ଅତିବଡ଼ୀ ଜଗନ୍ନାଥ ଦାସକୃତ

# ଶ୍ରୀମଦ୍‌ଭାଗବତ

ଶୁଦ୍ଧ ସଂସ୍କରଣ

(ପ୍ରଥମ-ଦ୍ୱାଦଶ ସ୍କନ୍ଧ)

ସଂପାଦନା

ନୀଳମଣି ମିଶ୍ର



ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥ ଦାସକୃତ

## ଶ୍ରୀମଦ୍‌ଭାଗବତ

(ପ୍ରଥମ-ଦ୍ୱାଦଶ ସ୍କନ୍ଧ)

ସଂପାଦନା :

**ନୀଳମଣି ମିଶ୍ର**


ପ୍ରକାଶକ :

**ଓଡ଼ିଶା ସାହିତ୍ୟ ଏକାଡେମୀ**

ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪

| | |
|---|---|
| ପ୍ରଥମ ସଂସ୍କରଣ | ୧୯୮୯-୯୩ |
| ଦ୍ୱିତୀୟ ସଂସ୍କରଣ | ୨୦୦୬ |
| ତୃତୀୟ ସଂସ୍କରଣ | ୨୦୧୩ |

ଡି.ଟି.ପି.: ପେଜ୍‌ମେକର କମ୍ପ୍ୟୁଟର ସର୍ଭିସେସ୍
୧୧୭, ବାପୁଜୀ ନଗର, ଭୁବନେଶ୍ୱର

ମୂଲ୍ୟ : ଟ ୧୫୦.୦୦

ମୁଦ୍ରଣ : **ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦**


ATIBADI JAGANNATHA DASAKRUTA

**SHRIMADBHAGABATA**

Edited by :

**Nilamani Mishra**


Published by :
**Odisha Sahitya Akademi,** Sanskruti Bhawan
Bhubaneswar - 751014

| | | |
|---|---|---|
| First Edition | : | 1989-93 |
| Second Edition | : | 2006 |
| Third Edition | : | 2013 |

D.T.P. : Pagemaker Computer Services
117, Bapuji Nagar, Bhubaneswar

Price : **Rupees One Hundred Fifty only**
Printed at : Odisha Government Press, Cuttack-10
ISBN : 81-7586 -137-1



Dr. Sudhanshu Sekhar Mishra



ଅତିବଡ଼ୀ ଜଗନ୍ନାଥ ଦାସ  ୧୪୮୭-୧୫୫୭

Dr. Sudhanshu Sekhar Mishra

# ଗୀତ ପ୍ରବନ୍ଧେ ଭାଗବତ

ଓଡ଼ିଆ ଜାତିର ପ୍ରାତଃ ସ୍ମରଣୀୟ ସନ୍ଥକବି ଅତିବଡ଼ୀ ଜଗନ୍ନାଥ ଦାସକୃତ ଶ୍ରୀମଦ୍ ଭାଗବତ ମହାପୁରାଣ ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ । ଓଡ଼ିଆ ଭାଷା, ସାହିତ୍ୟ, ଓଡ଼ିଶାର ଧର୍ମଧାରା ଓ ଜନଜୀବନକୁ ଏହି ଅନବଦ୍ୟ କୃତି ବିଗତ ପ୍ରାୟ ପାଂଚ ଶତାବ୍ଦୀ ଧରି ଆଚ୍ଛନ୍ନ କରି ରଖିଛି ।

ଜନନୀଙ୍କ ଇଚ୍ଛାରେ ଏହି ମହାଗ୍ରନ୍ଥ ରଚିତ ହୋଇଥିବା କଥା ଆଜି ମଧ୍ୟ ଜନଶ୍ରୁତିରେ ଜୀବନ୍ତ । ଜଗନ୍ନାଥ ଦାସଙ୍କ ମା' ଶ୍ରୀମନ୍ଦିରରେ ପ୍ରତ୍ୟହ ପଠିତ ସଂସ୍କୃତ ଭାଗବତ ବୁଝି ନପାରି, ନିଜ ମାତୃଭାଷାରେ ଭାଗବତ ରଚନା କରିବା ପାଇଁ ପୁତ୍ର ଜଗନ୍ନାଥଙ୍କୁ ଅନୁରୋଧ କରିଥିଲେ । ଜନନୀଙ୍କର ଏହି ଇଚ୍ଛାକୁ ଆହ୍ୱାନ ଓ ଅଙ୍ଗୀକାର ଭାବରେ ଗ୍ରହଣ କରି ମାତୃଭକ୍ତ ଜଗନ୍ନାଥ ଓଡ଼ିଆ ଭାଗବତ ରଚନାରେ ମନୋନିବେଶ କରିଥିଲେ । ନିଜ ମା' ଓ ପ୍ରକାରାନ୍ତରେ ସାରା ଓଡ଼ିଶାର ମା'ମାନେ ବୁଝି ପାରିଲା ଭଳି ସରଳ ଓ ସାବଲୀଳ ଭାଷାରେ, ତତ୍‌ସମ ଓ ତଦ୍‌ଭବ ଶବ୍ଦର ସୁନ୍ଦର ସମନ୍ୱୟରେ ପୁଣି ସହଜ ନବାକ୍ଷରୀ ଛନ୍ଦରେ ଓଡ଼ିଆ ଭାଗବତ ରଚନା କଲେ ଜଗନ୍ନାଥ ଦାସ । ଏହି ଗ୍ରନ୍ଥ ଯେ କାଳକବଳରେ ଅସ୍ତିତ୍ୱ ହରାଇଥିବା ଗୋଟିଏ ଐତିହାସିକ ଜାତିର ଅସ୍ମିତାର ପ୍ରତୀକ ପାଲଟିବ ଏବଂ ଏକ ବହୁଧା ବିଭକ୍ତ ଭୂଖଣ୍ଡକୁ ଏକତ୍ର କରିବ, ଏହା ହୁଏତ ଜଗନ୍ନାଥ ଦାସ ନିଜେ କେବେ ବି ଭାବି ନଥିବେ ।

ଗଜପତି ମହାରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ଥିଲା ଓଡ଼ିଶାରେ ସାଂସ୍କୃତିକ ଜାଗୃତିର ଏକ ସ୍ମରଣୀୟ ସୋପାନ । ପଂଚସଖାଙ୍କର ସାରସ୍ୱତ ସାଧନା, ଶ୍ରୀଚୈତନ୍ୟଙ୍କ ଶ୍ରୀକ୍ଷେତ୍ରରେ ଅବସ୍ଥାନ ସାଙ୍ଗକୁ ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କ ଭାଗବତ ବ୍ୟାଖ୍ୟା ସେହି ସମୟର କଥା । କିନ୍ତୁ ରାଜନୈତିକ କ୍ଷେତ୍ରରେ ସେହି କାଳଖଣ୍ଡ ଥିଲା ଅଧପତନର ଆଦ୍ୟ ଅଧ୍ୟାୟ । ଗଜପତି ପ୍ରତାପରୁଦ୍ର ଦେବଙ୍କ କ୍ରମାଗତ ପରାଜୟ ସୁବିସ୍ତୃତ ଓଡ଼ିଶୀ ସାମ୍ରାଜ୍ୟର ସଂକୋଚନର ହେତୁ ହୋଇଥିଲା । ଏହି ସଂକୋଚନର ଶେଷ ବିନ୍ଦୁ ଥିଲା ବୈତରଣୀ ଅବବାହିକାରେ ମୁକୁନ୍ଦଦେବଙ୍କ ପରାଜୟ । ଏହା ସାଲ ୧୫୬୮ର ଘଟଣା । ତା' ପରଠୁଁ ପ୍ରଲମ୍ବିତ ଅରାଜକତା, ଘନଘନ ପ୍ରାକୃତିକ ବିପର୍ଯ୍ୟୟ, ସାମାଜିକ ବିଶୃଙ୍ଖଳା ଓ ସାଂସ୍କୃତିକ ସ୍ଥାଣୁତ୍ୱ ମଧ୍ୟଦେଇ ପ୍ରାୟ ତିନିଶହ ବର୍ଷ କାଳ ରୁଦ୍ଧି ହୋଇଯାଇଥିଲା ଓଡ଼ିଶା ।

୧୮୬୮ ସାଲରେ ଓଡ଼ିଆ ଭାଷା ପ୍ରତି ହୋଇଥିବା ପ୍ରବାସୀ ଚକ୍ରାନ୍ତ ଏବଂ ତା'ର ଦୁଇବର୍ଷ ପୂର୍ବରୁ ପୁରୀ ଗଜପତିଙ୍କ ନବମ ଅଙ୍କରେ ସଂଘଟିତ ଭୟାବହ ନଅଙ୍କ ଦୁର୍ଭିକ୍ଷ ପରୋକ୍ଷରେ ଉତ୍କଳୀୟ ପୁନର୍ନବାର ଦ୍ୱାର ଉନ୍ମୁକ୍ତ କରିଥିଲା । ଓଡ଼ିଆ ଜାତିର ସମର୍ଥ ସେନାପତି ବ୍ୟାସକବି ଫକୀରମୋହନ ଓ ଓଡ଼ିଆପ୍ରାଣ କର୍ମବୀର ଗୌରୀଶଙ୍କର ରାୟଙ୍କ ଉଦ୍ୟମ ଓ ଆନ୍ଦୋଳନ ଫଳରେ ଓଡ଼ିଆ ଭାଷା ବିପଦମୁକ୍ତ ହୋଇ ପାରିଥିଲା । ପରବର୍ତ୍ତୀ ସମୟରେ ଉତ୍କଳଗୌରବ ମଧୁସୂଦନ ଦାସ ଏହି ଅସ୍ପଷ୍ଟ ଅସ୍ମିତାକୁ ସ୍ପଷ୍ଟ ଓ ପ୍ରମୂର୍ତ୍ତ କରିଥିଲେ । ଉତ୍କଳ ସମ୍ମିଳନୀ ମାଧ୍ୟମରେ ସେ ଏବଂ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପରି କର୍ଣ୍ଣଧାରଗଣ ଭାଷାଭିତ୍ତିକ ରାଜ୍ୟଗଠନ ପାଇଁ ନିରନ୍ତର ସଂଗ୍ରାମ ଜାରି ରଖିଥିଲେ । ଫଳସ୍ୱରୂପ, ଭାରତବର୍ଷ ସ୍ୱାଧୀନ ହେବାର ଏକ ଦଶନ୍ଧି ପୂର୍ବରୁ ଓଡ଼ିଶା ଦେଶର ପ୍ରଥମ ଭାଷାଭିତ୍ତିକ ରାଜ୍ୟ ହେବାର ସୌଭାଗ୍ୟ ଲାଭ କରିଥିଲା ।

ଏଠାରେ ଉଲ୍ଲେଖନୀୟ ଯେ ତିନିଶହ ବର୍ଷର ଅରାଜକତା ଓ ବିଦେଶୀ ଶାସନ ସତ୍ତ୍ୱେ ଓଡ଼ିଆମାନେ ନିଜ ମାତୃଭାଷାକୁ ଜଳାଞ୍ଜଳି ଦେଇ ନଥିଲେ । ଏହାର ପ୍ରମୁଖ କାରଣ ଥିଲା ଓଡ଼ିଆ ଭାଗବତ ଓ ଭାଗବତ ଟୁଙ୍ଗି । ଭାଗବତ ଟୁଙ୍ଗି ମାଧ୍ୟମରେ ତତ୍କାଳୀନ ତଥାକଥିତ ଓଡ଼ିଶା, ବିଚ୍ଛିନ୍ନାଂଚଳ ତଥା ଓଡ଼ିଶାର ଗଡ଼ଜାତ ଗୁଡ଼ିକର ପୁରପଲ୍ଲୀରେ ଦୈନିକ ଭାଗବତ ପାଠ ଏକ ପରମ୍ପରାରେ ପରିଣତ ହୋଇଥିଲା । ଭାଗବତକୁ ଓଡ଼ିଶାର ଲୋକମାନେ ଏତେ ଗଭୀର ଭାବରେ ଆତ୍ମସ୍ଥ କରିଥିଲେ ଯେ କଥାକଥାରେ ଭାଗବତରୁ ପ୍ରାସଙ୍ଗିକ ପଦ ଉଦ୍ଧାର ଓଡ଼ିଆମାନଙ୍କ ଅଭ୍ୟାସରେ ପଡ଼ିଯାଇଥିଲା । ଏହି ଅଭ୍ୟାସ ଆଜି ମଧ୍ୟ ବିପୁଳାଂଶରେ ଅବ୍ୟାହତ ରହିଛି । ପୁନଶ୍ଚ ଭାଗବତ ପୋଥିକୁ ସ୍ୱୟଂ ବାସୁଦେବ ଭାବରେ ପୂଜା କରିବାର ବିଧି ଏବଂ ମୃତ୍ୟୁଶଯ୍ୟାରେ ଭାଗବତ ପଠନର ପରମ୍ପରା ଓଡ଼ିଆ ଜାତିର ଏକାନ୍ତ ନିଜସ୍ୱ ।

ବିଶ୍ୱର କୌଣସି ଜାତି ଗୋଟିଏ ଗ୍ରନ୍ଥର ଜନ୍ମଦିନ ପାଳନ କରେ କି ? ଖୁବ୍ ସମ୍ଭବତଃ, ଏହାର ଉତ୍ତର ନକରାତ୍ମକ। କିନ୍ତୁ ଓଡ଼ିଆ ଜାତି ଭାଗବତର ଜନ୍ମଦିନ ପାଳନ କରେ । ଆଜି ମଧ୍ୟ ଏହା ଓଡ଼ିଆ ପଞ୍ଜିକାଭୁକ୍ତ ଏବଂ ସାରା ରାଜ୍ୟରେ ସଶ୍ରଦ୍ଧ ପାଳିତ। ଆଜି ମଧ୍ୟ ଭାଗବତର ଭାଷା ଓଡ଼ିଶାର ମାନକ ଭାଷା ।

ଏହି ସର୍ବଜନାଦୃତ ମହାଗ୍ରନ୍ଥ ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃକ ପ୍ରଥମେ ୧୯୮୯ ମସିହାରେ ପ୍ରକାଶିତ ହୋଇଥିଲା। ଓଡ଼ିଆ ଭାଗବତର ପାଠକୀୟ ଆଦର ଏଡ଼େ ବ୍ୟାପକ ଯେ ଇତିମଧ୍ୟରେ ଏହାର ଏକାଧିକ ସଂସ୍କରଣ ହୋଇ ସାରିଛି। ସମ୍ପ୍ରତି ଓଡ଼ିଶା ସରକାରଙ୍କ ଠାରୁ ସ୍ୱତନ୍ତ୍ର ଅନୁଦାନ ପ୍ରାପ୍ତ ହୋଇ ଓଡ଼ିଶା ସାହିତ୍ୟ ଏକାଡେମୀ ଭାଗବତର ଏକ ସୁଦୃଶ୍ୟ ସଂସ୍କରଣ ପାଠକ/ପାଠିକାମାନଙ୍କୁ ଭେଟି ଦେଉଛି। ଏହି ଜାତୀୟକାର୍ଯ୍ୟ ପାଇଁ ସକଳ ପ୍ରେରଣାର ଉତ୍ସ ତଥା ମାର୍ଗଦର୍ଶକ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିକଟରେ ଓଡ଼ିଶା ସାହିତ୍ୟ ଏକାଡେମୀ ଗଭୀର କୃତଜ୍ଞତା ଜ୍ଞାପନ କରୁଛି। ଓଡ଼ିଶାର ମାନ୍ୟବର ସଂସ୍କୃତି ମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତିଙ୍କୁ ଏବଂ ମାନ୍ୟବର ପୂର୍ବତନ ସଂସ୍କୃତି ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲଙ୍କୁ ସେମାନଙ୍କର ମୂଲ୍ୟବାନ ପରାମର୍ଶ ନିମନ୍ତେ ଅଜସ୍ର କୃତଜ୍ଞତା। ସମୟୋଚିତ ତତ୍ତ୍ୱାବଧାନ ଓ ଅକୁଣ୍ଠ ସହଯୋଗ ପାଇଁ ସଂସ୍କୃତି ବିଭାଗର କମିଶନର ତଥା ଶାସନ ସଚିବ ଶ୍ରୀ ସନ୍ତୋଷ ଷଡ଼ଙ୍ଗୀ, ପୂର୍ବତନ ପ୍ରମୁଖ ଶାସନ ସଚିବ ଶ୍ରୀ ଅଶୋକ କୁମାର ତ୍ରିପାଠୀ, ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ସୁଶୀଲ କୁମାର ଦାସ, ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଶ୍ରୀ ସାତକଡ଼ି ହୋତା, ପୂର୍ବତନ ସଭାପତି ଡକ୍ଟର ରାମଚନ୍ଦ୍ର ବେହେରା, ଉପସଭାପତି ଶ୍ରୀ ଗିରି ଦଣ୍ଡସେନା ତଥା ଏକାଡେମୀର ସଦସ୍ୟଗଣଙ୍କୁ ଏହି ଅବସରରେ ଅଶେଷ ସାଧୁବାଦ। ସମୟସୀମା ମଧ୍ୟରେ ଏହାର ମୁଦ୍ରଣ ପାଇଁ ସରକାରୀ ମୁଦ୍ରଣାଳୟ, କଟକ ବିଶେଷ ଧନ୍ୟବାଦାର୍ହ। ସର୍ବୋପରି ମୁଦ୍ରଣାଦି କାର୍ଯ୍ୟରେ ନିୟୋଜିତ ମୋର ସତୀର୍ଥଗଣଙ୍କ କର୍ମକୁଶଳତା ଅତ୍ୟନ୍ତ ପ୍ରଶଂସନୀୟ।

ଏହି ଅପୂର୍ବ ଗୀତ ପ୍ରବନ୍ଧକୁ ନବକଳେବରରେ ଓଡ଼ିଶାର ଅଗଣିତ ପାଠକ/ପାଠିକାମାନଙ୍କୁ ଅର୍ପଣ କରି ଓଡ଼ିଶା ସାହିତ୍ୟ ଏକାଡେମୀ ପରିବାର ନିଜକୁ ଗୌରବାନ୍ୱିତ ମନେ କରୁଅଛି।

**ବିଜୟ କୁମାର ନାୟକ**
ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର
ତା ୧୯.୦୯.୨୦୧୩ (ଶ୍ରୀଭାଗବତ ଜନ୍ମ)

Dr. Sudhanshu Sekhar Mishra

# ମୁଖବନ୍ଧ

ପୂଣ୍ୟଭୂମି ଭାରତ। ଧର୍ମଭୂମି ଭାରତ। ଆଧାତ୍ମିକ ଚେତନାର ପ୍ରଥମ ଉଦ୍‌ଭାସ ହୁଏ ଏଇ ଆର୍ଯ୍ୟ ଭୂମିରେ। ଈଶ୍ୱର ବ୍ରହ୍ମ, ପରମାତ୍ମା, ଆତ୍ମା, ମହାମାୟାର ବ୍ୟାଖ୍ୟା ଶୁଣିବାକୁ ମିଳିଛି ଏଇ ଭୂମିରେ। ବୈଦିକ ଯୁଗର ଅନେକ କାଳ ପରେ ମହର୍ଷି ବେଦବ୍ୟାସ ରଚନା କରନ୍ତି ସଂସ୍କୃତ ଭାଗବତ। ଏଥିରେ ଥିବା ସୃଷ୍ଟି ଓ ସ୍ରଷ୍ଟାଙ୍କ ଅମୃତବାଣୀ ପରବର୍ତ୍ତୀ କାଳରେ ସନାତନ ହିନ୍ଦୁ ଧର୍ମର ସଂପଦ ହୋଇଯାଏ। ଏହାର ପ୍ରାୟ ସାତ ଶହ ବର୍ଷ ପରେ ଓଡ଼ିଆ ଭାଷାରେ ଭାଗବତ ପ୍ରଥମେ ରଚନା କରନ୍ତି ମହାପୁରୁଷ ଜଗନ୍ନାଥ ଦାସ। ପଣ୍ଡିତମାନଙ୍କ ମତରେ ଜଗନ୍ନାଥ ଦାସ ଜନ୍ମ ଗ୍ରହଣ କରନ୍ତି ୧୪୯୧ ମସିହା ଅଗଷ୍ଟମାସ ଡେ'ର ତାରିଖରେ। ଉତ୍କଳ ଖଣ୍ଡର ପୁରୁଷୋତ୍ତମ କ୍ଷେତ୍ର ପୁରୀଠାରେ ତାଙ୍କର ସାକ୍ଷାତ ହୁଏ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହିତ ୧୫୧୦ରେ। ଏଇ ପୂଣ୍ୟଭୂମିରେ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଦିବ୍ୟଲୀଳା ଶେଷ ହେବା ପର୍ଯ୍ୟନ୍ତ ତାଙ୍କର ଅତି ପ୍ରିୟ ଥିଲେ ପୂଣ୍ୟାତ୍ମା ଜଗନ୍ନାଥ ଦାସ। ଭାରତୀୟମାନେ ଗଣ୍ଡୁଷେ ଜଳରେ ଦେଶର ସ୍ୱରୂପକୁ ଦର୍ଶନ କରୁଥିବା ବେଳେ ରାଜାମହାରାଜାମାନେ ଈଶ୍ୱରଙ୍କ ପ୍ରତିନିଧିଭାବେ ଲୋକଙ୍କୁ ଶାସନ ଓ ଦେଶକୁ ରକ୍ଷାକରିବା ପରିବର୍ତ୍ତେ ନିଜ ନିଜ ମଧ୍ୟରେ ଲଢୁଥିଲେ। ଦେଶର ଦୁଃସମୟରେ ଆଫଗାନ୍, ମୋଗଲ ଓ ଅନ୍ୟାନ୍ୟ ବିଦେଶୀ ଶତ୍ରୁ ଆକ୍ରମଣ କରନ୍ତି ଭାରତ। ଯୁଦ୍ଧରେ ରାଜାମହାରାଜାଙ୍କୁ ପରାଭୂତ କରି ମୋଗଲ ସୈନ୍ୟ ବାବରଙ୍କ ନେତୃତ୍ୱରେ ଉତ୍ତର ଭାରତ ଜୟ କରନ୍ତି। ଦେଶର ଏଇ ଦୁଃସମୟରେ ଶାସକମାନେ ପ୍ରଜାମାନଙ୍କୁ ପଣ୍ୟସାମଗ୍ରୀ ପରି ବ୍ୟବହାର କରୁଥିଲେ। ଲୋକମାନେ ମ୍ରିୟମାଣ ଓ ଅବସନ୍ନ ଥିଲାବେଳେ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣରେ ସାଧୁ ସନ୍ଥ ଓ ମହାପୁରୁଷମାନେ ଧର୍ମ, ସଂସ୍କୃତି ଓ ସାହିତ୍ୟ ମାଧ୍ୟମରେ ସଂଜୀବନୀମନ୍ତ୍ର ଶୁଣାଇଥିଲେ ଦେଶବାସୀଙ୍କୁ। ଦିନେ ଏକ ଶୁଭ ଲଗ୍ନରେ ମା'ଙ୍କ ଆଜ୍ଞା ଏଡ଼ିନପାରି ଶ୍ରୀମନ୍ଦିରସ୍ଥିତ ବଟ ଗଣେଶଙ୍କ ମନ୍ଦିର ପରିସରରେ ବ୍ୟାସଦେବଙ୍କ ଭାଗବତର ଓଡ଼ିଆ ବ୍ୟାଖ୍ୟା କରି ମା'ଙ୍କ ଇଚ୍ଛା ପୂର୍ଣ୍ଣ କରିଥିଲେ ଜଗନ୍ନାଥ ଦାସ।

ଦେଶର ଘଡ଼ିସନ୍ଧି ମୁହୂର୍ତ୍ତରେ ଜାତୀୟ ଜୀବନକୁ ସଂଜୀବନୀ ସଦୃଶ ପରିପୁଷ୍ଟ କରିଥିଲା ଉତ୍ତର ଭାରତରେ ସନ୍ଥ ତୁଳସୀ ଦାସଙ୍କ ରାମଚରିତ ମାନସ, କବୀରଙ୍କ ଦୋହା, ନାନକଙ୍କ ବାଣୀ, ଦକ୍ଷିଣରେ କମ୍ବନଙ୍କ ରାମାୟଣ ଓ ଉତ୍କଳ ଖଣ୍ଡରେ ପଞ୍ଚସଖାଙ୍କ ଆଧାତ୍ମିକ ଚେତନା। ପଞ୍ଚସଖାଙ୍କ ମଧ୍ୟରେ ଥିଲେ ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସ। ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ସହିତ ଏମାନଙ୍କର ଅନ୍ତରଙ୍ଗ ସମ୍ପର୍କସତ୍ତ୍ୱେ ଏମାନେ ତାଙ୍କ ପ୍ରେମଭକ୍ତି ବା ଗୌଡ଼ୀୟ ରାଧାକୃଷ୍ଣ ପ୍ରେମ ଧାରା ଗ୍ରହଣ କରିନଥିଲେ। ମହାପୁରୁଷ ଜଗନ୍ନାଥ ଦାସ ଦିନେ ବଟଗଣେଶଙ୍କ ପାଖରେ ସଂସ୍କୃତ ଭାଗବତର ସାବଲୀଳ ବ୍ୟାଖ୍ୟା କରୁଥିବା ବେଳେ ଶ୍ରୀଚୈତନ୍ୟ ଭାବ ବିହ୍ୱଳ ହୋଇ ତାଙ୍କୁ ଆଲିଙ୍ଗନ କଲେ ଏବଂ ଏହା ଅଢ଼େଇ ପହର ପର୍ଯ୍ୟନ୍ତ ଚାଲିଥିଲା ବୋଲି ଦିବାକର ଦାସ ବୈଷ୍ଣବ ଲୀଳାମୃତରେ ଲେଖିଛନ୍ତି।

ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ॥
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ॥
ପ୍ରେମଭାବରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ॥
ଅଢ଼ାଇ ଦିବସ ପର୍ଯ୍ୟନ୍ତ । ବେନି ରହିଲେ ପ୍ରେମଚିତ୍ତ ॥

ଦିନେ ମନ୍ଦିର ପରିକ୍ରମା ପରେ ଭକ୍ତପ୍ରବର ଜଗନ୍ନାଥ ଦାସଙ୍କୁ ଶ୍ରୀଜଗନ୍ନାଥଙ୍କ ଅନନ୍ୟ ଭକ୍ତ ବୋଲି କହିଥିଲେ ଶ୍ରୀଚୈତନ୍ୟ। 'ଜଗନ୍ନାଥ ଦାସ ମହାପ୍ରେମର ଭଣ୍ଡାର। ତେଣୁ ସେ ଆମ ସମସ୍ତଙ୍କ ନମସ୍ୟ ଓ ପୂଜ୍ୟ'। ଜଗନ୍ନାଥ ଦାସ ଥିଲେ ଅନନ୍ୟ ଜ୍ଞାନୀ ଭକ୍ତ। ସେ ଶ୍ରୀଚୈତନ୍ୟଙ୍କଠାରୁ ଦୀକ୍ଷା ନେବାପାଇଁ ଇଚ୍ଛା ପ୍ରକାଶ କଲାରୁ ଶ୍ରୀଚୈତନ୍ୟ ତାଙ୍କୁ ରାମଭକ୍ତ କବି ବଳରାମ ଦାସଙ୍କ ଠାରୁ ଦୀକ୍ଷା ନେବାପାଇଁ କହିଥିଲେ। ଗୌଡ଼ୀୟ ବୈଷ୍ଣବମାନଙ୍କ ମନ୍ତ୍ର 'ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ - ହରେ ରାମ ହରେ ରାମ ରାମ ରାମ ହରେ ହରେ' କିନ୍ତୁ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଉତ୍କଳୀୟ ମନ୍ତ୍ର 'ହରେ ରାମ ହରେ ରାମ ରାମ ରାମ ହରେ ହରେ-ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ' ଦୀକ୍ଷା ନେବା ପାଇଁ ସମ୍ମତି ଦେଇଥିଲେ। ଏଇ ନାମ ମନ୍ତ୍ରର ଭିନ୍ନତା ହିଁ ଉତ୍କଳୀୟ ବୈଷ୍ଣବମାନଙ୍କ ସ୍ୱକୀୟତା ପ୍ରମାଣ କରେ। ଜଗନ୍ନାଥ ଦାସଙ୍କୁ ଉତ୍କଳୀୟ ମତାନୁସାରେ ଦୀକ୍ଷା ନେବା ପାଇଁ କହିବା ଓ ତାଙ୍କୁ ଅତିବଡ଼ୀ

Dr. Sudhanshu Sekhar Mishra

କହି ଶ୍ରଦ୍ଧା ନିବେଦନ କରିବା ଗୌଡ଼ୀୟ ବୈଷ୍ଣବମାନଙ୍କୁ ଅସନ୍ତୁଷ୍ଟ କରିଥିଲା। ଏଣୁ କେତେକ ଭକ୍ତ ଶ୍ରୀକ୍ଷେତ୍ର ଛାଡ଼ି ବଙ୍ଗଦେଶକୁ ଫେରି ଯାଇଥିଲେ ଏବଂ ଆଉ କେତେକ ବୃନ୍ଦାବନ ଚାଲିଗଲେ ମଧ ଶ୍ରୀଚୈତନ୍ୟ ପୁରୀ ଧାମକୁ ସବୁଠାରୁ ଉତ୍ତମ କହି ଏଠାରେ ଶେଷ ପର୍ଯ୍ୟନ୍ତ ରହିଯାଇଥିଲେ। 'ଜଗନ୍ନାଥ ଚରିତମୃତ' ରେ ଉଲ୍ଲେଖ ଅଛି -

ଏବେ କଳିଯୁଗରେ ମୁହିଁ
ଜଗନ୍ନାଥ ଆଶ୍ରା କରଇ
ତୁମ୍ଭେ ନଛାଡ଼ି ଏହିପୁର
ଭଜ ଜଗନ୍ନାଥ ପୟର
କ୍ଷେତ୍ରେ ତୀର୍ଥେ ମୋ କାମ୍ୟ ନାହିଁ
ଏ କ୍ଷେତ୍ର ନଛାଡ଼ିବି ମୁହିଁ।

ଅତିବଡ଼ୀ ଜଗନ୍ନାଥଙ୍କ ସୁନାମ ବଢ଼ି ଚାଲିଲା। ଶ୍ରୀଚୈତନ୍ୟଙ୍କ ପ୍ରଦତ୍ତ ଅତିବଡ଼ୀ ସମ୍ମାନ ଗଜପତି ରାଜା ପ୍ରତାପରୁଦ୍ର ଦେବ ଶୁଣିବା ପରେ ନିଜେ ମଧ ଏହା ଆନନ୍ଦରେ ପ୍ରକାଶ କଲେ ଏବଂ ଜଗନ୍ନାଥ ଦାସଙ୍କୁ ଗୁରୁତୁଲ୍ୟ ସମ୍ମାନିତ କଲେ। ଜଗନ୍ନାଥ ଦାସଙ୍କ କୀର୍ତ୍ତି ପ୍ରସାରିତ ହେବାରୁ କେତେକ ଖଳ ପ୍ରକୃତିର ଲୋକେ ତାଙ୍କ ନାମରେ ନାନାଦି ଅପପ୍ରଚାର କରିବା ସତ୍ତ୍ୱେ ଗଜପତି ରାଜା ତାହା ଗ୍ରହଣ କରିନଥିଲେ। 'ସୁଧାତ୍ରୟ' ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ମହାପ୍ରଭୁଙ୍କ ଦର୍ଶନ ପରେ ଦିନେ ଗଜପତି ବଟଗଣେଶଙ୍କ ପାଖରେ ପହଞ୍ଚିଲେ ଏବଂ ସେଠାରେ ଜଗନ୍ନାଥ ଦାସଙ୍କ ପୁରାଣପାଠ ଶୁଣି ମୁଗ୍ଧ ହେଲେ। ତାଙ୍କର ଭାବାବେଶ ହେଲା ଏବଂ ସେତେବେଳେ ମହାତ୍ମା ଜଗନ୍ନାଥ ଦାସଙ୍କୁ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁଶରଧାରୀ ବଂଶୀବାଦନରତ ଲୋଭନୀୟ ଅଷ୍ଟଭୁଜ ବିଶିଷ୍ଟ ଶ୍ୟାମସୁନ୍ଦର ରୂପରେ ବିରାଜମାନଥିବା ଦେଖିଲେ।

ଅଷ୍ଟବାହୁର୍ଜଗନ୍ନାଥଦାସୋ ବଂଶୀଧନୁଶରାନ୍
ଶଙ୍ଖ ଚକ୍ରଂ ଗଦା ପଦ୍ମଂ ବିଭ୍ରଚ୍ଛ୍ୟାମୋଦ୍ଧଭଉଦା ॥ (ସୁଧାତ୍ରୟ)

ଏଥିରୁ ପୂଣ୍ୟାତ୍ମା ଜଗନ୍ନାଥ ଦାସଙ୍କ ଆଧାତ୍ମିକ ଉତ୍ତରଣର ନିଦର୍ଶନ ମିଳେ। ସେ ତୀର୍ଥ ଭ୍ରମଣ ନକରି ନୀଳାଚଳ ନିବାସୀ ଜଗନ୍ନାଥଙ୍କୁ ହିଁ ପରମଇଷ୍ଟଭାବେ ଗ୍ରହଣ କରିଥିଲେ। ମହାପୁରୁଷ ଜଗନ୍ନାଥ ଜଣେ ସୁପଣ୍ଡିତ, ଜ୍ଞାନୀ, କବି, ସନ୍ୟାସୀ ଓ ପରମଭକ୍ତ ଥିଲେ। ସେ ଶ୍ରୀଚୈତନ୍ୟଙ୍କୁ ଶ୍ରଦ୍ଧାଭକ୍ତି କରୁଥିଲେ। ବୈଷ୍ଣବ ମଣ୍ଡଳୀରେ ଜଗନ୍ନାଥ ଦାସ ଶ୍ରୀଚୈତନ୍ୟଙ୍କ ପ୍ରିୟସଖାଭାବେ ଆଦୃତ ହେଉଥିଲେ।

ଦିନେ ସନ୍ଧ୍ୟାରେ କୀର୍ତ୍ତନ ଓ ଉଦଣ୍ଡ ନୃତ୍ୟ କଲାବେଳେ ଶ୍ରୀଚୈତନ୍ୟଙ୍କ ପାଦରେ ଆଘାତ ଲାଗିଲା। ତାଙ୍କୁ ସେବାକରୁଥିଲେ ପରମଭକ୍ତ ଜଗନ୍ନାଥ ଦାସ। ଶ୍ରୀଚୈତନ୍ୟ କହିଥିବା ବୈଷ୍ଣବ ଲୀଳାମୃତରେ ଉଲ୍ଲେଖ ଅଛି-

ଭକତି ବାଟ ବତାଇଲୁ । ସଖ୍ୟରେ ମୋତେ ବନ୍ଧାଇଲୁ ॥
ତୋତେ ଛାଡ଼ି ମୁଁ ଯିବି ନାହିଁ । ତୋ ଯିବା ବାଟ ଥିବି ଚାହିଁ ॥
ପ୍ରଭୁର ନୟନ ଲୋତକ । ସ୍ୱାମୀ ହେରଇ ପ୍ରଭୁମୁଖ ॥

ଶ୍ରୀଚୈତନ୍ୟଙ୍କ ମହାପ୍ରାୟାଣ ଘଟିଥିଲା ୧୫୩୦ ଖ୍ରୀଷ୍ଟାବ୍ଦରେ। ପରେ ରଥଯାତ୍ରା ଦିନ ଗଜପତି ରାଜା ଏହା ଘୋଷଣା କରିଥିଲେ। ମହାତ୍ମା ଜଗନ୍ନାଥ ଦାସଙ୍କ ଷାଠିଏ ବର୍ଷରେ ମହାପ୍ରୟାଣ ହୋଇଥିଲା ମକର ମାସ ଶୁକ୍ଲପକ୍ଷ ଦ୍ୱିବା ନକ୍ଷତ୍ରଯୁକ୍ତର ସପ୍ତମୀ ତିଥି ୨୫.୨.୧୫୫୦ରେ।

ତାଙ୍କର ଅନେକ ସଂସ୍କୃତ ଓ ଓଡ଼ିଆ ରଚନା ମଧ୍ୟରେ ଭାଗବତ ହିଁ ଶ୍ରେଷ୍ଠ। ଲୋକ କଲ୍ୟାଣ ଓ ସଂସ୍କାର ପାଇଁ ଏଇ ରଚନା ଉଦ୍ଦିଷ୍ଟ। ବୈଦିକ ଯୁଗରୁ ଧର୍ମ, ସଂସ୍କୃତି ଓ ସାହିତ୍ୟ ମାଧମରେ ପ୍ରବାହିତ ହେଉଥିବା ଉର୍ଦ୍ଧ୍ୱମୁଖୀ ଆଧାତ୍ମିକ ଚେତନାକୁ ସଂଜିବିତ କରି ରଖିବା ପାଇଁ 'ଭାଗବତ' ଉଦ୍ଦିଷ୍ଟ। ଏହା ଓଡ଼ିଆ ଜାତୀୟ ଜୀବନକୁ କେବଳ ଈଶ୍ୱର ପ୍ରେମରେ ଭସାଇ ନେଇନାହିଁ, ଏ ଜାତିର ପରମଇଷ୍ଟ ମହାପ୍ରଭୁ ମହାବାହୁ ଜଗନ୍ନାଥଙ୍କୁ ଓଡ଼ିଆ ଜାତିର ଶ୍ରେଷ୍ଠ ଐଶ୍ୱର୍ଯ୍ୟଭାବେ ପ୍ରତିପାଦିତ କରେ। ଓଡ଼ିଆ ସଂସ୍କୃତି, ଓଡ଼ିଆ ଆଧାତ୍ମିକ ଚେତନା ଓ ଓଡ଼ିଆ ଚଳଣି ଓ ଓଡ଼ିଆ ଭାଷା ସାହିତ୍ୟ ମାଧମରେ ପାଞ୍ଚଶହ ବର୍ଷ ଧରି ଗ୍ରାମରୁ ସହର ପର୍ଯ୍ୟନ୍ତ ବାସ କରୁଥିବା କୋଟି କୋଟି ଲୋକଙ୍କୁ ଦିବ୍ୟ ଚେତନାଯୁକ୍ତ କରି ଆସିଛି ଓଡ଼ିଆ ଭାଗବତ। ଆହୁରି ବଡ଼ କଥା ହେଉଛି ଯେ ଷୋହଳଶହ ଶତାବ୍ଦୀର

Dr. Sudhanshu Sekhar Mishra

ଜାତିବାଦ ଭାଙ୍ଗିବା ପାଇଁ ଶ୍ରୀଚୈତନ୍ୟ ଓ ପଞ୍ଚସଖା ଯେପରି ପଣ କରିଥିଲେ ସେହିପରି ଲୋକଙ୍କ ମାଧମରେ ସମତା ପ୍ରତିଷ୍ଠା ପାଇଁ ଶାସ୍ତ୍ର ପୁରାଣର ସଦୁପଯୋଗ କରିଥିଲେ।

ମହାତ୍ମା ଜଗନ୍ନାଥ ଦାସଙ୍କ ରଚିତ ଭାଗବତର ବୈଶିଷ୍ଟ ହେଉଛି ଯେ ସେ ବେଦବ୍ୟାସଙ୍କ ସଂସ୍କୃତ ଭାଗବତ ମହାପୁରାଣ ଅନୁକରଣ କରିଥିଲେ ମଧ ଏହାର ଆକ୍ଷରିକ ଅନୁବାଦ କରି ନାହାନ୍ତି। ବରଂ ଓଡ଼ିଶାର ପାଣି ପବନକୁ ସୁହାଇବା ପରି ଭାଗବତର ପ୍ରାଣବନ୍ତ ଅନୁସୃଜନ କରିଛନ୍ତି ଯେ ତାହା ଲୋକଶିକ୍ଷା ଓ ଜାତି ଗଠନର ମାଧମ ହୋଇଛି। ସାହିତ୍ୟ ଯେତେବେଳେ ମଣିଷର ଅବବୋଧକୁ ପ୍ରଭାବିତ କରେ ସେତେବେଳେ ଈଶ୍ୱରାନୁଭୂତି ଉଦଗ୍ର ହୁଏ। ୧୩୦୦ ଖ୍ରୀଷ୍ଟାବ୍ଦରେ ପ୍ରଣୀତ ଓଡ଼ିଶାର ପ୍ରାତଃ ସ୍ମରଣୀୟ ଶ୍ରୀଧରସ୍ୱାମୀଙ୍କ 'ଭାବାର୍ଥ ଦୀପିକା' ଅନୁସରଣ କରି ଜଗନ୍ନାଥ ଦାସ ଭାଗବତର ଆରମ୍ଭରେ ନୃସିଂହଙ୍କୁ ସ୍ତୁତି କରିଛନ୍ତି।

ନମଇ ନୃସିଂହ ଚରଣ । ଅନାଦି ପରମ କାରଣ ॥

ସଂସ୍କୃତ ଭାଗବତରେ ମୋଟ ୩୩୫ ଅଧାୟ ଥିବା ବେଳେ ଓଡ଼ିଆ ଭାଗବତରେ ୩୪୨ ଅଧାୟ ରହିଛି। ସଂସ୍କୃତ ଭାଗବତରେ ଅଠର ହଜାର ଶ୍ଳୋକ ଥିଲାବେଳେ ଓଡ଼ିଆ ଭାଗବତରେ ୨୭୧୬୦ ନବାକ୍ଷରୀ ପଦ ରହିଛି। ଜଟିଳ ତତ୍ତ୍ୱକୁ କିପରି ବୋଧଗମ୍ୟ ସରଳ ଭାଷାରେ ଜଗନ୍ନାଥ ଦାସ ଭାଗବତରେ ବର୍ଣ୍ଣନା କରିଛନ୍ତି ଏହାର ଅନେକ ଦୃଷ୍ଟାନ୍ତ ରହିଛି। ଏପରିକି କଥାରେ ଭାଗବତର ସୂକ୍ତି ଗୁଡ଼ିକୁ ଉଦ୍ଧାର କରିଥାନ୍ତି ଗ୍ରାମାଞ୍ଚଳର ଲୋକମାନେ। ଏଥିରୁ ଭାଗବତର ଲୋକପ୍ରିୟତା ଜଣାପଡ଼େ।

ଧର୍ମ, ଅର୍ଥ, କାମ, ମୋକ୍ଷ ଏଇ ପୁରୁଷାର୍ଥ ଅର୍ଜନ କରିବା ପାଇଁ ସତ୍ୟ, ଧର୍ମ, ତ୍ୟାଗ, ତିତିକ୍ଷା, ସଂଯମ ଓ ସହିଷ୍ଣୁତାକୁ ଆଶ୍ରୟ କରି ସଂସାର କର୍ମ କରିବା ପାଇଁ ଭାଗବତରେ ଅଛି। 'ଧନ୍ୟ ସେ ଜୀବ ଏ ଜଗତେ – ଯେ ପ୍ରାଣଧରେ ପରହିତେ ॥' ବେଦ, ଉପନିଷଦ ଓ ଗୀତାଠାରୁ ଭାଗବତ ପର୍ଯ୍ୟନ୍ତ ପରର ହିତ ସାଧନକୁ ଧର୍ମ ଏବଂ ଅନ୍ୟକୁ ପୀଡ଼ା ଦବା ପାପ ବୋଲି କୁହାଯାଇଛି। ଭାରତୀୟ ଧର୍ମ ହେଉଛି ମାନବ ଧର୍ମ। ସତ୍ୟ ହେଉଛି ଏହାର ମୂଳ। ସତ୍ୟ ଓ ଧର୍ମ ବିନା ଈଶ୍ୱର ଲାଭ ଅସମ୍ଭବ। ପ୍ରଥା, ପରମ୍ପରା ବେଳେ ବେଳେ ଦାଟବଣା ହୋଇ ଅନ୍ଧବିଶ୍ୱାସରେ ପରିଣତ ହୁଏ। ଭାଗବତ ଧର୍ମ ହେଉଛି ମାନବ ସେବା। ଜନ ଜୀବନକୁ ସଂଗଠିତ ଓ ଅନୁପ୍ରେରିତ କରିବା ସଂସ୍କୃତିର ଲକ୍ଷ୍ୟ। ତେଣୁ ଭାଗବତ କେବଳ ଏକ ଧର୍ମପୁସ୍ତକ ନୁହେଁ, ଓଡ଼ିଆ ତଥା ଭାରତୀୟ ଜାତୀୟ ଜୀବନକୁ ସଂଗଠିତ କରିବା ହେଉଛି ଏହାର ଶାସ୍ୱତ ଭୂମିକା। ସେଥିପାଇଁ ମୂଲ୍ୟବୋଧର ଅବକ୍ଷୟ ସତ୍ତ୍ୱେ ବି ଭାଗବତର ମହିମା ହ୍ରାସ ପାଇନାହିଁ। ଘରେ ଘରେ ଭାଗବତ ଗାଦି ପୂଜା ପାଉଥିବା ଏହାର ନିଦର୍ଶନ। ଜଣେ ମହାପୁରୁଷ କିପରି ଗୋଟିଏ ଜାତିକୁ ସତ୍‌ମାର୍ଗରେ ଯିବା ପାଇଁ ପ୍ରେରଣାର ଉତ୍ସ ହୋଇପାରନ୍ତି ମହାପୁରୁଷ ଜଗନ୍ନାଥ ଦାସଙ୍କ ଭାଗବତ ଏହାର ଉଜ୍ଜ୍ୱଳ ନିଦର୍ଶନ। ଭାରତୀୟ ଜାତୀୟତାପରି ଓଡ଼ିଆ ଜାତୀୟତାକୁ ମଧ ପ୍ରଭାବିତ କରିଛି ଧର୍ମ, ସଂସ୍କୃତି ଓ ସାହିତ୍ୟ। ଦୀର୍ଘକାଳର ପରାଧୀନତା ଲୋକମାନଙ୍କ ଚେତନାକୁ ଖର୍ବ କରିଥିଲା ବେଳେ ଭାଗବତ ଓ ଶ୍ରୀମଦ୍ ଭାଗବତ ଗୀତାର ବାଣୀ ଜନଜୀବନକୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରୁଥିଲା। ସମାଜ ସଂସ୍କାର ଓ ସମାଜ ଗଠନ ନିମିତ୍ତ ଭାଗବତ ଲୋକମାନଙ୍କୁ ବାଟ ଦେଖାଉଥିଲା। ଜାତିଭେଦ ଯୋଗୁ ଗଢ଼ି ଉଠିଥିବା ସାମାଜିକ ଶ୍ରେଣୀବଦ୍ଧତା ଭାଙ୍ଗିବା ପାଇଁ ପଞ୍ଚସଖା ଉଦ୍ୟମ କରୁଥିଲାବେଳେ ଏହାର ଅଗ୍ର ଭାଗରେ ଥିଲେ ଲକ୍ଷ୍ମୀପୁରାଣ ରଚୟିତା ଭକ୍ତ ବଳରାମ ଦାସ ଏବଂ ଭାଗବତର ପ୍ରଣେତା ମହାପୁରୁଷ ଜଗନ୍ନାଥ ଦାସ। ସାହିତ୍ୟକୁ ସମାଜ ଗଠନର ମାଧମରୂପେ ବିନିଯୋଗ କରିବା ପାଇଁ ମହାପୁରୁଷ ଜଗନ୍ନାଥ ଦାସଙ୍କ ଭାଗବତ ଆଲୋକବର୍ତ୍ତିକା ହୋଇ ରହିବ ଏଥିରେ ସନ୍ଦେହ ନାହିଁ। ଭାଷା ଓ ସାହିତ୍ୟ ଏବଂ ଧର୍ମ ଯେ ଜାତୀୟତାର ମୂଳଉତ୍ସ ଏହା ପ୍ରମାଣିତ ହୋଇଛି ପଞ୍ଚସଖା ଯୁଗରେ। ମହାପୁରୁଷ ଜଗନ୍ନାଥ ଦାସ ଓଡ଼ିଶାବାସୀଙ୍କ ପ୍ରଣମ୍ୟ ପୂଣ୍ୟାତ୍ମା ପୁରୁଷ।

**ସାତକଡ଼ି ହୋତା**

ସଭାପତି

ଓଡ଼ିଶା ସାହିତ୍ୟ ଏକାଡେମୀ

Dr. Sudhanshu Sekhar Mishra

# ମୁଖବନ୍ଧ

(ଦ୍ୱିତୀୟ ସଂସ୍କରଣ ଅବସରରେ)

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ୧୬ଶ ଶତାବ୍ଦୀର ରଚିତ ଶ୍ରୀମଦ୍‌ଭାଗବତ ଓଡ଼ିଶାର ସବୁଠାରୁ ଜନପ୍ରିୟ ଗ୍ରନ୍ଥ । ହିନ୍ଦୀ ସାହିତ୍ୟ ଜଗତରେ ତୁଳସୀ ଦାସଙ୍କ ସହ ଓଡ଼ିଆ ସାହିତ୍ୟର ଜଗନ୍ନାଥଙ୍କ ସ୍ଥାନ ତୁଳନୀୟ । ଗ୍ରନ୍ଥଟି ଦୀର୍ଘ ୫୦୦ ବର୍ଷ ଧରି ଓଡ଼ିଶାର ଜନ-ଜୀବନକୁ ପ୍ରଭାବିତ କରିଛି ।

ଜଗନ୍ନାଥ ଦାସଙ୍କ ସମୟ ଓଡ଼ିଶାରେ ବୈଷ୍ଣବ ଧର୍ମ ବିକାଶର କାଳ । ଏତିକିବେଳେ ବଙ୍ଗଳାର ଭକ୍ତି ଧର୍ମର ମହାନ୍ ପ୍ରଚାରକ ଶ୍ରୀଚୈତନ୍ୟ ପୁରୀ ଧାମକୁ ଆସିଥିଲେ ଏବଂ ଏଠାରେ ଜଗନ୍ନାଥ ଦାସଙ୍କ ସହ ତାଙ୍କର ଭବ୍ୟ ସାକ୍ଷାତ୍ ହୋଇଥିଲା । ଜଗନ୍ନାଥ ଦାସଙ୍କ ଉତ୍କଳୀୟ ବୈଷ୍ଣବ ଧର୍ମ ବିଚାର, ଶ୍ରୀଚୈତନ୍ୟଙ୍କ ଗୌଡ଼ୀୟ ଧର୍ମ ବିଚାରଠାରୁ ଭିନ୍ନ ଥିଲା । ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କର ଜଣେ ଉଚ୍ଚ ପ୍ରଶଂସକ ଥିଲେ । ତାଙ୍କ ଧର୍ମ ବିଚାର, ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଶ୍ରୀଚୈତନ୍ୟ ତାଙ୍କୁ 'ଅତିବଡ଼ୀ' ଉପାଧି ଦେଇଥିଲେ ।

ଧର୍ମୀୟ ଦୃଷ୍ଟିକୋଣରୁ ଷୋଡ଼ଶ ଶତକଟି ସମଗ୍ର ଭାରତ ପାଇଁ ଏକ ଉଲ୍ଲେଖନୀୟ କାଳ ଥିଲା । ଏତିକିବେଳେ ଜଗନ୍ନାଥ ଦାସଙ୍କ ସମସାମୟିକ ଶ୍ରୀଚୈତନ୍ୟ, ଶଙ୍କର ଦେବ, କବୀର, ନାନକ, ମୀରାବାଇ ପ୍ରମୁଖ ଭକ୍ତି ମାର୍ଗ-ପ୍ରବର୍ତ୍ତକ ଗଣଙ୍କ ଆବିର୍ଭାବ ହୋଇଥିଲା । ଜଗନ୍ନାଥ ଦାସଙ୍କ ବୈଷ୍ଣବ ଧର୍ମ ଅନୁଚିନ୍ତନ ଓଡ଼ିଶାର ଧର୍ମ ମାନସକୁ ବେଶ୍ ଛୁଇଁଥିଲା । ତାଙ୍କ ରଚନା ଓଡ଼ିଆ ମନପ୍ରାଣକୁ ଆପ୍ଲୁତ କରିଥିଲା । ସହଜ, ସରଳ ଭାଷା, ସୁନିପୁଣ ଛନ୍ଦ ମାଧୁରୀ, ସର୍ବୋପରି ନବାକ୍ଷରୀ ବୃତ୍ତରେ ରଚିତ ଭାଗବତ ପାଠକର ହୃଦୟକୁ ଯେଭଳି ଆହ୍ଲାଦିତ କଲା, ତାର ପଟାନ୍ତର ନାହିଁ ।

ବ୍ୟାସଦେବଙ୍କ ସଂସ୍କୃତ ଭାଗବତ ହିଁ ଜଗନ୍ନାଥ ଦାସଙ୍କୁ ଅନୁପ୍ରାଣିତ କରିଛି । କିନ୍ତୁ ଏହି ଓଡ଼ିଆ ରୂପାନ୍ତର ଆକ୍ଷରିକ ଅନୁବାଦ ନୁହେଁ । ଭାବ, ଭାବନାତ୍ମକ ମୌଳିକତା ଓ ସ୍ୱାତନ୍ତ୍ର୍ୟରେ ଭରପୁର ଏହି ଅତୁଳନୀୟ ସୃଷ୍ଟି ନିଜସ୍ୱ ଶୈଳୀରେ ଗୁମ୍ଫିତ । ସେତେବେଳର ଓଡ଼ିଶାର ରାଜନୈତିକ ଓ ସାମାଜିକ ସ୍ଥିତି ନାନା ସଙ୍କଟ ଓ ବିପର୍ଯ୍ୟୟ ମଧ୍ୟ ଦେଇ ଗତି କରୁଥିଲା । ଏହି ଦୁଃସମୟରେ ଓଡ଼ିଆମାନଙ୍କୁ ଏକତ୍ର ସୂତ୍ରରେ ବାନ୍ଧି ରଖିଥିଲେ ଓଡ଼ିଆ ଜାତିର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ଓ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତ । ଏ ଦୁଇଟି ହିଁ ସେଦିନ ଓଡ଼ିଆମାନଙ୍କ ପ୍ରେରଣା, ସାହସ ଓ ସ୍ପନ୍ଦନର ଉତ୍ସ ଥିଲା । ଏପରି ଗୌରବ, ଶ୍ରଦ୍ଧା, ସମ୍ମାନ ଭାଗବତ ବ୍ୟତୀତ ଓଡ଼ିଆ ସାହିତ୍ୟର ଅନ୍ୟ କୌଣସି ସୃଷ୍ଟିର ଭାଗ୍ୟରେ ସମ୍ଭବ ହୋଇନାହିଁ ।

ଦ୍ୱାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ଆଜିର ଶ୍ରୀମନ୍ଦିରରେ ଜୟଦେବଙ୍କ ଶ୍ରୀ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଚରଣରେ ନିବେଦିତ ହେବା ଫଳରେ ସେଠାରେ କୃଷ୍ଣ ଚେତନାର ଯେଉଁ ବୀଜ ବପନ ହୋଇଥିଲା, ତାହା ଷୋଡଶ ଶତାବ୍ଦୀ ବେଳକୁ ପ୍ରସ୍ଫୁଟିତ, ପଲ୍ଲବିତ ହୋଇସାରିଥିଲା ।

ଅନେକ ପଣ୍ଡିତଙ୍କର ବିଶ୍ୱାସ ଯେ ମୂଳ ସଂସ୍କୃତ ଭାଗବତ ଦକ୍ଷିଣ ଭାରତରେ ରଚିତ ହୋଇଥିଲା ଏବଂ ସେଠାରେ ଅଲୱାର ସନ୍ଥକବି / କବୟତ୍ରୀଙ୍କ ରଚିତ ମଧୁର ଗୀତି ମାଧ୍ୟମରେ କୃଷ୍ଣ ପ୍ରେମର ତରଙ୍ଗ ସାଧାରଣ ଜନତାଙ୍କ ମଧ୍ୟରେ ପ୍ରବାହିତ ହୋଇଥିଲା । ଜଗନ୍ନାଥ ଦାସଙ୍କ ସମୟରୁ ପୁରୁଷୋତ୍ତମ / ନୀଳମାଧବ ସମ୍ପୂର୍ଣ୍ଣ କୃଷ୍ଣମୟ ହୋଇ ସାରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଜଗନ୍ନାଥ ଦାସଙ୍କ ଭାଗବତ ଗ୍ରନ୍ଥଟି କୃଷ୍ଣ ଚେତନାର ଏକ ସାମଗ୍ରିକ, ମଧୁର ଅଭିବ୍ୟକ୍ତି । କୃଷ୍ଣଲୀଳାର ବର୍ଣ୍ଣନା ଏହାର ମୁଖ୍ୟ ଆକର୍ଷଣ । ଏହା ସହିତ ଭକ୍ତ କବିଙ୍କ ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ ଅନେକ ସ୍ତୁତି ଏହି ମହାକାବ୍ୟର ଏକ ବିଶେଷ ବିଭବ ।

ଭାଗବତର ପ୍ରସାର ଫଳରେ ଓଡ଼ିଆ ଭାଷା ଅଗଣିତ ସାଧାରଣ ମଣିଷଙ୍କ ନିକଟତର ହେଲା । ଗାଁ ଗାଁରେ ଭାଗବତ ଟୁଙ୍ଗି ଗଢ଼ିଉଠିଲା । ଏଠାରେ ପ୍ରତିଦିନ ସନ୍ଧ୍ୟାରେ ଭାଗବତ ପାରାୟଣ କରାଯାଉଥିଲା ଏବଂ ଏକ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି ହେଉଥିଲା । ସବୁ ଜାତିର ଲୋକେ ଏହି ଟୁଙ୍ଗିରେ ଏକତ୍ର ହୋଇ ଭାଗବତ ଶୁଣୁଥିଲେ ଓ ଓଡ଼ିଆ ଅକ୍ଷର ଶିଖୁଥିଲେ । ଫଳରେ, ଶିକ୍ଷା-ସାହିତ୍ୟ ବିକାଶର ଏକ ନୂତନ ଦିଗନ୍ତ ଖୋଲିଥିଲା । ଭାଗବତ, ସମାଜରେ ଏକ ନୈତିକ ତଥା ଶୃଙ୍ଖଳିତ ଭିତ୍ତିଭୂମି ସୃଷ୍ଟିକଲା । ଭାଗବତ ଗ୍ରନ୍ଥଟି ନୀତିବାଣୀ, ସଦୁକ୍ତି, ଲୋକୋକ୍ତି ଆଦିର ଏକ ଅନବଦ୍ୟ ଅମୂଲ୍ୟ ଭଣ୍ଡାର । ଭାଗବତର ଭାଷା ସରଳ, ପ୍ରାଞ୍ଜଳ ତଥା ଭାବଗର୍ଭକ । ଏ ଭାଷା ସର୍ବକାଳୀନ ଓ ସାର୍ବଜନୀନ ଶକ୍ତିରେ ପ୍ରସ୍ତୁତ ।

ଆଜି ଭାଗବତ ଟୁଙ୍ଗି ନାହିଁ, କିନ୍ତୁ ଭାଗବତ-ଧର୍ମ-ସଂସ୍କୃତିର ପ୍ରଭାବ ଆମ ଭିତରେ ବଞ୍ଚିରହିଛି । ଭାଗବତ ଏବେ ବି ଆମର ଜୀବନ-ବେଦ । ସନ୍ତାନ ଜନ୍ମରେ ଏନ୍ତୁଡ଼ିଶାଳରେ ନବଜାତ ପାଖରେ ଶ୍ରୀକୃଷ୍ଣ ଜନ୍ମଲୀଳାର ଅଧ୍ୟାୟ ପଠିତ ହେଲେ ବା ମରଣ

Dr. Sudhanshu Sekhar Mishra

କାଳରେ ଭାଗବତର ବାଣୀରୁ ପଦେ ଦିପଦ କାନରେ ପଡ଼ିଗଲେ ଜୀବନ ଧନ୍ୟ ହୋଇଯିବ ବୋଲି ଆମର ବିଶ୍ୱାସ ରହିଛି । ବାସ୍ତବରେ ମାନସିକ ଶାନ୍ତି, ବୌଦ୍ଧିକ ତୃପ୍ତି ଓ ସୁସ୍ଥ ସୁନ୍ଦର ସମାଜ ଗଠନରେ ଭାଗବତ ପାଠ ଓ ଚର୍ଚ୍ଚାର ଅମାପ ମୂଲ୍ୟ ରହିଛି ।

ଏହି ଅନବଦ୍ୟ କାବ୍ୟର ସୃଷ୍ଟି ହେବାର ଅଳ୍ପ କାଳ ମଧ୍ୟରେ ଏହା ସମଗ୍ର ଓଡ଼ିଆ ଜାତି ଦ୍ୱାରା ଆଦୃତ ହୋଇଥିଲା । ଜନମାନସରେ ଏହା ଭଗବାନଙ୍କ ଜୀବନ୍ତ ଓ ମୂର୍ତ୍ତିମାନ ପ୍ରତୀକ ରୂପେ ଗୃହୀତ ହୋଇଥିଲା । ବିଶ୍ୱ ସାହିତ୍ୟରେ ଏପ୍ରକାର ସମ୍ମାନ ଓ ପରାକାଷ୍ଠା କ୍ୱଚିତ ଦୃଷ୍ଟିଗୋଚର ହୁଏ ।

ଯୁଗସ୍ରଷ୍ଟା ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତକୁ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ପୂର୍ବରୁ ଇଣ୍ଟରନେଟ୍ ମାଧ୍ୟମରେ ଉପଲବ୍ଧ ହେବାର ବ୍ୟବସ୍ଥା କରିଛନ୍ତି । ଏହା ଓଡ଼ିଶା ସରକାରଙ୍କ ୱେବ୍‌ସାଇଟ୍ orissa.gov.in ରେ ଉପଲବ୍ଧ । ଏହା ଅଚିରେ ବିଶ୍ୱର ଅଗଣିତ ଭାଗବତପ୍ରେମୀଙ୍କ ଆକାଂକ୍ଷା ପୂରଣ କରିବ ବୋଲି ଆମର ବିଶ୍ୱାସ ରହିଛି ।

ବର୍ତ୍ତମାନ ଏହାର ମୁଦ୍ରିତ ସଂସ୍କରଣ ଓଡ଼ିଶା ସାହିତ୍ୟ ଏକାଡେମୀ ସୁଲଭ ମୂଲ୍ୟରେ ପୁନଃପ୍ରକାଶ କରିଛନ୍ତି । ଏହାଫଳରେ ଜନସାଧାରଣ ଏହି ଅମୂଲ୍ୟ ଗ୍ରନ୍ଥ କ୍ରୟ କରି ପାଠ କରିବା ସହଜସାଧ୍ୟ ହେବ ।

ଜଗତ-ଜୀବନର କଲ୍ୟାଣ ପାଇଁ ଭାଗବତ ଆମକୁ ଆଲୋକ ଆଡ଼କୁ ନେଉ-ଏହାହିଁ ଶ୍ରୀଜଗନ୍ନାଥଙ୍କ ଚରଣ କମଳରେ ଆମର ଜଣାଣ ।

**ଡକ୍ଟର ସୁବାସ ପାଣି**
ମୁଖ୍ୟ ଶାସନ ସଚିବ, ଓଡ଼ିଶା

Dr. Sudhanshu Sekhar Mishra

# ସୂଚନା

(ଦ୍ୱିତୀୟ ସଂସ୍କରଣ ଅବସରରେ)

ଷୋଡଶ ଶତାବ୍ଦୀରେ ରଚିତ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍‌ଭାଗବତ ଓଡ଼ିଆ ଭାଷା ଓ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ମହାକବି ବ୍ୟାସଙ୍କ ମୂଳ ସଂସ୍କୃତ ଭାଗବତ ଉପରେ ଆଧାରିତ ହୋଇଥିଲେ ହେଁ ଏହାର ସ୍ୱତନ୍ତ୍ରତା ଓ ମୌଳିକତା ଅବଶ୍ୟ ସ୍ୱୀକାର୍ଯ୍ୟ । ଭଗବାନ ଶ୍ରୀକୃଷ୍ଣଙ୍କ ଚରିତ ତଥା ବୈଷ୍ଣବୀୟ ଭାବଧାରା ଏହାର ବିଷୟବସ୍ତୁ । ଏହା ଦ୍ୱାଦଶ ସ୍କନ୍ଧରେ ବିଭକ୍ତ ଏବଂ ନବାକ୍ଷରୀ ବୃତ୍ତରେ ରଚିତ ।

ଶବ୍ଦବିଭବ, ଛନ୍ଦ ଲାଳିତ୍ୟ, ରୂପକଳ୍ପ ତଥା ଅସାଧାରଣ କାବ୍ୟ ଚାତୁରୀରେ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍‌ଭାଗବତ ସହିତ ତୁଳନୀୟ ଗ୍ରନ୍ଥ ଭାରତୀୟ ସାହିତ୍ୟରେ ବିରଳ । କୋଟି କୋଟି ଓଡ଼ିଆଙ୍କର ଏହା ସର୍ବାଧିକ ପ୍ରିୟଗ୍ରନ୍ଥ, ଶତାବ୍ଦୀ ଶତାବ୍ଦୀ ଧରି ଏହାର ଭାବ ଓ ଭାଷା ଓଡ଼ିଆ ମାନସିକତାକୁ ଆଚ୍ଛନ୍ନ କରି ରଖିଛି । ଏହି ଗ୍ରନ୍ଥକୁ କେନ୍ଦ୍ରକରି ଓଡ଼ିଶାର ଗ୍ରାମେ ଗ୍ରାମେ ଗଢ଼ି ଉଠିଛି ଭାଗବତ ଟୁଙ୍ଗୀ ବା ଭାଗବତ ଘର । ଓଡ଼ିଆ ଜାତୀୟତା ଓ ପରିଚୟର ଅନ୍ୟତମ ମୂଳ ଉତ୍ସ ଶ୍ରୀମଦ୍ ଭାଗବତ ।

ଅତିବଡ଼ୀ ଜଗନ୍ନାଥ ଦାସ ଥିଲେ ସଂସ୍କୃତ ଓ ଓଡ଼ିଆ ଭାଷାରେ ଅସାଧାରଣ ବିଦ୍ୱାନ । ସେ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । କଥିତ ଅଛି, ତାଙ୍କ ମାଆ ବୁଝି ପାରିବେ ବୋଲି ସେ ସଂସ୍କୃତ ଭାଗବତକୁ ସରଳ ଓଡ଼ିଆରେ ଭାଷାନ୍ତର କରିଥିଲେ । ପ୍ରତ୍ୟହ ସେ ଜଗନ୍ନାଥ ମନ୍ଦିର କଳ୍ପବଟ ବୃକ୍ଷ ମୂଳରେ ଏହା ପାରାୟଣ କରୁଥିଲେ । ମହାପୁରୁଷ ଚୈତନ୍ୟ ଦେବ ଜଗନ୍ନାଥ ଦାସଙ୍କ ଭାଗବତ ପାରାୟଣ, ବିଦ୍‌ବତ୍ତା ଓ କବିତ୍ୱରେ ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ ।

୧୯୯୪ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଶ୍ରୀମଦ୍‌ଭାବତର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ କରିଥିଲେ । ଏହାର ସମ୍ପାଦନା କରିଥିଲେ ବିଶିଷ୍ଟ ଗବେଷକ ପଣ୍ଡିତ ନୀଳମଣି ମିଶ୍ର । ବର୍ତ୍ତମାନ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରାଯାଉଛି । ପଣ୍ଡିତ ମିଶ୍ରଙ୍କ ସମ୍ପାଦିତ ପାଠ ହିଁ ଏଥିପାଇଁ ଗୃହୀତ ହୋଇଛି ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତର ଆବେଦନ କୌଣସି ଯୁଗରେ ହ୍ରାସ ହୋଇ ନପାରେ ।

ଜନ୍ମାଷ୍ଟମୀ
୧୫ ଅଗଷ୍ଟ ୨୦୦୬
ଭୁବନେଶ୍ୱର

**ଗଣେଶ୍ୱର ମିଶ୍ର**
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ପଦେକଥା

(ଦ୍ୱିତୀୟ ସଂସ୍କରଣ ଅବସରରେ)

ଭାଗବତପ୍ରେମୀ ଜନସାଧାରଣଙ୍କ ନିକଟରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ କୃତ ଶ୍ରୀମଦ୍‌ଭାଗବତକୁ ପହଞ୍ଚାଇ ଦେବା ପାଇଁ ପଣ୍ଡିତ ନୀଳମଣି ମିଶ୍ରଙ୍କ ସମ୍ପାଦନାରେ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୯୪ ମସିହାରେ ଏହାର ଶୁଦ୍ଧ ସଂସ୍କରଣ ପ୍ରକାଶ କରିଥିଲା । ଇତି ମଧ୍ୟରେ ଏହି ସଂସ୍କରଣ ଅଭୂତପୂର୍ବ ଲୋକପ୍ରିୟତା ହାସଲ କରିଅଛି ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ କୃତ ନବାକ୍ଷରୀ ଛନ୍ଦରେ ରଚିତ ଶ୍ରୀମଦ୍‌ଭାଗବତ ଗ୍ରନ୍ଥଟି ଓଡ଼ିଆ ଜାତିର ଅମୂଲ୍ୟ ନିଧି । ଯୁଗ ଯୁଗଧରି ଏହା ଆମର ଭାଷା, ସାହିତ୍ୟ, ସଂସ୍କୃତି ଓ ଜନଜୀବନକୁ ଗଭୀର ଭାବରେ ଅନୁପ୍ରାଣିତ କରି ଆସୁଅଛି । ଆଜି ମଧ୍ୟ ପୁରପଲ୍ଲୀରେ ଭାଗବତ ଗାଦି ପୂଜିତ ହୋଇ ଆସୁଅଛି । ଏହି ଗ୍ରନ୍ଥକୁ ଆଧାର କରି ଗାଁ ଗହଳିରେ ଭାଗବତ ଟୁଙ୍ଗୀମାନ ଗଢ଼ି ଉଠି ଏକଦା ପଲ୍ଲୀବାସୀଙ୍କ ପାଇଁ ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚେତନାର ପ୍ରାଣକେନ୍ଦ୍ର ହୋଇଥିଲା । ଜନସାଧାରଣ କୌଣସି ସଙ୍କଟର ସମ୍ମୁଖୀନ ହେଲେ, ଭାଗବତ ପଂକ୍ତି ଉଦ୍ଧାର କରନ୍ତି । ଭାଗବତ ଓଡ଼ିଆ ଜାତୀୟ ଜୀବନ ସହିତ କିପରି ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ, ଏହା ତାହାର ଏକ ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ।

ଏହାର ପୁନଃ ପ୍ରକାଶନର ଆବଶ୍ୟକତା ଉପଲବ୍ଧି କରି ଓଡ଼ିଶା ସାହିତ୍ୟ ଏକାଡେମୀ ଏହାର ପୁନଃ ମୁଦ୍ରଣ କରୁଛନ୍ତି । ଜନସାଧାରଣଙ୍କ ନିକଟରେ ସେମାନଙ୍କର ଅତିପ୍ରିୟ ଏହି ଭାଗବତଟିକୁ ସୁଲଭ ମୂଲ୍ୟରେ ପହଞ୍ଚାଇବା ପାଇଁ ଓଡ଼ିଶା ସରକାର ଏହାର ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ ଏକାଡେମୀ ପକ୍ଷରୁ ଧନ୍ୟବାଦ ଜଣାଉଅଛି । ବିଶେଷ କରି ଓଡ଼ିଶାର ମୁଖ୍ୟ ଶାସନ ସଚିବ, ସଂସ୍କୃତିପ୍ରେମୀ ଡଃ ସୁବାସ ପାଣି ଏଦିଗରେ ଯଥେଷ୍ଟ ସହାୟତା ପ୍ରଦାନ କରିଥିବାରୁ ତାଙ୍କୁ ମଧ୍ୟ ଏକାଡେମୀ ପକ୍ଷରୁ ସାଧୁବାଦ ଜ୍ଞାପନ କରୁଛି ।

**ରବୀନ୍ଦ୍ରନାଥ ଦାସ**
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

Dr. Sudhanshu Sekhar Mishra

# ସନ୍ଥକବି ଜଗନ୍ନାଥ ଦାସ ଓ ତାଙ୍କର ଭାଗବତ

(ପ୍ରଥମ ସଂସ୍କରଣ ଅବସରରେ)

ହିନ୍ଦୁଧର୍ମରେ ତିନିଗୋଟି ଗ୍ରନ୍ଥକୁ ବିଶେଷ ସ୍ଥାନ ଦେଇ ସେମାନଙ୍କୁ ପ୍ରସ୍ଥାନତ୍ରୟୀ ବୋଲି କୁହାଯାଇଛି । ସେଗୁଡ଼ିକ ହେଲା, ଉପନିଷଦ, ବ୍ରହ୍ମସୂତ୍ର ଏବଂ ଭାଗବତ ଗୀତା । କିନ୍ତୁ ଧର୍ମ ଓ ତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ଶ୍ରୀମଦ୍ ଭାଗବତ ଗୀତା ଏବଂ ଶ୍ରୀମଦ୍‌ଭାଗବତ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଗୀତାରେ ବେଦ ଓ ଉପନିଷଦର ସାରତତ୍ତ୍ୱ ବର୍ଣ୍ଣନା କରାଯାଇଥିବା ବେଳେ, ଶ୍ରୀମଦ୍‌ଭାଗବତରେ ସେହି ତତ୍ତ୍ୱକୁ ଲୌକିକ ତଥା ସାଧାରଣ ବୋଧଗମ୍ୟ ରସାଳ ଭାଷାରେ ବିଭିନ୍ନ ଆଖ୍ୟାୟିକା ଛଳରେ ବୁଝାଇ ଦିଆଯାଇଛି । ତେଣୁ ପ୍ରସ୍ଥାନତ୍ରୟୀ ଅପେକ୍ଷା ଶ୍ରୀମଦ୍‌ଭାଗବତ ଲୋକଙ୍କ ପାଖରେ ବେଶୀ ଆଦୃତ । ଭଗବାନ ବ୍ୟାସଦେବ ଶ୍ରୀମଦ୍‌ଭାଗବତ ରଚନା କରିବା ପରେ ହିଁ ଶାନ୍ତି ପାଇଥିଲେ । ପ୍ରସ୍ଥାନତ୍ରୟୀ ଭିତରେ ଯଦିଓ ଭାଗବତ ଗଣ୍ୟ ହୁଏ ନାହିଁ, ତଥାପି ଯଦି ଚତୁର୍ଥ ପ୍ରସ୍ଥାନ ରୂପେ କୌଣସି ଗ୍ରନ୍ଥ ମର୍ଯ୍ୟାଦା ପାଇବାକୁ ଉପଯୁକ୍ତ ହୁଏ, ତେବେ ଭାଗବତ ହିଁ ସେହି ସ୍ଥାନ ପାଇବ । ଏ ଦୃଷ୍ଟିରୁ ଭାଗବତର ପ୍ରଚାର ଓ ପ୍ରସାର ସମଗ୍ର ଭାରତବର୍ଷରେ ଉଲ୍ଲେଖନୀୟ ।

ଓଡ଼ିଆ ଭାଷା ଓ ଜାତି ପ୍ରତି ଶ୍ରୀଜଗନ୍ନାଥଙ୍କ ଅପାର କରୁଣା ଯୋଗୁଁ ସନ୍ଥକବି ଜଗନ୍ନାଥ ଦାସ ଓଡ଼ିଶାରେ ଜନ୍ମଗ୍ରହଣ କରି ସଂସ୍କୃତ ଭାଗବତକୁ ଓଡ଼ିଆରେ ଲେଖି ପ୍ରଚାର କରିଥିଲେ । ସେତେବେଳର ରକ୍ଷଣଶୀଳ ହିନ୍ଦୁ ତଥା ବ୍ରାହ୍ମଣ ସମାଜରେ ଓଡ଼ିଆରେ ସଂସ୍କୃତ ଭାଗବତକୁ ଲେଖି ପ୍ରଚାର କରିବା କେବଳ ଓଡ଼ିଆ ଭାଷା ନୁହେଁ, ସମଗ୍ର ସମାଜ ନିମନ୍ତେ ଏକ ବୈପ୍ଳବିକ ଚିନ୍ତାଧାରା-ଏକ ଦୁଃସାହସିକ ଆଧ୍ୟାତ୍ମିକ କାର୍ଯ୍ୟ ।

ଜଗନ୍ନାଥ ଦାସଙ୍କର ଜନ୍ମ ପୁରୀ ସହର ନିକଟବର୍ତ୍ତୀ ଗୋଟିଏ ବ୍ରାହ୍ମଣ ଶାସନରେ । ସେତେବେଳେ ବ୍ରାହ୍ମଣ ସମାଜ ଅତ୍ୟନ୍ତ ରକ୍ଷଣଶୀଳ ଥିଲା ଏବଂ ସେମାନଙ୍କର ଧାରଣା ଥିଲା ଯେ ସଂସ୍କୃତ ରଚନାବଳୀକୁ ଓଡ଼ିଆ ଭାଷାରେ ଅନୁବାଦ କରାହୋଇ ପାରିବ ନାହିଁ । ସଂସ୍କୃତ ଭାଷାର ମଧୁର ପଦଲାଳିତ୍ୟ ତଥା ଗଭୀର ଚିନ୍ତାଧାରାକୁ କୌଣସି ପ୍ରାଦେଶିକ ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ ବୋଲି ସେତେବେଳେ ସଂସ୍କୃତ ଅଭିଜ୍ଞ ପଣ୍ଡିତମାନେ ଭାବୁଥିଲେ । ତେଣୁ ସଂସ୍କୃତ ଭାଷାରେ ଲିଖିତ ଶ୍ରୀମଦ୍‌ଭାଗବତକୁ ଓଡ଼ିଆରେ ଲେଖିଲେ କେବଳ ଯେ ସଂସ୍କୃତ ଭାଷାର ମର୍ଯ୍ୟାଦା କ୍ଷୁର୍ଣ୍ଣ ହେବ ତାହା ନୁହେଁ, ବରଂ ଶ୍ରୀମଦ୍‌ଭାଗବତ ମଧ୍ୟ ଅପବିତ୍ର ହୋଇଯିବ ବୋଲି ଆଶଙ୍କା କରାଯାଉଥିଲା ।

ଏହି ପରିପ୍ରେକ୍ଷୀରେ ଥରେ ଜଗନ୍ନାଥ ଦାସଙ୍କ ମାଆ ପୁଅକୁ କହିଲେ, "ପୁଅ, ଭାଗବତ ପଢ଼ା ହେଲାବେଳେ, ମୁଁ ସେଥିରୁ କିଛି ବୁଝି ପାରୁନାହିଁ । ମୁଁ ବୁଝିବା ପରି ତୁ କ'ଣ ମୋ ଭାଷାରେ ଭାଗବତଟି ଲେଖିଦେଇ ପାରିବୁ ନାହିଁ ?" ଏହି ପଦେ କଥା ଜଗନ୍ନାଥ ଦାସଙ୍କ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ସେଥିରୁ ଜନ୍ମନେଲା ଏକ ମହାନ୍ ସଙ୍କଳ୍ପ । ଜଗନ୍ନାଥ ଦାସଙ୍କ କର୍ଣ୍ଣ-କୁହରରେ ପ୍ରବେଶ କଲା ଲକ୍ଷ ଲକ୍ଷ ମାଆ ଭଉଣୀଙ୍କ ଆତୁର ନିବେଦନ, "ଆମେ ବୁଝିବା ପରି ତୁମେ କ'ଣ ଆମ ଭାଷାରେ ଭାଗବତଟିଏ ଲେଖିଦେଇ ପାରିବ ନାହିଁ ?" ସଂସ୍କୃତ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରିଥିବା ଶ୍ରୋତ୍ରୀୟ ବ୍ରାହ୍ମଣଙ୍କ ପ୍ରତି ଏହାଥିଲା ଏକ ବିପ୍ଳବର ଆହ୍ୱାନ । ଭାଗବତକୁ ଓଡ଼ିଆ ଭାଷାରେ ଲେଖି ଅପାସର ଚାଣ୍ଡାଳ ସବୁ ଓଡ଼ିଆଙ୍କ ପାଇଁ ଭକ୍ତିର ଗଙ୍ଗା ବୁହାଇବାକୁ ସେ ଯେଉଁ ବୈପ୍ଳବିକ ପଦକ୍ଷେପ ନେଲେ, ତାହା ଭାଷା, ଧର୍ମ ତଥା ସାମାଜିକ ଚେତନା ନିମନ୍ତେ ଏକ ଅତୁଳନୀୟ ପଦକ୍ଷେପ ଥିଲା ।

ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କ ଶରଣ ନେଇ ନୃସିଂହଙ୍କୁ ଆରାଧନା କରି ଜଗନ୍ନାଥ ମନ୍ଦିରରେ ଭାଗବତ ରଚନା ଆରମ୍ଭ କରିଥିଲେ, 'ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ ।' ଶ୍ରୀଜଗନ୍ନାଥ ପ୍ରଥମେ ଥିଲେ ନୃସିଂହ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଅଚଳାଭକ୍ତି ଏବଂ ପୂଜା ହେତୁ ଯଜ୍ଞ ମଧ୍ୟରୁ ଆବିର୍ଭୂତ ହୋଇଥିଲେ ନୃସିଂହ । ତାଙ୍କର ସେ ବିକଟାଳ ଭୈରବ ରୂପ ଦେଖି ଭୀତତ୍ରସ୍ତ ରାଜା କାତର ପ୍ରାର୍ଥନା ଜଣାଇଲେ - "ପ୍ରଭୁ ମୁଁ ଯେଉଁ ଶାନ୍ତ ପରଂବ୍ରହ୍ମଙ୍କର ଅପାଣିପାଦ ରୂପ ଧ୍ୟାନ କରିଥିଲି, ସେହି ରୂପ ତ ଏ ନୁହନ୍ତି । ଏହି ଯଜ୍ଞକୁଣ୍ଡରୁ ନୃସିଂହଙ୍କର ଆବିର୍ଭାବ ହେଲା ବା କିପରି ?" ଏହି ସମୟରେ ସ୍ୱର୍ଗରୁ ଆକାଶବାଣୀ ହେଲା, "ଭକ୍ତରାଜା ଇନ୍ଦ୍ରଦ୍ୟୁମ୍ନ, ଏ ହେଉଛନ୍ତି ସେହି ଅପାଣିପାଦ ଜଗତର ନାଥ, ଯାହାଙ୍କର ଅଲୌକିକ କଳ୍ପନା ତୁମେ କରିପାରିଛ । ସେ ପ୍ରଥମେ ନୃସିଂହ ରୂପରେ ତୁମକୁ ଦର୍ଶନ ଦେଉଛନ୍ତି । ତୁମେ ତାଙ୍କୁ ବିଷ୍ଣୁ ରୂପରେ ପୂଜାର୍ଚ୍ଚନା କର । ତା'ପରେ ସେ ତୁମର କଳ୍ପିତ ରୂପରେ ପ୍ରକାଶ ପାଇବେ ।"

ନୃସିଂହ ହିଁ ଶ୍ରୀଜଗନ୍ନାଥଙ୍କର ଆଦ୍ୟରୂପ । ଶ୍ରୀମନ୍ଦିର ବେଢ଼ା ଭିତରେ ମୁକ୍ତିମଣ୍ଡପ ପାଖରେ ଏବେ ବି ନୃସିଂହଙ୍କର ସେହି କ୍ଷୁଦ୍ର ମନ୍ଦିର ରହିଅଛି । ଲକ୍ଷ୍ମୀଙ୍କ ମନ୍ଦିରରେ ଏବେ ବି ଲକ୍ଷ୍ମୀ-ନୃସିଂହଙ୍କର ଶାନ୍ତ କମନୀୟ ମୂର୍ତ୍ତି ଶୋଭାବର୍ଦ୍ଧନ କରୁଛି । ନୃସିଂହ ହିଁ ପରଂବ୍ରହ୍ମ, ଅନାଦିକାରଣଙ୍କ ପ୍ରଥମ ବହିଃପ୍ରକାଶ । ଶ୍ରୀଜଗନ୍ନାଥଙ୍କୁ ନୃସିଂହ ରୂପରେ ବନ୍ଦନା କରି ଜଗନ୍ନାଥ ଦାସ ଓଡ଼ିଆ ଭାଗବତର ଆରମ୍ଭ କରି ସଂସ୍କୃତ ଭାଗବତଠାରୁ ତାର ସ୍ୱାତନ୍ତ୍ର୍ୟ ପ୍ରକାଶ କରିଛନ୍ତି ତଥା ନୃସିଂହଙ୍କ ଚରଣ ବନ୍ଦନା କରି ସେ ବିପ୍ଳବର ଅଗ୍ନିଶିଖା ଧାରଣ କରିଛନ୍ତି ।

Dr. Sudhanshu Sekhar Mishra

ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିଥିବାରୁ ସେ ଏବଂ ତାଙ୍କ ପ୍ରେରଣାଦାତ୍ରୀ ଜନନୀ-ଉଭୟଙ୍କୁ ଅପାଂକ୍ତେୟ ହେବାକୁ ପଡ଼ିଥିଲା ଏବଂ ସମାଜର ଅନେକ ନିର୍ଯାତନା ସେମାନଙ୍କୁ ଭୋଗ କରିବାକୁ ପଡ଼ିଥିଲା । ତଥାପି ଜଗନ୍ନାଥ ଦାସ ନିଜର ସ୍ୱଧର୍ମ ପାଳନ କରିଥିଲେ । ସେହି ସ୍ୱଧର୍ମ ହେଲା ନିଜ ମାତାଙ୍କ ପ୍ରତି, ନିଜ ମାତୃଭାଷା ପ୍ରତି, ଦେବାର ଅଗଣିତ ଓ ଜନସାଧାରଣଙ୍କ ପ୍ରତି ଏବଂ ନିଜର ଇଷ୍ଟଦେବ ଭାଗବତର କେନ୍ଦ୍ରବିନ୍ଦୁ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରଦ୍ଧା, ଅନୁରାଗ ତଥା ଭକ୍ତିର ନିବେଦନ ।

ଜଗନ୍ନାଥ ଦାସ ଭାଗବତ ରଚନା କରିବା ପୂର୍ବରୁ ଆଦିକବି ସାରଳା ଦାସ ଦାଣ୍ଡିବୃତ୍ତରେ ମହାଭାରତ ରଚନା କରିଥିଲେ ।

କିନ୍ତୁ ତାହା ଥିଲା ଛନ୍ଦବିହୀନ । କେଉଁଠି ନବାକ୍ଷରୀ ତ କେଉଁଠି ଚତୁର୍ଦ୍ଦଶାକ୍ଷରୀ, କେଉଁଠି ଷୋଡ଼ଶାକ୍ଷରୀ ତ କେଉଁଠି ପଞ୍ଚବିଂଶାକ୍ଷରୀ, ପଦ ପଢ଼ିବା ନିମନ୍ତେ ଯେତେ ବାଟ ଗଲା । ଯେପରି ବର୍ଷାକାଳୀନ ନଦୀ ତାର ପ୍ରଖର ସ୍ରୋତରେ ଥଳକୂଳ ନ ମାନି ବନ୍ୟା ରୂପରେ ବହିଯାଉଚି : ଜଗନ୍ନାଥ ଦାସଙ୍କ ଭାଗବତରେ ତାହାହେଲା ଏକ ନିର୍ମଳ ଶାରଦୀୟ କୁଳୁନାଦିନୀ ସ୍ରୋତସ୍ୱିନୀ-ନବାକ୍ଷରୀ ବୃତ୍ତରେ ଏକ ଛନ୍ଦୋବଦ୍ଧ ମହାକାବ୍ୟ । ସରଳ ଭାଷାରେ ବେଦ ଉପନିଷଦର ଗୁଢ଼ତତ୍ତ୍ୱ ପରିବେଷଣ କରିବାରେ ସେହି ନିପୁଣ ହସ୍ତର ଲେଖନୀ ଆଜି ମଧ୍ୟ ଓଡ଼ିଆ କବିଙ୍କ ନିମନ୍ତେ ଏକ ନବଦିଗନ୍ତର ସୂଚନା ଦେଇପାରୁଛି ।

ସଂସ୍କୃତ ଭାଗବତର ଆଦ୍ୟ ଶ୍ଳୋକ -

ନିଗମକଳ୍ପତରୋର୍ଗଳିତଂ ଫଳଂ
ଶୁକମୁଖାଦମୃତଦ୍ରବସଂଯୁତମ ।
ପିବତ ଭାଗବତଂ ରସମାଳୟଂ
ମୁହୁରହୋ ରସିକା ଭୁବିଭାବୁକାଃ ।।

ଏହି ଗୂଢ଼ ଅର୍ଥକୁ ଜଗନ୍ନାଥ ଦାସ ମାତ୍ର ଷୋଳଟି ଧାଡ଼ିରେ ଯେପରି ସରଳ ସାବଲୀଳ ଅଥଚ ଚମତ୍କାର କାବ୍ୟିକ ଶୈଳୀରେ ବର୍ଣ୍ଣନା କରି ଯାଇଛନ୍ତି, ବିଶ୍ୱ ସାହିତ୍ୟରେ ତାର ପଟାନ୍ତର ନାହିଁ ।

ସକଳ ବେଦ ହୋଇ ବୃକ୍ଷେ
ଫଳ ଫଳିଲେ ଅନ୍ତରୀକ୍ଷେ
କେତେହେଁ ଦିନେ ପାଚି ତଳେ
ବୃକ୍ଷୁ ପଡ଼ିଲେ ବାୟୁ ବଳେ
ଶୁକ ଧାଇଁଲେ ତାହା ଦେଖି
ପକ୍ଷୀଙ୍କ ସଙ୍ଗତ ଉପେକ୍ଷି
ଚୋଷେ ଅଧରେ କ୍ଷତ ହେଲା
ଭିତରେ ସୁରଙ୍ଗ ଦିଶିଲା
ତହୁଁ ଗଳିଲା ରସ ସାର
କି ଅବା ଦେବା ପଟାନ୍ତର
ଅମୃତ ନିନ୍ଦେ ସ୍ୱାଦୁପଣେ
ସୁଜନେ ପିବ ଅନୁକ୍ଷଣେ
ଆନନ୍ଦେ କର ସୁଧାପାନ
ଯେଣେ ପାଇବ ଦିବ୍ୟଜ୍ଞାନ
ଏ ରସ ଚାରିବେଦ ମୂଳ
ନିଗମ ବୃକ୍ଷର ଏ ଫଳ ।।

ବ୍ୟାସଦେବ ଭାଗବତର ପ୍ରଶସ୍ତି ଗାଇ ସଂସ୍କୃତ ଭାଗବତର ଶେଷ ଆଡ଼କୁ ଲେଖିଛନ୍ତି ଯେ ସଂସାରର ମାୟାମୋହରୁ ରକ୍ଷା ପାଇବା ନିମନ୍ତେ ଜୀବନ ଥିବା ପର୍ଯ୍ୟନ୍ତ ଭାଗବତ ପାଠ କରିବା ଆବଶ୍ୟକ । ଏହି କଥାକୁ ମଧ୍ୟ ଜଗନ୍ନାଥ ଦାସ ସରଳ ଭାଷାରେ ସୁନ୍ଦର ପଦଯୋଜନା କରି ଓଡ଼ିଆ ଭାଗବତରେ ପ୍ରକାଶ କରିପାରିଛନ୍ତି ମନକୁ ଛୁଇଁବା ପରି ।

ସଂସ୍କୃତ ଭାଗବତଠାରୁ ଓଡ଼ିଆ ଭାଗବତର ସ୍ୱାତନ୍ତ୍ର୍ୟ ଅନେକ ସ୍ଥଳରେ ପ୍ରତିପାଦିତ । ମୃଗୁଣୀ କଥା ଏହିପରି ଏକ ସ୍ୱତନ୍ତ୍ର ବିଷୟ । ଏହା ତାଙ୍କର ନିଜସ୍ୱ କଳ୍ପନା । ତଥାପି ଭାଗବତର ଅଙ୍ଗସୌଷ୍ଠବ ବୃଦ୍ଧି କରି ଏହା ଭାଗବତର ଏକ ଅଂଶ ହୋଇପାରିଛି । ଗୋଟିଏ ଦିଗରେ ଶବର ନିଜର ଜାଲ ବିସ୍ତାର କରିଦେଇ ଅନ୍ୟ ଦିଗରେ ଅଗ୍ନିର ହୁତାଶନ ଜାଳି ଦେଇଛି । ଚତୁର୍ଦ୍ଦିଗରେ ଭୀଷଣ ଦୁର୍ବିପାକ । ଅସହାୟ ହୋଇ ମୃଗୁଣୀ କାତର ଭାବରେ ମହାଭାରତର ସତୀ ଦ୍ରୌପଦୀଙ୍କ ପରି ଅନନ୍ୟୋପାୟ ହୋଇ ଜଗନ୍ନାଥଙ୍କର

ଆଶ୍ରୟ ନେଇଛି ଏବଂ ଶେଷରେ ମୃଗୁଣୀକୁ ଭଗବାନ ରକ୍ଷା କରିଛନ୍ତି । ଜୀବନରେ ଏହିପରି ଦୁର୍ଦ୍ଦିନ ଆସେ ପ୍ରତ୍ୟେକ ସଂସାରୀ ବ୍ୟକ୍ତି ପାଇଁ । ସେତେବେଳେ ସେ ଏକ ଅସହାୟ ମୃଗୁଣୀ ହୋଇଯାଏ । ତାହା ପାଇଁ ଜଗନ୍ନାଥ ଦାସ ତାଙ୍କର ମୃଗୁଣୀ ସ୍ତୁତି ଛାଡ଼ି ଯାଇଛନ୍ତି । ସମସ୍ତ ମନ ଏବଂ ହୃଦୟ ଦେଇ ଅସହାୟା ମୃଗୁଣୀଟି ପରି ଯଦି କେହି ଈଶ୍ୱରଙ୍କୁ ଡାକେ ସେ ଡାକ ଜଗନ୍ନାଥ ସାଙ୍ଗେ ସାଙ୍ଗେ ଶୁଣନ୍ତି । ସେଥିପାଇଁ ସେ ଏହି ଓଡ଼ିଆ ଜାତିର ରକ୍ଷକ । ମୃଗୁଣୀ ସ୍ତୁତି କେବଳ ଏକ ଆଖ୍ୟାୟିକା ନୁହେଁ, ଏଥିରେ ହୃଦୟର ଯେଉଁ ଅନ୍ତରତମ କାରୁଣ୍ୟ, ପୂର୍ଣ୍ଣାଙ୍ଗ ସମର୍ପଣ ଓ ଶରଣାପନ୍ନ ଭରି ରହିଛି, ତାହା ହେଉଛି ଏକ ଅନବଦ୍ୟ, ଶାଶ୍ୱତ ସାହିତ୍ୟ ।

ହିନ୍ଦୀଭାଷୀ ଲୋକଙ୍କ ନିମନ୍ତେ ସନ୍ଥକବି ତୁଳସୀ ଦାସଙ୍କ 'ରାମ ଚରିତ ମାନସ' ଯେପରି ସୁଖପାଠ୍ୟ, ଇଂରେଜୀ ଭାଷୀଙ୍କ ନିମନ୍ତେ ବାଇବେଲ ଯେପରି ଶାନ୍ତିଦାୟକ, ଓଡ଼ିଆ ଭାଷୀଙ୍କ ପାଇଁ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍‌ଭାଗବତ ସେପରି ସୁଖପାଠ୍ୟ ଓ ଶାନ୍ତିଦାୟକ । ଓଡ଼ିଆ ଜାତି ଭାଗବତ ବିନା ବଞ୍ଚିପାରିବ ନାହିଁ । ଓଡ଼ିଶାରେ ଏପରି କୌଣସି ଗ୍ରାମ ନାହିଁ ଯେଉଁଠି ଲୋକମାନେ ଭାଗବତ ପଢ଼ନ୍ତି ନାହିଁ । ମେଦିନୀପୁରରୁ ଗୋଦାବରୀ ତୀର ପର୍ଯ୍ୟନ୍ତ ଯେଉଁଠି ଓଡ଼ିଆ ଜାତି ଜୀବିତ, ଯେଉଁଠି ଓଡ଼ିଆ ଘର ଅବସ୍ଥିତ, ସେଇଠି ଭାଗବତ ପଢ଼ା ଚାଲିଛି । ଏବେ ମଧ୍ୟ ବଙ୍ଗ ଭାଷାରେ ଲିଖିତ ଓଡ଼ିଆ ଭାଗବତ ମେଦିନୀପୁର ଜିଲ୍ଲାରେ ଓଡ଼ିଆ ଲୋକେ ପଢୁଛନ୍ତି । ଓଡ଼ିଆ ଭାଗବତ ଉଭୟ ବଙ୍ଗ ଓ ଓଡ଼ିଆ ଭାଷାରେ ଲେଖାଯାଇ ପଢ଼ାଯାଉଅଛି ।

ଗାଁ ଗାଁରେ ଭାଗବତ ଟୁଙ୍ଗୀ ହୋଇଚି ଜନସାଧାରଣଙ୍କ ଲାଗି ଏକ ସର୍ବାଭିପ୍ରାୟ-ପୂରକ ବୈଠକଖାନା । ରାତ୍ରିର ପ୍ରଥମ ପ୍ରହରରେ ଗାଁ ମୁଣ୍ଡରେ ଜାତି, ବର୍ଣ୍ଣ, ବଂଶ ନିର୍ବିଶେଷରେ ଗାଁଆର ସବୁଲୋକ ମିଳିତ ହୋଇ ଭାଗବତ ପାଠ କରିବା ଦୃଶ୍ୟ ଆମ ସାମାଜିକ ଜୀବନର ଏକ ବ୍ୟାପକ, ଗଭୀର ଓ ବଳିଷ୍ଠ ଅଙ୍ଗ । ଭାଗବତର ସରଳ ଭାଷା ଏବଂ ଉଚ୍ଚଭାବ ଓଡ଼ିଆମାନଙ୍କୁ ତୁଚ୍ଛ ସାଂସାରିକ ଐଶ୍ୱର୍ଯ୍ୟଠାରୁ ଦୂରେଇ ନେଇ ନିତ୍ୟ ତଥା ଶାଶ୍ୱତ ମୂଲ୍ୟବୋଧର ନିକଟତର କରିଦିଏ । ସେଥିରେ ଯେଉଁ ଆନନ୍ଦ ମିଳେ, ତାର ତୁଳନା ନାହିଁ ।

ଭାଗବତର ଧାର୍ମିକ ଓ ସାମାଜିକ ମୂଲ୍ୟ ଛଡ଼ା ଅନ୍ୟ ଏକ ମୂଲ୍ୟ ରହିଛି । ତାହା ହେଉଛି ଐତିହାସିକ । ଏହି ଐତିହାସିକ ମୂଲ୍ୟ ଅକଳନୀୟ । ଜଗନ୍ନାଥ ଦାସ ଯେତେବେଳେ ଭାଗବତ ରଚନା କରିଥିଲେ, ତାହା ଥିଲା ଓଡ଼ିଶାର ଜାତୀୟ ଇତିହାସର ଏକ ସନ୍ଧିକ୍ଷଣ, ଏକ ସଙ୍କଟମୟ ମୁହୂର୍ତ୍ତ । ଓଡ଼ିଶାର ଶେଷସୂର୍ଯ୍ୟ ଗଜପତି ପ୍ରତାପରୁଦ୍ର ଦେବ ବାରମ୍ବାର ପରାଜୟର ସମ୍ମୁଖୀନ ହୋଇଥିଲେ । ବିଜୟୀ ବୀର ଓଡ଼ିଆ ଜାତିର ଭାଗ୍ୟାକାଶରେ ଘୋର ଦୁର୍ଦ୍ଦିନର ସର୍ବନାଶୀ କଳାମେଘ ଘୋଟି ଆସୁଥିଲା । ବାରମ୍ବାର ଶତ୍ରୁ ଆକ୍ରମଣକୁ ପ୍ରତିହତ କରି କରି ବୀର ଓଡ଼ିଆ ଶେଷରେ ନିସ୍ତେଜ ହୋଇ ଯାଇଥିଲା । ଦୀପର ଶେଷ ଜ୍ୟୋତି ପରି ଓଡ଼ିଆ ପାଇକ ମୁସଲିମ ଆକ୍ରମଣକାରୀଙ୍କୁ ହଟାଇ ଦେଇଥିଲେ ମଧ୍ୟ ଇତିହାସର ଦୁର୍ଭାଗ୍ୟ ସଙ୍କେତ ବହନକାରୀ ନିଦାରୁଣ ପଦଚିହ୍ନ ସେତେବେଳେ ସୁସ୍ପଷ୍ଟ ହୋଇ ଉଠିଲାଣି । ଏହା ପୂର୍ବରୁ ଦୀର୍ଘକାଳ ଧରି କଳିଙ୍ଗ ସାମ୍ରାଜ୍ୟର ସୂର୍ଯ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ସ୍ୱୀତ ଆଲୋକରେ ଆଲୋକିତ କରୁଥିଲା । କପିଳେନ୍ଦ୍ର ଦେବ କାବେରୀ ଦେବୀ ପର୍ଯ୍ୟନ୍ତ ତାଙ୍କ ସାମ୍ରାଜ୍ୟ ବିସ୍ତାର କରିସାରିଥିଲେ । ଓଡ଼ିଶାର ପ୍ରାନ୍ତୀୟ ଶାସକ ରାୟରାମାନନ୍ଦଙ୍କୁ ଶ୍ରୀଚୈତନ୍ୟ ଗୋଦାବରୀ ତଟରେ ଭେଟିଥିଲେ । ନରସିଂହ ଦେବଙ୍କ ଯୁଦ୍ଧ ଅଶ୍ୱମାନେ ଗଙ୍ଗାନଦୀରେ ତାଙ୍କ ତୃଷା ନିବାରଣ କରୁଥିଲେ । ଭାରତବର୍ଷର ପ୍ରଧାନ ରାଜ୍ୟ କଳିଙ୍ଗ ଶହ ଶହ ବର୍ଷଧରି ସ୍ୱାଧୀନ ହୋଇ ରହିଥିଲା । ସେହି କଳିଙ୍ଗ ରାଜ୍ୟର ସୌଭାଗ୍ୟରବି ଅସ୍ତ ହୋଇ କାଳରାତ୍ରି ମାଡ଼ି ଆସୁଥିଲା । ସେହି ଘୋର ଦୁର୍ଦ୍ଦିନ ଭିତରେ, ସେହି ଘନ ଅନ୍ଧକାର ଭିତରେ ଓଡ଼ିଆ ଜାତିକୁ ବଞ୍ଚାଇ ରଖିବାର ଐଶ୍ୱରିକ ଆହ୍ୱାନ ଓ ଦିବ୍ୟ ପ୍ରତିଶ୍ରୁତି ଜଗନ୍ନାଥ ଦାସଙ୍କ ଭାଗବତ ହିଁ ଗ୍ରହଣ କଲା ।

ଏକ ଦୀର୍ଘ ଅନ୍ଧକାରମୟ କାଳରାତ୍ରି-ଯେପରିକି ସେ ଅନ୍ଧକାର ଓଡ଼ିଆ ଜାତିର ଦେଜଦୀପ୍ତି ଓ ଅସ୍ତିତ୍ୱକୁ ଗ୍ରାସ କରିବାପାଇଁ ବସିଚି । ସେହି ଅନ୍ଧକାରମୟ ରାତ୍ରିରେ ଏହି ଅନ୍ଧକାରକୁ ପଦାଘାତ କରି ମିଞ୍ଜି ମିଞ୍ଜି ହୋଇ ଅସଂଖ୍ୟ ଦୀପସବୁ ଜଳୁଥିଲେ ଓଡ଼ିଶାର ଅଗଣିତ ତାଳ ନଡ଼ିଆ ବାଉଁଶବଣ ଘେରା ପଲ୍ଲି ଗ୍ରାମର ଚାଳଛପର ଭାଗବତ ଘର ବା ଟୁଙ୍ଗୀମାନଙ୍କରେ । ତାହାକୁ ଆଶ୍ରୟ କରି ଦୀର୍ଘ ୪୦୦ ବର୍ଷ ଧରି ଓଡ଼ିଆ ଜାତିର ଆତ୍ମା ବଞ୍ଚି ରହିଲା ଏବଂ ତାର ଜାତୀୟ ଜୀବନଶକ୍ତିକୁ ଅଦ୍ୟାବଧି ବଞ୍ଚାଇ ରଖିଲା । ଜଗନ୍ନାଥ ଦାସଙ୍କର ଭାଗବତ ଥିଲା ତାର ଭାଷା ଓ ସମସ୍ତ ମହତ୍ତ୍ୱପୂର୍ଣ୍ଣ ଭାବ ଓ ଆକାଂକ୍ଷାର ପ୍ରତୀକ । ତାର କି ଆଧାତ୍ମିକ ସଙ୍ଗଠନର ଶକ୍ତି ! ଏ ଅଭିଶପ୍ତ କାଳର କଥା ଚିନ୍ତାକଲେ ଆଜି ବିଶ୍ୱାସ କରି ହୁଏନାହିଁ ଯେ ଜଗନ୍ନାଥ ଦାସ ତାଙ୍କର ଭାଗବତ ପୋଥିର ଡୋରରେ କିପରି ଗୋଟାଏ ବିଶାଳ ଜାତିକୁ ଏତେଦିନ ଧରି ବାନ୍ଧି ରଖିଦେଲେ । ଯେତେବେଳେ ତରବାରୀ ସବୁ ଭଗ୍ନ ଓ ଅବନତ, କ୍ଷାତ୍ରଧର୍ମର ପରାକ୍ରମ ସଙ୍କୁଚିତ, ଗଙ୍ଗାଠାରୁ ଗୋଦାବରୀ ବା କାବେରୀ ପର୍ଯ୍ୟନ୍ତ ସେ କଳିଙ୍ଗ ସାମ୍ରାଜ୍ୟ ଆଉ ନାହିଁ, ଏକ ଅତୁଳନୀୟ ବୀରଜାତିର ଅସ୍ତିତ୍ୱର ପ୍ରଶ୍ନ ଘେନେଇ ଆସୁଛି, ସେତେବେଳେ ସେ ଆହ୍ୱାନକୁ କେହି ରାଜନୈତିକ ସ୍ତରରେ ଗ୍ରହଣ କରିପାରି ନଥାନ୍ତେ । ସେତେବେଳେ ଏ ଜାତିର ଦରକାର ଥିଲା ଏକ ବିଶାଳ ଆଧାତ୍ମିକ ନେତୃତ୍ୱ । ସେହି ନେତୃତ୍ୱ ଦେଇ ଜଗନ୍ନାଥ ଦାସ ନିଜେ ଚିରକାଳ ଅମର ହୋଇଗଲେ ଏବଂ ଓଡ଼ିଆ ଜାତିକୁ ଏକ ଅକ୍ଷୟ ଅମରତ୍ୱ ମଧ୍ୟ ଦାନ କରିଦେଇଗଲେ ।

Dr. Sudhanshu Sekhar Mishra

ଭାରତୀୟ ସାହିତ୍ୟ ଭାରତୀୟ ସଂସ୍କୃତିଠାରୁ ଭିନ୍ନ ନୁହେଁ । ସାହିତ୍ୟରେ ସବୁ ରସର ପରିବେଷଣ ହେବ । ମାତ୍ର ପ୍ରଧାନ ରସ ହେଉଛି- ଭକ୍ତିରସ । ଆଧ୍ୟାତ୍ମିକତାକୁ ଛାଡ଼ି ଭାରତୀୟ ସମାଜ ବଞ୍ଚି ପାରିବନାହିଁ । ଚାରିଆଡ଼େ ଯେତେବେଳେ ଘୋର ଭୌତିକତାର ତାଣ୍ଡବ ନୃତ୍ୟ, ଚତୁର୍ଦ୍ଦିଗରେ ଶାନ୍ତି ପାଇଁ ଆକୁଳ ନିବେଦନ, ସେତେବେଳେ କିଏ ଏହି ବିଶ୍ୱକୁ ଶାନ୍ତିର ପଥ ଦେଖାଇବ ? ଭାରତବର୍ଷ ବିଶ୍ୱକୁ ଯେଉଁ ପଥ ଦେଖାଇଥିଲା, ସେ ତାହା ନିଜେ କ'ଣ ବିସ୍ମୃତ ହୋଇଯିବ ? ବେଦ, ଉପନିଷଦ, ରାମାୟଣ, ମହାଭାରତ ପରି ଯେଉଁ ଅମୂଲ୍ୟ ଧନ ଆମ ପାଖରେ ରହିଛି, ଆମେ କ'ଣ ତାହାର ବ୍ୟବହାର କରିବା ନାହିଁ ? କସ୍ତୁରୀ ମୃଗ ନିଜର ସୁବାସକୁ ଖୋଜି ବୁଲିଲା ପରି ଆମେ ଦିଗଭ୍ରାନ୍ତ ହୋଇ ଏକ ମରୀଚିକା ପଛରେ ଗୋଡ଼ାଇବା ? ଯୁଗେ ଯୁଗେ ଶ୍ରୀଚୈତନ୍ୟ, ନାନକ, କବୀର, ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀଅରବିନ୍ଦ ଆସିଛନ୍ତି ଭାରତକୁ ଭୁଲି ଯାଇଥିବା ତାର ବାଟକୁ ଦେଖାଇବା ପାଇଁ । ଜଗନ୍ନାଥ ଦାସ ସବୁ ତୁଳସୀଦାସଙ୍କ ପରି ସେହି ବାଟ ଦେଖାଇବାପାଇଁ ଆସିଥିଲେ । ତାଙ୍କର ସେଇ ଅମୃତମୟ ସୃଷ୍ଟି ଯୁଗେ ଯୁଗେ ଆମକୁ ପ୍ରେରଣା ଦେଉଥିବ ।

ଆଜି ଓଡ଼ିଶା ସାହିତ୍ୟ ଏକାଡେମୀ ସେହି ପ୍ରାତଃସ୍ମରଣୀୟ କବିଙ୍କ ଲିଖିତ ଭାଗବତର ଶୁଦ୍ଧ ସଂସ୍କରଣ ପ୍ରକାଶ କରୁଛନ୍ତି-ଏହା ଆମ ସମସ୍ତଙ୍କ ପାଇଁ ଏକ ଆନନ୍ଦର ସମ୍ବାଦ । ମୁଁ ଆଶାକରେ-ଏହି ଶୁଦ୍ଧ ସଙ୍କଳନଟି ସମସ୍ତଙ୍କ ଦ୍ୱାରା ଆଦୃତ ହେବ ।

।। ଇତି ।।

**ଜାନକୀ ବଲ୍ଲଭ ପଟ୍ଟନାୟକ**

୩୦.୦୯.୧୯୮୯
ଭୁବନେଶ୍ୱର

Dr. Sudhanshu Sekhar Mishra

# ଅଗ୍ରଲେଖ

( ପ୍ରଥମ ସଂସ୍କରଣ ଅବସରରେ )

ଓଡ଼ିଆ ଜାତିର ତ୍ରିକାଳ ସନ୍ଧ୍ୟାରେ ନିତ୍ୟସ୍ମରଣୀୟ ଭକ୍ତ କବି ଜଗନ୍ନାଥ ଦାସଙ୍କ କୃତ ଶ୍ରୀମଦ୍‌ଭାଗବତର ଏକ ଶୁଦ୍ଧ ସଂସ୍କରଣ ଟୀକା ଓ ଟିପ୍ପଣୀ ସହ ପ୍ରକାଶ କରିବା ଓ ଯଥାସୁଲଭ ମୂଲ୍ୟ ବିନିମୟରେ ଶ୍ରଦ୍ଧାଳୁ ପାଠକ/ପାଠିକାମାନଙ୍କ ପାଖରେ ପହଁଚାଇ ଦେବା, ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରେ ଏକ ସର୍ବାଦୌ ଜାତୀୟ କର୍ତ୍ତବ୍ୟ ନିଶ୍ଚୟ । ବିଳମ୍ବରେ ହେଲେ ମଧ୍ୟ, ଏ କାର୍ଯ୍ୟଟି ସଂପାଦିତ ହେବାକୁ ଯାଉଛି, ଏହା ଆମ ସମସ୍ତଙ୍କ ପକ୍ଷରେ ଅତ୍ୟନ୍ତ ଆନନ୍ଦର କଥା । ଜଗନ୍ନାଥ ଦାସଙ୍କୁ ଆମର ଜାତୀୟ କବି କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ସେ ହିଁ ଓଡ଼ିଶାର ସର୍ବଜନାଦୃତ ଓ ସର୍ବଜନମାନ୍ୟ କବି ।

ଷୋଡ଼ଶ ଶତାବ୍ଦୀରେ ମହାକବି ଜଗନ୍ନାଥ ଦାସ ଏହି ଭାଗବତ ମାଧ୍ୟମରେ ଓଡ଼ିଆମାନଙ୍କୁ ଏପରି ଏକ ସର୍ବଭାବ ଓ ଚିନ୍ତାପ୍ରକାଶକ ଅନବଦ୍ୟ ଭାଷା-ସଂପଦ ଦାନ କରି ଯାଇଛନ୍ତି, ଯାହାକି ଆଜି ମଧ୍ୟ ସାରା ଓଡ଼ିଶାର ଅଧିବାସୀମାନଙ୍କ ପାଇଁ ସର୍ବଜନଗ୍ରାହ୍ୟ ଏକ ଷ୍ଟାଣ୍ଡାର୍ଡ ଭାଷା ରୂପେ ପ୍ରତିଷ୍ଠିତ ହୋଇପାରିଛି ।

ଆଜିକୁ ଚାରିଶ ବର୍ଷ ତଳେ, ଓଡ଼ିଆ ଜାତିର ଘୋର ଜାତୀୟ ବିପର୍ଯ୍ୟୟଠାରୁ ଆଜିର ଅଭ୍ୟୁଦୟ କାଳ ପର୍ଯ୍ୟନ୍ତ, ତାଙ୍କର ଏହି ଭାଗବତ ଏ ଜାତିକୁ ଗୋଟିଏ ଆତ୍ମିକ ସୂତ୍ରରେ ବାନ୍ଧି ରଖିଛି ଓ ବଞ୍ଚାଇ ରଖିଛି । ଏ ଜାତିକୁ ଘୋର ଦୁର୍ଦ୍ଦିନର ନୈରାଶ୍ୟକର ଅନ୍ଧକାର ଭିତରେ ଆଲୋକ ଦେଖାଇ ଆସିଛି - ଶକ୍ତି, ଉତ୍ସାହ ଓ ଆଶ୍ୱାସନା ଯୋଗାଇ ଆସିଛି । ପ୍ରତିଟି ଓଡ଼ିଆ ହିନ୍ଦୁ ପାଇଁ ମହାପ୍ରଭୁ ଜଗନ୍ନାଥ ଯେପରି ସବୁଠାରୁ ପ୍ରିୟତମ ଇଷ୍ଟଦେବତା, ସେହିପରି ଅତିବଡ଼ୀ ଜଗନ୍ନାଥ ଦାସ ମଧ୍ୟ ସବୁଠାରୁ ପ୍ରିୟତମ ଇଷ୍ଟକବି - ଏବଂ ଭାଗବତହିଁ ସବୁଠାରୁ ବାଞ୍ଛିତ ପ୍ରିୟତମ କାବ୍ୟ । ବଞ୍ଚିଥିବାଯାଏ ଓଡ଼ିଆଟିଏ ତା' ଜୀବନ ପାଇଁ ଆଲୋକ ଏହି ଦାସଙ୍କ ଭାଗବତରୁ ହିଁ ପାଇଥାଏ ଓ ମଲାବେଳେ ମଧ୍ୟ ପୁଅଝିଅ, ନାତିନାତୁଣୀଙ୍କ କଣ୍ଠରୁ ସେହି ଭାଗବତରୁ ଅଧାୟେ ଅନ୍ତତଃ ଶୁଣୁ ଶୁଣୁ, ଘୋର ଅନ୍ଧକାରମୟ ମୃତ୍ୟୁପଥରେ ତା' ଆତ୍ମାର ସଦ୍‌ଗତି ପାଇଁ ଆଲୋକ ପାଇବ ବୋଲି ଆଶା କରୁଥାଏ ।

ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶ୍ରୀମଦ୍‌ଭାଗବତ ଶୁଦ୍ଧ ସଂସ୍କରଣର ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧ ଏକତ୍ର ଏବେ ପ୍ରକାଶିତ ହେଲା । ଓଡ଼ିଆ ପାଠକ/ପାଠିକାଙ୍କ ନିକଟରେ ଏହା ନିଶ୍ଚୟ ବିଶେଷ ଆଦୃତ ହେବ ବୋଲି ମୁଁ ଆଶା କରୁଛି ।

**ମହାପାତ୍ର ନୀଳମଣି ସାହୁ**

ତା ୧୮.୧୦.୮୯ — ସଭାପତି

ଓଡ଼ିଶା ସାହିତ୍ୟ ଏକାଡେମୀ

Dr. Sudhanshu Sekhar Mishra

# ସମ୍ପାଦକଙ୍କ କଲମରୁ
## ( ପ୍ରଥମ ସଂସ୍କରଣ ଅବସରରେ )

ଓଡ଼ିଆ ସଂସ୍କୃତି କହିଲେ ଆମେ ସାଧାରଣତଃ ଭାଗବତ ସଂସ୍କୃତି ବୋଲି ବୁଝିଥାଉଁ; କାରଣ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଘରେ ଘରେ ସୁପରିଚିତ । ଦିନଥିଲା ଯେତେବେଳେ ପ୍ରତି ଭାଗବତ ଟୁଙ୍ଗିରେ ଏହା ନିୟମିତ ଭାବେ ପଠିତ ହେଉଥିଲା । ଆଜି ପୂର୍ବର ଭାଗବତ ଟୁଙ୍ଗିମାନ ଅବଶ୍ୟ ଆଧୁନିକ ସଭ୍ୟତାର ସ୍ପର୍ଶରେ ନାନା କାରଣରୁ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛନ୍ତି; କିନ୍ତୁ ଓଡ଼ିଆ ଭାଗବତ ପୂର୍ବଭଳି ଲୋକପ୍ରିୟତା ବଜାୟ ରଖିଛି । ଏବେମଧ ଓଡ଼ିଶାରେ ତଥା ଓଡ଼ିଆ ଅଧ୍ୟୁଷିତ ବିଚ୍ଛିନ୍ନାଞ୍ଚଳମାନଙ୍କରେ ଏହି ଭାଗବତର ଯଥେଷ୍ଟ ଲୋକପ୍ରିୟତା ରହିଅଛି । ଉଦାହରଣ ସ୍ୱରୂପ ପଶ୍ଚିମବଙ୍ଗର ମେଦିନୀପୁର ଅଞ୍ଚଳରେ ବଙ୍ଗଳା ଲିପିରେ ଓଡ଼ିଆ ଭାଗବତ ଦେଖିବାକୁ ମିଳିଥାଏ । ଏହି ଗ୍ରନ୍ଥର ଏତାଦୃଶ ଲୋକପ୍ରିୟତା ସତ୍ତ୍ୱେ ଆମେ ଏ ପର୍ଯ୍ୟନ୍ତ ଏହାର ଗୋଟିଏ ଶୁଦ୍ଧ ସଂସ୍କରଣ ଦେଖିବାକୁ ପାଇ ନ ଥିଲୁ । ନାନା କାରଣରୁ ଗତ ପ୍ରାୟ ପାଞ୍ଚଶହ ବର୍ଷ ଧରି ଏଥିରେ ପ୍ରକ୍ଷେପମାନ ଅନୁପ୍ରବେଶ କରିଥିବା ହେତୁ ଜଗନ୍ନାଥ ଦାସଙ୍କ କୃତ ମୂଳ ଓଡ଼ିଆ ଭାଗବତର ବିକୃତ ରୂପଟିକୁ ହିଁ ଆମେ ଦେଖିବାକୁ ପାଉଥିଲୁ । ଏହା ଫଳରେ କେତେକ ସ୍ଥାନରେ ଭାଗବତର ଅର୍ଥ ଦୁର୍ବୋଧ ହେଉଥିଲା ଏବଂ ଆଉ କେତେକ ସ୍ଥାନରେ ଏହାର ବିପରୀତାର୍ଥବୋଧକ ଭାବ ପ୍ରକଟିତ ହେଉଥିଲା ।

ଓଡ଼ିଆ ସଂସ୍କୃତି ଭାଗବତ ସଂସ୍କୃତି ସହିତ ଏଭଳି ନାଭିଗତ ସଂପର୍କ ଥିବା ଦୃଷ୍ଟେ ଏହି ଭାଗବତର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବାର ଆବଶ୍ୟକତା ବହୁ ଦିନରୁ ଅନୁଭୂତ ହେଉଥିଲା । ଏହି ଶୁଦ୍ଧ ସଂସ୍କରଣ କାର୍ଯ୍ୟଟି ସଂପାଦନ କରିବା ଯେତିକି କଷ୍ଟସାଧ ତତୋଽଧିକ ବ୍ୟୟବହୁଳ ମଧ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ହୋଇଥିବା ପୋଥିଗୁଡ଼ିକର ପାଠକୁ ତୁଳନା କରି ଏବଂ ଆବଶ୍ୟକ ସ୍ଥଳେ ମୂଳ ସଂସ୍କୃତ ପାଠ ଓ ବିଶେଷକରି ଶ୍ରୀଧର ସ୍ୱାମୀକୃତ ଟୀକା ସହିତ ମିଳାଇ ଏହି ଭାଗବତର ଶୁଦ୍ଧ ସଂସ୍କରଣ କାର୍ଯ୍ୟ କରିବାର ଆବଶ୍ୟକତା ଅନୁଭୂତ ହେଉଥିଲା । ଏଥିପାଇଁ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଏକାଡେମୀ ପାଇଁ ସ୍ୱତନ୍ତ୍ର ଭାବରେ ଅନୁଦାନ ମଞ୍ଜୁର କରିବାରୁ ଏହି କାର୍ଯ୍ୟ କରିବା ସମ୍ଭବପର ହୋଇପାରିଲା । ଓଡ଼ିଶାର ସଂସ୍କୃତିପ୍ରେମୀ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଉତ୍ସାହ ଓ ଉଦ୍ଦୀପନା ମିଳି ନଥିଲେ ଏ କାର୍ଯ୍ୟଟି ସମାହିତ କରିବା ସମ୍ଭବ ହୋଇ ନଥାନ୍ତା । ତେଣୁ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କ ନିକଟରେ ଗଭୀର ଭାବରେ କୃତଜ୍ଞ ।

ବର୍ତ୍ତମାନ ଭାଗବତର ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧକୁ ନେଇ ଏହି ପୁସ୍ତକଟି ପ୍ରକାଶ ପାଉଛି । ଏହାକୁ ସଂପାଦନା କରିବା ସମୟରେ ବିଭିନ୍ନ ପୋଥିମାନଙ୍କରେ ଥିବା ପାଠଭେଦ ସୂଚାଇ ଦେବାର ଆବଶ୍ୟକତା ଅନୁଭୂତ ହେଉଅଛି । ଏତଦ୍‌ବ୍ୟତୀତ କେତେକ ଟିପ୍‌ପଣୀ ମଧ ଦେବାର ଆବଶ୍ୟକତା ପଡୁଅଛି; କିନ୍ତୁ ସାଧାରଣ ପାଠକମାନଙ୍କର ଏହି ପାଠଭେଦ ଓ ଟିପ୍‌ପଣୀ ବିଶେଷ ଆବଶ୍ୟକ ପଡ଼ିବ ନାହିଁ ବୋଲି ଭାବି ଏହାକୁ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ପୁସ୍ତକରୁ ବାଦ୍ ଦିଆଯାଇଛି । ଏହା ନ କରିଥିଲେ ପୁସ୍ତକଟିର କଳେବର ବୃଦ୍ଧି ଦୃଷ୍ଟିରୁ ସେମାନଙ୍କୁ ଅଧିକ ମୂଲ୍ୟ ଦେଇ ଏହାକୁ କିଣିବାକୁ ପଡ଼ିଥାନ୍ତା । ତେଣୁ ସେମାନଙ୍କ ସୁବିଧା ଦୃଷ୍ଟିରୁ କେବଳ ମୂଳପାଠ ଓ ଅର୍ଥଦୀପିକାକୁ ନେଇ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକଟି ପ୍ରକାଶ କରାଯାଉଛି । ଏହାର ଅବଶ୍ୟ ଆଉ ଏକ କଳେବରରେ ପାଠଭେଦ ଓ ଟିପ୍‌ପଣୀକୁ ସଂଯୋଜିତ କରାଯାଇଛି । ଏହି କଳେବରର ପୁସ୍ତକଟି ମୁଖ୍ୟତଃ ପୁସ୍ତକାଗାର ଓ ଭାଗବତ ଗବେଷକଙ୍କ ପାଇଁ ଉଦ୍ଦିଷ୍ଟ । ସାଧାରଣ ପାଠକମାନଙ୍କୁ ଅପେକ୍ଷାକୃତ କମ୍ ମୂଲ୍ୟରେ ଭାଗବତ ପୁସ୍ତକଟି ଯୋଗାଇ ଦେବାପାଇଁ ଏକାଡେମୀ ପକ୍ଷରୁ ଏହି ଯେଉଁ ଉଦ୍ୟମ କରାଯାଇଅଛି ତାହାର ଯାଥାର୍ଥ୍ୟ ସେମାନଙ୍କ ଦ୍ୱାରା ଉପଲବ୍ଧ ହେବ ବୋଲି ଆଶା କରାଯାଏ ।

ବହୁ ଶ୍ରମ ସ୍ୱୀକାରପୂର୍ବକ ପଣ୍ଡିତ ନୀଳମଣି ମିଶ୍ର ଏହାର ସମ୍ପାଦନା କାର୍ଯ୍ୟ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଅଛି ।

ଆଉମଧ ବହୁ କଷ୍ଟ ସ୍ୱୀକାରପୂର୍ବକ ଗ୍ରନ୍ଥଟିର ନିର୍ଭୁଲ ମୁଦ୍ରଣ ଲାଗି ମୁଦ୍ରଣ ସଂସ୍ଥା 'ପ୍ରସେସ୍ ଆଣ୍ଡ୍ ଅଫ୍‌ସେଟ୍ କୋଃ', କଟକ ଯତ୍‌ପରୋନାସ୍ତି ଉଦ୍ୟମ କରିଥିବାରୁ ସେମାନେ ମଧ ଆମର ଧନ୍ୟବାଦାର୍ହ ।

ମୁଁ ଆଶା କରୁଛି ଏହି ପୁସ୍ତକଟି ଓଡ଼ିଆ ପାଠକ-ପାଠିକାମାନଙ୍କ ଦ୍ୱାରା ଯଥେଷ୍ଟ ଆଦୃତ ହେବ ।

**ସୁରେନ୍ଦ୍ରନାଥ ଶତପଥୀ**
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

ତା ୨୫.୧୦.୮୯

Dr. Sudhanshu Sekhar Mishra

# ଅଗ୍ରଲେଖ

(ପ୍ରଥମ ସଂସ୍କରଣ ଅବସରରେ)

ବିଶିଷ୍ଟ ବିଦ୍ୱାନ ଶ୍ରୀ ନୀଳମଣି ମିଶ୍ରଙ୍କ ସଂପାଦନାରେ ଅତିବଡ଼ୀ ଜଗନ୍ନାଥ ଦାସ କୃତ 'ଶ୍ରୀମଦ୍‌ଭାଗବତ' ର ତୃତୀୟ ସ୍କନ୍ଧ ଓଡ଼ିଶାର ସୁଧୀବର୍ଗଙ୍କ ହାତରେ ଅର୍ପଣ କରୁଅଛୁ। ପୂର୍ବରୁ ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃକ ପ୍ରକାଶିତ, ଶ୍ରୀ ମିଶ୍ରଙ୍କ ଦ୍ୱାରା ସଂପାଦିତ ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧର ଲୋକପ୍ରିୟତା ଆମକୁ ବହୁ ଭାବରେ ଉତ୍ସାହିତ କରିଥିବାରୁ ପରବର୍ତ୍ତୀ ସମସ୍ତ ସ୍କନ୍ଧ ଯଥାଶୀଘ୍ର ପ୍ରକାଶ କରିବା ଦିଗରେ ଏକାଡେମୀ ନିଜକୁ ପ୍ରସ୍ତୁତ କରୁଅଛି। ବ୍ୟାସଦେବକୃତ 'ଶ୍ରୀମଦ୍‌ଭାଗବତ' ସମଗ୍ର ବିଶ୍ୱ ସାହିତ୍ୟରେ ଏକ ଅନବଦ୍ୟ ଭକ୍ତିଗ୍ରନ୍ଥରୂପେ ସ୍ୱୀକୃତ। ବହୁ ଭାରତୀୟ ମନୀଷୀ ଏବଂ କତିପୟ ବିଦେଶୀୟ ପଣ୍ଡିତ ଏହି ମହାନ୍ ଗ୍ରନ୍ଥର ଅନୁବାଦ, ଭାଷ୍ୟ, ଟୀକାଟିପ୍ପଣୀ ଆଦି କରି ଯାଇଛନ୍ତି। ଅତିବଡ଼ୀ ଦାସଙ୍କ ଭାଗବତର ପଦାବଳୀ ମୌଳିକ ଭାଗବତ ଆକ୍ଷରିକ ଅନୁବାଦ ନ ହୋଇଥିଲେ ମଧ୍ୟ ରଚନାଶୈଳୀ ଏଭଳି ପଲ୍ଲବିତ ଓ ପୁଷ୍କଳ ଯେ ସଂସ୍କୃତ ଅନଭିଜ୍ଞ ଜନସାଧାରଣଙ୍କଠାରୁ ପଣ୍ଡିତମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ହୃଦୟକୁ ଏହା ଗଭୀରଭାବେ ସ୍ପର୍ଶ କରିଅଛି। ଭାଗବତର କେତେକ ପ୍ରସଙ୍ଗକୁ ଉତ୍କଳର ସାମାଜିକ ଅବସ୍ଥାର ଅନୁକୂଳ କରାଇ ଅତିବଡ଼ୀ ଜଗନ୍ନାଥ ଦାସ ଓଡ଼ିଆ ପାଠକମାନଙ୍କ ପାଇଁ ଭାଗବତର ମହତ୍ତ୍ୱକୁ ବହୁଗୁଣିତ କରିଅଛନ୍ତି। ପ୍ରସ୍ତୁତ ଶୁଦ୍ଧ ସଂସ୍କରଣଟି ପାଠକ, ଗବେଷକ ତଥା ଭକ୍ତିରସପିପାସୁମାନଙ୍କ ନିକଟରେ ଆଦୃତ ହୋଇପାରିଲେ ଏକାଡେମୀର ଉଦ୍ୟମ ଚରିତାର୍ଥ ହେବ ବୋଲି ଆଶା କରୁ।

ମନୋରମା ମହାପାତ୍ର
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେମୀ

# ସଂପାଦକଙ୍କ କଲମରୁ

(ପ୍ରଥମ ସଂସ୍କରଣ ଅବସରରେ)

ଉତ୍କଳୀୟ ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତି ବା ଭାଗବତ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ। ଓଡ଼ିଆ ଜାତିର ଶ୍ରୀଜଗନ୍ନାଥ ଯେପରି ଅତି ପ୍ରିୟ ଓ ଆପଣାର, ସେହିପରି ସନ୍ଥକବି ଜଗନ୍ନାଥ ଦାସକୃତ ଓଡ଼ିଆ ଭାଗବତ ମଧ୍ୟ ଅତିପ୍ରିୟ ଓ ଆପଣାର। ସେଥିପାଇଁ ଓଡ଼ିଶାର ଘରେ ଘରେ ଓ ଗ୍ରାମେ ଗ୍ରାମେ ଭାଗବତ ଗାଦୀରେ ଏହି ଅଧ୍ୟାତ୍ମଗ୍ରନ୍ଥ ଭାଗବତ ଗୋସେଇଁ ରୂପେ ପୂଜିତ ହୁଏ। ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଆ ଜାତିର ସର୍ବ-ଧର୍ମ-ସମନ୍ୱିତ ଧର୍ମ-ଧାରଣାକୁ ଯେ କେବଳ ପ୍ରଭାବିତ କରିଛି ତାହା ନୁହେଁ, ଓଡ଼ିଆ ଜାତୀୟ ଜୀବନଧାରାକୁ ମଧ୍ୟ ଗଭୀର ଭାବରେ ରୂପାନ୍ତରିତ କରିଛି। ବିଗତ ପାଞ୍ଚଶହ ବର୍ଷ ଧରି ଏହି କାବ୍ୟ-ଗ୍ରନ୍ଥ ଓଡ଼ିଆ ଭାଷା, ସାହିତ୍ୟ, ସମାଜ ଓ ସଂସ୍କୃତିର ଶ୍ରୀବୃଦ୍ଧି ସାଧନରେ ସହାୟକ ହୋଇପାରିଛି। ଆଜି ସମୟ ଆସିଛି, ଓଡ଼ିଶା ଭାଗବତ-ଘରର ପୁନରୁଦ୍ଧାର କରି ଭାଗବତ ଧର୍ମ-ଧାରଣାର ପ୍ରସାର ପାଇଁ ସମସ୍ତେ ବ୍ରତୀ ହେବା ଉଚିତ୍।

ପୂର୍ବ ପ୍ରକାଶିତ ଓଡ଼ିଆ ଭାଗବତର ବିଭିନ୍ନ ସଂସ୍କରଣରେ କେତେକ ଅଶୁଦ୍ଧି ଲକ୍ଷ୍ୟ କରି ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଏହାର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ ପାଇଁ ଉଦ୍ୟମ କରାଯାଇଛି। ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ବିଭିନ୍ନ ପୋଥିର ପାଠ ସହିତ ତୁଳନା କରି ଏହି ଶୁଦ୍ଧ ସଂସ୍କରଣ ସଂପାଦନା କରିଛନ୍ତି ରାଜ୍ୟ ସଂଗ୍ରହାଳୟ ପୋଥି ବିଭାଗର ପୂର୍ବତନ କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ର। ଏହି ମହତ୍ କାର୍ଯ୍ୟ ପାଇଁ ତାଙ୍କୁ ସାଧୁବାଦ ଜଣାଉଛି। ଶୁଦ୍ଧ ସଂସ୍କରଣ କାର୍ଯ୍ୟ ସମାପ୍ତ ହୋଇସାରିଛି। ବର୍ତ୍ତମାନ କେବଳ ସ୍କନ୍ଧଗୁଡ଼ିକର ଆଶୁ ପ୍ରକାଶନ ପାଇଁ ବ୍ୟବସ୍ଥା ଗ୍ରହଣ କରାଯାଉଛି। ପୂର୍ବରୁ ଶ୍ରୀମଦ୍‌ଭାଗବତର ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧ ପ୍ରକାଶିତ ହୋଇଥିଲା; ବର୍ତ୍ତମାନ ଏହାର ତୃତୀୟ ସ୍କନ୍ଧ ପ୍ରକାଶିତ ହେଲା। ଭାଗବତ ପ୍ରେମୀ ଓଡ଼ିଆ ପାଠକ-ପାଠିକାମାନଙ୍କ ଦ୍ୱାରା ଏହା ଆଦୃତ ହେବ ବୋଲି ମୁଁ ଆଶା କରୁଛି।

ଇନ୍ଦୁଭୂଷଣ କର
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

Dr. Sudhanshu Sekhar Mishra

# ଭୂମିକା

ପୋଥି ସମ୍ପାଦନା କହିଲେ ଯାହା ବୁଝାଯାଏ, ସେହି ଦୃଷ୍ଟିରୁ ଅତିବଡ଼ୀ ଜଗନ୍ନାଥ ଦାସ ଗୋସାଇଁଙ୍କ ଭାଗବତର ସମ୍ପାଦନା ଅଦ୍ୟାପି ହୋଇନାହିଁ । ବିଭିନ୍ନ ମୁଦ୍ରଣାଳୟ ଗୋଟିଏ ଗୋଟିଏ ଅଞ୍ଚଳର ଖଣ୍ଡିଏ ଖଣ୍ଡିଏ ପୋଥିର ପାଠକୁ ଗ୍ରହଣ କରି ଭାଗବତ ପ୍ରକାଶ କରିଛନ୍ତି । ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳର ପ୍ରକାଶକମାନେ ଭାଗବତ ପୁସ୍ତକ ଛାପିଛନ୍ତି । ପରବର୍ତ୍ତୀ କାଳରେ ଯେଉଁମାନେ ଭାଗବତ ପୁସ୍ତକ ପ୍ରକାଶ କରିବାରେ ଅଗ୍ରସର ହୋଇଛନ୍ତି, ସେମାନେ ଓଡ଼ିଶାର ସବୁ ଅଞ୍ଚଳରୁ ପୋଥି ସଂଗ୍ରହ କରି ଗୋଟିଏ ଶୁଦ୍ଧ-ସଂସ୍କରଣ ପ୍ରସ୍ତୁତ କରିନାହାନ୍ତି । ସେମାନେ ପ୍ରକାଶକମାନଙ୍କ ଚାହିଦା ଅନୁସାରେ ଯେନତେନ ପ୍ରକାରେ ତାଙ୍କ ଦୃଷ୍ଟିକୋଣରୁ ଖଣ୍ଡିଏ ଖଣ୍ଡିଏ ପାଣ୍ଡୁଲିପି ପ୍ରସ୍ତୁତ କରିଛନ୍ତି ।

୧୯୨୫ ମସିହାରେ ଶ୍ରୀ ରାଜକିଶୋର ଦାସ ପୁରୀ, ଡମପଡ଼ା ଓ ଯାଜପୁର ଅଞ୍ଚଳରୁ କେତେଖଣ୍ଡି ପୋଥି ସଂଗ୍ରହ କରି ଭାଗବତର ଏକ ବିଶୁଦ୍ଧ ସଂସ୍କରଣ ପ୍ରକାଶ କରିବାରେ ପ୍ରୟାସୀ ହୋଇଥିଲେ । ସେ ମହାଶୟ ସଂସ୍କୃତ ଭାଗବତର ପାଠ ପ୍ରତି ଦୃଷ୍ଟିଦେଇ ନିଜ ସଂସ୍କରଣରେ ସେହି ପାଠର ଗୁରୁତ୍ୱ ଉପଲବ୍ଧି କରିଥିଲେ । ତେଣୁ ରାଜକିଶୋର ଦାସଙ୍କ ଭାଗବତ ସଙ୍କଳନଟି ମୁଖ୍ୟତଃ ମୂଳ ସଂସ୍କୃତ 'ଭାଗବତ' ଓ 'ଭାବାର୍ଥ ଦୀପିକା' ଟୀକାର ପ୍ରଣେତା ଯଶସ୍ୱୀ ଭାଷ୍ୟକାର ଶ୍ରୀଧର ସ୍ୱାମୀଙ୍କ ମତ ଉପରେ ଆଧାରିତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସମ୍ପାଦନାଟି ଅଦ୍ୟାପି ଖଣ୍ଡିଏ ମୂଲ୍ୟବାନ୍ ଶୁଦ୍ଧପାଠ ରୂପେ ସୁଧୀ ସମାଜରେ ଗୃହୀତ ହୋଇଆସୁଛି ।

ଭାଗବତକାର ଅତିବଡ଼ୀ ଜଗନ୍ନାଥ ଦାସ ପୁରୀ ଜିଲ୍ଲାର ସନାଢ୍ୟ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କ ପିତା ଜଣେ ପୁରାଣ ପଣ୍ଡା ଥିଲେ । ବାଳକ ଜଗନ୍ନାଥ ମଧ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ । କିନ୍ତୁ ପିଲାଟି ଦିନରୁ ସେ ଥିଲେ କୃଷ୍ଣଭକ୍ତ । ତାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ଏବଂ ଶ୍ରୀଜଗନ୍ନାଥ ଏକ ଓ ଅଭିନ୍ନ । ମାତାଙ୍କ ଅନୁରୋଧରେ ସେ ବ୍ୟାସଦେବଙ୍କ ରଚିତ ସଂସ୍କୃତ ଭାଗବତକୁ ସରଳ ତଥା ସୁବୋଧ ଓଡ଼ିଆ ଭାଷାରେ ଲେଖିବା ପାଇଁ ପ୍ରୟାସ କରିଥିଲେ । ତାଙ୍କ ରଚନା ପ୍ରକାଶ ପାଆନ୍ତେ ସ୍ଥାନୀୟ ବ୍ରାହ୍ମଣ ଶାସନର ପଣ୍ଡିତମାନେ ତାହାକୁ ବିରୋଧ କରିଥିଲେ । କିନ୍ତୁ ସର୍ବସାଧାରଣରେ ସୁଖପାଠ୍ୟ ହୋଇଥିବାରୁ ତାଙ୍କ ରଚିତ ଭାଗବତ ସାଧାରଣ ଲୋକମାନଙ୍କର ଗଣ୍ଠିଧନ ହୋଇଥିଲା । ସମଗ୍ର ସଂସ୍କୃତ ବିଦ୍ୱାନ୍‌ଙ୍କ ବିରୋଧ ସତ୍ତ୍ୱେ ସେକାଳର ଯୁଗପୁରୁଷ ଶ୍ରୀଚୈତନ୍ୟଦେବ ଜଗନ୍ନାଥ ଦାସଙ୍କ ଭାଗବତକୁ ଆଦର କରିଥିଲେ । ତେଣୁ ସମଗ୍ର ଓଡ଼ିଶାରେ ଜଗନ୍ନାଥ ଦାସଙ୍କ 'ଭାଗବତ' ଆଦରର ସହିତ ପଠିତ ହୋଇଥିଲା । ମୂଳ ରଚନାରୁ ପର୍ଯ୍ୟାୟକ୍ରମେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକମାନେ ଭାଗବତ ପୋଥିର ନକଲ କରି ନେଇଥିଲେ । ଏହାରି ଫଳରେ ଗୋସ୍ୱାମୀଙ୍କ ଭାଗବତ ସମଗ୍ର ଓଡ଼ିଶାରେ ବ୍ୟାପିଯାଇଥିଲା । ତେଣୁ ଭାଗବତର ଏକ ଶୁଦ୍ଧ ସଂସ୍କରଣ କରିବାକୁ ହେଲେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଖଣ୍ଡିଏ ଖଣ୍ଡିଏ ପୋଥି ନେଇ, ଆଞ୍ଚଳିକ ପାଠ ଭେଦ ସହିତ ମୌଳିକ ଭାବଧାରାକୁ ଅକ୍ଷୁଣ୍ଣ ରଖି ସାବଧାନତାର ସହିତ ସମ୍ପାଦନା କାର୍ଯ୍ୟରେ ପ୍ରବୃତ୍ତ ହେବା ଆବଶ୍ୟକ ।

ପ୍ରସ୍ତୁତ ଭାଗବତ ସଙ୍କଳନଟିକୁ ଯଥାସମ୍ଭବ ବିଶୁଦ୍ଧ ତଥା ପ୍ରାମାଣିକ କରିବା ପାଇଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଛଅଖଣ୍ଡି ତାଳପତ୍ର ପୋଥି ଗ୍ରହଣ କରାଯାଇଛି । ଏତଦ୍‌ବ୍ୟତୀତ ୧୯୨୫ ମସିହାରେ ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ, ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ତଥା ବାବା ଚୈତନ୍ୟ ଚରଣ ଦାସଙ୍କ ଦ୍ୱାରା ପରିମାର୍ଜିତ 'ଭାଗବତ' ପ୍ରଭୃତି ପୁସ୍ତକଗୁଡ଼ିକର ସାହାଯ୍ୟ ନିଆଯାଇଛି । ଜଗନ୍ନାଥ ଦାସ ଗୋସାଇଁଙ୍କ ପାଠକୁ ଆହୁରି ପ୍ରାମାଣିକ କରିବା ପାଇଁ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଦ୍ୱାରା ଅନୁବାଦିତ ଭାଗବତର ସାହାଯ୍ୟ ନେବା ଏକାନ୍ତ ଅପରିହାର୍ଯ୍ୟ । ଏତଦ୍‌ବ୍ୟତୀତ ବଳରାମ ବାନପ୍ରସ୍ଥୀଙ୍କ ଦ୍ୱାରା ପ୍ରସ୍ତୁତ ମୂଳ ଭାଗବତ ସହିତ ଓଡ଼ିଆ ଗଦ୍ୟାନୁବାଦ ତଥା ଶ୍ରୀ ସୁଶୀଳ ଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରସ୍ତୁତ ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ସଂସ୍କୃତ ଭାଗବତକୁ ମଧ ଏହି ସମ୍ପାଦନାରେ ସାହାଯ୍ୟକାରୀ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇଛି । ଏତଦ୍‌ବ୍ୟତୀତ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କାନ୍ଥିର ନୀହାର ପ୍ରେସରୁ ବଙ୍ଗାକ୍ଷରରେ ପ୍ରକାଶିତ ଜଗନ୍ନାଥ ଦାସଙ୍କ ଭାଗବତକୁ ଏହି ଶୁଦ୍ଧ ସଂସ୍କରଣରେ ସ୍ଥାନ ଦିଆଯାଇଛି ।



Dr. Sudhanshu Sekhar Mishra

ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ତଥା ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗରେ ସଂରକ୍ଷିତ ଛଅଖଣ୍ଡି ତାଳପତ୍ର ପୋଥି ତଥା ଅନ୍ୟାନ୍ୟ ସାହାଯ୍ୟକାରୀ ପୁସ୍ତକଗୁଡ଼ିକର ବିବରଣୀ ବିଜ୍ଞ ଆଲୋଚକମାନଙ୍କ ଗୋଚର ନିମିତ୍ତ ଏଠାରେ ଉଲ୍ଲେଖ କରାଯାଉଛି ।

କ ପୋଥି - ଏହି ଛଅଖଣ୍ଡି ପୋଥି ବ୍ୟତୀତ ୧୯୨୫ ମସିହାରେ ପ୍ରକାଶିତ ତଥା ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ ପୁସ୍ତକଟିକୁ ପ୍ରସ୍ତୁତ ସମ୍ପାଦନାରେ 'କ' ପୋଥି ରୂପେ ଗ୍ରହଣ କରାଯାଇଛି । ରାଜକିଶୋର ଦାସ ଡମପଡ଼ା, ପୁରୀଧାମର ଓଡ଼ିଆ ମଠ, କେନ୍ଦ୍ରାପଡ଼ା ତଥା ଯାଜପୁରର ବାଲିଆ ଅଞ୍ଚଳରୁ ସଂଗୃହୀତ ପୋଥି ଉପରେ ନିର୍ଭର କରି ଭାଗବତ ସମ୍ପାଦନା କରିଥିବାରୁ ପୁସ୍ତକଟିର ବୈଶିଷ୍ଟ୍ୟ ଅନ୍ୟାନ୍ୟ ସଂସ୍କରଣ ଅପେକ୍ଷା ଗୁରୁତ୍ୱପୂର୍ଣ୍ଣ । ତେଣୁ ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକ ଦ୍ୱାରା ପ୍ରକାଶିତ ଉକ୍ତ ପୁସ୍ତକର ଷଷ୍ଠ ସଂସ୍କରଣଟି ଆମ ସଙ୍କଳନର ଅନ୍ୟତମ ପାଠ ରୂପେ ଗୃହୀତ ହୋଇଛି ।

ସମ୍ପାଦକ ରାଜକିଶୋର ଦାସ ଅତ୍ୟନ୍ତ ସାବଧାନତାର ସହିତ ବିଭିନ୍ନ ଭାଗବତ ପୋଥିର ପାଠକୁ ସମ୍ପାଦନା କରିବାରେ ଯେଉଁ ପ୍ରୟାସ କରିଛନ୍ତି, ତାହା ଓଡ଼ିଶାରେ ସମ୍ପୂର୍ଣ୍ଣ ଅଭିନବ ଓ ମହତ୍ତ୍ୱପୂର୍ଣ୍ଣ ପ୍ରଚେଷ୍ଟା ବୋଲି କୁହାଯାଇପାରେ । ସେ ମହାଶୟ ଭାଗବତର ସମ୍ପାଦନା ସୂଚାରୁରୂପେ କରିନଥିଲେ ହୁଏତ ପରବର୍ତ୍ତୀ ସମ୍ପାଦକମାନଙ୍କୁ ଭାଗବତ ସମ୍ପାଦନାରେ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥାନ୍ତା । ତାଙ୍କ ପାଠଟି ଅଧିକ ସଂସ୍କୃତ ଅଭିମୁଖୀ ହୋଇଛି । ବିଶେଷତଃ କଟକ ଜିଲ୍ଲାର ପୋଥିପାଠ ସହିତ ତାଙ୍କ ସମ୍ପାଦନାର ପାଠ ଅନେକ ସ୍ଥଳରେ ମିଶିଯାଉଛି । ଅଳ୍ପ କେତୋଟି ସ୍ଥାନରେ ତାଙ୍କ ସମ୍ପାଦନାରେ ପ୍ରମାଦ ରହିଥିଲେ ହେଁ, ଆମ ଶୁଦ୍ଧ ସଙ୍କଳନ ପ୍ରସ୍ତୁତ କରିବାରେ ଏହା ଅଦ୍ୱିତୀୟ ସହାୟକ ପୁସ୍ତକରୂପେ ପଥପ୍ରଦର୍ଶନ କରିଛି । ତେଣୁ ଆମେ ଏହି ପୁସ୍ତକଟିକୁ "କ" ପାଠ ରୂପେ ଗ୍ରହଣ କରିଅଛୁ ।

'ଖ'ପୋଥି-ପ୍ରସ୍ତୁତ ସମ୍ପାଦନାରେ 'ଖ' ପୋଥି ରୂପେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ORP 213 ସଂଖ୍ୟକ ପୋଥିଟିକୁ ଗ୍ରହଣ କରାଯାଇଛି । ପ୍ରସ୍ତୁତ ପୋଥିର ବିବରଣୀ ନିମ୍ନଲିଖିତମତେ ପ୍ରଦତ୍ତ ହେଲା-

ତାଳପତ୍ର, ପତ୍ରସଂଖ୍ୟା-୧୨୫, ଲମ୍ବ, ଓସାର ୩୬.୬ x ୩.୯ ସେ.ମି. ଧାଡ଼ି ସଂଖ୍ୟା-୫, ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା ୫୩.୫୯ । ଅବସ୍ଥା-କୀଟଦଂଷ୍ଟ । ପ୍ରଥମରୁ ଦୁଇପତ୍ର ନାହିଁ । ପ୍ରାପ୍ତିସ୍ଥାନ-କୃଷ୍ଣଚନ୍ଦ୍ର ଗଜପତି କଲେଜ, ପାରଳାଖେମୁଣ୍ଡି, ଜିଲ୍ଲା-ଗଞ୍ଜାମ । ଲିପିକାରଙ୍କ ସମୟ-ଆନୁମାନିକ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ।

ପୋଥିଟି ଜନୈକ ଅର୍ଦ୍ଧଶିକ୍ଷିତ ବ୍ୟକ୍ତିଙ୍କ ଦ୍ୱାରା ନକଲ କରାଯାଇଥିବାରୁ ଏଥିରେ ଶ, ଷ, ସ, ଇକାର, ଈକାର, ଉକାର, ଊକାର ପ୍ରଭୃତି ବର୍ଣ୍ଣାଶୁଦ୍ଧି ପ୍ରତି ଦୃଷ୍ଟି ଦିଆଯାଇ ନାହିଁ । କେବଳ ସେତିକି ନୁହେଁ, ଆଞ୍ଚଳିକ ଉଚ୍ଚାରଣ ଅନୁସାରେ କେତେକ ଶବ୍ଦକୁ ଏଥିରେ ବିକୃତ ଭାବରେ ଲେଖାଯାଇଛି । ଜଗନ୍ନାଥ ଦାସ ଗୋସାଇଁ ଜଣେ ପ୍ରସିଦ୍ଧ ସଂସ୍କୃତଜ୍ଞ । ତାଙ୍କ ଲେଖା ମଧ୍ୟରେ ଏ ପ୍ରକାର ତ୍ରୁଟି ରହିବା ଆଦୌ ସମ୍ଭବ ନୁହେଁ । ତେଣୁ ଏ ପ୍ରକାର ବର୍ଣ୍ଣାଶୁଦ୍ଧି ଓ ଉଚ୍ଚାରଣଗତ ବିକୃତିକୁ ଲିପିକାରଙ୍କ ପ୍ରମାଦ ବୋଲି କୁହାଯାଇପାରେ । ଉଦାହରଣ ସ୍ୱରୂପ, ପ୍ରସ୍ତୁତ ପୋଥିରେ ପରିଲକ୍ଷିତ କେତୋଟି ଉଚ୍ଚାରଣଗତ ଶବ୍ଦ ଏଠାରେ ଉଲ୍ଲେଖ କରାଯାଉଛି । ଯଥା- ଶାସ୍ତ୍ର-ଶାସ୍ତ୍ର, କୋଠର-କଠୋର, ସ୍ତ୍ରୀଜଇ-ସୃଜଇ, ଅଭ୍ୟାନ୍ତର-ଅଭ୍ୟନ୍ତର, ଆକ୍ରସି-ଆକର୍ଷି, ଅନୁଗୃହ-ଅନୁଗ୍ରହ, ଦୃଜୟ-ଦୁର୍ଜୟ, ଶ୍ୟାନ୍ତ-ଶାନ୍ତ, ବିସିର୍ଣ୍ଣ-ବିସ୍ତୀର୍ଣ୍ଣ, ରୋଧିର-ରୁଧିର, ସୃକାଳ-ଶୃଗାଳ, ଜ୍ୱରା-ଜରା, ଗ୍ୟାନ-ଜ୍ଞାନ ଇତ୍ୟାଦି ।

'ଗ' ପୋଥି - ପ୍ରସ୍ତୁତ ସମ୍ପାଦନାରେ 'ଗ' ପୋଥିରୂପେ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ORP 305 ସଂଖ୍ୟକ ପୋଥିଟିକୁ ଗ୍ରହଣ କରାଯାଇଛି । ପ୍ରସ୍ତୁତ ପୋଥିର ବିବରଣୀ ନିମ୍ନଲିଖିତମତେ ପ୍ରଦତ୍ତ ହେଲା-

ତାଳପତ୍ର, ପତ୍ରସଂଖ୍ୟା ୧୬୮, ଲମ୍ବ, ଓସାର ୩୪.୨୩.୮ ସେ.ମି ପ୍ରତ୍ୟେକ ପତ୍ରର ଧାଡ଼ି ସଂଖ୍ୟା ୩.୫ । ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା-୪୫.୫୨ । ଅବସ୍ଥା-କୀଟଦଂଷ୍ଟ । ଲିପିକାରଙ୍କ ସମୟ ଆନୁମାନିକ ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ । ପ୍ରାପ୍ତିସ୍ଥାନ-ଭବାନୀପାଟଣା, ଜିଲ୍ଲା - କଳାହାଣ୍ଡି, ଶ୍ରୀମତୀ ଲକ୍ଷ୍ମୀଦେବୀଙ୍କଠାରୁ ପୋଥିଟି କ୍ରୟ କରାଯାଇଛି । ପୋଥିଟି କୀଟଦଂଷ୍ଟ ହୋଇଥିବାରୁ ସ୍ଥାନେ ସ୍ଥାନେ ପାଠ ଆଦୌ ସୁସ୍ପଷ୍ଟ ନୁହେଁ । ଲିପିକାର ଅର୍ଦ୍ଧଶିକ୍ଷିତ ହୋଇଥିବାରୁ ସେ ପୋଥି ମଧ୍ୟରେ ଥିବା ବର୍ଣ୍ଣାଶୁଦ୍ଧି ପ୍ରତି ଆଦୌ ଦୃଷ୍ଟି ଦେଇନାହାନ୍ତି । 'ଖ' ପୋଥି ପରି ଏଥିରେ ମଧ ଶ, ଷ, ସ ଓ ଇକାର ଉକାର ପ୍ରଭୃତି ଭ୍ରମ ପ୍ରତି ଆଦୌ ଧ୍ୟାନ ଦିଆଯାଇ ନ ଥିବାର ପରିଲକ୍ଷିତ ହୁଏ । ପୋଥିର ଶେଷରେ- "ଶ୍ରୀ ମାଣିକେଶ୍ୱରୀ ଉଦ୍ଧାର କରିବେ" ବୋଲି ଲେଖାଯାଇଛି । ଉଚ୍ଚାରଣଗତ ଅଶୁଦ୍ଧ ଶବ୍ଦ ଏ ପୋଥିରେ ଅଧିକ ସଂଖ୍ୟାରେ ଦେଖାଯାଏ । ଉଦାହରଣ ସ୍ୱରୂପ, ଏଠାରେ କେତୋଟି ଶବ୍ଦ ଦିଆଯାଉଛି । ସୁନ-ଶୁଣ, ଶ୍ୟାପେ-ଶାପେ, ଉଚିଷ୍ଟ-ଉଚ୍ଛିଷ୍ଟ, ଜାତେସ୍ୱର-ଜାତିସ୍ମର, ଧଂଷିଲା-ଦଂଶିଲା, ପ୍ରଜଟନ-ପର୍ଯ୍ୟଟନ, କଷ୍ଟୋର-କଠୋର, କୁମସ-କଳ୍ମଷ, ଛଦର୍ମେ-ଛଦ୍ମେ, ଦୃବାସ୍ୟା-ଦୁର୍ବାସା, ସମ୍ରୁଧି-ସମୃଦ୍ଧି, ପ୍ରଳମ୍ଭ-ପ୍ରଣାମ, ନୀଳା-ଲୀଳା, ଚତୃଥ-ଚତୁର୍ଥ, ଅଶ୍ୱସ୍ତମା-ଅଶ୍ୱତ୍ଥାମା, ଧୃମ-ଧୂମ, ବିଦୁଜନ-ବିଦ୍ୱଜ୍ଜନ, ଅନଗୃହ-ଅନୁଗ୍ରହ ଇତ୍ୟାଦି । ଦ୍ୱିତୀୟ ସ୍କନ୍ଧର ଆରମ୍ଭରେ ଲେଖାଯାଇଛି-

"ଅନାଦିନାଥଂ କରୁଣାନିଧାନଂ ତମାଳବର୍ଣ୍ଣଂ
ଶୋଭିତାବତାରମ୍ ।
ଅପାର-ସଂସାର-ସମୁଦ୍ରସେତୁଂ ନମାମ୍ୟହଂ
ଭାଗବତ ସ୍ୱରୂପମ୍ ।"



Dr. Sudhanshu Sekhar Mishra

'ଘ' ପୋଥି - ବାଲେଶ୍ୱର ଜିଲ୍ଲାର ଭଦ୍ରକ ଅଞ୍ଚଳରୁ ସଂଗୃହୀତ ତଥା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗର ସଂରକ୍ଷିତ ORP/ 407 ଏବଂ ନକଲ ସଂଖ୍ୟା CY/2194 ପୋଥି ଦୁଇଟିକୁ 'ଘ' ପୋଥି ରୂପେ ପ୍ରସ୍ତୁତ ସଙ୍କଳନରେ ଗ୍ରହଣ କରାଯାଇଛି । ପୋଥିଟିର ବିବରଣୀ ଏଠାରେ ପ୍ରଦତ୍ତ ହେଲା-

ତାଳପତ୍ର, ପତ୍ରସଂଖ୍ୟା-୧୦୪, ଲମ୍ବ, ଓସାର ୩୭.୧ x ୩.୯ ସେ.ମି, ଧାଡ଼ି ସଂଖ୍ୟା-୪-୬ । ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା ୫୮.୬୬ । ଅବସ୍ଥା କୀଟଦଂଷ୍ଟ । ପ୍ରାପ୍ତିସ୍ଥାନ-ଭଦ୍ରକ, ଜିଲ୍ଲା-ବାଲେଶ୍ୱର । ଲିପିକାର ସାଧୁଚରଣ ଦାସ, ପ୍ରଗନା-ଯାଜପୁର, ସାକିନ-କଟସାହିବିନ୍ଧା । ଲିପିକାରଙ୍କ ସମୟ-ସନ ୧୨୯୬ ସାଲ ଆଶ୍ୱିନ ମାସ ଦି ୧୯ନ ବୁଧବାର (ଅର୍ଥାତ୍ ୧୮୮୯ ମସିହା)ଠାରୁ କାର୍ତ୍ତିକ ମାସ ଦି୨ନ ମଙ୍ଗଳବାର ।

ପୁଷ୍ପିକା- ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂବା ମମ ଦୋଷୋ ନ ବିଦ୍ୟତେ ।।
ଭଗ୍ନ ପୃଷ୍ଠଃ କଟୀଗ୍ରୀବା ତୁଲ୍ୟଦୃଷ୍ଟିରଧୋମୁଖଃ ।
ଦୁଃଖେନ ଲିଖିତଂ ଗ୍ରନ୍ଥଂପୁତ୍ରବତ୍ ପରିପାଳୟେତ୍ ।।

ଏ ପୋଥିର ଅବସ୍ଥା ଅତ୍ୟନ୍ତ ଜୀର୍ଣ୍ଣଶୀର୍ଣ୍ଣ । ସ୍ଥାନେ ସ୍ଥାନେ କୀଟଦଂଷ୍ଟ ହେତୁରୁ ପାଠ ଆଦୌ ବୋଧଗମ୍ୟ ନୁହେଁ । ଏହି ପୋଥିର ଲିପିକାର ମଧ୍ୟ ଜଣେ ସାଧାରଣ ଅକ୍ଷର ଜ୍ଞାନଥିବା ବ୍ୟକ୍ତି ବୋଲି ତାଙ୍କ ଲିପି ଖୋଦନରୁ ଅନୁମାନ କରାଯାଏ । ତାଙ୍କର ଲିପି ଖୋଦନରେ ଅନେକ ବର୍ଣ୍ଣାଶୁଦ୍ଧିଗତ ପ୍ରମାଦ ରହିଛି । ବିଶେଷତଃ ତାଙ୍କ ଲେଖା ମଧ୍ୟରେ ଯେଉଁ ଉଚ୍ଚାରଣଗତ ପ୍ରମାଦ ପରିଲକ୍ଷିତ ହୁଏ, ତା'ର କେତୋଟି ଉଦାହରଣ ଏଠାରେ ଦିଆଯାଉଛି । ପ୍ରିଅଜନ-ପ୍ରୟୋଜନ, ଶାସ୍ର-ଶାସ୍ତ୍ର, ଉପଦର୍ପ-ଉପଦ୍ରବ, କଣ୍ଡେଆର-କାଣ୍ଡାର, ଜିଭ୍ୟା-ଜିହ୍ୱା, ରାସାନ୍ତଳ-ରସାତଳ, ବସନ୍ଧରୀ-ବସୁନ୍ଧରୀ, ଧନ୍ୟନ୍ତିରି-ଧନ୍ୱନ୍ତରୀ, ବ୍ରିଜ-ବୀର୍ଯ୍ୟ, ଜିମ୍ଭୁତ, ଜିବୁତ-ଜୀମୂତ, ଉପଲେଖି-ଉପଲକ୍ଷି, କ୍ରିତିଧର-କୀର୍ତ୍ତିଧର, ଦୃଭଗା-ଦୁର୍ଭଗା, ବିତକ୍ଷଣ-ବିଚକ୍ଷଣ, ମୌଷଧ୍ୟ-ମହୌଷଧି, ମୃଧୁଙ୍ଗ-ମୃଦଙ୍ଗ, ମନୁରମ୍ୟ-ମନୋରମ, ଚ୍ରେଷ୍ଟିତ-ଚେଷ୍ଟିତ, ପ୍ରଜନ୍ତ-ପର୍ଯ୍ୟନ୍ତ, ସଂସପି-ସଂକ୍ଷେପି, ସ୍ମସ୍ତାନ-ଶ୍ମଶାନ, ମୁହୁତେ-ମୁହୂର୍ତ୍ତେ, ଆଚଂବନ-ଆଚମନ, ଭ୍ରଛନା-ଭର୍ତ୍ସନା, ଦ୍ରିଘ-ଦୀର୍ଘ, ପୁଶ୍ୟ-ପୁଷ୍ପ ଇତ୍ୟାଦି ।

ଏତଦ୍‌ବ୍ୟତୀତ ପଦର ଆଦ୍ୟରେ ଥିବା ଓକାର ସ୍ଥାନରେ ଉକାର ପ୍ରୟୋଗ ପ୍ରାୟ ପୋଥିଟିର ଅନେକ ସ୍ଥଳରେ ପରିଲକ୍ଷିତ ହୁଏ । ମୁକ୍ଷ-ମୋକ୍ଷ, ଅମୁହ-ଅମୋଘ ଇତ୍ୟାଦି ଏବଂ ଲ ସ୍ଥାନରେ ନ ତଥା ନ ସ୍ଥାନରେ ଲ ପ୍ରୟୋଗ । ଲଭ-ନଭ, ନଳିତ-ଲଳିତ, ନୀନ-ଲୀନ, ନାଳସେ-ଲାଳସେ ପ୍ରଭୃତି ପୋଥିରେ ବହୁଳ ଭାବରେ ପରିଲକ୍ଷିତ ହୁଏ ।

**'ଙ' ପୋଥି** - ପ୍ରସ୍ତୁତ ସଂକଳନରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ORP 526 ପୋଥିଟିକୁ ଏହି ସଙ୍କଳନରେ 'ଙ' ପୋଥି ରୂପେ ଗ୍ରହଣ କରାଯାଇଛି । ଏହି ପୋଥିଟି ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ଗୋପୀବଲ୍ଲଭପୁର ଓ କାନ୍ଥି ଅଞ୍ଚଳରୁ ସଂଗୃହୀତ ହୋଇଛି । ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଏକ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ । ଅଦ୍ୟାପି ସେଠାରେ ଓଡ଼ିଆ ଲିପିରେ ଖୋଦିତ ତାଳପତ୍ର ପୋଥି ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଘରେ ରହିଛି । ଓଡ଼ିଆ ତାଳପତ୍ର ପୋଥିଗୁଡ଼ିକ ମେଦିନୀପୁର ଜିଲ୍ଲାରୁ କ୍ରମେ ନିଶ୍ଚିହ୍ନ ହୋଇଯାଉଥିଲେ ହେଁ ଶହ ଶହ ସଂଖ୍ୟକ ପୋଥି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ସଂଗୃହୀତ ହୋଇଛି । ୧୯୬୧ ମସିହାରେ ସୀତାରାମ ଦାସ ବାବାଜୀ ନାମକ ଜଣେ ପରିବ୍ରାଜକ ବହୁସଂଖ୍ୟକ ଓଡ଼ିଆ ପୋଥି ମେଦିନୀପୁର ଜିଲ୍ଲାରୁ ସଂଗ୍ରହ କରି ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ବିକ୍ରୟ କରିଥିଲେ । ସେହି ପୋଥିର ବିବରଣୀ ଏଠାରେ ପ୍ରଦତ୍ତ ହେଲା-

ତାଳପତ୍ର, ପତ୍ରସଂଖ୍ୟା-୯୬, ଲମ୍ବ, ଓସାର-୪୨ x ୩.୫ ସେ.ମି., ଧାଡ଼ିସଂଖ୍ୟା-୪-୬, ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା ୬୧-୭୨ । ଅବସ୍ଥା-କୀଟଦଂଷ୍ଟ । ଲିପିକାରଙ୍କ ସମୟ ଆନୁମାନିକ ୧୮ଶ ଶତାବ୍ଦୀର ଶେଷଭାଗ । ଲିପିକାର-ଶୀତଳ ପ୍ରସାଦ ଦେବଶର୍ମା ।

ପ୍ରସ୍ତୁତ ପୋଥିରେ ଅନ୍ୟାନ୍ୟ ପୋଥିଗୁଡ଼ିକ ପରି ବର୍ଣ୍ଣାଶୁଦ୍ଧି ରହିଛି । ବିଶେଷତଃ ସ୍ଥାନେ ସ୍ଥାନେ ଅ କୁ ଯ ରୂପେ ଲେଖାଯାଇଛି- ଯଧ୍ୟାୟ-ଅଧ୍ୟାୟ, ଯଂଶ-ଅଂଶ, ଯନିତ୍ୟ-ଅନିତ୍ୟ ପ୍ରଭୃତି । ଏତଦ୍‌ବ୍ୟତୀତ ଆଉଷ୍ୟ-ଆୟୁଷ, ଉପଦ୍ରପ-ଉପଦ୍ରବ, ପ୍ରିଅଜନ-ପ୍ରୟୋଜନ, ପ୍ରାଭବ-ପରାଭବ, ଯୁଯେଷ୍ଟି-ଯୁଧିଷ୍ଠିର, ଯସଥମା-ଅଶ୍ୱତ୍‌ଥାମା, ଦ୍ରୋପତି-ଦ୍ରୌପଦୀ, ଆକ୍ରୋସି-ଆକର୍ଷି, ଢଂସିଳା-ଦଂଶିଳା, ଚିକିଚ୍ଛା-ଚିକିତ୍ସା ପ୍ରଭୃତି ଏ ପୋଥିର ଉଚ୍ଚାରଣଗତ ବୈଶିଷ୍ଟ୍ୟ ରୂପେ ପରିଲକ୍ଷିତ ହୁଏ । ଏ ପୋଥିର ପାଠ ସ୍ଥାନେ ସ୍ଥାନେ ନିତାନ୍ତ ଅବୋଧ ଓ କେତେକ ସ୍ଥାନରେ ଲିପିକାରଙ୍କ ପ୍ରମାଦରୁ କେତେଗୁଡ଼ିଏ ପଦ ବିଲୁପ୍ତପ୍ରାୟ । କିନ୍ତୁ କୌତୂହଳର ବିଷୟ ହେଉଛି, ଭଦ୍ରକ ଅଞ୍ଚଳରୁ ସଂଗୃହୀତ 'ଘ' ପୋଥିଟିର ପାଠ ସହିତ ପ୍ରସ୍ତୁତ ପୋଥିର ପାଠ ଅନେକ ସ୍ଥଳରେ ସାମଞ୍ଜସ୍ୟ ରକ୍ଷାକରେ । ଏଥିରୁ ମନେହୁଏ ଭଦ୍ରକ ଅଞ୍ଚଳରେ ପ୍ରଚଳିତ ପୋଥିରୁ ମେଦିନୀପୁର ଅଞ୍ଚଳରେ ପ୍ରଚଳିତ ପାଠ ସଂଗ୍ରହ କରାଯାଇଛି । ଏ ସମ୍ପର୍କରେ ଆହୁରିମଧ୍ୟ ଜଣାଯାଏ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପୋଥି ଭିନ୍ନ ଭିନ୍ନ ଅଞ୍ଚଳରେ ଦେଖିବାକୁ ମିଳେ । ଲିପିକାରମାନେ ଉପହାର ଓ ବିକ୍ରୟ ସୂତ୍ରରେ ପୋଥିଗୁଡ଼ିକୁ ଭିନ୍ନ ଭିନ୍ନ ସ୍ଥାନରେ ଦେଉଥିଲେ । ବିବାହ ସମୟରେ ମଧ୍ୟ କନ୍ୟାର ଯୌତୁକ ପେଡ଼ିରେ ପୋଥି ଦିଆଯିବାର ପ୍ରଥା ଚଳୁଥିଲା । ସେ ଦୃଷ୍ଟିରୁ ପୁରୀ ଅଞ୍ଚଳର ପୋଥି କଳାହାଣ୍ଡିରେ, ଗଞ୍ଜାମ ଅଞ୍ଚଳର ପୋଥି ବାଲେଶ୍ୱରରେ ଓ ଭଦ୍ରକ ଅଞ୍ଚଳର ପୋଥି ମେଦିନୀପୁରରେ ମିଳିବା ଆଦୌ ଅସମ୍ଭବ ନୁହେଁ ।


Dr. Sudhanshu Sekhar Mishra

**‘ଚ’ ପୋଥି** – ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ORP/604 ସଂଖ୍ୟକ ପୋଥିଟିକୁ ଭାଗବତ ଶୁଦ୍ଧ ସଂସ୍କରଣ ସଙ୍କଳନରେ ‘ଚ’ ପୋଥିରୂପେ ଗ୍ରହଣ କରାଯାଇଛି । ଏହି ପୋଥିଟି ପୁରୀ ଜିଲ୍ଲାର ଖୋର୍ଦ୍ଧା ସବ୍‌ଡିଭିଜନ୍ ଅନ୍ତର୍ଗତ ଗଡ଼ମାଣିତ୍ରୀ ଗ୍ରାମରୁ ସଂଗୃହୀତ ହୋଇଅଛି । ପୋଥିଟିର ବିବରଣୀ ଏଠାରେ ପ୍ରଦତ୍ତ ହେଲା-

ତାଳପତ୍ର, ପତ୍ରସଂଖ୍ୟା-୧୭୪, ଲମ୍ବ, ଓସାର ୩୦.୯ x ୩.୪ ସେ.ମି., ଧାଡ଼ି ସଂଖ୍ୟା ୨-୫, ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା-୪୧-୫୫ । ଅବସ୍ଥା-କୀଟଦଂଷ୍ଟ । ଲିପିକାରଙ୍କ ସମୟ-ବୀରକିଶୋର ଦେବଙ୍କ ଅ୪ଙ୍କ ଅର୍ଥାତ ୧୮୫୬ ମସିହା । ଲିପିକାର-ବିଦ୍ୟାକର ମହାପାତ୍ର ।

ପୁଷ୍ପିକା- “ଭୀମସ୍ୟାପି – ନ ବିଦ୍ୟତେ । ପୁସ୍ତକଂ ହରତେ-ବ୍ରଜେତ୍ । ବୀର ଶ୍ରୀ ବୀରକିଶୋର ଦେବ ମହାରାଜାଙ୍କ ସମସ୍ତ ଅ୪ଙ୍କ କୁମ୍ଭ ଦି୧୨ନ ଫାଲ୍‌ଗୁନ କୃଷ୍ଣ ଦ୍ୱାଦଶୀ ଶନିବାର ବେଳ ଘ୬ଡ଼ି ସମୟରେ ଏ ପୁସ୍ତକ ସମ୍ପୂର୍ଣ୍ଣ ହୋଇଲେ । ଏ ପୁସ୍ତକ ବିଦ୍ୟାକର ମହାପାତ୍ରଙ୍କର । ମାଗିନେଇ ଯେ ଗ୍ରାହ୍ୟ ଦରିବ ତା’ ସପ୍ତପୁରୁଷ ତଳ ।”

ଏହି ପୋଥିରେ ଅ, ହ, ତ୍ୟ, ଦ୍ଧ, ଙ୍କ ପ୍ରଭୃତି ଅକ୍ଷରଗୁଡ଼ିକ ଆଧୁନିକ ବର୍ଣ୍ଣମାଳାଠାରୁ ଭିନ୍ନ । ଅନ୍ୟାନ୍ୟ ପୋଥି ତୁଳନାରେ ବର୍ଣ୍ଣାଶୁଦ୍ଧିର ମାତ୍ରା ଏ ପୋଥିରେ ଅପେକ୍ଷାକୃତ କମ୍ ଥିଲେ ହେଁ ଉଚ୍ଚାରଣଗତ ଶବ୍ଦ ଯୋଜନାରେ ଏ ପୋଥିର ଲିପିକାର ଆଦୌ ସଚେତ ନ ଥିଲା ପରି ମନେହୁଏ । ଏ ପୋଥିରେ ଉଚ୍ଚାରଣଗତ ଲେଖନର କେତୋଟି ନମୁନା ଏଠାରେ ଦିଆଯାଉଛି –

ଅମୋହ-ଅମୋଘ, କଷ୍ଟୋର-କଠୋର, ସ୍ୱରସ୍ୱତୀ-ସରସ୍ୱତୀ, ଶ୍ୟରୀର-ଶରୀର, ପ୍ରତଗ୍ୟାଂ-ପ୍ରତିଜ୍ଞା, ନାରାଜ-ନାରାଚ, ଦ୍ରୋପଦୀ-ଦ୍ରୌପଦୀ, ଅନୁଗ୍ରହ-ଅନୁଗ୍ରହ, ସମୋଦ୍ର-ସମୁଦ୍ର, ଚତୃଭୂଜ-ଚତୁର୍ଭୂଜ, ସନାନ୍ତନ-ସନାତନ, ସର୍ବଣ-ଶ୍ରବଣ, ବିମ୍ବର-ବବର, ଅନସ୍ତା-ଅନ୍ୟଥା, ବିଶୁଧ-ବିଶୁଦ୍ଧ, ଦୃଭାସା-ଦୁର୍ବାସା, ତୀକ୍ଷ-ତୀକ୍ଷଣ, ଶାପ୍ୟ-ଶାପ, ପ୍ରଣମ୍ୟ-ପ୍ରଣାମ, କ୍ରିତି-କୀର୍ତ୍ତି, ମଛ-ମତ୍ସ୍ୟ ଇତ୍ୟାଦି ।

କଳାହାଣ୍ଡି ଅଞ୍ଚଳରୁ ସଂଗୃହୀତ ତଥା ପ୍ରସ୍ତୁତ ସଙ୍କଳନରେ ‘ଗ’ ପୋଥିରୂପେ ଗୃହୀତ ପୋଥିର ପାଠ ସହିତ ଏ ପୋଥିର ପାଠରେ ସାମଞ୍ଜସ୍ୟ ଥିବାର ପରିଲକ୍ଷିତ ହୁଏ । ସେଥିରୁ ମନେହୁଏ ପୁରୀ ଅଞ୍ଚଳରୁ ଭାଗବତ ପୋଥି କୌଣସି ସୂତ୍ରରେ କଳାହାଣ୍ଡିରେ ପହଞ୍ଚିଥିଲା । ଆହୁରିମଧ୍ୟ ଜଣାଯାଏ ଯେ, ପୂର୍ବତନ ଗଡ଼ଜାତ କଳାହାଣ୍ଡି ରାଜ୍ୟର ରାଜା ବାହାଦୁର ପୁରୀ ଓ ଗଞ୍ଜାମ ଅଞ୍ଚଳରୁ ବ୍ରାହ୍ମଣମାନଙ୍କୁ ନେଇ ନିଜ ରାଜ୍ୟ ମଧ୍ୟରେ ବୃତ୍ତିବାଡ଼ି ଖଞ୍ଜିଦେଇ ରଖାଇଥିଲେ । ସେହି ଦୃଷ୍ଟିରୁ ପୁରୀ ତଥା କଳାହାଣ୍ଡି ଭବାନୀପାଟଣା ଅଞ୍ଚଳର ପୋଥି ମଧ୍ୟରେ ପାଠଗତ ସାମଞ୍ଜସ୍ୟ ଦେଖାଯାଉଛି ।

**‘ଛ’ ପୋଥି** – କଟକ ଜିଲ୍ଲା ଆଠଗଡ଼ ଅଞ୍ଚଳରୁ ସଂଗୃହୀତ ତଥା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ORP/1149 ସଂଖ୍ୟକ ପୋଥିଟିକୁ ଏହି ସଙ୍କଳନରେ ‘ଛ’ ପୋଥି ରୂପେ ଗ୍ରହଣ କରାଯାଇଛି । ପୋଥିଟିର ବିସ୍ତୃତ ବିବରଣୀ ଆଲୋଚକମାନଙ୍କ ଜିଜ୍ଞାସା ଦୃଷ୍ଟିରୁ ଏଠାରେ ଦିଆଯାଉଛି-

ତାଳପତ୍ର, ପତ୍ରସଂଖ୍ୟା-୧୪୬, ଲମ୍ବ, ଓସାର ୩୧.୮ x ୩.୩ ସେ.ମି., ପ୍ରତ୍ୟେକ ପାଖର ଧାଡ଼ିସଂଖ୍ୟା-୪-୫, ପ୍ରତ୍ୟେକ ଧାଡ଼ିର ଅକ୍ଷର ସଂଖ୍ୟା ୫୪-୬୯ । ଅବସ୍ଥା-କୀଟଦଂଷ୍ଟ । ପ୍ରାପ୍ତିସ୍ଥାନ-ରାଧାନାଥପୁର ଶାସନ, ଆଠଗଡ଼, ଜିଲ୍ଲା-କଟକ । ଲିପିକାରଙ୍କ ସମୟ-ଆନୁମାନିକ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗ । ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧ ସମ୍ପୂର୍ଣ୍ଣ ।

ପ୍ରସ୍ତୁତ ପୋଥିର ପାଠକ ପାଠ ସହିତ ଅନେକ ସ୍ଥଳରେ ସାମଞ୍ଜସ୍ୟ ରକ୍ଷାକରିଛି । ବିଶେଷତଃ ଶ୍ରୀମଦ୍‌ଭାଗବତର ପ୍ରସିଦ୍ଧ ଟୀକାକାର (ଭାବାର୍ଥ ଦୀପିକା ଶ୍ରୀଧର ସ୍ୱାମୀଙ୍କ) ଟୀକାର ଆରମ୍ଭରେ ଦିଆଯାଇଥିବା ଅଧ୍ୟାୟର ବିଷୟସୂଚକ ଶ୍ଳୋକ କ ଓ ଛ ପୋଥିରେ ଥିବାର ପରିଲକ୍ଷିତ ହୁଏ । ଅବଶ୍ୟ କ ପାଠର ସମ୍ପାଦକ ରାଜକିଶୋର ଦାସ ଏହି ଶ୍ଳୋକର ଛ ପୋଥିର ପାଠ ମୂଳ ସଂସ୍କୃତ ଶ୍ଳୋକର ନିକଟତମ ହୋଇଥିବାର ମନେହୁଏ । ଭାଗବତ ପାଠ ମଧ୍ୟରେ ଏପରି ଅନେକ ସ୍ଥଳ ରହିଛି, ଯାହା କେବଳ କ ଓ ଛ ପୋଥିରେ ମିଳୁଛି ଏବଂ ସେ ଅଂଶର ସୂଚନା ସଂସ୍କୃତ ପାଠରେ ମଧ୍ୟ ରହିଛି । ଛ ପୋଥିରେ ଏପରି ଅନେକ ପଦ ରହିଛି, ଯେଉଁ ସ୍ଥଳରେ ଲିପିକାର ସଂସ୍କୃତ ଶ୍ଳୋକର ଶବ୍ଦଗୁଡ଼ିକୁ ଅବିକଳ ଗ୍ରହଣ କରିଛନ୍ତି । ଆଉ କେତେକ ସ୍ଥଳରେ ଛ ପୋଥି କେତେଗୁଡ଼ିଏ ଅବାନ୍ତର ପଦ ଯୋଗ କରିଛି । ସେଥିରୁ ଅନୁମାନ କରାଯାଏ ଯେ, ଲିପିକାର ସେପରି ସ୍ଥଳରେ ମନରୁ କେତେଗୁଡ଼ିଏ ପଦ ରଚନା କରି ପୋଥିରେ ସନ୍ନିବେଶିତ କରିଛନ୍ତି ।

ଭାଗବତ ଶୁଦ୍ଧ ସଂସ୍କରଣକୁ ଅଧିକ ପ୍ରାମାଣିକ କରିବା ପାଇଁ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରଚିତ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଅନୁବାଦର ସାହାଯ୍ୟ ନିଆଯାଇଛି । ଦୀନବନ୍ଧୁ ଖାଡ଼ଙ୍ଗା ଖୁବ୍ ସମ୍ଭବତଃ ଖଣ୍ଡପଡ଼ା ନିବାସୀ ଥିଲେ ଏବଂ ସେ ଖଣ୍ଡପଡ଼ାର ରାଜା ନାରାୟଣ ମଙ୍ଗରାଜଙ୍କ ପୃଷ୍ଠପୋଷକତାରେ ରହିଥିଲେ । କିନ୍ତୁ ତାଙ୍କଦ୍ୱାରା ପ୍ରଦତ୍ତ ବଂଶ ବିବରଣୀରୁ ଜଣାଯାଏ ଯେ, ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ପୂର୍ବପୁରୁଷ ବାମଦେବ ବାଜପେୟୀ ଶ୍ରୀ ପୁରୁଷୋତ୍ତମ ନିକଟସ୍ଥ ବାମଦେବପୁର ଶାସନର ଅଧିବାସୀ ଥିଲେ ।

ଦୀନବନ୍ଧୁ ଖାଡ଼ଙ୍ଗା କୌତ୍ସସ ଗୋତ୍ରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବଂଶାବଳୀରୁ ଜଣାଯାଏ-ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ସପ୍ତମ ପୂର୍ବପୁରୁଷ ବାମଦେବ, ବାମଦେବପୁର ଶାସନ ଦାନ ସୂତ୍ରରେ ପାଇ ସେଠାରେ ବସବାସ କରୁଥିଲେ । ତାଙ୍କ ପୁତ୍ରଙ୍କ ନାମ ଥିଲା ସର୍ବେଶ୍ୱର ବାଜପେୟୀ । ସର୍ବେଶ୍ୱର ବାଜପେୟୀଙ୍କ ପୁତ୍ର ଦୁର୍ଗାଦାସ ବାଜପେୟୀ ସେହି ଶାସନରେ ରହୁଥିଲେ । ତାଙ୍କ ପୁତ୍ର ତାନ୍ତ୍ରିକ



Dr. Sudhanshu Sekhar Mishra

ବାଲୁଙ୍କି ବାଜପେୟୀ ବାଲୁଙ୍କି ଦୀକ୍ଷିତ ନାମରେ ପରିଚିତ ହୋଇ ପିତୃ ପିତାମହଙ୍କ ବାସସ୍ଥାନ ବାମଦେବପୁର ଶାସନରେ ଅବସ୍ଥାନ କରୁଥିଲେ । ତାଙ୍କ ପୁତ୍ର ଅର୍ଥାତ୍ ଭାଗବତ ଅନୁବାଦକ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ପିତାମହ ଜୀବଦାସ ମିଶ୍ର, ବାଜପେୟୀ ଓ ଦୀକ୍ଷିତ ପଦବୀ ବ୍ୟବହାର ନ କରି କୁଳ ପରମ୍ପରାଗତ 'ମିଶ୍ର' ପଦବୀରେ ପରିଚିତ ହୋଇଥିଲେ । ଜୀବଦାସଙ୍କ ପୁତ୍ର ମଧୁସୂଦନ ଓ ତାଙ୍କ ପୁତ୍ର ଦୀନବନ୍ଧୁ କେଉଁ ପରିସ୍ଥିତିରେ ଖଡ଼୍ଗରାୟ ବା ଖାଡ଼ଙ୍ଗା ପଦବୀ ଗ୍ରହଣ କରିଥିଲେ, ତାହା ଜଣାଯାଏ ନାହିଁ । ଖୁବ୍ ସମ୍ଭବତଃ ଖଣ୍ଡପଡ଼ାର ରାଜା ନାରାୟଣ ମଙ୍ଗରାଜଙ୍କ ପୃଷ୍ଠପୋଷକତା ଲାଭକରି ମଧୁସୂଦନ ଖଣ୍ଡପଡ଼ାରେ ବସବାସ କରୁଥିଲେ ଏବଂ ତାଙ୍କ ପୁତ୍ର ଦୀନବନ୍ଧୁ ଖଡ଼୍ଗରାୟ ରାଜପୃଷ୍ଠପୋଷକତାରେ ରହି ସଂସ୍କୃତ ଭାଗବତର ନବାକ୍ଷରୀ ବୃତ୍ତରେ ଓଡ଼ିଆ ଅନୁବାଦ କରିଥିଲେ । ଏହି ଅନୁବାଦ କାର୍ଯ୍ୟରେ ବୈତରଣୀ ତଟସ୍ଥିତ ମୁକୁନ୍ଦପୁର ନାମକ ଗ୍ରାମର ଅଧିବାସୀ ବୈଷ୍ଣବ ଜୟରାମ ଦାସ ତାଙ୍କୁ ସାହାଯ୍ୟ କରିଥିଲେ । ତେଣୁ ଅନୁବାଦକ ଦୀନବନ୍ଧୁ ଗୌଡ଼ (ବଙ୍ଗଦେଶ) ବାରାଣସୀ (କାଶୀ) ଓ ଉତ୍କଳ ଏହି ତିନି ସ୍ଥାନରୁ ଭାଗବତ ପୋଥି ସଂଗ୍ରହ କରି ସେଥିରେ ଥିବା ଶୁଦ୍ଧାଶୁଦ୍ଧ ବିଚାରପୂର୍ବକ ସଂସ୍କୃତ ପାଠର ଆକ୍ଷରିକ ଓଡ଼ିଆ ଅନୁବାଦ କରିଥିଲେ ।

ଦୀନବନ୍ଧୁ ଖାଡ଼ଙ୍ଗା ନିଜର ବଂଶାବଳୀ, ପୂର୍ବପୁରୁଷଙ୍କ ନାମ ତଥା ସାହାଯ୍ୟକାରୀ ଜୟରାମ ଦାସଙ୍କ ନାମୋଲ୍ଲେଖ ପୂର୍ବକ ସ୍ୱୀକାରୋକ୍ତି ଭାଗବତର ପ୍ରତ୍ୟେକ ସ୍କନ୍ଧରେ ଶେଷ ଅଧ୍ୟାୟରେ ଲିପିବଦ୍ଧ କରିଛନ୍ତି -

"ଶ୍ରୀପୁରୁଷୋତ୍ତମ ନିକଟ । ବ୍ରାହ୍ମଣ ଶାସନ ପ୍ରକଟ ।।
ତା ନାମ ବାମଦେବପୁର । କୌସ୍ତୁସମାନଙ୍କ ମନ୍ଦିର ।।
ଯେ ବାମଦେବ ବାଜପେୟୀ । ସେ ଗ୍ରାମ ଥିଲେ ଦାନପାଇ ।।
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ।।
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗାଦାସ ନାମ ହୋଇ ।।
ବାଲୁଙ୍କି ଦୀକ୍ଷିତ ନାମରେ । ସମ୍ଭବ ତାଙ୍କର କୁମରେ ।।
ତାଙ୍କ ତନୁଜ ଜୀବଦାସ । ମିଶ୍ର ନାମରେ ସେ ପ୍ରକାଶ ।।
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ।।
ମୋହର ଦୀନବନ୍ଧୁ ନାମ । ଯେ ବୈତରଣୀ ତଟେ ଗ୍ରାମ ।।
ମୁକୁନ୍ଦପୁର ନାମେ ଗ୍ରାମ । ବୈଷ୍ଣବ ଦାସ ଜୟରାମ ।।
ତାଙ୍କ ପ୍ରୀତିରେ ବଶ୍ୟ ହେଲି । ଭାଗବତକୁ ଗୀତ କଲି ।।
ଗୌଡ଼ ବାରାଣସୀ ଉତ୍କଳ । ଏ ତିନିଦେଶ ପୋଥି ଠୁଳ ।।
କରିଣ ଶୁଦ୍ଧାଶୁଦ୍ଧ ବାଣୀ । ଗୀତକୁ ରଚିଲି ପ୍ରମାଣି ।।
ସଜ୍ଜନେ ନଧର ମୋ ଦୋଷ । ମୁଁ ତୁମ୍ଭମାନଙ୍କର ଦାସ" ।।

ଖୁବ୍ ସମ୍ଭବତଃ ବୈଷ୍ଣବ ଜୟରାମ ଦାସଙ୍କ ପ୍ରେରଣାରେ ଦୀନବନ୍ଧୁ ଖାଡ଼ଙ୍ଗା ଭାଗବତର ଅନୁବାଦ କରିଥିଲେ ଏବଂ ବୈଷ୍ଣବ ଜୟରାମ ଦାସ ଖାଡ଼ଙ୍ଗାଙ୍କ ଅନୁବାଦ ଶୁଣି ପରମ ସନ୍ତୋଷ ଲାଭ କରୁଥିଲେ । ଖାଡ଼ଙ୍ଗା ଭାଗବତର ବହୁ ଅଧ୍ୟାୟରେ ଏହାର ସୂଚନା ରହିଛି -

"ଦ୍ୱିତୀୟ ସ୍କନ୍ଧ ଭାଗବତ । ଭାଷା ପ୍ରବନ୍ଧେ କରି ଗୀତ ।।
ବ୍ରାହ୍ମଣ ଦୀନବନ୍ଧୁ ନାମ । ଯେ ଦାସ ଖ୍ୟାତ ଜୟରାମ ।।
ତାହାଙ୍କ ପଠନ ନିମିତ୍ତେ । ନିର୍ମାଣ କଲି ଶୁଦ୍ଧ ଚିତ୍ତେ ।।

(ଭା ୨/୪)

ହେ କୃଷ୍ଣଚନ୍ଦ୍ର କୃପାସିନ୍ଧୁ । ତୁମ୍ଭଙ୍କୁ ସେବି ଦୀନବନ୍ଧୁ ।।
ଭାଗବତକୁ ଭଣେ ଗୀତ । ସନ୍ତୋଷ ଜୟରାମ ଚିତ୍ତ" ।।

(ଭା ୨/୬)

ବ୍ରାହ୍ମଣ ଦୀନବନ୍ଧୁ ଖାଡ଼ଙ୍ଗା ଭାଗବତ ଅନୁବାଦ କରିବା ବେଳକୁ ଜନସମାଜରେ ଜଗନ୍ନାଥ ଗୋସାଇଁଙ୍କ ଭାଗବତର ପ୍ରଚାର ଓ ପ୍ରସାର ପ୍ରତିଷ୍ଠା ଲାଭ କରିଥିଲା । ସଂସ୍କୃତପ୍ରେମୀ ବ୍ରାହ୍ମଣମାନଙ୍କ ପରି ଦୀନବନ୍ଧୁ ଖାଡ଼ଙ୍ଗା ମଧ୍ୟ ଜଗନ୍ନାଥ ଦାସଙ୍କ ପ୍ରତିଭାରେ ଈର୍ଷାନ୍ୱିତ ହୋଇଥିବେ । ସେ ସଂସ୍କୃତ ଭାଗବତର ଆକ୍ଷରିକ ଓଡ଼ିଆ ଅନୁବାଦ କରି ଜନସମାଜରେ ଜଗନ୍ନାଥ ଦାସଙ୍କ ଭାଗବତକୁ ଗୋଟିଏ ଅଶୁଦ୍ଧ ଭାଗବତ ବୋଲି ପ୍ରମାଣ କରାଇବାର ହୀନ ଚେଷ୍ଟା କରିଥିବା ଅସମ୍ଭବ ନୁହେଁ । ଜଗନ୍ନାଥ ଦାସଙ୍କର ଯେପରି ଐଶ୍ୱରୀୟ ପ୍ରତିଭା ଥିଲା, କବି ଦୀନବନ୍ଧୁ ଖାଡ଼ଙ୍ଗାଙ୍କର ସେପରି ପ୍ରତିଭା ଥିବାର ମନେ ହୁଏନାହିଁ । ସେ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଭାବରେ ପ୍ରତିଷ୍ଠିତ ବିଦ୍ୱାନ୍ ଥିଲେ । ତାଙ୍କଦ୍ୱାରା "ସୁସଙ୍ଗୀତ-ନାରାୟଣ" ଓ "ହରିଭକ୍ତି ସୁଧାକର" ଶୀର୍ଷକ ଦୁଇଖଣ୍ଡି ଗ୍ରନ୍ଥ ରଚିତ ହୋଇଥିଲା । ସେ ପରେ


Dr. Sudhanshu Sekhar Mishra

ବୈଷ୍ଣବ ଜୟରାମ ଦାସଙ୍କ ଦ୍ୱାରା ଉତ୍ସାହିତ ହୋଇ ଭାଗବତକୁ କୌଣସିମତେ ଅନୁବାଦ କରିଥିଲେ । ତାଙ୍କ ଭାଷା, ରଚନାଶୈଳୀ ଆଦୌ ଜଗନ୍ନାଥ ଦାସଙ୍କ ରଚନା ସହିତ ସମକକ୍ଷ ନୁହେଁ । ତେଣୁ ଖାଡ଼ଙ୍ଗାଙ୍କ ଭାଗବତ ଲୋକ ସମାଜରେ ସେପରି ଭାବରେ ପ୍ରଚାରିତ ହୋଇପାରିଲା ନାହିଁ । କିନ୍ତୁ ସଂସ୍କୃତ ଭାଗବତର ଆକ୍ଷରିକ ପଦ୍ୟାନୁବାଦ କରିବାରେ ଖାଡ଼ଙ୍ଗା ସମର୍ଥ ହୋଇଥିଲେ । ସେ ଆବଶ୍ୟକସ୍ଥଳେ ଭାଗବତର ସଂସ୍କୃତ ପଦଗୁଡ଼ିକୁ ଅବିକଳ ଅନୁବାଦରେ ସନ୍ନିବେଶିତ କରିଦେଇଥିବାରୁ ତାହା ଜଗନ୍ନାଥ ଦାସଙ୍କ ପଦାବଳୀ ପରି ସୁଖପାଠ୍ୟ ହେଉନାହିଁ ।

ମୂଳ ଭାଗବତର ଅର୍ଥ ଜାଣିବାପାଇଁ ଖାଡ଼ଙ୍ଗାଙ୍କ ଭାଗବତ ନିତାନ୍ତ ଆବଶ୍ୟକ । ସେହିଦୃଷ୍ଟିରୁ ପ୍ରସ୍ତୁତ ଶୁଦ୍ଧ ସଂସ୍କରଣରେ ଖାଡ଼ଙ୍ଗାଙ୍କ ଅନୁବାଦକୁ ଅନ୍ୟତମ ପାଠ ରୂପେ ଗ୍ରହଣ କରାଯାଇଛି । ସ୍ଥଳବିଶେଷରେ ଖାଡ଼ଙ୍ଗାଙ୍କ ଭାଗବତରୁ ଉଦ୍ଧୃତିମାନ ପାଦଟୀକାରେ ଦିଆଯାଇଛି ।

କଟକର ରାଧାରମଣ ପୁସ୍ତକାଳୟ ଦ୍ୱାରା ୧୯୫୪ ମସିହାରେ ପ୍ରକାଶିତ ଭାଗବତକୁ ପ୍ରସ୍ତୁତ ଶୁଦ୍ଧ ସଂସ୍କରଣରେ ଅନ୍ୟତମ ସହାୟକ ଉପାଦାନ ରୂପେ ଗ୍ରହଣ କରାଯାଇଛି । ପ୍ରକାଶକ କେଉଁ ମୂଳ ପୋଥିରୁ ଏହାର ପାଠ ସଂଗ୍ରହ କରିଛନ୍ତି, ତାହା ଉଲ୍ଲେଖ କରିନାହାନ୍ତି । କିନ୍ତୁ ଆଲୋଚନାରୁ ଜଣାଯାଏ-ଏହା ପୁରୀ ଜିଲ୍ଲାର ଭୁବନେଶ୍ୱର ଅଞ୍ଚଳରୁ ସଂଗୃହୀତ କୌଣସି ପୋଥିରୁ ପାଠ ସଂଗ୍ରହ କରାଯାଇଛି । ପୂର୍ବାପର ସଙ୍ଗତି ନ ଥିବା ପାଠ ଏଥିରେ କେତେକ ସ୍ଥଳରେ ଥିବାର ଦେଖାଯାଏ । ତଥାପି କେତେକ ସ୍ଥଳରେ ଶୁଦ୍ଧପାଠ ସଂଗ୍ରହ କରିବାରେ ପୁସ୍ତକଟି ବିଶେଷ ସହାୟକ ହୋଇଛି ।

ଭୁବନେଶ୍ୱରର ଭାଗବତ ପ୍ରଚାର ସମିତି ଦ୍ୱାରା ୧୯୮୭ ମସିହାରେ ବାବା ଚୈତନ୍ୟ ଚରଣ ଦାସଙ୍କ ସମ୍ପାଦିତ ଭାଗବତ ପୁସ୍ତକଟିକୁ ପ୍ରସ୍ତୁତ ଶୁଦ୍ଧ ସଂସ୍କରଣରେ ଅନ୍ୟତମ ସହାୟକ ପୁସ୍ତକ ରୂପେ ଗ୍ରହଣ କରାଯାଇଛି । ପ୍ରସ୍ତୁତ ଶୁଦ୍ଧ ସଙ୍କଳନରେ 'କ' ପାଠ ରୂପେ ଗୃହୀତ ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ ଭାଗବତ ଓ ବାବା ଚୈତନ୍ୟ ଚରଣ ଦାସଙ୍କ "ପରିମାର୍ଜିତ ନୂତନ ସଂସ୍କରଣ" ପାଠ ମଧ୍ୟରେ କୌଣସି ପାର୍ଥକ୍ୟ ପ୍ରାୟ ଦେଖାଯାଏ ନାହିଁ । ଭାଗବତର ପ୍ରଥମ ସ୍କନ୍ଧ ଓ ଦ୍ୱିତୀୟ ସ୍କନ୍ଧ ପାଠ ମଧ୍ୟରେ ବାବା ଚୈତନ୍ୟ ଚରଣ ଦାସ ଅଳ୍ପ କେତୋଟି ସ୍ଥାନରେ ପାଠଭେଦ ଦେଇଛନ୍ତି । ଅନ୍ୟଥା ସେ ରାଜକିଶୋର ଦାସଙ୍କ ସମ୍ପାଦିତ ଭାଗବତକୁ ଅବିକଳ ନକଲ କରିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଶେଷତଃ ରାଜକିଶୋର ଦାସଙ୍କ ସମ୍ପାଦନାରେ ଯେଉଁଠି ଭ୍ରମ ରହିଛି, 'ଭାଗବତ ପ୍ରଚାର ପରିଷଦ' ଦ୍ୱାରା ପ୍ରକାଶିତ ଭାଗବତରେ ଅନୁରୂପ ପ୍ରମାଦ ପରିଲକ୍ଷିତ ହୁଏ ।

ଉଦାହରଣ ସ୍ୱରୂପ ଦ୍ୱିତୀୟ ସ୍କନ୍ଧର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ "ଶୁକଦେବଙ୍କ ବ୍ରହ୍ମଜ୍ଞାନ ଶିକ୍ଷା" ସମ୍ପର୍କୀୟ ପ୍ରକରଣ ନିଆଯାଇ ପାରେ ।

"ଦ୍ୱାପର ଯୁଗ ଆଦ୍ୟକାଳେ । ମୁଁ ଯେ ଅନେକ ଶିଷ୍ୟମେଳେ ।।
ମୋର ଜନକ ବ୍ୟାସମୁନି । ମୁହିଁ ତାହାଙ୍କ ଶିକ୍ଷା ଘେନି ।।
ନିର୍ଗୁଣ ମାର୍ଗେ ମୋର ଚିତ୍ତ । ବିଷ୍ଣୁର ଭାବ ହେଲା ଜାତ" ।।

ରାଜା ପରୀକ୍ଷିତଙ୍କ ନିକଟକୁ ଆସିବାବେଳେ ଶୁକଦେବଙ୍କୁ ଷୋହଳ ବର୍ଷ ବୟସ ହୋଇଥିଲା ବୋଲି ପ୍ରଥମ ସ୍କନ୍ଧର ଊନବିଂଶ ଅଧ୍ୟାୟରେ ବର୍ଣ୍ଣନା ରହିଛି-

"ସ୍ୱଭାବେ ଷୋଡ଼ଶ ଅବଦ । ସୁନ୍ଦର ସୁକୁମାର ପାଦ ।।
କରୁଯୁଗଳ ବାହୁ ଅଂଶ । ଉନ୍ନତ ସୁନ୍ଦର ସୁନାସ ।।
x x x
ପ୍ରଲମ୍ବ ଭୁଜ ଜାନୁଯାଏ । ଦିଶେ ଅମରବର ପ୍ରାୟେ" ।।

ଏ ଉଭୟ ପ୍ରକରଣକୁ ମିଶାଇ ଆଲୋଚନା କଲେ ଜଣାଯାଏ- ପରୀକ୍ଷିତଙ୍କ ନିକଟକୁ ଆସିବା ସମୟକୁ ଷୋହଳ ବର୍ଷ ବୟସ ହୋଇଥିଲେ ତାଙ୍କ ବ୍ରହ୍ମଜ୍ଞାନ ଶିକ୍ଷା କେବେହେଲେ ଦ୍ୱାପର ଯୁଗର 'ଆଦ୍ୟକାଳେ' ହେବା ସମ୍ଭବ ନୁହେଁ । ପ୍ରସ୍ତୁତ ଶୁଦ୍ଧ ସଙ୍କଳନରେ ଗୃହୀତ ରାଜକିଶୋର ଦାସଙ୍କ ସମ୍ପାଦିତ ପୁସ୍ତକ ଓ କଟକ ଜିଲ୍ଲାର ଆଠଗଡ଼ ଅଞ୍ଚଳରୁ ସଂଗୃହୀତ ପୋଥି ବ୍ୟତୀତ ପାରଳାଖେମୁଣ୍ଡି, ଭବାନୀପାଟଣା, ଭଦ୍ରକ, ମେଦିନୀପୁର ଓ ଗଡ଼ମାଣିତ୍ରୀ ଅଞ୍ଚଳର ପୋଥିରେ ''ଦ୍ୱାପରଯୁଗ ଅନ୍ତଃକାଳେ'' ବୋଲି ପାଠ ରହିଛି । କେବଳ ସେତିକି ନୁହେଁ, ଶ୍ରୀମଦ୍‌ଭାଗବତର ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ତାଙ୍କ ଟୀକାରେ ସୁସ୍ପଷ୍ଟ ରୂପେ ମୂଳ ଶ୍ଲୋକଟିକୁ ବ୍ୟାଖ୍ୟା କରି ''ଭାବାର୍ଥ-ଦୀପିକା''ରେ ଲେଖିଛନ୍ତି- "ଦ୍ୱାପରାଦୌ ଦ୍ୱାପର ଆଦିର୍ଯସ୍ୟ କାଳସ୍ୟ ତସ୍ମିନ୍ ଦ୍ୱାପରାନ୍ତେ ଇତ୍ୟର୍ଥଃ'' । ଏହାର ଓଡ଼ିଆ ଅନୁବାଦ କରିବାକୁ ଯାଇ ଅନୁବାଦକ ସୁଶୀଲ କୁମାର ଦାସ ଲେଖିଛନ୍ତି- "ଦ୍ୱାପର ଯୁଗର ଶେଷ ଭାଗରେ ମୋର ପିତା ବ୍ୟାସଦେବଙ୍କ ନିକଟରୁ ମୁଁ ଏହି ପୁରାଣ ଅଧ୍ୟୟନ କରିଥିଲି ।"

ଶ୍ରୀମଦ୍‌ଭାଗବତର ଅନ୍ୟତମ ଓଡ଼ିଆ ଗଦ୍ୟାନୁବାଦକ ସାଧକ ବଳରାମ ବାନପ୍ରସ୍ଥୀ ମହୋଦୟ "ସନାତନ ଧର୍ମଗ୍ରନ୍ଥ-ପ୍ରକାଶନୀ--ପ୍ରତିଷ୍ଠାନ" ପକ୍ଷରୁ ୧୯୭୮ ମସିହାରେ ଯେଉଁ ପୁସ୍ତକ ପ୍ରକାଶ କରିଛନ୍ତି, ସେଥିରେ ମଧ ରହିଛି- "ଦ୍ୱାପର ଶେଷରେ ଏହି ଭାଗବତସ୍ୱରୂପ ଅର୍ଥାତ ବେଦତ୍ରୟୀ ଶ୍ରୀମଦ୍‌ଭାଗବତ ନାମକ ମହାପୁରାଣ ମୋର ପିତା ଶ୍ରୀ କୃଷ୍ଣ ଦ୍ୱୈପାୟନଙ୍କଠାରୁ ମୁଁ ଅଧ୍ୟୟନ କରିଥିଲି ।"


Dr. Sudhanshu Sekhar Mishra

ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କାନ୍ଥି, ନୀହାର ପ୍ରେସ୍ ଦ୍ୱାରା ପ୍ରକାଶିତ ବଙ୍ଗାକ୍ଷରରେ ମୁଦ୍ରିତ ଭାଗବତରେ ମଧ୍ୟ ରହିଛି-

"ଦ୍ୱାପରଯୁଗ ଅନ୍ତଃକାଳେ । ମୁହିଁ ଅନେକ ଶିଷ୍ୟମେଳେ" ।।

ଏଥିରୁ ମନେହୁଏ "ଦ୍ୱାପରଯୁଗ ଆଦ୍ୟକାଳେ" ପାଠଟି "ଦ୍ୱାପରାଦୌ" ଶବ୍ଦର ଅବିଚାରିତ ଅନୁବାଦ ବୋଲି ଯେଉଁମାନେ ଗ୍ରହଣ କରିଛନ୍ତି, ତାହା ପ୍ରମାଦପୂର୍ଣ୍ଣ ଅଟେ । "ଭାଗବତ ପ୍ରଚାର ପରିଷଦ" ଦ୍ୱାରା ପ୍ରକାଶିତ ସମ୍ପାଦନାରେ ରାଜକିଶୋର ଦାସଙ୍କ ସମ୍ପାଦନାରୁ ଅବିକଳ ଭାବରେ କେବଳ ଏହି ଅଂଶଟି ନୁହେଁ, ଅଦ୍ୟାପି ଆଲୋଚିତ ପ୍ରଥମ, ଦ୍ୱିତୀୟ ସ୍କନ୍ଧର ପାଠ ସମ୍ପୂର୍ଣ୍ଣଭାବରେ ନକଲ କରାଯାଇଛି ।

ବାବା ଚୈତନ୍ୟ ଚରଣ ଦାସ ତାଙ୍କ "ନମ୍ର ନିବେଦନ"ରେ ଲେଖିଛନ୍ତି- "ଅମୃତ ନିନ୍ଦେ ସ୍ୱାଦୁପଣେ । ପିଅ ସୁଜନେ ଅନୁକ୍ଷଣେ ।" ଏଠାରେ "ପିଅ" ସ୍ଥାନରେ ''ପିବ'' କ୍ରିୟା ସଂଯୋଜିତ ହୋଇଛି । କାରଣ ସଂସ୍କୃତ ଭାଗବତର କ୍ରିୟାପଦ x x x ଏପରି ବହୁ ସ୍ଥାନରେ ବ୍ୟତିକ୍ରମ ଦେଖି ଆମେ ପୂର୍ବ ପୋଥି ଓ ଛାପା ସଂସ୍କରଣରେ ଥିବା ସରଳ ପଦକୁ ଏହି ନୂତନ ସଂସ୍କରଣରେ ରଖିଛୁ । ଯଥା ''ପିବ'' ସ୍ଥାନରେ ''ପିଅ'', ''ଗଙ୍ଗାର ତୀରେ'' ସ୍ଥାନରେ ''ଜାହ୍ନବୀ ତଟେ'' ଅର୍ଥାତ୍ ଆମେ କୌଣସି କଳ୍ପନାପ୍ରସୂତ ପଦ ପ୍ରୟୋଗ କରିନାହୁଁ ।

''ଗଙ୍ଗାର ତୀରେ'' ସ୍ଥାନରେ ''ଜାହ୍ନବୀ ତଟେ'' ସରଳ ପଦ କି ନା ତାହା ସୁଧୀ ପାଠକେ ବିଚାର କରିବେ । କିନ୍ତୁ ''ପିଅ'' ସ୍ଥାନରେ ''ପିବ''ର ବ୍ୟବହାର ବାବା ଚୈତନ୍ୟ ଚରଣ ଦାସ ମହୋଦୟ ସ୍ୱସମ୍ପାଦନାର ଅନ୍ୟସ୍ଥଳରେ କରି ସ୍ୱବଚନ ବିରୋଧ କରିଛନ୍ତି -

"ଅମୃତବାଣୀ ରସମୟେ । ପିବ ଜୀବନ ଅନ୍ତଯାଏ" ।।

(ଭା-୨ୟ ସ୍କନ୍ଧ ପ୍ରଥମ ଅଧ୍ୟାୟ, ଶେଷପଦ, ପୃ-୧୪୪)

ତଥାପି ଏହି ସମ୍ପାଦନାରେ ଯେଉଁ ଯେଉଁ ସ୍ଥଳରେ ଶୁଦ୍ଧପାଠର ସନ୍ଧାନ ମିଳିଛି, ତାହା ପ୍ରସ୍ତୁତ ଶୁଦ୍ଧ ସଂକଳନରେ ସନ୍ନିବେଶିତ ହୋଇଛି ।

ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କାନ୍ଥି ସହରର ନୀହାର ପ୍ରେସ୍‌ରୁ ସନ ୧୩୪୯ ସାଲ ଅର୍ଥାତ ୧୯୪୨ ମସିହାରେ ଶ୍ରୀ ଯତୀନ୍ଦ୍ର ନାଥ ଜାନାଙ୍କ ଦ୍ୱାରା ବଙ୍ଗାକ୍ଷରରେ ମୁଦ୍ରିତ ଭାଗବତ ପୁସ୍ତକଟିକୁ ଆମେ ପ୍ରସ୍ତୁତ ସଙ୍କଳନର ଅନ୍ୟତମ ସହାୟକ ଗ୍ରନ୍ଥ ଭାବରେ ଗ୍ରହଣ କରିଛୁ । ଶ୍ରୀ ଯତୀନ୍ଦ୍ର ନାଥ ଜାନା ପୁସ୍ତକର ଆରମ୍ଭରେ ଲେଖିଛନ୍ତି- "ମହାନୁଭବ ଶ୍ରୀମଦ୍ ଜଗନ୍ନାଥ ଦାସକୃତ ଉତ୍କଳ ଭାଷାୟେ ବଙ୍ଗାକ୍ଷରରେ ନବାକ୍ଷରୀ ପୟାର ଛନ୍ଦ ଗ୍ରନ୍ଥ ପ୍ରଥମ ସ୍କନ୍ଧ" ପ୍ରସ୍ତୁତି ସଙ୍କଳନରେ ଗ ଓ ଙ ପୋଥିରୂପେ ଗୃହୀତ ଭଦ୍ରକ ଓ ମେଦିନୀପୁର ଅଞ୍ଚଳର ପୋଥି ଦୁଇଟି ସହିତ ବଙ୍ଗାକ୍ଷରରେ ମୁଦ୍ରିତ ପୁସ୍ତକର ପାଠରେ ଅନେକ ସାମଞ୍ଜସ୍ୟ ରହିଛି । ଆଉ କେତେକ ସ୍ଥଳରେ ନିତାନ୍ତ ଅସଙ୍ଗତ ପାଠ ରହିଥିଲେ ହେଁ ଅନ୍ୟ କେତେକ ସ୍ଥଳରେ ଶୁଦ୍ଧ ସଙ୍କଳନ ପାଇଁ ସମୀଚୀନ ପାଠ ଯୋଗାଇବାରେ ପୁସ୍ତକଟି ସହାୟକ ହୋଇଛି ।

ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ତଥା ଶ୍ରୀ ସୁଶୀଲ କୁମାର ଦାସଙ୍କ ସମ୍ପାଦିତ ମୂଳ ସଂସ୍କୃତ ଭାବାର୍ଥ ଦୀପିକା ଟୀକା ତଥା ଅନୁବାଦ ସମ୍ବଳିତ ପୁସ୍ତକ ଓ ସାଧକ ବଳରାମ ବାନପ୍ରସ୍ଥୀଙ୍କ ମୂଳ ସଂସ୍କୃତ, ଓଡ଼ିଆ ଗଦ୍ୟ ଅନୁବାଦ ସମେତ ପୁସ୍ତକ ଦୁଇଟି ଆମ ଶୁଦ୍ଧ ସଙ୍କଳନ ପ୍ରସ୍ତୁତି କରିବାରେ ବିଶେଷ ସହାୟକ ହୋଇଛନ୍ତି ।

ପ୍ରସ୍ତୁତ ସଙ୍କଳନରେ ବ୍ୟବହୃତ ବିଭିନ୍ନ ଅଞ୍ଚଳର ପୋଥିଗୁଡ଼ିକ ମଧ୍ୟରେ କ ପୋଥି ସହିତ ଛ ପୋଥିର, ଖ, ଗ ପୋଥି ସହିତ ଚ ପୋଥିର ଏବଂ ଘ ପୋଥି ସହିତ ଙ ପୋଥି ପାଠର ସାମଞ୍ଜସ୍ୟ ରହିଛି । ଏହାର କାରଣସ୍ୱରୂପ ଏତିକି କୁହାଯାଇପାରେ ଯେ, ପୋଥି-ଲେଖକମାନେ ବିଭିନ୍ନ ଅଞ୍ଚଳରେ ବୁଲି ପୋଥି ଲେଖୁଥିଲେ । ସେମାନେ ଯେଉଁ ଯେଉଁ ସ୍ଥାନରେ ରହି ଯେଉଁ ମୂଳ ପୋଥିଟିର ଅନୁକରଣରେ ଅନ୍ୟ ପୋଥିମାନ ଲେଖିଥିବେ, ସେହି ସେହି ପୋଥିଗୁଡ଼ିକ ମଧ୍ୟରେ ପାଠଗତ ସାମଞ୍ଜସ୍ୟ ରହିବା ଅସମ୍ଭବ ନୁହେଁ । ଏତଦ୍‌ବ୍ୟତୀତ ଦାନ ଓ ଯୌତୁକ ସୂତ୍ରରେ ମଧ୍ୟ ପୋଥିଗୁଡ଼ିକ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇଥାଏ ଏବଂ ସେହି ପୋଥିର ଅନୁସରଣରେ ସେଠାରେ ଯେଉଁ ଯେଉଁ ପୋଥିଗୁଡ଼ିକ ଲେଖାଯାଇଥାଏ, ତାହା ସେହି ମୂଳ ପୋଥିର ପାଠ ସହିତ ସାମଞ୍ଜସ୍ୟ ରକ୍ଷା କରିଥାଏ ।

ବିଭିନ୍ନ ଅଞ୍ଚଳର ପୋଥିଗୁଡ଼ିକର ପାଠ, ଛପା ପୁସ୍ତକଗୁଡ଼ିକର ପାଠ ତଥା ସଂସ୍କୃତ ପାଠକୁ ମିଶାଇ ଏହି ସଂସ୍କରଣରେ ଗୋଟିଏ ଶୁଦ୍ଧପାଠ ଗ୍ରହଣ କରାଯାଇଛି । ଯାହା କୌଣସି ପାଠରେ ନାହିଁ, ତାହା ଆମ ଶୁଦ୍ଧ ସଂସ୍କରଣରେ ସନ୍ନିବେଶିତ ହୋଇନାହିଁ । ଯେଉଁଠାରେ ଗୋଟିଏ ଦୁଇଟି ପାଠ ସହିତ ଅନ୍ୟ ସମସ୍ତ ପାଠର ଅମେଳ ରହିଛି ଏବଂ ତାହା ସମୀଚୀନ ପାଠ ବୋଲି ମନେହେଉଛି, ସେ ସ୍ଥଳରେ ମୂଳ ସଂସ୍କୃତର ପାଠ ତଥା ଖାଡ଼ଙ୍ଗାଙ୍କ ଅନୁବାଦ ପାଦଟୀକାରେ ଦିଆଯାଇଛି । ଏତଦ୍‌ବ୍ୟତୀତ ଯେଉଁ ପାଠଟି ଯୁକ୍ତିଯୁକ୍ତ ବୋଲି ମନେହୋଇଛି, ତାହାକୁ ଶୁଦ୍ଧପାଠ ବୋଲି ମନେ କରାଯାଇ ଉପରେ ଦିଆଯାଇଥିବା ସଙ୍ଗେ ସଙ୍ଗେ, ଅନ୍ୟ ପାଠଗୁଡ଼ିକୁ ପାଦଟୀକାରେ



Dr. Sudhanshu Sekhar Mishra

ଲିପିବଦ୍ଧ କରାଯାଇଛି । କେତେକ ପୋଥିର ପାଠ ନିତାନ୍ତ ଅସମୀଚୀନ ହୋଇଛି । ତଥାପି ବିଜ୍ଞ ଆଲୋଚକମାନଙ୍କ ସୁବିଧା ନିମିତ୍ତ ଏହି ଶୁଦ୍ଧ ସଂସ୍କରଣର ବିସ୍ତୃତ ପାଦଟୀକାରେ ସେପରି ପାଠ ସନ୍ନିବେଶିତ ହୋଇଛି । ଏହାବ୍ୟତୀତ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧ (ପ୍ରଥମଖଣ୍ଡ)ରେ ଥିବା କଠିନ ଶବ୍ଦ, ଚରିତ ତଥା ତାତ୍ତ୍ୱିକ ଶବ୍ଦମାନଙ୍କର ଏକ ''ଅର୍ଥ-ଦୀପିକା'' ଏଥିସହିତ ସନ୍ନିବେଶିତ ହୋଇଛି । ଅଭିଧାନ ଦୃଷ୍ଟିରୁ ଏହି ଶବ୍ଦଗୁଡ଼ିକର ଅର୍ଥ ବିଭିନ୍ନ ହୋଇଥିଲେ ମଧ୍ୟ ଜଗନ୍ନାଥ ଦାସ ଗୋସାଇଁଙ୍କ ଭାଗବତର ପ୍ରାସଙ୍ଗିକ ଅର୍ଥ ଦୃଷ୍ଟିରୁ ଏଥିରେ ଶବ୍ଦାର୍ଥ ଓ ତତ୍ତ୍ୱାର୍ଥ ସନ୍ନିବେଶିତ ହୋଇଛି ।

**ଶ୍ରୀମଦ୍‌ଭାଗବତ ମହାତ୍ମ୍ୟ —**

ଶ୍ରୀମଦ୍‌ଭାଗବତର ମହାତ୍ମ୍ୟ ପ୍ରସଙ୍ଗରେ ଭଗବାନ ବିଷ୍ଣୁ ପ୍ରଜାପତି ବ୍ରହ୍ମାଙ୍କୁ ନେକ ଉପଦେଶ ଦେଇଛନ୍ତି —

"ଯେଽର୍ଚ୍ଚୟନ୍ତି ସଦା ଗେହେ ଶାସ୍ତ୍ରଂ ଭାଗବତଂ ନରାଃ ।
ପ୍ରୀଣିତାସ୍ତୈଶ୍ଚ ବିବୁଧା ଯାବଦାଭୂତ-ସଂପ୍ଳୁବମ୍ ।"

(ଶ୍ରୀମଦ୍‌ଭାଗବତ ରହସ୍ୟ)

ଅଷ୍ଟାଦଶ ପୁରାଣ ଅନ୍ତର୍ଗତ "ଶ୍ରୀମଦ୍‌ଭାଗବତ" ହେଉଛି ଏକ ପବିତ୍ର ଗ୍ରନ୍ଥ । ଏହାକୁ ପରାଶର ମହର୍ଷିଙ୍କ ସୁତ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ପ୍ରଣୟନ କରିଛନ୍ତି । ଏହି ଗ୍ରନ୍ଥର ବାରଗୋଟି ସ୍କନ୍ଧ ମଧ୍ୟରେ ଅଷ୍ଟାଦଶ ସହସ୍ର ସଂଖ୍ୟକ ଶ୍ଳୋକ ସନ୍ନିବେଶିତ ହୋଇଛି । ଏହି ଶ୍ଳୋକଗୁଡ଼ିକୁ ମହାମୁନି ବ୍ୟାସଦେବ ତିନିଶହ ବତିଶି ଅଧ୍ୟାୟରେ ବିଭକ୍ତ କରିଛନ୍ତି । ଏଥିରେ ପୂର୍ଣ୍ଣବ୍ରହ୍ମ ଭଗବାନ୍ ବାସୁଦେବ ଶ୍ରୀକୃଷ୍ଣଙ୍କ ଚରିତ ମୁଖ୍ୟତଃ ବର୍ଣ୍ଣିତ ହୋଇଛି ।

କଥିତ ହୁଏ, ବ୍ୟାସଦେବ ବେଦ, ବ୍ରହ୍ମସୂତ୍ର, ସର୍ବଉପନିଷଦ୍, ଗାୟତ୍ରୀଭାଷ୍ୟ, ପୁରାଣ ତଥା ଉପପୁରାଣମାନଙ୍କର ସାର ଉଦ୍ଧାର କରି ଆତ୍ମତୃପ୍ତି ତଥା ଜନସମାଜର କଲ୍ୟାଣ ଲାଗି ଯେଉଁ ଗ୍ରନ୍ଥ ପ୍ରଣୟନ କରିଥିଲେ, ତାହାର ନାମ ହେଉଛି, "ଶ୍ରୀମଦ୍‌ଭାଗବତ" ।

ମହର୍ଷି ବ୍ୟାସଦେବଙ୍କଠାରୁ ତାଙ୍କ ବ୍ରହ୍ମଜ୍ଞାନ ସମ୍ପନ୍ନ ପୁତ୍ର ଶୁକଦେବ ଯୋଗାଭ୍ୟାସ ବଳରେ ଶ୍ରୀମଦ୍‌ଭାଗବତକୁ ଅଧ୍ୟୟନ କରି, ଗଙ୍ଗା କୂଳରେ ବ୍ରହ୍ମଶାପଜନିତ ମରଣାପନ୍ନ ଅବସ୍ଥାରେ ପଡ଼ିଥିବା ରାଜା ପରୀକ୍ଷିତଙ୍କୁ ଶୁଣାଇଥିଲେ ।

"ଅର୍ଥୋଽୟଂ ବ୍ରହ୍ମସୂତ୍ରାଣାଂ ସର୍ବୋପନିଷଦାମପି ।
ଗାୟତ୍ରୀଭାଷ୍ୟରୂପୋଽସୌ ଶ୍ରୀମଦ୍‌ଭାଗବତାଭିଧଃ ।।
ସର୍ବବେଦେତିହାସାନାଂ ସାରଂ ସାରଂ ସମୁଦ୍ଧୃତମ୍ ।
ସ ତୁ ସଂଶ୍ରାବୟାମାସ ମହାରାଜ-ପରୀକ୍ଷିତମ୍ ।।"

ଶ୍ରୀମଦ୍‌ଭାଗବତର ପ୍ରଥମ ସ୍କନ୍ଧରେ କୁହାଯାଇଛି—ଏହା ହେଉଛି ଏକ ପ୍ରାଚୀନ ଗ୍ରନ୍ଥ ଏବଂ ଏହାର ବିଷୟବସ୍ତୁ ବେଦସମ୍ମତ ଅଟେ । ଏଥିରେ ଥିବା ଶ୍ଳୋକଗୁଡ଼ିକ ଭଗବାନ ଶ୍ରୀକୃଷ୍ଣ ଚରିତର ଅବଲମ୍ବନରେ ରଚିତ । ଏହାକୁ ଭଗବାନ ବାଦରାୟଣ ବ୍ରହ୍ମମୁନି ବେଦବ୍ୟାସ ରଚନା କରିଛନ୍ତି—

"ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମସମ୍ମତମ୍ ।
ଉତ୍ତମ-ଶ୍ଳୋକ ଚରିତଂ ଚକାର ଭଗମାନୃଷିଃ ।।"

(ଭା ୧.୩-୪୦)

ଭାଗବତ ଗ୍ରନ୍ଥର ମହାତ୍ମ୍ୟ ସମ୍ପର୍କରେ ବିଭିନ୍ନ ପୁରାଣରେ ଶ୍ଳୋକମାନ ରହିଛି । ମତ୍ସ୍ୟ ପୁରାଣରେ କୁହାଯାଇଛି—

"ଯତ୍ରାଧିକୃତ୍ୟ ଗାୟତ୍ରୀଂ ବର୍ଣ୍ଣ୍ୟତେ ଧର୍ମ-ବିସ୍ତରଃ ।
ବୃତ୍ରାସୁର-ବଧୋପେତମ୍ ତଦ୍‌ଭାଗବତମିଷ୍ୟତେ ।।
ଅଷ୍ଟାଦଶସହସ୍ରାଣି ପୁରାଣଂ ତତ୍ ପ୍ରକୀର୍ତ୍ତିତମ" ।

ସମସ୍ତ ଶାସ୍ତ୍ର ପ୍ରଣୟନ କରିବାପରେ ବ୍ୟାସଦେବଙ୍କ ମନରେ ଶାନ୍ତି ବିରାଜମାନ କଲାନାହିଁ । ସେ ସରସ୍ୱତୀ ନଦୀ ତଟବର୍ତ୍ତୀ 'ବଦରିକା' ଆଶ୍ରମରେ ବ୍ୟାକୁଳତାର ସହିତ ଇଷ୍ଟ ଚିନ୍ତା କରିଥିଲେ । ଏହି ସମୟରେ ପ୍ରଜାପତି ବ୍ରହ୍ମାଙ୍କଦ୍ୱାରା ପ୍ରେରିତ ହୋଇ ନାରଦ ସେଠାରେ ଉପସ୍ଥିତ ହେଲେ । ସେ ବ୍ୟାସଦେବଙ୍କ ମନୋଭାବ ଜାଣି ତାଙ୍କୁ କହିଲେ— "ଆପଣ ଭଗବାନ ଶ୍ରୀକୃଷ୍ଣଙ୍କ ମହିମା ବର୍ଣ୍ଣନା କରି ଶ୍ରୀମଦ୍‌ଭାଗବତର ରଚନା ଆରମ୍ଭ କରନ୍ତୁ । ଏହା କେବଳ ମୋର ଉପଦେଶ ନୁହେଁ, ସ୍ୱୟଂ ପିତାମହ ବ୍ରହ୍ମା ମଧ୍ୟ ଏହା ଇଚ୍ଛା କରନ୍ତି । ତାହା ଫଳରେ ଆପଣ କେବଳ ଶାନ୍ତି ପାଇବେ ତା'ନୁହେଁ, ଏହି କଳିଯୁଗରେ ଯେଉଁମାନଙ୍କର ବେଦରେ ଅଧିକାର ନାହିଁ, ସେମାନଙ୍କର ମଧ୍ୟ ପରମ କଲ୍ୟାଣ ସାଧିତ ହେବ ।'' 'ନାରଦଙ୍କ ଉପଦେଶ ଅନୁସାରେ ବ୍ୟାସଦେବ ଶ୍ରୀମଦ୍‌ଭାଗବତ ରଚନା କରି ମୁମୁକ୍ଷୁ ଜନସମାଜର କଲ୍ୟାଣ କରିଛନ୍ତି—

"ସ୍ତ୍ରୀଶୂଦ୍ରଦ୍ୱିଜବନ୍ଧୂନାଂ ତ୍ରୟୀ ନ ଶ୍ରୁତିଗୋଚରା ।
କର୍ମଶ୍ରେୟସି ମୂଢ଼ାନାଂ ଶ୍ରେୟଃ ଏବଂ ଭବେଦିହ" ।।



Dr. Sudhanshu Sekhar Mishra

ପରମହଂସ ମୁନି ବ୍ୟାସଦେବ ଶ୍ରୀମଦ୍‌ଭାଗବତ ରଚନା କରି ପୁତ୍ର ଶୁକଦେବଙ୍କୁ ଅଧ୍ୟୟନ କରାଇଥିଲେ । ଶୁକଦେବ ଥିଲେ ବ୍ରହ୍ମଜ୍ଞାନୀ ଓ ମୋକ୍ଷଧର୍ମର ପ୍ରବକ୍ତା । ସେ ଭାଗବତ ବିଦ୍ୟାକୁ ହୃଦୟଙ୍ଗମ କରି ସର୍ବତ୍ର ମୁନିମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ବିଶେଷତଃ ଗଙ୍ଗା କୂଳରେ ରାଜା ପରୀକ୍ଷିତଙ୍କୁ ଶୁଣାଇଥିବାବେଳେ ତାହା ସୂତମୁନି ହୃଦୟଙ୍ଗମ କରି ନୈମିଷାରଣ୍ୟବାସୀ ଶୌନକ ଆଦି ମୁନିମାନଙ୍କୁ ଶୁଣାଇଥିଲେ । ତା'ରି ଫଳରେ ଶ୍ରୀମଦ୍‌ଭାଗବତର ମାହାତ୍ମ୍ୟ ସର୍ବତ୍ର ପ୍ରଚାରିତ ହେଲା ଏବଂ ଜନସମାଜରେ ଏହାର ଆଦର ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା ।

ବ୍ରହ୍ମର୍ଷି ବ୍ୟାସଦେବ ବେଦ, ବ୍ରହ୍ମସୂତ୍ର, ଉପନିଷଦ ଓ ଇତିହାସ ପୁରାଣମାନଙ୍କର ସାର ଉଦ୍ଧାର କରି ଏହି ମହାନ୍ ଗ୍ରନ୍ଥର ରଚନା କରିଥିବାରୁ ତା' ଏକ ପ୍ରସିଦ୍ଧ ଗ୍ରନ୍ଥ ରୂପେ ପରିଚିତ ହେଲା ସତ, କିନ୍ତୁ ଭାଗବତର ଭାଷା ସର୍ବଜନ ବୋଧ ହେଲାନାହିଁ । କେବଳ ଦର୍ଶନଶାସ୍ତ୍ରରେ ଗୂଢ଼ଜ୍ଞାନ ଏବଂ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିବା ବ୍ୟକ୍ତିମାନେ ଭାଗବତର ଅର୍ଥ ହୃଦୟଙ୍ଗମ କରିବାରେ ସମର୍ଥ ହୋଇଥିଲେ । ସେଥିପାଇଁ ବିଦ୍ୱାନ୍‌ମଣ୍ଡଳୀରେ ଗୋଟିଏ ଦୁଇଟି ପ୍ରବଚନ ରହିଛି-

"ବିଦ୍ୟାବତାଂ ଭାଗବତେ ପରୀକ୍ଷା
ବିଦ୍ୟା ଭାଗବତାବଧିଃ ।।

ଗୂଢ଼ତତ୍ତ୍ୱ ଓ କଠିନ ଶବ୍ଦ ସମ୍ବଳିତ ଭାଗବତଗ୍ରନ୍ଥ ସର୍ବସାଧାରଣରେ ଆଦୃତ ହେବା ସଙ୍ଗେ ସଙ୍ଗେ ବୈଷ୍ଣବମାନଙ୍କର ଏକ ପ୍ରିୟଗ୍ରନ୍ଥ ରୂପେ ଆଦୃତ ହୋଇଥିଲା । ଭାଗବତର ଦ୍ୱାଦଶ ସ୍କନ୍ଧରୁ ଜଣାଯାଏ-

"ଶ୍ରୀମଦ୍‌ଭାଗବତଂ ପୁରାଣମମଳଂ ଯଦ୍ ବୈଷ୍ଣବାନାଂ ପ୍ରିୟଂ ।
ଯସ୍ମିନ ପାରମହଂସ୍ୟ ମେକମମଳଂ ଜ୍ଞାନଂ ପରଂ ଗୀୟତେ ।।
ତତ୍ର ଜ୍ଞାନବିରାଗଭକ୍ତିସହିତଂ ନୈଷ୍କର୍ମ୍ୟମାବିଷ୍କୃତଂ ।
ତଚ୍ଛୃଣ୍ୱନ୍ ବିପଠନ୍ ବିଚାରଣପରୋ ଭକ୍ତ୍ୟା ବିମୁଚ୍ୟେ ନରଃ" ।।

(ଭା-୧୨-୧୩-୧୮)

ତେଣୁ ଭାଗବତକୁ ଭଲଭାବରେ ହୃଦୟଙ୍ଗମ କରିବା ପାଇଁ ବିଭିନ୍ନ ବିଦ୍ୱାନ୍‌ମାନେ ତହିଁର ଟୀକା ରଚନା କରିଥିଲେ । ସେହି ଟୀକାଗୁଡ଼ିକ ମଧ୍ୟରେ ବିଷ୍ଣୁସ୍ୱାମୀ, ଶ୍ରୀଧରସ୍ୱାମୀ (ଭାବାର୍ଥ ଦୀପିକା), ବଲ୍ଲଭାଚାର୍ଯ୍ୟ (ସୁବୋଧିନୀ), ସନାତନ ଗୋସ୍ୱାମୀ (ବୈଷ୍ଣବ ତୋଷିଣୀ), ରୂପ ଗୋସ୍ୱାମୀ (ଲଘୁ ଭାଗବତାମୃତ), ଜୀବ ଗୋସ୍ୱାମୀ (କ୍ରମସନ୍ଦର୍ଭ), ବିଶ୍ୱନାଥ ଚକ୍ରବର୍ତ୍ତୀ (ସାରାର୍ଥ ଦର୍ଶିନୀ), ବଳଦେବ ବିଦ୍ୟାଭୂଷଣ (ବୈଷ୍ଣବାନନ୍ଦିନୀ), ରାଧାରମଣ ଗୋସ୍ୱାମୀ (ଦୀପିକା ଦୀପନ), ସୁଦର୍ଶନ ସୂରି (ଶୁକପକ୍ଷୀୟା), ବୀର ରାଘବ (ଭାଗବତ ଚନ୍ଦ୍ରିକା), ବିଜୟ ଧ୍ୱଜ (ପଦରତ୍ନାବଳୀ), ମାଧ୍ୱାଚାର୍ଯ୍ୟ (ତାତ୍ପର୍ଯ୍ୟ ନିର୍ଣ୍ଣୟ), ଶୁକଦେବାଚାର୍ଯ୍ୟ (ସିଦ୍ଧାନ୍ତ ପ୍ରଦୀପ), ଗଙ୍ଗସହାୟ ବିଦ୍ୟା ବାଚସ୍ପତି (ବଂଶୀଧାରୀ ଚୂର୍ଣ୍ଣିକା), ଶ୍ରୀହରି (ହରିଭକ୍ତି ରସାୟନ)ଙ୍କ ନାମ ଉଲ୍ଲେଖଯୋଗ୍ୟ । ତନ୍ମଧ୍ୟରେ ଉତ୍କଳୀୟ ବୈଷ୍ଣବ ଶ୍ରୀଧରସ୍ୱାମୀ ଥିଲେ ସର୍ବଶ୍ରେଷ୍ଠ ଟୀକାକାର । ତାଙ୍କ କୃତ ''ଭାବାର୍ଥ ଦୀପିକା'' ଟୀକା ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ରଣୀତ ହୋଇଥିଲା । ଶ୍ରୀଧରସ୍ୱାମୀ ପୁରୀ ଗୋବର୍ଦ୍ଧନ ପୀଠର ଅନ୍ୟତମ ସ୍ୱାମୀ ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲେ । ତାଙ୍କର ଜନ୍ମସ୍ଥାନ ବାଲେଶ୍ୱର ସହର ନିକଟବର୍ତ୍ତୀ ମରେଇ ଗାଁ । କିନ୍ତୁ ସେ ଢେଙ୍କାନାଳ ଜିଲ୍ଲାର କପିଳାସ ପର୍ବତ ନିକଟସ୍ଥ ବ୍ରହ୍ମଚାରୀ ମଠରେ ରହି ଶ୍ରୀମଦ୍‌ଭାଗବତର "ଭାବାର୍ଥ ଦୀପିକା" ଟୀକା ପ୍ରଣୟନ କରିଥିବା ବିଷୟରେ ଆଲୋଚକମାନେ ମତବ୍ୟକ୍ତ କରନ୍ତି । କପିଳାସର ବ୍ରହ୍ମଚାରୀ ମଠର ଆରାଧ ଦେବତା ହେଉଛନ୍ତି ନୃସିଂହ । ସେ ନୃସିଂହଙ୍କୁ ସ୍ତୁତିକରି ତାଙ୍କର ଟୀକା ଆରମ୍ଭ କରିଛନ୍ତି । ଶ୍ରୀଧରଙ୍କ ଟୀକା ଫଳରେ ସମଗ୍ର ଭାରତବର୍ଷରେ ଭାଗବତର ପ୍ରଚାର ଓ ପ୍ରସାର ବିଶେଷ ଭାବରେ ହୋଇପାରିଥିଲା । ବିଭିନ୍ନ ଅଞ୍ଚଳର କବିମାନେ ସ୍ୱ ସ୍ୱ ମାତୃଭାଷାରେ ଭାଗବତର ଅନୁବାଦ କରିବାକୁ ପ୍ରୟାସ କଲେ । ଶ୍ରୀମଦ୍‌ଭାଗବତର ଟୀକାକାରଙ୍କ ମଧ୍ୟରେ ଅନ୍ୟଜଣେ ଉତ୍କଳୀୟ ବିଦ୍ୱାନ୍ ହେଉଛନ୍ତି-ବଳଦେବ ବିଦ୍ୟାଭୂଷଣ ।

**ଭାଗବତ** - ଭାଗବତ କହିଲେ କେବଳ ପୁରାଣ ବିଶେଷକୁ ବୁଝାଯାଏ, ତା ନୁହେଁ, ଯେଉଁମାନେ ଭଗବତ୍ ଆରାଧନା, ଭଗବନ୍ନାମ କୀର୍ତ୍ତନ ଓ କଥା ଶ୍ରବଣରେ କାଳ ଅତିବାହିତ କରନ୍ତି ସେମାନଙ୍କୁ ମଧ୍ୟ ''ଭାଗବତ'' କୁହାଯାଏ । ଲିଙ୍ଗ ପୁରାଣର ଆଖ୍ୟାନରୁ ଜଣାଯାଏ, ଯେଉଁ ବ୍ୟକ୍ତି ବିଷ୍ଣୁଭକ୍ତମାନଙ୍କୁ ନିଜର ଶକ୍ତି ଅନୁସାରେ ଭୋଜନ ଓ ବସ୍ତ୍ର ପ୍ରଦାନ କରେ ତାହାଙ୍କୁ ''ଭାଗବତ'' କୁହାଯାଏ ।

"ଭୋଜନାଚ୍ଛାଦନଂ ସର୍ବଂ ଯଥାଶକ୍ତ୍ୟା ଦଦାତି ଯଃ ।
ବିଷ୍ଣୁଭକ୍ତସ୍ୟ ସତତଂ ସ ବୈ ଭାଗବତଃ ସ୍ମୃତଃ" ।

ଶ୍ରୀମଦ୍‌ଭାଗବତର ଏକାଦଶ ସ୍କନ୍ଧରେ କୁହାଯାଇଛି ଯେ, ଯେଉଁ ବ୍ୟକ୍ତି ସମସ୍ତ ପ୍ରାଣୀଙ୍କଠାରେ ଭଗବାନ୍‌ଙ୍କର ଉପସ୍ଥିତି ଅନୁଭବ କରେ ସେ ପ୍ରକୃତରେ ''ଭାଗବତ'' । ଯାହାର ହୃଦୟରେ ପର ଆପଣାର ଭେଦ ନ ଥାଏ, ସମସ୍ତ ପ୍ରାଣୀଙ୍କଠାରେ ଯେ ବିଷ୍ଣୁଙ୍କର ସ୍ଥିତି ଅନୁଭବ କରେ, ଯେ ଦୁଃଖଶୋକ ସମୟରେ ନିଜକୁ ଭଗବତ୍ ଚରଣରେ ସମର୍ପଣ କରି ଶୋକ ବା ହର୍ଷ ଅନୁଭବ କରେ ନାହିଁ; ସକଳ ପ୍ରାଣୀଙ୍କର ଦୁଃଖକୁ ଯେ ଆପଣାର ଦୁଃଖ ବୋଲି ମନେକରି ତା'ର ପ୍ରତିକାର ପାଇଁ ଚିନ୍ତା କରିଥାଏ, ସେ ହେଉଛି ଶ୍ରେଷ୍ଠ ''ଭାଗବତ'' ।

ବୃହନ୍ନାରଦୀୟ ପୁରାଣରୁ ଜଣାଯାଏ, ଯେଉଁ ବ୍ୟକ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତଥା ଅନ୍ୟାନ୍ୟ ଦେବଦେବୀଙ୍କ ପ୍ରତି ହୃଦୟରେ ସମବୁଦ୍ଧି ପ୍ରକାଶ କରେ ସେ ହେଉଛି ଉତ୍ତମ 'ଭାଗବତ' ।

"ଶିବେ ଚ ପରମେଶାନେ ବିଷ୍ଣୌଚ ପରମାତ୍ମନି ।
ସମବୁଦ୍ଧ୍ୟା ପ୍ରବର୍ତ୍ତନ୍ତେ ତେ ବୈ ଭାଗବତୋତ୍ତମାଃ" ।।

ଏହିପରି ଭାବରେ ଦେଖିବାକୁ ଗଲେ ବ୍ୟାସଦେବଙ୍କ ରଚିତ ଗ୍ରନ୍ଥ ଓ ବିଷ୍ଣୁଭକ୍ତ ଉଭୟ ''ଭାଗବତ'' ପଦବାଚ୍ୟ ।

**ଭାଗବତ ପରମ୍ପରା** - ଗୋଟିଏ ପରମ୍ପରା ହେଉଛି-ପରମେଶ୍ୱର ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ ଭାଗବତତତ୍ତ୍ୱ ଶୁଣାଇଥିଲେ । ପ୍ରଜାପତି ବ୍ରହ୍ମା ନିଜର ମାନସ ପୁତ୍ର ନାରଦଙ୍କୁ ଭାଗବତତତ୍ତ୍ୱ ଉପଦେଶ ଦିଅନ୍ତେ, ସେ ବ୍ରହ୍ମର୍ଷି ବ୍ୟାସଦେବଙ୍କ ଆଗରେ ଭାଗବତର ମହିମା ବ୍ୟାଖ୍ୟାନ କରି ତା'ର ପ୍ରସାର ନିମନ୍ତେ ଉପଦେଶ ଦେଇଥିଲେ । ବ୍ୟାସଦେବଙ୍କଠାରୁ ତାଙ୍କ ପୁତ୍ର ଶୁକଦେବ ଓ ଶୁକଦେବଙ୍କଠାରୁ ସୂତ ମହର୍ଷି ଏବଂ ସୂତ ମହର୍ଷିଙ୍କଠାରୁ ନୈମିଷାରଣ୍ୟର ମୁନିମାନେ ଭାଗବତ ଶ୍ରବଣ କରି ଲୋକମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ ।

ଅନ୍ୟ ଗୋଟିଏ ପରମ୍ପରା ହେଉଛି-ପରମେଶ୍ୱର ଭଗବାନଙ୍କ ଶ୍ରୀମୁଖରୁ ସହସ୍ରଫଣା ବିଶିଷ୍ଟ ଅନନ୍ତ, ଅନନ୍ତଙ୍କଠାରୁ ସନତ୍‌କୁମାର, ସନତ୍‌କୁମାରଙ୍କଠାରୁ ସାଂଖ୍ୟାୟନ, ସାଂଖ୍ୟାୟନଙ୍କଠାରୁ ପରାଶର ଓ ପରାଶରଙ୍କଠାରୁ ମୈତ୍ରେୟ ଭାଗବତ ଶାସ୍ତ୍ର ଗ୍ରହଣ କରିଥିଲେ । ଖୁବ୍ ସମ୍ଭବତଃ ପରାଶର ମୈତ୍ରେୟ ସମ୍ବାଦ ଭାଗବତ୍ କଥା ସମ୍ବନ୍ଧୀୟ ଗ୍ରନ୍ଥ ହେଉଛି- ''ବିଷ୍ଣୁପୁରାଣ'', ଯାହାକୁ ଭାଗବତର ମୂଳଗ୍ରନ୍ଥ ରୂପେ କଳ୍ପନା କରାଯାଇଛି । ଏହି ବିଷ୍ଣୁପୁରାଣ ଗ୍ରନ୍ଥ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିବାର ବିଷ୍ଣୁ ପୁରାଣରେ ବର୍ଣ୍ଣିତ ବଂଶାନୁଚରିତ ପ୍ରକରଣ ବିଶିଷ୍ଟ ଚତୁର୍ଥ ଅଂଶରୁ ପ୍ରମାଣ ମିଳେ । ବିଷ୍ଣୁ ପୁରାଣର ଚତୁର୍ଥ ଅଂଶର ତ୍ରୟୋବିଂଶ ଅଧ୍ୟାୟରେ ମଗଧବଂଶ ବର୍ଣ୍ଣନ ଓ ଚତୁର୍ବିଂଶ ଅଧ୍ୟାୟରେ କଳିଯୁଗର ରାଜାମାନଙ୍କ ବର୍ଣ୍ଣନ ପ୍ରକରଣରେ ନନ୍ଦବଂଶ, ମୌର୍ଯ୍ୟବଂଶ, ଶୁଙ୍ଗବଂଶ, କଣ୍ୱବଂଶ, ଆନ୍ଧ୍ର, କୋଶଳ ଓ କଳିଙ୍ଗ ଆଦି ରାଜାଙ୍କ ବର୍ଣ୍ଣନାରୁ ''ବିଷ୍ଣୁପୁରାଣ''ର ରଚନାକାଳ ସମ୍ପର୍କରେ ଅନୁମାନ କରାଯାଏ । ଖୁବ୍ ସମ୍ଭବତଃ ବିଷ୍ଣୁପୁରାଣ ରଚନାର ପରବର୍ତ୍ତୀ ସମୟରେ ସେହି କଥାବସ୍ତୁରେ ଦାର୍ଶନିକ ତତ୍ତ୍ୱ ସମ୍ମିଳିତ କରି ବ୍ୟାସଦେବ ଶ୍ରୀମଦ୍‌ଭାଗବତ ରଚନା କରିଥିଲେ । ତେଣୁ ମୂଳ ଭାଗବତର ରଚନା ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀରେ ହୋଇଥିବାର ଅନୁମାନ କରାଯାଏ । ଅବଶ୍ୟ ବୈଷ୍ଣବମାନେ ଭାଗବତକୁ ବେଦପରି 'ସନାତନ' ବୋଲି ଭାକ୍ତିକ ବିଶ୍ୱାସ ସ୍ଥାପନ କରନ୍ତି । କବିରାଜ କୃଷ୍ଣଦାସ ଗୋସ୍ୱାମୀଙ୍କ ମତରେ -

"ଏଇ ମତ ଭାଗବତକାର କୃତ ନୟ ।
ଆବିର୍ଭାବ ତିରୋଭାବ ଏଇ ମାତ୍ର କୟ" ।।

ମୈତ୍ରେୟଙ୍କଠାରୁ ବିଦୁର ଭାଗବତ ଶ୍ରବଣ କରି ଲୋକ ସମାଜରେ ପ୍ରଚାର କରିଥିଲେ । କିନ୍ତୁ ସଂସ୍କୃତରେ ରଚିତ ମୂଳ ଭାଗବତ କେବଳ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ସୀମିତ ଥିଲା । ବୈଷ୍ଣବ କବି, ଭାଗବତ ତତ୍ତ୍ୱାନ୍ୱେଷୀ ମନୀଷୀ ତଥା ଭାଗବତ ପ୍ରେମୀ ବିଶିଷ୍ଟ ବିଦ୍ୱାନ୍‌ମାନେ ବିଭିନ୍ନ ଟୀକା ଟିପ୍ପଣୀରେ ସମନ୍ୱିତ କରିବା ପରେ ଭାଗବତ କେବଳ ସଂସ୍କୃତ ଭାଷାଭାଷୀ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ସୁପ୍ରଚାରିତ ହୋଇଥିଲା । ଭାରତର ପ୍ରଧାନ ତୀର୍ଥ, କ୍ଷେତ୍ର, ମଠ ଓ ମନ୍ଦିରମାନଙ୍କରେ ଭାଗବତର ପାରାୟଣ ଓ ପ୍ରବଚନ ହେବାକୁ ଲାଗିଲା । ଜନସାଧାରଣ ବିଦ୍ୱାନ୍ ପୁରାଣପଣ୍ଡାଙ୍କ ମୁଖରୁ ଭାଗବତ ଶୁଣି କୃତକୃତ୍ୟ ହେଲେ ।

**ଶ୍ରୀମଦ୍‌ଭାଗବତର ବୈଶିଷ୍ଟ୍ୟ** - ପୁରାଣଗୁଡ଼ିକ ହେଉଛନ୍ତି ପଞ୍ଚଲକ୍ଷଣ ବିଶିଷ୍ଟ । ଏଥିରେ ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର, ବଂଶାନୁଚରିତ କୀର୍ତ୍ତିତ ହୋଇଥାଏ । ସର୍ଗ ଅର୍ଥାତ୍ ସୃଷ୍ଟି, ପ୍ରତିସର୍ଗ ଅର୍ଥାତ୍ ବ୍ରହ୍ମାଙ୍କ ସୃଷ୍ଟିପରେ ଦକ୍ଷାଦି ନବ ପ୍ରଜାପତିଙ୍କ ଦ୍ୱାରା ଦ୍ୱିତୀୟ ପର୍ଯ୍ୟାୟର ସୃଷ୍ଟି ଓ ପ୍ରଳୟ, ବଂଶ ଅର୍ଥାତ୍ ପ୍ରାଚୀନ ବଂଶଗୁଡ଼ିକର ନାମ, ମନ୍ୱନ୍ତର ଅର୍ଥାତ୍ ଚଉଦଜଣ ମନୁଙ୍କର ଶାସନକାଳ, ବଂଶାନୁଚରିତ ଅର୍ଥାତ୍ କେଉଁବଂଶ କେତେବର୍ଷ ରାଜତ୍ୱ କରିଥାନ୍ତି ଏବଂ ସେ ସମୟରେ କେଉଁ କେଉଁ ଘଟଣାମାନ ଘଟିଥାଏ, ତାହା ପ୍ରତିପାଦ୍ୟ ବିଷୟରୂପେ ପୁରାଣ ଗୁଡ଼ିକରେ ବର୍ଣ୍ଣିତ ହୋଇଥାଏ । କିନ୍ତୁ ମହାପୁରାଣମାନଙ୍କରେ ଦଶଗୋଟି ଲକ୍ଷଣ ରହିଥାଏ । ଶ୍ରୀମଦ୍‌ଭାଗବତରେ ସେହି ଦଶଗୋଟି ଲକ୍ଷଣ ରହିଛି । ଶ୍ରୀମଦ୍‌ଭାଗବତର ଦ୍ୱିତୀୟ ସ୍କନ୍ଧରେ ସେହି ଦଶ ଲକ୍ଷଣର ନାମ ସ୍ପଷ୍ଟ ଭାବରେ କଥିତ ହୋଇଛି ।

"ଅତ୍ର ସର୍ଗୋ ବିସର୍ଗଶ୍ଚ ସ୍ଥାନଂ ପୋଷଣମୂତୟଃ ।
ମନ୍ୱନ୍ତରେଶାନୁକଥା ନିରୋଧା ମୁକ୍ତିରାଶ୍ରୟଃ ।।''

(ଭା-୨-୧୦-୧)

ଏହି ଦଶ ଲକ୍ଷଣର ସ୍ୱରୂପ ସମ୍ବନ୍ଧରେ ଭାଗବତ ଦ୍ୱିତୀୟ ସ୍କନ୍ଧରେ ଦଶମ ଅଧ୍ୟାୟରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ସେଇଥିପାଇଁ ବ୍ୟାସଦେବ ଅଷ୍ଟାଦଶ ପୁରାଣ ମଧ୍ୟରେ 'ଶ୍ରୀମଦ୍‌ଭାଗବତ'କୁ ମହାପୁରାଣ ରୂପେ ପ୍ରତ୍ୟେକ ଅଧ୍ୟାୟର ପୁଷ୍ପିକା (Colophone)ରେ ଉଲ୍ଲେଖ କରିଛନ୍ତି- "ଶ୍ରୀମଦ୍‌ଭାଗବତେ ମହାପୁରାଣେ- ।"

ଭଗବାନ୍ ବିଷ୍ଣୁଙ୍କର ସମସ୍ତ ଚରିତ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଛି । ବେଦ, ବ୍ରହ୍ମସୂତ୍ର ଓ ଉପନିଷଦାଦି ଗ୍ରନ୍ଥରେ ବିଷ୍ଣୁଙ୍କ ମହିମା ବର୍ଣ୍ଣିତ ହୋଇଥିଲେ ହେଁ ପରଂବ୍ରହ୍ମ ସ୍ୱରୂପୀ ଶ୍ରୀକୃଷ୍ଣଙ୍କ ଚରିତ ଓ ଲୀଳାମାନ ସେହି ଗ୍ରନ୍ଥଗୁଡ଼ିକରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇନାହିଁ । ତେଣୁ ଦେବର୍ଷି ନାରଦ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରି ଶ୍ରୀମଦ୍‌ଭାଗବତ ରଚନା କରିବା ନିମିତ୍ତ ବ୍ୟାସଦେବଙ୍କୁ


Dr. Sudhanshu Sekhar Mishra

ଉପଦେଶ ଦେଇ କହିଥିଲେ-

"ଯମାଦିଭିର୍ଯୋଗପଥୈଃ କାମଲୋଭହତୋମୁହୁଃ ।
ମୁକୁନ୍ଦସେବୟା ଯଦ୍‌ବତ୍ ତଥାଽଽତ୍ମାଦ୍ଧା ନ ଶାମ୍ୟତି ।।
ସର୍ବଂ ତଦିଦମାଖ୍ୟାତଂ ଯତ୍‌ପୃଷ୍ଟୋଽହଂ ତ୍ୱୟାନଘ ।
ଜନ୍ମକର୍ମ-ରହସ୍ୟଂ ମେ ଭବତ ଶ୍ଚାତ୍ମତୋଷଣମ୍" ।।

(ଭା-୧.୬.୩୬-୩୭)

ସେହିପରି ଭାଗବତର ପ୍ରଥମ ସ୍କନ୍ଧ ଦ୍ୱିତୀୟ ଅଧ୍ୟାୟରେ କୁହାଯାଇଛି-

"ଶୃଣ୍ୱତାଂ ସ୍ୱକଥାଂ କୃଷ୍ଣଃ ପୁଣ୍ୟଶ୍ରବଣକୀର୍ତ୍ତନଃ ।
ହୃଦ୍ୟନ୍ତଃସ୍ଥୋ ହ୍ୟଭଦ୍ରାଣି ବିଧୂନୋତି ସୁହୃତ୍ ସତାମ୍ ।।
ନଷ୍ଟପ୍ରାୟେଷ୍ୱଭଦ୍ରେଷୁ ନିତ୍ୟଂ ଭାଗବତ ସେବୟା ।
ଭଗବତ୍ୟୁତ୍ତମ ଶ୍ଲୋକେ ଭକ୍ତିର୍ଭବତି ନୈଷ୍ଠିକୀ" ।।

(ଭା-୧.୨.୧୭-୧୮)

ଶ୍ରୀକୃଷ୍ଣଙ୍କ ଲୀଳାନୁକୀର୍ତ୍ତନ ଓ ଶ୍ରବଣ ଫଳରେ ଜୀବର ମୁକ୍ତି ହୋଇଥାଏ । ସେହି ପରଂବ୍ରହ୍ମ (କୃଷ୍ଣସ୍ତୁଭଗବାନ ସ୍ୱୟଂ) ଆତ୍ମାସ୍ୱରୂପୀ ଶ୍ରୀକୃଷ୍ଣଙ୍କ ଲୀଳାନୁକୀର୍ତ୍ତନ ଶ୍ରୀମଦ୍‌ଭାଗବତରେ ବିଶଦ୍‌ଭାବରେ ବର୍ଣ୍ଣିତ ହୋଇଛି । ଶ୍ରୀମଦ୍‌ଭାଗବତରେ ଶ୍ରୀମନ୍ନାରାୟଣଙ୍କ ଏକବିଂଶତି ଅବତାରର ନାମ ଓ କାର୍ଯ୍ୟାବଳୀ ଉଲ୍ଲେଖ କରାଯାଇ ଶ୍ରୀକୃଷ୍ଣଙ୍କୁ ଉନବିଂଶ ଅବତାର ଭାବରେ ବର୍ଣ୍ଣନା କରାଯାଇଥିଲେ ହେଁ ତାଙ୍କୁ 'ପୂର୍ଣ୍ଣବ୍ରହ୍ମ' ରୂପେ ବ୍ୟାସଦେବ ଉଲ୍ଲେଖ କରିଛନ୍ତି । ପ୍ରଥମ ସ୍କନ୍ଧରୁ ନବମ ସ୍କନ୍ଧ ପର୍ଯ୍ୟନ୍ତ ନଅଗୋଟି ବିଭାଗରେ ବିଷ୍ଣୁଙ୍କ ଅନ୍ୟାନ୍ୟ ଅବତାରଗୁଡ଼ିକର ଆଖ୍ୟାନ ବର୍ଣ୍ଣନା କରିବା ପରେ ବ୍ୟାସଦେବ ଦଶମ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କ ଗୋପ, ମଥୁରା, ତଥା ଦ୍ୱାରକା ଲୀଳାର ଅବତାରଣା କରିଛନ୍ତି । ତତ୍ପରେ ଏକାଦଶ ସ୍କନ୍ଧରେ ଭକ୍ତିଜ୍ଞାନ ଓ ବିଭୂତିଯୋଗ ସମ୍ପର୍କରେ (ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ ମାଧ୍ୟମରେ) ବ୍ୟାଖ୍ୟା କରି ଶ୍ରୀକୃଷ୍ଣଙ୍କ ଇହଲୀଳାର ଅବସାନ ଘଟାଇଛନ୍ତି ।

ଦଶମ ସ୍କନ୍ଧର ଗୋପଲୀଳା ଓ ଦ୍ୱାରକାଲୀଳାର ବିଷୟବସ୍ତୁ ଅବଶ୍ୟ ବିଷ୍ଣୁ ପୁରାଣରେ ବର୍ଣ୍ଣିତ ହୋଇଛି । କିନ୍ତୁ ବ୍ୟାସଦେବ ଶ୍ରୀମଦ୍‌ଭାଗବତର ଗୋପଲୀଳା ପ୍ରକରଣରେ ଶ୍ରୀକୃଷ୍ଣଙ୍କର ଯେଉଁ ମଧୁର ଲୀଳାର ଅବତାରଣା କରିଛନ୍ତି, ତାହା ଲୌକିକ ଦୃଷ୍ଟିରେ ଯେପରି ଆମୋଦପ୍ରଦ, ତାତ୍ତ୍ୱିକ ଦୃଷ୍ଟିରୁ ଅନୁରୂପ ମହତ୍ତ୍ୱପୂର୍ଣ୍ଣ । ଗୋପୀମାନେ ଭକ୍ତିର 'ସହଜ' ଅର୍ଥାତ୍ ନୈସର୍ଗିକ ସ୍ତରରେ ଉପନୀତା ହୋଇ ଧନ, ସମ୍ପତ୍ତି, ପୁତ୍ର, ସ୍ୱାମୀ, ବେଶ, ବାସ, ନିନ୍ଦା, ଅପଯଶ, ବାଧା, ବନ୍ଧନ, ଗର୍ବ ଓ ଅହଙ୍କାରାଦି ଭୁଲିଯାଇ କୃଷ୍ଣସ୍ୱରୂପୀ ପରମାତ୍ମାଙ୍କ ସହିତ ମିଳିତ ହେବାର ଯେଉଁ ଅଲୌକିକ ତନ୍ମୟତା ପ୍ରଦର୍ଶନ କରିଛନ୍ତି, ତାହାହିଁ ହେଉଛି-ମୁକ୍ତିର ଶ୍ରେଷ୍ଠ ସୋପାନ । ଭଗବାନ ଓ ଭକ୍ତଙ୍କ ମଧ୍ୟରେ ବ୍ୟବଧାନ ନାହିଁ । ତାଙ୍କ ମଧ୍ୟରେ ଯବନିକା ନାହିଁ । ସେହି ସୁସମ୍ପର୍କର ସ୍ଥାନ ବହୁ ଉଚ୍ଚରେ । ଜ୍ଞାନର ଚରମ ସୋପାନରେ ଉପନୀତ ନ ହେଲେ 'ଗୋପୀତତ୍ତ୍ୱ' ଜାଣିବାରେ ବିଦ୍ୱାନ୍‌ମାନେ ସମର୍ଥ ହୁଅନ୍ତି ନାହିଁ । ସେହି 'ଶୁଦ୍ଧାଭକ୍ତି'ର ସାରମର୍ମକୁ ଗୋପୀମାନେ ହୃଦୟଙ୍ଗମ କରିଥିବାରୁ ବାସୁଦେବ ଶ୍ରୀକୃଷ୍ଣ, ଗୋପୀନାଥ, ଗୋପିକାରମଣ, ଗୋପୀବଲ୍ଲଭ ନାମରେ ନାମିତ ହୋଇଛନ୍ତି ।

ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ 'ରାସଲୀଳା' ପ୍ରସଙ୍ଗ ତାତ୍ତ୍ୱିକ ଭକ୍ତି ସାଧନାର ଚରମ ଉତ୍କର୍ଷ । ଏହି ଉତ୍କର୍ଷର ପ୍ରାରମ୍ଭ ହୁଏ 'ବସ୍ତ୍ର ହରଣ' ଲୀଳାରୁ । ସବୁକିଛି ଅର୍ଥାତ୍ ଯାହାକିଛି ଆପଣାର ତାକୁ ଇଷ୍ଟ ନିମିତ୍ତ ନିର୍ବିକାରରେ ତ୍ୟାଗ ନ କଲେ, ଭକ୍ତିର ଚରମ ସୋପାନରେ କେହି ଉପନୀତ ହୋଇପାରେ ନାହିଁ । ତାହାହିଁ ହେଉଛି-ବସ୍ତ୍ରହରଣ ଲୀଳାର ପ୍ରତିପାଦ୍ୟ ବିଷୟ ।

ଭକ୍ତିର ସୋପାନଗୁଡ଼ିକ ମଧ୍ୟରେ 'ବାତ୍ସଲ୍ୟ ପ୍ରେମ'ର ସ୍ଥାନ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ନନ୍ଦ ଓ ଯଶୋଦା ଶ୍ରୀକୃଷ୍ଣଙ୍କ ଅଲୌକିକ ଶକ୍ତି ସମ୍ବନ୍ଧରେ ବେଶ୍ ଅବଗତ ହୋଇଥିଲେ ହେଁ ସେ ଦୁହେଁ ପରମେଶ୍ୱରଙ୍କୁ ବାତ୍ସଲ୍ୟ ସ୍ନେହରେ ଜାବୁଡ଼ି ଧରିଛନ୍ତି । ତେଣୁ ତାଙ୍କର ଅଲୌକିକ କାର୍ଯ୍ୟମାନ ତାଙ୍କ ଦୃଷ୍ଟିରେ ନିତାନ୍ତ ଆକସ୍ମିକ ଅବୋଧ ଲୀଳା ବୋଲି ବୋଧ ହୋଇଛି । ବାତ୍ସଲ୍ୟ ପ୍ରେମର ତନ୍ମୟତାରେ ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ଲାଭ କରିଥିବାରୁ ଭକ୍ତବତ୍ସଳ ଶ୍ରୀକୃଷ୍ଣ ନନ୍ଦନନ୍ଦନ ଓ ଯଶୋଦାନନ୍ଦନ ନାମରେ ନାମିତ ହୋଇଛନ୍ତି ।

ମଥୁରା ଓ ଦ୍ୱାରକା ଲୀଳାରେ ଫୁଟିଉଠିଛି ଶ୍ରୀକୃଷ୍ଣଙ୍କ 'ବାସୁଦେବ' ସ୍ୱରୂପ । ସେ ଜଗତର ଅଶାନ୍ତି ଦୂର କରିବା ପାଇଁ 'ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ' ରୂପେ ଚତୁର୍ଦ୍ଧାମୂର୍ତ୍ତି ଧାରଣ କରିଛନ୍ତି । କଂସଠାରୁ ଆରମ୍ଭ କରି କୌରବମାନଙ୍କ ପର୍ଯ୍ୟନ୍ତ ସମସ୍ତ ଅନିଷ୍ଟକାରୀ ଶକ୍ତିର ବିନାଶ କରିବା ସଙ୍ଗେ ସଙ୍ଗେ ଜଗନ୍ମଙ୍ଗଳ ରୂପେ ସେ ସ୍ୱବଂଶର ଧ୍ୱଂସ ସାଧନ କରି ଜଗଲ୍ଲୀଳାର ପରିପୂର୍ଣ୍ଣତା ସମ୍ପର୍କରେ ଧାରଣା ଜନ୍ମାଇଛନ୍ତି । ଶ୍ରୀମଦ୍‌ଭାଗବତରେ ବର୍ଣ୍ଣିତ ପରମେଶ୍ୱରଙ୍କର ଏହି ଉଭୟ ସ୍ୱରୂପ ହିଁ ସାଧାରଣ ପାଠକ, ବିଜ୍ଞ ଆଲୋଚକ, ଜ୍ଞାନାଶ୍ରୟୀ ଯୋଗୀ ତଥା ପରମହଂସ ଅବଧୂତମାନଙ୍କୁ ବିମୁଗ୍ଧ କରିଛି । ଏହା ହିଁ ହେଉଛି-ଶ୍ରୀମଦ୍‌ଭାଗବତର ବୈଶିଷ୍ଟ୍ୟ ।



Dr. Sudhanshu Sekhar Mishra

**ଓଡ଼ିଶାରେ ବୈଷ୍ଣବ ମତବାଦର ପ୍ରଚାର -**

ଓଡ଼ିଶାରେ ଭାଗବତ ଧର୍ମ ତଥା ବୈଷ୍ଣବ ମତବାଦର ପ୍ରଚାର ଖ୍ରୀଷ୍ଟୀୟ ପଞ୍ଚମ, ଷଷ୍ଠ ଶତାବ୍ଦୀ ବେଳକୁ ସୁବିଦିତ ହୋଇଥିଲା । ଓଡ଼ିଶାର ଶୈଳୋଦ୍ଭବ ବଂଶୀୟ ରାଜା ମାଧବରାଜ 'ଚକ୍ରଧର ଭଗବାନ ମାଧବ'ଙ୍କ ଉପାସନା କରୁଥିବାର ପ୍ରମାଣ 'ଶୈଳୋଦ୍ଭବ ବଂଶୀୟ ଶିଳାଲେଖ'ରୁ ମିଳିଥାଏ- "ପ୍ରବୃତ୍ତଚକ୍ର-ଚକ୍ରଧର ଇବ ଭଗବାନ ମାଧବଃ ଶ୍ରୀମାଧବରାଜ କୁଶଳୀ" । କେବଳ ସେତିକି ନୁହେଁ, ଶୈଳୋଦ୍ଭବବଂଶ ପୂର୍ବରୁ ଓଡ଼ିଶାର ତାଳପତ୍ରମାନଙ୍କରେ ବିଷ୍ଣୁଙ୍କ ଅବତାରମାନଙ୍କ ନାମୋଲ୍ଲେଖ ଥିବାର ବର୍ଣ୍ଣନା ରହିଛି ।

ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଉଭୟ ଖିଞ୍ଜିଳିମଣ୍ଡଳ, ଗନ୍ଧରାଡ଼ି (ବୌଦ, ସୋନପୁର ଓ ଘୁମୁସର ଅଞ୍ଚଳ)ରେ ରାଜତ୍ୱ କରୁଥିବା ଶତ୍ରୁଭଞ୍ଜ 'ଗନ୍ଧାଟପାଟି' ନାମକ ଗ୍ରାମ ପ୍ରତିଷ୍ଠା କରି ସେଠାରେ 'ନୀଳମାଧବ'ଙ୍କ ବିଗ୍ରହ ପ୍ରତିଷ୍ଠା କରିଥିଲେ । ଏତଦ୍‌ବ୍ୟତୀତ ବୈତରଣୀ, ପ୍ରାଚୀ ଓ ମହାନଦୀ ଉପତ୍ୟକାରେ ମାଧବ ଉପାସନା ବିଶେଷ ପ୍ରସିଦ୍ଧି ଅର୍ଜନ କରିଥିଲା ।

ଶ୍ରୀଜଗନ୍ନାଥ ମହାପ୍ରଭୁ 'ପୁରୁଷୋତ୍ତମ' ନାମରେ ଅନ୍ତତଃ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀବେଳକୁ ପ୍ରଖ୍ୟାତ ହୋଇ ସାରିଥିଲେ । ଓଡ଼ିଶାରେ ଗଙ୍ଗବଂଶର ରାଜତ୍ୱ ଆରମ୍ଭରୁ ଶ୍ରୀଜଗନ୍ନାଥ ମନ୍ଦିର ସମଗ୍ର ହିନ୍ଦୁ ଜଗତରେ ପ୍ରସିଦ୍ଧ ହିନ୍ଦୁ ମନ୍ଦିର ତଥା ଭାରତର ଚତୁର୍ଦ୍ଧାମ ମଧ୍ୟରେ ଅନ୍ୟତମ ଧାମ (ପୁରୁଷୋତ୍ତମ ଧାମ) ରୂପେ ସୁଖ୍ୟାତି ଅର୍ଜନ କରିଥିଲା ।

ଓଡ଼ିଶାର ପ୍ରାଚୀନ ଶୈବ ଓ ଶାକ୍ତ ମନ୍ଦିର ଗାତ୍ରରେ ରାମାୟଣ, ମହାଭାରତ ତଥା ଶ୍ରୀମଦ୍‌ଭାଗବତାଦି ଗ୍ରନ୍ଥର ଅବଲମ୍ବନରେ ମୂର୍ତ୍ତିମାନ ଖୋଦିତ ହୋଇ ଆମ ରାଜ୍ୟର ବୈଷ୍ଣବ ଉପାସନାକୁ ସୁଦୃଢ଼ କରିଥିଲା । ବିଶେଷତଃ ଶ୍ରୀରାମାନୁଜ, ନିମ୍ବାର୍କ, ବିଷ୍ଣୁସ୍ୱାମୀ, ବଲ୍ଲଭାଚାର୍ଯ୍ୟ, ମାଧବାଚାର୍ଯ୍ୟ ପ୍ରଭୃତି ଆଚାର୍ଯ୍ୟମାନଙ୍କ ଶ୍ରୀକ୍ଷେତ୍ର ଆଗମନ ତଥା ସ୍ୱମତାନୁସାରେ ବୈଷ୍ଣବତତ୍ତ୍ୱର ପ୍ରଚାର ଫଳରେ ଓଡ଼ିଶା ସର୍ବଭାରତୀୟ ସ୍ତରରେ ବୈଷ୍ଣବ ଉପାସନାର ପ୍ରାଣକେନ୍ଦ୍ର ହୋଇଉଠିଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ମାଧବ, ଭୂଦେବୀ ଓ ଶ୍ରୀଦେବୀଙ୍କ ସମ୍ମିଳିତ ବିଗ୍ରହ ରୂପେ ବର୍ଣ୍ଣନା କରି ସମାଜପତିମାନେ ଜୈନ, ବୌଦ୍ଧ, ଶାକ୍ତ ଓ ଶୈବ ସଂସ୍କୃତିରେ ସମୃଦ୍ଧ ଓଡ଼ିଶାରେ ବୈଷ୍ଣବୀଧାରାର ଅଖଣ୍ଡସ୍ରୋତ ପ୍ରବାହିତ କରାଇଥିଲେ । ତାହା ଫଳରେ ସମଗ୍ର ଓଡ଼ିଶାର ବିଭିନ୍ନ କେନ୍ଦ୍ରସ୍ଥଳମାନଙ୍କରେ ବିଷ୍ଣୁମନ୍ଦିର ପ୍ରତିଷ୍ଠିତ ହୋଇ ଗୋପୀନାଥ ଶ୍ରୀକୃଷ୍ଣ, ଅନନ୍ତ ବାସୁଦେବ, ଦଧିବାମନ, ବଳରାମ, ଶ୍ରୀରାମ, ନରସିଂହ ଓ ବରାହନାଥ ଆଦି ମୂର୍ତ୍ତି ପୂଜିତ ହେବା ସଙ୍ଗେ ସଙ୍ଗେ ବିଷ୍ଣୁଙ୍କ ଦଶାବତାର ମୂର୍ତ୍ତିର ପୂଜା, ସେହି ନାମାନୁସାରେ ଗ୍ରାମ ପ୍ରତିଷ୍ଠା (ବରାହପୁର, ଶ୍ରୀକୂର୍ମ, ପୁରୁଷୋତ୍ତମପୁର, ରାମଚନ୍ଦ୍ରପୁର, ନରସିଂହପୁର, ବଳରାମପୁର, ଅନନ୍ତପୁର, ବାସୁଦେବପୁର, ବିଷ୍ଣୁପୁର ଆଦି) କରାଗଲା ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ପୁରୀଜିଲ୍ଲା ଅନ୍ତର୍ଗତ ପ୍ରାଚୀ ନଦୀ ତଟବର୍ତ୍ତୀ କେନ୍ଦୁବିଲ୍ୱ (କେନ୍ଦୁଳୀ) ନାମକ ବ୍ରାହ୍ମଣ ଶାସନରେ ଆଚାର୍ଯ୍ୟ ଭୋଜଦେବ ତଥା ବାମାଦେବୀଙ୍କ କ୍ରୋଡ଼ମଣ୍ଡନ କରି କବି ଶ୍ରୀ ଜୟଦେବଙ୍କ ଆବିର୍ଭାବ ତଥା ତାଙ୍କଦ୍ୱାରା ପ୍ରଣୀତ କାନ୍ତକୋମଳ-ପଦାବଳୀ ବିଶିଷ୍ଟ ଗୀତକାବ୍ୟ 'ଗୀତଗୋବିନ୍ଦ'ର ପ୍ରଚାର ଓଡ଼ିଶାରେ ବୈଷ୍ଣବ ମତବାଦକୁ ଆହୁରି ସୁପ୍ରତିଷ୍ଠିତ କରାଇଲା ।

ଗୀତଗୋବିନ୍ଦ କାବ୍ୟରେ ଶ୍ରୀଜଗନ୍ନାଥ ତଥା ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ କଳ୍ପନା କରାଯାଇ ସ୍ତୁତିମୂଳକ ଦଶାବତାର ବର୍ଣ୍ଣନା ଏବଂ ଶ୍ରୀରାଧାଙ୍କ ସହିତ ଶ୍ରୀକୃଷ୍ଣଙ୍କ 'ଅପ୍ରାକୃତ ପ୍ରେମଲୀଳା'ର ଯେଉଁ ଶାଶ୍ୱତ-ମନ୍ଦାକିନୀ ପ୍ରବାହିତ ହେଲା, ତା' ଫଳରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ବୈଷ୍ଣବ ମତବାଦ ଭାରତୀୟ ବୈଷ୍ଣବ ସମାଜରେ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ପ୍ରତିଷ୍ଠିତ କରାଇଲା ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବହୁ ସ୍ୱନାମଧନ୍ୟ କବି-କୋବିଦ ବୈଷ୍ଣବ-ମତବାଦର ପରିପୋଷକ, ବହୁ ମହାକାବ୍ୟ, କାବ୍ୟ, ନାଟକ, ଚମ୍ପୂମାନ ରଚନା କରି ବୈଷ୍ଣବୀ-ଧାରାକୁ ଆହୁରି ସ୍ରୋତସ୍ୱିନୀ କରାଇଥିଲେ ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ, ଜଗନ୍ନାଥ ଦାସ ଓ ଅନନ୍ତ ଦାସ ପ୍ରମୁଖ ପଞ୍ଚସଖାଙ୍କ ଆବିର୍ଭାବ ଉତ୍କଳୀୟ ବୈଷ୍ଣବ ମତବାଦର ଭିତ୍ତିଭୂମିକୁ ଆହୁରି ସୁଦୃଢ଼ କରାଇଥିଲା । ଏହି ପଞ୍ଚସଖା ଶ୍ରୀଜଗନ୍ନାଥଙ୍କୁ ନିର୍ଗୁଣ ବ୍ରହ୍ମ, ଅଣାକାର, ଶୂନ୍ୟବ୍ରହ୍ମ, ଅପାଣିପାଦ-ପୁରୁଷ, ଶୂନ୍ୟପୁରୁଷ ଓ ନିରାକାର ରୂପେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଅରୂପରେ ରୂପ, ନିରାକାରରେ ଆକାର, ଅପାଣିପାଦଙ୍କଠାରେ ବଳିୟାର ଭୁଜ, ଚରଣାଶ୍ରିତ ଭକ୍ତଜନ, ଅଚିନ୍ତ୍ୟଙ୍କଠାରେ 'ଭେଦାଭେଦ'ର କଳ୍ପନା କରି ଉତ୍କଳୀୟ ବୈଷ୍ଣବୀ-ଧାରାକୁ ଆହୁରି ସୁବିସ୍ତୃତ ତଥା ଜନପ୍ରିୟ କରାଇଲେ ।

ଷୋଡ଼ଶ ଶତାବ୍ଦୀର ପ୍ରାକ୍‌କାଳରେ ଶ୍ରୀଚୈତନ୍ୟ ଦେବଙ୍କ ଉତ୍କଳ ଆଗମନ ତଥା ଉତ୍କଳୀୟ ବୈଷ୍ଣବୀ-ଧାରାରେ ଗୌଡ଼ୀୟ ରାଧାକୃଷ୍ଣବାଦର ଅନ୍ତର୍ବିଲୀନ; ଶ୍ରୀ ଜଗନ୍ନାଥୀୟ ଚିନ୍ତା ଓ ଚେତନାକୁ ବହୁମୁଖୀ କରାଇଲା । ଉତ୍କଳୀୟ ପଞ୍ଚସଖାଙ୍କ ଯୋଗାଶ୍ରିତ ଜ୍ଞାନ ଓ ଭକ୍ତି ଭାବନାରେ ଶ୍ରୀଚୈତନ୍ୟ ଦେବ ବିମୋହିତ ହୋଇ ଭକ୍ତପ୍ରବର ଶ୍ରୀରାୟ ରାମାନନ୍ଦ ପଟ୍ଟନାୟକଙ୍କଠାରୁ 'ଅଚିନ୍ତ୍ୟ ଭେଦାଭେଦ'ର ସୂକ୍ଷ୍ମତତ୍ତ୍ୱ ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ, ତଥାକଥିତ ସମାଜପତିଙ୍କ ଦ୍ୱାରା ନିନ୍ଦିତ ବଳରାମ ଦାସଙ୍କୁ ଶ୍ରେଷ୍ଠ 'ଭାବ-ମତ୍ତ' ଏବଂ ଶ୍ରୀ ଜଗନ୍ନାଥ ଦାସଙ୍କୁ 'ଅତିବଡ଼ୀ' ରୂପେ ସ୍ୱୀକାର କରିଥିଲେ ।



Dr. Sudhanshu Sekhar Mishra

**ଶ୍ରୀ ଜଗନ୍ନାଥ ଦାସଙ୍କ ଆବିର୍ଭାବ ଓ ପ୍ରତିଷ୍ଠା -**

ଅତିବଡ଼ୀ ଜଗନ୍ନାଥ ଦାସ ଗୋସାଇଁ ପୁରୀ ଶ୍ରୀକ୍ଷେତ୍ରଧାମର ଅନତି ଦୂରରେ ଅବସ୍ଥିତ କପିଳେଶ୍ୱରପୁରରେ ପୁରାଣପଣ୍ଡା ଭଗବାନ ଓ ଦେବୀ ପଦ୍ମାବତୀଙ୍କ କ୍ରୋଡ଼ ମଣ୍ଡନକରି ଜନ୍ମ ହୋଇଥିଲେ । କବି ଦିବାକର ଦାସଙ୍କ 'ଶ୍ରୀଜଗନ୍ନାଥ ଚରିତାମୃତ' ପୁସ୍ତକରୁ ଭକ୍ତକବି ଜଗନ୍ନାଥ ଦାସଙ୍କ ଜନ୍ମ ଓ ଶିକ୍ଷାଦି ସମ୍ପର୍କରେ କେତେକ ଉପାଦାନ ମିଳୁଛି ।

"ଆଜ୍ଞାପ୍ରମାଣେ ସେ ଅଇଲେ । ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ।।
ନାମ କପିଳେଶ୍ୱର ପୁର । ଶାସନ ମଧ୍ୟେ ତାଙ୍କ ଘର ।।
ପୁରାଣ ପଣ୍ଡା ଭଗବାନ । ପଦ୍ମା ବୋଲିଣ ପତ୍ନୀ ନାମ ।।
ପିତାଙ୍କୁ ବିଭାନାସ୍ତି କଲେ । ସକଳ ବିଦ୍ୟାୟେ ପଢ଼ିଲେ ।।
ଯଜୁର୍ବେଦ ସାମବେଦଙ୍କୁ । କଣ୍ଠସ୍ଥ କଲେକ ତାହାଙ୍କୁ ।।
କଳାପ ବର୍ଦ୍ଧମାନ ଦୁଇ । ରଖିଲେ ଜିହ୍ୱାଅଗ୍ରେ ନେଇ ।।
ସକଳଶାସ୍ତ୍ରେ ପୂର୍ଣ୍ଣହେଲେ । ଭାରତ ସମଗ୍ର ପଢ଼ିଲେ ।।
ଶ୍ରୀରାମାୟଣ ଗ୍ରନ୍ଥସାଧି । ଶ୍ରୀଭାଗବତେ ଦେଲେ ବୁଦ୍ଧି" ।।

ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ, ଡକ୍ଟର ବେଣୀମାଧବ ପାଢ଼ୀ, ଡକ୍ଟର କାହ୍ନୁ ଚରଣ ମିଶ୍ର, ଡକ୍ଟର ବଂଶୀଧର ମହାନ୍ତି, ସ୍ୱର୍ଗତ ସୂର୍ଯ୍ୟନାରାୟଣ ଦାସ, ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ, ଡକ୍ଟର ଗଙ୍ଗାଧର ବଳ, ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ପ୍ରଭୃତି ଆଲୋଚକଙ୍କ ଆଲୋଚନାରୁ ଜଣାଯାଏ ଯେ, ଜଗନ୍ନାଥ ଦାସ ଗୋସ୍ୱାମୀ ଖ୍ରୀଷ୍ଟାବ୍ଦ ପଞ୍ଚଦଶ ଶତାବ୍ଦୀର ଶେଷପାଦରେ ଜନ୍ମଗ୍ରହଣ କରିଥିଲେ । ଦିବାକର ଦାଶଙ୍କ ବର୍ଣ୍ଣନାନୁସାରେ ଜଗନ୍ନାଥ ଦାସଙ୍କ ଜନ୍ମ ଭାଦ୍ରବମାସ ଶୁକ୍ଳପକ୍ଷ ଅଷ୍ଟମୀ (ରାଧାଷ୍ଟମୀ) ତିଥିରେ ହୋଇଥିଲା । ପୂର୍ବେ ସେହି ତିଥିଟି ଓଡ଼ିଶାରେ ଦୁର୍ବାଷ୍ଟମୀ ରୂପେ ପାଳିତ ହେଉଥିଲା । କିନ୍ତୁ ପରେ ସେହି ତିଥିରେ ରାଧାଷ୍ଟମୀ ପାଳିତ ହେଉଛି ।

ଦିବାକର ଦାସଙ୍କ ପ୍ରଣୀତ (ଜଗନ୍ନାଥ ଚରିତାମୃତ) ପୁସ୍ତକରୁ ଜଣାଯାଏ ଯେ ଜଗନ୍ନାଥ ଦାସ ଆବାଲ୍ୟରୁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ । ସେ ଶୈଶବ ଓ ଯୌବନକାଳ କେବଳ ଶାସ୍ତ୍ରାଧ୍ୟୟନ ଓ ଶ୍ରୀକୃଷ୍ଣର୍ଚ୍ଚନରେ ବିତାଇଥିଲେ ।

କିମ୍ବଦନ୍ତୀରୁ ଜଣାଯାଏ-ଜଗନ୍ନାଥ ଦାସ ଯୌବନରେ ପଦାର୍ପଣ କରିବାକ୍ଷଣି ତାଙ୍କ ପିତୃବିୟୋଗ ଘଟିଥିଲା । ପିତାଙ୍କ ଅନ୍ତେ ତାଙ୍କ ମାତା ପଦ୍ମାବତୀ ଦେବୀ ସାମାଜିକ ଚଳଣି ଅନୁସାରେ କାର୍ତ୍ତିକ ମାସରେ 'ହବିଷ' କରିବା ପାଇଁ ଶ୍ରୀମନ୍ଦିରକୁ ଯାଉଥିଲେ । ସେ ସେଠାରେ ଅନ୍ୟମାନଙ୍କ ସହିତ ଜନୈକ ପୁରାଣ ପଣ୍ଡାଙ୍କଠାରୁ ସଂସ୍କୃତ ଭାଗବତ ଶୁଣିବାବେଳେ ଗୋଟିଏ ପ୍ରକରଣର ଅର୍ଥ ସୁସ୍ପଷ୍ଟ ନ ହେବାରୁ ପୁରାଣପଣ୍ଡାଙ୍କୁ ତାର ଅର୍ଥ ପଚାରିଥିଲେ । କିନ୍ତୁ ପୁରାଣପଣ୍ଡା ପ୍ରକରଣର ଅର୍ଥ କହିବା ତ ଦୂରର କଥା, ପଦ୍ମାବତୀଙ୍କୁ ସାମାନ୍ୟ ମୂର୍ଖ ମୂଢ଼ାନାରୀ ଭାବି ତାଚ୍ଛଲ୍ୟ ଭାଷାରେ କେଇପଦ ଶୁଣାଇଦେଲା । ଶ୍ରୀମନ୍ଦିରର ଭୂତପୂର୍ବ ପୁରାଣପଣ୍ଡାଙ୍କ ପତ୍ନୀ ପଦ୍ମାବତୀଙ୍କ ମନରେ ଏହା ଗଭୀର ରେଖାପାତ କରିଥିଲା । ସେ ଘରକୁ ଫେରିଆସି ପୁତ୍ର ଜଗନ୍ନାଥଙ୍କ ଆଗରେ ମନର କ୍ଷୋଭ ପ୍ରକାଶ କରି କହିଥିଲେ-

"ପୁଅରେ ! ଏତେ ପାଠ ପଢ଼ିଛୁ, ଭାଗବତକୁ କ'ଣ ଆମ ବୁଝିଲା ଭଳି ଭାଷାରେ ଲେଖିପାରିବୁ ନାହିଁ ? ସେତକ ତୋ ଦ୍ୱାରା ହୋଇଗଲେ ଆମେ ଆଉ ସେ ପୁରାଣପଣ୍ଡାଙ୍କ ମୁହଁକୁ ଚାହିଁ ବସନ୍ତୁ ନାହିଁ ।"

ଏତିକିରେ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ ପ୍ରତି ମନରେ ଉତ୍ସାହ ଜାତ ହେଲା । ଆଲୋଚକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ମତରେ ଜଗନ୍ନାଥ ଦାସ ଅଠର ବର୍ଷ ବୟସରେ ପଦାର୍ପଣ କଲାବେଳକୁ ଭାଗବତ-ଅନୁବାଦର ଆୟମାରମ୍ଭ କରିଥିଲେ । ତାଙ୍କ ପୂର୍ବରୁ ସର୍ବଭାରତୀୟ ସ୍ତରରେ କବୀର ଦାସ, ନାରସୀ ମେହେଟ୍ଟା, ଗୁରୁନାନକ ପ୍ରଭୃତି ମହାପୁରୁଷମାନେ ଜନ୍ମଗ୍ରହଣ କରି ପ୍ରସିଦ୍ଧି ଲାଭ କରିଥିଲେ । ଜଗନ୍ନାଥ ଦାସଙ୍କ ଜନ୍ମ ସମ୍ବନ୍ଧରେ ସଠିକ ସମ୍ବତ୍ସର ଜଣା ନଥିଲେ ମଧ୍ୟ ଖ୍ରୀଷ୍ଟାବ୍ଦ ୧୫୦୯-୧୦ ବେଳକୁ ସେ ଭାଗବତ ରଚନା କରି ପୁରୀ ଶ୍ରୀମନ୍ଦିରର 'ବଟଗଣେଶ'ଙ୍କଠାରେ ଦଶମ ସ୍କନ୍ଧର ପାଠ ଆଲୋଚନା କରୁଥିବାବେଳେ ଶ୍ରୀଚୈତନ୍ୟ ଦେବଙ୍କ ସହିତ ତାଙ୍କର ଭେଟ ହୋଇଥିଲା । ଖ୍ରୀଷ୍ଟାବ୍ଦ ୧୫୦୯ରେ ଶ୍ରୀଚୈତନ୍ୟ ଦେବ ଓଡ଼ିଶାରେ ପଦାର୍ପଣ କରିଥିବାର ପ୍ରମାଣ ବିଦ୍ୱାନ୍‌ମାନଙ୍କ ମହଲରେ ସ୍ୱୀକୃତ ହୋଇଛି ।

ଶ୍ରୀଚୈତନ୍ୟ ଦେବଙ୍କ ସହିତ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ସାକ୍ଷାତ ରୂପକ ଘଟଣାଟିକୁ ଉଭୟ ଅତିବଡ଼ୀ ସମ୍ପ୍ରଦାୟର ପ୍ରସିଦ୍ଧ ଶିଷ୍ୟ ଦିବାକର ଦାସ ତାଙ୍କ 'ଜଗନ୍ନାଥ ଚରିତାମୃତ'ରେ ତଥା ଦାସ ଗୋସାଇଁଙ୍କର ପ୍ରାୟ ସମସାମୟିକ ଭକ୍ତକବି ମାଧବ ପଟ୍ଟନାୟକ ସ୍ୱରଚିତ 'ବୈଷ୍ଣବ-ଲୀଳାମୃତ'ରେ ଉଲ୍ଲେଖ କରିଛନ୍ତି-

"ଶ୍ରୀ ଅତିବଡ଼ୀ ଜଗନ୍ନାଥ । ଦଶମସ୍କନ୍ଧ ଭାଗବତ ।।
ଶ୍ରୀକୃଷ୍ଣ ସ୍ତୁତିର ବିଚାର । ପଢ଼ନ୍ତି ଗଣେଶ ଅଗ୍ରର ।।
ପୁରାଣ ପଢ଼ିବାର କାଳେ । ଭକତି ପ୍ରକାଶନ୍ତି ବଳେ ।।
ନାମ ଶ୍ରୀ ଜଗନ୍ନାଥ ଦାସ । ସକଳ ଗୁଣରେ ପ୍ରକାଶ ।।
ସୁସାଧୁଗଣ ସଙ୍ଗେ ମିଶି । କଳ୍ପବଟର ମୂଳେ ବସି ।।



Dr. Sudhanshu Sekhar Mishra

ପ୍ରାକୃତ ଭାଗବତ ବାଣୀ । ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ ।।
ନିର୍ମଳ ସୁଧା ପାନ କରି । ସମସ୍ତେଛନ୍ତି କର୍ଣ୍ଣ ଡେରି ।।
ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ।।
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ।।
ପ୍ରେମଭାବରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ" ।।

(ଜଗନ୍ନାଥ ଚରିତାମୃତ-୨ୟ ଅଧ୍ୟାୟ)

"ବଟଗଣେଶ ମୂଳେ ବସେ । ଜଗନ୍ନାଥ ଦାସ ପ୍ରତ୍ୟେ' ।।
ରାହାସ ମଣ୍ଡପ ନିର୍ମାଣି । ରାଧାକୃଷ୍ଣ ମୂର୍ତ୍ତି ଥାପଣି ।।
ଭାଗବତ ରଚନା କରେ । ଭଗତେ ଶୁଣନ୍ତି ସଧୀରେ ।।
ଭାଗବତର ଭାବ ଯେତେ । ମଧୁର ସ୍ୱରେ ଗାଏ ନିତ୍ୟେ ।।
ଦିନେକ ସଞ୍ଜ ଅବକାଶେ । ଭଗତେ ଗୁଷ୍ଠ ଯେ ବିଶେଷେ ।।
ଭାଗବତ ଅର୍ଥ ବଖାଣେ । ଆସି ମିଳିଲେ ଶ୍ରୀଚୈତନ୍ୟେ ।।
ଭାଗବତ ଅର୍ଥ ଶୁଣିଲେ । ସ୍ୱାମୀର ଭାବ ସେ ବୁଝିଲେ ।।
ନୟନେ ଅଶ୍ରୁ ଝର ଝର । ଅଙ୍ଗେଣ ପୁଲକ ଅପାର ।।
ଜଗନ୍ନାଥର ଏତେ ଭାବ । ଚୈତନ୍ୟ କଲେ ତାହା ଠାବ ।।
ବୋଇଲେ ତୁ ଭଗତଶ୍ରେଷ୍ଠ । ଭଗତଭାବେ ମତି ପୁଷ୍ଟ ।।
ତୋ ଭାବ ମୁଁ କାହିଁ ପାଇବି । ତୋହର ସଙ୍ଗ ନ ଛାଡ଼ିବି ।।
ଅଢ଼େଇ ପହର ପର୍ଯ୍ୟନ୍ତେ । ଦୁହେଁ ରହିଲେ କୋଳାଗ୍ରତେ ।।
ସ୍ୱାମୀ ତୁ ବୋଇଲା ଚୈତନ୍ୟ । ପ୍ରଭୁ ତୁ ବୋଇଲା ଆପଣ ।।
ସମୁଦ୍ରେ ନଦୀ ଯେ ମିଶିଲା । ଭାବ ତରଙ୍ଗ ଉଭାରିଲା" ।।

(ବୈଷ୍ଣବ ଲୀଳାମୃତ । ମାଧବ ପଟ୍ଟନାୟକ-୪ର୍ଥ ଅଧ୍ୟାୟ)

ଦିବାକର ଦାସଙ୍କ ବର୍ଣ୍ଣନା ଅନୁସାରେ ଖ୍ରୀଷ୍ଟାବ୍ଦ ୧୫୦୯-୧୦ ବେଳକୁ ଯଦି ଭାଗବତର ଅନୁବାଦ ଦଶମ ସ୍କନ୍ଧ ପର୍ଯ୍ୟନ୍ତ ଶେଷ ହୋଇଥାଏ, ତେବେ ଅନ୍ୟୁନ ତାହାର ପାଞ୍ଚ ସାତବର୍ଷ ପୂର୍ବରୁ ଦାସ ଗୋସାଇଁ ଭାଗବତ ରଚନା ଆରମ୍ଭ କରିଥିବା ଅସାମଟୀନ ନୁହେଁ । ତେଣୁ ଜଗନ୍ନାଥ ଦାସଙ୍କ ଦ୍ୱାରା ଭାଗବତର ଅନୁବାଦ କାର୍ଯ୍ୟ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରଥମ ଦଶକର ପୂର୍ବାର୍ଦ୍ଧରେ ହୋଇଥିବ ବୋଲି ଅନୁମାନ କରାଯାଇପାରେ ।

ଶ୍ରୀମଦ୍‌ଭାଗବତ ପରି ଏକ ଦୁରୂହ ଦାର୍ଶନିକ ଚିନ୍ତାଧାରା ସମ୍ବଳିତ ଗ୍ରନ୍ଥକୁ ଓଡ଼ିଆ ଭାଷାରେ ଅନୁବାଦ କରିଥିବାରୁ ଜଗନ୍ନାଥ ଦାସ କେବଳ ଯେ ଓଡ଼ିଆ ଭାଷାଭାଷୀଙ୍କ ନିକଟରେ ସୁପରିଚିତ ହୋଇଥିଲେ, ତା ନୁହେଁ, ପଡ଼ୋଶୀ ବଙ୍ଗଦେଶର କବି କୋବିଦମାନଙ୍କ ମଧ୍ୟରେ ଆଦରଣୀୟ ହୋଇଥିଲେ ।

ବଙ୍ଗଳା ଭାଷାରେ ପ୍ରଥମ ଅନୁବାଦକ ବିପ୍ର ସନାତନ ବିଦ୍ୟାବାଗୀଶ ଜଗନ୍ନାଥ ଦାସଙ୍କ କୃତିତ୍ୱକୁ ଉଚ୍ଛ୍ୱସିତ କଣ୍ଠରେ ପ୍ରଶଂସା କରି ସ୍ୱରଚିତ 'ଭାଷାବନ୍ଧ ଭାଗବତ'ର ଦଶମ ସ୍କନ୍ଧରେ ଲେଖିଛନ୍ତି-

"ଶୁନ ଶୁନ ଶ୍ରୋତାଗନ କରି ନିବେଦନ ।
ପ୍ରଥମ ହଇତେ ଗ୍ରନ୍ଥ ଲେଖିଲୁ ଆପନ ।।
ଦଶମେର ଶେଷ ଷଷ୍ଠ ଭାଖା ନ ପାଇନ ।
ଅନେକତ ପାଣି ଗ୍ରାମେ ଗ୍ରାମେ ବେଡ଼ାଇନ ।।
ଏ ହେତୁ ଉତ୍କଳ ଭାଷା କରିଲ ଲିଖନ ।
ଜଗନ୍ନାଥ ଦାସକୃତ ଅପୂର୍ବ ବର୍ଣ୍ଣନ ।।
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହଇୟାଁ ।
ବଙ୍ଗଜଭାଷାୟ ଉତ୍କଳ ମିଶାଇୟାଁ ।।
ଦଶମସ୍କନ୍ଧ ଭାଗବତ ସମ୍ପୂର୍ଣ୍ଣ ହଇତେ ।
ଷଡ଼ଅଧ୍ୟା ଲିଖିଲାମ ଶ୍ରୀଗୁରୁ ଇସାତେ ।।
ଇଥେ ସାଧୁଗନ ମୋର ଦୋଷ ନା ଲଇବେ ।
ଭାଗବତ ସାଧୁବାକ୍ୟ ଆନନ୍ଦେ ଶୁନିବେ" ।।

(ଭାଷାବନ୍ଧ ଭାଗବତ - B/10 ରାଜ୍ୟ ସଂଗ୍ରହାଳୟପୋଥି)



Dr. Sudhanshu Sekhar Mishra

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ ପଡ଼ୋଶୀ ରାଜ୍ୟର ବିଦ୍ୱାନ୍ ବିପ୍ର ସନାତନ ବିଦ୍ୟାବାଗୀଶଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ସେ ଦଶମ ସ୍କନ୍ଧର ଅନୁବାଦ ପ୍ରକରଣରେ ଜଗନ୍ନାଥ ଦାସଙ୍କ ପଦାବଳୀକୁ ଅବିକଳ ଗ୍ରହଣ କରି ନିଜର ଅପାରଗତା ପାଇଁ ବିଜ୍ଞ ପାଠକମାନଙ୍କ ନିକଟରେ କ୍ଷମାଭିକ୍ଷା କରିଛନ୍ତି ।

ଓଡ଼ିଶାରେ ଘରେ ଘରେ ପୂଜିତ ତଥା ପଠିତ ଭାଗବତ ପୋଥି ମୂଳ ସଂସ୍କୃତ ଅନୁସାରେ ବାରଖଣ୍ଡରେ ବିଭକ୍ତ ହୋଇଥିଲେ ହେଁ, ଓଡ଼ିଶାରେ ଚଉଦଖଣ୍ଡି ଭାଗବତ ମିଳୁଥିବାର ଦେଖାଯାଏ । ଦ୍ୱାଦଶ ସ୍କନ୍ଧ ବ୍ୟତୀତ ତ୍ରୟୋଦଶ ସ୍କନ୍ଧ ଓ ଚତୁର୍ଦ୍ଦଶ ସ୍କନ୍ଧ ଅର୍ଥାତ ଗୁପ୍ତ ଭାଗବତ (ଚୋରି ଚବିଶ) ଶୀର୍ଷକ ଦୁଇଖଣ୍ଡି ପୋଥି ମିଳୁଛି । ଏହା କେବଳ ମୁଦ୍ରିତ ପୁସ୍ତକରେ ମିଳୁଛି, ତା ନୁହେଁ, ପ୍ରାଚୀନ ତାଳପତ୍ର ପୋଥିରେ ମଧ ତ୍ରୟୋଦଶ ସ୍କନ୍ଧ ଓ ଗୁପ୍ତ ଭାଗବତ ଶୀର୍ଷକ ଉଭୟ ପୁସ୍ତକରେ ଜଗନ୍ନାଥ ଦାସଙ୍କ ନାମ ଭଣିତାରେ ରହିଛି । ଅବଶ୍ୟ ତ୍ରୟୋଦଶ ସ୍କନ୍ଧର କେତୋଟି ଅଧ୍ୟାୟର ଭଣିତାରେ 'ଦ୍ୱାରିକା ଜଗନ୍ନାଥ ଦାସ' ବୋଲି ଦେଖିବାକୁ ମିଳେ ।

ଅତିବଡ଼ୀ ଜଗନ୍ନାଥ ଦାସ ଭାଗବତର ଏକାଦଶ ସ୍କନ୍ଧରେ ଜ୍ଞାନଯୋଗ (ଊନତ୍ରିଂଶ ଅଧ୍ୟାୟ) ଭକ୍ତିଯୋଗ (ବିଂଶ ଓ ଏକବିଂଶ ଅଧ୍ୟାୟ) ଓ ବିଭୂତି ଯୋଗ (ସପ୍ତଦଶ ଅଧ୍ୟାୟ) ପ୍ରଭୃତିର ବର୍ଣ୍ଣନା କରିବା ପରେ, ସେ ପୁଣି ତ୍ରୟୋଦଶ ସ୍କନ୍ଧରେ ସେହି ବିଷୟମାନଙ୍କର ଅବତାରଣା କରିବା ଅସମୀଚୀନ ନୁହେଁ କି ? ଆହୁରିମଧ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ଉଦ୍ଧବ ବ୍ରଜମଣ୍ଡଳରେ କିଛିଦିନ କଟାଇ ବଦରିକାଶ୍ରମରେ ନିବାସ କରିଥିବାର ବର୍ଣ୍ଣନା ରହିଥିବାବେଳେ, ତ୍ରୟୋଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ସହିତ ଉଦ୍ଧବଙ୍କ ବୈକୁଣ୍ଠ ଗମନର ବୃତ୍ତାନ୍ତ ରହିଛି । ଜଗନ୍ନାଥ ଦାସଙ୍କ ପରି ଜଣେ ସୁକବି, ଏପରି ପ୍ରମାଦ କରିବା ଆଦୌ ସମ୍ଭବ ନୁହେଁ । ତେଣୁ ଅନୁମାନ କରାଯାଏ-ଦ୍ୱାରିକାଦାସ ନାମକ ଅତିବଡ଼ୀ ସମ୍ପ୍ରଦାୟର ଜନୈକ ଶିଷ୍ୟ ବ୍ରହ୍ମଜ୍ଞାନ ସମ୍ପର୍କରେ ଆଲୋଚନା କରି ପୁସ୍ତକଟିକୁ ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିବା ସଙ୍ଗେ ସଙ୍ଗେ କେତେକ ଅଧ୍ୟାୟରେ "ଦ୍ୱାରିକା ଜଗନ୍ନାଥ ଦାସ । ଆନନ୍ଦେ କଲେ ପରକାଶ" । ବୋଲି ଉଲ୍ଲେଖ କରି ଅକ୍ଷରମାଳିନୀ କୀର୍ତ୍ତି ସ୍ଥାପନର ଯୋଜନା କରିଛନ୍ତି ।

ଗୁପ୍ତଭାଗବତ ଶୀର୍ଷକ ପୁସ୍ତକରେ ଜଗନ୍ନାଥ ଦାସଙ୍କ ନାମ ଭଣିତାରେ ମିଳୁଛି । ପୁସ୍ତକର ପ୍ରାରମ୍ଭରେ ଉଲ୍ଲେଖ ରହିଛି- "ଜଗନ୍ନାଥ ଦାସ ଚବିଶିଟି ଅଧ୍ୟାୟକୁ ଗୋପନରେ ରଖି, ପରେ ତାହାକୁ ପ୍ରକାଶ କରିଛନ୍ତି ।" ବିଶେଷତଃ ଦଶମ ସ୍କନ୍ଧର ଗୋପଲୀଳା ପ୍ରକରଣରେ ଜଗନ୍ନାଥ ଦାସ 'ଶ୍ରୀରାଧା'ଙ୍କ ନାମୋଲ୍ଲେଖ କରି ନ ଥିଲେ ହେଁ, ଗୁପ୍ତ ଭାଗବତରେ ରାଧାଜନ୍ମ ଓ ରାଧାଷ୍ଟମୀ ବ୍ରତ ପାଳନ ସମ୍ପର୍କରେ ଲେଖିବା ଅତ୍ୟନ୍ତ କୌତୂହଳୋଦ୍ଦୀପକ ଘଟଣା ନୁହେଁ କି ?

ଆଲୋଚନାରୁ ଆହୁରି ମଧ ଜଣାଯାଏ-ଓଡ଼ିଶାରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଲିଖିତ କୌଣସି ଧର୍ମଶାସ୍ତ୍ର ଗ୍ରନ୍ଥରେ ରାଧାଷ୍ଟମୀ ବ୍ରତପାଳନ ସମ୍ପର୍କରେ ଉଲ୍ଲେଖ ନାହିଁ । ଏପରିକି, ଚୈତନ୍ୟ ଦେବଙ୍କ ବିଧାନ ଅନୁଯାୟୀ ତଥା ଷଡ଼ଗୋସ୍ୱାମୀଙ୍କ ମଧରେ ଅନ୍ୟତମ ଆଚାର୍ଯ୍ୟ ଗୋପାଳଭଟ୍ଟ ସ୍ୱରଚିତ 'ହରିଭକ୍ତି ବିଳାସ' (ଗୌଡ଼ୀୟ ସ୍ମୃତିଗ୍ରନ୍ଥ)ରେ ମଧ ରାଧାପୂଜା ବା ରାଧାଷ୍ଟମୀ ବ୍ରତ ପାଳନର ବଚନିକା ଉଲ୍ଲେଖ କରିନାହାନ୍ତି । ଆଜିକାଲି ଭାଦ୍ରବମାସ ଶୁକ୍ଳ ଅଷ୍ଟମୀରେ ରାଧାଷ୍ଟମୀବ୍ରତ ପାଳିତ ହେଉଛି । କିନ୍ତୁ ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଓଡ଼ିଆ ବିଦ୍ୱାନ୍‌ମାନଙ୍କଦ୍ୱାରା ରଚିତ 'କୃତ୍ୟକୌମୁଦୀ', 'ସ୍ମୃତିସାର ସଂଗ୍ରହ', 'କାଳଦୀପ' ଓ 'କାଳସାର' (ଗଦାଧର ପଦ୍ଧତି) ପ୍ରଭୃତି ସ୍ମୃତି ଗ୍ରନ୍ଥରେ ରାଧାଷ୍ଟମୀର ଉଲ୍ଲେଖ ନାହିଁ । ସେହି ଭାଦ୍ରବ ଶୁକ୍ଳ ଅଷ୍ଟମୀରେ 'ଦୁର୍ବାଷ୍ଟମୀ' ଅନୁଷ୍ଠିତ ହୋଇ ଶିବଙ୍କୁ ଆରାଧନା କରାଯାଉଥିଲା । ଅଷ୍ଟାଦଶ ଶତାବ୍ଦୀର ମଧଭାଗରେ ଉତ୍କଳୀୟ ସ୍ମୃତିକାର ମହାମହୋପାଧ୍ୟାୟ କୃଷ୍ଣମିଶ୍ର ସ୍ୱରଚିତ 'କାଳସର୍ବସ୍ୱ' ଗ୍ରନ୍ଥରେ ଲେଖିଛନ୍ତି-

"ଯଦ୍ୟପି ରାଧାଲଳିତାଜନ୍ମ ହରିଭକ୍ତିବିଳାସେ ନାସ୍ତି ତଥାପି ବୈଷ୍ଣବାଚାରାତ୍ ସାଧନଦୀପିକାୟାଂ ସତ୍ତ୍ୱାଚ୍ଚ ତତ୍ କିଞ୍ଚିଲ୍ଲିଖ୍ୟତେ । ଜ୍ୟେଷ୍ଠାଷ୍ଟମୀ-ଜ୍ୟେଷ୍ଠା ରାଧାୟା ନାମାନ୍ତରମ୍ ।"

ଏଥିରୁ ମନେହୁଏ, ଅଷ୍ଟାଦଶ ଶତାବ୍ଦୀର ମଧଭାଗ ପର୍ଯ୍ୟନ୍ତ ଓଡ଼ିଶାରେ ରାଧାପୂଜା ଓ ରାଧାଷ୍ଟମୀ ବ୍ରତକୁ ସାମାଜିକ ସ୍ୱୀକୃତି ମିଳି ନଥିବା ସ୍ଥଳେ ଜଗନ୍ନାଥ ଦାସ ରାଧାଜନ୍ମ ସମ୍ପର୍କରେ ଗୁପ୍ତ ଭାଗବତରେ ଉଲ୍ଲେଖ କରିଥାନ୍ତେ କାହିଁକି ?

ଏଥିରୁ ସ୍ପଷ୍ଟ ଧାରଣା କରିହୁଏ ଯେ, ଅଷ୍ଟାଦଶ ଶତାବ୍ଦୀର ପ୍ରସିଦ୍ଧ ଗୌଡ଼ୀୟ ବୈଷ୍ଣବ ରସିକାନନ୍ଦ ଗୋସ୍ୱାମୀ ଓ 'ଗୋବିନ୍ଦଭାଷ୍ୟ'ର ପ୍ରଣେତା, ଉତ୍କଳୀୟ ଦାର୍ଶନିକ ବଳଦେବ ବିଦ୍ୟାଭୂଷଣଙ୍କ ପ୍ରଚାର ଫଳରେ କୌଣସି ଜଣେ ବୈଷ୍ଣବକବି 'ଗୁପ୍ତ ଭାଗବତ' ଶୀର୍ଷକ ପୁସ୍ତକଟି ରଚନା କରି ଅତିବଡ଼ୀ ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିଛନ୍ତି । ଏହା କେବେହେଲେ ଦାସ ଗୋସାଇଁଙ୍କ ଦ୍ୱାରା ଲେଖାଯାଇ ନାହିଁ ।

ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଭାଗବତର ଦ୍ୱାଦଶ ସ୍କନ୍ଧର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ଆଉ ଏକ ସମସ୍ୟା ଆଲୋଚକମାନଙ୍କ ମନରେ ତୀବ୍ର ଆଲୋଡ଼ନ ସୃଷ୍ଟି କରେ । ମହାଦେବ ଦାସ ନାମକ ଜନୈକ କବି ଭାଗବତର ଦ୍ୱାଦଶ ସ୍କନ୍ଧଟିକୁ ରଚନା କରି ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିଛନ୍ତି ବୋଲି କେତୋଟି ପଦରୁ ଜଣାଯାଏ । କବି ମହାଦେବ ଦାସଙ୍କ ମତରେ ଅତିବଡ଼ୀ ଗୋସାଇଁ ଏକାଦଶ ସ୍କନ୍ଧର ଅନୁବାଦ ଶେଷ କରିବା ପରେ ଇହଲୀଳା ସାଙ୍ଗ କରିଥିଲେ –

"ସେ ନାରାୟଣ ପାଦେ ମୁହିଁ । ଶରଣ ଯାଇ ଯେ ଅଛଇ ।।



Dr. Sudhanshu Sekhar Mishra

ଦ୍ୱାଦଶ ସ୍କନ୍ଧ ଭାଗବତ । ତ୍ରୟୋଦଶ ଅଧ୍ୟା ନିର୍ମିତ ।।
ଜଗନ୍ନାଥ ଦାସ ପ୍ରକାଶ । କରି ତ ଲୋଡ଼ୁଅଛି ଆଶ ।।
ନାମ ମୋହର ମହାଦେବ । ବିପ୍ରକୁଳରେ ମୁଁ ସମ୍ଭବ ।।
କୃଷ୍ଣ ସହିତେ ଜଗନ୍ନାଥ । ଚଳିଲେ ଗୋଲୋକ ଯେ ପଥ ।।
ମୁଁ ଏହା କରଇ ବିଚାର । ଅଷ୍ଟାଦଶ ପୁରାଣ ସାର ।।
ଦ୍ୱାଦଶସ୍କନ୍ଧ ତ୍ରୟୋଦଶ । ଯେମନ୍ତେ ହୋଇବ ପ୍ରକାଶ ।।
ପୁରାଣମାନଙ୍କୁ ଉଦ୍ଧାରି । ସୂତ ଯା କହିଲେ ବିଚାରି" ।।

ଏହି ଉଦ୍ଧୃତାଂଶର ପାଠ ବିଭିନ୍ନ ପ୍ରକାଶିତ ପୁସ୍ତକ ତଥା ତାଳପତ୍ର ପୋଥିମାନଙ୍କରେ ରହିଛି । ଏକାଦଶ ସ୍କନ୍ଧର ଦ୍ୱାତ୍ରିଂଶ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ବୈକୁଣ୍ଠ ଗମନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ଉଦ୍ଧୃତାଂଶରେ ଲିଖିତ ମହାଦେବ ଦାସଙ୍କ ସ୍ୱୀକାରୋକ୍ତିରୁ ଜଣାଯାଏ- ଶ୍ରୀକୃଷ୍ଣଙ୍କ ଗୋଲୋକ ଗମନ ବର୍ଣ୍ଣନା କରିବା ପରେ ଜଗନ୍ନାଥ ଦାସ ଦେହତ୍ୟାଗ କରିଥିଲେ । ଅବଶ୍ୟ ଏ ପ୍ରକାର ଘଟଣା ଜଣେ 'ତଦ୍‌ଭାବଭାବିତ' ସାଧକଙ୍କ ପକ୍ଷରେ ଆଦୌ ଅସମ୍ଭବ ନୁହେଁ । ଶ୍ରୀ ଜଗନ୍ନାଥ ଦାସ ନିଜେ ରାଧା ଅଂଶରେ ଜାତ ହୋଇଥିଲେ ବୋଲି ବହୁ କିମ୍ବଦନ୍ତୀମୂଳକ ଆଖ୍ୟାନ ରହିଛି । ଏପରିକି, ସେ ଥରେ ଗଜପତି ରାଜା ପ୍ରତାପରୁଦ୍ରଦେବଙ୍କ ସମ୍ମୁଖରେ ନିଜ ସ୍ତ୍ରୀତ୍ୱର ପରିଚୟ ଦେବା ଘଟଣା କାହାରିକୁ ଅବିଦିତ ନାହିଁ । ସାଧନମାର୍ଗରେ ନିଜକୁ 'ରାଧା' ବୋଲି ଅଭିହିତ କରି ତନ୍ମୟତାର ସହିତ ଶ୍ରୀକୃଷ୍ଣଙ୍କୁ ଆରାଧନା କରୁଥିବା ସାଧକ ପ୍ରାଣରେ ଶ୍ରୀକୃଷ୍ଣଙ୍କ ବିୟୋଗ ବର୍ଣ୍ଣନା ନିଶ୍ଚିତ ଭାବରେ ମର୍ମନ୍ତୁଦ ହୋଇଥିବ । ତେଣୁ ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କର ଗୋଲୋକଗମନ ବୃତ୍ତାନ୍ତ ବର୍ଣ୍ଣନା କରିବା ପରେ, ଭାବ-ସମାଧିରେ ରହି ଇହଲୀଳା ସାଙ୍ଗ କରିଥିବା ଅସମ୍ଭବ ନୁହେଁ । ତାଙ୍କଦ୍ୱାରା ପ୍ରତିଷ୍ଠିତ ପୁରୀର 'ବଡ଼ ଓଡ଼ିଆ ମଠ'ରେ ମଧ ଏହି କିମ୍ବଦନ୍ତୀ ଶିଷ୍ୟ ପରମ୍ପରାକ୍ରମେ ଗ୍ରହଣ କରାଯାଉଛି । ତାଙ୍କ ମୃତ୍ୟୁପରେ ମହାଦେବ ଦାସ ନାମକ ତାଙ୍କର ଜନୈକ ଶିଷ୍ୟ ଭାଗବତ ଦ୍ୱାଦଶ ସ୍କନ୍ଧର ଅନୁବାଦ ସମ୍ପୂର୍ଣ୍ଣ କରି, ଜଗନ୍ନାଥଙ୍କ ନାମ ଭଣିତା କରିଥିବା ଆଦୌ ଅସମ୍ଭବ ନୁହେଁ । ଅବଶ୍ୟ ଏ ମହାଦେବ ଦାସ 'ମାର୍କଣ୍ଡେୟପୁରାଣ', 'ବିଷ୍ଣୁ କେଶରୀ ପୁରାଣ', 'କାର୍ତ୍ତିକ ମାହାତ୍ମ୍ୟ' ଆଦି ଗ୍ରନ୍ଥର ପ୍ରଣେତା ମହାଦେବ ଦାସ ନୁହଁନ୍ତି । କାରଣ 'ବିଷ୍ଣୁକେଶରୀ' ଆଦି ପୁରାଣରେ ମହାଦେବ ଦାସଙ୍କ ସମ୍ପର୍କରେ ଯେଉଁ ପଦମାନ ରହିଛି, ସେଥିରୁ ସେ ଶୂଦ୍ର କୂଳରେ ଜାତ ହୋଇଥିଲେ ବୋଲି ଜଣାଯାଏ । କିନ୍ତୁ ଦ୍ୱାଦଶ ସ୍କନ୍ଧର ଅନୁବାଦକ ନିଜକୁ 'ବ୍ରହ୍ମକୂଳରେ ସମ୍ଭବ' ବୋଲି ସୂଚାଇଛନ୍ତି । ତେଣୁ ଏ ମହାଦେବ ଦାସ କିଏ, ତା'ର ପ୍ରମାଣ ଏ ପର୍ଯ୍ୟନ୍ତ ଆଲୋଚକମାନଙ୍କ ହସ୍ତଗତ ହୋଇନାହିଁ ।

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ସୁବର୍ଣ୍ଣରେଖା ନଦୀର ତଟବର୍ତ୍ତୀ ଭୋଗରାଇ ଗ୍ରାମରେ ଜାନକୀବଲ୍ଲଭ କରଶର୍ମା ନାମରେ ଜଣେ ସୁକବି ଜନ୍ମଗ୍ରହଣ କରିଥିଲେ । ସେ ମେଦିନୀପୁର ଜିଲ୍ଲା ପଟାସପୁର ପ୍ରଗଣାର ଜମିଦାର (ରାଜା) ଚୌଧୁରୀ ଗୋପେନ୍ଦ୍ରନନ୍ଦନ ଦାସ ମହାଶୟଙ୍କର ପୃଷ୍ଠ-ପୋଷକତାରେ ରହି ତାଙ୍କ ରାଣୀ ଗୁଣ୍ଡିଚାଦେବୀଙ୍କ ନିର୍ଦ୍ଦେଶରେ ଜଗନ୍ନାଥ ଦାସଙ୍କ ଭାଗବତକୁ ସଂଶୋଧନ କରିଥିଲେ । କବି ଜାନକୀବଲ୍ଲଭ ପ୍ରତି ଅଧ୍ୟାୟର ଶେଷରେ ଜଗନ୍ନାଥ ଦାସଙ୍କ ନାମ ଭଣିତା କରିବା ସଙ୍ଗେ ସଙ୍ଗେ କେତେକ ଅଧ୍ୟାୟର ଶେଷରେ ଭାଗବତ ସଂଶୋଧନର କାରଣ ଉଲ୍ଲେଖ କରିଛନ୍ତି-

"ଏବେ ହୋ ଶୁଣ ସାଧୁଜନେ । କହୁଛି ତୁମ୍ଭର ଚରଣେ ।।
ବ୍ୟାସ ଭାଷିତ ଜଗନ୍ନାଥ । ଭାଷାରେ ବର୍ଣ୍ଣିଲେ ସମସ୍ତ ।।
ସେ ଭାଷା ଲେଖକ ଦୋଷରେ । ଅନ୍ୟଥା ହେଲା ଏ ସଂସାରେ ।।
ସେ ବ୍ୟାସ ଜଗନ୍ନାଥ ବାଣୀ । ଯେ ରୂପେ ତୁଲ୍ୟ ପରିମାଣି ।।
ଏ ରୂପେ ବିଚାର କରିଣ । ଜାନକୀବଲ୍ଲଭ ବ୍ରାହ୍ମଣ ।।
ଗୁଣ୍ଡିଚାବାକ୍ୟ ଅନୁସରି । ଶୋଧି ଲେଖିଲେ ଯତ୍ନକରି ।।
ପଣ୍ଡିତେ ନ ଧରିବେ ଦୋଷ । ସର୍ବାନ୍ତର୍ଯ୍ୟାମୀ ପୀତବାସ" ।।

(ରାଜ୍ୟ ସଂଗ୍ରହାଳୟ ପୋଥି ନବମ ସ୍କନ୍ଧ ଶେଷ ଅଧ୍ୟାୟ)

ଜାନକୀବଲ୍ଲଭ କରଶର୍ମା ୧୬୪୭ ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୧୭୨୫ରେ ଭାଗବତ ପଞ୍ଚମ ସ୍କନ୍ଧର ସଂଶୋଧନ କରିଥିବାର ଉଲ୍ଲେଖ କରିଛନ୍ତି -

"ଶକାବ୍ଦ ଚାରି ସାତ ନେଇ । ତା ବାମେ ଷୋଳସଂଖ୍ୟା ଦେଇ ।।
ଏତେ ଶକାବ୍ଦେ ବିଷ୍ଣୁଧ୍ୟାୟୀ । ଗୁଣ୍ଡିଚା ବାକ୍ୟେ ବଦ୍ଧ ହୋଇ ।।
ଲେଖିଲି ଭାଗବତ କଥା । ଶୁଣନ୍ତେ ତୁଟେ ଭବବ୍ୟଥା" ।।

(ରାଜ୍ୟ ସଂଗ୍ରହାଳୟ ପୋଥି, ପଞ୍ଚମ ସ୍କନ୍ଧ, ଶେଷ ଅଧ୍ୟାୟ)



Dr. Sudhanshu Sekhar Mishra

ଭାଗବତ ଏକାଦଶ ସ୍କନ୍ଧର ଶେଷ ଅଧ୍ୟାୟରେ ଲେଖାଅଛି -

"ଶକାବ୍ଦ ପାଞ୍ଚସାତ ନେଇ | ତା ବାମେ ଷୋହଳକୁ ଦେଇ" ||

ଅର୍ଥାତ ୧୬୫୭ ଶକାବ୍ଦ ବା ୧୭୩୫ରେ ସେ ଏକାଦଶ ସ୍କନ୍ଧର ସଂଶୋଧନ ଶେଷ କରିଥିଲେ । ଷଷ୍ଠରୁ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ଦୁଇଶହ ଦଶ ଅଧ୍ୟାୟକୁ ସଂଶୋଧନ କରିବା ପାଇଁ ତାଙ୍କୁ ଦଶବର୍ଷ ସମୟ ଲାଗିଥିବାରୁ ପ୍ରଥମରୁ ପଞ୍ଚମ ସ୍କନ୍ଧ ପର୍ଯ୍ୟନ୍ତ ଏକଶହ ଉଣେଇଶି ଅଧ୍ୟାୟକୁ ଅନୂନ ସାତ ଆଠବର୍ଷ ସମୟ ଲାଗିଥିବ । ତାହାହେଲେ ଜାନକୀବଲ୍ଲଭ ୧୭୧୮ ମସିହାରେ ଭାଗବତର ସଂଶୋଧନ କାର୍ଯ୍ୟ ଆରମ୍ଭ କରି ସତର ଅଠର ବର୍ଷପରେ ଅର୍ଥାତ୍ ୧୭୩୮ ମଧ୍ୟରେ ସଂଶୋଧନ କାର୍ଯ୍ୟ ଶେଷ କରିଥିଲେ ।

କବି ଜାନକୀବଲ୍ଲଭ କରଶର୍ମାଙ୍କ ଦ୍ୱାରା ଅନୁବାଦିତ "ଶ୍ରୀମଦ୍‌ଭଗବତ୍ ଗୀତା"ର ପୁଷ୍ପିକାରୁ କବି ଉକ୍ତ ଅନୁବାଦଟିକୁ ୧୭୫୫ରେ ଶେଷ କରିଥିଲେ ବୋଲି ପ୍ରମାଣ ମିଳେ ।

"ଯେ ରାଜପତ୍ନୀ ଲକ୍ଷ୍ମୀଅଂଶ | ଅଶେଷ ଜନ ତାର ବଶ ||
ସେ ରାଜପତ୍ନୀ ବାକ୍ୟଶୁଣି | ଏ ଭାଷା କଲି ପରିମାଣି ||
ଗୁଣ୍ଡିଚାଠାରେ ପ୍ରତିଦିନ | କରୁଣାକର ଭଗବାନ ||
ଶକାବ୍ଦ ସପ୍ତ ସପ୍ତରସ | ଅପରେ ସୁଧାଂଶୁ ପ୍ରକାଶ ||
ଶ୍ରୀଗୀତାଭାଷା ପୂର୍ଣ୍ଣହେଲେ | ଶ୍ରୀକୃଷ୍ଣ ଯାହା ଆଜ୍ଞାକଲେ" ||

(ଗୀତାର୍ଥ ସାରଟୀକା, ରାଜ୍ୟ ସଂଗ୍ରହାଳୟ ପୋଥି, ଶେଷ ଅଧ୍ୟାୟ)

ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତ ଉତ୍ତର ବାଲେଶ୍ୱର ମେଦିନୀପୁର ଓ ମୟୂରଭଞ୍ଜ ଜିଲ୍ଲାରେ ଉପଲବ୍ଧ ହେଉଛି । ସେଥିରେ ଥିବା ପାଠ ମୁଦ୍ରିତ ଭାଗବତର ପାଠ ସହିତ ବିଷୟବସ୍ତୁ ବର୍ଣ୍ଣନା ଦୃଷ୍ଟିରୁ ସାମଞ୍ଜସ୍ୟ ରକ୍ଷା କରୁଥିଲେ ହେଁ ଶବ୍ଦ ଯୋଜନା ଦୃଷ୍ଟିରୁ ସମ୍ପୂର୍ଣ୍ଣ ପାର୍ଥକ୍ୟ ଅଟେ । ଉଦାହରଣ ସ୍ୱରୂପ ଅଷ୍ଟମ ସ୍କନ୍ଧର ଦେବସ୍ତୁତି ପ୍ରକରଣରୁ ଦଶଟି ପଦ ଏଠାରେ ଉଲ୍ଲେଖ କରାଯାଇପାରେ-

"ଏମନ୍ତେ ଦେବସ୍ତୁତି ଶୁଣି | ଶୂନ୍ୟେ ପ୍ରକାଶ ଚକ୍ରପାଣି ||
ସମସ୍ତେ ହରିତେଜ ଦେଖି | ଦେବେ ବୁଜିଲେ ଭୟେ ଆଖି ||
ଦିଗ ନ ପାରନ୍ତି ବିଚାରି | ବୁଦ୍ଧିର ମତେ ପ୍ରାଣଧରି ||
ରହିଲେ ଅନ୍ଧକାରଛନ୍ନେ | ଚାହିଁ ନ ପାରନ୍ତି ଗଗନେ ||
ମଧ୍ୟେ ଯେ ବ୍ରହ୍ମାରୁଦ୍ର ଥିଲେ | ଟେକି ଅନ୍ତରୀ‌ସେ ଚାହିଁଲେ ||
ଦେଖିଲେ ବିଷ୍ଣୁର ପ୍ରକାଶ | ଶରୀର ପୂରିଛି ଆକାଶ ||
ନୀଳ ମହୀନ୍ଦ୍ର ପ୍ରାୟ ଦିଶେ | ଅରୁଣଲୋଚନ ପ୍ରକାଶେ ||
ବିକଚ ପୁଣ୍ଡରୀକ ପ୍ରାୟେ | କର୍ଣ୍ଣେ କୁଣ୍ଡଳ ବେନି ଶୋହେ ||
ତପ୍ତକାଞ୍ଚନ ପ୍ରାୟ ବର୍ଣ୍ଣ | ପୀତବସନ ପରିଧାନ ||
ପ୍ରସନ୍ନ ଚାରୁ ସର୍ବ ଅଙ୍ଗ | ସୁମୁଖ ସୁନ୍ଦର ସୁରଙ୍ଗ" ||

(ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ଭାଗବତ ଅଷ୍ଟମ ସ୍କନ୍ଧ ଷଷ୍ଠ ଅଧ୍ୟାୟ)

"ଏମନ୍ତେ ଦେବସ୍ତୁତି ଶୁଣି | ଶୂନ୍ୟେ ପ୍ରକାଶ ଚକ୍ରପାଣି ||
ସହସ୍ର ସୂର୍ଯ୍ୟତେଜ ଦେଖି | ଦେବେ ବୁଜିଲେ ଭୟେ ଆଖି ||
ଦିଶ ଆକାଶ ନ ଜାଣିଲେ | ପ୍ରଭୁଙ୍କୁ ଚିହ୍ନି ନ ପାରିଲେ ||
ମଧ୍ୟେ ଯେ ବ୍ରହ୍ମାରୁଦ୍ର ଥିଲେ | ଉର୍ଦ୍ଧ୍ୱେ ଅନ୍ତରୀକ୍ଷେ ଚାହିଁଲେ ||
ଦେଖିଲେ ବିଷ୍ଣୁ କଳେବର | କି ଶୋଭା ଦେବା ପଟାନ୍ତର ||
ନିର୍ମଳ ମରକତ ବର୍ଣ୍ଣ | ପଦ୍ମ ଅରୁଣ ବିଲୋଚନ ||
ତପ୍ତକାଞ୍ଚନ ପ୍ରାୟେ ବର୍ଣ୍ଣ | ପୀତବସନ ପରିଧାନ ||
ପ୍ରସନ୍ନ ରମ୍ୟ କଳେବର | ସୁମୁଖ ସୁଭ୍ରୁବ ସୁନ୍ଦର ||
ମସ୍ତକେ ଅମୂଲ୍ୟ ମୁକୁଟ | କାଞ୍ଚନ କେୟୁର ପ୍ରକଟ ||
କର୍ଣ୍ଣେ କୁଣ୍ଡଳ ବେନି ଶୋହେ | ଯେହ୍ନେ ଅଶେଷଜନ ମୋହେ" ||

(ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତ ୮ମ ସ୍କନ୍ଧ, ୬ଷ୍ଠ ଅଧ୍ୟାୟ)

ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତ ଓ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମିଳୁଥିବା ଭାଗବତର ପାଠ ମଧ୍ୟରେ ବହୁ ପାର୍ଥକ୍ୟ ପରିଲକ୍ଷିତ ହେଉଥିବାରୁ ପ୍ରସ୍ତୁତ ଶୁଦ୍ଧ ସଙ୍କଳନରେ ଆମେ ସେ ପୋଥିଗୁଡ଼ିକୁ ଗ୍ରହଣ କରିନାହୁଁ ।



Dr. Sudhanshu Sekhar Mishra

## ଶ୍ରୀ ଜଗନ୍ନାଥ ଦାସଙ୍କ ବୈଶିଷ୍ଟ୍ୟ -

ଅତିବଡ଼ୀ ଶ୍ରୀ ଜଗନ୍ନାଥ ଦାସ ଗୋସ୍ୱାମୀ ଥିଲେ ଜଣେ ପ୍ରସିଦ୍ଧ ସଂସ୍କୃତଜ୍ଞ । କଳାପ ଓ ବର୍ଦ୍ଧମାନ ଆଦି ବ୍ୟାକରଣ, ବେଦବେଦାଙ୍ଗ ତଥା ଷଡ୍‌ଦର୍ଶନ ପାଠରେ ମନଦେଇ ସେ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳାଗାନରେ ତନ୍ମୟ ଥିଲେ । ସମକାଳୀନ ଭକ୍ତମଣ୍ଡଳୀରେ ସେ ଲୀଳାମୟୀ ଶ୍ରୀରାଧାଙ୍କ ଅବତାର ରୂପେ ସ୍ୱୀକୃତ । ଏ ସମ୍ପର୍କରେ ଅନେକ କିମ୍ବଦନ୍ତୀ ବହୁ ପୂର୍ବରୁ ଲିପିବଦ୍ଧ ହୋଇ ରହିଆସିଛି ।

ଶ୍ରୀମଦ୍‌ଭାଗବତର ଅନୁବାଦ କରିବା ସମୟରେ ସେ ଅନୁବାଦକର ଧର୍ମ ସମ୍ପୂର୍ଣ୍ଣଭାବେ ପାଳନ କରିଥିଲେ । ଅନୁବାଦକର କର୍ତ୍ତବ୍ୟ ହେଉଛି, ମୂଳଗ୍ରନ୍ଥର ବିଷୟବସ୍ତୁ ଓ ଭାଷାକୁ ପୂର୍ଣ୍ଣଭାବରେ ହୃଦୟଙ୍ଗମ କରି, ନିଜ ଭାଷାର ଶୈଳୀ ଅନୁସାରେ ତାହାକୁ ପ୍ରକାଶ କରିବା । ଆକ୍ଷରିକ ଅନୁବାଦ କରିବା ଅନୁବାଦକର ଧର୍ମ ନୁହେଁ । ଆକ୍ଷରିକ ଅନୁବାଦ କଲେ ତାହା ପାଠକ ସମାଜରେ ସମାଦୃତ ହୁଏନାହିଁ । ତେଣୁ ଭାଗବତକାର ଦାସ ଗୋସାଇଁ ଶ୍ରୀମଦ୍‌ଭାଗବତର ପାଣ୍ଡିତ୍ୟପୂର୍ଣ୍ଣ ରଚନା ତଥା ଦାର୍ଶନିକ ଭାବପୂର୍ଣ୍ଣ ବିଷୟବସ୍ତୁକୁ ହୃଦୟଙ୍ଗମ କରି ତାହାକୁ ସର୍ବଜନ ବୋଧ, ସୁଲଳିତ ତଥା ସାବଲୀଳ ଭାଷାରେ ପ୍ରକାଶ କରିଛନ୍ତି । ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧର ପାଠରୁ ଜଣାଯାଏ, ସେ କୌଣସିଠାରେ ମୂଳ ବିଷୟକୁ ତ୍ୟାଗ କରିନାହାନ୍ତି । ସ୍ଥଳବିଶେଷରେ ମୂଳ ଶ୍ଳୋକକୁ ଯଥାସମ୍ଭବ ସୁବୋଧ ଭାଷାରେ ଅନୁବାଦ କରିବା ସଙ୍ଗେ ସଙ୍ଗେ କେତେକ ସ୍ଥଳରେ ସ୍ୱକଳ୍ପନାପ୍ରସୂତ ପଦାବଳୀ ଦ୍ୱାରା ମୂଳପାଠକୁ ପଲ୍ଲବିତ କରିଛନ୍ତି । ଯେଉଁଠାରେ ଅନୁବାଦ ଦୁର୍ବୋଧ ହେବ ବୋଲି ସେ ଅନୁଭବ କରିଛନ୍ତି, ସେଠାରେ ସେ ଯଥାସମ୍ଭବ ଭାବଗର୍ଭକ ପଦାବଳୀ ସଂଯୋଗ କରି ଅନୁବାଦକୁ ସାବଲୀଳ କରିବାରେ ଚେଷ୍ଟା କରିଛନ୍ତି । ଉଦାହରଣ ସ୍ୱରୂପ ପ୍ରଥମ ସ୍କନ୍ଧର ଶ୍ଳୋକକୁ ନିଆଯାଇପାରେ -

"ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରଥ ଷାର୍ଥେଷ୍ୱଭିଜ୍ଞ ସ୍ୱରାଟ୍
ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୁରୟଃ ।
ତେଜୋ ବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂପରଂ ଧୀମହି" ।

ଜଗନ୍ନାଥଙ୍କ ଅନୁବାଦ -

"ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।।
ଯା ବିନୁ ଆଦିମଧ ଅନ୍ତ । ବିଚାରେ ନ ଘଟେ ଜଗତ ।।
ଇନ୍ଦ୍ରିୟ ଅର୍ଥ ଯେ ଜାଣଇ । ସ୍ୱତେଜେ ନିତ୍ୟ ପ୍ରକାଶଇ ।।
ଆନନ୍ଦ ମନେ ବେଦ ସାର । ବ୍ରହ୍ମାଣ୍ଡେ ଯେ କଲା ବିସ୍ତାର ।।
ଯାର ସ୍ୱରୂପ ହୃଦେ ଚିନ୍ତି । ବେଦପୁରୁଷ ନ ଜାଣନ୍ତି ।।
ମୃତ୍ତିକା ବିକାର ଯେମନ୍ତ । ଜଳରେ ହୁଅଇ କଳ୍ପିତ ।।
ଜଳେ ଉପଳ ବୁଦ୍ଧି କରି । ମୃଗତୃଷ୍ଣାରେ ଯେହ୍ନେ ବାରି ।।
ରୂପ ଅରୂପ ସ୍ଥିତି ତିନି । ଯାର ଗୋଚରେ ଅନୁମାନି ।।
ସ୍ୱଭାବେ ନୋହେ ସେ ଏମନ୍ତ । ଏ ସାଂଖ୍ୟ ଯୋଗୀଙ୍କର ମତ ।।
ଆତ୍ମପ୍ରକାଶେ ସଦା ଥାଇ । ନିରସ୍ତ କୁହୁକ ବୋଲାଇ ।।
ସତ୍ୟପରମାନନ୍ଦ ହରି । ଯାହାର ଭାବେ ଭବୁ ତରି ।।
ଏମନ୍ତେ ସତ୍ୟରୂପ ଯାର । ତା ପାଦେ ମୋର ନମସ୍କାର" ।।

ଜଗନ୍ନାଥ ଦାସ ଏହି କ୍ଷେତ୍ରରେ ନିଜ ଭକ୍ତିଭାବର ପ୍ରଦର୍ଶନ କରି ଆଉ କେତୋଟି ପଦ ଯୋଡ଼ିଛନ୍ତି -

"ତାର ଚରଣେ ନିତ୍ୟେ ଧ୍ୟାନ । କରି ତରନ୍ତି ସର୍ବଜନ ।।
ସେ କୃଷ୍ଣପାଦ ହୃଦେ ଧରି । ପ୍ରବନ୍ଧେ ଗୀତନାଦ କରି ।।
ଅଶେଷ ଜଗତର ହିତେ । ବନ୍ଦଇ ଦାସ ଜଗନ୍ନାଥେ" ।।

ସେହିପରି କୁରୁବୀର ଦୁର୍ଯ୍ୟୋଧନର ଉରୁଭଙ୍ଗ ପରେ ଅଶ୍ୱତ୍‌ଥାମାଙ୍କ ସହିତ ତାଙ୍କର କଥୋପକଥନ ଓ ଦ୍ରୌପଦୀଙ୍କ ପଞ୍ଚପୁତ୍ର ବଧ ପ୍ରକରଣରେ ଜଗନ୍ନାଥ ଦାସ ମୂଳ ସଂସ୍କୃତର ସଂକ୍ଷିପ୍ତ ସୂଚନାକୁ ଜନସାଧାରଣଙ୍କ ବୁଝିବା ନିମିତ୍ତ ବିସ୍ତୃତ ଭାବରେ ରଚନା କରିଛନ୍ତି -

''ଯଦା ମୃଧେକୌରବସୃଞ୍ଜୟାନାଂ
ବୀରେଷ୍ୱଥୋ ବୀରଗତିଂ ଗତେଷୁ ।
ବୃକୋଦରାବିଦ୍ଧଗଦାଭିମର୍ଶ
ଭଗ୍ନୋରୁଦଣ୍ଡେ ଧୃତରାଷ୍ଟ୍ରପୁତ୍ରେ ।
ଭର୍ତ୍ତୁଃ ପ୍ରିୟଂ ଦ୍ରୌଣିରିତି ସ୍ମପଶ୍ୟନ୍
କୃଷ୍ଣାସୁତାନାଂ ସ୍ୱପତାଂ ଶିରାଂସି ।

ଉପାହରଦ୍ ବିପ୍ରିୟମେବ ତସ୍ୟ
କୁଗୁପ୍ସିତଂ କର୍ମ ବିଗର୍ହୟନ୍ତି” ।

(ଶ୍ରୀମଦ୍ଭାଗବତ-୧ ।୭ ।୧୩-୧୪)

ଅନୁବାଦ -

| | | |
|---|---|---|
| “ଭୀମସେନର ଗଦା ବାଜି | । ଦୁର୍ଯ୍ୟୋଧନର ଗଦା ଭାଜି | ।। |
| ପଳାଇଗଲା ପ୍ରାଣ ଡରେ | । ଲୁଚିଲା ବ୍ୟାସସରୋବରେ | ।। |
| ଏମନ୍ତେ ହୋଇଲା ରଜନୀ | । ଛଳେ ଭାଳଇ ଭୟ ଘେନି | ।। |
| କାନ୍ଦଇ ଜୀବନବିକଳେ | । ଦ୍ରୋଣନନ୍ଦନ ଦେଖି କୂଳେ | ।। |
| ବୋଲଇ ରାଜା ମୁଖ ଚାହିଁ | । ମୋତେ ଯେ ନ ବରିଲୁ ତୁହି | ।। |
| ଯୁଦ୍ଧେ ସକଳବୀରେ ମାରି | । ଏ ଭୂମି ଅପାଣ୍ଡବା କରି | ।। |
| ତୋତେ ବସାନ୍ତି ରାଜକୁଳେ | । ଅଖଣ୍ଡ-ଅବନୀ-ମଣ୍ଡଳେ | ।। |
| ଶୁଣି ବୋଲଇ ନୃପବର | । ଏବେ ହୋ ଅପାଣ୍ଡବା କର | ।। |
| ଏବେ ବରିଲି ସେନାପତି | । ଫେଡ଼ ତୁ ମୋହର ଦୁର୍ଗତି | ।। |
| ଏମନ୍ତ କହି ଅନ୍ଧବଳା | । ତାହାର ହସ୍ତେ ଜଳ ଦେଲା” | ।। |

ସପ୍ତମ ଅଧ୍ୟାୟର ୪୧-୫୫ ପଦ ପର୍ଯ୍ୟନ୍ତ ଜଗନ୍ନାଥ ଦାସଙ୍କର ସ୍ୱକୀୟ କଳ୍ପନା ଏବଂ ପ୍ରସଙ୍ଗ ଦୃଷ୍ଟିରୁ ଏହାର ଆବଶ୍ୟକତା ସମୀଚୀନ ବୋଲି ମନେହୁଏ । ଏ ସ୍ଥଳରେ ଅତିବଡ଼ୀ ଗୋସାଇଁ କବି ପ୍ରତିଭାର ଯେଉଁ ପରିଚୟ ଦେଇଛନ୍ତି, ତାହା ସାରଳା ଦାସଙ୍କ ମହାଭାରତର କାଇଁଶିକା ପର୍ବରେ ବର୍ଣ୍ଣିତ ପ୍ରସଙ୍ଗ ସହିତ ସାମଞ୍ଜସ୍ୟ ରକ୍ଷାକରେ ।

ଏହି ଦୃଷ୍ଟିକୋଣରୁ ବିଚାର କଲେ, ଜଗନ୍ନାଥ ଦାସ ସ୍ୱରଚିତ ଭାଗବତର ଅନେକ ସ୍ଥଳରେ ବିଷୟବସ୍ତୁର ସୂକ୍ଷ୍ମ ପରିବର୍ତ୍ତନ, ଭାବ ସଂପ୍ରସାରଣ, ଭାବ ସଂକ୍ଷେପଣ ଓ ଭାବ ପରିସ୍ଫୁଟନ କରି ସ୍ୱକୀୟ ରଚନାକୁ ଋଦ୍ଧିମନ୍ତ କରିଛନ୍ତି ।

ଜଗନ୍ନାଥ ଦାସ ମୁଖ୍ୟତଃ ଅନୁବାଦ କ୍ଷେତ୍ରରେ ଶ୍ରୀମଦ୍ଭାଗବତର ମୂଳ ଶ୍ଳୋକ ଅପେକ୍ଷା ଶ୍ରୀଧର ସ୍ୱାମୀଙ୍କ ‘ଭାବାର୍ଥଦୀପିକା’ ଟୀକାକୁ ଅନୁସରଣ କରିଛନ୍ତି । ସେହିପରି ଭାଗବତର ଦ୍ୱିତୀୟ ସ୍କନ୍ଧର ଅନୁବାଦ କ୍ଷେତ୍ରରେ ଦାସ ଗୋସାଇଁ କଠିନ ଦାର୍ଶନିକତତ୍ତ୍ୱକୁ ବ୍ୟାଖ୍ୟା କରିବା ସମୟରେ ମୌଳିକ ଭାବଧାରାକୁ ଅକ୍ଷୁଣ୍ଣ ରଖି ସ୍ୱକୀୟ ପଦରଚନା ମାଧ୍ୟମରେ ବିଷୟବସ୍ତୁକୁ ପ୍ରାଞ୍ଜଳ ତଥା ସର୍ବଜନବୋଧ କରିଛନ୍ତି । ଏହାର ସୂଚନା ପାଦଟୀକାରେ ସନ୍ନିବେଶିତ ହୋଇଛି ।

ଜଗନ୍ନାଥ ଦାସଙ୍କ ଭାଗବତ ବିଭିନ୍ନ ଅଞ୍ଚଳର ଲିପିକାରଙ୍କ ଦ୍ୱାରା ବିକୃତ ରୂପ ଧାରଣ କରିଛି । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ଯେଉଁ ପୋଥିଗୁଡ଼ିକ ଆମେ ଶୁଦ୍ଧ ସଂସ୍କରଣରେ ଗ୍ରହଣ କରିଛୁ, ସେଥିରେ ଥିବା ପାଠଭେଦରୁ ଏହାର ପ୍ରମାଣ ସୁସ୍ପଷ୍ଟ ହେଉଛି । ବିଜ୍ଞ ପାଠକ ପାଠିକା ତଥା ଗବେଷଣାରତ ବିଦ୍ୱାନ୍‌ମାନଙ୍କ ଅବଗତି ନିମିତ୍ତ ଶୁଦ୍ଧ ସଙ୍କଳନର ପାଦଟୀକାରେ ପ୍ରତ୍ୟେକ ପୋଥିର ପାଠଭେଦ ଦିଆଯାଇ ସମୀଚୀନ ପଦକୁ ମୂଳରେ ଗ୍ରହଣ କରାଯାଇଛି । ଯାହା କୌଣସି ପାଠରେ ନାହିଁ, ସେପରି ଗୋଟିଏହେଲେ ପଦ ଶୁଦ୍ଧ ସଂସ୍କରଣରେ ଗ୍ରହଣ କରାଯାଇନାହିଁ ।

## ଭାଗବତର ଭାଷା -

ଭାଷା ସଂଯୋଜନ କ୍ଷେତ୍ରରେ ଜଗନ୍ନାଥ ଦାସ ଥିଲେ ଜଣେ ଅଲୌକିକ ଶିଳ୍ପୀ । ତାଙ୍କ ଲେଖନୀ ମୂନରୁ ଯେଉଁ ସରଳ ତଥା ସାବଲୀଳ ଭାଷା ନିଃସୃତ ହୋଇଛି, ତାହା ଓଡ଼ିଶାର ଜନସାଧାରଣଙ୍କ ଭାଷା । ଏହି ଭାଷାକୁ ବିଲର ଚଷାଠାରୁ ଆରମ୍ଭକରି ରାଜ ଅନ୍ତଃପୁରର ‘ଅସୂର୍ଯ୍ୟଂପଶ୍ୟା’ ଯୋଷା ପର୍ଯ୍ୟନ୍ତ ସମସ୍ତେ ହୃଦୟଙ୍ଗମ କରିପାରନ୍ତି । ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ ଭାଷା ବିକୃତ ହୋଇଯିବାର ଅନେକ ସମ୍ଭାବନା ଥିଲା । ସେ ସମୟକୁ ଆମ ଭାଷା ଉପରେ ସଂସ୍କୃତ ଭାଷାର ଅଖଣ୍ଡ ପ୍ରଭାବ ପଡ଼ିସାରିଥିଲା । ଧୀରେ ଧୀରେ ଯାବନିକ ଶବ୍ଦ ମଧ୍ୟ ଆମ ଭାଷାର ମୌଳିକତାକୁ କ୍ଷୁଣ୍ଣ କରୁଥିଲା । ସେପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଦାସ ଗୋସାଇଁ ଭାଷା ବ୍ୟବହାର କ୍ଷେତ୍ରରେ ଯେଉଁ ଅଭିନବ ପ୍ରୟାସ କରିଛନ୍ତି, ତାର ପଟାନ୍ତର ନାହିଁ । ଜଗନ୍ନାଥ ଦାସ ଗୋସାଇଁଙ୍କ ଭାଷା କବି, ଲେଖକ, ପୁରାଣକାର ତଥା ଅନ୍ୟ ସମସ୍ତ ପ୍ରକାର ରଚନାକୁ ସମୃଦ୍ଧ କରିଛି । ଆଜି ଓଡ଼ିଆ ଭାଷା ଓ ସାହିତ୍ୟ ଯଦି ଋଦ୍ଧିମନ୍ତ ହୋଇଥାଏ; ତାହା ଜଗନ୍ନାଥ ଦାସଙ୍କ ପ୍ରଚେଷ୍ଟାରେ ଫଳ ବୋଲି ନିଃସଙ୍କୋଚରେ କୁହାଯାଇପାରେ ।

ସାରଳା ଦାସଙ୍କ ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ ତଥା ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ବା ଜଗମୋହନ ରାମାୟଣ ଆଦି ପୁସ୍ତକରେ ଯେଉଁ ଭାଷାର ସୂତ୍ରପାତ ହୋଇଛି, ତାହା ଯଦି ଅବ୍ୟାହତ ରହିଥା’ନ୍ତା, ତେବେ ଓଡ଼ିଶାରେ ସମ୍ବଲପୁରୀ ‘ବିଭାଷା’ ପରି ଆଉଗୋଟିଏ ଉପଭାଷା ଉପକୂଳବର୍ତ୍ତୀ ଅଞ୍ଚଳରେ ସୃଷ୍ଟି ହୋଇଥାନ୍ତା । କିନ୍ତୁ ଠିକ୍ ସମୟରେ ଦାସ ଗୋସାଇଁ ଗୋଟିଏ ସର୍ବଜନଗ୍ରାହ୍ୟ ‘ଷ୍ଟାଣ୍ଡାର୍ଡ’ ଭାଷା ଗଠନ କରିବାର ପ୍ରୟାସକୁ ଭାଗବତ ମାଧ୍ୟମରେ ଚରିତାର୍ଥ କରିଛନ୍ତି ।


Dr. Sudhanshu Sekhar Mishra

ଜଗନ୍ନାଥ ଦାସ ଜଣେ ପ୍ରସିଦ୍ଧ ସଂସ୍କୃତଜ୍ଞ ହୋଇଥିଲେ ହେଁ; ସେ ପରବର୍ତ୍ତୀ କାଳର ଭାଗବତ ଅନୁବାଦକ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ପରି ଅପ୍ରଚଳିତ ସଂସ୍କୃତ ଶବ୍ଦଦ୍ୱାରା ନିଜ ଅନୁବାଦକୁ ଭାରାକ୍ରାନ୍ତ କରିନାହାନ୍ତି । ଅବଶ୍ୟ ସ୍ଥଳବିଶେଷରେ ପଦର ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଯାଇ ସେ ପିବ, ଜୀବତି, ବିନିନ୍ଦତି ପ୍ରଭୃତି ସଂସ୍କୃତ କ୍ରିୟାପଦ ବ୍ୟବହାର କରିବା ସଙ୍ଗେ ସଙ୍ଗେ ଉର୍ଣ୍ଣନାଭ, ବିତସ୍ତି, ମେଢ୍ର, ଦୁରଧିଗମ୍ୟ, ଅଧାତୃମନ୍ତ, ଖେଟଖର୍ବଟ, ତ୍ରିବୃତବ୍ରହ୍ମ ଓ ଅର୍ଯ୍ୟମଣ ପ୍ରଭୃତି କଠିନ ଶବ୍ଦର ବ୍ୟବହାର କରିଛନ୍ତି । ତଦ୍‌ବ୍ୟତୀତ ଦର୍ଶନଶାସ୍ତ୍ରର କେତେକ ବୈଷୟିକ ଶବ୍ଦ ବ୍ୟବହାର କରିବାକୁ ସେ ବାଧ୍ୟ ହୋଇଛନ୍ତି । ଅନ୍ୟଥା ସେହି ସେହି ସ୍ଥଳର ଭାବ ପରିସ୍ଫୁଟ ହୋଇ ନଥା'ନ୍ତା ।

ଆହୁରି ମଧ୍ୟ ଜଣାଯାଏ ଯେ, ଜଗନ୍ନାଥ ଦାସ ଦେଶଜ ଶବ୍ଦକୁ ଆଦୌ ପରିହାର କରିନାହାନ୍ତି । ଯେଉଁ ସ୍ଥଳରେ ଦେଶଜ ଶବ୍ଦ ପଦ ଗଠନର ଶୋଭା ବିଧାୟକ ହୋଇଛି, ଅଥବା ଅର୍ଥ ଅଭିବ୍ୟକ୍ତିରେ ଅନୁକୂଳ ହୋଇଛି-ତାହାକୁ ସେ ସାଦରେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ ଏଠାରେ କେତୋଟି ଶବ୍ଦର ଉଲ୍ଲେଖ କରାଯାଇପାରେ ।

"ଛନ୍ତି, ଭିଆଇ, ଫେଇ, ସର୍ଜିଲେ, ଉତୁରି, ଉବୁରି, ହେରି, ଉଛୁଣି, ଚିଆଁଇ, ଅପୁଆ, ଗଡ଼ଘାଲି, ଆକଟ, ଖାକଂର, ବଗଡ଼ା, ମହାଖୁଡ଼, ନିଉଛାଳି, ଉଭାରି ଇତ୍ୟାଦି ।"

ଜଗନ୍ନାଥ ଦାସ ବାକ୍ୟ ଗଠନରେ ଅସମାପିକା କ୍ରିୟାକୁ ସମାପିକା କ୍ରିୟା ରୂପେ ସମୁଦାୟ ଭାଗବତରେ ବ୍ୟବହାର କରିଥିବାର ପରିଲକ୍ଷିତ ହୁଏ । ଖୁବ୍ ସମ୍ଭବତଃ ନବାକ୍ଷର ଛନ୍ଦର ବନ୍ଧନରେ ପଡ଼ି ସେ ଏ'ପ୍ରକାର ପ୍ରୟୋଗକୁ ଆଦରି ନେଇଛନ୍ତି ।

## ନୃତ୍ୟ ଭାଗବତ -

ଓଡ଼ିଆରେ ଲୀଳାମୃତ ଭାଗବତ, ଗୌରାଙ୍ଗ ଭାଗବତ, ବାଲିଗାଁ ଦାସିଆ ଭାଗବତ ଓ ନୃତ୍ୟ ଭାଗବତ ଶୀର୍ଷକ କେତେଖଣ୍ଡି ଭାଗବତ-ସଂଜ୍ଞାମୂଳକ ପୁସ୍ତକ ଥିବାର ଦେଖିବାକୁ ମିଳେ । ତନ୍ମଧ୍ୟରେ 'ନୃତ୍ୟଭାଗବତ' ବ୍ୟତୀତ ଅନ୍ୟଗୁଡ଼ିକ କେବଳ ନାମତଃ ଭାଗବତ ମାତ୍ର ।

ଓଡ଼ିଆରେ ରାମାୟଣ ଗ୍ରନ୍ଥର ପ୍ରଚାର ପରେ ତାହାକୁ ଆହୁରି ଲୋକପ୍ରିୟ କରାଇବା ପାଇଁ ପରବର୍ତ୍ତୀ କାଳର କବିମାନେ ବିଚିତ୍ର ରାମାୟଣ, ରାମଲୀଳା ଓ ନୃତ୍ୟ ରାମାୟଣ ନାମରେ କେତେଖଣ୍ଡି ପୁସ୍ତକ ରଚନା କରିଥିଲେ । ସେଥିରେ ଓଡ଼ିଶାରେ ପ୍ରଚଳିତ ରାଗ-ରାଗିଣୀର ସମନ୍ୱିତ କରି ସୁଗେୟ କରିବା ପାଇଁ ଚେଷ୍ଟା କରାଯାଇଥିଲା । ସେହିପରି ମହାଭାରତର ବିଷୟବସ୍ତୁକୁ ବିଭିନ୍ନ ରାଗ-ରାଗିଣୀରେ ସମନ୍ୱିତ କରି କବିମାନେ ବିଚିତ୍ର ଭାରତ, ଭାରତ ରାସର୍ଣ୍ଣବ ଛାନ୍ଦ, ପ୍ରମୋଦଚନ୍ଦ୍ର ମଣି ଆଦି ନାମରେ କେତେଖଣ୍ଡି ପୁସ୍ତକ ଲେଖିଛନ୍ତି । ଠିକ୍ ସେହିପରି ଭାଗବତକୁ ଛନ୍ଦୋବଦ୍ଧ କରି ସୁଗେୟ କରିବା ଉଦ୍ଦେଶ୍ୟରେ 'ନୃତ୍ୟ ଭାଗବତ' ବା 'ବିଚିତ୍ର ଭାଗବତ' ଶୀର୍ଷକ ଖଣ୍ଡିଏ ପୋଥି ଦେଖିବାକୁ ମିଳେ । ଏହି ପୋଥିର କେବଳ ଅଷ୍ଟମ ଓ ନବମ ସ୍କନ୍ଧର ପାଠ, ପଶ୍ଚିମବଙ୍ଗର ଶାନ୍ତିନିକେତନସ୍ଥିତ ବିଶ୍ୱଭାରତୀର ଓଡ଼ିଆ ବିଭାଗରେ ସଂରକ୍ଷିତ ହୋଇଛି । ଏହି 'ନୃତ୍ୟ ଭାଗବତ'ର ପ୍ରଣେତା ହେଉଛନ୍ତି ଗୋପୀବଲ୍ଲଭ ଦାସ । ଖୁବ୍ ସମ୍ଭବତଃ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି ଗୋପୀବଲ୍ଲଭ ନୃତ୍ୟ ରାମାୟଣ ଓ ବିଚିତ୍ର ଭାରତ ଆଦି ପୁସ୍ତକର ଅନୁକରଣରେ 'ନୃତ୍ୟଭାଗବତ' ପୁସ୍ତକଟିକୁ ଲେଖିଛନ୍ତି । ସେହି ପୁସ୍ତକରେ ଉଭୟ ବିପ୍ର ଜଗନ୍ନାଥ ଓ ଗୋପୀବଲ୍ଲଭଙ୍କ ନାମ ଭଣିତାରେ ରହିଛି -

"ବୋଲେ ବିପ୍ର ଜଗନ୍ନାଥ ଯେ
ଅଷ୍ଟମସ୍କନ୍ଧେ ଏ ପଞ୍ଚଦଶ ଅଧ୍ୟା ଅଦିତିଙ୍କ ପୟୋବ୍ରତ ଯେ ।
ଭାବିଣ ଗୋପୀବଲ୍ଲଭ ଯେ
ବିଚିତ୍ର ଭାଗବତରେ ଧାୟେ କରେ ଚକ୍ରଧର ବାସୁଦେବ ଯେ ।।

* * *

ଯେବା ଜଗନ୍ନାଥ ବଂଶାନୁଚରିତ ସୁଜନଜନେ ଏହା ଶୁଣି ।
ଏ ଭବୁ ତରିବ ଯାହା ବ୍ରହ୍ମାଶିବ ଭକ୍ତି ହୃଦୟେ ପରିମାଣି ।।
ହରି ଚରଣେ ମନ ଏ ଧର ।
ସେ ହରିଚରିତ ଶୁଣହେ ନରେଶ ମୁହିଁ ଚରଣେ ତୁମ୍ଭର କିଙ୍କର
ଚତୁର୍ଦ୍ଦଶ ଅଧ୍ୟା ଏ ନବମସ୍କନ୍ଧ ଶୁଣି ପାପକ୍ଷୟ କରି ହେ ।
ଗୋପୀବଲ୍ଲଭ ବୁଦ୍ଧି ଅତି ଅସ୍ଥିର ସେ ପଦ୍ମଚରଣ ଭରସା ।
ଭବସିନ୍ଧୁ ତରିବା ମନେ ଏ ଆଶା ।
ସତେ ଶତପତ୍ର-ନେତ୍ର ଏ ଅଘୀର ନାସିବେ ଦୁର୍ଦ୍ଦଶାହେ ।।
ଏ ଯେ ହେଲା ନୃତ୍ୟ ଭାଗବତ
ନବମସ୍କନ୍ଧ ପୂର୍ଣ୍ଣ ଛାନ୍ଦ ସପ୍ ହେ" ।।



Dr. Sudhanshu Sekhar Mishra

ଏହା ବ୍ୟତୀତ କେବଳ ଭାଗବତର ଦଶମ ସ୍କନ୍ଧ-ଗୋପଲୀଳା ପ୍ରକରଣର ଅବଲମ୍ବନରେ 'ବ୍ରଜବିହାର' ଶୀର୍ଷକ ଖଣ୍ଡିଏ କାବ୍ୟପୁସ୍ତକ ଲେଖାଯାଇଛି । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଓ ତୃତୀୟ ଦଶକର କବି ଦାଶରଥି ଦାସ ଦଶଟି ବୋଲିରେ ଭାଗବତର ଗୋପଲୀଳାକୁ ପରିବେଷଣ କରି ଜଗନ୍ନାଥ ଦାସଙ୍କର ଅକ୍ଷରମାଳିକା କାର୍ତ୍ତିକୁ ସୁସମୃଦ୍ଧ କରିଛନ୍ତି । ଏ' ପ୍ରକାର ପ୍ରୟାସ ଓଡ଼ିଶାର ଅନେକ କବି କରିଥିବାର ଦେଖାଯାଏ ।

କେବଳ ଛାନ୍ଦମାଧ୍ୟରେ ନୁହେଁ, ଲଳିତ କଳା ମାଧ୍ୟମରେ ଭାଗବତର କଥାବସ୍ତୁକୁ ପରିପ୍ରକାଶ କରାଯାଇଛି । ଭାଗବତର ଘଟଣାବଳୀକୁ ଚିତ୍ରଶିଳ୍ପୀମାନେ ତୂଳିକାଗ୍ରରେ ପ୍ରକାଶ କରିବା ପାଇଁ ତାଳପତ୍ର, ହାତ ତିଆରି କାଗଜ ଓ ପୋଥିପଟାକୁ ପ୍ରକାଶର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗରେ ଏପରି ଭାଗବତ ଚିତ୍ରାବଳୀ ବହୁ ସଂଖ୍ୟାରେ ସଂରକ୍ଷିତ ହୋଇଛି । ଶ୍ରୀଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ପ୍ରଚାର ପରେ ଓଡ଼ିଶାର ଜନସାଧାରଣଙ୍କ ମନରେ ଭାଗବତ ପ୍ରତି ଯେଉଁ ଶ୍ରଦ୍ଧା ଜାତ ହୋଇଥିଲା, ଏହା ତା'ରି ପରିପ୍ରକାଶ ବୋଲି କହିଲେ ଅସମୀଚୀନ ହେବନାହିଁ ।

### ଭାଗବତଘର, ଗାଦି, ମେଳଣ ଓ ସପ୍ତା -

ଓଡ଼ିଶାରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜାନୁଗ୍ରହ ଲାଭ କରି ସଂସ୍କୃତ ଭାଷାର ପ୍ରୟୋଗ ସ୍ୱଚ୍ଛନ୍ଦରେ ଚାଲିଥିଲା । କିନ୍ତୁ ଗଙ୍ଗବଂଶର ରାଜାମାନଙ୍କ ଅମଳରୁ ଜନସାଧାରଣଙ୍କ ଅସୁବିଧାକୁ ହୃଦୟଙ୍ଗମ କରି, ଗଙ୍ଗନରପତିମାନେ ଓଡ଼ିଆ ଭାଷାର ପ୍ରଚଳନ ଆରମ୍ଭ କରାଇଥିଲେ । ଗଙ୍ଗରାଜତ୍ୱ କାଳରେ ଗୁଣି ଗାରେଡ଼ି ପ୍ରଭୃତି ଆଭିଚାରିକ ତନ୍ତ୍ର, ଶିଶୁବେଦ ପ୍ରଭୃତି ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓଡ଼ିଆରେ ରଚିତ ହେବା ସଙ୍ଗେ ସଙ୍ଗେ ଗଙ୍ଗନରପତିମାନେ କେତୋଟି ଦାନପତ୍ର ଓଡ଼ିଆରେ ଲେଖାଇଥିଲେ । ଓଡ଼ିଶାରେ ସୂର୍ଯ୍ୟବଂଶର ରାଜତ୍ୱ ଆରମ୍ଭ ହେବାମାତ୍ରେ କପିଳେନ୍ଦ୍ରଦେବ ଓଡ଼ିଆ ଭାଷା ଓ ସାହିତ୍ୟର ପୃଷ୍ଠପୋଷକତା କରିଥିଲେ । କପିଳେନ୍ଦ୍ରଦେବଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମଦେବ ଓ ପୌତ୍ର ପ୍ରତାପରୁଦ୍ରଦେବ ଓଡ଼ିଆ କବିକୋବିଦମାନଙ୍କ ପୃଷ୍ଠପୋଷକତା କରି ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଭାଷା ପ୍ରୟୋଗ କ୍ଷେତ୍ରରେ ଶାସକଙ୍କ ମତିଗତି ଲକ୍ଷ୍ୟକରି ଶାରଳା ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ ଓ ଜଗନ୍ନାଥ ଦାସ ପ୍ରଭୃତି କବିମାନେ ସଂସ୍କୃତ ସାହିତ୍ୟର ବିଶିଷ୍ଟ ଗ୍ରନ୍ଥ-ମହାଭାରତ, ଆର୍ଷରାମାୟଣ, ହରିବଂଶ ଓ ଭାଗବତକୁ ଓଡ଼ିଆରେ ଲେଖି ଜନସାଧାରଣଙ୍କ ପ୍ରିୟପାତ୍ର ହୋଇଥିଲେ । ତଦ୍‌ବ୍ୟତୀତ ଯଶୋବନ୍ତ ଦାସ, ଅନନ୍ତ ଦାସ ପ୍ରଭୃତି କବିମାନେ ଭବିଷ୍ୟମାଳିକା ଓ ସଂହିତ ପ୍ରଭୃତି ଗ୍ରନ୍ଥ ଲେଖି ଓଡ଼ିଶାରେ ପ୍ରଚାର କରାଇଥିଲେ । ତନ୍ମଧ୍ୟରେ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଥିଲା । ଓଡ଼ିଶାର ବଡ଼ଠାକୁର ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରୁ ଆରମ୍ଭ କରି ସମଗ୍ର ଓଡ଼ିଶାର ମଠ, ମନ୍ଦିର ଓ ଭାଗବତ ଟୁଙ୍ଗୀମାନଙ୍କରେ 'ଭାଗବତ ପାଠ ଏକ ଧର୍ମକାର୍ଯ୍ୟ ରୂପେ ପରିଗଣିତ ହୋଇଥିଲା । ପ୍ରତି ଗ୍ରାମରେ ଭାଗବତ ଟୁଙ୍ଗୀ' ଓ 'ଗାଦି' ରହିବା ସଙ୍ଗେ ସଙ୍ଗେ 'ଭାଗବତ ସପ୍ତା' 'ହରିହାଟ' ଓ 'ଭାଗବତ ମେଳଣ' ପ୍ରଭୃତିର ପ୍ରଚଳନ ଲୋକପ୍ରିୟ ହୋଇଉଠିଲା । ଲୋକମାନେ ଭାଗବତ ପୋଥି ନକଲ କରିବାକୁ ଏକ ଧର୍ମକାର୍ଯ୍ୟ ବୋଲି ମନେ କରୁଥିଲେ । ତା'ରି ଫଳରେ ଘରେ ଘରେ 'ଭାଗବତ ଗାଦି' ଗଢ଼ିଉଠିଲା । ଗ୍ରାମର 'ଭାଗବତ ଟୁଙ୍ଗୀ'ଗୁଡ଼ିକ ସମାଜର ପ୍ରାଣକେନ୍ଦ୍ର ରୂପେ ଲୋକପ୍ରିୟତା ଅର୍ଜନ କଲା । ଅକ୍ଷରଜ୍ଞାନ ହେବାମାତ୍ରେ 'ପିଲାକୁ ଟୀକାଭାଗବତ' 'ରାସକ୍ରୀଡ଼ା' ଓ ପରବର୍ତ୍ତୀ ପର୍ଯ୍ୟାୟରେ ଭାଗବତ ପଢ଼ାଇବା ଏକପ୍ରକାର ବାଧ୍ୟତାମୂଳକ ହୋଇଥିଲା । ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଭାଷାରେ କହିବାକୁ ଗଲେ-'ଏକଦା ଭାଗବତ ଟୁଙ୍ଗି ହୋଇ ଉଠିଥିଲା ଏକାଧାରରେ ସଙ୍କୀର୍ତ୍ତନ, ସଙ୍ଗୀତ ଶିକ୍ଷା ଗୃହ, ଦୈହିକ ଓ ମାନସିକ ଶକ୍ତି ଅର୍ଜନର ଏକ ସମନ୍ୱୟ କ୍ଷେତ୍ର ।" ଆଜିମଧ୍ୟ ଓଡ଼ିଶାର ଏପରି କୌଣସି ଓଡ଼ିଆ ଘର ନାହିଁ, ଯେଉଁଘରୁ ଖଣ୍ଡିଏ ଦୁଇଖଣ୍ଡି ଭାଗବତ ପୋଥି ମିଳିବ ନାହିଁ । ଏବେବି ଗ୍ରାମାଞ୍ଚଳର ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ କଥାକଥାରେ ଭାଗବତର ସଦୁକ୍ତି ଉଦ୍ଧାର କରି ନିଜଉକ୍ତିର ସାର୍ଥକତା ପ୍ରତିପାଦନ କରୁଛନ୍ତି । 'ବାରସ୍କନ୍ଧ' ଭାଗବତରେ ଉଦାହରଣୀୟ ଶହଶହ ସଦୁକ୍ତି ଆଜିମଧ୍ୟ ଆମ ଭାବପ୍ରକାଶର ସହାୟକ ହୋଇ ରହିଛନ୍ତି । ଏହି ସଦୁକ୍ତିଗୁଡ଼ିକ ମଧ୍ୟରୁ କେତୋଟି ଅତ୍ୟନ୍ତ ଉପାଦେୟ ପଦ ଏଠାରେ ଉଲ୍ଲେଖ କରାଗଲା-

..."ଅମୃତ ବିନୟ ବଚନ । କହି ତୋଷିବ ପ୍ରାଣୀମନ ।।

*  *  *

ମଧୁର ସୁରୁଚି ବଚନ । ଶୁଣି ହରଷ ସର୍ବଜନ ।।
ଧନ ଅର୍ଜିବ ଧର୍ମକରି । ଧର୍ମେ ପ୍ରାପତ ନରହରି ।।
....ସତ୍ୟ, ଅହିଂସା, ଦୟା, କ୍ଷମା-ଏ ଚାରି ବିଷ୍ଣୁଙ୍କ ମହିମା ।।

*  *  *

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହେଲେ ହେଁ ମରଇ ।।

*  *  *

ଅଳପ ବହୁତ ସନ୍ତୋଷ । ନମିଳେ କରେ ଉପବାସ ।।
କର୍ମ କଷଣେ ଦେହ ବହେ । ଅରଣ୍ୟେ ଅଜଗର ପ୍ରାୟେ ।।

*          *          *

ଆତ୍ମ ପ୍ରଶଂସା ଆଦି ମୁଖେ । ଯେ ପ୍ରାଣୀ କହୁଥାନ୍ତି ସୁଖେ ।।
ପଶ ନରହେ ତିନିଲୋକେ । ମରଣେ ପଡ଼ନ୍ତି ନରକେ ।।

*          *          *

ନିର୍ଦ୍ଦୋଷ ପ୍ରାଣୀଙ୍କି ଯେ ହିଂସେ । ସେ ଅପରାଧେ ଆତ୍ମା ନାଶେ ।।

*          *          *

ପ୍ରାଣୀଙ୍କୁ ହିଂସା ନ କରିବ । କ୍ରୋଧରେ ଶାପକୁ ନ ଦେବ ।।

*          *          *

ପ୍ରାଣୀଙ୍କି ନ କରିବ ଭିନ୍ନ । ଦେଖିବ ସକଳ ସମାନ ।।

*          *          *

ପ୍ରାଣୀ ଜୀବନ ରକ୍ଷା କଲେ । ଆପଣେ ରକ୍ଷା ହୋଇ ଭଲେ ।।

*          *          *

ସତ୍ୟ କହିବ ନିତ୍ୟେ ତୁଣ୍ଡେ । କେବେ ହେଁ ନ ଥିବ ପାଷଣ୍ଡେ ।।

*          *          *

ବୁଦ୍ଧି ବିବେକ ଜ୍ଞାନ ବଳେ । ମରଣ ଜିଣିପାର ହେଲେ ।।

*          *          *

କର୍ମର ଫଳ ଏ ଜଗତ । କର୍ମ ସରିଲେ ହୁଏ ହତ ।।
ସ୍ଥାବରୁ ଜୀବଲୋକ ଯାଏଁ । କର୍ମ ସରିଲେ ହୋନ୍ତି କ୍ଷୟେ ।।
ସମଦରଶୀ ଯାର ଚିତ୍ତ । ନାହିଁ ତାହାର ରିପୁ ମିତ୍ର ।।

*          *          *

ଅଧର୍ମ ମାର୍ଗେ ମୂଢ଼ ପ୍ରାଣୀ । ଧନ ସଞ୍ଚଇ ଗୃହେଆଣି ।।
ପୁତ୍ର କଳତ୍ର ବନ୍ଧୁ ଭାଇ । ସଞ୍ଚିଲା ଧନ ତାର ଖାଇ ।।
ଯେଝାର ପଥେ ଯାନ୍ତି ବେଗେ । ଦୁଷ୍କୃତ ରହେ ତା'ର ଅଙ୍ଗେ" ।। ଇତ୍ୟାଦି

ଏଥିରୁ ପ୍ରମାଣିତ ହୁଏ ଯେ ଭକ୍ତପ୍ରବର ତଥା ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ଆମ ସାମାଜିକ, ସାଂସ୍କୃତିକ ତଥା ପାରିବାରିକ ଜୀବନରେ ଅଖଣ୍ଡ ପ୍ରବାହ ରୂପେ ଶହଶହ ବର୍ଷଧରି ଆମ ଜାତୀୟ ଜୀବନକୁ ପରିଚାଳିତ ଓ ମହିମାନ୍ୱିତ କରିଆସୁଛି ।

## ପଞ୍ଚସଖା ଓ ଜଗନ୍ନାଥ ଦାସ –

କେହି କେହି ଆଲୋଚକ ଅତିବଡ଼ୀ ଜଗନ୍ନାଥ ଦାସଙ୍କୁ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ସଖାରୂପେ ଗ୍ରହଣ କରିବାକୁ କୁଣ୍ଠାବୋଧ କରନ୍ତି । କିନ୍ତୁ ଯଶୋବନ୍ତ ଦାସଙ୍କ ଚଉରାଶୀ ଆଜ୍ଞା, ଅଚ୍ୟୁତାନନ୍ଦଙ୍କ ଗୋପାଳ ଓଗାଳ, ଶୂନ୍ୟସଂହିତା, ଜଗନ୍ନାଥ ଦାସଙ୍କ ପାଦପଦ୍ମ ସୁଧାନିଧି ଆଦି ଗ୍ରନ୍ଥରେ ଜଗନ୍ନାଥ ଦାସ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ସଖାରୂପେ ସର୍ବଜନାଦୃତ ହୋଇଥିବାର ପରିଲକ୍ଷିତ ହୁଏ ।

ବଳରାମ ଦାସ ପ୍ରଭୃତି ପଞ୍ଚସଖା ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ସ୍ୱନାମଧନ୍ୟ ହୋଇ ଉଠିଥିଲେ । ସେମାନଙ୍କୁ ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ସଖାରୂପେ ଅଭିହିତ କରାଯାଇଛି–

"ଦ୍ୱାପରେ ସୁବାହୁ ସୁବଳ । ଶ୍ରୀବସ୍ତ ନାମେଣ ଗୋପାଳ ।।
ଦାମ ସୁଦାମ ଆଦିକରି । ଏ ପଞ୍ଚ ଗୋପାଳ ଯେ ସରି ।।
ପ୍ରଭୁଙ୍କ ସଙ୍ଗେ ଜନ୍ମହେଲେ । ପଞ୍ଚସଖା ନାମ ବହିଲେ ।।
ପାଞ୍ଚହେଁ କୃଷ୍ଣ ମନୁଜାତ । ଭକତ ଶ୍ରେଷ୍ଠଙ୍କ ମହତ ।।

*          *          *

ଅଚ୍ୟୁତ ଦାସ ସଖାଟି ଅଟଇ । ସୁଦାମ ସଖା ଜଗନ୍ନାଥ ହୋଇ ।।
ସୁବଳ ସଖା ବଳରାମ ହୋଇ । ସୁବାହୁ ସଖା ଯଶୋବନ୍ତ ହୋଇ ।।
ଶ୍ରୀବସ୍ତ ସଖା ଅନନ୍ତକୁ ଜାଣ । ଏକଥା ପ୍ରତ୍ୟକ୍ଷ କର ହେତୁଗଣ ।।

*          *          *

ଏ ପଞ୍ଚସଖା ନାମଯାହା । କହିବା ଶୁଣ ରଘୁନାହା ।।
ଜଗନ୍ନାଥ ଯେ ବଳରାମ । ଶିଶୁ ଯଶୋବନ୍ତ ବୋଲିଣ ।।



Dr. Sudhanshu Sekhar Mishra

ଅଚ୍ୟୁତାନନ୍ଦ-ପାଞ୍ଚ ହୋଇ । ଏ ପାଞ୍ଚନାମ ଦେଲି କହି ।।

* * *

ଏମନ୍ତେ କିଛିଦିନ ତହିଁ ରହିଲି

ସାଧୁଙ୍କ ମେଳରେ ବସି ।।

ଅନନ୍ତ ଯେ ଯଶୋବନ୍ତ ବଳରାମ

ଶ୍ରୀବସ ମିଳିଲେ ଆସି ।।

ଜଗନ୍ନାଥ ଦାସ ଘେନି ପଞ୍ଚସଖା

ଉଦୟ ହୋଇଲେ ତହିଁ ।।

ଘରେ ଘରେ ହରିଧ୍ୱନି ଉଛୁଳିଲା

ଚଇତନ୍ୟ ଆଜ୍ଞା ପାଇ" ।।

(ଅତିବଡ଼ୀ ଜଗନ୍ନାଥ ପରିକ୍ରମା-ପଣ୍ଡିତ

କୁରାମଣିପାଠୀଙ୍କ ପ୍ରବନ୍ଧ ପୃ-୮୫)

ଜଗନ୍ନାଥ ଦାସ ଆଦି ପଞ୍ଚସଖାଙ୍କ ସମ୍ପର୍କରେ ଅନେକ କିମ୍ବଦନ୍ତୀ ପ୍ରଚଳିତ ରହିଛି । ଜଗନ୍ନାଥ ଦାସ ଅଷ୍ଟଭୁଜ ପ୍ରଦର୍ଶନ କରି ରାଜା ପ୍ରତାପରୁଦ୍ରଦେବଙ୍କୁ ବିସ୍ମିତ କରାଇଥିଲେ । ସେ ପ୍ରତାପରୁଦ୍ରଦେବଙ୍କ ରାଣୀଙ୍କୁ ଭାଗବତ ଶୁଣାଉଥିବା ସମ୍ପର୍କରେ ଭାବବିହ୍ୱଳ ହୋଇ ରାଧା ରାଧା ଉଚ୍ଚାରଣ ପୂର୍ବକ ଦାସୀ ପରିବାରୀଙ୍କ ଗହଣରେ ନାଚୁଥିବାବେଳେ ରାଜାଙ୍କ ବିଷଚକ୍ଷୁରେ ପଡ଼ିଥିଲେ ଏବଂ ପରଦିନ ନିଜ ଶରୀରରେ ସ୍ତ୍ରୀ ଲକ୍ଷଣମାନ ଦେଖାଇ ରାଜାଙ୍କୁ ବିସ୍ମିତ କରାଇଥିଲେ ।

ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଆହୁରି ମଧ୍ୟ ଶୁଣାଯାଏ, ମେଧା, ସୁମେଧା ନାମ୍ନୀ ଦୁଇଟି ଦାସୀ ଦେବଲୋକରୁ ଆସି ଗୋସାଇଁଙ୍କ ସେବା କରୁଥିଲେ । ଜଗନ୍ନାଥ ଦାସ ସ୍ୱୟଂ ଭବିଷ୍ୟତ ମାଳିକା ପୁସ୍ତକରେ ଲେଖିଛନ୍ତି-

"ମୁହିଁ ରାଧା ଅଂଶ ସେହି କୃଷ୍ଣଅଂଶ ଯୁଗତେ ହୋଇବୁ ମେଳ

ନୀଳାଚଳ ରାଜା ପ୍ରତାପରୁଦ୍ର ଦେ କ୍ଷେତ୍ରାଧିପ ମହୀପାଳ ।"

ଜଗନ୍ନାଥ ଦାସ ଜଣେ ପ୍ରସିଦ୍ଧ ସାଧକ ଥିଲେ । ସେ ସଗୁଣ ଓ ନିର୍ଗୁଣ, ଉଭୟ ଭକ୍ତିମାର୍ଗରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଜ୍ଞାନାଶ୍ରୟୀ ଓ ପ୍ରେମାଶ୍ରୟୀ ଭକ୍ତିର ତତ୍ତ୍ୱକୁ ସେ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ । ତାଙ୍କ ମତରେ "ଅଷ୍ଟାଙ୍ଗ ସାଧନ" ଦ୍ୱାରା ପରମେଶ୍ୱରଙ୍କୁ ଲାଭ କରିହୁଏ ।

ବଳରାମ ଆଦି ପଞ୍ଚସଖାଙ୍କ ନାମରେ ଭଣିତ ବହୁ ପୁସ୍ତକ ଓଡ଼ିଶାରେ ରହିଛି । ତନ୍ମଧ୍ୟରେ ଅନେକ ପୁସ୍ତକ ଅଦ୍ୟାପି ଅପ୍ରକାଶିତ ଅବସ୍ଥାରେ ରାଜ୍ୟ ସଂଗ୍ରହାଳୟ ପୋଥି ଭଣ୍ଡାର ଆଦି ଅନୁଷ୍ଠାନରେ ସଂରକ୍ଷିତ ହୋଇଛି । ଜଗନ୍ନାଥ ଦାସଙ୍କ ନାମରେ ଭଣିତ ଗ୍ରନ୍ଥସଂଖ୍ୟା ପ୍ରାୟ ପଞ୍ଚସ୍ତରୀ ଖଣ୍ଡ ବୋଲି ପଣ୍ଡିତ କୁରାମଣି ପାଠୀ ଏକ ତାଲିକା 'ଅତିବଡ଼ୀ ଜଗନ୍ନାଥ ପରିକ୍ରମା' ପୁସ୍ତକରେ ପ୍ରକାଶ କରିଛନ୍ତି । ତନ୍ମଧ୍ୟରେ ଭାଗବତ, ମହାଭାରତ, ଦାରୁବ୍ରହ୍ମଗୀତା, ପଦ୍ମକଳ୍ପଟୀକା, ବ୍ରହ୍ମାଣ୍ଡ ଭୂଗୋଳ, ଷୋଳ ଚଉପଦୀ, ଜ୍ଞାନସାଗର ଗୀତା, ଭକ୍ତିସଂହିତା, କଳିମାଳିକା, ଅର୍ଥ କୋଇଲି, କୃଷ୍ଣଭକ୍ତି-କଳ୍ପଲତା ଓ ନୀଳାଦ୍ରିଶତକ (ଶେଷୋକ୍ତ ଦୁଇଖଣ୍ଡ ସଂସ୍କୃତ) ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ ।

ଶ୍ରୀ ଜଗନ୍ନାଥ ଦାସଙ୍କ ନାମ ଭଣିତାଥିବା କେତେକ ଭଜନ ଓ ଚଉପଦୀ ଥିବାର ଦେଖାଯାଏ । 'ତୁଳାଭିଣା' ଆଦି ପୁସ୍ତକରେ ତାଙ୍କ ଗଦ୍ୟ ରଚନାର ପ୍ରମାଣ ମିଳିଥାଏ । ତେଣୁ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା ରୂପେ ସାହିତ୍ୟ-ସମାଲୋଚକମାନେ ଅତିବଡ଼ୀ ଜଗନ୍ନାଥ ଦାସଙ୍କୁ ଶ୍ରେଷ୍ଠ ଆସନରେ ବସାଇ ଅଛନ୍ତି । ଜଗନ୍ନାଥ ଦାସ ଏକାଧାରରେ ଥିଲେ - 'ସୁଲେଖକ, କବି, ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ପ୍ରଚାରକ, ସୁସାଧକ ତଥା ଯୁଗପ୍ରବର୍ତ୍ତକ ମହାମନୀଷୀ । ତାଙ୍କ ରଚିତ ଭାଗବତ ପ୍ରତ୍ୟେକ ଓଡ଼ିଆ ପାଠକର ଆଦରଣୀୟ ପୁସ୍ତକ ।

## ପ୍ରଥମ-ଦ୍ୱିତୀୟ ସ୍କନ୍ଧ

ଅତିବଡ଼ୀ ଜଗନ୍ନାଥ ଦାସ ନୃସିଂହ ବନ୍ଦନାପୂର୍ବକ ଭାଗବତ ଆରମ୍ଭକରି ସତ୍ୟପରମାନନ୍ଦ ଶ୍ରୀହରିଙ୍କ ମହିମା ପ୍ରଖ୍ୟାପନ କରିଛନ୍ତି । ଏହା ଶୁକ ମୁଖରୁ ଖସି ପଡ଼ିଥିବା ଜ୍ଞାନାମୃତ ଫଳର ନିର୍ଯ୍ୟାସ ବୋଲି କହିବା ପରେ ଦାସ ଗୋସାଇଁ ନୈମିଷାରଣ୍ୟବାସୀ ଶୌନକାଦି ମୁନିଗଣ ସୂତ ପୌରାଣିକଙ୍କୁ କଳିଯୁଗରେ ଲୋକମାନଙ୍କ ଉଦ୍ଧାର ନିମିତ୍ତ ଭଗବତ୍‌ମହିମା, ନାମ ଓ ଲୀଳା ସମ୍ପର୍କରେ ଛଅଟି ପ୍ରଶ୍ନ କରିଛନ୍ତି । ନାରଦ ବଦରିକାଶ୍ରମରେ ଉପସ୍ଥିତ ହୋଇ ବ୍ୟାସଦେବଙ୍କ ମନଃସ୍ଥିତି ଜାଣି ତାଙ୍କୁ ଶ୍ରୀମଦ୍‌ଭାଗବତ ରଚନା କରିବା ପ୍ରସଙ୍ଗରେ ନିଜର ପୂର୍ବଜନ୍ମ ସମ୍ପର୍କରେ ସୂଚନା ଦେଇଛନ୍ତି ।

ଦ୍ରୌପଦୀଙ୍କ ପଞ୍ଚପୁତ୍ରଙ୍କୁ ହତ୍ୟା କରିବା ପରେ ଅଶ୍ୱତ୍ଥାମାଙ୍କୁ ଅର୍ଜୁନଙ୍କ ଦଣ୍ଡବିଧାନ ଓ ସେହି କୋପରେ ଦ୍ରୋଣକୁମର ପାଣ୍ଡବ ବଂଶର ଶେଷ କୁଳାଙ୍କୁର ପରୀକ୍ଷିତଙ୍କୁ ମାତୃଗର୍ଭରେ ଧ୍ୱଂସ କରିବାପାଇଁ ବ୍ରହ୍ମଶର ନିକ୍ଷେପ କରନ୍ତେ, ଶ୍ରୀକୃଷ୍ଣଙ୍କ ଅନୁଗ୍ରହରୁ ବ୍ରହ୍ମଶର ପ୍ରତିହତ ହୋଇଛି ।



Dr. Sudhanshu Sekhar Mishra

ଯୁଧିଷ୍ଠିର ମହାଭାରତ ଯୁଦ୍ଧପାଇଁ ନିଜକୁ ଦୋଷୀ ମନେକରି ବିଳାପ କରିବା ସମୟରେ ଶ୍ରୀକୃଷ୍ଣ ସମସ୍ତଙ୍କୁ ବୁଝାଇ ସେମାନଙ୍କୁ ଭୀଷ୍ମଙ୍କ ଶରଶଯ୍ୟା ନିକଟକୁ ନେଇଯାଇଛନ୍ତି । ସେଠାରେ ଭୀଷ୍ମ ଯୁଧିଷ୍ଠିରଙ୍କୁ ରାଜଧର୍ମ ସମ୍ପର୍କରେ ଉପଦେଶ ଦେବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କୁ ପରଂବ୍ରହ୍ମ ରୂପେ ସ୍ତୁତି କରିଛନ୍ତି ।

ତତ୍ପରେ ଶ୍ରୀକୃଷ୍ଣ ହସ୍ତିନାର ପୁରଜନଙ୍କ ଦ୍ୱାରା ଅଭିନନ୍ଦିତ ହୋଇ ଦ୍ୱାରିକାକୁ ଗମନ କରିଛନ୍ତି ଏବଂ ସେଠାକାର ଅଧିବାସୀ ଓ ପୁରଜନଙ୍କ ଦ୍ୱାରା ସେ ସମ୍ବର୍ଦ୍ଧିତ ହୋଇଛନ୍ତି ।

ଏହା ମଧ୍ୟରେ ପରୀକ୍ଷିତଙ୍କ ଜନ୍ମ, ତାଙ୍କ ଭବିଷ୍ୟତ ସମ୍ବନ୍ଧରେ ଜାଣି ଯୁଧିଷ୍ଠିର ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଛନ୍ତି । ଏହି ସମୟରେ ତୀର୍ଥ ଭ୍ରମଣରୁ ଫେରିଆସି ବିଦୁର ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ସଦୁପଦେଶ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେ ଦୁହିଁଙ୍କୁ ସଙ୍ଗରେ ନେଇ ବନବାସ ଉଦ୍ଦେଶ୍ୟରେ ହିମାଳୟକୁ ଗମନ କରିଛନ୍ତି । ସେଠାରେ ବନାଗ୍ନିରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ନିଧନ ପରେ ବିଦୁର ଯୋଗ ବଳରେ ଆତ୍ମତ୍ୟାଗ କରି ପରମଧାମର ପଥିକ ହୋଇଛନ୍ତି ।

ଯୁଧିଷ୍ଠିର ପ୍ରକୃତିର ବିଲକ୍ଷଣ ତଥା ଅଶୁଭ ଦର୍ଶନ କରି ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଥିବା ସମୟରେ ଅର୍ଜୁନ ଦ୍ୱାରକାରୁ ଫେରିଆସି ଶ୍ରୀକୃଷ୍ଣଙ୍କ ସମେତ ଯାଦବବଂଶର ବିନାଶ ସମ୍ପର୍କରେ ସୂଚନା ଦେଇଛନ୍ତି । ତାହା ଶ୍ରବଣ କରିବା ମାତ୍ରେ ପାଣ୍ଡବ ଜନନୀ କୁନ୍ତୀ ସଙ୍ଗେ ସଙ୍ଗେ ପ୍ରାଣତ୍ୟାଗ କରିଛନ୍ତି । ତହୁଁ ପଞ୍ଚପାଣ୍ଡବ ପରୀକ୍ଷିତଙ୍କୁ ସିଂହାସନରେ ବସାଇ ମହାପ୍ରସ୍ଥାନ କରିଛନ୍ତି ।

ରାଜା ପରୀକ୍ଷିତ ଦିନେ ବୃଷଭରୂପୀ ଧର୍ମ ଓ ଗୋମାତାରୂପୀ ପୃଥିବୀଙ୍କୁ ଦଣ୍ଡିତ କରୁଥିବାର ଦେଖି, ରାଜବେଶଧାରୀ କଳିଯୁଗକୁ ଶାସ୍ତି ଦେବାଲାଗି ପ୍ରସ୍ତୁତ ହୁଅନ୍ତେ, କଳି କୌଶଳରେ ଦ୍ୟୂତ, ପାନଶାଳା, ସୁବର୍ଣ୍ଣ, ବେଶ୍ୟାଳୟ ଓ ହିଂସାପରିପୂର୍ଣ୍ଣ ସ୍ଥାନରେ ଆଶ୍ରୟ ଗ୍ରହଣ କରିବା ପାଇଁ ଅନୁମତି ଲାଭ କରିଛି ।

ଦିନେ ମୃଗୟା ବିହାରରେ ଯାଇ ତୃଷାତୁର ରାଜା ପରୀକ୍ଷିତ ଶମୀକ ଋଷିଙ୍କ ଗଳାରେ ମୃତସର୍ପ ଝୁଲାଇ ଦିଅନ୍ତେ, ଋଷିକୁମାର ଶୃଙ୍ଗୀଙ୍କ ଦ୍ୱାରା ଅଭିଶପ୍ତ ହୋଇଛନ୍ତି । ରାଜା ତକ୍ଷକ ଦଂଶନରେ ପ୍ରାଣତ୍ୟାଗ କରିବାର ଅଭିଶାପ ପାଇବା ମାତ୍ରେ ଗଙ୍ଗାକୂଳରେ 'ପ୍ରାୟୋପବେଶନରେ' ବସିଥିବା ସମୟରେ ବ୍ରହ୍ମଜ୍ଞାନୀ ଶୁକମୁନି ସେଠାକୁ ଆସି ତାଙ୍କୁ ଭାଗବତ ଶୁଣାଇବାର ଉପକ୍ରମ କରିଛନ୍ତି ।

ଦ୍ୱିତୀୟ ସ୍କନ୍ଧରେ ମହାରାଜ ପରୀକ୍ଷିତଙ୍କୁ ଶୁକମୁନି ଭଗବାନଙ୍କ ବିଶ୍ୱରୂପ, ଆତ୍ମାର ଗତି, ବିଷ୍ଣୁ ଭଜନର ମହିମା, ବିରାଟ ପୁରୁଷଙ୍କ ବିଭୂତି, ଚତୁଃଶ୍ଳୋକୀ ଭାଗବତ ଓ ଭାଗବତର ଦଶଲକ୍ଷଣ ସମ୍ପର୍କରେ ଶୁଣାଇଛନ୍ତି ।

**ଶୁଦ୍ଧ ସଂସ୍କରଣର ବ୍ୟତିକ୍ରମ** – ଓଡ଼ିଶା ଜଗନ୍ନାଥ କମ୍ପାନୀଙ୍କ ଦ୍ୱାରା ପ୍ରକାଶିତ, ରାଜ କିଶୋର ଦାସଙ୍କ ଭାଗବତ, ଭାଗବତ ପ୍ରଚାର ପରିଷଦ ପକ୍ଷରୁ ବାବା ଚୈତନ୍ୟଚରଣ ଦାସଙ୍କ ଦ୍ୱାରା ସମ୍ପାଦିତ ଭାଗବତ, ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ଭାଗବତ ପ୍ରଭୃତି ପୁସ୍ତକମାନଙ୍କରେ ଯେଉଁ 'ଉବାଚ' ଦିଆଯାଇଛି ତଥା ବିଭିନ୍ନ ପୋଥିମାନଙ୍କରେ ଯେଉଁ 'ଉବାଚ' ରହିଛି, ସେଗୁଡ଼ିକର ସାମଞ୍ଜସ୍ୟ ପ୍ରାୟ ରହୁନାହିଁ । ସେପରି ସ୍ଥଳରେ ଆମେ ଶ୍ରୀମଦ୍‌ଭାଗବତର ମୂଳ-ସଂସ୍କୃତ ଲେଖାରେ ଥିବା 'ଉବାଚ'କୁ ଅଧିକାଂଶ ସ୍ଥଳରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମିଳିଥିବା ପୋଥିଗୁଡ଼ିକର 'ଉବାଚ'କୁ ମଧ୍ୟ ବିଚାରକୁ ନେଇ ଶୁଦ୍ଧ-ସଂସ୍କରଣରେ ଉଲ୍ଲେଖ କରିଛୁ । ଆମ ଶୁଦ୍ଧସଂସ୍କରଣରେ ଆଉ ଗୋଟିଏ ବ୍ୟତିକ୍ରମ କରାଯାଇଛି । ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷଙ୍କ ପରାମର୍ଶକ୍ରମେ 'ଦେବାଉଚୁଃ' 'ଋଷିରୁବାଚ' 'ବ୍ରହ୍ମୋବାଚ' 'ପ୍ରଜାପତିରୁବାଚ' 'ବାଦରାୟଣିରୁବାଚ' 'ରାଜୋବାଚ' 'ବିଷ୍ଣୁଦୂତାଉଚୁଃ' 'ଭଗବାନୁବାଚ' 'ପରୀକ୍ଷିଦୁବାଚ' 'ଧରଣ୍ୟୁବାଚ' 'ପୃଥୁରୁବାଚ' 'ସଦସ୍ୟାଉଚୁଃ ମୁନୟଉଚୁଃ, 'ଯୋଗେଶ୍ୱରାଉଚୁଃ, ଅଗ୍ନିରୁବାଚ, 'ବ୍ରାହ୍ମଣପତ୍ନ୍ୟଉଚୁଃ' 'ସତ୍ୟୁବାଚ' ପ୍ରଭୃତି ସ୍ଥାନରେ ଯଥାକ୍ରମେ 'ଦେବଗଣଉବାଚ' 'ଋଷି ଉବାଚ' 'ବ୍ରହ୍ମା ଉବାଚ' 'ପ୍ରଜାପତି ଉବାଚ' 'ବାଦରାୟଣି ଉବାଚ' 'ରାଜା ଉବାଚ' 'ପୃଥୁ ଉବାଚ', ସଦସ୍ୟଗଣ ଉବାଚ, 'ମୁନିଗଣ ଉବାଚ' 'ଯୋଗେଶ୍ୱର ଉବାଚ', 'ଅଗ୍ନି ଉବାଚ', 'ବ୍ରହ୍ମଣପତ୍ନୀ ଉବାଚ', 'ସତୀଉବାଚ', ପ୍ରଭୃତି କରାଯାଇଛି । ଏହାର କାରଣସ୍ୱରୂପ ଏତିକି କୁହାଯାଇପାରେ ଯେ ସଂସ୍କୃତରେ ପ୍ରୟୋଗ 'ଉବାଚ' ସାଧାରଣ ଓଡ଼ିଆ ପାଠକଙ୍କ ମଧ୍ୟରେ କେବଳ 'କହୁଛି ଓ କହୁଛନ୍ତି' ଅର୍ଥରେ ବୁଝାଯାଉଛି । ଉଚୁଃର ଅର୍ଥ ପ୍ରାୟ କେହି ବୁଝନ୍ତି ନାହିଁ । ତେଣୁ ସନ୍ଧି ଓ ବ୍ୟାକରଣସମ୍ମତ ନୀତିକୁ ପରିହାର କରି ସର୍ବସାଧାରଣ ଓଡ଼ିଆ ପାଠକଙ୍କ ବୋଧଗମ୍ୟ ପାଇଁ ଶୁଦ୍ଧସଙ୍କଳନରେ ଏକବଚନ ଓ ବହୁବଚନ ସ୍ଥାନରେ କେବଳ 'ଉବାଚ'କୁ ଗ୍ରହଣ କରାଯାଇଛି ।

ସେହିପରି ଅଧ୍ୟାୟର ଶେଷରେ ମଧ୍ୟ ଇତିଶ୍ରୀମଦ୍.....ଆଦି ଯେଉଁ ବଚନିକା ରହିଛି, ସେଠାରେ ମଧ୍ୟ ଆମେ କ୍ଲିଷ୍ଟତାକୁ ଦୂରକରି ଯଥାସମ୍ଭବ ଲୋକ ପ୍ରଚଳିତ ସରଳତାକୁ ଗ୍ରହଣ କରିଛୁ । ଯେଉଁସ୍ଥାନରେ ପାଠ୍ୟକ୍ରମର କାଠିନ୍ୟ ପ୍ରକାଶ ପାଇଛି ସେଠାରେ ତାର ଅର୍ଥ ଅର୍ଥଦୀପିକାରେ ତଥା ପାଠଭେଦ ପ୍ରକରଣରେ ସୂଚିତ କରାଯାଇଛି । ଶୁଦ୍ଧସଂସ୍କରଣର ମୂଳପାଠକୁ ପ୍ରାମାଣିକ କରିବା ପାଇଁ ଶ୍ରୀମଦ୍‌ଭାଗବତର ଶ୍ଳୋକ ଉଦ୍ଧାର କରି ସ୍କନ୍ଧ, ଅଧ୍ୟାୟ ଓ ଶ୍ଳୋକ ସଂଖ୍ୟାକୁ ଅର୍ଥାତ୍ ପ୍ରଥମ ସ୍କନ୍ଧ ପ୍ରଥମ ଅଧ୍ୟାୟର ପ୍ରଥମ ଶ୍ଳୋକକୁ ୧।୧।୧ ସଦୃଶ ସର୍ବତ୍ର ଗ୍ରହଣ କରିଛୁ ।



Dr. Sudhanshu Sekhar Mishra

ସଂପାଦନା କହିଲେ ଯାହା ବୁଝାଯାଏ - ସେହି ଦୃଷ୍ଟିରୁ ଅତିବଡ଼ୀ ଜଗନ୍ନାଥ ଦାସ ଗୋସାଇଁଙ୍କ ଅନୁବାଦିତ ଭାଗବତର ସମ୍ପାଦନା ହୋଇ ନ ଥିଲା। ପ୍ରସ୍ତୁତ ସମ୍ପାଦିତ ଭାଗବତ ପୁସ୍ତକର ପ୍ରକାଶନ ପୂର୍ବରୁ ୧୯୨୫ ମସିହାରେ ଶ୍ରୀ ରାଜ କିଶୋର ଦାସ ଓଡ଼ିଆ ଭାଗବତର ଏକ ବିଶୁଦ୍ଧ ସଂସ୍କରଣ ପ୍ରକାଶ କରିବାରେ ପ୍ରୟାସୀ ହୋଇଥିଲେ। କିନ୍ତୁ ଓଡ଼ିଶାର ବିଭିନ୍ନ ଅଞ୍ଚଳର ପାଠକୁ ସେଥିରେ ଗ୍ରହଣ କରାଯାଇ ନଥିଲା। କେବଳ ପୁରୀ, ଯାଜପୁର ଓ ତମପଡ଼ା ଅଞ୍ଚଳର ପୋଥି ସାହାଯ୍ୟରେ ଶ୍ରୀଦାସ ଯେଉଁ ସଂସ୍କରଣଟି ପ୍ରକାଶ କରିଥିଲେ, ତାହା ଅପେକ୍ଷାକୃତ ଶୁଦ୍ଧ ସଂସ୍କରଣ ବୋଲି ଅଦ୍ୟାପି ଆଲୋଚକମାନଙ୍କ ଦ୍ଵାରା ଗୃହୀତ ହୋଇ ଆସୁଛି।

ବାବା ଶ୍ରୀ ଚୈତନ୍ୟଚରଣ ଦାସଙ୍କ ଦ୍ଵାରା ସମ୍ପାଦିତ ତଥା ଭୁବନେଶ୍ୱରର 'ଭାଗବତ ପ୍ରଚାର ସମିତି' ପକ୍ଷରୁ ଯେଉଁ ଭାଗବତ ପ୍ରକାଶିତ ହୋଇଛି, ତାହାର ପାଠ ସହିତ ଶ୍ରୀ ରାଜକିଶୋର ଦାସଙ୍କ ସମ୍ପାଦିତ ପାଠର କୌଣସି ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ।

ପ୍ରସ୍ତୁତ ଶୁଦ୍ଧପାଠ ସଙ୍କଳନରେ ରାଜକିଶୋର ଦାସଙ୍କ ସମ୍ପାଦିତ ପୁସ୍ତକକୁ 'କ' ପାଠ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ତଥା ପାରଳାଖେମୁଣ୍ଡି, ଜୟପୁର ଭଦ୍ରକ, ମେଦିନୀପୁର (ପଶ୍ଚିମ ବଙ୍ଗ) ଖୁରୁଧା, ବଡ଼ମ୍ବା ଓ କେନ୍ଦୁଝର ଅଞ୍ଚଳରୁ ସଂଗୃହୀତ ସାତଖଣ୍ଡି ପୋଥିକୁ ଯଥାକ୍ରମେ ଖ, ଗ, ଘ, ଙ, ଚ, ଛ, ଜ ପାଠ ରୂପେ ଗ୍ରହଣ କରାଯାଇଛି। ଏହା ବ୍ୟତୀତ ବାବା ଚୈତନ୍ୟଚରଣ ଦାସଙ୍କ ସମ୍ପାଦିତ ବଙ୍ଗାକ୍ଷରରେ ମୁଦ୍ରିତ, କଟକ ରାଧାରମଣ ପୁସ୍ତକାଳୟରୁ ପ୍ରକାଶିତ ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଅନୁବାଦିତ ତଥା ବିଦ୍ୟାପୁରୀ (କଟକ) ପକ୍ଷରୁ ପ୍ରକାଶିତ ଭାଗବତ ପୁସ୍ତକଗୁଡ଼ିକୁ ପ୍ରସ୍ତୁତ ସମ୍ପାଦନାରେ ସହାୟକ ଗ୍ରନ୍ଥରୂପେ ଗ୍ରହଣ କରାଯାଇଛି।

ଅତିବଡ଼ୀ ଗୋସାଇଁ ମୂଳସଂସ୍କୃତ ଭାଗବତ ତଥା ପ୍ରସିଦ୍ଧ 'ପରମ ଭାଗବତ' ଶ୍ରୀଧର ସ୍ୱାମୀଙ୍କ ଟୀକାକୁ ଅବଲମ୍ବନ କରି ସ୍ୱରଚିତ ଭାଗବତର ଅନୁବାଦକୁ ପ୍ରମାଣିତ କରିଥିବାରୁ ପ୍ରସ୍ତୁତ ସମ୍ପାଦନାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ ଶ୍ରୀସୁଶୀଳ ଚନ୍ଦ୍ର ଦାସଙ୍କ ସମ୍ପାଦିତ ତଥା ବାବା ବଳରାମ ବାନପ୍ରସ୍ଥୀଙ୍କ ଦ୍ଵାରା ଅନୁବାଦିତ ସଂସ୍କୃତ ଭାଗବତକୁ ପ୍ରସ୍ତୁତ ସମ୍ପାଦନାରେ ସହାୟକ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇଛି।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥିଗୁଡ଼ିକର ନକଲ ସମୟ ଖ୍ରୀଷ୍ଟିୟ ଅଷ୍ଟାଦଶ ତଥା ଊନବିଂଶ ଶତାବ୍ଦୀ ବୋଲି ପୋଥିର ଅକ୍ଷର, ତଥା ପୁଷ୍ପିକାଗୁଡ଼ିକରୁ ଅନୁମାନ କରାଯାଏ। ଏହି ପୋଥିଗୁଡ଼ିକର ନକଲରେ ବର୍ଣ୍ଣାଶୁଦ୍ଧି ବହୁଳ ଭାବରେ ପରିଲକ୍ଷିତ ହୁଏ ଏବଂ ଆଞ୍ଚଳିକ ଉଚ୍ଚାରଣ ଦୃଷ୍ଟିରୁ କେତେକ ପାଠ ବିକୃତ ହୋଇ ଲେଖା ଯାଇଥିବା ପରିଦୃଷ୍ଟ ହୁଏ। ତନ୍ମଧ୍ୟରୁ ମାତ୍ର ଅଳ୍ପ କେତୋଟିର ଉଦାହରଣ ଏଠାରେ ଦିଆଯାଇପାରେ -

ଅମୋହ (ଅମୋଘ), କଷ୍ଟୋର (କଠୋର), ପ୍ରତଗ୍ୟାଂ (ପ୍ରତିଜ୍ଞ), ଦୃଭାସା (ଦୁର୍ବାସା), ପ୍ରଣମ୍ଭ (ପ୍ରଣାମ), ୟଂଶ (ଅଂଶ), ଆଉଶ୍ୟ (ଆୟୁଷ), ପ୍ରାଭବ (ପରାଭବ), ତିକିଛା (ଚିକିତ୍ସା), ପ୍ରିୟଜନ (ପ୍ରୟୋଜନ), ଭ୍ରଛନା (ଭର୍ତ୍ସନା), ବିତକ୍ଷଣ (ବିଚକ୍ଷଣ), କ୍ରିତଧର (କୀର୍ତ୍ତିଧର), ମୌଷଧି (ମହୌଷଧି), ବରେହା (ବରାହ), ବୁଦୁକା, ବୁଭୁକା, ବୁହୁକା (ବୁଦ୍‌ବୁଦ୍) ବିଶ୍ମ (ବିଶ୍ୱ), କୁତୋହଳ (କୁତୂହଳ) ଆଚୋବନ (ଆଚମନ) ଇତ୍ୟାଦି। ଏହା ବ୍ୟତୀତ ଇକାର, ଈକାର, ଉକାର, ଊକାର, ଶଷସ ଆଦି ବର୍ଣ୍ଣାଶୁଦ୍ଧି ସର୍ବତ୍ର ପୂରିରହିଛି। ଅବଶ୍ୟ ତାଳପତ୍ର ଉପରେ ଲେଖିବା ବେଳେ ଲେଖନୀ ଚାଳନାର ସୁବିଧା ଦୃଷ୍ଟିରୁ ନକଲକାରମାନେ ଜାଣିଶୁଣି କେତେକ ସ୍ଥଳରେ ବର୍ଣ୍ଣାଶୁଦ୍ଧି କରିବାରେ ବାଧ୍ୟ ହୋଇଥା'ନ୍ତି।

ବିଜ୍ଞ ପାଠକପାଠିକାମାନଙ୍କ ଅବଗତି ନିମିତ୍ତ ଶ୍ରୀମଦ୍ ଭାଗବତ, ତୃତୀୟସ୍କନ୍ଧର ସଂକ୍ଷିପ୍ତ ପାଠ ଏଠାରେ ପ୍ରଦତ୍ତ ହେଲା -

ବିଦୁର କୌରବମାନଙ୍କ ଦ୍ଵାରା ଅପମାନିତ ହୋଇ ହସ୍ତିନା ତ୍ୟାଗପୂର୍ବକ ତୀର୍ଥ ଭ୍ରମଣରେ ଯାଇ ବୃନ୍ଦାବନଠାରେ ଭକ୍ତ ଉଦ୍ଧବଙ୍କୁ ଭେଟିଲେ। ବିଦୁର ଉଦ୍ଧବଙ୍କ ମୁଖରୁ କୁରୁପାଣ୍ଡବଙ୍କ ଯୁଦ୍ଧର ପରିଣତି, ଯୁଧିଷ୍ଠିରଙ୍କ ରାଜ୍ୟାଭିଷେକ ତଥା ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ସମ୍ବନ୍ଧରେ ଶୁଣି ତାଙ୍କର (ଉଦ୍ଧବଙ୍କ) ପରାମର୍ଶରେ ମୈତ୍ରେୟ ମୁନିଙ୍କ ଆଶ୍ରମରେ ଉପଗତ ହୋଇଥିଲେ।

ମୈତ୍ରେୟ ମୁନି ବିଦୁରଙ୍କ ଅନୁରୋଧରେ ତା'ଙ୍କୁ ଭଗବଲ୍ଲୀଳା ରହସ୍ୟ ଶୁଣାଇବାକୁ ଯାଇ କହିଲେ - ସୃଷ୍ଟି ରଚନା ପୂର୍ବରୁ ପୂର୍ଣ୍ଣପରଂବ୍ରହ୍ମଙ୍କ ଏକମାତ୍ର ସତ୍ତା ରହିଥିଲା। ସେତେବେଳେ ଦୃଶ୍ୟ ଓ ଦ୍ରଷ୍ଟା କେହି ନଥିଲେ କିମ୍ବା ମାୟା ଓ ବିକାରର ସୃଷ୍ଟି ହୋଇ ନଥିଲା। ଏହି ଉପକ୍ରମରେ ମହାମୁନି ମୈତ୍ରେୟ ପରମଭକ୍ତ ବିଦୁରଙ୍କୁ, ପରମାତ୍ମାଙ୍କ ମହତତ୍ତ୍ୱ, ଅହଙ୍କାର, ପଞ୍ଚଭୂତ, ପଞ୍ଚତନ୍ମାତ୍ରା, ମନ ସମେତ ଏକାଦଶ ଇନ୍ଦ୍ରିୟ, ପଚିଶ ପ୍ରକୃତି ତଥା ବିରାଟ ପୁରୁଷଙ୍କ ସୃଷ୍ଟି ସଂପର୍କରେ ଉପଦେଶ ଦେଇଥିଲେ।

ତତ୍ପରେ ବିଦୁରଙ୍କ ପ୍ରଶ୍ନ ଅନୁସାରେ ମୈତ୍ରେୟ ମୁନି ତାହାଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଉତ୍ପତ୍ତି, ବ୍ରହ୍ମାଙ୍କ ତପସ୍ୟା, ସୃଷ୍ଟି କରିବା ପାଇଁ ତାଙ୍କର ଆକାଂକ୍ଷା ସମ୍ବନ୍ଧରେ ଉପଦେଶ ଦେବାପରେ, ବ୍ରହ୍ମାଙ୍କ ଦ୍ଵାରା ସୃଷ୍ଟ ମହତତ୍ତ୍ୱ, ଅହଙ୍କାର, ଭୂତସର୍ଗ, ଇନ୍ଦ୍ରିୟ, ଇନ୍ଦ୍ରିୟାଧିଷ୍ଠିତ ଦେବତା, ଅବିଦ୍ୟା, ସ୍ଥାବର, ଜଙ୍ଗମ, ପଶୁପକ୍ଷୀ, ମନୁଷ୍ୟ, ଦେବତା, ପିତର, ପ୍ରେତ, ଅସୁର, ସନକାଦି, ଚାରିଜଣ ମୁନି ତଥା ରୁଦ୍ରଙ୍କ ଉତ୍ପତ୍ତି ସମ୍ବନ୍ଧରେ ବ୍ୟାଖ୍ୟା କରିଥିଲେ।

ସୃଷ୍ଟିର ପ୍ରସାର ନିମିତ୍ତ ମରୀଚି ଆଦି ଦଶ ପ୍ରଜାପତି ଜନ୍ମ, ବେଦାଦି ଶାସ୍ତ୍ରର ଉତ୍ପତ୍ତି, ଚାରିଗୋଟି ଆଶ୍ରମର ଉତ୍ପତ୍ତି ହେବା ପରେ, ବ୍ରହ୍ମାଙ୍କ ବାମ ଓ ଦକ୍ଷିଣାଙ୍ଗରୁ ଯଥାକ୍ରମେ ଶତରୂପା ଓ ମନୁଜାତ ହୋଇ ମୈଥୁନୀ ସୃଷ୍ଟି କରିବା ପାଇଁ ଆଦିଷ୍ଟ ହେଲେ।

ତତ୍ପରେ ବିଦୁରଙ୍କ ଅନୁରୋଧ ଅନୁସାରେ ମୈତ୍ରେୟ ତାହାଙ୍କୁ ରସାତଳଗାମୀ ଧରିତ୍ରୀର ଉଦ୍ଧାର ପ୍ରକରଣରେ ବିଷ୍ଣୁଙ୍କ ଦ୍ୱାରପାଳ ଜୟବିଜୟଙ୍କ ଅଭିଶାପ, କଶ୍ୟପଙ୍କ ଔରସରେ ଦିତିଙ୍କ ଗର୍ଭରୁ ହିରଣ୍ୟ ହିରଣ୍ୟାକ୍ଷଙ୍କ ଜନ୍ମ, ହିରଣ୍ୟାକ୍ଷର ଉତ୍ପାତ, ବରାହରୂପୀ ବିଷ୍ଣୁଙ୍କ ଦ୍ୱାରା ହିରଣ୍ୟାକ୍ଷର ବଧ ତଥା ପୃଥିବୀର ଉପସ୍ଥାପନା ସଂପର୍କରେ ଶୁଣାଇ ପ୍ରୀତ କରାଇଥିଲେ।

ବିଦୁରଙ୍କ ଅନୁରୋଧକ୍ରମେ ମୈତ୍ରେୟ ମୁନି ମନୁ ଓ ଶତରୂପଙ୍କ ପୁତ୍ରୀ ଦେବହୂତୀ ତଥା ବ୍ରହ୍ମର୍ଷି କର୍ଦ୍ଦମଙ୍କ ବିବାହ, ଦିବ୍ୟଦୃଷ୍ଟି ବଳରେ ବିଶ୍ୱ ପର୍ଯ୍ୟଟନ, କର୍ଦ୍ଦମଙ୍କ ଔରସରେ ଦେବହୂତୀଙ୍କ ଗର୍ଭରୁ କପିଳଙ୍କ ଜନ୍ମ, ତପସ୍ୟା ନିମିତ୍ତ କର୍ଦ୍ଦମଙ୍କ ଅରଣ୍ୟ ଗମନ, ପୁତ୍ର କପିଳଙ୍କଠାରୁ ଦେବହୂତୀଙ୍କ ସାଂଖ୍ୟତତ୍ତ୍ୱ ଶ୍ରବଣ ଆଦି ବୃତ୍ତାନ୍ତ ତାହାଙ୍କୁ ପୁଙ୍ଖାନୁପୁଙ୍ଖ ରୂପେ ଶୁଣାଯାଇଥିଲେ।

ପରିଶେଷରେ ମୈତ୍ରେୟ ମୁନି କହିଲେ – 'ହେ ବିଦୁର! ଭଗବାନ ବିଷ୍ଣୁଙ୍କ ଅଂଶରୁ ଜାତ ମହର୍ଷି କପିଳ ମାତା ଦେବହୁତୀଙ୍କୁ ଜ୍ଞାନ ଉପଦେଶରେ ତାଙ୍କ ମନରୁ ମୋହମାୟା ଦୂର କରାଇ ତପସ୍ୟା ନିମିତ୍ତ ଅନ୍ୟତ୍ର ପ୍ରସ୍ଥାନ କଲେ। ତପସ୍ୱିନୀ ଦେବହୂତୀ ପୁତ୍ରଙ୍କ ପରାମର୍ଶରେ ଯୋଗ ସାଧନରେ ବ୍ରତଚାରିଣୀ ହେବା ପାଇଁ 'ସିଦ୍ଧିପଦ' ନାମକ ପୁଣ୍ୟ କ୍ଷେତ୍ରକୁ ଗମନ କଲେ। ସେଠାରେ ସେ ବ୍ରହ୍ମନିର୍ବାଣ ଲାଭ କରି 'ସିଦ୍ଧିଦା' ନଦୀ ନାମରେ ପ୍ରବାହିତ ହେବାକୁ ଲାଗିଲେ।"

ମୈତେୟ ବିଦୁରଙ୍କୁ ଯାହା କହିଥିଲେ, ଅତିବଡ଼ୀ ଗୋସାଇଁଙ୍କ ରଚନା ମାଧ୍ୟମରେ ତାହା ଓଡ଼ିଆ ପାଠକପାଠିକାଙ୍କ ହସ୍ତଗତ ହୋଇଛି। ତେତିଶ ଅଧ୍ୟାୟ ବିଶିଷ୍ଟ ଭାଗବତର ତୃତୀୟସ୍କନ୍ଧଟିକୁ ଶେଷ କରି ଜଗନ୍ନାଥ ଦାସ ଗୋସାଇଁ ଲେଖିଛନ୍ତି –

'ତୃତୀୟ ସ୍କନ୍ଧେ ଭାଗବତ। କପିଳ ଜ୍ଞାନ ଉପଗତ।।<br>
ତେତିଶ ଅଧ୍ୟା ସମାପତ। ମୈତ୍ରେୟ ବିଦୁର ଚରିତ<br>
ଶ୍ରୀକୃଷ୍ଣ ମୁଖରୁ ସମ୍ଭୂତ। ଭାବେ ହୋଇଲା ଭାଗବତ।।<br>
ଏ ଭାବେ ରସ ସାଧୁଜନ। ତୁମ୍ଭ ଚରଣେ ମୋର ଧ୍ୟାନ।।<br>
କହଇ ଜଗନ୍ନାଥ ଦାସ। ତ୍ରାହି କରିବେ ପୀତବାସ।।"

ଭାଗବତର ଶୁଦ୍ଧ ସଂସ୍କରଣର ସଂପାଦନାରେ ମୁଁ ଯେଉଁ ପଦ୍ଧତି ଅନୁସରଣ କରିଛି, ତାହାର ବିଶଦ ବିବରଣୀ ତଥା ପ୍ରସ୍ତୁତ ଶୁଦ୍ଧ ସଂସ୍କରଣର ପରିକଳ୍ପନାରେ ଯେଉଁ ବିଦ୍ୱାନ, ବିଜ୍ଞ, ତଥା ପ୍ରଶାସକମାନଙ୍କ ପ୍ରେରଣା ଥିଲା, ସେ ସମ୍ବନ୍ଧରେ ମୁଁ ପ୍ରଥମ ଦ୍ୱିତୀୟ ସ୍କନ୍ଧର ଭୂମିକାର ତେପନ, ଚଉବନ ଓ ପଞ୍ଚାବନ ପୃଷ୍ଠାରେ ଉଲ୍ଲେଖ କରିଛି। ପ୍ରସ୍ତୁତ ତୃତୀୟ ସ୍କନ୍ଧର ଶେଷରେ 'ଅର୍ଥଦୀପିକା' ଶୀର୍ଷକ କେତୋଟି ପୃଷ୍ଠା ସନ୍ନିବେଶିତ ହୋଇଛି। ତା'ଫଳରେ ସାଧାରଣ ପାଠକ-ପାଠିକା ଶ୍ରୀମଦ୍‌ଭାଗବତର କେତେକ କଠିନ ଶବ୍ଦକୁ ସହଜରେ ବୁଝିପାରିବେ। ଏହାବ୍ୟତୀତ ଯେତେଖଣ୍ଡ ତାଳପତ୍ର ପୋଥି ପ୍ରସ୍ତୁତ ଶୁଦ୍ଧ ସଂସ୍କରଣରେ ଗୃହୀତ ହୋଇଛି, ତା'ର ଅବିକଳ ପାଠଗୁଡ଼ିକୁ ପାଦଟୀକାରେ କ, ଖ, ଗ ଆଦି କ୍ରମରେ ପ୍ରଦତ୍ତ ହୋଇଛି ଏବଂ ଯେଉଁ ପାଠଟିକୁ ଶୁଦ୍ଧ ପାଠ ବୋଲି ମୁଁ ଅନୁଭବ କରିଛି ତାହାକୁ ମୂଳପାଠରେ ଦେଇଛି। ଏହା ଫଳରେ ବିଜ୍ଞ ଗବେଷକମାନେ ପାଦଟୀକାର ଅବତାରଣା ସଂପର୍କରେ ଅବଗତ ହୋଇପାରିବେ।

## ଚତୁର୍ଥ ସ୍କନ୍ଧ

ପଞ୍ଚସଖା ଯୁଗର ଅନ୍ୟତମ ମହାନ୍ ସାଧକ ତଥା ସନ୍ଥକବି ଅତିବଡ଼ୀ ଜଗନ୍ନାଥ ଦାସ ଗୋସାଇଂଙ୍କ ଶ୍ରୀମଦ୍‌ଭାଗବତର ଅନୁବାଦ ଓଡ଼ିଶାର ଘରେ ଘରେ ସୁପ୍ରଚାରିତ । କିନ୍ତୁ ଦୀର୍ଘ ପାଞ୍ଚଶହ ବର୍ଷ ମଧ୍ୟରେ ଏହି ପୁଣ୍ୟଗ୍ରନ୍ଥ ଓଡ଼ିଶାର ବହୁ ଲେଖନକାରଙ୍କ ଦ୍ୱାରା ନକଲ୍ କରାଯାଇଥିବାରୁ, ସେଥିରେ କେତେକ ପାଠ ବିକୃତ ହୋଇଯାଇଛି ଏବଂ କେତେକ ସ୍ଥଳରେ ପାଠକୁ ସଂକ୍ଷିପ୍ତ କରାଯାଇଛି । ଶ୍ରୀମଦ୍‌ଭାଗବତର ସ୍ତୁତି ପ୍ରକରଣ ହେଉଛି ସବୁଠାରୁ ଅଧିକ ମୂଲ୍ୟବାନ୍ । କେତେକ ପ୍ରକାଶକ ଜ୍ଞାତସାରରେ ହେଉ ବା ଅଜ୍ଞାନତାବଶତଃ ହେଉ, ସେହି ସ୍ତୁତି ପ୍ରକରଣକୁ ନିଜ ଇଚ୍ଛାନୁସାରେ ସଂକ୍ଷିପ୍ତ କରି ଦେଇ ଶ୍ରୀମଦ୍‌ଭାଗବତର ମୂଲ୍ୟବୋଧକୁ କ୍ଷୁଣ୍ଣ କରିଛନ୍ତି । ଏହା ବ୍ୟତୀତ ନାମବାଚକ ଶବ୍ଦ ତଥା ଗଭୀର ଭାବବ୍ୟଞ୍ଜକ ଶବ୍ଦଗୁଡ଼ିକୁ ମଧ୍ୟ ଅନେକ ସ୍ଥଳରେ ପରିବର୍ତ୍ତନ କରି, ଶ୍ରୀମଦ୍‌ଭାଗବତର ମୌଳିକତାକୁ ନଷ୍ଟ କରିଛନ୍ତି । ସେହି ପରିପ୍ରେକ୍ଷୀରେ ବିଚାର କରାଯାଇ ରାଜ୍ୟସରକାରଙ୍କ ସଂସ୍କୃତିବିଭାଗ ପକ୍ଷରୁ, ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ, ଜଗନ୍ନାଥ ଦାସଙ୍କ ଭାଗବତର ଏକ ଶୁଦ୍ଧସଂସ୍କରଣ ପ୍ରକାଶ କରାଯିବା ପାଇ ସ୍ଥିର କରାଗଲା ।

'ଶ୍ରୀଜୟଦେବ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ' ରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ହୋଇ ବହୁ ଭାଗବତ ପୋଥି ସଂରକ୍ଷିତ ହୋଇଛି । ଏହାବ୍ୟତୀତ ଓଡ଼ିଶାର ବହୁ ପ୍ରକାଶକ ମଧ୍ୟ ଭାଗବତ ପ୍ରକାଶନ କରିଛନ୍ତି । ଆନନ୍ଦର କଥା ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲା ଅନ୍ତର୍ଗତ କାନ୍ଥିର ନୀହାରପ୍ରେସ୍ ପକ୍ଷରୁ ବଙ୍ଗଳା ଅକ୍ଷରରେ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରକାଶ ପାଇଛି। ଏହି ସମସ୍ତ ଉପାଦାନରୁ ଗୋଟିଏ ଶୁଦ୍ଧପାଠ ବାହାର କରିବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିଛି ଏବଂ ମୋର ସହଯୋଗୀମାନେ ମଧ୍ୟ ସମସ୍ତ ପ୍ରକାର ସାହାଯ୍ୟ କରିଛନ୍ତି । ବିଶେଷତଃ ରାଜକିଶୋର ଦାସଙ୍କ ଦ୍ୱାରା ସମ୍ପାଦିତ ତଥା ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକଙ୍କ ଦ୍ୱାରା ପ୍ରକାଶିତ ଭାଗବତର ପାଠ ମୋ' ସମ୍ପାଦନାକୁ ବିଶେଷ ଭାବରେ ସାହାଯ୍ୟ କରିଛି । ମୂଳସଂସ୍କୃତ, ଶ୍ରୀଧର ସ୍ୱାମୀଙ୍କ ଟୀକା ତଥା ଗଦ୍ୟାନୁବାଦ ସନ୍ନିବେଶିତ ଶ୍ରୀଯୁକ୍ତ ସୁଶୀଳକୁମାର ଦାସଙ୍କ ସମ୍ପାଦିତ ତଥା ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଶ୍ରୀମଦ୍‌ଭାଗବତ ପୁସ୍ତକର ମୁଁ ବହୁଭାବରେ ସାହାଯ୍ୟ ଗ୍ରହଣ କରିଛି ।



Dr. Sudhanshu Sekhar Mishra

ଶ୍ରୀମଦ୍‌ଭାଗବତର ଚତୁର୍ଥସ୍କନ୍ଧଟି ସମୁଦାୟ ବାରସ୍କନ୍ଧ ମଧ୍ୟରେ ଏକ ଉପାଦେୟ ଖଣ୍ଡ । ସାଧାରଣତଃ ଏହି ସ୍କନ୍ଧରେ କାହାଣୀ ମାଧ୍ୟମରେ ଭଗବଦ୍‌ଜ୍ଞାନର ଯେଉଁ ତତ୍ତ୍ୱମାନ ସନ୍ନିବେଶିତ ହୋଇଛି, ତାହା ପ୍ରତ୍ୟେକ ପାଠକ-ପାଠିକାଙ୍କ ପକ୍ଷରେ ଅତ୍ୟନ୍ତ ଉପାଦେୟ ତଥ୍ୟ ବୋଲି ମନେହୁଏ ।

ଚତୁର୍ଥସ୍କନ୍ଧରେ ଦକ୍ଷଯଜ୍ଞ, ଧ୍ରୁବଚରିତ, ବେଣ ଓ ପୃଥୁଚରିତ ପ୍ରାଚୀନବର୍ହି, ପୁରଞ୍ଜନ, ପ୍ରଚେତା ଆଦି ଦଶଭାଇଙ୍କ ଉପାଖ୍ୟାନ ମାଧ୍ୟମରେ ମହର୍ଷି କୃଷ୍ଣଦ୍ୱୈପାୟନ ବ୍ୟାସଦେବ ଭଗବତ୍ ଭକ୍ତି ରହସ୍ୟର ଯେଉଁ ମୂଲ୍ୟାୟନ କରିଛନ୍ତି, ତା'ର ସାରବତ୍ତା ଚରିତ୍ରଗଠନ, ଶୃଙ୍ଖଳାବୋଧ, ସମାଜଗଠନ, ପାପପୁଣ୍ୟର ମହତ୍ୱ, ଯାଗଯଜ୍ଞର ଉପାଦେୟତା ବିଷୟରେ ଗୋଟିଏ ଗୋଟିଏ ଆଲୋକବର୍ତ୍ତିକା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୂଳ ସଂସ୍କୃତପାଠର କ୍ଲିଷ୍ଟତାକୁ ସରଳ, ସର୍ବଜନବୋଧ ତଥା ଭାବଗର୍ଭକ କରି ଦାସେ ଆପଣେ ଓଡ଼ିଆ ପାଠିକା ଓ ପାଠକ ମହଲରେ ପରିବେଷଣ କରିଛନ୍ତି । ବିଶେଷତଃ ପୁରଞ୍ଜନ ଉପାଖ୍ୟାନରେ ଯେପରି ଭାବରେ ଲାକ୍ଷଣିକ ଭାବଧାରା ରହିଛି, ତାହା ମୋକ୍ଷକାମୀ ଜନମାନସରେ ନିଶ୍ଚିତ ଭାବରେ ପ୍ରଭାବ ସୃଷ୍ଟି କରିବ । ତା' ବ୍ୟତୀତ ଚତୁର୍ଥସ୍କନ୍ଧରେ ବର୍ଣ୍ଣିତ ରୁଦ୍ରଗୀତା ପ୍ରତ୍ୟେକ ଭକ୍ତି- ସଚେତନ ବ୍ୟକ୍ତିର ପ୍ରଣିଧାନଯୋଗ୍ୟ। ଏଣୁ ଶ୍ରୀମଦ୍‌ଭାଗବତର ଚତୁର୍ଥସ୍କନ୍ଧ ସାଧାରଣ ପାଠକ-ପାଠିକାଙ୍କ ପକ୍ଷରେ ଯେପରି ଉପଭୋଗ୍ୟ, ଠିକ୍ ସେହିପରି ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା ଆଦରର ଧନରୂପେ ଗୃହୀତ ।

ଭଗବାନ୍ ଶ୍ରୀକୃଷ୍ଣ ସ୍ୱର୍ଗାରୋହଣ ସମୟରେ ବିଦୁରଙ୍କ ଉଦ୍ଦେଶ୍ୟରେ ମୈତ୍ରେୟ ମୁନିଙ୍କୁ ଯେଉଁ ଉପଦେଶ ପ୍ରଦାନ କରିଥିଲେ, ତାହାହିଁ ଭାଗବତ ଚତୁର୍ଥ ସ୍କନ୍ଧରେ ପୁଙ୍ଖାନୁପୁଙ୍ଖ ରୂପେ ବର୍ଣ୍ଣିତ ହୋଇଛି ।

**ପଞ୍ଚମ-ଷଷ୍ଠ ସ୍କନ୍ଧ**

ଶ୍ରୀମଦ୍‌ଭାଗବତର ପଞ୍ଚମ ଓ ଷଷ୍ଠ ସ୍କନ୍ଧ ଦୁଇଟି ବାରସ୍କନ୍ଧ ମଧ୍ୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପଞ୍ଚମ ସ୍କନ୍ଧର ପାଠ ମଧ୍ୟରେ ଭଗବାନଙ୍କ ଅନ୍ୟତମ ଅବତାର ଋଷଭଙ୍କ ଜନ୍ମ, ରାଜତ୍ୱ ଓ ମହାପ୍ରୟାଣର ଅବତାରଣା ମାଧ୍ୟମରେ ଲୋକଶିକ୍ଷା ତଥା ଲୋକଚଳଣିର ଯେଉଁ ମହାନ୍ ପରମ୍ପରାକୁ ଅତିବଡ଼ୀ ଜଗନ୍ନାଥ ଦାସ ଅତ୍ୟନ୍ତ ସରଳ ତଥା ସାବଲୀଳ ଭାଷାରେ ପରିବେଷଣ କରିଛନ୍ତି, ତା'ର ପଟାନ୍ତର ନାହିଁ । ମୂଳଭାଗବତରେ ଏହାର ବର୍ଣ୍ଣନା ସାଧାରଣ ବୋଧଗମ୍ୟ ନୁହେଁ । ସେହିପରି ଭରତଙ୍କ ରାଜତ୍ୱ, ତପସ୍ୟା ଓ ପରିଶେଷରେ ହରିଣୀ ପ୍ରତି ତା'ଙ୍କ ମୋହରୁ ଯେଉଁ ଦୁର୍ଘଟଣା ଘଟିଲା, ତାହା ମଧ୍ୟ ଜନସାଧାରଣ, ବିଶେଷତଃ ମୋକ୍ଷକାମୀ ସାଧକ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ଶିକ୍ଷଣୀୟ ବିଷୟ । ସାରା ଜୀବନର ସାଧନା ମାତ୍ର କ୍ଷଣିକ ମୋହରେ କିପରି ବିଷମୟ ପରିସ୍ଥିତିରେ ପରିଣତ ହେଲା, ତାହାକୁ ଭକ୍ତ, ସାଧକ, ପରମବୈଷ୍ଣବ ତଥା ସଂସ୍କୃତଜ୍ଞ ଜଗନ୍ନାଥ ଦାସ ଅତ୍ୟନ୍ତ ରୋଚିକ ଢ଼ଙ୍ଗରେ ପରିବେଷଣ କରି, ଓଡ଼ିଆ ପାଠକ-ପାଠିକାମାନଙ୍କର ଅଶେଷ ଉପକାର କରିଛନ୍ତି ।

ସେହି ପ୍ରକରଣରେ ରାଜା ରହୂଗଣ ଓ ଜଡ଼ଭରତଙ୍କ ସମ୍ବାଦ ଦାର୍ଶନିକ ତତ୍ତ୍ୱ ଦୃଷ୍ଟିରୁ କମ୍ ମହତ୍ୱପୂର୍ଣ୍ଣ ନୁହେଁ। ପଞ୍ଚମ ସ୍କନ୍ଧରେ ଏହି "ସମ୍ବାଦ"ଟି ଅନୁସନ୍ଧିତ୍ସୁ ଭକ୍ତମାନଙ୍କର ଅତ୍ୟନ୍ତ ଆଦରଣୀୟ ବିଷୟ ।

ପଞ୍ଚମ ସ୍କନ୍ଧରେ ଭୁବନକୋଷ, ପୃଥିବୀର ବିଭାଗୀକରଣ, ଜମ୍ବୁଦ୍ୱୀପ ଆଦିର ବର୍ଣ୍ଣନା, ଜ୍ୟୋତିଶ୍ଚକ୍ର, ଶିଶୁମାରଚକ୍ର ଆଦିର ବ୍ୟାଖ୍ୟାନ ଆଧୁନିକ ଖଗୋଳ ଓ ଭୂଗୋଳ ଦୃଷ୍ଟିରୁ ଆଦୌ ଉପେକ୍ଷଣୀୟ ବିଷୟ ନୁହେଁ ।

ଷଷ୍ଠ ସ୍କନ୍ଧଟି ଯଦିଓ ବହୁ ଅତିମାନବୀୟ ଆଖ୍ୟାୟିକାରେ ପରିପୂର୍ଣ୍ଣ, ତଥାପି ସେଥି ମଧ୍ୟରେ ଅଜାମିଳ ଉପାଖ୍ୟାନ, ଆଥର୍ବଣଦଧୀଚିଙ୍କ ଆତ୍ମତ୍ୟାଗ, ଅଙ୍ଗିରା ଓ ନାରଦଙ୍କ ସହିତ ରାଜା ଚିତ୍ରକେତୁଙ୍କ କଥୋପକଥନ ଏବଂ ପରିଶେଷରେ ଦିତିଙ୍କ ତପସ୍ୟାର ବିଫଳତା କର୍ମପ୍ରବଣ ତଥା ସାଂସାରିକ ଜଞ୍ଜାଳଗ୍ରସ୍ତ ମାନବସମାଜ ପକ୍ଷରେ ନିଶ୍ଚିତ ଭାବରେ ଶିକ୍ଷଣୀୟ ବିଷୟ । ପ୍ରତ୍ୟେକ ଆଖ୍ୟାୟିକାର ମୂଳ ଉଦ୍ଦେଶ୍ୟ ହେଉଛି, ମାନବ ସମାଜକୁ ଆଧ୍ୟାତ୍ମିକ ଅନୁପ୍ରେରଣାରେ ପ୍ରେରିତ କରିବା । ଆଖ୍ୟାୟିକା ମାଧ୍ୟମରେ ଜନସମାଜକୁ ଦିଗ୍‌ଦର୍ଶନ କରାଇବାରେ, ଭାଗବତ ଷଷ୍ଠସ୍କନ୍ଧର ଭୂମିକା ବିଦ୍ୱତ୍ ସମାଜରେ ବେଶ୍ ଆଦୃତ ହୋଇପାରିଛି । ଧର୍ମଶାସ୍ତ୍ରର କଠୋର ନିୟମ ମଧ୍ୟରେ ଆଦିମ ମଣିଷର ଜାନ୍ତବ ପ୍ରବୃତ୍ତିକୁ ମାନବୀୟ ଚିନ୍ତାଧାରାରେ ପରିବର୍ତ୍ତିତ କରିବା ଅପେକ୍ଷା, ଆଖ୍ୟାୟିକା ମାଧ୍ୟମରେ ନୀତିଶିକ୍ଷା ଦେବା ସହଜ ତଥା ସଫଳ ପଦ୍ଧତି ରୂପେ ପରିଗୃହୀତ । ସେହି ପରିପ୍ରେକ୍ଷୀରେ ଭାଗବତର ପଞ୍ଚମ ଓ ଷଷ୍ଠସ୍କନ୍ଧ ଅତ୍ୟନ୍ତ ଲୋକପ୍ରିୟ ହୋଇଛି ବୋଲି କହିଲେ ଅସମୀଚୀନ ହେବ ନାହିଁ ।

ପ୍ରସ୍ତୁତ ପଞ୍ଚମ ଓ ଷଷ୍ଠସ୍କନ୍ଧର ପାଠ ପ୍ରସ୍ତୁତ କରିବା ପାଇଁ ସମଗ୍ର ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ତଥା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ତାଳପତ୍ର ପୋଥିରୁ ସାହାଯ୍ୟ ନିଆଯାଇଛି । ବିଶେଷତଃ ପଶ୍ଚିମବଙ୍ଗର କାନ୍ଥି ନୀହାର ପ୍ରେସ୍ ଦ୍ୱାରା ମୁଦ୍ରିତ ବଙ୍ଗାକ୍ଷରରେ ଜଗନ୍ନାଥ ଦାସଙ୍କ ଭାଗବତର ପାଠ ଆମ ସମ୍ପାଦନାକୁ ଋଦ୍ଧିମନ୍ତ କରିଛି । ଏହାବ୍ୟତୀତ ମୂଳଭାଗବତ ଓ ଶ୍ରୀଧର ସ୍ୱାମୀଙ୍କ ଟୀକା ମଧ୍ୟ ନାମବାଚକ ଶବ୍ଦର ପରିବେଷଣରେ ଆମକୁ ବିଶେଷ ସାହାଯ୍ୟ କରିଛି । ଅନ୍ୟଥା ପୋଥିମାନଙ୍କରେ ଥିବା 'ଅଶୁଦ୍ଧ ଶବ୍ଦ' ଆମ ସମ୍ପାଦନାକୁ ବିକୃତ କରିଥାଆନ୍ତା ।

**ସପ୍ତମ-ଅଷ୍ଟମ ସ୍କନ୍ଧ**

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତର ସପ୍ତମ ଓ ଅଷ୍ଟମ ସ୍କନ୍ଧ ସମ୍ପାଦନା କରିବା ସମୟରେ ମୁଁ ବଙ୍ଗାକ୍ଷରରେ ମୁଦ୍ରିତ ମେଦିନୀପୁର ଅଞ୍ଚଳର ଭାଗବତ, ରାଜକିଶୋର ଦାସଙ୍କ ସମ୍ପାଦିତ ଭାଗବତ, ରାଧାମାଧମ ପୁସ୍ତକାଳୟ ଦ୍ୱାରା ମୁଦ୍ରିତ ଭାଗବତ, ବ୍ରହ୍ମପୁରର ବାଣୀଭଣ୍ଡାର

ଦ୍ୱାରା ମୁଦ୍ରିତ ଭାଗବତ, ତଥା ଜୟଦେବ ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ ବାଙ୍କୀ, ପାରଳାଖେମୁଣ୍ଡି, ଜୟପୁର, ବଲାଙ୍ଗୀର, କୁଜଙ୍ଗ, କଳାହାଣ୍ଡି ଓ ପୁରୀ ଜିଲ୍ଲାର ଚନ୍ଦନପୁରର ପୋଥିଗୁଡ଼ିକର ସାହାଯ୍ୟ ଗ୍ରହଣ କରିଛି । ଉପରୋକ୍ତ ପୁସ୍ତକ ଓ ପୋଥିଗୁଡ଼ିକର ପାଠକୁ ଅତ୍ୟନ୍ତ ଯତ୍ନ ସହକାରେ ଅନୁଧ୍ୟାନ କରି, ଯେଉଁ ପାଠଟି କ୍ରାନ୍ତଦର୍ଶୀ କବି ଜଗନ୍ନାଥ ଦାସଙ୍କର ବୋଲି ମନେହୋଇଛି, ସେହି ପାଠଟିକୁ ମୂଳରେ ଦେଇ, ପାଠାନ୍ତର ଅଂଶକୁ ଟୀକାରେ କ,ଖ,ଗ ଆଦି ପାଠ ଭାବରେ ଉଲ୍ଲେଖ କରିଛି ।

ଶ୍ରୀମଦ ଭାଗବତରେ ସପ୍ତମ ଓ ଅଷ୍ଟମ ସ୍କନ୍ଧ ଦୁଇଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍କନ୍ଧ । ଏଥିରେ ବ୍ୟାସଦେବ, ଶ୍ରୀହରିଙ୍କ ଲୀଳାବିସ୍ତାର କରି ଭକ୍ତପ୍ରବର ପ୍ରହ୍ଲାଦଙ୍କ ଚରିତ ପ୍ରସଙ୍ଗରେ ହିରଣ୍ୟକଶିପୁ ପରି ଏକ ଦୁର୍ଦ୍ଦାନ୍ତ ଦୈତ୍ୟର ବଧ, ବର୍ଣ୍ଣାଶ୍ରମ ଧର୍ମର ଉପଦେଶ, ଗଜ-କୁମ୍ଭୀର ଯୁଦ୍ଧ, ଗଜ ଉଦ୍ଧାରଣ, ସମୁଦ୍ର ମନ୍ଥନ, ଦେବାସୁର ସଂଗ୍ରାମ, ବାମନାବତାର, ବଳୀରାଜା ଚରିତ, ମତ୍ସ୍ୟାବତାର ଆଦି ଚରିତର ବର୍ଣ୍ଣନା ମଧ୍ୟରେ ବୈଷ୍ଣବତତ୍ତ୍ୱର ବ୍ୟାଖ୍ୟା କରିଛନ୍ତି । ପ୍ରତ୍ୟେକ ଲୀଳାର ମାହାତ୍ମ୍ୟ ବର୍ଣ୍ଣନାରେ ଭଗବତ ଶକ୍ତିର ଯେଉଁ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି ତାହା ହିଁ ହେଉଛି- ଭାଗବତର ସଫଳ ରୂପାୟନ । ତେଣୁ ଏଠାରେ ସପ୍ତମ ଓ ଅଷ୍ଟମ ସ୍କନ୍ଧର କଥାବସ୍ତୁ ସଂକ୍ଷେପରେ ପ୍ରଦାନ କରାଯାଉଛି ।

ରାଜା ପରୀକ୍ଷିତଙ୍କୁ ସପ୍ତମ ସ୍କନ୍ଧର ବିଷୟ ବୁଝାଇବାକୁ ଯାଇ ମହର୍ଷି ଶୁକଦେବ କହିଲେ - "ହେ ରାଜନ୍! ପ୍ରକୃତରେ ଭଗବାନ୍ ଅଜନ୍ମା, ଅବ୍ୟକ୍ତ ତଥା ପ୍ରକୃତିରୁ ପର । ସେ ମାୟାଗୁଣକୁ ଆଶ୍ରୟ କରି, ଅନେକ ରୂପ ଗ୍ରହଣ କରନ୍ତି । ପରମାତ୍ମା ହେଉଛନ୍ତି- ଗୁଣାତୀତ, ସେ ସଂସାରର ଉଦ୍ଧାର ପାଇଁ ସତ୍ତ୍ୱେ, ରଜ ଓ ତମୋଗୁଣରେ ଯୁକ୍ତ ହୋଇ ଲୀଳାବିହାର କରନ୍ତି । ସେହି ପ୍ରସଙ୍ଗରେ ଯୁଧିଷ୍ଠିରଙ୍କୁ ନାରଦ ଯାହା ଶୁଣାଇଥିଲେ, ମୁଁ ତାହା ଆପଣଙ୍କୁ ଶୁଣାଉଛି ।

"ହେ ରାଜ୍! ଭଗବାନ୍ ହେଉଛନ୍ତି-ଭେଦାଭେଦ ଶୂନ୍ୟ । ତା'ଙ୍କୁ ମିତ୍ର ଓ ବୈର, ଉଭୟ ଭାବରେ ଲାଭ କରିହୁଏ ।"

ଶିଶୁପାଳ ଓ ଦନ୍ତବକ୍ର ଦୁହେଁ ଥିଲେ ବିଷ୍ଣୁଙ୍କର ପାର୍ଷଦ । ସନକାଦି ମୁନିଙ୍କ ଶାପରେ ସେ ଦୁହେଁ ହିରଣ୍ୟ ଓ ହିରଣ୍ୟାକ୍ଷ, ରାବଣ ଓ କୁମ୍ଭକର୍ଣ୍ଣ ତଥା ଶିଶୁପାଳ ଓ ଦନ୍ତବକ୍ର ରୂପେ ଜନ୍ମଗ୍ରହଣ କରି ଯଥାକ୍ରମେ ଭଗବାନ୍ ବରାହ, ନୃସିଂହ,ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ଦ୍ୱାରା ମୋକ୍ଷପ୍ରାପ୍ତ ହୋଇଥିଲେ ।

ଭଗବାନ ବରାହ ରୂପରେ ହିରଣ୍ୟାକ୍ଷ ଦୈତ୍ୟକୁ ବଧ କରନ୍ତେ, ହିରଣ୍ୟକଶିପୁ ମାତା ଦିତିଙ୍କୁ ବୁଝାଇ, ମନ୍ଦର ପର୍ବତରେ ଏକ ସୁରମ୍ୟ ଗୁମ୍ଫା ମଧ୍ୟରେ ତପସ୍ୟା କରି, ଅମରବର ପରି ଗୋଟିଏ ବର ପାଇ, ସଭିଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲା । ଦେବତାମାନେ ବୈକୁଣ୍ଠବିହାରୀଙ୍କ ନିକଟରେ ଗୁହାରି କରି ହିରଣ୍ୟକଶିପୁର ଅତ୍ୟାଚାର ବିଷୟ ଜଣାଇଲେ ।

ହିରଣ୍ୟକଶିପୁର ଚାରିପୁଅଙ୍କ ମଧ୍ୟରେ କନିଷ୍ଠ ପ୍ରହ୍ଲାଦ ଥିଲା । ବିଷ୍ଣୁଭକ୍ତ ଶୁକ୍ରାଚାର୍ଯ୍ୟଙ୍କ ପୁତ୍ର ଅସୁର ପିଲାମାନଙ୍କୁ ପାଠ ପଢ଼ାଉଥିଲେ । ପ୍ରହ୍ଲାଦର ବିଷ୍ଣୁଭକ୍ତି ଦେଖି ଶିକ୍ଷକ ରାଜାଙ୍କୁ ଜଣାଇଲେ । ଦୈତ୍ୟରାଜ ପୁତ୍ର ପ୍ରହ୍ଲାଦକୁ ନିଜ ବାଟକୁ ଅଣାଇବା ପାଇଁ ଅନେକ ଚେଷ୍ଟା କରି ବିଫଳ ହେଲେ । ଶେଷରେ ସେ ପ୍ରହ୍ଲାଦଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କଲେ । ଦିନେ ବିଷ୍ଣୁ ଭକ୍ତ ପ୍ରହ୍ଲାଦଙ୍କ ଆକୁଳ ମିନତିରେ ସ୍ତମ୍ଭରେ ନରସିଂହରୂପରେ ପ୍ରକଟ ହୋଇ, ହିରଣ୍ୟକଶିପୁକୁ ବଧ କଲେ । ସେତେବେଳେ ତା'ଙ୍କର ନିକଟ ନରସିଂହ ରୂପ ଦେଖି, ଦେବତା, ଋଷି, ଗନ୍ଧର୍ବ ଏପରିକି ସ୍ୱୟଂ ବ୍ରହ୍ମା ମଧ୍ୟ ଉଭୟରେ ଥରହର ହୋଇ ନାନା ଭାବରେ ତା'ଙ୍କୁ ସ୍ତୁତି କରିବାରେ ଲାଗିଲେ । ଶେଷରେ ପ୍ରହ୍ଲାଦଙ୍କ ସ୍ତୁତିରେ ନରସିଂହ ସନ୍ତୁଷ୍ଟ ହୋଇ ତା'ଙ୍କୁ ଦୈତ୍ୟରାଜ ପଦରେ ଅଭିଷିକ୍ତ କରାଇଲେ ।

ପରୀକ୍ଷିତଙ୍କ ଜିଜ୍ଞାସାମତେ ମୁନିରାଜ ଶୁକଦେବ, ଯୁଧିଷ୍ଠିର-ନାରଦ ସମ୍ବାଦର ଅବତାରଣା କରି, ତା'ଙ୍କୁ ବର୍ଣ୍ଣାଶ୍ରମ ଧର୍ମର ଗୂଢ଼ତତ୍ତ୍ୱମାନ ଶୁଣାଇଲେ । ଶୁକଦେବ ବ୍ରହ୍ମଚାରୀ, ଗୃହୀ, ବାନପ୍ରସ୍ଥୀ ଓ ସନ୍ନ୍ୟାସୀମାନଙ୍କର ଆଚାର ବିଚାର, ରୀତିନୀତି ତଥା କର୍ତ୍ତବ୍ୟ ସମ୍ପର୍କରେ ଶୁଣାଇ ରାଜାଙ୍କୁ ସନ୍ତୁଷ୍ଟ କଲେ ।

ପ୍ରହ୍ଲାଦ ଦୈତ୍ୟରାଜ ପଦରେ ଅଭିଷିକ୍ତ ହୋଇ ଦେଶ ପର୍ଯ୍ୟଟନ କରିବା ଫଳରେ କାମ,କ୍ରୋଧ,ଲୋଭ ଓ ମୋହାଦି ଛଅରିପୁଙ୍କୁ ଜୟ କରି ସାରା ଜୀବନ ଶ୍ରୀହରିଙ୍କ ନାମ-ଭଜନରେ କାଳ ଅତିବାହିତ କଲେ ।

ମହାରାଜା ପରୀକ୍ଷିତଙ୍କୁ ଶୁକଦେଇ ଅଷ୍ଟମ ସ୍କନ୍ଧରେ ବିବରଣୀ ଶୁଣାଇବା ପ୍ରସଙ୍ଗରେ ବରୁଣ ହ୍ରଦରେ ଗଜ-କୁମ୍ଭୀର ଯୁଦ୍ଧର ବିଶଦ ବର୍ଣ୍ଣନା କରିଥିଲେ । ଗଜରାଜଙ୍କର ଆର୍ତ୍ତସ୍ତବନରେ ଚକ୍ରଧର ବିଷ୍ଣୁ ସେଠାରେ ଉପସ୍ଥିତ ହୋଇ କୁମ୍ଭୀରକୁ ବିନାଶ କରିବା ସଙ୍ଗେ ସଙ୍ଗେ ଗଜରାଜଙ୍କୁ ରକ୍ଷା କରିଥିଲେ । ଏତିକିବେଳେ ଦେବଦେବୀମାନେ ଆସି ବିଷ୍ଣୁଙ୍କୁ ଦର୍ଶନ କରିଥିଲେ ।

ଅସୁରମାନଙ୍କ ଉତ୍ପାତ ସହ୍ୟ କରି ନ ପାରି ଦେବଗଣ ବିଷ୍ଣୁଙ୍କଠାରେ ଉପସ୍ଥିତ ହେଲେ । ବିଷ୍ଣୁଙ୍କ ପରାମର୍ଶରେ ଦେବାସୁରଙ୍କ ଦ୍ୱାରା 'ସମୁଦ୍ର ମନ୍ଥନ' ଆରମ୍ଭ କରାଗଲା । ଶିବ ହଳାହଳ ପାନ କରି ନୀଳକଣ୍ଠ ହେଲେ । ସମୁଦ୍ର ମନ୍ଥନରୁ ମିଳିଥିବା ବସ୍ତୁ, ବିଶେଷତଃ ଅମୃତ ପାଇଁ ଦେବାସୁରଙ୍କ ମଧ୍ୟରେ କଳହର ସୂତ୍ରପାତ ହେଲା । ବିଷ୍ଣୁ ମୋହିନୀରୂପ ଧାରଣ କରି କେବଳ ଦେବତାମାନଙ୍କୁ ଅମୃତ ପରିବେଷଣ କରିଦେଲେ । ତା'ପରେ ଆରମ୍ଭ ହେଲା ଘୋରତର ଦେବାସୁର ସଂଗ୍ରାମ । ଏହା ମଧ୍ୟରେ ଶିବ ବିଷ୍ଣୁଙ୍କ ମୋହିନୀ ମୂର୍ତ୍ତି ଦେଖିବା ପାଇଁ ଆଗ୍ରହ ପ୍ରକାଶ କରି, ଅପଦସ୍ତ ହେଲେ ।


Dr. Sudhanshu Sekhar Mishra

ବଳିରାଜ ବଳବାନ୍ ହୋଇ ସ୍ୱର୍ଗ ଅଧିକାର କରିନିଅନ୍ତେ, ଅଦିତିଙ୍କ ପୟୋବ୍ରତ ଫଳରେ ବାମନ ଜନ୍ମଗ୍ରହଣ କରି, ବଳିଠାରୁ ତ୍ରିପୁର ଦାନ ଗ୍ରହଣ କଲେ। ପ୍ରହ୍ଲାଦଙ୍କ ଅନୁରୋଧରେ ବିଷ୍ଣୁ ସୁତଳରେ ବଳିଙ୍କୁ ଅବସ୍ଥାନ କରାଇ, ନିଜେ ଗଦାଧାରଣ କରି ତା'ରି ରକ୍ଷାରେ ନିଯୁକ୍ତ ହେଲେ।

ଏହାପରେ ମହାପ୍ରଳୟର ସମୟ ଆସିଗଲା। ଭଗବାନ୍ ବିଷ୍ଣୁ ରାଜର୍ଷି ସତ୍ୟବ୍ରତଙ୍କୁ ମୀନ ଅବତାର ଗ୍ରହଣ କରି ଦର୍ଶନ ଦେବା ସଙ୍ଗେ ସଙ୍ଗେ ତାହାଙ୍କୁ ଭବସାଗରରୁ ଉଦ୍ଧାର କରି, ପୁନଃସୃଷ୍ଟିର ଆୟୋଜନ କରିଥିଲେ।

ଶ୍ରୀମଦ୍ ଭାଗବତର ପ୍ରତ୍ୟେକ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କ ଚରିତ ଭିନ୍ନ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇଛି। କୃଷ୍ଣଦ୍ୱୈପାୟନ ବ୍ୟାସଦେବ ଜଗତର କଲ୍ୟାଣ ପାଇଁ ଏହି ଗ୍ରନ୍ଥ ରଚନାକରି, ସେଥିରେ ପ୍ରତି ଛତ୍ରେ ଛତ୍ରେ ଶ୍ରୀକୃଷ୍ଣଙ୍କ ମଧୁମୟ ଗୁଣାବଳୀର କୀର୍ତ୍ତନ କରିଛନ୍ତି।

## ନବମ ସ୍କନ୍ଧ

ଶ୍ରୀମଦ୍‌ଭାଗବତର ନବମସ୍କନ୍ଧରେ କଥାବସ୍ତୁ ଅପେକ୍ଷା ନାମାବଳୀ ବହୁଳ ଭାବରେ ଥିବାର ଦେଖାଯାଏ। କାରଣ ପୁରାଣର ନିୟମ ଅନୁସାରେ ଏହି ସ୍କନ୍ଧଟି ବଂଶାବଳୀ ଚରିତରେ ସମୃଦ୍ଧ ହୋଇଛି। ସୂର୍ଯ୍ୟବଂଶ ଇକ୍ଷ୍ୱାକୁ ଆର୍ଯ୍ୟାବର୍ତ୍ତରେ ସମୃଦ୍ଧ ବଂଶରୂପେ ପରିଚିତ। ଏହି ଇକ୍ଷ୍ୱାକୁ ବଂଶରେ ଶ୍ରୀରାମ ଓ ଶ୍ରୀକୃଷ୍ଣ ଆବିର୍ଭୂତ ହୋଇ, ଜନତା-ଜନାର୍ଦ୍ଦନର ସେବାରେ ଆତ୍ମନିୟୋଗ କରିଥିଲେ। ଏହି ଇକ୍ଷ୍ୱାକୁ ମୂଳ ବଂଶବୃକ୍ଷର ବହୁସଂଖ୍ୟକ ଶାଖା-ପ୍ରଶାଖା ମେଲି ଆର୍ଯ୍ୟାବର୍ତ୍ତର ଶାସନଭାର ଗ୍ରହଣ କରିଥିଲେ। ଏହି ଇକ୍ଷ୍ୱାକୁ ବଂଶରେ କେତେଜଣ ସୁଖ୍ୟାତ ରାଜାଥିଲେ, ଯେଉଁମାନଙ୍କ କୀର୍ତ୍ତିକଳାପ ଯୁଗଯୁଗ ଧରି ରହିଆସିଛି। ଆଜିସୁଦ୍ଧା ସେହି ପୁଣ୍ୟଶ୍ଳୋକ ରାଜାଙ୍କ ଚରିତ ପଠନ ଓ ଶ୍ରବଣ କରି ଭକ୍ତଜନତା କୃତକୃତ୍ୟ ହେଉଅଛି। ସେହି ରାଜାମାନଙ୍କ ମଧ୍ୟରେ ଅମ୍ବରୀଷ ଥିଲେ ଜଣେ ପ୍ରଖ୍ୟାତ ବିଷ୍ଣୁଭକ୍ତ। କୋପମୁନି ଦୁର୍ବାସା ଏକଦା ତା'ଙ୍କ ପ୍ରତି ଅନ୍ୟାୟରେ କୋପ କରି କୃତ୍ୟା ପୋଷଣ କରିଥିବାରୁ, ସ୍ୱୟଂ ସୁଦର୍ଶନ ଚକ୍ର ତା'ଙ୍କୁ ବିପଦରୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ମୁନିଙ୍କି ସମୁଚିତ ଶିକ୍ଷା ଦେଇଥିଲେ।

ସେହିପରି ମହାରାଜା ସଗରଙ୍କ ଯଜ୍ଞ, ଷାଠିଏ ହଜାର ପୁତ୍ରଙ୍କ ଅକାଳମୃତ୍ୟୁ, ଅଂଶୁମାନଙ୍କ ପ୍ରଚେଷ୍ଟା ତଥା ଶେଷରେ ମହାରାଜା ଭଗୀରଥଙ୍କ ଦ୍ୱାରା ଗଙ୍ଗା ଆନୟନ ନବମସ୍କନ୍ଧର ଏକ ଶିକ୍ଷଣୀୟ ଆଖ୍ୟାନ।

ଏହି ସ୍କନ୍ଧରେ ସମ୍ପୂର୍ଣ୍ଣ ରାମାୟଣର କାହାଣୀ ସଂକ୍ଷେପରେ ବର୍ଣ୍ଣିତ ହୋଇଛି। ସେହି ପ୍ରକରଣରେ ହୈହୟବଂଶଜ ପ୍ରଖ୍ୟାତ ନୃପତି ସହସ୍ରାର୍ଜ୍ଜୁନ କାର୍ତ୍ତବୀର୍ଯ୍ୟ ଓ ପରଶୁରାମଙ୍କ ଆଖ୍ୟାନ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ। ଅହଂକାର କିପରି ମନୁଷ୍ୟଙ୍କୁ ସର୍ବନାଶର ଗର୍ଭ ଆଡ଼କୁ ଓଟାରି ନିଏ, ତାହା ହିଁ ହେଉଛି-ଏହି ଆଖ୍ୟାନର ବୈଶିଷ୍ଟ୍ୟ

ସେହିପରି ଯଯାତି, ଶୁକ୍ରାଚାର୍ଯ୍ୟ, ଶର୍ମିଷ୍ଠା ଓ ଦେବଯାନୀଙ୍କୁ ନେଇ ଯେଉଁ ମନୋରମ ଆଖ୍ୟାନଟିନମବସ୍କନ୍ଧରେ ରହିଛି, ତାହା କମ୍ ଶିକ୍ଷୀୟ ନୁହେଁ। ବଳବତୀ ଇନ୍ଦ୍ରିୟଲାଳସା ଓ ଭୋଗତୃଷ୍ଣା କିପରି 'ହବିଷାକୃଷ୍ଣବର୍ତ୍ମେବ ଭୂୟଏବାଭିବର୍ଦ୍ଧତେ' ତା'ର ଜ୍ୱଳନ୍ତ ନମୁନା ମିଳେ ଯଯାତିଙ୍କ ଆଖ୍ୟାନରୁ।

ନବମ ସ୍କନ୍ଧର ଆଖ୍ୟାୟିକାଗୁଡ଼ିକ ମଧ୍ୟରେ ମହାରାଜା ଦୁଷ୍ୟନ୍ତ ଓ ଶକୁନ୍ତଳା ତଥା ଦାନବୀର ରନ୍ତିଦେବଙ୍କ ଚରିତ ଅତ୍ୟନ୍ତ ଆକର୍ଷଣୀୟ ଓ ଶିକ୍ଷଣୀୟ। ମହାରାଜ ରନ୍ତିଦେବ ଅଠଚାଳିଶ ଦିନ ପରିବାର ସହିତ ଉପବାସ ରହିବା ପରେ, କୌଣସି ମତେ ଯୋଗାଡ଼ କରିଥିବା ଖାଦ୍ୟକୁ ପୁଣି ଅତିଥିମାନଙ୍କୁ ବାଣ୍ଟିଦେଇ, ଭାରତୀୟ ସମାଜରେ 'ଦାନ'ର ଯେଉଁ ମହତ୍ତ୍ୱପୂର୍ଣ୍ଣ ବଦାନ୍ୟତା ସୃଷ୍ଟି କରିଛନ୍ତି, ତା'ର ପଟାନ୍ତର ନାହିଁ।

ପିତୃ ଆଜ୍ଞା ଉଲ୍ଲଙ୍ଘନ ଫଳରେ ଯଦୁବଂଶ କିପରି ବ୍ରହ୍ମଶାପରେ ଧ୍ୱଂସ ହେଲା ଏବଂ ସେହି ବଂଶର କୀର୍ତ୍ତିମାନ ପୁରୁଷ ଶ୍ରୀକୃଷ୍ଣ କିପରି ସିଂହାସନ ଆରୋହଣ କରିବାରୁ ବଞ୍ଚିତ ହେଲେ, ତାହା ନବମ ସ୍କନ୍ଧର ବଂଶାନୁଚରିତରୁ ମିଳିଥାଏ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ନାମରେ ବଜାରରେ ଯେତେ ଖଣ୍ଡି ଭାଗବତ ମିଳୁଛି, ସବୁଥିରେ ବିଭିନ୍ନ ରାଜବଂଶର ରାଜା, ରାଜକୁମାର ଓ ରାଜପୁରୁଷ ନାମ ଉଲ୍ଲେଖରେ ବହୁ ଭ୍ରମପ୍ରମାଦ ପରିଲକ୍ଷିତ ହୁଏ। ପ୍ରସ୍ତୁତ ଶୁଦ୍ଧ ସଂସ୍କରଣରେ ସଂସ୍କୃତ ପାଠ ଓ ଶ୍ରୀଧରସ୍ୱାମୀଙ୍କ ଟୀକାରୁ ନାମାବଳୀଗୁଡ଼ିକ ସଂଗୃହୀତ କରାଯାଇଛି। ତେଣୁ ଅନ୍ୟାନ୍ୟ ପ୍ରକାଶନରେ ଯେଉଁ ପ୍ରମାଦ ଦେଖାଯାଏ, ତାହା ପ୍ରସ୍ତୁତ ସଂସ୍କରଣରୁ ମିଳିବ ନାହିଁ।

ଏହି 'ଶୁଦ୍ଧ ସଂସ୍କରଣ'ଟି ପ୍ରସ୍ତୁତ କରିବା ପାଇଁ ବଙ୍ଗାକ୍ଷରରେ ମୁଦ୍ରିତ, ରାଧାରମଣ ପୁସ୍ତକାଳୟ ପ୍ରକାଶିତ, ରାଜକିଶୋର ଦାସଙ୍କ ସମ୍ପାଦି ଭାଗବତ ପୁସ୍ତକଗୁଡ଼ିକର ସାହାଯ୍ୟ ନିଆଯାଇଛି। ଏତଦ୍‌ବ୍ୟତୀତ ଜୟଦେବ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥିବିଭାଗରେ ସଂରକ୍ଷିତ ORP/2495 ପୁରୀଜିଲ୍ଲାର କୋଟପଲ୍ଲାରୁ ସଂଗୃହୀତ ପୋଥି ORP/217 ଗଜପତି ଜିଲ୍ଲାର ପାରଳାଖେମୁଣ୍ଡିରୁ ସଂଗୃହୀତ ପୋଥି, ORP/751 ଢେଙ୍କାନାଳ ଜିଲ୍ଲାର ଭାପୁରରୁ ସଂଗୃହୀତ ପୋଥି, ORP/441 ଯାଜପୁର ଜିଲ୍ଲାର ମଧୁପୁରରୁ ସଂଗୃହୀତ ପୋଥି ORP/1565 କୋରାପୁଟ ଜିଲ୍ଲାର ଗୁଣପୁରରୁ ସଂଗୃହୀତ ପୋଥିରୁ ପାଠ ସଂଗୃହୀତ ହୋଇଛି। ପ୍ରତ୍ୟେକ ପୋଥି ଓ ପୁସ୍ତକର ପାଠକୁ ସାବଧାନତାର ସହିତ ବିଚାର କରି, ଗୋଟିଏ ପାଠକୁ ମୂଳପାଠ ରୂପେ ଗ୍ରହଣ କରି, ଅନ୍ୟ ପାଠଗୁଡ଼ିକ ପରି ଏଥିରେ ମଧ ଗୋଟିଏ 'ଅର୍ଥଦୀପିକା' ଦିଆଯାଇଛି।

**ଦଶମ ସ୍କନ୍ଧ** (ଗୋପ-ଲୀଳା)

ଶ୍ରୀମଦ୍‌ଭାଗବତର ମୂଳ ସଂସ୍କୃତ ପାଠରେ ଦଶମ ସ୍କନ୍ଧଟି ମୋଟ ନବେଟି ଅଧ୍ୟାୟରେ ସମ୍ପୂର୍ଣ୍ଣ ହୋଇଛି । କିନ୍ତୁ କ୍ରାନ୍ତ ଦର୍ଶୀ କବି ଜଗନ୍ନାଥ ଦାସ ମୂଳପାଠର ନବେଟି ଅଧ୍ୟାୟକୁ ଛୟାନବେ ଅଧ୍ୟାୟରେ ପରିଣତ କରି, ପ୍ରଥମ ଅଠାଳିଶ ଅଧ୍ୟାୟକୁ 'ଗୋପଲୀଳା' ଓ ପରବର୍ତ୍ତୀ ଅଠଚାଳିଶ ଅଧ୍ୟାୟକୁ 'ଦ୍ୱାରକାଲୀଳା' ନାମରେ ନାମିତ କରିଛନ୍ତି । ପୃଷ୍ଠା ସଂଖ୍ୟାର ଆଧିକ୍ୟ ହେତୁ ଆମ ସମ୍ପାଦନାରେ ଦଶମ ସ୍କନ୍ଧଟିକୁ ଗୋପଲୀଳା ଓ ଦ୍ୱାରକାଲୀଳା ଭେଦରେ ଦୁଇ ଖଣ୍ଡରେ ପ୍ରକାଶ କରାଯାଉଛି ।

ଭାଗବତ ମହାପୁରାଣରେ ଦଶମ ସ୍କନ୍ଧର ପ୍ରଥମ ଭାଗ ଗୋପଲୀଳା ନାମରେ ନାମିତ । ଏଥିରେ ବସୁଦେବ ଓ ଦେବକୀଙ୍କ ବିବାହଠାରୁ ଆରମ୍ଭ କରି ଶ୍ରୀକୃଷ୍ଣଙ୍କ ଜନ୍ମ, ଦେବକୀ-ବସୁଦେବଙ୍କ ପ୍ରତି କଂସର ଅତ୍ୟାଚାର, ଗୋପପୁରରେ ଶ୍ରୀକୃଷ୍ଣଙ୍କ ବାଳଲୀଳା, ତା'ଙ୍କ ଦ୍ୱାରା ପୁତନା, ଶକଟ, ଅଘ, ବକ, ଧେନୁକ ଓ କେଶୀ ଆଦି ଅସୁରଙ୍କ ବଧ, ମଥୁରାରେ କଂସର ଉଚ୍ଚାଟ, ଧନୁଯାତ୍ରାର ଆୟୋଜନ, ମଥୁରାରୁ ଅକ୍ରୁରଙ୍କ ଗୋପପୁର ଆଗମନ, ଶ୍ରୀକୃଷ୍ଣ ଓ ବଳରାମଙ୍କ ମଥୁରାଯାତ୍ରା, କୁବଳୟାପୀଡ଼, ଚାଣୁର, ମୁଷ୍ଟିକ ଓ ପରିଶେଷରେ କଂସବଧ ଏହି ଖଣ୍ଡର ପ୍ରତିପାଦ୍ୟ ବିଷୟ ।

ଦଶମସ୍କନ୍ଧ 'ଗୋପଲୀଳା'ରେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଗୋବର୍ଦ୍ଧନ ଧାରଣ, ଇନ୍ଦ୍ରର ଗର୍ବଗଞ୍ଜନ, ବରୁଣପୁରରେ ପ୍ରବେଶ ଓ ବ୍ରହ୍ମ ରଜନୀରେ ରାସଲୀଳା ହେଉଛି ମୁଖ୍ୟ ଆଲୋଚ୍ୟ ବିଷୟ । କୃଷ୍ଣପ୍ରେମାଧୀନା ଗୋପୀମାନେ ଭକ୍ତିର 'ସହଜ' ଅର୍ଥାତ୍ ନୈସର୍ଗିକ ସ୍ତରରେ ଉପନୀତା ହୋଇ ଧନଧାନ୍ୟ, ପୁତ୍ର, ସ୍ୱାମୀ, ବେଶ, ବାସ ତ୍ୟାଗକରି, ନିନ୍ଦା, ଅପଯଶ, ବାଧା ଓ ବନ୍ଧନକୁ ନ ମାନି ଶ୍ରୀକୃଷ୍ଣରୂପୀ ପରମାତ୍ମାଙ୍କଠାରେ ମିଳିତ ହେବାର ଯେଉଁ ଅଲୌକିକ ତନ୍ମୟତା ପ୍ରଦର୍ଶନ କରିଛନ୍ତି ତାହା ହେଉଛି ମଧୁରା ଭକ୍ତିର ଶ୍ରେଷ୍ଠ ସୋପାନ । ଗୋପୀମାନେ ନବଧା ଭକ୍ତିର ଶ୍ରେଷ୍ଠ ସୋପାନରେ ଉପନୀତା ହୋଇ ସର୍ବସ୍ୱ ତ୍ୟାଗର ଯେଉଁ ଦୃଷ୍ଟାନ୍ତ ଉପସ୍ଥାପିତ କରିଛନ୍ତି, ଭକ୍ତି ରାଜ୍ୟରେ ତା'ର ତୁଳନା ନାହିଁ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ବ୍ୟବଧାନ ନାହଁଙ୍ଗ କିମ୍ବା ଉଭୟଙ୍କ ମଧ୍ୟରେ 'ଯବନିକା' ନାହଁଙ୍ଗ । ସେହି ସୁସମ୍ପର୍କର ସ୍ଥାନ ଭକ୍ତିର ଚରମ ସୋପାନରେ ଉପନୀତ । ଗୋପୀମାନଙ୍କ ଭକ୍ତି ସିଦ୍ଧାନ୍ତର ପଟାନ୍ତର ନାହଁଙ୍ଗ । ସେଇଥିପାଇଁ ଭକ୍ତି ରାଜ୍ୟରେ ଗୋପୀକା ଭକ୍ତିକୁ ଶ୍ରେଷ୍ଠସ୍ଥାନ ଦିଆଯାଇଛି ।

ଦଶମସ୍କନ୍ଧର ଅଠଚାଳିଶ ଅଧ୍ୟାୟ ମଧ୍ୟରେ ଅକ୍ରୁରଙ୍କ ଦିବ୍ୟରୂପ ଦର୍ଶନ ଭକ୍ତମାନଙ୍କ ମଧ୍ୟରେ ଏକ ଆଲୋଡ଼ନ ସୃଷ୍ଟିକରେ । କୁବୁଜାର ପ୍ରେମାତ୍ମିକା ଭକ୍ତି ଅବଶ୍ୟ ଗୋପିକାଭକ୍ତିର ସମତୁଲ ହୋଇପାରେ । ମାତ୍ର ଗୋପିକା ଭକ୍ତିରେ ଯେଉଁ ଆତ୍ମିକ ପରିପ୍ରକାଶ ରହିଛି, ତାହା କୁବୁଜାର ପ୍ରେମାତ୍ମିକା ଭକ୍ତିରେ ମିଳେ ନାହଁଙ୍ଗ ।

ଗୋପଲୀଳାର ଶେଷ ପର୍ଯ୍ୟାୟରେ କଂସବଧ ସମଗ୍ର ମଥୁରାବାସୀଙ୍କୁ ଚମତ୍କୃତ କରିଛି । ପୌଗଣ୍ଡ ଅତିକ୍ରମ କରିଥିବା ବାଳକଦ୍ୱୟ- ରାମ ଓ କୃଷ୍ଣ ସମସ୍ତଙ୍କ ଦୃଷ୍ଟିରେ ବିସ୍ମୟର ରେଖାପାତ କରିଛନ୍ତି । ବିଶେଷତଃ କୁବଳୟାପୀଡ଼, ଚାଣୁର, ମୁଷ୍ଟିକ ଓ କଂସବଧ ସମସ୍ତଙ୍କୁ ମନ୍ତ୍ରମୁଗଧ କରିଛି । ଅତିବଡ଼ୀ ଜଗନ୍ନାଥ ଦାସ ଏହି ପ୍ରକରଣକୁ ଆହୁରି ବିସ୍ତୃତ ତଥା ମଧୁମୟ କରିବା ପାଇଁ ସରଳ ଭାଷା ଓ ସାବଲୀଳ ପଦାବଳୀର ପ୍ରୟୋଗ କରି ସୁବର୍ଣ୍ଣରେ ସୁଗନ୍ଧ ଭରି ଦେଇଛନ୍ତି ।

ଦଶମସ୍କନ୍ଧ ଗୋପଲୀଳାର ସମ୍ପାଦନା ଉଦ୍ଦେଶ୍ୟରେ ରାଜକିଶୋର ଦାସଙ୍କ ସମ୍ପାଦିତ ଭାଗବତ, ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ବଙ୍ଗାକ୍ଷରରେ ମୁଦ୍ରିତ ଭାଗବତ, ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ଶ୍ରୀଧରୀ ଟୀକା ସମେତ ମୂଳ ଭାଗବତ ଆଦି ପୁସ୍ତକ ତଥା ଜୟଦେବ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ କୋରାପୁଟ, ସୋରଡ଼ା, ବାଣପୁର, କେନ୍ଦ୍ରାପଡ଼ା, ସୋରୋ, ବାଲେଶ୍ୱର ଅଞ୍ଚଳର ପୋଥିଗୁଡ଼ିକରୁ ପାଠ ସଂଗ୍ରହ କରାଯାଇଛି । ଯେଉଁ ପାଠ ଜଗନ୍ନାଥ ଦାସଙ୍କ ପାଠ ବୋଲି ଆପାତତଃ ଗୃହୀତ ହୋଇଛି, ସେହି ପାଠଟିକୁ ମୂଳପାଠ ରୂପେ ଗ୍ରହଣ କରାଯାଇଛି ଏବଂ ଅନ୍ୟ ପାଠଗୁଡ଼ିକୁ କ,ଖ,ଗ,ଘ କ୍ରମରେ ଟୀକାରେ ସନ୍ନିବେଶିତ କରାଯାଇଛି ।

ଅନ୍ୟ ସ୍କନ୍ଧମାନଙ୍କ ପରି ଦଶମସ୍କନ୍ଧର ଗୋପଲୀଳାରେ ଗୋଟିଏ 'ଅର୍ଥଦୀପିକା' ଦିଆଯାଇଛି । ଯେଉଁ ଶବ୍ଦଗୁଡ଼ିକ ସାଧାରଣ ପାଠକ-ପାଠିକାଙ୍କ ଦ୍ୱାରା ବୋଧଗମ୍ୟ ହେବ ନାହଁଙ୍ଗ, ସେହି ଶବ୍ଦଗୁଡ଼ିକର ଅର୍ଥ ଓ କେତେକ ଶବ୍ଦର ବିଶଦ୍ ବ୍ୟାଖ୍ୟା ଏଥିରେ ପ୍ରଦତ୍ତ ହୋଇଛି ।

**ଦଶମ ସ୍କନ୍ଧ** (ଦ୍ୱାରକା-ଲୀଳା)

ଶ୍ରୀମଦ୍‌ଭାଗବତ ଦଶମ ସ୍କନ୍ଧ, ଦ୍ୱାରକା ଲୀଳାର ଶୁଦ୍ଧ ସଂସ୍କରଣ କଲାବେଳେ ଆମେ ଜୟଦେବ ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱରରେ ଥିବା ORP, ୨୬୮୭, ୧୫୬୫, ୨୮୮୩, ୩୦୧୬ ପ୍ରଭୃତି ତାଳପତ୍ର ପୋଥି, ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ପୁସ୍ତକ, କାନ୍ଥି (ମେଦିନପୁର, ପଶ୍ଚିମବଙ୍ଗ) ନୀହାର ପ୍ରେସ୍ ଦ୍ୱାରା ବଙ୍ଗାକ୍ଷରରେ ମୁଦ୍ରିତ ପୁସ୍ତକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ଶ୍ରୀଧର ସ୍ୱାମୀଙ୍କ ଟୀକା ଓ ଅନୁବାଦ ସମନ୍ୱିତ ପୁସ୍ତକ ଓ ବଳରାମ ବାନପ୍ରସ୍ଥୀଙ୍କ ଦ୍ୱାରା ଅନୁବାଦିତ ଭାଗବତ ପୁସ୍ତକ ସମୂହରୁ ପାଠ ଗ୍ରହଣ କରିଛୁ । ତନ୍ମଧ୍ୟରେ ଯେଉଁ ପାଠଟି ଅଧିକ ସମୀଚୀନ ବୋଲି ଗୃହୀତ ହୋଇଛି, ସେହି ପାଠଟିକୁ ମୂଳପାଠ ରୂପେ ଗ୍ରହଣ କରାଯାଇ ଅନ୍ୟ ପାଠଗୁଡ଼ିକୁ ଟୀକାରେ ଦିଆଯାଇଛି ।



Dr. Sudhanshu Sekhar Mishra

ମୂଳ ସଂସ୍କୃତ ପାଠରେ ଦଶମ ସ୍କନ୍ଧ - ଉତ୍ତରାର୍ଦ୍ଧ ନାମରେ ନାମିତ ପଞ୍ଚଚାଳିଶ ଅଧ୍ୟାୟକୁ ଆଚାର୍ଯ୍ୟ କବି ଜଗନ୍ନାଥ ଦାସଙ୍କ ଅନୁବାଦରେ ଦ୍ୱାରକାଲୀଳା ନାମରେ ନାମିତ କରାଯାଇ,ସେଥିରେ ଅଠଚାଳିଶ ଅଧ୍ୟାୟ ସନ୍ନିବେଶିତ କରାଯାଇଛି । ତେଣୁ ପ୍ରସ୍ତୁତ ଭାଗରେ ଅଣଚାଷ ଅଧ୍ୟାୟରୁ ଛୟାନବେ ଅଧ୍ୟାୟ ପର୍ଯ୍ୟନ୍ତ ପାଠ ରହିଛି ।

ଦଶମସ୍କନ୍ଧର ଏହି ଭାଗରେ ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କୁ ମଥୁରା ତଥା ଶ୍ରୀକୃଷ୍ଣ ଦ୍ୱାରକାଧୀଶ ଶ୍ରୀକୃଷ୍ଣ ରୂପେ ବର୍ଣ୍ଣନା କରାଯାଇଛି । ଯମ ଭୁବନରୁ ଗୁରୁ ସାନ୍ଦୀପନୀଙ୍କ ମୃତ ପୁତ୍ରର ଆନୟନଠାରୁ ଶ୍ରୀକୃଷ୍ଣଙ୍କ ମହତ୍ୱପୂର୍ଣ୍ଣ କାର୍ଯ୍ୟର ଶୁଭାରମ୍ଭ ହୋଇଛି ।

ତତ୍ପରେ ମାଗଧ ଜରାସନ୍ଧଙ୍କ ସହିତ ତାଙ୍କ ସପ୍ତଦଶବାର ଭୟାବହ ଯୁଦ୍ଧରେ ସେ ନିଜକୁ ଜଣେ ଶକ୍ତିଶାଳୀ ତଥା କଠୋର ପରିଶ୍ରମୀ ଜନସେବୀ ରୂପେ ପ୍ରତିଷ୍ଠିତ କରାଇ, ମଥୁରାବାସୀଙ୍କର ନେତୃତ୍ୱ ନେଇଛନ୍ତି । କାଳଯବନ ପରି ଜଣେ ଦୁର୍ଦ୍ଧାନ୍ତ ରାକ୍ଷସକୁ ଅନାୟାସରେ ମୃତ୍ୟୁର କରାଳ ମୁଖକୁ ଠେଲି ଦେଇ, ସେ ଯେଉଁ ଦୁଃସାହସିକତାର ପରିଚୟ ଦେଇଛନ୍ତି, ତାହା ତାଙ୍କର ପଦମର୍ଯ୍ୟାଦାକୁ ବହୁଗୁଣିତ କରିପାରିଛି ।

ଭୀତତ୍ରସ୍ତ ଯାଦବ ଆଦି ସାତବଂଶର ଲୋକମାନଙ୍କୁ ସମୁଦ୍ର ମଧ୍ୟବର୍ତ୍ତୀ ଦ୍ୱାରକା ପୁରକୁ ନେଇ ଯାଇ, ଶ୍ରୀକୃଷ୍ଣ ନାଗରିକମାନଙ୍କ ଶ୍ରଦ୍ଧାଭାଜନ ହୋଇଛନ୍ତି । ତାପରେ ଗୋଟିଏ ପରେ ଗୋଟିଏ ତାଙ୍କର କର୍ମତତ୍ପରତା ବୃଦ୍ଧି ପାଇଛି ରୁକ୍ମିଣୀ ହରଣ ପ୍ରସଙ୍ଗରୁ । ଶାଲ୍ୱ, ଶିଶୁପାଳ, ଦନ୍ତବକ୍ର ଓ ଜରାସନ୍ଧଙ୍କ ସମ୍ମିଳିତ ସେନା ବିରୁଦ୍ଧରେ ଯାଦବସେନାର ବିଜୟ ଫଳରେ ଆର୍ଯ୍ୟାବର୍ତ୍ତରେ ଶ୍ରୀକୃଷ୍ଣର ପରାକ୍ରମ ଯଜ୍ଞରେ ପୁରୁଷୋତ୍ତମ ରୂପେ ଅର୍ଘ୍ୟ ଗ୍ରହଣ ତଥା ଶିଶୁପାଳର ମୃତ୍ୟୁରେ ତାଙ୍କର ମହିମାନ୍ୱିତ କାର୍ଯ୍ୟକଳାପର ସମଗ୍ର ଆର୍ଯ୍ୟାବର୍ତ୍ତରେ ପରିବ୍ୟାପ୍ତ ହୋଇଛି ।

ଗୋଟିଏ ଦିଗରେ ଲୀଳାବିଳାସୀ ଓ ଅନ୍ୟଦିଗରେ ତାଙ୍କର ଦୁର୍ଦ୍ଦମନୀୟ କାର୍ଯ୍ୟକଳାପ ଫଳରେ ଶ୍ରୀକୃଷ୍ଣ ଲୀଳାମୟ ପୁରୁଷୋତ୍ତମ ରୂପେ ଜନମାନସକୁ ଚମତ୍କୃତ କରିଛନ୍ତି ।

ଦ୍ୱାରକାଲୀଳାର ବିଷୟବସ୍ତୁ ମଧ୍ୟରେ ଅଷ୍ଟଅଶୀତିତମ ଅଧ୍ୟାୟରେ ବର୍ଣ୍ଣିତ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କ ସହିତ ଗୋପଗୋପୀଙ୍କ ମିଳନ ଏବଂ ପରବର୍ତ୍ତୀ ଦୁଇଟି ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କ ପତ୍ନୀମାନଙ୍କୁ ଦ୍ରୌପଦୀଙ୍କ ପ୍ରଶ୍ନ ଓ ଅଷ୍ଟପାଟରାଣୀଙ୍କ ଉତ୍ତର ଓ ଗୋପପୁରବାସୀଙ୍କ ସହିତ ଶ୍ରୀକୃଷ୍ଣ ବଳରାମଙ୍କ ମିଳନ ମାନବୀୟ ଲୀଳାର ଏକ ନମନୀୟ ପ୍ରସଙ୍ଗ ରୂପେ ପାଠକ-ପାଠିକାମାନଙ୍କୁ ଆକୃଷ୍ଟ କରାଇଥାଏ ।

ଏହି ଭାଗରେ ବେଦସ୍ତୁତି ଏକ ମହତ୍ୱପୂର୍ଣ୍ଣ ବିଷୟ । ଦାର୍ଶନିକ ବିଚାରଧାରା ସମନ୍ୱିତ ତେୟାନବେତମ ଅଧ୍ୟାୟଟି ସୁଧୀବର୍ଗଙ୍କ ଆପ୍ୟାୟିତ କରେ । ଏହାହିଁ ହେଉଛି - ସଂକ୍ଷେପରେ ଦ୍ୱାରକାଲୀଳାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ।

### ଏକାଦଶ-ଦ୍ୱାଦଶ ସ୍କନ୍ଧ

ଶ୍ରୀମଦ୍‌ଭାଗବତର ଏକାଦଶସ୍କନ୍ଧ ଓ ଦ୍ୱାଦଶସ୍କନ୍ଧ ସମ୍ପାଦନାରେ ମେଦିନୀପୁର (ପଶ୍ଚିମବଙ୍ଗ), ଗୁଣୁପୁର, ପାରଳାଖେମୁଣ୍ଡି, କେନ୍ଦ୍ରାପଡ଼ା, ହଳଦିଆ (ପୂର୍ବତନ ପୁରୀଜିଲ୍ଲା) ଅଞ୍ଚଳରୁ ସଂଗୃହୀତ ତଥା ଜୟଦେବ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥିଗୁଡ଼ିକରୁ ପାଠ ସଂଗୃହୀତ ହୋଇଛି । ଏହା ବ୍ୟତୀତ ଏହି ସଂକଳନରେ ରାଧାରମଣ ପୁସ୍ତକାଳୟ, ଜଗନ୍ନାଥ କମ୍ପାନୀ, କାନ୍ଥି (ପ. ବଙ୍ଗ) ନୀହାର ପ୍ରେସ୍‌ରେ ବଙ୍ଗାକ୍ଷରରେ ମୁଦ୍ରିତ ଜଗନ୍ନାଥ ଦାସଙ୍କ ଭାଗବତରୁ ମଧ୍ୟ ପାଠ ସଂଗ୍ରହ କରାଯାଇଛି । ସ୍ଥଳ ବିଶେଷରେ, ବିଶେଷତଃ ତତ୍ତ୍ୱସମ୍ପର୍କୀୟ କଠିନ ସ୍ଥଳମାନଙ୍କରେ ଶ୍ରୀମଦ୍‌ଭାଗବତର ଶ୍ରୀଧରସ୍ୱାମୀଙ୍କ ଟୀକା, ବଳରାମ ବାନପ୍ରସ୍ଥୀଙ୍କ ଗଦ୍ୟାନୁବାଦ ତଥା ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପକ୍ଷରୁ ପ୍ରକାଶିତ ମୂଳପାଠ ଓ ଗଦ୍ୟାନୁବାଦରୁ ସାହାଯ୍ୟ ଗ୍ରହଣ କରାଯାଇଛି । ଏଥି ମଧ୍ୟରୁ ଯେଉଁ ପାଠଟି ମୋ ଦ୍ୱାରା ଶୁଦ୍ଧପାଠ ରୂପେ ବିବେଚିତ ହୋଇଛି, ତାହାକୁ ମୂଳପାଠ ରୂପେ ଗ୍ରହଣ କରି, ଅନ୍ୟାନ୍ୟ ପାଠ ତଥା ଆବଶ୍ୟକୀୟ ତଥ୍ୟଗୁଡ଼ିକୁ ଟୀକାରେ ସନ୍ନିବେଶିତ କରାଯାଇଛି ।

ଉଭୟ ଏକାଦଶ ତଥା ଦ୍ୱାଦଶ ସ୍କନ୍ଧର ପାଠ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଶାର ପ୍ରତ୍ୟେକ ଓଡ଼ିଆ ହିନ୍ଦୁଜନସାଧାରଣଙ୍କ ଘରେ ଅନ୍ତତଃ ଖଣ୍ଡିଏ ଏକାଦଶସ୍କନ୍ଧ ସଂରକ୍ଷିତ ହୋଇଥିବାର ଦେଖାଯାଏ । ଏହାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ଶ୍ରୀମଦ୍‌ଭାଗବତରେ ଶ୍ରୀକୃଷ୍ଣଙ୍କର ଯେଉଁ ମାନବୀୟ ଲୀଳାର ଅବତରଣା କରାଯାଇଛି, ଏକାଦଶସ୍କନ୍ଧରେ ତାର ପରିସମାପ୍ତି ଘଟିଛି । ଶ୍ରୀମଦ୍‌ଭାଗବତର ପ୍ରଥମ ସ୍କନ୍ଧରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ରୂପକ ଦାରୁଣ ସମ୍ବାଦ ଶୁଣି ମହାଦେବୀ କୁନ୍ତୀ ଓ ତାଙ୍କ ପୁତ୍ରମାନେ ମହାପ୍ରୟାଣ କରିଥିବାର ଯେଉଁ ଉପାଖ୍ୟାନ ବର୍ଣ୍ଣିତ ହୋଇଛି, ତାହାର ମୂଳକାରଣ ଏକାଦଶସ୍କନ୍ଧରେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ । ଶ୍ରୀକୃଷ୍ଣଙ୍କ ପ୍ରଭାବରେ ଦର୍ପାନ୍ଧ ହୋଇ ଯାଦବବଳ, ବିଶେଷତଃ କୃଷ୍ଣଙ୍କ ପୁତ୍ରମାନେ ଅତ୍ୟନ୍ତ ଉଦ୍ଧତ ତଥା ଅହଙ୍କାରୀ ହୋଇ ଉଠଛନ୍ତି । କିନ୍ତୁ ଗର୍ବଗଞ୍ଜନବାନା ପରମେଶ୍ୱର ଶ୍ରୀକୃଷ୍ଣ ଯଦୁ, ଅନ୍ଧକ, ଭୋଜ ଓ ବୃଷ୍ଣିଆଦି ସାତବଂଶର ବୀରମାନଙ୍କୁ ଧ୍ୱଂସ ନ କରି, ଇହଧାମ ତ୍ୟାଗ କରିନାହାନ୍ତି । ଏହାର ସୂତ୍ରପାତ ହୋଇଛି - ଶାମ୍ବଙ୍କ ନାରୀବେଶରୁ । ଶ୍ରୀକୃଷ୍ଣଙ୍କ ପୁତ୍ରମାନେ ଏତେ ଅହଙ୍କାରୀ ହୋଇ ଉଠିଛନ୍ତି ଯେ, ସେମାନେ ପରମ ସମ୍ମାନାସ୍ପଦ ମୁନିମାନଙ୍କୁ ମଧ୍ୟ ଉପହାସ କରିବାକୁ ବାଦ୍ ଦେଇ ନାହାଁନ୍ତି । ଅହଙ୍କାରୀ ଯଦୁକୁମରମାନେ ଅଶିଷ୍ଟ ଆଚରଣର ଫଳ ସଂଗେ ସଂଗେ ପାଇ ବଂଶନାଶର ପଥ ପରିଷ୍କାର କରିଛନ୍ତି ।

ବିଦେହ ନରେଶ ଓ ନବମୁନିଙ୍କ ଆଲୋଚନା ପ୍ରତ୍ୟେକ ମନୁଷ୍ୟକୁ ସୁପଥରେ ପରିଚାଳିତ କରେ । ଶ୍ରୀକୃଷ୍ଣ ଉଦ୍ଧବଙ୍କ କଥୋପକଥନ ଛଳରେ ପ୍ରତ୍ୟେକ ମନୁଷ୍ୟର ଜୀବନଚର୍ଯ୍ୟା ସମ୍ବନ୍ଧରେ ଯେଉଁ ଉପଦେଶମାନ ଏକାଦଶସ୍କନ୍ଧରୁ ମିଳେ, ତାହା ଜୀବନର


Dr. Sudhanshu Sekhar Mishra

ଗତିପଥରେ, ବିଶେଷତଃ ଘୋର ତିମିରାଚ୍ଛନ୍ନ ଭବସଂସାରରେ ଗୋଟିଏ ଗୋଟିଏ ଆଲୋକ ବର୍ତ୍ତିକା ସଦୃଶ ହୋଇଥାଏ । ଯଦୁରାଜ ଓ ଅବଧୂତଙ୍କ ଆଲୋଚନା, ସେହି ପ୍ରସଙ୍ଗରେ ଚବିଶଗୁରୁଙ୍କ ଅବତାରଣା ଏକାଦଶସ୍କନ୍ଧର ବିଷୟବସ୍ତୁ ପ୍ରତି ମୋକ୍ଷକାମୀ ଭଗବଦ୍ ଭକ୍ତିଭାବାପନ୍ନ ବ୍ୟକ୍ତିମାନଙ୍କୁ ଆକୃଷ୍ଟ କରେ ।

ପରମପୁରୁଷ ଇହଧାମରୁ ବିଦାୟ ନେବା ଅବସରରେ ତାଙ୍କ ଶ୍ରୀମୁଖରୁ ସାଂଖ୍ୟ, କର୍ମ, ଜ୍ଞାନ, ଭକ୍ତି ଓ ବିଭୂତିଯୋଗ ସମ୍ବନ୍ଧୀୟ କଠିନ ଦାର୍ଶନିକ ତତ୍ତ୍ୱକୁ ଅତିବଡ଼ୀ ଜଗନ୍ନାଥ ଦାସ ସାଧାରଣ ଜନତାର ବୋଧଗମ୍ୟ କରାଇ ଏକାଦଶସ୍କନ୍ଧକୁ ରୋଚକ ତଥା ହୃଦ୍ୟ କରାଇଛନ୍ତି । ସେହି ପ୍ରସଙ୍ଗରେ ଚାରିବର୍ଣ୍ଣ, ଚାରିଆଶ୍ରମ ଓ ତ୍ରିଗୁଣର ମହତ୍ତ୍ୱ ସଂପର୍କରେ ଶ୍ରୀକୃଷ୍ଣଙ୍କ ମୁଖନିଃସୃତବାଣୀ ମନୁଷ୍ୟମନର ସଂକୀର୍ଣ୍ଣତାକୁ ଦୂର କରିବାରେ ରସାମୃତ ସ୍ୱରୂପ ହୋଇଛି ।

ମଣିଷ ଏକ ସାମାଜିକ ପ୍ରାଣୀ । ଏହି ସମାଜ ମଧ୍ୟରେ ତାକୁ ନାନା ପ୍ରକାର ବାଧା, ବିଘ୍ନ ଓ ଦୁର୍ବିପାକର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଭାଗବତ ଏକାଦଶସ୍କନ୍ଧରେ ରହିଛି କଳିକଳୁଷ ନିବାରଣର ପ୍ରକୃଷ୍ଟ ଉପାୟ । ଆହୁରି ମଧ୍ୟ ଶୁଦ୍ଧାଶୁଦ୍ଧ ବିଚାର ଏହି ସ୍କନ୍ଧର ଏକ ତଥ୍ୟପୂର୍ଣ୍ଣ ଆଲୋଚନା । ପରିଶେଷରେ ଭଗବଦ୍ ଶ୍ରୀଚରଣାରବିନ୍ଦରେ ସର୍ବସ୍ୱ ସମର୍ପଣ କରି କୃଷ୍ଣୈକତାନାତ୍ମନ ହେବାକୁ ଶ୍ରୀକୃଷ୍ଣଙ୍କ ଉପଦେଶ ପ୍ରତ୍ୟେକ ଭକ୍ତିଭାବାପନ୍ନ ମନୁଷ୍ୟକୁ ସନ୍ମାର୍ଗରେ ପରିଚାଳିତ କରାଏ ।

ଏକାଦଶସ୍କନ୍ଧର ଶେଷ ତିନି ଅଧ୍ୟାୟର ବିଷୟବସ୍ତୁ ଅତ୍ୟନ୍ତ ମର୍ମନ୍ତୁଦ । ଶ୍ରୀକୃଷ୍ଣ ଯେଉଁ ବଂଶବର୍ଦ୍ଧନରେ ନିଜର ସମସ୍ତ ଶକ୍ତି ନିୟୋଜିତ କରିଥିଲେ, ତାହାକୁ ପିଲାର ଧୂଳିଘର ପରି ହଠାତ୍ ଭାଙ୍ଗିଦେଇ ଇହଧାମରୁ ବିଦାୟ ନେବା ପ୍ରସଙ୍ଗ, କର୍ମଜଞ୍ଜାଳପ୍ରବଣ ସାଧାରଣ ମନୁଷ୍ୟକୁ ଶୋକାପ୍ଲୁତ କରାଇଥିଲେ ହେଁ, ସ୍ଥିତି, ପ୍ରଳୟ, ଭଗବଦ୍‌ଚିନ୍ତାଚେତନାର ଆଭିମୁଖ୍ୟ ବୋଲି ଦର୍ଶାଇଥାଏ ।

ଶ୍ରୀମଦ୍‌ଭାଗବତର ଦ୍ୱାଦଶସ୍କନ୍ଧର ପ୍ରାରମ୍ଭରେ ଶ୍ରୀକୃଷ୍ଣଙ୍କ ଗୋଲୋକଗମନର ଅବ୍ୟବହିତ ପରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ସ୍ୱର୍ଗାରୋହଣ ପ୍ରସଙ୍ଗ ସୂଚିତ ହୋଇଛି । ଅତିବଡ଼ୀଙ୍କ ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ତାଙ୍କ ଶିଷ୍ୟ ମହାଦେବ ଦାସ ସମ୍ପୂର୍ଣ୍ଣ କରିଛନ୍ତି । ଏହି ସ୍କନ୍ଧରେ କଳିଯୁଗର ନୀତି, ଜନ୍ମେଜୟଙ୍କ ସର୍ପଯଜ୍ଞ ଓ ପରୀକ୍ଷିତଙ୍କ ମହାପ୍ରୟାଣ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ତକ୍ଷକ ଓ ଧନ୍ୱନ୍ତରୀଙ୍କ କଥୋପକଥନର ଅନ୍ତରାଳରେ ଉତ୍କୋଚ ଗ୍ରହଣର ଦୃଷ୍ଟାନ୍ତ କଳିଯୁଗର ମାନବ ସମାଜକୁ କିପରି ବିଭ୍ରାନ୍ତ କରିଛି, ତାର ଅୟମାରମ୍ଭ ହୋଇଛି ଦ୍ୱାଦଶସ୍କନ୍ଧରେ ।

ଶ୍ରୀମଦ୍‌ଭାଗବତ ହେଉଛି - କଳିମଳ ବିନାଶନ, ଭବାବ୍ଧିତରଣ, ସମ୍ପୂର୍ଣ୍ଣ ଆତ୍ମସମର୍ପଣ ପ୍ରବୃତ୍ତିର ପ୍ରେରକ : ଏହା ପ୍ରାରମ୍ଭରୁ ଦେବର୍ଷି ନାରଦ ଓ ବ୍ୟାସଦେବଙ୍କ କଥୋପକଥନରେ ସୂଚିତ ହୋଇଛି । ସମୁଦାୟ ବାରଖଣ୍ଡ ଭାଗବତରେ ଭାବଗର୍ଭକ ବୈଷ୍ଣବତତ୍ତ୍ୱର ଯେଉଁ ଆଲୋଚନା କରାଯାଇଛି, ତାହା ଅଷ୍ଟାଦଶ ପୁରାଣର ସାର ବୋଲି ବିଦ୍ୱାନ୍‌ମାନେ ମତ ଦିଅନ୍ତି । ତା ବ୍ୟତୀତ ବେଦ, ବ୍ରହ୍ମସୂତ୍ର, ବେଦାନ୍ତ ଉପନିଷଦ୍‌ମାନଙ୍କର ସାର ମଧ୍ୟ କାହାଣୀ ମାଧ୍ୟମରେ ଭାଗବତରେ ପରିବେଶିତ ହୋଇଛି ।

ଦୀର୍ଘ ପାଞ୍ଚଶହ ବର୍ଷତଳେ ଓଡ଼ିଆ ଭାଷାକୁ ସୁସଂଯତ ତଥା ଶୃଙ୍ଖଳିତ କରିବା ପାଇଁ, ଅତିବଡ଼ୀ ଜଗନ୍ନାଥ ଦାସ ଯେଉଁ ପ୍ରାଞ୍ଜଳ ଅନୁବାଦ କରିଛନ୍ତି, ତାହା ଆମ ଭାଷାର ଏକ ଆଦର୍ଶଗ୍ରନ୍ଥ ହୋଇ ପାରିଛି । ଭାଗବତ ପରି ଏକ ମହାନ୍ ଦାର୍ଶନିକ ଗ୍ରନ୍ଥକୁ ଜଗନ୍ନାଥ ଦାସ ସର୍ବସାଧାରଣଙ୍କ ବୋଧଗମ୍ୟ ଭାଷାରେ ଅନୁବାଦ କରି ଅତିବଡ଼ ଆସନରେ ଚିରକାଳ ପାଇଁ ଆସୀନ ହୋଇଛନ୍ତି ।

ଜଗନ୍ନାଥଦାସଙ୍କ ଅନୁବାଦିତ ଭାଗବତ ଓଡ଼ିଶାର ଘରେ ଘରେ ସୁପରିଚିତ । ଦୀର୍ଘଦିନର ପୋଥି ସଂଗ୍ରହାଳୟର ଅଭିଜ୍ଞତାରୁ ମୁଁ ଏତିକି ଜାଣିଛି, ଓଡ଼ିଶାର ଘରେ ଘରେ ଭାଗବତ ପୋଥି ସାଇତା ହୋଇଥିଲା । ଏପରିକି ଉତ୍କଳୀୟ ମୁସଲମାନ ଭାଇମାନେ ମଧ୍ୟ ଭାଗବତ ପୋଥି ପାଠ କରୁଥିଲେ ଏବଂ ଶ୍ରୀକୃଷ୍ଣଭକ୍ତି ସମ୍ବଳିତ ପଦ୍ୟରଚନା କରିବା ସଂଗେ ସଂଗେ ଭାଗବତ, ରସକଲ୍ଲୋଳ, ମଥୁରାମଙ୍ଗଳ ଆଦି ପୁସ୍ତକଗୁଡ଼ିକୁ ତାଳପତ୍ରରେ ନକଲ କରି ନିଜ ଘରେ ସାଇତି ରଖୁଥିଲେ । ପ୍ରତ୍ୟେକ ଗ୍ରାମର ଭାଗବତ ଟୁଙ୍ଗୀ, ଆମ ଜାତୀୟଜୀବନକୁ ଉନ୍ନତ କରୁଥିଲା । କିନ୍ତୁ ଭାଗବତ ଟୁଙ୍ଗି ଓ ଭାଗବତ ବାଣୀର ଅଭାବରେ ଆଜି ଉତ୍କଳୀୟ ଜନଜୀବନ ଉଚ୍ଛନ୍ନ ହେବାରେ ଲାଗିଛି । ଆମ ରାଜ୍ୟରେ ପୁଣି ଭାଗବତ ଟୁଙ୍ଗି ଓ ଭାଗବତ ବାଣୀର ପ୍ରଚାର ଓ ପ୍ରସାର ଏକାନ୍ତ ଆବଶ୍ୟକ ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତର ଅନେକ ସଂସ୍କରଣ ବିଭିନ୍ନ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲେ ହେଁ, ଓଡ଼ିଶାର ସବୁ ଅଞ୍ଚଳର ପୋଥିରୁ ପାଠ ମିଳାଇ ଗୋଟିଏ ଶୁଦ୍ଧସଂକଳନ କରିବା ଲାଗି ଆମ ରାଜ୍ୟର ସଂସ୍କୃତିବିତ୍ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ସର୍ବଦା ଚିନ୍ତା କରୁଥିଲେ । ତାଙ୍କରି ଚିନ୍ତା ଓ ପ୍ରେରଣାର ପରିପ୍ରକାଶ ହେଉଛି, ଆଜିର ଏହି ଶୁଦ୍ଧସଂସ୍କରଣର ଭିତ୍ତିଭୂମି । ରାଜ୍ୟ ସଂସ୍କୃତି ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ଶରତ ରାଉତ ମହୋଦୟ ଭାଗବତ-ଶୁଦ୍ଧସଙ୍କଳନ ପ୍ରକାଶ ଦିଗରେ ଅତ୍ୟନ୍ତ ନିଷ୍ଠା ଓ ବ୍ୟଗ୍ରତା ପ୍ରକାଶ କରିଛନ୍ତି । ଓଡ଼ିଶାର ଯୁଗସ୍ରଷ୍ଟା କବି, ରାଜ୍ୟ ଶାସନର ପୂର୍ବତନ ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ରାଜସ୍ୱ ବୋର୍ଡ଼ର ସଦସ୍ୟ ଶ୍ରୀଯୁକ୍ତ ରମାକାନ୍ତ ରଥ, ଆଇ.ଏ.ଏସ୍. ମହୋଦୟ ଭାଗବତର ଗୋଟିଏ ଶୁଦ୍ଧସଂକଳନ ନିମିତ୍ତ ମୋ' ସହିତ ବହୁବାର ଆଲୋଚନା କରିଛନ୍ତି । ରାଜ୍ୟ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ବିଭାଗରେ ଶାସନ ସଚିବ ଥିବା ସମୟରେ ଶ୍ରୀଯୁକ୍ତ ସମରବଲ୍ଲଭ ମହାପାତ୍ର, ଭାଗବତର ଶୁଦ୍ଧସଙ୍କଳନ ନିମିତ୍ତ ଗୋଟିଏ ଯୋଜନା ପ୍ରସ୍ତୁତ କରିବା ପାଇଁ ମୋତେ ନିର୍ଦ୍ଦେଶ ଦେଇଥିଲେ । ଓଡ଼ିଶା ସାହିତ୍ୟ



Dr. Sudhanshu Sekhar Mishra

ଏକାଡେମୀର ସଭାପତି ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, ଉପସଭାପତି ଶ୍ରୀଯୁକ୍ତ ବିନୋଦ ଚନ୍ଦ୍ର ନାୟକ, ସମ୍ପାଦକ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଶତପଥୀ ଆନ୍ତରିକତାର ସହିତ ଉଦ୍ୟମ କରି ନଥିଲେ ଏ ଯୋଜନା ଏତେଶୀଘ୍ର କାର୍ଯ୍ୟକାରୀ ହୋଇପାରି ନଥାନ୍ତା । ଏହି ଯୋଜନାକୁ କାର୍ଯ୍ୟାନ୍ୱିତ କରିବା ପାଇଁ ରାଜ୍ୟ ପର୍ଯ୍ୟଟନ, କ୍ରୀଡ଼ା ଓ ସଂସ୍କୃତି ବିଭାଗର ଭୂତପୂର୍ବ ଶାସନସଚିବ ଶ୍ରୀଯୁକ୍ତ ସୁଧାଂଶୁ ମୋହନ ପଟ୍ଟନାୟକ ଆଇ.ଏ.ଏସ୍, ବର୍ତ୍ତମାନର ସଂସ୍କୃତି ବିଭାଗର ଶାସନସଚିବ ଶ୍ରୀଯୁକ୍ତ ସହଦେବ ସାହୁ ଆଇ.ଏ.ଏସ୍. ସଂସ୍କୃତି ବିଭାଗର ପୂର୍ବତନ ନିର୍ଦ୍ଦେଶକ ଶ୍ରୀଯୁକ୍ତ ରବିନାରାୟଣ ସେନାପତି, ଆଇ.ଏ.ଏସ୍, ଉପ-ଶାସନସଚିବ ଶ୍ରୀଯୁକ୍ତ ସୁଧାଂଶୁ ମୋହନ ରାଉତରାୟ ଆନ୍ତରିକତା ପ୍ରଦର୍ଶନ କରିଛନ୍ତି । ତେଣୁ ଏହି ଅବସରରେ ମୁଁ ସେମାନଙ୍କଠାରେ ମୋର ବିନମ୍ର କୃତଜ୍ଞତା ଜ୍ଞାପନ କରୁଅଛି ।

ମୁଁ ଏହି କାର୍ଯ୍ୟ କରୁଥିବା ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଶ୍ରୀଯୁକ୍ତ ସାହୁ, ଉପ-ସଭାପତି ଶ୍ରୀଯୁକ୍ତ ନାୟକ ଓ ସମ୍ପାଦକ ଶ୍ରୀଯୁକ୍ତ ଶତପଥୀ ସଙ୍କଳିତ ଅଧ୍ୟାୟଗୁଡ଼ିକୁ ଅତ୍ୟନ୍ତ ଆଗ୍ରହର ସହିତ ପାଠ କରି ଆବଶ୍ୟକୀୟ ସଂଶୋଧନ ନିମିତ୍ତ ପରାମର୍ଶ ଦେଇଥିବାରୁ ମୁଁ ସେହି ମହାନୁଭବ ବିଦ୍ୱାନ୍‌ଙ୍କ ନିକଟରେ ବିନମ୍ର କୃତଜ୍ଞତା ଅର୍ପଣ କରୁଛି । (ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧ ପ୍ରକାଶନ ଅବକାଶରେ)

ଓଡ଼ିଆ ଭାଗବତର ଅନେକ ସଂସ୍କରଣ ପ୍ରକାଶ ପାଇଥିଲେ ହେଁ ରାଜକିଶୋର ଦାସଙ୍କ ସମ୍ପାଦିତ ଭାଗବତ ବ୍ୟତୀତ ଅନ୍ୟ କୌଣସି ପୁସ୍ତକ ଆଦୌ ସୁପାଠ୍ୟ ନୁହେଁ । ତାହା ମଧ୍ୟ ଅତିବଡ଼ୀଙ୍କ ପ୍ରଦର୍ଶିତ ମାର୍ଗରୁ ଓହରିଯାଇ, ମୂଳ ସଂସ୍କୃତପାଠକୁ ବିଶେଷ ଭାବରେ ଆଦରି ନେଇଛି । ସେଇଥିପାଇଁ ଅତିବଡ଼ୀଙ୍କ ଭାଗବତର ଏକ ଶୁଦ୍ଧ ସଂସ୍କରଣ ପାଇଁ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ପୂର୍ବତନ ମୁଖ୍ୟଶାସନ ସଚିବ ଶ୍ରୀଯୁକ୍ତ ରମାକାନ୍ତ ରଥ, ପୂର୍ବତନ ସଂସ୍କୃତି ବିଭାଗର ଶାସନ ସଚିବ ଶ୍ରୀଯୁକ୍ତ ସମର ବଲ୍ଲଭ ମହାପାତ୍ର, ଓଡ଼ିଶା ସାହିତ୍ୟ ଏକାଡ଼େମୀର ପୂର୍ବତନ ସଭାପତି ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, ଉପସଭାପତି ଶ୍ରୀଯୁକ୍ତ ବିନୋଦ ଚନ୍ଦ୍ର ନାୟକ ପ୍ରମୁଖ ପ୍ରଚେଷ୍ଟା କରି, ଏହି ଯୋଜନାକୁ କାର୍ଯ୍ୟାନ୍ୱିତ କରାଇଥିଲେ । ସେଥିପାଇଁ ମୁଁ ସେହି ସୁଧୀବୃନ୍ଦଙ୍କ ଠାରେ ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି । (ତୃତୀୟ-ଦଶମ ସ୍କନ୍ଧ ପ୍ରକାଶନ ଅବକାଶରେ)

ମୋ ଦ୍ୱାରା ସଂପାଦିତ ପାଣ୍ଡୁଲିପିଗୁଡ଼ିକର ମୁଦ୍ରଣ ପାଇଁ, ରାଜ୍ୟ ସଂସ୍କୃତିବିଭାଗର ମନ୍ତ୍ରୀ ମାନ୍ୟବର ଚୈତନ୍ୟ ପ୍ରସାଦ ମାଝୀ, ସଂସ୍କୃତି ବିଭାଗର ଶାସନ ସଚିବ ଶ୍ରୀଯୁକ୍ତ ଅଶୋକ କୁମାର ମିଶ୍ର, ଉପଶାସନ ସଚିବ ଡ଼କ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଅଧାପିକା ଶ୍ରୀମତୀ ମନୋରମା ମହାପାତ୍ର, ସମ୍ପାଦକ ଶ୍ରୀଯୁକ୍ତ ଇନ୍ଦୁଭୂଷଣ କର ପ୍ରମୁଖ ଆନ୍ତରିକ ପ୍ରଚେଷ୍ଟା କରିଥିବାରୁ ମୁଁ ସେମାନଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଛି । (ଏକାଦଶ-ଦ୍ୱାଦଶ ସ୍କନ୍ଧ ପ୍ରକାଶନ ଅବକାଶରେ)

ଏହି ସଂକଳନ କାର୍ଯ୍ୟରେ ମୋତେ ଆୟୁଷ୍ମାନ୍ ମୁକୁନ୍ଦ କିଶୋର ସାହୁ ପ୍ରଥମରୁ ସାହାଯ୍ୟ କରି ଆସିଛନ୍ତି । ତାଙ୍କ ଦ୍ୱାରା ମୁଦ୍ରଣ ଯୋଗ୍ୟ ନକଲ କରାଯାଇ ନ ଥିଲେ, ହୁଏତ ସମ୍ପାଦନା କାର୍ଯ୍ୟ ବିଳମ୍ବିତ ହୋଇଥାଆନ୍ତା । ତାଳପତ୍ର ପୋଥିଗୁଡ଼ିକୁ ପାଠ କରି ଶ୍ରୀ ପ୍ରଫୁଲ୍ଲ କୁମାର ଧଳ ଓ ଶ୍ରୀ ବିଜନ ବିହାରୀ ମିଶ୍ର ମୋତେ ସାହାଯ୍ୟ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛି । ଏହି ସ୍କନ୍ଧର ଶେଷ ପର୍ଯ୍ୟାୟ ପ୍ରୁଫ୍ ସଂଶୋଧନ କରିଛନ୍ତି ଶ୍ରୀ ଭବାନୀ ପ୍ରସାଦ ସିଂହ । ତାଙ୍କୁ ଏ ଅବସରରେ ଧନ୍ୟବାଦ ଜଣାଉଛି ।

ଅତ୍ୟନ୍ତ ସାବଧାନତାର ସହିତ ମୁଁ ଏହି ସଂକଳନଟିକୁ ପ୍ରସ୍ତୁତ କରିଥିଲେ ହେଁ ଏଥିରେ ଭ୍ରମପ୍ରମାଦ ରହିବା ଆଦୌ ଅସମ୍ଭବ ନୁହେଁ । ତେଣୁ ସୁଧୀବୃନ୍ଦ ମୋ ଦୋଷତ୍ରୁଟି ପ୍ରତି ମୋତେ ସଚେତନ କରାଇଲେ, ମୁଁ ଅନୁଗୃହୀତ ହେବି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣାରୁ ମୋ ଦ୍ୱାରା ସମ୍ପାଦିତ ଭାଗବତର ଶୁଦ୍ଧ ସଂସ୍କରଣ ନିର୍ବିଘ୍ନରେ ଶେଷ ହୋଇଥିବାରୁ ମୁଁ ତାଙ୍କରି ପଦାରବିନ୍ଦରେ ଏହାକୁ ସମର୍ପଣ କରୁଛି ।

ପଣ୍ଡୁ ପୂର୍ଣ୍ଣିମା
୨୮, ଡ଼ିସେମ୍ବର ୧୯୯୩
କେଦାରନାଥ ଗବେଷଣା ପ୍ରତିଷ୍ଠାନ
ଭୁବନେଶ୍ୱର - ୭୫୧ ୦୦୨ ।

ବିନୀତ
ନୀଳମଣି ମିଶ୍ର
ମୁଖ୍ୟ ସଂପାଦକ

***(ବି.ଦ୍ର: ପଣ୍ଡିତ ନୀଳମଣି ମିଶ୍ରଙ୍କ ସମ୍ପାଦିତ ଅତିବଡ଼ୀ ଜଗନ୍ନାଥଦାସକୃତ ଶ୍ରୀମଦ୍ ଭାଗବତର ସମସ୍ତ ସ୍କନ୍ଧ ଏକତ୍ର କରାଯାଇ ଗୋଟିଏ ଖଣ୍ଡରେ ତୃତୀୟ ସଂସ୍କରଣ ଆକାରରେ ମୁଦ୍ରଣ କରାଯାଇଅଛି । ତେଣୁ ସ୍ୱର୍ଗତ ପଣ୍ଡିତ ମିଶ୍ରଙ୍କ ଦ୍ୱାରା ଲିଖିତ ପ୍ରତ୍ୟେକ ସ୍କନ୍ଧର ଭୂମିକା ଏଠାରେ ଏକତ୍ର ସଙ୍କଳନ କରାଯାଇଅଛି । ପୂର୍ବରୁ ଶ୍ରୀମଦ ଭାଗବତର ସ୍କନ୍ଧଗୁଡ଼ିକର ପ୍ରକାଶନକାଳ ଭିନ୍ନ ହୋଇଥିବାରୁ ତାଙ୍କ ଦ୍ୱାରା ଔପଚାରିକ କୃତଜ୍ଞତା ମଧ୍ୟ ଭିନ୍ନ ଭାବେ ପ୍ରକାଶିତ ହୋଇଥିଲା, ଯାହା ଏଠାରେ ମଧ୍ୟ ଏକତ୍ର କରାଯାଇଅଛି ।***

ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ)



Dr. Sudhanshu Sekhar Mishra

## ସହାୟକ ଗ୍ରନ୍ଥାବଳୀ


୧ ଶ୍ରୀମଦ୍‌ଭାଗବତ ରହସ୍ୟ, ପୂଜ୍ୟପାଦ ଶ୍ରୀରାମଚନ୍ଦ୍ର କେଶବ ଡୋଙ୍ଗରଜୀ ମହାରାଜ

୨ ଅତିବଡ଼ୀ ଜଗନ୍ନାଥ ଦାସ ଗୋସ୍ୱାମୀ ପରିକ୍ରମା

୩ ଜଗନ୍ନାଥ ଦାସ-ପୂଜ୍ୟପୂଜା ସଂସଦ - ୧୯୭୫, ଗୋସ୍ୱାମୀ ପରିକ୍ରମା, ଶ୍ରୀନାରାୟଣ ସାହୁ

୪ ଜଗନ୍ନାଥ ଦାସ ଗୋସ୍ୱାମୀ - ବୃନ୍ଦାବନ ଦାସ ଗୋସ୍ୱାମୀ

୫ ଉତ୍କଳୀୟ ଧର୍ମଶାସ୍ତ୍ର, ଡକ୍ଟର ଭଗବାନ ପଣ୍ଡା

୬ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପଦାଙ୍କପୂତ ଓଡ଼ିଶା-ଡକ୍ଟର 'କୀର ଚରଣ ଦାସ

୭ ଓଡ଼ିଆ ବୈଷ୍ଣବ ସାହିତ୍ୟ .... ଡକ୍ଟର ନଟବର ସାମନ୍ତରାୟ

୮ ଭକ୍ତକବି ଜଗନ୍ନାଥ: ଏକ ସମୀକ୍ଷା - ଡକ୍ଟର ବଂଶୀଧର ମହାନ୍ତି

୯ ସମ୍ପୂର୍ଣ୍ଣ କଥା ଭାଗବତ - ପ୍ରକାଶକ - ଗ୍ରନ୍ଥମନ୍ଦିର, କଟକ

୧୦ ଭାଗବତ ସମୀକ୍ଷା - ଶ୍ରୀ ସର୍ବେଶ୍ୱର ଦାସ

୧୧ ଭାଗବତ ପରିଚୟ, ସମ୍ପାଦକ - ଡକ୍ଟର କାହ୍ନୁଚରଣ ମିଶ୍ର

୧୨ ଭାଗବତ କଥା, ୧ମ - ପ୍ରଭୁଦତ୍ତ ବ୍ରହ୍ମଚାରୀ

୧୩ ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ - ଶ୍ରୀ ଗୌର ପ୍ରତାପ ସିଂହଦେଓ

୧୪ ଭାଷାବନ୍ଧ ଭାଗବତ -. ସନାତନ ବିଦ୍ୟାବାଗୀଶ, ରାଜ୍ୟ ସଂଗ୍ରହାଳୟ ପୋଥି - **B/10**

୧୫ ବିଷ୍ଣୁ ପୁରାଣ (ସଂ) ପ୍ରକାଶକ - ଗୀତା ପ୍ରେସ୍, ଗୋରଖପୁର

୧୬ ଶବ୍ଦ କଳ୍ପଦ୍ରୁମ (ସଂ) ସମ୍ପାଦକ - ରାଜା ରାଧାକାନ୍ତ ଦେବ ବାହାଦୁର

୧୭ ଶ୍ରୀମଦ୍‌ଭାଗବତ (ଗଦ୍ୟାନୁବାଦ) ସମ୍ପାଦକ - ସାଧକ ବଳରାମ ବାନପ୍ରସ୍ଥୀ

୧୮ ଶ୍ରୀମଦ୍‌ଭାଗବତ, ସମ୍ପାଦକ - ବାବା ଚୈତନ୍ୟ ଚରଣ ଦାସ

୧୯ ଶ୍ରୀମଦ୍‌ଭାଗବତ, ସମ୍ପାଦକ - ଶ୍ରୀ ସୁଶୀଲ କୁମାର ଦାସ, ଆଇ.ଏ.ଏସ୍

୨୦ ଶ୍ରୀମଦ୍‌ଭାଗବତ, ସମ୍ପାଦକ - ଶ୍ରୀ ଯତୀନ୍ଦ୍ର ନାଥ ଜାନା, କାନ୍ଥି, ମେଦିନୀପୁର

୨୧ କୋଣାର୍କ-ପଞ୍ଚସଖା ବିଶେଷାଙ୍କ - ଓଡ଼ିଶା ସାହିତ୍ୟ ଏକାଡେମୀ

୨୨ Studies in the Bhagavata, Edited by : Dr. K. C. Mishra

୨୩ Shrimad Bhagavata Shridhara Swami Tika, By Ramtej Shastri Padeya.


---

# ସୂଚୀପତ୍ର





Dr. Sudhanshu Sekhar Mishra

## ତୃତୀୟ ସ୍କନ୍ଧ



## ଚତୁର୍ଥ ସ୍କନ୍ଧ





Dr. Sudhanshu Sekhar Mishra

## ପଞ୍ଚମ ସ୍କନ୍ଧ





Dr. Sudhanshu Sekhar Mishra

## ଷଷ୍ଠ ସ୍କନ୍ଧ





Dr. Sudhanshu Sekhar Mishra

## ସପ୍ତମ ସ୍କନ୍ଧ



## ଅଷ୍ଟମ ସ୍କନ୍ଧ





Dr. Sudhanshu Sekhar Mishra

## ନବମ ସ୍କନ୍ଧ





Dr. Sudhanshu Sekhar Mishra

## ଦଶମ ସ୍କନ୍ଧ (ଦ୍ୱାରକା ଲୀଳା)





Dr. Sudhanshu Sekhar Mishra

## ଦଶମ ସ୍କନ୍ଧ (ଗୋପଲୀଳା)





Dr. Sudhanshu Sekhar Mishra

Dr. Sudhanshu Sekhar Mishra

## ଏକାଦଶ ସ୍କନ୍ଧ





Dr. Sudhanshu Sekhar Mishra

## ଦ୍ୱାଦଶ ସ୍କନ୍ଧ



---



Dr. Sudhanshu Sekhar Mishra

## ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ପ୍ରଥମ ସ୍କନ୍ଧ

Dr. Sudhanshu Sekhar Mishra

# ପ୍ରଥମସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଓଁ ନମୋ ଭଗବତେ ବାସୁଦେବାୟ ।

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାସ୍ତେ ହୃଦୟେ ସମ୍ବିତ୍ ତଂ ନୃସିଂହମହଂ ଭଜେ ॥୧
ବିଶ୍ୱସର୍ଗବିସର୍ଗାଦିନବଲକ୍ଷଣଲକ୍ଷିତମ୍ ।
ଶ୍ରୀକୃଷ୍ଣାଖ୍ୟଂ ପରଂଧାମ ଜଗଦ୍ଧାମ ନମାମି ତତ୍ ॥୨
ମାଧବୋ ମାଧବାବୀଶୌ ସର୍ବସିଦ୍ଧିବିଧାୟିନୌ ।
ବନ୍ଦେ ପରସ୍ପରାତ୍ମାନୌ ପରସ୍ପରନତିପ୍ରିୟୌ ॥୩
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥୪
ଯଂ ବ୍ରହ୍ମାବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ ।
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈ ର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥୫
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥୬
ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍
ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୁରୟଃ ।
ତେଜୋ ବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା
ଧାମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି ॥୭

ଧର୍ମଃ ପ୍ରୋଜ୍‌ଝିତକୈତବୋଽତ୍ର ପରମୋ
ନିର୍ମତ୍ସରାଣାଂ ସତାଂ
ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ
ତାପତ୍ରୟୋନ୍ମୂଳନମ୍ ।
ଶ୍ରୀମଦ୍‌ଭାଗବତେ ମହାମୁନିକୃତେ
କିମ୍ବା ପରୈରୀଶ୍ୱରଃ
ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ
ଶୁଶ୍ରୂଷୁଭିସ୍ତତ୍‌କ୍ଷଣାତ୍ ॥୮
ନିଗମକଳ୍ପତରୋର୍ଗଳିତଂ ଫଳଂ
ଶୁକମୁଖାଦମୃତଦ୍ରବସଂଯୁତମ୍ ।
ପିବତ ଭାଗବତଂ ରସମାଳୟଂ
ମୁହୁରହୋ ରସିକା ଭୁବି ଭାବୁକାଃ ॥୯

Dr. Sudhanshu Sekhar Mishra

### ଶ୍ରୀ ଗଣେଶାୟ ନମଃ

ନମଇଁ ନୃସିଂହ ଚରଣ ।
ଅନାଦି ପରମକାରଣ ॥୧
ଯା ବିନୁ ଆଦି ମଧ ଅନ୍ତ ।
ବିଚାରେ ନ ଘଟେ ଜଗତ ॥୨
ଇନ୍ଦ୍ରିୟ ଅର୍ଥ ଯେ ଜାଣଇ ।
ସ୍ୱତେଜେ ନିତ୍ୟ ପ୍ରକାଶଇ ॥୩
ଆନନ୍ଦମନେ ବେଦସାର ।
ବ୍ରହ୍ମାଣ୍ଡେ ଯେ କଲା ବିସ୍ତାର ॥୪
ଯାର ସ୍ୱରୂପ ହୃଦେ ଚିନ୍ତି ।
ବେଦପୁରୁଷେ ନ ଜାଣନ୍ତି ॥୫
ମୃତ୍ତିକା ବିକାର ଯେମନ୍ତ ।
ଜଳରେ ହୁଅଇ କଳ୍ପିତ ॥୬
ଜଳେ ଉପଳ ବୁଦ୍ଧି କରି ।
ମୃଗତୃଷ୍ଣାରେ ଯେହ୍ନେ ବାରି ॥୭
ରୂପ ଅରୂପ ସ୍ଥିତି ତିନି ।
ଯାର ଗୋଚରେ ଅନୁମାନି ॥୮
ସ୍ୱଭାବେ ନୋହେ ସେ ଏମନ୍ତ ।
ଏ ସାଂଖ୍ୟଯୋଗୀଙ୍କର ମତ ॥୯
ଆତ୍ମପ୍ରକାଶେ ସଦା ଥାଇ ।
ନିରସ୍ତ କୁହୁକ ବୋଲାଇ ॥୧୦
ସତ୍ୟପରମାନନ୍ଦ ହରି ।
ଯାହାର ଭାବେ ଭବୁ ତରି ॥୧୧
ଏମନ୍ତେ ସତ୍ୟ ରୂପ ଯାର ।
ତା ପାଦେ ମୋର ନମସ୍କାର ॥୧୨
ତାର ଚରଣେ ନିତ୍ୟେ ଧ୍ୟାନ ।
କରି ତରନ୍ତି ସର୍ବଜନ ॥୧୩
ସେ କୃଷ୍ଣପାଦ ହୃଦେ ଧରି ।
ପ୍ରବନ୍ଧେ ଗୀତନାଦ କରି ॥୧୪
ଅଶେଷ ଜଗତର ହିତେ ।
ବର୍ଣ୍ଣଇ ଦାସ ଜଗନ୍ନାଥେ ॥୧୫
ନିର୍ମଳ ମୁନିଙ୍କର ମତେ ।
ହରି-ଚରିତ ଭାଗବତେ ॥୧୬
କହିବି ଅଛି ଯେତେ ଗୁଣ ।
ସୁଜନେ ସାବଧାନେ ଶୁଣ ॥୧୭

ନାହିଁ ତାହାଙ୍କ ଅହଙ୍କାର ।
ସହିଷ୍ଣୁ ଭୂତେ ଦୟାପର ॥୧୮
କପଟ ଧର୍ମ ଯାର ନାହିଁ ।
ସ୍ୱଭାବେ ସନ୍ଥ ସେ ବୋଲାଇ ॥୧୯
ସେ ସାଧୁଜନଙ୍କର ଧର୍ମ ।
ମାୟାବର୍ଜିତ ଶୁଦ୍ଧକର୍ମ ॥୨୦
ତାଙ୍କ ବିଚାରେ ଧର୍ମ ଯେତେ ।
ଶୁଣ କହିବା ଦୃଢ଼ଚିତ୍ତେ ॥୨୧
ଲକ୍ଷ୍ୟ ଅଲକ୍ଷ୍ୟ ଯେତେ ପ୍ରାଣୀ ।
ବୋଧ ବିଚାରେ ପରିମାଣି ॥୨୨
ସେ ଧର୍ମ ଯହିଁ ଅନୁମାନି ।
ଏଣେ ସଂସାରେ ଯେତେ ଜ୍ଞାନୀ ॥୨୩
ସେ ବସ୍ତୁ ଅଛି ଯହିଁ ପୂରି ।
ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ॥୨୪
ଶ୍ରବଣ ମାତ୍ରେ ମୋକ୍ଷ ପାଇ ।
ତାପତ୍ରିତୟ କ୍ଷୟ ଯାଇ ॥୨୫
ହୃଦୟେ ବସଇ ତକ୍ଷଣ ।
ଅନାଦି ପ୍ରଭୁ ନାରାୟଣ ॥୨୬
ଏଣୁ ଅଧିକ ଅନ୍ୟ ଗ୍ରନ୍ଥେ ।
କି ପ୍ରୟୋଜନ ଏ ଜଗତେ ॥୨୭
ଏଣୁ ଏ ଭାଗବତ ଯେହି ।
ଶ୍ରବଣମାତ୍ରେ ଭକ୍ତି ହୋଇ ॥୨୮
ଏ ଭାଗବତର ମହିମା ।
କେ ଚିନ୍ତିପାରେ ଗୁଣସୀମା ॥୨୯
ସକଳ ଶାସ୍ତ୍ରଫଳ ଏହି ।
ଶ୍ରୀଭାଗବତ ନାମ ଯେହି ॥୩୦
ସକଳ ବେଦ ହୋଇ ବୃକ୍ଷେ ।
ଫଳ ଫଳିଲେ ଅନ୍ତରୀକ୍ଷେ ॥୩୧
କେତେହେଁ ଦିନେ ପାଚି ତଳେ ।
ବୃକ୍ଷୁ ପଡ଼ିଲେ ବାୟୁବଳେ ॥୩୨
ଶୁକ ଧାଇଁଲେ ତାହା ଦେଖି ।
ପକ୍ଷୀଙ୍କ ସଙ୍ଗତ ଉପେକ୍ଷି ॥୩୩
ତୋଷେ ଅଧର କ୍ଷତ କଲା ।
ଭିତରେ ସୁରଙ୍ଗ ଦିଶିଲା ॥୩୪

ତହୁଁ ଗଳିଲା ରସସାର ।
କି ଅବା ଦେବା ପଟାନ୍ତର ॥୩୫
ଅମୃତ ନିନ୍ଦେ ସ୍ୱାଦୁ ପଣେ ।
ସୁଜନେ ପିବ ଅନୁକ୍ଷଣେ ॥୩୬
ଆନନ୍ଦେ କର ସୁଧାପାନ ।
ଯେଣେ ପାଇବ ଦିବ୍ୟଜ୍ଞାନ ॥୩୭
ଏ ଚାରିବେଦଙ୍କର ମୂଳ ।
ନିଗମବୃକ୍ଷର ଏ ଫଳ ॥୩୮
ପିବ ଜୀବନ ଅନ୍ତଯାଏ ।
ଯେବେ ବଞ୍ଚିବ ମାୟାମୋହେ ॥୩୯
ଏବେ ହୋ ଶୁଣ ସାଧୁଜନେ ।
ହରିଚରିତ ଶୁଦ୍ଧମନେ ॥୪୦
ସର୍ବଦେବଙ୍କ ରମ୍ୟସ୍ଥାନ ।
ନାମ ଯେ ନୈମିଷଅରଣ୍ୟ ॥୪୧
କଳିର ଆଗମନ ଦେଖି ।
ମୁନିଏ ସ୍ଥାନ ଉପଲକ୍ଷି ॥୪୨
ଶୌନକ ଆଦି ମୁନିଗଣେ ।
ମିଳିଲେ ନୈମିଷଅରଣ୍ୟେ ॥୪୩
କଳି-କଳୁଷ ଭୟ କରି ।
ମୁନିଏ ଏକାନ୍ତେ ବିଚାରି ॥୪୪
ସଂକଳ୍ପ କରି ଏକ ତୁଲେ ।
ସହସ୍ର-ଯଜ୍ଞ ଆରମ୍ଭିଲେ ॥୪୫
ଜାଣନ୍ତି ଶୁଭପ୍ରଦ ବାଞ୍ଛା ।
ସ୍ୱର୍ଗାଦିଲୋକେ କଲେ ଇଚ୍ଛା ॥୪୬
ସକଳେ ମିଳି ପ୍ରାତଃକାଳେ ।
କର୍ମ ସମ୍ପାଦିଲେ ଅନଳେ ॥୪୭
ସୂତମୁନିଙ୍କି ପୂଜା କରି ।
ବସିଲେ ସକଳେ ଆବୋରି ॥୪୮
ସକଳମୁନି ଶୁଦ୍ଧମନେ ।
ପୁଚ୍ଛିଲେ ଅମୃତ-ବଚନେ ॥୪୯

ଋଷିଗଣ ଉବାଚ

ହେ ସୂତ ଶୁଣ ସାବଧାନେ ।
ତୁମ୍ଭ ମହିମା ଅନୁମାନେ ॥୫୦
ସର୍ବ-ପୁରାଣ ଇତିହାସ ।
ଶୁଣିଲୁ ତୁମ୍ଭର ସକାଶ ॥୫୧

Dr. Sudhanshu Sekhar Mishra

ସଂସାରେ ଧର୍ମଶାସ୍ତ୍ର ଯେତେ ।
ସର୍ବ ଗୋଚର ତୁମ୍ଭମତେ ॥୫୨
ବେଦବିଦଙ୍କ ମଧ୍ୟେ ଶ୍ରେଷ୍ଠ ।
ଯେ ବ୍ୟାସମୁନି ତପୋନିଷ୍ଠ ॥୫୩
ତାହାଙ୍କ ଶିଷ୍ୟ ଅଟ ତୁମ୍ଭେ ।
ଏ କଥା ଭଲେ ଜାଣୁ ଆମ୍ଭେ ॥୫୪
ପୂର୍ବେ ଯେ ଥିଲେ ବ୍ରହ୍ମମୁନି ।
ତାଙ୍କ ବଚନ ତୁମ୍ଭେ ଶୁଣି ॥୫୫
ସକଳ ଶାସ୍ତ୍ର ତୁମ୍ଭ ତହିଁ ।
ବେଦପୁରାଣେ ଯେତେ କହି ॥୫୬
ବ୍ୟାସଙ୍କ ଅନୁଗ୍ରହ ଘେନି ।
ସକଳ ଶାସ୍ତ୍ରେ ତୁମ୍ଭେ ଜ୍ଞାନୀ ॥୫୭
ଦଇବେ ଅଛି ଏହି ମତ ।
ଯେ ଶିଷ୍ୟ ଗୁରୁରେ ଭକତ ॥୫୮
ଶିଷ୍ୟ ଭକ୍ତିରେ ଦୟା ବହେ ।
ସକଳ ଗୂଢ଼ତତ୍ତ୍ୱ କହେ ॥୫୯
ଏଣୁ ବ୍ୟାସଙ୍କ ଶିକ୍ଷା ଯେତେ ।
ପ୍ରକାଶ ଆମ୍ଭର ଅଗ୍ରତେ ॥୬୦
ନିଷ୍ଠେ ଏକାନ୍ତ ଶ୍ରେୟ ଯେତେ ।
ଏ ଜୀବ ତରିବ ଯେମନ୍ତେ ॥୬୧
ଯେଣେ ତୁଟଇ ବିଷ୍ଣୁ ମାୟା ।
କହ ଆମ୍ଭଙ୍କୁ ଯେବେ ଦୟା ॥୬୨
ଏ କଳିଯୁଗେ ଯେତେ ପ୍ରାଣୀ ।
ଅଳ୍ପ ଆୟୁଷ ପରିମାଣି ॥୬୩
ସ୍ୱଭାବେ ମନ୍ଦମତି ହୋନ୍ତି ।
ପ୍ରାଣୀଙ୍କ ଉପଦ୍ରବ ଚିନ୍ତି ॥୬୪
ଯୁଗ ବେଭାରେ ପରିମାଣି ।
ସକଳ ଧର୍ମ ତୁମ୍ଭେ ଜାଣି ॥୬୫
ଏ ପ୍ରଶ୍ନ ଶୁଭ ଆମ୍ଭମତେ ।
ସାର ଉଦ୍ଧାରି ଦୃଢ଼ଚିତ୍ତେ ॥୬୬
କହ ସଂସାରେ ପ୍ରାଣୀଙ୍କର ।
ଯେମନ୍ତେ ମାୟାରୁ ନିସ୍ତାର ॥୬୭
ଯେଣେ ପ୍ରସନ୍ନ ହୋଇ ହରି ।
ଏ ଜୀବ ଆତ୍ମାକୁ ଉଦ୍ଧାର ॥୬୮
କର ଏ ମାୟାରୁ ନିସ୍ତାର ।
ଏ ଜୀବମାନଙ୍କୁ ଉଦ୍ଧାର ॥୬୯
ତୁମ୍ଭ ପ୍ରସନ୍ନେ ଯୋଗବଳେ ।
ପ୍ରକାଶ କର ମହୀତଳେ ॥୭୦
କି ପ୍ରୟୋଜନେ ଜଗନ୍ନାଥ ।
ଦେବକୀ ଉଦରେ ସମ୍ଭୂତ ॥୭୧
ସେ ହେତୁ କହ ଶୁଦ୍ଧଚିତ୍ତେ ।
ଆମ୍ଭେ ପଚାରୁ ଜନହିତେ ॥୭୨
ସଂସାରେ ଯାର ଅବତାର ।
ପ୍ରାଣୀ-ମଙ୍ଗଳ-ବୃଦ୍ଧିକର ॥୭୩
ଜଗତ ପାର ସେ ଚରିତ ।
ତୁମ୍ଭେ ତା ବର୍ଣ୍ଣନେ ସମର୍ଥ ॥୭୪
ଘୋର-ସଂସାରେ ପ୍ରାଣୀ ପଡ ।
ଆତ୍ମା-ନିସ୍ତାର-ପଥ ହୁଡ଼ି ॥୭୫
ଯାହାର ନାମ ଉଚ୍ଚାରିଲେ ।
ସଙ୍କଟୁ ତରିଯାନ୍ତି ଭଲେ ॥୭୬
ଯେ ଭୟ ଜୀବ ତେଜ ହରେ ।
ସେ ହରି ନାମ ଶୁଣି ଡରେ ॥୭୭
ଯାର ଚରଣେ ଆଶ୍ରେ କରି ।
ପବିତ୍ର ହୋନ୍ତି ବ୍ରହ୍ମଚାରୀ ॥୭୮
ଶୁଦ୍ଧ କରନ୍ତି ସର୍ବଜନେ ।
ଗଙ୍ଗା ଯେସନେ ସ୍ନାନପାନେ ॥୭୯
ଯାହାର ଯଶ ପୁଣ୍ୟଶ୍ଳୋକେ ।
ସୁଖେ ଗୁଣନ୍ତି ଜ୍ଞାନୀଲୋକେ ॥୮୦
କଳିକଲୁଷ ନ ଲାଗଇ ।
କେବା ନ ତରେ ଏହା ଗାଇ ॥୮୧
ଯା ଯଶ ଗାଇ ମୁନିଗଣେ ।
ସୁଖେ ତରନ୍ତି ଭବବଣେ ॥୮୨
ଯେ ହରି ବ୍ରହ୍ମାଣ୍ଡ ଭିତରେ ।
ଲୀଳା ସରାଗେ ଅବତରେ ॥୮୩
ବିଶ୍ୱ-ଉତ୍ପତ୍ତି-ସ୍ଥିତି-ନାଶ ।
କି ରୂପେ କର ତା ପ୍ରକାଶ ॥୮୪
ମତ୍ସ୍ୟାଦି ଅବତାରମାନ ।
ଧରିଣ ପ୍ରଭୁ ଭଗବାନ ॥୮୫
ଆତ୍ମାର ଯୋଗମାୟା ବଳେ ।
ବିହରେ ଅବନୀ-ମଣ୍ଡଳେ ॥୮୬
ସେ ହରି ସ୍ୱଚ୍ଛ ଶୁଭ କଥା ।
କହ ହେ ସୂତ ଧର୍ମଜ୍ଞାତା ॥୮୭
ତାର ମହିମା ଶୁଣି ନିତ୍ୟେ ।
ତୋଷ ନଲଭୁ ଆମ୍ଭଚିତ୍ତେ ॥୮୮
ଜିହ୍ୱା ଯେସନ ସୁଧାରସ ।
ପିବନ୍ତେ ନୁହଇ ସନ୍ତୋଷ ॥୮୯
ଅନନ୍ତ ସଙ୍ଗେ ଥାଇ ହରି ।
ଜଗତେ ଯେତେ କର୍ମ କରି ॥୯୦
କପଟେ ନରରୂପ ଧରି ।
ଅତିମାନୁଷ କର୍ମ କରି ॥୯୧
କଳି ଆଗମ ଆମ୍ଭେ ଦେଖି ।
ସକଳ ସମ୍ପଦ ଉପେକ୍ଷି ॥୯୨
ଏ ପୁଣ୍ୟକ୍ଷେତ୍ରେ ଶୁଭକ୍ଷଣେ ।
କୃଷ୍ଣର କଥା ଅନୁକ୍ଷଣେ ॥୯୩
କରି ତରିବୁ ବିଷ୍ଣୁ ମାୟା ।
ଭୋ ମୁନି ତୁମ୍ଭେ କର ଦୟା ॥୯୪
ଆମ୍ଭର ପୂର୍ବ ପୁଣ୍ୟଫଳେ ।
ସଙ୍ଗ ହୋଇଲୁ ତୁମ୍ଭ ମେଳେ ॥୯୫
ଏ ଭୟଙ୍କର କଳିକାଳେ ।
ଆମ୍ଭେ ଯେ ଅଛୁ ଭବଜଳେ ॥୯୬
ଏ ଜଳୁ ତୁମ୍ଭେ କର ପାର ।
ବୋଇତେ ଯେହ୍ନେ କର୍ଣ୍ଣଧାର ॥୯୭
ଯେ ହରି ବ୍ରହ୍ମାଣ୍ଡ-ବତ୍ସଳ ।
ସର୍ବଦେବଙ୍କ ଆଦିମୂଳ ॥୯୮
ଧର୍ମ-କବଚ ଯାର ଅଙ୍ଗେ ।
ସୁଖେ ବିହରେ ନାନାରଙ୍ଗେ ॥୯୯
କଳି ଆଗମେ ଭଗବାନ ।
ଗମିଲେ ଆପଣା ଭୁବନ ॥୧୦୦
ଯେ ଧର୍ମ ସଂସାର ରଖିବ ।
ସେ କାହିଁ ଶରଣ ପଶିବ ॥୧୦୧
ଏ କଥା କହ ମୁନିବର ।
ଆମ୍ଭ ସଂଶୟ ଯାଉ ଦୂର ॥୧୦୨
ଏମନ୍ତେ ନଇମିଷ ବନେ ।
ସର୍ବମୁନିଙ୍କ ସନ୍ନିଧାନେ ॥୧୦୩
ଶୌନକ ଆଦି ମୁନିଗଣେ ।
ଯେ ପ୍ରଶ୍ନ କଲେ ଜଣେ ଜଣେ ॥୧୦୪
ନିର୍ମଳ ବିଷ୍ଣୁର ଚରିତ ।
କୃଷ୍ଣ-ବିଷୟ ଭାଗବତ ॥୧୦୫
ସୁଜନଜନଙ୍କର ହିତେ ।
କହଇ ଦାସ ଜଗନ୍ନାଥେ ॥୧୦୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ପ୍ରଥମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

ସୂତ ଉବାଚ

ମୁନିଙ୍କ ପ୍ରଶ୍ନ କର୍ଣ୍ଣେ ଶୁଣି ।
ହରଷମନେ ମନେ ଗୁଣି ॥୧
ଗୁରୁଙ୍କୁ ମନେ ମନେ ଧ୍ୟାୟି ।
ପରମ-ପ୍ରୀତି-ବାକ୍ୟେ ଗାଇ ॥୨
ଜୀବର ହିତେ କୃତକୃତ୍ୟ ।
ହସି କହନ୍ତି ମୁନି ସୂତ ॥୩
ଯେ ଶୁକ ଏକାନ୍ତ ଗମନ ।
କରିଣ ଦେହ କଲେ ଶୂନ୍ୟ ॥୪
ପୁତ୍ରର ସ୍ନେହ ମନେ ଧରି ।
ବ୍ୟାସ ଡାକନ୍ତି ଉଚ୍ଚକରି ॥୫
ପିତାର ସ୍ନେହ ରକ୍ଷା ଅର୍ଥେ ।
ଉତ୍ତର ଦେଲେ ବୃକ୍ଷ ପଥେ ॥୬
ତାହାଙ୍କୁ ମୋର ନମସ୍କାର ।
ଯେ ହୃଦ ସର୍ବପ୍ରାଣୀଙ୍କର ॥୭
ଜୀବର ପରିତ୍ରାଣ ଅର୍ଥେ ।
କରୁଣା ବହି ଯେହୁ ଚିତ୍ତେ ॥୮
ଅଖିଳ-ବେଦର ଯେ ସାର ।
ଯେ ଅନୁଭବ ଆପଣାର ॥୯
କହିଲେ ପୁରାଣର ସାର ।
ତାହାଙ୍କୁ ମୋର ନମସ୍କାର ॥୧୦
ବାଣୀ ନର ଯେ ନାରାୟଣ ।
ଯେ ଗ୍ରନ୍ଥ ସଂସାର-ତାରଣ ॥୧୧
ଉଦିତ କଲେ ଏ ସଂସାରେ ।
ନମଇଁ ତାହାଙ୍କ ପୟରେ ॥୧୨
ଏମନ୍ତେ ନମସ୍କାର କରି ।
କହନ୍ତି ମନେ ମୋଦ ଭରି ॥୧୩
ଶୁଣ ସକଳ ମୁନିଜନ ।
ସାଧୁ ଏ ତୁମ୍ଭର ବଚନ ॥୧୪
ପରମ-ମଙ୍ଗଳ ଏ ବାଣୀ ।
ଜୀବ ନିସ୍ତରେ ଯାହା ଶୁଣି ॥୧୫
ପରମଧର୍ମ ଏ ଜଗତେ ।
କୃଷ୍ଣ ଭକତି ଯେଉଁ ମତେ ॥୧୬

ଫଳର ଆଶା ଯହିଁ ନାହିଁ ।
ବିଘ୍ନ ପଶିବ ଅବା କାହିଁ ॥୧୭
ଯେ ଭକ୍ତିବଳେ ଏ ସଂସାର ।
ନୁହଇ ପୁଣ ଏ ଜୀବର ॥୧୮
ଭକତି କଲେ ଜ୍ଞାନ ହୋଏ ।
ଜୀବ ନ ପଡ଼େ ମାୟାମୋହେ ॥୧୯
କୃଷ୍ଣଚରିତ ଶୁଣି ଯେବେ ।
ଭକ୍ତି ନ ଜନ୍ମେ ମୂଢ଼ଭାବେ ॥୨୦
କେବଳ ଶ୍ରମ ତାହାଙ୍କର ।
କାହୁଁ ତରିବେ ତମଘୋର ॥୨୧
ଅର୍ଥସଞ୍ଚିତ ଯେତେ ନର ।
କେବଳ ଦୁଃଖ ତାହାଙ୍କର ॥୨୨
ଅର୍ଥେ ନ ପାଇ ଧର୍ମ ମୋକ୍ଷ ।
ସେ କାମ ଲୋଭଟି ପ୍ରତ୍ୟକ୍ଷ ॥୨୩
ଇନ୍ଦ୍ରିୟ ଅର୍ଥେ ପ୍ରିୟ ଯେତେ ।
ଲୋଭେ ଭ୍ରମଇ କାମ ଅର୍ଥେ ॥୨୪
ଯାବତ ଜୀବନ ଧରଇ ।
କାମ ଲୋଭରେ ସୁଖ କାହିଁ ॥୨୫
ଜୀବର ତତ୍ତ୍ୱ ଜାଣିବାରେ ।
କେ ଜ୍ଞାନୀ ଅଛି ଏ ସଂସାରେ ॥୨୬
ତତ୍ତ୍ୱ ବିଚାରି ଜ୍ଞାନୀ ଯେତେ ।
ଜ୍ଞାନ କହନ୍ତି ଏ ଜଗତେ ॥୨୭
କେହୁ କହନ୍ତି ବ୍ରହ୍ମତତ୍ତ୍ୱ ।
କେ ଅବା ବୋଲେ ପରମାର୍ଥ ॥୨୮
କେହୁ ବୋଲନ୍ତି ଭଗବାନ ।
ନିର୍ମଳରସ ଗୋପ୍ୟ-ଜ୍ଞାନ ॥୨୯
ସେବୋଲେ ଶ୍ରଦ୍ଧା ଯେ କରନ୍ତି ।
ଜ୍ଞାନବୈରାଗ୍ୟ ଆଚରନ୍ତି ॥୩୦
କରନ୍ତି ବିଷ୍ଣୁରେ ଭକତି ।
ଆତ୍ମାରେ ଆତ୍ମାକୁ ଦେଖନ୍ତି ॥୩୧
ହରି ଚରଣେ ଭକ୍ତିଜାତ ।
ଅଜ୍ଞାନେ ନ ଜାଣେ ଜଗତ ॥୩୨
ଏଣୁ ଏ ଅଖିଳ ଜଗତେ ।
ଅଛନ୍ତି ବର୍ଣ୍ଣାଶ୍ରମୀ ଯେତେ ॥୩୩

ସ୍ୱଭାବ ଧର୍ମ ଆଚରଣେ ।
ଭକ୍ତି ଉପୁଜେ ନାରାୟଣେ ॥୩୪
ତେଣୁ ସନ୍ତୋଷ କୃଷ୍ଣ ହୋଇ ।
ପ୍ରାଣୀଙ୍କି ଚଉବର୍ଗ ଦେଇ ॥୩୫
ଏ ଘେନି ହୋଇ ଏକମନ ।
ଭାବେ ତୋଷିବ ଭଗବାନ ॥୩୬
ଶ୍ରୀକୃଷ୍ଣ ଜନ୍ମ କର୍ମ ଯେତେ ।
ନିତ୍ୟେ ଶୁଣିବ କର୍ଣ୍ଣପଥେ ॥୩୭
ନିର୍ମଳ କରି ଦୃଢ଼ମନ ।
ନିରତେ କରିବ କୀର୍ତ୍ତନ ॥୩୮
ଧ୍ୟାନେ ଚିନ୍ତିବ କୃଷ୍ଣରୂପେ ।
ପୂଜା କରିବ ସୂକ୍ଷ୍ମକଳ୍ପେ ॥୩୯
ଏ ଭାବେ ଭକ୍ତିଯୋଗ ବଢେ ।
କର୍ମ-ବନ୍ଧନ-ଗ୍ରନ୍ଥି ଛିଡ଼େ ॥୪୦
ଏଣୁ ଜଗତେ ଜ୍ଞାନୀ ଯେତେ ।
କୃଷ୍ଣ ନ ଭଜିବେ କେମନ୍ତେ ॥୪୧
କୃଷ୍ଣକଥାରେ ରତି ଯାର ।
ସେ ପ୍ରାଣୀ ଭବ ମଧ୍ୟେ ସାର ॥୪୨
ହରିଚରଣେ ଯାର ଶ୍ରଦ୍ଧା ।
ତାକୁ ନ ଲାଗେ ଭବବାଧା ॥୪୩
ସେପୁଣ୍ୟେ ସାଧୁସଙ୍ଗ ମିଳେ ।
ପୁଣ୍ୟତୀର୍ଥକୁ ଆଶ୍ରେ କଲେ ॥୪୪
ଭକତ ସଙ୍ଗେ ଯେବେ ମିଶେ ।
ତେବେ ସେ ହରିରସେ ରସେ ॥୪୫
କୃଷ୍ଣର କଥା ଯେ ଶୁଣନ୍ତି ।
ବଦନେ ମହିମା ଗୁଣନ୍ତି ॥୪୬
ତାହାଙ୍କ ହୃଦେ ହରି ବସେ ।
ସକଳ କଳ୍ମଷ ବିନାଶେ ॥୪୭
ସେ ପୁଣ୍ୟ-ଶ୍ରବଣ-କୀର୍ତ୍ତନ ।
ବେଦେ କହନ୍ତି ମୁନିଜନ ॥୪୮
ସାଧୁଜନଙ୍କ ମିତ୍ର ହରି ।
ଏଣୁ ଭକତକୁ ଆବୋରି ॥୪୯
ହେଲେ ତାରଇ ଭବସିନ୍ଧୁ ।
ଯେଣୁ ଭକତଜନବନ୍ଧୁ ॥୫୦

Dr. Sudhanshu Sekhar Mishra

ଭକତଜନ ସେବା ଫଳେ ।
ଦହନ ହୋନ୍ତି ଅମଙ୍ଗଳେ ॥୫୧
ତେଣୁ ସେ ଗୋବିନ୍ଦ ବିଷୟେ ।
ଭକ୍ତି ଉପୁଜେ ନରଦେହେ ॥୫୨
ସ୍ୱଭାବେ ରଜ ତମ ଦୁଇ ।
କାମାଦି ଯେତେ ରିପୁ ଥାଇ ॥୫୩
ଚିତ୍ତୁ ବାହାର ହୋଇଯାନ୍ତି ।
ସାତ୍ତ୍ୱିକଗୁଣ ଆବୋରନ୍ତି ॥୫୪
ଏହି ପ୍ରକାରେ ଯେବେ ମନ ।
ହୋଇବ ନିର୍ମଳ ପ୍ରସନ୍ନ ॥୫୫
ତେବେ ସେ ଭକ୍ତିଯୋଗ ବଳେ।
କୃଷ୍ଣଭକତ ସଙ୍ଗମେଳେ ॥୫୬
ନିର୍ମଳ ଜ୍ଞାନ ପ୍ରକାଶଇ ।
ଜନ୍ମ ମରଣ ଆଉ କାହିଁ ॥୫୭
ଅଶେଷ-କର୍ମ-ଗଣ୍ଠି-ଛନ୍ଦ ।
ଏଣେ ଛିଡ଼ଇ ସର୍ବଦ୍ୱନ୍ଦ୍ୱ ॥୫୮
ସର୍ବ ସଂଶୟ ତୁଳେ କମ ।
ତୁଟଇ ବିଶ୍ୱମାୟାଭ୍ରମ ॥୫୯
ଆତ୍ମାରେ ଆତ୍ମାକୁ ଦେଖନ୍ତି ।
ଜନ୍ମ ମରଣେ ନାହିଁ ଭ୍ରାନ୍ତି ॥୬୦
ଏଣୁ ପଣ୍ଡିତଜନ ଯେତେ ।
ଆନନ୍ଦେ ଭକ୍ତିଯୋଗ ମତେ ॥୬୧
ହରି ବିଷୟ ଦୃଢ଼ଚିତ୍ତେ ।
ନିତ୍ୟେ ଭଜନ୍ତି ଆତ୍ମା ହିତେ ॥୬୨
ବିଷ୍ଣୁର ମାୟାରୁ ସମ୍ଭୂତ ।
ଆଦି ପ୍ରକୃତି ଜନମାତ ॥୬୩
ଯେ ସତ୍ତ୍ୱ-ରଜ-ତମ ଗୁଣ ।
ସୃଷ୍ଟି ପାଳନ ସଂହାରଣ ॥୬୪

ଅନାଦି-ପରମ-ପୁରୁଷ ।
ଏ ତିନିଗୁଣେ ସେ ପ୍ରକାଶ ॥୬୫
ସୃଷ୍ଟି ଉଦୟେ ବ୍ରହ୍ମା ହୋଇ ।
ପାଳନେ ବିଷ୍ଣୁ ସେ ବୋଲାଇ ॥୬୬
ସଂହାର କାଳେ ରୁଦ୍ର ରୂପେ ।
ସୁଖେ ବିହରେ ମୋହକଳ୍ପେ ॥୬୭
ସେ ଶୁଦ୍ଧସତ୍ତ୍ୱ ବିଷ୍ଣୁଦେହେ ।
ଜନ୍ତୁଙ୍କ ଶ୍ରେୟ ଗୁଣ ବହେ ॥୬୮
କାଷ୍ଠ ସଂଯୋଗେ ଧୂମ ଜାତ ।
ଧୂମରୁ ଅନଳ ସମ୍ଭୂତ ॥୬୯
ତୃତୀୟ ଅଙ୍ଗାର ପ୍ରମାଣ ।
ତାମସ ରଜ ସତ୍ତ୍ୱ ଗୁଣ ॥୭୦
ଏ ଭାବେ ବ୍ରହ୍ମ ପରିମାଣି ।
ଭବସାଗର ତରେ ପ୍ରାଣୀ ॥୭୧
ନିର୍ମଳଚେତା ମୁନି ଯେତେ ।
ବିଚାର କରି ଆତ୍ମାହିତେ ॥୭୨
ବିଷ୍ଣୁଙ୍କୁ ସତ୍ତ୍ୱଗୁଣେ ଜାଣି ।
ଭଜିଲେ ମୋକ୍ଷ ପରିମାଣି ॥୭୩
ତାମସ ରଜଗୁଣେ ଯେତେ ।
ଯେ ଭୂତପତି ଏ ଜଗତେ ॥୭୪
ସ୍ୱଭାବେ ଘୋର ଭୟଙ୍କର ।
ଏଣୁ ନ ଭଜେ ସାଧୁନର ॥୭୫
ଅହିଂସା ଶାନ୍ତିଗୁଣେ ଥାନ୍ତି ।
ହରି ଚରିତ ଚିତ୍ତେ ଚିନ୍ତି ॥୭୬
ଧନ ସମ୍ପଦେ ଯାର ଇଚ୍ଛା ।
ସେ କରେ ଭୂତପ୍ରେତ ଦୀକ୍ଷା ॥୭୭
ସଂସାରେ ଦେବଯକ୍ଷ ଯେତେ ।
ଯୋଗସାଧନ କ୍ରିୟାମତେ ॥୭୮

ପରମଜ୍ଞାନ ତପ ଆଦି ।
କଠୋର ଯେତେ ଧର୍ମ ସାଧି ॥୭୯
ଏ ସର୍ବଗତି ନାରାୟଣ ।
ଏବେ ହୋ ମୁନିଗଣେ ଶୁଣ ॥୮୦
ଏ ସର୍ବବିଧି ଧର୍ମ ଯେତେ ।
କରିବ ବିଷ୍ଣୁପ୍ରୀତି ଅର୍ଥେ ॥୮୧
ଏ ତିନିଗୁଣେ ନାରାୟଣ ।
ସୃଷ୍ଟି ପାଳନ ସଂହାରଣ ॥୮୨
ଏମନ୍ତେ ବିଶ୍ୱରୂପ ଧରେ ।
ମାୟାସଂସାରେ ସେ ବିହରେ ॥୮୩
ସ୍ୱଭାବେ ନିର୍ଗୁଣ ମୁରାରି ।
ଖେଳଇ ତ୍ରିଗୁଣ ଆବୋରି ॥୮୪
ସକଳ ଜୀବ ମଧ୍ୟେ ଥାଇ ।
ଅଜ୍ଞାନେ ଜୀବ ନ ଜାଣଇ ॥୮୫
ଅଶେଷ ମହିମା ଯେ ଧରେ ।
କିବା ଉପମା ଦେବା ତାରେ ॥୮୬
ସେ ହରି-ଚରଣ-ପଙ୍କଜ ।
ସୁଜନଜନ ନିତ୍ୟେ ଭଜ ॥୮୭
କହଇ ଦାସ ଜଗନ୍ନାଥ ।
ଗୀତ-ପ୍ରବନ୍ଧେ ଭାଗବତ ॥୮୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

### ସୂତ ଉବାଚ

ସୂତ କହନ୍ତି ଶୁଦ୍ଧ ଚିତ୍ତେ ।
ହରଷେ ମୁନିଙ୍କ ଅଗ୍ରତେ ।୧
ଶୁଣ ସକଳ ମୁନିଜନେ ।
ହରିଚରିତ ସାବଧାନେ ।୨
ସୃଷ୍ଟିର କାଳେ ସେ ମୁରାରି ।
ମହାପୁରୁଷ ରୂପ ଧରି ।୩
ମହତ ଆଦି ଅଙ୍ଗେ ମିଶି ।
ବିରାଟ ରୂପେ ବ୍ରହ୍ମରାଶି ।୪
କଳା ବହଇ ଷଡ଼ଦଶ ।
ଅନାଦି-ପରମ-ପୁରୁଷ ।୫
ବୁଦ୍ଧି ଚେତନା ଅହଙ୍କାର ।
ମନ ଅନ୍ତରୀକ୍ଷ ସମୀର ।୬
ଅନଳ ଜଳ ବସୁମତୀ ।
ବୁଦ୍ଧି ଇନ୍ଦ୍ରିୟ ଯାହା ଚିନ୍ତି ।୭
ଜୀବ ପରମ ଏ ଷୋଡ଼ଶ ।
ଏ ଆଦି ସୃଷ୍ଟି ଉପଦେଶ ।୮
ସେ ସୃଷ୍ଟିସର୍ଗ ଇଚ୍ଛା କରି ।
ଜଳେ ଯୋଗନିଦ୍ରା ବିସ୍ତାରି ।୯
ତା ନାଭିକମଳୁ କମଳ ।
ପ୍ରକାଶି ଆଚ୍ଛାଦିଲା ଜଳ ।୧୦
ବ୍ରହ୍ମା ହୋଇଲା ତହୁଁ ଜାତ ।
ଯେ ପ୍ରଜାପତିଙ୍କର ନାଥ ।୧୧
ତାର ଶରୀରୁ ସୃଷ୍ଟ ଲୋକ ।
ବିସ୍ତାର ହୋଇଲା ଅନେକ ।୧୨
ସେ ଶୁଦ୍ଧ ସତ୍ତ୍ୱ ବିଷ୍ଣୁ ରୂପ ।
ଯାହା ଭିଆଣ ମାୟାକଳ୍ପ ।୧୩
ଜ୍ଞାନଚକ୍ଷୁର ଦ୍ୱାରେ ଭରି ।
ଯେ ରୂପ ଦେଖେ ବ୍ରହ୍ମଚାରୀ ।୧୪
ସହସ୍ରପାଦ ଉରୁ ଭୁଜ ।
ଶିର ବଦନ ନାସା ତେଜ ।୧୫
ସହସ୍ର ଲୋଚନ ଶ୍ରବଣ ।
ବସନ କୁଣ୍ଡଳ ଭୂଷଣ ।୧୬
ମଣି କଙ୍କଣ ଝଟକନ୍ତି ।
ଦିଶଇ ଅତି ରୂପକାନ୍ତି ।୧୭
ଏ ସୃଷ୍ଟି ମଧ୍ୟେ ମାୟାଧର ।
କରଇ ଯେତେ ଅବତାର ।୧୮
ତାହାଙ୍କ ମୂଳବୀଜ ଏହି ।
ଜଗତେ ବ୍ରହ୍ମା ସେ ବୋଲାଇ ।୧୯
ଯାହାର ଅଂଶାଅଂଶ ବଳେ ।
ଗଗନ ପୃଥିବୀ ପାତାଳେ ।୨୦
ଦେବ ମନୁଷ୍ୟ ପଶୁ ଆଦି ।
ନିଗମ ଗୋଚରରେ ସମ୍ପାଦି ।୨୧
ପ୍ରଥମେ କୁମାର ରୂପେ ସେ ।
ସୃଷ୍ଟି ଉଦୟ ଉପଦେଶେ ।୨୨
ଦୁସ୍ତର ବ୍ରହ୍ମଚର୍ଯ୍ୟବ୍ରତେ ।
ତପ ସାଧିଲା ଦୃଢ଼ଚିତ୍ତେ ।୨୩
ଦ୍ୱିତୀୟେ ସୃଷ୍ଟିର ଆଗମେ ।
ସାଧିଲା ଯଜ୍ଞେଶ୍ୱର ନାମେ ।୨୪
ପୂର୍ବ ପ୍ରଳୟକାଳ ବେଳେ ।
ମହୀ ଯେ ଥିଲା ରସାତଳେ ।୨୫
ତାର ଉଦ୍ଧାରେ ନରହରି ।
ତକ୍ଷଣେ କୋଳରୂପ ଧରି ।୨୬
ଉଦ୍ଧରି ଜଳେ ବସାଇଲା ।
ବରାହକଳ୍ପ ବୋଲାଇଲା ।୨୭
ତୃତୀୟେ ଋଷିସର୍ଗେ ହରି ।
ନାରଦ ମୁନି ରୂପଧରି ।୨୮
କୃଷ୍ଣଭକତ ଜନହିତ ।
ନିଷ୍କାମ ଶାସ୍ତ୍ର କଲେ ଉକ୍ତ ।୨୯
ଚତୁର୍ଥେ ଜନ୍ମ ଧର୍ମକଳା ।
ଦେବ ଉଦ୍ଦେଶ୍ୟେ କର୍ମ କଲା ।୩୦
ସେ ରୂପ ନର ନାରାୟଣ ।
ସୃଜିଲେ ଧର୍ମ ଆଚରଣ ।୩୧
ତପ ସାଧିଲେ ଦୃଢ଼ଚିତ୍ତେ ।
ସୃଷ୍ଟିକଳ୍ପନା ଅଭିମତେ ।୩୨
ପଞ୍ଚମେ ସିଦ୍ଧ ଅବତାରେ ।
ଜନ୍ମିଲେ କର୍ଦ୍ଦମର ଘରେ ।୩୩
ନାମେ ସେ କପିଳ ବୋଲାଇ ।
ପିତାମାତାଙ୍କୁ ଜ୍ଞାନ କହି ।୩୪
ଷଷ୍ଠେ ସେ ଅତ୍ରିପୁତ୍ର ହୋଇ ।
ଅନସୂୟାଙ୍କୁ ମାତା ପାଇ ।୩୫
ପ୍ରହ୍ଲାଦ ଆଦି ଦୈତ୍ୟଗଣେ ।
ଜ୍ଞାନ କହିଲେ ଜଣେ ଜଣେ ।୩୬
ସପ୍ତମସର୍ଗେ ନରହରି ।
ଆକୂତି ଗର୍ଭେ ଅବତରି ।୩୭
ଅନେକ ଜ୍ଞାନଶାସ୍ତ୍ର କଲେ ।
ସ୍ୱାୟମ୍ଭୁ ମନ୍ୱନ୍ତ ପାଳିଲେ ।୩୮
ଅଷ୍ଟମେ ନାଭିଗୃହେ ଜାତ ।
ଋଷଭ ମେରୁଦେବୀ ସୁତ ।୩୯
ଅତି କଠୋର ତପ କଲେ ।
ଜ୍ଞାନୀଙ୍କି ପଥ ଦେଖାଇଲେ ।୪୦
ନବମେ ପୃଥୁ ରୂପ ଧରି ।
ବଳେ ଦୁହିଁଲେ ବସୁନ୍ଧରୀ ।୪୧
କ୍ଷୀରେ ଧରଣୀ କଲେ ସମ ।
ନାମ ବହିଲେ ଉଶତ୍ତମ ।୪୨
ଦଶମେ ମତ୍ସ୍ୟରୂପ ହୋଇ ।
ନାବ ପ୍ରଳୟ ଜଳେ ବାହି ।୪୩
ପ୍ରଳୟ ଜଳେ ବିହରିଲେ ।
ରବିର ବଂଶକୁ ରଖିଲେ ।୪୪
ଏକାଦଶରେ ଚକ୍ରଧର ।
ଯେ ରୂପେ ଜନ ଉପକାର ।୪୫
ଇନ୍ଦ୍ରର ଅର୍ଥେ ଦେବାସୁରେ ।
କ୍ଷୀରସମୁଦ୍ର ମନ୍ଥିବାରେ ।୪୬
କପଟେ କୂର୍ମ ରୂପ ହୋଇ ।
ମନ୍ଦରଗିରି ପୃଷ୍ଠେ ବହି ।୪୭
ଦ୍ୱାଦଶସର୍ଗେ ବିଶ୍ୱକର୍ତ୍ତେ ।
ଜନ୍ମିଲେ ଧନ୍ୱନ୍ତରୀ ରୂପେ ।୪୮
ଅମୃତ କ୍ଷୀରାର୍ଣ୍ଣବୁ ଆଣି ।
ଦେବଙ୍କୁ ପିଆଇଲେ ପୁଣି ।୪୯
ମୋହିନୀ ରୂପେ ତ୍ରୟୋଦଶେ ।
ଶଙ୍କର ମୋହେ କାମବଶେ ।୫୦

Dr. Sudhanshu Sekhar Mishra

ଚତୁରଦଶେ ସିଂହବପୁ ।
ବିଦାରେ ହିରଣ୍ୟକଶିପୁ ।୫୧
ବାମନ ରୂପେ ପଞ୍ଚଦଶେ ।
ବଳିକି ଛଳିଲେ ବିଶ୍ୱାସେ ।୫୨
ଷୋଡ଼ଶ ଅବତାରେ ହରି ।
ପରଶୁରାମ ରୂପ ଧରି ।୫୩
ପିତାବଧରେ ଅହଙ୍କାରେ ।
ଧରଣୀ ଏକବିଂଶ ବାରେ ।୫୪
ଭ୍ରମିଲେ ମହାକୋପାନଳେ ।
ରାଜାଙ୍କୁ ଧରି ବାହୁବଳେ ।୫୫
ଦୁଷ୍ଟକ୍ଷତ୍ରିୟ କାଟି ମୁଣ୍ଡ ।
ରୁଧିରେ ପୂର୍ଣ୍ଣକରି କୁଣ୍ଡ ।୫୬
ତର୍ପଣ କଲେ ପିତୃଗଣେ ।
ତପେ ରହିଲେ ଘୋରବନେ ।୫୭
ସପତଦଶେ ଦେବ କାର୍ଯ୍ୟେ ।
ଜନ୍ମିଲେ ପରାଶର ବୀର୍ଯ୍ୟେ ।୫୮
ନିଗମ ବୃକ୍ଷ ଥିଲା ଏକା ।
ବିଚାରି କଲେ ଶତେଶାଖା ।୫୯
ପ୍ରାଣୀଙ୍କି ଦେଖି ଅଳ୍ପବୁଦ୍ଧି ।
ଯେ ଧର୍ମ ସଂସାରେ ପ୍ରସିଦ୍ଧି ।୬୦
ସେ ପୁଣି ଦିବାକର-ବଂଶେ ।
ଶ୍ରୀରାମଚନ୍ଦ୍ର ଅଷ୍ଟାଦଶେ ।୬୧
ଜଳଧି ବାନ୍ଧି ସୀତା ଛଳେ ।
ଲଙ୍କା ଧ୍ୱଂସିଲେ ଭୁଜବଳେ ।୬୨
ରାବଣ ମାରି ଦେବରାଜ ।
ଭଲେ ସମ୍ପାଦି ଦେବ କାର୍ଯ୍ୟ ।୬୩
ଊନବିଂଶତି ରୂପେ ହରି ।
ଯାଦବବଂଶେ ଅବତରି ।୬୪
କୃଷ୍ଣ ସ୍ୱରୂପେ ରାମ ତୁଳେ ।
ଅବନୀ ଭାରା ଉଶ୍ୱାସିଲେ ।୬୫
କଳି ଆଗମେ ଭାବଗ୍ରାହୀ ।
ପାଷାଣ୍ଡ-ଜନ-ମନ ମୋହି ।୬୬
ବୁଦ୍ଧ ସ୍ୱରୂପ ଅବତାରେ ।
ଜନ୍ମିବେ କୀକଟ ନଗରେ ।୬୭
ଜ୍ଞାନ ଉଦ୍ଦେଶ୍ୟେ ଭଗବାନ ।
ମୋହିବେ ଅସୁରଙ୍କ ମନ ।୬୮

ଏମନ୍ତେ ଜନ୍ମ ଏକବିଂଶ ।
ସୁଜନ ହିତେ ହୃଷୀକେଶ ।୬୯
ସେ ପୁଣି କଳିଯୁଗ ଅନ୍ତେ ।
ରାଜାଙ୍କୁ ଦେଖିବେ ଜଗତେ ।୭୦
ନିର୍ଦ୍ଦୟ-ହୃଦେ ପ୍ରଜାମାରି ।
ଧନ ଜୀବନ ନ୍ୟନ୍ତି ହରି ।୭୧
ସେ କାଳେ ବିଷ୍ଣୁଯଶା ଘରେ ।
ଜନ୍ମିବେ କଳ୍କି-ଅବତାରେ ।୭୨
ମନହୁଁ ବେଗ ବଳବନ୍ତ ।
ଅଶ୍ୱ ଆରୋହି ଜଗନ୍ନାଥ ।୭୩
ସୁନନ୍ଦ-ଖଡ୍ଗ କରେ ଧରି ।
ଦୁଷ୍ଟରାଜାଙ୍କୁ ବେଗେ ମାରି ।୭୪
ଅଳପ ରାଜା-ଜନ-ଦେଶ ।
ଦୟାରେ କରିଣ ଆଶ୍ୱାସ ।୭୫
ସେ ସତ୍ୟନିଧି ମାୟାଧର ।
ଅଶେଷ କରେ ଅବତାର ।୭୬
ଯଥା ଜୀମୂତ ବୃଷ୍ଟି ଜଳେ ।
ସହସ୍ର ନଦୀ ମହୀତଳେ ।୭୭
ଋଷି ଦେବତା ମନୁରାଜା ।
ଯେ ମନୁ ପୁତ୍ରେ ମହାତେଜା ।୭୮
ଏ ଆଦି ଯେତେ ପ୍ରଜାପତି ।
କୃଷ୍ଣର ଅଂଶେ ଜାତ ହୋନ୍ତି ।୭୯
କେ ଅଂଶ କେବା କଳା ହୋଇ ।
ବିଭୂତି ଗୁଣେ କେ ଜନ୍ମଇ ।୮୦
ସକଳ ଅବତାର ସାର ।
କି ଅବା ଦେବା ପଟାନ୍ତର ।୮୧
ନୀଳ ଜୀମୂତ ଚକ୍ରଧର ।
ସ୍ୱୟଂ ଶ୍ରୀକୃଷ୍ଣ ଅବତାର ।୮୨
ଏମନ୍ତେ ନାନାରୂପ ଧରି ।
ସଂସାରେ ରମେ ନରହରି ।୮୩
ଦୁଷ୍ଟର ତେଜ ତେଜେ ହରି ।
ସଂସାରେ ଖେଳଇ ମୁରାରି ।୮୪
କୃଷ୍ଣର ଜନ୍ମ-କର୍ମ ବାଣୀ ।
ଯେ ଏହା କର୍ଣ୍ଣପଥେ ଶୁଣି ।୮୫
ରାତ୍ର ଦିବସ ମଧ୍ୟେ ଯେବେ ।
କାଳ ବଇ କୃଷ୍ଣଭାବେ ।୮୬

ସେ ଦୁଃଖ-ସଙ୍କଟୁ ତରନ୍ତି ।
ଜନ୍ମ ମରଣେ ନାହିଁ ଭ୍ରାନ୍ତି ।୮୭
ଏମନ୍ତେ ନାନାରୂପ ଯେତେ ।
ବିଷ୍ଣୁ ଧରନ୍ତି ଏ ଜଗତେ ।୮୮
ସ୍ୱଭାବେ ରୂପ ଯାର ନାହିଁ ।
ନିର୍ଲେପ ନିରଞ୍ଜନ ସେହି ।୮୯
ମାୟାର ଗୁଣେ ବିରଚିତ ।
ମହତ ଆଦିରୁ ସମ୍ଭୂତ ।୯୦
ଯେମନ୍ତେ ମେଘ ଶୂନ୍ୟେ ଥାନ୍ତି ।
ପବନ ବଳେ ସେ ଉଡ଼ନ୍ତି ।୯୧
ପାର୍ଥିବ ରେଣୁଏ ଯେମନ୍ତେ ।
ଉଡ଼ନ୍ତି ପବନ ବିଘାତେ ।୯୨
ଆକାଶ ଧୂସର ଦିଶଇ ।
ନାନା ବର୍ଣ୍ଣରେ ଆଭାସଇ ।୯୩
ତାହାକୁ ଦୃଷ୍ଟିଭେଦେ ଦେଖି ।
ଯେ ସତ୍ୟ ପ୍ରାୟେ ଉପଲକ୍ଷି ।୯୪
ସେ ରୂପେ ଆତ୍ମାରେ ଶରୀର ।
କଳ୍ପନା କରନ୍ତି ଯେ ନର ।୯୫
ତାହାଙ୍କୁ ବୋଲି ଜ୍ଞାନହୀନ ।
ଏବେ ହୋ ମୁନିଗଣେ ଶୁଣ ।୯୬
ସ୍ୱଭାବେ ଦୃଶ୍ୟବସ୍ତୁ ନୋହେ ।
ଗୁଣ ଆବୋରି ଦେହ ବହେ ।୯୭
ଏଣୁ ସେ ଜୀବ ରୂପ ବହି ।
ଜନ୍ମ-ମରଣ ପଥେ ଥାଇ ।୯୮
ସମ ଅସମ ରୂପ ଯେତେ ।
ସମ୍ଭବେ ବିଷ୍ଣୁ-ମାୟା-ଗ୍ରସ୍ତେ ।୯୯
ଆତ୍ମାରେ କଳ୍ପିତ ଈଶ୍ୱର ।
ଏ ତତ୍ତ୍ୱେ ବ୍ରହ୍ମର ବିଚାର ।୧୦୦
ମାୟା ମିଶ୍ରିତ ମତି ଯେବେ ।
ନିରସ୍ତ ହୋଇ ଜ୍ଞାନ ଭାବେ ।୧୦୧
ତେବେ ଆତ୍ମାରେ ଆତ୍ମା ଦେଖି ।
ନିର୍ମଳ ମହିମା ନିରେଖି ।୧୦୨
ଏ ମାୟା ଈଶ୍ୱରୁ ପ୍ରକାଶ ।
ଯେବେ ସେ ହୁଅଇ ବିନାଶ ।୧୦୩
ପରମାନନ୍ଦ ରୂପେ ଚିତ୍ତ ।
ତେବେ ସେ ହୁଅଇ ଭାବିତ ।୧୦୪

Dr. Sudhanshu Sekhar Mishra

ତହୁଁ ସମ୍ପନ୍ନ ବ୍ରହ୍ମଜ୍ଞାନ ।
ଜାଣଇ ତତ୍ତ୍ୱଜ୍ଞାନୀଜନ ।୧୦୫
ଏମନ୍ତେ ଜନ୍ମକର୍ମ ଯେତେ ।
ବିଚାର କରି ବେଦପଥେ ।୧୦୬
ବୋଲନ୍ତି ଯେତେ ମୁନିଜନେ ।
ଏ ତ ନ ଘଟେ ଅନୁମାନେ ।୧୦୭
ସ୍ୱଭାବେ ଯାର ଜନ୍ମ ନାହିଁ ।
ବିଚାର କରିବ ତା କେହି ।୧୦୮
ଅମୋଘ-ଲୀଳା ନରହରି ।
ଆତ୍ମାରେ ବିଶ୍ୱମାୟା କରି ।୧୦୯
ବ୍ରହ୍ମାଣ୍ଡ ସୃଜଇ ପାଳଇ ।
ଅନ୍ତେ ଆପଣେ ସଂହାରଇ ।୧୧୦
ପ୍ରାଣୀଙ୍କ ମଧ୍ୟେ ଆତ୍ମତନ୍ତ୍ରେ ।
ଷଡ୍‌ବର୍ଗେ ଭୋଗ କରେ ନିତ୍ୟେ ।୧୧୧
ଏଣୁ ଈଶ୍ୱର ସେ ବୋଲାଇ ।
କିବା ଉପମା ଦେବି ମୁହିଁ ।୧୧୨
ଈଶ୍ୱର-ଲୀଳା-କର୍ମ ଯେତେ ।
କେ ଜାଣିପାରେ ତର୍କମତେ ।୧୧୩
ଏହାର ଅଛି ଯେତେ ନାମ ।
ସ୍ୱଭାବେ ଯେତେ ଗୁଣଗ୍ରାମ ।୧୧୪
ଅଜ୍ଞାନେ କେ ଜାଣିବ ତାହା ।
ଦୁରଧିଗମ୍ୟ ବିଷ୍ଣୁ ମାୟା ।୧୧୫
ନଟ ଯେସନେ ମାୟା କରି ।
ମୋହଇ କୁହୁକ ବିସ୍ତାରି ।୧୧୬
ସେ ଚକ୍ରପାଣିର ଚରିତ ।
କେ ଜାଣିପାରେ ତ୍ରିଜଗତ ।୧୧୭

ଏ କାଳଚକ୍ର ଯାର ହସ୍ତେ ।
କେ ଯାଇ ପାରେ ତାର ପଥେ ।୧୧୮
ଯେ ହରି ପାଦପଦ୍ମଗନ୍ଧ ।
ଯେ ନିତ୍ୟେ ପିବେ ମକରନ୍ଦ ।୧୧୯
ଧନ୍ୟ ଜୀବନ ତାହାଙ୍କର ।
ଯେ ହରିଚରଣେ କିଙ୍କର ।୧୨୦
ସର୍ବ ଆତ୍ମାକୁ ଆତ୍ମଭାବେ ।
ଭଜନ୍ତି ନିତ୍ୟେ ବାସୁଦେବେ ।୧୨୧
ଏମନ୍ତ ଭାବେ ଯେ ଭଜଇ ।
ଏ ମାୟା ତାକୁ ନ ଲାଗଇ ।୧୨୨
ଏ ଯେ ପୁରାଣ ଭାଗବତ ।
ନିର୍ମଳପଦ ବ୍ରହ୍ମତତ୍ତ୍ୱ ।୧୨୩
କୃଷ୍ଣଚରିତ ପରଶଂସି ।
ପ୍ରକାଶ କଲେ ବ୍ରହ୍ମଋଷି ।୧୨୪
ଜୀବର ମୋକ୍ଷଫଳ ଅର୍ଥେ ।
ଧନ୍ୟ ମଙ୍ଗଳ ଏ ଜଗତେ ।୧୨୫
ସର୍ବ-ନିଗମ ଇତିହାସେ ।
ସାର ଉଦ୍ଧାରି ମନତୋଷେ ।୧୨୬
ଆତ୍ମଜ୍ଞାନୀଙ୍କ ମଧ୍ୟେ ବର ।
ଯେ ଶୁକରୂପେ ଅବତାର ।୧୨୭
ତାହାଙ୍କୁ ଭାଗବତ ଦୀକ୍ଷା ।
ଦେଇ କହିଲେ ଆତ୍ମଶିକ୍ଷା ।୧୨୮
ସେ ପୁଣି ପରୀକ୍ଷିତ ଆଗେ ।
କହିଲେ ଆତ୍ମ-ଅନୁରାଗେ ।୧୨୯
ବ୍ରାହ୍ମଣ ଶାପେ ସେ ବିକଳେ ।
ନିବାସ କରି ଗଙ୍ଗାକୂଳେ ।୧୩୦

ପରମ-ଋଷି ମେଳେ ଥାଇ ।
କୃଷ୍ଣଚରଣେ ମନ ଦେଇ ।୧୩୧
ଏ ଭାଗବତ-ରସ ଶୁଣି ।
ତରିଲା ଭବ-ତରଙ୍ଗିଣୀ ।୧୩୨
ଶ୍ରୀକୃଷ୍ଣ ଗଲେ ନିଜଧାମ ।
ସଙ୍ଗତେ ଘେନି ଜ୍ଞାନ ଧର୍ମ ।୧୩୩
ଏ କଳିଯୁଗେ ଯେତେ ନରେ ।
ପଡ଼ିବେ ମାୟା ଅନ୍ଧକାରେ ।୧୩୪
ତାହାଙ୍କୁ ତପନ ଉଦିତ ।
ହୋଇବ ଭାବେ ଭାଗବତ ।୧୩୫
ରାଜା ସଙ୍ଗତେ ଗଙ୍ଗାତଟେ ।
ଅନେକ ଋଷିଙ୍କ ନିକଟେ ।୧୩୬
ଏ ଭାଗବତ ତତ୍ତ୍ୱବାଣୀ ।
ଶୁକମୁନିଙ୍କ ମୁଖୁ ଶୁଣି ।୧୩୭
ଜାଣିଲି ଶୁକ ଅନୁରାଗେ ।
ଏବେ କହିବା ତୁମ୍ଭ ଆଗେ ।୧୩୮
ଏ ଭାବେ ଚିନ୍ତି ନରହରି ।
ଘୋର ସଂସାରୁ ଯିବା ତରି ।୧୩୯
ବୋଲଇ ଦାସ ଜଗନ୍ନାଥ ।
ସୁଜନ-ହିତେ ଭାଗବତ ।୧୪୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ତୃତୀୟୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଚତୁର୍ଥ ଅଧ୍ୟାୟ

ଏମନ୍ତେ ଭାଗବତବାଣୀ ।
ସୂତମୁନିଙ୍କ ମୁଖୁ ଶୁଣି ।୧
ମୁନିଙ୍କ ମଧ୍ୟେ କର୍ମଶୁଦ୍ଧ ।
ଶୌନକ ନାମେ କୁଳବୃଦ୍ଧ ।୨
ସର୍ବମୁନିଙ୍କ ଅବଧାନେ ।
ପୁଚ୍ଛନ୍ତି ମଧୁର-ବଚନେ ।୩

ଶୌନକ ଉବାଚ

ହେ ସୂତ ତୁମ୍ଭେ ମହାଧୀର ।
ବକତାଜନ ମଧ୍ୟେ ବର ।୪
ଗଙ୍ଗାର ତୀରେ ରାଜା ଆଗେ ।
ଶୁକ କହିଲେ ବ୍ରହ୍ମଭାଗେ ।୫
ଏ ଭାଗବତଧର୍ମ କେବେ ।
ବ୍ୟାସ ରଚିଲେ କେଉଁ ଯୁଗେ ।୬
ସେ କଥା କହ ଆମ୍ଭ ଆଗ ।
ତୁମ୍ଭେ ସେ ଅଟ ମହାଭାଗ ।୭
କାହାର ବୋଲେ କାହିଁ ବସି ।
କି ଭାବେ କି ହେତୁ ଉଦ୍ଦେଶି ।୮
ଶୁକ ଯେ ତାହାଙ୍କ କୁମର ।
ସମଦରଶୀ ନିର୍ବିକାର ।୯
ଏକାନ୍ତ-ମତି ରାତ୍ର ଦିନେ ।
କୃଷ୍ଣ-ମହିମା ଯାର ମନେ ।୧୦
ନିର୍ମାୟା ମୂଢ଼ତା ପ୍ରତୀତି ।
ଲକ୍ଷି ନ ପାରେ କେହି ଗତି ।୧୧
ଯାହାର ଆଗମନ କାଳେ ।
ଦେବକନ୍ୟାଏ ଥିଲେ ଜଳେ ।୧୨
ସ୍ୱଭାବେ ନଗ୍ନ ତାଙ୍କୁ ଦେଖି ।
ଧାଇଁଲେ ଲଜ୍ଜାକୁ ଉପେକ୍ଷି ।୧୩
ଦେଖିବା ଅର୍ଥେ ଜଳତଟେ ।
ମିଳିଲେ ମୁନିଙ୍କ ନିକଟେ ।୧୪
ବ୍ୟାସଙ୍କୁ ତାଙ୍କ ପଛେ ଚାହିଁ ।
ଜଳେ ପଶିଲେ ବେଗେ ଯାଇ ।୧୫
ସ୍ୱଭାବେ ସେ ସୁର-ଯୁବତୀ ।
ଜାଣନ୍ତି ସର୍ବପ୍ରାଣୀ ଗତି ।୧୬
ଦେଖି କନ୍ୟାଙ୍କ ମୂଢ଼ଗତି ।
ଚଞ୍ଚଳ ବ୍ୟାସଙ୍କର ମତି ।୧୭
ଏମନ୍ତେ କନ୍ୟାଗଣେ ଚାହିଁ ।
ବ୍ୟାସ କହନ୍ତି ଖେଦ ବହି ।୧୮
ପୁଣି କ୍ଷଣକେ ପାଇ ଶାନ୍ତି ।
କନ୍ୟାଙ୍କୁ ଚାହିଁ ପଚାରନ୍ତି ।୧୯
ଅଇଲ ମୋର ପୁତ୍ର ଚାହିଁ ।
କିମ୍ପା ପଶିଲ ଜଳେ ଯାଇ ।୨୦
ଏ କିସ ତୁମ୍ଭର ବେଭାର ।
ସେ ଶୁକ ମୋହର କୁମର ।୨୧
ତରୁଣ ବୟସ ତାହାର ।
ଏ ବୃଦ୍ଧ-ଶରୀର ମୋହର ।୨୨
ବ୍ୟାସ-ବଚନେ ନାରୀଗଣେ ।
ତକ୍ଷଣେ ନମିଲେ ଚରଣେ ।୨୩
ବୋଲନ୍ତି ବ୍ୟାସ ମୁଖ ଚାହିଁ ।
ସଂସାର ତାଙ୍କ ଦେହେ ନାହିଁ ।୨୪
ତୁମ୍ଭେ ଯେ ବୋଲ ଆମ୍ଭେ ବୃଦ୍ଧ ।
ବିଷୟରସେ ଅଛି ସଧ ।୨୫
ଏ ଘେନି ହୋଇଲୁ ଅନ୍ତର ।
ଆମ୍ଭର ଦୋଷ କ୍ଷମାକର ।୨୬
ଏମନ୍ତେ ଗଲେ ନାରୀଗଣେ ।
ଶୁକ ରହିଲେ ସେହି ବନେ ।୨୭
ସେ ଶୁକମୁନି କିସ କାର୍ଯ୍ୟେ ।
ପ୍ରବେଶ କଲେ କୁରୁରାଜ୍ୟେ ।୨୮
ଉନ୍ମତ୍ତ ଜଡ଼ରୂପ ବହି ।
ତାହାଙ୍କୁ କେହି ନ ଜାଣଇ ।୨୯
କେମନ୍ତେ ପରୀକ୍ଷିତ ମେଳେ ।
ମିଳିଲେ ଜାହ୍ନବୀର କୂଳେ ।୩୦
ତହିଁ ଅନେକ ମୁନିମଧ୍ୟେ ।
ଏ ଭାଗବତର ସମ୍ବାଦେ ।୩୧
ପ୍ରଜାଙ୍କ ଦ୍ୱାରେ ସାୟଂକାଳେ ।
ଯେ ନିତ୍ୟେ ଭିକ୍ଷାଅର୍ଥେ ମିଳେ ।୩୨
ଗୋଦୋହ ମାତ୍ର ଦ୍ୱାରେ ରହି ।
ଗୃହୀଙ୍କି ତୀର୍ଥଫଳ ଦେଇ ।୩୩
ସେ ମୁନି ପରୀକ୍ଷିତ ମେଳେ ।
ମିଳିଲେ ପୂର୍ବ-ପୁଣ୍ୟ-ଫଳେ ।୩୪
ସେ ପୁଣି ଭାଗବତ-ଶାସ୍ତ୍ର ।
କହିଲେ ଏତ ଆଚମ୍ବିତ ।୩୫
ସେ ଭାଗବତ ପରୀକ୍ଷିତ ।
ସ୍ୱଭାବେ ଅଭିମନ୍ୟୁ-ସୁତ ।୩୬
ତାହାଙ୍କ ଜନ୍ମ-କର୍ମ ଯେତେ ।
କହିବା ଆମ୍ଭର ଅଗ୍ରତେ ।୩୭
ଅଦ୍ଭୁତ ପ୍ରାୟ ତାହା ଶୁଣି ।
ତରିବୁ ଭବ-ତରଙ୍ଗିଣୀ ।୩୮
ସେ ସର୍ବ-ରାଜାଙ୍କର ସାର ।
ପାଣ୍ଡବବଂଶେ କୀର୍ତ୍ତିଧର ।୩୯
ଏଡ଼େ ସମ୍ପଦ କରି ଦୂର ।
କିମ୍ପା ରହିଲେ ଗଙ୍ଗାତୀର ।୪୦
ଶତ୍ରୁ ରାଜାଏ ଯାର ପାଦ ।
ନମନ୍ତି ଦେଇଣ ସମ୍ପଦ ।୪୧
ଯୁବାବୟସେ ନରପତି ।
ତେଜିଣ ଅଚଳ ବିଭୂତି ।୪୨
ଯେହୁ ଶରୀର ଏ ସଂସାରେ ।
ବହଇ ପର ଉପକାରେ ।୪୩
ହରିଚରଣ ଚିନ୍ତି ଚିତ୍ତେ ।
ଯେ ରାଜା ବର୍ତ୍ତେ ଜନହିତେ ।୪୪
ସେ କିମ୍ପା ଛାଡ଼ିଲେ ଜୀବନ ।
ଉପେକ୍ଷି ଗୃହ-ଦାରା-ଧନ ।୪୫
କହ କାରଣ କିବା ଅର୍ଥେ ।
ସଂଶୟ ଛାଡ଼ିବ ଯେମନ୍ତେ ।୪୬
ତୁମ୍ଭେ ସର୍ବଜ୍ଞ ନିର୍ବିକାର ।
କହ ସଂଶୟ ଯାଉ ଦୂର ।୪୭
ଏମନ୍ତେ ଶୌନକ ବଚନେ ।
ସକଳ ପ୍ରଶ୍ନ ଅନୁମାନେ ।୪୮
କହନ୍ତି ସୂତ ମହାଋଷି ।
ମୁନିଙ୍କ ପ୍ରଶ୍ନ ପରଶଂସି ।୪୯

Dr. Sudhanshu Sekhar Mishra

ସୂତ ଉବାଚ

ଶୁଣ ସକଳ ମୁନିଜନ ।
ଶ୍ରୀକୃଷ୍ଣ ଚରିତ ବିଧାନ ।୫୦
ତ୍ରେତୟା ଯୁଗ ଭୋଗ ଅନ୍ତେ ।
ଦ୍ୱାପର ଯୁଗ ଉପଗତେ ।୫୧
ବିଷ୍ଣୁର ଅଂଶେ ବ୍ୟାସମୁନି ।
ଜନ୍ମିଲେ ନରଦେହ ଘେନି ।୫୨
ପରାଶରଙ୍କ ବୀର୍ଯ୍ୟେ ଜାତ ।
ଯୋଜନଗନ୍ଧା ଗର୍ଭଗତ ।।୫୩
ସେ ଏକଦିନେ ପ୍ରାତଃକାଳେ ।
ସ୍ନାହାନ ସାରି ଗଙ୍ଗାଜଳେ ।୫୪
ଏକାନ୍ତେ ବଦରିକାଶ୍ରମେ ।
ବସିଣ ନିଶ୍ଚଳ ଆସନେ ।୫୫
ପର ଅପର ଜ୍ଞାନ ଜାଣେ ।
ସକଳ-ଶାସ୍ତ୍ର ପରିମାଣେ ।୫୬
ଯେ କାଳ ପୁରୁଷର ବଳେ ।
ଯୁଗେ ଉଡ଼ନ୍ତି ଅନ୍ତରାଳେ ।୫୭
ତାହାକୁ ନ ଦେଖନ୍ତି କେହି ।
ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି ।୫୮
ପ୍ରାଣୀଙ୍କ ବଳ ନିତ୍ୟେ ହରେ ।
ଯୁଗ ସ୍ୱଭାବ ଅନୁସାରେ ।୫୯
କଳି-ଆଗମେ ପ୍ରାଣୀଙ୍କର ।
ଯେମନ୍ତ ହୋଇବ ବେଭାର ।୬୦
ଶ୍ରଦ୍ଧା ଛାଡ଼ିବେ ଅତି ଦୂରେ ।
ଦୁର୍ବଳ ହୋଇବେ ଶରୀରେ ।୬୧
ବୁଦ୍ଧି ହୋଇବ ଲୋଭେ ଗ୍ରାସ ।
ସ୍ୱଭାବେ ଅଳପ ଆୟୁଷ ।୬୨
ଦୁର୍ଭାଗା ହୋଇବେ ସକଳେ ।
ଏହା ଜାଣିଲେ ଯୋଗବଳେ ।୬୩
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
କଳି ବଞ୍ଚିବେ ଯେଉଁ ଧର୍ମେ ।୬୪
ବେଦ ଉଚିତ ଶୁଦ୍ଧକର୍ମ ।
ଆଶ୍ରମେ ଭିନ୍ନ ଭିନ୍ନ ଧର୍ମ ।୬୫
ଜୀବର ଶୁଦ୍ଧେ ଅର୍ଥ କରି ।
ଯେମନ୍ତେ ବିଷ୍ଣୁମାୟା ତରି ।୬୬
ଧର୍ମ ସାଧିବେ ଯଜ୍ଞମତେ ।
ଏମନ୍ତ ଭାଳି ମୁନି ଚିତ୍ତେ ।୬୭
ବେଦକୁ କଲେ ଚାରିଖଣ୍ଡ ।
ମଧ୍ୟେ ଭିଆଇ କର୍ମକାଣ୍ଡ ।୬୮
ଋକ ଯଜୁ ସାମ ଅଥର୍ବ ।
ଏ ରୂପେ କରି ଭିନ୍ନଭାବ ।୬୯
ପଞ୍ଚମ ବେଦ ଇତିହାସ ।
ବ୍ରହ୍ମପୁରାଣ ଅଷ୍ଟାଦଶ ।୭୦
ପଇଲ ମୁନିଙ୍କି ଆଣିଲେ ।
ପ୍ରଥମବେଦ ପଢ଼ାଇଲେ ।୭୧
ଜଇମିନିଙ୍କି ଦେଲେ ସାମ ।
ଯଜୁ ଯେ ବଇଶମ୍ପାୟନ ।୭୨
ଅଙ୍ଗିରାମୁନି ଅଥର୍ବଣେ ।
ମୋ ପିତା ରୋମହରଷଣେ ।୭୩
ପୁରାଣ ଅଷ୍ଟାଦଶ ଦେଲେ ।
ଏମନ୍ତେ କର୍ମ ସମ୍ପାଦିଲେ ।୭୪
ସେ ଶିଷ୍ୟେ ବିଚାରି ନିଶ୍ଚଳେ ।
ବେଦ-ବୃକ୍ଷକୁ ଯୋଗବଳେ ।୭୫
ଅନେକ ଶାଖା ଭିଆଇଲେ ।
ଶିଷ୍ୟେ ପ୍ରଶିଷ୍ୟେ ଶିଖାଇଲେ ।୭୬
ଅଳପ ବୁଦ୍ଧି ନର ଯେତେ ।
ବେଦ ଧରିବେ ଦୃଢ଼ଚିତ୍ତେ ।୭୭
ତେଣୁ ଏ ବେଦ ଭାଗ କଲେ ।
ଯେ ଯାହା ମତି ଅନୁସାରେ ।୭୮
ସ୍ତ୍ରୀ-ଶୂଦ୍ରଜନ ଏ ଜଗତେ ।
ଯୋଗ୍ୟ ନୁହନ୍ତି ବେଦପଥେ ।୭୯
ତାହାଙ୍କ ନିସ୍ତାରଣ ଅର୍ଥେ ।
ଉପାୟ ଚିନ୍ତି ଦୟାଚିତ୍ତେ ।୮୦
ବୁଦ୍ଧି-ମନ୍ଥନେ ବେଦ ମନ୍ଥି ।
ଭାରତ ପଦବନ୍ଧେ ଗୁନ୍ଥି ।୮୧
ବେଦୁ ଉଦ୍ଧାରି ସାରଅର୍ଥ ।
ସୃଜିଲେ ପୁରାଣ ଭାରତ ।୮୨
ପ୍ରାଣୀଙ୍କୁ ନିସ୍ତାରିବା ଅର୍ଥେ ।
କାନନେ ମିଳିଲେ ନିଶ୍ଚିନ୍ତେ ।୮୩
କଲେ ହେଁ ସର୍ବଧର୍ମ ଯେତେ ।
ତୋଷ ନୋହିଲେ ହୃଦ ଗତେ ।୮୪
ଆଶ୍ରିତ ସରସ୍ୱତୀ କୂଳେ ।
ମନ ନ ରହଇ ନିଶ୍ଚଳେ ।୮୫
ଯୋଗେ ନ ପାରି ଚିତ୍ତ ଧରି ।
ଚଞ୍ଚଳେ ଏମନ୍ତ ବିଚାରି ।୮୬
ଅତି କଠୋରେ ବେଦ ଘେନି ।
ଗୁରୁ ଅନଳେ ଚିଣ୍ଡ ମାନି ।୮୭
ଯେବା ଭାରତ କଲି ସାର ।
ସ୍ତ୍ରୀ-ଶୂଦ୍ରଜନଙ୍କ ନିସ୍ତାର ।୮୮
ତେବେ ନିର୍ମଳ ନୋହେ ମନ ।
ଚିନ୍ତା ଅନଳେ ଛନ ଛନ ।୮୯
ଏ ମନ ଧରିବି କେମନ୍ତେ ।
ନିଶ୍ଚଳ କରି ଜ୍ଞାନ ପଥେ ।୯୦
ଯେତେ ଚିନ୍ତିଲି ବେଦଧର୍ମ ।
ବିଚାରେ ଏ ସେ ମାୟାଭ୍ରମ ।୯୧
ଏ ମାୟା ତୁଟଇ ଯେମନ୍ତେ ।
ଶ୍ରୀକୃଷ୍ଣ-ଭକ୍ତି-ଯୋଗ ପଥେ ।୯୨
କହିବି ଭାଗବତ ଧର୍ମ ।
ଯେଣେ ନ ଲାଗେ ମାୟାଭ୍ରମ ।୯୩
ଏମନ୍ତ ହୃଦୟେ ବିଚାରି ।
ମନକୁ ନ ପାରନ୍ତି ଧରି ।୯୪
ଏମନ୍ତ ସମୟେ ନାରଦ ।
ଆସନ୍ତେ ଶୁଭେ ବୀଣାନାଦ ।୯୫
ତକ୍ଷଣେ ସରସ୍ୱତୀ ତଟେ ।
ମିଳିଲେ ବ୍ୟାସଙ୍କ ନିକଟେ ।୯୬
ନାରଦ ଆଗମନ ଦେଖି ।
ତକ୍ଷଣେ ଆସନ ଉପେକ୍ଷି ।୯୭
କେତେ ହେଁ ଦୂର ଆଗସରି ।
ନାରଦ କରେ କର ଧରି ।୯୮
ବସାଇ ଉତ୍ତମ ଆସନେ ।
ପୂଜିଲେ ଅତିଥି ବିଧାନେ ।୯୯
ସେ ବ୍ୟାସ-ନାରଦଙ୍କ ପାଦେ ।
ସୁଜନେ ପ୍ରଣମ ଆନନ୍ଦେ ।୧୦୦
ଯାର ଚିନ୍ତନେ ପାପନାଶ ।
ନମଇଁ ଜଗନ୍ନାଥ ଦାସ ।୧୦୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ଚତୁର୍ଥୋଽଧ୍ୟାୟଃ ।।

Dr. Sudhanshu Sekhar Mishra

## ପଞ୍ଚମ ଅଧ୍ୟାୟ

### ସୂତ ଉବାଚ

ସୁତ କହନ୍ତି ଅନୁରାଗେ ।
ହରଷେ ମୁନିଙ୍କର ଆଗେ ॥୧
ଶୁଣ ସକଳ ମୁନି ଜନେ ।
ହରିଚରିତ ସାବଧାନେ ॥୨
ବ୍ୟାସ ସମୀପେ ଦେବରଷି ।
ସୁଖ-ଆସନେ ଦୃଢ଼େ ବସି ॥୩
ବ୍ୟାସ ପୁଚ୍ଛିଲେ ମନ ତୋଷେ ।
ଯେ ଜାତ ଗୋବିନ୍ଦର ଅଂଶେ ॥୪
ହରଷେ ବୀଣା ହସ୍ତୁ ଥୋଇ ।
କହନ୍ତି ବ୍ୟାସ ମୁଖ ଚାହିଁ ॥୫

### ନାରଦ ଉବାଚ

ହେ ପରାଶର-ଋଷି-ସୁତ ।
ତୁମ୍ଭେ ସ୍ୱଭାବେ ଭାଗବତ ॥୬
ଚଳ ଦିଶୁଛି ବଦନ ।
ଦେଖି ଜାଣିଲି ତୁମ୍ଭ ମନ ॥୭
ସକଳ ବେଦ ଶିଷ୍ୟେ ଦେଇ ।
ପୁରାଣ ଭାରତ ଭିଆଇ ॥୮
ବେଦ ବିଚାରି ବ୍ରହ୍ମଚିନ୍ତି ।
ଚିତ୍ତ ନୋହିଲା ତୁମ୍ଭ ଶାନ୍ତି ॥୯
ଭଲେ ଜାଣିଲି ମୁହିଁ ଏହା ।
ତୁମ୍ଭେ ସ୍ୱଭାବେ ପୁଣ୍ୟଦେହା ॥୧୦
ନାରଦ ବାକ୍ୟ ଶୁଣି କର୍ଣ୍ଣେ ।
ବ୍ୟାସ କହନ୍ତି ସାବଧାନେ ॥୧୧

### ବ୍ୟାସ ଉବାଚ

ତୁମ୍ଭେ କହିଲ ମୁନି ଯେତେ ।
ମୋର ଅଭ୍ୟାସ ବହୁମତେ ॥୧୨
ବେଦ ପୁରାଣ ଅର୍ଥ ଯେତେ ।
ମୁଁ ସର୍ବ ସମ୍ପାଦିଲି ଚିତ୍ତେ ॥୧୩
ତଥାପି ଆତ୍ମା ତୋଷ ନୋହେ ।
ସ୍ଥିର ନ ରହେ ମନ ଦେହେ ॥୧୪
ତୁମ୍ଭେ ଯେ ବ୍ରହ୍ମାଙ୍କ ନନ୍ଦନ ।
ଭଲେ ଜାଣିଲ ମୋର ମନ ॥୧୫
ଏ ମନ ସ୍ଥିର କରିବାରେ ।
ଗୋବିନ୍ଦ ବିନା କେବା ପାରେ ॥୧୬
ସକଳ-ଶାସ୍ତ୍ର ତହୁଁ ସାର ।
ତାର ମହିମା ଅଗୋଚର ॥୧୭
ତାର ଭକତି ଯେଣୁ ନାହିଁ ।
ଏଣୁ ମୋ ଚିତ୍ତ ସ୍ଥିର ନୋହି ॥୧୮
ତୁମ୍ଭେ ସକଳ ତତ୍ତ୍ୱ ଜାଣ ।
ଯେ କୃଷ୍ଣ-ମହିମା ପ୍ରମାଣ ॥୧୯
ସେ ସର୍ବଜୀବଙ୍କ ଈଶ୍ୱର ।
ଯାର ମାୟାରେ ଏ ସଂସାର ॥୨୦
ସୃଜଇ ପାଳଇ ସଂହାରେ ।
ତ୍ରିଗୁଣ-ବ୍ୟାଜେ ସେ ବିହରେ ॥୨୧
ସେ ମାୟା ତାକୁ ନ ଲାଗଇ ।
ନିତ୍ୟେ ସେ ନିଜ ସୁଖେ ଥାଇ ॥୨୨
ଏ ତିନିଲୋକ ତୁମ୍ଭ ଦେହେ ।
ନିରତେ ଭ୍ରମେ ରବି ପ୍ରାୟେ ॥୨୩
ପ୍ରାଣୀଙ୍କ ବାହ୍ୟ ଅଭ୍ୟନ୍ତରେ ।
ଯେସନେ ସମୀର ସଞ୍ଚରେ ॥୨୪
ଆତ୍ମା ଯେସନେ ସାକ୍ଷୀ ରୂପେ ।
ନିତ୍ୟେ ବିହରେ ନିଜ ସୁଖେ ॥୨୫
ସେ ବିଷ୍ଣୁ-ପାଦପଦ୍ମ ଜଳେ ।
ତୁମ୍ଭର ସ୍ନାନ ସୁନିଷ୍ଠଳେ ॥୨୬
ସେ ଜଳ ଶୀତ ଉଷ୍ଣ ଭାବ ।
ନିତ୍ୟେ ତୁମ୍ଭର ଅନୁଭବ ॥୨୭
ତାଙ୍କ ମହିମା ପରିମାଣି ।
ତୁମ୍ଭହୁଁ ଅନ୍ୟ କେବା ଜାଣି ॥୨୮
କହ ଆନନ୍ଦେ ମୁନିବର ।
ଯେମନ୍ତେ ମନ ହୋଏ ସ୍ଥିର ॥୨୯
ଏମନ୍ତ ବ୍ୟାସ ମୁଖୁ ଶୁଣି ।
ଭାବେ କହନ୍ତି ଦେବମୁନି ॥୩୦

### ନାରଦ ଉବାଚ

ଭୋ ମୁନି ସତ୍ୟ ଏ ବଚନ ।
ଯେଣୁ ସନ୍ତୋଷ ନୋହେ ମନ ॥୩୧
କୃଷ୍ଣ ନିର୍ମଳ ଯଶଗୁଣ ।
ଯେଣୁ ନକଲ ଉଚ୍ଚାରଣ ॥୩୨
ଯେ ଧର୍ମେ କୃଷ୍ଣ ତୋଷ ନୋହି ।
ସେ ଧର୍ମ ନିଷ୍ଫଳ ଅଟଇ ॥୩୩
ଧର୍ମ ସମ୍ପଦ କାମ ଅର୍ଥେ ।
ଯେତେ କହିଲ ବେଦପଥେ ॥୩୪
ଯେବେ ଗୋବିନ୍ଦ ଗୁଣଗ୍ରାମ ।
ଅଭ୍ୟାସେ ଥାନ୍ତା କିଛି ଶ୍ରମ ॥୩୫
ତେବେ କି ମନ ଅସନ୍ତୋଷ ।
କହିବି ଶୁଣ ଉପଦେଶ ॥୩୬
ଯେବେ ଏ ଜିହ୍ୱା ବାକ୍ୟ-ଶ୍ରମେ ।
ନ କରେ କୃଷ୍ଣ-ଗୁଣ-ଗ୍ରାମେ ॥୩୭
ଯେ ବାଣୀ ଅଖିଳ-ତାରିଣୀ ।
ତା ଛାଡ଼ି ଅନ୍ୟ ଯେବେ ଭଣି ॥୩୮
ତାହାକୁ ବୋଲି କାକ ବାଣୀ ।
ଯହିଁ ଗୋବିନ୍ଦଙ୍କୁ ନ ଶୁଣି ॥୩୯
ନିଶ୍ଚୟ କାକତୀର୍ଥ ସେହି ।
ସେ ଜଳେ କେବା ଅବଗାହି ॥୪୦
ପରମହଂସ ମୁନିମେଳେ ।
ଯେ ଥାନ୍ତି ପୁଣ୍ୟ-ତୀର୍ଥ-କୂଳେ ॥୪୧
ଯେ ବାକ୍ୟେ କୃଷ୍ଣଗୁଣ ଗାଇ ।
ନିଶ୍ଚୟେ ପୁଣ୍ୟତୀର୍ଥ ସେହି ॥୪୨
ସେ ବାକ୍ୟ ଜନ ତାପ ନାଶେ ।
ତୀର୍ଥ ଯେସନେ ପାପ ଧ୍ୱଂସେ ॥୪୩
କୃଷ୍ଣର ଗୁଣଗାଥା ଯେବେ ।
ପ୍ରବନ୍ଧେ ଉଚ୍ଚାରଇ ଭାବେ ॥୪୪
ପଦ ଦୂଷିତ ଯେବେ ହୋଏ ।
ସେ ପ୍ରାଣୀ ସର୍ବପାପ ଦହେ ॥୪୫
ଅନନ୍ତ ନାମ-ଯଶ-ଗୁଣେ ।
ସାଧୁଙ୍କ ବାକ୍ୟ ନିତ୍ୟେ ଭଣେ ॥୪୬
ସେ ହରି-ଭାବ ଯେବେ ଛାଡ଼ି ।
ଯେ ଯାନ୍ତି କର୍ମପଥ ମାଡ଼ି ॥୪୭
ଯେ ପୁଣ୍ୟ ବେଦମାର୍ଗେ କରେ ।
ସକାମ ଚିତ୍ତେ ଫଳ ଧରେ ॥୪୮

Dr. Sudhanshu Sekhar Mishra

ହରିଙ୍କି ନ କରେ ଅର୍ପଣ ।
ସେ ସର୍ବଫଳ ଅକାରଣ ॥୪୯

ନିଷ୍କାମମତେ ସର୍ବ ନ୍ୟାସି ।
ତପ ସାଧନ୍ତି ବନେ ପଶି ॥୫୦

ହରି ମହିମା ଛାଡ଼ି ଯେବେ ।
ଅତି ନିର୍ମଳ ଜ୍ଞାନ ଭାବେ ॥୫୧

ସେ କାହିଁ ଅଶୁଭ ନାଶିବ ।
ତପ ସାଧିଲା ଫଳ ଦେବ ॥୫୨

ତୁମ୍ଭେ ସ୍ୱଭାବେ ଭାଗବତ ॥
ମହାନୁଭାବ ଶୁଚିମନ୍ତ ॥୫୩

ସତ୍ୟବଚନ ଧୃତିମନ୍ତ ।
ଏଣୁ ଅମୋଘ ତୁମ୍ଭ ଚିତ୍ତ ॥୫୪

ସମାଧି କରି କୃଷ୍ଣପାଦେ ।
ତାର ଚରିତ ଅନୁବାଦେ ॥୫୫

ପ୍ରବନ୍ଧ ଭାଗବତ କର ।
ଅଖିଳ ଜନଙ୍କୁ ଉଦ୍ଧର ॥୫୬

ଯେ ପ୍ରାଣୀ ଅନ୍ୟ ମାର୍ଗେ ଭଜେ ।
ହରି ଭକତି ଦୂରେ ତେଜେ ॥୫୭

କୃଷ୍ଣ ଭକତି ଲାଭ ଛାଡ଼ି ।
ତୃତୀୟବର୍ଗେ ଚିତ୍ତ ବଢ଼ି ॥୫୮

ତାହାର ସୁଖ ଲେଶ କାହିଁ ।
ସମୁଦ୍ରେ ଯେହ୍ନେ ନାବ ଥାଇ ॥୫୯

ଜଳ ପବନ ମେଘ ତେଜେ ।
କୂଳେ ନ ଲାଗି ଯେହ୍ନେ ଭାଜେ ॥୬୦

ତାହାଙ୍କ ଗତି ସେହି ମତ ।
ଶୁଣ ହେ ପରାଶର-ସୁତ ॥୬୧

ନିନ୍ଦିତ କର୍ମ ଚିତ୍ତେ ଚିନ୍ତି ।
ଯେ ଅନ୍ୟଜନେ ଶିକ୍ଷା ଦ୍ୟନ୍ତି ॥୬୨

ସ୍ୱଭାବେ ମୂଢ଼ ସେହୁ ଜନ ।
ବିଅର୍ଥ ତାହାର ଜୀବନ ॥୬୩

ତାର ବଚନେ ସେହୁ ଭ୍ରମେ ।
ଯେ ପ୍ରାଣୀ ଆଚରେ ଅଧର୍ମେ ॥୬୪

ସାଧୁ-ନିନ୍ଦନ ଯେ କରନ୍ତି ।
ଜଗତେ ନାହିଁ ତାଙ୍କ ସ୍ଥିତି ॥୬୫

ପାପ ଆଚରି ନରଲୋକେ ।
ଅନ୍ତେ ସେ ପଡ଼ନ୍ତି ନରକେ ॥୬୬

ତୁମ୍ଭେ ସ୍ୱଭାବେ ବିଚକ୍ଷଣ ।
ଭାବ ଅଭାବ ଭଲେ ଜାଣ ॥୬୭

ଅନନ୍ତ ପାର ବିଷ୍ଣୁକଥା ।
ତୁମ୍ଭେ ବର୍ଣ୍ଣନେ ସାମରଥା ॥୬୮

ନିବୃତ୍ତି ପ୍ରବୃତ୍ତି ଏ ଭାବେ ।
ଯେମନ୍ତେ ପ୍ରାଣୀ ନିସ୍ତରିବେ ॥ ୬୯

ହରି ଚରିତ ଦୀପ କର ।
ଜନଙ୍କୁ ଅନ୍ଧାରୁ ଉଦ୍ଧର ॥୭୦

ଯେ ପ୍ରାଣୀ ନିଜ ଧର୍ମ ତେଜି ।
ହରି-ଚରଣ ଦୃଢ଼େ ଭଜି ॥୭୧

ଭଜୁଁ ମରଇ ଯେବେ ଦୁଃଖେ ।
କେବେହେଁ ନ ପଡ଼େ ନରକେ ॥୭୨

ସ୍ୱଧର୍ମେ ଭଜନ୍ତି ଯେ ପ୍ରାଣୀ ।
ହରି ଭକତି ନ ପ୍ରମାଣି ॥୭୩

ଅନ୍ତେ ତାହାଙ୍କ ଗତି ଯେତେ ।
କେ ଅନୁମାନି ପାରେ ଚିତ୍ତେ ॥୭୪

ଏବେ ହୋ ଶୁଣ ମୁନିବର ।
ପଣ୍ଡିତଜନଙ୍କ ବେଭାର ॥୭୫

ଯେ ଲାଭ କେହି ନ ଲଭନ୍ତି ।
ସେ ଲାଭେ ଯାର ଚିତ୍ତ ଚିନ୍ତି ॥୭୬

ସେ ଅର୍ଥେ ଯତ୍ନ ଯେ କରନ୍ତି ।
ସଂସାରେ ପଣ୍ଡିତ ବୋଲାନ୍ତି ॥୭୭

କାଳର ବଳେ ପୁଣପୁଣ ।
ଏ ଭବ ମଧ୍ୟେ ତା ଭ୍ରମଣ ॥୭୮

ପୂର୍ବ ଅର୍ଜିତ କର୍ମବଶେ ।
ଦୁଃଖ ସଦୃଶ ସୁଖ ଆସେ ॥୭୯

ଏ ଅଧ ଊର୍ଦ୍ଧ୍ୱ ବେନି ପଥେ ।
ପ୍ରାଣୀଏ ଭ୍ରମନ୍ତି ନିରତେ ॥୮୦

ତାହାଙ୍କ ମଧ୍ୟେ ଜଣେ ଜଣେ ।
ଲୋଭିଲେ ସେ ଫଳ ଧାରଣେ ॥୮୧

ସେ ଫଳ ପାଇ ସୁଖେ ଖାଇ ।
ଭ୍ରମଣେ ଶ୍ରମ ନ ଲାଗଇ ॥୮୨

ଭ୍ରମିଣ ପ୍ରାଣୀ ଯେବେ ପାଇ ।
ପୁଣି ଭ୍ରମନ୍ତି ତାହା ଖାଇ ॥୮୩

ଏଣୁ ମୁକୁନ୍ଦ-ପାଦଗତେ ।
ଯେ ପ୍ରାଣୀ ଭଜନ୍ତି ନିରତେ ॥୮୪

ମୁକୁନ୍ଦପାଦ ତାର ଗତି ।
ଅନ୍ୟର ପ୍ରାୟ ନ ଭ୍ରମନ୍ତି ॥୮୫

କୃଷ୍ଣର ପାଦପଦ୍ମ ରସ ।
ନିରତେ କରନ୍ତି ଯେ ଗ୍ରାସ ॥୮୬

ସେ ରସ ଛାଡ଼ିବ ସେ କେହ୍ନେ ।
ରସେ ରସିକଜନ ଯେହ୍ନେ ॥୮୭

ଈଶ୍ୱର ହେତୁ ଏସଂସାର ।
ସଂସାରୁ ଈଶ୍ୱର ବାହାର ॥୮୮

ଯେଣୁ ଉତ୍ପତ୍ତି ସ୍ଥିତି ନାଶ ।
ବିଶ୍ୱର ହୁଅଇ ପ୍ରକାଶ ॥୮୯

ଏଣୁ ଲୀଳାକୁ କରିଅଛି ।
ପ୍ରାଣୀଙ୍କି ନୋହିବ ପ୍ରତ୍ୟକ୍ଷି ॥୯୦

ଈଶ୍ୱର ଜୀବ ଏ ସଂସାର ।
ଏ ସର୍ବ ଏକଇ ପ୍ରକାର ॥୯୧

ଏ ସର୍ବ ବ୍ରହ୍ମଭାବେ ଜାଣି ।
ବେଦରେ ଅଛି ପରିମାଣି ॥୯୨

ତୁମ୍ଭେ ସର୍ବଜ୍ଞ ମୁନିବର ।
କହ କୃଷ୍ଣର ଅବତାର ॥୯୩

ତୁମ୍ଭେ ଯେ ଆତ୍ମାରାମେ ରମି ।
ଅନ୍ତର ଦୃଷ୍ଟି ଅନ୍ତର୍ଯ୍ୟାମୀ ॥୯୪

ପରମ ପୁରୁଷଙ୍କ କଳା ।
ସୁମରି ଗୋବିନ୍ଦର ଲୀଳା ॥୯୫

ସଂସାର ନିସ୍ତାରଣ ଅର୍ଥେ ।
ଶ୍ରୀଭାଗବତ କର ଗ୍ରନ୍ଥେ ॥୯୬

ସ୍ୱଭାବେ ଜନ୍ମ ଯାର ନାହିଁ ।
ମାୟା ଶୟଳେ ରୂପ ବହି ॥୯୭

ତାର ଚରିତରୁ କିଞ୍ଚିତେ ।
ପ୍ରକାଶ କର ଜନହିତେ ॥୯୮

ଏହୁ ସେ ପୁରୁଷାର୍ଥ ସାର ।
ଯଜ୍ଞ ତପସ୍ୟା ବେଦସାର ॥୯୯

ଇଷ୍ଟ ପୂଜନ ଯଜ୍ଞ ଦାନ ।
ଯେବେ ଭାବଇ କୃଷ୍ଣନାମ ॥୧୦୦

ତାହାଙ୍କ ଫଳ ଏ ଅଟଇ ।
ତା ବିନୁ ନିଷ୍ଫଳ ହୁଅଇ ॥୧୦୧

ପୂର୍ବେ ନିର୍ମଳ ଋଷିଜନେ ।
ତପ ଆଚରି ଘୋରବନେ ॥୧୦୨

Dr. Sudhanshu Sekhar Mishra

ସଂସାର ସାର କୃଷ୍ଣକଥା ।
ନିରତେ ଗାଇ ଗୁଣଗାଥା ॥୧୦୩
ଏ ଭାବେ ପାଇଲି ଯେମନ୍ତେ ।
କହିବି ତୁମ୍ଭର ଅଗ୍ରତେ ॥୧୦୪
ପୂର୍ବେ ମୁଁ ଦକ୍ଷ ଶାପ ପାଇ ।
ଜନ୍ମିଲି ଦାସୀପୁତ୍ର ହୋଇ ॥୧୦୫
ବ୍ରାହ୍ମଣ ଘରେ ଏକାଏକି ।
ମୋହର ଜନନୀ ସେବକୀ ॥୧୦୬
ବ୍ୟାପାର କରେ ରାତ୍ର ଦିନେ ।
ଏମନ୍ତେ ବିଧିର ବିଧାନେ ॥୧୦୭
ସେ ବିପ୍ରଗୃହେ ବର୍ଷା କାଳେ ।
ଅତିଥି ବ୍ରାହ୍ମଣେ ମିଳିଲେ ॥୧୦୮
ତାହାଙ୍କୁ ଅନ୍ନଜଳ ଦେଇ ।
ବ୍ରାହ୍ମଣ କହେ ଭାବ ବହି ॥୧୦୯
ହେ ବିପ୍ରେ ଶୁଣ ମୋ ବଚନ ।
ଆଜ ଜୀବନ ମୋର ଧନ୍ୟ ॥୧୧୦
ତୁମ୍ଭର ଦୟା ଯେବେ ମୋତେ ।
ମୋ ଘରେ ରୁହ ଦିନାକେତେ ॥୧୧୧
ଦୁର୍ଗମ ବର୍ଷାମାସ ଚାରି ।
ଏ ଋତୁ ମୋର ଘରେ ସାରି ॥୧୧୨
ହେଉ ବୋଇଲେ ବିପ୍ରଜନେ ।
ବ୍ରାହ୍ମଣ ଗୃହେ ଶୁଦ୍ଧମନେ ॥୧୧୩
ରହିଲେ ମନର ସନ୍ତୋଷେ ।
ମୁଁ ସେବା କଲି ତାଙ୍କ ପାଶେ ॥୧୧୪
ବାଳୁତ ଚପଳ ମୋ ଚିତ୍ତ ।
ସେବା କରଇ ଅବିରତ ॥୧୧୫
ସେ ବିପ୍ରଗଣେ ମୋତେ ଚାହିଁ ।
ଆଶ୍ୱାସ କଲେ ଦୟାବହି ॥୧୧୬
ତାହାଙ୍କ ଭୋଜନର ଅନ୍ତେ ।
ପତ୍ରେ ଉଚ୍ଛିଷ୍ଟ ଥାଇ ଯେତେ ॥୧୧୭
ତାହା ଭୁଞ୍ଜଇ ନିତ୍ୟେ ମୁହିଁ ।
ଅନ୍ୟ ଭୋଜନ ନ ଜାଣଇ ॥୧୧୮
ଉଚ୍ଛିଷ୍ଟ ଭୋଜନ ପ୍ରସାଦେ ।
ମୋହର ଚିତ୍ତୁ ଅପ୍ରମାଦେ ॥୧୧୯
ସର୍ବ କିଲ୍‌ବିଷ କେଣେ ଗଲା ।
ତାହାଙ୍କ ଧର୍ମ ଉଦେ ହେଲା ॥୧୨୦

ବିପ୍ରଙ୍କ ମୁଖୁ ହରିବାଣୀ ।
ଦିନ ବଞ୍ଚଇ ନିତ୍ୟେ ଶୁଣି ॥୧୨୧
ପଦକୁ ପଦ ଗୀତ ସ୍ୱରେ ।
ସେ ବାଣୀ ମୋର ମନ ହରେ ॥୧୨୨
ନିରତେ ଶୁଣି ପଦେ ପଦେ ।
ମନ ବୁଡ଼ିଲା କୃଷ୍ଣପାଦେ ॥୧୨୩
କୃଷ୍ଣ ହୁଁ ଆନ ନ ଜାଣଇ ।
ବିଷୟ-ରସ ଆଉ କାହିଁ ॥୧୨୪
ଯେଣୁ ଏ ସଦସତ ରୂପ ।
ପ୍ରାଣୀ ଦେଖନ୍ତି ମୋହକଳ୍ପ ॥୧୨୫
ଆପଣା ଅଜ୍ଞାନ ସେ ଅଟେ ।
କେବେହେଁ ସତ୍ୟ ସେ ନଘଟେ ॥୧୨୬
ମୁହିଁ ଦେଖଇ ବହୁମତେ ।
ହରିହୁଁ ଆନ କେ ଜଗତେ ॥୧୨୭
ଏମନ୍ତେ ବରଷା ସରିଲା ।
ଶରଦ ଋତୁ ପ୍ରସରିଲା ॥୧୨୮
ନିରତେ ଶବ୍ଦେ ହରିବାଣୀ ।
ବିପ୍ରଜନଙ୍କ ମୁଖୁ ଶୁଣି ॥୧୨୯
ସାତ୍ତ୍ୱିକ ଭକ୍ତି ମୋର ମନେ ।
ପ୍ରକାଶ ହେଲା ଅନୁକ୍ଷଣେ ॥୧୩୦
ମୋହର ସେବା ଦିନୁ ଦିନେ ।
ଦେଖି ସନ୍ତୋଷ ବିପ୍ରଜନେ ॥୧୩୧
ଜାଣିଲେ ଶୁଦ୍ଧସତ୍ତ୍ୱ ରୂପେ ।
ଭକତି ଜାତ ମୋର ଚିତ୍ତେ ॥୧୩୨
ଯିବାର ବେଳେ ମୋତେ ରାଇ ।
କୃଷ୍ଣମହିମା ଶିକ୍ଷା ଦେଇ ॥୧୩୩
ଯେ ଗୁହ୍ୟ ଗୁହ୍ୟତମ ଜ୍ଞାନ ।
ଯେଣେ ଉଦିତ ଭଗବାନ ॥୧୩୪
ସର୍ବ କହିଲେ ମୋର କର୍ଣ୍ଣେ ।
ଦୀନବତ୍ସଳ ମୁନିଜନେ ॥୧୩୫
ବିଷ୍ଣୁର ମାୟା ଅନୁଭବ ।
ତେଣୁ ଜାଣିଲି ମୁହିଁ ସର୍ବ ॥୧୩୬
ଯେଭାବେ ଭାବି ଅପ୍ରମାଦେ ।
ପ୍ରାଣୀ ପଶନ୍ତି କୃଷ୍ଣପାଦେ ॥୧୩୭
ଏଣୁ ଏ କୃଷ୍ଣାର୍ପିତ କର୍ମ ।
କଲେ ତୁଟଇ ଭବଭ୍ରମ ॥୧୩୮

ଆତ୍ମାରେ ଜ୍ଞାନ ପ୍ରକାଶଇ ।
ତ୍ରିତାପମାନ କ୍ଷୟ ଯାଇ ॥୧୩୯
ବ୍ୟାଧି ଉପୁଜେ ଯାର ଭୋଗେ ।
ସେ ଦ୍ରବ୍ୟେ ଚିକିତ୍ସା ନ ଲଭେ ॥୧୪୦
ଏଣୁ ଗୋବିନ୍ଦ-ରସ ତେଜି ।
ଯେବେ ବିଷୟ-ରସେ ମଜି ॥୧୪୧
ସେ କାହିଁ ତରିବ ସଂସାରେ ।
ପଡ଼ଇ ଘୋର ଅନ୍ଧକାରେ ॥୧୪୨
ଏ ଭବ ମଧ୍ୟେ ଦେହ ଧରି ।
ବିଷ୍ଣୁ ତୋଷଣେ କର୍ମ କରି ॥୧୪୩
ଭକତିଯୋଗ ଜାତ ହୋଇ ।
ଜ୍ଞାନ ଅଧୀନ ଯା ଅଟଇ ॥୧୪୪
ଯେବେ ସକଳକର୍ମ କରି ।
କୃଷ୍ଣ ଅର୍ପଣ ମନେ ଧରି ॥୧୪୫
ବିଷ୍ଣୁର ଯେତେ ଗୁଣଗ୍ରାମ ।
ଜଗତେ ଅଛି ଯେତେ ନାମ ॥୧୪୬
ମୁଖେ ଉଚ୍ଚାରି ମନେ ସ୍ମରି ।
ସେ ଭକ୍ତିଯୋଗେ ଅଧିକାରୀ ॥୧୪୭
ଅରୂପବ୍ରହ୍ମ ମନେ ସ୍ମରି ।
ଯେ ଚିନ୍ତେ ତାଙ୍କ ନାମ ଧରି ॥୧୪୮
ଶ୍ରୀବାସୁଦେବ ଯେ ପ୍ରଦ୍ୟୁମ୍ନ ।
ଯେ ଅନିରୁଦ୍ଧ ସଙ୍କର୍ଷଣ ॥୧୪୯
ମନ୍ତ୍ର ଉଚ୍ଚାରି ମୂର୍ତ୍ତି କରି ।
ପୂଜା କରନ୍ତି ଭକ୍ତି ଭରି ॥୧୫୦
ସେହୁ ନପଡ଼େ ମାୟା ମୋହେ ।
ଅନ୍ତେ ପଶଇ କୃଷ୍ଣଦେହେ ॥୧୫୧
ଏମନ୍ତେ ସାଧୁସଙ୍ଗ ଫଳେ ।
କୃଷ୍ଣଭକତି ଯୋଗବଳେ ॥୧୫୨
ଅଶେଷ ଦୁଃଖ ଦୂର ଗଲା ।
ସେ ହରି ମୋତେ ଜ୍ଞାନଦେଲା ॥୧୫୩
ଏବେ ହୋ ଶୁଣ ମୁନିବର ।
ହରିଚରଣେ ମନ ଧର ॥୧୫୪
କୃଷ୍ଣର ନାମଗୁଣ ଯେତେ ।
ପ୍ରାଣୀଙ୍କି କହ ଭାଗବତେ ॥୧୫୫
ଯେଣେ ପଣ୍ଡିତଜନଙ୍କର ।
ଅବୋଧ-କର୍ମ ଯିବ ଦୂର ॥୧୫୬

Dr. Sudhanshu Sekhar Mishra

ବିଷୟ-ବିଷେ ପ୍ରାଣୀ ମରେ ।
ଆତ୍ମାର ଗତି ନ ବିଚାରେ ॥୧୫୭
ସେ ଏବେ ଭାଗବତ ଶୁଣି ।
ତରିବେ ଭବ-ତରଙ୍ଗିଣୀ ॥୧୫୮
ଏମନ୍ତ ବ୍ୟାସ ଆଗେ କହି ।
ବୀଣାଶବଦେ କୃଷ୍ଣ ଗାଇ ॥୧୫୯
ସେ ମୁନିବର ପାଦଯୁଗେ ।
ସୁଜନେ ନମ ଅନୁରାଗେ ॥୧୬୦
ହୋଇବ ଭବବନ୍ଧ ନାଶ ।
କହଇ ଜଗନ୍ନାଥ ଦାସ ॥୧୬୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ବ୍ୟାସ-ନାରଦ ସମ୍ବାଦେ
ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ

ସୂତ ଉବାଚ

ଶୌନକ ଆଦି ମୁନି ମଧ୍ୟେ ।
ସୂତ କହନ୍ତି ଜ୍ଞାନବୋଧେ ॥୧
ଶୁଣ ସକଳ ମୁନିଜନ ।
ସେ ବ୍ୟାସ-ନାରଦ ପ୍ରଶନ ॥୨
ଏମନ୍ତେ ନାରଦଙ୍କ ବାଣୀ ।
ସେ ସତ୍ୟବତୀ-ସୁତ ଶୁଣି ॥୩
ନାରଦ ଜନ୍ମକର୍ମ ଯେତେ ।
ହରିଙ୍କି ଭଜିଲେ ଯେମନ୍ତେ ॥୪
ଏସର୍ବକଥା ଜାଣିମାରେ ।
ପୁଣି ପୁଛିଲେ ଆରବାରେ ॥୫

ବ୍ୟାସ ଉବାଚ

ଥିଲେ ସନ୍ନ୍ୟାସୀ ଯେତେ ଦିନ ।
ତୁମ୍ଭଙ୍କୁ କଲେ ମନ୍ତ୍ର ଦାନ ॥୬
ସନ୍ତୋଷେ ଦେଇ ମନ୍ତ୍ରଦୀକ୍ଷା ।
ଗମିଲେ ଯେଣେ ତାଙ୍କ ଇଚ୍ଛା ॥୭
ତଦଅନ୍ତରେ କଲ କିସ ।
ତୁମ୍ଭର ପ୍ରଥମ-ବୟସ ॥୮
ଜନ୍ମ ସଞ୍ଚଇ ପ୍ରଜାପତି ।
ବାଲୁତକାଲୁ ଯେତେ ଗତି ॥୯
କରି ବଞ୍ଚନ୍ତି ପ୍ରାଣୀ ସର୍ବେ ।
ତୁମ୍ଭେ ବଞ୍ଚିଲ କେଉଁ ଭାବେ ॥୧୦
କାଳ ପ୍ରବେଶେ ମୁନିବର ।
କେହ୍ନେ ଛାଡ଼ିଲ କଳେବର ॥୧୧
ପୂର୍ବକଳ୍ପର ଏ ବିଚାର ।
କିରୂପେ ହେଲ ଜାତିସ୍ମର ॥୧୨
ତୁମ୍ଭର ଜ୍ଞାନ ଦେହ ଅନ୍ତେ ।
କାଳ ନ ହରିଲା କେମନ୍ତେ ॥୧୩
ଏମନ୍ତ ବ୍ୟାସମୁଖୁ ଶୁଣି ।
ବ୍ରହ୍ମାନନ୍ଦନ ବାକ୍ୟ ଭଣି ॥୧୪

ନାରଦ ଉବାଚ

ଶୁଣ ହେ ମୁନି ଶୁଦ୍ଧଚେତା ।
ମୋ ଜନ୍ମକର୍ମର ବାରତା ॥୧୫
ମୋତେ ପରମଜ୍ଞାନ ଦେଇ ।
ବିପ୍ରେ ଯେ ଗଲେ ପଥବହି ॥୧୬
ମୁଁ ପୁଣି ପ୍ରଥମ-ବୟସେ ।
ମୁନିଜନଙ୍କ ଉପଦେଶେ ॥୧୭
ଦିନ ବଞ୍ଚଇ ମାତା କୋଳେ ।
ମନ ମୋ କୃଷ୍ଣପାଦତଳେ ॥୧୮
ମୋର ଜନନୀ ବିପ୍ରଘରେ ।
ସେବକୀ ପଣେ ଦିନ ହରେ ॥୧୯
ସେବଇ ବିପ୍ରଘରେ ନିତ୍ୟେ ।
ନ ଥାଇ ଆତ୍ମାର ଆୟତ୍ତେ ॥୨୦
ଏକଇ ପୁତ୍ର ତାର ମୁହିଁ ।
ସେ ମୋତେ ଦଣ୍ଡେ ନ ଛାଡ଼ଇ ॥୨୧
ସ୍ନେହେ ପୋଷଇ ନିତିନିତି ।
ମୋ ତହୁଁ ନାହିଁ ଅନ୍ୟଗତି ॥୨୨
ମୋର ନିମିତ୍ତେ ଭିକ୍ଷାଅନ୍ନ ।
ବହୁତ କଷ୍ଟେ ତାର ମନ ॥୨୩
ସେ ବା ପାଇବ ଅନ୍ନ କାହିଁ ।
ବ୍ରାହ୍ମଣଘରେ ଯା ମିଳଇ ॥୨୪
ମୋତେ ଭୁଞ୍ଜାଇ ଅବଶେଷ ।
ମୋର ଜନନୀ କରେ ଗ୍ରାସ ॥୨୫
ସଂସାର ଈଶ୍ୱର-ଆୟତ୍ତେ ।
ଏମନ୍ତେ ଗଲା ଦିନାକେତେ ॥୨୬
ମୁଁ ସେ ବ୍ରାହ୍ମଣ ଘରେ ଥାଇ ।
ସନ୍ଧ୍ୟା-ସକାଳ ନ ଜାଣଇ ॥୨୭
ବାଳକ ପଞ୍ଚମ ବୟସେ ।
ବଞ୍ଚଇ ଜନନୀର ପାଶେ ॥୨୮
ମୋର ଜନନୀ ଏକଦିନେ ।
ବ୍ରାହ୍ମଣଘରେ ଗୋଦୋହନେ ॥୨୯
ଧେନୁ ଦୋହନ୍ତେ ପଥେ ବସି ।
ସର୍ପେ ମିଳିଲା ପାଶେ ଆସି ॥୩୦
ଦଇବ ଯୋଗେ ସେ ଦଂଶିଲା ।
ତକ୍ଷଣେ ଜନନୀ ମୋ ମଲା ॥୩୧
ମୁହିଁ ମାତାଙ୍କୁ ଅଗ୍ନି ଦେଇ ।
ଭାଳଇ ଚଉଦିଗ ଚାହିଁ ॥୩୨
ବିପ୍ରଙ୍କ ତହିଁ ମୋର ମନ ।
ନିତ୍ୟେ ଭାଳଇ ଛନଛନ ॥୩୩
ତାହାଙ୍କୁ ଭେଟିବାର ଅର୍ଥେ ।
ଗଲି ଉତ୍ତରଦିଗ ପଥେ ॥୩୪
ଅନେକ ପୁର ନଗ୍ର ଗ୍ରାମେ ।
ବିପ୍ରଙ୍କୁ ଖୋଜି ପଥଶ୍ରମେ ॥୩୫
ଖେଟ ଖର୍ବଟ ବାଟୀ ବନେ ।
ଦୁର୍ଗମ ପର୍ବତ କାନନେ ॥୩୬
ପବିତ୍ରଜଳେ ପୁଣ୍ୟତୀର୍ଥେ ।
ଦେବେ ସେବନ୍ତି ଯହିଁ ନିତ୍ୟେ ॥୩୭

Dr. Sudhanshu Sekhar Mishra

ଉତ୍ତମ ସରୋବର ବନେ ।
ହଂସ ସାରସ ଭୃଙ୍ଗସ୍ୱନେ ॥୩୮
ପୁଣି ମିଳିଲି ଘୋରଦେଶେ ।
ପୂରିତ ନଳ କୁଶ କାଶେ ॥୩୯
ହସ୍ତୀସେବିତ ବନ ଆଦି ।
ଯେ ସ୍ୱର୍ଣ୍ଣଚିତ୍ର ପୁଣ୍ୟନଦୀ ॥୪୦
ବୈଣବୀ ଲତା ଗୁଳ୍ମସାର ।
ଦିଶଇ ଘୋର ଅନ୍ଧକାର ॥୪୧
ସର୍ପ ଉଲୂକ ଶିବାଗୃହେ ।
ବନେ ଭ୍ରମଇ ଏକାଦେହେ ॥୪୨
ଏମନ୍ତେ ଭ୍ରମୁ ଘୋରପଥେ ।
ଶ୍ରମେ ପିପାସା ବୁଭୁକ୍ଷିତେ ॥୪୩
ଏମନ୍ତେ ଯାଉଁ ପଦେପଦେ ।
ଶ୍ରମେ ପଶିଲି ନଦୀହ୍ରଦେ ॥୪୪
ଶୀତଳ ବାରି ସ୍ନାନପାନ ।
କରନ୍ତେ ଗଲା ମୋର ଶ୍ରମ ॥୪୫
ସେ ନଦୀ ଜଳେ ପ୍ରାଣ ତୋଷି ।
ଅଶ୍ୱତ୍ଥ ତରୁତଳେ ବସି ॥୪୬
ଯେରୂପେ ମୁନିଙ୍କ ବଚନେ ।
ଆତ୍ମାରେ ଆତ୍ମା ଅବଧାନେ ॥୪୭
କୃଷ୍ଣର ପାଦପଦ୍ମ ଯୁଗେ ।
ଧ୍ୟାନ ମୁଁ କଲି ଅନୁରାଗେ ॥୪୮
ଉତ୍‌କଣ୍ଠା ଗଦ୍‌ଗଦ ବଚନ ।
ଅଶ୍ରୁଜଳରେ ନେତ୍ର ପୂର୍ଣ୍ଣ ॥୪୯
ତକ୍ଷଣେ ପରମ ଆନନ୍ଦେ ।
ହରି ବିଜୟେ ମୋର ହୃଦେ ॥୫୦
ଅତ୍ୟନ୍ତ ପ୍ରେମଭରେ ଦେହେ ।
ଉଦ୍‌ଗମ ହେଲେ ତନୁରୁହେ ॥୫୧
ଆନନ୍ଦ-ସାଗରେ ବୁଡ଼ିଲି ।
ଉଭୟଲୋକ ନ ଜାଣିଲି ॥୫୨
ରୂପେ କି ଦେବା ପଟାନ୍ତର ।
ମନ ବଚନ ଆଗୋଚର ॥୫୩
ଦେଖି ଉଠିଲି ତତକ୍ଷଣେ ।
ବିକଳେ ଚିତ୍ତକରଷଣେ ॥୫୪
ପୁଣି ରହିଲି ଦୃଢ଼ଚିତ୍ତେ ।
ସେ ରୂପ ଦେଖିବା ନିମନ୍ତେ ॥୫୫

ସେ ହରି ହୋଇଲେ ଅନ୍ତର ।
ଦିଶିଲା ଘୋର-ଅନ୍ଧକାର ॥୫୬
ବାହୁଡ଼ି ଚାହିଁଲି ବାହାରେ ।
ଦିଶ ଆକାଶ ଅଭ୍ୟନ୍ତରେ ॥୫୭
ଭିତରେ ବାହାରେ ନ ପାଇ ।
ଆକୁଳେ କମ୍ପେ ମୋର ଦେହୀ ॥୫୮
ଏମନ୍ତେ ଅନ୍ତରୀକ୍ଷ-ବାଣୀ ।
କିବା ଅମୃତ ତରଙ୍ଗିଣୀ ॥୫୯
ମନ-ବଚନେ ଅଗୋଚର ।
ସ୍ୱଭାବେ ଗମ୍ଭୀର ସୁସ୍ୱର ॥୬୦
ପ୍ରସନ୍ନ କଲା ମୋର ମନ ।
ଶୁଣିଲି ଆକାଶ-ବଚନ ॥୬୧
ଏଜନ୍ମେ ଦେଖିବୁ ତୁ କାହିଁ ।
ମୋହର ଆଦି ଅନ୍ତ ନାହିଁ ॥୬୨
କୁଜନଜନଙ୍କର ଚିତ୍ତ ।
କର୍ମ-ବାସନାରେ ଜଡ଼ିତ ॥୬୩
ଯାବତ ଶୁଭାଶୁଭ-କର୍ମେ ।
ଚିତ୍ତ ଆକର୍ଷେ ମତି ଭ୍ରମେ ॥୬୪
ସେ ମୋତେ ପାଇବେ କେମନ୍ତେ ।
କର୍ମ ଆବୋରି ନାନାମତେ ॥୬୫
ମୋର ସେବକ ସେବା ଫଳେ ।
ତେଣୁ ଦେଖିଲୁ ମୋତେ ତୋଳେ ॥୬୬
ମୁଁ ଯାର ଚିତ୍ତେ ନିତ୍ୟେ ଥାଇ ।
ତା ହୃଦେ ଅମଙ୍ଗଳ କାହିଁ ॥୬୭
ଏବେ ସାଧୁଙ୍କ ସେବା କରି ।
ଦୀର୍ଘଜୀବନ ଦେହେ ଧରି ॥୬୮
ଦୃଢ଼ଭକତି ମୋର ପାଦେ ।
ଚିତ୍ତେ ପ୍ରସନ୍ନୁ ଅପ୍ରମାଦେ ॥୬୯
ଏ ଦେହ ଛାଡ଼ି ମୋର ଧ୍ୟାନେ ।
ଅନ୍ତେ ମିଳିବୁ ମୋ ଭୁବନେ ॥୭୦
ମୋର ବିଷୟେ ତୋର ମତି ।
କେବେ ହେଁ ନୋହିବ ଦୁର୍ଗତି ॥୭୧
ସୃଷ୍ଟିପ୍ରଳୟ ବାଧା ଯେତେ ।
କେବେହେଁ ନ ଲାଗିବ ତୋତେ ॥୭୨
ମୋ ଅନୁଗ୍ରହେ ହେଉ ଜ୍ଞାନ ।
ଏମନ୍ତ ଆକାଶ-ବଚନ ॥୭୩

ସ୍ୱଭାବେ ସ୍ଫୁରେ ଅନ୍ତରୀକ୍ଷେ ।
କେ ତାହା ଦେଖିବ ପ୍ରତ୍ୟକ୍ଷେ ॥୭୪
ସ୍ୱଭାବେ ରୂପ ନାହିଁ ଯାର ।
ମହାମହିମା ନିର୍ବିକାର ॥୭୫
ସେ ବାଣୀ ଶୁଣି ଚିତ୍ତ ସ୍ଥିରେ ।
ପ୍ରଣାମ କଲି ତା ପୟରେ ॥୭୬
ମୋର ଜୀବନ କୃତକୃତ୍ୟ ।
ଶୁଣ ହେ ସତ୍ୟବତୀ-ସୁତ ॥୭୭
ସେ ବିନୁ ନ ଜାଣଇ ଆନ ।
ମୋ ସର୍ବଗତି ଭଗବାନ ॥୭୮
ଲାଜଭୟକୁ ପରିହରି ।
ହୃଦେ ଗୋବିନ୍ଦ ନାମ ଧରି ॥୭୯
ଅନନ୍ତ ନାମ ଗୁଣ ଯେତେ ।
ଚିତ୍ତେ ସୁମରି ଅବିରତେ ॥୮୦
ଭୂମି କରଇ ପର୍ଯ୍ୟଟନ ।
ବିଗତରାଗ ତୁଷ୍ଟ ମନ ॥୮୧
ମଦମତ୍ସରମାନ ତେଜି ।
କୃଷ୍ଣ-ଚରଣେ ଦୃଢ଼େ ଭଜି ॥୮୨
ଏମନ୍ତେ ଭ୍ରମୁ ଅନୁଦିନ ।
ନିର୍ମଳ ହୋଇଲା ମୋ ମନ ॥୮୩
ଏମନ୍ତେ ମରଣ ନିୟତ ।
କାଳ ହୋଇଲା ଉପଗତ ॥୮୪
ସଂଶୟ ସ୍ଫୁରେ ମୋର ମନେ ।
ବିଜୁଳି ଯେହ୍ନେ ନୀଳଘନେ ॥୮୫
ଦିବ୍ୟସ୍ୱରୂପ ମୁହିଁ ଦେଖି ।
ତକ୍ଷଣେ ଶରୀର ଉପେକ୍ଷି ॥୮୬
ଆନନ୍ଦେ କୃଷ୍ଣ ଅନୁଗ୍ରହେ ।
ଶୂନ୍ୟେ ଗମିଲି ଦିବ୍ୟଦେହେ ॥୮୭
କଳ୍ପାନ୍ତେ ଦିନ ପ୍ରଳୟରେ ।
ଏ ସୃଷ୍ଟି ଦେଖିଣ ଉଦରେ ॥୮୮
କ୍ଷୀରଜଳଧି ମଧ୍ୟେ ସ୍ଥିତ ।
ଅନନ୍ତଶୟନେ ଅଚ୍ୟୁତ ॥୮୯
ପଶିଲି ତାର ଅଭ୍ୟନ୍ତରେ ।
ନିର୍ଲେପ ନିର୍ମଳ ଶରୀରେ ॥୯୦
ଯେବେ ସହସ୍ରଯୁଗ ଗଲା ।
ଶୟନୁ ଅନନ୍ତ ଉଠିଲା ॥୯୧

Dr. Sudhanshu Sekhar Mishra

ତକ୍ଷଣେ ବ୍ରହ୍ମ-ରୂପ ଧରି ।
ଭୂମି ଭିଆଇ ସୃଷ୍ଟିକରି ॥ ୯୨
ମରୀଚି ଆଦି ସପ୍ତସୁତ ।
ବ୍ରହ୍ମା ମନରୁ ହେଲେ ଜାତ ॥୯୩
ମୁହିଁ ହୋଇଲି ତାଙ୍କ ସଙ୍ଗେ ।
ସମ୍ଭୂତ ବିଧାତାର ଅଙ୍ଗେ ॥୯୪
ନିଶ୍ଚଳ ଚିତ୍ତେ ଦୃଢ଼ବ୍ରତେ ।
ଏ ତିନିଲୋକେ ଭ୍ରମେ ନିତ୍ୟେ ॥୯୫
କୃଷ୍ଣର ଭାବେ ଭ୍ରମେ ନିତି ।
ମୋହର ଅବ୍ୟାହତଗତି ॥୯୬
କୃଷ୍ଣଭକତି ଭାବଭୋଳେ ।
ମୁହିଁ ଗମଇ ଅନ୍ତରାଳେ ॥୯୭
ଦେବଙ୍କ ମଧ୍ୟେ ମୁହିଁ ଥାଇ ।
ନୃତ୍ୟ କରଇ କୃଷ୍ଣ ଗାଇ ॥୯୮
ଶୁଣି ସନ୍ତୋଷ ମୋର ବାଣୀ ।
ବୀଣା ଗୋଟିଏ ଦେଲେ ଆଣି ॥୯୯
ସପତସ୍ୱର ବିଭୂଷଣା ।
ସୁସ୍ୱର ନାଦ ତିନିଗୁଣା ॥୧୦୦
ସ୍ୱର ମୂର୍ଚ୍ଛନା ନାଦ ବାଇ ।
ଆନନ୍ଦେ କୃଷ୍ଣଗୁଣ ଗାଇ ॥୧୦୧
ନିରତେ ଭ୍ରମେ ତ୍ରିଜଗତେ ।
ଶୁଣ କହିବା ଆଉ ଯେତେ ॥୧୦୨
ହରିର ଅଭୟଚରଣ ।
ଅଶେଷତୀର୍ଥଙ୍କର ସ୍ଥାନ ॥୧୦୩
ସେ ପାଦ କଲେ ସୁମରଣ ।
ଶୀଘ୍ରେ ମୋ ଚିତ୍ତେ ନାରାୟଣ ॥ ୧୦୪
ଆଦିତ୍ୟ ତେଜ ପ୍ରାୟ ଦିଶେ ।
ଅଜ୍ଞାନତମ ବେଗେ ନାଶେ ॥୧୦୫
ସେ ହରିଚରିତର ଗୁଣ ।
ଭୋ ମୁନି ସାବଧାନେ ଶୁଣ ॥୧୦୬
ଭବସାଗରେ ଯେତେ ନରେ ।
ଆତୁର ଚିତ୍ତ ଅଭ୍ୟନ୍ତରେ ॥୧୦୭
ବିଷୟରସେ ସୁଜଡ଼ିତ ।
କେବେହେଁ ନୋହେ ଶୁଦ୍ଧଚିତ୍ତ ॥୧୦୮
ଅଛନ୍ତି ଭବ-ସିନ୍ଧୁ-ଗର୍ଭେ ।
ସେ ନରେ କେମନ୍ତେ ତରିବେ ॥୧୦୯
କୃଷ୍ଣର ଗୁଣଗାଥା ଘୋଷି ।
ଆନନ୍ଦେ ସୁଖନାବେ ବସି ॥୧୧୦
ହେଳେ ତରିବେ ହରି ଗାଇ ।
ଅନ୍ୟଥା ସୁଖ ଲେଶ ନାହିଁ ॥୧୧୧
ଯମ ନିୟମ ଯୋଗପଥେ ।
ଯେ ନର ସାଧେ ଅବିରତେ ॥୧୧୨
ଏ ନାବ ପାଇବ ସେ କାହିଁ ।
ଯେବେ ଗୋବିନ୍ଦେ ଚିତ୍ତ ନାହିଁ ॥୧୧୩
ଶୁଣ ହେ ସତ୍ୟବତୀ-ସୁତ ।
ମୋହର ପୂର୍ବର ଚରିତ ॥୧୧୪
ଜନ୍ମ କର୍ମାଦି ମୋର ଯେତେ ।
କହିଲି ତୁମ୍ଭର ଅଗ୍ରତେ ॥୧୧୫
ତୁମ୍ଭର ମନ ତୋଷ ଅର୍ଥେ ।
କହିଲି ଭକ୍ତିଯୋଗ ଯେତେ ॥୧୧୬

ସୂତ ଉବାଚ

ସୂତ କହନ୍ତି ଅନୁରାଗେ ।
ଯଜ୍ଞେ ସମସ୍ତ ମୁନିଆଗେ ॥୧୧୭
ନାରଦ ଜନ୍ମକର୍ମ କଥା ।
ବିଷ୍ଣୁ ଭକତିର ବ୍ୟବସ୍ଥା ॥୧୧୮
ବ୍ୟାସଙ୍କ ଆଗେ ସର୍ବ କହି ।
ଆନନ୍ଦେ ବୀଣାବାଦ୍ୟ ବାଇ ॥୧୧୯
ଆକାଶମାର୍ଗେ ଗଲେ ଏକେ ।
ବିଜୁଳି ଯେହ୍ନେ ବଳାହକେ ॥୧୨୦
ଧନ୍ୟ ମହିମା ଦେବଋଷି ।
ନିରତେ କୃଷ୍ଣନାମ ଘୋଷି ॥୧୨୧
ହରି ଗାୟନେ ଭୋଳ ହୋଇ ।
ବିବିଧଛନ୍ଦେ ବୀଣା ବାଇ ॥୧୨୨
ନିରତେ ଭ୍ରମେ ତିନିପୁରେ ।
ଜଗତ ସଙ୍କଟୁ ଉଦ୍ଧରେ ॥୧୨୩
ବୋଲଇ ଦାସ ଜଗନ୍ନାଥ ।
ପ୍ରଥମସ୍କନ୍ଧେ ଭାଗବତ ॥୧୨୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ବ୍ୟାସ-ନାରଦ-ସମ୍ବାଦେ
ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ଏମନ୍ତେ ଶୁକ ମୁଖୁ ଶୁଣି ।
ଶୌନକ ଆଦି ସର୍ବ ମୁନି ॥୧
ସୂତମୁନିଙ୍କ ମୁଖ ଚାହିଁ ।
ପୁଣି ପୁଚ୍ଛନ୍ତି ଭାବ ବହି ॥୨

ଶୌନକ ଉବାଚ

ବ୍ୟାସଙ୍କୁ ଛାଡ଼ି ଗଙ୍ଗାକୂଳେ ।
ନାରଦ ଗଲେ ଯେତେବେଳେ ॥୩
ଚିତ୍ତେ ସଂଶୟ ଯେତେ ଥିଲା ।
ନାରଦବାକ୍ୟେ ଦୂର ହେଲା ॥୪
ସେ ସର୍ବଗୁଣେ ଅଧିକାରୀ ।
ନାରଦବାକ୍ୟ ଚିତ୍ତେ ଧରି ॥୫
ପୁଣି କି କଲେ ପୁଣ୍ୟଦେହା ।
କହ ଆମ୍ଭଙ୍କୁ ଯେବେ ଦୟା ॥୬
ଏମନ୍ତେ ମୁନିଙ୍କ ପ୍ରଶ୍ନେ ।
କୃଷ୍ଣମହିମା ଶୁଣି କର୍ଣ୍ଣେ ॥୭
ସୂତ କହନ୍ତି ତୋଷ ଚିତ୍ତେ ।
ମୁନିଜନଙ୍କର ଅଗ୍ରତେ ॥୮

ସୂତ ଉବାଚ

ସେ ବ୍ରହ୍ମନଦୀର ପଶ୍ଚିମେ ।
ଆଶ୍ରମ ଶମ୍ୟାପ୍ରାସ ନାମେ ॥୯
ଯହିଁ ଅଶେଷ ମୁନିଜନ ।
ଏଣୁ ଅନେକ ଯଜ୍ଞସ୍ଥାନ ॥୧୦

Dr. Sudhanshu Sekhar Mishra

ମଧ୍ୟେ ବଦରୀ ନାମେ ବନ ।
ବ୍ୟାସଙ୍କ ନିୟତ ଆଶ୍ରମ ॥୧୧
ସେ ବନେ ସରସ୍ୱତୀଜଳେ ।
ସ୍ନାହାନ ସାରି ପ୍ରାତଃକାଳେ ॥୧୨
କୃଷ୍ଣମହିମା ଚିନ୍ତି ମନେ ।
ମୁନି ବସିଲେ ଯୋଗଧ୍ୟାନେ ॥୧୩
ନିର୍ମଳ ମନେ ଧ୍ୟାନ କରି ।
ତକ୍ଷଣେ ପ୍ରଭୁ ନରହରି ॥୧୪
ମାୟା ସହିତେ ହେଲେ ଦୃଶ୍ୟ ।
ଯେ ପୂର୍ବପୁରାଣପୁରୁଷ ॥୧୫
ଯେ ମାୟା ତ୍ରିଗୁଣେ ଜଡ଼ିତ ।
ଅଜ୍ଞାନ ପଥେ ମୋହଗ୍ରସ୍ତ ॥୧୬
ଅସତ୍ୟ ସତ୍ୟ ପ୍ରାୟେ ମଣେ ।
ଆତ୍ମାର ଗତି ନ ପ୍ରମାଣେ ॥୧୭
ତେଣୁ ସେ ଜନ୍ମାଦି ଅନର୍ଥ ।
ଜୀବକୁ ହୁଅଇ ପ୍ରାପତ ॥୧୮
ତାହାକୁ ଉଦ୍ଧରିବା ଅର୍ଥେ ।
କୃଷ୍ଣଭକତି ଯୋଗପଥେ ॥୧୯
ରଚିଲେ ଭାଗବତବାଣୀ ।
ଏ ଜୀବ ତରେ ଯାହା ଶୁଣି ॥୨୦
ଭକତି ଲଭେ କୃଷ୍ଣପାଦେ ।
ନ ପଡ଼େ ଶୋକ ମୋହ ବାଦେ ॥୨୧
ସଂହିତା ଛଳେ ହରିବାଣୀ ।
ଶୁକ ମୁନିଙ୍କି ଘରେ ଆଣି ॥୨୨
ସ୍ୱଭାବେ ତାଙ୍କ ନିଜ ସୁତ ।
ହରଷେ ଦେଲେ ଭାଗବତ ॥୨୩
ବିଶେଷେ ଗୋବିନ୍ଦ ପ୍ରସନ୍ନେ ।
ମାୟା ନ ଲାଗେ ତାଙ୍କ ମନେ ॥୨୪
ଏମନ୍ତେ ସୂତ ପ୍ରଶ୍ନ ଶୁଣି ।
ମୁନି ସକଳେ ମନେ ଗୁଣି ॥୨୫
ମନେ ସଂଶୟ ଖେଦ ବହି ।
କହନ୍ତି ସୂତ ମୁଖ ଚାହିଁ ॥୨୬

ଶୌନକ ଉବାଚ

ମାୟା ନ ଲାଗେ ଯାର ଚିତ୍ତେ ।
କି ପ୍ରୟୋଜନ ତାର ଗ୍ରନ୍ଥେ ॥୨୭
ଶୁକ ସ୍ୱଭାବେ ଆତ୍ମାରାମ ।
ତାହାଙ୍କ ଗ୍ରନ୍ଥେ କିବା ଶ୍ରମ ॥୨୮
କାହାର ଅର୍ଥେ ବ୍ୟାସସୁତ ।
ଅଭ୍ୟାସ କଲେ ଭାଗବତ ॥୨୯
ନିର୍ଲେପ ଯୋଗୀ ସେ ଯୁଗତେ ।
ସଂଶୟ ଲାଗେ ଆମ୍ଭ ଚିତ୍ତେ ॥୩୦
ଶୁଣି ସଂଶୟ ମୁନିକଥା ।
କହନ୍ତି ସୂତ ବ୍ରହ୍ମବେତ୍ତା ॥୩୧

ସୂତ ଉବାଚ

ସ୍ୱଭାବେ ମୁନିଙ୍କର ଚିତ୍ତ ।
ଗ୍ରନ୍ଥରେ ନୁହଇ ଗ୍ରନ୍ଥିତ ॥୩୨
ତଥାପି ଅକିନ ପଣେ ।
ଭଜନ୍ତି ଗୋବିନ୍ଦଚରଣେ ॥୩୩
ଯେଣୁ ସକଳ ଭୂତେ ହରି ।
ପରମ ଆତ୍ମା ରୂପେ ପୂରି ॥୩୪
ତେଣୁ ଭକତି ଅତିରେକେ ।
କହନ୍ତି ଏକକୁ ଆରେକେ ॥୩୫
ସେ ଶୁକମୁନି ଶୁଦ୍ଧଚେତା ।
ନିତ୍ୟେ ଅଭ୍ୟାସେ କୃଷ୍ଣକଥା ॥୩୬
ଭକତଜନ ପ୍ରିୟ ଅର୍ଥେ ।
ଯାହାର ଜନ୍ମ ଏ ଜଗତେ ॥୩୭
ଏବେ ହୋ ଶୁଣ ବିପ୍ରଜନେ ।
ହରି ଚରିତ ଅବଧାନେ ॥୩୮
ଭକତ ପରୀକ୍ଷିତ କଥା ।
ପଣ୍ଡୁନନ୍ଦନଙ୍କ ବ୍ୟବସ୍ଥା ॥୩୯
କୁରୁ ପାଣ୍ଡବ ଯୁଦ୍ଧ ଅନ୍ତେ ।
ବୀରେ ଗମିଲେ ବୀରପଥେ ॥୪୦
ଭୀମସେନର ଗଦା ବାଜି ।
ଦୁର୍ଯ୍ୟୋଧନର ଜାନୁ ଭାଜି ॥୪୧
ପଳାଇ ଗଲା ପ୍ରାଣ ଡରେ ।
ଲୁଚିଲା ବ୍ୟାସ-ସରୋବରେ ॥୪୨
ଏମନ୍ତେ ହୋଇଲା ରଜନୀ ।
ଜଳେ ଭାଳଇ ଭୟ ଘେନି ॥୪୩
କାନ୍ଦଇ ଜୀବନ ବିକଳେ ।
ଦ୍ରୋଣନନ୍ଦନ ଦେଖି କୂଳେ ॥୪୪
ବୋଲଇ ରାଜା ମୁଖ ଚାହିଁ ।
ମୋତେ ଯେ ନ ବରିଲୁ ତୁହି ॥୪୫
ଯୁଦ୍ଧେ ସକଳ ବୀର ମାରି ।
ଏ ଭୂମି ଅପାଣ୍ଡବା କରି ॥୪୬
ତୋତେ ବସାନ୍ତି ରାଜକୁଳେ ।
ଅଖଣ୍ଡ ଅବନୀ ମଣ୍ଡଳେ ॥୪୭
ଶୁଣି ବୋଲଇ ନୃପବର ।
ଏବେ ହୋ ଅପାଣ୍ଡବା କର ॥୪୮
ଏବେ ବରିଲି ସେନାପତି ।
ଫେଡ଼ ତୁ ମୋହର ଦୁର୍ଗତି ॥୪୯
ଏମନ୍ତ କହି ଅନ୍ଧବଳା ।
ତାହାର ହସ୍ତେ ଜଳ ଦେଲା ॥୫୦
ଦ୍ରୋଣ କୁମର ବେଗେ ଉଠି ।
ଧନୁ ଧଇଲା ଦୃଢ଼ମୁଷ୍ଟି ॥୫୧
ମନ୍ତ୍ରିଣ ନାରାଚ ପେଷିଲା ।
ପାଣ୍ଡବ ଶିବିରେ ପଡ଼ିଲା ॥୫୨
ଦ୍ରୌପଦୀ ପାଞ୍ଚ ଯେ କୁମରେ ।
ଶୋଇଣ ଥିଲେ ଅନ୍ତଃପୁରେ ॥୫୩
ପଡ଼ି କାଟିଲା ତାଙ୍କ ଶିର ।
ଶବଦ କଲା ମହାଘୋର ॥୫୪
ଶୁଣି କମ୍ପିଲେ ଦିଗପାଳେ ।
ପୂରିଲା ଭୂମି ଅନ୍ତରାଳେ ॥୫୫
ଅତି ନିନ୍ଦିତ କର୍ମ କଲା ।
ଦଇବ ବଶେ ଦ୍ରୋଣବଳା ॥୫୬
ଦ୍ରୌପଦୀ ଶୟନ ଉପେକ୍ଷି ।
ପୁତ୍ର ମରଣ ଦୁଃଖେ ଦୁଃଖୀ ॥୫୭
ବିକଳେ କରଇ ରୋଦନ ।
ତା ପାଶେ ମିଳିଲେ ଅର୍ଜୁନ ॥୫୮
ଅନେକ ଶାନ୍ତି ବାକ୍ୟ କହି ।
ବୋଲେ ଦ୍ରୌପଦୀ ମୁଖ ଚାହିଁ ॥୫୯
ଦ୍ରୋଣ କୁମର ଶିର ବାଣେ ।
କାଟି ସ୍ଥାପିବି ତୋ ଚରଣେ ॥୬୦
ତେବେ ହରିବି ତୋର ଶୋକ ।
ତୁ ଏବେ ସ୍ଥିର ଚିତ୍ତେ ଦେଖ ॥୬୧
ସେ ବ୍ରହ୍ମବନ୍ଧୁ ଆତତାୟୀ ।
ତାହାର ବଧେ ଦୋଷ ନାହିଁ ॥୬୨

Dr. Sudhanshu Sekhar Mishra

ଏମନ୍ତେ ମଧୁର ବଚନେ ।
ଶାନ୍ତି କରାଇ ତାର ମନେ ।।୬୩
ଯାର ସାରଥି ଭଗବାନ ।
କେ ତାରେ କରେ ଅପମାନ ।।୬୪
ଗାଣ୍ଡୀବ ଧନୁ ଧରି ହସ୍ତେ ।
ବସିଲା କପିଧ୍ୱଜ ରଥେ ।।୬୫
ବେଗେ ଧାଇଁଲା ସଜହୋଇ ।
ଦେବେ ଗଗନେ ଛନ୍ତି ଚାହିଁ ।।୬୬
ଅର୍ଜୁନ ଦେଖି ଦ୍ରୋଣ ବଳା ।
କାତରେ ହୃଦୟ କମ୍ପିଲା ।।୬୭
ବାଳକ ବଧେ ଛନ୍ନ ମନେ ।
ପଳାଇ ଜୀବନ ରକ୍ଷଣେ ।।୬୮
ବେଗେ ପଳାଇ ଭୂମିଗତେ ।
ପଶିଲା ଗହନ ବନସ୍ତେ ।।୬୯
ପୁଣି ପଳାଇ ଘୋର ବନେ ।
ଅନ୍ଧକ ରୁଦ୍ର ଡରେ ଯେହ୍ନେ ।।୭୦
ତାରେ ରକ୍ଷକ କେହି ନାହିଁ ।
ଶ୍ରମେଣ ଅଶ୍ୱ ନ ଚଳଇ ।।୭୧
ପ୍ରାଣ ରକ୍ଷଣେ ଦ୍ରୋଣସୁତ ।
ମନେ ସୁମରି ବ୍ରହ୍ମଅସ୍ତ୍ର ।।୭୨
ତକ୍ଷଣେ ଜଳେ ସ୍ନାନ କରି ।
ବ୍ରହ୍ମଶିରାକୁ ହସ୍ତେ ଧରି ।।୭୩
ସଂହାର ନ ଜାଣେ ତାହାରେ ।
ପେଷିଲା ଅର୍ଜୁନ ଉପରେ ।।୭୪
ସ୍ୱଭାବେ ବ୍ରହ୍ମଶିରା ନାମ ।
ତେଜେ ବିରାଜେ ରବି ସମ ।।୭୫
ତାର ପ୍ରଚଣ୍ଡ ତେଜ ଚାହିଁ ।
କମ୍ପଇ ଅର୍ଜୁନର ଦେହୀ ।।୭୬
ବ୍ରହ୍ମ ଅସ୍ତ୍ରକୁ ଭୟ କଲା ।
ଗୋବିନ୍ଦ ମୁଖକୁ ଚାହିଁଲା ।।୭୭
ପଡ଼ି ଅଭୟ ପାଦତଳେ ।
ବୋଲଇ ଜୀବନ ବିକଳେ ।।୭୮

ଅର୍ଜୁନ ଉବାଚ

ହେ କୃଷ୍ଣ କୃଷ୍ଣ ଯୋଗେଶ୍ୱର ।
ଶରଣଜନଙ୍କ ସୋଦର ।।୭୯
ସଂସାର ଅନଳ ଦହନେ ।
ଡରେ ସ୍ମରନ୍ତି ତୋତେ ଜନେ ।।୮୦
ତାହାଙ୍କୁ ଦେଉ ମୋକ୍ଷ ଗତି ।
ଅଭୟ ବ୍ରହ୍ମେ ସେ ପଶନ୍ତି ।।୮୧
ଆଦିପୁରୁଷ ନିରଞ୍ଜନ ।
ପ୍ରକୃତି ପରେ ତୋ ବିଶ୍ରାମ ।।୮୨
ସ୍ୱରୂପେ ମାୟାକୁ ସଂହରୁ ।
କୈବଲ୍ୟ ରୂପେ ତୁ ବିହରୁ ।।୮୩
ଏଣୁ ତୋହର ଗତି ମୁହିଁ ।
ମାୟାର ବଳେ ନ ଜାଣଇ ।।୮୪
ଏ ଜୀବଲୋକେ ଘୋରମାୟା ।
ତୁଟଇ ଯାରେ କରୁ ଦୟା ।।୮୫
ଏଯେ ତୋହର ଅବତାର ।
ଖଣ୍ଡିବ ଅବନୀର ଭାର ।।୮୬
ତୋରେ ଶରଣ ଯେ ପଶଇ ।
ସଂସାର ତାକୁ ନ ଲାଗଇ ।।୮୭
ଏଣୁ ମୋହର ଗତି ତୁହି ।
ତୋ ମାୟାବଳ ମୁଁ ଜାଣଇ ।।୮୮
ଏ ଯେ ଆସଇ ବ୍ରହ୍ମଶର ।
ତେଜେ ଆଚ୍ଛାଦି ତିନିପୁର ।।୮୯
ସ୍ୱଭାବେ ପ୍ରଚଣ୍ଡ ଦାରୁଣ ।
ଦେଖି କମ୍ପଇ ମୋର ପ୍ରାଣ ।।୯୦
କହ କି କରିବି ଗୋସାଇଁ ।
ତୋ ତହୁଁ ଆନଗତି ନାହିଁ ।।୯୧
ଅର୍ଜୁନ ବାକ୍ୟ ଶୁଣି ହସି ।
କହନ୍ତି ପ୍ରଭୁ ବ୍ରହ୍ମରାଶି ।।୯୨

ଶ୍ରୀକୃଷ୍ଣ ଉବାଚ

ଜୀବନ ଡରେ ଦ୍ରୋଣ ବଳା ।
ଅତିମାନୁଷ କର୍ମ କଲା ।।୯୩
ମନ୍ତ୍ର ନ ଜାଣଇ ସଂହାରେ ।
ବେଗେ ପେଷିଲା ପ୍ରାଣଡରେ ।।୯୪
ଏହା ନିବାରେ ଶସ୍ତ୍ର ନାହିଁ ।
କେହି ନ ଜାଣେ ଦେହ ବହି ।।୯୫
ତୁ ତ ସକଳ ଶାସ୍ତ୍ର ଜାଣୁ ।
ଚଳ ଚିତ୍ତେ ନ ପ୍ରମାଣୁ ।।୯୬
ଏ ବ୍ରହ୍ମଶସ୍ତ୍ର ତେଜ ଘୋର ।
ତୁ ବ୍ରହ୍ମଶସ୍ତ୍ରେଣ ନିବାର ।।୯୭

ସୂତ ଉବାଚ

ଶୁଣି ଗୋବିନ୍ଦ ମୁଖୁ ବାଣୀ ।
ଅର୍ଜୁନ ମନେ ମନେ ଗୁଣି ।।୯୮
ତକ୍ଷଣେ ଆଚମନ କଲା ।
କୃଷ୍ଣଙ୍କୁ ମନେ ସୁମରିଲା ।।୯୯
ଦ୍ରୋଣଙ୍କ ତହୁଁ ଅଛି ଜାଣି ।
ଭାବେ କହିଲେ ଚକ୍ରପାଣି ।।୧୦୦
ବ୍ରହ୍ମଶରକୁ ବ୍ରହ୍ମଶର ।
ମନ୍ତ୍ରି ପେଷିଲା ବୀରବର ।।୧୦୧
ଗଗନ ମଧ୍ୟେ ବେନି ଶରେ ।
ଭୂମି କମ୍ପଇ ଥରହରେ ।।୧୦୨
ଅର୍କ ଅନଳ ପ୍ରାୟ ଦିଶି ।
ବେଢ଼ିଲେ ଦଶଦିଗ ଗ୍ରାସି ।।୧୦୩
ସେ ବେନି ଶସ୍ତ୍ର ତେଜରାଶି ।
ପ୍ରଳୟାନଳ ପ୍ରାୟ ଦିଶି ।।୧୦୪
ଦହିବା ପ୍ରାୟ ତ୍ରିଭୁବନ ।
ଦେଖି ଡରିଲେ ସର୍ବଜନ ।।୧୦୫
ତେଜେ ତାପିତ ତ୍ରିଭୁବନ ।
ତା ଦେଖି ତକ୍ଷଣେ ଅର୍ଜୁନ ।।୧୦୬
କୃଷ୍ଣ ବୋଇଲେ ଶୁଣ ବୀର ।
ଅସ୍ତ୍ରେ ସେ ଅସ୍ତ୍ରକୁ ସଂହାର ।।୧୦୭
ଯହୁଁ କହିଲେ ଚକ୍ରପାଣି ।
ତକ୍ଷଣେ ସଂହାରିଲା ଆଣି ।।୧୦୮
ରଥୁ ଓହ୍ଲାଇ ମହାରୋଷେ ।
ଧଇଲା ଅଶ୍ୱତ୍ଥାମା କେଶେ ।।୧୦୯
ପ୍ରଚଣ୍ଡ ରୋଷେ ଶିରଝୁଣି ।
ଆକର୍ଷି ପାଡ଼ିଲା ଧରଣୀ ।।୧୧୦
କର ଚରଣ ତନୁ ଛନ୍ଦେ ।
ବେଗେ ବାନ୍ଧିଲା ମାଳ ବନ୍ଧେ ।।୧୧୧
ବରୁଣ ପାଶକୁ ସୁମରି ।
ପଶୁଙ୍କ ପ୍ରାୟ ବନ୍ଦୀ କରି ।।୧୧୨
ଅର୍ଜୁନ ମନେ ଦୟା ବହି ।
ରାଜସଦନେ ନେବା ପାଇଁ ।।୧୧୩

Dr. Sudhanshu Sekhar Mishra

ରଥର ଦଣ୍ଡେ ବାନ୍ଧେ ଆଣି ।
ଦେଖି ବୋଲନ୍ତି ଚକ୍ରପାଣି ॥୧୧୪
ଏ ବ୍ରହ୍ମବନ୍ଧୁ ବସଦ୍ରୋହୀ ।
ଏହାକୁ ଦଣ୍ଡେ ହେଁ ନ ଥୋଇ ॥୧୧୫
ମନେ ତୁ ଅନ୍ୟ ନ ବିଚାର ।
ବେଗେ ଏହାର ପ୍ରାଣ ହର ॥୧୧୬
ନିର୍ଦ୍ଦୋଷ ବାଳକ ଶୟନେ ।
ଥିଲେ ଯେ ନିଦ୍ରିତ ଲୋଚନେ ॥୧୧୭
ଏ ନାଶ କଲା ତାଙ୍କ ପ୍ରାଣ ।
ଏବେ କହିବା ପାର୍ଥ ଶୁଣ ॥୧୧୮
ମତ୍ତ ପ୍ରମତ୍ତ ଉନମତ୍ତ ।
ବାଳ ବନିତା ନିଦ୍ରାଗତ ॥୧୧୯
ଶରଣାଗତ ରଥହୀନ ।
ସଙ୍କଟେ ଦେଖି ରିପୁଜନ ॥୧୨୦
ଏହାଙ୍କୁ ବଧ ଯେ କରନ୍ତି ।
ଜୀବନ ଥାଉଁ ସେ ମରନ୍ତି ॥୧୨୧
ପର ଜୀବନ ମାରି ଆଣି ।
ଆତ୍ମାକୁ ପୋଷନ୍ତି ଯେ ପ୍ରାଣୀ ॥୧୨୨
ତାଙ୍କୁ ମାରନ୍ତେ ବହୁ ପୁଣ୍ୟ ।
ବେଦେ କହନ୍ତି ବିପ୍ରଜନ ॥୧୨୩
ତୁ ଯେ ଦ୍ରୌପଦୀ ଆଗେ ରହି ।
ପ୍ରତିଜ୍ଞା କଲୁ ଗର୍ବ ବହି ॥୧୨୪
ବୋଇଲୁ ନ କାନ୍ଦ ସୁନ୍ଦରି ।
ତୋର ରିପୁକୁ ମୁହିଁ ଧରି ॥୧୨୫
ତାହାର ଶିର କାଟି ବେଗେ ।
ସ୍ଥାପିବି ତୋର ପାଦଯୁଗେ ॥୧୨୬
ମୁହିଁ ଯେ ଶୁଣିଅଛି ଏହା ।
ଏବେ ରଖିଲୁ କରି ଦୟା ॥୧୨୭
ବେଗେ ଏହାର ପ୍ରାଣ ହର ।
ନିମିଷେ ବିଳମ୍ବ ନ କର ॥୧୨୮
ଏ ପାପୀ ଆତତାୟୀ ନର ।
ବାଳକ ହନ୍ତା ଏ ତୁମ୍ଭର ॥୧୨୯
ଯାହାର ଆଶ୍ରେ ଭୋଗ କଲା ।
ତାର ଅପ୍ରିୟ ଏ ଚିନ୍ତିଲା ॥୧୩୦
ଏଣୁ ଏ କୁଳପାଂଶୁ ପଣେ ।
ନିତ୍ୟେ ବଞ୍ଚଇ ଘୋର ବନେ ॥୧୩୧

ସୂତ ଉବାଚ

ଏମନ୍ତେ ଧର୍ମ ପରୀକ୍ଷାର୍ଥେ ।
କୃଷ୍ଣ କହିଲେ ନାନା ମତେ ॥୧୩୨
ଅର୍ଜ୍ଜୁନ ନ ଶୁଣଇ ତାହା ।
ଗୁରୁପୁତ୍ରକୁ କରି ଦୟା ॥୧୩୩
ଯଦ୍ୟପି ଅଟେ ପୁତ୍ରଦ୍ରୋହୀ ।
ତଥାପି ବଧେ ଇଚ୍ଛା ନାହିଁ ॥୧୩୪
ତକ୍ଷଣେ ଉଠି ବୀର ପାର୍ଥ ।
ବନ୍ଧନ କରି ଗୁରୁସୁତ ॥୧୩୫
ଦ୍ରୌପଦୀ ଆଗେ ନେଇ ଦେଲା ।
ତୋ ରିପୁ ସମ୍ଭାଳ ବୋଇଲା ॥୧୩୬
ନିନ୍ଦିତ କର୍ମେ ହୀନ ହୋଇ ।
ବନ୍ଧନ ପଶୁ ପାଶେ ଦେହୀ ॥୧୩୭
ଦ୍ରୌପଦୀ ତାର ରୂପ ଚାହିଁ ।
ତକ୍ଷଣେ ଚିତ୍ତେ ଦୟା ବହି ॥୧୩୮
ପୁତ୍ରଙ୍କ ରିପୁ ଏ ନିୟତ ।
ସ୍ୱଭାବେ ଦ୍ରୋଣ-ଗୁରୁ-ସୁତ ॥୧୩୯
ଅନ୍ତରେ ନମସ୍କାର କଲା ।
ଅର୍ଜ୍ଜୁନ ମୁଖକୁ ଚାହିଁଲା ॥୧୪୦
ବୋଲଇ ବେନି କରଯୋଡ଼ି ।
ବନ୍ଧନ ଦିଅ ବେଗେ ଫେଡ଼ି ॥୧୪୧
ସ୍ୱଭାବେ ବିପ୍ର ଗୁରୁଜନ ।
ବିଶେଷେ ଦ୍ରୋଣଙ୍କ ନନ୍ଦନ ॥୧୪୨
ରହସ୍ୟ ଧନୁର୍ବ୍ବେଦ ଗ୍ରାମ ।
ବିସର୍ଗ ସଂହାର ସଂଯମ ॥୧୪୩
ସକଳ ଅସ୍ତ୍ର ଶସ୍ତ୍ର କଳା ।
ଯେ ଗୁରୁପଣେ ଶିଖାଇଲା ॥୧୪୪
ସେହିଟି ପୁତ୍ର ରୂପେ ଜାତ ।
ଆତ୍ମାରୁ ଆପଣେ ସମ୍ଭୂତ ॥୧୪୫
ସ୍ୱାମୀର ତହୁଁ ଅର୍ଦ୍ଧେ ଘେନି ।
ଯୁକତେ ଏହାର ଜନନୀ ॥୧୪୬
ସ୍ୱାମୀର ସଙ୍ଗେ ସେ ନ ମଲା ।
ଯେଣୁ ଏ ପୁତ୍ର ତାର ଥିଲା ॥୧୪୭
ତୁମ୍ଭେ ଧର୍ମଜ୍ଞ ମହାଭାଗ ।
ଏ ନୋହେ ତୁମ୍ଭ ଦଣ୍ଡଯୋଗ୍ୟ ॥୧୪୮
ଏ ତୋର ଧର୍ମ ଗୁରୁକୁଳ ।
ଏହାକୁ ଭଲେ ପ୍ରତିପାଳ ॥୧୪୯
ଏହାର ଗଉତମୀ ମାତା ।
ସୁପୁଣ୍ୟବତୀ ପତିବ୍ରତା ॥୧୫୦
ରୋଦନ ନ କରୁ ସେ ଶୋକେ ।
ମୋହର ପ୍ରାୟେ ପୁତ୍ର ଦୁଃଖେ ॥୧୫୧
କ୍ଷତ୍ରିୟ ଯେବେ ମୂଢ଼ପଣେ ।
କୋପ ସମ୍ପାଦେ ବିପ୍ରଗଣେ ॥୧୫୨
ସେ କୋପେ ନିଜକୁଳ ଦହେ ।
ଏଣୁ କେ ବିପ୍ର ମନ୍ୟୁ ସହେ ॥୧୫୩

ସୂତ ଉବାଚ

ଦ୍ରୌପଦୀ ଧର୍ମ ନ୍ୟାୟ ବାଣୀ ।
ହରଷେ ଯୁଧିଷ୍ଠିର ଶୁଣି ॥୧୫୪
ଶୁଣି ନକୁଳ ସହଦେବ ।
ସାତ୍ୟକି ଅର୍ଜ୍ଜୁନ ପାଣ୍ଡବ ॥୧୫୫
ଗୋବିନ୍ଦ ଆଦି ଶୁଣି କରି ।
କୁନ୍ତୀ ସହିତେ ଯେତେ ନାରୀ ॥୧୫୬
ମଉନେ କିଛି ନ ବୋଇଲେ ।
ସେ ଧର୍ମ ଅନ୍ତରେ ଜାଣିଲେ ॥୧୫୭
ତାହାଙ୍କ ମଧ୍ୟେ ଭୀମସେନ ।
କଟାକ୍ଷେ ଅରୁଣ ଲୋଚନ ॥୧୫୮
କୋପେ ଅନାଇ କୃଷ୍ଣ ମୁଖେ ।
ବୋଲନ୍ତି ଅତି ମନ ଦୁଃଖେ ॥୧୫୯
ତୀକ୍ଷ୍ଣ ଖଡ଼ଗେ କାଟି ଶିର ।
ଏହାକୁ ନରକୁ ଉଦ୍ଧର ॥୧୬୦
କି ପ୍ରୟୋଜନ କିବା ଅର୍ଥେ ।
ଏ ପାପୁ ତରିବ କେମନ୍ତେ ॥୧୬୧
ଶୟନେ ଶିଶୁବଧ କଲା ।
ସ୍ୱଭାବେ ଜିଉଁ ଜିଉଁ ମଲା ॥୧୬୨
ଦ୍ରୌପଦୀ ତୁଲେ ଚକ୍ରପାଣି ।
ଏ ଧର୍ମ ଭୀମ ମୁଖୁ ଶୁଣି ॥୧୬୩
ଅଳପ ହାସେ ଭାବଗ୍ରାହୀ ।
ବୋଲନ୍ତି ଅର୍ଜ୍ଜୁନକୁ ଚାହିଁ ॥୧୬୪

ଶ୍ରୀଭଗବାନୁବାଚ

ବ୍ରାହ୍ମଣ ବଧ ଯୋଗ୍ୟ ନୋହି ।
ଏହା ମୁଁ ଶାସ୍ତ୍ରେ ଅଛି କହି ॥୧୬୫

Dr. Sudhanshu Sekhar Mishra

ଯେ ଆତତାୟୀ କର୍ମ କରେ ।
ଅଧର୍ମ ମାର୍ଗେ ଶସ୍ତ୍ରଧରେ ॥୧୬୬
ଜୀବନ ଥାଉଁ ସେ ମରନ୍ତି ।
ଅନ୍ତେ ନରକ ପଥ ଚିନ୍ତି ॥୧୬୭
ମରଣ ଉଚିତ ଏହାର ।
ଏହାକୁ ରଖ ବୀରବର ॥୧୬୮
ଉଭୟ ବାକ୍ୟ ମୋର କର ।
ଯେ ଧର୍ମ ଉଚିତ ବେଭାର ॥୧୬୯
ଦ୍ରୌପଦୀ ପୁତ୍ର ଶୋକ ବେଳେ ।
ତୁ ଯେ ବୋଇଲୁ ଅବହେଳେ ॥୧୭୦
ତୋହର ପୁତ୍ର ଶତ୍ରୁ ମାରି ।
ଶିର ଚରଣେ ପୂଜା କରି ॥୧୭୧
ଖଣ୍ଡିବ ପୁତ୍ର ଶୋକ ତେବେ ।
ମୋର ବଚନ କର ଏବେ ॥୧୭୨
ଶସ୍ତ୍ରେ ଏହାର ତେଜ ହର ।
ଜୀବନ ମୃତ୍ୟୁ ପ୍ରାୟେ କର ॥୧୭୩
ଶାସ୍ତି ଲାଞ୍ଛନେ ଏ ବିହରୁ ।
ଏ ବିପ୍ର ଜୀବନେ ନ ମରୁ ॥୧୭୪
ଶୋକ ନ ଥାଉ କୃଷ୍ଣା ଚିତ୍ତେ ।
ଏ କଥା କର ଭୀମ ହିତେ ॥୧୭୫

ଏକଥା ମୋର ସନମତ ।
ଶୁଣି ଅର୍ଜୁନ କୃତକୃତ୍ୟ ॥୧୭୬
ତକ୍ଷଣେ ଉଠି କୋପଭରେ ।
ତୀକ୍ଷ୍ଣ ଖଡ୍‌ଗ ଧରି କରେ ॥୧୭୭
କେଶ ଧଇଲା ବାମ ହସ୍ତେ ।
ମଣି ଯେ ଥିଲା ତାର ମାଥେ ॥୧୭୮
ଖଡ୍‌ଗ ଧରି ଦୃଢ଼ମୁଷ୍ଟି ।
ମଣି ସହିତେ ଶିଖା କାଟି ॥୧୭୯
ଆଣି ଥୋଇଲା ବାହୁବଳେ ।
ଦ୍ରୌପଦୀ ଦେବୀ ପାଦ ତଳେ ॥୧୮୦
ବନ୍ଧନ ତକ୍ଷଣେ ଫେଡ଼ିଲା ।
ଦ୍ରୌପଦୀ ତା ମୁଖ ଚାହିଁଲା ॥୧୮୧
ବାଳକ ହତ୍ୟା ଦୋଷେ ହୀନା
ମଳିନ ଦିଶେ ତା ବଦନ ॥୧୮୨
ମଣି ହରଣେ ତେଜ ଗଲା ।
ନଗରୁ ବେଗେ ପଳାଇଲା ॥୧୮୩
କେଶବପନ ଧନ ହରି ।
ତାହାକୁ ରାଜ୍ୟୁ ଦୂର କରି ॥୧୮୪
ବ୍ରାହ୍ମଣ ଦଣ୍ଡ ଏହି ମତେ ।
ମରଣ ଲଭଇ ଜୀବନ୍ତେ ॥୧୮୫

ଦ୍ରୋଣ କୁମରେ ଶାସ୍ତି ଦେଇ ।
ଜ୍ଞାତି ବାନ୍ଧବେ ରୁଣ୍ଡ ହୋଇ ॥୧୮୬
ସର୍ବେ ଆତୁର ପୁତ୍ର ଶୋକେ ।
ବାଳକ ଘେନି ଏକେ ଏକେ ॥୧୮୭
ଦହନ କଲେ ଦୁଃଖ ମନେ ।
ଏବେ ହୋ ଶୁଣ ମୁନିଜନେ ॥୧୮୮
ସୁଜନ ହିତେ ଭାଗବତ ।
ଭିଆଇ ରସମୟ ଗୀତ ॥୧୮୯
ପ୍ରଥମସ୍କନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୯୦
ଅମୃତ ଶ୍ରୀକୃଷ୍ଣ ଚରିତ ।
କହଇ ଦାସ ଜଗନ୍ନାଥ ॥୧୯୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ଦ୍ରୌଣିନିଗ୍ରହୋ ନାମ
ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ

ସୂତ ଉବାଚ

ସକଳେ ମିଳି ଦୁଃଖ ଶୋକେ ।
ମିଳିଲେ ଗଙ୍ଗାର ଉଦକେ ॥୧
ମୃତ୍ୟୁ ଉଦକ ଦାନ ଅର୍ଥେ ।
ଦ୍ରୌପଦୀ କୁନ୍ତୀର ସହିତେ ॥୨
ଅପରେ ଯେତେ ନାରୀଗଣେ ।
ସକଳ ଶୋକ ନିବାରଣେ ॥୩
ଗଙ୍ଗାର ତୀରେ ଦୁଃଖମନେ ।
ମିଳିଲେ ସର୍ବ ବନ୍ଧୁଜନେ ॥୪
ଉଦକ ଦେଇ ଗଙ୍ଗାଜଳେ ।
ଦ୍ୱିତୀୟ ସ୍ନାନ କରି ଗଲେ ॥୫
ଧର୍ମନନ୍ଦନ ଭୀମସେନ ।
ଅମ୍ବିକାସୁତ ଯେ ଅର୍ଜୁନ ॥୬

ଗାନ୍ଧାରୀ ପୁତ୍ରଶୋକେ କାନ୍ଦି ।
ଧରଣୀ ଲୋଟଇ ଦ୍ରୌପଦୀ ॥୭
କୁନ୍ତୀ କାନ୍ଦଇ ଅଶ୍ରୁମୁଖେ ।
ଏମନ୍ତେ ସର୍ବେ ଦୁଃଖ ଶୋକେ ॥୮
ବିକଳେ କରନ୍ତେ ରୋଦନ ।
ତା ଦେଖି ଦେବକୀନନ୍ଦନ ॥୯
ବ୍ୟାସ ସହିତେ ସର୍ବମୁନି ।
କୃଷ୍ଣ ବସିଲେ ସଙ୍ଗେ ଘେନି ॥୧୦
ଧର୍ମପୁରାଣ ଇତିହାସ ।
ମୁନିଏ କରନ୍ତି ପ୍ରକାଶ ॥୧୧

ମୁନିଉବାଚ

ମିଥ୍ୟା ସଂସାର ବିଷ୍ଣୁମାୟା ।
କେ ସତ୍ୟ କରିପାରେ ଏହା ॥୧୨

କାଳର କ୍ରୀଡ଼ା ଏ ଜଗତ ।
କାଳକୁ କେବା ସାମରଥ ॥୧୩
ସର୍ଜି ପାଳଇ ପୁଣ ହରେ ।
କାଳର କ୍ରୀଡ଼ା ଏ ସଂସାରେ ॥୧୪
ତାହାକୁ ପ୍ରତିକ୍ରିୟା ନାହିଁ ।
ଏମନ୍ତେ ବୋଧ ତାଙ୍କୁ ଦେଇ ॥୧୫
ଶୋକ ହରିଲେ ନାରାୟଣ ।
ଏବେ ହୋ ମୁନିଗଣେ ଶୁଣ ॥୧୬
ଦୁଷ୍ଟରାଜାଙ୍କ ସଙ୍ଗ ମେଳେ ।
କିତବେ ରାଜ୍ୟ ହରିଥିଲେ ॥୧୭
ଦ୍ରୌପଦୀ କେଶ ସ୍ପର୍ଶ ଦୋଷେ ।
ସ୍ୱଭାବେ ଅଳପ ଆୟୁଷେ ॥୧୮
ତାହାଙ୍କୁ ପ୍ରଭୁ ମାୟା କରି ।
ଅର୍ଜୁନ ଗାଣ୍ଡୀବେ ସଂହାରି ॥୧୯

Dr. Sudhanshu Sekhar Mishra

ଯୁଧିଷ୍ଠିରଙ୍କୁ ରାଜ୍ୟ ଦେଲେ ।
ଅବନୀଭାରା ନିବାରିଲେ ।।୨୦
ଉତ୍ତମ କଲ୍ପେ ସୁସମ୍ପାଦି ।
କରାଇ ତିନି ଅଶ୍ୱମେଧି ।।୨୧
ରାଜାର ଯଶ ମହୀତଳେ ।
ଇନ୍ଦ୍ରର ପ୍ରାୟେ ସମ୍ପାଦିଲେ ।।୨୨
ପାଣ୍ଡୁପୁତ୍ରଙ୍କୁ କରି ଭାବ ।
ସଙ୍ଗତେ ସାତ୍ୟକି ଉଦ୍ଧବ ।।୨୩
ବ୍ୟାସ ସମେତେ ଯେତେ ମୁନି ।
କୃଷ୍ଣ ପୂଜିଲେ ଅର୍ଘ୍ୟ ଘେନି ।।୨୪
ସନ୍ତୋଷେ ସର୍ବ ମୁନିଗଣେ ।
କୃଷ୍ଣଙ୍କୁ ପୂଜିଲେ କଲ୍ୟାଣେ ।।୨୫
ତାହାଙ୍କୁ ମାଗି ଅନୁଯାନ ।
ରଥେ ବସିଲେ ଭଗବାନ ।।୨୬
ଦ୍ୱାରକା ବିଜେ ନରହରି ।
ବାଜଇ ମଙ୍ଗଳ ମହୁରୀ ।।୨୭
ଏମନ୍ତେ ଶୁଣ ମୁନିଜନେ ।
ଉତ୍ତରା ରାଜାର ଭୁବନେ ।।୨୮
ଥିଲା ଯେ ଅଭିମନ୍ୟୁ ଅନ୍ତେ ।
ଅନଳେ ନ ଗଲା ସଙ୍ଗତେ ।।୨୯
ବିଧବା ରୂପେ ଗର୍ଭବାସେ ।
କୁନ୍ତୀ ଦ୍ରୌପଦୀଙ୍କ ଆଶ୍ୱାସେ ।।୩୦
ତାର ଗର୍ଭକୁ କୋପ କଲା ।
କାନନେ ଦ୍ରୋଣଗୁରୁବଳା ।।୩୧
ଅର୍ଜ୍ଜୁନ ହସ୍ତେ ଦଣ୍ଡ ପାଇ ।
ଲୁଚିଲା ଘୋରବନେ ଯାଇ ।।୩୨
ସହି ନ ପାରି ଅପମାନ ।
କୋପ ବସିଲା ତାର ମନ ।।୩୩
ସଙ୍କଳ୍ପ କରି ଗଙ୍ଗାଜଳେ ।
ଧନୁ ଧଇଲା କୋପାନଳେ ।।୩୪
ମନ୍ତ୍ର ଉଚ୍ଚାରି ବ୍ରହ୍ମଶର ।
ବୋଲଇ ଦ୍ରୋଣଙ୍କ କୁମର ।।୩୫
ତୁ ଯେ କଠୋର ସାଧ୍ୟ ମୋର ।
ଅବନୀ-ଅପାଣ୍ଡବ କର ।।୩୬
ଏମନ୍ତେ ବିନ୍ଧିଲା ନାରାଚ ।
ଗଗନେ ଯେହ୍ନେ ରବିତେଜ ।।୩୭
ଦିଶ ଆକାଶ ଆବୋରିଲା ।
ତା ତେଜେ ଭୁବନ କମ୍ପିଲା ।।୩୮
ଗଗନେ ଆସୁଅଛି କ୍ଷେପି ।
ଉତ୍ତରା ଭୟ କଲା ଦେଖି ।।୩୯
ଧାମଇ ଜୀବନ ବିକଳେ ।
କେଶ ବସନ ଅସମ୍ଭାଳେ ।।୪୦
ବିକଳେ ବେନିକର ଟେକି ।
ଡାକଇ ରଖ ବନମାଳୀ ।।୪୧
ହେ ଦେବ ଦେବ ଜଗନ୍ନାଥ ।
ଭାରା ନିବାରେ ତୋ ସମ୍ଭୂତ ।।୪୨
ହେ ମହାଯୋଗୀ ଯୋଗେଶ୍ୱର ।
ଜଗତଈଶ୍ୱର ଈଶ୍ୱର ।।୪୩
ଅନାଥ ନାଥ ଭାବଗ୍ରାହୀ ।
ଘୋର ସଙ୍କଟୁ କର ତ୍ରାହି ।।୪୪
ତୋ ତହୁଁ ନ ଜାଣଇ ଆନ ।।
ଅଭୟ ସଙ୍କଟ ଭଞ୍ଜନ ।।୪୫
ଏ ଯେ ଗଗନ ମାର୍ଗେ ଶର ।।
ଆସଇ ଯେହ୍ନେ ଦିବାକର ।।୪୬
ପାଣ୍ଡବକୁଳ ଏ ହରିବ ।
ଏହାକୁ କେବା ନିବାରିବ ।।୪୭
ତୋରେ ଶରଣ ଗଲି ମୁହିଁ ।
ମୋ ଗର୍ଭ ରଖ ଭାବଗ୍ରାହୀ ।।୪୮
ଏ ଗର୍ଭ ରବିତଳେ ଥାଉ ।
ମୋର ଜୀବନ ବାଣ ଦହୁ ।।୪୯

ସୂତ ଉବାଚ

ଉତ୍ତରା ବାକ୍ୟ କର୍ଣ୍ଣେ ଶୁଣି ।
ମନେ ଚିନ୍ତିଲେ ଚକ୍ରପାଣି ।।୫୦
ଦ୍ରୋଣକୁମର ଅପମାନେ ।
ଲୁଚି ଯେ ଥିଲା ଘୋରବନେ ।।୫୧
ମନ୍ତ୍ରି ନାରାଚ ବ୍ରହ୍ମଶର ।
ପ୍ରହାର କଲା କୋପଭର ।।୫୨
ମେଦିନୀ-ଅପାଣ୍ଡବ-ଶର ।
ମୁହିଁ କରିବି ପ୍ରତିକାର ।।୫୩
ଏକଥା କୃଷ୍ଣ ମୁଖୁ ଶୁଣି ।
ପାଣ୍ଡବେ ନିଜ ଧନୁ ଆଣି ।।୫୪
ସୂର୍ଯ୍ୟର ପ୍ରାୟ ଏକେ ଏକେ ।
ପଞ୍ଚ-ନାରାଚ ଅଭିମୁଖେ ।।୫୫
ଯୋଚି ଚାହିଁଲେ କୃଷ୍ଣମୁଖ ।।
ଅନ୍ତେ ବୋଲନ୍ତି ରଖ ରଖ ।।୫୬
ତାହା ଜାଣିଲେ ନରହରି ।
ତକ୍ଷଣେ ଚକ୍ରକୁ ସୁମରି ।।୫୭
ବୋଇଲେ ଶୁଣ ସୁଦର୍ଶନ ।
ରଖ ତୁ ପାଣ୍ଡବ ଜୀବନ ।।୫୮
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
ଯହିଁ ପାଣ୍ଡବ ପାଞ୍ଚଭାଇ ।।୫୯
ମେଘର ପ୍ରାୟେ ଆଚ୍ଛାଦିଲା ।
କୃଷ୍ଣର କରେ ବିଜେ କଲା ।।୬୦
ସେ ଚକ୍ର ଘେନି କୃଷ୍ଣ ବେଗେ ।
ପଶିଲେ ଉତ୍ତରାର ଗର୍ଭେ ।।୬୧
ସେ ମାୟାଧର ଚକ୍ରପାଣି ।
କେବା ପାରିବ ପରିମାଣି ।।୬୨
ସକଳ ଆତ୍ମା ଯୋଗେଶ୍ୱର ।
ଯାର ମହିମା ଅଗୋଚର ।।୬୩
ପାଣ୍ଡବ ବଂଶ ରକ୍ଷା ଅର୍ଥେ ।
ଗର୍ଭ ଆବୋରି ଚକ୍ରହସ୍ତେ ।।୬୪
ସ୍ୱଭାବେ ଶସ୍ତ୍ର ବ୍ରହ୍ମଶର ।
ତାହାକୁ ନାହିଁ ପ୍ରତିକାର ।।୬୫
କୃଷ୍ଣର ତେଜ ତା ସଂହାରି ।
ଗର୍ଭକୁ ରଖିଲେ ମୁରାରି ।।୬୬
ଯାହାର ମାୟା ଏ ସଂସାରେ ।
ସୃଜଇ ପାଳଇ ସଂହାରେ ।।୬୭
ଏକି ଆଶ୍ଚର୍ଯ୍ୟ ଅଟେ ତାର ।
ସର୍ବ ଆଶ୍ଚର୍ଯ୍ୟ ଯେ ଈଶ୍ୱର ।।୬୮
ସେ ବ୍ରହ୍ମଶସ୍ତ୍ର ଯହୁଁ ଗଲା ।
ପାଣ୍ଡବେ ଗୋବିନ୍ଦ ରଖିଲା ।।୬୯
ତକ୍ଷଣେ ପାଣ୍ଡବ ଜନନୀ ।
କୃଷ୍ଣା ଉତ୍ତରା ସଙ୍ଗେ ଘେନି ।।୭୦
ପାଞ୍ଚପୁତ୍ରଙ୍କୁ ଘେନି ସଙ୍ଗେ ।
ନମିଲେ କୃଷ୍ଣ-ପାଦ-ଯୁଗେ ।।୭୧
କାତରେ ଯୋଡ଼ି ବେନି ପାଣି ।
କଣ୍ଠ କୁଣ୍ଠିତେ କହେ ବାଣୀ ।।୭୨

Dr. Sudhanshu Sekhar Mishra

ବୋଲଇ କୃଷ୍ଣ ମୁଖ ଚାହିଁ ।
ଭୋ ନାଥ କର ମୋତେ ତ୍ରାହି ।।୭୩

କୁନ୍ତୀଉବାଚ

ଭୋ କୃଷ୍ଣ ମୁଁ ତୋର କିଙ୍କର ।
ଆଦିପୁରୁଷ ତୁ ଈଶ୍ୱର ।।୭୪
ପ୍ରକୃତି ପରେ ତୋର ବାସ ।
ଏଣୁ ପ୍ରାଣିଙ୍କି ଅପ୍ରକାଶ ।।୭୫
ଜନ୍ତୁଙ୍କ ଅନ୍ତର ବାହାରେ ।
ତୋ ବିନୁ ଅନ୍ୟ ନାହିଁ ପରେ ।।୭୬
ଆଚ୍ଛାଦି ମାୟା ଯବନିକା ।
ନିର୍ଲେପ ରୂପେ ଥାଉ ଏକା ।।୭୭
ଇନ୍ଦ୍ରିୟଗଣ ତୁଲେ ପୂରି ।
ଅବ୍ୟୟ ଆତ୍ମାରୂପ ଧରି ।।୭୮
ତୋହର ମାୟା ଯାର ଚିତ୍ତେ ।
ସେ ତୋତେ ଜାଣିବେ କେମନ୍ତେ ।।୭୯
ନଟଙ୍କ ମଧ୍ୟେ ଯେ ନାୟକ ।
ସେ ଯେହ୍ନେ ନାଟେ ମୋହେ ଲୋକ ।।୮୦
ନାନା କାଛେଣି ସେ ଭିଆଇ ।
ନୃତ୍ୟକାରକୁ ସେ ନଚାଇ ।।୮୧
ଦେଖନ୍ତା ପ୍ରାଣୀ ମନ ମୋହେ ।
ନିଶ୍ଚେ ବିଚାରେ ସତ୍ୟ ନୋହେ ।।୮୨
ପରମହଂସ ଦୀକ୍ଷା ପଣେ ।
ନିର୍ମଳଚେତା ମୁନିଗଣେ ।।୮୩
ଦୃଢ଼-ଭକତି-ଯୋଗ ମତେ ।
ତୋ ପାଦେ ଧ୍ୟାନ ଅବିରତେ ।।୮୪
ସେ ଭକ୍ତିଯୋଗର ବିଧାନ ।
କାହୁଁ ଦେଖିବେ ସ୍ତିରୀଜନ ।।୮୫
ତୁ ନାଥ କୃଷ୍ଣ ଅବତାରେ ।
ପ୍ରକାଶ ବସୁଦେବ ଘରେ ।।୮୬
ଦେବକୀ ଉଦରୁ ସମ୍ଭବ ।
ଏଣୁ ତୋ ନାମ ବାସୁଦେବ ।।୮୭
ସକଳ ଜନ୍ତୁ ହୃଦଗତେ ।
ତୋର ବିଜୟ ଆତ୍ମାମତେ ।।୮୮
କୁମାର ରୂପେ ନନ୍ଦ ଘରେ ।
ତୋର ବିହାର ଗୋପପୁରେ ।।୮୯
ଇନ୍ଦ୍ର ବିବାଦେ ବନମାଳୀ ।
ପର୍ବତ ବାମକରେ ତୋଳି ।।୯୦
ରଖିଲୁ ଗୋପର ସମ୍ପଦ ।
ଏମନ୍ତେ ନାମ ତୋ ଗୋବିନ୍ଦ ।।୯୧
ତୁମ୍ଭଙ୍କୁ ମୋର ନମସ୍କାର ।
ତୋ ବିନୁ ନ ଜାଣଇ ଆର ।।୯୨
ପ୍ରଳୟଜଳେ ତୋର ବାସ ।
ନାଭିରୁ ପଙ୍କଜ ପ୍ରକାଶ ।।୯୩
ପଙ୍କଜମାଳା ତୋର ଗଳେ ।
ବିହରୁ ଭୁବନ ମଣ୍ଡଳେ ।।୯୪
ପଙ୍କଜ-ଲୋଚନ ସୁନ୍ଦର ।
ନମଇ ପଙ୍କଜ-ପୟର ।।୯୫
ଦେବକୀ ଦେବୀ କଂସ ଘରେ ।
ବନ୍ଦୀରେ ଥିଲା ଶୋକ ଭରେ ।।୯୬
ମୁଁ ପଞ୍ଚପୁତ୍ର ଘେନି ଏକେ ।
ବନେ ବଞ୍ଚଇ ଦୁଃଖଶୋକେ ।।୯୭
ଦେବକୀ ପ୍ରାୟେ ମୋତେ କରି ।
ଅଶେଷ ସଙ୍କଟୁ ଉଦ୍ଧରି ।।୯୮
ଭୀମକୁ ବିଷଲଡୁ ଦେଲେ ।
ତହୁଁ ରଖିଲୁ ତେତେବେଳେ ।।୯୯
ଜତୁର ଘର ଦହନରୁ ।
ତୁ ନାଥ ତହୁଁ ଉଦ୍ଧରିଲୁ ।। ୧୦୦
ଜଳେ କୁମ୍ଭିରୀ ଆଦି ଯେତେ ।
ରାକ୍ଷସେ ମିଳିଲେ ବନସ୍ତେ ।। ୧୦୧
ହିଡିମ୍ବକାଦି ଯେ ରାକ୍ଷସ ।
ତହୁଁ ରଖିଲୁ ପୀତବାସ ।। ୧୦୨
ପଶା କପଟେ ରାଜ୍ୟ ହରି ।
ନେଲେ ଦ୍ରୌପଦୀ କେଶ ଧରି ।। ୧୦୩
ବିବସ୍ତ୍ର କଲେ ସଭାତଳେ ।
ତହୁଁ ରଖିଲୁ ତେତେବେଳେ ।। ୧୦୪
ପୁଣି ଅଜ୍ଞାତ ବନବାସେ ।
ଦିନ ବଞ୍ଚିଲୁ ନାନା ଦେଶେ ।। ୧୦୫
ଯୁଦ୍ଧେ ଦୁର୍ଜୟ ରିପୁ ତ୍ରାସୁ ।
ତୁ ନାଥ ମୋ ପୁତ୍ରେ ଆଶ୍ୱାସୁ ।। ୧୦୬
ଦ୍ରୋଣକୁମର ବ୍ରହ୍ମଶର ।
ତହୁଁ ରଖିଲୁ ବଂଶ ମୋର ।। ୧୦୭
ଏଣୁ ବିପଦେ ନ ଡରଇ ।
ଯେ ଦୁଃଖେ ତୋତେ ମୁଁ ଦେଖଇ ।। ୧୦୮
ତୋହର ଦରଶନ ଫଳେ ।
ଏ ଜୀବ ରହଇ ନିଶ୍ଚଳେ ।। ୧୦୯
ପରମଲୋକେ ଲଭେ ବାସ ।
ତୁ ନାଥ ଭକତ ବିଶ୍ୱାସ ।। ୧୧୦
ଉତ୍ତମ କୁଳେ ଜନ୍ମ ହୋଇ ।
ବିଦ୍ୟା ସମ୍ପଦ ଯେବେ ଥାଇ ।। ୧୧୧
ବୁଡ଼ଇ ମତ୍ତଗର୍ବ-ଚିତ୍ତେ ।
ସେ ତୋତେ ପାଇବ କେମନ୍ତେ ।। ୧୧୨
ତୁ ନାଥ ଜଗତ ଜୀବନ ।
ତୁ ଅକିଞ୍ଚନ-ଜନ-ଧନ ।। ୧୧୩
ଦରିଦ୍ର-ଜନ-ଧନ ତୁହି ।
ପ୍ରକୃତି ତୋତେ ନ ଜାଣଇ ।। ୧୧୪
ତୁ ନାଥ ଆତ୍ମାରାମ ଶାନ୍ତ ।
ନମଇଁ କୈବଲ୍ୟର ନାଥ ।। ୧୧୫
ତୁ ନାଥ କାଳରୂପ ହେଉ ।
ଅନାଦି-ନିଧନ ବୋଲାଉ ।। ୧୧୬
ସମେ ତୁ ବସୁ ସର୍ବଦେହେ ।
ପ୍ରାଣୀ ତୋହର ମାୟାମୋହେ ।। ୧୧୭
ଭଜନ୍ତି ଅନ୍ୟ ଅନ୍ୟ ଭାବେ ।
କଳି ଯେସନେ କଳିଯୁଗେ ।। ୧୧୮
ତୋହର ଇଚ୍ଛା କେ ଜାଣିବ ।
ଶରୀର ବହି ବ୍ରହ୍ମା ଶିବ ।। ୧୧୯
ତୋର ଚରିତ ଭଗବାନ ।
ଏ ନରଲୋକେ ବିଡ଼ମ୍ବନ ।। ୧୨୦
ଏଣୁ ତୋ ରିପୁ ମିତ୍ର ନାହିଁ ।
ପ୍ରାଣୀ ଜାଣିବେ ତୋତେ କାହିଁ ।। ୧୨୧
ତୋ ଠାରେ ଭେଦବୁଦ୍ଧି କରି ।
ବଇରି ମିତ୍ର ଅନୁସରି ।। ୧୨୨
ତୁ ବିଶ୍ୱଆତ୍ମା ନରହରି ।
ଲୀଳାବିହାରେ ଦେହ ଧରି ।। ୧୨୩
ପଶୁଙ୍କ ମଧ୍ୟେ ହେଉ ଜାତ ।
ଋଷିଙ୍କ ଘରେ ଋଷିସୁତ ।। ୧୨୪
ଜଳଜନ୍ତୁଙ୍କ ମଧ୍ୟେ ତୁହି ।
ବିହରୁ ମୀନ କୂର୍ମ ହୋଇ ।। ୧୨୫

Dr. Sudhanshu Sekhar Mishra

ଏ କଥା ତୋତେ ବିଡ଼ମ୍ବନ ।
ଆଧ୍ୟାତ୍ମ ଆତ୍ମା ନିରଞ୍ଜନ ॥ ୧୨୬
ଦଧି ମନ୍ଥନ ବେଳେ ଧରି ।
ରୋଳେ ବାନ୍ଧିଲା ନନ୍ଦନାରୀ ॥ ୧୨୭
ପଛେ ଲୁଚାଇ ଛାଟ ଗୋଟି ।
ତା ଦେଖି ଭୂମିରେ ତୁ ଲୋଟି ॥ ୧୨୮
ଚକ୍ଷୁ ଅଞ୍ଜନ ଘଷି କରେ ।
କାନ୍ଦି ପଡ଼ିଲୁ ତା ପୟରେ ॥ ୧୨୯
ବଦନ ହସ୍ତରେ ଲୁଚାଇ ।
ଭୟେ କମ୍ପଇ ତୋର ଦେହୀ ॥ ୧୩୦
ଏ ତୋର ସର୍ବ ସମ୍ପାଦିଲା ।
ମୋତେ ତ ସନ୍ଦେହ ଲାଗିଲା ॥ ୧୩୧
ଭୟ ଯାହାର ନାମେ ଡରେ ।
ସେ କିମ୍ପା ଯଶୋଦାକୁ ଡରେ ॥ ୧୩୨
ତୁ ନାଥ ଯୋଗମାୟା ଅଂଶେ ।
ଜନ୍ମିଲୁ ଯଦୁରାଜ ବଂଶେ ॥ ୧୩୩
ସ୍ୱଭାବେ ଜନ୍ମ ନାହିଁ ତୋର ।
ଯୁଧିଷ୍ଠି କାର୍ଯ୍ୟେ ଅବତାର ॥ ୧୩୪
ଏଣୁ କହନ୍ତି ସାଧୁଜନ ।
ମଳୟେ ଯେସନେ ଚନ୍ଦନ ॥ ୧୩୫
ଅପରେ ଯେତେ ସାଧୁଜନ ।
ତୋ ଜନ୍ମ କରି ଅନୁମାନ ॥ ୧୩୬
ବୋଲନ୍ତି ବାସୁଦେବ ଘରେ ।
ଜନ୍ମିଲୁ ଭୂମିଭାରା ହରେ ॥ ୧୩୭
ପୂର୍ବେ କଠୋର ତପ କରି ।
ବର ମାଗିଲା ପୁତ୍ର କରି ॥ ୧୩୮
ତେଣୁ ଦେବକୀ ଗର୍ଭେ ଜାତ ।
ତୁ ଯେଣୁ ଅନାଥର ନାଥ ॥ ୧୩୯
ଅସୁରଙ୍କର ଭାରେ ମହୀ ।
ବ୍ରହ୍ମା ସମୀପେ ଦୁଃଖ କହି ॥ ୧୪୦
ତାହାର ଅର୍ଥେ ଭଗବାନ ।
ଜଳେ ଯେ ତୋହର ଶୟନ ॥ ୧୪୧
ସର୍ବଦେବଙ୍କୁ ଘେନିଗଲା ।
ତୋର ଚରଣେ ସ୍ତୁତି କଲା ॥ ୧୪୨
କହିଲା ତୋ ଚରଣ ତଳେ ।
ନାବ ବୁଡ଼ଇ ଯେହ୍ନେ ଜଳେ ॥ ୧୪୩

ତେମନ୍ତ ବୁଡ଼ଇ ଧରଣୀ ।
ଏହାକୁ ରଖ ଚକ୍ରପାଣି ॥ ୧୪୪
ତେଣୁ ତୁ ନର ରୂପ ଧରି ।
ଭୂମିମଣ୍ଡଳେ ଅବତରି ॥ ୧୪୫
ଅବିଦ୍ୟା କାମ୍ୟକର୍ମ ବଳେ ।
ଜନ୍ତୁଏ ଦୁଃଖେ ଭବଜଳେ ॥ ୧୪୬
ଅତି କ୍ଲେଶିତ ତାଙ୍କ ଦେହୀ ।
ତାହାଙ୍କୁ ଉଦ୍ଧରିବା ପାଇଁ ॥ ୧୪୭
ଧ୍ୟାନ ଶ୍ରବଣ ମନ୍ତ୍ରଗୁରୁ ।
ତେଣୁ ମହିମା କଳ୍ପତରୁ ॥ ୧୪୮
ତୋର ଚରିତ କର୍ଣ୍ଣେ ଶୁଣି ।
ତୋହର ନାମ ମୁଖେ ଭଣି ॥ ୧୪୯
ମନ ତୋହର ଦେହେ ଦ୍ୟନ୍ତି ।
ଆନନ୍ଦେ ଦେହ ସମର୍ପନ୍ତି ॥ ୧୫୦
ଏଣୁ ପଶନ୍ତି ତୋ ଚରଣେ ।
ନିଶ୍ଚିନ୍ତେ ଧ୍ୟାନେ ସୁମରଣେ ॥ ୧୫୧
ତୋର ଚରଣ ତାଙ୍କୁ ରଖେ ।
ଭବ-ପ୍ରବାହୁ ତରେ ସୁଖେ ॥ ୧୫୨
ସେ ପାଦେ ପଶିଲି ଶରଣ ।
ମୋତେ ନ ତେଜ ନାରାୟଣ ॥ ୧୫୩
ତୁ ଯେ ମୋହର ସୁତ ହିତୋ
ଜନ୍ମିଲୁ ଏ ଘୋର ଜଗତେ ॥ ୧୫୪
ତୋର ସୁହୃଦ ପଣେ ହରି ।
ତୋର ଚରଣେ ଆଶ୍ରା କରି ॥ ୧୫୫
ନିତ୍ୟେ କରନ୍ତି ତୋତେ ଧ୍ୟାନ।
ତୋ ତହୁଁ ନ ଜାଣନ୍ତି ଆନ ॥ ୧୫୬
ଅପ୍ରାଧ କରି ରାଜକୁଳେ ।
ନମନ୍ତି ତୋର ବାହୁ ବଳେ ॥ ୧୫୭
କେବଳ ନାମ ରୂପ ତୋର ।
ମୋର ପୁତ୍ରଙ୍କ ସୁଖଘର ॥ ୧୫୮
ଯଦୁଙ୍କ ତୁଲେ ତାହା ଚିନ୍ତି ।
ଏ ଭବଭୟ ନ ଡରନ୍ତି ॥ ୧୫୯
ତୋ ରୂପ ନ ଦେଖି ନୟନେ।
ଇନ୍ଦ୍ରିୟ ଯେହ୍ନେ ଆତ୍ମା ବିନେ ॥ ୧୬୦
ଏ ମହୀ ତୋର ପାଦ ଲାଗି ।
ଯେମନ୍ତ ଦିଶଇ ସୌଭାଗୀ ॥ ୧୬୧

ତୋ ଅବତାର ଯେବେ ଯିବ ।
ବିଧବା ପ୍ରାୟେକ ଦିଶିବ ॥ ୧୬୨
ଏହା ଉପରେ ଯେତେ ଜନ ।
ଗ୍ରାମ ଔଷଧି ଗିରିବନ ॥ ୧୬୩
ସମୁଦ୍ର ଆଦି ଜଳସ୍ଥାନେ ।
ବଞ୍ଚନ୍ତି ତୋ ଚରଣ ଧ୍ୟାନେ ॥ ୧୬୪
ହେ ବିଶ୍ୱ ଆତ୍ମା ବିଶ୍ୱେଶ୍ୱର ।
ମୁଁ ତୋର ଚରଣେ କିଙ୍କର ॥ ୧୬୫
ପାଣ୍ଡବ କୁଳେ ବୃଷ୍ଣିବଂଶେ ।
ମୁଁ ଯେ ବନ୍ଧନ ସ୍ନେହ ପାଶେ ॥ ୧୬୬
ତୁ ଯେବେ ଶରଣ ସୋଦର ।
ଏ ସ୍ନେହ ପାଶ ଦୂର କର ॥ ୧୬୭
ଭୋ ନାଥ ଶ୍ରୀମଧୁସୂଦନ ।
ତୋର ଚରଣେ ମୋର ମନ ॥ ୧୬୮
ସର୍ବ ବ୍ୟସନ ଦୂରେ ଚିନ୍ତି ।
ତୋର ଚରଣେ ହେଉ ମତି ॥ ୧୬୯
ଗଙ୍ଗାର ସ୍ରୋତ ଯେହ୍ନେ ବହେ।
ସେ ପୁଣି ସିନ୍ଧୁଜଳେ ରହେ ॥ ୧୭୦
ହେ କୃଷ୍ଣ କୃଷ୍ଣସଖା ତୁହି ।
ହେ ବୃଷ୍ଣିଶ୍ରେଷ୍ଠ ଭାବଗ୍ରାହୀ ॥ ୧୭୧
ଅଖିଳଗୁରୁ ଯୋଗେଶ୍ୱର ।
ଦୁଷ୍ଟ କ୍ଷତ୍ରିୟ କୁଳାନଳ ॥ ୧୭୨
ତୋହର ହେତୁ ଏ ତରନ୍ତି ।
ନିଶ୍ଚିନ୍ତେ ତୋ ଦେହେ ପଶନ୍ତି ॥ ୧୭୩
ଗୋବିନ୍ଦ ଶରଣ ସୋଦର ।
ହେ ଦେବ-ବିପ୍ର-ଦୁଃଖ-ହର ॥ ୧୭୪
ତୋ ଅବତାର ଏ ଜଗତେ ।
ଗୋରୁ-ବ୍ରାହ୍ମଣ-ଦେବହିତେ ॥ ୧୭୫
ଅଖିଳ ଗୁରୁ ଯୋଗେଶ୍ୱର ।
ତୋ ପାଦେ ମୋର ନମସ୍କାର ॥ ୧୭୬

ସୂତ ଉବାଚ

ସୂତ କହନ୍ତି ମଞ୍ଜୁବାଣୀ ।
କୁନ୍ତୀ ବଚନ କୃଷ୍ଣ ଶୁଣି ॥ ୧୭୭
ଅଳପ ହସି ଦାମୋଦର ।
କୋମଳ ବଚନ ଗମ୍ଭୀର ॥ ୧୭୮
କରିବି ସତ୍ୟ ତୋ ବଚନ ।
କହି ଉଠିଲେ ଭଗବାନ ॥ ୧୭୯

Dr. Sudhanshu Sekhar Mishra

ହସ୍ତିନାପୁରେ ଯାଇ ପଶି ।
ଅନ୍ଧ ଗାନ୍ଧାରୀଙ୍କି ଆଶ୍ୱାସି ॥୧୮୦
ବ୍ୟାସ ସହିତେ ମୁନିଗଣ ।
ସଙ୍ଗତେ ଘେନି ନାରାୟଣ ॥୧୮୧
ନିକଟେ ବସି ଏକେ ଏକେ ।
ବୋଧିଲେ ଇତିହାସ ବାକ୍ୟେ ॥୧୮୨
କୃଷ୍ଣମାୟାରେ ମନଛନ୍ନ ।
ନ ବୁଝେ କୃଷ୍ଣର ବଚନ ॥୧୮୩
ପୁଣି ମାୟାରେ ଛନ୍ନ ହୋଇ ।
ସୁହୃଦ ବଧ ଚିତ୍ତେ ଧ୍ୟାଇ ॥୧୮୪
ସ୍ନେହ ମୋହରେ ବଶ ହୋଇ ।
ଶ୍ରୀକୃଷ୍ଣ ମୁଖକୁ ଅନାଇଁ ॥୧୮୫
କପୋଳେ ଦେଇ ବେନିକର ।
ବୋଲଇ ରାଜା ଯୁଧିଷ୍ଠିର ॥୧୮୬

ଯୁଧିଷ୍ଠିର ଉବାଚ

ଶୁଣ ହେ ପ୍ରଭୁ ଦାମୋଦର ।
ମୁଁ ରାଜା ଧର୍ମର କୁମର ॥୧୮୭
ମୋହର ପୂର୍ବ କର୍ମ ଦୋଷେ ।
ପଡ଼ିଲି ସ୍ନେହ ମୋହପାଶେ ॥୧୮୮
ଦେଖ ଅଜ୍ଞାନ ବୁଦ୍ଧି ମୋର ।
ମୁଁ ମୂଢ଼ ଦୁଷ୍ଟ ଦୁରାଚାର ॥୧୮୯
ଏ ମାୟାଦେହେ ସ୍ନେହ କରି ।
ଅନେକ ଅକ୍ଷୌହିଣୀ ମାରି ॥୧୯୦
ବାଳକ ଦ୍ୱିଜ ବନ୍ଧୁ ମିତ ।
ପିତୃ ଭ୍ରାତର ମୋର ହିତ ॥୧୯୧
ଦ୍ରୋହ ମୁଁ କଲି ଅବିବେକେ ।
ନିଶ୍ଚୟେ ପଡ଼ିବି ନରକେ ॥୧୯୨
ବରଷ ଅୟୁତୁଁ ଅୟୁତେ ।
କେବେହେଁ ମୋକ୍ଷ ନାହିଁ ମୋତେ॥୧୯୩
ଏମନ୍ତ ଶାସ୍ତ୍ରର ବଚନ ।
ଯେ ଧର୍ମ କହେ ମୁନିଜନ ॥୧୯୪
ପ୍ରଜାପାଳନେ ଧର୍ମଯୁଦ୍ଧେ ।
ଦୋଷ ନ ଲାଗେ ଶତ୍ରୁ ବଧେ ॥୧୯୫
ଏ କଥା ମୋତେ ବୋଧ ନୋହେ ।
ସକଳ ଘଟେ ହରି ରହେ ॥୧୯୬
ପ୍ରାଣୀର ବଧେ କାହିଁ ଧର୍ମ ।
ଏ ଟି ଅବିଦ୍ୟା ମୋହଭ୍ରମ ॥୧୯୭
ବାନ୍ଧବାନ୍ଧବ ନ ପ୍ରମାଣି ।
ସଂଗ୍ରାମେ ମଲେ ଯେତେ ପ୍ରାଣୀ॥୧୯୮
ତାଙ୍କ ରମଣୀଜନେ ଗୃହେ ।
ଦିନ ବଞ୍ଚନ୍ତି ଶୋକ ମୋହେ ॥୧୯୯
ତହୁଁ ଯେ ତାପ ଉପୁଜିବ ।
କି କର୍ମେ ସେ ତାପ ଖଣ୍ଡିବ ॥୨୦୦
ଦେହେ ଲାଗିଲା ପଙ୍କ ଯେହ୍ନେ ।
ନ ଯାଇ ପଙ୍କ ପ୍ରକ୍ଷାଳନେ ॥୨୦୧
ମଦ୍ୟକୁ ଆଣି ଦେହେ ବୋଳି ।
ମଦ୍ୟେ ଯେସନେ ତା ପଖାଳି ॥୨୦୨
ପ୍ରାଣୀର ବଧ ପ୍ରାଣୀ ହିତେ ।
କାହୁଁ ତାରିବ ଯଜ୍ଞମତେ ॥୨୦୩

ସୂତ ଉବାଚ

ଏମନ୍ତେ କୃଷ୍ଣର ଅଗ୍ରତେ ।
ରାଜା କହିଲେ ଦୁଃଖଚିତ୍ତେ ॥୨୦୪
ତକ୍ଷଣେ ପ୍ରଭୁ ନରହରି ।
ମାୟାରେ ତାଙ୍କ ମନ ହରି ॥୨୦୫
ପଞ୍ଚପାଣ୍ଡବ ସଙ୍ଗେ ଘେନି ।
କିଛି ନ କହି ହେଲେ ତୁନି ॥୨୦୬
ସେ ମାୟାଧର ପାଦଗତ ।
ନମଇ ଦାସ ଜଗନ୍ନାଥ ॥୨୦୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ କୁନ୍ତୀସ୍ତୁତି
ଯୁଧିଷ୍ଠିରାନୁତାପୋ ନାମାଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

ସୂତ ଉବାଚ

ଏମନ୍ତେ ପ୍ରାଣୀ ବଧେ ଭୟ ।
ନିବେଦି ଧର୍ମର ତନୟ ॥୧
ସକଳ ଧର୍ମ ଜ୍ଞାନ ଅର୍ଥେ ।
ବିଜୟ କଲେ ନିଜ ରଥେ ॥୨
ଯୁଦ୍ଧଭୂମିକୁ ହୋଇ ସଜ ।
ସଙ୍ଗତେ ଘେନି ଦେବରାଜ ॥୩
ମିଳିଲେ କୁରୁକ୍ଷେତ୍ରେ ଯାଇ ।
ଭୀଷ୍ମ ଅଛନ୍ତି ଯହିଁ ଶୋଇ ॥୪
ରାଜା ସଙ୍ଗତେ ଚାରିଭ୍ରାତେ ।
ସଜ ହୋଇଲେ ଯେଝା ରଥେ ॥୫
ଉତ୍ତମ ନାନା ଅଶ୍ୱଗଣ ।
ସ୍ୱଭାବେ ରତ୍ନ ବିଭୂଷଣ ॥୬
ତାହାଙ୍କ ସଙ୍ଗେ ବିପ୍ରଜନେ ।
ଗମନ କଲେ ତୋଷ ମନେ ॥୭
ଗୋବିନ୍ଦ ନନ୍ଦିଘୋଷ ରଥେ ।
ବସିଲେ ଅର୍ଜୁନ ସଙ୍ଗତେ ॥୮
ପାଣ୍ଡବ ମଧ୍ୟେ ଚକ୍ରଧର ।
କି ଅବା ଦେବା ପଟାନ୍ତର ॥୯
ଗୁହ୍ୟକଗଣ ମଧ୍ୟଗତେ ।
କୁବେର ପ୍ରକାଶ ଯେମନ୍ତେ ॥୧୦
ଏମନ୍ତେ କୁରୁକ୍ଷେତ୍ର ଗଲେ ।
ପାଣ୍ଡବେ ଗୋବିନ୍ଦଙ୍କ ତୁଲେ ॥୧୧
ଶର ଶୟନେ ଗଙ୍ଗାସୁତ ।
ଦେଖିବା ଅର୍ଥେ ଉପଗତ ॥୧୨
ଅବନୀ ପୃଷ୍ଠେ ମୋହଗତ ।
କି ବା ଅମର ଭୂମିଗତ ॥୧୩
ପାଣ୍ଡବେ ଗୋବିନ୍ଦର ତୁଲେ ।
ଭୀଷ୍ମ ଚରଣେ ପ୍ରଣମିଲେ ॥୧୪
ବ୍ରାହ୍ମଣେ ମିଳିଲେ ତକ୍ଷଣେ ।
ବ୍ୟାସ ସହିତେ ମୁନିଗଣେ ॥୧୫

Dr. Sudhanshu Sekhar Mishra

ଅପରେ ଯେତେ ରାଜଋଷି ।
ମିଳିଲେ କୁରୁକ୍ଷେତ୍ରେ ଆସି ॥୧୬
ପର୍ବତ ନାମେ ମହାଋଷି ।
ଧୌମ୍ୟ ନାରଦ ତୁଲେ ମିଶି ॥୧୭
ବାଦରାୟଣ ବୃହଦଶ୍ୱ ।
ଭରଦ୍ୱାଜଙ୍କ ସଙ୍ଗେ ଶିଷ୍ୟ ॥୧୮
ପରମକ୍ଷତ୍ରୀ ପର୍ଶୁରାମ ।
ବଶିଷ୍ଠ ଇନ୍ଦ୍ରପ୍ରମଦନ ॥୧୯
ତ୍ରିତ ଅସିତ ଗୃସମଦ ।
ଗୌତମ କକ୍ଷୀବାନ ସିଦ୍ଧ ॥୨୦
ଅତ୍ରି କୌଶିକ ସୁଦର୍ଶନ ।
କଶ୍ୟପ ଅଙ୍ଗୀରସ ନାମ ॥୨୧
ନିର୍ମଳଚେତା ବ୍ରହ୍ମଚାରୀ ।
ମିଳିଲେ ଶୁକ ମଧ୍ୟେ କରି ॥୨୨
ଏମନ୍ତେ ସର୍ବ ମୁନିଜନେ ।
ମିଳିଲେ ଭୀଷ୍ମ ସନ୍ନିଧାନେ ॥୨୩
ମୁନିଙ୍କି ଶାୟନ୍ତନୁସୁତ ।
ଶୟନେ କଲେ ପ୍ରଣିପାତ ॥୨୪
ଧର୍ମଜ୍ଞ ଗଙ୍ଗାର କୁମର ।
ଯେ ଦେଶାଚାର ସତକାର ॥୨୫
ତେଣୁ ପୂଜିଲେ ଏକେ ଏକେ ।
ମୁନିଙ୍କି ଦୃଢ଼ମାନସିକେ ॥୨୬
ଯେ ହରି ଜଗତ ଈଶ୍ୱର ।
ଅନାଦି ଧର୍ମ ନିରାକାର ॥୨୭
କୃଷ୍ଣଙ୍କୁ ହୃଦରେ ବସାଇ ।
ପୂଜିଲେ ଦୃଢ଼ ଚିତ୍ତ ହୋଇ ॥୨୮
ପ୍ରେମେ ବିନୟଭାବ ହୋଇ ।
ନିକଟେ ଥିବା ପଞ୍ଚଭାଇ ॥୨୯
ପାଣ୍ଡୁପୁତ୍ରଙ୍କୁ ଦୟାଚିତ୍ତେ ।
ଭାବେ ବୋଲନ୍ତି ଅଶ୍ରୁନେତ୍ରେ ॥୩୦
ଭୀଷ୍ମ କହନ୍ତି ଦୟାମନେ ।
ସକଳ ମୁନି ଅବଧାନେ ॥୩୧

ଭୀଷ୍ମ ଉବାଚ

ଏ ବଡ଼କଷ୍ଟ ମୋର ଚିତ୍ତେ ।
ଏ ପାଭାଇ କୁନ୍ତୀ ସୁତେ ॥୩୨
ବନେ ବଞ୍ଚିଲେ କଷ୍ଟ କର୍ମେ ।
ଜୀବନ ପୋଷି ବିପ୍ରଧର୍ମେ ॥୩୩
ଯେଣୁ ଗୋବିନ୍ଦ ଆଶ୍ରେ ଥିଲେ ।
ଅନେକ ସଙ୍କଟୁ ତରିଲେ ॥୩୪
ସ୍ୱାମୀ ମରଣେ କୁନ୍ତୀ ସାଧୁ ।
ସ୍ୱଭାବେ ବାଳକୁଳବଧୂ ॥୩୫
ପୁତ୍ରଙ୍କ ତୁଲେ ବହୁକ୍ଲେଶେ ।
ଦୁଃଖେ ବଞ୍ଚିଲେ ବନବାସେ ॥୩୬
କାଳର ବଶ ଏ ଜଗତ ।
ପ୍ରାଣୀଏ କାଳର ଆୟତ୍ତ ॥୩୭
ସେ କାଳବଶେ ସର୍ବେ ଚଳି ।
ପବନେ ଯେହ୍ନେ ଘନାବଳୀ ॥୩୮
ଯେ କୁଳେ ରାଜା ଧର୍ମସୁତ ।
ରକ୍ଷକ ଭୀମ ଗଦାହସ୍ତ ॥୩୯
ଅର୍ଜୁନ ଯହିଁ ଧନୁ ଧରେ ।
ଯହିଁ ଗୋବିନ୍ଦ ରକ୍ଷାକରେ ॥୪୦
ସେ କୁଳେ ପଡ଼ଇ ବିପତ୍ତି ।
ଏମନ୍ତ ବିଧାତାର ଗତି ॥୪୧
କେ ଜାଣିପାରେ ଏହା ଚିନ୍ତି ।
ଯହିଁ ପଣ୍ଡିତେ ଭ୍ରମି ଯାନ୍ତି ॥୪୨
ସଂସାର କର୍ମର ଆୟତ୍ତ ।
ଏହା ତୁ ଜାଣ କୁନ୍ତୀସୁତ ॥୪୩
ଏଣୁ ତୁ କିଛି ହିଁ ନ ଭାଳ ।
ଅନାଥ ପ୍ରଜା ଏବେ ପାଳ ॥୪୪
ଦେଖ ଏ ଆଦିନାରାୟଣ ।
ଜଗତ ପରମ କାରଣ ॥୪୫
ମାୟାରେ ଲୋକ ମନ ହରି ।
ଯାଦବ ବଂଶେ ଅବତରି ॥୪୬
ଏହାର ଅନୁଭାବ ଗତି ।
ଅଥବା ଜାଣେ ପଶୁପତି ॥୪୭
ନାରଦ ଜାଣେ ଭାବ ଘେନି ।
କିବା କପିଳ ମହାମୁନି ॥୪୮
ତୁ କୃଷ୍ଣ ମହିମା ନ ଜାଣି ।
ମାତୁଳସୁତ ପ୍ରାୟ ମଣି ॥୪୯
ପ୍ରିୟ ସୁହୃଦ ମିତ୍ର ପରି ।
ସଚିବ ବୁଦ୍ଧି କି ଆଚରି ॥୫୦
ଏହାଙ୍କୁ ଦୌତ୍ୟରେ ନିଯୋଗି ।
ପେଷିଲୁ ପଞ୍ଚଗ୍ରାମ ମାଗି ॥୫୧
ବାନ୍ଧବପ୍ରାୟେ ସ୍ନେହ କରି ।
ରଥେ ସାରଥି ପଣେ ବରି ॥୫୨
ଯହୁଁ ଏ ପ୍ରଭୁ ଭାବଗ୍ରାହୀ ।
ସ୍ୱଭାବେ ପରାପର ନାହିଁ ॥୫୩
ଏଣୁ ତା ଉଚ୍ଚ ନୀଚ କର୍ମ ।
ଯୋଗ୍ୟ ଅଯୋଗ୍ୟ ସବୁ ସମ ॥୫୪
ଏ ଥାଇ ଭକତଙ୍କ ହିତେ ।
ଦେଖ ମୋ ଭାଗ୍ୟର ଆୟତ୍ତେ ॥୫୫
ଜୀବନ ଛାଡ଼ିବାର କାଳେ ।
ମିଳିଲା ଶରଶଯ୍ୟା ତଳେ ॥୫୬
ଯାର ଚରଣ ଭକ୍ତି ବଳେ ।
ନିଷ୍କଳମନେ ଅନ୍ତଃ କାଳେ ॥୫୭
ତୁଣ୍ଡେ ଯେ ନାମ ଉଚ୍ଚାରନ୍ତି ।
ପରମପଦେ ସେ ମିଶନ୍ତି ॥୫୮
କର୍ମବାସନା ଯାଇ ଦୂର ।
ଏମନ୍ତ ମହିମା ଯାହାର ॥୫୯
ସେ ଦେବଦେବ ଭଗବାନ ।
ଭାବେ ଜାଣିଲେ ମୋର ମନ ॥୬୦
ଚିତ୍ତେ ପ୍ରସନ୍ନ ହେଉ ମୋର ।
ମୁହିଁ ଛାଡ଼ିବି କଳେବର ॥୬୧
ପ୍ରଫୁଲ୍ଲ କମଳ ଲୋଚନ ।
ସୁନ୍ଦର ହର୍ଷିତ ବଦନ ॥୬୨
ଚକ୍ର ସହିତେ ମହାବାହୁ ।
ସେ ମୋର ଧ୍ୟାନପଥେ ରହୁ ॥୬୩

ସୂତ ଉବାଚ

ଭୀଷ୍ମ ବଚନ କର୍ଣ୍ଣେ ଶୁଣି ।
ଧର୍ମନନ୍ଦନ ମନେ ଗୁଣି ॥୬୪
ଭୀଷ୍ମଙ୍କୁ ଶରତଳ୍ପେ ଚାହିଁ ।
କର ଯୁଗଳ ଶିରେ ଦେଇ ॥୬୫
ବିବିଧ ଧର୍ମ ପଚାରିଲେ ।
ଅଶେଷ ମୁନିଗଣ ତୁଲେ ॥୬୬
ସ୍ୱଭାବ ଧର୍ମ ଯେ ଜଗତେ ।
ଚତୁର ବର୍ଣ୍ଣାଶ୍ରମ ଯେତେ ॥୬୭

Dr. Sudhanshu Sekhar Mishra

ରାଗ ବୈରାଗ୍ୟ ଆଦି କରି ।
ଯେ ମାର୍ଗେ ସଂସାରୁ ନିସ୍ତରି ॥୬୮
ଯେ ଦାନଧର୍ମ ରାଜଧର୍ମ ।
ମୋକ୍ଷ ସାଧନେ ଯେତେ କର୍ମ ॥୬୯
ଯଥା ବିଧାନେ ଯେତେ କରି ।
ଗୃହୀ ବନସ୍ଥ ବ୍ରହ୍ମଚାରୀ ॥୭୦
ସ୍ତିରୀ ଜନ୍ମର ଯେବା ଧର୍ମ ।
ଯେ ବିଷ୍ଣୁ ଭକତଙ୍କ କର୍ମ ॥୭୧
ଧର୍ମାର୍ଥ କାମ ମୋକ୍ଷ ଆଦି ।
ଯେତେ ପ୍ରକାରେ ଯାହା ସାଧି ॥୭୨
ସକଳ କହିଲେ ହରଷେ ।
ନାନା ଆଖ୍ୟାନ ଇତିହାସେ ॥୭୩
ଏମନ୍ତେ କହୁଁ କହୁଁ ଧର୍ମ ।
ଭୀଷ୍ମର ଚିତ୍ତେ କାଳଭ୍ରମ ॥୭୪
ସିଦ୍ଧ ପୁରୁଷ ଯୋଗବଳେ ।
ଯାହା ଚିନ୍ତନ୍ତି ଅନ୍ତଃକାଳେ ॥୭୫
ସେ କାଳ ଅତି ପୁଣ୍ୟ ଧର୍ମ ।
ଉତ୍ତରାୟଣ ଯାର ନାମ ॥୭୬
ସେ କାଳ ଆଗମନ ଦେଖି ।
ସଙ୍କୋଚ କଲେ ବେନି ଆଖି ॥୭୭
ସହସ୍ର ସହସ୍ର ବଚନ ।
ଶୁଣାଇ ହୋଇଲେ ମଉନ ॥୭୮
ତକ୍ଷଣେ ବିଷ୍ଣୁଭାବ ଘେନି ।
ଗଙ୍ଗାନନ୍ଦନ ହେଲେ ତୁନି ॥୭୯
ସର୍ବୁଁ ସଂହରି ଦୃଷ୍ଟି ମନ ।
କୃଷ୍ଣ ଚରଣେ ଅବଧାନ ॥୮୦
ଯେ ହରି ଅଛି ଅଗ୍ରେ ବସି ।
ଚତୁରଭୁଜ ପରକାଶି ॥୮୧
ପୀତବସନ କଟୀଭାଗେ ।
ବିଜୁଳି ଯେହ୍ନେ ନୀଳମେଘେ ॥୮୨
ଏମନ୍ତ କୃଷ୍ଣ ରୂପ ହେଜି ।
ବଚନ ଶ୍ରମେ ଚକ୍ଷୁ ବୁଜି ॥୮୩
ଧାରଣା ଯୋଗେ ଧ୍ୟାନ କରି ।
ସଂଶୟ ଦୂରେ ପରିହରି ॥୮୪
ଯୁଦ୍ଧର ଶ୍ରମ ଯେତେ ଥିଲା ।
ତକ୍ଷଣେ ଶରୀରୁ ଛାଡ଼ିଲା ॥୮୫
ଇନ୍ଦ୍ରିୟ ଅର୍ଥେ ଯେତେ କର୍ମ ।
ଚିତ୍ତୁ ଛାଡ଼ିଲା ମାୟାଭ୍ରମ ॥୮୬
ଅନ୍ତରେ ବେନିକର ଯୋଡ଼ି ।
ବୋଲେ ଗୋବିନ୍ଦ ପାଦେ ପଡ଼ି ॥୮୭

### ଭୀଷ୍ମ ଉବାଚ

ଏମନ୍ତ ଭାବେ ମନ ମୋର ।
ତୃଷ୍ଣା ବର୍ଜିତ ନିର୍ବିକାର ॥୮୮
କୃଷ୍ଣ ଶରୀରେ ହେଉ ଲୀନ ।
ଯେ ହରି ଭକତ ତାରଣ ॥୮୯
ଯାର ମହିମା ଯୋଗୀଜନେ ।
ଚିନ୍ତି ନ ପାନ୍ତି ଯୋଗଧ୍ୟାନେ ॥୯୦
ସ୍ୱସୁଖେ ଥାଇ ଅବିରତେ ।
ପ୍ରକୃତି ବଶେ ବିଶ୍ୱ ଅର୍ଥେ ॥୯୧
ପ୍ରକୃତି ତହୁଁ ଏ ଜଗତ ।
ପ୍ରବାହ ରୂପେ ଆତଯାତ ॥୯୨
ତମାଳପତ୍ର ପ୍ରାୟେ ବର୍ଣ୍ଣ ।
ଯେ ରୂପେ ମୋହେ ତ୍ରିଭୁବନ ॥୯୩
ପୀତବସନ କଟୀ ଶୋହେ ।
ପ୍ରକାଶେ ରବିରଶ୍ମି ପ୍ରାୟେ ॥୯୪
ଅଳକା ଆବୃତ କପୋଳ ।
ବିରାଜେ ବଦନ କମଳ ॥୯୫
ଅର୍ଜ୍ଜୁନ ସଖା ପାଦତଳେ ।
ମୋ ଚିତ୍ତ ରହୁ ସୁନିଶ୍ଚଳେ ॥୯୬
ସଂଗ୍ରାମେ ଅଶ୍ୱଧୁଳି କାୟେ ।
ଶିର ବଦନ ଧୂମ୍ର ପ୍ରାୟେ ॥୯୭
ବିରାଜେ ସ୍ୱେଦ କଣା ଅଙ୍ଗେ ।
ବିବିଧ ଅଳଙ୍କାର ରଙ୍ଗେ ॥୯୮
ମୋହର ତୀକ୍ଷଣ ବାଣପନ୍ତି ।
ଯାର କବଚେ ଝଲକନ୍ତି ॥୯୯
ସେ ରୂପେ ପଶୁ ମୋର ପ୍ରାଣ ।
ଏ ଭବଜଳୁ ପରିତ୍ରାଣ ॥୧୦୦
ଯେ ହରି ଅର୍ଜ୍ଜୁନ ବଚନେ ।
ରଥ ନିବେଶି ମଧ ସ୍ଥାନେ ॥୧୦୧
ଅନାଇଁ କଟାକ୍ଷ ଲୋଚନେ ।
ଆୟୁଷ ହରେ ପର ସୈନ୍ୟେ ॥୧୦୨
ତାର ଚରଣେ ମନ ଚିନ୍ତି ।
ନିରତେ ହେଉ ମୋର ପ୍ରୀତି ॥୧୦୩
ଯୁଦ୍ଧର ଅର୍ଥେ କୋପ ଭରି ।
ସକଳ ବୀରେ ଶସ୍ତ୍ର ଧରି ॥୧୦୪
ସମରେ ଦେଖି ବନ୍ଧୁଜନ ।
ଦୟାରେ ନ ଯୁଝେ ଅର୍ଜ୍ଜୁନ ॥୧୦୫
ମାୟାରେ ତାର ମନ ମୋହି ।
ଅନେକ ଆତ୍ମବିଦ୍ୟା କହି ॥୧୦୬
ତାହାର କୁମତି ହରିଲା ।
ଛଳେ ସମସ୍ତ ସଂହାରିଲା ॥୧୦୭
ତାର ଚରଣେ ମୋର ମତି ।
ନିଶ୍ଚଳେ ହେଉ ଆତ୍ମରତି ॥୧୦୮
ମୋହର ତୁଲେ ସତ୍ୟ କଲା ।
ଶସ୍ତ୍ର ନ ଧରିବି ବୋଇଲା ॥୧୦୯
ମୋହର ତୀକ୍ଷ୍ଣବାଣେ କୋପି ।
ମୋହ ବଚନେ ସତ୍ୟ ସ୍ଥାପି ॥୧୧୦
ତକ୍ଷଣେ ଚକ୍ର ଘେନି ହସ୍ତେ ।
ରଥୁ ଧାଇଁଲା ଭୂମିଗତେ ॥୧୧୧
ସ୍ୱଧର୍ମ ସମର ଉପେକ୍ଷି ।
ସିଂହ ଯେସନେ ଗଜ ଦେଖି ॥୧୧୨
ଧାମନ୍ତେ ଅବନୀ କମ୍ପିଲା ।
ଉତ୍ତରୀ କାନ୍ଧୁ ଉଡ଼ିଗଲା ॥୧୧୩
ଚକ୍ର ଉଞ୍ଚାଇ ମହାକୋପେ ।
ମିଳିଲା ମୋହର ସମୀପେ ॥୧୧୪
ମୁଁ ଆତତାୟୀ ପଣେ ସନ୍ଧି ।
ଅନେକ ବାଣ ରୋଷେ ବିନ୍ଧି ॥୧୧୫
ବିଶୀର୍ଣ୍ଣ କଲି ସେହ୍ନ ଅଙ୍ଗେ ।
ଦେଖି ଧାଇଁଲା ଅତି ବେଗେ ॥୧୧୬
ରୁଧିର ଭୂଷଣ ଶରୀରେ ।
ଭୂମି କମ୍ପଇ ପାଦଭରେ ॥୧୧୭
ହରିବା ପାଇଁ ମୋର ପ୍ରାଣ ।
ମୁଁ ଏବେ ପଶିଲି ଶରଣ ॥୧୧୮
ବିଜୟ ରଥେ ଯେ ସାରଥି ।
ରଥ ଆରୋହି ଶୁଭ ଚିନ୍ତି ॥୧୧୯
ହୟଙ୍କ ରଶ୍ମି ଯେହୁ ଧରେ ।
ସେ ରୂପେ ମନ ରହୁ ସ୍ଥିରେ ॥୧୨୦

Dr. Sudhanshu Sekhar Mishra

ସଂଗ୍ରାମ କରି ଯେତେ ମଲେ ।
ତା ମୁଖ ଦେଖି ତରିଗଲେ ॥୧୨୧
ଏବେ ମୋହର ଅନ୍ତଃକାଳେ ।
ମୋ ଚିତ୍ତ ରମୁ ତା ପୟରେ ॥୧୨୨
ଗୋପନଗରେ ବୃନ୍ଦାବନେ ।
ରାସଉତ୍ସବେ ଗୋପୀଜନେ ॥୧୨୩
ଲଳିତ ଗତି ସୁବିଳାସ ।
ମନୋଜ୍ଞ ଦୃଷ୍ଟି ମନ୍ଦହାସ ॥୧୨୪
ଯାହାର ସଙ୍ଗେ ଭାବ କରି ।
ଗୋପୀଏ ଭବୁ ଗଲେ ତରି ॥୧୨୫
ଧର୍ମନନ୍ଦନ ଯଜ୍ଞକାଳେ ।
ଋଷି ବ୍ରାହ୍ମଣ ରାଜା ମେଳେ ॥୧୨୬
ଯାହାର ପାଦେ ଅର୍ଘ୍ୟ ଦେଇ ।
ସୁଖେ ସୁନ୍ଦର ମୁଖ ଚାହିଁ ॥୧୨୭
ସକଳେ ଗଲେ ମୋକ୍ଷମାର୍ଗେ ।
ସେ ଏବେ ଦିଶେ ମୋର ଆଗେ ॥୧୨୮
ନିର୍ମଳ ଆତ୍ମାରୂପ ହୋଇ ।
ପ୍ରାଣୀଙ୍କ ହୃଦେ ଯେ ବସଇ ॥୧୨୯
ଯେ ରୂପେ ଦୃଷ୍ଟିଭେଦେ ରବି ।
ଅନେକ ବୋଲି ଅନୁଭବି ॥୧୩୦
ସେ ହରି ପାଦଯୁଗେ ଭଜି ।
ପଶିଲି ଭବମୋହ ତେଜି ॥୧୩୧

ସୂତ ଉବାଚ

ଏମନ୍ତେ ଗୋବିନ୍ଦ ବିଷୟେ ।
ମନ ବଚନ ଦୃଷ୍ଟି ଦେହେ ॥୧୩୨
ଆତ୍ମାରେ ଆତ୍ମା ସ୍ଥିର କରି ।
ପବନେ ପବନ ସଂହରି ॥୧୩୩
ଦେଖନ୍ତି ସୁର ନର ମୁନି ।
ଗଙ୍ଗାନନ୍ଦନ ହେଲେ ତୁନି ॥୧୩୪
ଶରୀର ତେଜି ଭାବ ମୋହେ ।
ପଶିଲେ ଗୋବିନ୍ଦର ଦେହେ ॥୧୩୫
ଭୀଷ୍ମ ମରଣ ଦେଖି ଭଲେ ।
ଯେ ଅବା ଥିଲେ କୃଷ୍ଣ ତୁଲେ ॥୧୩୬
ମଉନେ ବସିଲେ ସମସ୍ତେ ।
ପକ୍ଷୀଏ ଯେହ୍ନେ ଦିନ ଅନ୍ତେ ॥୧୩୭
ତକ୍ଷଣେ ଦୁନ୍ଦୁଭି ଶବଦ ।
ଦେବମାନବେ କଲେ ବାଦ୍ୟ ॥୧୩୮
ସାଧୁ ଶବଦ ଶୂନ୍ୟେ ସ୍ୱରେ ।
ପୁଷ୍ପ ବରଷେ ନିରନ୍ତରେ ॥୧୩୯
ତକ୍ଷଣେ ଯୁଧିଷ୍ଠିର ଯାଇ ।
ଅନଳେ ଭୀଷ୍ମ ଦେହ ଦହି ॥୧୪୦
ମୁହୂର୍ତ୍ତେ ବସି ଦୁଃଖ ମନେ ।
ଉଠି ସକଳ ମହାଜନେ ॥୧୪୧

ଯେ ଯାହା ମତେ ସ୍ତୁତି କଲେ ।
ନମିଲେ କୃଷ୍ଣ ପାଦତଳେ ॥୧୪୨
ଉଠି ସକଳେ ଦୁଃଖ ଚିତ୍ତେ ।
ଗୃହେ ଚଳିଲେ ଯେଝାମତେ ॥୧୪୩
ପାଣ୍ଡବେ କୃଷ୍ଣର ସଙ୍ଗତେ ।
ହସ୍ତିନା ମିଳିଲେ ତୁରିତେ ॥୧୪୪
ତକ୍ଷଣେ ଅନ୍ତଃପୁରେ ଯାଇ ।
ଅନ୍ଧ ଗାନ୍ଧାରୀଙ୍କି ବୁଝାଇ ॥୧୪୫
ଗୋବିନ୍ଦ ଧୃତରାଷ୍ଟ୍ର ବୋଲେ ।
ଯୁଧିଷ୍ଠିରଙ୍କୁ ରାଜା କଲେ ॥୧୪୬
ସେ ରାଜା ଧର୍ମେ ରାଜ୍ୟ କଲା ।
ଯା ପିତୃପିତାମହେ ଥିଲା ॥୧୪୭
ଏମନ୍ତେ କରି ରାଜପଣ ।
ସଙ୍ଗତେ ଘେନି ନାରାୟଣ ॥୧୪୮
ସେ ନାରାୟଣ ପାଦଗତ ।
ଶରଣ ଦାସ ଜଗନ୍ନାଥ ॥୧୪୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପ୍ରଥମସ୍କନ୍ଧେ ଯୁଧିଷ୍ଠିର ରାଜ୍ୟପ୍ରଲମ୍ଭୋ ନାମ ନବମୋଽଧ୍ୟାୟଃ ।

---



## ଦଶମ ଅଧ୍ୟାୟ

ଶୌନକ ଉବାଚ

ଭୋ ସୂତ କହ କୃଷ୍ଣବାଣୀ ।
ସଂସାରୁ ତରି ଯାହା ଶୁଣି ॥୧
ପଣ୍ଡୁରାଜାର ଅନ୍ତଃକାଳେ ।
ଦୁଷ୍ଟେ ଯେ ରାଜ୍ୟ ନେଲେ ବଳେ ॥୨
ଗୋବିନ୍ଦ ପାଦେ ଆଶ୍ରେ କରି ।
ସେ ଆତତାୟୀ ଜନେ ମାରି ॥୩
ପଞ୍ଚଭ୍ରାତାଏ ଏକମେଳେ ।
ପ୍ରଜାଙ୍କୁ ପାଳି ରାଜ୍ୟ କଲେ ॥୪
ତେବେ କି କଲେ ପଣ୍ଡୁସୁତେ ।
ସ୍ୱଭାବେ କୃଷ୍ଣର ସଙ୍ଗତେ ॥୫

ସୂତ ଉବାଚ

ପାଣ୍ଡବବଂଶ ରକ୍ଷା କରି ।
କୁରୁବଂଶକୁ ନରହରି ॥୬
କ୍ରୋଧ ଅନଳେ ଭସ୍ମ କଲେ ।
ଦାବାଗ୍ନି ଯେହ୍ନେ ବନସ୍ଥଳେ ॥୭
ପାଣ୍ଡବେ ନିଜ ରାଜ୍ୟ ମଧ୍ୟେ ।
କୃଷ୍ଣ ସ୍ଥାପିଲେ ରାଜପଦେ ॥୮
ଭୀଷ୍ମଙ୍କ ଠହୁଁ ଧର୍ମବାଣୀ ।
ଯେବା କହିଲେ ଚକ୍ରପାଣି ॥୯
ସେ ବାକ୍ୟେ ଶୋକମୋହ ଛାଡ଼ି ।
ପ୍ରଜାପାଳନେ ଚିତ୍ତ ବଢ଼ି ॥୧୦
ଆନନ୍ଦମନେ ଧର୍ମବଳା ।
ପ୍ରଜାପାଳନେ ମନ ଦେଲା ॥୧୧
କୃଷ୍ଣର ତେଜେ ରାଜାଗଣେ ।
ସେବନ୍ତି ଯୁଧିଷ୍ଠି ଚରଣେ ॥୧୨
ସମୁଦ୍ର ଅନ୍ତଃ ଯାଏ ମହୀ ।
ଧର୍ମନନ୍ଦନ ଆଜ୍ଞାବହି ॥୧୩

Dr. Sudhanshu Sekhar Mishra

ପ୍ରଜା ବଚନେ ମେଘମାଳ ।
ଭୂମିରେ ବରଷନ୍ତି ଜଳ ।।୧୪
କାମଧେନୁର ପ୍ରାୟେ ମହୀ ।
ପ୍ରଜା କଳ୍ପିତେ ଶସ୍ୟ ଦେଇ ।।୧୫
ଗୋପାଳ ଗୋଷ୍ଠ ମଧ୍ୟେ ଥାଇ ।
ଅନେକ କ୍ଷୀର ଦ୍ୟନ୍ତି ଗାଈ ।।୧୬
ନଦୀ ବହନ୍ତି ପୂରି ଜଳେ ।
ସମୁଦ୍ର ରହିଲା ନିଶ୍ଚଳେ ।।୧୭
ପର୍ବତେ ନିଜ ସ୍ଥାନେ ସ୍ଥିର ।
ଆବୃତ ଲତା ବନ ଘୋର ।।୧୮
ସର୍ବଔଷଧି ଫଳ ଯେତେ ।
ଫଳନ୍ତି ପ୍ରଜାଙ୍କ ଆୟତେ ।।୧୯
ପ୍ରଜାଙ୍କୁ ଆଧି-ବ୍ୟାଧି-କ୍ଲେଶ ।
ନ ଲାଗେ ତାପ-ତ୍ରୟ-ତ୍ରାସ ।।୨୦
ଧର୍ମନନ୍ଦନ ରାଜ୍ୟେ ଯେତେ ।
ପ୍ରଜାଏ ବଞ୍ଚନ୍ତି ନିଶ୍ଚିନ୍ତେ ।।୨୧
ବନ୍ଧୁଙ୍କ ଶୋକ ଶାନ୍ତ କରି ।
ସୁଭଦ୍ରା ପ୍ରିୟକାମେ ହରି ।।୨୨
ହସ୍ତିନାପୁରେ ହୃଷୀକେଶ ।
ଭାବେ ବଞ୍ଚିଲେ କେତେ ମାସ ।।୨୩
ଦ୍ୱାରକା ଗମନେ ଉଦ୍‌ଯୋଗୀ ।
ଯୁଧିଷ୍ଠିରଙ୍କୁ ଆଜ୍ଞା ମାଗି ।।୨୪
ଜଣ ଜଣକେ କରି କୋଳ ।
ସୁହୃଦ-ପ୍ରେମ-ବାକ୍ୟେ ଭୋଳ ।।୨୫
ରଥେ ବସିଲେ ବନମାଳୀ ।
ତୁଲେ ସକଳ ବନ୍ଧୁ ମିଳି ।।୨୬
କୃଷ୍ଣା ସୁଭଦ୍ରା କୁନ୍ତୀସୁତେ ।
ରାଜାଏ ଆସିଥିଲେ ଯେତେ ।।୨୭
ଗାନ୍ଧାରୀ ଧୃତରାଷ୍ଟ୍ର ମେଳେ ।
ଯୁଯୁତ୍ସୁ ଗଉତମ ତୁଲେ ।।୨୮
ଧୌମ୍ୟ ସଙ୍ଗତେ ଭୀମ ଗଲା ।
ଉତ୍ତରା ନାରୀ ସଙ୍ଗେ ଥିଲା ।।୨୯
କୃଷ୍ଣଙ୍କୁ ନମିଲା ଅନ୍ତରେ ।
ପ୍ରବେଶ କଲା ଅନ୍ତଃପୁରେ ।୩୦
କୃଷ୍ଣ ବିରହେ ମନଛନ୍ନ ।
ସହି ନ ପାରି ହତଜ୍ଞାନ ।୩୧

କୃଷ୍ଣର ଭାବେ ଭାବ ବଢ଼ି ।
ତା ସଙ୍ଗ କେ ପାରିବ ଛାଡ଼ି ।୩୨
ଯାହାର ଯଶ ଗୁଣ କର୍ଣ୍ଣେ ।
ନିରତେ ଭାବୁଥାନ୍ତି ମନେ ।୩୩
ନ ଦେଖି ତାର ପଦ୍ମମୁଖ ।
କାହିଁ ଲଭିବେ ଆତ୍ମସୁଖ ।୩୪
ନିରତେ କରନ୍ତି ଦର୍ଶନ ।
ସ୍ନେହ ନିର୍ଭରେ ଆଲିଙ୍ଗନ ।୩୫
କୃଷ୍ଣଙ୍କୁ କହନ୍ତି ବଚନ ।
ଆବୋରି ଶୟନ ଭୋଜନ ।୩୬
ଏ ରୂପେ ଚିତ୍ତବୃତ୍ତି ଦେଇ ।
ଚକ୍ଷୁ ପିଛୁଡ଼ା ନ ଚଳଇ ।୩୭
ତାହାର ସ୍ନେହେ ବଦ୍ଧ ହୋଇ ।
ତା ତହୁଁ ଅନ୍ୟେ ଚିତ୍ତ ନାହିଁ ।୩୮
ପୁରୁ ବାହାର ହୋନ୍ତେ ହରି ।
ବିକଳେ ଯେତେ ପୁରନାରୀ ।୩୯
ଚକ୍ଷୁ ବୁଜିଲେ ଭାବଭରେ ।
ରୋମାଞ୍ଚତନୁ ଅଶ୍ରୁଝରେ ।୪୦
କୁଣ୍ଠିତ କଣ୍ଠେ ବାକ୍ୟ କହି ।
ବୋଲନ୍ତି ଏକୁ ଆରେ ଚାହିଁ ।୪୧
ଦ୍ୱାରକା ଗଲେ ଭାବଗ୍ରାହୀ ।
ଆମ୍ଭର ସୁଖଲେଶ କାହିଁ ।୪୨
ମୃଦଙ୍ଗ ଶଙ୍ଖ ଭେରୀ ବୀଣା ।
ଘଣ୍ଟ ଦୁନ୍ଦୁଭି ନିର୍ଘୋଷଣା ।୪୩
ସେ କୁରୁରାଜ୍ୟେ ଯେତେ ନାରୀ ।
କୃଷ୍ଣ ବିଚ୍ଛେଦେ ତନୁ ଘାରି ।୪୪
ଜଗତୀ ଅଟ୍ଟାଳୀ ଆରୋହୀ ।
ପୁଷ୍ପବିଞ୍ଚନ୍ତି କୃଷ୍ଣ ଚାହିଁ ।୪୫
କୃଷ୍ଣର ଶିରେ ଶ୍ୱେତଛତ୍ର ।
ରତ୍ନ କାନେ ସୁଘଟିତ ।୪୬
ଆନନ୍ଦେ ଘେନି ମନତୋଷେ ।
ଅର୍ଜୁନ ଗୋବିନ୍ଦର ପାଶେ ।୪୭
ବାମ ଦକ୍ଷିଣ ପାଶେ ଟେକି ।
ବ୍ୟଜନ ଉଦ୍ଧବ ସାତ୍ୟକି ।୪୮
ଚାମର ହସ୍ତେ ପୁଣି ବିଞ୍ଚି ।
କୃଷ୍ଣେ କର୍ପୂରଧୂଳି ସିଞ୍ଚି ।୪୯

ଦେବେ କୁସୁମ ବରଷନ୍ତି ।
ମାର୍ଗେ ବିଜୟ ଯଦୁପତି ।।୫୦
ବ୍ରାହ୍ମଣେ ମିଳି କୃଷ୍ଣ ଆଗେ ।
ସୁସ୍ୱରେ ସାମଗାନ ରଙ୍ଗେ ।।୫୧
ଆଶିଷ ଅର୍ଥେ ବେଦବାଣୀ ।
ହୃଦେ ନମନ୍ତି ଚକ୍ରପାଣି ।।୫୨
ନିର୍ଗୁଣ ଗୁଣ ଯାର ଦେହୀ ।
ଭାବ ଅଭାବ ଯାର ନାହିଁ ।।୫୩
ବିପ୍ରସମୂହ ଅନ୍ୟେ ଅନ୍ୟେ ।
ଆଶିଷ ଦେଲେ ତୋଷ ମନେ ।।୫୪
କୌରବପୁର ନାରୀଙ୍କର ।
ସେ ସର୍ବସୁଖ ମନୋହର ।।୫୫
ଉତ୍ତମ ଶ୍ଲୋକେ ଚିତ୍ତ ଯାର ।
ଅନ୍ୟୋଽନ୍ୟେ କରନ୍ତି ବିଚାର ।।୫୬
ସେ ହରି ପୁରୁଷ ପୁରାଣ ।
ଆତ୍ମାକୁ ଆତ୍ମାରେ ନିର୍ମାଣ ।।୫୭
କରି ସକଳ ଦେହେ ବସେ ।
ରହଇ ଏକ ଅବଶେଷେ ।।୫୮
ଗୁଣତ୍ରିତୟେ ଏ ଜଗତ ।
ମାୟାରେ କରେ ଆତଯାତ ।।୫୯
ଆତ୍ମାରେ ଆତ୍ମାଭାବ ବହେ ।
ସକଳଶକ୍ତି ଘେନି ରହେ ।।୬୦
ଦିବସ ଅନ୍ତେ ପ୍ରାଣୀ ଦେହେ ।
ନିଦ୍ରା ଯେସନେ ସର୍ବ ମୋହେ ।।୬୧
ପୁଣି ଉଠନ୍ତି ରାତ୍ରି ଅନ୍ତେ ।
ବିଷୟ ଧ୍ୟାନ ଅବିରତେ ।।୬୨
ଯାହାର ନିଜ ବୀର୍ଯ୍ୟବଳେ ।
ପ୍ରକୃତି ପ୍ରସରେ ଶୟଳେ ।।୬୩
ଜୀବର ସଙ୍ଗେ ସଙ୍ଗ କରି ।
ବିହରେ ନାନାରୂପ ଧରି ।।୬୪
ଏମନ୍ତେ ସଞ୍ଚରେ ଜଗତ ।
ଶାସ୍ତ୍ର କରଇ ଆତଯାତ ।।୬୫
ଯାହାର ପାଦ ଆଶ୍ରେ କରି ।
ଜିତଇନ୍ଦ୍ରିୟ ବ୍ରହ୍ମଚାରୀ ।।୬୬
ନିର୍ମଳ ଆତ୍ମାରେ ନିଶ୍ଚଳେ ।
ଦେଖନ୍ତି ଭକ୍ତି ଯୋଗବଳେ ।।୬୭

Dr. Sudhanshu Sekhar Mishra

ତାହାଙ୍କ ହୃଦେ ପ୍ରକାଶଇ ।
ସକଳ କଳୁଷ ନାଶଇ ।।୬୮
ଯାର ମହିମା ମୁନିଗଣେ ।
ଆଗମ ନିଗମ ପ୍ରମାଣେ ।।୬୯
ଏକୁ ଆରେକ କଥା କହି ।
ବଞ୍ଚନ୍ତି ଯାର ପାଦ ଧ୍ୟାୟି ।।୭୦
ଯେ ଏକ ଈଶ ଲୀଳା କରି ।
ପ୍ରକୃତି ସଙ୍ଗତେ ବିହରି ।।୭୧
ସୃଷ୍ଟି କରିଣ ପୁଣି ପାଳେ ।
ଈଶ୍ୱର ରୂପେ ଅନ୍ତଃ କରେ ।।୭୨
ସେ ଦୋଷ ନ ଲାଗେ ତାହାର ।
ନଳିନୀ ଦଳେ ଯେହ୍ନେ ନୀର ।।୭୩
ସେହି ଏ ଆମ୍ଭ ଦୃଷ୍ଟିପଥେ ।
ଦେଖ ଗୋ ସଖି ଅଛି ରଥେ ।।୭୪
ଦୁଷ୍ଟ କ୍ଷତ୍ରିୟେ ଯେତେବେଳେ ।
ଅଧର୍ମେ ଗ୍ରାସନ୍ତି ଶୟଳେ ।।୭୫
ସେ ହରି ସତ୍ତ୍ୱଗୁଣ ଧରି ।
ନାନା ଶରୀରେ ଅବତରି ।।୭୬
ଯଶ ବିସ୍ତାରି ଦୟା ସଙ୍ଗେ ।
ସୁଖେ ବିହରେ ଯୁଗେଯୁଗେ ।।୭୭
ଯାହାର ଅଂଶ ଅବତାରେ ।
ଯାଦବକୁଳ ଏ ସଂସାରେ ।।୭୮
ପୁରୁଷଉତ୍ତମ ଶ୍ରୀପତି ।
ଯେଣୁ ଯାଦବେ ଉତପତ୍ତି ।।୭୯
ରଜନୀ ଅନ୍ତେ ନରଲୋକେ ।
ନାମ ଧରନ୍ତି ପୁଣ୍ୟଶ୍ଳୋକେ ।।୮୦
ଯାର ନିବାସ ମଧୁବନ ।
ତେଣୁ ସ୍ୱଭାବେ ପୁଣ୍ୟତମ ।।୮୧
ଏ ଯେ ଦ୍ୱାରକା ତ୍ରିଅକ୍ଷର ।
ଅପାର ପୁଣ୍ୟ ଯଶସ୍କର ।।୮୨
ଯହିଁ ସକଳ ପ୍ରଜାଜନ ।
କୃଷ୍ଣର ହସିତ ବଦନ ।।୮୩
ନିଗମ ବାକ୍ୟ ଯାହା ଘୋଷି ।
ଦେଖନ୍ତି ନିଜଦ୍ୱାରେ ବସି ।।୮୪
ସାତ୍ତ୍ୱିକଭାବେ ବିପ୍ରଗଣେ ।
ଯାର ଚରଣ ଅନୁକ୍ଷଣେ ।।୮୫
ଯମ ନିୟମ ବ୍ରତ ସ୍ନାନ ।
ଯଜ୍ଞ ତପସ୍ୟା ମହାଦାନ ।।୮୬
ସଙ୍କଳ୍ପ କରି ଦକ୍ଷହସ୍ତେ ।
ତର୍ପଣ କରୁଥାନ୍ତି ନିତ୍ୟେ ।।୮୭
କୃଷ୍ଣର ଯେତେ ପତ୍ନୀଗଣ ।
ସେ ତ ସ୍ୱଭାବେ ଭାଗ୍ୟବାନ ।।୮୮
ସଙ୍କଳ୍ପ କରି ଜନ୍ମାନ୍ତରେ ।
ତାହାଙ୍କୁ ଲଭିଛନ୍ତି ବରେ ।।୮୯
ଯାର ଅଧର ମଧୁରସେ ।
ଗୋକୁଳ ଗୋପୀଏ ହରଷେ ।।୯୦
ନିତ୍ୟେ ପିବନ୍ତି ଚକ୍ଷୁଦ୍ୱାରେ ।
ତନୁ ଅତନୁ ଶର ଘାରେ ।।୯୧
ରୁକ୍ମିଣୀ ସ୍ୱୟମ୍ବର କାଳେ ।
ସଭାର ମଧ୍ୟେ ନୃପମେଳେ ।।୯୨
କୃଷ୍ଣ ବିଷୟେ ଯେତେ ବାଦୀ ।
କ୍ଷତ୍ରିୟ ଶିଶୁପାଳ ଆଦି ।।୯୩
ତାହାଙ୍କ ଦର୍ପ ନାଶ କରି ।
ନାରକାପୁରୁ କନ୍ୟା ହରି ।।୯୪
ସେ ବଧୂଜନେ ତାର ସଙ୍ଗେ ।
ଖଟନ୍ତି ସଉଭାଗ୍ୟ ରଙ୍ଗେ ।।୯୫
ତାର କଟାକ୍ଷେ ବଶ ହୋଇ ।
ନିଶ୍ଚଳ ଚିତ୍ତେ ରୂପ ଧ୍ୟାୟି ।।୯୬
ନିରତେ କୃଷ୍ଣ ଘେନି ଘରେ ।
ପ୍ରେମେ ସେବନ୍ତି ତା ପୟରେ ।।୯୭
ପାରିଜାତକ ଆଦି ଦାନ ।
ଦେଇ ଆନନ୍ଦ ତାଙ୍କ ମନ ।।୯୮
କରିଣ ପ୍ରଭୁ ଭାବଗ୍ରାହୀ ।
ତାହାଙ୍କ ସଙ୍ଗ ନ ଛାଡ଼ଇ ।।୯୯
କୁରୁମଣ୍ଡଳ ବଧୂଜନେ ।
ଏକାନ୍ତ ବାଣୀ ଅନ୍ୟୁ ଅନ୍ୟେ ।।୧୦୦
ସ୍ମିତ ଈକ୍ଷଣେ ତାହା ଜାଣି ।
ରଥେ ଚଳିଲେ ଚକ୍ରପାଣି ।।୧୦୧
କୃଷ୍ଣର ସ୍ନେହ ମନେ ଧରି ।
ପାଣ୍ଡବେ ଘେନି ସୈନ୍ୟ ଚାରି ।।୧୦୨
ଶତ୍ରୁଙ୍କ ଭୟ ଚିନ୍ତେ ଚିନ୍ତି ।
କୃଷ୍ଣଙ୍କୁ ଆବୋରି ଚଳନ୍ତି ।।୧୦୩
କେତେ ହେଁ ଦୂରେ ଭାବଗ୍ରାହୀ ।
ପାଣ୍ଡବମାନଙ୍କୁ ବୁହାଇ ।।୧୦୪
ଉଦ୍ଧବ ଆଦି ପ୍ରିୟ ସଙ୍ଗେ ।
ଚଳିଲେ ନିଜ ପୁର ମାର୍ଗେ ।।୧୦୫
କୁରୁ ଜାଙ୍ଗଳ ଦେଶ ଜିଣି ।
ପାଞ୍ଚାଳ ଦେଶ ଶୂରସେନୀ ।।୧୦୬
ଯମୁନା ଦେଶ ବ୍ରହ୍ମାବର୍ତ୍ତ ।
ମତ୍ସ୍ୟନଗର ସାରସ୍ୱତ ।।୧୦୭
ମରୁଧନ୍ୱନ ସଉବୀର ।
ଆଭୀରପୁରୀ ଯେ ଅପର ।।୧୦୮
ଅନ୍ୟାନ୍ୟ ଆଦି ଦେଶ ଯେତେ ।
ଜିଣି ଗମିଲେ ନିଜ ରଥେ ।।୧୦୯
ସେ ଦେଶେ ଯେତେ ପ୍ରଜାଜନେ ।
ସଂଭ୍ରମେ କୃଷ୍ଣ ଦରଶନେ ।।୧୧୦
ଅନେକ ଉପାୟନ ହସ୍ତେ ।
ନିବେଦି କୃଷ୍ଣପାଦଗତେ ।।୧୧୧
ଏମନ୍ତେ ଦ୍ୱାରକା ଅଗ୍ରତେ ।
ମିଳିଲେ ଦିନକର ଅସ୍ତେ ।।୧୧୨
ସେ ହରି ଚରଣ ପଙ୍କଜେ ।
କିଙ୍କର ଜଗନ୍ନାଥ ଭଜେ ।।୧୧୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ଶ୍ରୀକୃଷ୍ଣ ଦ୍ୱାରକା
ଗମନଂ ନାମ ଦଶମୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ଏକାଦଶ ଅଧ୍ୟାୟ

ସୂତ ଉବାଚ

ଏମନ୍ତେ ନିଜ ରାଜ୍ୟେ ହରି ।
ମିଳିଲେ ଶଙ୍ଖନାଦ କରି ॥ ୧
ସେ ପାଞ୍ଚଜନ୍ୟର ଶବଦ ।
ହରିଲା ପ୍ରଜାଙ୍କ ବିଷାଦ ॥ ୨
ସେ ଶଙ୍ଖଧବଳ ଉଦର ।
ବିରାଜେ ଶ୍ରୀକୃଷ୍ଣର କର ॥ ୩
ଅଧର ରଙ୍ଗେ ରଙ୍ଗ ଦିଶି ।
ଉଚ୍ଚ ଶବଦ ସେହୁ ଭାଷି ॥ ୪
ରକତ ପଦ୍ମ କୋଳେ ଯେହ୍ନେ ।
ଶୋଭିତ ରାଜହଂସ ସ୍ୱନେ ॥ ୫
ସେ ନାଦ ଯେତେଦୂର ସ୍ଫୁରେ ।
ଜନ୍ମ ମରଣ ଭୟ ହରେ ॥ ୬
ସେ ନାଦ ସ୍ଫୁରେ ଘନଘନ ।
ଶୁଣି ସକଳ ପ୍ରଜାଜନ ॥ ୭
ଧାମନ୍ତି ପରମ ହରଷେ ।
ଶ୍ରୀକୃଷ୍ଣ ଦର୍ଶନ ଲାଳସେ ॥ ୮
ବିବିଧ ଉପାୟନ ହସ୍ତେ ।
ମିଳିଲେ ଗୋବିନ୍ଦ ଅଗ୍ରତେ ॥ ୯
ରବି ସମୀପେ ଦୀପପନ୍ତି ।
ଦିବସେ ଯେସନେ ଦିଶନ୍ତି ॥ ୧୦
ଯେ ହରି ନିତ୍ୟ ପୂର୍ଣ୍ଣକାମ ।
ଆତ୍ମପ୍ରକାଶ ଆତ୍ମାରାମ ॥ ୧୧
ତାର ନିକଟେ ରୁଣ୍ଡ ହୋଇ ।
ସକଳେ ଶିରେ କର ଦେଇ ॥ ୧୨
ବାଳକ ପିତା ସନ୍ନିଧାନେ ।
ଯେମନ୍ତେ ମାନ ଅପମାନେ ॥ ୧୩
ଆନନ୍ଦେ କୃଷ୍ଣ ମୁଖ ଚାହିଁ ।
ବୋଲନ୍ତି ଗଦଗଦ ହୋଇ ॥ ୧୪
ଭୋନାଥ ପରମ କାରଣ ।
ତୋହର ଅଭୟ ଚରଣ ॥ ୧୫
ଶିବ ବିରଞ୍ଚି ଆଦି ଦେବେ ।
ନିତ୍ୟେ ସେବନ୍ତି ଆତ୍ମଭାବେ ॥ ୧୬
ଯେ ଚିନ୍ତେ ଆତ୍ମାର କାରଣ ।
ତୋ ପାଦପଦ୍ମ ନାରାୟଣ ॥ ୧୭
ଯେ କାଳ ସକଳ ସଂହାରେ ।
ତୋର ସେବକେ ସେ ନପାରେ ॥ ୧୮
ତୁ ଆମ୍ଭ ପିତାମାତା ପତି ।
ସର୍ବ ସଙ୍କଟ କ୍ଷେମଗତି ॥ ୧୯
ପରମଗୁରୁ ଦଇବତ ।
ସୁହୃଦ ବନ୍ଧୁ ପ୍ରିୟମିତ୍ର ॥ ୨୦
ତୋ ବିନୁ ଆମ୍ଭେ ନୋହୁ କିଛି ।
ତୁ ନାଥ ସର୍ବ-ଆତ୍ମା-ସାକ୍ଷୀ ॥ ୨୧
ଅନାଥ ନାଥ ତୁ ଆମ୍ଭର ।
ଦେବମାନବେ ଅଗୋଚର ॥ ୨୨
ତୋର ବଦନ ନାରାୟଣ ।
ପ୍ରେମ ହସିତ ନିରୀକ୍ଷଣ ॥ ୨୩
ସେ ମୁଖ ଦେଖୁ ତୋର ଦେହେ ।
ସର୍ବସୌନ୍ଦର୍ଯ୍ୟ ଯହିଁ ରହେ ॥ ୨୪
ଯେବେ ସୁହୃଦ ଦେଖିବାରେ ।
କୁରୁନଗର ମଧୁପୁରେ ॥ ୨୫
ଇଚ୍ଛାରେ କରୁ ତୁ ଗମନ ।
ତୋତେ ନ ଦେଖି ଆମ୍ଭମନ ॥ ୨୬
କ୍ଷଣକ କୋଟିଯୁଗ ମଣେ ।
ରଜନୀ ଦିବସ ନ ଜାଣେ ॥ ୨୭
କୋଟିନୟନ ପ୍ରାଣୀ ବହି ।
କି କରେ ରବି ଯେବେ ନାହିଁ ॥ ୨୮
ତୋହର ପ୍ରସନ୍ନ ବଦନ ।
ଅଖିଳ ତାପ ବିମୋଚନ ॥ ୨୯
ଚିର ପ୍ରବାସେ ତା ନ ଦେଖି ।
ଆମ୍ଭ ଜୀବନ ବଡ଼ ଦୁଃଖୀ ॥ ୩୦
ଏମନ୍ତ ଜନ ମୁଖୁ ଶୁଣି ।
ଆନନ୍ଦ ମଣ୍ଡେ ଚକ୍ରପାଣି ॥ ୩୧
ଅମୃତ ଲୋଚନେ ଅନାଇ ।
ପୁରେ ପ୍ରବେଶ ଭାବଗ୍ରାହୀ ॥ ୩୨
ଯାଦବ ସାତବଂଶ ମିଳି ।
ଶବଦ ଶୁଭେ କୁଶସ୍ଥଳୀ ॥ ୩୩
ରକ୍ଷିତ ନିଜ ତୁଲ୍ୟ ବଳେ ।
ପାତାଳ ଯେହ୍ନେ ନାଗବଳେ ॥ ୩୪
ମତ୍ତ ମାତଙ୍ଗ ଅଶ୍ୱ ଖର ।
ରଥ ଶକଟ ବହୁତର ॥ ୩୫
ପଦାତିବଳ ଅପ୍ରମିତ ।
ଧାମନ୍ତି ବୀରେ ଯୂଥଯୂଥ ॥ ୩୬
ଚଳନ୍ତେ ମୁଖରାବ ଗୋଳ ।
ପାତାଳେ ଯେହ୍ନେ ନାଗବଳ ॥ ୩୭
ସକଳ ଋତୁ ପୁଷ୍ପଫଳେ ।
ଆଶ୍ରଇ ଲତା ଦ୍ରୁମ ମେଳେ ॥ ୩୮
ଆରାମ ଭବନେ ଶୋଭନ ।
ଜଳେ ଜଳଜ ହଂସ ମୀନ ॥ ୩୯
ତୋରଣ ପୁର ଦ୍ୱାର ମାର୍ଗେ ।
ଉଚ୍ଚେ ବନ୍ଧନ ନବରଙ୍ଗେ ॥ ୪୦
ଧ୍ୱଜ ପତାକା ଚିତ୍ର ଶୋହେ ।
ସୁନ୍ଦର ପଥ ମନ ମୋହେ ॥ ୪୧
ମାର୍ଜିତ ମାର୍ଗ ଦ୍ୱାରେ ଦ୍ୱାରେ ।
ସିଞ୍ଚା କୁସୁମ ଗନ୍ଧନୀରେ ॥ ୪୨
ଗୃହମାନଙ୍କ ପ୍ରତିଦ୍ୱାରେ ।
ଦଧି ଅକ୍ଷତ ଫଳଭରେ ॥ ୪୩
ପୂର୍ଣ୍ଣ କଳସ ଧୂପଦୀପେ ।
ଜୟଶବଦ ନାନାରୂପେ ॥ ୪୪
କୃଷ୍ଣର ଆଗମନ ଜାଣି ।
ସଙ୍ଗତେ ବସୁଦେବ ଘେନି ॥ ୪୫
ରାମ ଅକ୍ରୂର ଉଗ୍ରସେନ ।
କୃଷ୍ଣର ଯେତେକ ନନ୍ଦନ ॥ ୪୬
ହରଷେ ଉଚ୍ଛୁଳିଲା ମନ ।
ଉପେକ୍ଷି ଶୟନ ଭୋଜନ ॥ ୪୭
ଉତ୍ତମ ହସ୍ତୀ ସଜ କରି ।
ମାଗଧେ ମଙ୍ଗଳ ଉଚ୍ଚାରି ॥ ୪୮
ମଙ୍ଗଳ ବେଦନାଦ ସ୍ୱରେ ।
ଅଗ୍ରେ ଚଳିଲେ ବିପ୍ରବରେ ॥ ୪୯
ଶଙ୍ଖ ମହୁରୀ ଭେରୀ ତୂରୀ ।
ଯେ ବାଦ୍ୟେ ମଙ୍ଗଳ ଉଚ୍ଚାରି ॥ ୫୦
ଏମନ୍ତେ ପୁରଜନ ପଥେ ।
ଆନନ୍ଦେ ମିଳିଲେ ସମସ୍ତେ ॥ ୫୧

Dr. Sudhanshu Sekhar Mishra

ଶତ ସହସ୍ର ବାରାଙ୍ଗନା ।
ଯେ ରୂପେ ଜଗତ ମୋହନା ॥ ୫୨
କୁଣ୍ଡଳ ଲୋଳିତ ଶ୍ରବଣେ ।
ଲୋଚନ ପୂରିତ ଅଞ୍ଜନେ ॥ ୫୩
ଅଳକା ତିଳକ କୁସୁମ ।
ଦେବମାନବେ ମନୋରମ ॥ ୫୪
ନଟ ନର୍ତ୍ତକ ବନ୍ଦୀ ସୂତେ ।
ଅଗ୍ରେ ଚଳନ୍ତି ଯୂଥେଯୂଥେ ॥ ୫୫
କୃଷ୍ଣର ଅଦ୍‌ଭୁତ ଚରିତ ।
ଗାୟନ କରି ନୃତ୍ୟଗୀତ ॥ ୫୬
ମିଳିଲେ ଗୋବିନ୍ଦର ପାଶେ ।
ସକଳେ ପରମ ହରଷେ ॥ ୫୭
ଗୋବିନ୍ଦ ଦେଖି ପୁରଜନ ।
ତକ୍ଷଣେ ଉପେକ୍ଷି ଆସନ ॥ ୫୮
ଯେ ହରି ସର୍ବ ଗୁଣନିଧି ।
ବନ୍ଧୁ ପୂଜିଲେ ଯଥାବିଧି ॥ ୫୯
କାହାକୁ କରି ନମସ୍କାର ।
ଆନନ୍ଦେ ଧରି କରେ କର ॥ ୬୦
କାହାକୁ କରି ଆଲିଙ୍ଗନ ।
କା ଶିରେ ଆଘ୍ରାଣ ଚୁମ୍ବନ ॥ ୬୧
କାହାକୁ ମନ୍ଦହାସେ ଚାହିଁ ।
ଭାବେ ତୋଷିଲେ ଭାବଗ୍ରାହୀ ॥ ୬୨
ଆଶ୍ୱାସ କରି ପୁରଜନେ ।
ତୋଷିଲେ ସର୍ବ ବାକ୍ୟଧନେ ॥ ୬୩
ଚାଣ୍ଡାଳୁ ବ୍ରହ୍ମଯାଏଁ ପୂଜା ।
କରି ତୋଷିଲେ ଦେବରାଜା ॥ ୬୪
କୁଳ ପୂଜିତ ଜ୍ଞାନବୃଦ୍ଧ ।
କୃଷ୍ଣଙ୍କୁ କଲେ ଆଶୀର୍ବାଦ ॥ ୬୫
ପୁରେ ପଶନ୍ତେ ଜନାର୍ଦ୍ଦନ ।
ଦ୍ୱାରକାପୁର ବଧୂଜନ ॥ ୬୬
ତକ୍ଷଣେ ଲାଜ ଦୂର କରି ।
ଆରୋହି ଅଟ୍ଟାଳୀ ପାଚେରୀ ॥ ୬୭
ଦେଖିଣ କୃଷ୍ଣର ଶରୀର ।
ମହାଉତ୍ସବେଣ ଅସ୍ଥିର ॥ ୬୮
ଯଦ୍ୟପି ନିତ୍ୟେ ନିତ୍ୟେ ପୁରେ ।
କୃଷ୍ଣ ବଦନ ନିରନ୍ତରେ ॥ ୬୯
ଦେଖି ସନ୍ତୋଷ ନୋହେ ମନ ।
ଯା ଅଙ୍ଗ ସର୍ବ ଶୋଭାବନ ॥ ୭୦
ଲକ୍ଷ୍ମୀ ବିଳାସ ଯାର ଅଙ୍ଗେ ।
ଅଦ୍‌ଭୁତ ବିବିଧ ବିଭଙ୍ଗେ ॥ ୭୧
ସୁଧା-ସମ୍ପୂର୍ଣ୍ଣ ଯାର ଗାତ୍ର ।
ପ୍ରାଣୀ ଲୋଚନ ପାନପାତ୍ର ॥ ୭୨
ଯାହାର ଚାରିଭୁଜତଳେ ।
ବାସବ ଆଦି ଦିଗପାଳେ ॥ ୭୩
ଯାହାର ଅଭୟ ଚରଣ ।
ଭକତଜନଙ୍କ ଶରଣ ॥ ୭୪
ଧବଳଛତ୍ର କେବା ଧରେ ।
କେବା ଚାମର ବିଞ୍ଚେ ଧୀରେ ॥ ୭୫
ଜୟଶବଦ କେ କରନ୍ତି ।
କେ ବା କୁସୁମ ବରଷନ୍ତି ॥ ୭୬
ପଥେ ଗୋବିନ୍ଦ ତନୁ ଶୋଭା ।
କିବା ଉପମା ତାରେ ଦେବା ॥ ୭୭
ପୀତବସନ ବନମାଳ ।
ଶ୍ରବଣେ ମକର କୁଣ୍ଡଳ ॥ ୭୮
ପିଶଙ୍ଗ ବସ୍ତ୍ର ମଧ୍ୟଭାଗେ ।
ଯେହ୍ନେ ବିଜୁଳି ନୀଳମେଘେ ॥ ୭୯
ରବି ଶଶାଙ୍କ ଶକ୍ରଚାପ ।
ସ୍ୱଭାବେ ଘନନୀଳ ରୂପ ॥ ୮୦
ପୁରେ ପଶନ୍ତେ ବ୍ରହ୍ମରାଶି ।
ତକ୍ଷଣେ ମାତୃଗଣେ ଆସି ॥ ୮୧
ଆନନ୍ଦେ କରି ଆଲିଙ୍ଗନ ।
କୃଷ୍ଣଙ୍କୁ କରନ୍ତି କଲ୍ୟାଣ ॥ ୮୨
ଦେବକୀ ଆଦି ସପ୍ତନାରୀ ।
ଚରଣେ ନମିଲେ ମୁରାରି ॥ ୮୩
ସକଳ ମାତୃଗଣେ ମିଳି ।
କୋଳେ ବସାଇ ବନମାଳୀ ॥ ୮୪
ଅତ୍ୟନ୍ତ ପୁତ୍ର ସ୍ନେହଭରେ ।
କ୍ଷୀର ସ୍ରବଇ ପୟୋଧରେ ॥ ୮୫
ଅତି ଆନନ୍ଦେ ଅଶ୍ରୁଜଳେ ।
ସିଞ୍ଚନ୍ତି କୃଷ୍ଣଙ୍କ ଉପରେ ॥ ୮୬
ମାତୃଗଣଙ୍କ ସଙ୍ଗୁ ହରି ।
ନିଜ ଭୁବନେ ବିଜେ କରି ॥ ୮୭
ଷୋଳସହସ୍ର ପତ୍ନୀଙ୍କର ।
ବିରାଜେ ରତ୍ନମୟ ପୁର ॥ ୮୮
ସକଳ କାମ ଅର୍ଥ ଧର୍ମ ।
ଯହିଁ ବିଜୟେ ପୂର୍ଣ୍ଣବ୍ରହ୍ମ ॥ ୮୯
ମାୟାର ବଳେ ବନମାଳୀ ।
ପତ୍ନୀ ଭୁବନେ ବେଗେ ମିଳି ॥ ୯୦
ଅଷ୍ଟ ଅଧିକ ଶତନାରୀ ।
ଷୋଳସହସ୍ର ମନୋହାରୀ ॥ ୯୧
ପଶିଲେ ଏତେ ରୂପ ହୋଇ ।
ହାସ୍ୟ କଟାକ୍ଷେ ମନ ମୋହି ॥ ୯୨
ଭୁବନେ ଦେଖି ନିଜ ପତି ।
ସମ୍ଭ୍ରମେ ସକଳ ଯୁବତୀ ॥ ୯୩
ଦୂରୁ ଗୋବିନ୍ଦ ମୁଖ ଦେଖି ।
ଉଠିଲେ ଆସନ ଉପେକ୍ଷି ॥ ୯୪
କି ଅବା ଦେବା ପଟାନ୍ତର ।
ଚକୋରେ ଯେହ୍ନେ ନିଶାକର ॥ ୯୫
ତକ୍ଷଣେ ହରିରୂପ ଦେଖି ।
ନିର୍ମଳ କରି ବେନିଆଖି ॥ ୯୬
ଅନ୍ତରେ ସ୍ୱାମୀରୂପ ଧରି ।
ନିବିଡ଼େ ଆଲିଙ୍ଗନ କରି ॥ ୯୭
ପୁଣି କୃଷ୍ଣର ପାଶେ ମିଳି ।
ପୁତ୍ରାଦି ଦ୍ୱାରା କୋଳ କରି ॥ ୯୮
ସ୍ୱଭାବେ ସଲଜ୍ଜ ବଦନ ।
ଲୋତକେ ପୂରିତ ନୟନ ॥ ୯୯
ଯଦ୍ୟପି ପାଇଲେ ଏକାନ୍ତେ ।
ତଥାପି କୃଷ୍ଣ ପାଦଗତେ ॥ ୧୦୦
ଅତି ପୀରତି ନବନବ ।
ସ୍ୱାମୀ ଚରଣେ କଲେ ଭାବ ॥ ୧୦୧
ପାଦପଦ୍ମରେ ସେବା କଲେ ।
କେ ତାହା ଛାଡ଼ିପାରେ ଭଲେ ॥ ୧୦୨
ଲକ୍ଷ୍ମୀ ଯେ ସ୍ୱଭାବେ ଚଞ୍ଚଳା ।
ସେ ନ ଛାଡ଼ଇ ଅତିଭୋଳା ॥ ୧୦୩
ଏହି ପ୍ରକାରେ ନରହରି ।
ଛଳେ ଧରଣୀ ଭାରା ହରି ॥ ୧୦୪
ଦଶ ଅୟୁତ ରାଜାଗଣେ ।
ଉଭାରି ସଂହାରିଲେ ରଣେ ॥ ୧୦୫

Dr. Sudhanshu Sekhar Mishra

କଳି ଭିଆଇ ନାରାୟଣ ।
ଅନଳେ ଯେହ୍ନେ ସମୀରଣ ।।୧୦୬
ନାଶିଲେ ଅହଙ୍କାର ବାଦେ ।
ବିମାନେ ବସି ନିରାୟୁଧେ ।।୧୦୭
ସ୍ୱମାୟାବଳେ ନରହରି ।
ମନୁଷ୍ୟ ଦେହେ ଅବତରି ।।୧୦୮
ଅଜ୍ଞାନୀ ଯେହ୍ନେ ଗୃହେ ରହି ।
ବଇ ପତ୍ନୀବଶ ହୋଇ ।।୧୦୯
ପତ୍ନୀର ଭାବ ପ୍ରେମରଙ୍ଗେ ।
ଯନ୍ତ୍ରିତ ମୋହନ ଅନଙ୍ଗେ ।।୧୧୦
କୃଷ୍ଣର ଯେତେ ନାରୀଗଣ ।
ସୁନ୍ଦରେ ମୋହନ୍ତି ମଦନ ।।୧୧୧
ସ୍ୱଭାବେ ପ୍ରେମଛନ୍ଦେ ରସେ ।
ନିତ୍ୟେ ସେବନ୍ତି କୃଷ୍ଣପାଶେ ।।୧୧୨
ବିବିଧ ଆଲିଙ୍ଗନ ଦେଇ ।
ତା ମନ ନ ପାରିଲେ ମୋହି ।। ୧୧୩
ଏ ଜୀବଲୋକ କାହୁଁ ଜାଣେ ।
ଆପଣା ତୁଲ୍ୟ ପ୍ରାୟ ମଣେ ।।୧୧୪
କାହୁଁ ପାରିବେ ବଶ କରି ।
ନିର୍ଲେପ ପ୍ରଭୁ ନରହରି ।।୧୧୫
ସେ ହରି ଚରଣ କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ।।୧୧୬
କହଇ ଦାସ ଜଗନ୍ନାଥ ।
ପ୍ରଥମ ସ୍କନ୍ଧେ ଭାଗବତ ।।୧୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ଶ୍ରୀକୃଷ୍ଣ ଦ୍ୱାରକାପ୍ରବେଶୋ
ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

### ଶୌନକ ଉବାଚ

କୋପେ ଯେ ଦ୍ରୋଣଙ୍କ କୁମର ।
ମନ୍ତ୍ରି ପେଷିଲା ବ୍ରହ୍ମଶର ।। ୧
ତାର ପ୍ରଚଣ୍ଡ ତେଜଜ୍ୱାଳେ ।
ଭୟେ କମ୍ପିଲେ ଦିଗପାଳେ ।। ୨
ଉତ୍ତରା ଗର୍ଭେ ସେ ପଡ଼ିଲା ।
ତକ୍ଷଣେ ଗୋବିନ୍ଦ ରଖିଲା ।। ୩
ସେ ପୁଣି ଗର୍ଭୁ ଜନ୍ମ ହୋଇ ।
ପାଳିଲା ରାଜାପଣେ ମହୀ ।। ୪
ଜଗତେ ଯେତେ କର୍ମ କଲା ।
ପ୍ରଜାଙ୍କୁ ଯେମନ୍ତେ ପାଳିଲା ।। ୫
କେବଣ ହେତୁ ନୃପରାଣ ।
କାହିଁ ଛାଡ଼ିଲା ନିଜପ୍ରାଣ ।। ୬
ଅଳପ ବୟସେ ନୃପତି ।
ଅନ୍ତେ ଲଭିଲା କେଉଁଗତି ।। ୭
ଆନନ୍ଦେ ବ୍ୟାସଙ୍କର ସୁତ ।
ଯାହାଙ୍କୁ ଦେଲେ ଜ୍ଞାନତତ୍ତ୍ୱ ।। ୮
ତାର ସକଳ କର୍ମଦୀକ୍ଷା ।
ଶ୍ରବଣେ କଲୁ ଆମ୍ଭେ ଇଚ୍ଛା ।। ୯
ଆମ୍ଭଙ୍କୁ ଯେବେ ଦୟା ବହ ।
ସଂଶୟ ଯାଉ ମୁନି କହ ।। ୧୦

### ସୂତ ଉବାଚ

କୁରୁ ନଗରେ ଧର୍ମରାଜା ।
ପୁତ୍ରଙ୍କ ପ୍ରାୟେ ପାଳେ ପ୍ରଜା ।। ୧୧
କୃଷ୍ଣହୁଁ ନ ଜାଣଇ ଆନ ।
ବିଷୟା ରସେ ନାହିଁ ମନ ।। ୧୨
ଧନ ସମ୍ପଦର ରକ୍ଷଣେ ।
ଯେ ସ୍ନେହ ଭାର୍ଯ୍ୟା ଭ୍ରାତୃଗଣେ ।। ୧୩
ରାଜ୍ୟ ପାଳନେ ଏହିମତେ ।
ଧର୍ମହୁଁ ଅନ୍ୟ ନାହିଁ ଚିତ୍ତେ ।। ୧୪
ଏ ଜମ୍ବୁଦ୍ୱୀପେ ଯେତେ ରାଜା ।
ସର୍ବେ କରନ୍ତି ପାଦପୂଜା ।। ୧୫
ଯାର ମହିମା ତିନିଲୋକେ ।
ଘୋଷନ୍ତି ଏକକୁ ଆରକେ ।। ୧୬
ଗୋବିନ୍ଦ ଯାର ହୃଦେ ବସେ ।
ସେ କି ବିଷୟରସେ ରସେ ।। ୧୭
କ୍ଷୁଧିତଜନ ମନ ଯେହ୍ନେ ।
ଅନ୍ନହୁଁ ନ ଲୋଡ଼ଇ ମନେ ।। ୧୮
ଏବେ ହୋ ଶୁଣ ବିପ୍ରଜନ ।
କହିବା ପରୀକ୍ଷିତ ଜନ୍ମ ।। ୧୯
ମାତାର ଗର୍ଭେ ଯେବେ ଥିଲା ।
ନୟନେ କୃଷ୍ଣଙ୍କୁ ଦେଖିଲା ।। ୨୦
ତେଜେ ଯେସନେ ଦିବାକର ।
ଗର୍ଭେ ପଡ଼ିଲା ବ୍ରହ୍ମଶର ।। ୨୧
ଉତ୍ତରା ଡାକେ ତ୍ରାହି ତ୍ରାହି ।
ତକ୍ଷଣେ ପ୍ରଭୁ ଭାବଗ୍ରାହୀ ।। ୨୨
ଅଙ୍ଗୁଷ୍ଠି ପ୍ରମାଣେ ଶରୀରେ ।
ସୁଦରଶନ ଧରି କରେ ।। ୨୩
କିରୀଟ କୁଣ୍ଡଳ ବିରାଜେ ।
ପ୍ରଭା ସବିତାତେଜ ଗଞ୍ଜେ ।। ୨୪
ଅପୂର୍ବ ରୂପ ଘନଶ୍ୟାମ ।
ତଡ଼ିତବାସ କଟିଦାମ ।। ୨୫
ଆଜାନୁଲମ୍ବେ ଭୁଜ ଚାରି ।
ଶଙ୍ଖ କମଳ ଗଦା ଧରି ।। ୨୬
କୋପେ ଲୋହିତ ବେନି ଦୃଷ୍ଟି ।
ଗଦା ଭ୍ରମଣେ ଦୃଢ଼ମୁଷ୍ଟି ।। ୨୭
ଗଦାର ତେଜ ରବିତ୍ରାସ ।
ମଣ୍ଡଳେ ପୂରେ ଦଶଦିଶ ।। ୨୮
ହରିଲେ ବ୍ରହ୍ମଶର ତେଜ ।
ନୀହାର ଯେହ୍ନେ ଗ୍ରହରାଜ ।। ୨୯
ନିକଟେ ଦେଖି ବିତର୍କିତ ।
ଏ କେ ମୋ ପାଶେ ଉପଗତ ।। ୩୦
ନିର୍ମଳଆତ୍ମା ଭଗବାନ ।
ଧର୍ମପାଳକ ଜନାର୍ଦ୍ଦନ ।। ୩୧
ତକ୍ଷଣେ ଗର୍ଭ ରକ୍ଷା କରି ।
ଅନ୍ତର ହୋଇଲେ ମୁରାରି ।। ୩୨

Dr. Sudhanshu Sekhar Mishra

ବାଳକ ଦେଖେ ତା ନୟନେ ।
ଗୋବିନ୍ଦ ଗଲେ ଅନ୍ତର୍ଦ୍ଧାନେ ।।୩୩
ତକ୍ଷଣେ ସର୍ବଶୁଭ ବେଳେ ।
ଗ୍ରହ ସକଳ ଅନୁକୂଳେ ।।୩୪
ବାଳକ ହୋଇଲା ବାହାର ।
ଗୁଣେ ପାଣ୍ଡବ ବଂଶଧର ।।୩୫
ଅତି ସୁନ୍ଦର ବିରାଜିଲା ।
ପୁଣି କି ପାଣ୍ଡୁ ପ୍ରକାଶିଲା ।।୩୬
ଦେଖି ସନ୍ତୋଷ ଧର୍ମସୁତ ।
ସଙ୍ଗତେ ଘେନି ପୁରୋହିତ ।।୩୭
ଆନନ୍ଦେ ମିଳି ମହାଜନେ ।
ସ୍ୱସ୍ତିକ ମଙ୍ଗଳ ବଚନେ ।।୩୮
ଶୁଭଇ ଶଙ୍ଖନାଦ ଭେରୀ ।
ଶୁଭେଣ ଜାତକର୍ମ କରି ।।୩୯
ସୁବର୍ଣ୍ଣ ମହୀ ଧେନୁ ତୁଳେ ।
ଅନେକ ଗ୍ରାମଦାନ ଦେଲେ ।।୪୦
ଅଶ୍ୱ କୁଞ୍ଜର ନିଜ ଅନ୍ନ ।
ସୁମୃତି ମତେ ଦେଲେ ଦାନ ।।୪୧
ସୂତ ମାଗଧ ଆଦି ଲୋକେ ।
ଯେ ଆସି ମିଳିଲେ ଯାଚକେ ।।୪୨
ଧର୍ମନନ୍ଦନ ସୁଖଚିତ୍ତେ ।
ଦକ୍ଷିଣା ଦେଲେ ପ୍ରଜାତୀର୍ଥେ ।।୪୩
ସନ୍ତୋଷେ ବସି ବିପ୍ରଗଣ ।
ବିଚାରି ଜାତକ ଲକ୍ଷଣ ।।୪୪
ଗ୍ରହ ନକ୍ଷତ୍ର ଚିହ୍ନି ଚିତ୍ତେ ।
କହନ୍ତି ରାଜାଙ୍କ ଅଗ୍ରତେ ।।୪୫
ଏ ଅଭିମନ୍ୟୁର କୁମର ।
ପାଣ୍ଡବବଂଶେ କୀର୍ତ୍ତିକର ।।୪୬
ଗର୍ଭସଙ୍କଟୁ ଏ ତରିଲା ।
ଏହାକୁ ବିଷ୍ଣୁ ରକ୍ଷା କଲା ।।୪୭
ସର୍ବ ଲକ୍ଷଣେ ଏ ସମ୍ଭୂତ ।
ଏହାର ନାମ ବିଷ୍ଣୁରାତ ।।୪୮
କୁରୁପାଣ୍ଡବ ବଂଶଧର ।
ଏ ଭାଗବତ ମଧ୍ୟେ ବର ।।୪୯
ଏମନ୍ତେ ବ୍ରାହ୍ମଣଙ୍କ ବାଣୀ ।
ବୋଲନ୍ତି ଯୁଧିଷ୍ଠିର ଶୁଣି ।।୫୦

ହେ ବିପ୍ରବରେ ତୁମ୍ଭ ବାଣୀ ।
ଶ୍ରବଣେ ସୁଧାପ୍ରାୟ ମଣି ।।୫୧
ଆଗମ ନିଗମେ ଯା ସାର ।
ତୁମ୍ଭଙ୍କୁ ନୋହେ ଅଗୋଚର ।।୫୨
ଗ୍ରହନକ୍ଷତ୍ର ଯୋଗମତେ ।
ଯାହା କହିଲ ଶାସ୍ତ୍ରତତ୍ତ୍ୱେ ।।୫୩
ଏ ବଂଶଧର ସାଧୁବାଦେ ।
ସତେ ପାଳିବ ରାଜପଦେ ।।୫୪
ରାଜାବଚନେ ବିପ୍ରଗଣ ।
କହନ୍ତି ଜାତକ ଲକ୍ଷଣ ।।୫୫
ଶୁଣ ହେ ଧର୍ମର ନନ୍ଦନ ।
ଆମ୍ଭର ଆଶିଷ ବଚନ ।।୫୬
ପ୍ରଜାପାଳନେ ଏ ନିୟତ ।
ଯେହ୍ନେ ଇକ୍ଷ୍ୱାକୁ ମନୁସୁତ ।।୫୭
ବ୍ରାହ୍ମଣ ଜନହିତକର ।
ସତ୍ୟପ୍ରତିଜ୍ଞ ଗୁଣଧର ।।୫୮
ଏହାର ଯଶ ସର୍ବଦେଶେ ।
ଯେହ୍ନେ ଶ୍ରୀରାମ ରଘୁବଂଶେ ।।୫୯
ଶିବି ଯେସନେ ଦାତାବର ।
ଦୟାଳୁ ମଧ୍ୟେ ଏ କୁମର ।।୬୦
ଭରତ ପ୍ରାଏ ଯଜ୍ଞକାରୀ ।
ଅର୍ଜୁନ ସମ ଧନୁର୍ଦ୍ଧାରୀ ।।୬୧
ହୁତାଶ ପ୍ରାୟ ତେଜୋମୟ ।
ଦୁସ୍ତର ସମୁଦ୍ରର ପ୍ରାୟ ।।୬୨
ବିକ୍ରମେ ଯେସନେ କେଶରୀ ।
ଆଶ୍ରୟେ ଯେହ୍ନେ ହିମଗିରି ।।୬୩
ପୃଥିବୀ ସମ ଧୀରଚେତା ।
ସହିଷ୍ଣୁ ଯେହ୍ନେ ପିତାମାତା ।।୬୪
ସମ ପାଳନେ କି ବିଧାତା ।
ଈଶ୍ୱର ପ୍ରାୟ ବରଦାତା ।।୬୫
ଆଶ୍ରୟ ସର୍ବ ପ୍ରାଣୀଙ୍କର ।
ଯେହ୍ନେ ସଂସାରେ ରମାବର ।।୬୬
ସର୍ବଲକ୍ଷଣେ କୃଷ୍ଣସମ ।
ସୁଦୃଢ଼ବ୍ରତ ସତ୍ୟଧାମ ।।୬୭
ଉଦାର ପଣେ ରନ୍ତିଦେବ ।
ଯଯାତି ପ୍ରାୟେ ଧୀରଭାବ ।।୬୮

ବଳିର ପ୍ରାୟ ଧୀରପଦ ।
ବୈଷ୍ଣବ ଯେହ୍ନେ ପ୍ରହଲାଦ ।।୬୯
ସଂସ୍କାର ମନ୍ତ୍ର ହବିର୍ଭାଗେ ।
ଦେବଙ୍କୁ ଅଶ୍ୱମେଧ ଯଜ୍ଞେ ।।୭୦
ପୂଜାରେ କରାଇ ସନ୍ତୋଷ ।
ବୃଦ୍ଧ ସେବାରେ ସେ ବିଶ୍ୱାସ ।।୭୧
ରାଜଋଷିଙ୍କ ଜାତକାରୀ ।
ଦୁଷ୍ଟଜନଙ୍କ ଦର୍ପହାରୀ ।।୭୨
ଅବନୀ ଧର୍ମ ରକ୍ଷା ଅର୍ଥେ ।
କଳିକି ବାନ୍ଧିବ ଆୟତ୍ତେ ।।୭୩
ବ୍ରାହ୍ମଣ ଶାପ ମହାରୋଷେ ।
ଲଭିବ ଅଳପ ବୟସେ ।।୭୪
ବ୍ରହ୍ମବଚନ ତୀକ୍ଷ୍ଣବାଣ ।
ତକ୍ଷକ ହସ୍ତେ ଦେବ ପ୍ରାଣ ।।୭୫
ବ୍ରାହ୍ମଣ ଶାପେ ଭୟ ପାଇ ।
ତକ୍ଷଣେ ସାଧୁସଙ୍ଗୀ ହୋଇ ।।୭୬
ଜାହ୍ନବୀକୂଳେ ଅନ୍ତର୍ଜଳେ ।
ହରି-ଭକତି ସନ୍ତୁମେଳେ ।।୭୭
କୃଷ୍ଣ-ମହିମା ଶୁକ ମୁଖେ ।
ଶୁଣି ଛାଡ଼ିବ ପ୍ରାଣ ସୁଖେ ।।୭୮
ଗୋବିନ୍ଦ ଅଭୟ ଚରଣ ।
ନିଶ୍ଚିନ୍ତେ ପଶିବ ଶରଣ ।।୭୯

ସୂତ ଉବାଚ

ଏମନ୍ତେ ଜାତକର୍ମ କଲେ ।
ବନ୍ଧୁବାନ୍ଧବ ବିପ୍ରମେଳେ ।।୮୦
ରାଜାଙ୍କୁ ମାଗି ଅନୁଯାନ ।
ବିପ୍ରେ ଚଳିଲେ ନିଜ ସ୍ଥାନ ।।୮୧
ଗର୍ଭେ ଦେଖିଲା ଚକ୍ରପାଣି ।
ସଂସାରେ ଦେଖେ ଯେତେ ପ୍ରାଣୀ ।।୮୨
ଏ ଅବା ସେହି ଅବା ନୋହି ।
ଏମନ୍ତ ପରୀକ୍ଷା କରଇ ।।୮୩
ଏ ଘେନି ନାମ ପରୀକ୍ଷିତ ।
ଲୋକରେ ହୋଇଲା ବିଖ୍ୟାତ ।।୮୪
ଦିନକୁଦିନ ତେଜରାଶି ।
ଶୁକ୍ଳପକ୍ଷେ ଯେହ୍ନେ ଶଶୀ ।।୮୫

Dr. Sudhanshu Sekhar Mishra

ଦିନକୁଦିନ ପିତୃଗଣେ ।
ସ୍ନେହେ ପାଳନ୍ତି ଅନୁକ୍ଷଣେ ॥୮୬
ବାଳକ ଦେହେ ପରୀକ୍ଷିତ ।
ସ୍ୱଭାବେ କୃଷ୍ଣର ଭକତ ॥୮୭
ସକଳ ଲୋକେ ପ୍ରୀତିଦାତା ।
ସାଧୁ-ସୁନ୍ଦର-ଶୁଦ୍ଧଚେତା ॥୮୮
ଏବେ ହୋ ଶୁଣ ବିପ୍ରଜନେ ।
ଧର୍ମନନ୍ଦନ ଚିନ୍ତେ ମନେ ॥୮୯
ଜ୍ଞାତି ମାରଣ-ଦ୍ରୋହ ଚିତ୍ତେ ।
ସର୍ବକଲୁଷ ନାଶ ଅର୍ଥେ ॥୯୦
ପ୍ରଜାଙ୍କ ଠହୁଁ ନିଜଧନ ।
ନକରି ଦଣ୍ଡ କରଷଣ ॥୯୧
କୃଷ୍ଣ ଆଜ୍ଞାରେ ଭ୍ରାତୃଗଣେ ।
ଗଲେ ଯେ ରାଜାଙ୍କ ବରଣେ ॥୯୨
ରାଜାଙ୍କ ଠହୁଁ କେତେ ଆଣି ।
ସଙ୍ଗତେ ଘେନି ଚକ୍ରପାଣି ॥୯୩
ପଞ୍ଚଭ୍ରାତାଏ ତୋଷେ ମିଳି ।
ବିପ୍ରଙ୍କୁ ଘେନି ବନମାଳୀ ॥୯୪
ଆଗମ ନିଗମ ଯେ ବିଧି ।
କରାଇ ତିନି ଅଶ୍ୱମେଧି ॥୯୫
କେତେହେଁ ଦିନ କୃଷ୍ଣ ରହି ।
ଜ୍ଞାତି ସୁହୃଦ ଭାବ ବହି ॥୯୬
ଦ୍ରୌପଦୀ କୁନ୍ତୀ ଅନୁମତେ ।
ବିଚାର କରି ପଞ୍ଚଭ୍ରାତେ ॥୯୭
ରଥେ ଅର୍ଜୁନ ସଙ୍ଗେ କରି ।
ନିଜ ଭୁବନେ ଗଲେ ହରି ॥୯୮
ସେ ହରି-ଚରଣ-ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ପରୀକ୍ଷିତ ଜନ୍ମାଦି
ଉତ୍‌କର୍ଷୋ ନାମ ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ

ସୂତ ଉବାଚ

ବିଦୁର ତୀର୍ଥଯାତ୍ରା କ୍ରମେ ।
ମିଳିଲେ ମୈତ୍ରେୟ ଆଶ୍ରମେ ॥୧
କେତେହେଁ ଦିନ ତହିଁ ଥାଇ ।
ଆତ୍ମାର ତତ୍ତ୍ୱଜ୍ଞାନ ପାଇ ॥୨
ହସ୍ତିନା ନଗରେ ବିଶ୍ୱାସେ ।
ମିଳିଲେ ଯୁଧିଷ୍ଠିର ପାଶେ ॥୩
ଜାଣିବା ପାଇଁ ତାର ଗତି ।
ସ୍ୱଭାବେ ସାଧୁ ଧୀରମତି ॥୪
ମୈତ୍ରେୟ ଆଗେ ଯେବା ପ୍ରଶ୍ନ ।
କରି ପାଇଲେ ଆତ୍ମଜ୍ଞାନ ॥୫
ତେଣୁ ଗୋବିନ୍ଦେ ଭକ୍ତି ଜାତ ।
କେବଳ ନାହିଁ ଶତ୍ରୁମିତ୍ର ॥୬
ବିଦୁର ଦେଖି ଧର୍ମସୁତ ।
ବନ୍ଧୁ ଆଗମେ କୃତକୃତ୍ୟ ॥୭
ସଙ୍ଗତେ ଘେନି ଚାରିଭାଇ ।
ନମିଲେ ଆସନେ ବସାଇ ॥୮
ଯୁଯୁତ୍ସୁ ଧୃତରାଷ୍ଟ୍ର ସୁତ ।
ସଙ୍ଗତେ ଘେନି ଶାରଦ୍ୱତ ॥୯
ଗାନ୍ଧାରୀ ଦ୍ରୌପଦୀ ସହିତେ ।
ସୁଭଦ୍ରା ଉତ୍ତରା ସମେତେ ॥୧୦
ଆଗେ ଗମନ୍ତି ଦେବୀକୁନ୍ତୀ ।
ଅନ୍ୟେ ସୁହୃଦ-ବନ୍ଧୁ-ଜ୍ଞାତି ॥୧୧
ପଣ୍ଡୁର ଯେତେ ବନ୍ଧୁଜନେ ।
ମିଳିଲେ ହରଷ ବଦନେ ॥୧୨
ପ୍ରାଣକୁ ପାଇ ତନୁ ଯେହ୍ନେ ।
ପୁଣି ଉଠଇ ଦିବ୍ୟଜ୍ଞାନେ ॥୧୩
ସକଳେ ମିଳି ତାର ପାଶେ ।
ବନ୍ଦିଲେ ଯେ ଯାହା ବିଶ୍ୱାସେ ॥୧୪
ଅନାଇ ବିଦୁର ବଦନ ।
ଆନନ୍ଦେ ଅଶ୍ରୁଜଳ ପୂର୍ଣ୍ଣ ॥୧୫
ସକଳ ପୂଜାବିଧି କରି ।
ରାଜନ କରେ କର ଧରି ॥୧୬
ବିଦୁରେ ବସାଇ ଆସନେ ।
ପାଶେ ଭୁଞ୍ଜାଇ ସୁଖମନେ ॥୧୭
ତାର ବଦନ ରାଜା ଚାହିଁ ।
ଆନନ୍ଦେ ଘେନି ଚାରିଭାଇ ॥୧୮
ଉଚ୍ଚେ ପଚାରି ପ୍ରୀତିବାଣୀ ।
ଯେମନ୍ତେ ସର୍ବଲୋକେ ଶୁଣି ॥୧୯

ଯୁଧିଷ୍ଠିର ଉବାଚ

ହେ ତାତ କହୁଁ ତୋ ଅଗ୍ରତେ ।
ଆମ୍ଭ କୁଶଳ ତୋର ଚିତ୍ତେ ॥୨୦
ସ୍ମରଣ କରୁ ତୀର୍ଥଭ୍ରମେ ।
ବନଗହନ ବହୁଶ୍ରମେ ॥୨୧
ତୁମ୍ଭର ଛାୟା ଆଶ୍ରେ କରି ।
ସକଳ କଷ୍ଟହିଁ ପାଶୋରି ॥୨୨
ବିପଦ-ଦଶା ଯେତେ ହୋଇ ।
ବନେ ବଞ୍ଚିଲୁ ପାଞ୍ଚଭାଇ ॥୨୩
ମାତା ସହିତେ ଜତୁଘରେ ।
ଅଗ୍ନି ଦହନ ମହାଘୋରେ ॥୨୪
ବିଷଭକ୍ଷଣ ଆଦି ଯେତେ ।
ତୋ ଆଗେ କହିବି ମୁଁ କେତେ ॥୨୫

Dr. Sudhanshu Sekhar Mishra

ଅନେକ ଆପଦ ପ୍ରମାଦୁ ।
ବଞ୍ଚିଲୁ ତୁମ୍ଭର ପ୍ରସାଦୁ ।। ୨୬
ତୁ ଆମ୍ଭ ସ୍ନେହ ଦୂର କରି ।
ଭ୍ରମଣ କଲୁ ବସୁନ୍ଧରୀ ।। ୨୭
ଉଦାସୀ ପଥିକ ଲକ୍ଷଣେ ।
ଏକା ତୁ ବୁଲୁ ବନେ-ବନେ ।। ୨୮
କିପରି ପ୍ରାଣ ରକ୍ଷା କରୁ ।
ଏ ପଥଶ୍ରମ କେହ୍ନେ ହରୁ ।। ୨୯
ଭ୍ରମିଲୁ ଅବନୀ ମଣ୍ଡଳେ ।
ତୀର୍ଥ-ଆଶ୍ରମ ପୁଣ୍ୟସ୍ଥଳେ ।। ୩୦
ତୋହର ପ୍ରାୟେ ସାଧୁ ଯେତେ ।
ପବିତ୍ର ଦେହେ ସର୍ବତୀର୍ଥେ ।। ୩୧
ଭ୍ରମି କରନ୍ତି ପୁଣ୍ୟତର ।
ଯାହାଙ୍କ ଚିତ୍ତେ ଚକ୍ରଧର ।। ୩୨
ତୁ ଯେ ସ୍ୱଭାବେ ପୁଣ୍ୟଦେହ ।
ପ୍ରସନ୍ନ ଚିତ୍ତେ ତାତ କହ ।। ୩୩
ଯାଦବ ସଙ୍ଗେ ବନମାଳୀ ।
ସୁଖେ କି ଛନ୍ତି କୁଶସ୍ଥଳୀ ।। ୩୪
ତାହାର ଭଲେ ଭଲ ମୋର ।
ସେ ହରି ଶରଣ-ସୋଦର ।। ୩୫
ସୁଖେ ଅଛନ୍ତି କି ଯାଦବେ ।
ଭୋ ତାତ ପଚାରୁ ପ୍ରସ୍ତାବେ ।। ୩୬
ଏମନ୍ତେ ରାଜା ବାକ୍ୟ ଶୁଣି ।
ବିଦୁର ମନେମନେ ଗୁଣି ।। ୩୭
ସୁହୃଦ ଭାବେ ଭୟ କଲା ।
ଯାଦବ କ୍ଷୟ ନ କହିଲା ।। ୩୮
ବିଚାରେ କହିବି ମୁଁ ଯେବେ ।
ଜୀବନ ଛାଡ଼ିବେ ପାଣ୍ଡବେ ।। ୩୯
କେମନ୍ତେ ଦେଖିବି ମୁଁ ଏହା ।
ଏତେ ବିଚାରି କଲା ମାୟା ।। ୪୦
ନ କହେ ଯଦୁବଂଶ ନାଶ ।
ନିର୍ଘାତେ ଛାଡ଼ିଲା ନିଃଶ୍ୱାସ ।। ୪୧
ଊର୍ଦ୍ଧ୍ୱ-ବଦନେ ସେ ବିଦୁର ।
କପଟେ କହଇ ମଧୁର ।। ୪୨
ସର୍ବ-କୁଶଳ ଯା ପ୍ରସାଦେ ।
କୃଷ୍ଣ ଅଛନ୍ତି ଅପ୍ରମାଦେ ।। ୪୩

ଏମନ୍ତେ ରାଜା ଆଗେ କହି ।
କେତେହେଁ ଦିନ ପୁରେ ରହି ।। ୪୪
ଜ୍ୟେଷ୍ଠଭ୍ରାତାର ଶ୍ରେୟ ଅର୍ଥେ ।
ସର୍ବଜନଙ୍କ ପ୍ରୀତିମତେ ।। ୪୫
ନିତ୍ୟେ ଆନନ୍ଦ ଧର୍ମରାଜା ।
ବିଦୁର-ପାଦେ କରେ ପୂଜା ।। ୪୬
ରାତ୍ର-ଦିବସ ତାର ସଙ୍ଗେ ।
ଧର୍ମନନ୍ଦନ ଅନୁରାଗେ ।। ୪୭
ଅଶେଷ ତୀର୍ଥଙ୍କ ମହିମା ।
କେ କହିପାରେ ଗୁଣସୀମା ।। ୪୮
ସର୍ବ କହିଲା ସୁଖି ମନେ ।
ଏବେ ହୋ ଶୁଣ ବିପ୍ରଜନେ ।। ୪୯
ମାଣ୍ଡବ୍ୟଠାରୁ ଶାପ ପାଇ ।
ଯମ ବିଦୁର ଦେହ ବହି ।। ୫୦
ଶତେ ବରଷ ଶୂଦ୍ର ଦେହେ ।
ବଞ୍ଚିଲା ବିଷ୍ଣୁ-ମାୟା-ମୋହେ ।। ୫୧
ପାପୀଙ୍କ ଦଣ୍ଡେ ଅଧିକାର ।
କରନ୍ତି ଦେବ ଦିନକର ।। ୫୨
କୁଳରକ୍ଷକ ପରୀକ୍ଷିତ ।
ଜାଣି ନିଶ୍ଚିନ୍ତ ଧର୍ମସୁତ ।। ୫୩
ଏବେ ପାଣ୍ଡବ ପାଭାଇ ।
ରିପୁ ସଂହାରି ରାଜ୍ୟ ପାଇ ।। ୫୪
ଗୃହ କରଣେ ଚିତ୍ତ ଜଡ଼ି ।
ବିଷ୍ଣୁର ମାୟାମୋହେ ପଡ଼ି ।। ୫୫
ରାଜ୍ୟ କରନ୍ତେ ଧର୍ମସୁତ ।
ମିଳିଲା କାଳ ବିପରୀତ ।। ୫୬
କେହି ନ ଜାଣେ ଗତି ତାର ।
ସ୍ୱଭାବେ ଅବ୍ୟକ୍ତ ଈଶ୍ୱର ।। ୫୭
ଧୂମ୍ର ପୂରିଲା ଦଶଦିଶେ ।
ବିଦୁର ଦେଖି ମହାତ୍ରାସେ ।। ୫୮
ବସିଲା ଧୃତରାଷ୍ଟ୍ର ମେଳେ ।
ବିଶ୍ୱାସେ କହେ କର୍ଣ୍ଣମୂଳେ ।। ୫୯
ହେ ଭ୍ରାତ ଶୁଣ ମୋ ଉତ୍ତର ।
ଚଳ ତୁ ବେଗେ ତେଜି ପୁର ।। ୬୦
କାଳ ମିଳିଲା ଭୟଙ୍କର ।
ଦିଶ-ଆକାଶ ଅନ୍ଧକାର ।। ୬୧

ଏଥକୁ ପ୍ରତିକ୍ରିୟା ନାହିଁ ।
ଅବ୍ୟକ୍ତ ରୂପ ଯାର ଦେହୀ ।। ୬୨
ଦ୍ୱାପର ଯୁଗ ଶେଷ ହେଲା ।
ଏ କଳିକାଳ ପ୍ରକାଶିଲା ।। ୬୩
ଆମ୍ଭର ପ୍ରାଣ ଏ ହରିବ ।
ଏହାକୁ କେବା ନିବାରିବ ।। ୬୪
ଜନ ସମ୍ପଦ ମହୀତଳେ ।
ସଂହାର କରିବ ଏ ବଳେ ।। ୬୫
ଦେବ ଦାନବ ମହାବଳ ।
ବୃଦ୍ଧ ପ୍ରତାପୀ ଯୁବା ବାଳ ।। ୬୬
ଯାହାର ଦରଶନ ମାତ୍ରେ ।
କଦଳୀବନ ଯେହ୍ନେ ବାତେ ।। ୬୭
ଭୟେ କମ୍ପନ୍ତି ଥରହର ।
କାତରେ ନେତ୍ରୁ ବହେ ନୀର ।। ୬୮
ଅନିତ୍ୟ ଏ ମନୁଷ୍ୟ ଦେହୀ ।
ସାର ଏହାର କିଛି ନାହିଁ ।। ୬୯
ଏ ଦେହେ ଯେ ମୁକ୍ତ-ବନ୍ଧନ ।
ତାହାକୁ ବୋଲି ମହାଜନ ।। ୭୦
ଦେଖ ତୋହର କର୍ମଫଳ ।
ନାଶିଲେ ଭ୍ରାତୃପୁତ୍ର ବଳ ।। ୭୧
ଆୟୁଷ ତୋର ଶେଷ ହେଲା ।
ମରଣ ନିକଟ ହୋଇଲା ।। ୭୨
ଅତି ଦୁଃଖିତ ବୃଦ୍ଧଦେହେ ।
ତୋର ନିବାସ ପର ଗୃହେ ।। ୭୩
ବିଶେଷେ ଚକ୍ଷୁହୀନ ତୁହି ।
ବଧିର ବୁଦ୍ଧି ଆର କାହିଁ ।। ୭୪
ବିଶୀର୍ଣ୍ଣ ଦନ୍ତ ତୋ ଅଧର ।
କଫେ ଜଡ଼ିତ କଣ୍ଠସ୍ୱର ।। ୭୫
ଅନ୍ତରେ ଅଗ୍ନି ମନ୍ଦ ହୋଇ ।
ଅନ୍ନ-ଭୋଜନ ନ ଜୀରଇ ।। ୭୬
ପ୍ରାଣୀ ଜୀବିତ ଆଶା ଯେତେ ।
କେ ତାକୁ କରିବ ଆୟତ୍ତେ ।। ୭୭
ଯେଉଁ ଭୀମର ଗଦାଘାତେ ।
ସମରେ ନାଶିଲେ ତୋ ସୁତେ ।। ୭୮
ତାର ବର୍ଜିତ ପିଣ୍ଡେ ଆଶା ।
ଶ୍ୱାନର ପ୍ରାୟେ ତୋ ଭରସା ।। ୭୯

Dr. Sudhanshu Sekhar Mishra

କୁମନ୍ତ୍ରୀଜନ ସଙ୍ଗେ ଭାଳି ।
ତୋର କୁମରେ କଲେ କଳି ॥ ୮୦

ପଣ୍ଡୁର ପଞ୍ଚପୁତ୍ର ମାରି ।
ସୁଖେ ଭୁଞ୍ଜିବା ରାଜ୍ୟଶିରୀ ॥ ୮୧

ଦୁଷ୍ଟଙ୍କ ସଙ୍ଗେ ବିଚାରିଲେ ।
ଭୀମକୁ ବିଷଲଡୁ ଦେଲେ ॥ ୮୨

ସେ ଭୀମ କେବେହେଁ ନମଲା ।
ତାହାକୁ ଗୋବିନ୍ଦ ରଖିଲା ॥ ୮୩

ଜତୁର ଘରେ ଅଗ୍ନି ଦେଲେ ।
ସେ ବେଳେ ପାଣ୍ଡବେ ନ ମଲେ ॥ ୮୪

ପୁଣି କପଟପଶା କରି ।
ଧନ ସମ୍ପଦ ଅପହରି ॥ ୮୫

ଦ୍ରୌପଦୀ କେଶ ଧରି ବଳେ ।
ବିବସ୍ତ୍ର କଲେ ସଭା ତଳେ ॥ ୮୬

ଏ ଆଦି ଯେତେ କର୍ମ କଲେ ।
ତୁ ତାହା ଶୁଣିଅଛୁ ଭଲେ ॥ ୮୭

ସେ କିମ୍ବା ତାଙ୍କ ଚିତ୍ତୁ ଯିବ ।
ମନୁଷ୍ୟ ଜନ୍ମର ସ୍ୱଭାବ ॥ ୮୮

ତାହାଙ୍କ ଦତ୍ତ ପିଣ୍ଡ ଖାଇ ।
ସେବକ ପ୍ରାୟ ଗୃହେ ଥାଇ ॥ ୮୯

ତୋର ବୟସ ଆଉ କାହିଁ ।
ଅତି ପୀଡ଼ିତ ବୃଦ୍ଧଦେହୀ ॥ ୯୦

ଦିନକୁ ଦିନ ତନୁ କ୍ଷୀଣ ।
ଯେସନେ ପୁରୁଣା ବସନ ॥ ୯୧

ଏ ଦେହେ ବିରକ୍ତ ଯେ ଜନ ।
ସେ ପ୍ରାଣୀ ବିମୁକ୍ତ-ବନ୍ଧନ ॥ ୯୨

ଅନିତ୍ୟ ନର-କଳେବର ।
ଭିତରେ କିଛି ନାହିଁ ସାର ॥ ୯୩

ଏହା ବିଚାରି ଯୋଗବଳେ ।
ହରି ଭକତ ସଙ୍ଗ ମେଳେ ॥ ୯୪

ନିର୍ବେଦ ହୋଇ ଚଳେ ବନ ।
ସେ ପ୍ରାଣୀ ପୁରୁଷ ଉତ୍ତମ ॥ ୯୫

ତୁ ବୁଧଜନଙ୍କ ଉତ୍ତମ ।
ଏବେ ତୁ ଛାଡ଼ ମତିଭ୍ରମ ॥ ୯୬

ଉତ୍ତର-ପଥେ ଚଳ ବେଗେ ।
ପତ୍ନୀ ସମେତେ ମୋର ସଙ୍ଗେ ॥ ୯୭

ମୁହିଁ ଉଦାସୀପଣେ ବନେ ।
ସେବିବି ତୋତେ ଅନୁକ୍ଷଣେ ॥ ୯୮

ଦେଖ ଏ କାଳ ଭୟଙ୍କର ।
ଶିରୀ ହରିବ ପ୍ରାଣୀଙ୍କର ॥ ୯୯

ଏମନ୍ତେ ବିଦୁରର ବାଣୀ ।
ସେ ଅନ୍ଧ ଧୃତରାଷ୍ଟ୍ର ଶୁଣି ॥ ୧୦୦

ତକ୍ଷଣେ ମୋହ ଜଡ଼ ଛାଡ଼ି ।
ବନ ଗମନେ ଚିତ୍ତ ବଢ଼ି ॥ ୧୦୧

ବିଷ୍ଣୁର ମାୟା କରି ଦୂର ।
ନବରୁ ହୋଇଲା ବାହାର ॥ ୧୦୨

ପତିର ବନବାସ କଥା ।
ଶୁଣି ସାନନ୍ଦେ ପତିବ୍ରତା ॥ ୧୦୩

ବିଦୁର କନ୍ଧେ ଦେଇ କର ।
ନଗରୁ ହୋଇଲେ ବାହାର ॥ ୧୦୪

ମନ ଆନନ୍ଦେ ବେନିଜନେ ।
ପଶିଲେ ହିମାଳୟ-ବନେ ॥ ୧୦୫

କ୍ଷତ୍ରିୟ ଯେହ୍ନେ ମହାଯୁଦ୍ଧେ ।
ପଶଇ ମନର ସାନନ୍ଦେ ॥ ୧୦୬

ଏବେ ହୋ ଶୁଣ ମୁନିବରେ ।
ଧର୍ମନନ୍ଦନ ନିଜ ଘରେ ॥ ୧୦୭

ସନ୍ଧ୍ୟାଦି ନିତ୍ୟକର୍ମ ସାରି ।
ଅଗ୍ନି ପୂଜନ ଦାନ କରି ॥ ୧୦୮

ଗୁରୁ-ବନ୍ଦନ ପୂଜା ଅର୍ଥେ ।
ଗୃହେ ପଶିଲେ କୃତକୃତ୍ୟେ ॥ ୧୦୯

ଗୁରୁ-ଭୁବନେ ଯାଇ ମିଳି ।
ହସ୍ତରେ ଘେନି ଅର୍ଘ୍ୟସ୍ଥାଳୀ ॥ ୧୧୦

ତକ୍ଷଣେ ଦେଖି ଶୂନ୍ୟଘର ।
କାତର ମନେ ନୃପବର ॥ ୧୧୧

ପୁଚ୍ଛିଲେ ସଞ୍ଜୟକୁ ଚାହିଁ ।
ମୋ ଗୁରୁଜନେ ଗଲେ କାହିଁ ॥ ୧୧୨

କେହି ନ ଶୁଣନ୍ତି ବଚନ ।
ଭୟେ ଚାହାନ୍ତି ଛନ୍ନଛନ୍ନ ॥ ୧୧୩

ପୁଣି ବୋଲନ୍ତି ଜନେ ଚାହିଁ ।
ତାତ ଜନନୀ ଗଲେ କାହିଁ ॥ ୧୧୪

ବିଦୁର ନାହିଁ ମୋର ପାଶେ ।
ତାତ ଜନନୀ ମୋ ନ ଦିଶେ ॥ ୧୧୫

ଲୋଚନେ ନ ଦିଶଇ ପଥ ।
ଦଇବେ ବୟସେ ବୃଦ୍ଧତ୍ୱ ॥ ୧୧୬

ପୁତ୍ରଙ୍କ ମରଣେ ଦୁଃଖିତ ।
କେବଣ ଦେଶେ ଉପଗତ ॥ ୧୧୭

ନ ପୁଣ ପୁତ୍ର-ଶୋକ-ଜ୍ୱାଳେ ।
ପ୍ରାଣ ଛାଡ଼ିଲେ ଗଙ୍ଗାଜଳେ ॥ ୧୧୮

ବନ୍ଧୁ ସୁହୃଦ ପୁତ୍ର ନାଶେ ।
ମୋର ଜନନୀ ତାତ ତ୍ରାସେ ॥ ୧୧୯

ଦୁଃଖସାଗରେ ନିମଜ୍ଜିଲେ ।
ମୋର ଦୁଷ୍କୃତ-କର୍ମ ଫଳେ ॥ ୧୨୦

### ସୂତ ଉବାଚ

ଧର୍ମନନ୍ଦନ ବାକ୍ୟ ଶୁଣି ।
ସାରଥି ନ କହିଲା ବାଣୀ ॥ ୧୨୧

ନ ଦେଖି ଧୃତରାଷ୍ଟ୍ର ପାଶେ ।
ଅତି ପୀଡ଼ିତ ସ୍ନେହ ବଶେ ॥ ୧୨୨

ବିରହ ଦୁଃଖରେ ବିକଳ ।
ନୟନୁ ବହେ ଅଶ୍ରୁଜଳ ॥ ୧୨୩

ପୁଣି ସେ ମନେ ଧୈର୍ଯ୍ୟ ଧରି ।
ହସ୍ତେ ପୋଛିଲା ନେତ୍ରୁ ବାରି ॥ ୧୨୪

ଧୃତରାଷ୍ଟ୍ରର ଯେ ବିଯୋଗ ।
କହଇ ଯୁଧିଷ୍ଠିର ଆଗ ॥ ୧୨୫

### ସଞ୍ଜୟ ଉବାଚ

ଶୁଣ ହେ ନୃପ-ଚୂଡ଼ାମଣି ।
ତୋହର ପିଅର ଜନନୀ ॥ ୧୨୬

ରଜନୀ କାଳେ ଗଲେ କାହିଁ ।
ସର୍ବଥା ନ ଜାଣଇ ମୁହିଁ ॥ ୧୨୭

ମୋର ଜୀବନ ଦୁଃଖ ଭରେ ।
ମଜ୍ଜିଲା ବୃଜିନ-ସାଗରେ ॥ ୧୨୮

ଏମନ୍ତେ କହୁଁ ମନ ଖେଦ ।
ଗଗନେ ଶୁଭେ ବୀଣାନାଦ ॥ ୧୨୯

ଶୁଣି ଚାହିଁଲେ ଅନ୍ତରୀକ୍ଷେ ।
ନାରଦ ଦିଶିଲେ ପ୍ରତ୍ୟକ୍ଷେ ॥ ୧୩୦

ତୁମ୍ବୁରୁ ଅଛି ତାଙ୍କ ସଙ୍ଗେ ।
ବୀଣା-ବିନୋଦ ବାଦ୍ୟରଙ୍ଗେ ॥ ୧୩୧

Dr. Sudhanshu Sekhar Mishra

ନାଦେ ଗୋବିନ୍ଦ ଗୁଣ ଗାଇ ।
ପୁଲକ ରୋମପନ୍ତି ବହି ॥ ୧୩୨
ଆନନ୍ଦେ ଅଶ୍ରୁଜଳ ପୂରେ ।
ମିଳିଲେ ରାଜାର ଛାମୁରେ ॥ ୧୩୩
ଦେଖି ସମ୍ଭ୍ରମେ ନୃପମଣି ।
ଅନୁଜ ସଙ୍ଗେ ପାଦେ ନମି ॥ ୧୩୪
ମୁନିଙ୍କି ଆସନେ ବସାଇ ।
ବେନି ଚରଣ କରେ ଧୋଇ ॥ ୧୩୫
ଚରଣ ପୂଜି ବିଧିମତେ ।
କହନ୍ତି ନାରଦ ଅଗ୍ରତେ ॥ ୧୩୬

ଯୁଧିଷ୍ଠିର ଉବାଚ

ଭୋ ବ୍ରହ୍ମମୁନି ଶୁଣ ଭଲେ ।
ମୋ ତାତମାତ କେଣେ ଗଲେ ॥ ୧୩୭
ମୋର କରମ ଦୁଃଖ ଶୁଣ ।
ଭୋ ମୁନି ତୁମ୍ଭେ ଭଲେ ଜାଣ ॥ ୧୩୮
ଚକ୍ଷୁ ବିହୀନେ ଘୋରବନେ ।
ଜୀବନ ଧରିବେ କେସନେ ॥ ୧୩୯
ଗଭୀର-ଜଳେ ନାବ ଥୋଇ ।
ନାବିକ ଯେସନେ ପଳାଇ ॥ ୧୪୦
ତେମନ୍ତେ କରିଗଲେ ମୋତେ ।
ଅଧିକ କହିବି ମୁଁ କେତେ ॥ ୧୪୧
ଏ ଶୋକ-ସାଗର ଅପାର ।
ପାରକ ତୁମ୍ଭେ କର୍ଣ୍ଣଧାର ॥ ୧୪୨
ରାଜନ ଶୋକବାଣୀ ଶୁଣି ।
ମୁନି କହନ୍ତି ଯୋଗବାଣୀ ॥ ୧୪୩

ନାରଦ ଉବାଚ

ଭୋ ନୃପ ଶୋକ ତୁ ନକର ।
ଈଶ୍ୱର ମାୟା ଏ ସଂସାର ॥ ୧୪୪
ପ୍ରାଣୀ ଭିଆଇ ମାୟାଯୋଗେ ।
ଖେଳଇ ସଂଯୋଗ-ବିଯୋଗେ ॥ ୧୪୫
ଗୋରୁ ନାସିକା ଯେହ୍ନେ ବିନ୍ଧି ।
ଆକର୍ଷି ଚର୍ମରଜ୍ଜୁ ବାନ୍ଧି ॥ ୧୪୬
ସେ ପ୍ରାଣୀ ଯେହ୍ନେ ଭାରା ବହେ ।
ଅନ୍ତରେ ଦୁଃଖ ଖେଦ ସହେ ॥ ୧୪୭

କ୍ରୀଡ଼ା-କନ୍ଦୁକ କ୍ରୀଡ଼ାରଙ୍ଗେ ।
ଭ୍ରମଇ ସଂଯୋଗେ ବିଯୋଗେ ॥ ୧୪୮
ଯେ ଦାନ ପଡ଼ଇ ଯେମନ୍ତେ ।
କନ୍ଦୁକ ଚଳେ ସେହିମତେ ॥ ୧୪୯
ସଂସାର ଈଶ୍ୱରର ଇଚ୍ଛା ।
ଏ ଭବପଥ ଗୁରୁଦୀକ୍ଷା ॥ ୧୫୦
ତୁ ରାଜା ତୋତେ ହେଁ ନ ଜାଣୁ ।
ସଂସାର ସତ୍ୟ ପ୍ରାୟ ମଣୁ ॥ ୧୫୧
ସତ୍ୟ କି ମିଥ୍ୟା ବେନିପଥେ ।
ଶୋକ ନ କରି ପାରୁ ଚିତ୍ତେ ॥ ୧୫୨
ଯଦି ତୁ ଜୀବ ସତ୍ୟ ମଣୁ ।
ଦେହ ଅନିତ୍ୟ ପରିମାଣୁ ॥ ୧୫୩
ଅଥବା ବ୍ରହ୍ମଭାବ ବହୁ ।
ସ୍ନେହ ଛାଡ଼ିଲେ ଶୋକ କାହୁଁ ॥ ୧୫୪
ଏଣୁ ଅଜ୍ଞାନ ଜଡ଼ମତି ।
ବ୍ୟାକୁଳ ଛାଡ଼ ହେ ନୃପତି ॥ ୧୫୫
ତୁ ଯେ ବିଚାରୁ ସ୍ନେହଭାବେ ।
ମୋ ବିନେ କେମନ୍ତେ ବଞ୍ଚିବେ ॥ ୧୫୬
ଏ ଦେହ ପଞ୍ଚଭୂତେ ଜଡ଼ି ।
ଅବିଦ୍ୟା କାଳକର୍ମେ ପଡ଼ି ॥ ୧୫୭
ଆପଣା ଦୁଃଖେ ନିତ୍ୟ ଦୁଃଖୀ ।
ଏ କାହିଁ ପରପ୍ରାଣ ରଖି ॥ ୧୫୮
ଉରଗ ଗିଳିଛି ଯାହାକୁ ।
ସେ କାହିଁ ରଖିବ ଆନକୁ ॥ ୧୫୯
ଦେଖ ପ୍ରତ୍ୟକ୍ଷେ ନୃପବର ।
ବିଷ୍ଣୁର ମାୟା-ଖେଳଘର ॥ ୧୬୦
ସ୍ୱଭାବେ ନାହିଁ ଯାର ହସ୍ତ ।
ହସ୍ତ ଥିଲାର ସେ ଆୟତ୍ତ ॥ ୧୬୧
ଦ୍ୱିପଦ ଚତୁଷ୍ପଦ ଯେତେ ।
ନିପଦେ ତାହାଙ୍କ ଆୟତ୍ତେ ॥ ୧୬୨
ବଡ଼ଙ୍କ ଭକ୍ଷ୍ୟ ହୋନ୍ତି ସାନେ ।
ସେ ନାଶ ଯାନ୍ତି ଅନ୍ୟେ ଅନ୍ୟେ ॥ ୧୬୩
ଏ ଜୀବ ଜୀବଙ୍କ ଆହାର ।
କେବଳ ନିର୍ବଳ ବିଚାର ॥ ୧୬୪
ସେ ହରି ନିତ୍ୟ ବିଶ୍ୱରୂପେ ।
ନର ଶରୀରେ ମୋହକଳ୍ପେ ॥ ୧୬୫

ଏକଇ ଆତ୍ମା ନରହରି ।
ଭାବେ ଅଶେଷ ଦେହେ ପୂରି ॥ ୧୬୬
ଅନ୍ତର ବାହାରେ ପ୍ରକାଶ ।
ସେ ଭୋଗ୍ୟ ଭୋକ୍ତା ହୃଷୀକେଶ ॥ ୧୬୭
ଏ ମାୟା ଦୁରନ୍ତ ତାହାର ।
କେ କରି ପାରିବ ଗୋଚର ॥ ୧୬୮
ଭାରା ନିବାରେ ତନୁ ଧରି ।
ଦୁର୍ଜନ ସମୂହ ସଂହାରି ॥ ୧୬୯
ନିଜ ଜନଙ୍କୁ ରକ୍ଷା କରେ ।
ଏମନ୍ତେ ସଂସାରେ ବିହରେ ॥ ୧୭୦
ଦେବଙ୍କ କାର୍ଯ୍ୟ କରି ତୋଷେ ।
ଏବେ ବର୍ତ୍ତଇ ଅବଶେଷେ ॥ ୧୭୧
ଯାବତ ଥିବ ଚକ୍ରଧର ।
ତାବତ ତୁମ୍ଭ ଅଧିକାର ॥ ୧୭୨
ଏବେ ହୋ ଶୁଣ ମହାରଥୀ ।
ତୋ ତାତ-ଜନନୀ ବ୍ୟବସ୍ଥା ॥ ୧୭୩
ବିଦୁର ଧୃତରାଷ୍ଟ୍ର ବେନି ।
ସଙ୍ଗତେ ପତିବ୍ରତା ଘେନି ॥ ୧୭୪
ସେ ହିମବନ୍ତର ଦକ୍ଷିଣେ ।
ଋଷି ଆଶ୍ରମ ଘୋରବନେ ॥ ୧୭୫
ଯେ ସପ୍ତସ୍ରୋତ ସୁରନଦୀ ।
ଭରତଖଣ୍ଡେ ଯେ ପ୍ରସିଦ୍ଧି ॥ ୧୭୬
ସେ ଜଳେ ନିତ୍ୟେ କରି ସ୍ନାନ ।
ଅନଳେ କରି ହୋମଦାନ ॥ ୧୭୭
କେବଳ ଜଳ-ଗ୍ରାସ ଭକ୍ଷି ।
ଶରୀରେ ଜୀବଆତ୍ମା ରଖି ॥ ୧୭୮
ବିଗତରାଗ ଇନ୍ଦ୍ରିଗଣେ ।
ପ୍ରଣବେ ନିଃଶ୍ୱାସ ଧାରଣେ ॥ ୧୭୯
ଦୃଢ଼ ଆସନେ ବସି ଧୀରେ ।
ଷଡ଼ ଇନ୍ଦ୍ରିୟ ପରିହରେ ॥ ୧୮୦
ସର୍ବ ବିଷୟ ରସ ତେଜି ।
ହରି ଚରଣ ଭାବେ ଭଜି ॥ ୧୮୧
ମନ ଛଡ଼ାଇ ତିନିଗୁଣେ ।
ସମାଧି ଗୋବିନ୍ଦ ଚରଣେ ॥ ୧୮୨
ବିଜ୍ଞାନ ଆତ୍ମା ଜ୍ଞାନେ ଭରି ।
ଜୀବ ପରମ ଏକ କରି ॥ ୧୮୩

Dr. Sudhanshu Sekhar Mishra

ପ୍ରବେଶି ଅନାହତ ପୁରେ ।
ଗୋବିନ୍ଦ ନାମ ଧରି ଧୀରେ ॥ ୧୮୪
ଗଗନେ ଗମନ ପ୍ରବେଶ ।
କି ଅବା ରହେ ଅବଶେଷ ॥ ୧୮୫
ତ୍ରିଗୁଣ ମାୟା ନାଶ କରି ।
ବସଇ ଇନ୍ଦ୍ରିୟ ସଂହରି ॥ ୧୮୬
ସର୍ବବିଷୟ ଯୋଗବଳେ ।
ନିବାରି ଆସନ ନିଶ୍ଚଳେ ॥ ୧୮୭
ନିଶ୍ଚଳ ସ୍ଥାଣୁ ପ୍ରାୟ ଲକ୍ଷି ।
କେ ଅବା ତାରେ ବିଘ୍ନ ଇଛି ॥ ୧୮୮
ଆଜହୁଁ ପଦିନ ଅନ୍ତେ ।
ପ୍ରାଣ ଛାଡ଼ିବେ ଯୋଗପଥେ ॥ ୧୮୯

ରଜନୀ କାଳେ ବୃକ୍ଷମୂଳେ ।
ପବନ ଯୋଗେ ଦାବାନଳେ ॥ ୧୯୦
ଦହନ ହୋଇବ ଶରୀର ।
ତା ପତ୍ନୀ ଥିବ ଯେ ବାହାର ॥ ୧୯୧
ତକ୍ଷଣେ ସ୍ୱାମୀ ଧରି କୋଳେ ।
ଦହନ ହୋଇବ ଅନଳେ ॥ ୧୯୨
ତା ଦେଖି ବିଦୁର ଶରୀର ।
ହରଷ ଶୋକରେ କାତର ॥ ୧୯୩
ହୃଦେ ସୁମରି ନରହରି ।
ବେଗେ ସେ ବନୁ ଅପସରି ॥ ୧୯୪
ତୀର୍ଥ ସେବନେ ଆଗମନ ।
କରିବ ଶୁଣ ହେ ରାଜନ ॥ ୧୯୫

ଏମନ୍ତେ ରାଜା ଆଗେ କହି ।
ତୁମ୍ବୁରୁ ତୁଲେ ବୀଣା ବାଇ ॥ ୧୯୬
ଆକାଶ ମାର୍ଗେ ଗଲେ ମୁନି ।
ଧର୍ମନନ୍ଦନ ତାହା ଶୁଣି ॥ ୧୯୭
ତତ୍ତ୍ୱବଚନ ହୃଦେ ଧରି ।
ସର୍ବ ସଂଶୟ ଦୂର କରି ॥ ୧୯୮
ରାଜ୍ୟ ପାଳନେ ଦୃଢ଼ ଚିତ୍ତ ।
କହଇ ଦାସ ଜଗନ୍ନାଥ ॥ ୧୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ନାମ ତ୍ରୟୋଦଶୋଽଧ୍ୟାୟଃ ।

## ଚତୁର୍ଦ୍ଦଶ ଅଧ୍ୟାୟ

### ସୂତ ଉବାଚ

ଅର୍ଜୁନ ରାଜାର ବଚନେ ।
ଗଲା ଯେ ଦ୍ୱାରକା ଭୁବନେ ॥ ୧
ବନ୍ଧୁବାନ୍ଧବ ଦୃଷ୍ଟି ଆଶେ ।
ସ୍ନେହ ଜଡ଼ିତ ମୋହପାଶେ ॥ ୨
ମାୟା ମନୁଷ୍ୟ ରୂପେ ହରି ।
ଛଦ୍ରମେ ଗୃହବାସ କରି ॥ ୩
ସଂସାର ଯାର ଖେଳଘର ।
ବ୍ରହ୍ମାଶଙ୍କରେ ଅଗୋଚର ॥ ୪
ବିଚାର ତାର ଜାଣିବାରେ ।
ମିଳିଲେ ଦ୍ୱାରକା ନଗରେ ॥ ୫
କେତେହେଁ ଦିନ ତହିଁ ରହି ।
କୃଷ୍ଣର ପଦେ ଚିତ୍ତ ଦେଇ ॥ ୬
ଏମନ୍ତେ ଗଲା ମାସ କେତେ ।
ଚଞ୍ଚଳ ଯୁଧିଷ୍ଠିର ଚିତ୍ତେ ॥ ୭
ଅର୍ଜୁନ ନ ମିଳିଲା ପାଶେ ।
ଘୋର ଅଦ୍‌ଭୁତ ଦେଖି ତ୍ରାସେ ॥ ୮
କାଳର ଗତି ବିପରୀତ ।
ଅଧର୍ମେ ପ୍ରାଣୀଙ୍କର ଚିତ୍ତ ॥ ୯

ପାପ ଆଚାର କଲେ ଦମ୍ଭେ ।
ଯନ୍ତ୍ରିତ କାମ କ୍ରୋଧ ଲୋଭେ ॥ ୧୦
ମିତ୍ର ସୁହୃଦ ଶଠମତି ।
ପିତାମାତା ଯେ ଭ୍ରାତା ଜ୍ଞାତି ॥ ୧୧
ସ୍ୱାମୀ ଭାରିଯା ପୁତ୍ର ମେଳେ ।
ଧ୍ୱନି ସେ ଉଠଇ କନ୍ଦଳେ ॥ ୧୨
ନିରତେ ଅରିଷ୍ଟ-ସୂଚକ ।
ପ୍ରକାଶ ହୋଇଲା ଅନେକ ॥ ୧୩
ପାପ ପ୍ରକୃତି ପ୍ରାଣୀଙ୍କର ।
ଦେଖି ଚକିତ ନୃପବର ॥ ୧୪
ଭୀମସେନକୁ ରାଇ ପାଶେ ।
କହନ୍ତି ଆମ୍ଭର ବିଶ୍ୱାସେ ॥ ୧୫

### ଯୁଧିଷ୍ଠିର ଉବାଚ

ଅର୍ଜୁନ ଦ୍ୱାରକା ଭୁବନେ ।
ଗଲା ବାନ୍ଧବ ଦରଶନେ ॥ ୧୬
କୃଷ୍ଣ ମହିମା କୃଷ୍ଣସଙ୍ଗେ ।
ଜାଣିବା ପାଇଁ ମନରଙ୍ଗେ ॥ ୧୭
ଏବେ ସପତ ମାସ ଗଲା ।
ତେବେ ହେଁ ଅର୍ଜୁନ ନଇଲା ॥ ୧୮

କିବା କେବଣ ବିପରୀତ ।
ତେଣୁ ଚଞ୍ଚଳ ମୋର ଚିତ୍ତ ॥ ୧୯
କି ହେତୁ ମୋର ପାଶ ଛାଡ଼ି ।
ଅର୍ଜୁନ ରହେ ଲୋଭବଢ଼ି ॥ ୨୦
ଏହାତ ଜାଣି ନ ପାରଇ ।
ଭୟେ ବ୍ୟାକୁଳ ମୋର ଦେହୀ ॥ ୨୧
ନାରଦ କହିଗଲେ ମୋତେ ।
ସେ କାଳ ହେଲା ବା ପ୍ରାପତେ ॥ ୨୨
କ୍ରୀଡ଼ା ଶରୀରର ଉଚ୍ଛନ୍ନ ।
କି ବା ଇଛିଲେ ଭଗବାନ ॥ ୨୩
ହରି ସେନେହ ଅପ୍ରମାଦେ ।
ମୁଁ ଯେ ବସିଲି ରାଜପଦେ ॥ ୨୪
ଦାରା ସମ୍ପଦ ପ୍ରାଣ ମୋର ।
ସର୍ବ ମଙ୍ଗଳ ଦାମୋଦର ॥ ୨୫
ସକଳ ରାଜା ମୋର ପାଦେ ।
ଖଟନ୍ତି ଯାହାର ପ୍ରସାଦେ ॥ ୨୬
ତାହାର ଭଲେ ଭଲ ମୋର ।
ସେ ହରି ଶରଣ-ସୋଦର ॥ ୨୭
ଦେଖ ପ୍ରତ୍ୟକ୍ଷେ ବୃକୋଦର ।
ଦିଶ ଆକାଶ ଅନ୍ଧକାର ॥ ୨୮

Dr. Sudhanshu Sekhar Mishra

ତ୍ରିବିଧ ଉତ୍ପାତ ଗଗନେ ।
ତେଣୁ ସଂଶୟ ମୋର ମନେ ॥ ୨୯
ଭୂମି ଆକାଶ ପ୍ରାଣୀମାନ ।
ଭୟେ କମ୍ପନ୍ତି ଛନ ଛନ ॥ ୩୦
ମୋହର ମନ ବୁଦ୍ଧି ଚିତ୍ତେ ।
କମ୍ପେ କଦଳୀ ଯେହ୍ନେ ବାତେ ॥ ୩୧
ଉରୁ ଲୋଚନ ବାହୁମାନ ।
ବାମେ କମ୍ପନ୍ତି ଘନ ଘନ ॥ ୩୨
ଭୟେ କମ୍ପଇ ମୋ ଶରୀର ।
ଦେଖ ପ୍ରତ୍ୟକ୍ଷେ ବୃକୋଦର ॥ ୩୩
ଏ ରିଷ୍ଟ ସୂଚକ ସ୍ୱଭାବ ।
ଏ ସେ ନିକଟେ ଦୁଃଖ ଦେବ ॥ ୩୪
ରବି ଉଦୟ କାଳେ ଆସି ।
ଶୃଗାଳ ଯୂଥେ-ଯୂଥେ ବସି ॥ ୩୫
ପୂର୍ବଦିଗକୁ ମୁଖ କରି ।
ବଦନୁ ଅନଳ ଉଦ୍‌ଗାରି ॥ ୩୬
କରନ୍ତି ଭୟଙ୍କର ନାଦ ।
ଏ ସେ ସୂଚକ ପରମାଦ ॥ ୩୭
କୁକୁର ମୋର ମୁଖ ଚାହିଁ ।
ନିର୍ଭୟେ ରୋଦନ କରଇ ॥ ୩୮
ଶୃଗାଳେ ମୋର ବାମଭାଗେ ।
ବେଗେ ପଳାନ୍ତି ଦକ୍ଷମାର୍ଗେ ॥ ୩୯
ଆବର ଶୁଭପଶୁ ଯେତେ ।
ମୋତେ ଭ୍ରମନ୍ତି ବିପରୀତେ ॥ ୪୦
ଏ ମୋର ଗଜ ଅଶ୍ୱ ଯେତେ ।
ମୋତେ ଚାହାନ୍ତି ଅଶ୍ରୁନେତ୍ରେ ॥ ୪୧
ଯମର ଦୂତ ପ୍ରାୟେ ଆସି ।
ଉଲ୍ଲୂକେ ମୋର ଆଗେ ବସି ॥ ୪୨
ଶବଦେ କମ୍ପାନ୍ତି ମେଦିନୀ ।
ମୋର ଚାହାନ୍ତେ ନୋହେ ତୁନି ॥ ୪୩
ପ୍ରତି ଉଲ୍ଲୂକ ମୁଖରାବେ ।
ରାବଇ ଭୟଙ୍କର ଭାବେ ॥ ୪୪
ଏହାଙ୍କ ରାବେ ଶୂନ୍ୟ ମହୀ ।
ପ୍ରଜାଏ ନ ରହିବେ କେହି ॥ ୪୫
ଦେଖ ଏ ଧୂମ ଦଶଦିଶେ ।
ଅନ୍ଧାର ପ୍ରାୟେ ମହୀ ଦିଶେ ॥ ୪୬

ପର୍ବତ ତୁଳେ ବସୁନ୍ଧରୀ ।
କମ୍ପଇ ଘୋରନାଦ କରି ॥ ୪୭
ନିର୍ମେଘେ ନିର୍ଘାତ ଶୁଭଇ ।
ବିଜୁଳୀ ତେଜ ଝଟକଇ ॥ ୪୮
ବାୟୁ ବହଇ ଖରତର ।
ଧୂଳିରେ ଦିଗ ଅନ୍ଧକାର ॥ ୪୯
ରୁଧିର ବରଷନ୍ତି ମେଘେ ।
ଆମିଷ ଗନ୍ଧ ସର୍ବଦିଗେ ॥ ୫୦
ସୂର୍ଯ୍ୟର ଦେହେ ନାହିଁ ତେଜ ।
ଦେଖ ଆକାଶେ ଗ୍ରହଯୁଝ ॥ ୫୧
ଦିଗେ ଦିଶନ୍ତି ଭୂତଗଣେ ।
ଯେହ୍ନେ ପୂରିତ ଅଗ୍ନିବାଣେ ॥ ୫୨
କ୍ଷୁଭିତ ଦିଶେ ନଦୀନଦ ।
କରନ୍ତି ସିନ୍ଧୁପ୍ରାୟେ ନାଦ ॥ ୫୩
ଜନ୍ତୁଙ୍କ ମନ ସେହିମତେ ।
ଅଦ୍‌ଭୁତ ପୂରିତ ଜଗତେ ॥ ୫୪
ଅନଳ ଲିଭେ ଘୃତଧାରେ ।
କାଳ କି ପ୍ରବେଶ ସଂସାରେ ॥ ୫୫
ବତ୍ସା ନ କରେ କ୍ଷୀରପାନ ।
ଗାବ ନ ଦ୍ୟନ୍ତି କ୍ଷୀରଦାନ ॥ ୫୬
ତୃଣ ନ ଚରି ଅଶ୍ରୁମୁଖେ ।
ବୃଷଭ ବୁଲେ ମନଦୁଃଖେ ॥ ୫୭
ହରଷେ ନ କରନ୍ତି ନାଦ ।
ଦେଖ ଅଦ୍‌ଭୁତ ପରମାଦ ॥ ୫୮
ଦେବତା ପ୍ରତିମା ଚଳେ ।
ରୋଦନ୍ତି ତନୁ-ଘର୍ମ-ଜଳେ ॥ ୫୯
ଏ ଜନପଦ ଗ୍ରାମମାନ ।
ନଗର ଆବର ଉଦ୍ୟାନ ॥ ୬୦
ବନ ଆଶ୍ରମେ ଯେତେ ଜନେ ।
ମୁହିଁ ଯା ଦେଖଇ ନୟନେ ॥ ୬୧
ସର୍ବେ ଦିଶନ୍ତି ହତଶିରୀ ।
ଚଳ ଚଳ ବନଗିରି ॥ ୬୨
ବାହ୍ୟ ଅନ୍ତର ସର୍ବ ଚାହିଁ ।
ମୁହିଁ ଏମନ୍ତ ବିଚାରଇ ॥ ୬୩
ଶ୍ରୀକୃଷ୍ଣ ପାଦ ଲାଗି ମହୀ ।
ଅତି ସୁନ୍ଦର ବିରାଜଇ ॥ ୬୪

ସେ ପାଦ କିବା ଶୂନ୍ୟେ ଗଲା ।
ଅବନୀ ଏମନ୍ତ ଦିଶିଲା ॥ ୬୫

ସୂତ ଉବାଚ

ଏମନ୍ତ କହୁଁ ଭୀମ ଆଗେ ।
ଧର୍ମନନ୍ଦନ ଉଦବେଗେ ॥ ୬୬
ଭୟେ କମ୍ପନ୍ତି ଛନ ଛନ ।
ତକ୍ଷଣେ ମିଳିଲା ଅର୍ଜୁନ ॥ ୬୭
ରାଜା ଚରଣ ତଳେ ପଡ଼ି ।
ଅଜ୍ଞାନେ ନମସ୍କାର ହୁଡ଼ି ॥ ୬୮
ଲୋଚନୁ ବହେ ଅଶ୍ରୁଜଳ ।
ଦେହେ ବ୍ୟାପିତ ଶ୍ରମଝାଳ ॥ ୬୯
ଅର୍ଜୁନ ଦେଖି ଧର୍ମସୁତ ।
ତକ୍ଷଣେ ଛାଡ଼ି ଭୀମହସ୍ତ ॥ ୭୦
ନିସ୍ତେଜ ଦେଖି ତାର ଗାତ୍ର ।
ବ୍ୟାକୁଳେ ହୃଦୟ କମ୍ପିତ ॥ ୭୧
ବନ୍ଧୁ-ସୁହୃଦ ମଧ୍ୟେ ଥାଇ ।
ପୁଚ୍ଛନ୍ତି ଅର୍ଜୁନକୁ ଚାହିଁ ॥ ୭୨
ନାରଦ ବଚନ ସୁମରି ।
ଅନ୍ତରେ ଚିନ୍ତି ନରହରି ॥ ୭୩
ଅର୍ଜୁନ ମୁଖ ଚାହିଁ ଭଣି ।
ଛନ୍ନ ବଦନେ ନୃପମଣି ॥ ୭୪

ଯୁଧିଷ୍ଠିର ଉବାଚ

ଶୁଣ ଅର୍ଜୁନ ସାବଧାନେ ।
ଦ୍ୱାରକାପୁରେ ବନ୍ଧୁଜନେ ॥ ୭୫
ସୁଖେ ଅଛନ୍ତି ନା ସମସ୍ତେ ।
ଯାଦବବଂଶ ଯେ ସପତେ ॥ ୭୬
ଶୂର ମୋହର ମାତାମହ ।
ସେ ଭଲେ ଅଛନ୍ତି କି କହ ॥ ୭୭
ମାତୁଳ ଅକ୍ରୂରର ତୁଲେ ।
ସ୍ୱଗୃହେ ଅଛନ୍ତି ନା ଭଲେ ॥ ୭୮
ଦେବକୀ ଆଦି ପତ୍ନୀ ଯେତେ ।
ସୁଖେ ଅଛନ୍ତି ନା ସମସ୍ତେ ॥ ୭୯
ଦେବକ ଉଗ୍ରସେନ ଦୁଇ ।
ଭଲେ କି ଛନ୍ତି ବେନିଭାଇ ॥ ୮୦
ଗଦ ସାରଣ ଜୟନ୍ତନ ।
ଏ ଆଦି ମାତୁଳ-ନନ୍ଦନ ॥ ୮୧

Dr. Sudhanshu Sekhar Mishra

ଶାମ୍ବ ସାତ୍ୟକି ହଳଧର ।
କହ କୁଶଳ ତାହାଙ୍କର ॥୮୨
ଯାଦବବଂଶେ ମହାରଥ ।
ପ୍ରଦ୍ୟୁମ୍ନ ରୁକ୍ମିଣୀର ସୁତ ॥୮୩
ତାର କୁମର ଅନିରୁଦ୍ଧ ।
ଅତି ଗମ୍ଭୀର ଶୂର ଯୋଧ ॥୮୪
ସୁଷେଣ ସୁମିତ୍ର ସହିତେ ।
ଭଲେ କି ଛନ୍ତି କୃଷ୍ଣ ସୁତେ ॥୮୫
ଋଷଭ ଆଦି ମହାବୀରେ ।
ସୁଖେ ଅଛନ୍ତି ନା ନଗରେ ॥୮୬
ଗୋବିନ୍ଦ ଅନୁଚର ଯେତେ ।
ସୁଖେ ଅଛନ୍ତି ନା ସମସ୍ତେ ॥୮୭
ସୁନନ୍ଦ ନନ୍ଦ ଆଦି ଯେତେ ।
ଉଦ୍ଧବ ମନ୍ତ୍ରୀର ସମେତେ ॥୮୮
ରାମଗୋବିନ୍ଦ ଭୁଜାଶ୍ରିତେ ।
ସର୍ବେ ଅଛନ୍ତି ଟି କି ସୁସ୍ଥେ ॥୮୯
ନିଶ୍ଚିନ୍ତେ ଭୁବନେ ଅଛନ୍ତି ।
ଆମ୍ଭ କୁଶଳ ପଚାରନ୍ତି ॥୯୦
କରୁଣାସିନ୍ଧୁ ନନ୍ଦବାଳ ।
ବ୍ରହ୍ମଣ୍ୟ ଭକତ-ବତ୍ସଳ ॥୯୧
ବନ୍ଧୁବାନ୍ଧବ ତୁଳେ ବସି ।
ସୁଧର୍ମା ମଧ୍ୟେ ବ୍ରହ୍ମରାଶି ॥୯୨
ଲୋକ-ମଙ୍ଗଳ-କ୍ଷେମ ଅର୍ଥେ ।
ଯାହାର ଜନ୍ମ ଏ ଜଗତେ ॥୯୩
ସେ ହରି ଅଛନ୍ତି ନା ଭଲେ ।
ରୋହିଣୀସୁତ ରାମ ତୁଳେ ॥୯୪
ଯାହାର ଭୁଜ ଆଶ୍ରେ କରି ।
ଯାଦବେ ବିଷ୍ଣୁତେଜ ଧରି ॥୯୫

ମହାପୁରୁଷ ଯୋଗବନ୍ଧେ ।
କ୍ରୀଡ଼ନ୍ତି ପରମ ଆନନ୍ଦେ ॥୯୬
ଯାର ଚରଣେ ସେବା କରି ।
ଷୋଳ ସହସ୍ର କୃଷ୍ଣନାରୀ ॥୯୭
ସତ୍ୟାର ଛଳେ ଇନ୍ଦ୍ର ଜିଣି ।
ନନ୍ଦନବନୁ ଚକ୍ରପାଣି ॥୯୮
ଲୀଳାରେ ଜିଣି ଶଚୀନାଥ ।
ବଳେ ଉପାଡ଼ି ପାରିଜାତ ॥୯୯
ଯାହା ବିଳସେ ଇନ୍ଦ୍ରନାରୀ ।
ସେ ପୁଷ୍ପ ବିଷ୍ଣୁ ତେଜେ ହରି ॥୧୦୦
ସହସ୍ରେ ଶାଖା ପରିମାଣି ।
ନାରୀଙ୍କି ଦେଲେ ଚକ୍ରପାଣି ॥୧୦୧
ଯାହାର ଭୁଜଦଣ୍ଡ ବଳେ ।
ଯଦୁ-ପ୍ରବୀରେ ମହୀତଳେ ॥୧୦୨
ନିର୍ଭୟେ ଜଗତେ ଭ୍ରମନ୍ତି ।
ପାଦେ ସୁଧର୍ମା ଆକ୍ରମନ୍ତି ॥୧୦୩
ହେ ଭ୍ରାତ ଶୁଣ ମହାଭୁଜ ।
ତୁ ମୋତେ ଦିଶୁ ହତବୀର୍ଯ୍ୟ ॥୧୦୪
ଲଭିଲା ବସ୍ତୁ କେଣେ ଗଲା ।
ତୋତେ ଅବଜ୍ଞା କେହୁ କଲା॥୧୦୫
ଚିରପ୍ରବାସେ ଦୁଃଖ ଚିନ୍ତା ।
ତେଣୁ ବଦନ ମଳିନତା ॥୧୦୬
କେବା ଭର୍ତ୍ସନା ଅମଙ୍ଗଳେ ।
ତୋତେ ଶଂପିଲା ବାକ୍ୟବଳେ॥୧୦୭
ଅର୍ଥୀ ପ୍ରାଣୀଙ୍କୁ ଦେବାକଲୁ ।
ମାଗନ୍ତେ କି ଅବା ନ ଦେଲୁ ॥୧୦୮
ବୃଦ୍ଧ ବ୍ରାହ୍ମଣ ନିରମାଖି ।
ସ୍ତିରୀ ବାଳକ ଗୋରୁ ଦୁଃଖୀ ॥ ୧୦୯

ରୋଗ ପୀଡ଼ନ୍ତେ ଯେ ରୋଦନ୍ତି ।
ଯେ ଅବା ଶରଣ ପଶନ୍ତି ॥୧୧୦
ଏହାଙ୍କୁ ଦୟା ବା ନକଲୁ ।
ତେଣୁ ତୁ ଅଶୁଭ ଦିଶିଲୁ ॥୧୧୧
ଅଗମ୍ୟେ କଲୁ ବା ଗମନ ।
କି ବା ହରିଲୁ ସ୍ତିରୀଜନ ॥୧୧୨
ମାର୍ଗେ ଆସନ୍ତେ ତୁ ଚଳେ ।
କେବା ଜିଣିଲା ତୋତେ ବଳେ ॥୧୧୩
ବାଳକ ବୃଦ୍ଧ ନ ଭୁଞ୍ଜାଇ ।
ଅଗ୍ରେ ଭୁଞ୍ଜିଲୁ ଅବା ତୁହି ॥୧୧୪
କି ବା ନିନ୍ଦିତ-କର୍ମ କଲୁ ।
ତେଣୁ ତୁ ଏମନ୍ତ ଦିଶିଲୁ ॥୧୧୫
ଅତିଥି ଭୃତ୍ୟ ଗର୍ଭିନାରୀ ।
କନ୍ୟା ବା ଅଭୋଜନ କରି ॥୧୧୬
କି ବା ତୋ ଜୀବନ ଠାକୁର ।
ଗୋବିନ୍ଦ ହୋଇଲେ ଅନ୍ତର ॥୧୧୭
ତାହାର ଶୂନ୍ୟେ ଶୂନ୍ୟ ତୁହି ।
ଏମନ୍ତ ପ୍ରାୟ ମୁଁ ମଣଇ ॥୧୧୮
ତୋ ମନେ ଦୁଃଖ ଏହା ବିନେ ।
କେବେହେଁ ନ ଘଟେ ମୁଁ ମଣେ॥୧୧୯
ହରିଚରିତ ସୁଧାବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୨୦
କହଇ ଦାସ ଜଗନ୍ନାଥ ।
ପ୍ରଥମ ସ୍କନ୍ଧେ ଭାଗବତ ॥୧୨୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ଯୁଧିଷ୍ଠିରବିତର୍କୋ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚଦଶ ଅଧ୍ୟାୟ

### ସୂତ ଉବାଚ

ଏମନ୍ତ ରାଜାର ବଚନ ।
ଅର୍ଜୁନ ଶୁଣି ଶୋକମନ ।। ୧
ଯେତେ କହିଲେ ଧର୍ମସୁତ ।
ନାନା ଶକୁନ ବିପରୀତ ।। ୨
କୃଷ୍ଣ ବିଯୋଗେ ଖେଦମନ ।
ସ୍ୱଭାବେ ଶୁଖିଛି ବଦନ ।। ୩
ତେଜ ପ୍ରଭାବ ଦୂର ଗଲା ।
ଜୀବନ ଥାଉଁ ଦେହ ମଲା ।। ୪
ଶୋକେ କମ୍ପିତ କଳେବର ।
ବଦନୁ ନ ସ୍ଫୁରେ ଉତ୍ତର ।। ୫
ଲୋଚନେ ଦେଇ ବେନିକର ।
ଶୋକ ସମ୍ଭରି ବୀରବର ।। ୬
ଶୋକେ କୁଣ୍ଠିତ କଣ୍ଠଦ୍ୱାର ।
ବିହ୍ୱଳେ ନ ସ୍ଫୁରେ ଉତ୍ତର ।। ୭
ସଖା ସୁହୃଦ୍ ନନ୍ଦବଳା ।
ସାରଥିପଣେ ରଥେ ଥିଲା ।। ୮
ଏ ଆଦି ଯେତେ କୃଷ୍ଣଗୁଣ ।
ସୁମରି କାନ୍ଦେ ପୁଣପୁଣ ।। ୯
ରାଜାଙ୍କୁ ଚାହିଁ ମନଖେଦେ ।
ବୋଲଇ ଶୋକ ଗଦଗଦେ ।।୧ ୦

### ଅର୍ଜୁନ ଉବାଚ

ସନ୍ଦେଶ ଶୁଣ ନରନାଥ ।
କୃଷ୍ଣେ ମୁଁ ହୋଇଲି ବଞ୍ଚିତ ।।୧ ୧
ମୋର ଜୀବନବନ୍ଧୁ ହରି ।
ତାର ବିଯୋଗେ ହତଶିରୀ ।।୧ ୨
ବିଶୀର୍ଣ୍ଣ ମୋହର ଶରୀର ।
ଦେଖ ପ୍ରତ୍ୟକ୍ଷେ ନୃପବର ।।୧ ୩
ଯେ ତେଜ ପ୍ରତାପ ମୋହର ।
ଦେବ-ଦାନବେ ଅଗୋଚର ।।୧ ୪
ସେ ତେଜ କୃଷ୍ଣ ସଙ୍ଗେ ଗଲା ।
ଜୀବନ ଜୀଉଁ ଜୀଉଁ ମଲା ।।୧ ୫
କୃଷ୍ଣ ବିଯୋଗେ କ୍ଷଣମାତ୍ରେ ।
ଶୋକ ପୂରିତ ନିଜ ଗାତ୍ରେ ।।୧ ୬
ଲୋକେ ଅପ୍ରିୟ ଦରଶନ ।
ଦେଖି କୁଣ୍ଠିତ ମୋର ମନ ।।୧ ୭
ମରଣ କାଳେ ପ୍ରାଣୀ ଯେହ୍ନେ ।
ସମ୍ଭ୍ରମେ କୁଣ୍ଠିତ-ବଚନେ ।।୧ ୮
ଯାହାର ପାଦେ ଆଶ୍ରେକରି ।
ନିଜ ଗାଣ୍ଡୀବ କରେ ଧରି ।।୧ ୯
ଦ୍ରୁପଦ ଗୃହେ ରାଜମେଳେ ।
ଦ୍ରୌପଦୀ ସ୍ୱୟମ୍ବର କାଳେ ।।୨ ୦
ଯେତେ ମିଳିଲେ ରାଜପୁତ୍ରେ ।
କନ୍ୟା ଲଭିବା ଫଳ ଅର୍ଥେ ।।୨ ୧
କନ୍ୟା ଲଭିବା କାଳେ ଗୋଳ ।
ଯେସନେ ଜଳଧି ଉଲ୍ଲୋଳ ।।୨ ୨
ହେଲେ ତାହାଙ୍କ ତେଜ ହରି ।
ଲଭିଲି ଲାଖବିନ୍ଧି ନାରୀ ।।୨ ୩
ଖାଣ୍ଡବବନେ କ୍ରୀଡ଼ାରଙ୍ଗେ ।
କୃଷ୍ଣ ଯେ ଥିଲେ ମୋର ସଙ୍ଗେ ।।୨ ୪
ସେ ବନ ଅଗ୍ନିମୁଖେ ଦେଇ ।
ଲଭିଲି ମାୟାସଭା ମୁହିଁ ।।୨ ୫
ଅମରଗଣ ତୁଲେ ପୁଣି ।
କିଞ୍ଚିତେ ଇନ୍ଦ୍ରତେଜ ଜିଣି ।।୨ ୬
ମୟନିର୍ମିତ ସଭା ଆଣି ।
ଯହିଁ ସକଳ ନୃପମଣି ।।୨ ୭
ତୋହର ଯଜ୍ଞକାଳେ ମିଳି ।
ତୋ ପାଦେ କଲେ ନିଉଛାଳି ।।୨ ୮
ଯାହାର ତୁଲେ ବେନିଭାଇ ।
ଛଦ୍ମେ ବିପ୍ରରୂପ ହୋଇ ।।୨ ୯
ଜରାକୁ ବାହୁଯୁଦ୍ଧେ ଜିଣି ।
ରାଜାଙ୍କୁ ବନ୍ଦୀଘରୁ ଆଣି ।।୩୦
ତୋହର ଯଜ୍ଞ ନିମନ୍ତ୍ରଣେ ।
ତୋତେ ଖଟିଲେ ନୃପଗଣେ ।।୩ ୧
ତୋହର ଯଜ୍ଞସ୍ନାନ କାଳେ ।
ଦ୍ରୌପଦୀ ଦେଖି ତୋର କୋଳେ ।।୩ ୨
ସ୍ୱଭାବେ ନାରୀ ଶିରୋମଣି ।
କବରୀ ବେଶେ ଜନ ଜିଣି ।।୩୩
କପଟପଶା କରି ବାଦେ ।
କୌରବେ ତୋତେ ସଭାମଧ୍ୟେ ।।୩୪
ଜିଣି ପାଞ୍ଚାଳୀ କେଶ ଧରି ।
ବିବସ୍ତ୍ର ସଭାତଳେ କରି ।।୩୫
ଭୟେ ପାଞ୍ଚାଳୀ ସୁମରିଲା ।
ସେବେଳେ ଯେ ହରି ରଖିଲା ।।୩୬
ପୁଣି ଅଜ୍ଞାତ-ବନବାସେ ।
ଦୁର୍ବାସା ଦୁଷ୍ଟଙ୍କ ବିଶ୍ୱାସେ ।।୩୭
ଭୋଜନ ଅନ୍ତେ ଭିକ୍ଷାଅର୍ଥେ ।
ଅଯୁତ ବିପ୍ର ଘେନି ସାଥେ ।।୩୮
ଭୁଞ୍ଜିବା ପାଇଁ ସ୍ନାନ ସାରି ।
ତା ଜାଣି ପ୍ରଭୁ ନରହରି ।।୩୯
ଅତିଥି ରୂପେ ବିଜେ କଲା ।
ଶେଷ ଯେ ଶାକଅନ୍ନ ଥିଲା ।।୪୦
କର ପ୍ରସାରି ତାହା ଖାଇ ।
ମୁନିଙ୍କ ମନମଧ୍ୟେ ଯାଇ ।।୪ ୧
ସନ୍ତୋଷ କଲା ଜଳ ମଧ୍ୟେ ।
ତକ୍ଷଣେ ବ୍ରାହ୍ମଣେ ଆନନ୍ଦେ ।।୪ ୨
ସନ୍ତୋଷେ ନିଜସ୍ଥାନେ ଗଲେ ।
ସେ ଦୁଃଖୁ ଯେ ହରି ରଖିଲେ ।।୪୩
ଯାହାର ତେଜେ ଧନୁ ଟାଣି ।
ବନେ ଜିଣିଲି ଶୂଳପାଣି ।।୪୪
ସନ୍ତୋଷେ ମୋତେ ଉମାକାନ୍ତ ।
ବୋଇଲେ ବରମାଗ ପାର୍ଥ ।।୪୫
ପାର୍ବତୀ ବିଶ୍ୱାସେ ମୋହିତ ।
ବରେ ପାଇଲି ପାଶୁପତ ।।୪୬
ହର ବିଶ୍ୱାସେ ମୋତେ ପୁଣ ।
ପାର୍ବତୀ ଦେଲେ ଅକ୍ଷତୂଣ ।।୪୭
ସେ ବେନିଶସ୍ତ୍ର ପାଇ ବନେ ।
ମିଳିଲି ଇନ୍ଦ୍ରର ଭୁବନେ ।।୪୮
ନର ଶରୀରେ ସୁରଦେଶେ ।
ମିଳିଲି ଯେ ହରି ବିଶ୍ୱାସେ ।।୪୯

Dr. Sudhanshu Sekhar Mishra

ବିଷ୍ଣୁର ତେଜ ଦେଖି ମୋତେ ।
ସର୍ବ ଦେବତା ତୋଷଚିତ୍ତେ ।।୫୦
ବିଚାରି ସର୍ବ ଅନୁମାନେ ।
ବସାଇ ଇନ୍ଦ୍ରର ଆସନେ ।।୫୧
ମୋତେ ପୂଜିଲେ ପୁରସ୍କାରେ ।
ମୁଁ ପୁଣି ରହି ସ୍ୱର୍ଗପୁରେ ।।୫୨
ସର୍ବ ଦେବତାଙ୍କ ବିଶ୍ୱାସ ।
ଅସୁରବଳ କଲି ନାଶ ।।୫୩
ଇନ୍ଦ୍ର ସହିତେ ସର୍ବଦେବେ ।
ମୋତେ ପୂଜିଲେ ଗଉରବେ ।।୫୪
ଯା ତେଜୁ ମୋ ପୁରୁଷକାର ।
ସେ ହରି ମୋତେ କଲା ଦୂର ।।୫୫
ଯେଉଁ ଗୋବିନ୍ଦ ବନ୍ଧୁପଣେ ।
କୁରୁସାଗର-ଘୋରରଣେ ।।୫୬
ତରିଲି ଦୁସ୍ତର-ସାଗର ।
ଦେବ-ମାନବେ ଅଗୋଚର ।।୫୭
ସଂଗ୍ରାମେ ରିପୁବଳ ଜିଣି ।
ଅନେକ ଧନରତ୍ନ ଆଣି ।।୫୮
ରତ୍ନ ମୁକୁଟ ମଣିପରେ ।
ଥିଲା ଯେ ରାଜାଙ୍କର ଶିରେ ।।୫୯
ତାହା ହରିଲି ବାହୁବଳେ ।
ନିର୍ଭୟେ ଅବନୀ-ମଣ୍ଡଳେ ।।୬୦
ବିରାଟ ଗୋଧନ ହରଣେ ।
ମହାଦୁସ୍ତର ଘୋରରଣେ ।।୬୧
ଗୋଧନ ନେଲି ନିଜପୁର ।
ସେ ହରି କଲା ମୋତେ ଦୂର ।।୬୨
ଯେ ହରି ମୋର ରଥେ ବସି ।
ଅଗାଧ-କୁରୁବଳେ ପଶି ।।୬୩
ଭୀଷ୍ମ ସବିତାସୁତ କୃପ ।
ଶଲ୍ୟ ସହିତେ ଯେତେ ନୃପ ।।୬୪
ତାହାଙ୍କ ଅଗ୍ରେ ରଥ କରି ।
ଅଶ୍ୱ ରସନା କରେ ଧରି ।।୬୫
ରିପୁ ଆୟୁଷ ସଙ୍ଗେ ମନ ।
ହରିଲା ନନ୍ଦର ନନ୍ଦନ ।।୬୬
ଭୀଷ୍ମାଦି ଥିଲେ ଯେତେ ବୀର ।
ସେ ଗୁରୁ ଦ୍ରୋଣଙ୍କ ସଙ୍ଗର ।।୬୭

ଅମୋଘ ଅସ୍ତ୍ର ବରଷନ୍ତି ।
ସେ ମୋର ହୃଦେ ନ ଭେଦନ୍ତି ।।୬୮
ଯେସନେ ନୃସିଂହର ପାଦ ।
ଆଶ୍ରେ ତରିଲା ପ୍ରହଲାଦ ।।୬୯
ଜୟଦ୍ରଥର ବଧ କାଳେ ।
ଅଶ୍ୱେ ତୃଷିତ ମୋର ହେଲେ ।।୭୦
ତାହାଙ୍କୁ ଜଳ ଦେବା ଅର୍ଥେ ।
ସଂଗ୍ରାମେ ହେଲି ଭୂମିଗତେ ।।୭୧
ମହାରଥୀଙ୍କ ଚିତ୍ତେ ଯାଇ ।
ପ୍ରବେଶ ହେଲେ ଭାବଗ୍ରାହୀ ।।୭୨
ନୟନେ ମୋ ରୂପ ଦେଖନ୍ତି ।
ଦେଖନ୍ତେ କେହି ନ ମାରନ୍ତି ।।୭୩
ଯାହାର ପାଦପଦ୍ମ ନିତ୍ୟେ ।
ଜ୍ଞାନୀଏ ଭାବୁଥାନ୍ତି ଚିତ୍ତେ ।।୭୪
କୁମତି-ବଳେ ନ ବିଚାରି ।
ତାହାଙ୍କୁ ସାରଥି ମୁଁ କରି ।।୭୫
ସେ କୃଷ୍ଣ ବସି ମୋର ପାଶେ ।
ଶୋଭନ-ସ୍ମିତ-ମନ୍ଦହାସେ ।।୭୬
ଆନନ୍ଦେ କରେ କର ଧରି ।
ବିବିଧ ପରିହାସ କରି ।।୭୭
ହେ ପାର୍ଥ ଅର୍ଜୁନ ହେ ସଖେ ।
କୁରୁନନ୍ଦନ ବୋଲି ଡାକେ ।।୭୮
ତାହାର ଗୁଣକର୍ମ ଯେତେ ।
ସୁମରି କ୍ଷୋଭିତ ମୋ ଚିତ୍ତେ ।।୭୯
ଶୟନ-ଆସନ-ଭୋଜନେ ।
ମୁହିଁ ଯେ ତାର ସନ୍ନିଧାନେ ।।୮୦
ସଙ୍ଗେ ବିହରି ସଖାପରି ।
ତା କରେ କର ଧରାଧରି ।।୮୧
ମୁଁ ପାପୀ କୁମତି ମୋହର ।
କେବେ ବା କରେ ତିରସ୍କାର ।।୮୨
ସେ ଅପରାଧ ମୋର ହରି ।
ନ ଘେନେ ମୋରେ ସ୍ନେହ କରି ।।୮୩
ସଖାର ସଖା ଯେହ୍ନେ ସହେ ।
ପିତାମାତା ବା ଯେହ୍ନେ ପୋଏ ।।୮୪
ନୃପେନ୍ଦ୍ର ଶୁଣ ମୋର ବାଣୀ ।
ମୋତେ ମୁଞ୍ଚିଲେ ଚକ୍ରପାଣି ।।୮୫

ମୋହର ପ୍ରିୟସଖା ହରି ।
ହୃଦୟ ଗଲା ଶୂନ୍ୟ କରି ।।୮୬
ଦେଖ ମୋହର ବୀରପଣ ।
ମାର୍ଗେ ଗୋବିନ୍ଦ-ପତ୍ନୀଗଣ ।।୮୭
ଆବୋରି ନ ପାରିଲି ବଳେ ।
ତକ୍ଷଣେ ଲୁଚିଲେ ଗୋପାଳେ ।।୮୮
ସେହି ଗାଣ୍ଡୀବଧନୁ ମୋର ।
ସେହି ଅକ୍ଷୟ ତୂଣଶର ।।୮୯
ସେହି ବିମାନ ଅଶ୍ୱ ଦେଖ ।
କ୍ଷଣକେ ହୋଇଲି ନିରେଖ ।।୯୦
ଯାହାର ତେଜେ ନୃପଗଣେ ।
ନମନ୍ତି ମୋହର ଚରଣେ ।।୯୧
ତାର ବିୟୋଗେ ତନୁ କ୍ଷୀଣ ।
ଦିଗେ ଦିଶନ୍ତି ମୋତେ ଶୂନ୍ୟ ।।୯୨
ସେ ପ୍ରାଣବାନ୍ଧବ ବିୟୋଗ ।
ଭସ୍ମେ ଯେସନେ ହବିର୍ଭାଗ ।।୯୩
କୁହୁକ ବସ୍ତୁ ମୁଷ୍ଟିଗତେ ।
ପ୍ରତ୍ୟକ୍ଷ ନୋହେ ଦୃଷ୍ଟିମାତ୍ରେ ।।୯୪
ଉଷର ଭୂମିରେ ରୋପିତ ।
ବୀଜର ପ୍ରାୟେ ମୁଁ ନିହତ ।।୯୫
ଶୁଣ ହେ ନୃପ ଶୁଦ୍ଧଚେତା ।
ବନ୍ଧୁବାନ୍ଧବଙ୍କ ବାରତା ।।୯୬
ଅପରେ ଯେତେ ଯଦୁକୁଳେ ।
ନିଶ୍ଚିନ୍ତେ ଥିଲେ କୁଶସ୍ଥଳେ ।।୯୭
ବ୍ରାହ୍ମଣଶାପ ଅବସାନେ ।
ମିଳିଲେ ଏରକାର ବନେ ।।୯୮
ଚାରୁଣୀମଦ୍ୟ କଲେ ପାନ ।
ଭୋଳେ ହୋଇଲେ ହତଜ୍ଞାନ ।।୯୯
ଏରକା ମୁଷ୍ଟି କରେ ଧରି ।
ଏକ ଆରେକ ମରାମରି ।।୧୦୦
ଆମ୍ଭାକୁ ନ ଜାଣନ୍ତି ଭୋଳେ ।
ନାଶିଲେ ବ୍ରହ୍ମଶାପ ଫଳେ ।।୧୦୧
ଏଣୁ ଯାଦବ ବଂଶନାଶ ।
ରହିଲେ ଚାରିପାଞ୍ଚ ଶେଷ ।।୧୦୨
ଈଶ୍ୱର କ୍ରୀଡ଼ା ଏ ଜଗତ ।
ପ୍ରାଣୀଏ ଈଶ୍ୱର ଆୟତ୍ତ ।।୧୦୩

Dr. Sudhanshu Sekhar Mishra

ମାରନ୍ତି ଏକୁ ଆର ବଳେ ।
ଜଳ ଜନ୍ତୁଏ ଯେହ୍ନେ ଜଳେ ।।୧୦୪
ନିର୍ବଳ ଜନ୍ତୁଙ୍କୁ ଗିଳନ୍ତି ।
ନିଜ ମରଣ ନ ଜାଣନ୍ତି ।।୧୦୫
ଦୁର୍ବଳ-ପ୍ରାଣୀଙ୍କି ସବଳେ ।
ଦର୍ପ ହରନ୍ତି ଅବହେଳେ ।।୧୦୬
ଏହି ପ୍ରକାରେ ଯଦୁବଳେ ।
କଳି ଭିଆଇ ମଦ୍ୟଭୋଳେ ।।୧୦୭
ଯଦୁଙ୍କୁ ଯଦୁବଳେ ମାରି ।
ଭୂମିର ଭାରା ଅପହରି ।।୧୦୮
ଗୋବିନ୍ଦ କଲେ କର୍ମ ଯେତେ ।
ଲୀଳା ବିହାରେ ଏ ଜଗତେ ।।୧୦୯
ତା ଦେଶ-କାଳ-ଅର୍ଥଯୁକ୍ତ ।
ଶୀତଳବାଣୀ ଜନହିତ ।।୧୧୦
ସେ ବାଣୀ ସ୍ମରି ମୋର ଚିତ୍ତେ ।
ପ୍ରାଣ ଦହଇ ଅନ୍ତର୍ଗତେ ।।୧୧୧

### ସୂତ ଉବାଚ

ଏମନ୍ତେ ପାଣ୍ଡବ ଅର୍ଜୁନ ।
କୃଷ୍ଣ ଚରଣେ ଦେଇ ମନ ।।୧୧୨
ସୁହୃଦଭାବେ ଗାଢ଼େ ଚିନ୍ତି ।
ଲଭିଲା ସୁବିମଳ ଗତି ।।୧୧୩
କୃଷ୍ଣ ଚରଣ ଅନୁଧ୍ୟାନେ ।
ଚିତ୍ତ ନିର୍ମଳ ଶାନ୍ତି ଜ୍ଞାନେ ।।୧୧୪
ଥିଲା ଯେ ଅଶେଷ କଳୁଷ ।
ଭକ୍ତିମନ୍ତ୍ରେ ଗଲା ନାଶ ।।୧୧୫
ନିର୍ମଳବୁଦ୍ଧି ପ୍ରକାଶିଲା ।
ଗୋବିନ୍ଦ ବାକ୍ୟ ସୁମରିଲା ।।୧୧୬
ସଂଗ୍ରାମ ମଧ୍ୟେ ରଥେ ରହି ।
ଯେ ଗୀତା କୃଷ୍ଣଥିଲେ କହି ।।୧୧୭
ତାହା ସୁମରି ଶୁଦ୍ଧମନେ ।
ଶୋକ ଛାଡ଼ିଲା କୃଷ୍ଣ ଧ୍ୟାନେ ।।୧୧୮
ପ୍ରକୃତି ଲୀନେ ଗୁଣ ଲିଙ୍ଗ ।
ସ୍ଥୂଳଶରୀର ସଙ୍ଗଭଙ୍ଗ ।।୧୧୯
ତେବେ ଦ୍ୱଇତ ଭାବ ଯାଇ ।
ଶୋକ-ସମ୍ଭ୍ରମ ଆଉ କାହିଁ ।।୧୨୦

ଆପଣା ଅଂଶ ବଂଶ ହରି ।
ଶ୍ରୀକୃଷ୍ଣ ଗଲେ ନିଜପୁରୀ ।।୧୨୧
ଅର୍ଜୁନ ମୁଖୁ ଏହା ଶୁଣି ।
ନିର୍ବେଦ ନୃପ-ଚୂଡ଼ାମଣି ।।୧୨୨
ଆତ୍ମା ନିବୃଣ୍ଣ ଜ୍ଞାନମାର୍ଗେ ।
ନିଶ୍ଚୟ କଲେ ସ୍ୱର୍ଗମାର୍ଗେ ।।୧୨୩
କୁନ୍ତୀ ଯେ ନିଜପୁରେ ଥିଲା ।
ଶ୍ରୀକୃଷ୍ଣ ବିଯୋଗ ଶୁଣିଲା ।।୧୨୪
ତକ୍ଷଣେ ପାଇ ଦିବ୍ୟଜ୍ଞାନ ।
ଗୋବିନ୍ଦ ପାଦେ ହେଲା ଲୀନ ।।୧୨୫
ଯେ ଦେହ ଭୂମିଭାର ନାଶେ ।
ଧରି ଜନ୍ମିଲେ ଯଦୁବଂଶେ ।।୧୨୬
ଭାରା ନିବାରି ତା ସଂହରେ ।
କଣ୍ଟକ ଯେହ୍ନେ କଣ୍ଟକରେ ।।୧୨୭
ମତ୍ସ୍ୟାଦି ରୂପକୁ ଯେମନ୍ତେ ।
ଧରି ଛାଡ଼ଇ କାର୍ଯ୍ୟଅନ୍ତେ ।।୧୨୮
ଯେସନେ ନଟରୂପ ଧରେ ।
କ୍ଷଣକୁ କ୍ଷଣ ଆନ କରେ ।।୧୨୯
ଭୂଭାର କ୍ଷୟ ଯେ ଦେହେଣ ।
ସେ ଦେହ କଲେ ଅନ୍ତର୍ଦ୍ଧାନ ।।୧୩୦
ଯେବେ ମୁକୁନ୍ଦ ମହୀତେଜି ।
ସ୍ୱଭାବେ ନିଜଧାମ ଭଜି ।।୧୩୧
ଯାର ମହିମା ନରଲୋକେ ।
ସାଧବେ ଏକକୁ ଆରକେ ।।୧୩୨
କହି ତରିଲେ ଭବଜଳୁ ।
କଳିଂଆଗମ ସେହି ବେଳୁ ।।୧୩୩
ସକଳ ଦୋଷ ହେତୁ ଯହିଁ ।
ବେଦ-ପୁରାଣ-ମାର୍ଗେ କହି ।।୧୩୪
ମିଳିଲା ନରଲୋକେ ଆସି ।
ତକ୍ଷଣେ ଗ୍ରାମେଗ୍ରାମେ ପଶି ।।୧୩୫
ସକଳ ପୁରେ ପ୍ରାଣୀ ଚିତ୍ତେ ।
ଲୋଭ କପଟ ଦମ୍ଭମତେ ।।୧୩୬
ପ୍ରାଣୀ ହିଂସନ ଧର୍ମନାଶେ ।
ପ୍ରାଣୀୟେ କଳିର ବିଶ୍ୱାସେ ।।୧୩୭
ନିଷ୍ଠୁର ଚିତ୍ତ ସର୍ବଜନ ।
ତା ଦେଖି ଧର୍ମର ନନ୍ଦନ ।।୧୩୮

ସ୍ୱର୍ଗ-ଗମନ ମନେ ଗୁଣି ।
ତକ୍ଷଣେ ପରୀକ୍ଷିତ ଆଣି ।।୧୩୯
ଉତ୍ତମ ରାଜଚିହ୍ନ ଦେଖି ।
ସକଳ ଗୁଣ ଉପଲକ୍ଷି ।।୧୪୦
ଆତ୍ମାର ତୁଲ୍ୟପ୍ରାୟ ମଣି ।
ଅନେକ ତୀର୍ଥଜଳ ଆଣି ।।୧୪୧
ହସ୍ତିନାପୁର ନରଲୋକେ ।
ସ୍ଥାପିଲେ ନୃପ ଅଭିଷେକେ ।।୧୪୨
ଯାଦବବଂଶେ ଶେଷଥିଲା ।
ବଜ୍ର ଯେ ଅନିରୁଦ୍ଧବଳା ।।୧୪୩
ମଥୁରାପୁରେ ଧର୍ମଚାଟେ ।
ସ୍ଥାପିଲେ ଶୂରସେନପାଟେ ।।୧୪୪
ସକଳ ଭୋଗ ଦୂରକରି ।
ଶରୀର-ବନ୍ଧ ପରିହରି ।।୧୪୫
ଆତ୍ମାରେ ଆତ୍ମା-ଅଗ୍ନି ଜାଳି ।
ସର୍ବ-ବିଷୟ-ଘୃତ ଢାଳି ।।୧୪୬
ଜ୍ଞାନଗୋଚରେ ଅଗ୍ନିପାନ ।
ତକ୍ଷଣେ ଧର୍ମର ନନ୍ଦନ ।।୧୪୭
ସର୍ବ ସମ୍ପଦ କରି ଦୂର ।
ନିର୍ମଳ-ରାଗ-ଅହଙ୍କାର ।।୧୪୮
ଅଶେଷ କର୍ମପାଶ ଛେଦି ।
ଯୋଗେ ଶରୀରରନ୍ଧ୍ର ରୁନ୍ଧି ।।୧୪୯
ବଚନ ମନେ ଲୀନ କରି ।
ବାୟୁ ଧାରଣେ ମନ ଧରି ।।୧୫୦
ବାୟୁ ଧାରଣ ପ୍ରାଣ ଯେହି ।
ଅପାନେ ତାହାକୁ ମିଶାଇ ।।୧୫୧
ଅପାନ ଉତ୍ସର୍ଗ ସହିତ ।
ଯେ ମାର୍ଗେ ହୋଏ ଅନ୍ତର୍ଗତ ।।୧୫୨
ସେ ମୃତ୍ୟୁଦେବକୁ ପଞ୍ଚତ୍ୱେ ।
ପଞ୍ଚକୁ ପଞ୍ଚରେ ଏକତ୍ୱେ ।।୧୫୩
ପୁଣି ପଞ୍ଚକୁ ତିନିଗୁଣେ ।
ତ୍ରିଗୁଣ ସମସ୍ତ କାରଣେ ।।୧୫୪
ତାହାକୁ ଜୀବେ ଦେଇ ସ୍ଥାନ ।
ଯେଣେ ଜୀବର ପରିତ୍ରାଣ ।।୧୫୫
ସକଳ ଗୁଣ ପରିହରି ।
ଆତ୍ମାରେ ଆତ୍ମା ହୋମକରି ।।୧୫୬

Dr. Sudhanshu Sekhar Mishra

ବ୍ରହ୍ମନିର୍ବାଣେ ଥୋଇ ଚିତ୍ତ ।
ଉତ୍ତରପଥେ ଉପଗତ ॥୧୫୭

ଚିରବସନ ନିରାହାର ।
ମଉନ ମୁକ୍ତକେଶ ଶିର ॥୧୫୮

ଜଡ଼-ଉନ୍ମତ୍ତ-ଜନ ପ୍ରାୟେ ।
ଲୋକେ ଦେଖାଇ ନିଜକାୟେ ॥୧୫୯

ଲୋକ ବଦନକୁ ନ ଚାହିଁ ।
ଅନ୍ଧ-ବଧିର ପ୍ରାୟ ହୋଇ ॥୧୬୦

ହୃଦେ ନିବେଶି ବେନିପାଣି ।
ଉତ୍ତରଦିଗେ ନୃପମଣି ॥୧୬୧

ପୂର୍ବେ ଅଶେଷ ମୁନି ସଙ୍ଗେ ।
ମୋକ୍ଷହୋଇଲେ ଯେଉଁ ପଥେ ॥୧୬୨

ପରମବ୍ରହ୍ମ ଚିନ୍ତି ଚିତ୍ତେ ।
ପ୍ରସ୍ଥାନ କଲେ ସ୍ୱର୍ଗପଥେ ॥୧୬୩

ପଛେ ଚଳନ୍ତି ଚାରିଭାଇ ।
ରାଜାର ଅନୁରୂପ ହୋଇ ॥୧୬୪

ପ୍ରଜାଙ୍କୁ କରି ଆଲିଙ୍ଗନ ।
ହରଷେ ହରି ତାଙ୍କ ମନ ॥୧୬୫

ସେ ସାଧୁକୃତ୍ୟ ସତ୍ତ୍ୱ ଗୁଣୀ ।
ଆତ୍ମାର ହିତ ଚିତ୍ତେ ଜାଣି ॥୧୬୬

ମନ ନିବେଶି କୃଷ୍ଣପାଦେ ।
ବିଷ୍ଣୁ ଭକତି ଯୋଗସାଧେ ॥୧୬୭

ନିର୍ମଳ ଚିତ୍ତ ତାହାଙ୍କର ।
ଗୋବିନ୍ଦେ ଧ୍ୟାନ ନିରନ୍ତର ॥୧୬୮

କୃଷ୍ଣର ପାଦେ ଚିତ୍ତ ଦେଲେ ।
ପରମଗତି ସେ ଲଭିଲେ ॥୧୬୯

ଅସତ୍ୟ ଇନ୍ଦ୍ରିୟ ବିଷୟେ ।
ନିତ୍ୟେ ଯାହାର ଚିତ୍ତ ରହେ ॥୧୭୦

ସେ ଯେବେ ପାଦହୃଦେ ଚିନ୍ତି ।
ସର୍ବକଳୁଷ ନାଶ ଯାନ୍ତି ॥୧୭୧

ସେପାଦେ ଲଭଇ ସେ ସ୍ଥାନ ।
ତାହା ପାଇଲେ ପଣ୍ଡୁନାନ ॥୧୭୨

ବିଦୁର ଥିଲେ ବନବାସେ ।
ପ୍ରଭାସତୀର୍ଥେ ମୋକ୍ଷ ଆଶେ ॥୧୭୩

ଗୋବିନ୍ଦ-ଚରଣ-କମଳେ ।
ପ୍ରାଣ ଛାଡ଼ିଲେ ଯୋଗବଳେ ॥୧୭୪

ପିତୃଗଣଙ୍କ ସଙ୍ଗେ ମିଶି ।
ନକ୍ଷତ୍ର ମଧ୍ୟେ ଯେହ୍ନେ ଶଶୀ ॥୧୭୫

ନିଜ ଭୁବନେ ବିଜେ କଲେ ।
ବ୍ରାହ୍ମଣଶାପୁ ନିସ୍ତରିଲେ ॥୧୭୬

ତକ୍ଷଣେ ଦ୍ରୁପଦ କୁମାରୀ ।
ଭର୍ତ୍ତାଙ୍କ ପଥ ଅନୁସରି ॥୧୭୭

କୃଷ୍ଣେ ନିବେଶି ପଞ୍ଚପ୍ରାଣ ।
ପଥେ ଛାଡ଼ିଲେ ନିଜପ୍ରାଣ ॥୧୭୮

କହନ୍ତି ସୂତ ଶୁଦ୍ଧଚିତ୍ତେ ।
ସର୍ବମୁନିଙ୍କ ମଧ୍ୟଗତେ ॥୧୭୯

ଏବେ ହୋ ଶୁଣ ବିପ୍ରଜନେ ।
କୃଷ୍ଣ-ମହିମା ଶୁଦ୍ଧମନେ ॥୧୮୦

ଗୋବିନ୍ଦ ଚରଣ କମଳେ ।
ପଶୁକୁମ୍ଭରେ ଭାବଭୋଳେ ॥୧୮୧

ସଂସାର ମାୟା ଦୂର କଲେ ।
ଜଗତ ମଧ୍ୟୁ ନିସ୍ତରିଲେ ॥୧୮୨

ପରମ ମଙ୍ଗଳ ଏ ବାଣୀ ।
ଯେ ପ୍ରାଣୀ ଶୁଦ୍ଧଚିତ୍ତେ ଶୁଣି ॥୧୮୩

ଭକତି ଲଭେ କୃଷ୍ଣପାଦେ ।
ସଂସାରୁ ତରେ ଅପ୍ରମାଦେ ॥୧୮୪

କୃଷ୍ଣ-ମହିମା-ସୁଧାରସ ।
କହିଲା ଜଗନ୍ନାଥ ଦାସ ॥୧୮୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ପାଣ୍ଡବସ୍ୱର୍ଗାରୋହଣଂ
ନାମ ପଞ୍ଚଦଶୋଽଧ୍ୟାୟଃ ।

---

## ଷୋଡ଼ଶ ଅଧ୍ୟାୟ

ସୂତ କହନ୍ତି ଅନୁରାଗେ ।
ଆନନ୍ଦେ ମୁନିଙ୍କର ଆଗେ ॥ ୧

ସୂତ ଉବାଚ

ସ୍ୱଭାବେ ଅଭିମନ୍ୟୁସୁତ ।
ତେଜ-ବିକ୍ରମେ ପରୀକ୍ଷିତ ॥ ୨

ବ୍ରାହ୍ମଣବାକ୍ୟେ ଜନ୍ମକାଳେ ।
ସମ୍ପ୍ରତି ହସ୍ତିନା-ମଣ୍ଡଳେ ॥ ୩

ରାଜ୍ୟ ଆବୋରି ମହାତେଜେ ।
ବିପ୍ରବଚନ ଗୁଣ ଭଜେ ॥ ୪

ବିରାଟସୁତ ସୁତା ଥିଲା ।
ସ୍ନେହେ ସେ ପରୀକ୍ଷିତେ ଦେଲା ॥ ୫

ଉତ୍ତରସୁତା ଭାଗ୍ୟବତୀ ।
ନାମ ତାହାର ଇରାବତୀ ॥ ୬

ତାହାର ଗର୍ଭେ ଚାରିସୁତ ।
ଧର୍ମେ ସମ୍ପାଦି ପରୀକ୍ଷିତ ॥ ୭

କୁମାର ଜନ୍ମେଜୟ ଆଦି ।
ସକଳଗୁଣେ ସେ ପ୍ରସିଦ୍ଧି ॥ ୮

ଆନନ୍ଦେ ରାଜା ପରୀକ୍ଷିତ ।
ଯଜ୍ଞେ ବରିଲା ପୁରୋହିତ ॥ ୯

ଗଙ୍ଗାର ତୀରେ ବେଦସିଦ୍ଧ ।
ସାଧିଲା ତିନି ଅଶ୍ୱମେଧ ॥୧୦

ଦକ୍ଷିଣା ଦେଲା ମନଭରି ।
ଦିଗବିଜୟେ ବିଜେ କରି ॥ ୧୧

କଳିଯୁଗକୁ ଏକଦିନେ ।
ଦେଖିଲା ବେଳ ଅବସାନେ ॥୧୨

ସେ ଶୂଦ୍ରଜାତି ନୃପସଜେ ।
କାଷ୍ଠ ମୂଷଳ ଧରି ଭୁଜେ ॥୧୩

ଅଗ୍ରେ ଗୋମିଥୁନକୁ ଥୋଇ ।
ହୁଙ୍କାରେ ପାଦ ପ୍ରହାରଇ ॥୧୪

ତାହାକୁ ଦେଖି ନୃପମଣି ।
ତକ୍ଷଣେ ଭୁଜ ଧରି ଆଣି ॥୧୫

ବନ୍ଧନ କଲା ବାହୁବଳେ ।
ସେ ବୀର ଅବନୀ ମଣ୍ଡଳେ ॥୧୬

ଏମନ୍ତେ ସୂତ ମୁଖୁ ଶୁଣି ।
ଶୌନକ ଆଦି ଯେତେ ମୁନି ॥୧୭

Dr. Sudhanshu Sekhar Mishra

ଆନନ୍ଦେ ହୋଇ କୃତକୃତ୍ୟ ।
ବୋଲନ୍ତି ଶୁଣ ମୁନି ସୂତ ॥୧୮

ଶୌନକ ଉବାଚ

କେବଣ ହେତୁ ପରୀକ୍ଷିତ ।
ଦିଗବିଜୟେ ଉପଗତ ॥୧୯
କଳିକି ଧରି ବାହୁବଳେ ।
ବନ୍ଧନ କଲା କିମ୍ବା ଛଳେ ॥୨୦
ସ୍ୱଭାବେ ଶୂଦ୍ରରୂପ ଧରି ।
କପଟେ ନୃପବେଶ କରି ॥୨୧
ପାଦେ ପ୍ରହାରିଲା କାହାକୁ ।
ଭୋ ସୂତ କହିବା ଆମ୍ଭଙ୍କୁ ॥୨୨
ଯେ କୃଷ୍ଣକଥା ଶୁଭବାଣୀ ।
ଏଜୀବ ତରେ ଯାହା ଶୁଣି ॥୨୩
ଶରୀର ବହି ମୋହକଷ୍ଟେ ।
କି ଲାଭ ଅସତ୍ୟ ଆଳାପେ ॥୨୪
ଆୟୁଷ ଦିନୁଦିନ ତୁଟେ ।
ଜଳ ଯେସନେ ଛିଦ୍ରଘଟେ ॥୨୫
କ୍ଷୁଦ୍ର ଆୟୁଷ ପ୍ରାଣୀଙ୍କର ।
ଅମୃତଦାତା ଚକ୍ରଧର ॥୨୬
ଯଜ୍ଞେ ପ୍ରାଣୀଙ୍କ ନାଶ ଅର୍ଥେ ।
ମୃତ୍ୟୁପୁରୁଷ ଏ ଜଗତେ ॥୨୭
ସେ ନୋହେ କାହାରି ଆୟତ୍ତ ।
କରଇ କ୍ଷଣେ କ୍ଷଣେ ଗ୍ରସ୍ତ ॥୨୮
ଯାବତ ଯମ ଏହିଠାରେ ।
ମୃତ୍ୟୁ ନୋହିବ ମର୍ତ୍ତ୍ୟପୁରେ ॥୨୯
ସେ ମୃତ୍ୟୁମୁଖୁ ନିସ୍ତାରଣ ।
କେବଳ ଶ୍ରୀକୃଷ୍ଣଶରଣ ॥୩୦
କୃଷ୍ଣ-ଭକତି-ସୁଧାପାନେ ।
ଅମୃତ-ପିହିତ-ବଚନେ ॥୩୧
ଦିନ ହରନ୍ତି ଦୁଃଖସୁଖେ ।
ତାହାଙ୍କୁ ନାରାୟଣ ରଖେ ॥୩୨
ସ୍ୱଭାବେ ମନ୍ଦବୁଦ୍ଧି ପ୍ରାଣୀ ।
ନିଜ ଆୟୁଷ ନ ପ୍ରମାଣି ॥୩୩
ନିରତେ ମନ୍ଦକର୍ମ କରେ ।
ତାର ଆୟୁଷ ଏ ସଂସାରେ ॥୩୪
ଅର୍ଦ୍ଧେ ହରଇ ନିଦ୍ରା ନିଶି ।
ଦିବସ ବ୍ୟର୍ଥକର୍ମେ ଗ୍ରାସି ॥୩୫
ଏମନ୍ତେ ମୁନିଙ୍କ ପ୍ରଶ୍ନେ ।
ସୂତ କହନ୍ତି ତୋଷମନେ ॥୩୬

ସୂତ ଉବାଚ

ସେ ରାଜରଷି ଯେତେବେଳେ ।
ବସିଲେ ହସ୍ତିନା-ମଣ୍ଡଳେ ॥୩୭
ବିଶେଷେ ଅର୍ଜୁନର ନାତି ।
ରାଜାଙ୍କ ମଧ୍ୟେ ଚକ୍ରବର୍ତ୍ତୀ ॥୩୮
କଳି-ପ୍ରବେଶ-କଥା ଶୁଣି ।
ଦିଗବିଜୟେ ନୃପମଣି ॥୩୯
ତାର ସଙ୍ଗତେ ନୃପବରେ ।
ସମର୍ଥ ନୁହନ୍ତି ସମରେ ॥୪୦
ଉଣ୍ଡମରଥ ସଜକରି ।
ରଥେ ଯୋଚିଲା ଅଶ୍ୱଚାରି ॥୪୧
ଶ୍ୟାମ ତୁରଙ୍ଗ ମନୋଜବ ।
କେ କହୁ ଅଶ୍ୱଙ୍କ ପ୍ରଭାବ ॥୪୨
ଅଶ୍ୱଭୂଷିତ ଅଳଙ୍କାର ।
ଯେହ୍ନେ ଉଦିତ ଦିବାକର ॥୪୩
ରଥ ଉପରେ ସିଂହଧ୍ୱଜ ।
ପୁରୁ ବାହାର ମହାରାଜ ॥୪୪
ଆବୃଷ୍ଟ ଚତୁରଙ୍ଗ ବଳେ ।
କେ ତାକୁ ସମ ମହୀତଳେ ॥୪୫
ଦିଗବିଜୟେ ବିଜେ କଲା ।
ଚାଲନ୍ତେ ଅବନୀ କମ୍ପିଲା ॥୪୬
ମିଳେ ଉତ୍ତର କୁରୁଦେଶେ ।
ସର୍ବ ନୃପତି ତାର ବଶେ ॥୪୭
ଭଦ୍ରାଶ୍ୱ କେତୁମାଳ ଜିଣି ।
ଭାରତବର୍ଷ ନୃପମଣି ॥୪୮
ବରଷ କିଂପୁରୁଷ ଆଦି ।
ଜିଣିଲା ସକଳ ସମାଦି ॥୪୯
ସର୍ବ ନୃପତି ତା ଚରଣେ ।
ଧନେ ଖଟିଲେ ଦାସପଣେ ॥୫୦
କେତେହେଁ ଲୋକ ତାର ଆଗେ ।
କୃଷ୍ଣଚରିତ ନାନାରଙ୍ଗେ ॥୫୧
ଆମ୍ଭାକୁ ରଖିଲେ ଯେମନ୍ତେ ।
ଦ୍ରୋଣକୁମର ଶସ୍ତ୍ରଘାତେ ॥୫୨
ବୃଷ୍ଣି ପାଣ୍ଡବ ବନ୍ଧୁପଣେ ।
ଭକତି କୃଷ୍ଣର ଚରଣେ ॥୫୩
ପୂର୍ବପୁରୁଷଙ୍କର ବାଣୀ ।
ତୋଷ ତାହାଙ୍କ ମୁଖୁ ଶୁଣି ॥୫୪
ସନ୍ତୋଷ ହେଲେ ନୃପମଣି ।
ଉତ୍ତମ-ଧନ-ବସ୍ତ୍ର ଆଣି ॥୫୫
ତାହାଙ୍କୁ ଦେଲେ ପୁରସ୍କାର ।
ରତ୍ନ-କଙ୍କଣ-ମଣିହାର ॥୫୬
ପାଣ୍ଡବ ତୁଲେ ଯେତେ ଭାବ ।
ସଂସାରେ ସାଧିଲେ ମାଧବ ॥୫୭
ରଣେ ସାରଥି ପଣେ ରଥେ ।
ଯେ ବନବାସ ଘୋରପଥେ ॥୫୮
ଦୁଃଖୁ ଉଦ୍ଧାରି ସଖାପଣେ ।
ହସ୍ତିନା ଗଲେ ଦୂତପଣେ ॥୫୯
ଆସନ ଶୟନ ଭୋଜନେ ।
ସ୍ତୁତିବଚନେ ବନ୍ଧୁପଣେ ॥୬୦
ଏ ଆଦି ଯେତେ କର୍ମକରି ।
ପାଣ୍ଡବ ସଙ୍ଗତେ ବିହରି ॥୬୧
ସେ ଭାବଘେନି ଦୃଢ଼ଚିତ୍ତେ ।
ଭଜିଲା କୃଷ୍ଣ-ପାଦଗତେ ॥୬୨
ପୂର୍ବପୁରୁଷଙ୍କର ଧର୍ମ ।
ସାଧିଲା ଅନୁଦିନେ କର୍ମ ॥୬୩
ସେ ପୁଣି ନିଜ କର୍ମବଶେ ।
ଲଭିଲା ଅଳପ-ବୟସେ ॥୬୪
ତାର ଆଶ୍ଚର୍ଯ୍ୟକଥା ଯେତେ ।
ଶୁଣ ଶୌନକ ଶୁଦ୍ଧଚିତ୍ତେ ॥୬୫
ଧର୍ମ ଯେ ଏକପାଦ ବହି ।
ଦିନେ ସେ ବୃଷରୂପ ହୋଇ ॥୬୬
ଭୂମିକି ଦେଖି ଧେନୁରୂପେ ।
ବିଶ୍ୱାସେ ମିଳିଲା ସମୀପେ ॥୬୭
ସେ ଧେନୁ ଅତିଦୁଃଖେ ଦୁଃଖୀ ।
ଅଧୋବଦନେ ଅଶ୍ରୁମୁଖୀ ॥୬୮
କାନ୍ଦଇ ତେଜହୀନ ହୋଇ ।
ବତ୍ସା ବିହୁନେ ଯେହ୍ନେ ଗାଈ ॥୬୯

Dr. Sudhanshu Sekhar Mishra

ତାର ବଦନ ଚାହିଁ ଧୀରେ ।
ଧର୍ମ ପୁଚ୍ଛଇ ପ୍ରିୟଭରେ ॥୭୦
ଭୋ ବସୁନ୍ଧରୀ ସତ୍ୟ କହ ।
ତୋର ବିଷୟେ ମୋ ସନ୍ଦେହ ॥୭୧
ତୋର ଶରୀରେ କିବା ବ୍ୟାଧି ।
ଅନ୍ତର-ବାହାରେ ଆଚ୍ଛାଦି ॥୭୨
ବିରସ ବଦନ ତୋହର ।
ଯେ ମୁଖ ସ୍ୱଭାବେ ସୁନ୍ଦର ॥୭୩
କିବା ତନୟ ତୋର ମଲା ।
ସ୍ୱାମୀ ବା ଦୂରେ ପ୍ରବାସିଲା ॥୭୪
କିବା ତୋହର ମନବ୍ୟଥା ।
କି ନଷ୍ଟଧନେ ତୋର ଚିନ୍ତା ॥୭୫
ଏକଇ ପାଦ ଦେଖି ମୋତେ ।
ଦୟା ବସିଲା ତୋର ଚିତ୍ତେ ॥୭୬
କିବା ଏ ଘୋର କଳିକାଳେ ।
ଶୂଦ୍ରେ ଭୁଞ୍ଜିବେ ତୋତେ ବଳେ ॥୭୭
କିବା ଦେବଙ୍କ ପ୍ରୀତି ଛଳେ ।
ଯଜ୍ଞ ନୋହିଲା ମହୀତଳେ ॥୭୮
ତେଣୁ ବା ଇନ୍ଦ୍ର ନ ବର୍ଷିଲେ ।
ଏଣୁ ବା ପ୍ରଜାନାଶ ଗଲେ ॥୭୯
କି ବା ପୁରୁଷେ ନିଜ ନାରୀ ।
ଉପେକ୍ଷି ପରଦାରା କରି ॥୮୦
କି ବା ବାଳକେ ପିତାମାତା ।
ଛାଡ଼ିବେ ତେଣୁ ତୋର ଚିନ୍ତା ॥୮୧
କି ବା ବ୍ରାହ୍ମଣେ ବେଦବାଣୀ ।
ସାଧିବେ ହୀନକୁଳେ ଆଣି ॥୮୨
କି ହୀନ କ୍ଷତ୍ରବନ୍ଧୁ ରାଜା ।
କଳି-ପୀଡ଼ିତ ଜନପ୍ରଜା ॥୮୩
ନିଜ ଭୁବନ ଛାଡ଼ି ଜନେ ।
ପଶିବେ ଦୁର୍ଗମ-ବିପିନେ ॥୮୪
ପ୍ରାଣୀ ନ ମଣି ସ୍ଥାନାସ୍ଥାନ ।
ଆସନ ଶୟନ ଭୋଜନ ॥୮୫
କରିବେ ପରପାକେ ମତି ।
ପର ଯୁବତୀ ସଙ୍ଗେ ରତି ॥୮୬
କିବା ତୋହର ଗୁରୁଭାର ।
ଖଣ୍ଡିଲା କୃଷ୍ଣ-ଅବତାର ॥୮୭

ତାର ଚରଣ ତୋ ଉପର ।
ଯେହ୍ନେ ଭୂଷିତ ଅଳଙ୍କାର ॥୮୮
ତାର ଚରିତ ଗୁଣଲୀଳା ।
କିବା ତୋ ମନ ସୁମରିଲା ॥୮୯
ତାର ବିୟୋଗେ ତୋର ଚିତ୍ତ ।
ଚିନ୍ତା-ସାଗରେ ମୋହଗତ ॥୯୦
ଏ ଆଦି ଯେତେ ଚିନ୍ତାଭାର ।
କହ ତୋ ବିମନ ବେଭାର ॥୯୧
ଦେବେ ପୂଜନ୍ତି ତୋତେ ଭଲେ ।
ଏବେ ଅବଜ୍ଞା କିବା କଲେ ॥୯୨
କାଳ ବା ତୋର ଶୁଭ ହରି ।
ଏଣୁ ଦିଶିଲୁ ହତଶିରୀ ॥୯୩
ଧର୍ମ ବୃଷଭ ବାକ୍ୟ ଶୁଣି ।
ଧରଣୀ କହେ ମନେ ଗୁଣି ॥୯୪

ଧରଣୀ ଉବାଚ

ଭୋ ବୃଷ ଯେତେ ପ୍ରଶ୍ନ ତୋର ।
ଏ ତୋତେ ନୋହେ ଅଗୋଚର ॥୯୫
ତୋହର ଚତୁର ଚରଣ ।
ପ୍ରାଣୀଙ୍କ ସୁଖର କାରଣ ॥୯୬
ସତ୍ୟ ଶଉଚ ଦୟା କ୍ଷାନ୍ତି ।
ତ୍ୟାଗ ସନ୍ତୋଷ ଋଜୁବୃତ୍ତି ॥୯୭
ତପ ସମତା ଶମ ଦମ ।
ତିତିକ୍ଷା ଇନ୍ଦ୍ରିୟ ସଂଯମ ॥୯୮
ଜ୍ଞାନ ବୈରାଗ୍ୟ ଅଇଶ୍ୱର୍ଯ୍ୟ ।
ସ୍ୱାତନ୍ତ୍ର୍ୟ ତେଜ ସ୍ମୃତି ଶୌର୍ଯ୍ୟ ॥୯୯
ଧୈର୍ଯ୍ୟ କୌଶଳ ମୃଦୁଭାବ ।
କାନ୍ତି ବାଗ୍ମିତା ସୁସ୍ୱଭାବ ॥୧୦୦
ବିନୟ ସହ ଓଜବଳ ।
ସ୍ଥୈର୍ଯ୍ୟ ଗାମ୍ଭୀର୍ଯ୍ୟ ଏ ସକଳ ॥୧୦୧
କୀର୍ତ୍ତି ମାନ ଅନହଙ୍କାର ।
ଏ ସର୍ବ ଯାହାର ଶରୀର ॥୧୦୨
ଏ ଆଦି ଅନ୍ୟ ଧର୍ମ ଯେତେ ।
କର୍ମ ସାଧନ ଏ ଜଗତେ ॥୧୦୩
ମହତଜନ ଆଚରଣ ।
ଆତ୍ମାର ପରମ କାରଣ ॥୧୦୪

ଏ ସର୍ବଗୁଣ ସଉଭାଗେ ।
ଗମିଲେ ଗୋବିନ୍ଦର ସଙ୍ଗେ ॥୧୦୫
ପଡ଼ିଲା କଳି ଦୃଷ୍ଟିପାତ ।
ତେଣୁ ଶୋଚନା ଅଟେ ମୋର ॥୧୦୬
ସେ କୃଷ୍ଣ ବିରହେ କାତର ।
ତେଣୁ ଶୋଚନା ମୋର ଚିତ୍ତ ॥୧୦୭
ମୁଁ ଏବେ ଆତ୍ମାକୁ ସୁମରି ।
ଏ ସର୍ବଗୁଣ ମନେ ଧରି ॥୧୦୮
ତୋର ଚରଣ ଭଗ୍ନ ଦେଖି ।
କାନ୍ଦଇ ଅତି ଦୁଃଖେ ଦୁଃଖୀ ॥୧୦୯
ଦେବତା ଋଷି ପିତୃଗଣ ।
ଯେ ବର୍ଣ୍ଣାଶ୍ରମ ଆଚରଣ ॥୧୧୦
ଏ ସର୍ବ ଧର୍ମ ଗଲା ଦୂର ।
ମୋତେ ଛାଡ଼ିଲେ ଚକ୍ରଧର ॥୧୧୧
ବ୍ରହ୍ମାଦି ଦେବଦେବୀ ଯେତେ ।
ନିଶ୍ଚଳେ ମୋହର ସହିତେ ॥୧୧୨
ଯାର ଅପାଙ୍ଗ ମୋକ୍ଷଶିରୀ ।
ଲଭିବୁ ବୋଲି ଆଶ କରି ॥୧୧୩
କଠୋର ତପ ସାଧି ବନେ ।
ପ୍ରପନ୍ନ ଯାହାର ଚରଣେ ॥୧୧୪
ସେ ଲକ୍ଷ୍ମୀ ତେଜି ପଦ୍ମବନ ।
ଯାର ହୃଦୟେ ଲଭି ସ୍ଥାନ ॥୧୧୫
ସେ ସ୍ଥାନେ ନ ରହେ ତା ମନ ।
ଯାର ଚରଣେ ନିତ୍ୟେ ଧ୍ୟାନ ॥୧୧୬
କରି ବଞ୍ଚଇ ସର୍ବବେଳା ।
ସେ ହରି ନିଜପୁରେ ଗଲା ॥୧୧୭
ତାର ଚରଣ ଚିହ୍ନ ଯେତେ ।
ଧ୍ୱଜ ଅଙ୍କୁଶ ମୋର ଗାତ୍ରେ ॥୧୧୮
ସେ ବେଶେ ଅଳଂକୃତ ହୋଇ ।
ଶୁଦ୍ଧ ସୁନ୍ଦର ବିରାଜଇ ॥୧୧୯
ଯେଣୁ ଛାଡ଼ିଲେ ମୋତେ ହରି ।
ତେଣୁ ଦିଶଇ ହତଶିରୀ ॥୧୨୦
ଅସୁର ଅକ୍ଷୌହିଣୀ ଭାର ।
ଉଶ୍ୱାସ କଲା ଯେ ମୋହର ॥୧୨୧
ତୋତେ ସ୍ଥାପିଲେ ଏ ସଂସାରେ ।
ଅଶେଷ-ଜନ-ଉପକାରେ ॥୧୨୨

Dr. Sudhanshu Sekhar Mishra

ଯାଦବବଂଶ ହିତକର ।
ଅଶେଷ-ଅନଙ୍ଗ-ସୁନ୍ଦର ॥ ୧୨୩
ଏ ତିନିଲୋକ ମନ ମୋହେ ।
ଶ୍ୟାମସୁନ୍ଦର ନିଜ ଦେହେ ॥ ୧୨୪
ସେ ରୂପ ହୋଇଲା ଅନ୍ତର ।
ତେଣୁ ବିବର୍ଣ୍ଣ ରୂପ ମୋର ॥ ୧୨୫
କଥନ ମନୋହର ସ୍ମିତେ ।
ପ୍ରେମାବଲୋକ ବହୁମତେ ॥ ୧୨୬
ଦ୍ୱାରକାପୁର ନାରୀଙ୍କର ।
ଯେ ମାନ ହରେ ନିରନ୍ତର ॥ ୧୨୭
ଯାର ଚରଣ ରେଣୁ ଲାଗି ।
ତୃଣ ଛଳେ ମୁଁ ପୁଲକାଙ୍ଗୀ ॥ ୧୨୮
ତାର ବିୟୋଗ କେବା ସହି ।
ଏ ଜୀବଲୋକେ ଦେହ ବହି ॥ ୧୨୯
ସୂତ କହନ୍ତି ଅବଧାନେ ।
ଏବେ ହୋ ଶୁଣ ମୁନିଜନେ ॥ ୧୩୦

ସୂତ ଉବାଚ

ଏମନ୍ତେ କହୁ କହୁ ବାଣୀ ।
ଧର୍ମର ସଙ୍ଗତେ ଧରଣୀ ॥ ୧୩୧
ସେ ପରୀକ୍ଷିତ ଦଣ୍ଡଧାରୀ ।
ଦିଗବିଜୟ କର୍ମ ସାରି ॥ ୧୩୨
ଧର୍ମ ଧରଣୀ ସଙ୍ଗମେଳେ ।
ମିଳିରେ ସରସ୍ୱତୀ କୂଳେ ॥ ୧୩୩
ବୋଲଇ ଦାସ ଜଗନ୍ନାଥ ।
ଗୀତ ପ୍ରବନ୍ଧେ ଭାଗବତ ॥ ୧୩୪
ଭବସିନ୍ଧୁ-ତରଣେ-ଭେଳା ।
ଏଣେ ସୁଜନେ ହୁଅ ମେଳା ॥ ୧୩୫
ଅମୃତ କୃଷ୍ଣର ଚରିତ ।
ପ୍ରଥମ ସ୍କନ୍ଧେ ଭାଗବତ ॥ ୧୩୬
ଅମୃତରସ କୃଷ୍ଣବାଣୀ ।
ସୁଜନେ ତର ଏହା ଶୁଣି ॥ ୧୩୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପ୍ରଥମସ୍କନ୍ଧେ ପୃଥ୍ୱୀଧର୍ମସମ୍ବାଦୋ ନାମ ଷୋଡ଼ଶୋଽଧ୍ୟାୟଃ ।

---

## ସପ୍ତଦଶ ଅଧ୍ୟାୟ

ସୂତ ଉବାଚ

ଏବେ ହୋ ଶୁଣ ମୁନିଜନେ ।
ହରି ଚରିତ ଶୁଦ୍ଧମନେ ॥ ୧
ସେ ପ୍ରାଚୀ ସରସ୍ୱତୀ କୂଳେ ।
ପ୍ରବେଶ ଚତୁରଙ୍ଗ ବଳେ ॥ ୨
ସେ ରାଜରଷି ପରୀକ୍ଷିତ ।
ତେଜେ କି ବିରାଜେ ଆଦିତ୍ୟ ॥ ୩
ତକ୍ଷଣେ ସରସ୍ୱତୀ କୂଳେ ।
ମିଳିଲେ ଗୋ-ମିଥୁନ ମେଳେ ॥ ୪
ଦେଖିଲେ ରାଜରୂପଧାରୀ ।
ଲୁହାର ଯଷ୍ଟି କରେ ଧରି ॥ ୫
ସ୍ୱଭାବେ ଶୂଦ୍ର ତାର ଦେହୀ ।
ନଟର ପ୍ରାୟ ସଜ ହୋଇ ॥ ୬
ସର୍ପର ପ୍ରାୟେ ଘୋରନାଦେ ।
ଦଣ୍ଡ ପ୍ରହାରେ ବୃଷ ପାଦେ ॥ ୭
ସ୍ୱଭାବେ ଏକଇ ଚରଣ ।
ପ୍ରହାର କରେ ପୁଣୀ ପୁଣ ॥ ୮
ତାର ପ୍ରହାରେ ସେ ବିକଳ ।
ଲୋଚନୁ ବହେ ଅଶ୍ରୁଜଳ ॥ ୯
କମ୍ପଇ ମହାଭୟେ ଦେହୀ ।
ମୂତ୍ର ପୁରୀଷ ଉତ୍ସର୍ଗଇ ॥ ୧୦
ତାର ପ୍ରହାରେ ଧେନୁ କାନ୍ଦେ ।
ସ୍ଥିର ନ ରହେ ଚାରିପାଦେ ॥ ୧୧
ପାଦେ ପ୍ରହାରେ ଧେନୁ ପୁଣ ।
ଲୁଟଇ ଚତୁର ଚରଣ ॥ ୧୨
ବତ୍ସା ବିହୀନ କୃଶଦେହୀ ।
କ୍ଷୁଧାର୍ତ୍ତେ ଭୋଜନ ଇଛଇ ॥୧୩
ତାର ନିକଟେ ରଥେ ଥାଇ ।
ରାଜନ ଅଳଙ୍କୃତ ଦେହୀ ॥୧୪
ବାଣ ଆରୋପି ଧନୁର୍ଗୁଣେ ।
ଗଭୀର କୋମଳ ବଚନେ ॥ ୧୫
ଅନାଇଁ ବୃଷଭ ବଦନ ।
ପୁଚ୍ଛଇ ପ୍ରହାର କାରଣ ॥ ୧୬
ସେ ଦୁଷ୍ଟ ପୁରୁଷକୁ ଚାହିଁ ।
ରାଜନ କହେ ରୋଷବହି ॥ ୧୭

ରାଜାଉବାଚ

କହ ଏ କେବଣ କାରଣ ।
କିମ୍ପାଇ କରୁ ପ୍ରହାରଣ ॥ ୧୮
କାହୁଁ ଅଇଲୁ ତୁ ପୁରୁଷ ।
କହ ତୋହର ନାମ କିସ ॥ ୧୯
ମୋର ଶରଣ ନରଲୋକ ।
ଏହାକୁ କରୁ ତୁ ନିରେଖ ॥ ୨୦
ନିର୍ବଳ ପ୍ରାଣୀଙ୍କି ତୁ ବଳେ ।
ପ୍ରହାରୁ ବଳିଆର ଛଳେ ॥ ୨୧
ବେଶେ ତୁ ରାଜରୂପ ବହୁ ।
ନଟର ପ୍ରାୟ ଦ୍ୱିଜ ନୋହୁ ॥ ୨୨
କହ ଏ କେବଣ କାରଣ ।
ଦେଖ ମୋ କରେ ଧନୁର୍ବାଣ ॥ ୨୩
ଦେଖ ଅର୍ଜୁନ ସଙ୍ଗେ କରି ।
ନିଜ ଭୁବନେ ଗଲେ ହରି ॥ ୨୪
ସେ ତ ସ୍ୱଭାବେ ଅରକ୍ଷିତ ।
ପ୍ରାଣୀଙ୍କି କିମ୍ପା କରୁ ହତ ॥ ୨୫
ପ୍ରାଣୀ ସଂହରୁ ଅବହେଳେ ।
କାଳ ତୋ ପୂରିଲା ନିଶ୍ଚଳେ ॥ ୨୬
ପୁଣି ବୃଷଭ ମୁଖ ଚାହିଁ ।
ସପ୍ତମ ଚିଣ୍ଣେ ପଚାରଇ ॥ ୨୭
ତୁ ବୃଷ ମୃଣାଳ ଧବଳ ।
ଏକଇ ପାଦେ ତୁମ୍ଭେ ଚଳ ॥ ୨୮

Dr. Sudhanshu Sekhar Mishra

ତିନି ଚରଣ ତୋର ଥିଲା ।
କହ କି ହେତୁ କେଣେ ଗଲା ॥୨୯
କେଉଁ ଦେବତା କହ ତୁହି ।
ମାୟାରେ ବୃଷରୂପ ହୋଇ ॥୩୦
ଏ କଥା ମୋତେ ବଡ଼ ଗରୁ ।
ମୋହର ମନେ ଖେଦ କରୁ ॥୩୧
ଦେଖ କୌରବ ବଂଶଭୁଜେ ।
ପ୍ରଜା ରକ୍ଷିତ ମୋର ରାଜ୍ୟେ ॥୩୨
ପ୍ରାଣୀ ଲୋଚନୁ ଅଶ୍ରୁଜଳ ।
ତୋ ବିନୁ ନ ପଡ଼ଇ ତଳ ॥୩୩
ପୁଣି ସୁରଭୀ ମୁଖ ଚାହିଁ ।
ଆଶ୍ୱାସ ବାକ୍ୟେ ପଚାରଇ ॥୩୪
ତୁ ଧେନୁ କାନ୍ଦୁ କାହିଁପାଇଁ ।
ବୃଷଭ ଭୟ ତୋର ନାହିଁ ॥୩୫
ଭୋ ମାତ ରୋଦନ ନ କର ।
ମୁହିଁ ଖଳଙ୍କ ଦର୍ପହର ॥୩୬
ମୁହିଁ ପାଳକ ଅଛି ଯହିଁ ।
ମୋର ପ୍ରଜାଙ୍କୁ ଦୁଃଖ କାହିଁ ॥୩୭
ଯାହାର ରାଜ୍ୟେ ପ୍ରଜାକୁଳେ ।
ହିଂସା କରନ୍ତି ଦୁଷ୍ଟଖଳେ ॥୩୮
ତା ଯେବେ ରାଜା ନ ଶୁଣଇ ।
ତାର ଆୟୁଷ ଯଶ କାହିଁ ॥୩୯
ନାଶଇ ଇହ ପରଲୋକ ।
ଅନ୍ତେ ସେ ପଡ଼ଇ ନରକ ॥୪୦
ରାଜପଣର ଧର୍ମ ଏହି ।
ନିଶ୍ଚିନ୍ତେ ପ୍ରଜା ଯେ ପାଳଇ ॥୪୧
ଏଣୁ ଏହାକୁ ବଧ କରି ।
ଧର୍ମେ ଅଧର୍ମ ଦୂର କରି ॥୪୨
ପ୍ରଜାରକ୍ଷଣେ ଏ କାରଣ ।
ଏବେ ହୋ ବୃଷଭ ତୁ ଶୁଣ ॥୪୩
ତୋର ଚତୁରପାଦ ଥିଲା ।
ତିନିଚରଣ କେଣେ ଗଲା ॥୪୪
କୃଷ୍ଣସେବକ ରାଜ୍ୟେ କେହି ।
ତୋ ପରି ଦୁଃଖିତିଭେ ନାହିଁ ॥୪୫
କୃଷ୍ଣାନୁବ୍ରତୀ ରାଜା ଯେତେ ।
ତାହାଙ୍କ ରିପୁ ଏ ଜଗତେ ॥୪୬
ଧର୍ମ ନାଶନ୍ତି ମହୀତଳେ ।
ଯେ ସାଧୁ ହିଂସେ ଅବହେଳେ ॥୪୭
ତୋହର ବିରୂପ ଚରଣ ।
ପାଣ୍ଡବବଂଶେ ଏ ଦୂଷଣ ॥୪୮
ନିର୍ଦ୍ଦୋଷ ପ୍ରାଣୀଙ୍କି ଯେ ହିଂସେ ।
ସେ ଅପରାଧେ ଆତ୍ମା ନାଶେ ॥୪୯
ତାହା ତୁ କହ ମୋ ଆଗର ।
ମଙ୍ଗଳ କରିବି ତୁମ୍ଭର ॥୫୦
ସଂସାରେ ପାପୀଜନଙ୍କର ।
ମୋ ଭୟେ ହୃଦୟ କାତର ॥୫୧
ସାଧୁଙ୍କ ମଙ୍ଗଳ ନିମନ୍ତେ ।
ଅସାଧୁଗଣ ନାଶ ଅର୍ଥେ ॥୫୨
ଏଣୁ ଏ ଲୋକେ ଅପଯଶ ।
ଯେ କରେ ହୋଇ ନିରଙ୍କୁଶ ॥୫୩
ମୁହିଁ ତାହାର ଭୁଜ ଦୁଇ ।
ଛେଦିବି ଯେବେ ଦେବ ହୋଇ ॥୫୪
ରାଜା ପରମଧର୍ମ ଏହି ।
ସ୍ୱଧର୍ମେ ପ୍ରଜାଙ୍କୁ ପାଳଇ ॥୫୫
ସ୍ୱଧର୍ମେ ପାଳେ ବସୁନ୍ଧରୀ ।
ଖଳ ଚଉର୍ଯ୍ୟଙ୍କୁ ନିବାରି ॥୫୬
ଯେ ଚାରିବର୍ଣ୍ଣ ଏ ଜଗତେ ।
ସ୍ୱଧର୍ମ ଛାଡ଼ି ଅନ୍ୟପଥେ ॥୫୭
ତାହାଙ୍କ ଗର୍ବ ଯେବେ ହରେ ।
ସେ ରାଜଧର୍ମ ରାଜ୍ୟ କରେ ॥୫୮
ରାଜାର ବାକ୍ୟ ଶୁଣି ତୋଷେ ।
ସେ ଧର୍ମ କହନ୍ତି ହରଷେ ॥୫୯

ଧର୍ମ ଉବାଚ

ପାଣ୍ଡବବଂଶେ ଏ ବେଭାର ।
ଆରତ ପ୍ରାଣୀ ଭୟ ହର ॥୬୦
ଯାହାର ପୁଣ୍ୟଗୁଣେ ହରି ।
ସାରଥି ଦୂତପଣ କରି ॥୬୧
ଶୁଣ ହୋ ପୁରୁଷ-ଉତ୍ତମ ।
ଯାହାର ସେବା ନିଜଧର୍ମ ॥୬୨
ପ୍ରାଣୀଙ୍କ କ୍ଳେଶବୀଜ ଯେତେ ।
ପ୍ରକାଶ ନୋହେ ମୋର ଚିତ୍ତେ ॥୬୩
ଯେ ବାକ୍ୟଭେଦ ବିମୋହନ ।
ତାକୁ ନ ଜାଣେ ତେଣୁ ଜନ ॥୬୪
କେ ଆତ୍ମାଙ୍କାନେ ଆତ୍ମା ଧରେ ।
ଆତ୍ମାର ବିକଳ୍ପ ବିଚାରେ ॥୬୫
କେ ବୋଲେ ଦୈବ ବଳାୟାର ।
କେ ବୋଲେ କର୍ମର ଏ ଫଳ ॥୬୬
କେ ବୋଲେ ସ୍ୱଭାବ ଏହାର ।
ବ୍ରହ୍ମାଶଙ୍କରେ ଅଗୋଚର ॥୬୭
ତର୍କି ନ ପାରି ଯାହା ମନେ ।
କେ ତାହା କହିବ ବଚନେ ॥୬୮
ଏ ଆଦି ଯେ ବିଧି ବୃତ୍ତାନ୍ତ ।
ତୁ ରାଜା ଏହା ମନେ ଚିନ୍ତ ॥୬୯

ସୂତ ଉବାଚ

ଏମନ୍ତେ ଧର୍ମମୁଖୁ ବାଣୀ ।
ସେ ରାଜା ସାବଧାନେ ଶୁଣି ॥୭୦
ମନରୁ ଖେଦ ଦୂର କଲା ।
ସ୍ୱରୂପେ ଧର୍ମକୁ ଦେଖିଲା ॥୭୧
ଦେହେ ଉତ୍ତରୀ ଅକ୍ଷମାଳ ।
କଟୀରେ ଅଜିନ ଦୁକୂଳ ॥୭୨
ଲମ୍ବ ସୁନ୍ଦର ଚାରିକର ।
ଶିରେ ଶୋଭିତ ଜଟାଭାର ॥୭୩
ତନୁ ଶଶାଙ୍କ-ବପୁ ଗଞ୍ଜେ ।
ଶ୍ରୀବତ୍ସ ଚିହ୍ନ ହୃଦେ ସାଜେ ॥୭୪
ଯେସନେ ତଡ଼ିତ ତଗସ ।
ରାଜା ଦେଖିଲା ଏହୁ ବେଶ ॥୭୫
ରାଜାକୁ ସ୍ୱରୂପ ଦେଖାଇ ।
ସେ ବୃଷ ଏକପାଦେ ରହି ॥୭୬
ରାଜା ଦେଖିଲା ଧର୍ମ ରୂପ ।
ଚିତ୍ତେ ପ୍ରକାଶେ ଜ୍ଞାନଦୀପ ॥୭୭
କପୋଳେ ଦେଇ ବେନିକର ।
ଧର୍ମକୁ ବୋଲେ ନୃପବର ॥୭୮

ରାଜାଉବାଚ

ତୁ ଧର୍ମ ଧର୍ମକଥା କହୁ ।
ଛଳେ ବୃଷଭ ରୂପ ବହୁ ॥୭୯

Dr. Sudhanshu Sekhar Mishra

ଅଧର୍ମ କର୍ମ ଯେ କରଇ ।
ଯେ ଅବା ତାହା ପ୍ରକାଶଇ ।। ୮୦
ନରକେ ଗତି ଦୁହିଙ୍କର ।
ଏ ରୂପେ ଶାସ୍ତ୍ରର ବିଚାର ।। ୮୧
କିବା ଏ ଦେବମାୟା ଗତି ।
କେ ଜାଣି ବାରେ ଚିତ୍ତେ ଚିନ୍ତି ।। ୮୨
ମନ ବଚନେ ଅଗୋଚର ।
ନିଶ୍ଚୟ ବିଚାର ପ୍ରାଣୀର ।। ୮୩
ତୋହର ଚତୁର ଚରଣ ।
ପ୍ରଥମ ଯୁଗେ ଆଚରଣ ।। ୮୪
ତପ ଶଉଚ ଦୟା ସତ୍ୟ ।
ଏ ଯୁଗ ଅନୁରୂପେ କୃତ୍ୟ ।। ୮୫
ସତ୍ୟର ସଙ୍ଗେ ତପ ଗଲା ।
ଶଉଚ ତ୍ରେତୟା ହରିଲା ।। ୮୬
ଦ୍ୱାପର ଗଲା ଦୟା ସଙ୍ଗେ ।
ସତ୍ୟ ରହିଲା କଳିଯୁଗେ ।। ୮୭
ତପକୁ ଗର୍ବ ନାଶ କଲା ।
ଶଉଚ ସଙ୍ଗ ସଂହାରିଲା ।। ୮୮
ଦୟା ହରିଲା ମଦ ବଳେ ।
ସତ୍ୟ ଯେ ରହିଲା ନିଶ୍ଚଳେ ।। ୮୯
ଯେ ସତ୍ୟବଳେ ପ୍ରାଣୀ ତୋତେ ।
ସାଧନ୍ତି କର୍ମ ନାନାମତେ ।। ୯୦
ଏବେ ଯେ ଅଛି ଏକପାଦ ।
ଏ କଳି ତାହାକୁ ଆପଦ ।। ୯୧
ଚିନ୍ତଇ ମିଥ୍ୟା ଅଧର୍ମରେ ।
ଏ କିମ୍ପା ମୋର ଅଧିକାରେ ।। ୯୨
କଠୋର ସତ୍ୟ ଯେ ପାଳିବ ।
ସେ ପ୍ରାଣୀ କୃଷ୍ଣଙ୍କୁ ପାଇବ ।। ୯୩
ଏ ସତ୍ୟଭାବୁଁ ସତ୍ୟଯୁଗ ।
ଏ କଳି ଅନ୍ତେ ପ୍ରକାଶିବ ।। ୯୪
ଏ ଭୂମି ଭାରାଭର ହରି ।
ଶ୍ରୀକୃଷ୍ଣ ଗଲେ ଅପସରି ।। ୯୫
କୃଷ୍ଣର ପାଦପଦ୍ମ ଚିହ୍ନ ।
ମଣି କୁଣ୍ଡଳ ଶୋଭାବନ ।। ୯୬
ପବିତ୍ର ସୁନ୍ଦର ଶରୀର ।
ଦେଖି ସାନନ୍ଦ ସୁରନର ।। ୯୭
ସେ ହରି ଛାଡ଼ିଗଲା ଯେବେ ।
ଦେଖ ଏହାର ଦୁଃଖ ଏବେ ।। ୯୮
ଦୁର୍ଭଗା ପ୍ରାୟେ ଅଶ୍ରୁମୁଖୀ ।
କାନ୍ଦଇ ଅତି ଦୁଃଖେ ଦୁଃଖୀ ।। ୯୯
ପାପିଷ୍ଠ ଶୂଦ୍ରରାଜା ଯେତେ ।
ସର୍ବେ ଭୁଞ୍ଜିବେ ମିଳି ମୋତେ ।। ୧୦୦
ଏମନ୍ତେ ଧର୍ମ ବସୁନ୍ଧରୀ ।
ବାକ୍ୟ ପ୍ରବନ୍ଧେ ବୋଧ କରି ।। ୧୦୧
ତୀକ୍ଷଣ ଖଡ଼ଗ ଧରି ହସ୍ତେ ।
ମିଳିଲା କଳିର ଅଗ୍ରତେ ।। ୧୦୨
ଅଧର୍ମ ହେତୁ ବଳେ ମାରି ।
ମୁହିଁ ପାଳିବି ବସୁନ୍ଧରୀ ।। ୧୦୩
କଳି ଦେଖିଣ ତା ବଦନ ।
ଛାଡ଼ିଲା ନୃପତି ଲାଞ୍ଛନ ।। ୧୦୪
ପ୍ରାଣ କାତରେ ଉଦବେଗେ ।
ପଡ଼ିଲା ରାଜା ପାଦଯୁଗେ ।। ୧୦୫
ସେ କଳି ଜୀବନ ବିକଳେ ।
ପାଦେ ପଡ଼ିଲା ଯେତେବେଳେ ।। ୧୦୬
ଦେଖିଣ କଳିର ବିକଳ ।
ସ୍ୱଭାବେ ମେଦିନୀ ବତ୍ସଳ ।। ୧୦୭
ତାର ବିକଳ ମୁଖ ଦେଖି ।
ଖଡ଼ଗ ଭୁଜ ଉର୍ଦ୍ଧ୍ୱେ ରଖି ।। ୧୦୮
ଛେଦନ ନ କରି ତା ଶିର ।
ହସି ବୋଲନ୍ତି ନୃପବର ।। ୧୦୯

ରାଜା ଉବାଚ

ତୁ ଯେ ଅଞ୍ଜଳି ଶିରେ ଧରି ।
ପାଦେ ପଡ଼ିଲୁ ଭୟ କରି ।। ୧୧୦
ଅର୍ଜୁନବଂଶେ ଜାତ ଯାର ।
ତାହାକୁ ଭୟ ନାହିଁ ତୋର ।। ୧୧୧
ଅଧର୍ମବନ୍ଧୁ ତୁ ସ୍ୱଭାବେ ।
ମୋର ବଚନ ଶୁଣ ଏବେ ।। ୧୧୨
ମୋହର କ୍ଷେତ୍ରେ ନ ପଶିବୁ ।
ଯେବେ ତୁ ଜୀବନେ ବଞ୍ଚିବୁ ।। ୧୧୩
ତୁ କେବେ ଥିବୁ ରାଜଘରେ ।
ଅଧର୍ମ ଯୂଥ ତୋ ସଙ୍ଗରେ ।। ୧୧୪
ଲୋଭ ଅସତ୍ୟ ଚୌର୍ଯ୍ୟକର୍ମ ।
ଏ ଆଦି ଅଶେଷ ଅଧର୍ମ ।। ୧୧୫
ଦୁର୍ଜନ ଆଚରଣ ଅହଂ ।
ମାୟା କଳହ ଦମ୍ଭ ମୋହ ।। ୧୧୬
ତୋହର ସଙ୍ଗେ ଥାନ୍ତି ଏତେ ।
ମୋ ଦେଶେ ଥିବୁ ତୁ କେମନ୍ତେ ।। ୧୧୭
ଯେ ପ୍ରାଣୀ ଥିବେ ସତ୍ୟଧର୍ମେ ।
ତହିଁ ତୁ ନ ପଶିବୁ ଭ୍ରମେ ।। ୧୧୮
ଏ ବ୍ରହ୍ମାବର୍ତ୍ତେ ଯେତେ ଜନ ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।। ୧୧୯
ଆଗମ ନିଗମ ପ୍ରମାଣେ ।
ଯଜ୍ଞ ସମ୍ପାଦି ଯେ ବ୍ରାହ୍ମଣେ ।। ୧୨୦
ହରିଚରଣେ ପୂଜା କରି ।
ଯେଣେ ସନ୍ତୋଷ ନରହରି ।। ୧୨୧
ସ୍ଥାବର ଆଦି ଚାରିଦେହେ ।
ବାହ୍ୟ ଅନ୍ତରେ ବ୍ୟାପିରହେ ।। ୧୨୨
ଯେହ୍ନେ ପବନ ଏ ଶରୀରେ ।
ବହଇ ଅନ୍ତର ବାହାରେ ।। ୧୨୩
ସେ ହରିପୂଜା କରି ଯହିଁ ।
ତହିଁ ପ୍ରବେଶ ତୋର ନାହିଁ ।। ୧୨୪
ଏ ଧର୍ମ ମୋହର ପ୍ରମାଣ ।
ଏଥକୁ ସାକ୍ଷ ନାରାୟଣ ।। ୧୨୫

ସୂତ ଉବାଚ

ଶୁଣି ସେ ରାଜାର ଉତ୍ତର ।
କଳି କମ୍ପଇ ଥରହର ।। ୧୨୬
ପରୀକ୍ଷେ ରାଜଶିକ୍ଷା ଦେଇ ।
ସ୍ୱର୍ଗେ ଚଳିଲେ ପାଣ୍ଡୁଭାଇ ।। ୧୫୩
ସେହି ପ୍ରକାରେ ମନେ ଗୁଣି ।
ରହେ କୌରବ ଶିରୋମଣି ।। ୧୫୪
ହସ୍ତିନାପୁରେ ରାଜନୀତି ।
ପ୍ରଜାପାଳନେ ଚକ୍ରବର୍ତ୍ତୀ ।। ୧୫୫
ଏମନ୍ତେ ଅଭିମନ୍ୟୁସୁତ ।
ପ୍ରଜାପାଳନେ ସୁବିଦିତ ।। ୧୫୬
ଯାହାର ରାଜ୍ୟେ ତୁମ୍ଭେ ଥାଇ ।
ହରି ଭଜୁଛ ଯଜ୍ଞେ ଦାହି ।। ୧୫୭
ସେ ହରି ଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ।। ୧୫୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ କଳିନିଗ୍ରହୋ ନାମ
ସପ୍ତଦଶୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ଅଷ୍ଟାଦଶ ଅଧ୍ୟାୟ

କହନ୍ତି ସୂତ ଶୁଦ୍ଧଚେତା ।
ଶୁଣ ସକଳ ବ୍ରହ୍ମବେତ୍ତା ॥ ୧

ସୂତ ଉବାଚ

ଦ୍ରୋଣକୁମର ଶସ୍ତ୍ରାଘାତେ ।
ଯେ ରାଜା ବଞ୍ଚି ଗର୍ଭଗତେ ॥ ୨
କୃଷ୍ଣର ଅନୁଗ୍ରହ ଭାବେ ।
ନ ମଲା ଜନନୀର ଗର୍ଭେ ॥ ୩
ବ୍ରାହ୍ମଣ କୋପେ ଶାପ ଦେଲା ।
ତକ୍ଷକେ ମର ତୁ ବୋଇଲା ॥ ୪
ତେଣୁ ତକ୍ଷକ ତାକୁ ବଳେ ।
ବେଗେ ଦଂଶିଲା ଗଙ୍ଗାଜଳେ ॥ ୫
ମରଣ ଜାଣି ମହୀପତି ।
ହୃଦେ ଚିନ୍ତିଲା ଯଦୁପତି ॥ ୬
ହରିମହିମା ପରିମାଣି ।
ବ୍ୟାସକୁମର ମୁଖୁ ଶୁଣି ॥ ୭
ଛାଡ଼ିଣ ସର୍ବସଙ୍ଗ ହେଳେ ।
ଯେ ଜୀବ ଜ୍ଞାନତତ୍ତ୍ୱ ବଳେ ॥ ୮
ଗଙ୍ଗାରେ ଛାଡ଼ି ନିଜପ୍ରାଣ ।
ଗୋବିନ୍ଦେ ପଶିଲା ଶରଣ ॥ ୯
କୃଷ୍ଣର ଗାଥା ଗୁଣପନ୍ତି ।
ଯେ ନିତ୍ୟେ ହୃଦରେ ଚିନ୍ତନ୍ତି ॥ ୧୦
କୃଷ୍ଣର କଥାମୃତ ତୁଣ୍ଡେ ।
କହି ରୋମା ନିଜ ପିଣ୍ଡେ ॥ ୧୧
ସର୍ବଦା ପାଦ ଯେ ସ୍ମରନ୍ତି ।
ମରଣେ କିବା ତାଙ୍କ ଭୀତି ॥ ୧୨
ସେ ରାଜା ଯେତେଦିନ ଥିଲା ।
ସଂସାରେ କଳି ନ ପଶିଲା ॥ ୧୩
ନନ୍ଦନନ୍ଦନ ଯେତେବେଳେ ।
ତନୁ ଛାଡ଼ିଲେ ମହୀତଳେ ॥ ୧୪
ତକ୍ଷଣେ ଅଧର୍ମ ପୁରୁଷ ।
କଳି ଏ ସଂସାରେ ପ୍ରବେଶ ॥ ୧୫
ସେ ରାଜା ତାକୁ ସ୍ଥାନ ଦେଇ ।
ସାରଙ୍ଗ ପ୍ରାୟ ସାର ଖାଇ ॥ ୧୬
କୁଶଳ କର୍ମ ଯେ କରନ୍ତି ।
ସେ ଫଳ ଏ ଦେହେ ଭୁଞ୍ଜନ୍ତି ॥ ୧୭
ଇତର ଚିନ୍ତା ନ ଲାଗଇ ।
ଯେ ଶୁଭକର୍ମେ ନିତ୍ୟେ ଥାଇ ॥ ୧୮
ସେ କଳିଯୁଗ ଭୟଙ୍କର ।
ସ୍ୱଭାବେ ସୁବୁଦ୍ଧି ଗଭୀର ॥ ୧୯
ନିରତେ ଅପ୍ରମତ୍ତ ହୋଇ ।
ସିଂହର ପ୍ରାୟେ ବିକ୍ରମଇ ॥ ୨୦
ପ୍ରମତ୍ତ ପ୍ରାୟ ବାଳ ମଧ୍ୟେ ।
ସେ କଳି ବିହରେ ଆନନ୍ଦେ ॥ ୨୧
ସେ ପରୀକ୍ଷିତ ଗୁଣଗାଥା ।
ଯହିଁ ପ୍ରକାଶ କୃଷ୍ଣକଥା ॥ ୨୨
ପ୍ରସଙ୍ଗେ କହିଲଇଁ ଏବେ ।
ଯେଣୁ ପୁଚ୍ଛିଲ ପ୍ରିୟଭାବେ ॥ ୨୩
କୃଷ୍ଣର ଯେତେ ଗୁଣଗାଥା ।
ଯେ ସାଧୁଜନ ମଧ୍ୟେ କଥା ॥ ୨୪
ତାର ମହିମା ଶୁଦ୍ଧଚିତ୍ତେ ।
କହି ବନ୍ତି ସାଧୁସନ୍ତେ ॥ ୨୫
ନିତ୍ୟେ ତାହାର ପଦ ଚିନ୍ତି ।
ନିଶ୍ଚୟେ ଗୋବିନ୍ଦେ ପଶନ୍ତି ॥ ୨୬
ସୂତ ବଚନ ଶୁଣି କର୍ଣ୍ଣେ ।
ମନ ଆନନ୍ଦେ ମୁନିଜନେ ॥ ୨୭
କର ପ୍ରସାରି ଜଣେ ଜଣ ।
ସୂତଙ୍କୁ କରନ୍ତି କଲ୍ୟାଣ ॥ ୨୮

ଋଷିଜନ ଉବାଚ

ନିର୍ମଳ-ଯଶ-ଗୁଣ-ଦେହୀ ।
ଚିର ଜୀବନେ ରହ ତୁହି ॥ ୨୯
ଆମ୍ଭେ ଯେ ନରଦେହ ବହି ।
ତୋର ନିକଟେ ଶୁଭେ ଥାଇ ॥ ୩୦
କୃଷ୍ଣ ଅମୃତ କଥାମାନ ।
ତୋର ବଚନୁ କର୍ଣ୍ଣେ ପାନ ॥ ୩୧
କରି ବଞ୍ଚିଲୁ ଦିନାକେତେ ।
ସୁସାଧୁ ସଙ୍ଗର ଆୟତ୍ତେ ॥ ୩୨
ଏ ଯଜ୍ଞକର୍ମେ ଆମ୍ଭ ଚିତ୍ତ ।
ବେଦ ବଚନେ ମୋହଗତ ॥ ୩୩
ଏ ଯଜ୍ଞ ଧୂମେ ଧୂମାକୁଳ ।
ଆମ୍ଭର ଆତ୍ମା ହୀନବଳ ॥ ୩୪
ଫୁଟିଲୁ ଯଜ୍ଞବାଟେ ଭ୍ରମି ।
ପଥିକୀ ଯେହ୍ନେ ପଥଶ୍ରମୀ ॥ ୩୫
ତୁ ଯେ ଆମ୍ଭର ଶ୍ରମ ଜାଣି ।
କୃଷ୍ଣ ଅମୃତ କଥା ବାଣୀ ॥ ୩୬
ପାନ କରାଇ ଶ୍ରୁତିମାର୍ଗେ ।
ରଖିଲ ଆମ୍ଭ ପ୍ରାଣ ବେଗେ ॥ ୩୭
ହରି ଭକତଜନ ସଙ୍ଗେ ।
ଯେ କ୍ଷଣେ ବଞ୍ଚେ ନର ଅଙ୍ଗ ॥ ୩୮
ତା ସଙ୍ଗେ ସ୍ୱର୍ଗ-ଭୋଗ-ମୋକ୍ଷ ।
କେ ତୁଲ୍ୟ କରିବ ପ୍ରତ୍ୟକ୍ଷ ॥ ୩୯
ଏଣୁ ଯେ କରେ ସାଧୁସଙ୍ଗ ।
ତରଇ ଏ ଭବତରଙ୍ଗ ॥ ୪୦
ପ୍ରାଣୀ ବାଞ୍ଛିତ ଆଶା ଏତେ ।
ଅଧିକ କ୍ଳେଶ ଏ ଜଗତେ ॥ ୪୧
କୃଷ୍ଣକଥାରେ ରସ ଯେତେ ।
ତାହା ଆସ୍ୱାଦି ଶୁଦ୍ଧଚିତ୍ତେ ॥ ୪୨
କେବା ରସଜ୍ଞ ତାହା ତେଜେ ।
କର୍ଣ୍ଣ ଜିହ୍ୱାରେ ସୁଖେ ଭୁଞ୍ଜେ ॥ ୪୩
ଯାହାର ଗୁଣ ଅନ୍ତ ନାହିଁ ।
ସ୍ୱଭାବେ ନିର୍ଗୁଣ ବୋଲାଇ ॥ ୪୪
ଭବ ବିରଞ୍ଚି ଯାର ଅନ୍ତ ।
ପ୍ରମାଣି ନ ପାରେ ଜଗତ ॥ ୪୫
ଏଣୁ ଭକତ ପ୍ରାଣୀଙ୍କର ।
ଭାବୁକ ମଧ୍ୟେ ତୁମ୍ଭେ ବର ॥ ୪୬
ମହତଜନଙ୍କ ଶରଣ ।
ଯାହାର ଅଭୟ ଚରଣ ॥ ୪୭
ଶ୍ରୀକୃଷ୍ଣ ଉଦାର ଚରିତ ।
ବିଶୁଦ୍ଧ ରସେ ଆମ୍ଭ ଚିତ୍ତ ॥ ୪୮
ଲୋଭିଲା ମଧୁକର ପ୍ରାୟେ ।
ଭୋ ମୁନି କର ତୁ ସଦୟେ ॥ ୪୯

Dr. Sudhanshu Sekhar Mishra

କହ ଗୋବିନ୍ଦ-ରସକଥା ।
ଯେଣେ ଛାଡ଼ିବୁ ଭବବ୍ୟଥା ॥ ୫୦
ସେ ମହାଭାଗ ପରୀକ୍ଷିତ ।
ଭକତ ମଧ୍ୟେ ବୁଦ୍ଧିମନ୍ତ ॥ ୫୧
ବ୍ୟାସନନ୍ଦନ ମୁଖୁ ବାଣୀ ।
ସାନନ୍ଦେ ଗଙ୍ଗାତୀରେ ଶୁଣି ॥ ୫୨
କୃଷ୍ଣର ପାଦପଦ୍ମ ଗନ୍ଧେ ।
ଭୃଙ୍ଗ ଯେସନେ ମକରନ୍ଦେ ॥ ୫୩
ଗରୁଡ଼ଧ୍ୱଜ ପାଦମୂଳେ ।
ପ୍ରାଣ ନିବେଶି ଗଙ୍ଗାଜଳେ ॥ ୫୪
ପଶିଲା ସର୍ବସୁଖ ତେଜି ।
ହରି ଚରଣ ଭାବେ ଭଜି ॥ ୫୫
ତାର ଚରିତ ଯୋଗସାର ।
ସେ ଯେ ଭକତ ମଧ୍ୟେ ବର ॥ ୫୬
ଅନନ୍ତ ଚରିତ ସଂଯୁତ ।
ଯେ କର୍ମ କଲେ ପରୀକ୍ଷିତ ॥ ୫୭
କହ ସକଳ ଆମ୍ଭ ଆଗ ।
ତୁମ୍ଭେ ସହଜେ ମହାଭାଗ ॥ ୫୮
ଶୁଣି କହନ୍ତି ସୂତମୁନି ।
ବିପ୍ରଙ୍କ ଭାବେ ଭାବ ଘେନି ॥ ୫୯

ସୂତ ଉବାଚ

ବୋଲନ୍ତି ଭାଗ୍ୟ ଏ ମୋହର ।
ବୃଦ୍ଧଙ୍କ ମଧ୍ୟେ ପୁରସ୍କାର ॥ ୬୦
ବିଲୋମେ ଜନ୍ମ ମୁଁ ଲଭିଲି ।
ସତ୍‌କୁଳ ମଧ୍ୟେ ଗଣ୍ୟ ହେଲି ॥ ୬୧
ମହତଜନଙ୍କୁ ଯେ ପାଇ ।
ତାର ଦୁଷ୍କୃତ ଦୋଷ କାହିଁ ॥ ୬୨
ଶ୍ରୀକୃଷ୍ଣ ନାମ ଯେ ଗୁଣନ୍ତି ।
ଯେ ଅବା ଶ୍ରବଣେ ଶୁଣନ୍ତି ॥ ୬୩
ତାଙ୍କର କଥା କି କହିବା ।
ତାଙ୍କୁ ସମାନ ଅଛି କେବା ॥ ୬୪
ସେ ହରି ସର୍ବଘଟେ ଥାଇ ।
ଶରଣ ରକ୍ଷଣ ବୋଲାଇ ॥ ୬୫
ଅନନ୍ତ ଶକ୍ତି ଯେ ଅନନ୍ତ ।
ମହାନ୍ତଗୁଣ ନାହିଁ ଅନ୍ତ ॥ ୬୬

ବ୍ରହ୍ମାଦି ଦେବ ଋଷି ଯେତେ ।
ଯା ଅନୁରୋଧେ ବେଦପଥେ ॥ ୬୭
ଯୋଗ ସମାଧି ତପେ ଚିନ୍ତି ।
ଯେ ଲକ୍ଷ୍ମୀ କଟାକ୍ଷ ଇଚ୍ଛନ୍ତି ॥ ୬୮
ସେ ଲକ୍ଷ୍ମୀ ସର୍ବ ଗୁଣ ଛାଡ଼ି ।
ତାର ଚରଣେ ଚିତ୍ତ ବଢ଼ି ॥ ୬୯
ନିତ୍ୟେ ବସଇ ବକ୍ଷସ୍ଥଳେ ।
ଧ୍ୟାନ ନିରୋପି ପାଦମୂଳେ ॥ ୭୦
କୃଷ୍ଣର ପାଦପଦ୍ମ ରଜେ ।
ନିଷ୍କାମ ମାର୍ଗେ ନିତ୍ୟେ ଭଜେ ॥ ୭୧
ଯାହାର ପାଦ ନଖ ଲାଗି ।
ସ୍ୱଭାବେ ଗଙ୍ଗା ସଉଭାଗୀ ॥ ୭୨
ସେ ଗଙ୍ଗାଜଳ ଏ ଜଗତେ ।
ପୂଜନ୍ତି ବିରଞ୍ଚି ସହିତେ ॥ ୭୩
ସେ ଗଙ୍ଗାନାମ ଉଚ୍ଚାରିଲେ ।
ପ୍ରାଣୀ ତରନ୍ତି ପାପୁ ଭଲେ ॥ ୭୪
ଏଣୁ ମୁକୁନ୍ଦ ନାମ ବିନେ ।
ସଂସାରେ କେବା ଉଚ୍ଚାରଣେ ॥ ୭୫
ସେ କି ପଦାର୍ଥ ଏ ଜଗତେ ।
ଚିନ୍ତି ନ ପାରେ ମୁନିସନ୍ତେ ॥ ୭୬
ଯାର ଚରଣେ ସିଦ୍ଧଗଣେ ।
ସମାଧି ଯୋଗ ଆଚରଣେ ॥ ୭୭
ଛାଡ଼ି ବିଷୟ ମୁନିଗଣେ ।
ନିତ୍ୟେ କରନ୍ତି ସୁମରଣ ॥ ୭୮
ଭକ୍ତି ସମାଧି ଦୃଢ଼ାସନେ ।
ତରିଲେ ସଂସାର ବନ୍ଧନେ ॥ ୭୯
ହେ ଆର୍ଯ୍ୟମଣ ମୁନି ଯେତେ ।
ତୁମ୍ଭେ ଯେ ପଚାରିଲ ମୋତେ ॥ ୮୦
କହିବି କୃଷ୍ଣର ମହିମା ।
ଯେ ଅବା ତାର ଗୁଣସୀମା ॥ ୮୧
କେ ଅବା ପାରେ ମୁଖେ କହି ।
ଯେହ୍ନେ ଗଗନ ଅନ୍ତ ନାହିଁ ॥ ୮୨
କୃଷ୍ଣ ମହିମା ସେହିମତେ ।
ଯେ ପକ୍ଷୀ ଉଡ଼ିପାରେ ଯେତେ ॥ ୮୩
ତାର ବାରତା ସେ ଜାଣନ୍ତି ।
ଅଧିକେ ନ ପାରନ୍ତି ଚିନ୍ତି ॥ ୮୪

ଏଣୁ ପଣ୍ଡିତଜନ ଯେତେ ।
ଜ୍ଞାନ ବିଚାରି ଏ ଜଗତେ ॥ ୮୫
କୃଷ୍ଣର ମହିମା ବିଚାରେ ।
ସହସ୍ରଜନ୍ମେ କେବା ପାରେ ॥ ୮୬
ଏବେ ହୋ ଶୁଣ ବିପ୍ରଜନେ ।
ହରିଚରିତ ଶୁଦ୍ଧମନେ ॥ ୮୭
ସେ ପରୀକ୍ଷିତ ଏକଦିନେ ।
ମୃଗୟା ଅର୍ଥେ ଗଲା ବନେ ॥ ୮୮
ମୃଗ ନ ପାଇ ଘୋରବନେ ।
କ୍ଷୁଧିତ ତୃଷିତ ବଦନେ ॥ ୮୯
ଜଳ ନ ପାଇ ପଥଶ୍ରମେ ।
ମିଳିଲା ମୁନିଙ୍କ ଆଶ୍ରମେ ॥ ୯୦
ଦେଖଇ ଏକବୃକ୍ଷ ତଳେ ।
ବ୍ରାହ୍ମଣ ଆସନ ନିଶ୍ଚଳେ ॥ ୯୧
ଆନନ୍ଦେ ମୁଦ୍ରିତ ଲୋଚନେ ।
ଆତ୍ମା ନିବେଶି ଯୋଗଧ୍ୟାନେ ॥ ୯୨
ନିଶ୍ଚଳ ଆତ୍ମା ମନ ବୁଦ୍ଧି ।
ପବନ ନବଦ୍ୱାରେ ରୁନ୍ଧି ॥ ୯୩
ଇନ୍ଦ୍ରିୟଗଣ ପ୍ରତ୍ୟାହାରେ ।
ଧ୍ୟାନେ ପ୍ରବେଶ ଶୂନ୍ୟପୁରେ ॥ ୯୪
ଆଧାର ଲିଙ୍ଗ ନାଭିହୃଦେ ।
କଣ୍ଠମଣ୍ଡଳ ଭ୍ରୂମଧ୍ୟେ ॥ ୯୫
ମନପବନ ବ୍ରହ୍ମରନ୍ଧ୍ରେ ।
ନିବେଶି ଅଛନ୍ତି ଆନନ୍ଦେ ॥ ୯୬
ଯୋଗନିଶ୍ଚଳ ବ୍ରହ୍ମଭୂତ ।
ତିନିବିକାରୁ ସେ ଅତୀତ ॥ ୯୭
ପ୍ରକୀର୍ଣ୍ଣ ଜଟାଭାର ଶିରେ ।
ହରିଣ ଚର୍ମର ଉପରେ ॥ ୯୮
ଏମନ୍ତ ବିପ୍ରକୁ ଅନାଇ ।
ତୃଷିତେ କଣ୍ଠ ଶୁଷ୍କ ହୋଇ ॥ ୯୯
ଜଳ ମାଗିଲା ମହାରାଜା ।
ଇଚ୍ଛଇ ଆପଣାର ପୂଜା ॥ ୧୦୦
ଉଦକ ତୃଣ ଭୂମି ଆଦି ।
ଅତିଥି ପୂଜାର ପ୍ରସିଦ୍ଧି ॥ ୧୦୧
ଅର୍ଘ୍ୟ ସୁନୃତ ସାଧୁବାଣୀ ।
ନ ଲଭି କୋପେ ନୃପମଣି ॥ ୧୦୨

Dr. Sudhanshu Sekhar Mishra

ମନେ ବିଚାରେ ମହାରାଜ ।
ଅବଜ୍ଞା କଲା ମୋତେ ଦ୍ୱିଜ ॥୧୦୩
କ୍ଷୁଧା ତୃଷାର ବଳେ ମନ ।
କ୍ଷଣ କ୍ଷଣକେ ଅଚେତନ ॥୧୦୪
ପ୍ରଚଣ୍ଡ କ୍ରୋଧ କୋପାନଳେ ।
ମୃତ ଉରଗ ଧନୁହୁଳେ ॥୧୦୫
ବ୍ରାହ୍ମଣଗଳେ ନେଇ ଦେଲା ।
ତକ୍ଷଣେ ନିଜପୁରେ ଗଲା ॥୧୦୬
ସେ ପରୀକ୍ଷିତ ନୃପମଣି ।
ବ୍ରାହ୍ମଣ କଥା ମନେ ଗୁଣି ॥୧୦୭
ସର୍ବ ଇନ୍ଦ୍ରିୟର ନିବୃତ୍ତି ।
ନୟନ ବୁଜି କିମ୍ବା ଛନ୍ତି ॥୧୦୮
କିବା ଏ ରାଜାଙ୍କ ଆଗତ ।
ନିମିତ୍ତେ କରି ଦୃଢ଼ବ୍ରତ ॥୧୦୯
ତେଣୁ ଏ କପଟ ଏହାର ।
ନିଶ୍ଚଳ ସମାଧି ଗୋଚର ॥୧୧୦
ଏତେ ଅବଜ୍ଞା ନରଦେହେ ।
କ୍ଷତ୍ରିୟଜନ୍ମେ କେବା ସହେ ॥୧୧୧
ଏମନ୍ତେ ଗଲା ନରନାଥ ।
ତକ୍ଷଣେ ବ୍ରାହ୍ମଣର ସୁତ ॥୧୧୨
ବାଳକ ସଙ୍ଗେ କ୍ରୀଡ଼ା କରେ ।
ତେଜେ ଅନଳ ରୂପ ଧରେ ॥୧୧୩
ରାଜାର ଆଗମନ କଥା ।
ପିତାର ଯେମନ୍ତ ବ୍ୟବସ୍ଥା ॥୧୧୪
ବାଳକ ମୁଖୁ ଶୁଣି କୋପେ ।
ମିଳିଲା ପିତାର ସମୀପେ ॥୧୧୫
ପିତାର ଗଳେ ସର୍ପ ଦେଖି ।
କୋପେ ଚଳ କଲା ଆଖି ॥୧୧୬
ସଂସାର ଧର୍ମ ଯେ ପାଳକ ।
ଦେଖ ତାହାର ଅବିବେକ ॥୧୧୭
ଶ୍ୱାନର ପ୍ରାୟେ ଚେଷ୍ଟା କଲା ।
ଦାସ ତ ସ୍ୱାମୀକୁ ଲଂଘିଲା ॥୧୧୮
ବ୍ରାହ୍ମଣେ କ୍ଷତ୍ରିୟଙ୍କୁ ବରି ।
ଯଜ୍ଞରେ ଦ୍ୱାରପାଳ କରି ॥୧୧୯
ଶ୍ୱାନର ପ୍ରାୟେ ଦ୍ୱାରେ ଥାନ୍ତି ।
ସେ ଭାଣ୍ଡେ ଭୋଜନ ଇଚ୍ଛନ୍ତି ॥୧୨୦

ଉତ୍ପଥ ପ୍ରାଣୀ ଦଣ୍ଡ ଅର୍ଥେ ।
ଯେ କୃଷ୍ଣ ଥିଲେ ଏ ଜଗତେ ॥ ୧୨୧
ସେ ଯେଣୁ ନିଜପୁରେ ଗଲା ।
ତେଣୁ ଏ ଅନ୍ୟାୟ ଚିନ୍ତିଲା ॥ ୧୨୨
ଏ ପ୍ରାଣୀ ସଂସାରେ ରହିଲେ ।
ଧର୍ମ ନଥିବ ଏଥି ଭଲେ ॥ ୧୨୩
ଦେଖ ମୋହର ବିପ୍ରପଣ ।
କରିବି ଏଥିର କାରଣ ॥ ୧୨୪
ଏମନ୍ତ ବାଳକଙ୍କୁ କହି ।
ରଙ୍ଗନୟନେ ରୋଷ ବହି ॥ ୧୨୫
କୌଶିକୀ ଜଳେ ହସ୍ତଭରି ।
ମାର୍ଜନା ଆଚମନ କରି ॥ ୧୨୬
ରାଜା ଉଦ୍ଦେଶ୍ୟ କରି ମନେ ।
ବଜ୍ର-ପ୍ରହାରଣ ବଚନେ ॥ ୧୨୭
ବୋଲଇ ଅଧର୍ମ ବିଚାର ।
ଅନ୍ୟାୟ କଲା ଏ ପାମର ॥ ୧୨୮
ଆଜହୁଁ ସପତ-ଦିବସେ ।
ତକ୍ଷକ ଆସି ମହାରୋଷେ ॥ ୧୨୯
ତାର ଶରୀର ବେଗେ ଖାଉ ।
ଏ ପାପୀ ଜଗତେ ନ ଥାଉ ॥ ୧୩୦
ମୋର ପିତାର ଦ୍ରୋହକାରୀ ।
ସେ କିମ୍ବା ଥିବ ଦେହଧରି ॥ ୧୩୧
ଏମନ୍ତ ଶାପ ତାକୁ ଦେଇ ।
ମିଳିଲା ପିତା ପାଶେ ଯାଇ ॥ ୧୩୨
ପିତାର ଗଳେ ସର୍ପ ଦେଖି ।
କାନ୍ଦଇ ଅତି ଦୁଃଖେ ଦୁଃଖୀ ॥ ୧୩୩
ପୁତ୍ର ରୋଦନ କର୍ଣ୍ଣେ ଶୁଣି ।
ଧ୍ୟାନ ତେଜିଲା ବିପ୍ରମଣି ॥ ୧୩୪
ସେ ଆଙ୍ଗିରସ ନିଜାସନେ ।
ଚାହିଁଲା ଉନ୍ମୀଳ ଲୋଚନେ ॥ ୧୩୫
ଆପଣା ଗଳେ ସର୍ପ ଦେଖି ।
ଉଠିଲା ଆସନ ଉପେକ୍ଷି ॥ ୧୩୬
ଗଳାରୁ ସର୍ପକୁ ପକାଇ ।
ପୁଚ୍ଛଇ ପୁତ୍ରମୁଖ ଚାହିଁ ॥ ୧୩୭
ହେ ପୁତ୍ର କାନ୍ଦୁ କିସ ଅର୍ଥେ ।
କେ ପ୍ରାଣୀ ଶୋକ ଦେଲା ତୋତେ ॥ ୧୩୮

ପିତା ବଚନ ଶୁଣି ବଳା ।
ସଂକ୍ଷେପି ସକଳ କହିଲା ॥ ୧୩୯
ହେ ତାତ ଶୁଣ ମୋର ବାଣୀ ।
ମୃଗୟା ଆସି ନୃପମଣି ॥ ୧୪୦
ମଉନବ୍ରତ ତୋର ଦେଖି ।
ସ୍ୱଧର୍ମ କଲା ସେ ଉପେକ୍ଷି ॥ ୧୪୧
ମୃତ-ଉରଗ ତୋର ଗଳେ ।
ଦେଇ ଚଳିଲା ଅବହେଳେ ॥ ୧୪୨
ମୁଁ ତାକୁ ଜାଣି ଶାପ ଦେଲି ।
ତକ୍ଷକେ ମର ତୁ ବୋଇଲି ॥ ୧୪୩
ଏବେ ତୋ ଗଳେ ସର୍ପ ଚାହିଁ ।
ଭୟେ କାନ୍ଦଇ ଦୂରେ ରହି ॥ ୧୪୪
ପୁତ୍ର ବଚନ ଶୁଣି କର୍ଣ୍ଣେ ।
କୋପ ବସିଲା ବିପ୍ରମନେ ॥ ୧୪୫
ପୁତ୍ରକୁ ଚାହିଁ କୋପଭରେ ।
ବୋଲଇ ନିଷ୍ଠୁର ଉତ୍ତରେ ॥ ୧୪୬
ଅଳପ ଅପରାଧେ ତୁହି ।
ଏ କର୍ମ କଲୁ କିସ ପାଇଁ ॥ ୧୪୭
ସେ ଭାଗବତ ପୁଣ୍ୟଦେହୀ ।
ଏ ଶାପ ତାକୁ ନ ଯୋଗାଇ ॥ ୧୪୮
ଅହୋ ଆଶ୍ଚର୍ଯ୍ୟ ଦେଖ କଥା ।
ଶୁଣି ମୋ ମନେ ଗରୁ ବ୍ୟଥା ॥ ୧୪୯
ଅଳପ ଅପରାଧେ ଦେଖ ।
ଦୁର୍ବୁଦ୍ଧି ବିହିଲୁ ବାଳକ ॥ ୧୫୦
ଯାହାର ଭୁଜ ଆଶ୍ରେ କରି ।
ଧର୍ମ-ସମ୍ପଦ-ସୁଖ-ଶିରୀ ॥ ୧୫୧
ପ୍ରଜାଏ ସୁଖେଣ ଭୁଞ୍ଜନ୍ତି ।
ସେ କି କାହାରେ ଦ୍ରୋହ ଚିନ୍ତି ॥ ୧୫୨
ବିଷ୍ଣୁର ଅଂଶ ନରପତି ।
କେ ଅଛି ତାରେ ଦ୍ରୋହ ଚିନ୍ତି ॥ ୧୫୩
ଏବେ ରାଜାର ଅନ୍ତେ ମହୀ ।
ଚଉର୍ଯ୍ୟ ବଳଦର୍ପ ବହି ॥ ୧୫୪
ଅରକ୍ଷ ମେଷଯୂଥ ପ୍ରାୟେ ।
ଲୋକ ନଶିବେ ଚୋରଭୟେ ॥ ୧୫୫
ଧନ ହରିବେ ଅନ୍ୟୋଅନ୍ୟେ ।
ପ୍ରଜା ପଶିବେ ଘୋରବନେ ॥ ୧୫୬

Dr. Sudhanshu Sekhar Mishra

ନିର୍ଭୟେ ପଶୁଙ୍କୁ ହିଂସିବେ ।
ପର ରମଣୀ ନ ମାନିବେ ॥ ୧୫୭
ଅନାଥ ହୋଇବ ସଂସାର ।
ସେ ପାପ ହୋଇବ ଆମ୍ଭର ॥ ୧୫୮
ଧର୍ମ ଛାଡ଼ିବ ଚାରିପାଦେ ।
ଯେବା ବିହିତ ଅଛି ବେଦେ ॥ ୧୫୯
ବର୍ଣ୍ଣ ଆଶ୍ରମ ଯେ ଆଚାର ।
ଏ ତିନିଧର୍ମ ଯେ ବେଦର ॥ ୧୬୦
ସେ ଧର୍ମ ତେଜି ଅଭ୍ୟନ୍ତରେ ।
ପଶିବେ ଅଧର୍ମ ବେଭାରେ ॥ ୧୬୧
ସର୍ବେ ବୁଡ଼ିବେ ଅର୍ଥକାମେ ।
ବଞ୍ଚିବେ ଶ୍ୱାନ କପି ଧର୍ମେ ॥ ୧୬୨
ଏ ଧର୍ମପାଳ ନରପତି ।
ସୁକୃତବନ୍ତ ଚକ୍ରବର୍ତ୍ତୀ ॥ ୧୬୩
ସାକ୍ଷାତେ ମହାଭାଗବତ ।
ସେ ରାଜରଷି ପରୀକ୍ଷିତ ॥ ୧୬୪
କଲା ଯେ ତିନି ଅଶ୍ୱମେଧ ।
ଆଗମ ନିଗମ ପ୍ରସିଦ୍ଧି ॥ ୧୬୫
କ୍ଷୁଧା ତୃଷାରେ ବୁଲି ବନେ ।
ମିଳିଲା ମୋହର ଆଶ୍ରମେ ॥ ୧୬୬
ତାହାଙ୍କୁ ଶାନ୍ତି ତୁ ନ କଲୁ ।
ବିଶେଷେ ଘୋରଶାପ ଦେଲୁ ॥ ୧୬୭
ସେ ଆମ୍ଭ ଶାପ୍ୟେ ଯୋଗ୍ୟ ନୋହେ ।
ଅଶେଷ ଧର୍ମେ ଦେହ ବହେ ॥ ୧୬୮

ଏମନ୍ତେ କୃଷ୍ଣ ମନେ ଧ୍ୟାୟି ।
ବ୍ରାହ୍ମଣ ବୋଲେ ତ୍ରାହି ତ୍ରାହି ॥ ୧୬୯
ନିଷ୍ପାପ ଭୃତ୍ୟକୁ ଏ ବଳେ ।
ଦ୍ରୋହ ଚିନ୍ତିଲା ମହୀତଳେ ॥ ୧୭୦
ଅଳପ ବୁଦ୍ଧି ଏ ବାଳକ ।
ଏହାର ମନେ କଲା ଦୁଃଖ ॥ ୧୭୧
ଭୋ ନାଥ କରୁଣାସାଗର ।
ବାଳକ ଦୋଷ କ୍ଷମାକର ॥ ୧୭୨
ନିନ୍ଦା କପଟ ଅବଜ୍ଞାନ ।
ଶାପ ତାଡ଼ନ ଆଦି ମାନ ॥ ୧୭୩
କଲା ପ୍ରାଣୀଙ୍କି ପ୍ରତିକୃତ ।
ନ କରେ ଯେ ତୋର ଭକତ ॥ ୧୭୪
ତୋହର ଭକତ ଯେ ଜନ ।
କୋପ ନ ବସେ ତାର ମନ ॥ ୧୭୫
ପ୍ରାଣୀଙ୍କ ଅପରାଧ ସହେ ।
ତୋହର ଭାବେ ଚିତ୍ତବହେ ॥ ୧୭୬
ଅତି ଅନ୍ୟାୟ କର୍ମ ମୋର ।
ମୁଁ କର୍ମହୀନ ଦୁରାଚାର ॥ ୧୭୭
ନିରପରାଧେ ଦ୍ରୋହ ଚିନ୍ତି ।
ଏ ମୋର ଚିତ୍ତେ ଗରୁଭ୍ରାନ୍ତି ॥ ୧୭୮
ଦେବହେଳନ କର୍ମ ମୋର ।
ନିଶ୍ଚେ ଲଭିଲି ଦାମୋଦର ॥ ୧୭୯
ଦୁଃଖ ମୁଁ ଲଭିବି ନିକଟେ ।
ଏ ଘୋର-ସଂସାର-ସଙ୍କଟେ ॥ ୧୮୦

ଏମନ୍ତେ ପୁତ୍ର ଅପରାଧେ ।
ମହତ ଶାପ ଅପବାଦେ ॥ ୧୮୧
ଅନୁତାପିତ ବିପ୍ରବର ।
ବୋଲେ ଗୋବିନ୍ଦ ରକ୍ଷାକର ॥ ୧୮୨
ରାଜା ଯେ ଅପରାଧ କଲା ।
ସେ କଥା ଚିତ୍ତେ ନଘେନିଲା ॥ ୧୮୩
ଏ ନରଲୋକେ ସାଧୁ ଯେତେ ।
କୋପ ନ ବଶେ ତାଙ୍କ ଚିତ୍ତେ ॥ ୧୮୪
ପ୍ରାଣୀଙ୍କ ଦୋଷ ନ ଘେନନ୍ତି ।
ସ୍ତୁତିରେ ହରଷ ନୁହନ୍ତି ॥ ୧୮୫
ପରଦୁଃଖରେ ଦୁଃଖୀ ହୋନ୍ତି ।
ସମଦୃଷ୍ଟିରେ ଆତ୍ମା ଚିନ୍ତି ॥ ୧୮୬
ସେ ସାଧୁଜନଙ୍କର କଥା ।
କେବେହେଁ ନୁହଇ ଅନ୍ୟଥା ॥ ୧୮୭
ବୋଲଇ ଦାସ ଜଗନ୍ନାଥ ।
ଭାଷାପ୍ରବନ୍ଧେ ଭାଗବତ ॥ ୧୮୮
ସୁଜନଜନଙ୍କର ହିତେ ।
ଯେବା ପ୍ରକାଶ ମୋର ଚିତ୍ତେ ॥ ୧୮୯
ସୁଜନେ ନ ଘେନିବ ଦୋଷ ।
ମୁଁ ତୁମ୍ଭ ଦାସଙ୍କର ଦାସ ॥ ୧୯୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ବିପ୍ରଶାପୋପଲମ୍ଭନଂ
ନାମ ଅଷ୍ଟାଦଶୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ଊନବିଂଶ ଅଧ୍ୟାୟ

ସୂତ କହନ୍ତି ଅନୁରାଗେ ।
ଶୌନକଆଦି ଋଷିଆଗେ ॥ ୧

### ସୂତ ଉବାଚ

ସେ ମହୀପତି ପରୀକ୍ଷିତ ।
ଚିନ୍ତା ନିମଗ୍ନ ଦୁଃଖଚିତ୍ତ ॥ ୨
ଏକାନ୍ତେ ବସି ବିଚାରଇ ।
ନିନ୍ଦିତକର୍ମ କଲି ମୁହିଁ ॥ ୩
ଅର୍ଜିତ-କର୍ମବଶ ହୋଇ ।
ଗୁରୁ ଯେସନେ ଶିକ୍ଷା ଦେଇ ॥ ୪
ଅନ୍ୟାୟେ ପ୍ରାଣୀଙ୍କ ବେଭାରେ ।
କୁକର୍ମ କଲି ଏ ସଂସାରେ ॥ ୫
ନିର୍ଦ୍ଦୋଷ-ବ୍ରାହ୍ମଣର ଗଳେ ।
ସର୍ପ ଲମ୍ବାଇ ଧନୁହୁଳେ ॥ ୬
ନିଶ୍ଚଳ-ଯୋଗେ ତାର ଧ୍ୟାନ ।
ନ ଜାଣି ହେଲି ହତଜ୍ଞାନ ॥ ୭
ଦେବହେଳନ କର୍ମ କଲି ।
ନିକଟେ ସଙ୍କଟ ଲଭିଲି ॥ ୮
ଏ ପାପ-ବିନାଶନ ହେତୁ ।
ବେଗେ ବିଧାତା ମୋତେ ଚିନ୍ତୁ ॥ ୯
ଏ କର୍ମ ପୁଣ ମୁଁ ଯେମନ୍ତେ ।
କେବେହେଁ ନ କଲ୍ପଇ ଚିତ୍ତେ ॥ ୧୦
ବ୍ରାହ୍ମଣକ୍ରୋଧ ଦାବାନଳ ।
ଏ ମୋର ରାଜ୍ୟ-ଧନବଳ ॥ ୧୧
ଆତ୍ମାର ସଙ୍ଗେ ଦହୁ ମୋତେ ।
ଏ କର୍ମ ନ କରେ ଯେମନ୍ତେ ॥ ୧୨
ଗୋଦ୍ୱିଜଦେବଙ୍କ ହିଂସନେ ।
ଦୁର୍ବୁଦ୍ଧି ନ ସ୍ଫୁରୁ ମୋ ମନେ ॥ ୧୩
ଏମନ୍ତେ ବିଚାରୁ ବିଷାଦେ ।
ବୃତ୍ତାନ୍ତ ଶୁଭେ ଜନପଦେ ॥ ୧୪
ଉରଗ ବ୍ରାହ୍ମଣର ଗଳେ ।
ରାଜା ଯେ ଦେଲା ଧନୁହୁଳେ ॥ ୧୫

ତାର ବାଳକ ଶାପ ଦେଲା ।
ତକ୍ଷକ ଦଂଶିବ ବୋଇଲା ॥ ୧୬
ସପ୍ତମଦିନେ କୋପାନଳେ ।
ତାହାଙ୍କୁ ଦଂଶିବ ସେ ବଳେ ॥ ୧୭
ଏମନ୍ତ ଜନମୁଖୁ ଶୁଣି ।
ମନେ ସାନନ୍ଦ ନୃପମଣି ॥ ୧୮
ବୋଲଇ ବେଗେ ମୋତେ ଖାଉ ।
ଏ ମୋର କୁଳେ ତାପ ନୋହୁ ॥ ୧୯
ଯେଣୁ ବିଷୟୀ ତ୍ୟାଗ ହେତୁ ।
ତେଣୁ ଚିନ୍ତଇ ଆତ୍ମାମୃତ୍ୟୁ ॥ ୨୦
ଯେମନ୍ତେ ଇହ ପରଲୋକେ ।
ମରଣେ ନ ପଡ଼ଇ ଦୁଃଖେ ॥ ୨୧
ଏମନ୍ତ ନିଶ୍ଚୟ ବିଚାରି ।
ରାଜସମ୍ପଦ ପରିହରି ॥ ୨୨
ଚିନ୍ତିଲା କୃଷ୍ଣ-ପାଦପୁଷ୍ପ ।
ସେବନ ବିନା ନାହିଁ ଶ୍ରେଷ୍ଠ ॥ ୨୩
କୃଷ୍ଣର ପାଦପଦ୍ମଜଳେ ।
ପ୍ରବେଶ ଯାଇ ଗଙ୍ଗାକୂଳେ ॥ ୨୪
ଶ୍ରୀକୃଷ୍ଣ-ଚରଣ-ତୁଳସୀ ।
ପାଦଉଦକରଜେ ମିଶି ॥ ୨୫
ଅତି ପବିତ୍ର ବହେ ବାରି ।
ଉଭୟଲୋକ ପାପହରି ॥ ୨୬
ପ୍ରାଣୀର ପ୍ରାଣତ୍ୟାଗ କାଳେ ।
କେବା ନବସେ ତାର କୂଳେ ॥ ୨୭
ପାଣ୍ଡବବଂଶେ କୀର୍ତ୍ତିକର ।
ସକଳରାଜା ମଧ୍ୟେ ବର ॥ ୨୮
ସେ ସୁରନଦୀ ତୀରେ ଯାଇ ।
ଚିତ୍ତେ ଗୋବିନ୍ଦପଦ ଧ୍ୟାୟି ॥ ୨୯
ବିଷୟସଙ୍ଗ ଦୂର କରି ।
ଅନ୍ନ-ଉଦକ ପରିହରି ॥ ୩୦
ମୁନିଙ୍କ ବ୍ରତେ ସେ ନିଶ୍ଚଳେ ।
ମନ ନିବେଶି ଗଙ୍ଗାଜଳେ ॥ ୩୧

ସେ କଥା ଶୁଣି ମୁନିଜନେ ।
ଯେ ଅବା ଥିଲେ ଗିରିବନେ ॥ ୩୨
ନିଜ ନିବାସ ଉପେକ୍ଷିଲେ ।
ହସ୍ତିନା ନଗରେ ମିଳିଲେ ॥ ୩୩
ଯେ ଅବା ଥିଲେ ଯେଉଁ ଦେଶେ ।
ରାଜାଙ୍କୁ ଦେଖିବାର ଆଶେ ॥ ୩୪
ସଙ୍ଗତେ ଘେନି ଶିଷ୍ୟଗଣ ।
ଅପରେ ଅଶେଷ ବ୍ରାହ୍ମଣ ॥ ୩୫
ତାଙ୍କ ମହିମା କେବା କହେ ।
ତୀର୍ଥ ପବିତ୍ର ତାଙ୍କ ଦେହେ ॥ ୩୬
ଅତ୍ରି ବଶିଷ୍ଠ ଆଦି ମୁନି ।
ଚ୍ୟବନ ଭୃଗୁ ବ୍ୟାସ ଘେନି ॥ ୩୭
ଅଙ୍ଗିରା ପରାଶର ଗାଧି ।
ସୁତ ଉତଥ୍ୟ ଯେ ପ୍ରସିଦ୍ଧି ॥ ୩୮
ଗୌତମ ଭରଦ୍ୱାଜ ମୁନି ।
ମୈତ୍ରେୟ ବିଶ୍ୱାମିତ୍ର ଘେନି ॥ ୩୯
ଅରିଷ୍ଟନେମି ଆର୍ଷ୍ଟିଷେଣ ।
ଇନ୍ଦ୍ରପ୍ରମଦ ଶରଦ୍ୱାନ ॥ ୪୦
ନାରଦମୁନି ଆଦି କରି ।
ସର୍ବେ ମିଳିଲେ ରାଜପୁରୀ ॥ ୪୧
ଦେବର୍ଷି ରାଜର୍ଷି ମହର୍ଷି ।
ଅପରେ ଯେତେକ ବ୍ରହ୍ମର୍ଷି ॥ ୪୨
ସକଳ ଋଷି ଏକମେଳେ ।
ମିଳିଲେ ଜାହ୍ନବୀର କୂଳେ ॥ ୪୩
ତାହାଙ୍କୁ ଦେଖି ପରୀକ୍ଷିତ ।
କପୋଳେ ଦେଇ ବେନିହସ୍ତ ॥ ୪୪
ବନ୍ଦିଲା ମୁନିଗଣ-ପାଦେ ।
ଆନନ୍ଦେ ଅଶ୍ରୁ-ଗଦଗଦେ ॥ ୪୫
ସୁଖେ ବସିଲେ ମୁନିଗଣେ ।
ପୁଣି ହିଁ ରାଜା ପରଣାମେ ॥ ୪୬
କର ଅଞ୍ଜଳି ଶିରେ ଦେଇ ।
ବୋଲଇ କୃତକୃତ୍ୟ ହୋଇ ॥ ୪୭

Dr. Sudhanshu Sekhar Mishra

## ପରୀକ୍ଷିତ ଉବାଚ

ରାଜାଙ୍କ ମଧ୍ୟେ ମୋ ଜୀବନ ।
ନିଶ୍ଚେ ଜାଣିଲି ଧନ୍ୟ ଧନ୍ୟ ॥ ୪୮
ମୋହର ପ୍ରାଣତ୍ୟାଗ କାଳେ ।
ମହାନ୍ତଜନେ ବିଜେ କଲେ ॥ ୪୯
ବ୍ରାହ୍ମଣପାଦ ଯହିଁ ଧୋଇ ।
ସେ ସ୍ଥାନେ ନିଜ ଶିର ଦେଇ ॥ ୫୦
କ୍ଷତ୍ରିୟ ସ୍ୱଭାବ ଏମନ୍ତ ।
ଆଗମ ନିଗମ ଉକତ ॥ ୫୧
ଯେ ଏହା ଲଙ୍ଘେ ଦୁଷ୍ଟପଣେ ।
ଦୂଷିତ ହୋଇ ତତକ୍ଷଣେ ॥ ୫୨
ସେ ବିପ୍ରେ ଆସି ମୋର ପାଶେ ।
ବସନ୍ତି ମନର ହରଷେ ॥ ୫୩
ତାହାର ଭାଗ୍ୟ କି କହିବା ।
ଯାହା ନ ପାନ୍ତି ସୁର ଦେବା ॥ ୫୪
ଅପ୍ରାଧ କଲି ବିପ୍ରକୁଳେ ।
ଦେଖ ମୋହର ଅନ୍ତକାଳେ ॥ ୫୫
ସର୍ବ-ବିଷୟ-ସଙ୍ଗ ତେଜି ।
କୃଷ୍ଣଚରଣେ ଚିତ୍ତମଜି ॥ ୫୬
ତୁମ୍ଭେ ଅଶେଷ ବ୍ରହ୍ମରଷି ।
ମିଳିଲ ମୋର ପାଶେ ଆସି ॥ ୫୭
ବ୍ରାହ୍ମଣ ଶାପ କୋପାନଳ ।
ଏ ମୋର ବିମୁକ୍ତିର ମୂଳ ॥ ୫୮
ଯେ କର୍ମ କଲେ ଏ ସଂସାରେ ।
ପ୍ରାଣୀ ତରନ୍ତି ମାୟାଘୋରେ ॥ ୫୯
ତୁମ୍ଭର ଅନୁଗ୍ରହ ସେବି ।
ପ୍ରସନ୍ନ ହେଉ ଗଙ୍ଗାଦେବୀ ॥ ୬୦
କୃଷ୍ଣଚରଣେ ପ୍ରୀତି ହେଉ ।
କୁହକ ତକ୍ଷକ ବା ଖାଉ ॥ ୬୧
ତେଣେ ସଂଶୟ ନାହିଁ ମୋର ।
ସକଳେ କୃଷ୍ଣକଥା କର ॥ ୬୨
କୃଷ୍ଣବିଷୟେ ହେଉ ମତି ।
ତାର ସେବକ ସଙ୍ଗ ଗତି ॥ ୬୩
ମୋହର କର୍ମଫଳ ଲଭି ।
ଜନ୍ମ ଲଭିବି ଯହିଁ ତହିଁ ॥ ୬୪
ମୁଁ ତହିଁ କୃଷ୍ଣଦାସ ପଣେ ।
ସେବିବି ଅଭୟ ଚରଣେ ॥ ୬୫

ଶରଣାଗତ ବୋଲି ମୁହିଁ ।
ହେ ବିପ୍ରେ ଭାବ ଦୟା ବହି ॥ ୬୬
ସକଳଜୀବେ ମିତ୍ରଭାବ ।
ଯେମନ୍ତେ ହୋଇବ ସମ୍ଭବ ॥ ୬୭
ଏମନ୍ତ ମୋତେ ଦିଅ ବର ।
ତୁମ୍ଭ ଚରଣେ ନମସ୍କାର ॥ ୬୮
ଏମନ୍ତ ମୁନିଙ୍କି ଜଣାଇ ।
କୃଷ୍ଣଚରଣେ ମନ ଦେଇ ॥ ୬୯
ଜାହ୍ନବୀତୀରେ କୁଶଶଯ୍ୟା ।
ଶୟନ ଅର୍ଥେ କଲା ରାଜା ॥ ୭୦
ପୂର୍ବଦିଗକୁ ଶିର କରି ।
ଉତ୍ତରମୁଖେ ଦଣ୍ଡଧାରୀ ॥ ୭୧
ଗଙ୍ଗା ଦକ୍ଷିଣକୂଳେ ଶୋଇ ।
କାରୁଣ୍ୟଜଳେ ଦୃଷ୍ଟି ଦେଇ ॥ ୭୨
ଯେ ଜନ୍ମେଜୟ ସୁତ ତାର ।
ତା ଶିରେ ଦେଇ ରାଜ୍ୟଭାର ॥ ୭୩
ଅଶେଷ ଋଷିଗଣ ମଧ୍ୟେ ।
ମନ ନିବେଶି କୃଷ୍ଣପାଦେ ॥ ୭୪
ଆକାଶେ ଥାଇ ଦେବଗଣେ ।
ଆନନ୍ଦେ ପୁଷ୍ପବରଷଣେ ॥ ୭୫
ଦୁନ୍ଦୁଭି ବାଦ୍ୟନାଦ ତୁଲେ ।
ସାଧୁଶବଦେ ସ୍ତୁତି କଲେ ॥ ୭୬
ଯେ ମୁନିଗଣେ ଗଙ୍ଗାକୂଳେ ।
ଥିଲେ ଯେ ପରୀକ୍ଷିତ ମେଳେ ॥ ୭୭
ଗଗନେ ଶୁଣି ସାଧୁବାଣୀ ।
ଆନନ୍ଦମନେ ସର୍ବମୁନି ॥ ୭୮
ସାଧୁଶବଦ ଉଚ୍ଚସ୍ୱରେ ।
ଦିଶ ପୂରିଲା ଗଙ୍ଗାତୀରେ ॥ ୭୯
ପ୍ରଜାଏ ଅନୁଗ୍ରହ ମୁଖେ ।
କହନ୍ତି ଏକକୁ ଆରକେ ॥ ୮୦
ଏ ସାଧୁରାଜା ବିଚକ୍ଷଣ ।
ଅକାଳେ ଲଭିବ ମରଣ ॥ ୮୧
ଦେଖ ଏହାର ଭାଗ୍ୟବଳେ ।
ମୁନିଙ୍କ ମଧ୍ୟେ ଅନ୍ତକାଳେ ॥ ୮୨
ଯାର ଆସ୍ଥାନେ ସର୍ବରାଜା ।
ଶିର ନୁଆଁଇ କଲେ ପୂଜା ॥ ୮୩
ସେ ରାଜା କାଳେ ହରିଭାବେ ।
ପଶିବ ଜନ୍ମର ସ୍ୱଭାବେ ॥ ୮୪

ଏ ନରପତି ଯେତେଦିନେ ।
ପ୍ରାଣ ଛାଡ଼ିବ କୃଷ୍ଣଧ୍ୟାନେ ॥ ୮୫
ସୁଖେ ଲଭିବ ବିଷ୍ଣୁଲୋକ ।
ଯେ ସ୍ଥାନ ବିମୋହ ବିଶୋକ ॥ ୮୬
ଆମ୍ଭେ ସକଳେ ଏହି ସ୍ଥାନେ ।
ବଞ୍ଚିବା ଗଙ୍ଗାଜଳପାନେ ॥ ୮୭
ଏ ଭାଗବତର ଉତ୍ତମ ।
ନିଶ୍ଚେ ଲଭିବ ପ୍ରେମଧାମ ॥ ୮୮
ଏମନ୍ତେ ପ୍ରଜାମୁଖୁ ଶୁଣି ।
ଅମୃତ ସମ ସାଧୁବାଣୀ ॥ ୮୯
ରାଜା ମଣିଲା ସତ୍ୟ ପ୍ରାୟ ।
ଛାଡ଼ିଲା ସକଳ ସଂଶୟ ॥ ୯୦
କୃଷ୍ଣଚରଣ ସେବାଫଳେ ।
ଅଶେଷ ପ୍ରାଣୀ ମହୀତଳେ ॥ ୯୧
ପୂର୍ବେ ଲଭିଲେ ହରିଭାବ ।
ଯେ ବ୍ରହ୍ମାଶଙ୍କରେ ଦୁର୍ଲ୍ଲଭ ॥ ୯୨
ଦେଖ ମୋହର ଭାଗ୍ୟବଶୁ ।
ସର୍ବେ ମିଳିଲେ ସର୍ବଦେଶୁ ॥ ୯୩
ବେଦେ ଯେମନ୍ତ ଦେହବନ୍ତେ ।
ସ୍ୱର୍ଗେ ବିବୁଧଙ୍କ ସଙ୍ଗତେ ॥ ୯୪
ବସି କହନ୍ତି ନାନାଧର୍ମ ।
ଯେ ବର୍ଣ୍ଣେ ଯେବା ନିଜକର୍ମ ॥ ୯୫
ଯେ ଫଳ ଇହ ପରଲୋକେ ।
ପ୍ରାଣୀ ଲଭନ୍ତି ସୁଃଖସୁଖେ ॥ ୯୬
ତେମନ୍ତେ ଅନୁଗ୍ରହ ଚିତ୍ତେ ।
ତୁମ୍ଭେ ଆଗତ ପରହିତେ ॥ ୯୭
ଏ ବିନେ ନାହିଁ କାର୍ଯ୍ୟ ଆର ।
ଏ ଦେହସ୍ୱଭାବ ତୁମ୍ଭର ॥ ୯୮
ତୁମ୍ଭଙ୍କୁ ପଚାରଇ ମୁହିଁ ।
ମରଣେ ଅନ୍ତର୍କାଳେ ଥାଇ ॥ ୯୯
ଏବେ କି କୃତ୍ୟ ଅଛି ମୋତେ ।
କହ ସକଳେ ଶୁଦ୍ଧଚିତ୍ତେ ॥ ୧୦୦
ଏ ଘୋର-ସଂସାର-ସାଗରେ ।
ମରଣୁ କିବା କରି ତରେ ॥ ୧୦୧
ଏମନ୍ତ ପୁଚ୍ଛୁଁ ରାଜଋଷି ।
ଶୁକ ମିଳିଲେ ବେଗେ ଆସି ॥ ୧୦୨
ମହୀ-ଭ୍ରମଣ ଇଚ୍ଛା ସୁଖେ ।
ଶ୍ରୀକୃଷ୍ଣନାମ ଗାଇ ମୁଖେ ॥ ୧୦୩

Dr. Sudhanshu Sekhar Mishra

ଲକ୍ଷି ନପାରି ଯାର ଅଙ୍ଗ ।
କ୍ଷଣକ୍ଷଣକେ ନାନାରଙ୍ଗ ॥ ୧୦୪
ନିରତେ ନିଜ ଲାଭେ ତୋଷ ।
ସ୍ୱଭାବେ ଅବଧୂତ ବେଶ ॥ ୧୦୫
ବେଷ୍ଟିତ ବାଳକ ସମୂହେ ।
କିବା ଉପମା ଦେବା ଦେହେ ॥ ୧୦୬
ସ୍ୱଭାବେ ଷୋଡ଼ଶ ଅବଦ ।
ସୁନ୍ଦର ସୁକୁମାର ପାଦ ॥ ୧୦୭
କର ଯୁଗଳ ବାହୁ ଅଂସ ।
ଉନ୍ନତ ସୁନ୍ଦର ସୁନାସ ॥ ୧୦୮
ନିବିଡ଼ ବେନି ଉରୁ ସାଜେ ।
ସୁନ୍ଦର କପୋଳ ବିରାଜେ ॥ ୧୦୯
ଆୟତ ଚକ୍ଷୁ ଚାରୁକର୍ଣ୍ଣ ।
ସୁଗ୍ରୀବ ସୁନ୍ଦର ଆନନ ॥ ୧୧୦
ମାଂସେ ନିଗୂଢ଼ ଜତ୍ରୁ ସାଜେ ।
ତୁଙ୍ଗ ବକ୍ଷସ୍ଥଳ ବିରାଜେ ॥ ୧୧୧
ତ୍ରିବଳୀ କୁକ୍ଷି ମନୋହର ।
ଆବର୍ତ୍ତ ନାଭି ସୁଗଭୀର ॥ ୧୧୨
ବିକୀର୍ଣ୍ଣ କେଶ ଦିଗମ୍ବର ।
ବିଭୂତି-ଭୂଷଣ ଶରୀର ॥ ୧୧୩
ପ୍ରଲମ୍ବଭୁଜ ଜାନୁଯାଏ ।
ଦିଶେ ଅମରବର ପ୍ରାୟେ ॥ ୧୧୪
ଶରୀର ବର୍ଣ୍ଣରୁଚି ଶ୍ୟାମ ।
ରୂପେ ତୁଳିତ ନୋହେ କାମ ॥ ୧୧୫
କି ଅବା ଦେବା ପଟାନ୍ତର ।
କାମିନୀଜନ-ମନୋହର ॥ ୧୧୬
ଏମନ୍ତ ରୂପ ତାର ଦେଖି ।
ମୁନିଏ ଆସନ ଉପେକ୍ଷି ॥ ୧୧୭
ଜାଣନ୍ତି ତାହାଙ୍କ ଲକ୍ଷଣ ।
ସେ ଯୋଗୀ କୃଷ୍ଣ-ପରାୟଣ ॥ ୧୧୮
ଶୁକ ଆଗମ ଦେଖି ରାଜା ।
ତକ୍ଷଣେ ଆଣି ଅର୍ଘ୍ୟପୂଜା ॥ ୧୧୯
ବିନୟଭାବେ ଦଣ୍ଡଧାରୀ ।
ଚରଣେ ନମସ୍କାର କରି ॥ ୧୨୦
ସ୍ତିରୀ ବାଳକ ଯେତେ ଥିଲେ ।
ତା ଦେଖି ଭୟେ ବାହୁଡ଼ିଲେ ॥ ୧୨୧
ରାଜା ପୂଜିଲା ମନତୋଷେ ।
ଶୁକ ବସିଲେ ରାଜାପାଶେ ॥ ୧୨୨
ବେଷ୍ଟିତ ଋଷିଗଣ ମଧ୍ୟେ ।
ସେ ଶୁକ ବସିଲେ ଆନନ୍ଦେ ॥ ୧୨୩
ଶଶାଙ୍କ ଯେହ୍ନେ ତାରାମେଳେ ।
ବିରାଜେ ଗଗନ ମଣ୍ଡଳେ ॥ ୧୨୪
ପ୍ରଶାନ୍ତ-ଚିତ୍ତ ମୁନିବର ।
ଅକୁଣ୍ଠ-ଧାରଣା ଯାହାର ॥ ୧୨୫
ସେ ମୁନିପାଦେ ନମସ୍କାର ।
କରି ଯୋଡ଼ିଲା ବେନିକର ॥ ୧୨୬
ନିର୍ମଳବାକ୍ୟ ସୁଧାଧାର ।
ମୁନିଙ୍କି ଚାହିଁ ନୃପବର ॥ ୧୨୭
ପୁଚ୍ଛଇ ବେନିକର ଯୋଡ଼ି ।
ଚରଣେ ପୁଣ ପୁଣ ପଡ଼ି ॥ ୧୨୮

ରାଜା ଉବାଚ

ଆଜ ମୋହର ଜନ୍ମ ଧନ୍ୟ ।
କ୍ଷତ୍ରିୟବଂଶେ ବିଦ୍ୟମାନ ॥ ୧୨୯
ତୁମ୍ଭେ ଅତିଥି ରୂପେ ଆସି ।
ନିର୍ମଳଚିତ୍ତେ ବ୍ରହ୍ମଋଷି ॥ ୧୩୦
ଦେଖି ମୋ ଆତ୍ମା କୃତକୃତ୍ୟ ।
ଦେହକୁ କଲି ତୀର୍ଥଭୂତ ॥ ୧୩୧
ଯାହାର ସ୍ମରଣ ବିଶ୍ୱାସ ।
ପବିତ୍ର କରେ ଗୃହୀବାସ ॥ ୧୩୨
ତାହାର ଦରଶନ ମାତ୍ରେ ।
ଦୁରିତ ନ ରହଇ ଗାତ୍ରେ ॥ ୧୩୩
ସ୍ମରଣ ପାଦଜଳ ଯହିଁ ।
ସକଳ ତୀର୍ଥଫଳ ତହିଁ ॥ ୧୩୪
ଆଜ ଜୀବନ ମୋର ଧନ୍ୟ ।
ଦେଖିଲି ତୁମ୍ଭର ବଦନ ॥ ୧୩୫
ଯେତେ ଦୁରିତ ଦେହେ ଥିଲା ।
ତୁମ୍ଭ ସାନ୍ନିଧ୍ୟେ ଦୂର ଗଲା ॥ ୧୩୬
ବିଷ୍ଣୁର ତେଜ ମହାଘୋରେ ।
ଯେମନ୍ତେ ନଶନ୍ତି ଅସୁରେ ॥ ୧୩୭
ଆଜ ଜାଣିଲି ମୋତେ ହରି ।
ପାଣ୍ଡବ ସ୍ନେହେ ପ୍ରୀତି କରି ॥ ୧୩୮
ବାନ୍ଧବପ୍ରିୟ ବ୍ରହ୍ମରାଶି ।
ଯେହ୍ନେ ପାଣ୍ଡବ ଗୃହେ ଆସି ॥ ୧୩୯
ତାହାଙ୍କ ଗୋତ୍ର ଯେଣୁ ମୁହିଁ ।
ତେଣୁ ସଦୟ ମୋରେ ହୋଇ ॥ ୧୪୦
କୃଷ୍ଣର ଦୟା ଯେଣୁ ହୋଇ ।
ତୁମ୍ଭ ଦର୍ଶନେ ଯୋଗ୍ୟ ମୁହିଁ ॥ ୧୪୧
ଅବ୍ୟକ୍ତଗତି ଯେ ତୁମ୍ଭର ।
କେ ତାହା କରିବ ଗୋଚର ॥ ୧୪୨
ପୁଣି ମରଣେ ତୁମ୍ଭ ସଙ୍ଗ ।
ତରିଲି ଏ ଭବ-ତରଙ୍ଗ ॥ ୧୪୩
ଯୋଗୀଙ୍କ ମଧ୍ୟେ ତୁମ୍ଭେ ଗୁରୁ ।
ଯେହ୍ନେ ଅଚଳ-ମହାମେରୁ ॥ ୧୪୪
ଦେଖ ଜୀବନ ଯିବା କାଳେ ।
କିବା ସାଧିବି ମହୀତଳେ ॥ ୧୪୫
କିବା ଶୁଣିବି କର୍ଣ୍ଣପଥେ ।
ସ୍ମରଣ କି କରିବି ଚିତ୍ତେ ॥ ୧୪୬
କିବା ବଚନ ଉଚ୍ଚାରଣେ ।
ଭଜିବି କାହାର ଚରଣେ ॥ ୧୪୭
ତୁମ୍ଭେ ଯେ ପ୍ରାଣୀଙ୍କର ଦ୍ୱାରେ ।
ଦଣ୍ଡେ ନ ରହ ମନସ୍ଥିରେ ॥ ୧୪୮
ଗୋଦୋହମାତ୍ରେ ତୁମ୍ଭ ଗତି ।
ଏଣୁ ମୋହର ମନେ ଭ୍ରାନ୍ତି ॥ ୧୪୯
କହନ୍ତି ସୂତ ଶୁଦ୍ଧମନେ ।
ଶୁଣ ସକଳ ମୁନିଜନେ ॥ ୧୫୦

ସୂତ ଉବାଚ

ଏମନ୍ତ ପରୀକ୍ଷିତ ବାଣୀ ।
ଆନନ୍ଦେ ଶୁକମୁନି ଶୁଣି ॥ ୧୫୧
ହରଷେ ମୁଦ୍ରିତ ଲୋଚନ ।
ଚିତ୍ତେ ଚିନ୍ତିଲେ ଭଗବାନ ॥ ୧୫୨
ସେ ମୁନି ଚରଣ କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ॥ ୧୫୩
ପ୍ରଥମସ୍କନ୍ଧେ ଭାଗବତ ।
ବର୍ଣ୍ଣଇ ଦାସ ଜଗନ୍ନାଥ ॥ ୧୫୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପ୍ରଥମସ୍କନ୍ଧେ ଶୁକାଗମନଂ ନାମ
ଏକୋନବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ଦ୍ୱିତୀୟ ସ୍କନ୍ଧ

Dr. Sudhanshu Sekhar Mishra

## ଦ୍ୱିତୀୟସ୍କନ୍ଧ

### ପ୍ରଥମ ଅଧ୍ୟାୟ

ସୂତ ଉବାଚ

ହରି-ଚରଣ ଚିନ୍ତି ଧ୍ୟାନେ ।
କୋମଳ-ଗଭୀର-ବଚନେ ॥୧
ରୋମପୁଲକ ନିଜଦେହୀ ।
ଶୁକ କହନ୍ତି ରାଜା ଚାହିଁ ॥୨

ଶୁକ ଉବାଚ

ହେ ପରୀକ୍ଷିତ ନୃପବର ।
ଗରିଷ୍ଠ ପ୍ରଶ୍ନ ଏ ତୋହର ॥୩
ପଚାରୁ ଜୀବଲୋକ ହିତେ ।
ଯେ ପ୍ରଶ୍ନ ଅଛି ତୋର ଚିତ୍ତେ ॥୪
ଏ ଆତ୍ମାଜ୍ଞାନୀଙ୍କର ସାର ।
ସଂସାରେ ଜନଉପକାର ॥୫
ଶ୍ରୋତବ୍ୟ ପ୍ରଶ୍ନ ଅଛି ଯେତେ ।
ଆଗମ ନିଗମ ଉକତେ ॥୬
ସହସ୍ର ସହସ୍ର ପ୍ରକାରେ ।
ଯେ ପ୍ରଶ୍ନ ଅଛି ଏ ସଂସାରେ ॥୭
ସଂସାର କରିବାର ଆଶେ ।
ଯେତେ ଅଛନ୍ତି ଗୃହବାସେ ॥୮
ଇନ୍ଦ୍ରିୟବଶେ ଗୃହେ ଥାଇ ।
ଆତ୍ମାର ହିତେ ଜ୍ଞାନ ନାହିଁ ॥୯
ଆୟୁଷ କ୍ଷୟ ନ ଜାଣନ୍ତି ।
ବିଷୟ ଅର୍ଥ ନିତ୍ୟେ ଚିନ୍ତି ॥୧୦
ନିଶା ହରଇ ଅର୍ଦ୍ଧବେଳ ।
ନିଦ୍ରା ବା ବଧୂ ସଙ୍ଗ ମେଳ ॥୧୧
ଦିବସେ ଅର୍ଥ ଚିନ୍ତାକୁଳ ।
କୁଟୁମ୍ବପୋଷଣେ ବିକଳ ॥୧୨
ସୁତ-କଳତ୍ର ଦେହ ପାଇ ।
ଆନନ୍ଦେ ତାଙ୍କ ମଧ୍ୟେ ଥାଇ ॥୧୩
ବିଷ୍ଣୁର ମାୟା ସତ୍ୟ ଚିନ୍ତି ।
ନିକଟେ ମୃତ୍ୟୁ ନ ଦେଖନ୍ତି ॥୧୪
ମରଣ ଦେଖୁଥାନ୍ତି ଡୋଳେ ।
ଅଜ୍ଞାନେ ଭ୍ରମେ ସୁଖଭୋଳେ ॥୧୫
ଏଣୁ ସଂସାର ପ୍ରାଣୀଙ୍କର ।
ଆତ୍ମାର ଗତି ଅଗୋଚର ॥୧୬
ଏଣୁ ସଂସାର ଭାବ ତେଜି ।
ଆତ୍ମାର ଗତି ଚିତ୍ତେ ହେଜି ॥୧୭
ଯେ ହରି ସର୍ବଘଟେ ପୂରେ ।
ନିର୍ଲେପ ବାହ୍ୟ-ଅଭ୍ୟନ୍ତରେ ॥୧୮
ତାର ମହିମା ଶୁଣି କର୍ଣ୍ଣେ ।
ନାମକୁ ଉଚ୍ଚାରି ବଦନେ ॥୧୯
ସ୍ମରଣ କର ହୃଦଗତେ ।
ଯେବେ ଅଭୟ-ଇଚ୍ଛା ଚିତ୍ତେ ॥୨୦
ଏକଥା ସାଂଖ୍ୟଯୋଗେ ଜାଣି ।
ସ୍ୱଧର୍ମନିଷ୍ଠା ପରିମାଣି ॥୨୧
ଜନ୍ମର ଲାଭ ଏ ପ୍ରମାଣ ।
ଅନ୍ତେ ସ୍ମରଣ ନାରାୟଣ ॥୨୨
ପୂର୍ବେ ନିର୍ମଳ-ମୁନି ଯେତେ ।
ତତ୍ତ୍ୱ ବିଚାରି ବେଦମତେ ॥୨୩
ବିଧି ନିଷେଧ ଦୂର କରି ।
କୃଷ୍ଣର ଭାବ ହୃଦେ ଧରି ॥୨୪
କୃଷ୍ଣର ଗୁଣ ଅନୁକ୍ଷଣେ ।
ଗୁଣନ୍ତି ଶୁଣନ୍ତି ଶ୍ରବଣେ ॥୨୫
ଏ ଭାଗବତ ଧର୍ମବାଣୀ ।
ବ୍ରହ୍ମସମାନେ ପରିମାଣି ॥୨୬
ଦ୍ୱାପରଯୁଗ ଅନ୍ତଃକାଳେ ।
ମୁଁ ଯେ ଅନେକ ଶିଷ୍ୟମେଳେ ॥୨୭
ମୋର ଜନକ ବ୍ୟାସମୁନି ।
ତାହାଙ୍କ ଶିକ୍ଷା ଶିରେ ଘେନି ॥୨୮
ନିର୍ଗୁଣ ମାର୍ଗେ ଦୃଢ଼ଚିତ୍ତ ।
ବିଷ୍ଣୁର ଭାବ ହେଲା ଜାତ ॥୨୯
ନିଶ୍ଚଳ ଯୋଗେ ମନ ଥୋଇ ।
ଯେବା ଅଭ୍ୟାସ କଲି ମୁହିଁ ॥୩୦
କହିବି ତୋର ଆଗେ ତାହା ।
ଶୁଣ ପରୀକ୍ଷ ପୁଣ୍ୟଦେହା ॥୩୧
ଏ ଭାଗବତ ବାଣୀ କର୍ଣ୍ଣେ ।
ଯେ ଶୁଣେ ଶ୍ରଦ୍ଧା ଅବଧାନେ ॥୩୨
ମୁକୁନ୍ଦପାଦେ ତାଙ୍କ ମନ ।
ନିଶ୍ଚଳେ ରହେ ଅନୁକ୍ଷଣ ॥୩୩
ମୋକ୍ଷ ଇଚ୍ଛିଲା ପ୍ରାଣୀଙ୍କର ।
ହରିକୀର୍ତ୍ତନ ଅଟେ ଫଳ ॥୩୪
ତାକୁ ନ ଲାଗେ ଯମଭୟେ ।
ନିର୍ଭୟପଥେ ଚିତ୍ତ ରହେ ॥୩୫
ଯୋଗ ଅଭ୍ୟାସେ ଯୋଗୀଜନେ ।
ଦୀର୍ଘେ ଜୀବନ୍ତି ଯୋଗଧ୍ୟାନେ ॥୩୬
ଯେବେ ସେ କୃଷ୍ଣନାମ ମୁଖେ ।
କହନ୍ତି ଏକକୁ ଆରକେ ॥୩୭
ଦିନ ବଞ୍ଚନ୍ତି କୃଷ୍ଣ-ଗାଇ ।
ଅନ୍ତରେ ତାର ପଦ ଧ୍ୟାୟି ॥୩୮
ଯେ ହରି ନ ବୋଲେ ବଦନେ ।
କି ପ୍ରୟୋଜନ ଯୋଗଧ୍ୟାନେ ॥୩୯
କାଳ ନିର୍ଣ୍ଣୟ ନାହିଁ ତହିଁ ।
ହେ ନୃପ ଶୁଣ ମନଦେଇ ॥୪୦
ମୁହୂର୍ତ୍ତମାତ୍ରେ କୃଷ୍ଣବାଣୀ ।
ଯେ ଶୁଣେ ଯେବା ମୁଖେ ଭଣି ॥୪୧
ସେ ପ୍ରାଣୀ ଆତ୍ମାକୁ ଉଦ୍ଧରେ ।
କି ଭାବ ବହୁ ସମ୍ବତ୍ସରେ ॥୪୨
ଖଟ୍ୱାଙ୍ଗ ନାମେ ରାଜା ଥିଲା ।
ସ୍ୱର୍ଗେ ଦେବଙ୍କୁ ହିତ କଲା ॥୪୩
ରିପୁ ସଂହାରି ଦେବପାଶେ ।
ମିଳିଲା ଭକତି-ବିଶ୍ୱାସେ ॥୪୪
ଦେବେ ବୋଇଲେ ମାଗ ବର ।
ଶୁଣି ବୋଇଲା ନୃପବର ॥୪୫
ଆୟୁଷ ଅଛଇ ମୋ କେତେ ।
ଦେବେ କହିଲେ ଶାସ୍ତ୍ରମତେ ॥୪୬

Dr. Sudhanshu Sekhar Mishra

ମୁହୂର୍ତ୍ତେ ଅଛି ତୋ ଜୀବନ ।
ତା ଶୁଣି ସନ୍ତୋଷ ରାଜନ ॥୪୭
ତକ୍ଷଣେ ଆସି ମହୀତଳେ ।
ଭାବିଲା ଅକିଞ୍ଚନ ମେଳେ ॥୪୮
ମୁହୂର୍ତ୍ତେ ନାମ ଉଚ୍ଚାରିଲା ।
ଅନ୍ତେ ସେ ଗୋବିନ୍ଦେ ପଶିଲା ॥୪୯
ଏବେ ସପତଦିନ ଯାଏ ।
ଜୀବନ ଥିବ ତୋର ଦେହେ ॥୫୦
ଏବେ ହରିଙ୍କି ଆଶ୍ରେକର ।
କର୍ଣ୍ଣେ ଶୁଣ ମୁଖେ ଉଚ୍ଚାର ॥୫୧
ଯେ ଅନ୍ତଃକାଳେ କୃଷ୍ଣବାଣୀ ।
ମୁଖେ ଉଚ୍ଚାରେ କର୍ଣ୍ଣେ ଶୁଣି ॥୫୨
ତାହାର ମୃତ୍ୟୁଭୟ ନୋହେ ।
ଦାରାତନୟ ନିଜ ଦେହେ ॥୫୩
ଯେତେ ବିଷୟ ଆତ୍ମାଭେଦି ।
ଅସଙ୍ଗଶସ୍ତ୍ରେ ତାହା ଛେଦି ॥୫୪
ବେଗେ ସେ ପଶେ କୃଷ୍ଣଭାବେ ।
ଶୁଣ କହିବା ତୋତେ ଏବେ ॥୫୫
ଯେ ପ୍ରାଣୀ ଅନ୍ତଃକାଳ ଜାଣି ।
ଆତ୍ମାର ହିତ ମନେ ଗୁଣି ॥୫୬
ଘରୁ ବାହାର ହୋଇ ଜ୍ଞାନେ ।
ତପଆଚରେ ଘୋରବନେ ॥୫୭
ସ୍ନାହାନ ସାରି ତୀର୍ଥଜଳେ ।
ଆସନେ ବସିବ ନିଶ୍ଚଳେ ॥୫୮
ଏକାନ୍ତେ ଯେ ବିଧି ଆସନେ ।
ପ୍ରଥମ-ଆଶ୍ରମ ଲକ୍ଷଣେ ॥୫୯
ଅଭ୍ୟାସ କରି ଶୁଦ୍ଧମନେ ।
ତ୍ରିବୃତ-ବ୍ରହ୍ମ ସୁମରଣେ ॥୬୦
ପ୍ରାଣ ପବନ ଯୋଗେ ରୁନ୍ଧି ।
ଚଞ୍ଚଳ ଇନ୍ଦ୍ରିୟ ନିରୋଧି ॥୬୧
ବୁଦ୍ଧି-ସାରଥି ଆଶ୍ରେ କରି ।
ବିଷୟ-ସମୂହ ସଂହରି ॥୬୨
କର୍ମେ ଚଞ୍ଚଳମନ ବଳେ ।
ନିରୋପି କୃଷ୍ଣ-ପାଦତଳେ ॥୬୩
ତାର ଶରୀର ଅବୟବେ ।
ଚିନ୍ତିବ ଏକେ ଏକେ ଭାବେ ॥୬୪

ମନକୁ ନିର୍ବିଷୟ କରି ।
ସକଳଚିନ୍ତା ପରିହରି ॥୬୫
ମନ ପ୍ରସନ୍ନ ଯେତେବେଳେ ।
ଜ୍ଞାନ-ପ୍ରସରେ ସୁନିଶ୍ଚଳେ ॥୬୬
ସ୍ୱଭାବେ ମନ ଦୁଷ୍ଟପଣେ ।
ଆବୃତ ରଜ ତମୋ ଗୁଣେ ॥୬୭
ଏଣୁ ଧାରଣା ଆଶ୍ରେ କରି ।
ମନର ମଳ ଅପହରି ॥୬୮
ଏମନ୍ତ ଯୋଗର ଧାରଣ ।
ଯୋଗୀଙ୍କ ଭକତି ଲକ୍ଷଣ ॥୬୯
ଯେ ଭକ୍ତି-ଧାରଣାର ବଳେ ।
ଯୋଗପ୍ରାପତ ଅନ୍ତକାଳେ ॥୭୦
ବିଷୟ ଦେଖାଇ ମଙ୍ଗଳ ।
କୃଷ୍ଣେ କରଇ ସର୍ବମେଳ ॥୭୧
ଏମନ୍ତ ଶୁକ ମୁଖୁ ଶୁଣି ।
ବୋଲେ ପାଣ୍ଡବ-ଚୂଡ଼ାମଣି ॥୭୨

ରାଜା ଉବାଚ

ଧାରଣା-ଯୋଗ ଚିତ୍ତେ ଧରି ।
ଯେମନ୍ତେ ତରେ ବ୍ରହ୍ମଚାରୀ ॥୭୩
ଯେମନ୍ତ ଧାରଣା ନିଶ୍ଚଳ ।
ବେଗେ ହରଇ ମନୁ ମଳ ॥୭୪
ଏ ଯୋଗଧାରଣା ସ୍ୱଭାବ ।
ଯେ ଶାସ୍ତ୍ରମାର୍ଗେ ଅନୁଭବ ॥୭୫
ଗୁରୁ ବଚନେ କିବା ଜାଣି ।
ଯୋଗଧାରଣା ପରିମାଣି ॥୭୬
ଯେଣେ ଅଭ୍ୟାସ ପ୍ରାଣୀକରେ ।
ଯେମନ୍ତେ ମନୁ ମଳ ହରେ ॥୭୭
କହି ପବିତ୍ର ମୋତେ କର ।
ନିର୍ମଳ ହେଉ ମୋ ଶରୀର ॥୭୮
ଏମନ୍ତ ରାଜା ପ୍ରଶ୍ନ ଶୁଣି ।
ଶୁକ କହନ୍ତି ମନେ ଗୁଣି ॥୭୯

ଶୁକ ଉବାଚ

ଜିତ ଆସନ ଜିତ ପ୍ରାଣ ।
ଜିତ ବିଷୟ ଇନ୍ଦ୍ରିଗଣ ॥୮୦

ସ୍ଥୁଳ ଶରୀରେ ବୁଦ୍ଧିବଳେ ।
ମନକୁ ସ୍ଥାପିବ ନିଶ୍ଚଳେ ॥୮୧
ବିଶେଷେ ଗୋବିନ୍ଦ ଶରୀର ।
ଅତ୍ୟନ୍ତ ସ୍ଥୁଳୁ ସ୍ଥୁଳତର ॥୮୨
ଯହିଁ ସଂସାର ପରମାଣ ।
ଭୂତ-ଭବିଷ୍ୟ-ବର୍ତ୍ତମାନ ॥୮୩
ବ୍ରହ୍ମାଣ୍ଡ ବସେ ଯାର ଦେହି ।
ସପ୍ତାବରଣେ ଯୁକ୍ତ ହୋଇ ॥୮୪
ବିରାଜ-ପୁରୁଷ ଏ ମଧ୍ୟେ ।
ବସେ ଧାରଣା ଅନୁବାଦେ ॥୮୫
ବ୍ରହ୍ମାଣ୍ଡ ଚତୁର୍ଦ୍ଦଶ-ପୁର ।
ପ୍ରମାଣ ଯାହାର ଶରୀର ॥୮୬
ଶୁଣ କହିବା ଅଧଉର୍ଦ୍ଧ୍ୱେ ।
ବିରାଟରୂପ ଥାଇ ମଧ୍ୟେ ॥୮୭
ପାତାଳ ବୋଲି ପାଦମୂଳ ।
ପାର୍ଷ୍ଣି ପାଦାଗ୍ର ରସାତଳ ॥୮୮
ଚରଣ ଗୁଲ୍‌ଫେ ମହାତଳ ।
ଜଂଘଯୁଗଳ ତଳାତଳ ॥୮୯
ସୁତଳ ବୋଲି ଜାନୁଯୁଗେ ।
ବିତଳାତଳ ଉରୁଭାଗେ ॥୯୦
ଜଘନଦେଶ ମହୀତଳ ।
ନାଭିମଣ୍ଡଳ ନଭସ୍ଥଳ ॥୯୧
ସ୍ୱର୍ଲୋକ ହୃଦୟରେ ବସେ ।
ଜ୍ୟୋତିସମୂହ ପରକାଶେ ॥୯୨
କଣ୍ଠ ଆଶ୍ରିତ ମହର୍ଲୋକ ।
ବଦନେ ବଶେ ଜନଲୋକ ॥୯୩
ଲଲାଟେ ତପଲୋକ ବସେ ।
ସତ୍ୟ କଳ୍ପିତ ଶିରଦେଶେ ॥୯୪
ବାସବ ଆଦି ଦିଗପାଳ ।
ଯାହାର ଭୁଜ ସୁବିଶାଳ ॥୯୫
କର୍ଣ୍ଣ ଯାହାର ଅଷ୍ଟଦିଶା ।
ଅଶ୍ୱିନୀକୁମାରେ ଯା ନାସା ॥୯୬
ଜ୍ୱଳନ୍ତା ଅଗ୍ନି ଯା ବଦନ ।
ନୟନ ଗୋଲୋକ ଗମନ ॥୯୭
ତପନ ଯାର ଚକ୍ଷୁବେନି ।
ଉଦୟ ଅସ୍ତ ପକ୍ଷ୍ମ ବେନି ॥୯୮

Dr. Sudhanshu Sekhar Mishra

ଯାର ଭ୍ରୂଭଙ୍ଗ ବ୍ରହ୍ମପଦ ।
ସଲିଳ ତାଳୁ ରସଜିହ୍ୱ ॥୯୯
ସକଳ ବେଦ ବ୍ରହ୍ମରନ୍ଧ୍ର ।
ବିକଟ ଦନ୍ତ ଯମପଦ ॥ ୧୦୦
ଯାହାର ତୁଣ୍ଡେ ସ୍ନେହକଳା ।
ଅଧଉର୍ଦ୍ଧ୍ୱରେ ଦନ୍ତମାଳା ॥ ୧୦୧
ଜନଉନ୍ମାଦ ଯାର ହାସ ।
ଯେ ବିଷ୍ଣୁମାୟାର ପ୍ରକାଶ ॥ ୧୦୨
ସଂସାର ଯାହାର କଟାକ୍ଷ ।
ଏ ଜୀବ ଲଭେ ଯା ପ୍ରତ୍ୟକ୍ଷ ॥ ୧୦୩
ଉପର ଓଷ୍ଠେ ଲଜ୍ଜା ବସେ ।
ଲୋଭ ବସଇ ଅଧୋଦେଶେ ॥ ୧୦୪
ଧର୍ମ ବସଇ ସ୍ତନଯୁଗେ ।
ଅଧର୍ମପଥ ପୃଷ୍ଠଭାଗେ ॥ ୧୦୫
ଅଣ୍ଡେ ବସଇ ପ୍ରଜାପତି ।
ମିତ୍ରାବରୁଣ କୋଷେ ସ୍ଥିତି ॥ ୧୦୬
ଉଦଧି ଯାହାର ଉଦର ।
ଅସ୍ଥିସମୂହ ମହୀଧର ॥ ୧୦୭
ଶିରାସମୂହ ନଦୀଗଣ ।
ବୃକ୍ଷଔଷଧି ତନୁରୋମ ॥ ୧୦୮
ଅନନ୍ତବୀର୍ଯ୍ୟ ଯହିଁ ବସେ ।
ଶ୍ୱାସପବନ ଅଣଚାଶେ ॥ ୧୦୯
ଯାହାର ଗତି ଜାଣ କାଳ ।
ଜୀବ ସଂସାର ଯାର ଖେଳ ॥ ୧୧୦
ଜୀମୂତଗଣ ଯାର କେଶ ।
ସନ୍ଧ୍ୟା ଯାହାର ନିଜବାସ ॥ ୧୧୧
ପ୍ରକୃତି ହୃଦୟ ଯାହାର ।
ଯାହାର ମନ ନିଶାକର ॥ ୧୧୨

ହେ କୁରୁଶ୍ରେଷ୍ଠ ପରୀକ୍ଷିତ ।
ଈଶ୍ୱର ସର୍ବ କୋଷଭୂତ ॥ ୧୧୩
ବିଜ୍ଞାନଶକ୍ତି ଯା ମହିମା ।
ଅନ୍ତଃକରଣ ରୁଦ୍ରସୀମା ॥ ୧୧୪
କଳଭ ଅଶ୍ୱ ଅଶ୍ୱତର ।
ନଖସମୂହ କରିବର ॥ ୧୧୫
ଯେ ପଶୁ ମୃଗାଦି ବିଶେଷେ ।
ସର୍ବ କଳ୍ପିତ ଶ୍ରୋଣୀଦେଶେ ॥ ୧୧୬
ପକ୍ଷିଏ ଯାର ବ୍ୟାକରଣ ।
ବୁଦ୍ଧି ବିଷୟ ମନୁଗଣ ॥ ୧୧୭
ଯାର ନିବାସ ନରଦେହ ।
ଯହିଁ କଳ୍ପିତ ମାୟାମୋହ ॥ ୧୧୮
ଗନ୍ଧର୍ବ ବିଦ୍ୟାଧର ଆଦି ।
ଚାରଣ ଗଣିକା ପ୍ରସିଦ୍ଧି ॥ ୧୧୯
କିନ୍ନରଗଣ ଯାର ସ୍ୱର ।
ବୀର୍ଯ୍ୟରେ କଳ୍ପିତ ଅସୁର ॥ ୧୨୦
ବ୍ରାହ୍ମଣ ଯାର ମୁଖୁ ଜାତ ।
କ୍ଷତ୍ରିୟ ଭୁଜରୁ ସମ୍ଭୂତ ॥ ୧୨୧
ଉରୁରୁ ବୈଶ୍ୟ ଉତପତ୍ତି ।
ପାଦରୁ ଜନ୍ମ ଶୂଦ୍ରଜାତି ॥ ୧୨୨
ନାନା ପ୍ରକାର ନାମ ବହି ।
ଅଭୀଷ୍ଟ ଦେବେ ଯାର ଦେହି ॥ ୧୨୩
ନିଗମ-କର୍ମ-କାଣ୍ଡ ଯେତେ ।
ଯାହାର କର୍ମ ଏ ଯୁଗତେ ॥ ୧୨୪
ଏମନ୍ତେ ଈଶ୍ୱରର ଦେହେ ।
ବସନ୍ତି ଅବୟବ ପ୍ରାୟେ ॥ ୧୨୫
ଏମନ୍ତେ ଏ ସ୍ଥୂଳ-ଶରୀରେ ।
ଧାରଣାଯୋଗେ ନିର୍ବିକାରେ ॥ ୧୨୬

ମନ ନିରୋଳ ଯୋଗବଳେ ।
ଗୋବିନ୍ଦ-ଚରଣ-କମଳେ ॥ ୧୨୭
ସର୍ବ ଶରୀରେ ଭଗବାନ ।
ତା ତହୁଁ କେବା ଅଛି ଆନ ॥ ୧୨୮
ସେ ସର୍ବ-ବୁଦ୍ଧି ଅନୁଭବ ।
ଜୀବ ପରମ ପଦ୍ମନାଭ ॥ ୧୨୯
ସତ୍ୟ-ପରମାନନ୍ଦ-ନିଧି ।
ତାର ଭଜନ ସର୍ବସିଦ୍ଧି ॥ ୧୩୦
ଜନ୍ମମରଣ ତାର ତହୁଁ ।
କେବା ଗୋଚରେ ତାହା କହୁଁ ॥ ୧୩୧
ଯେ ଅନ୍ୟସଙ୍ଗ ଦାରାସୁତ ।
ନ କରି ଯେଣୁ ଆତ୍ମପାତ ॥ ୧୩୨
ସ୍ୱପ୍ନରେ ଜୀବର ଯେମନ୍ତ ।
ଦେଖଇ ଇନ୍ଦ୍ରିୟ ବୃତ୍ତାନ୍ତ ॥ ୧୩୩
ସେ ସର୍ବମିଥ୍ୟା ଜୀବ ସତ୍ୟ ।
ଏ ଜ୍ଞାନେ ହୁଅଇ ମୁକତ ॥ ୧୩୪

ସୂତ ଉବାଚ

ଏମନ୍ତ କହି ଶୁକମୁନି ।
ହରଷେ ହରିଭାବ ଘେନି ॥ ୧୩୫
ଆନନ୍ଦେ ପରୀକ୍ଷିତ ମେଳେ ।
ଯାହା କହିଲେ ଗଙ୍ଗାକୂଳେ ॥ ୧୩୬
ଦ୍ୱିତୀୟ ସ୍କନ୍ଧେ ଭାଗବତ ।
କହିଲା ଦାସ ଜଗନ୍ନାଥ ॥ ୧୩୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ମହାପୁରୁଷସଂସ୍ଥାନ
ଅନୁବର୍ଣ୍ଣନେ
ନାମ ପ୍ରଥମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

### ସୂତ ଉବାଚ

କହନ୍ତି ଶୁକ ମହାମୁନି ।
ଶୁଣ ରାଜନ-ଚୂଡ଼ାମଣି ।।୧

### ଶୁକ ଉବାଚ

ଏ ଯେତେ କହିଲି ମୁଁ ତୋତେ ।
ଈଶ୍ୱର ଶରୀର ସମେତେ ।।୨
ଏ ସ୍ଥୂଳଦେହେ ମନ ଧରି ।
ସୁବୁଦ୍ଧିବଳେ ଯତ୍ନ କରି ।।୩
ସେ ହରି ଅନ୍ତରେ ବାହାରେ ।
ଆନ କେ ଅଛି ଏ ସଂସାରେ ।।୪
ସେ ସର୍ବବୁଦ୍ଧି ଅନୁଭୂତ ।
ସ୍ୱପ୍ନ-ଜାଗ୍ରତ ମଧ୍ୟେ ସ୍ଥିତ ।।୫
ସତ୍ୟ-ଆନନ୍ଦ-ଜଳନିଧି ।
ଭକ୍ତଜନଙ୍କ ସର୍ବସିଦ୍ଧି ।।୬
ଯାହାର ତହୁଁ ଏ ଜଗତ ।
ଆତ୍ମାର ତୁଲେ ଉଦେ ଅସ୍ତ ।।୭
ଏହି ପ୍ରକାରେ ପୂର୍ବକାଳେ ।
ସେ ଆତ୍ମଯୋନି ଏ ଶୟଳେ ।।୮
ଆତ୍ମ ସ୍ମରଣେ ବୁଦ୍ଧିବଳେ ।
ସର୍ଜିଲା ଏ ବିଶ୍ୱ-ମଣ୍ଡଳେ ।।୯
ପୂର୍ବେ ଯେମନ୍ତେ ଥିଲା ବିଧି ।
ତେହ୍ନେ ଧାରଣା ବଳେ ସାଧି ।।୧୦
ଆତ୍ମାକୁ ପାଳି ପୁଣ ହରେ ।
ବଣିଜ ଯେହ୍ନେ ବଣିଜାରେ ।।୧୧
ଶବଦ ବ୍ରହ୍ମର ଏ ପଥ ।
ଯେ ମାର୍ଗେ ଜୀବ ଆତଯାତ ।।୧୨
ପଡ଼ି ଭ୍ରମଇ ଅଧ ଊର୍ଦ୍ଧ୍ୱେ ।
କିଛି ନ ଲଭେ ଲାଭପଦେ ।।୧୩
ନାନା ଦେବତା ଦୀକ୍ଷା କରେ ।
ବିଅର୍ଥ-ସୁଖେ ମନ ଧରେ ।।୧୪
ବାସନା-ମାୟାମୟ-ଯାନେ ।
ନ ବୁଝି ନିରତେ ଭ୍ରମଣେ ।।୧୫

ତାହାଙ୍କ ମଧ୍ୟେ ଯେ ସୁବୁଦ୍ଧି ।
ଜାଣଇ ବେଗ-ସତ୍ୟ-ବୁଦ୍ଧି ।।୧୬
ବିଚାର କରେ ମାୟାଗ୍ରସ୍ତେ ।
ମୁହିଁ ଭ୍ରମଇ କିସ ଅର୍ଥେ ।।୧୭
ଶ୍ରମ ଲଭଇ ଆତଯାତେ ।
ଲାଭ ନ ମିଳେ ମୋର ହସ୍ତେ ।।୧୮
ଏଣୁ ଏ ପଥଶ୍ରମ ତେଜି ।
ଯେ ପ୍ରାଣୀ ଆତ୍ମାଲାଭ ଖୋଜି ।।୧୯
ପ୍ରୟାସ ଦୂରେ ପରିହରି ।
ଆତ୍ମାରେ ଆତ୍ମା ବୋଧ କରି ।।୨୦
ଅଳପ ଭୋଗେ ଆତ୍ମା ପୋଷେ ।
ବର୍ତ୍ତଇ ଅବା ଉପବାସେ ।।୨୧
ଥାଉଁ ଏ ବସୁନ୍ଧରୀ ଅଙ୍କ ।
ସୁବର୍ଣ୍ଣ ପଲଙ୍କେ କି ସୁଖ ।।୨୨
ସମର୍ଥ-ଭୁଜ ଥାଉଁ ବାମେ ।
କି ପ୍ରୟୋଜନ ଉପାଧାନେ ।।୨୩
ଅଞ୍ଜଳି ଅଛି ଯେବେ ହସ୍ତେ ।
କି ପ୍ରୟୋଜନ ଅନ୍ୟପାତ୍ରେ ।।୨୪
ଦିଗ-ବକଳ ଯାର ବାସ ।
ବସନେ ତାର କିବା ଆଶ ।।୨୫
ଲେଙ୍କଡ଼ା ବସ୍ତ୍ର ପଥେ ଦେଖି ।
ତାର ଗ୍ରହଣେ ହୋନ୍ତି ସୁଖୀ ।।୨୬
ଥାଉଁ ସମର୍ଥ ଦୁଇଭୁଜ ।
ଭୃତ୍ୟ କିଙ୍କରେ କିସ କାର୍ଯ୍ୟ ।।୨୭
ଆରୋହି ମନ ଯାର ପାଦ ।
ଗଜତୁରଙ୍ଗେ କିସ ସଧ ।।୨୮
ଫଳ ପୂରିଛି ବୃକ୍ଷେ ବନେ ।
କି ପ୍ରୟୋଜନ ଭିକ୍ଷାଅନ୍ନେ ।।୨୯
ନିର୍ଝର ନଦୀ କୂପ ସ୍ଥଳେ ।
କି ପ୍ରୟୋଜନ କମଣ୍ଡଳେ ।।୩୦
ପର୍ବତ ଗୁହା ତୃଣେ ବେଢ଼ି ।
ସେ ଥାଉଁ ଗୃହେ କିମ୍ପା ପଡ଼ି ।।୩୧
ଏମନ୍ତ ଭାବେ କୃଷ୍ଣପାଦେ ।
ଯେ ପ୍ରାଣୀ ରମନ୍ତି ଆନନ୍ଦେ ।।୩୨

ତାହାଙ୍କ ରକ୍ଷଣ ଉପାୟ ।
କରନ୍ତି ପ୍ରଭୁ ଦେବରାୟ ।।୩୩
ସେ କିମ୍ପା ଧନଗର୍ବୀ ଲୋକେ ।
କ୍ଷଣେ ଭଜିବେ ଆତ୍ମସୁଖେ ।।୩୪
ଏହି ପ୍ରକାରେ ଆତ୍ମଚିତ୍ତେ ।
ସିଦ୍ଧି ଲଭନ୍ତି ଅନୁଭୂତେ ।।୩୫
ସେ ପ୍ରାଣୀ ହୋଏ କୃତକୃତ୍ୟ ।
ତାହାକୁ ପ୍ରସନ୍ନ ଅନନ୍ତ ।।୩୬
ଏଣୁ ନିୟତ ଆତ୍ମା ଯୋଗେ ।
ଭଜିବ କୃଷ୍ଣ-ପାଦଯୁଗେ ।।୩୭
ମୁଁ ତୋତେ କହିଲି ବିଶ୍ୱାସେ ।
ଏଣେ ସଂସାର-ହେତୁ ନାଶେ ।।୩୮
ଏ ଭାବ ଅନାଦର କରି ।
ସଂସାର-ଚିନ୍ତା ଚିତ୍ତେ ଧରି ।।୩୯
ପଶୁଙ୍କ ପ୍ରାୟ ତାଙ୍କ ଗତି ।
ଏ ମାୟା-ସଂସାରେ ଭ୍ରମନ୍ତି ।।୪୦
ଦେଖ ସଂସାରେ ପ୍ରାଣୀ ଯେତେ ।
ଯନ୍ତ୍ରିତ ଯମର ଆୟତ୍ତେ ।।୪୧
ବଇତରଣୀ ନାମେ ନଦୀ ।
ଯାତନା ମଧ୍ୟେ ସେ ପ୍ରସିଦ୍ଧି ।।୪୨
ତହିଁ ପଡ଼ନ୍ତି ଦେଖୁ ଦେଖୁ ।
ତାଙ୍କ ଜୀବନ କେବା ରଖୁ ।।୪୩
ଅର୍ଜିଲା କର୍ମଫଳ ସେବି ।
ଅଶେଷ ଦେହେ ତାହା ଭାବି ।।୪୪
ଏବେ ହୋ ଶୁଣ ନୃପମଣି ।
ଯେଣେ ସଂସାରୁ ତରେ ପ୍ରାଣୀ ।।୪୫
ଏ ଭାବେ ଏ ନର-ଶରୀରେ ।
ଧାରଣାଯୋଗ ନିର୍ବିକାରେ ।।୪୬
ସ୍ୱଦେହେ ହୃଦୟ ପ୍ରକାଶେ ।
ସେ ହରି ଘୋରତମ ନାଶେ ।।୪୭
ପ୍ରାଦେଶମାତ୍ର ରୂପ ଧରି ।
ବିଜୟେ ପ୍ରଭୁ ନରହରି ।।୪୮
ସୂକ୍ଷ୍ମ-ସ୍ୱରୂପ ରୂପ ତାର ।
ଶୁଣ ସୁମନେ କୁରୁବୀର ।।୪୯

Dr. Sudhanshu Sekhar Mishra

ଶ୍ୟାମସୁନ୍ଦର ଭୁଜଚାରି ।
ଶଙ୍ଖ-କମଳ-ଗଦା-ଅରୀ ।।୫୦

ଧାରଣା ଯୋଗେ ଏହା ଚିନ୍ତି ।
ନିଶ୍ଚଳ-ନୟନେ ଦେଖନ୍ତି ।।୫୧

ପ୍ରସନ୍ନ ଶ୍ରୀମୁଖ-ମଣ୍ଡଳ ।
ଲୋଚନ ଅମଳ-କମଳ ।।୫୨

କଦମ୍ବ କିଞ୍ଜଳ୍କ ସୁରଙ୍ଗେ ।
ପୀତବସନ ଶୋହେ ଅଙ୍ଗେ ।।୫୩

ସୁବର୍ଣ୍ଣ କିରୀଟ କୁଣ୍ଡଳ ।
ସୁନ୍ଦର ଅଳକା କପୋଳ ।।୫୪

ଅମୂଲ୍ୟ-ହାର ବକ୍ଷସ୍ଥଳେ ।
ରତ୍ନକେୟୂର ବାହୁମୂଳେ ।।୫୫

ହୃଦୟପଦ୍ମ ମଧ୍ୟେ ସ୍ମରି ।
ଯେ ପାଦଧ୍ୟାୟେ ବ୍ରହ୍ମଚାରୀ ।।୫୬

ସେ ପାଦ ଲକ୍ଷ୍ମୀରେ ଚିହ୍ନିତ ।
ଦିଶଇ ଅତ୍ୟନ୍ତ ଶୋଭିତ ।।୫୭

ଶ୍ରୀବତ୍ସ କଉସ୍ତୁଭମଣି ।
ସୁବର୍ଣ୍ଣସୂତ୍ରେ ସୁଖଞ୍ଜଣି ।।୫୮

ଆଜାନୁଲମ୍ବେ ବନମାଳେ ।
ସ୍କନ୍ଧୁବେଷ୍ଟିତ ବକ୍ଷସ୍ଥଳେ ।।୫୯

ରତ୍ନମେଖଳା କଟୀମାଝେ ।
ଅଙ୍ଗୁଷ୍ଠେ ମୁଦ୍ରିକା ବିରାଜେ ।୬୦

ଅଙ୍ଗଦ ନୂପୁର କଙ୍କଣ ।
ବିବିଧ ଅଙ୍ଗ-ଆଭରଣ ।୬୧

ଅମଳପୁଷ୍ପ ଶିରେ ଶୋହେ ।
ନୀଳକୁନ୍ତଳ ଜନ ମୋହେ ।୬୨

ସୁନ୍ଦର ହୃଷିତ-ବଦନ ।
ଅଞ୍ଜନ ବିରାଜେ ନୟନ ।୬୩

ଭ୍ରୂଭଙ୍ଗ ଅନୁଗ୍ରହ ମୁଖ ।
ଭ୍ରୂକୁଟୀ କୁଟୀଳ ସୁରେଖ ।।୬୪

ଅନେକ ଅନୁଗ୍ରହ ଯହିଁ ।
ସଞ୍ଚିତ ହୋଇଅଛି ରହି ।୬୫

ଏମନ୍ତେ ଈଶ୍ୱରର ଦେହ ।
ଚିତ୍ତେ ଚିନ୍ତିବ ଚିନ୍ତାମୟ ।୬୬

ଯାବତ ଧାରଣାର ବଳେ ।
ମନକୁ ରୁହାଇ ନିଶ୍ଚଳେ ।୬୭

ତାବତ ଏକ ଏକ ଅଙ୍ଗେ ।
ନିତ୍ୟେ ଭାବିବ ବୁଦ୍ଧିଯୋଗେ ।୬୮

ହାସବଦନୁ ପାଦଯାଏ ।
ଭାବିବ ବିଷ୍ଣୁ ସ୍ଥୂଳଦେହେ ।୬୯

ସ୍ଥାନକୁ ସ୍ଥାନ ଧ୍ୟାନ କରି ।
ଛାଡ଼ିବ ଅପର ଆବୋରି ।୭୦

ଯାବତ ବୁଦ୍ଧି ଏ ଶରୀରେ ।
ପରମେ ଭକ୍ତି ନ ବିଚାରେ ।୭୧

ଯାବତ ବିଷ୍ଣୁ ନିଜ ଦେହେ ।
ନ ଦେଖି ତତ୍ତ୍ୱର ଉଦୟେ ।୭୨

ତାବତ ସ୍ଥୂଳ ରୂପ ଚିନ୍ତି ।
ଚିତ୍ତେ ସ୍ମରିବ ନିତିନିତି ।୭୩

ସୁଖେ ବସିବ ସ୍ଥିରାସନେ ।
ସ୍ଥୂଳ-ଶରୀର ଯୋଗଧ୍ୟାନେ ।୭୪

ଏମନ୍ତ କରିବ ଧାରଣ ।
ଯାବତ ନ ଲଭେ ମରଣ ।୭୫

ଏମନ୍ତ ଯୋଗୀ ଏ ଦେହକୁ ।
ଯେବେ ଇଚ୍ଛିବ ଛାଡ଼ିବାକୁ ।।୭୬

ପବିତ୍ର-ପୁଣ୍ୟ-ତୀର୍ଥ-କାଳ ।
ମନରେ ନ କରି ବିଚାର ।।୭୭

ଯୋଗସାଧନେ ପଞ୍ଚପ୍ରାଣ ।
ସାଧିବ ସମାଧି ଧାରଣ ।୭୮

ଆସନ ପ୍ରତ୍ୟାହାର ବଳେ ।
ମନକୁ ସ୍ଥାପିବ ନିଶ୍ଚଳେ ।୭୯

ମନ ସମେତେ ଇନ୍ଦ୍ରିଗଣ ।
ନିର୍ମଳ ବୁଦ୍ଧିରେ ସଂଯମ ।।୮୦

ସେ ବୁଦ୍ଧି କ୍ଷେତ୍ରଜ୍ଞେ ପ୍ରମାଣି ।
ଆତ୍ମାରେ କ୍ଷେତ୍ରଜ୍ଞକୁ ଜାଣି ।।୮୧

ଆତ୍ମାରେ ଆତ୍ମାକୁ ନିରୋଧି ।
ଏମନ୍ତେ ଯେ ଜନ ସୁବୁଦ୍ଧି ।।୮୨

ଆତ୍ମାର ଲାଭ ଲଭେ ହେଳେ ।
କର୍ମଛାଡ଼ିବ ତେତେବେଳେ ।।୮୩

ଏ ଭାବେ ଜୀବର ନିସ୍ତାର ।
କାଳର ନାହିଁ ଅଧିକାର ।।୮୪

ଦେବେ ନ ପାରେ ତାରେ ହିଂସି ।
ତ୍ରିଗୁଣେ ନ ପାରନ୍ତି ପଶି ।।୮୫

ଇନ୍ଦ୍ରିୟଗଣେ ଅଗୋଚର ।
ଯହିଁ ମହତତତ୍ତ୍ୱ ଦୂର ।।୮୬

ଦେବେ ନ ପାନ୍ତି ଯାହା ଚିନ୍ତି ।
ନ ଜାଣୁ ନ ଜାଣୁ ବୋଲନ୍ତି ।।୮୭

ଦୁରାତ୍ମାଭାବ ପରିହରି ।
ସୁହୃଦଭାବ ଚିତ୍ତେ ଧରି ।।୮୮

ଯେ ଅଟେ ବୈଷ୍ଣବର ଧାମ ।
ପରମପଦ ଯାର ନାମ ।।୮୯

ସେ ପଦ ହୃଦରେ ଧରନ୍ତି ।
ସର୍ବତ୍ର ଶ୍ରେଷ୍ଠ ମନେ ଚିନ୍ତି ।।୯୦

ଏ ରୂପେ ସାଧି ମୁନିଜନ ।
ପରମପଦେ କରେ ସ୍ଥାନ ।।୯୧

ଯେବେ ନ ପାରେ ଏ ସାଧନେ ।
ତେବେ ବିଜ୍ଞାନ-ଶାସ୍ତ୍ରଜ୍ଞାନେ ।।୯୨

ନାଶଇ ବିଷୟ-ବାସନା ।
ନାହିଁ ତା ମାୟାର ରଚନା ।।୯୩

ଯେବେ ତା ଦେହତ୍ୟାଗେ ମନ ।
ତେବେ ସାଧିବ ଦୃଢ଼ାସନ ।।୯୪

ବାମଚରଣ ପଚ୍ଛଭର ।
ତେଣେ ନିରୋଧି ମୂଳାଧାର ।।୯୫

ମୂଳପବନ ଉର୍ଦ୍ଧ୍ୱେ ତୋଳି ।
ନାଭିପବନ ସଙ୍ଗେ ମିଳି ।।୯୬

ବେନିପବନ ପୁଣି ବଳେ ।
ସ୍ଥାପିବ ହୃଦୟ-କମଳେ ।।୯୭

ତହୁଁ ତୋଳିବ ତିନିପ୍ରାଣ ।
କଣ୍ଠେ ଯେ ବସଇ ଉଦାନ ।।୯୮

ବ୍ୟାନ-ପବନ ତାର ତୁଲେ ।
ଧରି ସ୍ଥାପିବ ତାଳୁମୂଳେ ।।୯୯

ତହୁଁ କୁମ୍ଭକ ସାଧିକରି ।
ପ୍ରାଣକୁ ଭ୍ରୂମଣ୍ଡଳେ ଭରି ।।୧୦୦

ନିରୋଧ କରି ସପ୍ତଦ୍ୱାର ।
ସ୍ମରଣ କରିବ ଓଁକାର ।।୧୦୧

ଯେବେ ଭୋଗରେ ମନ ନାହିଁ ।
ମୁହୂର୍ତ୍ତଅର୍ଦ୍ଧ ତହିଁ ରହି ।।୧୦୨

ନିୟତ ଥାଇ ଯୋଗବନ୍ଧେ ।
ତେବେ ସ୍ଥାପିବ ବ୍ରହ୍ମରନ୍ଧ୍ରେ ।।୧୦୩

Dr. Sudhanshu Sekhar Mishra

ନିଶ୍ଚଳ-ଯୋଗ ଦୃଢ଼େ ସାଧି ।
ତକ୍ଷଣେ ବ୍ରହ୍ମରନ୍ଧ୍ର ଭେଦି ॥୧୦୪
ପରମପଦେ ତାର ଗତି ।
ଦେହଇନ୍ଦ୍ରିୟ ପାଶୋରନ୍ତି ॥୧୦୫
ହେ ନୃପ ଯେବେ ବ୍ରହ୍ମପଦ ।
ବୋଲିବ ପ୍ରୟାସ-ଆସ୍ପଦ ॥୧୦୬
ଯେ ସିଦ୍ଧିଦେବଙ୍କର ସ୍ଥାନ ।
ଯେ ଅଷ୍ଟନିଧିରେ ସମ୍ପନ୍ନ ॥୧୦୭
ବ୍ରହ୍ମର ବ୍ରହ୍ମଲୋକେ ସ୍ଥିତି ।
ସେ ସ୍ଥାନ ଭୋଗ ମନେ ଚିନ୍ତି ॥୧୦୮
ଗୁଣ ସମୂହେ ଗୁଣସିଦ୍ଧି ।
ଯେବା ବାଞ୍ଛଇ ସର୍ବସିଦ୍ଧି ॥୧୦୯
ମନ ଇନ୍ଦ୍ରିୟଗଣ ମେଳେ ।
ତକ୍ଷଣେ ସେ ଲୋକରେ ମିଳେ ॥୧୧୦
ଯୋଗେଶ୍ୱରଙ୍କ ଏହୁ ଗତି ।
ପରମପୁରୁଷେ ବୋଲନ୍ତି ॥୧୧୧
ଏମନ୍ତ ତିନିଲୋକ ଜିଣି ।
ଶୁଣ କହିବା ପରିମାଣି ॥୧୧୨
ଯେ କର୍ମସାଧେ କର୍ମକାଣ୍ଡେ ।
ସେ କାହିଁ ଯିବ ଉର୍ଦ୍ଧ୍ୱଦାଣ୍ଡେ ॥୧୧୩
କେବା ଲଭିବ କର୍ମଭାବେ ।
ସମାଧି-ବିଦ୍ୟା-ତପ-ଯୋଗେ ॥୧୧୪
ଯେ ବ୍ରହ୍ମଲୋକ ମନେ କରେ ।
ପ୍ରଥମେ ଅଗ୍ନି ଆଶ୍ରେ କରେ ॥୧୧୫
ସୁଷୁମ୍ନାରନ୍ଧ୍ରେ ବ୍ରହ୍ମପଥେ ।
ଜ୍ୟୋତି ପ୍ରକାଶେ ଉର୍ଦ୍ଧ୍ୱଗତେ ॥୧୧୬
ବିଧୂତ-କଳ୍ମଷ-ଶରୀର ।
ସେ ଚକ୍ରେ ସ୍ଥିତ ଶିଶୁମାର ॥୧୧୭
ସେ ଶିଶୁମାର ଚକ୍ରସାର ।
ସେ ଚକ୍ର ତଳେ ଧ୍ରୁବପୁର ॥୧୧୮
ବିଶ୍ୱର ନାଭି ସେ ବୋଲାଇ ।
ଆତ୍ମା ସ୍ୱରୂପେ ତହୁଁ ଯାଇ ॥୧୧୯
ପ୍ରବେଶ ପରମ-ସ୍ୱରୂପେ ।
ବ୍ରହ୍ମନିର୍ବାଣ ମହର୍ଲୋକେ ॥୧୨୦
କଳ୍ପଆୟୁଷ ଦେବଗଣେ ।
ଯହିଁ ରମନ୍ତି ଅନୁକ୍ଷଣେ ॥୧୨୧

ସେ ପୁଣି କଳ୍ପକ୍ଷୟକାଳେ ।
ଅନନ୍ତ-ନିଃଶ୍ୱାସ-ଅନଳେ ॥୧୨୨
ଦହନ ଦେଖି ଅନ୍ତରୀକ୍ଷେ ।
ଅନନ୍ତଶୟନେ ପ୍ରତ୍ୟକ୍ଷେ ॥୧୨୩
ସିଦ୍ଧେଶ୍ୱରଙ୍କ ସ୍ଥାନେ ପଶେ ।
ବେଦ ଯା ବ୍ରହ୍ମଲୋକେ ଘୋଷେ ॥୧୨୪
ବେନିପରାର୍ଦ୍ଧ ଯହିଁ ଗଣି ।
ସେ ବ୍ରହ୍ମଲୋକ ପରିମାଣି ॥୧୨୫
ସଂସାରକର୍ତ୍ତା ଯେ ବୋଲାନ୍ତି ।
ସେ ବ୍ରହ୍ମା ବ୍ରହ୍ମଲୋକେ ସ୍ଥିତି ॥୧୨୬
ସେ ପୁରେ ନାହିଁ ଦୁଃଖଶୋକ ।
ଜରା-ମରଣ-ଉଦବେଗ ॥୧୨୭
ଚିତ୍ତଅନର୍ଥହେତୁ ନାହିଁ ।
ଜନ୍ମମରଣ ଭୟ କାହିଁ ॥୧୨୮
କେତେ ହେଁ କାଳେ ସେ ଭୁବନେ ।
ଥାଇ ଚିନ୍ତଇ ଅବଧାନେ ॥୧୨୯
ଲିଙ୍ଗ-ଶରୀରେ ପୃଥିବୀରେ ।
ନିର୍ଭୟେ ସେ ସ୍ଥଳେ ବିହରେ ॥୧୩୦
ପୃଥିବୀ ରୂପେ ଜଳେ ଯାଇ ।
ଯେ ଇଷ୍ଟଭୋଗ ତା ଭୁଞ୍ଜଇ ॥୧୩୧
ଅନଳ ମଧ୍ୟେ ତହୁଁ ସ୍ଥିତି ।
ଜ୍ୟୋତିସ୍ୱରୂପ ପ୍ରାଣ ଚିନ୍ତି ॥୧୩୨
ପବନେ କରଇ ସଞ୍ଚାର ।
ଧରଇ ପବନ ଶରୀର ॥୧୩୩
ସେ ବାୟୁ କାଳେ ନଭେ ପୁରେ ।
ସେ ନଭେ ଲିଙ୍ଗରୂପେ ଧରେ ॥୧୩୪
ଗନ୍ଧ କଳ୍ପଇ ଘ୍ରାଣମାତ୍ରେ ।
ରସକୁ ରସନାସମେତେ ॥୧୩୫
ଦୃଷ୍ଟିରେ ରୂପକୁ ସଂହରେ ।
ପବନ ବଶେ ଚର୍ମପରେ ॥୧୩୬
ଆକାଶଗୁଣ କର୍ଣ୍ଣେ ଭରି ।
ଏ ରୂପେ ପ୍ରାଣ ସୂକ୍ଷ୍ମେ ଭରି ॥୧୩୭
ବୁଦ୍ଧି-ଇନ୍ଦ୍ରିୟ-ଭାବ ଏଣେ ।
ପଞ୍ଚତନ୍ମାତ୍ରେ ପରିମାଣେ ॥୧୩୮
ଏ ଅହଙ୍କାର ତିନିଗୁଣ ।
ବୁଦ୍ଧି-ଇନ୍ଦ୍ରିୟ-ଦିବ୍ୟଜ୍ଞାନ ॥୧୩୯

ପଞ୍ଚବିକାର ପଞ୍ଚଦେବା ।
ମନ ସମେତେ କରି ସେବା ॥୧୪୦
ଏ ପଞ୍ଚଦେବତା ସମେତେ ।
ସୂକ୍ଷ୍ମ ସ୍ୱରୂପେ ମହତ୍ତତ୍ତ୍ୱେ ॥୧୪୧
ସେ ତତ୍ତ୍ୱଗୁଣର ସଂସ୍ଥାନ ।
ପ୍ରଧାନ ଦେହେ ହୋଏ ଲୀନ ॥୧୪୨
ସେ ନିତ୍ୟ-ଶାନ୍ତି-ସନାତନେ ।
ଆତ୍ମା-ନିରୋଧେ ଆତ୍ମଜ୍ଞାନେ ॥୧୪୩
ପ୍ରବେଶ କରେ ବିଦ୍ୟମାନେ ।
ବିଜ୍ଞାନ-ଆନନ୍ଦ-ଚେତନେ ॥୧୪୪
ଆନନ୍ଦଜ୍ଞାନ ରସଭୋଳେ ।
ଶାନ୍ତି ଲଭଇ ସୁନିଶ୍ଚଳେ ॥୧୪୫
ଏମନ୍ତେ ଧାରଣାନୁଭାବେ ।
ନିଶ୍ଚେ ପଶଇ ବାସୁଦେବେ ॥୧୪୬
ଅନ୍ତେ ଲଭଇ ଯେଉଁ ଗତି ।
ତାହାକୁ ବୋଲି ଭାଗବତୀ ॥୧୪୭
ଯହିଁ ପଶିଲେ ଆତ୍ମାମନ ।
ନ ଲଭେ ପୁନରାଗମନ ॥୧୪୮
ଶୁଣ ହେ ନୃପ ପରୀକ୍ଷିତ ।
ଯେଣୁ ପୁଚ୍ଛିଲୁ ଭାଗବତ ॥୧୪୯
ତେଣୁ କହିଲି ଶ୍ରୁତିଯୋଗେ ।
ତୋର ସମୀପେ ଅନୁରାଗେ ॥୧୫୦
ଦଇବେ କାଳ ଅବସାନ ।
ଏବେ କହିବା ଦିବ୍ୟଜ୍ଞାନ ॥୧୫୧
ବ୍ରହ୍ମାର ତପେ ହୋଇ ତୋଷ ।
ବିଷ୍ଣୁ ଯେ ଦେଲେ ଉପଦେଶ ॥୧୫୨
ଯେ ସଦ୍ୟୋମୁକ୍ତି କ୍ରମମୁକ୍ତି ।
ସ୍ୱଭାବସିଦ୍ଧ ବେନିଗତି ॥୧୫୩
ସେ ପଥ କହିବି ମୁଁ ତୋତେ ।
ଏବେ ତୁ ଶୁଣ ଏକଚିତ୍ତେ ॥୧୫୪
ସଂସାରେ ସଞ୍ଚରନ୍ତି ଯେତେ ।
ତାଙ୍କ ତାରଣେ ପଥ ଯେତେ ॥୧୫୫
ଏହିଟି ଜାଣ ଶିବପଥ ।
ତା ତହୁଁ ଭକ୍ତିଯୋଗ ଜାତ ॥୧୫୬
ଯେ କଥା ଶୁଣି ପ୍ରିୟଭାବେ ।
ଭକତି ଲଭେ ବାସୁଦେବେ ॥୧୫୭

Dr. Sudhanshu Sekhar Mishra

ବ୍ରହ୍ମାର ତପକଷ୍ଟେ ହରି ।
ଯାହା କହିଲେ ଦୟାକରି ।।୧୫୮
ସେ ବ୍ରହ୍ମା ବ୍ରହ୍ମବେଦସାର ।
ସକଳ ବୁଝି ତିନିବାର ।।୧୫୯
ଯେ ଭକ୍ତି ଜୀବ-ସୁଖପଥ ।
ଏ ଭାବେ ହେଲା ଆମ୍ଭେ ରତ ।।୧୬୦
ସେ ହରି ସର୍ବଭୂତ ମଧ୍ୟେ ।
ନିତ୍ୟେ ବିହରେ ଆତ୍ମାପଦେ ।।୧୬୧
ବୁଦ୍ଧି ଲକ୍ଷଣେ ଅନୁମାନେ ।
ନିଷ୍କଳଯୋଗୀ ଯୋଗଧ୍ୟାନେ ।।୧୬୨
କେ ଅବା କରିବ ଗୋଚର ।
ଜଗତ ବାହ୍ୟ-ଅଭ୍ୟନ୍ତର ।।୧୬୩
ଏ ଘେନି ସର୍ବ ଆତ୍ମାଭାବେ ।
ସର୍ବଦା କାଳେ ସର୍ବଠାବେ ।।୧୬୪
ହରିଙ୍କି ଶ୍ରୁତିପଥେ ଶୁଣ ।
ମୁଖେ ନିରତେ ନାମ ଭଣ ।।୧୬୫
ସେ ହରିକଥାମୃତରସ ।
ଯେ କରେ ଶ୍ରୁତିପଥେ ଗ୍ରାସ ।।୧୬୬
ବିଷୟ-ବିଦୂଷିତ-ଚିତ୍ତ ।
ପବିତ୍ର କରେ ଅନ୍ତର୍ଗତ ।।୧୬୭
ଗୋବିନ୍ଦ-ଚରଣ-କମଳେ ।
ପଶଇ ଭକ୍ତିଯୋଗବଳେ ।।୧୬୮
ଏ ଭାଗବତ ରସ ଯେତେ ।
ସୁଜନେ ପିବ ଶ୍ରୁତିପଥେ ।।୧୬୯
ବିଷୟାରସରେ ନ ରସ ।
କହଇ ଜଗନ୍ନାଥ ଦାସ ।।୧୭୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ପୁରୁଷସଂସ୍ଥାବର୍ଣ୍ଣନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ।।

## ତୃତୀୟ ଅଧ୍ୟାୟ

ସୂତ ଉବାଚ

ଶୁକ କହନ୍ତି ଶୁଦ୍ଧତିରେ ।
ପ୍ରସନ୍ନେ ନୃପତି ଅଗ୍ରତେ ।।୧

ଶୁକ ଉବାଚ

ଶୁଣ ପରୀକ୍ଷ ପୁଣ୍ୟଦେହା ।
ତୁ ମୋତେ ପଚାରିଲୁ ଯାହା ।।୨
ମନୁଷ୍ୟ ମଧ୍ୟେ ସାଧୁପ୍ରାଣୀ ।
ମରଣକାଳେ ଯାହା ଜାଣି ।।୩
ଏବେ କହିବି ଜ୍ଞାନସାର ।
ଭକତଜନଙ୍କ ବେଭାର ।।୪
ବ୍ରହ୍ମତେଜକୁ ଯାର ଇଚ୍ଛା ।
ବ୍ରହ୍ମଭଜନେ ହୋଇ ବାଞ୍ଛା ।।୫
ଇନ୍ଦ୍ରିୟସୁଖେ ଯାର ଭାବ ।
ସେ ନର ଇନ୍ଦ୍ରଙ୍କୁ ପୂଜିବ ।।୬
ପୁତ୍ରକାମରେ ଯାର ମତି ।
ସେ ଜନ ପୂଜେ ପ୍ରଜାପତି ।।୭
ଶ୍ରୀକାମୀ ପ୍ରାଣୀ ଦେବୀଭଜେ ।
ତେଜସ୍ୱୀ ପୂଜେ ଗ୍ରହରାଜେ ।।୮
ବସୁଙ୍କୁ ପୂଜେ ବସୁକାମୀ ।
ଦୃଢ଼ ଭକତିଭାବ ଘେନି ।।୯
ବୀର୍ଯ୍ୟରେ ହୋଏ ଯାର ମତି ।
ସେ ଭଜେ ପଶୁଙ୍କରପତି ।।୧୦
ଅନ୍ନାଦିକାମେ ଯାର ଚିନ୍ତା ।
ସେବେ ଅଦିତି ଦେବମାତା ।।୧୧
ଦେବଙ୍କୁ ପୂଜେ ସ୍ୱର୍ଗକାମୀ ।
ବିଶ୍ୱଦେବାଙ୍କୁ ରାଜ୍ୟସ୍ୱାମୀ ।।୧୨
ସାଧ୍ୟଙ୍କୁ ପୂଜି ପ୍ରଜାହିତେ ।
ଆୟୁଷକାମେ ଅଶ୍ୱିସୁତେ ।।୧୩
ଯେ ପ୍ରାଣୀ ତୁଷ୍ଟ-ପୁଷ୍ଟିକାମୀ ।
ସର୍ବଲକ୍ଷଣେ ପୂଜେ ଭୂମି ।।୧୪
ପ୍ରତିଷ୍ଠାକାମେ ଯେବେ ଇଚ୍ଛେ ।
ସେ ପୂଜେ ଭୂମି-ଅନ୍ତରୀକ୍ଷେ ।।୧୫
ସୁନ୍ଦରରୂପେ ଯାର ଭାବ ।
ସେ ନର ପୂଜନ୍ତି ଗନ୍ଧର୍ବ ।।୧୬
ଯେ ନର ଇଚ୍ଛେ ଦିବ୍ୟନାରୀ ।
ଭାବେ ଉର୍ବଶୀ ପୂଜାକରି ।।୧୭
ସକଳ-ଆଧିପତ୍ୟ-ଚିନ୍ତା ।
ଯେ କରେ ସେ ପୂଜେ ବିଧାତା ।।୧୮
ଯଶ ଇଚ୍ଛଇ ଯେହୁ ନର ।
ଯଜ୍ଞେ ପୂଜିବ ଯଜ୍ଞେଶ୍ୱର ।।୧୯
ଧନଭଣ୍ଡାର ଯେ ଇଚ୍ଛନ୍ତି ।
ବରୁଣ-ଚରଣେ ପୂଜନ୍ତି ।।୨୦
ଈଶ୍ୱରପୂଜେ ବିଦ୍ୟାଅର୍ଥୀ ।
ଦମ୍ପତିକାମେ ଉମାସତୀ ।।୨୧
ଧର୍ମାର୍ଥୀ ବିଷ୍ଣୁର ଚରଣେ ।
ସନ୍ତାନଅର୍ଥେ ପିତୃଗଣେ ।।୨୨
ଯକ୍ଷଙ୍କୁ ପୂଜେ ରକ୍ଷାକାମେ ।
ବଳାର୍ଥୀ ପୂଜେ ପ୍ରଭଞ୍ଜନେ ।।୨୩
ସକଳରାଜ୍ୟେ ରାଜାପଣେ ।
ସେ ଆଶେ ପୂଜେ ମନୁଗଣେ ।।୨୪
ଶତ୍ରୁମାରଣେ ଯାର ଇଚ୍ଛା ।
ରାକ୍ଷସ-ଭଜନେ ତା ବାଞ୍ଛା ।।୨୫
ସୋମକୁ ପୂଜେ କାମକାମୀ ।
ଅକାମୀ ଆତ୍ମାରାମେ ରମି ।।୨୬
ଅକାମେ ଅବା ସର୍ବକାମେ ।
ଯେ ଅବା ଭଜେ ମୋକ୍ଷକାମେ ।।୨୭
ପରମପୁରୁଷ ଚରଣେ ।
ଯେବା ସେବନ୍ତି ଦାସପଣେ ।।୨୮
ଏ ଭାବେ ତାହାଙ୍କ ଜୀବନ ।
ଜନ୍ମମରଣେ ଧନ୍ୟ ଧନ୍ୟ ।।୨୯
ପରମପଦ ସେ ଲଭନ୍ତି ।
କୃଷ୍ଣଚରଣେ ନିତ୍ୟେ ଚିନ୍ତି ।।୩୦
ହରିଭକତଜନ ସଙ୍ଗେ ।
ତରଇ ଏ ଭବତରଙ୍ଗେ ।।୩୧
ଜ୍ଞାନ ପ୍ରସରେ ଭକ୍ତିବଳେ ।
ତ୍ରିଗୁଣ ହରଇ ନିଷ୍କଳେ ।।୩୨

Dr. Sudhanshu Sekhar Mishra

ଆତ୍ମା ପ୍ରସନ୍ନ ସୁବିବେକେ ।
ଗୁଣେ ଅସଙ୍ଗ ବେନିଲୋକେ ।।୩୩
କୈବଲ୍ୟ-ସମ୍ମତ ଏ ପଥ ।
ଏ ଭକ୍ତି ଯୋଗୀଙ୍କର ମତ ।।୩୪
କେବା ନିବୃତ ହରିଭାବେ ।
ଆତ୍ମାର କଇବଲ୍ୟ-ଲାଭେ ।।୩୫
ଶୌନକ ସୂତମୁଖ ଚାହିଁ ।
ପୁଣି ପୁଚ୍ଛଇ ଭାବବହି ।।୩୬

ଶୌନକ ଉବାଚ

ଏମନ୍ତ ଶୁକ ମୁଖୁ ଶୁଣି ।
ସେ କୁରୁବୀର ଚୂଡ଼ାମଣି ।।୩୭
ପୁଣି ସେ ଅଭିମନ୍ୟୁ ବଳା ।
ଆନ-ପ୍ରଶନ କିବା କଲା ।।୩୮
ସେ ହରିକଥା ଆସ୍ଥଆଗେ ।
ହେ ସୂତ କହ ସଭାଯୋଗେ ।।୩୯
ସେ କଥା ତୁମ୍ଭ ମୁଖୁ ଶୁଣି ।
ତରିବୁ ଭବ-ତରଙ୍ଗିଣୀ ।।୪୦
ତୁମ୍ଭର ଅଛି ଯେବେ ସ୍ନେହ ।
ସଦୟଚିତ୍ତେ ମୁନି କହ ।।୪୧
ଯେ ହରିକଥା ସଭାମଧ୍ୟେ ।
ଭକତେ କହନ୍ତି ଆନନ୍ଦେ ।।୪୨
ସେ ପଣ୍ଡୁବଂଶେ ମହାରଥ ।
ସ୍ୱଭାବେ କୃଷ୍ଣଅଂଶେ ଜାତ ।।୪୩
ବାଳକ-କ୍ରୀଡ଼ା-ରସଖେଳେ ।
ଯେ ପୂଜେ କୃଷ୍ଣ-ପାଦମୂଳେ ।।୪୪
ବ୍ୟାସକୁମର ସତ୍ତ୍ୱଗୁଣ ।
ସ୍ୱଭାବେ ବିଷ୍ଣୁ-ପରାୟଣ ।।୪୫
ପରମାନନ୍ଦ ଗୁଣଗାଥା ।
ସତସଙ୍ଗମେ ଯେ ବକତା ।।୪୬
ଜୀବନ ବହି ଏ ଜଗତେ ।
ହରିକଥାରେ ନିତ୍ୟେ ନିତ୍ୟେ ।।୪୭
ନ କରେ ଜୀବନ ସଫଳ ।
ବ୍ୟର୍ଥ ତାହାର ଆୟୁର୍ବଳ ।।୪୮
ଏ ରବି ଉଦେ ଅସ୍ତକାଳେ ।
ଜନ୍ତୁଜୀବନ ଘେନି ଚଳେ ।।୪୯
ଯେ ହରିଭାବେ ଥାନ୍ତି ଜଡ଼ି ।
ତାଙ୍କ ଜୀବନ ଦୂରେ ଏଡ଼ି ।।୫୦
ଏ ତରୁଗଣେ ଏ ସଂସାରେ ।
ଜୀବନ୍ତି ଅଜ୍ଞାନ ପ୍ରକାରେ ।।୫୧
ଲୌହକାରଙ୍କ ଗୃହେ ଭାତି ।
ଶ୍ୱାସ ଛାଡ଼ନ୍ତେ ନ ଜୀବତି ।।୫୨
ଗ୍ରାମ-କାନନେ ପଶୁଗଣ ।
କି ନ ଭକ୍ଷନ୍ତି ଜଳତୃଣ ।।୫୩
ମୂତ୍ରପୁରୀଷ ଉତ୍ସର୍ଗନ୍ତି ।
ଅଜ୍ଞାନସୁଖେ ସେ ଜୀବନ୍ତି ।।୫୪
ଶ୍ୱାନ ଶୂକର ଉଷ୍ଟ୍ରଖର ।
ଏହାଙ୍କ ସମାନ ସେ ନର ।।୫୫
କୃଷ୍ଣର ନାମ ଉଚ୍ଚାରଣ ।
ନ ଶୁଣେ ଯାହାର ଶ୍ରବଣ ।।୫୬
ତାହାର ଶ୍ରୁତିଯୁଗ କାନ୍ତେ ।
ବିବରେ ଦିଶନ୍ତି ଯେମନ୍ତେ ।।୫୭
ତୁଣ୍ଡର ମଧ୍ୟେ ଜିହ୍ୱା ବହି ।
ଯେ ହରିନାମ ନ ଭଜଇ ।।୫୮
ଦର୍ଦ୍ଦୁର ବାଣୀ ବୋଲି ତାରେ ।
ଯେ ହରିନାମ ନ ଉଚ୍ଚାରେ ।।୫୯
ଯାର ଉତ୍ତମ-ଅଙ୍ଗସାଜେ ।
ସୁବର୍ଣ୍ଣ-ମୁକୁଟ ବିରାଜେ ।।୬୦
ପାଟବସନେ ବାନ୍ଧି ଚୂଳ ।
ଶ୍ରବଣେ ମକର-କୁଣ୍ଡଳ ।।୬୧
ସେ ଯେବେ ହରିଙ୍କି ନ ନମେ ।
ସେ ମୁଣ୍ଡ ଭାରବହି ଶ୍ରମେ ।।୬୨
ଯେ ବା ସୁନ୍ଦର ବେନିଭୁଜେ ।
କାଞ୍ଚନ କଙ୍କଣ ବିରାଜେ ।।୬୩
କୃଷ୍ଣର କାର୍ଯ୍ୟ ଯେବେ ନୋହେ ।
ଶ୍ମଶାନ-ଅସ୍ଥି ପ୍ରାୟ ହୋଏ ।।୬୪
ଲୋଚନ ବେନି ଥାଉଁ ମୁଖେ ।
ଯେ ହରିମୂରତି ନ ଦେଖେ ।।୬୫
ମୟୂରପୁଚ୍ଛ ବୋଲି ତାରେ ।
ସେ ଅନ୍ଧ ସଂସାର-ସାଗରେ ।।୬୬
ଚରଣଯୁଗ ବହି ନରେ ।
ଯେବେ ନ ଯାନ୍ତି ବିଷ୍ଣୁପୁରେ ।।୬୭
ତାହାକୁ ବୋଲି ବୃକ୍ଷଦୁଇ ।
ସେ ଯେହ୍ନେ ପାଦେ ନ ଚଳଇ ।। ୬୮
କୃଷ୍ଣର ଭକତଚରଣୁ ।
ଶିରେ ନ ଲାଗେ ଯାର ରେଣୁ ।। ୬୯
ପବିତ୍ର ନୋହେ ତା ଶରୀର ।
ଜୀଅନ୍ତା ଶବର ଆକାର ।।୭୦
ତୁଳସୀଦଳ କୃଷ୍ଣଦେହେ ।
ଶୁଦ୍ଧ-ସୌରଭ-ଗନ୍ଧ ବହେ ।।୭୧
ସେ ଗନ୍ଧ ଯାର ନାସାଦ୍ୱାର ।
ନ ଲଭେ ଶବ ତା ଶରୀର ।।୭୨
ଗୋବିନ୍ଦନାମ ଯାରହୃଦେ ।
ନ ପଶେ ପୁଲକ ଆନନ୍ଦେ ।।୭୩
କି ଅବା ପଶିଲେ ହୃଦରେ ।
ନୟନୁ ଅଶ୍ରୁ ତା ନ ଝରେ ।।୭୪
ତାର ହୃଦୟ ଅଶ୍ମସାର ।
ବହଇ ଲୋହମୟ ଭାର ।।୭୫
ହେ ସୂତ ଶୁଣ କୃଷ୍ଣଗୁଣ ।
ଶୁଣାଅ ଆମ୍ଭର ଶ୍ରବଣ ।।୭୬
ଯେ ସାଧୁପ୍ରଶ୍ନ ପରୀକ୍ଷିତ ।
ପୁଚ୍ଛିଲା ଶୁକଙ୍କ ଅଗ୍ରତ ।।୭୭
ହରଷେ ବ୍ୟାସଙ୍କ କୁମର ।
ଆତ୍ମଜ୍ଞାନୀଙ୍କ ମଧ୍ୟେ ସାର ।।୭୮
ଆନନ୍ଦେ ମୁନିଗଣମେଳେ ।
ଯାହା କହିଲେ ଗଙ୍ଗାକୂଳେ ।।୭୯
ସେ ଆମ୍ଭମନ ଅନୁକୂଳ ।
କହି ସଂସାରୁ କର ପାର ।।୮୦
ସେ ହରି-ଚରଣ-ପଙ୍କଜେ ।
ବ୍ରାହ୍ମଣ-ଜଗନ୍ନାଥ ଭଜେ ।।୮୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ତୃତୀୟୋଽଧ୍ୟାୟଃ ।।

Dr. Sudhanshu Sekhar Mishra

## ଚତୁର୍ଥ ଅଧ୍ୟାୟ

ସୂତ ଉବାଚ

ଏମନ୍ତ ଶୁକବାକ୍ୟ ଶୁଣି ।
ଆତ୍ମାର ତତ୍ତ୍ୱ ମନେ ଗୁଣି ।।୧
କୃଷ୍ଣବିଷୟେ ଦୃଢ଼ମନ ।
କଳିଲା ଉତ୍ତରା-ନନ୍ଦନ ।।୨
ଆତ୍ମା-କଳତ୍ର-ସୁତ-ଗୃହେ ।
ପଶୁ-ଦ୍ରବିଣ-ବନ୍ଧୁସ୍ନେହେ ।।୩
ରାଜ୍ୟ-ସମ୍ପଦ ଯେତେ ଆଶ ।
ହୃଦୁ ଛାଡ଼ିଲା ସ୍ନେହପାଶ ।।୪
ତୁମ୍ଭେ ଯା ପଚାରିଲ ମୋତେ ।
ଏ କଥା ରାଜା ଦୃଢ଼ଚିତ୍ତେ ।।୫
କୃଷ୍ଣାନୁଭାବ ଶୁଣିବାରେ ।
ଶ୍ରଦ୍ଧାବଳିଲା ନିର୍ବିକାରେ ।।୬
ଆତ୍ମନିଧନ ମନେ ସ୍ମରି ।
ବେଦବଚନ ଦୃଢ଼କରି ।।୭
କୃଷ୍ଣବିଷୟେ ଦୃଢ଼ଚିତ୍ତ ।
ନିଶ୍ଚୟ କରି ପରୀକ୍ଷିତ ।।୮
ଆତ୍ମଦ୍ୱଭାବ ହେଲେ ଦେହେ ।
ପୁଣି ପୁଚ୍ଛଇ ଅତି ସ୍ନେହେ ।।୯

ରାଜା ଉବାଚ

ହେ ଶୁକ ତୁମ୍ଭର ବଚନ ।
କୃଷ୍ଣର ଯେତେ ଗୁଣକର୍ମ ।।୧୦
ଯାହା ଶୁଣନ୍ତେ ପାପହରେ ।
ପବିତ୍ର ବାହ୍ୟ-ଅଭ୍ୟନ୍ତରେ ।।୧୧
ଶୁଣି ଅଜ୍ଞାନ ମୋର ଗଲା ।
ତୁମ୍ଭ ପ୍ରସାଦ ଯେଣୁ ହେଲା ।।୧୨
ସେ କଥା କହ ମୁନି ମୋତେ ।
ଯେମନ୍ତେ ଧରି ଦୃଢ଼ଚିତ୍ତେ ।।୧୩
ସେ ହରି ଆତ୍ମମାୟାବଳେ ।
ସୃଷ୍ଟି ସଞ୍ଚଇ ଏ ଶୟଳେ ।।୧୪
ବିଷ୍ଣୁର ସର୍ଜିଲା ସଂସାର ।
ଅନ୍ୟଦେବଙ୍କୁ ଅଗୋଚର ।।୧୫
ସେ କଥା ଜାଣିବାର ପାଇଁ ।
ଭୋ ମୁନି ପୁଣି ମୁଁ ପୁଚ୍ଛଇ ।।୧୬
ସେ ବହୁ ଶକ୍ତିମନ୍ତ ହରି ।
ପରମ-ପୁରୁଷ-ମୁରାରି ।।୧୭
ଯେମନ୍ତେ ପାଳି ପୁଣ ହରେ ।
ଯେ କାଳେ ଯେବା ଶକ୍ତିଧରେ ।।୧୮
ଆତ୍ମାକୁ ଆତ୍ମା କରି ଖେଳା ।
କୁତୁକମତେ ବିଷ୍ଣୁଲୀଳା ।।୧୯
ସୃଜଇ ପାଳଇ ସଂହରେ ।
ମାୟା-ତ୍ରିଗୁଣରୂପ ଧରେ ।।୨୦
ଯେମନ୍ତେ ବ୍ରହ୍ମା-ବିଷ୍ଣୁ-ହର ।
କ୍ରୀଡ଼ନ କରେ ଦାମୋଦର ।।୨୧
ବିବିଧରୂପ ଏ ଜଗତେ ।
ଯେମନ୍ତେ କରେ କ୍ରୀଡ଼ାଅର୍ଥେ ।।୨୨
ଅଦ୍‌ଭୁତକର୍ମ ଏ ତାହାର ।
କେ କରିପାରିବ ଗୋଚର ।।୨୩
ଏକଇ ପୁରୁଷ ଅନନ୍ତ ।
ପ୍ରକୃତିମତେ ବହୁମତ ।।୨୪
ଆଦିପୁରୁଷ ରୂପ ଧରି ।
ଯେମନ୍ତେ କ୍ରମେ ନରହରି ।।୨୫
କାର୍ଯ୍ୟମାନଙ୍କୁ ଏ ସଂସାରେ ।
କଲେ କହିବା ମୁନିବରେ ।।୨୬
ଯେ ଶବ୍ଦ ବ୍ରହ୍ମରେ ବିଚାର ।
ବ୍ରହ୍ମାନୁଭବରେ ଗୋଚର ।।୨୭
ଏକ ଅନେକ ରୂପ ଧରେ ।
ଅଶେଷଜନ୍ମ କର୍ମ କରେ ।।୨୮
ଏଣୁ ଶ୍ରବଣେ ଇଚ୍ଛା ମୋର ।
କହ ହେ ବ୍ୟାସଙ୍କ କୁମର ।।୨୯
ହେ ମହାମୁନି ଭାଗବତ ।
ଶ୍ରବଣେ ପିଆଅ ଅମୃତ ।।୩୦

ସୂତ ଉବାଚ

ଏମନ୍ତ ପରୀକ୍ଷିତ କଥା ।
ପୁରୁଷୋତ୍ତମ-ଗୁଣଗାଥା ।।୩୧
ଶୁଣି ସାନନ୍ଦ ବ୍ୟାସସୁତ ।
କୃଷ୍ଣଚରଣେ ଦେଇ ଚିତ୍ତ ।।୩୨
ସେ ପରୀକ୍ଷିତେ ପ୍ରତିବାଣୀ ।
କହିବା ଅର୍ଥେ ମୁନିମଣି ।।୩୩
ଧ୍ୟାନେ ସେ ଚିନ୍ତି ନାରାୟଣ ।
ବୋଇଲେ ପରୀକ୍ଷିତ ଶୁଣ ।।୩୪
ନମସ୍ତେ ପରମ-ପୁରୁଷ ।
ଅନନ୍ତଘଟେ ଯା ପ୍ରକାଶ ।।୩୫
ଲୀଳାବିହାରେ ସୃଷ୍ଟିକରେ ।
ପାଳଇ ପୁଣି ସେ ସଂହରେ ।।୩୬
ହେଲେ ଏ ତିନିଶକ୍ତି ଧରେ ।
ଜନ୍ତୁର ଅନ୍ତରେ ବିହରେ ।।୩୭
ତେଣୁ ତା ମାର୍ଗ ଉପଲକ୍ଷ୍ୟ ।
କରିବ କାହାର ବା ଶକ୍ୟ ।।୩୮
ନମସ୍ତେ ଜଗତଜୀବନ ।
ସାଧୁଙ୍କ ବୃଜିନ-ଦହନ ।।୩୯
ଅସାଧୁ-ଦମନ ବେଭାର ।
ଅଖିଳଜନ୍ତୁ ରୂପ ତୋର ।।୪୦
ପରମହଂସଙ୍କ ଆଶ୍ରମେ ।
ଯେ ବ୍ୟବସ୍ଥିତ ପ୍ରାଣୀମାନେ ।।୪୧
ତାହାଙ୍କ ଆତ୍ମତତ୍ତ୍ୱଦାତା ।
ନିରତେ ତୋର ପାଦେ ଚିନ୍ତା ।।୪୨
ନମସ୍ତେ ସାତ୍ତ୍ୱତବତ୍ସଳ ।
କୁଯୋଗୀଗଣେ ଅଗୋଚରେ ।।୪୩
ସମେ ପ୍ରକାଶ ସର୍ବଠାରେ ।
ଜନ୍ତୁଙ୍କ ବାହ୍ୟ-ଅଭ୍ୟନ୍ତରେ ।।୪୪
ଐଶ୍ୱର୍ଯ୍ୟେ ପରମ-କାରଣ ।
ଯେ ନିତ୍ୟେ ସ୍ୱଧାମ-ଧାରଣ ।।୪୫
ଯା ନାମ ଶ୍ରବଣ-କୀର୍ତ୍ତନ ।
ଯା ରୂପ ଦେଖିଣ ନୟନ ।।୪୬
ନମିଲେ ଯାହାର ଚରଣ ।
ସ୍ମରଣ ପୂଜା ସମର୍ପଣ ।।୪୭
ଜନ୍ତୁଙ୍କ କଳ୍ମଷ ନାଶଇ ।
ଯେ ସର୍ବମଙ୍ଗଳ ବୋଲାଇ ।।୪୮

Dr. Sudhanshu Sekhar Mishra

ଯେ ହରି ଶରଣ-ସୋଦର ।
ତାହାଙ୍କୁ ମୋର ନମସ୍କାର ।୪୯
ପଣ୍ଡିତଜନ ଯାର ପାଦେ ।
ସେବା ସମ୍ପାଦି ଅପ୍ରମାଦେ ।୫୦
ଆତ୍ମାର କଲ୍ମଷ ନାଶନ୍ତି ।
ଜନ୍ମମରଣେ ନତରନ୍ତି ।୫୧
ଆତ୍ମାର ଶ୍ରମ କରି ଶାନ୍ତି ।
ଅନ୍ତେ ଲଭନ୍ତି ବ୍ରହ୍ମଗତି ।୫୨
ସର୍ବମଙ୍ଗଳ ଦାମୋଦର ।
ତାହାଙ୍କୁ ମୋର ନମସ୍କାର ।୫୩
ଯେ ପ୍ରାଣୀ ତପ-ଦାନ କରେ ।
ଯଶ ସମ୍ପାଦି ଏ ସଂସାରେ ।୫୪
ସୁବୁଦ୍ଧିପଣେ ମନ୍ତ୍ରସାଧି ।
ମଙ୍ଗଳକର୍ମକୁ ଆରାଧି ।୫୫
ଏଣୁ ଅର୍ଜନ୍ତି ଯେତେ ଫଳ ।
ତୋତେ ନ ସମର୍ପି ନିଷ୍ଫଳ ।୫୬
ସୁଭଦ୍ରଶ୍ରବା ନାମ ଯାର ।
ତାହାଙ୍କୁ ମୋର ନମସ୍କାର ।୫୭
କିରାତ ହୂଣ ଆନ୍ଧ୍ର ଯେତେ ।
ପୁଲିନ୍ଦ ଚଣ୍ଡାଳ ସମେତେ ।୫୮
ଆଭୀର କଙ୍କ ଯେ ଯବନ ।
ଏ ଆଦି ଯେତେ ଅନ୍ତ୍ୟଜନ ।୫୯
ଦୁଷ୍କୃତକର୍ମ ଯେ କରନ୍ତି ।
ଯା ପାଦ ଆଶ୍ରିତେ ତରନ୍ତି ।୬୦
ସର୍ବ-ପ୍ରଭବଶୀଳ ଯେହି ।
ତା ପାଦପଦ୍ମେ ମୁଁ ନମଇଁ ।୬୧

ଯେ ହରି ଜଗତ-ଜୀବନ ।
ଆତ୍ମଜ୍ଞାନୀଙ୍କ ଆତ୍ମାଧନ ।୬୨
ଏ ତିନିବେଦ ଯାର ଦେହ ।
ଯେ ଧର୍ମମୟ ତପୋମୟ ।୬୩
ନିର୍ମଳତପେ ଯୋଗୀଜନେ ।
ବ୍ରହ୍ମାଶଙ୍କର ଅନୁମାନେ ।୬୪
ନାନାପ୍ରକାରେ ଧ୍ୟାନେ ଚିନ୍ତି ।
ଯା ରୂପ କେହି ନ ଦେଖନ୍ତି ।୬୫
ଯେ ଲକ୍ଷ୍ମୀପତି ଯଜ୍ଞପତି ।
ଯେ ପ୍ରଜାପତି ଜ୍ଞାନପତି ।୬୬
ଯେ ଲୋକପତି ଧରାପତି ।
ଯାଦବବଂଶ-ପତି-ଗତି ।୬୭
ସାଧବଗଣେ ଯାହା ଚିନ୍ତି ।
ସେ ହେଉ ମୋର ମନେ ସ୍ଥିତି ।୬୮
ଯାର ଚରଣ-ଧ୍ୟାନବଳେ ।
ନିଶ୍ଚଳ-ସମାଧିର ଜଳେ ।୬୯
ବୁଦ୍ଧି କି ପ୍ରକ୍ଷାଳନ କରି ।
ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ।୭୦
ସଗୁଣ-ନିର୍ଗୁଣ ବିଚାରେ ।
କହନ୍ତି ଯଥା ଅନୁସାରେ ।୭୧
ସେହରି ମୋର ହୃଦଗତେ ।
ପ୍ରକାଶ ହେଉ ଅବିରତେ ।୭୨
ଯାହାର ଆଜ୍ଞା ପରମାଣେ ।
ଭାରତୀ ଆସି ତତକ୍ଷଣେ ।୭୩
ପ୍ରକାଶି କଳ୍ପ ଆଦିକାଳେ ।
ବ୍ରହ୍ମାର ହୃଦୟ-କମଳେ ।୭୪

ସୃଷ୍ଟି-ବିଷୟ ଜ୍ଞାନ ଦେଲା ।
ମୁଖେ ଗାୟତ୍ରୀ ଉଚ୍ଚାରିଲା ।୭୫
ନମସ୍ତେ ବ୍ୟାସରୂପ ହରି ।
ହୃଦୟେ ବସ କୃପା କରି ।୭୬
ମହତ ଆଦି ପଞ୍ଚଭୂତେ ।
ଜନ୍ତୁ ଭିଆଇ ଏ ଜଗତେ ।୭୭
ଜନ୍ତୁଙ୍କ ହୃଦୟ-କମଳେ ।
ଯାର ଆସନ ସୁଖଭୋଳେ ।୭୮
ଗୁଣସମୂହ ସୁଖେ ଭୁଞ୍ଜେ ।
ଷୋଡ଼ଶଆତ୍ମାରୂପେ ରାଜେ ।୭୯
ସେ ହରି ବସୁ ମୋର ହୃଦେ ।
ବାକ୍ୟ ଆବୋରି ପଦେପଦେ ।୮୦
ନମଇଁ ବ୍ୟାସମୁନିବର ।
କୃଷ୍ଣେ ଅକୁଣ୍ଠବୁଦ୍ଧି ଯାର ।୮୧
ଯା ମୁଖପଦ୍ମୁଁ ଜ୍ଞାନରସେ ।
ମୁନିଏ ପିବନ୍ତି ହରଷେ ।୮୨
ଯେ ହରିକଥା ପୂର୍ବକାଳେ ।
ନାରଦଋଷି ମୁନିମେଳେ ।୮୩
ବ୍ରହ୍ମାଙ୍କୁ ପଚାରିଲେ ଯେତେ ।
ପ୍ରସନ୍ନେ କହିବି ମୁଁ ତୋତେ ।୮୪
ଏ ବାଣୀ ଶୁଣି ସୁଖଭୋଳେ ।
ପ୍ରାଣୀ ନିସ୍ତରେ ଭବଜଳେ ।୮୫
କହଇ ଦାସ ଜଗନ୍ନାଥ ।
ଦ୍ୱିତୀୟସ୍କନ୍ଧେ ଭାଗବତ ।୮୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ଚତୁର୍ଥୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚମ ଅଧ୍ୟାୟ

ଆନନ୍ଦ ଚିତ୍ତେ ସେ ନାରଦ ।
ପୁଚ୍ଛଇ ବ୍ରହ୍ମାଙ୍କର ପାଦ ॥ ୧

ନାରଦ ଉବାଚ

ଭୋ ଦେବଦେବ ନମସ୍ତୁତେ ।
ଭୂତଭାବନ ତୁ ଜଗତେ ॥ ୨
ସୃଷ୍ଟିର ଅଗ୍ରେ ତୋର ଦେହୀ ।
ତୋ ଭାବ ନ ଜାଣନ୍ତି କେହି ॥ ୩
ଆତ୍ମାର ତତ୍ତ୍ୱ ତୁମ୍ଭେ ଜାଣ ।
ଯେ ବେଦ-ପୁରାଣେ ପ୍ରମାଣ ॥ ୪
ଯେ ରୂପ ଯହିଁ ତୋର ବାସ ।
ଯହୁଁ ଏ ଜଗତ ପ୍ରକାଶ ॥ ୫
ଯାହାର ଆଶ୍ରେ ଏ ବର୍ତ୍ତଇ ।
ପ୍ରକାଶି ଯହିଁ ଲୀନ ହୋଇ ॥ ୬
ଭୂତ-ଭବିଷ୍ୟ-ବର୍ତ୍ତମାନ ।
ତୁମ୍ଭ ଗୋଚରେ ଦିବ୍ୟଜ୍ଞାନ ॥ ୭
ହସ୍ତେ ଅଁଳାଫଳ ପ୍ରାୟେ ।
ତୁମ୍ଭ ଗୋଚରେ ଜ୍ଞାନ ରହେ ॥ ୮
ଯେଣୁ ତୁମ୍ଭର ଜ୍ଞାନ ସ୍ଫୁରେ ।
ଯେବା ତୁମ୍ଭଙ୍କୁ ହୃଦେ ଧରେ ॥ ୯
ଯାହାର ବଶ ତୁ ବୋଲାଇ ।
ବର୍ତ୍ତୁ ତୁ ଯାର ଆମ୍ଭା ବହି ॥୧୦
ଭୂତେ ସଞ୍ଚରି ଭୂତ କରୁ ।
ଯାହାର ମାୟାରେ ବିହରୁ ॥ ୧୧
ଏ ଭୂତଗଣଙ୍କୁ ଯେ ପାଳେ ।
ଅପରାଭବୀ ଆମ୍ଭା ତୁଳେ ॥ ୧୨
ଆତ୍ମାର ଶକ୍ତିବଳେ ଭାବି ।
ଅକ୍ଳେଶେ ଯଥା ଊର୍ଣ୍ଣନାଭି ॥ ୧୩
ଏ ସୃଷ୍ଟିକର୍ମ ଅଗୋଚର ।
କି ନାମ ଗୁଣରୂପ ଆର ॥ ୧୪
ପର ଅପର ଯେ ମଧ୍ୟମ ।
ଯେ ଅବା ଅଛି ସ୍ଥୂଳସୂକ୍ଷ୍ମ ॥ ୧୫
ଜାଣେ ମୁଁ ନାହିଁ ତୋ ବାହାରେ ।
ଅନ୍ୟ ବା କେ ଅଛି ସଂସାରେ ॥ ୧୬
ତୁମ୍ଭେ ଯେ ଘୋରତପ କର ।
ଆମ୍ଭା ସମାଧିବଳେ ଧର ॥ ୧୭
ତେଣୁ ମୋହିତ ମୋର ମନ ।
ତୁମ୍ଭ ଉପରେ କେବା ଅନ୍ୟ ॥ ୧୮
ଏ ମାୟା ସୃଜିଲା କେମନ୍ତେ ।
ଏଣୁ ସଂଶୟ ମୋର ଚିତ୍ତେ ॥ ୧୯
ତୁମ୍ଭେ ସର୍ବଜ୍ଞ ସର୍ବେଶ୍ୱର ।
ମୋର ସଂଶୟ କର ଦୂର ॥ ୨୦
ଭକତଭାବେ ପଚାରଇ ।
ସ୍ୱଭାବେ ପୁତ୍ର ମୁଁ ଅଟଇ ॥ ୨୧
ଯେମନ୍ତେ ମୋର ଚିତ୍ତେ ସ୍ଫୁରେ ।
ଏ ବିଶ୍ୱ ସମାଧି-ଗୋଚରେ ॥ ୨୨
ଏଣୁ ନାରଦବାକ୍ୟ ଶୁଣି ।
ହରଷେ କହେ ପଦ୍ମଯୋନି ॥ ୨୩

ବ୍ରହ୍ମା ଉବାଚ

ଧନ୍ୟ ନାରଦ ମୁନିବର ।
ସାଧୁ ପ୍ରସ୍ତାବ ଏ ତୋହର ॥ ୨୪
ତୁ ଯେ ପଚାରୁ ଜନହିତେ ।
ଏ ବ୍ରହ୍ମଭାଗ ଭାଗବତେ ॥ ୨୫
ବିଷ୍ଣୁ ମହିମା ଦରଶନେ ।
ପୁଚ୍ଛିଲୁ ବିନୟବଚନେ ॥ ୨୬
ତୁ ଯାହା ପଚାରିଲୁ ମୋତେ ।
ମିଥ୍ୟା ନୁହଇ ଏ ଉଚିତେ ॥ ୨୭
ଯେଣୁ ଈଶ୍ୱର ପ୍ରାୟ ହୋଇ ।
ଏ ସୃଷ୍ଟି ମୋହର ଅଟଇ ॥ ୨୮
ପରମେଶ୍ୱର ଜ୍ଞାନ ଯେଣୁ ।
ନାହିଁ ତୋହର ଭ୍ରାନ୍ତି ତେଣୁ ॥ ୨୯
ବିଷ୍ଣୁର ଆଜ୍ଞା ଘେନି ମାଥେ ।
ବ୍ରହ୍ମାଣ୍ଡ ସୃଜିଲି ଯେମନ୍ତେ ॥ ୩୦
ଯେମନ୍ତେ ଅର୍କ-ଅଗ୍ନି-ଶଶୀ ।
ଗ୍ରହ-ନକ୍ଷତ୍ର-ତାରା-ରାଶି ॥ ୩୧
ତୋ ଆଦି ସବୁ ଛନ୍ତି ଯେତେ ।
ଯେ ବିଷ୍ଣୁମାୟା ବଳଗ୍ରସ୍ତେ ॥ ୩୨
ବୋଲନ୍ତି ମୋତେ ବିଶ୍ୱଗୁରୁ ।
ଯାର ମହିମା ମହାମେରୁ ॥ ୩୩
ତାହା କହିବି ତୋ ସମୀପେ ।
ବିଷ୍ଣୁର ଆଜ୍ଞାବଳ ଦର୍ପେ ॥ ୩୪
ଯେ ହରି ଜଗତ-ଈଶ୍ୱର ।
ତାହାଙ୍କୁ ମୋର ନମସ୍କାର ॥ ୩୫
ଯାହାର ଇଚ୍ଛାମାର୍ଗେ ସ୍ଥିତି ।
ଲାଜେ ଶଙ୍କିତ ଭଗବତୀ ॥ ୩୬
ସେ ମାୟାବଶେ ଏ ଜଗତ ।
ଅଜ୍ଞାନ ମଦେ ବିମୋହିତ ॥ ୩୭
ମୁହିଁ ମୋହର ଏ ଶରୀର ।
ଦାରା ସମ୍ପଦ ବନ୍ଧୁ ମୋର ॥ ୩୮
ଅଜ୍ଞାନଜନଙ୍କ ଏ ଭାବ ।
ସର୍ବସମ୍ପଦ ପଦ୍ମନାଭ ॥ ୩୯
ଏ ଦ୍ରବ୍ୟ-କାଳ-କର୍ମ-ଜୀବ ।
ଜୀବର ଯେ ଅବା ସ୍ୱଭାବ ॥ ୪୦
ଯେତେ ଦେଖଇ ଭିନ୍ନେ ଭିନ୍ନେ ।
କୃଷ୍ଣହୁଁ କେବା ଅଛି ଅନ୍ୟେ ॥ ୪୧
ବେଦବଚନ ଦେବଗଣ ।
ଏ ସର୍ବଲୋକ ଯଜ୍ଞଦାନ ॥ ୪୨
ତପସ୍ୟା-ଯୋଗ-ଜ୍ଞାନ-ଗତି ।
ସର୍ବସମ୍ପଦ ଦାଶରଥି ॥ ୪୩
ଯେ ହରି ସର୍ବଦେହେ ଦେହୀ ।
ସର୍ବ ଦେଖଇ ହୃଦେ ରହି ॥ ୪୪
ତାର ଶରୀରୁ ମୁହିଁ ଜାତ ।
ତା ତେଜେ ସର୍ଜ୍ଜଇ ଜଗତ ॥ ୪୫
ସ୍ୱଭାବେ ନିର୍ଗୁଣ-ମୁରାରି ।
ସୃଷ୍ଟି ସଞ୍ଚଇ ଗୁଣ ଧରି ॥ ୪୬
ନିର୍ଗୁଣ-ପୁରୁଷ-ଈଶ୍ୱର ।
ତା ମାୟାବଳେ ଏ ସଂସାର ॥ ୪୭
ସର୍ଗ-ପାଳନ-ତିରୋଧାନେ ।
ଗୁଣଙ୍କୁ ଧରେ ଭିନ୍ନେ ଭିନ୍ନେ ॥ ୪୮
କାର୍ଯ୍ୟ-କାରଣ-କର୍ତ୍ତା-ଅର୍ଥେ ।
ଦ୍ରବ୍ୟ-ଜ୍ଞାନ-କ୍ରିୟା ସମେତେ ॥ ୪୯

Dr. Sudhanshu Sekhar Mishra

ଗୁଣେ ରହନ୍ତି ଆଶ୍ରେ କରି ।
ନିର୍ଗୁଣ-ପୁରୁଷ ଆବୋରି ॥ ୫୦
ଏ ତିନିଗୁଣ ଲିଙ୍ଗଗତେ ।
ମଧ୍ୟେ ବର୍ତ୍ତଇ ଅଲକ୍ଷିତେ ॥ ୫୧
ମୋ ଆଦି ସର୍ବଜନଙ୍କର ।
ଆତ୍ମାସ୍ୱରୂପ ସେ ଈଶ୍ୱର ॥ ୫୨
ମାୟା-ଈଶ୍ୱର ମାୟାବଳେ ।
ସର୍ଜେ ସ୍ୱଭାବ କର୍ମକାଳେ ॥ ୫୩
ଆପଣା ଇଚ୍ଛାବଳେ କରି ।
ବିବିଧ-ଶରୀରକୁ ଧରି ॥ ୫୪
ସେ କାଳ-ଗୁଣ ବ୍ୟତିକରେ ।
ସୃଜଇ ପାଳଇ ସଂହରେ ॥ ୫୫
ତାର ସ୍ୱଭାବ କର୍ମ ଯୋଗେ ।
ମହତ ଉପୁଜିଲା ଆଗେ ॥ ୫୬
ମହତ ବିକାରୁ ତକ୍ଷଣେ ।
ତ୍ରିଗୁଣ-ଲିଙ୍ଗ ଆବରଣେ ॥ ୫୭
ତମ ପ୍ରଧାନ ଅତିରେକେ ।
ସେ ଦ୍ରବ୍ୟଜ୍ଞାନ କ୍ରିୟାତ୍ମକେ ॥ ୫୮
ସ୍ୱଭାବେ ଶକ୍ତି ମହାଘୋର ।
ତମ ଅଧିକ ଅହଙ୍କାର ॥ ୫୯
ସେ ଅହଙ୍କାର ନାମ ହୋଇ ।
ସେ ତିନି ପ୍ରକାର ଭଜଇ ॥ ୬୦
ଗୁଣ ପ୍ରକାଶ ତିନିତିନି ।
ବିକାର-ତମ-ତେଜ ଘେନି ॥ ୬୧
ଯେ ଶକ୍ତି-ଦ୍ରବ୍ୟ-କ୍ରିୟା-ଜ୍ଞାନ ।
ଏ ଭାବେ ଭେଦ ଭିନ୍ନ ଭିନ୍ନ ॥ ୬୨
ସେ ଅହଙ୍କାରେ ଭୂତ ଆଦି ।
ତାମସ-ଶକ୍ତି ତହିଁ ଭେଦି ॥ ୬୩
ଶବଦ-ଗୁଣ-ମାତ୍ରା ସଞ୍ଚେ ।
ନଭପ୍ରକାଶେ ଅନ୍ତରୀକ୍ଷେ ॥ ୬୪
ଶବଦ-ଗୁଣ ସେ ପ୍ରଧାନ ।
ଦୃଶ୍ୟଦର୍ଶକ ଭେଦସ୍ଥାନ ॥ ୬୫
ଶବଦ-ଗୁଣ ନଭୁ ହୋଇ ।
ଚତୁର୍ଥମାତ୍ରା ସଙ୍ଗେ ଲଇ ॥ ୬୬
ନଭବିକାରୁ ବାୟୁ ଜାତ ।
ସ୍ପରଶ ଶବ୍ଦଗୁଣେ ସ୍ଥିତ ॥ ୬୭

ସ୍ପରଶଗୁଣ ତା ପ୍ରବଳ ।
ଯେ ପ୍ରାଣସହ ଓଜ-ବଳ ॥ ୬୮
ପବନବିକାରୁ ତକ୍ଷଣେ ।
ସ୍ୱଭାବକାଳ କର୍ମଗୁଣେ ॥ ୬୯
ସ୍ପରଶଗୁଣ ତହିଁ ଥାଇ ।
ତୃତୀୟମାତ୍ରା ଭାବ ବହି ॥ ୭୦
ଶବଦ-ସ୍ପର୍ଶ-ରୂପ ତାର ।
ପ୍ରଚଣ୍ଡତେଜ ମହାଘୋର ॥ ୭୧
ତେଜବିକାରୁ ସେ ଉଦକ ।
ଯାର ସ୍ୱଭାବ ରସାତ୍ମକ ॥ ୭୨
ଶବ୍ଦ-ସ୍ପରଶ-ରୂପ ତିନି ।
ଏ ତିନିରସ ସଙ୍ଗେ ଘେନି ॥ ୭୩
ଆପବିକାରୁ ମହୀଜାତ ।
ସେ ପଞ୍ଚମାତ୍ରା ଗୁଣେ ଯୁତ ॥ ୭୪
ସତ୍ତ୍ୱ-ବିକାରଢ଼ୁହୁଁ ମନ ।
ଯେ ରୂପେ ପ୍ରକାଶେ ଗଗନ ॥ ୭୫
ମନର ସଙ୍ଗେ ଦେବବଳ ।
ଦଶଇନ୍ଦ୍ରିୟ ରକ୍ଷପାଳ ॥ ୭୬
ଦିଗ-ବାତାର୍କ-ଜଳପତି ।
ଅଶ୍ୱିନୀ-ବହ୍ନି-ସୁରପତି ॥ ୭୭
ଉପେନ୍ଦ୍ର-ମିତ୍ର-ପ୍ରଜାପତି ।
ଏ ରୂପେ ଦଶ ଉତପତି ॥ ୭୮
ତୈଜସବିକାରୁ ତକ୍ଷଣେ ।
ଜନ୍ମିଲେ ଦଶଇନ୍ଦ୍ରିଗଣେ ॥ ୭୯
ଯେ ଜ୍ଞାନ କ୍ରିୟା ବୁଦ୍ଧି ପ୍ରାଣ ।
ତୈଜସଶକ୍ତି ଏ ପ୍ରମାଣ ॥ ୮୦
ଶ୍ରୁତିଯୁଗଳ ଚର୍ମ ଘ୍ରାଣ ।
ନୟନ ଜିହ୍ୱା ପଞ୍ଚଜ୍ଞାନ ॥ ୮୧
ବଚନ ପାଣି ଅଂଘ୍ରିବେନି ।
ଉପସ୍ଥ ମୂଳାଧାର ଘେନି ॥ ୮୨
ଏ କର୍ମ ଇନ୍ଦ୍ରିୟ ପ୍ରକାର ।
ଦଶଦେବଙ୍କ ଅଧିକାର ॥ ୮୩
ଭୂତ ଇନ୍ଦ୍ରିୟ-ଗଣ ମନ ।
ମହତ ଆଦି ତିନିଗୁଣ ॥ ୮୪
ଯେଣୁ ନୋହିଲେ ଏକମନ ।
ଏ ତେଣୁ ନ ପାଇଲେ ସ୍ଥାନ ॥ ୮୫

ବ୍ରହ୍ମାଣ୍ଡ ହେତୁ ଏ ପ୍ରତ୍ୟକ୍ଷେ ।
ସୂକ୍ଷ୍ମେ ରହିଲେ ଅନ୍ତରୀକ୍ଷେ ॥ ୮୬
ସ୍ଥାନ ନ ପାଇ ଅନ୍ୟୋଅନ୍ୟେ ।
ସ୍ଥକିତେ ରହିଲେ ଗଗନେ ॥ ୮୭
କେତେହେଁ କାଳ ଶୂନ୍ୟେ ରହି ।
ଶବଦେ ବିଷ୍ଣୁଆଜ୍ଞା ପାଇ ॥ ୮୮
ଏ ମହାଭୂତେ ସୂକ୍ଷ୍ମଭୂତେ ।
ଘଟିତ ଅନ୍ୟୋଅନ୍ୟ ଯୁତେ ॥ ୮୯
ସୁବର୍ଣ୍ଣ-ଅଣ୍ଡ ଉପୁଜିଲା ।
ତକ୍ଷଣେ ଉଦକେ ପଡ଼ିଲା ॥ ୯୦
ଅନେକ ସହସ୍ର ବରଷେ ।
ସେ ଅଣ୍ଡ ମହାଜଳେ ଭାସେ ॥ ୯୧
ସେ ଅଣ୍ଡ ମଧ୍ୟେ ଜୀବ ଜାତ ।
କାଳ କର୍ମ ସ୍ୱଭାବେ ସ୍ଥିତ ॥ ୯୨
ଜୀବ ସ୍ୱଭାବେ ଅଚେତନ ।
ଚେତନା ଦେଲେ ଭଗବାନ ॥ ୯୩
ସେ ସର୍ବଗୁଣ ସର୍ବସିଦ୍ଧି ।
କେତେହେଁ କାଳେ ଅଣ୍ଡଭେଦି ॥ ୯୪
ପୁରୁଷେ ହୋଇଲା ବାହାର ।
ଏବେ ହୋ ଶୁଣ ମୁନିବର ॥ ୯୫
ସହସ୍ର-ଉରୁ-ଅଂଘ୍ରି-ବକ୍ଷ ।
ସହସ୍ରନୟନ ପ୍ରତ୍ୟକ୍ଷ ॥ ୯୬
ସହସ୍ରେ ଶିର ସହସ୍ରଭୁଜ ।
ଆନନ ଅପ୍ରମିତ ତେଜ ॥ ୯୭
ତାହାର ଦେହ ଶୂନ୍ୟେ ଦେଖି ।
ଲୋକର ସ୍ଥିତି ଉପଲକ୍ଷି ॥ ୯୮
ଦ୍ୱିସପ୍ତଲୋକ ତାର ଅଙ୍ଗେ ।
କଳ୍ପିତ ଅଧ ଉର୍ଦ୍ଧ୍ୱ ଭାଗେ ॥ ୯୯
ମୁଖୁ କଳ୍ପିତ ବ୍ରହ୍ମକୁଳ ।
କ୍ଷତ୍ରିୟଜାତ ବାହୁମୂଳ ॥ ୧୦୦
ଉରୁ ଯୁଗଳୁ ବୈଶ୍ୟଗଣେ ।
ଶୂଦ୍ର ଉପୁଜିଲା ଚରଣେ ॥ ୧୦୧
ଭୂଲୋକ କଟୀଭାଗେ ସ୍ଥିତ ।
ନାଭିରୁ ଭୁବଲୋକ ଜାତ ॥ ୧୦୨
ହୃଦରେ ସ୍ୱର୍ଗଲୋକ ମିଳେ ।
ମହତଲୋକ ଉରସ୍ଥଳେ ॥ ୧୦୩

Dr. Sudhanshu Sekhar Mishra

ଜନଲୋକ ଯେ ଗ୍ରୀବାତଟେ ।
ତପ ବସଇ ବେନିଓଷ୍ଟେ ।। ୧୦୪
ମୂର୍ଦ୍ଧନି ମଧ୍ୟେ ସତ୍ୟଲୋକ ।
ଯେ ବ୍ରହ୍ମ-ସନାତନ-କଳ୍ପ ।। ୧୦୫
ସପ୍ତପାତାଳ ଅଧୋଭାଗେ ।
ଶୁଣ କହିବା ପ୍ରତିଅଙ୍ଗେ ।। ୧୦୬
ଅତଳ ବସେ କଟୀଦେଶେ ।
ଉରୁରେ ବିତଳ ପ୍ରକାଶେ ।। ୧୦୭
ସୁତଳ ବସେ ଜାନୁମୂଳ ।
ଜଂଘର ମୂଳେ ତଳାତଳ ।। ୧୦୮
ଯେ ମହାତଳ ଗୁଳ୍ଫଦେଶେ ।
ପାଦାଗ୍ରେ ରସାତଳ ବସେ ।। ୧୦୯
ପାତାଳ ପାଦତଳେ ରହେ ।
ଏଣୁ ଭୁବନ ବିଶ୍ୱଦେହେ ।। ୧୧୦
ଯେ ଭୂଲୋକ ପାଦେ ବସେ ।
ନାଭିରେ ଭୁବ ଯେ ପ୍ରକାଶେ ।। ୧୧୧
ସ୍ୱର୍ଲୋକ କଳ୍ପିତ ମୂର୍ଦ୍ଧନି ।
ବିଶ୍ୱଦେହେ ବା ବିଶ୍ୱମାନି ।। ୧୧୨
ନାରଦ ଆଗେ ବେଦବର ।
ଯାହା କହିଲେ ବେଦସାର ।। ୧୧୩
ସୁଜନଜନଙ୍କ ଶ୍ରବଣେ ।
ବ୍ରାହ୍ମଣ ଜଗନ୍ନାଥ ଭଣେ ।। ୧୧୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଦେ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ବ୍ରହ୍ମା ଉବାଚ

ଶୁଣ ନାରଦ ମହାଋଷି ।
ବିରାଜରୂପେ ବ୍ରହ୍ମରାଶି ।। ୧
ବ୍ରହ୍ମାଣ୍ଡ ମଧ୍ୟେ ପ୍ରବେଶିଲା ।
ଯେ ଅଙ୍ଗୁ ଯେବା ପ୍ରକାଶିଲା ।। ୨
ତାହା କହିବା ତୋତେ ଭଲେ ।
ଇନ୍ଦ୍ରିୟଅର୍ଥେ ଇନ୍ଦ୍ରିତୁଲେ ।। ୩
ବଚନ ବହ୍ନିମୁଖେ ବସେ ।
ଯେଣେ ତା ଶବଦ ପ୍ରକାଶେ ।। ୪
ସପତଛନ୍ଦ ଧାତୁ ଯେତେ ।
ଦେହରେ ବସେ ତା ବାହ୍ୟାନ୍ତେ ।। ୫
ରସନା ଷଡ଼ରସେ ରସେ ।
ଜଳାଧିପତି ଯହିଁ ବସେ ।। ୬
ସେ ଦେବ-ପିତୃ ନରଙ୍କର ।
ଅନ୍ନର ସ୍ଥାନ ସେ ଆବର ।। ୭
ପ୍ରାଣସହିତ ଦଶପ୍ରାଣ ।
ସୁଗନ୍ଧ ଦୁର୍ଗନ୍ଧ ଆଘ୍ରାଣ ।। ୮
ନାସାବିବରେ ଆଶ୍ରେ କଲେ ।
ଅଶ୍ୱିନୀକୁମାରଙ୍କ ତୁଲେ ।। ୯
ଚକ୍ଷୁଇନ୍ଦ୍ରିୟ ରୂପ ଅର୍ଥେ ।
ସୂର୍ଯ୍ୟ ପ୍ରକାଶ ଦୃଷ୍ଟିପଥେ ।। ୧୦
ଶବଦଅର୍ଥେ କର୍ଣ୍ଣବେନି ।
ଦିଗବସଇ ତୀର୍ଥ ଘେନି ।। ୧୧
ସେ ଦେବଦେହେ ଚର୍ମଦେଶେ ।
ସ୍ପରଶ ପବନ ପ୍ରକାଶେ ।। ୧୨
ଯେ ସର୍ବଯଜ୍ଞବସ୍ତୁ ସାର ।
ସର୍ବସୌଭାଗ୍ୟର ବେଭାର ।। ୧୩
ଚର୍ମ ଉପରେ ରୋମ ଭେଦି ।
ସେବୃକ୍ଷ ଯେଣେ ଯଜ୍ଞ ସାଧି ।। ୧୪
କେଶ ପ୍ରକାଶ ମୁଣ୍ଡେ ଦାଢ଼ି ।
ଯେ ପାଦେ କରେ ନଖ ଜଡ଼ି ।। ୧୫
ସେ ତିନି ମଧ୍ୟେ ତିନିଦେବା ।
ପାଷାଣ ଲୌହ ମେଘପ୍ରଭା ।। ୧୬
ବାସବଆଦି ଦିଗପାଳେ ।
ବସନ୍ତି ତାର ଭୁଜମୂଳେ ।। ୧୭
ତାର ବିକ୍ରମେ ଲୋକତିନି ।
ଭୂଲୋକ-ଭୁବ-ସ୍ୱର୍ଗ ଘେନି ।। ୧୮
ଯେ ସର୍ବ-କୁଶଳ-କାରଣ ।
ସକଳ-ଭୟ-ନିବାରଣ ।। ୧୯
ସେ ହରି ଚରଣକମଳ ।
ସକଳ-କାମବର-ସ୍ଥଳ ।। ୨୦
ଯେ ସର୍ଗ ଶୁକ୍ରଘ ନରସ ।
ଯା ମେଢ୍ରେ ପ୍ରଜାପତି ବାସ ।। ୨୧
ମନ ଇନ୍ଦ୍ରିୟରସେ ରସେ ।
ଜନନେ ପ୍ରଜାପତି ବସେ ।। ୨୨
ସନ୍ତାନ ଅର୍ଥେ ସେ କଳ୍ପିତ ।
ସମ୍ଭୋଗ କାମେଣ ନିବୃତ୍ତ ।। ୨୩
ମଳ ଉତ୍ସର୍ଗ ମଳଦ୍ୱାରେ ।
ଯମ ବସଇ ଅଧିକାରେ ।। ୨୪
ନାଡ଼ୀ ସମୂହେ ନଦୀନଦେ ।
ଗିରି ସମୂହେ ଅସ୍ଥି ଭେଦେ ।। ୨୫
ପାୟୁ ନରକ ଯମକ୍ଷେତ୍ର ।
ତା ମଳତ୍ୟାଗସ୍ଥାନ ମିତ୍ର ।। ୨୬
ହିଂସା ଅଲକ୍ଷ୍ମୀ ମୃତ୍ୟୁ ତହିଁ ।
ନିୟତ ବସତି କରଇ ।। ୨୭
ସେ ଜୀବଦେହେ ପୃଷ୍ଠଦେଶେ ।
ଅଧର୍ମ ସଙ୍ଗେ ତମ ବସେ ।। ୨୮
ସପତସିନ୍ଧୁ ଗର୍ଭେ ରହି ।
ଭୋଜନେ ତୁଷ୍ଟିପୁଷ୍ଟି ବହି ।। ୨୯
ଉଦରେ ମୃତ୍ୟୁ ହୃଦଦେଶେ ।
ସର୍ବବ୍ୟାପକ ମନ ବସେ ।। ୩୦
ବିରାଟ ଆତ୍ମା ଦେହ ମଧ୍ୟେ ।
ବସଇ ସକଳ ସମ୍ପଦେ ।। ୩୧
ଧର୍ମ ସଙ୍ଗତେ ପଦ୍ମଯୋନି ।
ତୋ ସଙ୍ଗେ କୁମାରଙ୍କୁ ଘେନି ।। ୩୨
ବିଜ୍ଞାନ-ସତ୍ତ୍ୱ ରୁଦ୍ର ସଙ୍ଗେ ।
ସର୍ବେ ଆଶ୍ରିତ ଆତ୍ମାଅଙ୍ଗେ ।। ୩୩
ବ୍ରହ୍ମା ନାରଦ ଭବ ଆଦି ।
ମୁନିଏ ଯେତେ ବେଦବାଦୀ ।। ୩୪
ସୁର ଅସୁର ନର ନାଗ ।
ଯେ ସରୀସୃପ ଖଗ ମୃଗ ।। ୩୫
ଗନ୍ଧର୍ବ ଅପ୍‌ସରା ଯକ୍ଷ ।
ଭୂତ ଉରଗ ପଶୁ ରକ୍ଷ ।। ୩୬

Dr. Sudhanshu Sekhar Mishra

ପିତର ସିଦ୍ଧ ବିଦ୍ୟାଧର ।
ଚାରଣ ଗୁହ୍ୟକ କିନ୍ନର ।। ୩୭
ବୃକ୍ଷ ଔଷଧି ଲତା ଯେତେ ।
ବିବିଧଜୀବଙ୍କ ସମେତେ ।। ୩୮
ଯେ ଜଳ ସ୍ଥଳ ଅନ୍ତରୀକ୍ଷେ ।
ଗ୍ରହ ଆଦିତ୍ୟ କେତୁଋକ୍ଷେ ।। ୩୯
ତାରା ସମୂହ ତେଜେ ଝଳି ।
ଜୀମୂତ ପ୍ରକାଶେ ବିଜୁଳି ।। ୪୦
ତା ତନୁ ଏ ସର୍ବ କାରଣ ।
ଭୂତ ଭବିଷ୍ୟ ବର୍ତ୍ତମାନ ।। ୪୧
ଏ ରୂପେ ଏ ବିଶ୍ୱ-ସଂସାର ।
ପ୍ରକାଶେ ଯାହାର ଶରୀର ।। ୪୨
ବିତସ୍ତିମାତ୍ର ମଧ୍ୟେ ରହେ ।
ଏକ ଅନେକ ଜନ୍ତୁ ଦେହେ ।। ୪୩
ଭିତରେ ରହେ ପ୍ରାଣ ତେଜେ ।
ପ୍ରକାଶେ ଅନ୍ତର ବାହିଯେ ।। ୪୪
ଅବ୍ୟୟ ଅମୃତ ଈଶ୍ୱର ।
ଜନ୍ମ-ମରଣ ଆରପାର ।। ୪୫
ତାହାର ଏମନ୍ତ ମହିମା ।
ଏଣୁ ଦୁସ୍ତର ଗୁଣସୀମା ।। ୪୬
ପାଦେ ଅଶେଷ ଭୂତ ବସେ ।
ଅମୃତାଭୟ କ୍ଷେମକୋଷେ ।। ୪୭
ତ୍ରିଲୋକ ଊର୍ଦ୍ଧ୍ୱେ ତିନିଲୋକ ।
ବହେ ଅଭୟ କ୍ଷେମ ସୁଖ ।। ୪୮
ଯେ ପ୍ରଜାଶ୍ରମେ ଧର୍ମ ଚିନ୍ତେ ।
ତ୍ରିଲୋକେ ଭ୍ରମେ ଗତାଗତେ ।। ୪୯
ଯେ ଆନ ଆଶ୍ରମେ ରମନ୍ତି ।
ତ୍ରୈଲୋକ୍ୟ ବାହ୍ୟେ ତାଙ୍କ ସ୍ଥିତି ।। ୫୦
ଜୀବର ଏହି ବେନିଗତି ।
ବିଦ୍ୟା ଅବିଦ୍ୟା ଭାବେ ହୋନ୍ତି ।। ୫୧
ଯେ ଶ୍ରୁତିମାର୍ଗେଣ ଉତ୍ତରେ ।
ଦକ୍ଷିଣେ ପୁରୁଷ ସଞ୍ଚରେ ।। ୫୨
ଭୋଗାପବର୍ଗର ସାଧନ ।
ଜୀବର ଏ ବେନି ଅୟନ ।। ୫୩
ଯାହାର ଅଂଶ ମାୟାମୟ ।
ଭୂତ-ଇନ୍ଦ୍ରିୟ-ଗୁଣାଶ୍ରୟ ।। ୫୪

ବିରାଟ ରୂପେ ଜାତ ହୁଏ ।
କିରଣ ଯେହ୍ନେ ସୂର୍ଯ୍ୟଦେହେ ।। ୫୫
ଯାହାର ନାଭିପଦ୍ମଜାତ ।
ମୁଁ ବ୍ରହ୍ମା ବ୍ରହ୍ମାଣ୍ଡର ନାଥ ।। ୫୬
ଯଜ୍ଞସମ୍ଭାର ନ ଜାଣଇ ।
ଯାବତ ତାର ଦେହେ ଥାଇ ।। ୫୭
ତାର ଶରୀରେ ଯଜ୍ଞବିଧି ।
ଆଗମ-ନିଗମ ପ୍ରସିଦ୍ଧି ।। ୫୮
ପଶୁ ଇନ୍ଧନ କୁଶ ଆଦି ।
ଯେମନ୍ତେ ଯେ ଅବା ସମ୍ପାଦି ।। ୫୯
ଯଜନ ଦେବ ପିତୃ ତୋଷେ ।
ଯେ କାଳ ଯେବା ପୁଣ୍ୟଦେଶେ ।। ୬୦
ଯେତେ ପାତ୍ରରେ ଯଜ୍ଞ କରି ।
ମନ୍ତ୍ର ଔଷଧି ଆଦିକରି ।। ୬୧
ସ୍ନେହରସ ଯେ ଲୌହ ଆଦି ।
ମୃତ୍ତିକା ଜଳ ଯେ ସମ୍ପାଦି ।। ୬୨
ଋକ ଯଜୁଃ ଯେ ସାମ ତିନି ।
ଚତୁରହୋତ୍ର କର୍ମ ଘେନି ।। ୬୩
ଯେ ନାମଧେୟ ଯେବା ମନ୍ତ୍ର ।
ଯେବା ଦକ୍ଷିଣା ଯେବା ବ୍ରତ ।। ୬୪
ଦେବତା ଅନୁକ୍ରମ କଳ୍ପ ।
ଯେ ତନ୍ତ୍ର ଯେ ଅବା ସଙ୍କଳ୍ପ ।। ୬୫
ଯେ ଗତି ଯଜ୍ଞ ଯେବା ମତି ।
ଯେ ସମର୍ପଣ ପ୍ରାୟଶ୍ଚିତ୍ତି ।। ୬୬
ଯଜ୍ଞସମ୍ଭାର ତା ଶରୀରେ ।
ଲଭିଲି ଜନ ଉପକାରେ ।। ୬୭
ତାର ବିଭୂତି ତାର ଅଙ୍ଗେ ।
ଯଜ୍ଞ ଆରାଧି ହବିର୍ଭାଗେ ।। ୬୮
ପୂଜିଲି ପୁରୁଷ-ପୁରାଣ ।
ତେଣୁ ମୁଁ ସଂସାର-କାରଣ ।। ୬୯
ସକଳ ଯଜ୍ଞଭାଗେ ଚିନ୍ତି ।
ମୋ ଅନ୍ତେ ନବପ୍ରଜାପତି ।। ୭୦
ଯଜ୍ଞପୁରୁଷ ସ୍ଥାପି କୁଣ୍ଡେ ।
ଯେମନ୍ତ ବିଧି କର୍ମକାଣ୍ଡେ ।। ୭୧
ପୂଜିଲେ ତାହାର ଚରଣେ ।
ଯେ ବିଧି ମନ୍ତ୍ର-ଉଚ୍ଚାରଣେ ।। ୭୨

ଏହି ପ୍ରକାରେ ସର୍ବଋଷି ।
ପିତୃ ଦେବତା ମନୁ ବସି ।। ୭୩
ଦାନବ ମାନବ ସହିତେ ।
ଯଜ୍ଞେ ପୂଜିଲେ ବେଦମନ୍ତ୍ରେ ।। ୭୪
ଯେ ହରି ଅଙ୍ଗେ ଏ ଜଗତ ।
ଯଜ୍ଞ ପୂଜନେ ସମାହିତ ।। ୭୫
ଯେ ସ୍ୱୟଂ ନିର୍ଗୁଣ ଅନନ୍ତ ।
ମାୟା ଗୃହୀତ ଗୁଣବନ୍ତ ।। ୭୬
ଯଜ୍ଞେ ତାହାଙ୍କୁ ପୂଜା କରି ।
ମୁଁ ଏ ସଂସାରେ ଅଧିକାରୀ ।। ୭୭
ତାହା ଆଜ୍ଞା ଶିରେ ବହି ।
ମୁଁ ଏ ସଂସାର ସରଜଇ ।। ୭୮
ପାଳଇ ବିଷ୍ଣୁ ରୂପ ଧରି ।
ଶଙ୍କର ରୂପେଣ ସଂହରି ।। ୭୯
ସୃଷ୍ଟିପାଳନ ସଂହାରଣ ।
ଏ ଆଦି ବିକାର ତ୍ରିଗୁଣ ।। ୮୦
ସେ ମାୟାଧର ନରହରି ।
ଖେଳଇ ସୃଷ୍ଟିଲୀଳା କରି ।। ୮୧
ତୁ ଯାହା ପୁଚ୍ଛିଲୁ ପ୍ରସ୍ତାବେ ।
ସଂକ୍ଷେପି କହିଲି ମୁଁ ଏବେ ।। ୮୨
ସତ ଅସତ ରୂପ ଯେତେ ।
ମାୟା କଳ୍ପିତ ଏ ଜଗତେ ।। ୮୩
ଏ ସର୍ବରୂପ ନାରାୟଣ ।
ଅନାଦି-ପରମ-କାରଣ ।। ୮୪
ମୋର ବଚନ ହେ ନାରଦ ।
କେବେ ହେଁ ନୁହଇ ଅସଦ ।। ୮୫
ମୋହର ମନ ସତ୍ୟେ ସ୍ଥିତି ।
ସ୍ୱଭାବେ ନୁହେ ମିଥ୍ୟାଗତି ।। ୮୬
ଏ ମୋର ଇନ୍ଦ୍ରିଗଣ କେବେ ।
ନ ଯାନ୍ତି ଅସତ୍ୟ ଅମାର୍ଗେ ।। ୮୭
ଯେଣୁ ମୋ ହୃଦେ ନାରାୟଣ ।
ଉତ୍କଣ୍ଠାଭାବେ ସୁମରଣ ।। ୮୮
ତପ ସମାଧି ମୋର ସ୍ଥିତି ।
ମୁଁ ପ୍ରଜାପତିଙ୍କର ପତି ।। ୮୯
ଯୋଗେ ନିପୁଣ ସମାହିତ ।
ଯେଣୁ ମୁଁ ଆତ୍ମତନ୍ତ୍ରେ ଜାତ ।। ୯୦

Dr. Sudhanshu Sekhar Mishra

ତେବେ ହେଁ ନ ଜାଣିଲି ତାକୁ ।
ଆନ କେ ଅଛି ଜାଣିବାକୁ ॥ ୯୧
ତାର ଚରଣେ ନମସ୍କାର ।
ଯା ଭାବେ ତୁଟଇ ସଂସାର ॥ ୯୨
ଶୁଭ ମଙ୍ଗଳ ସ୍ୱସ୍ତ୍ୟୟନ ।
ଆନନ୍ଦମୂଳ ମାୟାଧାମ ॥ ୯୩
ବ୍ରହ୍ମାଦି ଦେବେ ଅଗୋଚର ।
ଅକୁଣ୍ଠ-ମହିମା ଯାହାର ॥ ୯୪
ଆତ୍ମାରେ ଆତ୍ମମାୟା କରେ ।
ଲୀଳାରେ ବିହରେ ସଂସାରେ ॥ ୯୫
ସ୍ୱମାୟା ସେହି ନ ଜାଣଇ ।
କେ ଅବା ଅପରେ ଜାଣଇ ॥ ୯୬
ଦୃଶ୍ୟ ଅଦୃଶ୍ୟ ସର୍ବବ୍ୟାପୀ ।
ଗଗନ ଯେହ୍ନେ ବିଶ୍ୱରୂପୀ ॥ ୯୭
ମୁଁ ଯାର ଗତି ନ ଜାଣଇ ।
ତୁ କାହିଁ ପ୍ରବେଶିବୁ ତହିଁ ॥ ୯୮
ଭାବ ନ ପାରେ ଯାକୁ ଚିନ୍ତି ।
ଦେବେ ଜାଣିବେ କାହିଁ ଗତି ॥ ୯୯
ତାର ମାୟାରେ ମୋହି ହୋଇ ।
ତା ରୂପ କେହି ନ ଜାଣଇ ॥ ୧୦୦
ଆତ୍ମାର ସମ ଆମ୍ଭେ ଜାଣୁ ।କେ ତାର
ରୂପ ପରିମାଣୁ ॥ ୧୦୧
ଯା ଅବତାର କର୍ମମାନ ।ଲେ ମ ।
ଆଦି କରନ୍ତି ଗାୟନ ॥ ୧୦୨
ତତ୍ତ୍ୱେ ଜାଣିବୁ ଆମ୍ଭେ କାହିଁ ।ଯାହାର
ଆଦିଅନ୍ତ ନାହିଁ ॥ ୧୦୩
ଯାର ଚରଣେ ଆମ୍ଭେ ନମୁ ।ଯ ।
ମାୟାରୂପ ବଳେ ଭ୍ରମୁ ॥ ୧୦୪
ସେ ଆଦିପୁରୁଷ ମୁରାରି ।କ ଛ -
କଚ୍ଛକେ ସୃଷ୍ଟି କରି ॥ ୧୦୫

ଆତ୍ମାରେ ଆତ୍ମାରୂପେ ମିଳେ ।
ଆତ୍ମାକୁ ଆପେ ହରେ ପାଳେ ॥ ୧୦୬
କେବଳ ଶୁଦ୍ଧ-ଜ୍ଞାନମୟେ ।
ସତ୍ୟସ୍ୱରୂପ ସର୍ବଦେହେ ॥ ୧୦୭
ଅନାଦି ଅନନ୍ତ ନିର୍ଗୁଣ ।ନି ତ ୟ
ଅବ୍ୟୟ ନାରାୟଣ ॥ ୧୦୮
ଶୁଣ ନାରଦ ମନ ଦେଇ ।ଯେମନ୍ତେ
ତାହାକୁ ଜାଣଇ ॥ ୧୦୯
ପ୍ରଶାନ୍ତ-ଆତ୍ମା ମୁନିଗଣେ ।ନିର୍ମଳ-
ଅନ୍ତରକରଣେ ॥ ୧୧୦
ସମାଧି ଯୋଗବଳେ ଚିନ୍ତି ।ଆତ୍ମାରେ
ଆତ୍ମାକୁ ଦେଖନ୍ତି ॥ ୧୧୧
ଅସତ୍ୟ ତର୍କ ଯେବେ ଥାଇ ।
ତେବେ ତା ଭାବ ନ ଜାଣଇ ॥ ୧୧୨
ପରମ-ପୁରୁଷ ମୁରାରି ।
ଆଦ୍ୟାବତାର ତନୁ ଧରି ॥ ୧୧୩
କାଳ ସ୍ୱଭାବ ସଙ୍ଗେ ମନ ।ଯେ ନିତ୍ୟ
ଶୁଦ୍ଧ ଚଇତନ ॥ ୧୧୪
ଦ୍ରବ୍ୟ ବିକାର ତିନିଗୁଣ ।ଦେ ବ
ସମେତେ ଇନ୍ଦ୍ରିଗଣ ॥ ୧୧୫
ବିରାଟ ରୂପେ ମହୀ ମାଝେ ।ସ୍ଥା।ବ ର
ଆଦି ଦେହେ ବିଜେ ॥ ୧୧୬
ବ୍ରହ୍ମା ଶଙ୍କର ଯଜ୍ଞପତି ।ଦକ୍ଷ।ଦି
ଯେତେ ପ୍ରଜାପତି ॥ ୧୧୭
ତୁ ଆଦି ସନକ ସହିତେ ।ସ୍ୱ ର୍ଗେ
ଦେବତା ଛନ୍ତି ଯେତେ ॥ ୧୧୮
ଗରୁଡ଼ ଆଦି ଖଗପାଳେ ।ଭୂଲୋକ
ସପତ-ପାତାଳେ ॥ ୧୧୯
ଗନ୍ଧର୍ବ ବିଦ୍ୟାଧରଗଣ ।ଯେ ଯକ୍ଷ
କିନ୍ନର ଚାରଣ ॥ ୧୨୦

ରାକ୍ଷସ ସରୀସୃପ ନାଗେ ।ବାସୁକି
ଆଦି ମହୋରଗେ ॥ ୧୨୧
ଋଷିଙ୍କ ମଧ୍ୟେ ଶ୍ରେଷ୍ଠ ଯେତେ ।
ଯେ ପିତୃଗଣଙ୍କ ସମେତେ ॥ ୧୨୨
ଦୈତ୍ୟ ଦାନବ ସିଦ୍ଧକୁଳ ।ପ୍ରେ ତ
ପିଶାଚ ଭୂତବଳ ॥ ୧୨୩
କୁଷ୍ମାଣ୍ଡ ଜଳଜୀବ ଯେତେ ।କି ଅବା
ପଶୁପକ୍ଷୀ ଯେତେ ॥ ୧୨୪
ଯେ ଆନେ ଛନ୍ତି ଯହିଁ ଯେତେ ।ତେ ଜ
ବିକ୍ରମ ବଳ ଯୁତେ ॥ ୧୨୫
କମଳା ଆଦି ଅଷ୍ଟନିଧି ।
ଯେ ଗୁଣେ ଯେ ଅବା ପ୍ରସିଦ୍ଧି ॥ ୧୨୬
ପ୍ରଧାନ ଗୁଣ ଯେବା ଭୂତେ ।ଜ ଗ ତ
ମଧ୍ୟେ ଛନ୍ତି ଯେତେ ॥ ୧୨୭
ଏ ସର୍ବ ପରତତ୍ତ୍ୱ ଯେହି ।ତାହାର
ବିଭୂତି ଅଟଇ ॥ ୧୨୮
ଏ ସର୍ବସାର ତା ଶରୀର ।ଯେ
ବିଷ୍ଣୁଲୀଳା ଅବତାର ॥ ୧୨୯
ଏ ଲୀଳାକଥା ଗୀତସ୍ୱରେ ।ପଶଇ
ଯାର କର୍ଣ୍ଣଦ୍ୱାରେ ॥ ୧୩୦
ସର୍ବ-ଦୁରିତ-ତମ ନାଶେ ।ଯେ ବା।
ବଦନେ ନିତ୍ୟ ଘୋଷେ ॥ ୧୩୧
ଶୁଣ ନାରଦ ମନଦେଇ ।
ଲୀଳାନୁକ୍ରମେ କହିବଇଁ ॥ ୧୩୨
ଅମୃତ କୃଷ୍ଣଲୀଳା-ରସ ।
ଶ୍ରୁତିଯୁଗଳେ କର ଗ୍ରାସ ॥ ୧୩୩
ତାହାଙ୍କ ଚରଣେ ବିଶ୍ୱାସ ।କହଇ
ଜଗନ୍ନାଥ ଦାସ ॥ ୧୩୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ଷଷ୍ଠୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ସପ୍ତମ ଅଧ୍ୟାୟ

ବ୍ରହ୍ମା ଉବାଚ

ଶୁଣ ନାରଦ ମୁନିବର ।
ଭବିଷ୍ୟ ଲୀଳା ଅବତାର ॥ ୧
ଅଶେଷଜନଙ୍କର ହିତେ ।
ଶୁଣ କହିବା ତୋ ଅଗ୍ରତେ ॥ ୨
ପଦ୍ମକଳ୍ପର ଅନ୍ତେ ହରି ।
ଶୂକରରୂପେ ଅବତରି ॥ ୩
ସେ ସର୍ବ ଯଜ୍ଞମୟ ଗାତ୍ରେ ।
ଧରଣୀ ଉଦ୍ଧରିବା ଅର୍ଥେ ॥ ୪
ଆଦିଅସୁର ଅବତାର ।
ପ୍ରଚଣ୍ଡ ହିରଣ୍ୟାକ୍ଷ ବୀର ॥ ୫
ତାହାକୁ ମହାର୍ଣ୍ଣବ-ଜଳେ ।
ଦନ୍ତେ ବିଦାରିଲେ ପାତାଳେ ॥ ୬
ବଜ୍ରେ ଯେସନେ ବଜ୍ରଧର ।
ହେଳେ ବିଦାରେ ମହୀଧର ॥ ୭
ସେ ପୁଣି ରୁଚିଋଷି ଘରେ ।
ଜନ୍ମିଲେ ଆକୂତି ଉଦରେ ॥ ୮
ସେ ଯଜ୍ଞରୂପ ନରହରି ।
ଦକ୍ଷିଣା ଗର୍ଭେ ବିଜେକରି ॥ ୯
ସର୍ବଦେବଙ୍କୁ ଜାତ କଲେ ।
ତ୍ରୈଲୋକ୍ୟ-ଭୟ ନିବାରିଲେ ॥ ୧୦
ମନୁ ଯେ ବ୍ରହ୍ମାର ନନ୍ଦନ ।
ହରଷେ ଦେଲେ ହରି ନାମ ॥ ୧୧
କର୍ଦ୍ଦମଋଷି ଗୃହେ ପୂର୍ବେ ।
ଜନ୍ମିଲେ ଦେବହୂତି ଗର୍ଭେ ॥ ୧୨
ତାଙ୍କ ସଙ୍ଗତେ ନବନାରୀ ।
ଜନ୍ମିଲେ ଦିବ୍ୟରୂପ ଧରି ॥ ୧୩
ସେ ଜନ୍ମେ ଜନନୀର ଦୁଃଖ ।
ଦେଖି ସଦୟ ପଦ୍ମମୁଖ ॥ ୧୪
ଆତ୍ମାର ଗତି ମାତାଆଗେ ।
କହିଲେ ତତ୍ତ୍ୱ-ଅନୁରାଗେ ॥ ୧୫
ସେ ତତ୍ତ୍ୱେ ଆତ୍ମା-ଗୁଣ-ଦୋଷ ।
ସେ ଦେବହୂତି କଲେ ନାଶ ॥ ୧୬
ତାହାଙ୍କୁ ମାୟାରୁ ଉଦ୍ଧରି ।
କପିଳରୂପେ ତପ କରି ॥ ୧୭
ଅତ୍ରିର ତପ ଦେଖି ତୋଷେ ।
ତକ୍ଷଣେ ମିଳି ତାର ପାଶେ ॥ ୧୮
ବୋଇଲେ ତୋତେ ଦେଲି ବର ।
ହୋଇବି ତୋହର କୁମର ॥ ୧୯
ଦତ୍ତ-ବଚନେ ଦତ୍ତ ନାମ ।
ସୁନ୍ଦରେ ସମ ନୋହେ କାମ ॥ ୨୦
ଧରଣୀ ପର୍ଯ୍ୟଟନ କଲେ ।
ଅନେକ ତପ ଆଚରିଲେ ॥ ୨୧
ହୈହୟ ଯଦୁ ଆଦି ରାଜା ।
ଯାର ଚରଣେ କରି ପୂଜା ॥ ୨୨
ଯୋଗ-ସମାଧି ସମ୍ପାଦିଲେ ।
ଜନ୍ମ-ମରଣୁ ନିସ୍ତରିଲେ ॥ ୨୩
ସୃଷ୍ଟି-ସୃଜନେ ମନ କରି ।
ଆଦ୍ୟେ ମୁଁ ତପ ଯେ ଆଚରି ॥ ୨୪
ତପର ବଳେ ଭଗବାନ ।
ଜାତ ହୋଇଲେ ଚତୁଃସନ ॥ ୨୫
ଯେ ଯୋଗ ପୂର୍ବକାଳେ ଥିଲା ।
କଳ୍ପ-ପ୍ରଳୟେ ନାଶ ଗଲା ॥ ୨୬
ତାହା ଉଦ୍ଧରି ଯୋଗବଳେ ।
ଧର୍ମ ରଖିଲେ ମହୀତଳେ ॥ ୨୭
ଦକ୍ଷକୁମାରୀ ଗର୍ଭେ ହରି ।
ଧର୍ମର ବୀର୍ଯ୍ୟେ ଅବତରି ॥ ୨୮
ସେ ଦକ୍ଷକନ୍ୟା ମୂର୍ତ୍ତି ନାମ ।
ସର୍ବସୁନ୍ଦର ଅନୁପମ ॥ ୨୯
ତାର ଉଦରୁ ପୂର୍ବକଳ୍ପେ ।
ଜନ୍ମିଲେ ନାରାୟଣ ରୂପେ ॥ ୩୦
ନର ସ୍ୱରୂପ ନର ନାମ ।
ସର୍ବସୁନ୍ଦର ପୁଣ୍ୟଧାମ ॥ ୩୧
ନିଶ୍ଚଳ ତପ ଯୋଗଧ୍ୟାନେ ।
ବସିଲେ ବଦରିକାଶ୍ରମେ ॥ ୩୨
ଅତି ଦୁଃସହ ତପ ଘୋରେ ।
ଇନ୍ଦ୍ର କମ୍ପିଲା ସ୍ୱର୍ଗପୁରେ ॥ ୩୩
ତକ୍ଷଣେ ଅପସରା ଗଣେ ।
ମିଳିଲେ ବଦରିକା ବନେ ॥ ୩୪
ଦିବ୍ୟ ସୁବେଶେ ନାନାରଙ୍ଗେ ।
ଆସି ମିଳିଲେ ତପଭଙ୍ଗେ ॥ ୩୫
ତୋଳେ ଉର୍ବଶୀ ରୂପ ଦେଖି ।
ଲାଜେ ହୋଇଲେ ଅଧୋମୁଖୀ ॥ ୩୬
କୋପନୟନେ ମୁନିଜନ ।
କାମକୁ କରନ୍ତି ଦହନ ॥ ୩୭
କୋପକୁ ନ ପାରନ୍ତି ଦହି ।
କୋପ ପ୍ରବେଶ ଯହିଁ ନାହିଁ ॥ ୩୮
କାହୁଁ କରିବେ ତପ ନାଶ ।
ବାହୁଡ଼ି ହୋଇଲେ ନିରାଶ ॥ ୩୯
ଉତ୍ତାନପାଦ ରାଜା କୋଳେ ।
ଧ୍ରୁବବାଳକ ରସଭୋଳେ ॥ ୪୦
ବସିବ ବୋଲି ବିଚାରିଲା ।
ମାତା-ସପତ୍ନୀ ଝିଙ୍ଗାସିଲା ॥ ୪୧
ସେ ନିଜ ଜନନୀ ବଚନେ ।
ଅରଣ୍ୟେ ଗଲା ଦୁଃଖମନେ ॥ ୪୨
ଅତି କଠୋର ତପ କଲା ।
ତାକୁ ଯେ ଧ୍ରୁବପଦ ଦେଲା ॥ ୪୩
ମୁନିଏ ଉର୍ଦ୍ଧ୍ୱେ ତଳେ ଥାଇ ।
ଧ୍ରୁବ ତପସ୍ୟାଫଳ ଚାହିଁ ॥ ୪୪
ସ୍ତୁତି କରନ୍ତି ତାର ତପେ ।
ଜନନୀ ଦେଖି ତା ସମୀପେ ॥ ୪୫
ବେଣ ଯେ ସତ୍ୟଯୁଗେ ରାଜା ।
ଅଧର୍ମେ ପାଳେ ଜନପ୍ରଜା ॥ ୪୬
ହରିଙ୍କି ନ ସ୍ଥାପନ୍ତେ ଭଲେ ।
ବ୍ରାହ୍ମଣେ ଶାପେ ନାଶ କଲେ ॥ ୪୭
ରାଜା-ମାରଣେ ଅରାଜକେ ।
ପ୍ରଜା ଦୁଃଖିତ ଅତିରେକେ ॥ ୪୮
ତା ଦେଖି ଦ୍ୱିଜେ ସ୍ତୁତି କରି ।
ତକ୍ଷଣେ ପୃଥୁରୂପ ଧରି ॥ ୪୯
ହରି ଜନ୍ମିଲେ ରାଜକୁଳେ ।
ଭୂମିକି ଦୁହିଁ ବାହୁବଳେ ॥ ୫୦

Dr. Sudhanshu Sekhar Mishra

ପ୍ରଜାଙ୍କୁ ଶସ୍ୟବୀଜ ଦେଲେ ।
ଅନ୍ନସଙ୍କଟୁ ଉଦ୍ଧରିଲେ ॥ ୫୧
ନାଭିର ବାର୍ଯ୍ୟେ ସେ ଋଷଭ ।
ସୁଦେବୀ ଉଦରେ ସମ୍ଭବ ॥ ୫୨
କପଟେ ଜଡ଼ରୂପ ଧରି ।
ସକଳ ଯୋଗ ସାଧ କରି ॥ ୫୩
ପରମହଂସ ମୁନିଗଣେ ।
ନମନ୍ତି ଯାହାର ଚରଣେ ॥ ୫୪
ସେ ସ୍ୱଚ୍ଛ ଶାନ୍ତ ଅନୁଗତ ।
ଅଶେଷସଙ୍ଗରୁ ବିମୁକ୍ତ ॥ ୫୫
ପୁଣି ମୋହର ଯଜ୍ଞକାଳେ ।
ମନ୍ତ୍ରେ ଉପୁଜିଲା ଅନଳେ ॥ ୫୬
ନର-ଶରୀର ଅଶ୍ୱଶିର ।
ସୁବର୍ଣ୍ଣବର୍ଣ୍ଣ ଜଟାଭାର ॥ ୫୭
ସକଳ ବେଦ ଯଜ୍ଞମୟ ।
ଅଖିଳ-ଆତ୍ମା ନିଜ ଦେହ ॥ ୫୮
ତାର ନିଃଶ୍ୱାସୁ ବେଦ ତିନି ।
ଜନ୍ମିଲେ କର୍ମକାଣ୍ଡ ଘେନି ॥ ୫୯
ଯୁଗାନ୍ତକାଳେ ମହାଜଳେ ।
ରାଜାର ତର୍ପଣର କାଳେ ॥ ୬୦
ରାଜା ତାରଣେ ଦଇତାରି ।
ମିଳିଲେ ମତ୍ସ୍ୟରୂପ ଧରି ॥ ୬୧
ଯୁଗ-ବିପ୍ଳବେ ବେଦରାଶି ।
ଥିଲା ଯେ ମହାଜଳେ ପଶି ॥ ୬୨
ସେ ବେଦ ସଲିଳୁ ଉଦ୍ଧରି ।
ମନୁକୁ ଦେଲେ ନରହରି ॥ ୬୩
ବାସବ-ସମ୍ପଦ ଉଦ୍ଧାରେ ।
କ୍ଷୀରସମୁଦ୍ର ମନ୍ଥିବାରେ ॥ ୬୪
ମିଳି ସକଳ ଦେବାସୁର ।
ସମୁଦ୍ରେ ସ୍ଥାପିଲେ ମନ୍ଦର ॥ ୬୫
ଅଗାଧଜଳେ ମଧୁହାରୀ ।
ମିଳିଲେ କୂର୍ମରୂପ ଧରି ॥ ୬୬
ପୃଷ୍ଠେ ବହିଲେ ଗିରିବର ।
ମନ୍ଥନ କଲେ ଦେବାସୁର ॥ ୬୭
ଗିରି-ଘର୍ଷଣ କଣ୍ଡୁ-ସୁଖେ ।
ନିଦ୍ରାନୟନ ଅଧୋମୁଖେ ॥ ୬୮

ଦେବଙ୍କ ଭୟ ନାଶିବାରେ ।
ସେ ନରସିଂହ ରୂପ ଧରେ ॥ ୬୯
ଭ୍ରମାଇ ଭ୍ରୂକୁଟୀ-କୁଟୀଳ ।
ଦନ୍ତ-ଶ୍ରୀମୁଖ ବିକରାଳ ॥ ୭୦
ଗଦା ବୁଲାଇ ଅତି ବେଗେ ।
ଦୈତ୍ୟ ମିଳିଲା ଆସି ଆଗେ ॥ ୭୧
ତକ୍ଷଣେ ଊରୁ ମଧ୍ୟେ ଧରି ।
ନଖାଗ୍ରେ ହିରଣ୍ୟ ବିଦାରି ॥ ୭୨
ମହାଦୈତ୍ୟକୁ ସଂହାରିଲେ ।
ସଂସାର ସଙ୍କଟୁ ତାରିଲେ ॥ ୭୩
ଅଗାଧ-ସରୋବର ମଧ୍ୟେ ।
କୁମ୍ଭୀର ଗଜରାଜ ପାଦେ ॥ ୭୪
ଧଇଲା ଅତି ଦୃଢ଼ବଳେ ।
ହସ୍ତୀର ଚରଣ ନିଶ୍ଚଳେ ॥ ୭୫
ଚଳି ନ ପାରି ଯୂଥପତି ।
ଆରତେ ସୁମରେ ଶ୍ରୀପତି ॥ ୭୬
ହସ୍ତେ କମଳ ଉଚ୍ଚେ ଟେକି ।
ନୟନୁ ଅଶ୍ରୁଜଳ ଗଳି ॥ ୭୭
ଆଦିପୁରୁଷ ଲୋକନାଥ ।
ତୀର୍ଥ-ପବିତ୍ର ତୋ ଚରିତ ॥ ୭୮
ଶ୍ରବଣ-ମଙ୍ଗଳ ତୋ ନାମ ।
ପୁଣ୍ୟପୁରୁଷ ଗୁଣଧାମ ॥ ୭୯
ସେ ହରି ସ୍ତୁତି ଶୁଣି କର୍ଣ୍ଣେ ।
ଗଜବିକଳ ଯୋଗଧ୍ୟାନେ ॥ ୮୦
ମରଣକାଳେ ସୁମରିଲା ।
ବିଷ୍ଣୁର ସମାଧି ଭାଜିଲା ॥ ୮୧
ତାର ମହିମା ଅପ୍ରମେୟ ।
ନିମିତ୍ତେ ବହେ ନାନାଦେହ ॥ ୮୨
ଦକ୍ଷିଣଭୁଜେ ଚକ୍ର ଧରି ।
ଗରୁଡ଼-ସ୍କନ୍ଧେ ବିଜେ କରି ॥ ୮୩
ଚକ୍ର ପ୍ରହାରେ ନକ୍ର ମାରି ।
ହସ୍ତୀର ହସ୍ତ ହସ୍ତେ ଧରି ॥ ୮୪
ଜଳୁ ଉଦ୍ଧରି ନାରାୟଣ ।
ଅନ୍ତର ହୋଇଲେ ତକ୍ଷଣ ॥ ୮୫
ଅଦିତି-ପୁତ୍ରଙ୍କର ସାନ ।
ଗୁଣରେ ଜ୍ୟେଷ୍ଠ ସେ ବାମନ ॥ ୮୬

ତ୍ରିପାଦେ ତିନିଲୋକ ଜିଣି ।
ସେ ଅଧ୍ୱରଜ୍ଞ ନାମ ଭଣି ॥ ୮୭
ଯେ ଧର୍ମମାର୍ଗେ ନିତ୍ୟେ ଥାନ୍ତି ।
ଯାଚଞ୍ଜା ବିନା ତା ସମ୍ପତ୍ତି ॥ ୮୮
ଈଶ୍ୱର ଆଦିତନୁ ଧରି ।
କେହି ନ ପାରେ ତାହା ହରି ॥ ୮୯
ସେ ବଳି ଦୃଢ଼ ସତ୍ୟ ମନେ ।
କୃଷ୍ଣଚରଣ ଆରାଧନେ ॥ ୯୦
ମନ୍ତ୍ରୀର ବୋଲ ନ ଶୁଣିଲା ।
ତ୍ରିପାଦ-ଭୂମି ଦାନ ଦେଲା ॥ ୯୧
ବିଷ୍ଣୁର ପାଦରଜେ ଇଚ୍ଛା ।
ଇନ୍ଦ୍ରାଦି ପଦେ ନାହିଁ ବାଞ୍ଛା ॥ ୯୨
ସର୍ବ-ସମ୍ପଦ ଆତ୍ମା ତୁଲେ ।
ଅର୍ପିଲା ବିଷ୍ଣୁ-ପାଦମୂଳେ ॥ ୯୩
ତୁ ଯେ ନାରଦ ତାରଅଂଶେ ।
ଶରୀର ବହୁ ମୋର ବଂଶେ ॥ ୯୪
ତୁମ୍ଭଙ୍କୁ ଭକ୍ତି ହଂସରୂପେ ।
କହିଲା ଭକ୍ତ-ତୋଷ ଅର୍ଥେ ॥ ୯୫
ତହୁଁ ଲଭିଲୁ ଦିବ୍ୟଜ୍ଞାନ ।
ଯେ ଯୋଗୀଗଣେ ବିଦ୍ୟମାନ ॥ ୯୬
ଯେ ଜ୍ଞାନେ କୃଷ୍ଣର ଚରଣ ।
ସୁଖେଣ ପଶନ୍ତି ଶରଣ ॥ ୯୭
ସେ ମନ୍ୱନ୍ତରେ ମନୁବଂଶେ ।
ସ୍ୱତେଜେ ଚକ୍ରବର୍ତ୍ତୀ ଅଂଶେ ॥ ୯୮
ଦୁଷ୍ଟରାଜାଙ୍କୁ ଦଣ୍ଡିଦେଇ ।
ଜିଣି ସ୍ଥାପିଲା ସାଧୁମାର୍ଗେ ॥ ୯୯
ତ୍ରିଲୋକ ପରେ ସତ୍ୟଲୋକେ ।
କୀର୍ତ୍ତି ବିସ୍ତାରି କଉତୁକେ ॥ ୧୦୦
ସେ ଧନ୍ୱନ୍ତରୀ ରୂପ ଧରି ।
ବ୍ରହ୍ମାଣ୍ଡ ମଧ୍ୟେ ଅବତରି ॥ ୧୦୧
ହରିଲା ପ୍ରାଣୀଙ୍କର ବ୍ୟାଧି ।
ଭିଆଇ ମନ୍ତ୍ର-ମଉଷଧି ॥ ୧୦୨
ଯଜ୍ଞେ ସ୍ୱଭାଗ ଭୋଗକଲା ।
ପ୍ରାଣୀଙ୍କି ଆୟୁର୍ବେଦ ଦେଲା ॥ ୧୦୩
ବ୍ରାହ୍ମଣବଧ ଦେଖି କୋପେ ।
ସେ ପୁଣି ପର୍ଶୁରାମ ରୂପେ ॥ ୧୦୪

Dr. Sudhanshu Sekhar Mishra

ପରଶୁ ଦକ୍ଷଭୁଜେ ଧରି ।
ଅବନୀ ପର୍ଯ୍ୟଟନ କରି ॥ ୧୦୫
କ୍ଷତ୍ରିୟ-ରୁଧିର ତର୍ପଣେ ।
ତୋଷିଲା ନିଜ ପିତୃଗଣେ ॥ ୧୦୬
ମୋର ବଚନେ ଦଇତାରି ।
ଇକ୍ଷ୍ୱାକୁବଂଶେ ଅବତରି ॥ ୧୦୭
ପିତା ବଚନେ ଗଲା ବନ ।
ସ୍ୱପତ୍ନୀ ସହିତେ ଲକ୍ଷ୍ମଣ ॥ ୧୦୮
ସୀତା ରାବଣ ନେଲା ହରି ।
ସେ କୋପେ ତାର ବଂଶ ମାରି ॥ ୧୦୯
ବିଭୀଷଣଙ୍କୁ ଲଙ୍କା ଦେଲେ ।
ଦେବଙ୍କ ଭୟ ନିବାରିଲେ ॥ ୧୧୦
ତ୍ରିପୁରବଧେ ଯେହ୍ନେ ହର ।
ସେ ରୂପେ ତେଜ ରଘୁବୀର ॥ ୧୧୧
ସେ ତେଜେ ଉରଗ ମକର ।
ନକ୍ରସମୂହ ଥରହର ॥ ୧୧୨
ଜଳଧି ତାରେ ଭୟକରି ।
ତାହାର ନିଜରୂପ ଧରି ॥ ୧୧୩
ଚରଣେ ଶରଣ ପଶିଲା ।
ଲଙ୍କାଗମନେ ମାର୍ଗ ଦେଲା ॥ ୧୧୪
ଦିଗବିଜୟେ ଲଙ୍କାପତି ।
ଅଇରାବତ ନାମେ ହସ୍ତୀ ॥ ୧୧୫
ତାହାର ସଙ୍ଗେ ବାଦ କରି ।
ଉରସ୍ୱରଣେ ଦନ୍ତ ଚୂରି ॥ ୧୧୬
ଦେଖି ଭାଜିଲା ଗଜଶ୍ରେଷ୍ଠ ।
ରାବଣ ସଙ୍ଗେ କାହିଁ ହଟ ॥ ୧୧୭
ସେହି ରାବଣଦର୍ପ ରଣେ ।
ଶ୍ରୀରାମ ସଂହାରିଲେ ବାଣେ ॥ ୧୧୮
ଭୂମିର ଭାରା ନିବାରଣେ ।
କ୍ଷୀରସମୁଦ୍ରେ ଦେବଗଣେ ॥ ୧୧୯
ଇଶ୍ୱର ସଙ୍ଗେ ଦେବବଳେ ।
ନମିଲେ ଚରଣକମଳେ ॥ ୧୨୦
ଅନେକ ମତେ ସ୍ତୁତି ଭଣି ।
ବିଷ୍ଣୁ ସନ୍ତୋଷ ତାହାଶୁଣି ॥ ୧୨୧
ସନ୍ତୋଷେ ଶୁକ୍ଳକୃଷ୍ଣକେଶ ।
ଜଂଘୁ ଉପାଡ଼ି ହୃଷୀକେଶ ॥ ୧୨୨

ସେ ବେନିରୋମ ମହୀତଳେ ।
ଜନ୍ମି ଅସୁର ସଂହାରିଲେ ॥ ୧୨୩
ହରିଲେ ଅବନୀର ଭାର ।
ମହାମହିମା ଚକ୍ରଧର ॥ ୧୨୪
ତିନିଦିବସେ ନାରାୟଣ ।
ଶୋଷିଲେ ପୂତନାର ପ୍ରାଣ ॥ ୧୨୫
ମାସକେ ନନ୍ଦଗୃହେ ହରି ।
ପାଦେ ଶକଟା ଚୂର କରି ॥ ୧୨୬
ଦଧିମନ୍ଥନ କାଳେ ଧରି ।
ରୋଳେ ବାନ୍ଧିଲା ନନ୍ଦନାରୀ ॥ ୧୨୭
ସେ ରୋଳ ସଙ୍ଗେ ନନ୍ଦବଳା ।
ବେନିଅର୍ଜ୍ଜୁନ ମଧ୍ୟେଗଲା ॥ ୧୨୮
ଅତି ଉତ୍ସର୍ଗ ବେନିବୃକ୍ଷେ ।
ଉପୁଡ଼ି ପଡ଼ିଲେ ପ୍ରତ୍ୟକ୍ଷେ ॥ ୧୨୯
ସେ ପୁଣି ଗୋବତ୍ସ ରକ୍ଷଣେ ।
କାଳିନ୍ଦୀତଟେ ବୃନ୍ଦାବନେ ॥ ୧୩୦
ବତ୍ସା-ବାଳକ ବିଷଜଳେ ।
ପଶିଲେ ତୃଷାର ବିକଳେ ॥ ୧୩୧
ସକଳେ କଲେ ଜଳପାନ ।
ତକ୍ଷଣେ ହାରିଲେ ଜୀବନ ॥ ୧୩୨
ଅଦ୍‌ଭୁତ ଦେଖି ଭାବଗ୍ରାହୀ ।
ଅମୃତନୟନେ ଅନାଇ ॥ ୧୩୩
ତାହାଙ୍କୁ ଜୀବଦାନ ଦେଲେ ।
ସେ ଜଳେ ସର୍ପକୁ ଦେଖିଲେ ॥ ୧୩୪
ଜିହ୍ୱା ଚଞ୍ଚଳ ବିଷ ବଳେ ।
ବିହାଁର କାଳିନ୍ଦୀର ଜଳେ ॥ ୧୩୫
ଦୂରେ ନିବେଶି ନାଗବଳ ।
ଅମୃତ କଲେ ବିଷଜଳ ॥ ୧୩୬
ଜନ୍ତୁଙ୍କୁ କରାଇଲେ ପାନ ।
ଅଦ୍‌ଭୁତଗତି ଭଗବାନ ॥ ୧୩୭
ଅମ୍ବିକାବନେ ଗୋପଜନେ ।
ଶୟନେ ନିଶିଅର୍ଦ୍ଧମାନେ ॥ ୧୩୮
ଅଗ୍ନି ବେଢ଼ିଲା ବେଗେ ଆସି ।
ପ୍ରଳୟାନଳ ପ୍ରାୟ ଦିଶି ॥ ୧୩୯
ଅନଳ ଦେଖି ନନ୍ଦବଳା ।
ବଦନ ଲୁଚାଅ-ବୋଇଲା ॥ ୧୪୦

ଉଦରେ ଲୁଚାଇଲେ ବଦନ ।
ଗୋବିନ୍ଦ କଲେ ଅଗ୍ନିପାନ ॥ ୧୪୧
ବାନ୍ଧିବା ପାଇଁ ଡୋର ଆଣି ।
ଯେତେ ଯୋଖିଲା ନନ୍ଦରାଣୀ ॥ ୧୪୨
ବାନ୍ଧି ନ ପାରେ ନନ୍ଦନାରୀ ।
ମହାମହିମ ନରହରି ॥ ୧୪୩
ମାତାର କୋଳେ ବସିଥିଲା ।
ଜୃମ୍ଭଣେ ମୁଖ ବିସ୍ତାରିଲା ॥ ୧୪୪
ଗୋପୀ ଚାହିଁଲେ ତା ବଦନ ।
ଉଦରେ ଅଶେଷ-ଭୁବନ ॥ ୧୪୫
ଐଶ୍ୱର୍ଯ୍ୟଲୀଳା ତାର ଦେହୀ ।
ଦେଖି ଶଙ୍କିତମନ ହୋଇ ॥ ୧୪୬
ବରୁଣପୁରୁ ଦଇତାରି ।
ନନ୍ଦଙ୍କୁ ବନ୍ଦୀମୋକ୍ଷ କରି ॥ ୧୪୭
ବରୁଣପୁରୁ ଯେତେବେଳେ ।
ନନ୍ଦଙ୍କୁ ଆଣିଲେ ଗୋକୁଳେ ॥ ୧୪୮
ଗୋପାଳେ ବରୁଣଭୁବନ ।
ଦେଖିବେ ବୋଲି କଲେ ମନ ॥ ୧୪୯
ତାହାଙ୍କୁ ନିଦ୍ରାକାଳେ ନେଇ ।
ବରୁଣଭୁବନ ଦେଖାଇ ॥ ୧୫୦
ପୁଣି ମାୟାରେ ଭଗବାନ ।
ଦେଖାଇ ଆପଣା ଭୁବନ ॥ ୧୫୧
ସେ ପୁଣି ବଳଦେବ ସଙ୍ଗେ ।
ବନେ ଖେଳନ୍ତି ନାନାରଙ୍ଗେ ॥ ୧୫୨
ବ୍ୟୋମଅସୁର ମାୟା କଲା ।
ଗୋପାଳପୁଅଙ୍କୁ ହରିଲା ॥ ୧୫୩
ଗିରିକ୍ରୋଡରେ ନେଇ ଥୋଇ ।
ଦ୍ୱାରରୁନ୍ଧିଲା ଶିଳା ଦେଇ ॥ ୧୫୪
ତାହା ଜାଣିଲେ ଚକ୍ରପାଣି ।
ବନ୍ଦୀରୁ ଗୋପସୁତ ଆଣି ॥ ୧୫୫
ଅସୁରଜୀବନ ହରିଲେ ।
ପୁଣି ଅଦ୍‌ଭୁତକର୍ମ କଲେ ॥ ୧୫୬
ଗୋପାଳେ ନନ୍ଦଗୋପ ମେଳେ ।
ଇନ୍ଦ୍ର-ଉତ୍ସବ-ଯଜ୍ଞ କାଳେ ॥ ୧୫୭
ଗୋବିନ୍ଦ ବୋଲେ ଯଜ୍ଞ ଭାଙ୍ଗି ।
ପର୍ବତ-ଗୋବର୍ଦ୍ଧନ ପୂଜି ॥ ୧୫୮

Dr. Sudhanshu Sekhar Mishra

ମେଘ-ପବନ ଘେନି ସଙ୍ଗେ ।
ଇନ୍ଦ୍ର ମିଳିଲା ଗୋପେ ବେଗେ ।। ୧୫୯
ଇନ୍ଦ୍ରବରଷେ କୋପ କରି ।
ପ୍ରଳୟକାଳେ ଯେହ୍ନେ ବାରି ।। ୧୬୦
ତା ଦେଖି କୃଷ୍ଣ ଦୟାଚିତ୍ତେ ।
ଗୋରୁଗୋପାଳ ରକ୍ଷାଅର୍ଥେ ।। ୧୬୧
ସପତ-ବରଷ-କୁମର ।
ହସ୍ତେ ଉପାଡ଼ି ଗିରିବର ।। ୧୬୨
ଛତ୍ର ପରାଏ ବାମକରେ ।
ତୋଳିଲା ଅଙ୍ଗୁଳି ଅଗ୍ରରେ ।। ୧୬୩
ସପତଦିନ ବରଷିଲା ।
କୃଷ୍ଣର କରେ ଗିରି ଥିଲା ।। ୧୬୪
ଭୟେ ଚିନ୍ତିଣ ସୁରରାୟେ ।
ଶରଣଗଲା କୃଷ୍ଣପାୟେ ।। ୧୬୫
ଆସି ସୁରଭୀ ଘେନି ସଙ୍ଗେ ।
ପୂଜିଲା କୃଷ୍ଣପାଦଯୁଗେ ।। ୧୬୬
ଗୋବିନ୍ଦ ନାମ ଦେଇଗଲା ।
ସନ୍ତୋଷେ ପୁରେ ପ୍ରବେଶିଲା ।। ୧୬୭
ପୁଣି ଶରଦଋତୁ କାଳେ ।
ଗୋବିନ୍ଦ ଯୋଗମାୟା ବଳେ ।। ୧୬୮
ରାତ୍ରେ ଶଶାଙ୍କରଶ୍ମିଜାଳେ ।
ରାସଉତ୍ସବ ଗୋପୀମେଳେ ।। ୧୬୯
ମଧୁର-ବେଣୁନାଦ-ଗୀତେ ।
ମନମୋହିଲେ ବାମା ଯେତେ ।। ୧୭୦
ଅନଙ୍ଗମୋହେ ବ୍ରଜନାରୀ ।
ଗୋବିନ୍ଦ ସଙ୍ଗେ କ୍ରୀଡ଼ା କରି ।। ୧୭୧
ଶୁଣି କୃଷ୍ଣର ବେଣୁସ୍ୱନ ।
ମିଳିଲା କୁବେରନନ୍ଦନ ।। ୧୭୨
ଗୋପୀଙ୍କି ହରିବାର ଆଶେ ।
ଲୁଚି ବସିଲା ବନଦେଶେ ।। ୧୭୩
ତାହାକୁ ଧରି ବେଣୁଧର ।
କରପ୍ରହାରେ ଛେଦିଶିର ।। ୧୭୪
ମଣି ହରିଲେ ତାର ଶିରୁ ।
ଅଶେଷଜନପିତାଗୁରୁ ।। ୧୭୫
ପ୍ରଳମ୍ୱ ଖର ବକାସୁର ।
କେଶୀ ଧେନୁକା ଷଣ୍ଢାବୀର ।। ୧୭୬
ମୁଷ୍ଟିକମଲ୍ଲ କୁବଳୟା ।
କଂସ ଯବନ ଘୋରମାୟା ।। ୧୭୭
ନାରକା ସାଲ୍ୱ ପୁଣ୍ଡରୀକ ।
କପି ବଲ୍ୱଳ ଦନ୍ତବକ୍ର ।। ୧୭୮
ସପତକ୍ଷଣ୍ଢ ବିଦୂରଥ ।
ସମ୍ବର ରୁକ୍ମିଣୀର ଭ୍ରାତ ।। ୧୭୯
କାମ୍ବୋଜ ମତ୍ସ୍ୟ କୁରୁବୀରେ ।
ସୃଞ୍ଜୟ କେକୟ ଅପରେ ।। ୧୮୦
ଏହାଙ୍କୁ ସଂଗ୍ରାମେ ନିବାରି ।
ଭୀମ ଅର୍ଜ୍ଜୁନ ସଙ୍ଗେ କରି ।। ୧୮୧
ପରମପଦେ ଦେଲେ ସ୍ଥାନ ।
ମାୟା-ମନୁଷ୍ୟ-ଭଗବାନ ।। ୧୮୨
କଳିପ୍ରବେଶ କାଳବଳେ ।
ପ୍ରାଣୀଏ ଚେତନା-ଚଞ୍ଚଳେ ।। ୧୮୩
ଭାରତୀ ନ ପାରନ୍ତି ଧରି ।
ଅଳ୍ପଆୟୁଷ ଦେଖି ହରି ।। ୧୮୪
ଜନ୍ମିଲେ ବ୍ୟାସ ରୂପ ଧରି ।
ଅଶେଷ-ଶ୍ରୁତିଶାସ୍ତ୍ର କରି ।। ୧୮୫
ବେଦଦ୍ରୁମକୁ ଶାଖା କଲେ ।
ଏକୁ ଅନେକ ବୁଦ୍ଧିବଳେ ।। ୧୮୬
ଅସୁରେ ରହି ବେଦମାର୍ଗେ ।
ମାୟାଭିମାନେ କଳିଯୁଗେ ।। ୧୮୭
ମୟଦଇତର ସଙ୍ଗତେ ।
ଦୃଶ୍ୟ-ଅଦୃଶ୍ୟ ବେନିପଥେ ।। ୧୮୮
ସେକଥା ଜାଣି ଜଗନ୍ନାଥେ ।
ବୁଦ୍ଧାବତାରେ ଜନହିତେ ।। ୧୮୯
କପଟ-ମାୟା-ମୋହବଶେ ।
ପାଷାଣ୍ଡମାର୍ଗ ଉପଦେଶେ ।। ୧୯୦
ଅନେକ ଦୁର୍ଗତି ହରିବେ ।
ସୁଜନଜନଙ୍କୁ ରଖିବେ ।। ୧୯୧
ପୁଣି ଏ କଳିଯୁଗ ଅନ୍ତେ ।
ସୁଧୁଜନଙ୍କ ଗୃହଗତେ ।। ୧୯୨
କୃଷ୍ଣ-ସ୍ମରଣ-ଗୁଣଗାଥା ।
ନୋହିବ ଯେବେ ହରିକଥା ।। ୧୯୩
ଦ୍ୱିଜେ ପାଷଣ୍ଡ ଆଚରିବେ ।
ସେ ପଞ୍ଚଯଜ୍ଞ ନ କରିବେ ।। ୧୯୪
ରାଜା ହୋଇବେ ଶୂଦ୍ରଜନେ ।
ପ୍ରଜା ପୀଡ଼ିବେ କର-ଧନେ ।। ୧୯୫
ଯେ ସ୍ୱାହା ସ୍ୱଧା ବଷଟ୍‌କାର ।
ଛାଡ଼ି କରିବେ ଦୁରାଚାର ।। ୧୯୬
ଏ କର୍ମ ଦେଖି କଳ୍‌କୀ ରୂପେ ।
ଅଶ୍ୱ ଆରୋହି ମହାକୋପେ ।। ୧୯୭
ଖଡ଼୍‌ଗ ଉଭାରି ବେନିହସ୍ତେ ।
ଶେଷେ ସ୍ଥାପିବେ ଧର୍ମପଥେ ।। ୧୯୮
ସର୍ଜନେ ମୁହିଁ ଋଷି ନବ ।
ପ୍ରଜାପତିଏ ତପଭାବ ।। ୧୯୯
ସ୍ଥିତିରେ ଧର୍ମ ମନୁଗଣ ।
ଯଜ୍ଞସ୍ୱରୂପ ବିଷ୍ଣୁ ପଣ ।। ୨୦୦
ଅମରଗଣ ରାଜାଗଣ ।
ସଂହାରେ ଅଧର୍ମ କାରଣ ।। ୨୦୧
ଯେ ହର ହରେ ତିନିପୁର ।
ଉରଗ ଆଦି ଯେ ଅସୁର ।। ୨୦୨
ଅନନ୍ତ ଶକ୍ତି ଦାମୋଦର ।
ଏ ସର୍ବ ବିଭୂତି ତାହାର ।। ୨୦୩
ଯେଣୁ ସେ ମାୟାରୂପ ଧରେ ।
କଳ୍ପକଳ୍ପାନ୍ତେ ସୃଷ୍ଟି କରେ ।। ୨୦୪
ଯେ ବିଷ୍ଣୁ-ନାଭି-ଜାତ-ପାଦ ।
ଆବୋରି ଭୁବନ ଚଉଦ ।। ୨୦୫
ଯା ବେଗେ ପ୍ରକୃତି କମ୍ପିଲା ।
ନିଜ ବିକ୍ରମେ ଯେ ଧଇଲା ।। ୨୦୬
ସେ ବିଷ୍ଣୁ-ମହିମା ସଂସାରେ ।
କେ ଗଣି ସଂଖ୍ୟା କରିପାରେ ।। ୨୦୭
ଯେ କବି ଭୂମି ରେଣୁ ଗଣି ।
ସେ କି ପାରିବ ପରିମାଣି ।। ୨୦୮
ତାହାର ମାୟାବଳ ଗତି ।
ତା ଅନ୍ତ କେହି ନ ଜାଣନ୍ତି ।। ୨୦୯
ତୋର ଅଗ୍ରଜ ମୁନି ଶାନ୍ତ ।
ସେ କାହିଁ ଜାଣିବେ ତଦନ୍ତ ।। ୨୧୦
ବ୍ରହ୍ମା ଶଙ୍କର ନ ପ୍ରମାଣେ ।
ଅପରେ କେବା ତାହା ଜାଣେ ।। ୨୧୧
ବାସୁକି ଅୟୁତବଦନେ ।
ସମର୍ଥ ନୋହେ ଗୁଣଗାନେ ।। ୨୧୨

Dr. Sudhanshu Sekhar Mishra

ଯାହାଂରେ ହରି ଦୟାକରେ ।
ସେ ଯେବେ ନିଷ୍କପଟେ ଧରେ ।। ୨୧୩
ଦୁସ୍ତର-ମାୟା ସେ ତରନ୍ତି ।
ଦୁଃଖେ ସଙ୍କଟେ ନ ପଡ଼ନ୍ତି ।।୨୧୪
ଶ୍ୱାନ-ଶୃଗାଳ-ଭକ୍ଷ ଦେହେ ।
ଏ ମୋର ବୋଲି ଜ୍ଞାନ ନୋହେ।। ୨୧୫
ଏବେ ନାରଦ ଶୁଣ ଧୀରେ ।
ଯେବା ତରିଲେ ମାୟାଘୋରେ ।। ୨୧୬
ତା ମାୟା ଚିତ୍ତେ ଜାଣି ଭଲେ ।
ଯେ ଏ ସଂସାରୁ ତରିଗଲେ ।। ୨୧୭
ମୁହିଁ ଜାଣଇ ମାୟା ତାର ।
ତୁମ୍ଭେ ସନକାଦି ଶଙ୍କର ।। ୨୧୮
ପ୍ରହ୍ଲାଦ ଜାଣେ ଅନ୍ତର୍ଗତେ ।
ମନୁ ଯେ କୁଟୁମ୍ବ ସହିତେ ।। ୨୧୯
ପ୍ରାଚୀନବର୍ହି ଋଭୁ ଅଙ୍ଗ ।
ଧ୍ରୁବ ଇକ୍ଷ୍ୱାକୁ ମୁଚୁକୁନ୍ଦ ।। ୨୨୦
ବିଦେହ ସୌମ୍ୟସୁତ ଗାଧି ।
ରଘୁ ଅମ୍ବରୀଶ ସୁବୁଦ୍ଧି ।। ୨୨୧
ଗୟ ନହୁଷ ଆଦି ଯେତେ ।
ଶୁଣ ନାରଦ କହୁଁ ତୋତେ ।। ୨୨୨
ମାନ୍ଧାତାଳର୍କ ଶତଧନୁ ।
ରନ୍ତିଦେବ ଯେ ଗଙ୍ଗାସୂନୁ ।। ୨୨୩
ଅମୂର୍ତ୍ତରୟ ଯେ ସୌଭରି ।
ଦିଲୀପ ଉତଙ୍କ ଯେ ବଳୀ ।। ୨୨୪
ଶିବି ଦେବଳ ପିପ୍ପଲାଦ ।
ସାରସ୍ୱତ ସଙ୍ଗେ ଉଦ୍ଧବ ।। ୨୨୫
ଯେ ପରାଶର ଭୂରିଷେଣ ।
ରାବଣଭ୍ରାତ ହନୁମାନ ।। ୨୨୬
ଶୁକ ଯେ ଉପଇନ୍ଦ୍ର ଦତ୍ତ ।
ବିଦୁର ଆର୍ଷ୍ଟିଷେଣ ପାର୍ଥ ।। ୨୨୭
ବ୍ରାହ୍ମଣ ଶ୍ରୁତଦେବ ତୁଲେ ।
ବିଷ୍ଣୁମାୟାରୁ ତରିଗଲେ ।। ୨୨୮
ହୂଣ ଯବନ ଶୂଦ୍ର ସ୍ତିରୀ ।
ଶବର ତୁଲେ ଗଲେ ତରି ।। ୨୨୯
କୃଷ୍ଣର ରୂପେ ମନ ଯାର ।
କିବା କହିବା ଗତି ତାର ।। ୨୩୦
ଅଦ୍‌ଭୁତକର୍ମ ଯେ ତାହାର ।
ଯେ ଭାବେ ନାହିଁ ପରାପର।। ୨୩୧
ତା ଭକ୍ତିଶିକ୍ଷା ଅଟେ ଯାର ।
ସେହୁ ତରନ୍ତି ମାୟାଘୋର ।। ୨୩୨
ନିତ୍ୟ ପ୍ରଶାନ୍ତ ସେ ନିର୍ଭୟ ।
ପ୍ରବୋଧ ମାତ୍ର ଯାର ଦେହ ।। ୨୩୩
ସେ ଶୁଦ୍ଧ ସର୍ବଘଟେ ସମ ।
ରୂପ-ଅରୂପ ପରଧାମ ।। ୨୩୪
ଶବ୍ଦ ନ ପାରେ ଯାହା କହି ।
ଅନେକ କ୍ରିୟାଯୋଗ ବହି ।। ୨୩୫
ଯାର ସମ୍ମୁଖେ ଭଗବତୀ ।
ଲାଜେ ପଳାଇ ଶିରପୋତି ।। ୨୩୬
ଯେ ବ୍ରହ୍ମଜ୍ଞାନୀ ମୁନିଗଣେ ।
ଯାହା ସ୍ମରନ୍ତି ଅନୁକ୍ଷଣେ ।। ୨୩୭
ନିଜସ୍ୱରୂପ ତାର ଚିନ୍ତି ।
ପରମପୁରୁଷ ବୋଲାନ୍ତି ।। ୨୩୮
ଅଜରାମର ଯେ ବିଶୋକ ।
ନାହିଁ ଯାହାର ରୂପରେଖ ।। ୨୩୯
ଯାହାର ମନ ଦୃଢ଼ଚିତ୍ତେ ।
କୃଷ୍ଣବିଷୟେ ଅବିରତେ ।। ୨୪୦
ଭାବି ଛାଡ଼ଇ ସର୍ବତାପ ।
ଇନ୍ଦ୍ର ନ ଖୋଳେ ଯେହ୍ନେ କୂପ ।। ୨୪୧
ସେ ହରି କଇବଲ୍ୟନାଥ ।
ଭାବ ସ୍ୱଭାବ ଏ ଜଗତ ।। ୨୪୨
କରାଏ ସର୍ବଦେହେ ବସି ।
ଶମାଦି ସ୍ୱଭାବ ପ୍ରକାଶି ।। ୨୪୩
ଦେହ-ବିଯୋଗ କାଳେ ଦେହୀ ।
ଗଗନପ୍ରାୟେ ଶୂନ୍ୟେ ରହି ।। ୨୪୪
ତେଣେ ତାହାର ସଙ୍ଗ ନାହିଁ ।
ଜନମ ମୃତ୍ୟୁ ତାର କାହିଁ ।। ୨୪୫
ହେ ପୁତ୍ର କହିଲି ମୁଁ ତୋତେ ।
ହରିମହିମା ଭାବି ଚିତ୍ତେ ।। ୨୪୬
ସତ ଅସତ ରୂପ ସେହି ।
ଅଶେଷ ମାୟାରୂପ ବହି ।। ୨୪୭
କରଇ ଆତ୍ମା ଖେଳାଲୀଳା ।
ତାର ଚରିତ ଭବଭେଳା ।। ୨୪୮
ଏ ଭାଗବତଧର୍ମ ଯେତେ ।
ଗୋବିନ୍ଦ କହିଥିଲେ ମୋତେ ।। ୨୪୯
ଏ ସର୍ବ ସଂଗ୍ରହର ମୂଳ ।
ଅଶେଷ ଧର୍ମ ଯଜ୍ଞଫଳ ।। ୨୫୦
ଲୀଳା ବିସ୍ତାରି କହ ମୁଖେ ।
ସୁଜନଜନଙ୍କର ସୁଖେ ।। ୨୫୧
ଯେମନ୍ତେ ପ୍ରାଣୀଙ୍କର ଚିତ୍ତେ ।
କୃଷ୍ଣବିଷୟ ଅବିରତେ ।। ୨୫୨
ଯେମନ୍ତେ ନାଶେ ଶୋକମୋହ ।
ଇତି ସଙ୍କ୍ଷି ତାତ କହ ।। ୨୫୩
ବର୍ଣ୍ଣିଲି ଈଶ୍ୱରର ମାୟା ।
ଯେ ଶୁଣେ ତରେ ତାର କାୟା ।। ୨୫୪
ମାୟା ନ ଲାଗେ ତାର ଚିତ୍ତେ ।
ଯେ ମୁଖେ ଗୁଣେ ଅବିରତେ ।। ୨୫୫
ଏମନ୍ତ ଭାଗବତବାଣୀ ।
ନାରଦ ବ୍ରହ୍ମାମୁଖୁ ଶୁଣି ।। ୨୫୬
ମନଆନନ୍ଦେ କୃତକୃତ୍ୟ ।
କହଇ ଦାସ ଜଗନ୍ନାଥ ।। ୨୫୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ବ୍ରହ୍ମାନାରଦସମ୍ବାଦେ
ସପ୍ତମୋଽଧ୍ୟାୟ ।

Dr. Sudhanshu Sekhar Mishra

## ଅଷ୍ଟମ ଅଧ୍ୟାୟ

ଶୁକଚରଣେ ଦେଇ ଚିତ୍ତ ।
ଆନନ୍ଦେ ବୋଲେ ପରୀକ୍ଷିତ ।। ୧

ପରୀକ୍ଷିତ ଉବାଚ

ନାରଦ ଆଗେ ବ୍ରହ୍ମା ଯେତେ ।
ବିଷ୍ଣୁମହିମା ଭାଗବତେ ।। ୨
କହିଲେ ଜନ ଉପକାରେ ।
ଯେ କଥା ଶୁଣି ପ୍ରାଣୀ ତରେ ।। ୩
ଯେ ସ୍ଥାନେ ଯାହାକୁ ଯେ ଭାବେ ।
ମୁନି କହିଲେ ହରିଭାବେ ।। ୪ ।
ତାହା ଶ୍ରବଣେ ଇଚ୍ଛା ମୋର ।
ତୁମ୍ଭେ ତତ୍ତ୍ୱଜ୍ଞ ମଧ୍ୟେ ବର ।। ୫
ହରିମହିମା ଅଗୋଚର ।
ଶ୍ରବଣ-ମଙ୍ଗଳ-ଉଚ୍ଚାର ।। ୬
ସେ କଥା କହ ମୁନି ମୋତେ ।
ସେ ହରିଚରଣେ ଯେମନ୍ତେ ।। ୭
ନିଶ୍ଚଳେ ମନ କରି ସ୍ଥିର ।
ଯେମନ୍ତେ ଛାଡ଼ିବି ଶରୀର ।। ୮
ଶ୍ରଦ୍ଧାରେ ନିତ୍ୟେ ଯେବା ଶୁଣେ ।
ଯେ ହରିକଥା ମନେ ଗୁଣେ ।। ୯
ମଙ୍ଗଳ-ନାମ-ଉଚ୍ଚାରଣ ।
ତାର ହୃଦୟେ ତତକ୍ଷଣ ।। ୧୦
ଶ୍ରବଣମାର୍ଗେ ହରି ପଶେ ।
ହୃଦୟପଦ୍ମେ ସ୍ଥିରେ ବସେ ।। ୧୧
ସର୍ବ ଦୁରିତ ହେଳେ ନାଶେ ।
ଶରଦ ଯେହ୍ନେ ବୃଷ୍ଟିଶେଷେ ।। ୧୨
ଜଳୁ ହରଇ ମଳରାଶି ।
ସେ ଯେହ୍ନେ ନିର୍ମଳ ପ୍ରକାଶି ।। ୧୩
ନିର୍ମଳ ଆତ୍ମା ତାର ହୋଇ ।
ସେ କୃଷ୍ଣ-ପାଦମୂଳେ ଥାଇ ।। ୧୪
କେବେହେଁ ନୁହଇ ବାହାର ।
ମାୟା-ଭ୍ରମଣ ହୋଏ ଦୂର ।। ୧୫
ପଥିକ ପଥଶ୍ରମ ପାଇ ।
ସେ ଯେହ୍ନେ ନିଜଗୃହେ ଯାଇ ।। ୧୬
ଶ୍ରମ ପାଶୋରି ସୁଖେ ରହେ ।
ଗୃହସମ୍ପଦ-ଭୋଗେ ଦେହେ ।। ୧୭
ଅଧାତୁମନ୍ତ-ଆତ୍ମା ହୋଏ ।
ଧାତୁଘଟଣ ଦେହ ବହେ ।। ୧୮
ଜାଣୁ ତୁ କହ ଏ କେମନ୍ତେ ।
କି ବା ଏ କାଳକ୍ରମ ମତେ ।। ୧୯
ଯାର ଉଦରୁ ପଦ୍ମ ହୋଇ ।
ଲୋକ-ସଂସ୍ଥାନ ପ୍ରକାଶଇ ।। ୨୦
ଯା ରୂପ ନ ଜାଣନ୍ତି କେହି ।
ପ୍ରକାଶେ ଅବୟବ-ଦେହୀ ।। ୨୧
ସେ ଯେବେ ଅବୟବୀ ହୋଇ ।
ଜୀବ ଈଶ୍ୱର ଭେଦ କାହିଁ ।। ୨୨
ସ୍ୱଭାବେ ତାର ଜନ୍ମ ନାହିଁ ।
ଆତ୍ମାରୁ ପ୍ରାଣୀଙ୍କି ସୃଜଇ ।। ୨୩
ବ୍ରହ୍ମା ଯେ ଭୂତଆତ୍ମା ହୋଏ ।
ସେ ପୁଣି ଯାର ଅନୁଗ୍ରହେ ।। ୨୪
ନାଭିକମଳୁ ହୋଇ ଜାତ ।
ତାହାକୁ ଦେଖେ ରୂପବନ୍ତ ।। ୨୫
କାଳର ବଳେ ସେ ପୁରୁଷ ।
କରଇ ସୃଷ୍ଟି-ସ୍ଥିତି-ନାଶ ।। ୨୬
ସକଳଭୂତେ ଯାର ବାସ ।
ସେ ଯେଉଁ ରୂପେଣ ପ୍ରକାଶ ।। ୨୭
ଏ ଲୋକ ଲୋକପାଳ ସଙ୍ଗେ ।
ସର୍ବକଳ୍ପିତ ତାର ଅଙ୍ଗେ ।। ୨୮
ଏ ଯେତେ ଚତୁର୍ଦ୍ଦଶ ପୁର ।
କଳ୍ପନା କରି ଅଙ୍ଗ ତାର ।। ୨୯
ଏ ଭାବେ ଶୁଣିଲି ଯେ ମୁହିଁ ।
ଏବେ ତୁମ୍ଭଙ୍କୁ ପଚାରଇ ।। ୩୦
କଳ୍ପ-ବିକଳ୍ପ ଯଥାକାଳେ ।
ସେ ବ୍ରହ୍ମ କରେ ଅବହେଳେ ।। ୩୧
ସୃଷ୍ଟି-ପାଳଣ-ସଂହାରଣ ।
ଭୂତ-ଭବିଷ୍ୟ-ବର୍ତ୍ତମାନ ।। ୩୨
କାଳରଠାରୁ ଏ ଯେମନ୍ତେ ।
ଆୟୁ ପ୍ରମାଣ କାର କେତେ ।। ୩୩
କାଳର ଯେବା ଅନୁଗତି ।
ଅଳ୍ପ ବହୁତ ସଂଖ୍ୟା ସ୍ଥିତି ।। ୩୪
କର୍ମର ଗତି ଅବା ଯେତେ ।
ଯେ ହେତୁ ପ୍ରକାଶ ଯେମନ୍ତେ ।। ୩୫
ଗୁଣଙ୍କ ପରିଣାମେ କେବା ।
ଦେବାଦି-ରୂପ ଇଚ୍ଛେ ଯେବା ।। ୩୬
କି କର୍ମ କରି ଯହିଁ ତହିଁ ।
କି ଭାବେ ଜୀବ ତା ଭୁଞ୍ଜଇ ।। ୩୭
ଭୂମି ପାତାଳ ଦଶଦିଶ ।
ଯେ ରୂପେ ସମ୍ଭବେ ଆକାଶ ।। ୩୮
ଗ୍ରହ ନକ୍ଷତ୍ର ମହୀଧର ।
ନଦୀ ସମୁଦ୍ର ଦ୍ୱୀପପାର ।। ୩୯
ଏଥି ଆଶ୍ରିତ ଜନ୍ତୁ ଯେତେ ।
ବ୍ରହ୍ମାଣ୍ଡ ପ୍ରମାଣ ବା କେତେ ।। ୪୦
ବାହ୍ୟ ଅନ୍ତରେ ବସ୍ତୁ ଯେତେ ।
ସଂକ୍ଷେପି କହ ମୋ ଅଗ୍ରତେ ।। ୪୧
ମହାନ୍ତଜନ-ଆଚରଣ ।
ଯେ ବର୍ଣ୍ଣବିଭାଗ ଆଶ୍ରମ ।। ୪୨
ଏ ଅଣ୍ଡକୋଷ ମଧ୍ୟଗତେ ।
ବିଷ୍ଣୁର ଅବତାର ଯେତେ ।। ୪୩
ଯୁଗାନୁଯୁଗେ ଯୁଗମାନ ।
ଯେ ଯୁଗେ ଯେବା ଧର୍ମଜ୍ଞାନ ।। ୪୪
ମନୁଷ୍ୟ ସାଧାରଣଧର୍ମ ।
ଯେବା ବିଶେଷ ଯଥାକ୍ରମ ।। ୪୫
ବ୍ରହ୍ମରଷିଙ୍କ ଧର୍ମ ଆଦି ।
ଯା ରାଜରଷି ଏ ସମ୍ପାଦି ।। ୪୬
ଆପଦେ ଧର୍ମ ପ୍ରାଣୀଙ୍କର ।
ଏ ସର୍ବ କହ ମୁନିବର ।। ୪୭
ସଂଖ୍ୟା-ଲକ୍ଷଣ ତତ୍ତ୍ୱଙ୍କର ।
କି ରୂପେ ହେତୁ କେ କାହାର ।। ୪୮
ପୁରୁଷ-ଆରାଧନା-ବିଧି ।
ଅଷ୍ଟାଙ୍ଗଯୋଗ ଯେହ୍ନେ ସାଧି ।। ୪୯
ଯୋଗେଶ୍ୱରଙ୍କ ଗତି ଯେତେ ।
ଲିଙ୍ଗଭଗନ ମୋକ୍ଷପଥେ ।। ୫୦

Dr. Sudhanshu Sekhar Mishra

ଯେ ଧର୍ମ ବେଦ-ଉପବେଦେ ।
ପୁରାଣ-ଇତିହାସବାଦେ ।। ୫୧
ସର୍ବଭୂତଙ୍କ ଯେ ସମ୍ଭବ ।
ବିକ୍ରମ ସଙ୍କ୍ରମ ପ୍ରସ୍ତାବ ।। ୫୨
ଯେ ଇଷ୍ଟ ବଇଦିକ କର୍ମ ।
ଯେ ଅବା ସ୍ମାର୍ତ୍ତକର୍ମ-ଧର୍ମ ।। ୫୩
ଯେ ବିଧିଯଜ୍ଞ ଜଳଦାନେ ।
ଯେ କର୍ମ ତ୍ରିବର୍ଗସାଧନେ ।। ୫୪
ଯେ ରୂପେ ଜୀବ ସମ୍ଭବନ୍ତି ।
ଯେ ରୂପେ ପାଷାଣ୍ଡ ହୁଅନ୍ତି ।। ୫୫
ଆତ୍ମାର ବନ୍ଧ-ମୋକ୍ଷ ଦୁଇ ।
ଯେବା ସ୍ୱରୂପେ ଯେହ୍ନେ ହୋଇ ।। ୫୬
ସେ ଆତ୍ମତନ୍ତ୍ର ଭାବଗ୍ରାହୀ ।
ଆତ୍ମମାୟାରେ ସେ କ୍ରୀଡ଼ଇ ।। ୫୭
ସେ ମାୟା ବିସର୍ଜି ଯେମନ୍ତେ ।
ପ୍ରଳୟେ ରହେ ସାକ୍ଷୀମତେ ।। ୫୮
ଭୋ ମୁନି ପଚାରିଲି ଯେତେ ।
ସଂକ୍ଷେପି କହିବାକୁ ମୋତେ ।। ୫୯
ତୁ ଯେ ବ୍ରହ୍ମାର ସମ ମୂର୍ତ୍ତି ।
ଏ ବିଶ୍ୱସଂସାର ପ୍ରମାଣି ।। ୬୦
ପୁଣ୍ୟପୁରୁଷେ ଯାହା ଚିନ୍ତି ।
ଅପରେ ଯାହା ଆଚରନ୍ତି ।। ୬୧
ଆହାରହୀନେ ମୋର ପ୍ରାଣ ।
କେବେହେଁ ନୋହିବ ମଳିନ ।। ୬୨
ତୁମ୍ଭ ବଚନୁ ହରିରସ ।
ପିବନ୍ତେ ମନ ହେବ ତୋଷ ।। ୬୩
ସୂତ କହନ୍ତି ଅନୁରାଗେ ।
ଶୌନକଆଦି ମୁନି ଆଗେ ।। ୬୪

ସୂତ ଉବାଚ

ଏମନ୍ତେ ପରୀକ୍ଷିତବାଣୀ ।
ହରଷେ ଶୁକମୁନି ଶୁଣି ।। ୬୫
ମୁନିଜନଙ୍କ ସଭାମଧ୍ୟେ ।
ଯେ ଅବା କହିଲେ ଆନନ୍ଦେ ।। ୬୬
ସେ ଭାଗବତ ହରିଗୁଣ ।
ବ୍ରହ୍ମସମ୍ମତ ଯେ ପୁରାଣ ।। ୬୭
ଯେ କଥା ବ୍ରହ୍ମାର ଅଗ୍ରତେ ।
ସେ ବ୍ରହ୍ମକଳ୍ପ-ଉପଗତେ ।। ୬୮
ଏକାନ୍ତେ କହିଲେ ମୁରାରି ।
ବିଶ୍ୱସଂସାରେ ଦୟାକରି ।। ୬୯
ପାଣ୍ଡବଶ୍ରେଷ୍ଠ ପରୀକ୍ଷିତ ।
ଯେ ପ୍ରଶ୍ନ କଲେକ ଉକତ ।। ୭୦
ସେ କଥା ଆଦି ମଧ୍ୟ ଅନ୍ତେ ।
କହିବି ତୁମ୍ଭର ଅଗ୍ରତେ ।। ୭୧
ବୋଲଇ ଦାସ ଜଗନ୍ନାଥ ।
ଦ୍ୱିତୀୟସ୍କନ୍ଧେ ଭାଗବତ ।। ୭୨
ଅମୃତ-ରସମୟ-ଗୀତେ ।
ସୁଜନଜନଙ୍କର ହିତେ ।। ୭୩
ପ୍ରାକୃତବନ୍ଧେ ଗୀତବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।। ୭୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ
ପ୍ରଶ୍ନବିଧିର୍ନାମାଷ୍ଟମୋଽଧ୍ୟାୟଃ ।।

---

## ନବମ ଅଧ୍ୟାୟ

ଶୁକ କହନ୍ତି ରାଜା ଆଗେ ।
ତାର ପ୍ରଶନେ ଅନୁରାଗେ ।। ୧

ଶୁକ ଉବାଚ

ଶୁଣ ନୃପତି ପୁଣ୍ୟଦେହା ।
ତୁ ମୋତେ ପଚାରିଲୁ ଯାହା ।। ୨
ବିଷ୍ଣୁର କ୍ରୀଡ଼ା ମାୟାଗୁଣ ।
ସୃଷ୍ଟି-ପାଳନ-ସଂହାରଣ ।। ୩
ଆତ୍ମମାୟାରେ ସୃଷ୍ଟିକରେ ।
ସେ ମାୟା କେବା କଳିପାରେ ।। ୪
କରଇ ସକଳ ସମ୍ଭବ ।
ସ୍ୱପ୍ନେ ଯେସନେ ଅନୁଭବ ।। ୫
ଏହା ଈଶ୍ୱର-ମାୟା ବିନେ ।
ନ ଘଟେ ତତ୍ତ୍ୱ ଅନୁମାନେ ।। ୬
ଯେବେ ସେ ମାୟାରେ ମିଶଇ ।
ଏକୁ ଅନେକ ପ୍ରକାଶଇ ।। ୭
ସ୍ୱଭାବେ ମାୟା ବହୁରୂପୀ ।
ରୂପ ପ୍ରକାଶେ ସର୍ବବ୍ୟାପୀ ।। ୮
ସେ ରୂପେ ଥାଇ ସର୍ବଗୁଣେ ।
ମୁହିଁ ମୋହର ପ୍ରାୟେ ମଣେ ।। ୯
ଯେବେ ସେ ଭକ୍ତିଯୋଗ କରେ ।
ତେବେ ମମତା ପରିହରେ ।। ୧୦
ସତ୍ୟ ପ୍ରକାଶେ ଯେବେ ଦେହେ ।
ନିଶ୍ଚିନ୍ତେ ଆତ୍ମାରୂପେ ରହେ ।। ୧୧
କାଳ ମାୟାର ପରେ ରହି ।
ପର ଆପଣା ଭେଦ କାହିଁ ।। ୧୨
ମାୟାକୁ ରମେ ସତ୍ୟ ପ୍ରାୟେ ।
ସତ୍ୟ ଅସତ୍ୟେ ଭେଦ ନୋହେ ।। ୧୩
ଆତ୍ମାର ତତ୍ତ୍ୱଶୁଦ୍ଧି ଅର୍ଥେ ।
କହିଲେ ବ୍ରହ୍ମାର ଅଗ୍ରତେ ।। ୧୪
ଯେଣୁ ସେ ଘୋରତପ କରି ।
ଅନେକ କଷ୍ଟେ ପ୍ରାଣ ଧରି ।। ୧୫
ତପେ ତୋଷିଲା ଭଗବାନ ।
ତେଣୁ ପାଇଲା ଦରଶନ ।। ୧୬
ନିର୍ମଳ ନିଷ୍କପଟ ଚିତ୍ତେ ।
ଯେଣୁ ଚିନ୍ତିଲା ହୃଦଗତେ ।। ୧୭
ଶୁଣ କହିବା ତୋ ଅଗ୍ରତେ ।
ବ୍ରହ୍ମାଙ୍କୁ ଦିଶିଲା ଯେମନ୍ତେ ।। ୧୮
ସେ ଆଦି-ଦେବଗଣ-ଗୁରୁ ।
ଭକତ-ବାଞ୍ଛା-କଳ୍ପତରୁ ।। ୧୯
ନିଜ ଭୁବନେ ସୁଖେ ଥିଲା ।
ଖେଳିବା ଅର୍ଥେ ବିଚାରିଲା ।। ୨୦
ଆତ୍ମାରେ ଆତ୍ମା ମାୟାଗ୍ରସ୍ତ ।
ପ୍ରପଞ୍ଚ ନିର୍ମାଣ ଯେମନ୍ତ ।। ୨୧

Dr. Sudhanshu Sekhar Mishra

ନାଭିରୁ ପଦ୍ମ କଲା ଜାତ ।
ତହୁଁ ଜନ୍ମିଲା ଚତୁର୍ମାଥ ॥ ୨୨
ସେ ପୁଣି ଚିନ୍ତାଭରେ ରହି ।
ପର ଅପର ନ ଜାଣଇ ॥ ୨୩
ସୃଷ୍ଟି ବିଷୟ କି ପ୍ରକାର ।
ମନେ ଚିନ୍ତଇ ବେଦବର ॥ ୨୪
ଚିନ୍ତା ବିକଳେ ଭାବେ ମନେ ।
ଶବଦ ଶୁଭିଲା ଗଗନେ ॥ ୨୫
ଜଳେ କମଳମଧ୍ୟେ ଥିଲା ।
ବେନି ଅକ୍ଷର ସେ ଶୁଣିଲା ॥ ୨୬
କ କାର ଆଦି ଯେ ଷୋଡ଼ଶେ ।
ପଞ୍ଚ ମିଶ୍ରିତ ଏକବିଂଶେ ॥ ୨୭
ଶବଦେ 'ତପ' ଉଚ୍ଚାରଣ ।
ନିଷ୍କିଞ୍ଚନଙ୍କ ନିଜଧନ ॥ ୨୮
ସେ ବାଣୀ ଶୁଣି ବ୍ରହ୍ମା କର୍ଣ୍ଣେ ।
ନିରୋପି ଚାହିଁଲା ଗଗନେ ॥ ୨୯
ଶୂନ୍ୟେ କି ସୁଧା ଉଛୁଳିଲା ।
କିବା ଅମୃତ ବରଷିଲା ॥ ୩୦
ଦିଗ ସହିତେ ଅନାଇଲା ।
କାହିଁ ସେ କିଛି ନ ଦେଖିଲା ॥ ୩୧
ସେ ପୁଣି ରହି ନିଜସ୍ଥାନେ ।
ଆତ୍ମାର ହିତ ଚିନ୍ତି ମନେ ॥ ୩୨
ଜାଣିଲା ଏ ପରମତତ୍ତ୍ୱ ।
ତପ ସାଧନେ ଦେଲା ଚିତ୍ତ ॥ ୩୩
ଏ ମୋର ହିତ ବୋଲି ଜାଣି ।
ନିଶ୍ଚଳ ମନେ କୁଶପାଣି ॥ ୩୪
ଅମୋଘ-ଦୃଷ୍ଟି ସେ ବିଧାତା ।
ତପେ ବଢ଼ିଲା ତାର ଚିନ୍ତା ॥ ୩୫
ଦେବବରଷେ ଦଶଶତ ।
ତପେ ବସିଲା ଦୃଢ଼ ଚିତ୍ତ ॥ ୩୬
ମନ ପବନ କଲା ବନ୍ଦି ।
ଦଶଇନ୍ଦ୍ରିୟଗଣ ରୁନ୍ଧି ॥ ୩୭
ତପସ୍ୟା କଲା ଅତିରେକ ।
ଯହୁଁ ପ୍ରକାଶ ସର୍ବଲୋକ ॥ ୩୮
ତପ ପ୍ରସାଦେ ନରହରି ।
ମିଳିଲେ ନିଜରୂପ ଧରି ॥ ୩୯

ସ୍ୱଲୋକ ସ୍ୱଗଣ ସହିତେ ।
ଦିଶିଲେ ବ୍ରହ୍ମାର ଅଗ୍ରତେ ॥ ୪୦
ସେ ରୂପ ନ ଜାଣନ୍ତି କେହି ।
ମାୟା-ସଂସାରେ ଦେହ ବହି ॥ ୪୧
ବିଷ୍ଣୁ ପ୍ରସନ୍ନେ ପ୍ରଜାପତି ।
ଛାଡ଼ିଲା ମନୁ ଦୁଃଖ ଭ୍ରାନ୍ତି ॥ ୪୨
ଶୂନ୍ୟେ ବିଜୟେ ଶଙ୍ଖଧାରୀ ।
ଅଶେଷ ଦେବେ ସ୍ତୁତି କରି ॥ ୪୩
ଯାର ଶରୀରେ ରଜ-ତମେ ।
ପଶି ନ ପାରନ୍ତି ସଂଭ୍ରମେ ॥ ୪୪
ଯେ ଅବା କାଳର ବିକ୍ରମ ।
ସେ ବା ହୋଇବ କାହିଁ କ୍ଷମ ॥ ୪୫
ମାୟା ନ ପାରେ ପଶି ଯହିଁ ।
ରାଗ-ଲୋଭାଦି ଭେଦ କାହିଁ ॥ ୪୬
ବିମାନ ମଧ୍ୟେ ନାରାୟଣ ।
ବେଷ୍ଟିତ ପାରିଷଦଗଣ ॥ ୪୭
ସର୍ବେ ଦିଶନ୍ତି ବିଷ୍ଣୁତେଜ ।
ସ୍ୱଭାବେ ଚାରି ଚାରି ଭୁଜ ॥ ୪୮
ଶ୍ୟାମସୁନ୍ଦର ତନୁ ବର୍ଣ୍ଣ ।
ଅରୁଣ-ପଙ୍କଜ-ଲୋଚନ ॥ ୪୯
ପୀତବସନ ପରିଧାନ ।
ସୁରୁଚି ସୁନ୍ଦର ବଦନ ॥ ୫୦
ମଣି ପଦକ କଣ୍ଠ ଦେଶେ ।
କାମ-ଗଞ୍ଜନ ନିଜ ବେଶେ ॥ ୫୧
ପ୍ରବାଳ ବଇଡୂର୍ଯ୍ୟ କାନ୍ତି ।
ମୃଣାଳ ପ୍ରାୟ ଝଟକନ୍ତି ॥ ୫୨
କିରୀଟ ଖଞ୍ଜିତ କପୋଳ ।
ଶ୍ରବଣେ ମକର-କୁଣ୍ଡଳ ॥ ୫୩
ତେଜେ ବିରାଜେ ନଭସ୍ଥଳୀ ।
ବିମାନ ପରେ ସର୍ବେ ମିଳି ॥ ୫୪
ଦିବ୍ୟ କାମିନୀଗଣ ସଙ୍ଗେ ।
ବିଜୁଳି ଯେହ୍ନେ କଳାମେଘେ ॥ ୫୫
ଅଷ୍ଟବିଭୂତି ସଙ୍ଗ ମେଳେ ।
କମଳା ସେବେ ପାଦ ତଳେ ॥ ୫୬
ଦିବ୍ୟ ଦୋଳିକା ମଧ୍ୟେ ନାରୀ ।
ପୁଷ୍ପ ବରଷି ସ୍ତୁତି କରି ॥ ୫୭

ହରିର ପ୍ରିୟ କର୍ମମାନ ।
ଭ୍ରମରେ କରନ୍ତି ଗାୟନ ॥ ୫୮
ଏମନ୍ତେ ବିଷ୍ଣୁ ନଭସ୍ଥଳେ ।
ବ୍ରହ୍ମା ଦେଖିଲେ ନିଜ ଡୋଳେ ॥ ୫୯
ଯାହାର ନାମ ଶିରୀପତି ।
ଭକତଜନଙ୍କର ପତି ॥ ୬୦
କମଳାପତି ଯଜ୍ଞପତି ।
ଜଗତପତି ସର୍ବଗତି ॥ ୬୧
ସୁନନ୍ଦ-ନନ୍ଦ ଆଦି ଯେତେ ।
ପୂଜା ଉଚିତ ବଳି ହସ୍ତେ ॥ ୬୨
ପୂଜନ୍ତି କିଙ୍କର ସ୍ୱଭାବେ ।
ମିଳି ସଂଭ୍ରମେ ସର୍ବଦେବେ ॥ ୬୩
ଭୃତ୍ୟଙ୍କୁ ପ୍ରସନ୍ନ-ବଦନ ।
ଅରୁଣ-ପଙ୍କଜ-ଲୋଚନ ॥ ୬୪
କିରୀଟ କୁଣ୍ଡଳ ବିରାଜେ ।
ପୀତବସନ କଟିମାଝେ ॥ ୬୫
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ ।
ରୂପେ ଅଶେଷଜନ ମୋହେ ॥ ୬୬
ଅମୂଲ୍ୟ-ସିଂହାସନେ ସ୍ଥିତି ।
ବେଷ୍ଟିତ ପଞ୍ଚବିଂଶ-ଶକ୍ତି ॥ ୬୭
ସ୍ୱଭାବେ ଅଇଶ୍ୱର୍ଯ୍ୟମୟ ।
ଇତରଜନେ ଅନିଶ୍ଚୟ ॥ ୬୮
ସ୍ୱଧାମେ ସ୍ୱରୂପେ ରମନ୍ତି ।
ଏଣୁ ସେ ଈଶ୍ୱର ବୋଲାନ୍ତି ॥ ୬୯
ଏମନ୍ତ ରୂପ ବ୍ରହ୍ମା ଦେଖି ।
ଉଠିଲେ ଆସନ ଉପେକ୍ଷି ॥ ୭୦
କୃଷ୍ଣ-ଦର୍ଶନ ଆହ୍ଲାଦ ।
ଅନ୍ତରେ ହୋଇ ଗଦଗଦ ॥ ୭୧
ଲୋମ ହରଷେ ତନୁ ପୂର୍ଣ୍ଣ ।
ପ୍ରେମାଶ୍ରୁ ଗଳଇ ଲୋଚନ ॥ ୭୨
ଶ୍ରୀକୃଷ୍ଣ-ପାଦପଦ୍ମ ଚାହିଁ ।
ନମିଲା ଶିରେ କର ଦେଇ ॥ ୭୩
ଆନନ୍ଦସାଗରେ ବୁଡ଼ିଲା ।
ଅଧିକେ ଆତ୍ମା ପାଶୋରିଲା ॥ ୭୪
ଅତି ଆନନ୍ଦେ ପ୍ରେମ ସୁଖେ ।
ସେ ବ୍ରହ୍ମା ବିଷ୍ଣୁର ସମ୍ମୁଖେ ॥ ୭୫

Dr. Sudhanshu Sekhar Mishra

ପ୍ରଜା-ସର୍ଜନେ ତାର ମନ ।
ଜାଣିଲେ ପ୍ରଭୁ ଭଗବାନ ।।୭୬
ବ୍ରହ୍ମା-ବଦନ ହରି ଚାହିଁ ।
ଈଷିତ-ହାସ୍ୟେ ବାକ୍ୟ କହି ।।୭୭
ଆତ୍ମାର ପ୍ରିୟ ପ୍ରାୟ କରି ।
ବ୍ରହ୍ମାର କର କରେ ଧରି ।।୭୮

ଭଗବାନ ଉବାଚ

ହେ ବେଦଗର୍ଭ ସୃଷ୍ଟିଅର୍ଥେ ।
ତୁମ୍ଭେ ଯେ ତୋଷ କଲ ମୋତେ ।।୭୯
ଅତି ଦୁସ୍ତର ଘୋରତପେ ।
ତେଣୁ ମୁଁ ତୋହର ସମୀପେ ।।୮୦
ସ୍ୱଭାବେ ଯୋଗୀଙ୍କୁ ଦୁର୍ଲଭ ।
ତୋତେ ମୁଁ ହୋଇଲି ସୁଲଭ ।।୮୧
ସର୍ବମଙ୍ଗଳ ହେଉ ତୋର ।
ଦୃଢ଼ଚିତ୍ତରେ ମାଗ ବର ।।୮୨
ମୋହର ଦରଶନ ଯେବେ ।
ପ୍ରାଣୀ ଲଭଇ ପୁଣ୍ୟେଭାବେ ।।୮୩
ତାହାର ଶ୍ରେୟ ପରିଶ୍ରମ ।
ଅନ୍ତରେ ହୋଏ ଆତ୍ମାରାମ ।।୮୪
ଗଗନେ ଶୁଣି ମୋ ବଚନ ।
ତୁ ଯେ ତପରେ କଲୁ ମନ ।।୮୫
କର୍ମ ବିଭ୍ରମ ଦେଖି ତୋତେ ।
ମୁଁ ଯେ ଡାକିଲି ଶୂନ୍ୟପଥେ ।।୮୬
ବୋଇଲି ଦୃଢ଼େ ତପ କର ।
ମୁଁ ତୋତେ ହୋଇବି ଗୋଚର ।।୮୭
ମୋର ହୃଦୟ ତପ ଜାଣ ।
ତପ ମୋ ଆତ୍ମାଟି ପ୍ରମାଣ ।।୮୮
ତପେ ମୁଁ ସୃଷ୍ଟି କଲି ହେଳେ ।
ଅନ୍ତେ ସଂହରେ ତପବଳେ ।।୮୯
ତପର ବଳେ ଏ ଜଗତ ।
ମୁହିଁ ପାଳଇ ଅବିରତ ।।୯୦
ଏମନ୍ତେ ବିଷ୍ଣୁ ମୁଖୁ ଶୁଣି ।
ବିଧାତା କହେ ସ୍ତୁତିବାଣୀ ।।୯୧

ବ୍ରହ୍ମା ଉବାଚ

ହେ ନାରାୟଣ ଭୂତେଶ୍ୱର ।
ପ୍ରାଣୀ ହୃଦୟେ ତୁମ୍ଭ ଘର ।।୯୨
ହୃଦୟପଦ୍ମ ମଧ୍ୟେ ଥାଉ ।
ପ୍ରାଣୀଙ୍କି ଉପଦେଶ ଦେଉ ।।୯୩
ଏଣୁ ମୋହର ମନ ଜାଣି ।
ଯେ ଜ୍ଞାନ ଦେଲ ଚକ୍ରପାଣି ।।୯୪
ଅନାଥନାଥ ତୋ ମହିମା ।
କେ ଜାଣିପାରେ ଗୁଣସୀମା ।।୯୫
ମୁଁ ତୋର ଚରଣେ କିଙ୍କର ।
ଏମନ୍ତ ଆଜ୍ଞା ମୋତେ କର ।।୯୬
ରୂପ ଅରୂପ ତୋର ଯେତେ ।
ଏ ସୃଷ୍ଟି କରୁ ତୁ ଯେମନ୍ତେ ।।୯୭
ଯେ ମାୟାଯୋଗେ ସୃଷ୍ଟି କରୁ ।
ନାନାପ୍ରକାରେ ଶକ୍ତି ଧରୁ ।।୯୮
ଏ ସୃଷ୍ଟି-ସ୍ଥିତି-ସଂହାରଣ ।
ଯେମନ୍ତେ ହେଉ ତୁ କାରଣ ।।୯୯
ସ୍ୱତନ୍ତ୍ର-ସୂତ୍ରେ ଊର୍ଣ୍ଣନାଭି ।
କ୍ରୀଡ଼ଇ ଯେହ୍ନେ ମନେ ଭାବି ।।୧୦୦
ତେମନ୍ତ ବୁଦ୍ଧି ଦିଅ ମୋତେ ।
ଏ ସୃଷ୍ଟି କରଇ ଯେମନ୍ତେ ।।୧୦୧
ସୃଷ୍ଟି-ସଂକଳ୍ପେ ମୋର ଇଚ୍ଛା ।
ତୁ ନାଥ କହ ସୃଷ୍ଟି-ଦୀକ୍ଷା ।।୧୦୨
ତୁମ୍ଭର ଶିକ୍ଷା ଘେନି ଚିତ୍ତେ ।
ସୃଷ୍ଟି କରିବି ଅବିରତେ ।।୧୦୩
ସୃଷ୍ଟି କରଣେ ଭଗବାନ ।
କେବେହେଁ ନାହିଁ ମୋର ଜ୍ଞାନ ।।୧୦୪
ତୋ ଅନୁଗ୍ରହ ଯେବେ ମୋତେ ।
ତୁ ନାଥ ବସ ମୋର ଚିତ୍ତେ ।।୧୦୫
ହେ ହରି ସଖାପ୍ରାୟ କରି ।
ତୁ ଯେ ମୋହର କର ଧରି ।।୧୦୬
ସେ ଅହଂକାର ମୋର ମନେ ।
ନୋହିବ ହେବ ତୋ ଅର୍ଚ୍ଚନେ ।।୧୦୭
ଯାବତ ପ୍ରଜାସର୍ଗେ ଜନ ।
କରିବି ଉତ୍ତମ ମଧ୍ୟମ ।।୧୦୮
ମୁଁ ଅଜ ସ୍ୱତନ୍ତ୍ର ମୋ ଭାବ ।
ଏମନ୍ତ ନୋହିବ ମୋ ଗର୍ବ ।।୧୦୯
ଏମନ୍ତ ବ୍ରହ୍ମାର ବଚନ ।
ଶୁଣି କହନ୍ତି ଭଗବାନ ।।୧୧୦

ଭଗବାନ ଉବାଚ

ଶୁଣ ବିଧାତା ମୋ ବଚନ ।
ଯେଣେ ଲଭିବୁ ସୃଷ୍ଟି-ଜ୍ଞାନ ।।୧୧୧
ଯେ ଭକ୍ତିଯୋଗ ମୋ ସମ୍ମତ ।
ଅଟଇ ଅତ୍ୟନ୍ତ ଗୁପତ ।।୧୧୨
ସୃଷ୍ଟି ସର୍ଜନା ଅଙ୍ଗ ଯେତେ ।
ହରଷେ କହୁଁ ତୋ ଅଗ୍ରତେ ।।୧୧୩
ଯେମନ୍ତ ସ୍ୱରୂପ ମୋ ହୋଇ ।
ସ୍ୱଭାବେ ରୂପଗୁଣ ଯେହି ।।୧୧୪
ଯେ କର୍ମମାନ ମୁହିଁ ବହେ ।
ସେ ତତ୍ତ୍ୱବିଜ୍ଞାନ ତୋ ଦେହେ ।।୧୧୫
ପ୍ରସରୁ ମୋର ଅନୁଗ୍ରହେ ।
ଜଗତ ଯେହ୍ନେ ମୋର ଦେହେ ।।୧୧୬
ସୃଷ୍ଟିର ଅଗ୍ରେ ମୁହିଁ ଏକ ।
ମୋ ଠହୁଁ ପ୍ରସରେ ଅନେକ ।।୧୧୭
ସତ ଅସତ ପର ମୁହିଁ ।
ଯେ ଅବଶେଷ ଶେଷ ରହି ।।୧୧୮
ଏଣୁ ଏ ଆଦି ମଧ୍ୟ ଅନ୍ତେ ।
ମୋ ଠହୁଁ ଅନ୍ୟ କେ ଜଗତେ ।।୧୧୯
ଅର୍ଥକୁ ଛାଡ଼ି ଯାର ବଶେ ।
ପ୍ରତୀତ ହୁଅଇ ଆଭାସେ ।।୧୨୦
ମାୟା ପ୍ରକାଶେ ସେ ପ୍ରମାଣେ ।
ଗଗନେ ଯେହ୍ନେ ଜ୍ୟୋତିର୍ଗଣେ ।।୧୨୧
ଯେମନ୍ତେ ସ୍ଥୂଳ ସୂକ୍ଷ୍ମ ଭୂତେ ।
ପ୍ରବେଶ ପଞ୍ଚ-ମହାଭୂତେ ।।୧୨୨
ଛାଡ଼ି ପଶନ୍ତି ପୁଣ ପୁଣ ।
ମୁଁ ମାୟା ଶରୀରେ ତେସନ ।।୧୨୩
ଆତ୍ମା ସର୍ବଦା ସର୍ବଠାବେ ।
ଅନ୍ୱୟ-ବ୍ୟତିରେକ ଭାବେ ।।୧୨୪
ଏହା ଜାଣନ୍ତି ତତ୍ତ୍ୱଜ୍ଞାନୀ ।
ମାୟାସଂସାରେ ଅନୁମାନି ।।୧୨୫
ତୋର ପ୍ରସ୍ତାବେ ପ୍ରଜାପତି ।
କହିଲି ସୃଷ୍ଟି ଯଥାଗତି ।।୧୨୬
ଯେଝା ବିଚାର ଅନୁମାନେ ।
ଯେ ସର୍ବକାଳ ବିଦ୍ୟମାନେ ।।୧୨୭

Dr. Sudhanshu Sekhar Mishra

ଏ ମୋର ତତ୍ତ୍ୱଜ୍ଞାନ ବଳେ ।
ଧର ତୁ ସମାଧି ନିଶ୍ଚଳେ ॥ ୧୨୮
କଳ୍ପ ବିକଳ୍ପେ ତୋର ଚିତ୍ତ ।
କେବେହେଁ ନୋହୁ ବିମୋହିତ ॥ ୧୨୯

ଶୁକ ଉବାଚ

ଏ ରୂପେ ପ୍ରଭୁ ଭାବଗ୍ରାହୀ ।
ବ୍ରହ୍ମାଙ୍କୁ ସୃଷ୍ଟିତତ୍ତ୍ୱ କହି ॥ ୧୩୦
ତକ୍ଷଣେ ବ୍ରହ୍ମାର ଅଗ୍ରତେ ।
ଗୋବିନ୍ଦ ଗଲେ ଶୂନ୍ୟପଥେ ॥ ୧୩୧
କୃଷ୍ଣ ନ ଦେଖି ପ୍ରଜାପତି ।
ଅନେକମତେ କଲା ସ୍ତୁତି ॥ ୧୩୨
କରଅଞ୍ଜଳି ଶିରେ ଦେଇ ।
ଅନେକଭାବେ ଭାବ ବହି ॥ ୧୩୩
ବିଶ୍ୱ ସର୍ଜିଲା ବିଷ୍ଣୁ ତେଜେ ।
ପୂର୍ବର ପ୍ରାୟ ନାନା ବାର୍ଯ୍ୟେ ॥ ୧୩୪
ସେ ପ୍ରଜାପତି ଧର୍ମପତି ।
ଯମ ନିୟମେ ଦେଲା ମତି ॥ ୧୩୫

ପ୍ରଜା କଲ୍ୟାଣ ଚିନ୍ତାକରି ।
ଆତ୍ମାର ହିତ ମନେ ଧରି ॥ ୧୩୬
ବ୍ରହ୍ମାର ସମାଧି ନିଶ୍ଚଳ ।
ଦେଖି ନାରଦ ମୁନିବର ॥ ୧୩୭
ପୁତ୍ରଙ୍କ ମଧ୍ୟେ ପ୍ରିୟତମ ।
ବିନୟେ ସେବାରେ ସେ ପୁଣ ॥ ୧୩୮
ବ୍ରହ୍ମାର ମନ ତୋଷ କଲେ ।
ବିଷ୍ଣୁର ମାୟା ଜାଣିବାରେ ॥ ୧୩୯
ପିତାର ମନ ତୋଷ ଜାଣି ।
ବିନୟଭାବେ ମୁନିମଣି ॥ ୧୪୦
ପୁଛିଲେ ପିତାର ଅଗ୍ରତେ ।
ତୁ ଯାହା ପଚାରିଲୁ ମୋତେ ॥ ୧୪୧
ନାରଦ ବାକ୍ୟେ ବେଦବର ।
ହରି-ମହିମା ଅଗୋଚର ॥ ୧୪୨
ଯେତେ କହିଲେ ସୃଷ୍ଟି ଅର୍ଥେ ।
ମାୟାର ମହିମା ଯେମନ୍ତେ ॥ ୧୪୩
ଜାଣିବା ଅର୍ଥେ ମହାମୁନି ।
କହି ବିଧାତା ହେଲେ ତୁନି ॥ ୧୪୪

ବ୍ରହ୍ମା-ନାରଦ ପ୍ରଶ୍ନ ଯେତେ ।
କହିଲି ତୋହର ଅଗ୍ରତେ ॥ ୧୪୫
ରାଜନ ସାବଧାନେ ଶୁଣ ।
ଏ ଭାଗବତର ପ୍ରମାଣ ॥ ୧୪୬
ଦଶଲକ୍ଷଣେ ଏହା ଜାଣି ।
ଯେବା କହିଲେ ପରିମାଣି ॥ ୧୪୭
ଏ କଥା ସରସ୍ୱତୀତଟେ ।
ନାରଦ ବ୍ୟାସଙ୍କ ନିକଟେ ॥ ୧୪୮
ଏବେ ମୁଁ ତୋହର ଅଗ୍ରତେ ।
କହିଲି ପଚାରିଲୁ ଯେତେ ॥ ୧୪୯
ଏମନ୍ତେ ପରୀକ୍ଷିତ ମେଳେ ।
ଶୁକ କହିଲେ ଗଙ୍ଗାକୂଳେ ॥ ୧୫୦
ଦଶଲକ୍ଷଣେ ଭାଗବତ ।
କହଇ ଦାସ ଜଗନ୍ନାଥ ॥ ୧୫୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱିତୀୟସ୍କନ୍ଧେ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ

ଶୁକ ଉବାଚ

ମୁନି କହନ୍ତି ରାୟେ ଶୁଣ ।
ଏ ଭାଗବତର ଲକ୍ଷଣ ॥ ୧
ଦଶପ୍ରକାରେ ଭାବ ଚିନ୍ତି ।
ପୁରାଣ-ପୁରୁଷେ ବୋଲାନ୍ତି ॥ ୨
ତାହା କହିବା ଏକେ ଏକେ ।
ପ୍ରସ୍ତାବେ ତୋହର ସମ୍ମୁଖେ ॥ ୩
ସର୍ଗ ବିସର୍ଗ ଯେବା ସ୍ଥାନ ।
ପୋଷଣ ଉତି ପରିମାଣ ॥ ୪
ଯେ ମନ୍ୱନ୍ତର ଈଶକଥା ।
ନିରୋଧ ମୁକ୍ତିର ବ୍ୟବସ୍ଥା ॥ ୫
ଆଶ୍ରୟ ମିଶି ଦଶଗୁଣ ।
ଏ ଭାଗବତର ଲକ୍ଷଣ ॥ ୬
ଦଶ ବିଶୁଦ୍ଧ ଅର୍ଥେ ରହେ ।
ନବ ଲକ୍ଷଣ ଯେବା ହୋଏ ॥ ୭

ବେଦ ବିଚାରି ମହାଜନେ ।
ତତ୍ତ୍ୱ କହନ୍ତି ଅନୁମାନେ ॥ ୮
ଦଶଇନ୍ଦ୍ରିୟ ପଞ୍ଚମାତ୍ର ।
ମହତ ତୁଲେ ପଞ୍ଚଭୂତ ॥ ୯
ତାହାଙ୍କ ଜନ୍ମ ସର୍ଗ କହି ।
ବିସର୍ଗ ଶୁଣ ଚିତ୍ତ ଦେଇ ॥ ୧୦
ବିରାଟ-ପୁରୁଷର ଦେହେ ।
ବ୍ରହ୍ମା ସର୍ଜନା ଯେତେ ହୋଏ ॥ ୧୧
ପୌରୁଷ ଚରାଚର ଯେତେ ।
ବିସର୍ଗ ବୋଲନ୍ତିଟି ଏତେ ॥ ୧୨
ବିଷ୍ଣୁ ବିଜୟ ସ୍ଥିତି ନାମ ।
ଭକ୍ତାନୁଗ୍ରହ ଯେ ପୋଷଣ ॥ ୧୩
ମନ୍ୱନ୍ତର ଯେ ମନୁ ଧର୍ମ ।
କର୍ମବାସନା ଉତି ନାମ ॥ ୧୪
ବିଷ୍ଣୁ ଅବତାର ଚରିତ ।
ତାର ଭକ୍ତଙ୍କ ଯେ ଉକତ ॥ ୧୫

କୃଷ୍ଣର କଥା ଅନୁବାଦେ ।
ଉତ୍ତମ ପୁରୁଷଙ୍କ ମଧ୍ୟେ ॥ ୧୬
ଈଶାନୁକଥା ଏହା କହି ।
ଅପରେ ଶୁଣ ମନ ଦେଇ ॥ ୧୭
ସଂହରି ଆତ୍ମାର ଶକତି ।
ଜଳେ ଶୟନ ଯୋଗପତି ॥ ୧୮
ନିରୋଧ ବୋଲି ତାର ନାମ ।
ନିଜ ସ୍ୱଭାବେ ପୂର୍ଣ୍ଣକାମ ॥ ୧୯
ମୁକ୍ତି ସ୍ୱରୂପେ ବ୍ୟବସ୍ଥିତି ।
ଯହିଁ ନ ଘଟେ ପୁନର୍ଗତି ॥ ୨୦
ଆଭାସ ନିରୋଧ ଏ ଦୁଇ ।
ଯା ଠାରୁ ପ୍ରକାଶ ହୁଅଇ ॥ ୨୧
ଆଶ୍ରୟ ନାମ ସେ ବୋଲାଇ ।
ପରମ ବ୍ରହ୍ମ ଯାକୁ କହି ॥ ୨୨
ସେ ପରମାତ୍ମା ନରହରି ।
ଅଂଶେ ଅଶେଷଘଟେ ପୂରି ॥ ୨୩

Dr. Sudhanshu Sekhar Mishra

ତାର ସକାଶୁ ଜୀବ ଏକ ।
ତେଣୁ ବୋଲାଇ ଆଧ୍ୟାତ୍ମିକ ॥ ୨୪
ସେ ଅଧିଦେବତା ବୋଲାଇ ।
ଅଧିଭୂତଙ୍କ ଆତ୍ମା ସେହି ॥ ୨୫
ଯେ ବେନି ବିଚ୍ଛେଦ କରଇ ।
ତାହାକୁ ଅଧିଭୂତ କହି ॥ ୨୬
ଅଭାବେ ଏକ ଏକତର ।
ଯଦି ନ ଲକ୍ଷେ ପରସ୍ପର ॥ ୨୭
ତେବେ ଏ ନୁହଁଇ ସଂସାର ।
ଯେମନ୍ତେ ଚକ୍ଷୁ ଦିନକର ॥ ୨୮
ତୃତୀୟେ ସାକ୍ଷୀରୂପ ହୋଇ ।
ଯେ ଦେଖେ ପରଆତ୍ମା ସେହି ॥ ୨୯
ଅନ୍ୟ ଆଶ୍ରୟ ସେ ହୁଅଇ ।
ତାର ଆଶ୍ରୟ ଅଟେ ସେହି ॥ ୩୦
ସର୍ବଆଶ୍ରୟ ତାର ନାମ ।
ପରମ ପୁରୁଷ ଉତ୍ତମ ॥ ୩୧
ସେ ଯେଉଁ କାଳେ ଅଣ୍ଡଭେଦି ।
ବାହାର ହେଲା ଗୁଣନିଧି ॥ ୩୨
ଆତ୍ମାର ସ୍ଥାନ ଇଛା କରି ।
ସ୍ୱଭାବେ ଜଳସୃଷ୍ଟି କରି ॥ ୩୩
ସେ ଜଳ ମଧ୍ୟେ ମାୟାଧର ।
ବଞ୍ଚିଲା ସହସ୍ରବତ୍ସର ॥ ୩୪
ଜଳର 'ନାରା' ବୋଲି ନାମ ।
ତେଣୁ ତା ନାମ ନାରାୟଣ ॥ ୩୫
ଯେ ଦ୍ରବ୍ୟ ଗୁଣ କର୍ମ କାଳ ।
ସ୍ୱଭାବେ ଜୀବ ଏକମେଳ ॥ ୩୬
ଯା ଅନୁଗ୍ରହେ ଉପୁଜନ୍ତି ।
ଯାର ନିଗ୍ରହେ ଲୀନ ହୋନ୍ତି ॥ ୩୭
ଯେ ଯୋଗମାୟା ବଳେ ଉଠି ।
ଅଂଶେ କଳ୍ପଇ ନାନାସୃଷ୍ଟି ॥ ୩୮
ସୁବର୍ଣ୍ଣମୟ ତା ଶରୀର ।
ସର୍ଜିଲା ତ୍ରିବିଧ ପ୍ରକାର ॥ ୩୯
ଆଧିଦୈବତ ଆଧ୍ୟାତ୍ମିକ ।
ଆବର ଆଧିଭଉତିକ ॥ ୪୦
ଗୁଣ ପୌରୁଷ ବୀର୍ଯ୍ୟବଳେ ।
ଯଥା ତ୍ରିବିଧି ଭେଦ ହେଲେ ॥ ୪୧

ଅନ୍ତଃଶରୀର ଆକାଶରୁ ।
ପରମପୁରୁଷ ଚେଷ୍ଟାରୁ ॥ ୪୨
ସ୍ୱଭାବେ ଓଜ-ସହ-ବଳ ।
ଜାତ ହୋଇଲେ ଅନର୍ଗଳ ॥ ୪୩
ଏ ତିନିଭାବୁ ପ୍ରାଣ ଜାତ ।
ଦଶପ୍ରାଣଙ୍କ ମୂଳନାଥ ॥ ୪୪
ତାହାର ବଳେ ପ୍ରାଣ ଚଳେ ।
ଇନ୍ଦ୍ରିୟ ଚେଷ୍ଟାକୁ ସେ କରେ ॥ ୪୫
ଜ୍ଞାନ ଅଜ୍ଞାନ ଏହିମତେ ।
ଅଶେଷଜନ ଅନ୍ତର୍ଗତେ ॥ ୪୬
ରାଜାକୁ ଯେହ୍ନେ ଆଶ୍ରେ କରି ।
ସେବକେ ପଥ ଅନୁସରି ॥ ୪୭
ମୂଳକମଳୁ ଏହି ମତେ ।
ସଞ୍ଚରୁ ବ୍ରହ୍ମରନ୍ଧ୍ରପଥେ ॥ ୪୮
ପ୍ରାଣର ଆତଯାତ ଶ୍ରମେ ।
ଉପୁଜେ କ୍ଷୁଧାତୃଷା ସମେ ॥ ୪୯
କ୍ଷୁଧାତୃଷାର ମାର୍ଗ ସୁଖ ।
ଅର୍ଥେ ସୃଜିଲା ଅଗ୍ରେ ମୁଖ ॥ ୫୦
ମୁଖର ମୂଳେ ତାଲୁ ଜାତ ।
ସଂଯୋଗେ ରସନା ସମ୍ଭୂତ ॥ ୫୧
ତାର ସଂଯୋଗେ ନାନାରସେ ।
ବସନ୍ତି ବରୁଣ ବିଶ୍ୱାସେ ॥ ୫୨
ଶବଦ ଅର୍ଥେ ମୁଖଦ୍ୱାରେ ।
ଅଗ୍ନିଦେବତା ବାକ୍ୟ ଧରେ ॥ ୫୩
ସୁଚିରକାଳ ଥାଇ ଜଳେ ।
ନାସାବିମ୍ୱର ବାୟୁବଳେ ॥ ୫୪
ଆଘ୍ରାଣ ଅର୍ଥେ ଉପୁଜିଲେ ।
ତକ୍ଷଣେ ଗନ୍ଧବହ ତୁଲେ ॥ ୫୫
ଆତ୍ମାର ଦେଖି ଅନ୍ଧକାର ।
ବ୍ରହ୍ମା ସୃଜିଲା ଚକ୍ଷୁଦ୍ୱାର ॥ ୫୬
ଜ୍ୟୋତି ସର୍ଜିଲା ତା ରକ୍ଷଣେ ।
ରୂପ-ଗ୍ରହଣ ଇଚ୍ଛି ମନେ ॥ ୫୭
ବେଦପୁରୁଷଙ୍କ ବଚନେ ।
ବିଧାତା ବେଦ ଅନୁମାନେ ॥ ୫୮
ଶୁଣିବା ଅର୍ଥେ ନାନା ସ୍ୱନ ।
ନିର୍ମଳେ ପ୍ରକାଶିଲା କର୍ଣ୍ଣ ॥ ୫୯

ଦିଗ-ଦେବତାଙ୍କ ରକ୍ଷଣେ ।
ପ୍ରକାଶେ ଯେ ବାମେ ଦକ୍ଷିଣେ ॥ ୬୦
ବସ୍ତୁର କୋମଳ କଠିନ ।
ଲଘୁ କି ଅବା ଗୁରୁ ଗୁଣ ॥ ୬୧
ଶୀତଳ ଉଷ୍ଣ ଯେଣେ ଜାଣି ।
ପବନ ଯୋଗେ ପରିମାଣି ॥ ୬୨
ସେ ଚର୍ମଇନ୍ଦ୍ରିଗୁଣେ ଭଜି ।
ଉପରେ ବହେ ରୋମରାଜି ॥ ୬୩
ଅଶେଷକର୍ମ କରିବାରେ ।
ପ୍ରକାଶ ହୃଦୟ ଉପରେ ॥ ୬୪
ବାମ ଦକ୍ଷିଣ ବେନିକର ।
ଯହିଁ ରକ୍ଷକ ସୁନାସୀର ॥ ୬୫
ଦାନ ଆଦାନ କର୍ମ ଆଦି ।
ଅର୍ଥେ ସର୍ଜିଲା ବେଦବାଦୀ ॥ ୬୬
ସୁଗମଗତି ଚିନ୍ତି ପୁଣ ।
ବିଧାତା ସର୍ଜିଲା ଚରଣ ॥ ୬୭
ସେ ବାମ-ଦକ୍ଷିଣ-ପଦର ।
ରକ୍ଷକ ହେଲେ ଯଜ୍ଞେଶ୍ୱର ॥ ୬୮
ସମସ୍ତ ହବ୍ୟ-କବ୍ୟ-ବିଧି ।
ଚରଣଯୁଗ ବଳେ ସାଧି ॥ ୬୯
ବେନିଚରଣ ମୂଳଦେଶେ ।
ଆନନ୍ଦେ ଶିଶ୍ନ ପରକାଶେ ॥ ୭୦
ସନ୍ତାନ-ଉତ୍ପତ୍ତି କାରଣେ ।
ରକ୍ଷକ ପ୍ରଜାପତିଗଣେ ॥ ୭୧
ଉଭୟ ଆନନ୍ଦର ଦ୍ୱାର ।
ଅନଙ୍ଗତୁଲେ ନିଶାକର ॥ ୭୨
ଉତ୍ସର୍ଗ ଅର୍ଥେ ବେଦବର ।
ତପେ ସୃଜିଲା ମଳଦ୍ୱାର ॥ ୭୩
ମିତ୍ର-ଦେବତାର ବିଷୟ ।
ଉଭୟ ଉତ୍ସର୍ଗ-ଆଶ୍ରୟ ॥ ୭୪
ଦେହରୁ ଦେହାନ୍ତର ଗତି ।
ଇଚ୍ଛାରୁ ନାଭି ଉତପତ୍ତି ॥ ୭୫
ନାଭିରେ ପ୍ରାଣ ଯେ ଅପାନ ।
ବିଯୋଗେ ହୁଅଇ ମରଣ ॥ ୭୬
ଅନ୍ନ ଭୋଜନ ପାନ ସନ୍ଧେ ।
ନାଡ଼ି ସୃଜିଲା କୁକ୍ଷିମଧ୍ୟେ ॥ ୭୭

Dr. Sudhanshu Sekhar Mishra

ନାଡ଼ୀରେ ନଦୀ ତୃଷା ବସେ ।
ଅନ୍ତେ ସମୁଦ୍ର ରହେ ଗ୍ରାସେ ॥୭୮
ଉଭୟ ନିମିତ୍ତ ଏ ଦୁଇ ।
ଯେ ତୁଷ୍ଟି ପୁଷ୍ଟି ନାମ ବହି ॥୭୯
ଆତ୍ମମାୟାକୁ ଚିନ୍ତା କରି ।
ସତ୍ତ୍ୱେ ହୃଦୟ ରୂପ ଧରି ॥୮୦
କାମ ସଙ୍କଳ୍ପ ଚନ୍ଦ୍ର ମନ ।
ହୃଦୟ ଏହାଙ୍କର ସ୍ଥାନ ॥୮୧
ହୃଦୟ ଆବୋରିବା ଆଶେ ।
ଅସ୍ଥି ସର୍ଜିଲା ପୃଷ୍ଠଦେଶେ ॥୮୨
ଅସ୍ଥି ଭିତରେ ମଜ୍ଜା କଲା ।
ଉପରେ ମେଦ ଭିଆଇଲା ॥୮୩
ତାର ଉପରେ ମାଂସ ଧରି ।
ରୁଧିର ଆବରଣ କରି ॥୮୪
ତାର ଉପରେ ଚର୍ମ-ରୋମ ।
ମଜ୍ଜାର ମଧ୍ୟେ ରହେ ବ୍ୟୋମ ॥୮୫
ଏମନ୍ତ କରି ସପ୍ତଧାତୁ ।
ପ୍ରାଣୀଜୀବନ ମୂଳହେତୁ ॥୮୬
ବାସ୍ତରି ସହସ୍ର ଯେ ନାଡ଼ୀ ।
ହୃଦକମଳ ମଧ୍ୟେ ବେଢ଼ି ॥୮୭
ପ୍ରାଣ ରହଇ ତାଙ୍କ ମଧ୍ୟେ ।
ଅନ୍ତରେ ରସ-ମୂଳ ଭେଦେ ॥୮୮
ତ୍ରିଗୁଣାତ୍ମକ ଇନ୍ଦ୍ରିଗଣ ।
ଭୂତାଦି ପ୍ରଭବ ଯେ ଗୁଣ ॥୮୯
କଳ୍ପିତ ଅହଙ୍କାରେ ପୁଣ ।
ସର୍ବବିକାର ଆତ୍ମା ମନ ॥୯୦
ବୁଦ୍ଧି ବିଜ୍ଞାନ ସ୍ୱରୂପିଣୀ ।
ଯେଣେ ସଂସାରମାୟା ଜିଣି ॥୯୧
ଅବନୀ ଉଦକ ଅନଳ ।
ପବନ ଆକାଶ ମଣ୍ଡଳ ॥୯୨
ଏ ପଞ୍ଚଭୂତ କଳେବର ।
ବିଷ୍ଣୁର ଭଜନ-ମନ୍ଦିର ॥୯୩
ଏମନ୍ତେ କହିଲି ମୁଁ ତୋତେ ।
ବିଷ୍ଣୁର ସ୍ଥୂଳରୂପ ଯେତେ ॥୯୪
ଏ ଜୀବ ବ୍ରହ୍ମାଣ୍ଡ-ଧାରଣେ ।
ବେଷ୍ଟିତ ଅଷ୍ଟ-ଆବରଣେ ॥୯୫

ପୃଥିବୀ ଆଦି ପଞ୍ଚଭୂତ ।
ମନ ଅହଙ୍କାର ମହତ ॥୯୬
ଏ ଅଷ୍ଟଗୁଣେ ଆବରଣ ।
ଏମନ୍ତେ ବ୍ରହ୍ମାଣ୍ଡ-ଘଟଣ ॥୯୭
ଏ ସ୍ଥୂଳରୂପ ଯେ ତାହାର ।
ଏହା ଉପରେ ସୂକ୍ଷ୍ମତର ॥୯୮
ସେ ନିର୍ବିକାର ନିରଞ୍ଜନ ।
ଅନାଦି-ମଧ୍ୟମ-ନିଧନ ॥୯୯
ସେ ଶୂନ୍ୟମଧ୍ୟେ ନିରାକାର ।
ମନ-ବଚନ-ଅଗୋଚର ॥୧୦୦
ଏ ସ୍ଥୂଳ-ସୂକ୍ଷ୍ମ ରୂପ ଧରି ।
ଖେଳଇ ଆତ୍ମମାୟା କରି ॥୧୦୧
ପଣ୍ଡିତେ ନ ମାନନ୍ତି ଏହା ।
ସୃଷ୍ଟି-ସଂକଳ୍ପ ବିଷ୍ଣୁମାୟା ॥୧୦୨
ବାଚ୍ୟ-ବାଚକ ରୂପ ଧରି ।
ସେ ବ୍ରହ୍ମରୂପୀ ଅବତରି ॥୧୦୩
ସେ ରୂପ ନାମ କ୍ରିୟା ଧାତୁ ।
ଅକର୍ମା ହୋଇ କର୍ମହେତୁ ॥୧୦୪
ସର୍ବସଙ୍କଳ୍ପ କ୍ରିୟା ଅର୍ଥେ ।
ଶୁଣ କହିବା ଆର ଯେତେ ॥୧୦୫
ଆତ୍ମାଙ୍କୁ ଭିନ୍ନଭିନ୍ନ କରି ।
ସେ ପ୍ରଜାପତି ରୂପ ଧରି ॥୧୦୬
ମନୁଙ୍କୁ ସର୍ଜିଲା ସେ ହେଳେ ।
ଋଷି ଦେବତା ପିତୃମେଳେ ॥୧୦୭
ସିଦ୍ଧ ଚାରଣ ବିଦ୍ୟାଧର ।
ଗନ୍ଧର୍ବ ଗୁହ୍ୟକ ଅସୁର ॥୧୦୮
କିନ୍ନର ଅପସରା ଗଣ ।
ନାଗ କିଂପୁରୁଷ ଯେ ପୁଣ ॥୧୦୯
ଯକ୍ଷ ଉରଗ ମାତୃଗଣ ।
ପିଶାଚ ଭୂତ ପ୍ରେତମାନ ॥୧୧୦
କୁଷ୍ମାଣ୍ଡଗଣ ବିନାୟକ ।
ଉନ୍ମାଦ ବେତାଳ ଯେତେକ ॥୧୧୧
ଯେ ଯାତୁଧାନ ସରୀସୃପ ।
ଗ୍ରହ ମୃଗାଦି ଖଗ ରୂପ ॥୧୧୨
ବୃକ୍ଷ ପର୍ବତ ପଶୁଗଣ ।
ଏ ରୂପେ କଲେକ ସର୍ଜନ ॥୧୧୩

ଦ୍ୱିବିଧ ଚତୁର୍ବିଧ ଗଣେ ।
ଜଳେ ବା ସ୍ଥଳେ ବା ଗଗନେ ॥୧୧୪
ମିଶ୍ର କୁଶଳ ଅକୁଶଳ ।
ତିନି ପ୍ରକାରେ କର୍ମଫଳ ॥୧୧୫
ଏତେ ପ୍ରକାରେ କର୍ମଗତି ।
ଆତ୍ମାର ବଳେ ସେ ସର୍ଜନ୍ତି ॥୧୧୬
ଗୁଣ ପ୍ରଭେଦେ ତିନିଲୋକ ।
ଦେବ ଅସୁର ନରଲୋକ ॥୧୧୭
ସତ୍ତ୍ୱଗୁଣରୁ ଦେବ ହୋଇ ।
ମନୁଷ୍ୟ ରଜଗୁଣ ବହି ॥୧୧୮
ତମଗୁଣରୁ ଅଧୋଗତି ।
ପାପିଷ୍ଠେ ଯହିଁ ବିଶ୍ରାମନ୍ତି ॥୧୧୯
ସେ ତିନିଲୋକେ ତିନିଗତି ।
ଭାବେ ସୃଜିଲା ପ୍ରଜାପତି ॥୧୨୦
ସେ ଗୁଣ ଚିତ୍ରପ୍ରାୟ ହୋଇ ।
ସ୍ୱଭାବେ ଭିନ୍ନଭିନ୍ନ ଦେହୀ ॥୧୨୧
ଏକ ଆରକେ ନ ଗଣିଲେ ।
ନିଶ୍ଚଳେ ରହି ନ ପାରିଲେ ॥୧୨୨
ତା ଦେଖି ପ୍ରଭୁ ନରହରି ।
ତକ୍ଷଣେ ଧର୍ମରୂପ ଧରି ॥୧୨୩
ବିଶ୍ୱକୁ ପାଳିବାର ଅର୍ଥେ ।
ଦେବ ମନୁଷ୍ୟ ପଶୁ ଯେତେ ॥୧୨୪
ଏ ତିନିରୂପେ ଭଗବାନ ।
ରକ୍ଷା-ପୋଷଣେ କରି ସ୍ଥାନ ॥୧୨୫
ସୁଖ ସମ୍ପଦ ଭୋଗ ଦେଇ ।
ଯେ ବିଧି ସଂସାରେ ବଢ଼ାଇ ॥୧୨୬
ସୃଷ୍ଟିର ଭୋଗଅନ୍ତେ ହରି ।
କାଳାଗ୍ନି-ରୁଦ୍ରରୂପ ଧରି ॥୧୨୭
ଆତ୍ମାର କ୍ରୀଡ଼ା ନାଶ କରେ ।
ବାଳକ ଯେସନେ ବେଭାରେ॥୧୨୮
ସର୍ବ ହରଇ ଅବସାନେ ।
ଜୀମୂତ ଯେସନ ପବନେ ॥୧୨୯
ଏ ଭାବେ ହରିଗୁଣ ଯେତେ ।
ଦେବେ ଚିନ୍ତିବେ କାହିଁ ଚିତ୍ତେ॥୧୩୦
କେବଳ ଭାବେ ତାଙ୍କୁ ଜାଣି ।
ଶ୍ରୁତିବଚନେ ତା ପ୍ରମାଣି ॥୧୩୧

Dr. Sudhanshu Sekhar Mishra

ସୃଷ୍ଟିର ଜନ୍ମ ଆଦିକାଳେ ।
ଯେ କର୍ମସାଧେ ଯୋଗବଳେ ॥୧୩୨
ସ୍ୱଭାବେ କର୍ମ ଯାର ନାହିଁ ।
ମାୟାରେ ବିଶ୍ୱ ପ୍ରକାଶଇ ॥୧୩୩
ଏ ବ୍ରହ୍ମକଳ୍ପିତ ସଂସାର ।
ବିକଳ୍ପ ନାମଟି ଏହାର ॥୧୩୪
ଏ ନିତ୍ୟ ସାଧାରଣ ବିଧି ।
ଯେ ପୂର୍ବକଳ୍ପରୁ ପ୍ରସିଦ୍ଧି ॥୧୩୫
ପ୍ରାକୃତ ବୈକୃତ ସଂସାର ।
ମହତ-ସ୍ଥାନର ସଞ୍ଚାର ॥୧୩୬
ସଂକ୍ଷେପେ କହିଲଇଁ ତୋତେ ।
ତୁ ଯାହା ପଚାରିଲୁ ମୋତେ ॥୧୩୭
ଯେ କଳ୍ପ-ଲକ୍ଷଣ ଯେ ନାମ ।
ଯେ ବା କାଳର ପରିମାଣ ॥୧୩୮
ଭାବେ କହିବି କଳ୍ପଗୁଣ ।
ରାଜନ ସାବଧାନେ ଶୁଣ ॥୧୩୯
ଶୌନକ ଆଦି ମୁନିଗଣ ।
ସୂତଙ୍କୁ ପଚାରନ୍ତି ପୁଣ ॥୧୪୦

ଶୌନକ ଉବାଚ

ହେ ସୂତ ତୁମ୍ଭେ ଆମ୍ଭଆଗେ ।
ଯାହା କହିଲ ଆମ୍ଭମାର୍ଗେ ॥୧୪୧
ଦୁର୍ଯ୍ୟୋଧନର ଦୁଷ୍ଟବାଣୀ ।
ବିଦୁର ସଭାମଧ୍ୟେ ଶୁଣି ॥୧୪୨
କୁଟୁମ୍ବ ଆଶା ଦୂରକରି ।
ତୀର୍ଥସେବନ ମନେ ଧରି ॥୧୪୩
ପୃଥିବୀ କଲା ପର୍ଯ୍ୟଟନ ।
ବୁଲି ପର୍ବତ ଘୋରବନ ॥୧୪୪
କୈବଲ୍ୟ ଲାଭେ ଇଚ୍ଛାକଲା ।
ଅନେକ ତୀର୍ଥ ସେ ଭ୍ରମିଲା ॥୧୪୫
ମୈତ୍ରେୟ ମୁନି ସଙ୍ଗେ ତାର ।
କାହିଁ ହୋଇଲା ଏକସ୍ୱର ॥୧୪୬
ବ୍ରହ୍ମସମ୍ବାଦ ବେନିଜନେ ।
କରି ବଞ୍ଚିଲେ କେଉଁସ୍ଥାନେ ॥୧୪୭
ବିଦୁର ପଚାରିଲେ ଯେତେ ।
ମୈତ୍ରେୟ ବୋଧିଲେ ଯେମନ୍ତେ ॥୧୪୮
ସେ ବନ୍ଧୁତ୍ୟାଗୀ କି ନିମନ୍ତେ ।
ପୁଣି ମିଳିଲେ ଇନ୍ଦ୍ରପ୍ରସ୍ଥେ ॥୧୪୯
ହେ ସୂତ କହ ସର୍ବକଥା ।
ଯେଣେ ଛାଡ଼ିବ ଭବବ୍ୟଥା ॥୧୫୦
ପଦ୍ମକଳ୍ପର କଥା କହ ।
ଯେଣେ ନ ଲାଗେ ଭବମୋହ ॥୧୫୧
ଶୌନକ ପ୍ରଶ୍ନ ସୂତ ଶୁଣି ।
କହନ୍ତି ଶୁଣ ମହାମୁନି ॥୧୫୨

ସୂତ ଉବାଚ

ଯେ ପ୍ରଶ୍ନ କଲ ତୁମ୍ଭେ ମୋତେ ।
ଏ ପ୍ରଶ୍ନ ଶୁକଙ୍କ ଅଗ୍ରତେ ॥୧୫୩
ପୁଚ୍ଛିଲେ ରାଜା ପରୀକ୍ଷିତ ।
ମୈତ୍ରେୟ-ବିଦୁର ଚରିତ ॥୧୫୪
ପରୀକ୍ଷ-ବାକ୍ୟ ଚିତ୍ତେ ଘେନି ।
ଯାହା କହିଲେ ଶୁକମୁନି ॥୧୫୫
ସେ ପ୍ରଶ୍ନ ଅନୁସାରେ ଯେତେ ।
ଶୁଣ କହିବା ଭାଗବତେ ॥୧୫୬
ସୂତ-ଶଉନକ ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ॥୧୫୭
ଦ୍ୱିତୀୟସ୍କନ୍ଧେ ଭାଗବତ ।
ଅମୃତ-ରସମୟ-ଗୀତ ॥୧୫୮
ସୁଜନଜନଙ୍କର ହିତ ।
କହିଲା ଦାସ ଜଗନ୍ନାଥ ॥୧୫୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ଦ୍ୱିତୀୟସ୍କନ୍ଧେ
ଅଷ୍ଟାଦଶସାହସ୍ର୍ୟାଂ ସଂହିତାୟାଂ
ପୁରୁଷସଂସ୍ଥାନୁବର୍ଣ୍ଣନଂ
ନାମ ଦଶମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ତୃତୀୟ ସ୍କନ୍ଧ

Dr. Sudhanshu Sekhar Mishra

# ତୃତୀୟସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ
ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ
ତତୋଜୟମୁଦୀରୟେତ୍ ॥

## ପ୍ରଥମ ଅଧ୍ୟାୟ

ଶୌନକ ଆଦି ମୁନିଜନେ ।
ଆନନ୍ଦେ ସୂତ ସନ୍ନିଧାନେ ।୧
ବିଦୁର କଥା ମନେ ଚିନ୍ତି ।
ବିଶ୍ୱାସଭାବେ ପଚାରନ୍ତ ।୨

ଶୌନକ ଉବାଚ

ହେ ସୂତ ତୁମ୍ଭର ବଚନ ।
ଶୁଣି ସନ୍ତୋଷ ଆମ୍ଭମନ ।୩
ମହାତ୍ମା ବିଦୁରର ବାଣୀ ।
ଆମ୍ଭେ ତୁମ୍ଭର ମୁଖୁଁ ଶୁଣି ।୪
ହେଲେ ଛାଡ଼ିବୁ ଭବବ୍ୟଥା ।
ବିସ୍ତାରି କହ ତା'ର କଥା ।୫
ସର୍ବସମ୍ପଦ ଛାଡ଼ି ବନେ ।
କିପାଁ ପଶିଲା ଦୁଃଖ ମନେ ।୬
ଅନେକତୀର୍ଥେ ଦେଇ ମନ ।
ପୃଥିବୀ କଲା ପର୍ଯ୍ୟଟନ ।୭
ମୈତ୍ରେୟ ମୁନି ସଙ୍ଗେ ତା'ର ।
ଏକାନ୍ତେ ଅଧ୍ୟାତ୍ମ-ବିଚାର ।୮
କାହିଁ ବା ନଦୀ-ତୀର ବନେ ।
ସାନନ୍ଦେ ବସି ବେନିଜନେ ।୯
ସନ୍ତୋଷେ ବିଦୁରର ଆଗେ ।
ମୈତ୍ରେୟ ମୁନି ଅନୁରାଗେ ।୧୦
କହିଲେ ତତ୍ତ୍ୱସାର ବାଣୀ ।
ଯା' ଶୁଣି ଭବୁ ତରେ ପ୍ରାଣୀ ।୧୧
ସେ କଥା କହ ମୁନିବର ।
ବିଦୁର ବିଷ୍ଣୁ ଭକ୍ତସାର ।୧୨
ସେ ବନ୍ଧୁତ୍ୟାଗୀ କିବା ଅର୍ଥେ ।
ପୁଣି ମିଳିଲା ଇନ୍ଦ୍ରପ୍ରସ୍ଥେ ।୧୩

ଏମନ୍ତ ମୁନିଙ୍କର ବାଣୀ ।
ସୂତ ସନ୍ତୋଷମନେ ଶୁଣି ।୧୪
କହନ୍ତି ଶୌନକ ଆଗେ ।
କୃଷ୍ଣର ଭାବ ଅନୁରାଗେ ।୧୫
ଶୁଣ ହେ ମୁନିଗଣ ତୋଷେ ।
ଏ କଥା ଶୁକ୍ରମୁନି ପାଶେ ।୧୬
ଆନନ୍ଦେ ଅଭିମନ୍ୟୁ-ସୁତ ।
ପୁଚ୍ଛିଲା ବିଦୁରଚରିତ ।୧୭
ସେ ମୁନି କହିଲେ ଯେମନ୍ତେ ।
ସେ କଥା ଶୁଣ ଏକଚିତ୍ତେ ।୧୮

ଶୁକ ଉବାଚ

ଶୁକ ବୋଲନ୍ତି ଭାବଭରି ।
ଶୁଣ ପରୀକ୍ଷ ଦଣ୍ଡଧାରୀ ।୧୯
ସେ ଧୃତରାଷ୍ଟ୍ର ଯେତେବେଳେ ।
ନିଷ୍ଠୁର ହୀନ ବୁଦ୍ଧିବଳେ ।୨୦
ଅଧର୍ମେ ଧନ ସେ ସଞ୍ଚଇ ।
ନିଜ ସୁତଙ୍କୁ ଭୋଗ ଦେଇ ।୨୧
ପଣ୍ଡୁସୁତଙ୍କୁ ଦେଖେ ଭିନ୍ନେ ।
ନିନ୍ଦଇ ନିଷ୍ଠୁର-ବଚନେ ।୨୨
ବାଳକେ ପିତୃହୀନ ହୋଇ ।
ମାତାର ସଙ୍ଗେ ଦୁଃଖ ସହି ।୨୩
ହସ୍ତିନାପୁରେ ତା'ଙ୍କ ଘରେ ।
ବଞ୍ଚନ୍ତି ଅତି ଅବେଭାରେ ।୨୪
ତାହାଙ୍କ ମରଣ ଇଚ୍ଛଇ ।
ଭୀମକୁ ବିଷଲଡୁ ଦେଇ ।୨୫
ଜତୁର ଘରେ ଅଗ୍ନି ଦେଲା ।
ସେବେଳେ ଗୋବିନ୍ଦ ରଖିଲା ।୨୬

ପୁଣି ସଭାର ତଳେ ଆଣି ।
ପଞ୍ଚପାଣ୍ଡବଙ୍କ ରମଣୀ ।୨୭
କେଶ ଆକର୍ଷି ବାହୁବଳେ ।
ବିବସ୍ତ୍ର କଲେ ସଭାତଳେ ।୨୮
କୁଚ କୁଙ୍କୁମ ବହେ ଉରେ ।
ଅଧୋବଦନ ଅଶ୍ରୁଧାରେ ।୨୯
ବଧୂର ଦୁଃଖ ସେ ଶୁଣିଲା ।
ପୁତ୍ରଙ୍କୁ ବାରଣ ନ କଲା ।୩୦
ମାୟା କପଟପାଶା କରି ।
ଦ୍ୟୁତଖେଳାଇ ଧନହରି ।୩୧
ଛଳେ ହରିଲା ତା'ଙ୍କ ଦେଶ ।
କାନନେ ଦ୍ୱାଦଶବରଷ ।୩୨
ଅଜ୍ଞାତେ ଅଧିକ ବରଷେ ।
ବିରାଟ ରାଜ୍ୟେ ମତ୍ସ୍ୟଦେଶେ ।୩୩
ତହିଁ ବଞ୍ଚିଲେ ଦୁଃଖ-ସୁଖେ ।
ବନକଷଣ ଅତିରେକେ ।୩୪
ପୁଣି ମିଳିଲେ ରାଜ୍ୟେ ଆସି ।
ବିଶ୍ୱାସେ ରାଜା ପାଶେ ବସି ।୩୫
ଜୀବିକା ଅର୍ଥେ କିଛି ଧନ ।
ମାଗିଲେ ନ ଦେଲା ରାଜନ ।୩୬
ପୁଣି କୃଷ୍ଣଙ୍କୁ କରି ଦୂତ ।
ଗ୍ରାମ ମାଗିଲେ ପଣ୍ଡୁସୁତ ।୩୭
କୃଷ୍ଣର ବୋଲ ସେ ନ କଲା ।
ସୂଚୀ ଅଗ୍ରତେ ସେ ନ ଦେଲା ।୩୮
କୃଷ୍ଣଙ୍କୁ କରି ଅପମାନ ।
ଲୋଭେ ହୋଇଲା ହତଜ୍ଞାନ ।୩୯
ବିଦୁର ଆଣି ଏକାନ୍ତରେ ।
ବିଚାର କଲା ଅନ୍ତଃପୁରେ ।୪୦

Dr. Sudhanshu Sekhar Mishra

ପାଣ୍ଡବ ମାରି ନାନାମତେ ।
ରାଜା ହୋଇବ ସେ ନିଶ୍ଚିନ୍ତେ ।୪୧

ଶୁଣି ବିଦୁର କରଯୋଡ଼ି ।
ବୋଲଇ ରାଜାପାଦେ ପଡ଼ି ।୪୨

ବିଦୁର ଉବାଚ

ଅସହ୍ୟ ଅପରାଧ ତୋ'ର ।
କେତେ ସହିଛି ଯୁଧିଷ୍ଠିର ।୪୩

ତାହାଙ୍କୁ ଅର୍ଦ୍ଧରାଜ୍ୟ ଦେଇ ।
ପୁତ୍ରଙ୍କ ତୁଲେ ଭୁଞ୍ଜ ମହୀ ।୪୪

ନୋହିଲେ ସୁଖ ନାହିଁ ତୋ'ର ।
ସେ ବିଷ୍ଣୁତେଜେ ବଳୀୟାର ।୪୫

ଶ୍ରୀହରି ତା'ଙ୍କୁ ସଙ୍ଗେ ଘେନି ।
ଉଶ୍ବାସ କରିବେ ମେଦିନୀ ।୪୬

ସେ ହରି ଥାଇ ନିଜପୁରେ ।
ପାଣ୍ଡବବଂଶ ପକ୍ଷ ଧରେ ।୪୭

ସେ କୃଷ୍ଣ ଆସି ତୋ'ର ପୁରେ ।
ମିଳିଲେ ବାନ୍ଧବ-ବେଭାରେ ।।୪୮

ତା'ଙ୍କୁ ଇତର ପ୍ରାୟ ମଣି ।
ଜ୍ଞାନ ହାରିଲୁ ନୃପମଣି ।।୪୯

ତା'ର ମହିମା ତୁ ନ ଜାଣୁ ।
ମନୁଷ୍ୟ ପ୍ରାୟ ପରିମାଣୁ ।।୫୦

ଏ ପୁତ୍ର ଆସି ତୋ'ର ପୁରୀ ।
ବସିଲା ଦୋଷରୂପ ଧରି ।।୫୧

ତା'ଙ୍କୁ ତୁ ପୁତ୍ରପ୍ରାୟ ମଣୁ ।
କୁଳ କୁଶଳ ନ ପ୍ରମାଣୁ ।।୫୨

ଶ୍ରୀକୃଷ୍ଣେ ଭକତି ନ କରି ।
ତୁହି ହୋଇଲୁ ହତଶିରୀ ।।୫୩

କୁଳ-କୁଶଳେ ଯେବେ ମନ ।
ତେଜ ଅଶୁଭ ଦୁର୍ଯ୍ୟୋଧନ ।।୫୪

ଏମନ୍ତ ବିଦୁରର ବାଣୀ ।
ସକ୍ରୋଧ ଦୁର୍ଯ୍ୟୋଧନ ଶୁଣି ।।୫୫

ସଙ୍ଗେ ଅଛନ୍ତି ତିନିଜଣ ।
କର୍ଣ୍ଣ ଶକୁନି ଦୁଃଶାସନ ।।୫୬

ବୋଲଇ ସ୍ଫୁରିତ ଅଧରେ ।
ଆକର୍ଷି ଦୁଃଶାସନ କରେ ।।୫୭

ଏ ଦାସୀପୁତ୍ର ମୋର ଘରେ ।
ବସଇ ବାନ୍ଧବ-ବେଭାରେ ।।୫୮

ଏ ମୋର ନିତ୍ୟେ ଅନ୍ନ ଖାଇ ।
ପଣ୍ଡୁପୁତ୍ରଙ୍କ ହିତେ ଥାଇ ।।୫୯

କୃଷ୍ଣଙ୍କୁ ଘେନି ଭାଳେ ନିତ୍ୟେ ।
ମୋର ବିନାଶ ଚିତ୍ତେ ଚିନ୍ତେ ।।୬୦

ଏମନ୍ତ କୁଟିଳ ଲୋକକୁ ।
କେ ଅବା ଡାକିଲା ଏଠାକୁ ।।୬୧

ଏମନ୍ତ ବୋଲି ବିଚାରିଲା ।
କୋପେ ଅନେକ ଗାଳିଦେଲା ।।୬୨

ଦଶନେ କାମୋଡ଼ି ଅଧର ।
ବୋଲେ ଭଣ୍ଡାର କର କ୍ରୂର ।।୬୩

ଏହାକୁ ଦଣ୍ଡେହେଁ ନ ଥୁଅ ।
ରାଜ୍ୟୁ ବାହାର କରିଦିଅ ।।୬୪

ଏମନ୍ତ ତା'ର ବାକ୍ୟ ଶୁଣି ।
ବଜ୍ର ପଡ଼ିଲା ପ୍ରାୟ ମଣି ।।୬୫

ମରମ-ଉଚ୍ଚାଟ ବଚନ ।
ଶୁଣି ହୋଇଲା ହତଜ୍ଞାନ ।।୬୬

ଜ୍ୟେଷ୍ଠଭ୍ରାତାର ତୁଲେ ଥିଲା ।
ରାଜା ହିଁ ଆଶ୍ୱାସ ନ କଲା ।।୬୭

ତକ୍ଷଣେ ଉଠି ସେ ବିଦୁର ।
ଚିତ୍ତେ ଚିନ୍ତଇ ଚକ୍ରଧର ।।୬୮

ବିଷ୍ଣୁର ମାୟା ବିଚାରିଲା ।
ତକ୍ଷଣେ ବନସ୍ତେ ପଶିଲା ।।୬୯

ସମ୍ପଦ ତୁଚ୍ଛପ୍ରାୟ ମଣି ।
ମନେ ଚିନ୍ତଇ ଚକ୍ରପାଣି ।।୭୦

ହସ୍ତିନା ନଗରୁ ବାହାର ।
ତୀର୍ଥଗମନେ ଆଗୁସାର ।।୭୧

ମିଳିଲା ଯାଇ ଘୋରବନେ ।
ଭ୍ରମଇ ଋଷି-ବିପ୍ରସ୍ଥାନେ ।।୭୨

ମନେ ଚିନ୍ତଇ ତୀର୍ଥଗତି ।
ହରିଭକତ ଯହିଁ ଥା'ନ୍ତି ।।୭୩

ନିରାଶ କରି ଆତ୍ମମନ ।
ଗ୍ରାମ ପାଟଣା ଉପବନ ।।୭୪

ସୁପୁଣ୍ୟଗିରି-କୁଞ୍ଜଦେଶେ ।
ଭ୍ରମଇ ତୀର୍ଥ ଅଭିଳାଷେ ।।୭୫

ପୁଣ୍ୟସରିତ ପୁଣ୍ୟସର ।
ନିରତେ ଭ୍ରମଇ ବିଦୁର ।।୭୬

ଅନନ୍ତ ସିଦ୍ଧଲିଙ୍ଗେ ଯହିଁ ।
ଶୁଦ୍ଧ ପବିତ୍ର ପୁଣ୍ୟଭୂଇଁ ।।୭୭

ଏମନ୍ତେ ଅବଧୂତ ବେଶେ ।
ବିଦୁର ଭ୍ରମେ ପୁଣ୍ୟଦେଶେ ।।୭୮

ହରିତୋଷଣ ବ୍ରତ ଯେତେ ।
ତୀର୍ଥେ ସେବଇ ଅବିରତେ ।।୭୯

ଏମନ୍ତେ ଭାରତବରଷେ ।
କାଳେ ମିଳିଲା ସେ ପ୍ରଭାସେ ।।୮୦

ତହିଁ ଶୁଣିଲା ସାଧୁବାଣୀ ।
ପାଣ୍ଡବେ କୁରୁବଳ ଜିଣି ।।୮୧

କୃଷ୍ଣ ସାରଥିପଣେ ବରି ।
ଅନେକ ଅକ୍ଷୌହିଣୀ ମାରି ।।୮୨

ଗୋବିନ୍ଦ ଘେନି ତୀର୍ଥଜଳେ ।
ମଙ୍ଗଳ ଶୁଭ ଅନୁକୂଳେ ।।୮୩

କରାଇ ଅଭିଷେକ ପୂଜା ।
ଏକାଙ୍ଗଚକ୍ରେ କଲେ ରାଜା ।।୮୪

ସର୍ବେ ନଶିଲେ କୁରୁବଳେ ।
ଯେସନେ ବେଣୁ ଦାବାନଳେ ।।୮୫

କୁଟୁମ୍ବବଧେ ଶୋକକରି ।
ସ୍ୱଜନ ବାନ୍ଧବ ସୁମରି ।।୮୬

ମଉନ ହୋଇ ଅଶ୍ରୁକଣ୍ଠେ ।
ମିଳିଲା ସରସ୍ୱତୀତଟେ ।।୮୭

ଯାହାର ତୀରେ ଏକାଦଶ ।
ତୀର୍ଥେ ବସନ୍ତି ପୁଣ୍ୟଯଶ ।।୮୮

ତ୍ରିତ ଉଶନା ମନୁ ନାମ ।
ପୃଥୁ ଅନଳ ଯେ ପବନ ।।୮୯

ସୁଦାସ ଗାବ ଗୁହ ଯମ ।
ଅସିତ ଏକାଦଶ ନାମ ।।୯୦

ଏତେ ମନ୍ଦିର ବିଷ୍ଣୁ ଅର୍ଥେ ।
ତୀରେ ସଞ୍ଚିଲେ ଯେଝାମତେ ।।୯୧

ଋଷି ଦେବତା ଆଦି ଯେତେ ।
ତୀର୍ଥେ ସେବନ୍ତି ଦୃଢ଼ଚିତ୍ତେ ।।୯୨

ପ୍ରତ୍ୟଙ୍ଗମୁଖ୍ୟାଙ୍କିତ ଘର ।
ଦିଶନ୍ତି ଅତି ମନୋହର ।।୯୩

Dr. Sudhanshu Sekhar Mishra

ଯେ ପୁର ଦରଶନ ମାତ୍ରେ ।
ବିଷ୍ଣୁସ୍ମରଣ ପଶେ ଗାତ୍ରେ ॥୯୪

ଏମନ୍ତ ସରସ୍ୱତୀତୀର୍ଥ ।
ଦେଖି ବିଦୁର କୃତକୃତ୍ୟ ॥୯୫

ତହୁଁ ଚଳିଲା ତୋଷମନେ ।
ସୌରାଷ୍ଟ୍ର ସୌବୀର ବିପିନେ ॥୯୬

କୁରୁ ଜାଙ୍ଗଳ ମତ୍ସ୍ୟଦେଶ ।
ଜିଣି ଯମୁନା ପରବେଶ ॥୯୭

କାଳିନ୍ଦୀତୀରେ ବୃନ୍ଦାବନ ।
ଯହିଁ ବିରାଜେ ଗୋବର୍ଦ୍ଧନ ॥୯୮

ସେ ବନେ ବୁଲେ ଏକେ ଏକେ ।
ନିଶ୍ଚଳେ ଉଦ୍ଧବଙ୍କୁ ଦେଖେ ॥୯୯

ହରି-ଭକତଙ୍କର ସାର ।
ତପ ଆଚରି ମହାଘୋର ॥୧୦୦

ଆସନ ନିଶ୍ଚଳ ସମାଧି ।
ଶ୍ରୀକୃଷ୍ଣ-ଚରଣେ ଆରାଧି ॥୧୦୧

ଏକାନ୍ତେ ଅଛି ବୃକ୍ଷମୂଳେ ।
ବିଦୁର ଦେଖେ ବେନିଡୋଳେ ॥୧୦୨

ସେ ବାସୁଦେବ ଅନୁଚର ।
କି ଅବା ଦେବା ପଟାନ୍ତର ॥୧୦୩

ଦେବଗୁରୁଙ୍କ ଶିଷ୍ୟ ସ୍ନେହେ ।
ସ୍ୱଭାବେ ମନ୍ତ୍ରୀବୁଦ୍ଧି ବହେ ॥୧୦୪

ଏମନ୍ତେ ମିଳି ବେନିଜନ ।
ନିବିଡ଼େ କଲେ ଆଲିଙ୍ଗନ ॥୧୦୫

ବିଦୁର ଉଦ୍ଧବଙ୍କୁ ଚାହିଁ ।
ବନ୍ଧୁବାନ୍ଧବ ସ୍ନେହ ବହି ॥୧୦୬

ରୋମହରଷେ ଶୁଦ୍ଧଚେତା ।
ପୁଛଇ କୃଷ୍ଣର ବାରତା ॥୧୦୭

କୃଷ୍ଣପୁତ୍ରଙ୍କୁ ଆଦି କରି ।
ଏକ ଆରେକ ନାମ ଧରି ॥୧୦୮

ବିଦୁର ଉବାଚ

ଶୁଣ ଉଦ୍ଧବ ମୋ' ବଚନ ।
ମୁଁ ଯେ ପୁଛଇ ବନ୍ଧୁଜନ ॥୧୦୯

ଯେ ହରି ପୁରୁଷ-ପୁରାଣ ।
ଅନାଦି-ପରମ-କାରଣ ॥୧୧୦

ଧରଣୀଭାରା ନାଶ ଅର୍ଥେ ।
ମନୁଷ୍ୟ ଦେହେ ଏ ଜଗତେ ॥୧୧୧

ରାମ ଗୋବିନ୍ଦ ରୂପ ଧରି ।
ଯାଦବବଂଶେ ଅବତରି ॥୧୧୨

ଅଛନ୍ତି ବସୁଦେବ ଘରେ ।
ଆନନ୍ଦେ ବେନି ସହୋଦରେ ॥୧୧୩

ଆମ୍ଭର ବଂଶେ ଅଧିଦେବ ।
ଦେବକୀ ତୁଲେ ବସୁଦେବ ॥୧୧୪

ସୁଖେ କି ଛନ୍ତି ନିଜପୁରେ ।
ବନ୍ଧୁ-ସୁହୃଦ-ଭାବଭରେ ॥୧୧୫

ପ୍ରଦ୍ୟୁମ୍ନ ଅଛଇ ନା ଭଲେ ।
ଆନନ୍ଦେ ଜନନୀର ତୁଲେ ॥୧୧୬

ରୁକ୍ମିଣୀ ପୂର୍ବ-ତପଫଳେ ।
ପୁତ୍ର ପ୍ରଦ୍ୟୁମ୍ନ କଲା କୋଳେ ॥୧୧୭

ଭୋଜାଦି ସାତବଂଶ ରାଜା ।
ଗୋବିନ୍ଦ ଯାକୁ କଲେ ପୂଜା ॥୧୧୮

ଛାଡ଼ି ଆପଣା ନୃପାସନ ।
ରାଜ୍ୟେ ସ୍ଥାପିଲେ ଉଗ୍ରସେନ ॥୧୧୯

ତୀର୍ଥଉଦକ ସିଞ୍ଚି ଶିରେ ।
ସେ ସୁଖେ ଅଛିଟି କି ପୁରେ ॥୧୨୦

ଭଲେ କି ଜାମ୍ବବତୀସୁତ ।
ଯେ ରଥୀ ମଧ୍ୟେ ମହାରଥ ॥୧୨୧

କୃଷ୍ଣର ସଦୃଶ ଯେ ହୋଇ ।
ପୂର୍ବେ ଅମ୍ବିକା ଗର୍ଭେ ଥାଇ ॥୧୨୨

ଯାହାକୁ ଜାମ୍ବବତୀ ଦେବୀ ।
ପାଇଲା ନାନାବ୍ରତ ସେବି ॥୧୨୩

କ୍ଷେମେ କି ଅଛି ଯୁଯୁଧାନ ।
ଯାହାକୁ ସନ୍ତୋଷ ଅର୍ଜ୍ଜୁନ ॥୧୨୪

ରହସ୍ୟ-ଧନୁର୍ବେଦ ଦେଲା ।
ଯେ ପୁଣି କୃଷ୍ଣ ଆରାଧିଲା ॥୧୨୫

ସୁଖେ ହୋଇଲା ଗତି ତା'ର ।
ଯେ ଯୋଗୀଜନେ ଅଗୋଚର ॥୧୨୬

ଶ୍ୱଫଲ୍କ ସୁତ ଯଶସ୍କର ।
ଶୁଭେ କି ଅଛଇ ଅକ୍ରୂର ॥୧୨୭

କଂସ ଆଦେଶେ ଗୋପପୁରେ ।
ଲଭିଲା କୃଷ୍ଣରେଣୁ ଶିରେ ॥୧୨୮

ଭଲେ କି ଅଛଇ ଦେବକୀ ।
ଯେ ଗର୍ଭେ ଧଇଲା ହରିଙ୍କି ॥୧୨୯

ଅଶେଷ ମନୋରଥ ବୋଧ ।
ଭଲେ କି ଅଛି ଅନିରୁଦ୍ଧ ॥୧୩୦

ଯା'ର ମହିମା ଶବ୍ଦଯୋନି ।
ତୁରୀୟତତ୍ତ୍ୱ ସଙ୍ଗେ ମାନି ॥୧୩୧

ସତ୍ୟଭାମାର ସୁତ ଯେତେ ।
ଭଲେ କି ଅଛନ୍ତି ସମସ୍ତେ ॥୧୩୨

ଗଦର କହ ଭଲ କଥା ।
ଯେ ଅନ୍ୟ ଯାଦବ ବାରତା ॥୧୩୩

ଏକାନ୍ତେ କୃଷ୍ଣର ପୟରେ ।
ସେବନ୍ତି ସବୁ ପରକାରେ ॥୧୩୪

ଧର୍ମେ କି ଅଛି ଯୁଧିଷ୍ଠିର ।
ଯେ ଧର୍ମେ ରଖିଲା ସଂସାର ॥୧୩୫

ଯାହାର ବାହୁପ୍ରାୟ ହୋଇ ।
କୃଷ୍ଣ ଅର୍ଜ୍ଜୁନ ବେନି ଥାଇ ॥୧୩୬

ଭୀମର କହ ଭଲ କଥା ।
ଯେ ଭୀମ ଅତି ବଳବନ୍ତା ॥୧୩୭

ଯା'ର ଚରଣ-ଘାତ କୋପେ ।
ଦୁର୍ଜ୍ଜୟ-ରଣଭୂମି କମ୍ପେ ॥୧୩୮

ଅର୍ଜ୍ଜୁନ ଅଛିଟି କି ଭଲେ ।
ନିରତେ ଗୋବିନ୍ଦର ତୁଲେ ॥୧୩୯

ଗାଣ୍ଡୀବଧନୁ କରେ ଧରି ।
ରଣେ ତୋଷିଲା ଶୂଳଧାରୀ ॥୧୪୦

ନକୁଳ ସହଦେବ ବେନି ।
କୁଶଳ କହ ପରିମାଣି ॥୧୪୧

ଅଶ୍ୱିନୀ ନାସିକା-ବିବରେ ।
ଜନ୍ମ ହୋଇଲେ ଯେ ଶରୀରେ ॥୧୪୨

କେ କହୁ ତା'ଙ୍କ ଗୁଣଗ୍ରାମ ।
ଦେବଙ୍କ ବ୍ୟାଧି ହରେ ନାମ ॥୧୪୩

ତାହାଙ୍କ ବୀର୍ଯ୍ୟେ ଜାତ ହୋଇ ।
ସୁନ୍ଦର ରୂପେ ଜନ ମୋହି ॥୧୪୪

ପାଣ୍ଡବ-ଚକ୍ଷୁ ସେ ବୋଲାନ୍ତି ।
କହ କୁଶଳେ କି ଅଛନ୍ତି ॥୧୪୫

ଦେଖ ଏ କୁନ୍ତୀ ଗର୍ଭଅର୍ଥେ ।
ସ୍ୱାମୀକୁ ଚିନ୍ତେ ଅବିରତେ ॥୧୪୬

Dr. Sudhanshu Sekhar Mishra

ସ୍ୱ-ସ୍ୱାମୀ ବିନୁ ସୁତ ଲଭେ ।
ଯା' ନାମ ଚନ୍ଦ୍ରଦିଗେ ଶୁଭେ ॥୧୪୭
ତାହାଙ୍କୁ ଛାଡ଼ି ଭୋଗ ବିନେ ।
ରହିଲା ପୁତ୍ରସ୍ନେହ ମନେ ॥୧୪୮
ଶୁଣ ଉଦ୍ଧବ ସାଧୁ ଧୀର ।
ଧୃତରାଷ୍ଟ୍ରର ଯେ ବେଭାର ॥୧୪୯
ସେ ପିତୃହୀନ ପଞ୍ଚପୁତ୍ରେ ।
ତା'ଙ୍କ ମରଣ ଚିତ୍ତେ ଚିନ୍ତେ ॥୧୫୦
ପୁତ୍ରଙ୍କ ତୁଲେ ତା' ବିଚାର ।
ମୁଁ ପ୍ରିୟ ସୁହୃଦ ତାହାର ॥୧୫୧
ପୁରୁ ବାହାର କରିଦେଲା ।
ଚିତ୍ତେ ତା' ଦୟା ନ ବସିଲା ॥୧୫୨
ଏଣୁ ପଡ଼ିବ ତମଘୋର ।
ଜୀବନେ ଚିନ୍ତା ତା'ଙ୍କୁ ମୋର ॥୧୫୩
ଯେ କୃଷ୍ଣ ପରମ-ମଙ୍ଗଳ ।
ଆନନ୍ଦମାନଙ୍କର ମୂଳ ॥୧୫୪
ସେ ହରି ମନୁଷ୍ୟ-ଶରୀରେ ।
ସାକ୍ଷାତେ ସଂସାରେ ବିହରେ ॥୧୫୫

ତା'ର ପ୍ରସାଦୁ ତା' ମହାତ୍ମ୍ୟ ।
ଜାଣି ଛାଡ଼ିଲି ସର୍ବ ଭ୍ରମ ॥୧୫୬
ତା'ର ଚରଣ ଧ୍ୟାନ କରି ।
ମୁଁ ଏବେ କାନନେ ବିହରି ॥୧୫୭
ଦେଖ ଉଦ୍ଧବ ତା' ମହିମା ।
କେ କହିପାରେ ଗୁଣସୀମା ॥୧୫୮
ଯେ ଯେତେ ଥିଲେ ମହୀପାଳେ ।
ଅନେକ ଅକ୍ଷୌହିଣୀ ମେଳେ ॥୧୫୯
ତାହାଙ୍କୁ ମାୟାରେ ସଂହାରି ।
ହେଲେ ତ୍ରିଭୁବନ ଉଦ୍ଧରି ॥୧୬୦
ପ୍ରପନ୍ନଜନ ଦୁଃଖ ନାଶ. ।
ଅର୍ଥେ କ୍ଷଣକେ ପୀତବାସ ॥୧୬୧
ପାରନ୍ତି କ୍ରୁରଙ୍କୁ ସଂହାରି ।
ସହିଲେ ଦୋଷ କ୍ଷମା କରି ॥୧୬୨
ସେ ଗୁଣାତୀତ ଅଜ ହରି ।
ଖଳନାଶନେ ଅବତରି ॥୧୬୩
ଅଖିଳଲୋକଙ୍କୁ କୁଶଳେ ।
ଯେ ଦେହବନ୍ତ ଯଦୁକୁଳେ ॥୧୬୪

ଯାହାର ଆଜ୍ଞାରେ ସଂସାର ।
ତୀର୍ଥର ପ୍ରାୟେ କୀର୍ତ୍ତି ଯା'ର ॥୧୬୫
ସେ ହରି ଶୁଭକଥା ମୋତେ ।
କହ ଉଦ୍ଧବ ଶୁଦ୍ଧଚିତ୍ତେ ॥୧୬୬
ଏମନ୍ତେ ବିଦୁରର ବାଣୀ ।
ଉଦ୍ଧବ ମନେ ପରିମାଣି ॥୧୬୭
ଚିତ୍ତେ ଚିନ୍ତିଲା ନାରାୟଣ ।
ସୁଜନେ ଏକମନେ ଶୁଣ ॥୧୬୮
ହରିଚରିତ ସୁଧାରସ ।
କହିଲା ଜଗନ୍ନାଥ ଦାସ ॥୧୬୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ବିଦୁର-ଉଦ୍ଧବ ସମ୍ବାଦେ
ଦ୍ୱିତୀୟୋଽଧ୍ୟାୟଃ ॥

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ଏମନ୍ତେ ବିଦୁରର ବଚନ ।
ଶୁଣି ଉଦ୍ଧବ ହତଜ୍ଞାନ ।।୧
କୃଷ୍ଣ-ଚରଣେ ଚିତ୍ତଦେଇ ।
ଉତ୍କଣ୍ଠେ ନ ପାରଇ କହି ।।୨
ପାଞ୍ଚବରଷେ ତା'ର ମାତ ।
ପ୍ରାତଃ ଭୋଜନେ ଡାକେ ସୁତ ।।୩
କୃଷ୍ଣସେବାରେ ଦେଇମନ ।
ଉଦ୍ଧବ ନ କରେ ଭୋଜନ ।।୪
କୃଷ୍ଣସେବାରେ ଦିନ ଗଲା ।
ସ୍ୱଭାବେ ବୟସ ସରିଲା ।।୫
ବିଦୁରବାକ୍ୟ ଶୁଣି କର୍ଣ୍ଣେ ।
ବଚନ ନ ସ୍ଫୁରେ ବଦନେ ।।୬
କୃଷ୍ଣଚରଣେ ଦେଇ ମନ ।
ମୁହୂର୍ତ୍ତେ ରହିଲା ମଉନ ।।୭

ତତ୍କ୍ଷଣେ ଦେହଭାବ ଛାଡ଼ି ।
କୃଷ୍ଣଭକତି ଜଳେ ବୁଡ଼ି ।।୮
କୃଷ୍ଣଚରଣ-ସୁଧା-ପାନ ।
କରି ପାଇଲା ଦିବ୍ୟଜ୍ଞାନ ।।୯
ପୁଲକ ହେଲା ରୋମରାଜି ।
ଅଶ୍ରୁ ମୁଞ୍ଚଇ ଚକ୍ଷୁବୁଜି ।।୧୦
ଧ୍ୟାନେ ହୋଇଲା ପୂର୍ଣ୍ଣକାମ ।
ସ୍ନେହ-ସଲିଳେ କଲା ସ୍ନାନ ।।୧୧
ଧ୍ୟାନ ଛଡ଼ାଇ କୃଷ୍ଣପାଦେ ।
ପୁଣି ମିଳିଲା ଦେହମଧ୍ୟେ ।।୧୨
ବେନିଲୋଚନ ଘଷି କରେ ।
ନିଃଶ୍ୱାସ ଛାଡ଼ି ଖରତରେ ।।୧୩
ବିଦୁର ମୁଖ ଚାହିଁ ଦୁଃଖେ ।
ଉଦ୍ଧବ କହେ ଅଶ୍ରୁମୁଖେ ।।୧୪

ଉଦ୍ଧବ ଉବାଚ

ଯାଦବ ମଧ୍ୟେ କୃଷ୍ଣ ଥାଇ ।
ସୂର୍ଯ୍ୟର ପ୍ରାୟ ପ୍ରକାଶଇ ।।୧୫
ସେ ସୂର୍ଯ୍ୟ ଅସ୍ତାଚଳେ ଗଲା ।
ନିବିଡ଼ତମ ପ୍ରକାଶିଲା ।।୧୬
ମୁଁ ଏବେ ଅତିଦୁଃଖ-ଶୋକେ ।
ପଡ଼ିଛି ଅଜଗର-ମୁଖେ ।।୧୭
ଆମ୍ଭ କୁଶଳ କାହିଁ ଆର ।
କହିବି ଶୁଣ ହେ ବିଦୁର ।।୧୮
ସଂସାର ମଧ୍ୟେ ଯେତେଜନ ।
ସର୍ବେ ହୋଇଲେ ଭାଗ୍ୟହୀନ ।।୧୯
ଦେଖ ଅଭାଗ୍ୟ ଯଦୁବଂଶ ।
ବାଳକ ପ୍ରାୟ ବୁଦ୍ଧିଭ୍ରଂଶ ।।୨୦
ବସନ୍ତି କୃଷ୍ଣ ଅଙ୍ଗସଙ୍ଗେ ।
ରାତ୍ରିଦିବସ ଅନୁରାଗେ ।।୨୧

Dr. Sudhanshu Sekhar Mishra

ତାହାଙ୍କୁ କେହି ନ ଜାଣିଲେ ।
ଚନ୍ଦ୍ରକୁ ମୀନ ଯେହ୍ନେ ଜଳେ ।।୨୨
ଯାଦବେ କୃଷ୍ଣ ସଙ୍ଗମେଳେ ।
ଦିନ ହରନ୍ତି କୁତୂହଳେ ।।୨୩
ସଙ୍ଗତେ ପାଇ ନରହରି ।
ଦେଖନ୍ତି ଅନାଦର କରି ।।୨୪
ଅତି ନିପୁଣ ସେ ଅଟନ୍ତି ।
ଜ୍ଞାନୀ ହେଲେହେଁ ନ ଜାଣନ୍ତି ।।୨୪
ଯା'ର ମାୟାରେ ଅନ୍ୟଜନେ ।
ବଇରୀଭାବ ଚିନ୍ତିମନେ ।।୨୬
କୃଷ୍ଣର ମାୟାବଳେ ଗ୍ରନ୍ଥି ।
ମନୁଷ୍ୟ ପ୍ରାୟ ସେ ମଣନ୍ତି ।।୨୭
ପ୍ରାଣୀଙ୍କ ତପୋବଳ ଚାହିଁ ।
ନୟନେ ଶରୀର ଦେଖାଇ ।।୨୮
ପୁଣି ହରିଲେ ନିଜ ଅଙ୍ଗ ।
ପ୍ରାଣୀଙ୍କ ଚକ୍ଷୁ ଘେନି ସଙ୍ଗ ।।୨୯
ମାୟା ମନୁଷ୍ୟ ରୂପେ ହରି ।
ଅନନ୍ତ ଲୀଳାଏ ବିହରି ।।୩୦
ସର୍ବସମ୍ପଦ ଆତ୍ମାତୁଲେ ।
ନିଜ ଭୁବନେ ବିଜେକଲେ ।।୩୧
ଧର୍ମକୁମର ଯଜ୍ଞକାଳେ ।
ଦେବ-ମନୁଷ୍ୟ-ଋଷିମେଳେ ।।୩୨
ଯେ ରୂପ ଦେଖି ତୋଷମନେ ।
କୈବଲ୍ୟ ଲଭିଲେ ଲୋଚନେ ।।୩୩
ବ୍ରହ୍ମା ସର୍ଜନା ଯେଣୁ ନୋହି ।
ତେଣୁ ସକଳ ମନମୋହି ।।୩୪
ଯେ କୃଷ୍ଣ-ଅନୁରାଗ-ମୁଖି ।
ସୁନ୍ଦର-ହାସ-ରଙ୍ଗରେଖି ।।୩୫
ତେଣେ ମୋହିତ ଚିତ୍ତ ଧରି ।
ମୋକ୍ଷ ଲଭିଲେ ବ୍ରଜନାରୀ ।।୩୬
ସେ ଶାନ୍ତରୂପ ଏକରୂପୀ ।
ବସଇ ସର୍ବଭୂତେ ବ୍ୟାପୀ ।।୩୭
ତା'ର ବିଭୂତି ଦେବଗଣ ।
ପୂଜନ୍ତି ତାହାର ଚରଣ ।।୩୮
ଦେବଙ୍କ ଅର୍ଥେ ସେ ମୁରାରି ।
ଜନ୍ମଇ ନାନାରୂପ ଧରି ।।୩୯

ସ୍ୱଭାବେ ଜନ୍ମ ଯା'ର ନାହିଁ ।
ନିମିତ୍ତ ଅର୍ଥେ କଲେ ଦେହୀ ।।୪୦
ଅଗ୍ନି ଯେସନେ ନାନାମତେ ।
ଯତନେ ଜଳଇ ଜଗତେ ।।୪୧
ଏ କଥା ମୋରେ ଖେଦକରେ ।
ସେ ଜନ୍ମି ବସୁଦେବ ଘରେ ।।୪୨
କଂସର ଡରେ ଗୋପମେଳେ ।
ଲୁଚି ଯେ ଥିଲେ ବାଳକାଳେ ।।୪୩
ତହୁଁ ମଥୁରାପୁରେ ଆସି ।
ଗଜ ଚାଣୂର କଂସ ନାଶି ।।୪୪
ଯାଇଣ ମାତାପିତା ପାଶ ।
ବୋଇଲେ କ୍ଷମା କରଦୋଷ ।।୪୫
ତୁମ୍ଭଙ୍କୁ ନିଶ୍ଚିନ୍ତ ନ କରି ।
ବିଅର୍ଥେ ବଞ୍ଚେ ଦେହଧରି ।।୪୬
ସେ କଥା ବିଡ଼ମ୍ବନ ମୋତେ ।
ହୃଦୟ ଦହେ ଅବିରତେ ।।୪୭
ତା'ର ଚରଣରେଣୁ ଗନ୍ଧ ।
ଆଘ୍ରାଣ କରି ନାସାରନ୍ଧ୍ର ।।୪୮
କେ ତା' ପାଶୋରିପାରେ ଚିତ୍ତେ ।
ସୁଦୃଢ଼-ଯୋଗାଭ୍ୟାସେ ନିତ୍ୟେ ।।୪୯
ଭୂମିର ଭାର ନାଶ ଅର୍ଥେ ।
ତାହାର ଜନ୍ମ ଏ ଜଗତେ ।।୫୦
ତୁମ୍ଭେ ତ ଦେଖିଅଛ ଡୋଳେ ।
ଧର୍ମନନ୍ଦନ-ଯଜ୍ଞକାଳେ ।।୫୧
ଯାହାକୁ ଶିଶୁପାଳ ନିନ୍ଦି ।
ତକ୍ଷଣେ ତା'ର ଦେହେ ଭେଦି ।।୫୨
ଲୁଚିଲା ଅଭୟ-ଚରଣେ ।
ରହିଲା ଅଜରାମରଣେ ।।୫୩
ଯେ ଗତି ଯୋଗୀଜନେ ଚିନ୍ତି ।
ଜନ୍ମମରଣୁ ନିସ୍ତରନ୍ତି ।।୫୪
ତା'ର ବିଯୋଗ କେବା ସହେ ।
ଯେ ବା ଜଗତେ ଦେହବହେ ।।୫୫
ଦେଖ ଭାରତଯୁଦ୍ଧେ ଯେତେ ।
ରଥୀ ପଦାତି ଅପ୍ରମିତେ ।।୫୬
ଭୂଲୋକେ ଯେତେ ବୀର ଥିଲେ ।
ମରଣେ ତା' ମୁଖ ଦେଖିଲେ ।।୫୭

ଅର୍ଜୁନ-ବାଣେ କ୍ଷୀଣ ହୋଇ ।
ପଶିଲେ ତା'ର ଦେହେ ଯାଇ ।।୫୮
ତ୍ରୈଲୋକ୍ୟନାଥ ସେ ଅନନ୍ତ ।
ସ୍ୱଭାବେ କମଳାର କାନ୍ତ ।।୫୯
ତ୍ରିଦଶ-ଦେବେ ତା' ଚରଣେ ।
ସେବା କରନ୍ତି ଅନୁକ୍ଷଣେ ।।୬୦
ଯା'ର ସମାନ ବା ଅଧିକ ।
ନାହିଁ ଏ ଚତୁର୍ଦ୍ଦଶଲୋକ ।।୬୧
ସେ ପୁଣି ସ୍ଥାପି ରାଜପଦେ ।
ପୂଜିଲା ଉଗ୍ରସେନ ପାଦେ ।।୬୨
ଭୃତ୍ୟର ଭୃତ୍ୟ ଅଟେ ଯେହୁ ।
ତାହାକୁ ଆଜ୍ଞାମାଗେ ସେହୁ ।।୬୩
ଏ କଥା ଦେଖି ହେ ବିଦୁର ।
ଅତି ଦୁଃଖିତ ଚିତ୍ତ ମୋର ।।୬୪
ଦେଖ ପୂତନା ଧାତ୍ରୀ ରୂପେ ।
ସ୍ତନ ନିବେଶି ତା'ର ମୁଖେ ।।୬୫
କ୍ଷୀର ଗରଳ ସଙ୍ଗେ ଦେଇ ।
ପଶିଲା ତା'ର ଦେହେ ଯାଇ ।।୬୬
ସେ ଦୟାନିଧିର ଚରଣ ।
କେବା ନ ପଶିଲା ଶରଣ ।।୬୭
ଯେତେ ଅସୁର ଏ ଜଗତେ ।
ନଶିଲେ ଗୋବିନ୍ଦର ହସ୍ତେ ।।୬୮
ଗରୁଡ଼କନ୍ଧେ ତାକୁ ଚାହିଁ ।
ପଶିଲେ ତା'ର ଦେହେ ଯାଇ ।।୬୯
ସେ ଭାଗବତ ମଧ୍ୟେ ସାର ।
କି ଅବା ଦେବା ପଟାନ୍ତର ।।୭୦
କଂସରାଜାର ବନ୍ଦୀଘରେ ।
ଜନ୍ମିଲା ଦେବକୀ ଉଦରେ ।।୭୧
ବ୍ରହ୍ମାଙ୍କ ବୋଲେ ହୃଷୀକେଶ ।
ଧରଣୀଭାର କଲେ ନାଶ ।।୭୨
ସେ ବସୁଦେବ କଂସ ଡରେ ।
ନେଇ ଥୋଇଲା ନନ୍ଦଘରେ ।।୭୩
ଗୁପତେ ସଙ୍ଗେ ହଳଧର ।
ବଢ଼ିଲେ ଏଗାରବର୍ଷର ।।୭୪
ଗୋପବାଳକ ସଙ୍ଗେ ଥାଇ ।
ବନେ ଚରାନ୍ତି ନିତ୍ୟେ ଗାଈ ।।୭୫

Dr. Sudhanshu Sekhar Mishra

ବେଣୁଶବଦ ଶିଙ୍ଗାନାଦେ ।
ବନେ ବୁଲନ୍ତି ଅପ୍ରମାତେ ।।୭୬
ଯମୁନାକୂଳେ ଥାଇ ନିତ୍ୟେ ।
ଭୃଙ୍ଗ-କୋକିଳ-ନାଦ-ଗୀତେ ।।୭୭
ବରଜବାସୀଙ୍କ ଲୋଚନେ ।
କୁମାରଲୀଳା ଅନୁଦିନେ ।।୭୮
ରୋଦନ ହସନ ଖେଳନେ ।
ନିରତେ ବସେ ତା'ଙ୍କମନେ ।।୭୯
ବାଳସିଂହର ପ୍ରାୟେ ଚାହେଁ ।
ଯେ କାଳେ ଯେ ଲୀଳା ଦେଖାଏ ।।୮୦
ଦିନକୁଦିନ ଶୋଭାବନ୍ତ ।
ବନେ ବୁଲଇ ନନ୍ଦସୁତ ।।୮୧
ଗୋଧନ ଘେନି ଗୋପସଙ୍ଗେ ।
ବେଣୁ ବଜାଇ ନାନାରଙ୍ଗେ ।।୮୨
କଂସର ଆଜ୍ଞାରେ ଅସୁରେ ।
ଯେତେ ମିଳିଲେ ଗୋପପୁରେ ।।୮୩

ପୂତନା ଆଦି ମାୟାରୂପୀ ।
ମିଳିଲେ ବନଗିରି ବ୍ୟାପୀ ।।୮୪
ତାହାଙ୍କୁ କରି ବାଳଖେଳା ।
ହେଳେ ମାଇଲେ ନନ୍ଦବଳା ।।୮୫
ଯମୁନା ବିଷଜଳ ଖାଇ ।
ମରୁ ଯେ ଥିଲେ ଗୋପଗାଈ ।।୮୬
ତା'ଙ୍କୁ ଜୀଆଇ ନନ୍ଦବାଳ ।
ଅମୃତ କଲା ବିଷଜଳ ।।୮୭
ଇନ୍ଦ୍ରଉତ୍ସବ ଭଙ୍ଗ କରି ।
ଗୋପଙ୍କୁ ପୂଜାଇଲେ ଗିରି ।।୮୮
ଯଜ୍ଞବିଭଙ୍ଗେ କୋପକରି ।
ଇନ୍ଦ୍ର ବରଷେ ଘୋର ବାରି ।।୮୯
ଗୋରୁ ଗୋପାଳଙ୍କ ବିକଳ ।
ତକ୍ଷଣେ ଦେଖି ନନ୍ଦବାଳ ।।୯୦
ଛତ୍ର ଆକାରେ ଗିରି ଧରି ।
ରଖିଲେ ଗୋପପୁର ଶିରୀ ।।୯୧

ଶରଦ-ଚନ୍ଦ୍ରନିଶି ଚାହିଁ ।
କାନନେ ବେଣୁନାଦ ବାଇ ।।୯୨
ସେ ଗୋପୀମଣ୍ଡଳ-ମଣ୍ଡନ ।
ରାସ-ଉତ୍ସବେ ଭଗବାନ ।।୯୩
ଷୋଳସହସ୍ର ଗୋପନାରୀ ।
ରମିଲେ ନାନାରୂପ ଧରି ।।୯୪
ତା'ର ମହିମା କେ କହିବ ।
ଯାହା ନ ଜାଣେ ବ୍ରହ୍ମା-ଶିବ ।।୯୫
ସେ ହରିଚରଣକମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ।।୯୬
ବିଦୁର-ଉଦ୍ଧବ ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ।।୯୭
ଏଣେ ଗୋବିନ୍ଦପାଦେ ରସ ।
କହଇ ଜଗନ୍ନାଥ ଦାସ ।।୯୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ବିଦୁର-ଉଦ୍ଧବ ସମ୍ବାଦେ
ଦ୍ୱିତୀୟୋଽଧ୍ୟାୟଃ ॥

---

## ତୃତୀୟ ଅଧ୍ୟାୟ

ଉଦ୍ଧବ ଉବାଚ

ଶୁଣ ବିଦୁର ମୋ ବଚନ ।
ଧରି ନ ପାରେ ଖେଦମନ ।।୧
ସେ ରାମକୃଷ୍ଣ ଏକାରଥେ ।
ଗମିଲେ ଅକ୍ରୂର ସଙ୍ଗତେ ।।୨
ମାତାପିତାଙ୍କର କୁଶଳ ।
ପୁଚ୍ଛନ୍ତି ରାମ-ଆଦିମୂଳ ।।୩
କଂସକୁ ଦୃଷ୍ଟିରେ ସଂହାରି ।
ମଞ୍ଚାଉପରୁ କେଶଧରି ।।୪
ତଳେ ପକାଇ ରୋଷଭରେ ।
ମୃତପିଣ୍ଡକୁ ଆକର୍ଷିଲେ ।। ୫
ସାନ୍ଦପନିର ଘରେ ଯାଇ ।
ସକଳବିଦ୍ୟା ଶିକ୍ଷା ପାଇ ।। ୬
ସେ ଦୈତ୍ୟ ନାମ ପଞ୍ଚଜନ ।
କରି ତା ଉଦର ବିଦୀର୍ଣ୍ଣ ।। ୭

ଗୁରୁଦକ୍ଷିଣା ଅର୍ଥେ ପୁଣି ।
ଯମପୁରରୁ ପୁତ୍ର ଆଣି ।।୮
ଗୁରୁକାମିନୀ ଦୁଃଖ ହରି ।
ପୁଣି ମିଳିଲେ ନିଜପୁରୀ ।।୯
ଭୀଷ୍ମକ କନ୍ୟା ଅର୍ଥେ ହରି ।
କୁଣ୍ଡୀନଗରେ ବିଜେକରି ।।୧୦
ଗାନ୍ଧର୍ବବୃତ୍ତି ଆଚରିଲେ ।
ବଳେ ସେ କନ୍ୟାକୁ ହରିଲେ ।।୧୧
ଶୃଗାଳ ମଧ୍ୟେ ସିଂହ ଯେହ୍ନେ ।
ସ୍ୱଭାଗ ହରଇ ତେସନେ ।।୧୨
ଯେହ୍ନେ ସୁପର୍ଣ୍ଣ ନିଜ ଭାଗ ।
ଅମୃତ ହରି କଲା ଭୋଗ ।।୧୩
କୋଶଳପୁରେ ନରହରି ।
ସପତକ୍ଷଣ୍ଡ ବନ୍ଦୀ କରି ।।୧୪

କନ୍ୟା ଲଭିଲେ ନନ୍ଦବାଳ ।
ଜିଣି ସକଳ ଶତ୍ରୁବଳ ।।୧୫
ସତ୍ୟଭାମାର ବୋଲେ ପୁଣି ।
ନନ୍ଦନବନୁ ଚକ୍ରପାଣି ।।୧୬
ବଳେ ହରିଲେ ପାରିଜାତ ।
ଲୀଳାୟେ ଜିଣି ଶଚୀନାଥ ।।୧୭
ପୁରେ ରୋପିଲେ ବୃକ୍ଷ ନେଇ ।
ପତ୍ନୀର ପ୍ରିୟଭାବ ବହି ।।୧୮
ଗରୁଡ଼େ ବସି ଭାବଗ୍ରାହୀ ।
ନାରକାସୁରପୁରେ ଯାଇ ।।୧୯
ଦେଖିଲେ ତାହାର ଭବନ ।
ଶରୀରେ ବ୍ୟାପିଛି ଗଗନ ।।୨୦
ଚକ୍ରେ ତାହାର ମୁଣ୍ଡହାଣି ।
ଦେଖି ପ୍ରଣମିଲା ଧରଣୀ ।।୨୧

Dr. Sudhanshu Sekhar Mishra

ବୋଲଇ କଲୁ ପୁତ୍ର ନାଶ ।
ଧରଣୀ ବଚନେ ବିଶ୍ୱାସ ।।୨୨
ନାରକାପୁତ୍ରକୁ ମୁରାରି ।
ତା' ରାଜ୍ୟେ ଅଭିଷେକ କରି ।।୨୩
ନାରକା ଅନ୍ତଃପୁରେ ହରି ।
କୋଟିକନ୍ଦର୍ପ ରୂପ ଧରି ।।୨୪
ଯୁଦ୍ଧେ ସକଳ ରାଜା ଜିଣି ।
ଯେ କନ୍ୟା ଥିଲା ଦୈତ୍ୟ ଆଣି ।।୨୫
ସେ ସର୍ବ ଦେଖି କାମଭୋଳେ ।
ଚାହାଁନ୍ତି ନୟନ-ନିଷ୍ଫଳେ ।।୨୬
ଷୋଳସହସ୍ର ଶତାଧିକେ ।
ତୁଲ୍ୟବୟସୀ ଏକେ ଏକେ ।।୨୭
ହରିଙ୍କି ବରିଲେ ସକଳେ ।
ମଙ୍ଗଳ-ଶୁଭଲଗ୍ନ ବେଳେ ।।୨୮
ତାହାଙ୍କୁ ନିଜପୁରେ ଆଣି ।
ଏକମୁହୂର୍ତ୍ତେ ଚକ୍ରପାଣି ।।୨୯
ବିବାହ କଲେ ବେଦମତେ ।
ଶୁଣ ତାହାଙ୍କ ପୁତ୍ର ଯେତେ ।।୩୦
ଦଶକୁମର କନ୍ୟା ଏକ ।
ଆତ୍ମାସଦୃଶ ରୂପରେଖ ।।୩୧
କାଳଯବନ ଜରାସନ୍ଧେ ।
ଶାଲ୍ୱ ସହିତେ ପୁର ରୁନ୍ଧେ ।।୩୨
ତାହାଙ୍କୁ ନିକଟେକେ ନାଶି ।
ସ୍ୱଜନ-ବାନ୍ଧବ ଆଶ୍ୱାସି ।।୩୩
ଶମ୍ବର ଦ୍ୱିବିଦବାନର ।
ମୁର ବଲ୍ୱଳ ବାଣାସୁର ।।୩୪
ଯେ ଦନ୍ତବକ୍ର ଆଦି କରି ।
ତାହାଙ୍କୁ ସଂଗ୍ରାମେ ସଂହାରି ।।୩୫
ଏବେ ତୋ ଜ୍ୟେଷ୍ଠଭ୍ରାତସୁତେ ।
ଅନେକ ନୃପତି ସହିତେ ।।୩୬
ସଙ୍ଗତେ ନିଜବଳ ଘେନି ।
ଚରଣେ କମ୍ପାଇ ମେଦିନୀ ।।୩୭
ମିଳିଲେ କୁରୁକ୍ଷେତ୍ର ମଧ୍ୟେ ।
ଜିଣି ଭୁଞ୍ଜିବେ ମହୀ ସାଧେ ।।୩୮
କର୍ଣ୍ଣ ଶକୁନି ଦୁଃଶାସନ ।
ସ୍ୱଭାବେ ଦୁଷ୍ଟ ତିନିଜଣ ।।୩୯

ତାହାଙ୍କୁ ହୋଇଲେ ବିଶ୍ୱାସ ।
ଏଣୁ ହୋଇଲେ ଅଳ୍ପାୟୁଷ ।।୪୦
ଦେଖି ପଡ଼ିଲେ ରଣମଧ୍ୟେ ।
ମୂଢ଼ ଅଧର୍ମ-ଦୋଷବାଦେ ।।୪୧
ଶୁଣ ବିଦୁର କହୁଁ ତୋତେ ।
ଶ୍ରୀକୃଷ୍ଣ ଭାଳେ ଅନ୍ତର୍ଗତେ ।।୪୨
ଯେ ଭୀଷ୍ମ ଦ୍ରୋଣ ଭୀମାର୍ଜୁନ ।
ମାରିଲେ ଅନେକ ରାଜନ ।।୪୩
ଭାରା-ନିବାର-ଅର୍ଥେ ମହୀ ।
ସଂହାର ଅଳପ ମଣଇ ।।୪୪
ଏ ଯେ ମୋହର ଯଦୁବଂଶ ।
ଏ ମଲେ ଭାରା ହୋଏ ଶେଷ ।।୪୫
ମଦ୍ୟେ ଅରୁଣଚକ୍ଷୁ କୋପେ ।
ସର୍ବେ ମରିବେ ବିପ୍ରଶାପେ ।।୪୬
ଏ ଯେ ନ ମଲେ ନୋହେ ଶାନ୍ତି ।
ଏମନ୍ତ ଯୋଗମାୟା ଚିନ୍ତି ।।୪୭
ଏମନ୍ତେ ମନେ ଚିନ୍ତାକରି ।
ଧର୍ମସୁତଙ୍କୁ ନରହରି ।।୪୮
ବନ୍ଧୁ-ସୁହୃଦଜନ ମଧ୍ୟେ ।
କୃଷ୍ଣ ସ୍ଥାପିଲେ ରାଜପଦେ ।।୪୯
ଉତ୍ତରାଗର୍ଭେ କୁରୁବଂଶ ।
କୃଷ୍ଣ ରଖିଲେ ଅବଶେଷ ।।୫୦
ପରୀକ୍ଷିତଙ୍କୁ କରି ରକ୍ଷା ।
ଧର୍ମନନ୍ଦନେ ଦେଲେ ଦୀକ୍ଷା ।।୫୧
ଜ୍ଞାତିମାରଣ ଦୋଷ ନାଶେ ।
ଧର୍ମନନ୍ଦନଙ୍କୁ ବିଶ୍ୱାସେ ।।୫୨
ସର୍ବସମ୍ପଦେ ସୁସମ୍ପାଦି ।
କରାଇ ତିନି-ଅଶ୍ୱମେଧି ।।୫୩
ଯୁଧିଷ୍ଠି କୃଷ୍ଣେ ଅନୁଗତ ।
ପାଳିଲେ ମହୀ ଘେନି ଭ୍ରାତ ।।୫୪
ଆପଣେ ନିଜପୁରେ ଯାଇ ।
ନାରୀଗଣଙ୍କ ମଧ୍ୟେ ଥାଇ ।।୫୫
ଗୃହସ୍ଥଧର୍ମ ବେଦମତେ ।
କୃଷ୍ଣ ଆଚରିଲେ ଜଗତେ ।।୫୬
ସ୍ମିତ-ନୟନେ ସ୍ନେହ ବହି ।
ପୀୟୂଷ ସମ କଥା କହି ।।୫୭

ନାରୀଗଣଙ୍କ ମନ ମୋହି ।
ଗୃହଚରିତେ ଗୃହେ ଥାଇ ।।୫୮
ଯେ ଧର୍ମ ଇହ ପରଲୋକେ ।
କୃଷ୍ଣ ସାଧିଲେ ସୁବିବେକେ ।।୫୯
ଏମନ୍ତେ ବହୁତ ବରଷେ ।
ରମନ୍ତେ ଗୃହମେଧ ଆଶେ ।।୬୦
ବିଷୟେ ବଇରାଗ୍ୟ ଜାତ ।
ହୋଇଲା ଯୋଗେ ହୃଦଗତ ।।୬୧
କର୍ମ ଅଧୀନେ କାମେ ଜଡ଼ି ।
ଦେବମାୟାରେ ସୁଖ ଲୋଡ଼ି ।।୬୨
ପୁରୁଷ କର୍ମର ଅଧୀନ ।
ଯୋଗେଶ୍ୱରଙ୍କୁ ଯେ ଗହନ ।।୬୩
ସେ ହରି ବିଷ୍ଣୁମାୟା କରି ।
ନିଜପୁତ୍ରଙ୍କ ମନ ହରି ।।୬୪
ସେ ପୁତ୍ରେ କ୍ରୀଡ଼ାରସେ ଦିନେ ।
କୋପ ସଞ୍ଚିଲେ ବିପ୍ରମନେ ।।୬୫
ହରିର ମତ ଜାଣି ଭଲେ ।
ବ୍ରାହ୍ମଣେ ଶାପ ଦେଇଗଲେ ।।୬୬
ବ୍ରାହ୍ମଣ-ଶାପ ପାଇ ପୁରେ ।
ଅଦ୍ଭୁତ ଦେଖିଲେ ବିସ୍ତାରେ ।।୬୭
କୃଷ୍ଣବଚନେ ଶାନ୍ତି ଅର୍ଥେ ।
ପ୍ରଭାସେ ମିଳିଲେ ସମସ୍ତେ ।।୬୮
ସେ ପୁଣ୍ୟଜଳେ କରି ସ୍ନାନ ।
ପିତୃତର୍ପଣ ପିଣ୍ଡଦାନ ।।୬୯
ପୂଜିଲେ ଋଷି ଦେବଗଣେ ।
ଗୋଦାନେ ତୋଷିଲେ ବ୍ରାହ୍ମଣେ ।।୭୦
ସୁବର୍ଣ୍ଣ ରଜତ ଶୟନ ।
ବସନ କମ୍ବଳ ଅଜିନ ।।୭୧
ରଥକୁଞ୍ଜର ଅଶ୍ୱମାନ ।
ଧରଣୀତୁଲେ କନ୍ୟାଦାନ ।।୭୨
ଅନ୍ନ ସହିତେ ନାନାରସେ ।
ବିପ୍ରଙ୍କୁ ଭୁଞ୍ଜାଇ ହରଷେ ।।୭୩
ଏମନ୍ତେ ଯଦୁ-ଭୋଜଗଣେ ।
ଗୋ-ବିପ୍ରସେବା ତା'ଙ୍କ ପ୍ରାଣ ।।୭୪
ବିପ୍ରଙ୍କ ପାଦେ ପ୍ରଣମିତେ ।
ଦିବସ ବଞ୍ଚିଲେ ଏମନ୍ତେ ।।୭୫

Dr. Sudhanshu Sekhar Mishra

ସ୍ୱଭାବେ କରି ଉପବାସେ ।
ରାତ୍ର ବଞ୍ଚିଲେ ସେ ନିରାଶେ ।।୭୬

ସେ ଯଦୁବଂଶର ଚରଣେ ।
ସୁଜନେ ଚିନ୍ତ ଅନୁକ୍ଷଣେ ।।୭୭

ହୋଇବ କୃଷ୍ଣରେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ।।୭୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ବିଦୁର-ଉଦ୍ଧବ ସମ୍ବାଦେ
ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ଉଦ୍ଧବ ଉବାଚ

ଉଦ୍ଧବ କହେ ଅଶ୍ରୁମୁଖେ ।
ସେ ଯଦୁବଂଶ ରାତ୍ରିମୁଖେ ।। ୧
ବାରୁଣୀମଦ୍ୟ କଲେ ପାନ ।
ତେଣୁ ହୋଇଲେ ହତଜ୍ଞାନ ।। ୨
ମର୍ମଭେଦନ କଟୁବାକ୍ୟେ ।
କନ୍ଦଳ କଲେ ଏକେ ଏକେ ।। ୩
ମନ ହରିଲା ମଦ୍ୟଦୋଷ ।
ଭୋଳେ ହୋଇଲେ ବୁଦ୍ଧିଭ୍ରଂଶ ।। ୪
ରଜନୀ ମଧ୍ୟେ ଯଦୁବଳେ ।
କନ୍ଦଳଯୁଦ୍ଧେ ନାଶ ଗଲେ ।। ୫
ତକ୍ଷଣେ ଆତ୍ମମାୟାଗତି ।
ବିଚାରି ପ୍ରଭୁ ଯଦୁପତି ।। ୬
ମିଳିଲେ ସରସ୍ୱତୀକୂଳେ ।
ବନେ ଅଶ୍ୱତଥ-ତରୁମୂଳେ ।। ୭
ସ୍ୱକୁଳ ନାଶ ଇଚ୍ଛା କରି ।
ଦ୍ୱାରକା ଥିଲାବେଳେ ହରି ।। ୮
ମୋତେ ବୋଇଲେ ଶିଷ୍ୟଧର୍ମେ ।
ଚଳ ତୁ ବଦରିକାଶ୍ରମେ ।। ୯
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
ପଦକମଳେ ମନ ଥୋଇ ।। ୧୦
ନ କରି ତୀର୍ଥକୁ ଗମନ ।
ଚାହିଁଲି ଶ୍ରୀକୃଷ୍ଣ-ବଦନ ।। ୧୧
ତା'ର ଗମନ ପଛେ ମୁହିଁ ।
ଗଲି ତାହାର ଭାବ ବହି ।। ୧୨
ସେ ପ୍ରିୟମତି ନରହରି ।
ଖୋଜନ୍ତେ ତା'ଙ୍କୁ ଅନୁସରି ।। ୧୩

ଦେଖିଲି ସରସ୍ୱତୀତୀରେ ।
ଏକାନ୍ତ-ଆସନ ସଧୀରେ ।। ୧୪
ଶ୍ୟାମସୁନ୍ଦର ତନୁ ବର୍ଣ୍ଣ ।
ପ୍ରଶାନ୍ତ-ଅରୁଣଲୋଚନ ।। ୧୫
ଚତୁରଭୁଜେ ଶସ୍ତ୍ର ଶୋହେ ।
ପୀତବସନ ମନମୋହେ ।। ୧୬
ଦକ୍ଷିଣପାଦ ବାମଜଙ୍ଘେ ।
ବାଳ-ଅଶ୍ୱତଥ ପୃଷ୍ଠଭାଗେ ।। ୧୭
ଏବେ ହୋ କୁରୁବୀର ଶୁଣ ।
ମୈତ୍ରେୟ ମିଳିଲେ ସେ ସ୍ଥାନ ।। ୧୮
ବ୍ୟାସମୁନିଙ୍କ ସଖା ହୋ'ନ୍ତି ।
ଆନନ୍ଦେ ଭୁବନେ ଭ୍ରମନ୍ତି ।। ୧୯
ତକ୍ଷଣେ କୃଷ୍ଣପାଶେ ଯାଇ ।
ପଦେ ନମିଲେ ଶିରଦେଇ ।। ୨୦
ମୁହିଁ ଶୁଣଇ ଅନୁରାଗେ ।
ଯେବା ବୋଇଲେ କୃଷ୍ଣଭାବେ ।। ୨୧

ଭଗବାନ ଉବାଚ

ଉଦ୍ଧବ ଶୁଣ ମୋ' ବଚନ ।
ମୁହୁଁ ଜାଣିଲି ତୋ'ର ମନ ।। ୨୨
ଦୁର୍ଲ୍ଲଭ-ଜ୍ଞାନ ଦେବି ତୋତେ ।
ସଂସାରୁ ତରିବୁ ଯେମନ୍ତେ ।। ୨୩
ପୂର୍ବେ ବ୍ରହ୍ମାର ଯଜ୍ଞକାଳେ ।
ସକଳ-ବସୁଙ୍କର ମେଳେ ।। ୨୪
କହିଲୁ ଯୋଗେ ଇଷ୍ଟସିଦ୍ଧି ।
ମୋ'ର ଚରଣ ଧ୍ୟାନେ ବନ୍ଦି ।। ୨୫
ଏ ଯୋଗ ସର୍ବ ପୂର୍ବେସିଦ୍ଧି ।
ଯେଣୁ ମୋ' ଅନୁଗ୍ରହ-ବିଧି ।। ୨୬

ତେଣୁ ଲଭିଲୁ ମୋତେ ହେଳେ ।
ନିଜ ଭୁବନେ ଯିବାବେଳେ ।। ୨୭
ବିଷୟରସ ଭୋଗଚିନ୍ତି ।
ଯେ ପ୍ରାଣୀ ସ୍ୱଧର୍ମ ଛାଡ଼ନ୍ତି ।। ୨୮
ଭକ୍ତିବୈରାଗ୍ୟ ଯା'ର ନାହିଁ ।
ସେ ବା ଲଭିବ ମୋତେ କାହିଁ ।। ୨୯
ଯେ ଜ୍ଞାନ ବ୍ରହ୍ମାର ସମୀପେ ।
ମୁହିଁ କହିଲି ପଦ୍ମକଳ୍ପେ ।। ୩୦
ପରମ-ଜ୍ଞାନର ମହିମା ।
କେ ଚିନ୍ତିପାରେ ଆଦିସୀମା ।। ୩୧
ଏଣୁ ପଣ୍ଡିତେ ମୁନିଜନେ ।
ଦୃଢ଼େ ବିଚାରି ଅନୁମାନେ ।। ୩୨
ଏ ଭାଗବତ-ଧର୍ମ ଚିନ୍ତି ।
ଏ ଭବଜଳୁ ତରିଯା'ନ୍ତି ।। ୩୩

ଉଦ୍ଧବ ଉବାଚ

ସେ ଆଦିପୁରୁଷ ବଚନ ।
ଶୁଣି ଆନନ୍ଦ ମୋର ମନ ।। ୩୪
ତା' ଅନୁଗ୍ରହ ପ୍ରତିକ୍ଷଣେ ।
କହିଲି ତାହାର ସ୍ମରଣେ ।। ୩୫
କୃଷ୍ଣସ୍ନେହରେ ମୋରଦେହୀ ।
ରୋମପୁଲକେ ଅଶ୍ରୁ ବହି ।। ୩୬
କରଯୁଗଳ ଶିରେ ଦେଇ ।
କହିଲି ତାହାଙ୍କୁ ବିନୋୟି ।। ୩୭
ଭୋ ନାଥ ତୋ'ର ପଦ୍ମପାଦେ ।
ଯେ ପ୍ରାଣୀ ଭଜନ୍ତି ଆନନ୍ଦେ ।। ୩୮
ତାହାଙ୍କୁ ସର୍ବ-ପୁରୁଷାର୍ଥ ।
ଯେ ଧର୍ମ-କାମ-ମୋକ୍ଷ-ଅର୍ଥ ।। ୩୯

Dr. Sudhanshu Sekhar Mishra

ଦୁର୍ଲଭ ନୋହେ ଲଭିବାରେ ।
ନିଶ୍ଚୟ ମୋହର ବିଚାରେ ।। ୪୦
ମୋହର ତେଣେ ଆଶାନାହିଁ ।
କେବଳ ତୋ' ପାଦ ଭଜଇ ।। ୪୧
ସ୍ୱଭାବେ ଜନ୍ମ ଯା'ର ନାହିଁ ।
କର୍ମର ଚେଷ୍ଟା ତା'ର କାହିଁ ।। ୪୨
ସ୍ୱଭାବେ କାଳରୂପ ତୋ'ର ।
ଜ୍ଞାନବିଜ୍ଞାନେ ଅଗୋଚର ।। ୪୩
ତୋ'ର ମହିମା ଆତ୍ମାରତି ।
ଯୋଗୀଏ ନ ପାରନ୍ତି ଚିନ୍ତି ।। ୪୪
ତୁ ପୁଣି ଶତ୍ରୁଭୟ ପାଇ ।
ସମୁଦ୍ରେ ଦୁର୍ଗକୁ ଭିଆଇ ।। ୪୫
ପଳାଇ ରହିଲୁ ଆନନ୍ଦେ ।
ଅନେକ ନାରୀଗଣ ମଧ୍ୟେ ।। ୪୬
ମନ୍ତ୍ରଣା ଅର୍ଥେ ମୋତେ ରାଇ ।
ଆଦରେ ସମୀପେ ବସାଇ ।। ୪୭
ସ୍ୱଭାବେ ଅକୁଣ୍ଠିତ-ବୁଦ୍ଧି ।
ଅଖଣ୍ଡ-ଆତ୍ମଜ୍ଞାନନିଧି ।। ୪୮
ସଂଶୟେ ବୁଦ୍ଧି ହୁଏ କ୍ଷୀଣ ।
ଦେଖିଣ ତୋ'ର ଆଚରଣ ।। ୪୯
ସର୍ବଜ୍ଞପଣ ଯା'ର ତହିଁ ।
ସେ କିପାଁ ମୋତେ ପଚାରଇ ।। ୫୦
ଏଣୁ ମୋ ମନ ଖେଦ ପାଇ ।
ତୋ' ମାୟା ଗହନେ ଭ୍ରମଇଁ ।। ୫୧
ଯେ ଆତ୍ମାଜ୍ଞାନ ତୁ ଏକାନ୍ତେ ।
କହିଲୁ ବ୍ରହ୍ମାର ଅଗ୍ରତେ ।। ୫୨
ମୁଁ ଯେବେ ଶୁଣିବାରେ କ୍ଷମ ।
କହ ହେ ପୁରୁଷଉତ୍ତମ ।। ୫୩
ଯେ ଜ୍ଞାନମାର୍ଗେ ତୋତେ ସେବି ।
ଏ ମାୟାସଂସାରୁ ତରିବି ।। ୫୪
ଏମନ୍ତ ପଚାରନ୍ତେ ମୁହିଁ ।
ସେ କୃଷ୍ଣ ମୋତେ ଦୟାବହି ।। ୫୫
ଆତ୍ମାର ତତ୍ତ୍ୱ ନିତ୍ୟଜ୍ଞାନ ।
କହିଲେ କମଳଲୋଚନ ।। ୫୬
ସେ ତୀର୍ଥପାଦ ଜଗନ୍ନାଥ ।
ମୋହର ଭାବେ ଆରାଧିତ ।। ୫୭

ସେ ହରିମୁଖୁ ଜ୍ଞାନ ପାଇ ।
ତା' ପାଦପଦ୍ମେ ଶିରଦେଇ ।। ୫୮
ସେ ଦେବଦେବ ଭଗବାନ ।
ତାହାଙ୍କୁ କରି ପ୍ରଦକ୍ଷିଣ ।। ୫୯
ତା'ର ବିଚ୍ଛେଦେ ଆତ୍ମା ମୋ'ର ।
କ୍ଷଣେ ଏ ଦେହେ ନୋହେ ସ୍ଥିର ।। ୬୦
ତା'ର ବିରହ ଆତ୍ମାତୁଳେ ।
ତକ୍ଷଣେ ଅଇଲି ଏ ସ୍ଥଳେ ।। ୬୧
ତା'ର ବିଯୋଗ ଆର୍ତ୍ତିଯୁତେ ।
ଯିବି ମୁଁ ତା'ର ପ୍ରିୟତୀର୍ଥେ ।। ୬୨
ନାମ ତା' ବଦରିକାଶ୍ରମ ।
ଯହିଁରେ ନରନାରାୟଣ ।। ୬୩
ଏ ନରଲୋକେ ଶୁଭ ଅର୍ଥେ ।
ତପ ଆରାଧି ଦୃଢ଼ଚିତ୍ତେ ।। ୬୪
ଅଛନ୍ତି ନରନାରାୟଣ ।
ଶୁକ ବୋଲନ୍ତି ରାୟ ଶୁଣ ।। ୬୫

ଶୁକ ଉବାଚ

ସୁହୃଦ-ବନ୍ଧୁ-ବଧ ବାଣୀ ।
ଉଦ୍ଧବ ମୁଖୁ ତାହା ଶୁଣି ।। ୬୬
ଦୁଃସହ-ଦୁଃଖ ତା' ମନର ।
ଜ୍ଞାନେ ସଂହରିଲା ବିଦୁର ।। ୬୭
କହି ଉଦ୍ଧବ ଚଳିଯା'ନ୍ତେ ।
ବିଦୁର ପଡ଼େ ପାଦଗତେ ।। ୬୮
ପୁଣି ବିଶ୍ୱାସ ତା'ଙ୍କୁ କରି ।
ବୋଲେ ଚରଣ ଶିରେ ଧରି ।। ୬୯

ବିଦୁର ଉବାଚ

ଉଦ୍ଧବ ଶୁଣ ମୋ' ବଚନ ।
ତୋ'ର ଠାକୁର ଭଗବାନ ।। ୭୦
ସେ ଜ୍ଞାନ କହିଛନ୍ତି ଯେତେ ।
ଉଦ୍ଧବ କହ ମୋ' ଅଗ୍ରତେ ।। ୭୧
ଯେ ଜ୍ଞାନ ଧ୍ୟାନ ସୁଖ ଭୋଳେ ।
ପଶିବି ତା' ପାଦକମଳେ ।। ୭୨
ଏମନ୍ତେ ବିଦୁରର ବାଣୀ ।
ଉଦ୍ଧବ ବୋଲେ ତାହା ଶୁଣି ।। ୭୩

ଉଦ୍ଧବ ଉବାଚ

ଶୁଣ ବିଦୁର ମୋ' ବଚନ ।
ସେ ଯୋଗେଶ୍ୱର ଭଗବାନ ।। ୭୪
ଜୀବନ ଛାଡ଼ିବାର କାଳେ ।
ମୈତ୍ରେୟ ମୁନିଙ୍କି ନିଶ୍ଚଳେ ।। ୭୫
ସମ୍ପୂର୍ଣ୍ଣ-ଜ୍ଞାନ ତା'ଙ୍କୁ ଦେଲେ ।
ନିଜ ଭୁବନେ ବିଜେ କଲେ ।। ୭୬
ତୁ ଏବେ ଚଳ ତା'ଙ୍କ ପାଶ ।
ନିର୍ମଳ-ଭକ୍ତି-ଉପଦେଶ ।। ୭୭
ସେ ତୋତେ ଦେବେ ଦିବ୍ୟଜ୍ଞାନ ।
ଏମନ୍ତ କହି ବେନିଜନ ।। ୭୮
ପୁଳିନେ ବଞ୍ଚିଲେ ରଜନୀ ।
ନିଶ୍ଚଳେ କୃଷ୍ଣଭାବଘେନି ।। ୭୯
କୃଷ୍ଣ-ଚରଣ-ଧ୍ୟାନ ବଳେ ।
ବନ୍ଧୁ-ବିଯୋଗ ପାଶୋରିଲେ ।। ୮୦
ଏମନ୍ତେ ପାହିଲା ରଜନୀ ।
କୃଷ୍ଣଭକତିଭାବ ଘେନି ।। ୮୧
ଉଦ୍ଧବ ଗଲା ତୋଷମନେ ।
ମିଳିଲା ବଦରିକାଶ୍ରମେ ।। ୮୨
ପରୀକ୍ଷ କହେ ଶୁକେ ଚାହିଁ ।
ଭାବେ ଚରଣେ ଶିର ଦେଇ ।। ୮୩

ପରୀକ୍ଷିତ ଉବାଚ

ଭୋ ମୁନି ଅସମ୍ଭବ ବାଣୀ ।
ମୁହିଁ ତୁମ୍ଭର ମୁଖୁ ଶୁଣି ।। ୮୪
ସଂଶୟ ରହିଲା ମୋ' ମନେ ।
ପୁଚ୍ଛଇ ତୁମ୍ଭ ସନ୍ନିଧାନେ ।। ୮୫
ବ୍ରାହ୍ମଣଶାପେ ଯଦୁବଳେ ।
ନଶିଲେ ରଣେ ମଦ୍ୟଭୋଳେ ।। ୮୬
ରଥ କୁଞ୍ଜର ଯୂଥପତି ।
କେବେ ହେଁ ରଣେ ନ ଘୁଞ୍ଚନ୍ତି ।। ୮୭
ଯୂଥପତିଙ୍କ ମଧ୍ୟେ ମୁଖ୍ୟ ।
ଉଦ୍ଧବ ଅଟଇ ପ୍ରତ୍ୟକ୍ଷ ।। ୮୮
ଏ ବଡ଼ ସଂଶୟ ମୋ' ଚିତ୍ତେ ।
ଉଦ୍ଧବ ବଞ୍ଚିଲା କେମନ୍ତେ ।। ୮୯
ଯହିଁ ଗୋବିନ୍ଦ ଦେହ ଗଲା ।
ଏ ବା କେମନ୍ତେ ଉବୁରିଲା ।। ୯୦

Dr. Sudhanshu Sekhar Mishra

ଶୁଣି କହନ୍ତି ଶୁକମୁନି ।
ଆନନ୍ଦେ କୃଷ୍ଣଭାବ ଘେନି ।।୯୧

ଶୁକ ଉବାଚ

ବ୍ରାହ୍ମଣ-ଶାପ ବଡ଼ଦୋଷ ।
ନିଶ୍ଚେ ଦହିବ ଯଦୁବଂଶ ।।୯୨
ଏମନ୍ତ ଜାଣି ଭାବଗ୍ରାହୀ ।
ନିକଟେ ଉଦ୍ଧବ ବସାଇ ।। ୯୩
ଆତ୍ମମରଣ ପରିମାଣି ।
ମନେ ଚିନ୍ତିଲେ ଚକ୍ରପାଣି ।। ୯୪
ଏ ମୋର ତତ୍ତ୍ୱଜ୍ଞାନ ଯେତେ ।
ମୁଁ ଗଲେ ଯିବ ମୋ' ସଙ୍ଗତେ ।। ୯୫
ଏ ଜ୍ଞାନ ଦେଲେ ମୁଁ ଉଦ୍ଧବେ ।
ପ୍ରାଣୀ ତରିବେ ଏହିଭାବେ ।।୯୬
ଏମନ୍ତେ ମନେ ବିଚାରିଲେ ।
ଉଦ୍ଧବେ ତତ୍ତ୍ୱଜ୍ଞାନ ଦେଲେ ।। ୯୭
ବୋଇଲେ ସାଧୁ ଜ୍ଞାନବ୍ରହ୍ମ ।
ଏ ଯେ ଉଦ୍ଧବ ମୋର ସମ ।। ୯୮
ଏ ଜ୍ଞାନ ପ୍ରାଣୀଙ୍କି ବୁଝାଉ ।
ଏଣୁ ଏ ନରଲୋକେ ରହୁ ।। ୯୯
ଉଦ୍ଧବ କହିବ ଯେମନ୍ତେ ।
ପ୍ରାଣୀଏ ଯିବେ ସେହିପଥେ ।।୧୦୦
ଏଣୁ ତ୍ରିଲୋକଗୁରୁ-ହରି ।
ଜ୍ଞାନେ ଉଦ୍ଧବକୁ ଉଦ୍ଧରି ।।୧୦୧
ତେଣୁ ଗୋବିନ୍ଦ ବୋଲେ ଗଲା ।
ବଦ୍ରିକାଆଶ୍ରମେ ମିଳିଲା ।।୧୦୨
ସମାଧି କରି ଘୋରବନେ ।
ପୂଜିଲା ଗୋବିନ୍ଦ-ଚରଣେ ।।୧୦୩
ଏମନ୍ତେ ଉଦ୍ଧବର ବାଣୀ ।
ବିଦୁର ସାବଧାନେ ଶୁଣି ।।୧୦୪
କୃଷ୍ଣର ଲୀଳା ଅବତାର ।
ଯେ ଗୁଣଗାଥା କର୍ମ ତା'ର ।।୧୦୫
ଶରୀର ଛାଡ଼ିଲେ ଯେମନ୍ତେ ।
ଏ ସର୍ବକଥା ସ୍ମରି ଚିତ୍ତେ ।।୧୦୬
କୃଷ୍ଣର ସ୍ନେହେ ଦେଇମନ ।
ଚଳନ୍ତେ କରଇ ରୋଦନ ।।୧୦୭
କେତେ ହେଁ ଦିନ ବନେ ଗଲା ।
କାଳିନ୍ଦୀତଟରେ ମିଳିଲା ।।୧୦୮
ତହୁଁ ଚଳିଲା ଗଙ୍ଗାତୀରେ ।
ମୈତ୍ରେୟ-ମୁନି-ଅନୁସରେ ।।୧୦୯
କହଇ ବିପ୍ର ଜଗନ୍ନାଥ ।
ତୃତୀୟସ୍କନ୍ଧେ ଭାଗବତ ।।୧୧୦
ବିଦୁର-ଉଦ୍ଧବ-ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ।।୧୧୧
ସୁଜନେ ଏଣେ ଦିନ ବଞ୍ଚ ।
କୃଷ୍ଣ-ଭକତି ହୃଦେ ସଞ୍ଚ ।।୧୧୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ତୃତୀୟସ୍କନ୍ଧେ ବିଦୁର-ଉଦ୍ଧବ ସମ୍ବାଦେ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ଶୁକ ଉବାଚ

ଶୁଣ ହେ କୁରୁ ନୃପବର ।
ଗଙ୍ଗାରତୀରେ ସେ ବିଦୁର ।। ୧
ସେ ଗଙ୍ଗାତୀରେ ଉପବନେ ।
ଦୃଢ଼ ନିଶ୍ଚଳେ ଯୋଗାସନେ ।। ୨
ଅଗାଧବୋଧ ବ୍ରହ୍ମଋଷି ।
ବୃକ୍ଷର ମୂଳେ ଛନ୍ତି ବସି ।। ୩
ମୈତ୍ରେୟ ନାମ ତାହାଙ୍କର ।
ତେଜେ କି ବିରାଜେ ଭାସ୍କର ।। ୪
ତା'ଙ୍କ ସମୀପେ ବେଗେ ଯାଇ ।
କପୋଳେ ବେନିକର ଦେଇ ।। ୫
ଗୋବିନ୍ଦଭାବ ଘେନି ହୃଦେ ।
ବିଦୁର ପୁଚ୍ଛିଲା ଆନନ୍ଦେ ।। ୬

ବିଦୁର ଉବାଚ

ଭୋ ବ୍ରହ୍ମମୁନି ମୋତେ କହ ।
ଏ ମୋର ମନରେ ସନ୍ଦେହ ।। ୭
ଏ ଜୀବଲୋକ ସୁଖଅର୍ଥେ ।
କର୍ମ ସମ୍ପାଦୁଥାଇ ନିତ୍ୟେ ।। ୮
କେବେହେଁ ଦୁଃଖ ନ ଚିନ୍ତଇ ।
ନିଷ୍କାମମାର୍ଗେ ନ ରହଇ ।। ୯
ସୁଖ ଚିନ୍ତନ୍ତେ ଦୁଃଖଲଭେ ।
କହ ଏ କେବଣ ପ୍ରସ୍ତାବେ ।। ୧୦
କୃଷ୍ଣ-ବିମୁଖ ଯେତେ ନର ।
କର୍ମ ଅଭାଗ୍ୟ ତାହାଙ୍କର ।। ୧୧
ବଞ୍ଚିତ ଗୁରୁଧର୍ମଦୀକ୍ଷା ।
କାହୁଁ ପାଇବେ ସୁଖବାଞ୍ଛା ।। ୧୨
କୃଷ୍ଣର ଅନୁଗ୍ରହୀ ଜନେ ।
ଭୂତ-ଭବିଷ୍ୟ-ବର୍ତ୍ତମାନେ ।। ୧୩
ତା'ଙ୍କ କୁଶଳ ଆଚରନ୍ତି ।
କ୍ଷେମେଣ ସଂସାରେ ଭ୍ରମନ୍ତି ।। ୧୪
ହେ ସାଧୁଜନଙ୍କର ସାର ।
କହ ସାଧୁମାର୍ଗ ବିଚାର ।। ୧୫
ଯେ ମାର୍ଗେ କୃଷ୍ଣଙ୍କୁ ଆରାଧି ।
ପ୍ରାଣୀ ଲଭନ୍ତି ସର୍ବସିଦ୍ଧି ।। ୧୬
ସେ ହରି ଭକ୍ତି ଅନୁଗତେ ।
ବସନ୍ତି ଭକ୍ତ-ହୃଦଗତେ ।। ୧୭
ନିର୍ମଳଚିତ୍ତେ ଜ୍ଞାନ କହେ ।
ଜନ୍ମମରଣ ତାପ ଦହେ ।। ୧୮
ସେ ହରି ନାନା-ଅବତାରେ ।
ସଂସାରେ ଯେତେ କର୍ମକରେ ।। ୧୯

Dr. Sudhanshu Sekhar Mishra

ସ୍ୱଭାବେ ତ୍ରୈଲୋକ୍ୟଈଶ୍ୱର ।
ବ୍ରହ୍ମା-ଶଙ୍କରେ ଅଗୋଚର ।। ୨୦
ସ୍ୱଭାବେ ଚେଷ୍ଟା ଯା'ର ନାହିଁ ।
ସେ କିପାଁ ସଂସାର ସର୍ଜଇ ।। ୨୧
ବ୍ରହ୍ମାଣ୍ଡେ କରେ ନାନାମୂର୍ତ୍ତି ।
ଯେ ଜୀବ ଯେମନ୍ତେ ଜୀଅନ୍ତି ।। ୨୨
ଜୀବଙ୍କୁ ହୃଦେ ଭରି ଶୋଏ ।
କେବଳ ଆତ୍ମମାୟା-ମୋହେ ।। ୨୩
ଯୋଗେଶ୍ୱରଙ୍କ ଅଧୀଶ୍ୱର ।
ଯେମନ୍ତେ ବହୁତ ପ୍ରକାର ।। ୨୪
ବହୁପ୍ରକାରେ ପ୍ରକାଶଇ ।
ରବି ଯେସନେ ଶୂନ୍ୟେଥାଇ ।। ୨୫
କ୍ରୀଡ଼ାବିହାରେ ଏ ଜଗତେ ।
ଗୋ-ବିପ୍ର-ଦେବ-ରକ୍ଷାଅର୍ଥେ ।। ୨୬
କର୍ମ କରଇ ସେ ଯେମନ୍ତେ ।
ରୂପ ପ୍ରଭେଦ ବହୁମତେ ।। ୨୭
ସେ ହରି-ଚରିତ-ଅମୃତ ।
ଶୁଣି ସନ୍ତୋଷ ନୋହେ ଚିତ୍ତ ।। ୨୮
ସେ ଆଦିଲୋକନାଥ ହରି ।
ଯେ ଅବା ତତ୍ତ୍ୱ ଆଶ୍ରେକରି ।। ୨୯
ଲୋକ-ଅଲୋକ-ଲୋକପାଳ ।
ଅନେକ ଭୁବନମଣ୍ଡଳ ।। ୩୦
ନାନାପ୍ରକାରେ ଭେଦକରି ।
ପ୍ରାଣୀଙ୍କ କର୍ମସୂତ୍ର ଧରି ।। ୩୧
ସେ ନାରାୟଣ ଆତ୍ମଯୋନି ।
ବିଶ୍ୱସର୍ଜଇ ଯା'କୁ ଘେନି ।। ୩୨
ଯେମନ୍ତେ ଜୀବମାନଙ୍କର ।
ସ୍ୱଭାବକର୍ମ ଯେ ଯାହାର ।। ୩୩
ସେ କଥା କହ ମୁନି ମୋତେ ।
ସଂସାରୁ ତରିବି ଯେମନ୍ତେ ।। ୩୪
ପରଅପର କଥା ଯେତେ ।
ଗୋବିନ୍ଦ-ଚରିତ ସମେତେ ।। ୩୫
ବ୍ୟାସଙ୍କ ମୁଖୁ ଅନୁକ୍ଷଣେ ।
ଶୁଣିଛି ତୃଷିତ-ଶ୍ରବଣେ ।। ୩୬
ଅଳପ ସୁଖ ଯା' ଲକ୍ଷଣ ।
ସେ କାହିଁ ହରିବ ମୋ' ମନ ।। ୩୭

ଶ୍ରୀକୃଷ୍ଣ-କଥାମୃତରସ ।
ପାନରେ ସର୍ବଦା ମୋ' ଆଶ ।। ୩୮
କୃଷ୍ଣଚରିତ ତୀର୍ଥପଦ ।
ହରଇ ବିଷୟା-ବିଷାଦ ।। ୩୯
ସକଳତୀର୍ଥେ ମୁନିଗଣେ ।
ଯା'ର ଚରିତ ଅନୁକ୍ଷଣେ ।। ୪୦
ସ୍ତୁତି କରନ୍ତି ଆତ୍ମଲାଭେ ।
କେବଳ ଆତ୍ମଜ୍ଞାନଲୋଭେ ।। ୪୧
ସେ କଥା ପଶି କର୍ଣ୍ଣଦ୍ୱାରେ ।
ସୁତୀକ୍ଷ୍ଣ-ଚକ୍ର ଘେନି କରେ ।। ୪୨
ଯେ କର୍ମ ଗୃହ-ଧନ୍ଦେ ଥାଇ ।
ତ୍ରିଗୁଣ-ରଜ୍ଜୁ ଗଳେ ଦେଇ ।। ୪୩
ଜନ୍ମମରଣ-ମାର୍ଗେ ଟାଣେ ।
ସେ କର୍ମ ଛେଦେ ତତକ୍ଷଣେ ।। ୪୪
ଏମନ୍ତ କୃଷ୍ଣଗୁଣ ଯେତେ ।
କେ ତୃପ୍ତ ଶୁଣି କର୍ଣ୍ଣପଥେ ।। ୪୫
ତୁମ୍ଭର ସଖା ମୁନିବ୍ୟାସ ।
ଭାରତେ କୃଷ୍ଣ ଗୁଣ-ଯଶ ।। ୪୬
ଅର୍ଥକାମାଦିଦ୍ୱାରେ କହି ।
ଯେଣେ ଶ୍ରୀକୃଷ୍ଣେ ମତିହୋଇ ।। ୪୭
ଯାହା ଶୁଣନ୍ତେ କର୍ଣ୍ଣେ ସୁଖ ।
ମନେ ନ ରହେ କିଛି ଦୁଃଖ ।। ୪୮
ଯାହା ଶୁଣନ୍ତେ ନିତିନିତି ।
ନିବିଡ଼େ ବଢ଼ଇ ବିରକ୍ତି ।। ୪୯
ସେ ହରି କଥନ ଶ୍ରବଣେ ।
ଯେ ପ୍ରାଣୀ ବାଞ୍ଛେ ଅନୁକ୍ଷଣେ ।। ୫୦
ସକଳଦୁଃଖ ହରେ ତା'ର ।
ରବି ଯେସନେ ଅନ୍ଧକାର ।। ୫୧
ଯେ ହରି-କଥନେ ବିମୁଖୀ ।
ତା'ର ଜୀବନ ସଦା ଦୁଃଖୀ ।। ୫୨
ତା'ର ଆୟୁଷ ଗତି-ସ୍ମୃତି ।
କାଳର ବଳେ ନାଶ ଯା'ନ୍ତି ।। ୫୩
ତାହା ନ ଜାଣି ମୂଢ଼ପଣେ ।
ବିଅର୍ଥବାଦ ଅନୁକ୍ଷଣେ ।। ୫୪
ଏଣୁ ଗୋବିନ୍ଦ କଥା ଯେତେ ।
ଆଗମ ନିଗମ ଭକତେ ।। ୫୫

ସକଳ କଥା ମଧ୍ୟେ ସାର ।
ସର୍ବକଲ୍ୟାଣ ସୁଖଘର ।। ୫୬
ଉଧରି କହ ବିପ୍ର ମୋତେ ।
ଏ ଜୀବଆତ୍ମା ମୋକ୍ଷଅର୍ଥେ ।। ୫୭
ପୁଷ୍ପରୁ ସାର ମଧୁ ଯେହ୍ନେ ।
ଉଦ୍ଧରି ମଧୁକର ଆଣେ ।। ୫୮
ଚିତ୍ତ-ସନ୍ତୋଷେ ପାନ କରେ ।
ନିର୍ମଳଭାବେ ଦିନ ହରେ ।। ୫୯
ସୃଷ୍ଟି-ପାଳନ-ସଂହାରଣେ ।
ଯେ ହରି ଆତ୍ମମାୟା-ଗୁଣେ ।। ୬୦
ଅଶେଷ ଶରୀରେ ବିହରେ ।
ଅତିମାନୁଷ କର୍ମକରେ ।। ୬୧
ନାନା ପ୍ରକାର ଶକ୍ତି ଧରେ ।
ଯେମନ୍ତେ ସଂସାରେ ବିହରେ ।। ୬୨
ସେ ହରି ଗୁଣକର୍ମ ଯେତେ ।
ଭୋ ମୁନି କହ ମୋ' ଅଗ୍ରତେ ।। ୬୩

ଶୁକ ଉବାଚ

ଏମନ୍ତ ବିଦୁରର ବାଣୀ ।
ଆନନ୍ଦେ ମୈତ୍ରେୟ ଶୁଣି ।। ୬୪
ଏ ଜୀବ ନିସ୍ତରେ ଯେମନ୍ତେ ।
କହନ୍ତି ବିଦୁର ଅଗ୍ରତେ ।। ୬୫

ମୈତ୍ରେୟ ଉବାଚ

ବିଦୁର ସାଧୁ ତୋ' ବଚନ ।
ଯେଣେ ତରିବେ ଦୁଃଖୀଜନ ।। ୬୬
ଯେ କଥା ହରି-ପାରାୟଣ ।
ବିସ୍ତାରି ପୁଚ୍ଛୁ ତୁ କାରଣ ।। ୬୭
ବ୍ୟାସଙ୍କ ବୀର୍ଯ୍ୟେ ତୁ ସ୍ୱଭାବେ ।
ଜନ୍ମ ଲଭିଲୁ ହରିଭାବେ ।। ୬୮
ମାଣ୍ଡବ୍ୟ ଠହୁଁ ଶାପ ପାଇ ।
ତୁ ଯମ ଶୂଦ୍ରରୂପ ବହି ।। ୬୯
ବ୍ୟାସ କନିଷ୍ଠଭ୍ରାତା କ୍ଷେତ୍ରେ ।
ଯୋଜନଗନ୍ଧା ଅନୁମତେ ।। ୭୦
ଶୂଦ୍ରାର ଗର୍ଭେ ତୋ'ର ଜାତ ।
ତେଣୁ ତୁ ବ୍ୟାସଙ୍କର ସୁତ ।। ୭୧

Dr. Sudhanshu Sekhar Mishra

ସେ ବିପ୍ରଶାପ ମୋକ୍ଷଅର୍ଥେ ।
ହରି ଭଜିଲୁ ଅବିରତେ ।। ୭୨
ସେ ହରି ପ୍ରାଣତ୍ୟାଗ କାଳେ ।
ବନେ ପିପ୍ପଳ ବୃକ୍ଷମୂଳେ ।। ୭୩
ତୋହର ଅର୍ଥେ ମୋତେ ଜ୍ଞାନ ।
କହିଲେ ଦେବକୀନନ୍ଦନ ।। ୭୪
ସେ ଜ୍ଞାନ ତୋତେ ମୁଁ କହିବି ।
ଶୁଣନ୍ତା-ପ୍ରାଣୀ ନିସ୍ତାରିବି ।। ୭୫
ସେ ହରି ଯୋଗମାୟା ବଳେ ।
ଲୀଳାବିହାର ଏ ଶୟଳେ ।। ୭୬
ବିଶ୍ୱ ସର୍ଜଇ ପାଳି ହରେ ।
ଯେ ଯୁଗେ ଯେବା କର୍ମକରେ ।। ୭୭
ନାନାପ୍ରକାର ଲୀଳା କରେ ।
ଇଚ୍ଛା ଏ ସଂସାରେ ବିହରେ ।। ୭୮
ସୃଷ୍ଟିର କାଳେ ଭଗବାନ ।
ଆତ୍ମାକୁ ଆତ୍ମାଜ୍ଞାନେ ଧ୍ୟାନ ।। ୭୯
କରିଣ ଦେଖେ ଏତଜ୍ୟୋତି ।
ସେ ପୁଣି ଆତ୍ମଜ୍ଞାନେ ସ୍ଥିତି ।। ୮୦
ଅଶେଷ ଶକ୍ତି ତା'ର ଦେହେ ।
ନିଦ୍ରିତ ପ୍ରାୟେ ସୁଖେ ରହେ ।। ୮୧
ସେ ଶକ୍ତି ଜ୍ଞାନବଳେ ସ୍ମରି ।
ତକ୍ଷଣେ ମାୟାରୂପ ଧରି ।। ୮୨
ସତ-ଅସତ-ଆତ୍ମା ତା'ର ।
ଯେ ଭାବେ ନିର୍ମିତ ସଂସାର ।। ୮୩
ସେ ମାୟାମଧ୍ୟେ କାଳ ରୂପେ ।
ତ୍ରିଗୁଣ ଗୁଣମୟେ କଳ୍ପେ ।। ୮୪
ପୁରୁଷରୂପେ ବୀର୍ଯ୍ୟ ଥୋଇ ।
ସେ ବୀର୍ଯ୍ୟେ ସ୍ୱୟଂ ପ୍ରକାଶଇ ।। ୮୫
ଅବ୍ୟକ୍ତ ମଧ୍ୟୁ କାଳବଳେ ।
ମହତ ଉଦୟ ନିଶ୍ଚଳେ ।। ୮୬
ବିଲୀନଆତ୍ମା ଦେହଗତ ।
ଯେ ବୀର୍ଯ୍ୟେ ଏ ବିଶ୍ୱ ବ୍ୟକତ ।। ୮୭
ଯହୁଁ ସକଳ ପରକାଶେ ।
ଅନ୍ଧାର ଯେହ୍ନେ ରବି-ତ୍ରାସେ ।। ୮୮
ସେ ଅଂଶ ଗୁଣ କାଳବଶେ ।
ଆତ୍ମାରୁ ସଂସାର ପ୍ରକାଶେ ।। ୮୯

ଆତ୍ମାରୁ ଆତ୍ମାଗୁଣ ବଳେ ।
ଲହରୀ ଯେହ୍ନେ ସିନ୍ଧୁଜଳେ ।। ୯୦
ସେ ପୁଣି ଈଶ୍ୱରର ଇଚ୍ଛା ।
ଯହୁଁ ଉପୁଜେ ସୃଷ୍ଟିଦୀକ୍ଷା ।। ୯୧
ଯେସନେ ରୋପିତ ଅଙ୍କୁର ।
ଧରଇ ବୃକ୍ଷର ଆକାର ।। ୯୨
ସେ ରୂପେ ବିଶ୍ୱର ପ୍ରକାଶ ।
ନିଜଦେହରୁ କରେ ଈଶ ।। ୯୩
ସେ ଅଂଶ-ଗୁଣ-କାଳ-ଆତ୍ମା ।
ବିକୃତ କରି ନିଜ ଆତ୍ମା ।। ୯୪
ତା'ର ବିକାରୁ ଅହଙ୍କାର ।
ତକ୍ଷଣେ ହୋଇଲା ବାହାର ।। ୯୫
କାର୍ଯ୍ୟ କାରଣ କର୍ତ୍ତା ଦେହ ।
ଭୂତ ଇନ୍ଦ୍ରିୟ ମନୋମୟ ।। ୯୬
ସାତ୍ତ୍ୱିକ ରାଜସ ତାମସ ।
ଏ ତିନିରୂପେ ତା' ପ୍ରକାଶ ।। ୯୭
ସେ ପୁଣି ବିଷ୍ଣୁ-ମାୟାବଳେ ।
ଜଳବୁଦ୍‌ବୁଦ ଯେହ୍ନେ ଜଳେ ।। ୯୮
ମନ ଉପୁଜିଲା ତକ୍ଷଣ ।
ଇନ୍ଦ୍ରିୟ ଦେବତାଏ ପୁଣ ।। ୯୯
ତୈଜସୁ ହେଲେ ଇନ୍ଦ୍ରିଗଣେ ।
ଯେ ଜ୍ଞାନ ପରମ କାରଣେ ।।୧୦୦
ତମୁ ଉପୁଜିଲା ଶବଦ ।
ସ୍ପରଶ ରୂପ-ରସ-ଗନ୍ଧ ।।୧୦୧
ଏ ପଞ୍ଚ ସୂକ୍ଷ୍ମଗୁଣେ ମିଶି ।
ଶବଦୁ ଗଗନ ପ୍ରକାଶି ।।୧୦୨
ସେ କାଳମାୟା ଅଂଶଯୋଗେ ।
ବିଷ୍ଣୁର ଦୃଷ୍ଟିର ସଂଯୋଗେ ।।୧୦୩
ତହୁଁ ସ୍ପରଶ-ଗୁଣ ହୋଇ ।
ସ୍ପର୍ଶୁ ପବନ ପ୍ରକାଶଇ ।।୧୦୪
ତାହାର ତହିଁ ବେନିଗୁଣ ।
ଶବଦ ସ୍ପରଶ ଲକ୍ଷଣ ।।୧୦୫
ସେ ପୁଣି କାଳେ ବିକାରିତ ।
ଜ୍ୟୋତି ତାହାର ତହୁଁ ଜାତ ।।୧୦୬
ସେ ଜ୍ୟୋତି ମଧ୍ୟେ ରୂପ ଥୋଇ ।
ଶବ୍ଦ-ସ୍ପରଶ-ରୂପମୟୀ ।।୧୦୭

ଜ୍ୟୋତିବିକାରେ ରସୁଁ ଆପ ।
ଶବ୍ଦ-ସ୍ପରଶ-ରସ-ରୂପ ।।୧୦୮
ଏ ଚାରିଗୁଣ ଜଳେ ଥୋଇ ।
ଭୂମି ଉପୁଜେ ଗନ୍ଧ ଲଇ ।।୧୦୯
ଏମନ୍ତେ ସୃଷ୍ଟିର ସଞ୍ଚାର ।
ମହତଆଦିତତ୍ତ୍ୱଙ୍କର ।।୧୧୦
ଅଧିଦେବତା ଅଧିକାର ।
ଯେ ଅଂଶ ଅଟନ୍ତି ବିଷ୍ଣୁର ।।୧୧୧
ସେ ତତ୍ତ୍ୱମାନଙ୍କ ଈଶ୍ୱର ।
ଚେତନା-ବିକ୍ଷେପ-ବିଚାର ।।୧୧୨
ଏ ତିନିଗୁଣଙ୍କୁ ସେ ଧରି ।
ବ୍ରହ୍ମାଣ୍ଡ ସୃଜିଣ ନ ପାରି ।।୧୧୩
କରଅଞ୍ଜଳି ଶିରେ ଦେଇ ।
ଭାବେ ବୋଲନ୍ତି ବିଷ୍ଣୁ ଚାହିଁ ।।୧୧୪

ଦେବଗଣ ଉବାଚ

ଭୋ ଦେବ ନମୁଁ ତୋ' ପୟର ।
ପ୍ରପନ୍ନଜନ ଦୁଃଖ ହର ।।୧୧୫
ଯେ ପାଦପଦ୍ମ ଆଶ୍ରେ କରି ।
ସଂସାରୁ ତରନ୍ତି ସଂସାରୀ ।।୧୧୬
ହେ ଧାତା ତୋ'ର ମାୟାବଳେ ।
ଅଶେଷଜନ୍ତୁ ଏ ଶୟଳେ ।।୧୧୭
କରନ୍ତି ତାପତ୍ରୟେ ଭ୍ରମ ।
ଏଣୁ ଲଭନ୍ତି ପ୍ରାଣୀ ଶ୍ରମ ।।୧୧୮
ତୋ' ପାଦପଦ୍ମ ଛାୟାତଳେ ।
ଯେ ପ୍ରାଣୀ ରହନ୍ତି ନିଶ୍ଚଳେ ।।୧୧୯
ସେ ପ୍ରାଣୀ ସଂସାରୁ ତରନ୍ତି ।
କେବେ ହେଁ ଭ୍ରମେ ନ ପଡ଼ନ୍ତି ।।୧୨୦
ଏଣୁ ତୋ ପାଦ ସେବାଅର୍ଥେ ।
ଆମ୍ଭେ ରହିବୁ ଏ ଜଗତେ ।।୧୨୧
ତୋ' ମୁଖପଦ୍ମ ଛାୟା ପ୍ରାୟ ।
ଯେମନ୍ତେ ପକ୍ଷୀଙ୍କ ଆଶ୍ରୟ ।।୧୨୨
ନିଶ୍ଚିନ୍ତ ପ୍ରାୟେ ଘୋରବନେ ।
ଆଶ୍ରେ କରନ୍ତି ମୁନିଜନେ ।।୧୨୩
ସେ ପାଦ ଛୁଇଁ ତୀର୍ଥବର ।
ଗଙ୍ଗା ଯେ ସ୍ୱଭାବେ ନିର୍ମଳ ।।୧୨୪

Dr. Sudhanshu Sekhar Mishra

ସମ୍ପୂର୍ଣ୍ଣ ଅଘମରଷଣ ।
ସେ ପାଦେ ପଶିଲୁ ଶରଣ ।।୧୨୫
ଏଣୁ ଯେ ତୋହର ଚରଣେ ।
ହୃଦେ ଭାବନ୍ତି ଅନୁକ୍ଷଣେ ।।୧୨୬
ଜ୍ଞାନ-ବୈରାଗ୍ୟବଳେ ଚିନ୍ତି ।
ଯେ ପାଦ ହୃଦେ ଆରୋପନ୍ତି ।।୧୨୭
ସେ ପାଦେ ପଶିଲୁ ଶରଣ ।
ପ୍ରସନ୍ନ ହୁଅ ନାରାୟଣ ।।୧୨୮
ସୃଷ୍ଟି-ସ୍ଥିତି-ସଂହାର ଅର୍ଥେ ।
ତୋ' ଅବତାର ଏ ଜଗତେ ।।୧୨୯
ସେ ରୂପ ଗୁଣ ଯେ ଚିନ୍ତନ୍ତି ।
ଏ ଘୋରସଂସାରୁ ତରନ୍ତି ।।୧୩୦
ଭୋ ନାଥ ଗୃହ-ଅନ୍ଧକୂପେ ।
ପ୍ରାଣୀ ପଡ଼ନ୍ତି ମୋହକନ୍ଧେ ।।୧୩୧
ମୁହିଁ ମୋହର ବୋଲି ଭାଷି ।
ହୃଦେ ବାନ୍ଧନ୍ତି ମୋହଫାଶି ।।୧୩୨
ସେ ଦୃଢ଼-ବନ୍ଧନ ବିଷାଦ ।
ହେଲେ ଖଣ୍ଡଇ ତୋ'ର ପାଦ ।।୧୩୩
ତୋ ପାଦପଦ୍ମେ ଜଗନ୍ନାଥ ।
ନିରତେ ରହୁ ଆମ୍ଭ ଚିତ୍ତ ।।୧୩୪
ଅଶାନ୍ତ ଇନ୍ଦ୍ରିଗଣ ମେଳେ ।
ହୃଦୟ ନ ରହେ ନିଶ୍ଚଳେ ।।୧୩୫

ଆତ୍ମାର ପଥ ନ ଦେଖନ୍ତି ।
ଯେ କଷ୍ଟେ ସମ୍ପଦ-ବିଭୂତି ।।୧୩୬
ତୋ' କଥା ସୁଧା ରସପାନ ।
ପ୍ରବୋଧ-ଭକ୍ତି-ଦିବ୍ୟଜ୍ଞାନ ।।୧୩୭
ବୈରାଗ୍ୟସାର ସେ ଲଭନ୍ତି ।
ନିର୍ଭୟେ ବିଷ୍ଣୁ ଲୋକେ ଯା'ନ୍ତି ।।୧୩୮
ଅପରେ ଯେତେ ମୁନିକୁଳେ ।
ଆତ୍ମା-ସମାଧି-ଯୋଗବଳେ ।।୧୩୯
ଘୋର ପ୍ରକୃତି-ମୁଖୁ ତରି ।
ତୋ' ପଦ-କମଳ ଆବୋରି ।।୧୪୦
ତୋ'ର ସେବାରେ ଭ୍ରମ ତୁଟେ ।
ଅଶେଷ-ମାୟାବନ୍ଧ ଫିଟେ ।। ୧୪୧
ଲୋକ ସର୍ଜିବା ଅର୍ଥେ ତୁହି ।
ଆମ୍ଭଙ୍କୁ ଆପଣେ ଭିଆଇ ।।୧୪୨
ତ୍ରିଗୁଣ-ଭେଦଭାବ ଦେଇ ।
ଆମ୍ଭଙ୍କୁ ସର୍ଜୁ ନାଥ ତୁହି ।।୧୪୩
ଆମ୍ଭେ ବିଯୁକ୍ତଭାବେ ଥା'ନ୍ତେ ।
ତୋ' ସୃଷ୍ଟି କରିବୁ କେମନ୍ତେ ।।୧୪୪
ଯେମନ୍ତେ ଯଥାକାଳେ ବଳି ।
ତୋ' ପାଦେ ଦେଇ ବନମାଳୀ ।।୧୪୫
ଥୋକାଏ ପାଇ ତୋଷଚିତ୍ତେ ।
ତୋ' ପାଦେ ସେବୁଁ ଅବିରତେ ।।୧୪୬

ତୁ କୂଟସ୍ଥିତ ଆଦି ହରି ।
ମାୟା-ପୁରୁଷ ରୂପ ଧରି ।।୧୪୭
ଅବିଦ୍ୟା ଗୁଣ-କର୍ମ-ବଳେ ।
ତୋ' ଶକ୍ତିଗର୍ଭେ ତୁ ନିଶ୍ଚଳେ ।।୧୪୮
ଅମୋଘ-ବୀର୍ଯ୍ୟ ନାଥ ଥୋଇ ।
ସୃଷ୍ଟି ସର୍ଜନା କରୁ ତୁହି ।।୧୪୯
ତୋହର ତହୁଁ ଆମ୍ଭେ ଜାତ ।
ସତ୍ୟ ପ୍ରମୁଖ ଜଗନ୍ନାଥ ।।୧୫୦
ତୋ' ଆଜ୍ଞା ଶିରେ ଘେନି ଭାବେ ।
କହ କି କରିବଇଁ ଏବେ ।।୧୫୧
ଆମ୍ଭଙ୍କୁ ଦିବ୍ୟଚକ୍ଷୁ ଦେଇ ।
ତୋ'ର ବ୍ୟାପାରେ ରଖ ତୁହି ।। ୧୫୨
ଏମନ୍ତ ଦେବଙ୍କ ବଚନ ।
ଶୁଣି ସନ୍ତୋଷ ଭଗବାନ ।।୧୫୩
ସେ ହରିଚରଣେ ବିଶ୍ୱାସ ।
ଭଣଇ ଜଗନ୍ନାଥ ଦାସ ।।୧୫୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ପଞ୍ଚମୋଽଧ୍ୟାୟଃ ॥

---

## ଷଷ୍ଠ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତ ଦେବଙ୍କ ବଚନ ।
ଶୁଣି ସନ୍ତୋଷ ଭଗବାନ ।। ୧
ନିଦ୍ରିତ ପ୍ରାୟ ଲୋକତନ୍ତ୍ର ।
ଈଶ୍ୱର ଇଚ୍ଛାର ଆୟତ୍ତ ।। ୨
ସେ କାଳଶକ୍ତି ରୂପ ଧରି ।
ତ୍ରୟୋବିଂଶତିତତ୍ତ୍ୱେ ପୂରି ।। ୩
ଚେଷ୍ଟା-ସ୍ୱରୂପେ ତା'ଙ୍କ ମଧ୍ୟେ ।
ନିଦ୍ରିତ-କର୍ମକୁ ପ୍ରବୋଧେ ।। ୪
ସଂଯୋଗ କରି ଭିନ୍ନଭିନ୍ନ ।
ଯାହାର ଯହିଁ ପ୍ରୟୋଜନ ।। ୫

ସେ ତ୍ରୟୋବିଂଶତତ୍ତ୍ୱଗଣେ ।
ଈଶ୍ୱର-ଆଜ୍ଞା ପରମାଣେ ।। ୬
ଯେ ଯାହା ମାତ୍ରା ବଳ ଦେଇ ।
ଅଧିପୁରୁଷ ରୂପ ବହି ।। ୭
ଏମନ୍ତେ ପରମପୁରୁଷ ।
ମାତ୍ରାଙ୍କ ମଧ୍ୟେ ପରକାଶ ।। ୮
ଏକ ଆରକେ କ୍ଷୋଭ ପାଇ ।
ଚରଅଚର ଲୋକ ଯହିଁ ।। ୯
ସୁବର୍ଣ୍ଣମୟ ସେ ପୁରୁଷ ।
ରହିଲା ସହସ୍ରବରଷ ।। ୧୦

ଜଳେ ଶୟନ ନାରାୟଣ ।
ଅନାଦି-ପରମ-କାରଣ ।। ୧୧
ସକଳ ଜୀବ ଆତ୍ମା ସେହି ।
ସର୍ବଶରୀରେ ସଞ୍ଚରଇ ।। ୧୨
ସଂସାରେ ଯେତେ ପ୍ରଜାପତି ।
ବିଶ୍ୱସଂସାରକୁ ସର୍ଜନ୍ତି ।। ୧୩
ତାହାଙ୍କ ରୂପହେତୁ ସେହି ।
ତୃତୀୟଶକ୍ତି କି ସେ ବହି ।। ୧୪
ଦଇବ ଆତ୍ମା କର୍ମମୟ ।
ବିଭାଗ କରି ଆତ୍ମାଦେହ ।। ୧୫

Dr. Sudhanshu Sekhar Mishra

ସର୍ଜିଲା ଏକ ଦଶ ତିନି ।
ସୃଷ୍ଟିବ୍ୟାପାରେ କର୍ମ ଘେନି ।। ୧୬
ଜ୍ଞାନେ ଚୈତନ୍ୟରୂପ ଧରି ।
କ୍ରିୟାଶକ୍ତିରେ ପ୍ରାଣଭରି ।। ୧୭
ଯେ ପ୍ରାଣ ଅପାନ ସମାନ ।
ଉଦାନ ବ୍ୟାନଟି ପ୍ରମାଣ ।। ୧୮
କୃକର କୂର୍ମ ନାଗ ଖ୍ୟାତ ।
ଯେ ଧନଞ୍ଜୟ ଦେବଦତ୍ତ ।। ୧୯
ଏମନ୍ତେ ଦଶପ୍ରାଣ କରି ।
ଏହାଙ୍କ ବୃତ୍ତିଭେଦେ ହରି ।। ୨୦
ଅଶେଷ ପ୍ରାଣୀ ଆତ୍ମା ଏହି ।
ଖେଳଇ ଅଂଶରୂପ ହୋଇ ।। ୨୧
ଆଦି ଅବତାର ସର୍ଜନ ।
ଏ ଭୂତଗ୍ରାମ ଭିନ୍ନ ଭିନ୍ନ ।। ୨୨
ଅଧ୍ୟାତ୍ମ ଅଧିଭୂତ ଭାବ ।
ପୁଣି କଳ୍ପିଲା ଅଧିଦେବ ।। ୨୩
ବିରାଟରୂପେ ଦଶପ୍ରାଣ ।
ଏକା ସେ ହୃଦୟ କାରଣ ।। ୨୪
ବିଶ୍ୱ-ସର୍ଜନ ଅର୍ଥେ ହରି ।
ତତ୍ତ୍ୱଙ୍କ କଥାକୁ ସୁମରି ।। ୨୫
ପ୍ରଜାପତିଙ୍କ ଜନ୍ମ ଜାଣି ।
ବିରାଜଦେହେ ଚକ୍ରପାଣି ।। ୨୬
ତକ୍ଷଣେ ପଶି ନିଜ ତେଜେ ।
ଯେବା ସେ ପ୍ରୟୋଜନ କାର୍ଯ୍ୟେ ।। ୨୭
ସ୍ଥାନ ଭିଆଇ ଦଶମତେ ।
ଶୁଣ ତୁ ସ୍ଥାପିଲେ ଯେମନ୍ତେ ।। ୨୮
ବିରାଜମୁଣ୍ଡେ ତୁଣ୍ଡ କରି ।
ବଚନ ଅର୍ଥେ ଅଧିକାରୀ ।। ୨୯
ଅଗ୍ନି ସ୍ଥାପିଲେ ଶବ୍ଦ ଅର୍ଥେ ।
ଏତେ ତୁ ଶୁଣ ଏକଚିତ୍ତେ ।। ୩୦
ସେ ମୁଖ ମଧ୍ୟେ ତାଳୁ ଭେଦି ।
ବରୁଣ ରସନା ସମ୍ପାଦି ।। ୩୧
ଜିହ୍ୱା ଆବୋରି ଷଡ଼ରସେ ।
ଥାପିଲେ ଆସ୍ୱାଦନ ବଶେ ।। ୩୨
ତୁଣ୍ଡ ଉପରେ ନାସାଦ୍ୱାରେ ।
ବସିଲେ ଅଶ୍ୱିନୀକୁମାରେ ।। ୩୩
ଘ୍ରାଣ ଆବୋରି ଗନ୍ଧ ଅର୍ଥେ ।
ସୁଗନ୍ଧ ଦୁର୍ଗନ୍ଧ ସହିତେ ।। ୩୪
ସେ ନାସାମୂଳେ ଚକ୍ଷୁଦ୍ୱାର ।
ସମେ ବସଇ ଦିବାକର ।। ୩୫
ଜ୍ୟୋତିସ୍ୱରୂପେ ସେ ଲୋଚନେ ।
ରହିଲେ ରୂପ-ସମ୍ପାଦନେ ।। ୩୬
ପବନ ବହେ ଦେହେ ପଶି ।
କେବେହେଁ କାହିଁରେ ନ ମିଶି ।। ୩୭
ଶୀତ-ତପତ ଜାଣିବାରେ ।
ଚର୍ମେ ବସିଲେ ଅଧିକାରେ ।। ୩୮
ସେ ବେନିଚକ୍ଷୁର ଉପରେ ।
ବାମ-ଦକ୍ଷିଣ କର୍ଣ୍ଣଦ୍ୱାରେ ।। ୩୯
ଶବଦ ଅର୍ଥେ ଦିଗ ବସେ ।
ଯେବା ଶବଦ ଯେଣେ ଭାଷେ ।। ୪୦
ତ୍ୱକ ଯେ ଚର୍ମୁ ଭିନ୍ନ ହେଲା ।
ଔଷଧି ଲୋମେ ଯେ ବସିଲା ।। ୪୧
ସେହି ଲୋମରୁ କଣ୍ଡୁ ଆଦି ।
ହୁଅଇ ସ୍ପରଶ ସୁଖାଦି ।। ୪୨
ମେଢ୍ର ଆବୋରି ଲିଙ୍ଗବୃତ୍ତି ।
ତହିଁ ବସିଲେ ପ୍ରଜାପତି ।। ୪୩
ଶୁକ୍ର ରେତସ ଅନୁବନ୍ଧେ ।
ମୈଥୁନ ସ୍ପରଶ ଆନନ୍ଦେ ।। ୪୪
ସନ୍ତତି ଉପୁଜିବା ଅର୍ଥେ ।
ଲିଙ୍ଗେ ରହିଲେ ଦୃଢ଼ଚିତ୍ତେ ।। ୪୫
ତା' ଅଧେ ଅଷ୍ଟମଅଙ୍ଗୁଳେ ।
ଯେ ମଳଦ୍ୱାର ପାୟୁମୂଳେ ।। ୪୬
ମିତ୍ର ବସିଲା ତା' ଆବୋରି ।
ମୃତ୍ୟୁଦେବତା ସଙ୍ଗେ କରି ।। ୪୭
ମଳ ଉତ୍ସର୍ଗ ଦୃଢ଼ବନ୍ଧେ ।
ବ୍ୟାପାର ଆବୋରି ଆନନ୍ଦେ ।। ୪୮
ହୃଦ ଉପରେ ବେନିଭୁଜେ ।
ଇନ୍ଦ୍ର ବସିଲା ନିଜ ତେଜେ ।। ୪୯
ବୃତ୍ତିବ୍ୟାପାର କର୍ମ ଅର୍ଥେ ।
ଜୀବର ଜୀବିକା ଯେମନ୍ତେ ।। ୫୦
କଟୀ ସନ୍ଧାନ ପାଦ କରି ।
ତହିଁ ବସିଲେ ନରହରି ।। ୫୧
ଏ ପିଣ୍ଡ ଚଳିବ ଯେମନ୍ତେ ।
ଗମନ ପ୍ରାପ୍ୟସ୍ଥାନ ଅର୍ଥେ ।। ୫୨
ବାଗୀଶ ବସେ ବୁଦ୍ଧି ମଧ୍ୟେ ।
ସୁବୁଦ୍ଧି ପ୍ରବୋଧ ଆନନ୍ଦେ ।। ୫୩
ହୃଦୟଭେଦେ ନିଶାକର ।
ଯେ ମନବ୍ୟାପାର-ଗୋଚର ।। ୫୪
ଚନ୍ଦ୍ରମା ତହିଁ ଦୃଢ଼ମତେ ।
ଆବୋରି ରହିଲା ନିଶ୍ଚିନ୍ତେ ।। ୫୫
ଆତ୍ମାରେ ବସେ ଅଭିମାନ ।
ଯେଣୁ କର୍ତ୍ତବ୍ୟେ ବହେ ଜ୍ଞାନ ।। ୫୬
ଚିତ୍ତକୁ ଭେଦି ସ୍ରଷ୍ଟା ବସେ ।
ଯେଣେ ସେ ବିଜ୍ଞାନ ପ୍ରକାଶେ ।। ୫୭
ମୂର୍ଦ୍ଧନି ଦେଶେ ସ୍ୱର୍ଗରହେ ।
ପାଦଯୁଗଳେ ମହୀ ବହେ ।। ୫୮
ନାଭିରୁ ପ୍ରକାଶେ ଗଗନ ।
ଗୁଣଙ୍କ ବୃତ୍ତି ଘେନି ଶୂନ୍ୟ ।। ୫୯
ଏମନ୍ତେ ଆତ୍ମା ତା'ଙ୍କ ମତେ ।
ଦେହ ଆବୋରିଲେ ନିଶ୍ଚିନ୍ତେ ।। ୬୦
ସୁର-ଈଶ୍ୱରଗଣ ଜନ ।
ଦେହେ କଳ୍ପିଲେ ଭଗବାନ ।। ୬୧
ଅତ୍ୟନ୍ତ ସତ୍ତ୍ୱଗୁଣ କରି ।
ଦେବେ ରହିଲେ ସ୍ୱର୍ଗପୁରୀ ।। ୬୨
ରଜ-ସ୍ୱଭାବ ନରଗଣ ।
ଭୂମିରେ କଲେ ଅଧିଷ୍ଠାନ ।। ୬୩
ରୁଦ୍ରପାର୍ଷଦ ଭୂତଗଣ ।
ତା'ଙ୍କ ସ୍ୱଭାବ ତମୋଗୁଣ ।। ୬୪
ତାହାଙ୍କ ଅନ୍ତରୀକ୍ଷଲୋକ ।
ଯାହାକୁ ବୋଲି ଭୁବଲୋକ ।। ୬୫
ବ୍ରାହ୍ମଣ ଜନ୍ମିଲା ମୁଖରୁ ।
ଯେ ଚାରିବର୍ଣ୍ଣଙ୍କର ଗୁରୁ ।। ୬୬
ବିରାଜ ତେଜଗୁଣେ ହରି ।
ଭୁଜୁଁ କ୍ଷତ୍ରିୟ ଜନ୍ମ କରି ।। ୬୭
ବୈଶ୍ୟ ଜନ୍ମିଲେ ଜାନୁଯୁଗେ ।
ଜୀବର ଜୀବିକା ସ୍ୱଭାବେ ।। ୬୮
ଏ ତିନିବର୍ଣ୍ଣ ସେବାଅର୍ଥେ ।
ଶୂଦ୍ର ଜନ୍ମିଲା ପାଦଗତେ ।। ୬୯

Dr. Sudhanshu Sekhar Mishra

ଯାହାର ସେବାବୃତ୍ତି ଫଳେ ।
ହରି ସନ୍ତୋଷ ଏ ଶୟଳେ ।। ୭୦
ଏ ଚାରିବର୍ଣ୍ଣ ଏ ଜଗତେ ।
ସ୍ୱଭାବଧର୍ମ ଅନୁମତେ ।। ୭୧
ଜଗତଗୁରୁ ହରିପାଦେ ।
ଭଜିବେ ଯୁଗ ଅନୁବାଦେ ।। ୭୨
ଶୁଦ୍ଧ ସୁବୃତ୍ତି ଘେନି ସୁଖେ ।
ବିଷ୍ଣୁ ପୂଜିବେ ଯଜ୍ଞମୁଖେ ।। ୭୩
ତାହାର ଗୁଣ ବର୍ଣ୍ଣିବାରେ ।
କେବା ସମର୍ଥ ଏ ସଂସାରେ ।। ୭୪
ଏମନ୍ତେ ଶୁଣ ହେ ବିଦୂର ।
ଯାହା କହିଲେ ଗଦାଧର ।। ୭୫
ମୁଁ ତୋତେ କହିଲଇଁ ଭାବେ ।
ଯାହା ପଚାରିଲୁ ପ୍ରସ୍ତାବେ ।। ୭୬
ସେ ହରି ଗୁଣ-ମାୟା-ଅର୍ଥ ।
କେ ମୁଖେ କହି ସାମରଥ ।। ୭୭
ତଥାପି ଜ୍ଞାନ ମୋର ଯେତେ ।
ସବୁ କହିବି ତୋ' ଅଗ୍ରତେ ।। ୭୮
ଯେଣୁ ସେ କୃଷ୍ଣର ଚରିତ ।
କରଇ ବଚନ ପବିତ୍ର ।। ୭୯
ଯା'ର ମହିମା ଅବଧାନେ ।
ଜ୍ଞାନ-ଅମୃତ-ରସ-ପାନେ ।। ୮୦
ଜନ୍ମ-ମରଣୁ ପ୍ରାଣୀତରେ ।
ନ ବୁଡ଼େ ସଂସାରସାଗରେ ।। ୮୧
ତା'ର ମହିମା ଏ ସଂସାରେ ।
କେ କହୁ ଶତ ସମ୍ବତ୍ସରେ ।। ୮୨
ଯା'ର ମହିମା ଯୋଗେ ଚିନ୍ତି ।
ବ୍ରହ୍ମାଶଙ୍କରେ ମୋହ ଯା'ନ୍ତି ।। ୮୩
ସେ ହରି ଏ ମାୟା ସଂସାରେ ।
ମୋହିନୀ ରୂପରେ ପ୍ରଚରେ ।। ୮୪
ସେ ହରି ସ୍ୱୟଂ ଆତ୍ମାଗତି ।
ସେହି ନ ଜାଣେ ମାୟାଗତି ।। ୮୫
ଅପରେ କେବା ତାହା ଜାଣେ ।
ବ୍ରହ୍ମାଦି ଯେତେ ଦେବଗଣେ ।। ୮୬
ଯା'ର ଚରଣ ଖୋଜିଗଲେ ।
ମନ-ବଚନ ନ ପାଇଲେ ।। ୮୭
ଅପରେ କେ ତାହା ଜାଣିବ ।
କେ ମୁଖେ ରେଣୁକୁ ଗଣିବ ।। ୮୮
ସେ ହରିପାଦେ କରି ଆଶ ।
କହଇ ଜଗନ୍ନାଥ ଦାସ ।। ୮୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଷଷ୍ଠୋଽଧ୍ୟାୟଃ ॥

---

## ସପ୍ତମ ଅଧ୍ୟାୟ

ଶୁକ ଉବାଚ

ଏମନ୍ତେ ମଇତ୍ରେୟ ବାଣୀ ।
ବିଦୁର ଦୃଢ଼ଚିତ୍ତେ ଶୁଣି ।। ୧
ଆନନ୍ଦମନେ ବ୍ୟାସସୁତ ।
କପୋଳେ ଦେଇ ବେନିହସ୍ତ ।। ୨
ରୋମପୁଲକ ତା'ର ଦେହୀ ।
ପୁଚ୍ଛେ ମୈତ୍ରେୟ ମୁଖ ଚାହିଁ ।। ୩

ବିଦୁର ଉବାଚ

ଭୋ ମୁନି ଏ ତ ବିପରୀତ ।
ଭ୍ରମେ ଭ୍ରମଇ ମୋ'ର ଚିତ୍ତ ।। ୪
ସେ ହରି ସ୍ୱଭାବେ ନିର୍ଗୁଣ ।
ଚିନ୍ମାତ୍ର ପରମ-କାରଣ ।। ୫
ଲୀଳା-ବିହାରେ-ଗୁଣ କ୍ରିୟା ।
କି ରୂପେ ସର୍ଜେ ତାରମାୟା ।। ୬
ବାଳକ କ୍ରୀଡ଼ାଭାବ ଯେହ୍ନେ ।
ଏ ତ ନ ଘଟେ ଅନୁମାନେ ।। ୭
ଇଚ୍ଛା-ସ୍ୱଭାବେ ଖେଳତା'ର ।
ଏ ନୋହେ ମୋହର ଗୋଚର ।। ୮
ଯେ ନିଦ୍ରାଗତ ନିଜ ସୁଖେ ।
ସେ କିପାଁ ମିଶେ ଏତେ ଦୁଃଖେ ।। ୯
ଯେ ଗୁଣମୟୀ ମାୟାବଳେ ।
ବିଶ୍ୱସର୍ଜଇ ଅବହେଳେ ।। ୧୦
ପୁଣି ପାଳିଣ କରେ ଅନ୍ତ ।
ବ୍ୟାପାରୀ ପୁରୁଷ ଯେମନ୍ତ ।। ୧୧
ଯେ ଜୀବାତ୍ମା ବ୍ରହ୍ମମୟେ ।
କିପାଁ ଅବିଦ୍ୟା ସଙ୍ଗହୋଏ ।। ୧୨
କର୍ମ କରଇ ନାନାମତେ ।
ଯେ ଦେଶକାଳପାତ୍ର ଅର୍ଥେ ।। ୧୩
କେମନ୍ତେ ସୃଷ୍ଟି ସେ କରଇ ।
ସେ କର୍ମ ତା'କୁ ନ ଲାଗଇ ।। ୧୪
ମାୟା ସଂଯୋଗେ ନିପାତଇ ।
ଅନ୍ୟ ପୁରୁଷ ପ୍ରାୟ ହୋଇ ।। ୧୫
ସେ ଏକ ସର୍ବ ଆତ୍ମାଗତି ।
ସକଳ କ୍ଷେତ୍ରେ ତା'ର ସ୍ଥିତି ।। ୧୬
କର୍ମରୁ ସୁଖ-କ୍ଳେଶ ସ୍ଫୁରେ ।
ସେ କିପାଁ ଏ କର୍ମେ ବିହରେ ।। ୧୭
ଅଜ୍ଞାନ-ସଙ୍କଟେ ମୋ' ମନ ।
ପଡ଼ି ଭାଳଇ ଛନ୍ନଛନ୍ନ ।। ୧୮
ଏଣୁ ମୋ' ମନେ ଯେତେ ଖେଦ ।
ଜ୍ଞାନ-ଖଡ଼୍‌ଗେ ମୁନି ଛେଦ ।। ୧୯

ଶୁକ ଉବାଚ

କହନ୍ତି ଶୁକ ମୁନିବର ।
ଶୁଣ ପରୀକ୍ଷ ଦଣ୍ଡଧର ।। ୨୦
ଏମନ୍ତେ ବିଦୁରର ବାଣୀ ।
ସାନନ୍ଦେ ମଇତ୍ରେୟ ଶୁଣି ।। ୨୧
ବିଷ୍ଣୁ-ଚିନ୍ତନ ଅନୁରାଗେ ।
ହସି କହନ୍ତି ତା'ର ଆଗେ ।। ୨୨

Dr. Sudhanshu Sekhar Mishra

### ମୈତ୍ରେୟ ଉବାଚ

ସେ ବିଷ୍ଣୁ ମାୟାମୟ ଦେହୀ ।
ଏମନ୍ତେ ମନକୁ ମୋହଇ ।। ୨୩
ଈଶ୍ୱର ସ୍ୱଭାବେ ବିମୁକ୍ତ ।
ତା'ର ବନ୍ଧନ ମାୟା ମାତ୍ର ।। ୨୪
ଯେସନେ ସ୍ୱପ୍ନେ ଅନୁମାନ ।
ହୁଅଇ ମସ୍ତକ ଛେଦନ ।। ୨୫
ସେ ରୂପେ ଆତ୍ମାର ବନ୍ଧନ ।
ଅସତ୍ୟ ସତ୍ୟ ପ୍ରାୟେ ଜାଣ ।। ୨୬
ଆତ୍ମାର ବିପରୀତ ଭାବେ ।
ଈଶ୍ୱର ଈଶ୍ୱର ସ୍ୱଭାବେ ।। ୨୭
ଶରୀର ଭେଦେ ଇଛାକରେ ।
ଯେସନେ ଦର୍ପଣ ଭିତରେ ।। ୨୮
ଦେଖନ୍ତା ପୁରୁଷକୁ ମୋହେ ।
ତା'ର ବିକାର ଦେହେ ବହେ ।। ୨୯
କର୍ମ କରନ୍ତେ ସେ କରଇ ।
ସେ ଯେହ୍ନେ ତା'କୁ ନ ଲାଗଇ ।। ୩୦
ଏମନ୍ତେ କୃଷ୍ଣ-ମାୟାବଳେ ।
ଚନ୍ଦ୍ରର ଛାୟା ଯେହ୍ନେ ଜଳେ ।। ୩୧
ଜଳ କମ୍ପନେ ସେ କମ୍ପଇ ।
ସେ ଯେହ୍ନେ ତା'କୁ ନ ଲାଗଇ ।। ୩୨
ତେମନ୍ତେ ଜୀବ ମାୟାବଳେ ।
ଆତ୍ମାରେ ନ ରହେ ନିଶ୍ଚଳେ ।। ୩୩
ଯୋଗୀଏ ଯୋଗଧ୍ୟାନ ବଳେ ।
ଆତ୍ମାରେ ରହନ୍ତି ନିଶ୍ଚଳେ ।। ୩୪
ଇନ୍ଦ୍ରିୟ ତା'ଙ୍କୁ ନ ଲାଗନ୍ତି ।
ଅନ୍ତରେ ନିଶ୍ଚଳେ ରହନ୍ତି ।। ୩୫
ବିଷ୍ଣୁର ପାଦ ସେହି ମତେ ।
ଯେବା ଚିନ୍ତନ୍ତି ଅବିରତେ ।। ୩୬
ତାହାଙ୍କ ଦେହେ କ୍ଲେଶ ଯେତେ ।
ଦହନ ହୁଅନ୍ତି ସମସ୍ତେ ।। ୩୭
ଏଣୁ କୃଷ୍ଣର ଗୁଣଗାଥା ।
ଯେ ଶୁଣେ ଯେ ଅବା ବକତା ।। ୩୮
ଅଶେଷ-କ୍ଲେଶ ତା'ଙ୍କ ଦେହେ ।
ଦହନ ହୋନ୍ତି ତୃଣପ୍ରାୟେ ।। ୩୯
ସେ ହରି-ପାଦପଦ୍ମ-ଗନ୍ଧେ ।
ଚିତ୍ତ ଲୋଭିତ ମକରନ୍ଦେ ।। ୪୦
ନିତ୍ୟେ ପିବନ୍ତି ଭୃଙ୍ଗ ପ୍ରାୟ ।
ତା'ଙ୍କୁ ନ ଲାଗେ ଯମଭୟ ।। ୪୧

### ବିଦୁର ଉବାଚ

ଭୋ ମୁନି ତୁମ୍ଭ ବାକ୍ୟ-ଅସି ।
ମୋ' ମନ-ସଂଶୟ ବିନାଶି ।। ୪୨
ଜୀବ-ପରମ ବେନିଭାବେ ।
ଚିତ୍ତ ମୋ' ପ୍ରବେଶିଲା ଏବେ ।। ୪୩
ଅବିଦ୍ୟାମୂଳ ଏ ସଂସାର ।
ସତ୍ୟ ଏ ବଚନ ତୋହର ।। ୪୪
ବିଷ୍ଣୁ-ମାୟାରେ ଜୀବ ଭ୍ରମେ ।
ଅସତ୍ୟ ସତ୍ୟ ପ୍ରାୟ ମଣେ ।। ୪୫
ସଂସାରେ ମୂଢ଼ ଯେଉଁ ଜନ ।
ଯେବା ଈଶ୍ୱରେ ଦୃଢ଼ମନ ।। ୪୬
ଏ ବେନି ସଂସାରୁ ତରନ୍ତି ।
ମଝିମଝିକା ନାଶ ଯା'ନ୍ତି ।। ୪୭
ଅନର୍ଥ ଅସତ୍ୟ ସଂସାର ।
ସତ୍ୟ ପ୍ରତୀତି ଯେ ମୋହର ।। ୪୮
ତା' ତୁମ୍ଭ ଚରଣ-ସେବାରେ ।
ନାଶିବି ତୁମ୍ଭର କୃପାରେ ।। ୪୯
ସାଧୁଙ୍କ ସେବାଫଳ ଏହି ।
କୃଷ୍ଣ-ଚରଣେ ପ୍ରୀତି ହୋଇ ।। ୫୦
ସେ ହରି ଚରଣ ପ୍ରସାଦେ ।
ସଂସାରୁ ତରେ ଅପ୍ରମାଦେ ।। ୫୧
ବୈକୁଣ୍ଠ-ମାର୍ଗ ସାଧୁଜନେ ।
ତାହାଙ୍କ ସେବା ଅଳ୍ପପୁଣ୍ୟେ ।। ୫୨
ଦୁର୍ଲ୍ଲଭ ଅଟଇ ଜଗତେ ।
ହରି କୀର୍ତ୍ତନ ଯହିଁ ନିତ୍ୟେ ।। ୫୩
ଇନ୍ଦ୍ରିୟ ମହଦାଦିତତ୍ତ୍ୱ ।
ବିରାଟ-ପୁରୁଷ ସହିତ ।। ୫୪
ଏହାଙ୍କୁ ସର୍ଜି ନାରାୟଣ ।
ଅଂଶେ ପ୍ରବେଶ ତହିଁ ପୁଣ ।। ୫୫
ସହସ୍ରପାଦ ଉରୁ ହସ୍ତ ।
ଯା' ଦେହେ ବ୍ରହ୍ମାଣ୍ଡ ସମସ୍ତ ।। ୫୬
ବ୍ରାହ୍ମଣ ଆଦି ଚାରି ଜାତି ।
ବିଶେଷେ ତାହାର ବିଭୂତି ।। ୫୭
ବିସ୍ତାରି କହ ତୁ କାରଣେ ।
କ୍ଷୀଣ-ସଂଶୟ ହୋଏ ଯେଣେ ।। ୫୮
ଏ ସୃଷ୍ଟି ବିସ୍ତାର କାରଣେ ।
ଯେମନ୍ତେ ପ୍ରଜାପତିଗଣେ ।। ୫୯
ସର୍ଗ ସମେତେ ପ୍ରତିସର୍ଗ ।
ମନୁ ମନୁଅନ୍ତର ଭୋଗ ।। ୬୦
ଏହାଙ୍କ ତହୁଁ ବଂଶ ଯେତେ ।
ବଂଶାନୁଚରିତ ସହିତେ ।। ୬୧
ବିରାଜ ରୂପ ଦେହ ମଧ୍ୟେ ।
ଯେବା ବସନ୍ତି ଅଧଊର୍ଦ୍ଧ୍ୱେ ।। ୬୨
ଚତୁରଦଶ ଲୋକ ସ୍ଥିତି ।
କେ କେତେ ଅନ୍ତରେ ବସନ୍ତି ।। ୬୩
ଦେବ ମନୁଷ୍ୟ ପଶୁଗଣ ।
ପକ୍ଷୀ ପତଙ୍ଗ ଭୂମି ତୃଣ ।। ୬୪
ସ୍ୱେଦଜ ଅଣ୍ଡଜ ଉଦ୍‌ଭିଜ ।
ଯେ ଅବା ପୁଣି ଜରାୟୁଜ ।। ୬୫
ଏହାଙ୍କ ସର୍ଗର ବିଭାଗ ।
ଭୋ ମୁନି କହ ମୋର ଆଗ ।। ୬୬
ଯେ ଗୁଣେ ଯେବା ଅବତାରେ ।
ସୃଷ୍ଟି ପାଳନ ଅନ୍ତକରେ ।। ୬୭
ଯେମନ୍ତେ ସ୍ୱକେ ଶ୍ରୀନିବାସ ।
ତା'ର ମହିମା ତୁ ପ୍ରକାଶ ।। ୬୮
ଯେ ବର୍ଣ୍ଣାଶ୍ରମଙ୍କ ବିଭାଗ ।
ସୁଶୀଳ ସ୍ୱରୂପ ସ୍ୱଭାବ ।। ୬୯
ଋଷିଙ୍କ ଜନ୍ମକର୍ମ ଯେତେ ।
ବେଦବୃକ୍ଷର ଶାଖା କେତେ ।। ୭୦
ଯଜ୍ଞବିଧାନେ ବେଦବିଧି ।
ଯୋଗସାଧନେ ଯେତେ ସିଦ୍ଧି ।। ୭୧
ନିଷ୍କାମ ସାଂଖ୍ୟ-ବିଦ୍ୟା ସାର ।
ଯେ ତନ୍ତ୍ର-ମନ୍ତ୍ରର ବିଚାର ।। ୭୨
ପାଷଣ୍ଡ-ପଥର ବୈଷମ୍ୟ ।
ଯେ ଅନୁଲୋମ ପ୍ରତିଲୋମ ।। ୭୩
ଜୀବର ଗତି ଯେତେ ମାର୍ଗେ ।
ଯେ ରୂପ ଗୁଣ କର୍ମ ଯୋଗେ ।। ୭୪
ଧର୍ମାର୍ଥ-କାମ-ମୋକ୍ଷ ଆଦି ।
ଯେ ମାର୍ଗେ ଯେମନ୍ତ ସମ୍ପାଦି ।। ୭୫

Dr. Sudhanshu Sekhar Mishra

ଯେ ବାର୍ତ୍ତା ଦଣ୍ଡନୀତି ବେନି ।
ଯେ ବେଦବିଧି ଅନୁମାନି ।। ୭୬
ଶ୍ରାଦ୍ଧର ଯେବା ନୀତି ବିଧି ।
ପିତୃଗଣଙ୍କ ସ୍ଥାନ ସିଦ୍ଧି ।। ୭୭
ଗ୍ରହ ନକ୍ଷତ୍ର ତାରାଗଣ ।
ଯେ କାଳଚକ୍ରର ପ୍ରମାଣ ।। ୭୮
ଦାନ ତପସ୍ୟା ଫଳ ଯେତେ ।
ଯେ ଅବା ଲାଭ ଇଷ୍ଟାପୂର୍ତ୍ତେ ।। ୭୯
ପ୍ରବାସ ସ୍ଥିତି ଯେବା ଧର୍ମ ।
ଆପଦ କାଳେ ଯେବା କର୍ମ ।। ୮୦
ଯେଣେ ଗୋବିନ୍ଦ ତୋଷ ହୋଇ ।
ଯେ ଧର୍ମଜନକ ବୋଲାଇ ।। ୮୧
ସେ ହରି ପ୍ରସନ୍ନ ଯେମନ୍ତେ ।
ଭୋ ମୁନି କହ ଦୟାଚିତ୍ତେ ।। ୮୨
ସେବକ-ଶିଷ୍ୟେ ଋଷିଗଣେ ।
ଜ୍ଞାନ କହନ୍ତି ସାଧୁପଣେ ।। ୮୩
ଯେ ପୁତ୍ରେ ପିତା ତୋଷ ହୋଇ ।
ସ୍ୱଧର୍ମ ମାର୍ଗେ ଶିକ୍ଷା ଦେଇ ।। ୮୪
ଦୀନବତ୍ସଳ ଯେଣୁ ଗୁରୁ ।
ପଚାରୁ ଅବା ନ ପଚାରୁ ।। ୮୫

ତତ୍ତ୍ୱ-ପ୍ରଳୟ କେତେ ମତେ ।
ସୃଷ୍ଟିରେ ସଞ୍ଚରନ୍ତି ଯେତେ ।। ୮୬
ବିରାଜ ରୂପେ ଦେହେ ଥା'ନ୍ତି ।
ପୁଣି କେମନ୍ତେ ଲୀନ ହୋନ୍ତି ।। ୮୭
ଆତ୍ମାର ସ୍ଥିତି ଅବା କାହିଁ ।
କିବା ସ୍ୱରୂପେ ପ୍ରକାଶଇ ।। ୮୮
ଯେ ଗୁରୁ-ଶିଷ୍ୟଙ୍କ ସମ୍ବାଦେ ।
ଜ୍ଞାନ ସାଧନ୍ତି ମୋକ୍ଷ ସଧେ ।। ୮୯
ଏ ଆଦି ଯେତେ ପ୍ରଶ୍ନ ମୋର ।
ପଣ୍ଡିତଜନେ ଯେ ଗୋଚର ।। ୯୦
କେମନ୍ତେ ପୁରୁଷଙ୍କ ଦେହେ ।
ଜ୍ଞାନ-ବୈରାଗ୍ୟ-ଭକ୍ତି ହୋଏ ।। ୯୧
ଏ ଯେତେ ପ୍ରଶନ ମୋହରି ।
ହରି ମହିମା ଇଚ୍ଛାକରି ।। ୯୨
ପୁଚ୍ଛିଲି ତୁମ୍ଭର ଅଗ୍ରତେ ।
ଭୋ ମୁନି କହ ସର୍ବ ମୋତେ ।। ୯୩
ଯେଣୁ ମାୟାରେ ପଡ଼ି ମୁହିଁ ।
ଜ୍ଞାନ-ବିହୀନେ ଅନ୍ଧ ହୋଇ ।। ୯୪
ତୁମ୍ଭ କୃପାରେ ଚକ୍ଷୁ ପାଇ ।
ନିର୍ଭୟେ ବିହରିବି ମୁହିଁ ।। ୯୫

ଜୀବର ଯେବା ଭୟ ଦେହେ ।
ହରି ଦେଖାଏ ସର୍ବ ଦେହେ ।। ୯୬
ଯେତେ ଏ ବେଦ-ଯଜ୍ଞ-ମନ୍ତ୍ର ।
ତପ ସମାଧି ଦାନ ତୀର୍ଥ ।। ୯୭
ଏ ପୁଣ୍ୟ କଳାମାତ୍ରେ ସମ ।
ନୁହନ୍ତି ବେଦ ଆଦି କର୍ମ ।। ୯୮

ଶୁକ ଉବାଚ

ଏମନ୍ତେ ପୁରାଣ-ସଙ୍କେତେ ।
ବିଦୁର ମୈତ୍ରେୟ ସମୀପେ ।। ୯୯
ଆନନ୍ଦେ ଯେତେ ପଚାରିଲା ।
ସୃଷ୍ଟି-ସମ୍ବନ୍ଧେ ବିଷ୍ଣୁଲୀଳା ।।୧୦୦
ଶୁଣି ହରଷ ମୁନିବର ।
ବୋଲନ୍ତି ଶୁଣ ହେ ବିଦୁର ।।୧୦୧
ଏ ଭାଗବତ ପ୍ରଶ୍ନ ବାଣୀ ।
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ।।୧୦୨
ଯେ ଅବା ବଦନେ ଉଚ୍ଚାରି ।
ବିଷ୍ଣୁ ମାୟାରୁ ଯା'ନ୍ତି ତରି ।।୧୦୩
ତୃତୀୟସ୍କନ୍ଧେ ଭାଗବତ ।
କହଇ ଦାସ ଜଗନ୍ନାଥ ।।୧୦୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ଶୁକ ଉବାଚ

ବିଦୁର ବାକ୍ୟ ଶୁଣି କର୍ଣ୍ଣେ ।
ମୈତ୍ରେୟ ଆନନ୍ଦିତ ମନେ ।। ୧
କୃଷ୍ଣ-ଚରଣ-ଯୁଗ ଧ୍ୟାୟି ।
କହନ୍ତି ବିଦୁରକୁ ଚାହିଁ ।। ୨

ମୈତ୍ରେୟ ଉବାଚ

ଶୁଣ ବିଦୁର ଶୁଦ୍ଧଚେତା ।
ସୁପୁଣ୍ୟ ପରୀକ୍ଷିତ-ଗାଥା ।। ୩
ତୋହର ଜନ୍ମ ପୁରୁବଂଶେ ।
ପରମ-ଭାଗବତ-ଅଂଶେ ।। ୪
ଯାହା ମହିମା ଶୁଣି କର୍ଣ୍ଣେ ।
ସେବା କରନ୍ତି ସାଧୁଜନେ ।। ୫
ଯହିଁ ତୁ ଲୋକପାଳ ଯମ ।
ସାକ୍ଷାତେ ହୋଇଲୁ ଜନମ ।। ୬
ଭକ୍ତଜନଙ୍କ ଶିରୋମଣି ।
ତୋ'ର ସକାଶୁ ଜନ ଶୁଣି ।। ୭
କହ ସଂସାରେ କୃଷ୍ଣଲୀଳା ।
ବିଶ୍ୱମଙ୍ଗଳ କୀର୍ତ୍ତିମାଳା ।। ୮
ନିରତେ ନବ ନବ ମଣେ ।
ତୋଷ ନ ଲଭେ ପ୍ରତିକ୍ଷଣେ ।। ୯
ତା'ର ମହିମା ତୋ' ସମ୍ମୁଖେ ।
କହିବି ଭକ୍ତଜନ-ସୁଖେ ।। ୧୦
ଦୁଃଖ-ସମୁଦ୍ରେ ସୁଖ ପ୍ରାୟେ ।
ନିରତେ ମନ ଯା'ର ଧାଏଁ ।। ୧୧
ତାହାଙ୍କ ନିସ୍ତାରଣ ଅର୍ଥେ ।
ଶୁଣ କହିବା ତୋ' ଅଗ୍ରତେ ।। ୧୨
ଶ୍ରୀଭାଗବତ ରସସାର ।
ଋଷିଙ୍କି ଦେଲେ ଚକ୍ରଧର ।। ୧୩
ଶୁଣ ବିଦୁର ସାବଧାନେ ।
ବ୍ରହ୍ମାର ପୁତ୍ରେ ଏକଦିନେ ।। ୧୪

Dr. Sudhanshu Sekhar Mishra

ସନକ ଆଦି ସପ୍ତଭ୍ରାତେ ।
ମିଳିଲେ ଅନନ୍ତ ଅଗ୍ରତେ ।। ୧୫

ରତ୍ନଆସନେ ଭୂମିଗତେ ।
ବସି ଅଛନ୍ତି ଶୁଦ୍ଧ ଚିତ୍ତେ ।। ୧୬

ଆଦି ଅନନ୍ତ ରୂପସାର ।
ଅକୁଣ୍ଠ-ମହିମା ଯାହାର ।। ୧୭

ତା'ଙ୍କ ସମୀପେ ସପ୍ତଭ୍ରାତେ ।
ମିଳିଲେ ଜ୍ଞାନ-ପ୍ରଶ୍ନ ଅର୍ଥେ ।। ୧୮

ପରମପଦେ କରି ଇଚ୍ଛା ।
ଏକୁ ଅନେକ କଲେ ପୃଚ୍ଛା ।। ୧୯

ସ୍ୱଭାବେ ସ୍ଥିର ଯା' ଶରୀର ।
ଦେବମାନବେ ଅଗୋଚର ।। ୨୦

ସର୍ବେ କରନ୍ତି ବହୁ ମାନ୍ୟ ।
ଧ୍ୟାନେ ତରନ୍ତି ସଙ୍କର୍ଷଣ ।। ୨୧

ମୃଣାଳ-କୋଷ ପ୍ରାୟ ଦେହୀ ।
ଉନ୍ମୀଳ ଚକ୍ଷୁଯୁଗ ବହି ।। ୨୨

ବିବୁଧଜନଙ୍କ ଆନନ୍ଦେ ।
ସୁଖେ ନିଶ୍ଚଳ ଯୋଗାନନ୍ଦେ ।। ୨୩

ନିର୍ମଳ ଭୋଗବତୀ ନୀରେ ।
ଧୌତ କବରୀଭାର ଶିରେ ।। ୨୪

ସେ ଜଟାକଳାପେ ଚରଣ ।
ପଦ୍ମେ ନମନ୍ତି ମୁନିଗଣ ।। ୨୫

ଯେ ପାଦେ ନାଗଙ୍କ କାମିନୀ ।
ବିବିଧ-ଉପାୟନ ଘେନି ।। ୨୬

ସେବନ୍ତି ଯେଉଁ ପାଦଗତେ ।
ଉତ୍ତମ-ବର-ପ୍ରାପ୍ତି ଅର୍ଥେ ।। ୨୭

ସୁସ୍ୱର-ଗୀତନାଦ-ଧ୍ୱନି ।
ସ୍ୱଭାବେ ଅନୁରାଗ ଘେନି ।। ୨୮

ଯାହାର କର୍ମ ଦୃଢ଼ଚିତ୍ତେ ।
ଗାୟନ କରନ୍ତି ନିରତେ ।। ୨୯

ଜାଣନ୍ତି ଲୀଳା-ତତ୍ତ୍ୱଜ୍ଞାନ ।
ନିର୍ମଳ ମନେ ନିତ୍ୟେ ଧ୍ୟାନ ।। ୩୦

ସେ ଦେବ ସହସ୍ରଶୀରଷ ।
କିରୀଟ ମଣିମୟ ତ୍ରାସ ।। ୩୧

ଫଣାସହସ୍ରେ ଶୋଭା କରେ ।
ଆଦିତ୍ୟ ଯେସନେ ଅମ୍ବରେ ।। ୩୨

ତା'ର ଚରଣ-ରଜ ଶିରେ ।
ସନତ୍କୁମାର ଧରି କରେ ।। ୩୩

ପୁଚ୍ଛିଲେ ସାର-ତତ୍ତ୍ୱଜ୍ଞାନ ।
ଯା' ଶୁଣି ନିସ୍ତରିବେ ଜନ ।। ୩୪

ନିବୃତ୍ତି-ଧର୍ମେ ଦେଖି ଚିତ୍ତ ।
ଏହାଙ୍କୁ କହିଲେ ଅନନ୍ତ ।। ୩୫

ସେ ପୁଣି ପ୍ରଶ୍ନ ଅନୁରାଗେ ।
କହିଲେ ସାଂଖ୍ୟାୟନ ଆଗେ ।। ୩୬

ସେ ସାଂଖ୍ୟାୟନ ଯୋଗ ଧ୍ୟାୟେ ।
ପରମହଂସ-ଦୀକ୍ଷା ବହେ ।। ୩୭

ସେ ପୁଣି ଦୟା-ଶୁଦ୍ଧଚିତ୍ତେ ।
ସଂସାରେ ନିସ୍ତାରଣ ଅର୍ଥେ ।। ୩୮

କୃଷ୍ଣ-ମହିମା ପରିମାଣି ।
ନିର୍ମଳ-ଭାଗବତ-ବାଣୀ ।। ୩୯

କୃଷ୍ଣ-ଭକତି ଅନୁରାଗେ ।
କହିଲେ ମୋ'ର ଗୁରୁ ଆଗେ ।। ୪୦

ଆବର ବୃହସ୍ପତି ଆଗେ ।
ଦେବସମୂହ ପ୍ରିୟଭାବେ ।। ୪୧

ସେ ପରାଶର ମହାମୁନି ।
ପୌଲସ୍ତ୍ୟ ମୁନି ଆଜ୍ଞା ଘେନି ।। ୪୨

ଦୟାଳୁ ମୁନି ପରାଶର ।
କହିଲେ ମୋହର ଆଗର ।। ୪୩

ବ୍ରହ୍ମ-ଗୁପତ-ବାଣୀ ଏବେ ।
ଶୁଣ କହିବା ତୋତେ ଭାବେ ।। ୪୪

ତୁ ଶ୍ରଦ୍ଧାଯୁତ ଅନୁଗତ ।
ଶୁଣ କହିବି ଭାଗବତ ।। ୪୫

ତୁ ଶୁଦ୍ଧଚିତ୍ତେ ବସ ଶୁଣ ।
ଏ ଆଦି ପରମ-ପୁରାଣ ।। ୪୬

ଯେ ବିଶ୍ୱସୃଷ୍ଟି ପୂର୍ବେ ଥିଲା ।
ପ୍ରଳୟ-ଜଳେ ନାଶ ଗଲା ।। ୪୭

ପରମସୁଖେ ଭଗବାନ ।
ନିଦ୍ରାରେ ମୁଦ୍ରିତ ନୟନ ।। ୪୮

ପ୍ରଳୟ-ଜଳନିଧି ମଧ୍ୟେ ।
ଅନନ୍ତ-ଶୟନେ ଆନନ୍ଦେ ।। ୪୯

ଶୋଇଲେ ଏକରୂପ ହୋଇ ।
ସଙ୍ଗେ ସଙ୍ଗତି ନାହିଁ କେହି ।। ୫୦

ନିଷେଷ୍ଟ-ଆତ୍ମସୁଖେ ରତ ।
ଭୂତେ ନିବେଶି ପଞ୍ଚଭୂତ ।। ୫୧

ଆତ୍ମା ଆଶ୍ରିତ ସୂକ୍ଷ୍ମଭୂତେ ।
କାଳାତ୍ମା ଶକ୍ତିର ଆୟତ୍ତେ ।। ୫୨

ଚେଷ୍ଟା ରହିତ ଭଗବାନ ।
ଦାରୁରେ ଯେହ୍ନେ ହୁତାଶନ ।। ୫୩

ସେ ରୂପ ବାହ୍ୟବୃତ୍ତି ଶୂନ୍ୟ ।
ଜଳରେ କଲେ ସେ ଶୟନ ।। ୫୪

ବିଷ୍ଣୁ-ରଜନୀ ପ୍ରକାଶିଲା ।
ଚାରିସହସ୍ର ଯୁଗ ଗଲା ।। ୫୫

ଜଳେ ଶୟନ ଭଗବାନ ।
ଯେ ଆତ୍ମଶକ୍ତିର ନିଦାନ ।। ୫୬

ତା'ର ଆୟତ୍ତ କାଳବଳେ ।
ସୃଷ୍ଟିସମୟ ସୁମରିଲେ ।। ୫୭

ପୂର୍ବ-ଜୀବଙ୍କୁ ଦେହେ ଚାହିଁ ।
ସେ ପୁଣି କର୍ମତନ୍ତ୍ର ହୋଇ ।। ୫୮

ତାହାଙ୍କ ଅବତାର ଅର୍ଥେ ।
ସୂକ୍ଷ୍ମେ ନିବେଶି ଦୃଷ୍ଟିପଥ ।। ୫୯

କ୍ଷୋଭିତ-ସୃଷ୍ଟିର କାରଣେ ।
ସ୍ୱୟଂ ପ୍ରବେଶି ରଜୋଗୁଣେ ।। ୬୦

ସେ କାଳବଳର ବିଶ୍ୱାସେ ।
ମିଳିଲେ ବିଷ୍ଣୁ-ନାଭିଦେଶେ ।। ୬୧

ସେ ନାଭିମଧ୍ୟୁ ପଦ୍ମକୋଷ ।
ତକ୍ଷଣେ ହୋଇଲା ପ୍ରକାଶ ।। ୬୨

ସେ ପଦ୍ମ କାଳକର୍ମ ବଳେ ।
ରୂପ ବିରାଜେ ମହାଜଳେ ।। ୬୩

ଉଦିତ-ରବି ପ୍ରାୟେ ମାନି ।
ଜଳେ ପ୍ରକାଶ ଆତ୍ମଯୋନି ।। ୬୪

ସେ ଲୋକପଦ୍ମେ ନାରାୟଣ ।
ସ୍ୱୟଂପ୍ରବେଶ ରଜୋଗୁଣ ।। ୬୫

ସକଳଗୁଣେ ସେ ପ୍ରକାଶ ।
ସହସ୍ରରବି ଜିଣି ତ୍ରାସ ।। ୬୬

ସେ ପଦ୍ମକର୍ଣ୍ଣିକାର ମଧ୍ୟେ ।
ବ୍ରହ୍ମା ପ୍ରକାଶ ବେଦପଦେ ।। ୬୭

ବିଧାତା ନାମ ସେ ବୋଲାଇ ।
ଯା'ର ଶରୀର କର୍ମମୟୀ ।। ୬୮

Dr. Sudhanshu Sekhar Mishra

ସ୍ୱୟମ୍ଭୁ ନାମ ସେ ସ୍ୱଭାବେ ।
ଉଦୟ ନିଜ କର୍ମଲାଭେ ।। ୬୯
ସେ ପଦ୍ମମଧ୍ୟେ ବ୍ରହ୍ମା ରହେ ।
ବସି ସକଳଦିଗେ ଚାହେଁ ।। ୭୦
ନ ଦେଖି ଲୋକଙ୍କ ଉଦ୍ଦେଶ୍ୟ ।
ତକ୍ଷଣେ ଚାହିଁଲା ଆକାଶ ।। ୭୧
ହୋଇଲା ତା'ର ଚାରିମୁଖ ।
କେବେହେଁ ନ ଲଭଇ ସୁଖ ।। ୭୨
ପ୍ରଳୟ-ପବନର ବଳେ ।
ଲହରୀ ଭ୍ରମ ମହାଜଳେ ।। ୭୩
ଆତ୍ମାକୁ ନ ଜାଣଇ ଭଲେ ।
ଯେ ଲୋକତତ୍ତ୍ୱ ପଦ୍ମତୁଳେ ।। ୭୪
କାହୁଁ ଅଇଲି କେଉଁ ଦେଶ ।
ନ ଜାଣି ଆତ୍ମାର ବିଶେଷ ।। ୭୫
ଏ ପଦ୍ମ କାହୁଁ ଉପୁଜିଲା ।
କିବା ଏ ଜଳମଧ୍ୟେ ଥିଲା ।। ୭୬
ସ୍ଥଳ ନ ଥିଲେ ଜଳ କାହିଁ ।
ଏମନ୍ତ ମନେ ବିଚାରଇ ।। ୭୭
କିବା ଏ ପଦ୍ମମୂଳେ ଅଛି ।
ଏମନ୍ତ ମନେମନେ ଲକ୍ଷି ।। ୭୮
କେବେହେଁ ହେଜି ନ ପାରିଲା ।
ଏମନ୍ତେ କେତେକାଳ ଗଲା ।। ୭୯
ପୁଣି ଚାହିଁଲା ମନଦୁଃଖେ ।
ନିଜ ଆସନେ ଅଧୋମୁଖେ ।। ୮୦
ତଳେ ଦେଖିଲା ପଦ୍ମନାଳ ।
ତା' ମଧ୍ୟେ ଅନ୍ଧକାର ବିଳ ।। ୮୧
ବିଚାରେ ଏହିମାର୍ଗେ ଯିବି ।
କାହୁଁ ଅଇଲି ତା' ଦେଖିବି ।। ୮୨
ଏମନ୍ତେ ବିଚାରି ସଂଶୟେ ।
ବିଳେ ପଶିଲା ମହାଭୟେ ।। ୮୩
ସେ ବିଳମାର୍ଗେ ନାଭିପଥେ ।
ପଶିଲା ବିଷ୍ଣୁ-ଗର୍ଭଗତେ ।। ୮୪
ଅନେକ କାଳ ଗର୍ଭେ ଭ୍ରମି ।
ଫୁଟି ହୋଇଲା ପଥଶ୍ରମୀ ।। ୮୫
ଯେ କାଳ ଜନ୍ତୁଙ୍କର ପ୍ରାଣ ।
ବଳେ ହରଇ ଅନୁକ୍ଷଣ ।। ୮୬

ସେ କାଳବଳ-କରଷଣେ ।
ବାହାର ହୋଇଲା ତକ୍ଷଣେ ।। ୮୭
ମନ-କଳ୍ପିତ ନ ପାଇଲା ।
ନିଜ ଆସନେ ବିଜେ କଲା ।। ୮୮
ସ୍ଥିର-ନିଃଶ୍ୱାସ ଦୃଢ଼େ ଧରି ।
ମନ-ପବନ ହୃଦେ ଭରି ।। ୮୯
ନିବୃତ୍ତଚିତ୍ତେ ପ୍ରଜାପତି ।
ଯୋଗ ଅଭ୍ୟାସେ କଲା ମତି ।। ୯୦
ସେ ଶତେବର୍ଷ କାଳଭୋଗେ ।
ଲଭିଲା ବୋଧ ନିଷ୍ଠାଯୋଗେ ।। ୯୧
ତା'ର ହୃଦୟେ ବିଷ୍ଣୁଭାବେ ।
ପ୍ରକାଶେ ସୃଷ୍ଟିଅର୍ଥ ଲାଭେ ।। ୯୨
ପୂର୍ବେ ଯାହାକୁ ମହାଜଳେ ।
ଖୋଜି ନ ଦେଖିଲା ନିଷ୍ଫଳେ ।। ୯୩
ତାହାକୁ ଆପଣା ହୃଦୟେ ।
ଦେଖେ ସମାଧିଯୋଗଧ୍ୟାୟେ ।। ୯୪
ମୃଣାଳ-ଗୌର ଦେହକାନ୍ତି ।
ଅନନ୍ତ-ଶୟନେ ଶ୍ରୀପତି ।। ୯୫
ଏକା ଅଛନ୍ତି ନାହିଁ କେହି ।
ଦେଖେ ନିଶ୍ଚଳ-ନେତ୍ରେ ଚାହିଁ ।। ୯୬
ଫଣାସହସ୍ର ଉର୍ଦ୍ଧ୍ୱ ଜ୍ୟୋତି ।
ରତ୍ନସମୂହେ ଝଟକନ୍ତି ।। ୯୭
ଯୁଗାନ୍ତ-ଜଳ-ଅନ୍ଧକାର ।
ସେ ରତ୍ନଜ୍ୟୋତି କରେ ଦୂର ।। ୯୮
ମର୍କତଗିରି ନିନ୍ଦେ ରୂପ ।
ସନ୍ଧ୍ୟାଭ୍ର ଜିଣି ପୀତାଂଶୁକ ।। ୯୯
ସୁବର୍ଣ୍ଣ-ଶୃଙ୍ଗ ତିରସ୍କାର ।
କରେ ମୁକୁଟ ଶିରପର ।।୧୦୦
ପର୍ବତ ବେଣୁବୃକ୍ଷ ଶୋଭା ।
ନିନ୍ଦଇ ଭୁଜପାଦ ପ୍ରଭା ।।୧୦୧
ରତ୍ନଔଷଧି ଜଳ ପୁଷ୍ପେ ।
ଗିରିଭୂଷଣ ମାଳ ରୂପେ ।।୧୦୨
ତାହାକୁ ବଳି ହରିଗଳେ ।
ରତ୍ନତୁଳସୀ ମୁକ୍ତାଫଳେ ।।୧୦୩
ମହାପୁରୁଷ ବିଷ୍ଣୁରୂପେ ।
ସ୍ୱୟଂ ପ୍ରକାଶ ମହାକଳ୍ପେ ।।୧୦୪

ପ୍ରକାଶ ଅଛଇ ବିସ୍ତାରେ ।
ତ୍ରିଲୋକ ପ୍ରକାଶ ଶରୀରେ ।।୧୦୫
ଦିବ୍ୟ ବିଚିତ୍ର ଆଭରଣେ ।
ପ୍ରକାଶେ ବସ୍ତ୍ର ଆଚ୍ଛାଦନେ ।।୧୦୬
ସର୍ବସୁନ୍ଦରର ସମୂହେ ।
ତେଜ ପ୍ରକାଶେ ବିଶ୍ୱଦେହେ ।।୧୦୭
ମିଳି ସକଳ ମହାଜନେ ।
ନିଜ ବାଞ୍ଛିତ ଆତ୍ମାଧ୍ୟାନେ ।।୧୦୮
ଯେ କାମ ଯେ କରନ୍ତି ଧ୍ୟାୟେ ।
ତାହାଙ୍କୁ କାମଧେନୁ ପ୍ରାୟେ ।।୧୦୯
ଦୟାସାଗର ଭଗବାନ ।
ବ୍ରହ୍ମାଙ୍କୁ ଦେଲେ ଦରଶନ ।।୧୧୦
ଅଙ୍ଗୁଳି ଅଗ୍ରେ ନଖକାନ୍ତି ।
ଶଶାଙ୍କପ୍ରାୟ ଝଟକନ୍ତି ।।୧୧୧
ସ୍ଫୁରିତ ଦିଶେ ହାସ୍ୟମୁଖ ।
ଦେଖନ୍ତେ ହରେ ପ୍ରାଣୀଦୁଃଖ ।।୧୧୨
କର୍ଣ୍ଣେ କୁଣ୍ଡଳବେନି ଶୋହେ ।
ଚନ୍ଦ୍ର-ତପନ ସମ ନୋହେ ।।୧୧୩
ଶୋଣ-ଅରୁଣ ଓଷ୍ଠବେନି ।
ବିରାଜେ ଦନ୍ତପନ୍ତି ଘେନି ।।୧୧୪
କଦମ୍ବପୁଷ୍ପ ତେଜ ପ୍ରାୟେ ।
ପୀତବସନ କଟୀ ଶୋହେ ।।୧୧୫
ରତ୍ନମେଖଳା ତେଜ ଦମ୍ଭେ ।
ସୁନ୍ଦର ବିରାଜେ ନିତମ୍ବେ ।।୧୧୬
ଅଷ୍ଟରତନ ବନମାଳ ।
ଲମ୍ବେ ଶ୍ରୀବତ୍ସ-ବକ୍ଷସ୍ଥଳ ।।୧୧୭
ହାରକେୟୂର ରତ୍ନମାଳ ।
ସୁନ୍ଦର ଅଳକା କପୋଳ ।।୧୧୮
ଭୁଜସହସ୍ର ଜାନୁଯାଏ ।
ଲମ୍ବେ ଶ୍ରୀବଟ ରୁହ ପ୍ରାୟେ ।।୧୧୯
ସର୍ବ-ଭୁବନ ତା'ର ଦେହେ ।
ବିରାଜେ ପୁଷ୍ପକଣା ପ୍ରାୟେ ।।୧୨୦
ଅଦୃଶ୍ୟ ମୂଳ ତା' ସ୍ୱଭାବ ।
କେ ଅବା ଲୋଚନେ ଦେଖିବ ।।୧୨୧
ମନ୍ଦରଗିରି ଯେହ୍ନେ ଜଳେ ।
କ୍ଷୀରୋଦ-ମନ୍ଥନର କାଳେ ।।୧୨୨

Dr. Sudhanshu Sekhar Mishra

ସହସ୍ରଶୃଙ୍ଗ ପ୍ରାୟ ସାଜେ ।
ସୁରତ୍ନ କିରୀଟ ବିରାଜେ ।।୧୨୩
କଣ୍ଠେ କୌସ୍ତୁଭମଣି ଶୋହେ ।
ରତ୍ନପ୍ରଭାରେ ମନ ମୋହେ ।।୧୨୪
ସୁକୀର୍ତ୍ତିମୟି ବନମାଳ ।
ଲମ୍ବେ ସୁନ୍ଦର-ବକ୍ଷସ୍ଥଳ ।।୧୨୫
ଗନ୍ଧେ ଆବୃତ୍ତ ଭୃଙ୍ଗପନ୍ତି ।
ସୂର୍ଯ୍ୟ-ଶଶାଙ୍କ-ଅଗ୍ନିଜ୍ୟୋତି ।।୧୨୬
ସେ ପୁଣି ଚାହାଁନ୍ତେ ନିରୋଳେ ।
ଆତ୍ମାକୁ ତା' ନାଭି କମଳେ ।।୧୨୭
ପବନ ଗଗନ ସଲିଳ ।
ବିଧାତା ଦେଖେ ଦେହେ ତା'ର ।।୧୨୮
ରଜୋଗୁଣରେ ଯୁକ୍ତ ହୋଇ ।
ପ୍ରଜା-ସୃଜନେ ମନଦେଇ ।।୧୨୯
ଲୋକ-ବିସୃଷ୍ଟି ଦେହେ ଦେଖି ।
ବିଧାତା ଆସନ ଉପେକ୍ଷି ।।୧୩୦
କରଯୁଗଳ ଦେଇ ମୁଣ୍ଡେ ।
ସ୍ତୁତି କରଇ ଚାରିତୁଣ୍ଡେ ।।୧୩୧
ସେ ହରି-ଚରଣେ ବିଶ୍ୱାସ ।
ନମଇଁ ଜଗନ୍ନାଥ ଦାସ ।।୧୩୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟ

ବ୍ରହ୍ମା ଉବାଚ

ଭୋ ନାଥ ତୋ'ର ଗତି ମୁହିଁ ।
ଜାଣିଲି ତୋ'ର ଭାବ ବହି ।। ୧
ଏ ଜୀବ ତୋ'ର ମାୟାବର୍ତ୍ତୀ ।
କାହୁଁ ଜାଣିବେ ତୋ'ର ଗତି ।। ୨
ଦୃଶ୍ୟ ଅଦୃଶ୍ୟ ତୋ'ର ଭାବ ।
ଏ ଘେନି ତୋତେ କେ ଜାଣିବ ।। ୩
ମାୟାର ପରେ ତୋ'ର ବାସ ।
ନିତ୍ୟ ନିରଞ୍ଜନ ପ୍ରକାଶ ।। ୪
ସଦନୁଗ୍ରହେ ବନମାଳୀ ।
ତୁ ନାଥ ମାୟା ସଙ୍ଗେ ମିଳି ।। ୫
ତୋ'ର ଏ ରୂପ ନାରାୟଣ ।
ଶତ-ଅବତାର କାରଣ ।। ୬
ତୋ' ନାଭିକମଳୁ ମୁଁ ଜାତ ।
ସ୍ୱଭାବେ ଅବିକାର-ତତ୍ତ୍ୱ ।। ୭
ତୋ' ରୂପ ଦେଖିଲି ଲୋଚନେ ।
ଏ ଲାଭୁଁ ଲାଭ ନାହିଁ ଅନ୍ୟେ ।। ୮
ଆନନ୍ଦରୂପ ତୋ' ଶରୀର ।
ଅବିଦ୍ଧତେଜ ରୂପ ତୋ'ର ।। ୯
ତୁ ବିଶ୍ୱସୃଷ୍ଟି-ମୂଳ ଏକ ।
ତୋ' ତହୁଁ ପ୍ରକାଶ ଅନେକ ।। ୧୦
ଭୂତ ଇନ୍ଦ୍ରିୟ ଆତ୍ମା ତୁହି ।
ତୋ' ପାଦେ ଆଶ୍ରେ କଲି ମୁହିଁ ।। ୧୧
ତୁ ସେ ସଂସାର ଆଦିମୂଳ ।
ତୋ' ରୂପ ଭୁବନମଙ୍ଗଳ ।। ୧୨
ଧାରଣା ଧ୍ୟାନେ ମନ ଦେଇ ।
ପ୍ରାଣୀ ତରନ୍ତି ଯାହା ଧ୍ୟାୟି ।। ୧୩
ତୋ ଅନୁଭାବେ ଭବ-ତମ ।
ହରଇ ପୁରୁଷଉତ୍ତମ ।। ୧୪
ଶ୍ରୀବାସୁଦେବ ନମୋସ୍ତୁତେ ।
ମନବଚନ ଜ୍ଞାନମତେ ।। ୧୫
ଯେ ତୋତେ ଅନାଦର କରେ ।
ନରକମାର୍ଗେ ସେ ସଞ୍ଚରେ ।। ୧୬
ଅନିତ୍ୟ ସଙ୍ଗେ ତା'ର ବାସ ।
ତୋ' ଭାବେ ହୋନ୍ତି ସେ ନିରାଶ ।। ୧୭
ତୋ' ପାଦପଦ୍ମ-ଗନ୍ଧ ଯା'ର ।
ଆଘ୍ରାଣ କରେ ନାସାଦ୍ୱାର ।। ୧୮
ଶ୍ରୁତିଯୁଗଳେ ନାମ ଶୁଣେ ।
ଯେ ଅବା ଜିହ୍ୱାଗ୍ରତେ ଗୁଣେ ।। ୧୯
ପରମଭକ୍ତି ଯୋଗବଳେ ।
ଯେ ନମେ ତୋ' ପାଦକମଳେ ।। ୨୦
ତା ହୃଦପଦ୍ମ ମଧ୍ୟେ ଥାଉ ।
କେବେହେଁ କେଣିକି ନ ଯାଉ ।। ୨୧
ଏ ଭବଭୟ-ଧନ-ମୋହ ।
ସୁହୃଦ-ଶୋକ-ବନ୍ଧୁସ୍ନେହ ।। ୨୨
ସନ୍ତତି ଜାୟା ଜାତିକୁଳ ।
ଏ ସର୍ବ ଆପଦର ମୂଳ ।। ୨୩
ଯାବତ ତୋ' ପାଦକମଳେ ।
ଯେ ପ୍ରାଣୀ ନ ରହେ ନିଶ୍ଚଳେ ।। ୨୪
ସେ କାହିଁ ଏ ଭୟ ତରିବ ।
ଯେବେ ନ ଜାଣେ ତୋ'ର ଭାବ ।। ୨୫
ଏ ଭବଭୟ ତେବେ ନାଶେ ।
ତୋ' ସଙ୍ଗୀସଙ୍ଗେ ଯେବେ ମିଶେ ।। ୨୬
ତା' ଛାଡ଼ି ଇନ୍ଦ୍ରିୟ-ଲାଳସେ ।
କ୍ଷଣିକ ସୁଖଲେଶ ଆଶେ ।। ୨୭
ଯତ୍ନ କରନ୍ତି ଅବିରତେ ।
ତୋ' ମାୟା ତରିବେ କେମନ୍ତେ ।। ୨୮
କ୍ଷୁଧା ପିପାସା ମାର୍ଗେ ଭ୍ରମି ।
ଆଶା ବନ୍ଧନେ ପଥଶ୍ରମି ।। ୨୯
ଶୀତ ନିଦାଘ ବାତ ବୃଷ୍ଟି ।
ଏଣେ ଭ୍ରମନ୍ତି ପ୍ରାଣୀ ଫୁଟି ।। ୩୦
ଦୁର୍ଜୟ-କାମାନଳ ଦହେ ।
କେବେହେଁ ତୋ'ପାଦେ ନ ରହେ ।। ୩୧
ଏ ଦୁଃଖ ଦେଖି ମୋର ମନ ।
ଭୟେ କମ୍ପଇ ଭଗବାନ ।। ୩୨
ଯାବତ ଏ ମାୟା ଗହନେ ।
ମନ କଳ୍ପଇ ଭିନ୍ନେଭିନ୍ନେ ।। ୩୩
ଇନ୍ଦ୍ରିୟ ଅର୍ଥେ ଚିତ୍ତ ଜଡ଼େ ।
ଘୋର ସଙ୍କଟ ଦୁଃଖେ ପଡ଼େ ।। ୩୪
ତାବତ ସଂସାର ନ ତୁଟେ ।
ସଞ୍ଚରି ପୁଣି ପୁଣି ଫୁଟେ ।। ୩୫

Dr. Sudhanshu Sekhar Mishra

ଏ ବେନିଲୋକ ସୁଖ ଅଥେ ।
ପୁଣି ଭ୍ରମନ୍ତି ସୃଷ୍ଟି ପଥେ ।। ୩୬
ଦୁଃଖ-ସମୁଦ୍ରେ ପୁଣି ଭାସେ ।
ଯତ୍ନ ନ କରେ ସୁଖଲେଶେ ।। ୩୭
ଭୂତ ଭବିଷ୍ୟେ ଆଶା କରି ।
ସର୍ବବିଷୟ ଚିତ୍ତେ ଭରି ।। ୩୮
ରାତ୍ରେ ନିଦ୍ରିତ ହୋଇ ଯେବେ ।
ସ୍ୱପ୍ନେ କଳ୍ପିତ ନାନାଭାବେ ।। ୩୯
ତେଣୁ ପ୍ରାଣୀଙ୍କ ସୁଖଲେଶ ।
ନ ଥାଇ କ୍ଲେଶ ମାତ୍ରଶେଷ ।। ୪୦
ଭ୍ରମଇଁ ମୁନିଙ୍କର ମନ ।
ତୋ' ମାୟାବଳେ ଭଗବାନ ।। ୪୧
ଏଣୁ ତୋ' ପାଦେ ଯେ ବିମୁଖ ।
ଇହ ସଂସାରେ ଲଭେ ଦୁଃଖ ।। ୪୨
ଶ୍ରବଣ ତୋ' ନାମ ଯାହାର ।
ତୁ ପୁଣି ତାହାର ଗୋଚର ।। ୪୩
ତୋ' ଭକ୍ତିଭାବେ ଯେ ଭାବିତ ।
ତା' ହୃଦପଦ୍ମେ ତୁ ଉଦିତ ।। ୪୪
ସକଳ ଜୀବେ ତୋ' ବିହାର ।
ତୁ ପୁଣି ତୋତେ ଅଗୋଚର ।। ୪୫
ଯେ ଯେତେଭାବେ ତୋତେ ଭାବେ ।
ତୋ' ଅନୁଗ୍ରହେ ସୁଖଲଭେ ।। ୪୬
ନାନା ପ୍ରକାରେ ଉପଚାରେ ।
ତୋ' ଆରାଧନା ଯେବା କରେ ।। ୪୭
ତୁ ପୁଣି ତେଣେ ବଶ ନୋହୁ ।
ସକଳ ହୃଦୟରେ ଥାଉ ।। ୪୮
ନିଷ୍କାମ ଯୋଗେ ତୁ ସୁଲଭ ।
ସକାମ-ଭକ୍ତିରେ ଦୁର୍ଲଭ ।। ୪୯
ଯେ ସର୍ବଭୂତେ ଦୟା ଚିନ୍ତି ।
ତା' ସମ ତ୍ରିଦଶେ ନୁହଁନ୍ତି ।। ୫୦
ଯେ ତୋତେ ଶୁଦ୍ଧଭାବେ ଚିନ୍ତି ।
ନିଶ୍ଚିନ୍ତେ ତୋ' ପାଦେ ପଶନ୍ତି ।। ୫୧
ତୁ ପୁଣି ସର୍ବଜନ୍ତୁ ଦେହେ ।
ପ୍ରକାଶୁ ଆଦିତ୍ୟର ପ୍ରାୟେ ।। ୫୨
ଏକୁ ଅନେକ ତୋ' ପ୍ରକାଶ ।
ପ୍ରସନ୍ନ ଯେସନେ ଆକାଶ ।। ୫୩

ସର୍ବ ସୁହୃଦ ଅନ୍ତରାତ୍ମା ।
କେ ଲକ୍ଷିପାରେ ତୋ' ମହିମା ।। ୫୪
ପ୍ରାଣୀଙ୍କ ମନ-କର୍ମବଳେ ।
ଦଣ୍ଡେହେଁ ନ ରହେ ନିଶ୍ଚଳେ ।। ୫୫
ଆରାଧି ନାନା ତପ ବ୍ରତେ ।
ସୁକୃତ-ଫଳ ଦେଇ ତୋତେ ।। ୫୬
ବେଗେ ହୁଅନ୍ତି ଭବୁ ପାର ।
ନୋହିଲେ ଭ୍ରମନ୍ତି ସଂସାର ।। ୫୭
ତୋ'ର ସ୍ୱରୂପ ନିତ୍ୟେ ଚିନ୍ତି ।
ଘୋର ସଂସାରୁ ତରିଯା'ନ୍ତି ।। ୫୮
ବିଶ୍ୱ ଉତ୍ପତ୍ତି-ସ୍ଥିତି-ନାଶ ।
ତୋ' ମାୟା-ଲୀଳାରୁ ପ୍ରକାଶ ।। ୫୯
ଏମନ୍ତ ମହିମା ତୋହର ।
ଭୋ ଦେବ ତୋତେ ନମସ୍କାର ।। ୬୦
ତୋ' ଅବତାର ଗୁଣ କର୍ମ ।
ସେ ଅନୁରୂପେ ଯେବା ନାମ ।। ୬୧
ମରଣେ ଗୁଣନ୍ତି ଯେ ମୁଖେ ।
ବେଗେ ତରନ୍ତି ମହାସୁଖେ ।। ୬୨
ଅନେକ ଜନ୍ମ ଜରା ଭ୍ରାନ୍ତି ।
ନିର୍ଭୟେ ବେଗେ ସେ ତରନ୍ତି ।। ୬୩
ଅମୃତ ଲଭି ଅପ୍ରମାଦେ ।
ସୁଖେ ଲଭନ୍ତି ମୋକ୍ଷପଦେ ।। ୬୪
ଏମନ୍ତ ପ୍ରଭୁ ପାଦତଳେ ।
ଶରଣ ପଶିଲି ନିଶ୍ଚଳେ ।। ୬୫
ତୁ ନାଥ ପରମମଙ୍ଗଳ ।
ଉଦ୍ଭବ-ସ୍ଥିତି-ଅନ୍ତଃମୂଳ ।। ୬୬
ଭୁବନଦ୍ରୁମ ତୋ' ମହିମା ।
କେ ଜାଣିପାରେ ଅନ୍ତଃସୀମା ।। ୬୭
ମୁଁ ଆଦିଭବ ବିଷ୍ଣୁ ତିନି ।
ତାଳ ସ୍ୱରୂପେ ଯହିଁ ମାନି ।। ୬୮
ମରୀଚି ମନୁ ଆଦି ଯେତେ ।
ଏ ସର୍ବଶାଖା ଅପ୍ରମିତେ ।। ୬୯
ଏମନ୍ତ ବୃକ୍ଷରୂପ ତୋ'ର ।
ତୋ' ପାଦେ ମୋ'ର ନମସ୍କାର ।। ୭୦
ଏ ଜୀବଲୋକ ଅବିରତ ।
ବିକାର-ମାର୍ଗେ ସୁଜଡ଼ିତ ।। ୭୧

ଭାବଇ ଅକୁଶଳ କର୍ମ ।
ନିତ୍ୟେ କଷ୍ଟଇ ନିଜଭ୍ରମ ।। ୭୨
ପ୍ରମତ୍ତ ନାନା ଫଳ ଲାଭେ ।
ତୋହର ଭଜନ ପ୍ରସ୍ତାବେ ।। ୭୩
ତା'ର ଜୀବନ ଆଶା ତୁହି ।
କ୍ଷଣକେ ଛେଦୁ ଭାବଗ୍ରାହୀ ।। ୭୪
ଏମନ୍ତ ପ୍ରଭୁ ପାଦଗତେ ।
ମୋ' ନମସ୍କାର ଅବିରତେ ।। ୭୫
ଭୋ ନାଥ ଜୀବନ ମୋହର ।
ବେନିପରାର୍ଦ୍ଧ ଅଧିକାର ।। ୭୬
ସକଳ ଲୋକ ନମସ୍କୃତ ।
ସପ୍ତମଣ୍ଡଳ ପରେ ସ୍ଥିତ ।। ୭୭
ଅନେକ ତପେ ଅଧିକାରୀ ।
ତୋ' କାଳରୂପେ ତେବେ ଡରି ।। ୭୮
ତୁ ଅଧିଯଜ୍ଞ ଦାମୋଦର ।
ତୋ' ପାଦେ ମୋର ନମସ୍କାର ।। ୭୯
ପଶୁ ମନୁଷ୍ୟ ଦେବଦେହେ ।
ସମ୍ଭବି ତୁ ଲୋକ ସଂଗ୍ରହେ ।। ୮୦
ଇଚ୍ଛାୟେ କରୁ ନାନାକର୍ମ ।
ନମସ୍ତେ ପୁରୁଷଉତ୍ତମ ।। ୮୧
ଯେ ନିଦ୍ରାଗତି ପଞ୍ଚବୃତ୍ତି ।
ତୁରୀୟ ସ୍ୱପ୍ନ ଯେ ସୁଷୁପ୍ତି ।। ୮୨
ଅବିଦ୍ୟା-ନିଦ୍ରାର କାରଣ ।
ତୁ ନୋହୁ ତାହାର ଅଧୀନ ।। ୮୩
ତଥାପି ନିଦ୍ରାଗଲା ପରି ।
ଲୋକ ସଂସାର ପେଟେ ଭରି ।। ୮୪
ଜୀବଙ୍କୁ ଦେବାକୁ ବିଶ୍ରାମ ।
ପ୍ରଳୟ ଜଳେ ତୋ' ଶୟନ ।। ୮୫
ତ୍ରିଲୋକ-ଉପକାର ସଧେ ।
ମୋ' ଜନ୍ମ ତୋ'ର ନାଭିପଦ୍ମେ ।। ୮୬
ଏ ଯୋଗମାୟା ଅବସାନ ।
ନମସ୍ତେ ନଳିନ ନୟନ ।। ୮୭
ଜୟତୁ ପ୍ରଭୁ ଭଗବାନ ।
ଅଶେଷ ଜନ୍ତୁଙ୍କ ଜୀବନ ।। ୮୮
ତୋ'ର ଆଦେଶ ଶିରେ ଧରି ।
ମୁଁ ଏ ସଂସାରେ ଅଧିକାରୀ ।। ୮୯

Dr. Sudhanshu Sekhar Mishra

ଯେ ଜ୍ଞାନ-ଐଶ୍ୱର୍ଯ୍ୟ ବଳୁ ।
ତୁହି ସଂସାର ସୃଜି ପାଳୁ ।। ୯୦
ଯେ ଜ୍ଞାନ ଦିଅ ଅନୁଗ୍ରହେ ।
ସୃଷ୍ଟି କରିବି ପୂର୍ବ ପ୍ରାୟେ ।। ୯୧
ଭୋ ନାଥ ପରମପୁରୁଷ ।
ଏ ଆତ୍ମାଶକ୍ତି ତୋ' ବିଶ୍ୱାସ ।। ୯୨
ଗୁଣ-ଗୃହୀତ ଅବତାରେ ।
ଯେ ଅବା କରୁ ତୁ ସଂସାରେ ।। ୯୩
ସେ ଗୁଣ ଘେନି ସୃଷ୍ଟିଅର୍ଥେ ।
ଯେ ଅବା ହୋଇବ ଯେମନ୍ତେ ।। ୯୪
ସର୍ଜିବି ଆତ୍ମା ଯୋଗବଳେ ।
ମୋ' ଚିତ୍ତ ଯେମନ୍ତେ ନିଶ୍ଚଳେ ।। ୯୫
ତୋ'ର ଚରଣେ ଦୃଢ଼ ହୋଏ ।
ଭୋ ନାଥ କର ଏ ଉପାୟେ ।। ୯୬
ଦୁର୍ଗମ ଏ ପ୍ରଳୟ ଜଳେ ।
ମୁଁ ଜାତ ତୋ' ନାଭିକମଳେ ।। ୯୭
ବିଜ୍ଞାନ ଶକ୍ତି ଯେଣୁ ବହୁ ।
ତେଣୁ ଅନନ୍ତ ତୁ ବୋଲାଉ ।। ୯୮
ସଂଭ୍ରମେ ପଦ୍ମନାଳେ ମୁହିଁ ।
ଭ୍ରମନ୍ତେ ତୋ'ର ମାୟାବହି ।। ୯୯
ଦେଖିଲି ତୋ' ପରମରୂପ ।
ଯେ ରୂପ ନିଗମ-ସଙ୍କଳ୍ପ ।।୧୦୦
ସର୍ବୁ ବିଚିତ୍ର ବିଶ୍ୱରୂପ ।
ମୋ' ବ୍ରହ୍ମତେଜ ନୋହୁ ଲୋପ ।।୧୦୧
ଅଶେଷ କରୁଣାସାଗର ।
ଭୋ ନାଥ ମହିମା ତୋହର ।।୧୦୨
ରଙ୍ଗ ଅଧରେ ମନ୍ଦହାସ ।
ଦେଖାଇ ମୋର ମନ ତୋଷ ।।୧୦୩
ଏ ବିଶ୍ୱସଂସାର କୁଶଳେ ।
ମୁଁ ଯେଣୁ ଅଛି ମହାଜଳେ ।।୧୦୪
ସୃଷ୍ଟି କଳ୍ପନା ଚିନ୍ତା ଅର୍ଥେ ।
ମୁହିଁ ଭାଳଇ ଅବିରତେ ।।୧୦୫
ତୁ ନାଥ ମଧୁର-ବଚନେ ।
ଚିନ୍ତା ନିବାର ମୋର ମନେ ।।୧୦୬

ମୈତ୍ରେୟ ଉବାଚ

ଏମନ୍ତେ ସଂଭ୍ରମ-ବଚନେ ।
ତପ ସମାଧି ଯୋଗଧ୍ୟାନେ ।।୧୦୭
ନିର୍ମଳ ଦିବ୍ୟ-ଅନୁଭବେ ।
ନିଗମ ବଚନ ପ୍ରସ୍ତାବେ ।।୧୦୮
ନାନା ପ୍ରକାରେ କରି ସ୍ତୁତି ।
ମନ-ବଚନେ ଯେତେ ଶକ୍ତି ।।୧୦୯
ଅନ୍ତେ ଗୋବିନ୍ଦ-ଭାବ ଘେନି ।
ସେ ପଦ୍ମ ମଧ୍ୟେ ହେଲା ତୁନି ।।୧୧୦
ଏମନ୍ତେ ବ୍ରହ୍ମା ମନ ଜାଣି ।
ଦୟାସାଗର ଚକ୍ରପାଣି ।।୧୧୧
ବିଷାଦ ଚିତ୍ତେ ସେ ଭାଳଇ ।
ପ୍ରଳୟ ଜଳ ମଧ୍ୟେ ଥାଇ ।।୧୧୨
ଲୋକ ସଂସ୍ଥାନ ଚିନ୍ତାକରି ।
ଭାଳଇ ଖେଦ ମନେ ଧରି ।।୧୧୩
ସେ ଚିତ୍ତ ଜାଣି ଭଗବାନ ।
କୋମଳ ଗଭୀର ବଚନ ।।୧୧୪
ବ୍ରହ୍ମାର ମନ ଖେଦ ହରି ।
କହନ୍ତି ପ୍ରଭୁ ଦଇତାରି ।।୧୧୫

ଭଗବାନ ଉବାଚ

ହେ ବେଦଗର୍ଭ ସୃଷ୍ଟିମୁଖ ।
ବେଗେ ତୁ ଛାଡ଼ ମନଦୁଃଖ ।।୧୧୬
ତୁ ଯେ କହିତେ ମାଗୁ ଯାହା ।
ଆଗେ ମୁଁ କରିଅଛି ତାହା ।।୧୧୭
ତୁ ଏବେ ତପେ କର ଆଶା ।
ମୋ' ବିଦ୍ୟାବଳ ତୋ' ଭରସା ।। ୧୧୮
ଏ ତପ-ଯୋଗବିଦ୍ୟା ବଳେ ।
ସୃଷ୍ଟି ତୁ କର ମହାଜଳେ ।।୧୧୯
ଆତ୍ମା ନିଯୋଗେ ଭକ୍ତି କର ।
ଯେ ରୂପେ ହୋଇବ ସଂସାର ।। ୧୨୦
ସର୍ବ ଦେଖିବୁ ମୋର ଦେହେ ।
ମୋତେ ଦେଖିବୁ ସର୍ବମୟେ ।। ୧୨୧
ମୁଁ ବସେ ସର୍ବପ୍ରାଣୀ ମନେ ।
ଇନ୍ଧନ ମଧ୍ୟେ ଅଗ୍ନି ଯେହ୍ନେ ।।୧୨୨
ମୋତେ ଯେ ଦେଖେ ବେଦବର ।
ତା'ର ସଂଶୟ ଯାଇ ଦୂର ।।୧୨୩
ଭୂତ-ଇନ୍ଦ୍ରିୟ-ଗୁଣ ମେଳେ ।
ଅନ୍ତଃକରଣ ସୁନିଶ୍ଚଳେ ।।୧୨୪
ଯେବେ ଦେଖଇ ଦେହେ ମୋତେ ।
ସ୍ୱରାଜ୍ୟେ ରହଇ ନିଶ୍ଚିନ୍ତେ ।।୧୨୫
କର୍ମ ବିଭାଗେ ନାନାମତେ ।
ଏ ସୃଷ୍ଟି ସର୍ଜିବୁ ଯେମନ୍ତେ ।।୧୨୬
ମୋ' ଅନୁଗ୍ରହେ ତୋ'ର ମନ ।
କେବେହେଁ ନୋହିବଟି ଛନ୍ନ ।। ୧୨୭
ତୁ ଯେବେ ମୋ'ର ଦେହେ ମନ ।
ଦେଇ ସର୍ଜିବୁ ପ୍ରଜାଜନ ।।୧୨୮
ଏ ରଜଗୁଣେ ଯେତେ ଭାବ ।
କେବେହେଁ ତୋତେ ନ ଲାଗିବ ।।୧୨୯
ପ୍ରାଣୀଙ୍କ ଦୁର୍ଲ୍ଲଭ ଯୁଗତେ ।
ତୁ ଯେ ଜାଣିଲୁ ଏବେ ମୋତେ ।।୧୩୦
ଭୂତ-ଇନ୍ଦ୍ରିୟଗଣ ଗ୍ରସ୍ତେ ।
କେ ହେଜି ସମ୍ପାଦିବ ମୋତେ ।।୧୩୧
ତୁ ଯେ ସଂଶୟ ଚିତ୍ତେ ବହି ।
କମଳନାଳ ମଧ୍ୟେ ଯାଇ ।।୧୩୨
ତାହାର ମୂଳ ଇଚ୍ଛା କଲୁ ।
ଅନେକ କାଳ ତୁ ଭ୍ରମିଲୁ ।।୧୩୩
ଦୟା ବସିଲା ମୋର ଚିତ୍ତେ ।
ବାହାରେ ଦେଖାଇଲି ତୋତେ ।।୧୩୪
ତୁ ଯେତେ କଲୁ ମୋତେ ସ୍ତୁତି ।
କହଇ ଶୁଣ ବେଦପତି ।।୧୩୫
ଯେ ତପନିଷ୍ଠା ତୋ'ର ଦେହେ ।
ଲଭିଲୁ ମୋ'ର ଅନୁଗ୍ରହେ ।।୧୩୬
ସୁପ୍ରୀତ ହୋଇଲି ମୁଁ ତୋତେ ।
କଲ୍ୟାଣ ଲଭ ତୁ ଜଗତେ ।।୧୩୭
ଲୋକମଙ୍ଗଳ ଅର୍ଥେ ତୋ'ର ।
ମହିମା ବର୍ଣ୍ଣିଲୁ ମୋହର ।।୧୩୮
ଏ ସ୍ତୋତ୍ରେ ମୋତେ ଯେ ଭଜିବେ ।
ସଂସାର ଭୟରୁ ତରିବ ।।୧୩୯
ମୁଁ ବରଦାତା ଭଗବାନ ।
ତାହାକୁ ହୁଅଇ ପ୍ରସନ୍ନ ।।୧୪୦
ସମାଧି ତପ ଯଜ୍ଞମତେ ।
ଜ୍ଞାନ ବୈରାଗ୍ୟ ଉପଗତେ ।।୧୪୧
ମୋରେ ନିଶ୍ଚଳ ପ୍ରୀତିଭାବ ।
ଏ ସର୍ବ କର୍ମଫଳ ଲାଭ ।। ୧୪୨

Dr. Sudhanshu Sekhar Mishra

ମୁଁ ଆତ୍ମା ଜଗତ ଜୀବର ।
ସଂଶୟଚିତ୍ତେ ଅଗୋଚର ।।୧୪୩
ଏଣୁ ଯେ ମୋ' ବିଷୟ ଭଜେ ।
ସ୍ୱଭାବେ ସର୍ବମାୟା ତେଜେ ।।୧୪୪
ଆତ୍ମାରେ ଆତ୍ମମାୟା ତରେ ।
ନ ବୁଡ଼େ ସଂସାର-ସାଗରେ ।।୧୪୫
ମାୟାରେ ଆତ୍ମାବୁଦ୍ଧି ଧର ।
ପୂର୍ବର ପ୍ରାୟେ ସୃଷ୍ଟି କର ।।୧୪୬
ସକଳ ବେଦଭାବେ କରି ।
ମୋହର ଭାବ ହୃଦେ ଧରି ।।୧୪୭
ଯେ ପ୍ରାଣୀ ମୋ'ର ଦେହେ ଥିଲେ।
ପ୍ରଳୟ ଜଳେ ନାଶ କାଳେ ।।୧୪୮
ତାହାଙ୍କୁ କର୍ମର ଆୟତ୍ତେ ।
ପୁଣି ପ୍ରକାଶ ଏ ଜଗତେ ।।୧୪୯

ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମା ଆଗେ କହି ।
ଅନ୍ତର ହେଲେ ଭାବଗ୍ରାହୀ ।।୧୫୦
ସେ ହରିଚରଣ-ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ।।୧୫୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ

ବିଦୁର ଉବାଚ

ମୈତ୍ରେୟ ପାଦେ ଦେଇ ଶିର ।
ଆନନ୍ଦେ ପଚାରେ ବିଦୁର ।।୧
ଭୋ ମୁନି କହ ଶୁଦ୍ଧମନେ ।
ବିଷ୍ଣୁ ଯେ ଗଲେ ଅନ୍ତର୍ଦ୍ଧାନେ ।।୨
ସେ ବେଦପତି ଜ୍ଞାନମତେ ।
ପ୍ରଜା ସର୍ଜିଲା ସେ କେମନ୍ତେ ।।୩
ତା'ର କି ଦେହେ ପ୍ରଜା ଥିଲା ।
କେତେ ପ୍ରକାରେ ଭିଆଇଲା ।।୪
ମନ କଳ୍ପିତ ଦେହଗତେ ।
କହ ସଂଶୟ ଯାଉ ଚିତ୍ତେ ।।୫

ସୂତ ଉବାଚ

ବିଦୁର ବାକ୍ୟ କର୍ଣ୍ଣେ ଶୁଣି ।
ଯେ ପୂର୍ବପ୍ରଶ୍ନ ମନେ ଗୁଣି ।।୬
ବିଦୁର ପ୍ରୀତିଭାବ ଘେନି ।
କହନ୍ତି ମଇତ୍ରେୟ ମୁନି ।।୭

ମୈତ୍ରେୟ ଉବାଚ

ଶୁଣ ବିଦୁର ଏକଚିତ୍ତେ ।
ଜଗତ ସର୍ଜିଲା ଯେମନ୍ତେ ।।୮
ଗୋବିନ୍ଦ ବାକ୍ୟେ ବେଦପତି ।
ତପ ସାଧନେ କଲା ମତି ।।୯
ଶତେବରଷ ବେଦମତେ ।
ତପ ସାଧିଲା ଦୃଢ଼ଚିତ୍ତେ ।।୧୦
ଆତ୍ମାରେ ଆତ୍ମା ଲୀନ କରି ।
ଗୋବିନ୍ଦ-ବଚନ ସୁମରି ।।୧୧
ଦେଖଇ ନୟନ ନିଶ୍ଚଳେ ।
ଉର୍ମ୍ମି-ସଙ୍କୁଳ ମହାଜଳେ ।।୧୨
ପବନ ଯୋଗେ ଅତି ଖର ।
ସ୍ୱଭାବେ ଦିଶେ ଭୟଙ୍କର ।।୧୩
ପଦ୍ମ ସହିତେ ଜଳ କମ୍ପେ ।
ଉର୍ମ୍ମି-ସଙ୍କୁଳ ଅତିରେକେ ।।୧୪
କାଳର ବଳେ କମ୍ପମାନ ।
ଦେଖି ଉଷତ ବ୍ରହ୍ମା ମନ ।।୧୫
ତକ୍ଷଣେ ତପ-ବିଦ୍ୟାବଳେ ।
ସୁସ୍ଥିର ବିଜ୍ଞାନ ନିଶ୍ଚଳେ ।।୧୬
ବାୟୁ ସହିତେ ଜଳରାଶି ।
ସେ ବ୍ରହ୍ମା ଯୋଗବଳେ ଗ୍ରାସି ।।୧୭
ପ୍ରଳୟ ଜଳ ଯହୁଁ ଗଲା ।
ନିଶ୍ଚଳେ ପଦ୍ମ ବିକାଶିଲା ।।୧୮
ସେ ପଦ୍ମେ ବସି ବେଦବର ।
ମନରେ କରଇ ବିଚାର ।।୧୯
ପୂର୍ବେ କମଳ-ଗର୍ଭଗତେ ।
ଜନ୍ତୁଏ ପଶିଛନ୍ତି ଯେତେ ।।୨୦
ତାହାଙ୍କୁ କରିବି ପ୍ରକାଶ ।
ସେ ଯେଣୁ ସ୍ୱକର୍ମେ ପ୍ରବେଶ ।।୨୧
ଏକୁ ଅନେକ ରୂପ ଚିନ୍ତେ ।
ସ୍ୱକର୍ମ ବଳେ ନାନା ମତେ ।।୨୨
ଦ୍ୱିସପ୍ତଲୋକ ସ୍ଥାନ ଯେହି ।
ତିନି ଭୁବନ କଲେ ତହିଁ ।।୨୩
ଯହିଁରେ ଯେବା ନିଜ କର୍ମ ।
ସର୍ଜିଲେ ପ୍ରଜା ଭିନ୍ନ ଭିନ୍ନ ।।୨୪
ଯେ ଯାହା ମତେ ଧର୍ମ ଚିହ୍ନି ।
ନିଶ୍ଚଳଯୋଗେ ପ୍ରଜାପତି ।।୨୫

ବିଦୁର ଉବାଚ

ଭୋ ମୁନି ହରିର ମହିମା ।
ଅଦ୍ଭୁତ କର୍ମ ଗୁଣସୀମା ।।୨୬
ସୃଷ୍ଟି ପାଳନ ସଂହାରଣ ।
କାଳ ସ୍ୱରୂପ ନାରାୟଣ ।।୨୭
ଖେଳଇ ନିଜ ମାୟାବଳେ ।
କେ ତା ଦେଖିବ ଚର୍ମଡୋଳେ ।।୨୮
ତା'ର ଲକ୍ଷଣ କହ ମୋତେ ।
ଅଣୁ ବା ପରମାଣୁ ଯେତେ ।।୨୯

ମୈତ୍ରେୟ ଉବାଚ

ସ୍ୱଭାବେ ନିର୍ଗୁଣ ଅଚ୍ୟୁତ ।
ନିର୍ଲେପ ନିର୍ବିକଳ୍ପେ ସ୍ଥିତ ।।୩୦
ତା'ର ଶରୀରୁ ଆତ୍ମା ଜାତ ।
ଲୀଳାରେ ସୃଜଇ ଜଗତ ।।୩୧

Dr. Sudhanshu Sekhar Mishra

ଏ ବିଶ୍ୱ ବ୍ରହ୍ମମୟ-ରୂପୀ ।
ନିଜ ମାୟାର ବଳେ ବ୍ୟାପି ।। ୩୨
କାଳ ପ୍ରଭାବେ ପରିଚ୍ଛିନ୍ନ ।
ଯେ କାଳ ସ୍ୱୟଂ ଭଗବାନ ।। ୩୩
ଯେମନ୍ତ ସୃଷ୍ଟି ଥିଲା ପୂର୍ବେ ।
ତେମନ୍ତ ପୁଣି ହେବ ଏବେ ।। ୩୪
ପ୍ରକୃତି ବିକୃତି ବିକାରେ ।
ଯେ ସର୍ଗ ନବ ପରକାରେ ।। ୩୫
ଯେ କାଳ ଦ୍ରବ୍ୟ ଗୁଣମୟ ।
ଏହାର ତିନିଟି ପ୍ରଳୟ ।। ୩୬
ଯେବା ପ୍ରଳୟ ହୁଏ କାଳେ ।
ତା' ନିତ୍ୟ ବୋଲନ୍ତି ସକଳେ ।। ୩୭
ଯେ ସଙ୍କର୍ଷଣ ମୁଖାଗ୍ନିରେ ।
ପ୍ରଳୟ ଘଟଇ ସଂସାରେ ।। ୩୮
ସେ ଦ୍ରବ୍ୟ ହେତୁ ନୈମିତ୍ତିକ ।
ସ୍ୱକାର୍ଯ୍ୟ ଗ୍ରାସେ ପ୍ରାକୃତିକ ।। ୩୯
ଗୁଣର ବଶେ ତା' ଉତ୍ପତ୍ତି ।
ଏ ରୂପେ ତ୍ରିବିଧ ବୋଲନ୍ତି ।। ୪୦
ଯେ କାଳେ ବ୍ରହ୍ମ ଉଦେ ହୋନ୍ତି ।
ମହତ ଆଦି ତତ୍ତ୍ୱ ଚିନ୍ତି ।। ୪୧
ଗୁଣ-ବୈଷମ୍ୟେ ଆତ୍ମା ବସେ ।
ସ୍ୱଗୁଣ ସ୍ୱଭାବେ ପ୍ରକାଶେ ।। ୪୨
ମହତ ତତ୍ତ୍ୱ ଆଦ୍ୟ ଚିନ୍ତି ।
ପ୍ରଥମ ସର୍ଗ ଉତପତ୍ତି ।। ୪୩
ଦ୍ୱିତୀୟ ଅହଙ୍କାରୋଦୟ ।
ଯେ ଦ୍ରବ୍ୟଜ୍ଞାନ-କ୍ରିୟାଶ୍ରୟ ।। ୪୪
ତୃତୀୟ ଭୂତସର୍ଗ ହୋଏ ।
ଯେ ମାତ୍ରା ଦିବ୍ୟଶକ୍ତି ବହେ ।। ୪୫
ଚତୁର୍ଥେ ଇନ୍ଦ୍ରିୟଙ୍କ ଜନ୍ମ ।
ଯେ ଜ୍ଞାନ-କ୍ରିୟାତ୍ମକ ନାମ ।। ୪୬
ଇନ୍ଦ୍ରି ରକ୍ଷକ ଦେବଗଣ ।
ଆବର ପଞ୍ଚମରେ ମନ ।। ୪୭
ଷଷ୍ଠରେ ତାମସ ଯେ ହୋଏ ।
ଅବିଦ୍ୟା ମହାଶକ୍ତି ବହେ ।। ୪୮
ଏ ଷଟ ପ୍ରକୃତି ଗୋଚର ।
ବିକୃତି ଶୁଣ ହେ ବିଦୁର ।। ୪୯

ଏ ସୃଷ୍ଟି ଜାତ ରଜୋଗୁଣେ ।
ହରିର ଲୀଳା ଏ ପ୍ରମାଣେ ।। ୫୦
ସ୍ଥାବର ସୃଜନ ସପ୍ତମ ।
ଅନ୍ୟାନ୍ୟ ସୃଷ୍ଟି ମୁଖ୍ୟତମ ।। ୫୧
ଏବେ ହୋ ମୁଖ୍ୟସର୍ଗ କହି ।
ସ୍ଥାବର ଷଡ଼ବିଧ ହୋଇ ।। ୫୨
ବନସ୍ପତି ଲତା ଔଷଧି ।
ବୀରୁଧ ଦ୍ରୁମ ବେଣୁ ଆଦି ।। ୫୩
ଏହାଙ୍କ ନାମ ଊର୍ଦ୍ଧ୍ୱ-ସ୍ରୋତ ।
ଅନ୍ତରେ ସ୍ପର୍ଶଜ୍ଞାନ ମାତ୍ର ।। ୫୪
ଅଷ୍ଟମସର୍ଗେ ପଶୁଗଣ ।
ସେ ଅଷ୍ଟବିଂଶ ପରମାଣ ।। ୫୫
ଅଜ୍ଞାନ ତମଗୁଣେ ଥା'ନ୍ତି ।
କେବଳ ଘ୍ରାଣେ ସେ ଜାଣନ୍ତି ।। ୫୬
ଗୋରୁ ମହିଷ ଛାଗ ତିନି ।
ଗବୟ ଶୂକର ହରିଣୀ ।। ୫୭
ଏହାଙ୍କ ପାଦେ ବେନିଖୁର ।
ମେଷ ଶରଭ ଉଷ୍ଟ୍ରଖର ।। ୫୮
ସମ୍ବର ମୃଗ ଆଦି ଯେତେ ।
ଯେ ଏକଖୁର କହୁଁ ତୋତେ ।। ୫୯
ଏବେ କହିବା ବୀର ଶୁଣ ।
ଯେ ପଞ୍ଚନଖୀ ପଶୁଗଣ ।। ୬୦
ଶ୍ୱା ବୃକ ବ୍ୟାଘ୍ର ଯେ ଶୃଗାଳ ।
ଶଶକ ଭଲ୍ଲୁକ ବିଡ଼ାଳ ।। ୬୧
ସିଂହ ବାନର କୂର୍ମ ହସ୍ତୀ ।
ଏ ପଞ୍ଚନଖ ବୋଲି ଥା'ନ୍ତି ।। ୬୨
ମକର ଆଦି ଜଳ ଜୀବେ ।
ଭାବେ କହିବା ଶୁଣ ଏବେ ।। ୬୩
ଯେ କଙ୍କ ଶାଗୁଣା ସଞ୍ଚାଣ ।
ଭାସ ଶଲ୍ଲକ ବରହିଣ ।। ୬୪
ହଂସ ସାରସ ଚକ୍ରବାକ ।
ଉଲ୍ଲୁକ ଆଦି ଚିଲ କାକ ।। ୬୫
ଏବେ ନବମସର୍ଗ କହି ।
ବିଦୁର ଶୁଣ ମନଦେଇ ।। ୬୬
ମନୁଷ୍ୟ ମଧ୍ୟେ ତାଙ୍କୁ ଗଣି ।
ଦୁଃଖକୁ ସୁଖପ୍ରାୟ ମଣି ।। ୬୭

ରଜ ଅଧିକ କର୍ମ ପର ।
ବିକୃତ ଏ ତିନି ପ୍ରକାର ।। ୬୮
ଏବେ ଅପର କହୁଁ ତୋତେ ।
ଉଭୟ ମଧ୍ୟେ ସୃଷ୍ଟି ଯେତେ ।। ୬୯
କୁମାରସର୍ଗ ଯେ ବୋଲାଇ ।
ଉଭୟ ମତେ ଦେହ ବହି ।। ୭୦
ଦେବଙ୍କ ସୃଷ୍ଟି ଅଷ୍ଟବିଧ ।
ପିତର ଅସୁର ବିବୁଧ ।। ୭୧
ଗନ୍ଧର୍ବ ଅପ୍ସରା ସିଦ୍ଧ ।
ଚାରଣ ଯକ୍ଷ ରକ୍ଷ ଭେଦ ।। ୭୨
ଭୂତ ପିଶାଚ ପ୍ରେତଗଣ ।
କିନ୍ନର ବିଦ୍ୟାଧର ପୁଣ ।। ୭୩
ଏ ଅଷ୍ଟବିଧ ଉତପତ୍ତି ।
ସ୍ୱଭାବେ ଦେବତା ବୋଲନ୍ତି ।। ୭୪
ଏ ଦଶସର୍ଗ ହେ ବିଦୁର ।
କ୍ରମେ ସର୍ଜିଲା ବେଦବର ।। ୭୫
ଏବେ କହିବା କୁରୁବୀର ।
ଯେ ବଂଶ ମନୁ ମନ୍ୱନ୍ତର ।। ୭୬
ଏମନ୍ତେ ରଜଗୁଣେ ମିଶି ।
ସୃଷ୍ଟି ଆଗମେ ବ୍ରହ୍ମରାଶି ।। ୭୭
ଅମୋଘ-ସଙ୍କଳ୍ପ ସ୍ୱଭାବ ।
ଆତ୍ମାରେ ଆତ୍ମା ପଦ୍ମନାଭ ।। ୭୮
ତ୍ରିଗୁଣେ ନୋହେ ସେ ଗୃହୀତ ।
ଈଶ୍ୱର ମାୟା ମହୁମତ ।। ୭୯
ନଦୀଙ୍କ ଜଳ ଯେହ୍ନେ ଭ୍ରମେ ।
ଜଳଧି ଯା'ନ୍ତି ଯଥାକ୍ରମେ ।। ୮୦
ଏ ଯେତେ ଦେବାସୁର ଆଦି ।
ଯେତେ ମୁଁ କହିଲି ସମ୍ପାଦି ।। ୮୧
ସେ ନାନାବିଧ ରୂପ ହୋନ୍ତି ।
କ୍ରମେ ତାହାର ଦେହେ ଯା'ନ୍ତି ।। ୮୨
ଏମନ୍ତେ ବିଦୁର ସମୀପେ ।
ମୁନି କହିଲେ ପଦ୍ମକଳ୍ପେ ।। ୮୩
ଏ ଭାଗବତ ଜ୍ଞାନରସ ।
କହିଲା ଜଗନ୍ନାଥ ଦାସ ।। ୮୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଦଶମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଏକାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ଏକଚିତ୍ତେ ।
ସେ କାଳରୂପ ସଂଖ୍ୟା ଯେତେ ।। ୧
ନିମିଷ ଆଦି ରୂପ ତା'ର ।
ଯେମନ୍ତେ ପୂରଇ ବତ୍ସର ।। ୨
ନିମିଷ ଚକ୍ଷୁ ପକ୍ଷ୍ମ ଭ୍ରମ ।
ଅଣୁ ତହିଁରୁ ଅଟେ ସାନ ।। ୩
ହେ କୁରୁବୀର ଶୁଣ ତୁହି ।
କହିବି ପରମାଣୁ ମୁହିଁ ।। ୪
ଯାହା ବିଭାଗ ନ ଲଭଇ ।
ସଂଯୋଗେ ଭାବ ଯା'ର ନାହିଁ ।। ୫
ଯାହା ସର୍ବଦା ବର୍ତ୍ତମାନ ।
ତାହାର ପରମାଣୁ ନାମ ।। ୬
ଅଣୁର ଅର୍ଦ୍ଧ ପରମାଣୁ ।
ତ୍ରିଭାଗେ ହୋଏ ତ୍ରସରେଣୁ ।। ୭
ତୃତୀୟ ତ୍ରସରେଣୁ ଯେହି ।
ତାହାକୁ ତ୍ରୁଟି ବୋଲି କହି ।। ୮
ଶଏ ତ୍ରୁଟିରେ ବେଧ ହୋଏ ।
ତ୍ରିବେଧେ ଲବ ନାମ ବହେ ।। ୯
ତ୍ରିଲବ କାଳ ଅଟେ ଯେହି ।
ନିମିଷ ବୋଲି ତା'କୁ କହି ।। ୧୦
ତିନି ନିମିଷେ ଏକ କ୍ଷଣ ।
ପଞ୍ଚ କ୍ଷଣରେ କାଷ୍ଠା ପୁଣ ।। ୧୧
କାଷ୍ଠା ପନ୍ଦର ଯେବେ ହୋଇ ।
ତାହାକୁ ଲଘୁ ବୋଲି କହି ।। ୧୨
ଏ ପଞ୍ଚଦଶ ଲଘୁ ଘେନ ।
ନାଡ଼ି ବୋଲିଣ ତା'କୁ ଜାଣ ।। ୧୩
ବେନି ନାଡ଼ିରେ ଯେ ମୁହୂର୍ତ୍ତ ।
ପ୍ରହର ଷଟ ଅବା ସପ୍ତ ।। ୧୪
ତାହାକୁ ଯାମ ବୋଲି କହି ।
ଅଷ୍ଟମେ ଅହୋରାତ୍ର ହୋଇ ।। ୧୫
ତାମ୍ର ଦ୍ୱାଦଶପଳ ଅର୍ଦ୍ଧେ ।
ପ୍ରସ୍ଥ ପ୍ରମାଣ ପାତ୍ର ମଧ୍ୟେ ।। ୧୬
ଚାରି ଅଙ୍ଗୁଳି ଦୀର୍ଘ କରି ।
ଚତୁରମସେ ଚୂତୀ ଗଢ଼ି ।। ୧୭
ସ୍ୱର୍ଣ୍ଣସୂଚୀରେ ଛିଦ୍ର କରି ।
କରିବ ଆୟାମ ବିସ୍ତାରି ।। ୧୮
ଜଳେ ବୁଡ଼ନ୍ତେ ଦଣ୍ଡେ ହୁଏ ।
ଏମନ୍ତେ କାଳର ନିର୍ଣ୍ଣୟେ ।। ୧୯
ଅଷ୍ଟପ୍ରହରେ ଦିବା-ରାତ୍ରି ।
କାଳଜ୍ଞେ ଏମନ୍ତ ଗଣନ୍ତି ।। ୨୦
ପନ୍ଦର ଅହୋରାତ୍ରେ ପକ୍ଷ ।
ସେ ଶୁକ୍ଳ କୃଷ୍ଣ ଯେ ପ୍ରତ୍ୟକ୍ଷ ।। ୨୧
ଏ ବେନିପକ୍ଷେ ହୁଏ ମାସ ।
ପିତୃଙ୍କ ରାତ୍ରି ଯେ ଦିବସ ।। ୨୨
ଦ୍ୱିମାସେ ଋତୁ ଏକ ହୋଇ ।
ବସନ୍ତ ଆଦି ଷଟ ସେହି ।। ୨୩
ଏକ ଅୟନେ ଋତୁ ତିନି ।
ଉତ୍ତର ଦକ୍ଷିଣ ଯେ ବେନି ।। ୨୪
ବେନି ଅୟନେ ସମ୍ୱତ୍ସର ।
ଏମନ୍ତେ ଗଣନା କାଳର ।। ୨୫
ଦେବଙ୍କୁ ଅହୋରାତ୍ର ହୁଏ ।
ମନୁଷ୍ୟ-ବରଷ ବୋଲାଏ ।। ୨୬
ଏମନ୍ତେ ଶତେକ ବରଷ ।
ମନୁଷ୍ୟ ପରମାୟୁ ଶେଷ ।। ୨୭
ଗ୍ରହ ନକ୍ଷତ୍ର ତାରା ଚକ୍ରେ ।
ସେ କାଳରୂପୀ ବିଭୁ ଏକେ ।। ୨୮
ଏମନ୍ତେ ସମ୍ୱତ୍ସର ଅନ୍ତେ ।
ବିହରେ ଆତ୍ମାର ଆୟତେ ।। ୨୯
ଅଣୁ ପ୍ରମାଣୁ ପରିମାଣେ ।
ପ୍ରାଣୀଙ୍କି ନାଶେ ଅନୁକ୍ଷଣେ ।। ୩୦
ଏ ପଞ୍ଚବିଧ-ସମ୍ୱତ୍ସର ।
ସୁମନେ ଶୁଣ ହେ ବିଦୁର ।। ୩୧
ପ୍ରଥମେ ସମ୍ୱତ୍ସର ହୋଏ ।
ପରିବତ୍ସର ଯେ ଦ୍ୱିତୀୟେ ।। ୩୨
ଇଦାବତ୍ସର ତୃତୀୟର ।
ଚତୁର୍ଥେ ଅନୁ ଯେ ବତ୍ସର ।। ୩୩
ପଞ୍ଚମେ ବତ୍ସର ବୋଲାଇ ।
କାଳ ସ୍ୱରୂପ ଗୁଣମୟୀ ।। ୩୪
ସେ ସୂର୍ଯ୍ୟ କାଳ ରୂପ ଧରି ।
ସଂସାର-ବୀଜକୁ ବିସ୍ତାରି ।। ୩୫
ସକାମ-ଫଳ ବିସ୍ତାରଣେ ।
ଯାହାର ଉଦୟ ଗଗନେ ।। ୩୬
ସେ ତେଜୋମୟ କାଳାନ୍ତକ ।
ପଞ୍ଚବତ୍ସର ପ୍ରବର୍ତ୍ତକ ।। ୩୭
ସେ ମହାଭୂତ ମହାତେଜ ।
ବହୁ ପ୍ରକାରେ କରି କାର୍ଯ୍ୟ ।। ୩୮
ଧାଏଁ ଆକାଶେ ଅନୁକ୍ଷଣେ ।
ପୁରୁଷ ମୋହ ନିବାରଣେ ।। ୩୯
ନିତ୍ୟେ ତାହାଙ୍କ ପୂଜା କର ।
ତରିବ ଏ ଭବ-ସଂସାର ।। ୪୦
ଏମନ୍ତେ ମଇତ୍ରେୟ ବାଣୀ ।
ବିଦୁର ବୋଲେ ତାହା ଶୁଣି ।। ୪୧

### ବିଦୁର ଉବାଚ

ପିତୃ ଦେବତା ନର ଆଦି ।
ପରମାୟୁଷ ଯଥାବିଧି ।। ୪୨
ଶୁଣିଲି ତୁମ୍ଭ ମୁଖୁ ଏବେ ।
ସନ୍ତୋଷ କହ ମୁନି ଭାବେ ।। ୪୩
ଏପରେ କଳ୍ପ ବାହ୍ୟେ ଯେତେ ।
ନାନା ପ୍ରକାରେ ଏ ଜଗତେ ।। ୪୪
ସନକ ଆଦି ମହାମୁନି ।
ତ୍ରୈଲୋକ୍ୟ ବାହ୍ୟେ ଯେତେ ଜ୍ଞାନୀ ।। ୪୫
ଅଛନ୍ତି କାଳର ଆୟତ୍ତେ ।
ତା'ଙ୍କ ଆୟୁଷ କହ ମୋତେ ।। ୪୬
ତୁମ୍ଭେ ସେ କାଳଗତି ଜାଣ ।
ଯେ ଯୁଗେ ଯେ ଅବା ପ୍ରମାଣ ।। ୪୭

Dr. Sudhanshu Sekhar Mishra

ଯେଣୁ ସେ ବିଚକ୍ଷଣ ଧୀର ।
ସୁବୁଦ୍ଧି ସୁଗୁଣ ଗମ୍ଭୀର ।। ୪୮
ଯେତେ ବିଷୟ ଏ ଶୟଳେ ।
ଜାଣନ୍ତି ଜ୍ଞାନଚକ୍ଷୁ ବଳେ ।। ୪୯

ମୈତ୍ରେୟ ଉବାଚ

ବୋଲନ୍ତି ଶୁଣ ହେ ବିଦୁର ।
ଯେ ବ୍ରହ୍ମା ସୃଷ୍ଟିର ବିଚାର ।। ୫୦
ସତ୍ୟ ତ୍ରେତୟା ଦ୍ୱାପରାଦି ।
କଳି ଏ ଚତୁର୍ଯୁଗ ବିଧି ।। ୫୧
ଦେବଙ୍କ ଦ୍ୱାଦଶ ସହସ୍ରେ ।
ଏ ଚାରିଯୁଗ କାଳ ଅଂଶେ ।। ୫୨
ଚାରିସହସ୍ର ଯୁଗ ସତ୍ୟ ।
ତିନିସହସ୍ର ତ୍ରେତା ମତ ।। ୫୩
ଦ୍ୱାପର ଦ୍ୱିସହସ୍ର ଜାଣ ।
କଳି ସହସ୍ରେ ପରିମାଣ ।। ୫୪
ଏହି ପ୍ରମାଣେ ଶତ ଦେଇ ।
ଦ୍ୱିଗୁଣେ ଏହାକୁ ମିଶାଇ ।। ୫୫
ଯୁଗଙ୍କ ସନ୍ଧ୍ୟା ସନ୍ଧ୍ୟାଂଶ ।
ଅୟୁତେ ଯେ କାଳ ପ୍ରକାଶ ।। ୫୬
ଏମନ୍ତେ ଦେବବର୍ଷ ମତେ ।
ଦ୍ୱାଦଶସହସ୍ର ସମେତେ ।। ୫୭
ଏ ରୂପ ଯୁଗସଂଖ୍ୟା ଜାଣି ।
ଜ୍ଞାନୀଙ୍କ ଗୋଚରେ ପ୍ରମାଣି ।। ୫୮
ଯେ ଯୁଗେ ଯେବା ଧର୍ମବିଧି ।
ଆଗମ ନିଗମ ପ୍ରସିଦ୍ଧି ।। ୫୯
ଧର୍ମ ସତ୍ୟରେ ଚତୁଷ୍ପଦ ।
ଅଧର୍ମ କ୍ରମେ ହୀନପଦ ।। ୬୦
ତ୍ରେତାରେ ତିନିପଦ ଥିଲା ।
ଦ୍ୱାପରେ ଦ୍ୱିପାଦ ହୋଇଲା ।। ୬୧
କଳିର ଏକପଦ ରହେ ।
ଯେଣୁ ଅଧର୍ମ ବୃଦ୍ଧି ବହେ ।। ୬୨
ଦେବଙ୍କ ସହସ୍ର ଯୁଗରେ ।
ବ୍ରହ୍ମା ଦିବସ ବୋଲି ତାରେ ।। ୬୩
ଏହି ପ୍ରମାଣେ ରାତ୍ର ହୁଏ ।
ନିଶି ଆଗମେ ବ୍ରହ୍ମା ଶୁଏ ।। ୬୪
ରାତ୍ରର ଅନ୍ତେ ପୁଣି ଉଠି ।
ବେଦ ପ୍ରମାଣେ କରେ ସୃଷ୍ଟି ।। ୬୫
ଏମନ୍ତ ବ୍ରହ୍ମାର ଦିବସେ ।
ଭୁଞ୍ଜନ୍ତି ମନୁ-ଚତୁର୍ଦ୍ଦଶେ ।। ୬୬
ମନୁ ଅନ୍ତର କାଳ ଭୋଗ ।
ଏକସ୍ତରି ଯେ ଚତୁର୍ଯୁଗ ।। ୬୭
କିଛି ଅଧିକେ ହୁଏ ଶେଷ ।
ଏମନ୍ତେ ବ୍ରହ୍ମାଙ୍କ ଦିବସ ।। ୬୮
ମନୁଙ୍କ ବଂଶେ ମନୁସୁତେ ।
ଋଷି ଦେବତା ସୁରନାଥେ ।। ୬୯
ତିନିଭୁବନେ ପ୍ରାଣୀ ଯେତେ ।
ଭୁଞ୍ଜନ୍ତି କଳ୍ପ ପରିଯନ୍ତେ ।। ୭୦
ଏ ସୃଷ୍ଟି ଦୈନନ୍ଦିନ କାମ ।
ତୀର୍ଯ୍ୟକ ପିତୃ ଦେବ ଜନ ।। ୭୧
ଏମନ୍ତେ କଳ୍ପ ପରିଯନ୍ତେ ।
କର୍ମ ଭୁଞ୍ଜନ୍ତି ପ୍ରାଣୀ ଏଥେ ।। ୭୨
ମନ୍ୱନ୍ତରମାନଙ୍କେ ହରି ।
ବିଶୁଦ୍ଧ ସତ୍ତ୍ୱମୂର୍ତ୍ତି ଧରି ।। ୭୩
ମନୁ ଶରୀରେ ଏ ସଂସାରେ ।
ପାଳି କ୍ରୀଡ଼େ ପୁରୁଷକାରେ ।। ୭୪
ମାୟାର ବଳେ ସେ ବିହରେ ।
ବ୍ରହ୍ମାଦିବସ ଅନ୍ତଃକାଳେ ।। ୭୫
ନିଶା ଆଗମେ ବିଶ୍ୱଦେହୀ ।
ମଉନ ବ୍ରତେ ସେ ବସଇ ।। ୭୬
ତ୍ରୈଲୋକ୍ୟ କର୍ମେ ତାହା ଦେଖି ।
ସ୍ୱଜ୍ଞାନ ଜୀବନ ଉପେକ୍ଷି ।। ୭୭
ରବି ଶଶାଙ୍କ ଶୂନ୍ୟେ ଗଲା ।
ପ୍ରଳୟ ଅଗ୍ନି ପ୍ରକାଶିଲା ।। ୭୮
ସଙ୍କରଷଣ ମୁଖୁ ଆସି ।
ଅନଳ ତିନିଲୋକେ ଗ୍ରାସି ।। ୭୯
ପ୍ରଚଣ୍ଡ-ବହ୍ନି ତେଜ ତ୍ରାସେ ।
ଋଷିଏ ଥା'ନ୍ତି ଯେ ଆକାଶେ ।। ୮୦
ସେ ମହର୍ଲୋକ ଛାଡ଼ି ବେଗେ ।
ପଶନ୍ତି ଜନଲୋକ-ମାର୍ଗେ ।। ୮୧
ତକ୍ଷଣେ ସପ୍ତସିନ୍ଧୁ-ଜଳେ ।
ତ୍ରିଲୋକ ଆଚ୍ଛାଦନ୍ତି ହେଳେ ।। ୮୨
ପବନ ଅଣଚାଶ ବଳେ ।
ବହନ୍ତେ ଗର୍ଜେ ଊର୍ମିମାଳେ ।। ୮୩
ଜଳ ତରଙ୍ଗ ମଧ୍ୟେ ପୁଣି ।
ନାଗଆସନେ ଚକ୍ରପାଣି ।। ୮୪
ନିଶ୍ଚିନ୍ତେ ନିଦ୍ରିତ-ନୟନେ ।
ଶୟନ ଅନନ୍ତ-ଶୟନେ ।। ୮୫
ସଙ୍ଗତେ ସଙ୍ଗ ନାହିଁ ଏକେ ।
ସ୍ତୁତି କରନ୍ତି ଜନଲୋକେ ।। ୮୬
ଏମନ୍ତେ ଅହୋରାତ୍ର ଗଣି ।
ଆଗମ-ନିଗମେ ପ୍ରମାଣି ।। ୮୭
ଏ ଭାବେ ଶତେକ ବରଷ ।
ବ୍ରହ୍ମାର ପରମ ଆୟୁଷ ।। ୮୮
ସେ ଆୟୁ କାଳବଶେ ପୁଣ ।
ହୁଅଇ ଦିନୁଦିନ କ୍ଷୀଣ ।। ୮୯
ସେ ବ୍ରହ୍ମା କାଳଭୟେ ଭୀତ ।
ବିଷୟାଶକ୍ତି ବିରହିତ ।। ୯୦
କରନ୍ତି ହରି-ଉପାସନ ।
କି ଏ ମାନବ ଅକିଞ୍ଚନ ।। ୯୧
ବ୍ରହ୍ମାର ଆୟୁଷ ଯେ ହୋଇ ।
ଅର୍ଦ୍ଧକେ ପରାର୍ଦ୍ଧ ବୋଲାଇ ।। ୯୨
ସେ ପୂର୍ବଅର୍ଦ୍ଧ ଭୋଗ ଯାଇ ।
ଅପରଅର୍ଦ୍ଧ ଏବେ ହୋଇ ।। ୯୩
ପୂର୍ବପରାର୍ଦ୍ଧେ ବ୍ରହ୍ମା ନାମ ।
ଶବ୍ଦବ୍ରହ୍ମ ଯେ ମହାନ ।। ୯୪
ପରାର୍ଦ୍ଧକଳ୍ପ ଯେବା ହୋଏ ।
ସେ ପଦ୍ମକଳ୍ପ ନାମ ବହେ ।। ୯୫
ବିଷ୍ଣୁ ନାଭିରୁ ପଦ୍ମଜାତ ।
ଯହୁଁ ଉପୁଜେ ବେଦନାଥ ।। ୯୬
ଦ୍ୱିତୀୟକଳ୍ପ ଏବେ କହି ।
ଶ୍ୱେତବରାହ ସେ ବୋଲାଇ ।। ୯୭
ଯେବଣ କଳ୍ପେ ନରହରି ।
ଶ୍ୱେତବରାହ ରୂପ ଧରି ।। ୯୮
ବେନି-ପରାର୍ଦ୍ଧ-ରୂପୀ କାଳ ।
ନିମିଷ ଆଦି-ଅନ୍ତ ଯା'ର ।। ୯୯
ଅନାଦି ଅବ୍ୟକ୍ତର ସୀମା ।
ଅନନ୍ତ ଈଶ୍ୱର ମହିମା ।।୧୦୦

Dr. Sudhanshu Sekhar Mishra

କେବଳ ପରିପୂର୍ଣ୍ଣ ବିଭୁ ।
ସେ ସର୍ବେଶ୍ୱର ସର୍ବ ପ୍ରଭୁ ।। ୧୦୧
ତାହାଙ୍କ ପରେ ପ୍ରଭୁପଣ ।
ସମର୍ଥ ନୋହେ କାଳ ଜାଣ ।।୧୦୨
ଷୋଡ଼ଶ-ବିକାରେ ସଞ୍ଚରେ ।
ନାନା ବିଷୟେ ରୂପ ଧରେ ।। ୧୦୩
ଏ ଅଣ୍ଡକୋଷ ଆଦ୍ୟ ପ୍ରାନ୍ତେ ।
ପଞ୍ଚାଶକୋଟି ପରିମିତେ ।।୧୦୪
ବିସ୍ତୃତ ସପ୍ତଆବରଣେ ।
ଉତ୍ତରୋତ୍ତର ଦଶଗୁଣେ ।।୧୦୫
କୋଟି ବ୍ରହ୍ମାଣ୍ଡ ଯା'ର ଦେହେ ।
ଦିଶନ୍ତି ପରମାଣୁ ପ୍ରାୟେ ।।୧୦୬
ଅକ୍ଷରବ୍ରହ୍ମ ତା'ର ନାମ ।
ସେ ସର୍ବକାରଣ-କାରଣ ।।୧୦୭
ତା'ର ଚରଣେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ।।୧୦୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ କାଳସଂଖ୍ୟା ଯେତେ ।
ବର୍ଣ୍ଣିଲି ତୋହର ଅଗ୍ରତେ ।। ୧
ଏବେ ବିଦୁର କହୁଁ ତୋତେ ।
ସେ ବ୍ରହ୍ମା-ସର୍ଜନା ଯେମନ୍ତେ ।। ୨
ବେଦ ବିଚାରେ କଲା ସୃଷ୍ଟି ।
ଯେଣୁ ଅମୋଘ ତା'ର ଦୃଷ୍ଟି ।। ୩
ଅନ୍ଧତାମିସ୍ର ମହାମୋହ ।
ତାମିସ୍ର ପୁଣି ତମ ମୋହ ।। ୪
ଅବିଦ୍ୟା ପଞ୍ଚପର୍ବ ସୃଷ୍ଟି ।
ଆଗେ କହିଲା ପରମେଷ୍ଠି ।। ୫
ପାପ-ବହୁଳ-ସୃଷ୍ଟି ସେହି ।
ତା' ଦେଖି ବ୍ରହ୍ମା ବିଚାରଇ ।। ୬
ଏ ସୃଷ୍ଟି ନୋହିଲା ଉଚିତ ।
ଦୃଢ଼େ ଗୋବିନ୍ଦେ ଦେଲା ଚିତ୍ତ ।। ୭
ଗୋବିନ୍ଦପାଦ ଧ୍ୟାନ ବଳେ ।
ସଂଯୁକ୍ତ-ଭକତି ନିଷ୍ଠଳେ ।। ୮
ବିଷ୍ଣୁର ଅଂଶେ ଚାରିଭ୍ରାତ ।
ବ୍ରହ୍ମାର ମନମଧ୍ୟୁ ଜାତ ।। ୯
ସନକ ସନନ୍ଦ ଏ ବେନି ।
କୁମାର ସନାତନ ଘେନି ।। ୧୦
ସ୍ୱଭାବେ ଉର୍ଦ୍ଧ୍ୱରେତା ହୋନ୍ତି ।
ବିଷ୍ଣୁହୁଁ ଆନ ନ ଜାଣନ୍ତି ।। ୧୧
ତାହାଙ୍କୁ ଚାହିଁ ବେଦବର ।
ସ୍ୱଭାବେ କହଇ ମଧୁର ।। ୧୨

### ବ୍ରହ୍ମା ଉବାଚ

ତୁମ୍ଭେ ଚତୁରପୁତ୍ରେ ମୋର ।
ବେଦପ୍ରମାଣେ ସୃଷ୍ଟି କର ।। ୧୩
ଏ ସୃଷ୍ଟି ହୋଇବ ତୁମ୍ଭର ।
ଯାଅ ଯା ମୋର ବୋଲ କର ।। ୧୪

### ମୈତ୍ରେୟ ଉବାଚ

ଏମନ୍ତେ ପିତା ବାକ୍ୟ ଶୁଣି ।
ପୁତ୍ରେ କହନ୍ତି ମନେ ଗୁଣି ।। ୧୫
ଆମ୍ଭର ତେଣେ କାର୍ଯ୍ୟ ନାହିଁ ।
ଏମନ୍ତ ଆଜ୍ଞା ଦିଅ ତୁହି ।। ୧୬
ଗୋବିନ୍ଦ-ଚରଣାରବିନ୍ଦେ ।
ଭକ୍ତି କରିବୁ ମୋକ୍ଷ-ସଧେ ।। ୧୭
ଏମନ୍ତେ ଶୁଣି ତା'ଙ୍କ ବାଣୀ ।
କ୍ରୋଧେ କମ୍ପିଲା କୁଶପାଣି ।। ୧୮
ପୁଣି ବୁଦ୍ଧିରେ ଚିତ୍ତ ଧରି ।
ଧ୍ୟାନେ ସୁମରି ନରହରି ।। ୧୯
କୋପେ ଭ୍ରୂକୁଟୀ ତା କୁଟୀଳ ।
ବଦନ ଦିଶିଲା ପିଙ୍ଗଳ ।। ୨୦
ଭ୍ରୂକୁଟୀ ମଧ୍ୟୁ ପୁତ୍ର ଜାତ ।
ଦିଶଇ ସୁନୀଳ-ଲୋହିତ ।। ୨୧
ଦେବଙ୍କ ପୂର୍ବେ ଜାତ ସେହି ।
କାନ୍ଦଇ ବ୍ରହ୍ମା ମୁଖ ଚାହିଁ ।। ୨୨
ବୋଲଇ ଶୁଣ ବେଦବର ।
ମୋହର ନାମ ଆଗେ କର ।। ୨୩
ନିର୍ଭୟ ସ୍ଥାନେ ସ୍ଥାପ ମୋତେ ।
ଯେମନ୍ତେ ରହିବି ନିଶ୍ଚିନ୍ତେ ।। ୨୪
ଶୁଣି ସାନନ୍ଦ ପ୍ରଜାପତି ।
ଚିନ୍ତିଲା ଯେବା ନାମ ସ୍ଥିତି ।। ୨୫
ହେ ପୁତ୍ର ରୋଦନ ନ କର ।
କରିବି ବଚନ ତୋହର ।। ୨୬
ରୋଦନ କଲୁ ଆଗେ ଯେଣୁ ।
ତୋ' ନାମ ରୁଦ୍ର ହେଉ ତେଣୁ ।। ୨୭
ଏମନ୍ତ କହି ତା'ର ଆଗେ ।
ସ୍ଥାନ କହିଲା ଯଥାଭାଗେ ।। ୨୮
ମନ ଇନ୍ଦ୍ରିୟ ପ୍ରାଣ ବ୍ୟୋମ ।
ବାୟୁ ଅନଳ ଜଳସ୍ଥାନ ।। ୨୯
ମହୀ ମିହିର ଚନ୍ଦ୍ର ତପ ।
ଏମନ୍ତେ ଏକାଦଶ ରୂପ ।। ୩୦
ଯେ ସ୍ଥାନେ ଯେ ନାମ ତୋହର ।
ହୋଇବ ଶୁଣ ହେ କୁମର ।। ୩୧
ମନ ଉପରେ ମନ୍ୟୁ ନାମ ।
ଇନ୍ଦ୍ରିୟ ପଦେ ମନୁ ଜାଣ ।। ୩୨
ପ୍ରାଣରେ ବସେ ମହୀନସ ।
ଆକାଶେ ମହାନ ପ୍ରକାଶ ।। ୩୩
ପବନେ ଶିବରୂପ ବସେ ।
ଅନଳେ ଋତଧ୍ୱଜ ମିଶେ ।। ୩୪
ଉର୍ଦ୍ଧ୍ୱରେତସ ଜଳ ଯୋଗେ ।
ଭବ ବସିବ ଭୂମିଭାଗେ ।। ୩୫
ରବିର ସ୍ଥାନେ କଳାଭାବ ।
ଚନ୍ଦ୍ରେ ବସିବ ବାମଦେବ ।। ୩୬

Dr. Sudhanshu Sekhar Mishra

ତପେ ବସିବ ଧୃତବ୍ରତ ।
ଏମନ୍ତେ ଏକାଦଶ ମତ ।। ୩୭
ତୁମ୍ଭର ପତ୍ନୀ ନାମ ଯେତେ ।
ଶୁଣ କହିବା ତୋ' ଅଗ୍ରତେ ।। ୩୮
ଧୀ ବୃତ୍ତି ଉଶନା ଯେ ଉମା ।
ଅପରେ ଶୁଣ ଯେତେ ବାମା ।। ୩୯
ନିୟସର୍ପୀ ଇଳା ଅମ୍ବିକା ।
ଇରାବତୀ ଯେ ସୁଧା ଦୀକ୍ଷା ।। ୪୦
ଏ କନ୍ୟା ରୁଦ୍ରାଣୀ ବୋଲାନ୍ତି ।
ଏହାଙ୍କ ତୁମ୍ଭେ ହୁଅ ପତି ।। ୪୧
ଏ ଯେତେ ନାମ ଆଦି ସ୍ଥାନ ।
ସ୍ତିରୀ ସହିତେ ତୁହି ଘେନ ।। ୪୨
ଏହି ପ୍ରମାଣେ ସୃଷ୍ଟି କର ।
ହୁଅ ତୁ ପ୍ରଜାପତି-ବର ।। ୪୩
ଏମନ୍ତେ ଗୁରୁ ଆଜ୍ଞା ପାଇ ।
ନୀଳ ଲୋହିତ ତୋଷ ହୋଇ ।। ୪୪
ସତ୍ତ୍ୱ ଆକୃତି ଆତ୍ମସମ ।
ନିର୍ମାଣ କଲା ପ୍ରଜାଗଣ ।। ୪୫
ସେ ବ୍ରହ୍ମା ରୁଦ୍ର ସୃଷ୍ଟି ଚାହିଁ ।
ସଂଶୟ ମନେ ବିଚାରଇ ।। ୪୬
ଏ ସୃଷ୍ଟି ମହା ଭୟଙ୍କର ।
ଦେଖି କମ୍ପିଲା ଚିତ୍ତ ମୋର ।। ୪୭
ବୋଲନ୍ତି ରୁଦ୍ର ମୁଖ ଚାହିଁ ।
ଭୋ ପୁତ୍ର ଏଣେ କାର୍ଯ୍ୟନାହିଁ ।। ୪୮
ଏ ସୃଷ୍ଟି ଦଶଦିଗ ତୁଲେ ।
ମୋହର ମନେ ତାପ କଲେ ।। ୪୯
ଏବେ ତୁ ତପ ସାଧକର ।
ସର୍ବଜୀବଙ୍କ ସୁଖଘର ।। ୫୦
ତପର ବଳେ ଏ ଜଗତେ ।
ପ୍ରଜା ତୁ କର ପୂର୍ବମତେ ।। ୫୧
ତପେ ତୁ ବିଷ୍ଣୁଙ୍କୁ ପାଇବୁ ।
ଯେ ଭାବେ ସର୍ବକାଳେ ଥିବୁ ।। ୫୨

ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମା-ଆଜ୍ଞା ପାଇ ।
ନୀଳଲୋହିତ ତୋଷ ହୋଇ ।। ୫୩
ବ୍ରହ୍ମାର ଚରଣେ ନମିଲା ।
ତପ ସାଧନେ ବନେ ଗଲା ।। ୫୪
ରୁଦ୍ରଙ୍କୁ ତପେ ଆଜ୍ଞା ଦେଇ ।
ସେ ବ୍ରହ୍ମା ମନେ ବିଚାରଇ ।। ୫୫
ଏ ତ ଅସଂଖ୍ୟ ରୁଦ୍ରଗଣ ।
ନୁହନ୍ତି ସୃଷ୍ଟିର କାରଣ ।। ୫୬
ତାହାଙ୍କୁ ଶିବଲୋକେ ଥୋଇ ।
ପୁଣି ସଂଶୟେ ବିଚାରଇ ।। ୫୭
ଏବେ କି କରିବି ଉପାୟ ।
ନ ପୁଣ କୋପେ ଦେବରାୟ ।। ୫୮
ଏମନ୍ତେ ବିଷ୍ଣୁପାଦ ଚିନ୍ତି ।
ଧ୍ୟାନେ ବସିଲା ପ୍ରଜାପତି ।। ୫୯
ତା'ର ଶରୀରୁ ଦଶସୁତ ।
ତକ୍ଷଣେ ହୋଇଲେ ସମ୍ଭୂତ ।। ୬୦
ଲୋକବର୍ଦ୍ଧନ ହେତୁ ଅର୍ଥେ ।
ନମିଲେ ବ୍ରହ୍ମା-ପାଦଗତେ ।। ୬୧
ମରୀଚି ଅତ୍ରି ଅଙ୍ଗିରସ ।
ପୌଲସ୍ତ୍ୟ ପୁଲହ ପ୍ରକାଶ ।। ୬୨
କ୍ରତୁ ବଶିଷ୍ଠ ଭୃଗୁ ଦକ୍ଷ ।
ଦଶମେ ନାରଦ ପ୍ରତ୍ୟକ୍ଷ ।। ୬୩
ଶୁଣ ବିଦୁର କହୁଁ ଭଲେ ।
ଯେ ଅଙ୍ଗୁ ଯେବା ଉପୁଜିଲେ ।। ୬୪
ନାରଦ ଉପୁଜିଲେ କୋଳୁ ।
ଦକ୍ଷ ଦକ୍ଷିଣାଙ୍ଗୁଷ୍ଠ ମୂଳୁ ।। ୬୫
ପ୍ରାଣୁ ବଶିଷ୍ଠମୁନି ଜାତ ।
ଭୃଗୁ ଯେ ତ୍ୱକରୁ ସମ୍ଭୂତ ।। ୬୬
କ୍ରତୁ ଉପୁଜେ ଭୁଜମୂଳୁ ।
ପୁଲହ ନାଭିର ମଣ୍ଡଳୁ ।। ୬୭
ପୌଲସ୍ତ୍ୟ କର୍ଣ୍ଣମୂଳୁ ଜାତ ।
ଅଙ୍ଗିରା ବଦନୁ ସମ୍ଭୂତ ।। ୬୮
ଅତ୍ରି ଉପୁଜେ ଚକ୍ଷୁଯୁଗେ ।
ମରୀଚି ମନର ସଂଯୋଗେ ।। ୬୯
ଦକ୍ଷିଣସ୍ତନୁ ଧର୍ମ ଜାତ ।
ଯେ ଧମ ଧରଇ ଜଗତ ।। ୭୦
ଯେ ସ୍ଥାନେ ସ୍ୱୟଂ ନାରାୟଣ ।
ଅଛନ୍ତି ସଦା ବିଦ୍ୟମାନ ।। ୭୧
ଅଧର୍ମ ପୃଷ୍ଠଦେଶୁ ହୋଇ ।
ମୃତ୍ୟୁ ଯହିଁରୁ ସଞ୍ଚରଇ ।। ୭୨
କାମ ତା' ହୃଦରୁ ସମ୍ଭୂତ ।
ଭୂରୁ ମଣ୍ଡଳୁ କ୍ରୋଧ ଜାତ ।। ୭୩
ଲୋଭ ହୋଇଲା ଓଷ୍ଠଦେଶେ ।
ବଚନ ବଦନୁ ପ୍ରକାଶେ ।। ୭୪
ସପତସିନ୍ଧୁ ମେଢ୍ର ଦେଶୁ ।
ମୃତ୍ୟୁ ଦେବତା ଗୁହ୍ୟଦେଶୁ ।। ୭୫
କର୍ଦ୍ଦମ ଛାୟାରୁ ସମ୍ଭୂତି ।
ଯାହାର ପତ୍ନୀ ଦେବହୂତି ।। ୭୬
ଏମନ୍ତେ ଅଶେଷ ଜଗତ ।
ବ୍ରହ୍ମାର ମନ-ଦେହୁ ଜାତ ।। ୭୭
ଯେ କନ୍ୟା ବଚନୁ ଜନ୍ମିଲା ।
ବ୍ରହ୍ମାର ମନ ସେ ମୋହିଲା ।। ୭୮
ସକାମେ ବ୍ରହ୍ମା ତା'ର ହସ୍ତ ।
ଧଇଲେ ରତିରଙ୍ଗ ଅର୍ଥେ ।। ୭୯
ଅଧର୍ମ ଦେଖି ବ୍ରହ୍ମା ଚିତ୍ତେ ।
ପୁତ୍ରେ ମିଳିଲେ ତା' ଅଗ୍ରତେ ।। ୮୦
ମରୀଚି ଆଦି ଯେତେ ଭାଇ ।
ବୋଲନ୍ତି ପିତା ମୁଖ ଚାହିଁ ।। ୮୧
ଭୋ ତାତ ସ୍ଥିରକର ଚିତ୍ତ ।
ଏ ତ ତୁମ୍ଭର ବିପରୀତ ।। ୮୨
ଯେ କର୍ମ ପୂର୍ବାପରେ ନାହିଁ ।
ଏବେ ସେ ସମ୍ଭବିବ କାହିଁ ।। ୮୩
କାହିଁ ଦୁହିତା ରମେ ପିତା ।
ଏଣୁ ଆମ୍ଭର ମନେ ଚିନ୍ତା ।। ୮୪
ପୂର୍ବେ ତେଜସ୍ୱୀ ଯେତେ ଥିଲେ ।
ସତ୍ୟେ ସେ ଧର୍ମ ଆଚରିଲେ ।। ୮୫
ସେ ନ କରନ୍ତି ଏଡ଼େ କର୍ମ ।
ସ୍ୱଭାବେ ନୁହଇ ଏ ଧର୍ମ ।। ୮୬
ଯେ ଧର୍ମ ଲୋକକ୍ଷେମ କରେ ।
ଆନନ୍ଦେ ଆତ୍ମାକୁ ଉଦ୍ଧାରେ ।। ୮୭
ଏଣୁ ସେ ବିଷ୍ଣୁସମ ନର ।
ଆମ୍ଭର ତାଙ୍କୁ ନମସ୍କାର ।। ୮୮
ତୁ ଦେବ ଆତ୍ମାକୁ ସୁମର ।
ଅଧର୍ମୁ ମନ ସ୍ଥିରକର ।। ୮୯

Dr. Sudhanshu Sekhar Mishra

ଭୋ ତାତ ଧର୍ମେ କର ଚିତ୍ତ ।
ଅଧର୍ମେ ନ ବୁଡୁ ଜଗତ ।। ୯୦
ତୁ ଏବେ ପାପ ଆଚରିଲେ ।
ସଂସାରେ ଥିବ କେବା ଭଲେ ।। ୯୧
ଅନ୍ୟେ ତୋ କର୍ମ ଅନୁସାରେ ।
କୁଶଳୀ ହୋଇବେ ସଂସାରେ ।। ୯୨
ଏମନ୍ତେ ଶିରେ କର ଦେଇ ।
ପାଦେ ନମିଲେ ସର୍ବଭାଇ ।। ୯୩
ଏମନ୍ତ ବ୍ରହ୍ମାଙ୍କୁ ଜଣାଇ ।
ପୁଣି ବୋଲନ୍ତି ବିଷ୍ଣୁ ଚାହିଁ ।। ୯୪
ହେ ବିଷ୍ଣୁ ଜଗତ-ଈଶ୍ୱର ।
ଆମ୍ଭର ତୋତେ ନମସ୍କାର ।। ୯୫
ତୁ ଦେବ ଧର୍ମ ରକ୍ଷା କର ।
ଅଧର୍ମେ ନ ବୁଡୁ ପିଅର ।। ୯୬
ଏମନ୍ତେ ପୁତ୍ରଙ୍କୁ ଅନାଇ ।
ବ୍ରହ୍ମା ରହିଲେ ଲଜ୍ଜାପାଇ ।। ୯୭
ତକ୍ଷଣେ ଛାଡ଼ି ତା'ର ହସ୍ତ ।
ବିଷ୍ଣୁ ସ୍ମରେ ତଉମାଥ ।। ୯୮
ଅତି ଲଜ୍ଜିତ ଯେଣୁ ହେଲେ ।
ଲୀଳାରେ ତନୁ ତ୍ୟାଗ କଲେ ।। ୯୯
ସେ ବ୍ରହ୍ମା ଯେଣୁ ଲଜ୍ଜା କଲା ।
ତା' ତନୁ ଅଷ୍ଟଦିଗେ ଗଲା ।।୧୦୦
ସେ ଘୋର-ଅନ୍ଧକାର ରେଖା ।
ନାମ ବହିଲା କୁଜ୍ଝଟିକା ।।୧୦୧
ଅଧର୍ମେ ଅନ୍ଧକାର ହୋଇ ।
ସୂର୍ଯ୍ୟ ସମ୍ମୁଖେ ପ୍ରକାଶଇ ।।୧୦୨
ପୁଣି ଚଳଇ ଅଷ୍ଟଦିଶେ ।
ସଞ୍ଜରେ ସମ୍ଭବି ଆକାଶେ ।।୧୦୩
ମେଘର ପ୍ରାୟେ ତା'ର ଦେହୀ ।
ଶୁଣ ବିଦୁର ଏବେ କହି ।।୧୦୪
ଚିନ୍ତା ଆକୁଳେ ପ୍ରଜାପତି ।
ସୃଷ୍ଟି-ବିଷୟେ କଲା ମତି ।।୧୦୫
ଧ୍ୟାନ କରନ୍ତେ ମନେ ଖେଦ ।
ମୁଖୁ ଜନ୍ମିଲେ ଚାରିବେଦ ।।୧୦୬
ଶବ୍ଦବ୍ରହ୍ମ ପରିମାଣେ ।
ଧର୍ମ ଅଧର୍ମ ଯେ ବଖାଣେ ।।୧୦୭
ମନେ ବିଚାରେ ପଦ୍ମଯୋନି ।
ମୁଁ ଏବେ ବେଦତତ୍ତ୍ୱ ଘେନି ।।୧୦୮
କରିବି ବିଷୟ-ଗୋଚର ।
ଯେମନ୍ତେ ପୂର୍ବେ ଏ ସଂସାର ।।୧୦୯
ବେଦବିଚାରେ ନାନାମତେ ।
କର୍ମ ବିସ୍ତାରି ଏ ଜଗତେ ।।୧୧୦
ଏ ଚାରିହୋତ୍ର କର୍ମତନ୍ତ୍ର ।
ଯେ ଉପବେଦ ନ୍ୟାୟଶାସ୍ତ୍ର ।।୧୧୧
ଏ ଭାବେ ଚାରିପାଦ-ଧର୍ମ ।
ଆଶ୍ରମ ବୃତ୍ତି ଯଥାକ୍ରମ ।।୧୧୨
ଯେ ଯୁଗେ ପ୍ରସରିବ ଯେତେ ।
ବ୍ରହ୍ମା ବିଚାରେ ଅନ୍ତର୍ଗତେ ।।୧୧୩
ମୈତ୍ରେୟ ମୁନି ପାଦେ ପଡ଼ି ।
ବିଦୁର ବୋଲେ କର ଯୋଡ଼ି ।।୧୧୪

ବିଦୁର ଉବାଚ

ଭୋ ମୁନି କହିବା ପ୍ରସନ୍ନେ ।
ସନ୍ଦେହ ଅଛି ମୋର ମନେ ।।୧୧୫
ସେ ବିଶ୍ୱ ସର୍ଜନ-ଈଶ୍ୱର ।
ଅଶେଷ ଶକ୍ତି ଶ୍ରୁତିଧର ।।୧୧୬
ଯେ ମୁଖେ ଯେ ବେଦ ସର୍ଜିଲେ ।
ଯହୁଁ ଯେ ଧର୍ମ ପ୍ରକାଶିଲେ ।।୧୧୭
ସେ କଥା କହ ମୁନି ମୋତେ ।
ସଂଶୟ ନ ରହୁ ମୋ ଚିତ୍ତେ ।।୧୧୮
ବିଦୁର-ବାକ୍ୟ ଶୁଣି କର୍ଣ୍ଣେ ।
ମୈତ୍ରେୟ କହନ୍ତି ପ୍ରସନ୍ନେ ।।୧୧୯

ମୈତ୍ରେୟ ଉବାଚ

ଶୁଣ ହୋ ବିଧାତାର ଲୀଳା ।
ଯେ ମୁଖୁ ଯେ ବେଦ ସର୍ଜିଲା ।।୧୨୦
ଋଗ୍‌ବେଦ ପୂର୍ବମୁଖୁ କଲା ।
ଦକ୍ଷିଣେ ଯଜୁଃ ପ୍ରକାଶିଲା ।।୧୨୧
ସାମ ପଶ୍ଚିମମୁଖୁ ଜାତ ।
ଅଥର୍ବ ଉତ୍ତରୁ ସମ୍ଭୂତ ।।୧୨୨
ବେଦାଦିଶାସ୍ତ୍ର ସ୍ତୁତି ସ୍ତୋତ୍ର ।
ଯଜ୍ଞାଦିକୃତ ଅଗ୍ନିହୋତ୍ର ।।୧୨୩
ଦେବଙ୍କ ମନ୍ତ୍ର ସ୍ତୁତି ଯେତେ ।
ପୂର୍ବାଦି ଯଥାକ୍ରମ ମତେ ।।୧୨୪
ଆୟୁର୍ବେଦ ଯେ ଧନୁର୍ବେଦ ।
ଗାନ୍ଧର୍ବବେଦ ଶିଳ୍ପବେଦ ।।୧୨୫
ଏ ଆଦି ଉପବେଦ ଯେତେ ।
ପୂର୍ବାଦିମୁଖୁ କ୍ରମାଗତେ ।।୧୨୬
ପଞ୍ଚମ ବେଦ ଇତିହାସ ।
ସକଳ ବଦନୁ ପ୍ରକାଶ ।।୧୨୭
ଷୋଡ଼ଶୀ ଛନ୍ଦ ପୂର୍ବମୁଖେ ।
ପୁରିଷୀ ଅଗ୍ନିଷ୍ଟୁତ ଦକ୍ଷେ ।।୧୨୮
ଆପ୍ତ ଉର୍ଯ୍ୟାମ ଅତିରାତ୍ର ।
ଗୋସବ ବାଜପେୟ ଜାତ ।।୧୨୯
ଧର୍ମାଚରଣ ଚାରିବେଦେ ।
ବ୍ରହ୍ମା କହିଲା ଜ୍ଞାନଭେଦେ ।।୧୩୦
ଯେ ବିଦ୍ୟା ଦାନ ତପ ସତ୍ୟ ।
ଏ ଧର୍ମ ଚତୁଷ୍ପାଦ ମତ ।।୧୩୧
ଚତୁରାଶ୍ରମ ବୃତ୍ତିଭାବେ ।
ଯେ ଧର୍ମେ ଯେବା ନିସ୍ତରିବେ ।।୧୩୨
ସାବିତ୍ରୀ ପ୍ରାଜାପତ୍ୟ ବ୍ରାହ୍ମ ।
ବୃହତ ଆଦି ଚାରିକର୍ମ ।।୧୩୩
କୃଷି ଯାଜନ ଯେ ଶାଳୀନ ।
ଶୀଳୋଞ୍ଛବୃତ୍ତି ଆଦି ଧର୍ମ ।।୧୩୪
ବୈଖାନ ବାଳଖିଲ୍ୟା ଦୀକ୍ଷା ।
ଉଡୁମ୍ବର ଫେନପା ଶିକ୍ଷା ।।୧୩୫
ସନ୍ନ୍ୟାସେ କୁଟୀଚକ୍ର ଆଦି ।
ଆଶ୍ରମ ଧର୍ମ ଯେଣେ ସାଧି ।।୧୩୬
ଅପର ଆନ୍ୱିକ୍ଷିକୀ ତ୍ରୟୀ ।
ବାର୍ତ୍ତା ଦଣ୍ଡନୀତି ଯେ ହୋଇ ।।୧୩୭
ବ୍ୟାହୃତି ସୃଷ୍ଟି ଏହିମତେ ।
ପ୍ରଣବ ଜନ୍ମ ହୃଦଗତେ ।।୧୩୮
ଗାୟତ୍ରୀ ଆଦି ସପ୍ତଛନ୍ଦ ।
ମନ୍ତ୍ରଦେବତା ଅନୁବନ୍ଧ ।।୧୩୯
ଉଷ୍ଣିକଛନ୍ଦ ଲୋମୁ ଜାତ ।
ଗାୟତ୍ରୀ ଚର୍ମୁ ଉଦଭୁତ ।।୧୪୦
ମାଂସୁ ଉପୁଜେ ତ୍ରିଷ୍ଟୁପ୍ ଛନ୍ଦ ।
ସ୍ନାୟୁରୁ ଅନୁଷ୍ଟୁପ ଛନ୍ଦ ।।୧୪୧
ଜଗତି ଅସ୍ଥିଦେଶୁ ହୁଏ ।
ମଜ୍ଜାରେ ପଙ୍‌କ୍ତିଛନ୍ଦ ରହେ ।।୧୪୨

Dr. Sudhanshu Sekhar Mishra

ବୃହତୀଛନ୍ଦ ଦଶପ୍ରାଣ ।
ଜୀବ ତାହାର ସ୍ପର୍ଶ ବର୍ଣ୍ଣ ।।୧୪୩
ସ୍ୱର ବ୍ରହ୍ମା-ଶରୀରୁ ଜାତ ।
ଉଷ୍ମାଣ ଇନ୍ଦ୍ରିୟ ସମ୍ଭୂତ ।।୧୪୪
ଅନ୍ତ୍ୟସ୍ଥବର୍ଣ୍ଣ ବଳେ ବସେ ।
ଯେ ବଳେ ଶରୀର ପ୍ରକାଶେ ।।୧୪୫
ବ୍ରହ୍ମ-ବିହାର ସପ୍ତସ୍ୱର ।
ସୁଚିତ୍ତେ ଶୁଣ ହେ ବିଦୁର ।।୧୪୬
ଶବ୍ଦବ୍ରହ୍ମ ତା' ଶରୀର ।
ସ୍ୱଭାବେ ବ୍ୟକ୍ତାବ୍ୟକ୍ତ ପର ।।୧୪୭
ଏଣୁ ସଂସାର ବ୍ରହ୍ମମୟେ ।
ଯେ ବ୍ରହ୍ମ ନାନା-ଶକ୍ତିବହେ ।।୧୪୮
ଏମନ୍ତେ ଶବ୍ଦବ୍ରହ୍ମ କରି ।
ଅପର ସୃଷ୍ଟି ମନେ ସ୍ମରି ।।୧୪୯
ଯେ ଋଷି ସୃଷ୍ଟି ପୂର୍ବେ କଲା ।
ତା'ଙ୍କ ବିସ୍ତାର ନ ଦେଖିଲା ।।୧୫୦
ସ୍ୱଭାବେ ତେଜୋବନ୍ତ ହୋନ୍ତି ।
ପ୍ରଜା ସୃଜନ ନ କରନ୍ତି ।।୧୫୧
ଏମନ୍ତ ବିଚାରି ବିଧାତା ।
ମନେ ପାଇଲା ଗୁରୁଚିନ୍ତା ।।୧୫୨
ଦେଖ ମୋହର କର୍ମ ମନ୍ଦ ।
ମୁଁ ଯେ ସୃଜିଲି ଋଷିବୃନ୍ଦ ।।୧୫୩
କେହି ନୋହିଲେ ସୃଷ୍ଟିଯୋଗ୍ୟେ ।
ସର୍ବେ ପଶିଲେ ତପଯୋଗେ ।।୧୫୪
ଏଥିରେ ଦୈବ ପ୍ରତିକୂଳ ।
ଏଣୁ ମୋ ମାନସ ଆକୁଳ ।।୧୫୫
ଏମନ୍ତେ ମନେ କରି ଚିନ୍ତା ।
ମଉନେ ବସିଲା ବିଧାତା ।।୧୫୬
ତକ୍ଷଣେ ବ୍ରହ୍ମା ନିଜ ପିଣ୍ଡ ।
ତାପେ ହୋଇଲା ବେନିଖଣ୍ଡ ।।୧୫୭
ସେ ବେନିଖଣ୍ଡ ବ୍ରହ୍ମା ଦେହେ ।
ନାରୀ ପୁରୁଷ ବେନି ହୁଏ ।।୧୫୮
ପୁରୁଷଖଣ୍ଡ ତାହା ତନୁ ।
ସେ ହେଲା ସ୍ୱାୟମ୍ଭୁବ ମନୁ ।।୧୫୯
ସଂସାରେ ରାଜା ସେ ବୋଲାଇ ।
ଶୁଣ ବିଦୁର ଏବେ କହି ।।୧୬୦
ଅପରଖଣ୍ଡ ନାରୀ ଜନ୍ମ ।
ହୋଇଲା ଶତରୂପା ନାମ ।।୧୬୧
ମନୁର ପତ୍ନୀ ସେ ହୋଇଲା ।
ମୈଥୁନେ ସୃଷ୍ଟି ଉପୁଜିଲା ।।୧୬୨
ପଞ୍ଚସନ୍ତତି ତା'ର ତହୁଁ ।
ହୋଇଲେ ଶୁଣ ନାମ କହୁ ।। ୧୬୩
ଉତ୍ତାନପାଦ ପ୍ରିୟବ୍ରତ ।
ଆଗେ ହୋଇଲେ ବେନିସୁତ ।। ୧୬୪
ଅପରେ ଜାତ ବେନି କନ୍ୟା ।
ଜଗନ୍ମୋହିନୀ ଅନୁପମା ।।୧୬୫
ଆକୂତି ଦେବହୂତି ବେନି ।
ପ୍ରସୂତି ନାମେ କନ୍ୟା ତିନି ।।୧୬୬
ସେ ମନୁ କନ୍ୟାଦାନ କଲା ।
ଆକୂତି ରଚିବିପ୍ରେ ଦେଲା ।।୧୬୭
ମଧ୍ୟମା ଦେବହୂତି ନାମ ।
ବିବାହ କଲେ ତା କର୍ଦ୍ଦମ ।।୧୬୮
ତୃତୀୟା ନାମ ଯେ ପ୍ରସୂତି ।
ତାହାଙ୍କୁ ଦକ୍ଷ ପ୍ରଜାପତି ।।୧୬୯
ତାହାଙ୍କ ଗର୍ଭୁ ନାନାମତେ ।
ସନ୍ତତି ପୂରିଲେ ଜଗତେ ।।୧୭୦
ଏମନ୍ତ ଭାଗବତ ବାଣୀ ।
ମୈତ୍ରେୟ ବିଦୁରେ ବଖାଣି ।। ୧୭୧
ଶୁଣ ସୁଜନେ ଶୁଦ୍ଧଚିତ୍ତେ ।
ତୃତୀୟସ୍କନ୍ଧ ଭାଗବତେ ।। ୧୭୨
ମୈତ୍ରେୟ ବିଦୁର ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ।।୧୭୩
ଏଣେ ହରିଙ୍କି କରି ଲୟେ ।
ବ୍ରାହ୍ମଣ ଜଗନ୍ନାଥ କହେ ।।୧୭୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଦ୍ୱାଦଶୋଽଧ୍ୟାୟଃ ।।

Dr. Sudhanshu Sekhar Mishra

### ଶୁକ ଉବାଚ

ଏମନ୍ତେ ମୈତ୍ରେୟ ବଚନ ।
ଶୁଣି ବିଦୁର ତୋଷମନ ।। ୧
କୃଷ୍ଣଚରିତେ ଭାବ ଭରି ।
ପୁଣି ପୁଚ୍ଛଇ ପାଦଧରି ।। ୨

### ବିଦୁର ଉବାଚ

ସେ ସ୍ୱାୟମ୍ଭୁବ ବ୍ରହ୍ମାସୁତ ।
ସଂସାର-ପ୍ରିୟ ପ୍ରିୟବ୍ରତ ।। ୩
ପ୍ରତ୍ୟକ୍ଷେ ବ୍ରହ୍ମାର ଶରୀର ।
ସେ ସ୍ୱାୟମ୍ଭୁବ ନୃପବର ।। ୪
ଯେ ଶତରୂପା ପତ୍ନୀ ତା'ର ।
ସ୍ୱଭାବେ ବ୍ରହ୍ମାର ଶରୀର ।। ୫
ନିର୍ମିତ ନରନାରୀ ରୂପେ ।
ବିଷ୍ଣୁ ଆଦେଶେ ମହାକଳ୍ପେ ।। ୬
ମୈଥୁନଭାବେ ସେ ରହିଲେ ।
କେମନ୍ତେ ସୃଷ୍ଟି ଭିଆଇଲେ ।। ୭
ସେ ରାଜରଷିର ଚରିତ ।
କହି ସନ୍ତୋଷ କର ଚିତ୍ତ ।। ୮
ଏ କୃଷ୍ଣକଥା ପୁଣ୍ୟଯଶ ।
ଶ୍ରବଣେ ଚିତ୍ତ କଲା ଆଶ ।। ୯
ଏମନ୍ତେ ବିଦୁରର ବାଣୀ ।
ମୈତ୍ରେୟ ବୋଲେ ତାହା ଶୁଣି ।। ୧୦

### ମୈତ୍ରେୟ ଉବାଚ

ଶୁଣ ବିଦୁର ଏକଚିତ୍ତେ ।
ତୁ ଯାହା ପଚାରିଲୁ ମୋତେ ।। ୧୧
ବ୍ରହ୍ମାର ଶରୀରୁ ସମ୍ଭବ ।
ପତ୍ନୀର ତୁଲେ ସ୍ୱାୟମ୍ଭୁବ ।। ୧୨
କରଅଞ୍ଜଳି ଶିରେ ଦେଇ ।
ବୋଲଇ ବ୍ରହ୍ମାମୁଖ ଚାହିଁ ।। ୧୩
ତୁ ସର୍ବଜନ୍ତୁଙ୍କର ପିତା ।
ଜନ୍ମସମ୍ପଦ ବୃତ୍ତିଦାତା ।। ୧୪
ଆମ୍ଭେ ତୋହର ଭୃତ୍ୟପଣେ ।
ଯେମନ୍ତେ ଖଟୁ ତୋ' ଚରଣେ ।। ୧୫

## ତ୍ରୟୋଦଶ ଅଧ୍ୟାୟ

ସେ ଆଜ୍ଞା ଦିଅ ବେଦବର ।
ତୋ'ର ଚରଣେ ନମସ୍କାର ।। ୧୬
ଯେ କର୍ମ ସାଧି ଅତିରେକେ ।
ସୁ ଯଶ ଇହ ପରଲୋକେ ।। ୧୭
ଲଭନ୍ତି ପ୍ରାଣୀ ଆତ୍ମସୁଖେ ।
ସେ ଆଜ୍ଞା କର ତାତ ମୁଖେ ।। ୧୮
ଏମନ୍ତେ ପୁତ୍ରର ବଚନେ ।
ବ୍ରହ୍ମା କହିଲେ ତୋଷମନେ ।। ୧୯

### ବ୍ରହ୍ମା ଉବାଚ

ଶୁଣ କୁମର ସାଧୁଧୀର ।
ତୁ ଏ ସଂସାରେ ନୃପବର ।। ୨୦
ନିର୍ମଳ ହୃଦେ ତୁ ପଚାରୁ ।
ଯେହ୍ନେ ସମ୍ବାଦ ଶିଷ୍ୟ ଗୁରୁ ।। ୨୧
ତୋ'ଠାରେ ହୋଇଲି ପ୍ରସନ୍ନ ।
ତୋହର ହେଉ ଯେ କଲ୍ୟାଣ ।। ୨୨
ପିତାର ଆଜ୍ଞା ଶିରେ ଧରି ।
ସାଦରେ ସର୍ବ ଦୂର କରି ।। ୨୩
ଏହାର ସଙ୍ଗେ ତୁହି ରମ ।
ସନ୍ତତି କର ଆତ୍ମସମ ।। ୨୪
ପୃଥିବୀ ପାଳନ ତୁ କର ।
ଯଜ୍ଞେ ସନ୍ତୋଷ ଚକ୍ରଧର ।। ୨୫
ପ୍ରଜା ପାଳନେ କର ଆଶା ।
ତେଣେ ମୋ' ହୋଇବ ଶୁଶ୍ରୂଷା ।। ୨୬
ଯେ ଯଜ୍ଞରୂପ ଜନାର୍ଦ୍ଦନ ।
ତୋ' ପ୍ରତି ହୋଇବେ ପ୍ରସନ୍ନ ।। ୨୭
ସେ ଯଜ୍ଞ ଅନ୍ତେ ଜନାର୍ଦ୍ଦନ ।
ଯାହାକୁ ନୁହଁନ୍ତି ପ୍ରସନ୍ନ ।। ୨୮
ବିଫଳ ଶ୍ରମ ହିଁ ତାହାର ।
ଯେଣୁ ଆତ୍ମାରେ ଅନାଦର ।। ୨୯
ଏମନ୍ତେ ପିତାର ବଚନେ ।
ଶୁଣି ସ୍ୱାୟମ୍ଭୁବ ତୋଷମନେ ।। ୩୦
ଆନନ୍ଦେ ଶିରେ କର ଦେଇ ।
ବୋଲଇ ବ୍ରହ୍ମାମୁଖ ଚାହିଁ ।। ୩୧

### ମନୁ ଉବାଚ

ଭୋ ନାଥ ତୋହର ଆଦେଶେ ।
ସୃଷ୍ଟି ମୁଁ କରିବି ବିଶ୍ୱାସେ ।। ୩୨
ମୁଁ ସୃଷ୍ଟି ସରଜିବି କାହିଁ ।
ଏ ଜଳେ ଧରଣୀ ତ ନାହିଁ ।। ୩୩
ତା'ର ଉଦ୍ଧାରେ ଯତ୍ନ କର ।
ଯେମନ୍ତେ ସୃଷ୍ଟିର ସଂଚାର ।। ୩୪

### ମୈତ୍ରେୟ ଉବାଚ

ଏମନ୍ତେ ପୁତ୍ରର ବଚନେ ।
ବ୍ରହ୍ମା ବିଚାରେ ନିଜମନେ ।। ୩୫
ମାୟା ପ୍ରଳୟ ଜଳରାଶି ।
ପବନ ସଙ୍ଗେ ମୁଁ ଯେ ଗ୍ରାସି ।। ୩୬
ପୃଥିବୀ ନିବେଶିଲି ଜଳେ ।
ପ୍ରଜା କଳ୍ପିଲି ଯୋଗବଳେ ।। ୩୭
ଦେବ ଅସୁର ପିତୃ ନର ।
ପଶୁ ପତଙ୍ଗ ମହୀଧର ।। ୩୮
ବୃକ୍ଷ ଔଷଧି ଉଚ୍ଚ-ନୀଚେ ।
ଧରଣୀ ସ୍ଥାପିଲି ଯେ ସଞ୍ଚେ ।। ୩୯
ଏବେ ତ ଜଳେ ନାହିଁ ମହୀ ।
ଏମନ୍ତ ବ୍ରହ୍ମା ବିଚାରଇ ।। ୪୦
ଜଳେ ନ ଦେଖି ବସୁନ୍ଧରୀ ।
ବିଧାତା ମନେ ଧ୍ୟାନକରି ।। ୪୧
ମହୀ ବୁଡ଼ିଲା ମହାଜଳେ ।
କେମନ୍ତେ ଉଦ୍ଧରିବି ବଳେ ।। ୪୨
ଯା'ର ଆଦେଶେ ଅବତରି ।
ମୁଁ ଏ ସଂସାରେ ଅଧିକାରୀ ।। ୪୩
ସେ ହରି ଯେବେ ଦୟାକରେ ।
ଧରଣୀ ଆପଣେ ଉଦ୍ଧରେ ।। ୪୪
ନୋହିଲେ ମୋର ଶକ୍ୟ କାହିଁ ।
ଏମନ୍ତେ ବିଷ୍ଣୁପାଦ ଧ୍ୟାୟି ।। ୪୫
ବ୍ରହ୍ମା ରହିଲେ ସ୍ତମ୍ଭୀଭୂତେ ।
ଶୁଣ ବିଦୁର ଏକଚିତ୍ତେ ।। ୪୬

Dr. Sudhanshu Sekhar Mishra

ତକ୍ଷଣେ ପ୍ରଭୁ ନରହରି ।
ବାଳ ଶୂକର ରୂପଧରି ।। ୪୭
ଅଙ୍ଗୁଷ୍ଠ ପ୍ରମାଣ ଶରୀରେ ।
ଜନ୍ମିଲେ ବ୍ରହ୍ମା ନାସାଦ୍ୱାରେ ।। ୪୮
ପୁଣି କ୍ଷଣକେ ଗଜପ୍ରାୟେ ।
ଅଦ୍ଭୁତେ ବଢ଼େ ତାରକାୟେ ।। ୪୯
ମରୀଚି ଆଦି ମୁନି ଯେତେ ।
ସନତକୁମାର ସହିତେ ।। ୫୦
ଅଦ୍ଭୁତ ବରାହ ଶରୀର ।
କ୍ଷଣକ୍ଷଣକେ ଅଗୋଚର ।। ୫୧
ଋଷିଙ୍କି ଚାହିଁ ବେଦବର ।
କହନ୍ତି ଦେଖି ତା' ଶରୀର ।। ୫୨
ଅଙ୍ଗୁଷ୍ଠ ମାତ୍ରେ ଜାତ ହୋଇ ।
ପର୍ବତ ସମାନେ ବଢ଼ଇ ।। ୫୩
ଶୁଣ ସକଳ ମୁନିଜନେ ।
ଏ ରୂପେ ଖେଦ ମୋରମନେ ।। ୫୪
ଏମନ୍ତେ ପୁତ୍ରଗଣ ଘେନି ।
ବିଚାର କରେ ପଦ୍ମଯୋନି ।। ୫୫
ଏ ବା ଅନାଦି-ଭଗବାନ ।
ଏ ରୂପେ ବୋଧେ ମୋର ମନ ।। ୫୬
ଏମନ୍ତ ଜାଣି ବାସୁଦେବ ।
ଗର୍ଜିଲେ ଗଜେନ୍ଦ୍ର ସ୍ୱଭାବ ।। ୫୭
ବ୍ରହ୍ମାଦି ଋଷିଙ୍କ ସମେତେ ।
ହରଷ କଲେ ସର୍ବେ ଚିତ୍ତେ ।। ୫୮
ଦିଗ ପୂରିଲା ଗରଜନ୍ତେ ।
ଅଦ୍ଭୁତ ଶବଦ ସହିତେ ।। ୫୯
ସେ ମାୟାମୟ ରୂପ ହରି ।
ଛଳେ ଶୂକର ରୂପ ଧରି ।। ୬୦
ଦେଖି ଚକିତ ମୁନିଜନେ ।
ଆନନ୍ଦେ ବିଚାରନ୍ତି ମନେ ।। ୬୧
ଜନ ସତ୍ୟ ତପ ନିବାସୀ ।
ମିଳି ସକଳ ବ୍ରହ୍ମଋଷି ।। ୬୨
ସ୍ତୁତି କରନ୍ତି ମନତୋଷେ ।
ଧରଣୀ ଉଦ୍ଧରିବା ଆଶେ ।। ୬୩
ଯାହାର ଗୁଣ ଅନୁବାଦେ ।
କ୍ଷମ ନୁହଁନ୍ତି ଚାରିବେଦେ ।। ୬୪

ଯା' ରୂପ ମନଙ୍କାନେ ଚିନ୍ତି ।
ଅଶେଷ ଶାସ୍ତ୍ରେ ନ ଜାଣନ୍ତି ।। ୬୫
ମୁନିଙ୍କ ସ୍ତୁତିବାକ୍ୟ ଶୁଣି ।
ତକ୍ଷଣେ ପ୍ରଭୁ ଚକ୍ରପାଣି ।। ୬୬
ଦେବଙ୍କ ହିତଅର୍ଥେ ହରି ।
ପୁଣି ଶୂକର ନାଦକରି ।। ୬୭
ଗଜେନ୍ଦ୍ର ଲୀଳା କରି ହେଲେ ।
ବିଷ୍ଣୁ ପଶିଲେ ମହାଜଳେ ।। ୬୮
ଖୁର-ଲାଙ୍ଗୁଡ଼ ମୁଖେ ତାଡ଼ି ।
ଶବଦ ଶୁଭେ ଘଡ଼ଘଡ଼ି ।। ୬୯
ଜଳ ପ୍ରବେଶ ପୂର୍ବେ ହରି ।
ପୁଚ୍ଛ ଉତ୍‌କ୍ଷେପ ଉର୍ଦ୍ଧ୍ୱେ କରି ।। ୭୦
ଲମ୍ଫରେ ଆକାଶେ ଉଠିଲେ ।
କଠୋର ଶଟା କମ୍ପାଇଲେ ।। ୭୧
ବରାହ ଦେହ ଜଳକଣେ ।
ଶୂନ୍ୟେ ତିନ୍ତିଲେ ଦେବଗଣେ ।। ୭୨
ଲାଙ୍ଗୁଡ଼-ବୃଷ୍ଟି-ଜଳଲାଗି ।
ଦିଗେ ହୋଇଲେ ସଉଭାଗୀ ।। ୭୩
ସୁତୀକ୍ଷ୍ଣ ଖୁର କ୍ଷିପ୍ରଜଳେ ।
ସମୁଦ୍ର ଉଚ୍ଛୁଳେ କଲ୍ଲୋଳେ ।। ୭୪
ପର୍ବତ ପ୍ରାୟେ ଦେହକାନ୍ତି ।
ଜ୍ୟୋତି ସମୂହେ ଝଟକନ୍ତି ।। ୭୫
ମହୀ ଖୋଜନ୍ତି ଘ୍ରାଣବାସେ ।
ଧରଣୀ ଉଦ୍ଧରିବା ଆଶେ ।। ୭୬
କରାଳ ଦନ୍ତ ଓଷ୍ଠ ପାଟି ।
ଉର୍ଦ୍ଧ୍ୱେ ମୁନିଙ୍କି ଦେଇ ଦୃଷ୍ଟି ।। ୭୭
ଅଙ୍ଗ ନିର୍ଘାତ ବଜ୍ର ପ୍ରାୟେ ।
ଦେଖି ଜଳଧି କଲା ଭୟେ ।। ୭୮
ତରଙ୍ଗ-କର ଉଚ୍ଚେ କରି ।
ଡାକଇ ରଖ ଦଇତାରି ।। ୭୯
ହେ ଯଜ୍ଞେଶ୍ୱର ତ୍ରାହିକର ।
ମୁଁ ତୁମ୍ଭ ଚରଣେ କିଙ୍କର ।। ୮୦
ସମୁଦ୍ର ମୁଖରାବ ଗୋଳେ ।
ହରି ପଶିଲେ ରସାତଳେ ।। ୮୧
ଜଳେ ନିମଗ୍ନା ବସୁନ୍ଧରୀ ।
ତକ୍ଷଣେ ଦନ୍ତାଗ୍ରେ ଉଦ୍ଧରି ।। ୮୨

ଜଳୁ ଆସନ୍ତେ ଉର୍ଦ୍ଧ୍ୱମୁଖେ ।
ଅସୁର ମିଳିଲା ସମ୍ମୁଖେ ।। ୮୩
ଆଦିଅସୁର ଯେ ପ୍ରତ୍ୟକ୍ଷ ।
ନାମ ତାହାର ହିରଣାକ୍ଷ ।। ୮୪
ଗଦା ବୁଲାଇ ଅତିବେଗେ ।
ମିଳିଲା ଯଜ୍ଞନାଥ ଆଗେ ।। ୮୫
ମତ୍ତମାତଙ୍ଗ ଯେହ୍ନେ ମହୀ ।
କର୍କଶ ଦନ୍ତେ ବିଦାରଇ ।। ୮୬
ଲୀଳାଏ ଅସୁର ସଂହାରି ।
ଗଜକୁ ଯେସନେ କେଶରୀ ।। ୮୭
ତା' ଦେହ ଦଶନେ ବିଦାରି ।
ଧରଣୀ ଘେନି ବିଜେକରି ।। ୮୮
ତମାଳ ନୀଳବର୍ଣ୍ଣ ଦେହୀ ।
ଶୁଭ୍ର ତୀକ୍ଷ୍ଣ ଦନ୍ତଦୁଇ ।। ୮୯
ଦଶନଅଗ୍ରେ ମହୀ ରହେ ।
ଚନ୍ଦ୍ରେ କଳଙ୍କ ଯେହ୍ନେ ଶୋହେ ।। ୯୦
ଏମନ୍ତ ରୂପ ଦେଖି ବେଗେ ।
ବ୍ରହ୍ମା ମିଳିଲେ ବିଷ୍ଣୁ ଆଗେ ।। ୯୧
ସଙ୍ଗତେ ମୁନିଗଣ ଘେନି ।
ସ୍ତୁତି କରଇ ପଦ୍ମଯୋନି ।। ୯୨

ଋଷିଗଣ ଉବାଚ

ହେ ଯଜ୍ଞରୂପୀ ଜନାର୍ଦ୍ଦନ ।
ତୋ'ର ବିହାର ତ୍ରିଭୁବନ ।। ୯୩
ଜୟ ତୁ ଜୟ ଭଗବାନ ।
ତୁ ବେଦମୟ ବିଦ୍ୟମାନ ।। ୯୪
ଯଜ୍ଞମୂରତି ନିଜ ପିଣ୍ଡେ ।
ଯେ ଯଜ୍ଞଧର୍ମ କର୍ମକାଣ୍ଡେ ।। ୯୫
ତୋ'ର ଶରୀର ରୋମକୂପେ ।
ସମୁଦ୍ର ଲୁଚିଲା ସ୍ୱରୂପେ ।। ୯୬
ନମୋ ଗୋବିନ୍ଦ ମହୀଧର ।
ଅଶେଷ-ମହିମା-ସାଗର ।। ୯୭
ହେ କାଳରୂପୀ ତୋ' ଚରଣେ ।
ନିର୍ଭୟେ ପଶିଲୁ ଶରଣେ ।। ୯୮
ଯଜ୍ଞାଦି ଆତ୍ମା ତୋ' ଶରୀର ।
ଦୁଷ୍କୃତଜନେ ଅଗୋଚର ।। ୯୯

Dr. Sudhanshu Sekhar Mishra

ତୋ' ଦେହ ଚର୍ମେ ବେଦ ବସେ ।
ଅନଳ ରୋମକୂପ ଦେଶେ ।।୧୦୦
ଘୃତ ଆହୁତି ନେତ୍ରଯୁଗେ ।
ଚତୁରହୋତ୍ର ପାଦଭାଗେ ।।୧୦୧
ଏ ଯଜ୍ଞ ସ୍ରୁଚ ତୋର ତୁଣ୍ଡେ ।
ସ୍ରୁବ ନିର୍ମିତ ନାସାଖଣ୍ଡେ ।।୧୦୨
ଇଡ଼ା ଉଦର ଅନୁବନ୍ଧେ ।
ଚମସ ରହେ କର୍ଣ୍ଣରନ୍ଧ୍ରେ ।।୧୦୩
ପ୍ରାଶିତ୍ର ବସେ ତୋ'ର ଆସ୍ୟେ ।
ଗ୍ରହେ ବସନ୍ତି ତୋ'ର ଗ୍ରାସେ ।।୧୦୪
ଚର୍ବଣେ ଅଗ୍ନିହୋତ୍ର ରହେ ।
ଦୀକ୍ଷା ତୋ' ଅନୁଜନ୍ମ ବହେ ।।୧୦୫
ଯେ ଉପସଦ ତିନିଇଷ୍ଟେ ।
ସେ ତୋ'ର ଗ୍ରୀବାଦେଶ ଅଟେ ।। ୧୦୬
ଦନ୍ତେ ପ୍ରାୟଣୀ ଉଦୟିନୀ ।
ଜିହ୍ୱାରେ ପ୍ରବର୍ଗ୍ୟକୁ ଘେନି ।।୧୦୭
ଶିରେ ହୋମରହିତ ଅଗ୍ନି ।
ଆବର ଉପାସନା ବହ୍ନି ।।୧୦୮
ପ୍ରାଣେ ବସନ୍ତି ଚିତିଗଣ ।
ସୋମ ତୋ' ରେତ ଆଚରଣ ।।୧୦୯
ସବନ ତୋହର ଅବସ୍ଥା ।
ସପ୍ତଧାତୁଏ ତୋ'ର ସଂସ୍ଥା ।।୧୧୦
ତୋ' ଦେହସନ୍ଧି ସର୍ବ ସତ୍ର ।
ତୁ ସର୍ବଯଜ୍ଞ କ୍ରତୁ ମାତ୍ର ।।୧୧୧
ମନ୍ତ୍ରଦେବତା ରୂପ ତୁହି ।
ତୁ ଦ୍ରବ୍ୟ କ୍ରତୁ କ୍ରିୟା ହୋଇ ।।୧୧୨
ବୈରାଗ୍ୟ ଭକ୍ତି ଆତ୍ମଜୟେ ।
କରାଉ ଜ୍ଞାନର ଉଦୟେ ।।୧୧୩
ତୁ ବିଦ୍ୟାଗୁରୁ ଜ୍ଞାନଦାତା ।
ସକଳ ଜୀବ ପିତାମାତା ।।୧୧୪
ଅଖିଳ ମୂର୍ତ୍ତି ଭଗବାନ ।
ତୋ'ର ଚରଣେ ନମୋନମ ।।୧୧୫
ତୋ' ଦନ୍ତଅଗ୍ରେ ବସୁନ୍ଧରୀ ।
ବିରାଜେ ନିଜ ରୂପ ଧରି ।।୧୧୬
କି ଅବା ଦେବା ପଟାନ୍ତର ।
ଜଳେ ଯେସନେ କରୀବର ।।୧୧୭
ପଦ୍ମବନରୁ ସେ ନିର୍ଗତ ।
ଦନ୍ତାଗ୍ରେ ପଦ୍ମିନୀ ଶୋଭିତ ।।୧୧୮
ଏ ଯେ ଶୂକର ତୋ'ର ଦେହ ।
ଅଶେଷ ଯଜ୍ଞ ବେଦମୟ ।।୧୧୯
ଦନ୍ତେ ଧରଣୀ କରେ ଶୋଭା ।
କିବା ଉପମା ଆମ୍ଭେ ଦେବା ।। ୧୨୦
ପର୍ବତଶୃଙ୍ଗେ ଜଳଧର ।
ଯେମନ୍ତେ ଦିଶଇ ସୁନ୍ଦର ।।୧୨୧
ତେମନ୍ତେ ଶୋଭିତ ଧରଣୀ ।
ତୋ' ଦନ୍ତଅଗ୍ରେ ଚକ୍ରପାଣି ।।୧୨୨
ଏବେ ଧରଣୀ ସ୍ଥାପ ଜଳେ ।
ଭୋ ନାଥ ତୋ'ର ମାୟାବଳେ ।। ୧୨୩
ଏ ଭୂମି ଜୀବଲୋକ-ମାତା ।
ତୁ ନାଥ ଜୀବଲୋକ-ପିତା ।।୧୨୪
ତୋ' ବିନୁ କେବା ଅନ୍ୟ ବଳେ ।
ମହୀ ଉଦ୍ଧରେ ମହାଜଳେ ।।୧୨୫
ଏଣୁ ବିସ୍ମୟ ଆମ୍ଭ ନାହିଁ ।
ଅତି ବିସ୍ମୟ ବିଶ୍ୱେ ଯେହି ।।୧୨୬
ତାହାକୁ ତୁହି ମାୟାବଳେ ।
ସର୍ଜନା କଲୁ ଏ ଶୟଳେ ।।୧୨୭
ଏ ଯେ ଈଶ୍ୱର ତୋ'ର ଦେହୀ ।
ସକଳ ବେଦମୟ ଏହି ।।୧୨୮
ଜଳେ ପଶନ୍ତେ ତୋ' ଶରୀର ।
ଜଳଧି ଦିଶେ ଭୟଙ୍କର ।।୧୨୯
ତୋ' ରୋମଅଗ୍ରେ ଜଳରାଶି ।
ଉଛୁଳି ଶୂନ୍ୟମାର୍ଗେ ଆସି ।।୧୩୦
ସେ ଜଳବିନ୍ଦୁ ସ୍ପର୍ଶ ମାତ୍ର ।
ସକଳେ ହୋଇଲୁ ପବିତ୍ର ।।୧୩୧
ଜନ ତପ ସତ୍ୟ ଭୁବନେ ।
ଆମ୍ଭେ ଯେ ରହୁ ତୋଷମନେ ।।୧୩୨
ତୋ ରୋମଜଳେ କରି ସ୍ନାନ ।
ଆନନ୍ଦେ ତୋଷ କଲୁ ମନ ।।୧୩୩
ପବିତ୍ର କଲୁ ପିଣ୍ଡ ପ୍ରାଣ ।
ତୋ'ର ଶରଣ ନାରାୟଣ ।।୧୩୪
ତୋ କର୍ମ-ପାର ଜାଣିବାରେ ।
ଯେ ଜନ ମନେ ବାଞ୍ଛାକରେ ।। ୧୩୫
ତାହାକୁ ବୋଲି ମନ୍ଦମତି ।
ଯେଣୁ ଅସାଧ ତୋ'ର ଗତି ।।୧୩୬
ତୋ' ଯୋଗମାୟା ଗୁଣ ବଳେ ।
ଆମ୍ଭେ ମୋହିତ ଏ ଶୟଳେ ।।୧୩୭
ଏଣୁ ବିଶ୍ୱକୁ ସୁଖ ଦେଇ ।
ଆମ୍ଭଙ୍କୁ ନାଥ କର ତ୍ରାହି ।।୧୩୮

ମୈତ୍ରେୟ ଉବାଚ

ବ୍ରହ୍ମାଦି ମୁନିଙ୍କ ବଚନେ ।
ବରାହ ରୂପୀ ତୋଷମନେ ।। ୧୩୯
ଜଳେ ବସାଇ ବସୁନ୍ଧରୀ ।
ଅଦୃଶ୍ୟ ହୋଇଲେ ମୁରାରି ।।୧୪୦
ସେ ହରି ଅଭୟ ଚରଣେ ।
ବିଦୁର ପଶ ତୁ ଶରଣେ ।। ୧୪୧
ଏ ମନୋହର କୃଷ୍ଣକଥା ।
ଯେ ଅବା ହୋନ୍ତି ଶ୍ରୋତା ବକ୍ତା ।। ୧୪୨
ତା'ର ହୃଦୟେ ଭଗବାନ ।
ତତ୍କ୍ଷଣେ ହୁଅନ୍ତି ପ୍ରସନ୍ନ ।।୧୪୩
ସେ ହରି ଅଦ୍ଭୁତ ଚରିତ ।
ଶୁଣି ବିଦୁର ତୋଷଚିତ୍ତ ।।୧୪୪
ଶୁଣ ସୁଜନେ ତୋଷଚିତ୍ତେ ।
ସଂସାରୁ ତରିବ ଯେମନ୍ତେ ।।୧୪୫
ଯା'ର ପ୍ରସନ୍ନେ ମାୟାଘୋର ।
ନଳିନୀଦଳେ ଯେହ୍ନେ ନୀର ।। ୧୪୬
ନ ଲାଗେ ନିରତେ ସିଞ୍ଚନ୍ତେ ।
ବିଷ୍ଣୁ-ପ୍ରସଙ୍ଗ ଅନୁମତେ ।।୧୪୭
କର୍ଣ୍ଣେ ପଶନ୍ତେ ହରିବାଣୀ ।
ସୁଧା-ସମୁଦ୍ର ପରିମାଣି ।। ୧୪୮
ଆନନ୍ଦେ କର ସୁଧାପାନ ।
ଯେଣେ ହୋଇବ ତତ୍ତ୍ୱଜ୍ଞାନ ।।୧୪୯
ତୃତୀୟସ୍କନ୍ଧେ ଭାଗବତ ।
ଅଦ୍ଭୁତ ବରାହ ଚରିତ ।। ୧୫୦
ଏଣେ ନିବେଶି ବୁଦ୍ଧି-ଚିତ୍ତ ।
କହଇ ଦାସ ଜଗନ୍ନାଥ ।। ୧୫୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ତୃତୀୟସ୍କନ୍ଧେ ବରାହପ୍ରାଦୁର୍ଭାବ ବର୍ଣ୍ଣନେ ନାମ ତ୍ରୟୋଦଶୋଽଧ୍ୟାୟଃ ।।

Dr. Sudhanshu Sekhar Mishra

## ଚତୁର୍ଦ୍ଦଶ ଅଧ୍ୟାୟ

ଶୁକ ଉବାଚ
ମୈତ୍ରେୟ ବାଣି ଶୁଣି କର୍ଣ୍ଣେ ।
ତୋଷ ନୋହିଲା ତା'ର ମନେ ।। ୧
କୃଷ୍ଣ ଶୂକରରୂପ କଥା ।
ଅମୃତ ରସମୟ ଗାଥା ।। ୨
ଆନନ୍ଦେ ଶିରେ କର ଦେଇ ।
ପୁଣି ବିଦୁର ପଚାରଇ ।। ୩
ବିଦୁର ଉବାଚ
ଯଜ୍ଞବରାହ ରୂପ ହରି ।
ଦନ୍ତାଗ୍ରେ ଧରଣୀ ଉଦ୍ଧରି ।। ୪
ଜଳୁ ଆସନ୍ତେ ଉର୍ଦ୍ଧ୍ୱଗତେ ।
ଆଦି ଅସୁର ତା' ଅଗ୍ରତେ ।। ୫
ମିଳିଲା ଗଦା କରେ ଧରି ।
ତା' ଦେହ ଦଶନେ ବିଦାରି ।। ୬
ଏ କଥା ଶୁଣି ତୁମ୍ଭ ମୁଖେ ।
ଏବେ ପଚାରେ ମନସୁଖେ ।। ୭
ସେ ଦୈତ୍ୟ ତେଜେ ଅନର୍ଗଳା ।
କି ହେତୁ ଗଦାଯୁଦ୍ଧ କଲା ।। ୮
ତାହାର ଜନ୍ମ କର୍ମ ଯେତେ ।
ବିସ୍ତାରି କହ ମୁନି ମୋତେ ।। ୯
ପରମ କୁତୂହଳ ବାଣୀ ।
ଜୀବ ନିସ୍ତରେ ଯାହା ଶୁଣି ।। ୧୦
ମୈତ୍ରେୟ ଉବାଚ
ତୁ ଧନ୍ୟ ଧନ୍ୟ କୁରୁବର ।
ଏ ସାଧୁ ପ୍ରଶ୍ନ ଯେ ତୋହର ।। ୧୧
ହରି-ଚରିତ ଗୁର କଥା ।
ଅମୃତ ରସମୟ-ଗାଥା ।। ୧୨
ଯାହା ଶୁଣନ୍ତେ ମୃତ୍ୟୁପାଶ ।
ସୁତୀକ୍ଷ୍ଣ ଚକ୍ରେ ହୋଏ ନାଶ ।। ୧୩
ସେ ସ୍ୱାୟମ୍ଭୁବ ମୁନି ସୁତ ।
ଉତ୍ତାନପାଦ-ସୁତ ଖ୍ୟାତ ।। ୧୪
ତପର ବଳେ ସେ ପ୍ରଚଣ୍ଡେ ।
ଚରଣ ଦେଇ ମୃତ୍ୟୁମୁଣ୍ଡେ ।। ୧୫

ସ୍ୱଭାବେ ତେଜେ ଅନର୍ଗଳା ।
ପରମପଦେ ସେ ପଶିଲା ।। ୧୬
ତୁ ଯେବେ ପଚାରିଲୁ ମୋତେ ।
ବିଦୁର ଶୁଣ ଏକଚିତ୍ତେ ।। ୧୭
ପ୍ରସ୍ତାବେ ଇତିହାସ ବାଣୀ ।
ଦେବଙ୍କ ସଭାମଧ୍ୟେ ଶୁଣି ।। ୧୮
ଦେବ ସମୀପେ ଦେବଦେବ ।
ବ୍ରହ୍ମା କହିଲେ ଯେ ପ୍ରସ୍ତାବ ।। ୧୯
ଜାଣଇ ଏଥିର କାରଣ ।
କହିବି ଏକଚିତ୍ତେ ଶୁଣ ।। ୨୦
ଦକ୍ଷ ଦୁହିତା ଦିତି ନାମା ।
କଶ୍ୟପ ଋଷିଙ୍କର ବାମା ।। ୨୧
ସେ ଏକଦିନେ ସନ୍ଧ୍ୟାକାଳେ ।
ଏକା ପଶିଲା ଯଜ୍ଞଶାଳେ ।। ୨୨
ମିଳିଲା ନିଜ ପତି ପାଶେ ।
କାମେ ପୀଡ଼ିତ ରତି ଆଶେ ।। ୨୩
ସେ ମହାଋଷି ଯଜ୍ଞଘରେ ।
ମନ୍ତ୍ରେ ଆହୁତି ଘୃତଧାରେ ।। ୨୪
ଯଜ୍ଞପୁରୁଷ ପ୍ରୀତି ଅର୍ଥେ ।
ଅସ୍ତ ପର୍ବତେ ସୂର୍ଯ୍ୟ ଯା'ନ୍ତେ ।। ୨୫
ହବିରେ ଅଗ୍ନିକି ପୂଜନ ।
କରନ୍ତି ହୋଇ ତୋଷମନ ।। ୨୬
ନିବିଡ଼ ସନ୍ଧ୍ୟା ଆଗମନେ ।
ମିଳିଲା ସ୍ୱାମୀ ସନ୍ନିଧାନେ ।। ୨୭
ସମାଧିସ୍ଥିତ ସ୍ୱାମୀ ପାଶେ ।
କାମ ପୀଡ଼ିତା ଦିତି ବସେ ।। ୨୮
କରଅଞ୍ଜଳି ଶିରେ ଦେଇ ।
ବୋଲେ କଶ୍ୟପ ମୁଖ ଚାହିଁ ।। ୨୯
ଦିତି ଉବାଚ
ଭୋ ନାଥ ଶୁଣ ତପୋଧନ ।
ଅନଙ୍ଗ ଘେନି ଶରାସନ ।। ୩୦
ତା ପଞ୍ଚବାଣେ ମୋର ମନେ ।
ଦହଇ ତୁମ୍ଭର ବିହୁନେ ।। ୩୧

କଦଳୀବନ ଯେହ୍ନେ ଗଜ ।
ଦନ୍ତେ ବିଦାରେ ମହାତେଜ ।। ୩୨
ସମୃଦ୍ଧି ଦେଖି ସପତ୍ନୀର ।
ମୋ' ମନ ଦଗ୍‌ଧ ନିରନ୍ତର ।। ୩୩
ତୁ ପ୍ରଜାପତିଙ୍କ ଈଶ୍ୱର ।
ସର୍ବ କଳ୍ପନା ସୁଖଘର ।। ୩୪
ଏବେ ମୋ'ଠାରେ ଅନୁଗ୍ରହ ।
କରି ସକଳ ସୁଖ ଦିଅ ।। ୩୫
ଯାହାକୁ ସ୍ୱାମୀ ହୋଏ ତୋଷ ।
ସଂସାରେ ରହେ ତା'ର ଯଶ ।। ୩୬
ଆପଣା ରୂପେ ପ୍ରତ୍ରଜାତ ।
ହୁଅଇ ଯା'ର ଗର୍ଭଗତ ।। ୩୭
ଆମ୍ଭର ଗର୍ଭେ ପୁତ୍ରହେଲେ ।
ତୋ' ଯଶ ବିସ୍ତାରିବ ଭଲେ ।। ୩୮
ମୋ ପିତା ଦକ୍ଷ ପ୍ରଜାପତି ।
ପ୍ରଜା ସର୍ଜନେ ତା'ର ମତି ।। ୩୯
ଆମ୍ଭର ଗର୍ଭେ ପୁତ୍ର ଯେତେ ।
ଧର୍ମେ ପାଳିବେ ଏ ଜଗତେ ।। ୪୦
ଏ କଥା ମନେ ବିଚାରିଲା ।
ଯତ୍ନେ ଆମ୍ଭଙ୍କୁ ପଚାରିଲା ।। ୪୧
ସମ୍ପତି ଦେଖିଣ ଆମ୍ଭର ।
ତେଣୁ ବରିଲା ତୋତେ ବର ।। ୪୨
ଆମ୍ଭେ ଯେ ଭଗ୍ନୀ ତ୍ରୟୋଦଶ ।
ତୁମ୍ଭର ଚରଣେ ବିଶ୍ୱାସ ।। ୪୩
ଆମ୍ଭର ରୂପ ଶୀଳ ଗୁଣ ।
ତୁମ୍ଭେ ତ ପ୍ରତ୍ୟକ୍ଷ ପ୍ରମାଣ ।। ୪୪
ଭୋ ନାଥ ନଳିନଲୋଚନ ।
ଏବେ ତୁ କର ମୋ' ବଚନ ।। ୪୫
ମୋ' ସଙ୍ଗେ କର ଏବେ ରତି ।
ସୌଭାଗ୍ୟେ ହେଉ ମୋ' ସନ୍ତତି ।। ୪୬
ମୈତ୍ରେୟ ଉବାଚ
ଏମନ୍ତେ ଶୁଣି ତା' ବଚନ ।
କଶ୍ୟପ ହୋଇ ଦୁଃଖ ମନ ।। ୪୭

Dr. Sudhanshu Sekhar Mishra

ଚାହିଁଲେ ଦିତିର ବଦନ ।
ଅନଙ୍ଗବାଣେ ଛନଛନ ।। ୪୮
ଦେଖି ତାହାର ଦୁଷ୍ଟଚିତ୍ତ ।
କହନ୍ତି ମରୀଚିଙ୍କ ସୁତ ।। ୪୯

କଶ୍ୟପ ଉବାଚ

ଶୁଣ ସୁନ୍ଦରି ମୋ ବଚନ ।
ମୁହିଁ ଜାଣଇ ତୋ'ର ମନ ।। ୫୦
ଏ ସନ୍ଧ୍ୟାକାଳେ ମୋ'ର ପାଶେ ।
ତୁ ଯେ ମିଳିଲୁ ରତି ଆଶେ ।। ୫୧
ଏ ଧର୍ମ-ପ୍ରମାଣ ସ୍ୱଭାବ ।
କେ ତାହା ଅନ୍ୟଥା କରିବ ।। ୫୨
ଏଣୁ ତୋହର ପ୍ରିୟଯେତେ ।
କରିବି ତୋହର ଆୟତ୍ତେ ।। ୫୩
ସଂସାର ସ୍ୱଭାବଟି ଏହି ।
ଯେ ଧର୍ମକର୍ମେ ରହେ ଗୃହୀ ।। ୫୪
ସର୍ବ ଆଶ୍ରମ ମଧ୍ୟେ ସାର ।
ପୁତ୍ର କଳତ୍ର ଘେନି ଘର ।। ୫୫
ଏଣୁ ହୁଅଇ ଦୁଃଖ ପାର ।
ବୋଇତେ ଯେହ୍ନେ ପାରାବାର ।। ୫୬
ଆତ୍ମାର ଅର୍ଦ୍ଧସମ ନାରୀ ।
ଅନ୍ୟଥା କେବା ତାହା କରି ।। ୫୭
ତାହାର ତହିଁ ଗୃହଭାର ।
ଦେଇ ନିଶ୍ଚିନ୍ତେ ଥାଇ ନର ।। ୫୮
ଯାହାର ଆଶ୍ରେ ପ୍ରାଣୀ ଥାଇ ।
ଇନ୍ଦ୍ରିୟ-ଶତ୍ରୁକୁ ଜିଣଇ ।। ୫୯
ଏଣୁ ତୁମ୍ଭର ଉପକାର ।
ଶୁଝା ଯେ ନ ଯିବ ଆମ୍ଭର ।। ୬୦
ଏ କଥା କେ କରି ବ ଆନ ।
ଯାହା ସଞ୍ଚିଲେ ଭଗବାନ ।। ୬୧
ଏବେ ତୁ ଧୀର ଆତ୍ମମନେ ।
ମୁହୂର୍ତ୍ତେ ରହ ମୋ' ବଚନେ ।। ୬୨
ଦେଖ ଏ ଭୟଙ୍କର ବେଳା ।
ପ୍ରେତ-ପିଶାଚଗଣ ମେଳା ।। ୬୩
ଭୂତ-ବେତାଳ ଘେନି ସଙ୍ଗେ ।
ରମନ୍ତି ଭୂତପତି ରଙ୍ଗେ ।। ୬୪
ଦେଖ ଏ ଘୋର-ସନ୍ଧ୍ୟାକାଳେ ।
ଘୋର ଶବଦ ଗଣମେଳେ ।।୬୫
ଶ୍ମଶାନ-ଧୂଳିରେ ଧୂସର ।
ଜଟାକଳାପେ ଭୟଙ୍କର ।।୬୬
ଭସ୍ମଲେପନ ସର୍ବଅଙ୍ଗେ ।
ଭୂତାଦିଗଣ ଘେନି ସଙ୍ଗେ ।।୬୭
ବୃଷଭେ ବସି ଭୂତପତି ।
ଦେଖଇ ସର୍ବଜନ ଗତି ।।୬୮
ତୋହର ଦେବର ସ୍ୱଭାବେ ।
ମୁହୂର୍ତ୍ତେ ରହ ସଖି ଏବେ ।। ୬୯
ପର ଅପର ଯା'ର ନାହିଁ ।
ବନ୍ଦନ ନିନ୍ଦନ ବା କାହିଁ ।। ୭୦
ଆମ୍ଭେ ସକଳେ ଯା' ଚରଣେ ।
ସେବୁ ସୁବ୍ରତ ଆଚରଣେ ।। ୭୧
ତା'ର ପ୍ରସାଦ ଶେଷଭୋଗ ।
ଭୁଞ୍ଜୁ ଅତୁଲ୍ୟ ସଉଭାଗ୍ୟ ।। ୭୨
ଯା'ର ନିର୍ମଳ ଗୁଣ ଚିନ୍ତି ।
ମାୟା-ପଟଳେ ସର୍ବ ଯତି ।। ୭୩
ଚିନ୍ତନ୍ତି ନିର୍ଲେପ ଶରୀର ।
ଅଚିନ୍ତ୍ୟ ଗୁଣ ଯେ ଗଭୀର ।। ୭୪
ନିର୍ମଳଚେତା ମୁନିଗଣେ ।
ଧ୍ୟାନେ ଚିନ୍ତନ୍ତି ଯା' ଚରଣେ ।। ୭୫
ତପ ସାଧନେ ଯୋଗେ ଚିନ୍ତି ।
ଅଶେଷ ସମ୍ପଦ ଲଭନ୍ତି ।। ୭୬
ପିଶାଚ-ମାର୍ଗ ଦେଖି ତା'ର ।
ସୁଜନେ କରନ୍ତି ବିଚାର ।। ୭୭
ଉଣା ଅଧିକେ ଯା'ର ନାହିଁ ।
ପିଶାଚ-ଚେଷ୍ଟାରେ ଭ୍ରମଇ ।। ୭୮
ତା'ଙ୍କୁ ଯେ ଦୁର୍ଭଗା ହସନ୍ତି ।
ସେ ତା ମହିମା ନ ଜାଣନ୍ତି ।। ୭୯
ବ୍ରହ୍ମାଦି ଦେବେ ଯା' କିଙ୍କର ।
ଯା' ମାୟାବଳେ ଏ ସଂସାର ।। ୮୦
ସୃଷ୍ଟି ପାଳନ ସଂହାରଣ ।
ଯେ ବିଶ୍ୱ ପରମ-କାରଣ ।। ୮୧
ପିଶାଚଚେଷ୍ଟା ତା'ର ଦେଖି ।
ସାଧବ ଜନେ ହୋନ୍ତି ଦୁଃଖୀ ।। ୮୨
ଚରିତ ବିଡ଼ମ୍ବନା ତା'ର ।
ଦେବ ମାନବେ ଅଗୋଚର ।। ୮୩

ମୈତ୍ରେୟ ଉବାଚ

ଇନ୍ଦ୍ରିୟଗଣ ସେ ଦିତିର ।
କାମରେ ହୋଇଲା ଅସ୍ଥିର ।। ୮୪
ଏମନ୍ତେ ସ୍ୱାମୀ ବାକ୍ୟ ଶୁଣି ।
ସ୍ୱଭାବେ ଉନ୍ମତ୍ତ ତରୁଣୀ ।। ୮୫
ମଦନବାଣେ ଭୋଳ ଚିତ୍ତ ।
ବେଗେ ଧଇଲା ସ୍ୱାମୀ ହସ୍ତ ।। ୮୬
ବସ୍ତ୍ର କରଷି ବାମକରେ ।
କଟାକ୍ଷେ ଚାହେଁ କାମଭରେ ।। ୮୭
ବୃଷଳୀ ପ୍ରାୟେ ଲଜ୍ଜା ଛାଡ଼ି ।
ରମଣରସେ ଚିତ୍ତ ବଢ଼ି ।। ୮୮
ପତ୍ନୀ ନିର୍ବନ୍ଧ ମୁନି ଦେଖି ।
ଧର୍ମ ବିଷୟେ ମନେ ଦୁଃଖୀ ।। ୮୯
ଦଇବ ରୂପ ଯେ ଈଶ୍ୱର ।
ତାହାଙ୍କୁ କରି ନମସ୍କାର ।। ୯୦
ଏକାନ୍ତେ ଯାଇ ତା'ର ସଙ୍ଗେ ।
ମେଳ ହୋଇଲେ ରତିରଙ୍ଗେ ।। ୯୧
ପତ୍ନୀ ରମଣରସ ସାରି ।
ତକ୍ଷଣେ ଆଚମନ କରି ।। ୯୨
କର ଚରଣ ଧୋଇ ଜଳେ ।
ଆସନେ ବସିଲେ ନିଶ୍ଚଳେ ।। ୯୩
ଗାୟତ୍ରୀମନ୍ତ୍ର ପ୍ରାଣାୟାମ ।
କରି ଚିନ୍ତିଲେ ବିଷ୍ଣୁନାମ ।। ୯୪
ନିର୍ମଳ ଜ୍ୟୋତିରୂପେ ମନ ।
ନିବେଶି ହୋଇଲେ ମଗନ ।। ୯୫
ତକ୍ଷଣେ ଉଠି ଦିତି ବେଗେ ।
ବସ୍ତ୍ର ଆଚ୍ଛାଦି ସର୍ବଅଙ୍ଗେ ।। ୯୬
ସଲ୍ଲଜ୍ଜେ ଅଧୋମୁଖେ ରହି ।
କହେ କଶ୍ୟପ ମୁଖ ଚାହିଁ ।। ୯୭

ଦିତି ଉବାଚ

ଭୋ ନାଥ ଶୁଣ ମୋ'ବଚନ ।
ମୋହର କର୍ମଫଳ ହୀନ ।। ୯୮

Dr. Sudhanshu Sekhar Mishra

ଯେ ଗର୍ଭେ ହୋଇବ ମୋହର ।
ଯେମନ୍ତେ ନାଶ ନୋହେ ତା'ର ।। ୯୯
ଅବଜ୍ଞା କରି ଭୂତପତି ।
ମୁଁ ଯେ ଆଚରିଲି ଅନୀତି ।।୧୦୦
ଭୋ ରୁଦ୍ର ନମୁଁ ତୋ' ଚରଣେ ।
ତୋ'ର ବିହାର ଭୂତଗଣେ ।।୧୦୧
ହେ ଶିବ ଶିବ ଦଣ୍ଡଧର ।
ଉଦଣ୍ଡ-ଦଣ୍ଡ ତୋ'ର କର ।।୧୦୨
ତୁ ଉଗ୍ର ଭୀମ ଉମାପତି ।
ତୋ' ଅନୁଗ୍ରହେ ନାହିଁ ଭୀତି ।।୧୦୩
ଅପ୍ରାଧ ନାଶେ ତୋ'ର ଦୟା ।
ତାକୁ ନ ଲାଗେ ବିଷ୍ଣୁମାୟା ।।୧୦୪
ତୁ ଉଗ୍ରରୂପ କ୍ଷମାକର ।
ନମୋ ନମସ୍ତେ ତୋ' ପୟର ।।୧୦୫
ସଂହାରେ କ୍ରୋଧ ରୂପ ତୋ'ର ।
ତୋ' ପଦେ ମୋର ନମସ୍କାର ।।୧୦୬
ଗର୍ଭ ମୋ' ରଖ ହେ ଗୋସାଇଁ ।
ପ୍ରସନ୍ନ ହୁଅ ଦୟା ବହି ।।୧୦୭
ହେ ପ୍ରଭୁ ଦେବ ଭଗବାନ ।
ଆମ୍ଭଙ୍କୁ ହୋଇବା ପ୍ରସନ୍ନ ।।୧୦୮
ମୁଁ ଯେ ସ୍ୱଭାବେ ସ୍ତିରୀଜାତି ।
ନମୋ ନମସ୍ତେ ସତୀପତି ।।୧୦୯
ପତ୍ନୀ-ସ୍ୱଭାବ ଭଲେ ଜାଣ ।
ବିଚାରି ହୁଅ ତୁ ପ୍ରସନ୍ନ ।।୧୧୦

### ମୈତ୍ରେୟ ଉବାଚ

ଗର୍ଭ ଆଶିଷେ ମନ ଦେଇ ।
କମ୍ପେ କଶ୍ୟପ ମୁଖ ଚାହିଁ ।।୧୧୧
ତକ୍ଷଣେ ଧ୍ୟାନ ବେଗେ ।
ମୁନି କହନ୍ତି ପତ୍ନୀ ଆଗେ ।।୧୧୨

### କଶ୍ୟପ ଉବାଚ

ଭୋ ସଖି ଶୁଣ ଶୁଦ୍ଧଚିତ୍ତେ ।
ଏ କର୍ମ ତୋହର ଆୟତ୍ତେ ।।୧୧୩
ମୁହୂର୍ତ୍ତ ଦୋଷ ଭୟଙ୍କର ।
ଦେବହେଳନ କର୍ମ ତୋ'ର ।।୧୧୪
ଏ ଦୋଷୁ ତୋ'ର ଗର୍ଭଗତେ ।
ଜନ୍ମ ହୋଇବେ ବେନିସୁତେ ।।୧୧୫
ଦୁଷ୍ଟ ହୋଇବେ ଏ ଶୟଳେ ।
ତପ ସାଧନ କର୍ମଫଳେ ।।୧୧୬
ଏ ତିନିପୁର ରାଜାଗଣେ ।
ବିକଳେ ଖଟିବେ ଚରଣେ ।।୧୧୭
ଧନଜୀବନ ସେ ହରିବେ ।
ପ୍ରାଣୀଙ୍କି ଦୁଃଖଶୋକ ଦେବେ ।।୧୧୮
ନିର୍ଦ୍ଦୋଷ ପ୍ରାଣୀଙ୍କି ମାରଣେ ।
ପର ରମଣୀ କରଷଣେ ।।୧୧୯
ଏ ଆଦି ଯେତେ ପାପକର୍ମେ ।
ବଳେ କରିବେ ମତିଭ୍ରମେ ।।୧୨୦
ମହତଜନେ କୋପ ଜାତ ।
କରିବେ ସେହି ବେନିଭ୍ରାତ ।।୧୨୧
ତାହାଙ୍କ ଦେଖି ଦୁଷ୍କର୍ମ ।
କୋପିବେ ଶ୍ରୀପୁରୁଷୋତ୍ତମ ।।୧୨୨
ଏ ମହୀତଳେ ଦେହ ବହି ।
ବିଷ୍ଣୁ ମାରିବେ ବେନିଭାଇ ।।୧୨୩
ଇନ୍ଦ୍ର ଯେସନେ ଦେହ ଧରି ।
ଘୋର ପର୍ବତ ଦର୍ପ ହରି ।।୧୨୪
ଏମନ୍ତେ କଶ୍ୟପ ବଚନ ।
ବିଷାଦ ଶୁଣି ଦିତି ମନ ।।୧୨୫
ସ୍ୱାମୀ ଚରଣ ତଳେ ପଡ଼ି ।
ବୋଲଇ ବେନିକର ଯୋଡ଼ି ।।୧୨୬

### ଦିତି ଉବାଚ

ଭୋ ନାଥ ମୋ'ର ପୁତ୍ର ଯେବେ ।
ସଂସାରେ ଦୁଷ୍କର୍ମ ଭାବେ ।।୧୨୭
ବିଷ୍ଣୁର ହସ୍ତେ ଯିବେ ନାଶ ।
ଏଣେ ମୋହର ନାହିଁ ତ୍ରାସ ।।୧୨୮
ତହିଁକି ମୋ'ର ଭୟ ନାହିଁ ।
ବ୍ରାହ୍ମଣ କୋପେ ମୁଁ ଡରଇ ।।୧୨୯
ବ୍ରାହ୍ମଣ କୋପେ ଯେ ମରନ୍ତି ।
ପ୍ରାଣୀଙ୍କ ବଧ ଆଚରନ୍ତି ।। ୧୩୦
ତାହାଙ୍କ ନାହିଁ ସୁଖ ଲେଶ ।
ନରକେ ହୁଅନ୍ତି ପ୍ରବେଶ ।। ୧୩୧
କର୍ମର ବଳେ ଯେତେ ଯୋନି ।
ଜନ୍ମ ଲଭନ୍ତି ଦେହ ଘେନି ।।୧୩୨
ଅଶେଷ ଦୁଃଖ ଫଳ ଭୋଗେ ।
ଭୁଞ୍ଜନ୍ତି ଜୀବନ ସଂଯୋଗେ ।।୧୩୩
ଏମନ୍ତେ ଦିତିର ବଚନ ।
ଶୁଣି କଶ୍ୟପ ତପୋଧନ ।। ୧୩୪
ବୋଲନ୍ତି ଦିତି ମୁଖ ଚାହିଁ ।
ଭୋ ସଖି ଶୁଣ ମନଦେଇ ।। ୧୩୫
ଯେ ଅପରାଧ ତୋ' କୃତ ।
ତେଣୁ ଯେ ଶୋକ ଅନୁତାପ ।।୧୩୬
ଯେ ଭଲମନ୍ଦର ବିଚାର ।
ତକ୍ଷଣେ ହୋଇଲା ତୋହର ।।୧୩୭
ଯେ ଭାବ ହେଲା ହରିଠାରେ ।
ଯେବା ଆଦର ତୋ'ର ମୋରେ ।।୧୩୮
ଏଣୁ ତୋହର ବେନିପୁତ୍ରେ ।
ଯନ୍ତ୍ରିତ ନିଜ କର୍ମସୂତ୍ରେ ।। ୧୩୯
ବିଷ୍ଣୁର ହସ୍ତେ ପ୍ରାଣ ଦେଇ ।
ଶାପୁ ତରିବେ ବେନିଭାଇ ।। ୧୪୦
ତାହାଙ୍କ ପୁତ୍ରଙ୍କର ମଧ୍ୟେ ।
ବିଷ୍ଣୁ ଭକତି ଅନୁବାଦେ ।। ୧୪୧
ହୋଇବ ବିଷ୍ଣୁଭକ୍ତ ସାର ।
ଅତୁଳ୍ୟ ଗୁଣ ସୁବିଚାର ।। ୧୪୨
ତାହାର ଯଶ ଇହଲୋକେ ।
ବିଷ୍ଣୁଭକତ ମନସୁଖେ ।। ୧୪୩
ଶୁଣି ଶ୍ରବଣେ ନିରନ୍ତର ।
ତରିବେ ଏ ଭବସାଗର ।। ୧୪୪
ତା'ର ସ୍ୱଭାବ ପାଇବାରେ ।
ଯୋଗୀଏ ସାଧିବେ ସଂସାରେ ।। ୧୪୫
ହୋଇବ ହୃଦୟ ନିର୍ମଳ ।
ଅଗ୍ନିରେ ଯେହ୍ନେ ହେମ-ମଳ ।।୧୪୬
ଯେ ହରି ସର୍ବଘଟେ ପୂରି ।
ସେ ହରି ତା'ରେ ଦୟାକରି ।।୧୪୭
ତା'ର ପ୍ରସନ୍ନେ ଏ ସଂସାର ।
ଯେଣୁ ତା' ନାହିଁ ନିଜ ଘର ।।୧୪୮
ସେ ମହାଭାଗବତ ପୁଣି ।
ତା' ଯଶ ଗାଇ ତରେ ପ୍ରାଣୀ ।। ୧୪୯

Dr. Sudhanshu Sekhar Mishra

ମହାତ୍ମା ମହତେ ମହତ ।
ଭକତି ବଳେ ଶୋଧି ଚିତ୍ତ ।। ୧୫୦
ବିଷ୍ଣୁ ଭକତି ଅତିରେକେ ।
ଅନ୍ତେ ମିଳିବ ବିଷ୍ଣୁଲୋକେ ।।୧୫୧
ପର ସମ୍ପଦେ ସେ ସୁଖିତ ।
ଦୁଃଖରେ ହୋଇବ ଦୁଃଖିତ ।।୧୫୨
ହରିବ ଜନଶୋକରାଶି ।
ନିଦାଘ-ତାପ ଯେହ୍ନେ ଶଶୀ ।।୧୫୩
ଦେଖିବ ତୋ' ପୁତ୍ର ନନ୍ଦନ ।
ଅନ୍ତର ବାହ୍ୟେ ଭଗବାନ ।।୧୫୪

ସୁନ୍ଦର-ବର-ସୁକୁମାର ।
କର୍ଣ୍ଣେ କୁଣ୍ଡଳ ହୃଦେ ହାର ।।୧୫୫

ମୈତ୍ରେୟ ଉବାଚ

ପୌତ୍ରର ଗୁଣମାନ ଶୁଣି ।
ବୈଷ୍ଣବ-ଗୁଣେ ଶିରୋମଣି ।।୧୫୬
ସଂସାର କରିବ ପବିତ୍ର ।
ଶୁଣି ଆନନ୍ଦ ଦିତି ଚିତ୍ତ ।।୧୫୭
ଅନ୍ତର ଆତ୍ମା ଅତିତୋଷେ ।
ସ୍ୱାମୀଙ୍କି ନମିଲା ହରଷେ ।।୧୫୮

ଦିତି-କଶ୍ୟପର ସମ୍ବାଦ ।
ଶୁଣ ସୁଜନେ ଜ୍ଞାନଭେଦ ।।୧୫୯
ତୃତୀୟସ୍କନ୍ଧ ଭାଗବତ ।
କହିଲା ଦାସ ଜଗନ୍ନାଥ ।।୧୬୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଦିତି-କଶ୍ୟପ-ସମ୍ବାଦେ
ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ପଞ୍ଚଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ସେ ପ୍ରଜାପତି ତେଜବୀର୍ଯ୍ୟ ।
ଦିତି ଉଦରେ ସେ ଆତ୍ମଜ ।।୧
ଶତେବରଷ ବେଦମତେ ।
ଗର୍ଭେ ଧଇଲା ଭୟଚିତ୍ତେ ।।୨
ଦେବଦଳନ ତେଜ ଶୁଣି ।
ଅନ୍ତରେ ଭାଳଇ ତରୁଣୀ ।।୩
ନ ଜାଣି କଲି ଏଡ଼େ କର୍ମ ।
କାମେ ହୋଇଲି ମତିଭ୍ରମ ।।୪
ଦଇବବଳ ବଳୀୟାର ।
କି କରିପାରେ ସୁରନର ।।୫
ଗଭୀର ତେଜ ବଳେ କରି ।
ଲୋକେ ଦିଶିଲେ ହତଶିରୀ ।।୬
ଏବେ ହେ ଶୁଣ କୁରୁବୀର ।
ସଂସାର ଦିଶେ ଅନ୍ଧକାର ।।୭
ଇନ୍ଦ୍ରାଦି ଦିଗପାଳେ ମିଳି ।
ସକଳେ ଏକମନେ ଭାଳି ।।୮
ବ୍ରହ୍ମାର ନିକଟେ ମିଳିଲେ ।
ଭୟେ ଅନେକ ସ୍ତୁତି କଲେ ।।୯

ଦେବଗଣ ଉବାଚ

ଭୋ ଦେବଦେବ ପ୍ରଜାପତି ।
ଦିଗେ ଦିଶନ୍ତି ଭୟାକୃତି ।।୧୦

ଏ ଘୋର ଅନ୍ଧକାର ଯେଣୁ ।
ଆମ୍ଭେ ତ ଭଲେ ନ ପ୍ରମାଣୁ ।।୧୧
କୁଶଳ ନୋହେ ଏ ସଂସାର ।
ଅଦ୍ଭୁତ ଘୋର ଅନ୍ଧକାର ।।୧୨
ଏ କଥା ତୁମ୍ଭଙ୍କୁ ଗୋଚର ।
କି ଅଗୋଚର ବା ତୁମ୍ଭର ।।୧୩
ଏ କାଳ ମହିମା କେ ଜାଣେ ।
ଆଗମ ନିଗମ ପ୍ରମାଣେ ।।୧୪
ହେ ଦେବଦେବ ଜଗନ୍ନାଥ ।
ଆମ୍ଭେ ସକଳେ ତୋ'ର ଭୃତ୍ୟ ।।୧୫
ତୁ ପରାତ୍ପର ଭାବଗ୍ରାହୀ ।
ଜଗତ ମାୟାବଳେ ମୋହି ।।୧୬
ଗୃହୀତ ରଜୋଗୁଣେ ଦେହୀ ।
ତୋ' ରୂପ ନ ଜାଣନ୍ତି କେହି ।।୧୭
ଅନନ୍ୟଭାବେ ଆତ୍ମାଲାଭେ ।
ଯେ ପ୍ରାଣୀ ତୋ' ଚରଣ ସେବେ ।।୧୮
ତା'ର ଅଶୁଭ ଲେଶ ନାହିଁ ।
ସତ ଅସତ ପର ତୁହି ।।୧୯
ନିର୍ଜନେ ବସି ଯୋଗୀଜନେ ।
ନିଶ୍ଚଳ ଚିତ୍ତେ ଯୋଗଧ୍ୟାନେ ।।୨୦
ମନ ପବନ ହୃଦେ ରୁନ୍ଧି ।
ଇନ୍ଦ୍ରିୟ ସମୂହ ନିରୋଧି ।।୨୧

ତୋ'ର ପ୍ରସାଦ ଯେ ଲଭନ୍ତି ।
ତାହାଙ୍କ ନାହିଁ ଭୟଭ୍ରାନ୍ତି ।।୨୨
ଯା'ର ବଚନେ ପ୍ରଜାଗଣେ ।
ଭାବେ ସେବନ୍ତି ଅନୁକ୍ଷଣେ ।।୨୩
ତରନ୍ତି ଭବଭୟ ତ୍ରାସ ।
ତୁ ନାଥ ଅନାଦି-ପୁରୁଷ ।।୨୪
ଆମ୍ଭର ସୁଖ ଗଲା କ୍ଷୟ ।
ଭୋ ନାଥ କର ତୁ ଉପାୟ ।।୨୫
ଦେଖ କଶ୍ୟପ ପ୍ରଜାପତି ।
ଦିତି ସଂଯୋଗେ କଲା ମତି ।।୨୬
ଦିତିର ଗର୍ଭେ ବୀର୍ଯ୍ୟ ଦେଲା ।
ତମେ ଭୁବନ ଆଚ୍ଛାଦିଲା ।।୨୭
ବେଳକୁ ବେଳ ବଢ଼େ ତେଜ ।
ସମିଧେ ଯେହ୍ନେ ଅଗ୍ନିତେଜ ।।୨୮

ମୈତ୍ରେୟ ଉବାଚ

ଏମନ୍ତେ ଦେବସ୍ତୁତି ଶୁଣି ।
ସଂଭ୍ରମ ଚିତ୍ତେ କୁଶପାଣି ।।୨୯
ଶବଦବ୍ରହ୍ମେ ବେଦବର ।
ଦେବଙ୍କୁ କହନ୍ତି ମଧୁର ।।୩୦

ବ୍ରହ୍ମା ଉବାଚ

ଶୁଣ ସକଳ ଦେବଗଣ ।
କହିବା ଏଥିର କାରଣ ।।୩୧

Dr. Sudhanshu Sekhar Mishra

ତୁମ୍ଭର ପୂର୍ବସୃଷ୍ଟି ଲାଭେ ।
ମୁଁ ଯେ ବସିଲି ଧ୍ୟାନଭାବେ ।।୩୨
ସନକ ଆଦି ଚାରିଭ୍ରାତେ ।
ଜନ୍ମିଲେ ମୋ'ର ଶୁଦ୍ଧଚିତ୍ତେ ।।୩୩
ଊର୍ଦ୍ଧ୍ୱେ ଜନ୍ମିଲେ ଶୁଦ୍ଧଚେତା ।
ତେଣୁ ହୋଇଲେ ଊର୍ଦ୍ଧ୍ୱରେତା ।।୩୪
ଗଗନମାର୍ଗେ ତା'ଙ୍କ ଗତି ।
ସକଳ ଭୁବନେ ଭ୍ରମନ୍ତି ।।୩୫
ବିଗତସ୍ପୃହା ତା'ଙ୍କ ଶିକ୍ଷା ।
ନିତ୍ୟେ ପରମହଂସ ଦୀକ୍ଷା ।।୩୬
ଧୂଳି ଧୂସର ଦିଗମ୍ବର ।
ନିତ୍ୟ ନିର୍ବିଷୟ ଗୋଚର ।।୩୭
ସେ ମୁନିଗଣେ ଏକଦିନେ ।
ମିଳିଲେ ବିଷ୍ଣୁର ଭୁବନେ ।।୩୮
ଯେ ନାମ ବୈକୁଣ୍ଠ ବିଦିତ ।
ସର୍ବ ଦେବତା ନମସ୍କୃତ ।।୩୯
ଯହିଁ ପୁରୁଷେ ମହାସୁଖେ ।
ବସନ୍ତି ବିଷ୍ଣୁର ସମ୍ମୁଖେ ।।୪୦
ସର୍ବେ ଦିଶନ୍ତି ବିଷ୍ଣୁରୂପେ ।
ବିନାଶ ନାହିଁ କାଳକଳ୍ପେ ।।୪୧
ନିମିତ୍ତାନିମିତ୍ତ ଆଚାରେ ।
ହରିଙ୍କି ଭଜନ୍ତି ବେଭାରେ ।।୪୨
ଆଦି ପୁରୁଷ ଯହିଁ ହରି ।
ବସନ୍ତି ଧର୍ମରୂପ ଧରି ।।୪୩
ସର୍ବ ଗୋଚର ଦୃଷ୍ଟିମାତ୍ରେ ।
ବିଶ୍ୱ ସଂସାରେ ଅବିରତେ ।।୪୪
ନିର୍ମଳ ସତ୍ତ୍ୱମୂର୍ତ୍ତି ବହି ।
ସୁଖେ ଅଛନ୍ତି ଯହିଁ ରହି ।।୪୫
ଯହିଁ କୈବଲ୍ୟ ନାମେ ବନ ।
ବିରାଜେ କଳ୍ପଦ୍ରୁମମାନ ।।୪୬
ବାଞ୍ଛିତ ଲତା ବୃକ୍ଷବନ ।
ଯହିଁ ଅଛନ୍ତି ବିଦ୍ୟମାନ ।।୪୭
ସକଳ ଋତୁ ଯହିଁ ବସେ ।
କୈବଲ୍ୟ ମୂର୍ତ୍ତିମନ୍ତ କି ସେ ।।୪୮
ଯହିଁ ବିମାନ ଶତ ଶତେ ।
ଦିବ୍ୟକାମିନୀ ଯୂଥ ଯୂଥେ ।।୪୯

ବିଷ୍ଣୁ ମହିମା ଗୁଣ ଗା'ନ୍ତି ।
କୋଟି-ଶଶାଙ୍କ ରୂପକାନ୍ତି ।।୫୦
ବିକାଶ ପୁଷ୍ପ ଜଳାଶୟେ ।
ମଧୁ ମାଧବୀ ଗନ୍ଧବହେ ।।୫୧
ସେ ଗନ୍ଧ ସର୍ବମନୋହର ।
ତାହାକୁ କରି ଅନାଦର ।।୫୨
ବିଷ୍ଣୁର ପାଦେ ମନ ଦେଇ ।
ଆନନ୍ଦେ ତୁଣ୍ଡେ ନାମ ଗାଇ ।।୫୩
କୋକିଳ ପାରାବତ ହଂସ ।
ଡାହୁକ ତିତ୍ତିର ସାରସ ।।୫୪
ଚକ୍ରବାକ ଯେ ବରହିଣ ।
ସୁସ୍ୱରନାଦେ ଅନୁକ୍ଷଣ ।।୫୫
ସର୍ବେ ଗାୟନ୍ତି ହରିକଥା ।
ଯେ ଭାବେ ଖଣ୍ଡେ ଭବବ୍ୟଥା ।।୫୬
ମନ୍ଦାର କୁରୁବକ କୁନ୍ଦ ।
ଉତ୍ପଳ ଚମ୍ପକ କୁମୁଦ ।।୫୭
ପୁନ୍ନାଗ ନାଗ ପାରିଜାତ ।
ତୁଳସୀଦଳ ସୁଲଳିତ ।।୫୮
ନାନା କୁସୁମ ପରିମଳ ।
ସୁଗନ୍ଧ ସମୀର ଶୀତଳ ।।୫୯
ମର୍କତ ବଇଦୂର୍ଯ୍ୟ ହେମ ।
ସହସ୍ର ସହସ୍ର ବିମାନ ।।୬୦
ପ୍ରଣାମ କରି ହରିପାଦେ ।
ଭକତେ ବସନ୍ତି ଆନନ୍ଦେ ।।୬୧
ସୁନ୍ଦରୀ ଶତଶତ ଯହିଁ ।
ବସନ୍ତି ହରିକଥା ଗାଇ ।।୬୨
ପରମଲକ୍ଷ୍ମୀ ଯହିଁ ନିତ୍ୟେ ।
ନୀଳ ଲୋହିତ ପଦ୍ମ ହସ୍ତେ ।।୬୩
ସ୍ଫଟିକ ପୁରମଧ୍ୟେ ବସେ ।
ପଦେ ନୂପୁର ଧ୍ୱନି ଘୋଷେ ।।୬୪
ସୁବର୍ଣ୍ଣସ୍ତମ୍ଭ ଗୃହମଧ୍ୟେ ।
ବିରାଜେ ଭୁବନ ଆନନ୍ଦେ ।।୬୫
ପଦ୍ମ କଳ୍ପିତ ସମ୍ମାର୍ଜନୀ ।
ମାର୍ଜନା କଲା ପ୍ରାୟେ ମାନି ।।୬୬
ଯହିଁରେ ଲକ୍ଷ୍ମୀ କୁତୂହଳେ ।
ସକଳ ପରିଚାରୀ ମେଳେ ।।୬୭

ଯଦ୍ୟପି ଧୂଳି ତହିଁ ନାହିଁ ।
ବିନୟ ଭକ୍ତି ପ୍ରକାଶଇ ।।୬୮
ଗୋବିନ୍ଦ ଅନୁଗ୍ରହ ଆଶେ ।
ସ୍ୱବନେ ତୁଳସୀର ବାସେ ।।୬୯
ପୂଜନ୍ତି କୃଷ୍ଣର ଚରଣ ।
ତେଣେ ସନ୍ତୋଷ ଭଗବାନ ।।୭୦
ସେ ବନେ ବାପୀ ପୁଷ୍କରିଣୀ ।
ତୀରେ ବିଦ୍ରୁମଘାଟ ଶ୍ରେଣୀ ।।୭୧
ସେ ଶୁଦ୍ଧଜଳେ ମୁଖ ଚାହିଁ ।
ବିଷ୍ଣୁ ଚୁମ୍ବନ ମନେ ବହି ।।୭୨
ସେ ବିଷ୍ଣୁପୁରେ ପାପୀଜନ ।
ପ୍ରବେଶେ ନୁହନ୍ତି ଭାଜନ ।।୭୩
ଯେ ଅର୍ଥେ କାମେ ରତି କରେ ।
ଗୋବିନ୍ଦ ଗୁଣ ନ ସୁମରେ ।।୭୪
ଦୁଷ୍କୃତ ମାର୍ଗେ ଯେ ରମନ୍ତି ।
ନରକମାର୍ଗେ ଯା'ର ଗତି ।।୭୫
ସେ କାହିଁ ପଶିବେ ସେ ପୁରେ ।
ନରକେ ପଡ଼ନ୍ତି ନିର୍ଭରେ ।।୭୬
ସେ ଦେହ ପାଇ ଯେଉଁ ଜନ ।
ନ କରେ ହରିର ସେବନ ।।୭୭
ଏ ଅତି ଦୁଃଖ ହିଁ ବିଦିତ ।
ସେ ବିଷ୍ଣୁମାୟା ବିମୋହିତ ।।୭୮
ଯେ ଯୋଗମାର୍ଗେ ଅନୁବାଦେ ।
କଠୋର ତପକର୍ମ ସାଧେ ।।୭୯
ମନ-ପବନ ହୃଦେ ଛନ୍ଦି ।
ଚଞ୍ଚଳ ଇନ୍ଦ୍ରିୟ ନିରୋଧି ।।୮୦
ଯେବେ ଗୋବିନ୍ଦଭାବ ନାହିଁ ।
ସେ ପୁରେ ପଶିବେ ସେ କାହିଁ ।।୮୧
ବିଷ୍ଣୁର ମାୟାବଳେ ଜଡ଼ି ।
ଜନ୍ମ-ମରଣେ ଥା'ନ୍ତି ପଡ଼ି ।।୮୨
ମୋ ଆଦି ଦେବେ ଯା' ଚରଣେ ।
ଭଜେ ଖଟନ୍ତି ଅନୁକ୍ଷଣେ ।।୮୩
ନମନ୍ତି ଭୃତ୍ୟପ୍ରାୟ ହୋଇ ।
ପାଦେ ଖଟନ୍ତି ବଳି ଦେଇ ।।୮୪
ବିଷ୍ଣୁର ଯଶ ଗୁଣଗାଥା ।
ନିତ୍ୟେ କରନ୍ତି ମନେ ଚିନ୍ତା ।।୮୫

Dr. Sudhanshu Sekhar Mishra

ଆନନ୍ଦେ ଅଶ୍ରୁ ବହେ ନେତ୍ରେ ।
ରୋମହରଷ ସର୍ବଗାତ୍ରେ ।।୮୬
ହରିଭକତି ଭାବେ କରି ।
କାରୁଣ୍ୟ ହିଂସା ପରିହରି ।।୮୭
ସେମାନେ ଯା'ନ୍ତି ଆମ୍ଭ ଉର୍ଦ୍ଧ୍ୱେ ।
ସୁଖେ ବସନ୍ତି ବିଷ୍ଣୁପଦେ ।।୮୮
ଏମନ୍ତ ବିଷ୍ଣୁର ଭୁବନେ ।
ପଶିଲେ ମୋହର ନନ୍ଦନେ ।।୮୯
ଦେଖିଲେ ଅପୂର୍ବ-ଭୁବନ ।
ଜଗତଗୁରୁର ଯେ ସ୍ଥାନ ।।୯୦
ବିବିଧ ଶ୍ରେଷ୍ଠ ଦେବମାନେ ।
ବିମାନେ ଦୀପ୍ତ ଏ ଭୁବନେ ।।୯୧
ଯହିଁ ପୁରାଣ ଇତିହାସ ।
ଆଗମ ନିଗମ ପ୍ରକାଶ ।।୯୨
ତର୍କ ବେଦାନ୍ତ ଯୋଗଶାସ୍ତ୍ରେ ।
ନ୍ୟାୟ ମୀମାଂସା ଆଦି ଯେତେ ।।୯୩
ସ୍ତୁତି କରନ୍ତି ଅବଧାନେ ।
କୃଷ୍ଣଚରିତ ଗୁଣଗାନେ ।।୯୪
ଏମନ୍ତେ ଶାସ୍ତ୍ରେ ମୂର୍ତ୍ତିମନ୍ତେ ।
ଯହିଁ ସେବନ୍ତି ଅବିରତେ ।।୯୫
ସେ ପୁରେ ପଶି ମନସୁଖେ ।
କୃଷ୍ଣ କହିମା ଗାଇ ମୁଖେ ।।୯୬
ନିରତେ ହରିଗୁଣ ଚିନ୍ତି ।
କୃଷ୍ଣମାୟାରେ ନ ପଡ଼ନ୍ତି ।।୯୭
ଚାରିକୁମରେ ଏକମେଳେ ।
ଆନନ୍ଦେ ଷଡ଼ଦ୍ୱାରେ ଗଲେ ।।୯୮
ସପତଦ୍ୱାରେ ଯା'ନ୍ତେ ବଳେ ।
ଆଗେ ମିଳିଲେ ଦ୍ୱାରପାଳେ ।।୯୯
କିରୀଟ କୁଣ୍ଡଳ କେୟୂର ।
ଅମୂଲ୍ୟବେଶେ ଶୋଭାକର ।।୧୦୦
ଉଚ୍ଚ ସୁନ୍ଦର ବକ୍ଷସ୍ଥଳ ।
କଣ୍ଠେ ଲମ୍ବଇ ବନମାଳ ।।୧୦୧
ଦିଶନ୍ତି କୃଷ୍ଣରୂପ ତେଜେ ।
ସୁବର୍ଣ୍ଣବେତ ଧରି ଭୁଜେ ।।୧୦୨
ଏମନ୍ତେ ବେନି ଦ୍ୱାରପାଳ ।
ଦେଖିଣ ମୋହର କୁମର ।।୧୦୩

ସେ ବ୍ରହ୍ମରଷି ପ୍ରତିଦ୍ୱାରେ ।
ଯେମନ୍ତେ ଗଲେ ବିଷ୍ଣୁପୁରେ ।।୧୦୪
ତେମନ୍ତେ ତା'ଙ୍କୁ ନ ପଚାରି ।
ସପ୍ତମେ ଯା'ନ୍ତେ ଭାଇଚାରି ।।୧୦୫
ଦ୍ୱାରେ କବାଟ ହେମମୟେ ।
ପ୍ରାଣୀ ନୟନ ମନ ମୋହେ ।।୧୦୬
ସେ ଦ୍ୱାରେ ମିଳି ବେନିଭାଇ ।
ଦ୍ୱାର ରୁନ୍ଧିଲେ ରୋଷବହି ।।୧୦୭
ସେ ଚାରିଭାଇ ମୋର ସୁତ ।
ଦେବଙ୍କ ପୂର୍ବସର୍ଗେ ଜାତ ।।୧୦୮
ସ୍ୱଭାବେ ବୃଦ୍ଧ ସେ ଅଟନ୍ତି ।
ବାଳକ ପ୍ରାୟ ତନୁକାନ୍ତି ।।୧୦୯
ପଞ୍ଚବରଷ ପୁତ୍ରପ୍ରାୟେ ।
ଦିଶନ୍ତି ବସ୍ତ୍ର ନାହିଁ ଦେହେ ।।୧୧୦
ଉଲଗ୍ନ ଦେଖି ତା'ଙ୍କ ବେଶ ।
ତାହାଙ୍କୁ କଲେ ଉପହାସ ।।୧୧୧
ତକ୍ଷଣେ ବେତ୍ର ଧରି କରେ ।
ନିଷେଧ କଲେ ସପ୍ତଦ୍ୱାରେ ।।୧୧୨
ଦେବେ ଦେଖନ୍ତି ଶୂନ୍ୟେ ରହି ।
ନିରୋଧ କଲେ ବେନିଭାଇ ।।୧୧୩
ସେ ଚାରିରଷି ରହି ଦ୍ୱାରେ ।
ମନେ ବିଚାରି କୋପଭରେ ।।୧୧୪
ବିଷ୍ଣୁର ଅତି ପ୍ରିୟପଣେ ।
ପାଦେ ଖଟନ୍ତି ଅନୁକ୍ଷଣେ ।।୧୧୫
ଦେଖି ନ ପାରି କୃଷ୍ଣରୂପ ।
ହୃଦେ ବସିଲା ଗରୁତାପ ।।୧୧୬
ବୋଲନ୍ତି ଅନ୍ୟୋଅନ୍ୟେ ଚାହିଁ ।
ଏ ଭାବ ଏ ପୁରେ ତ ନାହିଁ ।।୧୧୭
ଏ ଦ୍ୱାରପାଳ ପଣେ ଥାଇ ।
କୁହୁକ ଜନପ୍ରାୟ ହୋଇ ।।୧୧୮
ଯେ ବଇକୁଣ୍ଠପୁରେ ଥା'ନ୍ତି ।
ତା'ଙ୍କୁ ନ ଲାଗେ ରିପୁ ଭ୍ରାନ୍ତି ।।୧୧୯
କାମାଦି ଶତ୍ରୁ ଷଡ଼ଭାଇ ।
ଏ ପୁରେ ସମ୍ଭବିବେ କାହିଁ ।।୧୨୦
ସ୍ୱଭାବେ ସର୍ବପ୍ରାଣୀ ହୃଦେ ।
ହରି ବସନ୍ତି ଆତ୍ମାପଦେ ।।୧୨୧

ବାହ୍ୟ ଅନ୍ତରେ ବିଶ୍ୱରୂପୀ ।
ଘଟ ଆକାଶ ପ୍ରାୟ ବ୍ୟାପି ।।୧୨୨
କରନ୍ତି ଆତ୍ମାର ପ୍ରକାଶ ।
ପଣ୍ଡିତେ ଯହିଁରେ ସନ୍ତୋଷ ।।୧୨୩
ସମ ବିଷମ ଯହିଁ ନାହିଁ ।
ଅନ୍ୟାୟ କଲେ ବେନିଭାଇ ।।୧୨୪
ବିଷ୍ଣୁର ଦ୍ୱାରପାଳ ଭାବେ ।
ଦୁଷ୍ଟ ହୋଇଲେ ମତ୍ତଗର୍ବେ ।।୧୨୫
କପଟଧର୍ମୀ ବେନିଭାଇ ।
ଏ ପୁରେ ଥିବା ନ ଯୋଗାଇ ।।୧୨୬
ବେଗେ ପଡ଼ନ୍ତୁ ମହୀତଳେ ।
ଜନ୍ମିବେ ଅସୁରଙ୍କ କୁଳେ ।।୧୨୭
ତୃତୀୟ ଜନ୍ମ ଭୋଗ ସାରି ।
ପୁଣି ଲଭିବେ ବିଷ୍ଣୁପୁରୀ ।।୧୨୮
ଏମନ୍ତ ଶାପ ତା'ଙ୍କୁ ଦ୍ୟନ୍ତେ ।
ଦ୍ୱାରେ ଶୁଣିଲେ ବେନିଭ୍ରାତେ ।।୧୨୯
ଏ ବ୍ରହ୍ମଦଣ୍ଡ ଅନିର୍ବାର ।
କେବେହେଁ ନାହିଁ ପ୍ରତିକାର ।।୧୩୦
ମୁନି ବଚନେ ଦ୍ୱାରପାଳ ।
ମନରେ ହୋଇଲେ ବିକଳ ।।୧୩୧
ଏମନ୍ତେ ଅତିଭୟ ମନେ ।
ପାଦେ ପଡ଼ିଲେ ବେନିଜନେ ।।୧୩୨
ଉଠିଣ ଶିରେ କର ଦେଇ ।
କହନ୍ତି ମୁନିଙ୍କି ଅନାଇଁ ।।୧୩୩
ଏ ଦଣ୍ଡ ଉଚିତ ଆମ୍ଭର ।
ଏଥି ବା କି ଦୋଷ ତୁମ୍ଭର ।।୧୩୪
ଦେବ ହେଳେନ କର୍ମ କରି ।
ଅସୁର ଦେହେ ଅବତରି ।।୧୩୫
ତହିଁକି ନାହିଁ ଆମ୍ଭ ଡର ।
କେବଳ କୃପା ଏତେ କର ।।୧୩୬
ଅର୍ଜିଲା କର୍ମର ଆୟତେ ।
ଜନ୍ମ ମରଣ ଏ ଜଗତେ ।।୧୩୭
ବୋଲନ୍ତି ଶୁଣ ମୁନିବର ।
କରିବ ପାପୀ ପ୍ରତିକାର ।।୧୩୮
କୃଷ୍ଣର ସ୍ମରଣ ଆମ୍ଭର ।
ଯେମନ୍ତେ ନୋହିବ ବିସ୍ମର ।।୧୩୯

Dr. Sudhanshu Sekhar Mishra

ମୁନି ବୋଲନ୍ତି ଦୟାଚିତ୍ତେ ।
ସ୍ୱଭାବେ ଥିବ ଦୁଷ୍ଟମତେ ।।୧୪୦
ତୁମ୍ଭର ଦେହେ ବିଷ୍ଣୁଭାବ ।
କଳାଏ ଅଂଶମାତ୍ର ଥିବ ।।୧୪୧
ଏବେ ହୋ ଶୁଣ ସୁରଗଣ ।
ତାହା ଜାଣିଲେ ନାରାୟଣ ।।୧୪୨
ମୁନିହେଳନ କର୍ମ ଶୁଣି ।
ପୁରୁ ବାହାର ଚକ୍ରପାଣି ।।୧୪୩
ଦ୍ୱାରପାଳଙ୍କୁ ଦୟା ବହି ।
ଭୃତ୍ୟବତ୍ସଳ ଭାବଗ୍ରାହୀ ।।୧୪୪
ଲକ୍ଷ୍ମୀର କରେ ଦେଇ କର ।
ଗୋବିନ୍ଦ ହୋଇଲେ ବାହାର ।।୧୪୫
ଗୋବିନ୍ଦ ଚଳନ୍ତି ଚରଣେ ।
ଯହିଁ ଅଛନ୍ତି ମୁନିଗଣେ ।।୧୪୬
ପରମହଂସ ଦୀକ୍ଷା ବହି ।
ତେଜେ ପ୍ରଚଣ୍ଡ ଚାରିଭାଇ ।।୧୪୭
କୋପେ କମ୍ପନ୍ତି ମହାତାପେ ।
ଗୋବିନ୍ଦ ମିଳିଲେ ସମୀପେ ।।୧୪୮
ଯାହାର ଦରଶନ ଅର୍ଥେ ।
ଯୋଗ ସାଧନ୍ତି ମୁନି-ସନ୍ତେ ।।୧୪୯
ଲକ୍ଷ୍ମୀଦେବୀଙ୍କ ପରିବାରୀ ।
କରେ ଚାମର ଛନ୍ତି ଧରି ।।୧୫୦
କେ ଶୁକ୍ଳ ପାଟଛତ୍ର କରେ ।
ଘେନି ଚଳନ୍ତି ଧୀରେ ଧୀରେ ।।୧୫୧
ଛତ୍ରେ ମୁକୁତାମାଳ ଶୋହେ ।
ହିମ ଶୀକର କଣା ବହେ ।।୧୫୨
ପ୍ରସନ୍ନମୁଖ ଭଗବାନ ।
କିବା ସୁନ୍ଦର ଅନୁପମ ।।୧୫୩
ସ୍ନେହ ଦୟାରେ ସର୍ବଜନ ।
ମନ ମୋହିଲେ ଭଗବାନ ।।୧୫୪
ଶ୍ୟାମସୁନ୍ଦର ବକ୍ଷସ୍ଥଳେ ।
କମଳା ବସନ୍ତି ନିଶ୍ଚଳେ ।।୧୫୫
କୌସ୍ତୁଭମଣି କଣ୍ଠେ ଶୋହେ ।
ଅଶେଷ ଜନମନ ମୋହେ ।।୧୫୬
ପୀତବସନ କଟୀମାଝେ ।
କନକମେଖଳା ବିରାଜେ ।।୧୫୭

ଉରେ ଲମ୍ବଇ ବନମାଳ ।
ସୁନ୍ଦର ଅଳକ କପୋଳ ।।୧୫୮
କେୟୂର କଙ୍କଣ ବିରାଜେ ।
ରୂପେ କୋଟିଏ କାମଗଞ୍ଜେ ।।୧୫୯
ଲୀଳାଅମ୍ବୁଜ ଏକକରେ ।
ଚଳନ୍ତେ ଭ୍ରମଇ ସେ କରେ ।।୧୬୦
ବିଜୁଳି ପ୍ରାୟେ ଗଣ୍ଡସ୍ଥଳେ ।
ଶୋଭଇ ମକରକୁଣ୍ଡଳେ ।।୧୬୧
ଶିରେ ମୁକୁଟମଣି ଶୋହେ ।
ଅଧିକେ ଜଗ୍ତଜନ ମୋହେ ।।୧୬୨
ଚତୁର ବାହୁର ମଧର ।
ସୁସଞ୍ଚ ମନୋହର ହାର ।।୧୬୩
କଣ୍ଠେ ଲମ୍ବଇ ମଣିହାର ।
ମଧ୍ୟେ କୌସ୍ତୁଭ ରତ୍ନସାର ।।୧୬୪
ଏମନ୍ତେ ନାନାରତ୍ନ ପୁଞ୍ଜେ ।
ତେତେ କମଳାରୂପ ଗଞ୍ଜେ ।।୧୬୫
ବ୍ରହ୍ମା-ଶଙ୍କର-ଦେବ ମନ ।
ମୋହନ ରୂପେ ହୋଏ ଛନ୍ନ ।।୧୬୬
ସ୍ଥିରଲୋଚନେ ସ୍ତମ୍ଭୀଭୂତେ ।
ଦେଖି ତୃପତ ନୋହେ ଚିତ୍ତେ ।।୧୬୭
ଆନନ୍ଦେ ସର୍ବ ମୁନିବରେ ।
ନମିଲେ କୃଷ୍ଣଙ୍କ ପୟରେ ।।୧୬୮
ସେ ହରି ଚରଣାରବିନ୍ଦ ।
କିଞ୍ଜଳ୍କ ତୁଳସୀ ଆମୋଦ ।।୧୬୯
ପବନ ନାସାଦ୍ୱାରେ ପୂରେ ।
ଚିତ୍ତ ଶରୀର କ୍ଷୋଭ କରେ ।।୧୭୦
କୃଷ୍ଣ ସୁନ୍ଦର ମୁଖତ୍ରାସ ।
ଯେହ୍ନେ ସୁନୀଳ ପଦ୍ମକୋଷ ।।୧୭୧
ବିମ୍ବଅଧରେ କୁନ୍ଦହାସ ।
ଅଶେଷ ଜନମନ ତୋଷ ।।୧୭୨
ସେ ରୂପ ଦେଖି ପୁଣି ଚିତ୍ତେ ।
ଧ୍ୟାନ ନିରୋପି ପାଦଗତେ ।।୧୭୩
ଅରୁଣ ମଣି ନଖକାନ୍ତି ।
ନିଶ୍ଚଳ ଲୋଚନେ ଧରନ୍ତି ।।୧୭୪
ଯାହାର ଗତି ଯୋଗମାର୍ଗେ ।
ଧ୍ୟାନେ ଚିନ୍ତନ୍ତି ମୁନିବର୍ଗେ ।।୧୭୫

ସେ ରୂପ ନୟନଗୋଚରେ ।
ଦେଖିଲେ ମୋହର କୁମରେ ।।୧୭୬
ଅଷ୍ଟ ଐଶ୍ୱର୍ଯ୍ୟ ମୁକ୍ତକଞ୍ଚ ।
ଦେଖନ୍ତେ ପ୍ରଭୁ ନିଜରୂପ ।।୧୭୭
ତକ୍ଷଣେ ଶିରେ କର ଦେଇ ।
ବୋଲନ୍ତି କୃଷ୍ଣ ମୁଖ ଚାହିଁ ।।୧୭୮

କୁମାରଗଣ ଉବାଚ

ଯେ ହରି ପ୍ରାଣୀଙ୍କ ଶରୀରେ ।
ଅନନ୍ତ ହୃଦୟେ ବିହରେ ।।୧୭୯
ସାଧୁ ଅସାଧୁ ଯା'ର ନାହିଁ ।
ତା'ର ମହିମା କେବା କହି ।।୧୮୦
ସେ ହରି ଆମ୍ଭ ଦୃଷ୍ଟି ପଥେ ।
ପ୍ରତ୍ୟକ୍ଷେ ମିଳିଲେ ଅଗ୍ରତେ ।।୧୮୧
ଯାହାର ଗୁଣ କର୍ମ ଗାଥା ।
ଏକାନ୍ତେ ବସି ଆମ୍ଭ ପିତା ।।୧୮୨
କହିଲେ ପରମ ଆନନ୍ଦେ ।
ବ୍ରହ୍ମବିଗ୍ରହ ଅନୁବାଦେ ।।୧୮୩
ସେ ପଶି ଆମ୍ଭ କର୍ଣ୍ଣଦ୍ୱାରେ ।
ରହିଲା ହୃଦୟ-ବିବରେ ।।୧୮୪
ତୁ ନାଥ ପରମାର୍ଥ-ତତ୍ତ୍ୱ ।
ଯୋଗେ ସାଧନ୍ତି ମୁନିସନ୍ତ ।।୧୮୫
ତୋ' ଧ୍ୟାନ ରଚି ସତ୍ତ୍ୱଗୁଣେ ।
ଯେ'ବା ଚିନ୍ତନ୍ତି ଅନୁକ୍ଷଣେ ।।୧୮୬
ସଂସାର ଅନୁତାପେ ଯନ୍ତି ।
ସୁହୃଦ ଭକ୍ତିଭାବେ ଚିନ୍ତି ।।୧୮୭
ହୃଦରେ ସ୍ଥାପି ତୋ'ର ରୂପ ।
ବେଗେ ଛାଡ଼ନ୍ତି ତିନିତାପ ।।୧୮୮
ତୋ'ର ପ୍ରସାଦ ଆତ୍ୟନ୍ତିକେ ।
ମନେ ଚିନ୍ତନ୍ତି ଯେବା ଲୋକେ ।।୧୮୯
କି ଅବା ଅନ୍ୟ ଇଚ୍ଛା ତା'ର ।
ଅଛି ଏ ସଂସାର ଭିତର ।।୧୯୦
ଭୋ ଦେବ ତୋହର ଚରଣେ ।
ଯେ ପ୍ରାଣୀ ପଶନ୍ତି ଶରଣେ ।।୧୯୧
ତୋ'ର କଥାରେ ଯା'ର ରତି ।
ଘୋର ସଂସାରୁ ତରିଯା'ନ୍ତି ।।୧୯୨

Dr. Sudhanshu Sekhar Mishra

ଆମ୍ଭେ ତୋ' ଭକ୍ତେ ଶାପ ଦେଇ ।
ଯେ ପାପ ଅର୍ଜ୍ଜିଲୁ ଗୋସାଇଁ ॥୧୯୩
ସେ ପାପେ ନାନା ଯୋନିଗତେ ।
ଜନମ ଲଭି ଭୂମିଗତେ ॥୧୯୪
ତୋ' ଯଶ ଶୁଣି କର୍ଣ୍ଣମାର୍ଗେ ।
ତୋ' ନାମ ଗୁଣି ଜିହ୍ୱାଅଗ୍ରେ ॥୧୯୫
ତୋ'ର ଚରଣେ ହେଉ ରତି ।
ଆମ୍ଭର ଜଡ଼ବୁଦ୍ଧି ମତି ॥୧୯୬
ବଚନ ତୋ' ଚରଣେ ରହୁ ।
ତୁଳସୀ ପ୍ରାୟ ଶୋଭା ପାଉ ॥୧୯୭

ତୋ' ଗୁଣଗଣେ କର୍ଣ୍ଣପଥ ।
ଶ୍ରବଣେ ପୂରୁ ଜଗନ୍ନାଥ ॥୧୯୮
ତୁ ରୂପ ଦେଖାଇ ପବିତ୍ର ।
କୃତାର୍ଥ କଲୁ ଆମ୍ଭ ନେତ୍ର ॥୧୯୯
ଭୋ ନାଥ କମଳାରମଣ ।
ଅନାଦି ପରମ କାରଣ ॥୨୦୦
ଅଜିତ ଇନ୍ଦ୍ରିୟ ଜନର ।
ତୋ' ରୂପ ଅଟେ ଅଗୋଚର ॥୨୦୧
ଏମନ୍ତେ କହି ମୋର ସୁତେ ।
ନମିଲେ ବିଷ୍ଣୁ ପାଦଗତେ ॥୨୦୨

ସେ ହରି ଚରଣ କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ॥୨୦୩
ତୃତୀୟସ୍କନ୍ଧେ ଭାଗବତ ।
କହିଲା ଦାସ ଜଗନ୍ନାଥ ॥୨୦୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଜୟବିଜୟୟୋଃ
ସନକାଦିଶାପୋ
ନାମ ପଞ୍ଚଦଶୋଽଧ୍ୟାୟଃ ।

## ଷୋଡ଼ଶ ଅଧ୍ୟାୟ

ବ୍ରହ୍ମା ଉବାଚ

ଏମନ୍ତେ ମୁନିଙ୍କ ବଚନ ।
ଶୁଣି ସନ୍ତୋଷ ଭଗବାନ ॥୧
ମୁନିଙ୍କ ମୁଖ ଚାହିଁ ଭଣି ।
ମଞ୍ଜୁ କୋମଳ ଶୁଭବାଣୀ ॥୨

ଭଗବାନ ଉବାଚ

ଜୟ ବିଜୟ ବେନିଭ୍ରାତେ ।
ମୋ ଦ୍ୱାରେ ଥା'ନ୍ତି ଅବିରତେ ॥୩
ମୋ ପାରିଷଦ ବେନିଜନେ ।
ଦ୍ୱାରେ ଖଟନ୍ତି ମୋ ଭୁବନେ ॥୪
କଦର୍ଥ କରି ଯେବେ ମୋତେ ।
କୋପ ବସାଇ ତୁମ୍ଭ ଚିତ୍ତେ ॥୫
ଯେ ବ୍ରହ୍ମଦଣ୍ଡ ଏ ପାଇଲେ ।
ଅନ୍ୟଥା ନୋହେ କାହା ବୋଲେ ॥୬
ଅସାଧୁ କାର୍ଯ୍ୟ ଯେ କରନ୍ତି ।
ସେ ଅପରାଧେ ଦଣ୍ଡ ପା'ନ୍ତି ॥୭
ମୁହିଁ ସମ୍ମତ କଲି ଚିତ୍ତେ ।
ଦେବହେଳନ ଅନୁମତେ ॥୮
ଯେଣୁ ବ୍ରାହ୍ମଣ ଇଷ୍ଟ ମୋର ।
ତେଣୁ ସୁଦୟା ତୁମ୍ଭେ କର ॥୯
ତୁମ୍ଭେ ପ୍ରସନ୍ନ ହୁଅ ଚିତ୍ତେ ।
ଏହାଙ୍କ ଦୋଷ କ୍ଷମ ମୋତେ ॥୧୦

ଅଯଶ ସଂସାରେ ପ୍ରକାଶେ ।
ବ୍ୟାଧି ଯେସନେ ରୂପନାଶେ ॥୧୧
ଯାହାର ଗୁଣ ଯଶ ସାର ।
ଯେହ୍ନେ ନିର୍ମଳ ସୁଧାଧାର ॥୧୨
ଶ୍ରବଣପୁଟେ କରି ପାନ ।
ସଂସାରୁ ତରେ ସର୍ବଜନ ॥୧୩
ସେ ବଇକୁଣ୍ଠନାଥ ମୁହିଁ ।
ତୁମ୍ଭର ଭାବ ହୃଦେ ବହି ॥୧୪
ତୁମ୍ଭର କୋପ ଅତିରେକେ ।
ମିଳିଲି ତୁମ୍ଭର ସମୀପେ ॥୧୫
ତୁମ୍ଭେ ମୋ' ଭାବ ଦୂରକରି ।
ଅତ୍ୟନ୍ତ କୋପ ହୃଦେଧରି ॥୧୬
ବହିଲ ଦ୍ୱାରପାଳେ ଦଣ୍ଡ ।
ବ୍ରାହ୍ମଣ ତେଜ ପରଚଣ୍ଡ ॥୧୭
ଯେଉଁ ବ୍ରାହ୍ମଣ ସେବାକାଳେ ।
ପବିତ୍ର ରେଣୁ ମୋ' ପୟରେ ॥୧୮
ସଦ୍ୟ ପ୍ରସଙ୍ଗେ ମଳହରେ ।
ସକଳ ପ୍ରାଣୀଙ୍କି ନିସ୍ତାରେ ॥୧୯
ସେ ପାଦ କମଳା ନିରତେ ।
ପ୍ରେମେ ନ ଛାଡ଼େ କଦାଚିତେ ॥୨୦
ଯା'ର କଟାକ୍ଷ ଲେଶ ପାଇଁ ।
ବ୍ରହ୍ମାଦି ଦେବ ତପଧ୍ୟାୟି ॥୨୧

ମୋତେ ବ୍ରାହ୍ମଣେ ବେଦମାର୍ଗେ ।
ଯଜ୍ଞେ ପୂଜନ୍ତି ହବିର୍ଭାଗେ ॥୨୨
ଦଧି ଓଦନ ଘୃତପ୍ଳୁତେ ।
ମଧୁ ସଂଯୁକ୍ତ ବେଦମତେ ॥୨୩
ଏଣେ ସନ୍ତୋଷ ମୋ'ର ନାହିଁ ।
ବ୍ରାହ୍ମଣ ଦେହେ ମୁଁ ବସଇ ॥୨୪
ବ୍ରାହ୍ମଣ ମୁଖେ ଯେବେ ଭକ୍ଷେ ।
ମୁହିଁ ଭୁଞ୍ଜଇ ତା' ପ୍ରତ୍ୟକ୍ଷେ ॥୨୫
ବ୍ରାହ୍ମଣ ପାଦରଜ ବଳେ ।
ମୁଁ ଏ ସଂସାର ଜନ ମେଳେ ॥୨୬
ମାୟା ବିଭୂତି ଅଇଶ୍ୱର୍ଯ୍ୟେ ।
ଭୁଞ୍ଜଇ ସର୍ବଦେହ ମାଝେ ॥୨୭
ମୋ' ପାଦଜଳ ଅଘ ଦହେ ।
ଚନ୍ଦ୍ରଶେଖର ଶିରେ ବହେ ॥୨୮
ପବିତ୍ର ହୋନ୍ତି ତିନିଲୋକେ ।
ଏମନ୍ତ ହେଲେହେଁ ମସ୍ତକେ ॥୨୯
କିରୀଟେ ଯା'ର ରେଣୁ ବହେ ।
ବ୍ରାହ୍ମଣ ଦୋଷ କେ ନ ସହେ ॥୩୦
ବିପ୍ର-ଶରୀର ମୋର ତନୁ ।
ଏଣୁ ଦୁଃସହ ବିପ୍ର-ମନ୍ୟୁ ॥୩୧
ଯେ ଭେଦବୁଦ୍ଧିଟି ବିଚାରି ।
ମୋତେ ଚିନ୍ତନ୍ତି ଭିନ୍ନକରି ॥୩୨

Dr. Sudhanshu Sekhar Mishra

ସେ ମୋରେ ଅପରାଧ କରେ ।
କେବେହେଁ ସଂସାରୁ ନ ତରେ ।।୩୩
ଯମର ଗୃଧ୍ରରୂପୀ ଦୂତ ।
ଚଞ୍ଚୁରେ ନାଶେ ଦୃଷ୍ଟିପଥ ।।୩୪
ବ୍ରାହ୍ମଣ ଦେହେ ଦ୍ରୋହ ଚିନ୍ତି ।
ଏ ଭବସିନ୍ଧୁ ନ ତରନ୍ତି ।।୩୫
ବିପ୍ର ଭକତି ତେଜି ନିତ୍ୟେ ।
ଭ୍ରମନ୍ତି ଘୋର ମାୟା ପଥେ ।।୩୬
ସ୍ୱଭାବ କର୍ମ ଦୂର କରି ।
ବିକର୍ମ ମତ ଅନୁସରି ।।୩୭
ପାଷଣ୍ଡବାଦ ଅନୁକ୍ଷଣେ ।
କରନ୍ତି ବିଦ୍ୟାଗର୍ବ ପଣେ ।।୩୮
ନୁହଁନ୍ତି ମୋହରେ ବିଶ୍ୱାସ ।
ଏଣୁ ସଂସାରେ ହୋନ୍ତି ନାଶ ।।୩୯
ବ୍ରାହ୍ମଣ କ୍ରୋଧ କଲେ ଚିତ୍ତେ ।
ଯେ ଶାନ୍ତ କରେ ଯଥୋଚିତେ ।।୪୦
କଟୁ ଭାଷଣ ବ୍ରାହ୍ମଣର ।
ଶୁଣି ସନ୍ତୋଷ ଯେଉଁ ନର ।।୪୧
ପୁତ୍ରର ପ୍ରାୟେ କରେ ସ୍ନେହ ।
ତା' ବଶୀଭୂତ ମୋର ଦେହ ।।୪୨
ବିପ୍ର ଭକ୍ତିରେ ମୋ' ସନ୍ତୋଷ ।
ମୁହିଁ ନିଶ୍ଚୟ ତା'ର ବଶ ।।୪୩
ସେ ବେଗେ ଭବନଦୀ ତରେ ।
ଏ ଭାବେ ମୋତେ ବଶ କରେ ।।୪୪
ତୁମ୍ଭର ଭାବେ ଯେହୁ ଭାବି ।
ଶେଷେ ତରନ୍ତି ଭବନଦୀ ।।୪୫
ତୁମ୍ଭର ମତ ଯେ ଆଚରି ।
ମାୟାସମୂହ ପରିହରି ।।୪୬
ବ୍ରହ୍ମନିର୍ବାଣେ ପଶେ ଯାଇ ।
ଉଦୟ ଅସ୍ତ ତା'ର ନାହିଁ ।।୪୭
ଏମନ୍ତ କହି ଭଗବାନ ।
ମୋହିଲେ ସନକାଦି ମନ ।।୪୮
ତୁମ୍ଭର ବ୍ରହ୍ମଶାପ ଫଳେ ।
ତୃତୀୟ ଜନ୍ମ ରବିତଳେ ।।୪୯
ଦୁଷ୍ଟଆଚାର କର୍ମ କରି ।
ଧର୍ମ ଅଧର୍ମ ନ ବିଚାରି ।।୫୦
ଏବେ ଏ ତୁମ୍ଭର ସନ୍ତୋଷେ ।
ପୁଣି ମିଳିବେ ମୋର ପାଶେ ।।୫୧
ମୁଁ ପୁଣି ତା'ଙ୍କ ଉପକାରେ ।
ଶରୀର ବହିବି ସଂସାରେ ।।୫୨
କରିବି ତାହାଙ୍କୁ ନିସ୍ତାର ।
କହିଲେ ପ୍ରଭୁ ଚକ୍ରଧର ।।୫୩
ଏମନ୍ତ କୃଷ୍ଣ ମଞ୍ଜୁବାଣୀ ।
ସନ୍ତୋଷ ବିପ୍ରବରେ ଶୁଣି ।।୫୪
ବିଷ୍ଣୁର ଭକ୍ତି ହୃଦେ ବହି ।
ବୋଲନ୍ତି ଶିରେ କର ଦେଇ ।।୫୫

ଋଷିଗଣ ଉବାଚ

ଭୋ ଦେବଦେବ ଲକ୍ଷ୍ମୀପତି ।
ଆମ୍ଭେ ନ ଜାଣୁ ତୋର ଗତି ।।୫୬
ଆମ୍ଭଙ୍କୁ ଅନୁଗ୍ରହ କରି ।
ଯାହା ବୋଇଲୁ ନରହରି ।।୫୭
ବ୍ରହ୍ମଣ୍ୟଦେବ ତୋ' ମହିମା ।
ତୋ' ଗତି ନ ଜାଣନ୍ତି ବ୍ରହ୍ମା ।।୫୮
ତୁ ପୁଣି ଦେବ ବିପ୍ରଙ୍କର ।
ଆତ୍ମା ସୁହୃଦ ଶକ୍ତିଧର ।।୫୯
ଧର୍ମ ତୋ' ଶରୀରୁ ପ୍ରକାଶେ ।
ଯେ ଧର୍ମ ସୃଷ୍ଟି ପାପ ନାଶେ ।।୬୦
ତୁ ନାଥ ନିର୍ବିକାର ଧର୍ମ ।
ତା'ର ରକ୍ଷଣ ତୋ'ର କର୍ମ ।।୬୧
ଯାହାର ଅନୁଗ୍ରହେ ଜନ ।
ଧର୍ମ ସଞ୍ଚୟେ ଦ୍ୟନ୍ତି ମନ ।।୬୨
ତୋ' ପାଦପଦ୍ମ ସେବାଫଳେ ।
ମୃତ୍ୟୁ ଜିଣନ୍ତି ଅବହେଳେ ।।୬୩
ତୁ ଅଟୁ ଏମନ୍ତ ପୁରୁଷ ।
ଆମ୍ଭର ଅନୁଗ୍ରହେ ଆଶ ।।୬୪
ଏ ତୋ'ର ଗତି ବିପରୀତ ।
କେ ଅବା ଜାଣିବ କିଞ୍ଚିତ ।।୬୫
ଏମନ୍ତ ମୁନିଙ୍କ ବଚନ ।
ଶୁଣି ସନ୍ତୋଷ ଭଗବାନ ।।୬୬
ବ୍ରାହ୍ମଣ ଭାବ ଚିତ୍ତେ ବହି ।
କହନ୍ତି ବିପ୍ରଙ୍କୁ ଅନାଇ ।।୬୭

ଭଗବାନ ଉବାଚ

ଜୟ ବିଜୟ ବେନିଭାଇ ।
ତୁମ୍ଭର ଚିତ୍ତେ କ୍ରୋଧ ଦେଇ ।।୬୮
ଅସୁରଯୋନି ଏ ପାଇବେ ।
ଦୁଷ୍କୃତ କର୍ମ ଆଚରିବେ ।।୬୯
ପୁଣି ଆସିବେ ମୋର ପୁରେ ।
ସୁବର୍ଣ୍ଣ ବେତ୍ର ଧରି କରେ ।।୭୦
ଏ ବଇକୁଣ୍ଠ ପୁରେ ବାସ ।
ଯେବେ ତୁମ୍ଭର ମନ ତୋଷ ।।୭୧

ବ୍ରହ୍ମା ଉବାଚ

ଏ ଚାରି ମୋହର ନନ୍ଦନେ ।
ତକ୍ଷଣେ ଆନନ୍ଦ ଲୋଚନେ ।।୭୨
ବିଷ୍ଣୁର ମୁଖ ଦେଖି ତୋଷେ ।
ବେଗେ ମିଳିଲେ କୃଷ୍ଣପାଶେ ।।୭୩
ସ୍ୱଭାବେ ବିଷ୍ଣୁର ଭୁବନ ।
ଯହିଁ ନ ଥାନ୍ତି ଦୁଷ୍ଟଜନ ।।୭୪
ବିଷ୍ଣୁଙ୍କୁ କରି ପ୍ରଦକ୍ଷିଣ ।
ଆଜ୍ଞା ମାଗିଣ ମୁନିଗଣ ।।୭୫
ବିଷ୍ଣୁର ପାଦେ ସେ ନମିଲେ ।
ଆନନ୍ଦେ ନିଜସ୍ଥାନେ ଗଲେ ।।୭୬
ଦ୍ୱାରପାଳଙ୍କ ମୁଖ ଚାହିଁ ।
କହନ୍ତି ପ୍ରଭୁ ଭାବଗ୍ରାହୀ ।।୭୭
ତୁମ୍ଭେ ଯେ ଧରଣୀମଣ୍ଡଳେ ।
ଜନ୍ମିବ ଅସୁରଙ୍କ କୁଳେ ।।୭୮
ତୁମ୍ଭ କୁଶଳ ମୁଁ କରିବି ।
ତୃତୀୟ ଜନ୍ମ ଉଦ୍ଧରିବି ।।୭୯
ବ୍ରାହ୍ମଣ ଶାପ ନାଶ ପାଇଁ ।
ମୁଁ ଅବା ସମର୍ଥ ଅଟଇ ।।୮୦
ହେଲେହେଁ ସମ୍ମତ ମୋହର ।
ଭୟ ନ କର ବେନିବୀର ।।୮୧
ଏ କଥା କମଳା ସମୀପେ ।
କହିଁ ମୁଁ ଅଛି ପୂର୍ବକଳ୍ପେ ।।୮୨
ମୋର ଏକାନ୍ତେ ଲକ୍ଷ୍ମୀ ଯା'ନ୍ତେ ।
ଯେବେ ନିରୋଧ କଲ ପଥେ ।।୮୩
ବ୍ରହ୍ମହେଳନ ଯେ କରନ୍ତି ।
ମୋ' ହୃଦେ ଶଲ୍ୟ ସମର୍ପନ୍ତି ।।୮୪

Dr. Sudhanshu Sekhar Mishra

ତୁମ୍ଭର ତାରଣ ନିମନ୍ତେ ।
ମୁଁ ଦେହ ବହିବି ଜଗତେ ।।୮୫
ଭୁବନେ ରହିବ ମୋ' ଯଶ ।
ଶୁଣନ୍ତେ ପାପ ଯିବ ନାଶ ।।୮୬
ମୋ' କଥା ଭୁବନ-ପାବନୀ ।
ଏ ଭୂମିମଧ୍ୟେ ଦେହ ଘେନି ।।୮୭
କରିବେ ଶ୍ରବଣ କୀର୍ତ୍ତନ ।
ଶୁଣି ତରିବେ ସର୍ବଜନ ।।୮୮

ବ୍ରହ୍ମା ଉବାଚ

ଏମନ୍ତେ ଦ୍ୱାରପାଳେ କହି ।
ନିଜ ଭୁବନେ ଭାବଗ୍ରାହୀ ।।୮୯
ବସିଲେ କମଳାର ମେଳେ ।
ଆବୃତ ବିମାନ ସଙ୍କୁଳେ ।।୯୦
ସେ ଦ୍ୱାରପାଳ ବେନିଭାଇ ।
ଭାଳନ୍ତି ଦଶଦିଗ ଚାହିଁ ।।୯୧
ତକ୍ଷଣେ ଅଧର ଶୃଙ୍ଖଳା ।
ଆତ୍ମାରୁ ବିଷ୍ଣୁତେଜ ଗଲା ।।୯୨
ଦୁସ୍ତର ବ୍ରହ୍ମଶାପୁ କରି ।
ବେଗେ ହୋଇଲେ ହତଶିରୀ ।।୯୩
ତକ୍ଷଣେ ହତଗର୍ବ ହୋଇ ।
ଅଧୋବଦନେ ବେନିଭାଇ ।।୯୪
ବିଷ୍ଣୁର ଭୁବନୁ ପଡ଼ନ୍ତେ ।
ହାହା ଶବଦ ଶୂନ୍ୟ ପଥେ ।।୯୫
ସେ ବେନିବୀର ଏକଭାବେ ।
ତକ୍ଷଣେ ପଶି ଦିତିଗର୍ଭେ ।।୯୬
କଶ୍ୟପବୀର୍ଯ୍ୟ ଆଶ୍ରେ କରି ।
ଏଣୁ ଭୁବନଲୋକେ ଡରି ।।୯୭
ସେ ବେନି ଅସୁରଙ୍କ ତେଜ ।
ତୁମ୍ଭଙ୍କୁ କରିଛି ନିସ୍ତେଜ ।।୯୮
ସେ ବେନିଭାଇଙ୍କର ଦର୍ପେ ।
ତିନିଭୁବନ ଦିଶ କମ୍ପେ ।।୯୯
ଏଥକୁ ନାହିଁ ପ୍ରତିକାର ।
ତ୍ରାହି କରିବେ ଚକ୍ରଧର ।।୧୦୦
ଯେ ବିଶ୍ୱସୃଷ୍ଟିର କାରଣ ।
ଅନାଦି ପ୍ରଭୁ ନାରାୟଣ ।।୧୦୧
ତା' ମାୟା ନ ଜାଣନ୍ତି କେହି ।
ସଂସାରମଧ୍ୟେ ଦେହ ବହି ।।୧୦୨
ଆମ୍ଭେ ସକଳେ ତା' ଚରଣେ ।
ଆଶ୍ରୟ କରୁଁ ଭୃତ୍ୟପଣେ ।।୧୦୩
ଏ ଘୋରଭୟ ହିଁ ଆମ୍ଭର ।
ଖଣ୍ଡିବେ ପ୍ରଭୁ ଚକ୍ରଧର ।।୧୦୪
ଏମନ୍ତେ ଦେବଗଣ ମଧ୍ୟେ ।
ବିଧାତା କହିଲେ ଆନନ୍ଦେ ।।୧୦୫
ସେ ହରି ଚରଣ କମଳେ ।
ସୁଜନେ ଚିନ୍ତ ହେ ନିଶ୍ଚଳେ ।।୧୦୬
ସେ ହରି ବ୍ରାହ୍ମଣ-ବତ୍ସଳ ।
କରୁଣାସିନ୍ଧୁ ଆଦିମୂଳ ।।୧୦୭
ତାହାଙ୍କ ଚରଣ-ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ।।୧୦୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଷୋଡ଼ଶୋଽଧ୍ୟାୟଃ ।

## ସପ୍ତଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ବ୍ରହ୍ମା ବଚନେ ଦେବଗଣ ।
ଶୁଣିଲେ ଅଦ୍ଭୁତ କାରଣ ।।୧
ବିଧାତା ପାଦେ ପ୍ରଣମିଲେ ।
ଆନନ୍ଦେ ନିଜପୁରେ ଗଲେ ।।୨
ଦିତି କଶ୍ୟପ ଆଜ୍ଞା ପାଇ ।
ପୁତ୍ରଙ୍କ ଜନ୍ମେ ଶଙ୍କା ବହି ।।୩
ଶତେବରଷ ପୂର୍ଣ୍ଣ ହେଲା ।
ବେନିବାଳକ ପ୍ରସବିଲା ।।୪
ସେ ବେନିପୁତ୍ର ଜନ୍ମକାଳେ ।
ଦିବି ମେଦିନୀ ଅନ୍ତରାଳେ ।।୫
ଘୋର ଉତ୍ପାତ ଭୟଙ୍କର ।
ଦେଖି କମ୍ପିଲେ ସୁରନର ।।୬
ଚଳ ଅଚଳ ସଙ୍ଗେ ମହୀ ।
କମ୍ପିଲେ ମହାଭୟ ପାଇ ।।୭
ଦହିଲା ପ୍ରାୟ ଅଷ୍ଟଦିଗେ ।
ଦିଶନ୍ତି ଅନଳ ସଂଯୋଗେ ।।୮
ଉଲ୍‌କା ସଙ୍କୁଳ ବଜ୍ର ଯୋଗେ ।
ସମୁଦ୍ର କମ୍ପିଲା ତରଙ୍ଗେ ।।୯
କର୍କଶେ ବହଇ ପବନ ।
ଉଚ୍ଚେ ଶୁଭଇ ଘୋରସ୍ୱନ ।।୧୦
ଘୋର ପ୍ରଚଣ୍ଡ ବାତ ବଳେ ।
ବୃକ୍ଷେ ଉଡ଼ିଲେ ଅନ୍ତରାଳେ ।।୧୧
ଧୂଳି ପୂରିଲା ଦଶଦିଶେ ।
ନିବିଡ଼ ଅନ୍ଧାର ପ୍ରକାଶେ ।।୧୨
ଉଚ୍ଚେ ହସିଲାପ୍ରାୟ ହୋଇ ।
ତଡ଼ିତ ମେଘେ ଆଚ୍ଛାଦଇ ।।୧୩
ଗଗନେ ଯେତେ ଜ୍ୟୋତି ଥିଲେ ।
ଘୋର ତିମିରେ ନ ଦିଶିଲେ ।।୧୪
ଗଗନେ ନ ଦିଶଇ ପଥ ।
ତମ ଆକାଶ କଲା ଗ୍ରସ୍ତ ।।୧୫
ସମୁଦ୍ର ଗର୍ଜିଲା ତରଙ୍ଗେ ।
କ୍ଷୁଭିତ ମକରାଦି ସଙ୍ଗେ ।।୧୬
ନଦୀରୁ ଜଳ ଶୁଖିଗଲା ।
ନିବିଡ଼ ପଙ୍କ ପ୍ରକାଶିଲା ।।୧୭
ଆକାଶେ ଚନ୍ଦ୍ର ଦିବାକର ।
ମଣ୍ଡଳେ ଦିଶନ୍ତି ଧୂସର ।।୧୮
ବିନା ମେଘରେ ଯେ ନିର୍ଘାତ ।
ହୋଇଲା ଘୋର ବଜ୍ରପାତ ।।୧୯
ଫେରବଗଣ ପୂର୍ବମୁଖେ ।
ନାଦ କରନ୍ତି ଅତିଦୁଃଖେ ।।୨୦
କରନ୍ତି ଅତିଘୋର ସ୍ୱନ ।
ତୁଣ୍ଡେ କି ଜଳେ ହୁତାଶନ ।।୨୧

Dr. Sudhanshu Sekhar Mishra

ଶୃଗାଳୀ ଉଲ୍ଲୁକ ହୁଙ୍କାରେ ।
ନାଦ କରନ୍ତି ଅତିଖରେ ।।୨୨
ଗର୍ଦ୍ଦଭ ସଙ୍ଗେ ଶ୍ୱାନେ ମିଳି ।
କାନ୍ଦନ୍ତି ଉର୍ଦ୍ଧ୍ୱେ ମୁଖ ଟେକି ।।୨୩
ବୃକ୍ଷୁ ପଡ଼ନ୍ତି ପକ୍ଷୀଗଣେ ।
ଅରଣ୍ୟ ପଶୁ ଘୋରବନେ ।।୨୪
ମୂତ୍ର ପରୀଷ ଉତ୍ସର୍ଗନ୍ତି ।
ରାସଭସ୍ୱନେ ମହାଭୀତି ।।୨୫
ଗାଵ ଦୋହନେ ରକ୍ତ ସ୍ରବେ ।
ଗଗନେ ଘୋରନାଦ ଶୁଭେ ।।୨୬
ଆକାଶେ ପୂରି ମେଘମାଳେ ।
ପୂଜ ବରଷନ୍ତି ଗହଳେ ।।୨୭
ଲିଙ୍ଗେ କାନ୍ଦନ୍ତି ଶକ୍ତି ଯୁକ୍ତେ ।
ବୃକ୍ଷେ ପଡ଼ନ୍ତି ବିନା ବାତେ ।।୨୮
ଆକାଶେ ଗ୍ରହଗଣ ମିଳି ।
ଶୂନ୍ୟେ ନାଚନ୍ତି ତାରାବଳି ।।୨୯
ଗ୍ରହେ କରନ୍ତି ଘୋରରଣ ।
ପ୍ରହାରେ ଦିଶେ ଅଗ୍ନିକଣ ।।୩୦
ଉତ୍ପାତ ଦେଖି ଗୁରୁତରେ ।
ପ୍ରଜାଏ କମ୍ପିଲେ ନିର୍ଭରେ ।।୩୧
ସନକ ଆଦି ଚାରିଭାଇ ।
ଦେଖନ୍ତି ଶୂନ୍ୟମାର୍ଗେ ରହି ।।୩୨
ବିଶ୍ୱ-ସଂସାରେ ମହାତ୍ରାସେ ।
ସୃଷ୍ଟି ପ୍ରଳୟପ୍ରାୟ ଦିଶେ ।।୩୩
ଏମନ୍ତେ କଶ୍ୟପ ଭୁବନେ ।
ପୁତ୍ରେ ବଢ଼ନ୍ତି ଦିନେ ଦିନେ ।।୩୪
ସ୍ୱଭାବେ କର୍କଶ ଶରୀର ।
ଦିଶନ୍ତି ମହାଭୟଙ୍କର ।।୩୫
ପର୍ବତପ୍ରାୟ ଦିନେ ଦିନେ ।
ବଢ଼ିଲେ କଶ୍ୟପ ଭୁବନେ ।।୩୬
ଶିରେ କିରୀଟ ହେମମୟେ ।
ଉଚ୍ଚେ ଗଗନ କିବା ଛୁଏଁ ।।୩୭
ରବି କି ଜିଣି କଟୀ ମାଝେ ।
ସୁବର୍ଣ୍ଣ-ମେଖଳା ବିରାଜେ ।।୩୮
ବଜ୍ର ସମାନ ଗଦା ହସ୍ତେ ।
ନିତ୍ୟେ ଧାବନ୍ତି ନାନାପଥେ ।।୩୯

ଗୃହେ ମିଳନ୍ତି ଘୋରନାଦେ ।
ଭୂମି କମ୍ପଇ ବାଜି ପାଦେ ।।୪୦
ଏମନ୍ତେ ପୁତ୍ରଙ୍କର ଗତି ।
ଦେଖି କଶ୍ୟପ ପ୍ରଜାପତି ।।୪୧
ନାମକରଣ ହୋମ କଲା ।
ବେନିପୁତ୍ରଙ୍କ ନାମ ଦେଲା ।।୪୨
ବଜ୍ର-କଠିନ ଦେଖି ବପୁ ।
ବଡ଼ ଯେ ହିରଣ୍ୟକଶିପୁ ।।୪୩
ଅନୁଜ ତାହା ତହୁଁ ଦକ୍ଷ ।
କହିଲା ନାମ ହିରଣ୍ୟାକ୍ଷ ।।୪୪
ଦିନକୁ ଦିନ ମହାବପୁ ।
ବଢ଼ିଲା ହିରଣ୍ୟକଶିପୁ ।।୪୫
ତପେ ବ୍ରହ୍ମାଙ୍କୁ ତୋଷ କଲା ।
ସ୍ୱଭାବେ ତେଜ ଅନର୍ଗଳା ।।୪୬
ଗଦା ବୁଲାଇ ମହାରୋଷେ ।
ବେଗେ ଧାଇଁଲା ଦଶଦିଶେ ।।୪୭
ଦେଖି ତାହାର ଦୁଷ୍ଟପଣ ।
ଭୟେ କମ୍ପିଲେ ଦେବଗଣ ।।୪୮
ବେଗେ ମିଳିଲେ ତା'ର ପାଶେ ।
ଖଟିଲେ ଜୀବନର ଆଶେ ।।୪୯
ତା'ର ଅନୁଜ ହିରଣ୍ୟାକ୍ଷ ।
ଗଦା-ସମରେ ମହାଦକ୍ଷ ।।୫୦
ଜ୍ୟେଷ୍ଠ-ଭ୍ରାତାର ପ୍ରିୟକାରୀ ।
ଯୁଦ୍ଧେ ବୁଲଇ ଗଦା ଧରି ।।୫୧
ବଳେ ପଶିଲା ସ୍ୱର୍ଗପୁରେ ।
ସୁବର୍ଣ୍ଣ ନୂପୁର ପୟରେ ।।୫୨
ଚାଲନ୍ତେ ରୁଣୁଝୁଣୁ ବାଜେ ।
କୁସୁମମାଳା ଗଳେ ସାଜେ ।।୫୩
କନ୍ଧେ ପକାଇ ଗଦାବର ।
କି ଅବା ଦେବା ପଟାନ୍ତର ।।୫୪
ତା'ର ଗମନ ଅତିବେଗେ ।
ଅତି ଉତ୍କଟ ମତ୍ତଗର୍ବେ ।।୫୫
ଦେଖି ପଳାନ୍ତି ରିପୁଯୂଥେ ।
ନିର୍ଭୟେ ଭ୍ରମଇ ଜଗତେ ।।୫୬
ଦେବେ ତାହାର ରୂପ ଦେଖି ।
ଭାଜିଲେ ତ୍ରିଦିବ ଉପେକ୍ଷି ।।୫୭

ଆକାଶ ତେଜି ଦେବଗଣେ ।
ଭୟେ ଲୁଚିଲେ ଘୋରବଣେ ।।୫୮
ବନେ ବୁଲିଲେ ତା'ର ଦର୍ପେ ।
ଗରୁଡ଼ ଭୟେ ଯେହ୍ନେ ସର୍ପେ ।।୫୯
ସ୍ୱର୍ଗେ ପଶିଲା ବେଗେ ଯାଇ ।
ଦେଖିଲା ସ୍ୱର୍ଗେ ଲୋକ ନାହିଁ ।।୬୦
ଦେବତା ଇନ୍ଦ୍ରରାଜ ମେଳେ ।
ସ୍ୱର୍ଗ ସମ୍ପଦ ଛାଡ଼ି ଗଲେ ।।୬୧
ଦେଖିଲା ସ୍ୱର୍ଗେ କେହି ନାହିଁ ।
ଗର୍ଜ୍ଜନ କଲା ମତ୍ତ ହୋଇ ।।୬୨
ଦେଖିଣ ଇନ୍ଦ୍ରର ସମ୍ପଦ ।
ଅନେକ କଲା ଘୋରନାଦ ।।୬୩
ମୁହୂର୍ତ୍ତେ ସ୍ୱର୍ଗପୁରେ ବସି ।
ପୁଣି ମିଳିଲା ମର୍ତ୍ତ୍ୟେ ଆସି ।।୬୪
ଅସୁର ବିଚାରଇ ମନେ ।
ପଶିବି ବରୁଣ ଭୁବନେ ।।୬୫
ମୋହର ପ୍ରାୟ ଗଦା ବଳେ ।
କେ ଅବା ଅଛଇ ପାତାଳେ ।।୬୬
ଏମନ୍ତ ମନେ ବିଚାରିଲା ।
ଜଳଧି ମଧ୍ୟେ ସେ ପଶିଲା ।।୬୭
ସେ ମଦମତ୍ତ-ହସ୍ତୀ ପ୍ରାୟେ ।
ଜଳଧି ମଧ୍ୟେ ଅବଗାହେ ।।୬୮
ଏମନ୍ତେ ହିରଣ୍ୟାକ୍ଷ ବୀର ।
ଜଳେ ପଶିଲା କ୍ରୋଧଭର ।।୬୯
ଜଳେ ପଶନ୍ତେ ମହାସୁର ।
କମ୍ପିଲା ବରୁଣର ପୁର ।।୭୦
ଭାଜିଲେ ଜଳଜନ୍ତୁ ଗଣେ ।
କେବା ବଳିବ ତା'କୁ ରଣେ ।।୭୧
ସଭୟେ ସର୍ବେ ପଳାଇଲେ ।
ଗଭୀର-ଜଳେ ସେ ପଶିଲେ ।।୭୨
ଏମନ୍ତ ବରୁଣ-ଭୁବନେ ।
ବହୁ ବରଷ କୋପମନେ ।।୭୩
ସେ ବିଭାବରୀ ନାମ ପୁରୀ ।
ତା' ମଧ୍ୟେ ବିଚରଣ କରି ।।୭୪
ଭ୍ରମଇ କରେ ଗଦା ଧରି ।
କେ ତା'କୁ ସମରେ ଉଭାରି ।।୭୫

Dr. Sudhanshu Sekhar Mishra

ତା'ର ନିଃଶ୍ୱାସ-ବାୟୁ ବେଗେ ।
ବହୁ ତରଙ୍ଗ ଜଳଭାଗେ ।।୭୬
ସେ ଲୌହମୟ ଗଦା ନେଇ ।
ତାହା ଉପରେ ପ୍ରହାରଇ ।।୭୭
ରାତ୍ରି ଆଗମେ ଏକଦିନେ ।
ମିଳି ବରୁଣ ସନ୍ନିଧାନେ ।।୭୮
ଅଳପ ହସି ଉପହାସେ ।
ପ୍ରଣାମ କରି ତା'ର ପାଶେ ।।୭୯
ନୀଚଜନଙ୍କ ପ୍ରାୟେ ହୋଇ ।
ବୋଲଇ ଶିରେ କର ଦେଇ ।।୮୦
ହେ ରାଜା ଶୁଣ ମୋର ବୋଲ ।
ତୁ ଯୁଦ୍ଧ କର ମୋର ତୁଲ ।।୮୧
ବୋଲଇ କରେ ଗଦା ତୋଳି ।
ଘୋରଶବଦେ ମହାବଳୀ ।।୮୨
ମୁଁ ଏବେ ଭୁବନେ ତୋହର ।
ରହିଲି ବହୁ ସମ୍ବତ୍ସର ।।୮୩
ତୁ ମୋତେ ଗଦାଯୁଦ୍ଧ ଦେବୁ ।
ନ ଦେଲେ ଭୁବନେ ନ ଥିବୁ ।।୮୪
ତୁ ଲୋକପାଳ ଅଧିପତି ।
ଦୁଷ୍ଟ ନାଶନେ ତୋ'ର ଖ୍ୟାତି ।।୮୫
ଦୈତ୍ୟ-ଦାନବ ନାଶ କରି ।
ରାଜସୂୟରେ ଅଧିକାରୀ ।।୮୬
ମୋ' ସଙ୍ଗେ ଯୁଦ୍ଧ କର ତୁହି ।
ନ ହେଲେ ସୁଖ ତୋ'ର ନାହିଁ ।।୮୭

ତୁ ଲୋକପାଳ ଶିରୋମଣି ।
ତୋ'ର ମହିମା ମୁହିଁ ଜାଣି ।।୮୮
ମିଳିଲି ତୋହର ସମ୍ମୁଖେ ।
ସମର କର ଆତ୍ମସୁଖେ ।।୮୯
ତୁ ଧର୍ମଦାତା ମଧ୍ୟେ ମେରୁ ।
ବୀରମାନଙ୍କ ଦର୍ପ ହରୁ ।।୯୦
ମୋହର ଦର୍ପ ଏବେ ହର ।
ସୁଖେ ରାଜସୂ ଯାଗ କର ।।୯୧
ଏମନ୍ତ ଶୁଣି ତା' ବଚନ ।
ଜଳାଧିପତି କୋପେ ଛନ୍ନ ।।୯୨
ପୁଣି ସେ କୋପ କରି ସ୍ଥିର ।
କହଇ ବଚନ ମଧୁର ।।୯୩
ବୋଲେ ଶୁଣ ଭୋ ବୀରମଣି ।
ମୁଁ ତୋ'ର ରିପୁ ନୋହେ ପୁଣି ।।୯୪
ତୁ ବୀର କହୁ ମୋ'ର ହିତେ ।
ମୁଁ ତୋତେ ଯୁଝିବି କେମନ୍ତେ ।।୯୫
ତୁ ମହାବୀରଙ୍କର ବୀର ।
ମୋ ବୋଲେ କୋପ ତୁ ସଂହର ।।୯୬
ଭୋ ବୀର ରହ ଦିନାକେତେ ।
ଇଚ୍ଛା ତୋ ଯେବେ ଯୁଦ୍ଧ ଅର୍ଥେ ।।୯୭
ଯେ ତୋ'ର ତୁଲେ ଯୁଦ୍ଧକାରୀ ।
ମିଳିବେ ମୋତେ ଦୟାକରି ।।୯୮
ତୁ ଯୁଦ୍ଧମାର୍ଗରେ ନିପୁଣ ।
ତୋ ତୁଲେ ସମ ନାରାୟଣ ।।୯୯

ତୁ ବୀର ରଣେ ସୁପଣ୍ଡିତ ।
କେ ରଣେ ତୋଷିବ ତୋ ଚିତ୍ତ ।।୧୦୦
କେବଳ ପୁରାଣପୁରୁଷ ।
ସେ ବିଷ୍ଣୁ କରିପାରେ ତୋଷ ।।୧୦୧
ତୋତେ ମାରିବେ ସେ ସମରେ ।
ତୁ ପୁଣି ସଂଗ୍ରାମ ଭୂମିରେ ।।୧୦୨
ବୀର ଶୟନେ ତୁ ଆନନ୍ଦେ ।
ଶୋଇବୁ କୁକୁରଙ୍କ ମଧ୍ୟେ ।।୧୦୩
ସେ ରୂପ ବହେ ଏ ଜଗତେ ।
ତୋହର ପ୍ରାୟ ଦୁଷ୍ଟ ଯେତେ ।।୧୦୪
ତାହାଙ୍କ ଗର୍ବ ଚୂର କରେ ।
ସଂସାର ହିତେ ସେ ବିହରେ ।।୧୦୫
ସାଧୁଙ୍କ ଅନୁଗ୍ରହ ଅର୍ଥେ ।
ତା' ଅବତାର ଏ ଜଗତେ ।।୧୦୬
ତୋ'ପରି ଅସାଧୁ ବିନାଶେ ।
ଜଗତେ ସେ ରୂପ ପ୍ରକାଶେ ।।୧୦୭
ଏମନ୍ତ ଅସୁରକୁ କହି ।
ମନେ ଚିନ୍ତଇ ଭାବଗ୍ରାହୀ ।।୧୦୮
ସେ ହରି ଚରଣାରବିନ୍ଦେ ।
ସୁଜନେ ପ୍ରଣମ ଆନନ୍ଦେ ।।୧୦୯
ତୃତୀୟସ୍କନ୍ଧେ ଭାଗବତ ।
କହଇ ଦାସ ଜଗନ୍ନାଥ ।।୧୧୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ହିରଣ୍ୟାକ୍ଷ-ଦିଗ୍‌ବିଜୟେ
ସପ୍ତଦଶୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ଅଷ୍ଟାଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ବରୁଣ ବାକ୍ୟ ଶୁଣି କର୍ଣ୍ଣେ ।
ଅସୁର ବିଚାରଇ ମନେ ।।୧
ବରୁଣ ତୁଲେ ଯୁଦ୍ଧ ମୋର ।
ଏ ତ ନୁହଇ ଯଶସ୍କର ।।୨
ନାରଦ କହିଛନ୍ତି ମୋତେ ।
ବିଷ୍ଣୁର ଗତି ଏ ଜଗତେ ।।୩
ଶୂକର ରୂପେ ସେ ଧରଣୀ ।
ସ୍ଥାପିବ ଦନ୍ତଅଗ୍ରେ ଆଣି ।।୪
ତାହାର ତୁଲେ ମୋ' ସମର ।
ନାମ ଯାହାର ଗଦାଧର ।।୫
ମୋ' ଭୁଜକଣ୍ଡୁ ସେ ହରିବ ।
ଦେବଙ୍କୁ ସଙ୍କଟୁ ତାରିବ ।।୬
ଏମନ୍ତ ମନେ ବିଚାରିଲା ।
ତକ୍ଷଣେ ପାତାଳେ ପଶିଲା ।।୭
ଦେଖଇ ଗୋବିନ୍ଦର ଗତି ।
ଦଶନ ଅଗ୍ରେ ବସୁମତୀ ।।୮
କୋଟି ଆଦିତ୍ୟ ତେଜ ଦେଖି ।
ଭୟେ ବୁଜିଲା ବେନିଆଖି ।।୯
ପୁଣି କ୍ଷଣକେ ଚକ୍ଷୁଫେଇ ।
ବିଷ୍ଣୁଙ୍କୁ ଦେଖି ବିଚାରଇ ।।୧୦
ନାରଦ ବାକ୍ୟ ଯେବେ ସତ୍ୟ ।
ମୁହିଁ ଦେଖଇ ବିପରୀତ ।।୧୧
ଶୂକର କାନନେ ଗୋଚର ।
ପଙ୍କେ ଦୂଷିତ କଳେବର ।।୧୨
ଏମନ୍ତ ବୋଲିଣ ହସିଲା ।
ବରାହ ନିକଟକୁ ଗଲା ।।୧୩
ବୋଲେ ଶୂକର ମୁଖ ଚାହିଁ ।
ଦଶନୁ ବେଗେ ଥୁଅ ମହୀ ।।୧୪
ପାତାଳ ଲୋକଙ୍କୁ ମେଦିନୀ ।
ପୂର୍ବେ ଦେଇଛି ପଦ୍ମଯୋନି ।।୧୫
ଯେବେ ମେଦିନୀ ନ ଛାଡ଼ିବୁ ।
ମୋ' ମୁଖୁ ଭଲେ ନ ବର୍ତ୍ତିବୁ ।।୧୬
ସୁର ଅଧମ ତୁ ବୋଲାଉ ।
ଯେଣୁ ଶୂକର ରୂପ ବହୁ ।।୧୭
ମୋର ରିପୁଙ୍କ ଶୁଭ ଚିନ୍ତି ।
ତୁ ବହୁ ଶୂକର ଆକୃତି ।।୧୮
ରେ ମୂଢ଼ ଶୁଣ ମୋ' ଉତ୍ତର ।
ଆମ୍ଭର ହସ୍ତେ ମୃତ୍ୟୁ ତୋର ।।୧୯
ମାୟାରେ ମାରୁ ତୁ ଅସୁର ।
କପଟ ଧର୍ମ ଏ ତୋହର ।।୨୦
ଆଜି ତୋ ସଂହାର କରିବି ।
ସୁହୃଦ-ଶୋକ ନିବାରିବି ।।୨୧
ତୋ'ର ମୋହର ଗଦାଯୁଦ୍ଧେ ।
ତ୍ରିଦଶେ ଦେଖନ୍ତୁ ଆନନ୍ଦେ ।।୨୨
ତୋ'ର ମସ୍ତକ ଗଦାଘାତେ ।
ବେଗେ ଉଡ଼ିବ ମହାବାତେ ।।୨୩
ବଳି ହରନ୍ତି ଯେତେ ଦେବେ ।
ତୋହର ମରଣ ଦେଖିବେ ।।୨୪
ମୂଳ ବିନାଶେ ବୃକ୍ଷ ଯେହ୍ନେ ।
ତ୍ରିଦଶେ ହୋଇବେ ତେସନେ ।।୨୫
ଏମନ୍ତ ଅସୁରର ବାଣୀ ।
ଶୁଣିଣ କମ୍ପିଲା ଧରଣୀ ।।୨୬
ଗୋବିନ୍ଦ ଦେଖି ଭୂମି ଭୟେ ।
ଜଳେ ବଢ଼ିଲେ ମହାକାୟେ ।।୨୭
ବରାହ ରୂପୀ କୋପମନେ ।
ମର୍ମ ପ୍ରହାରେ ହସ୍ତୀ ଯେହ୍ନେ ।।୨୮
ଜଳୁ ଉଠନ୍ତେ ମହାରୋଷେ ।
ପର୍ବତ ପ୍ରାୟ ଦେହ ଦିଶେ ।।୨୯
ସେ ହିରଣ୍ୟାକ୍ଷ ଦେଖି କୋପେ ।
ମିଳିଲା ବରାହ ସମୀପେ ।।୩୦
ସିଂହ ଯେସନେ ହସ୍ତୀ ଆଗେ ।
ମିଳିଲା ପବନହୁଁ ବେଗେ ।।୩୧
କରାଳଦନ୍ତ ଗଦାପାଣି ।
ବଜ୍ର-ନିଃସ୍ୱନ ପ୍ରାୟ ବାଣୀ ।।୩୨
ବୋଲେ ବରାହ ମୁଖ ଚାହିଁ ।
ତୋ'ର ବଦନେ ଲଜ୍ଜା ନାହିଁ ।।୩୩
ଦେବଙ୍କ ଈଶ୍ୱର ବୋଲାଉ ।
ଶୂକର ରୂପ କିପାଁ ବହୁ ।।୩୪
ଏମନ୍ତ ଅସୁର ବଚନେ ।
କୋପ ବସିଲା ବିଷ୍ଣୁମନେ ।।୩୫
ଧରଣୀ ସମୁଦ୍ରର କୋଳେ ।
ଦନ୍ତୁ ଥୋଇଲେ ବିଷ୍ଣୁତଳେ ।।୩୬
ନିଜ ମୂରତି ଗଦାଧର ।
କି ଅବା ଦେବା ପଟାନ୍ତର ।।୩୭
ଦେଖି ସାନନ୍ଦ ଦେବଗଣ ।
କରନ୍ତି ପୁଷ୍ପ ବରଷଣ ।।୩୮
ବ୍ରହ୍ମାଦି ଦେବଗଣେ ମିଳି ।
ସ୍ତୁତି କରନ୍ତି ଭୁଜ ତୋଳି ।।୩୯
ଅସୁର ଦେବସ୍ତୁତି ଶୁଣି ।
କୋପେ କମ୍ପଇ ଶିର ଝୁଣି ।।୪୦
ତାହାର ହସ୍ତେ ଗଦା ସାଜେ ।
କାଞ୍ଚନ-କବଚ ବିରାଜେ ।।୪୧
ଶୁଣି ଅସୁର ଦୁର୍ବଚନ ।
କୋପେ କମ୍ପିଲେ ଭଗବାନ ।।୪୨
ପ୍ରଚଣ୍ଡତେଜ ମନ୍ଦହାସେ ।
ଅସୁର ମୁଖ ଚାହିଁ ରୋଷେ ।।୪୩
ତା' ଉପହାସ ପ୍ରତ୍ୟୁତ୍ତର ।
ସହାସ୍ୟେ କଲେ ଗଦାଧର ।।୪୪

ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ଦୟାନିଧି ।
ଶୁଣ ହୋ ଅସୁର ଦୁର୍ବୁଦ୍ଧି ।।୪୫
ବନ ଶୂକର ମୁଁ ସ୍ୱଭାବେ ।
ମୋର ମହିମା ଶୁଣ ଏବେ ।।୪୬
ତୋହର ପ୍ରାୟ ଶ୍ୱାନଗଣ ।
ମୋ' ତୁଲେ କେ କରିବ ରଣ ।।୪୭
ତୁ ମୃତ୍ୟୁପାଶେ ବଦ୍ଧ ହୋଇ ।
ବିଶେଷେ କହୁ ଦମ୍ଭ ବହି ।।୪୮

Dr. Sudhanshu Sekhar Mishra

ଯେଣୁ ଅଳପ ବଳ ମୋର ।
କିବା କହିବି ତୋ' ଆଗର ।।୪୯
ଯେ ବୀରଗଣ ଏ ସଂସାରେ ।
ତୋ'ର ପ୍ରଶଂସା କେବା କରେ ।।୫୦
ଆସ ମୋ' ପରାଭବ କର ।
ତୁ ଯୂଥପତିଙ୍କ ପ୍ରବର ।।୫୧
କରି ତୁ ଆମ୍ଭର ନିଧନ ।
ତୋ ଯୁଦ୍ଧଆଶା କର ପୂର୍ଣ୍ଣ ।।୫୨
ପ୍ରତିଜ୍ଞା ପୂର୍ଣ୍ଣ ଯେ ନ କରେ ।
ଅସାଧୁ ବୋଲାନ୍ତି ସଂସାରେ ।।୫୩
ସ୍ୱର୍ଗରେ ଦେବଗଣ ଯେତେ ।
ଦେଖି ତୋହର ଗଦାହସ୍ତେ ।।୫୪
ଆକାଶ ଛାଡ଼ି ପଳାଇଲେ ।
ମୋହର ସମୀପେ ମିଳିଲେ ।।୫୫
କେମନ୍ତେ ସଂଗ୍ରାମ ନ ଦେବି ।
ପଳାଇ କାହିଁ ବା ପଶିବି ।।୫୬
ତୋତେ ମୁଁ ସଂଗ୍ରାମେ ନାଶିବି ।
ଦେବଙ୍କୁ ସଙ୍କଟୁ ତାରିବି ।।୫୭
ଗଦା ପ୍ରହାରି ତୋ'ର ହୃଦେ ।
ଦେବେ ସ୍ଥାପିବି ନିଜ ପଦେ ।।୫୮

### ମୈତ୍ରେୟ ଉବାଚ

ଏମନ୍ତେ ବରାହ ବଚନେ ।
ସେ ହିରଣ୍ୟାକ୍ଷ କୋପମନେ ।।୫୯
ସ୍ୱଭାବେ ଦୁଷ୍ଟ ମହାବଳୀ ।
ଗର୍ଜିଇ ହସ୍ତେ ଗଦା ତୋଳି ।।୬୦
ଶବଦେ ବ୍ରହ୍ମାଣ୍ଡ କମ୍ପିଲା ।
ବରାହ ଅଙ୍ଗେ ପ୍ରହାରିଲା ।।୬୧
ସେ ହରି ନିଜ ମାୟାବଳେ ।
ଦୃଢ଼-ପ୍ରହାର ବଞ୍ଚାଇଲେ ।।୬୨
ପୁଣି ଅସୁର ଗଦାହସ୍ତେ ।
ମଣ୍ଡଳଗତି ଶୂନ୍ୟପଥେ ।।୬୩
ଗଦା ବୁଲାଇ ଅତି ରୋଷେ ।
ପିଟିଲା ବିଷ୍ଣୁ ପୃଷ୍ଠଦେଶେ ।।୬୪
ଶୁଭିଲା ବଜ୍ର ଘଡ଼ଘଡ଼ି ।
ଅଧର ଦଶନେ କାମୋଡ଼ି ।।୬୫

ସେ ଗଦା ବଞ୍ଚାଇ ମୁରାରି ।
ଦକ୍ଷିଣଭୁଜେ ଗଦାଧରି ।।୬୬
ପିଟିଲେ ଅସୁରର ମୁଣ୍ଡେ ।
ବଜ୍ର ଯେସନେ ଗିରିଖଣ୍ଡେ ।।୬୭
ଏମନ୍ତେ ହରି-ହିରଣ୍ୟାକ୍ଷ ।
ସମରେ ବେନିଜନ ଦକ୍ଷ ।।୬୮
ବେନି ଶରୀରେ ଗଦାଘାତ ।
ଶୁଭଇ ଯେହ୍ନେ ବଜ୍ରପାତ ।।୬୯
ଜିଣିବା ଆଶେ ଅନ୍ୟୋଅନ୍ୟେ ।
ଯୁଦ୍ଧ କରନ୍ତି କୋପମନେ ।।୭୦
ଏମନ୍ତେ ହରି ହିରଣ୍ୟାକ୍ଷେ ।
ଗଦା ପ୍ରହାରେ ଜାନୁ ବକ୍ଷେ ।।୭୧
ଫାଟି ବହଇ ଶୋଣୀ ଧାର ।
ବିଶେଷେ ଯୁଦ୍ଧ ମହାଘୋର ।।୭୨
ଗଦା ବିଚିତ୍ରଗତି କରି ।
ବେଗେ ପିଟନ୍ତେ କୋପଭରି ।।୭୩
ଶବଦ ଶୁଭଇ ପ୍ରଚଣ୍ଡ ।
ଯେହ୍ନେ ଯୁଝନ୍ତି ବେନିଷଣ୍ଢ ।।୭୪
ଏମନ୍ତେ ହରି-ହିରଣ୍ୟାକ୍ଷେ ।
ଦେବେ ଦେଖନ୍ତି ଅନ୍ତରୀକ୍ଷେ ।।୭୫
ମିଳିଲେ ଦେବ ଋଷିମେଳେ ।
ଅଞ୍ଜଳି ନିବେଶି କପୋଳେ ।।୭୬
ବିଧାତା ଶୂନ୍ୟପଥେ ଥାଇ ।
ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ।।୭୭

### ବ୍ରହ୍ମା ଉବାଚ

ହେ ଦେବଦେବ ତୋ' ଚରଣ ।
ଆମ୍ଭେ ଯେ ପଶିଲୁ ଶରଣ ।।୭୮
ଆମ୍ଭ ସକାଶୁ ବର ପାଇ ।
ଏ ଦୈତ୍ୟ ଶତ୍ରୁଶୂନ୍ୟ ହୋଇ ।।୭୯
ଗୋରୁ ବ୍ରାହ୍ମଣ ଦେବଙ୍କର ।
ଅନିଷ୍ଟ କରଇ ଅସୁର ।।୮୦
ନିର୍ଭୟେ ଗଦା ଘେନି କରେ ।
ଯୁଦ୍ଧର ଅର୍ଥେ ତିନିପୁରେ ।।୮୧
ଭ୍ରମଇଁ ଏହୁ ମହାରୋଷେ ।
ବାରଣ ଯେହ୍ନେ ନିରଙ୍କୁଶେ ।।୮୨

ସର୍ପର ଲାଞ୍ଜ ଧରି କରେ ।
ବାଳକ ଯେହ୍ନେ କ୍ରୀଡ଼ାକରେ ।।୮୩
ଏହି ମାୟାବୀ ଦୈତ୍ୟ ଘେନି ।
କ୍ରୀଡ଼ା ନ କର ଗଦାପାଣି ।।୮୪
ଦିନକୁ ଦିନ ଏ ବଢ଼ନ୍ତେ ।
କେ ସୁଖେ ଥିବ ଏ ଜଗତେ ।।୮୫
ଆସୁରୀ-ବେଳା ପ୍ରାପ୍ତ ହୋଇ ।
ଯାବତ ଏହି ନ ବଢ଼ଇ ।।୮୬
ତାବତ ନିଜ ମାୟାବଳେ ।
ଏ ଦୁଷ୍ଟ ନଷ୍ଟକରେ ହେଳେ ।।୮୭
ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର ।
ଏହାର ପ୍ରାଣ ବେଗେ ହର ।।୮୮
ଦେଖ ଏ ସନ୍ଧ୍ୟା ବିଭାବରୀ ।
ଏ ଭୂମି ଅନ୍ଧକାର କରି ।।୮୯
ଆସଇ ମହାଘୋର ରୂପେ ।
ଭୋ ନାଥ ଦେଖ ତୋ' ସମୀପେ ।।୯୦
ଆମ୍ଭ ବିପକ୍ଷ ଦିତିବଳା ।
କିବା ତୋହର ବିଷ୍ଣୁଲୀଳା ।।୯୧
ବେଗେ ଅସୁର ଏବେ ମାର ।
ଆମ୍ଭର ଜୟ ଉଦେକର ।।୯୨
ମୁହୂର୍ତ୍ତ ଅଭିଜିତ ନାମ ।
ସର୍ବମଙ୍ଗଳ ଶୁଭଧାମ ।।୯୩
ଏ ଶୁଭବେଳେ ଚକ୍ରଧର ।
ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର ।।୯୪
ଦୁରନ୍ତ-ଦାନବ ବିନାଶ ।
ଏ ଋଷି-ଦେବଙ୍କୁ ଉଶ୍ୱାସ ।।୯୫
ଏହାଙ୍କ ଅଭିଶାପ କାଳେ ।
ତୁ ଅନୁଗ୍ରହ କଲୁ ହେଳେ ।।୯୬
ଏହାର ମୃତ୍ୟୁ ତୁ ସାକ୍ଷାତେ ।
ଭାଗ୍ୟେ ମିଳିଲା ତୋ' ଅଗ୍ରତେ ।।୯୭
ଏମନ୍ତେ ଅସୁରର ଲକ୍ଷ୍ୟେ ।
ଋଷି-ଦେବତା ଅନ୍ତରୀକ୍ଷେ ।।୯୮
ଅତି ବିକଳେ ସ୍ତୁତି କଲେ ।
ବରାହରୂପୀ ପାଦତଳେ ।।୯୯
ସେ ଯଜ୍ଞବରାହ ଚରଣେ ।
ସୁଜନେ ଚିନ୍ତ ଅନୁକ୍ଷଣେ ।।୧୦୦

Dr. Sudhanshu Sekhar Mishra

ତୃତୀୟସ୍କନ୍ଦେ ହରିବାଣୀ ।
ସନ୍ତୋଷ ଶ୍ରୁତିପଥେ ଶୁଣି ।।୧୦୧
ହରି ଚରଣେ କରି ଆଶ ।
କହଇ ଜଗନ୍ନାଥ ଦାସ ।।୧୦୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ହିରଣ୍ୟାକ୍ଷଯୁଦ୍ଧେ
ଅଷ୍ଟାଦଶୋଽଧ୍ୟାୟଃ ।

---

## ଉନବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମାର ବଚନ ।
ଶୁଣି ସନ୍ତୋଷ ଭଗବାନ ।।୧
ଅମୃତ ପ୍ରାୟ ଶୁଣି କର୍ଣ୍ଣେ ।
ଅସୁରବଧେ ସାବଧାନେ ।।୨
ଦକ୍ଷିଣକରେ ଗଦାଧରି ।
ହୁଁକାର ନାଦେ ଦଇତ୍ୟାରି ।।୩
ନିର୍ଭୟ ଦେଖି ତା' ନିକଟେ ।
ପ୍ରହାର କଲେ କର୍ଣ୍ଣତଟେ ।।୪
ତକ୍ଷଣେ ଦୈତ୍ୟ ଗଦାବଳେ ।
ଗଦା ପଡ଼ିଲା ହସ୍ତୁ ତଳେ ।।୫
ବିଷ୍ଣୁଙ୍କୁ ହିରଣ୍ୟାକ୍ଷ ଚାହିଁ ।
କ୍ଷତ୍ରିୟଧର୍ମ ବିଚାରଇ ।।୬
ଆୟୁଧ ନାହିଁ ଏହା ହସ୍ତେ ।
ଏହାକୁ ମାରିବି କେମନ୍ତେ ।।୭
ଏମନ୍ତେ ବିଚାରୁ ଅସୁର ।
ଶୂନ୍ୟେ ଶୁଭିଲା ହାହାକାର ।।୮
ତା' ଶୁଣି ପ୍ରଭୁ ଗଦାଧର ।
ସମ୍ଭ୍ରମେ ତୋଳି ବେନିକର ।।୯
ବୋଲନ୍ତି ଦେବଗଣେ ଚାହିଁ ।
ଭୟ ନ କର ତୁମ୍ଭେ କେହି ।।୧୦
ଏମନ୍ତେ କହି ଦେବରାଜ ।
ଉର୍ଦ୍ଧ୍ୱେ ତୋଳିଲେ ଦକ୍ଷଭୁଜ ।।୧୧
ନିଜ ଆୟୁଧେ କଲେ ମନ ।
ତକ୍ଷଣେ ଜାଣି ସୁଦର୍ଶନ ।।୧୨
ବେଗେ ଧାଇଁଲା ଶୂନ୍ୟେ ବ୍ୟାପି ।
ତେଜ ବିରାଜେ ବିଶ୍ୱରୂପୀ ।।୧୩
ମିଳିଲା ବିଷ୍ଣୁକରେ ଯାଇ ।
ତା' ଦିତିପୁତ୍ର ନ ଜାଣଇ ।।୧୪

ଦେବେ ଦେଖନ୍ତି ଶୂନ୍ୟପଥେ ।
ଚକ୍ରକୁ ଚାହିଁ ବିଷ୍ଣୁହସ୍ତେ ।।୧୫
କହନ୍ତି ବିଚିତ୍ର ବଚନ ।
ଭୋ ଦେବ ହେଉ ତୋ' କଲ୍ୟାଣ ।।୧୬
ଭୋ ନାଥ ତୋ'ର ଦ୍ୱାରପାଳ ।
ଏ ଦୁଷ୍ଟ ତେଜେ ଅନର୍ଗଳ ।।୧୭
ଏହାର ପ୍ରାଣ ବେଗେ ହର ।
ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର ।।୧୮
ଦେବଙ୍କ ବାକ୍ୟ କର୍ଣ୍ଣେ ଶୁଣି ।
କୋପେ ଧାଇଁଲା ବୀରମଣି ।।୧୯
ସମୀପେ ଦେଖି ଚକ୍ରପାଣି ।
ଓଷ୍ଠ କାମୋଡ଼େ ପୁଣପୁଣି ।।୨୦
ନିଃଶ୍ୱାସ ଖରତର ବହେ ।
କୋପେ କମ୍ପଇ ତା'ର କାୟେ ।।୨୧
କରାଳ ଦିଶେ ତା' ବଦନ ।
ନୟନୁ ପ୍ରକାଶେ ଦହନ ।।୨୨
ଦହିଲା ପ୍ରାୟ ଦଶଦିଶେ ।
ବେଗେ ଧାଇଁଲା ମହାରୋଷେ ।।୨୩
ଡାକଇ ପୂରିଲା ତୋ' କାଳ ।
ମୋ' ଗଦାପ୍ରହାର ସମ୍ଭାଳ ।।୨୪
ଏମନ୍ତ ବୋଲି କୋପଭରେ ।
ପିଟିଲା ବିଷ୍ଣୁର ଉପରେ ।।୨୫
ପବନବତ ଜଗନ୍ନାଥ ।
ପାଦେ ହରିଲେ ଗଦାଘାତ ।।୨୬
ଦୈତ୍ୟକୁ ବୋଲନ୍ତି ଉତ୍ତର ।
ଯେବେ ଜିଣିବା ଇଚ୍ଛା ତୋ'ର ।।୨୭
ଉତ୍ତମ ଶସ୍ତ୍ର ଧରି ହସ୍ତେ ।
ପ୍ରହାର କର ତୁହି ମୋତେ ।।୨୮

ଏମନ୍ତ ଶୁଣିଣ ବଚନ ।
କୋପେ କମ୍ପଇ ଅପଘନ ।।୨୯
ଗୋବିନ୍ଦ ଶିରେ ଗଦାଘାତ ।
ପଡ଼ି ଶୁଭିଲା ବଜ୍ରାଘାତ ।।୩୦
ଶବଦେ ଭୁବନ କମ୍ପିଲା ।
ତକ୍ଷଣେ ଭୂମିରେ ପଡ଼ିଲା ।।୩୧
ଭାଜିଲା ଶତେଖଣ୍ଡ ହୋଇ ।
ଦେବେ ଦେଖନ୍ତି ଶୂନ୍ୟେ ରହି ।।୩୨
ଗଦା ଯାଚିଲେ ନାରାୟଣ ।
ଅସୁର ନ ନେଲା ତା' ପୁଣ ।।୩୩
ଗଦା ବିଭଙ୍ଗେ କୋପଭରେ ।
ତୀକ୍ଷ୍ଣ ତ୍ରିଶୂଳ ଧରି କରେ ।।୩୪
ଅନଳ ପ୍ରାୟ ଶୂଳ ଜଳେ ।
ଦେଖି କମ୍ପିଲେ ଦିଗପାଳେ ।।୩୫
ଯଜ୍ଞ-ସ୍ୱରୂପୀ ବିଷ୍ଣୁ ଦେହେ ।
ବ୍ରାହ୍ମଣେ ଅଭିଚାର ପ୍ରାୟେ ।।୩୬
ଉଚ୍ଚେ ଧଇଲା ଶୂଳ ତୋଳି ।
ପିଟିଲା ନେଇ ମହାବଳୀ ।।୩୭
ତା' ଦେଖି ପ୍ରଭୁ ଜଗନ୍ନାଥ ।
ସୁତୀକ୍ଷ୍ଣ ଚକ୍ର ଘେନି ହସ୍ତ ।।୩୮
ସେ ଶୂଳ ଗଗନେ ପ୍ରକାଶେ ।
ଜ୍ୱଳନ୍ତ ଅଗ୍ନିପ୍ରାୟ ଦିଶେ ।।୩୯
ଶୂଳ ଛେଦିଲେ ମହାଶୂନ୍ୟେ ।
ଗରୁଡ଼ ପକ୍ଷ ଇନ୍ଦ୍ର ଯେହ୍ନେ ।।୪୦
ତ୍ରିଶୂଳ ଭଗ୍ନ ଦେଖି ରୋଷେ ।
ବେଗେ ମିଳିଲା ବିଷ୍ଣୁପାଶେ ।।୪୧
ମୁଷ୍ଟି ଉଞ୍ଚାଇ ବଜ୍ର ପ୍ରାୟେ ।
ପ୍ରହାରେ ଯଜ୍ଞରୂପୀ ଦେହେ ।।୪୨

Dr. Sudhanshu Sekhar Mishra

ମାୟାବୀ ହିରଣ୍ୟାକ୍ଷ ବୀର ।
ଶରୀର କଲା ଯେ ଅନ୍ତର ।।୪୩
କେହି ନ ଦେଖେ କେଣେ ଗଲା ।
ଅଦ୍ଭୁତ ଶବଦ ଶୁଭିଲା ।।୪୪
ତା'ର ପ୍ରହାରେ ପଦ୍ମମୁଖ ।
ସହଜେ ନୋହିଲେ ବିମୁଖ ।।୪୫
ଗଜକୁ ପୁଷ୍ପମଣ୍ଡା ଯେହ୍ନେ ।
ପ୍ରହାରେ ଦୁଃଖ ନାହିଁ ମନେ ।।୪୬
ପୁଣି କ୍ଷଣକେ ମହାରୋଷେ ।
ଅସୁର ମିଳି ବିଷ୍ଣୁ ପାଶେ ।।୪୭
ମାୟା ସର୍ଜିଲା ଅପ୍ରମିତେ ।
ଶ୍ରୀମାୟାଧରଙ୍କ ଅଗ୍ରତେ ।।୪୮
ସେ ମାୟା ଦେଖି ଦେବଗଣେ ।
ହସ୍ତ ଆଚ୍ଛାଦିଲେ ନୟନେ ।।୪୯
ଶରୀର କମ୍ପେ ମହାଭୟେ ।
ମଣିଲେ ପ୍ରଳୟର ପ୍ରାୟେ ।।୫୦
ପ୍ରଚଣ୍ଡ-ବାତ ବହେ ଖରେ ।
ଶୂନ୍ୟୁ ପାଷାଣ ବୃଷ୍ଟି କରେ ।।୫୧
ପାଂଶୁ ପୂରିଲା ଦଶଦିଶେ ।
ନିଷ୍ଠୁର ତମ ଯେ ପ୍ରକାଶେ ।।୫୨
ଘୋର ଗର୍ଜନ ମାୟା ମେଘେ ।
ବିଜୁଳି ଲୁଚିଲେ ଦଶଦିଗେ ।।୫୩
ବିଷମ ମେଘର ଆଚ୍ଛନ୍ନେ ।
ଶୂନ୍ୟେ ଲୁଚିଲେ ଜ୍ୟୋତିର୍ଗଣେ ।।୫୪
ପୂଯ ପୁରୀଷ ମୂତ୍ର ଅସ୍ଥି ।
ରୁଧିର ସଙ୍ଗେ ବରଷନ୍ତି ।।୫୫
ପର୍ବତ ପ୍ରାୟ ଦେହ କରି ।
ରାକ୍ଷସୀ ନାନା ଶସ୍ତ୍ର ଧରି ।।୫୬
ଧାମନ୍ତି ଅତି ମହାରୋଷେ ।
କଟୀ ବିବସ୍ତ୍ର ମୁକ୍ତ କେଶେ ।।୫୭
ହସ୍ତେ ବିରାଜେ ତୀକ୍ଷ୍ଣ ଶୂଳ ।
ଶୁଭଇ ମୁଖ ରାବ ଗୋଳ ।।୫୮
ପ୍ରଳୟ-କାଳ ପ୍ରାୟ ମଣି ।
ଅଦ୍ଭୁତେ କମ୍ପଇ ଧରଣୀ ।।୫୯
ଯକ୍ଷ ରାକ୍ଷସ ପନ୍ତି-ପନ୍ତି ।
ରଥ ତୁରଙ୍ଗ ନର ହସ୍ତୀ ।।୬୦

କୁତ୍ସିତ ବାକ୍ୟେ ରାବ ଶୁଭେ ।
ଶୂନ୍ୟେ କମ୍ପନ୍ତି ସର୍ବଦେବେ ।।୬୧
ଏମନ୍ତ ମାୟା ଦେଖି ହରି ।
ନିଶ୍ଚୟ ଜାଣିଲେ ଆସୁରୀ ।।୬୨
ମାୟାବୀ ଦର୍ପ ବିନାଶନେ ।
କୋପ ବସିଲା ବିଷ୍ଣୁମନେ ।।୬୩
ସୁଦରଶନ ଧରି କରେ ।
ହରି ଧାଇଁଲେ ଧାତିକାରେ ।।୬୪
ତକ୍ଷଣେ କଶ୍ୟପ-ଭୁବନେ ।
ଭୟ ପଶିଲା ଦିତିମନେ ।।୬୫
ହୃଦୟ କମ୍ପଇ କାତରେ ।
ବାକ୍ୟ ନ ସ୍ଫୁରେ କମ୍ପ-ଜ୍ୱରେ ।।୬୬
ସ୍ୱାମୀର ବଚନ ସୁମରେ ।
ସ୍ତନୁ ରୁଧିର ଧାରା ଝରେ ।।୬୭
ଚକ୍ରର ତେଜେ ମାୟା ଗଲା ।
ରବି କିରଣ ପ୍ରକାଶିଲା ।।୬୮
କ୍ଷେପି ଅସୁର ମହାକୋପେ ।
ମିଳିଲା ବିଷ୍ଣୁର ସମୀପେ ।।୬୯
ରୋଷେ ଅରୁଣ ଦିଶେ ଦୃଷ୍ଟି ।
ଉର୍ଦ୍ଧ୍ୱେ ତୋଳିଲା ବେନି ମୁଷ୍ଟି ।।୭୦
ଗୋବିନ୍ଦ ହୃଦେ ପ୍ରହାରିଲା ।
ଶବଦେ ଭୁବନ କମ୍ପିଲା ।।୭୧
ମୁଷ୍ଟି ବାଜିଲା ବଜ୍ର ପ୍ରାୟେ ।
ଦେଖି କୋପିଲେ ଦେବରାୟେ ।।୭୨
କର ପ୍ରସାରି କର୍ଣ୍ଣମୂଳେ ।
ଗୋବିନ୍ଦ ପ୍ରହାରିଲେ ବଳେ ।।୭୩
ପୂର୍ବେ ଯେସନେ ସୁରରାୟେ ।
ବିଶ୍ୱକର୍ମାର ପୁତ୍ର ଦେହେ ।।୭୪
ଯଜ୍ଞ-ବରାହ ଅବହେଳେ ।
ପାଦ ପ୍ରହାରେ କର୍ଣ୍ଣମୂଳେ ।।୭୫
କେବଳ ଏକ ପଦାଘାତେ ।
ଘୂର୍ଣ୍ଣିତ ଲୋଚନ ସହିତେ ।।୭୬
ତା' ହସ୍ତପାଦ ହେଲା ଶୀର୍ଣ୍ଣ ।
ହୋଇଲା ଶରୀର ବିବର୍ଣ୍ଣ ।।୭୭
ମୁଷ୍ଟି ପ୍ରହାରେ ମୁଣ୍ଡ ଫାଟି ।
ପଡ଼ିଲା ମହୀତଳେ ଲୋଟି ।।୭୮

ବୃକ୍ଷ ଯେସନେ ବାୟୁ ବଳେ ।
ଉପୁଡ଼ି ପଡ଼ଇ ଭୂତଳେ ।।୭୯
ତେସନେ ଭୂମିତଳେ ପଡ଼ି ।
ଦଶନେ ଅଧର କାମୋଡ଼ି ।।୮୦
ସେ ନାଦ କଲା ଘୋରତର ।
ପ୍ରାଣ ଛାଡ଼ିଲା ମହାବୀର ।।୮୧
ଅସୁର ମୃତ୍ୟୁ ଦେବେ ଦେଖି ।
ମିଳିଲେ ଗଗନ ଉପେକ୍ଷି ।।୮୨
ଦେଖିଲେ ଅସୁର ବଦନ ।
ଭ୍ରୂକୁଟୀ କୁଟୀଳ ନୟନ ।।୮୩
ବିଧାତା ଆଦି ସୁରବୃନ୍ଦ ।
କରନ୍ତି ଜୟ ଜୟ ନାଦ ।।୮୪
ବୋଲନ୍ତି ଧନ୍ୟ ଏ ଅସୁର ।
ବିଷ୍ଣୁର ହସ୍ତେ ଗଲା ମାର ।।୮୫
ଏମନ୍ତେ କେ ଲଭେ ମରଣ ।
ଲଭିଲା ବିଷ୍ଣୁର ଚରଣ ।।୮୬
ଯେ ପାଦ ଅର୍ଥେ ଯୋଗୀଜନ ।
ନିର୍ଜନେ ଯୋଗ କରେ ଧ୍ୟାନ ।।୮୭
ସେ ପଦାଘାତେ ଏ ଅସୁର ।
ତେଜିଲା ନିଜ କଳେବର ।।୮୮
ଧନ୍ୟ ଜୀବନଟି ଏହାର ।
ବ୍ରାହ୍ମଣ ଶାପୁଁ ହେଲା ପାର ।।୮୯
ପୁଣି ହୋଇବ ଜନ୍ମଦୁଇ ।
ଏମନ୍ତ ବୋଲି ବିଷ୍ଣୁ ଚାହିଁ ।।୯୦
ବ୍ରହ୍ମାଦିଦେବେ କରଯୋଡ଼ି ।
ସ୍ତୁତି କରନ୍ତି ପାଦେ ପଡ଼ି ।।୯୧

ଦେବଗଣ ଉବାଚ

ନମୋ ଅଖିଳ ଯଜ୍ଞ-ତନ୍ତୁ ।
ତୋ' ଅବତାର ଭକ୍ତ ହେତୁ ।।୯୨
ନିର୍ମଳ ସତ୍ତ୍ୱ ମୂର୍ତ୍ତି ଧରି ।
ସଂସାର ପାଳୁ ନରହରି ।।୯୩
ଆମ୍ଭର ଭାଗ୍ୟେ ଭଗବାନ ।
ଏ ଦୁଷ୍ଟ କଲୁ ତୁ ନିଧନ ।।୯୪
ତୋ'ର ପ୍ରସନ୍ନେ ଜଗନ୍ନାଥ ।
ଆମ୍ଭେ ଯେ ହୋଇଲୁ ନିଶ୍ଚିନ୍ତ ।।୯୫

Dr. Sudhanshu Sekhar Mishra

ତୋ'ର ସଂସାର ପାଳ ଏବେ ।
ଏମନ୍ତ କହି ସର୍ବଦେବେ ।।୯୬
ଆନନ୍ଦେ ଗଲେ ନିଜ ପୁର ।
ସୁମନେ ଶୁଣ ହେ ବିଦୁର ।।୯୭

ମୈତ୍ରେୟ ଉବାଚ

ଏମନ୍ତେ ହିରଣ୍ୟାକ୍ଷ ମାରି ।
ଯଜ୍ଞବରାହ ରୂପ ଧରି ।।୯୮
ନିଜ ଭୁବନେ ହରି ଗଲେ ।
ଉତ୍ସବ ପରମ ମଙ୍ଗଳେ ।।୯୯
ବ୍ରହ୍ମାଦି ଦେବେ କଲେ ସ୍ତୁତି ।
ନିଜ ଭୁବନେ ଲକ୍ଷ୍ମୀପତି ।।୧୦୦
ଭକ୍ତ ଉଦ୍ଧରି ମହାତୋଷେ ।
ମିଳିଲେ କମଳିନୀ ପାଶେ ।।୧୦୧
ତୁ ଯାହା ପଚାରିଲୁ ମୋତେ ।
ପ୍ରସନ୍ନେ କହିଲି ମୁଁ ତୋତେ ।।୧୦୨
ବିଷ୍ଣୁର ଲୀଳା ଅବତାର ।
ହିରଣ୍ୟାକ୍ଷର ଯେ ଉଦ୍ଧାର ।।୧୦୩

ସୂତ ଉବାଚ

ଏମନ୍ତେ ମଇତ୍ରେୟ ବାଣୀ ।
ବିଦୁର ସାବଧାନେ ଶୁଣି ।।୧୦୪
ପରମାନନ୍ଦ ସେ ଲଭିଲା ।
କାନନେ ପରାଶର-ବଳା ।।୧୦୫
ଅନ୍ୟ ଯେ ପୁଣ୍ୟଶ୍ଳୋକ ଜନେ ।
ନାନାପ୍ରକାରେ ଏ ଭୁବନେ ।।୧୦୬
ତାହାଙ୍କ ଯଶ କର୍ଣ୍ଣେ ଶୁଣି ।
ଭବସାଗରୁ ତରେ ପ୍ରାଣୀ ।।୧୦୭
କୃଷ୍ଣର ଗୁଣ-ଅବତାର ।
କର୍ଣ୍ଣେ ଅମୃତ-ରସ-ଧାର ।।୧୦୮
ଶୁଣି ସୁଜନେ କର୍ଣ୍ଣଦ୍ୱାରେ ।
କିପାଁ ନ ତରିବେ ସଂସାରେ ।।୧୦୯
ବନସ୍ଥ ଗଜ ଜଳେ ପଶି ।
କରିଣୀ-ପଲ ମଧ୍ୟେ ମିଶି ।।୧୧୦
ଜଳେ ଚରନ୍ତେ ପଦ୍ମବନେ ।
କୁମ୍ଭୀର ଗ୍ରାସିଲା ଚରଣେ ।।୧୧୧
ଚରଣ ନ ପାରିଲା ଆଣି ।
ଅନେକ ହସ୍ତୀ ତା'କୁ ପୁଣି ।।୧୧୨
ଧଇଲେ ଉଦ୍ଧରିବା ବଳେ ।
ତିଳେ ହେଁ ଟାଣି ନ ପାରିଲେ ।।୧୧୩
ନ ପାରି ହୋଇଲେ ବିଷାଦ ।
ଚିତ୍ତେ ଚିନ୍ତିଲେ ବିଷ୍ଣୁପଦ ।।୧୧୪
ହସ୍ତୀଗଣଙ୍କ ଆର୍ତ୍ତନାଦ ।
ଶୁଣି ସଦୟ ସେ ମୁକୁନ୍ଦ ।।୧୧୫
ତକ୍ଷଣେ ପ୍ରଭୁ ଚକ୍ରପାଣି ।
ଗଜ ରଖିଲେ ଗ୍ରାହା ହାଣି ।।୧୧୬
ତା'ର ଚରଣେ ମୁନିବୃନ୍ଦେ ।
ନାନା ପ୍ରକାର ଯୋଗ ସାଧେ ।।୧୧୭
ଅଭୟପଦେ ସେ ପଶନ୍ତି ।
ସେ ଅନ୍ୟଭାବ ନ ଚିନ୍ତନ୍ତି ।।୧୧୮
ଯେ ଜନ ଦେଇ ମନପ୍ରାଣ ।
ସୁଖେ ଆରାଧେ ତା' ଚରଣ ।।୧୧୯
ହିରଣ୍ୟାକ୍ଷର ବଧ ତତ୍ତ୍ୱ ।
ଅମୀୟ ରସ ଭାଗବତ ।।୧୨୦
ନିଜ ଭକତ ଉଦ୍ଧାରିଣ ।
ଶୂକର ରୂପେ ନାରାୟଣ ।।୧୨୧
ଧରଣୀ ଉଦ୍ଧରିଲେ ଦନ୍ତେ ।
କ୍ରୀଡ଼ା ବିହାର ଏ ଜଗତେ ।।୧୨୨
ଏ କଥା ଶ୍ରବଣ କୀର୍ତ୍ତନ ।
କରି ବଞ୍ଚନ୍ତି ଯେଉଁ ଜନ ।।୧୨୩
ବ୍ରାହ୍ମଣ ବଧ କରିଥିଲେ ।
ଦୋଷ ନ ଲଗେ ତା'କୁ ଭଲେ ।।୧୨୪
ଏ ପୁଣ୍ୟଯଶ ହରିକଥା ।
ଧନ ଆୟୁଷ ମୋକ୍ଷଦାତା ।।୧୨୫
ପ୍ରାଣ ଇନ୍ଦ୍ରିୟ ସୁଖ ବଢ଼େ ।
ଦୁର୍ଗତି ରିଷ୍ଟ ବାଧା ଛାଡ଼େ ।।୧୨୬
ସୁଜନ ସଙ୍ଗେ ଯେବେ ମିଶେ ।
ଅନ୍ତେ ଗୋବିନ୍ଦ ପାଦେ ପଶେ ।।୧୨୭
ଏ କଥା ଶୁଣି ସାଧୁଜନେ ।
ବଞ୍ଚିବ ଶ୍ରବଣ କୀର୍ତ୍ତନେ ।।୧୨୮
ତୃତୀୟସ୍କନ୍ଧେ ଭାଗବତ ।
ମୈତ୍ରେୟ ବିଦୁର ଚରିତ ।।୧୨୯
ଯେତେ କହିଲେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୧୩୦
ଭାଷା ପ୍ରବନ୍ଧେ ଭାଗବତ ।
କହିଲା ଦାସ ଜଗନ୍ନାଥ ।।୧୩୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ହିରଣ୍ୟାକ୍ଷବଧୋ ନାମ
ଊନବିଂଶୋଽଧ୍ୟାୟଃ ।

---

Dr. Sudhanshu Sekhar Mishra

ଶୌନକ ଉବାଚ

ବରାହରୂପୀ ଭାବଗ୍ରାହୀ ।
ଜଳେ ଧରଣୀ ଗଲେ ଥୋଇ ।।୧
ସେ ସ୍ୱାୟମ୍ଭୁବ ମନୁ କଲା ।
ଧରଣୀ ପୃଷ୍ଠେ ଯାହା କଲା ।।୨
ନାନା ପ୍ରକାରେ ଜନ୍ତୁ ଯେତେ ।
ତାହାଙ୍କୁ ସାଧିଲା କେମନ୍ତେ ।।୩
ଜ୍ୟେଷ୍ଠଭ୍ରାତା ଯେ ଧୃତରାଷ୍ଟ୍ର ।
ତା' ପୁତ୍ର ଦୁର୍ଯ୍ୟୋଧନ ଦୁଷ୍ଟ ।।୪
କର୍ଣ୍ଣ ଶକୁନି ଦୁଃଶାସନ ।
ଏହାଙ୍କ ତୁଲେ ଯେତେ ଜନ ।।୫
ପାଣ୍ଡବ ହିତେ ସେ ବିଶ୍ୱାସେ ।
ବର୍ତ୍ତଇ ବୋଲି ମହାରୋଷେ ।।୬
ରାଜ୍ୟୁ ବାହାର କରିଦେଲା ।
ଯେଣୁ ସେ ବ୍ୟାସଙ୍କର ବଳା ।।୭
କୃଷ୍ଣ ଚରଣେ ଆଶ୍ରେ କରି ।
ଛାଡ଼ିଲା ହସ୍ତିନା ନଗରୀ ।।୮
ତୀର୍ଥ ସାଧନ ପୁଣ୍ୟବଳେ ।
ଏକାନ୍ତେ ବିଷ୍ଣୁଭକ୍ତି ଫଳେ ।।୯
ଗୋବିନ୍ଦ ଭକ୍ତ ସେ ନିଷ୍କଳେ ।
ବର୍ତ୍ତଇ ଭକ୍ତଜନ ମେଳେ ।।୧୦
ବିଦୁର ଭ୍ରମୀ ତୀର୍ଥମାର୍ଗେ ।
କାନନେ ମୈତ୍ରେୟଙ୍କ ଆଗେ ।।୧୧
ବନ ଗହନେ ଗଙ୍ଗାକୂଳେ ।
ସେ ବେନିଜନ ଏକମେଳେ ।।୧୨
ବିଦୁର କିବା ପ୍ରଶ୍ନ କଲା ।
କହିବା ମୋତେ ବିଷ୍ଣୁଲୀଳା ।।୧୩
ସେ ବିଷ୍ଣୁକଥା ବାକ୍ୟସାର ।
ଶ୍ରୁତିଯୁଗଳେ ସୁଧାଧାର ।।୧୪
ଯେସନେ ଗଙ୍ଗାସ୍ନାନ କଲେ ।
ସେ ତିନିତାପରୁ ଉଦ୍ଧରେ ।।୧୫
ଗୋବିନ୍ଦ କଥା ସେହି ମତେ ।
ପାନ ନ ରହେ ଅନ୍ତର୍ଗତେ ।।୧୬

## ବିଂଶ ଅଧ୍ୟାୟ

କୃଷ୍ଣ ଚେଷ୍ଟିତ ଭାବ ଯେତେ ।
ଭୋ ମୁନି କହ ମୋ' ଅଗ୍ରତେ ।।୧୭
କୃଷ୍ଣର ଲୀଳାମୃତ ରସେ ।
ରସଇ ଯା'ର ଶ୍ରୁତି ଗ୍ରାସେ ।।୧୮
ସେ କାହିଁ ଛାଡ଼େ କୃଷ୍ଣକଥା ।
ଯେଣେ ହରଇ ଭବବ୍ୟଥା ।।୧୯
ନୈମିଷ୍ୟାରଣ୍ୟେ ମୁନିଗଣେ ।
ସେ ଉଗ୍ରଶ୍ରବାର ଚରଣେ ।।୨୦
ପ୍ରଣତ ହୋଇଣ କହିଲେ ।
ବିଷ୍ଣୁର କଥା କହ ଭଲେ ।।୨୧
ସେ ଉଗ୍ରଶ୍ରବା ବିଷ୍ଣୁ ପଦେ ।
ମନକୁ ନିବେଶି ଆନନ୍ଦେ ।।୨୨
କହିଲେ ଶୁଣି ମୁନିଗଣ ।
କହିବି ଶ୍ରୀହରିର ଗୁଣ ।।୨୩

ସୂତ ଉବାଚ

ବିଷ୍ଣୁ ଶୂକର ରୂପ ଧରି ।
ଧରଣୀ ପାତାଳୁ ଉଦ୍ଧରି ।।୨୪
ଲୀଳା ବିହାରେ ହିରଣ୍ୟାକ୍ଷ ।
ଗୋବିନ୍ଦ ମାଇଲେ ପ୍ରତ୍ୟକ୍ଷ ।।୨୫
ସେ କଥା ଶୁଣି ତୋଷ ଚିତ୍ତେ ।
ଅଶ୍ରୁ ପୁଲକ ରୋମ ଗାତ୍ରେ ।।୨୬
ମୈତ୍ରେୟ ପାଦେ ଦେଇ ଶିର ।
ଆନନ୍ଦେ ପୁଚ୍ଛଇ ବିଦୁର ।।୨୭

ବିଦୁର ଉବାଚ

ନାଭିରୁ ବ୍ରହ୍ମା ଅବତାର ।
ସେ ପ୍ରଜାପତିଙ୍କ ଈଶ୍ୱର ।।୨୮
ପ୍ରଜାପତିଙ୍କୁ ଜାତ କଲା ।
ସୃଷ୍ଟି ସର୍ଜନେ ଆଜ୍ଞା ଦେଲା ।।୨୯
ମରୀଚି ଆଦି ସପ୍ତତନୁ ।
ଅପରେ ସ୍ୱାୟମ୍ଭୁବ ମନୁ ।।୩୦
ପିତାର ଆଦେଶେ ସମସ୍ତେ ।
ଏ ସୃଷ୍ଟି ସର୍ଜିଲେ କେମନ୍ତେ ।।୩୧
ଭାର୍ଯ୍ୟା ସହିତେ ଯୋଗମତେ ।
କି ଅବା ସର୍ଜିଲେ ସ୍ୱତନ୍ତ୍ରେ ।।୩୨
କିବା ସକଳ ଏକମେଳେ ।
ସୃଷ୍ଟି ସର୍ଜିଲେ ଅନ୍ତରାଳେ ।।୩୩
କିବା ଧରଣୀ ଜଳେ ସ୍ଥାପି ।
ପ୍ରଜା ସର୍ଜିଲେ ବିଶ୍ୱରୂପୀ ।।୩୪
ସେ ପୁଣି କିବା କଲେ ପରେ ।
ତୋ ବିନୁ କେବା କହିପାରେ ।।୩୫
ତୁମ୍ଭେ ଆଗତ ଅନାଗତ ।
ସକଳ ବିଷୟେ ବିଦିତ ।।୩୬
ବ୍ରହ୍ମାଙ୍କ ଆଜ୍ଞା ଘେନି ଶିରେ ।
ଜଗତ କଲେ କି ପ୍ରକାରେ ।।୩୭

ମୈତ୍ରେୟ ଉବାଚ

ଶୁଣ ବିଦୁର ଏକଚିତ୍ତେ ।
ଯେ ସୃଷ୍ଟି ପଦ୍ମକଳ୍ପ ଅନ୍ତେ ।।୩୮
ଯେ କାଳରୂପୀ ବିଶ୍ୱନାଥ ।
ଯା' ମାୟାବଳେ ଏ ଜଗତ ।।୩୯
ସ୍ୱ ମାୟାବଳେ କ୍ଷୋଭ ପାଇ ।
ମହତ ରୂପ ସେ ଧରଇ ।।୪୦
ରଜ ପ୍ରଧାନେ ତିନିଗୁଣେ ।
କହିଲା ଦଇବ ପ୍ରେରଣେ ।।୪୧
ସେ ଭୂତ ଆଦି ଯେ ମହତ ।
ଅଗ୍ରେ ସର୍ଜିଲା ପଞ୍ଚଭୂତ ।।୪୨
ଶବଦ ଆଦି ପଞ୍ଚଗୁଣେ ।
ମିଳିଲେ ସୃଷ୍ଟିର କାରଣେ ।।୪୩
ଯେ ଜ୍ଞାନେନ୍ଦ୍ରିୟ ଚକ୍ଷୁ ଆଦି ।
ଯେ କର୍ମେନ୍ଦ୍ରିୟ ହିଁ ବାଗାଦି ।।୪୪
ଶବ୍ଦାଦି ଯେତେକ ହୋଇଲେ ।
ସୃଜନେ ଅସମର୍ଥ ହେଲେ ।।୪୫
ସେ ପୁଣି ଏକଗୁଣ୍ଠ ହୋଇ ।
ଦୈବଶକ୍ତିର ବଳପାଇ ।।୪୬
କହିଲା ହେକମୟ ଅଣ୍ଡ ।
ଯାହାକୁ ବୋଲନ୍ତି ବ୍ରହ୍ମାଣ୍ଡ ।।୪୭

Dr. Sudhanshu Sekhar Mishra

ସେ ଅଣ୍ଡକୋଷ ମହାଜଳେ ।
ପଡ଼ି ଭାସଇ କାଳବଳେ ।।୪୮
ସେ ପୁଣି ସହସ୍ର ବରଷେ ।
ସେ ମହାର୍ଣ୍ଣବ ଜଳେ ଭାସେ ।।୪୯
ସେ ଅଣ୍ଡକୋଷ ମଧ୍ୟେ ହରି ।
ଶୋଏ ଅନନ୍ତ ଶଯ୍ୟା କରି ।।୫୦
ତା ନାଭିପଦ୍ମୁ ପଦ୍ମକୋଷ ।
ସଲିଳେ ହୋଇଲା ପ୍ରକାଶ ।।୫୧
ସେ ପଦ୍ମ ନିଜ ତେଜ ପୁଞ୍ଜେ ।
ସହସ୍ରେ ରବିରଶ୍ମି ଗଞ୍ଜେ ।।୫୨
ସେ ପଦ୍ମ ମଧ୍ୟେ ସର୍ବଜନ୍ତୁ ।
ପ୍ରକାଶେ ନିଜ କର୍ମ ହେତୁ ।।୫୩
ବିରାଜ ରୂପ ତା'ର ମଧ୍ୟେ ।
ଜନ୍ମିଲା ନିଜ କାର୍ଯ୍ୟ ସାଧେ ।।୫୪
ସେ ପୁଣି ବିଷ୍ଣୁ ଉପଦେଶେ ।
ସୃଷ୍ଟି ସର୍ଜିଲା ଅଣ୍ଡକୋଷେ ।।୫୫
ପୂର୍ବେ ଯେମନ୍ତେ ସୃଷ୍ଟି ଥିଲା ।
ସେ ନାନାରୂପେ ସମ୍ପାଦିଲା ।।୫୬
କାଳର ବଳେ କୋପମନେ ।
ନିଃଶ୍ୱାସ ଛାଡ଼େ ଘନଘନେ ।।୫୭
ତା'ର ନିଃଶ୍ୱାସୁ ତତକ୍ଷଣେ ।
ଅବିଦ୍ୟା ସଙ୍ଗେ ପଞ୍ଚଗଣେ ।।୫୮
ତାମିସ୍ର ଅନ୍ଧତମ ତମ ।
ମୋହ ମହାମୋହ ପଞ୍ଚମ ।।୫୯
ଏ ପଞ୍ଚତମ ଏକାବେଳେ ।
ଜନ୍ମିଲେ ଅନ୍ଧକାର ବଳେ ।।୬୦
ଦେଖି ସେ ଛାୟାରୂପ ସୃଷ୍ଟି ।
ତୁଷ୍ଟ ନୋହିଲା ପରମେଷ୍ଠୀ ।।୬୧
ଏ ସୃଷ୍ଟି ଦେଖି ତମୋମୟ ।
ଧାତା ଛାଡ଼ିଲା ନିଜଦେହ ।।୬୨
ସେ ପିଣ୍ଡ ଦେଖି ତମୋଗଣେ ।
ବେଗେ ଧାଇଁଲେ ତତକ୍ଷଣେ ।।୬୩
ସେ ଦେହମଧ୍ୟେ ସନ୍ଧ୍ୟା ମିଶି ।
ତମେ ରଜନୀ ପ୍ରାୟ ଦିଶି ।।୬୪
କ୍ଷୁଧା ତୃଷାର ଅତିବଳେ ।
ସର୍ବେ ମିଳିଲେ ଏକମେଳେ ।।୬୫

ଥୋକେ ବୋଲନ୍ତି ରଖ ରଖ ।
ଥୋକେ ବୋଲନ୍ତି ବେଗେ ଭକ୍ଷ ।।୬୬
ତକ୍ଷଣେ ବ୍ରହ୍ମା ଭୟପାଇ ।
ବୋଲେ ତାହାଙ୍କ ମୁଖଚାହିଁ ।।୬୭
ଏ ପିଣ୍ଡ ରଖ ହୋ ନ ଭକ୍ଷ ।
ଏଣୁ ହୋଇବ ଯକ୍ଷ ରକ୍ଷ ।।୬୮
ତୁମ୍ଭେ ଯେ ଯକ୍ଷ-ରକ୍ଷ-ଗଣ ।
ମୋର ବଚନ ଏବେ ଶୁଣ ।।୬୯
ତୁମ୍ଭେ ମୋହର ପ୍ରଜା ହୁଅ ।
ଏମନ୍ତ କହି ପିତାମହ ।।୭୦
ସୃଜିଲା ଅପସରାଗଣ ।
ଦେବଙ୍କ ଭୋଗ୍ୟ ଯେ ପ୍ରମାଣ ।।୭୧
ଦିବସ ରୂପା ସେ ସାକ୍ଷାତେ ।
ସର୍ଜିଲା କ୍ରୀଡ଼ାର ନିମନ୍ତେ ।।୭୨
ବ୍ରହ୍ମା ସାତ୍ତ୍ୱିକ ମନୋଭାବ ।
ତହୁଁ ଦେବଙ୍କ ଆବିର୍ଭାବ ।।୭୩
ପୁଣି ଜଘନୁ ବେଦପତି ।
ଅସୁର କଲା ଉତ୍ପତ୍ତି ।।୭୪
ସ୍ତିରୀ ଲମ୍ପଟ ସେ ଯୁକତେ ।
ନାରୀଙ୍କୁ ଦେଖିଲେ ଅଗ୍ରତେ ।।୭୫
ତାହାଙ୍କୁ ଦେଖି ତତକ୍ଷଣେ ।
ଧାଇଁଲେ ସେ ଅସୁରଗଣେ ।।୭୬
ମୈଥୁନ ଲୋଭ ବନ୍ଧେ ଧାଇଁ ।
ବେଗେ ବେଢ଼ିଲେ ଲୋଭବହି ।।୭୭
ନିର୍ଲଜପଣ ତାହାଙ୍କର ।
ଦେଖି ହସିଲେ ବେଦବର ।।୭୮
ବ୍ରହ୍ମାର ହାସ୍ୟ ଦେଖି କୋପେ ।
ମିଳିଲେ ତାଙ୍କର ସମୀପେ ।।୭୯
ଚାହାଁନ୍ତେ କୋପିତ ବଦନେ ।
ଭୟ ପଶିଲା ବ୍ରହ୍ମା ମନେ ।।୮୦
ଶୂନ୍ୟେ ଗୋବିନ୍ଦ ପଦ ଧ୍ୟାୟୀ ।
ବୋଲଇ ଶିରେ କର ଦେଇ ।।୮୧
ପ୍ରାଣୀଙ୍କ ଅନୁଗ୍ରହ ଅର୍ଥେ ।
ତୁ ନାଥ ଆଜ୍ଞାଦେଲୁ ମୋତେ ।।୮୨
ସୃଷ୍ଟି କରଇ ତୋ'ର ବୋଲେ ।
ତୋ' ଅନୁରୂପ ଏ ଶୟଳେ ।।୮୩

ତୁ ମୋତେ ରଖ ଚକ୍ରଧର ।
ଏ ଗଣେ ମହାଭୟଙ୍କର ।।୮୪
ଏ ଯେବେ ଭକ୍ଷିବେଟି ମୋତେ ।
କେମନ୍ତେ ସର୍ଜିବି ଜଗତେ ।।୮୫
ବ୍ରହ୍ମା ବିକଳ କର୍ଣ୍ଣେ ଶୁଣି ।
ବୋଇଲେ ପ୍ରଭୁ ଚକ୍ରପାଣି ।।୮୬
ଏ ଦେହ ଘୋର ଭୟଙ୍କର ।
ବେଗେ ତୁ ଛାଡ଼ ଏ ଶରୀର ।।୮୭
ଶୁଣି ଗୋବିନ୍ଦର ବଚନ ।
ତକ୍ଷଣେ ଛାଡ଼ିଲା ଜୀବନ ।।୮୮
ସେ ଦେହ ସନ୍ଧ୍ୟାରୂପ ହୋଇ ।
ରୂପେ ଅସୁର ମନମୋହି ।।୮୯
ଯେ ଅପସରାଗଣ ଥିଲେ ।
ତା' ରୂପ ଦେଖି ମୋହ ଗଲେ ।।୯୦
ନାନା ଅଳଙ୍କାର ସାଜେଣୀ ।
ଚରଣେ ନୂପୁର ବାଜେଣୀ ।।୯୧
ମଦ ବିହ୍ୱଳିତ ଲୋଚନ ।
ଦୁକୂଳେ କଟୀ ଶୋଭାବନ ।।୯୨
କଟୀ ମେଖଳା ରତ୍ନସାର ।
ହୃଦୟେ ତୁଙ୍ଗ ପୟୋଧର ।।୯୩
ସୁନ୍ଦର ନାସିକା ବିରାଜେ ।
ଦନ୍ତ ଡାଳିମ୍ବ ବୀଜ ଗଞ୍ଜେ ।।୯୪
ସୁନ୍ଦର ହାସ ମନୋହର ।
ସଂଭ୍ରମ କଟାକ୍ଷ ସୁନ୍ଦର ।।୯୫
ବସ୍ତ୍ରେ ଆଚ୍ଛାଦି କଳେବର ।
ପଥେ ଚାଲଇ ଲାଜଭର ।।୯୬
ତା'ର କୁନ୍ତଳ ମନୋହର ।
ଶୁଣ ହେ ଧର୍ମାତ୍ମା ବିଦୁର ।।୯୭
ଅସୁରେ ଦେଖି ତା' ଗମନ ।
ସର୍ବେ ହୋଇଲେ ହତଜ୍ଞାନ ।।୯୮
କହନ୍ତି ଏକ ଏକେ ଚାହିଁ ।
ଏମନ୍ତ ଦେଖିଲାତ ନାହିଁ ।।୯୯
ନବୀନ ବୟସ ଏହାର ।
ରୂପ-ଲାବଣ୍ୟ ମନୋହର ।।୧୦୦
ଏ ଆମ୍ଭ ମନମଧ୍ୟେ ରମେ ।
ଅକାମୀଜନ ପ୍ରାୟ ଭ୍ରମେ ।।୧୦୧

Dr. Sudhanshu Sekhar Mishra

ଏମନ୍ତେ ସନ୍ଧ୍ୟାରୂପ ଦେଖି ।
ପ୍ରମଦା ପ୍ରାୟ ଉପଲକ୍ଷି ।।୧୦୨
ନୟନ ଦେଇ ତା' ବଦନେ ।
ଭାବେ ପୁଚ୍ଛନ୍ତି ଅନ୍ୟୋଅନ୍ୟେ ।।୧୦୩
ଏମନ୍ତ ବହୁତ ବିଚାର ।
କରିଣ ସକଳ ଅସୁର ।।୧୦୪
ପ୍ରଣୟବଶେ ପ୍ରମଦାର ।
କରିଣ ବହୁତ ସତ୍କାର ।।୧୦୫
କୁବୁଦ୍ଧି ପଣରେ ଅସୁର ।
ପୁଚ୍ଛିଲେ ତା'ଙ୍କୁ ବାରବାର ।।୧୦୬
ଆହେ ରମ୍ଭୋରୁ ସୁକଲ୍ୟାଣି ।
ପ୍ରମଦାକୂଳ ଶିରୋମଣି ।।୧୦୭
କାହାର ପତ୍ନୀ ତୁ ବୋଲାଉ ।
କହ ତୁ ଉପୁଜିଲୁ କାହୁଁ ।।୧୦୮
କହ ତୁ ତୋ'ର କିସ ନାମ ।
କି ପ୍ରୟୋଜନେ ତୋ' ଗମନ ।।୧୦୯
ତୋ' ରୂପ ଗୁଣେ ହୋଇ ଛନ୍ନ ।
ଆମ୍ଭର ସ୍ତଗିତ ଲୋଚନ ।।୧୧୦
ତୋହର ରୂପଗୁଣ ରାଶି ।
ଆମ୍ଭର ପ୍ରଭାକୁ ବିନାଶି ।।୧୧୧
ଆମ୍ଭର ପୂର୍ବଭାଗ୍ୟ ଫଳେ ।
ମିଳିଲୁ ଆମ୍ଭର ଛାମୁରେ ।।୧୧୨
କନ୍ଦୁକ କ୍ରୀଡ଼ା ତୋ ନୟନ ।
ରୂପେ ହରିଲୁ ଆମ୍ଭମନ ।।୧୧୩
ତୋ'ର ଚରଣ ପଦ୍ମଯୁଗ ।
ଗମନ ଚଞ୍ଚଳ ତରଙ୍ଗ ।।୧୧୪
ହସ୍ତେ କନ୍ଦୁକ ତୋ'ର ସାଜେ ।
ତୋ' ମଝା ସିଂହମଧ୍ୟ ଗଞ୍ଜେ ।।୧୧୫
ସେ ପୁଣି ସ୍ତନଭାର ଖିନ୍ନେ ।
ଭାଜିଲା ପ୍ରାୟ ଅନୁମାନେ ।।୧୧୬
ଏମନ୍ତ ସନ୍ଧ୍ୟା ରୂପ ଚାହିଁ ।
ଅସୁରଗଣ ଲୋଭ ବହି ।।୧୧୭
ସନ୍ଧ୍ୟାକୁ ଧରି ବାହୁବଳେ ।
ମୋହେ ମଜିଲେ କାମଭୋଳେ ।।୧୧୮
ଭାବ ଗମ୍ଭୀର ମଗ୍ନଚିତ୍ତ ।
ଦେଖି ବିଧାତା ହରଷିତ ।।୧୧୯

ବ୍ରହ୍ମାର ଶରୀର ବିରାଜେ ।
ତକ୍ଷଣେ ନିଜ କାନ୍ତି ତେଜେ ।।୧୨୦
ସ୍ୱଭାବେ ବ୍ରହ୍ମା ସେ ଆନନ୍ଦ ।
ଗନ୍ଧର୍ବ ଅପସରା ବୃନ୍ଦ ।।୧୨୧
ବ୍ରହ୍ମାର ଶରୀରୁ ବାହାର ।
ଯେ ରୂପ ମୋହେ ସୁରନର ।।୧୨୨
ଗନ୍ଧର୍ବ ବିଶ୍ୱାବସୁ ଆଦି ।
ସୁନ୍ଦର ରୂପରେ ପ୍ରସିଦ୍ଧି ।।୧୨୩
ଆବୋରି ଅପସରାଗଣେ ।
ସୁଖେ ରହିଲେ ଜଣେଜଣେ ।।୧୨୪
ତଦନ୍ତେ ଆତ୍ମତନ୍ଦ୍ରା ଧରି ।
ଭୂତ ପିଶାଚଗଣ କରି ।।୧୨୫
ସେ ମୁକ୍ତକେଶ ଦିଗମ୍ବର ।
ଦେଖି କମ୍ପିଲେ ସୁରନର ।।୧୨୬
ପଥେ ତାହାଙ୍କ ରୂପ ଦେଖି ।
ବ୍ରହ୍ମା ବୁଜିଲେ ବେନିଆଖି ।।୧୨୭
ଭୟେ ଅଳସ ତା'ର ମୁଖେ ।
କ୍ଷଣେ ଶୋଇଲା ନିଦ୍ରାସୁଖେ ।।୧୨୮
ସେ ଦେହ ନିଦ୍ରାବଶ ଚାହିଁ ।
ପୁଣି ଛାଡ଼ିଲା ନିଜ ଦେହୀ ।।୧୨୯
ପରୋକ୍ଷ ପୁଣି ସତ୍ତ୍ୱଗୁଣେ ।
ସର୍ଜିଲା ସାଧ ପିତୃଗଣେ ।।୧୩୦
ସେ ସାଧ ପିତୃ ବେନିଗଣ ।
ସେ ଯହୁଁ ହୋଇଲେ ଜନମ ।।୧୩୧
ସେ ଦେହ ପାଇ ତୋଷ ଚିତ୍ତ ।
କର୍ମକୋବିଦେ ଯେ ବିଦିତ ।।୧୩୨
ସେ ସିଦ୍ଧ ବିଦ୍ୟାଧର ଗଣେ ।
ଜାତ ହୋଇଲେ ତତକ୍ଷଣେ ।।୧୩୩
ସ୍ୱଭାବେ ତେଜ ଅନର୍ଗଳା ।
ତାହାଙ୍କୁ ଅନ୍ତର୍ଦ୍ଧାନ ଦେଲା ।।୧୩୪
ବିଧାତା ପ୍ରତିବିମ୍ବ ବଳେ ।
ଦେଖିଣ ମନର ନିଶ୍ଚଳେ ।।୧୩୫
କିନ୍ନର କିଂପୁରୁଷ ଜାତି ।
ପୁଣି ସର୍ଜିଲା ପ୍ରଜାପତି ।।୧୩୬
ମିଥୁନ ଭାବେ ବୀଣା ବାଇ ।
ଦେବଙ୍କ ତୋଷେ ଗୀତଗାଇ ।। ୧୩୭

ଏବେ ତୁ ଶୁଣ ହେ ବିଦୁର ।
ବ୍ରହ୍ମାର ସୃଷ୍ଟିର ପ୍ରକାର ।।୧୩୮
ସେ ସୃଷ୍ଟି ଚାହିଁ ପ୍ରଜାନାଥ ।
ମନରେ ହୋଇଲା ଚିନ୍ତିତ ।।୧୩୯
ଏ ସୃଷ୍ଟି ବୃଦ୍ଧି ତ ନୋହିଲା ।
ଚିନ୍ତାରେ ବହୁତ ଶୋଇଲା ।।୧୪୦
ତାହାଙ୍କୁ ସର୍ଜି ବେଦବର ।
ତକ୍ଷଣେ ଛାଡି ସେ ଶରୀର ।।୧୪୧
ଦେହ ଅନ୍ତରେ ଶୂନ୍ୟେ ରହି ।
ଶରୀର ଦେଖି ବିଚାରଇ ।।୧୪୨
ସର୍ଜନେ ଯୋଗ୍ୟ ଏ ନୁହନ୍ତି ।
ଏମନ୍ତେ କ୍ରୋଧେ ବହୁ ଚିନ୍ତି ।।୧୪୩
କ୍ରୋଧର ବଶେ ପଦ୍ମଯୋନି ।
ସେ ଭୋଗଦେହ ତ୍ୟଜେ ପୁଣି ।। ୧୪୪
ତହୁଁ ସେ କେଶ ଗଲା ଖସି ।
ତହୁଁ ଜନ୍ମିଲେ ସର୍ପରାଶି ।।୧୪୫
ତକ୍ଷଣେ ତମ ଗୁଣୁ ଜାତ ।
ଗରଳ ତେଜେ ବଳବନ୍ତ ।।୧୪୬
ତାହାଙ୍କୁ ଚାହିଁ ପ୍ରଜାନାଥ ।
ସନ୍ତୋଷେ ହେଲା କୃତକୃତ୍ୟ ।।୧୪୭
ପୁଣି କଳ୍ପିଲା ମନୋରଥେ ।
ଆବର ସୃଷ୍ଟିଭାବ ଯେତେ ।। ୧୪୮
ମନୁଙ୍କୁ କଲା ଉତପତ୍ତି ।
ମନର ତହୁଁ ବେଦପତି ।। ୧୪୯
ନିଜ ପୁରୁଷ ରୂପ ଦେହ ।
ତାଙ୍କୁ ଅର୍ପିଲା ପିତାମହ ।। ୧୫୦
ସ୍ତିରୀ ପୁରୁଷ କଲେ ମନେ ।
ଯେ ସୃଷ୍ଟି ଉପୁଜେ ମୈଥୁନେ ।।୧୫୧
ଯେ ଅଗ୍ରେ ଜାତ ହୋଇଥିଲେ ।
ତାଙ୍କୁ ପ୍ରଶଂସା ବହୁ କଲେ ।। ୧୫୨
ଏମନ୍ତେ ବ୍ରହ୍ମା ସୃଷ୍ଟି ଚାହିଁ ।
ବିବୁଧେ ତାର ଗୁଣ ଗାଇ ।। ୧୫୩
ବୋଲନ୍ତି ଧନ୍ୟ ବେଦପତି ।
ସୃଷ୍ଟି ସର୍ଜନେ ଦୃଢମତି ।। ୧୫୪
ଅନେକ ତପ ଯେଣୁ କଲୁ ।
ଗୋବିନ୍ଦ ଆଜ୍ଞା ତୁ ଲଭିଲୁ ।। ୧୫୫

Dr. Sudhanshu Sekhar Mishra

ନିଜ ସାଧନା ତପଫଳେ ।
ଏ ସୃଷ୍ଟି କଲୁ ବୁଦ୍ଧିବଳେ ॥ ୧୫୬
ଏଣେ ହୋଇବ ସର୍ବଯୋଗ।
ଆମ୍ଭେ ଲଭିବୁ ହବିର୍ଭାଗ ॥ ୧୫୭
ତପସ୍ୟା ବିଦ୍ୟା ଆସନାଦି ।
ଅଷ୍ଟାଙ୍ଗଯୋଗ ସୁସମାଧି ॥ ୧୫୮
ପୁଣି ସର୍ଜିଲା ଋଷିଗଣ ।
ସ୍ୱବଶ କରି ଇନ୍ଦ୍ରଗଣ ॥ ୧୫୯

ଏମନ୍ତ ଋଷି ସୃଷ୍ଟି କଲା ।
ଆପଣା ଦେହ ଅଂଶ ହେଲା॥ ୧୬୦
ଏମନ୍ତେ ସୃଷ୍ଟିର କାରଣ ।
ବିଧାତା ରୂପେ ନାରାୟଣ ॥ ୧୬୧
କରଇ ପୁଣ ପୁଣ ଭାବେ ।
ତାର ଭକତଜନ ଲାଭେ ॥ ୧୬୨
ଏମନ୍ତେ ଭାଗବତ ବାଣୀ ।
ମୈତ୍ରେୟ ମୁନି ଆଗେ ଭଣି ॥ ୧୬୩

ବନେ ପିପ୍ପଳ ବୃକ୍ଷ ମୂଳେ ।
ଶ୍ରୀକୃଷ୍ଣ ରୂପ ତ୍ୟାଗ କାଳେ॥ ୧୬୪
ସେ କଥା ପରୀକ୍ଷିତ ଆଗେ ।
ମୁନି କହିଲେ ପ୍ରିୟ ଭାବେ ॥ ୧୬୫
ହରି ଚରିତ ଭାଗବତ ।
କହିଲା ଦାସ ଜଗନ୍ନାଥ ॥ ୧୬୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ବିଂଶୋଽଧ୍ୟାୟଃ ।

---

## ଏକବିଂଶ ଅଧ୍ୟାୟ

ମୈତ୍ରେୟ ମୁନି ପାଦେ ପଡି ।
ବିଦୁର କହେ କରଯୋଡି ॥୧
ବିଦୁର ଉବାଚ
ବୋଇଲେ ଶୁଣ ହେ ମୈତ୍ରେୟ ।
ମୋହର ପ୍ରତି ତୁ ସଦୟ ॥୨
ସେ ସ୍ୱାୟମ୍ଭୂବ -ମନୁବଂଶ ।
ମୋ ଆଗେ କର ହେ ପ୍ରକାଶ ॥୩
ଯାର ପ୍ରଶଂସା ସାଧୁଲୋକ ।
କରନ୍ତି ସଦା ଅତିରେକ ॥୪
ବ୍ରହ୍ମାର ତହୁଁ ଯାର ତନୁ ।
ଯେ ପୂର୍ବେ ସ୍ୱାୟମ୍ଭୂବମନୁ ॥୫
ତାହାର ବଂଶ ଏ ଜଗତେ ।
କି ରୂପେ ପ୍ରସରିଲେ କେତେ ॥ ୬
ମୈଥୁନ ମତେ କଲା ପ୍ରଜା ।
ଯେ ପୁଣି ମନୁବଂଶେ ରାଜା ॥ ୭
ସେ ସ୍ୱାୟମ୍ଭୂବ ମନୁ ସୁତ ।
ଉତ୍ତାନପାଦ ପ୍ରିୟବ୍ରତ ॥ ୮
ତେଜେ ପ୍ରଚଣ୍ଡ ସେ ବିରାଜେ।
ଏ ସପ୍ତଦ୍ୱୀପା ମହୀ ଭୁଞ୍ଜେ ॥ ୯
ଯେମନ୍ତେ ଧର୍ମ ଏ ସଂସାରେ ।
ରଖିଲେ କହ ମୁନିବରେ ॥ ୧୦
ତାର ଦୁହିତା ଅନୁପମ ।
ଯାହାର ଦେବହୂତି ନାମ ॥ ୧୧

କର୍ଦ୍ଦମ ତାର ନିଜ ପତି ।
ତାର ଭୁବନେ ଦେବହୂତି ॥ ୧୨
ସେବା କରଇ ଅନୁବ୍ରତେ ।
ଯେ ଧର୍ମ ପତିବ୍ରତା ମତେ ॥ ୧୩
ସ୍ୱାମୀ ସୁହାଗେ ସଉଭାଗ୍ୟେ ।
ମୈଥୁନ ଭାବେ ରତିରଙ୍ଗେ ॥ ୧୪
ତାହାର ଗର୍ଭେ ପୁତ୍ର କେତେ ।
ଜନ୍ମିଲେ କହ ମୋ ଅଗ୍ରତେ ॥ ୧୫
ତାହା ଶ୍ରବଣେ ଇଚ୍ଛା ମୋର ।
କହ ସଦୟେ ମୁନିବର ॥ ୧୬
ମନୁ ତନୟା ଯେ ଆକୂତି ।
ତାହାଙ୍କୁ ରୁଚି ପ୍ରଜାପତି ॥ ୧୭
ବ୍ରହ୍ମଜ ଦକ୍ଷ ପ୍ରଜାପତି ।
ସେ ପୁଣ ଲଭିଣ ପ୍ରସୂତି ॥ ୧୮
ସୃଷ୍ଟି ସୃଜିଲେ କେଉଁଭାବେ ।
ଭୋ ମୁନି ତାହା କହ ଏବେ ॥ ୧୯
ଏମନ୍ତ ବିଦୁରର ବାଣୀ ।
ମୈତ୍ରେୟ ବୋଲେ ତାହାଶୁଣି ॥ ୨୦
ମୈତ୍ରେୟ ଉବାଚ
କର୍ଦ୍ଦମେ ରାଇ ବେଦବର ।
ବୋଇଲେ ପ୍ରଜା ସୃଷ୍ଟିକର ॥ ୨୧
ବ୍ରହ୍ମାର ଆଜ୍ଞା ଘେନି ଶିରେ ।
ମିଳିଲେ ସରସ୍ୱତୀ ତୀରେ ॥ ୨୨

ଅତି କଠୋର ତପ କଲା ।
ଶୁଣ ହେ ଯେତେ ଦିନ ଗଲା ॥ ୨୩
ଦେବଙ୍କ ଅୟୁତ ବରଷେ ।
ବସିଲା ଆତ୍ମାର ବିଶ୍ୱାସେ ॥ ୨୪
ସମାଧି ଯୋଗରେ କର୍ଦ୍ଦମ ।
ସେବିଲେ ପୁରୁଷଉତ୍ତମ ॥ ୨୫
ତପ ସମାଧି କ୍ରିୟା ଯୋଗେ ।
ନିଶ୍ଚଳ ଭକ୍ତି ଅନୁରାଗେ ॥ ୨୬
ତାର ସମୀପେ ହୃଷୀକେଶ ।
ତକ୍ଷଣେ ହୋଇଲେ ପ୍ରବେଶ ॥ ୨୭
ଶୁକ୍ଳ-କମଳ-ମାଳ ଗଳେ ।
ବଦନ ଶୋଭିତ କୁଣ୍ଡଳେ ॥୨୮
ଶବଦବ୍ରହ୍ମ ରୂପ ଧରି ।
ଶତେ ଆଦିତ୍ୟ ନୋହେ ସରି ॥ ୨୯
ଲୋଚନ ପୁଣ୍ଡରୀକଦଳେ ।
ସୁନ୍ଦର ଅଳକା କପୋଳେ ॥ ୩୦
ନିର୍ମଳ ବସ୍ତ୍ର ପରିଧାନ ।
ସୁନ୍ଦର ମସ୍ତକ ଭୂଷଣ ॥ ୩୧
କିରୀଟ କୁଣ୍ଡଳ ବିରାଜେ ।
ଶଙ୍ଖ କମଳ ଗଦା ସାଜେ ॥ ୩୨
ଚକ୍ର ବିରାଜେ ଦକ୍ଷକରେ ।
ତେତେଜେଣ ଦଶଦିଗ ପୁରେ ॥ ୩୩
ଅଧରେ ସ୍ମିତହାସ୍ୟ ଯାର ।
ବିରାଜେ ଅତି ମନୋହର ॥ ୩୪

Dr. Sudhanshu Sekhar Mishra

ସ୍ମିତ ବାରିକ ଚକ୍ଷୁ ବେନି ।
ବିରାଜେ ନିଜ ତେଜ ଘେନି ॥୩୫
ସୁନ୍ଦର ହାସ୍ୟେ ମନ ମୋହେ ।
କୋଟି କନ୍ଦର୍ପ ସମ ନୋହେ ॥୩୬
ଗରୁଡ ସ୍କନ୍ଧେ ଆରୋହଣ ।
ଅମୂଲ୍ୟ ରତ୍ନ ବିଭୂଷଣ ॥୩୭
ଭ୍ରୂଭଙ୍ଗେ ରୁଚିର ଶ୍ରୀମୁଖ ।
ଦେଖନ୍ତେ ହରେ ଭବଦୁଃଖ ॥୩୮
ଶ୍ରୀବତ୍ସଚିହ୍ନ ହୃଦେ ସାଜେ ।
କୌସ୍ତୁଭମଣି କଣ୍ଠମାଝେ ॥୩୯
ଶୁକ୍ଳ ଶରୀର ଶୂନ୍ୟମାର୍ଗେ ।
ଯେ ରୂପ ବହେ ସତ୍ୟଯୁଗେ ॥୪୦
ଶୂନ୍ୟ-ମଣ୍ଡଳେ ବିଷ୍ଣୁ ଦେଖି ।
ଉଠିଲା ଆସନ ଉପେକ୍ଷି ॥୪୧
ବହୁ ବରଷ ତପ ଶ୍ରମ ।
ଦେଖନ୍ତେ ଗଲା ମନ ଭ୍ରମ ॥୪୨
ରୋମ ହରଷ କଳେବର ।
ନୟନୁ ବହେ ଅଶ୍ରୁଧାର ॥୪୩
କର ଅଞ୍ଜଳି ଦେଇ ମାଥେ ।
ଦଣ୍ଡ ପ୍ରଣାମ ଭୂମିଗତେ ॥୪୪
ଆନନ୍ଦେ ପ୍ରାପ୍ତ ମନୋରଥ ।
ଅନ୍ତରେ ହୋଇ କୃତକୃତ୍ୟ ॥୪୫
ଶ୍ରୁତି ବଚନ ମୁଖେ କହି ।
ବୋଲଇ ବିଷ୍ଣୁ ରୂପ ଚାହିଁ ॥୪୬

କର୍ଦ୍ଦମ ଉବାଚ

ଭୋ ନାଥ ତବ ଦରଶନ ।
ସଫଳ କଲା ମୋ ନୟନ ॥୪୭
ଯେ ରୂପ ଦେଖିବାର ଅର୍ଥେ ।
ଯୋଗ ସାଧନ୍ତି ମୁନିସନ୍ତେ ॥୪୮
ଭୋ ନାଥ ତୋହର ଚରଣ ।
ଜୀବର ପରମ କାରଣ ॥୪୯
ତୋ ପାଦପଦ୍ମ ନାବ କରି ।
ଭବସାଗରୁ ଯାନ୍ତି ତରି ॥୫୦
ଏ ଭାବ ଛାଡ଼ି ଯେ ସଂସାରେ ।
ବିଷୟରସ ଆଶ୍ରେ କରେ ॥୫୧
ତାହାର ମୋକ୍ଷ ଆଉ କାହିଁ ।
ସଂସାରେ ନିୟତ ଭ୍ରମଇ ॥୫୨
ନରକେ ଯାନ୍ତି ସେହି ମତେ ।
ସେ ତୋତେ ପାଇବେ କେମନ୍ତେ ।।୫୩
ସେହି ପ୍ରକାରେ ମନ ମୋର ।
କଳ୍ପଇ ବିଷୟା ଗୋଚର ॥୫୪
ତୋର ଆଦେଶେ ସୃଷ୍ଟି ଧର୍ମେ ।
କଳ୍ପଇ ଗୃହସ୍ଥ ଆଶ୍ରମେ ॥୫୫
ଯେ ଗୃହ କାମଧେନୁ ପ୍ରାୟେ ।
କୁଟୁମ୍ବ ଜନ ମନ ମୋହେ ॥୫୬
ତୋର ଚରଣ କଳ୍ପଦ୍ରୁମ ।
ଆଶ୍ରେ ଲଭିବି ସର୍ବକାମ ॥୫୭
ତୋ ଅନୁଗ୍ରହେ ମନୁରାଜା ।
କଳ୍ପିବ ତାହାର ତନୁଜା ॥୫୮
ମୁଁ ପୁଣି ସର୍ବପ୍ରାଣୀ ହିତେ ।
ଯେମନ୍ତେ ତୋ ଚରଣାଗତେ ॥୫୯
ବଳି ନିବେଦି ଗୃହଧର୍ମେ ।
ଯେମନ୍ତେ ରମିବି ଆଶ୍ରମେ ॥୬୦
ତୋ ପଦ୍ ବିନୁ ଚକ୍ରଧର ।
ସେବିବି କାହାର ପୟର ॥୬୧
ତୋ ପାଦ ତାପତ୍ରୟ-ଛତ୍ର ।
ଏ କଥା ଜଗତେ ବିଦିତ ॥୬୨
ତୋ ରୂପ ଗୁଣ ଅବତାର ।
ନିର୍ମଳ ବହେ ସୁଧାଧାର ॥୬୩
ତେଣେ ଲୋଭିତ ଯାର ଚିତ୍ତ ।
ସେ ନୋହେ କାଳଚକ୍ରେ ଗ୍ରସ୍ତ ॥୬୪
ତୋ କାଳଚକ୍ରର ମହିମା ।
କେ କରିପାରେ ଗୁଣ ସୀମା ॥୬୫
ଯାହାର ବ୍ରହ୍ମରୂପୀ ଅକ୍ଷ୍ୟ ।
ଭ୍ରମଣେ କେବା କରୁ ଲକ୍ଷ୍ୟ ॥୬୬
ତୃତୀୟ ଦଶ ଅର ହୋଇ ।
ତ୍ରିଶତଷଷ୍ଟୀ ପର୍ବ ଯହିଁ ॥୬୭
ଅନନ୍ତ ପତ୍ର ଷଟନେମୀ ।
ତ୍ରିନାଭି ଯେହୁ ବ୍ୟଗ୍ରଗାମୀ ॥୬୮
ଏ ରୂପେ ଧାମେ ଅବିରତେ ।
ପ୍ରାଣୀ ଆୟୁଷ ହରେ ନିତ୍ୟେ ॥୬୯
ଏମନ୍ତ କାଳ ରୂପ ଯେହି ।
ତୋ ଭକ୍ତେ ନ ପାରଇ ସେହି ॥୭୦
ତୁ ଏକରୂପୀ ଛନ୍ନଦେହା ।
ଜଗନ୍ମୋହିନୀ ତୋର ମାୟା ॥୭୧
ତେଣେ ଏ ସୃଷ୍ଟି ସ୍ଥିତି ଅନ୍ତ ।
ଯେସନେ ଉର୍ଣ୍ଣନାଭି ବତ ॥୭୨
କାମୀ ଅକାମୀ ମନ ପୂର୍ଣ୍ଣ ।
କରେ ତୋ ପାଦ କଳ୍ପଦ୍ରୁମ ॥୭୩
ତୋତେ ଜାଣନ୍ତି ଯେତେ ଜୀବେ ।
କର୍ମର ଭୋଗନାଶ ତେବେ ॥୭୪
ଆପଣେ ଆପଣା ମାୟାରୁ ।
ଏ ବିଶ୍ୱ ଆବର୍ତ୍ତିତ କରୁ ॥୭୫
ତୁହି ସକଳ କାମଦାତା ।
ନିଷ୍କାମ ଜନ ମୋକ୍ଷଦାତା ॥୭୬
ଏଣୁ ମୁଁ ନିଷ୍କା କାମ ବଳେ ।
ନମଇ ତୋ ପାଦ କମଳେ ॥୭୭
ଯେଣୁ ତୁ ଭକ୍ତି-ମୁକ୍ତିଦାତା ।
ତୋ ପାଦେ ନମୁଁ ଦୁଃଖ ହର୍ତ୍ତା ॥୭୮
ଭୋ ନାଥ ତୋହର ମହିମା ।
କେ କହିପାରେ ଗୁଣସୀମା ॥୭୯

ମୈତ୍ରେୟ ଉବାଚ

ଏମନ୍ତ ମୁନି ବାକ୍ୟ ଶୁଣି ।
ଗରୁଡ ସ୍କନ୍ଧେ ଚକ୍ରପାଣି ॥୮୦
ଜ୍ୟୋତି ସ୍ୱରୂପ ଶୂନ୍ୟେ ଥାଇ ।
କହନ୍ତି ମୁନି ମୁଖ ଚାହିଁ ॥୮୧

ଭଗବାନ ଉବାଚ

ଶୁଣ ହୋ ପ୍ରଜାପତି ସୁତ ।
ମୁହିଁ ଜାଣିଲି ତୋର ଚିତ୍ତ ॥୮୨
ତୁ ଯେଣୁ ପୂଜି ମୋ ଚରଣ ।
କଳ୍ପିଲୁ ସୃଷ୍ଟିର କାରଣ ॥୮୩
ଯହିଁ ତୋହାର ମନଯୋଗ ।
ପୂର୍ବେ କରିଛି ତା ସଂଯୋଗ ॥୮୪
ଅବଶ୍ୟ ତାହା କରିବଇଁ ।
ମୋ ପୂଜା ବିଅର୍ଥେ ନ ଯାଇ ॥୮୫

Dr. Sudhanshu Sekhar Mishra

ତୁ ଏବେ ସାବଧାନେ ଶୁଣ ।
କହିବା ତହିଁର କାରଣ ॥୮୬
ଯେ ପୂର୍ବେ ପଦ୍ମଯୋନି ତନୁ ।
ସମ୍ଭୂତ ସ୍ୱାୟମ୍ଭୁବମନୁ ॥୮୭
ଯେ ପ୍ରଜାପତିଙ୍କର ପତି ।
ଯାହାର ସଦାଚ୍ଚର ଖ୍ୟାତି ॥୮୮
ଏ ବ୍ରହ୍ମାବର୍ତ୍ତେ ରାଜା ହୋଇ ।
ପାଳଇ ସପ୍ତଦ୍ୱୀପା ମହୀ ॥୮୯
ସେହି ଧର୍ମଙ୍କ ମନୁ ତୋତେ ।
ଆସିବେ ଦେଖିବା ନିମନ୍ତେ ॥୯୦
ତାହାର ଶତରୂପା ନାରୀ ।
ରୂପେ କମଳା ନୋହେ ସରି ॥୯୧
ସେ ବେନିଜନେ ଏକ ରଥେ ।
ତୋ ରୂପ ଦେଖିବାର ଅର୍ଥେ ॥୯୨
ତୋହର ସମୀପେ ସାକ୍ଷତେ ।
ମିଳିବେ ବେନିଦିନ ଅନ୍ତେ ॥୯୩
ତାର ଦୁହିତା ଦେବହୂତି ।
ରୂପେ ସମାନ ନୋହେ ରତି ॥୯୪
ତାର ବୟସ ରୂପ ଗୁଣେ ।
ଅପରେ କେ ଅଛି ପ୍ରମାଣେ ॥୯୫
ତା ରୂପ ଅତି ମନୋହର ।
ତୁ ତାହା ଅନୁରୂପେ ବର ॥୯୬
ସେ କନ୍ୟା ସମର୍ପିବ ତୋତେ ।
ଯେ ବିଧିବିଧାନ ଉକତେ ॥୯୭
ତୁ ମୋ ଚରଣେ ଚିତ୍ତ ଦେଇ ।
ଯେତେ ବରଷ ତପ ଦାହି ॥୯୮
ନିରତେ କଲୁ ଆତ୍ମଯୋଗ ।
ଏବେ ବିଷୟ ଅନୁଭୋଗ ॥୯୯
ମନୁ-ଦୁହିତା ତୋର ସଙ୍ଗେ ।
ନିରତେ ଭଜୁ ଅନୁରାଗେ ॥୧୦୦
ସେ ତୋର ତୁଲେ କରି ଭାବ ।
ନବଧା-ଗର୍ଭ ପ୍ରସବିବ ॥୧୦୧
ତୋହର ବୀର୍ଯ୍ୟେ ଯେତେ କନ୍ୟା ।
ଜନ୍ମିବେ ରୂପଗୁଣେ ଧନ୍ୟା ॥୧୦୨
ତାହାଙ୍କ ଗର୍ଭେ ଋଷିଗଣ ।
କଲ୍ପିବେ ବହୁତ ସନ୍ତାନ ॥୧୦୩

ତୋହର ଗୁଣ ଅନୁପମ ।
ହୋଇବେ ଅନୁମତ ନାମ ॥୧୦୪
ତୁ ଯେ ମୋ ଆଜ୍ଞା ଶିରେ ଧରି ।
ମୋତେ ତୁ ତୀର୍ଥପ୍ରାୟ କରି ॥୧୦୫
ଅଶେଷ କର୍ମଫଳ ଦେଇ ।
ମୋତେ ପାଇବୁ ତେଣୁ ତୁହି ॥୧୦୬
ଅଶେଷଭୂତେ ତୋର ଦୟା ।
ତୋତେ ନ ଲାଗୁ ବିଷ୍ଣୁ ମାୟା ॥୧୦୭
ଆତ୍ମାରେ ଜଗତ ଆରୋପି ।
ତୁ ଯେ ମୋହାର ଭାବେ ବ୍ୟାପି ॥୧୦୮
ଆତ୍ମା ସହିତେ ସର୍ବଭୂତ ।
ମୋଠାରେ ହୋଇଛି ମିଳିତ ॥୧୦୯
ତପ ସାଧିଲୁ ଚିରକାଳେ ।
ଏ ଘୋର ସଂସାର ଉଲ୍ଲୋଳେ ।୧୧୦
ତୁ ମୋତେ ଆତ୍ମାରେ ଦେଖିବୁ ।
ଜୀବନ ସଫଳ ଲଭିବୁ ॥୧୧୧
ମୁଁ ପୁଣି ପଶି ତୋର ବୀର୍ଯ୍ୟେ ।
ସ୍ୱଭାବେ ବିଷ୍ଣୁଅଂଶ ତେଜେ ॥୧୧୨
ତୋହାର କ୍ଷେତ୍ରେ ମୁଁ ସମ୍ଭୂତ ।
ହୋଇବି ଦେବହୂତି ସୁତ ॥୧୧୩
ତତ୍ତ୍ୱ ସଂହିତା ପ୍ରଣୟନ ।
କରିବି ହୋଇ ଅବତୀର୍ଣ୍ଣ ॥୧୧୪

ମୈତ୍ରେୟ ଉବାଚ

ଏମନ୍ତ କହି ମୁନି ଆଗେ ।
ହରି ଚଳିଲେ ଶୂନ୍ୟମାର୍ଗେ ॥୧୧୫
ଗମିଲେ ବିନ୍ଦୁସରୋବରୁ ।
ନିର୍ମଳ ସରସ୍ୱତୀ ତୀରୁ ॥୧୧୬
ସେ ନଦୀତୀରେ ପୁଷ୍ପବନେ ।
ଗରୁଡ ପକ୍ଷୀ ନାଦ ସ୍ୱନେ ॥୧୧୭
ଭୃଙ୍ଗ ସମୂହେ ବାୟୁ ବହେ ।
ଶୁଭଇ ସାମଗାନ ପ୍ରାୟେ ॥୧୧୮
ଏମନ୍ତେ ଶୁଣ ହୋ ବିଦୁର ।
ସେ ସ୍ୱାୟମ୍ଭୁବ ମନୁବର ॥୧୧୯
ସୁବର୍ଣ୍ଣ ଆଚ୍ଛାଦିତ ରଥେ ।
ଆରୋହି ପାରିଷଦ ଯେତେ ॥୧୨୦

ସଙ୍ଗତେ ଘେନି ଦେବହୂତି ।
ଭୂମି ପର୍ଯ୍ୟଟନ କରନ୍ତି ॥୧୨୧
ମିଳିଲେ କର୍ଦ୍ଦମ ଆଶ୍ରମେ ।
ବିଷ୍ଣୁର କହିଥିବା ଦିନେ ॥୧୨୨
ନିର୍ମଳ ସରସ୍ୱତୀ ତୀରେ ।
ମିଳିଲେ ବିନ୍ଦୁ ସରୋବରେ ॥୧୨୩
ଦେଖିଲେ କର୍ଦ୍ଦମ ଶରୀର ।
ତପ ସାଧନେ କୃଶତର ॥୧୨୪
ପୂର୍ବେ ଯେ ସରସ୍ୱତୀ କୂଳେ ।
ବିଷ୍ଣୁ ମିଳିଲେ ଋଷିମେଳେ ॥୧୨୫
ଦେଖି ତାହାଙ୍କ ଭକ୍ତିଭାବ ।
ତନୁ ପୁଲକ ପଦ୍ମନାଭ ॥୧୨୬
ସ୍ୱଭାବେ ଭକ୍ତଜନବନ୍ଧୁ ।
ନୟନୁ ଅଶ୍ରୁ ଜଳବିନ୍ଦୁ ॥୧୨୭
ପଡିଲା ସରସ୍ୱତୀ ନୀର ।
ତେଣୁ ବୋଲାଇ ବିନ୍ଦୁସର ॥୧୨୮
ସେ ବନ ସାମାନ୍ୟ ନୋହର ।
ଯହିଁରେ ପ୍ରଭୁ ଭାବଗ୍ରାହୀ ॥୧୨୯
କର୍ଦ୍ଦମ ପ୍ରତି ଦୟା କରି ।
ପତିତ କଲେ ନେତ୍ର ବାରି ॥୧୩୦
ପୁଣ୍ୟ ପବିତ୍ର ସୁଧା ଜଳ ।
ସ୍ୱଭାବେ ନିର୍ମଳ ଶୀତଳ ॥୧୩୧
ଯେ ପୁଣ୍ୟଜଳ ମୁନିଗଣେ ।
ସେବା କରନ୍ତି ଅନୁକ୍ଷଣେ ॥୧୩୨
ପବିତ୍ର ଦ୍ରୁମଲତା ଘନେ ।
ନାଦ କରନ୍ତି ପକ୍ଷୀଗଣେ ॥୧୩୩
କ୍ରୀଡନ୍ତି ନାନା ବନଜୀବେ ।
ଗଭୀର ଶୁଭେ ଭୃଙ୍ଗରବେ ॥୧୩୪
ସକଳ ଋତୁ ଫଳ ନାହିଁ ।
ପୁଷ୍ପ ପଲ୍ଲବ ବିରାଜଇ ॥୧୩୫
ମତ୍ତ-ମୟୂର ଯୂଥ ଯୂଥ ।
କୋକିଳ ରାବ ସୁଲଳିତ ॥୧୩୬
ପ୍ରମତ୍ତ ଭ୍ରମର ନିକରେ ।
ନାନା ପ୍ରକାରେ କ୍ରୀଡ଼ା କରେ ॥୧୩୭
କଦମ୍ବ ଚମ୍ପକ ଅଶୋକ ।
ନାଗକେଶ୍ୱର କୁରୁବକ ॥୧୩୮

Dr. Sudhanshu Sekhar Mishra

କରଞ୍ଜ ପନସ ଅସନ ।
କୁନ୍ଦ ମନ୍ଦାର ଚୂତବନ ॥୧୩୯

ହଂସ ସାରସ ବକପନ୍ତି ।
ଜଳକୁକ୍‌କୁଟ ରାବ ଦ୍ୟନ୍ତି ॥୧୪୦

ଚକୋର ଚକ୍ରବାକ ବାଣୀ ।
ଅତି ଗଭୀର ପରିମାଣି ॥୧୪୧

ଗୟଳ ଶଲ୍ଲକ କୁଞ୍ଜର ।
କୁରଙ୍ଗ ହରିଣ ଶୂକର ॥୧୪୨

ବାନର ଗୋଲାଙ୍ଗୁଳ ସାଜେ ।
ନକୁଳ କସ୍ତୂରୀ ବିରାଜେ ॥୧୪୩

ସେ ତୀର୍ଥବରେ ଆଦିରାଜା ।
ରଥେ ମିଳିଲେ ମହାତେଜା ॥୧୪୪

କଳତ୍ର ଦୁହିତା ସମେତେ ।
ପ୍ରବେଶ ହେଲା ରତ୍ନରଥେ ॥୧୪୫

ଦେଖିଲା ମୁନିଙ୍କ ବଦନ ।
ସ୍ୱଭାବେ ଦ୍ରୁତ ହୁତାଶନ ॥୧୪୬

ସ୍ୱଭାବେ ଘୋରତପ ତେଜେ ।
ସୁନ୍ଦର ଶରୀର ବିରାଜେ ॥୧୪୭

ବିଷ୍ଣୁ ଜନ୍ମିବେ ଯା ଶରୀରେ ।
ସୁନ୍ଦର କେତେକ ମାତରେ ॥୧୪୮

ଅମୃତ ତୁଲ୍ୟ ବିଷ୍ଣୁବାଣୀ ।
ସେ ମୁନି କର୍ଣ୍ଣପଥେ ଶୁଣି ॥୧୪୯

ରୋମ ପୁଲକ କଳେବର ।
ନେତ୍ରେ ଆନନ୍ଦ ଅଶ୍ରୁଧାର ॥୧୫୦

ଶିରେ ସୁନ୍ଦର ଶୋହେ ଜଟା ।
ବସନ ଚିରାଣି କାଛଟା ॥୧୫୧

ସେ ମୁନି ମଳିନ ଯେ ଗାତ୍ର ।
ରତ୍ନ ଯେସନେ ଅସଂସ୍କୃତ ॥୧୫୨

ଏମନ୍ତ ଦେଖି ନୃପମଣି ।
ସଙ୍ଗତେ ନିଜ ପତ୍ନୀ ଘେନି ॥୧୫୩

ରଥୁ ତୁରିତେ ଅବତରି ।
ମୁନି ସମୀପେ ଦଣ୍ଡଧାରୀ ॥୧୫୪

ମିଳିଲେ ଯୋଡି ବେନିପାଣି ।
ପାଦେ ପ୍ରଣାମ କଲେ ପୁଣି ॥୧୫୫

ଦେଖି ଉଠିଲେ ମୁନି ବେଗେ ।
ଆଶିଷ କଲେ ମନ୍ତ୍ରଯୋଗେ ॥୧୫୬

ବିଷ୍ଣୁ ଆଦେଶ ଗୁଣି ମନେ ।
ଆନନ୍ଦ ଉଲ୍ଲୋଳ ଲୋଚନେ ॥୧୫୭

ପୂଜିଲେ ବସାଇ ଆସନେ ।
କହନ୍ତି ଅମୃତ ବଚନେ ॥୧୫୮

ରାଜ କୁଶଳ ପ୍ରଶ୍ନବାଣୀ ।
ସନ୍ତୋଷେ ପୁଚ୍ଛେ ବିପ୍ରମଣି ॥୧୫୯

କର୍ଦ୍ଦମ ଉବାଚ

ତୋ ଆଗମନେ ନୃପବର ।
ଧନ୍ୟ ଏ ଆଶ୍ରମ ମୋହର ॥୧୬୦

ତୁମ୍ଭ ଭ୍ରମଣ ଏ ଜଗତେ ।
ସାଧୁଜନଙ୍କ ରକ୍ଷା ଅର୍ଥେ ॥୧୬୧

ଅସାଧୁଜନ ବିନାଶନେ ।
ନିଶ୍ଚଳେ ଧର୍ମର ସ୍ଥାପନେ ॥୧୬୨

ରବି ଶଶାଙ୍କ ଅଗ୍ନି ଯମ ।
ଇନ୍ଦ୍ର ବରୁଣ ବାତ ଧର୍ମ ॥୧୬୩

ଏ ଅଷ୍ଟ-ଦିଗପାଳ ତେଜ ।
ଏଣୁ କ୍ଷତ୍ରିୟ ଅଷ୍ଟଭୁଜ ॥୧୬୪

ଏଣୁ ତୁମ୍ଭଙ୍କୁ ନମସ୍କାର ।
ତୁ ଧର୍ମମୂର୍ତ୍ତି ନୃପବର ॥୧୬୫

ରଥ ଆରୋହି ତୋ ବିହାର ।
ଅସତଜନ ଗର୍ବ ହର ॥୧୬୬

ଘୋର-ଗର୍ଜନ ଧନୁ-ରବେ ।
ଉଦଣ୍ଡ ସଂଗ୍ରାମ ଉତ୍ସବେ ॥୧୬୭

ବେଷ୍ଟିତ ଚତୁରଙ୍ଗ ବଳେ ।
କମ୍ପାଇ ଅବନୀ ମଣ୍ଡଳେ ॥୧୬୮

ସୂର୍ଯ୍ୟର ପ୍ରାୟେ ତେଜ ଧରି ।
ଖେଟ ଖର୍ବଟ ବନଗିରି ॥୧୬୯

ଶତ୍ରୁ ବିନାଶେ ସାବଧାନେ ।
କ୍ଷତ୍ରିୟଧର୍ମ ଏ ପ୍ରମାଣେ ॥୧୭୦

ଏହା ନ କରି ଯେବେ ଘରେ ।
ସୁଖଶୟନେ ନିଦ୍ରା କରେ ॥୧୭୧

ତେବେ ଅସତ ରିପୁ ବଳ ।
ନାଶନ୍ତି ଭୁବନ ମଣ୍ଡଳ ॥୧୭୨

ତଥାପି ଶୁଣ ହେ ରାଜନ ।
ଯେ ଅର୍ଥେ ତୁମ୍ଭ ଆଗମନ ॥୧୭୩

ତୁମ୍ଭର ପ୍ରିୟଭାବ ବହି ।
ସୁହୃଦ ଭାବେ କରିବଇଁ ॥୧୭୪

ଏମନ୍ତ କହି ରାଜା ଆଗେ ।
କର୍ଦ୍ଦମ ଅତି ସଉଭାଗ୍ୟେ ॥୧୭୫

ବିଷ୍ଣୁର ବଚନ ସୁମରି ।
ଅଧିକ ପ୍ରିୟଭାବ ଭାରି ॥୧୭୬

ସେ ମୁନି ଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୧୭୭

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ତୃତୀୟସ୍କନ୍ଧେ
ଏକବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱାବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ରାଜା ଗୁଣଗ୍ରାମ ।
ଆନନ୍ଦେ ବର୍ଣ୍ଣିଲେ କର୍ଦ୍ଦମ ॥୧
ଶୁଣିଣ ଆପଣା ସୁଖ୍ୟାତି ।
ଲଜ୍ଜିତ ହୋଇଲେ ଭୂପତି ॥୨
ବୋଇଲେ ମୁନି ମୁଖ ଚାହିଁ ।
ଶୁଣ କର୍ଦ୍ଦମ ଦୟାବହି ॥୩

### ମନୁ ଉବାଚ

ସେ ବେଦମୟ ବ୍ରହ୍ମାଆଗେ ।
ବେଦ ପ୍ରବୃତ୍ତି ଇଚ୍ଛାଯୋଗେ ॥୪
ତପସ୍ୟା ବିଦ୍ୟା ଯୋଗଯୁକ୍ତ ।
ଲମ୍ପଟ ଭାବ ବିରହିତ ॥୫
କରି ସୃଜିଲେ ଲୋକଗୁରୁ ।
ତୁମ୍ଭମାନଙ୍କୁ ସ୍ୱମୁଖରୁ ॥୬
ଏଣୁ ପବିତ୍ର ତୁମ୍ଭ ଦେହୀ ।
ସୁବିଦ୍ୟାତପ ଛନ୍ଦମୟୀ ॥୭
ଯୋଗ ସାଧନେ ଅଲମ୍ପଟ ।
ତୁମ୍ଭ ସାଧନ ସ୍ୱର୍ଗ-ବାଟ ॥୮
ଏ ତୁମ୍ଭ ଧର୍ମରକ୍ଷା ଅର୍ଥେ ।
ସେ ପିତାମହ ଏ ଜଗତେ ॥୯
ସହସ୍ରେ ଭୁଜ ତେଜ ଘେନି ।
ସୃଷ୍ଟି ପାଳନେ ପଦ୍ମଯୋନି ॥୧୦
କ୍ଷତ୍ରିୟ ଜାଡି ଭିଆଇଲା ।
ସେ ତେଜ ସୃଷ୍ଟି ଆବୋରିଲା ॥୧୧
ଏ ବେନି ତେଜେ ବେନି ରହେ ।
ଧର୍ମ ପାଳନେ ଦେହ ବହେ ॥୧୨
ଏଣୁ ତୁମ୍ଭର ଦରଶନେ ।
ସଂଶୟ ନରହେ ମୋ ମନେ ॥୧୩
ଯେଣୁ ଅନେକ ଭାଗ୍ୟ ମୋର ।
ଦେଖିଲି ତୁମ୍ଭର ଶରୀର ॥୧୪
ତୁମ୍ଭ ଚରଣରଜ-ନୀର ।
ପବିତ୍ର କଲା ମୋ ଶରୀର ॥୧୫
ପ୍ରାକୃତଜନ ମାନଙ୍କର ।
ଯେ ରୂପ ଅଟେ ଅଗୋଚର ॥୧୬
ତୁମ୍ଭର ଅନୁଗ୍ରହ ପାଇ ।
ପବିତ୍ର କଲି ନିଜ ଦେହୀ ॥୧୭
ତୁମ୍ଭର ବାକ୍ୟେ କର୍ଣ୍ଣପଥ ।
ନିଶ୍ଚଳ ହୋଏ କୃତକୃତ୍ୟ ॥୧୮
ମୁଁ ଏ ଦୁହିତା ସ୍ନେହେ ଜଡି ।
ଏ ମାୟାମୋହ ବନ୍ଧେ ପଡି ॥୧୯
ଏଣୁ ମୋହର ଦୁଃଖ ମନେ ।
କହିବି ଶୁଣ ସାବଧାନେ ॥୨୦
ମୋହର ଜ୍ୟେଷ୍ଠ ବେନିସୁତ ।
ଉତ୍ତାନପାଦ ପ୍ରିୟବ୍ରତ ॥୨୧
ତାଙ୍କ ଭଗିନୀ ଏ ସୁମୁଖୀ ।
ଏ ଦେବହୂତି ଚନ୍ଦ୍ରମୁଖୀ ॥୨୨
ଏହାର ଗୁଣ ଶୀଳ ସମେ ।
ପତି ଇଚ୍ଛଇ ନିଜ ଧର୍ମେ ॥୨୩
ତୁମ୍ଭର ରୂପ ଗୁଣ ଯେତେ ।
ନାରଦ ଏହାର ଅଗ୍ରତେ ॥୨୪
କହିଲେ ମୋହର ସାକ୍ଷାତେ ।
ତେଣୁ କଳ୍ପିଲା ଏହା ଚିତ୍ତେ ॥୨୫
ମୁଁ ଏବେ ଶ୍ରଦ୍ଧା ପ୍ରୀତି ଚିତ୍ତେ ।
ଘେନି ମିଳିଲି ତୋ ଅଗ୍ରତେ ॥୨୬
କନ୍ୟା ଗ୍ରହଣ ତୁମ୍ଭେ କର ।
ଶ୍ରଦ୍ଧାରେ ଦେଲି ଉପହାର ॥୨୭
ତୁ ଧର୍ମଜ୍ଞାନୀଙ୍କର ବର ।
ଗୃହସ୍ଥଧର୍ମ ଏବେ କର ॥୨୮
ତୋ ଗୃହାଶ୍ରମ କର୍ମମାନ ।
ସୁନ୍ଦର କରିବ ସାଧନ ॥୨୯
ଏଣେ ତୋ ପ୍ରତିବାଦ ନାହିଁ ।
ପୁଷ୍କଳଧର୍ମେ ଏହା କହି ॥୩୦
ଉଦ୍ୟତଭୋଗ ଯେବେ ଛାଡି ।
ଯେ ଯାନ୍ତି ଭିକ୍ଷୁପଥ ମାଡ଼ି ॥୩୧
ଯେ ଯଶମାନ ତାର ଥାଇ ।
ଅବଜ୍ଞା ବଶେ ନ ରହଇ ॥୩୨
ତୁମ୍ଭର ବ୍ରହ୍ମଚର୍ଯ୍ୟବ୍ରତ ।
ଅବଧି ହେଲା ସମାପତ ॥୩୩
ବିବାହ କରିବାର ପାଇଁ ।
ଶୁଣିଲୁ ଇଚ୍ଛା ବଳିଛଇଁ ॥୩୪
ଏବେ ତୁ ଗୃହମେଧି ଧର୍ମ ।
କର ସଫଳ ଏ ଉଦ୍ୟମ ॥୩୫
ଏ ଦେବହୂତି କନ୍ୟା ମୋର ।
ବେଦ ପ୍ରମାଣେ ବିଭାକର ॥୩୬
ଏମନ୍ତ ମନୁବାକ୍ୟ ଶୁଣି ।
କର୍ଦ୍ଦମ ହୃଦେ ପରିମାଣି ॥୩୭
ବୋଲନ୍ତ ମନୁ ମୁଖ ଚାହିଁ ।
ଆନନ୍ଦଚିତ୍ତେ ଦେହ ବହି ॥୩୮

### କର୍ଦ୍ଦମ ଉବାଚ

ତୁମ୍ଭର ଆଜ୍ଞା ଶିରୋ ଧରି ।
ଏ ଦେବହୂତି ବିଭାକରି ॥୩୯
ରମିବି ସଂସାର ଧାରଣେ ।
ଆତ୍ମାର ଉତ୍ପତ୍ତି କାରଣେ ॥୪୦
ଯେ ମନୁରାଜାର ଦୁହିତ ।
ଉତ୍ତାନପାଦ ଯାର ଭ୍ରାତ ॥୪୧
ଏ ଗୁଣବତୀ କନ୍ୟାସାର ।
କି ଅବା ଦେବା ପଟାନ୍ତର ॥୪୨
ମୋହର କର୍ମେ ଏ ବିଦିତ ।
ସୁନ୍ଦର ଗୁଣ ବର୍ଣ୍ଣଯୁକ୍ତ ॥୪୩
ଏଣୁ ଏ ଲଳନା ଲଲାମ ।
ଏହାର ଗୁଣ ଅନୁପମ ॥୪୪
କେ ତାହା ଛାଡି ଅବା ପାରେ ।
ଶରୀର ବହି ଏ ସଂସାରେ ॥୪୫
କରିବି ଦାର ପରିଗ୍ରହ ।
ତୁମ୍ଭେ ମୋହରେ ସ୍ନେହ ବହ ॥୪୬
କିନ୍ତୁ ଏ ନିୟମ ମୋହର ।
ଶୁଣ ହେ ଧର୍ମପାଳ ବର ॥୪୭

Dr. Sudhanshu Sekhar Mishra

ଯାବତ ଏହା କୋଳେ ଜାତ ।
ସୁନ୍ଦର ଗୁଣବନ୍ତ ପୁତ୍ର ॥୪୮
ତାବତ ଗୃହାଶ୍ରମ ରହି ।
ତହୁଁ ସନ୍ନ୍ୟାସ କରିବଇଁ ॥୪୯
ତୁମ୍ଭ ବଚନ ମାନ୍ୟ ମୋର ।
ଯେ ଭାବେ ଜନ ଉପକାର ॥୫୦
ପିତ୍ରାଦି ଋଣ ଶୋଧ କରି ।
ପରେ ସନ୍ନ୍ୟାସ ଅନୁସରି ॥୫୧
ଏମନ୍ତ ବିଷ୍ଣୁ ଅନୁମତି ।
ତୁମ୍ଭଙ୍କୁ କହିଲି ସମ୍ପ୍ରତି ॥୫୨

ମୈତ୍ରେୟ ଉବାଚ

ଏମନ୍ତେ ବିପ୍ର ବାକ୍ୟ ଶୁଣି ।
ସନ୍ତୋଷ ଚିତ୍ତେ ରାଜା-ରାଣୀ ॥୫୩
ମୁନିଙ୍କି ବରବେଶ କରି ।
ବେଦ-ବିଧାନେ କନ୍ୟା ବରି ॥୫୪
ତାପସ ଶ୍ରେଷ୍ଠ ମୁନିବରେ ।
ହରଷେ ପ୍ରଫୁଲ୍ଲ ଅନ୍ତରେ ॥୫୫
ବିବାହ ଦେଇ ସେ ଉତ୍ସୁକ ।
ଅନେକ ଦେଲେ ଯଉତୁକ ॥୫୬
ଅମୂଲ୍ୟ ବସନ ଭୂଷଣ ।
ଗୃହ ପୁଷ୍କଳ ମହୀ ଧନ ॥୫୭
ଝିଅ ଜୁଆଇଁ ପ୍ରୀତି ଅର୍ଥେ ।
ସେ ରାଣୀ ଦେଲେ ବହୁମତେ ॥୫୮
ସକଳ ଦେଇ ମୁନିଜନେ ।
ବୋଧିଲେ ଅମୃତ ବଚନେ ॥୫୯
ଆନନ୍ଦ ଚିତ୍ତେ ଦଣ୍ଡଧାରୀ ।
ମୁନିଙ୍କି ଆଲିଙ୍ଗନ କରି ॥୬୦
କଣ୍ଠ କୁଣ୍ଠିତ ଅଶ୍ରୁ ମୁଖେ ।
ଦୁହିତା ସ୍ନେହଭଙ୍ଗ ଦୁଃଖେ ॥୬୧
ହେ ମାତ ବୋଲି ଅଶ୍ରୁ ମୁଖ ।
ଦୁହିତା ଦୁଃଖେ ଅତି ଦଃଖ ॥୬୨
ଦୁହିତା କେଶ ନେତ୍ର ଜଳେ ।
ଅତି କାତରେ ଆର୍ଦ୍ର କଲେ ॥୬୩
ମୁନିଙ୍କି କନ୍ୟାଦାନ ଦେଇ ।
ଆନନ୍ଦେ କୃତକୃତ୍ୟ ହୋଇ ॥୬୪

ରଥ ଆରୋହୀ ବେନି ଜନେ ।
ଗଲେ ସେ ଆପଣା ଭୁବନେ ॥୬୫
ସେ ପୁଣ୍ୟନଦୀ ସରସ୍ୱତୀ ।
ଅତି ଶୋଭନ ତଟବତୀ ॥୬୬
ସେ ଋଷିକୂଲ୍ୟା ନଦୀ ତଟେ ।
ଅନେକ ଋଷି ଯା ନିକଟେ ॥୬୭
ପର୍ଣ୍ଣ କୁଟୀର ସେ ଭିଆଇ ।
ସୁଦୃଢ଼େ କୁଶ କାଶ ଛାଇ ॥୬୮
ସେ ନଦୀତୀରେ ସୁଖେ ରହି ।
ବିଷ୍ଣୁ ଭଜନେ ଯଜ୍ଞ ଦାହି ॥୬୯
ତା ତଟେ ମୁନିଙ୍କ ଆଶ୍ରମ ।
ଦେଖି ତା ଶୋଭା ଅନୁପମ ॥୭୦
ମନୁର ଚିତ୍ତ ତୃପ୍ତ ହେଲା ।
ସ୍ୱଗୃହ ମାର୍ଗେ ଚଳିଗଲା ॥୭୧
ସେ ବ୍ରହ୍ମାବର୍ତ୍ତ ପ୍ରଜାଜନେ ।
ମନୁ ଆସନ୍ତେ ସ୍ୱଭୁବନେ ॥୭୨
ହରଷେ ରାଜାର ଅଗ୍ରତେ ।
ମିଳିଲେ ବାଦ୍ୟ ସ୍ତୁତି ରୀତେ ॥୭୩
ଯା ନା ବର୍ହିଷ୍ମତି ପୁରୀ ।
ତହିଁ ବିଜୟେ ଦଣ୍ଡଧାରୀ ॥୭୪
ବରାହ ଅଙ୍ଗର କମ୍ପନେ ।
ରୋମ ପଡ଼ିଲା ଯେଉଁ ସ୍ଥାନେ ॥୭୫
ସେ କୁଶ କାଶ ହୋଇ ଯହିଁ ।
ନିତ୍ୟେ ହରିର ତେଜ ବହି ॥୭୬
ପୂର୍ବେ ଋଷିଏ ଯେଣେ କରି ।
ଅସୁରଙ୍କର ଦର୍ପ ହରି ॥୭୭
ଯେ ଯଜ୍ଞ ବିଷ୍ଣୁ ପାଦତଳେ ।
ଯଜ୍ଞେ ପୂଜିଲେ ଏକ ମେଳେ ॥୭୮
ସେ ମନୁ ସ୍ଥାନ ତହିଁ ପାଇ ।
ଯଜ୍ଞପୁରୁଷ ଯଜ୍ଞେ ଦାହି ॥୭୯
ପୁର ନିର୍ମିତ କୁଶ କାଶେ ।
ସେ ସ୍ଥାନେ ତାପତ୍ରୟ ନାଶେ ॥୮୦
ସେ ଗୃହେ ପତ୍ନୀ ତୁଲେ ରହି ।
ସନ୍ତତି ସହ ପ୍ରିୟ ବହି ॥୮୧
କଳ୍ପିତ ସଖ ବଇଭୋଗେ ।
ସେ ପ୍ରଜାଅର୍ଥେ ରତି ରଙ୍ଗେ ॥୮୨

ସୁସ୍ୱର ଗୀତ ନାଦ ଧ୍ୱନି ।
ଗନ୍ଧର୍ବେ ସ୍ତ୍ରୀରୀବୃନ୍ଦ ଘେନି ॥୮୩
ସଙ୍ଗୀତ ରସ ବୀଣା ନାଦେ ।
ଲଳିତ ଗୀତ ଅନୁବାଦେ ॥୮୪
ପ୍ରତି ଦିବସ ରାତ୍ରି ଅନ୍ତେ ।
କୃଷ୍ଣଚରିତ ହୃଦଗତେ ॥୮୫
କର୍ଣ୍ଣେ ଶୁଣନ୍ତି ଧ୍ୟାନ କରି ।
ଚିତ୍ତେ ଗୋବିନ୍ଦ ଭାବ ଭରି ॥୮୬
ନିରତେ କୃଷ୍ଣନାମ ଘୋଷେ ।
ସେ ବେନିଜନେ ଗୃହବାସେ ॥୮୭
ବିଷ୍ଣୁ ଚରିତ ହୃଦେ ଭରି ।
ନାମ ଶ୍ରବଣେ ଆଶା କରି ॥୮୮
ସେ ମନୁ ଯୋଗମାୟା ଭୋଗେ ।
ଥିଲେ ହେଁ ତାହାଙ୍କୁ ନ ଲାଗେ ॥୮୯
ଜାଗ୍ରତ ସ୍ୱପ୍ନ ଯେ ସୁଷୁପ୍ତି ।
ତାହାଙ୍କୁ କେହି ନ ବାଧନ୍ତି ॥୯୦
ଯେଣୁ ସେ ହରି ପରାୟଣ ।
ଅଟଇ ମନୁ ନୃପରାଣ ॥୯୧
କୃଷ୍ଣର କଥା କର୍ଣ୍ଣେ ଶୁଣେ ।
ତା ରୂପ ଧ୍ୟାନେ ପରିମାଣେ ॥୯୨
ମୁଖେ ରଟନ୍ତି ନାମ ତାର ।
ତା କଥା କହି ନିରନ୍ତର ॥୯୩
ଏମନ୍ତେ ନିଜ ମନ୍ୱନ୍ତର ।
ଯେ ଯୁଗଗଣନା ବେଭାର ॥୯୪
ଏକସପ୍ତତି ଚତୁର୍ଯୁଗେ ।
ହୋଇଲା ମନ୍ୱନ୍ତର ଭୋଗେ ॥୯୫
ଏମନ୍ତେ ହରିଭାବ କରି ।
ତୃତୀୟ ତାପୁଁ ଯେ ନିସ୍ତରି ॥୯୬
ସେ ପୁଣି ମୁନିଙ୍କର ବୋଲେ ।
ବିବିଧ ଜ୍ଞାନ ହିଁ କହିଲେ ॥୯୭
ତ୍ରିବିଧ ବାଧା ଲୋକେ ଅଛି ।
ଭକ୍ତଙ୍କୁ ନ ଲାଗଇ କିଛି ॥୯୮
ମନୁର ବାଧା ହିଁ ନ ଥିଲା ।
ଯେଣୁ ହରିଙ୍କି ଆଶ୍ରେ କଲା ॥୯୯
ଶୁଣ ବିଦୁର ପୁଣ୍ୟଦେହା ।
କହିଲି ପଚରିଲୁ ଯାହା ॥୧୦୦

Dr. Sudhanshu Sekhar Mishra

ସେ ଆଦିରାଜ ମନୁ କଥା ।
ଶୁଣନ୍ତେ ତୁଟେ ଭବ ବ୍ୟାଥା ॥୧୦୧

ଏ ସୃଷ୍ଟି ଆଦିର କାରଣ ।
ଏବେ ହୋଇ ମନୁବଂଶ ଶୁଣ॥୧୦୨

ତୃତୀୟ ସ୍କନ୍ଧେ ଭାବବତ ।
କହିଲା ଦାସ ଜଗନ୍ନାଥ ॥୧୦୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ ଦ୍ୱାବିଂଶୋଽଧ୍ୟାୟଃ ।

## ତ୍ରୟୋବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତେ କନ୍ୟା ବିଭା ଦେଇ ।
ମନୁ ଯେ ଗଲେ ରଥ ବାହି ॥୧
ଏବେ ହୋ ଶୁଣ କୁରୁନାଥ ।
କର୍ଦ୍ଦମମୁନୀଙ୍କ ଚରିତ ॥୨
ସେ ନଦୀତୀରେ ପୁଣ୍ୟ ବନେ ।
ଦୃଢେ ରହିଲେ ତପସ୍ଥାନେ ॥୩
ତାହାଙ୍କ ପତ୍ନୀ ଦେବହୂତି ।
ସୁନ୍ଦର ସୁଗୁଣ ସୁମତି ॥୪
ସ୍ୱାମୀର ମନ ଜାଣି ଚିତ୍ତେ ।
ସେବା କରଇ ଅନୁବ୍ରତେ ॥୫
ଇଙ୍ଗିତ ମାତ୍ରେ ଆଜ୍ଞା ବହେ ।
ଭବାନୀ ଭବସେବା ପ୍ରାୟେ ॥୬
ବିଶ୍ୱାସ ଆତ୍ମ-ଶୌଚ ଧର୍ମେ ।
ଧୀର ଗୌରବ ସମ ଦମେ ॥୭
ଶୁଶ୍ରୂଷା ସହୃଦୟ ପ୍ରେମେ ।
ମଧୁରବାକ୍ୟେ ସୁସଂଭ୍ରମେ ॥୮
ବର୍ଜିତ କାମ ମଦ ହିଂସା ।
ଦମ୍ଭ ଗର୍ବିତ ମିଥ୍ୟାଭାଷା ॥୯
ଉଦ୍ୟମ ନିରଳସ ମତି ।
ସ୍ୱାମୀ ସନ୍ତୋଷେ ମନ ସ୍ଥିତି ॥୧୦
ମନୁ ତନୟା ଦେବହୂତି ।
ଦେବ ସମାନେ ମଣେ ପତି ॥୧୧
ପତିର ଆଶୀର୍ବାଦ ଲାଭ ।
କରିବା ପାଇଁ ତାର ଲୋଭ ॥୧୨
ତେଣୁ ପତିର ସେବା ନିତ୍ୟେ ।
କରଇ ଭକ୍ତିଭାବେ ଚିତ୍ତେ ॥୧୩
ଏମନ୍ତେ ଦେବହୂତି ରହିଁ ।
ମୁନି ସାନନ୍ଦେ ସ୍ନେହ ବହି ॥୧୪
ପତି ଦେବତାର ଆଶିଷେ ।
ନିରତେ ସେବେ ସ୍ୱାମୀ ପାଶେ ॥୧୫
ତାହାର ପତିବ୍ରତା ଧର୍ମ ।
ଦେଖି ବିଚାରଇ କର୍ଦ୍ଦମ ॥୧୬
ଏ ପତିବ୍ରତାଙ୍କର ସାର ।
ସୁଶୀଳ ସୁଗୁଣ ଗମ୍ଭୀର ॥୧୭
ଏମନ୍ତ ଗୁଣ ମନେ ଗୁଣି ।
ସପ୍ରେମେ ଗଦଗଦ ବାଣୀ ॥୧୮
ନିଜ କାମିନୀ ମୁଖ ରହିଁ ।
କର୍ଦ୍ଦମ କହେ ପ୍ରେମ ବହି ॥୧୯

କର୍ଦ୍ଦମ ଉବାଚ

ଶୁଣ ସୁନ୍ଦରି ମୋ ବଚନ ।
ମୋର ବିଷୟେ ତୋର ମନ ॥୨୦
ଦେଖି ସନ୍ତୋଷ ମୋର ଚିତ୍ତ ।
ତୁ ଅନୁବ୍ରତେ ମୋର ଭକ୍ତ ॥୨୧
ପ୍ରାଣୀମାନଙ୍କ ନିଜ ଦେହ ।
ସୁହୃଦ ପ୍ରିୟ ଅତି ସ୍ନେହ ॥୨୨
ସେ ଦେହେ ତୋର ଯତ୍ନ ନାହିଁ ।
ମୋହରି ଅର୍ଥେ ମନ ଦେଇ ॥୨୩
ସ୍ୱଧର୍ମ ରତ ପ୍ରାଣୀଙ୍କର ।
ତପ ସମାଧି ବିଦ୍ୟାସାର ॥୨୪
ସୁଦୃଢ କର୍ମ ଆତ୍ମଧ୍ୟାନ ।
ଜୀବଙ୍କ ହିତ ତତ୍ତ୍ୱଜ୍ଞାନ ॥୨୫
ଏ ସର୍ବ ଗୋବିନ୍ଦ ପ୍ରସାଦେ ।
ମୁଁ ଯେ ସାଧିଲି ନିରାପଦେ ॥୨୬
ତୋତେ ମୁଁ ଦିବ୍ୟଚକ୍ଷୁ ଦାନ ।
କଲି ତୁ ଦେଖ ବିଦ୍ୟମାନ ॥୨୭
ଏ ସର୍ବ ତୋହର ସୁସାଧ୍ୟ ।
ତୁ ଏବେ ଭଜ ବିଷ୍ଣୁପାଦ ॥୨୮
ଗୋବିନ୍ଦ ସେବା ଭୋଗ ପାଇ ।
ସେ ଭୋଗେ ଭୟ ଶୋକ ନାହିଁ ॥୨୯
ଅନ୍ୟ ଅନେକ ଅଛି ଭୋଗ ।
କିନ୍ତୁ ସେ ତୋର ନୋହେ ଯୋଗ୍ୟ॥୩୦
ତୁ ସିଦ୍ଧ ହେଲୁ ନିଜ କର୍ମେ ।
ଆପଣା ପତିବ୍ରତା ଧର୍ମେ ॥୩୧
ଏଣୁ ତୁ ଦିବ୍ୟଭୋଗ କର ।
ଯାହା ଦୁଷ୍ପ୍ରାପ୍ୟ ମାନବର ॥୩୨
ଏ ବିନେ ଅନ୍ୟ ଭୋଗ ଯେହି ।
କି କାର୍ଯ୍ୟ ତୁଚ୍ଛ ସେ ଅଟଇ ॥୩୩
ଅଧିକ ଗୁଣ କିବା କହି ।
ସର୍ବ ସମ୍ପଦ ଯେଣେ ପାଇ ॥୩୪
ସେ ହରି-ଚରଣପଙ୍କଜ ।
ନିର୍ମଳଚିତ୍ତେ ଏବେ ଭଜ ॥୩୫

ମୈତ୍ରେୟ ଉବାଚ

ଏମନ୍ତ କର୍ଦ୍ଦମ ବଚନେ ।
ସେ ଦେବହୂତି ତୋଷମନେ ॥୩୬
ଭର୍ତ୍ତା ବଦନ ରହିଁ କହେ ।
ଗଭୀର ବାକ୍ୟ ସୁଧାମୟେ ॥୩୭

ଦେବହୂତି ଉବାଚ

ଭୋ ନାଥ ତୁମ୍ଭର ପ୍ରସାଦେ ।
ତୁମ୍ଭ ଚରଣେ ଅପ୍ରମାଦେ ॥୩୮

Dr. Sudhanshu Sekhar Mishra

ନିରତେ ହେଉ ମୋର ସେବା ।
ପ୍ରସନ୍ନେ ମୋତେ ଆଜ୍ଞା ଦେବା ॥୩୯
ତୁମ୍ଭେ ମୋହୋର ତୁଲେ ଏବେ ।
ଗୃହସ୍ଥ ଧର୍ମେ ପ୍ରିୟଭାବେ ॥୪୦
ଅତୁଲ୍ୟ ଧର୍ମ ଭୋଗ କର ।
ଯେ ଧର୍ମ କାମଧେନୁ ସାର ॥୪୧

ମୈତ୍ରେୟ ଉବାଚ

ଏମନ୍ତେ ପତ୍ନୀର ବଚନ ।
କର୍ଦ୍ଦମ ଶୁଣି ତୋଷମନ ॥୪୨
ପ୍ରିୟା କଳ୍ପିତ ମନ ଜାଣି ।
ଚିତ୍ତେ ବିଚାରି ବିପ୍ରମଣି ॥୪୩
ବିଶ୍ୱକର୍ମାଙ୍କୁ ମନେ ସ୍ମରି ।
ବିମାନ ତପବଳେ କରି ॥୪୪
ଯହିଁ କଳ୍ପିତ ବସ୍ତୁଯୁତ ।
ଅଶେଷ ରତ୍ନେ ସେ ନିର୍ମିତ ॥୪୫
ମଣି ନିର୍ମିତ ସ୍ତମ୍ଭକୂଳେ ।
ସକଳ ଋତୁ ପୁଷ୍ପ ଫଳେ ॥୪୬
ଦେବଙ୍କ ଦିବ୍ୟଭୋଗ ଯହିଁ ।
ସର୍ବଦାକାଳ ସୁଖମୟୀ ॥୪୭
ବିଚିତ୍ର ଚିତ୍ର ହେମମୟେ ।
ଚିତ୍ର ପତାକା ଧ୍ୱଜ ଶୋହେ ॥୪୮
ସୁଗନ୍ଧ ପୁଷ୍ପ ମାଳେମାଳେ ।
ଯେ ରଥେ ଲମ୍ବଇ ଗହଳେ ॥୪୯
ଗଭୀର ଭୃଙ୍ଗନାଦ ଶୋହେ ।
ପାଟବସନ ମନ ମୋହେ ॥୫୦
ଉପରେ ନୀଳ ରତ୍ନମଣି ।
ବିରାଜେ ରବିତେଜ ଜିଣି ॥୫୧
ସେ ରଥେ ସୁବର୍ଣ୍ଣ ପଲଙ୍କେ ।
କୋମଳ ଶଯ୍ୟା ଶୋହେ ରଙ୍ଗେ ॥୫୨
ବିଶ୍ୱକର୍ମାର ଶିଳ୍ପୀପଣ ।
ଯେ ରଥ କରିଛି ଘଟଣ ॥୫୩
ମହାମର୍କତ ସ୍ତମ୍ଭ ଯହିଁ ।
ବିଦ୍ରୁମ-ବେଦୀ ବିରାଜଇ ॥୫୪
ଯେଦ୍ୱାରେ ବିଦ୍ରୁମ ଦେହଳୀ ।
ହୀରା କବାଟ ଯହିଁ କିଳି ॥୫୫
ଶିଖରମାନ ସ୍ୱର୍ଣ୍ଣକୁମ୍ଭେ ।
ବିରାଜେ ଇନ୍ଦ୍ରନୀଳ-ସ୍ତମ୍ଭେ ॥୫୬
ଜ୍ୱଳନ୍ତି ପଦ୍ମରାଗ-ଦୀପେ ।
ବିଚିତ୍ରଚିତ୍ରେ ଚନ୍ଦ୍ରାତପେ ॥୫୭
ହେମତୋରଣେ ହାର ଲମ୍ବେ ।
ପାଟ-ଦୋଳିକା ରତ୍ନସ୍ତମ୍ଭେ ॥୫୮
ଶ୍ୱେତ ହଂସକ ପାରାବତ ।
ରାବ କହନ୍ତି ଉନମତ୍ତ ॥୫୯
ବିମାନଶିଖେ ଜଳାରନ୍ଧ୍ରେ ।
ଧୂମ୍ର ନିର୍ଗତ ଧୂପ ଗନ୍ଧେ ॥୬୦
ବିହାର ଶଯ୍ୟା ଆଦି ସ୍ଥାନ ।
ସୁବର୍ଣ୍ଣ ନିର୍ମିତ ପ୍ରାଙ୍ଗଣ ॥୬୧
ନାନା ବିଶ୍ରାମ ସ୍ଥାନ ଶୋହେ ।
ଦେଖି ଦେବଙ୍କ ମନ ମୋହେ ॥୬୨
ଏମନ୍ତ ଦିବ୍ୟପୁର ରହିଁ ।
ସନ୍ତୋଷ ଲଭେ ନେତ୍ରଦ୍ୱଇ ॥୬୩
ଆପଣା ଦେହ ହୀନ କାନ୍ତି ।
ତୋଷ ନୋହିଲା ଦେବହୂତି ॥୬୪
କର୍ଦ୍ଦମମୁନି ପତ୍ନୀ ରହିଁ ।
ଅମୃତ ବଚନ ବୋଲଇ ॥୬୫
ସେ ସର୍ବ ପ୍ରାଣୀ ଚିତ୍ତ ଜାଣେ ।
ତପ ସମାଧି ବିଦ୍ୟା ଗୁଣେ ॥୬୬

କର୍ଦ୍ଦମ ଉବାଚ

ସୁନ୍ଦରୀ ଶୁଣ ମୋ ବଚନ ।
ଏ ତୀର୍ଥେ ତୋଷେ କର ସ୍ନାନ ॥୬୭
ବିମାନେ ସୁଖେ ବିଜେ କର ।
ଚିତ୍ତେ ଗୋବିନ୍ଦ ନାମ ସ୍ମର ॥୬୮
ଶୁକ୍ଳ ନିର୍ମିତ ତୀର୍ଥ ଏହି ।
ପ୍ରାଣୀଙ୍କି ସୁଖ ଫଳ ଦେଇ ॥୬୯
ଏମନ୍ତ ସ୍ୱାମୀର ବଚନେ ।
ସେ ଦେବହୂତି ତୋଷମନେ ॥୭୦
ମଳିନ ବସ୍ତ୍ର ପରିଧାନ ।
ହୃଦେ ଆଚ୍ଛାଦି ତୁଙ୍ଗ ସ୍ତନ ॥୭୧
ଶିରେ ଶୋଭିତ ଜଟାବେଣୀ ।
ସୁଗନ୍ଧ ଅଙ୍ଗେ ଲେପେ ଆଣି ॥୭୨
ପଶିଲା ସରସ୍ୱତୀ ନୀରେ ।
ଯେ ନୀର ସର୍ବପାପ ହରେ ।୭୩
ଜଳେ ପ୍ରବେଶ କରି ପୁଣି ।
ଆଶ୍ଚର୍ଯ୍ୟେ ଦେଖିଲା ତରୁଣୀ ॥୭୪
ତକ୍ଷଣେ ସରୋବର ଜଳେ ।
ସହସ୍ରେ କନ୍ୟା ଏକମେଳେ ॥୭୫
ଉଠିଲେ ଦିବ୍ୟରୂପ ଧରି ।
ଜୟ ଶବଦ ମୁଖେ କରି ॥୭୬
ରୂପେ କି ଦେବା ପଟାନ୍ତର ।
ମୋହନ୍ତି ବ୍ରହ୍ମା ସୁର ନର ॥୭୭
କିଶୋର ବୟସୀ ଆନନ୍ଦେ ।
ବାସନ୍ତି ନୀଳୋତ୍ପଳ ଗନ୍ଧେ ॥୭୮
କନ୍ୟାଏ ଦେଖି ଜଳମଧ୍ୟେ ।
ସେ ଦେବହୂତିଙ୍କୁ ଆନନ୍ଦେ ॥୭୯
କପୋଳେ ଦେଇ ବେନିକର ।
ସ୍ୱଭାବେ କହନ୍ତି ମଧୁର ॥୮୦
ଆମ୍ଭେ ତୋହର ଦାସୀ ପଣେ ।
ସେବିବୁ ତୋହର ଚରଣେ ॥୮୧
ଏ ଯେ ତୋହର ଦିବ୍ୟକାୟ ।
କିବା କରିବୁ ଆଜ୍ଞା ଦିଅ ॥୮୨
ଏମନ୍ତ କହି କନ୍ୟାଗଣେ ।
ସେ ଦେବହୂତିର ଚରଣେ ॥୮୩
ତକ୍ଷଣେ ନମସ୍କାର କରି ।
ସର୍ବେ ହୋଇଲେ ପରିଚାରୀ ॥୮୪
ସୁଗନ୍ଧ ତାର ଅଙ୍ଗେ ବୋଳି ।
ଆନନ୍ଦେ ଦେଲେ ହୁଳହୁଳୀ ॥୮୫
ସ୍ନାନ କରାଇ ପୁଣ୍ୟନୀରେ ।
ମଣ୍ଡିଲେ ନାନା ଉପହାରେ ॥୮୬
ନୂତନ ବସ୍ତ୍ରଯୁଗ ଦେଲେ ।
ବିବିଧ ଅଳଙ୍କାର ତୁଲେ ॥୮୭
ଅମୂଲ୍ୟ ମାଳ ରତ୍ନପନ୍ତି ।
ଚନ୍ଦ୍ରକିରଣେ ଝଟକନ୍ତି ॥୮୮
ଅନ୍ନ ବ୍ୟଞ୍ଜନ ଷଡ଼ରସେ ।
ଭୋଜନ କରାଇ ହରଷେ ॥୮୯
ସୁବାସ ଜଳେ ଆଚମନ ।
କରାଇ ସୁମୁଖ ବାସନ ॥୯୦

Dr. Sudhanshu Sekhar Mishra

ଉତ୍ତମ ଶଯ୍ୟାରେ ବସାଇ ।
ଦର୍ପଣ ସମର୍ପିଲେ ନେଇ ॥୯୧
ମୁକୁରେ ଚାହିଁ ମୁଖଶୋଭା ।
ଶିରେ ଖଞ୍ଜିଲେ ପୁଷ୍ପଗଭା ॥୯୨
କର୍ପୂର କୁଙ୍କୁମ ସୁଗନ୍ଧେ ।
ଅଙ୍ଗେ ଲେପିଲେ ସେ ଆନନ୍ଦେ ॥୯୩
ଦୂର୍ବା ଅକ୍ଷତ ଗନ୍ଧ ଆଣି ।
ଆଶିଷ କନ୍ୟାଗଣେ ଭଣି ॥୯୪
ଏମନ୍ତେ ସର୍ବ ପରିବାରୀ ।
ସୁଲଗ୍ନେ ଶୁଦ୍ଧସ୍ନାନ କରି ॥୯୫
ଗଳେ ଆରୋପି ରତ୍ନହାର ।
ଚରଣେ ବାଜେଣି ନୂପୁର ॥୯୬
କଟୀ ଶୋଭିତ କାଞ୍ଚୀ ଦାମ ।
ହୃଦେ କାଞ୍ଚଳା ଅନୁପମ ॥୯୭
ଅମୂଲ୍ୟ ହାର ହୃଦେ ଶୋହେ ।
ରୂପେ କାମିନୀ ମନ ମୋହେ ॥୯୮
ଦେଖିଲେ ଭ୍ରୂଦ୍ୱୟ ସୁନ୍ଦର ।
ଶୋଭନ ଦଶନ ନିକର ॥୯୯
ନୟନେ ପଦ୍ମ ପରାଜିତ ।
ସୁନ୍ଦର ଅପାଙ୍ଗ ସଂଯୁତ ॥୧୦୦
ସୁନୀଳ ଅଳକା କପୋଳେ ।
ଶୋଭିତ ବଦନ ମଣ୍ଡଳେ ॥୧୦୧
ଦର୍ପଣେ ନିଜ ଶୋଭା ଦେଖି ।
ସ୍ୱାମୀ ସ୍ମରିଲା ଶଶିମୁଖୀ ॥୧୦୨
ରୂପ ମୋହନ ପ୍ରିୟ ଭାବେ ।
ବାକ୍ୟ କହନ୍ତି ପିକ ରବେ ॥୧୦୩
ତକ୍ଷଣେ କନ୍ୟାଗଣ ତୁଳେ ।
ପ୍ରଜାପତିର ପାଶେ ମିଳେ ॥୧୦୪
ସ୍ୱାମୀର ଯୋଗଗତି ଦେଖି ।
ସଂଶୟ ଚିତ୍ତେ ଅଧୋମୁଖୀ ॥୧୦୫
ସମସ୍ତ ହେଲା କି ପ୍ରକାରେ ।
ଭାବି ବିସ୍ମୟ ତା ମନରେ ॥୧୦୬
ସଂଶୟ ଦେଖି ତାର ମନେ ।
ମୁନି ଜାଣିଲେ ଯୋଗଧ୍ୟାନେ ॥୧୦୭
ଅପୂର୍ବ ଶୋଭା ଦେଖି ତାର ।
ପ୍ରେମ ଜନ୍ମିଲା କର୍ଦ୍ଦମର ॥୧୦୮

ଆବୃତ ତୁଙ୍ଗ ବେନିସ୍ତନ ।
ଦେଖି ସନ୍ତୋଷ ମୁନି ମନ ॥୧୦୯
ତକ୍ଷଣେ ଧରି କନ୍ୟା ହସ୍ତ ।
ମୁନି ଆରୋହୀ ଦିବ୍ୟରଥ ॥୧୧୦
ସହସ୍ରେ ନାରୀଗଣ ମଧ୍ୟେ ।
ଉର୍ଦ୍ଧ୍ୱେ ଗମନ ବିଷ୍ଣୁପଦେ ॥୧୧୧
ସ୍ୱର୍ଗେ ଦେଖନ୍ତି ସୁରଦେବା ।
କି ଅବା ପଟାନ୍ତର ଦେବା ॥୧୧୨
ଯେସନେ ତାରାଗଣ ମଧ୍ୟେ ।
ଚନ୍ଦ୍ର ବିରାଜେ ବିଷ୍ଣୁପଦେ ॥୧୧୩
ଦେଖନ୍ତି ଅଷ୍ଟଦିଗପାଳେ ।
ବିମାନ ଅତି ଅନ୍ତରାଳେ ॥୧୧୪
ଇନ୍ଦ୍ରାଦି ଅଷ୍ଟଲୋକସ୍ଥାନେ ।
ମେରୁ ପର୍ବତ ଘୋରବନେ ॥୧୧୫
ସିଦ୍ଧ କିନ୍ନର କ୍ରୀଡ଼ା ଦେଶେ ।
ଗିରି ଗହ୍ୱର ଅଧିବାସେ ॥୧୧୬
ଏମନ୍ତେ ନାନା କ୍ରୀଡ଼ା ସ୍ଥାନେ ।
ବିମାନେ ମୁନି ତୋଷମନେ ॥୧୧୭
କୁବେର ପ୍ରାୟ ଅଷ୍ଟଦିଗେ ।
ଗମି ଭ୍ରମନ୍ତି ଅତିବେଗେ ॥୧୧୮
ଦେବ ଉଦ୍ୟାନ ବନ ଯେତେ ।
ମାନସସରର ସମେତେ ॥୧୧୯
ଏମନ୍ତେ ସନ୍ତୋଷେ ବିହରି ।
କାମିନୀ ସଙ୍ଗେ ସଙ୍ଗ କରି ॥୧୨୦
ରତ୍ନ ବିମାନ କାମଗତି ।
ଯେ ଭାବେ ଯେବା ପ୍ରଚରନ୍ତି ॥୧୨୧
ପବନ ଯେହ୍ନେ ସର୍ବଦେଶେ ।
କାମଗ ବିମାନ ପ୍ରକାଶେ ॥୧୨୨
ବିଷ୍ଣୁ ସନ୍ତୋଷ ପ୍ରାଣୀଙ୍କର ।
କିବା ସମ୍ପଦ ଅଗୋଚର ॥୧୨୩
ଏମନ୍ତେ ଦଶଦିଗ ଭ୍ରମି ।
ପଥିକ ପ୍ରାୟେ ପଥ ଶ୍ରମି ॥୧୨୪
ପୁଣି ମିଳିଲେ ନିଜଘରେ ।
ଗୃହସ୍ଥ ଧର୍ମର ବେଭାରେ ॥୧୨୫
ସେ ମୁନି ତପେ ଅନର୍ଗଳା ।
ଆତ୍ମାକୁ ନବରୂପ କଲା ॥୧୨୬

ପତ୍ନୀ ସଂଯୋଗେ ହୋଇ କାମୀ ।
ଅନେକ ସମ୍ୱତ୍ସର ରମି ॥୧୨୭
କେବେହେଁ କାମ ନ ପୂରିଲା ।
ମୁହୂର୍ତ୍ତେ ପ୍ରାୟ ଦିନ ଗଲା ॥୧୨୮
ଏମନ୍ତେ ଯୋଗର ପ୍ରଭାବେ ।
ରମିଲେ ଦମ୍ପତି ସ୍ୱଭାବେ ॥୧୨୯
ଶତେବରଷ ଦେବ ମତେ ।
ସୁଚିତ୍ତେ ରମିଲେ ନିଶ୍ଚିନ୍ତେ ॥୧୩୦
ଏମନ୍ତେ ପ୍ରଜାପତି ରେତେ ।
ସେ ଦେବହୂତି ଗର୍ଭଗତେ ॥୧୩୧
ନବକୁମାରୀ ଉପୁଜିଲେ ।
ଶୁଭ ମଙ୍ଗଳ ଲଗ୍ନବେଳେ ॥୧୩୨
ସର୍ବେ ସୁରୂପା ରୂପ ମଧ୍ୟେ ।
ଶୋଣିତ ଉତ୍ପଳ ସୁଗନ୍ଧେ ॥୧୩୩
ଏମନ୍ତେ ନବକନ୍ୟା ଚାହିଁ ।
ସେ ଦେବହୂତି ବିଚାରଇ ॥୧୩୪
ଏ କି ଅଦ୍‌ଭୁତ କର୍ମ ମୋର ।
ଦଇବ ବଳେ ବଳିଆର ॥୧୩୫
ଏମନ୍ତ ସମୟେ ସେ ମୁନି ।
ସନ୍ନ୍ୟାସାଶ୍ରମ ମନେ ଗୁଣି ॥୧୩୬
ଗମନେ ହୋଇଲେ ପ୍ରବୃତ୍ତ ।
ତା ଦେଖି ଦେବହୂତି ଚିତ୍ତ ॥୧୩୭
ଅତୀବ ବ୍ୟାକୁଳିତ ହେଲା ।
ବାହ୍ୟେ ବିସ୍ମୟ ପ୍ରକାଶିଲା ॥୧୩୮
ବିକଳେ ପତି ପାଶେ ଯାଇ ।
ରହିଲା ଅଧୋମୁଖୀ ହୋଇ ॥୧୩୯
ଅଶ୍ରୁ ପୂରିତ ସେ ଲୋଚନେ ।
ବୋଲଇ ବିନୟ ବଚନେ ॥୧୪୦

ଦେବହୂତି ଉବାଚ

ଭୋନାଥ ତୁମ୍ଭର ପ୍ରସାଦେ ।
ସକଳ ସୁଖ ମୁଁ ଆନନ୍ଦେ ॥୧୪୧
ଭୁଞ୍ଜଇ ତବ ପାଦ ଧ୍ୟାୟି ।
ମୋହର ଚିତ୍ତେ ଚିନ୍ତା ନାହିଁ ॥୧୪୨
ଏବେ ମୋ ଗର୍ଭେ କନ୍ୟା ଦେଖି ।
ହୋଇଲି ମନଦୁଃଖେ ଦୁଃଖୀ ॥୧୪୩

Dr. Sudhanshu Sekhar Mishra

ଯାହା ପ୍ରତିଜ୍ଞା ତୋର ଥିଲା ।
ତାହାତ ସମ୍ପୂର୍ଣ୍ଣ ହୋଇଲା ॥୧୪୪
ତୋ ପାଦେ ପଶିଲି ଶରଣ ।
ମୋତେ ଅଭୟ ଦିଅ ପୁଣ ॥୧୪୫
ସେବଇଁ ଚରଣେ ତୁମ୍ଭର ।
ମୋହର ମନଦୁଃଖ ହର ॥୧୪୬
ପୁତ୍ର ନୋହିଲା ମୋର ଗର୍ଭେ ।
ଏଣୁ ମୋ ମନ ଦୁଃଖେ ଭାବେ॥୧୪୭
ଯେବା ହୋଇଲେ ନବନାରୀ ।
ଏ ଅନୁରୂପେ ବର ବରି ॥୧୪୮
ବିବାହ ଦିଅ ତୁମ୍ଭେ ସୁଖେ ।
ମୋ ଦୀନଭାବ ଯାଉ ସୁଖେ ॥୧୪୯
ତୁମ୍ଭେ ଯେ ବନେ ତପ କଲେ ।
ମୋ ମନ ନ ରହିବ ଭଲେ ॥୧୫୦
ଏଣୁ ମୋ ମନଦୁଃଖ ଭାବେ ।
ପୁତ୍ର ସମ୍ପାଦ ମୋର ଗର୍ଭେ ॥୧୫୧
ମୁଁ ଏତେ କାଳ ତୁମ୍ଭ ତୁଲେ ।
ବଞ୍ଚିଲି ନାନା ଭୋଗ ଭୋଳେ ॥୧୫୨
ଇନ୍ଦ୍ରିୟ ଭୋଗର ଲାଳସେ ।
ବଞ୍ଚିଲି ନାନା ଭୋଗ ରସେ ॥୧୫୩
ତୁମ୍ଭର ଅଙ୍ଗ ସଙ୍ଗ ମେଳେ ।
ଏ ଜନ୍ମ ଗଲା ମୋର ଭୋଳେ॥୧୫୪

ଏ କର୍ମଭୂମି ମଧ୍ୟେ ମୁହିଁ ।
ଉତ୍ତମ-କୁଳେ ଜନ୍ମ ହୋଇ ॥୧୫୫
ଆତ୍ମାର ଗତି ନ ଜାଣଇଁ ।
ଏ ଦୁଃଖ ସୁଖ ମୁଁ ମଣଇଁ ॥୧୫୬
ତୁମ୍ଭ ସଙ୍ଗତେ ସଙ୍ଗ କରି ।
ହରି-ଭଜନ ମୁଁ ପାଶୋରି ॥୧୫୭
ହେ କାନ୍ତ ମୋତେ ଦୟା କର ।
ଏ ଭବସାଗରୁ ଉଦ୍ଧର ॥୧୫୮
ଭୟ ନିବାର ମୋର ଚିତ୍ତେ ।
ଏ ମାୟା ତରିବି ଯେମନ୍ତେ ॥୧୫୯
ବିଷୟା-ରସେ ଯାର ସଙ୍ଗ ।
ଆବୋରେ ସଂସାର-ତରଙ୍ଗ ॥୧୬୦
ତାର ନିସ୍ତାର ଆଉ କାହିଁ ।
କର୍ମ-ବନ୍ଧନେ ସେ ପଡ଼ଇ ॥୧୬୧
ବୁଡ଼ଇ ସଂସାର-ସାଗରେ ।
ସମ୍ଭବେ ଅଶେଷ ଉଦରେ ॥୧୬୨
ଏ ଭାବ ଜାଣି ଯାର ମନ ।
ବିଷ୍ଣୁ-ଭଜନେ ସାବଧାନ ॥୧୬୩
ସେ ଜୀବ ଆତ୍ମାକୁ ଉଦ୍ଧରେ ।
ନ ବୁଡେ ସଂସାର-ସାଗରେ ॥୧୬୪
ଯେ ଇହଜନ୍ମ କର୍ମ-ଧର୍ମେ ।
ହରି ନ ଭଜେ ମାୟା ଭ୍ରମେ ॥୧୬୫

ଯେ ତୀର୍ଥପଦ ନ ସେବଇ ।
ଜୀବନ ଥାଉଁ ସେ ମରଇ ॥୧୬୬
ମୁଁ ଏ ଇନ୍ଦ୍ରିୟ ଭୋଗ ବଳେ ।
ବଞ୍ଚିଲି ବିଷ୍ଣୁମାୟା ଭୋଳେ ॥୧୬୭
ମୁଁ ତୁମ୍ଭ ପାଦେ ସେବା କରି ।
ମୋକ୍ଷେ ନୋହିଲି ଅଧିକାରୀ ॥୧୬୮
ଏବେ ଉପାୟ କହ ମୋତେ ।
ଏ ମାୟା ତରିବି ଯେମନ୍ତେ ॥୧୬୯

ମୈତ୍ରେୟ ଉବାଚ

ଏମନ୍ତେ କର୍ଦ୍ଦମ ସମ୍ମୁଖେ ।
ସେ ଦେବହୂତି ମନଦୁଃଖେ ॥୧୭୦
ଯେତେ କହିଲା ମନ-ତ୍ରାସ ।
ସୁଜନ ଜନେ ଏଥେଁ ରସ ॥୧୭୧
ତୃତୀୟସ୍କନ୍ଧେ ଭାଗବତ ।
କହିଲା ଦାସ ଜଗନ୍ନାଥ ॥୧୭୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟୋପଖ୍ୟାନେ
ତ୍ରୟୋବିଂଶୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ଚତୁର୍ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତ ପତ୍ନୀର ବଚନେ ।
କର୍ଦ୍ଦମ ଅତି ସାବଧାନେ ॥୧
ଗୋବିନ୍ଦପାଦେ ମନଦେଇ ।
କହିଲେ ପତ୍ନୀ ମୁଖ ଚାହିଁ ॥୨
ଶୁକ୍ଳ ବଚନ ସ୍ମରି ମନେ ।
କହନ୍ତି ଅମୃତ ବଚନେ ॥୩

### କର୍ଦ୍ଦମ ଉବାଚ

ହେ ପ୍ରିୟ ଶୁଣ ମୋ ଉତ୍ତର ।
ମନରେ ଖେଦ ତୁ ନ କର ॥୪
ଏହି ନିକଟେ ତୋ ଉଦରେ ।
ଗୋବିନ୍ଦ ନର କଳେବରେ ॥୫
ଜାତ ହୋଇବେ ତୋର ଭାବେ ।
ତୋ ବ୍ରତ ତପର ପ୍ରସ୍ତାବେ ॥୬
ତୁ ବ୍ରତ ଦାନ ଧ୍ୟାନ କରି ।
ବିଷ୍ଣୁଚରଣ ହୃଦେ ଧରି ॥୭
ଏ ମାୟାମୟ ସୁଖ ତେଜ ।
ତପେ ଗୋବିନ୍ଦପାଦେ ଭଜ ॥୮
ସେ ଶୁକ୍ଳବର୍ଣ୍ଣ ତୋର ଭାବେ ।
ମୋହର ତପ ଫଳ ଲାଭେ ॥୯
ସଂଶୟ ଗ୍ରନ୍ଥି ତୋର ଚିତ୍ତେ ।
ସେ ଦୃଢ଼ବନ୍ଧ କର୍ମଗତେ ॥୧୦
ସେ ହରି ଜ୍ଞାନ ଉପଦେଶେ ।
ସର୍ବ ଛେଦିବେ ଅବଶେଷେ ॥୧୧

### ମୈତ୍ରେୟ ଉବାଚ

ସେ ପ୍ରଜାପତିର ସନ୍ଦେଶ ।
ବିଶ୍ୱାସ ଗୌରବ ପ୍ରକାଶ ॥୧୨
କରି ଭଜିଲେ ଶ୍ରଦ୍ଧାଭାବେ ।
ଜଗତଗୁରୁ ହରିପାଦେ ॥୧୩
ଏମନ୍ତେ ବହୁକାଳ ଗଲା ।
ହରିର ଅନୁଗ୍ରହ ହେଲା ॥୧୪
ଏ ବେନିଭାବ ହୃଦେ ଧରି ।
ଅଶେଷ-ମଙ୍ଗଳ-ମୁରାରି ॥୧୫
ପ୍ରବେଶ ପ୍ରଜାପତି ଅଙ୍ଗେ ।
ପତି କାମିନୀ ଅଙ୍ଗ ସଙ୍ଗେ ॥୧୬
ଗର୍ଭ ସଂଯୋଗେ ଦେହଧରି ।
ଜନ୍ମ ହୋଇଲେ ନରହରି ॥୧୭
ସଂସାର ନିସ୍ତାରଣ ସାଧେ ।
ଅନଳ ଯେହ୍ନେ ଦାରୁମଧ୍ୟେ ॥୧୮
ଆକାଶେ ଶୁଭେ ନାନାବାଦ୍ୟ ।
ଶୁଭ ମଙ୍ଗଳ ବେଦନାଦ ॥୧୯
ଗନ୍ଧର୍ବ ଗାନ ସୁଲଳିତ ।
ନାଚନ୍ତି ଅପସରା ଯୂଥ ॥୨୦
ଦେବେ କରନ୍ତି ପୁଷ୍ପବୃଷ୍ଟି ।
ମହୀମଙ୍ଗଳ ଶୁଭସୃଷ୍ଟି ॥୨୧
ପ୍ରସନ୍ନ ଦଶଦିଗ ଦିଶେ ।
ଜଳଧି ଉର୍ମ୍ମିଳି ପ୍ରକାଶେ ॥୨୨
ସକଳ ପ୍ରାଣୀଙ୍କର ମନ ।
ସ୍ୱଭାବେ ହୁଏ ସୁପ୍ରସନ୍ନ ॥୨୩
କର୍ଦ୍ଦମ ଆଶ୍ରମ-ମଣ୍ଡଳ ।
ବେଷ୍ଟିତ ସରସ୍ୱତୀ ଜଳ ॥୨୪
ମରୀଚି ଆଦି ସପ୍ତଋଷି ।
ବ୍ରହ୍ମାର ତୁଲେ ସର୍ବେ ଆସି ॥୨୫
ପରମବ୍ରହ୍ମ ସର୍ବବ୍ୟାପୀ ।
ସାତ୍ତ୍ୱିକ ଅଂଶେ ସର୍ବରୂପୀ ॥୨୬
ସେ ତତ୍ତ୍ୱ ସାଂଖ୍ୟଜ୍ଞାନ ଅର୍ଥେ ।
ବିରାଜ ରୂପ ଏ ଜଗତେ ॥୨୭
ବିଶୁଦ୍ଧ ଚିତ୍ତ ନରହରି ।
କର୍ଦ୍ଦମ ଭକ୍ତି ହୃଦେ ଧରି ॥୨୮
ପ୍ରବେଶ କର୍ଦ୍ଦମ ମନ୍ଦିରେ ।
ଅଶେଷଜନ ଉପକାରେ ॥୨୯
କର୍ଦ୍ଦମ ମୁଖ ଚାହିଁ ଭଣି ।
ଆନନ୍ଦମନେ କୃଶପାଣି ॥୩୦

### ବ୍ରହ୍ମା ଉବାଚ

ତୁ ଯେ ମୋହର ଆଜ୍ଞା ଶିରେ ।
ଘେନି ଏ ସଂସାର-ସାଗରେ ॥୩୧
ତପ ସାଧିଲୁ ଘୋରଦୁଃଖେ ।
ରମିଲୁ ଗୃହମେଧି ସୁଖେ ॥୩୨
ପୁତ୍ରର ଧର୍ମଟି ଏମନ୍ତ ।
ଯାହା ବୋଲନ୍ତି ମାତା ତାତ ॥୩୩
ଆଦରେ ସର୍ବଦା କରଇ ।
ତେବେ ସେ ବିଷ୍ଣୁଙ୍କୁ ତୋଷଇ ॥୩୪
ତାହାର ଇହପରଲୋକେ ।
ସକଳ କାଳ ଯାଏ ସୁଖେ ॥୩୫
ଏ ନବକୁମାରୀ ତୋହର ।
ପରମ ସୁଗୁଣ ସୁନ୍ଦର ॥୩୬
ଏ ସୃଷ୍ଟି ସର୍ଜନ କାରଣ ।
ତୁ ଏବେ ମୋର ବୋଲ ଶୁଣ ॥୩୭
ମରୀଚି ଆଦି ମୁନି ଯେତେ ।
ତାହାଙ୍କୁ ବରି ଶୁଦ୍ଧ ଚିତ୍ତେ ॥୩୮
ଯଥା ଉଚିତେ କରି ଶୋଭା ।
ନିଗମମାର୍ଗେ ଦିଅ ବିଭା ॥୩୯
ତୋହର ଯଶ ସର୍ବକାଳେ ।
ଅଶେଷ ଭୁବନ ମଣ୍ଡଳେ ॥୪୦
ଏବେ ତୋହର ଘରେ ହରି ।
ଅଂଶେ ଜନ୍ମିଲେ ଦେହ ଧରି ॥୪୧
ଜୀବର ନିସ୍ତାରଣ ଅର୍ଥେ ।
କପିଳ ରୂପେ ଏ ଜଗତେ ॥୪୨
ଏ ବାକ୍ୟ କର୍ଦ୍ଦମକୁ କହି ।
ସେ ଦେବହୂତି ମୁଖ ଚାହିଁ ॥୪୩
କହନ୍ତି ପ୍ରଭୁ ବେଦବର ।
ଧନ୍ୟ ଜୀବନ ମାତ ତୋର ॥୪୪
ହେ ଦେବହୂତି ଶୁଣ ତୁହି ।
ତୋ ପୁତ୍ର ସାମାନ୍ୟ ନୁହଇ ॥୪୫
ଏ ହରି ତୋହର ନନ୍ଦନ ।
ଛେଦିବ ହୃଦୟ-ବନ୍ଧନ ॥୪୬

Dr. Sudhanshu Sekhar Mishra

ଜ୍ଞାନ-ବିଜ୍ଞାନ ଯୋଗେ କର୍ମ ।
ନାଶିବ ଧରି ଯତିଧର୍ମ ॥୪୭
ଶିରେ ଅରୁଣ ଜଟାଭାର ।
ସ୍ୱରୂପେ ଜଗତ ସୁନ୍ଦର ॥୪୮
ନେତ୍ର ଚରଣେ ପଦ୍ମଚିହ୍ନ ।
ସୁନ୍ଦର ଜଗତ ମୋହନ ॥୪୯
ଜ୍ଞାନେ ବିଜ୍ଞାନେ ଏହି ଦେବ ।
କର୍ମମୂଳକୁ ଉପାଡ଼ିବ ॥୫୦
ପରମଜ୍ଞାନ ତୋତେ କହି ।
ଇଚ୍ଛାଏ ଭ୍ରମିବ ଏ ମହୀ ॥୫୧
ଏ ସିଦ୍ଧଗଣଙ୍କ ଈଶ୍ୱର ।
ସୁସଂଖ୍ୟଯୋଗୀଙ୍କର ସାର ॥୫୨
ତୋ ଯଶ କୀର୍ତ୍ତିର ବର୍ଦ୍ଧନ ।
ହୋଇବ କପିଳ ଯା ନାମ ॥୫୩

ମୈତ୍ରେୟ ଉବାଚ

କର୍ଦ୍ଦମ ଦେବହୂତି ବେନି ।
ଆଶ୍ୱାସ କରି ପଦ୍ମଯୋନି ॥୫୪
ନାରଦ ଆଦି ପୁତ୍ର ମେଳେ ।
ଅନେକ ମୁନିଙ୍କ ଗହଳେ ॥୫୫
ସେ ହଂସମୟ ଦିବ୍ୟଯାନେ ।
ତକ୍ଷଣେ ଗଲେ ନିଜ ସ୍ଥାନେ ॥୫୬
ବ୍ରହ୍ମା ଅନ୍ତରେ ସେ କର୍ଦ୍ଦମ ।
ହରଷ ଚିତ୍ତେ ସୁସଂଭ୍ରମ ॥୫୭
ବ୍ରହ୍ମାର ଆଜ୍ଞା ଘେନି ଶିରେ ।
ଋଷିଙ୍କି ଆଣି ନିଜ ପୁରେ ॥୫୮
ମଙ୍ଗଳ ଦୂର୍ବାସୂତ୍ର ରକ୍ଷେ ।
ବର ବରିଲେ ଏକେ ଏକେ ॥୫୯
ମରୀଚି ମୁନି ହସ୍ତ ଧରି ।
କଳା କନ୍ୟାକୁ ବର ବରି ॥୬୦
ଆନନ୍ଦ ମନେ କରି ବିଭା ।
କିଅବା ପଟାନ୍ତର ଦେବା ॥୬୧
ତ୍ରିଦଶେ ଦେଖନ୍ତି ଆକାଶେ ।
ହରଗଉରୀ ପ୍ରାୟ ଦିଶେ ॥୬୨
ଦ୍ୱିତୀୟ କନ୍ୟା ଅନସୂୟା ।
ଅତ୍ରି ମୁନିଙ୍କି ଦେଲା ତାହା ॥୬୩

ଶ୍ରଦ୍ଧାକୁ ଅଙ୍ଗିରସ ମୁନି ।
ବରିଲା କରେ ଅର୍ଘ୍ୟ ଘେନି ॥୬୪
ପୁଲସ୍ତ୍ୟେ ହବି ଦେଲା ଦାନ ।
ପୁଲହେ ଗତି ବିଦ୍ୟମାନ ॥୬୫
କ୍ରତୁଙ୍କୁ ଦେଲା କ୍ରିୟା ସତୀ ।
ଭୃଗୁଙ୍କୁ ସମର୍ପିଲା ଖ୍ୟାତି ॥୬୬
ବଶିଷ୍ଠେ ବରି ଅରୁନ୍ଧତୀ ।
ଅଥର୍ବେ ସମର୍ପିଲା ଶାନ୍ତି ॥୬୭
ଏମନ୍ତେ ନବ-ବିପ୍ରବରେ ।
କନ୍ୟା ବିବାହେ ନିଜ ପୁରେ ॥୬୮
ଧନେ ସନ୍ତୋଷୀ ତାଙ୍କ ମନ ।
ଗଲେ ସେ ଯେ ଯାହା ଭୁବନ ॥୬୯
ମୁନିଙ୍କି କରି ଅନୁଯାନ ।
ସଂଭ୍ରମ କର୍ଦ୍ଦମର ମନ ॥୭୦
ଗୃହେ ଯେ ପୁତ୍ର ଉପୁଜିଲା ।
କପିଳ ନାମେ ବିଷ୍ଣୁକଳା ॥୭୧
ବେଗେ ମିଳିଲା ପୁତ୍ର ପାଶେ ।
ସ୍ୱଭାବେ ଜନକ ବିଶ୍ୱାସେ ॥୭୨
ବିଷ୍ଣୁର ଜନ୍ମ ପତ୍ନୀ ଗର୍ଭେ ।
ସୁମରେ ଶୁକ୍ଳ-ବାକ୍ୟ ଭାବେ ॥୭୩
ଏକାନ୍ତେ ପୁତ୍ର ପାଶେ ଯାଇ ।
ବୋଲେ କପାଳେ କରଦେଇ ॥୭୪

କର୍ଦ୍ଦମ ଉବାଚ

ଦେଖ ମୋହର ଦୁଷ୍ଟପଣ ।
ନ ସେବି ତୁମ୍ଭର ଚରଣ ॥୭୫
ଏ ଗୃହ-ଅନ୍ଧକୂପ ପଥେ ।
ପଡ଼ିଲି ଅମଙ୍ଗଳ ଯନ୍ତେ ॥୭୬
ଅନେକ ଜନ୍ମେ ଯୋଗସାଧ୍ୟେ ।
ଯୋଗସମାଧି ଅନୁବାଦେ ॥୭୭
ଯେ ପ୍ରାଣୀ ଗୃହବନ୍ଧ ତେଜେ ।
ବନସ୍ତେ ତୋ ଚରଣେ ଭଜେ ॥୭୮
ପର୍ଣ୍ଣକୁଟୀର ମଧ୍ୟେ ଥାଇ ।
ବଞ୍ଚନ୍ତି ତୋ ଚରଣ ଧ୍ୟାୟି ॥୭୯
ତୋ ପାଦ ଦେଖିବାର ଆଶେ ।
ସାଧନ୍ତି ଅନେକ ବରଷେ ॥୮୦

ଏମନ୍ତ ପ୍ରଭୁ ତୁମ୍ଭେ ହରି ।
ମୋର ଭୁବନେ ଅବତରି ॥୮୧
ତୋର ଭକତ ରକ୍ଷାଅର୍ଥେ ।
ତୋ ଅବତାର ଏ ଜଗତେ ॥୮୨
ନିଜ ବଚନ ସତ୍ୟ କରି ।
ତୁ ମୋର ଗୃହେ ଅବତରି ॥୮୩
ସ୍ୱଭାବେ ସର୍ବଭୂତେ ଥାଉ ।
ଭକତଜନେ ବଶ ହେଉ ॥୮୪
ଭକତହିତେ ନାନାଯୋନି ।
ଉପୁଜୁ ନିଜତେଜ ଘେନି ॥୮୫
ପଣ୍ଡିତଜନେ ତୋ ବିଶ୍ୱାସେ ।
ତୋ ପାଦପଦ୍ମଗନ୍ଧାବାସେ ॥୮୬
ସଂସାର ତେଜି ସେ ଭଜନ୍ତି ।
ଅନ୍ତେ ତୋ ଶରୀରେ ପଶନ୍ତି ॥୮୭
ତୁ ପୂର୍ଣ୍ଣବ୍ରହ୍ମ ନରହରି ।
ପ୍ରକାଶୁ ଜ୍ୟୋତିରୂପ ଧରି ॥୮୮
ଐଶ୍ୱର୍ଯ୍ୟ ବୀର୍ଯ୍ୟ ଯଶ ଜ୍ଞାନ ।
ତୁ ଶ୍ରୀ ବୈରାଗ୍ୟ ପରିପୂର୍ଣ୍ଣ ॥୮୯
ତେଣୁ ଶରଣାଗତ ମୁହିଁ ।
ମୋ ଦୋଷ କ୍ଷମ ଭାବଗ୍ରାହୀ ॥୯୦
ତୁ ନାଥ ପରମ-ପୁରୁଷ ।
ପ୍ରକୃତି ମଧ୍ୟେ ତୋ ପ୍ରକାଶ ॥୯୧
ମହତଆଦି ରୂପ ତୋର ।
ଭୂତଙ୍କ ସୂକ୍ଷ୍ମ ଅହଙ୍କାର ॥୯୨
ତ୍ରିଗୁଣମୟୀ କାଳରୂପୀ ।
ତୁ କବି ସର୍ବଭୂତେ ବ୍ୟାପି ॥୯୩
ତୋ ରୂପ ଆତ୍ମାଜ୍ଞାନ ଅର୍ଥେ ।
କପିଳରୂପେ ଏ ଜଗତେ ॥୯୪
ଶରଣାଗତ ତୋ ଚରଣେ ।
ମୋ ମନ ରହୁ ଅନୁକ୍ଷଣେ ॥୯୫
ତୁ ପ୍ରଜାପତିଙ୍କର ନାଥ ।
ତୁ ଯେ ହୋଇଲୁ ମୋର ସୁତ ॥୯୬
ତୁ ଅବତୀର୍ଣ୍ଣ ହେଲା ମାତ୍ରେ ।
ମୋ ଋଣତ୍ରୟ ନାହିଁ ଗାତ୍ରେ ॥୯୭
ପୂର୍ଣ୍ଣ ହୋଇଲା ମନୋରଥ ।
ସନ୍ନ୍ୟାସମାର୍ଗେ ଏବେ ଚିତ୍ତ ॥୯୮

Dr. Sudhanshu Sekhar Mishra

ତେଣୁ ମାଗଇ ଆତ୍ମା ଅର୍ଥେ ।
ତୋ ପାଦଧ୍ୟାନ ହୃଦଗତେ ॥୯୯
ଧରିଣ ବୁଲିବି ଜଗତେ ।
ଏମନ୍ତ ଆଜ୍ଞା ଦିଅ ମୋତେ ॥୧୦୦
ଏମନ୍ତ କର୍ଦ୍ଦମ ବଚନ ।
ଶୁଣି କହନ୍ତି ଭଗବାନ ॥୧୦୧

ଭଗବାନ ଉବାଚ

ତୋହର ତପ ତେଜ ବଳେ ।
ମୋ ଅବତାର ଏ ଶୟଳେ ॥୧୦୨
ନିଜ ବଚନ ସତ୍ୟ କରି ।
ତୋ ପତ୍ନୀ-ଗର୍ଭେ ଅବତରି ॥୧୦୩
କେ ଲଭିପାରେ ମୋର ଭାବ ।
ମୋ ରୂପ ଯୋଗୀଙ୍କି ଦୁର୍ଲ୍ଲଭ ॥୧୦୪
ମୁଁ ଏବେ ସଂସାରର ଅର୍ଥେ ।
ଜ୍ଞାନପ୍ରକାଶି ଏ ଜଗତେ ॥୧୦୫
ଏ ସିଦ୍ଧଦେହେ ଥିବି ମୁହିଁ ।
ଯାବତ ସୂର୍ଯ୍ୟ ଚନ୍ଦ୍ର ମହୀ ॥୧୦୬
ଯେ ତତ୍ତ୍ୱଜ୍ଞାନ ପୂର୍ବେ ଥିଲା ।
କାଳର ବଳେ ନାଶ ଗଲା ॥୧୦୭
ସେ ତତ୍ତ୍ୱ ପ୍ରକାଶିବା ଅର୍ଥେ ।
ମୋ ଅବତାର ଏ ଜଗତେ ॥୧୦୮
ତୋହର ସାଧୁକ୍ରିୟା ଯେତେ ।
ସବୁ ସମର୍ପି ଦିଅ ମୋତେ ॥୧୦୯
ମୋର ଚରଣେ ଭାବେ ବନ୍ଧି ।
ଚଳ ତୁ ଗୃହବନ୍ଧ ଏଡ଼ି ॥୧୧୦
ସୁହୃଦେ ମୋ ପଦ ଭଜିବୁ ।
ଦୁର୍ଜ୍ଜୟ-ମରଣୁ ତରିବୁ ॥୧୧୧
ଅନ୍ତେ ପଶିବୁ ମୋ ଚରଣେ ।
ବେଗେ ଯା ତପ ସାଧ ବନେ॥୧୧୨
ମୁଁ ଆତ୍ମାନନ୍ଦଜ୍ୟୋତି ପଦେ ।
ପ୍ରକାଶ ସର୍ବଭୂତହୃଦେ ॥୧୧୩
ଆତ୍ମାର ମଧ୍ୟେ ଆତ୍ମା ଦେଖ ।
ମୃତ୍ୟୁ ସକାଶୁ ଆତ୍ମା ରଖ ॥୧୧୪
ଅଧ୍ୟାତ୍ମ-ବିଦ୍ୟା ସ୍ୱାଧ୍ୟ କର ।
ଏ ମାୟା-ବନ୍ଧନ୍ତୁ ନିସ୍ତର ॥୧୧୫
ଯେ ବିଦ୍ୟାବଳେ ଦେବହୂତି ।
ହେବ ପରମାନନ୍ଦ ପ୍ରାପ୍ତି ॥୧୧୬

ମୈତ୍ରେୟ ଉବାଚ

ଏମନ୍ତ ହରି ଆଜ୍ଞା ପାଇ ।
ଅଭୟପଦେ ମନ ଦେଇ ॥୧୧୭
ବିଷ୍ଣୁଙ୍କ ପ୍ରଦକ୍ଷିଣ କଲା ।
ମଉନବ୍ରତେ ବନ ଗଲା ॥୧୧୮
ଅହିଂସାବ୍ରତ ଆଚରଣ ।
କେବଳ ଆତ୍ମାରେ ଶରଣ ॥୧୧୯
ନିଃସଙ୍ଗ ଗୃହ ନିରପେକ୍ଷ ।
ଅନଳ ଛାଡ଼ି ସେ ପ୍ରତ୍ୟକ୍ଷ ॥୧୨୦
ନିର୍ଗୁଣବ୍ରହ୍ମେ ମନ ଦେଇ ।
ସତ ଅସତ ପର ସେହି ॥୧୨୧
ଏକାନ୍ତଭକ୍ତିରସେ ରସି ।
ଜିଣିଲା କାଳଦଣ୍ଡଫାସି ॥୧୨୨
ଭ୍ରମଇ ବନ ଘନ ଗିରି ।
ଦେଖଇ ସର୍ବଭୂତେ ହରି ॥୧୨୩
ଇନ୍ଦ୍ରିୟଗଣଙ୍କୁ ନିରୋଧି ।
ଯେସନେ ନିଶ୍ଚଳ ଜଳଧି ॥୧୨୪
ସର୍ବଙ୍କେ ସର୍ବ ଆତ୍ମାଭାବେ ।
ଯେ ଭଗବାନ ବାସୁଦେବେ ॥୧୨୫
ଯେ ଭାବେ ରହି ଧୀରପଣେ ।
ନିର୍ବାଣମୁକ୍ତିର ଭିଆଣେ ॥୧୨୬
ଦେଖଇ ସର୍ବଭୂତେ ହରି ।
ଆତ୍ମା ସ୍ୱରୂପେ ଅଛି ପୂରି ॥୧୨୭
ହରିର ଦେହେ ଏ ଜଗତ ।
ଦେଖେ ଅଭେଦେ ଦୃଷ୍ଟିଗତ ॥୧୨୮
ଅନ୍ତେ ଲଭିଲା ହରିଭାବ ।
ଯେ ହରି ଦେବଙ୍କୁ ଦୁର୍ଲଭ ॥୧୨୯
ଏମନ୍ତ ବିଦୁରର ଆଗେ ।
ମୈତ୍ରେୟ କହେ ପ୍ରିୟଭାବେ ॥୧୩୦
ନିର୍ମଳ-ଭାଗବତବାଣୀ ।
ଭାଷାପ୍ରବନ୍ଧେ ପରିମାଣି ॥୧୩୧
ତୃତୀୟସ୍କନ୍ଧେ କୃଷ୍ଣରସ ।
କହିଲା ଜଗନ୍ନାଥ ଦାସ ॥୧୩୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟେ
ଚତୁର୍ବିଂଶୋଽଧ୍ୟାୟଃ ।

---

Dr. Sudhanshu Sekhar Mishra

## ପଞ୍ଚବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ମୁନି ଅନ୍ତରେ ଦେବହୂତି ।
ସ୍ୱଭାବେ ସୁଗୁଣ ସୁମତି ॥୧
ତକ୍ଷଣେ ପୁତ୍ରପାଶେ ଯାଇ ।
କହଇ ଶିରେ କର ଦେଇ ॥୨

ଦେବହୂତି ଉବାଚ

ତୁ ଅଜ ନିର୍ଗୁଣ ନିର୍ଲକ୍ଷ୍ୟ ।
ତୋ ଭକ୍ତଜନେ ତୁ ପ୍ରତ୍ୟକ୍ଷ ॥୩
ଆଦିପୁରୁଷ ତୁ ଈଶ୍ୱର ।
ଯେ ଅନ୍ଧତମ ପ୍ରାଣୀଙ୍କର ॥୪
ଜୀବର ପରିତ୍ରାଣ ଅର୍ଥେ ।
ତୋ ଅବତାର ଏ ଜଗତେ ॥୫
ସ୍ତିରୀ ସ୍ୱଭାବ ମୁହିଁ ମନ୍ଦ ।
ନ ଜାଣେ ଆତ୍ମା ଭଲମନ୍ଦ ॥୬
କି ରୂପେ ସଂସାର ତୁଟଇ ।
ଜୀବନ-ବନ୍ଧନ ଫିଟଇ ॥୭
ମୁଁ ଯେ ଅଜ୍ଞାନ ମୂଢ଼ମତି ।
ସ୍ୱଭାବେ ଅଟଇ ଯୁବତୀ ॥୮
ତୁ ମୋତେ ଜ୍ଞାନଚକ୍ଷୁ ଦେଇ ।
ଉଦ୍ଧର ଦୁର୍ଗତି ଖଣ୍ଡାଇ ॥୯
ତୁ ନାଥ ମୋତେ ଦୟାକର ।
ଏ ଘୋରସଂସାରୁ ଉଦ୍ଧର ॥୧୦
ମାତୃଭାବେ କର ଦୟା ।
ଯେମନ୍ତେ ତୁଟେ ତୋର ମାୟା ॥୧୧

ମୈତ୍ରେୟ ଉବାଚ

ମାତା ବଚନେ ହୃଷୀକେଶ ।
ଅଳପ ହୋଇ ହସହସ ॥୧୨
ଅଶେଷ ଜୀବ ଦେହବାସୀ ।
କହନ୍ତି ପ୍ରଭୁ ବ୍ରହ୍ମରାଶି ॥୧୩

ଭଗବାନ କପିଳ ଉବାଚ

ଶୁଣ ଜନନୀ କହୁଁ ତୋତେ ।
ଯେ ପ୍ରଶ୍ନ କଲୁ ତୁହି ମୋତେ ॥୧୪
ଯାହାର ଚିତ୍ତେ ଭକ୍ତିଯୋଗ ।
ଭଜଇ ମୋ ଚରଣଯୁଗ ॥୧୫
ତେବେ ବିଷୟେ ବଇରାଗ୍ୟ ।
ଉପୁଜେ ପୂର୍ବେ ଥିଲେ ଭାଗ୍ୟ ॥୧୬
ଏ ଆତ୍ମନିଷ୍ଠା ଯୋଗ ଜାଣ ।
ପୁରୁଷ ମୋକ୍ଷର କାରଣ ॥୧୭
ଭୋ ମାତ ତୁମ୍ଭେ ଏବେ ଶୁଣ ।
ନିର୍ଗୁଣଭକ୍ତିର କାରଣ ॥୧୮
ପୂର୍ବେ ମୁଁ ଋଷିଙ୍କର ମଧ୍ୟେ ।
ଯେ ଯୋଗ କହିଲଇଁ ସାଧ୍ୟେ ॥୧୯
ଯେଣେ ଏ ମାୟା ଘୋରବନେ ।
ନିସ୍ତାର ଭକ୍ତି-କରଷଣେ ॥୨୦
ଶୁଣ ଜନନୀ ସେ ଲକ୍ଷଣ ।
କହିବା ଯେ ଭକ୍ତି ନିର୍ଗୁଣ ॥୨୧
ଚିତ୍ତ ସଂଯମ ବ୍ୟତିରେକେ ।
ଯୋଗର ସିଦ୍ଧି ନୋହେ ଲୋକେ ॥୨୨
ବନ୍ଧ-ମୋକ୍ଷର ହେତୁ ଚିତ୍ତ ।
ଏ ଆତ୍ମଜ୍ଞାନୀଙ୍କ ସମ୍ମତ ॥୨୩
ଜୀବର ଜନ୍ମ-ବନ୍ଧ-ପାଶ ।
ଯେ ଭାବେ ହୋଇବ ଉଶ୍ୱାସ ॥୨୪
ବିଷୟାରତ ଚିତ୍ତ ଯେବେ ।
ଜୀବର ବଦ୍ଧଭାବ ତେବେ ॥୨୫
ଈଶ୍ୱରେ ଦେଲେ ସେହି ଚିତ୍ତ ।
ବନ୍ଧନୁ ହୁଅଇ ମୁକତ ॥୨୬
ମୁହିଁ ମୋହର ଭାବୁଁ ଜାତ ।
କାମାଦି ତେଜେ ଯେବେ ଚିତ୍ତ ॥୨୭
ନିର୍ମଳ ହୁଅଇଟି ଜାଣ ।
ମଣଇ ସୁଖ ଦୁଃଖ ସମ ॥୨୮
ଏ ରୂପେ ଚିତ୍ତଶୁଦ୍ଧ ଯେବେ ।
ଜୀବ ଈଶ୍ୱର ଏକ ଭାବେ ॥୨୯
ଦେଖାଇ ପ୍ରକୃତିରୁ ଭିନ୍ନ ।
ସ୍ୱୟଂପ୍ରକାଶ ପରିପୂର୍ଣ୍ଣ ॥୩୦
ପ୍ରକୃତି ବଳ ହୋଏ ହତ ।
ଜ୍ଞାନ ବୈରାଗ୍ୟ ଭକ୍ତି ଜାତ ॥୩୧
ଅଖିଳ ଆତ୍ମା ପାଦଯୁଗେ ।
ଭଜିଲେ ଦୃଢ଼େ ଭକ୍ତିଯୋଗେ ॥୩୨
ଏଣୁ ସେ ଲଭେ ବ୍ରହ୍ମଜ୍ଞାନ ।
ଏଥିରୁଁ ପଥ ନାହିଁ ଆନ ॥୩୩
ଏ ଭବ-ଜଳଧି-ତରଙ୍ଗ ।
ହରଇ ସାଧୁଙ୍କର ସଙ୍ଗ ॥୩୪
ଭଜଇ କୈବଲ୍ୟ କାରଣେ ।
ମନ ନ ଭ୍ରମେ ଭବବଣେ ॥୩୫
ଶୁଣ ଜନନୀ ସାଧୁଗୁଣ ।
ଯେ ଅବା ସାଧୁଙ୍କ ଲକ୍ଷଣ ॥୩୬
ପ୍ରାଣୀବିଷୟେ ଆତ୍ମାବତ ।
କରଇ ତ୍ୟାଗ ଦୟା ଚିତ୍ତ ॥୩୭
ଜଗତ ନିର୍ବଇର ଦେଖେ ।
ନିଶ୍ଚଳେ ରହେ ଆତ୍ମାସୁଖେ ॥୩୮
ନିରତେ ଗୋବିନ୍ଦ ଚରଣେ ।
ସ୍ତୁତି କୀର୍ତ୍ତନ ଅନୁକ୍ଷଣେ ॥୩୯
ଦାରା ସ୍ୱଜନ ସୁତ ଧନ ।
ଗୃହ ଉପେକ୍ଷି ଚଳେ ବନ ॥୪୦
ସକଳ କର୍ମ ତେଜି ଦୃଢ଼େ ।
ମୋ ଭାବେ ମଜ୍ଜେ ଅତି ଗାଢ଼େ ॥୪୧
ମୋ ରୂପ ଗୁଣ କର୍ମ ଯେତେ ।
ଶ୍ରବଣ କୀର୍ତ୍ତନ ନିରତେ ॥୪୨
ଏମନ୍ତ ଭାବ ନିତ୍ୟେ କରି ।
ଏ ମାୟାଭବୁ ଯାନ୍ତି ତରି ॥୪୩
ଏ ରୂପେ ସାଧୁଙ୍କ ଚରିତ ।
ସମସ୍ତ ସଙ୍ଗ ବିବର୍ଜିତ ॥୪୪
ଏମନ୍ତ ଭକ୍ତଜନ ସଙ୍ଗ ।
କରି ତୁ ତର ଏ ତରଙ୍ଗ ॥୪୫
ଭକତଜନ ସଙ୍ଗ ଯେବେ ।
କରଇ ଭ୍ରମ ଖଣ୍ଡେ ତେବେ ॥୪୬

Dr. Sudhanshu Sekhar Mishra

ମୋର ଚରିତ ଗୁଣଗାଥା ।
ଏକ ଆନରେ କରେ ଚିନ୍ତା ॥୪୭
ଶୁଣି ଶୁଣାଇ ଅଶ୍ରୁଧାରେ ।
ଆନନ୍ଦେ ପୁଲକ ଶରୀରେ ॥୪୮
ନିରତେ ଶ୍ରଦ୍ଧାଭକ୍ତି ବଢେ ।
ଭବ-ବନ୍ଧନ-ପାଶ ଛିଡେ ॥୪୯
ଅଶେଷ ଜନ୍ମ ଭାଗ୍ୟୋଦୟେ ।
ଭକତଜନେ ଶ୍ରଦ୍ଧା ବହେ ॥୫୦
ତହୁଁ ଉପୁଜେ ରତି ଭକ୍ତି ।
ମୋହର ଲୀଳା କର୍ମ ଚିନ୍ତି ॥୫୧
ବୈରାଗ୍ୟ ହୁଅଇ ପ୍ରକାଶ ।
ପ୍ରକୃତି ଗୁଣ ଯାଇ ନାଶ ॥୫୨
ଜ୍ଞାନ ବୈରାଗ୍ୟ ଭକ୍ତିବଳେ ।
ସକଳ ସମର୍ପେ ମୋ ଠାରେ ॥୫୩
ତେବେ ଏ ଦେହେ ମୋତେ ପାଇ।
ଶୁଣ ଜନନୀ ମନ ଦେଇ ॥୫୪
ମୋ ନାମ ନାବ କରି ଭାବେ ।
ବସି ତରିବୁ ଭକ୍ତିଭାବେ ॥୫୫
ଭକତ ସଙ୍ଗେ ନାବେ ବସି ।
ଏ ସିନ୍ଧୁ ତରଣେ ସାହସୀ ॥୫୬
ଯେଣୁ ଭକତପ୍ରିୟ ହରି ।
ତା ଭାବେ ଭବସିନ୍ଧୁ ତରି ॥୫୭

ମୈତ୍ରେୟ ଉବାଚ

ଏମନ୍ତେ ପୁତ୍ର ବାକ୍ୟ ଶୁଣି ।
ଆନନ୍ଦେ କର୍ଦ୍ଦମ ଘରଣୀ ॥୫୮
ଆନନ୍ଦରସେ ହରଷିତ ।
ତକ୍ଷଣେ ହୋଇ କୃତକୃତ୍ୟ ॥୫୯
ଆକୁଳେ ପୁତ୍ର ପାଦେ ପଡି ।
ପୁଣି ପଚାରେ କରଯୋଡି ॥୬୦

ଦେବହୂତି ଉବାଚ

କି ରୂପେ ଭକ୍ତିଯୋଗ ଜାଣି ।
ଭକତି କିରୂପେ ପ୍ରମାଣି ॥୬୧
ଯେ ଭକ୍ତିବଳେ ଅନାୟାସେ ।
ଜୀବ ନିର୍ବାଣପଦେ ପଶେ ॥୬୨
ଯେ ଯୋଗ ମୁଖ୍ୟ ପ୍ରୟୋଜନ ।
ଶୁଣିଲି ତୁମ୍ଭର ବଚନ ॥୬୩
ସେ ଯୋଗ କେମନ୍ତ ଅଟଇ ।
କେମନ୍ତ ସାଧନ ତା ହୋଇ ॥୬୪
ମୁଁ ସ୍ତିରୀ ଅଟେ ମନ୍ଦବୁଦ୍ଧି ।
ଦୁର୍ବୋଧ୍ୟ ଯୋଗ ଦୟାନିଧି ॥୬୫
ଏଣୁ ମୋ ଚିତ୍ତରେ ସଂଶୟ ।
କହ ହେ ପ୍ରଭୁ ଦୟାମୟ ॥୬୬

ମୈତ୍ରେୟ ଉବାଚ

ଏମନ୍ତ ମାତାବାକ୍ୟ ଶୁଣି ।
କପିଳବେଶେ ଚକ୍ରପାଣି ॥୬୭
କହନ୍ତି ଜନନୀର ଆଗେ ।
ପରମ-ଜ୍ଞାନ ସଂଖ୍ୟଯୋଗେ ॥୬୮

କପିଳ ଉବାଚ

ଶୁଣ ଜନନୀ ବାକ୍ୟ ସାର ।
ଆଗମ ନିଗମ ପ୍ରକାର ॥୬୯
ଯେବା ଇନ୍ଦ୍ରିୟ ଦେବଗଣ ।
ଯା'ର ଯେ ସ୍ୱାଭାବିକ କର୍ମ ॥୭୦
ଯେ ଧର୍ମ କର୍ମ ଅଛି ବେଦେ ।
ତାହା ଇନ୍ଦ୍ରିୟ ଯେବେ ସାଧେ ॥୭୧
ଯେ ବର୍ଣ୍ଣେ ଯେବା ଧର୍ମ କର୍ମ ।
ଇନ୍ଦ୍ରିୟ କରେ ସେହି କର୍ମ ॥୭୨
ସେ ସର୍ବକର୍ମ ଯେବେ ମୋତେ ।
ଦେଇ ଭଜଇ ଏକଚିତ୍ତେ ॥୭୩
ଆପଣେ ଅକିଞ୍ଚନ ରୂପେ ।
ଭ୍ରମଇ ମାୟାମୟ କକ୍ଷେ ॥୭୪
ଭକତ ମଧ୍ୟେ ଏ ପ୍ରଧାନ ।
ଲଭଇ କଇବଲ୍ୟ-ସ୍ଥାନ ॥୭୫
ଜୀବ-ବାସନା-ବନ୍ଧ ହରେ ।
ନ ବୁଡେ ସଂସାର-ସାଗରେ ॥୭୬
ବ୍ୟାଧି ଯେସନେ ସ୍ଥାନେସ୍ଥାନେ ।
ହରଇ ଅଉଷଧ ପାନେ ॥୭୭
ଏ ଭାବେ ଯେ କରେ ବିଚାର ।
କୈବଲ୍ୟ କିବା ବସ୍ତୁତାର ॥୭୮
ନିତ୍ୟେ ଭକତଜନ ମଧ୍ୟେ ।
ହରିଚରିତ ନାନାଛନ୍ଦେ ॥୭୯
ନିରତେ କରେ ଅନୁପାନ ।
ଆନନ୍ଦ-ଅଶ୍ରୁ-ଜଳେ ସ୍ନାନ ॥୮୦
ତାର ସମାନ ଆନ ଜନେ ।
ନ ଦେଖି ଏ ତିନିଭୁବନେ ॥୮୧
ଏମନ୍ତେ ବଞ୍ଚେ ଦୁଃଖ ସୁଖେ ।
ସେ ମୋର ନିଜରୂପ ଦେଖେ ॥୮୨
ସୁନ୍ଦର ପ୍ରସନ୍ନ ବଦନ ।
ବିକଚ କମଳ ଲୋଚନ ॥୮୩
ସର୍ବ ସୁନ୍ଦର ମନୋହର ।
ମୋ ଶ୍ୟାମସୁନ୍ଦର ଶରୀର ॥୮୪
ମୋର ଅମୃତମୟ ବାଣୀ ।
ତନୁ ରୋମାଞ୍ଚ କରେ ଶୁଣି ॥୮୫
ଏ ରୂପ ଛାଡି ତାର ମନ ।
କୈବଲ୍ୟେ କିବା ପ୍ରୟୋଜନ ॥୮୬
ଏ ରୂପ ଦେଖି ଚିତ୍ତ ହରେ ।
କୈବଲ୍ୟ ଲଭେ ଅଭ୍ୟନ୍ତରେ ॥୮୭
ଅଷ୍ଟ ଐଶ୍ୱର୍ଯ୍ୟ ଯାହା ଚିନ୍ତ ।
ଅନନ୍ତ ଅନନ୍ତ ବିଭୂତି ॥୮୮
ସେ ସର୍ବେ ଖଟନ୍ତି ତା ପାଏ ।
ମୋ ଭକ୍ତଜନେ ଦୂର ନୋହେ ॥୮୯
ଏଣୁ ଭକତ ରଖେ ହରି ।
କାଳ ନ ପାରେ ଗ୍ରସ୍ତ କରି ॥୯୦
ମୁଁ ତାର ପ୍ରିୟ ଆତ୍ମା ସୁତ ।
ସଖା ସୁହୃଦ ଗୁରୁବତ ॥୯୧
ତାହାର ଗୁରୁଦେବ ମୁହିଁ ।
ଯେ ମୋତେ ଏ ଭାବେ ଭାବଇ॥୯୨
ତାହାର ଇଷ୍ଟ ବନ୍ଧୁ ମୁହିଁ ।
ଯେ ମୋତେ ସର୍ବ ସମର୍ପଇ ॥୯୩
ନାହିଁ ତା ଇହ ପର ଲୋକ ।
ନ ମାନେ ଆତ୍ମା ଦୁଃଖ ସୁଖ ॥୯୪
ଏକାନ୍ତ ଭକ୍ତିବଳେ ମୋତେ ।
ମନ ବଚନେ ନିତ୍ୟେ ଚିନ୍ତେ ॥୯୫
ସର୍ବ ସମର୍ପି ଅବିରତେ ।
ପଶଇ ମୋର ପାଦଗତେ ॥୯୬

Dr. Sudhanshu Sekhar Mishra

ମୁଁ ଈଶ ପୁରୁଷପ୍ରଧାନ ।
ମୋ ବିନୁ ବନ୍ଧୁ ନାହିଁ ଆନ ॥୯୭
ଦେଖ ମୋହର ମାୟାଗତେ ।
ଯନ୍ତ୍ରିତ ଅଛନ୍ତି ସମସ୍ତେ ॥୯୮
ମୋ ଆଜ୍ଞା କରୁଥାନ୍ତି ନିତ୍ୟେ ।
ନିତ୍ୟେ ଯନ୍ତ୍ରିତ ଭୟଚିତ୍ତେ ॥୯୯
ଦେଖ ପବନ ମୋର ଡରେ ।
ବହଇ ବାହ୍ୟ ଅଭ୍ୟନ୍ତରେ ॥୧୦୦
ମୋ ଭୟେ ଉଦେ ଦିନକର ।
ମୋ ଡରେ ବର୍ଷେ ସୁନାସୀର॥୧୦୧
ମୋ ଭୟେ ଯମ ଦଣ୍ଡ ଧରେ।
ମୃତ୍ୟୁ ସକଳ ପ୍ରାଣ ହରେ ॥୧୦୨
ମୋ ଡରେ ଯେବା ଯାହା ଭକ୍ଷେ ।
ଅଗ୍ନି ଦହଇ ଅପ୍ରତ୍ୟକ୍ଷେ ॥୧୦୩
ଶଶାଙ୍କ ଦିଶଇ ଆକାଶେ ।
ପ୍ରାଣୀଙ୍କ ମନ ସେ ଆଶ୍ୱାସେ ॥୧୦୪

ଏମନ୍ତେ ମହାଯୋଗୀଜନେ ।
ଯନ୍ତ୍ରିତ ମୋହର ବଚନେ ॥୧୦୫
ସେବନ୍ତି ମୋହର ଚରଣେ ।
ସଂସାର ପାର ଇଚ୍ଛି ମନେ ॥୧୦୬
କରନ୍ତି ପ୍ରାଣୀହିତ ନିତ୍ୟେ ।
ଅନ୍ୟୋନ୍ୟାଭାବେ ଏ ଜଗତେ॥୧୦୭
ଏବେ ତୁ ଭକ୍ତିଯୋଗ ଶୁଣ ।
ଯେଣେ ଜୀବର ପରିତ୍ରାଣ ॥୧୦୮
ଯେ ଭାବେ ଏ ସଂସାର ତୁଟେ।
ସୁଦୃଢ଼ କର୍ମଗ୍ରନ୍ଥି ଫିଟେ ॥୧୦୯
ତତ୍ତ୍ୱ-ତପନ-ତମ ନାଶେ ।
ନିର୍ମଳଜ୍ଞାନ ହିଁ ପ୍ରକାଶେ ॥୧୧୦
ଏଣୁ ଏ ତତ୍ତ୍ୱଜ୍ଞାନ କହି ।
ଶୁଣ ଜନନୀ ମନଦେଇ ॥୧୧୧
ଏମନ୍ତ ତତ୍ତ୍ୱଜ୍ଞାନ ଜାଣି ।
ଯେ ଭାବେ ଭଜେ ଚକ୍ରପାଣି॥୧୧୨

ଯେ ଦୟାସାଗର ମୁରାରି ।
ମାତା ବିଷୟେ ଦୟାକରି ॥୧୧୩
ଯେତେ କହିଲେ ଉପଦେଶ ।
ସୁଜନ ଜନେ ଏଣେ ରସ ॥୧୧୪
ତା ପାଦେ ମନ କରି ସ୍ଥିର ।
ମୋକ୍ଷେ ଉଦୟ ଲଭେ ନର ॥୧୧୫
ତୃତୀୟସ୍କନ୍ଧେ ଭାଗବତେ ।
ଜୀବର ପରିତ୍ରାଣ ଅର୍ଥେ ॥୧୧୬
ହରିଚରିତ ସୁଧାରସେ ।
କହଇ ଜଗନ୍ନାଥ ଦାସ ॥୧୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟୋପାଖ୍ୟାନେ
ପଞ୍ଚବିଂଶୋଽଧ୍ୟାୟଃ ।

---

## ଷଡ୍‌ବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଶୁଣ ବିଦୁର ତତ୍ତ୍ୱବାଣୀ ।
ଏ ଜୀବ ତରେ ଯାହା ଶୁଣି ॥୧
କପିଳରୂପେ ପ୍ରିୟଭାବେ ।
ଜନନୀ ପ୍ରବୋଧ ପ୍ରସ୍ତାବେ ॥୨
ଯାହା କହିଲେ ନାରାୟଣ ।
ନିଶ୍ଚଳଚିତ୍ତେ ଏବେ ଶୁଣ ॥୩
ବିଷ୍ଣୁ କହନ୍ତି ତୋଷମନେ ।
ମନୁତନୟା ସନ୍ନିଧାନେ ॥୪

କପିଳ ଉବାଚ

ଶୁଣ ଜନନୀ ମୋ ବଚନ ।
ଯେ ତତ୍ତ୍ୱଜ୍ଞାନର ଲକ୍ଷଣ ॥୫
ଏବେ ତୁ ତତ୍ତ୍ୱଜ୍ଞାନ ଶୁଣ ।
ଯେଣେ ଜୀବର ପରିତ୍ରାଣ ॥୬
ଏ ଜ୍ଞାନ ଜନ୍ମିଲେ ପୁରୁଷ ।
କାଟଇ ମୋହଗୁଣପାଶ ॥୭

ଯେ ଭାବେ ଏ ସଂସାର ତୁଟେ।
ସୁଦୃଢ଼-ହୃଦଗଣ୍ଠି ଫିଟେ ॥୮
ତତ୍ତ୍ୱତପନ ତମ ନାଶେ ।
ନିର୍ମଳ ଜ୍ଞାନ ହିଁ ପ୍ରକାଶେ ॥୯
ଏଣୁ ଏ ତତ୍ତ୍ୱଜ୍ଞାନ କହି ।
ଶୁଣ ଜନନୀ ମନ ଦେଇ ॥୧୦
ଯେମନ୍ତ ତତ୍ତ୍ୱଜ୍ଞାନ ଜାଣି ।
ଯେ ଭାବେ ଲଭି ଚକ୍ରପାଣି ॥୧୧
ନିଶ୍ଚଳଭାବେ କରି ଧ୍ୟାନ ।
ଆତ୍ମାକୁ କରନ୍ତି ଦର୍ଶନ ॥୧୨
ଅଶେଷ-ବନ୍ଧନ ଫିଟାଇ ।
ବିବେକ ଜ୍ଞାନ ପ୍ରକାଶଇ ॥୧୩
ମାୟା ଯନ୍ତ୍ରିତ ଅହଙ୍କାର ।
ହୃଦରୁ ତାହା ହୁଏ ଦୂର ॥୧୪
କହିବା ଶୁଣ ମନଦେଇ ।
ଯେ ମାର୍ଗେ ସଂଶୟ ନ ଥାଇ ॥୧୫

ଯେ ଆତ୍ମା ଅନାଦି-ପୁରୁଷ ।
ପ୍ରକୃତି ପରେ ଯାର ବାସ ॥୧୬
ସ୍ୱଭାବେ ନିର୍ଗୁଣ ଅଟଇ ।
ଜ୍ୟୋତି-ସ୍ୱରୂପେ ପ୍ରକାଶଇ ॥୧୭
ବ୍ୟାପିଛି ଏ ବିଶ୍ୱ ସଂସାରେ ।
ପ୍ରାଣୀଙ୍କ ବାହ୍ୟ-ଅଭ୍ୟନ୍ତରେ ॥୧୮
ଏ ରୂପେ ପ୍ରକୃତି-ପୁରୁଷ ।
ସୂକ୍ଷ୍ମ ସ୍ୱରୂପରେ ପ୍ରକାଶ ॥୧୯
ସେ ବିଷ୍ଣୁ ସୃଷ୍ଟି ଇଚ୍ଛା କରି ।
ଆଦିପ୍ରକୃତି ରୂପ ଧରି ॥୨୦
ତ୍ରିଗୁଣ ଜାତ ସେ କରଇ ।
ରଜ ସାତ୍ତ୍ୱିକ ତମ ଦେହୀ ॥୨୧
ରଜେ ସର୍ଜଇ ପାଳେ ସତ୍ତ୍ୱେ ।
ତମ ସ୍ୱରୂପେ ହରେ ନିତ୍ୟେ ॥୨୨
ଏ ରୂପେ ଲୀଳା ସେ କରଇ ।
ଦଇବୀ ମାୟା ଗୁଣମୟୀ ॥୨୩

Dr. Sudhanshu Sekhar Mishra

ଜୀବର ନାନାରୂପ କରେ ।
ଚିତ୍ର ବିଚିତ୍ର ଏ ସଂସାରେ ॥୨୪

ପ୍ରଜା ସର୍ଜଇ ନାନାକଷ୍ଟେ ।
ସ୍ଥାବର ଜଙ୍ଗମାଦି ରୂପେ ॥୨୫

ଅଜ୍ଞାନେ ଆବୃତ୍ତ ତା ଦେହୀ ।
ସାକ୍ଷୀ ସ୍ୱରୂପେ ସେ ଦେଖଇ ॥୨୬

ଏ ରୂପେ ପୂର୍ବରୁ ଭିଆଣ ।
ପ୍ରକୃତି କରଇ ନିର୍ମାଣ ॥୨୭

କର୍ମରେ ଗତାଗତ ହୋଇ ।
ଉଚ୍ଚ-ନୀଚକୁ ସେ ନିଅଇ ॥୨୮

ପ୍ରବୃତ୍ତିମାର୍ଗେ କରି କର୍ମ ।
ପ୍ରାଣୀ ଲଭନ୍ତି ପଥଶ୍ରମ ॥୨୯

ନିବୃତ୍ତିମାର୍ଗେ ମୋକ୍ଷ ହୋଇ ।
ଏ ବେନିମାର୍ଗ ସେ ଭିଆଇ ॥୩୦

ସାକ୍ଷୀ ସ୍ୱରୂପେ ସର୍ବଦେହୀ ।
ଦେଖଇ ହୃଦପଦ୍ମେ ରହି ॥୩୧

କାର୍ଯ୍ୟ-କାରଣେ କର୍ତ୍ତା ହୋଇ ।
ପ୍ରକୃତି ଯେତେକ ଅର୍ଜଇ ॥୩୨

ସୁକୃତ-ଦୁଷ୍କୃତାଦି ଯେତେ ।
ଜୀବ ଭୁଞ୍ଜଇ ତାହା ନିତ୍ୟେ ॥୩୩

ଏମନ୍ତ ଶୁଣି ଦେବହୂତି ।
ସଂଶୟେ ପୁଣି ପଚାରନ୍ତି ॥୩୪

ଦେବହୂତି ଉବାଚ

କହ ହେ ପୁରୁଷ-ଉତ୍ତମ ।
କି ରୂପେ ବିଶ୍ୱ ସ୍ଥୂଳ ସୂକ୍ଷ୍ମ ॥୩୫

କି ରୂପେ ପ୍ରକୃତି ପୁରୁଷ ।
ଜଗତେ ହୋଇଛି ପ୍ରକାଶ ॥୩୬

ଏମନ୍ତ ଶୁଣି ଭଗବାନ ।
କହନ୍ତି ଅମୃତ ବଚନ ॥୩୭

ଭଗବାନ ଉବାଚ

ଯେତେ ଏ ତ୍ରିଗୁଣ-ବନ୍ଧନେ ।
ସତ ଅସତ ଯେ ଯେମାନେ ॥୩୮

ଆତ୍ମା ଯେ ଜ୍ୟୋତିରୂପେ ଥାଇ ।
ଅବ୍ୟକ୍ତରୂପେ ପ୍ରକାଶଇ ॥୩୯

ପ୍ରଧାନରୂପରେ ପ୍ରକୃତି ।
ସମସ୍ତକର୍ମେ ଅଧିପତି ॥୪୦

ସମସ୍ତରୂପ ସେ ବହଇ ।
ମହତ ଆଦି ଯେତେ ଦେହୀ ॥୪୧

ଶୁଣ ଜନନୀ ଏକଚିତ୍ତେ ।
ଚତୁର୍ବିଂଶତି ତତ୍ତ୍ୱ ଯେତେ ॥୪୨

ପଞ୍ଚ ପଞ୍ଚ ଯେ ଚତୁର୍ଦ୍ଦଶ ।
ପ୍ରତ୍ୟେକେ କରିବା ପ୍ରକାଶ ॥୪୩

ପୃଥିବୀ ଆପ ତେଜ ବାତ ।
ଆକାଶ ଆଦି ପଞ୍ଚଭୂତ ॥୪୪

ଗନ୍ଧ ରୂପ ଯେ ରସ ଶବ୍ଦ ।
ସ୍ପର୍ଶାଦି ତନମାତ୍ର ଭେଦ ॥୪୫

ଜିହ୍ୱା ନାସିକା ଚକ୍ଷୁ କର୍ଣ୍ଣ ।
ଚର୍ମ ପାଣି ପାଦ ବଚନ ॥୪୬

ବୃଷଣ ପାୟୁ ଏ ଦଶମ ।
ଇନ୍ଦ୍ରିୟ ବୋଲି ଏହା ନାମ ॥୪୭

ମନ ବୁଦ୍ଧି ଯେ ଅହଂଚିତ୍ତ ।
ଚତର୍ବିଂଶତି ଏହୁ ତତ୍ତ୍ୱ ॥୪୮

ପଞ୍ଚବିଂଶତି କାଳ କହି ।
ଏ ରୂପେ ସଂଖ୍ୟାକ୍ରମ ହୋଇ ॥୪୯

ପ୍ରକୃତି ଏତେରୂପ ହୋଇ ।
କାର୍ଯ୍ୟ-କାରଣେ ପ୍ରବର୍ତ୍ତଇ ॥୫୦

କାଳସ୍ୱରୂପରେ ପୁରୁଷ ।
ସକଳ କରାଇ ପ୍ରକାଶ ॥୫୧

ଏ ଦେହୀ ମୁଗ୍‌ଧ ଅହଙ୍କାରେ ।
ସେ କାଳେ ଡରେ ନିରନ୍ତରେ ॥୫୨

ଏ ଦେହେ କର୍ତ୍ତା ସେ ହୁଅଇ ।
ସମସ୍ତ ଭୋଗ ସେ କରଇ ॥୫୩

ପ୍ରକୃତି ଯାର ଚେଷ୍ଟା ବଳେ ।
ସର୍ଜି ନାଶଇ ଭୂମିତଳେ ॥୫୪

କାଳ-ସ୍ୱରୂପୀ ଭଗବାନ ।
ଆତ୍ମା-ମାୟାରେ କରେ ଲୀନ ॥୫୫

ଏ ପଞ୍ଚବିଂଶରୂପ ହୋଇ ।
ଅପରେ ଶୁଣ ମନ ଦେଇ ॥୫୬

ପୁଣି ସେ ପରମ-ପୁରୁଷ ।
ପ୍ରକୃତି ମଧ୍ୟେ ତା ପ୍ରକାଶ ॥୫୭

ସେ ସର୍ବଭୂତେ ପରିପୂର୍ଣ୍ଣ ।
ଜଳରେ ଚନ୍ଦ୍ରମା ଯେସନ ॥୫୮

ପ୍ରକୃତି ତାର ତହୁଁ ଜାତ ।
ତା ତହୁଁ ହୋଏ ମହତତ୍ତ୍ୱ ॥୫୯

ହିରଣ୍ୟମୟ ତା'ର ଦେହୀ ।
ବ୍ରହ୍ମାଣ୍ଡମଧ୍ୟେ ବିରାଜଇ ॥୬୦

ଏ ବିଶ୍ୱ ଆତ୍ମା ଯେ ଅଟଇ ।
ସୂକ୍ଷ୍ମ ସ୍ୱରୂପେ ଅଛି ରହି ॥୬୧

ଆତ୍ମାରେ ପ୍ରକାଶ ସେ ହୋଇ ।
ଏ ଘୋରତିମିର ନାଶଇ ॥୬୨

ଯେ ସ୍ଥାନେ ରାଗ ଦ୍ୱେଷ ନାହିଁ ।
ପର ଅପର ନ ଜାଣଇ ॥୬୩

ସତ୍ତ୍ୱଗୁଣରେ ପ୍ରକାଶଇ ।
ନିର୍ମଳ-ଜ୍ୟୋତିର୍ମୟ ଦେହୀ ॥୬୪

ସେ ବିଷ୍ଣୁଭକ୍ତି ଲାଭ ସ୍ଥାନ ।
ବାସୁଦେବଟି ଯାର ନାମ ॥୬୫

ଅଧ୍ୟାତ୍ମରୂପୀ ସେ ଚୈତନ୍ୟ ।
ମହତ ବୋଲି ତାର ନାମ ॥୬୬

ପର ଅପରେ ବ୍ୟାପିଛଇଁ ।
ବିକାରଭାବ ଯାର ନାହିଁ ॥୬୭

ସ୍ୱଚ୍ଛ ସୁଶାନ୍ତ ଭାବ ବହି ।
ଅମୃତମୟ ତାର ଦେହୀ ॥୬୮

ମହତ ତହୁଁ ଜାତ ହୋଇ ।
ଯେ କ୍ରିୟାଶକ୍ତି ରୂପ ବହି ॥୬୯

ସେ ଅହଂକାର ରୂପ ତିନି ।
ଜନ୍ମଇ ଶୁଣ ଗୋ ଜନନି ॥୭୦

ସାତ୍ତ୍ୱିକ ରାଜସ ତାମସ ।
ଏ ତିନି ହୁଅନ୍ତି ପ୍ରକାଶ ॥୭୧

ମନ ଇନ୍ଦ୍ରିୟ ପଞ୍ଚଭୂତ ।
ଏ ତିନିଗୁଣେ ହୋନ୍ତି ଜାତ ॥୭୨

ସହସ୍ର ଶିର ବାହୁ ହୋଇ ।
ସଙ୍କରଷଣ ଯାକୁ କହି ॥୭୩

ଅନନ୍ତ ବୋଲି ଯାର କାୟ ।
ଭୂତ ଇନ୍ଦ୍ରିୟ ମନୋମୟ ॥୭୪

କର୍ତ୍ତାସ୍ୱରୂପେ ଦେବେ ଜାତ ।
କାରଣେ ଇନ୍ଦ୍ରିୟ ସମ୍ଭୂତ ॥୭୫

କାର୍ଯ୍ୟସ୍ୱରୂପେ ଭୂତଦେହୀ ।
ତ୍ରିଗୁଣେ ପ୍ରାଣୀ ମୋହ ହୋଇ ॥୭୬

Dr. Sudhanshu Sekhar Mishra

ସାତ୍ତ୍ୱିକଅଂଶୁ ମନ ଜାତ ।
ସଙ୍କଳ୍ପ ବିକଳ୍ପରେ ସ୍ଥିତ ॥୭୭
ହୃଷୀକମାନଙ୍କ ଈଶ୍ୱର ।
ଶ୍ୟାମସୁନ୍ଦର କଳେବର ॥୭୮
ତା ଭକ୍ତି ସାଧି ଯୋଗୀ ସିଦ୍ଧ ।
ଯାହାର ନାମ ଅନିରୁଦ୍ଧ ॥୭୯
ରଜୋଗୁଣରୁ ବୁଦ୍ଧି ଜାତ ।
ଦ୍ରବ୍ୟ ବିଜ୍ଞାନ ଇନ୍ଦ୍ରିଯୁତ ॥୮୦
ସଂଶୟ ବିପର୍ଯ୍ୟସ ବେନି ।
ନିଶ୍ଚୟ ସ୍ମୃତି ନିଦ୍ରା ତିନି ॥୮୧
ଏ ପାଞ୍ଚବୁଦ୍ଧିର ଲକ୍ଷଣ ।
ଏବେ ତୁ ଜନନି ଗୋ ଶୁଣ ॥୮୨
ରାଜସ ଅହଙ୍କାରୁ ପୁଣ ।
ଜାତ ହୁଅନ୍ତି ଇନ୍ଦ୍ରିଗଣ ॥୮୩
କ୍ରିୟା ଜ୍ଞାନରେ ଇନ୍ଦ୍ରିଗଣ ।
ଯେ ଯାହା ମାର୍ଗେ ପ୍ରବର୍ତ୍ତନ ॥୮୪
ସେ ପ୍ରାଣ କ୍ରିୟାଶକ୍ତି ବଳେ ।
ଭୋଗ ଭଞ୍ଜାଇ କୁତୂହଳେ ॥୮୫
ବୁଦ୍ଧି ବିଜ୍ଞାନ ଶକ୍ତିବଳେ ।
ଧାରଣା କରେ ସୁନିଶ୍ଚଳେ ॥୮୬
ତାମସ ଗୁଣେ ପଞ୍ଚମାତ୍ର ।
ବିଷ୍ଣୁର ଅଂଶେ ସେ ସମ୍ଭୂତ ॥୮୭
ଆକାଶ ଗୁଣୁ ଶ୍ରୋତ୍ର ହୋଇ ।
ଶବଦ୍ ସଂଗ୍ରହ କରଇ ॥୮୮
ଶବଦ ତନ୍ମାତ୍ର ଗଗନ ।
ଅର୍ଥ ଆଶ୍ରୟ ଯେବା ସ୍ଥାନ ॥୮୯
ଆତ୍ମା ଲିଙ୍ଗକୁ ପ୍ରକାଶଇ ।
ସ୍ୱଭାବେ ଅଦୃଶ୍ୟ ଅଟଇ ॥୯୦
ପ୍ରାଣୀଙ୍କ ବାହ୍ୟ ଅଭ୍ୟନ୍ତର ।
ପ୍ରାଣ ଇନ୍ଦ୍ରିୟ ଯେ ମନର ॥୯୧
ଆଶ୍ରୟ ହୋଇ ନ ଦିଶଇ ।
ଆକାଶଗୁଣ ଏହୁ ହୋଇ ॥୯୨
ଆକାଶ ତହୁଁ ସ୍ପର୍ଶ ମାତ୍ର ।
କାଳର ଗତିବଳେ ଜାତ ॥୯୩
ସ୍ପର୍ଶମାତ୍ରାରୁ ବାୟୁ ହୋଇ ।
ଚର୍ମ ତା ସଂଗ୍ରହ କରଇ ॥୯୪

ମୃଦୁ କଠିନ ଦ୍ୱଚ ହୋଇ ।
ଶୀତ ତପତି ସେ ଜଣାଇ ॥୯୫
ବୃକ୍ଷ-ଶାଖାଦି ତୃଣମାନ ।
ବାୟୁର ବଳେ ସେ ଚଳନ ॥୯୬
ଇନ୍ଦ୍ରିୟେ ସ୍ପର୍ଶ ଶବ୍ଦ ଗନ୍ଧ ।
ପ୍ରାଣୀଙ୍କି କରାଏ ଯେ ବୋଧ ॥୯୭
ସକଳଇନ୍ଦ୍ରିମାନଙ୍କର ।
ଆତ୍ମା ସ୍ୱରୂପେ ତା ବିହାର ॥୯୮
ପବନ ଦଇବ ପ୍ରେରିତ ।
ରୂପ ତନମାତ୍ର ସମ୍ଭୂତ ॥୯୯
ତହୁଁ ହୋଇଲା ତେଜ ଜାତ ।
ସେ ତେଜୁ ଚକ୍ଷୁ ଯେ ସମ୍ଭୂତ ॥୧୦୦
ଦ୍ରବ୍ୟ ଆକାର ଗୁଣଜ୍ଞାନ ।
ରୂପର ବୃତ୍ତି ଏ ଲକ୍ଷଣ ॥୧୦୧
ପ୍ରକାଶ ପାଚନ ଶୋଷଣ ।
କ୍ଷୁଧା ତୃଷାର ଉତପନ୍ନ ॥୧୦୨
ଭୋଜନ ପାନ ପରିପାକ ।
ଆବର ଶୀତ ନିବାରକ ॥୧୦୩
ତେଜର ବୃତ୍ତି ଅଟେ ଏତେ ।
ଶୁଣ ଜନନୀ ଶୁଦ୍ଧ ଚିତ୍ତେ ॥୧୦୪
ତେଜ ବିକାରେ ରସ ଜାତ ।
ରସରୁ ଜଳ ଯେ ସମ୍ଭୂତ ॥୧୦୫
ତହୁଁ ରସନା ଇନ୍ଦ୍ରି ହୋଇ ।
ଯେ ସର୍ବସ୍ୱାଦକୁ ଘେନଇ ॥୧୦୬
କଟୁ କଷାୟ ଯେ ଆମ୍ବିଳ ।
ତିକ୍ତ ଲବଣ ଯେ ମଧୁର ॥୧୦୭
ଏ ରୂପେ ଭେଦଭାବ କହି ।
ଏକଇ ରସ ନାନା ଥାଇ ॥୧୦୮
ତିନ୍ତା ଏ ମାଟି ପିଣ୍ଡୁଳାଏ ।
ଜୀବନ ରଖେ ତୃପ୍ତି ଦିଏ ॥୧୦୯
ତାପ ନିବାରେ ମୃଦୁ କରେ ।
ବହନ୍ତେ ପୁଣ ପୂଣ ଭରେ ॥୧୧୦
ଜଳର ସାଧାରଣ ଗୁଣ ।
ଏବେ କହିବା ମାତ ଶୁଣ ॥୧୧୧
ରସ ବିକାରୁ ଗନ୍ଧ ଜାତ ।
ପୃଥିବୀ ଗନ୍ଧରୁ ସମ୍ଭୂତ ॥୧୧୨

ଗନ୍ଧ ଗ୍ରହଣେ ଇନ୍ଦ୍ରି ଘ୍ରାଣ ।
ତହୁଁ ହୋଇଲା ଉତପନ୍ନ ॥୧୧୩
ଦୁର୍ଗନ୍ଧ ମିଶ୍ରଗନ୍ଧ ହୋଇ ।
ସୌରଭ ଶାନ୍ତ ଉଗ୍ର ଯେହି ॥୧୧୪
ଏକଇ ଗନ୍ଧ ଭେଦ ଭାବ ।
ଦ୍ରବ୍ୟ ସଂଯୋଗେ ତା ସମ୍ଭବ॥୧୧୫
ଭୋ ମାତ ଶୁଣ ଭୂମି ଗୁଣ ।
ଯେ ଭୂମି ବ୍ରହ୍ମାର ଭାଜନ ॥୧୧୬
ବ୍ରହ୍ମପ୍ରତିମା ନିରୂପଣ ।
ସର୍ବ ଆଧାର ସର୍ବସ୍ଥାନ ॥୧୧୭
ସକଳଭୂତ ଭେଦକରେ ।
ଭୂମି ଲକ୍ଷଣ ଏ ବେଭାରେ ॥୧୧୮
ଆକାଶ ଗୁଣ ଯେ ବିଶେଷ ।
ଶବଦରୂପେ ସେ ପ୍ରକାଶ ॥୧୧୯
ସେ ଯାର ବିଷୟ ଅଟଇ ।
ତାହାକୁ କର୍ଣ୍ଣ ଇନ୍ଦ୍ରି କହି ॥୧୨୦
ପବନ ଗୁଣ ଯେ ବିଶେଷ ।
ସ୍ପରଶ ରୂପେ ସେ ପ୍ରକାଶ ॥୧୨୧
ସେ ଯାର ବିଷୟ ଅଟଇ ।
ତାହାକୁ ଚମ ଇନ୍ଦ୍ରି କହି ॥୧୨୨
ତେଜର ଗୁଣ ରୂପ ହୋଇ ।
ଚକ୍ଷୁର ବିଷୟଟି ସେହି ॥୧୨୩
ଜଳର ଗୁଣ ରସ ହୋଇ ।
ସେ ପୁଣି ଜିହ୍ୱାରେ ବସଇ ॥୧୨୪
ପୃଥିବୀ ଗୁଣ ଗନ୍ଧ ଜାଣ ।
ତାହାର ଇନ୍ଦ୍ରି ଅଟେ ଘ୍ରାଣ ॥୧୨୫
ଏ ଭୂତଗଣ ପରେ ପରେ ।
ପୂର୍ବର ଗୁଣମାନ ଧରେ ॥୧୨୬
ଏଣୁ ଭୂମିରେ ଶବ୍ଦ ସ୍ପର୍ଶ ।
ରୂପ ରସ ଗନ୍ଧ ପ୍ରକାଶ ॥୧୨୭
ଏ ମାର୍ଗେ ପ୍ରାଣୀଏ ଭ୍ରମନ୍ତି ।
ଦଣ୍ଡେ ହେଁ ସ୍ଥିର ସେ ନୁହଁନ୍ତି ॥୧୨୮
ଏ ରୂପେ କାରଣ ଉତ୍ପତ୍ତି ।
ଏବେ ଗୋ ଶୁଣ କାର୍ଯ୍ୟୋତ୍ପତ୍ତି ॥୧୨୯
ଯେ କାଳେ ପ୍ରଳୟ ହୁଅଇ ।
ଏ ସର୍ବରୂପ ଭଙ୍ଗ ଯାଇ ॥୧୩୦

Dr. Sudhanshu Sekhar Mishra

ଯା ଠାରୁ ହୁଅଇ ଉପ୍ନନ୍ନ ।
ତାଠାରେ ହୁଅଇ ସେ ଲୀନ ॥୧୩୧
ସେକାଳେ ପ୍ରଭୁ ଭଗବାନ ।
ଯୋଗନିଦ୍ରାରେ ଅବଧାନ ॥୧୩୨
ପୁଣି ଏ ସୃଷ୍ଟି ଆଦି କାଳେ ।
ସ୍ୱଭାବ କାଳ କର୍ମ ବଳେ ॥୧୩୩
ସକଳେ ଉତ୍ପତ୍ତି ହୁଅନ୍ତେ ।
ଈଶ୍ୱର ତହିଁ ପ୍ରବେଶନ୍ତେ ॥୧୩୪
ଅନ୍ୟୋନ୍ୟେ ଏକତ୍ୱ ହୁଅନ୍ତି ।
ତକ୍ଷଣେ ରୂପକୁ ଲଭନ୍ତି ॥୧୩୫
ଜଳେ ହିରଣ୍ୟକୋଷ ପ୍ରାୟେ ।
ପଡି ଭାସନ୍ତି ମହାକାୟେ ॥୧୩୬
କେତେହେଁ କାଳେ ତହୁଁଜାତ ।
ସହସ୍ର-ଶିର ସେ ଅନନ୍ତ ॥୧୩୭
ଜଳେ ଶୟନ ସେ ଆନନ୍ଦେ ।
ବ୍ରହ୍ମା ଜନ୍ମିଲେ ନାଭିପଦ୍ମେ ॥୧୩୮
ସୃଷ୍ଟିର ଅଧିପତି ସେହି ।
ବିଷ୍ଣୁର ଆଦିରୂପ ଯେହି ॥୧୩୯
ଯେ ଅଂଶୁ ତାର ଯେବା ଜାତ ।
ବିରାଟରୂପ ଶୁଣ ମାତ ॥୧୪୦
ବଚନୁ ଅଗ୍ନି ଜାତ ହୋଇ ।
ନାସାରୁ ପ୍ରାଣ ଉପୁଜଇ ॥୧୪୧

ଘ୍ରାଣରୁ ବାୟୁ ଉତପନ୍ନ ।
ଚକ୍ଷୁରୁ ଜନ୍ମିଲା ତପନ ॥୧୪୨
କର୍ଣ୍ଣରୁ ଦିଗମାନ ହୋଇ ।
ଇନ୍ଦ୍ରାଦି ଦଶଦେବେ ଯହିଁ ॥୧୪୩
ଚର୍ମ ଉପରେ ଲୋମମାନ ।
ଔଷଧିଗଣ ତାକୁ ଜାଣ ॥୧୪୪
ତା ରେତ ଆପ ଯେ ଅଟଇ ।
ଗୁହ୍ୟ ତା ମୃତ୍ୟୁଲୋକ କହି ॥୧୪୫
ଭୁଜେ ତାହାର ଇନ୍ଦ୍ର ବସେ ।
ତା ସର୍ବଗତି ହୃଷୀକେଶେ ॥୧୪୬
ନାଭି ଆଶ୍ରିତ ଶିରାକୁଳ ।
ଏ ସର୍ବନଦୀଙ୍କର ମୂଳ ॥୧୪୭
ଉଦରେ ସମୁଦ୍ର ଅଛଇ ।
କ୍ଷୁଧା ପିପାସା ଅଗ୍ନି ବହି ॥୧୪୮
ମନ ହୃଦରୁ ଜାତ ହୋଇ ।
ବିଷୟ ଭେଦ ସେ କରଇ ॥୧୪୯
ମନର ପରେ ବୁଦ୍ଧିଜାତ ।
ସେ ବୁଦ୍ଧି ମହତୁଁ ସମ୍ଭୂତ ॥୧୫୦
ଏତେ ପ୍ରକାରେ ଜାତ ହୋଇ ।
ବିରାଟ ତେବେ ନ ଉଠଇ ॥୧୫୧
ଏ ଚତୁର୍ଦ୍ଦଶଲୋକ-ସ୍ଥିତି ।
ବିରାଟ ଅଙ୍ଗରେ ରହନ୍ତି ॥୧୫୨

ଯେ ସ୍ଥାନୁ ଯେବା ଜାତ ହୋଇ ।
ସେ ଅଙ୍ଗେ ସେହୁ ବିଶ୍ରାମଇ ॥୧୫୩
କ୍ଷେତ୍ରଜ୍ଞରୂପେ ଆତ୍ମା ଥାଇ ।
ଯେବେ ସେ ଶରୀରେ ପଶଇ॥୧୫୪
ତେବେ ସେ ଚେତନାକୁ ପାଇ ।
ବିରାଟ ଜଳରୁ ଉଠଇ ॥୧୫୫
କାର୍ଯ୍ୟ କାରଣେ ଇନ୍ଦ୍ରିଗଣ ।
ଆତ୍ମାକୁ କରାନ୍ତି ଭ୍ରମଣ ॥୧୫୬
ଏ ଭାବେ ଜାଣି ମୋର ପାଦେ ।
ଯେବା ଭଜଇ ଅପ୍ରମାଦେ ॥୧୫୭
ଏ ଭବ ଜଳ ସେ ତରଇ ।
ଏ ମାୟା ତାକୁ ନ ଲାଗଇ ॥୧୫୮
ତୃତୀୟସ୍କନ୍ଧେ ଭାଗବତ ।
ଅମୃତ ରସମୟ ଗୀତ ॥୧୫୯
ସୁଜନଜନେ ଏଣେ ରସ ।
କହିଲା ଜଗନ୍ନାଥ ଦାସ ॥୧୬୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟେ
ତତ୍ତ୍ୱସମାମ୍ନାୟେ
ଷଡ୍‌ବିଂଶୋଽଧ୍ୟାୟଃ ॥

---

## ସପ୍ତବିଂଶ ଅଧ୍ୟାୟ

ଭଗବାନ ଉବାଚ

ବିଷ୍ଣୁ କହନ୍ତି ତୋଷମନେ ।
ମନୁ ତନୟା ସନ୍ନିଧାନେ ॥୧
ଶୁଣି ଜନନୀ ଏକମନ ।
ଯେ ହରି ଅଜ-ନିରଞ୍ଜନ ॥୨
ନିର୍ଗୁଣ ନିର୍ବିକାରମୟେ ।
ବସଇ ଆତ୍ମାରୂପେ ଦେହେ ॥୩
ପ୍ରକୃତିଗୁଣେ ନୋହେ ସଙ୍ଗ ।
ଜଳ ଯେସନେ ଅର୍କବିମ୍ବ ॥୪
ସେ ଦେହଧର୍ମେ ବଦ୍ଧ ହୋଇ ।
ଆତ୍ମାଙ୍କୁ ଅହଙ୍କାର ବହି ॥୫

ଆତ୍ମାର ଦୁଃଖ ସୁଖ ମଣେ ।
କର୍ମକରତା ମୁଁ ପ୍ରମାଣେ ॥୬
ଆତ୍ମାର ବନ୍ଧ କର୍ମ ପାକେ ।
ନିତ୍ୟେ ଭ୍ରମଇ ଦୁଃଖ ସୁଖେ ॥୭
ଦେହକୁ କରେ ଅଭିମାନ ।
ଏଣୁ ହରଇ ନିଜ ଜ୍ଞାନ ॥୮
ନିରତେ ଅହଙ୍କାର ଘେନି ।
ଏମନ୍ତେ ଭ୍ରମେ ନାନା ଯୋନି ॥୯
ଯେସନେ ଜଳେ ପ୍ରାଣୀ ପଶେ ।
ପୁଣି ଉଠନ୍ତେ ଶିର ଦିଶେ ॥୧୦
ଜନ୍ମ ମରଣ ଏହି ମତ ।
ଅର୍ଜିଲା କର୍ମର ଆୟତ୍ତ ॥୧୧

ଆତ୍ମାର କର୍ମଫଳ ଘେନି ।
ଜୀବ ଭ୍ରମଇ ନାନା ଯୋନି ॥୧୨
ଅଜ୍ଞାନେ ଏ ଘୋର ସଂସାରେ ।
ଜୀବ ଭ୍ରମଇ ଅହଂକାରେ ॥୧୩
ଦୁଃଖ ଲଭଇ ବାରେବାରେ ।
ଆତ୍ମାର ଗତି ନବିଚାରେ ॥୧୪
ସ୍ୱପ୍ନେ ଅନର୍ଥ ଯେତେ ଦେଖି ।
ନାନା ପ୍ରପଞ୍ଚେ ଉପଲକ୍ଷି ॥୧୫
ଦେଖନ୍ତେ ମଣେ ତା ପ୍ରତ୍ୟକ୍ଷ ।
ଯେହ୍ନେ ଜାଗରେ ହୋଏ ମିଛ ॥୧୬
ଏ ରୂପେ ଜୀବର ସଞ୍ଚାର ।
ଏମନ୍ତ ମାୟା ଏ ସଂସାର ॥୧୭

Dr. Sudhanshu Sekhar Mishra

ଏ ଜୀବ ମୋହିତ ଅଜ୍ଞାନେ ।
ଏ ରୂପେ ପଡ଼ଇ ବନ୍ଧନେ ।।୧୮
ଏଣୁ ସଂଯମଚିତ୍ତ କରି ।
ବିଷୟ-ବିଷରୁ ଉଦ୍ଧରି ।।୧୯
ଭକ୍ତି-ବିରକ୍ତି ଯୋଗବଳେ ।
ମନକୁ ବଶ କରି ହେଳେ ।।୨୦
ନିୟମେ ମାପି ସୁନିଶ୍ଚଳେ ।
ଛାଡ଼ି ଇନ୍ଦ୍ରିୟ ସଙ୍ଗ ମେଳେ ।।୨୧
ବିଷ୍ଣୁ-ବିଷୟେ ମନ ଧରି ।
ସାଧିବ ଶରୀର ପାଶୋରି ।।୨୨
ଯତ୍ନେ ସାଧିବ ଯୋଗ ତପ ।
ସତ୍ୟ-ଶଉଚ-ଶ୍ରଦ୍ଧା କଳ୍ପ ।।୨୩
ମୋହର ଗୁଣ କର୍ମ ଯଶ ।
ଶ୍ରବଣ କୀର୍ତ୍ତନେ ହରଷ ।।୨୪
ସକଳଜୀବେ ନିଜ ପ୍ରାୟେ ।
ସମେ ଦେଖିବ ବିଷ୍ଣୁମୟେ ।।୨୫
ପ୍ରାଣୀଙ୍କ ହିତେ ଥିବ ନିତ୍ୟେ ।
ଚଞ୍ଚଳ-ଇନ୍ଦ୍ରିୟ ସଂଯତେ ।।୨୬
ଈଶ୍ୱରେ ସ୍ଥାପି କର୍ମଫଳ ।
ସ୍ୱଧର୍ମ ସାଧିବ ନିଶ୍ଚଳ ।।୨୭
ପ୍ରଥମ-ଆଶ୍ରମର ମତେ ।
ସ୍ୱଧର୍ମ ମୌନ ସତ୍ୟଯୁତେ ।।୨୮
କରି ଛାଡ଼ିବ ଗୃହ ସ୍ନେହ ।
ଯେ ଅହଙ୍କାର ମାୟାମୋହ ।।୨୯
ଆହାରେ ଭଲ ମନ୍ଦ ନାହିଁ ।
ଯେବା ମିଳିବ ଯାହା ଯହିଁ ।।୩୦
ଅଳ୍ପ ଭୋଜନେ ମତ ତୋଷି ।
ଏକାନ୍ତ ସ୍ଥାନେ ନିତ୍ୟେ ବସି ।।୩୧
କରୁଣ ଶାନ୍ତ ଶିଷ୍ଟ ଗୁଣ ।
ସକଳ ଭୂତେ ମିତ୍ରପଣ ।।୩୨
ସୁହୃଦ ସୁତ ଗୃହ ନାରୀ ।
ଏ ଦେହେ ମମତା ନକରି ।।୩୩
ପ୍ରକୃତି ପୁରୁଷ ବିଚାର ।
ଜ୍ଞାନର ତତ୍ତ୍ୱ ଅବଧାର ।।୩୪
ତେବେ ନିବୃତ୍ତ ବୁଦ୍ଧିଭାବ ।
ଜାଗ୍ରତ ସ୍ୱପ୍ନ ଆଦିଭାବ ।।୩୫

ସମସ୍ତ ହୁଅଇ ନିବୃତ୍ତ ।
ବିଷୟ-ଚିନ୍ତା ଦୂରୀଭୂତ ।।୩୬
ଅନ୍ୟ ଦର୍ଶନ ତାର ନାହିଁ ।
ଆତ୍ମାରେ ଆତ୍ମାକୁ ଦେଖଇ ।।୩୭
ଚକ୍ଷୁର ଅର୍କେ ଅର୍କ ପ୍ରାୟେ ।
ଦେଖଇ ସର୍ବ ବ୍ରହ୍ମମୟେ ।।୩୮
ସେ ବ୍ରହ୍ମ ନିତ୍ୟ ଲିଙ୍ଗମୁକ୍ତ ।
ଆଭାସେ ଅହଙ୍କାରେ ସ୍ଥିତ ।।୩୯
ଏଣୁ ଯେ ଅହଙ୍କାରୀ ଜୀବ ।
କି ରୂପେ ବ୍ରହ୍ମଙ୍କୁ ଦେଖିବ ।।୪୦
ଭୋ ମାତ ସଂଶୟ ନକର ।
ପ୍ରମାଣ କହିବା ତାହାର ।।୪୧
ଯେସନେ ରବିବିମ୍ବ ଜଳେ ।
ଆଭାସୁ ପୁଣି ଲକ୍ଷି ସ୍ଥଳେ ।।୪୨
ପୁଣି ସେ ଜଳବିମ୍ବ-ବଳେ ।
ଆକାଶ-ରବି ଦେଖି ଡୋଳେ ।।୪୩
ତେସନେ ଦେହେନ୍ଦ୍ରିୟ ମନେ ।
ଏ ଜୀବ ଥାଇଣ ପ୍ରଚ୍ଛନ୍ନେ ।।୪୪
ଏ ଯେ ତ୍ରିଗୁଣ ଅହଙ୍କାର ।
ଆଭାସ ଯହିଁରେ ବ୍ରହ୍ମର ।।୪୫
ତହୁଁ ବ୍ରହ୍ମଙ୍କୁ ଉପଲକ୍ଷି ।
ପୁଣି ପତ୍ୟେକ୍ଷେ ତାକୁ ଦେଖି ।।୪୬
ଆତ୍ମା ଅଟଇ ଶୁଦ୍ଧଜ୍ଞାନ ।
ଅନୁଭବରେ ତା ପ୍ରମାଣ ।।୪୭
ସୁଷୁପ୍ତି ଅବସ୍ଥାରେ ଯେବେ ।
ଭୂତାଦି ରହେ ଲୀନ ଭାବେ ।।୪୮
ନିଦ୍ରାରେ ଅହଙ୍କାର ଶୂନ୍ୟ ।
ଆତ୍ମା ସ୍ୱରୂପେ ବର୍ତ୍ତମାନ ।।୪୯
ଦ୍ରଷ୍ଟାସ୍ୱରୂପେ ଥାଇ ଦେହେ ।
ନିଜକୁ ମଣେ ନଷ୍ଟ ପ୍ରାୟେ ।।୫୦
ଉପାଧି ନାଶ ହେବା ଜାଣି ।
ଆପଣା ନାଶ ପରିମାଣି ।।୫୧
ଧନବିନାଶେ ଲୋକ ଯେହ୍ନେ ।
ଆପଣ ନାଶ ପ୍ରାୟ ମଣେ ।।୫୨
ସୁଷୁପ୍ତି ଅବସ୍ଥାରେ ପୁଣ ।
ବିଷୟ ମାତ୍ର ନୁହେଁ ଜ୍ଞାନ ।।୫୩

ଏ ରୂପେ ସଂଶୟ ନକର ।
ଭୋ ମାତ ମନରେ ବିଚାର ।।୫୪
ସୁଷୁପ୍ତି ଭଙ୍ଗରେ ପୁରୁଷ ।
ଏ ରୂପ କରଇ ପ୍ରକାଶ ।।୫୫
ମୁଁ ଆଜି ସୁଖେ ନିଦ୍ରା ଗଲି ।
କିଛି ମାତ୍ର ହିଁ ନଜାଣିଲି ।।୫୬
ଯେଣୁ ଏ ରୂପେ ମନେ ଥାଇ ।
ଆତ୍ମ ନଥିଲେ ଜ୍ଞାନ କାହିଁ ।।୫୭
ପ୍ରକାଶେ ଯେ କାର୍ଯ୍ୟକାରଣ ।
ସେ ଦ୍ରଷ୍ଟାରୂପେ ବର୍ତ୍ତମାନ ।।୫୮

ଦେବହୂତି ଉବାଚ

ହେ ପ୍ରଭୁ ପୁରୁଷ ପ୍ରକୃତି ।
କେହି କାହାକୁ ନଛାଡ଼ନ୍ତି ।।୫୯
ଅନ୍ୟୋନ୍ୟ ଆଶ୍ରୟ ସେ ନିତ୍ୟ ।
କେବେହେଁ ନୁହଁନ୍ତି ସେ ଚ୍ୟୁତ ।।୬୦
ଯେମନ୍ତେ ଭୂମି ଗନ୍ଧ ଦୁଇ ।
କେହି କାହାକୁ ନଛାଡ଼ଇ ।।୬୧
ଅଥବା ଦେଖ ଜଳ ରସ ।
ଏକ ଅଭାବେ ଏକ ନାଶ ।।୬୨
ସେ ରୂପେ ପ୍ରକୃତି ପୁରୁଷେ ।
ବିୟୋଗ କି ରୂପେ ପ୍ରକାଶେ ।।୬୩
ଅକର୍ତ୍ତା ପୁରୁଷ ବିଚାର ।
ତ୍ରିଗୁଣେ ପ୍ରକୃତି ସଞ୍ଚାର ।।୬୪
ଏ କର୍ମବନ୍ଧ ଯେଣୁ ତାର ।
କେମନ୍ତେ ମୋକ୍ଷ ଏହାଙ୍କର ।।୬୫
କେହି ବିବେକ ଜ୍ଞାନ ତତ୍ତ୍ୱେ ।
ସଂସାର ଯେବେ ବା ନିବର୍ତ୍ତେ ।।୬୬
ହେତୁ ତାହାର ଯେଣୁ ଥାଇ ।
କି ରୂପେ ମୋକ୍ଷ ବା ଘଟଇ ।।୬୭
ଏମନ୍ତ ଦେଖଇ ବହୁତ ।
ତୁ ମୋତେ କହ ଯଥା ତତ୍ତ୍ୱ ।।୬୮

ଭଗବାନ ଉବାଚ

ଶୁଣ ଜନନି ଦେଇ ଚିତ୍ତ ।
ଯେବା ଜୀବର ବନ୍ଧ-ମୁକ୍ତ ।।୬୯

Dr. Sudhanshu Sekhar Mishra

ନିଷ୍କାମେ ସ୍ୱଧର୍ମରେ ଥାଇ ।
ମନ ନିର୍ମଳେ ମୋତେ ଧ୍ୟାଇ ।।୭୦
ମୋହର ଦୃଢ଼ଭକ୍ତି ଯୋଗ ।
ସେ ତତ୍ତ୍ୱଜ୍ଞାନ ସୁବୈରାଗ୍ୟ ।। ୭୧
ଶ୍ରୀକୃଷ୍ଣ ଶ୍ରବଣ-କୀର୍ତ୍ତନେ ।
ଭକ୍ତିରେ ସାଧିବ ଯତନେ ।। ୭୨
ତତ୍ତ୍ୱ ଦର୍ଶନ ଜ୍ଞାନବଳେ ।
ଦୃଢ଼ବୈରାଗ୍ୟ ତପବଳେ ।। ୭୩
ଆତ୍ମାର ପ୍ରାପ୍ତି ଉପାୟରେ ।
ଚିତ୍ତ ଏକାଗ୍ର ସମାଧିରେ ।। ୭୪
ଏ ସର୍ବ ପ୍ରକାର ସାଧନ ।
ଖଣ୍ଡଇ ଜୀବର ବନ୍ଧନ ।। ୭୫
ପ୍ରକୃତି ପରାଭବ ପାଇ ।
ବିରହଭାବ ସେ ଲଭଇ ।। ୭୬
ଯେସନେ ଅରଣୀରୁ ଅଗ୍ନି ।
ଜନମି ଦହଇ ଅରଣୀ ।। ୭୭
ପ୍ରକୃତି ଭୋଗ ଶେଷ ହେଲେ ।
ତାହାର ଦୋଷ ଦିଶେ ଭଲେ ।। ୭୮

କାଟିଣ ସବୁ ବନ୍ଧ ପାଶ ।
ଆନନ୍ଦେ ବିହରେ ପୁରୁଷ ।। ୭୯
ଯେସନେ ସ୍ୱପନେ ଅନର୍ଥ ।
ଜାଗିଲେ ହୁଅଇ ଅସତ୍ୟ ।। ୮୦
ତେସନେ ସଂସାର ଦିଶଇ ।
ମୋ ମାୟା ତାକୁ ନଲାଗଇ ।। ୮୧
ବହୁତ ଜନ୍ମ ଭାଗ୍ୟବଳେ ।
ଅଧ୍ୟାତ୍ମଜ୍ଞାନ ହୁଏ କାଳେ ।। ୮୨
ଏ ରୂପେ ଆତ୍ମାରାମମୁନି ।
ବ୍ରହ୍ମଲୋକକୁ ତୁଚ୍ଛ ମଣି ।।୮୩
ମୋ ଭକ୍ତ ହୋଇ ମୋ ପ୍ରସାଦେ ।
ଆତ୍ମାକୁ ଜାଣେ ଅପ୍ରମାଦେ ।।୮୪
କୈବଲ୍ୟଧାମ ମୋ ଆଶ୍ରୟ ।
ଲଭେ ମୁକତି ଆଦି ଶ୍ରେୟ ।।୮୫
ଲିଙ୍ଗ-ଶରୀର ନାଶ ଯାଇ ।
ଆଉ ଲେଉଟି ନ ଆସଇ ।।୮୬
ଯାହାର ଚିତ୍ତ ଯୋଗୁ ଆନ ।
ମାୟାରେ ନୁହଇ ବିଭ୍ରମ ।।୮୭

ସେ ଆତ୍ୟନ୍ତିକୀ ଗତି ପାଇ ।
ଯହିଁରେ ମୃତ୍ୟୁଭୟ ନାହିଁ ।।୮୮
ମୈତ୍ରେୟ ବିଦୁର ଅଗ୍ରତେ ।
ବହୁ ସାଧନ ଯୋଗମତେ ।।୮୯
କହିଲେ କପିଳଙ୍କ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୯୦
ସଂସାରଜନ ହିତ ଅର୍ଥେ ।
ତୃତୀୟସ୍କନ୍ଧେ ଭାଗବତେ ।।୯୧
ସୁଜନେ ଚିନ୍ତ ମନେ ଏହା ।
ଯେବେ ଖଣ୍ଡିବ ଭବମାୟା ।।୯୨
ହରିଚରଣେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ।।୯୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
କାପିଳାୟ ଉପାଖ୍ୟାନେ
ସପ୍ତବିଂଶୋଽଧ୍ୟାୟଃ ।

---

## ଅଷ୍ଟବିଂଶ ଅଧ୍ୟାୟ

ଭଗବାନ ଉବାଚ

ଶୁଣ ନୃପତିସୁତା ତୁମ୍ଭେ ।
ଯୋଗଲକ୍ଷଣ କହୁ ଆମ୍ଭେ ।।୧
ମନ ପ୍ରସନ୍ନ ଯେଣେ ହୋଇ ।
ସତ୍‌ପଥେ ସର୍ବଦା ଗମଇ ।।୨
ଏଣୁ ଏ ଗ୍ରାମ୍ୟଧର୍ମ ଛାଡ଼ି ।
ନିବୃତ୍ତିମାର୍ଗେ ଚିତ୍ତ ବଢ଼ି ।।୩
ନିଶ୍ଚଳ ସ୍ଥାନେ ଅବସ୍ଥାନ ।
କରିବ ପବିତ୍ର ଭୋଜନ ।।୪
ଅହିଂସା ସତ୍ୟମାର୍ଗେ ଭଜି ।
ଅଧିକ ପ୍ରତିଗ୍ରହ ତେଜି ।।୫
ଯେ ବ୍ରହ୍ମଚର୍ଯ୍ୟ ଆଚରଣ ।
ତପ ଶଉଚ ଅଧ୍ୟୟନ ।।୬
ପରମ-ପୁରୁଷ ଅର୍ଚ୍ଚନ ।
ତା ପାଦେ ଦେଇ ବାକ୍ୟମନ ।।୭

ନିଶ୍ଚଳେ ଆସନେ ବସିବ ।
ମଉନ ବ୍ରତ ଆଚରିବ ।।୮ ।।
ମନକୁ ନିର୍ବିଷୟ କରି ।
ଇନ୍ଦ୍ରିୟ ସମୂହ ନିବାରି ।।୯ ।।
ଆହାର ଜିଣି ପ୍ରତ୍ୟାହାରେ ।
ପ୍ରାଣକୁ ସ୍ଥାପିବ ନିଶ୍ଚଳେ ।।୧୦
ଆତ୍ମାରେ ଆତ୍ମାକୁ ଚିନ୍ତିବ ।
ବୈକୁଣ୍ଠଲୀଳାକୁ ଭାବିବ ।।୧୧
ବୁଦ୍ଧିର ବଳେ କର୍ମସାଧି ।
ନିଶ୍ଚଳ ଯୋଗରେ ସମାଧି ।।୧୨
ଏ ବିନୁ ଅନ୍ୟ ମାର୍ଗ ନାହିଁ ।
ଶୁଣ ଗୋ ମାତ ମନ ଦେଇ ।।୧୩
ବିଶୁଦ୍ଧ ଦେଶରେ ଆସନ ।
କୁଶ କମ୍ବଳ କୃଷ୍ଣାଜିନ ।।୧୪

ସ୍ୱସ୍ତିକ ଆସନେ ବସିବ ।
ଆନନ୍ଦେ ଯୋଗ ଅଭ୍ୟାସିବ ।।୧୫
ଯେ ପ୍ରାଣମାର୍ଗ ବିଶୋଧକ ।
ପୂରକ କୁମ୍ଭକ ରେଚକ ।।୧୬
ଏ ମାର୍ଗେ ପ୍ରାଣକୁ ଶୋଧିବ ।
ନିଶ୍ଚଳ ଚିତ୍ତରେ ଚିନ୍ତିବ ।।୧୭
ଯେମନ୍ତେ ବାୟୁ ଅଗ୍ନି ଲାଗି ।
ଲୋହ ଦଗଧେ ମଳତ୍ୟାଗି ।।୧୮
ସେ ରୂପେ ପ୍ରାଣାୟମ କଲେ ।
ଆତ୍ମା ନିର୍ମଳ ହୁଏ ଭଲେ ।।୧୯
ସମସ୍ତ ଦୋଷ ଏଣେ ହରେ ।
ଯେବ ପାତକ ପୂର୍ବାପରେ ।।୨୦
ପ୍ରତ୍ୟାହାରର ବଳେ ମନ ।
ଧ୍ୟାନରେ ଜିଣଇ ତ୍ରିଗୁଣ ।।୨୧

Dr. Sudhanshu Sekhar Mishra

ମନ ନିର୍ମଳ ଯେତେବେଳେ ।
ଯୋଗକୁ ସାଧିବ ନିଶ୍ଚଳେ ।।୨୨
କଳା କାଷ୍ଠା ବା ଦଣ୍ଡ କ୍ଷଣେ ।
ନାସିକା ଅଗ୍ର ଦରଶନେ ।।୨୩
ଧ୍ୟାନେ ଚିନ୍ତିବ ଭଗବାନ ।
ଅନାଦି-ପରମ-କାରଣ ।।୨୪
ଶ୍ୟାମସୁନ୍ଦର କଳେବର ।
ବଚନ ଅମୃତ ମଧୁର ।।୨୫
ସୁନ୍ଦର ପ୍ରସନ୍ନ ବଦନ ।
ପଦ୍ମର ପ୍ରାୟେ ଯା ନୟନ ।।୨୬
ପଙ୍କଜ କିଞ୍ଜଳ୍କର ପ୍ରାୟେ ।
ପୀତବସନ କଟୀ ଶୋହେ ।।୨୭
ଯେ ଶଙ୍ଖଚକ୍ର ଗଦାଧର ।
ପଦ୍ମ ବିରାଜେ ଭୁଜେ ତାର ।।୨୮
ଶ୍ରୀବତ୍ସ ଚିହ୍ନ ବକ୍ଷସ୍ଥଳେ ।
କିବା ଉପମା ଦେବା ଭଲେ ।।୨୯
ମୁକୁତା ଚାପସରି ଶୋହେ ।
କଣ୍ଠେ କୌସ୍ତୁଭମଣି ମୋହେ ।।୩୦
ଲମ୍ବିତ ତାର ପୃଷ୍ଠଦେଶେ ।
ପାଟଝୁମ୍ପାଏ ସେ ପ୍ରକାଶେ ।।୩୧
ଅମଳ ବନମାଳା ଗଳେ ।
ମତ୍ତ ଭ୍ରମର ମଧୁ ଭୋଳେ ।।୩୨
ମଧୁର ଧ୍ୱନି ସେ କରନ୍ତି ।
ଆନନ୍ଦେ ଉଡ଼ି ପନ୍ତି ପନ୍ତି ।।୩୩
କିରୀଟ ଅଙ୍ଗଦ ବିରାଜେ ।
ଅମୂଲ୍ୟ ହାର ହୃଦେ ସାଜେ ।।୩୪
ରତ୍ନ ନୂପୁର ପାଦେ ଶୋହି ।
କିବା ଉପମା ଦେବା ତହିଁ ।।୩୫
କଟିରେ କାଞ୍ଚିଗୁଣ ସାଜେ ।
ଭକ୍ତଙ୍କ ମନରେ ବିରାଜେ ।।୩୬
ତାହାଙ୍କ କର୍ଣ୍ଣରେ କୁଣ୍ଡଳ ।
ଶୋଭିତ କରେ ଗଣ୍ଡସ୍ଥଳ ।।୩୭
ଏମନ୍ତ ରୂପ ଭକ୍ତଜନେ ।
ହୃଦେ ଚିନ୍ତନ୍ତି ଅନୁକ୍ଷଣେ ।।୩୮
ଆନନ୍ଦେ ଦର୍ଶନ କରନ୍ତି ।
ନିର୍ମଳ ନୟନେ ଦେଖନ୍ତି ।। ୩୯

କିଶୋର ତରୁଣ ବୟସ ।
ଅତି ସୁନ୍ଦର ସୁପ୍ରକାଶ ।।୪୦
ସର୍ବଲୋକଙ୍କ ନମସ୍କୃତ ।
ଅବ୍ୟୟ ସୁଶାନ୍ତ ମହତ ।।୪୧
ଭକ୍ତାନୁଗ୍ରହୀ ସେ ଅଟନ୍ତି ।
ଭକ୍ତର କଷ୍ଟ ନ ସହନ୍ତି ।।୪୨
କୀର୍ତ୍ତନ-ଯୋଗ୍ୟ ଯଶ ଯାର ।
ତୀର୍ଥ ସମାନ ପାପହର ।।୪୩
ଯାହାରକୀର୍ତ୍ତି ପୁଣ୍ୟଶ୍ଳୋକେ ।
ଗାୟନ କରୁଥାନ୍ତି ମୁଖେ ।।୪୪
ଏରୂପେ ତା ଅଙ୍ଗ ସମଗ୍ରେ ।
ମନରେ ଚିନ୍ତିବେ ଏକାଗ୍ରେ ।।୪୫
ଆସନେ ବସି ଏକାନ୍ତରେ ।
ଗମନ ଶୟନ ଗୁହାରେ ।।୪୬
ଅଙ୍ଗକୁ ଅଙ୍ଗପ୍ରତି ଧ୍ୟାନ ।
ଚିନ୍ତିବ ବିଷ୍ଣୁର ଚରଣ ।।୪୭
ଧ୍ୱଜ ଅଙ୍କୁଶ ବଜ୍ର ଚିହ୍ନ ।
ପଦ୍ମ ସହିତେ ଯେ ଲାଞ୍ଛନ ।।୪୮
ତୁଙ୍ଗ ସୁରଙ୍ଗ ପାଦ ଦୁଇ ।
ନଖ ଚନ୍ଦ୍ରିକା ବିରାଜଇ ।।୪୯
ଖଣ୍ଡଇ ହୃଦ ଅନ୍ଧକାର ।
ଧ୍ୟାନେ ଭଜିବ ନିରନ୍ତର ।।୫୦
ଯା ପାଦୋଦକ ଗଙ୍ଗାନୀର ।
ଶିରରେ ବହିଛନ୍ତି ହର ।।୫୧
ସେ ନୀରେ ବ୍ରହ୍ମାଣ୍ଡ ମଧ୍ୟରେ ।
ସ୍ନାନେ ତରନ୍ତି ସୁରନରେ ।।୫୨
ପାପ-ଶଇଳ ବଜ୍ରପ୍ରାୟେ ।
ଯା ପାଦ ନାଶଇ ନିର୍ଭୟେ ।।୫୩
ସେ ପାଦପଦ୍ମେ ଧ୍ୟାନ କରି ।
ନିତ୍ୟେ ବାନ୍ଧିବ ଚିତ୍ତେ ଧରି ।।୫୪
ସେ ପାଦପଦ୍ମର ମହିମା ।
କେ କହିପାରେ ଗୁଣସୀମା ।।୫୫
ଯେ ପାଦଯୁଗ ମନୋହର ।
ଲକ୍ଷ୍ମୀ ସେବଇ ନିରନ୍ତର ।।୫୬
ସୁନ୍ଦର ଜାନୁଲମ୍ବମାନ ।
ଗରୁଡ଼ସ୍କନ୍ଧରେ ଶୋଭନ ।।୫୭

ଅତସୀ କୁସୁମର ପ୍ରାୟେ ।
ଅଙ୍ଗ ତାହାର ଶୋଭାପାଏ ।।୫୮
ତଡ଼ିତ ଜିଣି ପୀତମ୍ବର ।
କାଞ୍ଚି ନିତମ୍ବେ ମନୋହର ।।୫୯
ଏ ବିଶ୍ୱ ଯାହାର ଉଦର ।
ସପ୍ତସମୁଦ୍ର ଦ୍ୱୀପବର ।।୬୦
ଯା ନାଭିପଦ୍ମୁ ବ୍ରହ୍ମଜାତ ।
ଅଖିଳ-ବ୍ରହ୍ମାଣ୍ଡର ନାଥ ।।୬୧
ଏମନ୍ତ ଭାବେ ଏହା ଚିନ୍ତି ।
ଅପରେ ହୃଦୟ ଆକୃତି ।।୬୨
ମର୍କତମଣି ପ୍ରାୟେ ଶୋଭା ।
ସ୍ତନଯୁଗଳ ଦିବ୍ୟପ୍ରଭା ।।୬୩
ତା ମଧ୍ୟେ ବିଶଦ ଯେ ହାର ।
ଅତ୍ୟନ୍ତ ଶୋଭା ସେ ହୃଦର ।।୬୪
ଲକ୍ଷ୍ମୀ ଭୂଷଣ ବକ୍ଷସ୍ଥଳେ ।
କୌସ୍ତୁଭମଣି ଶୋଭେ ଗଳେ ।।୬୫
ଅଖିଳଲୋକ ନମସ୍କୃତ ।
ରୂପ ଚିନ୍ତିବ ଜଗନ୍ନାଥ ।।୬୬
ମନ୍ଦରଗିରି ଶୃଙ୍ଗ ପ୍ରାୟେ ।
ତା ଭୁଜଦଣ୍ଡ ଶୋଭାପାଏ ।।୬୭
ଯେ ଚକ୍ର ଧରିଛନ୍ତି କର ।
ଅତି ଅସହ୍ୟ ତେଜ ତା'ର ।।୬୮
ତା କରପଦ୍ମେ ଶଙ୍ଖ ପ୍ରଭା ।
ରାଜହଂସର ପ୍ରାୟେ ଶୋଭା ।।୬୯
ଦାନବ ରୁଧିରେଣ ଯୁକ୍ତ ।
ଗଦାଏ ଅଛି ତାର ହସ୍ତ ।।୭୦
ମାଳାରେ ତାକଣ୍ଠ ଶୋଭିତ ।
ଭ୍ରମର ଗୁଞ୍ଜନେ ଶବ୍ଦିତ ।।୭୧
ତା ମଧ୍ୟେ କୌସ୍ତୁଭ ଖଚିତ ।
ଯାହା ଅଟଇ ଜୀବତତ୍ତ୍ୱ ।।୭୨
ଭୃତ୍ୟାନୁଗ୍ରହେ ତା ଶ୍ରୀମୁଖ ।
ସୁସ୍ମିତ ସୁରଙ୍ଗ ସୁରେଖ ।।୭୩
ସୁନ୍ଦର ବଦନାରବିନ୍ଦ ।
ପରେ ଚିନ୍ତିବେ ଯୋଗୀବୃନ୍ଦ ।।୭୪
ଶ୍ରବଣେ ମକର କୁଣ୍ଡଳ ।
ଚଳନ୍ତେ ଶୋହେ ଗଣ୍ଡସ୍ଥଳ ।।୭୫

Dr. Sudhanshu Sekhar Mishra

ତୁଙ୍ଗନାସିକା ଦିବ୍ୟଶୋଭା ।
କୁଟିଳ ଅଳକ ସୁପ୍ରଭା ।।୭୬
ଲୋଚନଯୁଗ ପଦ୍ମପ୍ରାୟେ ।
ତହିଁରେ ଭୃଙ୍ଗ କିବା ଶୋହେ ।।୭୭
ଏମନ୍ତ ରୂପ ଯେବା ଧ୍ୟାନ ।
ଆନନ୍ଦେ କରେ ଅନୁକ୍ଷଣ ।।୭୮
ତାହାକୁ ପ୍ରଭୁ କୃପା କରେ ।
ଏ ଘୋର ତାପତ୍ରୟ ହରେ ।।୭୯
ଏଣୁ ଏ ରୂପ ଗୁଣ ଧ୍ୟାନେ ।
ନିତ୍ୟେ ଚିନ୍ତିବ ଦୃଢ଼ମନେ ।।୮୦
ଅଖିଳଲୋକ ତାପ ହରେ ।
ଯେ ମନ୍ଦହାସ ଶ୍ରୀମୁଖରେ ।।୮୧
ମକରଧ୍ୱଜ-ଚାପ ପ୍ରାୟେ ।
ଭୃଙ୍ଗଯୁଗଳ ତାର ଶୋହେ ।।୮୨
କଟାକ୍ଷ ଶରପନ୍ତି ହୋଇ ।
ମୁନିଜନଙ୍କ ମନ ମୋହି ।।୮୩
ଏଣେ ମୋହିତ ମୁନିଜନେ ।
ଧ୍ୟାନ କରନ୍ତି ଅନୁକ୍ଷଣେ ।।୮୪
ତା ଉଚ୍ଚହାସ୍ୟ ଧ୍ୟାନ କର ।
ଅରୁଣବର୍ଣ୍ଣ ଓଷ୍ଠାଧାର ।।୮୫
କୁନ୍ଦ-କୋରକ ପ୍ରାୟେ ହୋଇ ।
ତା ଦନ୍ତପଙ୍‌କ୍ତି ବିରାଜଇ ।।୮୬
ପ୍ରେମାନୁବନ୍ଧେ ଏହା ଚିନ୍ତି ।
ସେ ଅନ୍ୟ କିଛି ନବାଛନ୍ତି ।।୮୭
ଏ ରୂପ ଧ୍ୟାନଯୋଗ ଭାବେ ।
ଭକ୍ତ ହୃଦୟ ଯହୁଁ ଦ୍ରବେ ।।୮୮
ଉତ୍କଣ୍ଠା ଅଶ୍ରୁ ପୁନଃ ପୁନଃ ।
ପୁଲକ ହୋଏ ତନୁଲୋମ ।।୮୯
ଆନନ୍ଦସାଗରେ ବୁଡ଼ଇ ।
ଆଉ ବା ଧ୍ୟାନ ତାର କାହିଁ ।।୯୦
ଏ ରୂପେ ନିର୍ବିଷୟ ହୋଇ ।
ନିଷ୍କାମମାର୍ଗେ ଯୋଗଧ୍ୟାୟି ।।୯୧
ପରମାନନ୍ଦ ରୂପ ଚିନ୍ତି ।
ବ୍ରହ୍ମ ନିର୍ବାଣ ସେ ଲଭନ୍ତି ।।୯୨
ଜ୍ୟୋତିସ୍ୱରୂପେ ଆତ୍ମା ଏକ ।
ସର୍ବତ୍ର ଦେଖଇ ପ୍ରତ୍ୟକ୍ଷ ।।୯୩
ଗୁଣ ପ୍ରବାହକୁ ନାଶଇ ।
ଅଗମ୍ୟ ଦିବ୍ୟସ୍ଥାନ ପାଇ ।।୯୪
ଏ ରୂପେ ଭକ୍ତିଯୋଗ ସାଧି ।
ତରଇ ସଂସାର ଜଳଧି ।।୯୫
ନ ଜାଣେ ସୁଖ ଦୁଃଖ ଭାବ ।
ଜନ୍ମ ମୃତ୍ୟୁର ପରାଭବ ।।୯୬
ମଦିରାପାନେ ଭୋଳ ହୋଇ ।
ଯେମନ୍ତ ବିବଶ ହୁଅଇ ।।୯୭
ବସନ କଟିତଟେ ଅଛି ।
ଅଥବା ଭୂତଳେ ପଡ଼ିଛି ।।୯୮
ଅଜ୍ଞାନେ କିଛି ନ ଜାଣନ୍ତି ।
ସେ ରୂପେ ଯୋଗୀ ଦେହବୃତ୍ତି ।।୯୯
ଏ ଦେହ କର୍ମବଶ ହୋଇ ।
ସର୍ବ ସଂକଳ୍ପ କରୁଥାଇ ।।୧୦୦
ଯାବତ ଯୋଗସିଦ୍ଧି ନୋହି ।
ତାବତ ବିଷୟେ ଭ୍ରମଇ ।।୧୦୧
ପୁତ୍ର କଳତ୍ର ଗୃହ ଧନ ।
ସ୍ନେହେ ବନ୍ଧନ ପ୍ରାଣୀ ମନ ।।୧୦୨
ସ୍ୱପ୍ନର ପ୍ରାୟ ତାହା ମଣି ।
ପୁରୁଷ ନ ମଜ୍ଜଇ ପୁଣି ।।୧୦୩
ଅତି ସ୍ନେହରେ ପୁତ୍ର ବିତ୍ତ ।
ଆତ୍ମ ସ୍ୱରୂପେ ହିଁ କଳ୍ପିତ ।।୧୦୪
ସ୍ୱଭାବେ ବିଭିନ୍ନ ଅଟଇ ।
ସେ ରୂପେ ଦେହେ ଆତ୍ମ ହୋଇ ।।୧୦୫
ଯେମନ୍ତେ ଅଗ୍ନି ଧୂମ ବଳେ ।
କେବେ ହେଁ ନଦିଶେ ନିର୍ମଳେ ।।୧୦୬
ସେ ରୂପେ ବିଷୟାରେ ପ୍ରାଣୀ ।
କେବେ ହେଁ ଆତ୍ମାକୁ ନ ଚିହ୍ନି ।।୧୦୭
କାଷ୍ଠରୁ ଧୂମ ଅଗ୍ନି ଜାତ ।
ସେ କାଷ୍ଠ ଦହଇ ଯେମନ୍ତ ।।୧୦୮
ଅଜ୍ଞାନୁ ଜ୍ଞାନ ଜାତ ହୋଇ ।
ବିଷୟ-ବାସନା ଦହଇ ।।୧୦୯
ଭୂତ ଇନ୍ଦ୍ରିୟଗଣ ଯେତେ ।
ପ୍ରଧାନ-ପୁରୁଷ ସହିତେ ।।୧୧୦
ଏକୁ ଅନେକ ରୂପ ହୋଇ ।
ବ୍ରହ୍ମାଣ୍ଡେ ଲୀଳା ସେ କରଇ ।।୧୧୧
ଏମନ୍ତ ଭାବେ ବ୍ରହ୍ମଜ୍ଞାନ ।
ପ୍ରାଣୀ ଚିନ୍ତନ୍ତି ଅନୁକ୍ଷଣ ।।୧୧୨
ଏ ସର୍ବଭୂତ ତାର ଦେହି ।
ସେ ସର୍ବଭୂତ ମଧ୍ୟେ ଥାଇ ।।୧୧୩
ଏମନ୍ତ ଭାବେ ସର୍ବଭୂତେ ।
ଅନନ୍ୟଭାବେ ଦେଖେ ନିତ୍ୟେ ।।୧୧୪
ସେ ଜ୍ୟୋତିର୍ମୟ ଆତ୍ମଯୋନି ।
ଗୁଣ ପ୍ରବାହ ଭେଦ ଘେନି ।।୧୧୫
ଆଭାସେ ଯଥା ଭିନ୍ନେ ଭିନ୍ନେ ।
ଆଧାର ଭେଦେ ଅଗ୍ନି ଯେହ୍ନେ ।।୧୧୬
ସତ୍ ଅସତ୍ ଆତ୍ମା ସେହି ।
ତା ବିନୁ ଅନ୍ୟ ନାହିଁ କେହି ।।୧୧୭
ପରମ ଭକ୍ତିଭାବ ଏହି ।
ଏ ଭାବେ ଚିନ୍ତ ମନ ଦେଇ ।।୧୧୮
ତେବେ ଏ ସଂସାରୁ ତରିବ ।
ଶ୍ରୀକୃଷ୍ଣ-ଚରଣ ଲଭିବ ।।୧୧୯
ଭୋ ମାତ ସାଧ ଏହି ଯୋଗ ।
ହେଲେ ତରିବ କର୍ମଭୋଗ ।।୧୨୦
ଏଣୁ ସଂସାରୁ ତରିଯିବ ।
ନାହିଁ ଯାତନା ପରାଭବ ।।୧୨୧
କହଇ ବିପ୍ର ଜଗନ୍ନାଥ ।
ସୁଜନେ ଚିନ୍ତ ଏହିପଥ ।।୧୨୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟେ
ସାଧନାନୁଷ୍ଠାନଂ ନାମ
ଅଷ୍ଟାବିଂଶୋଽଧ୍ୟାୟଃ ।

---

Dr. Sudhanshu Sekhar Mishra

## ଊନତ୍ରିଂଶ ଅଧ୍ୟାୟ

### ଦେବହୂତି ଉବାଚ

ଭୋନାଥ ପ୍ରଭୁ ଭଗବାନ ।
କହ ତୁ ପରମାର୍ଥଜ୍ଞାନ ।।୧।।
ଯେ ଜ୍ଞାନେ ଭକ୍ତି ପ୍ରକାଶଇ ।
ଅଜ୍ଞାନ-ତିମିର ନାଶଇ ।।୨।।
ମହତ ଆଦି ଯେ ପ୍ରମାଣ ।
ପ୍ରକୃତି ପୁରୁଷ ଲକ୍ଷଣ ।।୩।।
ଯଥା ସାଂଖ୍ୟରେ ଅଛ କହି ।
ତୋ ଭକ୍ତିମାର୍ଗକୁ ଚିହ୍ନାଇ ।।୪।।
ବିସ୍ତାରି କହ ପ୍ରଭୁ ମୋତେ ।
ସଂଶୟ ନ ରହୁ ମୋ ଚିତ୍ତେ ।।୫।।
ଯାହା ଶୁଣିଲେ ପ୍ରାଣୀ-ପ୍ରାଣ ।
ବିରକ୍ତେ ଭଜେ ନାରାୟଣ ।।୬।।
ଜୀବର ଜନ୍ମ ମୃତ୍ୟୁ ଦୁଇ ।
ଏ ଲୋକମାନଙ୍କର ହୋଇ ।।୭।।
ତାହା କହିବା ମହାବାହୁ ।
କାଳସ୍ୱରୂପ ଆଦି କେହୁ ।।୮।।
କାଳସ୍ୱରୂପ ଯେ ଈଶ୍ୱର ।
ସମସ୍ତ ଆତ୍ମାରେ ଗୋଚର ।।୯।।
ମହାପ୍ରଭାବ ହିଁ ଯାହାର ।
ଯା ଭୟେ ପୁଣ୍ୟ କରେ ନର ।।୧୦
ସେ କଥା ନିର୍ଣ୍ଣୟ କରିଣ ।
କହିବା ହେଉ ନାରାୟଣ ।।୧୧
ଏ ଦେହ ମିଥ୍ୟା ବୋଲି ପୁଣି ।
ସ୍ତ୍ରୀ ପୁତ୍ର ସତ୍ୟପ୍ରାୟ ମଣି ।।୧୨
ଏ ଭବ-ସଂସାରର ତମେ ।
ଜ୍ଞାନଚକ୍ଷୁକୁ ଢାଙ୍କି ଭ୍ରମେ ।।୧୩
ଏ କର୍ମମାର୍ଗରେ ଆସକ୍ତ ।
ମିଥ୍ୟା-ସଂସାର ମଣି ସତ୍ୟ ।।୧୪
ଏ ଲୋକ ଉଦ୍ଧାର ନିମନ୍ତେ ।
ଆପଣ ସୂର୍ଯ୍ୟ ଏ ଜଗତେ ।।୧୫
କୃପାରେ ଉଦେ ହୋଇଅଛ ।
ଏ ଘେନି ଦିଶୁଛ ପ୍ରତ୍ୟକ୍ଷ ।।୧୬
କାଳରୁ ନିସ୍ତାର ଉପାୟ ।
କହ ହେ ପ୍ରଭୁ ଦେବରାୟ ।।୧୭
ତୋ ଜ୍ଞାନ ଦେଇ ନରହରି ।
ବିନାଶ ଅଜ୍ଞାନ-ତିମିରି ।।୧୮

### ମୈତ୍ରେୟ ଉବାଚ

ଶୁଣ ବିଦୁର ମନଦେଇ ।
ମାତା ବଚନେ ଭାବଗ୍ରାହୀ ।।୧୯
କହନ୍ତି ଅମୃତ ବଚନ ।
ଯେଣେ ସନ୍ତୋଷ ମାତାମନ ।।୨୦

### ଭଗବାନ ଉବାଚ

ଶୁଣ ଜନନି ସ୍ଥିରମନେ ।
ଯେ ଜ୍ଞାନି ଭକ୍ତିର ଲକ୍ଷଣେ ।।୨୧
ବହୁ ପ୍ରକାରେ ଭକ୍ତିଯୋଗ ।
ଜ୍ଞାନୀ ସାଧନ୍ତି ମୋକ୍ଷମାର୍ଗ ।।୨୨
ସ୍ୱଭାବଗୁଣେ ଯୁକ୍ତ ହୋଇ ।
ନାନା ସଂକଳ୍ପ ମନେ ଧ୍ୟାୟି ।।୨୩
ସାତ୍ତ୍ୱିକ ରାଜସ ତାମସ ।
ଗୁଣପ୍ରବାହେ ଯେ ପ୍ରକାଶ ।।୨୪
ଦମ୍ଭ ମତ୍ସର ଭାବ ବହି ।
ପ୍ରାଣୀ ହିଂସାରେ ଯୁକ୍ତ ହୋଇ ।।୨୫
ପର ଅପର ଭେଦ ବୁଦ୍ଧି ।
ତାମସ ଗୁଣ ଏ ପ୍ରସିଦ୍ଧି ।।୨୬
ଏ ଭାବେ ମୋତେ ଯେ ଭଜଇ ।
ତାମସ ଭକ୍ତି ତାକୁ କହି ।।୨୭
ବିଷୟଭୋଗ ସେ ବାଞ୍ଛଇ ।
ଏ ଘେନି ଭୋଗାସକ୍ତ ହୋଇ ।।୨୮
ଯଶ ଐଶ୍ୱର୍ଯ୍ୟ ଯେ ବାଞ୍ଛଇ ।
ସେ ବୁଦ୍ଧି ଭେଦ ପର ହୋଇ ।।୨୯
ପ୍ରେମରେ ପ୍ରତିମାରେ ମୋତେ ।
ଯେ ପୂଜେ ଭକ୍ତିଭାବେ ନିତ୍ୟେ ।।୩୦
ସେ ଭକ୍ତି ରାଜସ ବୋଲାଇ ।
ଯେଣୁ ସେ ରାଜପଦ ପାଇ ।।୩୧
ବାହ୍ୟ ଅନ୍ତରେ ମାୟା ତେଜେ ।
କେବଳ ବିଷ୍ଣୁ ଭାବେ ଭଜେ ।।୩୨
ଫଳ ନବାଞ୍ଛି କର୍ମ କରେ ।
ଭେଦଦରଶୀ ନୋହେ ପରେ ।।୩୩
ଈଶ୍ୱର ଅର୍ଥେ କର୍ମ କରେ ।
ଧର୍ମ ମାର୍ଗରେ ଯେ ପ୍ରଚରେ ।।୩୪
ସର୍ବତ୍ର ଦେଖଇ ସମାନ ।
ସାତ୍ତ୍ୱିକ ଭକ୍ତି ତାକୁ ଜାଣ ।।୩୫
ଅଧମ ମଧ୍ୟମ ଉତ୍ତମ ।
ଏଣେ ତ୍ରିବିଧ ଭକ୍ତି କ୍ରମ ।।୩୬
ଶ୍ରବଣ କୀର୍ତ୍ତନ ସ୍ମରଣ ।
ଚରଣସେବନ ଅର୍ଚ୍ଚନ ।।୩୭
ବନ୍ଦନ ଦାସ୍ୟ ସଖ୍ୟଭାବ ।
ଆତ୍ମଅର୍ପଣ ଅଙ୍ଗ ନବ ।।୩୮
ଏହି ପ୍ରକାରେ ନବ ନବ ।
ସଗୁଣା ଏକାଅଶି ଭାବ ।।୩୯
ଏବେ କହିବା ମାତା ଶୁଣ ।
ନିର୍ଗୁଣ ଭକ୍ତିର ଲକ୍ଷଣ ।।୪୦
ବିଷ୍ଣୁର ଗୁଣ ଗୁଣି ଯେବେ ।
ରୋମ ପୁଲକେ ତନୁ ଦ୍ରବେ ।।୪୧
ଆନନ୍ଦେ ଅଶ୍ରୁ ନେତ୍ରୁ ବହେ ।
କଣ୍ଠ ଗଦ୍‌ଗଦେ ବାଣୀ କହେ ।।୪୨
ଚେତନା ବୁଦ୍ଧି ଅହଙ୍କାର ।
ଯେ ଭୂତ ଭବିଷ୍ୟ ଗୋଚର ।।୪୩
ମୋହର ଗୁଣ କୀର୍ତ୍ତିମାନ ।
ନିତ୍ୟେ ଯେ କରଇ ଶ୍ରବଣ ।।୪୪
ମୁହିଁ ଯେ ସର୍ବ ଗୁହାଶ୍ରୟ ।
ବିଚ୍ଛେଦ ନାହିଁ କିବା ମୋହ ।।୪୫
ଏମନ୍ତ ଭାବେ ଯେ ଭଜଇ ।
କର୍ମ-ବନ୍ଧନୁ ମୋକ୍ଷ ହୋଇ ।।୪୬
ଏ ସର୍ବ ହରିଭାବେ ମାନେ ।
ଗଙ୍ଗା ସମୁଦ୍ରେ ମିଳେ ଯେହ୍ନେ ।।୪୭
ସେ ରୂପେ ମୋର ଦେହେ ଲୀନ ।
ଭକ୍ତି ଭାବରେ ହୋନ୍ତି ଜନ ।।୪୮

Dr. Sudhanshu Sekhar Mishra

ନିଷ୍କାମମାର୍ଗେ ଆତ୍ମଜ୍ଞାନ ।
ସର୍ବତ୍ର ଦେଖଇ ସମାନ ।।୪୯
ପୁରୁଷୋତ୍ତମ ଭାବେ ଭଜି ।
ପରମଆତ୍ମା ମନେ ହେଜି ।।୫୦
ନିର୍ଗୁଣ ଭକ୍ତି ଏହା କହି ।
ଅପରେ ଶୁଣ ମନଦେଇ ।।୫୧
ସାମୀପ୍ୟ ସାରୂପ୍ୟ ଏକତ୍ୱ ।
ସାଲୋକ୍ୟ ଅଇଶ୍ୱର୍ଯ୍ୟ ମତ ।।୫୨
ଏ ଆଦି ଯେତେମେତେ ମୁକ୍ତି ।
ତେଣେ ସନ୍ତୋଷ ନୋହେ ମତି ।।୫୩
ମୋର ସେବନ ବିନା କେହି ।
ଭକ୍ତ ସନ୍ତୋଷ ମୋର ନାହିଁ ।।୫୪
ଏତେ ପ୍ରକାରେ ଭକ୍ତି ଯୋଗ ।
ସାଧନ୍ତି ପ୍ରାଣୀ ମୋକ୍ଷମାର୍ଗ ।।୫୫
ଯେବେ ତ୍ରିଗୁଣକୁ ଜିଣଇ ।
ମୋହର ଭାବକୁ ଲଭଇ ।।୫୬
କ୍ରିୟାଯୋଗରେ ନିଷ୍କାମରେ ।
ମୋତେ ସେବନ୍ତି ଯେବା ନରେ ।।୫୭
ହିଂସା ବିହୀନ ଯେ ନିଷ୍କାମ ।
ନିତ୍ୟେ ଭଜଇ ମୋର ନାମ ।।୫୮
କେ ଅବା ମୋତେ ପୂଜା କରେ ।
ସ୍ତୁତି ବନ୍ଦନେ ନିରନ୍ତରେ ।।୫୯
ଦର୍ଶନ ସ୍ପର୍ଶନ ପ୍ରମାଣ ।
ମୋର ପ୍ରତିମା ଆରାଧନ ।।୬୦
ମିତ୍ରଭାବରେ ସର୍ବଜନ ।
ଦେଖଇ ଆତ୍ମାର ସମାନ ।।୬୧
ଯମ ନିୟମ ମାର୍ଗ ସାଧି ।
ମହତଜନେ ମାନ୍ୟ ବିଧି ।।୬୨
ଦୀନରେ ଅନୁକମ୍ପା ବହି ।
ମୋ ବିନୁ ଅନ୍ୟ ନ ଜାଣଇ ।।୬୩
ମୋହର ନାମ ସଂକୀର୍ତ୍ତନ ।
ଶ୍ରବଣ ଆଧ୍ୟାତ୍ମ ଦର୍ଶନ ।।୬୪
ଆର୍ଜବ ସାଧୁସଙ୍ଗ ପୁଣ ।
ଅହିଂସା ଧର୍ମ ପରାୟଣ ।।୬୫
ମୋହର ଧର୍ମ ଆଚରଣ ।
ଏ ରୂପେ ଚିତ୍ତ ଶୁଦ୍ଧ ଜାଣ ।।୬୬

ମୋହର ଗୁଣ ଶୁଣି କର୍ଣ୍ଣେ ।
ମୋତେ ଲଭନ୍ତି ପ୍ରାଣୀମାନେ ।।୬୭
ଯେମନ୍ତେ ପବନର ବଳେ ।
ଗନ୍ଧ ଆସିଣ ଘ୍ରାଣେ ମିଳେ ।।୬୮
ସେ ରୂପ ନିର୍ବିକାର ଚିତ୍ତ ।
ଆତ୍ମାକୁ କରଇ ଆୟତ୍ତ ।।୬୯
ମୁଁ ସର୍ବଭୂତର ଈଶ୍ୱର ।
ଆତ୍ମା ସ୍ୱରୂପରେ ଗୋଚର ।।୭୦
ଏମନ୍ତ ଭାବ ମୋର ଛାଡ଼ି ।
ଯେ ପୂଜେ ଅନ୍ୟଭାବେ ପଡ଼ି ।।୭୧
ଯେ ଜୀବେ ଦୟା ନକରଇ ।
ପ୍ରତିମା ପୂଜେ ମନେ ଧାୟି ।।୭୨
ଭସ୍ମରେ ହୋମ ସେ ଯେମନ୍ତ ।
ତାହାର ପୂଜା ସେହି ମତ ।।୭୩
ମୁଁ ସର୍ବବ୍ୟାପୀ ଯେ ଅଟଇ ।
ଏମନ୍ତ ଭାବ ନଜାଣଇ ।।୭୪
ଯେ ଜୀବେ ବନ୍ଧ-ବୈର ହୋଇ ।
ସେ ଶାନ୍ତି କେବେ ନଲଭଇ ।।୭୫
ମୋତେ ପୂଜଇ ଯେବେ ସେହି ।
ତାର ପୂଜାରେ ତୋଷ ନୋହି ।।୭୬
ସର୍ବଭୂତରେ ସ୍ଥିତ ମୁହିଁ ।
ଯାବତ ପ୍ରାଣୀ ନଜାଣଇ ।।୭୭
ତାବତ ଥାଇ ସ୍ୱଧର୍ମରେ ।
ପୂଜିବ ପ୍ରତିମା ଆଦରେ ।।୭୮
ପର ଅପର ଏକ ଆତ୍ମା ।
ଅନ୍ତର କରେ ଯେ ଦୁରାତ୍ମା ।।୭୯
ସେ ମୃତ୍ୟୁପଥୁଁ ନ ତରଇ ।
ସଂସାରମାର୍ଗେ ଭ୍ରମୁଥାଇ ।।୮୦
ମୁଁ ଆତ୍ମା ସର୍ବଭୂତ ମଧ୍ୟେ ।
ଅର୍ଚ୍ଚନା କରେ ଯେ ସୁସାଧ୍ୟେ ।।୮୧
ମିତ୍ରଭାବରେ ସର୍ବ ଦେଖେ ।
ସଂସାରୁ ତରେ ସେ ପ୍ରତ୍ୟକ୍ଷେ ।।୮୨
ଅଜୀବ ତହୁଁ ଜୀବ ଶ୍ରେଷ୍ଠ ।
ଜୀବରେ ପ୍ରାଣ ଯେ ଗରିଷ୍ଠ ।।୮୩
ପ୍ରାଣରୁ ଚେତନା ବିଶିଷ୍ଟ ।
ତହୁଁ ଇନ୍ଦ୍ରିୟ ବୃତ୍ତି ଶ୍ରେଷ୍ଠ ।।୮୪

ସ୍ପର୍ଶ ଗୁଣରେ ବୃକ୍ଷ ଆଦି ।
ରସ ଗ୍ରହଣେ ମତ୍ସ୍ୟ ଆଦି ।।୮୫
ଗନ୍ଧ ଗ୍ରହଣେ ଭ୍ରମରାଦି ।
ତହୁଁ ସର୍ପାଦି ଶବ୍ଦଭେଦୀ ।।୮୬
ରୂପରେ କାକ ଆଦି ଯେତେ ।
ତହୁଁ ଉଦୟ ଦନ୍ତବନ୍ତେ ।।୮୭
ଅପାଦଠାରୁ ବହୁପାଦ ।
ବହୁ ପାଦରୁ ଚତୁଃଷ୍ପଦ ।।୮୮
ଦ୍ୱିପଦ ମନୁଷ୍ୟାଦି ଜାଣି ।
ଏକୁ ଆରେକ ଏ ପ୍ରଧାନ ।।୮୯
ମନୁଷ୍ୟ ମଧ୍ୟେ ଚାରିବର୍ଣ୍ଣ ।
ଏଥିରେ ବ୍ରାହ୍ମଣ ଉତ୍ତମ ।।୯୦
ବ୍ରାହ୍ମଣ ମଧରେ ବେଦଜ୍ଞ ।
ତହୁଁ ଅଧିକ ଯେ ଅର୍ଥଜ୍ଞ ।।୯୧
ତହୁଁ ସଂଶୟ-ଦୂରକାରୀ ।
ତହିଁରୁ ସ୍ୱଧର୍ମ-ଆଚାରୀ ।।୯୨
ତହୁଁ ଅଧିକ ଅଟେ ସେହି ।
ବିଷୟ-ସଙ୍ଗ ଯାର ନାହିଁ ।।୯୩
ମୋହର ପ୍ରିୟ କର୍ମ କରେ ।
ଆତ୍ମାରେ ଭାବ ନିରନ୍ତରେ ।।୯୪
ସକଳ କର୍ମ ସମର୍ପଇ ।
ମନ ସହିତେ ମୋର ତହିଁ ।।୯୫
ଏ ସର୍ବଭୂତେ ବିଜେ ମୁହିଁ ।
ବହୁ-ମାନନାରେ ନମଇ ।।୯୬
ଏମନ୍ତ ଭାବେ ଯେ ଭଜଇ ।
ତା ହୃଦେ ବିଜେ ଭାବଗ୍ରାହୀ ।।୯୭
ଆନନ୍ଦେ ଦର୍ଶନ ଦିଅନ୍ତି ।
ତା ଅଘତିମିର ନାଶନ୍ତି ।।୯୮
ହେ ମନୁତନୟା ଗୋ ଶୁଣ ।
ଯେ ଭକ୍ତିଯୋଗର ଲକ୍ଷଣ ।।୯୯
ଭକ୍ତିଯୋଗରେ ମୋତେ ଧାୟି ।
ଯେ ମୋତେ ହୃଦୟେ ଦେଖଇ ।।୧୦୦
ପରମବ୍ରହ୍ମକୁ ଲଭଇ ।
ତେଣୁ ଏକାଗ୍ରଭାବେ ଧାୟି ।।୧୦୧
ଈଶ୍ୱର ସର୍ବ-ଅନ୍ତର୍ଯ୍ୟାମୀ ।
ଏଭାବେ ପ୍ରାଣୀଙ୍କୁ ପ୍ରଣମି ।।୧୦୨

Dr. Sudhanshu Sekhar Mishra

ମନରେ ବହୁମାନ କରି ।
ପ୍ରାଣୀ ତରିବେ ଭବବାରି ।।୧୦୩
ସେ ଯେ ପରମବ୍ରହ୍ମସାର ।
ପ୍ରଧାନପୁରୁଷଙ୍କ ପର ।।୧୦୪
ତାର ଉପରେ କେହି ନାହିଁ ।
ସୃଷ୍ଟିର ଆଦି ଅନ୍ତ ସେହି ।।୧୦୫
ତାହାଙ୍କ ପ୍ରେରିତ ସମସ୍ତ ।
ସେ ଦୈବ ବୋଲିଣ କଥିତ ।।୧୦୬
ବସ୍ତୁ ଭେଦର ଯେ କାରଣ ।
ତାହାଙ୍କୁ କାଳ ବୋଲି ଜାଣ ।।୧୦୭
ଅଦ୍‌ଭୁତ କାଳର ମହିମା ।
ଭୋ ମାତ ନିଶ୍ଚଳେ ଜାଣିମା ।।୧୦୮
ମହତ ଆଦି ଯେତେ ଭୂତେ ।
ଯେତେକ ଅଛନ୍ତି ଜଗତେ ।।୧୦୯
ସମସ୍ତ ଆତ୍ମା ମଧ୍ୟଗତ ।
ନିରତେ କରୁଅଛି ଗ୍ରସ୍ତ ।।୧୧୦।।
ତାହାର ତହୁଁ ଭୟପାଇ ।
ନିରତେ କମ୍ପୁଅଛି ଦେହୀ ।।୧୧୧
ବିଷ୍ଣୁର ନାମାନ୍ତର କାଳ ।
ସେହି ବିତରେ ଯଜ୍ଞଫଳ ।।୧୧୨
ହେ ମାତ କାଳର ମହିମା ।
କେ କହିପାରେ ଗୁଣ ସୀମା ।।୧୧୩
ଜଗତ ବଶ ଯେ କରନ୍ତି ।
ସେ ପୁଣି କାଳବଳେ ଥାନ୍ତି ।।୧୧୪
ପ୍ରିୟ ଅପ୍ରିୟ ଯାର ନାହିଁ ।
ବିନାଶ କରେ ସର୍ବଦେହୀ ।।୧୧୫

ଯେ କାଳପୁରୁଷର ଭୟେ ।
ନିରତେ ପବନଟି ବହେ ।।୧୧୬
ଯେ କାଳଭୟେ ସୂର୍ଯ୍ୟ ତାପେ ।
ଭ୍ରମେ ବ୍ରହ୍ମାଣ୍ଡ ମଧ୍ୟେ ଆପେ ।।୧୧୭
ଯାହାର ଭୟେ ମେଘଗଣ ।
ବୃଷ୍ଟି କରନ୍ତି ଯଥାକ୍ଷଣ ।।୧୧୮
ଯାହାର ଭୟେ ତାରାଗଣେ ।
ଉଦିତ ହୁଅନ୍ତି ଗଗନେ ।।୧୧୯
ଯାହାର ଭୟେ ବୃକ୍ଷଗଣ ।
ଲତା ଔଷଧି ଶସ୍ୟମାନ ।।୧୨୦
ଯଥାକାଳରେ ପୁଷ୍ପଫଳ ।
ଫଳନ୍ତି ଫୁଟନ୍ତି ନିର୍ମଳ ।।୧୨୧
ଯାହାର ଭୟେ ନଦୀଗଣ ।
ବହୁଅଛନ୍ତି ଅନୁକ୍ଷଣ ।।୧୨୨
ଉଦଧି ଯାହାର ଭୟରେ ।
ଅଦ୍ୟାପି କେବେଁ ନ ଉଛୁଳେ ।।୧୨୩
ଅଗ୍ନି ଯାହାର ଭୟେ ପୁଣ ।
ସମସ୍ତ କରଇ ଦହନ ।।୧୨୪
ଯାହାର ଭୟେ ଗିରିବର ।
ଧରା ସହିତେ ସେ ନିଶ୍ଚଳ ।।୧୨୫
ଯାହାର ଆଜ୍ଞା ପରିମାଣେ ।
ଆକାଶ ଭୟକରି ମନେ ।।୧୨୬
ସ୍ୱଦେହ ବିସ୍ତାର ସେ କଲା ।
ସପ୍ତଲୋକକୁ ଠାବ ଦେଲା ।।୧୨୭
ଯାର ଆଜ୍ଞାରେ ମହତତ୍ତ୍ୱ ।
ସପତାବରଣ ସମେତ ।।୧୨୮

ଦେହକୁ ବିସ୍ତାର କରିଛି ।
ପ୍ରାଣକୁ ଧରିଣ ବହିଛି ।।୧୨୯
ବ୍ରହ୍ମାଦି ଯେତେ ଦେବଗଣ ।
ସଚରାଚର ଯେ ଭିଆଣ ।।୧୩୦
ଯାହାର ଭୟେ ବାରେବାରେ ।
ସର୍ଜନା ହୁଅନ୍ତି ସତ୍ୱରେ ।।୧୩୧
ଯେ କାଳଭୟରେ ତ୍ରିଗୁଣ ।
ସୃଷ୍ଟି ପାଳନ ସଂହାରଣ ।।୧୩୨
ସେ କାଳରୂପୀ ଯେ ଅନନ୍ତ ।
ଅନାଦି ଅବ୍ୟୟ ଅଚ୍ୟୁତ ।।୧୩୩
ସମସ୍ତ ଉତ୍ପତ୍ତି କରଇ ।
ଗୁଣ ପ୍ରବାହ ଭାବ ବହି ।।୧୩୪
ଯେ କାଳରୂପେ ଅନ୍ତ କରେ ।
ଏଣୁ ଅନନ୍ତ ନାମ ଧରେ ।।୧୩୫
ଏଣୁ ଏ କାଳର ମହିମା ।
କେ ଜାଣିପାରେ ଗୁଣସୀମା ।।୧୩୬
ମୋର ଭକତଜନେ ଯହିଁ ।
କାଳର ଅଧିକାର ନାହିଁ ।।୧୩୭
ସୁଜନେ ଏଣେ କର ମତି ।
ତୁଟିବ ସଂସାର ଦୁର୍ଗତି ।।୧୩୮
ଏ ମାତା-ପୁତ୍ରଙ୍କ ସମ୍ବାଦ ।
ଶୁଣନ୍ତେ ନଲାଗେ ପ୍ରମାଦ ।।୧୩୯
ପୁରାଣ ରସମୟ ଗୀତ ।
ହରିବ ସକଳ ଦୁରିତ ।।୧୪୦
କହଇ ଦାସ ଜଗନ୍ନାଥ ।
ତୃତୀୟ ସ୍କନ୍ଧେ ଭାଗବତ ।।୧୪୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ
କାପିଳେୟେ ସାଧନାନୁଷ୍ଠାନଂ ନାମ
ଉନତ୍ରିଂଶୋଽଧ୍ୟାୟଃ ।।

---

Dr. Sudhanshu Sekhar Mishra

## ତ୍ରିଂଶ ଅଧ୍ୟାୟ

ଭଗବାନ ଉବାଚ

କହନ୍ତି ପ୍ରଭୁ ଭଗବାନ ।
ଭୋ ମାତ ହୁଅ ସାବଧାନ ।।୧
ସେ କାଳ ପୁରୁଷପୁରାଣ ।
ସେ ପୁଣି ଅତି ବଳବାନ ।।୨
ସେ କାଳ ପରାକ୍ରମ ଯେତେ ।
କେ କହିପାରିବ ଜଗତେ ।।୩
ଏ ଯେତେ ଜୀବଲୋକେ ଛନ୍ତି ।
ତା ଗତି କେହି ନଜାଣନ୍ତି ।।୪
ସେ କାଳ ସକଳ ନାଶଇ ।
ଏଣୁ ତା ଗତି କେ ଜାଣଇ ।।୫
ଏ ଚରାଚର ଦେହଧାରୀ ।
ଯେ ସ୍ଥୁଳ ସୂକ୍ଷ୍ମ ଆଦି କରି ।।୬
ସକଳ କରଇ ଭକ୍ଷଣ ।
କ୍ଷୁଧାର୍ତ୍ତେ ଯେସନେ କୃପଣ ।।୭
ଯେହ୍ନେ ସମୀର ବଳୀୟାର ।
ଜୀମୂତ କରଇ ସଞ୍ଚାର ।।୮
ସେ ଘନ ତା ଗତି ନଜାଣେ ।
ତେସନେ ହୋଇ ଜୀବଗଣେ ।।୯
କାଳର ଗତି ନ ଜାଣନ୍ତି ।
ସେ କାଳବଶେ ଭ୍ରମୁଥାନ୍ତି ।।୧୦
ଏ ଜୀବ ସୁଖଭୋଗ ପାଇଁ ।
ଅର୍ଥ ଉପାର୍ଜନେ ଭ୍ରମଇ ।।୧୧
ବିବିଧ ଦୁଃଖେ ତା ସଞ୍ଚଇ ।
ସେ ଅର୍ଥ କାଳ ଯେ ହରଇ ।।୧୨
ତ୍ରିଲୋକ ଶୋଚେ ଯାହାପାଇଁ ।
ସେ ଅର୍ଥ କାଳ ବିନାଶଇ ।।୧୩
ସେ କାଳ ଅତି ବଳିୟାର ।
କେ ଜାଣିପାରେ ଗତି ତା'ର ।।୧୪
ସୂକ୍ଷ୍ମ ସ୍ୱରୂପେ ବିହରଇ ।
ମନ ବଚନେ ଭେଦ ନୋହି ।।୧୫
କୃପଣଜନ ପ୍ରାୟେ ହୋଇ ।
ସଂସାର ପାଳି ବିନାଶଇ ।।୧୬

ସେ କାଳମୁଖେ ଜୀବ ରହି ।
ନାନା ବିବାଦେ ହିଂସା ବହି ।।୧୭
କରନ୍ତି ନାନା ଛନ୍ଦ ମାୟା ।
ହୃଦେ ନ ବସେ ଜୀବେ ଦୟା ।।୧୮
ନିର୍ଦ୍ଦୟ ଭାବେ ମୂଢ଼ପଣେ ।
କାଳ ଗ୍ରାସଇ ପୁଣ୍ୟହୀନେ ।।୧୯
ତାହାର ନାହିଁ ପକ୍ଷାପକ୍ଷ ।
ସକଳ କରଇ ସେ ଭକ୍ଷ୍ୟ ।।୨୦
ଏ ଜୀବ ଅତି ମତିହୀନ ।
ଅର୍ଥ ସଞ୍ଚଇ ପ୍ରତିଦିନ ।।୨୧
ଯେ ଅର୍ଥେ ମୃତ୍ୟୁ ଉପଗତ ।
ନ ଜାଣେ ଏ ମୂଢ଼ ସମସ୍ତ ।।୨୨
ଅନିତ୍ୟ ଦେହ ନ ବୁଝଇ ।
ବ୍ୟାପାର କରେ ଦୁଃଖ ସହି ।।୨୩
ଗୃହ କଳତ୍ର ଧନ ଆଦି ।
ଏଣେ କରଇ ନିତ୍ୟ ବୁଦ୍ଧି ।।୨୪
ଏ ଦେହ ସୁତ ଦାରା ମୋହେ ।
ମୋହର ବୋଲି ନିତ୍ୟ କହେ ।।୨୫
ଏ ମାୟାମୋହେ ପଡ଼ିଅଛି ।
ଏଣୁ ନବୁଝଇ କିଛି ।।୨୬
ସଂସାର ମଧ୍ୟେ ଜୀବମାନେ ।
ନିରତେ ଭ୍ରମନ୍ତି ଅଜ୍ଞାନେ ।।୨୭
ଯାର୍ବିତ ଯୋନିରେ ଭ୍ରମନ୍ତି ।
ସର୍ବତ୍ର ଫୁଟିଣ ମରନ୍ତି ।।୨୮
ଏ ଘୋର ଦୁଃଖ ସୁଖମନେ ।
ବୈରାଗ୍ୟ ନଜନ୍ମେ ଅଜ୍ଞାନେ ।।୨୯
ଯେବେ ନରକେ କୀଟ ହୋଇ ।
ଅତ୍ୟନ୍ତ ସୁଖ ତା ମଣଇ ।।୩୦
କରଇ ନରକ ଆହାର ।
ତଥାପି ଦୁଃଖ ନୋହେ ତାର ।।୩୧
ସେ ଦେହତ୍ୟାଗ ନ ଇଚ୍ଛଇ ।
ଅଜ୍ଞାନ ମୋହେ ସ୍ନେହ ବହି ।।୩୨

ଦେହ କଳତ୍ର ସୁତ ଘର ।
ପଶୁ ଭୃତ୍ୟାଦି ବନ୍ଧୁ ମୋର ।।୩୩
ମନକୁ ଏଣେ ଦୃଢ଼ କରେ ।
ସୁଖ ମଣଇ ଦୁଃଖ ଘୋରେ ।।୩୪
ମଣଇ କୃତାର୍ଥ ହୋଇଲି ।
ଅନେକ ସୁଖ ମୁଁ ଲଭିଲି ।।୩୫
ମୋ ତୁଲ୍ୟ ନାହିଁ ଭାଗ୍ୟବନ୍ତ ।
କେ ଅଛି ମୋ ସମ ମହତ ।।୩୬
ତହିଁରେ ଯେତେ ଦୁଃଖ ହୁଏ ।
ନ ବୁଝେ ପଡ଼ି ମାୟାମୋହେ ।।୩୭
ଘୋର-ଗହନ ମାର୍ଗେ ବୁଡ଼ି ।
ଅଜ୍ଞାନେ ଭ୍ରମେ ଦୁଃଖ ପଡ଼ି ।।୩୮
ସେ ସର୍ବ ସୁଖପ୍ରାୟେ ମଣେ ।
କୃଷ୍ଣ ନଭଜେ ଏକ କ୍ଷଣେ ।।୩୯
କୁଟୁମ୍ବ-ପୋଷଣ ଉପାୟେ ।
ନିରତେ ଆକୁଳ ହୃଦୟେ ।।୪୦
ତାଙ୍କ ପୋଷଣେ ଚିନ୍ତା କରେ ।
ଦଗଧି ମରେ ଦୁଃଖ ଘୋରେ ।।୪୧
କ୍ଷଣେ ନପାରେ ଗୃହେ ରହି ।
ବାଣିଜ୍ୟ-ନାବ ପ୍ରାୟେ ହୋଇ ।।୪୨
ସ୍ନେହ ବନ୍ଧନେ ଦିବା ନିଶେ ।
ସ୍ୱବଶ ନୋହେ ଅବକାଶେ ।।୪୩
କରେ ଦୁରିତ କର୍ମମାନ ।
ଏମନ୍ତ ଏ ମୂଢ଼ ଅଜ୍ଞାନ ।।୪୪
ଅସତୀ ଦୁଷ୍ଟା ନାରୀ ଘରେ ।
ବିବିଧ ଛନ୍ଦ ମାୟା କରେ ।।୪୫
ତାର ବଶରେ ନିତ୍ୟେ ଥାଇ ।
ସେବକ ଜନ ପ୍ରାୟ ହୋଇ ।।୪୬
ଏ ବାକ୍ୟ ଶୁଣି ତୋଷମନେ ।
ଲଂଘି ନପାରେ ରାତ୍ର ଦିନେ ।।୪୭
ନୟନ ଥାଉଁ ନଦେଖଇ ।
ଅନ୍ଧ ଜଳକା ପ୍ରାୟ ହୋଇ ।।୪୮

Dr. Sudhanshu Sekhar Mishra

ସେ ମନ-ଇନ୍ଦ୍ରିୟ-ହାରିଣୀ ।
ତାର ସନ୍ତୋଷେ ନିତ୍ୟେ ପ୍ରାଣୀ ।।୪୯
ସେ ନାରୀ ସଙ୍ଗେ ବିହରଇ ।
ନିଶି ଦିବସେ ମନ ଦେଇ ।।୫୦
ତାହାଙ୍କ ସୁଖ ଭୋଗ ପ୍ରୀତି ।
ଓଟାରି ନରକେ ପକାନ୍ତି ।।୫୧
ନରକ ବୋଲି ଯାକୁ କହି ।
ସ୍ତିରୀ ସମ୍ଭୋଗ ସୁଖ ଏହି ।।୫୨
ଏହା ନଜାଣି ମୂଢ଼ପ୍ରାଣୀ ।
ଦୁଃଖକୁ ସୁଖ ପରିମାଣି ।।୫୩
ବାଳକ କୋମଳ ବଚନ ।
ତା ଶୁଣି ଅତି ତୋଷମନ ।।୫୪
ବାଳକଗୀତେ ହୋଇ ପ୍ରୀତ ।
ତହିଁ ଅର୍ପିତ କରେ ଚିତ୍ତ ।।୫୫
ଏ ସର୍ବ ସୁଖ କରି ମଣେ ।
ଯେ ହିତ ଅଜ୍ଞାନେ ନ ଜାଣେ ।।୫୬
ଏ ଗୃହ ଅତି କୂଟ-ଧର୍ମ ।
କରାଏ ଅତି ଛନ୍ଦ-କର୍ମ ।।୫୭
କେବଳ ଦୁଃଖର ଏ ମୂଳ ।
ତହିଁ ପଡ଼ିଣ ସେ ବ୍ୟାକୁଳ ।।୫୮
ସେ ଦୁଃଖ ପ୍ରତିକାର ପାଇଁ ।
ନାନା ବ୍ୟାପାରେ ଦୁଃଖେ ଧାଇଁ ।।୫୯
ସେ କ୍ଳେଶ ଅତି ସୁଖ ମଣେ ।
କେବଳ ମୋହେ ନ ପ୍ରମାଣେ ।।୬୦
କୁଟୁମ୍ବ-ପୋଷଣରେ ଥାଇ ।
ବହୁତ ଧନ ଉପୁଜାଇ ।।୬୧
ବହୁତ ହିଂସା କର୍ମ କରେ ।
ଅର୍ଥ-ଅର୍ଜନେ ନିରନ୍ତରେ ।।୬୨
ତାହାଙ୍କୁ ପୋଷି ଦୁଃଖେ ନିତ୍ୟେ ।
ନରକ ଭୁଞ୍ଜେ ଦେହ ଅନ୍ତେ ।।୬୩
ତାହାଙ୍କୁ ସତତ ପୋଷଇ ।
ଆପଣା ସୁଖ ନବାଞ୍ଛଇ ।।୬୪
ଯେବେ କ୍ଷୁଧାରେ ମରୁଥାଇ ।
ତାହାଙ୍କୁ ଅଗ୍ରତେ ଭୁଞ୍ଜାଇ ।।୬୫
ତେବେ ଭୁଞ୍ଜଇ ଅବଶେଷ ।
ଏକର୍ମେ ଧର୍ମ ହୁଏ ନାଶ ।।୬୬

ଅନ୍ତେ ସେ ଲଭେ ଅଧୋଗତି ।
ଏହା ନ ବୁଝେ ମୂଢ଼ମତି ।।୬୭
ଜୀବିକା ଦଇବ ସଂଯୋଗେ ।
ବିନିଷ୍ଟ ହେଲେ କର୍ମଯୋଗେ ।।୬୮
ପୁଣି ଜୀବିକା ଆରମ୍ଭଇ ।
ସେହି ଯଦ୍ୟପି ନାଶ ପାଇ ।।୬୯
ପୁଣି ଆରମ୍ଭେ ବାରମ୍ବାର ।
କୁଟୁମ୍ବ ଅର୍ଥେ ମୂଢ଼ନର ।।୭୦
ସମର୍ଥପଣ ଥିବା ଯାଏ ।
ତାବତ କରଇ ଉପାୟେ ।।୭୧
ତହୁଁ ହୋଇଲେ ଅସମର୍ଥ ।
ଲୋଭେ ଚିନ୍ତଇ ପର-ବିତ୍ତ ।।୭୨
ଲୋଭ ବଢ଼ାଇ ପରଧନେ ।
ନରକ ଭୟକୁ ନ ମାନେ ।।୭୩
ନିନ୍ଦିତ-କର୍ମେ ହରେ ଦିନ ।
କୁଟୁମ୍ବ ଅର୍ଥେ ମୂଢ଼ଜନ ।।୭୪
କେବଳ ମନ୍ଦଭାଗ୍ୟ ହୋଇ ।
କୁଟୁମ୍ବ ପୋଷି ନପାରଇ ।।୭୫
ଏଣୁ ହରଇ ପରଧନ ।
ନାଶଇ ପୂର୍ବ-ଜନ୍ମ-ପୁଣ୍ୟ ।।୭୬
ଦରିଦ୍ର ଜୀବନେ ବଞ୍ଚଇ ।
ନାନା ଆପଦ ପୀଡ଼ା ପାଇ ।।୭୭
ବୃଥା ଉଦ୍ୟମେ ଫୁଟି ରହେ ।
ଆଉ ସମ୍ପଦ କେବେ ନୋହେ ।।୭୮
ସର୍ବଦା ହୁଅଇ କୃପଣ ।
କରଇ ନିତ୍ୟେ ଅର୍ଥଧ୍ୟାନ ।।୭୯
ଅର୍ଥ ବିହୀନେ ଚିନ୍ତାକୁଳ ।
ଶରୀର ଦୁଃଖେ ତା ନିର୍ବଳ ।।୮୦
ଶ୍ୱାସ ଉଠଇ ନିରନ୍ତର ।
ଏମନ୍ତେ ନାଶଇ ଶରୀର ।।୮୧
ଅତ୍ୟନ୍ତ ବୃଦ୍ଧଭାବ ପାଇ ।
କୁଟୁମ୍ବ ପୋଷି ନପାରଇ ।।୮୨
ସାମର୍ଥ୍ୟ ହୀନେ ନିଜଘରେ ।
ବଞ୍ଚଇ ଅତିଥି ବେଭାରେ ।।୮୩
ଭବବନ୍ଧନେ ଅଙ୍ଗ ଫୁଟେ ।
କଫ ନିରୋଧେ କଣ୍ଠତଟେ ।।୮୪

ସ୍ମରଣ ବିସ୍ମରଣ କରେ ।
ଶୋଏ ଶିଥିଳ କଳେବରେ ।।୮୫
ଉଠି ନ ପାରି ଅସମର୍ଥେ ।
ତା ଦେଖି ପୁତ୍ର ଦାରା ଭୃତ୍ୟେ ।।୮୬
କରନ୍ତି ଅତି ଅପମାନ ।
ବୋଲନ୍ତି ନିନ୍ଦିତ ବଚନ ।।୮୭
ତାହାକୁ କେହି ନଗଣନ୍ତି ।
ନାନା ବଚନେ ଗାଳିଦ୍ୟନ୍ତି ।।୮୮
ବନ୍ଦୀ ଚୌରର ପ୍ରାୟେ ହୋଇ ।
ପ୍ରାଭବ ଭର୍ତ୍ସନା ସହଇ ।।୮୯
କିଛି ନ ପାରେ ତୁଣ୍ଡେ କହି ।
ଅନ୍ତରେ ଅପମାନ ବହି ।।୯୦
ଦାରା ତନୟ ଆଦି ଯେତେ ।
ଆଦର ଛାଡ଼ନ୍ତି ତୁରିତେ ।।୯୧
ଯେବା ଆଦର ପୂର୍ବେ ଥିଲା ।
ସେ ପୂର୍ବ ସ୍ନେହ ସବୁ ଗଲା ।।୯୨
ତାହାଙ୍କୁ ଜ୍ଞାତି ବନ୍ଧୁଜନେ ।
ଦୂରେ ତେଜନ୍ତି ଦୁଃଖମନେ ।।୯୩
ଯେହ୍ନେ କୃଷକ ବୃଦ୍ଧ ଗାବେ ।
ମାରି ତେଜନ୍ତି ଅନ୍ୟଠାବେ ।।୯୪
ତେସନେ ଦାରାଦି ସକଳେ ।
ବୃଦ୍ଧକୁ ନ ସେବନ୍ତି ହେଲେ ।।୯୫
ତଥାପି ସ୍ନେହ ନଛାଡ଼ଇ ।
ଗୃହାଦି ବାରତା ପୁଛଇ ।।୯୬
ତଥାପି ଦୟା ନକରନ୍ତି ।
ନିଷ୍ଠୁର ବାକ୍ୟେ ଗାଳି ଦ୍ୟନ୍ତି ।।୯୭
ଦୁଃଖେଣ ପୋଷିଲା ଯାହାକୁ ।
ସେ ସର୍ବ ଛାଡ଼ିଲେ ତାହାକୁ ।।୯୮
ଜରା ହରନ୍ତେ ରୂପକାନ୍ତି ।
ତେବେ ନଛାଡ଼େ ସ୍ନେହ ଅତି ।।୯୯
ମରଣ ନିକଟ ହୋଇଲା ।
ବୈରାଗ୍ୟ କେବେ ନସ୍ଫୁରିଲା ।।୧୦୦
ଦାରା ତନୟ ଭକ୍ଷ୍ୟ ତାରେ ।
ଦିଅନ୍ତି ଅତି ହତାଦରେ ।।୧୦୧
କର୍ମ ଆୟତ୍ତେ ଯେବା ପାଇ ।
ସନ୍ତୋଷ ନେହେ ତାହା ଖାଇ ।।୧୦୨

Dr. Sudhanshu Sekhar Mishra

ଭୁଞ୍ଜଇ ଗୃହାନ୍ତରେ ଯାଇ ।
ଶଙ୍କିତେ ଶ୍ୱାନ ପ୍ରାୟେ ହୋଇ ।।୧୦୩
ଚିନ୍ତା-ପ୍ରଜ୍ୱରେ ଦୁଃଖମନ ।
ରୋଗ ବଢ଼ଇ ପ୍ରତିଦିନ ।।୧୦୪
କ୍ଷୁଧାରେ କମ୍ପଇ ଶରୀର ।
ଭକ୍ଷଇ ଅଳପ ଆହାର ।।୧୦୫
କିଛି ନ ବୋଲେ ଅହଙ୍କାରେ ।
ଭିତରେ ପକ୍ଷୀ ପ୍ରାୟେ ଝୁରେ ।।୧୦୬
ଦିନକୁ ଦିନ ତନୁ କ୍ଷୀଣ ।
ଯେସନେ ପୁରୁଣା ବସନ ।।୧୦୭
ଆହାର ହୀନେ ଚିନ୍ତାଛନ୍ନେ ।
ନ ପଚେ ମନ୍ଦ-ହୁତାଶନେ ।।୧୦୮
ଆହାର ଅଳପ ଭକ୍ଷଇ ।
ଦୁର୍ବଳେ ଉଠି ନ ପାରଇ ।।୧୧୯
ଖର ପବନ ନାସାଦ୍ୱାରେ ।
ବହଇ ଅତି ଦୀର୍ଘତରେ ।।୧୧୦
ଶବଦ ଅତି ଭୟଙ୍କର ।
ଯେହ୍ନେ ଗଭୀର କମ୍ବୁସ୍ୱର ।।୧୧୧
ଗୃହ ବାହାରେ ଆସି ରହେ ।
କଫ ନିବାରେ ଶକ୍ତି ନୋହେ ।।୧୧୨
କଫେ ପୂରିତ ନାଡ଼ିମାନ ।
ଶ୍ୱାସ ନଚଳଇ ସମାନ ।।୧୧୩
କାଶରେ ବାୟୁ ଊର୍ଦ୍ଧ୍ୱଗତ ।
ତେଣୁ ନୟନ ବହିର୍ଗତ ।।୧୧୪
ଯେଣୁ ପବନ ମନ୍ଦ ହୋଇ ।
ବଚନ ନପାରଇ କହି ।।୧୧୫
ସର୍ବଦା ଉଠେ କାଶ ଶ୍ୱାସ ।
ଏଣେ ଲଭଇ ବହୁ କ୍ଲେଶ ।।୧୧୬
କଣ୍ଠ ହୁଅଇ ଘୁର-ଘୁର ।
ବଚନ ନୁହଇ ବାହାର ।।୧୧୭
ପ୍ରାଣ ହୁଅଇ କଣ୍ଠତଟ ।
ଜୀବନ ହୋଏ ଛଟପଟ ।।୧୧୮
କାନ୍ଦଇ ବନ୍ଧୁ ମୁଖ ଚାହିଁ ।
ବଦନୁ ବାକ୍ୟ ନ ସ୍ଫୁରଇ ।।୧୧୯
ଚିନ୍ତଇ କି ରୂପେ ମରିବି ।
କାହିଁ କେବଳ ମାର୍ଗେ ଯିବି ।।୧୨୦

ମୋର ମରଣେ ପୁତ୍ର ନାରୀ ।
କେମନ୍ତେ ଥିବେ ଗୃହ କରି ।।୧୨୧
ଦୁଃଖେ ସଞ୍ଚିଲି ଯେତେ ଧନ ।
ମୋ ମଲେ ଏହା ନେବ ଆନ ।।୧୨୨
ଏ ଯେ ହୋଇବେ ଅରକ୍ଷିତ ।
ଏଣୁ ବ୍ୟାକୁଳ ହୁଏ ଚିତ୍ତ ।।୧୨୩
ଭିତରେ ଆକୁଳେ କାନ୍ଦଇ ।
ତା ମନ କେହି ନ ଜାଣଇ ।।୧୨୪
ଜୀବନ ଦହେ ଦାରା-ଧନେ ।
ଗୋବିନ୍ଦ ନସ୍ମରେ ଅଜ୍ଞାନେ ।।୧୨୫
ବାଲିଶଯ୍ୟାରେ ଶୋଇ ଦେଇ ।
ବନ୍ଧୁ ବାନ୍ଧବେ ବେଢ଼ି ତହିଁ ।।୧୨୬
ସକଳେ କରନ୍ତି ରୋଦନ ।
ଶ୍ରବଣେ ଡାକନ୍ତି ସଘନ ।।୧୨୭
ହେ ତାତ ବୋଲି କେ ଡାକଇ ।
ତା ଗୁଣ ଭାଳି କେ ରୋଦଇ ।।୧୨୮
କେହୁ ଡାକନ୍ତି ପୁତ୍ର ଭାଇ ।
ପତ୍ନୀ ଡାକଇ ହେ ଗୋସାଇଁ ।।୧୨୯
ନାନା ପ୍ରକାରେ ସେ ରୋଦନ୍ତି ।
ତା ଦୁଃଖ କେହି ନ ଘେନନ୍ତି ।।୧୩୦
ସେ କାଳପାଶେ ବନ୍ଦୀ ହୋଇ ।
କିଞ୍ଚିତେ ବାକ୍ୟ ନ ଭାଷଇ ।।୧୩୧
ପୀଡ଼ିତ ମୃତ୍ୟୁ ଦୁଃଖ-ଘୋରେ ।
କୁଟୁମ୍ବ ଭରଣ ବ୍ୟାପାରେ ।।୧୩୨
ଶୁଣ ଜନନୀ ଏକ ଚିତ୍ତେ ।
ସଂସାର ଦୁଃଖସୁଖ ଏତେ ।।୧୩୩
ମନ ନିବିଷ୍ଟ ତହିଁ କଲା ।
ଇନ୍ଦ୍ରିୟ ଜିଣି ନପାରିଲା ।।୧୩୪
ତେଣୁ ହୋଇଲା ମୃତ୍ୟୁ ତାର ।
ଏ ଦଣ୍ଡ ଅତି ଭୟଙ୍କର ।।୧୩୫
ବନ୍ଧୁ-ସ୍ୱଜନେ ସର୍ବେ ଥାଇ ।
ତା ଦୁଃଖଭାରୀ କେହି ନୋହି ।।୧୩୬
ବ୍ୟର୍ଥେ ପୋଷିଲା ତାଙ୍କୁ ଦୁଃଖେ ।
ଏବେ ସେ ତେଜିଲେ ବିମୁଖେ ।।୧୩୭
ପ୍ରାଣ ଯିବାର ବେଳେ ମାଏ ।
ଅତି ବେଦନା ଜୀବ ପାଏ ।।୧୩୮

ଘୋର ବ୍ୟଥାରେ ନଷ୍ଟ ମତି ।
ଚେତନା ରହିତ ହୁଅନ୍ତି ।।୧୩୯
ଏମନ୍ତେ ଜୀବନର ଅନ୍ତେ ।
ବେଗେ ମିଳନ୍ତି ଯମ ଦୂତେ ।।୧୪୦
ପ୍ରଚଣ୍ଡ-ରୂପ ଭୟଙ୍କର ।
ଉଦ୍ଦଣ୍ଡ ଦଣ୍ଡ ପାଶଧର ।।୧୪୧
ତାହାଙ୍କ ରୂପକୁ ଅନାଇଁ ।
ଅଜ୍ଞାନେ ବିକଳେ କମ୍ପଇ ।।୧୪୨
ପାପୀଙ୍କି ଘେନି ଯିବା ପାଇଁ ।
ସକ୍ରୋଧ-ନୟନେ ଅନାଇ ।।୧୪୩
ତାଙ୍କୁ ଦେଖନ୍ତି ପାପୀଜନ ।
ହୃଦୟ ଭୟେ କମ୍ପମାନ ।।୧୪୪
ଆରତେ ଛାଡ଼େ ମଳମୂତ୍ର ।
ସର୍ବତ୍ର କମ୍ପମାନ ଗାତ୍ର ।।୧୪୫
ଯମ-ଡଗରେ ଆଗସରି ।
ଯାତନା-ପୁରୁଷକୁ ଧରି ।।୧୪୬
ବନ୍ଧନେ ନ କରନ୍ତି ଦୟେ ।
ତର୍ଜନ୍ତି ରାଜଭଟ ପ୍ରାୟେ ।।୧୪୭
ବନ୍ଧନ କରି ଚର୍ମପାଶେ ।
ଦଣ୍ଡ ପ୍ରହାରି ମହାରୋଷେ ।।୧୪୮
ସେ ରୂପ କେହି ନଦେଖନ୍ତି ।
ଅନ୍ଧାରପଥେ ଘେନିଯାନ୍ତି ।।୧୪୯
ପଥରେ ଗମନ୍ତି କୁକୁର ।
ରୋଷେ କାଟନ୍ତି ତା ଶରୀର ।।୧୫୦
ତାହାଙ୍କ ରୂପ ଦେଖି ଡରି ।
କାନ୍ଦଇ ଉଚ୍ଚ ନାଦ କରି ।।୧୫୧
ତୀକ୍ଷ୍ଣେ ଦଂଶନେ ଖଣ୍ଡ ଖଣ୍ଡ ।
ବେଗେ କରନ୍ତି ତାର ପିଣ୍ଡ ।।୧୫୨
ବିକ୍ରମି କରନ୍ତି ଭକ୍ଷଣ ।
କରଇ କାତରେ ରୋଦନ ।।୧୫୩
ସେ ଅତି କଷ୍ଟେ ପୀଡ଼ା ପାଇ ।
ନିଜ ପାତକ ସୁମରଇ ।।୧୫୪
ଉଠି ପଡ଼ଇ ସେ ଭୂତଳେ ।
ଘୋର ପ୍ରହାର ଭୟାକୁଳେ ।।୧୫୫
କ୍ଷୁଧା-ପିପାସା-ଦୁଃଖାକୁଳେ ।
ପଥରେ ନିଅନ୍ତି ସତ୍ୱରେ ।।୧୫୬

Dr. Sudhanshu Sekhar Mishra

ବଇତରଣୀ ନଦୀକୂଳେ ।
ବାଲୁକା ଜଳଇ ଅନଳେ ।।୧୫୭
ତପ୍ତ ବାଲୁକାମୟ ପଥ ।
ସେ ଉଷ୍ଣବାୟୁ ସନ୍ତାପିତ ।।୧୫୮
ସୂର୍ଯ୍ୟକିରଣ ଦାବାନଳ ।
ସନ୍ତପ୍ତ କରେ ଅତିବେଳ ।।୧୫୯
ଜଳି ତାପଇ ଅତିଘୋରେ ।
ସେ ତାପ କେ ସହୁ ଶରୀରେ ।।୧୬୦
ତହୁଁ ତପତ ବାଲୁକାରେ ।
ପ୍ରବେଶ କରାନ୍ତି ସତ୍ୱରେ ।।୧୬୧
ଯେବେ ନ ପଶେ ଭୟ କରି ।
ତକ୍ଷଣେ ଶିରେ ଯଷ୍ଟି ମାରି ।।୧୬୨
କ୍ଷଣେ ବିଶ୍ରାମ ନ କରାନ୍ତି ।
ଅନେକ ଘୋର ଶାସ୍ତି ଦ୍ୟନ୍ତି ।।୧୬୩
ଯେ ମାର୍ଗେ ଜଳ ବୃକ୍ଷ ନାହିଁ ।
ପ୍ରାଣ ସମ୍ଭାଳିବ ସେ କାହିଁ ।।୧୬୪
ଆଶ୍ରମ ଉଦକ ନ ମିଳେ ।
ସମର୍ଥ ହୀନେ ଭୟେ ଚଳେ ।।୧୬୫
ଏମନ୍ତ ପଥେ ନ୍ୟନ୍ତି ଧରି ।
ଏକାନ୍ତେ ନିଜ କର୍ମ ସ୍ମରି ।।୧୬୬
ପଡ଼ି ଉଠଇ ଦୁଃଖେ ଶ୍ରମେ ।
ମୂର୍ଚ୍ଛିତ ହୋଏ ଜ୍ଞାନ ଭ୍ରମେ ।।୧୬୭
ମାରନ୍ତେ ସତ୍ୱରେ ଉଠଇ ।
ଅଜ୍ଞାନେ ପୁଣି ସେ ପଡ଼ଇ ।।୧୬୮
ସେ ଦୂତେ ଦୟା ନକରନ୍ତି ।
ଦୁଃସହ ମାର୍ଗେ ଘେନିଯାନ୍ତି ।।୧୬୯
ଗହନ ଘୋର ଅନ୍ଧକାରେ ।
ନିଅନ୍ତି ପାପୀକୁ ଯତ୍ନରେ ।।୧୭୦
ପଥ ଅଦୃଶ୍ୟେ ହୁଡ଼ି ପଡ଼େ ।
ମୁଣ୍ଡେ ପ୍ରହାରନ୍ତି ନିବିଡ଼େ ।।୧୭୧
ଏମନ୍ତ ଦୁଃଖେ ପାପୀଜନ ।
ପ୍ରବେଶ ଯମର ଭୁବନ ।।୧୭୨
ନବ ନବତି ପରିମିତ ।
ସହସ୍ର ଯୋଜନ ସେ ପଥ ।।୧୭୩
ବେନି ବା ତିନି ମୁହୂର୍ତ୍ତରେ ।
ପ୍ରବେଶ କରାନ୍ତି ସେଠାରେ ।।୧୭୪

ଯମ ନିକଟେ ତାକୁ ନେଇ ।
ବୋଲନ୍ତି ଶିରେ କରଦେଇ ।।୧୭୫
ଭୋ ଧର୍ମରାଜ ତୋ ବଚନେ ।
ଆଣିଲୁ ତୋର ସନ୍ନିଧାନେ ।।୧୭୬
ସେ ଯମ କରଣେ ହକାରି ।
ତା ପାପ ସୁକୃତ ବିଚାରି ।।୧୭୭
ସୁକୃତୀ ରହେ ସ୍ୱର୍ଗଲୋକେ ।
ନାରକୀ ପଡ଼ଇ ନରକେ ।।୧୭୮
କହନ୍ତି ପ୍ରଭୁ ନାରାୟଣ ।
ପାପୀ ଯାତନା ମାତା ଶୁଣ ।।୧୭୯
ଯେ ପ୍ରାଣୀ ନରକେ ପଡ଼ନ୍ତି ।
ଦୁର୍ଗମ ତାହାଙ୍କ ଦୁର୍ଗତି ।।୧୮୦
ତହିଁ ଦଣ୍ଡନ୍ତି ଅନୁକ୍ଷଣ ।
ମସ୍ତକ ସର୍ବାଙ୍ଗ ଚରଣ ।।୧୮୧
ତଦନ୍ତେ ଦହନ୍ତି ଅନଳେ ।
ରୋଦଇ ନିର୍ଘାତ ଚହଳେ ।।୧୮୨
ଅତ୍ୟନ୍ତ ପୀଡ଼ାରେ ବ୍ୟାକୁଳ ।
କ୍ଷୁଧାରେ ହୋଏ ଜ୍ଞାନଭୋଳ ।।୧୮୩
ଆପଣ ହସ୍ତେ ଦେହ ମାଂସ ।
କାଟିଣ କରୁଥାଇ ଗ୍ରାସ ।।୧୮୪
ଅଥବା କାଟି ଦ୍ୟନ୍ତି ପର ।
ତହା ଭକ୍ଷଇ ପାପୀ ନର ।।୧୮୫
ଗୃଧ୍ର କୁକୁର ଯମପୁରେ ।
ପାପୀଙ୍କି ବେଢ଼ିଣ ସତ୍ୱରେ ।।୧୮୬
ଓଟାରି ନ୍ୟନ୍ତି ନାଡ଼ିଗଣ ।
ତଥାପି ନ ଛାଡ଼ଇ ପ୍ରାଣ ।।୧୮୭
ମିଳନ୍ତି ମହା ମହା ସର୍ପେ ।
ଦଂଶନ୍ତି ତାର ଦେହେ କୋପେ ।।୧୮୮
ମତ୍ସ୍ୟ କଚ୍ଛପ ତା ଶରୀର ।
ବେଢ଼ି ଭକ୍ଷନ୍ତି ନିରନ୍ତର ।।୧୮୯
କ୍ଷୁର ପ୍ରହାରେ ତାର ପିଣ୍ଡ ।
କାଟି କରନ୍ତି ଖଣ୍ଡ ଖଣ୍ଡ ।।୧୯୦
ଉତ୍ତାନେ ପକାଇ ଧରଣୀ ।
ଗଜେ ମାରନ୍ତି ଦନ୍ତ ଆଣି ।।୧୯୧
ଦଂଶନେ ଶରୀର ଚିରନ୍ତି ।
ପର୍ବତ ଶିଖରୁ ପକାନ୍ତି ।।୧୯୨

ତଦନ୍ତେ ଖାତଖୋଳି ରୁନ୍ଧି ।
ଧୂମ୍ର ପୂରାନ୍ତି ନିରବଧି ।।୧୯୩
ବୁଡ଼ାଇ ରଖନ୍ତି ଜଳରେ ।
ପଥର ଲଦି ତା ଉପରେ ।।୧୯୪
ଆକୁଳେ ରୋଦଇ ବିକଳେ ।
ମୁଖେ ପିଟନ୍ତି କୋପାନଳେ ।।୧୯୫
ଏମନ୍ତେ କର୍ମର ଆୟତ୍ତେ ।
ନାନା ଯାତନା ଦଣ୍ଡ ଯେତେ ।।୧୯୬
ଚତୁରଅଶୀତି ନରକେ ।
ନେଇ ଭୁଞ୍ଜାନ୍ତି ଏକେ ଏକେ ।।୧୯୭
ଏମନ୍ତେ ସଂସାର ଭ୍ରମଣେ ।
ବ୍ୟାକୁଳ କୁଟୁମ୍ବ ପୋଷଣେ ।।୧୯୮
ଅନ୍ତେ ଯମର ପୁରେ ଯାନ୍ତେ ।
କେହି ନଯାନ୍ତି ତାର ସାଥେ ।।୧୯୯
ବନ୍ଧୁବାନ୍ଧବ ପରିଜନେ ।
ଦହନ କରି ଶମଶାନେ ।।୨୦୦
ବିମୁଖେ ନିଜ ପୁରେ ଯାନ୍ତି ।
ତା ସଙ୍ଗେ କେହି ନ ରହନ୍ତି ।।୨୦୧
ଅର୍ଜିଲା ପାପପୁଣ୍ୟ ବେନି ।
ପଥେ ଗମନ୍ତି ତାକୁ ଘେନି ।।୨୦୨
ଏ ଦୁଇବଳେ ପରଲୋକେ ।
ଭୋଗ କରଇ ଏକେ ଏକେ ।।୨୦୩
ଅଧର୍ମେ ଧନାର୍ଜନ କରି ।
କୁଟୁମ୍ବ ପ୍ରପୋଷଣ କରି ।।୨୦୪
ଧର୍ମ ନ ସଞ୍ଚେ ରେଣୁ ମାତ୍ରେ ।
ନିତ୍ୟେ ମଜ୍ଜଇ ଦାରା-ସୁତେ ।।୨୦୫
ତାହାର ନାହିଁ ଇହପର ।
ଅନ୍ତେ ନରକ ମାତ୍ର ସାର ।।୨୦୬
ଏମନ୍ତେ କର୍ମର ଆୟତ୍ତେ ।
ଚଳନ୍ତି ସ୍ୱର୍ଗ-ନର୍କ ପଥେ ।।୨୦୭
ତାମିସ୍ର ଆଦି ଯେ ଯାତନା ।
କେତେ ତା କରିବି ବର୍ଣ୍ଣନା ।।୨୦୮
ପାତକୀ ସକଳ ଭୁଞ୍ଜଇ ।
ସ୍ୱକର୍ମ-ପାଶେ ବଦ୍ଧ ହୋଇ ।।୨୦୯
ଯେତେ ଅଛନ୍ତି ନରନାରୀ ।
ସର୍ବେ ଯାତନା ଅଧିକାରୀ ।।୨୧୦

Dr. Sudhanshu Sekhar Mishra

ଉଭୟ ସଙ୍ଗେ ଏ ନରକ ।
ଭୁଞ୍ଜାଇ ସଦା ପାପୀଲୋକ ।।୨୧୧
ଭୋ ମାତ ଦେଖ ସୁବିଚାରେ ।
ନରକ ସ୍ୱର୍ଗ ଏହିଠାରେ ।।୨୧୨
ନରକ ରାଜଦଣ୍ଡ ଆଦି ।
ଏହା ବୋଲନ୍ତି ଶାସ୍ତ୍ରବାଦୀ ।।୨୧୩
ଯେ ଉପଭୋଗ ସ୍ୱର୍ଗସୁଖ ।
ଏଠାରେ ଦେଖ ତା ପ୍ରତ୍ୟକ୍ଷ ।।୨୧୪
ଏ ବେନି ବୁଝ ପରିମାଣି ।
ବିବେକ ମୁଖେ ଶାସ୍ତ୍ର ଶୁଣି ।।୨୧୫
ଏରୂପେ କୁଟୁମ୍ବ ଯେ ପୋଷେ ।
ନିଜ ଉଦର ପରିତୋଷେ ।।୨୧୬
ଏ ବେନି ସଙ୍ଗତେ ନଯାଇ ।
ଛାଡ଼ିଣ ଏକା ସେ ଚଳଇ ।।୨୧୭
ଭୁଞ୍ଜାଇ ଆପେ କର୍ମଫଳ ।
ଯାଠାରୁ ନାହିଁ ବଳୀୟାର ।।୨୧୮
ତେଜିଣ ନିଜ କଳେବର ।
ଏକା ସେ ଗମେ ଯମପୁର ।।୨୧୯
ଅଧର୍ମେ ପ୍ରାଣୀ ହିଂସା କରି ।
ଯେ ଦେହ ପୋଷେ ସ୍ନେହ ଭରି ।।୨୨୦
ସେ ଦେହ ତେଜିଣ ସେ ଯାଇ ।
ପାପକୁ ପୃଷ୍ଠରେ ବସାଇ ।।୨୨୧

ଏକା ସେ ନରକ ଭୁଞ୍ଜଇ ।
ଦ୍ୱିତୀୟ ସଙ୍ଗତେ ନଯାଇ ।।୨୨୨
କୁଟୁମ୍ବ-ପୋଷଣର ଫଳ ।
ତାହାର ଯେତେକ ଶମଳ ।।୨୨୩
ସେ ଫଳ ଈଶ୍ୱର ଦିଅନ୍ତି ।
ପାପୀ ହିଁ ଏକାନ୍ତେ ଭୁଞ୍ଜନ୍ତି ।।୨୨୪
ଧନ ହରାଇ ଯେହ୍ନେ ନର ।
ମନରେ ହୁଅଇ ଆତୁର ।।୨୨୫
ତେସନ ପାପ କରେ ପ୍ରାଣୀ ।
ବ୍ୟାକୁଳେ ଭୁଞ୍ଜେ ପୁଣ ପୁଣି ।।୨୨୬
ସେ ଦୁଃଖ ନ ଭୁଞ୍ଜାଇ ପର ।
ତେସନେ ନରକ ଆହାର ।।୨୨୭
କେବଳ ଅଧର୍ମ ଆଚରି ।
କୁଟୁମ୍ବ ପୋଷଣ ଯେ କରି ।।୨୨୮
ଗମଇ ଅନ୍ଧ-ତାମିସ୍ରକୁ ।
ଉଦ୍ଧାର ନାହିଁ କାହିଁ ତାକୁ ।।୨୨୯
ଅନ୍ଧ-ତାମିସ୍ର ଯାର ନାମ ।
ତାହା ହିଁ ନରମ ଚରମ ।।୨୩୦
ସେ ତହିଁ ଗମନ କରଇ ।
ବହୁତ କାଳ ତହିଁ ଥାଇ ।।୨୩୧
ତାର ନରକ ଭୋଗ ଅନ୍ତେ ।
ଆପଣା କର୍ମର ଆୟତ୍ତେ ।।୨୩୨

ଯେତେକ ଯାତନା ଅଛଇ ।
କ୍ରମେଣ ସକଳ ଭୁଞ୍ଜଇ ।।୨୩୩
ସେ ପାପପୁଣ୍ୟ ଅବଶେଷ ।
କର୍ମେ ସେ ଉଦରେ ପ୍ରବେଶ ।।୨୩୪
ଶ୍ୱାନ ଶୂକର ଆଦି ଯୋନି ।
ପାପୀ ଲଭଇ କର୍ମ ଘେନି ।।୨୩୫
ଭୁଞ୍ଜନ୍ତି ପ୍ରାଣୀ ଦେହ ଘେନି ।
କହିବା ଶୁଣ ଗୋ ଜନନୀ ।।୨୩୬
କ୍ରମେ ତା ପାପ କ୍ଷୀଣ ହୋଇ ।
ପୁଣି ସେ ନରଜନ୍ମ ପାଇ ।।୨୩୭
ଏମନ୍ତେ ମାତାର ସମୀପେ ।
ଗୋବିନ୍ଦ କପିଳ ସ୍ୱରୂପେ ।।୨୩୮
ଯେତେ କହିଲେ ଜ୍ଞାନବାଣୀ ।
ସୁଜନଜନେ ଏହା ଶୁଣି ।।୨୩୯
ତରିବ ଭବବନ୍ଧ-ପାଶ ।
କହଇ ଜଗନ୍ନାଥ ଦାସ ।।୨୪୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟ ଉପାଖ୍ୟାନେ
କର୍ମବିପାକୋ
ନାମ ତ୍ରିଂଶୋଽଧ୍ୟାୟଃ ।

---

## ଏକତ୍ରିଂଶ ଅଧ୍ୟାୟ

କପିଳ ଉବାଚ

ଶୁଣ ଜନନୀ ତଦନ୍ତରେ ।
ପୁଣ୍ୟ ପାତକ ସୁବିଚାରେ ।।୧
ଏ ପୁଣ୍ୟ ପାପ ଅନୁସାରେ ।
ମନୁଷ୍ୟ ଦେହ ପ୍ରାଣୀ ଧରେ ।।୨
ମନୁଷ୍ୟ ଦେହ ଯେଣୁ ସ୍ଥିତି ।
ତେଣୁ ସେ ରାଜସିକ ମତି ।।୩
ଏହା କହିବା ତୋ ଆଗରେ ।
ସୁଜନେ ଶୁଣ ହେତୁଦ୍ୱାରେ ।।୪

ବୋଲନ୍ତି ପ୍ରଭୁ ଭଗବାନ ।
ଭୋ ମାତ ସାବଧାନେ ଶୁଣ ।।୫
ଏ ଜୀବ ଯେ କର୍ମ ଇଚ୍ଛଇ ।
ଈଶ୍ୱର ତହିଁ ନିଯୋଜଇ ।।୬
ଏ ଜୀବ ସ୍ୱକର୍ମ ବଶରେ ।
ପୁରୁଷ ରେତ ଆଶା କରେ ।।୭
ପୁଣି ଏ ଦେହ ଧରିବାକୁ ।
ପ୍ରବେଶ ଜନନୀ ଗର୍ଭକୁ ।।୮
ପୁରୁଷ ଦେହର ସ୍ୱରୂପେ ।
ପଶଇ ଆତ୍ମାର ସଙ୍କଛେ ।।୯

ଯେ ଜନ୍ମେ ଯେ ଗର୍ଭ ସଂଯୋଗ ।
ପଶଇ ରଜ-ବୀର୍ଯ୍ୟ ଯୋଗ ।।୧୦
ସେ ରେତ ପ୍ରଥମ ଦିନରେ ।
ମିଶଇ ଶୋଣିତ ସଙ୍ଗରେ ।।୧୧
ତାହାକୁ ବୋଲିଟି କଲ୍ଲୋଳ ।
ପଞ୍ଚମ ଦିନେ ସେ ବର୍ତ୍ତୁଳ ।।୧୨
ସେ ପୁଣି ବଦରୀ ସମାନେ ।
କଠିନ ହୁଏ ଦଶଦିନେ ।।୧୩
ତା ପରେ ହୋଇ ମାଂସ ପିଣ୍ଡ ।
ତଦନ୍ତେ ପ୍ରକାଶଇ ଅଣ୍ଡ ।।୧୪

Dr. Sudhanshu Sekhar Mishra

ମସ୍ତକ ପ୍ରଥମ ମାସରେ ।
ପ୍ରକାଶ ହୁଅଇ କନ୍ଦରେ ।।୧୫
ସମ୍ପୂର୍ଣ୍ଣ ବେନିମାସ ଯାଏ ।
କର ଚରଣ ଆଦି ହୋଏ ।।୧୬
ଅଙ୍ଗୁଳି ନଖ ତନୁ ରୋମ ।
ଅସ୍ଥି ହୃଦୟ ନାଡ଼ିମାନ ।।୧୭
ଲିଙ୍ଗ ଇନ୍ଦ୍ରିୟ ଛିଦ୍ର ଆଦି ।
ତୃତୀୟମାସେ ଏ ପ୍ରସିଦ୍ଧି ।।୧୮
ଚତୁର୍ଥମାସେ ଧାତୁ ହୋଏ ।
ପଞ୍ଚମେ କ୍ଷୁଧା ତୃଷା ବହେ ।।୧୯
ତଦନ୍ତେ ଷଷ୍ଠ ପରିମିତ ।
କ୍ଷୁଧା ତୃଷାରେ ସେ ପୀଡ଼ିତ ।।୨୦
ଗର୍ଭ ବେଷ୍ଟନେ ବନ୍ଧ ହୋଇ ।
ଦକ୍ଷିଣ କୁକ୍ଷିରେ ଭ୍ରମଇ ।।୨୧
ଜନନୀ ଯେ ଦ୍ରବ୍ୟ ଭକ୍ଷଇ ।
ସେ ରସେ ତା ଧାତୁ ବଢ଼ଇ ।।୨୨
ମୂତ୍ର ପୁରୀଷ ରକ୍ତ ଲାଳେ ।
କୃମି ପୀଡ଼ିତ ସମାକୁଳେ ।।୨୩
ତହିଁ ଯନ୍ତ୍ରିତେ ଶୋଇ ଥାଇ ।
କୃମି ସଂକୁଳ ମଧ୍ୟେ ରହି ।।୨୪
ଅତି କୋମଳ କଳେବର ।
କୃମି ଭକ୍ଷଣେ ନୋହେ ସ୍ଥିର ।।୨୫
ଅଙ୍ଗ କାଟନ୍ତେ କୃମିମାନେ ।
ପ୍ରଜ୍ୱଳେ ଦେହ ପ୍ରତିକ୍ଷଣେ ।।୨୬
ବହୁତ କ୍ଲେଶ ତହିଁ ପାଇ ।
କ୍ଷଣ କ୍ଷଣକେ ମୂର୍ଚ୍ଛା ଯାଇ ।।୨୭
ଉଷ୍ଣ ଲବଣ କଟୁ ତୀକ୍ଷ୍ଣ ।
କ୍ଷାର ଆମ୍ଳିକ ଯା ଭକ୍ଷଣ ।।୨୮
ଜନନୀ ଆହାର କରଇ ।
ସେ ରସେ ସର୍ବାଙ୍ଗ ପୀଡ଼ଇ ।।୨୯
କରଇ ବେଦନାକୁ ଜାତ ।
ତେଣେ ତା ସର୍ବାଙ୍ଗ ପୀଡ଼ିତ ।।୩୦
ନିବାସ ଜରାୟୁ ଭିତରେ ।
ନାଡ଼ିରେ ବେଷ୍ଟିତ ନିର୍ଭରେ ।।୩୧
କୁଟିଳ ଭାବେ ଶିରୋଧର ।
ପୃଷ୍ଠ କୁଟିଳ କଳେବର ।।୩୨

ମାତୃକୁକ୍ଷିରେ ଦେଇ ଶିର ।
ପଡ଼ି ଯେ ଥାଇ ନୋହେ ସ୍ଥିର ।।୩୩
ଶରୀର ଚାଳି ନପାରଇ ।
ପିଞ୍ଜର-ପକ୍ଷୀ ପ୍ରାୟ ହୋଇ ।।୩୪
ସେ ଗର୍ଭେ ପୂର୍ବକର୍ମ ବଶେ ।
ବହୁତ ଜନ୍ମ ତାକୁ ଦିଶେ ।।୩୫
ଶତେକଜନ୍ମର କର୍ମ ଯେତେ ।
ସୁମରୁ ଥାଏ ଗର୍ଭଗତେ ।।୩୬
ସେ ପାପ ପୁଣ୍ୟ ମନେ ଧାଇ ।
ବହୁତ ନିଃଶ୍ୱାସ ଛାଡ଼ଇ ।।୩୭
ତା ଫେଡ଼ି ନ ପାରଇ କେହି ।
କର୍ମଆୟତ୍ତେ ବଶ ହୋଇ ।।୩୮
ସୁମରି ପୂର୍ବଜନ୍ମ ଦୁଃଖ ।
ସୁଖ ନ ଲଭି ସେ ବିମୁଖ ।।୩୯
ସପ୍ତମମାସ ଆଦି କରି ।
ତା ଦେହେ ଜ୍ଞାନ ଥାଇ ପୁରି ।।୪୦
ପ୍ରସୂତିବାତ ବଳୀୟାର ।
ତେଣେ କମ୍ପଇ ତା ଶରୀର ।।୪୧
ଦେହକୁ ଅସ୍ଥିର କରଇ ।
କୃମି ଯେସନେ ଭ୍ରମୁଥାଇ ।।୪୨
ସେ ରୂପେ ଗର୍ଭେ ତା ଭ୍ରମଣ ।
ଦୁଃସହ ସେ ଦୁଃଖ କଷଣ ।।୪୩
ତଦନ୍ତେ ଶୁଣ ଗୋ ଜନନୀ ।
ଭାଳଇ ଦିବସ ରଜନୀ ।।୪୪
ଅତି ବିମୁଖେ କଷ୍ଟ ସହି ।
ସେ ଗର୍ଭେ ଆତ୍ମାକୁ ଦେଖଇ ।।୪୫
ତା ରୂପ ଅତି ମନୋହର ।
ଧ୍ୟାନେ ଜାଣଇ ତା ଶରୀର ।।୪୬
ନିରତେ ଭାଳେ ଏକଚିତ୍ତେ ।
ଭକ୍ତିରେ ମନ ପ୍ରମୋଦିତେ ।।୪୭
ସପ୍ତଧାତୁରେ ବନ୍ଧ ହୋଇ ।
ଅଞ୍ଜଳି କରିଣ ପ୍ରାର୍ଥଇ ।।୪୮
ଭୟେ ବିଚାରଇ ମନର ।
କେମନ୍ତେ ଏଥୁଁ ହେବି ପାର ।।୪୯
ଏଥୁଁ ନିସ୍ତାର ମୋ କେମନ୍ତେ ।
ଆତଙ୍କେ ଚିନ୍ତଇ ନିରତେ ।।୫୦

ଯେମନ୍ତେ ଆଉ ପୁନର୍ବାର ।
ଏ ଗର୍ଭ ଦୁଃଖ ନୋହୁ ମୋର ।।୫୧
ଶ୍ରୀକୃଷ୍ଣପାଦେ କରି ଧ୍ୟାନ ।
ଅତି ଆନନ୍ଦ ସୁଖେ ମଗ୍ନ ।।୫୨
ଏଥୁଁ ନିର୍ଗତ ମୋ କେମନ୍ତେ ।
ତାହାକୁ ଭାବେ ଅବିରତେ ।।୫୩
ସେ ଦୁଃଖ ନ ଘେନଇ ଚିତ୍ତେ ।
ଅନାଥ ମୁଁ ଯେ ଗର୍ଭଗତେ ।।୫୪
ବେଦନା ପାଉଅଛି ଯେତେ ।
ଏଥୁ ଉଦ୍ଧର ନାଥ ମୋତେ ।।୫୫
ଏ ଦୁଃଖ ଯେମନ୍ତେ ନୋହିବ ।
ଏମନ୍ତ କୃପା ମୋତେ ହେବ ।।୫୬
ଏ ରୂପେ ବ୍ୟାକୁଳେ କଷଣେ ।
ସ୍ତୁତି କରଇ ଅନୁକ୍ଷଣେ ।।୫୭

ଜୀବ ଉବାଚ

ତୁ ନାଥ ପୂର୍ଣ୍ଣଜ୍ଞାନମୟେ ।
ଆତ୍ମା ସ୍ୱରୂପେ ବସୁ ଦେହେ ।।୫୮
ସକଳ ହୃଦୟେ ପ୍ରକାଶ ।
ଗଗନେ ଯେହ୍ନେ ରବି ଭାସ ।।୫୯
ଏବେ ପ୍ରଣମୁଁ ତୋର ପାୟେ ।
ଭୋ ନାଥ କର ମୋତେ ଦୟେ ।।୬୦
ଏ ଗର୍ଭବାସ ଦୁଃଖ ମୋତେ ।
ଯେମନ୍ତେ ନଲାଗେ ଜଗତେ ।।୬୧
ନିର୍ଲେପ ନିରଞ୍ଜନ ତୁହି ।
ତୋ ରୂପ ନଜାଣନ୍ତି କେହି ।।୬୨
ତୋ ପାଦ ନଭଜିଲି ମୁହିଁ ।
ଅଶେଷ ଗର୍ଭେ ଦେହ ବହି ।।୬୩
ତେଣୁ ସକଳ ଗର୍ଭବାସ ।
ଜନ୍ମିଣ ପୁଣି ଯାଇ ନାଶ ।।୬୪
ତୁ ଏବେ ମୋତେ ଦୟାକର ।
ଏ ଗର୍ଭସଙ୍କଟୁ ଉଦ୍ଧର ।।୬୫
ଏ ମହାଗର୍ଭର କଷଣ ।
ଏଥୁ ଉଦ୍ଧର ନାରାୟଣ ।।୬୬
ଏ ଗର୍ଭୁ ହୋଇଲେ ନିସ୍ତାର ।
ତୋର ଚରଣେ ଚକ୍ରଧର ।।୬୭

Dr. Sudhanshu Sekhar Mishra

ମୁଁ ପାପୀ ଭଜିବି ନିରତେ ।
ଏ ଦୁଃଖ ନ ଲଭି ଯେମନ୍ତେ ।।୬୮
ଭୋନାଥ ତୋହର ଚରଣ ।
ପଶିଲି ଆଜି ମୁଁ ଶରଣ ।।୬୯
ଜଗତ ରକ୍ଷାର ନିମିତ୍ତ ।
ଇଚ୍ଛାଏ ନାନା ତନୁଭୂତ ।।୭୦
ମୁହିଁ ତ ଅଟଇ ଅସତ ।
ଏ ଗର୍ଭକଷ୍ଟ ମୋ ଉଚିତ ।।୭୧
ତୋ ରୂପ ଦେଖାଇଲୁ ଦେବ ।
ଅପୂର୍ବ ଦୟାଳୁ ସ୍ୱଭାବ ।।୭୨
ଗର୍ଭକୁ ଆଣିଲା ଯେ ମୋତେ ।
ତା ପାଦେ ସ୍ତୁତି ମୋ ନିରତେ ।।୭୩
ତା ପାଦେ ପଶିଲି ଶରଣ ।
ସେ ମୋତେ କରୁ ପରିତ୍ରାଣ ।।୭୪
ସେବଇ ତାର ପାଦଗତେ ।
ଅଶେଷ କର୍ତ୍ତା ଯେ ଜଗତେ ।।୭୫
ଯେ ପ୍ରଭୁ ସୃଷ୍ଟି ରକ୍ଷା ପାଇଁ ।
ଇଚ୍ଛାରେ ଶରୀର ଧରଇ ।।୭୬
ଯେ କଲା ଏତାଦୃଶ ଗତି ।
ମୁଁ ପାପୀ ଅତୀବ ଦୁର୍ମତି ।।୭୭
ସେ ପ୍ରଭୁ ଏକଷ୍ଟୁ ରଖିବେ ।
ତା ବିନୁ ଆଶ୍ରା ନାହିଁ ଜୀବେ ।।୭୮
ତାହାଙ୍କ ଅଭୟ ଚରଣେ ।
ଶରଣ ଗଲି ଏ କଷଣେ ।।୭୯
ସେ ପାଦେ ଯେ ପ୍ରାଣୀ ପ୍ରପନ୍ନ ।
ନ ଲାଗେ ଏ ଦୁଃଖ ବୃଜିନ ।।୮୦
ମୁଁ କଷ୍ଟେ ଜନନୀ ଗର୍ଭରେ ।
ଅଛଇ ମାୟା କଳେବରେ ।।୮୧
ଜୀବ ସ୍ୱରୂପେ ଅଛି ମୁହିଁ ।
ମୋ ନିଜକର୍ମେ ବନ୍ଦୀ ହୋଇ ।।୮୨
ଅଛଇ ବନ୍ଧନ ପରାୟେ ।
ଏ ଗର୍ଭପୀଡ଼ା ଅତି ଭୟେ ।।୮୩
ନମଇଁ ତାହାଙ୍କ ପୟରେ ।
ଯେ ଦେବ ଛନ୍ତି ମୋ ହୃଦରେ ।।୮୪
ବିଶୁଦ୍ଧ ବିକାର-ବିହୀନ ।
ଅଖଣ୍ଡବୋଧ ଅନୁଦିନ ।।୮୫

ତ୍ରିବିଧ ସନ୍ତାପେ ତାପିତ ।
ହୃଦୟେ ହୁଅଇ ପ୍ରତୀତ ।।୮୬
ନମଇଁ ତାହାଙ୍କ ଚରଣେ ।
ସେ ନାଥ ରଖୁ ଏ କଷଣେ ।।୮୭
ଏ ପଞ୍ଚଭୂତେ ବିରଚିତ ।
ଏମନ୍ତ ଦେହେ ମୁହିଁ ସ୍ଥିତ ।।୮୮
ମିଥ୍ୟାରେ ଆଚ୍ଛନ୍ନ ହୋଇଛି ।
ବୁଝିଲେ ସତ୍ୟ ନୋହେ କିଛି ।।୮୯
ଇନ୍ଦ୍ରିୟ ଅର୍ଥେ ଗୁଣେ ଚିତ୍ତ ।
ଏଥେଁ ମୁଁ ବଦ୍ଧ ଅବିରତ ।।୯୦
ବନ୍ଦଇ ସେ ପ୍ରଭୁ ଚରଣ ।
ଏ କଷ୍ଟୁ କରିବେ ତାରଣ ।।୯୧
ଅକୁଣ୍ଠ ମହିମା ତାହାର ।
କେବେ ହେଁ ନଥାଇ ବିକାର ।।୯୨
ଯେଣୁ ସେ ଆଦି ନିରଞ୍ଜନ ।
ପ୍ରକୃତି ପୁରୁଷହୁଁ ଭିନ୍ନ ।।୯୩
ସେ ପ୍ରଭୁ ପରମ-ପୁମାନ ।
ଦିଅନ୍ତୁ ମୋତେ ଦିବ୍ୟଜ୍ଞାନ ।।୯୪
ଯା ମାୟା ଆବୋରି ରହିଛି ।
ଏଣୁ ମୁଁ ସବୁ ବିସ୍ମରୁଛି ।।୯୫
ତେଣୁ ଭ୍ରମଇ ଏ ସଂସାରେ ।
ଶ୍ରମେ କାତର ନିରନ୍ତରେ ।।୯୬
ତାହାଙ୍କୁ ଭଜିବଇଁ ଯେବେ ।
ଏ ଦୁଃଖୁ ନିସ୍ତାରିବେ ତେବେ ।।୯୭
ଭଜିଲେ ନିଜରୂପ ପାଇ ।
ନ ଭଜି ପାରହେବି କାହିଁ ।।୯୮
ସେ ପ୍ରଭୁ ବିନୁ ଏହି ଜ୍ଞାନ ।
କେ ଦେଇ ପାରି ମୋତେ ଆନ ।।୯୯
ତା ତହୁଁ ଜ୍ଞାନ ମୁଁ ପାଇଛି ।
ଯେଣୁ ମୁଁ ତ୍ରିକାଳ ଦେଖୁଛି ।।୧୦୦
ଏଣୁ ଏ ଗର୍ଭଦୁଃଖ ଘୋର ।
ନ ଜାଣେ ଶରୀର ମୋହର ।।୧୦୧
ଏଣୁ ଯେ ତାହାଙ୍କୁ ଭଜିବି ।
ତେବେ ସେ କର୍ମକୁ ଜିଣିବି ।।୧୦୨
ଯାହାର ଅଂଶ ସ୍ଥିରଚରେ ।
ବ୍ୟାପିଛି ଭବନ ଭିତରେ ।।୧୦୩

ବନ୍ଦଇ ତାହାଙ୍କ ଚରଣ ।
ଭୋ ନାଥ ଦେବା ଦିବ୍ୟଜ୍ଞାନ ।।୧୦୪
ବାଳ ଚଞ୍ଚଳ ଭାବ ମୁହିଁ ।
ତୋ ପାଦ-କମଳେ ପୁଛଇ ।।୧୦୫
ଜନନୀ-ଉଦର-ଗୁହାରେ ।
ପୁରୀଷ ମୂତ୍ରାଦି କୁପରେ ।।୧୦୬
ଅବଶେ ତହିଁ ମୁଁ ପଡ଼ିଛି ।
ଜଠରଅଗ୍ନି ଦହୁ ଅଛି ।।୧୦୭
ତହୁଁ ବାହାର ହେବା ପାଇଁ ।
ସଭୟେ ମାସ ଗଣୁଛଇଁ ।।୧୦୮
କେବେ ସେ କରିବେ ବାହାର ।
ସେ ପ୍ରଭୁ କୃପା-ପାରାବାର ।।୧୦୯
ଯେ କଲା ଏତାଦୃଶ ଗତି ।
ଲଭିଲି ଦିବ୍ୟଜ୍ଞାନ ମତି ।।୧୧୦
ସେ ବଡ଼ କରୁଣାସାଗର ।
ଯେ ମୋତେ ଦେଲେ ଜ୍ଞାନପର ।।୧୧୧
ମୁଁ ତାଙ୍କୁ କିସେବା କରିବି ।
କି ଦ୍ରବ୍ୟ ଦେଇଣ ତୋଷିବି ।।୧୧୨
ସେ ନାଥ ଦୀନବନ୍ଧୁ ଯେବେ ।
ସ୍ୱଗୁଣେ ତୁଷ୍ଟ ହେବେ ତେବେ ।।୧୧୩
ଅଞ୍ଜଳି ବିନୁ ନାରାୟଣ ।
ମୋହର ଦ୍ରବ୍ୟ ନାହିଁ ଆନ ।।୧୧୪
ଏ ଯେତେ ଜୀବପଶୁ ଆଦି ।
ଅଜ୍ଞାନ ଦେହେ ନିରବଧି ।।୧୧୫
ଦେଖନ୍ତି ସୁଖ ଦୁଃଖ ମାତ୍ର ।
ଏଣୁ ହୁଅନ୍ତି କ୍ଳେଶପାତ୍ର ।।୧୧୬
ଯେ ଦିବ୍ୟଜ୍ଞାନ ଦେଲେ ମୋତେ ।
ଯେ ବୁଦ୍ଧି ଘେନି ଅବିରତେ ।।୧୧୭
ଏ ଦେହ ଭିତର ବାହାରେ ।
ପ୍ରତ୍ୟକ୍ଷ ଦେଖୁଛି ତାହାରେ ।।୧୧୮
ଏ ଘେନି ସୁଖେ ଆଶା ନାହିଁ ।
ଦୁଃଖକୁ ଭୟ ଅବା କାହିଁ ।।୧୧୯
ଯେ ମୋତେ ଦେଲେ ଦିବ୍ୟଜ୍ଞାନ ।
ସେ ପାଦେ ମୋହର ବନ୍ଦନ ।।୧୨୦
ସେ ପ୍ରଭୁ ରୂପ ମନୋହର ।
ଦର୍ଶନେ ଲୋଭ ଚିତ୍ତ ମୋର ।।୧୨୧

Dr. Sudhanshu Sekhar Mishra

ସେ ରୂପ-ସୁଧା ଆପ୍ୟାୟନେ ।
ତୃଷିତ ଲୋଚନ ସଘନେ ।।୧୨୨
କେବେ ହେଁ ନପାରଇ ଛାଡ଼ି ।
ଆନନ୍ଦେ ସୁଧାର୍ଣ୍ଣବେ ବୁଡ଼ି ।।୧୨୩
ବହୁତ ଦୁଃଖର ଆବାସ ।
ଏହି ମୋହର ଗର୍ଭବାସ ।।୧୨୪
ମୁଁ ଦୁଃଖେ ବଞ୍ଚିବି ଗର୍ଭରେ ।
କେବେ ହେଁ ନଯିବି ବାହାରେ ।।୧୨୫
ସଂସାର ଅନ୍ଧକୂପ ଅତି ।
ତହିଁକି ଯେ ଜୀବେ ଗମନ୍ତି ।।୧୨୬
ତୋ ମାୟା ଘୋଟଇ ତାହାକୁ ।
ସେ ସତ୍ୟ ମଣଇଁ ମିଥ୍ୟାକୁ ।।୧୨୭
ପଡ଼ଇ ସଂସାର-ଚକ୍ରରେ ।
ପୁତ୍ର କଳତ୍ର ମାୟା-ଘୋରେ ।।୧୨୮
ଏଣୁ ବାହାରେ ନ ଯିବଇଁ ।
ମୁଁ ଗର୍ଭେ ମୋକ୍ଷ ସାଧିବଇଁ ।।୧୨୯
ବ୍ୟାକୁଳ ନୋହି ଏ ଗର୍ଭର ।
ସହିବି ଦୁଃଖ ମହାଘୋର ।।୧୩୦
ଆତ୍ମାକୁ ତାରିବି ଏଠାରେ ।
ମନ ନିବେଶି ଆତ୍ମାଠାରେ ।।୧୩୧
ସାରଥି ବୁଦ୍ଧି ବିବେକକୁ ।
କରିଣ ତାରିବି ଆତ୍ମାକୁ ।।୧୩୨
ଗର୍ଭ ନିବାସ ଦୁଃଖ ଆର ।
ଯେମନ୍ତ ନୋହିବ ମୋହର ।।୧୩୩
ବିଷ୍ଣୁର ଚରଣେ ପଶିବି ।
ଅଶେଷ ଗର୍ଭେ ମୁଁ ନ ଯିବି ।।୧୩୪

ମୈତ୍ରେୟ ଉବାଚ

ଏମନ୍ତେ ନାନା ସ୍ତୁତି କରି ।
ଗର୍ଭ-ଯାତନା ଦୁଃଖେ ଡରି ।।୧୩୫
ସେ ଜୀବ ଅତି ଦୁଃଖେ ଛନ୍ନ ।
ଦୁର୍ଗନ୍ଧ ଆଘ୍ରାଣେ ଅଜ୍ଞାନ ।।୧୩୬
କହନ୍ତି କପିଳ ଗୋସାଇଁ ।
ସେ ଦେବହୂତି ମୁଖ ଚାହିଁ ।।୧୩୭

କପିଳ ଉବାଚ

ବିନୟ ଭାବେ ସ୍ତୁତି କରେ ।
ଏ ଜୀବ ଜନନୀ ଉଦରେ ।।୧୩୮
କେବେ ହେଁ ନୋହେ ତା ଉଶ୍ବାସ ।
ଦୁଃଖେ ପୀଡ଼ିତ ଦଶମାସ ।।୧୩୯
ଏମନ୍ତ ଦୁଃଖ ଅବଶେଷେ ।
ଶରୀରୁ ପବନ ପ୍ରକାଶେ ।।୧୪୦
ତାହାକୁ ପ୍ରସବ ମାରୁତ ।
ପ୍ରେରଣ କରଇ ବହୁତ ।।୧୪୧
ତକ୍ଷଣେ ଅଧୋମୁଖ କରି ।
ପକାଇ ଯୋନିଦ୍ୱାର ଭରି ।।୧୪୨
ଗର୍ଭ ଭିତରୁ ତାକୁ ହେଳେ ।
ପବନ ଝାଙ୍କି ମହାବଳେ ।।୧୪୩
ସେ ଯୋନିଦ୍ୱାର ମାର୍ଗଗତେ ।
ବାହାର କରଇ ତୁରିତେ ।।୧୪୪
ଅତି ସଂକୀର୍ଣ୍ଣ ଜନ୍ମଦ୍ୱାର ।
କଷ୍ଟରେ ହୁଅଇ ବାହାର ।।୧୪୫
ସ୍ତମ୍ଭିତେ ଶ୍ୱାସ ନିରୋଧଇ ।
ସେ ଗର୍ଭଜ୍ଞାନ ପାଶୋରଇ ।।୧୪୬
ଅଜ୍ଞାନେ ପଡ଼ଇ ଭୂମିରେ ।
ରକ୍ତ-ଜର୍ଜର କଳେବରେ ।।୧୪୭
କୃମିର ପ୍ରାୟେ ଚେଷ୍ଟା କରେ ।
ରୋଦନ କରଇ କାତରେ ।।୧୪୮
ଲଭଇ ବିପରୀତ ଗତି ।
ସେ ଜ୍ଞାନ ଆଉ ନ ସ୍ମରତି ।।୧୪୯
ପାଳନ୍ତି ଜ୍ଞାତି ବନ୍ଧୁଜନେ ।
ତା ଅଭିମତ କେହୁ ଜାଣେ ।।୧୫୦
କ୍ଷୁଧାରେ ତକ୍ଷଣେ ରୋଦଇ ।
ତା କେହି ବୁଝି ନପାରଇ ।।୧୫୧
ବୋଲନ୍ତି ପେଟ ବଥାଇଲା ।
ଏଣୁ ଏ ବ୍ୟାକୁଳେ ରୋଦିଲା ।।୧୫୨
ମୁଖେ ଦିଅନ୍ତି ନିମ୍ବରସ ।
ଜୀବ ତ ପିଅଇ ଅବଶ ।।୧୫୩
ନିଷେଧି ତାହା ନ ପାରଇ ।
ଯାହା ଦିଅନ୍ତି ତାହା ଖାଇ ।।୧୫୪
ଅଶୁଚି ଶଯ୍ୟାରେ ଶୟନ ।
କରନ୍ତି ତାକୁ ପରିଜନ ।।୧୫୫
ତହିଁ ଅବଶେ ପଡ଼ିଥାଇ ।
ପିମ୍ପୁଡ଼ି ମାଛି କୀଟ ଖାଇ ।।୧୫୬
ନିବାରେ ନୋହଇ ସମର୍ଥ ।
ଯେଣୁ ନଚଳେ ପଦ ହସ୍ତ ।।୧୫୭
ଉଠି ବସିତେ ଶକ୍ୟ ନାହିଁ ।
ବନ୍ଧନ ଜୀବ ପ୍ରାୟ ହୋଇ ।।୧୫୮
କୋମଳ ଚର୍ମ ତା ଶରୀରେ ।
କାଟନ୍ତି ମଶକ ନିର୍ଭରେ ।।୧୫୯
ଦଶନ ବିକାଶି କାଟନ୍ତି ।
ଶୋଷିଣ ଶୋଣିତ ପିବନ୍ତି ।।୧୬୦
ତହୁଁ ସେ ଜ୍ଞାନହୀନ ହୋଇ ।
ସର୍ବଦା ରୋଦନ କରଇ ।।୧୬୧
ଏ ରୂପେ ପାଞ୍ଚବର୍ଷ ଯାଏ ।
ଶୈଶବେ ଦୁଃଖ ଭୋଗ ହୁଏ ।।୧୬୨
ପୌଗଣ୍ଡ କାଳେ ମହା ଦୁଃଖ ।
ତହିଁ ନପାଇ କିଛି ସୁଖ ।।୧୬୩
ତଦନ୍ତେ ବିଦ୍ୟା ପ୍ରପଠନେ ।
ଭୟେ ତରସ୍ତ ପ୍ରତିଦିନେ ।।୧୬୪
ମରଣୁ ସେ ଦୁଃଖ ବଳଇ ।
ନିର୍ଭୟସ୍ଥାନେ ପଶେ ଯାଇ ।।୧୬୫
ଏମନ୍ତେ ଜୀବ ଲଭେ କ୍ଳେଶ ।
ନ ପାଇ ଜ୍ଞାନ ଉପଦେଶ ।।୧୬୬
ଯୌବନାବସ୍ଥା ପ୍ରବେଶେଣ ।
ତହିଁ ପୀଡ଼ିତ କାମବାଣ ।।୧୬୭
ମନେ କଳ୍ପିତ ଯା କରଇ ।
ସେ ଯେବେ ଆସି ନଘଟଇ ।।୧୬୮
ଶୋକରେ ହୁଅଇ ବାଧିତ ।
କ୍ରୋଧିତ ହୋଏ ଅବିରତ ।।୧୬୯
ଏମନ୍ତ ପ୍ରତି ସମ୍ବତ୍ସରେ ।
କାମ ବଢ଼ଇ ନିରନ୍ତରେ ।।୧୭୦
ଯେ ରୂପେ ଶରୀର ବଢ଼ଇ ।
ତା ସଙ୍ଗେ କାମାଦି ବଢ଼ଇ ।।୧୭୧
ପ୍ରକୋପ ବଢ଼େ କଳେବରେ ।
କାମିନୀ ସଙ୍ଗେ କେଳୀ କରେ ।।୧୭୨
ଅତ୍ୟନ୍ତ କାମେ ହୋଇ ବାଇ ।
ଆପଣା ନାଶ ନ ଜାଣଇ ।।୧୭୩
ନାନା ଯୋନିରେ ଆଶା କରେ ।
ଏ ଯୁବା ବୟସ ବେଭାରେ ।।୧୭୪

Dr. Sudhanshu Sekhar Mishra

ଏମନ୍ତେ ବଢ଼େ ଦିନେ ଦିନେ ।
ଯେ ରୂପେ ପ୍ରୌଢ଼ ସେ ଯୌବନେ ।।୧୭୫
ବ୍ୟାକୁଳ ଧନ ଅରଜନେ ।
ଚିତ୍ତ ବ୍ୟାକୁଳ ଦୁଃଖମନେ ।।୧୭୬
ଦିନକୁ ଦିନ କାମ ଗାଢ଼େ ।
ନିରତେ ଅହଙ୍କାର ବଢ଼େ ।।୧୭୭
ସନ୍ତତି ଜନମ ବ୍ୟାକୁଳେ ।
କାମିନୀ ସଙ୍ଗେ ରତି ମେଳେ ।।୧୭୮
ବଞ୍ଚଇ ସୁଖ ପ୍ରାୟ ମଣି ।
ଆତ୍ମାର ଦୁଃଖ ନ ପ୍ରମାଣି ।।୧୭୯
ଏ ପଞ୍ଚଭୂତ କଳେବରେ ।
ଆପଣା ବୋଲି ଯା ଆଦରେ ।।୧୮୦
ମୁଁ ହର୍ତ୍ତା କର୍ତ୍ତା ସର୍ବଠାରେ ।
ଏ ମୋର ଛନ୍ତି ଯେତେ ଘରେ ।।୧୮୧
ଏହି କୁମତି ଭାବୁଥାଇ ।
ଆପଣା ହିତ ନଜାଣଇ ।।୧୮୨
ଚର୍ମ ଶୋଣିତ ଗାଢ଼ ଭିତ୍ତି ।
ଅଶେଷ ରୋଗ ଯହିଁ ସ୍ଥିତି ।।୧୮୩
ଏ ମୋ ଶରୀର ବୋଲି ଜାଣେ ।
କ୍ଷଣ-ବିଧ୍ୱଂସ ନ ପ୍ରମାଣେ ।।୧୮୪
ଏ ଦେହ ଅସତ୍ୟ ସ୍ୱଭାବେ ।
ଯେ ଆତ୍ମବୁଦ୍ଧି ଅନୁଭବେ ।।୧୮୫
ପରମହିଂସନେ କରେ ମତି ।
ନିଜ ଶରୀର ସୁଖ ଚିନ୍ତି ।।୧୮୬
ଅସାଧୁ ସଙ୍ଗେ ନିତ୍ୟେ ଥାଇ ।
ସୁସାଧୁ ସଙ୍ଗ ନ ଇଚ୍ଛଇ ।।୧୮୭
ନିତ୍ୟେ ବିଷୟା ସଙ୍ଗ ଚିନ୍ତି ।
ଏ ଯେ ନ ଲଭେ ଆତ୍ମଗତି ।।୧୮୮
ଆହାର ଶୃଙ୍ଗାର ଇଚ୍ଛଇ ।
ନିବେଦେ ନିତ୍ୟେ ମନଦେଇ ।।୧୮୯
ତାର ବିଶ୍ୱାସେ ନିତ୍ୟେ ମଜ୍ଜେ ।
ଜିହ୍ୱା ଇନ୍ଦ୍ରିୟ ରସେ ମଜ୍ଜେ ।।୧୯୦
ଭଜଇ ବିଷୟ ତରଙ୍ଗ ।
କେବେହେଁ ନୋହେ ସାଧୁ ସଙ୍ଗ ।।୧୯୧
ଆତ୍ମାକୁ ନକରେ ବିଚାର ।
ଏଣୁ ଏ ଦୁଃଖ ମହାଘୋର ।।୧୯୨

ଯେ ଦେହେ ନାନା କ୍ଲେଶ ଦେଇ ।
କର୍ମ କରଇ ତାର ପାଇଁ ।।୧୯୩
ଯେ କର୍ମେ ବନ୍ଧ ପ୍ରାୟ ହୋଇ ।
ଅଜ୍ଞାନେ ପୁଣ ଜନ୍ମ ହୋଇ ।।୧୯୪
ଶିଶୁ ଉଦର ସୁଖାତୁରେ ।
ଉଦ୍ୟମ କରେ ନିରନ୍ତରେ ।।୧୯୫
ଏମନ୍ତ ଅସତ ଯେ ଜନ ।
ତାର ସଙ୍ଗତେ କରେ ମନ ।।୧୯୬
ତାଙ୍କ ସ୍ୱକର୍ମ ଆଚରଇ ।
ଯେ ମାର୍ଗେ ନରକେ ପଡ଼ଇ ।।୧୯୭
ଭୋମାତ ଶୁଣ ତଦନ୍ତରେ ।
ପୂର୍ବେ କହିଛୁ ଯେ ପ୍ରକାରେ ।।୧୯୮
ସେ ଭାବେ ପୁଣି ନର୍କେପାଇ ।
ଯାତନା ଅନେକ ଭୁଞ୍ଜଇ ।।୧୯୯
ଏଣୁ ଅସତ ସଙ୍ଗ କଲେ ।
ବିନାଶ ହୋଇ ଅବହେଳେ ।।୨୦୦
ଅସତ ସଙ୍ଗ ସତ୍ୟ ନାଶେ ।
ଶଉଚ ତପ ନ ପ୍ରକାଶେ ।।୨୦୧
ମଉନ ବ୍ରତାଦି ନ ରହେ ।
ବୁଦ୍ଧି-ବିବେକ ହୋନ୍ତି କ୍ଷୟେ ।।୨୦୨
ଲଜ୍ଜା ଛାଡ଼ଇ କାନ୍ତି ଯଶ ।
କ୍ଷମାଦି ଅଯଶେ ବିନାଶ ।।୨୦୩
ବିନାଶ ହୋନ୍ତି ସମ ଦମ ।
ଐଶ୍ୱର୍ଯ୍ୟ ହୋଏ ଉପଶମ ।।୨୦୪
ଅଶାନ୍ତ ଜନେ ସଙ୍ଗ ହୋଇ ।
ଯେ ମୂଢ଼ ଭାବେ ନିତ୍ୟେ ରହି ।।୨୦୫
ଜ୍ଞାନ ନ ବୁଝେ ଦମ୍ଭ ପଣେ ।
ମିଥ୍ୟା ଭାଷଇ ଅନୁକ୍ଷଣେ ।।୨୦୬
ଯେ ଦେହେ ଆତ୍ମବୁଦ୍ଧି କରେ ।
ସାଧୁଜନଙ୍କୁ ନ ଆଦରେ ।।୨୦୭
ବୋଲଇ ମୋ ତହୁଁ ଅପରେ ।
କେ ଭାଗ୍ୟବନ୍ତ ଏ ସଂସାରେ ।।୨୦୮
ମୁଁ ଧର୍ମ ଜାଣଇ ସକଳ ।
ଏଣୁ ପୂଜିତ ଏ ଶୟଳ ।।୨୦୯
ମୋ ତହୁଁ ଧନବନ୍ତ କେହି ।
ପ୍ରତୁଲ୍ୟ ନୋହିବ ଏ ମହୀ ।।୨୧୦

ମୋ ଧନ ଉପାୟେ ମିଳଇ ।
ଏଣୁ ମୋହର ଭୟ ନାହିଁ ।।୨୧୧
ଏମନ୍ତେ ଯେବା ଗର୍ବ କରେ ।
ଦେହାନ୍ତେ ନରକେ ସଞ୍ଚରେ ।।୨୧୨
ହୁଅନ୍ତି ନାରୀଙ୍କ ଅଧୀନ ।
ଖେଳିବା ହରିଣ ଯେସନ ।।୨୧୩
ଏମନ୍ତ ସଙ୍ଗ ନକରିବ ।
ଯେବେ ସୁଭାଗ୍ୟେ ଇଚ୍ଛା ଥିବ ।।୨୧୪
ଆବର ଶୁଣସି ଗୋ ମାଏ ।
ଯେମନ୍ତେ ପ୍ରାଣୀ ନାଶ ପାଏ ।।୨୧୫
ଯେଣୁ ଯୁବତୀ ସଙ୍ଗେ ମନ ।
ପ୍ରାଣୀର ହୋଏ ନିବନ୍ଧନ ।।୨୧୬
ଏମନ୍ତ ଅନ୍ୟ ସଙ୍ଗ ନାହିଁ ।
ଏଣୁ ଯୁବତୀ ସଙ୍ଗୀ ନୋହି ।।୨୧୭
ତାହାଙ୍କ ସଙ୍ଗୀ ଯେତେ ଜନ ।
ସେ ସଙ୍ଗ ନକରିବ ମନ ।।୨୧୮
ସେ ସର୍ବେ ମୋହିତ କରନ୍ତି ।
ସେ ସଙ୍ଗେ ପ୍ରାଣୀ ନାଶଯାନ୍ତି ।।୨୧୯
ପୂର୍ବେ ବିଧାତା କନ୍ୟା ଚାହିଁ ।
ତା ରୂପ ଦେଖି ବନ୍ଦୀ ହୋଇ ।।୨୨୦
ସେ କନ୍ୟା ପିତାର ଅଜ୍ଞାନେ ।
ପଳାଇ ଗଲା ଘୋରବନେ ।।୨୨୧
ହରିଣୀ ରୂପ ସେ ଧଇଲା ।
ଛଦ୍ମେ ବନସ୍ତେ ପଶିଲା ।।୨୨୨
ବିଧାତା ତା ଗତି ବିଚାରି ।
ସେହି ହରିଣ ରୂପ ଧରି ।।୨୨୩
ଲଜ୍ଜା ଛାଡ଼ିଲେ ବେଦବ୍ରହ୍ମା ।
ନାରୀଙ୍କ ଏମନ୍ତ ମହିମା ।।୨୨୪
ଏଣୁ କେ ତା ମୁଖୁଁ ତରିବ ।
ଯହିଁ ମୋହିତ ବ୍ରହ୍ମାଶିବ ।।୨୨୫
ସେ ସଙ୍ଗ ଛାଡ଼ିବ ଯତନେ ।
ଶ୍ରେୟକୁ ବାଞ୍ଛା ଥିଲେ ମନେ ।।୨୨୬
ସେ ବ୍ରହ୍ମା ଯାହାକୁ ସର୍ଜିଲା ।
ତା ହେତୁ ଆପେ ମୋହଗଲା ।।୨୨୭
ସେ ସଙ୍ଗ ଯେତେ ପ୍ରାଣୀ କଲେ ।
ଦେବ ମାୟାରେ ମୋହଗଲେ ।।୨୨୮

Dr. Sudhanshu Sekhar Mishra

ଏମନ୍ତ କେହୁ ପ୍ରାଣୀ ଅଛି ।
ନାରୀମାୟାରେ ନ ପଡ଼ିଛି ।।୨୨୯
ବିନାଶେ ପ୍ରଭୁ ଭଗବାନ ।
ନାରୀଙ୍କି ନ ଜିଣିଲେ ଆନ ।।୨୩୦
ଦେଖ ମୋ ଯୋଗମାୟା ବଳ ।
ଯୁବତୀ ସ୍ୱରୂପେ ପ୍ରବଳ ।।୨୩୧
ସେ ଯାକୁ ଅପାଙ୍ଗେ ଇଛଇ ।
ସେ ପ୍ରାଣୀ ପଡ଼ି ମୋହଯାଇ ।।୨୩୨
ଦିଗ ବିଜୟୀ ଯେବେ ହୋନ୍ତି ।
ତଥାପି ନାରୀବଶେ ଥାନ୍ତି ।।୨୩୩
ସେବନ୍ତି ନାରୀଙ୍କ ପୟର ।
ଏମନ୍ତ ମାୟାବଳ ମୋର ।।୨୩୪
ଯେ ମୋକ୍ଷସାଧନ ଇଚ୍ଛିବ ।
ସେ ନାରୀସଙ୍ଗ ନକରିବ ।।୨୩୫
ସେବିଣ ସାଧୁ ସୁଜ୍ଞଜନ ।
ଲଭି ଯେ ଥାଇ ଆତ୍ମଜ୍ଞାନ ।।୨୩୬
ଏମନ୍ତ ଯୋଗୀ ସେବା ହୋନ୍ତି ।
ତାହାଙ୍କୁ ଯୁବତୀ ନାଶନ୍ତି ।।୨୩୭
ନାରୀ ଅଜ୍ଞାନ ତମଦ୍ୱାର ।
ଯୋଗୀ ଛାଡ଼ିବେ ସଙ୍ଗ ତାର ।।୨୩୮
କେବଳ ମାୟାରେ ଯୁବତୀ ।
ନିର୍ମାଣ କଲା ପ୍ରଜାପତି ।।୨୩୯
ସେ ସେବା କରିବାର ଛଳେ ।
ପାଶକୁ ଆସୁଥାଇ ବଳେ ।।୨୪୦
କପଟେ ବିନୟ ବଚନ ।
କହି ବୋଧଇ ପ୍ରାଣୀମନ ।।୨୪୧
ବ୍ୟାଧ ଯେସନେ ଛନ୍ଦ କରି ।
ଜୀବ ବିନାଶେ ପାଶେ ଭରି ।।୨୪୨
ତେସନ ନାରୀଙ୍କ ବଚନ ।
ବିଶ୍ୱାସୀ ହରେ ପ୍ରାଣୀ ମନ ।।୨୪୩
ତୃଣଆଚ୍ଛନ୍ନ କୂପେ ଥାଇ ।
ପ୍ରାଣୀ ବିନାଶ ଚିତ୍ତେ ଧ୍ୟାଇ ।।୨୪୪
ନିଶି ଦିବସେ କୂପଦ୍ୱାରେ ।
ଜାଗ୍ରତେ ରହେ ନିରନ୍ତରେ ।।୨୪୫
ସେ ପଥେ ଯେ ପ୍ରାଣୀ ଗମନ୍ତି ।
ସେ କୂପେ ପଡ଼ି ନାଶଯାନ୍ତି ।।୨୪୬

ସେ କୂପ ଅତି ତମଘୋର ।
ଦେଖି ଭ୍ରମନ୍ତି ସୁରନର ।।୨୪୭
ତାହାର ଅନ୍ତଃ ପାର ନାହିଁ ।
ଗଭୀର କେ ପାରିବ କହି ।।୨୪୮
ଯହିଁ ଅଶେଷ ଉଦେ ଅସ୍ତ ।
ପ୍ରାଣୀ ନଜାଣେ ତାର ତତ୍ତ୍ୱ ।।୨୪୯
ସେ କୂପେ ପ୍ରାଣୀ ସୁଖଭରେ ।
ପଡ଼ି ବୃକ୍ଷାଦି ଯେବେ ଧରେ ।।୨୫୦
ସେ ସର୍ବେ ଉପୁଡ଼ି ପଡ଼ନ୍ତି ।
ସେ କୂପେ ପଡ଼ି ନବର୍ତ୍ତନ୍ତି ।।୨୫୧
ବୃକ୍ଷାଦି ଉପଲକ୍ଷ୍ୟ ଯେତେ ।
ଧର୍ମାଦି ପୁଣ୍ୟ ଏ ସମସ୍ତେ ।।୨୫୨
ସେ କୂପ ପୁଣ୍ୟ-ବିନାଶିନୀ ।
ନିର୍ମିତ କଲେ ପଦ୍ମଯୋନି ।।୨୫୩
ସେ ଜ୍ଞାନମାର୍ଗ ଆଚ୍ଛାଦଇ ।
ଅଜ୍ଞାନୀଜନେ ସୁଖମୟୀ ।।୨୫୪
ସେ ସଙ୍ଗେ ପୁଣ୍ୟକର୍ମ କଲେ ।
ସକଳ ନାଶ ଯାଇ ଭଲେ ।।୨୫୫
ଏ ଘେନି କୂପ ମାର୍ଗ ଗତେ ।
ଜ୍ଞାନୀ ନ ଗମେ ଭୟ ଚିତ୍ତେ ।।୨୫୬
ଦୁର୍ଗମ-ଦ୍ୱାର କୂପ କହି ।
ତୃଣ ଆଚ୍ଛାଦି ରୂପ ଯହିଁ ।।୨୫୭
ଯେବେ ଅଗ୍ୟାନେ ଭ୍ରମେ ଜୀବ ।
ତା ମୃତ୍ୟୁ ପ୍ରାୟେକ ଭାବିବ ।।୨୫୮
ମୋ ମାୟା ନାରୀରୂପ ହୋଇ ।
ପୁରୁଷ ପ୍ରାଣ ବିନାଶଇ ।।୨୫୯
ତାହାକୁ ବୋଲେ ମୋ ଯୁବତୀ ।
ତା ଶିରେ ଗୃହଧର୍ମ ଦ୍ୟନ୍ତି ।।୨୬୦
ଧନ ଜୀବନ ଆଦି ଯେତେ ।
ସମର୍ପି ଥାଇ ସ୍ନେହ ଚିତ୍ତେ ।।୨୬୧
ଗୁରୁଜନଙ୍କୁ ମାୟା କରେ ।
ତାର ବିଶ୍ୱାସେ ଦିନ ହରେ ।।୨୬୨
ସେବକଜନ ପ୍ରାୟ ହୋଇ ।
ନିରତେ ସେବେ ସୁଖ ପାଇ ।।୨୬୩
ଏ ଜୀବ ପ୍ରାଣ ଅନ୍ତଃକାଳେ ।
ତା ରୂପ ଧ୍ୟାନେ ସୁନିଷ୍ଠଳେ ।।୨୬୪

ସେ ନାରୀ ସ୍ୱରୂପ ଧରଇ ।
ପୁରୁଷଅଙ୍ଗ ପ୍ରତେଜଇ ।।୨୬୫
ସେ ମାୟାରୂପ ହୋଏ ପତି ।
ଗୃହ ତନୟ ସୁତା ନାତି ।।୨୬୬
ତାହାଙ୍କ ସ୍ନେହେ ବଶ ହୋଇ ।
ସେ ମୃତ୍ୟୁ ବୋଲି ନ ଜାଣଇ ।।୨୬୭
ଯେସନେ ବ୍ୟାଧ ଗୀତ ଗାଇ ।
ମୃଗ ତା ଶୁଣି ତୋଷ ହୋଇ ।।୨୬୮
ଗୀତରେ ଦେଇଥାଇ ମନ ।
ନ ଜାଣେ ଆତ୍ମା ବିନାଶନ ।।୨୬୯
ଏ ଜୀବ ରୂପ କଳେବର ।
କର୍ମ କରଇ ନିରନ୍ତର ।।୨୭୦
ଲୋକରୁ ଅନ୍ୟ ଲୋକ ଯାଇ ।
ସଞ୍ଚିତ କର୍ମ ସେ ଭୁଞ୍ଜଇ ।।୨୭୧
ସେ କର୍ମବଶେ ଗତାଗତ ।
କର୍ମ କରଇ ଅବିରତ ।।୨୭୨
କର୍ମର ସମାପତ ନାହିଁ ।
ଯେଣୁ ସନ୍ତତ କରଇ ।।୨୭୩
ଯେ ସୂକ୍ଷ୍ମଲିଙ୍ଗ କଳେବର ।
ସେହିଟି ଉପାଧି ଜୀବର ।।୨୭୪
ସ୍ଥୂଳ ଶରୀର ଭୋଗସ୍ଥାନ ।
ସେ ପଞ୍ଚଭୂତେ ସୁଘଟନ ।।୨୭୫
ଏ ବେନି କଳେବର ଯେବେ ।
କାର୍ଯ୍ୟକୁ କ୍ଷମ ଏ ନୋହିବେ ।।୨୭୬
ଜୀବର ଏହିଟି ମରଣ ।
ଜନ୍ମଟି ଦେହ ଦରଶନ ।।୨୭୭
ଏହାକୁ ବୋଲି ମୃତ୍ୟୁ ଜନ୍ମ ।
ମାୟା କରିଛି ଏତେ ଭ୍ରମ ।।୨୭୮
ଏଥକୁ ଦୃଷ୍ଟାନ୍ତ କହିବା ।
ଜନ୍ମ ମରଣେ ବୁଝାଇବା ।।୨୭୯
ନେତ୍ର ଗୋଳକ ଯେତେବେଳେ ।
ବ୍ୟାଧିରେ ପୀଡ଼ିତ ଆକୁଳେ ।।୨୮୦
ଦେଖିତେ ସମର୍ଥ ନୁହଇ ।
ଚକ୍ଷୁ ହିଁ ଅଯୋଗ୍ୟ ହୁଅଇ ।।୨୮୧
ସ୍ଥାନ ଇନ୍ଦ୍ରିୟ ଯେବେ ଦୁଇ ।
ଦେଖିତେ ସମର୍ଥ ନୁହଇ ।।୨୮୨

Dr. Sudhanshu Sekhar Mishra

ଏଠାରେ ଦ୍ରଷ୍ଟାରୂପ ଜୀବ ।
କେମନ୍ତେ ରୂପ ସେ ଦେଖିବ ।।୨୮୩
ଏହି ପ୍ରକାରେ ସ୍ଥୂଳ ଦେହେ ।
କର୍ମଯୋଗ୍ୟତା ଯେବେ ନୋହେ ।।୨୮୪
ତେବେ ସେ ଲିଙ୍ଗ କଳେବର ।
କରି ନ ପାରଇ ବ୍ୟାପାର ।।୨୮୫
ଏହିଟି ଜୀବର ମରଣ ।
ଏ ଜୀବ ଜନ୍ମ ମୃତ୍ୟୁ ହୀନ ।।୨୮୬
ଯେବେ ତା ଜନ୍ମ ମୃତ୍ୟୁ ନାହିଁ ।
ଏବେନି ଭୟ ଆଉ କାହିଁ ।।୨୮୭
ମୃତ୍ୟୁକୁ ଭୟ ନକରିବ ।
ଜୀଇବା ବ୍ୟାପାର ଛାଡ଼ିବ ।।୨୮୮
ସାଧୁ ସଙ୍ଗତେ ଯାର ଚିତ୍ତ ।
କେବେ ହେଁ ନୋହେ ବିମୋହିତ ।।୨୮୯
ଏ କଥା ପୂର୍ବପୁଣ୍ୟ ଗାଢ଼େ ।
ଆନନ୍ଦେ ବଢ଼ଇ ନିବିଡ଼େ ।।୨୯୦
ଯାହାର ପୂର୍ବେ ତପ ନାହିଁ ।
ସୁସଙ୍ଗ ସେ ପାଇବ କାହିଁ ।।୨୯୧

ଅଚେତେ ଅସାଧୁ ସଙ୍ଗମ ।
ମିଳେ ଅନୀତି ଭାବପ୍ରେମ ।।୨୯୨
ଯେ ସଙ୍ଗେ ଭକ୍ତିଯୋଗ ମିଳେ ।
ଯତ୍ନ କରିବ ସଙ୍ଗ ମେଳେ ।।୨୯୩
ଭକ୍ତି ମିଳନ୍ତେ ମୁକ୍ତି ଭାବ ।
ଭବଜଳଧିତଟେ ନାବ ।।୨୯୪
ସେ ନାବେ ବସ ଦୃଢ଼ କରି ।
ମାୟା-ଜଳଧି ଯେଣେ ତରି ।।୨୯୫
ଏମନ୍ତ ଜୀବଗତି ଜାଣି ।
ଛାଡ଼ିବ ସବୁ ସଙ୍ଗ ପୁଣି ।।୨୯୬
ଗୋବିନ୍ଦପାଦେ ଦେଇ ଚିତ୍ତ ।
ଯେ ପ୍ରାଣୀ ଥିବ ଅବିରତ ।।୨୯୭
ମାୟାବନ୍ଧନେ ନପଡ଼ିବ ।
ତେବେ ସେ ମୁକତି ଲଭିବ ।।୨୯୮
ବୈରାଗ୍ୟ ଯୋଗାଭ୍ୟାସ କରି ।
ବୁଦ୍ଧି-ବିବେକ ସୁବିଚାରି ।।୨୯୯
ମାୟା ରଚିତ ଏ ସଂସାରେ ।
ସ୍ନେହ ଛାଡ଼ିବ କଳେବରେ ।।୩୦୦

କେବଳ ଶରୀର ରଖିବ ।
ଅଧିକ ଦ୍ରବ୍ୟ ପ୍ରତ୍ୟେଜିବ ।।୩୦୧
ହରିଚରଣେ କରି ଧ୍ୟାନ ।
ଲଭିବ ଏହୁ ତତ୍ତ୍ୱଜ୍ଞାନ ।।୩୦୨
ଏମନ୍ତ କହି ନାରାୟଣ ।
ବନ୍ଦିଲେ ଜନନୀ ଚରଣ ।।୩୦୩
ସେ ହରି ଚରଣ ପଙ୍କଜ ।
ସୁଜନ-ଜନ ନିତ୍ୟେ ଭଜ ।।୩୦୪
ତୃତୀୟ ସ୍କନ୍ଧେ ଭାଗବତ ।
କପିଳଯୋଗବିଧି ଖ୍ୟାତ ।।୩୦୫
ହରି କହିଲେ ଜୀବଗତି ।
ଶୁଣି ତରିବେ ମୂଢ଼ମତି ।।୩୦୬
ଭଣଇ ଜଗନ୍ନାଥ ଦାସ ।
ସାଧୁଙ୍କ ହିତେ ଏ ପ୍ରକାଶ ।।୩୦୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟ
ଉପାଖ୍ୟାନେ ଜୀବଗତି ର୍ନାମ
ଏକତ୍ରିଂଶୋଽଧ୍ୟାୟଃ ।

---

## ଦ୍ୱାତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ତୋଷମନ ।
କପିଳରୂପେ ଭଗବାନ ।।୧
କହନ୍ତି ମାତା ମୁଖ ଚାହିଁ ।
ଶୁଣ ଜନନୀ ମନ ଦେଇ ।।୨

### କପିଳ ଉବାଚ

ଭୋ ମାତ ଶୁଣ ସାବଧାନେ ।
ସଂଶୟ ତେଜି ଶୁଦ୍ଧମନେ ।।୩
ପ୍ରାଣୀ ଯାତନା ଗତି ଯେତେ ।
କହିଲି ତୁମ୍ଭର ଅଗ୍ରତେ ।।୪
କାମୀର କର୍ମ ଗତି ଯେତେ ।
ବିଧି ନିଷେଧ ବେନି ମତେ ।।୫
ଯେ ପ୍ରାଣୀ ଗୃହଧର୍ମେ ଥାଇ ।
ସ୍ୱଧର୍ମ ନିତ୍ୟେ ଆଚରଇ ।।୬
ତହିଁ ସୁସିଦ୍ଧ କାମ ଅର୍ଥ ।
ଏ ଆଶେ ଭ୍ରମୁଥାଇ ବ୍ୟର୍ଥ ।।୭
ପୁଣି ସେ ଧର୍ମ ଆଚରଇ ।
ସେ ଧର୍ମେ କାମ ଅର୍ଥ ପାଇ ।।୮
କାମର ମୂଢ଼ମତି ନର ।
କୃଷ୍ଣଭକତି କରେ ଦୂର ।।୯
ଅର୍ଥ ସଞ୍ଚଇ ଅବିରତ ।
ଯଜ୍ଞରେ ଦେଇଥାଇ ଚିତ୍ତ ।।୧୦
କରଇ ଯଜ୍ଞ-ଅନୁଷ୍ଠାନ ।
ତହିଁ ପୂଜଇ ଦେବମାନ ।।୧୧
ତଦନ୍ତେ ପିତୃ ତୋଷ ଅର୍ଥେ ।
ପୂଜଇ ଶ୍ରାଦ୍ଧେ ଶୁଦ୍ଧଚିତ୍ତେ ।।୧୨
ଶ୍ରଦ୍ଧାରେ ସେ ଧର୍ମ ଆଚରେ ।
ପିତୃ-ଦେବତା ପୂଜା କରେ ।।୧୩
ସେ ପ୍ରାଣୀ ଗମେ ଚନ୍ଦ୍ରସ୍ଥାନ ।
ସେଠାରେ କରେ ସୋମପାନ ।।୧୪
ଭୋଗର ଅନ୍ତ ଯେବେ ହୋଇ ।
ଲେଉଟି ସେ ସ୍ଥାନୁ ଆସଇ ।।୧୫
ଯେ କାଳେ ଅନନ୍ତ ଶଯ୍ୟାରେ ।
ବିଜୟେ ହରି ସମୁଦ୍ରରେ ।।୧୬
ସେ ଯୋଗନିଦ୍ରାରେ ଶୟନ ।
ସକଳ ଚେଷ୍ଟା କରି ଲୀନ ।।୧୭
ଲୟ ହୁଅନ୍ତି ଲୋକ ତିନି ।
ଏ ମଧ୍ୟେ ଛନ୍ତି ଯେତେ ପ୍ରାଣୀ ।।୧୮
ସେ ସର୍ବେ ତାଙ୍କ ଦେହେ ଥାନ୍ତି ।

Dr. Sudhanshu Sekhar Mishra

ସେହରି ଉଠିଲେ ଆସନ୍ତି ।।୧୧୯
କାମ୍ୟ-କର୍ମରୁ ଏହି ଗତି ।
କେବେ ନଯାଇ ଗତାଗତି ।।୨୦
ଯେ ପ୍ରାଣୀ ପଣ୍ଡିତ ହୁଅନ୍ତି ।
ସେ କେବେ ଧର୍ମ ନ ଛାଡ଼ନ୍ତି ।।୨୧
କରନ୍ତି ସ୍ୱଧର୍ମ ଆଚର ।
ସଂସର୍ଗ ତେଜି ସର୍ବଠାର ।।୨୨
ସାଧନ୍ତି ନାହିଁ ଅର୍ଥ କାମ ।
ଦେଖନ୍ତି ସର୍ବ ମାୟାଭ୍ରମ ।।୨୩
କର୍ମାଦି କୃଷ୍ଣେ ସମର୍ପନ୍ତି ।
ସେ ବେଦ-ବିଧି ନଛାଡ଼ନ୍ତି ।।୨୪
ହୁଅନ୍ତି ଶାନ୍ତଧର୍ମେ ରତ ।
ନିଜ ଧର୍ମରେ ଶ୍ରଦ୍ଧାଚିତ୍ତ ।।୨୫
ନିବୃତ୍ତି ଧର୍ମପରାୟଣ ।
ହୁଅନ୍ତି ଅହଙ୍କାରହୀନ ।।୨୬
ମାୟାରୁ ସ୍ନେହ ଦୂର କରି ।
କୃଷ୍ଣ-ଭଜନେ ପ୍ରିୟଭରି ।।୨୭
ଏ ଧର୍ମ ସତ୍ତ୍ୱ-ଗୁଣମୟେ ।
ବିଶୁଦ୍ଧଚିତ୍ତ ତହୁଁ ହୋଏ ।।୨୮
ଏମନ୍ତ ଯେବା ପ୍ରାଣୀ ମନ ।
ତାଙ୍କ ପ୍ରୟାଣ ମାତ ଶୁଣ ।।୨୯
ସେ ସୂର୍ଯ୍ୟରଶ୍ମି ଦ୍ୱାରେ ଯାନ୍ତି ।
ପରମ-ପୁରୁଷ ଲଭନ୍ତି ।।୩୦
ପର ଅପର ଈଶ ଯେହି ।
ଏ ବିଶ୍ୱ ପ୍ରକୃତିଟି ସେହି ।।୩୧
ସେ ବିଶ୍ୱମୁଖ ନାରାୟଣ ।
ଯେ କରେ ସର୍ଜନ ପାଳନ ।।୩୨
ଏମନ୍ତ ଯେହୁ ଭଗବାନ ।
ତାଙ୍କୁ ଲଭନ୍ତି ଭକ୍ତଜନ ।।୩୩
ସେ ଇଚ୍ଛେ ମୁକ୍ତି ଲଭିବାକୁ ।
ଭଜଇ ହିରଣ୍ୟଗର୍ଭକୁ ।।୩୪
ସେ ମୋକ୍ଷ ଗୁଣ ଶୁଣ ମାୟେ ।
କହିବା ତୁମ୍ଭଙ୍କୁ ଥୋକାୟେ ।।୩୫
ବେନିପରାର୍ଦ୍ଧ କାଳ ଅନ୍ତେ ।
ବ୍ରହ୍ମପ୍ରଳୟ ଏ ଜଗତେ ।।୩୬
ତାବତ କାଳ ବ୍ରହ୍ମଲୋକେ ।
ହିରଣ୍ୟଗର୍ଭର ସାଧକେ ।।୩୭
ସୁଖେଣ ବିହାର କରନ୍ତି ।
ବ୍ରହ୍ମାର ସଙ୍ଗେ ଲୟ ଯାନ୍ତି ।।୩୮
ଭୂଆଦି ପଞ୍ଚ ମହାଭୂତ ।
ଏ ଦଶ ଇନ୍ଦ୍ରିୟ ସହିତ ।।୩୯
ପଞ୍ଚ ବିଷୟ ଅହଙ୍କାରେ ।
ଏ ସର୍ବ ବ୍ରହ୍ମାଣ୍ଡ ଆକାରେ ।।୪୦
ଏମାନ ରହନ୍ତି ପ୍ରଧାନେ ।
ପରାର୍ଦ୍ଧକାଳ ଅବସାନେ ।।୪୧
ସେସ୍ଥାନେ ଯେତେ ଯୋଗୀଥାନ୍ତି ।
ବ୍ରହ୍ମାଙ୍କ ଶରୀରେ ପଶନ୍ତି ।।୪୨
ଆୟୁଷଶେଷେ ପ୍ରଜାପତି ।
ପରମଆତ୍ମାରେ ମିଳନ୍ତି ।।୪୩
ଯେଣୁ ତାହାଙ୍କ ଅଭିମାନ ।
ଦେହରେ ନୋହେ ଅବସାନ ।।୪୪
ଏଣୁ ସାକ୍ଷାତେ ମୁକ୍ତି ନୋହେ ।
ବ୍ରହ୍ମାସଙ୍ଗତେ ହୋନ୍ତି ଲୟେ ।।୪୫
ଯେମାନେ ହରିର ଭକତ ।
ହରି ଭଜନ୍ତି ଅବିରତ ।।୪୬
ସେ ସର୍ବ ହରିଙ୍କୁ ଲଭନ୍ତି ।
ଦେହାଦିଭାବ ନ ଜାଣନ୍ତି ।।୪୭
ସମ ଦେଖନ୍ତି ସର୍ବଜୀବ ।
ମିତ୍ର ଅମିତ୍ର ଏକ ଭାବ ।।୪୮
ଏଣୁ ଭୋ ମାତ ହରି ଭଜ ।
ଭୋଗ-ବାସନା ସର୍ବ ତେଜ ।।୪୯
ଏ ସର୍ବଭୂତଙ୍କ ହୃଦରେ ।
ହରି ଅଛନ୍ତି ସର୍ବଠାରେ ।।୫୦
ତାହାଙ୍କ ମହିମା ସୁମରି ।
ମନକୁ ଯୋଗେ ଦୃଢ଼ କରି ।।୫୧
ତାହାଙ୍କୁ ଭଜିଲେ ତରିବ ।
ଏ ଦେହ ପୁଣି ନହୋଇବ ।।୫୨
ଯେ ଆଦ୍ୟ ଚରାଚରଙ୍କର ।
ଯାହାଙ୍କୁ ବୋଲି ସୁରେଶ୍ୱର ।।୫୩
କୁମାରଆଦି ସିଦ୍ଧ ଯେତେ ।
ଯୋଗ କରନ୍ତି ଅବିରତେ ।।୫୪
ନିଃସଙ୍ଗ କର୍ମ ହିଁ କରନ୍ତି ।
ତଥାପି ଭେଦ ନଛାଡ଼ନ୍ତି ।।୫୫
ଯେଣୁ କରନ୍ତି ଅଭିମାନ ।
ଏଣୁ ନ ପାନ୍ତି ଶୁଦ୍ଧଜ୍ଞାନ ।।୫୬
ସେମାନେ ପ୍ରଳୟ କାଳରେ ।
ପଶନ୍ତି ଈଶ୍ୱର ଦେହରେ ।।୫୭
ହୋଇଲେ ସୃଷ୍ଟିର ଜାଗର ।
ପୁଣି ଘେନନ୍ତି ଅବତାର ।।୫୮
ଲଭନ୍ତି ନିଜ ନିଜ ସ୍ଥାନ ।
ଭୋଗ କରନ୍ତି କର୍ମମାନ ।।୫୯
ଯେମାନେ କାମ୍ୟକର୍ମେ ରତ ।
କର୍ମ କରନ୍ତି ଅବିରତ ।।୬୦
ନିନ୍ଦିତ କର୍ମ ନ କରନ୍ତି ।
ବେଦବିଧିରେ ଆଚରନ୍ତି ।।୬୧
ଇନ୍ଦ୍ରିୟ ନ ଜିଣିଲେ ଯେଣୁ ।
ସକାମ କର୍ମ କଲେ ତେଣୁ ।।୬୨
ରଜଗୁଣରେ ତାଙ୍କ ମନ ।
ଆସକ୍ତ ଥାଇ ଅନୁକ୍ଷଣ ।।୬୩
ଗୃହକର୍ମରେ ହୋଇ ରତ ।
ପିତୃଙ୍କୁ ପୂଜେ ଅବିରତ ।।୬୪
ବିମୁଖ ଶ୍ରୀକୃଷ୍ଣ କଥାରେ ।
ରହନ୍ତି ଗୃହାଦି ବ୍ୟାପାରେ ।।୬୫
ଛାଡ଼ି ଅମୃତ କୃଷ୍ଣ କଥା ।
ନିତ୍ୟେ ଶୁଣନ୍ତି ଗ୍ରାମ୍ୟଗାଥା ।।୬୬
ତାଙ୍କୁ ବିଧାତା ବାମ ହେଲା ।
ବିଅର୍ଥେ ତାଙ୍କ ଜନ୍ମଗଲା ।।୬୭
ସକଳ ଅନର୍ଥ ଯେତେକ ।
ଏକତ୍ରେ କଲା ଅବିବେକ ।।୬୮
ଯେସନେ ବିଷ୍ଠା ଭୋଜୀମାନେ ।
ବିଷ୍ଠା ଭକ୍ଷନ୍ତି ହତ ଜ୍ଞାନେ ।।୬୯
ଏ ମୂଢ଼ଲୋକେ ସେହି ରୂପେ ।
ପଡ଼ି ଯନ୍ତ୍ରିତ ଭବକୂପେ ।।୭୦
ସେ ପୁଣ କର୍ମଭୋଗ ଅନ୍ତେ ।
ଚଳନ୍ତି ଶୁଣ ଯେଉଁ ପଥେ ।।୭୧
ସୂର୍ଯ୍ୟଙ୍କ ଦକ୍ଷିଣ ମାର୍ଗରେ ।
ବସନ୍ତି ସେ ପିତୃଲୋକରେ ।।୭୨
ସେ ଭୋଗଅନ୍ତେ ଗୋ ଜନନୀ ।

Dr. Sudhanshu Sekhar Mishra

ସଂସାରେ ପଡ଼େ ଦେହ ଘେନି ।।୭୩
ପୁତ୍ରାଦି ଗୃହେ ଜାତ ହୋଇ ।
ପୂର୍ବବାସନା ନଛାଡ଼ଇ ।।୭୪
ଗର୍ଭ-ଆଧାନ ଆଦି କର୍ମ ।
ଦେହାନ୍ତେ ଶମଶାନଧର୍ମ ।।୭୫
ଏ କର୍ମମାନ କରୁଥାନ୍ତି ।
ସଂସାର ଛାଡ଼ି ନପାରନ୍ତି ।।୭୬
ଗମନ୍ତି ଦେବ-ପିତୃସ୍ଥାନ ।
ତହିଁ କରନ୍ତି ଭୋଗମାନ ।।୭୭
ପୁଣି ଲଭନ୍ତି ନରଦେହ ।
ଏମନ୍ତେ କାମ୍ୟକର୍ମସ୍ନେହ ।।୭୮
ଏଣୁ ସୁସ୍ଥିରେ ତୁମ୍ଭେ ମାଏ ।
ମନ ନିବେଶ କୃଷ୍ଣପାୟେ ।।୭୯
ଶ୍ରବଣେ ଶୁଣ ତାଙ୍କ ଗୁଣ ।
କୀର୍ତ୍ତନ କର ଅନୁକ୍ଷଣ ।।୮୦
ସ୍ମରଣ ଅର୍ଚ୍ଚନ ବନ୍ଦନ ।
ଯେ ନବଭକ୍ତିର ବିଧାନ ।।୮୧
ପାଦ ସେବନ ଦାସ୍ୟଭାବ ।
ସଖ୍ୟାଦି ଆତ୍ମା ନିବେଦିବ ।।୮୨
ଏତେ ପ୍ରକାରେ କୃଷ୍ଣପାଦେ ।
ଭକତି କର ଅପ୍ରମାଦେ ।।୮୩
କୃଷ୍ଣରେ କଲେ ଭକ୍ତିଯୋଗ ।
ତହୁଁ ଲଭଇ ବଇରାଗ୍ୟ ।।୮୪
ତେବେ ଲଭିବ ଦିବ୍ୟଜ୍ଞାନ ।
ପାଇବ ପରଂବ୍ରହ୍ମସ୍ଥାନ ।।୮୫
ଭକ୍ତିରେ ଚିତ୍ତ ଯେତେବେଳେ ।
ରହଇ କୃଷ୍ଣ ସୁନିଶ୍ଚଳେ ।।୮୬
ତେବେ ସେ ବିଷୟ ଛାଡ଼ଇ ।
ପ୍ରିୟ ଅପ୍ରିୟ ନ ଜାଣଇ ।।୮୭
ଇନ୍ଦ୍ରିୟ ବୃତ୍ତିଭେଦ ନାହିଁ ।
ସମ ବିଷମ ଆଉ କାହିଁ ।।୮୮
ଏମନ୍ତ ଭାବ ଜନ୍ମେ ଯେବେ ।
ଦେହେ ଆତ୍ମାକୁ ଦେଖେ ତେବେ ।।୮୯
ପରମାନନ୍ଦ ସୁଖ ପାଇ ।
ଆନନ୍ଦେ ସଂସାର ଭ୍ରମଇ ।।୯୦
ଛାଡ଼ଇ ସର୍ବ ସଙ୍ଗମାନ ।

ପରମାନନ୍ଦେ ରହେ ମନ ।।୯୧
ସେ ବ୍ରହ୍ମ ପରମପୁମାନ ।
ରୂପ ବିହୀନ ଦିବ୍ୟଜ୍ଞାନ ।।୯୨
ସେ ପରମାତ୍ମା ପରମେଶ ।
ତା ନାମ ପରମ-ପୁରୁଷ ।।୯୩
ସେ ଏକ ନାନା ରୂପ ଧରେ ।
ଭ୍ରମ ଜନ୍ମାଇଛି ସଂସାରେ ।।୯୪
ଯୋଗୀଙ୍କ ଯୋଗସାଧ ଏହି ।
ଏକାନ୍ତେ ସଙ୍ଗ ଯେ ଛାଡ଼ଇ ।।୯୫
ପରମପଦ ଲଭେ ତେବେ ।
ତାବିନୁ ଭ୍ରମୁଥାଇ ଭବେ ।।୯୬
ବ୍ରହ୍ମ ନିର୍ଗୁଣ ନିରାକାର ।
କେବଳ ଜ୍ଞାନରୂପ ତାର ।।୯୭
ଶବ୍ଦାଦି ଧର୍ମ ଯାର ମାଏ ।
ସେ ଧର୍ମେ ପ୍ରକାଶ ସେ ହୋଏ ।।୯୮
ଆଭାସ ଦିଶଇ ଭ୍ରାନ୍ତିରେ ।
ଏ ବାହ୍ୟ ଇନ୍ଦ୍ରିୟଙ୍କ ଦ୍ୱାରେ ।।୯୯
ପ୍ରତ୍ୟକ୍ଷେ ଦେଖୁ ଯେତେ କିଛି ।
ଏକା ସେ ସବୁ ହୋଇଅଛି ।।୧୦୦
କହିବା ସେ ହେତୁ ପ୍ରକାର ।
ଯେ ରୂପେ ବ୍ରହ୍ମାଣ୍ଡ ସଞ୍ଚାର ।।୧୦୧
ପ୍ରଥମେ ମହତ ହୋଇଲା ।
ତହୁଁ ସେ ଅହଙ୍କାର ହେଲା ।।୧୦୨
ତ୍ରିବିଧ ହୋଏ ଅହଙ୍କାର ।
ଏ ପଞ୍ଚଭୂତ ରୂପ ତାର ।।୧୦୩
ମନ ଇନ୍ଦ୍ରିୟ ଏକାଦଶ ।
ଏଥୁଁ ବ୍ରହ୍ମାଣ୍ଡ ପରକାଶ ।।୧୦୪
ଜୀବରୂପରେ ସେହି ତହିଁ ।
ସ୍ୱରୂପ ତାହାରଟି ଏହି ।।୧୦୫
ଯେବେ କରଇ ଯୋଗାଭ୍ୟାସ ।
ଶ୍ରଦ୍ଧାରେ ଭଜଇ ବିଶେଷ ।।୧୦୬
ବୈରାଗ୍ୟେ ସଙ୍ଗ ତ୍ୟାଗ କରେ ।
ମନ ନିବେଶି କୃଷ୍ଣଠାରେ ।।୧୦୭
ତେବେ ସେ ପ୍ରପଞ୍ଚ ଲେଛଇ ।
ପରମଆତ୍ମାଙ୍କୁ ଚିହ୍ନଇ ।।୧୦୮
ଭୋ ମାତ ସାବଧାନେ ଘେନ ।

ତୁମ୍ଭଙ୍କୁ କହିଦେଲୁ ଜ୍ଞାନ ।।୧୦୯
ଏ ଜ୍ଞାନେ ବ୍ରହ୍ମ ଦରଶନ ।
ଏହା ବୁଝଇ ଯେଉଁଜନ ।।୧୧୦
ପ୍ରକୃତି ପୁରୁଷଙ୍କ ତତ୍ତ୍ୱ ।
ସେ ପ୍ରାଣୀ ଦେଖଇ ବ୍ୟକତ ।।୧୧୧
ଜ୍ଞାନଯୋଗରେ ତାଙ୍କୁ ପାଇ ।
ଭକ୍ତିଯୋଗରେ ଲଭ୍ୟ ସେହି ।।୧୧୨
କେବଳ ମାର୍ଗ ମାତ୍ର ଭେଦ ।
ନବୁଝି ପାଏ ବହୁ ଖେଦ ।।୧୧୩
ଜ୍ଞାନରେ ନିର୍ଗୁଣ ଭଜଇ ।
ଭକ୍ତିରେ ସଗୁଣ ଲଭଇ ।।୧୧୪
ସେ ଆତ୍ମା ଏକ ନାନା ହୋଏ ।
ଦୃଷ୍ଟାନ୍ତ କହେ ଶୁଣ ମାଏ ।।୧୧୫
ଦେଖ ଶାକର କ୍ଷୀର ଆଦି ।
ଧରନ୍ତି ନାନା ଗୁଣ ବିଧି ।।୧୧୬
କିନ୍ତୁ ପଦାର୍ଥ ଏକ ମାଏ ।
ଇନ୍ଦ୍ରିୟଭେଦେ ଭିନ୍ନ ହୋଏ ।।୧୧୭
ଚକ୍ଷୁରେ ଶୁକ୍ଳବର୍ଣ୍ଣ ଦିଶେ ।
ରସନେ ମଧୁର ବିଶେଷେ ।।୧୧୮
ତ୍ୱଚାରେ ଶୀତ ଉଷ୍ଣ ଭେଦ ।
ନାସାରେ ସୁବାସ ଆମୋଦ ।।୧୧୯
ଭୋ ମାତ ଆତ୍ମା ବ୍ରହ୍ମ ଏକ ।
ଗୁଣରେ ଦିଶଇ ଅନେକ ।।୧୨୦
ଯେ ତାକୁ ଯେ ରୂପେ ଭଜଇ ।
ସେ ତାକୁ ସେ ରୂପେ ଦିଶଇ ।।୧୨୧
ତାକୁ ଜାଣିବ ଏକ ବୋଲି ।
ନବୁଝି କରୁଥାନ୍ତି କଳି ।।୧୨୨
ଶାସ୍ତ୍ରମାର୍ଗରେ ନାନା କହେ ।
ସେ ପୁଣି ଏକ ନାନା ନୋହେ ।।୧୨୩
ଶୁଣ ଜନନୀ ଶାସ୍ତ୍ରଭେଦ ।
ଯେଣେ ଛାଡ଼ିବ ସର୍ବଖେଦ ।।୧୨୪
ଯେ କ୍ରିୟାପୂର୍ତ୍ତି ଆଦି କରି ।
ଯେ ଯାହା କରନ୍ତି ଆଦରି ।।୧୨୫
ତହୁଁ ଯେ ହୋଏ ଭୋଗମାନ ।
ସେ ସବୁ ରୂପ ଭଗବାନ ।।୧୨୬
ଯାଗକର୍ମରେ ପ୍ରାପ୍ୟ ସେହି ।

Dr. Sudhanshu Sekhar Mishra

ଦାନରେ ଅନ୍ୟ ନାହିଁ କେହି ।।୧୨୭
କେହୁ କରନ୍ତି ତପମାନ ।
ସେ ସବୁ ତହୁଁ ନୋହେ ଆନ ।।୧୨୮
ସେହିଟି ବେଦ-ଅଧ୍ୟୟନେ ।
ମୀମାଂସାଶାସ୍ତ୍ର ତାହା ଭଣେ ।।୧୨୯
ନିଷିଦ୍ଧ  କର୍ମ ତ୍ୟାଗ ଯେହି ।
ସେ ଧର୍ମ ଜାଣିଥିବ ସେହି ।।୧୩୦
ସନ୍ନ୍ୟାସ କାହାର ବା ଧର୍ମ ।
ଯହିଁ ଛାଡ଼ନ୍ତି କାମ୍ୟକର୍ମ ।।୧୩୧
ବିବିଧ ଅଙ୍ଗ ଯୋଗ ସେହି ।
ଭକ୍ତିଯୋଗରେ ପ୍ରାପ୍ୟ ଏହି ।।୧୩୨
ଜ୍ଞାନଯୋଗ ହିଁ ତାକୁ କହି ।
ସେ ଏକବସ୍ତୁ ସର୍ବମୟୀ ।।୧୩୩
ସକାମ ନିଷ୍କାମ ଯେ ଧର୍ମ ।
ସଗୁଣରୂପ ସବୁ ବ୍ରହ୍ମ ।।୧୩୪
ଆତ୍ମତତ୍ତ୍ୱରେ ଗମ୍ୟ ଏହି ।
ବୈରାଗ୍ୟ ଧର୍ମେ ତାକୁ ପାଇ ।।୧୩୫
ଏମନ୍ତେ ନାନା ଶାସ୍ତ୍ରମତେ ।
ଯେ ପ୍ରାଣୀ ଭଜଇ ଯେମନ୍ତେ ।।୧୩୬
ସଗୁଣ ନିର୍ଗୁଣଟି ସେହି ।
ତା ବିନୁ ଅନ୍ୟ ନାହିଁ କେହି ।।୧୩୭
ଏ ଭକ୍ତିଯୋଗ ଚାରିମତ ।
ସ୍ୱରୂପ କରିଲୁଁ ବ୍ୟକତ ।।୧୩୮
ଯେ କାଳ ଅନ୍ତରେ ଧାବଇ ।
ସୃଜନ ଆଦି ଯେ କରଇ ।।୧୩୯
କହିଲୁଁ ସ୍ୱରୂପ ତାହାର ।
ଭୋ ମାତ କରତୁ ବିଚାର ।।୧୪୦
ଗତି ଏ ଜୀବମାନଙ୍କର ।
ଅବିଦ୍ୟାକର୍ମରେ ପ୍ରଚୁର ।।୧୪୧
ଏ ଆତ୍ମା ତହିଁ ପଶିଥାଇ ।
ଆପଣା ଗତି ନ ବୁଝଇ ।।୧୪୨
ଏମନ୍ତେ ଜୀବ ଗତାଗତି ।
କହିଲୁ ଛାଡ଼ ମନୁ ଭ୍ରାନ୍ତି ।।୧୪୩
ଏ ଯୋଗ ନ କରି ପ୍ରକାଶ ।
କହିଲେ ଧର୍ମ ହୋଏ ନାଶ ।।୧୪୪
କେବେହେଁ ଖଳେ ନ କହିବ ।
ବିନୟ ଯେ ପ୍ରାଣୀ ନୋହିବ ।।୧୪୫
ନ କହି ଦୁର୍ଜନ ଅଗ୍ରତେ ।
ଅପରେ ଧର୍ମଧ୍ୱଜୀ ଯେତେ ।।୧୪୬
ଦାମ୍ଭିକ ଅଗ୍ରତେ ନ କହି ।
ପ୍ରଲୋଭୀ ପ୍ରାଣୀ ଅଟେ ଯେହି ।।୧୪୭
ଯେ ଗୃହଧର୍ମେ ହୋଇ ରତ ।
ତାରେ ନ କହି କଦାଚିତ ।।୧୪୮
ନ ସହେ ଯେ ଭକତଜନେ ।
ନ କହ ଭକ୍ତିହୀନ ଜନେ ।।୧୪୯
ଏମନ୍ତ ଲୋକେ ନ କହିବ ।
ଗର୍ବିତ ଭାବ ଯାର ଥିବ ।।୧୫୦
ମୋ ଭକ୍ତିହୀନେ ନ କହିବ ।
ମୋ ଭକ୍ତେ ଦ୍ୱେଷ ଯାର ଥିବ ।।୧୫୧
ଯାହାର ଶ୍ରଦ୍ଧା ଏଥି ଥିବ ।
ତାହାକୁ ଏ ମାର୍ଗ କହିବ ।।୧୫୨
ଭକତଜନେ ଏହା କହି ।
ଯେ ଭକ୍ତଜନରେ ସେବଇ ।।୧୫୩
ଯେ ପ୍ରାଣୀ ଏଥେ ସ୍ପୃହା କରେ ।
ଏ ଧର୍ମ କହିବ ତାହାରେ ।।୧୫୪
ଯେ ପ୍ରାଣୀ ସର୍ବଭୂତେ ମିତ୍ର ।
ତାହାକୁ କହି ଏ ଚରିତ ।।୧୫୫
ଯେ ପ୍ରାଣୀ ଗୁରୁଙ୍କୁ ସେବଇ ।
ଏ ଦୀକ୍ଷା ତାରେ ଶିକ୍ଷା ଦେଇ ।।୧୫୬
ବିଷୟେ ବୈରାଗ୍ୟ ଯାହାର ।
ଯେ ପ୍ରାଣୀ ଶାନ୍ତଚିତ୍ତ ଧୀର ।।୧୫୭
ଯେ ପ୍ରାଣୀ ହୋଏ ନିର୍ମତ୍ସର ।
ବିନୀତ ଶୁଚି ନିରନ୍ତର ।।୧୫୮
ପ୍ରିୟମାନଙ୍କ ଅତିପ୍ରିୟ ।
କରଇ ମୋର ଠାରେ ସ୍ନେହ ।।୧୫୯
ଏମନ୍ତ ପ୍ରାଣୀଙ୍କି କହିବ ।
ଅଧର୍ମଠାରେ ଲୁଚାଇବ ।।୧୬୦
ଶ୍ରଦ୍ଧାରେ ଯେ ଏହା ଶୁଣନ୍ତି ।
ଅଥବା ଆଦରେ ଭଣନ୍ତି ।।୧୬୧
ମୋହର ପଦବୀ ସେ ପାଏ ।
ସତ୍ୟ କହିଲୁ ଏହା ମାଏ ।।୧୬୨
ତୃତୀୟସ୍କନ୍ଧେ ଭାଗବତ ।
କପିଳମୁନି ଯୋଗ ଖ୍ୟାତ ।।୧୬୩
ମାତାଙ୍କୁ ଦେଲେ ଜ୍ଞାନବାଣୀ ।
ସୁଜନେ ତର ଏହା ଶୁଣି ।।୧୬୪
କର୍ମବିପାକ ପ୍ରାଣୀଙ୍କର ।
ଦ୍ୱାତ୍ରିଂଶ ଅଧ୍ୟାୟ ସଞ୍ଚାର ।।୧୬୫
ଶ୍ରବଣ କର ସାଧୁଜନେ ।
ବ୍ରାହ୍ମଣ ଜଗନ୍ନାଥ ଭଣେ ।।୧୬୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟେ
ଦ୍ୱାତ୍ରିଂଶୋଽଧ୍ୟାୟଃ ।

Dr. Sudhanshu Sekhar Mishra

## ତ୍ରୟତ୍ରିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ବୋଲନ୍ତି ମୈତ୍ରେୟ ବ୍ରାହ୍ମଣ ।
ବିଦୁର ସାବଧାନେ ଶୁଣ ।।୧
କର୍ଦ୍ଦମ-ପତ୍ନୀ ଦେବହୂତି ।
ସ୍ୱଭାବେ ମନୁର ଦୁହିତୀ ।।୨
କପିଳ ବଚନ ଶୁଣିଲେ ।
ମୋହପଟଳ ପ୍ରତେଜିଲେ ।।୩
ତତ୍ତ୍ୱବିଷୟ ସଂଖ୍ୟଜ୍ଞାନ ।
କହିଲେ ଯେଣୁ ଭଗବାନ ।।୪
ତାହାଙ୍କୁ କଲେ ପ୍ରଣିପାତ ।
ବିନୟ ଯୋଡ଼ି ବେନିହସ୍ତ ।।୫
ଚାହିଁଣ କପିଳ-ବଦନ ।
ଆନନ୍ଦେ କରନ୍ତି ସ୍ତବନ ।।୬

ଦେବହୂତି ଉବାଚ

ତୁ ନାଥ ଲୀଳା-ଅବସାନେ ।
କାଳକୁ ନିବେଶି ନୟନେ ।।୭
ଶୟନ ସଳିଳ ଭିତରେ ।
ସର୍ପଙ୍କ ବିରାଟ-ଶରୀରେ ।।୮
ଭୂତ ଇନ୍ଦ୍ରିୟ ମନୋମୟ ।
ଯହିଁରେ ଗୁଣଙ୍କ ପ୍ରବାହ ।।୯
ଅଶେଷ କାରଣ-କରଣ ।
ତୋ କଳେବର ନାରାୟଣ ।।୧୦
ଜଠର-ପଦ୍ମରୁ ଯାହାର ।
ଜାତ ହୋଇଲା ବେଦବର ।।୧୧
ତୋ ରୂପ ଦେଖିବା ନିମନ୍ତେ ।
ସେ ଅଜ ବିଚାରିଲା ଚିତ୍ତେ ।।୧୨
ଅନେକ ବ୍ୟାପାର ସେ କଲା ।
କେବେହେଁ ଦେଖି ନପାରିଲା ।।୧୩
କେବଳ ଧ୍ୟାନେ ସେ ଦେଖିଲା ।
ଏ ବିଶ୍ୱସୃଷ୍ଟି ତହୁଁ କଲା ।।୧୪
ତୁ ପ୍ରଭୁ ବହୁରୂପ ଧରି ।
ନିଜ ଶକ୍ତିରେ ମାୟା କରି ।।୧୫
କଲୁ ଏ ବିଶ୍ୱ ସରଜନ ।
ସ୍ୱଭାବେ ତୁ ଯେ କର୍ମ ଭିନ୍ନ ।।୧୬
ସତ୍ୟ-ସଂକଳ୍ପ ତୁମ୍ଭେ ହରି ।
ଜୀବଙ୍କ ଭୋଗ ଅନୁସରି ।।୧୭
ସୃଷ୍ଟ୍ୟାଦି କରିଛ ବିଧାନ ।
ଏ ତୁମ୍ଭ ମାୟାର ଭିଆଣ ।।୧୮
ଅନନ୍ତଶକ୍ତି ଏ ତୁମ୍ଭର ।
ତୋ ମାୟା କେ କରୁ ଗୋଚର ।।୧୯
ପ୍ରଳୟକାଳେ ତୁମ୍ଭେ ହରି ।
ଏ ବିଶ୍ୱ ଉଦରେ ସଂହରି ।।୨୦
ଶୟନ ବଟପତ୍ରେ ତୋର ।
ବାଳମୁକୁନ୍ଦ ରୂପଧର ।।୨୧
ଚରଣ ଅଙ୍ଗୁଳି ବଦନେ ।
ଭରି ଶୟନ ଶିଶୁ ଯେହ୍ନେ ।।୨୨
ଏ ବିଶ୍ୱ ଯାହାର ଉଦରେ ।
ମୁଁ ତାକୁ କେମନ୍ତେ ଜଠରେ ।।୨୩
ଧଇଲି ବୁଝି ନପାରଇ ।
କେବଳ ତୋ ମାୟା ଗୋସାଇଁ ।।୨୪
ତୁ ଦୁଷ୍ଟ ନିବାରିବା ପାଇଁ ।
ସାଧୁ ରକ୍ଷଣେ ତୋର ଦେହୀ ।।୨୫
ଏଣୁ ତୁମ୍ଭର କଳେବର ।
ଅନ୍ୟଥା କିକାର୍ଯ୍ୟ ତୋହର ।।୨୬
ତୁମ୍ଭେ କୋଳାଦି ରୂପଧରି ।
ଧର୍ମ ସ୍ଥାପିଲ ଦୁଷ୍ଟ ମାରି ।।୨୭
ଏ ତତ୍ତ୍ୱଜ୍ଞାନ ଦେବା ପାଇଁ ।
ଏ ରୂପ ଧଇଲ ଗୋସାଇଁ ।।୨୮
ଏଣୁ କୃତାର୍ଥ ମୋତେ କଲ ।
ପୁତ୍ର ସ୍ୱରୂପେ ପ୍ରକାଶିଲ ।।୨୯
ଯା ନାମ କରିଣ ଶ୍ରବଣ ।
ଅଥବା କରି ସଂକୀର୍ତ୍ତନ ।।୩୦
ଯା ପାଦେ କରି ନମସ୍କାର ।
ସ୍ମରଣ କରି ନାମ ଯାର ।।୩୧
ଚଣ୍ଡାଳ ସୋମଯୋଗ୍ୟ ହୋଏ ।
ଜାତି ବିଚାର ଭ୍ରାନ୍ତି ନୋହେ ।।୩୨
ଯେ ପ୍ରାଣୀ ନୟନେ ଦେଖିଲା ।
ସେ କିବା କୃତାର୍ଥ ନୋହିଲା ।।୩୩
ଏଣୁ ମୁଁ ସୁଗତି ଲଭିଲି ।
ନୟନେ ତୋ ରୂପ ଦେଖିଲି ।।୩୪
ମୋ ଭାଗ୍ୟ କେ କରୁ ପ୍ରମାଣ ।
ମୋତେ ଗୋଚର କାହିଁ ପୁଣ ।।୩୫
ଚଣ୍ଡାଳ ଏଣୁ ଶ୍ରେଷ୍ଠ ହେଲା ।
ଜିହ୍ୱାରେ ତୋନାମ ଧଇଲା ।।୩୬
ଯେଣୁ ତୋ ନାମ ଉଚ୍ଚାରିଲା ।
ସକଳ ତପ ସେହୁ କଲା ।।୩୭
ହୋମାଦି କଲା ବେଦମନ୍ତ୍ରେ ।
ସ୍ନାନ ସେ କଲା ନାନା ତୀର୍ଥେ ।।୩୮
ଅପରେ ନାହିଁ ସଦାଚାର ।
ତୋନାମ ଜିହ୍ୱାରେ ଯାହାର ।।୩୯
ସମଗ୍ର ବେଦ ସେ ପଢ଼ିଲା ।
ଯେ ତୁମ୍ଭ ନାମ ଉଚ୍ଚାରିଲା ।।୪୦
ତୁମ୍ଭେ ଯେ ପୁରୁଷ ପୁରାଣ ।
ସକଳ-ଜଗତ ନିଦାନ ।।୪୧
ତୁମ୍ଭଙ୍କୁ ନିଶ୍ଚଳ ମନରେ ।
ଯୋଗୀ ଭାବନ୍ତି ନିରନ୍ତରେ ।।୪୨
ଗୁଣମାନଙ୍କୁ ନିଜ ତେଜେ ।
ବିନାଶ କରିଛ ସହଜେ ।।୪୩
ତୁ ବ୍ରହ୍ମ ପରମ-ପୁରୁଷ ।
ଯୋଗୀଙ୍କ ମନେ ତୁ ପ୍ରକାଶ ।।୪୪
ତୁମ୍ଭେ କପିଳ ବେଦଗର୍ଭ ।
ତୁ ବିଷ୍ଣୁ ବ୍ୟାପିଅଛୁ ସର୍ବ ।।୪୫
ବନ୍ଦଇ ତୁମ୍ଭର ଚରଣ ।
ତୋ ବିନୁ ନ ଜାଣଇ ଆନ ।।୪୬

ମୈତ୍ରେୟ ଉବାଚ

ବୋଲନ୍ତି ମୈତ୍ରେୟ ଗୋସାଇଁ ।
ଶୁଣ ବିଦୁର ମନଦେଇ ।।୪୭
ଏମନ୍ତେ ଦିବ୍ୟସ୍ତୁତି କରି ।
ଆନନ୍ଦ ମନେ ମୋଦଭରି ।।୪୮

Dr. Sudhanshu Sekhar Mishra

ଶୁଣ ହେ ବିଦୁର ତଦନ୍ତେ ।
ଜନନୀ ସ୍ତବନ କରନ୍ତେ ।।୪୯
ଯେ ଯେ କପିଳ ଭଗବାନ ।
ସାକ୍ଷାତେ ପରମ ପୁମାନ ।।୫୦
ଗଭୀର ବଚନେ ସଧୀରେ ।
କହିଲେ ଜନନୀ ଛାମୁରେ ।।୫୧

କପିଳ ଉବାଚ

ଭୋ ମାତ ଘେନ ମୋ ବଚନ ।
ମୋହର ବାକ୍ୟେ ଦିଅ ମନ ।।୫୨
ଯେ ମାର୍ଗ ଭଜନ ପ୍ରକାର ।
କହିଲୁ ଅଗ୍ରତେ ତୁମ୍ଭର ।।୫୩
ଯେବେ ଏ ମାର୍ଗେ ତୁମ୍ଭେ ଯିବ ।
ଏକାନ୍ତେ କୃଷ୍ଣଙ୍କୁ ଲଭିବ ।।୫୪
ଅଚିରେ ଲଭିବ ମୁକତି ।
ପାଇଣ ନିଶ୍ଚଳ ଭକତି ।।୫୫
ଏ ମାର୍ଗେ ଶ୍ରଦ୍ଧା ତୁମ୍ଭେ କର ।
ଲଭିବ ଗୋବିନ୍ଦ-ପୟର ।।୫୬
ଏମନ୍ତେ ବ୍ରହ୍ମବାଦୀମାନେ ।
ମୋତେ ଲଭନ୍ତି ସାବଧାନେ ।।୫୭
ଯହିଁରେ ମୃତ୍ୟୁଭୟ ନାହିଁ ।
ଶୁଣ ଜନନୀ ମନ ଦେଇ ।।୫୮
ତୁମ୍ଭେ ପାଇବ ସେହିମତେ ।
ଏଣୁ କହିଲି ତୁମ୍ଭ ହିତେ ।।୫୯
ଏମନ୍ତ ଯେହୁ ନ ଜାଣନ୍ତି ।
ସେ ପ୍ରାଣୀ ମୋତେ ନଭଜନ୍ତି ।।୬୦

ମୈତ୍ରେୟ ଉବାଚ

ଏମନ୍ତ ଭାବେ ଆତ୍ମାଗତି ।
ଦେଖାଇ ଦେଲେ ରମାପତି ।।୬୧
ମାତାଙ୍କ ଅନୁମତି ନେଲେ ।
ତପ ସାଧନେ ବନେ ଗଲେ ।।୬୨
ବ୍ରହ୍ମବାଦିନୀ ଦେବହୂତି ।
ଯୋଗମାର୍ଗରେ ଦେଲେ ମତି ।।୬୩
ଆଶ୍ରମ ସରସ୍ୱତୀତୀରେ ।
ଯୋଗ ସାଧିଲେ ସେ ନିଶ୍ଚଳେ ।।୬୪

ରହିଲେ ପୁତ୍ରବାକ୍ୟ ଘେନି ।
ସେ ସ୍ଥାନେ କର୍ଦ୍ଦମ-ଘରଣୀ ।।୬୫
ସେ କାଳତ୍ରୟେ ସ୍ନାନ କରି ।
ବିହିତ ସକଳ ଆଚରି ।।୬୬
କୁଟିଳ-ଅଳକ ସକଳ ।
ସେ ହେଲା କପିଳ ଜଟିଳ ।।୬୭
କୃଶିତ ଲାବଣ୍ୟ ଶରୀର ।
ପିନ୍ଧନ୍ତି ବକଳ ଅମ୍ବର ।।୬୮
ଏମନ୍ତେ ତପସ୍ୱିନୀ ବେଶେ ।
ସେ ଦେବହୂତି ରହେତୋଷେ ।।୬୯
ରେଚକ କୁମ୍ଭକ ପୂରକେ ।
ଉଗ୍ର ତପସ୍ୟା ଅତିରେକେ ।।୭୦
ଗୃହ ସମ୍ପଦ ଦୂର କରି ।
ତପସ୍ୱୀ ବେଶେ ବନଚାରୀ ।।୭୧
କର୍ଦ୍ଦମ ଅଚଳ ବିଭୂତି ।
ଚିତ୍ତୁ ତ୍ୟାଗିଲା ଦେବହୂତି ।।୭୨
ତା' ଛାଡ଼ି ଚିତ୍ତ ବଇରାଗେ ।
ଭଜନମାର୍ଗେ ଅନୁରାଗେ ।।୭୩
ପୂର୍ବେ କର୍ଦ୍ଦମ ପ୍ରଜାପତି ।
ସମ୍ପାଦି ଥିଲେ ଯେ ସମ୍ପତ୍ତି ।।୭୪
ଗୃହସ୍ଥଧର୍ମ କରିଥିଲେ ।
ଉପମା ନାହିଁ ଭୂମଣ୍ଡଳେ ।।୭୫
ସୁଦିବ୍ୟ-ବିମାନେ ବିହରି ।
ଉପମା ନାହିଁ ତିନିପୁରି ।।୭୬
ଯହିଁ କଳ୍ପିତ ବସ୍ତୁ ଯେତେ ।
ଅଶେଷ ରତ୍ନେ ସୁନିର୍ମିତେ ।।୭୭
ମନ୍ଦିରେ ସ୍ଫଟିକର କାନ୍ଥ ।
ଭୂମି ରଚିତ ମରକତ ।।୭୮
ରତ୍ନେ ଜଳନ୍ତି ଦୀପ ପ୍ରାୟେ ।
ଶୋଭନେ ଯୋଗୀମନ ମୋହେ ।।୭୯
ଲଳନା-କୁଳ-ଶିରୋମଣି ।
ସେ ଦିବ୍ୟପୁରେ ନିବାସିନୀ ।।୮୦
ଭୁବନ ବେଢ଼ି ଉପବନ ।
ତହିଁ କୁସୁମ ଦ୍ରୁମମାନ ।।୮୧
ସକଳଋତୁ ପୁଷ୍ପଫଳ ।
ମଣି ନିର୍ମିତ ସ୍ତମ୍ଭକୂଳ ।।୮୨

ଦେବଙ୍କ ଦିବ୍ୟଭୋଗ ଯହିଁ ।
ସର୍ବଦା କାଳ ସୁଖମୟୀ ।।୮୩
ବିଚିତ୍ର ଚିତ୍ର ହେମମୟେ ।
ଚିତ୍ର-ପତାକା-ଧ୍ୱଜ ଶୋହେ ।।୮୪
ସୁଗନ୍ଧପୁଷ୍ପ ମାଳେମାଳେ ।
ଯେ ରଥେ ଲମ୍ବେ ସୁଗହଳେ ।।୮୫
ଗଭୀର ଭୃଙ୍ଗନାଦ ଶୋହେ ।
ପାଟ ବସନ ମନ ମୋହେ ।।୮୬
ଉପରେ ନୀଳ ରତ୍ନମଣି ।
ବିରାଜେ ରବିତେଜ ଜିଣି ।।୮୭
ସେ ରଥେ ସୁବର୍ଣ୍ଣ ପଲଙ୍କ ।
ବିଚିତ୍ର ରଜ ପୁଣ୍ଡରୀକ ।।୮୮
ତା ଶଯ୍ୟା ଦୁଗ୍ଧ-ଫେନ-ନିଭା ।
ଦେଖି ଦେବଙ୍କ ହୋଏ ଲୋଭ ।।୮୯
ବିଶ୍ୱକର୍ମାର ଶିଳ୍ପୀପଣ ।
ଯେ ରଥେ ହୋଇଛି ଘଟଣ ।।୯୦
ମହାମର୍କତସ୍ଥଳୀ ଯହିଁ ।
ବିଦ୍ରୁମବେଦୀ ବିରାଜଇ ।।୯୧
ଯେ ଦ୍ୱାରେ ବିଦ୍ରୁମ-ଦେହଳୀ ।
ହୀରା କବାଟ ଯହିଁ କିଳି ।।୯୨
ବାମ ଦକ୍ଷିଣେ ପୂର୍ଣ୍ଣକୁମ୍ଭ ।
ବିରାଜେ ଇନ୍ଦ୍ରନୀଳସ୍ତମ୍ଭ ।।୯୩
ଜଳନ୍ତି ପଦ୍ମରାଗ ଦୀପେ ।
ବିଚିତ୍ର ଶିଖେ ଚନ୍ଦ୍ରତପେ ।।୯୪
ମୌକ୍ତିକ ହେମମାଳା ଲମ୍ବେ ।
ପାଟଦୋଳିକା ରତ୍ନସ୍ତମ୍ଭେ ।।୯୫
ଶ୍ୱେତହଂସକ ପାରାବତ ।
ନାଦ କରନ୍ତି ଉନମତ୍ତ ।।୯୬
ବିମାନଶିଖେ ଜଳାରନ୍ଧ୍ରେ ।
ଧୂମ ନିର୍ଗତ ଧୂପ ଗନ୍ଧେ ।।୯୭
ବିହାର ସ୍ଥାନ ସୁମଣ୍ଡନ ।
ସୁବର୍ଣ୍ଣ ନିର୍ମିତ ପ୍ରାଙ୍ଗଣ ।।୯୮
ନାନା ବିଶ୍ରାମ ସ୍ଥାନ ଶୋହେ ।
ଦେଖି ଯୋଗୀଙ୍କ ମନ ମୋହେ ।।୯୯
ବିମାନେ ଯେବେ ବିହରନ୍ତି ।
ସେ ସୁଖ ସେମାନେ ବାଞ୍ଛନ୍ତି ।।୧୦୦

Dr. Sudhanshu Sekhar Mishra

ନାନା ବିଚିତ୍ର କର୍ମମୟେ ।
ଦିବ୍ୟପୁରରେ ଶୋଭା ପାଏ ।।୧୦୧
ଶୋହେ ସୁବର୍ଣ୍ଣ ପୀଢ଼ମାନ ।
ସରସ ସୁଖ ଉପାଧାନ ।।୧୦୨
ଭୁବନ ବେଢ଼ିଣ ଉଦ୍ୟାନ ।
ଯହିଁ ଅମର ଦ୍ରୁମମାନ ।।୧୦୩
ଫଳପୁଷ୍ପରେ ପରିପୂର୍ଣ୍ଣ ।
ତହିଁ ଲମ୍ବିତ ଲତାମାନ ।।୧୦୪
ବିହଙ୍ଗ-ମିଥୁନେ କ୍ରୀଡ଼ନ୍ତି ।
ମତ୍ତ-ମଧୁପେ ଗୁଞ୍ଜରନ୍ତି ।।୧୦୫
ବିବୁଧ-ଅନୁଚର ମାନେ ।
ବିହରୁଥାନ୍ତି ଉପବନେ ।।୧୦୬
ସେ ଦେବହୂତି ଯଶ-କୀର୍ତ୍ତି ।
ସୁସ୍ୱରେ ଗୀତ ସେ ଗାବନ୍ତି ।।୧୦୭
ଦିବ୍ୟ ବିଚିତ୍ର ବାପୀମାନ ।
କମଳ ଗନ୍ଧେ ସୁବାସନ ।।୧୦୮
କର୍ଦ୍ଦମ ତହିଁ ବିହରନ୍ତି ।
ସଙ୍ଗେ ସୁନ୍ଦରୀ ଦେବହୂତି ।।୧୦୯
ଏମନ୍ତ ରମ୍ୟ ସୁଖ ସ୍ଥାନ ।
ବାଞ୍ଛନ୍ତି ଇନ୍ଦ୍ର ପତ୍ନୀମାନ ।।୧୧୦
ସେ ପୁର ତେଜି ଦେବହୂତି ।
ଯୋଗସାଧନେ କଲେ ମତି ।।୧୧୧
ପ୍ରତେଜି ସ୍ୱାମୀ ପୁତ୍ର ଗଲେ ।
ତେଣୁ ବିରହେ ନିମଜ୍ଜିଲେ ।।୧୧୨
ଶୋକରେ ବିଷର୍ଣ୍ଣ-ବଦନ ।
ତଥାପି ଯୋଗେ ଦୃଢ଼ମନ ।।୧୧୩
ପତି-ବିଚ୍ଛେଦ ଦୁଃଖାକୁଳେ ।
ପୁତ୍ର ସୁସଙ୍ଗେ ସୁଖେ ଥିଲେ ।।୧୧୪
ସେ ପୁତ୍ର ତେଜି ଗଲେ ବନ ।
ଏଣୁ ବିଚ୍ଛେଦେ ଦୁଃଖ ମନ ।।୧୧୫
ବତ୍ସା ବିଯୋଗେ ଯେହ୍ନେ ଗାଈ ।
ଯେମନ୍ତେ ବ୍ୟାକୁଳେ ରୋଦଇ ।।୧୧୬
ସେ ରୂପେ ଆକୁଳ ହୋଇଲେ ।
ହା ପୁତ୍ର ବୋଲି ମୋହଗଲେ ।।୧୧୭
ଜନ୍ମିଲା ହୃଦେ ତତ୍ତ୍ୱଜ୍ଞାନ ।
ତଥାପି ଶୋକ ବିଦ୍ୟମାନ ।।୧୧୮

ପୁତ୍ରର ଗୁଣ ଅନୁକ୍ଷଣେ ।
ସ୍ମରଣ କରନ୍ତି ରୋଦନେ ।।୧୧୯
ଦୁଃଖେ ତୃଷିତ ତଷାନନ ।
ଦେ ଦେବହୂତି ପ୍ରତିଦିନ ।।୧୨୦
ଧ୍ୟାନେ ନିରୋପି କପିଳଙ୍କୁ ।
ସନ୍ତତି ଡାକନ୍ତି ତାହାଙ୍କୁ ।।୧୨୧
ସ୍ନେହ ଛାଡ଼ିଲା ଧନାଗାରେ ।
ଚିତ୍ତ ରହିଲା ପୁତ୍ରଠାରେ ।।୧୨୨
ମନକୁ କ୍ରମେ ସ୍ଥିର କଲେ ।
ନିଶ୍ଚଳେ ସୁଦୃଢ଼େ ବସିଲେ ।।୧୨୩
ଯେ ଜ୍ଞାନ ପୁତ୍ର କହିଥିଲେ ।
ସେ ରୂପେ ନିତ୍ୟେ ଧ୍ୟାନ କଲେ ।।୧୨୪
ବିଶୁଦ୍ଧ ହୋଇଅଛି ମନ ।
ତେଣୁ ନିଶ୍ଚଳରୂପେ ଧ୍ୟାନ ।।୧୨୫
ଭକ୍ତିଯୋଗରେ ଦୃଢ଼ ହେଲେ ।
ଶାସ୍ତ୍ରବିଧିରେ ଆରାଧିଲେ ।।୧୨୬
ବୈରାଗ୍ୟଭାବେ ତତ୍ତ୍ୱଜ୍ଞାନ ।
ତେଣୁ ଭାବନ୍ତି ଭଗବାନ ।।୧୨୭
ଆତ୍ମାକୁ ମାନସେ ଦେଖିଲେ ।
ତା ବିନୁ ଆନ ନ ଭାବିଲେ ।।୧୨୮
ଯେ ଆତ୍ମା ହୋଏ ବିଶ୍ୱମୁଖ ।
ବିନାଶି ମାୟାଗୁଣ ଦୁଃଖ ।।୧୨୯
ଏ ଜୀବ ଆଶ୍ରୟଯେ ବ୍ରହ୍ମ ।
ତହିଁ ରଖିଲେ ମତି ଧ୍ୟାନ ।।୧୩୦
ତାହାଙ୍କ ଗଲା ଜୀବଭାବ ।
ହୋଇଲା ଆତ୍ମତତ୍ତ୍ୱ ଲାଭ ।।୧୩୧
ସଂସାର-କ୍ଳେଶ ନିବର୍ତ୍ତିଲା ।
ତା ଗୁଣଭ୍ରମ ଦୂରେ ଗଲା ।।୧୩୨
ଆପଣା ଦେହ ପାଶୋରିଲେ ।
ସେ ବ୍ରହ୍ମସ୍ୱରୂପେ ରହିଲେ ।।୧୩୩
ଯେସନେ ସ୍ୱପ୍ନ ଦେଖୁଥାଇ ।
ନିଦ୍ରା ପ୍ରବୋଧେ ନ ଦିଶଇ ।।୧୩୪
ସେ ରୂପେ ଦେହ ପାଶୋରିଲେ ।
କେବଳ ବ୍ରହ୍ମକୁ ଲଭିଲେ ।।୧୩୫
ସେ ଦେବହୂତି ତପ-କ୍ଳେଶେ ।
ଶରୀର ମଳିନ ପ୍ରକାଶେ ।।୧୩୬

ଅମର-ଯୁବତୀ-ସକଳେ ।
ଯେ ଅଙ୍ଗ ସମ୍ମାର୍ଜ୍ଜୁଣ ଥିଲେ ।।୧୩୭
ସେ ଦେହ ମଳିନ ଦିଶିଲା ।
ତହିଁ ତା ଆଦର ନୋହିଲା ।।୧୩୮
ଯେଣୁ ତା ମନୁ ତାପ ଗଲା ।
ଏଣୁ ସେ ଅକୃଶ ହୋଇଲା ।।୧୩୯
ସଧୂମ-ପାବକର ପ୍ରାୟେ ।
ତେବେ ହେଁ ଅଙ୍ଗ ଶୋଭାପାଏ ।।୧୪୦
ମନ ନିବେଶି କୃଷ୍ଣଭାବେ ।
ବସି ରହିଲେ ଶାନ୍ତିଲାଭେ ।।୧୪୧
ଦେହ ହୋଇଲା ଯୋଗେ ଲୟ ।
ଆବର କାହିଁ ଲଜ୍ଜା ଭୟ ।।୧୪୨
ସୁକେଶ ବନ୍ଧନ ଫିଟିଲା ।
ଅଙ୍ଗେ ବସନ ନ ରହିଲା ।।୧୪୩
ପ୍ରାର୍‌ବଧ କର୍ମ ଭୋଗ ଯାଏ ।
ଏ ଦେହବନ୍ଧ ମାତ୍ର ଥାଏ ।।୧୪୪
ଏଣୁ ସେ ଦେହ ମାତ୍ର ଅଛି ।
ତା' ପାଇଁ ନ ସ୍ମରଇ କିଛି ।।୧୪୫
ଶୁଣ ହେ ବିଦୁର ତଦନ୍ତେ ।
ସେ ଦେବୀ ଯୋଗରେ ରହନ୍ତେ ।।୧୪୬
ଲଭିଲେ ସେ ବ୍ରହ୍ମ-ନିର୍ବାଣ ।
ଯେସନେ ଜଳେ ଜଳ ଲୀନ ।।୧୪୭
ଶୁଣ ବିଦୁର ଯେଉଁସ୍ଥଳେ ।
ସେ ଦେବୀ ସୁସିଦ୍ଧି ଲଭିଲେ ।।୧୪୮
ସେ ସ୍ଥଳ ପୁଣ୍ୟକ୍ଷେତ୍ର ହେଲା ।
ଭୁବନେ ବିଦିତ ହୋଇଲା ।।୧୪୯
ତା ନାମ ସିଦ୍ଧପଦ କହି ।
ସିଦ୍ଧେ ସୁସିଦ୍ଧ ଯହିଁ ହୋଇ ।।୧୫୦
ସେ ଦେବହୂତି କଳେବର ।
ଯୋଗେ ସୁସିଦ୍ଧ ପୁଣ୍ୟତର ।।୧୫୧
କୃଷ୍ଣ ଭାବନା ଧ୍ୟାନ ନିତ୍ୟେ ।
ଆନନ୍ଦ ଭକ୍ତି ଯୋଗ ଯୁତେ ।।୧୫୨
ସେ ଧ୍ୟାନେ ଶରୀର ମିଳାଇ ।
ନଦୀ ସ୍ୱରୂପେ ଗଲେ ବହି ।।୧୫୩
ନଦୀଙ୍କ ଶ୍ରେଷ୍ଠ ସେ ହୋଇଲା ।
ସୁପୁଣ୍ୟ ତୀର୍ଥ ବୋଲାଇଲା ।।୧୫୪

Dr. Sudhanshu Sekhar Mishra

ଯାହାଙ୍କୁ ସେବି ସିଦ୍ଧମାନେ ।
ସିଦ୍ଧି ଲଭନ୍ତି ସେହୁ ସ୍ଥାନେ ॥୧୫୫
ନାମ ତା ସିଦ୍ଧିକା ହୋଇଲା ।
ସ୍ମରଣେ ପାପ ବିନାଶିଲା ॥୧୫୬
ସେ ଯେ କପିଳ ମହାଯୋଗୀ ।
ବିଷୟେ ହୋଇ ବଇରାଗୀ ॥୧୫୭
ମାତାଙ୍କ ସ୍ନେହ ତ୍ୟାଗି ଗଲେ ।
ଐଶାନ୍ୟ-ଦିଗେ ପ୍ରବେଶିଲେ ॥୧୫୮
ସମୁଦ୍ର-ତୀରେ ଘୋରବନେ ।
ବସେ ନିର୍ମଳ ଯୋଗ ଧ୍ୟାନେ ॥୧୫୯
ସମୁଦ୍ର ତାହାଙ୍କୁ ଦେଖିଲେ ।
ଆନନ୍ଦମନେ ପୂଜା କଲେ ॥୧୬୦
ସେ ତା'ଙ୍କୁ ଦେଲେ ଦିବ୍ୟସ୍ଥାନ ।
ତହିଁ ରହିଲେ ଭଗବାନ ॥୧୬୧
ଯହିଁ ସକଳ ସୁରଗଣ ।
ସେବନ୍ତି ଯେଝା ନିଯୋଗଣ ॥୧୬୨
ସିଦ୍ଧ ଚାରଣ ମୁନିଜନେ ।
ଗନ୍ଧର୍ବ ଅପସରା ଗଣେ ॥୧୬୩

ସ୍ତୁତି କରନ୍ତି କପିଳଙ୍କୁ ।
ସଭୟେ ନିତ୍ୟେ ସେବି ତା'ଙ୍କୁ ॥୧୬୪
ଯୋଗେ ରହିଲେ ମହାମୁନି ।
ସାଂଖ୍ୟ ଆଚାର୍ଯ୍ୟମାନ ଘେନି ॥୧୬୫
ତ୍ରିଲୋକଜନ ଶାନ୍ତି ପାଇଁ ।
ଯୋଗେ ରହିଲେ ଯୋଗସାଇଁ ॥୧୬୬
ରହିଲେ ବ୍ରହ୍ମକଚ୍ଛ ଯାଏ ।
ଲୋକଶିକ୍ଷାରେ ଦେବରାଏ ॥୧୬୭
ବିଦୁର ପଚାରିଲୁ ଯାହା ।
ସମ୍ବାଦି କହିଲି ମୁଁ ତାହା ॥୧୬୮
କପିଳ-ଦେବହୂତିଙ୍କର ।
ପବିତ୍ର ସୁଜ୍ଞାନ ବିଚାର ॥୧୬୯
ଏହା ଯେ ଶ୍ରବଣ କରନ୍ତି ।
କି ଅବା ବଦନେ ଗୁଣନ୍ତି ॥୧୭୦
ଆନନ୍ଦେ ସଭାମଧ୍ୟେ କହେ ।
ଅଶେଷଜନ୍ମ ପାପ ଦହେ ॥୧୭୧
ସେ ସର୍ବେ ଗୋବିନ୍ଦ-ଚରଣେ ।
ଭକ୍ତି ଲଭନ୍ତି ଅନୁକ୍ଷଣେ ॥୧୭୨

ଅନ୍ତେ ଲଭନ୍ତି ହରି-ସ୍ଥାନ ।
କେ କରିପାରେ ତାହା ଆନ ॥୧୭୩
ତୃତୀୟସ୍କନ୍ଧେ ଭାଗବତ ।
କପିଳ-ଜ୍ଞାନ ଉପଗତ ॥୧୭୪
ତେତିଶଅଧ୍ୟା ସମାପତ ।
ମୈତ୍ରେୟ-ବିଦୁର ଚରିତ ॥୧୭୫
ଶ୍ରୀକୃଷ୍ଣ ମୁଖରୁ ସମ୍ଭୂତ ।
ଭାବେ ହୋଇଲା ଭାଗବତ ॥୧୭୬
ଏ ଭାବେ ରସ ସାଧୁଜନ ।
ତୁମ୍ଭ ଚରଣେ ମୋର ଧ୍ୟାନ ॥୧୭୭
କହଇ ଜଗନ୍ନାଥ ଦାସ ।
ତ୍ରାହି କରିବେ ପୀତବାସ ॥୧୭୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ତୃତୀୟସ୍କନ୍ଧେ କାପିଳେୟ
ଉପାଖ୍ୟାନେ
ତ୍ରୟତ୍ରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

# ଚତୁର୍ଥ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ
ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ
ତତୋ ଜୟ ମୁଦୀରୟେତ୍ ॥

## ପ୍ରଥମ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏବେ ହେ ଶୁଣ ଏକଚିତ୍ତେ ।
ଚତୁର୍ଥସ୍କନ୍ଧେ ଭାବବତେ ॥୧
ପୂର୍ବେ ଯେ ପଦ୍ମଯୋନି-ତନୁଁ ।
ଜନ୍ମିଲେ ସ୍ୱାୟମ୍ଭୁବମନୁ ॥୨
ତା ନାରୀ ଶତରୂପା ନାମ ।
ପବିତ୍ର-ସର୍ବ-ଗୁଣ-ଧାମ ॥୩
ତାହାଙ୍କ ଠାରୁ ସୁତା ତିନି ।
ପରେ ଜନ୍ମିଲେ ସୁତବେନି ॥୪
ଆକୂତି ଦେବହୂତି ବେନି ।
ପ୍ରସୂତି ନାମେ କନ୍ୟା ତିନି ॥୫
ଆକୂତି ରୁଚିକି ବରିଲା ।
ପୁତ୍ରିକା ଧର୍ମେ ବିଭା ଦେଲା ॥୬
ଯେ ଧର୍ମବିଧି ବେଦମାର୍ଗେ ।
ବିଚାରି ଶତରୂପା ସଙ୍ଗେ ॥୭
ସେ ପ୍ରଜାପତି ଗୃହେ ଆଣି ।
ସ୍ୱଧର୍ମେ ଆକୂତି ଘରଣୀ ॥୮
ସେ କନ୍ୟା ଗର୍ଭେ ରୁଚି ବୀର୍ଯ୍ୟେ ।
ପୁତ୍ର ଦୁହିତା ମହାତେଜେ ॥୯
ଜନ୍ମିଲେ ଅତି ସୁଲକ୍ଷଣ ।
ତାହାଙ୍କ ନାମ ଏବେ ଶୁଣ ॥୧୦
ଯଜ୍ଞପୁରୁଷ ତା'ଙ୍କ ବଂଶେ ।
ଜନ୍ମ ହୋଇଲେ ବିଷ୍ଣୁ ଅଂଶେ ॥୧୧
କନ୍ୟା ସୁରୂପା ସୁଲକ୍ଷଣା ।
ତା' ନାମ କହିଲା ଦକ୍ଷିଣା ॥୧୨
ତହୁଁ କନ୍ୟାର ପୁତ୍ର ଆଣି ।
ସ୍ୱଗୃହେ ମନୁଙ୍କ ଘରଣୀ ॥୧୩
ନିଜ ଅପତ୍ୟ ପ୍ରିୟଭାବେ ।
ପାଳନ୍ତି ମନୁବଂଶ ଲାଭେ ॥୧୪
ରୁଚିର ଘରେ କନ୍ୟା ରହି ।
ଦକ୍ଷିଣା ନାମ ଯା'ର ହୋଇ ॥୧୫
ଏମନ୍ତେ ଗଲା ଦିନାକେତେ ।
ସେ ରୁଚି କନ୍ୟା ଅଭିମତେ ॥୧୬
ସେ ଯଜ୍ଞରୂପୀ ବିଷ୍ଣୁହସ୍ତେ ।
କନ୍ୟା ଅର୍ପିଲେ ବିଧିମତେ ॥୧୭
ସେ ଯଜ୍ଞପତି କନ୍ୟା ପାଇ ।
ଗୃହସ୍ଥ-ଧର୍ମ-ବିଧି ବହି ॥୧୮
ସ୍ୱଧର୍ମ ସାଧନାର ଅର୍ଥେ ।
ସୁବୁଦ୍ଧି ଘେନି ଶୁଦ୍ଧଚିତ୍ତେ ॥୧୯
ଦକ୍ଷିଣା ଗର୍ଭେ ମୁନିବଳା ।
ଦ୍ୱାଦଶପୁତ୍ର ଜନ୍ମ କଲା ॥୨୦
ତୋଷ ପ୍ରତୋଷ ପୁତ୍ରବେନି ।
ସନ୍ତୋଷ ଭଦ୍ର ଶାନ୍ତି ଘେନି ॥୨୧
ଷଷ୍ଠ ପୁତ୍ର ଯେ ଇଡସ୍ପତି ।
ବେଦେ ଅଧିକ ଯାର ମତି ॥୨୨
ଇଦ୍ମ କବି ଯେ ବିଭୂ ସ୍ୱାହ୍ନ ।
ସୁଦେବ ଦ୍ୱାଦଶେ ରୋଚନ ॥୨୩
ସେ ସ୍ୱାୟମ୍ଭୁବ ସୁଶାସନେ ।
ଏହି ଦ୍ୱାଦଶ ଭ୍ରାତୃଗଣେ ॥୨୪
ତୁଷିତ ନାମେ ଦେବଗଣେ ।
ହୋଇଲେ ସୃଷ୍ଟିର କାରଣେ ॥୨୫
ମରୀଚି ଆଦି ସପ୍ତମୁନି ।
ଯଜ୍ଞକୁ ଇନ୍ଦ୍ରପଦେ ଘେନି ॥୨୬
ଉତ୍ତାନପାଦ ପ୍ରିୟବ୍ରତ ।
ଏ ବେନି ମନୁରାଜା ସୁତ ॥୨୭
ଏହାଙ୍କ ବଂଶେ ରାଜା ଯେତେ ।
ପୁତ୍ର ପଉତ୍ର ଅପ୍ରମିତେ ॥୨୮
ଯେ କନ୍ୟା ଦେବହୁତି ନାମ ।
ତାହାକୁ ଲଭିଲେ କର୍ଦ୍ଦମ ॥୨୯
ତାହାର ନବକନ୍ୟା ଗର୍ଭେ ।
ଯେ ଅବା ଉପୁଜିଲେ ପୂର୍ବେ ॥୩୦
ସେ କଥା କହିବଇଁ ତୋତେ ।
ତୁ ଯେଣୁ ପଚାରିଲୁ ମୋତେ ॥୩୧
ପ୍ରସୂତି କନ୍ୟା ମନୁରାଜା ।
ଦେଇ ଦକ୍ଷକୁ କଲା ପୂଜା ॥୩୨
ତା'ର ସନ୍ତତି ତିନିଲୋକେ ।
ବିସ୍ତାର ହୋଇଲେ ଅନେକେ ॥୩୩
କହିବି ଏଥିର କାରଣ ।
ତୁ ଏବେ ସାବଧାନେ ଶୁଣ ॥୩୪
ଶୁଣନ୍ତେ ନବମୁନି - ବଂଶ ।
ହରଇ ଅଶେଷ କଲୁଷ ॥୩୫
କର୍ଦ୍ଦମ କନ୍ୟା ନାମ କଳା ।
ମରୀଚି ମୁନିଙ୍କୁ ଅର୍ପିଲା ॥୩୬
ମରୀଚି ବୀର୍ଯ୍ୟେ ତା' ଉଦରେ ।
ଜନ୍ମିଲେ ଯେ ବେନି କୁମରେ ॥୩୭
କଶ୍ୟପ ପୂର୍ଣ୍ଣିମାନ ଦୁଇ ।
ଶୁଚି ସୁନ୍ଦର ବେନିଭାଇ ॥୩୮

Dr. Sudhanshu Sekhar Mishra

ଏ ବେନିଭାଇଙ୍କର ବଂଶ ।
ଜଗତେ ଅନେକ ପ୍ରକାଶ ।।୩୯
ବିରଜ ପୂର୍ଣ୍ଣିମାର ସୁତ ।
ଅପର ବିଶ୍ୱଗ ବିଦିତ ।।୪୦
ତା ଦେବକୁଲ୍ୟା ନାମେ କନ୍ୟା ।
ପୂର୍ବେ ଯେ ଗଙ୍ଗା ନାମେ ଧନ୍ୟା ।।୪୧
ଅତ୍ରିର ଅନସୂୟା ନାରୀ ।
ଅତି ସୁନ୍ଦରୀ ସୁକୁମାରୀ ।।୪୨
ତାହାର ଗର୍ଭେ ତିନିସୁତ ।
ହୋଇଲେ ଜଗତେ ବିଦିତ ।।୪୩
ଦତ୍ତ ଦୁର୍ବାସା ସୋମ ତିନି ।
ତିନି ଦେବଙ୍କ ଅଂଶ ଘେନି ।।୪୪

ବିଦୁର ଉବାଚ

ଅତ୍ରିର ପତ୍ନୀ ଗର୍ଭଗତେ ।
ତ୍ରିଦେବ ଜନ୍ମିଲେ କେମନ୍ତେ ।।୪୫
ଯେ ବ୍ରହ୍ମା ବିଷ୍ଣୁ ତ୍ରିପୁରାରି ।
ସୃଷ୍ଟି ପାଳନ ଅନ୍ତକାରୀ ।।୪୬
କି ହେତୁ କି କର୍ମ ବିଚାରି ।
କିପାଁ ଜନ୍ମିଲେ ଦେହଧରି ।।୪୭
ଏ କଥା ସଂଶୟ ତ ମୋତେ ।
ଭୋ ମୁନି କହ ଶୁଦ୍ଧଚିତ୍ତେ ।।୪୮
ବିଦୁର-ତହୁଁ ଏହା ଶୁଣି ।
କହେ ମୈତ୍ରେୟ ମନେ ଶୁଣି ।।୪୯

ମୈତ୍ରେୟ ଉବାଚ

ଶୁଣ ବିଦୁର ଧୀରମନ ।
ଅତ୍ରି ଯେ ବ୍ରହ୍ମାର ନନ୍ଦନ ।।୫୦
ସ୍ୱଭାବେ ବ୍ରହ୍ମଜ୍ଞାନୀ ବର ।
ବ୍ରହ୍ମା ବୋଇଲେ ତପ କର ।।୫୧
ଯେ ତପେ ଯେବା ଦେବ ସେବି ।
ତା'ର ପ୍ରସନ୍ନେ ଫଳ ଲଭି ।।୫୨
ଏମନ୍ତ ପିତା ବାକ୍ୟ ମାନି ।
ଧର୍ମପତ୍ନୀକି ସଙ୍ଗେ ଘେନି ।।୫୩

ସେ ପତିବ୍ରତା ଅନସୂୟା ।
ତା'ଙ୍କୁ ନ ଲାଗେ ବିଷ୍ଣୁମାୟା ।।୫୪
ସେ ସାଧୁ ପତ୍ନୀ ସଙ୍ଗମେଳେ ।
ମିଳିଲେ ଋକ୍ଷ କୁଳାଚଳେ ।।୫୫
ସେ ଗିରିଶିଖେ ନାନା ଫୁଲ ।
ସୁରଙ୍ଗ ସୁଗନ୍ଧ ଅମୂଲ ।।୫୬
ଦିବ୍ୟ ସୁସଞ୍ଚ ପନ୍ତିପନ୍ତି ।
ମନମୋହନ ବୃକ୍ଷେ ଛନ୍ତି ।।୫୭
ଚନ୍ଦନ ଚମ୍ପକ ଅଶୋକ ।
ପାରିଜାତକ କୁରୁବକ ।।୫୮
ନିର୍ବିନ୍ଧ୍ୟା ନାମେ ନଦୀ ବହେ ।
ସ୍ନାନେ ସକଳ ପାପ ଦହେ ।।୫୯
ସେ ବନେ ପଶି ବେନିଜନେ ।
ତପ ସମାଧିଇ ଯୋଗଧ୍ୟାନେ ।।୬୦
ମନକୁ ଧରି ଆତ୍ମାବଳେ ।
ପବନ ଇନ୍ଦ୍ରିୟ ନିଶ୍ଚଳେ ।।୬୧
ଏକ ଚରଣେ ଉଭାହୋଇ ।
ଊର୍ଦ୍ଧ୍ୱ ବଦନେ ଶୂନ୍ୟେ ଧ୍ୟାୟି ।।୬୨
ଶତେ ବରଷ ଯୋଗଧ୍ୟାନେ ।
ବଞ୍ଚିଲେ ପବନ ଅଶନେ ।।୬୩
ନିଶ୍ଚଳ ଯୋଗଧ୍ୟାନେ ଚିନ୍ତି ।
ଚିତ୍ତେ ଏମନ୍ତ ବିଚାରନ୍ତି ।।୬୪
ଜଗତପ୍ରଭୁ ଯେ ଈଶ୍ୱର ।
ସୃଷ୍ଟି-ପାଳନ-ନାଶକର ।।୬୫
ଅନାଦି-ପରମ-କାରଣ ।
ଦୁର୍ଲ୍ଲଭ ଯାହାର ଚରଣ ।।୬୬
ଆମ୍ଭର ସନ୍ତତି କାରଣେ ।
ଶରଣ ଗଲୁ ତା ଚରଣେ ।।୬୭
ଏମନ୍ତ ଚିତ୍ତେ ବିଚାରନ୍ତି ।
ହରିହୁଁ ଆନ ନ ଜାଣନ୍ତି ।।୬୮
ସେ ହରି ଯେବେ ଦୟାକରେ ।
ଜନ୍ମ ଲଭିବେ ଆମ୍ଭ ଘରେ ।।୬୯
ସଫଳ ଜୀବନ ମୋହର ।
ସେ ହରି ଶରଣ-ସୋଦର ।।୭୦

ଏମନ୍ତ ଚିତ୍ତେ ନିତ୍ୟେ ଚିନ୍ତି ।
ସେ ବନେ ତପ ସେ ସାଧନ୍ତି ।।୭୧
ଊର୍ଦ୍ଧ୍ୱ-ବଦନେ ଯେ ନିଶ୍ଚଳ ।
ଏମନ୍ତେ ଗଲା ଦୀର୍ଘକାଳ ।।୭୨
ପ୍ରାଣ ସଂଯମ ଶ୍ରମବଳେ ।
ଶିରେ ଅନଳ ଉପୁଜିଲେ ।।୭୩
ତେଜେ ତାପିଲା ତିନିପୁର ।
ଦେଖି କମ୍ପିଲେ ସୁର-ନର ।।୭୪
ବିଶ୍ୱ କମ୍ପିତ ତେଜମୟେ ।
ଦେଖି ଗୋବିନ୍ଦ କଲେ ଭୟେ ।।୭୫
ତାହାଙ୍କ ଉପର ସନ୍ତୋଷେ ।
ଗୋବିନ୍ଦ ମନର ହରଷେ ।।୭୬
ତକ୍ଷଣେ ପ୍ରଭୁ ନରହରି ।
ଭବ-ବିରଞ୍ଚି ସଙ୍ଗେ କରି ।।୭୭
ବେଗେ ମିଳିଲେ ଶୂନ୍ୟପଥେ ।
ଗନ୍ଧର୍ବ ବିଦ୍ୟାଧର ଯୁତେ ।।୭୮
ଉରଗ ସିଦ୍ଧ ମୁନିବୃନ୍ଦେ ।
ଅପ୍ସରା ନୃତ୍ୟନ୍ତି ଆନନ୍ଦେ ।।୭୯
ସୁସ୍ୱର ଯନ୍ତ୍ରେ ଗୀତ ଗାନ ।
ଯେଣେ ସନ୍ତୋଷ ଆତ୍ମାମନ ।।୮୦
ସେ ମୁନି ଯଶ-ଗୁଣ ଗାଇ ।
ତପ ପ୍ରଭାବ ହୃଦେ ବହି ।।୮୧
ସେ ହରି କମଳ-ଲୋଚନ ।
ଅଶେଷ ଭବ-ବିମୋଚନ ।।୮୨
ହରଷ ମନ ଅତି ଶ୍ରମେ ।
ମିଳିଲେ ମୁନିଙ୍କ ଆଶ୍ରମେ ।।୮୩
ଦେବଙ୍କ ଆଗମନ ଦେଖି ।
ସେ ମୁନି ଆସନ ଉପେକ୍ଷି ।।୮୪
ସମାଧି ତପ ଆଚରଣେ ।
ଥିଲେ ଯେ ଏକଇ ଚରଣେ ।।୮୫
ବେନିଚରଣ ତଳେ ଥୋଇ ।
କପୋଳେ ବେନିକର ଦେଇ ।।୮୬
ହୃଦୟେ ପୁଲକିତ ଭାବ ।
ଯେଣୁ ଗୋବିନ୍ଦ-ଅନୁରାଗ ।।୮୭

Dr. Sudhanshu Sekhar Mishra

ହରଷ-ଅଶ୍ରୁଜଳ ନେତ୍ରେ ।
ପ୍ରଣାମ କରି ଦଣ୍ଡବତେ ॥୮୮
ଉଠି ଚାହିଁଲ ଶୂନ୍ୟମାର୍ଗେ ।
ତିନି ମୂରତି ଦେଖି ଆଗେ ॥୮୯
ବୃଷଭ ପକ୍ଷିରାଜ-ଯାନେ ।
ପରମହଂସର ବିମାନେ ॥୯୦
ତିନିଦେବଙ୍କ ଚିହ୍ନ ଦେଖି ।
ନିଶ୍ଚଳ କଲା ବେନିଆଖି ॥୯୧
ଦେଖଇ ବ୍ରହ୍ମ ବିଷ୍ଣୁହର ।
ନିଜ ଆୟୁଧ ଧରି କର ॥୯୨
ପ୍ରସନ୍ନ ଦିଶେ ମୁଖକାନ୍ତି ।
ଈଷିତ ହାସ୍ୟେ ଶୋଭାପାନ୍ତି ॥୯୩
ଏମନ୍ତେ ଦେଖି ତିନିମୁଖ ।
ମୁନି ଛାଡିଲେ ମନୁ ଦୁଃଖ ॥୯୪
କଣ୍ଠ-କୁଣ୍ଠିତ ଗଦଗଦେ ।
ପ୍ରଣାମ କରି ପଦ୍ମପାଦେ ॥୯୫
କରଅଞ୍ଜଳି ଶିରେ ଦେଇ ।
ବୋଲଇ ତା'ଙ୍କ ମୁଖ ଚାହିଁ ॥୯୬

ଅତ୍ରି ଉବାଚ

ସୃଷ୍ଟି ପାଳନ ସଂହାରଣେ ।
ତୁମ୍ଭର ଶରୀର ପ୍ରମାଣେ ॥୯୭
ଭକ୍ତଜନଙ୍କ ପ୍ରୀତି ଯୋଗେ ।
ଶରୀର ବହ ଯୁଗେ ଯୁଗେ ॥୯୮
ତୁମ୍ଭେ ଯେ ବ୍ରହ୍ମା ବିଷ୍ଣୁ ହର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୯୯
ତୁମ୍ଭର ରୂପ ଏ ସଂସାରେ ।
ପ୍ରକାଶ ଜନ-ଉପକାରେ ॥୧୦୦
ମୁଁ ଧ୍ୟାନ କଲି ଯାହାରୂପ ।
କହ ହେ ମୋତେ ତା ସ୍ୱରୂପ॥୧୦୧
ସନ୍ତାନ ପାଇଁ ଭଗବାନ ।
ତପେ ମୁଁ କଲି ଆରାଧନ ॥୧୦୨
ପ୍ରଜାର୍ଥେ ଧ୍ୟାନ କରି ଯାର ।
ସେ ଦେହୀଙ୍କର ଅଗୋଚର ॥୧୦୩

ଏବେ ତ୍ରିତୟ-ରୂପ ଧରି ।
ତୁମ୍ଭେ ବିଜୟ ମୋର ପୁରୀ ॥୧୦୪
କି ରୂପେ ତୁମ୍ଭେ ତିନିଜଣ ।
ଏ ସ୍ଥାନେ କଲ ଆଗମନ ॥୧୦୫
ଏଥିରେ ମୋହର ବିସ୍ମୟ ।
ସନ୍ଦେହ ଫେଡ ଦୟାମୟ ॥୧୦୬
ଏ ବଡ ବିଚିତ୍ର ମଣଇ ।
ସଂଶୟ ଫେଡ ଦୟାବହି ॥୧୦୭

ମୈତ୍ରେୟ ଉବାଚ

ବିଦୁର ସାବଧାନେ ଶୁଣ ।
ତ୍ରିଦେବ ହୋଇଣ ପ୍ରସନ୍ନ ॥୧୦୮
ଏମନ୍ତ ଅତ୍ରି ବାକ୍ୟ ଶୁଣି ।
ବିଷ୍ଣୁ ଶଙ୍କର ପଦ୍ମଯୋନି ॥୧୦୯
ବୋଲନ୍ତ ଅତ୍ରି ମୁଖ ଚାହିଁ ।
ଭୋମୁନି ଭାଗ୍ୟବନ୍ତ ତୁହି ॥୧୧୦
ତୋହର ପ୍ରାୟେ ତପଘୋରୋ
ତପସ୍ୱୀ ନାହିଁ ଏ ସଂସାରେ ॥୧୧୧
ପତ୍ନୀ ସହିତେ ଦୁଃଖ ସହି ।
ଯେ ତପ କଲୁ ବନେ ରହି ॥୧୧୨
ଚିତ୍ତେ ତୁ କହିଅଛୁ ଯାହା ।
ତେଣୁ ଆମ୍ଭର ତୋତେ ଦୟା॥୧୧୩
ଚିତ୍ତେ ତୁ କଲୁ ଯାର ଧ୍ୟାନ ।
ସେ ଆମ୍ଭ ତିନିରୂପ ଜାଣ ॥୧୧୪
ମନେ ତୁ ସଂଶୟ ନ କର ।
ହୋଇବୁ ତୋହର କୁମର ॥୧୧୫
ତୋହର ଯଶ ଏ ଜଗତେ ।
ନିଶ୍ଚଳ ରହିବ ଯେମନ୍ତେ ॥୧୧୬
କରିବୁଁ ସତ୍ୟ ଏ ବଚନ ।
କହି ହୋଇଲେ ଅନ୍ତର୍ଦ୍ଧାନ ॥୧୧୭
ନିଜ ଭୁବନେ ଗଲେ ଦେବେ।
ଶୁଣ ବିଦୁର କହୁଁ ଏବେ ॥୧୧୮
ସେ ମୁନିପତ୍ନୀ ଗର୍ଭ ଯୋଗେ।
ଜନ୍ମ ହୋଇଲେ ତିନିଦେବେ॥୧୧୯

ନୟନ ମଧ୍ୟୁ ସୋମ ଜାତ ।
ଉଦରୁ ଦତ୍ତ ଯେ ସମ୍ଭୂତ ॥୧୨୦
ଦୁର୍ବାସା ଧୂର୍ଜ୍ଜଟିର ଅଂଶେ ।
ଜନ୍ମ ହୋଇଲେ ପୃଷ୍ଠଦେଶେ॥୧୨୧
ତପର ପ୍ରଭାବ ଏ ପୁଣ ।
ଏବେ ଅଙ୍ଗିରା ବଂଶ ଶୁଣ ॥୧୨୨
ଶ୍ରଦ୍ଧା ଯେ ଅଙ୍ଗିରା ଯୁବତୀ ।
ତା'ର ସଙ୍ଗମେ ପ୍ରଜାପତି ॥୧୨୩
ଚାରି-କୁମାରୀ ଜନ୍ମ କଲା ।
ସୁନ୍ଦର-ରୂପ-ଗୁଣ-ଶୀଳା ॥୧୨୪
ତୁଳନା ନାହିଁ ଅନୁପମ ।
ଶୁଣ ହୋ ତାହାଙ୍କର ନାମ ॥୧୨୫
ପ୍ରଥମ କନ୍ୟା ସିନୀବାଲୀ ।
ଅପରେ କୁହୁ ରାକାବାଳୀ ॥୧୨୬
ଚତୁର୍ଥ କନ୍ୟା ଅନୁମତି ।
ଏମନ୍ତେ କନ୍ୟାଙ୍କର ଖ୍ୟାତି ॥୧୨୭
ଅପରେ ବେନିପୁତ୍ର ଜାତ ।
ଉତଥ୍ୟ ବୃହସ୍ପତି ଖ୍ୟାତ ॥୧୨୮
ଏ ସ୍ୱାରୋଚିଷ ମନ୍ୱନ୍ତରେ ।
ଗୁଣେ ବିଖ୍ୟାତ ତିନିପୁରେ ॥୧୨୯
ବ୍ରହ୍ମା ବନ୍ଦିତ ତାଙ୍କ ଗୁଣ ।
ପୁଲସ୍ତ୍ୟ ବଂଶ ଏବେ ଶୁଣ ॥୧୩୦
ଅଗସ୍ତ୍ୟ ହବିର୍ଭୂ ଉଦରେ ।
ଜନ୍ମିଲେ ପୁଲସ୍ତ୍ୟ ବୀର୍ଯ୍ୟରେ॥୧୩୧
ଏ ଅନ୍ୟ ଜନ୍ମରେ ଜଠର ।
ଅଗ୍ନିରେ ଖ୍ୟାତ ତିନିପୁର ॥୧୩୨
ବିଶ୍ରବା ନାମେ ଆର ସୁତ ।
ଯା' ଯଶ ତିନିପୁରେ ଖ୍ୟାତ ॥୧୩୩
ତା' ପତ୍ନୀ ନାମ ଇଡବିଡା ।
ଦୁର୍ଜୟ ପୁତ୍ର ପ୍ରସବିଲା ॥୧୩୪
ବିଶ୍ରବା ଦେଖି ତା' ଶରୀର ।
ତା' ନାମ କହିଲା କୁବେର ॥୧୩୫
ପୁଣି ବିଶ୍ରବା ତେଜ ଘେନି ।
କେଶିନୀ ଗର୍ଭେ ପୁତ୍ରତିନି ॥୧୩୬

Dr. Sudhanshu Sekhar Mishra

ରାବଣ କୁମ୍ଭକର୍ଣ୍ଣ ନାମ ।
ତେଜେ ତ୍ରୈଲୋକ୍ୟ ନାହିଁ ସମା॥୧୩୬
ଜନ୍ମ ହୋଇଲେ ବିଭୀଷଣ ।
ବିଷ୍ଣୁ ଭକତ ମହାଜନ ॥୧୩୮
ପୁଲହ-ବଂଶ ଏବେ ଶୁଣ ।
କହିବା ତାହାଙ୍କର ଗୁଣ ॥୧୩୯
ପୁଲହ-ଭାର୍ଯ୍ୟା ଗତି ଗର୍ଭେ ।
ତିନି-ବାଳକ ଜନ୍ମ ଲଭେ ॥୧୪୦
କେ ପାରେ ତାଙ୍କ ଗୁଣଚିନ୍ତି ।
ଅନଳ ପ୍ରାୟେ ତେଜ କାନ୍ତି ॥୧୪୧
ଜ୍ୟେଷ୍ଠର ନାମ କର୍ମଶ୍ରେଷ୍ଠ ।
ଦ୍ୱିତୀୟ ବରୀୟସ ଶିଷ୍ଟ ॥୧୪୨
ସହିଷ୍ଣୁ ତୃତୀୟ ପ୍ରକାଶ ।
ଏବେ ତୁ ଶୁଣ କ୍ରତୁବଂଶ ॥୧୪୩
କ୍ରତୁର ପତ୍ନୀ କ୍ରିୟା ନାମ ।
ତା' ପୁତ୍ର ଶୁଣ ପୁଣ୍ୟଧାମ ॥୧୪୪
ଷଷ୍ଟି ସହସ୍ର ବାଲଖିଲ୍ୟା ।
ତା' ଗର୍ଭେ ପୁତ୍ର ଉପୁଜିଲା ॥୧୪୫
କେ ପାରେ ତାଙ୍କ ଗୁଣ ଚିନ୍ତି ।
ଅନଳ ପ୍ରାୟେ ବିରାଜନ୍ତି ॥୧୪୬
ଶୁଣ କହିବା ବିଷ୍ଣୁଭାବେ ।
ବଶିଷ୍ଠ ବୀର୍ଯ୍ୟେ ଉର୍ଜ୍ଜା ଗର୍ଭେ॥୧୪୭
ନିର୍ମଳ ଗୁଣ ସପ୍ତଋଷି ।
ମନୁଅନ୍ତରେ ଯାହା ଘୋଷି ॥୧୪୮
ଶୁଣ ବିଦୁର ମନ ସୁଖେ ।
ତାହାଙ୍କ ନାମ କହୁଁ ମୁଖେ ॥୧୪୯
ଜ୍ୟେଷ୍ଠ ଚିତ୍ରକେତୁ ସୁରୋଚି ।
ବିରଜା ମିତ୍ର ବେନି ବଷି ॥୧୫୦
ଉଲ୍ଲଣ ବସୁଭୃତ ଯାନ ।
ଦ୍ୟୁମାନ ଶକ୍ତି ଆଦି ଅନ୍ୟ ॥୧୫୧
ଚିତିର ବଂଶ ଏବେ କହି ।
ଶୁଣ ବିଦୁର ମନ ଦେଇ ॥୧୫୨
ଚିତି ଯେ ଅଥର୍ବଣ ପତ୍ନୀ ।
ତା' ଗର୍ଭେ ଏକପୁତ୍ର ଜନ୍ମି ॥୧୫୩

ଦଧୀଚି ନାମେ ମହାଧୀର ।
ତା' ଅନ୍ୟନାମ ଅଶ୍ୱଶିର ॥୧୫୪
କେ କହିପାରେ ତାଙ୍କ ଗୁଣ ।
ଏବେ ତୁ ଭୃଗୁବଂଶ ଶୁଣ ॥୧୫୫
ଭୃଗୁର ପତ୍ନୀ ଖ୍ୟାତି ଗର୍ଭେ ।
ତିନି ଅପତ୍ୟ ଜନ୍ମ ଲଭେ ॥୧୫୬
ଧାତା ବିଧାତା ବେନି ସୁତ ।
କନ୍ୟା ଏ କମଳା ସମ୍ଭୂତ ॥୧୫୭
କମଳା ବିଷ୍ଣୁକୁ ବରିଲା ।
ସେ ଅନୁରୂପ ପତି କଲା ॥୧୫୮
ଧାତା ବିଧାତା ବେନିବାଳେ ।
ସୁନ୍ଦରରୂପ ବାଳକାଳେ ॥୧୫୯
ମେରୁ ଋଷିର ଯେ ଦୁହିତା ।
ଆୟତି ନିୟତି ସମ୍ଭୂତା ॥୧୬୦
ଏ ବେନିକନ୍ୟା ବେନିଭାଇ ।
ବିଭା ହୋଇଲେ ଭାବ ବହି ॥୧୬୧
ସେ ବେନିକନ୍ୟା ଗର୍ଭଗତେ ।
ଜନ୍ମ ଲଭିଲେ ବେନିସୁତେ ॥୧୬୨
ମୃକଣ୍ଡ ପ୍ରାଣ ତାଙ୍କ ନାମ ।
ସୁନ୍ଦରେ ସମ ନୋହେ କାମ ॥୧୬୩
ମୃକଣ୍ଡ ସୁତ ମାର୍କଣ୍ଡେୟ ।
ପ୍ରାଣର ଏକଇ ତନୟ ॥୧୬୪
ତା ନାମ ବେଦଶିରା ହୋଏ ।
ମୁନିଙ୍କ ମଧ୍ୟେ ମହାଶୟେ ॥୧୬୫
ଭୃଗୁର କବି ନାମେ ପୁତ୍ର ।
ଉଶନାମୁନି ତା'ର ସୁତ ॥୧୬୬
ଏ ସର୍ବମୁନି ମହାଜନ ।
ସ୍ୱଭାବେ ତ୍ରୈଲୋକ୍ୟ-ଭାବନ॥୧୬୭
ଏମନ୍ତେ କର୍ଦ୍ଦମ ଦୁହିତୀ ।
କହିଲି ମୁନିବଂଶ ଖ୍ୟାତି ॥୧୬୮
ଯେ ଏହା ଶୁଣନ୍ତି ସଂସାରେ ।
ଜ୍ଞାନ-ଅଜ୍ଞାନ ପାପ ହରେ ॥୧୬୯
ଯେ ସ୍ୱାୟମ୍ଭୁବ ମନୁସୁତା ।
ପ୍ରସୂତି ନାମେ ପତିବ୍ରତା ॥୧୭୦

ତାହାର ପତି ଶୁଦ୍ଧମତି ।
ଯା ନାମ ଦକ୍ଷ ପ୍ରଜାପତି ॥୧୭୧
ତା' ବୀର୍ଯ୍ୟେ ପ୍ରସୂତିର ଗର୍ଭେ ।
ଷୋଡଶ କନ୍ୟା ସେ ପ୍ରସବେ॥୧୭୨
ଜନ୍ମିଲେ ନାରୀ ସୁଲୋଚନୀ ।
ରୂପେ ତ୍ରିଭୁବନ-ମୋହିନୀ ॥୧୭୩
ଧର୍ମକୁ ତ୍ରୟୋଦଶ ନାରୀ ।
ଦେଲା ସେ ଅଳଙ୍କାର ଭରି ॥୧୭୪
ଅଗ୍ନିକି ଏକକନ୍ୟା ଦେଲା ।
ପିତୃପୁରୁଷେ ଏକ ବାଳା ॥୧୭୫
ଅପରା ସତୀ ନାମେ କନ୍ୟା ।
ସୁଶୀଳା ପତିବ୍ରତା ଧନ୍ୟା ॥୧୭୬
ଭବଙ୍କୁ କଲେ ସମ୍ପ୍ରଦାନ ।
ଯା' ନାମ ଭବ-ବିନାଶନ ॥୧୭୭
ବିଦୁର ହୋଇ ଶୁଦ୍ଧମନ ।
ଧର୍ମ-ପତ୍ନୀଙ୍କ ନାମ ଶୁଣ ॥୧୭୮
ଶ୍ରଦ୍ଧା ମଇତ୍ରୀ ଦୟାଶାନ୍ତି ।
ତୁଷ୍ଟି ପୁଷ୍ଟି କ୍ରିୟା ଉନ୍ନତି ॥୧୭୯
ତିତିକ୍ଷା ଲଜ୍ଜା ବୁଦ୍ଧି ମେଧା ।
ମୂର୍ତ୍ତି ସହିତେ ଯେ ପ୍ରସିଦ୍ଧା ॥୧୮୦
ଏ ତ୍ରୟୋଦଶ ଧର୍ମନାରୀ ।
ଦକ୍ଷ ସୁମନେ ବିଭା କରି ॥୧୮୧
ଶ୍ରଦ୍ଧାର ସୁତ ସତ୍ୟ ଖ୍ୟାତ ।
ପ୍ରସାଦ ମୈତ୍ରୀ ତହୁ ଜାତ ॥୧୮୨
ଦୟାର ସୁତ ଯେ ଅଭୟ ।
ସୁଖ ଯେ ଶାନ୍ତିର ତନୟ ॥୧୮୩
ହର୍ଷକୁ ପ୍ରସବିଲା ତୁଷ୍ଟି ।
ଗର୍ବ ପ୍ରସବ କଲା ପୁଷ୍ଟି ॥୧୮୪
କ୍ରିୟାର ତହୁଁ ଯୋଗ ହୋଇ ।
ଉନ୍ନତି ଦର୍ପ ପ୍ରସବଇ ॥୧୮୫
ତିତିକ୍ଷା ତହୁଁ କ୍ଷେମ ହେଲା ।
ଲଜ୍ଜା ବିନୟ ଜାତ କଲା ॥୧୮୬
ବୁଦ୍ଧିର ପୁତ୍ର ଅର୍ଥ ପୁଣ ।
ମେଧାର ତନୟ ସ୍ମରଣ ॥୧୮୭

Dr. Sudhanshu Sekhar Mishra

ମୂର୍ତ୍ତିର ସୁତ ଏବେ କହି ।
ଆଶ୍ରିତ ସର୍ବଗୁଣ ଯହିଁ ॥୧୮୮
ସେ ବେନି ନର-ନାରାୟଣ ।
ତାହାଙ୍କ ଜନ୍ମ-କର୍ମ ଶୁଣ ॥୧୮୯
ଏ ମୂର୍ତ୍ତିପୁତ୍ର ଜନ୍ମଦିନେ ।
ଆନନ୍ଦ ଏ ତିନିଭୁବନେ ॥୧୯୦
ଦିଗ ପବନ ଗିରି ନଦୀ ।
ଆନନ୍ଦେ ଉଚ୍ଛୁଳେ ଜଳଧି ॥୧୯୧
ଆକାଶ ପୂରେ ତୂର୍ଯ୍ୟ ଘୋଷେ ।
ନିର୍ମେଘେ କୁସୁମ ବରଷେ ॥୧୯୨
ସକଳ ମୁନି ସ୍ତୁତି କଲେ ।
ଅପ୍‌ସରାମାନେ ନୃତ୍ୟ ଭୋଳେ ॥୧୯୩
ଗନ୍ଧର୍ବ କିନ୍ନର ଆନନ୍ଦେ ।
ଗାଇଲେ ବିଦ୍ୟାଧରବୃନ୍ଦେ ॥୧୯୪
ସକଳ-ଗ୍ରହେ ଅନୁକୂଳ ।
ଉତ୍ସବ ପରମ-ମଙ୍ଗଳ ॥୧୯୫
ହରଷେ ହର-ପଦ୍ମଯୋନି ।
ସଙ୍ଗେ ଦେବତାବୃନ୍ଦ ଘେନି ॥୧୯୬
ମିଳିଲେ ଧର୍ମର ଭୁବନେ ।
ଆନନ୍ଦ ମନେ ସର୍ବଜନେ ॥୧୯୭

ଦେବଗଣ ଉବାଚ

ଯେ ନିଜ ମାୟାଗୁଣେ ହରି ।
ବିଶ୍ୱ ସଂସାରେ ରୂପ ଧରି ॥୧୯୮
ବିଶ୍ୱର ଯୋଗ-କ୍ଷେମ ଅର୍ଥେ ।
ଭାରତ ଭୂମି ମଧ୍ୟଗତେ ॥୧୯୯
ଧର୍ମର ଗୃହେ ଅବତରି ।
ପ୍ରକଟ ଋଷିରୂପ ଧରି ॥୨୦୦
ତପ ଆଚରେ ଜନହିତେ ।
ସେ ହରି ଚରଣେ ନମସ୍ତେ ॥୨୦୧
ଯେ ହରି ସୃଷ୍ଟି-ସ୍ଥିତି ଅର୍ଥେ ।
ଆମ୍ଭଙ୍କୁ ସୃଜି ଏ ଜଗତେ ॥୨୦୨
ସର୍ବ-ରକ୍ଷଣ ଅର୍ଥେ ହରି ।
ଆତ୍ମାକୁ ବେନିରୂପ କରି ॥୨୦୩
ପରିପାଳନ ତପବଳେ ।
ଆସନ ଧରଣୀମଣ୍ଡଳେ ॥୨୦୪
ଶ୍ରୀନିକେତନ ଜିଣି ନେତ୍ର ।
କିଞ୍ଚିତ ଦର୍ଶନେ ପବିତ୍ର ॥୨୦୫
ଯେ ପ୍ରାଣୀ ତୋତେ ଆଶ୍ରେକରେ ।
ଭବ-ଅର୍ଣ୍ଣବୁ ସୁଖେ ତରେ ॥୨୦୬
ଏମନ୍ତ ସୁରଗଣେ କହି ।
ସ୍ତୁତି କରନ୍ତି ମୁଖ ଚାହିଁ ॥୨୦୭
ସେ ଦେବସ୍ତୁତି ପୂଜା ଘେନି ।
ସେ ନର-ନାରାୟଣ ବେନି ॥୨୦୮
ଗମିଲେ ଜନ-ଉପକାରେ ।
ସଂସାର ଏଡିଣ ନିର୍ଭରେ ॥୨୦୯
ଜଗତଜନ ହିତ ଅର୍ଥେ ।
ସେ ଗନ୍ଧମାର୍ଦ୍ଦନ ପର୍ବତେ ॥୨୧୦
ତପ କରନ୍ତି ଅତିରେକେ ।
ଯା' ତପେ ପୁରନ୍ଦର କମ୍ପେ ॥୨୧୧
ଏବେ ସେ ଭାରତଭୂମିରେ ।
ମିଳିଲେ ଶୁଭଲଗ୍ନ ବେଳେ ॥୨୧୨
ସେ ବେନିରୂପେ ବିଷ୍ଣୁଅଂଶେ ।
ଜନ୍ମ ଲଭିଲେ ଧର୍ମବଂଶେ ॥୨୧୩
ଭୂମିର ଭାରା-ନିବାରଣେ ।
ଜଗତ ପରମ-କାରଣେ ॥୨୧୪
ସମ୍ଭୂତ ଯଦୁ-କୁରୁବଂଶେ ।
କୃଷ୍ଣ ଅର୍ଜୁନ ବିଷ୍ଣୁ ଅଂଶେ ॥୨୧୫
ଅଗ୍ନିର ସ୍ୱାହା ନାମେ ନାରୀ ।
ତିନିକୁମର ଜାତକରି ॥୨୧୬
ପାପକ ପବମାନ ଶୁଚି ।
ହୁତ ଭୋଜନେ ତା'ଙ୍କ ରୁଚି ॥୨୧୭
ଏ ତିନିବୀର୍ଯ୍ୟେ ଅଗ୍ନିଗଣେ ।
ଜନ୍ମିଲେ ସଂସାର ଧାରଣେ ॥୨୧୮
ପଞ୍ଚଚାଳିଶ ରୂପ ହୋଇ ।
ତେଜେ ଗଞ୍ଜନ୍ତି ସ୍ୱର୍ଗ ମହୀ ॥୨୧୯
ସେ ପୁଣି ପିତୃପିତାମହ ।
ସଙ୍ଗତେ ଅଣଚାଶ ଦେହ ॥୨୨୦
ସ୍ୱଚ୍ଛନ୍ଦେ ପିତୃଗଣ ସଙ୍ଗେ ।
ମିଳନ୍ତି ବୈତାନିକ-ରଙ୍ଗେ ॥୨୨୧
ଯେ ବ୍ରହ୍ମବାଦୀ ବିପ୍ରଗଣେ ।
ସେ ଯଜ୍ଞେ ମନ୍ତ୍ର ଉଚ୍ଚାରଣେ ॥୨୨୨
ଅଗ୍ନିରେ କରନ୍ତି ହବନ ।
ପିତୃଙ୍କ ନାମ ଏବେ ଶୁଣ ॥୨୨୩
ଅନଳ ସ୍ୱାତ୍ତ ବର୍ହିଷଦ ।
ସୌମ୍ୟ ଆଜ୍ୟପା ଆଦି ଭେଦ ॥୨୨୪
ସାଗ୍ନିକ ନିରଗ୍ନିକ ଦୁଇ ।
ଏହାଙ୍କ ପତ୍ନୀ ସ୍ୱଧା ହୋଇ ॥୨୨୫
ତା'ର ଉଦରେ କନ୍ୟା ବେନି ।
ଜନ୍ମିଲେ ପିତୃରୂପ ଘେନି ॥୨୨୬
ଯା' ନାମ ବୟୁନା ଧାରିଣୀ ।
ସ୍ୱଭାବେ ସେ ବ୍ରହ୍ମବାଦିନୀ ॥୨୨୭
ଏ ଅନ୍ତେ ଦକ୍ଷ ପ୍ରଜାପତି ।
ତା'ର ଦୁହିତା ନାମ ସତୀ ॥୨୨୮
ଈଶ୍ୱର ପତ୍ନୀ ସେ ସ୍ୱଭାବେ ।
ତା'ର ଚରିତ ଶୁଣ ଏବେ ॥୨୨୯
ଆତ୍ମସଦୃଶ ପୁତ୍ର ଗର୍ଭେ ।
ସେ ସତୀ କେବେହେଁ ନ ଲଭେ ॥୨୩୦
ପିତା-ଅବଜ୍ଞା ସ୍ୱାମୀ-ତୁଲେ ।
ଚିତ୍ତେ ସେ ନ ସହିଲା ଭଲେ ॥୨୩୧
ପିତାର ଯଜ୍ଞଶାଳେ ଯାଇ ।
ସ୍ୱାମୀର ଛଳେ କୋପ ବହି ॥୨୩୨
ଦେବଙ୍କ ମଧ୍ୟେ ଯଜ୍ଞଶାଳେ ।
ଜୀବନ ଛାଡେ ଯୋଗବଳେ ॥୨୩୩
ଚତୁର୍ଥସ୍କନ୍ଧେ ଭାଗବତେ ।
ଭାଷାପ୍ରବନ୍ଧ ଅର୍ଥଯୁତେ ॥୨୩୪
ସୁଜନଜନ ହିତ ଅର୍ଥେ ।
କହିଲେ ଦାସ ଜଗନ୍ନାଥେ ॥୨୩୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥସ୍କନ୍ଧେ
ବିଦୁରମୈତ୍ରେୟ ସମ୍ବାଦେ ନାମ
ପ୍ରଥମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

ବିଦୁର ଉବାଚ

ଯେ ଶିବ ସାଧୁଙ୍କର ଶ୍ରେଷ୍ଠ ।
ତା' ସଙ୍ଗେ ଦକ୍ଷ କଲା ହଟ ॥୧
ଦୁହିତାବତ୍ସଳ ସ୍ୱଭାବେ ।
ସତୀକୁ ଦେଇଅଛି ପୂର୍ବେ ॥୨
କିପାଁ ଅନୀତି ଆଚରିଲା ।
ସତୀକୁ ଅନାଦର କଲା ॥୩
ସଚରାଚର-ଗୁରୁ ହର ।
ସେ ଆତ୍ମାରାମେ ଯୋଗେଶ୍ୱର ॥୪
ଶାନ୍ତ-ବିଗ୍ରହ ନିର୍ବିକାର ।
ଅଦ୍ଭୁତ ମହିମା ଯାହାର ॥୫
ସମସୁହୃଦ ଶୁଦ୍ଧଚିତ୍ତ ।
ଜଗତବନ୍ଧୁ ବିଶ୍ୱନାଥ ॥୬
ତା'ଙ୍କୁ ଅବଜ୍ଞା କିପାଁକଲା ।
କେବା ତାହାକୁ ଶିକ୍ଷା ଦେଲା ॥୭
ଶ୍ୱଶୁର-ଜାମାତାର ସ୍ନେହ ।
କିପାଁ ଭାଙ୍ଗିଲା ଏହା କହ ॥୮
ଶିବଙ୍କୁ ଅନାଦର କଲା ।
ସେ ଦୁଃଖେ ସତୀ ପ୍ରାଣ ଦେଲା ॥୯
ଏ ବାଣୀ ଶୁଣି ମୋର ମନ ।
ଚଞ୍ଚଳ ଭାବେ ଛନଛନ ॥୧୦
ଭୋମୁନି କର ଅନୁଗ୍ରହ ।
କହ ହେ ନ ରହୁ ସନ୍ଦେହ ॥୧୧

ମୈତ୍ରେୟ ଉବାଚ

ଶୁଣ ବିଦୁର ଶାସ୍ତ୍ରଯୋଗେ ।
ସେ ବିଶ୍ୱସ୍ରଷ୍ଟାଙ୍କର ଯାଗେ ॥୧୨
ଯଜ୍ଞ ଆରମ୍ଭ ଆଚରଣେ ।
ମିଳିଲେ ସର୍ବ ଦେବଗଣେ ॥୧୩
ଅଶେଷ ମୁନିଙ୍କର ମେଳେ ।
ମିଳିଲେ ଦଶ ଦିଗପାଳେ ॥୧୪
ଯକ୍ଷ କିନ୍ନର ନାଗକୁଳ ।
ମିଳିଲେ ଜ୍ୱଳନ୍ତ ଅନଳ ॥୧୫
ପିତୃ ଦେବତାଗଣ ଆଦି ।
ଯେଣେ ଯେ ଯଜ୍ଞକୁ ସମ୍ପାଦି ॥୧୬
ଏମନ୍ତେ ସୁରଗଣ ଯେତେ ।
ମିଳିଲେ ବ୍ରହ୍ମାଙ୍କ ଅଗ୍ରତେ ॥୧୭
ସୁର କିନ୍ନର ବ୍ରହ୍ମମୁନି ।
ଦକ୍ଷଙ୍କୁ ସର୍ବେ ସଙ୍ଗେ ଘେନି ॥୧୮
ସେ ଦକ୍ଷ ନିଜ ବ୍ରହ୍ମତେଜେ ।
ସୁନ୍ଦରେ ତ୍ରିଭୁବନ ଗଞ୍ଜେ ॥୧୯
ଆଦିତ୍ୟପ୍ରାୟେ ଦେହ କାନ୍ତି ।
ମଣିକଙ୍କଣ ଝଟକନ୍ତି ॥୨୦
ବ୍ରହ୍ମାର ସଭା ମଧ୍ୟଗତେ ।
ଥିଲା ଯେ ତିମିର ଆୟତେ ॥୨୧
ଦକ୍ଷର ତେଜେ ତମ ଗଲା ।
ସେ ସଭା ନିର୍ମଳ ଦିଶିଲା ॥୨୨
ସଭାର ଜନେ ଦକ୍ଷ ଦେଖି ।
ଉଠିଲେ ଆସନ ଉପେକ୍ଷି ॥୨୩
ମଧ୍ୟେ ଯେ ବ୍ରହ୍ମା ଶିବ ଥିଲେ ।
ଦକ୍ଷକୁ ଦେଖି ନ ଉଠିଲେ ॥୨୪
ସେ ସଭାମଧ୍ୟେ ମୁନି ଯେତେ ।
ସାନନ୍ଦ ଭାବେ ଶୁଦ୍ଧ ଚିତ୍ତେ ॥୨୫
ଅଞ୍ଜଳି କରି ନିଜ ମାଥେ ।
ରୋମାଞ୍ଚ ଅଶ୍ରୁଜଳ ନେତ୍ରେ ॥୨୬
ଦକ୍ଷଙ୍କୁ ସାଧୁ ସାଧୁବାଣୀ ।
ଭାବେ କହନ୍ତି ପୁଣ ପୁଣି ॥୨୭
ସେ ଦକ୍ଷ ସଭାମଧ୍ୟେ ଗଲା ।
ବ୍ରହ୍ମା ଚରଣେ ପ୍ରଣମିଲା ॥୨୮
ସେ ବ୍ରହ୍ମା କୃତକୃତ୍ୟ ହୋଇ ।
ଦକ୍ଷକୁ ଆଲିଙ୍ଗନ ଦେଇ ॥୨୯
ନିଜ ସମୀପେ ବସାଇଲେ ।
ଅନେକ ପୁରସ୍କାର କଲେ ॥୩୦
ରୁଦ୍ର ଯେ ସଭା ମଧ୍ୟେ ଥିଲେ ।
ଦକ୍ଷଙ୍କୁ ମାନ୍ୟ ସେ ନ କଲେ ॥୩୧
ଦେଖି ରୁଦ୍ରର ଅସମ୍ମାନ ।
ଦକ୍ଷର ଚିତ୍ତେ ଗୁରୁ-ତମ ॥୩୨
ସେ ଦକ୍ଷ ସ୍ୱଭାବେ ଶ୍ୱଶୁର ।
ତାଙ୍କୁ ନ ଗଣିଲେ ଈଶ୍ୱର ॥୩୩
ଅବଜ୍ଞା ଦୋଷେ ସେ ପ୍ରଚଣ୍ଡ ।
ଯେହ୍ନେ ଉଦିତ ମାରତଣ୍ଡ ॥୩୪
ଅତି ହିଁ କୋପଭର ଚିତ୍ତେ ।
ବୋଲନ୍ତି ସଭାର ଅଗ୍ରତେ ॥୩୫
କର ପ୍ରସାରି ସଭା ମଧ୍ୟେ ।
କୋପେ ବୋଲନ୍ତି ଶାସ୍ତ୍ରବାଦେ ॥୩୬
ଶୁଣ ହେ ବ୍ରହ୍ମଋଷିଗଣେ ।
ଆଗମ ନିଗମ ପ୍ରମାଣେ ॥୩୭
ତୁମ୍ଭେ ତ ସଭାମଧ୍ୟେ ଅଛ ।
ଏହାର ଆଚାର ଦେଖୁଛ ॥୩୮
ଶାସ୍ତ୍ରେ ତୁମ୍ଭର ବାକ୍ୟ ଯେତେ ।
ଯେ ସଦାଚାର ଏ ଜଗତେ ॥୩୯
କେଲଂଘି ପାରେ ତାହା ବଳେ ।
ଏ ତିନି-ଭୁବନମଣ୍ଡଳେ ॥୪୦
ଦେଖ ଏ ତୁମ୍ଭର ବଚନ ।
ଲଙ୍ଘିଂଲା ମର୍କଟ-ଲୋଚନ ॥୪୧
ରୁଦ୍ର ବୋଲାଇ ଗର୍ବ କଲା ।
ଏ ମୋତେ ଦେଖି ନ ଉଠିଲା ॥୪୨
ଦେଖ ଏ ଲୋକପାଳ ମଧ୍ୟେ ।
ଯଶ ନାଶିଲା ଅପବାଦେ ॥୪୩
ଯେ ସାଧୁ ସନ୍ଥ ଆଚରଣ ।
କି ଭାବେ କଲାକ ଦୂଷଣ ॥୪୪
ମୋହର ଶିଷ୍ୟ ଏ ବୋଲାଇ ।
ଯେଣୁ ଦୁହିତା ଦେଲି ମୁହିଁ ॥୪୫
ଅଗ୍ନିଦେବତା ବିପ୍ର ସ୍ଥାନେ ।
ଦୁହିତା ଦେଇଛି ପ୍ରସନ୍ନେ ॥୪୬

Dr. Sudhanshu Sekhar Mishra

ବେଦବାକ୍ୟରେ ସନମତ ।
କରିଣ ବଚନ ଉଚିତ ॥୪୭
ଏଣୁ ମୁଁ ଏହାର ଶ୍ୱଶୁର ।
ଗୁରୁଙ୍କ ମଧ୍ୟେ ଗୁରୁବର ॥୪୮
ଅଭିବାଦନ ସ୍ତୁତିବାଦେ ।
ଧର୍ମେ ନମିବ ମୋର ପାଦେ ॥୪୯
ଏହା ନ କରି ମୋ' ଚରଣେ ।
ଅବଜ୍ଞା କଲା ମୂଢ଼ପଣେ ॥୫୦
ଏ ଲୁପ୍ତକ୍ରିୟା ହୀନାଚାର ।
ଅଶୁଚି ଶରୀର ଏହାର ॥୫୧
ମର୍ଯ୍ୟାଦା ଭେଦେ ଅଭିମାନୀ ।
ବର୍ତ୍ତଇ ଶୂଦ୍ରଦେହ ଘେନି ॥୫୨
ଏହା ନ ଜାଣି ମୁଁ ଅଜ୍ଞାନେ ।
ବିଶ୍ୱାସି ବ୍ରହ୍ମାର ବଚନେ ॥୫୩
ଦୁହିତା ଦାନ ଦେଲି ମୁହିଁ ।
ଶୂଦ୍ରକୁ ଯେହ୍ନେ ବେଦ କହି ॥୫୪
ଅପାତ୍ରେ ଦେଲା ଫଲ ମୋର ।
କ୍ରିୟା-କଳାପ ଶୁଣ ତା'ର ॥୫୫
ଶ୍ମଶାନବାସୀ ଏ ନିରତେ ।
ବର୍ତ୍ତଇ ଭୂତ ପ୍ରେତ ସାଥେ ॥୫୬
ଉନ୍ମତ୍ତ ପ୍ରାୟେ ନଗ୍ନ ହୋଇ ।
ଶ୍ମଶାନୁ ଶ୍ମଶାନେ ଭ୍ରମଇ ॥୫୭
ଜଟାକଳାପ ମୁକ୍ତକେଶ ।
ଶ୍ମଶାନ ଚିତାଭସ୍ମ ବେଶ ॥୫୮
ଚିତାଭସ୍ମରେ କରେ ସ୍ନାନ ।
ଶରୀରେ ଅସ୍ଥିର ଭୂଷଣ ॥୫୯
ଉନ୍ମତ୍ତ ଭୋଳେ ହାସ୍ୟ ମୁଖେ ।
ନିତ୍ୟେ ବଞ୍ଚଇ ଆତ୍ମ ସୁଖେ ॥୬୦
ପତ୍ନୀର ଉପଦେଶ ଫଳେ ।
ନିତ୍ୟେ ଭ୍ରମଇ ଅନ୍ତରାଳେ ॥୬୧
ଏହାର ନାମ ମାତ୍ର ଶିବ ।
ସ୍ୱଭାବେ ଅଟଇ ଅଶିବ ॥୬୨
ପ୍ରମତ୍ତ-ମତ୍ତଜନ-ପ୍ରିୟ ।
ଏଣୁ ଅଶୁଚି ଏହା କାୟ ॥୬୩

ପ୍ରଥମ-ଭୂତଗଣ-ପତି ।
ନିତ୍ୟେ ତାମସ ବହେ ମତି ॥୬୪
ଯେଣୁ ତାମସଜନ ପ୍ରିୟ ।
ନିତ୍ୟେ ନିନ୍ଦିତ ଏହା ଦେହ ॥୬୫
ନିର୍ଗୁଣଭୂତେ ଏ ଦୁର୍ମତି ।
ସୁହୃଦ ପ୍ରାୟେ ବହେ ମତି ॥୬୬
ଅଶୌଚ-ହୃଦୟ ଏହାର ।
କେବଳ ମନ୍ଦ-ବୁଦ୍ଧି-ପର ॥୬୭
ମୁଁ ମୂଢ଼ ନ ଜାଣି ଅଜ୍ଞାନେ ।
ବିଶ୍ୱାସି ବ୍ରହ୍ମାର ବଚନେ ॥୬୮
ଏହାକୁ ସତୀ କନ୍ୟା ଦେଲି ।
ଅତି ଅନୀତି ଆଚରିଲି ॥୬୯
ମୈତ୍ରେୟ କହେ ତୋଷମନେ ।
ଶୁଣ ବିଦୁର ଏକମନେ ॥୭୦

ମୈତ୍ରେୟ ଉବାଚ

ଏମନ୍ତେ କୁତ୍ସିତ ବଚନେ ।
ସେ ପ୍ରଜାପତି କୋପମନେ ॥୭୧
ଦୁର୍ବୁଦ୍ଧିପଣ ଆଚରିଲା ।
ଗିରିଶେ ବହୁ ନିନ୍ଦା କଲା ॥୭୨
ତକ୍ଷଣେ ଉଠି କୋପାନଳେ ।
ହସ୍ତ ଅଞ୍ଜଳି ଭରି ଜଳେ ॥୭୩
ଭୃଗୁର ବଚନ ସମ୍ମତେ ।
ହରଙ୍କୁ ଶାପଦେବା ଅର୍ଥେ ॥୭୪
ମନରେ ମହାକ୍ରୋଧ ଧରି ।
ଶିବେ ବୋଲନ୍ତି ଦୃଢ଼କରି ॥୭୫

ଦକ୍ଷ ଉବାଚ

ଇନ୍ଦ୍ର ଉପେନ୍ଦ୍ର ଆଦି ଯେତେ ।
ଅଶେଷ ଦେବଙ୍କ ସମେତେ ॥୭୬
ଅଶେଷ-ଯଜ୍ଞେ ଯଜ୍ଞଭାଗ ।
କେବେହେଁ ହର ନ ଲଭିବ ॥୭୭
ଏ କଥା ମୋହର ପ୍ରମାଣ ।
ଏଥକୁ ସାକ୍ଷ୍ୟ ନାରାୟଣ ॥୭୮
ଏ ଦେବଗଣଙ୍କ ଅଧମ ।
ଆମ୍ଭାକୁ ମଣେ ସର୍ବସମ ॥୭୯

ଦକ୍ଷର ଏ ବଚନ ଶୁଣି ।
ସେ ଦେବସଭା ମଧ୍ୟେ ପୁଣି ॥୮୦
ଦକ୍ଷକୁ ଚାହିଁ ସର୍ବଲୋକେ ।
ନିଷେଧ କଲେ ଏକେ ଏକେ ॥୮୧
ସେ ଦକ୍ଷ କୋପେ ଅଭିମାନୀ ।
ଦେବଙ୍କ ବଚନ ନ ମାନି ॥୮୨
ଅତ୍ୟନ୍ତ କୋପେ ଶାପ ଦେଲା ।
ଋଷିଙ୍କ ବଚନ ନ କଲା ॥୮୩
ସର୍ବ ମଣିଲା ଅଣହିତ ।
ତେଣୁ କ୍ରୋଧରେ ଭ୍ରମଚିତ୍ତ ॥୮୪
ଶିବଙ୍କୁ କୋପେ ଶାପ ଦେଇ ।
ଅତ୍ୟନ୍ତ ଅଭିମାନ ବହି ॥୮୫
ବ୍ରହ୍ମାର ସଭାରୁ ବାହାର ।
ତକ୍ଷଣେ ଯା'ନ୍ତେ ନିଜପୁର ॥୮୬
ନନ୍ଦି ଯେ ରୁଦ୍ର ପାଶେ ଥିଲା ।
ଦକ୍ଷର ଶାପ ସେ ଶୁଣିଲା ॥୮୭
ହୃଦୟେ କମ୍ପମାନ ହୋଇ ।
ମନରେ ଦୁଃଖ-ଖେଦ ବହି ॥୮୮
ରୋଷେଣ କଷାୟ-ଲୋଚନ ।
ଦକ୍ଷର ବାକ୍ୟେ କୋପମନ ॥୮୯
ଦକ୍ଷକୁ ପ୍ରତି-ଶାପ ଦେଇ ।
ବୋଲଇ ସଭାଜନେ ଚାହିଁ ॥୯୦
ଦକ୍ଷର ମତେ ଯେତେ ଥିବେ ।
ଦକ୍ଷକୁ ଯେବା ଆରାଧିବେ ॥୯୧
ବିଷ୍ଣୁରେ ଦୋରେହା ହୋଇବେ ।
ଏ ଦୋଷେ କୁମ୍ଭୀପାକେ ଯିବେ ॥୯୨
ଯେବା ଗାଇବ ଏହି ବାଣୀ ।
ହୀନ ପ୍ରାଣୀଙ୍କ ମଧ୍ୟେ ଗଣି ॥୯୩
ଏ କୂଟ-ଗୃହଧର୍ମ ମଧ୍ୟେ ।
ବିଷୟଭୋଗ ଇଚ୍ଛା ସଧେ ॥୯୪
ବିସ୍ତାରି ଯଜ୍ଞ କର୍ମକାଣ୍ଡେ ।
ଦମ୍ଭେ ଆରମ୍ଭି ଏ ପାଷଣ୍ଡେ ॥୯୫
ଦେହକୁ ସ୍ୱାର୍ଥ ପ୍ରାୟେ ମଣି ।
ଆତ୍ମାର ଗତି ନ ପ୍ରମାଣି ॥୯୬

Dr. Sudhanshu Sekhar Mishra

ପଶୁଙ୍କ ପ୍ରାୟେ କରି ଆଶ ।
ସର୍ବଦା ହେଉ ନାରୀବଶ ॥୯୭
ଏ ଦକ୍ଷ ଛାଗମୁଖ ହେଉ ।
ଆମ୍ଭର ଶାପ ଆନ ନୋହୁ ॥୯୮
ଅବିଦ୍ୟାମାର୍ଗେ ବିଦ୍ୟା କଳ୍ପି ।
ଅଲାଭେ ଲାଭ ବୁଦ୍ଧି ସ୍ଥାପି ॥୯୯
ଏଣୁ ଏ ଛାଗର ସମାନ ।
ଅତିଶୟରେ ଜ୍ଞାନହୀନ ॥୧୦୦
ଦକ୍ଷଙ୍କ ପ୍ରାୟେ ଯେ ବ୍ରାହ୍ମଣ ।
ସଂସାରେ ଭ୍ରମୁ ପୁଣପୁଣ ॥୧୦୧
ଜୀବିକା ପାଇଁ ଧୃତବ୍ରତ ।
ଅଜ୍ଞାନବଳେ ଏ ମୋହିତ ॥୧୦୨
ଅଶେଷ ଯୋନି ସେ ପାଇବେ ।
ଜନ୍ମ ମରଣ ସଞ୍ଚରିବେ ॥୧୦୩
ପାତ୍ର ନ ବୁଝି ଅବିଗୁଣେ ।
ଯେ ମନ୍ଦବୁଦ୍ଧି ମୂଢ଼ପଣେ ॥୧୦୪
ପଶୁ ହିଂସିବେ କର୍ମମତେ ।
ଅଜ୍ଞାନବଳେ ବିମୋହିତେ ॥୧୦୫
ଅଶେଷ-ଯଜ୍ଞ-କର୍ମ କରି ।
ଏଭକ୍ଷ୍ୟାଭକ୍ଷ୍ୟ ନ ବିଚାରି ॥୧୦୬
ଏ ବିପ୍ରେ ତପ-ବିଦ୍ୟା-ବ୍ରତ ।
ଅଶେଷ କାମ୍ୟଫଳେ ରତ ॥୧୦୭
ଚିତ୍ତ ଇନ୍ଦ୍ରିୟ ଦେହେ ରମି ।
ଯାଚକ ପ୍ରାୟେ ଶ୍ରମେ ଭ୍ରମି ॥୧୦୮
ଭ୍ରମିବେ ଇହପରଲୋକେ ।
ଅରୁଦ୍ର ମାର୍ଗେ ଅତିରେକେ ॥୧୦୯
ଏମନ୍ତ ଶାପ ବିପ୍ରକୁଳେ ।
ସେ ନନ୍ଦୀଶ୍ୱର କୋପାନଳେ ॥୧୧୦

ଭୃଗୁ ଯେ ସଭା ମଧ୍ୟେ ଥିଲେ ।
ନନ୍ଦୀର ଶାପ ସେ ଶୁଣିଲେ ॥୧୧୧
ଦକ୍ଷର ମତେ ପକ୍ଷ ଧରି ।
ରୁଦ୍ର ବିଷୟେ କୋପକରି ॥୧୧୨
ଯେ ବ୍ରହ୍ମଦଣ୍ଡ ଦୁରତ୍ୟୟ ।
ସ୍ୱଭାବେ ଭୃଗୁ ମହାଶୟ ॥୧୧୩
ସେ ଅନୁଖେଦ ମନେ ଘେନି ।
ଶିବେ ଅଭାବ ମନେ ଗୁଣି ॥୧୧୪
ଦକ୍ଷିଣ-ହସ୍ତେ ଜଳଘେନି ।
ସଭା ସମୂହେ ଉଚ୍ଚେ ବାଣୀ ॥୧୧୫
କୋପେ ବୋଲଇ ଭୃଗୁଋଷି ।
ବ୍ରହ୍ମକୁ ସେ ଚିତ୍ତେ ନିବେଶି ॥୧୧୬
ଯେ ଶିବବ୍ରତ ଏ ଜଗତେ ।
କରିବ ଚିତ୍ତର ଆୟତ୍ତେ ॥୧୧୭
ସେ ଶାସ୍ତ୍ରମତ ନ ଆଦରି ।
ପାଷଣ୍ଡ ହୋନ୍ତୁ ତମ ଧରି ॥୧୧୮
ଦୁଷ୍ଟ ଅଶୁଚି ମୂଢ଼ବୁଦ୍ଧି ।
ପାଷଣ୍ଡପଣେ ଯେ ପ୍ରସିଦ୍ଧି ॥୧୧୯
ଭୂଷଣ ଜଟା ଭସ୍ମ ଅସ୍ଥି ।
ଶିବ ପୂଜନେ ଦୃଢ଼ମତି ॥୧୨୦
ବହନ୍ତୁ ଶିବଦୀକ୍ଷା ହୃଦେ ।
ଯହିଁ ଦେବତା ସୁରାମଦେ ॥୧୨୧
ବ୍ରହ୍ମା ବ୍ରାହ୍ମଣେ ନିନ୍ଦା କରି ।
ନିରତେ ଶିବଦୀକ୍ଷା ଧରି ॥୧୨୨
ଶିବର ପଥ ସନାତନ ।
ଯେ ଅବା ଆଚରିବେ ଜନ ॥୧୨୩
ବିଷ୍ଣୁ-ନିନ୍ଦନ ଫଳ ପାଉ ।
ଅନ୍ତେ ପାଷଣ୍ଡ ଗତି ହେଉ ॥୧୨୪

ମୈତ୍ରେୟ ଉବାଚ

ଏମନ୍ତ ଭୃଗୁବାକ୍ୟ ଶୁଣି ।
ସଭାର ମଧ୍ୟ ଶୂଳପାଣି ॥୧୨୫
ବିମନା ହୋଇ ବେଗେ ଉଠି ।
ଅନଳ ପ୍ରାୟ କୋପଦୃଷ୍ଟି ॥୧୨୬
ନିଜ ଗଣଙ୍କୁ ଘେନି ସଙ୍ଗେ ।
ଗମିଲେ ନିଜ ସ୍ଥାନ ମାର୍ଗେ ॥୧୨୭
ଶିବ ଗମନେ ମୁନିଗଣେ ।
ଆଗମ ନିଗମ ପ୍ରମାଣେ ॥୧୨୮
ତଦନ୍ତେ ବିଶ୍ୱସ୍ରଷ୍ଟାମାନେ ।
ସହସ୍ରବତ୍ସର ପ୍ରମାଣେ ॥୧୨୯
ଯଥା ବିଧାନେ ଯଜ୍ଞସାରି ।
ସେ ଅବଭୃତ ସ୍ନାନ କରି ॥୧୩୦
ପ୍ରୟାଗେ ଯମୁନା ସହିତ ।
ଜାହ୍ନବୀ ହୋଇଛି ମିଳିତ ॥୧୩୧
ତହିଁ ସକଳେ ସ୍ନାନ ସାରି ।
ଗମିଲେ ନିଜ ନିଜ ପୁରୀ ॥୧୩୨
ସେ ବ୍ରହ୍ମଯଜ୍ଞ ନମସ୍କୃତେ ।
ଭାଷା ପ୍ରବନ୍ଧେ ଭାଗବତେ ॥୧୩୩
ଚତୁର୍ଥସ୍କନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୩୪
ବିଷ୍ଣୁଚରିତ ସୁଧାରସ ।
କହଇ ଜଗନ୍ନାଥ ଦାସ ॥୧୩୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥସ୍କନ୍ଧେ
ଦକ୍ଷଶାପୋନାମ ଦ୍ୱିତୀୟୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

ମୈତ୍ରେୟ ମୁନି ତୋଷ ହୋଇ ।
କହେ ବିଦୁର ମୁଖ ଚାହିଁ ॥୧

ମୈତ୍ରେୟ ଉବାଚ

ଶୁଣ ବିଦୁର ଏକମନେ ।
ରୁଦ୍ର ଯେ ଗଲେ କୋପମନେ ॥୨
ଏମନ୍ତେ ଜାମାତା ଶ୍ୱଶୁର ।
ବିବାଦେ ଗଲା ବହୁକାଳ ॥୩
ପ୍ରଜାପତିଙ୍କ ମଧ୍ୟେ ପୂର୍ବେ ।
ଦକ୍ଷକୁ ସ୍ଥାପି ରାଜପଦେ ॥୪
ଦକ୍ଷକୁ ଅଭିଷେକ କରି ।
ବ୍ରହ୍ମା ବୋଇଲେ ହସ୍ତ ଧରି ॥୫
ତୁ ହୁଅ ପ୍ରଜାପତି ଶ୍ରେଷ୍ଠ ।
ଅପରେ ସର୍ବେ ତୋ' କନିଷ୍ଠ ॥୬
କମଳଯୋନି ଯେତେବେଳେ ।
ଦକ୍ଷକୁ ଶୁଭଲଗ୍ନ ଦେଲେ ॥୭
ସକଳ ମୁନି ମନୁଗଣେ ।
ସ୍ଥାପିଲେ ପ୍ରଜାପତି ପଣେ ॥୮
ଦକ୍ଷକୁ ପୂଜି ଅଭିଷେକେ ।
ମାନ୍ୟ ସେ କଲେ ଏକେଏକେ ॥୯
ତୁମ୍ଭ ସକଳମଧ୍ୟେ ଏହୁ ।
ପାଳନେ ଅଧିପତି ହେଉ ॥୧୦
ଦକ୍ଷକୁ ବୋଲେ ବେଦବର ।
ତୁ ବାଜପେୟ ଯଜ୍ଞ କର ॥୧୧
ସେ ଦକ୍ଷ ମନେ ଗର୍ବ କଲା ।
ରୋଷେ ରୁଦ୍ରଙ୍କୁ ନ ବରିଲା ॥୧୨
ଭୃଗୁଙ୍କୁ କଲେ ପୁରୋହିତ ।
ସଙ୍ଗେ ଘେନିଣ ମୁନିସନ୍ଥ ॥୧୩
ଯେ ଯଜ୍ଞ ବୃହସ୍ପତି ନାମ ।
ଶୁଣିଲା ଯଜ୍ଞଙ୍କ ଉତ୍ତମ ॥୧୪
ତେଣୁ ନିବେଶି ମନବୁଦ୍ଧି ।
ସକଳ ସମ୍ଭାର ନିବେଦି ॥୧୫

ସେ ଯଜ୍ଞ ବୃହସ୍ପତି ନାମ ।
ଶୁଣିଲା ଯଜ୍ଞଙ୍କ ଉତ୍ତମ ॥୧୬
ଯେ ବ୍ରହ୍ମଋଷି ଦେବଋଷି ।
ସର୍ବଦେବଙ୍କ ସଙ୍ଗେ ମିଶି ॥୧୭
ପିତୃ-ଦେବତାଗଣ ଶୂନ୍ୟେ ।
ପତ୍ନୀଙ୍କି ଘେନି ଦିବ୍ୟଯାନେ ॥୧୮
ମନର ଉଲ୍ଲାସେ ଗମନ୍ତି ।
ଦିଗ-ଭୁବନେ ବିରାଜନ୍ତି ॥୧୯
ଯଜ୍ଞେ ଗମନ୍ତି ଯୂଥେ ଯୂଥେ ।
ଗୀତ ସୁବାଦ୍ୟ ଶୂନ୍ୟପଥେ ॥୨୦
ଆକାଶେ ବିମାନ ଗହଳ ।
ଚଳନ୍ତେ ଶୁଭେ ମୁଖଗୋଳ ॥୨୧
ଏମନ୍ତେ ଈଶ୍ୱର ଘରଣୀ ।
ଆକାଶେ ଶୁଣି ଦେବବାଣୀ ॥୨୨
ନିଜ ସଖୀଙ୍କି ପଚାରିଲା ।
ତାହାଙ୍କ ବଦନୁ ଶୁଣିଲା ॥୨୩
ଶୁଣ ଗୋ ଈଶ୍ୱର ଭାମିନି ।
ଯେଣେ ଗମନ୍ତି ସୁର ମୁନି ॥୨୪
ତୁମ୍ଭ ପିତାର ମହାଯଜ୍ଞେ ।
ଦେବେ ଗମନ୍ତି ଶୂନ୍ୟମାର୍ଗେ ॥୨୫
ନିଜ ସଖୀଙ୍କି ପଚାରିଲା ।
ତାହାଙ୍କ ବଦନୁ ଶୁଣିଲା ॥୨୬
ତିନି ଭୁବନେ ଯେତେ ଜନେ ।
ଯଜ୍ଞେ ଗମନ୍ତି ତୋଷମନେ ॥୨୭
ଦିବ୍ୟ ଅଳଙ୍କାର ଭୂଷଣେ ।
ବିମାନେ ବସି ବଧୂଗଣେ ॥୨୮
ଅନେକ ପରିଜନ ଘେନି ।
ହରଷ ସୁବେଶେ କାମିନୀ ॥୨୯
ସ୍ୱାମୀଙ୍କ ସଙ୍ଗତେ ଚଳନ୍ତି ।
ଦେଖ ଗଗନେ ପନ୍ତି ପନ୍ତି ॥୩୦
ନକ୍ଷତ୍ରଗଣ ପ୍ରାୟ ଶୋଭା ।
କି ଅବା ପଟାନ୍ତର ଦେବା ॥୩୧

ତା' ଶୁଣି ଗଗନକୁ ଚାହିଁ ।
ଅମ୍ବିକା ମନେ ବିଚାରଇ ॥୩୨
ଦେଖ ଅଭାଗ୍ୟ କର୍ମ ମୋର ।
ମୋହର ସ୍ୱାମୀ ମହେଶ୍ୱର ॥୩୩
ମୋହର ପିତା ଯଜ୍ଞକାଳେ ।
ମୁହିଁ ନିରାଶ କର୍ମ-ଫଳେ ॥୩୪
ମୋର ସ୍ୱାମୀଙ୍କି ନ ବରିଲା ।
ଅବହେଳଣ ମୋତେ କଲା ॥୩୫
ମୋର ମାତାର ଦୟା ନାହିଁ ।
କେ ଏହା ସହୁ ଦେହ ବହି ॥୩୬
ନିନ୍ଦିତ-କର୍ମ ଏ ସଂସାରେ ।
ନ ଥିବା ଯୋଗାଇ ବେଭାରେ ॥୩୭
ଏମନ୍ତ ଭାଳି ଦେବୀ ମନେ ।
ମିଳିଲେ ସ୍ୱାମୀ ସନ୍ନିଧାନେ ॥୩୮
ହୃଦୟେ ଶୋକଭର ହୋଇ ।
ବୋଲନ୍ତି ରୁଦ୍ରମୁଖ ଚାହିଁ ॥୩୯

ସତୀଉବାଚ

ଭୋଳାନାଥ ଶୁଣ ପଶୁପତି ।
ତୁମ୍ଭ ଶ୍ୱଶୁର ମୂଢ଼ମତି ॥୪୦
ଯଜ୍ଞ ଆରମ୍ଭେ ପୁଣ୍ୟକାଳେ ।
ତା ଶୁଣି ସର୍ବଦେବେ ଚଳେ ॥୪୧
ମୁନିଏ ସପତ୍ନୀକ ହୋଇ ।
ଶୂନ୍ୟେ ଗମନ୍ତି ରଥବାହି ॥୪୨
ଦେଖ ଏ ମୁଖରାବଗୋଳ ।
ପୂରିଛି ଗଗନମଣ୍ଡଳ ॥୪୩
ଦେଖ ଆନନ୍ଦେ ଦେବଗଣେ ।
ଚଳନ୍ତି ଯଜ୍ଞର କାରଣେ ॥୪୪
ଭୋଳାନାଥ ଚାଲ ଆମ୍ଭେ ଯିବା ।
ପିତାର ଉତ୍ସବ ଦେଖିବା ॥୪୫
ଯଜ୍ଞ-ଉତ୍ସବ ପିତାପୁରେ ।
ମୋର ଭଗିନୀ ସହୋଦରେ ॥୪୬

Dr. Sudhanshu Sekhar Mishra

ଯାଆନ୍ତି ସ୍ୱାମୀ ଘେନି ସଙ୍ଗେ ।
ଯଜ୍ଞ ଦେଖିବେ ନାନାରଙ୍ଗେ ॥୪୭
ମୁଁ ଏବେ ତୁମ୍ଭ ସଙ୍ଗେ ଯିବି ।
ପିତାର ଉତ୍ସବ ଦେଖିବି ॥୪୮
ମାତାକୁ ଦେଖିବି ନୟନେ ।
ଭଗିନୀଗଣ ସୁଖ ମନେ ॥୪୯
ମୋ ପିତା-ଦତ୍ତ ଉପହାର ।
ସନ୍ତୋଷ ହୋଇବ ଆମ୍ଭର ॥୫୦
ଭୋନାଥ ଆଜ୍ଞାଦେବା ମାତେ ।
ଯିବଇଁ ତୁମ୍ଭର ସହିତେ ॥୫୧
ଭୋଦେବଦେବ ପଶୁପତି ।
କେ ଜାଣିପାରେ ତୁମ୍ଭ ଗତି ॥୫୨
ତୁମ୍ଭ ଗୋଚରରେ ବିଷ୍ଣୁମାୟା ।
କେ ଜାଣିପାରେ ନାଥ ଏହା ॥୫୩
ହେ ଅଜ ତୋହର ମାୟାରେ ।
ଆଶ୍ଚର୍ଯ୍ୟ ନିର୍ମାଣ ସଂସାରେ ॥୫୪
ତଥାପି ସ୍ତିରୀଜନ୍ମ ମୋର ।
ମୁଁ କାହିଁ କରିବି ଗୋଚର ॥୫୫
ମୋ ଜନ୍ମଭୂମିର ଦର୍ଶନେ ।
ଇଚ୍ଛା ବଳିଲା ମୋର ମନେ ॥୫୬
ହେ ଭବ ତୁମ୍ଭେ ତ ଅଭବ ।
କି ରୂପେ ହେବ ଅନୁଭବ ॥୫୭
ବନ୍ଧୁ ବିରହେ ଯେତେ ଦୁଃଖେ ।
ତହିଁରେ ତୁମ୍ଭେ ତ ବିମୁଖ ॥୫୮
ଦେଖ ହେ ପ୍ରଭୁ ଶୂନ୍ୟପଥେ ।
ଦେବେ ଗମନ୍ତି ଯୂଥେଯୂଥେ ॥୫୯
ଯେସନେ ରାଜହଂସ-ପନ୍ତି ।
ବିମାନ ମାନ ଶୂନ୍ୟେ ଯା'ନ୍ତି ॥୬୦
ମୋର ପିତାର ପୁରେ ଯାଇ ।
ଯଜ୍ଞ ଦେଖିବେ ସୁଖବହି ॥୬୧
ଭୋନାଥ ଶୁଣ ପଶୁପତି ।
ତୁମ୍ଭ ଚରଣେ ମୋର ମତି ॥୬୨
ମୁଁ ଏହା ସହିବି କେମନ୍ତେ ।
ଶରୀର ବହି ଏ ଜଗତେ ॥୬୩

ପିତା ଜନନୀ ଭଗ୍ନୀଗଣେ ।
ଦିବ୍ୟଭୂଷଣ ଆଭରଣେ ॥୬୪
ଯଜ୍ଞ ଆରମ୍ଭେ ସୁଖଭୋଳେ ।
ଥିବେ ସକଳେ ଏକମେଳେ ॥୬୫
ପିତା ଭର୍ତ୍ତା ଗୁରୁ ସଦନେ ।
ଯୋଗାଇ ଯିବା ଅବରଣେ ॥୬୬
ଭୋନାଥ ଶୁଣ ସଦାଶିବ ।
ତୁମ୍ଭେ ଅବରଣେ ନ ଯିବ ॥୬୭
ଯାହାର ଆବାହନ ନାହିଁ ।
ତାହାର ଯିବା ଯୋଗ୍ୟ ନୋହି ॥୬୮
ତୋହର ଜ୍ଞାନ ନୋହେ ଅନ୍ତ ।
ମୁଁ ତୋର ଅର୍ଦ୍ଧଅଙ୍ଗରୂପ ॥୬୯
ତେଣୁ ତୁ ଅର୍ଦ୍ଧନାରୀଶ୍ୱର ।
ଖ୍ୟାତି ଲଭିଲୁ ମହେଶ୍ୱର ॥୭୦
ଭୋନାଥ ମୋର କଥା କର ।
ମୋହର ବାଞ୍ଛା ପୂର୍ଣ୍ଣକର ॥୭୧
ମୁଁ ଯିବି ଆଜ୍ଞା ଦେବା ମୋତେ ।
ଆନନ୍ଦମନେ ଶୁଦ୍ଧ ଚିତ୍ତେ ॥୭୨

ମୈତ୍ରେୟ ଉବାଚ

ଏମନ୍ତ ପ୍ରିୟା ମୁଖୁ ଶୁଣି ।
ଈଶ୍ୱର ସ୍ଥିର-ଚିତ୍ତେ ଗୁଣି ॥୭୩
ସ୍ୱଭାବେ ଜଗତ ଈଶ୍ୱର ।
ଜଗତ ଯା'ର ଖେଡଘର ॥୭୪
ଅଳପ ଅପମାନ ବହି ।
କହନ୍ତି ପତ୍ନୀ-ମୁଖ ଚାହିଁ ॥୭୫

ଈଶ୍ୱର ଉବାଚ

ଶୁଣ ସୁନ୍ଦରୀ କହୁଁ ତୋତେ ।
ତୁ ଯେଣୁ ପଚାରିଲୁ ମୋତେ ॥୭୬
ସାଧୁବିଚାର ଏ ତୋହୋର ।
ଶୁଦ୍ଧ-ସୁନ୍ଦର-ମନୋହର ॥୭୭
ବୋଲୁ ଏ ବନ୍ଧୁ-ଅପମାନ ।
କେ ସହିପାରେ ଦୁର୍ବଚନ ॥୭୮

ବନ୍ଧୁକୁ ବନ୍ଧୁ ଭାବଭୋଳେ ।
ଅମାନ୍ୟ କଲେ ଅବହେଳେ ॥୭୯
ତହିଁ ନ ଥାଇ ଅପମାନ ।
କେ ସହୁ ପୁଣି ଦୁର୍ବଚନ ॥୮୦
ବିଦ୍ୟାର ବଳେ ତପଦାହେ ।
ସୁନ୍ଦର ବପୁ ବୟ ବହେ ॥୮୧
ଉତ୍ତମକୁଳେ ଯେହୁ ଜାତ ।
ସକଳଗୁଣେ ଯେ ବିଖ୍ୟାତ ॥୮୨
ଜାଣଇ ଶ୍ରୁତି ସ୍ମୃତି ଧର୍ମ ।
ଆଗମ ନିଗମ ଯେ କର୍ମ ॥୮୩
ସେ ପୁଣି ଅବିବେକ ବଳେ ।
ବନ୍ଧୁ ନିନ୍ଦଇ ଅବହେଳେ ॥୮୪
ମହତ ତେଜ ଯେ ନ ସହେ ।
ନିରତେ ମନେ ଗର୍ବ ବହେ ॥୮୫
ଅଜ୍ଞାନବାଦୀ ବୋଲି ତା'ରେ ।
ସୁଖ ନ ଲଭେ ଏ ସଂସାରେ ॥୮୬
ଯେ ପ୍ରାଣୀ ଅଭ୍ୟାଗତ ଦେଖି ।
ବକ୍ର-ବଦନେ ବୁଜେ ଆଖି ॥୮୭
ବନ୍ଧୁ ହେଲେ ହେଁ ଜାଣ ତୁହି ।
ତା' ଗୃହେ ଯିବା ନ ଯୋଗାଇ ॥୮୮
ସମରେ ଅରି-ବାଣ ଘାଏ ।
ଅଙ୍ଗରେ ତେତେ ପୀଡା ନୋହେ ॥୮୯
ବନ୍ଧୁର କୁବଚନ-ବାଣ ।
ଅନିଶେ ଦହେ ମନ ପ୍ରାଣ ॥୯୦
ତୁ ପୁଣି ପିତାପ୍ରିୟ ବହୁ ।
ତା'ର ସୁହୃଦ-ଧର୍ମ କହୁ ॥୯୧
ତଥାପି ପିତାଗୃହେ ଗଲେ ।
ମାନ ତୁ ନ ପାଇବୁ ଭଲେ ॥୯୨
ସାଧୁଙ୍କ ସଙ୍ଗେ ଯେ ବସଇ ।
ତାହାର ରିପୁ ମିତ୍ର ନାହିଁ ॥୯୩
ଏଣୁ ଅସାଧୁ ସଙ୍ଗେ ଥିଲେ ।
ପ୍ରାଣ ଇନ୍ଦ୍ରିୟ ବୁଦ୍ଧିବଳେ ॥୯୪
ପରର ଆତ୍ମାକୁ ନିନ୍ଦଇ ।
ଅସାଧୁ ବାକ୍ୟେ ଭାବବହି ॥୯୫

Dr. Sudhanshu Sekhar Mishra

ଅସାଧୁଜନଙ୍କ ସ୍ୱଭାବ ।
ନିରତେ ଅସହଣି ଭାବ ।।୯୬
ସାଧୁଙ୍କ ସୁପୁଣ୍ୟ ସମ୍ପଦ ।
ଦେଖି ବହନ୍ତି ମନେ ଖେଦ ।।୯୭
ହିଂସନ୍ତି ତାଙ୍କୁ ଅକାରଣେ ।
ହରିଙ୍କି ଯେହ୍ନେ ପୁଣ୍ୟଜନେ ।।୯୮
ସଭାର ମଧ୍ୟେ ତୋ ପିତାରେ ।
ଅବଜ୍ଞା କଲି ମୁଁ ବେଭାରେ ।।୯୯
ଏମନ୍ତ ନ ବିଚାର ମନେ ।
ଶୁଣ କହୁଛି ସୁମଧ୍ୟମେ ।।୧୦୦
ଯେ ବନ୍ଧୁ ଆଗମନ ଦେଖି ।
ଉଠନ୍ତି ଆସନ ଉପେକ୍ଷି ।।୧୦୧
ଭାବେ ଆସନ୍ତି କିଛି ଦୂର ।
ବଚନ କହନ୍ତି ମଧୁର ।।୧୦୨
ଅତି ହିଁ ସ୍ନେହ କରି ଚିତ୍ତେ ।
ପୁଲକ ହୋଇ ହୃଦଗତେ ।।୧୦୩
ଅଭିବାଦନ ମୃଦୁ ବାଣୀ ।
ପୂଜନ୍ତି ନିଜ ଗୃହେ ଆଣି ।।୧୦୪
ବିସ୍ତର ଭାବେ ପୂଜା କରି ।
ଆନନ୍ଦେ ପ୍ରିୟଭାବେ ଭରି ।।୧୦୫
ଲୋକେ କରନ୍ତି ପରସ୍ପର ।
ତା ନୋହେ ପ୍ରାଜ୍ଞଙ୍କ ଆଚାର।। ୧୦୬
ସେ ବିଷ୍ଣୁ ଶୁଦ୍ଧ-ସତ୍ତ୍ୱମୟ ।
ପ୍ରକାଶେ ଜୀବର ହୃଦୟ ।।୧୦୭
ତେଣୁ ବୋଲାଏ ବାସୁଦେବ ।
ସେ ଯେ ମୋହର ନିତ୍ୟ ସେବ୍ୟ ।।୧୦୮
ଦକ୍ଷ ହୃଦୟେ ତାଙ୍କୁ ଲକ୍ଷି ।
ମୁଁ ନମସ୍କାର କରିଅଛି ।।୧୦୯
ଏ ରୂପେ କଲି ମୁଁ ସମ୍ମାନ ।
ନ କରି ତାଙ୍କ ଅପମାନ ।।୧୧୦
ଏ ଦେହେ ଅଭିମାନ କରି ।
ଦକ୍ଷ ତା ଜାଣିବ କିପରି ।।୧୧୧
ଯେଣୁ ଯେ ଦକ୍ଷ ପ୍ରଜାପତି ।
ମୋ ଭାବେ ଚିନ୍ତଇ ଅନୀତି ।।୧୧୨
ଯେଣୁ ମୋ ଆଶ୍ରେ ଯେତେ ଛନ୍ତି ।
ଦକ୍ଷର ପ୍ରିୟ ସେ ନୁହଁନ୍ତି ।।୧୧୩
ନିରପରାଧ ମୁଁ ତାହାର ।
ଦୁର୍ବାକ୍ୟେ କଲା ତିରସ୍କାର ।।୧୧୪
ପିତା ହେଲେ ହେଁ ତାର ତହିଁ ।
ଯିବା ତୋହର ନ ଯୋଗାଇ ।।୧୧୫
ତୁ ଯେବେ ମୋହର ବଚନ ।
ଅଜ୍ଞାନେ କରିବୁ ଲଂଘନ ।।୧୧୬
ପିତା ଭୁବନେ ଯିବୁ ତୁହି ।
କେବେହେଁ ତୋର ଭଲ ନାହିଁ ।।୧୧୭
ତୋହର ଅମଙ୍ଗଳ ଫଳ ।
ମୋହୃଦେ ହୋଇବ ବିକଳ ।।୧୧୮
ଉତ୍ତମଜନ ଜାଣ ଯେବେ ।
ସ୍ୱଜନୁଁ ପରାଭବ ଲଭେ ।।୧୧୯
କେବେହେଁ ତାର ଭଲ ନାହିଁ ।
ଏମନ୍ତ ଦେବୀ ଆଗେ କହି ।।୧୨୦
ସ୍ଥିର ହୋଇଲେ ଉମାକାନ୍ତ ।
କହଇ ଦାସ ଜଗନ୍ନାଥ ।।୧୨୧

ଇତିଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚୂର୍ଥସ୍କନ୍ଧେ ଉମାରୁଦ୍ର ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।।

---

## ଚତୁର୍ଥ ଅଧ୍ୟାୟ

ମୈତ୍ରେୟ ହରଷେ କହନ୍ତି ।
ଶୁଣ ବିଦୁର ଶୁଦ୍ଧମତି ।।୧

ମୈତ୍ରେୟ ଉବାଚ

ସେ ଶିବ ବଚନରେ ସତୀ ।
କେବେ ହେଁ ନୋହେ ସ୍ଥିରମତି ।। ୨
ଏମନ୍ତ ଦେବୀଆଗେ କହି ।
ରୁଦ୍ର ରହିଲେ ତୁନି ହୋଇ ।।୩
ମନେ ଚିନ୍ତନ୍ତି ବିଶ୍ୱନାଥ ।
ନ ପୁଣ ହୋଏ ବିପରୀତ ।।୪
ମୋପତ୍ନୀ ପିତାଗୃହେ ଗଲେ ।
ଜୀବନ ନ ଧରିବ ଭଲେ ।।୫
ଏହାର ମନ ସ୍ଥିର ନାହିଁ ।
ନ ଗଲେ ନ ଧରିବ ଦେହୀ ।।୬
ବନ୍ଧୁଦର୍ଶନେ ଇଚ୍ଛା ତାର ।
ହୋଇଛି ଅତି ବଳୀୟାର ।।୭
ବାରେକ ହୁଅଇ ବାହାର ।
ମୋ ଭୟେ ପ୍ରବେଶେ ଗୃହର ।।୮
ଏହାର ମନ ସ୍ଥିର ନାହିଁ ।
ଅବଶ୍ୟ ଯିବ ଏ ନ କହି ।।୯
ଏମନ୍ତ ଚିତ୍ତେ ଚିନ୍ତି ହର ।
କେବେହେଁ ମନ ନୋହେ ସ୍ଥିର।।୧୦
ଚିନ୍ତା ଆକୁଳେ ଦୁଃଖମତି ।
ନିଜ ଗଣଙ୍କୁ ମନେ ଚିନ୍ତି ।।୧୧
ଏହାର ସଙ୍ଗେ ଥିବି ମୁହିଁ ।
ନିଜଗଣଙ୍କୁ ସଙ୍ଗେ ଲଇଁ ।।୧୨
ଏମନ୍ତେ ରୁଦ୍ର ଚିନ୍ତା କରୁଁ ।
ଦେବୀ ଉଠିଲେ ନିଜ ପୁରୁ ।।୧୩
ନୟନୁ ବହେ ଅଶ୍ରୁଜଳ ।
ଶୁଖିଛି ବଦନ-କମଳ ।।୧୪
ଶରୀର କମ୍ପେ ରୋଷଚିତ୍ତେ ।
କଦଳୀବନ ଯେହ୍ନେ ବାତେ ।।୧୫
ନିଃଶ୍ୱାସ ବହେ ଖରତର ।
ଶୁଖିଲା ସୁରଙ୍ଗ-ଅଧର ।।୧୬
ଅଧୋବଦନେ ମନ ଦୁଃଖୀ ।
ଚଳିଲେ ଭବଙ୍କୁ ଉପେକ୍ଷି ।।୧୭

Dr. Sudhanshu Sekhar Mishra

ଖରେ ଚଳନ୍ତେ ରୋଷଭରେ ।
ଅବନୀ କମ୍ପେ ପାଦଭରେ ॥୧୮
ପିତା ଭୁବନେ ଦେବୀ ଯା'ନ୍ତେ।
କେହି ନାହାନ୍ତି ନିଜସାଥେ ॥୧୯
ସ୍ତିରୀ ସ୍ୱଭାବ ମୂଢ଼ମତି ।
ଯେ ହର ସାଧୁ ଜନ-ପତି ॥୨୦
ସ୍ନେହରେ ଅର୍ଦ୍ଧଅଙ୍ଗ ହୋଇ ।
ସେ ସତୀ ତାଙ୍କୁ ଲଂଘି ଯାଇ ॥୨୧
ପିତା ଭୁବନେ ଦେବୀ ଯାନ୍ତେ ।
ପଛେ ଚଳନ୍ତି ଗଣ ଯୂଥେ ॥୨୨
ଶତ ସହସ୍ର ରୁଦ୍ର ଗଣ ।
ନିକଟେ ମିଳିଲେ ତକ୍ଷଣ ॥୨୩
ସତୀଙ୍କୁ ବୃଷଭେ ବସାଇ ।
ସର୍ବେ ଧାଇଁଲେ ସଜହୋଇ ॥୨୪
ମୁଁ ଯିବି ଅମ୍ବିକାର ପଛେ ।
ମୋ କଥା ଦେଖସି ପ୍ରତ୍ୟକ୍ଷେ ॥୨୫
ଏମନ୍ତ ରୁଦ୍ର ଆଗେ କହି ।
ନନ୍ଦି ଚଳିଲେ ଗଣ ଲଇଁ ॥୨୬
ଅମ୍ବିକା ତୁଲେ ନାରୀଯୂଥେ ।
ମିଳିଲେ ଉପାୟନ ହସ୍ତେ ॥୨୭
କନ୍ଦୁକ ଦର୍ପଣ ଅମ୍ବୁଜ ।
ଶ୍ୱେତାତପତ୍ର ଶ୍ୱେତଧ୍ୱଜ ॥୨୮
ବ୍ୟଜନ ପୁଷ୍ପମାଳା ଘେନି ।
ସଙ୍ଗୀତ-ଗୀତ-ନାଦ-ଧ୍ୱନି ॥୨୯
ଦୁନ୍ଦୁଭି ଶଙ୍ଖ ବେଣୁନାଦେ ।
ସଙ୍ଗତେ ଚଳିଲେ ଆନନ୍ଦେ ॥୩୦
ଏମନ୍ତେ ରୁଦ୍ରଗଣେ ଯାଇ ।
ଯଜ୍ଞ ଦେଖିଲେ ଦୂରେ ରହି ॥୩୧
ଧୂମ-ବ୍ୟାପିତ-ଯଜ୍ଞଶାଳେ ।
ଅଶେଷ ଋଷି-ବିପ୍ର ମେଳେ ॥୩୨
ବିପ୍ରଙ୍କ ସଙ୍ଗେ ପ୍ରଜାପତି ।
ଅନଳେ କ୍ଷେପନ୍ତି ଆହୁତି ॥୩୩
ଯଜ୍ଞର ଭାଣ୍ଡ ନାନାବିଧି ।
ଯେ ଭାଣ୍ଡେ ଯେ ଦ୍ରବ୍ୟ ପ୍ରସିଦ୍ଧି ॥୩୪

ମନ୍ତ୍ର ଆହୁତି ହୋମବେଳେ ।
ସତୀ ମିଳିଲେ ଯଜ୍ଞଶାଳେ ॥୩୫
ସତୀ ଚାହାଁନ୍ତେ କୋପଚିତ୍ତେ ।
ସେ ଯଜ୍ଞେ ଥିଲେ ଯେ ସମସ୍ତେ ॥୩୬
ସର୍ବେ ଦକ୍ଷର ଭୟପାଇ ।
ଆଦର ନକରିଲେ କେହି ॥୩୭
ଭଗିନୀଗଣେ ମାତା ତୁଲେ ।
ଆଦରେ ସମୀପେ ମିଳିଲେ ॥୩୮
ପ୍ରେମାଶ୍ରୁକଣ୍ଠେ ଭଗ୍ନୀଗଣ ।
କୋଳ କରନ୍ତି ଜଣେ ଜଣ ॥୩୯
ସୋଦରେ ସ୍ନେହେ ପ୍ରଶ୍ନ କଲେ।
ସର୍ବ କୁଶଳ ପଚାରିଲେ ॥୪୦
ଉତ୍ତମ ପୂଜା ବିଧି ଦ୍ରବ୍ୟ ।
ସମୀପେ ଆଣିଦେଲେ ସର୍ବ ॥୪୧
ରତ୍ନ-ଆସନ ବେଗେଆଣି ।
ସେ ପ୍ରଜାପତିର ଘରଣୀ ॥୪୨
ସତୀସମୀପେ ଆଣି ଦେଲେ ।
ତାଦେଖି ସତୀ କୋପ କଲେ ॥୪୩
ପିତାର ଅନାଦର ଦେଖି ।
କୋପେ କମ୍ପଇ ଅଶ୍ରୁମୁଖୀ ॥୪୪
ଯଜ୍ଞେ ନ ଦେଖି ସ୍ୱାମୀଭାଗ ।
ମନେ ବସିଲା ମହାରାଗ ॥୪୫
ମୋର ଈଶ୍ୱରେ ନ ଗଣିଲା ।
ଅବହେଳଣ କର୍ମ କଲା ॥୪୬
ସଭାରେ ଯେତେ ଲୋକ ଥିଲେ।
ସତୀଙ୍କି ଦେଖି ନ ଉଠିଲେ ॥୪୭
ପିତା ଅବଜ୍ଞା କର୍ମ ଦେଖି ।
କୋପେ କମ୍ପଇ ଅଶ୍ରୁମୁଖୀ ॥୪୮
ଏମନ୍ତେ ଦକ୍ଷ-ବଧ ଅର୍ଥେ ।
ସତୀ ଶରୀରୁ କୋପଚିତ୍ତେ ॥୪୯
ଅନେକ ଭୂତଗଣ ଜନ୍ମି ।
ତାହାଙ୍କୁ ନିବାରି ଭବାନୀ ॥୫୦
କୋପେ ବୋଲଇ ଉଚ୍ଚବାଣୀ ।
ଯେମନ୍ତେ ସଭାଲୋକେ ଶୁଣି ॥୫୧

କୋପେ କମ୍ପଇ ତା'ର ଦେହୀ।
ବୋଲଇ ପିତାମୁଖ ଚାହିଁ ॥୫୨

ଦେବୀ ଉବାଚ

ପ୍ରିୟ ଅପ୍ରିୟ ଅତିରେକେ ।
ନ ଦେଖି ଯା'ର ଇହଲୋକେ ॥୫୩
ଜଗତ ମଧ୍ୟେ ଯେତେ ଦେହ ।
ସ୍ୱାମୀ ମୋହର ସର୍ବପ୍ରିୟ ॥୫୪
ଯେ ରୁଦ୍ର ସର୍ବଆତ୍ମା ହୋଇ ।
ମିତ୍ର ଅମିତ୍ର ଯା'ର ନାହିଁ ॥୫୫
ସେ ଯେ ଅଶେଷ-ଜନ-ଗୁରୁ ।
ତାହାଙ୍କୁ ତୁହି ନିନ୍ଦା କରୁ ॥୫୬
ଦେଖ ଏ ସଂସାର-ବେଭାରେ ।
ଯେ ସାଧୁଜନେ ନିନ୍ଦା କରେ ॥୫୭
ଅନେକ-ଦୋଷ କରିଥିଲେ ।
ସାଧବେ ନ ଧରନ୍ତି ଭଲେ ॥୫୮
ସକଳ-ଦୋଷ କରେ କ୍ଷମା ।
ସେ ଜନ ସାଧୁ ମହାତମା ॥୫୯
ଏ' ରୂପେ ଯେତେକ ପଣ୍ଡିତ ।
ତାହାଙ୍କୁ ବୋଲନ୍ତି ମହତ ॥୬୦
ଯେ ଗୁଣମାତ୍ରକୁ ଧରନ୍ତି ।
ଦୋଷ ଗ୍ରହଣ ନ କରନ୍ତି ॥୬୧
ତାହାଙ୍କୁ ବୋଲି ମହତ୍ତର ।
କେ ଅବା ଅଛନ୍ତି ଅପର ॥୬୨
ଦୋଷକୁ ଦୂରେ ପରିହରି ।
ଆଦରେ ତୁଚ୍ଛ ଗୁଣଧରି ॥୬୩
ଏମନ୍ତ ସାଧୁ ପ୍ରତି ତାତ ।
ତୁ ପାପ କହିଲୁ ନିଶ୍ଚିତ ॥୬୪
ଅସାଧୁଜନ ପ୍ରାୟ ତୁହି ।
ରୁଦ୍ର ବିଷୟେ କୋପ ବହି ॥୬୫
ଯେଣୁ ବୋଲାଉ ପ୍ରଜାପତି ।
ସେ ଗର୍ବେ ନିନ୍ଦୁ ମୋର ପତି ॥୬୬
ଏ ନୋହେ ମହତଙ୍କ କର୍ମ ।
ଗର୍ବେ ହୋଇଲୁ ମତିଭ୍ରମ ॥୬୭

Dr. Sudhanshu Sekhar Mishra

ଯେ ବେନିଅକ୍ଷର ମୁଖରେ ।
ପ୍ରସନ୍ନେ ଶିବନାମ ଧରେ ॥୬୮
କି ଅବା ଶ୍ରଦ୍ଧାଯୁକ୍ତ ହୋଇ ।
ନିରତେ ବଦନେ ଗୁଣଇ ॥୬୯
ଅଥବା ପଶେ ଶ୍ରୁତିପଥେ ।
ପାପ ନାଶଇ କ୍ଷଣମାତ୍ରେ ॥୭୦
ଯାହାର ନାମ ଏ ଜଗତେ ।
ସର୍ବମଙ୍ଗଳ ବହୁମତେ ॥୭୧
ତୋର ଜୀବନ ପାପ-ସିନ୍ଧୁ ।
ଅଶିବ ହୋଇ ଶିବ ନିନ୍ଦୁ ॥୭୨
ଯା ପାଦପଦ୍ମ-ମଧୁ ଲୋଭେ ।
ମହାନ୍ତଜନ ନିତ୍ୟେ ସେବେ ॥୭୩
କାମୀ କାମନା ସ୍ରବେ ଯହୁଁ ।
ବିଶ୍ୱବାନ୍ଧବ ଅଟେ ଯେହୁ ॥୭୪
ସାଧୁ-ମାନସ -ଅଳି-ବୃନ୍ଦ ।
ବ୍ରହ୍ମଆନନ୍ଦ-ମକରନ୍ଦ ॥୭୫
ପାନାର୍ଥୀ ହୋଇ ସେବା କରେ ।
ଯାହାର ଶ୍ରୀପାଦପଦ୍ମରେ ॥୭୬
ତାହାରେ ଦ୍ରୋହ ଚିନ୍ତୁ ପିତ ।
ଏ କଥା ବଡ ଆଚମ୍ବିତ ॥୭୭
ଯେ ସଦାଶିବ ବିଶ୍ୱବନ୍ଧୁ ।
ତୁ ତାର ଦ୍ରୋହକରି ନିନ୍ଦୁ ॥୭୮
ଜଟା ବିସ୍ତାରି ଶ୍ମଶାନରେ ।
ବୁଲଇ ଶିବ ନିର୍ବିକାରେ ॥୭୯
ଶ୍ମଶାନଭସ୍ମ ମାଲ୍ୟ ତା'ର ।
ନର କପାଳ ଅଳଙ୍କାର ॥୮୦
ହେଲେ ହେଁ ଶିବଙ୍କୁ ଅଶିବ ।
ତୋ ବିନା କେଅବା ବୋଲିବ ॥୮୧
ବ୍ରହ୍ମାଦି ଦେବଗଣମାନେ ।
କେ ଶିବ ମହିମା ନ ଜାଣେ ॥୮୨
ତୁ କି ଜାଣିବୁ ସେ ମହିମା ।
ଅଶେଷ-ମଙ୍ଗଳର ସୀମା ॥୮୩
ଶିବ ନିର୍ମାଲ୍ୟ ମଥା ପାତି ।
ତଥାପି କେମନ୍ତେ ଘେନନ୍ତି ॥୮୪
ଧର୍ମରକ୍ଷକ ସ୍ୱାମୀ ମୋର ।
ତା' ସଙ୍ଗେ କଲୁ ତୁ ବିଧୁର ॥୮୫
ଏଣୁ ଜୀବନ ଛାଡିବଇଁ ।
ସକଳ-ଧର୍ମ-ରକ୍ଷା ପାଇଁ ॥୮୬
ଏହିଟି ପତିବ୍ରତା-ଧର୍ମ ।
ପାଷଣ୍ଡେ ସ୍ୱାମୀର ନିନ୍ଦନ ॥୮୭
ଶୁଣିଲେ କାନେ ହାତ ଦେବ ।
ତକ୍ଷଣେ ତହୁଁ ପଳାଇବ ॥୮୮
ପାରିଲେ ତା ଜିହ୍ୱା ଛେଦିବ ।
ଆପଣା ଜୀବନ ତେଜିବ ॥୮୯
ତୋ ବୀର୍ଯ୍ୟେ ଜନ୍ମ ମୋର ଦେହୀ ।
ହୋଇଲା ପୂର୍ବପାପ ବହି ॥୯୦
ସ୍ୱାମି ନିନ୍ଦନ ବାକ୍ୟ ସହି ।
ଏ ଦେହ ନ ଧରିବି ମୁହିଁ ॥୯୧
ଯେ ନାରୀ ସ୍ୱାମୀର ନିନ୍ଦନ ।
ଶୁଣି ଧରେ ନିଜ ଜୀବନ ॥୯୨
ପୂର୍ବର ପାପ ଯେ ନ ସ୍ମରେ ।
ତା ପ୍ରତିକାର ଯେଁ ନର୍କରେ ॥୯୩
ଦିନ ବଞ୍ଚଇ ଦୁଃଖ-ଶୋକେ ।
ଅନ୍ତେ ସେ ପଡଇ ନ ରକେ ॥୯୪
ଯେ ଆତ୍ମାରାମ ବଇରାଗୀ ।
ବିଧି-ନିଷେଧ ପାରେ ଲଂଘି ॥୯୫
ସ୍ୱଧର୍ମେ ନିଷ୍ଠା ଯା'ର ଥିବ ।
ସେ ପର-ନିନ୍ଦା ନ କରିବ ॥୯୬
ଯେ ଅବା ବେଦବିଧି ଧର୍ମ ।
ପ୍ରବୃତ୍ତି ନିବୃତ୍ତି ଲକ୍ଷଣ ॥୯୭
ଶିବେ ତା ନ ସମ୍ଭବେ ଦୁଇ ।
ଯେଣୁଟି ଆତ୍ମାରାମ ସେହି ॥୯୮
ଦରିଦ୍ର ବୋଲି ଶିବେ ତୁହି ।
ନିନ୍ଦା ନ ବହ ଗର୍ବ ବହି ॥୯୯
ଅଣିମା ଆଦି ଅଷ୍ଟସିଦ୍ଧି ।
ଯା ତହୁଁ ଲଭେ ଯୋଗୀ ସାଧି ॥୧୦୦
ତୋ ପରି ଯଜ୍ଞେ ଯେ ଭ୍ରମନ୍ତି ।
କାହୁଁ ଲଭିବେ ସେ ସମ୍ପତ୍ତି ॥୧୦୧
ତୁ ପାପୀ ଯେଣୁ ଶିବଦ୍ରୋହୀ ।
ତୋଠାରୁ ଜାତ ମୋର ଦେହୀ ॥୧୦୨
ଧିକ ଏ ଦେହ ନ ରଖିବି ।
ଆଉ ଏ ଲଜ୍ଜା ନ ସହିବି ॥୧୦୩
ତୋହର ସଙ୍ଗତେ ବଚନ ।
ଅଧିକେ ନାହିଁ ପ୍ରୟୋଜନ ॥୧୦୪
କେହି ନ ବୋଲୁ ଦାକ୍ଷାୟଣୀ ।
ଅଟଇ ଶିବର ଘରଣୀ ॥୧୦୫
ମୈତ୍ରେୟ କହନ୍ତି ବଚନ ।
ଶୁଣ ବିଦୁର ତୋଷମନ ॥୧୦୬

### ମୈତ୍ରେୟ ଉବାଚ

ଏମନ୍ତ ଦକ୍ଷେ ଦେବୀ କହି ।
କୁଣ୍ଡ-ଉତ୍ତରଦିଗେ ଯାଇ ॥୧୦୭
ଯୋଗଧାରଣା ଆଗମନେ ।
ନିଶ୍ଚଳେ ବସିଲେ ଆସନେ ॥୧୦୮
ସ୍ୱାମୀର ଅପମାନ ଅର୍ଥେ ।
ପିତାର ଅନାଦର ଚିତ୍ତେ ॥୧୦୯
ପୀତବସନ ପରିଧାନ ।
ପବିତ୍ର-ଜଳେ ଆଚମନ ॥୧୧୦
ହୃଦରେ କଛି ମହାମନ୍ୟୁ ।
ପବନ ଅଧ ଉର୍ଦ୍ଧ୍ୱ ସ୍ଥାନୁ ॥୧୧୧
ନାଭିକମଳେ ସୁନିଶ୍ଚଳେ ।
ପ୍ରାଣଧାରଣ ଯୋଗବଳେ ॥୧୧୨
ଏ ତିନିପ୍ରାଣ ଉର୍ଦ୍ଧ୍ୱେ ନେଇ ।
ଉଦାନ ସଙ୍ଗେ ହୃଦେ ଥୋଇ ॥୧୧୩
ହୃଦୟ ପ୍ରାଣ ସଙ୍ଗେ ବ୍ୟାପି ।
କଣ୍ଠେ ଲଲାଟ ଚକ୍ରେ କ୍ଷେପି ॥୧୧୪
ଭ୍ରୂମଧ୍ୟେ ଥାପି ଅନୁମାନେ ।
ଯୋଖିଲେ ବ୍ରହ୍ମରନ୍ଧ୍ର ସ୍ଥାନେ ॥୧୧୫
ସ୍ୱାମୀ ଚରଣେ ଧ୍ୟାନକରି ।
ଯୋଗ-ଅନଳେ ବାୟୁ ଧରି ॥୧୧୬
ମୂର୍ଦ୍ଧନି ଭେଦି ତତକ୍ଷଣ ।
ଶୂନ୍ୟେ ମିଶିଲା ଦଶପ୍ରାଣ ॥୧୧୭

Dr. Sudhanshu Sekhar Mishra

ସମାଧି ସମ୍ଭୂତ ଅନଳେ ।
ସତୀ ଶରୀର ବେଗେ ଜଳେ ॥ ୧୧୮
ସତୀ ମରଣ କର୍ମ ଚାହିଁ ।
ଦେବେ ଯେ ଯଜ୍ଞେ ଥିଲେ ରହି ॥ ୧୧୯
ଦେଖିଣ ଦେବୀର ନିଧନ ।
ଚଞ୍ଚଳ କରି ସର୍ବ ମନ ॥ ୧୨୦
ଭୂମି ଗମନେ ଯେ ବା ଥିଲେ ।
ହାହା ଶବଦ ଉଚ୍ଚେ କଲେ ॥ ୧୨୧
ଦେଖ ଏ ଦେବଦେବନାରୀ ।
କି ଅପମାନେ କୋପକରି ॥ ୧୨୨
ପ୍ରାଣ ଛାଡିଲେ ଯଜ୍ଞଶାଳେ ।
ପିତା ଅମାନ୍ୟ କୋପଭରେ ॥ ୧୨୩
ଦେଖ ଏ ଦକ୍ଷ ପ୍ରଜାପତି ।
ଗର୍ବେ ଆଚରିଲା ଅନୀତି ॥ ୧୨୪
ପ୍ରଜାଙ୍କ ପତି ଏ ବୋଲାଇ ।
ଅନୀତି କଲା ଗର୍ବ ବହି ॥ ୧୨୫
ନିଜ ଦୁହିତାର ନିଧନେ ।
ଯତ୍ନ କଲା ଏ କ୍ରୋଧମନେ ॥ ୧୨୬
ଏ ନୋହେ ସାଧୁଙ୍କ ବେଭାର ।
ଅଧର୍ମ କଲା ଗରୁତର ॥ ୧୨୭

ଏମନ୍ତ ବାକ୍ୟ କହୁଁ ଜନେ ।
ସତୀର ପ୍ରାଣ ଅବସାନେ ॥ ୧୨୮
ସତୀ ମରଣ କଥା ଶୁଣି ।
ନନ୍ଦିକେଶ୍ୱର ବୀରମଣି ॥ ୧୨୯
ରୁଦ୍ରଗଣଙ୍କୁ ସଙ୍ଗେ ଲଇଁ ।
ବେଗେ ଧାଇଁଲା ରୋଷ ବହି ॥ ୧୩୦
ବିବିଧ ଶସ୍ତ୍ର ଧରି କରେ ।
ମିଳିଲା ଦକ୍ଷ ଯଜ୍ଞଘରେ ॥ ୧୩୧
ତାହାଙ୍କୁ ଦେଖି ଭୃଗୁ ମୁନି ।
ଘୃତଆହୁତି କରେ ଘେନି ॥ ୧୩୨
ଯଜ୍ଞଘ୍ନ ନାମ ଯଜୁମନ୍ତ୍ରେ ।
କହିଲା ଅଭିଚାର-ତନ୍ତ୍ରେ ॥ ୧୩୩
ଆହୁତି ଦ୍ୟନ୍ତେ ଅଗ୍ନିକୁଣ୍ଡେ ।
ନିର୍ଦ୍ଧୂମ ସ୍ୱର୍ଣ୍ଣବର୍ଣ୍ଣ ପିଣ୍ଡେ ॥ ୧୩୪
ମନ୍ତ୍ରେ ମନ୍ତ୍ରିତ ସୋମ ପାଇ ।
ପ୍ରଚଣ୍ଡ ବ୍ରହ୍ମତେଜ ବହି ॥ ୧୩୫
ରଭୁ ନାମରେ ଦେବଗଣେ ।
ଅନଳୁ ଉଠିଲେ ତକ୍ଷଣେ ॥ ୧୩୬
ଜଳନ୍ତା କାଷ୍ଠ ଘେନି କରେ ।
ଶତସହସ୍ର କୋପଭରେ ॥ ୧୩୭

ଶବଦେ ଦଶଦିଗ ପୂରି ।
ଧାଇଁଲେ ଘୋରନାଦ କରି ॥ ୧୩୮
ତେଣେ ଭାଜିଲେ ରୁଦ୍ରସୈନି ।
ତା ଦେଖି ବେଗେ ଦେବମୁନି ॥ ୧୩୯
ଧାଇଁଲେ ଶିବପୁର-ମାର୍ଗେ ।
କହିଲେ ସଦାଶିବ ଆଗେ ॥ ୧୪୦
ସତୀ-ମରଣ-କଥା ଆଦି ।
କହିଲେ ସକଳ ସମ୍ବାଦି ॥ ୧୪୧
ସେ ବ୍ରହ୍ମମୁନିର ଚରଣେ ।
ଆମ୍ଭର ନିସ୍ତାର କାରଣେ ॥ ୧୪୨
କୃଷ୍ଣ-ବିଷୟ ଭାଗବତ ।
କହଇ ଦାସ ଜଗନ୍ନାଥ ॥ ୧୪୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ସତୀ ଦେହୋତ୍ସର୍ଗୋ ନାମ ଚତୁର୍ଥୋଽଧ୍ୟାୟଃ ॥

## ପଞ୍ଚମ ଅଧ୍ୟାୟ

କହେ ମୈତ୍ରେୟ ମୁନିବର ।
ସାନନ୍ଦେ ଶୁଣ ହେ ବିଦୁର ॥ ୧

ମୈତ୍ରେୟ ଉବାଚ

ନାରଦ ବାକ୍ୟ ଅବଧାନେ ।
ରୁଦ୍ର ଉଠିଲେ କୋପମନେ ॥ ୨
ଦକ୍ଷର ଯଜ୍ଞ ନାଶ ଅର୍ଥେ ।
କୋପ ବସିଲା ରୁଦ୍ରଚିତ୍ତେ ॥ ୩
ରୁଦ୍ର ବଦନେ କୋପ ଦେଖି ।
ବିବୁଧେ ଗଗନ ଉପେକ୍ଷି ॥ ୪
କମ୍ପିଲେ ରୁଦ୍ର କୋପ ଶୁଣି ।
ମହାପ୍ରଳୟ ପ୍ରାୟ ମଣି ॥ ୫

ଦନ୍ତେ କାମୋଡି ଓଷ୍ଠ ପାଟି ।
ପ୍ରଚଣ୍ଡ କରାଳ ଭ୍ରୁକୁଟୀ ॥ ୬
ଜଟାକଳାପେ ଅଗ୍ନିଜଳେ ।
ଦେଖି କମ୍ପିଲେ ଦିଗପାଳେ ॥ ୭
ସେ ଏକ ଜଟା ଉପାଡିଣ ।
ଭୂମିରେ କଲେ ନିକ୍ଷେପଣ ॥ ୮
ସେ ଜଟା ଭୂମିରେ ପଡିଲା ।
ତହୁଁରୁ ପୁରୁଷେ ଜନ୍ମିଲା ॥ ୯
ତାହାର ନାମ ବୀରଭଦ୍ର ।
ପ୍ରଳୟକାଳେ ଯେହ୍ନେ ରୁଦ୍ର ॥ ୧୦
ସହସ୍ରବାହୁ ମେଘବର୍ଣ୍ଣ ।
ଅନଳ ପ୍ରାୟେକ ନୟନ ॥ ୧୧

କୋଟିଏ ସୂର୍ଯ୍ୟ ତେଜ ଯେହ୍ନେ ।
ଦେଖି ପଳାନ୍ତି ସର୍ବଜନେ ॥ ୧୨
କରାଳ-ଦଂଷ୍ଟ୍ର ଶୋହେ ତୁଣ୍ଡେ ।
ଅଗ୍ନି ଜ୍ୱଳଇ ଶିଖା ଖଣ୍ଡେ ॥ ୧୩
ନାନା ଆୟୁଧ ଶୋହେ କରେ ।
ମୁଣ୍ଡମାଳାଏ ଲମ୍ବେ ଉରେ ॥ ୧୪
ରୁଦ୍ରଙ୍କୁ ଚାହିଁ କରଯୋଡି ।
ବୋଲଇ ଅଧର କାମୋଡି ॥ ୧୫
କହ ତୁ କି କରିବି ମୁହିଁ ।
ରୁଦ୍ର ବୋଲନ୍ତି ତାକୁ ଚାହିଁ ॥ ୧୬
ତୁ ହୁଅ ଗଣଙ୍କ ଈଶ୍ୱର ।
ଏବେ ତୁ ମୋର ବୋଲ କର ॥ ୧୭

Dr. Sudhanshu Sekhar Mishra

ଦକ୍ଷର ପ୍ରାଣ ଯଜ୍ଞ ସଙ୍ଗେ ।
ବିନାଶ କର ରଣରଙ୍ଗେ ॥୧୮
ତୁ ମୋର ଅଂଶ ଆତ୍ମାରୂପୀ ।
ସହସ୍ରଭୁଜ ଶୂନ୍ୟେ ବ୍ୟାପି ॥୧୯
ଦକ୍ଷର ଯଜ୍ଞ ନାଶ କର ।
ତାହାର ପ୍ରାଣ ବେଗେ ହର ॥୨୦
ଏମନ୍ତ ରୁଦ୍ର ଆଜ୍ଞା ପାଇ ।
କୋପେ କମ୍ପଇ ତାର ଦେହୀ ॥୨୧
ଜଳଇ ଅତି କୋପାନଳେ ।
ନମିଲା ରୁଦ୍ର ପାଦତଳେ ॥୨୨
ସ୍ୱଭାବେ ରୁଦ୍ର-ଆତ୍ମା ସେହି ।
ତା'ର ମହିମା କେ ବା କହି ॥୨୩
ଚଳିଲା ରୁଦ୍ରଗଣ ଘେନି ।
ଶବଦେ କମ୍ପାଇ ମେଦିନୀ ॥୨୪
ଗର୍ଜଇ ଭଇରବ ନାଦେ ।
ବେଗେ ଧାମଇଁ ଦ୍ରୁତପଦେ ॥୨୫
ଶୂଳ ବୁଲାଇ ଦକ୍ଷକରେ ।
ନୂପୁର ବାଜଇ ପୟରେ ॥୨୬
ଧାମଇଁ ପବନହୁଁ ବେଗେ ।
ବୀର ଉତ୍ତରଦିଗଭାଗେ ॥୨୭
ସକଳ ପାରିଷଦ ଗଣେ ।
ନାନା ଆୟୁଧ ତୀକ୍ଷ୍ଣବାଣେ ॥୨୮
ଅତି ପ୍ରଚଣ୍ଡ କୋପଭରି ।
ଧାଇଁଲେ ଘୋରନାଦ କରି ॥୨୯
ଶବଦେ ଦଶଦିଗ ପୂରେ ।
ଧୂଳି ଉଡଇ ପାଦଭରେ ॥୩୦
ବିପ୍ରେ ଯେ ଥିଲେ ଯଜ୍ଞଶାଳେ ।
ଧୂଳି ଦେଖିଲେ ଅନ୍ତରାଳେ ॥୩୧
ଉତ୍ତରଦିଗେ ରେଣୁ ଦେଖି ।
ଉଠିଲେ ଯଜ୍ଞକୁ ଉପେକ୍ଷି ॥୩୨
ଉତ୍ତରଦିଗକୁ ଅନାଇ ।
ବୋଲନ୍ତି ଏକୁ ଆରେ ଚାହିଁ ॥୩୩
ଦେଖ ଦିବସେ ଘୋରତମ ।
ଦିଗ ନ ଦିଶେ ବାତଭ୍ରମ ॥୩୪

ଏମନ୍ତେ ଦେବ-ବିପ୍ରନାରୀ ।
ଦେଖନ୍ତି ହସ୍ତେ ହସ୍ତ ଧରି ॥୩୫
ବୋଲନ୍ତି ଏ କି ତମଘୋର ।
ଦିଶଇ ଅତି ଭୟଙ୍କର ॥୩୬
ପ୍ରଚଣ୍ଡ ନ ବହେ ପବନ ।
ତମେ ଆଚ୍ଛାଦିଲା ଗଗନ ॥୩୭
ପ୍ରାଚୀନବର୍ହି ଦଣ୍ଡଧାରୀ ।
ଯେଣୁ ଅଛଇ ପ୍ରାଣ ଧରି ॥୩୮
ତାଙ୍କ ପ୍ରସାଦେ ଦସ୍ୟୁ ନାହିଁ ।
ଉତ୍ପାତ ହେଲା କିସ ପାଇଁ ॥୩୯
ଗୋରୁ ଚରଣ ଧୂଳି ନୋହେ ।
ଏ କି ତିମିର କାହୁଁ ହୋଏ ॥୪୦
ଆଜ କି ପ୍ରଳୟ ହୋଇବ ।
ବାମ କି ହୋଇଲା ଦଇବ ॥୪୧
ପ୍ରସୂତି ଆଦି ବାମା ଯେତେ ।
ଉଠି ଚାହାନ୍ତି ଦୁଃଖ ଚିତ୍ତେ ॥୪୨
ସର୍ବ ଦୁଃଖିତମନା ହୋଇ ।
ପ୍ରଚଣ୍ଡ ବାତକୁ ଅନାଇଁ ॥୪୩
ନିଶ୍ଚୟ ସେହି ପାପଫଳ ।
ସତୀର ଅପମାନ ମୂଳ ॥୪୪
ଏମନ୍ତ ଶୁଣି ବ୍ୟାସସୁତ ।
ଅଦ୍ଭୁତ ରୁଦ୍ରର ଚରିତ ॥୪୫
ଯେ ରୁଦ୍ର ପ୍ରଳୟ କାଳରେ ।
ତୀକ୍ଷ୍ଣ ତ୍ରିଶୂଳ ଧରି କରେ ॥୪୬
ନୃତ୍ୟ କରନ୍ତି ଅତି ବେଗେ ।
ଦେଖି ପଳାନ୍ତି ଦିଗନାଗେ ॥୪୭
ସହସ୍ରଭୁଜ ଉର୍ଦ୍ଧ୍ୱେ କରି ।
ନଟର ପ୍ରାୟେ ବେଶ ଧରି ॥୪୮
ଚଣ୍ଡାଟ୍ଟହାସ ଶୋହେ ତୁଣ୍ଡେ ।
ତେଜେ ନକ୍ଷତ୍ରଗଣ ଖଣ୍ଡେ ॥୪୯
ଅସହ୍ୟ ତେଜ ଯୋଗବଳ ।
ଦିଶଇ ଭ୍ରୂକୁଟୀ କୁଟିଳ ॥୫୦
କରାଳ ଦଂଷ୍ଟ୍ର ଶୋହେ ତୁଣ୍ଡେ ।
ତେଜେ ନକ୍ଷତ୍ରଗଣ ଖଣ୍ଡେ ॥୫୧

ତାରେ ଦୋରେହା କରି କେହି ।
ବିଧାତା ହେଲେ ରକ୍ଷା ନାହିଁ ॥୫୨
ଦକ୍ଷକୁ ଚାହିଁ ସଭାଜନେ ।
ବୋଲନ୍ତି ଅତି ଦୁଃଖମନେ ॥୫୩
ଦେଖ ଏହାର କର୍ମଫଳେ ।
ଆଜ ତ ନଶିଲୁ ସକଳେ ॥୫୪
ଘୋର-ଉତ୍ପାତ ଦୁଃଖମନେ ।
ଭୟେ ଲୁଚିଲେ ସର୍ବଜନେ ॥୫୫
କେ କହୁ ଜନଙ୍କ ବିକଳ ।
ତକ୍ଷଣେ ମିଳି ରୁଦ୍ରବଳ ॥୫୬
ନାନା ଆୟୁଧ ଧରି କରେ ।
ବେଗେ ବେଢ଼ିଲେ ଯଜ୍ଞଘରେ ॥୫୭
ପୀତ ପିଙ୍ଗଳ ଦିଶେ ବର୍ଣ୍ଣ ।
କେହି ବା ମକର ଆନନ ॥୫୮
ଶବଦେ ଗଗନ ଉଚ୍ଛୁଳେ ।
ବେଗେ ପଶିଲେ ଯଜ୍ଞଶାଳେ ॥୫୯
କେହୁ ଭାଙ୍ଗନ୍ତି ଯଜ୍ଞବାସ ।
କେ ପତ୍ନୀଶାଳା କରେ ନାଶ ॥୬୦
କେ ପାକଶାଳେ ପ୍ରବେଶନ୍ତି ।
କେ ଯଜ୍ଞପାତ୍ରକୁ ଭାଙ୍ଗନ୍ତି ॥୬୧
କେ ଯଜ୍ଞକୁଣ୍ଡରେ ମିଳନ୍ତି ।
ମୂତ୍ର ପୁରୀଷ ଉତ୍ସର୍ଗନ୍ତି ॥୬୨
କେ ଭୟଙ୍କର ନାଦକଲେ ।
ଯଜ୍ଞ ମେଖଳା ବେଦୀ ତୁଳେ ॥୬୩
ଭାଙ୍ଗିଲେ ଅତି କୋପଭରେ ।
ଶୂଳ ବୁଲାଇ ଦକ୍ଷକରେ ॥୬୪
କେ ଧାଏଁ ମୁନିଙ୍କ ଉପରେ ।
ତର୍ଜନ୍ତି ଅତି କୋପଭରେ ॥୬୫
ସ୍ତିରୀଗଣଙ୍କ ମଧ୍ୟେ ପଶି ।
ରାହୁ ଯେସନେ ଗ୍ରାସେ ଶଶୀ ॥୬୬
ଦେବେ ପଳାନ୍ତି ତାହା ଦେଖି ।
ଯଜ୍ଞର ଭାଗକୁ ଉପେକ୍ଷି ॥୬୭
ତାହାଙ୍କୁ ରୁଦ୍ରଗଣେ ଦେଖି ।
ଧାଇଁଲେ ଦୟାକୁ ଉପେକ୍ଷି ॥୬୮

Dr. Sudhanshu Sekhar Mishra

ଭୃଗୁକୁ ମଣିମାନ ବାନ୍ଧେ ।
ତା ଦେଖି ପ୍ରଜାପତି କାନ୍ଦେ ॥୬୯
ଦକ୍ଷକୁ ବୀରଭଦ୍ର ଧରି ।
ପଶୁର ପ୍ରାୟେ ବନ୍ଦି କରି ॥୭୦
ଚଣ୍ଡୀଶ ପୂଷଣକୁ ଧରେ ।
ଭଗକୁ ଧରେ ନନ୍ଦୀଶ୍ୱରେ ॥୭୧
ଯଜ୍ଞେ ଦେବତା ଯେତେ ଥିଲେ ।
ଋତ୍ୱିଜ ଋଷି ବିପ୍ର ତୁଲେ ॥୭୨
ରୁଦ୍ରଗଣଙ୍କ ତେଜ ଦେଖି ।
ଭାଜିଲେ ଯଜ୍ଞକୁ ଉପେକ୍ଷି ॥୭୩
ଭୃଗୁ ଯେ ଯଜ୍ଞେ ହୋମକାରୀ ।
ଘୃତ କ୍ଷେପନ୍ତି ଶ୍ରୁବ ଧରି ॥୭୪
ତାହାଙ୍କ କେଶ ବାମହସ୍ତେ ।
ରୋଷେ ସେ ଧଇଲେ ତୁରିତେ॥୭୫
ତାହାଙ୍କ ଦାଢ଼ି ଦକ୍ଷକରେ ।
ପୁଣି ଉପାଡ଼ି କୋପଭରେ ॥୭୬
ସଭାରେ ପଦ୍ମଯୋନିବଳା ।
ଯେ ଦାଢ଼ି ହଲାଇ ହସିଲା ॥୭୭
ଉପାଡ଼ି ଭୃଗୁ ଲମ୍ୱଦାଢ଼ି ।
ଭଗକୁ ରୋଷେ ତଳେ ଯୋଡ଼ି ॥୭୮

ଚକ୍ଷୁ ଉପାଡ଼ି ନଖ ଅଗ୍ରେ ।
ପୂର୍ବର ଶାପ ବଇଭୋଗେ ॥୭୯
ରୁଦ୍ରଙ୍କୁ ଶାପ ଦେବା ବେଳେ ।
ଯେଉଁ ଚକ୍ଷୁରେ ଠାରିଥିଲେ ॥୮୦
ଦକ୍ଷର ଶିବ-ନିନ୍ଦା କାଳେ ।
ଅପମାନିତ କୋପାନଳେ ॥୮୧
ଦନ୍ତ ଦେଖାଇ ପୂଷା ହସେ ।
ସେ କଥା ସ୍ମରି ମହାରୋଷେ ॥୮୨
ମୁଷ୍ଟି ପ୍ରହାରି ବାମକରେ ।
ଦନ୍ତ **ଝାଡ଼ିଲେ ରୋଷ**ଭରେ ॥୮୩
କଳିଙ୍ଗ ଦେଶ ରାଜା-ରଦ ।
ଯେହ୍ନେ ଭାଙ୍ଗିଲେ ବଳଭଦ୍ର ॥୮୪
ଦକ୍ଷର ହୃଦେ କର ତାଡ଼ି ।
ରୁଦ୍ର ଯେ ଅଧର କାମୋଡ଼ି ॥୮୫
ଭୂମିରେ ପାଡ଼ିଲେ ଉତ୍ତାନେ ।
ତୀକ୍ଷ୍ଣ ଖଡ଼ଗେ ମୁଣ୍ଡ ହାଣେ ॥୮୬
ଅକ୍ଷୟ ତାହାର ଶରୀର ।
ଦେଖି ବିସ୍ମିତି ଶୂଳଧର ॥୮୭
ଅବଧ୍ୟ ଦେଖି ତା'ର ଗତି ।
ବିସ୍ମୟେ ଭାଳି ପଶୁପତି ॥୮୮

ତୀକ୍ଷ୍ଣ-ଖଡ଼ଗେ ଛେଦି ଶିର ।
ସେ ବୀର ହୋଇଲା ବାହାର ॥୮୯
ଶିର ପଡ଼ିଲା ଅଗ୍ନିକୁଣ୍ଡେ ।
ରହିଲା ମାତ୍ର ମୃତ୍ୟୁପିଣ୍ଡେ ॥୯୦
ପିଶାଚଗଣ ଘେନି ସଙ୍ଗେ ।
ନାଚିଲେ ବୀରଭଦ୍ର ରଙ୍ଗେ ॥୯୧
ଦକ୍ଷ-ସମ୍ପଦ ନାଶ କରି ।
ଦକ୍ଷିଣଭୂଜେ ଶୂଳ ଧରି ॥୯୨
ସେ ବୀର ହୋଇଲେ ବାହାର ।
ଦେଖି କମ୍ପିଲେ ସୁରନର ॥୯୩
ସେ ରୁଦ୍ର-ଚରଣପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୯୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟା ସଂହିତାୟାଂ
ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞବିଧ୍ୱଂସୋ ନାମ
ପଞ୍ଚମୋଽଧ୍ୟାୟଃ ॥

---

## ଷଷ୍ଠ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ଶୁଣ ହେ ବିଦୁର ।
ରୁଦ୍ର ଚରିତ ରସସାର ॥୧
ରୁଦ୍ରଗଣଙ୍କ ଶସ୍ତ୍ରାଘାତେ ।
ଭୟେ ଭାଜିଲେ ଦେବେ ଯେତେ॥ ୨
ଶୂଳ ପଟ୍ଟିଶ କୁନ୍ତ ଶର ।
ନିସ୍ତ୍ରିଂଶ ଗଦା ମୁଦଗର ॥୩
ଏ ଶସ୍ତ୍ର ବାଜି ସର୍ବ ଅଙ୍ଗେ ।
ଭୟେ ଭାଜିଲେ ଦଶଦିଗେ ॥୪
ଋତ୍ୱିଜ ସଭାସଦଗଣ ।
ପଳାଇଗଲେ ଘେନି ପ୍ରାଣ ॥୫

ଭୟେ ସକଳେ ଏକମେଳେ ।
ମିଳିଲେ ଗଗନ-ମଣ୍ଡଳେ ॥୬
ଛନ୍ନ ବ୍ୟାକୁଳ ମନ ଦୁଃଖେ ।
ବେଗେ ମିଳିଲେ ବ୍ରହ୍ମଲୋକେ ॥୭
ବ୍ରହ୍ମା ଚରଣତଳେ ପଡ଼ି ।
ଦେବେ କହିଲେ କରଯୋଡ଼ି ॥୮
ଅନର୍ଥ ହେବ ବୋଲି ଜାଣି ।
ଯଜ୍ଞେ ନ ଗଲେ କୁଶପାଣି ॥୯
ସେ ଦେବେ ଯାହା ନିବେଦିଲେ।
ତା' ବ୍ରହ୍ମା-ବିଷ୍ଣୁ ଜାଣିଥିଲେ ॥୧୦
ତେଣୁ ସେ ଦକ୍ଷଯଜ୍ଞ କାଳେ ।
ଏ ବେନି ଗମନ ନ କଲେ ॥୧୧

ଏବେ ଦେବଙ୍କ ମୁଖୁଁ ଶୁଣି ।
ସେ ବ୍ରହ୍ମା କହେ ମଞ୍ଜୁବାଣୀ ॥୧୨
ଯଜ୍ଞ ବିନାଶି କୋପଭରେ ।
ରୁଦ୍ର ଯେ ଗଲେ ନିଜପୁରେ ॥୧୩
ସ୍ୱଭାବେ ତେଜେ ଅପ୍ରମିତ ।
ଅନ୍ତେ ଜଗତ କରେ ଗ୍ରସ୍ତ ॥୧୪
ତାହାଙ୍କ ତେଜ ବଳ ତଥ୍ୟ ।
କେ ତାହା ବର୍ଣ୍ଣିବେ ସମର୍ଥ ॥୧୫
ତାହାରେ ଅପରାଧ କରି ।
କେ ଅବା ଥିବ ଦେହ ଧରି ॥୧୬
ଏବେ ସକଳ ଦେବେ ଶୁଣ ।
କେ ଜାଣେ ଈଶ୍ୱର ପ୍ରମାଣ ॥୧୭

Dr. Sudhanshu Sekhar Mishra

ଚାଲ ସକଳ ସୁରଦେବା ।
ଏବେ ହୋ କଇଳାସ ଯିବା ॥୧୮
ରୁଦ୍ର ଚରଣେ ନମସ୍କାର ।
ସ୍ତୋତ୍ରେ ସନ୍ତୋଷ ଦେବ ହର ॥୧୯
ଈଶ୍ୱର ଚରଣ-କମଳେ ।
ଶରଣ ପଶ ଏକମେଳେ ॥୨୦
ସେ ଯେ ସକଳ-ଭୂତପତି ।
ସର୍ବସମ୍ପଦ ସେ ଦିଅନ୍ତି ॥୨୧
ତାହାଙ୍କ ନାମ ଆଶୁତୋଷ ।
ଅବଶ୍ୟ ହୋଇବେ ସନ୍ତୋଷ ॥୨୨
ମୋହର ବୋଲ ଏବେ କର ।
ଅନ୍ୟଥା ନାହିଁଟି ନିସ୍ତାର ॥୨୩
ଯେ ଅନ୍ତଃକାଳେ ଅଣ୍ଡକୋଷ ।
ନିମିଷ ମାତ୍ରେ କରେ ଗ୍ରାସ ॥୨୪
ତା'ର ଚରଣ ନ ସେବିଲେ ।
କେବା ସଂସାରେ ଥିବ ଭଲେ ॥୨୫
ଦକ୍ଷର ଅପରାଧ ଯୋଗେ ।
ବିଶେଷେ ପତ୍ନୀର ବିଯୋଗେ ॥୨୬
ସ୍ୱଭାବେ ତମଗୁଣ ଯୋଗେ ।
କେବା ମିଳିବ ତା'ର ଆଗେ ॥୨୭
ଯା'ର ମହିମା ବିଚାରଣେ ।
ମୋ ଆଦି ସର୍ବଦେବଗଣେ ॥୨୮
ଏ ଯଜ୍ଞ ଆଦି ଯେତେ ମୁନି ।
ସଙ୍ଗତେ ବେଦତତ୍ତ୍ୱ ଘେନି ॥୨୯
କେ ଜାଣି ପାରିବ ପ୍ରମାଣ ।
ସେ ଆତ୍ମତନ୍ତ୍ର ଭଗବାନ ॥୩୦
ଏବେ ସକଳେ ଚାଲ ଯିବା ।
ସେ ରୁଦ୍ର ଚରଣେ ନମିବା ॥୩୧
ସ୍ତୁତି କରିବା ନାନାମତେ ।
ଯେମନ୍ତେ ଦୟା ବହେ ଚିତ୍ତେ ॥୩୨
ଏମନ୍ତ କହି ପଦ୍ମଯୋନି ।
ସଙ୍ଗେ ସକଳ ଦେବ ଘେନି ॥୩୩
ଅଗ୍ରେ ଚଳିଲେ ବ୍ରହ୍ମା ପୁଣ ।
ଯକ୍ଷ କିନ୍ନର ଋଷିଗଣ ॥୩୪
ସିଦ୍ଧ ଚାରଣ ପିତୃତୁଲେ ।
ସର୍ବେ ଚଳିଲେ ବ୍ରହ୍ମାବୋଲେ ॥୩୫
ଈଶ୍ୱର ଦରଶନ ଆଶେ ।
ମିଳିଲେ କଇଳାସ ଦେଶେ ॥୩୬
ଯେ ବନେ ବସେ ସଦାଶିବ ।
ତା'ର ମହିମା କେ ବର୍ଣ୍ଣିବ ॥୩୭
ଜନ୍ମ ଔଷଧି ତପ ମନ୍ତ୍ରେ ।
ଯୋଗେ ସଂସିଦ୍ଧ ଯୋଗୀଯୂଥେ ॥୩୮
ଯକ୍ଷ କିନ୍ନର ବିଦ୍ୟାଧରୀ ।
ଗନ୍ଧର୍ବ ମୁନି ଅପସରୀ ॥୩୯
ସର୍ବେ ବସନ୍ତି ସିଦ୍ଧବନେ ।
ଅଶେଷ ଯୋଗୀ ଯୋଗଧ୍ୟାନେ ॥୪୦
ଅଶେଷ ମଣି-ରତ୍ନରେଖେ ।
ଶୃଙ୍ଗ ବିରାଜେ ଗିରି ଶିଖେ ॥୪୧
ଦେହେ ବିରାଜେ ନାନାଧାତୁ ।
ଅତି ଆନନ୍ଦ ରୂପ ହେତୁ ॥୪୨
ବିରାଜେ ନାନା ଗୁଳ୍ମ ଲତା ।
କେ ତା ବର୍ଣ୍ଣନେ ସାମରଥା ॥୪୩
ଆନନ୍ଦେ ମନୋହର ସ୍ଥାନେ ।
କ୍ରୀଡନ୍ତି ନାନା ପଶୁଗଣେ ॥୪୪
ଅନେକ କନ୍ଦର ଗମ୍ଭୀରା ।
ବହନ୍ତି ପ୍ରସ୍ରବଣ ଧାରା ॥୪୫
ରମଣେ ତୁଲେ ନାରୀଗଣେ ।
ରମନ୍ତି ସିଦ୍ଧସ୍ତ୍ରୀମାନେ ॥୪୬
ମୟୂର କେକାନାଦ ବାଣୀ ।
ଯେ ବନେ ମନୋହର ଶୁଣି ॥୪୭
କୋମଳକଣ୍ଠେ ପକ୍ଷୀଗଣେ ।
ନାଦ କରନ୍ତି ଘୋରବନେ ॥୪୮
ବସନ୍ତି କଳ୍ପଦ୍ରୁମ ପନ୍ତି ।
କି ଅବା ପକ୍ଷୀଙ୍କି ଡାକନ୍ତି ॥୪୯
ମତ୍ତ-ମାତଙ୍ଗ ଛଳେ ଚଳେ ।
ଗର୍ଜଇ କ୍ଷୁଦ୍ର-ନଦୀଜଳେ ॥୫୦
ମନ୍ଦାର ପାରିଜାତ ଦ୍ରୁମ ।
ସରଳ କୋବିଦାର ବନ ॥୫୧
ତମାଳ ଶାଳ ତାଳବନ ।
ଆବର ଅସନ ଅର୍ଜୁନ ॥୫୨
ଚୂତ କଦମ୍ବ ନାଗେଶ୍ୱର ।
ପୁନ୍ନାଗ ଚମ୍ପା କରବୀର ॥୫୩
ପାଟଳୀ ଅଶୋକ ଅନେକ ।
ବକୁଳ କୁନ୍ଦ କୁରୁବକ ॥୫୪
ସୁନାରୀ ଶତପତ୍ର ଜାତୀ ।
ମଲ୍ଲିକା ମାଧବୀ ଯେ ଯୂଥୀ ॥୫୫
ପନସ ଉଦୁମ୍ବର ପ୍ଲକ୍ଷ ।
ବଟ ଅଶ୍ୱତ୍ଥ ହିଙ୍ଗୁବୃକ୍ଷ ॥୫୬
ଖର୍ଜୁର ଜମ୍ବୁ ଯେ କ୍ରମୁକ ।
ଆମ୍ର ପିଆଳ ଆମ୍ରାତକ ॥୫୭
ଭୂର୍ଜ ଔଷଧି ଯେ ମଧୁକ ।
ଇଙ୍ଗୁଦ ବେଣୁ ଯେ କୀଚକ ॥୫୮
ବୃକ୍ଷେ ଅଛନ୍ତି ନାନାବର୍ଣ୍ଣେ ।
ଶୋଭନ କଇଳାସ ବନେ ॥୫୯
କୁମୁଦ ଉତ୍ପଳ କହ୍ଲାର ।
ଶତପତ୍ରରେ ଶୋହେ ନୀର ॥୬୦
ଆନନ୍ଦମନେ ପକ୍ଷୀକୁଳ ।
ଗଭୀରନାଦେ କୁତୂହଳ ॥୬୧
ମୃଗ ବାନର କୋଳଯୂଥ ।
ସିଂହ ଶାର୍ଦ୍ଦୂଳ ଗଜଯୂଥ ॥୬୨
ବୟ ବ୍ୟାଘ୍ର ଯେ ଋକ୍ଷଦଳ ।
ରୁରୁ ମହିଷ ଶଶାକୁଳ ॥୬୩
ଅରଣ୍ୟେ ମୃଗନାଭି ଆଦି ।
କେ କହୁ ସେ ବନ ପ୍ରସିଦ୍ଧି ॥୬୪
ସୁନ୍ଦର ଶୋହେ ରମ୍ଭାବନ ।
ଦେଖନ୍ତେ ମୋହେ ପ୍ରାଣୀମନ ॥୬୫
ବହଇ ତହିଁ ନଦୀ ନନ୍ଦା ।
ସତୀ ସ୍ନାନରେ ପୁଣ୍ୟଗନ୍ଧା ॥୬୬
ଏମନ୍ତ ବିଶ୍ୱନାଥ-ବନେ ।
ଦେଖି ସାନନ୍ଦ ଦେବଗଣେ ॥୬୭
ମନେ ବିସ୍ମୟ ପାଇ ବେଗେ ।
ଦେବେ ଚାହାଁନ୍ତି ଦଶଦିଗେ ॥୬୮

Dr. Sudhanshu Sekhar Mishra

ତା'ର ଉପର ପୁରେ ଯାଇ ।
ଅଳକାପୁରୀକୁ ଅନାଇ ॥୬୯
ସୁଗନ୍ଧ ନାମେ ବନ ଯହିଁ ।
ହେମପଙ୍କଜ ବିରାଜଇ ॥୭୦
ନନ୍ଦା-ଅଳକନନ୍ଦା ନଦୀ ।
ବହନ୍ତି ବାମଦକ୍ଷ ଭେଦି ॥୭୧
ବିଷ୍ଣୁ-ଚରଣ-ରଜ ଲାଗି ।
ସେ ନଦୀ ଅତି ସଉଭାଗୀ ॥୭୨
ଯେ ନଦୀଜଳେ ସୁରନାରୀ ।
ରମନ୍ତି ନାନା-କ୍ରୀଡା କରି ॥୭୩
କୁଚ-କୁଙ୍କମ ଜଳେ ମିଶେ ।
ସ୍ୱଭାବେ ସୁମଞ୍ଜୁଳ ଦିଶେ ॥୭୪
କରିଣୀ ତୁଲେ ହସ୍ତୀବଳ ।
ନିତ୍ୟେ ପିବନ୍ତି ଯା'ର ଜଳ ॥୭୫
ଯେବେ ପିପାସା ତା ନ ଥାଇ ।
ତଥାପି ତା ପାନ କରଇ ॥୭୬
ଆନନ୍ଦେ ପଦ୍ମବନେ ପଶି ।
କ୍ରୀଡା ଆନନ୍ଦେ ମନତୋଷି ॥୭୭
ସେ ନଦୀକୂଳେ ଉପଗତ ।
ରତ୍ନବିମାନ ଯୂଥଯୂଥ ॥୭୮
ପୁଣ୍ୟଜନଙ୍କ ପରିମଳ ।
ମିଶି ସୁଗନ୍ଧ ଗଙ୍ଗାଜଳ ॥୭୯
ତଡିତ ଯେହ୍ନେ ନୀଳମେଘେ ।
ଶୋଭା ଦିଶନ୍ତି ଦଶଦିଗେ ॥୮୦
ଏମନ୍ତ କୁବେର ନଗରୀ ।
ସୁଗନ୍ଧବନ ଆଦି କରି ॥୮୧
ଯହିଁରେ କଳ୍ପବୃକ୍ଷ ପ୍ରାୟେ ।
ଫଳ ପଲ୍ଲବ ପୁଷ୍ପ ଶୋହେ ॥୮୨
କୋମଳ କଣ୍ଠ-ନାଦ ପକ୍ଷୀ ।
ଭୃଙ୍ଗ ଶବଦ ଯହିଁ ଲକ୍ଷି ॥୮୩
ଜଳରେ କଳହଂସଗଣେ ।
କ୍ରୀଡା କରନ୍ତି ପଦ୍ମବନେ ॥୮୪
ହରିଚନ୍ଦନ-ବାୟୁ ସଙ୍ଗେ ।
ମତ୍ତମାତଙ୍ଗଗଣ ରଙ୍ଗେ ॥୮୫
ବୈଡୂର୍ଯ୍ୟ ବାପୀ କୂପସ୍ଥାନେ ।
ନିବିଡ-ପ୍ରବନ୍ଧ-ସୋପାନେ ॥୮୬
ସ୍ୱଭାବେ ଉତ୍ପଳ-ମାଳିନୀ ।
ବିରାଜେ ଗନ୍ଧର୍ବଗୁଣ ଘେନି ॥୮୭
ସେବନେ ଦେଖେ ବଟବୃକ୍ଷ ।
ଯହିଁ କିନ୍ନର ଗଣ ରକ୍ଷ ॥୮୮
ଶତେଯୋଜନ ଉଚ୍ଚ ଶୋହେ ।
ସୁନ୍ଦର ରୂପେ ଜନ ମୋହେ ॥୮୯
ସେ ବୃକ୍ଷଛାୟା ଦେହେ ଲାଗି ।
ପ୍ରାଣୀ ହୁଅନ୍ତି ସଉଭାଗୀ ॥୯୦
ଏମନ୍ତେ ସର୍ବ ଦେବଗଣେ ।
ମିଳିଲେ ମହାରୁଦ୍ର-ସ୍ଥାନେ ॥୯୧
ଦେଖିଲେ ବଟବୃକ୍ଷ ମୂଳେ ।
ନିବିଡ-ଆସନ ନିଶ୍ଚଳେ ॥୯୨
କୋପ ରହିତ ଯମ ପ୍ରାୟ ।
ବିଭୂତି ବିଲେପନ କାୟ ॥୯୩
ସନକ ଆଦି ସପ୍ତମୁନି ।
ସଙ୍ଗେ ଅନେକ ଶିଷ୍ୟଘେନି ॥୯୪
ଯକ୍ଷ-ସୁହୃଦ ଯା' ମହିମା ।
ସର୍ବମଙ୍ଗଳ ଏକସୀମା ॥୯୫
ବିଦ୍ୟା ତପସ୍ୟା ଯୋଗ ଆଦି ।
ସକଳେ ଖଟନ୍ତି ସବିଧି ॥୯୬
ବିଶ୍ୱ-ସୁହୃଦ ଯା' ମହିମା ।
ସର୍ବମଙ୍ଗଳ ଏକସୀମା ॥୯୭
ତପସ୍ୟା ଅଭ୍ୟାସିତ ଅଙ୍ଗ ।
ଯା'ର ଶରୀର ସିଦ୍ଧ ଲିଙ୍ଗ ॥୯୮
ଜଟା ଅଜିନ ଭସ୍ମ ଦଣ୍ଡ ।
ଶିରେ ରଞ୍ଜିତ ଇନ୍ଦୁଖଣ୍ଡ ॥୯୯
ସନ୍ଧ୍ୟା ସମୟେ ମେଘପ୍ରଭା ।
ତେମନ୍ତ ତାଙ୍କ ଅଙ୍ଗ ଶୋଭା ॥୧୦୦
କୁଶ ଆସନ ମଧ୍ୟେ ବସି ।
ପରମବ୍ରହ୍ମ ପରକାଶି ॥୧୦୧
ନାରଦ ମୁଖ ଚାହିଁ ଧୀରେ ।
ବଚନ କହନ୍ତି ମଧୁରେ ॥୧୦୨
ଦକ୍ଷିଣ-ଜାନୁର ଉପରେ ।
ବାମ-ଚରଣ ସ୍ଥାପି ଧୀରେ ॥୧୦୩
ବାମ-ଜାନୁରେ ବାମକର ।
ଦକ୍ଷ-କରରେ ଅକ୍ଷମାଳ ॥୧୦୪
ଚାହାଁନ୍ତି ବେନି ବାହୁ-ମୂଳେ ।
ଅରୁଣବର୍ଣ୍ଣ ବେନିଡୋଳେ ॥୧୦୫
ସ୍ୱଭାବେ ତର୍କ-ମୁଦ୍ରାଧାରୀ ।
ଯେ ରୂପେ ସଂସାର ସଂହାରି ॥୧୦୬
ନିଶ୍ଚଳ ସମାଧି ଧାରଣେ ।
ଦେଖିଲେ ସର୍ବ-ଦେବଗଣେ ॥୧୦୭
ସକଳ-ଋଷି ସଙ୍ଗମେଳେ ।
ଇନ୍ଦ୍ରାଦି ଦଶଦିଗପାଳେ ॥୧୦୮
ବ୍ରହ୍ମା ସହିତେ ସର୍ବଜନ ।
ଚାହିଁଲେ ରୁଦ୍ରଙ୍କ ବଦନ ॥୧୦୯
ଜୟ-ଶରଦ କରି ତୁଣ୍ଡେ ।
ରୁଦ୍ର ଚରଣେ ନମି ମୁଣ୍ଡେ ॥୧୧୦
ଯେ ହର ମନୁଙ୍କର ମନୁ ।
ଭକ୍ତଜନଙ୍କ କାମଧେନୁ ॥୧୧୧
ଜାଣିଲେ ସେ ନୀଳଲୋହିତ ।
ବ୍ରହ୍ମା ଯେ ଚରଣେ ପତିତ ॥୧୧୨
ସେ ସୁର-ଅସୁର-ନାୟକ ।
ଚରଣେ ନତ ସର୍ବଲୋକ ॥୧୧୩
ତା ଦେଖି ବ୍ୟଗ୍ର ହୋଇ ହର ।
ନମିଲେ ବ୍ରହ୍ମାର ପୟର ॥୧୧୪
ଯେ ରୂପେ କଶ୍ୟପ ଚରଣ ।
ବନ୍ଦନ କଲେ ସେ ବାମନ ॥୧୧୫
ନାରଦ ଆଦି ସିଦ୍ଧଗଣ ।
ବନ୍ଦିଲେ ବ୍ରହ୍ମାର ଚରଣ ॥୧୧୬
ସ୍ୱଭାବେ ମନ୍ଦ-ମନ୍ଦ ହସି ।
ଅମୃତ ବାକ୍ୟେ ମନତୋଷି ॥୧୧୭
ବ୍ରହ୍ମା କହନ୍ତି କରଯୋଡି ।
ଚରଣେ ପୁନଃପୁନଃ ପଡି ॥୧୧୮

**ବ୍ରହ୍ମୋବାଚ**

ତୁ ନାଥ ଜଗତ-ଈଶ୍ୱର ।
ସଂସାର ତୋ'ର ଖେଡଘର ॥୧୧୯

Dr. Sudhanshu Sekhar Mishra

ତୁ ଏ ଜଗତ ବୀଜଯୋନି ।
ସୃଷ୍ଟି ସଂହାରୁ ମାୟାଘେନି ॥ ୧୨୦
ତୁ ନାଥ ଜଗତ-ଈଶ୍ୱର ।
ନିର୍ଲେପ ବ୍ରହ୍ମ ନିରାକାର ॥ ୧୨୧
ତୁ ଶିବ-ଶକ୍ତି-ରୂପ ଧରୁ ।
ସଂସାରେ ଖେଳଘର କରୁ ॥ ୧୨୨
ସୃଜି ପାଳିଣ କରୁ ଅନ୍ତ ।
ଏ ବିଶ୍ୱ ଉର୍ଣ୍ଣନାଭବତ ॥ ୧୨୩
କ୍ରୀଡା ବିହାରେ ମାୟା କରି ।
ତୁ କ୍ରୀଡୁ ମାୟାରୂପ ଧରି ॥ ୧୨୪
କାହୁଁ ଜାଣିବେ ଦକ୍ଷ ତୋତେ।
ଯେଣୁ ଭ୍ରମଇ ଏ ଜଗତେ ॥ ୧୨୫
ଧର୍ମାର୍ଥ କାମ ଯହୁଁ ଝରେ ।
ଯେ ଯଜ୍ଞଧେନୁ ରୂପ ଧରେ ॥ ୧୨୬
ତୁ ତାହା ସର୍ଜିଛୁ ଜଗତେ ।
ସଂସାର ଭ୍ରମଣ ନିମନ୍ତେ ॥ ୧୨୭
ସେ ମାୟା ସଂସାର ବନ୍ଧନେ।
ଯନ୍ତ୍ରିତ ହୋଇ ମହାଜନେ ॥ ୧୨୮
କଳ୍ପନ୍ତି ନାନା କର୍ମ ବିଧି ।
ତୁ ସେ ସକଳ ଫଳ ସିଦ୍ଧି ॥ ୧୨୯
ମଙ୍ଗଳକ୍ରିୟାକର୍ମ-ଫଳ ।
ତୁ ସେ ଅନାଦି ଆଦିମୂଳ ॥ ୧୩୦
ସକଳଜନ ପରିତ୍ରାଣେ ।
ଭ୍ରମଣ କରୁ ଅନୁକ୍ଷଣେ ॥ ୧୩୧
ଅମଙ୍ଗଳକୁ ତମ ହେଉ ।
ଧର୍ମ ତୁ ସଦାକାଳେ ବହୁ ॥ ୧୩୨
ସ୍ୱର୍ଗାଦି ଫଳଦାତା ତୁହି ।
ତୋ ବିନୁ ଅନ୍ୟ କେହି ନାହିଁ॥ ୧୩୩
ତୁ ନାଥ ସର୍ବଫଳ ଦେଉ ।
ତୋର ମହିମା କେବା କହୁ ॥ ୧୩୪
ଯେବା ଅଶୁଭ-କର୍ମ କରେ ।
ନରକେ ପଡେ ସେହୁ ଘୋରେ॥ ୧୩୫
ଅସାଧୁଜନେ ତୁମ୍ଭ ରୋଷ ।
ସାଧୁରେ ନୁହଇ ପ୍ରକାଶ ॥ ୧୩୬

ଯେ ସାଧୁଜନେ କର୍ମ କରି ।
ଭାବ ପ୍ରଭାବେ ମୋଦ ଭରି ॥ ୧୩୭
ସେ ଫଳ ତୋତେ ସମର୍ପନ୍ତି ।
ମାୟାପଟଳୁ ତରି ଯା'ନ୍ତି ॥ ୧୩୮
ଯେ ଲୋଭବଶେ ତାହା ଚିନ୍ତି ।
ପଶୁଙ୍କ ପ୍ରାୟ ସେ ଭୁଞ୍ଜନ୍ତି ॥ ୧୩୯
ସେ କାହିଁ ସମ୍ପାଦିବେ ତୋତେ।
ଏଣୁ ଭ୍ରମନ୍ତି ଏ ଜଗତେ ॥ ୧୪୦
ଯେ ଭେଦଦର୍ଶୀ ଦୁଷ୍ଟାଶୟ ।
କେବଳ କର୍ମରତ ପ୍ରାୟ ॥ ୧୪୧
ପରର ଉଦୟେ ସର୍ବଥା ।
ଯାହାର ହୃଦୟରେ ବ୍ୟଥା॥ ୧୪୨
ସର୍ବଦା ବୋଲି ଦୁଷ୍ଟକଥା ।
ଦିଅଇ ପର ମର୍ମବ୍ୟଥା ॥ ୧୪୩
ଯେ ପଦ୍ମନାଭର ମାୟାରେ ।
ମୋହିତ ଭେଦ ଜ୍ଞାନୀ ନରେ ॥ ୧୪୪
ତାହାଙ୍କ ପ୍ରତି ସାଧୁଜନ ।
କରନ୍ତି ଦୟା ପ୍ରକାଶନ ॥ ୧୪୫
ଯେବା ସ୍ୱଧର୍ମ ଅନୁଗତ ।
ତାହାରେ ଦୟା ତ ଉଚିତ ॥ ୧୪୬
ତୁହି ତ ଯଜ୍ଞ ଫଳଦାତା ।
ସକଳ ଯଜ୍ଞଭାଗ-ଭୋକ୍ତା ॥ ୧୪୭
କୁତ୍ସିତ ଯଜ୍ଞକାରୀମାନ ।
ନ କଲେ ଯଜ୍ଞଭାଗ ଦାନ ॥ ୧୪୮
ତେଣୁ ଦକ୍ଷର ଯଜ୍ଞହତ ।
ହୋଇଣ ଅଛି ଅସମାପ୍ତ ॥ ୧୪୯
ତୋତେ ନ ଜାଣି ପ୍ରଜାପତି ।
ଦୁର୍ଗତି ଲଭିଲା ଦୁର୍ମତି ॥ ୧୫୦
ଆମ୍ଭ ଭକତି ହୃଦେ ଧର ।
ଏହାକୁ ଅନୁଗ୍ରହ କର ॥ ୧୫୧
ଏ ପୁଣି ଯଜ୍ଞଶାଳେ ମଲା ।
ସଂସାରେ ଯଶ ତୋ' ରହିଲା॥ ୧୫୨
ଏବେ ମୋହାର ବୋଲକର ।
ଏହାର ଯଜ୍ଞ ତୁ ଉଦ୍ଧର ॥ ୧୫୩

ଏ ଯଜ୍ଞେ ତୋ' ଭାଗ ନ ଦେଲେ।
ଏଣୁ ଏ ଜୀବ ଥାଉଁ ମଲେ ॥ ୧୫୪
ଏହାକୁ ଏ ଦଣ୍ଡ ଉଚିତ ।
ଯେଣୁ ନିନ୍ଦିଲେ ବିଶ୍ୱନାଥ ॥ ୧୫୫
ଏବେ ତୁ ଏହାଙ୍କୁ ଜୀଆଁଅ ।
ଭଗକୁ ଚକ୍ଷୁଦାନ ଦିଅ ॥ ୧୫୬
ଭୃଗୁର ଦାଢ଼ି ଏବେ ରୋପ ।
ପୂଷାର ଦନ୍ତ ପାଟି ସ୍ଥାପ ॥ ୧୫୭
ତୋ' ସୈନ୍ୟ ଶସ୍ତ୍ର ବରଷଣେ।
ଭୟେ ଭାଜିଲେ ଦେବଗଣେ॥ ୧୫୮
ତୋ ତ୍ରାସେ ଛିନଭିନ୍ନ ହୋଇ।
ଭୁବନେ ନ ପାରିଲେ ରହି ॥ ୧୫୯
ଋତ୍ୱିଜଗଣ ସେହି ମତ ।
ତାହାଙ୍କୁ ରଖ ବିଶ୍ୱନାଥ ॥ ୧୬୦
ଯଜ୍ଞେ ତୋ' ରୁଦ୍ରଭାଗ ଶେଷେ।
ସାଧିବା ମନ୍ତ୍ର ଉପଦେଶେ ॥ ୧୬୧
ହେ ରୁଦ୍ର ନିଜ ଭାଗ ପାଇ ।
ଯଜ୍ଞ ସମ୍ପୂର୍ଣ୍ଣ କର ତୁହି ॥ ୧୬୨
ଏମନ୍ତ କହି ପଦ୍ମଯୋନି ।
ନମିଲେ ଦେବଗଣ ଘେନି ॥ ୧୬୩
ସେ ରୁଦ୍ର ଚରଣପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥ ୧୬୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ରୁଦ୍ରସାନ୍ତ୍ୱନଂ ନାମ
ଷଷ୍ଠୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତମ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମାବୋଲ ଶୁଣି ।
ହସି କହନ୍ତି ଶୂଳପାଣି ॥୧

ମହାଦେବ ଉବାଚ

ହେ ବ୍ରହ୍ମା ମୋର ବାକ୍ୟ ଶୁଣ ।
ବର୍ଣ୍ଣିବା କି ବାଳକ ଗୁଣ ॥୨
ବାଳକ ବୋଲି ଏହା ସହି ।
ଆନେ ସହିବ କାହା ଦେହୀ ॥୩
ଦେଖ ଏ କର୍ମ କଲା ଯେତେ ।
କେ ସହି ପାରିବ ଜଗତେ ॥୪
ଯେଣୁ ଏ ତୋହର ସମ୍ମତି ।
ବୋଲାଇ ଦକ୍ଷ-ପ୍ରଜାପତି ॥୫
ତେଣୁ ସହିଲି ଆଜ ମୁହିଁ ।
ତୋହର ଭାବ ହୃଦେ ବହି ॥୬
ଯେ ଦେବ-ମାୟାରେ ମୋହିତ ।
ତାହାକୁ ମୋ ଦଣ୍ଡ ଉଚିତ ॥୭
ଏହାର ଦୋଷ କ୍ଷମା ପାଇଁ ।
ମିନତି କଲୁ ମୋତେ ତୁହି ॥୮
ଏବେ ସକଳ ଦେବେ ଯାଅ ।
ମୋହର ଆଜ୍ଞା ଶିରେ ବହ ॥୯
ଦକ୍ଷର ଶିର ଯଜ୍ଞକୁଣ୍ଡେ ।
ଭସ୍ମ ହୋଇଲା ଅତି ଚାଣ୍ଡେ ॥୧୦
ଛାଗଳ ଶିର ତାର କନ୍ଧେ ।
ବସାଅ ମନ୍ତ୍ର ଅନୁବନ୍ଧେ ॥୧୧
ମିତ୍ରର ଚକ୍ଷୁ ପାଇ ଭଗ ।
ଦେଖୁ ସେ ନିଜ ଯଜ୍ଞଭାଗ ॥୧୨
ପୂଷା ଯେ ତା'ର ଯଜମାନ ।
ଦାନ୍ତରେ ଖାଉ ପିଠାମାନ ॥୧୩
ଦେବେ ପାଇବେ ନିଜ ରୂପ ।
ଯାହାର ଯେମନ୍ତ ସ୍ୱରୂପ ॥୧୪
ଅଶ୍ୱିନୀକୁମାରଙ୍କ ବାହୁ ।
ବାହୁ ଛିଣ୍ଡିଲା ଲୋକ ପାଉ ॥୧୫
ପୂଷାର ହସ୍ତ ପାଇ ସେହୁ ।
ସକଳ କର୍ମ କରୁଥାଉ ॥୧୬
ଛାଗଳ ପ୍ରାୟେ ଦାଢ଼ି ଖଣ୍ଡେ ।
ଭୃଗୁର ରହିଥାଉ ତୁଣ୍ଡେ ॥୧୭
ଏମନ୍ତ ବଚନ ସନ୍ତୋଷେ ।
କହିଲେ ସର୍ବଦେବେ ପାଶେ ॥୧୮

ମୈତ୍ରେୟ ଉବାଚ

ଏମନ୍ତ ରୁଦ୍ର ବାକ୍ୟ ଶୁଣି ।
ସକଳେ ସାଧୁ ସାଧୁ ଭଣି ॥୧୯
ଇନ୍ଦ୍ର ସହିତେ ଋଷିଗଣ ।
ରୁଦ୍ରଙ୍କୁ କରି ଆମନ୍ତ୍ରଣ ॥୨୦
ହେ ପ୍ରଭୁ ଆଗମନ କରି ।
କୃତାର୍ଥ କର ଯଜ୍ଞସ୍ଥଳୀ ॥୨୧
ତଦନ୍ତେ ଦେବ-ଦେବରାଜ ।
ଯଜ୍ଞଶାଳାକୁ ହେଲେ ସଜ ॥୨୨
ବ୍ରହ୍ମା ସହିତେ ନାରାୟଣ ।
ସଙ୍ଗତେ ମିଳି ଦେବଗଣ ॥୨୩
ମିଳିଲେ ଯଜ୍ଞ ଶାଳେ ଯାଇ ।
ସକଳେ ଆନନ୍ଦିତ ହୋଇ ॥୨୪
ରୁଦ୍ରଙ୍କୁ ବସାଇ ଆସନେ ।
ତକ୍ଷଣେ ଶିବ ସୁପ୍ରସନ୍ନେ ॥୨୫
ଦକ୍ଷର ସ୍କନ୍ଧେ ଛାଗ-ଶିର ।
ମନ୍ତ୍ରେ ବସାଇଲେ ଶଙ୍କର ॥୨୬
ତକ୍ଷଣେ ପ୍ରଜାପତି ଅଙ୍ଗେ ।
ଜୀବ ପଶିଲା ପ୍ରାଣ ସଙ୍ଗେ ॥୨୭
ଯେହ୍ନେ ସ୍ୱପନୁ ପ୍ରାଣୀମାନେ ।
ଉଠନ୍ତି ନିଦ୍ରା ଅବସାନେ ॥୨୮
ଚକ୍ଷୁ ଘଷିଣ ବେନିହସ୍ତେ ।
ଶିବଙ୍କୁ ଦେଖିଲା ଅଗ୍ରତେ ॥୨୯
ସେ ଦକ୍ଷ ଶିବ-ଦ୍ୱେଷ କରି ।
କଳୁଷ-ଆତ୍ମା ଥିଲା ଧରି ॥୩୦
ରୁଦ୍ର ଚାହାଁନ୍ତେ ତା ଶରୀର ।
ତକ୍ଷଣେ ହୋଇଲା ନିର୍ମଳ ॥୩୧
ଶରଦଚନ୍ଦ୍ର ପ୍ରାୟେ ଦିଶେ ।
ରୁଦ୍ରଙ୍କୁ ଚାହେଁ ମନ ତୋଷେ ॥୩୨
ତକ୍ଷଣେ ବେନି କରଯୋଡ଼ି ।
ଆନନ୍ଦେ ରୁଦ୍ର-ପାଦେ ପଡ଼ି ॥୩୩
କରିବା ପାଇଁ ଭବସ୍ତୁତି ।
ଶ୍ରଦ୍ଧାରେ ଦକ୍ଷ କଲା ମତି ॥୩୪
ସ୍ତୁତି କରଣେ ଶକ୍ୟ ନୋହେ ।
କଣ୍ଠ ଗଦଗଦେ ବାଣୀ କହେ ॥୩୫
ଚଞ୍ଚଳ-ଚିତ୍ତ ସ୍ଥିର କରି ।
ସତୀ ମରଣ କଥା ସ୍ମରି ॥୩୬
ନିର୍ମଳ-ଚିତ୍ତେ ପ୍ରଜାପତି ।
ରୁଦ୍ରଙ୍କୁ ଚାହିଁ କରେ ସ୍ତୁତି ॥୩୭

ଦକ୍ଷ ଉବାଚ

ଭୋଳାନାଥ ଶୁଣ ବିଶ୍ୱଦେହ ।
ତୁ ମୋତେ କଲୁ ଅନୁଗ୍ରହ ॥୩୮
ମୁଁ ଯେ ହୋଇଲି ଜ୍ଞାନହତ ।
ମୋତେ ଦଣ୍ଡିବା ତୋ' ଉଚିତ ॥୩୯
ତୋତେ ନିନ୍ଦିଲି ଗର୍ବ ବହି ।
ମୋର କୁଶଳ ଆଉ ନାହିଁ ॥୪୦
ଅଭୟ ତୋ'ର ପଦ୍ମପାଦ ।
ମୁଁ ତହିଁ କଲି ଅପରାଧ ॥୪୧
ବ୍ରାହ୍ମଣ ତୋ'ର ମୁଖୁଁ ଜାତ ।
ସାଧନ୍ତି ବିଦ୍ୟା ତପ ବ୍ରତ ॥୪୨
ତାଙ୍କୁ ବିପଦୁ ତୁମ୍ଭେ ରଖ ।
ଯେସନେ ପଶୁଙ୍କୁ ପାଳକ ॥୪୩
ମୋହର ସଭା ମଧ୍ୟେ ତୋତେ ।
ନିନ୍ଦା ଯେ କଲି ଦୁଷ୍ଟଚିତ୍ତେ ॥୪୪

Dr. Sudhanshu Sekhar Mishra

ନିନ୍ଦିତ ବାକ୍ୟ ବାଣେ ତୋତେ ।
ପ୍ରହାର କଲି ମୂଢ଼-ଚିତ୍ତେ ॥୪୫
ସେ ଫଳ ପାଇଲି ପ୍ରତ୍ୟକ୍ଷେ ।
ଏ ଋଷି-ଦେବଙ୍କ ସମକ୍ଷେ ॥୪୬
କୃପା-ଦୃଷ୍ଟିରେ ମୋତେ ଚାହିଁ ।
ଏଥୁ ଉଦ୍ଧର ତୋଷ ହୋଇ ॥୪୭

ମୈତ୍ରେୟ ଉବାଚ

ଏମନ୍ତେ ରୁଦ୍ରେ ସ୍ତୁତି କରି ।
ପୁଣି ଋତ୍ୱିକ ଯଜ୍ଞେ ବରି ॥୪୮
ବିଷ୍ଣୁ-ସନ୍ତୋଷେ ବିପ୍ରଗଣେ ।
ପୂର୍ବର କଳ୍ପିତ-ବରଣେ ॥୪୯
ପୂଜିଲେ ମନ୍ତ୍ରର ବିଶ୍ୱାସେ ।
ଯେ ପୁରାତନ ଇତିହାସେ ॥୫୦
ଋତ୍ୱିଜ ଆଦି ସର୍ବ ଋଷି ।
ମନ୍ତ୍ର ଉଚ୍ଚାରି ଯଜ୍ଞେ ବସି ॥୫୧
ସକଳେ ବସି ଶୁଦ୍ଧମନେ ।
ଅଗ୍ନି ପୂଜିଲେ ଯୋଗଧ୍ୟାନେ ॥୫୨
ଅନଳ ରୂପେ ନାରାୟଣ ।
ସାକ୍ଷାତେ ହୋଇଲେ ପସନ୍ନ ॥୫୩
ତେଜେ ବିରାଜେ ଦଶଦିଶ ।
ଅନଳୁ ହୋଇଲେ ପ୍ରକାଶ ॥୫୪
ନିଶ୍ଚଳ ଗରୁଡ଼ଆସନ ।
ଶ୍ୟାମସୁନ୍ଦର ତନୁ-ବର୍ଣ୍ଣ ॥୫୫
କିରୀଟ ରବିତେଜ ଗଞ୍ଜେ ।
ମକରକୁଣ୍ଡଳ ବିରାଜେ ॥୫୬
ଶଙ୍ଖ ଯେ ଚକ୍ର ଗଦା ପଦ୍ମ ।
ଧନୁ ଖଡଗ ଶର ଚର୍ମ ॥୫୭
ହିରଣ୍ମୟ ଭୁଜେ ଶୋହେ ।
ପୁଷ୍ପିତ-କର୍ଣ୍ଣିକାର ପ୍ରାୟେ ॥୫୮
ଏ ଅଷ୍ଟଭୁଜ ଅନୁପମ ।
ରୂପେ ଗଞ୍ଜାଇ କୋଟିକାମ ॥୫୯
କମଳା ସେବେ ବକ୍ଷସ୍ଥଳେ ।
ସେ ବକ୍ଷ ଶୋହେ ବନମାଳେ ॥୬୦

ବିଶ୍ୱମଙ୍ଗଳ ରୂପ ସାର ।
ହୃଦେ ଲମ୍ବଇ ରତ୍ନହାର ॥୬୧
ତା ହାସ୍ୟ ବିଶ୍ୱ ପ୍ରୀତିକର ।
ପାର୍ଶ୍ୱରେ ବ୍ୟଜନ ଚାମର ॥୬୨
ସେ ରାଜହଂସର ସମାନ ।
ଭ୍ରମଇ ଚାମର ବ୍ୟଜନ ॥୬୩
ଉପରେ ଶୋହେ ଶ୍ୱେତଛତ୍ର ।
ଯେସନେ ଶଶାଙ୍କ ଶୋଭିତ ॥୬୪
ଏମନ୍ତ ବିଷ୍ଣୁରୂପ ଚାହିଁ ।
ସକଳେ ଶିରେ କର ଦେଇ ॥୬୫
ଉଠିଲେ ପଦ୍ମଯୋନି-ହର ।
ସଙ୍ଗତେ ଘେନି ସୁନାସୀର ॥୬୬
ପ୍ରଣାମ କରି ଜଣେଜଣେ ।
ବନ୍ଦିଲେ ବିଷ୍ଣୁର ଚରଣେ ॥୬୭
ବିଷ୍ଣୁର ତେଜବଳେ ଦେବେ ।
ହୋଇଲେ ହତପ୍ରଭ ସର୍ବେ ॥୬୮
ଭୟରେ ହୋଇଲେ ଚଞ୍ଚଳ ।
ରସନା ହୋଇଲା ଅଚଳ ॥୬୯
ତଥାପି ଶିରେ କର ଦେଇ ।
ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ॥୭୦
ଦକ୍ଷ ମିଳିଲା ଅର୍ଘ୍ୟ ଘେନି ।
ତୁଲେ ଅଶେଷ ବ୍ରହ୍ମମୁନି ॥୭୧
ସୁନନ୍ଦ ଆଦି ପାରିଷଦେ ।
ମିଳିଲେ ଜୟଜୟ ନାଦେ ॥୭୨
ଦକ୍ଷ ଆନନ୍ଦେ କରଯୋଡ଼ି ।
ବୋଲଇ ବିଷ୍ଣୁ-ପାଦେ ପଡ଼ି ॥୭୩

ଦକ୍ଷ ଉବାଚ

ତୁ ନାଥ ଶୁଦ୍ଧ-ଚଇତନ ।
ନିର୍ମଳ ନିତ୍ୟ ନିରଞ୍ଜନ ॥୭୪
ଭେଦବିହୀନ ତୁ ଅଭୟ ।
ଏ ବିଶ୍ୱପୂର୍ଣ୍ଣ ତୋ'ର ଦେହ ॥୭୫
କେ ତୋତେ ଜାଣିବ ସଂସାରେ ।
ତୁ ଥାଉ ମାୟା ଅତିଦୂରେ ॥୭୬

ଋତ୍ୱିକମାନେ କରଯୋଡ଼ି ।
କହନ୍ତି ବିଷ୍ଣୁ ପାଦେ ପଡ଼ି ॥୭୭

ଋତ୍ୱିକ ଗଣ ଉବାଚ

ଭୋନାଥ ରୁଦ୍ର-ଶାପେ ଆମ୍ଭେ ।
ବୁଡ଼ିଲୁ ମାୟା-ଗର୍ବ-ଦମ୍ଭେ ॥୭୮
ନିରତେ କର୍ମବଶ ହୋଇ ।
ତୋ' ଭାବେ ଆତ୍ମ ଜ୍ଞାନ ନାହିଁ ॥୭୯
ଏ ଯଜ୍ଞ ଧର୍ମର ଲକ୍ଷଣ ।
ଅଶେଷ-ଭାଗ୍ୟର କାରଣ ॥୮୦
ଏ ତୋ'ର ରୂପ ମହାବାହୁ ।
ଆମ୍ଭେ ଜାଣିବୁ ଅବା କାହୁଁ ॥୮୧
ତକ୍ଷଣେ ସଭାଲୋକ ଉଠି ।
ବିଷ୍ଣୁଙ୍କୁ ଦେଇ ତୁଲ୍ୟ ଦୃଷ୍ଟି ॥୮୨

ସଦସ୍ୟଗଣ-ଉବାଚ

ଭୋ ନାଥ ତୋ'ର ମାୟାବଳେ ।
ଏ ଜୀବ ଭ୍ରମେ ଏ ଶୟଳେ ॥୮୩
ଏ ଦୁଃଖ-ସୁଖ-ରୂପ-ଗର୍ତ୍ତେ ।
ବିଷୟା-ମୃଗତୃଷ୍ଣା ପଥେ ॥୮୪
ଶୋକ-ଦାବାଗ୍ନି ଦହ୍ୟମାନ ।
କାମେ ଚେଷ୍ଟିତ ଅନୁକ୍ଷଣ ॥୮୫
ନିରତେ ଚିନ୍ତେ ଆତ୍ମାସୁଖ ।
ଉଦ୍ଧରି ଧର ପଦ୍ମମୁଖ ॥୮୬

ରୁଦ୍ରଉବାଚ

ତୋ'ର ଚରଣ ଭଗବାନ ।
ଆଶିଷ ଫଳେ ମୁନିଜନ ॥୮୭
ଅଖିଳକାମେ ଅନାସକ୍ତ ।
ଆଦରେ ପୂଜନ୍ତି ନିରତ ॥୮୮
ସେ ପାଦପଦ୍ମ ଚିତ୍ତେ ଧରି ।
ତମେ ଜଗତ ମୁଁ ସଂହରି ॥୮୯
ବର୍ତ୍ତଇ ତୋ' ଚରଣ ଆଶେ ।
ନିରତେ ରହଇ ସନ୍ତୋଷେ ॥୯୦

Dr. Sudhanshu Sekhar Mishra

ଭୃଗୁ-ଉବାଚ

ଭୋନାଥ ତୋ' ମାୟା ଗହନେ ।
ବ୍ରହ୍ମାଦି ଯେତେ ମୁନିଜନେ ॥୯୧
ଅଜ୍ଞାନ-ଅନ୍ଧକାରେ ଥା'ନ୍ତି ।
ତୋର ମହିମା ନ ଜାଣନ୍ତି ॥୯୨
ତୋର ଚରଣେ ଯେ ପ୍ରଣତ ।
ତା ଆତ୍ମବନ୍ଧୁ ତୁ ନିୟତ ॥୯୩
ତୋର ଚରଣେ ମୋର ପ୍ରଣାମ ।
ପ୍ରସନ୍ନ ହୁଅ ପୁଣ୍ୟଧାମ ॥୯୪
ତୁ ଏବେ ରଖ ମୋ ମନ ।
ତୋର ଚରଣେ କରି ଲୀନ ॥୯୫
ଯା ମାୟା ଗହନରେ ପଡି ।
ବ୍ରହ୍ମାଦି ଦେବେ ତମେ ବୁଡି ॥୯୬
ତୋହର ତତ୍ତ୍ୱ ନ ଜାଣନ୍ତି ।
ସ୍ୱଭାବେ ମୁହିଁ ଅଳ୍ପମତି ॥୯୭
ନ ଜାଣି କଲଇଁ ଅନୀତି ।
ଏ ଦୋଷ ଖଣ୍ଡ ଲକ୍ଷ୍ମୀପତି ॥୯୮

ବ୍ରହ୍ମା ଉବାଚ

ପୁରୁଷ ଦେଖେ ଯେତେ ରୂପ ।
ତାହା ନୁହଇ ତୋ' ସ୍ୱରୂପ ॥୯୯
ଜ୍ଞାନେନ୍ଦ୍ରିୟର ଯେ ବିଷୟ ।
ସତ୍ୟ ତୁ ତାହାର ଆଶ୍ରୟ ॥୧୦୦
ପଦାର୍ଥ ଭେଦେ ଭେଦ ଆଖି ।
କେ ପାରେ ତୋତେ ଉପଲକ୍ଷି ॥୧୦୧
ତୁ ଜ୍ଞାନଇନ୍ଦ୍ରି ଅର୍ଥାଶ୍ରୟ ।
ହେଲେ ହେଁ ନୋହୁ ମାୟାମୟ ॥୧୦୨
ମାୟାର ବେଶ ଜ୍ଞାନ ଥାଇ ।
ତୋତେ ଜାଣିବେ ଅବା କାହିଁ ॥୧୦୩
ଇନ୍ଦ୍ର ହରଷ ଚିତ୍ତ ହୋଇ ।
କହନ୍ତି ବିଷ୍ଣୁମୁଖ ଚାହିଁ ॥୧୦୪
ହେ ବିଶ୍ୱଭବନ ମୁରାରି ।
ତୁ ଯେ ଆନନ୍ଦ-ବପୁଧାରୀ ॥୧୦୫
ସକଳ ପ୍ରାଣୀ ମନୋହର ।
ଭୋନାଥ ତୋହର ଶରୀର ॥୧୦୬
ଏ ଯେ ତୁମ୍ଭର ଅଷ୍ଟକର ।
ଏ ଦିଗପାଳଙ୍କ ଶରୀର ॥୧୦୭

ବ୍ରାହ୍ମଣପତ୍ନୀଗଣ-ଉବାଚ

ଏ ଯଜ୍ଞ ତୋ'ର ଯଜନାର୍ଥେ ।
ସୃଜିଲେ ବ୍ରହ୍ମା ଏ ଜଗତେ ॥୧୦୮
କେବଳ ବିଧି ଅବହେଳେ ।
ରୁଦ୍ର ରୂପରେ ଯଜ୍ଞଶାଳେ ॥୧୦୯
ଦକ୍ଷକୁ ଦେଲୁ କର୍ମଫଳ ।
ନାଶିଲୁ ତା' ଯଜ୍ଞ ସକଳ ॥୧୧୦
ଏବେ ପବିତ୍ର ଏ ଭୁବନ ।
କଲ୍ପିଲା ତୋ'ର ଦରଶନ ॥୧୧୧
ଋଷି ସହସ୍ର ନମ୍ର ଶିରେ ।
କହନ୍ତି ଯଜ୍ଞପୁରୁଷରେ ॥୧୧୨

ଋଷିଗଣ-ଉବାଚ

ଭୋନାଥ ତୋ'ର ବିଚେଷ୍ଟିତା ।
ବିଶ୍ୱ-ସଂସାରେ ବିପରୀତ ॥୧୧୩
ଈଶ୍ୱରୀମାୟା ଯେ ବିଭୂତି ।
ଯା' ବଳେ ଦେବେ ଭ୍ରମ ହୋନ୍ତି ॥୧୧୪
ଆମ୍ଭରେ ଦୟାଭାବ କରି ।
ସେ ମାୟା ଛେଦ ହେ ଶ୍ରୀହରି ॥୧୧୫
ନାହିଁ ଆଦର ସେ ଲକ୍ଷ୍ମୀରେ ।
ତୋ ଚେଷ୍ଟା ଜାଣୁ କେ ସଂସାରେ ॥୧୧୬
ସକଳ ସିଦ୍ଧେ ଉଠିବେଗେ ।
କହନ୍ତି ବିଷ୍ଣୁଙ୍କୁ ସରାଗେ ॥୧୧୭

ସିଦ୍ଧଗଣ-ଉବାଚ

ତୋ କଥା ସୁଧା-ତରଙ୍ଗିଣୀ ।
ଶୀତଳ-ଜଳ ପ୍ରାୟ ମଣି ॥୧୧୮
ମନ-ବାରଣ ତୃଷାକୁଳେ ।
ପ୍ରବେଶ ହୋଇ ଶୀତଜଳେ ॥୧୧୯
ନ ସ୍ମରେ କ୍ଳେଶ-ଦାବାନଳ ।
ତୋ'ର ପ୍ରସନ୍ନେ ଆଦିମୂଳ ॥୧୨୦

ଦକ୍ଷପତ୍ନୀ-ଉବାଚ

ଭୋନାଥ ତୋ'ର ଆଗମନ ।
ଆନନ୍ଦ କଲା ମୋ'ର ମନ ॥୧୨୧
ତୁ ଲକ୍ଷ୍ମୀକାନ୍ତ ସୁଧାନିଧି ।
ସକଳ ସମ୍ପଦ ପ୍ରସିଦ୍ଧି ॥୧୨୨
ତୋ ବିନୁ ଏହି ଯଜ୍ଞଘର ।
ଭୋନାଥ ନ ଦିଶେ ସୁନ୍ଦର ॥୧୨୩
କି ଅବା ଦେବା ପଟାନ୍ତର ।
କବନ୍ଧ ପ୍ରାୟ ଛିନ୍ନ ଶିର ॥୧୨୪
କାନ୍ତା ସହିତ ପରାତ୍ପର ।
ତେଣୁ ଆମ୍ଭଙ୍କୁ ରକ୍ଷା କର ॥୧୨୫
ତୁମ୍ଭର ବିଜେ ହେଲା ଯେଣୁ ।
ଏ ଗୃହ ଶୋଭା କେ ପ୍ରମାଣୁ ॥୧୨୬
ଏ କଥା ନୁହଇ ବିଚିତ୍ର ।
ତୋ' ନାମେ ଜଗତ ପବିତ୍ର ॥୧୨୭
ତୁ ଦେବଦେବଙ୍କର ଇଷ୍ଟ ।
ସର୍ବ-ନିୟନ୍ତା ତପୀଶ୍ରେଷ୍ଠ ॥୧୨୮

ଲୋକପାଳଗଣ-ଉବାଚ

ଆମ୍ଭର ଦୃଷ୍ଟଗ୍ରହ ଦୋଷେ ।
ତୋତେ ଦେଖିବୁ କାହୁଁ ଦୃଶେ ॥୧୨୯
ତୁ ଦ୍ରଷ୍ଟା ସକଳ ବିଶ୍ୱର ।
ଇନ୍ଦ୍ରିୟେ ନୋହୁ ତୁ ଗୋଚର ॥୧୩୦
ତୁ ଷଷ୍ଠ ପଞ୍ଚଭୂତେ ବସୁ ।
ମାୟା-ସ୍ୱରୂପ ତୁ ପ୍ରକାଶୁ ॥୧୩୧
ଅସତ ଯାହାର ଇନ୍ଦ୍ରିୟ ।
କାହୁଁ ଦେଖିବେ ତୋ'ର କାୟ ॥୧୩୨
ବିଶୁଦ୍ଧ ଯାହାର ମାନସ ।
ତାହା ନିକଟେ ତୁ ପ୍ରକାଶ ॥୧୩୩

ଯୋଗେଶ୍ୱର-ଉବାଚ

ତୁ ବିଶ୍ୱଆତ୍ମା ପରଂବ୍ରହ୍ମ ।
ଶୁଦ୍ଧ-ଚୈତନ୍ୟ ତୋ'ର ଧାମ ॥୧୩୪

Dr. Sudhanshu Sekhar Mishra

ଯେ ତୋତେ ଅଭେଦେ ଦେଖଇ ।
ତା ତହୁଁ ପ୍ରିୟ ତୋ'ର ନାହିଁ ॥ ୧୩୫
ଜଗତ ସୃଷ୍ଟି-ସ୍ଥିତି-ଅନ୍ତ ।
ତ୍ରିଗୁଣେ କରୁ ଆତଜାତ ॥ ୧୩୬
ଭୋନାଥ ତୁମ୍ଭ ଦରଶନେ ।
ଆମ୍ଭେ ଯେ ତୁଷ୍ଟ କଲୁ ମନେ॥ ୧୩୭
ଅଷ୍ଟାଙ୍ଗଯୋଗେ ଧର୍ମ ସାଧି ।
ଲଭିବା ପାଇଁ ଅଷ୍ଟନିଧି ॥ ୧୩୮
ସେ ପୁଣି ତୋ'ର ମାୟାବଳେ।
କେମନ୍ତେ ଧରିବା ନିଶ୍ଚଳେ ॥ ୧୩୯
ତୁ ନାଥ କରୁ ଯେବେ ଦୟା।
ତେବେ ବଞ୍ଚିବୁ ତୋ'ର ମାୟା॥ ୧୪୦
ନିର୍ଲେପ-ଜ୍ଞାନ ସର୍ବବ୍ୟାପୀ ।
ତୁ ନାଥ ନିରଞ୍ଜନ ରୂପୀ ॥ ୧୪୧
ତୋହର ମହିମା ଅପାର ।
ତୋ' ପାଦେ ଆମ୍ଭ ନମସ୍କାର॥ ୧୪୨
ବ୍ରହ୍ମା ଉଷତେ ବିଷ୍ଣୁ ଚାହିଁ ।
କହନ୍ତି ଶିରେ କର ଦେଇ ॥ ୧୪୩

ବ୍ରହ୍ମା-ଉବାଚ

ତୁମ୍ଭେ ଯେ ଆଶ୍ରୟ ଜୀବଙ୍କ ।
ଧର୍ମାର୍ଥ ଉତ୍ପତ୍ତି-କାରକ ॥ ୧୪୪
ଆବୋରି ତୁ ଯେ ସତ୍ତ୍ୱଗୁଣ ।
ଧର୍ମ ପ୍ରକାଶୁ ଭଗବାନ ॥ ୧୪୫
ତୁହି ନିର୍ଗୁଣ ନିରାକାର ।
ତୋ' ପାଦେ ମୋର ନମସ୍କାର ॥ ୧୪୬
ଯେଣୁ ମୁଁ ତୋ ତତ୍ତ୍ୱ ନ ଜାଣେ।
କାହୁଁ ଜାଣିବେ ଦେବଗଣେ ॥ ୧୪୭
ଅଗ୍ନି ସ୍ୱର୍ଗରେ କର ଦେଇ ।
କହଇ ବିଷ୍ଣୁ ମୁଖ ଚାହିଁ ॥ ୧୪୮

ଅଗ୍ନି-ଉବାଚ

ଯାହାର ତେଜ ବଳେ ମୁହିଁ ।
ଅନଳ ରୂପେ ଯଜ୍ଞେ ଥାଇ ॥ ୧୪୯
ଘୃତ ଆହୁତି ପଞ୍ଚବିଧେ ।
ମନ୍ତ୍ରେ ନିବେଦି ଏ ସମିଧେ ॥ ୧୫୦
ତୁ ଯଜ୍ଞରୂପୀ ଦାମୋଦର ।
ନିରତେ ମୋ'ର ନମସ୍କାର ॥ ୧୫୧
ତୁ ଅଗ୍ନିହୋତ୍ର ତୁହି ଦର୍ଶ ।
ତୁ ଚାତୁର୍ମାସ୍ୟ ପୌର୍ଣ୍ଣମାସ ॥ ୧୫୨
ତୁ ପଶୁ ସୋମ ପଞ୍ଚବିଧ ।
ମନ୍ତ୍ରେ ପୂଜିତ ତୁ ପ୍ରସିଦ୍ଧ ॥ ୧୫୩
ଦେବତାମାନେ ହରଷରେ ।
କହନ୍ତି ବିଷ୍ଣୁଙ୍କ ଛାମୁରେ ॥ ୧୫୪

ଦେବଗଣ-ଉବାଚ

ତୁ ନାଥ ପୂର୍ବକଳ୍ପେ ହରି ।
ପ୍ରଳୟକାଳେ ଗର୍ଭେ ଭରି ॥ ୧୫୫
ସର୍ବ-ସଂହରୁ ବିଶ୍ୱରୂପେ ।
ଜଳେ ଶୟନ ଅହିତଳ୍ପେ ॥ ୧୫୬
ଆମ୍ଭେ ଯେ ତୋ'ର ନିଜ ଭୃତ୍ୟ।
ଏ କଥା ଜଗତେ ବିଖ୍ୟାତ ॥ ୧୫୭
ଆମ୍ଭଙ୍କୁ ସଙ୍କଟ ପଡିଲେ ।
ତୁ ନାଥ ରକ୍ଷାକରୁ ଭଲେ ॥ ୧୫୮
ହେ ଦେବ ସ୍ୱରୂପ ତୋହର ।
ହୋଇଲା ନୟନ ଗୋଚର ॥ ୧୫୯

ଗନ୍ଧର୍ବଗଣ-ଉବାଚ

ଭୋନାଥ ତୋତେ ନମସ୍କାର।
ଏ ବିଶ୍ୱକ୍ରୀଡା-ଭାଣ୍ଡ ତୋର ॥ ୧୬୦
ଏ ବ୍ରହ୍ମା ରୁଦ୍ର ଆଦି ଯେତେ ।
ସକଳ ଦେବତା ସମେତେ ॥ ୧୬୧
ମରୀଚିଆଦି ପ୍ରଜାପତି ।
ବ୍ରହ୍ମାଦି ଦେବ ପଶୁପତି ॥ ୧୬୨
ତୁହି ଯେ ପୁରୁଷ ମହତ ।
ତୋ' ପାଦେ ଆମ୍ଭେ ହେଲୁ ନତ ॥ ୧୬୩

ବିଦ୍ୟାଧର-ଉବାଚ

ତୁମ୍ଭର ମାୟାବଳେ ପ୍ରାଣୀ ।
ମୁହିଁ ମୋହର ପରିମାଣି ॥ ୧୬୪
ଉତ୍ପଥଗାମୀ ପୁତ୍ରାଦିର ।
ଦୁଃଖ ଯେ ଅଟେ ଗୁରୁତର ॥ ୧୬୫
ତଥାପି ମୋହ ନ ତ୍ୟଜଇ ।
ଅସତେ ଲାଳସକୁ ବହି ॥ ୧୬୬
ତୋ' କଥା ଅମୃତ ନ ସେବୋ।
ଏଣୁ ପଡଇ ଭବାର୍ଣ୍ଣବେ ॥ ୧୬୭

ବ୍ରାହ୍ମଣ-ଉବାଚ

ତୁ ନାଥ ଯଜ୍ଞଅଗ୍ନି ସୋମ ।
ତୁ ନିତ୍ୟାଚାର ବିଧିକର୍ମ ॥ ୧୬୮
ସମିଧ ପାତ୍ର ତୁ ଋତ୍ୱିଜ ।
ଯଜ୍ଞାଦି ଯଜମାନ ଦ୍ୱିଜ ॥ ୧୬୯
ତୁ ସ୍ୱାହା ସ୍ୱଧା ଯଜ୍ଞପଶୁ ।
ତୁ ଯଜ୍ଞପୁରୁଷ ପ୍ରକାଶୁ ॥ ୧୭୦
ସଂଗ୍ରାମେ ହିରଣ୍ୟାକ୍ଷ ଜିଣି ।
ଦନ୍ତାଗ୍ରେ ଧଇଲୁ ଧରଣୀ ॥ ୧୭୧
ଧରଣୀ ସ୍ଥାପି ମହାଜଳେ ।
ଯେଣୁ ଏ ରହିଲା ନିଶ୍ଚଳେ ॥ ୧୭୨
ତୋହର କର୍ମ-ଯଜ୍ଞ ଦେବ ।
ଯା' ଦେଖି ଯୋଗୀ କରେ ସ୍ତବ ॥ ୧୭୩
ତୁମ୍ଭେ ତ ସେହି ଭଗବାନ ।
ଆମ୍ଭଙ୍କୁ ହୁଅ ତୁ ପ୍ରସନ୍ନ ॥ ୧୭୪
ସ୍ୱକର୍ମେ ଭ୍ରଷ୍ଟ ଆମ୍ଭେ ହୋଇ।
ଆମ୍ଭର ଆନ ଗତି ନାହିଁ ॥ ୧୭୫
ସକଳ-କର୍ମ ସାକ୍ଷୀ ତୁହି ।
ଭୋନାଥ ରଖ ଭାବଗ୍ରାହୀ ॥ ୧୭୬
ସର୍ବଭୂତରେ ତୁମ୍ଭ ବାସ ।
ସର୍ବଜ୍ଞ ନିର୍ଲେପ ଉଦାସ ॥ ୧୭୭
ଯାହାର ନାମ ଉଚ୍ଚାରଣ ।
କରଇ ବିଘ୍ନ-କରଷଣ ॥ ୧୭୮
ଏ ଯଜ୍ଞ ଭ୍ରଷ୍ଟ ହେଲା ଯେବେ ।
ଦର୍ଶନ ବାଞ୍ଛା କଲୁଁ ତେବେ ॥ ୧୭୯
ତୋହର ନାମ ସଂକୀର୍ତ୍ତନ ।
ଯଜ୍ଞୀୟ-ବିଘ୍ନ-ନିବାରଣ ॥ ୧୮୦
ହେ ପ୍ରଭୁ ତୋ'ର ପାଦତଳେ।
ପ୍ରଣତ ହୋଇଲୁ ସକଳେ ॥ ୧୮୧

Dr. Sudhanshu Sekhar Mishra

ମୈତ୍ରେୟ ଉବାଚ

ଏମନ୍ତେ କଲେ ସର୍ବେ ସ୍ତୁତି ।
ଶୁଣି ସନ୍ତୋଷ ଯଜ୍ଞପତି ॥୧୮୨
ଦକ୍ଷକୁ ଚାହିଁ ଚକ୍ରପାଣି ।
ମେଘ-ଗମ୍ଭୀର ମଞ୍ଜୁବାଣୀ ॥୧୮୩
ପ୍ରସନ୍ନେ କହିଲେ ମୁରାରି ।
ଦକ୍ଷକୁ ସମ୍ବୋଧନ କରି ॥୧୮୪

ଭଗବାନ ଉବାଚ

ମୁଁ ବ୍ରହ୍ମା ହର ରୂପଧରି ।
ଏ ବିଶ୍ୱ ସର୍ଜି ପାଳି ହରି ॥୧୮୫
ଏଣୁ ମୋହର ତିନିଗୁଣ ।
ସଂସାର ପରମ-କାରଣ ॥୧୮୬
ନିର୍ଲେପ ନିରଞ୍ଜନ ମୁହିଁ ।
ସକଳଭୂତେ ମୁଁ ବସଇ ॥୧୮୭
ଯାହାକୁ ସେବା ଶିକ୍ଷା ଦେଇ ।
ପ୍ରାଣୀ ଛାଡିବେ ତାହା କାହିଁ ॥୧୮୮
ମୁହିଁ ସେ ସମତା ଦୃଷ୍ଟିରେ ।
ଅଭେଦ ସକଳ ଶରୀରେ ॥୧୮୯
ଜ୍ଞାନୀଙ୍କ ମୋ ରୂପ ଗୋଚର ।
ଅଜ୍ଞାନୀଜନେ ମୁହିଁ ଦୂର ॥୧୯୦
ଜ୍ଞାନ ଗୋଚରେ ମୋତେ ଜାଣି ।
ସାତ୍ତ୍ୱିକଭାବେ ପରିମାଣି ॥୧୯୧
ଦେଖ ଏ ଦେହ ମଧ୍ୟଗତେ ।
ଶିର ଚରଣ କର ଯେତେ ॥୧୯୨
ଏହାକୁ ଭିନ୍ନ ପ୍ରାୟେ ମଣେ ।
ଆତ୍ମାର ଗତି ନ ପ୍ରମାଣେ ॥୧୯୩
ଯେ ହରି ହର ପଦ୍ମଯୋନି ।
ସର୍ବଭୂତଙ୍କ ଆତ୍ମା ତିନି ॥୧୯୪
ବାହ୍ୟ ଅନ୍ତରେ ଦେଖେ ଏକା ।
ଯାହାର ନିର୍ମଳ ବିବେକ ॥୧୯୫
ତିନିଙ୍କୁ ଦେଖେ ଐକ୍ୟ କରି ।
ସୁଖେ ତରଇ ଭବବାରି ॥୧୯୬
ସମାନେ ଦେଖଇ ଯେ ପ୍ରାଣୀ ।
ସେମାନେ ବୈଷ୍ଣବ ଅଗ୍ରଣୀ ॥୧୯୭
ଦୂରେ ରହଇ ଦୁଃଖ ଭ୍ରାନ୍ତି ।
ସେ ପ୍ରାଣୀ ଲଭେ ଆତ୍ମଶାନ୍ତି ॥୧୯୮

ମୈତ୍ରେୟ ଉବାଚ

ଏମନ୍ତ ବିଷ୍ଣୁ ମୁଖୁ ଶୁଣି ।
ଅମୃତ ପ୍ରାୟେ ମଞ୍ଜୁବାଣୀ ॥୧୯୯
ହରିଙ୍କି ଯଜ୍ଞେ ପୂଜା କଲା ।
ଯେଣୁ ତା ପୂର୍ବ-ଭାଗ୍ୟ ଥିଲା॥୨୦୦
ଋଷି-ଦେବତା ପୂଜା କରି ।
ରୁଦ୍ରଙ୍କୁ ରୁଦ୍ରଭାବେ ବରି ॥୨୦୧
ଯଜ୍ଞର ଶେଷେ ଭାଗ ଦେଲା ।
ସେ ଅବଭୃଥ ସ୍ନାନ କଲା ॥୨୦୨
ଦକ୍ଷ ରହିଲା ନିଜ ଘରେ ।
ଦେବେ ଚଳିଲେ ଯେଝାପୁରେ ॥୨୦୩
ଏବେ ହୋ ଶୁଣ କୁରୁବୀର ।
ସତୀ ଯେ ଛାଡିଲେ ଶରୀର ॥୨୦୪
ସେ ପୁଣି ହିମବନ୍ତ-ଘରେ ।
ଜନ୍ମିଲେ ମେନକା-ଉଦରେ ॥୨୦୫
ପୁଣି ସେ ରୁଦ୍ରଙ୍କୁ ବରିଲା ।
ଅମ୍ବିକା ହିମଗିରି-ବାଳା ॥୨୦୬
ଏମନ୍ତ ରୁଦ୍ରର ଚରିତ ।
ଯେମନ୍ତେ ଦକ୍ଷଯଜ୍ଞ ହତ ॥୨୦୭
ଉଦ୍ଧବ ମୁଖୁଁ ମୁହିଁ ଶୁଣି ।
ତୋତେ କହିଲି ପରିମାଣି ॥୨୦୮
ଏଣୁ ଏ ବିଷ୍ଣୁର ଚରିତ ।
ଭକ୍ତ-ତାରଣେ ଭାଗବତ ॥୨୦୯
ଭାବେ କହିଲି ତୋ ଅଗ୍ରତେ ।
ଯେଣୁ ତୁ ପଚାରିଲୁ ମୋତେ॥୨୧୦
ସର୍ବ ସମ୍ପଦ ଏଣେ ଲଭେ ।
ଜୀବ ନ ପଡେ ମାୟାଭବେ॥୨୧୧
ଏ ଯଶସ୍କର ଆୟୁଷ୍କର ।
ଅଶେଷ ଜନ ପାପ ହର ॥୨୧୨
ଯେ ନିତ୍ୟ ଈଶ୍ୱର ଚରିତ ।
କୀର୍ତ୍ତନ କରଇ ପବିତ୍ର ॥୨୧୩
ତାର ସଂସାର-ଦୁଃଖ ନାଶେ ।
କହିଲେ ଜଗନ୍ନାଥ ଦାସେ ॥୨୧୪

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞସନ୍ଧାନଂ ନାମ
ସପ୍ତମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଅଷ୍ଟମ ଅଧ୍ୟାୟ

ନମାମି ଅମ୍ବିକା ସୁତ ଚରଣ ପଙ୍କଜ ।
ସର୍ବଦେବଙ୍କର ମଧ୍ୟେ ନାମ ବିଘ୍ନରାଜ ॥୧
ଯା'ର ନାମ ଲମ୍ବୋଦର ସର୍ବ ବିଘ୍ନହର ।
କିରୀଟ କୁଣ୍ଡଳ କଣ୍ଠେ ହାର ମନୋହର ॥ ୨
ତୁଙ୍ଗ ବକ୍ଷସ୍ଥଳ ଦୀର୍ଘ ଶୋହେ ଭୁଜ ଚାରି ।
ଅଜୟ ଅଭୟ ବର ପାଶାଙ୍କୁଶଧାରୀ ॥ ୩
ଯାହାର ପ୍ରସନ୍ନବଳେ ଜଡବୁଦ୍ଧି ତୁଟେ ।
ନିର୍ମଳ ବଚନ ଯେ ସ୍ଫୁରଇ କଣ୍ଠତଟେ ॥ ୪
ମୋର ପ୍ରତି ପ୍ରସନ୍ନ ତୁ ହୁଅ ଲମ୍ବୋଦର ।
ଭାଗବତ ଭାଷା ମୁହିଁ କରିବି ପ୍ରଚାର ॥ ୫
ଭକ୍ତିଯୋଗ ମଧ୍ୟେ ଯେ ଉତ୍ତମ ଭାଗବତ ।
କହିବି ଚତୁର୍ଥସ୍କନ୍ଧେ ଧ୍ରୁବର ଚରିତ ॥ ୬
ପଞ୍ଚମ ବରଷ ବାଳ ଘୋରତପ କଲା ।
ମାତାର ସପତ୍ନୀ ବାକ୍ୟେ ହରିଙ୍କି ଭଜିଲା । ୭
ପିତା-ଜାନୁ-ଆରୋହଣ-ଭଙ୍ଗେ ରୋଷମନେ ।
ସପ୍ତରଷି ଉର୍ଦ୍ଧ୍ୱେଯାଇ ବସିଲା ଗଗନେ ॥ ୮
ଯା'ର ଘୋର-ତପ ଦେଖି ଭୃଗୁ ମନତୋଷେ ।
ଧନ୍ୟ ଧନ୍ୟ ଧ୍ରୁବ ବୋଲି ଋଷି ମଧ୍ୟେ ଭାଷେ ॥୯
ଜନନୀ ସହିତେ ଦିଶେ ଉତ୍ତର-ଆକାଶେ ।
ଦରଶନ ମାତ୍ରେ ଯା'ର ସର୍ବପାପ ନାଶେ ॥୧୦
ଜୀବିତ ରହଇ ନର ସୁଖେ ଶତସମା ।
ଯା'ର ଭାବ ନ ଲଭନ୍ତି ହର-ଇନ୍ଦ୍ର-ବ୍ରହ୍ମା ॥୧୧
ତାହାର ଚରିତ ଯେ ଶୁଣନ୍ତି ସାବଧାନେ ।
ସର୍ବପାପ ହରେ ମନ ରହେ ବିଷ୍ଣୁଧ୍ୟାନେ ॥୧୨
ଅଶେଷ ଅମୃତ ବାଣୀ ଧ୍ରୁବର ଚରିତ ।
କହେ ବିପ୍ର ଜଗନ୍ନାଥ ଭାବେ ଭାଗବତ ॥୧୩
ପୁଣ୍ୟ ମଧୁବନେ ସରସ୍ୱତୀ-ତଟେ ରହି ।
ମୈତ୍ରେୟ କହିଲେ ପୂର୍ବେ ବିଦୁରଙ୍କୁ ଚାହିଁ ॥୧୪
ଦୁର୍ଗତି-ତାରଣ ଭବ-ଭୟ-ନିବାରଣ ।
କହେ ବିପ୍ର ଜଗନ୍ନାଥ ସାବଧାନେ ଶୁଣ ॥୧୫
ସର୍ବଶାସ୍ତ୍ର ଜାଣି ସେ କହଇ ନାନା ମତେ ।
ଧ୍ରୁବର ଚରିତ ବିଷ୍ଣୁଭକ୍ତଜନ-ହିତେ ॥୧୬

ମୈତ୍ରେୟର ଆଗେ ପରାଶର-ମୁନି କହି ।
ବିଷ୍ଣୁ-ଜନ-ହିତେ ବଇଷ୍ଣବ-ଭାବ ବହି ॥୧୭
ପରତତ୍ତ୍ୱ ଧ୍ୟାନରତ ନିତ୍ୟେ ଶୁଦ୍ଧଚିତ୍ତେ ।
ବୈଷ୍ଣବ-ଅଗ୍ରଣୀ ଶିବ ଉମାର ଅଗ୍ରତେ ॥୧୮
ବିଷ୍ଣୁଦୂତେ ହରିକଥା କହିଛନ୍ତି ଯାହା ।
ଭାଷା-ପରିବନ୍ଧେ ମୁହିଁ ପ୍ରକାଶିବି ତାହା ॥୧୯
ସାଧୁଜନେ ଦୃଢଚିତ୍ତେ ଏଣେ କର ଭାବ ।
ଏଦୃଢ-ବୋଇତେ ଭବ-ବାରିଧି ତରିବ ॥୨୦
ବିଷ୍ଣୁଙ୍କ ଆଦେଶେ ସୃଷ୍ଟି କଲେ ପଦ୍ମଯୋନି ।
ମୈଥୁନ ପ୍ରକାଶେ ଶିବ-ଶକ୍ତି-ରୂପ ଘେନି ॥୨୧
ନିଜ କଳେବର ବ୍ରହ୍ମା ବେନିଖଣ୍ଡ କଲେ ।
ସ୍ୱୟମ୍ଭୁବମନୁ ଶତରୂପା ପ୍ରକାଶିଲେ ॥୨୨
ମୈଥୁନ-ପ୍ରବନ୍ଧେ ଉପୁଜିଲେ ପୁତ୍ର ବେନି ।
ସୃଷ୍ଟି ଅଂଶ ହେତୁ କନ୍ୟା ତିନି ସଙ୍ଗେ ଘେନି ॥୨୩
ପ୍ରିୟବ୍ରତ ସେ ଉତ୍ତାନପାଦ ନାମ ତା'ର ।
ସୁଗୁଣ ସୁନ୍ଦର-ରୂପେ ମୋହେ ତିନିପୁର ॥୨୪
ସୃଷ୍ଟିଅଂଶେ ମନୁବଂଶେ ବେନି-ସହୋଦର ।
ପ୍ରଜାର ସୃଜନ କଲେ ଅନେକ ପ୍ରକାର ॥୨୫
ଉତ୍ତାନପାଦର ଯେ ହୋଇଲେ ପତ୍ନୀବେନି ।
ସୁନୀତି ସୁରୁଚି ଯେ ସୁନ୍ଦର-ଗୁଣ ଘେନି ॥୨୬
ସେ ବେନିପତ୍ନୀଙ୍କ ମଧ୍ୟେ ସୁରୁଚି ସୁପ୍ରିୟା ।
ଉତ୍ତାନପାଦର ଚିତ୍ତେ ତା'ର ପ୍ରତି ଦୟା ॥୨୭
ତାହାର ଉଦରେ ଯେ ଉତ୍ତମ ପୁତ୍ର ହୋଏ ।
ରୂପ ଗୁଣ ସୁନ୍ଦରରେ ଜଗଜନ ମୋହେ ॥୨୮
ତା'ର ବଡ ପ୍ରିୟ ସେ ଉତ୍ତାନପାଦ ରାଜା ।
ଭୂଷଣ ବସନ ଦେଇ କରେ ଦିବ୍ୟପୂଜା ॥୨୯
ଅତି ପ୍ରିୟତମା ସେ ନିମିଷେ ନଛାଡ଼ଇ ।
ପତ୍ନୀ ସୁତ ସ୍ୱଭାବେ ଗୌରବଭାବ ବହି ॥୩୦
ସୁନୀତି ଅପ୍ରିୟ ତା'ର ସୁତ ଧ୍ରୁବ ନାମ ।
ରୂପଗୁଣସୁନ୍ଦରେ ମୋହିତ କୋଟି କାମ ॥୩୧
ବେନିସୁତେ ବେନିଧାତ୍ରୀ ଘେନିଥା'ନ୍ତି ନିତ୍ୟେ ।
ପିତାର ସମୀପେ ଦ୍ୟନ୍ତି ରାଜସେବା ମତେ ॥୩୨

ଏକଦିନେ ସୁରୁଚି ଉତ୍ତମ କର ଧରି ।
ନୃପତି ସମୀପେ ମିଳେ ପ୍ରିୟଭାବ ଭରି ॥୩୩
ଉତ୍ତମକୁ କୋଳେ ଦେଇ ରହିଲା ଅନ୍ତରେ ।
ନୃପତି-ସଭାର ମଧ୍ୟେ ପ୍ରିୟଭାବଭରେ ॥୩୪
ଏମନ୍ତ ସମୟେ ଧାତ୍ରୀ ଧ୍ରୁବ ଘେନି ସଙ୍ଗେ ।
ରାଜାର ସମୀପେ ମିଳେ ପ୍ରିୟଭାବ ରଙ୍ଗେ ॥୩୫
ଉତ୍ତମକୁ କୋଳେ ଦେଖି ଧ୍ରୁବ ସ୍ନେହ କଲା ।
ପିତାକୋଳେ ବସିବାକୁ ହସ୍ତ ପ୍ରସାରିଲା ॥୩୬
ତାହା ଦେଖି କୋପଚିତ୍ତେ ସୁରୁଚି ବୋଲଇ ।
ଦୁର୍ଭଗା-ତନୟ ତୋ'ର ମୁଖେ ଲାଜ ନାହିଁ ॥୩୭
ଆରୋହଣ କରି ଲୋଡୁ ନୃପ-ସିଂହାସନେ ।
ଯେ ଆସନ ସୁପୂଜିତ ଏତିନି-ଭୁବନେ ॥୩୮
ପୂର୍ବ-ତପଫଳେ ଦେଖ ଉତ୍ତମ କୁମର ।
ନୃପ-ବୀର୍ଯ୍ୟେ ଉପୁଜିଲା ମୋହର ଉଦର ॥୩୯
ସେହି ରାଜସିଂହାସନେ ବସିବାକୁ ଏକ ।
ଏ କଥା ବିଦିତ ଭଲେ ଜାଣନ୍ତି ତ୍ରିଲୋକ ॥୪୦
ନିଷ୍ଠାରେ କଠୋର-ତପ ପୂର୍ବେ ଯେ କରଇ ।
ତପଫଳେ ଲଭେ ସେ ଦୁର୍ଲଭ ନରଦେହୀ ॥୪୧
ଯେଉଁ ତପେ ଯେତେ ଭୋଗ କରନ୍ତି ଜଗତେ ।
କହଇ ବାଳକ ତୁହି ଶୁଣ ଏକଚିତ୍ତେ ॥୪୨
କେଉଁ ତପେ ବସିବୁ ତୁ ରାଜସିଂହାସନେ ।
କିରୀଟ ମସ୍ତକେ ଯହିଁ ନମେ ସର୍ବଜନେ ॥୪୩
ଜାଣିଲି ମୁଁ ପୂର୍ବେ ତୋ'ର କିଛି ତପ ନାହିଁ ।
ଏଣୁ ଅଭାଗିନୀ-ଗର୍ଭେ ଉପୁଜିଲୁ ତୁହି ॥୪୪
ଏହି ଅନୁମାନେ ତୋ'ର ଅଳ୍ପପୁଣ୍ୟ ଜାଣ ।
ଶୁଭାଶୁଭ-ଫଳ ଅନୁମାନ ଏ ପ୍ରମାଣ ॥୪୫
ରାଜାର କୁମର-ପଣେ ଏ ଜନ୍ମ ତୋହର ।
ନାନା-ସୁଖ ଭୋଗେ ତୋ'ର ନାହିଁ ଅଧିକାର ॥୪୬
ଦେଖ ଏ ଉତ୍ତମ ମୋର ଗର୍ଭେ ଜନ୍ମ ହୋଇ ।
ନୃପାସନେ ବସିବାକୁ ଯୋଗ୍ୟ ଏ ଅଟଇ ॥୪୭
ଏ ଆସନେ ବସିବାକୁ ଇଚ୍ଛା ଯେବେ ତୋ'ର ।
କିପାଁ ଜନ୍ମ ନ ଲଭିଲୁ ମୋହର ଉଦର ॥୪୮

Dr. Sudhanshu Sekhar Mishra

### ମୈତ୍ରେୟ ଉବାଚ

ଏମନ୍ତ ସଭାରେ ମଧ୍ୟେ ସୁରୁଚି ବଚନ ।
ଶୁଣି ଧ୍ରୁବ ଶୋକଚିତ୍ତେ ହୋଇଲା ମଉନ ॥୪୯
ଅନ୍ତର୍ଗତେ କମ୍ପିଲା ତାହାର ନିଜ ଦେହୀ ।
ଅଧୋମୁଖେ ରହିଲା ଭୂମିକି ଦୃଷ୍ଟି ଦେଇ ॥୫୦
ଅନୁଚିତ ଉଚିତ ନ କହେ ନୃପମଣି ।
ସଭାମଧ୍ୟେ ଶୁଣି ସେ ସୁରୁଚି ଗର୍ବବାଣୀ ॥୫୧
ତାହାର ଗୌରବେ ସେ ଯନ୍ତ୍ରିତ-ଚିତ୍ତ ହୋଇ ।
ସଭାମଧ୍ୟେ ଏକ ବାକ୍ୟ ନ ପାରିଲା କହି ॥୫୨
ଏମନ୍ତେ ନୃପତି ଗତି ଭାବି ଧ୍ରୁବ ମନେ ।
ନୃପେ ନମି ଧାତ୍ରୀ ସଙ୍ଗେ ଗମିଲା ମଉନେ ॥୫୩
ମାର୍ଗେ ଯା'ନ୍ତେ ବ୍ୟାକୁଳେ ନ ଦିଶେ ଦଶଦିଶ ।
ସର୍ପପ୍ରାୟେ ପୁଣ-ପୁଣ ଛାଡଇ ନିଃଶ୍ୱାସ ॥୫୪
ମାତାର ସମୀପେ ଧ୍ରୁବ ନିଜପୁରେ ଯାଇ ।
ଅଶ୍ରୁବହେ ଲୋଚନୁ କମ୍ପଇ ତା'ର ଦେହୀ ॥୫୫
ଅଶ୍ରୁକଣ୍ଠ-କୁଣ୍ଠିତ ବଚନ ଗଦଗଦେ ।
ନ ସ୍ଫୁରଇ ବାକ୍ୟ ମୁଖେ ଅତିମାନ ଖେଦେ ॥୫୬
ଏମନ୍ତ ପୁତ୍ରର ମୁଖ ସୁନୀତି ଅନାଇ ।
ଛନ୍ନ ଚିତ୍ତେ ପଚାରଇ ଧାତ୍ରୀ ମୁଖ ଚାହିଁ ॥୫୭
ତୁ ଯେ ପୁତ୍ର ଘେନିଗଲୁ ନୃପତି ସମୀପେ ।
କିପାଇଁ ରୋଦନ କରେ ଅତି ମନତାପେ ॥୫୮
ମାତାର ବଚନ ଶୁଣି ନୃପତି-ନନ୍ଦନ ।
ଉର୍ଦ୍ଧ୍ୱ-ମୁଖେ ଚାହିଁ ରହେ ବିକଳ-ବଦନ ॥୫୯
ପୁରଜନ ମୁଖୁ ଶୁଣି ସପତ୍ନୀ-ବୃତ୍ତାନ୍ତ ।
ସୁନୀତି ହୋଇଲା ଅତି ହୃଦୟେ ବ୍ୟଥିତ ॥୬୦
ଜନନୀ ଜାଣିଲେ ପୁତ୍ର ଅପମାନ ପାଇ ।
ପିତାଠାରୁ ଅଇଲା ଏ ମହାଦୁଃଖ ବହି ॥୬୧
ମୁଖଲକ୍ଷ୍ମୀ ଏହାର ତ ନ ଦିଶେ ସୁନ୍ଦର ।
ଅତିଦୁଃଖେ ବୁଡିଲା ଯେ ମୋହର କୁମର ॥୬୨
ବେନି କରେ ଆକର୍ଷି ପୁତ୍ରକୁ କୋଳେ ଧରି ।
ମସ୍ତକରେ କର ଦେଇ ନିଶ୍ୱାସ-ସଂହରି ॥୬୩
ଅତି-ମ୍ଲାନ-ମୁଖ ଦେଖି ପୁତ୍ର କୋଳ କରେ ।
ହୃଦୟେ ଲଗାଇ ପୁଚ୍ଛେ ଅତି-ସ୍ନେହ-ଭରେ ॥୬୪
ମୁଖେ ଜଳସିଞ୍ଚି ସେ ବଦନୁ ପୋଛେ ଲୁହ ।
କିପାଇଁ ରୋଦନ କରୁ ମୋର ଆଗେ କହ ॥୬୫
ରାଜାର କୁମର ତୁ ଦୁର୍ଲଭ ପ୍ରାଣୀଙ୍କର ।
ସ୍ୱଭାବେ ସୁନ୍ଦର-ଗୁଣ ଅତି ମନୋହର ॥୬୬
ତୋତେ ଶୋକ ଦେବାକୁ କେ ଅଛଇ ଜଗତେ ।
କପାଁ ତୁ ରୋଦନ କରୁ କହ ମୋ ଅଗ୍ରତେ ॥୬୭
ମାତାର ବଚନ ଶୁଣି ଧ୍ରୁବ ଦୁଃଖ-ମନେ ।
ବାଷ୍ପ ଗଦଗଦ ସ୍ୱରେ କହଇ ବଚନେ ॥୬୮

### ଧ୍ରୁବ ଉବାଚ

ଶୁଣ ଗୋ ଜନନି କହୁଁ ତୋହର ଅଗ୍ରତେ ।
ରାଜମହାଦେଈ ତୁ ବୋଲଉ କେଉଁମତେ ॥୬୯
ସୁରୁଚି ସମାନେ ତୋତେ ଜାଣନ୍ତି ଜଗତେ ।
ସେ ରାଜାର ପ୍ରିୟା ତୁ ଗୋ ଦୁର୍ଭଗା କେମନ୍ତେ ॥୭୦
କେଉଁ ମତେ ଉତ୍ତମ ବୋଲାଇ ତା'ର ପୁଅ ।
ମୁଁ କିପାଁ ଅଧମ ମାତା ସତ୍ୟ ମୋତେ କହ ॥୭୧
ନୃପ-ସିଂହାସନେ ବସିବାକୁ ବେନିଭାଇ ।
ସେ କିପାଁ ହୋଇଲା ଯୋଗ୍ୟ ମୋର ଭାଗ୍ୟେ ନାହିଁ ॥୭୨
ତୋର ପୁତ୍ର ହୋଇ ମୁହିଁ ଅଧମ କେମନ୍ତେ ।
ସେ କିପାଁ ଉତ୍ତମ ନାମ ରହିଲା ଜଗତେ ॥୭୩
ମୋହର ସୁକୃତ କିପାଁ ଏମନ୍ତ ହୋଇଲା ।
ଉତ୍ତମ ଉତ୍ତମ ସୁଖ କେମନ୍ତେ ପାଇଲା ॥୭୪
ଏମନ୍ତ ପୁତ୍ରର ବାକ୍ୟ ଶୁଣିଣ ସୁନୀତି ।
ପୁତ୍ରର ବଚନ-ପ୍ରଶ୍ନେ ଦୃଢ ତା'ର ମତି ॥୭୫
ସ୍ତବଧେ ରହି ନିଃଶ୍ୱାସ ଛାଡେ ଚିନ୍ତାଭରେ ।
ଶିଶୁ କୋପ ଶାନ୍ତି ଅର୍ଥେ କହଇ ମଧୁରେ ॥୭୬
ସ୍ୱଭାବେ ରାଜାର ନୀତି ଭଲେ ସେ ଜାଣଇ ।
ସପତ୍ନୀର ହିଂସାବାକ୍ୟ ହୃଦେ ନ ଗଣଇ ॥୭୭
ସ୍ୱଭାବେ ସୁନୀତି ସେ ତ କହେ ପୁତ୍ରେ ଚାହିଁ ।
କହିବି ସକଳ ମନଦେଇ ଶୁଣ ତୁହି ॥୭୮
ଜାଣିଲି ନୃପତି ପାଶେ ଅପମାନ କଥା ।
ଶୁଣରେ ତନୟ ତୁହି ଛାଡ ମନୁ ବ୍ୟଥା ॥୭୯
ସୁରୁଚି ବଚନ ଶୁଣି ନୃପତି ସମ୍ମୁଖେ ।
ତୁ ଯେତେ କହିଲୁ ବାବୁ ସତ୍ୟ ଏ ପ୍ରତ୍ୟକ୍ଷେ ॥୮୦
ସୁରୁଚି ସୁଭଗା ସେ ଯେ ରାଜପାଟରାଣୀ ।
ସର୍ବପତ୍ନୀ ମଧ୍ୟେ ସେ ବୋଲାଇ ଶିରୋମଣି ॥୮୧
ଜନ୍ମାନ୍ତରେ ଯେଣୁ ସେ ଅନେକ ତପ କଲା ।
ତପବଳେ ସ୍ୱାମୀର ସେ ସୁହାଗିନୀ ହେଲା ॥୮୨
ଜାଣିଲି ନିଶ୍ଚୟ ମୋର ପୂର୍ବ-ତପ ନାହିଁ ।
ସେ ଫଳେ ଦୁର୍ଭାଗୀ ମୁହିଁ ରାଜପତ୍ନୀ ହୋଇ ॥୮୩
ପୂର୍ବେ ତୋ'ର ଭାଇ ଯେ ଉତ୍ତମତପ କଲା ।
ତପଫଳେ ନୃପସିଂହାସନେ ସେ ବସିଲା ॥୮୪
ଉତ୍ତମ ଉତ୍ତମପୁତ୍ର ଅତିପୁଣ୍ୟ ତା'ର ।
ଜନ୍ମିଲା ନୃପତି-ସିଂହାସନେ ଅଧିକାର ॥୮୫
ଶୁଣରେ କୁମରମଣି ସ୍ଥିର କରି ମନ ।
ସାବଧାନ ହୋଇ ଶୁଣ ମୋହର ବଚନ ॥୮୬
ଯା' କହିଲେ ତୋର ମାତ ସତ୍ୟ-କର ମନେ ।
ବସିବାର ବାଞ୍ଛା ଯଦି ରାଜ ସିଂହାସନେ ॥୮୭
ତପେ ହରି-ପାଦପଦ୍ମ ଆରାଧନ କର ।
ସେ ବିଶ୍ୱ-ପାଳନ ପାଇଁ ସତ୍ତ୍ୱଗୁଣାଧାର ॥୮୮
ପରମେଷ୍ଠୀ ହେଲେ ବ୍ରହ୍ମା ଯା'ର ଆରାଧନେ ।
ଜିତେନ୍ଦ୍ରିୟ ମୁନିଗଣ ବନ୍ଦେ ଯା' ଚରଣେ ॥୮୯
ଯେଉଁଭାବେ ପୂର୍ବ ଜନ୍ମେ ନାନା-ତପ କରି ।
ନାନା ରୂପେ ଭୋଗ ଭୁଞ୍ଜେ ନରଦେହ ଧରି ॥୯୦
ଚନ୍ଦ୍ରଜ୍ୟୋତି ପାଟଛତ୍ର ଚାମର ସମେତେ ।
ନୃପ-ସିଂହାସନେ ବସେ ବାଦ୍ୟ-ନାଦ-ଗୀତେ ॥୯୧
ସିନ୍ଦୂରେ ମଣ୍ଡିତ ଶିର ରାଜବୃନ୍ଦ-ମେଳେ ।
ମନୋଗାମୀ-ତୁରଙ୍ଗମ ଚତୁରଙ୍ଗ-ବଳେ ॥୯୨
ନ ଥାଇ ବ୍ୟାଧି ଶରୀରେ ଜୀଏଁ ଶତସମା ।
ଉତ୍ତମ-ସୁଜନେ ତା'ଙ୍କ ଗୁଣନ୍ତି ମହିମା ॥୯୩
ଶୁଭ-ରାଜ୍ୟେ ରାଜପଣେ ବସେ ଅକଣ୍ଟକେ ।
ତା'ର ଯଶ ଗୁଣ ପୂରେ ଇହ-ପରଲୋକେ ॥୯୪
ଯେ ହରି-ଚରଣେ ସେବା କରେ ନିତ୍ୟେ-ନିତ୍ୟେ ।
ଦୁଃଖୀଜନ ଦେଖି ଦୟା କରଇ ସେ ଚିତ୍ତେ ॥୯୫
ସୁନିର୍ମଳ ତତ୍ତ୍ୱଜ୍ଞାନ ନିତ୍ୟେ ଯା'ର ଚିତ୍ତେ ।
ସର୍ବଶାସ୍ତ୍ର ଅଭ୍ୟାସ କରଇ ଶୁଦ୍ଧମତେ ॥୯୬
ରିପୁ-ଷଡ଼ବର୍ଗ ଜିଣି ସତ୍ତ୍ୱଗୁଣେ ମତି ।
କରୁଣା-ସମ୍ପୂର୍ଣ୍ଣ-ଦୃଷ୍ଟି ବାଣୀ-ଶୁଦ୍ଧାକୃତି ॥୯୭

Dr. Sudhanshu Sekhar Mishra

ସର୍ବକାଳେ ନିରଳସ ଗୁରୁପାଦେ ଭକ୍ତି ।
ସର୍ବଦା ସୁସ୍ଥିର-ଚିତ୍ତ ସୁଜନ ଆକୃତି ॥୯୮
ଶ୍ରୁତିମାନେ ଉପାସନା ନିର୍ମଳ-ବଚନ ।
ସଭାମଧ୍ୟେ ସୁପଣ୍ଡିତ ଅତି-ବିଦ୍ୟାବାନ ॥୯୯
ପ୍ରଜାର ପାଳନ କାର୍ଯ୍ୟେ ଅତି ବୀରପଣ ।
ଇହ-ପରଲୋକ ହୁଏ ସୁଯଶ-ଘୋଷଣ ॥୧୦୦
ବନ୍ଧୁବର୍ଗେ ଧୀରପଣେ ଅନୁବ୍ରତେ ରହେ ।
ବାଣିଜ୍ୟେ ଚତୁର ବାକ୍ୟେ ଭାବେ ମନ ମୋହେ ॥୧୦୧
ଯୋଷିତ ପ୍ରଣୟେ ମୃଦୁ-ବଚନ ଭାଷିତ ।
ବ୍ରାହ୍ମଣ ବିଷୟେ ଚିତ୍ତେ ଭଜଇ ବିନୀତ ॥୧୦୨
ସ୍ୱଧର୍ମେ ଜୀବନ ପୋଷେ ନିଜ-ବୃତ୍ତି ବହି ।
ବୁଧଙ୍କର ଭାବେ ଯେ ସାତ୍ତ୍ୱିକେ ମନଦେଇ ॥୧୦୩
ଭାଗୀରଥୀ-ତୀରେ ବାସ ସୁତୀର୍ଥେ ମରଣ ।
ସୁଖ ଭୋଗୀଗଣ ମୁଖ୍ୟ ଅତିଥି-ତୋଷଣ ॥୧୦୪
ବନ୍ଧୁଜନ ସଙ୍ଗେ ଭୋଗ କରେ ସମତୁଲେ ।
ଦାନ-ଦକ୍ଷିଣାରେ ଦିନ ଯାପଇ ସେ ଭଲେ ॥୧୦୫
ନିଜ ବିଦ୍ୟା ଅଭ୍ୟାସେ ବର୍ତ୍ତଇ ନିରନ୍ତରେ ।
ନିତ୍ୟେ ସେବା କରେ ତାତ-ଜନନୀ-ପୟରେ ॥୧୦୬
ଯଶ ଧର୍ମ ନିରନ୍ତରେ ସଞ୍ଚେ ଧନ ପ୍ରାୟେ ।
ସ୍ୱର୍ଗ-ଅପବର୍ଗ ବୃଦ୍ଧି-ଅଳଙ୍କାର ବହେ ॥୧୦୭
ନିତ୍ୟେ ବସେ ସାଧୁସଙ୍ଗେ ମିତ୍ର ସର୍ବଭୂତେ ।
ଇତିହାସ ପୁରାଣାଦି ଶୁଣେ ଶୁଦ୍ଧଚିତ୍ତେ ॥୧୦୮
ବିପଦର କାଳେ ଧୈର୍ଯ୍ୟ ବହେ ନିତ୍ୟେ ଚିତ୍ତେ ।
ସମ୍ପଦ-ଆଗମେ କ୍ଷମା ବହଇ ନିରତେ ॥୧୦୯
ବିଦ୍ୟା ପଢି ଗଭୀର-ସାଗର ପ୍ରାୟେ ରହେ।
ପାତ୍ରେ ଦାନ ସମର୍ପି ଉଦାସ-ଭାବ ବହେ ॥୧୧୦
ଯଶ ଧର୍ମ ଲଭିବାରେ ନିତ୍ୟେ କରେ ମତି ।
ସ୍ୱର୍ଗମୋଦ ଶୁଦ୍ଧଫଳ ସ୍ୱଭାବେ ସୁକୀର୍ତ୍ତି ॥୧୧୧
ନିତ୍ୟେ ସାଧୁସଙ୍ଗ ମେଳ ଦୃଢ଼େ କରେ ଆଶା ।
ପିତୃ-ମାତୃ ପାଦପଦ୍ମେ କରଇ ଶୁଶ୍ରୂଷା ॥୧୧୨
ଦୀନଜନେ ଦୟାକରେ ସାଧୁକାର୍ଯ୍ୟେ ରତ ।
ରିପୁଗଣ ଜୟକାରୀ ଭୁବନେ ବିଦିତ ॥୧୧୩
ଗଭୀର ବଚନ ତା'ର ବଦନୁ ପ୍ରକାଶେ ।
ଉତ୍ତମ-ଉଦାରବୁଦ୍ଧି ପ୍ରିୟ-ଉପଦେଶେ ॥୧୧୪

ସମ ଦରଶନ କରି ପ୍ରକୃତି ଧରଇ ।
ଏତେ ଗୁଣ ଧରେ ଯା'ର ପୂର୍ବେ ତପ ଥାଇ ॥୧୧୫
ଯେଣୁ ପୂର୍ବେ ତୋହୋର ମୋହର ତପ ନାହିଁ ।
ଏ ଜନ୍ମେ ଲୋଡିଲେ ପୁତ୍ର ପାଇବା ତା କାହିଁ ॥୧୧୬
ମାନ-ଅପମାନ ଯେ ଫଳଇ ପୂର୍ବଫଳେ ।
ଏହା ନ ଜାଣିଣ ପ୍ରାଣୀ ଭ୍ରମନ୍ତି ଶୟଳେ ॥୧୧୭
ଆପଣା ଅର୍ଜିଲା କର୍ମ ଆପଣେ ଭୁଞ୍ଜଇ ।
ବିଧାତାର ବୋଲେ କର୍ମ ଅନ୍ୟଥା ନୁହଇ ॥୧୧୮
ଏଣୁ ତୁ ନ କର ଶୋକ କର୍ମକୁ ଆଦର ।
ମୋହର ବଚନେ ପୁତ୍ର କୋପ ତୁ ସଂହର ॥୧୧୯
ଏମନ୍ତେ ମାତାର ବାଣୀ ସାବଧାନେ ଶୁଣି ।
ସୁନୀତିର ପୁତ୍ର ଧୀର ମନେ ମନେ ଗୁଣି ॥୧୨୦
ଜନନୀ ବଦନ ଚାହିଁ ବେନି କରଯୋଡି ।
କହେ ଶୋକ-ଗଦଗଦେ ମାତା ପାଦେ ପଡି ॥୧୨୧

### ଧ୍ରୁବଉବାଚ

ଜନନୀ ମୋହର ବାକ୍ୟ ମନଦେଇ ଶୁଣ ।
ମୋତେ ତୁ ବାଳକ ପ୍ରାୟେ କେବେହେଁ ନ ମଣ ॥୧୨୨
ପବିତ୍ର-ମନୁର ବଂଶେ ଜନ୍ମ ଯେବେ ମୋର ।
ଉତ୍ତାନପାଦର ବୀର୍ଯ୍ୟେ ଉଦରେ ତୋହର ॥୧୨୩
ତୁ ଯେ ବୋଲୁ ତପ-ବ୍ରତ ସମ୍ପଦ-କାରଣ ।
କହିବୁ ତୋହର ଆଗେ ସ୍ଥିରମନେ ଶୁଣ ॥୧୨୪
ସଂସାରେ ଦୁର୍ଲଭପଦ ଯେଉଁ ତପେ ପାଇ ।
ନିର୍ଜନ-ଦୁର୍ଗମବନେ ସାଧିବଇଁ ମୁହିଁ ॥୧୨୫
ଏତେ ମାତ୍ର ଆଜ୍ଞା ମୋତେ ଦିଅ ଶୁଦ୍ଧଚିତ୍ତେ ।
ଆଶୀର୍ବାଦ କର ତପ ସାଧଇଁ ଯେମନ୍ତେ ॥୧୨୬

### ମୈତ୍ରେୟ ଉବାଚ

ଏମନ୍ତ ନିଶ୍ଚୟ-ବାଣୀ ଶୁଣି ପୁତ୍ରମୁଖେ ।
ସୁନୀତି କପୋଳେ କର ଦେଇ ମନଦୁଃଖେ॥୧୨୭
ଏହିରୂପେ ଧ୍ରୁବବାକ୍ୟ ଦୃଢ଼େ ଶୁଣି ମାତା ।
ପୁତ୍ର ମୁଖ ଚାହିଁ ମନେ କଲା ଗରୁଚିନ୍ତା ॥୧୨୮
ବୋଲଇ ମୋହର ଗର୍ଭେ ଜାତ ଏ କୁମର ।
ରାଜାର ଆତ୍ମସମ୍ଭୂତ ତେଜେ ଏ ପ୍ରଖର ॥୧୨୯
କ୍ଷତ୍ରିୟ ସ୍ୱଭାବ ବହେ ଦୁର୍ଗମ-ଚରିତ୍ର ।
ତପ-ଫଳ-ଶ୍ରବଣେ କହିଲା ଅନ୍ତର୍ଗତ ॥୧୩୦

ତେଜ ବିରାଜଇ ଦେହେ ତପନ ପରାୟେ ।
ଅବଶ୍ୟ ଗମିବ ତପେ ଜାଣିଲି ନିଶ୍ଚୟେ ॥୧୩୧
କେବେହେଁ ଏ ନ ରହିବ ମୋହର ବଚନେ ।
ନ ଜାଣି ମୁଁ ଉପଦେଶ କହିଲି ଅଜ୍ଞାନେ ॥୧୩୨
ଏହାର ସୁନ୍ଦର-ମୁଖ ନ ଦେଖି ସମ୍ମୁଖେ ।
ନିମିଷ କୋଟିଏ-ଯୁଗ ହୋଇବ ପ୍ରତ୍ୟକ୍ଷେ ॥୧୩୩
କିବୁଦ୍ଧି କରିବି ପୁତ୍ର କେମନ୍ତେ ରହିବ ।
ଦୁର୍ଗମ-ସଙ୍କଟ ମୋତେ ସଞ୍ଚିଲା ଦଇବ ॥୧୩୪
ଏମନ୍ତ ବିଚାରି ସେ ପୁତ୍ରର ମୁଖ ଚାହିଁ ।
ବୋଲଇ ସୁନୀତି ମନେ ଦୁଃଖ ଖେଦ ବହି ॥୧୩୫
ଶୁଣ ପୁତ୍ର ସାବଧାନେ ମୋହର ବଚନ ।
କେବେହେଁ ନ କର ପୁତ୍ର ତପକୁ ଗମନ ॥୧୩୬
ତୋତେ ଆଜ୍ଞା ଦେବାକୁ ମୋହର ଶକ୍ୟ ନାହିଁ ।
ତୁ ପଞ୍ଚବରଷ ବାଳ ସୁକୁମାର-ଦେହୀ ॥୧୩୭
ତଥାପି କହିବି ଶୁଣ ସାବଧାନ ଚିତ୍ତେ ।
ରାଜାର ନବରେ ଅଛି ସପତ୍ନୀ-ଆୟତ୍ତେ ॥୧୩୮
ତା'ର ବାକ୍ୟ ନିର୍ଘାତେ ମୋହର ପ୍ରାଣ ଦହେ ।
ଶ୍ରାବଣର ଧାରା ପ୍ରାୟେ ଅଶ୍ରୁଜଳ ବହେ ॥୧୩୯
ଏବେ ତୋ ବନ-ଗମନ ଶୁଣି ମୋର ମନ ।
ସମୁଦ୍ର-ତରଙ୍ଗ ପ୍ରାୟେ ଉଲ୍ଲୋଳ-ନୟନ ॥୧୪୦
ନଦୀ ପ୍ରାୟେ ବହେ ଲୁହ କେବେହେଁ ନ ରହେ ।
କହ ପୁତ୍ର ଏବେ ମୁଁ କି କରିବି ଉପାୟେ ॥୧୪୧
ସ୍ୱଭାବେ ମୁଁ ଏକପୁତ୍ରୀ ବିଧାତା ଭିଆଣେ ।
ତୋତେ ନ ଦେଖିଲେ ଚିତ୍ତ ଧରିବି କେସନେ॥୧୪୨
ତୁ ମୋହର ଅନ୍ଧ-ଯଷ୍ଟି ତୋ'ର ପଛେ ଥାଇ ।
ତୋତେ ହରାଇଲେ ମୁହିଁ କେମନ୍ତେ ଜୀଅଇଁ ॥୧୪୩
ପୁତ୍ର ଜନ୍ମ ନୋହିବାରୁ ପାଇ ମନେ ବ୍ୟଥା।
ତୋ'ର ପ୍ରାପ୍ତି ଅର୍ଥେ କେତେ ପୂଜିଲି ଦେବତା ॥୧୪୪
କୃଚ୍ଛ୍ର-ଚାନ୍ଦ୍ରାୟଣ ଉପାସିଣ ବ୍ରତ କଲି ।
ସେ ବ୍ରତ-ସାଧନେ ପୁତ୍ର ତୋତେ ମୁଁ ଲଭିଲି ॥୧୪୫
ତୋହର ମୁଖ ଚନ୍ଦ୍ରୋଦୟ ଦେଖି ମୋର ମନ ।
ସମୁଦ୍ର-ତରଙ୍ଗ ପ୍ରାୟେ ଉଛୁଳେ ନୟନ ॥୧୪୬
ଆନନ୍ଦ-ପୟ ଯେ ପୂରେ ମୋର ବେନି ସ୍ତନ ।
ଗଳିତ ହୁଅଇ ଦେଖି ତୋହର ବଦନ ॥୧୪୭

Dr. Sudhanshu Sekhar Mishra

ତୋ'ର ମୁଖ ନ ଦେଖି ମୋହର ଅଙ୍ଗ ତାପେ ।
ତକ୍ଷଣେ ଶୀତଳ ହୁଏ ମିଳିଲେ ସମୀପେ ॥୧୪୮
ମୋହର ହୃଦୟେ ତୁ ନିଦ୍ରିତ ସ୍ତନ୍ୟ-ପାନେ ।
ବସ୍ତ୍ର-ଆଚ୍ଛାଦିତ ଦୁଗ୍ଧ-ବୋଧିତ-ବଦନେ॥୧୪୯
ତୋହର ଶୀତଳ-ବାକ୍ୟ କର୍ଣ୍ଣେ ଶୁଭେ ଯେବେ ।
ସପତ୍ନୀର ବାକ୍ୟ-ତାପ ହୃଦୟେ ନ ଭାବେ॥୧୫୦
ବିଳମ୍ବ ତୋ' ନିଦ୍ରା ଦେଖି ମୋହର ହୃଦୟ ।
ପଦ୍ମ ଯେହ୍ନେ ଚାହିଁ ଥାଇ ଆଦିତ୍ୟ ଉଦୟ ॥୧୫୧
ବାଳକ-ଖେଳଣ-ଖେଳା ଖେଳିବାର ଅର୍ଥେ ।
ଗୃହରୁ ବାହାର ହୋଇ ମିଳୁ ଯେବେ ପଥେ ॥୧୫୨
ତୋହର ବିଳମ୍ବେ ହୃଦେ ବେନି-ସ୍ତନ ମୋର ।
ଚଞ୍ଚଳେ ସ୍ରବଇ ଯେହ୍ନେ ମେଘ-ଜଳଧାର ॥୧୫୩
ତୁ ଏବେ ତପସ୍ୟା ଅର୍ଥେ ଯିବୁ ଯେବେ ହଟେ ।
ମୋର ପଞ୍ଚ-ପ୍ରାଣ ଯେ ମିଳିବ କଣ୍ଠାଗ୍ରତେ॥୧୫୪
ଅତି ତାପେ ତାପିବି ମୁଁ ତୋହର ଗମନେ।
କେମନ୍ତେ ଛାଡିଣ ପୁତ୍ର ଯିବୁ ତୁହି ବନେ ॥୧୫୫
ଏମନ୍ତ ବଚନ ଶୁଣି ଜନନୀ ବଦନେ ।
ଚିନ୍ତା ମାତ୍ର ନ ରହିଲା ସେ ଧ୍ରୁବର ମନେ ॥୧୫୬
ଏମନ୍ତେ ଅନେକ ମତେ ବୋଧିଲେ ସୁନୀତି ।
ନ ଶୁଣି ସେ ମାତା-ବାଣୀ ଧ୍ରୁବ ମହାପତି ॥୧୫୭
ନିଷ୍ଠୁର-ହୃଦୟେ ପାଦେ କରି ନମସ୍କାର ।
ମଙ୍ଗଳ-ମୁହୂର୍ତ୍ତେ ଧ୍ରୁବ ହୋଇଲା ବାହାର ॥୧୫୮
ଜନନୀର ମନ-ସ୍ନେହ ପଛେପଛେ ଗଲା ।
ଚଳନ୍ତେ ରାଜାର ପୁରେ କେହି ନ ଦେଖିଲା॥୧୫୯
ବାଳକ ବାଳ-ଆଦିତ୍ୟ ପ୍ରାୟେ ପଥେ ଯା'ନ୍ତେ ।
ଅନୁକୂଳ-ପବନ ବହିଲା ଅକସ୍ମାତେ ॥୧୬୦
ପବନେ ଚଳିତ ବନ-ଲତା-ତରୁଗଣ ।
ହସ୍ତ-ପ୍ରସାରିଲା ପ୍ରାୟେ କରନ୍ତି କଲ୍ୟାଣ ॥୧୬୧
କାନନେ ପଶିଲା ଧ୍ରୁବ ଗୋବିନ୍ଦ ସୁମରି ।
ଜନନୀ ଚରଣ-ଧ୍ୟାନ ହୃଦୟରେ କରି ॥୧୬୨
ଭୂମିକି ଅନାଇ ସେ ଅନେକ ଦୂର ଗଲା ।
ଗହନ-କାନନେ ରାଜପଥ ନ ପାଇଲା ॥୧୬୩
କ୍ଷୁଧା ତୃଷା ଆକୁଳେ ସେ ଅତି ଦୁଃଖ ମନେ ।
ବୃକ୍ଷତଳେ ବସିଲା ଆଦିତ୍ୟ ଅବସାନେ ॥୧୬୪

ବାଳକ ଭାଳଇ ମନେ ଚଉଦିଗ ଚାହି ।
କାହାକୁ ପୁଚ୍ଛିବି ମୋର ସଙ୍ଗେ କେହି ନାହିଁ॥୧୬୫
ବେନି-ଚକ୍ଷୁ ବୁଜି ସେ କୃଷ୍ଣଙ୍କୁ ସୁମରଇ ।
ବନଜନ୍ତୁ ଭୟେ ଧ୍ରୁବ ପୁଣି ହିଁ ଅନାଇ ॥୧୬୬
ତା'ର ପୂର୍ବ-ତପଫଳେ ସେ ଘୋରକାନନେ ।
ସାୟଂକାଳେ ସମୀପେ ମିଳିଲେ ମୁନିଜନେ॥୧୬୭
ପର୍ବତ-କାନନ-ଧୂମ-ଜଳ-ଅଗ୍ନିପଥେ ।
ବାଳ-ବୃଦ୍ଧ-ବନିତା-ଦୁର୍ବଳ-ବ୍ୟାଧିଗ୍ରସ୍ତେ ॥୧୬୮
ପୂର୍ବ-ଭାଗ୍ୟ ଥିଲେ ପ୍ରାଣୀ ଦୁସ୍ତରୁ ତରଇ ।
ଭାଗ୍ୟହୀନ ଗୃହେ ଯତ୍ନ କରନ୍ତେ ମରଇ ॥୧୬୯
ରାଜାର କୁମର କାହିଁ କାହିଁ ବନବାସ ।
ଦଇବ-ଘଟଣ ଦେଖ ଧର୍ମର ବିଶ୍ୱାସ ॥୧୭୦
ଏଣୁ ନିଜ କର୍ମକୁ କରିବ ନମସ୍କାର ।
ଯାହାର ଉପରେ ନାହିଁ ପ୍ରଭୁ-ଅଧିକାର ॥୧୭୧
ଯା'ର ତହିଁ ଶୁଭାଶୁଭ ପୁଣ୍ୟବଳ ଥାଇ ।
ମନେ ନ କଳ୍ପିଲେ ଅକସ୍ମାତେ ସେ ମିଳଇ॥୧୭୨
ସତ୍ତ୍ୱ-ରଜ-ତମ ବଳେ କରି ଆକର୍ଷଣ ।
ନାନାସ୍ଥାନେ କରୁଥାଇ ଗମନା-ଗମନ ॥୧୭୩
ଶରୀର ସମ୍ପଦ ପଦ ବିବିଧ ବେଷ୍ଟିତ ।
ତେଜ ବଳ ସହାୟ ସେ ଉଦ୍ୟମ ସମର୍ଥ ॥୧୭୪
ପୁଣ୍ୟବଳ ଥିଲେ ସେ ସମସ୍ତ ଫଳ ପାଇ ।
ପୂର୍ବେ ନ ଅର୍ଜିଲେ ଲୋଡି ପାଇବଟି କାହିଁ ॥୧୭୫
ଚକ୍ଷୁମେଲି ଚାହାଁନ୍ତେ ଦେଖିଲା ମୁନିଗଣ ।
ତେଜେ ବିରାଜନ୍ତି ଯେହ୍ନେ ସୂର୍ଯ୍ୟର କିରଣ॥୧୭୬
ଲଲାଟେ ତିଳକ ଦୂର୍ବା ବେନି କରେ ଘେନି ।
ଉଭା ହୋଇଛନ୍ତି ଧ୍ରୁବ ଆଗେ ବ୍ରହ୍ମମୁନି ॥୧୭୭
କୃଷ୍ଣାଜିନ ପରିଧାନ ପବିତ୍ର-ଉତ୍ତରୀ ।
ଉନ୍ମୀଳଲୋଚନ ଅକ୍ଷମାଳା କରେ ଧରି ॥୧୭୮
କଷାୟବସନ ସୂକ୍ଷ୍ମ-ଉତ୍ତରୀ ପ୍ରକାଶେ ।
ସୁଗନ୍ଧ-ବିଭୂତି ରୁଚି କଳେବର ଦିଶେ ॥୧୭୯
ଅକସ୍ମାତେ ମିଳିଲେ ଅଗାଧ-କ୍ଷୀରନିଧି ।
ତ୍ରୟକାଳଜ୍ଞାତା ଜ୍ଞାନଗୁଣେ ଗୁଣନିଧି ॥୧୮୦
ଅମୃତ ବଚନ କି ବଦନେ ବରଷନ୍ତି ।
କ୍ଷୀରସିନ୍ଧୁ ମଧ୍ୟେ ହଂସ ପ୍ରାୟେକ ଦିଶନ୍ତି ॥୧୮୧

ଏମନ୍ତ ମୁନିଙ୍କି ଧ୍ରୁବ ସନ୍ନିଧିରେ ଦେଖି ।
ସଂଭ୍ରମ-ଚିତ୍ତେ ଉଠିଲା ଆସନ ଉପେକ୍ଷି ॥୧୮୨
କପାଳେ କର ସମ୍ପୁଟ ଦେଇ ଦୃଢମନେ ।
ମୁନିଙ୍କି ପ୍ରଣାମ କଲା ହରଷ ବଦନେ ॥୧୮୩
ଆନନ୍ଦେ ମୁନିଙ୍କ ପାଦେ ଧ୍ରୁବ କରଯୋଡି ।
କହଇ କୋମଳ-ବାଣୀ ବିନୟ ଆଚରି ॥୧୮୪

ଧ୍ରୁବଉବାଚ

ଉତ୍ତାନପାଦର ବୀର୍ଯ୍ୟେ ସୁନୀତି ଉଦରେ ।
ଶରୀର ବହିଲି ମୁହିଁ ଏ ଭବସଂସାରେ ॥୧୮୫
ଧ୍ରୁବନାମ ବୋଲାଇ ଅଧ୍ରୁବ ନାମ ମୋର ।
ନିର୍ମଳ-ମାନସେ ମୁହିଁ ମନ୍ଦିରୁ ବାହାର ॥୧୮୬
ଅନାଥ ହୋଇ ମିଳିଲି ଏ ଘୋରକାନନେ ।
ସନାଥ ହୋଇଲି ଏବେ ତୁମ୍ଭ ଦରଶନେ ॥୧୮୭
ନିର୍ଲଜ-ଶରୀର ମୋର ଏଣେ କାର୍ଯ୍ୟ ନାହିଁ ।
ବଞ୍ଚିତ ହୋଇଲି ନୃପ ସିଂହାସନେ ମୁହିଁ ॥୧୮୮
ପୂର୍ବେ କୋଟିଜନ୍ମେ ମୁଁ ନ କଲି ତପ-ରାଶି ।
ଏବେ ଚିତ୍ତ କଷ୍ଟେ ନୃପ-ସିଂହାସନେ ବସି ॥୧୮୯
ଏଣୁ ମୁଁ ନିରାଶଚିତ୍ତେ ପଶିଲି ବନସ୍ତେ ।
ସ୍ଥିର ଭାବେ ମନ ମୋ' ନ ରହେ ଅନ୍ତର୍ଗତେ॥୧୯୦
ଏମନ୍ତ ଧ୍ରୁବର ବାଣୀ ଶୁଣି ମୁନିଗଣେ ।
ତା'ର ମୁଖ ଚାହିଁଣ କହନ୍ତି ଜଣେ ଜଣେ ॥୧୯୧
ସ୍ୱଭାବେ ମଧୁରାକୃତି ଶୁଖିଛି ବଦନ ।
ଅମୃତୁ ଅଧିକ କହେ ମଧୁର-ବଚନ ॥୧୯୨
ସଦୟ-ହୃଦୟେ ବସି ଧ୍ରୁବର ସମକ୍ଷେ ।
ଅନୁରାଗେ ମୁନିଏ କହନ୍ତି ଏକେ ଏକେ ॥୧୯୩

ଋଷିଗଣ-ଉବାଚ

ଅହୋ ବାଳ ବିଶାଳାକ୍ଷ ମହାରାଜ-ସୁତ ।
ବିଚାରି ନ ପାରିଲୁ ତୋହର ଅନ୍ତର୍ଗତ ॥୧୯୪
ନିବେଦ୍ୟ କାରଣ ତୁ ଆମ୍ଭର ଆଗେ କହ ।
ତୋ'ର ବାକ୍ୟେ ଆମ୍ଭ ଚିତ୍ତେ ଲାଗିଲା ସନ୍ଦେହ ॥୧୯୫
ସ୍ୱଭାବେ ବାଳକ ତୋର ଅର୍ଥଚିନ୍ତା ନାହିଁ ।
ରାଜପୁରେ ଜନନୀର ସଙ୍ଗେ ଥାଉ ତୁହି ॥୧୯୬
ଆଧି ବ୍ୟାଧି ନ ଦେଖୁ ତ ତୋହର ଶରୀରେ ।
ନିର୍ବେଦ କାରଣ କହ ଆମ୍ଭର ଛାମୁରେ ॥୧୯୭

Dr. Sudhanshu Sekhar Mishra

ଯୁବାକାଳେ ଭୋଗ ଯେବେ ନ ଲଭନ୍ତି ନରେ ।
ସ୍ୱଭାବେ ବୈରାଗ୍ୟ ଜାତ ହୁଏ ତା ଶରୀରେ ॥୧୯୮
ସପ୍ତଦ୍ୱୀପପତିର ତୁ କୁମର ସ୍ୱଭାବେ ।
କିକାରଣେ କାନନେ ପଶିଲୁ ବାଳଭାବେ ॥୧୯୯
ଯୁବା ନୋହୁ ବୃଦ୍ଧ ନୋହୁ ବ୍ୟାଧି ଦେହେ ନାହିଁ ।
ବାଳକାଳେ ଅରଣ୍ୟେ ପଶିଲୁ କାହିଁପାଇଁ ॥୨୦୦
ଏମନ୍ତ ପ୍ରକାରେ ଶୁଣି ମୁନିଙ୍କ ବଚନ ।
ଗଦଗଦ ବାକ୍ୟେ କହେ ନୃପତି ନନ୍ଦନ ॥୨୦୧

ଧ୍ରୁବଉବାଚ

ଶୁଣିମା ସକଳ ବ୍ରହ୍ମମୁନିଗଣ ଧୀରେ ।
ନିର୍ବେଦ କାରଣ କହୁଁ ତୁମ୍ଭର ଛାମୁରେ ॥୨୦୨
ରାଜସେବା ଅର୍ଥେ ମୋତେ ଜନନୀ ପେଷିଲା ।
ମୋର ଧାତ୍ରୀ ପିତା ଆଗେ ନେଇ ପ୍ରବେଶିଲା॥୨୦୩
ପିତାଙ୍କ ଚରଣେ ମୁହିଁ ନମସ୍କାର କରି
ଉଭା ହୋଇଥିଲି ଧାତ୍ରୀ ବସ୍ତ୍ର କରେ ଧରି ॥୨୦୪
ମୋର ଭାଇ ଉତ୍ତମକୁ ଦେଖି ପିତାକୋଳେ ।
ମୁହିଁ ବସିବାକୁ ଯାଇ ଧଇଲି ଅଞ୍ଚଳେ ॥୨୦୫
ତାହା ଦେଖି ସୁରୁଚି ମୋ' ମାତା ସପତଣୀ ।
ଅନେକ ଭର୍ତ୍ସିଲେ ସେ ସପତ୍ନୀ-ଭାବ ଘେନି॥୨୦୬
ଆପଣା ପୁତ୍ରକୁ କଲା ଉତ୍ତମ ସ୍ୱଭାବେ ।
ଅନେକ ନିନ୍ଦିଲା ମୋତେ ନିନ୍ଦିତ ପ୍ରସ୍ତାବେ॥୨୦୭
ଅଭାଗିନୀ ଗର୍ଭେ ହେଲା ଜନମ ତୋହର ।
ଦେଖ ଅତି ଭାଗ୍ୟବନ୍ତ ମୋହର କୁମର ॥୨୦୮
ଏ ଗର୍ଭେ ଜନ୍ମିଲେ ନୃପସିଂହାସନ ପାଇ ।
ମୋର ଗର୍ଭେ ଜନ୍ମ କିପାଁ ନ ଲଭିଲୁ ତୁହି ॥୨୦୯
ତୋହର ମାତାର ପୂର୍ବେ କିଛି ତପ ନାହିଁ ।
ସେ ଗର୍ଭେ ଜନ୍ମିଲୁ ସୁଖ ଲଭିବୁ ତୁ କାହିଁ ॥୨୧୦
ଦୁର୍ଭଗାର ପୁତ୍ର ହୋଇ ନୃପସିଂହାସନେ ।
ତୋ'ର ପୁଣ୍ୟ ନାହିଁ ଏଥେ ବସିବୁ କେସନେ॥୨୧୧
ଏମନ୍ତ ପ୍ରକାରେ ସେ ଯେ ମୋତେ ନିନ୍ଦା କଲା ।
ଧିକ ଧିକ ଜନ୍ମ ବୋଲି ବହୁ ଝିଙ୍କାସିଲା ॥୨୧୨
ମୁହିଁ କାନ୍ଦି କହିଲି ମୋ' ଜନନୀ ଅଗ୍ରତେ ।
ତପ କରିବାକୁ ମାତା ଆଜ୍ଞା ଦେଲେ ମୋତେ॥୨୧୩
ବୋଇଲେ ସଂସାରେ ସାର ତପସ୍ୟା କାରଣ ।
ଉଚ୍ଚ ନୀଚ ମଧ୍ୟେ ଦେଖ ସଂସାର-ଭ୍ରମଣ॥୨୧୪
ନୃପସିଂହାସନେ ଯେବେ ବାଞ୍ଛା ଅଛି ତୋ'ର ।
ଏବେ ନରଦେହେ ପୁତ୍ର ତପ-ସିଦ୍ଧକର ॥୨୧୫
ଏମନ୍ତେ ଜନନୀ ମୁଖୁ ପାଇ ଉପଦେଶ ।
ତପ-ସଧେ ଘୋରବନେ ହୋଇଲି ପ୍ରବେଶ॥୨୧୬
ନିର୍ବେଦ କାରଣ ମୁଁ କହିଲି ତୁମ୍ଭ ଆଗେ ।
ବନେ ପଶି ଭାଳଇ ମୁଁ ବାଳକ ସ୍ୱଭାବେ ॥୨୧୭
ଏମନ୍ତ ଧ୍ରୁବର ବାକ୍ୟ ଶୁଣି ମୁନିଗଣ ।
ପରସ୍ପରେ ଚାହିଁ ସେ ବୋଲନ୍ତି ପୁଣ ପୁଣ ॥୨୧୮

ଋଷିଗଣ ଉବାଚ

ଦେଖ ଏ କ୍ଷତ୍ରିୟ ତେଜ ସଂସାରେ ଦୁସ୍ତର ।
ବାଳକ ଶରୀରେ ତେଜ ଅତି ଯେ ପ୍ରଖର॥୨୧୯
ପୁଣି ଧ୍ରୁବ ମୁଖ ଚାହିଁ ବୋଲନ୍ତି ଉତ୍ତର ।
ଆମ୍ଭରେ କି ସାଧ୍ୟ-କର୍ମ ତୋ'ର ଉପକାର॥୨୨୦
ତୋର ମନୋରଥ ଆମ୍ଭେ ଜାଣିବୁ କେମନ୍ତେ ।
ଭ୍ରାନ୍ତି ଛାଡି କହ ବାବୁ ଆମ୍ଭର ଅଗ୍ରତେ ॥୨୨୧

ଧ୍ରୁବଉବାଚ

ଶୁଣିମା ଭୋ ମୁନିଜନେ ମୋର ମନୋରଥ ।
ପିତାର ଦୁର୍ଲଭ ପୁତ୍ର ଉତ୍ତମ ମୋ ଭ୍ରାତ ॥୨୨୨
ପିତାର ସମୀପେ ବସେ ନୃପସିଂହାସନେ ।
ତାହାକୁ ମୋହର କିଛି ଆନ ନାହିଁ ମନେ ॥୨୨୩
ତୁମେ ମୋତେ ସାହା ହୁଅ ଏ ଘୋର କାନନେ ।
ଉପଦେଶ ଦିଅ ମୋତେ ନିସ୍ତାର କାରଣେ॥୨୨୪
ଶରୀର ବାଳକ ମୋର ବୁଦ୍ଧି ବାଳ ନୋହେ ।
କହିବି ତୁମ୍ଭର ଆଗେ ଚିତ୍ତର ନିର୍ଣ୍ଣୟେ ॥୨୨୫
ମୋର କଥା କହଇ ତା' ଶୁଣି ମୁନିଜନେ ।
ଯେଉଁ କାରଣରୁ ମୁଁ ପଶିଲି ଘୋରବନେ ॥୨୨୬
ଯେ ପଦକୁ ପୂର୍ବେ ତପେ କେହି ଲଭି ନାହିଁ ।
ଇନ୍ଦ୍ର ଆଦି ଦେବତାଙ୍କୁ ଗୋଚର ନୋହଇ॥୨୨୭
ତ୍ରିଲୋକ ଉପରେ ସର୍ବ-ବନ୍ଦିତ ଯେ ସ୍ଥାନ ।
ତହିଁ ବସି ଭୁଞ୍ଜିବି କଳ୍ପଇ ମୋର ମନ ॥୨୨୮
ମୋର ପିତୃ-ପିତାମହ ଯାହା ନ ପାଇଲେ ।
କଳ୍ପକଳ୍ପାନ୍ତରେ ଯାହା ନ ପାଇବେ ଭଲେ ॥୨୨୯
ସେ ଭୁବନେ ଯେଉଁ ଭାବେ ବସିବଇଁ ମୁହିଁ ।
ତହିଁର ଉପାୟ ମୋତେ କହ ଭାବ ବହି ॥୨୩୦
ଧନ ରାଜ୍ୟଭୋଗ ମୋର ପ୍ରୟୋଜନ ନାହିଁ ।
ଏତେ କହି ମୁନିଙ୍କ ଚରଣେ ପ୍ରଣମଇ ॥୨୩୧
ଧ୍ରୁବର ବଚନେ ହରଷିତ ମୁନିଜନେ ।
ଅନ୍ୟେ ଅନ୍ୟେ ମିଳି ସେ କହନ୍ତି ତୁଷ୍ଟମନେ॥୨୩୨

ମରୀଚି ଉବାଚ

ଶୁଣ ହୋ ନୃପନନ୍ଦନ କହୁଁ ତୋ'ର ଆଗେ ।
ସର୍ବ ବେଦ ପୁରାଣଙ୍କ ଶାସ୍ତ୍ର ଅନୁଭବେ ॥୨୩୩
ବିଷ୍ଣୁର ଚରଣେ ସେବା କରେ ଯେ ନିଶ୍ଚୟେ ।
ଇହପରଲୋକେ ସେ ବାଞ୍ଛିତ ଫଳ ପାଏ ॥୨୩୪
ଅନ୍ୟ ଦେବଙ୍କର ତପ ଅନୁଭବେ ସ୍ଥିରେ ।
ବିଷ୍ଣୁର ପ୍ରସନ୍ନେ ଭୋଗ-ଭୁଞ୍ଜେ ନିରନ୍ତରେ॥୨୩୫

ଅତ୍ରି ଉବାଚଜ

ଅତ୍ରି କହେ ଶୁଣ ବାବୁ ସୁନୀତି କୁମର ।
ନାରାୟଣ-ସନ୍ତୋଷେ ନିର୍ମଳ-ତପ କର ॥୨୩୬
ସେ ପରମପୁରୁଷ ଯାହାକୁ ତୋଷ ହୋଇ ।
ମନର ବାଞ୍ଛିତ ଫଳ ଅଧିକେ ଦିଅଇ ॥୨୩୭
ଅକ୍ଷୟ-ସ୍ଥାନରେ ତା'ର ହୁଏ ଅଧିକାର ।
ବିଘ୍ନକରି ନ ପାରନ୍ତି ସୁରା-ସୁର-ନର ॥୨୩୮
ସତ୍ୟ ଏ ବଚନ ମୋର କର ହରି-ଧ୍ୟାନ ।
ଅଳ୍ପଦିନେ ଲଭିବୁ ଅକ୍ଷୟ-ଦିବ୍ୟସ୍ଥାନ ॥୨୩୯

ଅଙ୍ଗିରା ଉବାଚ

ଅଙ୍ଗିରା କହନ୍ତି ଶୁଣ ନୃପତି କୁମର ।
ସର୍ବଭାବେ ଗୋବିନ୍ଦ ଚରଣେ ଆଶ୍ରେକର ॥୨୪୦
ବିଶ୍ୱ ବସ୍ତୁ-ଅଭ୍ୟନ୍ତରେ ଯାହାର ନିବାସ ।
ଆତ୍ମାରୂପେ ସର୍ବଭୂତେ ଯାହରା ପ୍ରକାଶ ॥୨୪୧
ଅଗ୍ରସ୍ଥାନେ ବସିବାକୁ ଇଚ୍ଛା ଯେବେ ତୋ'ର ।
ଏକମନେ ଲୟକର ଶ୍ରୀହରି-ପୟର ॥୨୪୨

ପୁଲସ୍ତ୍ୟ ଉବାଚ

ପରଂଧାମ ପରଂବ୍ରହ୍ମ ପରାପର ନାହିଁ ।
ବିଶ୍ୱ-ବାହ୍ୟ-ଅଭ୍ୟନ୍ତରେ ଯାର ବିଶ୍ୱଦେହୀ ॥୨୪୩

Dr. Sudhanshu Sekhar Mishra

ସେ ହରିଚରଣେ ଧ୍ୟାନ କର ଦୃଢ଼ଚିତ୍ତେ ।
ତ୍ରୈଲୋକ୍ୟ-ଦୁର୍ଲଭ-ସ୍ଥାନ ଲଭିବୁ ଯେମନ୍ତେ ॥୨୪୪

କ୍ରତୁ ଉବାଚ

କ୍ରତୁ କହେ ଶୁଣ ଆହେ ମୋହର ବଚନ ।
ଯେ ଯଜ୍ଞପୁରୁଷ ଅଙ୍ଗେ ଏ ତିନିଭୁବନ ॥୨୪୫
ତାହାର ପ୍ରସନ୍ନେ ଯେ ଦୁର୍ଲଭ ଲଭେ ପ୍ରାଣୀ ।
ମୁଁ ଏହା ଜାଣଇ ସର୍ବଶାସ୍ତ୍ର ପରିମାଣି ॥୨୪୬

ପୁଲହ ଉବାଚ

ପୁଲହ କହନ୍ତି ଧ୍ରୁବ ଶୁଣ ଏକମନେ ।
ଇନ୍ଦ୍ରାଦି ଦୁର୍ଲଭ ସ୍ଥାନ ଲଭିବୁ ଯେସନେ ॥୨୪୭
ଘୋରତପେ ବିଷ୍ଣୁର ଚରଣେ ଆଶ୍ରେକର ।
ଦୁର୍ଲଭ-ଆସନେ ବସି ଭୁଞ୍ଜ ଭୋଗସାର ॥୨୪୮
ବିଷ୍ଣୁର ଚରଣ ସେବା ଯେ ଜନ କରନ୍ତି ।
ଇହ-ପରଲୋକେ ସେ ବାଞ୍ଛିତ-ଫଳ ପା'ନ୍ତି ॥୨୪୯
ଅନ୍ୟ ଦେବଙ୍କର ସେବା ଫଳ ଅଳ୍ପଦିନ ।
ବିଷ୍ଣୁର ସେବନ-ଫଳ ଅକ୍ଷୟଟି ଜାଣ ॥୨୫୦

ବଶିଷ୍ଠ ଉବାଚ

ବଶିଷ୍ଠ କହନ୍ତି ଶୁଣ ନୃପତିନନ୍ଦନ ।
ତପ-ବଳେ ବାସୁଦେବ ଦୃଢ଼େ କର ଧ୍ୟାନ ॥୨୫୧
ପରମ କୈବଲ୍ୟଦାତା ପ୍ରଭୁ ଚକ୍ରଧର ।
ଯାହାର ପ୍ରସନ୍ନେ ତୁଟେ ଏ ଘୋର-ସଂସାର ॥୨୫୨
ଶୁଣି ଧ୍ରୁବ ବେନିକର ଶିରେ ଦେଇ ତୋଷେ ।
ପୁଣପୁଣ ପ୍ରଣମିଲା ଭକତି ବିଶ୍ୱାସେ ॥୨୫୩

ଧ୍ରୁବ ଉବାଚ

ତୁମ୍ଭ ଉପଦେଶେ ଯେବେ ହରିଙ୍କି ଭଜିବି ।
ଉପାୟ କହିବା ମୋତେ କେମନ୍ତେ ଲଭିବି॥୨୫୪
ସାଂଖ୍ୟଯୋଗ କିବା ତପ ଜପ ମନ୍ତ୍ର ଧ୍ୟାନେ ।
ପ୍ରାଣାୟାମ ବଳେ କିବା ନିଶ୍ଚଳ-ଆସନେ ॥୨୫୫
ଯେମନ୍ତେ ପାଇବି ଅଳ୍ପଦିନେ ତପ କରି ।
ସ୍ୱଭାବେ ବାଳକ ମୁଁ ନୁହଇ ବ୍ରହ୍ମଚାରୀ ॥୨୫୬
ଯେଉଁ ଆରାଧନେ ମିଳେ ବିଷ୍ଣୁର ଚରଣ ।
ପ୍ରସନ୍ନ-ବଦନେ ମୋତେ କହ ମୁନିଗଣ ॥୨୫୭
ଋଷିଗଣ ଏମନ୍ତ ବାଳକ-ବାକ୍ୟ ଶୁଣି ।
ସର୍ବ ମନେ ବିଚାରି କହନ୍ତି ପୁଣପୁଣି ॥୨୫୮

ଋଷିଗଣ-ଉବାଚ

କହନ୍ତି ହେ ଧ୍ରୁବ ଶୁଣ ନିର୍ବାଣ ପ୍ରକାର ।
ଯେଉଁ ଆରାଧନେ ନିସ୍ତରନ୍ତି ସୁରନର ॥୨୫୯
ପ୍ରତ୍ୟାହାର ବଳେ ଯେ ବିଷୟ ଇନ୍ଦ୍ରିଗଣ ।
ବାହାର ଭିତରେ ମନ କରଇ ଭ୍ରମଣ ॥୨୬୦
ଇନ୍ଦ୍ରିୟ-ବିଷୟେ ମନ ନିଶ୍ଚଳେ ନିରୋଧି ।
ଗୁରୁ-ବାକ୍ୟେ ସାଧିବ ଯେ ବିଧାନ ସମ୍ପାଦି॥୨୬୧
ଜାଗ୍ରତ ସ୍ୱପ୍ନ ମଧ୍ୟେ ଉଭୟ ଭ୍ରୁବସ୍ଥାନେ ।
ପଞ୍ଚପ୍ରାଣ ନିରୋଧ କରିବ ତତ୍ତ୍ୱଜ୍ଞାନେ ॥୨୬୨
ବାହ୍ୟ-ଅନ୍ତେ ଜଳଘଟେ ଗଗନ ଯେସନେ ।
ସେହି ଭାବେ ସର୍ବ ଘଟେ ଦେଖ ଦିବ୍ୟଜ୍ଞାନେ॥୨୬୩
ନାଭିଚକ୍ର ଉର୍ଦ୍ଧ୍ୱେ ଦେଖ ଦଶହିଁ ଅଙ୍ଗୁଳେ ।
ପୀତବର୍ଣ୍ଣ ପ୍ରାୟେ ଦିଶେ ହୃଦୟ କମଳେ ॥୨୬୪

ଦ୍ୱାଦଶଦଳର ମଧ୍ୟେ ପଦ୍ମ ଯେ କେଶର ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ରହେ ମଣ୍ଡଳ ଆକାର ॥୨୬୫
ତା'ର ମଧ୍ୟେ ଧ୍ୟାନ କରି ଚିନ୍ତ ଦିବ୍ୟରୂପ ।
ସର୍ବ-ଭୂତାଶ୍ରୟ ଯେ ପୁରୁଷୋତ୍ତମ-କଳ୍ପ ॥୨୬୬
ସେହି ସ୍ଥାନେ ବସ ତୁ ଆସନ ଦୃଢ଼ କରି ।
ଦ୍ୱାଦଶ-ଅକ୍ଷର-ମନ୍ତ୍ର ଜପ ହୃଦେ ଧରି ॥୨୬୭
ଓଁକାର ପ୍ରଥମେ ଭାଗବତ ନାମ ଧରି ।
ନମୋ ବାସୁଦେବାୟ ତୁ ନିଶ୍ଚଳେ ଉଚ୍ଚାରି॥୨୬୮
ଦ୍ୱାଦଶ-ଅକ୍ଷର ମନ୍ତ୍ରରାଜ ଏ ବୋଲାଇ ।
ଏହି ମନ୍ତ୍ର ଜପିଲେ ପ୍ରସନ୍ନ ଭାବଗ୍ରାହୀ ॥୨୬୯
ଏହି ମନ୍ତ୍ର ପୂର୍ବେ ଜପି ସ୍ୱାୟମ୍ଭୁବ ମନୁ ।
ସୃଷ୍ଟି ହେତୁ ସାଧ୍ୟ କଲା ବ୍ରହ୍ମା ନିଜ ତନୁ ॥୨୭୦
ତାହାରେ ସନ୍ତୋଷ ଯେ ହୋଇଲେ ବାସୁଦେବ ।
ଯା'ର ଭାବେ ସାଧ୍ୟ କଲା ସଂସାର-ବିଭବ॥୨୭୧
ଏହି ମନ୍ତ୍ର ଜପ କର ଏକଚିତ୍ତ ହୋଇ ।
ଅନ୍ତର୍ଦ୍ଧାନେ ଗଲେ ମୁନି ଉପଦେଶ ଦେଇ ॥୨୭୨
ମୁନିଙ୍କର ଉପଦେଶ ହୃଦରେ ସୁମରି ।
ହରିଭକ୍ତ-ଜନ-ଅର୍ଥେ କହିଲି ବିସ୍ତାରି ॥୨୭୩
ସାଧୁଜନେ ଏହିଭାବେ ଦୃଢ଼କର ଚିତ୍ତ ।
ସଂସାର-ନିସ୍ତାରେ କହେ ଦାସ ଜଗନ୍ନାଥ ॥୨୭୪

ଇତିଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ଧ୍ରୁବଚରିତେ ଅଷ୍ଟମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ନବମ ଅଧ୍ୟାୟ

### ମୈତ୍ରେୟ ଉବାଚ

ଘୋରବନେ ଅନ୍ତର୍ଦ୍ଧାନେ ଯା'ନ୍ତେ ମୁନିଗଣେ ।
ଅନ୍ତରୀକ୍ଷ-ବାଣୀ ତାକୁ ଶୁଭିଲା ଗଗନେ ॥୧
ମଧୁବନ କାଳିନ୍ଦୀ ଦକ୍ଷିଣ-ତଟେ ରହି ।
ନିଶ୍ଚଳ-ଆସନେ ମନ୍ତ୍ର ଜପ କର ତୁହି ॥୨
ଅନ୍ତରୀକ୍ଷ-ବଚନ ଶୁଣିଲା ଯହୁଁ କର୍ଣ୍ଣେ ।
ନିଶ୍ଚଳ-ଆସନେ ଚିତ୍ତ ନିବେଶି ଗଗନେ ॥୩
ତକ୍ଷଣେ ନମିଲା ସେ ମୁନିଙ୍କ ପାଦଗତେ ।
ସେ ଆସନ ତେଜି ଧ୍ରୁବ ଚଳିଲା ତୁରିତେ ॥୪
କୃତକୃତ୍ୟ ହୋଇ ସେ ବାଳକ ଅରକ୍ଷିତ ।
ସେ ବନୁ ଚଳିଲା ଧ୍ରୁବ କିଛି ଦୂର ପଥ ॥୫
ନିର୍ଜ୍ଜନ-ବନସ୍ତେ ଯେ ଯମୁନା-ତଟେ ଯାଇ ।
ଅନ୍ତରୀକ୍ଷ-ବାଣୀ ଚିନ୍ତେ ଗଗନକୁ ଚାହିଁ ॥୬
ମଧୁନାମେ ଦୈତ୍ୟ-ଅଧିପତି ତହିଁ ଥିଲା ।
ସେ କାରଣୁ ମଧୁବନ ନାମ ସେ ହୋଇଲା ॥୭
ବିଷ୍ଣୁ-ସନ୍ନିଧାନେ ସେ ହାରିଲା ଯୁଗେ ଯୁଗେ ।
ତା'ର ପୁତ୍ର ଲବଣ ଯେ ଥିଲା ବନଭାବେ। ॥୮
ଶତ୍ରୁଘନ ରୂପେ ତା'କୁ ମାରି ଚକ୍ରଧର ।
ଗ୍ରାମ ବସାଇଲେ ନାମ ମଥୁରାନଗର ॥୯
ସର୍ବପାପ ହରଇ ଯମୁନାଜଳ ଯହିଁ ।
ତା'ର ତୀରେ ନିଶ୍ଚଳେ ବସିଲା ଧ୍ରୁବ ଯାଇ ॥୧୦
ମୁନିଙ୍କର ଉପଦେଶ ସୁମରି ନିଶ୍ଚଳେ ।
ଯମୁନାର ସମୀପେ କଦମ୍ବ ବୃକ୍ଷ ମୂଳେ ॥୧୧
ନିଶ୍ଚଳ ଆସନେ ବସି ପ୍ରତ୍ୟାହାର କଲା ।
ହରି ଅନୁଗ୍ରହେ ମନ ନିଶ୍ଚଳ ରହିଲା ॥୧୨
ଅଶେଷ ଦେବ ଈଶ୍ୱର ବିଷ୍ଣୁତା ହୃଦୟେ ।
ପ୍ରକାଶ ହୋଇଲେ ପୂର୍ବ ଭାଗ୍ୟର ଉଦୟେ ॥୧୩
ସର୍ବଭୂତ ଦେହେ ବସେ ଆକାଶର ପ୍ରାୟେ ।
ସର୍ବଗତେ ସର୍ବଭାବେ ସର୍ବ ଜୀବମୟେ ॥୧୪
ଦ୍ୱାଦଶ ଅକ୍ଷର ମନ୍ତ୍ର ହୃଦରେ ସୁମରି ।
ବିଷ୍ଣୁର ଚରଣେ ଚିତ୍ତ ଅତି ଦୃଢେ ଧରି ॥୧୫
ମନେ ବିଚାରଇ ଏ ଆସନେ କାର୍ଯ୍ୟ ନାହିଁ ।
ଊର୍ଦ୍ଧ୍ୱମୁଖେ ଊର୍ଦ୍ଧ୍ୱବାହୁ ତପ ସାଧିବଇଁ ॥୧୬
ଏମନ୍ତ ବିଚାରି ସେ ଆସନୁ ଉଠୁରିଲା ।
ଦକ୍ଷିଣଚରଣ ସେ ଧରଣୀ-ପୃଷ୍ଟେ ଦେଲା ॥୧୭
ସର୍ବଭୂତଧାତ୍ରୀ କମ୍ପେ ଧ୍ରୁବପାଦଭରେ ।
ବନଗିରି-ଜଳଧି ସହିତେ ଯା' ଶରୀରେ ॥୧୮
ବାମପାଦ-ଅଙ୍ଗୁଷ୍ଠ-ଅଗ୍ରରେ ଭରାଦେଇ ।
ବାମଜାନୁ ଉପରେ ଦକ୍ଷିଣ-ପାଦ ଥୋଇ ॥୧୯
ପାଦର ଅଙ୍ଗୁଷ୍ଠେ ଧ୍ରୁବ ନିଶ୍ଚଳେ ରହିଲା ।
ଧ୍ରୁବର ଚରଣ-ଭାରେ ଅବନୀ କମ୍ପିଲା ॥୨୦
ପର୍ବତ-କାନନ ଆଦି ଜଳଧି ସହିତେ ।
କମ୍ପଇ ଧରଣୀ ଚମ୍ପାପତ୍ର ଯେହ୍ନେ ବାତେ ॥୨୧
ଦଶଦିଗ କମ୍ପିଲା କମ୍ପିଲେ ଦିଗପାଳେ ।
ଦେବଙ୍କର ବିମାନ କମ୍ପିଲା ଅନ୍ତରାଳେ ॥୨୨
ଯମ ଆଦି ଦେବଗଣ ପରମ-ଆକୁଳେ ।
ଇନ୍ଦ୍ରର ସହିତେ ବସି ଚିନ୍ତିଲେ ସକଳେ ॥୨୩
ବିଚାରନ୍ତି ଧ୍ରୁବର ତପସ୍ୟା ଭଗ୍ନ କଲେ ।
ତେବେ ନିଜ ଅଧିକାରେ ରହିବା ନିଶ୍ଚଳେ ॥୨୪
ଯଦ୍ୟପି ଏହାର ତପ ରହିବ ନିଶ୍ଚଳ ।
ଚତୁର୍ଦ୍ଦଶ-ଲୋକେ ନାହିଁ କାହାରି କୁଶଳ ॥୨୫
ଏମନ୍ତ ବିଚାରି ଦେବେ ରହିଲେ ଚକିତେ ।
ଧ୍ରୁବର ନିଶ୍ଚଳ-ଧ୍ୟାନ କୃଷ୍ଣପାଦଗତେ ॥୨୬
ପରଂବ୍ରହ୍ମ ଅନାମୟ ବାସୁଦେବ-ମନ୍ତ୍ରେ ।
ଆଗମ ନିଗମ ମନ୍ତ୍ରେ ସ୍ତୁତିସ୍ତୋତ୍ର ଯେତେ ॥୨୭
ବାସୁଦେବ ପ୍ରାୟ ସେ ଜଗତକୁ ଦେଖଇ ।
ଉନ୍ମୀଳ ଲୋଚନେ ଧ୍ରୁବ ପରାଭବ ବହି ॥୨୮
ସର୍ବଭାବେ ସର୍ବଘଟେ ଦେଖେ ହରି-ରୂପ ।
ସର୍ବଦିଗେ ଅନଳ-ପବନ ସର୍ବଜଳ ॥୨୯
ବନଗିରି କନ୍ଦରେ ଯେତେକ ପଶୁଯୂଥ ।
ବରୁଣ-ଭୁବନେ ଜଳଜନ୍ତୁ ଯେ ସମସ୍ତ ॥୩୦
ଅଶ୍ୱ ଗଜ ସହିତେ ରାଜାର ପୁରେ ଯେତେ ।
ବିଷ୍ଣୁର ସ୍ୱରୂପେ ରୂପ ଦେଖଇ ସମସ୍ତେ ॥୩୧
ପାତାଳେ ଅନନ୍ତ ରୂପ ଗଗନେ ନକ୍ଷତ୍ର ।
ଏକରୂପେ ରୂପଭେଦ କେ କରିବ ଅନ୍ତ ॥୩୨
ଦେବଙ୍କର ଦେହେ ନିତ୍ୟେ ଯେ ହରି ବସଇ ।
ସର୍ବଭୂତେ ଏକଆତ୍ମା ଅନ୍ୟ ନ ଘଟଇ ॥୩୩
ବିଶ୍ୱବ୍ୟାପୀ ପୁରୁଷ ଗୋଚର କେବା କହୁ ।
ଏଣୁ ବ୍ୟାପୀ ଅଛଇଁ ଆକାଶ ପ୍ରାୟେ ସେହୁ ॥୩୪
ଏହି ଭାବେ ନାମ ଧରି ବିଷ୍ଣୁରେ ପୀରତି ।
ସର୍ବଭୂତେ ପୂରିଅଛି କେହି ନ ଦେଖନ୍ତି ॥୩୫
ସର୍ବଜନ୍ତୁ ହୃଦାକାଶେ ରବି ପ୍ରାୟେ ଦିଶେ ।
ଇନ୍ଦ୍ରିଯଙ୍କ ଈଶ୍ୱର ଯେ ହୃଷୀକେଶ ଘୋଷେ ॥୩୬
ଯାହାର ଭକତଜନ ପ୍ରଳୟେ ନ ନାଶେ ।
ଏଣୁ ଏ ଅଚ୍ୟୁତନାମ ସର୍ବବେଦ ଘୋଷେ ॥୩୭
ଚରାଚରେ ବିଶ୍ୱଭାବେ ହୋଇ ଏ ବିଶ୍ୱାସେ ।
ଏଣୁ ବିଶ୍ୱଭାବ ନାମ ସର୍ବ ଉପଦେଶେ ॥୩୮
ଧ୍ରୁବର ନୟନ ବିଷ୍ଣୁପାଦେ ଲୀନ ଗଲା ।
ଶ୍ରୁତିଯୁଗ ବିଷ୍ଣୁର ଶବଦେ ଆଶ୍ରେକଲା ॥୩୯
ବଚନ ରହିଲା ବିଷ୍ଣୁ ଚରିତ ବର୍ଣ୍ଣନେ ।
ବିଷ୍ଣୁ ପାଦପଦ୍ମ ଗନ୍ଧ ନାସାରନ୍ଧ୍ର ଘ୍ରାଣେ ॥୪୦
ହସ୍ତ ବେନି ସେବା ଭାବେ ହୋଇଲେ ଅର୍ପିତ ।
ପଦଯୁଗ ଗୋବିନ୍ଦ-ଭକତେ ଉପଗତ ॥୪୧
ଚର୍ମ ଇନ୍ଦ୍ରି ରୋଧିଲା ପ୍ରସାଦ-ଗନ୍ଧ-ରସେ ।
ଶୀତ ଘର୍ମ ନ ଲାଗିଲା ବିଷ୍ଣୁ ଉପଦେଶେ ॥୪୨
ଶବଦ ସ୍ପରଶ ରସ ରୂପ ଗନ୍ଧ ଯେତେ ।
ବିଷ୍ଣୁର ଚରଣେ ଲୀନ ହୋଇଲେ ସମସ୍ତେ ॥୪୩
ବାକ୍ୟ ପାଦ ପାଣି ଲିଙ୍ଗ ମୂଳାଧାର ଆଦି ।
ନିଶ୍ଚଳେ ରହିଲା ଧ୍ରୁବ ଯୋଗରେ ସନ୍ନିଧି ॥୪୪
ତା'ର ଘୋରତପ ତେଜେ ସର୍ବତେଜ ଲୀନ ।
ଅଗ୍ନି ସୁଧାକର ବାୟୁ ଆକାଶେ ତପନ ॥୪୫
ସର୍ବଜୀବ ଜଡମତ ଧ୍ରୁବ-ତେଜଭରେ ।
ଧ୍ରୁବ ତପେ ପୃଥ୍ୱୀ ଘୂରେ ମଣ୍ଡଳ ଆକାରେ ॥୪୬
ନିର୍ମଳ ଶୀତଳ ଜଳ ନଦୀଏ ବହନ୍ତି ।
ମନ୍ଦ ଶୀତ ଗନ୍ଧଗୁଣେ ପବନ ଚଳନ୍ତି ॥୪୭

Dr. Sudhanshu Sekhar Mishra

ଯେତେ ରୂପ ଗୁଣ ଯେତେ ସୁନ୍ଦର ତ୍ରିଲୋକେ ।
ସର୍ବ ଲୀନ ହୋଇଲେ ସୁନୀତି-ପୁତ୍ର-ମୁଖେ ॥୪୮
ସମୀରଣ ବହେ ଯେ ଧ୍ରୁବର ଦେହେ ଲାଗି ।
ସେ ବାୟୁ ସ୍ପରଶେ ସର୍ବଦିଗ ସଉଭାଗୀ ॥୪୯
ଅଶେଷ-ଶବଦ ଘେନି ଗଗନ ନିଶ୍ଚଳେ ।
ଆଶ୍ରେ କରି ରହିଲେ ଧ୍ରୁବର କର୍ଣ୍ଣମୂଳେ ॥୫୦
ଭୂମି-ଆଦି ଧ୍ରୁବର ଶରୀର ପଞ୍ଚଭୂତେ ।
ନିଶ୍ଚଳେ ରହିଲେ ତପବଳର ଆୟତ୍ତେ ॥୫୧
ଧ୍ରୁବତପ ଦେଖିଣ ପବନ ବିଚାରଇ ।
ମୋର ଦର୍ପ ତପବଳେ ସଂହରିବ ଏହି ॥୫୨
ଏହାର ତପସ୍ୟା ଭଙ୍ଗେ ମୁହିଁ କ୍ଷମ ନୋହେ ।
ଏଣୁ କରି ଧ୍ରୁବ ଅଙ୍ଗେ ଶୀତଭସ୍ତେ ବହେ ॥୫୩
ଅପସରା ଗଣେ ଚାହିଁ ଧ୍ରୁବର ବଦନେ ।
ଅନ୍ୟୋଅନ୍ୟେ ସମ୍ଭ୍ରମେ କହନ୍ତି ଦୁଃଖମନେ ॥୫୪
ସୁରାଙ୍ଗନଙ୍କର ଯୋଗ-ତପ ଆମ୍ଭେ ଗଞ୍ଜି ।
ଏ ବାଳକ ଚିତ୍ତେ କାହୁଁ ପାରିବା ନିମଜ୍ଜି ॥୫୫
କାମ-କ୍ରୋଧ ଅଛନ୍ତି ଯେ ଆମ୍ଭର ସଙ୍ଗତେ ।
କେହି ନ ପାରିବେ ପଶି ଏ ବାଳକ ଚିତ୍ତେ ॥୫୬
ତଦନ୍ତେ ସକଳ-ଦେବେ ଇନ୍ଦ୍ରମୁଖ ଚାହିଁ ।
ବୋଲନ୍ତି ସଂଭ୍ରମ-ଚିତ୍ତେ ଶିରେ କର ଦେଇ ॥୫୭
କି ବୁଦ୍ଧି କରିବା ଏବେ କହ ଦେବରାୟେ ।
ଧ୍ରୁବର ତପସ୍ୟା-ଭଙ୍ଗେ ନାହିଁକି ଉପାୟେ ॥୫୮
ମୁହୂର୍ତ୍ତେ ରହିଲା ଇନ୍ଦ୍ର ଦେବବାକ୍ୟ ଶୁଣି ।
ତପ-ଭଙ୍ଗ ନିମିତ୍ତ ଉପାୟ ମନେ ଗୁଣି ॥୫୯
ଇନ୍ଦ୍ର କହେ ସ୍ୱଭାବେ ବାଳକ ଦେହ ଧରି ।
ଭୟଙ୍କର ଭୂତ ଆଦି ଦେଖି ଅବା ଡରି ॥୬୦
ଭୟଙ୍କର ରୂପ ଦେଖି ବାଳକେ ଡରନ୍ତି ।
ଅନ୍ୟ କିଛି ଉପାୟେ ନ ହେବ ଏହା ଭାତି ॥୬୧
ଆସୁରୀ-ମାୟାରେ ଯେବେ ଭଙ୍ଗ କରିପାର ।
ନିଶ୍ଚୟେ ଭୁଞ୍ଜିବ ତୁମ୍ଭେ ଯେଝା ଅଧିକାର ॥୬୨
ସ୍ୱଭାବେ ବାଳକ ବସିଅଛି ଘୋରବନେ ।
ଅନ୍ୟଥା ଉପାୟ ନାହିଁ ତପ-ଉଚ୍ଚାଟନେ ॥୬୩
ଏମନ୍ତ ବିଚାରି ଯେ ଆସୁରୀ-ମାୟା ବଳେ ।
ନାନା ଭୟଙ୍କର ରୂପ ଧ୍ରୁବଙ୍କୁ ବେଢ଼ିଲେ ॥୬୪

ଭୂତଗଣ ଧାଇଁଲେ ଭୀଷଣ ରୂପ ଧରି ।
ଲହ-ଲହ ଜିହ୍ୱା କଳକଳ ନାଦ କରି ॥୬୫
ଡାକିନୀ ସ୍ୱଭାବେ ରୂପ ଅତି ଭୟଙ୍କର ।
ନରମୁଣ୍ଡେ ହସ୍ତେ କରି ରାବନ୍ତି ଅପାର ॥୬୬
ଉଲ୍ଲୁକ ଆକାର ଉଷ୍ଟ୍ର-ଖର ରୂପ ଧରି ।
ଲମ୍ବଗ୍ରୀବା ଶିର ପାଦ ବଦନ ବିସ୍ତାରି ॥୬୭
ଭୂମି-ଦନ୍ତାଘାତେ ତରୁ ଉଲ୍ଲୋଳ କରନ୍ତି ।
ବିକଟ-ଦଶନେ ବକ୍ରମୁଖ କେ କରନ୍ତି ॥୬୮
କେବା ତରୁ ଉପାଡ଼ିଣ ଭୂମିରେ ପିଟନ୍ତି ।
ଅତି ଆସ୍ଫାଳନେ ଧ୍ରୁବ ନିକଟେ ମିଳନ୍ତି ॥୬୯
ବୃଷଭ ଆକାରେ ତୀକ୍ଷ୍ଣ-ଶୃଙ୍ଗେ ଭୂବିଦାରି ।
ମନୋଜବେ ଧାମନ୍ତି ଉନ୍ମତ୍ତ-ରୂପଧରି ॥୭୦
ସର୍ପରୂପ ଧରି ଫଣା ଉଭାରନ୍ତି ବଳେ ।
ଲହଲହ ବେନିଜିହ୍ୱା ବୁଲାଇ ଚଞ୍ଚଳେ ॥୭୧
ଫୁ...ଫୁ... କରି ବିଷ କଣା ଜଳ ବୃଷ୍ଟି ପ୍ରାୟେ ।
ଏ ରୂପେ ଧ୍ରୁବ ସମୀପେ ମିଳିଲେ ଥୋକାଏ ॥୭୨
ମହିଷ ଆକାରେ ଗିରିଶୃଙ୍ଗ ଅଗ୍ରେ ଧରି ।
ଉପାଡନ୍ତି କୋପଭରେ ଲାଙ୍ଗୁଳି ଉଭାରି ॥୭୩
ଭୂତଗଣେ ଧାମନ୍ତି ବିସ୍ତାରି ମହାକାୟେ ।
ବେନିପାଦ ଦିଶନ୍ତି ଖର୍ଜୁର ବୃକ୍ଷ ପ୍ରାୟେ ॥୭୪
ମୁଖ ବିସ୍ତାରନ୍ତି କିବା ଭକ୍ଷିବେ ଗଗନ ।
ନାସା ଅଗ୍ରେ ବହେ ଉନପଞ୍ଚାଶ ପବନ ॥୭୫
ଉଲ୍ଲୁକ ଆକାରେ ପୁଣି ଫୁ..ଫୁ.. ନାଦ କରି ।
ହୃଦୟ କମ୍ପାଇ ଧ୍ରୁବ ନିକଟରେ ମିଳି ॥୭୬
ପିଶାଚେ ଧାବନ୍ତି ଭୟଙ୍କର ରୂପ ଧରି ।
ବାମେ ଛିନ୍ନଶିର ଦକ୍ଷେ ଖଡଗ ଉଭାରି ॥୭୭
ଅଗ୍ନି-ନାସା ମହାହନୁ କରାଳ-ଦଶନେ ।
ଧ୍ରୁବର ସମୀପେ ଯେ ମିଳିଲେ ଘୋରବନେ ॥୭୮
ବେନି ଶାଳବୃକ୍ଷ ବେନିକରେ ଉପାଡନ୍ତି ।
ଅନ୍ତକ-ପୁରୁଷ ପ୍ରାୟେ ନିକଟେ ମିଳନ୍ତି ॥୭୯
ଭୈରବ-ନାଦରେ ଯେ କରନ୍ତି ହୁହୁଂକାର ।
ସେ ନାଦ ଶୁଣିଲେ ଆତ୍ମା କମ୍ପେ ଥରହର ॥୮୦
ଡାକିନୀ ମିଳିଲେ ଯେ ହୁଙ୍କାର ନାଦ କରି ।
ରୋଦନ କରନ୍ତି ଶିଶୁ ବେନିପାଦ ଧରି ॥୮୧

ଧ୍ରୁବର ନିକଟେ ଅତିକୋପେ ସେ ମିଳିଲେ ।
ମୃଣାଳ ପ୍ରାୟେକ ଶିଶୁ-ମୁଣ୍ଡ ଚୋବାଇଲେ ॥୮୨
ବଦନ ବିସ୍ତାରି ସେ ରୁଧିର ପାନ କରି ।
ଧ୍ରୁବର ବଦନ ଚାହିଁ ବୋଲେ ମାୟାଧାରୀ ॥୮୩
ସୁଲଳିତ ପ୍ରାଣ ତୋ'ର ଶୁଣରେ କୁମର ।
ସନ୍ତୋଷେ ରୁଧିର ପାନ କରିବି ତୋହର ॥୮୪
ଦଣ୍ଡେ ଯଦି ରହିପାରୁ ମୋହର ଛାମୁର ।
ମୃଣାଳର ପ୍ରାୟେ ଅସ୍ଥି ଚୋବାଇବି ତୋର ॥୮୫
ଏମନ୍ତ କହନ୍ତେ ପୁଣି ଗୁହ୍ୟକ ମିଳିଲେ ।
ଧ୍ରୁବ ଚାରିପାଶେ ଶୁଷ୍କକାଷ୍ଠ ରୁଣ୍ଡକଲେ ॥୮୬
ଦାବାଗ୍ନି ଲଗାଇ ଯେ ବିଞ୍ଚନ୍ତି କର-ପତ୍ରେ ।
ବୃଷ୍ଟିପ୍ରାୟ ଅଗ୍ନିକଣା ପଡେ ଧ୍ରୁବ-ଗାତ୍ରେ ॥୮୭
ମଣ୍ଡଳ ଆକାରେ ବୃକ୍ଷମାନ ଉପାଡ଼ନ୍ତି ।
ଧ୍ରୁବର ସମୀପେ ରହି ଶବଦେ ଗର୍ଜନ୍ତି ॥୮୮
ଗଗନେ କ୍ଷେପନ୍ତି ତରୁଲତା କୋଟି କୋଟି ।
ଅନ୍ୟେ ଅନ୍ୟେ ବୃକ୍ଷ ଧରି ଚାହାଁନ୍ତି ତରାଟି ॥୮୯
ଶତ ଶତ ଶୃଗାଳ ରାବନ୍ତି ଘନଘନେ ।
ଧ୍ରୁବପାଶେ ମିଳନ୍ତି ସେ କୁପିତ ଲୋଚନେ ॥୯୦
ପୁଣି ଏକ ଡାକିନୀ ସୁନୀତି ରୂପ ଧରି ।
ଧ୍ରୁବର ସମୀପେ ମିଳେ ମାତୃସ୍ନେହ ଭରି ॥୯୧
ହାହା ପୁତ୍ର ବୋଲି ବେନିକର ହୃଦେ ତାଡେ ।
କେଶ-ବାସ ଅସମ୍ଭାଳ ପୁଣ ପୁଣ ପଡେ ॥୯୨
ବହୁମାୟା ବିନିର୍ମିତ ଚାଟୁବାକ୍ୟ କହେ ।
ଜନନୀ ବାଳକ ଭାବେ କେହୁ ବା ତା ସହେ ।୯୩
ଅତ୍ୟନ୍ତ କାରୁଣ୍ୟେ ପୁତ୍ରସ୍ନେହେ ସେ ରୋଦନ ।
ପୁଣି ସ୍ଥିର କରି ଚାହେଁ ଧ୍ରୁବର ବଦନ ॥୯୪
ତୁହି ମୋର ଏକପୁତ୍ର ସଙ୍ଗେ କେହି ନାହିଁ ।
କେବଳ ତୋହର ଧ୍ୟାନେ ପ୍ରାଣ ମୁଁ ଧରଇ ॥୯୫
ତୁହି ମୋ ରକ୍ଷକ ତୋର ତହୁଁ ଆନ ନାହିଁ ।
ତୋର ବନଗମନେ ଅଜ୍ଞାନ ମୋର ଦେହୀ ॥୯୬
ତୋର ବିନୁ ମରଣ ନିକଟେ ମୋର ମିଳେ ।
କାଳସର୍ପ ପ୍ରାୟ ମୋତେ ନିରନ୍ତରେ ଗିଳେ ॥୯୭
ତୋହର ଉଦ୍ଦେଶ୍ୟେ ମୁଁ ଅନେକ-ଗ୍ରାମ-ପୁରେ ।
ଖୋଜି ନ ପାଇଲି ବଳା ଅନେକ ପ୍ରକାରେ ॥୯୮

Dr. Sudhanshu Sekhar Mishra

ବନ-ଗିରି-କନ୍ଦର-ପାଟଣା-ପୁରେ ଖୋଜି ।
ପ୍ରାଣରକ୍ଷା କରଇ ଉଦକ-ପତ୍ର ଭୁଞ୍ଜି ॥୯୯
ଯେଉଁ ଦିନୁ ମୋର ପୁରୁ ହୋଇଲୁ ବାହାର ।
ନିତ୍ୟେ ଲୁହ ସ୍ରବଇ କଣ୍ଠରେ ହାହାକାର ॥୧୦୦
ଯେତେଦିନ ତୋହର ବିହୁନେ ଥିଲି ମୁହିଁ ।
ସପତ୍ନୀର ବଚନ ମୁଁ ନ ପାରଇ ସହି ॥୧୦୧
ଦାବାଗ୍ନି ଯେସନେ ବନ ଦହେ ଅତି ବଳେ ।
ମୋର ପ୍ରାଣ ଦହିଲା ସପତ୍ନୀ ବାକ୍ୟାନଳେ ॥୧୦୨
ନିଦ୍ରା ଉଜାଗର ମୁହିଁ ନ ଜାଣଇ କିଛି ।
ଶୟନ-ଭୋଜନ-ପାନ କିଛି ହିଁ ନ ଇଚ୍ଛି ॥୧୦୩
ରାତ୍ରିଦିନ ଯୋଗୀ ପ୍ରାୟେ କରେ ତୋତେ ଧ୍ୟାନ ।
ସ୍ୱପନେ ଦେଖଇ ମୁଁ ଯେ ତୋହର ବଦନ ॥୧୦୪
ତୋହର ବଦନ ପ୍ରତିଦିନ ମୁଁ ନ ଦେଖି ।
ତୋ'ର ମୁଖ-ଧ୍ୟାନେ ମୋର ସ୍ରବେ ବେନିଆଖି॥୧୦୫
ତୋହର ମଧୁର-ବାକ୍ୟ ଶୁଭେ ମୋର କର୍ଣ୍ଣେ ।
ଏବେ ମୋତେ ନ ରୁଚଇ କୋକିଳ ବଚନେ ॥୧୦୬
ତୋର ଅଙ୍ଗ-ସଙ୍ଗ-ଧୂଳି ମୋ' ଅଙ୍ଗେ ଧୂସର ।
ଶୀତଳ-ତପତ ମୋତେ ନ ବାଧେ ଶରୀର॥୧୦୭
କେତେ ବନଗିରି ଯେ ସରିତ ସର କୂଳେ ।
ଭ୍ରମୁଅଛି ରାତ୍ରିଦିବା ତୋହର ବିକଳେ ॥୧୦୮
ତୋତେ ନ ଦେଖିଲେ ମୋ'ର ହୋଇବ ମରଣ ।
ଅନ୍ତର୍ଗତ-ଅନଳେ ଦହଇ ରାତ୍ରିଦିନ ॥୧୦୯
ଚରଣ ଚାଲିବା ମୋ' ବିବର୍ଣ୍ଣ ଦେଖ ବଳା ।
ସ୍ୱଭାବେ ରକ୍ତିମା ଥିଲା ଏବେ ଦେଖ କଳା ॥୧୧୦
ଧ୍ରୁବ ବିନୁ ଅଧ୍ରୁବ ଦେଖଇ ବିଶ୍ୱ ମୁହିଁ ।
ଅନ୍ଧକାର ଦଶଦିଶ କିଛି ନ ଦିଶଇ ॥୧୧୧
ନିତ୍ୟେ ଡାକ ଦେଉ ଧାତା ରଖ ମୋର ପ୍ରାଣ ।
ଧ୍ରୁବ ଘେନି ତୋର ପାଦେ ପଶିଲି ଶରଣ ॥୧୧୨
ତୁ ମୋର ଅନ୍ଧରଯଷ୍ଟି ଦେଖ ପୁତ୍ର ମୁଖ ।
ପୁତ୍ରକୁ ଉଦରେ ଧରି ପାଉଅଛି ଦୁଃଖ ॥୧୧୩
ତୋର ଅଙ୍ଗ ସୁକୋମଳ ବାହୁ ସୁଲଳିତ ।
ବାବୁ ଏ ଦାରୁଣ-ତପ କଲୁ ବିପରୀତ ॥୧୧୪
ଦୁଷ୍କର ସାଧନ ତପ ଅତି ଗୁରୁତର ।
କର୍ମସାଧ୍ୟ ପୁରୁଷକୁ ଅଟଇ ସୁନ୍ଦର ॥୧୧୫

ଅଳ୍ପଲୋକେ କର୍ମ ସାଧ୍ୟ କେବେହେଁ ନୁହଇ ।
ନଜାଣି ଦୁଃସହ-କର୍ମ କିପାଁ ଭୁଞ୍ଜୁ ତୁହି ॥୧୧୬
ସୁଲକ୍ଷଣ-ତନୁ ତୋର ସ୍ୱଭାବେ ସୁନ୍ଦର ।
ରାଜ-ଅଇଶ୍ୱର୍ଯ୍ୟ-ଭୋଗ ତୋତେ ନୁହେ ଦୂର ॥୧୧୭
ଏ ବାଳ-ବୟସେ ତୋର ଖେଳ ନିରନ୍ତର ।
ସାତ-ପାଞ୍ଚ ବାଳକର ସଙ୍ଗତେ ବିହାର ॥୧୧୮
କୁମାର-ବୟସେ ବିଦ୍ୟା ଅଭ୍ୟାସ କାରଣେ ।
ନାନା-ତର୍କ-ବିତର୍କ ଶବଦ-ଉଚ୍ଚାରଣେ ॥୧୧୯
ପୁଣି ବିଶ୍ୱ ସଂସାରେ ସ୍ୱଧର୍ମ-କର୍ମ କରି ।
କୁଳ-ଶୀଳ-ଶୁଚିଯୁକ୍ତା କନ୍ୟା ଘରେ ବରି ॥୧୨୦
ଧର୍ମ-ଧନ ସଞ୍ଚୟ ସନ୍ତତି ଜନ୍ମ କରି ।
ବିଷୟ-ସମ୍ମୋହେ ଚିତ୍ତ ଅତି ଦୃଢ଼େ ଧରି ॥୧୨୧
ନାନା-ସୁଖେ ଭୋଗ କରି ଇନ୍ଦ୍ରିୟ ରୋଧନେ ।
ପଞ୍ଚାଶ-ବରଷେ ପୁଣି ପ୍ରବେଶିବୁ ବନେ ॥୧୨୨
ନାନା-ଧର୍ମ ତପ ସାଧ୍ୟ କରି ବନବାସେ ।
ସନ୍ନ୍ୟାସ-ଗ୍ରହଣେ ଚିତ୍ତ ଯୋଗର ଅଭ୍ୟାସେ ॥୧୨୩
ଏ ଜନ୍ମ-ମରଣ ଭାବ ଚିତ୍ତେ ପରିମାଣି ।
ନିର୍ବିକାର-ବ୍ରହ୍ମରୂପେ ପ୍ରବେଶନ୍ତି ପ୍ରାଣୀ ॥୧୨୪
ସଂସାରର ଧର୍ମ ଏ ଯେ ପରମ-କାରଣ ।
ଏ ମୋର ବଚନ ପୁତ୍ର ସାବଧାନେ ଶୁଣ ॥୧୨୫
ବାଲ୍ୟକାଳେ ତପସାଧି ସିଦ୍ଧ ନୋହେ କେବେ ।
ଚିତ୍ତ-ବୃତ୍ତି ଅତିଶୟ ସଚଞ୍ଚଳ ଯେବେ ॥୧୨୬
ଶତ୍ରୁ-ପରାଭବେ ଯେବେ ତପ ସାଧ୍ୟ କରେ ।
ହିଂସା-ଫଳ ଲଭେ ପ୍ରାଣୀ କେବେ ହେଁ ନ ତରେ ॥୧୨୭
ଅଧର୍ମ-ତପ-ନିବୃତ୍ତି ହୁଅ ଏବେ ସୁତ ।
ଏ ସ୍ୱଭାବେ ନୁହେଁ ଧର୍ମ ସାଧୁଙ୍କର ମତ ॥୧୨୮
ଏମନ୍ତ ବଚନ ଯହୁଁ ମାତୃଭାବେ ଶୁଣି ।
ସମାଧି-ଯୋଗରେ ଧ୍ରୁବ ମନେମନେ ଗୁଣି ॥୧୨୯
ବିଚାରଇ ଜନନୀ ଏ ନୋହଇ ମୋହର ।
ନିଶ୍ଚୟେ ଜାଣିଲି ଏ ଆସୁରୀ-ମାୟା ଘୋର ॥୧୩୦
ଏମନ୍ତ ବିଚାରି ମନ-ନିଶ୍ଚଳେ ରହିଲା ।
ରଖ ହେ ଗୋବିନ୍ଦ ବୋଲି ଶରଣ ପଶିଲା ॥୧୩୧
ସମସ୍ତ ଦେବତା ମିଳି ଇନ୍ଦ୍ରର ବଚନେ ।
ଯେତେ-ମାୟା ପ୍ରକାଶିଲେ ଧ୍ରୁବ ସନ୍ନିଧାନେ ॥୧୩୨

ଧ୍ରୁବ-ତପ-ଭଙ୍ଗେ କେହି ସମର୍ଥ ନୋହିଲେ ।
ବିଷ୍ଣୁ-ଚକ୍ର-ତେଜ ଧ୍ରୁବ ନିକଟେ ଦେଖିଲେ ॥୧୩୩
ସକଳେ ଭାଜିଲେ ତେଜ ଦେଖି ଧ୍ରୁବଦେହେ ।
ନିଶି ଅନ୍ଧକାର ଯେହ୍ନେ ତପନ ଉଦୟେ ॥୧୩୪
ସର୍ବଭୂତେ ଧ୍ରୁବର ଚରଣେ ପ୍ରଣମିଲେ ।
ବ୍ୟର୍ଥ-ମନୋରଥେ ନିଜ ଭୁବନେ ମିଳିଲେ ॥୧୩୫
ଇନ୍ଦ୍ର-ଆଦି ଦିଗପାଳେ ଭୂତବଳ ଭଗେ ।
ପୁଣି ବିଚାରନ୍ତି ବସି ବିଘ୍ନ-ଅନୁମାନେ ॥୧୩୬
ବିଘ୍ନ କରି ନ ପାରି ସକଳ ଦେବଗଣେ ।
ଶରଣ ପଶିଲେ ଯାଇ ଶ୍ରୀହରି ଚରଣେ ॥୧୩୭
ନାରାୟଣ ଚରଣେ ନମିଲେ ଦେବଗଣ ।
ଦେଖି ହରି ପ୍ରଶ୍ନ କଲେ ଗମନ କାରଣ ॥୧୩୮
ଗୋବିନ୍ଦ ବଚନ ଶୁଣି ଶିରେ କରଯୋଡ ।
ଦେବଗଣେ କହନ୍ତି ଚରଣତଳେ ପଡି ॥୧୩୯

ଗଣ-ଉବାଚ

ଉତ୍ତାନ ପାଦର ପୁତ୍ର ଧ୍ରୁବ ତପ-ବଳେ ।
ସମୁଦ୍ର-ଗିରି ସହିତେ ଧରଣୀ କମ୍ପିଲେ ॥୧୪୦
ଆମ୍ଭେ ରହି ନ ପାରିଲୁ ଗଗନ-ମଣ୍ଡଳେ ।
ତା'ର ତପେ କମ୍ପିଲେ ସକଳ-ଦିଗପାଳେ ॥୧୪୧
ତ୍ରୈଲୋକ୍ୟ ସକଳେ କେହି ନ ପାରିଲୁ ରହି ।
ନ ଜାଣୁ କାହାର ପଦ ମନେ ସେ ବାଞ୍ଛଇ ॥୧୪୨

ମୈତ୍ରେୟ ଉବାଚ

ଏମନ୍ତ ବଚନ ସେ ଦେବଙ୍କ ମୁଖୁ ଶୁଣି ।
ଅଧୋମୁଖେ ହରଷେ ରହିଲେ ଚକ୍ରପାଣି ॥୧୪୩
ଧ୍ରୁବ-ତପେ ହୀନ-ତେଜ ଦେଖି ଦେବଗଣ ।
ହରଷେ କହନ୍ତି ଧ୍ରୁବ ତପର କାରଣ ॥୧୪୪

ଭଗବାନ ଉବାଚ

ମୋହର ବଚନ ଏବେ ଶୁଣ ଦେବଗଣେ ।
ଯେ ନିମିତ୍ତେ ଧ୍ରୁବ ତପ କରଇ ଅରଣ୍ୟେ ॥୧୪୫
ପିତା-ଜାନୁ-ଆରୋହଣେ ଧ୍ରୁବ ଇଚ୍ଛା କଲା ।
ତାହା ଦେଖି ମାତୃ-ସପତଣୀ ଝିଙ୍କାସିଲା ॥୧୪୬
ତାରବାକ୍ୟ-କୁଳିଶରେ ହୃଦୟେ ଦହିଲା ।
ମାତାର ବଚନେ ଧ୍ରୁବ ତପ ଆଚରିଲା ॥୧୪୭

Dr. Sudhanshu Sekhar Mishra

ଘୋର-ତପବଳେ ତା'କୁ ଆମ୍ଭେ ବର ଦେବୁ ।
ତ୍ରିଲୋକ ଉପରେ ନେଇ ଧ୍ରୁବେ ବସାଇବୁ ॥୧୪୮
ତୁମ୍ଭ ଅଧିକାରେ ପ୍ରୟୋଜନ ନାହିଁ ତା'ର ।
ନିଶ୍ଚିନ୍ତେ ଗମନ ଦେବେ କର ନିଜପୁର ॥୧୪୯
ବିଷ୍ଣୁ-ଭକ୍ତ-ପ୍ରାଣୀ ବିଷ୍ଣୁ ପ୍ରାୟେ ଦେଖେ ସର୍ବ ।
କେବେ ହେଁ ଅପରବଳ ନ କରଇ ଖର୍ବ ॥୧୫୦
ତା'ର ତପ ଦେଖି କୋପ ନ କରିବ ଚିତ୍ତେ ।
ନିରତେ ରହିବ ସର୍ବପ୍ରାଣୀଙ୍କର ହିତେ ॥୧୫୧
ଆମ୍ଭର ଆଦେଶେ ଧ୍ରୁବ-ସ୍ଥାନେ ସେ ବସିବ ।
ତୁମ୍ଭ ଦିଗପାଳ-ପଦ ନିଶ୍ଚଳେ ରହିବ ॥୧୫୨

### ମୈତ୍ରେୟ ଉବାଚ

ଏମନ୍ତ ବିଷ୍ଣୁର ବାକ୍ୟ ଶୁଣି ସାବଧାନେ ।
ନିଜପୁରେ ଦିଗପାଳେ ଗଲେ ତୋଷମନେ ॥୧୫୩
ଶୁକ କହେ ଶୁଣ ପରୀକ୍ଷିତ ନୃପମଣି ।
ଧ୍ରୁବତପେ ତା'ରେ ଦୟା କଲେ ଚକ୍ରପାଣି ॥୧୫୪
ଗରୁଡ଼ ଆସନେ ବସି ଚତୁର୍ଭୁଜ ରୂପେ ।
କାଳିନ୍ଦୀ-ତଟେ ମିଳିଲେ ଧ୍ରୁବର ସମୀପେ ॥୧୫୫
ମଧୁର-ବଚନେ କିବା ଅମୃତ-ବରଷେ ।
ସର୍ବଦେବ ଦେଖୁଛନ୍ତି ବିସ୍ମିତେ ଆକାଶେ ॥୧୫୬
ଧ୍ରୁବକୁ ଅନାଇ ହରି ପ୍ରସନ୍ନ-ବଦନେ ।
ତପ-ତେଜ-ଶାନ୍ତିକର ଅମୃତ ବଚନେ ॥୧୫୭

### ଭଗବାନ ଉବାଚ

ବର ମାଗ ପ୍ରସନ୍ନ ହୋଇଲି ମୁହିଁ ତୋତେ ।
ତପିଗଣେ ଶ୍ରେଷ୍ଠ ତୁ ହୋଇଲୁ ସର୍ବମତେ ॥୧୫୮
ବାଳକ-ଶରୀର ତୋର ଅତି ସୁକୁମାର ।
କିପାଁ ବନବାସେ ତୋର ତପସ୍ୟା କଠୋର ॥୧୫୯
ଏମନ୍ତ ବଚନ ବିଷ୍ଣୁ ମୁଖୁ ଶୁଣି ଧ୍ରୁବ ।
କଠୋର-ସମାଧି ଛାଡି ବହେ ମୃଦୁ ଭାବ ॥୧୬୦
ଅମୃତ-ସମାନ ବିଷ୍ଣୁ ବଚନ ଶୁଣିଲା ।
ଉନ୍ମିଳ-ଲୋଚନେ ଊର୍ଦ୍ଧ୍ୱମୁଖେ ଅନାଇଲା ॥୧୬୧
ଇନ୍ଦ୍ର-ନୀଳମଣି-ରୂପ ଗଗନେ ପ୍ରକାଶେ ।
ନୀଳୋତ୍ପଳ-ସମୂହ କି ଦିଶେ ଦଶଦିଶେ ॥୧୬୨
ଗଗନ-ମଣ୍ଡଳ-ସରୋବର ପ୍ରାୟ ହୋଇ ।
ଲକ୍ଷ୍ମୀଦେବୀ କଟାକ୍ଷେ କି ଜଗତ ମୋହଇ ॥୧୬୩
କାଦମ୍ବିନୀ ମଧ୍ୟେ ଯେହ୍ନେ ଚପଳା ବିରାଜେ ।
ଦିବ୍ୟ-ସରୋବର କିବା ନୀଳୋତ୍ପଳ ସାଜେ॥୧୬୪
ଅଗ୍ରତେ ଦେଖଇ ପୀତାମ୍ବର-ପରିଧାନ ।
ଆକାଶ-ମେରୁରେ ହେମ ବେଷ୍ଟିତ ଯେସନ॥ ୧୬୫
ଯେଣେ ଧ୍ରୁବ ଚାହିଁଇ ସେ ଉନ୍ମିଳଲୋଚନେ ।
ସର୍ବଦିଗେ ବିରାଜନ୍ତି ଗରୁଡ଼ ଆସନେ ॥୧୬୬
ଧ୍ରୁବ ବିଚାରଇ ବିଷ୍ଣୁ ରୂପ ଏ ପ୍ରମାଣ ।
ମନ୍ତ୍ରଦୀକ୍ଷା କାଳେ କହିଛନ୍ତି ମୁନିଗଣ ॥୧୬୭
ଏମନ୍ତ ବିଚାରି ସେ ଉଠିଲା ଖରତରେ ।
ଦଣ୍ଡବତେ ନମିଲା ସେ ବିଷ୍ଣୁର ପୟରେ ॥୧୬୮
ପୁଣି ଉଠି ପୁଣି ଲୋଟି କରଇ ରୋଦନ ।
ପିତାର ପ୍ରାୟେକ ମଣେ ବିଷ୍ଣୁ ଆଗମନ ॥୧୬୯
ବହୁକାଳ ପରେ ପିତା-ପୁତ୍ର ଦରଶନ ।
ବାଳକ ସ୍ୱଭାବେ ଧ୍ରୁବ କରଇ ରୋଦନ ॥୧୭୦
ବିଷ୍ଣୁ-ପାରିଷଦଗଣ ମିଳିଲେ ପ୍ରତ୍ୟକ୍ଷେ ।
ମଙ୍ଗଳ ଶବଦ ସ୍ତୁତି କରି ଅନ୍ତରୀକ୍ଷେ ॥୧୭୧
ସନନ୍ଦ ନାରଦ ସନକାଦି ମୁନି ଯେତେ ।
ସିଦ୍ଧଗଣ ସାଧ୍ୟଗଣ ଯୋଗୀନ୍ଦ୍ର ସମେତେ ॥୧୭୨
ପୁତ୍ର ଦୁଃଖ ଦେଖି ଯେହ୍ନେ ପିତା ଦୟାକରେ ।
ଧ୍ରୁବକୁ ଧଇଲେ ପ୍ରଭୁ ଟେକି ବେନିକରେ ॥୧୭୩
ଧୂଳିରେ ଧୂସର ତନୁ ଝାଡି ସ୍ନେହଭରେ ।
ବେନି-ଭୁଜେ ଆଲିଙ୍ଗିଲେ ପୁଲକ-ଶରୀରେ ॥୧୭୪
ବିଷ୍ଣୁକର ଲାଗି ଧ୍ରୁବ ତପ-ଦୁଃଖ ଗଲା ।
କୋଟିଏ ବ୍ରହ୍ମାର ବୁଦ୍ଧି ହୃଦେ ପ୍ରକାଶିଲା ॥୧୭୫
ସେ ହରି-ଚରଣେ ଯୁଗ ହୃଦେ କରି ଧ୍ୟାନ ।
ବିପ୍ର ଜଗନ୍ନାଥ କହେ ଶୁଣ ହେ ସୁଜନ ॥୧୭୬
ସେ ହରି-ଚରଣେ ନିତ୍ୟେ କର ଦୃଢ଼ଭାବ ।
ଭକତି-ବୋଇତେ ଭବ-ସଂସାରୁ ତରିବ ॥୧୭୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଧ୍ରୁବଚରିତଂ ନାମ ନବମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

### ମୈତ୍ରେୟ ଉବାଚ

ବିଷ୍ଣୁ-କର ସ୍ପରଶେ ଧ୍ରୁବର ଧ୍ରୁବମତି ।
ଶ୍ରୀହରି ଚରଣ ଚାହିଁ ଆରମ୍ଭିଲା ସ୍ତୁତି ॥୧

### ଧ୍ରୁବ ଉବାଚ

ହର ପ୍ରଜାପତି ଯା' ଶରୀରୁ ଜାତ ହୋଇ ।
ପାଳନ-ସଂହାର କରେ ଯା'ର ଆଜ୍ଞା ପାଇ ॥୨
ତୁହି ସେ ହିରଣ୍ୟଦାତା ତୁ ହିରଣ୍ୟତ୍ରାତା ।
ନମସ୍ତେ ହିରଣ୍ୟରୂପ ସୁଖମୟ ଧାତା ॥୩
ହିରଣ୍ୟକଶ୍ୟପୁ ବପୁ ନଖେ ବିଦାରଣ ।
ମାୟାଭୂତଙ୍କର ଆତ୍ମା ବହୁ ତୁ କାରଣ ॥୪
ଏଣୁ ଭୂତଙ୍କର ଗତି-ପତି ରୂପ ହୋଇ ।
ସ୍ଥିତି ହେତୁ ବିଷ୍ଣୁ -ଗର୍ଭ ବିଷ୍ଣୁ ରୂପ ବହି ॥୫
ଶ୍ରୀକୃଷ୍ଣ ଜଳଦଶ୍ୟାମ ରୂପ ଯେ ତୋହର ।
ମହାଭାରା-ସହିଷ୍ଣୁ ତୁ କୂର୍ମରୂପ-ଧର ॥୬
ଅସୁର-ଅରଣ୍ୟେ ମହାଦାବାନଳ ରୂପେ ।
ଦୈତ୍ୟ-ଦ୍ରୁମ ଛେଦନେ କୁଠାର ବହୁ ଦର୍ପେ ॥୭
ଶାର୍ଙ୍ଗଧନୁ କରେ ଧରି ରିପୁବଳ ନାଶି ।
କୌମୋଦକୀ ଗଦା ତେଜେ କଉଣପ ଧ୍ୱଂସି ॥୮
ମହାଦନୁଜ ନାଶନେ ନନ୍ଦକ ଧାରଣ ।
ନମୋ ଲକ୍ଷ୍ମୀପତି ଦକ୍ଷକରେ ସୁଦର୍ଶନ ॥ ୯
ବାସୁଦେବ ନମୋ ନମୋ ଦେବକୀନନ୍ଦନ ।
ସଙ୍କର୍ଷଣ ଅନିରୁଦ୍ଧ ଅବ୍ୟକ୍ତ କାରଣ ॥ ୧୦
ନମୋନମୋ ଯଜ୍ଞେଶ୍ୱର ପରମକାରଣ ।
ନମସ୍ତେ ନମସ୍ତେ ପ୍ରଭୁ କେଶୀ ବିମର୍ଦ୍ଦନ ॥ ୧୧
କଂସ-ବିନାଶନ ଯେ ଚାଣୂର ପ୍ରାଣହାରୀ ।
ନିଗୂଢ଼-ବନ୍ଧନୁ ମାତା ପିତାଙ୍କୁ ଉଦ୍ଧରି ॥ ୧୨
ଦାମୋଦର ହୃଷୀକେଶ ଗୋବିନ୍ଦ ଅଚ୍ୟୁତ ।
ମାଧବ ଉପେନ୍ଦ୍ର ଯେ କୈଟଭ-ପ୍ରାଣହତ ॥ ୧୩
ନାରାୟଣ ନରକ-ନାଶନ ପାପହାରୀ ।
ବାମନଙ୍କୁ ନମୋ ନମ ନମୋ ଗଦାଧାରୀ ॥ ୧୪

ଅନନ୍ତାୟ ଅନନ୍ତ ଶୟନେ ବନମାଳୀ ।
ରୁକ୍ମିଣୀବଲ୍ଲଭ ରୁକ୍ମ-ଦର୍ପ ହେଳେ ଦଳି ॥ ୧୫
ଶିଶୁପାଳ ପ୍ରାଣହର ଅସୁରଦଳନ ।
ଦାନବ ଅନ୍ତକ ଜୟ କୃଷ୍ଣ ନାରାୟଣ ॥ ୧୬
ମୁକୁନ୍ଦ ପରମାନନ୍ଦ ନନ୍ଦ-ଗୋପବାଳ ।
ନମସ୍ତେ ପୁଣ୍ଡରୀକାକ୍ଷ ଦନୁଜେନ୍ଦ୍ର କାଳ ॥ ୧୭
ନମୋ ଗୋପରୂପ-ଧର ବେଣୁବାଦ୍ୟକାରୀ ।
ଗୋପୀପ୍ରିୟ କେଶୀରିପୁ ଗୋବର୍ଦ୍ଧନଧାରୀ ॥ ୧୮
ରାମ ରଘୁନାଥ ଯେ ରାବଣ-ପ୍ରାଣହାରୀ ।
ବିଭୀଷଣ-ଶରଣ ଅଭୟ-ପଦକାରୀ ॥ ୧୯
ଅଜୟ ତୁ ଜୟରୂପେ ରଣରଙ୍ଗେ ବୀର ।
ଯୋଗ ଆଦି କାଳକଳେ ନାନାରୂପ ଧର ॥ ୨୦
ମାୟାବୀଙ୍କ ଗୁରୁ ଗଦା-ଚକ୍ର କରେ ଶୋହେ ।
ଦୈତ୍ୟଚକ୍ର-ବିମର୍ଦ୍ଦନ ବିଶ୍ୱରୂପ ବହେ ॥ ୨୧
ବଳେ ବଳଭଦ୍ର ନାମ ବଳାରାତି-ପ୍ରିୟ ।
ବଳିଯଜ୍ଞ ଭଞ୍ଜନ ଭକତ-ସ୍ନେହମୟ ॥ ୨୨
ରଣପ୍ରିୟ ହିରଣ୍ୟକଶିପୁ ବିଦାରଣ ।
ନମସ୍ତେ ପରମବ୍ରହ୍ମ ନମୋ ନାରାୟଣ ॥ ୨୩
ସତ୍ୟଗୁଣେ ଧର୍ମରୂପ ଧରୁ ଅନ୍ତରୀକ୍ଷେ ।
ସକଳ ଜଗତ-ଜୀବ ପାଳୁ ତୁ ପ୍ରତ୍ୟକ୍ଷେ ॥ ୨୪
ସହସ୍ର-ଶୀର୍ଷ ନମସ୍ତେ ସହସ୍ରବଦନ ।
ସହସ୍ର-ବାହୁ ନାସିକା ସହସ୍ର-ଶ୍ରବଣ ॥ ୨୫
ସର୍ବଭୂତ ଅନ୍ତଶ୍ଚକ୍ଷୁ ସହସ୍ର-ଚରଣ ।
ଦିବସେ କିରଣ ରୂପ ସହସ୍ର-କିରଣ ॥ ୨୬
ସହସ୍ର-ମୂରତି ଲକ୍ଷ୍ମୀକାନ୍ତ ଦିବ୍ୟଦେହ ।
ସୁଯଜ୍ଞ-ପୁରୁଷ ତୁ ସକଳ-ହବିର୍ବହ ॥ ୨୭
ତୋହର ସ୍ୱରୂପ ବେଦପୁରୁଷେ ଜାଣନ୍ତି ।
ବେଦପ୍ରିୟ ବୋଲି ତୋତେ କରୁଥା'ନ୍ତି ସ୍ତୁତି ॥ ୨୮
ଦେବଙ୍କ ବଚନେ ଦେବ ବେଦବିଦ୍ୟା ତୁହି ।
ସଦାଚାର-ମାର୍ଗେ ତୋ'ର ଗମନ ଅଟଇ ॥ ୨୯

ନମୋ ବଇକୁଣ୍ଠ ରୂପ ବିକୁଣ୍ଠ-ନନ୍ଦନ ।
ବଇକୁଣ୍ଠବାସୀ ନିର୍ବିକାର ନିରଞ୍ଜନ ॥୩୦
ନମସ୍ତେ ଶ୍ରୀବିଷ୍ଣୁ ନମୋ ଗରୁଡ଼-ବାହନ ।
ବିଶ୍ୱକ୍‌ସେନ ନମୋ ଜଗନ୍ନାଥ ଜନାର୍ଦ୍ଦନ ॥୩୧
ତ୍ରିବିକ୍ରମ ପାଦେ ନମୋ ନମ ସତ୍ୟପ୍ରିୟ ।
ମାୟା ବିଶ୍ୱରୂପ ତୁ କେଶବ ଦିବ୍ୟଦେହ ॥୩୨
ନମ ତପସ୍କର ତପରୂପ ତୋ' ଶରୀର ।
ତପଫଳ-ସିଦ୍ଧିଦାତା ତୁ ସେ ଦାମୋଦର ॥୩୩
ସ୍ତୁତିର ନିଧାନ ସ୍ତୁତି-ଦେବ ସ୍ତୁତିପ୍ରିୟ ।
ଭକ୍ତ-ସ୍ତୁତି-ନିହିତ ତୋହର ନିଜ ଦେହ ॥୩୪
ନମ ଶ୍ରୁତିପ୍ରିୟ ସତ୍ୟାଚାର ଜଗନ୍ନାଥ ।
ଶ୍ରୁତିଜ୍ଞାନ-ସମ୍ପାଦିତ ତୋ'ର ନିଜ ଗାତ୍ର ॥୩୫
ଭକତବତ୍ସଳ କୃଷ୍ଣ ଜୟ ଯୁଗରୂପୀ ।
ଚତୁଃରୂପେ ଚଉଦଭୁବନେ ଦେହବ୍ୟାପୀ ॥୩୬
ଦେବଗଣ ମଧ୍ୟେ ତୁ ବୋଲାଉ ସୁନାସୀର ।
ନବଗ୍ରହ ମଧ୍ୟେ ତୁ ବୋଲାଉ ଦିବାକର ॥୩୭
ଚତୁର୍ଦ୍ଦଶ ଲୋକେ ବ୍ରହ୍ମଲୋକ ତୋ' ଶରୀର ।
ସପତ-ଜଳଧି ମଧ୍ୟେ କ୍ଷୀରସିନ୍ଧୁ ସାର ॥୩୮
ନଦୀଙ୍କର ମଧ୍ୟେ ଗଙ୍ଗା ସର୍ବପାପହର ।
ସରୋବର ମେଧେ ତୁହି ମାନସରୋବର ॥୩୯
ଗିରି ମଧ୍ୟେ ହିମାଳୟ ଏ ତୋହର ତନୁ ।
ଧେନୁଙ୍କ ମଧ୍ୟରେ ତୁ ବୋଲାଉ କାମଧେନୁ ॥ ୪୦
ଧାତୁ ମଧ୍ୟେ ସୁବର୍ଣ୍ଣ ସ୍ୱଟିକ ପ୍ରାୟ ଦେହ ।
ପୁଷ୍ପଙ୍କର ମଧ୍ୟେ ନୀଳୋତ୍ପଳ ପ୍ରାୟେ କାୟ ॥ ୪୧
ସର୍ବଶାଖା ମଧ୍ୟେ ତୁ ଯେ ତୁଳସୀ ବୋଲାଉ ।
ଶିଳାଙ୍କର ମଧ୍ୟେ ଶାଳଗ୍ରାମ ରୂପ ବହୁ ॥ ୪୨
ମୁକ୍ତିକ୍ଷେତ୍ର ମଧ୍ୟେ ବାରାଣସୀ ତୋ'ର ନାମ ।
ତୀର୍ଥଙ୍କର ମଧ୍ୟେ ତୁ ପ୍ରୟାଗ ନିଜ ଧାମ ॥ ୪୩
ବର୍ଣ୍ଣଙ୍କର ମଧ୍ୟେ ଶୁକ୍ଳବର୍ଣ୍ଣ ରୂପ ତୋର ।
ମନୁଷ୍ୟଙ୍କ ମଧ୍ୟେ ତୁ ବୋଲାଉ ବିପ୍ରବର ॥ ୪୪

Dr. Sudhanshu Sekhar Mishra

ପକ୍ଷୀଙ୍କର ମଧ୍ୟେ ତୁ ବିନତାସୁତ ହରି ।
ବ୍ୟବହାରେ ରହୁ ତୁ ବଚନ ରୂପ ଧରି ॥୪୫
ବେଦବାକ୍ୟ ମଧ୍ୟେ ବ୍ରହ୍ମଭାଗ ତୋ' ଶରୀର ।
ମନ୍ତ୍ରଙ୍କର ମଧ୍ୟରେ ତୁ ପ୍ରଣବ ଓଁକାର ॥୪୬
ଅକ୍ଷରଙ୍କ ମଧ୍ୟେ ତୁ ଅ କାର ଉଚ୍ଚାରଣ ।
ଯଜ୍ଞଙ୍କର ମଧ୍ୟେ ସୋମରୂପ ତୁ କାରଣ ॥୪୭
ପ୍ରଭାଙ୍କର ମଧ୍ୟେ ଅଗ୍ନିଦେବଙ୍କ ବଦନ ।
କ୍ଷମାବନ୍ତ ମଧ୍ୟେ ତୁମ୍ଭେ ଯେ ସର୍ବସହନ ॥୪୮
ଦାତାଙ୍କର ମଧ୍ୟେ ଘନରୂପୀ ଶୂନ୍ୟବାସୀ ।
ପବିତ୍ରଙ୍କ ମଧ୍ୟେ ତୁ ବୋଲାଉ ପୁଣ୍ୟରାଶି ॥୪୯
ସର୍ବଶସ୍ତ୍ର ମଧ୍ୟେ ଧନୁରୂପ ତୋ' ଶରୀର ।
ବେଗବନ୍ତ ମଧ୍ୟେ ତୁମ୍ଭେ ବୋଲାଅ ସମୀର ॥୫୦
ଇନ୍ଦ୍ରିଗଣ ମଧ୍ୟରେ ତୁ ମନ ନିର୍ବିକାର ।
ସର୍ବବ୍ୟାପୀ ମଧ୍ୟେ ବ୍ୟୋମ ଅତି ଅଗୋଚର ॥୫୧
ଆତ୍ମାଙ୍କର ମଧ୍ୟେ ତୁ ପରମଆତ୍ମା ହେଉ ।
ସର୍ବକର୍ମ ମଧ୍ୟେ ପୂର୍ବସନ୍ଧ୍ୟା ତୁ ବୋଲାଉ ॥୫୨
ଯଜ୍ଞ ମଧ୍ୟେ ଅଶ୍ୱମେଧ ନାମଦ ନିର୍ଭୟ ।
ଲାଭଙ୍କର ମଧ ପୁତ୍ରଲାଭ ତୁ ଉଦୟ ॥୫୩
ଯୁଗଙ୍କର ମଧ୍ୟେ ତୁ ପ୍ରଥମ ସତ୍ୟଯୁଗ ।
ଷଡରତୁ ମଧ୍ୟେ ତୁ ବସନ୍ତ ବଲଭୋଗ ॥୫୪
ପଞ୍ଚଦଶ-ତିଥି ମଧ୍ୟେ କୁହୁ ତୁ ବୋଲାଉ ।
ନକ୍ଷତ୍ରଙ୍କ ମଧ୍ୟେ ପୁଷ୍ୟା ରୂପେ ଉଦେ ହେଉ ॥୫୫
ପଞ୍ଚପର୍ବ ମଧ୍ୟେ ତୁ ବୋଲାଉ ସଙ୍କ୍ରମଣ ।
ଯୋଗେ ବ୍ୟତିପାତ ତୃଣ ମଧ୍ୟେ ଦର୍ଭ ପୁଣ ॥୫୬
ସର୍ବବୃକ୍ଷ ମଧ୍ୟେ ତୁ ଅଶ୍ୱତ୍ଥ ବାସୁଦେବ ।
ଲତାଙ୍କର ମଧ୍ୟେ ସୋମଲତା ପଦ୍ମନାଭ ॥୫୭
ସର୍ବମନ୍ତ୍ର ମଧ୍ୟେ ତୁ ପ୍ରଥମ ପ୍ରାଣାୟମ ।
ସର୍ବଲିଙ୍ଗ ମଧ୍ୟେ ବିଶ୍ୱେଶ୍ୱର ତୋର ନାମ ॥୫୮
ସର୍ବକର୍ମ ଉପରେ ନିର୍ବାଣଦାତା ତୁହି ।
ସର୍ବବୁଦ୍ଧି ମଧ୍ୟେ ଧର୍ମବୁଦ୍ଧି ତୁ ଗୋସାଇଁ ॥୫୯
ମିତ୍ର ମଧ୍ୟେ ପତ୍ନୀ ତୁହି ବନ୍ଧୁ ମଧ୍ୟେ ଧର୍ମ ।
ଚରାଚର ମଧ୍ୟେ ନାହିଁ ତୋହ ତହୁଁ ଆନ ॥୬୦

ତୁ ସେ ମାତାପିତା ବନ୍ଧୁ ତୁ ସେ ମହାଧନ ।
ସର୍ବ ସୁଖ ସମ୍ପଦ ତୁ ଜୀବର ଜୀବନ ॥୬୧
ତାହାକୁ ସେ କଥା ବୋଲି ଯହିଁ ତୋ'ର ନାମ ।
ସେ ମନକୁ ମନ ବୋଲି ଯହିଁ ତୋ'ର ଧ୍ୟାନ ॥୬୨
ଯେ କର୍ମ ତୋହର ଅର୍ଥେ କରି ସେହି କର୍ମ ।
ତାହା ଛାଡି ଅନ୍ୟମାର୍ଗେ ଯେତେ କରି ଭ୍ରମ ॥୬୩
ତୁମ୍ଭର ସ୍ମରଣକୁ ଯେ ବୋଲି ଘୋରତପ ।
ଧନ୍ୟ ଧନ୍ୟ ବୋଲି ଯେ ସେବନ୍ତି ତୋ'ର ରୂପ ॥୬୪
ତୋ'ର କାର୍ଯ୍ୟ ଅର୍ଥେ ଯେତେ ବେଳ ଯାଇ ବହି ।
ସର୍ବ-ଶୂନ୍ୟ-ମାର୍ଗେ ଯାଇ ତେତେମାତ୍ର ରହି ॥୬୫
ଯେତେବେଳେ ଧ୍ୟାନମତେ ହୃଦେ ରହୁ ତୁହି ।
ତେତେବେଳେ ଜୀବନର ସୁଫଳ ଫଳଇ ॥୬୬
ତବ ପାଦ-ଉଦକ ସକଳ-ବ୍ୟାଧି ହରେ ।
ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗ ସ୍ଫୁରେ ॥୬୭
ବହୁ-ଜନ୍ମାନ୍ତରେ ଯେ ଅର୍ଜିତ ପାପଫଳ ।
ତୋ'ର ନାମେ ଦହେ ଯେହ୍ନେ ବନେ ଦାବାନଳ ॥୬୮
ବାସୁଦେବ-ସ୍ମରଣେ ଯାହାର ଅନ୍ୟ-ମତି ।
କେବେହେଁ ନ ଲଭେ ନାଥ ଆତ୍ମା ସଦଗତି ॥୬୯
ପ୍ରାଣୀଙ୍କର ମାୟାମୋହ ପ୍ରମାଦଟି ସେହି ।
କୃଷ୍ଣକଥା ଛାଡି ଅନ୍ୟେ ପୀରତି କରଇ ॥୭୦
ସେହିଟି ମଙ୍ଗଳ ମହାଧନ-ଅରଜନ ।
ଜୀବନର ସୁଗତିଟି ଗୋବିନ୍ଦ-କୀର୍ତ୍ତନ ॥୭୧
ଧର୍ମ-ଅର୍ଥ-କାମ-ମୋକ୍ଷ ହରି-ଉଚାରଣେ ।
ଯାବତ ଜୀବନ ରହେ ପରମ-କାରଣେ ॥୭୨
ଏହି ପାପ-ଦୁଃଖମୟ ଅନିତ୍ୟ ସଂସାରେ ।
ବାସୁଦେବ ସ୍ତୁତି ଛାଡି ଯେ ଅନ୍ୟ ଉଚ୍ଚାରେ ॥୭୩
ହରି ଆରାଧନ ଜ୍ଞାନ ଯେ କରେ ସଂସାରେ ।
ପୁତ୍ର ମିତ୍ର କଳତ୍ର ତା ମୋକ୍ଷ ଅଧିକାରେ ॥୭୪
କଲୁଷ ହରଇ ଆଧିବ୍ୟାଧି ନାଶ କରେ ।
ଧର୍ମଜ୍ଞାନ ପ୍ରସରଇ ଯେବା ଅନୁସରେ ॥୭୫
ତୋହର ଚରଣଯୁଗେ ଯେବା ଆଶ୍ରେ କରେ ।
ସାଧୁଜନ ପ୍ରସଙ୍ଗରେ ସର୍ବପାପହରେ ॥୭୬

ଅଜ୍ଞାନେ ଅନଳ ଯେହ୍ନେ ଶରୀର ଦହଇ ।
ବିମନେ ଶୁଣିଲେ ନାମ ଦୁରିତ ନାଶଇ ॥୭୭
ଏହିଟି ପରମଧର୍ମ ଏ ପରମତେଜ ।
ଯା'ର ଦେହେ ନିତ୍ୟେ ଲାଗେ ହରିପାଦରଜ ॥୭୮
ଭକ୍ତିଯୋଗେ ବିଷ୍ଣୁର ନିର୍ମାଲ୍ୟ ଯେ ଭକ୍ଷଇ ।
ଅଶେଷ କୋଟି ଜନ୍ମର ପାପକୁ ନାଶଇ ॥୭୯
ବିଷ୍ଣୁ-ପାଦୋଦକ ଶଙ୍ଖେ ଭରି ସ୍ନାନ କରେ ।
ଗଙ୍ଗାସ୍ନାନ ଦାନ ଫଳ ଲଭଇ ସତ୍ୱରେ ॥୮୦
ଶାଳଗ୍ରାମ ଶିଳା ଯେ ତୁଳସୀ ଦଳେ ପୂଜେ ।
ପାରିଜାତ ମାଳା ହୃଦେ ବସେ ସ୍ୱର୍ଗରାଜ୍ୟେ ॥୮୧
ବିପ୍ର ଆଦି ଚାରିବର୍ଣ୍ଣ ଅନ୍ୟ ଜାତି ଯେତେ ।
ସକଳେ ପୂଜା କରନ୍ତି ବିଷ୍ଣୁର ଭକତେ ॥୮୨
ଶଙ୍ଖ-ଚକ୍ରାଙ୍କିତ ଯା'ର ତନୁ ନିତ୍ୟେ ଶୋହେ ।
ଗୋପୀଚନ୍ଦନ ଅଙ୍କିତ ନିତ୍ୟେ ପାପ ଦହେ ॥୮୩
ନିତ୍ୟେ ହେ ଦ୍ୱାଦଶଚିତା ଚକ୍ରାଙ୍କିତ ତୁଳେ ।
ଅଚିନ୍ତ୍ୟ ବୈକୁଣ୍ଠପୁରେ ସ୍ଥାନ ଲଭେ ହେଳେ ॥୮୪
ତୁଳସୀବନ ଯେ ରୋପେ ବିଷ୍ଣୁପୂଜା ଅର୍ଥେ ।
ତା'ର ଗୃହେ ପ୍ରବେଶ ନ ହୋନ୍ତି ଯମଦୂତେ ॥୮୫
ନିରନ୍ତରେ ବୋଲଇ ଯେ ରାମ କୃଷ୍ଣ ହରି ।
ସାଧୁଜନ ଦେଖିଣ ଆନନ୍ଦେ ସେବାକରି ॥୮୬
ଲଲାଟେ ଗୋପୀଚନ୍ଦନ ମୁଖେ କୃଷ୍ଣ ହରି ।
ତୁଳସୀ-ମଞ୍ଜରୀମାଳା ଯେବା କଣ୍ଠେ ଧରି ॥୮୭
ଯମଦୂତେ ନୁହଁନ୍ତି ତାହାକୁ ଅଧିକାରୀ ।
ସ୍ୱାମୀର ବଚନ ଦୃଢ଼ଚିତ୍ତେ ଶିରେ ଧରି ॥୮୮
ଶ୍ରୀଗୋପୀଚନ୍ଦନ ଯେ ତୁଳସୀ ଶାଳଗ୍ରାମ ।
ଶଙ୍ଖ ଚକ୍ରାଙ୍କିତଶିଳା ସହିତେ ପଞ୍ଚମ ॥୮୯
ଏହି ପଞ୍ଚଦ୍ରବ୍ୟ ଯା'ର ନିତ୍ୟେ ରହେ ଗୃହେ ।
ତାହାକୁ ଦେଖନ୍ତେ ପାପ ବେଗେ ନାଶ ଯାଏ ॥୯୦
ଗୋବିନ୍ଦ ପରମାନନ୍ଦ ଶ୍ରୀମଧୁସୂଦନ ।
ତୋହର ଚରଣବିନ୍ଦୁ ନ ଜାଣଇ ଆନ ॥୯୧
ଜଳ ସ୍ଥଳ ପାତାଳ ସମୂହେ ନିରନ୍ତର ।
ବିଦ୍ୟାଧର ସୁରାସୁର ଗନ୍ଧର୍ବ କିନ୍ନର ॥୯୨

Dr. Sudhanshu Sekhar Mishra

ତୃଣ ଗୁଳ୍ମ ଲତା ତରୁ ପାଷାଣ ସହିତେ ।
ସର୍ବତ୍ର ସମାନରୂପ ଦେଖୁ ଅବିରତେ ॥ ୯୩
ପ୍ରାଣୀଦେହେ ଅନ୍ତର୍ଯ୍ୟାମୀ ରୂପେ ତୁମ୍ଭେ ଅଛ ।
ଏହି ରୂପେ ସର୍ବଦିଗେ ଦେଖଇ ପ୍ରତ୍ୟକ୍ଷ ॥ ୯୪
ଏଣୁ ତୋ ଚରଣେ ପୁଣପୁଣନମସ୍କାର ।
ବୁଡିଲି ମୋହସଂସାରେ ବାରେକ ଉଦ୍ଧର ॥ ୯୫
ନମାମି ଗୋବିନ୍ଦ ନାରାୟଣ ଦାମୋଦର ।
ବନମାଳୀ ବାସୁଦେବ ନମୁଁ ତୋ ପୟର ॥ ୯୬
ପାଦପଦ୍ମ ତଳେ ନାଥ ଶରଣ ମୁଁ ତୋ'ର ।
ଏ ଭବସାଗରୁ ପ୍ରଭୁ ଉଦ୍ଧରିଣ ଧର ॥ ୯୭

ମୈତ୍ରେୟ ଉବାଚ

ଏତେ ସ୍ତୁତି କରି ଧ୍ରୁବ ମଉନେ ରହିଲା ।
ନିଶ୍ଚଳେ ଗୋବିନ୍ଦ-ପାଦେ ଚିତ୍ତ ସମର୍ପିଲା ॥ ୯୮
ତାହାର ଭକତିଭାବ ଗୋବିନ୍ଦ ଜାଣିଲେ ।
ଗରୁଡୁ ଉତୁରି ଧ୍ରୁବ ଛାମୁରେ ମିଳିଲେ ॥ ୯୯
ଧ୍ରୁବଙ୍କୁ ଲଗାଇ ହୃଦେ କମଳାରମଣ ।
କହନ୍ତି ମଧୁରବାକ୍ୟେ ପ୍ରଭୁ ନାରାୟଣ ॥୧୦୦

ଶ୍ରୀଭଗବାନ୍ ଉବାଚ

ଶୁଣ ହୋ ବାଳକ ମୁଁ ଜାଣଇ ତୋ'ର ମନ ।
ଘୋରତପ କଲୁ ଶୁଣି ଜନନୀ-ବଚନ ॥୧୦୧
ତୋ'ର ମନ-ବାଞ୍ଛିତ ଜାଣଇ ମୁହିଁ ଭଲେ ।
ଧ୍ରୁବଲୋକେ ବସାଇବି ଜନନୀର ତୁଲେ ॥୧୦୨
ଧ୍ରୁବଲୋକେ ଅଧିକାର ତୋହର ହୋଇଲା ।
କୋଟି-କଳ୍ପାନ୍ତରେ ଯାହା କେହି ନ ପାଇଲା ॥୧୦୩
ତୋ'ର ପିତୃ-ପିତାମହେ ଅଗୋଚର ସ୍ଥାନ ।
ସେ ସ୍ଥାନେ ତୋ ବିନୁ ବାଳ ବସିବ କେ ଆନ ॥୧୦୪
ସ୍ୱର୍ଗଲୋକ ଊର୍ଦ୍ଧ୍ୱଦେଶେ ମହଲୋକ ତଳେ ।
ତ୍ରୈଲୋକ୍ୟ-ପ୍ରଳୟ କାଳେ ନ ଦହେ ଅନଳେ ॥୧୦୫
ଶିଶୁମାରଚକ୍ରେ ବସେ ଧ୍ରୁବ ଅଧିକାର ।
ଯେ ଚକ୍ର ଭ୍ରମନ୍ତେ ନିତ୍ୟେ ଭ୍ରମେ ଦିବାକର ॥୧୦୬
ଗ୍ରହ ଋକ୍ଷ ଋଷି ଚନ୍ଦ୍ର ତପନ ସହିତେ ।
ଦାମିନୀ ବନ୍ଧନେ ଛନ୍ତି ସମୀରଣ-ତନ୍ତ୍ରେ ॥୧୦୭

ସେହିସ୍ଥାନେ ଗ୍ରହଚକ୍ରେ ବସ ତୁ ନିଶ୍ଚିନ୍ତେ ।
କଳ୍ପ ସଂଖ୍ୟା ରହ ମନୋରଥ ପୂର୍ଣ୍ଣ ଅନ୍ତେ ॥୧୦୮
ପୂର୍ବେ ମହାଦେବ-ବରେ ସେ ସ୍ଥାନ ମୋହର ।
ମୁହିଁ ଦେଲି ଧ୍ରୁବ ତୁ ନିଶ୍ଚିନ୍ତେ ଭୋଗ କର ॥୧୦୯
ମନୁ ଯାହା ନ ପାଇଲେ କି ଅନ୍ୟ ମାନବେ ।
ଜନନୀ ସହିତେ ବାଳ ସୁଖେ ଭୁଞ୍ଜ ଏବେ ॥୧୧୦
ପୂର୍ବେ ତୁହି ବ୍ରହ୍ମ-ପୁତ୍ର ରାଜପୁତ୍ର ସଙ୍ଗେ ।
ମିତ୍ରପଣେ ରହି ଚିତ୍ତ କଳ୍ପିଅଛୁ ଭୋଗେ ॥୧୧୧
ଏଣୁ ପୁଣ୍ୟବଳେ ରାଜକୁଳେ ହେଲୁ ଜନ୍ମ ।
ଏବେ ତପଫଳେ ଭୁଞ୍ଜ ସମ୍ପାଦିଲା କର୍ମ ॥୧୧୨
ଶୁଣ ଧ୍ରୁବ ଏକଚିତ୍ତେ କହିବଇଁ ତୋତେ ।
ତପସ୍ଥାନେ ରହି ସ୍ତୁତି କଲୁ ମୋତେ ଯେତେ ॥୧୧୩
ସର୍ବ-ସ୍ତୋତ୍ରଙ୍କର ରାଜ ଏ ସ୍ତୋତ୍ର ପ୍ରତ୍ୟକ୍ଷେ ।
ଯେ ନର ଏ ସ୍ତୁତି ପଢେ ମୋହର ସମକ୍ଷେ॥୧୧୪
ତ୍ରିସନ୍ଧ୍ୟା ପଢନ୍ତି ଯେବା ନିତ୍ୟେ ଇଷ୍ଟ କରି।
ତ୍ରିବିଧ-ପାତକବନ୍ଧୁ ବେଗେ ଯା'ନ୍ତି ତରି ॥୧୧୫
ତାହାର ଭୁବନ ଲକ୍ଷ୍ମୀ କେବେହେଁ ନ ତେଜେ।
ଜନନୀ ବନ୍ଧୁ ବିଯୋଗ କେବେହେଁ ନ ଭଜେ॥୧୧୬
ଏ ତୋହର ପୁଣ୍ୟସ୍ତୁତି ପାପ ବିନାଶିନୀ ।
ବ୍ରହ୍ମହତ୍ୟା ଦୋଷ ହରେ ମୋର ଆଜ୍ଞା ଘେନି ॥୧୧୭
ଶ୍ରଦ୍ଧାଯୁକ୍ତେ ମୋର ନାମ ଯେବା ନର ପଢେ।
ସୁଖେ ମୋହଜଳୁ ତରେ କେବେହେଁ ନ ବୁଡେ ॥୧୧୮
ଗ୍ରହପୀଡା ମହାବ୍ୟାଧି ସର୍ବଦୁଃଖ ହରେ ।
ସର୍ବତୀର୍ଥ-ସ୍ନାନ ଫଳ ଲଭେ ବସି ଘରେ ॥୧୧୯
ଅପୁତ୍ରିକ ପୁତ୍ର ଯେ ନିର୍ଦ୍ଧନ ଧନ ଲଭେ ।
ଅଭକ୍ତ ଭକ୍ତି ଲଭଇ ତୋ'ର ସ୍ତୁତି ଭାବେ ॥୧୨୦
ନାନାଦାନ ନାନାତପ ନାନାବ୍ରତ କରି ।
ଯେ ତୋହୋର ସ୍ତୁତି ପଢେ ମୋର ଭାବ ଭରି॥୧୨୧
ଚତୁର୍ବର୍ଗମୁକ୍ତି ତା'ର କରତଳେ ରହି ।
ନିତ୍ୟେ ଯେ ଭଜନ୍ତି ମୋ' ଚରଣେ ଚିତ୍ତ ଦେଇ ॥୧୨୨

ମୈତ୍ରେୟ ଉବାଚ

ଏମନ୍ତ ପ୍ରସଙ୍ଗେ କହି ପ୍ରଭୁ ଚକ୍ରଧର ।
ସନ୍ତୋଷ ଧ୍ରୁବଙ୍କୁ ଚାହିଁ ଯାଚି ଦ୍ୟନ୍ତି ବର ॥୧୨୩

ବୋଲନ୍ତି ମନୁର ବଂଶେ ଜନ୍ମ ଏ ତୋହରା
ନରନାରାୟଣ ଦେବତାଙ୍କୁ ଅଗୋଚର ॥୧୨୪
ଏ ଶରୀର ଭୋଗେ ତୁ ଆମ୍ଭଙ୍କୁ କରି ଭୋଗ ।
ଆଧି-ବ୍ୟାଧି-ବର୍ଜିତ ଜୀବ ତୁ ସତ୍ୟଯୁଗ ॥୧୨୫
ଏ ଶରୀର ଘେନି ଧ୍ରୁବଲୋକେ ବସ ତୁହି ।
କଳ୍ପସଂଖ୍ୟା ପ୍ରମାଣେ ଜନନୀ ସଙ୍ଗେ ଲଇଁ ॥୧୨୬
ଏମନ୍ତ ଧ୍ରୁବଙ୍କୁ ବର ଦେଇ ଜନାର୍ଦ୍ଦନ ।
ଗରୁଡ-ବାହନେ ସେ ହୋଇଲେ ଅନ୍ତର୍ଦ୍ଧାନ॥୧୨୭
ବିଷ୍ଣୁବର ପାଇ ସେ ଉତ୍ତାନପାଦ-ବଳା ।
ଦିବ୍ୟରୂପ ଧରି ନିଜ ଭୁବନେ ମିଳିଲା ॥୧୨୮
ଜନନୀ ଚରଣେ ସେବା କଲା ଅନୁକ୍ଷଣେ ।
ଅନୁଭବ ଦୁଃଖ ଗଲା ଯେତେ ଥିଲା ମନେ॥୧୨୯
ପିତାର ବଲ୍ଲଭ ଦିନେ ଦିନେ ସେ ବଢ଼ଇ ।
ଧ୍ରୁବର ମହିମା ଅବା କେ ପାରିବ କହି ॥୧୩୦
ଏମନ୍ତ ବିଦୁର ଆଗେ ମଇତ୍ରେୟ ମୁନି ।
କହିଲେ ଧ୍ରୁବର କଥା ହରିଭାବ ଘେନି ॥୧୩୧
ବିଷ୍ଣୁପଦୀ-ତୀରେ ରହି ପରୀକ୍ଷିତ ଆଗେ ।
ଶୁକ ଭକ୍ତିଯୋଗ ଯେ କହିଲେ ଅନୁରାଗେ ॥୧୩୨
ଶ୍ରୀହରି-ଚରିତ ଏ ଅମୃତମୟ ରସ ।
ଭାଗବତ-ଗୀତ କହେ ଜଗନ୍ନାଥ ଦାସ ॥୧୩୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ଚରିତଂ ନାମ
ଦଶମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଏକାଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଶୁଣ ବିଦୁର ତୋଷମନେ ।
ଧ୍ରୁବ ସମୀପେ ବୃନ୍ଦାବନେ ॥ ୧
ପ୍ରସନ୍ନେ କମଳା-ରମଣ ।
ବୋଇଲେ ଧ୍ରୁବ ଏବେ ଶୁଣ ॥ ୨

ଭଗବାନ ଉବାଚ

ତୋ' ଜନ୍ମ ସ୍ୱାୟମ୍ଭୁବ ଘରେ ।
ଉତ୍ତାନପାଦର ବୀର୍ଯ୍ୟରେ ॥୩
ଦେବେ ବାଞ୍ଛନ୍ତି ସ୍ୱର୍ଗେ ଯାହା ।
ତୁ ତା' ଲଭିଲୁ ପୁଣ୍ୟଦେହା ॥୪
ଏବେ ତୁ ନିଜପୁରେ ଚଳ ।
ଚିତ୍ତେ ଆରାଧି ମୋର ବୋଲ ॥ ୫
ମାତୃ-ସପତ୍ନୀର ବଚନେ ।
ତପ ତୁ କଲୁ ବୃନ୍ଦାବନେ ॥୬
ଅତି-ବାଳକ ଦେହବହି ।
କୁବାକ୍ୟ ନ ପାରିଲୁ ସହି ॥୭
ପିତାର ଅଙ୍କେ ଆରୋହନ୍ତେ ।
ମାତା ଯେ ନିବାରିଲା ତୋତେ ॥୮
ସେ ଅପମାନେ ଦୁଃଖମନେ ।
ଏବେ ବସିବୁ ସ୍ୱର୍ଗସ୍ଥାନେ ॥ ୯
ତୋ ଭାଗ୍ୟ ନ ପାଇବେ କେହି ।
ମଞ୍ଚେ ମାନବ ଦେହ ବହି ॥ ୧୦
ତୋ' ତାତ ଯେବେ ଯିବେ ବନେ ।
ବସିବୁ ନୃପତି ଆସନେ ॥ ୧୧
ତୋହର ପରମ-ଆୟୁଷ ।
ଛତିଶ ସହସ୍ର ବରଷ ॥ ୧୨
ନୀରୋଗ ଦେହେ ଭୋଗ ଭୁଞ୍ଜି ।
ସ୍ୱତେଜେ ରିପୁବଳ ଗଞ୍ଜି ॥ ୧୩
ଉତ୍ତମ ତୋର ସାନ ଭ୍ରାତ ।
ବନେ ହୋଇବ ପ୍ରାଣେ ହତ ॥ ୧୪
ମୃଗୟା ଅର୍ଥେ ଘୋରବନେ ।
ମିଳିବ କୁବେର ଭୁବନେ ॥ ୧୫
ପୁଣ୍ୟଜନଙ୍କ ସଙ୍ଗେ ମିଳି ।
ଯୁଦ୍ଧେ ହାରିବ ମହାବଳୀ ॥ ୧୬
ତହିଁ ହୋଇବ ପ୍ରାଣେ ହତ ।
ତା' ଶୁଣି ତା'ର ନିଜମାତ ॥ ୧୭
ସେ ପୁତ୍ର ଶୋକର ବିକଳେ ।
ବନେ ମରିବ ଦାବାନଳେ ॥ ୧୮
ତୁ ମୋତେ ଯଜ୍ଞେ କରି ପୂଜା ।
ଦେବଙ୍କୁ ଦେଇ ବଳି ଭୋଜା ॥ ୧୯
ବିପ୍ରଙ୍କୁ କରି ତୋଷମନ ।
ଗୋରୁ ଦକ୍ଷିଣା ଧନ ଅନ୍ନ ॥ ୨୦
ବିପ୍ରଙ୍କ କଲ୍ୟାଣର ଫଳେ ।
ମୋତେ ସ୍ମରିବୁ ଅନ୍ତଃକାଳେ ॥ ୨୧
ମୋହର ଧ୍ୟାନେ ସ୍ୱର୍ଗପଥେ ।
ଗମିବୁ ଜନନୀ ସହିତେ ॥ ୨୨
ସପ୍ତଋଷିଙ୍କ ଊର୍ଦ୍ଧ୍ୱଗତେ ।
ଜନନୀ ସଙ୍ଗେ ଦିବ୍ୟରଥେ ॥ ୨୩
ବସିବୁ ଶିଶୁମାରପୁଚ୍ଛେ ।
ଉତ୍ତରଦିଗେ ତୁ ପ୍ରତ୍ୟକ୍ଷେ ॥ ୨୪
ଏମନ୍ତ କହି ଭଗବାନ ।
ବନେ ହୋଇଲେ ଅନ୍ତର୍ଦ୍ଧାନ ॥ ୨୫
ବିଷ୍ଣୁ ନ ଦେଖି ବୃନ୍ଦାବନେ ।
ଧ୍ରୁବ ଭାଳଇ ମନ ଛନ୍ନେ ॥ ୨୬
ଦେଖ ଅଭାଗ୍ୟ କର୍ମ ମୋର ।
ତପେ ତୋଷିଲି ଚକ୍ରଧର ॥ ୨୭
ଜନନୀ-ସପତ୍ନୀର ଛଳେ ।
ମୋକ୍ଷ ନ ମାଗି ବିଷ୍ଣୁ ତୁଲେ ॥ ୨୮
ଲଭିଲି ଧ୍ରୁବ-ଅଧିକାର ।
ଧିକ ଏ ଜୀବନ ମୋହର ॥ ୨୯
ଏମନ୍ତ ମନେ ବିଚାରିଲା ।
ତକ୍ଷଣେ ନିଜପୁରେ ଗଲା ॥୩୦
ମୈତ୍ରେୟ ତହୁଁ ଏହାଶୁଣି ।
ବିଦୁର ପଚାରଇ ପୁଣି ॥୩୧

ବିଦୁର ଉବାଚ

ଯେ ହରି ପରମ-ଦୁର୍ଲଭ ।
ଲଭି ନ ପାରେ ବ୍ରହ୍ମାଶିବ ॥୩୨
ସେ ହରି ତହୁଁ ବରପାଇ ।
ଘୋର-ମାୟାରେ ମନ ମୋହି ॥୩୩
ଆତ୍ମାର ଗତି ନ ମାଗିଲା ।
ମୋତେ ତ ସନ୍ଦେହ ଲାଗିଲା ॥୩୪
ବିଦୁରତହୁଁ ଏହା ଶୁଣି ।
ତୋଷେ ମୈତ୍ରେୟ କହେପୁଣି ॥୩୫

ମୈତ୍ରେୟ ଉବାଚ

ମାତୃ-ସପତ୍ନୀ ବାକ୍ୟ-ଶରେ ।
ମର୍ମ ଭେଦିଲା ତା' ଶରୀରେ ॥୩୬
ମୁକ୍ତି ନ ଇଛି ବିଷ୍ଣୁ ତୋଷେ ।
ପଛେ ତାପିଲା ଦୁଃଖତ୍ରାସେ ॥୩୭

ଧ୍ରୁବ ଉବାଚ

ସନକ ଆଦି ମୁନିଜନେ ।
ଅଷ୍ଟାଙ୍ଗ-ଯୋଗ ଅଭ୍ୟାସନେ ॥୩୮
ନିଶ୍ଚଳ-ଧ୍ୟାନେ ନିତ୍ୟେ ଚିନ୍ତି ।
ଯେ ପଦ ଲଭି ନ ପାରନ୍ତି ॥୩୯
ସେ ପଦ ହସ୍ତୁ ପକାଇଲି ।
ଦେଖ ଅଜ୍ଞାନପଣ କଲି ॥୪୦
କଳ୍ପ-ପାଦପ-ଛାୟା ତେଜି ।
ନିରାଶ ପଥେ ଚକ୍ଷୁ ବୁଜି ॥୪୧
ଧାଇଁଲି ତୃଷିତ-ବଦନ ।
ଧିକ ଏ ମୋହର ଜୀବନ ॥୪୨

Dr. Sudhanshu Sekhar Mishra

ଏମନ୍ତେ ମନ ଦୁଃଖ କରି ।
ଧ୍ରୁବ ମିଳିଲା ନିଜ-ପୁରୀ ॥୪୩
ପଥେ ଧ୍ରୁବକୁ ଦେଖି ଜନେ ।
ମିଳିଲେ ଧ୍ରୁବ ସନ୍ନିଧାନେ ॥୪୪
କେତେହେଁ ଜନ ବେଗେ ଧାଇଁ ।
କହିଲେ ରାଜା ଆଗେ ଯାଇ ॥୪୫
ଭୋ ନାଥ ଶୁଣ ସାବଧାନେ ।
ଧ୍ରୁବ ମିଳିଲେ ଉପବନେ ॥୪୬
ନିଧି ପ୍ରାପତ ପ୍ରାୟ ମଣି ।
ସଂଭ୍ରମ ଚିତ୍ତେ ନୃପମଣି ॥୪୭
ତକ୍ଷଣେ ଆସନୁ ଉଠିଲା ।
ଆନନ୍ଦ-ସାଗରେ ବୁଡ଼ିଲା ॥୪୮
କାନ୍ଦଇ କଣ୍ଠ-ଗଦଗଦେ ।
ତକ୍ଷଣେ ମିଳିଲେ ନାରଦେ ॥୪୯
ସଂଭ୍ରମେ ରାଜା ମୁଖ ଚାହିଁ ।
ଧ୍ରୁବ-ଆଗମ କଥା କହି ॥୫୦
ଶୁଣି ସାନନ୍ଦେ ନୃପବର ।
ନାରଦ-କଣ୍ଠେ ଦେଲା ହାର ॥୫୧
ସୁବର୍ଣ୍ଣ ପରିଚ୍ଛଦ ରଥେ ।
ବେଗେ ଚଳିଲା ରାଜପଥେ ॥୫୨
ସଙ୍ଗେ ବ୍ରାହ୍ମଣ କୁଳବୃନ୍ଦେ ।
ସ୍ୱଜ୍ଞାତି କୁଟୁମ୍ବ ସୁହୃଦେ ॥୫୩
ଅମାତ୍ୟ-ମନ୍ତ୍ରୀକୁଳ ଯେତେ ।
ଧାଇଁଲେ ବାଦ୍ୟ-ନାଦ-ଗୀତେ ॥୫୪
ସୁନୀତି ସୁରୁଚି ସହିତେ ।
ନାନା ଅଳଙ୍କାର ଭୂଷିତେ ॥୫୫
ସୁବର୍ଣ୍ଣ-ଶିବିକା ଆରୋହୀ ।
ଉତ୍ତମ-ପୁତ୍ରେ ସଙ୍ଗେ ନେଇ ॥୫୬
ଧ୍ରୁବକୁ ଦେଖି ଉପବନେ ।
ଆନନ୍ଦେ ବିସ୍ମିତ-ଲୋଚନେ ॥୫୭
ରଥୁଁ ଓହ୍ଲାଇ ରାଜା ବେଗେ ।
ଆନନ୍ଦେ ପୁତ୍ର-ଅନୁରାଗେ ॥୫୮
ପୁତ୍ରକୁ ଆଲିଙ୍ଗନ କଲା ।
ଯେଣୁ ଅଶେଷ-ପୁଣ୍ୟ ଥିଲା ॥୫୯

ଯେ ଧ୍ରୁବ ବିଷ୍ଣୁ-ଅଙ୍ଗସଙ୍ଗେ ।
ଅଶେଷ-ତୀର୍ଥ ଯାର ଅଙ୍ଗେ ॥୬୦
ଆଘ୍ରାଣ କରି ଶିର ଦେଶେ ।
ହୃଦେ ଲଗାଇ ଅତି ତୋଷେ ॥୬୧
ଶିରେ ସିଞ୍ଚିଲା ଅଶ୍ରୁବାରି ।
ହୃଦୟେ ପୁଣପୁଣ ଧରି ॥୬୨
ପିତା ଚରଣେ ଧ୍ରୁବ ନମି ।
ବାଳ ସ୍ୱାଭାବେ ପଥଶ୍ରମୀ ॥୬୩
ସୁରୁଚି ସୁନୀତିର ପାଦେ ।
ଧ୍ରୁବ ପ୍ରଣମଇଁ ଆନନ୍ଦେ ॥୬୪
ଜନନୀ ପୁତ୍ରମୁଖ ଚାହିଁ ।
ହରଷ କେ ପାରିବ କହି ॥୬୫
ସୁରୁଚି ଧ୍ରୁବେ ଧରି କୋଳେ ।
ଚୁମ୍ବନ ଦେଲା ସୁଖଭୋଳେ ॥୬୬
ସୁନୀତି ପୁତ୍ର କୋଳେ ଧରି ।
ଅଶ୍ରୁ ଗଳଇ ମୋଦଭରି ॥୬୭
ଜନେ କରନ୍ତି ଜୟ ବାଣୀ ।
ଧ୍ରୁବକୁ ଘେନି ନୃପମଣି ॥୬୮
ମିଳିଲେ ନିଜପୁରେ ଆସି ।
ଧ୍ରୁବ ମହିମା ପରଶଂସି ॥୬୯
ଧ୍ରୁବ ପ୍ରବେଶେ ପୁରଜନେ ।
ଆନନ୍ଦେ ଯେ ଯାହା ଭୁବନେ ॥୭୦
ଉତ୍ସବ ଅନେକ ପ୍ରକାରେ ।
ପ୍ରଦୀପ-ପୂର୍ଣ୍ଣ-କୁମ୍ଭ ଦ୍ୱାରେ ॥୭୧
ପ୍ରାଚୀର ଅଟ୍ଟାଳୀ ସମେତେ ।
ଚିତ୍ର ପ୍ରତିମା ରତ୍ନକାନ୍ତେ ॥୭୨
ତୋରଣା ଲମ୍ବେ ସର୍ବଦ୍ୱାରେ ।
ଚନ୍ଦନ-ଛେରା ନିରନ୍ତରେ ॥୭୩
ସ୍ୱଭାବେ ପ୍ରିୟବ୍ରତ-ପୁର ।
କି ଅବା ଦେବା ପଟ୍ଟାନ୍ତର ॥୭୪
ସକଳ ପୁର-ନାରୀବୃନ୍ଦେ ।
ଧ୍ରୁବକୁ ଦେଖିଣ ଆନନ୍ଦେ ॥୭୫
ଗନ୍ଧ-ଚନ୍ଦନ ବାସ-ପାଣି ।
ଦୂର୍ବା ଅକ୍ଷତ ପୁଷ୍ପ ଆଣି ॥୭୬

ଅକ୍ଷତ ଦେଇ ଧ୍ରୁବ ମୁଣ୍ଡେ ।
ଜୟ ଶବଦ କଲେ ତୁଣ୍ଡେ ॥୭୭
ଏମନ୍ତେ ନାନା-ଉପାୟନ ।
ଘେନି ସମସ୍ତ ମହାଜନ ॥୭୮
ଏମନ୍ତ ମଙ୍ଗଳ ଉତ୍ସବ ।
ସକଳ ଜନ ପ୍ରିୟଭାବ ॥୭୯
ଧ୍ରୁବ ପ୍ରବେଶ ନିଜ ପୁରେ ।
କାମିନୀ ଗାବନ୍ତି ସୁସ୍ୱରେ ॥୮୦
ପୁରେ ପ୍ରବେଶ ରାଜସୁତ ।
ଦେଖି ସକଳେ କୃତକୃତ୍ୟ ॥୮୧
ଶଙ୍ଖ ଦୁନ୍ଦୁଭି ଗୀତସ୍ୱରେ ।
ମଙ୍ଗଳ ନାଦେ ଦିଗ ପୂରେ ॥୮୨
ଯେ ଧ୍ରୁବ ହରି ଅଙ୍ଗ ସଙ୍ଗେ ।
ଅଶେଷ-ଲକ୍ଷ୍ମୀ ଶୋହେ ଅଙ୍ଗେ ॥୮୩
ସେ ଧ୍ରୁବ ଚରଣ କମଳେ ।
ସୁଜନେ ନମ ଧ୍ୟାନବଳେ ॥୮୪
ଯା'ର ସ୍ମରଣେ ପାପ ନାଶେ ।
ନିର୍ମଳ ଜ୍ଞାନ ପରକାଶେ ॥୮୫
ଚତୁର୍ଥ ସ୍କନ୍ଧେ ଭାଗବତ ।
କହିଲା ଦାସ ଜଗନ୍ନାଥ ॥୮୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥ ସ୍କନ୍ଧେ ଧ୍ରୁବ
ଚରିତଂ ନାମ ଏକାଦଶୋଽଧ୍ୟାୟଃ ।

---

Dr. Sudhanshu Sekhar Mishra

## ଦ୍ୱାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର କୃଷ୍ଣ କଥା ।
ଯେଣେ ଖଣ୍ଡିବ ଭବବ୍ୟାଥା ॥୧
ଉତ୍ତାନପାଦ ଧ୍ରୁବ ଦେଖି ।
ସଫଳ କଲା ଚର୍ମ ଆଖି ॥୨
ଧ୍ରୁବକୁ ରାଜଯୋଗ୍ୟ ଚାହିଁ ।
ବାନ୍ଧବ ସୁହୃଦ ବସାଇ ॥୩
ସର୍ବ ସମ୍ମତେ ମହାତେଜା ।
ରାଜ୍ୟେ ପୁତ୍ରକୁ କଲା ରାଜା ॥୪
ସ୍ୱଭାବେ ବିଷ୍ଣୁ-ତେଜ-ବଳ ।
ଭାବେ ନମନ୍ତି ଦିଗପାଳ ॥୫
ଏ ମହୀତଳେ ଯେତେ ରାଜା ।
ଧ୍ରୁବ-ଚରଣେ କଲେ ପୂଜା ॥୬
ଯେ ଶିଶୁମାର ପ୍ରଜାପତି ।
ତା' କନ୍ୟା ଭ୍ରମି ଗୁଣବତୀ ॥୭
ତାହାର ରୂପ-ଗୁଣରାଶି ।
କେତେ ବା କହିବା ବିଶେଷି ॥୮
ରୂପେ କମଳା ନୋହେ ସରି ।
ବିବାହେ ଧ୍ରୁବ ତା'କୁ ବରି ॥୯
ଅଶେଷ ଅଳଙ୍କାର ଶୋଭା ।
ବିରାଜେ ଅଙ୍ଗ ଜ୍ୟୋତି ଆଭା ॥୧୦
ସେ କନ୍ୟା ଗର୍ଭେ ପୁତ୍ର ଦୁଇ ।
କଳ୍ପ ବତ୍ସର ବେନି ଭାଇ ॥୧୧
ଦ୍ୱିତୀୟା ଭାର୍ଯ୍ୟା ଇଳା ନାମ ।
ରୂପେ ଗଞ୍ଜଇ କୋଟିକାମ ॥୧୨
ସ୍ୱଭାବେ ସମୀରଣ ସୁତା ।
ସୁଗୁଣା ସୁନ୍ଦରୀ ବିନୀତା ॥୧୩
ତା'ର ଉଦରେ ଧ୍ରୁବ-ବୀର୍ଯ୍ୟେ ।
ପୁତ୍ରେକ ହେଲା ମହାତେଜେ ॥୧୪
ଉତ୍କଳ ନାମେ ସେ କୁମର ।
ସ୍ୱଭାବେ ମହା-ଯୋଗେଶ୍ୱର ॥୧୫

ପୁଣି ଜନ୍ମିଲା କନ୍ୟା ଏକ ।
ତା' ରୂପ ଗୁଣ ଅତିରେକ ॥୧୬
ଧ୍ରୁବର କନିଷ୍ଠ ଉତ୍ତମ ।
ରୂପେ ଭୁବନେ ନାହିଁ ସମ ॥୧୭
ସ୍ୱଭାବେ ବୟସ କିଶୋର ।
ବିଭା ନ କଲେ ବୀରବର ॥୧୮
ସେ ଏକଦିନେ ଅଶ୍ୱେ ବସି ।
ମୃଗୟା ଅର୍ଥେ ବନେ ପଶି ॥୧୯
ବହୁତ ଦୂର ସେ ଗମିଲା ।
ମନ ଆନନ୍ଦେ ନୃପବଳା ॥୨୦
ମିଳିଲା କୁବେର ଭୁବନେ ।
ତାହାକୁ ଦେଖି ଗୁହ୍ୟଗଣେ ॥୨୧
ବଳେ ରୁନ୍ଧିଲେ ଯୁଦ୍ଧ କରି ।
ଅଶ୍ୱ ଘେନିଲେ ତା'କୁ ମାରି ॥୨୨
ତା' ଶୁଣି ତାହାର ଜନନୀ ।
ବିକଳେ ପୁତ୍ର-କଷ୍ଟ ଘେନି ॥୨୩
ବନ-ଅନଳେ ଦେହ ଦେଲା ।
ପୁତ୍ର-ବିୟୋଗ-ଦୁଃଖେ ମଲା ॥୨୪
ସେ କଥା ଶୁଣି ଧ୍ରୁବ ଶୋକେ ।
କମ୍ପିଲା ମାତା-ଭ୍ରାତା ଦୁଃଖେ ॥୨୫
ସେ ଧ୍ରୁବ ଅତି କ୍ରୋଧ ବହି ।
ଅଶ୍ୱ ସାରଥି ବେଗେ ରାଇ ॥୨୬
ଜଇତ୍ର ନାମେ ରଥେ ବସି ।
ସ୍ୱଭାବେ ଶୋହେ ରୂପ ରାଶି ॥୨୭
ଶୋକ-ଅନଳେ କୋପଭରେ ।
କଠୋର-ଧନୁ ଧରି କରେ ॥୨୮
କୁବେର-କାନନେ ମିଳିଲା ।
ଉଦଣ୍ଡେ ଶଙ୍ଖନାଦ କଲା ॥୨୯
ଯେ ବନେ ରୁଦ୍ର-ଅନୁଚରେ ।
ବସନ୍ତି ନଦୀ ବନ ଘୋରେ ॥୩୦
ହିମପର୍ବତ ଦ୍ରୋଣି ମଧ୍ୟେ ।
ଗୁହ୍ୟକେ ବସନ୍ତି ଆନନ୍ଦେ ॥୩୧

ସେ ବନେ ବଳେ ପଶି ଧ୍ରୁବ ।
ଉଦଣ୍ଡେ କଲା ଶଙ୍ଖରବ ॥୩୨
ଶବଦେ ପୂରିଲା ଆକାଶ ।
ବନ-ପର୍ବତ-ଦଶଦିଶ ॥୩୩
ଯକ୍ଷ-କାମିନୀଗଣ ବେଗେ ।
ଭୟେ ଚାହିଁଲେ ଊର୍ଦ୍ଧ୍ୱଦିଗେ ॥୩୪
ସେ ନାଦ ଶୁଣି ଦଶଦିଶେ ।
ଗୁହ୍ୟକଗଣ ମହାରୋଷେ ॥୩୫
ଧାଇଁଲେ ନାନା-ଶସ୍ତ୍ର ଧରି ।
ଚଳନ୍ତେ କମ୍ପେ ବସୁନ୍ଧରୀ ॥୩୬
ଗୁହ୍ୟକଗଣେ ଧ୍ରୁବେ ଚାହିଁ ।
ନିଜ କୋଦଣ୍ଡେ ଗୁଣ ଦେଇ ॥୩୭
ଆକର୍ଣ୍ଣ ଯାଏ ଟାଣି ଗୁଣ ।
ବିନ୍ଧିଲେ ତିନି ତିନି ବାଣ ॥୩୮
ଧ୍ରୁବର ତୀକ୍ଷ୍ଣ-ବାଣ ବଳେ ।
ପଡିଲେ ଗୁହ୍ୟକ ସକଳେ ॥୩୯
ଗୁହ୍ୟକଗଣ ଦେଖି ତ୍ରାସେ ।
ରଣେ ଭାଜିଲେ ଦଶଦିଶେ ॥୪୦
ଅଦ୍ଭୁତ କର୍ମ ଦେଖି ତା'ର ।
ବିଷ୍ଣୁର ତେଜେ ବଳୀୟାର ॥୪୧
କରନ୍ତି ଧନ୍ୟ-ଧନ୍ୟ ବାଣୀ ।
ଆନନ୍ଦେ ଦେବଲୋକେ ଶୁଣି ॥୪୨
ସେ ବାଣ ସହି ଗୁହ୍ୟଗଣେ ।
ପୁଣି ମିଳିଲେ ଘୋରରଣେ ॥୪୩
ମନେ ଅନେକ ରୋଷ ଭରି ।
କରେଣ ନାନା-ଶସ୍ତ୍ର ଧରି ॥୪୪
ପାଦ-ମାରନ୍ତେ ଅହି ଯେହ୍ନେ ।
ଧ୍ରୁବକୁ ବେଢ଼ି କୋପମନେ ॥୪୫
ଧ୍ରୁବର ରଥ ବେଗେ ରୁନ୍ଧି ।
ଦ୍ୱିଗୁଣେ ତୀକ୍ଷ୍ଣ ବାଣ ବିନ୍ଧି ॥୪୬
ପରିଘ ଖଡଗ ଆୟୁଧ ।
ପ୍ରାସ ତୋମର ଶରଯୁଦ୍ଧ ॥୪୭

Dr. Sudhanshu Sekhar Mishra

ଶକ୍ତିଭୂଷଣ୍ଡି ଋଷ୍ଟି ବାଣ ।
ବେଗେ ବିନ୍ଧିଲେ ଗରୁଟାଣ ॥୪୮
କୋପେ ବିନ୍ଧିଲେ ଅତି ରୁଷ୍ଟେ ।
ରଥୀ-ସାରଥି ଅଶ୍ୱପୃଷ୍ଠେ ॥୪୯
ଅୟୁତ-ତ୍ରୟୋଦଶ ମିଳି ।
ଶବଦେ ବ୍ରହ୍ମାଣ୍ଡ ଉଛୁଳି ॥୫୦
ବେଢ଼ିଲେ ଅତି-ଅନାୟତ୍ତ ।
ଛନ୍ନେ ନ ଦିଶେ ଧ୍ରୁବରଥ ॥୫୧
ଗଗନେ ମିଳି ଦେବଲୋକେ ।
କହନ୍ତି ଏକକୁ ଆରକେ ॥୫୨
ଶୁଭଇ ହାହାକାର ବାଣୀ ।
ଦେବେ ବୋଲନ୍ତି ତାହା ଶୁଣି ॥୫୩
ଦେଖ ଏ ମନୁବଂଶ-ସୁତ ।
ପ୍ରଚଣ୍ଡ ଯେସନେ ଆଦିତ୍ୟ ॥୫୪
ଗୁହ୍ୟକ-ସମୂହେ ବୁଡ଼ିଲା ।
ଧ୍ରୁବ ନିଶ୍ଚୟେ ନାଶ ଗଲା ॥୫୫
ଗର୍ଜନ୍ତି ଯାତୁଧାନ ଗଣେ ।
ଧ୍ରୁବ ଯେ ଶୁଣି ତା' ଶ୍ରବଣେ ॥୫୬
ସାରଥି ଚାହିଁ ପୁଣ୍ୟଦେହା ।
ବୋଇଲା ଉର୍ଦ୍ଧ୍ୱେ ରଥ ବାହା ॥୫୭
ଶୁଣି ସାରଥି ଅତି ବେଗେ ।
ରଥ ବାହିଲା ଶୂନ୍ୟମାର୍ଗେ ॥୫୮
ନୀହାର ଭେଦି ସୂର୍ଯ୍ୟ ଯେହ୍ନେ ।
ତେମନ୍ତେ ଦିଶଇ ଗଗନେ ॥୫୯
ଦେଖି ତାହାର ତେଜ ବଳ ।
ଆନନ୍ଦ ହୋଇଲେ ସକଳ ॥୬୦
ଗଗନେ ରହି ମନୁସୁତ ।
ବାଣ ବରଷେ ଅପ୍ରମିତ ॥୬୧
ଗୁହ୍ୟକ ବାଣବୃଷ୍ଟି ନାଶେ ।
ନୀହାର ଯେହ୍ନେ ଚଣ୍ଡତ୍ରାସେ ॥୬୨
ପବନ ଯୋଗେ ମେଘମାଳେ ।
ଯେହ୍ନେ ଉଡ଼ନ୍ତି ଅନ୍ତରାଳେ ॥୬୩
ଗୁହ୍ୟକ-ଶସ୍ତ୍ର ନାଶ କରି ।
ପୁଣି ବିନ୍ଧଇ ରୋଷଭରି ॥୬୪

ଧ୍ରୁବ-ନାରାଚ ତୀକ୍ଷ୍ଣ-ମୁନେ ।
ଗୁହ୍ୟକ ପଡ଼ିଲେ ସଗଣେ ॥୬୫
ଗୁହ୍ୟକ ଦେହେ ବାଣ ପଡ଼ି ।
ଶୁଭେ ବି ମେଘ-ଘଡ଼ିଘଡ଼ି ॥୬୬
ସର୍ବେ ପଡ଼ିଲେ ଭୂମିଗତେ ।
ପର୍ବତ ଯେହ୍ନେ ବଜ୍ରାଘାତେ ॥୬୭
ଶିରେ ଭେଦିଲା ଭଲ୍ଲଶସ୍ତ୍ର ।
ବାଣେ ଛେଦିତ ନିଜ ଗାତ୍ର ॥୬୮
ଶିରେ ପଡ଼ିଲା ଛିଡ଼ି ତଳେ ।
ବିରାଜେ କିରୀଟ କୁଣ୍ଡଳେ ॥୬୯
ହୃଦେ ଲମ୍ବିତ ହେମହାର ।
ବିରାଜେ ଉଷ୍ଣୀଷ କେୟୂର ॥୭୦
ଶସ୍ତ୍ର-ସମୂହେ ଶଯ୍ୟା କରି ।
ବୀରେ ଶୋଇଲେ ପ୍ରାଣହାରି ॥୭୧
ପଡ଼ିଲେ ଚଉଦିଗ ମାଡ଼ି ।
କେହୁ ପଳାଏ ରଣ ଛାଡ଼ି ॥୭୨
ଯେବା ଉବୁରି ଗଲେ ରଣେ ।
ଭୟେ ଲୁଚିଲେ ଘୋରବନେ ॥୭୩
ସିଂହର ତ୍ରାସେ ଯେହ୍ନେ ମୃଗେ ।
ଭୟେ ଭାଜିଲେ ଦଶ ଦିଗେ ॥୭୪
ଧ୍ରୁବ ଯେ ଦଶଦିଗେ ଚାହିଁ ।
ଦେଖଇ ରଣେ କେହି ନାହିଁ ॥୭୫
ବୋଲେ ସାରଥି ମୁଖ ଚାହିଁ ।
ଏ ପୁରେ ପଶ ରଥ ବାହି ॥୭୬
ଦହନ କରିବି ଅନଳେ ।
ଯେବା ଅଛନ୍ତି ଗୁହ୍ୟକୁଳେ ॥୭୭
ସର୍ବ ମାରିବି ଭ୍ରାତା-ଛଳେ ।
ତୁ ଏବେ ରଥ ବାହା ବଳେ ॥୭୮
ଏମନ୍ତ ଧ୍ରୁବ ବାକ୍ୟ ଶୁଣି ।
ସାରଥି ମନେମନେ ଗୁଣି ॥୭୯
ଗୁହ୍ୟକ ମାୟାର ପ୍ରମାଣେ ।
ଏମନ୍ତ ଘୋରନାଦ ଶୁଣେ ॥୮୦
ପ୍ରଳୟ କାଳେ ସିନ୍ଧୁ ଯେହ୍ନେ ।
ଲହରୀ ଉଚ୍ଛୁଳେ ଗଗନେ ॥୮୧

ପୁଣି ଦେଖଇ ଚାରିଦିଗେ ।
ଧୂଳି ଉଡ଼ଇ ଶୂନ୍ୟମାର୍ଗେ ॥୮୨
ତକ୍ଷଣେ ଘୋର ନାଦ କରି ।
ମେଘ ସମୂହ ଶୂନ୍ୟେ ପୂରି ॥୮୩
ବିଜୁଳି ସ୍ଫୁରେ ଦଶଦିଶେ ।
ବଜ୍ର ଶବଦ ସଙ୍ଗେ ମିଶେ ॥୮୪
ଉଲ୍କା ପଡ଼େ କୋଟି କୋଟି ।
ରୁଧିର ସଙ୍ଗେ ପୂଜ ବୃଷ୍ଟି ॥୮୫
ମୂତ୍ର ପୁରୀଷ ରେତ ତୂଲେ ।
ଦୁର୍ଗନ୍ଧେ ଧରଣୀ ପୂରିଲେ ॥୮୬
କବନ୍ଧେ ପଡ଼ିଲେ ଆକାଶୁ ।
ଦିଗେ ପୂରିଲା ଘୋରପାଂଶୁ ॥୮୭
ନିର୍ଘାତେ ଗଗନୁ ପଡ଼ନ୍ତି ।
ଗଦା ପରିଘ ପନ୍ତିପନ୍ତି ॥୮୮
ମୂଷଳ ସଙ୍ଗେ ବଜ୍ର ପଡ଼ି ।
ଘୋର ଶବଦ ଘଡ଼ଘଡ଼ି ॥୮୯
ସର୍ପେ ଧାମନ୍ତି ଫୁ ଫୁ କରି ।
ଅନଳ ପ୍ରାୟେ ଚକ୍ଷୁଧାରୀ ॥୯୦
ଗଜେ ଧାମନ୍ତି ଶୁଣ୍ଢ ଟେକି ।
ସିଂହ ଶାର୍ଦ୍ଦୂଳ ସଙ୍ଗେ ମିଳି ॥୯୧
ତକ୍ଷଣେ ସିନ୍ଧୁ ଉଛୁଳିଲା ।
ଲହରୀ ଗଗନେ ଲାଗିଲା ॥୯୨
ଭୂମି ପୂରିଲା ମହାଜଳେ ।
ପ୍ରଚଣ୍ଡ-ପବନ ଉଲ୍ଲୋଳେ ॥୯୩
କଳ୍ପାନ୍ତେ ଘୋରନାଦ ଯେହ୍ନେ ।
ଶବଦ ପୂରିଲା ଗଗନେ ॥୯୪
ଏମନ୍ତେ ନାନା ମାୟା କରି ।
ଗୁହ୍ୟକେ ସମର ଆବୋରି ॥୯୫
ମିଳିଲେ ନାନା ଶସ୍ତ୍ର ଘେନି ।
ଶବଦେ କମ୍ପାଇ ମେଦିନୀ ॥୯୬
ଧ୍ରୁବ ଉପରେ ମାୟା କରି ।
ଗୁହ୍ୟକେ ସନ୍ଧିଲେ ଆବୋରି ॥୯୭
ଗୁହ୍ୟକ-ମାୟା ଦେଖି ବେଗେ ।
ମୁନି ମିଳିଲେ ଧ୍ରୁବ ଆଗେ ॥୯୮

Dr. Sudhanshu Sekhar Mishra

କଲ୍ୟାଣ ବାଞ୍ଛା ମନେ ବହି ।
ବୋଲନ୍ତି ଧ୍ରୁବ ମୁଖ ଚାହିଁ ॥୯୯

ମୁନିଗଣ ଉବାଚ

ଶୁଣ ହେ ଉତ୍ତାନ-କୁମର ।
ତୋତେ ପ୍ରସନ୍ନ ଚକ୍ରଧର ॥୧୦୦
ଯେ ହରି ଭବ-ଭୟ ନାଶେ !
ଆମ୍ଭେ ତା' ଦେଖୁ ତୋର ପାଶେ ॥୧୦୧
ଯା ନାମ ସ୍ମରି ଅନ୍ତକାଳେ ।
ପ୍ରାଣୀ ତରନ୍ତି ଅବହେଳେ ॥୧୦୨
ସେ ହରି ନାମ ତୁ ସୁମର ।
ଗୁହ୍ୟକ ମାୟାକୁ ସଂହର ॥୧୦୩
ଏମନ୍ତେ ମୁନିଙ୍କର ବୋଲେ ।
ରଥ ଚୋଳିଲା ଅନ୍ତରାଳେ ॥୧୦୪
ଶୁଣ ସୁଜନେ ହରି କଥା ।
ହରି ନ ସହେ ଭୃତ୍ୟବ୍ୟଥା ॥୧୦୫
କହଇ ଦାସ ଜଗନ୍ନାଥ ।
ସୁଜନେ ହରି ପଦେ ଚିନ୍ତ ॥୧୦୬

ଇତିଶ୍ରୀମଦ୍‌ଭାଗବତ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ଧ୍ରୁବଚରିତଂ ନାମ
ଦ୍ୱାଦଶୋଽଧ୍ୟାୟଃ ॥

---

## ତ୍ରୟୋଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତ ମୁନି ବାକ୍ୟ ଶୁଣି ।
ଧ୍ରୁବ ଆନନ୍ଦ-ମନେ ଗୁଣି ॥୧
ସୁଜଳେ କରି ଆଚମନ ।
ଅସ୍ତ୍ର ସୁମରି ନାରାୟଣ ॥୨
ସନ୍ଧାନ ଧନୁ-ହୁଳେ କଲା ।
ତା' ଦେଖି ମାୟା ଭସ୍ମ ହେଲା ॥୩
ଗୁହ୍ୟକେ ହୋଇଲେ ଅଦୃଶ୍ୟ ।
ଦିଶିଲା ଧରଣୀ ଆକାଶ ॥୪
ଜ୍ଞାନ-ଉଦୟେ କ୍ଳେଶ ଯେହ୍ନେ ।
ଦେବେ ଦେଖନ୍ତି ରହି ଶୂନ୍ୟେ ॥୫
ଧ୍ରୁବ ଆମଞ୍ଚି ଧନୁର୍ଗୁଣ ।
ଯୋଚି ସୁବର୍ଣ୍ଣପୁଙ୍ଖ ବାଣ ॥୬
ବାଣର ପକ୍ଷ କଳହଂସ ।
ଦେଖି କମ୍ପିଲେ ଦଶ ଦିଶ ॥୭
ସେ ବାଣ ରିପୁବଳେ ପଶି ।
ଅନଳ ପ୍ରାୟ ତେଜ ଦିଶି ॥୮
ମୟୂର ଯେହ୍ନେ ନାଦ କରି ।
ଆନନ୍ଦେ ବନସ୍ତେ ବିହରି ॥୯
ଏମନ୍ତ ତୀକ୍ଷ୍ଣ ବାଣ ଭେଦି ।
ଗୁହ୍ୟକଗଣ ମାୟା ଛେଦି ॥୧୦
ଯକ୍ଷେ କୁପିତ ହୋଇ ଚିତ୍ତେ ।
ଧାଇଁଲେ ଶସ୍ତ୍ର ଘେନି ହସ୍ତେ ॥୧୧
ଯେସନେ ସର୍ପ ଫଣା ଧରି ।
ଗରୁଡ ଧାଏଁ କୋପଭରି ॥୧୨
ତାହାଙ୍କୁ ଦେଖି ରଣକ୍ଷେତ୍ରେ ।
ନାରାଚ-ଗୁଣ ଧରି ହସ୍ତେ ॥୧୩
ବିନ୍ଧଇ ଗୁହ୍ୟକ ଶରୀରେ ।
ଭେଦିଲା ବାହୁ-ଉରୁ-ଶିରେ ॥୧୪
ତକ୍ଷଣେ ଗଲେ ଛିନ୍ନ ଭିନ୍ନେ ।
ସଂଗ୍ରାମେ ଶମନ-ଭୁବନେ ॥୧୫
ଗୁହ୍ୟକବଳ ନାଶ ଦେଖି ।
ମନୁ ଯେ ଭୁବନ ଉପେକ୍ଷି ॥୧୬
ଉତ୍ତମ ଚିତ୍ରରଥେ ବସି ।
ମିଳିଲେ ରଣ ମଧ୍ୟେ ଆସି ॥୧୭
ସଙ୍ଗେ ଅଛନ୍ତି ମୁନିଜନେ ।
ଧ୍ରୁବକୁ ଦେଖି ତୋଷମନେ ॥୧୮
ଗୁହ୍ୟକ ଗଣେ ଦୟା ବହି ।
ବୋଲନ୍ତି ଧ୍ରୁବ ମୁଖ ଚାହିଁ ॥୧୯

ମନୁ ଉବାଚ

ଭୋ ବତ୍ସ ଛାଡ ମନୁ ରୋଷ ।
ଶୁଣ ତୁ ମୋର ଉପଦେଶ ॥୨୦
ଏ ରୋଷ ଘୋରତମ-ଦ୍ୱାର ।
ଏ ନୋହେ ଉତ୍ତମ ବେଭାର ॥୨୧
ଯେ ରୋଷବଶେ ଜ୍ଞାନ ହାରି ।
ନିର୍ଦ୍ଦୋଷ ପୁଣ୍ୟଜନ ମାରି ॥୨୨
ଏ ଆମ୍ଭ କୁଳଧର୍ମ ନୋହେ ।
ସାଧୁଙ୍କ ମଧ୍ୟେ ଦୋଷ ବହେ ॥୨୩
ଏକଇ ଜନ ଅପରାଧେ ।
ଅନେକ ମାରୁ କିପାଁ ଯୁଦ୍ଧେ ॥୨୪
ତୁ ଭ୍ରାତୃବଧେ କ୍ରୋଧ ବହି ।
ସାଧୁଙ୍କ ମାର୍ଗ ଏ ନୁହଇ ॥୨୫
ବିଷ୍ଣୁର ଭାବ ଯାଁ'ର ଦେହେ ।
ପ୍ରାଣୀଙ୍କି ଦୟା ହୃଦେ ବହେ ॥୨୬
ହିଂସା ନ ବହେ ତା'ର ଚିତ୍ତ ।
ଏ ହରିଭୃତ୍ୟଙ୍କର ମତ ॥୨୭
ସମଦ୍ୱେ ସର୍ବଭୂତେ ଦେଖେ ।
ତାହାକୁ ନାରାୟଣ ରଖେ ॥୨୮
ହରି ପ୍ରସନ୍ନ ପ୍ରାଣୀ ଦେହେ ।
ହିଂସ୍ରକ ପ୍ରକୃତି ନ ବହେ ॥୨୯
ନ ଲାଗେ ତ୍ରିଗୁଣ-ବନ୍ଧନ ।
ଅନ୍ତେ ଲଭଇ ନିରଞ୍ଜନ ॥୩୦
ତୁ ହରି ଭକ୍ତ ଶିରୋମଣି ।
ସର୍ବ-ସମ୍ମତେ ପରିମାଣି ॥୩୧
ସାଧୁଜନଙ୍କ ବ୍ରତ କରି ।
କେ ପାରେ ଅଧର୍ମ ଆଚରି ॥୩୨
ଯେ ପ୍ରାଣୀ ଆତ୍ମଭାବେ ସୁଖୀ ।
ହରିଙ୍କି ସର୍ବଭୂତେ ଦେଖି ॥୩୩

Dr. Sudhanshu Sekhar Mishra

ବିଷ୍ଣୁର ଭକ୍ତି ହୃଦେ ଧରି ।
ଦୟା ତିତିକ୍ଷା ଜୀବେ କରି ।।୩୪
ମଇତ୍ର ଭାବେ ଯା'ର ମନ ।
ତାହାକୁ ରଖେ ଭଗବାନ ।।୩୫
ହରି-ପ୍ରସନ୍ନେ ପ୍ରାଣୀଙ୍କର ।
ପ୍ରବୃତ୍ତି-ବନ୍ଧ ହୋଏ ଦୂର ।।୩୬
ଜୀବ ବନ୍ଧନୁ ମୋକ୍ଷ ହୋଇ ।
ନିର୍ବାଣ-ପଦେ ପଶେ ଯାଇ ।।୩୭
ଏ ପଞ୍ଚଭୂତେ ଦେହ ବହି ।
ସ୍ତିରୀ-ପୁରୁଷ ରୂପ ହୋଇ ।।୩୮
ଏ ବେନି ସଙ୍ଗମର କାଳେ ।
ରଜର ସଙ୍ଗେ ବୀର୍ଯ୍ୟ ମିଳେ ।।୩୯
ସ୍ତିରୀ ପୁରୁଷ ଦେହ ବହି ।
ଇହ ସଂସାରେ ଜନମଇ ।।୪୦
ଏମନ୍ତେ ସୃଷ୍ଟି-ସ୍ଥିତି-ନାଶ ।
ବିଷ୍ଣୁର ମାୟା ପରକାଶ ।।୪୧
ତହିଁ ନିମିତ୍ତ-ମାତ୍ର ହୋଇ ।
ପରମ ଜୀବକୁ ଭିଆଇ ।।୪୨
ମାୟାରେ ଭ୍ରମାଏ ଜଗତ ।
ଲୌହକୁ ଯେହ୍ନେ ଅୟସ୍କାନ୍ତ ।।୪୩
ସେ ହରି କାଳଶକ୍ତି-ରୂପୀ ।
ନିଜ ମାୟାରେ ବିଶ୍ୱବ୍ୟାପୀ ।।୪୪
ସର୍ବ କରଇ ସର୍ବହରେ ।
ଅକର୍ତ୍ତାରୂପେ ସେ ବିହରେ ।।୪୫
ପ୍ରବାହେ ଯେହ୍ନେ ବୃକ୍ଷରାଶି ।
ଜଳର ବଳେ ଯା'ନ୍ତି ଭାସି ।।୪୬
ଏମନ୍ତ କାଳ-ଚେଷ୍ଟା ବଳେ ।
ପ୍ରାଣୀ ଭାସନ୍ତି ଅବହେଳେ ।।୪୭
ସେ କାଳ ଅନାଦି ଅନନ୍ତ ।
ଅବ୍ୟୟ କରେ ଆଦି ଅନ୍ତ ।।୪୮
ଜନ୍ମେ ଜନଙ୍କୁ ଜନମାଇ ।
ମରଣେ ଜାହାଙ୍କୁ ମରାଇ ।।୪୯
ସପକ୍ଷ ବିପକ୍ଷ ଏ ଦୁଇ ।
ତା'ର ସ୍ୱଭାବେ ନ ଘଟଇ ।।୫୦
ପ୍ରଜାଏ ତାହାର ଆୟତ୍ତେ ।
ସମେ ବସନ୍ତି ଏ ଜଗତେ ।।୫୧

ଧୂଳି ଯେସନେ ବାୟୁବଳେ ।
ଉଡି ଭ୍ରମନ୍ତି ଅନ୍ତରାଳେ ।।୫୨
କର୍ମ ଅଧୀନ ପ୍ରାଣୀମାନେ ।
ତା' ପଛେ ଧାମନ୍ତି ତେସନେ ।।୫୩
ଜନ୍ତୁ ଆୟୁଷ ହାନି-ଲାଭ ।
ଏ ଦୁଇ କାଳର ସ୍ୱଭାବ ।।୫୪
କେହୁ ବୋଲନ୍ତି ଏ ଜଗତ ।
ଅଟଇ କର୍ମର ଆୟତ୍ତ ।।୫୫
କେ ବୋଲେ ସ୍ୱଭାବ ଏହାର ।
କେ ବୋଲେ କାଳର ସଞ୍ଚାର ।।୫୬
ବାସନା ବୋଲନ୍ତି ଅପରେ ।
ତା' ତତ୍ତ୍ୱ କେ ବା କହିପାରେ ।।୫୭
ଅପରେ ଦଇବ କେ କହି ।
କେ କହେ କାମରୂପ ହୋଇ ।।୫୮
ଅବିଦ୍ୟା କାମ ସଙ୍ଗେ ଜଡି ।
ଘୋର-ଅନ୍ଧାରେ ପ୍ରାଣୀ ପଡି ।।୫୯
ଭ୍ରମନ୍ତି କାଳ-ବାୟୁ ବଳେ ।
କଲ୍ଲୋଳ ଯେହ୍ନେ ସିନ୍ଧୁ ଜଳେ ।।୬୦
ଅବ୍ୟକ୍ତ ଅପ୍ରମେୟ ସୀମା ।
କେ ଜାଣିପାରେ ତା' ମହିମା ।।୬୧
ଏଣୁ ତୋ ଭ୍ରାତାର ମରଣ ।
ଗୁହ୍ୟକେ ନୁହଁନ୍ତି କାରଣ ।।୬୨
ଦଇବବଳ ସେ ପ୍ରମାଣ ।
ଏ କଥା ନିଶ୍ଚୟ ତୁ ଜାଣ ।।୬୩
ସ୍ୱମାୟା ଶକ୍ତିଯୁତେ ସେହି ।
ସର୍ଜଇ ପାଳଇ ହରଇ ।।୬୪
ଏଣୁ ସକଳଭୂତଙ୍କର ।
ଭୂତ ଭାବନ ଚକ୍ରଧର ।।୬୫
ଏଣୁ ସେ କାଳ ମଧ୍ୟେ ଥାଇ ।
ଦେବେ ପୂଜନ୍ତି ବଳି ଦେଇ ।।୬୬
ନାସା-ଭେଦିତ ଗାବ ଯେହ୍ନେ ।
ଭ୍ରମନ୍ତି ଦାମିନୀ ବନ୍ଧନେ ।।୬୭
ଜନନୀ ସପତ୍ନୀ ବଚନେ ।
ମର୍ମ ଭେଦିଲା ତୋର ମନେ ।।୬୮
ବନେ ପଶିଲୁ ତପ ଆଶେ ।
ସ୍ୱଭାବେ ପଞ୍ଚମ ବରଷେ ।।୬୯

ବିଷ୍ଣୁ ଆରାଧି ତପବଳେ ।
ବସିବୁ ଗଗନ-ମଣ୍ଡଳେ ।।୭୦
ତ୍ରୈଲୋକ୍ୟ-ଊର୍ଦ୍ଧ୍ୱ-ପଦଗତେ ।
ବସିବୁ କଳ୍ପ-ପରିଯନ୍ତେ ।।୭୧
ଏ ମାୟାମୟ ମୋହ-ପାଶ ।
ଛେଦିଲୁ ଭବବନ୍ଧ-ତ୍ରାସ ।।୭୨
ଏ ବର ଯା ତହୁଁ ଲଭିଲୁ ।
ପ୍ରତ୍ୟକ୍ଷେ ବିଷ୍ଣୁଙ୍କୁ ଦେଖିଲୁ ।।୭୩
ଚିତ୍ତେ ତାହାଙ୍କୁ ଏବେ ଭଜ ।
ଏ ଘୋରତମ ବେଗେ ତେଜ ।।୭୪
ସମେ ସକଳ ତାପ କ୍ଷୟ ।
ଏବେ ତୁ ହୁଅ ଶାନ୍ତକାୟ ।।୭୫
ଯାହାକୁ ଦେଖି ପ୍ରାଣୀ ଡରେ ।
ସେ ପ୍ରାଣୀ ଜୀବ ଥାଉଁ ମରେ ।।୭୬
ଈଶ୍ୱର-ମିତ୍ର ଏ କୁବେର ।
ଏହାକୁ ଅବଜ୍ଞା ନ କର ।।୭୭
ମାରି କୁବେର-ଅନୁଚର ।
କଲୁ ତୁ ଅନ୍ୟାୟ ଆଚାର ।।୭୮
ଏବେ ଏହାରେ ପ୍ରୀତି କର ।
ସର୍ବ-କୁଶଳ ହେବ ତୋର ।।୭୯

ମୈତ୍ରେୟ ଉବାଚ

ଏମନ୍ତ ସ୍ୱାୟମ୍ଭୁବ-ମନୁ ।
ପ୍ରବୋଧ କଲେ ପୌତ୍ର ମନ୍ୟୁ ।।୮୦
ଧ୍ରୁବକୁ ଆଲିଙ୍ଗନ କଲେ ।
ମୁନିଙ୍କ ସଙ୍ଗେ ପୁରେ ଗଲେ ।।୮୧
ସେ ମନୁ ଚରଣାରବିନ୍ଦେ ।
ସୁଜନେ ନମ ହେ ଆନନ୍ଦେ ।।୮୨
ଚତୁର୍ଥ ସ୍କନ୍ଧ ଭାଗବତ ।
ହରି-ମହିମା ସୁଚରିତ ।।୮୩
ସୁଜନ-ଜନେ ଏଣେ ରସ ।
କହଇ ଜଗନ୍ନାଥ ଦାସ ।।୮୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ଧ୍ରୁବଚରିତଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।।

Dr. Sudhanshu Sekhar Mishra

## ଚତୁର୍ଦ୍ଦଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଧ୍ରୁବର କୋପ ଯହୁଁ ଗଲା ।
କୁବେର ଭୁବନେ ଜାଣିଲା ॥୧
ତକ୍ଷଣେ ନିଜ ଗଣ ତୁଲେ ।
ଧ୍ରୁବ ସମୀପେ ଆସି ମିଳେ ॥୨
ଅଞ୍ଜଳି କରି ବେନିପାଣି ।
କାକୁସ୍ତେ କହେ ମଞ୍ଜୁବାଣି ॥୩

କୁବେର ଉବାଚ

ଆହେ କ୍ଷତ୍ରିୟ-ଚୂଡ଼ାମଣି ।
ତୋର ମହିମା ମୁହିଁ ଶୁଣି ॥୪
ମିଳିଲି ତୋହର ସମୀପେ ।
ଗୁହ୍ୟ-କିନ୍ନର ଘେନି ଆପେ ॥୫
ତୁ ଯେଣୁ ପିତାମହ ବୋଲେ ।
କୋପ ଛାଡ଼ିଲୁ ରିପୁ ତୁଲେ ॥୬
ଭ୍ରାତୃ-ମରଣେ କୋପ ବହି ।
ଗୁହ୍ୟକ ବିନାଶିଲୁ ତୁହି ॥୭
କେହି କାହାର ହନ୍ତା ନୋହେ ।
ପ୍ରାଣୀ-ଜୀବନ କାଳ ଦହେ ॥୮
ଏ ଜୀବ ଅହଂକାର ବହି ।
ଆତ୍ମାକୁ ବୋଲେ ତୁହି ମୁହିଁ ॥୯
ଏ ନୋହେ ଜ୍ଞାନୀଙ୍କର ମତ ।
ଯାହାକୁ ପ୍ରସନ୍ନ ଅନନ୍ତ ॥୧୦
ସଂସାର ଦେଖେ ସ୍ୱପ୍ନ ପ୍ରାୟେ ।
ସେ ମୋହେ ନୋହେ ବିପର୍ଯ୍ୟୟେ ॥୧୧
ତୋର ମଙ୍ଗଳ ହେଉ ନିତ୍ୟେ ।
ଗୃହେ ତୁ ଚଳ ଶୁଦ୍ଧ ଚିତ୍ତେ ॥୧୨
ଯା ଶକ୍ତି ମାୟା-ଗୁଣମୟୀ ।
ତହିଁରେ ଥାଇ ଯେ ନ ଥାଇ ॥୧୩
ସେ ହରିପାଦେ ଆଶ୍ରେ କରେ ।
ଆତ୍ମାକୁ ସଂସାରୁ ଉଦ୍ଧରେ ॥୧୪
ତୋତେ ମୋ ହୃଦେ ଅନୁରାଗ ।
ଯେ ତୋର ଇଚ୍ଛା ବର ମାଗ ॥୧୫
ହରିଙ୍କି ହୃଦେ ପରିମାଣୁ ।
ତୁ ବର-ଯୋଗ୍ୟ ହେଉ ତେଣୁ ॥୧୬

ମୈତ୍ରେୟ ଉବାଚ

ଏମନ୍ତେ କୁବେର-ବଚନେ ।
ଧ୍ରୁବ ବିଚାରି ତୋଷମନେ ॥୧୭
ବୋଲଇ ହରି-ପାଦଗତେ ।
ମୋହର ମନ ଥାଉ ନିତ୍ୟେ ॥୧୮
ଅନ୍ୟ କଳ୍ପନା ନାହିଁ ମୋର ।
ଯାର ପ୍ରସନ୍ନେ ଭବୁ ପାର ॥୧୯
କହେ କୁବେର ଧ୍ରୁବେ ଚାହିଁ ।
ଏ ବର ଲଭ ଧ୍ରୁବ ତୁହି ॥୨୦
ଏମନ୍ତ କହି ଧ୍ରୁବ ପାଶେ ।
କୁବେର ଗମିଲା ଆକାଶେ ॥୨୧
ଏବେ ହୋ ଶୁଣ ମହୀପତି ।
ଧ୍ରୁବର ଅର୍ଜିଲା ବିଭୂତି ॥୨୨
କୁବେର-ଭୁବନୁ ସନ୍ତୋଷ ।
ଧ୍ରୁବ ଗମିଲା ନିଜ-ଦେଶେ ॥୨୩
ନିଜ-ଭୁବନେ ଧ୍ରୁବ ଯାଇ ।
ଋତ୍ୱିଜ ପୁରୋହିତ ରାଇ ॥୨୪
ସଂକଳ୍ପ କରି ଯଜ୍ଞମତେ ।
ପୂଜିଲା ବିଷ୍ଣୁ-ପାଦଗତେ ॥୨୫
ଏ ଭାବେ ସମ୍ପଦ-ସମ୍ପାଦି ।
ଅଣିମା ଆଦି ଅଷ୍ଟନିଧି ॥୨୬
ସର୍ବ ସମ୍ପଦ ଭୋଗ କଲା ।
ଗୃହେ ଉତ୍ତାନପାଦ-ବଳା ॥୨୭
ସର୍ବ ପ୍ରକାରେ ବିଷ୍ଣୁ ପାଦେ ।
ଭକ୍ତି ସାଧିଲା ଅପ୍ରମାଦେ ॥୨୮
ପ୍ରଜାଏ ଧ୍ରୁବର ରାଜତ୍ୱେ ।
ଆନନ୍ଦେ ବଞ୍ଚିଲେ ଜଗତେ ॥୨୯
ସ୍ୱଭାବେ ଧ୍ରୁବ ଧର୍ମଶୀଳ ।
ସୁସାଧୁ ବ୍ରାହ୍ମଣ-ବତ୍ସଳ ॥୩୦
ଧ୍ରୁବଙ୍କୁ ପିତୃଭାବେ ଜାଣି ।
ଦୁଃଖ ସୁଖକୁ ନ ପ୍ରମାଣି ॥୩୧
ଆନନ୍ଦ ମନେ ଜନ ପ୍ରଜା ।
ପାଳନ କଲେ ଧ୍ରୁବ ରାଜା ॥୩୨
ସପତ-ଦ୍ୱୀପ ଅଧିପତି ।
ହୋଇଲେ ମନୁର ସନ୍ତତି ॥୩୩
ଛତିଶ-ସହସ୍ର-ବରଷ ।
ସ୍ୱଭାବେ ପରମ ଆୟୁଷ ॥୩୪
ଆନନ୍ଦ ମନେ ଭୋଗ କଲା ।
ଭୂମି ମଣ୍ଡଳେ ମନୁବଳା ॥୩୫
ଭୋଗରେ ପୁଣ୍ୟ କ୍ଷୟ କରି ।
ଯଜ୍ଞାଦି କାର୍ଯ୍ୟେ ପାପହରି ॥୩୬
ତ୍ରିବର୍ଗ ସାଧନ କରିଣ ।
ପୁତ୍ରକୁ କରି ରାଜ୍ୟ ଦାନ ॥୩୭
ନୃପ-ଆସନେ ବସାଇଲା ।
ସ୍ୱରାଜ୍ୟେ ଅଭିଷେକ କଲା ॥୩୮
ଆତ୍ମ-ସମ୍ପଦ ଆଦି ଯେତେ ।
ସ୍ୱପନ ପ୍ରାୟ ମଣି ଚିତ୍ତେ ॥୩୯
ବିଷ୍ଣୁର ମାୟା-ବଳ ଜାଣି ।
ଗନ୍ଧର୍ବ-ପୁର ପ୍ରାୟ ମଣି ॥୪୦
ପୁତ୍ର କଳତ୍ର ଦେହ ମିତ୍ର ।
ଧନାଦି ସକଳ ଅନିତ୍ୟ ॥୪୧
ସର୍ବ-ସମ୍ପଦ ପରିହରି ।
ସଂଯମେ ଆତ୍ମା ବଶ କରି ॥୪୨
ଆଶ୍ରମ ନାମ ବଦରିକା ।
ତହିଁ ମିଳିଲେ ଧ୍ରୁବ ଏକା ॥୪୩
ନିବୃତ୍ତ କରି ଇନ୍ଦ୍ରିଗଣ ।
ଚିତ୍ତେ ସୁମରି ନାରାୟଣ ॥୪୪

Dr. Sudhanshu Sekhar Mishra

ବିଷ୍ଣୁର ସ୍ଥୂଳ-ରୂପେ ମନ ।
ଧାରଣା ବଳେ କରି ଧ୍ୟାନ ॥୪୫
ତକ୍ଷଣେ ଲିଙ୍ଗ ରୂପ ଗଲା ।
ନିର୍ମଳ-ଜ୍ୟୋତି ପ୍ରକାଶିଲା ॥୪୬
ଧ୍ରୁବର ଭକ୍ତି ଦୃଢ଼ ହେଲା ।
ତା ଅଭିମାନ ଦୂରେ ଗଲା ॥୪୭
ନୟନୁ ଅଶ୍ରୁ-ବିଗଳିତ ।
ଆନନ୍ଦେ ଅଙ୍ଗ-ପୁଲକିତ ॥୪୮
ବିମାନ ଦେଖିଲା ଗଗନେ ।
ପୂର୍ଣ୍ଣିମା-ସୁଧାକର ଯେହ୍ନେ ॥୪୯
ତେଜେ ବିରାଜେ ଦଶଦିଶ ।
ଆକାଶୁ ହେଲା ପରବେଶ ॥୫୦
ରଥେ ଅଛନ୍ତି ବେନିଦୂତ ।
ଗଞ୍ଜନ୍ତି ଶଶାଙ୍କ-ଆଦିତ୍ୟ ॥୫୧
କିଶୋର-ତନୁ ଶ୍ୟାମ ବର୍ଣ୍ଣ ।
ଅରୁଣ-ପଙ୍କଜଲୋଚନ ॥୫୨
ଶୋହେ ସୁନ୍ଦର ଭୁଜଚାରି ।
ବିଷ୍ଣୁ-ଆୟୁଧ ଛନ୍ତି ଧରି ॥୫୩
ଅଙ୍ଗଦ କିରୀଟ କୁଣ୍ଡଳ ।
ହୃଦେ ଲମ୍ବଇ ବନମାଳ ॥୫୪
ରତ୍ନ-ମେଖଳା କଟି-ମାଝେ ।
ମକର କୁଣ୍ଡଳ ବିରାଜେ ॥୫୫
ଧ୍ରୁବ ନିକଟେ ଯାଇ ମିଳି ।
ଗଗନୁ ଖସେ କି ବିଜୁଳି ॥୫୬
ଧ୍ରୁବ ଆନନ୍ଦ ତା'ଙ୍କୁ ଦେଖି ।
ସଂଭ୍ରମେ ଆସନ ଉପେକ୍ଷି ॥୫୭
ତୁଣ୍ଡେ ଗୋବିନ୍ଦ-ନାମ ଗାଇ ।
କପାଳେ ବେନିକର ଦେଇ ॥୫୮
ନମିଲା ତାଙ୍କ ପାଦ ତଳେ ।
ରୋମ-ପୁଲକ ଅଶ୍ରୁଜଳେ ॥୫୯
ସୁନନ୍ଦ ନନ୍ଦ ପାରିଷଦେ ।
ତକ୍ଷଣେ ମିଳିଲେ ଆନନ୍ଦେ ॥୬୦
ଶ୍ରୀକୃଷ୍ଣ-ନାମ ତୁଣ୍ଡେ ଗାଇ ।
ବୋଲନ୍ତି ଧ୍ରୁବ ମୁଖ ଚାହିଁ ॥୬୧

ଶୁଣ ଉତ୍ତାନପାଦ-ସୁତ ।
ସଂସାରେ ତୁହି ଭାଗ୍ୟବନ୍ତ ॥୬୨
ତୁ ବାଳ ପଞ୍ଚମ-ବରଷେ ।
ତପେ ତୋଷିଲୁ ହୃଷୀକେଶେ ॥୬୩
ଏବେ ଗୋବିନ୍ଦ ଆଜ୍ଞା ଶିରେ ।
ଘେନି ମିଳିଲୁ ତୋ ଛାମୁରେ ॥୬୪
ଧ୍ରୁବପଦକୁ ନେବୁ ତୋତେ ।
ଦେଖ କାଞ୍ଚନ-ଦିବ୍ୟରଥେ ॥୬୫
ଦୁର୍ଲ୍ଲଭ ଧ୍ରୁବପଦ ତୁହି ।
ବନେ ଲଭିଲୁ ତପଦାହି ॥୬୬
ଏ ଶିଶୁମାର ଚକ୍ର ତୁଳେ ।
ଚନ୍ଦ୍ର-ଆଦିତ୍ୟ-ତାର ମେଳେ ॥୬୭
ନିତ୍ୟେ ଭ୍ରମନ୍ତି ପ୍ରଦକ୍ଷିଣେ ।
ପବନ-ରଜ୍ଜୁ ଆକର୍ଷଣେ ॥୬୮
ଯେ ପଦେ ତୋର ପିତୃଜନ ।
ପ୍ରବେଶେ ନୋହିଲେ ଭାଜନ ॥୬୯
କେ ଆନ ତାହା ଲଭିପାରେ ।
ଅନିତ୍ୟ-ସଂସାର-ସାଗରେ ॥୭୦
ଅଶେଷ-ଜଗତ-ବନ୍ଦନ ।
ବିଷ୍ଣୁ-ପରମପଦ-ସ୍ଥାନ ॥୭୧
ଏଣୁ ଏ ଉତ୍ତମ-ବିମାନ ।
ତୋଷେ ପେଷିଲେ ଭଗବାନ ॥୭୨
ତୁ ଏବେ ବସ ସ୍ଥିରମନେ ।
ବିମାନ ବାହିବୁ ଗଗନେ ॥୭୩

ମୈତ୍ରେୟ ଉବାଚ

ଏମନ୍ତେ ବିଷ୍ଣୁଦୂତ ବାଣୀ ।
ଆନନ୍ଦମନେ ଧ୍ରୁବ ଶୁଣି ॥୭୪
ତକ୍ଷଣେ ଧ୍ରୁବ ସ୍ନାନ ସାରି ।
ନିତ୍ୟ-ମଙ୍ଗଳ-କର୍ମ କରି ॥୭୫
ତଦନ୍ତେ ଅଳଙ୍କୃତ ହେଲା ।
ମୁନିଙ୍କଚରଣେ ନମିଲା ॥୭୬
ମୁନିଜନଙ୍କ ଆଶୀର୍ବାଦେ ।
ଜୟମଙ୍ଗଳ ବେଦନାଦେ ॥୭୭

ବିମାନ ପ୍ରଦକ୍ଷିଣ କରି ।
ବିଷ୍ଣୁଦୂତଙ୍କୁ ନମସ୍କାରି ॥୭୮
ହିରଣ୍ୟମୟ ରୂପ ଧରେ ।
ସ୍ୱତେଜେ ଦଶଦିଗ ପୂରେ ॥୭୯
ଗନ୍ଧର୍ବ ଚତୁର୍ବିଧ ବାଦ୍ୟେ ।
ଦିଗ ପୂରିଲେ ଗୀତ ନାଦେ ॥୮୦
ପୁଷ୍ପ ବରଷନ୍ତି ହରଷେ ।
ବିବୁଧେ ଦେଖନ୍ତି ଆକାଶେ ॥୮୧
ତକ୍ଷଣେ ସୁନୀତିର କଥା ।
ସ୍ମରଣେ ଧ୍ରୁବ ମନେ ବ୍ୟଥା ॥୮୨
ଦୁଃଖିନୀ ମୋହର ଜନନୀ ।
ତାହାକୁ ତେଜି ମୁହିଁ ପୁଣି ॥୮୩
ଯିବି ମୁଁ ସ୍ୱର୍ଗକୁ କି ରୂପେ ।
ଦୂତେ ଜାଣିଲେ ତା' ସଙ୍କଳ୍ପେ ॥୮୪
ବୋଇଲେ ଦେଖ ଭକ୍ତାଗ୍ରଣୀ ।
ଅଗ୍ରେ ବିମାନେ ତୋ ଜନନୀ ॥୮୫
ତା' ଶୁଣି ଚିତ୍ତ କଲା ସ୍ଥିର ।
ସେ ବିଷ୍ଣୁଭକ୍ତଙ୍କର ବର ॥୮୬
ସୁନୀତି ଜନନୀ ସହିତେ ।
ବସିଲେ ରତ୍ନମୟ-ରଥେ ॥୮୭
ବିମାନ ଯା'ନ୍ତେ ସ୍ୱର୍ଗପଥେ ।
ଦେବେ ଯେ ବସି ନିଜ ରଥେ ॥୮୮
ଧ୍ରୁବକୁ ଦେଖି ପ୍ରଶଂସନ୍ତି ।
କେ ବା ଆନନ୍ଦେ କରେ ସ୍ତୁତି ॥୮୯
ଏମନ୍ତେ ପୁଷ୍ପ ବୃଷ୍ଟି-ପଥେ ।
ଗ୍ରହଙ୍କୁ ଦେଖିଲେ ଅଗ୍ରତେ ॥୯୦
ତ୍ରୈଲୋକ୍ୟ ଜିଣି ଦିବ୍ୟଯାନେ ।
ମୁନିଙ୍କି ଦେଖିଲା ବିମାନେ ॥୯୧
ମୁନିଙ୍କି ନମିଣ ଆନନ୍ଦେ ।
ବିଜୟେ କଲା ବିଷ୍ଣୁପଦେ ॥୯୨
ସେ ବିଷ୍ଣୁପଦର ମହିମା ।
କେ କହିପାରେ ଗୁଣସୀମା ॥୯୩
ଯେ ପ୍ରାଣୀ ଶାନ୍ତ ସମଦୃଶ ।
ଅଶେଷ ଜନ୍ତୁଙ୍କ ବିଶ୍ୱାସ ॥୯୪

Dr. Sudhanshu Sekhar Mishra

ହରି-ଚରଣେ ଚିତ୍ତ ଯା'ର ।
ସୁଶାନ୍ତ ସମବୁଦ୍ଧି ତା'ର ॥୯୫
ସେ ପ୍ରାଣୀ ସେ ପୁରେ ପଶନ୍ତି ।
ମାୟା-ବନ୍ଧନୁ ନିସ୍ତରନ୍ତି ॥୯୬
ଏଣୁ ଉତ୍ତାନପାଦ ସୁତ ।
ବିଷ୍ଣୁର ପରମ ଭକତ ॥୯୭
ସକଳଲୋକ ଚୂଡ଼ାମଣି ।
ନିର୍ମଳ ବୋଲି ଯା'କୁ ଗଣି ॥୯୮
ସେ ଧ୍ରୁବ ବସିଲା ଯେ ସ୍ଥାନେ ।
ତା ଗୁଣ ଶୁଣ ସାବଧାନେ ॥୯୯
ଗଭୀର ବେଗେ କାଳଚକ୍ରେ ।
ବାୟୁ ରସନା ଅତିରେକେ ॥୧୦୦
ଗ୍ରହ ନକ୍ଷତ୍ର ତାରାଗଣେ ।
ଭ୍ରମନ୍ତି ମେଧି ଆକର୍ଷଣେ ॥୧୦୧
ତା'ର ମହିମା ଯଶ ଘୋଷି ।
ବୀଣା-ଶବଦେ ଦେବଋଷି ॥୧୦୨
ପ୍ରଚେତାଗଣ ସଙ୍ଗେ ଥାଇ ।
ନୃତ୍ୟ କରନ୍ତି ଗୀତ ଗାଇ ॥୧୦୩
ଧ୍ରୁବର ଯଶ-ଗୁଣ-ବୃନ୍ଦ ।
ସେ ଯଜ୍ଞେ କହନ୍ତି ନାରଦ ॥୧୦୪
କି ପତିବ୍ରତା ଏ ସୁନୀତି ।
କି ବା ତା ସୁତ ଧ୍ରୁବ ଗତି ॥୧୦୫
କିବା ତା ତପର ପ୍ରଭାବ ।
ବେଦବାଦୀଙ୍କି ଅସମ୍ଭବ ॥୧୦୬
ସେ ତପେ ହରିଙ୍କି ତୋଷିଲା ।
ଜନନୀ ସଙ୍ଗେ ସ୍ୱର୍ଗେ ଗଲା ॥୧୦୭
ଶୁଣ ହେ ବ୍ୟାସଙ୍କ କୁମର ।
ସାଧୁଜନଙ୍କ ମଧ୍ୟେ ବର ॥୧୦୮
ତୁ ଯେଣୁ ପଚାରିଲୁ ମୋତେ ।
ଧ୍ରୁବ-ଚରିତ ଭାଗବତେ ॥୧୦୯
ଉତ୍ତମ-ଯଶା ଧ୍ରୁବ ବାଣୀ ।
ଯେ ଏହା ଏକମନେ ଶୁଣି ॥୧୧୦
ବିସ୍ତାରି କହେ ସାଧୁମେଳେ ।
ବସଇ ବୈଷ୍ଣବ-ମଣ୍ଡଳେ ॥୧୧୧
ଯଶ ଆୟୁଷ ଧନ ମାନ ।
ସ୍ୱର୍ଗେ ନିବାସ ସ୍ୱସ୍ତ୍ୟୟନ ॥୧୧୨
ବିଘ୍ନ-ସମୂହେ ନାହିଁ ଭ୍ରାନ୍ତି ।
ସକଳ-କ୍ଳେଶୁ ନିସ୍ତରନ୍ତି ॥୧୧୩
ବିଷ୍ଣୁ-ସମୀପେ ପ୍ରାତଃକାଳେ ।
ଗୋବିନ୍ଦ-ଭକ୍ତିଭାବ ଭୋଳେ ॥୧୧୪
ପୂର୍ଣ୍ଣିମା ଅମାବାସ୍ୟା ଦିନେ ।
ଦ୍ୱାଦଶୀ ଶ୍ରବଣା ବିଧାନେ ॥୧୧୫
ଦିବସ-କ୍ଷୟ ବ୍ୟତିପାତେ ।
ସଙ୍କ୍ରାନ୍ତି ଅର୍କବାର ଯୁତେ ॥୧୧୬
ଶ୍ରଦ୍ଧା ପୂର୍ବକ ଯେ ପଢ଼ନ୍ତି ।
ଅଥବା ଶ୍ରବଣେ ଶୁଣନ୍ତି ॥୧୧୭
ଜ୍ଞାନ-ସନ୍ତୋଷ ପ୍ରାଣୀଙ୍କର ।
ଚତୁରବର୍ଗ ନୋହେ ଦୂର ॥୧୧୮
ସକାମ-ଚିତ୍ତେ ଚିନ୍ତେ ଯେବେ ।
ଶୁଣନ୍ତି ଧନ-ପୁତ୍ର ଲଭେ ॥୧୧୯
କୁଳେ ସୁପୁତ୍ର ହୋଏ ଜାତ ।
ଯେ ଶୁଣେ ଧ୍ରୁବର ଚରିତ ॥୧୨୦
ସଂସାର-ଜନଙ୍କର ହିତେ ।
ପୁରାଣ କଲି ଗୀତ କୃତେ ॥୧୨୧
କହଇ ଦାସ ଜଗନ୍ନାଥ ।
ଚତୁର୍ଥସ୍କନ୍ଧେ ଭାଗବତ ॥୧୨୨

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥସ୍କନ୍ଧେ ଧ୍ରୁବଚରିତଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

---

## ପଞ୍ଚଦଶ ଅଧ୍ୟାୟ

### ସୂତଉବାଚ

ମୈତ୍ରେୟ ବାକ୍ୟ ଶୁଣି କର୍ଣ୍ଣେ ।
ଆନନ୍ଦ ବିଦୁରର ମନେ ॥୧
ଧ୍ରୁବ ଯେ ଜନନୀ ସହିତେ ।
ନିଶ୍ଚଳେ କଳ୍ପ ପରିଯନ୍ତେ ॥୨
ବସିଲା ଯାଇ ଧ୍ରୁବପଦେ ।
ଜ୍ୟୋତିଷ୍କ ଗ୍ରହ ଚକ୍ର ମଧ୍ୟେ ॥୩
ମୈତ୍ରେୟ ପାଦେ ଦେଇ କର ।
ଆନନ୍ଦେ ପୁଚ୍ଛଇ ବିଦୁର ॥୪

### ବିଦୁର ଉବାଚ

ଭୋ ମୁନି ପ୍ରଚେତସମାନେ ।
କେବା ସେ କେବଣ ଭୁବନେ ॥୫
କେବଣ ବଂଶେ କିବା ଜାତି ।
କାହାର ପୁତ୍ର ସେ ବୋଲାନ୍ତି ॥୬
ପୂର୍ବେ ସେ ନାରଦ ବଚନେ ।
ଯଜ୍ଞ ଆରମ୍ଭି କେଉଁ ବନେ ॥୭
ହରିଙ୍କି କ୍ରିୟାଯୋଗେ ପାଇ ।
ଭବୁ ତରିଲେ ଦଶଭାଇ ॥୮
ସେ ଧର୍ମଶୀଳ ପ୍ରଚେତସ ।
ଯଜ୍ଞେ ବିଷ୍ଣୁଙ୍କୁ କରି ତୋଷ ॥୯
ସେ କଥା କହ ମୁନି ମୋତେ ।
ସଂସାରୁ ତରିବି ଯେମନ୍ତେ ॥୧୦
ମୈତ୍ରେୟ କହିଲେ ବିଦୁର ।
ଶୁଣ ହେ ବୃତ୍ତାନ୍ତ ତାହାର ॥୧୧
ତୁ ଯେ ପ୍ରାର୍ଥନା କଲୁ ମୋତେ ।
ଶୁଣ ବିଦୁର କହୁ ତୋତେ ॥୧୨
ଧ୍ରୁବର ପୁତ୍ର ଗୁଣଧାମ ।
ଜ୍ୟେଷ୍ଠ ଉତ୍କଳ ତା'ର ନାମ ॥୧୩

Dr. Sudhanshu Sekhar Mishra

ତାହାକୁ ଅଧିରାଜ୍ୟେ ସ୍ଥାପେ ।
ଧ୍ରୁବ ଯେ ଗଲା ବନେ ତପେ ॥୧୪
ସେ ବସି ରାଜାର ଆସନେ ।
ଉତ୍ତମ ରତ୍ନ-ସିଂହାସନେ ॥୧୫
ଅନେକ ଦିନ ରାଜ୍ୟ କରି ।
ସେ ଗୁଣୀ ମନରେ ବିଚାରି ॥୧୬
ପିତାର ଯାତ୍ରା ଶୁଣି କର୍ଣ୍ଣେ ।
ସୁଖ ନ ଲଭେ ଦୁଃଖ ମନେ ॥୧୭
ସେ ଯେ ସ୍ୱଭାବେ ଆତ୍ମଜ୍ଞାନୀ ।
ସମଦରଶୀ ବୁଦ୍ଧି ଘେନି ॥୧୮
ଦେଖଇ ସର୍ବଭୂତେ ହରି ।
ସ୍ଥାବର ଜଙ୍ଗମାଦି କରି ॥୧୯
ଏକାନ୍ତ ଆତ୍ମବୋଧ-ରସେ ।
ଗୁଣ-ପ୍ରବାହେ ସେ ନ ମିଶେ ॥୨୦
ନିର୍ଗୁଣ-ମନ-ବୁଦ୍ଧି ତା'ର ।
ନ ଜାଣେ ବାହ୍ୟ ଅଭ୍ୟନ୍ତର ॥୨୧
ଜଡାନ୍ଧ-ବଧିରଙ୍କ ପ୍ରାୟେ ।
ଭସ୍ମ-ଭୂଷିତ ଶୁଦ୍ଧ ଦେହେ ॥୨୨
ବାଳେ ଧାବନ୍ତି ଯାକୁ ଦେଖି ।
କେ ପାରେ ତାଙ୍କ ଗୁଣ ଲେଖି ॥୨୩
ବୁଲଇ ନାନା-ମାର୍ଗେ ଲୁଚି ।
କେହି ନ ପାରେ ତାକୁ ଲକ୍ଷି ॥୨୪
ଜଡ ଉନ୍ମତ୍ତ ତାକୁ ଜାଣି ।
ବନ୍ଧୁ ବାନ୍ଧବ ମନେ ଗୁଣି ॥୨୫
ମନ୍ତ୍ରୀ-ଅମାତ୍ୟଗଣେ ମିଳି ।
ରାଜ୍ୟ-ରକ୍ଷଣ ନିତ୍ୟେ ଭାଳି ॥୨୬
ବତ୍ସର ତା ଅନୁଜ ନାମ ।
ସୁନ୍ଦର ସର୍ବ-ଗୁଣଧାମ ॥୨୭
ତାହାକୁ ସକଳେ ବିଚାରି ।
ସ୍ୱରାଜ୍ୟେ ଅଭିଷେକ କରି ॥୨୮
ସ୍ଥାପିଲେ ନୃପତି ଆସନେ ।
ଏମନ୍ତେ ଗଲା କେତେଦିନେ ॥୨୯
ସ୍ୱର୍ବୀଥି ନାମେ ପତ୍ନୀ ତା'ର ।
ଯୋଷିତଗଣେ ସେ ଗମ୍ଭୀର ॥୩୦

ତା'ର ଉଦରୁ ସୁତ ଜାତ ।
ହୋଇଲେ ଗୁଣେ ଅପ୍ରମିତ ॥୩୧
ପୁଷ୍ପାର୍ଣ୍ଣ ତିଗ୍ମକେତୁ ନାମ ।
ଇଷ ଉର୍ଜ୍ଜ ଯେ ଅନୁପମ ॥୩୨
ବସୁ ଜୟ ଯେ ଷଟ ସୁତେ ।
ଗୁଣେ ପ୍ରଖ୍ୟାତ ଏ ଜଗତେ ॥୩୩
ପ୍ରଭା ଦୋଷା ଯେ ବେନି ନାରୀ ।
ପୁଷ୍ପାର୍ଣ୍ଣ ତୁଲେ ବିଭାକରି ॥୩୪
ସେ ପ୍ରଭା ଗର୍ଭେ ତିନି ସୁତ ।
ହୋଇଲେ ଜଗତେ ବିଖ୍ୟାତ ॥୩୫
ପ୍ରାତଃ ମଧ୍ୟାହ୍ନ ସାୟଂକାଳ ।
ସ୍ୱଭାବେ ତେଜ ଅନର୍ଗଳ ॥୩୬
ପ୍ରଦୋଷ ନିଶୀଥ ଯେ ବ୍ୟୁଷ୍ଟ ।
ଦୋଷା ତନୟ ତିନି ଶ୍ରେଷ୍ଠ ॥୩୭
ବ୍ୟୁଷ୍ଟର ପତ୍ନୀ ପୁଷ୍କରଣୀ ।
ତା ଗର୍ଭେ ସର୍ବତେଜା ଜନ୍ମି ॥୩୮
ଆକୂତି କନ୍ୟା ହେଲା ବିଭା ।
କିବା ଉପମା ତାରେ ଦେବା ॥୩୯
ଚାକ୍ଷୁଷ ମନୁ ତା'ର ବୀର୍ଯ୍ୟେ ।
ଜନ୍ମିଲା ଆକୂତିର ଗର୍ଭେ ॥୪୦
ନଡ୍ୱଳା ଚାକ୍ଷୁଷର ନାରୀ ।
ରୂପେ କମଳା ନୋହେ ସରି ॥୪୧
ତାର ଉଦରେ ବାର ସୁତେ ।
ଜନ୍ମିଲେ ବିଷ୍ଣୁତେଜ ଯୁତେ ॥୪୨
ନାମ ସେ ପୁରୁ କୁତ୍ସ ତ୍ରିତ ।
ଦ୍ୟୁମ୍ନ ସତ୍ୟ ଯେ ଋତବ୍ରତ ॥୪୩
ଅତିରାତ୍ର ଯେ ଅଗ୍ନିଷ୍ଟୋମ ।
ଶିବି ଯେ ଉଲ୍ମୁକ ପ୍ରଦ୍ୟୁମ୍ନ ॥୪୪
ଉଲ୍ମୁକ ତହୁଁ ଷଟସୁତ ।
ହୋଇଲେ ମନୁବଂଶେ ଖ୍ୟାତ ॥୪୫
ଅଙ୍ଗ ସୁମନା ଖ୍ୟାତି ତିନି ।
କ୍ରତୁ ଅଙ୍ଗିରା ଗୟ ଘେନି ॥୪୬
ସୁନୀଥା ଯମର ଦୁହିତା ।
ଅଙ୍ଗର ଅଟେ ସେ ବନିତା ॥୪୭

ବେଣ ତାହାର ଗର୍ଭୁ ଜାତ ।
ଶୁଣ ହେ ତାହାର ଚରିତ ॥୪୮
ସେ ପୁଣି ମାତାମହ ଦୋଷେ ।
ଦୁଷ୍ଟ ହୋଇଲା ମନୁ ବଂଶେ ॥୪୯
ଦୁଃଶୀଳପଣ ଦେଖି ତା'ର ।
ପିତା ଚଳିଲା ଛାଡି ପୁର ॥୫୦
ତାହାର ଦେଖି ଦୁଷ୍ଟପଣ ।
କୋପେ ନାଶିଲେ ମୁନିଗଣ ॥୫୧
ପୁଣି ତାହାର ମୃତ-ଗାତ୍ରେ ।
ବିପ୍ରେ ମନ୍ଥିଲେ ପୁତ୍ର ଅର୍ଥେ ॥୫୨
ଦକ୍ଷିଣ କରେ କୁଶ ବିଡି ।
ମନ୍ଥନ କଲେ ବେଦ ପଢି ॥୫୩
ପ୍ରଜା ଅନାଥ ଅରାଜକେ ।
ଦୁଷ୍ଟେ ପୀଡିଲେ ଅତିରେକେ ॥୫୪
ତା' ତହୁଁ ପୃଥୁ ନାମେ ହରି ।
ଜନ୍ମିଲେ ରାଜରୂପ ଧରି ॥୫୫
ତା' ଶୁଣି ସନ୍ତୋଷେ ବିଦୁର ।
ମୁନି ଚରଣେ ଦେଇ କର ॥୫୬
ରୋମ ପୁଲକ ତନୁ ବହି ।
ପୁଚ୍ଛଇ କୃତକୃତ୍ୟ ହୋଇ ॥୫୭

ବିଦୁର ଉବାଚ

ଯେ ଅଙ୍ଗ ସାଧୁ ଶୀଳନିଧି ।
ସର୍ବ-ଲକ୍ଷଣ ଶ୍ରେୟ-ବୁଦ୍ଧି ॥୫୮
ବ୍ରାହ୍ମଣ ପ୍ରଜା ରକ୍ଷାକାରୀ ।
ସେ ସର୍ବଧର୍ମେ ଅଧିକାରୀ ॥୫୯
ତାହାର ବେଣ ନାମେ ସୁତ ।
ସେ ଦୁଷ୍ଟ ହୋଇଲା କେମନ୍ତ ॥୬୦
ପ୍ରଜାଏ ତା'ର ଦୁଷ୍ଟପଣେ ।
ଭୟେ ପଶିଲେ ଘୋରବନେ ॥୬୧
କିପାଁ ବ୍ରାହ୍ମଣେ କୋପକଲେ ।
ତାହାକୁ ବ୍ରହ୍ମଦଣ୍ଡ ଦେଲେ ॥୬୨
ସେ ବିପ୍ରବରେ ସର୍ବଜ୍ଞାତା ।
ଆଗମ ନିଗମ ବକତା ॥୬୩

Dr. Sudhanshu Sekhar Mishra

ଏତେ ଅନ୍ୟାୟ କିପାଁ କଲେ ।
ରାଜାଙ୍କୁ କିପାଁ ବିନାଶିଲେ ॥୬୪
ରାଜାର ଶରୀରେ ନିଶ୍ଚଳେ ।
ବସନ୍ତି ଦଶଦିଗପାଳେ ॥୬୫
ଯେ ରାଜା ବିଷ୍ଣୁତେଜ ବହି ।
ସ୍ୱଧର୍ମେ ପ୍ରଜାଙ୍କୁ ପାଳଇ ॥୬୬
ସକଳ ରକ୍ଷଣର ଅର୍ଥେ ।
ତେଣୁ ଭିଆଣ ରାଜମତେ ॥୬୭
ଯମର ସୁତା-ସୁତ ଯେଣୁ ।
ଦୁଷ୍ଟ ହୋଇଲେ ଅବା ତେଣୁ ॥୬୮
ତଦ୍ୱଙ୍କ ମଧ୍ୟେ ତୁ ଉତ୍ତମ ।
ସର୍ବଜ୍ଞ ତୁହି ପୁଣ୍ୟଧାମ ॥୬୯
ଏ କଥା କହ ମୁନି ମୋତେ ।
ସଂଶୟ ନ ରହୁ ମୋ ଚିତ୍ତେ ॥୭୦
ବିଦୁର ତହୁଁ ପ୍ରଶ୍ନ ଶୁଣି ।
ମୈତ୍ରେୟ କହେ ମୃଦୁ-ବାଣୀ ॥୭୧

### ମୈତ୍ରେୟ ଉବାଚ

ଶୁଣ ହେ ବେଣ ଦୁଷ୍ଟପଣ ।
କହିବା ତାହାର କାରଣ ॥୭୨
ଅଙ୍ଗ ଯେ ଅଶ୍ୱମେଧ କଲା ।
ଉତ୍ତମ-ଋଷିଙ୍କି ବରିଲା ॥୭୩
ସକଳେ ମିଳି ବେଦନାଦେ ।
ଅନଳ ପୂଜିଲେ ସମିଧେ ॥୭୪
ଯଜ୍ଞ-କୁଣ୍ଡକୁ ବିପ୍ରେ ଚାହିଁ ।
ଦେଖିଲେ ଦେବଗଣେ ନାହିଁ ॥୭୫
ଇନ୍ଦ୍ରାଦି ଦଶଦିଗପାଳେ ।
ସେ ଯଜ୍ଞେ କେହି ନ ମିଳିଲେ ॥୭୬
ଦେଖି ବିସ୍ମୟେ ମୁନିଜନେ ।
ନିକଟେ ରାଇ ଯଜମାନେ ॥୭୭
ବୋଇଲେ ରାଜା ମୁଖ ଚାହିଁ ।
ଏ ଯଜ୍ଞ କରୁ କାହିଁ ପାଇଁ ॥୭୮
ଦେବେ ସେ ହବି ନ ଘେନିଲେ।
ଆମ୍ଭେ ପଚାରୁ ତେଣୁ ଭଲେ ॥୭୯

ଶୁଣ ରାଜନ ସାବଧାନେ ।
କିବା କଳ୍ପିତ ତୋର ମନେ ॥୮୦
ପବିତ୍ର-ଦ୍ରବ୍ୟ ଶ୍ରଦ୍ଧାକରି ।
ସକଳ-ନିଗମ ଉଚ୍ଚାରି ॥୮୧
ଆମ୍ଭେ ସକଳେ ଧୃତବ୍ରତ ।
ତୁମ୍ଭେ-ସ୍ୱଭାବେ ଶୁଦ୍ଧଚେତ ॥୮୨
ମନ୍ତ୍ର ଉଚ୍ଚାରି ଆମ୍ଭେ ତୁଣ୍ଡେ ।
ଆହୁତି ଦେଲୁ ଯଜ୍ଞକୁଣ୍ଡେ ॥୮୩
ଦେବେ ନଇଲେ କେଉଁଭାବେ।
ତା'ର ପ୍ରସ୍ତାବ ଶୁଣ ଏବେ ॥୮୪
ସକଳ କର୍ମ ସାକ୍ଷୀ ଦେବେ ।
କିପାଁ ନଇଲେ ଯଜ୍ଞଭାଗେ ॥୮୫

### ମୈତ୍ରେୟ ଉବାଚ

ଅଙ୍ଗ ଯେ ବିପ୍ର ବାକ୍ୟ ପୁଣି ।
ମୁହୂର୍ତ୍ତେ ରହି ମନେ ଗୁଣି ॥୮୬
ସଭାଜନଙ୍କ ମୁଖ ଚାହିଁ ।
ବୋଲଇ ଶିରେ କର ଦେଇ ॥୮୭
କି ମନ୍ଦ କର୍ମ ମୋର ଅଛି ।
କେମନ୍ତେ ପାରିବି ମୁଁ ଲକ୍ଷି ॥୮୮
ଦେବେ ନଇଲେ ଯଜ୍ଞଭାଗେ ।
କାରଣ କହ ମୋର ଆଗେ ॥୮୯
ଏମନ୍ତ ରାଜା ମୁଖୁ ଶୁଣି ।
ସ୍ୱଧର୍ମ ବିପ୍ରେ ପରିମାଣି ॥୯୦
ବୋଇଲେ ରାଜା ମୁଖ ଚାହିଁ ।
ଏ ଜନ୍ମେ ତୋର ଦୋଷ ନାହିଁ ॥୯୧
ପୂର୍ବ ଅର୍ଜିତ କର୍ମ-ଫଳେ ।
ସନ୍ତତି ନାହିଁ ତୋର କୋଳେ ॥୯୨
ଅପୁତ୍ର ଦୋଷେ ଦେବଗଣେ ।
ନଇଲେ ଯଜ୍ଞ-ନିମନ୍ତ୍ରଣେ ॥୯୩
ସଙ୍କଳ୍ପ ପୁତ୍ର-ଅର୍ଥେ କର ।
ଯଜ୍ଞପୁରୁଷ ଯଜ୍ଞେ ବର ॥୯୪
ତେବେ ସକଳ ଦେବଗଣ ।
ତୋ ଯଜ୍ଞେ ହୋଇବେ ବରଣ ॥୯୫

ସେ ବିଷ୍ଣୁ ହବିଭାଗ ପାଇ ।
ତୋହର ଯଜ୍ଞେ ତୋଷ ହୋଇ ॥୯୬
ସେ ହରି ପୁତ୍ର ଦେବେ ତୋତେ ।
ସଂସାରୁ ତରିବୁ ଯେମନ୍ତେ ॥୯୭
ମୈତ୍ରେୟ ଆନନ୍ଦ ଚିତ୍ତରେ ।
କହନ୍ତି ଶୁଣ ହେ ବିଦୁରେ ॥୯୮
ଏମନ୍ତ ବିପ୍ରବାକ୍ୟ ଶୁଣି ।
ସେ ଅଙ୍ଗରାଜ ମନେ ଗୁଣି ॥୯୯
ଯଜ୍ଞେ ଯଜ୍ଞପୁରୁଷ ତୁଣ୍ଡେ ।
ଆହୁତି ଦେଲେ ହୋମକୁଣ୍ଡେ ॥୧୦୦
ମନ୍ତ୍ର ଉଚ୍ଚାରି ବିଧିମତେ ।
ମୁନିଏ ଦେଲେ ଶୁଦ୍ଧଚିତ୍ତେ ॥୧୦୧
ତକ୍ଷଣେ ହୋମକୁଣ୍ଡୁ ଜାତ ।
ହୋଇଲା ପୁରୁଷ ଅଦ୍ଭୁତ ॥୧୦୨
ହୃଦେ ଲମ୍ବଇ ହେମହାର ।
କଟିରେ ଶୋହେ ପୀତାମ୍ବର ॥୧୦୩
ସୁବର୍ଣ୍ଣ ପାତ୍ର କରେ ଧରି ।
ସିଦ୍ଧ ପାୟସ ପୂର୍ଣ୍ଣ କରି ॥୧୦୪
ତେଜେ ଗଞ୍ଜଇ ସୂର୍ଯ୍ୟକାନ୍ତି ।
ତା ଦେଖି ବିପ୍ରେ କଲେ ସ୍ତୁତି॥୧୦୫
ଷୋଡଶ-ଉପଚାର ଯୁତେ ।
ବିପ୍ରେ ପୂଜିଲେ ଜଗନ୍ନାଥେ ॥୧୦୬
ଯଜ୍ଞପୁରୁଷ ଆଜ୍ଞା ଘେନି ।
ବ୍ରାହ୍ମଣେ କଲେ ଜୟଧ୍ୱନି ॥୧୦୭
ଅମୃତମୟ କ୍ଷୀରି-ପୂର୍ଣ୍ଣ ।
ରାଜାଙ୍କୁ ଅର୍ପିଲେ ବ୍ରାହ୍ମଣ ॥୧୦୮
ବିପ୍ର-ବଚନେ କ୍ଷୀରିପାତ୍ର ।
କରେ ଘେନିଲେ ନରନାଥ ॥୧୦୯
ଆଘ୍ରାଣ କରି ନାସା ଦ୍ୱାରେ ।
ଦେଲା ସେ ନିଜ ପତ୍ନୀ କରେ॥୧୧୦
ରାଣୀ ତା ଘେନିଲା ସନ୍ତୋଷେ।
ଗୃହେ ଭୁଞ୍ଜିଲା ମନ ତୋଷେ॥୧୧୧
ତକ୍ଷଣେ ପୁଂସବନ ଭାବେ ।
ପୁତ୍ର ରହିଲା ତାର ଗର୍ଭେ ॥୧୧୨

Dr. Sudhanshu Sekhar Mishra

ସେ ଗଭିକାଳ ଉପଗତ ।
କୁମାର ଜନ୍ମିଲା ଅଦ୍ଭୁତ ॥ ୧ ୧ ୩
ଦିନକୁ ଦିନ ସେ ବଢ଼ିଲା ।
ମାତାର ଅଂଶ ନ ଛାଡ଼ିଲା ॥ ୧ ୧ ୪
ସୁନୀଥା ଯମସୁତା ଯେଣୁ ।
ତା ସୁତ ଅଧାର୍ମିକ ତେଣୁ ॥ ୧ ୧ ୫
ଅଧର୍ମ-ଅଂଶୁ ଯମ ଜାତ ।
ଦୌହିତ୍ର ତାର ଅନୁଗତ ॥ ୧ ୧ ୬
ସ୍ୱଭାବେ ହୋଇ ଅଧାର୍ମିକ ।
କ୍ଷତ୍ରିୟ ଭାବେ ଅତିରେକ ॥ ୧ ୧ ୭
ନିରତେ ଧନୁଶର ଧରି ।
ବନେ ମୃଗୟା ନିତ୍ୟେ କରି ॥ ୧ ୧ ୮
ନିର୍ଦ୍ଦୋଷେ ପଶୁଗଣ ମାରେ ।
ଦୟା-ବିବେକ ନ ବିଚାରେ ॥ ୧ ୧ ୯
ତୁଲ୍ୟବୟସୀ ବାଳ-ମେଳେ ।
ଯେବେ ଖେଳଇ କୁତୂହଳେ ॥ ୧ ୨ ୦
ତାହାଙ୍କୁ ଦୁଷ୍ଟପଣେ ଦୃଢ଼େ ।
ଚରଣେ ଚାପି ମୁଣ୍ଡ ମୋଡ଼େ ॥ ୧ ୨ ୧
କାହାର କେଶ ବାସ ଫେଡ଼ି ।
କର ଚରଣ ଦୃଢ଼େ ଭିଡ଼ି ॥ ୧ ୨ ୨
ଏମନ୍ତ ତା'ର ଦୁଷ୍ଟପଣେ ।
ରାଜାର ଆଗେ ପ୍ରଜାଗଣେ ॥ ୧ ୨ ୩
ରୋଦନ କରି ଉଚ୍ଚସ୍ୱରେ ।
କର-ଅଞ୍ଜଳି ଦେଇ ଶିରେ ॥ ୧ ୨ ୪
କହନ୍ତି ବେଣ ଦୁଷ୍ଟପଣ ।
ରୋଦନ କରି ପ୍ରଜାଗଣ ॥ ୧ ୨ ୫
ଭୋନାଥ ଅନାଥର ପ୍ରାୟେ ।
ହୋଇଲୁ ସର୍ବ-ପରଜାଏ ॥ ୧ ୨ ୬
ଏମନ୍ତ ଅଙ୍ଗରାଜା ଶୁଣି ।
ଖଳପୁତ୍ରକୁ ଘରେ ଆଣି ॥ ୧ ୨ ୭
ନାନା-ପ୍ରକାରେ ଧର୍ମ କହି ।
ଅନେକ-ପ୍ରକାରେ ବୁଝାଇ ॥ ୧ ୨ ୮
ଶୁଣନ୍ତେ ନାନା-କୋପ କରେ ।
ପିତାର ବଚନ ନ ଧରେ ॥ ୧ ୨ ୯
ଦିନକୁ-ଦିନ ଦୁଷ୍ଟପଣେ ।
କୋପ ବହିଲେ ପ୍ରଜାଗଣେ ॥ ୧୩୦
ଅଙ୍ଗ ତାହାର କର୍ମ ଦେଖି ।
ଭାଳଇ ଅତିଦୁଃଖେ ଦୁଃଖୀ ॥ ୧୩୧
ଦେଖ ମୁଁ ବିଷ୍ଣୁ-ପାଦେ ସେବି ।
କୁପୁତ୍ରେ ହେଲି ପରାଭବୀ ॥ ୧୩୨
ସବୁରି ସଙ୍ଗେ ନିରନ୍ତରେ ।
ମହତ-ଦ୍ରୋହେ ଆଚରେ ॥ ୧୩୩
ପ୍ରାଣୀଙ୍କ ମନେ ବହୁବ୍ୟଥା ।
ଏ ଦୁଷ୍ଟ ଦିଅଇ ସର୍ବଥା ॥ ୧୩୪
ଏ ପୁତ୍ରେ କାର୍ଯ୍ୟ ଅଛି କିସ ।
ନାଶଇ ଇହ ପର ଯଶ ॥ ୧୩୫
ପୁଣି ସେ ରାଜା ବିଚାରଇ ।
ସୁପୁତ୍ର ଛାଡ଼ି ନ ହୁଅଇ ॥ ୧୩୬
କୁପୁତ୍ରେ ମାତ୍ର ଏତେ ଲାଭ ।
ସ୍ୱଜନଗୃହେ ଛାଡ଼େ ଲୋଭ ॥ ୧୩୭
ସୁପୁତ୍ର-କୁପୁତ୍ର ବିଚାରେ ।
ଚିତ୍ତ ନ ରହେ ତା'ର ଘରେ ॥ ୧୩୮
ରଜନୀ-ଅର୍ଦ୍ଧେ ନୃପବର ।
ମନ୍ଦିରୁ ହୋଇଲା ବାହାର ॥ ୧୩୯
ବନେ ପଶିଲା ନରପତି ।
କେହି ନ ଜାଣେ ତାର ଗତି ॥ ୧୪୦
ତାହାର ପାତ୍ର-ମନ୍ତ୍ରୀଗଣେ ।
ଅନେକ ଖୋଜି ଘୋରବନେ ॥ ୧ ୪ ୧
ନ ଦେଖି ବନରେ ମିଳିଲେ ।
ଅନେକ ପ୍ରକାରେ ଭାଳିଲେ ॥ ୧ ୪ ୨
ରୋଦନ କଲେ ଛନ୍ନ ମନେ ।
ବୋଇଲେ କେଣେ ଗଲେ ଶୂନ୍ୟେ ॥ ୧ ୪୩
ଭାଷା-ପ୍ରବନ୍ଧେ ଭାଗବତ ।
ବୋଲଇ ବିପ୍ର ଜଗନ୍ନାଥ ॥ ୧ ୪ ୪

ଇତିଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ବେଣଜନ୍ମ କଥନଂ ନାମ
ପଞ୍ଚଦଶୋଽଧ୍ୟାୟଃ ॥

---

## ଷୋଡ଼ଶ ଅଧ୍ୟାୟ

ମୈତ୍ରେୟ ହରଷେ କହନ୍ତି ।
ଶୁଣ ବିଦୁର ଶୁଦ୍ଧମତି ॥୧

ମୈତ୍ରେୟ ଉବାଚ

ଭୃଗୁ ଅଙ୍ଗିରା ଆଦି ଯେତେ ।
ମୁନିଏ ମିଳିଲେ ସମସ୍ତେ ॥୨
ଭାଳନ୍ତି ଅତି ମନ ଦୁଃଖେ ।
ପ୍ରଜା-ରକ୍ଷଣେ ଅରାଜକେ ॥୩
ବୋଲନ୍ତି ରାଜ୍ୟେ ନାହି ରାଜା ।
ଦୁଷ୍ଟେ ଲୁଟିବେ ଜନ ପ୍ରଜା ॥୪
ଏମନ୍ତ ବିଚାରି ସମସ୍ତେ ।
ବେଣର ଜନନୀ ଅଗ୍ରତେ ॥୫
ପ୍ରଜା ରକ୍ଷଣେ ଧର୍ମ କହି ।
ସକଳ ଜନେ ରୁଣ୍ଡ ହୋଇ ॥୬
ବିଚାର କରି ଅତିରେକେ ।
ବେଣକୁ ରାଜ-ଅଭିଷେକେ ॥୭
ନିଜ-ଭୁବନେ କଲେ ରାଜା ।
ଯେଣେ ରକ୍ଷିତ ଜନପ୍ରଜା ॥୮
ଦସ୍ୟୁ ଯେ ଥିଲେ ଦୁଷ୍ଟପଣେ ।
ଲୁଟିବେ ବୋଲି ପ୍ରଜାଗଣେ ॥୯
ବେଣର ରାଜପଣ କର୍ଣ୍ଣେ ।
ଶୁଣି ଲୁଚିଲେ ଘୋରବନେ ॥୧୦
ପଶିଲେ ଘୋର-ଗିରିମାର୍ଗେ ।
ଗରୁଡ଼ ଡରେ ଯେସନ୍ତେ ନାଗେ ॥୧୧

Dr. Sudhanshu Sekhar Mishra

ବେଣ ରାଜ୍ୟରେ ରାଜା ହୋଇ।
ରାଜା-ସମ୍ପଦେ ଗର୍ବ ବହି ॥୧୨
ସ୍ୱଭାବେ ଦୁଷ୍ଟ-ଦୁରାଚାର ।
ନ କରେ ଧର୍ମର ବିଚାର ॥୧୩
ଆମ୍ଭାକୁ ସିଦ୍ଧ-ପ୍ରାୟ ମଣେ ।
ଋଷିଙ୍କ ବଚନ ନ ଶୁଣେ ॥୧୪
ଲଭିଣ ଅଶେଷ ବିଭୂତି ।
ମାତିଲା ଯେହ୍ନେ ମତ୍ତହସ୍ତୀ ॥୧୫
କାଞ୍ଚନରଥେ ବିଜେ କରି ।
ବୁଲନ୍ତେ କମ୍ପେ ବସୁନ୍ଧରୀ ॥୧୬
ନିତ୍ୟେ ସେ ବିପ୍ରଙ୍କୁ ଅଣାଇ ।
ବୋଲଇ କୋପଭର ହୋଇ ॥୧୭
ଶୁଣ ହେ ବିପ୍ରେ ମୋର ବାଣୀ ।
ମୁଁ ଏ ଜଗତେ ନୃପମଣି ॥୧୮
ମୋହର ବଚନ ତୁମ୍ଭର ।
ସ୍ୱଭାବେ ପାଳିବା ବେଭାର ॥୧୯
ଦେଖ ମୋହର ବେନିଭୂଜ ।
ଦଶଦିଗପାଳଙ୍କ ତେଜ ॥୨୦
ମୁଁ ଯେ ପ୍ରତ୍ୟକ୍ଷେ ଭଗବାନ ।
ଦେଖ ମୋହର ବର୍ଣ୍ଣଚିହ୍ନ ॥୨୧
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।
ପାଶେ ବସାଇ ନୃପରାଣ ॥୨୨
ବିଷ୍ଣୁର ବଚନ ପ୍ରକାଶି ।
ମନ ଆନନ୍ଦେ ନୃପବଂଶୀ ॥୨୩
ଆମ୍ଭାକୁ ସିଦ୍ଧ ପ୍ରାୟ ମଣି ।
ବୋଲଇ ଅସମ୍ଭବ ବାଣୀ ॥୨୪
ଶୁଣ ସକଳ-ପ୍ରଜାଜନେ ।
ବ୍ରାହ୍ମଣ ଆଦି ଚାରିବବର୍ଣ୍ଣେ ॥୨୫
ମୋ ରାଜ୍ୟେ ଯଜ୍ଞ ନ କରିବ ।
ପିତୃଦେବତା ନ ପୂଜିବ ॥୨୬
ଦାନ ନ ଦେବ ବିପ୍ରହସ୍ତେ ।
ତୀର୍ଥେ ନ ଯିବ ପାଦଗତେ ॥୨୭
ଆଗମ ନିଗମ ଏ ନୀତି ।
ଯେ ଅବା ଶାସ୍ତ୍ର ମତ ଚିନ୍ତି ॥୨୮

ସଂସାରେ ଧର୍ମ କର୍ମ ଯେତେ ।
ସକଳ ସମର୍ପିବ ମୋତେ ॥୨୯
ମୋ ତହୁଁ ବଡ ନାହିଁ ଆନ ।
ମୁଁ ଯେ ପ୍ରତ୍ୟକ୍ଷ ଭଗବାନ ॥୩୦
ମୋହର ଜନ୍ମ କର୍ମ ଗୁଣ ।
ସର୍ବେ ତା' କରସି ବଖାଣ ॥୩୧
ମୋ ନାମ ଜପୁଥିବ ତୁଣ୍ଡେ ।
ମୋତେ ପୂଜିବ ଯଜ୍ଞକୁଣ୍ଡେ ॥୩୨
ଯେ ମୋର ବୋଲ ନ କରିବ ।
ମୋ ରାଜ୍ୟେ ଦଣ୍ଡେ ନ ରହିବ ॥୩୩
ଜୀବନ ହରିବି ତାହାର ।
ସର୍ବସମ୍ପଦ କରି କ୍ରୂର ॥୩୪
ଏମନ୍ତ ପୁର ଗ୍ରାମ ଦେଶେ ।
ହସ୍ତୀର କନ୍ଧେ ଭେରୀଘୋଷେ ॥୩୫
ଘୋଷଣ-ବାଜେ ସର୍ବଦେଶେ ।
ଶୁଣି ସକଳ ଜନ ତ୍ରାସେ ॥୩୬
ବେଣର ଆଜ୍ଞା ଶିରେ କଲେ ।
ସକଳ ଧର୍ମ ଉପେକ୍ଷିଲେ ॥୩୭
ଜପନ୍ତି ତା'ର ନାମେ ନିତ୍ୟେ ।
ଭୟେ ଖଟନ୍ତି ପାଦଗତେ ॥୩୮
ଏମନ୍ତ ରାଜା ଦୁଷ୍ଟପଣ ।
ଦେଖି ଭାଳନ୍ତି ମୁନିଗଣ ॥୩୯
ବୋଲନ୍ତି ଏକୁ ଆରେ ଚାହିଁ ।
ଏମନ୍ତ ଶୁଣିଲାତ ନାହିଁ ॥୪୦
ଭୂମିରେ ଯେତେ ରାଜା ଥିଲେ ।
ଏମନ୍ତ କେବା ପ୍ରଚାରିଲେ ॥୪୧
ଯଜ୍ଞ ନ କଲେ ମେଘ ନାହିଁ ।
ବୃଷ୍ଟି ନୋହିଲେ ଅନ୍ନ ନାହିଁ ॥୪୨
ଏ ପଞ୍ଚଯଜ୍ଞ କ୍ରିୟା ଲୋପେ ।
ଅଧର୍ମେ ତ୍ରିଭୁବନ କମ୍ପେ ॥୪୩
ଏ ଘୋର ସଙ୍କଟ ପଡିଲା ।
ଉଭୟ ଲୋକ ନାଶ ଗଲା ॥୪୪
ଏହାକୁ ଆମ୍ଭେ ରାଜା କଲୁ ।
ସର୍ପକୁ କ୍ଷୀର ପିଆଇଲୁ ॥୪୫

ସେ ଯେହ୍ନେ ବଡେ ଅତି ଘୋରେ।
କ୍ଷୀରଦାତାର ପ୍ରାଣ ହରେ ॥୪୬
ଆମ୍ଭେ ନ ବୁଝି କର୍ମ କଲୁ ।
ବେଣକୁ ରାଜପଦ ଦେଲୁ ॥୪୭
ଖଳକୁ ଦେଲୁ ରାଜ୍ୟେ ବାସ ।
ଆମ୍ଭେ ହୋଇଲୁ ଏବେ ନାଶ ॥୪୮
ସୁନୀଥା ଗର୍ଭୁ ଏ ସମ୍ଭୂତ ।
ସ୍ୱଭାବେ ଯମସୁତା-ସୁତ ॥୪୯
ଆମ୍ଭେ ଏହାର ପାଶେ ଯିବା ।
ଧର୍ମ-ବଚନ ବୁଝାଇବା ॥୫୦
ଏ ଯେବେ ବୋଲ ନ କରିବ ।
ଅଧର୍ମ ଦୋଷେ ନାଶ ଯିବ ॥୫୧
ଏତେ ବିଚାରି ବିପ୍ରଜନେ ।
ମିଳିଲେ ବେଣ ସନ୍ନିଧାନେ ॥୫୨
କଲ୍ୟାଣ କରି ବେଦନାଦେ ।
ବୋଧିଲେ ତା'କୁ ସାମବାଦେ ॥୫୩
ହେ ନୃପନାଥ ଶୁଣ ଧୀରେ ।
ଯାହା କହିବୁ ତୋ ଛାମୁରେ ॥୫୪
ଯେଣେ ହୋଇବ ତୋର ଲାଭ।
ଜଗତେ ଯଶ-କୀର୍ତ୍ତି ଥିବ ॥୫୫
ମନ-ବଚନ-ଦେହ ଗତେ ।
ଯେ ପ୍ରାଣୀ ଥା'ନ୍ତି ଜନହିତେ ॥୫୬
ଏ ବେନିଲୋକେ ସେ ଜିଣନ୍ତି ।
ନ କଲେ ଜୀବନ୍ତେ ମରନ୍ତି ॥୫୭
ପ୍ରଜାଏ ଧର୍ମ ଆଚରିଲେ ।
ନୃପ ସମ୍ପଦ ବଢେ ଭଲେ ॥୫୮
ସେ ଧର୍ମ ଯେବେ ନାଶ ଯାଇ ।
ନୃପ ସମ୍ପଦ ଆଉ କାହିଁ ॥୫୯
ପ୍ରଜାଙ୍କୁ ନିଶ୍ଚିନ୍ତ ଯେ କରେ ।
ଚୌର୍ଯ୍ୟାଦି ସର୍ବ ଭୟ ହରେ ॥୬୦
ସେ ରାଜା ଇହପରଲୋକେ ।
ଆନନ୍ଦ ମନେ ରହେ ସୁଖେ ॥୬୧
ଯେ ରାଜା ରାଜ୍ୟ ପୁର ଦେଶେ।
ବିଷ୍ଣୁଙ୍କୁ ପୂଜନ୍ତି ହରଷେ ॥୬୨

Dr. Sudhanshu Sekhar Mishra

ବିଷ୍ଣୁ-ପାଦୋଦକ ନିର୍ମାଲ୍ୟ ।
ଯେ ସେବେ ସେହି ସେ ଅମୂଲ୍ୟ॥୬୩
ପ୍ରଜାଏ ନିଜଧର୍ମେ ଥାଇ ।
ଆଶ୍ରମ-ଧର୍ମ ପ୍ରଚାରଇ ॥୬୪
ରାଜାର ଯଜ୍ଞେ ପୂଜା ପାଇ ।
ବିଷ୍ଣୁ ସନ୍ତୋଷେ ଦୟା ବହି ॥୬୫
ରାଜା-ପରଜା ସୁଖେ ରହେ ।
ଏ ଧର୍ମ ଚାରିବେଦ କହେ ॥୬୬
ବିଷ୍ଣୁର ପାଦପଦ୍ମ ତଳେ ।
ଖଟନ୍ତି ସର୍ବଦିଗପାଳେ ॥୬୭
ସୁଖ ଭୁଞ୍ଜନ୍ତି ସର୍ବକାଳେ ।
ଏ କଥା ବିଦିତ ଶୟଳେ ॥୬୮
ସେ ସର୍ବ-ଯଜ୍ଞ ମୟ ହରି ।
ମନୁ ଦେବତା ଆଦି କରି ॥୬୯
ସେହରି ଯଜ୍ଞେ ହେଲେ ତୋଷ ।
ସଂସାରେ ରହିବ ତୋ ଯଶ ॥୭୦
ସର୍ବ-ଦେବତା ତା'ର ଦେହେ ।
ବସନ୍ତି ଲୋମପନ୍ତି ପ୍ରାୟେ ॥୭୧
ତାହାର ସଞ୍ଚିଲା ଜଗତ ।
ତା' ବିନୁ କେହି ନୋହେ ସତ୍ୟ॥୭୨
ସେ ସର୍ବ-ଦେବମୟ ହରି ।
ତା'ର ଚରଣେ ପୂଜାକରି ॥୭୩
ଲଭିବୁ ସର୍ବ ସୁଖ ଭଲେ ।
ଆମ୍ଭର ବାକ୍ୟେ ଧର୍ମ କଲେ ॥୭୪
ସେ ହରି ଯେବେ ତୁଷ୍ଟ ହେବ ।
କିବା ଅପ୍ରାପ୍ୟ ତୋର ଥିବ ॥୭୫
ସର୍ବ ସମୃଦ୍ଧି ଲାଭ ପାଇଁ ।
ଲୋକେ ଯେ ହରିଙ୍କୁ ଭଜଇ ॥୭୬
ତୁ ତାଙ୍କ ଅନୁବର୍ତ୍ତୀ ହୋଇ ।
ଆମ୍ଭ ବଚନ ରଖ ତୁହି ॥୭୭
ସେ ହରି କଳା-ଦେବମୂର୍ତ୍ତି ।
ଯଜ୍ଞରେ ବ୍ରାହ୍ମଣେ ପୂଜନ୍ତି ॥୭୮
ତାହାଙ୍କ ପ୍ରତି ତୋ ହେଳଣ ।
ଉଚିତ ନୁହଇ ରାଜନ ॥୭୯

ଋଷିଙ୍କ ବୋଲ ଶୁଣି କର୍ଣ୍ଣେ ।
ବେଣ ବୋଲଇ କୋପମନେ ॥୮୦

ବେଣ ଉବାଚ

ତୁମ୍ଭେ ବାଳିଶ ବିପ୍ରଜନ ।
ବାଳକ ପ୍ରାୟ ତୁମ୍ଭ ଜ୍ଞାନ ॥୮୧
ଅଧର୍ମେ ଧର୍ମ ମାନ୍ୟ କର ।
ଏ ନୋହେ ସ୍ୱଧର୍ମ ତୁମ୍ଭର ॥୮୨
ଯୁବତୀ ନିଜ ସ୍ୱାମୀ ଛାଡି ।
ଜାର ପୁରୁଷେ ଲୋଭ ବଢି ॥୮୩
ତେମନ୍ତ ପ୍ରାୟେ ତୁମ୍ଭେମାନେ ।
ମୋ ପାଦ ଛାଡି ଭଜ ଅନ୍ୟେ ॥୮୪
ଏଣୁ ଏ ମୂଢ ପ୍ରାଣୀ ଯେତେ ।
ବର୍ତ୍ତନ୍ତି ଅଶାସ୍ତ୍ର ବିହିତେ ॥୮୫
ବିଷ୍ଣୁ ସ୍ୱରୂପ ନରପତି ।
ତାହାଙ୍କୁ ମନୁଷ୍ୟେ ଗଣନ୍ତି ॥୮୬
ତାହାଙ୍କ ଧର୍ମଜ୍ଞାନ ନାହିଁ ।
ଉଭୟ ଲୋକେ ସୁଖ କାହିଁ ॥୮୭
କେ ଯଜ୍ଞପୁରୁଷ ତୁମ୍ଭର ।
ଯା'ର ଚରଣେ ସେବାକର ॥୮୮
ଯୁବତୀ କୁଳ-ଧର୍ମ ଛାଡି ।
ଜାରେ ଯେସନେ ସେବା କରି ॥୮୯
ଦେଖ ଏ ନୃପତି ଶରୀରେ ।
ଦେବେ ବସନ୍ତି ଅଧିକାରେ ॥୯୦
ବିଷ୍ଣୁ ବିରଞ୍ଚି ମହେଶ୍ୱର ।
ଇନ୍ଦ୍ର ପବନ ଦିବାକର ॥୯୧
ଯମ ପର୍ଜନ୍ୟ ଧନଦାତା ।
ସୋମ ଧରଣୀ ଭସ୍ମକର୍ତ୍ତା ॥୯୨
ଜଳ ବରୁଣ ଆଦି ଯେତେ ।
ସର୍ବେ ବସନ୍ତି ନୃପଗାତ୍ରେ ॥୯୩
ଯେ ବର ଶାପ ଦ୍ୟନ୍ତି ଲୋକେ।
ନୃପ ଶରୀରେ ଏକେ ଏକେ ॥୯୪
ସକଳ-ଦେବ ତେଜଆଣି ।
ତେଣୁ ବୋଲାଇ ନୃପମଣି ॥୯୫

ଏଣୁ ଏ ନରପତି ଦେହ ।
ପ୍ରତ୍ୟକ୍ଷେ ସର୍ବଦେବମୟ ॥୯୬
ଦୁର୍ଲ୍ଲଭ ନୃପତି-ଶରୀର ।
କି ଅବା ଦେବା ପଟାନ୍ତର ॥୯୭
ଏ ଦେହ ମହିମା ନ ଜାଣି ।
ଅଧର୍ମ ଧର୍ମ ପରିମାଣି ॥୯୮
ଏଣୁ ତୁମ୍ଭର କର୍ମ ଯେତେ ।
ସେ ଧର୍ମେ ପୂଜା କର ମୋତେ ॥୯୯
ମୋହର ଅଗ୍ରେ ବଳି କର ।
ଏଧର୍ମ ସ୍ୱଧର୍ମ ତୁମ୍ଭର ॥୧୦୦
ମୁଁ ଯଜ୍ଞଭାଗ ଆଗ ପାଇ ।
ମୋ ତହୁଁ ଅନ୍ୟ ଦେବ ନାହିଁ॥୧୦୧

ମୈତ୍ରେୟ ଉବାଚ

ଏମନ୍ତ ବିପରୀତ-ଗତି ।
ଭଜିଲା ପାପିଷ୍ଠ-ନୃପତି ॥୧୦୨
ମୁନିଙ୍କ ଅନୁନୟ-ବାଣୀ ।
ନିଶ୍ଚେ ନ କଲା ନୃପମଣି ॥୧୦୩
ସ୍ୱଭାବେ ଦୁଷ୍ଟ ଅନର୍ଗଳ ।
ଆମ୍ଭାଙ୍କୁ କଲା ଅମଙ୍ଗଳ ॥୧୦୪
ଏମନ୍ତ ମୁନିଙ୍କ ବଚନ ।
ଅବଜ୍ଞା କଲା ଦିନୁଦିନ ॥୧୦୫
ଆତ୍ମ-ପଣ୍ଡିତ ମନେ କରେ ।
ମୁନିଙ୍କ ବଚନ ନ ଧରେ ॥୧୦୬
ମୁନିଏ ଦିନେ ଦିନେ ଆସି ।
ଧର୍ମ କହନ୍ତି ପାଶେ ବସି ॥୧୦୭
କହନ୍ତି ଅନେକ ବିଶ୍ୱାସ ।
ଦେଖାଇ ଜ୍ଞାନ ଉପଦେଶ ॥୧୦୮
କେବେହେଁ ନ କଲା ବଚନ।
ମୁନିଙ୍କି କଲା ଅପମାନ ॥୧୦୯
ତାହାର ଅଧର୍ମ ବିଶ୍ୱାସେ ।
ମୁନିଙ୍କ ମନେ କୋପ ବସେ॥୧୧୦
ବୋଲନ୍ତି ଏକୁଆରେ ତାହିଁ ।
ଏହା ଜୀବନେ କାର୍ଯ୍ୟ ନାହିଁ॥୧୧୧

Dr. Sudhanshu Sekhar Mishra

ଏହାର ଅଧର୍ମ ଆଚାରେ ।
ପ୍ରଜାଏ ନଶିବେ ସଂସାରେ ॥୧୧୨
ଅସାଧୁ ବୃତ୍ତି ଏହା ଦେହି ।
ନୃପ ଆସନେ ଯୋଗ୍ୟ ନୋହି॥୧୧୩
ଯେ ରାଜା ଲଜ୍ଜା ଦୂର କରି ।
ନିନ୍ଦଇ ଯଜ୍ଞପତି ହରି ॥୧୧୪
କେ ଏହା ସହେ ଦେହ ବହି ।
ବେଣକୁ ରାଜପଦ ଦେଇ ॥୧୧୫
ଏମନ୍ତେ ବେଣ ନାଶ ପାଇଁ ।
ମୁନିଏ ମହାକୋପ ବହି ॥୧୧୬
ହୁଙ୍କାର କରି ବେଦବାଣେ ।
ପ୍ରହାର କଲେ ଜଣେ ଜଣେ ॥୧୧୭
ଅଚ୍ୟୁତ ନିନ୍ଦା ଫଳ ଥିଲା ।
ତକ୍ଷଣେ ଦେହୁ ପ୍ରାଣଗଲା ॥୧୧୮
ବେଣକୁ ନାଶି ବିପ୍ରଜନେ ।
ଗଲେ ସେ ଯେ ଯାହା ଭୁବନେ ॥୧୧୯
ସୁନୀଥା ପୁତ୍ରର ମରଣ ।
ଦେଖି କରଇ ବିଚାରଣ ॥୧୨୦
ଅବଶ୍ୟ ଏହାର ଶରୀରେ ।
ପୁତ୍ର ଉପୁଜିବ ସଂସାରେ ॥୧୨୧
ହୋଇବେ ପ୍ରଜାଜନେ ସୁଖୀ ।
ଏତେ ବିଚାରି ଅଶ୍ରୁମୁଖୀ ॥୧୨୨
ତଇଳ-ଦ୍ରୋଣୀ ମଧ୍ୟେ ଥୋଇ
ବେଣର ଶରୀର ପାଳଇ ॥୧୨୩
ହୋମ ସମୟେ ଏକ ଦିନେ ।
ସରସ୍ୱତୀରେ ବିପ୍ରଜନେ ॥୧୨୪
ନିଷ୍ଠିନ୍ତେ ପ୍ରାତଃସ୍ନାନ ସାରି ।
ହୋମେ ପୂଜିଲେ ନରହରି ॥୧୨୫
ବିଷ୍ଣୁର କଥାଗୋଷ୍ଠୀ କଲେ ।
ଏମନ୍ତ ଉତ୍ପାତ ଦେଖିଲେ ॥୧୨୬
ଶୁଭଇ ମୁଖ ରାବ ଘୋଷ ।
ଭୟେ କମ୍ପନ୍ତି ଦଶଦିଶ ॥୧୨୭
ପ୍ରଜାଏ ଭୟର ଆତୁରେ ।
ପଳାନ୍ତି ବନ ଗିରି ଘୋରେ ॥୧୨୮
ମୁନି ଚାହାନ୍ତି ଚାରିଦିଗେ ।
ଧୂଳି ଉଡଇ ବାୟୁ ବେଗେ ॥୧୨୯
ଦୁଷ୍ଟେ ଧାମନ୍ତି ଶସ୍ତ୍ର ଧରି ।
ଡାକନ୍ତି ମାର ମାର କରି ॥୧୩୦
ତା'ଙ୍କ ଚରଣ ଧୂଳି ବେଗେ ।
ଆଚ୍ଛାଦି ଉଡେ ଦଶଦିଗେ ॥୧୩୧
ଦୁଷ୍ଟେ ଲୁଟନ୍ତି ପ୍ରଜାଧନ ।
ଅଦ୍ଭୁତେ ଶୁଭେ ଘୋରସ୍ୱନ ॥୧୩୨
ମୁନିଏ ପ୍ରଜା ଦୁଃଖ ଦେଖି ।
ମନେ ହୋଇଲେ ଗୁରୁ ଦୁଃଖୀ॥୧୩୩
ବୋଲନ୍ତି କଲୁ ମନ୍ଦ-କୃତ୍ୟ ।
ପ୍ରଜାଏ ହୋଇଲେ ଅନାଥ ॥୧୩୪
ଆମ୍ଭେ ତପସ୍ୟା କଥା ଜାଣି ।
ରାଜ୍ୟକୁ ରାଜା ସେ କାରଣୀ॥୧୩୫
ରାଜା ନ ଥିଲେ ପ୍ରଜା କାହିଁ ।
ଏମନ୍ତ ବୋଲି ଦୟାବହି ॥୧୩୬
ବୋଲନ୍ତି ବ୍ରାହ୍ମଣ-ବେଭାରେ ।
ସଂସାରେ ପର-ଉପକାରେ ॥୧୩୭
ସମାନ-ଦୃଷ୍ଟି ଯେ ବ୍ରାହ୍ମଣ ।
ଶାନ୍ତି ବିବେକ ସୁଲକ୍ଷଣ ॥୧୩୮
ଯେବେ ସେ ଦୁଃଖୀଙ୍କ କୁଶଳେ ।
ହେଳାରେ ବିଚାର ନ କରେ॥୧୩୯
ତା ଦେଖୁ ତପ ତୁଛ ଯାଏ ।
ଭଗ୍ନ-ଭଣ୍ଡରେ କ୍ଷୀର ପ୍ରାୟେ ॥୧୪୦
କେବେହେଁ ନୋହେ ସେ ନିରୋଧ ।
ଏମନ୍ତ ମଣି ଶାସ୍ତ୍ରବାଦ ॥୧୪୧
ବୋଲନ୍ତି ଅଙ୍ଗରାଜା ବଂଶେ ।
ରାଜା ଧାର୍ମିକ ବିଷ୍ଣୁଅଂଶେ ॥୧୪୨
ସେ ରାଜା ଗୋବିନ୍ଦ ଆଶ୍ରୟେ ।
ପ୍ରଜା ପାଳନେ ସ୍ନେହବହେ ॥୧୪୩
ତା'ର ଜୀବନ ଏ ସଂସାରେ ।
ବର୍ତ୍ତଇ ପର-ଉପକାରେ ॥୧୪୪
ଏତେ ବିଚାରି ବିପ୍ରବରେ ।
ଊରୁ ମନ୍ଥିଲେ କୁଶ-ଶରେ ॥୧୪୫
ବାହୁକ ନାମେ ନର ଅଂଶେ ।
ଅଦ୍ଭୁତେ ହୋଇଲା ପୁରୁଷେ ॥୧୪୬
କାକହୁଁ କୃଷ୍ଣ ଅଙ୍ଗ ତା'ର ।
ନାସିକା ହନୁ ଭୟଙ୍କର ॥୧୪୭
ହସ୍ତ ଚରଣ ଦେହ କୃଶ ।
ତାମ୍ରର ପ୍ରାୟ ମୁଣ୍ଡକେଶ ॥୧୪୮
ଅରୁଣ ବିରାଜେ ଲୋଚନ ।
ଭ୍ରୂକୁଟୀ କୁଟିଳ ବଦନ ॥୧୪୯
ବିପ୍ରଙ୍କ ପାଦେ ଶିର ଦେଇ ।
ବୋଲଇ କି କରିବି ମୁହିଁ ॥୧୫୦
ତା'ର ସ୍ୱରୂପ ଦେଖି ମନେ ।
ବିଚାର କଲେ ମୁନିଜନେ ॥୧୫୧
ଦେଖ ଅଦ୍ଭୁତ ଏହା କାୟେ ।
ରାଜ ଆସନେ ଯୋଗ୍ୟ ନୋହେ
॥ ୧୫୨
ଏହାକୁ ଆମ୍ଭେ ରାଜା କଲେ ।
ସଂସାର ନାଶିବ ଏ ଭଲେ ॥୧୫୩
ଏମନ୍ତେ ବିପ୍ରେ ବିଚାରିଲେ ।
ନିଷାଦ ବୋଲି ଆଜ୍ଞାଦେଲେ॥୧୫୪
ବୋଇଲେ ବନେ ହୁଅ ରାଜା ।
ଗିରିକାନନେ ପାଅ ପୂଜା ॥୧୫୫
ଏମନ୍ତ ମୁନିଙ୍କ ବଚନେ ।
ସେହୁ ପୁରୁଷ ଚଳେ ବନେ ॥୧୫୬
ତା ବଂଶ ନିଷାଦ ହୋଇଲେ ।
ଗିରି କାନନ ଆଶ୍ରେ କଲେ ॥୧୫୭
ବେଣର ଦେହେ ପାପ ଥିଲା ।
ନିଷାଦ ରୂପେ ବନେ ଗଲା ॥୧୫୮
ବୋଲଇ ଦାସ ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୧୫୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୃଥୁ ଚରିତେ
ନିଷାଦୋତ୍ପତ୍ତିର୍ନାମ
ଷୋଡଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ନିର୍ମଳ ଦେଖି ବେଣ ଅଙ୍ଗ ।
ପୁଣି ମନ୍ଥିଲେ ବାହୁଯୁଗ ॥୧
ନାରୀ ପୁରୁଷ ଏକ ମେଳେ ।
ଜନ୍ମିଲେ ବେଦ-ମନ୍ତ୍ରବଳେ ॥୨
ସ୍ତିରୀ ପୁରୁଷ ଦେହ ଦେଖି ।
ବିଷ୍ଣୁର କଳା ଉପଲକ୍ଷି ॥୩
ଆନନ୍ଦମନେ ମୁନିଗଣେ ।
ଭାବେ କହନ୍ତି ଜଣେ ଜଣେ ॥୪

### ଋଷିଗଣ ଉବାଚ

ଦେଖ ଏ ପୁରୁଷ କାମିନୀ ।
ଅଶେଷ-ଭୁବନ ପାବନୀ ॥୫
ଦେଖ ଏ ମିଥୁନ-ଲକ୍ଷଣ ।
ପ୍ରତ୍ୟେକ୍ଷେ ଲକ୍ଷ୍ମୀନାରାୟଣ ॥୬
ବେଣର ବଂଶ ଏ ରଖିବ ।
ଆନନ୍ଦେ ଭୁବନ ପାଳିବ ॥୭
ଏହାକୁ ରାଜ୍ୟେ ରାଜା କରି ।
ଏ କନ୍ୟା ରାଣୀ ରୂପେ ବରି ॥୮
ପ୍ରଥିତ ଯଶକୀର୍ତ୍ତି ଯେଣୁ ।
ଏହାର ପୃଥୁ ନାମ ତେଣୁ ॥୯
ଏ ଯେ ସୁନ୍ଦରୀ ଶୁଭ୍ରଦନ୍ତୀ ।
ମୁକ୍ତାର ପ୍ରାୟ ଦନ୍ତପନ୍ତି ॥୧୦
ସକଳ ଗୁଣେ ଏ ଭୂଷିତ ।
ବିରାଜେ ଯେସନେ ଆଦିତ୍ୟ ॥୧୧
ରୂପେ ଅର୍ଚ୍ଚିଲା ପୃଥୁ ଯେଣୁ ।
ଏହାର ଅର୍ଚ୍ଚି ନାମ ତେଣୁ ॥୧୨
ଏ ରାଜା ବିଷ୍ଣୁ ଅଂଶେ ଜାତ ।
ସୁଗୁଣେ ଲୋକେ ଏ ବିଖ୍ୟାତ ॥୧୩
ଏ ବାମା ଜାତ ଲକ୍ଷ୍ମୀ ରୂପେ ।
ସର୍ବଦା ବିଷ୍ଣୁର ସମୀପେ ॥୧୪

### ମୈତ୍ରେୟ ଉବାଚ

ଏତେ ବିଚାରି ଶୁଦ୍ଧମନେ ।
ସ୍ତୁତି କରନ୍ତି ବିପ୍ରଜନେ ॥୧୫

ଗନ୍ଧର୍ବେ ଗୀତନାଦ କଲେ ।
ଦେବେ କୁସୁମ ବରଷିଲେ ॥୧୬
ଆନନ୍ଦେ ବୀଣା ବାଦ୍ୟ କରି ।
ନୃତ୍ୟ କରନ୍ତି ଅପସରୀ ॥୧୭
ଶଙ୍ଖ ମହୁରୀ ତୂରୀ ନାଦେ ।
ଦେବେ ଦୁନ୍ଦୁଭି ବିଷ୍ଣୁପଦେ ॥୧୮
ଦେବତା ଋଷି ପିତୃଜନେ ।
ମିଳିଲେ ହରଷିତ ମନେ ॥୧୯
ଶଙ୍କର ପଦ୍ମଯୋନି ତୁଲେ ।
ଦେବ ସମୂହେ ବିଜେ କଲେ ॥୨୦
ଦେଖିଲେ ବେଣସୁତ ହସ୍ତ ।
ବିଷ୍ଣୁର ଚକ୍ର ଚିହ୍ନ ଯୁକ୍ତ ॥୨୧
ଚରଣେ ପଙ୍କଜ ଲାଞ୍ଛନ ।
ସକଳେ କଲେ ଅନୁମାନ ॥୨୨
ବିଷ୍ଣୁର ଅଂଶ ନିଶ୍ଚେ ଜାଣି ।
ବେଗେ ଆଣିଲେ ତୀର୍ଥପାଣି ॥୨୩
ଅଭିଷେକର ବସ୍ତୁ ଯେତେ ।
ପ୍ରଜାଏ ଆଣି ଯେଝା ମତେ ॥୨୪
ସମୁଦ୍ର ପର୍ବତ ସରିତ ।
ସର୍ପ ବିହଙ୍ଗ ମୃଗଯୂଥ ॥୨୫
ଧରଣୀ ଆଦି ପଞ୍ଚଭୂତେ ।
ଯାହାର ଯେ ଅବା ଉଚିତେ ॥୨୬
ସକଳେ ଆଣି ଉପାୟନ ।
ବନ୍ଦିଲେ ନୃପତି ଚରଣ ॥୨୭
ସକଳେ ନାନାଦ୍ରବ୍ୟ ଆଣି ।
ମୁନି ଆନନ୍ଦେ ବେଦ ଭଣି ॥୨୮
ପୃଥୁକୁ ଅଭିଷେକ କଲେ ।
ମଙ୍ଗଳନାଦେ ଅର୍ଚ୍ଚି ତୁଲେ ॥୨୯
ପୃଥୁକୁ କଲେ ମହାରାଜା ।
ଶୁଭେ ବିରାଜେ ମହାତେଜା ॥୩୦

କୁବେର ଦେଖି ତୋଷମନେ ।
ଦେଲା ସେ ସୁବର୍ଣ୍ଣ ଆସନେ ॥୩୧
ବରୁଣ ଦେଲା ଛତ୍ର ଆଣି ।
ପ୍ରକାଶେ ଦିବ୍ୟରତ୍ନ ମଣି ॥୩୨
ସେ ଛତ୍ର ନାମ ଜଳସ୍ରବା ।
ସ୍ୱଭାବେ ଦିଶେ ଶଶିପ୍ରଭା ॥୩୩
ଚାମର ସମୀରଣ ଦେଲା ।
ଧର୍ମ ଦେବତା କୀର୍ତ୍ତିମାଳା ॥୩୪
ଇନ୍ଦ୍ର ମୁକୁଟ ଦେଲା ଶିରେ ।
ଶମନ ଦଣ୍ଡ ଦେଲା କରେ ॥୩୫
ବ୍ରହ୍ମକବଚ ବ୍ରହ୍ମା ଦେଲେ ।
ଭାରତୀ ହାର ଲମ୍ବାଇଲେ ॥୩୬
ଗୋବିନ୍ଦ ଚକ୍ର ଦେଲେ କରେ ।
କମଳା ବସେ ତା'ର ଉରେ ॥୩୭
ସୁବର୍ଣ୍ଣ ଦଶଚନ୍ଦ୍ର ଯୁତେ ।
ରୁଦ୍ର ଖଡଗ ଦେଲେ ହସ୍ତେ ॥୩୮
ଅମ୍ବିକା ଦେଲେ ଚର୍ମାମ୍ବର ।
ଅଙ୍କିତ ଶତେ ନିଶାକର ॥୩୯
ଅମୃତମୟ-ଅଶ୍ୱ ଆଣି ।
ବିମାନ ଅର୍ଥେ ନିଶାମଣି ॥୪୦
ପୃଥୁ ସମୀପେ ଆଣି ଦେଲା ।
ସଙ୍ଗେ ତା ବିଶ୍ୱକର୍ମା ଥିଲା ॥୪୧
ବିମାନ ନାନାରତ୍ନେ ସାଜି ।
ତହିଁ ଯୋଚିଲା ସେହି ବାଜି ॥୪୨
ଅନଳ ଆଣି ଦେଲାଧନୁ ।
ରଶ୍ମି-ନାରାଚ ଦେଲା ଭାନୁ ॥୪୩
ବେନି-ପାଦୁକା ଯୋଗମୟୀ ।
ଚରଣ ତଳେ ଦେଲା ମହୀ ॥୪୪
ଆକାଶ ସଦା ପୁଷ୍ପାଞ୍ଜଳି ।
ପ୍ରଦାନେ ଅତି କୁତୂହଳୀ ॥୪୫

Dr. Sudhanshu Sekhar Mishra

ନୃତ୍ୟ ସଙ୍ଗୀତ ବାଦ୍ୟ ଯେତେ ।
ଯେ ଅନ୍ତର୍ଦ୍ଧାନ ବିଦ୍ୟା ଯୁତେ ॥୪୬
ଖେଚରେ ଆନନ୍ଦିତ ହୋଇ ।
ଦେଲେ ପୃଥୁଙ୍କୁ ପାଶେ ଯାଇ ॥୪୭
ମିଳି ସକଳ-ମୁନିଗଣେ ।
ଆଶିଷ ଦେଲେ ଜଣେ ଜଣେ ॥୪୮
ସମୁଦ୍ର ଶଙ୍ଖ ଦେଲା କରେ ।
ଯେ ନାଦେ ଦଶଦିଗ ପୂରେ ॥୪୯
ସମୁଦ୍ର ଗିରି ନଦୀ ଯେତେ ।
ବାଟ ଛାଡ଼ିଲେ ତା'ର ରଥେ ॥୫୦
ସୂତ ମାଗଧ ବନ୍ଦୀ ମେଳେ ।
ପୃଥୁର ସମୀପେ ମିଳିଲେ ॥୫୧

ସ୍ତୁତି ଉଦ୍ୟମ ତା'ଙ୍କ ଜାଣି ।
ମେଘ-ଗମ୍ଭୀର ମୃଦୁବାଣୀ ॥୫୨
ଆନନ୍ଦେ ନିକଟେ ବସାଇ ।
ପୃଥୁ କହନ୍ତି ଭାବ ବହି ॥୫୩

ପୃଥୁ-ଉବାଚ

ଆହେ ମାଗଧ ସୂତେ ଶୁଣ ।
ଯେତେ ଭବିଷ୍ୟ ସ୍ତୁତିଗୁଣ ॥୫୪
ଲୋକଙ୍କ ମଧ୍ୟେ ମୋର ଗୁଣ ।
ଅବ୍ୟକ୍ତ ରୂପେ ଅଛିପୁଣ ॥୫୫
ମୋର କର୍ତ୍ତବ୍ୟ କର୍ମ ଯେତେ ।
ତୁମ୍ଭେ କହିବ ଭବିଷ୍ୟତେ ॥୫୬

ମିଥ୍ୟା-ବଚନେ କାର୍ଯ୍ୟ ନାହିଁ ।
ମଧୁର ଭାଷୀ ତୁମ୍ଭେ ହୋଇ ॥୫୭
ଏବେ ବିଷ୍ଣୁଙ୍କୁ ସ୍ତୁତି କର ।
ଯାହା ଅଟଇ ମୋକ୍ଷ ଦ୍ୱାର ॥୫୮
ଏମନ୍ତ ପୃଥୁର ବଚନ ।
ଶୁଣି ସନ୍ତୋଷ ପ୍ରଜାଜନ ॥୫୯
କହଇ ବିପ୍ର ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୬୦
ଚତୁର୍ଥ ସ୍କନ୍ଧେ ବିଷ୍ଣୁବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୬୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୃଥୁ ଚରିତେ
ସପ୍ତଦଶୋଽଧ୍ୟାୟଃ ॥

---

## ଅଷ୍ଟାଦଶ ଅଧ୍ୟାୟ

ମୈତ୍ରେୟ କୃଷ୍ଣପାଦ ଧ୍ୟାୟି ।
କହେ ବିଦୁର ମୁଖ ଚାହିଁ ॥୧

ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ ।
ସୂତ ମାଗଧ ତୋଷମନେ ॥୨
ମୁନିଙ୍କ ମତେ ସାଧୁବାଣୀ ।
ପୃଥୁ-ବଦନ ଚାହିଁ ଭଣି ॥୩
ଭୋନାଥ ତୋହର ମହିମା ।
କେ କହିପାରେ ଗୁଣସୀମା ॥୪
ତାହା କେ ସମର୍ଥ ବର୍ଣ୍ଣନେ ।
ଯେଣେ ବ୍ରହ୍ମାଦି ବୁଦ୍ଧିଭ୍ରମେ ॥୫
ତୁ ଦେବ ନିଜ ମାୟା ବଳେ ।
ଶରୀର ବହୁ ଏ ଶୟଳେ ॥୬
ବେଣ-ଶରୀରୁ ତୁହି ଜାତ ।
ଏ କଥା ଜଗତେ ବିଖ୍ୟାତ ॥୭
ତଥାପି ତୋ'ର ଗୁଣ ଯେତେ ।
ଭାବେ କହିବୁ ତୋ ଅଗ୍ରତେ ॥୮

ତୁ ଧର୍ମଜ୍ଞାନୀଙ୍କର ସାର ।
ଯେ ଧର୍ମ ଲୋକ-ଉପକାର ॥୯
ଅଧର୍ମ ନାଶି ଧର୍ମ ପାଳୁ ।
ତୁ ନାଥ ପରମ ଦୟାଳୁ ॥୧୦
ଶରୀର ବହୁ କାଳେକାଳେ ।
ସ୍ୱଧର୍ମ ରଖୁ ମହୀତଳେ ॥୧୧
ସକଳଭୂତେ ସମେ ବସୁ ।
ସବିତା ରୂପେ ତୁ ପ୍ରକାଶୁ ॥୧୨
ହିମ ଗ୍ରୀଷମ ଅଷ୍ଟମାସ ।
ସବିତା ଯେହ୍ନେ ଜଳରସ ॥୧୩
ସକଳ ସ୍ଥାନୁ ସେ ହରଇ ।
ବରଷା କାଳେ ବରଷଇ ॥୧୪
ସେ ରୂପେ ତୁ କର-ଗ୍ରହଣ ।
କରି ଦୁର୍ଭିକ୍ଷେ ଦେବୁ ଦାନ ॥୧୫
ପୃଥିବୀ ସମ ସର୍ବ ସହୁ ।
ବିକାର ଅବିକାର ନୋହୁ ॥୧୬
ତୋ'ର ମହିମା ଅଧ-ଉର୍ଦ୍ଧ୍ୱେ ।
ପ୍ରକାଶ କର ଶୂନ୍ୟମଧ୍ୟେ ॥୧୭

ପ୍ରାଣୀଙ୍କ ମଧ୍ୟେ ତୁ କାରୁଣ୍ୟ ।
ଆରତ ଦୁଃଖ ନିବାରଣ ॥୧୮
ଇନ୍ଦ୍ର ଯଦ୍ୟପି ନ ବର୍ଷିବ ।
ଏ ପ୍ରଜା କଷ୍ଟରେ ପଡ଼ିବ ॥୧୯
ତୁ ସ୍ୱୟଂ ଇନ୍ଦ୍ର ରୂପ ଧରି ।
ପ୍ରଜା ରଖିବୁ ବୃଷ୍ଟି କରି ॥୨୦
ତୋହର ବଚନ-ଅମୃତ ।
ଶୁଣି ନିସ୍ତରିବେ ଜଗତ ॥୨୧
ତୋ'ର ବଦନ ଚାରୁହାସ ।
ଦେଖନ୍ତେ ହେବ ଦୁଃଖନାଶ ॥୨୨
ତୋହର କର୍ମ ବ୍ୟକ୍ତ ନୋହେ ।
ଯାହାର ମାୟା ଜନ ମୋହେ ॥୨୩
ତୋହର ଚେଷ୍ଟା ଅନ୍ତରାଳ ।
ବରୁଣ ପ୍ରାୟ ତୁ ଗମ୍ଭୀର ॥୨୪
ଅନନ୍ତ ମହିମା ତୋହର ।
ଅଶେଷ ଗୁଣର ସାଗର ॥୨୫
ତୁ ଦୁରାସଦ ଦୁର୍ବିଷହ ।
ନିକଟେ ଥାଇ ଦୂର ପ୍ରାୟ ॥୨୬

Dr. Sudhanshu Sekhar Mishra

ଜନ୍ତୁଙ୍କ ଅନ୍ତର ବାହାରେ ।
ତୋ ତହୁଁ କେବା ଅଛି ପରେ ॥୨୭
ଅଧ୍ୟକ୍ଷ ହୋଇ ଉଦାସୀନ ।
ଶରୀରେ ଯେସନେ ପବନ ॥୨୮
ଅଦୋଷଜନ ତୁ ନ ଦଣ୍ଡୁ ।
ପୁତ୍ର ହେଲେହେଁ ଦୋଷୀ ଦଣ୍ଡୁ ॥୨୯
ଅପ୍ରତିହତ-ଚକ୍ର ତୋର ।
ତେଜେ ଗଞ୍ଜାଇ ଦିବାକର ॥୩୦
ତୋହର ଆତ୍ମା ବିଚେଷ୍ଟିତ ।
ଲୋକରଞ୍ଜନ ଏ ଜଗତ ॥୩୧
ଯେ ରାଜା ପ୍ରଜା ମନ ରଞ୍ଜେ ।
ରାଜ୍ୟସମ୍ପଦ ସୁଖେ ଭୁଞ୍ଜେ ॥୩୨
ସତ୍ୟସନ୍ଧ ତୁ ଦୃଢବ୍ରତ ।
ବୃଦ୍ଧ ସେବକ ବିପ୍ରଭକ୍ତ ॥୩୩
ଶରଣ ସର୍ବ ପ୍ରାଣୀଙ୍କର ।
ଦୀନ ବତ୍ସଳ ଦୁଃଖ-ହର ॥୩୪
ପର-ରମଣୀ ମାତ ପ୍ରାୟ ।
ନିଜ-କାମିନୀ ଅର୍ଦ୍ଧକାୟ ॥୩୫
ପ୍ରଜାଙ୍କୁ ପୁତ୍ରପ୍ରାୟ ଚିତ୍ତେ ।
ବିପ୍ରଙ୍କୁ ସେବା ଯା'ର ନିତ୍ୟେ ॥୩୬
ପ୍ରାଣୀ ବିଷୟେ ଆତ୍ମା ପ୍ରାୟେ ।
ଦୟା ବସଇ ଯା'ର ଦେହେ ॥୩୭
ସୁହୃଦ ଆନନ୍ଦ ବର୍ଦ୍ଧନ ।
ବିମୁକ୍ତସଙ୍ଗ ସଙ୍ଗେ ଧ୍ୟାନ ॥୩୮
ଅସାଧୁଗଣେ ଦଣ୍ଡଧର ।
ସ୍ୱଭାବେ ଶରଣ-ସୋଦର ॥୩୯
ନିର୍ଗୁଣ ଭଗବାନ ତୁହି ।
କୂଟସ୍ଥ ଆତ୍ମା କଳା ବହି ॥୪୦

ଯେତେ ଅବିଦ୍ୟା ବିରଚିତ ।
ନାନା ଭାବରେ ସେ ପ୍ରତୀତ ॥୪୧
ହେଲେହେଁ ତୋହର ଶରୀରେ ।
ଦିଶଇ ବିଅର୍ଥ ବେଭାରେ ॥୪୨
ତୋ ଅବତାର ଏ ଜଗତେ ।
ଜଗତ ନିସ୍ତାର ନିମନ୍ତେ ॥୪୩
ତୁ ନୃପନାଥ ଏକରଥୀ ।
ମହୀମଣ୍ଡଳେ ଯେତେ ଛନ୍ତି ॥୪୪
ତାହାଙ୍କ ରକ୍ଷଣ ନିମିତ୍ତେ ।
ଉଦୟ ଗିରି ପରିଯନ୍ତେ ॥୪୫
ଭ୍ରମିବୁ ରଥେ ଧନୁଧରି ।
ଦିଗ-ସମୂହ ବନ ଗିରି ॥୪୬
ଦକ୍ଷିଣାବର୍ତ୍ତେ ସାବଧାନେ ।
ଶୂନ୍ୟେ ଆଦିତ୍ୟ ରଥ ଯେହ୍ନେ ॥୪୭
ଯେ ଲୋକପାଳ ରାଜାଗଣେ ।
ବଳେ ହାରିବେ ତୋତେ ରଣେ ॥୪୮
ଗାଇବେ ତୋ'ର ଯଶ ଗୁଣ ।
ଖଟିବେ ତୋହର ଚରଣ ॥୪୯
ଇନ୍ଦ୍ରର ପ୍ରାୟେ ଶରେ ଗିରି ।
ଛେଦି ପୃଥିବୀ ସମ କରି ॥୫୦
ମେଦିନୀ-ସ୍ତନୁ ପୟ ଦୁହିଁ ।
ପ୍ରାଣୀଙ୍କୁ ପ୍ରାଣ-ବୃତ୍ତି ଦେଇ ॥୫୧
ଖିଳ ଅଖିଳ ବସୁନ୍ଧରୀ ।
ପାଳିବ ଏ ନୃପକେଶରୀ ॥୫୨
ମୃଗେନ୍ଦ୍ର ଯେହ୍ନେ ଲାଞ୍ଜ ତୋଳି ।
ବିକ୍ରମି ଚରେ ମହାବଳୀ ॥୫୩
ତେହ୍ନେ ତୁ ଧନୁର ଟଙ୍କାରେ ।
ବିକ୍ରମି ବସନ୍ତେ ରଥରେ ॥୫୪

ଦେଖି ସକଳ ଶତ୍ରୁଗଣେ ।
ଭୟେ ପଶିବେ ଘୋରବନେ ॥୫୫
ମୃଗ ଯେସନେ ସିଂହ ଦେଖି ।
ପଳାନ୍ତି ବିପିନ ଉପେକ୍ଷି ॥୫୬
କରିବୁ ଅଶ୍ୱମେଧ ଶତ ।
ତ୍ରିଦିବେ ଯେହ୍ନେ ସୁରନାଥ ॥୫୭
ଶେଷ-ଯଜ୍ଞରେ ଅଶ୍ୱ ତୋ'ର ।
ହରିବେ ସ୍ୱୟଂ ପୁରନ୍ଦର ॥୫୮
ତଦନ୍ତେ ଗୃହ ମଧ୍ୟେ ଯାଇ ।
ସନତ୍କୁମାର ଧ୍ୟାନେ ଧ୍ୟାୟି ॥୫୯
ତେଣୁ ତୋ' ହେବ ବ୍ରହ୍ମଜ୍ଞାନ ।
ତୁ ହେବୁ ଅତୀବ ପାବନ ॥୬୦
ସ୍ୱଭୋଗ ଅନ୍ତେ ଗଙ୍ଗାକୂଳେ ।
ସନକୁମାରଙ୍କ ମେଳେ ॥୬୧
ଭକତି କରି ବିଷ୍ଣୁପାଦେ ।
ଅନ୍ତେ ପଶିବୁ ନିଜପଦେ ॥୬୨
ତୋର ଚରିତ ଇହଲୋକେ ।
ପ୍ରାଣୀଏ ବିସ୍ତାରିବେ ମୁଖେ ॥୬୩
ହେ ପୃଥୁ ପରାକ୍ରମ ତୋ'ର ।
ଦେବ-ମାନବେ ଅଗୋଚର ॥୬୪
ତୋ'ର ମହିମା କର୍ଣ୍ଣେ ଶୁଣି ।
ତରିବେ ଭବ-ତରଙ୍ଗିଣୀ ॥୬୫
ସୁଜନେ ଶୁଣ ଶୁଦ୍ଧଚିତ୍ତେ ।
ଭାଷା-ପ୍ରବନ୍ଧେ ଭାଗବତେ ॥୬୬
ଏ ପୃଥୁ ରାଜାର ଚରିତ ।
ବୋଲଇ ଦାସ ଜଗନ୍ନାଥ ॥୬୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥସ୍କନ୍ଧେ
ଅଷ୍ଟାଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଊନବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତେ ପୃଥୁରାଜା ବୋଲେ ।
ସୂତ ମାଗଧେ ଏକ ତୁଳେ ॥୧
ଭବିଷ୍ୟେ କଲେ ଯେତେ ସ୍ତୁତି ।
ଶୁଣି ସାନନ୍ଦେ ନରପତି ॥୨
ଆତ୍ମାର ଗୁଣ କର୍ମ ଶୁଣି ।
ସନ୍ତୋଷ ମନେ ନୃପମଣି ॥୩
ବାଞ୍ଛିତ ସର୍ବ ସୁଖ ଦେଲା ।
ଅନେକ ମତେ ମାନ୍ୟକଲା ॥୪
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
ଅମାତ୍ୟ ପୁରୋହିତ ଜନେ ॥୫
ସକଳ ପ୍ରଜାଜନ ଆଣି ।
ସନ୍ତୋଷ କଲା ନୃପମଣି ॥୬

ବିଦୁର ଉବାଚ

କେମନ୍ତେ ଗୋରୁ ରୂପ ଧରି ।
କ୍ଷୀର ସ୍ରବିଲା ବସୁନ୍ଧରୀ ॥୭
ସ୍ୱଭାବେ ସେ ବହୁରୂପିଣୀ ।
କେ ବା ମହିମା ତା'ର ଜାଣି ॥୮
ସ୍ୱଭାବେ ସେ ଅନନ୍ତ ରୂପୀ ।
ବିଷମ ରୂପେ ଅଛି ବ୍ୟାପି ॥୯
ତାହାକୁ କେମନ୍ତେ ଦୁହିଁଲା ।
ଦୋହନେ ବତ୍ସା କେ ହୋଇଲା॥୧୦
ସ୍ୱଭାବେ ଶରୀର ବିଷମ ।
କେବା ତାହାକୁ କଲା ସମ ॥୧୧
କି ଅର୍ଥେ ଅଶ୍ୱମେଧ କଲା ।
ଇନ୍ଦ୍ର କିପାଇଁ ଅଶ୍ୱ ନେଲା ॥୧୨
ସନତକୁମାରଙ୍କ ମେଳେ ।
ବ୍ରହ୍ମସମ୍ପାଦି କେତେ କାଳେ ॥୧୩
ତାହାଙ୍କ ଠହୁଁ ଜ୍ଞାନପାଇ ।
ପଶିଲା ନିଜ ତେଜେ ଯାଇ ॥୧୪
ଯେ ବ୍ରହ୍ମ ପରମ-କାରଣ ।
ଅଶେଷ-ଜୀବ-ପରିତ୍ରାଣ ॥୧୫

କି ଅର୍ଥେ ପ୍ରଭୁ ନରହରି ।
ଜଗତେ ପୃଥୁ ରୂପ ଧରି ॥୧୬
ସୁପୁଣ୍ୟ କଥା ବିଚାରିଲେ ।
ସୁଯଶ ଜଗତେ ରଖିଲେ ॥୧୭
ସେ କଥା କହ ମୁନି ମୋତେ ।
ମୁଁ ତୋ'ର ସେବକ ଉଚିତେ ॥୧୮
ତହିଁର କହ ପ୍ରତିକାର ।
ଭୋମୁନି ନମୁ ତୋ ପୟର ॥୧୯
ବିଷ୍ଣୁର କଥା ପୁଣ୍ୟସାର ।
ଯା ଶୁଣି ନିସ୍ତରେ ସଂସାର ॥୨୦
ଯାହାର ନାମ ଗୁଣ ଯଶ ।
ନିଗମେ କରନ୍ତି ବିଶ୍ୱାସ ॥୨୧
କେମନ୍ତେ ପୃଥୁରୂପେ ହରି ।
ଦୋହନ କଲେ ବସୁନ୍ଧରୀ ॥୨୨

ସୂତ ଉବାଚ

ଏମନ୍ତ ବିଦୁର ବଚନେ ।
ମୈତ୍ରେୟ ଶୁଣି ତୋଷମନେ ॥୨୩
ପ୍ରଶଂସି ବିଦୁର ବଚନ ।
କହେ ପରାଶର ନନ୍ଦନ ॥୨୪

ମୈତ୍ରେୟ ଉବାଚ

ଶୁଣ ବିଦୁର ଏକମନେ ।
ପୃଥୁକୁ ମିଳି ବିପ୍ରଜନେ ॥୨୫
ଜନପରଜା ଏକମେଳେ ।
ଆନନ୍ଦେ ଅଭିଷେକ କଲେ ॥୨୬
ସକଳେ ମିଳି ଏକଦିନେ ।
ମିଳିଲେ ପୃଥୁ ସନ୍ନିଧାନେ ॥୨୭
ବୋଲନ୍ତି ଶିରେ କର ଦେଇ ।
କ୍ଷୁଧାରେ କମ୍ପେ ଆମ୍ଭ ଦେହୀ ॥୨୮
କ୍ଷୁଧାଅନଳ ଦହେ ମନେ ।
ବୃକ୍ଷ କୋଟରେ ଅଗ୍ନି ଯେହ୍ନେ ॥୨୯
ଏଥକୁ କର ତୁ କାରଣ ।
ତୋପାଦେ ପଶିଲୁ ଶରଣ ॥୩୦

କ୍ଷୁଧା ନ ସହେ ଆମ୍ଭ ଦେହ ।
ଭୋନାଥ ଅନ୍ନ ଦାନ ଦିଅ ॥୩୧
କ୍ଷୁଧା ହରଇ ଆମ୍ଭ ପ୍ରାଣ ।
ଭୋଦେବ କର ପରିତ୍ରାଣ ॥୩୨
ଅନ୍ନ ନ ଥିଲେ ପ୍ରଜା ନାହିଁ ।
ପ୍ରାଣ ନ ଥିଲେ ପିଣ୍ଡ କାହିଁ ॥୩୩
ଜୀବ ନ ଥିଲେ ପ୍ରଜା ନାହିଁ ।
ପ୍ରଜା ନ ଥିଲେ ରାଜା କାହିଁ ॥୩୪
ଏମନ୍ତ ପ୍ରଜାଙ୍କ ରୋଦନ ।
ଶୁଣିଣ ଛନ୍ନ ପୃଥୁ ମନ ॥୩୫
ବୋଲଇ ଅନ୍ନ କେ ହରିଲା ।
ତୁମ୍ଭଙ୍କୁ ଏତେ ଦୁଃଖ ଦେଲା ॥୩୬
ଶୁଣି ବୋଲନ୍ତି ପ୍ରଜାଜନେ ।
ଶୁଣ ରାଜନ ସ୍ଥିର ମନେ ॥୩୭
ତୋ ପିତା ଅରାଜକ କାଳେ ।
ଏ ଭୂମି ଗୋରୁ-ରୂପେ ବଳେ ॥୩୮
ରାତ୍ରେ ସକଳଶସ୍ୟ ଖାଇ ।
ଦିବସେ ସମୁଦ୍ରେ ଲୁଚଇ ॥୩୯
ଆମ୍ଭର ଶସ୍ୟବୀଜ ବଳେ ।
ଭକ୍ଷିଲା କ୍ଷୁଧାର ବିକଳେ ॥୪୦
ତାହାକୁ କେବେହେଁ ନ ଦେଖି ।
ଏଣୁ ହୋଇଲୁ ଆମ୍ଭେ ଦୁଃଖୀ ॥୪୧
ଭୋ ଦେବ କହିଲୁ ସ୍ୱରୂପ ।
ଖଣ୍ଡ ଏ ଘୋର ଉପତାପ ॥୪୨
ଏମନ୍ତ ପ୍ରଜାବାକ୍ୟ ଶୁଣି ।
ପୃଥୁ ବିଚାରେ ମନେ ଗୁଣି ॥୪୩
ଭୂମିକି ମନେ ଧ୍ୟାନ କରି ।
ନିଜ କୋଦଣ୍ଡ କରେ ଧରି ॥୪୪
ବାଣ ନିବେଶି ଧନୁର୍ଗୁଣେ ।
ତ୍ରିପୁର ଦାହେ ରୁଦ୍ର ଯେହ୍ନେ ॥୪୫
ଧରଣୀ ପୃଥୁ ତେଜ ଦେଖି ।
ଧାଇଁଲା ସମୁଦ୍ର ଉପେକ୍ଷି ॥୪୬

Dr. Sudhanshu Sekhar Mishra

ଭୟେ ଚାହିଁଇ ଦଶଦିଶେ ।
ମୃଗ ଯେସନେ ବ୍ୟାଧ ତ୍ରାସେ ॥୪୭
ପୃଥୁ ଧାମଇଁ କୋପମନେ ।
ରୋଷିତ ଅରୁଣ ଲୋଚନେ ॥୪୮
ଶର-ସନ୍ଧାନ ଧନୁକରେ ।
ଭୂମି କମ୍ପଇ ପାଦଭରେ ॥୪୯
ଯେଣେ ପଳାଏ ବସୁନ୍ଧରୀ ।
ପୃଥୁ ଧାମଇଁ କୋପକରି ॥୫୦
ଦିଗ-ବିଦିଗ-ଭୂମି ଶୂନ୍ୟେ ।
ପ୍ରତାପେ ମିଳିଲେ ଗଗନେ ॥୫୧
ପୃଷ୍ଠେ ଚାହାଁନ୍ତେ ପୃଥୁ ଦେଖେ ।
କେବା ଅବନୀ ପ୍ରାଣ ରଖେ ॥୫୨
ଦେବୀ ଲଭିଲା ତ୍ରାସ ମନେ ।
ମୃତ୍ୟୁର ଭୟେ ପ୍ରାଣୀ ଯେହ୍ନେ ॥୫୩
ଚଳି ନ ପାରି ଦୁଃଖମନେ ।
ମିଳିଲା ପୃଥୁ ସନ୍ନିଧାନେ ॥୫୪
ଭୟେ କମ୍ପଇ ବସୁନ୍ଧରୀ ।
ପୃଥୁ ଚରଣେ ନମସ୍କାରି ॥୫୫
ନ ଦେଖି ନିଜ ପରିତ୍ରାଣ ।
ବିନୟେ କହିଲା ବଚନ ॥୫୬
ତୁ ମହାଭାଗ ଧର୍ମବେତ୍ତା ।
ଭୂତ-ବତ୍ସଳ-ସର୍ବଜ୍ଞାତା ॥୫୭
ପ୍ରାଣୀ ରକ୍ଷଣେ ଜନ୍ମ ତୋ'ର ।
ତୁ ନାଥ ଶରଣ-ସୋଦର ॥୫୮
ମୋହର ହିଂସା ତୁ ନ କର ।
ନୁହଇ ଅପରାଧୀ ତୋର ॥୫୯
ଭୋ ରାଜା ଶୁଣ ମୋ ବଚନ ।
ମୁଁ ନୋହେ ବଧକୁ କାରଣ ॥୬୦
ସ୍ତିରୀ ଗୋବଧ ମୋର ମଲେ ।
କେସନେ ସମ୍ପାଦିବୁ ଭଲେ ॥୬୧
ଏକ ମାରଣେ ବେନି ଦୋଷ ।
ସଂସାରେ ଥିବ ଅପଯଶ ॥୬୨
ସ୍ତ୍ରୀଲୋକ ଅପରାଧ କଲେ ।
ପଣ୍ଡିତେ ନ ଧରନ୍ତି ଭଲେ ॥୬୩

ତୁ ନାଥ କରୁଣା ସାଗର ।
ଦୁଃଖୀ ଦରିଦ୍ରଙ୍କ ସୋଦର ॥୬୪
ଦଦରା-ନାବ ପ୍ରାୟେ ମୁହିଁ ।
ଏ ଭାରା ସହି ନ ପାରଇ ॥୬୫
ମୋହର ମଲେ ଏ ଜଗତେ ।
ଏ ପ୍ରଜା ରଖିବୁ କେମନ୍ତେ ॥୬୬
ଅଶେଷ-ଜୀବ ଭାରାଭର ।
ଧରିଛି ମୋହର ଶରୀର ॥୬୭
ଏମନ୍ତ ଅବନୀ ବଚନେ ।
ପୃଥୁ କହଇ କୋପମନେ ॥୬୮

### ପୃଥୁ-ଉବାଚ

ଶୁଣ ଧରଣୀ ମୋ ଉତ୍ତର ।
ତୁ ମଲେ ମୋର ନାହିଁ ଡର ॥୬୯
ମୋହର ଆଜ୍ଞା ଭାଙ୍ଗୁ ତୁହି ।
ତୋ'ର ମାରଣେ ଦୋଷ ନାହିଁ ॥୭୦
ପିତା ମରଣେ ଅରାଜକେ ।
ସକଳ ଶସ୍ୟବୀଜ ସୁଖେ ॥୭୧
ଖାଇଲୁ ଗୋରୁ ରୂପ ହୋଇ ।
ସଂସାରେ ଶସ୍ୟବୀଜ ନାହିଁ ॥୭୨
ଅନ୍ନ ନ ଥିଲେ ପ୍ରଜାଜନ ।
କେମନ୍ତେ ରଖିବେ ଜୀବନ ॥୭୩
ପ୍ରଜା ନ ଥିଲେ ରାଜା କାହିଁ ।
ଏ ଘେନି ତୋତେ ମୁଁ ମାରଇ ॥୭୪
ଦୁଷ୍ଟ-ମାରଣ ରାଜଧର୍ମ ।
ଏ ତ ସ୍ୱଭାବେ ମୋର କର୍ମ ॥୭୫
ମୁଁ ଯେବେ ନ ମାରିବି ତୋତେ ।
ପ୍ରଜାଏ ବଞ୍ଚିବେ କେମନ୍ତେ ॥୭୬
ବିଧାତା ସୃଷ୍ଟି କଲା ଯେତେ ।
ଅନ୍ନ-ଜୀବନ ରକ୍ଷା ଅର୍ଥେ ॥୭୭
ସେ ଶସ୍ୟ ଗୋରୁ ରୂପେ ଖାଇ ।
ଏବେ ନ ଦେଉ କାହିଁ ପାଇଁ ॥୭୮
ତୁ ମନ୍ଦବୁଦ୍ଧି ଦୁରାଶୟ ।
ମାୟା ଭିଆଣେ ବହୁ ଦେହ ॥୭୯

ଅବଜ୍ଞା କଲୁ ଯେଣୁ ମୋତେ ।
ତେଣୁ ଦଣ୍ଡିବି ଆଜି ତୋତେ ॥୮୦
ଏ ପ୍ରଜା ପୀଡ଼ିତ ଆରତେ ।
କ୍ଷୁଧିତ ଅନ୍ନ ଅପ୍ରାପତେ ॥୮୧
ସେ ଦୁଃଖ ନିବାରିବି ମୁହିଁ ।
ମୋ ବାଣେ ତୋ'ର ମାଂସ ଦେଇ ॥୮୨
ସ୍ତିରୀ ପୁରୁଷ ନପୁଂସକେ ।
ପୀଡ଼ିତ ଯା'ର ତହୁଁ ଲୋକେ ॥୮୩
ତାହାକୁ ରାଜା ନ ଦଣ୍ଡିଲେ ।
କେବା ସଂସାରେ ଥିବ ଭଲେ ॥୮୪
ତା'ର ମାରଣେ ଦୋଷ ନାହିଁ ।
ସଂସାରେ ଧର୍ମ-କଥା ଏହି ॥୮୫
ତୁ ମାୟା-ଗୋରୁ-ରୂପ ହୋଇ ।
ସକଳ ଶସ୍ୟବୀଜ ଖାଇ ॥୮୬
ଆବଜ୍ଞା କଲୁ ଯେବେ ମୋତେ ।
ନିଶ୍ଚେ ଦଣ୍ଡିବି ଆଜ ତୋତେ ॥୮୭
ତୋର ଶରୀର ତୀକ୍ଷ୍ଣ-ବାଣେ ।
କାଟିବି ତିଳ ପରିମାଣେ ॥୮୮
ବାଣେ ତୋହର ପ୍ରାଣ ହରି ।
ମୁଁ ଏବେ ଆତ୍ମଯୋଗ କରି ॥୮୯
ବିସ୍ତାରି ମୋହର ଶରୀରେ ।
ଏ ପ୍ରଜା ରଖିବି ନିର୍ଭରେ ॥୯୦

### ମୈତ୍ରେୟ ଉବାଚ

ଏମନ୍ତ କହୁଁ ମହାକୋପେ ।
ପୃଥିବୀ ମିଳିଲା ସମୀପେ ॥୯୧
ଏମନ୍ତ ପୃଥୁ ରୂପ ଚାହିଁ ।
ଭୟେ କମ୍ପଇ ତା'ର ଦେହୀ ॥୯୨
ପୃଥୁ ଚରଣେ ଶିର ଦେଇ ।
ବୋଲଇ ଅଶ୍ରୁମୁଖୀ ହୋଇ ॥୯୩

### ପୃଥିବୀ ଉବାଚ

ନମସ୍ତେ ପରମ-ପୁରୁଷ ।
ଗୁଣ ପ୍ରକାଶେ ତୋ'ର ଦୃଶ୍ୟ ॥୯୪

Dr. Sudhanshu Sekhar Mishra

ନିଜ ମାୟାରେ ଛନ୍ନ ହୋଇ ।
ସଂସାର-ହିତେ ବହୁ ଦେହୀ ॥୯୫
ସ୍ୱରୂପେ ଅନୁଭବ ବୃତ୍ତି ।
ଦ୍ରବ୍ୟ-କାରକ-କ୍ରିୟା ରୀତି ॥୯୬
ସକଳ କରୁ ମାୟା ଭ୍ରମେ ।
ଉର୍ମି ଯେସନେ ଜଳଗ୍ରାମେ ॥୯୭
ମାୟା-ରଚନା ମୋତେ କରି ।
ବିହରୁ ଆତ୍ମା-ରୂପ ଧରି ॥୯୮
ସର୍ଜି-ପାଳିଣ କରୁ ଅନ୍ତ ।
ଯେ ସ୍ୱୟଂ ପ୍ରକାଶେ ଜଗତ ॥୯୯
ଏ ସର୍ବତତ୍ତ୍ୱ ଭେଦ କରି ।
ସେ ପୁଣି କରେ ଶସ୍ତ୍ର ଧରି ॥୧୦୦
ସେ ମୋତେ ମାରିବାର ସଧୋ।
ଧାମଇଁ ଉଦ୍ୟତ ଆୟୁଧେ ॥୧୦୧
କେବା ରକ୍ଷଣେ ଅଛି ମୋର।
ତୁ ନାଥ ନ କରୁ ବିଚାର ॥୧୦୨
ତୁ ନିଜ ମାୟାତର୍କ-ବଳେ ।
ଜନ୍ତୁଙ୍କୁ ସର୍ଜୁ ଏ ଶୟଳେ ॥୧୦୩

ତୁ ନାଥ ଧାର୍ମିକର ଗୁରୁ ।
କିପାଁ ନବୁଝି ମୋତେ ମାରୁ ॥୧୦୪
ଅନ୍ନ ନ ପାଇ ପ୍ରଜା ଯେବେ।
ତୋତେ କହିଲେ ଅନୁଭବେ॥୧୦୫
ତୁ ନାଥ ଜଗତ ଈଶ୍ୱର ।
ଏ ତୋତେ ନୋହେ ଅଗୋଚର ॥୧୦୬
ତୁ ଆଦି-ପଦ୍ମକଞ୍ଚ ଆନ୍ତେ ।
ଶୂକର ରୂପେ ତୋଳି ଦନ୍ତେ ॥୧୦୭
ମୋତେ ସ୍ଥାପିଲୁ ଜନ ହିତେ।
ଏବେ ସଂହାରିବୁ କେମନ୍ତେ ॥୧୦୮
ଯେ ଜନ ପ୍ରତିପାଳି ଥାଇ ।
ସେ ତୋ'ର ବଧ ନ ବାଞ୍ଛଇ॥୧୦୯
ମୋହର ପ୍ରାୟ ଯେଉଁ ଜନ ।
ଈଶ୍ୱର-ମାୟାରେ ମୋହନ ॥୧୧୦
ତୁମ୍ଭର ଚେଷ୍ଟା ନ ଜାଣଇ ।
ବାଳୁତ ପ୍ରାୟେକ ଭ୍ରମଇ ॥୧୧୧
ହେ ବୀର ତୁମ୍ଭେ ଯଶସ୍କର ।
ତୁମ୍ଭଙ୍କୁ ମୋର ନମସ୍କାର ॥୧୧୨

କହିଲି ଏବେ ତୋ'ର ଇଚ୍ଛା।
ଯେମନ୍ତ କର ତୋ'ର ବାଞ୍ଛା॥୧୧୩
ତୁ ନାଥ ଜଗତ ଈଶ୍ୱର ।
ଏ ମୋତେ ନୋହେ ଅଗୋଚର॥୧୧୪
ପୃଥିବୀ ପୃଥୁର ସମ୍ବାଦ ।
ଶୁଣନ୍ତେ ଖଣ୍ଡଇ ପ୍ରମାଦ ॥୧୧୫
ଚତୁର୍ଥସ୍କନ୍ଧେ ଭାଗବତେ ।
ଭାଷାପ୍ରବନ୍ଧେ ଜନହିତେ ॥୧୧୬
ଶ୍ରୁତି ବଦନେ ଶୁଣି ଭଣି ।
ଭବ-ସଂସାରୁ ତରେ ପ୍ରାଣୀ ॥୧୧୭
ବୋଲଇ ବିପ୍ର ଜଗନ୍ନାଥ ।
ସୁଜନ-ହିତେ ଭାଗବତ ॥୧୧୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ପୃଥୁ ବିଜୟେ ଧରିତ୍ରୀନିଗ୍ରହୋ-ନାମ ଉନବିଂଶୋଽଧ୍ୟାୟଃ ॥

---

## ବିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଏମନ୍ତ ପୃଥୁ ମୁଖ ଚାହିଁ ।
ଭୟେ ଚରଣେ ଶିର ଦେଇ ॥୧
କୋପିତେ ସ୍ଫୁରିତ ବଚନ ।
ସ୍ୱଭାବେ ଅରୁଣ-ଲୋଚନ ॥୨
ବିନୟେ କରି ନାନା ସ୍ତୁତି ।
ପୁଣି ବୋଲଇ ବସୁମତୀ ॥୩
ଭୋନାଥ କୋପ ଛାଡ ମାତେ।
ମୁହିଁ ଶରଣ ଗଲି ତୋତେ ॥୪
ଯେ ଆତ୍ମା-କାର୍ଯ୍ୟ ବିଚାରଇ ।
ସଂସାରୁ ସାର ଆହରଇ ॥୫

ଚିତ୍ତେ ନ କହେ ଭିନ୍ନେ-ଭିନ୍ନେ।
ପୁଷ୍ପରୁ ମଧୁକର ଯେହ୍ନେ ॥୬
ଯେ ଶାନ୍ତ ଇହ ପରଲୋକେ ।
ସୁଯୋଗୀ ଜନ କହେ ମୁଖେ ॥୭
ଉପାୟେ ସେ ଫଳ ଭୁଞ୍ଜନ୍ତି ।
ଉଭୟ-ଲୋକେ ନାହିଁ ଭ୍ରାନ୍ତି ॥୮
ଏହା ଯେ ନ କରନ୍ତି ଚିତ୍ତେ ।
ସେ ଯଶ ଲଭିବେ କେମନ୍ତେ ॥୯
ବ୍ରହ୍ମା ଯେ ସର୍ବପ୍ରାଣୀ ହିତେ ।
ଶସ୍ୟ ସାମଗ୍ରୀ କଲା ଯେତେ ॥୧୦
ସେ ସର୍ବ ମୋର ଦେହେ ଥିଲା।
ଏମନ୍ତେ ତୋର ପିତା ମଲା ॥୧୧

ରାଜା ବିଯୋଗେ ସର୍ବ ଧର୍ମ ।
ଦୁଷ୍ଟେ ନାଶିଲେ ସର୍ବ କର୍ମ ॥୧୨
ଚଉର-ଭୟ ଅରାଜତ୍ୱେ ।
ଭବିଷ୍ୟ ଯଜ୍ଞରକ୍ଷା ଅର୍ଥେ ॥୧୩
ଯେତେ ଔଷଧି ବୀଜ ଥିଲା ।
ଅରାଜା ଯୋଗେ ନାଶ ଗଲା ॥୧୪
କ୍ଷୀଣ ବୀରୁଧ ଦେଖି ମୁହିଁ ।
ଭକ୍ଷିଲି ଧେନୁରୂପ ହୋଇ ॥୧୫
ଯଦି ମୁଁ ନ କରନ୍ତି ଗ୍ରାସ ।
ଦୁଷ୍ଟେ କରନ୍ତେ ସର୍ବନାଶ ॥୧୬
ସେ ସର୍ବ ଶସ୍ୟ ରସ ଯେତେ ।
କ୍ଷୀରେ ବସନ୍ତି ମୋର ଗାତ୍ରେ ॥୧୭

Dr. Sudhanshu Sekhar Mishra

ତୁ ଏବେ ରକ୍ଷା କର ମୋତେ ।
ଦୋହନ କର ତୁ ଯୁଗତେ ॥୧୮
କ୍ଷରିବି ସର୍ବ-ଶସ୍ୟ ମୁହିଁ ।
ପ୍ରାଣୀ-ଜୀବନ ଯେଣେ ରହି ॥୧୯
ମୁଁ ସର୍ବ କାମଧେନୁ ରୂପେ ।
କ୍ଷୀର ସ୍ରବିବି ଜନ ମୁଖେ ॥୨୦
ତୁ ଏବେ ମୋତେ ରକ୍ଷାକର ।
ଧନୁ-ଆୟୁଧ ପରିହର ॥୨୧
ସୁଷମ କର ମୋ ଗାତ୍ର ।
ମୁହିଁ ଯେସନେ ଶସ୍ୟକ୍ଷେତ୍ର ॥୨୨
ସମ ହୋଇଲେ ମୋର ଶରୀର।
ବର୍ଷାରେ ପୂରି କ୍ଷୀରଧାର ॥୨୩
ସରସ ହୋଇ ମୋ ଶରୀର ।
ଶସ୍ୟ ଉଠିବ ନିରନ୍ତର ॥୨୪
ହୋଇବ ନାନାରୂପେ ଧାନ୍ୟ ।
ଜନ୍ତୁଏ ଲଭିବେ ଜୀବନ ॥୨୫

ମୈତ୍ରେୟ ଉବାଚ

ଏମନ୍ତ ଧରଣୀ ବଚନ ।
ଶୁଣି ସନ୍ତୋଷ ପୃଥୁମନ ॥୨୬
ମନୁକୁ ବସ୍ତାରୂପ କରି ।
ଭାବେ ବୋଲଇ ଦଣ୍ଡଧାରୀ ॥୨୭
ତୁ ଏହା ସ୍ତନ ପାନ କର ।
ଯେମନ୍ତେ ସଞ୍ଚରଇ କ୍ଷୀର ॥୨୮
ତକ୍ଷଣେ ପୃଥୁର ବଚନେ ।
ସେ ମନୁ ମୁଖ ଦେଲା ସ୍ତନେ ॥୨୯
ପିବନ୍ତେ ସଞ୍ଚରିଲା କ୍ଷୀର ।
ମେଘୁ ଯେସନେ ବୃଷ୍ଟିଧାର ॥୩୦
ଚରଣେ ବାନ୍ଧି ବସ୍ତା ମନୁ ।
ପୃଥୁ ଦୁହିଁଲା କ୍ଷୀର ସ୍ତନୁ ॥୩୧
କ୍ଷୀରେ ପୂରିଲା ବସୁନ୍ଧରୀ ।
ଯେସନେ ସିନ୍ଧୁର ଲହରୀ ॥୩୨
ଅନେକ ଅପ୍ରମେୟ ରସ ।
ଯେଣେ ସକଳ-ଜୀବ ବଶ ॥୩୩

ଗର୍ଭେ ଯେ ଶସ୍ୟବୀଜ ଥିଲା ।
କ୍ଷୀର ସଙ୍ଗତେ ସଞ୍ଚରିଲା ॥୩୪
ଶସ୍ୟ ହୋଇଲା ଅପ୍ରମିତେ ।
ପ୍ରଜାଏ ନେଲେ ଯେଝାମତେ ॥୩୫
ପୃଥୁ ଦୋହନ ଅନ୍ତେ ଦେବେ ।
ସର୍ବେ ଦୁହିଁଲେ ଯେଝା ଭାବେ ॥୩୬
ମିଳି ସକଳ ମୁନିଜନେ ।
ଅତ୍ୟନ୍ତ ହରଷିତ ମନେ ॥୩୭
ବୃହସ୍ପତିଙ୍କି ବସ୍ତା କରି ।
ଇନ୍ଦ୍ରିୟ-ପାତ୍ର କରେ ଧରି ॥୩୮
ଦୁହିଁଲେ ପୟ ଛନ୍ଦୋମୟ ।
ଯେ ଭାବେ ତୁଟଇ ସଂଶୟ ॥୩୯
ପୁଣି ସକଳ ଦେବେ ଧରି ।
ଇନ୍ଦ୍ରଙ୍କୁ ବସ୍ତାରୂପ କରି ॥୪୦
ସୁବର୍ଣ୍ଣମୟ ପାତ୍ର ଆଣି ।
ଆନନ୍ଦେ ଦୁହିଁଲେ ଧରଣୀ ॥୪୧
ସୋମ ଦୁହିଁଲେ ଯେଝାମତେ ।
ଅଶେଷ ଯଜ୍ଞ କର୍ମ ଅର୍ଥେ ॥୪୨
ଅମୃତ ବୀର୍ଯ୍ୟ ଓଜ ବଳ ।
ଦୁହିଁଲେ ପୟ ସୁନିର୍ମଳ ॥୪୩
ଦୈତ୍ୟ-ଦାନବେ ପୁଣ ଧରି ।
ପ୍ରହଲ୍ଲାଦକୁ ବସ୍ତା କରି ॥୪୪
ଦୁହିଁଲେ ଲୌହମୟ ପାତ୍ରେ ।
ସୁରା ଆସବ ଆଦି ଯେତେ ॥୪୫
ଗନ୍ଧର୍ବ ଅପସରା ଗଣେ ।
ମିଳିଲେ ଯାଇ ତତକ୍ଷଣେ ॥୪୬
କମଳପତ୍ର ପାତ୍ର କରି ।
ଦୁହିଁଲେ ଭୂମି ସ୍ତନ ଧରି ॥୪୭
ବିଶ୍ୱାବସୁଙ୍କୁ ବସ୍ତା କଲେ ।
ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଦୁହିଁଲେ ॥୪୮
ଶ୍ରାଦ୍ଧଦେବତା ପିତୃଗଣେ ।
ଶ୍ରଦ୍ଧାରେ କ୍ଷୀର ଜଣେ ଜଣେ ॥୪୯
ଅର୍ଯ୍ୟମା ବସ୍ତା କରି ହସ୍ତେ ।
କବ୍ୟ ଦୁହିଁଲେ ଆମପାତ୍ରେ ॥୫୦

ସିଦ୍ଧେ ମିଳିଲେ ନବରଙ୍ଗେ ।
କପିଳ ବସ୍ତା ଘେନି ସଙ୍ଗେ ॥୫୧
ସଙ୍କଳ୍ପମୟ କ୍ଷୀର ଧାରେ ।
ଦୁହିଁଲେ ଜନ ଉପକାରେ ॥୫୨
ପୁଣି ମିଳିଲେ ବିଦ୍ୟାଧରେ ।
ଯେ ଯାହା ପାତ୍ରଧରି କରେ ॥୫୩
ଏହୁ ଆକାଶ-ପାତ୍ର ଧରି ।
ଖେଚରୀ ବିଦ୍ୟା ଦୁହିଁ କରି ॥୫୪
ଆନନ୍ଦମନେ କ୍ଷୀର ଦୁହିଁ ।
ବସିଲେ ଯେଝାଭାବେ ଯାଇ ॥୫୫
ପୁଣି ମିଳିଲେ ପୁଣ୍ୟଜନେ ।
ମୟକୁ ବସ୍ତା କଛିମନେ ॥୫୬
ମାୟାବୀଗଣ ପୁଣି ଆସି ।
ଧରଣୀ ସ୍ତନ ତଳେ ବସି ॥୫୭
ଆନନ୍ଦ ପାତ୍ର କରି ମନ ।
ସର୍ବେ ଦୁହିଁଲେ ଅନ୍ତର୍ଦ୍ଧାନ ॥୫୮
ମିଳିଲେ ଯକ୍ଷ ରକ୍ଷଗଣେ ।
ଭୂତ ବେତାଳ ଯାତୁଧାନେ ॥୫୯
କପାଳ ପାତ୍ରକୁ ଧଇଲେ ।
ରୁଦ୍ରଙ୍କୁ ଆଣି ବସ୍ତା କଲେ ॥୬୦
ରୁଧିର ମଦ୍ୟ ସେ ଦୁହିଁଲେ ।
ପିଶାଚେ ଆନନ୍ଦ ହୋଇଲେ ॥୬୧
ତକ୍ଷଣେ ସର୍ପଗଣେ ଆସି ।
ଧରଣୀ ସ୍ତନ ତଳେ ବସି ॥୬୨
ତକ୍ଷକ-ନାଗ ବସ୍ତା କରି ।
ସନ୍ତୋଷ ମନେ ସ୍ତନ ଧରି ॥୬୩
ବିକକୁ ପାତ୍ର କରି ରଙ୍ଗେ ।
ବିଷ ଦୁହିଁଲେ ଅତି ବେଗେ ॥୬୪
ପଶୁଏ ମିଳି ସ୍ତନ ତଳେ ।
ବୃଷକୁ ବସ୍ତା କରି ବଳେ ॥୬୫
ତୃଣ ଦୁହିଁଲେ ଯେଝା ସୁଖେ ।
ତକ୍ଷଣେ ଗ୍ରାସ କରି ମୁଖେ ॥୬୬
ସିଂହ ସହିତେ ପଶୁଗଣେ ।
ମାଂସ ଦୋହନ କଲେ ବଣେ ॥୬୭

Dr. Sudhanshu Sekhar Mishra

ମାଂସାଶୀ-ଗଣେ ପରେ ଆସି ।
ଧରଣୀ ସ୍ତନ ତଳେ ବସି ॥୬୮
ଶରୀର-ପାତ୍ରେ ମାଂସ ଦୁହିଁ ।
ଆନନ୍ଦ କଲେ ନିଜ ଦେହୀ ॥୬୯
ପକ୍ଷୀଏ-କ୍ଷୀର-ପାନ ଆଶେ ।
ମିଳିଲେ ଧରଣୀର ପାଶେ ॥୭୦
ଗରୁଡ-ବତ୍ସା କରି ବଳେ ।
କୀଟ-ଫଳକୁ ସେ ଦୁହିଁଲେ ॥୭୧
ସକଳ ବୃକ୍ଷେ ଆଗ ସରି ।
ବଟବୃକ୍ଷକୁ ବତ୍ସା କରି ॥୭୨
ସନ୍ତୋଷେ ଦୁହିଁ ରସମୟେ ।
କ୍ଷୀର ବରଷି ନିଜ ଦେହେ ॥୭୩
ହିମବନ୍ତକୁ ବତ୍ସା କରି ।
ଧାତୁ ଦୁହିଁଲେ ସର୍ବ ଗିରି ॥୭୪
ସେ ପୃଥ୍ୱୀ ପୃଥୁ ବଶେ ଥିଲା ।
ସକଳେ କାମଦୁଘା ହେଲା ॥୭୫
ଏମନ୍ତେ ପୃଥୁ ଆଦି ସର୍ବେ ।
କ୍ଷୀର ଦୁହିଁଲେ ଯେଝାଭାବେ ॥୭୬
ଯେତେକ ମନୁ ଆଦି ଥିଲେ ।
ସର୍ବେ ଅଭୀଷ୍ଟ ସମ୍ପାଦିଲେ ॥୭୭
ଏମନ୍ତେ ଶୁଣ ହେ ରାଜନ ।
ଜାଣିଲେ ସର୍ବଜନ ମନ ॥୭୮
ପୃଥୁ ଧରଣୀ ମୁଖ ଚାହିଁ ।
ଆନନ୍ଦ-ମନେ ବିଚାରଇ ॥୭୯
ଏ ମୋର କାର୍ଯ୍ୟେ ଦୁଃଖ ସହି ।
ରୂପ ବହିଲା ଧେନୁ ହୋଇ ॥୮୦
ଯେ ଯାହା ସୁଖେ ପୟ ନେଲେ ।
ସର୍ବେ ତୋଷିଲା ମହୀ ଭଲେ ॥୮୧
ଏ ଦେହ-ଜୀବଧାରୀ ଯେତେ ।
ସ୍ଥାବର ଆଦି ନାନା ମତେ ॥୮୨
ସକଳେ ଲଭିଲେ ଜୀବନ ।
ଦେଖ ଏହାର ଦେହ ଧନ୍ୟ ॥୮୩
ଏ ମୋର ଦୁହିତା ହୋଇବ ।
ଏଣେ ବଞ୍ଚିଲେ ସର୍ବଜୀବ ॥୮୪
ଜୀବଙ୍କ ଜୀବଦାତା ଯେଣୁ ।
ଏହାର ପୃଥ୍ୱୀ ନାମ ତେଣୁ ॥୮୫
ହୋଇବ ଏ ମୋର ପ୍ରମାଣ ।
ଯେଣୁ ଏ ସଂସାର ଧାରଣ ॥୮୬
ଏମନ୍ତେ ପୃଥ୍ୱୀନାମ କରି ।
ସୁଖେ ପାଳିଲେ ବସୁନ୍ଧରୀ ॥୮୭
ଭୂମିରେ ଉଚ୍ଚ ପ୍ରାୟ ସ୍ଥାନ ।
ଧନୁ-ହୁଳେ କରି ସମାନ ॥୮୮
ଯଥା-ଯୋଗ୍ୟରେ ପ୍ରାଣୀ ସ୍ଥାନ ।
କଳ୍ପିଲା ବେଣର ନନ୍ଦନ ॥୮୯
ଏମନ୍ତେ ପୃଥୁ ହୋଇ ରାଜା ।
ସମେ ପାଳିଲେ ଜନପ୍ରଜା ॥୯୦
ଭୂମି ଉପରେ ନାନାଦେଶେ ।
ସକଳ ସ୍ଥାପିଲେ ହରଷେ ॥୯୧
ଗ୍ରାମାଦି ପୁର ଯେ ପତ୍ତନ ।
ଘୋଷ-ବ୍ରଜ ଶବର ସ୍ଥାନ ॥୯୨
ଆଖର ଖେଟ୍ ଯେ ଖର୍ବଟ ।
ଦୁର୍ଗ ଗ୍ରାମାଦି ଯେ ନିର୍ମିତ ॥୯୩
ସେ ରାଜା ଅତି ସ୍ନେହଭରେ ।
ସକଳ ଜୀବଙ୍କୁ ନିର୍ଭରେ ॥୯୪
ଜନଙ୍କୁ ପାଳେ ପିତା ପ୍ରାୟେ ।
ସକଳେ ରହିଲେ ନିର୍ଭୟେ ॥୯୫
ନିଶ୍ଚିନ୍ତେ ରହିଲେ ସକଳେ ।
ଅଚଳ ଯେସନେ ନିଶ୍ଚଳେ ॥୯୬
ପୃଥୁ-ଚରିତ ସୁଧାବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୯୭
ଗୋବିନ୍ଦ-ଚରଣେ ମିଳନ୍ତି ।
ବିନାଶି ଭବଭୟଭ୍ରାନ୍ତି ॥୯୮
ଏଣୁ ସୁଜନେ ଆଶ୍ରେ କର ।
ସଂସାର ସଙ୍କଟୁ ନିସ୍ତର ॥୯୯
ବୋଲଇ ଦାସ ଜଗନ୍ନାଥ ।
ଭାଷାପ୍ରବନ୍ଧେ ଭାଗବତ ॥ ୧୦୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ପୃଥୁବିଜୟେ ବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଏକବିଂଶ ଅଧ୍ୟାୟ

ମୈତ୍ରେୟଉବାଚ

ଏବେ ହୋ ଶୁଣ ବିଷ୍ଣୁ ଗାଥା ।
କହିବା ପୃଥୁ ଯଜ୍ଞ କଥା ॥୧
ମିଳି ସକଳ ମୁନିଜନେ ।
ସନ୍ତୋଷ ପୃଥୁ ସନ୍ନିଧାନେ ॥୨
ଯଜ୍ଞ-କରଣ ଉଦ୍ଦଯୋଗେ ।
ସର୍ବ-ସମ୍ଭାର ଅଣି ବେଗେ ॥୩
ସୁପ୍ରାଚୀ ସରସ୍ୱତୀ ତୀର୍ଥେ ।
ଆରମ୍ଭ କଲେ ବ୍ରହ୍ମାବର୍ତ୍ତେ ॥୪
ଇନ୍ଦ୍ରାଦି ସର୍ବଦେବେ ଆସି ।
ଯଜ୍ଞ ଉତ୍ସବ ଘରେ ପଶି ॥୫
ଯଜ୍ଞସମ୍ଭାର ଇନ୍ଦ୍ର ଦେଖି ।
ନ ସହି ମନେ ହେଲା ଦୁଃଖୀ ॥୬
ସେ ଯଜ୍ଞେ ଯଜ୍ଞପତି ହରି ।
ପ୍ରତ୍ୟକ୍ଷ ହେଲେ ଦୟାକରି ॥୭
ଶଙ୍କର ପଦ୍ମଯୋନି ମେଳେ ।
ମିଳି ସକଳ-ଦିଗପାଳେ ॥୮
ଗନ୍ଧର୍ବ-ଅପସରା ଗଣେ ।
ମୁନିଏ ବେଦ-ଉଚ୍ଚାରଣେ ॥୯
ଆନନ୍ଦେ ଗୀତ-ନୃତ୍ୟ-ସ୍ତୁତି ।
ସିଦ୍ଧ-ଗୁହ୍ୟକ ପନ୍ତି ପନ୍ତି ॥୧୦
ଦାନବ-ଦୈତ୍ୟ-ବିଦ୍ୟାଧରେ ।
ସେ ଯଜ୍ଞେ ମିଳିଲେ ଗହଳେ ॥୧୧
ସୁନନ୍ଦ ନନ୍ଦ ଆଦି ମାନେ ।
ହରିର ପାରିଷଦ ଗଣେ ॥୧୨
କପିଳ ନାରଦ ଯେ ଦତ୍ତ ।
ସନକ ଆଦି ଉପଗତ ॥୧୩
ସେ ପୃଥୁ ଯଜ୍ଞେ ବସୁମତୀ ।
ବାଞ୍ଛା-ସୁରଭୀ ପୟୋବତୀ ॥୧୪
କାମଧେନୁର ପ୍ରାୟ ହୋଇ ।
ସର୍ବ ସମ୍ପଦ ଦେଲା ମହୀ ॥୧୫

ନଦୀଏ ଦୁଗ୍ଧ-ରସ ଜଳେ ।
ସଧୀରେ ବହନ୍ତି ଉଲ୍ଲୋଳେ ॥୧୬
ଘୃତ-ସଂଯୋଗେ ଦଧି ଅନ୍ନ ।
ତୋଷେ ଭୁଞ୍ଜନ୍ତି ସର୍ବଜନ ॥୧୭
ସକଳ-ବୃକ୍ଷେ ମଧୁ-ପନ୍ତି ।
ଜୀମୂତ ପ୍ରାୟ ବରଷନ୍ତି ॥୧୮
ସମୁଦ୍ରେ ନାନା ରତ୍ନେ ପୂରି ।
ଗର୍ଜନ୍ତି ଉଲ୍ଲୋଳେ ଲହରୀ ॥୧୯
ପର୍ବତେ ଚତୁର୍ବିଧ-ଅନ୍ନ ।
ଦେଇ ରଞ୍ଜିଲେ ପୃଥୁମନ ॥୨୦
ଲୋକପାଳକେ ଲୋକ ତୁଳେ ।
ସର୍ବ-ସମ୍ଭାର ସମ୍ଭାରିଲେ ॥୨୧
ଯଜ୍ଞ କରଣେ ବିଷ୍ଣୁ ଅର୍ଥେ ।
ସର୍ବ ସମ୍ପାଦିଲେ ସମସ୍ତେ ॥୨୨
ପୃଥୁର ଯଜ୍ଞାରମ୍ଭ ଚାହିଁ ।
ବାସବ ମନେ ବିଚାରଇ ॥୨୩
ଏ ପୃଥୁ ଶତକ୍ରତୁ କଲେ ।
ଲଭିବ ଇନ୍ଦ୍ରପଦ ଭଲେ ॥୨୪
ମୋର ସମ୍ପଦ ଜୀବ ନାଶ ।
ଏମନ୍ତ ଚିନ୍ତି ଛାଡେ ଶ୍ୱାସ ॥୨୫
ଯଜ୍ଞର ଊନଶତ ଅନ୍ତେ ।
ଆତ୍ମାର ହିତ ଚିନ୍ତି ଚିତ୍ତେ ॥୨୬
ଯଜ୍ଞ-ପଶୁକୁ ହରି ନେଲା ।
ନିଜ ଭୁବନେ ବିଜେ କଲା ॥୨୭
ଆକାଶ ମାର୍ଗେ ଇନ୍ଦ୍ର ଗଲା ।
ପାଷଣ୍ଡ-ଧର୍ମ ଆଚରିଲା ॥୨୮
ଧର୍ମେ ବିଭ୍ରମ ତା'ର ମନ ।
ସଭୟେ ଚିତ୍ତ ଛନ୍ନଛନ୍ନ ॥୨୯
ଅତ୍ରି ଯେ ଯଜ୍ଞଶାଳେ ଥିଲେ ।
ଅଶ୍ୱର ହରଣ ଜାଣିଲେ ॥୩୦
ପୃଥୁ-ପୁତ୍ରକୁ ରାଇ ବେଗେ ।
ଇନ୍ଦ୍ରର କର୍ମ ତା'ର ଆଗେ ॥୩୧

କହିଲେ ଅଶ୍ୱହର ବାଣୀ ।
ପୃଥୁ-ତନୟ ତାହା ଶୁଣି ॥୩୨
ଧନୁ-ଶରକୁ ଧରି କରେ ।
ଶୂନ୍ୟେ ଧାଇଁଲା କୋପଭରେ ॥୩୩
ଡାକଇ ରହ ରହ ବାଣୀ ।
ସଭୟେ ଇନ୍ଦ୍ର ତାହା ଶୁଣି ॥୩୪
ନିଜ ଶରୀର ଛନ୍ନ କଲା ।
ଜଟିଳ-ରୂପ ପ୍ରକାଶିଲା ॥୩୫
ତାହାର ନିକଟେ ମିଳିଲା ।
ଇନ୍ଦ୍ର-ବିମାନକୁ ଚାହିଁଲା ॥୩୬
ଭସ୍ମ-ଭୂଷିତ ଦେହ ଚାହିଁ ।
ପୃଥୁ-ନନ୍ଦନ ବିଚାରଇ ॥୩୭
ଜଟିଳ ଭସ୍ମ ଏହା ଗାତ୍ରେ ।
ଏହାକୁ ମାରିବି କେମନ୍ତେ ॥୩୮
ଏମନ୍ତ ମନେ ବିଚାରିଲା ।
ଇନ୍ଦ୍ରକୁ ବାଣ ନ ଛାଡିଲା ॥୩୯
ତା'ର ରହିବା ପଥ ଦେଖି ।
ଅତ୍ରି ଯଜ୍ଞଶାଳ ଉପେକ୍ଷି ॥୪୦
ଡାକନ୍ତି ମାର ମାର ବେଗେ ।
ତା ଶୁଣି ଇନ୍ଦ୍ର ଶୂନ୍ୟମାର୍ଗେ ॥୪୧
ଭୟେ ଚାହିଁଇ ଦଶଦିଶେ ।
ସ୍ୱଭାବେ କେହି ନାହିଁ ପାଶେ ॥୪୨
ମନେ ବିଚାରେ ଶଚୀପତି ।
କି ଆଜ ହୋଇଲା ଦୁର୍ଗତି ॥୪୩
ବୋଲନ୍ତି ଅତି ବେଗେ ମାର ।
ସ୍ୱଭାବେ ଯଜ୍ଞ ଅଶ୍ୱ ଚୋର ॥୪୪
ଏମନ୍ତ ଅତ୍ରିର ବଚନ ।
ଶୁଣନ୍ତେ ପୃଥୁର ନନ୍ଦନ ॥୪୫
ଧାମଇଁ ଅତି କୋପକରି ।
ହସ୍ତୀକି ଯେସନେ କେଶରୀ ॥୪୬
ବାସବ ଦେଖି ତା' ବଦନ ।
ଅଶ୍ୱକୁ ଛାଡି ଅନ୍ତର୍ଦ୍ଧାନ ॥୪୭

Dr. Sudhanshu Sekhar Mishra

ରହିଲା ଶୂନ୍ୟମାର୍ଗେ ଯାଇ ।
ପୃଥୁନନ୍ଦନ ବିଚାରଇ ॥୪୮
ଅଶ୍ୱକୁ ଘେନି ମହାରୋଷେ ।
ଇନ୍ଦ୍ରକୁ ଚାହେଁ ଦଶଦିଶେ ॥୪୯
ନ ଦେଖି ପୁଣି ଯଜ୍ଞସ୍ଥାନେ ।
ମିଳିଲା ଅତ୍ରି-ସନ୍ନିଧାନେ ॥୫୦
ଅଶ୍ୱର ରଜ୍ଜୁ କରେ ଧରି ।
ଅତ୍ରିଚରଣେ ନମସ୍କାରି ॥୫୧
ତା'ର ଅଦ୍ଭୁତ-କର୍ମ ଦେଖି ।
ମୁନିଏ ନାମ ଉପଲକ୍ଷି ॥୫୨
ବିଷ୍ଣୁ ଉଚ୍ଚାରି ପୁଣ୍ୟଧାମ ।
ଦେଲେ ତା' ବିଜିତାଶ୍ୱ ନାମ ॥୫୩
ଏମନ୍ତେ ରଜନୀ ପ୍ରବେଶେ ।
ଇନ୍ଦ୍ର ମିଳିଲେ ଯଜ୍ଞଦେଶେ ॥୫୪
ଦେଖିଲା କେହି ନାହିଁ ପାଶେ ।
ସେ ପୁଣ ମନର ହରଷେ ॥୫୫
ଯଜ୍ଞର ଯୂପ-ତଳୁ ଛନ୍ନେ ।
ହରିଲା ସୁବର୍ଣ୍ଣ-ରସନେ ॥୫୬
ବିଚାରି ଅନ୍ଧକାର ଛଳେ ।
ଅଶ୍ୱକୁ ପୁଣି ନେଲା ବଳେ ॥୫୭
ଅତ୍ରି ଦେଖନ୍ତେ ଶୂନ୍ୟମାର୍ଗେ ।
ତ୍ରାସେ ପଳାଏ ଇନ୍ଦ୍ର ବେଗେ ॥୫୮
ବିଜିତାଶ୍ୱର ମୁଖ ଚାହିଁ ।
ବୋଲଇ ଅଶ୍ୱ ଆଣ ଯାଇ ॥୫୯
ତା' ଶୁଣି ହସ୍ତେ ଧନୁ ଧରି ।
ଧାଇଁଲା ଘୋରନାଦ କରି ॥୬୦
ଆହେ ଦୁର୍ମତି ମନ୍ଦ ଚୋର ।
କପାଁ ତୋ ଏମନ୍ତ ବିଚାର ॥୬୧
ଡାକଇ ରହ ରହ ବାଣୀ ।
ତା'ର ବଚନ ଇନ୍ଦ୍ର ଶୁଣି ॥୬୨
ପଥେ ଅଶ୍ୱକୁ ଛାଡ଼ି ଛନ୍ନେ ।
ତକ୍ଷଣେ ଗଲା ଅନ୍ତର୍ଦ୍ଧାନେ ॥୬୩
ପୁଣି ସେ ଅଶ୍ୱ ଧରି କରେ ।
ବେଗେ ମିଳିଲା ଯଜ୍ଞଘରେ ॥୬୪

ଅଶ୍ୱ ଚୋରାନ୍ତେ ଇନ୍ଦ୍ର ପଥେ ।
ଛଳେ ଧଇଲା ରୂପ ଯେତେ ॥୬୫
ପାଷଣ୍ଡଜନ ସେହି ମତେ ।
ରୂପ ପ୍ରକାଶନ୍ତି ଜଗତେ ॥୬୬
ପୃଥୁର ଯଜ୍ଞ-ବିନାଶନେ ।
ଇନ୍ଦ୍ରର ଯେତେ ରୂପ ଛନ୍ନେ ॥୬୭
ପାଷଣ୍ଡେ ସେହି ରୂପ ଚିନ୍ତି ।
ସଂସାରେ ଭ୍ରମ ସେ କରାନ୍ତି ॥୬୮
କେ ନଗ୍ନ ରକ୍ତପଟ୍ଟ ଧରେ ।
କେ ଭସ୍ମ ଭୂଷଣ ଶରୀରେ ॥୬୯
ଅଧର୍ମ-ମାର୍ଗ ଆଚରନ୍ତି ।
ଆମ୍ଭର ହିତ ନ କରନ୍ତି ॥୭୦
ପାଷଣ୍ଡ-ମାର୍ଗେ ଥାଇ ନିତ୍ୟେ ।
ଦୂଷଣ ଦେଇ ବେଦପଥେ ॥୭୧
ସେ ରୂପ ପ୍ରକାଶି ବ୍ରହ୍ମାଣ୍ଡେ ।
ନିଗମ ନିନ୍ଦିବେ ପାଷଣ୍ଡେ ॥୭୨
ତାହାଙ୍କ ମତ ଯେ କରନ୍ତି ।
ଅନ୍ତେ ନରକେ ପ୍ରବେଶନ୍ତି ॥୭୩
ସେ କଥା ଶୁଣି ପୃଥୁ କୋପେ ।
ଇନ୍ଦ୍ର ଝିଙ୍ଗାସେ ଦେହ କମ୍ପେ ॥୭୪
ଇନ୍ଦ୍ର ମାରଣେ କୋପ କରି ।
ନିଜ କୋଦଣ୍ଡ-ଶର ଧରି ॥୭୫
କୋପନ୍ତେ ଅରୁଣ-ନୟନ ।
ପ୍ରଚଣ୍ଡ ବିରାଜେ ବଦନ ॥୭୬
ପୃଥୁ ଗମନ ଦେଖି ରଣେ ।
ବେଗେ ମିଳିଲେ ବିପ୍ରଗଣେ ॥୭୭
ଇନ୍ଦ୍ର-ବିଷୟେ କୋପ ବହି ।
ବୋଲନ୍ତି ପୃଥୁ ମୁଖ ଚାହିଁ ॥୭୮
ଭୋ ପୃଥୁ ଶୁଣ ଧର୍ମ-କଥା ।
ଆଗମ ନିଗମ ବ୍ୟବସ୍ଥା ॥୭୯
ପଶୁର ବିନା ଆନ ବଧ ।
ଯଜ୍ଞରେ ଅଟଇ ନିଷେଧ ॥୮୦
ତୋ ଯଜ୍ଞ-କୀର୍ତ୍ତି ନାଶେ ଇନ୍ଦ୍ର ।
ଆମ୍ଭେ ନାଶିବୁ ତା' ନରେନ୍ଦ୍ର ॥୮୧

ମନ୍ତ୍ର ଆହ୍ୱାନ ବଳେ କରି ।
ଅଗ୍ନିକୁ ଆହୁତିରେ ଧରି ॥୮୨
ନାଶିବୁ ତୋହର ଅହିତ ।
ତୋ'ର ମାରିବା ନୋହେ ଯୁକ୍ତ ॥୮୩
ଏମନ୍ତ ପୃଥୁ ଆଗେ କହି ।
ଋତ୍ୱିକେ ଅତି କୋପ ବହି ॥୮୪
ସ୍ରୁବକୁ ସର୍ବେ ଧରି ହସ୍ତେ ।
ଅଗ୍ନିରେ ଆହୁତି ଦିଅନ୍ତେ ॥୮୫
ବ୍ରହ୍ମା ମିଳିଲେ ତତକ୍ଷଣ ।
ସମସ୍ତ ମୁନି-ସନ୍ନିଧାନ ॥୮୬
ଇନ୍ଦ୍ରର ହିତ ଚିତ୍ତେ ବହି ।
ବୋଲନ୍ତି ମୁନିଗଣେ ଚାହିଁ ॥୮୭
ଶୁଣ ହେ ସର୍ବ ବିପ୍ରବର ।
ଯାହାକୁ ଯଜ୍ଞେ ତୁମ୍ଭେ ମାର ॥୮୮
ଯେ ଦେବ ଯଜ୍ଞଭାଗ ଭୁଞ୍ଜେ ।
ସେ ଦେବଦେହ ଇନ୍ଦ୍ରତେଜେ ॥୮୯
ଏଣୁ ଇନ୍ଦ୍ରକୁ ଯଜ୍ଞେ ବରି ।
ମନ୍ତ୍ରେ ଅନଳେ ହୋମ କରି ॥୯୦
ସୃଷ୍ଟି ପାଳନେ ଏ କାରଣ ।
ଏ ଭାବେ ସଂସାର ଧାରଣ ॥୯୧
ପୃଥୁ ବଦନ ଚାହିଁ ଧୀରେ ।
ବୋଲନ୍ତି ବଚନ ମଧୁରେ ॥୯୨
ଏ ଇନ୍ଦ୍ରନାରାୟଣ ତନୁ ।
ଏହାକୁ ଛାଡ ତୁମ୍ଭେ ମନ୍ୟୁ ॥୯୩
ଏହାର ଦେହେ ସର୍ବଦେବେ ।
ନିତ୍ୟେ ବସନ୍ତି ଯଜ୍ଞଭାବେ ॥୯୪
ଆହୁତି ଯାର ମୁଖେ ଦେଇ ।
ତାହାକୁ କୋପ ନ ଯୋଗାଇ ॥୯୫
ଏହାକୁ କୋପ ତୁ ନ କର ।
ଯଜ୍ଞପୁରୁଷ ଅର୍ଥେ ବର ॥୯୬
ଏ ଧର୍ମ ପରମ-କାରଣ ।
ଅଶେଷ ସୃଷ୍ଟି ଉଦ୍ଧାରଣ ॥୯୭
ଏ ଯଜ୍ଞେ ଦ୍ରୋହ କର୍ମ କଲା ।
ପାଷଣ୍ଡ ପଣ ଆଚରିଲା ॥୯୮

Dr. Sudhanshu Sekhar Mishra

ପାଷଣ୍ଡ ଉଦ୍ଧରିବା ଅର୍ଥେ ।
ତୋ ଅବତାର ଏ ଜଗତେ ॥୯୯
ତୁ ସେ ସକଳ ଗୁଣମଣି ।
ଅପୂର୍ବ ନୋହେ କିଛି ପୁଣି ॥୧୦୦
ବେଣର ଦେହେ ଯେତେ ଦୋଷ।
ତୋ ଜନ୍ମ କଲା ତାହା ନାଶ॥୧୦୧
ତୁ ଏବେ ମୋର ବୋଲ କର।
ପାଷଣ୍ଡ ପ୍ରାଣୀଙ୍କି ଉଦ୍ଧର ॥୧୦୨

ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମାର ବଚନେ ।
ଇନ୍ଦ୍ରକୁ କୋପ ଛାଡି ମନେ ॥୧୦୩
ଯଜ୍ଞର ଅବଭୃତ-ସ୍ନାନେ ।
ଦକ୍ଷିଣା ଦେଇ ବିପ୍ରଜନେ ॥୧୦୪
ଯଜ୍ଞେ ତୋଷିଲେ ସର୍ବଜନେ।
ଅନ୍ନ-ବସନ-ଧେନୁ ଦାନେ ॥୧୦୫
ସେ ବିପ୍ରଜନେ ହୋଇ ତୋଷ।
ପୃଥୁକୁ କରନ୍ତି ଆଶିଷ ॥୧୦୬
ବ୍ରହ୍ମା ହରଷ-ଚିତ୍ତ ହୋଇ ।
କହନ୍ତି ପୃଥୁ ମୁଖ ଚାହିଁ ॥୧୦୭
ତୋର ବଚନେ ସର୍ବଦେବେ।
ତୋଷ ହୋଇଲେ ଯଜ୍ଞଭାବେ॥୧୦୮
ଏମନ୍ତ କହି ପଦ୍ମଯୋନି ।
ସଙ୍ଗେ ସକଳ ବିପ୍ର ଘେନି ॥୧୦୯
ତକ୍ଷଣେ ଗଲେ ନିଜସ୍ଥାନେ ।
ଶୁଣ ବିଦୁର ତୋଷମନେ ॥୧୧୦
ଏ ପୃଥୁ-ଯଜ୍ଞର କାହାଣୀ ।
ନିର୍ମଳ ହୁଅ ନରେ ଶୁଣି ॥୧୧୧
ମୈତ୍ରେୟ ମୁନି ତୋଷ ଚିତ୍ତେ ।
କହନ୍ତି ବିଦୁର ଅଗ୍ରତେ ॥୧୧୨
ଶୁଣ ବିଦୁର ସାବଧାନେ ।
ପୃଥୁର ଯଜ୍ଞ ଅବସାନେ ॥୧୧୩
ଯେ ଯଜ୍ଞପତି ଭଗବାନ ।
ଇନ୍ଦ୍ର ସହିତେ ଆଗମନ ॥୧୧୪

ହରଷେ ପ୍ରଭୁ ଯଜ୍ଞପତି ।
ପୃଥୁକୁ ଚାହିଁଣ କହନ୍ତି ॥୧୧୫

ଭଗବାନ ଉବାଚ

ଶୁଣ ହୋ ପୃଥୁ ନୃପନାଥ ।
ଇନ୍ଦ୍ର ଯେ କଲା ଯଜ୍ଞେ ଘାତ॥୧୧୬
ସେ ଅପରାଧ ଖଣ୍ଡିବାକୁ ।
ଏବେ ଅଇଲା ତୁମ୍ଭ ଠାକୁ ॥୧୧୭
ତୁମ୍ଭେ ଯେ ସାଧୁ ନୃପବର ।
ଏହାର ଦୋଷ କ୍ଷମା କର ॥୧୧୮
ଏ ଲୋକେ ସାଧୁ ଯେ ଅଟନ୍ତି।
ସେ ଦ୍ରୋହକର୍ମ ନ କରନ୍ତି ॥୧୧୯
ସାଧୁଙ୍କ ନାହିଁ ହିଂସା ଭାବ ।
ସମେ ଦେଖନ୍ତି ସର୍ବଜୀବ ॥୧୨୦
ଯେଣୁ ଏ ଦେହ ଆତ୍ମା ନୋହେ ।
ତେଣୁ ସେ ନ ପଡନ୍ତି ଦ୍ରୋହେ॥୧୨୧
ଯେବେ ପୁରୁଷ ତୁମ୍ଭ ପ୍ରାୟେ।
ଦେବମାୟାରେ ମୋହ ହୋଏ॥୧୨୨
ବୃଦ୍ଧ-ସେବନ ଦୀର୍ଘକାଳ ।
କେବଳ ଶ୍ରମ ସିନା ତା'ର ॥୧୨୩
ଅବିଦ୍ୟା କାମ୍ୟ-କର୍ମ ବଶେ।
ଯେଣୁ ଏ ଦେହ ପରକାଶେ ॥୧୨୪
ଏ କଥା ଯେ ଜ୍ଞାନୀ ଜାଣନ୍ତି।
ସେ ମୋହ ଦ୍ୱନ୍ଦ୍ୱେ ନ ପଡନ୍ତି॥୧୨୫
ଅନିତ୍ୟ ଜାଣନ୍ତି ସେ ଦେହ ।
ତେଣୁ ତହିଁରେ ନାହିଁ ସ୍ନେହ ॥୧୨୬
ଗୃହ ଦ୍ରବିଣ ଦାରା ସୁତେ ।
ମମତା କରିବେ କେମନ୍ତେ ॥୧୨୭
ଏ ଆତ୍ମା ଦେହ ତହୁଁ ଭିନ୍ନ ।
ଶୁଣ କହିବା ତା'ର ଚିହ୍ନ ॥୧୨୮
ଏକଇ ଆତ୍ମା ସର୍ବଦେହେ ।
ଶୁଦ୍ଧ-ଅଶୁଦ୍ଧେ ଭେଦ ନୋହେ॥୧୨୯
ନିର୍ଗୁଣ ହୋଇ ଗୁଣାଶ୍ରୟ ।
ସେ ଆତ୍ମା ସ୍ୱୟଂ ଜ୍ୟୋତିର୍ମୟ ॥୧୩୦

ସେ ଏକ ଅଛି ସର୍ବଠାରେ ।
ଆବୃତ ନୋହେ ମାୟାଦ୍ୱାରେ॥୧୩୧
ତାହାର ନାହିଁ ଆତ୍ମପର ।
ସେ ଥାଇ ପ୍ରକୃତିରୁ ପର ॥୧୩୨
ଶରୀରୁ ଭିନ୍ନେ ଥାଇ ସେହି ।
ତା'କୁ ଦେଖନ୍ତା ନାହିଁ କେହି॥୧୩୩
ଆତ୍ମାକୁ ଏମନ୍ତ ପ୍ରକାରେ ।
ଯେ ପ୍ରାଣୀ ଦେଖନ୍ତି ଶରୀରେ॥୧୩୪
ସେ ଯେବେ ପ୍ରକୃତିରେ ଥାଇ।
ପ୍ରକୃତି ଗୁଣେ ବଦ୍ଧ ନୋହି ॥୧୩୫
ଯେମନ୍ତେ ପ୍ରାଣୀ ମୋତେ ପାଏ।
ତୁମ୍ଭକୁ କହି ସେ ଉପାୟେ ॥୧୩୬
ଯେ ଜନ ସ୍ୱଧର୍ମେ ନିଷ୍କାମେ।
ମୋତେ ଭଜଇ ପ୍ରତିଦିନେ ॥୧୩୭
ତା ମତି ହୁଅଇ ପ୍ରସନ୍ନ ।
ଦୁର୍ଗତି କରଇ ମୋଚନ ॥୧୩୮
ମନ ପ୍ରସନ୍ନ ଯା'ର ହୋଇ ।
ସେ ପ୍ରାଣୀ ଗୁଣ ପ୍ରତେଜଇ ॥୧୩୯
ସମଦ୍ରେ ସେ ସର୍ବ ଦେଖଇ ।
ସେ ଜୀବ ଆତ୍ମାକୁ ଜାଣଇ ॥୧୪୦
ଭଜଇ ଶାନ୍ତି ଅବସ୍ଥାନ ।
ଲଭଇ କୈବଲ୍ୟ ନିର୍ବାଣ ॥୧୪୧
ଏହି ଆତ୍ମାକୁ ଯେଉଁମାନେ ।
ଦେହ ଇନ୍ଦ୍ରିୟ କର୍ମଜ୍ଞାନେ ॥୧୪୨
ମନର ଅଧ୍ୟକ୍ଷ ଜାଣନ୍ତି ।
ସକଳ ଦୁଃଖୁ ସେ ତରନ୍ତି ॥୧୪୩
ଦେଖ ଏ ଲିଙ୍ଗ କଳେବର ।
ସେ ପଞ୍ଚଭୂତେ ସ୍ଥୂଳତର ॥୧୪୪
ଏ ଦଶ-ଇନ୍ଦ୍ରିହନ୍ତି ଏଥି ।
ଚେତନ ରୂପେ ଆତ୍ମା ତଥି ॥୧୪୫
ଏ ଗୁଣ-ପ୍ରବାହରୁ ହୋଇ ।
ଏହାକୁ ଯେ ଭେଦି ଦେଖଇ ॥୧୪୬
ସେ ପ୍ରାଣୀ ଆତ୍ମାକୁ ଦେଖଇ।
କ୍ଲେଶାଦି ତା'କୁ ନ ବାଧଇ ॥୧୪୭

Dr. Sudhanshu Sekhar Mishra

ଯେ ଜନ ଦୃଢ଼ଭକ୍ତି କରେ ।
ମନ ବାନ୍ଧଇ ଆତ୍ମଠାରେ ॥୧୪୮
ବିପଦ ସମ୍ପଦରେ ତା'ର ।
କେବେ ହେଁ ନୋହଇ ବିକାର॥୧୪୯
ଶୋକାଦି ଦ୍ୱାରା ସେହିମାନେ।
ବ୍ୟଥିତ ନୁହଁନ୍ତି ଅଜ୍ଞାନେ ॥୧୫୦
ଶୁଣ ହେ ପୃଥୁ ନୃପବର ।
ସୁଖ-ଦୁଃଖକୁ ସମକର ॥୧୫୧
ପ୍ରାଣୀ ମାନଙ୍କ ତିନି କ୍ରମ ।
ଉତ୍ତମ ମଧ୍ୟମ ଅଧମ ॥୧୫୨
ଉତ୍ତମେ ଉତ୍ତମ ଲଭଇ ।
ଅଧମେ ଅଧୋଗତି ପାଇ ॥୧୫୩
ମଧ୍ୟମେ ମଧ୍ୟମ ବେଭାର ।
ଶୁଣ ହେ ପୃଥୁ ନୃପବର ॥୧୫୪
ଏ ଦୁଃଖ-ସୁଖ ସମ କର ।
ଇନ୍ଦ୍ରିୟମାନଙ୍କୁ ନିବାର ॥୧୫୫
ଚିତ୍ତକୁ ନିର୍ମଳ କରିଣ ।
ଇନ୍ଦ୍ରିମାନଙ୍କୁ ତୁହି ଜିଣ ॥୧୫୬
ବନ୍ଧୁ ଅମାତ୍ୟ ଆଦି ଯେତେ ।
ମୋହର ଦେବା ଜାଣି ଚିତ୍ତେ॥୧୫୭
ତାହାଙ୍କୁ ସଙ୍ଗତେ ଘେନିଣ ।
ପ୍ରଜାଙ୍କୁ ପାଳ ସ୍ୱଧର୍ମେଣ ॥୧୫୮
ଅଖିଳଲୋକ ରକ୍ଷାକର ।
ମଙ୍ଗଳ ହୋଇବ ତୁମ୍ଭର ॥୧୫୯
ପ୍ରଜାପାଳନ ରାଜାଧର୍ମ ।
ପ୍ରଜା କରେ ଯେ ଶୁଭକର୍ମ ॥୧୬୦
ପରଲୋକରେ ଷଷ୍ଠ ଅଂଶ ।
ନୃପତି ଲଭଇ ଅବଶ୍ୟ ॥୧୬୧
ଯେ ରାଜା ପ୍ରଜାଙ୍କୁ ନ ପାଳେ।
ଅଧର୍ମେ କର ନିଏ ବଳେ ॥୧୬୨
ସେ ରାଜା ନରକ ଭୁଞ୍ଜଇ ।
ତାହାର କାହିଁ ରକ୍ଷା ନାହିଁ ॥୧୬୩
ସ୍ୱଧର୍ମେ ଥାଇ ପ୍ରଜା ପାଳ ।
ଗୃହମେଧରେ କିଛିକାଳ ॥୧୬୪
ସନକ ଆଦି ମୁନିଜନେ ।
ଆସିବେ ତୋହର ଭୁବନେ ॥୧୬୫
ତାହାଙ୍କୁ ନୟନେ ଦେଖିବ ।
ସୁଦିବ୍ୟଜ୍ଞାନ ତୁମ୍ଭ ହେବ ॥୧୬୬
ତୋ ଧର୍ମ ଶୀଳ ଗୁଣ ଯଶ ।
ଭାବେ ହୋଇଲୁ ଆମ୍ଭେ ବଶ॥୧୬୭
ତେଣୁ ତୁ ମୋର ଠାରୁ ବର ।
ଯେ ଇଚ୍ଛା ମାଗ ନୃପବର ॥୧୬୮
ଯଜ୍ଞ ତପସ୍ୟା ଯୋଗାଦିରେ ।
ପ୍ରାପ୍ୟ ମୁଁ ନୁହଇ ସଂସାରେ ॥୧୬୯
ଯାହାର ଭେଦ-ଜ୍ଞାନ ନାହିଁ ।
ତା ହୃଦେ ନିରତେ ମୁଁ ଥାଇ ॥୧୭୦

### ମୈତ୍ରେୟ ଉବାଚ

ଏମନ୍ତେ ପ୍ରଭୁ ଭାବଗ୍ରାହୀ ।
ପୃଥୁଙ୍କୁ କହିଲେ ବୁଝାଇ ॥୧୭୧
ହରିଙ୍କ ଆଜ୍ଞା ଧରି ଶିରେ ।
ତକ୍ଷଣେ ପାଦେ ପ୍ରଣମିଲେ ॥୧୭୨
ଏମନ୍ତ କାଳେ ଦେବରାଜ ।
ଆପଣା କର୍ମେ ପାଇ ଲାଜ ॥୧୭୩
ପୃଥୁଙ୍କ ଚରଣେ ପଡ଼ିଲେ ।
ଅପ୍ରାଧ କଲୁଁ ବୋଇଲେ ॥୧୭୪
ପୃଥୁ ଯେ ତହୁଁ ଆଲିଙ୍ଗନ ।
କରି ତୋଷିଲେ ଇନ୍ଦ୍ରମନ ॥୧୭୫
ଏ ଅନ୍ତେ ପ୍ରଭୁ ଭଗବାନ ।
ଗଗନେ କଲେକ ଉଦ୍ୟମ ॥୧୭୬
ପୃଥୁ ଯେତେକ ପୂଜା କଲେ।
ହରି ତା' ଆନନ୍ଦେ ଘେନିଲେ॥୧୭୭
ସେ ରାଜା ପଡ଼ି ହରିପାଦେ ।
ପ୍ରଣାମ କରିଣ ଆନନ୍ଦେ ॥୧୭୮
ଆନନ୍ଦସାଗରେ ବୁଡ଼ିଲା ।
ପୁଲକ ସର୍ବାଙ୍ଗେ ବହିଲା ॥୧୭୯
ବେନି-ନୟନୁ ଅଶ୍ରୁ ଝରେ ।
ପ୍ରଭୁଙ୍କୁ ହୃଦପଦ୍ମେ ଧରେ ॥୧୮୦
କର-ଅଞ୍ଜଳି ଶିରେ ଦେଇ ।
କହଇ ବିଷ୍ଣୁମୁଖ ଚାହିଁ ॥୧୮୧

### ପୃଥୁ-ଉବାଚ

ହେ ପ୍ରଭୁ ବରଦ ଈଶ୍ୱର ।
ପଣ୍ଡିତେ ନ ମାଗିବେ ବର ॥୧୮୨
ଯେ ବ୍ୟକ୍ତି ଜ୍ଞାନୀ ହୋଇଥିବ ।
ଭୋଗ ବିଳାସ ନ ମାଗିବ ॥୧୮୩
ଆଜ୍ଞା ଯେ ଦେଲେ ବର ଘେନ ।
ବରେ ମୋ ନାହିଁ ପ୍ରୟୋଜନ॥୧୮୪
ବର ଘେନନ୍ତି ଭୋଗ ପାଇଁ ।
ସେ ଭୋଗ ନରକେ କି ନାହିଁ॥୧୮୫
କୈବଲ୍ୟନାଥ ତୋତେ ପାଇ।
କେ ଭୋଗ ବାଞ୍ଛା ଜ୍ଞାନୀ ହୋଇ॥୧୮୬
ଅପରେ ମୋକ୍ଷଧର୍ମ ସାର ।
ତହିଁରେ ବାଞ୍ଛା ନାହିଁ ମୋର ॥୧୮୭
ତୋ ପାଦପଦ୍ମ ମକରନ୍ଦ ।
ଅତି ହିଁ ରସାଳ ସୁଗନ୍ଧ ॥୧୮୮
ତୁମ୍ଭର ଗୁଣ ଭକ୍ତମାନେ ।
ସ୍ମରନ୍ତି ନିତ୍ୟ ରାତ୍ରିଦିନେ ॥୧୮୯
ତୁମ୍ଭର ଗୁଣ କୀର୍ତ୍ତିମାନ ।
ନିରତେ ଥାଉ ମୋର କର୍ଣ୍ଣ ॥୧୯୦
ସେ ଯଶ ଶ୍ରବଣେ ମୋ ଇଚ୍ଛା ।
ଅୟୁତେ କର୍ଣ୍ଣ ଦିଅ ବାଞ୍ଛା ॥୧୯୧
ଏ ଦୁଇକର୍ଣ୍ଣେ ଶୁଣି ମୋର ।
ସନ୍ତୋଷ ନୋହେ ଚକ୍ରଧର ॥୧୯୨
ତୋ ପାଦ-ପଦ୍ମ ସୁଧା ଯଶ ।
ସାଧୁଙ୍କ ବଦନୁ ପ୍ରକାଶ ॥୧୯୩
କୁଯୋଗୀ ଜନେ ଦିଏ ଜ୍ଞାନ ।
ଆନେ ମୋ ନାହିଁ ପ୍ରୟୋଜନ॥୧୯୪
ନିଖିଳ ପୁରୁଷଉତ୍ତମ ।
ତୁ ଗୁଣାଳୟ ତୋ ଚରଣ ॥୧୯୫
ସେବିବି ଲକ୍ଷ୍ମୀର ପରାୟେ ।
ତା ସଙ୍ଗେ କଳି କିକି ହୋଏ॥୧୯୬

Dr. Sudhanshu Sekhar Mishra

ଜଗତ ଜନନୀ ସମେତେ ।
ବାଦ ହେଲେହେଁ ଅବିରତେ ॥୧୯୭
ତଥାପି ସେବା ନ ତେଜିବି ।
ଅବଶ୍ୟ ସେ ପାଦ ଭଜିବି ॥୧୯୮
ଦୀନବତ୍ସଳ ତୋର ବାନା ।
ଭକ୍ତରେ ତୋହର କରୁଣା ॥୧୯୯
ଏଣୁ ଭଜନ୍ତି ଏକଭାବେ ।
ନିଷ୍କାମ ଭାବରେ ସାଧବେ ॥୨୦୦
ଅନ୍ୟତ୍ର ଫଳ ନ ବାଞ୍ଛନ୍ତି ।
ଆନନ୍ଦେ ତୋ ପାଦେ ଭଜନ୍ତି ॥୨୦୧
ଭଜିଲା ଲୋକଠାରେ ଯାହା ।
ବର ମାଗ ତୁ ବୋଲୁ ଯାହା ॥୨୦୨
ଭୋନାଥ ତୋହର ଏ ବାଣୀ।
ଜାଣିଲି ଏ ବିଶ୍ୱମୋହିନୀ ॥୨୦୩
ଫଳ ଆଶାରେ ଲୋଭୀ ହୋଇ।
ମାୟାମୋହରେ ଭ୍ରମୁ ଥାଇ ॥୨୦୪
ତାଙ୍କୁ ନ ଦେବ ଭୋଗ କିଛି।
ଯେବେ ଭକତେ ଦୟା ଅଛି ॥୨୦୫
ନିଷ୍କାମ ସାଧୁ ଯେଉଁ ଜନ ।
ଭଜନ୍ତି ତୋ' ପାଦପଦ୍ମେଣ ॥୨୦୬
ଅନ୍ୟତ୍ର ଫଳ ନ ଜାଣନ୍ତି ।
ତୋ ଭକ୍ତିଭାବେ ନିମଜ୍ଜନ୍ତି ॥୨୦୭
ତୁମ୍ଭଙ୍କୁ ଭଜେ ଯେଉଁ ନର ।
ବଚନେ ଦିଅ ତାକୁ ବର ॥୨୦୮
ଜଗମୋହନ ସେ ବଚନ ।
ନିଶ୍ଚେ ଜାଣିଲି ଭଗବାନ ॥୨୦୯
ପ୍ରାଣୀବନ୍ଧନ ଫଳ ଆଶେ ।
ତୁମ୍ଭ ବଚନ ରଜ୍ଜୁ ପାଶେ ॥୨୧୦
ପିତା ଯେସନେ ପୁତ୍ର ହିତେ ।
କରଇ ସ୍ନେହ ଅବିରତେ ॥୨୧୧
ତୁମ୍ଭେ ସେ ରୂପେ ଆଚରିବ ।
ତେବେ ଭକତ ନିସ୍ତରିବ ॥୨୧୨
ଏହା ମୁଁ ମାଗୁଛି ଶ୍ରୀହରି ।
ଦିଅ ହେ ପ୍ରଭୁ ଦୟା କରି ॥୨୧୩

ମୈତ୍ରେୟ କହନ୍ତି ବିଦୁରେ ।
ଶ୍ରୀକୃଷ୍ଣ ମହିମା ସ୍ୱାଦରେ ॥୨୧୪
ବର୍ଣ୍ଣନେ ପୃଥୁ ନୃପବର ।
ଶ୍ରବଣେ ହୋଇ ତୋଷଭର ॥୨୧୫
ଆଜ୍ଞା ଦିଅନ୍ତି ଭଗବାନ ।
ଶୁଣିମା ହେ ଆଦି ରାଜନ ॥୨୧୬
ତୋ ସ୍ତବେ ସନ୍ତୋଷ ହୋଇଣ।
ଆଜ୍ଞା ଦେଉଛୁ ପୁଣପୁଣ ॥୨୧୭
ହେ ରାଜା ତୋର ଭକ୍ତିଭାବ।
ମୋ ପାଦେ ସର୍ବଦା ହୋଇବ॥୨୧୮
ମୋର ବିଷୟେ ତୋର ବୁଦ୍ଧି।
ଭକତି ଯୋଗେ ଯେ ପ୍ରସିଦ୍ଧି ॥୨୧୯
ଏଣୁ ଦୁସ୍ତର ମୋର ମାୟା ।
ତୋତେ ନ ଲାଗୁ ପୁଣ୍ୟଦେହା ॥୨୨୦
ଏମନ୍ତ ବୋଲି ନାରାୟଣ ।
ବହୁତ ସନ୍ତୋଷ ହୋଇଣ ॥୨୨୧
ପୃଥୁରାଜାର ଯେତେ ବାଣୀ ।
ମନେ ଧଇଲେ ଚକ୍ରପାଣି ॥୨୨୨
ତା'ର ପୂଜନେ ତୋଷ ହୋଇ।
ତା'ଠାରେ ଅନୁଗ୍ରହ ବହି ॥୨୨୩
ଦେବ ଋଷି ପିତୃ ଗନ୍ଧର୍ବ ।
ସିଦ୍ଧ ଚାରଣ ଯେ ପନ୍ନଗ ॥୨୨୪
କିନ୍ନର ଅପସର ମର୍ତ୍ତ୍ୟ ।
ଖଗାଦି ଏ ଜୀବଲୋକନ୍ତ ॥୨୨୫
ରାଜର୍ଷି ପୃଥୁ ଆନେ ଯେତେ।
ଯେ ଉପାଧ୍ୟାୟ ଯଜ୍ଞଗତେ ॥୨୨୬
ଯେ ସର୍ବେ ବିଷ୍ଣୁସଙ୍ଗେ ଥିଲେ ।
ସନ୍ତୋଷେ ବିଷ୍ଣୁପୂଜା କଲେ ॥୨୨୭
ହରିଲେ ତାହାଙ୍କର ମନ ।
ବୈକୁଣ୍ଠେ ବିଜେ ଭଗବାନ ॥୨୨୮
ଗରୁଡ-ପୃଷ୍ଠେ ବିଜେ କଲେ ।
ସମସ୍ତ ଦେବେ ଦେଖୁଥିଲେ ॥୨୨୯
ଅଦୃଶ୍ୟ ହେଲେ ଭଗବାନ ।
ପୁଣି ନମିଲେ ଦେବଗଣ ॥୨୩୦

ଇନ୍ଦ୍ରାଦି ସର୍ବ ଦେବଗଣ ।
ଆବର ଋଷି-ପତ୍ନୀମାନ ॥୨୩୧
ପୃଥୁକୁ ଆଲିଙ୍ଗନ କରି ।
ଗଲେ ସେ ଯେ ଯାହାର ପୁରୀ ॥୨୩୨
ସେ ପୃଥୁ ତାଙ୍କୁ ନମସ୍କାର ।
କରିଣ ଗଲେ ନିଜ ପୁର ॥୨୩୩
ଏ ବିଷ୍ଣୁ ପୃଥୁର ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ॥୨୩୪
ସୁଜନଜନେ ଶୁଣ ଏହା ।
ଯେବେ ତରିବ ବିଷ୍ଣୁମାୟା ॥୨୩୫
କହନ୍ତି ମଇତ୍ରେୟ ଋଷି ।
ଶୁଣ ବିଦୁର କୁରୁବଂଶୀ ॥୨୩୬
ପୃଥୁ ବିଜୟେ ନିଜ ପୁର ।
ସେ ପୁର ଅତ୍ୟନ୍ତ ସୁନ୍ଦର ॥୨୩୭
ମୁକୁତାମାଳ ଲମ୍ବେ ତହିଁ ।
ଦିବ୍ୟ-କୁସୁମେ ଶୋଭା ପାଇ॥୨୩୮
ସୁବର୍ଣ୍ଣ-ତୋରଣ ତହିଁରେ ।
ଧୂପ ସୁଗନ୍ଧ ମନୋହରେ ॥୨୩୯
ଚନ୍ଦନ ଅଗୁରୁରେ ମିଶି ।
ତୋଷେ ସିଞ୍ଚନ୍ତି ପ୍ରଜା ଆସି ॥୨୪୦
ଫଳ ତଣ୍ଡୁଳ ଦୂର୍ବାକ୍ଷତେ ।
ପୂଜନ୍ତି ଦୀପ ଘେନି ହସ୍ତେ ॥୨୪୧
କଦଳୀ-ଗୁଆ-ବୃକ୍ଷ ଦାଣ୍ଡେ ।
ତରୁ ପଲ୍ଲବମାଳ ମୁଣ୍ଡେ ॥୨୪୨
ସେ ପୁର ଅଟେ ଅଳଙ୍କୃତ ।
ମଙ୍ଗଳ ଚିହ୍ନ ଯେ ସର୍ବତ୍ର ॥୨୪୩
ପ୍ରଜାଏ ଦୀପାବଳୀ କର ।
ଆବର ଯେ ଦ୍ରବ୍ୟ ମଙ୍ଗଳ ॥୨୪୪
ଉଜ୍ଜ୍ୱଳ କନ୍ୟାଗଣ ମେଳେ ।
ଦିବ୍ୟ କୁଣ୍ଡଳ କର୍ଣ୍ଣେ ଲୁଳେ ॥୨୪୫
ମିଳିଲେ ରାଜାର ଅଗ୍ରତେ ।
ପୂଜାର ବଳି ଘେନି ହସ୍ତେ ॥୨୪୬
ଶଙ୍ଖ ଦୁନ୍ଦୁଭିର ଘୋଷରେ ।
ବିପ୍ରଙ୍କ ବେଦଧ୍ୱନି ସ୍ବରେ ॥୨୪୭

Dr. Sudhanshu Sekhar Mishra

ସ୍ତୁତି କରନ୍ତି ସର୍ବେ ମିଳି ।
ସ୍ତିରୀଏ ଦ୍ୟନ୍ତି ହୁଳହୁଳି ॥୨୪୮
ସୁବର୍ଣ୍ଣପାତ୍ରେ ଅର୍ଘ୍ୟ କରି ।
ନାନାଦି ଫଳପୁଷ୍ପ ଭରି ॥୨୪୯
ମୁଖେ ମଙ୍ଗଳନାଦ ଭଣି ।
ବନ୍ଦାନ୍ତି ସକଳ ତରୁଣୀ ॥୨୫୦
ଭୁବନେ ବିଜେ ନୃପବର ।
ସର୍ବତ୍ର ତେଜି ଅହଙ୍କାର ॥୨୫୧
ମହାଆନନ୍ଦେ ଦଣ୍ଡଧାରୀ ।
ନିଜ ଆସନେ ବିଜେ କରି ॥୨୫୨
ସେ ପୁରେ ମହାନ୍ତ ଯେ ଥିଲେ।
ପୂଜିତ ହୋଇ ପୂଜା କଲେ ॥୨୫୩
ସେ ପୃଥୁ ଏ ରୂପେ ନାନାଦି ।
କୁଶଳ-କର୍ମକୁ ସମ୍ପାଦି ॥୨୫୪
ଅବନୀ-ମଣ୍ଡଳ ପାଳନ ।
କରି ନିର୍ମଳ ଯଶ ପୁଣ ॥୨୫୫
ପ୍ରଜାଙ୍କୁ ବହୁ ସୁଖ ଦେଲେ ।
ଅନ୍ତେ ସେ ବୈକୁଣ୍ଠ ଲଭିଲେ॥୨୫୬

### ସୂତ ଉବାଚ

କହନ୍ତି ସୂତ ପୌରାଣିକ ।
ଶୁଣ ହେ ମୁନି ଶଉନକ ॥୨୫୭
ସେ ଆଦିରାଜା ପୃଥୁ ଯଶ ।
ଅଶେଷ ଗୁଣ ଯେ ପ୍ରକାଶ ॥୨୫୮
ସେ ଯଶ ମହାଭାଗବତ ।
ବିଦୁର ଶୁଣି କୃତକୃତ୍ୟ ॥୨୫୯
ମୈତ୍ରେୟ ମୁନିଙ୍କୁ ପୂଜିଣ ।
ପୁଚ୍ଛଇ ପଡିଣ ଚରଣ ॥୨୬୦

### ବିଦୁର ଉବାଚ

ସେ ପୃଥୁ ବିପ୍ରଙ୍କରେ ବରି ।
ରାଜ୍ୟେ ହୋଇଲେ ଦଣ୍ଡଧାରୀ॥୨୬୧
ଅଶେଷ ଦେବଗଣଙ୍କର ।
ପୂଜା ପାଇଲେ ନୃପବର ॥୨୬୨
ବିଷ୍ଣୁର ଅଂଶ ଧରି ତେଜେ ।
ଭୂମି ଦୁହିଁଲେ ବେନିଭୁଜେ ॥୨୬୩
ଯା'ର ବିକ୍ରମ ଅବଶେଷ ।
ଉଚ୍ଛିଷ୍ଟ ଭୁଞ୍ଜନ୍ତି ନରେଶ ॥୨୬୪
ଏ ଲୋକପାଳ ଆଦି ଯେତେ ।
ଅଦ୍ୟାପି ଅଛନ୍ତି ନିଶ୍ଚିନ୍ତେ ॥୨୬୫
ସେ ପୃଥୁରାଜା କୀର୍ତ୍ତି ପୁଣି ।
କେ ଅବା ସେ କଥା ନ ଶୁଣି ॥୨୬୬
ଏଣୁ ତା ଶୁଦ୍ଧକର୍ମ ଯେତେ ।
କହ ହେ ମୁନି ମୋ ଅଗ୍ରତେ॥୨୬୭
ଆନନ୍ଦେ ମଇତ୍ରେୟ ମୁନି ।
କହନ୍ତି ହରିଭାବ ଘେନି ॥୨୬୮

### ମୈତ୍ରେୟ ଉବାଚ

ଶୁଣ ବିଦୁର କୁରୁବୀର ।
ଚରିତ ପୃଥୁ ରାଜନର ॥୨୬୯
ଗଙ୍ଗା ଯମୁନା ମଧ୍ୟେ ପୁର ।
ଭିଆଇ ରହି ପୃଥୁବୀର ॥୨୭୦
ପ୍ରାରବ୍ଧ କର୍ମ କ୍ଷୟ ପାଇ ।
ଭୋଗ ଭୁଞ୍ଜନ୍ତି ନରସାଇଁ ॥୨୭୧
ସପତଦ୍ୱୀପେ ଏକଦଣ୍ଡ ।
ଧରେ ସେ ନୃପତି ପ୍ରଚଣ୍ଡ ॥୨୭୨
ବ୍ରାହ୍ମଣ ବୈଷ୍ଣବରୁ ଅନ୍ୟ ।
ଆଜ୍ଞା ଲଭନ୍ତା ନାହିଁ ଜନ ॥୨୭୩
ଏକ ସମୟେ ମହାସତ୍ର ।
ଆରମ୍ଭ କଲେ ବେଣସୁତ ॥୨୭୪
ତହିଁ ପ୍ରବେଶ ଦେବଗଣ ।
ଦେବର୍ଷି ରାଜରଷିମାନ ॥୨୭୫
ଯେ ଯୋଗ୍ୟ ଯେମନ୍ତ ପୂଜାକୁ ।
ସେ ରୂପେ ପୂଜି ପୃଥୁ ତା'ଙ୍କୁ॥୨୭୬
ଭିଆଇ ତହିଁ ମହାସଭା ।
ରାଜା ତୁରିତେ ହେଲେ ଉଭା॥୨୭୭
ଉଠିଣ ସର୍ବଦିଗ ଚାହେଁ ।
ନକ୍ଷତ୍ରେ ଯେହ୍ନେ ଚନ୍ଦ୍ର ଶୋହେ॥୨୭୮
ଗଉରକାନ୍ତି ମନୋହର ।
ସୁନ୍ଦର ବଦନ-ମଣ୍ଡଳ ॥୨୭୯
ଲମ୍ବ ପୃଥୁଳ ବେନି ଭୁଜ ।
ପଦ୍ମ ଅରୁଣ ଚକ୍ଷୁ ତେଜ ॥୨୮୦
ସୁନାସା ମୁଖ ଦନ୍ତପନ୍ତି ।
ସ୍ମିତ ଅଧରେ ଶୋଭା ଅତି ॥୨୮୧
ବିସ୍ତାର ବକ୍ଷ କମ୍ବୁଗ୍ରୀବ ।
ସୁନ୍ଦର ବିଶାଳ ନିତମ୍ବ ॥୨୮୨
ଉଦରେ ତ୍ରିବଳି ବିରାଜେ ।
ଅଶ୍ୱତ୍ଥପତ୍ର ଶୋଭା ଗଞ୍ଜେ ॥୨୮୩
ଆବର୍ତ୍ତ ନାଭି ସୁଗଭୀର ।
ବିରାଜେ ମଧ୍ୟ-ଦେଶେ ତା'ର॥୨୮୪
ହେମସ୍ତମ୍ଭ କି ଉରୁଯୁଗ ।
ଉନ୍ନତ ଅଗ୍ରପାଦଯୁଗ ॥୨୮୫
ଯାହାର ଉଚ୍ଚପାଦ ଦୁଇ ।
ସର୍ବଲକ୍ଷଣେ ଶୋଭା ପାଇ ॥୨୮୬
ସୂକ୍ଷ୍ମ କୁଞ୍ଚିତ ସ୍ନିଗ୍ଧ କେଶ ।
ଦୁକୂଳ ଶୋହେ କଟିଦେଶ ॥୨୮୭
କନ୍ଧେ ଉତ୍ତରୀ ଯଜ୍ଞସୂତ୍ର ।
କୃଷ୍ଣ ଅଜିନ କୁଶ ହସ୍ତ ॥୨୮୮
ନିୟମେ ଛନ୍ତି ନରପତି ।
ତେଣୁ ଭୂଷଣ ନ ଧରନ୍ତି ॥୨୮୯
ତଥାପି ଦିବ୍ୟଶୋଭା ଦେହେ।
ଦେଖନ୍ତା ଜନ ମନ ମୋହେ ॥୨୯୦
ଚକ୍ଷୁର ତାରା ମନୋହର ।
ଅତି ଚିକ୍କଣ ସୁଖକର ॥୨୯୧
ସଭାକୁ ଚାହିଁ ଦଣ୍ଡଧର ।
ବଚନ କହନ୍ତି ମଧୁର ॥୨୯୨

### ପୃଥୁ ଉବାଚ

ଡାକିଣ କହନ୍ତି ରାଜନ ।
ଶୁଣିମା ହେଉ ସଭାଜନ ॥୨୯୩
ଆସିଛ ଯେତେ ସାଧୁଜନେ ।
ମନ ନିବେଶ ମୋ' ବଚନେ ॥୨୯୪

Dr. Sudhanshu Sekhar Mishra

ମୋହର ମନେ ଯେବା ଅଛି ।
ମୁଁ ତାହା ପ୍ରକାଶି କହୁଛି ॥୨୯୫
ହରି ମୋ ଠାରେ କୃପା କରି ।
କରିଛି ମୋତେ ଦଣ୍ଡଧାରୀ ॥୨୯୬
ପ୍ରଜାର ଦଣ୍ଡ ବା ରକ୍ଷଣ ।
ପୋଷଣ ସର୍ବତୋଭାବେଣ ॥୨୯୭
ରାଜା ପ୍ରଜାରେ ସୁଖ ଦେଇ ।
ବିଷ୍ଣୁ ସନ୍ତୋଷ ତାରେ ହୋଇ॥୨୯୮
ପ୍ରଜାଙ୍କୁ ରଖଇ ଧର୍ମରେ ।
ଅଧର୍ମେ କେହି ନ ପ୍ରଚରେ ॥୨୯୯
ଏ ରୂପେ ପ୍ରଜାଙ୍କୁ ଯେ ପାଳେ।
ସୁଗତି ଲଭେ ଅନ୍ତକାଳେ ॥୩୦୦
ପ୍ରଜାଙ୍କୁ କଲେ ସୁରକ୍ଷଣ ।
ତୁଷ୍ଟ ହୁଅନ୍ତି ନାରାୟଣ ॥୩୦୧
ଯାହାକୁ ସନ୍ତୋଷ ମୁରାରି ।
ସେ ପ୍ରାଣୀ ଭବୁ ଯା'ନ୍ତି ତରି ॥୩୦୨
ଅଧର୍ମମାର୍ଗେ ପ୍ରଜା ବିତ୍ତ ।
ଯେବେ ହରଇ ନରନାଥ ॥୩୦୩
ସେ ରାଜା ଅଟେ ଭାଗ୍ୟହୀନ ।
ପ୍ରଜାଙ୍କ ପାପେ ହୋଏ ଲୀନ॥୩୦୪
ଯେ ପ୍ରଜାଠାରୁ କର ନ୍ୟନ୍ତି ।
ପ୍ରଜାଙ୍କୁ ଧର୍ମ ନ ଶିଖାନ୍ତି ॥୩୦୫
ପ୍ରଜାଙ୍କ ପାତକ ଘେନନ୍ତି ।
ଅନ୍ତେ ନରକେ ସେ ପଡନ୍ତି ॥୩୦୬
ଏ ଘେନି କହଇ ପ୍ରଜାଙ୍କୁ ।
ଭୟ ରଖିବ ଅଧର୍ମକୁ ॥୩୦୭
ମୋ ତହୁଁ ଧର୍ମ କର ଶିକ୍ଷା ।
ମୋ ପରଲୋକ ହେଉ ରକ୍ଷା॥୩୦୮
ପରନିନ୍ଦାକୁ ପରିହରି ।
ହରିଙ୍କି ଭଜ ଦୃଢ କରି ॥୩୦୯
ମୋଠାରେ ଅନୁଗ୍ରହ ଯେବେ।
ହରିଙ୍କି ସେବାକର ତେବେ ॥୩୧୦
ହେ ଦେବ ପିତୃ ଋଷିଗଣେ ।
ଯେତେ ଆସିଛ ସଭାସ୍ଥାନେ ॥୩୧୧
ସକଳେ ଅନୁମତି କର ।
ପ୍ରଜାଙ୍କୁ ଶିକ୍ଷା ଦିଅ ମୋର ॥୩୧୨
ବୋଲିବ ଅବା କିପାଁ କର୍ମ ।
କରିବୁ ହରି ସମର୍ପଣ ॥୩୧୩
ଶୁଣ ଏଥକୁ ମୋର ଗିର ।
ହେ ମାନ୍ୟଜନେ ହୋଇ ସ୍ଥିର ॥୩୧୪
ବେଦ ଆଜ୍ଞାରେ କର୍ମ କରି ।
ଦିଅନ୍ତି ତା'ର ଫଳ ହରି ॥୩୧୫
ପରମେଶ୍ୱର ଯଜ୍ଞପତି ।
ଉତ୍ତମ-ଜନଙ୍କ ସମ୍ମତି ॥୩୧୬
ଅଛଇ ଇହ ପରେ ଜାଣ ।
ବିଚିତ୍ର ଭୋଗ ସ୍ଥାନମାନ ॥୩୧୭
ନ ଥିଲେ ଫଳଦାତା ଏକ ।
କି ରୂପେ ପାଇବ ତା' ଲୋକ॥୩୧୮
ବୋଲିବ ଅବା ଏଥି ପୁଣ ।
ବିଚିତ୍ର ସ୍ୱକର୍ମ କାରଣ ॥୩୧୯
ଶୁଣ ଏଥକୁ ଦେଇ ଚିତ୍ତ ।
ମହାନ୍ତମାନଙ୍କର ମତ ॥୩୨୦
ଯେ ସ୍ୱାୟମ୍ଭୁବ ମନୁବର ।
ଉତ୍ତାନପାଦ ଧ୍ରୁବ ଆର ॥୩୨୧
ଯେ ରାଜରଷି ପ୍ରିୟବ୍ରତ ।
ଅଙ୍ଗ ନୃପତି ପିତୃତାତ ॥୩୨୨
ବ୍ରହ୍ମା ଶଙ୍କର ଆଦି ଯେତେ ।
ପ୍ରହ୍ଲାଦ ବଳି ସର୍ବମତେ ॥୩୨୩
ଶ୍ରୀଗଦାଧର କର୍ମଫଳ ।
ଦେବାକୁ ସମର୍ଥ କେବଳ ॥୩୨୪
ତ୍ରିବର୍ଗ ସ୍ୱର୍ଗ ଅପବର୍ଗ ।
ଯେ ସାଧ୍ୟ ଅଛି ଭୋଗ୍ୟାଭୋଗ୍ୟ॥୩୨୫
ସେ ପ୍ରଭୁ ପରମ ଈଶ୍ୱର ।
ଦିଅନ୍ତି ସର୍ବ-କର୍ମଫଳ ॥୩୨୬
ମୃତ୍ୟୁଙ୍କ ନାତି ଆମ୍ଭ ତାତ ।
ଧର୍ମ ବିଚାରେ ବିମୋହିତ ॥୩୨୭
ସେପରି ଯେବା ଅଭାଗିନ ।
ମାନନ୍ତି ନାହିଁ ଭଗବାନ ॥୩୨୮
ହରି-ଚରଣ-ପଦ୍ମ ଜାତ ।
ସରିତ ପରାୟେ ସାକ୍ଷାତ ॥୩୨୯
ତା'ର ଚରଣ ସେବା ରୁଚି ।
ସକଳ ଜୀବେ କରେ ଶୁଚି ॥୩୩୦
ଦିନକୁ ଦିନ ବୃଦ୍ଧି ପାଏ ।
ମନର ମଳ ନାଶ ଯାଏ ॥୩୩୧
ମନର ମଳ ନାଶ ଗଲେ ।
ବୈରାଗ୍ୟ ବିଜ୍ଞାନର ବଳେ ॥୩୩୨
ଲଭି ଶ୍ରୀହରି ପାଦମୂଳ ।
ନ ପାଏ ପୁଣ ଏ ସଂସାର ॥୩୩୩
ଏ ଘେନି ସର୍ବେ ହରି ଭଜ ।
ବିଷୟ-ବାସନା ପ୍ରତେଜ ॥୩୩୪
ଏଣୁ ଯାହାର ଯେଉଁ ବୃତ୍ତି ।
ସେ ମାର୍ଗେ ଥାଇ କୃଷ୍ଣଭକ୍ତି ॥୩୩୫
କାର୍ଯ୍ୟ କ୍ରମ ମନ ବଚନ ।
ନିଷ୍କପଟରେ ହୋଇ ଲୀନ ॥୩୩୬
ପାଦପଦ୍ମରେ କରି ଧ୍ୟାନ ।
ସନ୍ତୋଷ ଲଭେ ଭଗବାନ ॥୩୩୭
ତାହାଙ୍କ ଚରଣ ଅମ୍ବୁଜ ।
ଅଶେଷ କାମ-ଲାଭ-ବୀଜ ॥୩୩୮
କପଟ ଭାବ ପରିହରି ।
ହେବା ଯେମନ୍ତ ଅଧିକାରୀ ॥୩୩୯
ଆପଣା ବର୍ଣ୍ଣାଶ୍ରମ ମତେ ।
ହରିଙ୍କି ଭଜ ଅବିରତେ ॥୩୪୦
ଏ ଯେ ଈଶ୍ୱର ଭଗବାନ ।
ବିଶେଷେ ବିଜ୍ଞାନରେ ଘନ ॥୩୪୧
ଗୁଣ ବିହୀନ ସେହୁ ଯେବେ ।
ତଥାପି ନାନାରୂପ ଲଭେ ॥୩୪୨
ନାନା ବିଶେଷଣ ସେ ହୋଇ ।
ଯଜ୍ଞପୁରୁଷ ସେ ଅଟଇ ॥୩୪୩
ନାନା ପ୍ରକାରେ ଦ୍ରବ୍ୟ ଗୁଣ ।
କର୍ମ-ତନ୍ତ୍ରେ ଜାତ ହୋଇଣ ॥୩୪୪
ଶୁଣ ହେ ସର୍ବ ସଭାଜନ ।
ଯଜ୍ଞପୁରୁଷ ବିଷ୍ଣୁ ଜାଣ ॥୩୪୫

Dr. Sudhanshu Sekhar Mishra

ଯେ ହୋମ ଦ୍ରବ୍ୟ କ୍ରିୟା ଗୁଣ ।
ଅବଘାତାଦି ମନ୍ତ୍ର ପୁଣ ॥୩୪୬
ଅଙ୍ଗ ସାଧ୍ୟ ଯେ ଉପକାର ।
ସଙ୍କଳ୍ପ ପଦାର୍ଥର ସାର ॥୩୪୭
ଜ୍ୟୋତିଷ୍ଟୋମାଦି ନାମ ଧରି ।
ପ୍ରକାଶେ ଯଜ୍ଞରୂପେ ହରି ॥୩୪୮
ଯଜ୍ଞରେ ଯେବା ଫଳ ହୋଏ।
ସେ ଫଳ ତହୁଁ ଭିନ୍ନ ନୋହୋ॥୩୪୯
ଯେ ଦେହେ ଚେତନା ରୂପରେ ।
ଅଛନ୍ତି ସକଳ ଶରୀରେ ॥୩୫୦
ଯେହ୍ନେ ଅନଳ ସମିଧରେ ।
ଏକ ସେ ନାନାରୂପ ଧରେ ॥୩୫୧
ସେ ରୂପେ ହରି ଦେହେ ଥା'ନ୍ତି ।
କର୍ମର ଫଳ ସେ ଭୁଞ୍ଜନ୍ତି ॥୩୫୨
ସେ ହରି ସର୍ବ-ଗୁରୁ ପର ।
ସର୍ବଦେବତା ଅଧୀଶ୍ୱର ॥୩୫୩
ଯେ ପ୍ରାଣୀ ସେ ପାଦେ ଭଜିଲା ।
ସେ ମୋତେ ଅନୁଗ୍ରହ କଲା ॥୩୫୪
ମୋର ସମ୍ବନ୍ଧୀ ଯେତେ ଜନ।
ହରିରେ କର ଆରାଧନ ॥୩୫୫
ଯେ ଦୃଢ଼ଭକ୍ତିରେ ପୂଜିବ ।
ମୋତେ ବହୁତ ସୁଖ ଦେବ ॥୩୫୬
ରାଜକୁଳରେ ଯେତେ ଜନ ।
ତେଜ ବଳରେ ବଳୀୟାନ ॥୩୫୭
ବ୍ରାହ୍ମଣ ବୈଷ୍ଣବ କୁଳରେ ।
ଦ୍ୱେଷ ନ କରିବ ମନରେ ॥୩୫୮
କ୍ଷମା ତପସ୍ୟା ବିଦ୍ୟାବଳେ ।
ଉଜ୍ଜ୍ୱଳ ଯେଉଁ ଦ୍ୱିଜକୁଳେ ॥୩୫୯
ଅପରେ ମହା-ସାଧୁ ଧୀର ।
ବିଷ୍ଣୁଟି ଦେବତା ଯାହାର ॥୩୬୦
ସେ କୁଳେ ପ୍ରଭୁପଣ କଲେ ।
ପ୍ରମାଦ ପଡ଼ଇଟି ଭଲେ ॥୩୬୧
ଯେ ବ୍ରାହ୍ମଣ ବୈଷ୍ଣବେ ପାଦେ।
ସେବା କରିଣ ଅପ୍ରମାଦେ ॥୩୬୨
ବିଷ୍ଣୁ ଲଭିଲେ ମହାଲକ୍ଷ୍ମୀ ।
ଯେ ଯଶ ସଂସାରେ ରହିଛି ॥୩୬୩
ବ୍ରାହ୍ମଣ ପାଦେ ସେବା କଲେ ।
ବିଷ୍ଣୁ ସନ୍ତୋଷ ହେବେ ଭଲେ ॥୩୬୪
ଏଣୁ ସକଳ ପ୍ରାଣୀମାନେ ।
ମାନ୍ୟ କରିବ ବିପ୍ରଜନେ ॥୩୬୫
ହରିଭୁଜାଦି ଦେବମାନେ ।
ତାହାଙ୍କ ମୁଖ ବିପ୍ରଜନେ ॥୩୬୬
ଏଣୁ ବିପ୍ରଙ୍କୁ ସେବା କଲେ ।
ଅଶ୍ରମେ ମୋକ୍ଷଲଭେ ଭଲେ ॥୩୬୭
ବ୍ରାହ୍ମଣ ଦେବଙ୍କର ମୁଖ ।
ତା'ଙ୍କ ଭୋଜନେ ଯେଉଁ ସୁଖ॥୩୬୮
ସେ ସୁଖ ହରି ଆସ୍ୱାଦନ୍ତି ।
ଯଜ୍ଞେ ସେ ସୁଖ ନ ପାବନ୍ତି ॥୩୬୯
ଏଣୁ ବପ୍ରଙ୍କୁ ଭୁଞ୍ଜାଇଲେ ।
ସକଳ ଯଜ୍ଞଫଳମିଳେ ॥୩୭୦
ଚେତନା ରହିତ ଅନଳେ ।
ଆହୁତି ମନ୍ତ୍ରଭାବେ ଦେଲେ ॥୩୭୧
ହରି ତା କଲେ ହେଁ ଭୋଜନ ।
ସୁଖ ନ ଲଭନ୍ତି ତେସନ ॥୩୭୨
ଏଣୁ ଅଗ୍ନିରୁ ଦ୍ୱିଜ ଶ୍ରେଷ୍ଠ ।
ଯେଣୁ ସେ ବେଦତତ୍ତ୍ୱେ ନିଷ୍ଠ॥୩୭୩
ବ୍ରାହ୍ମଣ ମୁଖେ ଯେବେ ଦେଇ ।
ଇନ୍ଦ୍ରାଦି ଦେବ ନାମ କହି ॥୩୭୪
ବିଷ୍ଣୁପ୍ରୀତିରେ ଦେବ ଯେତେ।
ବିଷ୍ଣୁ ତା' ପାଇବେ ସାକ୍ଷାତେ॥୩୭୫
ଯେ ବେଦେ ଦର୍ପଣ ପରାୟେ ।
ସକଳ ଧର୍ମ ଦୃଶ୍ୟ ହୋଏ ॥୩୭୬
ଶ୍ରଦ୍ଧା ତପସ୍ୟା ଶୁଦ୍ଧାଚାର ।
ମଉନ ସଂଯମ ପ୍ରକାର ॥୩୭୭
ସମ୍ପାଦି ଯେଉଁ ଦ୍ୱିଜମାନେ ।
ଧରନ୍ତି ତା'କୁ ହରି ଧ୍ୟାନେ ॥୩୭୮
ବେଦାର୍ଥ କରନ୍ତି ବିଚାର ।
ଯେ ବେଦ ହେତୁ ଏ ସଂସାର ॥୩୭୯
ବ୍ରାହ୍ମଣ ପାଦଧୁଳି ଶିରେ ।
ଧରିଣ ଥାଇ ତତପରେ ॥୩୮୦
ଯେ ପ୍ରଣୀ ନିତ୍ୟେ ଏହା ବହେ ।
ପାପ ନ ରହେ ତା'ର ଦେହେ ॥୩୮୧
ତା'ର କଲୁଷ ବେଗେ ନାଶେ ।
ସକଳ ଗୁଣ ତା'ର ପାଶେ ॥୩୮୨
ଏଣୁ ବିପ୍ରଙ୍କ ପାଦରଜେ ।
କିରୀଟ-ଅଗ୍ର ମୋର ରାଜେ ॥୩୮୩
ଯେ ଜନ ଗୋ ବିପ୍ର ଭଜଇ ।
ତା ପଛେ ସର୍ବଗୁଣ ଥାଇ ॥୩୮୪
ବିଷ୍ଣୁ ଯେ ତାହାରେ ସନ୍ତୋଷ।
ଅଧିକ କିବା ଗୁଣ ଯଶ ॥୩୮୫
ଗୋ ବିପ୍ର ବିଷ୍ଣୁଙ୍କ କିଙ୍କରେ ।
ପ୍ରସନ୍ନ ହୋନ୍ତୁ ମୋରଠାରେ ॥୩୮୬

ମୈତ୍ରେୟ ଉବାଚ

ଏମନ୍ତ କହୁଁ ପୃଥୁ ରାୟେ ।
ପିତୃ-ଦେବ-ଦ୍ୱିଜ ସମୂହେ ॥୩୮୭
ସକଳେ କଲେ ସାଧୁବାଣୀ ।
ସେ ସଭାମଧ୍ୟେ ଯେତେ ପ୍ରାଣୀ॥୩୮୮
କହନ୍ତି ପୃଥୁଙ୍କ ଅଗ୍ରତେ ।
ତୁମ୍ଭେ ହେ ଧନ୍ୟ ଧର୍ମମତେ ॥୩୮୯
ସୁପୁତ୍ରେ ପୁଣ୍ୟଲୋକ ପାଇ ।
ଏ ବାକ୍ୟ ସତ୍ୟ ଶ୍ରୁତି କହି ॥୩୯୦
ବ୍ରାହ୍ମଣ-ଶାପ-ଦଣ୍ଡଗ୍ରସ୍ତ ।
ମଲେ ଯେ ବେଣ ତୁମ୍ଭ ତାତ ॥୩୯୧
ସେ ମହାପାପୀ ହୋଇଥିଲେ ।
ତୁମ୍ଭ ସକାଶୁ ନିସ୍ତରିଲେ ॥୩୯୨
ହିରଣ୍ୟକଶିପୁ ଯେ ଥିଲା ।
ସେ ବିଷ୍ଣୁ ନିନ୍ଦାରେ ବଢ଼ିଲା ॥୩୯୩
ପ୍ରହ୍ଲାଦ ତା'ର ସୁତ ହୋଇ ।
ନରକ ମାର୍ଗୁ ଉଦ୍ଧରଇ ॥୩୯୪
ତୁ ଏବେ ଚକ୍ରବର୍ତ୍ତୀ ପଣେ ।
ଏ ମହୀ ପାଳ ଶୁଭକ୍ଷଣେ ॥୩୯୫

Dr. Sudhanshu Sekhar Mishra

ବହୁ ବତ୍ସର ତୁମ୍ଭ ଆୟୁ ।
ନିରୁଜ ହୋଇ ତନୁ ରହୁ ॥୩୯୬
ଗୁଣେ ଅଖଣ୍ଡ ଭୋଗ ଭୁଞ୍ଜ ।
ଭକ୍ତିରେ ହରିପାଦେ ଭଜ ॥୩୯୭
ବ୍ରହ୍ମଣ୍ୟ-ଦେବ ହରିକଥା ।
ତୁମ୍ଭର କୀର୍ତ୍ତନେ ସର୍ବଥା ॥୩୯୮
ଏଣୁ ଆମ୍ଭର ତୁମ୍ଭେ ନାଥ ।
ତୁମ୍ଭରେ ହୋଇଲୁ କୃତାର୍ଥ ॥୩୯୯
ଆମ୍ଭଙ୍କୁ ତୁମ୍ଭେ ନିସ୍ତାରିଲ ।
ହରିଙ୍କ ମହିମା କହିଲ ॥୪୦୦
ଅନେକ ପୁଣ୍ୟ କରିଥିଲୁ ।
ତେଣୁ ତୁମ୍ଭର ପ୍ରଜା ହେଲୁ ॥୪୦୧

ସେମାନେ ମହତ ଅଟନ୍ତି ।
ତା'ଙ୍କ ଚରିତ ଏହିମତି ॥୪୦୨
ପ୍ରଜାଙ୍କୁ ଦ୍ୟନ୍ତି ଧର୍ମ ଶିକ୍ଷା ।
ଯେଣେ ହୁଅଇ ସର୍ବରକ୍ଷା ॥୪୦୩
ଆମ୍ଭେ ଅଜ୍ଞାନେ ଭ୍ରମ ଅତି ।
ଆମ୍ଭଙ୍କୁ ଦେଲ ଦିବ୍ୟଗତି ॥୪୦୪
ଏ ଘୋର-ତମୁ ନିସ୍ତାରିଲ ।
ହରି ଭଜନ ଶିକ୍ଷା ଦେଲ ॥୪୦୫
ନରକ ମାର୍ଗେ ପଡିଥିଲୁ ।
ତୋ' ଅଙ୍ଗୁ ମୁକତ ହୋଇଲୁ ॥୪୦୬
ହେ ଶୁଦ୍ଧ-ସତ୍ତ୍ୱ ପୁଣ୍ୟ-ବ୍ରତ ।
ତୁମ୍ଭଙ୍କୁ ଆମ୍ଭ ପ୍ରଣମିତ ॥୪୦୭

ତୁମ୍ଭେ ଯେ ଜଗତ ଈଶ୍ୱର ।
ତୁମ୍ଭ ଚରଣେ ନମସ୍କାର ॥୪୦୮
ଏମନ୍ତେ ପୃଥୁର ଚରଣେ ।
ପ୍ରଣାମ କଲେ ପ୍ରଜାଗଣେ ॥୪୦୯
ମୈତ୍ରେୟ ବିଦୁର ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ॥୪୧୦
ବୋଲଇ ଦାସ ଜଗନ୍ନାଥ ।
ଚତୁର୍ଥେ ପୃଥୁର ଚରିତ ॥୪୧୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ଏକବିଂଶୋଽଧ୍ୟାୟଃ ॥

## ଦ୍ୱାବିଂଶ ଅଧ୍ୟାୟ

କୃଷ୍ଣ ଚରିତ ମନେ ଘେନି ।
କହନ୍ତି ମଇତ୍ରେୟ ମୁନି ॥୧

ମୈତ୍ରେୟ ଉବାଚ

ଏ ଅନ୍ତେ ଶୁଣ ହେ ବିଦୁର ।
ସେ ପୃଥୁଦେବ ରାଜ୍ୟେଶ୍ୱର ॥୨
ପ୍ରଜା ପାଳନେ ଧର୍ମଶୀଳ ।
ହରି-ଭକତି ରସେ ଭୋଳ ॥୩
ସେ ରାଜ୍ୟେ ଯେତେ ପ୍ରଜାଗଣ ।
ପିତୃ ଦେବ ଋଷି ବ୍ରାହ୍ମଣ ॥୪
ପୃଥୁଙ୍କ ଗୁଣ ବଖାଣନ୍ତି ।
ସେ ସର୍ବେ ହରିଙ୍କି ପୂଜନ୍ତି ॥୫
ଏମନ୍ତେ କେତେ କାଳାନ୍ତରେ ।
ବିଜୟ କଲେ ମୁନିବରେ ॥୬
ସେ ସିଦ୍ଧଗଣ ମଧ୍ୟେ ବର ।
ବିଶେଷେ ବ୍ରହ୍ମାଙ୍କ କୁମର ॥୭
ତପ-ସାଧନେ ବିରାଜନ୍ତି ।
ସୂର୍ଯ୍ୟକିରଣ ପ୍ରାୟେ ଜ୍ୟୋତି ॥୮
ଆକାଶେ ଦେଖିଲେ ରାଜନ ।
କାନ୍ତିରୁ କଲେ ଅନୁମାନ ॥୯

ଏ ସର୍ବେ ସିଦ୍ଧ ସନକାଦି ।
ବିଷ୍ଣୁଭକତ ବ୍ରହ୍ମବାଦୀ ॥୧୦
ଲୋକଙ୍କ ପାପଶୁଦ୍ଧି ଅର୍ଥେ ।
ଭ୍ରମଣ କରନ୍ତି ଜଗତେ ॥୧୧
ନିଶ୍ଚୟ ଜାଣି ଅନୁମାନେ ।
ଉଠିଲେ ସହାସ୍ୟେ ସଗଣେ ॥୧୨
ତା'ଙ୍କ ଦର୍ଶନେ ନୃପପ୍ରାଣ ।
ଉର୍ଦ୍ଧ୍ୱକୁ କଲା କି ଗମନ ॥୧୩
ଯେହ୍ନେ ଜୀବନ ପିଣ୍ଡ ପାଇ ।
ସତ୍ୱରେ ଉଠିଲେ ଚିତୋଇ ॥୧୪
ସଦସ୍ୟ ଆଦି ଯେତେ ଥିଲେ ।
ସକଳେ ସତ୍ୱରେ ଉଠିଲେ ॥୧୫
ଯେସନେ ଗନ୍ଧାଦି ଗୁଣଙ୍କୁ ।
ଜୀବ ଉତ୍ସୁକ ଘେନିବାକୁ ॥୧୬
ତେସନେ ନୃପ ହେଲେ ଉଭା ।
ମୁନି ପ୍ରବେଶ ହେଲେ ସଭା ॥୧୭
ଆନନ୍ଦେ ପୃଥୁ-ନୃପବର ।
ପ୍ରଣମି ମୁନିଙ୍କ ପୟର ॥୧୮

ସୁଗନ୍ଧ-ଶୀତଜଳ ନେଇ ।
ପଦକମଳ ଦେଲେ ଧୋଇ ॥୧୯
ଦିବ୍ୟ-ଆସନେ ବସାଇଲେ ।
ସବିଧି-ବେଭାରେ ପୂଜିଲେ ॥୨୦
ତାହାଙ୍କ ଚରଣ-ସଲିଳେ ।
ଅଳକ-ବନ୍ଧ ସମ୍ମାର୍ଜିଲେ ॥୨୧
ଯେ ପ୍ରାଣୀ ହୋଏ ଶୀଳବନ୍ତ ।
ତାହାଙ୍କ ଚରିତ ଏମନ୍ତ ॥୨୨
ଛାଡି ନୃପତି ଅଭିମାନ ।
ଆନନ୍ଦେ କଲେ ବହୁମାନ୍ୟ ॥୨୩
ହାଟକ-ଆସନେ ବସାଇ ।
ପାଦ-ଉଦକ ଶିରେ ଲଇ ॥୨୪
ସେ ଭବ-ଅଗ୍ରଜନ୍ମା ଯେଣୁ ।
ରାଜନ ମାନ୍ୟ କଲେ ତେଣୁ ॥୨୫
ଭାବେ ପ୍ରତୋଷି ତା'ଙ୍କ ମନ ।
କହନ୍ତି ମଧୁର ବଚନ ॥୨୬

ପୃଥୁ ଉବାଚ

ଆଜ ମୋ ପୂର୍ବଭାଗ୍ୟଫଳ ।
ଜୀବନ ହୋଇଲା ସଫଳ ॥୨୭

Dr. Sudhanshu Sekhar Mishra

ଦୁର୍ଲଭ ଦେଖିଲି ତୁମ୍ଭଙ୍କୁ ।
ଖୋଜି ନ ପା'ନ୍ତି ଯୋଗୀ ଯା'ଙ୍କୁ ॥୨୮
କି ତା'ର ଦୁର୍ଲଭ ସଂସାରେ ।
ଯେ ଅବା ଅଛି ଇହପରେ ॥୨୯
ଯାହାକୁ ବିଷ୍ଣୁ ବଇଷ୍ଣବ ।
ପ୍ରସନ୍ନ ବିପ୍ର ସଦାଶିବ ॥୩୦
ଅବ୍ୟକ୍ତ-ଗତି ଯେ ତୁମ୍ଭର ।
ଭ୍ରମଣ ଚତୁର୍ଦ୍ଦଶ-ପୁର ॥୩୧
ଅଭାଗ୍ୟବନ୍ତ ପ୍ରାଣୀ ଯେହି ।
ତୁମ୍ଭ ଦର୍ଶନେ ଯୋଗ୍ୟ କାହିଁ ॥୩୨
ଏ ଆତ୍ମାପୁରୁଷ ଯେସନେ ।
ସକଳ ଦେଖଇ ଚେତନେ ॥୩୩
ତାହାକୁ ନ ଦେଖନ୍ତି କେହି ।
ଏ ବିଶ୍ୱ ହେତୁଭୂତ ଯେହି ॥୩୪
ହେ ସିଦ୍ଧ ତୁମ୍ଭଙ୍କୁ ଦେଖିଲି ।
ଧନ୍ୟ ମୋ ଜୀବନ ମଣିଲି ॥୩୫
ନିର୍ଦ୍ଧନ ଗୃହେ ଯେହ୍ନେ ଧନ ।
ଅଣ ଆୟାସେ ଲଭେ ପୁଣ୍ୟ ॥୩୬
ତେହ୍ନେ ମଣିଲି ଅଦଭୁତ ।
କି ଭାଗ୍ୟେ ତୁମ୍ଭେ ଉପଗତ ॥୩୭
ଯା' ଗୃହେ ଅତିଥି ଆଗତ ।
ଭାବେ ପୂଜଇ ଶୁଦ୍ଧଚିତ୍ତ ॥୩୮
ବିଭବେ ପୂଜି ବହୁବିଧେ ।
କାୟ ବାଚିକ ମନ-ଶୁଦ୍ଧେ ॥୩୯
ବିଭବ-ହୀନ ଯେବା ଜନ ।
ପୂଜିବ ଯେ ବିଧି-ବିଧାନ ॥୪୦
ଭୂମି ଉଦକ ତୃଣାସନେ ।
ଦେଇ ପୂଜିବ ଶୁଦ୍ଧମନେ ॥୪୧
ଏ ଭାବେ ଯେବା ନ ପୂଜନ୍ତି ।
ସେ ବ୍ୟର୍ଥ-ଜୀବନେ ଜୀବନ୍ତି ॥୪୨
ବ୍ୟାଳ-ଆଳୟ ଦ୍ରୁମ ଯେହ୍ନେ ।
ତା ଗୃହ ଭୟଙ୍କର ତେହ୍ନେ ॥୪୩
ଯା' ଗୃହଗତେଣ ଅତିଥି ।
ସୁଖେ ଚରଣ ନ ଧୁଅନ୍ତି ॥୪୪

ତା'ର ଜୀବନ ଅକାରଣ ।
ବ୍ୟର୍ଥ ଆୟୁଷ ଯଶ ଗୁଣ ॥୪୫
ଯେ ଭକ୍ତଜନଙ୍କୁ ନ ସେବେ ।
ତା ସୁଖ ସମ୍ପଦ କି ଲାଭେ ॥୪୬
ଭୋ ମୁନି ତୁମ୍ଭ ଆଗମନ ।
ମଙ୍ଗଳ ମଣିଲି ଜୀବନ ॥୪୭
ତୁମ୍ଭର ବ୍ରତ ବିଧି ଆଦି ।
ଆଚରନ୍ତି ଯେ ମୋକ୍ଷବାଦୀ ॥୪୮
ଯେ ବାଳ ବୟସୁ ଆଚରେ ।
ସେ ତେବେ ମୋକ୍ଷମାର୍ଗ ଧରେ ॥୪୯
ଏ ବାଳ ପୌଗଣ୍ଡ କୈଶୋରେ ।
ଯେ ଧରେ ଦୃଢ଼ ନିଷ୍ଠାପରେ ॥୫୦
ସେ ତେବେ ମୋକ୍ଷପଦେ ଯାନ୍ତି ।
ଏ ବିଷ୍ଣୁ ମାୟାରୁ ତରନ୍ତି ॥୫୧
ଇନ୍ଦ୍ରିୟମାନଙ୍କ ବିଷୟ ।
ନ ଛାଡ଼େ ଯାହାର ହୃଦୟ ॥୫୨
ସେ କାହିଁ ସୁଖ ନ ଲଭନ୍ତି ।
ସ୍ୱକର୍ମ-ବନ୍ଧେ ବନ୍ଦୀ ହୋନ୍ତି ॥୫୩
ଏ ଘୋର-ସଂସାରେ ପଡିଣ ।
ଦୁଃଖ ଭୁଞ୍ଜନ୍ତି ଜ୍ଞାନହୀନ ॥୫୪
ଭୋ ମୁନିଗଣେ ତୁମ୍ଭେ ଜ୍ଞାନୀ ।
ଆତ୍ମାରାମଙ୍କ ମଧ୍ୟେ ମାନୀ ॥୫୫
ଏଣୁ ଯେ ତୁମ୍ଭ ମାନଙ୍କରେ ।
କୁଶଳ ପ୍ରଶ୍ନ କେ ପଚାରେ ॥୫୬
ତୁମ୍ଭର ମତି-ବୃତ୍ତିମାନେ ।
କୁଶଳାକୁଶଳ ନ ଘେନେ ॥୫୭
ଏହି ବିଶ୍ୱାସ ମୋର ଅଛି ।
ସଭୟେ ନ ପାରଇ ପୁଛି ॥୫୮
ସଂସାର-ତାପେ ଯେ ତାପିତ ।
ତା'ଙ୍କ କୁଶଳ ଯେ ଚରିତ ॥୫୯
ତୁମ୍ଭେ ତପସ୍ୱୀଗଣ ମିତ୍ର ।
ନିର୍ମଳ ଚରିତ ପବିତ୍ର ॥୬୦
ଏ ଅଭିପ୍ରାୟେ ମୁଁ ପୁଛଇ ।
ଫେଡିଣ କହିବା ଗୋସାଇଁ ॥୬୧

ଏ ଦୁଃଖ ଅଜ୍ଞାନ ସଂସାରେ ।
ଏ ଜୀବ ଭ୍ରମେ ନିରନ୍ତରେ ॥୬୨
ଭୋ ମୁନି କିବା କର୍ମ କଲେ ।
ଏ ଜୀବ ନିସ୍ତରିବେ ଭଲେ ॥୬୩
ଏ ଅଭିପ୍ରାୟେ ମୁଁ ପୁଛଇ ।
ଭକ୍ତ-ଉଦ୍ଧାରଣେ ଗୋସାଇଁ ॥୬୪
ତୁମ୍ଭେ ଭକତ-ଜନହିତେ ।
କୁଶଳ ବାଞ୍ଛ ଅବିରତେ ॥୬୫
ସିଦ୍ଧ-ଯୋଗୀନ୍ଦ୍ର ରୂପ ଧରି ।
ସଂସାରେ ଭ୍ରମୁଥା'ନ୍ତି ହରି ॥୬୬
ସକଳ ଆତ୍ମା ସେ ଗୋସାଇଁ ।
ଭ୍ରମନ୍ତି ସଜ୍ଜନ ପାଇଁ ॥୬୭
ସେ ଆଜ ସିଦ୍ଧ ରୂପେ ଥା'ନ୍ତି ।
ଆପକୁ ଆପେ ପ୍ରକାଶନ୍ତି ॥୬୮
ପ୍ରତ୍ୟକ୍ଷେ ତୁମ୍ଭେ ସେ ଗୋସାଇଁ ।
ଦର୍ଶନେ ନିସ୍ତରିଲି ମୁହିଁ ॥୬୯
ଏ ଭବତରଣ ଉପାୟେ ।
ଫେଡିଣ କହିବା ଥୋକାଏ ॥୭୦
ତୁମ୍ଭେ ଯେ ମୋତେ କୃପା ଘେନି ।
ଆମ୍ଭ କୁଶଳ କହ ମୁନି ॥୭୧

### ମୈତ୍ରେୟ ଉବାଚ

ଏମନ୍ତେ ଶୁଣ ହେ ବିଦୁର ।
ସେ ପୃଥୁ ବଚନ ମଧୁର ॥୭୨
ଶ୍ରବଣେ ତୋଷ ହେଲେ ମୁନି ।
ସାଧୁ-ସମ୍ମତ ବାକ୍ୟ ଘେନି ॥୭୩
ହରଷେ କହନ୍ତି କୁମାର ।
ଶୁଣ ହେ ପୃଥୁ ନୃପବର ॥୭୪
ସଂସାରେ ସାଧୁଜନ ଯେହି ।
ତା'ଙ୍କ ମହିମା ସିନା ଏହି ॥୭୫
ବିଷୟ ସୁଖ ନ ଘେନନ୍ତି ।
ପ୍ରାଣୀଙ୍କ ଶ୍ରେୟ ପଚାରନ୍ତି ॥୭୬
ତୁମ୍ଭେ ଯେ ପଣ୍ଡିତ ସୁଶୀଳ ।
ଏଣୁ ଉତ୍ତମ ପଚାରିଲ ॥୭୭
ସୁସାଧୁ ଜନଙ୍କ ସଙ୍ଗତ ।
ଉଭୟ ଲୋକଙ୍କୁ ସେ ହିତ ॥୭୮

Dr. Sudhanshu Sekhar Mishra

ଏଣୁ ସାଧୁଙ୍କ ସମ୍ଭାଷଣ ।
ସୁପୁଣ୍ୟ ମଙ୍ଗଳ କାରଣ ॥୭୯
ଅଶେଷ ଜୀବହିତ କରେ ।
ଏଣୁ ପଚାରିଲ ବେଭାରେ ॥୮୦
ସୁଶାନ୍ତ ଆତ୍ମ ମନ ହେଲା ।
ତୁମ୍ଭ ପ୍ରଶନେ ଦୁଃଖ ଗଲା ॥୮୧
ଏବେ ହେ ଶୁଣ ନୃପବର ।
କହିବା ଏଥି ପ୍ରତିକାର ॥୮୨
ଯେ ମୋକ୍ଷ-ସାଧନ ପୁଚ୍ଛିଲ ।
ଅଶେଷ ଜୀବର ଯେ ଭଲ ॥୮୩
ଉପାୟ ଅଛଇ ଯେ ଏକ ।
ଭୋ ନୃପ ମନେ ବୁଝି ଦେଖ ॥୮୪
ଗୋବିନ୍ଦ-ଚରଣ-କମଳେ ।
ଯେ ପ୍ରାଣୀ ଭଜନ୍ତି ଶୟଳେ ॥୮୫
ତରନ୍ତି ଏ ଭବ-ଜଳଧି ।
ଯେ ପ୍ରାଣୀ ଭଜେ ନିରବଧି ॥୮୬
ତ୍ରିବିଧ କୃଷ୍ଣ-ଉପାସନ ।
ରଜ ସାତ୍ତ୍ୱିକ ତମ ଗୁଣ ॥୮୭
ତାମସ-ଭକ୍ତ ଏ ଲକ୍ଷଣ ।
କହିବା ଏଥିର କାରଣ ॥୮୮
ଶ୍ରୀକୃଷ୍ଣ-ଭକତଙ୍କ ମେଳେ ।
ଯେ ନାଚେ ସଙ୍କୀର୍ତ୍ତନ ବେଳେ ॥୮୯
ତହିଁ ଯାହାର ନୋହେ ରତି ।
ସେ ହୀନ କପଟ ଭକତି ॥୯୦
ତାହାର ଅନ୍ତର ମଳିନ ।
କାମ-କଷାୟେ ହୋଏ ହୀନ ॥୯୧
ତାମସ ଭକ୍ତ ବୋଲି ତା'ରେ ।
ନ ତରେ ଏ ଭବସାଗରେ ॥୯୨
କୃଷ୍ଣ ଭଜନେ ହୋଏ ରତି ।
ଆତ୍ମାକୁ ବିଶୁଦ୍ଧ କରନ୍ତି ॥୯୩
ଯେ ନିଷ୍ଠା ଶାସ୍ତ୍ରମାର୍ଗେ କହେ ।
ନିଶ୍ଚୟ ବୁଝ ନରରାୟେ ॥୯୪
ସେ ଟି ନିର୍ମଳ ଜ୍ଞାନହେତୁ ।
ଭବସାଗର ପାର ସେତୁ ॥୯୫

ଚିତ୍ତ ବିଶୁଦ୍ଧ ଯାର ନାହିଁ ।
ତା'ର ବୈରାଗ୍ୟ ଜ୍ଞାନ କାହିଁ ॥୯୬
ହରି ଚରଣେ ସେବା ରତି ।
ବୈରାଗ୍ୟ ନିଶ୍ଚଳ ଭକତି ॥୯୭
ଏ ଟି କୈବଲ୍ୟ ସୁସାଧନ ।
ନିଶ୍ଚୟ ବୁଝ ତୁ ରାଜନ ॥୯୮
ବୈରାଗ୍ୟେ ହୋଏ ଯେ ଅସଙ୍ଗ ।
ତହୁଁ ଜନ୍ମଇ ଭକ୍ତି ଅଙ୍ଗ ॥୯୯
ଯେଣୁ ତା' ଦେହେ ସଙ୍ଗ ନାହିଁ ।
ଏଣୁଟି ଆତ୍ମେ ରତି ହୋଇ ॥୧୦୦
ସେ ବ୍ରହ୍ମ ନିର୍ଗୁଣ ନିର୍ମଳ ।
ବ୍ୟାପିଛି ଅଶେଷ-ଶୟଳ ॥୧୦୧
ଭକ୍ତି-ବୈରାଗ୍ୟେ ତା'କୁ ପାଇ ।
ଏ ବିନେ ଜୀବ ଭ୍ରମୁଥାଇ ॥୧୦୨
ସେ ବ୍ରହ୍ମେ ଏ ରତି ପ୍ରକାର ।
ଶାସ୍ତ୍ରରେ ଶ୍ରଦ୍ଧା ଥାଇ ଯା'ର ॥୧୦୩
ହରି-ଚରଣେ ଯେବେ ଭାବେ ।
ନିଷ୍କାମ-ଭକ୍ତି ହୋଏ ତେବେ ॥୧୦୪
ଯୋଗରେ ନିଷ୍ଠା ଥାଇ ଯା'ର ।
ପୁଚ୍ଛଇ ଶାସ୍ତ୍ର-ମାର୍ଗ ସାର ॥୧୦୫
ଯୋଗୀନ୍ଦ୍ର ଗଣେ ସେବାକଲେ ।
ସେ ରତି ଲଭେ ବ୍ରହ୍ମତୁଲେ ॥୧୦୬
କି ଅବା ହରି ସଂକୀର୍ତ୍ତନ ।
ଶୁଣେ ଶ୍ରବଣେ କରେ ଧ୍ୟାନ ॥୧୦୭
ଅସଙ୍ଗ-ରତି ଏହି ଭାବେ ।
ସାଧନ ତାରତମ୍ୟେ ଲଭେ ॥୧୦୮
ଶୁଣ ରାଜନ କୃଷ୍ଣ ଲୟେ ।
ତ୍ରିବିଧ ପ୍ରକାରେ ଯେ ହୋଏ॥୧୦୯
ଯେ ମାର୍ଗେ ଯେ ସାଧ୍ୟ କରନ୍ତି ।
ବ୍ରହ୍ମନିର୍ବାଣେ ହୋଏ ରତି ॥୧୧୦
ଅର୍ଥ-ବାଞ୍ଛିତ ମନ ଯା'ର ।
ତାମସେ ବଦ୍ଧ ସେହୁ ନର ॥୧୧୧
ଯେ ପ୍ରାଣୀ ଇନ୍ଦ୍ରିଭୋଗ ବଶ ।
ତାହାକୁ ବୋଲିଟି ରାଜସ ॥୧୧୨

ଏହାଙ୍କୁ ନ କରିବ ସଙ୍ଗ ।
ସେ ସଙ୍ଗ-ଦୋଷେ ଜ୍ଞାନଭଙ୍ଗ॥୧୧୩
ତହିଁ ନ ଦେବ ମନ ଦୃଷ୍ଟି ।
କେବେହେଁ ନ କରିବ ଗୋଷ୍ଠୀ ॥୧୧୪
ସେ ସଙ୍ଗ ଯେବା ଆଦରନ୍ତି ।
ସକାମ ଅର୍ଥ ସେ ବାଞ୍ଛନ୍ତି ॥୧୧୫
ଏଣୁ ତାହାଙ୍କ ସଙ୍ଗ ତେଜି ।
ଯେ ପ୍ରାଣୀ ଆତ୍ମାଲାଭ ଖୋଜି॥୧୧୬
ନିଃସଙ୍ଗେ ନିର୍ଜନେ ସେବଇ ।
ତେବେ ଆତ୍ମାକୁ ଭେଟ ପାଇ॥୧୧୭
ଏ ରୂପେ ହୋଏ ବ୍ରହ୍ମେ ରତି ।
ଶୁଣ ସୁମନେ ହେ ନୃପତି ॥୧୧୮
ଅପରେ ଅସାଧୁ କହିବା ।
ଯାହାର ନାହିଁ ଭକ୍ତି ସେବା ॥୧୧୯
ହରି-ଚରଣେ ଭକ୍ତି ନୋହି ।
ତାହାର ବ୍ରହ୍ମେ ରତି କାହିଁ ॥୧୨୦
ସେ ହରି ଗୁଣ ସୁଧା-ପାନ ।
ସେ ବିନୁ ନୋହେ ବ୍ରହ୍ମଜ୍ଞାନ॥୧୨୧
ଅହିଂସା-ଧର୍ମେ ଯେବା ଥା'ନ୍ତି ।
ଏ ବ୍ରହ୍ମଜ୍ଞାନ ସେ ଲଭନ୍ତି ॥୧୨୨
ପରମହଂସର ଯେ ବିଧି ।
ତତିକ୍ଷା ଶମ ଦମ ଆଦି ॥୧୨୩
ଆତ୍ମାର ହିତ ଅନୁଧ୍ୟାନେ ।
ନିର୍ଗୁଣ ହୋଏ ବ୍ରହ୍ମଜ୍ଞାନେ ॥୧୨୪
ସେ ହରି ପରମ-ପୁରୁଷ ।
ତାହାଙ୍କ ଚରିତ ପୀୟୂଷ ॥୧୨୫
ସେ ସୁଧାପାନ ଯେବେ କରେ ।
ତେବେ ସେ ବ୍ରହ୍ମଜ୍ଞାନ ଧରେ॥୧୨୬
ଯମ ନିୟମ ଶମ ଦମ ।
ଏ ଆଦି ସାଧନ ନିର୍ଗୁଣ ॥୧୨୭
ସଂସାରେ ଶାସ୍ତ୍ର-ବ୍ୟବହାରେ ।
ନିନ୍ଦା-ଧର୍ମକୁ ନ ଆଚରେ ॥୧୨୮
ପରମଧର୍ମ ଏ ବିଚାରେ ।
ନିର୍ମଳ ବାହ୍ୟ-ଅଭ୍ୟନ୍ତରେ ॥୧୨୯

Dr. Sudhanshu Sekhar Mishra

ଶୀତୋଷ୍ଣ ସୁଖ-ଦୁଃଖ ସହେ ।
ସେ ତେବେ ବ୍ରହ୍ମଜ୍ଞାନ ବହେ॥ ୧୩୦
ହରି-ଭକତ ଯେତେ ଜନ ।
ଏ ସର୍ବ ତାହାଙ୍କ ଭୂଷଣ ॥ ୧୩୧
ଯେତେ କୃଷ୍ଣର ଗୁଣ-ଗ୍ରାମ ।
ତହିଁ ସାଧକ ଯେଉଁ ଜନ ॥ ୧୩୨
ତେଣୁ ବଢଇ ତାର ଭକ୍ତି ।
ଆନ ପ୍ରସଙ୍ଗେ ଅନାଶକ୍ତି ॥ ୧୩୩
ସେ ବ୍ରହ୍ମ ଅଟେ ସଦା ସତ ।
ଅନାଦି ନିର୍ଗୁଣ ଅନନ୍ତ ॥ ୧୩୪
ତହିଁ ଯାହାର ରତି ହୋଏ ।
ସେ ପ୍ରାଣୀବନ୍ଧ ନୋହେ ମୋହେ॥ ୧୩୫
ସେ ବ୍ରହ୍ମେ ଯା'ର ନିଷ୍ଠା ରତି।
ତେବେ ତା ହୋଏ ଦୃଢ଼ମତି॥ ୧୩୬
ଯେ ସଦା ଗୁରୁ ସେବାକରେ।
ସେ ତେବେ ଜ୍ଞାନମାର୍ଗ ଧରେ॥ ୧୩୭
ଜ୍ଞାନ-ବୈରାଗ୍ୟ-ଯୋଗବଳେ।
ଏ ଜୀବକୋଷ ଦହେ ହେଳେ॥ ୧୩୮
ଏ ପଞ୍ଚଭୂତର ହୃଦୟ ।
ଜୀବର ହୋଇଛି ଆଳୟ ॥ ୧୩୯
ଜ୍ଞାନ-ଅନଳ ହେଲେ ଜାତ ।
ତେବେ ସେ ହୋଏ ଭସ୍ମଗତ॥ ୧୪୦
ଏ ଜୀବକୋଷ ଯେବେ ଯାଇ।
ତେବେ ସେ ବ୍ରହ୍ମଜ୍ଞାନ ପାଇ॥ ୧୪୧
ଅନଳ ପ୍ରକାଶିଲେ ଯେହ୍ନେ ।
ଦଗ୍ଧ ହୁଅନ୍ତି କାଷ୍ଠମାନେ ॥ ୧୪୨
ତେସନେ ଏ ଲିଙ୍ଗ ଶରୀର ।
ଜ୍ଞାନେ ଦହଇ ନୃପବର ॥ ୧୪୩
ଏମନ୍ତ ଜ୍ଞାନ ଉଦେ ଯା'ର ।
ନୁହଇ ଭବ-ବନ୍ଧ ତା'ର ॥ ୧୪୪
ଉପାଧି ବାସନା ଅଶେଷ ।
ଜ୍ଞାନ-ଅନଳେ ହୋଏ ଧ୍ୱଂସ॥ ୧୪୫
ଉପାଧି ହତେ ନୃପରାୟେ ।
ତା'ର ଗୁଣାଦି ହୋଏ ଲୟେ॥ ୧୪୬

ବିନାଶ ହୋଏ ଅଭିମାନ ।
ଆପଣା ପର ଆଦିଜ୍ଞାନ ॥ ୧୪୭
ଜନ୍ମଇ ନିଜ ଭାବେ ରତି ।
ଏ ପରାପର ନୋହେ ମତି ॥ ୧୪୮
ସେ ପୁଣି ଅନ୍ତର ବାହାରେ ।
ଏ ଦୁଃଖସୁଖ ନ ବିଚାରେ ॥ ୧୪୯
ବାହ୍ୟେ ସେ ନ ଲକ୍ଷଇ କିଛି।
ଘଟାଦି ବସ୍ତୁ ଯେତେ ଅଛି ॥ ୧୫୦
ଏଥକୁ ପ୍ରତିଲକ୍ଷ୍ୟ ଦେବା ।
ଭୋ ନୃପ ଦେଖାଇ କହିବା ॥ ୧୫୧
ଦ୍ରଷ୍ଟା-ଦୃଶ୍ୟର ଭିନ୍ନେ ବିଧି ।
ଏହାଙ୍କ ହେତୁ ମନ ବୁଦ୍ଧି ॥ ୧୫୨
ଏ ଆତ୍ମା ଏ ମୋହର ପର ।
ଏ ଭେଦ କରେ ଅହଙ୍କାର ॥ ୧୫୩
ଭେଦ କରନ୍ତା ଯେବେ ମଲା।
ତା'ର ଅଜ୍ଞାନ କ୍ଷୟ ଗଲା ॥ ୧୫୪
ଅଜ୍ଞାନ ନାଶେ ସର୍ବେ ଏକ ।
ଭୋ ନୃପ ବିଚାର ବିବେକ ॥ ୧୫୫
ଯେସନେ ଶୟନେ ସ୍ୱପନ ।
ମିଥ୍ୟାଭିଳାଷେ ଦେଖେ ମନ॥ ୧୫୬
ଆପଣେ ହୋଇଥାଇ ରାଜା ।
ସଙ୍ଗତେ ଦେଖେ ଜନପ୍ରଜା ॥ ୧୫୭
ସୈନ୍ୟସାମନ୍ତ ଗଜ ରଥ ।
ମିଥ୍ୟା ପ୍ରପଞ୍ଚ ମଣେ ସତ ॥ ୧୫୮
ସେ ପୁଣି ସ୍ୱପ୍ନ ଅବସାନେ ।
ସକଳ ମିଥ୍ୟା କରି ମଣେ ॥ ୧୫୯
ରାଜ୍ୟ ସମ୍ପଦ ଭୋଗ ଯେତେ ।
ଶୋଚନା ନ କରଇ ଚିତ୍ତେ ॥ ୧୬୦
ତେସନେ ଜ୍ଞାନ ଉପୁଜିଲେ ।
ଏ ସର୍ବ ନାଶ ଯା'ନ୍ତି ଭଲେ ॥ ୧୬୧
ଏ ଆତ୍ମା ଦେଖନ୍ତ: ପୁରୁଷ ।
ଇନ୍ଦ୍ରିୟ ଅର୍ଥାଦି ପ୍ରକାଶ ॥ ୧୬୨
ଏ ବେନି ପର ଅହଙ୍କାର ।
ଏ ଭେଦ ବିବେକ ବିଚାର ॥ ୧୬୩

ଯାବତ ଉପାଧି ଅଛଇ ।
ତାବତ ଭେଦ-ବୁଦ୍ଧି ଥାଇ ॥ ୧୬୪
ଉପାଧି ହତେ ସର୍ବନାଶ ।
ତେବେ ସେ ଆତ୍ମା ସ୍ୱ ପ୍ରକାଶ ॥ ୧୬୫
ଏ ଆତ୍ମା ପରମ-ପୁରୁଷ ।
ଯାହାର ନାହିଁ ଗୁଣ ଦୋଷ ॥ ୧୬୬
ଉପାଧି ଭେଦେ ଭିନ୍ନ ଦିଶେ ।
ତା' ବିନା ଏକ ସେ ପ୍ରକାଶେ॥ ୧୬୭
ଯେହ୍ନେ ଦର୍ପଣ ଜଳାଦିରେ ।
ଆପଣା ପ୍ରତିବିମ୍ବ ଧରେ ॥ ୧୬୮
ଏ ବେନି ହୀନେ ନ ଦିଶନ୍ତି ।
ଆପଣା ଶରୀର ଆକୃତି ॥ ୧୬୯
ଉପାଧି ହେତୁ ଭିନ୍ନ ଭିନ୍ନ ।
ତା' ଅବଶେଷେ ଏକ ଚିହ୍ନ ॥ ୧୭୦
ଶୁଣ ହେ ପୃଥୁ ମହୀପତି ।
ଅସଙ୍ଗ ଆଉ ବ୍ରହ୍ମରତି ॥ ୧୭୧
ଏ ବେନିମାର୍ଗ ମୋକ୍ଷ ହେତୁ ।
ଭବସାଗର ପାର ସେତୁ ॥ ୧୭୨
ଶୁଣ ସୁମନେ ହେ ରାଜନ ।
ବିବେକ-ହୀନ ଯେବା ଜନ ॥ ୧୭୩
ଯାହାର ଆତ୍ମା-ରତି ନୋହେ ।
ଯେ ଦେହେ ଅହଙ୍କାର ବହେ ॥ ୧୭୪
ଏ ମୋର ଦାରା-ସୁତ-ଘର ।
ବୋଲି କ୍ଷଣୟେ ଅହଙ୍କାର ॥ ୧୭୫
ବିଷୟ-ରସେ ଇନ୍ଦ୍ରି ରସି ।
ମନକୁ ଆଣଇ ଆକର୍ଷି ॥ ୧୭୬
ଇନ୍ଦ୍ରିୟ ସଙ୍ଗେ ମନ ରସେ ।
ନିଜ ଚେତନା ବଳ ଧ୍ୱଂସେ ॥ ୧୭୭
ଏଣୁ ବିବେକ ତା'ର ନାହିଁ ।
କୁସଙ୍ଗ ଦୋଷେ ମନ ମୋହି॥ ୧୭୮
ଯେସନେ କୁଶ ଆଦି ମୂଳ ।
ହୃଦରୁ ଓଟାରନ୍ତି ଜଳ ॥ ୧୭୯

Dr. Sudhanshu Sekhar Mishra

ତେସନେ ଦେଖ ବିଷୟାଦି ।
ହରଇ ସର୍ବ ମନ ବୁଦ୍ଧି ॥୧୮୦
ଚେତନା ବଳେ ସ୍ମୃତି ରହି ।
ତା'ର ଅଭାବେ ସ୍ମୃତି କାହିଁ ॥୧୮୧
ଯାହାର ସ୍ମୃତି ହୋଏ ନାଶ ।
ତା' ହୃଦେ ଜ୍ଞାନ ଅପ୍ରକାଶ ॥୧୮୨
ଜ୍ଞାନ ବିନାଶେ ଆତ୍ମା ହତ ।
ବେଦାନ୍ତେ କହନ୍ତି ପଣ୍ଡିତ ॥୧୮୩
ଶୁଣ ନୃପତି ପୁରୁଷର ।
ଏଥୁଟି ହାନି ନାହିଁ ପର ॥୧୮୪
ବିଷୟ-ସୁଖ ଭୋଗ ଲାଗି ।
ହୁଅଇ ଆତ୍ମାବଧେ ଭାଗୀ ॥୧୮୫
ଯେ ନିଜ ହାନି ନ ବୁଝଇ ।
ତା'ର ବିବେକ ଗୁଣ କାହିଁ ॥୧୮୬
ଅର୍ଥ-କାମାଦି ଧ୍ୟାନ ରାୟେ ।
ଏ ସର୍ବ ବିନାଶ ଉପାୟେ ॥୧୮୭
ଯେ ଜ୍ଞାନବିଜ୍ଞାନରୁ ହୀନ ।
ତା' ଜୀବ ସ୍ଥାବର ସମାନ ॥୧୮୮
ଯେ ଚିତ୍ତ ବ୍ରହ୍ମେ ରତି ନୋହେ ।
ସର୍ବ-ଅନର୍ଥେ ଭାଗୀ ହୋଏ ॥୧୮୯
ଅପରେ ଶୁଣ ହେ ରାଜନ ।
ସଙ୍ଗଟି ଅନର୍ଥ କାରଣ ॥୧୯୦
ସଂସାର-ତ୍ୟାଗ ଯେ ଇଛିବ ।
କେବେ ହେଁ ସଙ୍ଗ ନ କରିବ ॥୧୯୧
ଧର୍ମାର୍ଥ-କାମ-ମୋକ୍ଷ ଭଙ୍ଗ ।
କରଇ ପାପୀ କ୍ରୂର ସଙ୍ଗ ॥୧୯୨
କୁସଙ୍ଗେ ସର୍ବନାଶ ହୋଏ ।
ପଡଇ ମିଥ୍ୟା ମାୟା ମୋହେ ॥୧୯୩
ଏ ବେ ତୁ ଶୁଣ ନୃପରାଣ ।
ଏ ଚତୁର୍ବର୍ଗର କାରଣ ॥୧୯୪
ଯେ ଧର୍ମ ଅର୍ଥ କାମ ମୋକ୍ଷ ।
ଏ ଚାରି ମଧ୍ୟେ ଶ୍ରେୟ ମୋକ୍ଷ ॥୧୯୫
ଧର୍ମାର୍ଥ କାମ ବୋଲି ଯାହା ।
ଅନିତ୍ୟ ମିଥ୍ୟା ବୋଲି ତାହା ॥୧୯୬

ଅନିତ୍ୟେ ମୃତ୍ୟୁ ଭୟ ପାଇ ।
ଏଣୁ ଜ୍ଞାନୀ ତା' ନ ଭାବଇ ॥୧୯୭
ତୁରୀୟବର୍ଗ ବୋଲି ରାୟେ ।
ଦୁର୍ଲ୍ଲଭ ଯେ ଅର୍ଥ ଉପାୟେ ॥୧୯୮
ମୃତ୍ୟୁର ଭୟ ଯହିଁ ନାହିଁ ।
ନିତ୍ୟ ଆନନ୍ଦ ରୂପ ସେହି ॥୧୯୯
ଚତୁର୍ଥ-ବର୍ଗ ବହୁ ମୂଲ୍ୟ ।
ତୃତୀୟବର୍ଗ ନୋହେ ତୁଲ୍ୟ ॥୨୦୦
ଯାହାର କାଳ-ଭୟ ଅଛି ।
ତାହାର ସୁଖ ନାହିଁ କିଛି ॥୨୦୧
ଗୁଣ-କ୍ଷୋଭର ପରେ ପ୍ରାୟେ ।
ଯେ ଯେ ହୋଇଲେ ଭାବ ଚୟେ ॥୨୦୨
ସ୍ଥାବରୁ ବ୍ରହ୍ମାଦି ପର୍ଯ୍ୟନ୍ତ ।
ଈଶ୍ୱର-ମାୟାରେ ଯନ୍ତ୍ରିତ ॥୨୦୩
ଏହାଙ୍କ ଶ୍ରେୟ କେବେ ନୋହେ ।
ଏଣୁ ଦଣ୍ଡଇ ଜନ୍ତୁରାୟେ ॥୨୦୪
ଆପଣେ ଅର୍ଜଇ ଅନର୍ଥ ।
ରାଜନ ବୁଝ ଏହି ମତ ॥୨୦୫
ସ୍ଥାବର ଜଙ୍ଗମାଦି ଠାରେ ।
ଦେହ ଇନ୍ଦ୍ରିୟ ଅହଙ୍କାରେ ॥୨୦୬
ପ୍ରାଣ ବୁଦ୍ଧିରେ ଯେ ଆବୃତ ।
ଏହାଙ୍କ ହୃଦରେ ବ୍ୟକତ ॥୨୦୭
ଯେ ଅଧ ଉର୍ଦ୍ଧ୍ୱେଛନ୍ତି ପୂରି ।
ସର୍ବ-ବ୍ୟାପକ ନରହରି ॥୨୦୮
ଦେହକୁ କ୍ଷେତ୍ର ବୋଲି କହି ।
ଜୀବ ନ ଜାଣେ ଏହା ବହି ॥୨୦୯
ଏ ଦେହ ବହି ଅହଙ୍କାରେ ।
ଜୀବ ପରମ ବୁଦ୍ଧି ହରେ ॥୨୧୦
ଜୀବର ପ୍ରଭୁ ଭଗବାନ ।
ପ୍ରକାଶ କରନ୍ତି ଚେତନ ॥୨୧୧
ଭୋ ରାଜା ନିଷ୍ଠେ ଜାଣ ତୁହି ।
ଏ ଆତ୍ମା ରୂପ ତୁହି ମୁହିଁ ॥୨୧୨
ଏ ଆଦି ଚରାଚର ଯେତେ ।
ଆତ୍ମା-ସ୍ୱରୂପ ସର୍ବଭୂତେ ॥୨୧୩

ଯେ ଆତ୍ମା ଆଶ୍ରୟେ ଜଗତ ।
ଶୋଭା ପାଉଛି ସଦସତ ॥୨୧୪
ମାୟାରେ ହୋଇଣ ପ୍ରଭେଦ ।
ଜ୍ଞାନ ବିବେକେ ତାହା ଛେଦ ॥୨୧୫
ଆତ୍ମାକୁ ମାୟା ନ ସ୍ପର୍ଶେ ।
ଯେସନେ ପବନ ଆକାଶେ ॥୨୧୬
କର୍ମର ମୂଳ ଏ ପ୍ରକୃତି ।
ଏହାକୁ ଯେ ନାଶ କରନ୍ତି ॥୨୧୭
ସେ ଆତ୍ମା ସର୍ବଠାରେ ଯୁକ୍ତ ।
ଲିପ୍ତ ହୋଇଣ ଥାଇ ମୁକ୍ତ ॥୨୧୮
ସେ ଶୁଦ୍ଧ ପରମ-ପୁରୁଷ ।
ତାରେ ଶରଣ ବେଗେ ପଶ ॥୨୧୯
ଯାହାର ପାଦପଦ୍ମେ ଭକ୍ତି ।
କରି ସାଧୁଏ ନିସ୍ତରନ୍ତି ॥୨୨୦
ସୁଗମ ପଥ ଏ କାରଣ ।
ଅବିଘ୍ନେ ଲଭ ନାରାୟଣ ॥୨୨୧
କଠୋର ଯୋଗାଦି ସାଧନ ।
ସୁଗମ ଭକ୍ତି ହେ ରାଜନ ॥୨୨୨
ସେ ଆତ୍ମା ଆନନ୍ଦ ପାଇବ ।
ଭକ୍ତିରେ ଭଜ ବାସୁଦେବ ॥୨୨୩
ଏ ଭବ-ସମୁଦ୍ର ଅପାର ।
ଇନ୍ଦ୍ରିୟ-ନକ୍ର ମହା-ଘୋର ॥୨୨୪
ଏ ଜଳ-ତରଣେ ଯେ ଭେଳା ।
ତହିଁରେ ନ କର ତୁ ହେଳା ॥୨୨୫
ଅଷ୍ଟାଙ୍ଗଯୋଗ ଯୋଗୀ ସାଧି ।
ତରନ୍ତି ଯୋଗ-ଭେଳା ବାନ୍ଧି ॥୨୨୬
ସେ ଅତି କ୍ଳେଶେ ହୋନ୍ତି ପାର ।
ନୋହିଲେ ଭ୍ରମନ୍ତି ଅପାର ॥୨୨୭
ସୁଗମ-ତରଣୀ ଉପାୟେ ।
ତୁମ୍ଭଙ୍କୁ କହିଦେବା ରାୟେ ॥୨୨୮
ଗୋବିନ୍ଦ ଅଭୟ-ପୟର ।
ଯେ ଭକ୍ତେ ଭେଳା ମଧ୍ୟେ ସାର ॥୨୨୯
ସେ ପାଦେ କଲେ ଏକଭାବ ।
ସୁଖେ ତରିବ ଭବାର୍ଣ୍ଣବ ॥୨୩୦

Dr. Sudhanshu Sekhar Mishra

ଏ ଭକ୍ତିଯୋଗ ସୁସାଧନ ।
ମୋକ୍ଷକୁ ପରମ-କାରଣ ॥ ୨୩୧

### ମୈତ୍ରେୟ ଉବାଚ

ଏମନ୍ତ ଶୁଣ ହେ ବିଦୁର ।
ଯେ ଜ୍ଞାନ କହିଲେ କୁମାର ॥ ୨୩୨

ପୃଥୁ ଶ୍ରବଣେ ଆତ୍ମାଗତି ।
ପ୍ରଣମି ଚରଣେ ବୋଲନ୍ତି ॥ ୨୩୩

### ରାଜା-ଉବାଚ

ତୁମ୍ଭେ ଦୟାଳୁ ଯୋଗୀଜନ ।
ସୁଭାଗ୍ୟ ତୁମ୍ଭ ଦରଶନ ॥ ୨୩୪

ଯେଣୁ ଗୋବିନ୍ଦ କୃପା ଥିଲା ।
ତେଣୁ ଦର୍ଶନ ମୋର ହେଲା ॥ ୨୩୫

ହରିଙ୍କି ଦେଖାଇବା ପାଇଁ ।
ମୋ ହିତେ ଅଇଲ ଗୋସାଇଁ॥ ୨୩୬

ମୋର ସଂଶୟ ଯେତେ ଥିଲା ।
ତୁମ୍ଭ ଦର୍ଶନେ ଦୂର ଗଲା ॥ ୨୩୭

ମୋହର ମନୋରଥ ଯେତେ ।
ସମ୍ପୂର୍ଣ୍ଣ କରି ଦେଲ ମୋତେ ॥ ୨୩୮

ତୁମ୍ଭଙ୍କୁ କି ଭାବେ ସେବିବି ।
ଉତ୍ତମ ଦ୍ରବ୍ୟ କିବା ଦେବି ॥ ୨୩୯

ଦେହ ସହିତେ ଦ୍ରବ୍ୟ ମୋର ।
ସାଧୁଙ୍କ ଉଚ୍ଛିଷ୍ଟ ବେଭାର ॥ ୨୪୦

ସୁଦୟା କରି ସାଧୁଜନେ ।
ରାଜ ବିଭୂତି ତୋଷ ମନେ ॥ ୨୪୧

ସମର୍ପିଛନ୍ତି ମୋର ତହିଁ ।
ଏଥେ ପ୍ରଭୁତ୍ୱ ମୋର ନାହିଁ ॥ ୨୪୨

କି ଭାବେ କରିବି ସେବନ ।
ଏ ଦେହ ସାଧୁଙ୍କ ଅଧୀନ ॥ ୨୪୩

ଯେହ୍ନେ ବାଳକେ ସ୍ନେହ ବହି ।
ତାତ ଜନନୀ ଧନ ଦେଇ ॥ ୨୪୪

ପୁଣି ନ କରନ୍ତି ଗ୍ରହଣ ।
ଏ ସର୍ବ ତୁମ୍ଭର ଅର୍ପଣ ॥ ୨୪୫

ତୁମ୍ଭ ପ୍ରତୋଷେ ଶକ୍ୟ ନାହିଁ ।
ରାଜସେବକ ପ୍ରାୟେ ହୋଇ ॥ ୨୪୬

ତାଙ୍କୁ ତାମ୍ବୁଳ ନିଯୋଜନ୍ତି ।
ମଧ୍ୟରେ ସେବକ ବୋଲାନ୍ତି॥ ୨୪୭

ସେ ଅନୁସାରେ ମୋ ବିଚାର ।
ଯେ କିଛି ଦ୍ରବ୍ୟ ଅଛି ମୋର॥ ୨୪୮

ପ୍ରାଣ ତନୟ ଆଦି ଯେତେ ।
ଏ ରାଜ-ବିଭୂତି ସହିତେ ॥ ୨୪୯

ଅପରେ ଚତୁରଙ୍ଗ ବଳ ।
ସମର୍ପି ଅଛି ମୁଁ ସକଳ ॥ ୨୫୦

ଏଥେ ମୋ ନାହିଁ ଅଧିକାର ।
ମୋ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥ ୨୫୧

ଯେ ସର୍ବ-ସେନା ଅଧିପତି ।
ଦଣ୍ଡ-ଅଦଣ୍ଡ ରାଜନୀତି ॥ ୨୫୨

ସକଳ-ଲୋକେ ଅଧିକାର ।
ଏ ସର୍ବ ବେଦବିଦଙ୍କର ॥ ୨୫୩

ସେ ବିପ୍ରେ ନିଜ-ଧନେ ଶାନ୍ତି ।
ଜୀବଙ୍କୁ କଲ୍ୟାଣେ ପାଳନ୍ତି ॥ ୨୫୪

ବ୍ରାହ୍ମଣ-ଅନୁଗ୍ରହେ ଅନ୍ନ ।
ଭୁଞ୍ଜନ୍ତି କ୍ଷତ୍ରିୟାଦି ବର୍ଣ୍ଣ ॥ ୨୫୫

ବ୍ରହ୍ମା-ସର୍ଜନେ ଏ ଜଗତେ ।
ଅଛି ଅପୂର୍ବ-ଦ୍ରବ୍ୟ ଯେତେ ॥ ୨୫୬

ଏ ସର୍ବ ଯେବେ ସମର୍ପିବି ।
ତେବେ ପ୍ରତୋଷି ନ ପାରିବି॥ ୨୫୭

ନିଗମବେତ୍ତା ପ୍ରଭୁମାନେ ।
ମୋତେ ତୋଷିଲ ଦିବ୍ୟଜ୍ଞାନେ ॥ ୨୫୮

ଏକାନ୍ତେ ଦେଲ ଆତ୍ମାପଦ ।
ମୋହର ନାଶିଲ ପ୍ରମାଦ ॥ ୨୫୯

ତୁମ୍ଭେ ଦୟାଳୁ ଯୋଗେଶ୍ୱର ।
ଅଧମ ଜନେ କୃପାକର ॥ ୨୬୦

ଅବ୍ୟକ୍ତ-ବ୍ରହ୍ମ ଦୃଷ୍ଟିଗତେ ।
ପ୍ରତ୍ୟକ୍ଷେ ଦେଖାଇଲ ମୋତେ॥ ୨୬୧

ଅଜ୍ଞାନଭାବ ବିନାଶିଲ ।
ସଂସାର-ବନ୍ଧୁ ନିସ୍ତାରିଲ ॥ ୨୬୨

ଏମନ୍ତ ମହିମା ତୁମ୍ଭର ।
ଅଶେଷ-ଜୀବେ ହିତକର ॥ ୨୬୩

ଏଣୁ ଗୁରୁଙ୍କ ସୁକଲ୍ୟାଣ ।
ସାଧକ ମୋକ୍ଷର କାରଣ ॥ ୨୬୪

ଉପାୟ ନାହିଁ ମୋର କିଛି ।
କେବଳ ଅଞ୍ଜଳି ମୋ' ଅଛି ॥ ୨୬୫

### ମୈତ୍ରେୟ ଉବାଚ

ଏମନ୍ତ ସନକାଦି ଜନେ ।
ସନ୍ତୋଷ ପୃଥୁର ବଚନେ ॥ ୨୬୬

ନୃପ-ଶୀଳତା ପ୍ରଶଂସିଲେ ।
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ ॥ ୨୬୭

ସକଳ-ଜନ ଦୃଷ୍ଟିଗତେ ।
ସିଦ୍ଧେ ଗମିଲେ ଶୂନ୍ୟ ପଥେ॥ ୨୬୮

ତଦନ୍ତେ ଯେ ପୃଥୁ-ରାଜନ ।
ମହତ-ପଣେ ସେ ପ୍ରଧାନ ॥ ୨୬୯

ଅଧ୍ୟାତ୍ମ-ମାର୍ଗରେ ରହିଲେ ।
ଆତ୍ମଜ୍ଞାନରେ ପୂର୍ଣ୍ଣ ହେଲେ ॥ ୨୭୦

ଆତ୍ମାରେ କରି ଅବସ୍ଥିତି ।
କାଳରେ କର୍ମାଦି କରନ୍ତି ॥ ୨୭୧

ସେ ଦେଶ କାଳ ଯଥୋଚିତ ।
ଯେମନ୍ତ ଅଛଇ ବିହିତ ॥ ୨୭୨

ସେ ଅନୁସାରେ କର୍ମ କଲେ ।
ବିପ୍ରଙ୍କୁ ଦାନେ ପ୍ରତୋଷିଲେ ॥ ୨୭୩

ନିଜ ପରଜାଗଣ ରାଇ ।
ଅତି ଆନନ୍ଦେ ଦୟା ବହି ॥ ୨୭୪

କହନ୍ତି ଭବସିନ୍ଧୁ ପାର ।
ଅମୃତୁ ସୁସ୍ନିଗଧ ମଧୁର ॥ ୨୭୫

ହେ ପୁତ୍ରେ ସାବଧାନେ ଶୁଣ ।
ଯେଣେ ହୋଇବ ପରିତ୍ରାଣ ॥ ୨୭୬

କହିବା ତହିଁର ଉପାୟ ।
ଯେଣେ ଖଣ୍ଡିବ ମୃତ୍ୟୁଭୟ ॥ ୨୭୭

ସକଳେ କୃଷ୍ଣ ଆଶ୍ରେ କର ।
ଏ ଘୋର-ସଂସାରୁ ନିସ୍ତର ॥ ୨୭୮

Dr. Sudhanshu Sekhar Mishra

ଯେ କୃଷ୍ଣ-ଚରଣେ ସେବନ୍ତି ।
ଏ ଭବଭୟ ନିବାରନ୍ତି ॥୨୭୯
ଆମ୍ଭର ବାକ୍ୟ ଦୃଢେ ଧର ।
ରାଜସ୍ୱ-ଭୟ ପରିହର ॥୨୮୦
ଆୟୁଷ ଧର୍ମ ଧନ ଯେତେ ।
ଆମ୍ଭେ ପାଇଲୁ ତୋଷଚିତ୍ତେ ॥୨୮୧
ଏମନ୍ତ ମଧୁର-ବଚନେ ।
ପ୍ରଜା ଶିଖାଇ ପ୍ରବୋଧନେ ॥୨୮୨
ଅର୍ପଣ କରି କାମ୍ୟଫଳ ।
ନିବୃତ୍ତ ହୋଇଲେ ଭୂପାଳ ॥୨୮୩
ମୁଁ ଆତ୍ମା ପ୍ରକୃତିରୁ ପର ।
ଅଧ୍ୟକ୍ଷ କର୍ମମାନଙ୍କର ॥୨୮୪
ଆତ୍ମାକୁ ଏମନ୍ତ ସେ ମଣି ।
ଗୃହେ ରହିଲେ ନୃପମଣି ॥୨୮୫
ସମ୍ପଦ ପରିପୂର୍ଣ୍ଣେ ଛନ୍ତି ।
ଇନ୍ଦ୍ରିୟ-ଭୋଗ ନ ଇଚ୍ଛନ୍ତି ॥୨୮୬
ଛାଡ଼ି ସକଳ ଅହଙ୍କାର ।
ବିଷୟ ଆଦି ଯେ ବିକାର ॥୨୮୭
କେଉଁ କର୍ମରେ ଲିପ୍ତ ନୋହି ।
ସୂର୍ଯ୍ୟ କିରଣ ପ୍ରାୟ ହୋଇ ॥୨୮୮
ଏ ରୂପେ ଅଧ୍ୟାତ୍ମ-ଯୋଗରେ ।
କର୍ମ ଆଚରନ୍ତି ସଂସାରେ ॥୨୮୯
ତାହାଙ୍କ ଅର୍ଚ୍ଚି ନାମେ ରାଣୀ ।
ପ୍ରତ୍ୟକ୍ଷେ ଲକ୍ଷ୍ମୀ ଠାକୁରାଣୀ ॥୨୯୦
ପଞ୍ଚତନୟ ତାଙ୍କ ଠାରେ ।
ପୃଥୁ ଜନ୍ମାଇଲେ ବେଭାରେ ॥୨୯୧
ବିଜିତଅଶ୍ୱ ଧୂମ୍ରକେଶ ।
ହର୍ଯ୍ୟକ୍ଷ ଦ୍ରବିଣ ବୃକେଶ ॥୨୯୨
ଏ ପଞ୍ଚ-ତନୟ ତାଙ୍କର ।
ନୃପ ସମାନେ ଶୂର ବୀର ॥୨୯୩
କହିବା ଶୁଣ ହେ ବିଦୁର ।
ରାଜାଙ୍କ ଯେ ଗୁଣ ପ୍ରଚାର ॥୨୯୪
ଇନ୍ଦ୍ରାଦି ଦଶଦିଗପାଳ ।
ଏହାଙ୍କ ଗୁଣେ ସେ ଭୂପାଳ ॥୨୯୫
ସେ ନୃପ-ଅଙ୍ଗେ ଏକେ ଏକେ ।
ବସିଲେ ଅବୟବ ଯାକେ ॥୨୯୬
ବସିଲେ ସ୍ୱବୃତ୍ତି ଆବୋରି ।
ଶୁଣ ବିଦୁର ହେତୁ କରି ॥୨୯୭
ଜଗତ ପ୍ରତି-ପାଳିବାରେ ।
ସେ ଜନ୍ମ ଲଭିଲେ ସଂସାରେ ॥୨୯୮
ମନ-ବଚନ-କାୟ-ବୃତ୍ତି ।
ଅତି ସୁନ୍ଦର ଗୁଣ କୀର୍ତ୍ତି ॥୨୯୯
ଯେଣୁ ରଞ୍ଜିତ ଜନପ୍ରଜା ।
ତେଣୁ ତାହାଙ୍କ ନାମ ରାଜା ॥୩୦୦
ତା ତୁଲ୍ୟ ନାହିଁ ନୃପବର ।
ସମେ କି ସୋମ ପଟାନ୍ତର ॥୩୦୧
ସେ ରାଜା ସୂର୍ଯ୍ୟଙ୍କ ସମାନ ।
ତା' ତେଜେ ପୃଥ୍ୱୀ ଦୀପ୍ତିମାନ ॥୩୦୨
କେହି ନ ପାରେ ତେଜ ଧରି ।
ତେଣୁ ସେ ଅଗ୍ନି ସମ ସରି ॥୩୦୩
ରଣେ ଦୁର୍ଜ୍ଜୟ ମହାରାଜା ।
ଏଣୁ ମହେନ୍ଦ୍ର ସମ ତେଜା ॥୩୦୪
ସହିଷ୍ଣୁ ଗୁଣେ ସେ ପୃଥିବୀ ।
ଅଭୀଷ୍ଟ-ଦାନେ ସେ ସୁରଭୀ ॥୩୦୫
ଜୀମୂତ ପ୍ରାୟେ ବୃଷ୍ଟି କରେ ।
ପ୍ରଜାଙ୍କ ପ୍ରାର୍ଥନା ଯେ ପୂରେ ॥୩୦୬
ପୟୋଧି ତୁଲେ ଯେ ଗମ୍ଭୀର ।
ସୁଧୀର କନକ-ଭୂଧର ॥୩୦୭
ଧର୍ମ ସମାନେ ଶିକ୍ଷାକାରୀ ।
ଆଶ୍ଚର୍ଯ୍ୟେ ହିମାଳୟ ଗିରି ॥୩୦୮
କୁବେର ତୁଲେ ଧନେଶ୍ୱର ।
ରକ୍ଷକ ଯେହ୍ନେ ରତ୍ନାକର ॥୩୦୯
ଗୁଣେ ସକଳ ଜୀବେ ପ୍ରାଣ ।
ଶୀତଳ ପଣେ ଚନ୍ଦ୍ରକାଣ ॥୩୧୦
ଜୀବନ ବଳ ତେଜ ଘେନି ।
ଏଣୁ ମରୁତ ସମ ମାନି ॥୩୧୧
କ୍ରୋଧରେ କାଳରୁଦ୍ର ସମ ।
ସୁନ୍ଦରେ ସମ ନୋହେ କାମ ॥୩୧୨
ପ୍ରାକ୍ରମେ ସମ ମୃଗଇନ୍ଦ୍ର ।
ଦୟାରେ ସେ ମନୁ ନରେନ୍ଦ୍ର ॥୩୧୩
ପ୍ରଭୁତ୍ୱ ପଣେ ଯେହ୍ନେ ବିଧି ।
ଗୁରୁ ସମାନେ ବ୍ରହ୍ମବାଦୀ ॥୩୧୪
ବିଷ୍ଣୁ ସମାନେ ଜିତେନ୍ଦ୍ରିୟ ।
ପାଳନେ ଗୋରୁ-ବିପ୍ରପ୍ରିୟ ॥୩୧୫
ବିଷ୍ଣୁ ବୈଷ୍ଣବ ଜନ ଠାରେ ।
ସେବନ୍ତି ବିନୟ ବେଭାରେ ॥୩୧୬
ସମେ ପ୍ରତୁଲ୍ୟ କେହି ନାହିଁ ।
ସଜ୍ଜନେ ଦୂତୀବ୍ରହ୍ମା ସେହି ॥୩୧୭
ଏ ତିନିଲୋକେ ତା'ଙ୍କ ଯଶ।
ଯେହ୍ନେ ଶ୍ରବଣେ ହରି ରସ ॥୩୧୮
ଶ୍ରୀରାମ ତୁଲ୍ୟ କୀର୍ତ୍ତିକାରୀ ।
ଶୁଣ ଗାବନ୍ତି ନରନାରୀ ॥୩୧୯
ଶୁଣ ବିଦୁର ଭାଗ୍ୟବନ୍ତ ।
ସେ ପୃଥୁ ରାଜାର ଚରିତ ॥୩୨୦
ପୃଥୁ-ଚରିତ ସୁଧାରସ ।
ମନ-ଭ୍ରମର ତହିଁ ରସ ॥୩୨୧
ଅମୃତ-ରସମୟ ବାଣୀ ।
ଚତୁର୍ଥସ୍କନ୍ଧେ ଯାହା ଭଣି ॥୩୨୨
କହଇ ଦାସ ଜଗନ୍ନାଥ ।
ସନ୍ଥ-ଚରଣେ ଦେଇ ଚିତ୍ତ ॥୩୨୩

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥ ସ୍କନ୍ଧେ
ପୃଥୁଚରିତେ ଦ୍ୱାବିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

ଶୁଣି ବିଦୁର କୃତକୃତ ।
ନମେ ମୈତ୍ରେୟ ପାଦଗତ ॥୧
ଭୋମୁନି କରିବା ନିସ୍ତାର ।
କହ ସଂଶୟ ଯାଉ ଦୂର ॥୨
ପୃଥୁ କି କଲେ ଏ ଅନ୍ତରେ ।
ବୈକୁଣ୍ଠ ଗଲେ କି ପ୍ରକାରେ ॥୩
ବିଦୁର ତହୁଁ ଏହା ଶୁଣି ।
କହେ ମୈତ୍ରେୟ ମନେ ଗୁଣି ॥୪

ମୈତ୍ରେୟ ଉବାଚ

ଶୁଣ ବିଦୁର ଶୁଦ୍ଧଚିତ୍ତେ ।
ରାଜାର କିଛିକାଳ ଅନ୍ତେ ॥୫
ବୃଦ୍ଧ ଶରୀର ଗ୍ରାସେ କାଳ ।
ଦେଖି ବିଷାଦ ମହୀପାଳ ॥୬
ମୁଁ ଯେ ଦ୍ୱିତୀୟ ପ୍ରଜାପତି ।
ଯେଣୁ ମୁଁ କଲି ସର୍ବସ୍ଥିତି ॥୭
ଅନ୍ନାଦି ଉତ୍ପତ୍ତି ମୁଁ କଲି ।
ନଗର ପୁର ବସାଇଲି ॥୮
ସ୍ଥାବର ଜଙ୍ଗମାଦି ଯେତେ ।
ଅନ୍ନ ମୁଁ ଦେଲି ଯେଝାମତେ ॥୯
ସାଧୁଙ୍କ ଧର୍ମ ରକ୍ଷା କଲି ।
ଈଶ୍ୱର ବଚନ ପାଳିଲି ॥୧୦
ଏ ଧର୍ମ-ରକ୍ଷା ଅର୍ଥେ ମୁହିଁ ।
ଜନ୍ମ ଲଭିଲି କର୍ମଭୂଇଁ ॥୧୧
ଏବେ ଶରୀର ବୃଦ୍ଧ ହେଲା ।
କାମାଦି କର୍ମ ହିଁ ସରିଲା ॥୧୨
ଏବେ କି ଅର୍ଥେ ଥିବି ମୁହିଁ ।
ବନେ ପଶିବି କୃଷ୍ଣ ଧ୍ୟାୟି ॥୧୩
ଏବେ ଶମନ ନିଜ ସ୍ଥିତି ।
କରିବ ବିଚାରେ ନୃପତି ॥୧୪
ଦୁହିତା ପ୍ରତୁଲ୍ୟେ ଧରଣୀ ।
ପୁତ୍ରେ ନିବେଶି ନୃପମଣି ॥୧୫

## ତ୍ରୟୋବିଂଶ ଅଧ୍ୟାୟ

ପୁତ୍ରକୁ ଦେଇ ସିଂହାସନ ।
ଦଣ୍ଡ ଛତ୍ରାଦି ନୃପ ଚିହ୍ନ ॥୧୬
ସକଳ ସମର୍ପି କୁମରେ ।
ଗମନ କଲେ ବନ ଘୋରେ ॥୧୭
ପୃଥିବୀ ପୃଥୁ ତ୍ୟାଗଭରେ ।
ଶୋକେ ରହିଲା ପୁତ୍ରଠାରେ ॥୧୮
ସଙ୍ଗତେ ଘେନି ଅର୍ଚ୍ଚି ନାରୀ ।
ରୋଦନ୍ତି ପ୍ରଜା ନଗ୍ର ପୁରୀ ॥୧୯
ସ୍ୱଇଚ୍ଛା ମନେ ଦୁଃଖ-ଶ୍ରମେ ।
ତପ ଆରାଧି ଯୋଗଧର୍ମେ ॥୨୦
କଠୋର ଉଗ୍ରତପେ ରାୟେ ।
ଯେମନ୍ତେ ପୂର୍ବେ ରାଜ୍ୟ ଜୟେ ॥୨୧
ଯେ ବାନପ୍ରସ୍ଥର ବିଧାନ ।
ନିୟମ କଲେ ସେ ରାଜନ ॥୨୨
ଫଳାଦି ଶାକ କନ୍ଦମୂଳ ।
ଭୋଜନ କଲେ ମହୀପାଳ ॥୨୩
ଏମନ୍ତେ କେତେ କାଳାନ୍ତରେ ।
ତାହା ତେଜିଲେ ନୃପବରେ ॥୨୪
ନୀରସ-ପତ୍ର ଭୋଗ କରି ।
ତୁଷ୍ଟେ ଆନନ୍ଦେ ପ୍ରାଣ ଧରି ॥୨୫
ତାହା ଭକ୍ଷିଣ କିଛିଦିନ ।
ତପ ସାଧିଲେ ତୋଷମନ ॥୨୬
ସେ ପତ୍ରାଶନ ତେଜି ରାୟେ ।
ଜଳ ଆହାରେ ସୁଖମୟେ ॥୨୭
ଏମନ୍ତେ କିଛି କାଳାନ୍ତରେ ।
ଜଳ ତେଜିଲେ ନୃପବରେ ॥୨୮
ନିର୍ଜଳ ତପସ୍ୟା କଠୋର ।
କେବଳ ପବନ ଆହାର ॥୨୯
ପୁଣି ନିଦାଘକାଳେ ନୃପ ।
ତପସ୍ୟା କଲେ ପଞ୍ଚ ତାପ ॥୩୦
ଅଗ୍ନି ଜାଳି ଦିଗ ସକଳେ ।
ନିର୍ବିଘ୍ନେ ରାଜନ ବସିଲେ ॥୩୧

ସୂର୍ଯ୍ୟ-ମଣ୍ଡଳେ ଦୃଷ୍ଟି ଧରି ।
ପରମ ବ୍ରହ୍ମେଧ୍ୟାନ କରି ॥୩୨
କୃଷ୍ଣ-ଚରଣ-ପଦ୍ମ ଆଶେ ।
ତପ ସାଧିଲେ ବହୁକ୍ଳେଶେ ॥୩୩
ବରଷା କାଳେ ମହୀପତି ।
ଦୁଃସହ-ଜଳଧାରେ ତିନ୍ତି ॥୩୪
ଶିଶିର କାଳେ ତପ କରେ ।
ବୁଡି ଆକଣ୍ଠ ଶୀତନୀରେ ॥୩୫
ଶୟନେ ଭୂମି ଶଯ୍ୟା କରି ।
ଏ ଘୋର-ତପସ୍ୟା ଆଚରି ॥୩୬
ଜିତ-ବଚନ ଉର୍ଦ୍ଧ୍ୱରେତ ।
ଚିତ୍ତ ସମୀର ଶାନ୍ତ ଦାନ୍ତ ॥୩୭
କୃଷ୍ଣ-ଚରଣ ସେବା ପାଇଁ ।
କଠିନ-ତପେ ନୃପସାଇଁ ॥୩୮
ଲୋକ-ଶିକ୍ଷାରେ ତପ କଲେ ।
ବିଷୟ-କର୍ମ ବିନାଶିଲେ ॥୩୯
ନିରତେ ପ୍ରାଣାୟାମ କରି ।
ଇନ୍ଦ୍ରିୟ ବିଷୟ ସଂହରି ॥୪୦
ଛାଡିଲେ ଅଶେଷ ବନ୍ଧନ ।
ଯେ କିଛି ବାସନାଦି ମାନ ॥୪୧
ନିଶ୍ଚଳ ଚିତ୍ତେ ନୃପବର ।
ଯୋଗସାଧନେ ନିଷ୍ଠାପର ॥୪୨
ଯେ ଜ୍ଞାନ ବ୍ରହ୍ମାଙ୍କ କୁମର ।
କହି ଯେ ଥିଲେ ଯୋଗସାର ॥୪୩
ସେ ଯୋଗେ ଗୋବିନ୍ଦଚରଣ ।
ନିତ୍ୟେ ଆରାଧି ନୃପରାଣ ॥୪୪
ଶ୍ରଦ୍ଧା ଭକତି ଦୃଢ଼ଚିତ୍ତେ ।
ଭକ୍ତି ଜନ୍ମିଲା ହୃଦଗତେ ॥୪୫
ଆନନ୍ଦେ ପ୍ରେମାଙ୍ଗ-ଭକତି ।
ଶ୍ରୀକୃଷ୍ଣେ କଲେ ମହୀପତି ॥୪୬
ସେ ହରି ଭଜନ ପ୍ରବଳ ।
ହୋଇଲା ମନ ସୁନିଶ୍ଚଳ ॥୪୭

Dr. Sudhanshu Sekhar Mishra

ନିର୍ମଳ-ମନ ପ୍ରକାଶିଲା ।
ବୈରାଗ୍ୟ ଜ୍ଞାନ ଉପୁଜିଲା ॥୪୮
ସେ ଜ୍ଞାନ-ତୀକ୍ଷ୍ଣ-ଶସ୍ତ୍ରେ ରାୟେ ।
ଛେଦିଲେ ହୃଦୟ-ସଂଶୟେ ॥୪୯
ଯେ କର୍ମ-ଗ୍ରନ୍ଥି ଜୀବକୋଷ ।
ଜ୍ଞାନ ଖଡଗେ କଲେ ନାଶ ॥୫୦
ଦେହରେ ଆତ୍ମବୁଦ୍ଧି ଯେହି ।
ତକ୍ଷଣେ ଦୂରେ ଗଲା ସେହି ॥୫୧
ଏଣୁ ପାଇଲେ ଆତ୍ମଗତି ।
ନିରହଙ୍କାର ହେଲା ମତି ॥୫୨
ଏ ସର୍ବ ଯେ ଜ୍ଞାନେ ବିନାଶ ।
ତା ପରିହରି ନୃପଈଶ ॥୫୩
ଯାବତ ହରିଙ୍କ ଭଜନ ।
ନୋହିଛି ତାବତ ସାଧନ ॥୫୪
ଯେବେ ଶ୍ରୀକୃଷ୍ଣ ଭାବେ ରତି ।
ଶୁଦ୍ଧ ହୋଇବ ତେବେ ମତି ॥୫୫
ଭଜନ-ରସେ ମତ୍ତ ହୋଏ ।
ନ ପଡେ ଶୋକ ମାୟାମୋହେ ॥୫୬
ଏ ରୂପେ କଲେ ସେ ରାଜନ ।
ଆତ୍ମାରେ ଆତ୍ମାକୁ ଯୋଜନ ॥୫୭
ସେ ଯୋଗୀ ଯୋଗାସନ ବଳେ ।
ବ୍ରହ୍ମସ୍ୱରୂପୀ ସେ ହୋଇଲେ ॥୫୮
କାଳେ ଛାଡିଲେ କଳେବର ।
ଏ ଅନୁକ୍ରମେ ହେ ବିଦୁର ॥୫୯
ସୁସ୍ଥିରେ ବସି ଯୋଗାସନେ ।
ଦେହେ ସମୀର ସମାଧାନେ ॥୬୦
ବାମ-ଚରଣ ମୂଳାଧାରେ ।
ନିରୋଧି ଚାପିଲେ ନିର୍ଭରେ ॥୬୧
ସେ ମୂଳାଧାରରୁ ପବନ ।
ଊର୍ଦ୍ଧ୍ୱକୁ ଟେକିଲେ ରାଜନ ॥୬୨
ନାଭିରୁ ହୃଦୟ-କମଳେ ।
ପବନ ରଖିଲେ ସଧୀରେ ॥୬୩
ତହୁଁ ଷୋଡ଼ଶଦଳେ ନେଲେ ।
ତହୁଁ କଣ୍ଠରେ ତହୁଁ ଶିରେ ॥୬୪
ଏ ରୂପେ ପ୍ରାଣାଦି ପବନ ।
ଭେଦିଣ ଏ ଷଡଚକ୍ରେଣ ॥୬୫
ସେ ବ୍ରହ୍ମରନ୍ଧ୍ରେ ଯୋଗବଳେ ।
ଏ ସର୍ବ କରି ଏକ ଠୁଳେ ॥୬୬
ମନ ପବନ ଦୃଢେ ଧରି ।
ଭିତରେ ରହିଲେ ପାଶୋରି ॥୬୭
ସେ ବନେ ପୃଥୁ ନୃପନାଥ ।
ହେଦ ଧାରଣେ ପଞ୍ଚଭୂତ ॥୬୮
ଯେଝାନୁକ୍ରମେ ଯୋଗବଳେ ।
ସମଷ୍ଟିଭୂତେ ଲୟ କଲେ ॥୬୯
ପବନ ନ୍ୟାସି ସମୀରଣେ ।
ଯେ କିଛି ଦେହାଦି ଧାରଣେ ॥୭୦
କ୍ଷିତିକି ଆପ ମଧ୍ୟେ ନ୍ୟାସି ।
ସେ ଜଳ ଅନଳେ ନିବେଶି ॥୭୧
ତେଜକୁ ପବନେ ସଂହରି ।
ଆକାଶ ମଧ୍ୟେ ବାୟୁଧରି ॥୭୨
ଇନ୍ଦ୍ରିୟ ଗଣେ ଯୁକ୍ତ ମନ ।
ତାହା ଆକାଶେ କରି ଲୀନ ॥୭୩
ଆକାଶ ଶବଦେ ସଂହରି ।
ଶବଦ ତମୋଗୁଣେ ଧରି ॥୭୪
ଏ ଯେ ତାମସ ଅହଙ୍କାର ।
କାର୍ଯ୍ୟ ଯେ ମହାଭୂତ ତା'ର ॥୭୫
ଯେ ରୂପେ ଲୟ କଲେ ନୃପ ।
ଶୁଣ ବିଦୁର ତା ସ୍ୱରୂପ ॥୭୬
ପୃଥିବୀ ଗନ୍ଧେ ଲୟ କରି ।
ଆପକୁ ରସ ମଧ୍ୟେ ଧରି ॥୭୭
ତେଜକୁ ରୂପ ମଧ୍ୟେ ଥୋଇ ।
ପବନ ସ୍ପରଶେ ଲଗାଇ ॥୭୮
ଶବଦେ ଆକାଶ ସଂହରି ।
ଏ ସର୍ବ ତମଗୁଣେ ଭରି ॥୭୯
ଯେ ତମ ସାତ୍ତ୍ୱିକ ରାଜସ ।
ଏକତ୍ରେ କଲେ ତା' ପ୍ରକାଶ ॥୮୦
ଇନ୍ଦ୍ରି ସହିତେ ବୁଦ୍ଧି ମନ ।
ଯେଝାନୁକ୍ରମେ କଲେ ଲୀନ ॥୮୧
ଶବଦ ଆଦି ଇନ୍ଦ୍ରିଗଣେ ।
ଲୀନ ହୋଇଲେ ଯେଝାସ୍ଥାନେ ॥୮୨
ଏହାଙ୍କ ଅଧିଷ୍ଠାତା ଦେବେ ।
ଲୟେ ପାଇଲେ ଯେଝାଭାବେ ॥୮୩
ଏକତ୍ରେ ଅହଙ୍କାର ନେଇ ।
ସେ ମହତତ୍ତ୍ୱରେ ମିଶାଇ ॥୮୪
ଏ ସର୍ବ-ତତ୍ତ୍ୱ ଗୁଣେ ନ୍ୟାସି ।
ମହତତ୍ତ୍ୱରେ ପରକାଶି ॥୮୫
ସେ ମହତତ୍ତ୍ୱ ମାୟା ମଧ୍ୟେ ।
ପ୍ରକୃତି ସଙ୍ଗେ ହେଲେ ଲୟେ ॥୮୬
ଜ୍ଞାନ ବୈରାଗ୍ୟ ଯୋଗବଳେ ।
ଏ ଜୀବ ବ୍ରହ୍ମେ ଯାଇ ମିଳେ ॥୮୭
ଏମନ୍ତେ ପୃଥୁ ମହୀପାଳ ।
ଦେହ ତେଜିଲେ ପାଇ କାଳ ॥୮୮
ସେ ଅର୍ଚ୍ଚି ପତିବ୍ରତା ନାରୀ ।
ସ୍ୱଧର୍ମେ ସ୍ୱାମୀ-ପାଦ ଧରି ॥୮୯
ଦେହ ଶୁଖାଇ ତପେ ଥିଲେ ।
ସ୍ୱାମୀର ମରଣ ଦେଖିଲେ ॥୯୦
ତକ୍ଷଣେ ହୋଇ ହତଜ୍ଞାନ ।
ଆକୁଳେ କରନ୍ତି ରୋଦନ ॥୯୧
ଭୋନାଥ ମୋର ପ୍ରାଣନାହା ।
ମୋତେ ଦେଖାଅ କିପାଁ ଏହା ॥୯୨
କପଟେ ମୁଦ୍ରିତ ଲୋଚନ ।
ଶ୍ୱାସ ବହଇ ଅତି କ୍ଷୀଣ ॥୯୩
ତୁ କାଳ ବିହନ୍ତା ଈଶ୍ୱର ।
ଏ ତୋର ମାୟା ଖେଳଘର ॥୯୪
ସ୍ଥିତି ଉତ୍ପତ୍ତି କରୁ ନାଶ ।
ତୁ ମାତ୍ର ରହୁ ଅବଶେଷ ॥୯୫
ତୁ ସର୍ବକାରଣ ମୁରାରି ।
କାର୍ଯ୍ୟ କାରଣେ ଦେହ ଧରି ॥୯୬
ତୁ କାଳ ରୂପୀ ଭଗବାନ ।
ଅନ୍ତେ ସକଳ କରୁ ଲୀନ ॥୯୭
ଭୋ ଯୋଗେଶ୍ୱର ତୋ ମହିମା ।
ନ ଜାଣି ପାରେ ହରବ୍ରହ୍ମା ॥୯୮

Dr. Sudhanshu Sekhar Mishra

ଯା ନାମେ ମୃତ୍ୟୁଭୟ ନାଶେ ।
ମୃତ୍ୟୁ ଅମୃତ୍ୟୁ ପରକାଶେ ॥୯୯
ଏବେ କପଟେ ମୃତ୍ୟୁ ଭୟୋ
ମୋତେ ଦେଖାଅ ମାୟାମୋହ॥୧୦୦
ଏ ମାୟାମୋହ ଦ୍ୱନ୍ଦ୍ୱ-ପାଶ ।
ପ୍ରତେକି ତୁମ୍ଭ ପ୍ରତିଆଶ ॥୧୦୧
ଏବେ ଉପେକ୍ଷି ବନ ଘୋରେ।
ତେଜିଣ ଗଲ ନିଜପୁରେ ॥୧୦୨
ମୁଁ ଯେ ନିରତେ ଅପରାଧୀ ।
ତୋ ପାଦେ ନ ସେବି ଦୁର୍ବୁଦ୍ଧି॥୧୦୩
ସେ ଅପରାଧ ଦୋଷେ ମୋତେ ।
ଏବେ ତେଜିଲ ଦୁଃଖ ଚିତ୍ତେ॥୧୦୪
ତୁମେ ଯେ ମୋର ମନ ଦୁଃଖେ।
ବହ ସୁଦୟା-ଭାବ ସୁଖେ ॥୧୦୫
ଭୋ ସଖି ନ ତେଜିବି ତୋତେ।
ଯାବତ ପ୍ରାଣ ଦେହଗତେ ॥୧୦୬
ସେ ଆଜ୍ଞା ଅଭାଗ୍ୟେ ମୋହର।
ଏବେ ଫଳିଲା ଯୋଗେଶ୍ୱର॥୧୦୭
ଏ ରୂପେ ବିଳପେ ସୁନ୍ଦରୀ ।
ଶୋକସାଗରେ ତନୁଘାରି ॥୧୦୮
ସେ ଅର୍ଚ୍ଚିଦେବୀ ଜ୍ଞାନବତୀ ।
ତକ୍ଷଣେ ଧୀର କରି ମତି ॥୧୦୯
ପର୍ବତ-ପ୍ରାନ୍ତେ ଚିତା କଲେ ।
ସ୍ୱାମୀଙ୍କି ତହିଁ ନିବେଶିଲେ ॥୧୧୦
ମୁଖାଗ୍ନି କରି ବିଧିମତେ ।
ସ୍ନାନ ଉଦକ କ୍ରିୟା ଯେତେ ॥୧୧୧
ସୂର୍ଯ୍ୟଙ୍କୁ କରି ଅର୍ଘ୍ୟଦାନ ।
ଯେ କର୍ମ ଯେ ବିଧି ବିଧାନ॥୧୧୨
ଦେବଙ୍କୁ କରି ନମସ୍କାର ।
ସଂପୁଟେ ଯୋଡି ବେନିକର॥୧୧୩
ଏ ସର୍ବ ସାରିଣ ସୁନ୍ଦରୀ ।
ଅଗ୍ନିକୁ ପ୍ରଦକ୍ଷିଣ କରି ॥୧୧୪
ପ୍ରବେଶ ଅଗ୍ନି ମଧ୍ୟେ ଯାଇ ।
ଦେବେ ଦେଖନ୍ତି ଶୂନ୍ୟେ ଥାଇ॥୧୧୫

ସିଦ୍ଧ ଚାରଣ ବିଦ୍ୟାଧର ।
ଇନ୍ଦ୍ରାଦି ଯେତେ ଅନୁଚର ॥୧୧୬
ଯେ ଯାହା ମତେ କରି ସ୍ତୁତି।
ଆନନ୍ଦେ ପୁଷ୍ପ ବରଷନ୍ତି ॥୧୧୭
ଦୁନ୍ଦୁଭି ବାଦ୍ୟ-ନାଦ କରି ।
ରଙ୍ଗେ ନାଚନ୍ତି ଅପସରୀ ॥୧୧୮
ମଙ୍ଗଳାଳାପେ ଶୁଦ୍ଧ-କାଳେ ।
ସେ ପତିପତ୍ନୀ ଏକମେଳେ ॥୧୧୯
ଆକାଶେ ଯା'ନ୍ତି ଦେବଯାନେ।
ଯେହ୍ନେ ତଡିତ ନବଘନେ ॥୧୨୦
ଦେବେ ଆନନ୍ଦେ ସ୍ତୁତି ଭଣି।
ଶିରେ ନିବେଶି ବେନିପାଣି ॥୧୨୧
ପ୍ରଶଂସି ଦେବୀ ଜଣେ ଜଣେ ।
ଆନନ୍ଦେ ଅଶ୍ରୁଳ ଲୋଚନେ ॥୧୨୨
ଧନ୍ୟ ସାଧବୀ ପତିବ୍ରତା ।
ସ୍ୱାମୀ-ସେବାରେ ଅନୁରତା ॥୧୨୩
ତେଜିଣ ଅଚଳ-ବିଭୂତି ।
ସ୍ୱାମୀର ସଙ୍ଗତେ ଚଳନ୍ତି ॥୧୨୪
ଯେଣୁ ଏ ପୂର୍ବେ ତପ କଲେ।
ତେଣୁ ଦେବଙ୍କ ଉର୍ଦ୍ଧ୍ୱେ ଗଲେ॥୧୨୫
ଯେସନେ ଲକ୍ଷ୍ମୀନାରାୟଣ ।
ଏ ବେନି ଦିଶନ୍ତି ତେସନ ॥୧୨୬
ଲକ୍ଷ୍ମୀ ସଦୃଶ ଏ ଯୁବତୀ ।
ଲଭିଲେ ଏକାଙ୍ଗ ଭକତି ॥୧୨୭
ଯେଣୁ ସୁକର୍ମ କରିଛନ୍ତି ।
ତେଣୁ ଲଭିଲେ ନିଜପତି ॥୧୨୮
ଧନ୍ୟ ସେ ମର୍ତ୍ତ୍ୟ କର୍ମଭୂମି ।
ଅଳ୍ପ-ଆୟୁଷ ପ୍ରାଣୀ ଜନ୍ମି ॥୧୨୯
ସ୍ୱଧର୍ମ-କର୍ମ ଆଦରନ୍ତି ।
ସକଳ ଆପଦୁ ତରନ୍ତି ॥୧୩୦
ନିଷ୍ପାପ ଅଟେ ଯେଉଁ ନର ।
ସ୍ୱର୍ଗାପବର୍ଗ ନୋହେ ଦୂର ॥୧୩୧

ଏଣୁ ନିଷ୍କାମ ଯା'ର ମତି ।
ସେ ଲଭେ ଏକାନ୍ତ ଭକତି ॥୧୩୨
ସ୍ୱର୍ଗାଦି ଭୋଗ କିବା ତା'ର ।
ଯହିଁ ବସନ୍ତି ଭକ୍ତ ନର ॥୧୩୩
କୃଷ୍ଣ-ଚରିତ ନିତ୍ୟେ ଭାବି ।
ରୋମ ପୁଲକେ ଅଶ୍ରୁ ଦ୍ରବି ॥୧୩୪
ନିର୍ମଳ ହୋଏ ବୁଦ୍ଧି ମତି ।
ଅଜ୍ଞାନ ମୋହ ବିନାଶନ୍ତି ॥୧୩୫
ଏ ଭାବ ନ ଘେନେ ଯା ଚିତ୍ତ ।
ସେ ଦୁଃଖସାଗରେ ପୀଡିତ ॥୧୩୬
ସେ ଆତ୍ମାବୋଧେ ଭାଗୀହୋଇ।
ଯେ ନିତ୍ୟେ ବିଷୟେ ମଜ୍ଜଇ॥୧୩୭
ଏମନ୍ତେ ଶୁଣ ହେ ବିଦୁର ।
ସେ ଦେବ କାମିନୀ ବିଚାର॥୧୩୮
ସେ ଅର୍ଚ୍ଚିଦେବୀଙ୍କି ସ୍ତୁବନ୍ତି ।
ପ୍ରବେଶ ପତିଲୋକେ ସତୀ ॥୧୩୯
ସେ ପୃଥୁ ଭକତ-ଉତ୍ତମ ।
ଯାହାଙ୍କ ଚରିତ ଉଦ୍ଦାମ ॥୧୪୦
ବର୍ଣ୍ଣିଲୁ ତାହାଙ୍କ ଚରିତ ।
ଶ୍ରବଣେ ହୁଅ ଶୁଦ୍ଧଚିତ୍ତ ॥୧୪୧
ସେ ପୃଥୁ ପୁଣ୍ୟ-ଉପାଖ୍ୟାନ ।
ଶ୍ରଦ୍ଧାରେ ପଢନ୍ତି ଯେ ଜନ ॥୧୪୨
ସେ ପୃଥୁ ପଦକୁ ଲଭନ୍ତି ।
ଜନ୍ମ ମରଣୁ ନିସ୍ତରନ୍ତି ॥୧୪୩
ଏ ଚାରିବର୍ଣ୍ଣ ମଧ୍ୟଗତେ ।
ପଢନ୍ତି ଶୁଣନ୍ତି ଯେ ନିତ୍ୟେ ॥୧୪୪
ତା ସର୍ବକାମ ହୋଏ ସିଦ୍ଧି ।
ସକଳ-ବର୍ଣ୍ଣେ ସେ ପ୍ରସିଦ୍ଧି ॥୧୪୫
ଯେ ବିପ୍ରଜନ ଏହା ପଢେ ।
ବ୍ରହ୍ମପଦକୁ ଲଭେ ଦୃଢେ ॥୧୪୬
କ୍ଷତ୍ରିୟ କଲେ ଅଧ୍ୟୟନ ।
ରାଜତ୍ୱ ପଣେ ସେ ନିପୁଣ ॥୧୪୭

Dr. Sudhanshu Sekhar Mishra

ଗାୟନ କଲେ ବୈଶ୍ୟଜନ ।
କୃଷ୍ୟାଦି ବାଣିଜ୍ୟେ ନିପୁଣ ॥୧୪୮
ସେ ଜ୍ଞାନୀଜନେ ଶ୍ରେଷ୍ଠ ହୋଇ ।
ଧର୍ମାର୍ଥୀଜୀବନେ ଜୀଅଁଇ ॥୧୪୯
ଶ୍ରବଣେ ଶୂଦ୍ର ହୋଏ ସୁଖୀ ।
ଭକତ ମଧ୍ୟେ ତାକୁ ଲେଖି ॥୧୫୦
ତ୍ରିକାଳ ଶ୍ରବଣ କୀର୍ତ୍ତନେ ।
ଯେ ନରନାରୀ ଶୁଦ୍ଧମନେ ॥୧୫୧
ସକଳ-କାମାର୍ଥ ଲଭନ୍ତି ।
ଭୋଗାନ୍ତେ ବୈକୁଣ୍ଠେ ବସନ୍ତି ॥୧୫୨
ନିର୍ଦ୍ଧନ-ଅପୁତ୍ରିକ-ଜନ ।
ଲଭେ ଅପତ୍ୟ ବହୁ-ଧନ ॥୧୫୩
ଅକୀର୍ତ୍ତିମନ୍ତ ଯେବା ଜନ ।
ଶ୍ରବଣେ ଲଭେ କୀର୍ତ୍ତିମାନ ॥୧୫୪
ସେ ପୁଣ୍ୟ ପୃଥୁର ଚରିତ ।
ଶ୍ରବଣେ ମୂର୍ଖ ସୁପଣ୍ଡିତ ॥୧୫୫
ଯେ ପ୍ରତିଦିନେ ଅଧ୍ୟୟନ୍ତି ।
ଅଶୁଭ କର୍ମ ବିନାଶନ୍ତି ॥୧୫୬
ଯଶ ଆୟୁଷ ଧନ ଆଉ ।
ଶ୍ରବଣେ ବଢ଼େ ନିରନ୍ତର ॥୧୫୭

ଅପରେ ଧର୍ମ ଅର୍ଥ ଚାରି ।
ଲଭନ୍ତି ତ୍ରିତାପ ନିବାରି ॥୧୫୮
ଯେବେ କ୍ଷତ୍ରିୟ ରିପୁ ଭୟେ ।
ଶ୍ରବଣେ ଚତୁର୍ଦ୍ଦିଗ ଜୟେ ॥୧୫୯
ଏ ସର୍ବ କର୍ମଫଳ ପାଇ ।
ଯେ ଅବା ନିରତେ ଶୁଣଇ ॥୧୬୦
ଏ ପୁଣ୍ୟ ପୃଥୁର ଚରିତ ।
ସଦ୍ୟ ବିଶୁଦ୍ଧ ହୋଏ ଚିତ୍ତ ॥୧୬୧
ପଠନ କରେ ଯେବା ପ୍ରାଣୀ ।
ସୁସାଧୁ ମଧ୍ୟେ ତାକୁ ଗଣି ॥୧୬୨
ଯେ ମୁଖେ କରନ୍ତି ଗାୟନ ।
ବିଶୁଦ୍ଧ ହୋଏ ବୁଦ୍ଧି ମନ ॥୧୬୩
ତା'ର ଅଶେଷ ପୁଣ୍ୟମୟେ ।
ବିପ୍ର କଲ୍ୟାଣେ ତା'ର ହୋଏ ॥୧୬୪
ବ୍ରାହ୍ମଣ-ମୁଖୁ ଯେବେ ଶୁଣି ।
ଅନ୍ୟତ୍ର ଚତୁର୍ଗୁଣ ଜାଣି ॥୧୬୫
ବିପ୍ର-ପୂଜନେ ହରି ତୋଷ ।
ତାଙ୍କୁ ନ ଲାଗେ ଗୁଣ-ଦୋଷ ॥୧୬୬
ଶୁଣ ବିଦୁର ସାବଧାନେ ।
ସେ ପୃଥୁ ଚରିତ ଆଖ୍ୟାନେ ॥୧୬୭

ଅମୃତ ରସମୟ ଗୀତ ।
ଶ୍ରବଣେ ନିସ୍ତରେ ପତିତ ॥୧୬୮
ପାର୍ଥୀବ ଗତି ହୋଏ ତାର ।
ସ୍ୱର୍ଗାପବର୍ଗ ନୋହ ଦୂର ॥୧୬୯
ଏ ମୋହ-ସଂସାର ତାରଣେ ।
ଅନ୍ୟଥା ନାହିଁ ଉଦ୍ଧାରଣେ ॥୧୭୦
ଚତୁର୍ଥ ସ୍କନ୍ଧେ ଭାଗବତ ।
ତ୍ରିବିଂଶ-ଅଧ୍ୟାର ଚରିତ ॥୧୭୧
ମୈତ୍ରେୟ-ବିଦୁର ସମ୍ବାଦ ।
ଶ୍ରବଣେ ଖଣ୍ଡଇ ଆପଦ ॥୧୭୨
ଶୁଣନ୍ତେ ତୁଟେ ଭବବ୍ୟାଧି ।
ଶ୍ରବଣେ ପାପ-ବନ୍ଧ ଛେଦି ॥୧୭୩
ହରି-ଚରଣ ଆଶ୍ରେ କର ।
ସକଳ-ପାପ ହେବ ଦୂର ॥୧୭୪
ସୁଜନେ ଏହି ରସେ ରସ ।
ଭଣଇ ଜଗନ୍ନାଥ ଦାସ ॥୧୭୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଚତୁର୍ଥ ସ୍କନ୍ଧେ
ତ୍ରୟବିଂଶୋଽଧ୍ୟାୟଃ ॥

---

## ଚତୁର୍ବିଂଶ ଅଧ୍ୟାୟ

ମୈତ୍ରେୟଉବାଚ

ମୈତ୍ରେୟ କହନ୍ତି ବିଦୁର ।
ଯେ ପଞ୍ଚ ପୃଥୁଙ୍କ କୁମର ॥୧
ବିଜିତଅଶ୍ୱ ନାମ ଯା'ର ।
ବସିଲା ନୃପାସନେ ବୀର ॥୨
ତା'ର ଅନୁଚାଜା-ତରିଭ୍ର ।
ରାଜ୍ୟ-ବିଭାଜେ ଯଥୋଚିତ ॥୩
ଉତ୍ତର ଦକ୍ଷିଣ ପଶ୍ଚିମେ ।
ପୂର୍ବାଦି ଚାରି ଅନୁକ୍ରମେ ॥୪

ହର୍ଯ୍ୟାକ୍ଷ ନାମେ ଯେ କୁମର ।
ତାହାକୁ ପୂର୍ବେ ଅଧିକାର ॥୫
ଧୂମ୍ରକେଶକୁ ଦେଲେ ଭୂପ ।
ଦକ୍ଷିଣଦିଗେ ସେ ଅଧିପ ॥୬
ପଶ୍ଚିମେ ବୃକ ନୃପରାଣ ।
ଉତ୍ତର ଦିଗେଣ ଦ୍ରବିଣ ॥୭
ବିଜିତଅଶ୍ୱ ନାମ ଯା'ର ।
ସେ ଜ୍ୟେଷ୍ଠ ପୃଥୁଙ୍କ କୁମର ॥୮
ଦ୍ୱିତୀୟେ ଅନ୍ତର୍ଦ୍ଧାନ ନାମ ।
ତାହାକୁ ଦେଲେ ସୁରୋତ୍ତମ ॥୯

ଶୁଣି ବିଦୁର ହରଷିତ ।
ନାମେ ମୈତ୍ରେୟ ପାଦଗତ ॥୧୦

ବିଦୁର ଉବାଚ

କିମର୍ଥେ ଅନ୍ତର୍ଦ୍ଧାନ ନାମ ।
ତାହାକୁ ଦେଲେ ମଘବାନ ॥୧୧
ଏ ବଡ ସଂଶୟ ମୋ ଚିତ୍ତ ।
ଭୋ ମୁନି କହିବା ତଦନ୍ତ ॥୧୨
ଏମନ୍ତ ତା'ର ବାକ୍ୟ ଶୁଣି ।
କହେ ମୈତ୍ରେୟ ମହାମୁନି ॥୧୩

Dr. Sudhanshu Sekhar Mishra

### ମୈତ୍ରେୟ ଉବାଚ

ହେ କୁରୁଶ୍ରେଷ୍ଠ ଭାଗ୍ୟବନ୍ତ ।
ଅମୃତ ପୃଥୁର ଚରିତ ॥୧୪
ଶ୍ରବଣେ ଇଚ୍ଛା ଯେବେ ତୋର ।
କହିବା ସେ ପୂର୍ବ ବିଚାର ॥୧୫
ପୃଥୁ ଯେ ଅଶ୍ୱମେଧ କଲେ ।
ସକଳ ଦେବଙ୍କୁ ବରିଲେ ॥୧୬
ଯଜ୍ଞେ ପୂଜିଲେ ଭଗବାନ ।
ବେଦୋକ୍ତ କର୍ମେ ଧରି ମନ ॥୧୭
ଯଜ୍ଞ-ବିଧାନେ ବିଧି ଯେତେ ।
ସମ୍ଭାର କରି ନାନାମତେ ॥୧୮
ଏମନ୍ତେ ଯଜ୍ଞାହୁତି କାଳେ ।
ଅଶ୍ୱ ହରିଲା ଇନ୍ଦ୍ର ଛଳେ ॥୧୯
ବିଜିତଅଶ୍ୱ ତାହା ଜାଣି ।
ଇନ୍ଦ୍ର ନ ମାରି ଅଶ୍ୱ ଆଣି ॥୨୦
ତା' ଦେଖି ତୋଷେ ପୁରନ୍ଦର ।
ଭୋ ବୀର ବେଗେ ମାଗ ବର ॥୨୧
ତା ଶୁଣି ସେ ପୃଥୁ ନନ୍ଦନ ।
ଅତି ଆନନ୍ଦେ ତୋଷମନ ॥୨୨
ମୋହର ବରେ କାର୍ଯ୍ୟ ନାହିଁ ।
ଯେବେ ଯାଚିଲ ସୁରସାଇଁ ॥୨୩
ଏ ତୋର ଅନ୍ତର୍ଦ୍ଧାନ ଗତି ।
ପ୍ରସନ୍ନେ ଦିଅ ଶଚୀପତି ॥୨୪
ଶୁଣି ସନ୍ତୋଷ ମଘବାନ ।
ତାହାକୁ ଦେଲେ ଅନ୍ତର୍ଦ୍ଧାନ ॥୨୫
ସେ ଘେନି ଅନ୍ତର୍ଦ୍ଧାନ ନାମ ।
ଜଗତେ କରନ୍ତି ଗାୟନ ॥୨୬
ସେ ବୀର ନିଜ ରାଜ୍ୟେ ରାଜା ।
ଧର୍ମେ ପାଳଇ ଜନ ପ୍ରଜା ॥୨୭
ତା'ର ଶିଖଣ୍ଡୀ ନାମେ ନାରୀ ।
ରୂପେ କାମିନୀ ମନୋହାରୀ ॥୨୮
ତାହାର ଗର୍ଭେ ନୃପ-ବୀର୍ଯ୍ୟେ ।
ପୁତ୍ରେ ଜନ୍ମିଲେ ମହାତେଜେ ॥୨୯

ପାବକ ପବମାନ ଶୁଚି ।
ତେଜ ଶରୀର ଶୁଭ୍ରରୁଚି ॥୩୦
ଅଗ୍ନି ଯେ ବଶିଷ୍ଠ ଶାପରୁ ।
ଜନ୍ମିଲେ ଏ ତିନି ଯୋଗରୁ ॥୩୧
ଆର ଯେ ପତ୍ନୀ ନଭସ୍ୱତୀ ।
ସେ ଅନ୍ତର୍ଦ୍ଧାନର ଯୁବତୀ ॥୩୨
ତାହାର ଗର୍ଭେ ଯେ କୁମର ।
ହବିର୍ଦ୍ଧାନ ନାମ ତାହାର ॥୩୩
ତାହାକୁ କଲେ ସେ ନୃପତି ।
ତା ଆଶେ ରାଜାର ସନ୍ତତି ॥୩୪
ସେ ଅନ୍ତର୍ଦ୍ଧାନ ନୃପରାୟେ ।
ବିଷୟଭୋଗ ନ ଯୋଗାଏ ॥୩୫
ସେ ଜ୍ଞାନ-ବୈରାଗ୍ୟେ ନୃପତି ।
ତେଜିଣ ଅଚଳ ବିଭୂତି ॥୩୬
ମନେ ବିଚାରେ ନୃପରାଣ ।
ଏ ସର୍ବ ଅନର୍ଥ କାରଣ ॥୩୭
ରାଜସମ୍ପଦେ ଅନ୍ଧ ହୋଇ ।
ଅଜ୍ଞାନେ ଧର୍ମ ନ ଜାଣଇ ॥୩୮
କରଇ ଶତ୍ରୁ-ମିତ୍ରଭାବ ।
ସକଳ-ଘଟେ ଏକ -ଜୀବ ॥୩୯
ରାଜତ୍ୱ-ଧର୍ମେ କ୍ରୋଧ ବହି ।
ପ୍ରଜା ପୀଡ଼ନ୍ତି ଧନ ପାଇଁ ॥୪୦
ଅଧର୍ମ-ମାର୍ଗେ ନ୍ୟନ୍ତି ବଳେ ।
ପ୍ରଜା କ୍ଷୋଭିତ କ୍ଷୁଧାକୁଳେ ॥୪୧
ପ୍ରଜାବିନାଶେ ଘୋର-ପାପ ।
ନରକେ ପଡନ୍ତି ଅଧୀପ ॥୪୨
ପୋତୁ ଏ ରାଜ୍ୟେ କାର୍ଯ୍ୟ ନାହିଁ ।
ଯଜ୍ଞ କରିବା ସୁଖେ ରହି ॥୪୩
ଯଜ୍ଞର ଛଳେ ସେ ରାଜନ ।
ତେଜିଲେ ନୃପ ସିଂହାସନ ॥୪୪
ନିଷ୍କାମ-ପଥ ଆଶ୍ରେ କଲେ ।
ପରମ ପୁରୁଷ ଭଜିଲେ ॥୪୫
ସେ ହଂସଦୀକ୍ଷାରେ ରାଜନ ।
ଗମିଲେ ବୈକୁଣ୍ଠ ଭୁବନ ॥୪୬

ସେ ହବିର୍ଦ୍ଧାନ ତା କୁମର ।
ବସିଲା ନୃପାସନେ ବୀର ॥୪୭
ତା ପତ୍ନୀ ନାମ ହବିର୍ଦ୍ଧାନୀ ।
ସୁର-ମୋହିନୀ ସୁଲୋଚନୀ ॥୪୮
ତାହାର ଗର୍ଭେ ଷଡ଼ ସୁତ ।
ଜନ୍ମିଲେ ତେଜେ ବଳବନ୍ତ ॥୪୯
ବର୍ହିଷଦ ଯେ ଶୁକ୍ଳ ସତ୍ୟ ।
କୃଷ୍ଣ ଗୟ ଯେ ଜିତବ୍ରତ ॥୫୦
ସେ ହବିର୍ଦ୍ଧାନର ସନ୍ତତି ।
ମହତ-ଗୁଣ ତା'ର ଅତି ॥୫୧
ଏ ଛଅ ମଧ୍ୟେ ବର୍ହିଷଦ ।
ହୋଇଲେ ଭୂପ ଭାଗ୍ୟବନ୍ତ ॥୫୨
ସୌଭାଗ୍ୟବାନ ପ୍ରଜାପତି ।
ରଖିଲେ ଜଗତରେ ଖ୍ୟାତି ॥୫୩
ହୋଇଲେ ଶୁଭକାର୍ଯ୍ୟେ ବ୍ରତୀ ।
ପ୍ରାଣାୟାମାଦି ଯୋଗେ ରତି ॥୫୪
ସେ ଭାଗ୍ୟବନ୍ତ ଦଣ୍ଡଧର ।
ତା ଯଶ ତ୍ରୈଲୋକ୍ୟେ ବିସ୍ତାର ॥୫୫
ସେ କ୍ରିୟାକାଣ୍ଡରେ ନିପୁଣ ।
ଅଦ୍ଭୁତ ତା'ର କର୍ମମାନ ॥୫୬
ଯେ କର୍ମ କଲା ଏ ଜଗତେ ।
ଶୁଣ ବିଦୁର କହୁଁ ତୋତେ ॥୫୭
ଭୂତ ଭବିଷ୍ୟ ବର୍ତ୍ତମାନେ ।
ନ ଦେଖି ଏ ତିନି ଭୁବନେ ॥୫୮
ତା ଯଜ୍ଞେ ପ୍ରାଚୀ-ନଗ୍ର ସ୍ଥଳ ।
କୁଶେ ଆଚ୍ଛାଦିଲା ସକଳ ॥୫୯
ଏଣୁ ତା ନାମ ମହୀତଳେ ।
ପ୍ରାଚୀନ-ବରହିଷ ବୋଲେ ॥୬୦
ସେ ଯେ ପ୍ରାଚୀନ ମହୀପତି ।
ବିବାହ ସମୁଦ୍ର ଦୁହିତୀ ॥୬୧
ସେ ଶତଦ୍ରୁତି କନ୍ୟା ସାର ।
ତ୍ରୈଲୋକ୍ୟେ ନାହିଁ ପଟାନ୍ତର ॥୬୨
ତାର ଚରିତ ପୂର୍ବ-କଥା ।
ହୋଇଲା ଯେବଣ ବ୍ୟବସ୍ଥା ॥୬୩

Dr. Sudhanshu Sekhar Mishra

ବ୍ରହ୍ମା ତାହାଂର ପୁରେ ଆସି ।
କନ୍ୟାକୁ କହିଲେ ବିଶ୍ୱାସି ॥୬୪
ବ୍ରହ୍ମା ବଚନେ ସିନ୍ଧୁପତି ।
ରାଜାରେ ବରିଲେ ଦୁହିତୀ ॥୬୫
ସେ ଯେ ପ୍ରାଚୀନ ନୃପବର ।
ବିଭା-ସଂଯୋଗେ କନ୍ୟାବର ॥୬୬
ଅଗ୍ନି-ପ୍ରଦକ୍ଷିଣ କରନ୍ତେ ।
ଯେହ୍ନେ ଚଣ୍ଡାଂଶୁ ଭୂମିଗତେ ॥୬୭
ସେ କନ୍ୟା ରୂପେ ହୁତାଶନ ।
ଅନଙ୍ଗେ ହୋଇଲା ଅଧୀନ ॥୬୮
ସପ୍ତର୍ଷି-ଯଜ୍ଞେ ଋଷିପତ୍ନୀ ।
ଦେଖି କାମୁକ ହେଲେ ଅଗ୍ନି ॥୬୯
ତାହାଙ୍କ ପତ୍ନୀ ସ୍ୱାହା ଜାଣି ।
ଋଷିପତ୍ନୀଙ୍କ ରୂପ ଘେନି ॥୭୦
ଅଗ୍ନିଙ୍କ ଠାରେ ଉଭା ହେଲେ ।
ଅଗ୍ନି ଯେ ଆଲିଙ୍ଗନ କଲେ ॥୭୧
ଏହି ପ୍ରକାରେ ହୁତାଶନ ।
ଶତଦ୍ରୁତିର ପ୍ରେମେ ମଗ୍ନ ॥୭୨
ସେ ଶତଦ୍ରୁତି ରୂପବତୀ ।
ଚରଣେ ନୂପୁର ଶୋଭନ୍ତି ॥୭୩
ସେ ମତ୍ତ ଦ୍ୱିରଦ ଗାମିନୀ ।
ଚରଣେ ନୂପୁର ବାଜେଣି ॥୭୪
ଶ୍ରବଣେ ଅନଙ୍ଗ ପୀଡ଼ିତ ।
ମୂର୍ଖ ପଣ୍ଡିତ ଶୂରବନ୍ତ ॥୭୫
ତା ରୂପ ଦେଖି ବୁଦ୍ଧଜନେ ।
ମୋହେ ପଡ଼ିଲେ ହତଜ୍ଞାନେ ॥୭୬
ଅମର କିନ୍ନର ଉରଗ ।
ସିଦ୍ଧ ଚାରଣ ଖଗ ମୃଗ ॥୭୭
ଇତ୍ୟାଦି ପଶୁଜୀବ ଯେତେ ।
ତା' ରୂପେ ହେଲେ ବିମୋହିତେ ॥୭୮
ତାହାଙ୍କ ତୁଲ୍ୟ ଏ ଜଗତେ ।
ନ ଦେଖି ସ୍ୱର୍ଗ-ମର୍ତ୍ତ୍ୟଗତେ ॥୭୯
ପ୍ରାଚୀନବରହି ରାଜନ ।
ତାରୂପେ ହୋଇଲା ଅଧୀନ ॥୮୦

ସକଳ-ଧର୍ମ ପରିହରି ।
ତା' ବଶେ ନିତ୍ୟେ ଦଣ୍ଡଧାରୀ ॥୮୧
ସେ କ୍ରୀଡାମୃଗ ଜୀବ ପ୍ରାୟ ।
ତା' ବଶେ ଧର୍ମ କଲା କ୍ଷୟ ॥୮୨
ତା ବିନା-ଆଜ୍ଞାରେ ରାଜନ ।
ନ କରେ ଅନ୍ୟ କର୍ମମାନ ॥୮୩
ରାତ୍ର-ଦିବସ ନ ଜାଣିଲା ।
ତା' ଅଙ୍ଗସଙ୍ଗେ ଦିନ ନେଲା ॥୮୪
ସେ ପତ୍ନୀ-ଗର୍ଭେ ତା'ର ବୀର୍ଯ୍ୟେ ।
ପୁତ୍ରେ ଜନ୍ମିଲେ ମହାତେଜେ ॥୮୫
ଦଶକୁମର ଆତ୍ମା ଏକ ।
ଶୁଭ୍ର ସୁନ୍ଦର ସୁବିବେକ ॥୮୬
ସମ ଆକୃତି ରୂପ-ବେଶ ।
ଏକଇ ନାମ ପ୍ରଚେତସ ॥୮୭
ତାହାଙ୍କୁ ଚାହିଁ ନୃପବର ।
ବୋଇଲେ ପ୍ରଜା ସୃଷ୍ଟି କର ॥୮୮
ତକ୍ଷଣେ ପିତା ଆଜ୍ଞା ପାଇ ।
ସେ ପ୍ରଚେତସ ଦଶ ଭାଇ ॥୮୯
ତପ-ସାଧନେ ଆଗମନ ।
ପଥରେ ଭେଟିଲେ ଈଶାନ ॥୯୦
ବୃଷଭ-ବାହନେ ମହେଶ ।
ଡ଼ମ୍ବରୁ ବାଦ୍ୟ ନାଦ ଘୋଷ ॥୯୧
ଶିରେ ସୁଧାଂଶୁ ଶୋଭାକର ।
ଜାହ୍ନବୀ ସ୍ରବେ ଜଟାଭାର ॥୯୨
ଉଚ୍ଚେ ଉଚାରି ମୁଖେ ନାମ ।
ରାମ ଗୋବିନ୍ଦ କୃଷ୍ଣ ଶ୍ୟାମ ॥୯୩
ଗୋବିନ୍ଦ ଗୋପାଳ ଶ୍ରୀହରି ।
ହେ ହୃଷୀକେଶ ଦଇତ୍ୟାରି ॥୯୪
ଆନନ୍ଦେ ରୋମ ପୁଲକିତ ।
ପ୍ରେମ ଗଦ୍‌ଗଦେ ଅଶ୍ରୁପାତ ॥୯୫
ଏମନ୍ତ ସମୟେ କୁମର ।
ଦର୍ଶନ କଲେ ଦେବହର ॥୯୬
ଭେଟିଲେ ପୂର୍ବ ପୁଣ୍ୟ ଫଳେ ।
ଯା' ନାମ ଧରି ଅନ୍ତଃକାଳେ ॥୯୭

ପ୍ରାଣୀ ତରନ୍ତି ଅଘାର୍ଣ୍ଣବ ।
ଯେ ଶିବ ଦେବଙ୍କୁ ଦୁର୍ଲ୍ଲଭ ॥୯୮
ତାହାଙ୍କୁ ଚାହିଁଣ ଗିରୀଶ ।
ବୋଲନ୍ତି ଶୁଣ ବାଳଶିଷ ॥୯୯
କାହାର ପୁତ୍ର ତୁମ୍ଭେମାନେ ।
କି ନାମ ଗୋତ୍ର ବାଞ୍ଛା ମନେ ॥୧୦୦
ବୟ ଆକୃତି ସମ-ଦୃଶ ।
ବାଳ ନବୀନ ତୁମ୍ଭେ ଦଶ ॥୧୦୧
କିମର୍ଥେ ଶ୍ରମେ ଆଗମନ ।
କହ ସଂଶୟ ତେଜି ମନ ॥୧୦୨
ସେ ଦେବବାକ୍ୟ ସୁମଧୁର ।
ଅମୃତ ଜିଣି ସୁଧାକର ॥୧୦୩
ଶୁଣି ପ୍ରଚେତା ଦଶଭାଇ ।
ବୋଲନ୍ତି ଶିରେ କର ଦେଇ ॥୧୦୪
ଶୁଣିମା ପ୍ରଭୁ ଦେବ ଈଶ ।
ପ୍ରଚେତା ନାମେ ଆମ୍ଭେ ଦଶ॥ ୧୦୫
ସୁପ୍ରାଚୀ ନଗ୍ର ଅଧିପତି ।
ତା ବୀର୍ଯ୍ୟେ ଆମ୍ଭେ ଉତପତ୍ତି॥ ୧୦୬
ପିତା ବଚନେ ତପ ଅର୍ଥେ ।
ଅଇଲୁ ପ୍ରାଚୀ ଦିଗ ପଥେ ॥୧୦୭
କଠୋର-ତପ ସିଦ୍ଧ କରି ।
ଭାବେ ସେବିବୁ ନରହରି ॥୧୦୮
ତୁମ୍ଭ ଦର୍ଶନେ ଯୋଗେ ଶ୍ୱର ।
ଆମ୍ଭ ସଂଶୟ ହେଉ ଦୂର ॥୧୦୯
ତା ଶୁଣି ଦେବ-ଉମାସାଇଁ ।
ସନ୍ତୋଷେ ତା'ଙ୍କୁ ଦୀକ୍ଷା ଦେଇ॥ ୧୧୦
ସେ ତପେ ତୋଷି ଭଗବାନ।
ଆନନ୍ଦେ ଗଲେ ନିଜ ସ୍ଥାନ ॥୧୧୧
ଶୁଣି ବିଦୁର ବିପରୀତ ।
ପୁଣି ସଂଶୟ କରି ଚିତ୍ତ ॥୧୧୨
କହେ ମୈତ୍ରେୟ ମୁଖ ଚାହିଁ ।
ଅଦ୍ଭୁତ କହିଲ ଗୋସାଇଁ ॥୧୧୩
ନର ଅମରେ କାହିଁ ସଙ୍ଗ ।
କେସନେ ହୋଇଲା ସଂଯୋଗ॥ ୧୧୪

Dr. Sudhanshu Sekhar Mishra

ଏ ବଡ ସଂଶୟ ମୋ ଚିତ୍ତେ ।
ଭୋ ମୁନି ଫେଡି କହ ମୋତେ ॥ ୧ ୧ ୫
ଯେ କାଳ ରୁଦ୍ର ରୂପେ ସ୍ଥିତି ।
ଉତ୍ପତ୍ତି ପାଳିଣ ନାଶନ୍ତି ॥ ୧ ୧ ୬
ସେ ଯେ ପ୍ରଚେତା ଭାଇ ଦଶ ।
କିରୂପେ ତାଙ୍କୁ କଲେ ତୋଷ ॥ ୧ ୧ ୭
ଦେବ ମାନବେ ଭେଟ କାହିଁ ।
ସେ ଯେ ଭେଟିଲେ ଉମାସାଇଁ ॥ ୧ ୧ ୮
ଅତି ଦୁର୍ଲ୍ଲଭ ମୋକ୍ଷ ଅଙ୍ଗ ।
ମନୁଷ୍ୟେ ହୋଇଲା ସଂଯୋଗ ॥ ୧ ୧ ୯
ବିମୁକ୍ତ-ସଙ୍ଗ ଯୋଗୀଜନେ ।
ଯାଙ୍କୁ ଭାବନ୍ତି ତତ୍ତ୍ୱଜ୍ଞାନେ ॥ ୧ ୨ ୦
ଧ୍ୟାନ-ଧାରଣେ ନ ଦେଖନ୍ତି ।
କେହ୍ନେ ତୋଷିଲେ କାଳମୂର୍ତ୍ତି ॥ ୧ ୨ ୧
ସେ ଆତ୍ମନିରତ ପୁରୁଷ ।
ଘୋର ଶକ୍ତିଏ ଯା'ର ପାଶ ॥ ୧ ୨ ୨
ସେ ଶିବ ମୃତ୍ୟୁଦଣ୍ଡ ଧରେ ।
ଏ ଚରାଚର ପ୍ରାଣ ହରେ ॥ ୧ ୨ ୩
ତେଣୁ ସଂଶୟ ମୋର ଚିତ୍ତ ।
ଭୋମୁନି କହିବା ତଦନ୍ତ ॥ ୧ ୨ ୪
କି ରୂପେ ତୋଷ ଶୂଳଧର ।
ବିସ୍ତାରି କହ ମୁନିବର ॥ ୧ ୨ ୫

ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ ।
ଯେ ପୂର୍ବ ଆଦ୍ୟନ୍ତ ବିଧାନେ ॥ ୧ ୨ ୬
ଯେ ଶିବ ଶରୀରେ ଅଶେଷ ।
ସ୍ଥିତି ପାଳନ କରେ ନାଶ ॥ ୧ ୨ ୭
କର୍ମାନୁସାରେ ପ୍ରାଣୀଙ୍କର ।
ସୃଜନ ପାଳନ ସଂହାର ॥ ୧ ୨ ୮
ଅବିଦ୍ୟା-କର୍ମେ କାଳରୂପୀ ।
ସେ ଶିବ ମୃତ୍ୟୁରୂପେ ବ୍ୟାପି ॥ ୧ ୨ ୯
ସୁବିଦ୍ୟା-ଆଚାର ଯାହାର ।
ତାଙ୍କୁ ପ୍ରସନ୍ନ ଶୂଳଧର ॥ ୧ ୩ ୦

ସମ-ବିଷମ ତାଙ୍କ ନାହିଁ ।
ମିତ୍ର-ଅଇରି ଅବା କାହିଁ ॥ ୧ ୩ ୧
ଏଣୁ ସେମତେ ଯେ ଭାବନ୍ତି ।
ଏ ଘୋର-ମୃତ୍ୟୁ ନିସ୍ତରନ୍ତି ॥ ୧ ୩ ୨
ସେ ଯେ ପ୍ରଚେତା ଭାଇ ଦଶ ।
ପିତା ବଚନେ ଯେଣୁ ତୋଷ ॥ ୧ ୩ ୩
ତପ ସାଧନେ ଆଗମନ ।
ତେଜି ଅଚଳ-ଭୋଗମାନ ॥ ୧ ୩ ୪
ସମୁଦ୍ର ନିକଟେ ମିଳିଲେ ।
ସୁରମ୍ୟ-ସରସୀ ଦେଖିଲେ ॥ ୧ ୩ ୫
ସେ ଜଳ ଅତ୍ୟନ୍ତ ନିର୍ମଳ ।
ଦର୍ଶନେ ହରେ ତୃଷାକୁଳ ॥ ୧ ୩ ୬
ସୁଖ ଆନନ୍ଦ ଶୀତକର ।
ଅମୃତ-ତୁଲ୍ୟ ସୁମଧୁର ॥ ୧ ୩ ୭
ନିର୍ମଳ ଯେହ୍ନେ ସାଧୁମନ ।
ତେସନ ଦିଶଇ ଶୋଭନ ॥ ୧ ୩ ୮
ପୁଷ୍ପ ସମୂହେ ବିରାଜନ୍ତି ।
ଯେହ୍ନେ ଆକାଶେ ଗ୍ରହପନ୍ତି ॥ ୧ ୩ ୯
ପ୍ରସନ୍ନ ଛଳେ ସୁମଞ୍ଜୁଳ ।
ନାନାଦି ବର୍ଣ୍ଣେ ଯହିଁ ଠୁଳ ॥ ୧ ୪ ୦
ନୀଳଉତ୍ପଳ ଆଦି କରି ।
ପୁଷ୍ପ ସମୂହେ ଛନ୍ତି ପୂରି ॥ ୧ ୪ ୧
ପଙ୍କଜ-ଅରୁଣ ପ୍ରକାଶେ ।
ଶୋଭନ୍ତି ଇନ୍ଦୀବର ପାଶେ ॥ ୧ ୪ ୨
ସେ ଜଳେ ନାନା ପକ୍ଷୀ କୁଳେ ।
କ୍ରୀଡ଼ନ୍ତି କାମେ ମତ୍ତଭୋଳେ ॥ ୧ ୪ ୩
ହଂସ ସାରସ ଚକ୍ରବାକ ।
କାରଣ୍ଡବ ବକ ଡାହୁକ ॥ ୧ ୪ ୪
ମତ୍ତ ଭ୍ରମରେ ସ୍ୱନ ଦ୍ୟନ୍ତି ।
ଆନନ୍ଦେ ମଧୁପାନେ ମାତି ॥ ୧ ୪ ୫
ତୀରେ ଶୋଭନ୍ତି ତରୁଗଣେ ।
ବିବିଧ ଲତା ଆଚ୍ଛାଦନେ ॥ ୧ ୪ ୬
ଶୁକ କୋକିଳ ପକ୍ଷୀଗଣେ ।
ସୁସ୍ୱର ନାଦେ ଅନୁକ୍ଷଣେ ॥ ୧ ୪ ୭

ପଦ୍ମକେଶର ରଜ ନେଇ ।
ଶୀତଳ-ପବନ ବହଇ ॥ ୧ ୪ ୮
ସୁଗନ୍ଧ ପୁଷ୍ପ ସୌରଭରେ ।
ଯେ ଦିଗ ବିଦିଗ ପ୍ରସରେ ॥ ୧ ୪ ୯
ସେ ଗନ୍ଧବାୟୁ ଘ୍ରାଣେ ମୋଦ ।
ସୁଖେ ସଙ୍ଗୀତ ବାଦ୍ୟନାଦ ॥ ୧ ୫ ୦
ତାଳ ମୃଦଙ୍ଗ ଯନ୍ତ୍ର ବୀଣା ।
ସ୍ୱର ମୂର୍ଚ୍ଛନା ନିର୍ଘୋଷଣା ॥ ୧ ୫ ୧
ଗନ୍ଧର୍ବେ ଗାବନ୍ତି ଆନନ୍ଦେ ।
ସଙ୍ଗେଣ ଅପସରୀ ବୃନ୍ଦେ ॥ ୧ ୫ ୨
ବୃଷଭ ଆରୋହୀ ମହେଶ ।
ସେ ଜଳେ ହୋଇଲେକ ଦୃଶ୍ୟ ॥ ୧ ୫ ୩
ଦେଖି ପ୍ରଚେତା ଦଶ ଭାଇ ।
ରୋମ ପୁଲକେ ଅଶ୍ରୁ ଦେହୀ ॥ ୧ ୫ ୪
ବେନି ପାରୁଶେ ଦେବ ଗଣେ ।
ସ୍ତୁବନ୍ତି ବିବିଧ-ସ୍ତବନେ ॥ ୧ ୫ ୫
ପ୍ରସାଦ-ମୁଖ ସୁପ୍ରସନ୍ନ ।
ସେ ଦେବ ଦେବ ତ୍ରିଲୋଚନ ॥ ୧ ୫ ୬
ତପ୍ତ କାଞ୍ଚନ ପ୍ରାୟ କାନ୍ତି ।
ରତ୍ନ-ସମୂହେ ବିରାଜନ୍ତି ॥ ୧ ୫ ୭
ସୁଗ୍ରୀବ କଣ୍ଠ ସୁଶୋଭନ ।
ସୁନୀଳ ପ୍ରଭା ତ୍ରିଲୋଚନ ॥ ୧ ୫ ୮
ଏମନ୍ତ ସମୟେ କୁମରେ ।
ଦେଖି ସାନନ୍ଦ ସୁଖଭରେ ॥ ୧ ୫ ୯
ସତ୍ୱରେ ଦଣ୍ଡବତ କଲେ ।
ପ୍ରସନ୍ନ-ରକ୍ଷଣ ବୋଇଲେ ॥ ୧ ୬ ୦
ଭୋ ଧର୍ମରକ୍ଷଣ ଈଶାନ ।
ତୋ' ପାଦେ ନ ସେବି ଅଜ୍ଞାନ ॥ ୧ ୬ ୧
ପ୍ରାଣୀ ବୃଜିନ-ଦୁଃଖାନଳେ ।
ଦଗ୍ଧ-ସନ୍ତପ୍ତ ମହାକୁଳେ ॥ ୧ ୬ ୨
ଦାରା-ତନୟ ସ୍ନେହେ ଜଡି ।
ଦୁଃଖ-ସଙ୍କଟେ ନିତ୍ୟେ ପଡି ॥ ୧ ୬ ୩
ଏ ଘେନି ତୋ ପାଦ-କମଳେ ।
ତା ଚିତ୍ତ ନ ରହେ ନିଶ୍ଚଳେ ॥ ୧ ୬ ୪

Dr. Sudhanshu Sekhar Mishra

ତୁ ନାଥ ଭକତ-ସୋଦର ।
ଅଧମ ଦୀନ ତାପ ହର ॥୧୬୫
ତୋ ନାମ ଭଜନ୍ତି ଯେ ନିତ୍ୟେ ।
ସେ ତରି ତାରନ୍ତି ଜଗତେ ॥୧୬୬
ଏମନ୍ତେ ପ୍ରଚେତାଙ୍କ ବାଣୀ ।
ଶୁଣି ସନ୍ତୋଷ ଶୂଳପାଣି ॥୧୬୭
ପ୍ରସନ୍ନ-ଚିତ୍ତେ ଶୂଳହସ୍ତ ।
ଦେଖି ତାହାଙ୍କ ଶୀଳବନ୍ତ ॥୧୬୮
କହନ୍ତି ପ୍ରଚେତସମାନେ ।
ଜାଣିଲୁ ତୁମ୍ଭ ମନ ଜ୍ଞାନେ ॥୧୬୯
ତେଣୁ ଦର୍ଶନ ଦେଲୁ ଆଗେ ।
ଭୋପୁତ୍ରେ ବର ମାଗ ବେଗେ ॥୧୭୦
ଶୁଣି ସାନନ୍ଦ ପ୍ରଚେତସ ।
ଯେହ୍ନେ ଆପ୍ୟାନେ ସୁଧାରସ ॥୧୭୧
ସଦ୍ୱରେ ଦଣ୍ଡବତେ ପଡ଼ି ।
କହନ୍ତି ଶିରେ କରଯୋଡ଼ି ॥୧୭୨
ଭୋ ପ୍ରଭୁ ତୋ ପଦ-କମଳେ ।
ନ ଭଜି ମଜ୍ଜିଲୁ ଶଯଳେ ॥୧୭୩
ବିଫଳେ ଗଲା ଆମ୍ଭ ଦିନ ।
ତୋ କୃପା ବିହୀନେ ଈଶାନ ॥୧୭୪
ଏବେ ଜାଣିଲୁ ଶୁଦ୍ଧଚିତ୍ତେ ।
ତୋର ଦର୍ଶନ ଆମ୍ଭ ହିତେ ॥୧୭୫
ଅଶେଷ-କର୍ମ ଗଲା ନାଶ ।
ତୋର ପ୍ରସନ୍ନେ ଦେବ ଈଶ ॥୧୭୬
ଭୋ ଦେବ କରୁଣାସାଗର ।
ପ୍ରସନ୍ନ ଜନ ଦୁଃଖ ହର ॥୧୭୭
ତୋର ପ୍ରସନ୍ନେ ପ୍ରାଣୀଙ୍କର ।
ସ୍ୱର୍ଗାପବର୍ଗ ନୋହେ ଦୂର ॥୧୭୮
ଭୋ ଯୋଗେଶ୍ୱର ତୋ ମହିମା ।
ନ ଜାଣି ପାରେ ସୁରବ୍ରହ୍ମା ॥୧୭୯
ଆମ୍ଭେ ବାଳକ ଶିଶୁମତି ।
କାହୁଁ ଜାଣିବୁ ତୋର ଗତି ॥୧୮୦
ଏ ଆଜ୍ଞା ହେବ ପ୍ରଭୁ ତୋର ।
ଧର୍ମାର୍ଥ କାମ ମୋକ୍ଷ ଦ୍ୱାର ॥୧୮୧

ଏମନ୍ତେ ନାନା ସ୍ତୁତି କରି ।
ପ୍ରେମ-ଆନନ୍ଦେ ଅଶ୍ରୁପୂରି ॥୧୮୨
ଶୁଣି ସାନନ୍ଦ ଉମାକାନ୍ତ ।
ପ୍ରସନ୍ନେ କହନ୍ତି ତଦନ୍ତ ॥୧୮୩

ରୁଦ୍ର ଉବାଚ

ହେ ପୁତ୍ରେ ଶୁଣ ମୋ ଉତ୍ତର ।
ହରିଭକତେ ପ୍ରିୟ ମୋର ॥୧୮୪
ଭକତଜନ ମୋ ହୃଦୟ ।
ଏଣୁ ଭକତ ମୋର ପ୍ରିୟ ॥୧୮୫
ଯେ ଯଜ୍ଞେଶ୍ୱର ବାସୁଦେବ ।
ଯାହାର ନାମ ଦୟାର୍ଣ୍ଣବ ॥୧୮୬
ତ୍ରିଗୁଣ ପରେ ଯା ବିହାର ।
ପ୍ରଧାନ-ପୁରୁଷ ଈଶ୍ୱର ॥୧୮୭
ତାଙ୍କ ଭକତ ଯେତେ ଜନ ।
ସେ ମୋର ଅଟନ୍ତି ଜୀବନ ॥୧୮୮
ଏଣୁ ମୁଁ ତୁମ୍ଭରେ ପ୍ରସନ୍ନ ।
ବୈଷ୍ଣବେ ନୁହଁନ୍ତି ଅଭିନ୍ନ ॥୧୮୯
ତାଙ୍କ ମହିମା ଯଶ ଗୁଣ ।
ମୋ ଠହୁଁ ସାବଧାନେ ଶୁଣ ॥୧୯୦
ଯେ ପ୍ରାଣୀ ଶତ-ଜନ୍ମାନ୍ତରେ ।
ସ୍ୱଧର୍ମ ନିଷ୍ଠାରେ ଆଚରେ ॥୧୯୧
ତଦନ୍ତେ ବ୍ରହ୍ମପଦ ପାଇ ।
ଅଶେଷ କଲୁଷ ନାଶଇ ॥୧୯୨
ଯେ ବିପ୍ରଦେହେ ନିତ୍ୟାଚାରେ ।
ଯେ ପୁଣ୍ୟକରେ ନିରନ୍ତରେ ॥୧୯୩
ଅଶେଷ ପୁଣ୍ୟକର୍ମଫଳେ ।
ସେ ମୋତେ ଲଭେ ଅନ୍ତକାଳେ ॥୧୯୪
ତେବେ ବୈଷ୍ଣବ ପଦ ପାଇ ।
ଏ ଲିଙ୍ଗ ଶରୀର ନାଶଇ ॥୧୯୫
ଲିଙ୍ଗ-ଭଞ୍ଜନେ ମୋକ୍ଷଯୋଗ ।
ନ ଲଭେ ମୃତ୍ୟୁ ଭୟ ସଙ୍ଗ ॥୧୯୬
ତୁମ୍ଭେ ଭକତ-ଜନ ସାର ।
ଲକ୍ଷଣ ଜାଣିଲୁ ତୁମ୍ଭର ॥୧୯୭
ଆମ୍ଭର ପ୍ରିୟ ଯେଣୁ ହରି ।
ତୁମ୍ଭେ ତେସନେ ମୋତେ ସରି ॥୧୯୮

ଏଣୁ ମାନବେ ଭକ୍ତ ଯେହି ।
ମୋ ପ୍ରିୟ ତହୁଁ କେହି ନାହିଁ ॥୧୯୯
ହେ ପ୍ରଚେତସ ଭାଇ ଦଶ ।
ତୁମ୍ଭର ବାକ୍ୟେ ହେଲୁ ତୋଷ ॥୨୦୦
ହରି-ଭଜନ ଯେ ପ୍ରକାର ।
କହିବା ଦୃଢ଼ଚିତ୍ତେ ଧର ॥୨୦୧
ସେ ହରି ପ୍ରସନ୍ନ ଯେମନ୍ତେ ।
ତାହା କହିବା ଆମ୍ଭେ ତୋତେ ॥୨୦୨
ଏ ସର୍ବ-ସ୍ତୋତ୍ର ମଧ୍ୟେ ସାର ।
ତୁମ୍ଭେ ସକଳ ଚିତ୍ତେ ଧର ॥୨୦୩

ମୈତ୍ରେୟ ଉବାଚ

ଏମନ୍ତ କହିଣ ମହେଶ ।
ଶୁଣ ବିଦୁର ଜ୍ଞାନରସ ॥୨୦୪
ନୃପକୁମରେ ଦୟାବହି ।
ପ୍ରସନ୍ନେ କହନ୍ତି ଗୋସାଇଁ ॥୨୦୫
ସର୍ବେ ଯୋଡ଼ିଣ ବେନି କର ।
ଶୁଣନ୍ତି ଢେ଼ରି ଶ୍ରୁତିଦ୍ୱାର ॥୨୦୬

ରୁଦ୍ର ଉବାଚ

ନିରାତିଶୟ ଯେ ପରମ ।
ଆନନ୍ଦ ସୂକ୍ଷ୍ମ ନିରଞ୍ଜନ ॥୨୦୭
ସ୍ୱରୂପେ ସିଦ୍ଧ ହୁଅ ତୁମ୍ଭେ ।
ଏଣୁ ଆନନ୍ଦ ନାମ ଭାବେ ॥୨୦୮
ତୁମ୍ଭର ଯେବା ବଡ ପଣ ।
ଜ୍ଞାନୀଙ୍କ ଆନନ୍ଦ କାରଣ ॥୨୦୯
ଏଣୁ ଆନନ୍ଦଲାଭ ମୋର ।
କରୁଣା କର ଚକ୍ରଧର ॥୨୧୦
ତୁ ସର୍ବ ଆତ୍ମା ତୋତେ ମୋର ।
ନିରତେ ହେଉ ନମସ୍କାର ॥୨୧୧
ତୋ ନାଭିପଦ୍ମ ନାରାୟଣ ।
ଏ ବିଶ୍ୱ ଉତ୍ପତ୍ତି କାରଣ ॥୨୧୨
ଏଣୁ ତୋ ନାମ ପଦ୍ମନାଭ ।
ବୋଲନ୍ତି ସଂସାର ଉଦ୍ଭବ ॥୨୧୩
ସେ ନାମେ ପ୍ରଣତି ମୋହର ।
ଏ ବିନୁ ନାହିଁ ବାଞ୍ଛା ଆର ॥୨୧୪

Dr. Sudhanshu Sekhar Mishra

ପୃଥିବୀ ଆପ ତେଜ ବାୟୁ ।
ଆକାଶ ପଞ୍ଚଭୂତ ଯେହୁ ॥୨୧୫
ଶବ୍ଦ ସ୍ପରଶ ରୂପ ରସ ।
ଗନ୍ଧ ଯେ ଇନ୍ଦ୍ରି ଏକାଦଶ ॥୨୧୬
ଏହାଙ୍କ ଅନ୍ତରାତ୍ମା ହୋଇ ।
ଯେ ବିଶ୍ୱ ସଂସାର ସର୍ଜଇ ॥୨୧୭
ତାହାଙ୍କୁ ପ୍ରଣତି ମୋହର ।
ଏଭବୁ କରେ ଯେ ନିସ୍ତାର ॥୨୧୮
ଯେ ଅନ୍ତଃକରଣ ଚତ୍ୱାର ।
ଏ ମନ ବୁଦ୍ଧି ଅହଙ୍କାର ॥୨୧୯
ତାଙ୍କ ଅନ୍ତର ଆତ୍ମା ହୋଇ ।
ପ୍ରକାଶ କରୁ ତୁ ଗୋସାଇଁ ॥୨୨୦
ଯେ ପ୍ରଭୁ ଚିତ୍ତ ଅଧିଷ୍ଠାତା ।
ଶ୍ରୀବାସୁଦେବ ଶୁଦ୍ଧଚେତା ॥୨୨୧
ସେ ଅତି ଶାନ୍ତ ନିର୍ବିକାରେ ।
ନମଇଁ ଭକ୍ତିଯୋଗେ ତାରେ ॥୨୨୨
ଅଧିଷ୍ଠ ଅହଙ୍କାରେ ଯେହୁ ।
ସଙ୍କରଷଣ ମହାବାହୁ ॥୨୨୩
ସେ ଯେ ଅନନ୍ତ ସୂକ୍ଷ୍ମମୟେ ।
ମୋର ପ୍ରଣାମ ତାଙ୍କ ପାୟେ ॥୨୨୪
ଯେ ପ୍ରଭୁ ବୁଦ୍ଧି ଅଧିଷ୍ଠାତା ।
ପ୍ରଦ୍ୟୁମ୍ନ ରୂପେ ବିଚାରନ୍ତା ॥୨୨୫
ଯେ ବିଶ୍ୱ ପ୍ରବୋଧ କରନ୍ତି ।
ସେ ପ୍ରଭୁ ପାଦେ ମୋ ପ୍ରଣତି ॥୨୨୬
ତାଙ୍କ ପ୍ରସନ୍ନେ ମୋ ଅଜ୍ଞାନ ।
ତକ୍ଷଣେ ହୋଇବ ଦହନ ॥୨୨୭
ଇନ୍ଦ୍ରିୟ ଅଧିପ ଯେ ମନ ।
ତାହାଙ୍କ ଅଧିଷ୍ଠାତା ନାମ ॥୨୨୮
ସେ ଅନିରୁଦ୍ଧ ଯେ ଈଶ୍ୱର ।
କରିବେ ସଂସାରୁ ନିସ୍ତାର ॥୨୨୯
ଯେ ସୂର୍ଯ୍ୟ ରୂପେଣ ପ୍ରକାଶ ।
ପ୍ରତ୍ୟକ୍ଷେ ସେ ପରମହଂସ ॥୨୩୦
ସେ ଜ୍ୟୋତିର୍ମୟ ରୂପ ଧରି ।
ଏ ବିଶ୍ୱ ପ୍ରକାଶକୁ କରି ॥୨୩୧

ସ୍ୱର୍ଗାପବର୍ଗ ଦ୍ୱାର ବେନି ।
ନାହିଁ ଯାହାର ବୃଦ୍ଧି-ହାନି ॥୨୩୨
ପବିତ୍ର-ଚିତ୍ତେ ଯାର ସ୍ଥିତି ।
ସେ ପ୍ରଭୁ ପାଦେ ମୋ' ପ୍ରଣତି॥୨୩୩
ଯେ ଅଗ୍ନି-ରୂପୀ ଭଗବାନ ।
ଯଜ୍ଞାଦି ଯାହାରେ ସାଧନ ॥୨୩୪
ପ୍ରବୃତ୍ତି ନିବୃତ୍ତି ଯେ କରି ।
ଯେ ହରି ସଂସାରେ ବିହରି ॥୨୩୫
ସେ ପିତୃଦେବଙ୍କ କାରଣ ।
ହୋଇଲେ ଅନ୍ନ ସ୍ୱରୂପେଣ ॥୨୩୬
ସେ ସୋମରୂପୀ ନାରାୟଣ ।
ଧଇଲେ ପୋଥି ଉଦ୍ଧାରିଣ ॥୨୩୭
ତ୍ରିପତି ପାଦେ ମୋ ପ୍ରଣତି ।
ଯେଣେ ହୋଇବ ମୋରଗତି॥୨୩୮
ସେ ଆପରୂପ ଭଗବାନ ।
ରସ ସ୍ୱରୂପେ ଆସ୍ୱାଦନ ॥୨୩୯
ଯେ ପୃଥ୍ୱୀ ରୂପେ ସର୍ବକାୟ ।
ବିଶ୍ୱ ସଂସାର ଯା'ର ଦେହ ॥୨୪୦
ସେ ପ୍ରଭୁ ଚରଣେ ମୋ ମନ ।
ନିରତେ ରହୁ ଅନୁକ୍ଷଣ ॥୨୪୧
ବିରାଟ ରୂପ ଭଗବାନ ।
ବନ୍ଦଇ ସେ ପ୍ରଭୁ ଚରଣ ॥୨୪୨
ଯାହାର ରୋମ-କୂପ ମୂଳେ ।
ଅଶେଷ-ବ୍ରହ୍ମାଣ୍ଡ ନିଷ୍କଳେ ॥୨୪୩
ଅଛନ୍ତି ପରମାଣୁ ବତ ।
ସେ ପାଦେ ମୋର ପ୍ରତିପାତ ॥୨୪୪
ଯେ ପ୍ରଭୁ ବାୟୁ-ରୂପ ଧରେ ।
ପ୍ରାଣ-ସ୍ୱରୂପ ସର୍ବଠାରେ ॥୨୪୫
ସେ ରୂପେ ପାଳନ୍ତି ଜଗତ ।
ସେ ସହ-ଓଜ-ବଳବନ୍ତ ॥୨୪୬
ସେ ପ୍ରଭୁ ରଖନ୍ତୁ ମୋ ପ୍ରାଣ ।
ତା ପାଦେ ପଶିଲି ଶରଣ ॥୨୪୭
ଆକାଶ-ରୂପୀ ଭଗବାନ ।
କରନ୍ତି ଯେ ବିଧିବିଧାନ ॥୨୪୮

ଶବ୍ଦ-ସ୍ୱରୂପେ ଶୂନ୍ୟେ ରହେ ।
ଯେ ଶବ୍ଦେ ଅର୍ଥ-ବୋଧ ହୁଏ ॥୨୪୯
ଯେ ବାହ୍ୟାନ୍ତରେ ଛନ୍ତି ପୂରି ।
ସେ ପାଦେ ପ୍ରଣତି ମୋହରି ॥୨୫୦
ସ୍ୱର୍ଗାଦି-ପୁଣ୍ୟଲୋକ ଯେହି ।
ପ୍ରବୃତ୍ତି-ନିବୃତ୍ତିରେ ରହି ॥୨୫୧
ସେ ସର୍ବ-କର୍ମଫଳ-ଦାତା ।
ଏ ଭବ ସଙ୍କଟୁ ତାରନ୍ତା ॥୨୫୨
ଅଧର୍ମେ ମୃତ୍ୟୁରୂପ ଧରି ।
ଦୁଃଖ-ପୀଡିତ କର୍ମ କରି ॥୨୫୩
ଯେ ଶୁଭକର୍ମେ ମୋକ୍ଷାଦାତା ।
ସେ ହରି ପାଦେ ମୋର ଚିନ୍ତା॥୨୫୪
ନମସ୍ତେ କୃଷ୍ଣରୂପ ହରି ।
ପୁରାଣ-ପୁରୁଷ ମୁରାରି ॥୨୫୫
ନମସ୍ତେ ସାଂଖ୍ୟ-ଯୋଗେଶ୍ୱର ।
ପରମ ଆତ୍ମା ରୂପ ଧର ॥୨୫୬
ଯେ କର୍ମେ ବିଷ୍ଣୁରୂପ ଧରେ ।
ବ୍ୟାପକବନ୍ତ ଏ ସଂସାରେ ॥୨୫୭
ଯେ ରୁଦ୍ର ରୂପ ଧରିଛନ୍ତି ।
କାଳାନ୍ତେ ତ୍ରୈଲୋକ୍ୟ ନାଶନ୍ତି ॥୨୫୮
ସେ ରୁଦ୍ରଦେବ ପାଦେ ମୋର ।
ପ୍ରଣତି ହେଉ ନିରନ୍ତର ॥୨୫୯
ସେ ମୋର ତ୍ରିତାପ ନାଶିବେ ।
ଅବିଦ୍ୟା-ବନ୍ଧୁ ନିସ୍ତାରିବେ ॥୨୬୦
ଯେ ବ୍ରହ୍ମସ୍ୱରୂପ ଗୋସାଇଁ ।
ଏ ସୃଷ୍ଟି ସର୍ଜିବାର ପାଇଁ ॥୨୬୧
ଏ ରୂପେ ଯେବା ଭଗବାନ ।
ସେ ପ୍ରଭୁ ଚରଣେ ଶରଣ ॥୨୬୨
ସେ ଆତ୍ମ ଭକତି ଘେନିବେ ।
ଦର୍ଶନେ ଆଶା ପୂରାଇବେ ॥୨୬୩
ଯେ ରୂପ ଭକତେ ପୂଜନ୍ତି ।
ଇନ୍ଦ୍ରିୟଗୁଣ ପ୍ରକାଶନ୍ତି ॥୨୬୪
ନରରୁଚିର ଘନଶ୍ୟାମ ।
ପ୍ରତୁଲ୍ୟ ନୋହେ କୋଟିକାମ ॥୨୬୫

Dr. Sudhanshu Sekhar Mishra

ଯେ ରୂପ ପ୍ରକାଶେ ଶୋଭନ୍ତି ।
ଅଶେଷ-ଗୁଣ ସେ ବହନ୍ତି ॥ ୨୬୬
ଅବ୍ୟୟ ଗୁଣ ଏକ ଯା'ର ।
କୋଟି-ଅନଙ୍ଗ ଦର୍ପ ହର ॥ ୨୬୭
ଏ ସର୍ବ ମୋହର ତ୍ରିତାପ ।
ଦର୍ଶନେ ହରିବେ ସନ୍ତାପ ॥ ୨୬୮
ଆଜାନୁ ଲମ୍ବିତ ଶ୍ରୀଭୁଜ ।
ଶଙ୍ଖାଦି ଚାରିଚିହ୍ନ ତେଜ ॥ ୨୬୯
ନୀଳ ଜୀମୂତ ଦିବ୍ୟକାନ୍ତି ।
ବଳୟ ମଣି ବିଭାଜନ୍ତି ॥ ୨୭୦
ସେ କରେ ଆଶ୍ରୟ ଯେ କରି ।
ସେ ମୋକ୍ଷପଦେ ଅଧିକାରୀ ॥ ୨୭୧
ଏ ମୃତ୍ୟୁ ଜରା ଭୟ ଯେତେ ।
ସେ ସର୍ବ ନାଶିବେ ତୁରିତେ ॥ ୨୭୨
ଅତି ସୁଠାମ ସୁଆନନ ।
ଅରୁଣ ପଙ୍କଜ ଲୋଚନ ॥ ୨୭୩
ଆବୃତ୍ତ ଶୋଭା ଚାରିକର ।
ଭକ୍ତଜନଙ୍କ ତାପ ହର ॥ ୨୭୪
ଶିରେ ସୁନୀଳ ସୁକୁନ୍ତଳ ।
ଦେଖି ଅନଙ୍ଗକୋଟି ଭୋଳ ॥ ୨୭୫
ଚୂଡା ପ୍ରବନ୍ଧ ଶିଖେ ସାଜେ ।
ରତ୍ନକିରୀଟ ତେଜ ପୁଞ୍ଜେ ॥ ୨୭୬
ଦେଖି ଅନଙ୍ଗ ଭ୍ରମ କି ସେ ।
ଭକତଜନ ରିପୁ ଧ୍ୱଂସେ ॥ ୨୭୭
ସୁଚାରୁ କପୋଳ ଅଳକା ।
ଯେହ୍ନେ ଶୋଭିତ ରାହୁରେଖା॥ ୨୭୮
ଚାରୁ ସୁନ୍ଦର ସୁକପୋଳ ।
ଅଳାକା ବେଢ଼ି ଭୃଙ୍ଗମେଳ ॥ ୨୭୯
ଭ୍ରୂଭଙ୍ଗ ଯୁଗଳ ସୁଠାଣି ।
ଅତନୁ-ଚାପ ପ୍ରଭା ଜିଣି ॥ ୨୮୦
ଶୋଭନେ ନାହିଁ ପଟାନ୍ତର ।
ମନ ବଚନେ ଅଗୋଚର ॥ ୨୮୧
ଦିବ୍ୟ ସୁସଞ୍ଚ ନାସା ଠାଣି ।
ତିଳ ପ୍ରସୂନ ପ୍ରଭା ଜିଣି ॥ ୨୮୨

ତା' ପରେ ସିନ୍ଦୁଫଳ ରାଜେ ।
ଦେଖି ଅନଙ୍ଗ ଦର୍ପ ଗଞ୍ଜେ ॥ ୨୮୩
ଅରୁଣାଙ୍କିତ ବିମ୍ବାଧର ।
ଉପମା ନାହିଁ ତିନିପୁର ॥ ୨୮୪
ନବ-ଅରୁଣ ଜିଣି ଶୋଭା ।
ଦେଖି ଅନଙ୍ଗକୋଟି ଲୋଭା॥ ୨୮୫
ଶୁଭ୍ର ଦଶନ ବେନି-ପଙ୍କ୍ତି ।
ଜିତ ଡାଳିମ୍ବ ବୀଜ କାନ୍ତି ॥ ୨୮୬
ସସ୍ମିତେ ବିମ୍ବାଧର ରାଜେ ।
ଭକତଜନ ମନ ରଞ୍ଜେ ॥ ୨୮୭
ତା ତୁଲେ ନାହିଁ ପଟାନ୍ତର ।
ସେ ଅତି ଶୁଭ୍ର ନିଶାକର ॥ ୨୮୮
ଶ୍ରୁତି ଯୁଗଳେ ଝଟକନ୍ତି ।
ମକର କୁଣ୍ଡଳ ସୁକାନ୍ତି ॥ ୨୮୯
ଈଷିତ ଅପାଙ୍ଗ ଈକ୍ଷଣ ।
ମୋହିତ ସୁର ମୁନିଗଣ ॥ ୨୯୦
ନୀଳସୁନ୍ଦର କଳେବର ।
ତଡିତ ଜିଣି ପୀତାମ୍ବର ॥ ୨୯୧
ନୀଳସୁନ୍ଦର ଘନେ ଯେହ୍ନେ ।
ଝଟକେ ବସନ ତେସନେ ॥ ୨୯୨
ନୀଳମର୍କତ ଚାରୁ ପ୍ରଭା ।
ଚାରୁ ଚତ୍ୱାର ଭୁଜ ଆଭା ॥ ୨୯୩
ନିଜ ଆୟୁଧେ ବିରାଜନ୍ତି ।
ଅଜ୍ଞାନତମ ବିନାଶନ୍ତି ॥ ୨୯୪
ସେ ଶଙ୍ଖ ଚକ୍ର ଶୋଭାକର ।
କୋଟି ଆଦିତ୍ୟ ତେଜହର ॥ ୨୯୫
ଗଦା କମଳ ଆଦି ଯେତେ ।
ଶୋଭନ୍ତି ନାନା ତେଜବନ୍ତେ॥ ୨୯୬
କିରୀଟ କୁଣ୍ଡଳ ନୂପୁର ।
କଟୀ-ମେଖଳା ଶୋଭାକର ॥ ୨୯୭
ଆଜନୁ ଲମ୍ବେ ବନମାଳ ।
ଶୋଭେ ଶ୍ରୀବତ୍ସ ବକ୍ଷସ୍ଥଳ ॥ ୨୯୮
ସେ ରୂପ କେ ପାରିବ ଚିହ୍ନି ।
ଦେଖି ଅନଙ୍ଗ ଭ୍ରମ ଯା'ନ୍ତି ॥ ୨୯୯

ସୁଗ୍ରୀବ କଣ୍ଠ ଯେ ସୁନ୍ଦର ।
ଶୋଭେ କୌସ୍ତୁଭମଣି ସାର ॥ ୩୦୦
ଏ ମନ୍ତ ରୂପ ଦେଖାଇବ ।
ଆମ୍ଭର ତାପ ବିନାଶିବ ॥ ୩୦୧
ଯେ ହୃଦେ କମଳା ଶୋଭନା ।
ନୀଳ ପାଷାଣେ ଯେହ୍ନେ ହେମା॥ ୩୦୨
ରେଚକ ପୂରକ ଯେ ଶ୍ୱାସେ ।
କି ଜଳ-ଲହରୀ ସଦୃଶେ ॥ ୩୦୩
ସୁନୀଳ ରୋମଶ୍ରେଣୀ ଜଳେ ।
ଦିଶନ୍ତି ଯେସନେ ପ୍ରଚଳେ ॥ ୩୦୪
ଉଦରେ ତ୍ରିବଳୀ ମଞ୍ଜୁଳ ।
ଶୋଭିତ ସୁନାଭି ଗଭୀର ॥ ୩୦୫
ଯେ ଦ୍ୱାରେ ଏ ବିଶ୍ୱ ନିର୍ଗତ ।
ଫେରି ପ୍ରବେଶେ କି ଆବର୍ତ୍ତ ॥ ୩୦୬
ସେ ଶ୍ୟାମ-ନିତମ୍ବେ ଦୁକୂଳ ।
ବିରାଜେ ସୁବର୍ଣ୍ଣ ମେଖଳ ॥ ୩୦୭
ସୁସମ ଚାରୁ ଅଂଘ୍ରିବର ।
ଜଘନ-ଜାନୁ ଶୋଭାକର ॥ ୩୦୮
ଊରୁ-ଯୁଗଳ ଶୋଭା ଠାଣି ।
ଉଲଟ-ରମ୍ଭାକୁ ସେ ଜିଣି ॥ ୩୦୯
ଶ୍ରୀଯୁତ ଚରଣ-କମଳ ।
ଶୋଭିତ ନଖଶ୍ରେଣୀ କୂଳ ॥ ୩୧୦
କୋଟି-ଶଶାଙ୍କ ଶୁଭ୍ରକାନ୍ତି ।
ଜିତ ସୁଶ୍ରେଣୀ ନଖପନ୍ତି ॥ ୩୧୧
ସରୋଜ-ପାଦଯୁଗ ଯହିଁ ।
ଦର୍ଶନେ ଭବ-ଭୟ ନାହିଁ ॥ ୩୧୨
ଏ ସର୍ବେ ମୋହର ତ୍ରିତାପ ।
ଦର୍ଶନେ ହରିବେ ଦୁରାପ ॥ ୩୧୩
ଏମନ୍ତ ରୂପ ପ୍ରକାଶିବ ।
ଆମ୍ଭ ସଂଶୟ ବିନାଶିବ ॥ ୩୧୪
ତୁ ଗୁରୁ ରୂପେ ନାରାୟଣ ।
ମୂଢ ଅଜ୍ଞାନୀଙ୍କ କାରଣ ॥ ୩୧୫
ସକଳ ଭୂତେ ତୁମ୍ଭେ ଥାଇ ।
ପ୍ରାଣୀଙ୍କି ଜ୍ଞାନଦୀକ୍ଷା ଦେଇ ॥ ୩୧୬

Dr. Sudhanshu Sekhar Mishra

ସେ ଜ୍ଞାନେ ପ୍ରାଣୀଙ୍କ ନିସ୍ତାର।
ଅଜ୍ଞାନୀ ମଜ୍ଜେ ଏ ସଂସାର ॥୩୧୭
ଆତ୍ମାର ସିଦ୍ଧି ଯେ ଇଚ୍ଛନ୍ତି ।
ତୋ ରୂପ ଦର୍ଶନ ବାଞ୍ଛନ୍ତି ॥୩୧୮
ଯେ ନିତ୍ୟେ ସ୍ୱଧର୍ମ ଆଚରେ ।
ତୁମ୍ଭ ଭକତି ନିଷ୍ପାପରେ ॥୩୧୯
ତୋ ପଦେ ଅଭୟ ଭକତି ।
ସୁସ୍ଥିରେ ରହେ ତା'ର ମତି ॥୩୨୦
ସକଳ ଦେହେ ତୁ ଦୁର୍ଲଭ ।
ଭକତେ ହେଉ ତୁ ସୁଲଭ ॥୩୨୧
ଯେ ସୁଖ-ଭୋଗ ନିତ୍ୟ କରେ।
ସେ କାହିଁ ଦେଖିବ ତୁମ୍ଭରେ ॥୩୨୨
କେବଳ ଆତ୍ମାଜ୍ଞାନୀ ଜନ ।
ତୋତେ ଲଭନ୍ତି ଭଗବାନ ॥୩୨୩
ଏକାନ୍ତ ଭକ୍ତିଯୋଗେ ନର ।
ଯେ ଭଜେ ତୁମ୍ଭର ପୟର ॥୩୨୪
ସ୍ୱର୍ଗାଦି ନ ବାଞ୍ଛଇ ମନେ ।
ତୋ' ପାଦପଦ୍ମ ସୁଧାପାନେ ॥୩୨୫
ନିରତେ ଚିତ୍ତେ ଦୃଢ଼େ ଧ୍ୟାୟି
ତରନ୍ତି ଭବ-ଦୁଃଖୁ ସେହି ॥୩୨୬
ଯେ ତୁମ୍ଭ ଚରଣେ ସେବିବ ।
ସେ କାଳ ଭୟ ବିନାଶିବ ॥୩୨୭
ଭ୍ରୂକୁଟି କୁଟିଳ ପ୍ରକାଶେ ।
ତକ୍ଷଣେ ସଂସାର ବିନାଶେ ॥୩୨୮
ଯେ କାଳ ଅତି ଭୟଙ୍କର ।
ତୋର ସେବକେ ସେ କିଙ୍କର ॥୩୨୯
ଏଣୁ ଭକତ ସଙ୍ଗେ ତୋ'ର ।
କ୍ଷଣେ ନିମିଷେ ଯେଉଁ ନର ॥୩୩୦
ସେ ସଙ୍ଗୁ ଯେବା ସୁଖ ହୋଇ।
ସ୍ୱର୍ଗାପବର୍ଗ ସମ ନୋହି ॥୩୩୧
ଏ ମର୍ତ୍ତ୍ୟଭୋଗ ତୁଚ୍ଛ ମଣି ।
ତୋ' ଭକ୍ତ ସଙ୍ଗେ ଯେତେ ପ୍ରାଣୀ॥୩୩୨
ତୋର ପଙ୍କଜ-ଅଂଘ୍ରି-ରସ ।
ଯେ ରସେ କଳୁଷ ବିନାଶ ॥୩୩୩
ଯେବା ପିବନ୍ତି ଅନୁଦିନେ ।
ବ୍ରହ୍ମ ଆନନ୍ଦ ସୁଧାପାନେ ॥୩୩୪
ଯେ ଗଙ୍ଗାସ୍ନାନ ନିତ୍ୟେ କରେ।
ଅଶେଷ-ପାପୁ ସେ ନିସ୍ତରେ ॥୩୩୫
ତୋର ଭକତ ସଙ୍ଗେ ଯେବେ।
ଯେ କ୍ଷଣେ ବସେ ଶୁଦ୍ଧ ଭାବେ॥୩୩୬
ପବିତ୍ର ହୋଏ ତତକ୍ଷଣେ ।
ଜନ୍ମ ମରଣ ନିବାରଣେ ॥୩୩୭
ଏ ସାଧୁ-ସଙ୍ଗ ଭାଗ୍ୟେ ପାଇ।
ସକଳ-ଭୂତେ ଦୟାବହି ॥୩୩୮
ସୁସାଧୁଜନଙ୍କ ସଙ୍ଗତ ।
ଯେ ପ୍ରାଣୀ କରେ ଅବିରତ ॥୩୩୯
ସେ ଯେ ତୁମ୍ଭର କୃପା ପାଇ।
ମାୟା-ପଟଳୁ ନିସ୍ତରଇ ॥୩୪୦
ଯେ ଶୁଦ୍ଧ ଭକ୍ତିରେ ଭଜନ୍ତି ।
ବିଶୁଦ୍ଧ ହୋଏ ତା'ଙ୍କ ମତି ॥୩୪୧
ବିଷୟ ଭ୍ରମେ ଭ୍ରମ ନୋହେ।
ଅଜ୍ଞାନ ନାଶି ଜ୍ଞାନ ରହେ ॥୩୪୨
ଏଣୁ ଭକତ ସଙ୍ଗ ମେଳେ ।
ଲଭେ ଭକତି ସୁନିଶ୍ଚଳେ ॥୩୪୩
ଯେ ତତ୍ତ୍ୱେ ଏ ବିଶ୍ୱ ବ୍ୟକତ।
ବିଶ୍ୱେ ଶୋଭିତ ଯେଉଁ ତତ୍ତ୍ୱ ॥୩୪୪
ତତ୍ତ୍ୱ ପରମ ବ୍ରହ୍ମଜ୍ୟୋତି ।
ଆକାଶ ପ୍ରାୟେ ବ୍ୟାପି ଛନ୍ତି ॥୩୪୫
ଏ ବିଶ୍ୱ ମିଥ୍ୟା ସତ୍ୟ ପରି ।
ସର୍ଜି ପାଳିଣ ତା' ସଂହରି ॥୩୪୬
ଯା ମାୟା ବହୁରୂପ ଧରେ ।
ଜୀବରେ ଭେଦ-ବୁଦ୍ଧି କରେ॥୩୪୭
ମାୟା ସ୍ପରଶ ଯା'ର ନାହିଁ ।
ଜାଣିବ ବ୍ରହ୍ମରୂପ ସେହି ॥୩୪୮
ଯେ ଅନ୍ତଃ ବିକାର ବିହୀନ ।
ସେହିଟି ଜାଣ ତତ୍ତ୍ୱଜ୍ଞାନ ॥୩୪୯
ନିର୍ଗୁଣେ ସଗୁଣ ବୋଲନ୍ତି ।
କ୍ରିୟା କଳାପେ ଯୋଗୀ ଚିନ୍ତି॥୩୫୦
ଏହାଙ୍କ ପ୍ରାୟେ ଭଜେ ଯେହୁ।
ପଣ୍ଡିତ ବେଦାଗମେ ସେହୁ ॥୩୫୧
ପୁରୁଷ-ଆଦି ତୁମ୍ଭେ ପର ।
ଅଶେଷ-ବ୍ରହ୍ମାଣ୍ଡ-ଈଶ୍ୱର ॥୩୫୨
ତୁମ୍ଭର ଶକ୍ତି ଗୁପ୍ତେ ଥିଲା ।
କାଳାନ୍ତେ ଶୟନୁ ଉଠିଲା ॥୩୫୩
ସେ ଶକ୍ତି ତୋର ଆଜ୍ଞା ଭାବେ ।
ସତ୍ତ୍ୱାଦି ଭେଦ କଲା ତେବେ॥୩୫୪
ତହୁଁ ମହତ-ଅହଙ୍କାର ।
ଜଳାଗ୍ନି-ଆକାଶ-ସମୀର ॥୩୫୫
ଭୂଦେବ-ଋଷି-ସର୍ବଭୂତେ ।
ଜନ୍ମିଲେ ଏ ନାନା ଜଗତେ ॥୩୫୬
ମାୟାରୁ ଏ ଚାରି ପ୍ରକାର ।
ଯେ ତତ୍ତ୍ୱେ ସଞ୍ଚରିଲା ପୁର ॥୩୫୭
ନିର୍ମିତ କଲେ ଭଗବାନ ।
ଯେ ପ୍ରଭୁ ଜଗତ ଜୀବନ ॥୩୫୮
ଅଶେଷ ଶରୀରେ ପ୍ରବେଶ ।
ଏଣୁ ଜୀବ ନାମ ପୁରୁଷ ॥୩୫୯
ଅବିଦ୍ୟା-ବନ୍ଧେ ବଦ୍ଧ ହୋଇ।
ଏ ଦୁଃଖ-ସୁଖ ସେ ଭୁଞ୍ଜଇ ॥୩୬୦
ମାୟାରୁ ସୃଜନ ସେ କଲେ ।
ନିୟନ୍ତା-ପୁରୁଷ ହୋଇଲେ ॥୩୬୧
ଭୂତରୁ ଭୂତକୁ ନିଅନ୍ତି ।
ଯେହ୍ନେ ଆକାଶେ ମେଘପନ୍ତି॥୩୬୨
ପବନେ ନାନା ଦିଗେ ଯା'ନ୍ତି ।
ଏ ଭାବେ ଭୂତେ ସଞ୍ଚରନ୍ତି ॥୩୬୩
ଜୀବକୁ କର୍ମବଳେ ଟାଣି ।
ସଂହାରି ନିସ୍ତାରୁ ତୁ ପୁଣି ॥୩୬୪
ଏ ଜୀବ କର୍ମେ ହୋଇ ମତ୍ତ।
ଲୋଭେ ବିଷୟେ ଦେଇ ଚିତ୍ତ॥୩୬୫
ତୁ ହେଉ ଅପ୍ରମିତ ଅସି ।
ତକ୍ଷଣେ ଜୀବକୁ ବିନାଶି ॥୩୬୬
କାଳ ସ୍ୱରୂପେ ପ୍ରାଣହର ।
ଯେ ତୋତେ ନ ଭଜେ ପାମର॥୩୬୭

Dr. Sudhanshu Sekhar Mishra

ଏମନ୍ତ ପ୍ରଭୁ ତୋ'ର ମାୟା ।
ଜୀବ ନ ଜାଣି ଭୋଗେ ଏହା ॥୩୬୮

କ୍ଷୁଧା-ଅନଳେ ଓଷ୍ଠ ଅହି ।
ଚାଟିଣ ମୂଷା ଯେହ୍ନେ ଖାଇ ॥୩୬୯

ତେସନ ଅନ୍ତକ ତୁ ହରି ।
ଜୀବ ବିନାଶୁ ଭୋଗେ କରି ॥୩୭୦

ତୋ' ମାୟା-ଭୋଗେ ଜୀବ ବଶ ।
ଏ ଘେନି ତୁ କାଳ-ପୁରୁଷ ॥୩୭୧

ଏ ବେନି ତୋ' ପାଦ-କମଳେ ।
ଶରଣ ରଖ ତୁହି ବେଳେ ॥୩୭୨

ଆମ୍ଭେ ବ୍ରହ୍ମାଦି ଯା' ଚରଣେ ।
ସେବୁ ଏ ସୃଷ୍ଟିର କାରଣେ ॥୩୭୩

ଉପତ୍ତି ନ ପାରୁ ଯେ କରି ।
ତୋ' ପାଦ ବିନୁ ନରହରି ॥୩୭୪

ଏଣୁ ଏ ମନୁ ଚତୁର୍ଦ୍ଦଶ ।
ତୋ' ପାଦେ ଭଜେ ହୃଷୀକେଶ ॥୩୭୫

ଅନେକ ସୃଷ୍ଟିକି ସୃଜନ୍ତି ।
ଅନ୍ତେ ତୋ' ଶରୀରେ ପଶନ୍ତି ॥୩୭୬

ସେ ଘେନି ତୋ' ପାଦକମଳ ।
କେ ବୁଧ ଛାଡେ ଆଦିମୂଳ ॥୩୭୭

ଯାବତ ଜୀବ ଏ ଶରୀରେ ।
ଛାଡି ନ ପାରନ୍ତି ନିର୍ଭରେ ॥୩୭୮

ତୋ' ପାଦ-ଧ୍ୟାନେ ନିଜ ଦେହୀ ।
ଯେ ତ୍ୟାଗେ ଅନୁରାଗ ବହି ॥୩୭୯

ତାହାକୁ ବୋଲି ସୁପଣ୍ଡିତ ।
ସେ ପ୍ରାଣୀ ତୁମ୍ଭର ଭକତ ॥୩୮୦

ଏଣୁ ଏ ତୋ ପାଦକମଳେ ।
ଶରଣ ଇଛୁ ଆମ୍ଭେ ବଳେ ॥୩୮୧

ଏ ବିଶ୍ୱ-ଭୟ ରୁଦ୍ର କୋପେ ।
ବିନାଶ କରେ କାଳ ରୁପେ ॥୩୮୨

ଏଣୁ ତୁମ୍ଭରେ କରୁ ସ୍ତୁତି ।
ଭୋନାଥ ହୁଅ ଆମ୍ଭ ଗତି ॥୩୮୩

ଏ ତୁମ୍ଭ ପଙ୍କଜ-ଚରଣ ।
ଯେ ପ୍ରାଣୀ ପଶନ୍ତି ଶରଣ ॥୩୮୪

ଅଶେଷ-ଦ୍ୱନ୍ଦ୍ୱ-ମାୟା-ଭୟେ ।
ଖଣ୍ଡନ୍ତି ପ୍ରଭୁ ଦେବରାୟେ ॥୩୮୫

ସେ ରୁଦ୍ର କହୁଛି କୁମର ।
ଏ ଗୀତା ଶୁଦ୍ଧ ଚିତ୍ତେ ଧର ॥୩୮୬

ଏ ସ୍ତବ ପଢ଼ନ୍ତେ ତୁମ୍ଭର ।
ଅଜ୍ଞାନ ତମ ହେବ ଦୂର ॥୩୮୭

ନିତ୍ୟେ ସ୍ୱଧର୍ମ-ମାର୍ଗେ ଥିବ ।
ସକଳ କୃଷ୍ଣେ ସମର୍ପିବ ॥୩୮୮

ମନ ନିବେଶି ପଦ୍ମପାଦେ ।
ଭବୁ ତରିବ ଅପ୍ରମାଦେ ॥୩୮୯

ସେ ଆତ୍ମା ସର୍ବ -ଘଟଧାରୀ ।
ଦୃଶ୍ୟେ ଅଦୃଶ୍ୟେ ଛନ୍ତି ପୂରି ॥୩୯୦

ତା'ଙ୍କୁ ଏ ରୂପେ ଧ୍ୟାନ କର ।
ବଦନେ ତା' ନାମ ଉଚ୍ଚାର ॥୩୯୧

ଶ୍ରବଣ କର ନିରବଧି ।
ତା' ପାଦେ ଦେଇ ଚିତ୍ତ ବୁଦ୍ଧି ॥୩୯୨

ଏ ଯୋଗ ସର୍ବେ ଚିତ୍ତେ ଧର ।
ଏ ମୁନିବ୍ରତ ଦୃଢ଼େ କର ॥୩୯୩

ସମତା ଭାବେଣ ଆରାଧି ।
ହୃଦରେ ଘୋଷ ନିରବଧି ॥୩୯୪

ଏ ଗୀତା ପୂର୍ବେ ଧାତା ମୋତେ ।
କହିଲେ ଭୃଗ୍ୱାଦି ସହିତେ ॥୩୯୫

ଏ ସ୍ତବ ପଢ଼ନ୍ତେ ଆମ୍ଭର ।
ଅଜ୍ଞାନଦଶା ଗଲା ଦୂର ॥୩୯୬

ଅଜ୍ଞାନ ଶେଷେ ଜ୍ଞାନ ଦୃଶ୍ୟ ।
ସକଳେ ହୋଇଲୁ ହରଷ ॥୩୯୭

ତେବେ ବିବିଧମତେ ଆମ୍ଭେ ।
ସୃଷ୍ଟି ସର୍ଜିଲୁ କ୍ରିୟା ଦମ୍ଭେ ॥୩୯୮

ଏ ଗୀତା ପଠନ ଶ୍ରବଣେ ।
ଯେ ଫଳ ହୋଇବ ବିଧାନେ ॥୩୯୯

କହିବା ଶୁଦ୍ଧ-ଚିତ୍ତେ ଶୁଣ ।
ବେଦ ବେଦାନ୍ତେଯେ ପ୍ରମାଣ ॥୪୦୦

ଏହା ଯେ ନିରତେ ଶୁଣନ୍ତି ।
ତ୍ରିବିଧ-ତାପ ବିନାଶନ୍ତି ॥୪୦୧

ଯେବା ଆଦରେ ଦୃଢେ ସ୍ମରେ ।
ସକଳ ଆପଦୁ ଉଦ୍ଧରେ ॥୪୦୨

ଏ ସର୍ବ-ଧର୍ମ ମଧ୍ୟେ ସାର ।
ଏ ବିନୁ ନାହିଁ ଶ୍ରେୟ ଆର ॥୪୦୩

ହେ ପୁତ୍ରେ ଦୃଢ଼ଚିତ୍ତେ ଧର ।
ଦୁଃଖସାଗରୁ ହେବ ପାର ॥୪୦୪

ଇହ ଲୋକରେ ସୁଖ ଭାବ ।
ତୃତୀୟ-ତାପ ନ ଲାଗିବ ॥୪୦୫

ଏ ସ୍ତବେ ପୂଜ ହରିପାଦ ।
ଖଣ୍ଡିବ ବିଷୟା-ବିଷାଦ ॥୪୦୬

ତୁମ୍ଭର ଭକ୍ତି ସେ ଘେନିବେ ।
କାମାଦି-ଶତ୍ରୁ ନିବାରିବେ ॥୪୦୭

କାମନା-ଭୋଗେ ଇଚ୍ଛା ଯା'ର ।
ସମ୍ପୂର୍ଣ୍ଣେ ଲଭିବ ସେ ନର ॥୪୦୮

ପ୍ରଭାତ ମଧ୍ୟାହ୍ନ ସନ୍ଧ୍ୟାରେ ।
ଯେବା ପଢ଼ନ୍ତି ନିରନ୍ତରେ ॥୪୦୯

ନିର୍ମଳେ ପ୍ରକାଶଇ ଜ୍ଞାନ ।
ଅସତ୍ୟ ଦେଖେ ଭୋଗମାନ ॥୪୧୦

ଯେ ଶ୍ରଦ୍ଧାବିଧାନେ ପଢ଼ନ୍ତି ।
ଅଜ୍ଞାନ-ଭ୍ରମେ ନ ପଡନ୍ତି ॥୪୧୧

ଅଜ୍ଞାନ ଗୃହବାସ ତା'ର ।
ସେ ଜନ୍ମ ନୋହେ ପୁନର୍ବାର ॥୪୧୨

ମହେଶ କହିଲେ କର୍ଣ୍ଣରେ ।
ଆନନ୍ଦେ ଶୁଣି ତା କୁମରେ ॥୪୧୩

ସାଷ୍ଟାଙ୍ଗେ ତାହାଙ୍କ ଚରଣେ ।
ନମିଲେ ପ୍ରଚେତସ ଗଣେ ॥୪୧୪

କଲ୍ୟାଣ କଲେ ଶୂଳଧର ।
ସକଳ-ବାଞ୍ଛା ପୂର୍ଣ୍ଣକର ॥୪୧୫

ସେ ଗୁରୁ-ଶିଷ୍ୟଙ୍କ ଚରିତ ।
ମୈତ୍ରେୟ-ବିଦୁର କଥିତ ॥୪୧୬

କହିଲୁ ତୁମ୍ଭଙ୍କୁ ପ୍ରସନ୍ନେ ।
ଯେ ଏହା ଶୁଣେ ଶୁଦ୍ଧମନେ ॥୪୧୭

ଏ ଘୋର ସଂସାରୁ ତ୍ୱରନ୍ତି ।
ମରଣେ ନାହିଁ ତା'ଙ୍କ ଭୀତି ॥୪୧୮

Dr. Sudhanshu Sekhar Mishra

ମୈତ୍ରେୟ-ବିଦୁର ସମ୍ବାଦ ।
କହିଲୁ ଶୁଣ ଭକ୍ତି ଭେଦ ॥୪୧୯
ଯେ ଏହା ଶ୍ରଦ୍ଧାରେ ଶୁଣନ୍ତି ।
ଚତୁରବର୍ଗ ଫଳ ପା'ନ୍ତି ॥୪୨୦
ଭଣଇ ବିପ୍ର ଜଗନ୍ନାଥ ।
ଚତୁର୍ଥସ୍କନ୍ଧେ ଭାଗବତ ॥୪୨୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ରୁଦ୍ରଗୀତଂ ନାମ
ଚତୁର୍ବିଂଶୋଽଧ୍ୟାୟଃ ॥

---

## ପଞ୍ଚବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ସୁମନେ ହେ ବିଦୁର ।
ଏମନ୍ତେ ପ୍ରଭୁ ମହେଶ୍ୱର ॥୧
କୃପା ଯେ କଲେ ସେମାନଙ୍କୁ ।
କହିଲେ ରୁଦ୍ରଗୀତା ତା'ଙ୍କୁ ॥୨
ସେ ସର୍ବେ ହରଷ ହୋଇଲେ ।
ବିଧାନେ ଶିବଙ୍କୁ ପୂଜିଲେ ॥୩
ତାହାଙ୍କୁ ଦେଇ ଦିବ୍ୟଜ୍ଞାନ ।
ଶିବ ହୋଇଲେ ଅନ୍ତର୍ଦ୍ଧାନ ॥୪
ସେ ଦଶଭାଇ ପ୍ରଚେତସ ।
ଜ୍ଞାନରେ ହୋଇଲେ ହରଷ ॥୫।
ଭଗବାନଙ୍କ ସ୍ତୋତ୍ର-ଗାନେ ।
ନିମଗ୍ନ ପ୍ରଚେତସ ମାନେ ॥୬
ବୁଡିଣ ସମୁଦ୍ର-ସଲିଳେ ।
ସେ ଘୋର-ତପସ୍ୟା ନିଷ୍ଠଳେ ॥୭
ଅୟୁତେ-ସମ୍ବତ୍ସର ଶେଷ ।
ତପ ସାଧିଲେ ଭାଇ ଦଶ ॥୮
ରହିଲେ ଷଡ-ରିପୁ ମାରି ।
ମନ-ପର୍ବନିଁ ହୃଦେ ଧରି ॥୯
ନିତ୍ୟେ ପଢ଼ନ୍ତି ରୁଦ୍ରଗୀତା ।
ତପେ ହୋଇଲେ ଉର୍ଦ୍ଧ୍ୱରେତା ॥୧୦
ତଦନ୍ତେ ଶୁଣ ହେ ବିଦୁର ।
ସେ ଯେ ପ୍ରାଚୀନ ନୃପବର ॥୧୧
ରାଜ୍ୟ କରନ୍ତି ଅବିବେକ ।
ସ୍ୱଭାବେ ଅଜ୍ଞାନୀ କାମୁକ ॥୧୨
ହିଂସକ-କର୍ମ ଜାଣି ତା'ର ।
ମନେ ଚିନ୍ତନ୍ତି ମୁନିବର ॥୧୩
ଏ ମହୀପତି ପୃଥୁ ବଂଶ ।
ଅକର୍ମ-ମାର୍ଗେ ଗଲା ନାଶ ॥୧୪
ବିପ୍ର ବଚନେ ଭ୍ରମ ହେଲା ।
ଅନେକ ପଶୁ ବଧ କଲା ॥୧୫
ନିର୍ଦ୍ଦୋଷ-ଜୀବ ଯଜ୍ଞେ ମାରି ।
ଯେ ତାର ନୁହନ୍ତି ବଇରୀ ॥୧୬
ଦୁର୍ଲଭ-ଜନ୍ମ କଲା ନାଶ ।
କର୍ମେ ହୋଇଲା ଜ୍ଞାନଭ୍ରଂଶ ॥୧୭
ଏମନ୍ତ ସ୍ମରି ଦୟା-ଚିତ୍ତ ।
ସେ ମୁନି ସତ୍ୱରେ ଆଗତ ॥୧୮
ସେ ସର୍ବଘଟେ ଦୟା ପର ।
ଅଧ୍ୟାତ୍ମ-ବିଦ୍ୟା ଜ୍ଞାନେ ସାର ॥୧୯
କରୁଣା କରି ସେ ରାଜାଙ୍କୁ ।
ଦର୍ଶନ ଦେଲେ ଆସି ତାଙ୍କୁ ॥୨୦
ମୁନିଙ୍କି ଦେଖିଣ ରାଜନ ।
ଉଠିଲା ଆସନ ତେଜିଣ ॥୨୧
ସତ୍ୱରେ କରି ନମସ୍କାର ।
ଆନନ୍ଦେ ପୂଜିଲା ପୟର ॥୨୨
ଆସନେ ବସାଇଲା ନେଇ ।
ପାଦକମଳ ଦେଲା ଧୋଇ ॥୨୩
ତା'ର ଭକତି-ଭାବେ ତୋଷ ।
ସେ ମୁନିବର ହେଲେ ବଶ ॥୨୪
କହନ୍ତି ତା'ରେ ଦୟାବହି ।
ଭୋ ରାଜା ତୋର ଜ୍ଞାନ ନାହିଁ ॥୨୫
ତୁ କର୍ମମାର୍ଗେ ହେଲୁ ହୀନ ।
ବିଅର୍ଥେ ଗଲା ତୋର ଦିନ ॥୨୬
ନିରତେ କର୍ମେ ନିମଜ୍ଜିଲୁ ।
ଆତ୍ମାର ହିତ ନ ଜାଣିଲୁ ॥୨୭
ଯେ କର୍ମେ ମୋକ୍ଷମାର୍ଗ ହାନି ।
ତୁ ତାହା ଶ୍ରେୟ ପ୍ରାୟ ମଣି ॥୨୮
ଯେ ସଙ୍ଗ-ଦୋଷେ ଜ୍ଞାନ କ୍ଷୟେ ।
ବୁଝି ତୁ ନ ପାରିଲୁ ରାୟେ ॥୨୯
ତୁ ଅତିସ୍ନେହେ ତହିଁ ବନ୍ଧ ।
ସେ ସଙ୍ଗ-ଦୋଷ ଧର୍ମବାଧ ॥୩୦
ତା ଶୁଣି ଭୟେ ନୃପମଣି ।
ବଜ୍ର ପଡିଲା ପ୍ରାୟ ମଣି ॥୩୧
ଉଚ୍ଛନ୍ନେ କହଇ ନୃପତି ।
ଭୋ ମୁନି ମୁଁ ଯେ ମୂଢ଼ମତି ॥୩୨
ସ୍ୱକର୍ମ ମାର୍ଗେ ବଦ୍ଧ ହୋଇ ।
ମୁଁ ମୂଢ଼ଜ୍ଞାନ ନ ଜାଣଇ ॥୩୩
ଯେବେ ଅଇଲ ମୋର ହିତେ ।
ମୋ ଭାଗ୍ୟବଶେ ଦୟା ଚିତ୍ତେ ॥୩୪
ଯେବେ ସଦୟ ମୁନିବର ।
ଯେମନ୍ତେ ଜ୍ଞାନ ହୋଏ ମୋର ॥୩୫
ଯେଣେ ନୋହିବି କର୍ମେ ବଦ୍ଧ ।
ହୋଇବ ମୋକ୍ଷମାର୍ଗେ ସିଦ୍ଧ ॥୩୬
ଯେଣୁ ତୁମ୍ଭର ଦରଶନ ।
ହରଇ ବିଷୟ-ବନ୍ଧନ ॥୩୭
ଏ ଘୋର-ଜଡ କର୍ମ ମୋର ।
ସୁଜ୍ଞାନ-ଦାନେ ଦୂର କର ॥୩୮
ତୁମ୍ଭେ ସଂସାରେ ପ୍ରାଣୀ ହିତେ ।
ଭ୍ରମଣ କରୁଥାଅ ନିତ୍ୟେ ॥୩୯
ଅବ୍ୟକ୍ତଗତି ଯେ ତୁମ୍ଭର ।
ଦେବ ମାନବେ ଅଗୋଚର ॥୪୦
ଯେହ୍ନେ ଆଗମ ମୃତ୍ୟୁ ଜନ ।
ତେସନେ ତୁମ୍ଭ ଦରଶନ ॥୪୧

Dr. Sudhanshu Sekhar Mishra

ଏ ଗୃହଦ୍ୱନ୍ଦେ ମୋ' ପୀରତି ।
ଏ ପୁତ୍ର ଦାରା ମୋହେ ମତି ॥୪୨
ଏଣୁ ନୋହିଲା ଜ୍ଞାନେ ସଧ ।
ରାଜବିଭୂତି ମଦେ ଅନ୍ଧ ॥୪୩
ଇନ୍ଦ୍ରିୟରସ ଭୋଗ ମୁହିଁ ।
ନିରତେ ଛାଡି ନ ପାରଇ ॥୪୪
ଯେବେ ସୁଦୟା ତୁମ୍ଭ ଚିତ୍ତେ ।
ଘୋର ବନ୍ଧନୁ ଫେଡ ମୋତେ ॥୪୫
ପ୍ରସନ୍ନେ କହ ମୁନିବର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୪୬
ଏମନ୍ତ ତା'ର ବାକ୍ୟ ଶୁଣି ।
ଅତି ଆନନ୍ଦେ ଦେବମୁନି ॥୪୭
କହନ୍ତି ଚିତ୍ତେ ଦୟା ବହି ।
ଶୁଣ ପ୍ରାଚୀନ ପୁଣ୍ୟଦେହୀ ॥୪୮
ତୁ କର୍ମଜ୍ଞାନେ ବିଶାରଦ ।
ତେଣୁ ହୋଇଲୁ କର୍ମବନ୍ଧ ॥୪୯
ତୁ ଯେ ମମତ୍ୱେ ମହୀପତି ।
ଏ ଯଜ୍ଞକର୍ମେ ମୂଢ଼ ମତି ॥୫୦
ଯେ ପୂର୍ବ ପୁଣ୍ୟ ତୋର ଥିଲା ।
ଏ ଯଜ୍ଞେକର୍ମେ ନଷ୍ଟ ଗଲା ॥୫୧
ତୁ ବିପ୍ରବାକ୍ୟେ ହେଲୁ ଅନ୍ଧ ।
ଅନେକ କଲୁ ପଶୁ ବଧ ॥୫୨
ଅଦୋଷୀ ଜୀବ ଯଜ୍ଞେ ମାରି ।
ସେ ତୋ'ର ନୁହଁନ୍ତି ବଇରୀ ॥୫୩
ତୁ ରାଜା ଏଡେ ଅବିବେକ ।
ଦୟା ନ ବସିଲା ତିଳେକ ॥୫୪
ଏ ପଶୁଗଣେ କୋପ ବହି ।
ତୋ ମୃତ୍ୟୁବାଟ ଛନ୍ତି ଚାହିଁ ॥୫୫
ସେ ତୋତେ ନିଶ୍ଚେ ବିନାଶିବେ ।
ତୁ ନୃପ ବୋଲି ନ ଡରିବେ ॥୫୬
ତୁ ପୀଡା ଦେଇଅଛୁ ଯେତେ ।
ସେ କୋପେ ସୁମରନ୍ତି ନିତ୍ୟେ ॥୫୭
ତାହାଙ୍କ ଯାଇ ନାହିଁ କ୍ରୋଧ ।
ଦୁଃଖ ଦେବାକୁ ତା'ଙ୍କ ସଧ ॥୫୮

ତୋତେ ପାଇଲେ ପରଲୋକେ ।
କାଟି ଭକ୍ଷିବେ ଏକେ ଏକେ ॥୫୯
ତାହାଙ୍କ ଶୃଙ୍ଗ ତୀକ୍ଷ୍ଣ ଧାର ।
ସେ ଲୌହସମାନ କଠୋର ॥୬୦
ସେ ଶୃଙ୍ଗେ ତୋତେ ବିନାଶିବେ ।
ତେବେ ସେ କ୍ରୋଧ ଉପେକ୍ଷିବେ ॥୬୧
ଆମ୍ଭେ ଦେଖିଲୁ ସ୍ୱର୍ଗପଥେ ।
ତୋ ପ୍ରତିଆଶେ ପଶୁଯୂଥେ ॥୬୨
ଦଶନେ ଅଧର କାମୋଡି ।
କୋପେ ଦିଅନ୍ତି ଘୋର ରଡି ॥୬୩
ଦଶନ ଅତି ବିକରାଳ ।
କ୍ଷୁରେ ଖୋଳନ୍ତି ଦିବ୍ୟ ସ୍ଥଳ ॥୬୪
ସେ ତୋତେ ପାଇଲେ ରାଜନ ।
କରିବେ ଅବଶ୍ୟ ଭୋଜନ ॥୬୫
ତାହାଙ୍କ ମୁଖରେ ରାଜନ ।
ପଡି କେ ପାଇବ ଜୀବନ ॥୬୬
ଆମ୍ଭେ ଦେଖିଣ ଦୟା ଚିତ୍ତେ ।
ଶୀଘ୍ରେ ଅଇଲୁ ତୋ'ର ହିତେ ॥୬୭
କହିଲୁ ସତ୍ୟ ନିରାଧାର ।
ଏ ମିଥ୍ୟା ନୋହେ ନୃପବର ॥୬୮
ଯେବେ ସଂଶୟ ତୋର ଚିତ୍ତେ ।
ପ୍ରତ୍ୟକ୍ଷେ ଦେଖାଇବା ତୋତେ ॥୬୯
ଏମନ୍ତ କହି ମୁନିବର ।
ଯୋଗନିଦ୍ରାରେ ତା' ଶରୀର ॥୭୦
ହରିଲେ ମନ-ବୁଦ୍ଧିଜ୍ଞାନ ।
ତକ୍ଷଣେ ନୃପତି ଅଜ୍ଞାନ ॥୭୧
ସେ ଯୋଗନିଦ୍ରାର ସ୍ୱପନେ ।
ପ୍ରବେଶ ଯମର ଭୁବନେ ॥୭୨
ତହିଁ ଦେଖିଲା ନୃପରାଣ ।
ବେଢି ସକଳ ପଶୁଗଣ ॥୭୩
ଦେଖିଲା ତହିଁ ନୃପଗଣେ ।
ଦୁଃଖିତ ବିବିଧ କାରଣେ ॥୭୪
ଯେ ଯାହା କର୍ମ ଅନୁସାରେ ।
ପୀଡନ୍ତି ଯେ ଶତ୍ରୁ ଯାହାରେ ॥୭୫

ଯେ ଶସ୍ତ୍ରେ ଯାକୁ ଯେବା ମାରି ।
ସେ ରୂପେ ଶୃଙ୍ଗ ଛନ୍ତି ଧରି ॥୭୬
ଗଦା ମୁଦ୍ଗର ଅସିବର ।
କୁନ୍ତ କୁଠାର ଶକ୍ତିଶୂଳ ॥୭୭
ଏ ଆଦି ଅସ୍ତ୍ର ଅପ୍ରମିତେ ।
ପ୍ରକୋପେ ପ୍ରହାରନ୍ତି ନିତ୍ୟେ ॥୭୮
ତା ପୂର୍ବ-ଦଣ୍ଡ ଅନୁକ୍ରମେ ।
ସୁମରି ଦ୍ୟନ୍ତି ଶତ୍ରୁ ଜନେ ॥୭୯
କେ ବୃକ୍ଷେ ବାନ୍ଧିଣ ପିଟନ୍ତି ।
କେ ରୋଷେ ତୋଳି କଚାଡନ୍ତି ॥୮୦
ଅଧୋବଦନ ଊର୍ଦ୍ଧ୍ୱେ ପାଦ ।
ଏ ଆଦି ଅଶେଷ ବିଷାଦ ॥୮୧
ନାନା-କଦର୍ଥନେ ପୀଡନ୍ତି ।
ପ୍ରକୋପ ନୟନେ ଚାହାଁନ୍ତି ॥୮୨
ଅଧର ଚାପି ଦନ୍ତେ ଭିଡି ।
କୋପେ କରନ୍ତି ଘୋର ରଡି ॥୮୩
ପଶୁଙ୍କ ଦଣ୍ଡ ଉପତାପେ ।
ଉଚ୍ଚେଣ ରୋଦନ୍ତି ଅଧୀପେ ॥୮୪
ଦୁଃସହ-ଦୁଃଖେ ଭୟେ ଛନ୍ନ ।
ସ୍ରବିତ ମୂତ୍ରଦ୍ୱାରମାନ ॥୮୫
ତା ଦେଖି ପ୍ରାଚୀ ନୃପରାଣ ।
ଭୟେ ଉସର୍ଗ ପଞ୍ଚପ୍ରାଣ ॥୮୬
ଭ୍ରମ ହୋଇଲା ତା'ର ମତି ।
ପଳାଇ ଇଚ୍ଛଇ ନୃପତି ॥୮୭
ତା' ଯାଗେ ବଧ ପଶୁଗଣେ ।
ତାକୁ ବେଢିଲେ ତତକ୍ଷଣେ ॥୮୮
ନିଜ ଶତ୍ରୁକୁ ପାଇ କୋପେ ।
ବେଢି ଭକ୍ଷିଲେ କ୍ଷୁଧା ତାପେ ॥୮୯
ବୃକ-ସମୂହ ମୃଗେ ଯେହ୍ନେ ।
ରାଜାକୁ ଭକ୍ଷିଲେ ତେସନେ ॥୯୦
ଆବୋରି ଶତେପୁର କରି ।
ଏକ-ଆରେକ ବଳେ ଧରି ॥୯୧
ଦଶନେ ଧରି ଓଟାରନ୍ତି ।
ଏକ-ଆରକେ ନ ଛାଡନ୍ତି ॥୯୨

Dr. Sudhanshu Sekhar Mishra

ଦୁଃସହ ଦୁଃଖେ ସେ ରାଜନ ।
ବ୍ୟାକୁଳେ କରଇ ରୋଦନ ॥୯୩
ନିର୍ଦ୍ଦୟ-ପଶୁ ଦୁଷ୍ଟପଣେ ।
ମାଂସ ଭକ୍ଷନ୍ତି ଅନୁକ୍ଷଣେ ॥୯୪
ଭକ୍ଷନ୍ତି ଅସ୍ଥି ଶେଷ ଯାଏ ।
ଯାବତ କ୍ରୋଧ ଶାନ୍ତି ନୋହେ ॥୯୫
ତଦନ୍ତେ ଅନ୍ୟ ପଶୁଗଣେ ।
ବେଢ଼ି ସେ ଭକ୍ଷନ୍ତି ତକ୍ଷଣେ ॥୯୬
ମାୟାରେ ପୁନରପି କାୟେ ।
ପ୍ରକାଶେ ପୂର୍ବତନୁ ପ୍ରାୟେ ॥୯୭
ଦୁଃସହ-ଦୁଃଖେ ସେ ନୃପତି ।
ଭୟେ ପଳାଇ ଚଢ଼କତି ॥୯୮
ତେଣେ ଗୋଡ଼ାନ୍ତି ପଶୁଗଣେ ।
କୋପେ ଭକ୍ଷନ୍ତି ଅନୁକ୍ଷଣେ ॥୯୯
ଏମନ୍ତ ଦୁଃଖ ମହାଘୋରେ ।
ରୋଦନ କରେ ଉଚ୍ଚସ୍ୱରେ ॥୧୦୦
ତାରେ ରକ୍ଷକ କେହି ନାହିଁ ।
ଶତ୍ରୁ ସମୂହେ ପୀଡ଼େ ଦେହୀ ॥୧୦୧
ସଭୟେ ଭାଳଇ ରାଜନ ।
ନିଶ୍ଚେ ନାଶିବେ ମୋ' ଜୀବନ॥୧୦୨
ଏମନ୍ତ ଭାଳନ୍ତେ ଆକୁଳେ ।
ମୁନି ଜାଣିଲେ ଯୋଗବଳେ ॥୧୦୩
ଏ ମିଥ୍ୟା-ଭୟେ ନୃପରାଣ ।
ଅବଶ୍ୟ ଛାଡ଼ିବ ପରାଣ ॥୧୦୪
ଉଚ୍ଛନ୍ନ ଦେଖି ନୃପବର ।
ହରିଲେ ଯୋଗନିଦ୍ରା ତା'ର ॥୧୦୫
ତକ୍ଷଣେ ସେ ଜ୍ଞାନ ଲଭିଲା ।
ବିହ୍ୱଳେ ସତ୍ୱରେ ଉଠିଲା ॥୧୦୬
ମୁନିଙ୍କି କୋଳାଗ୍ରତ କରି ।
ସେ ମିଥ୍ୟା ନୃପଭୟେ ଡରି ॥୧୦୭
ଭୟେ ନ ଛାଡ଼େ ନୃପବର ।
ଭୋ ମୁନି ମୋତେ ରକ୍ଷାକର ॥୧୦୮
ଏ ଦୁଷ୍ଟ-ପଶୁ ଭୟଙ୍କର ।
ନିଶ୍ଚେ ଭକ୍ଷିବେ ମୋ' ଶରୀର॥୧୦୯

ଏମନ୍ତ କହି ସେ ରାଜନ ।
ଉଚ୍ଛନ୍ନେ କରଇ ରୋଦନ ॥୧୧୦
ମତି ବିଭ୍ରମ ଦେଖି ତା'ର ।
ପ୍ରବୋଧ କଲେ ମୁନିବର ॥୧୧୧
ଏ ମିଥ୍ୟା ଭୟେ ତୁ ରାଜନ ।
ବିଅର୍ଥେ ହେଉଛୁ ଉଚ୍ଛନ୍ନ ॥୧୧୨
ଏବେ ପ୍ରତ୍ୟକ୍ଷେ ଦେଖ ରାୟେ ।
ନୟନ ଫେଡ଼ି ତୁ ନିର୍ଭୟେ ॥୧୧୩
ଏ ଘୋର ଭୟ ପୀଡ଼ା ତୋତେ ।
ଅଜ୍ଞାନେ ଦେଲେ ଶତ୍ରୁଯୂଥେ ॥୧୧୪
ଦେଖ ପ୍ରତ୍ୟକ୍ଷେ ନୃପରାଣ ।
ତୋ ଭୟଙ୍କର ଶତ୍ରୁଗଣ ॥୧୧୫
ଅଦୃଶ୍ୟ ହେଲେ ଆସ୍ଥ ଡରେ।
ତୋ ଅନ୍ତେ ପାଡ଼ିବେ ସେଠାରେ ॥୧୧୬
ତୁ ତାଙ୍କୁ ଦୁଃଖ ଦେଲୁ ଯେତେ।
ଅବଶ୍ୟ ପାଡ଼ିବେ ସେ ତୋତେ ॥୧୧୭
ଶୁଣି ସଂଭ୍ରମେ ନୃପରାଣ ।
ବୋଲେ ମୁନିଙ୍କି ରଖ ପ୍ରାଣ ॥୧୧୮
ପଶୁଙ୍କ କଷଣୁ କେମନ୍ତେ ।
ତରିବି କହ ମୁନି ମୋତେ ॥୧୧୯
ତୁମ୍ଭେ ସର୍ବଜ୍ଞ ସର୍ବଜାଣ ।
କହିବା ଏଥିର କାରଣ ॥୧୨୦
ଏମନ୍ତ ଶୁଣି ମହାଋଷି ।
ରାଜା ବିଭ୍ରମେ ମନ୍ଦେ ହସି ॥୧୨୧
ଶୁଣ ସୁମନେ ନୃପବର ।
କହିବା ଏଥିର ବିଚାର ॥୧୨୨
ଏବେ ତୁ ଛାଡ଼ ସୁତ-ବିତ୍ତ ।
ଦାରା-ବନ୍ଧୁରେ ସ୍ନେହଚିତ୍ତ ॥୧୨୩
ଅଷ୍ଟ ଐଶ୍ୱର୍ଯ୍ୟ-ଭୋଗ ଯେତେ।
ଏ ରାଜ ବିଭୂତି ସହିତେ ॥୧୨୪
ଏ ସର୍ବ ତେଜି କୃଷ୍ଣପାଦେ ।
ଏକାନ୍ତେ ଭଜ ଅପ୍ରମାଦେ ॥୧୨୫
ତେବେ ଏ ହତ୍ୟା ଦୁଃଖ ଘୋର ।
ବେଗେ ଛାଡ଼ିବ ନୃପବର ॥୧୨୬

ଏ ବିନେ ତୋର ଅନ୍ୟ ଗତି
ଅପରେ ନ ଦେଖି ନୃପତି ॥୧୨୭
ତା' ଶୁଣି ବୋଲଇ ରାଜନ ।
ଭୋ ମୁନି ମୁଁ ମୂଢ଼ ଅଜ୍ଞାନ ॥୧୨୮
ଏ ପୁତ୍ର ଦାରା ସ୍ନେହ ଅତି ।
ଇନ୍ଦ୍ରିୟ ଭୋଗ ରସେ ମାତି ॥୧୨୯
ଏ ଆଦି ଗୃହବସ୍ତୁ ଯେତେ ।
ମୁଁ ଛାଡ଼ି ପାରିବି କେମନ୍ତେ ॥୧୩୦
ଉପାୟ ଥିଲେ ମୁନିବର ।
ଏ ମାୟାବନ୍ଧ ପରିହର ॥୧୩୧
ତା ବାକ୍ୟେ ହସି ମୁନି ତୋଷ ।
କହିବା ତୋତେ ଇତିହାସ ॥୧୩୨
ଶ୍ରବଣେ ହେବ ତୋର ଜ୍ଞାନ ।
ସେ ପୁରଞ୍ଜନର ଆଖ୍ୟାନ ॥୧୩୩
ଏ ଘୋରଭୟ ସ୍ନେହ ତୋର ।
ଶ୍ରବଣେ ବେଗେ ହେବ ଦୂର॥୧୩୪
ସେ ପୁରଞ୍ଜନ ଏକ ରାଜା ।
ପୂର୍ବେ ସେ ଥିଲା ମହାତେଜା॥୧୩୫
ବିଜ୍ଞାତ ନାମେ ସଖା ତା'ର ।
ଜ୍ଞାନ-ଚେଷ୍ଟାରେ ସେହୁ ଧୀର ॥୧୩୬
ସେ ନିଜ-ସଖା ପରିହରି ।
ଇନ୍ଦ୍ରିୟଭୋଗ ଇଚ୍ଛା କରି ॥୧୩୭
ନିରତେ ଭାବେ ଅନୁଦିନ ।
ଇନ୍ଦ୍ରିୟ ବଶେ ହୋଇ ଛନ୍ନ ॥୧୩୮
ସେ ରାଜା ପୃଥିବୀ ଭ୍ରମଇ ।
ଉତ୍ତମ-ସ୍ଥାନ ସେ ଇଚ୍ଛଇ ॥୧୩୯
ନ ପାଇ ନିଜ ରୂପେ ସ୍ଥିତି ।
ବିଷାଦମନ ସେ ନୃପତି ॥୧୪୦
ଯାବତ-ପୁର ମହୀତଳେ ।
ସେ ରାଜା ଦେଖଇ ନିରୋଳେ ॥୧୪୧
ତା ନିଜ କାମ ପୂର୍ଣ୍ଣ ପାଇଁ ।
ସେ ରାଜା ସନ୍ତତେ ଭ୍ରମଇ ॥୧୪୨
ଏମନ୍ତେ ଏକାନ୍ତେ ଭ୍ରମନ୍ତେ ।
ଗଲା ସେ ହିମାଳୟ ପଥେ ॥୧୪୩

Dr. Sudhanshu Sekhar Mishra

ସେ ଗିରି ଦକ୍ଷିଣ ଭାଗରେ ।
ପ୍ରବେଶ ହୋଇଲା ସଧୀରେ ॥ ୧୪୪
ସୁଦିବ୍ୟପୁର ତହିଁ ଥିଲା ।
ସେ ରାଜା ସନ୍ତୋଷେ ଦେଖିଲା ॥ ୧୪୫
ନାନା ଲକ୍ଷଣେ ବିରାଜଇ ।
ସେ ନବଦ୍ୱାରେ ଶୋଭାପାଇ॥ ୧୪୬
ସେ ପୁରେ ପାଚେରୀ ଶୋଭନ ।
ତା ଚଉପାଶେ ଉପବନ ॥ ୧୪୭
ଗୃହାଦି ଅଟ୍ଟାଳୀ ଶୋଭନ୍ତି ।
ପରିଖା ତୋରଣ ବିରାଜନ୍ତି ॥ ୧୪୮
ହେମ-ରଜତ-ଲୌହ-ଶୃଙ୍ଗ ।
ବିଚିତ୍ର-ବର୍ଣ୍ଣେ ନାନାରଙ୍ଗ ॥ ୧୪୯
ରତ୍ନ-ସମୁହେ ବିରାଜନ୍ତି ।
ଶୁଭ୍ର-ସୁନ୍ଦର ପୁର କାନ୍ତି ॥ ୧୫୦
ନୀଳାଦି ସ୍ଫଟିକ ପୋଏଲା ।
ମୋତି ମର୍କତ ଆଦି ଶିଳା ॥ ୧୫୧
ନିର୍ମିତ ହେମମୟ ସ୍ଥଳୀ ।
କାନ୍ତି ସମୂହେ ଅତି ଝଳି ॥ ୧୫୨
ସେ ପୁର ଦେଖିଣ ନୃପତି ।
କିଏ ଦ୍ୱିତୀୟ ଭୋଗବତୀ ॥ ୧୫୩
ସଭା ଚତ୍ୱର ରାଜ ବାଟ ।
ପଶା-ଖେଳନ ସ୍ଥାନ ହାଟ ॥ ୧୫୪
ବିଶ୍ରାମ-ସ୍ଥାନ ପ୍ରାଣୀଙ୍କର ।
ଏ ଆଦି ଅଛି ଯେ ମନ୍ଦିର ॥ ୧୫୫
ପତାକା ଶୋହେ ନାନାବିଧି ।
ଶୁଦ୍ଧ ସୁବର୍ଣ୍ଣେ ଶୋହେ ବେଦୀ ॥ ୧୫୬
ଯେ ପୁର ବାହ୍ୟେ ଉପବନ ।
ଶୋଭିତ ନାନା ଦ୍ରୁମମାନ ॥ ୧୫୭
ପୁଷ୍ପିତ-ସରୋବର ଶୋହି ।
ବିହଙ୍ଗ କୁଳ କୂଳେ ଯହି ॥ ୧୫୮
ହିମ-ନିର୍ଝର-ବିନ୍ଦୁଯୋଗେ ।
କୁସୁମାକର-ବାୟୁ ବେଗେ ॥ ୧୫୯
ପ୍ରଚଳେ ଦଳ ବିଟପୀରେ ।
ସରସୀତଟ ସମ୍ପଦରେ ॥ ୧୬୦

ନାନାବର୍ଣ୍ଣର ମୃଗମାନେ ।
ବିହରୁଛନ୍ତି ଉପବନେ ॥ ୧୬୧
ଯହିଁ କୋକିଳ କୂଜୁଛନ୍ତି ।
କିବା ସେ ପାନ୍ଥକୁ ଲୋଡନ୍ତି ॥ ୧୬୨
ଏମନ୍ତେ ନାନା ଜୀବ କୁଳେ ।
କ୍ରୀଡନ୍ତି କାମମତ୍ତ ଭୋଳେ ॥ ୧୬୩
ସେ ଦିବ୍ୟବନେ ହେ ରାଜନ ।
କହିବା ଅପର ବିଧାନ ॥ ୧୬୪
କାମିନୀରତ୍ନ ସେହୁ ବନେ ।
ଆସି ଯେ ଥିଲା ସ୍ୱଚ୍ଛ ମନେ ॥ ୧୬୫
ରମଣିରତ୍ନ ସେହୁ ବାଳା ।
ତାହାକୁ ନୃପତି ଦେଖିଲା ॥ ୧୬୬
ସଙ୍ଗେ ତା ଦଶ ପରିବାରୀ ।
ଘେନିଣ ଆସିଛି ସୁନ୍ଦରୀ ॥ ୧୬୭
ଭୃତ୍ୟମାନଙ୍କେ ଏକେ ଏକେ ।
ସଙ୍ଗତେ ଶତ ସ୍ୱନାୟିକେ ॥ ୧୬୮
ପଞ୍ଚମସ୍ତକ ଏକ ଅହି ।
ସେ ନାରୀ ଦ୍ୱାରପାଳ ସେହି ॥ ୧୬୯
ସେ କାମରୂପୀ ଦିବ୍ୟନାରୀ ।
ବିବାହ ନୋହିଛି ତାହାରି ॥ ୧୭୦
ତହୁଁ ସେ ସ୍ୱାମୀଙ୍କି ଶଙ୍ଖୋଳେ ।
ତା ଯୋଗ୍ୟ ବର ହିଁ ନ ମିଳେ॥ ୧୭୧
ଲାବଣ୍ୟ-ସମୂହେ ତରୁଣୀ ।
କେ ତା ନିର୍ମାଣିଲା ନ ଜାଣି ॥ ୧୭୨
ସୁସଞ୍ଚ-ନାସା ଦନ୍ତପନ୍ତି ।
ଯେହ୍ନେ ସୁନ୍ଦର ଗଜମୋତି ॥ ୧୭୩
ଅରୁଣ-ବିମ୍ବାଧାର ରାଜେ ।
ପକ୍ୱ-ଡାଳିମ୍ବ-ବୀଜ ଗଞ୍ଜେ ॥ ୧୭୪
ଅରୁଣ-ପଙ୍କଜ ଲୋଚନ ।
ସୁଧାଂଶୁ -ଆନନ ଶୋଭନ ॥ ୧୭୫
ସୁଚାରୁ-ଭୂଭଙ୍ଗ ସୁନ୍ଦର ।
ଅତନୁଚାପ ପଟାନ୍ତର ॥ ୧୭୬
ଦଗ୍ଧ ହାଟକ ସୁକପୋଳ ।
ଅଳକାବୃତ୍ତ ଭୃଙ୍ଗମାଳ ॥ ୧୭୭

ତା ପ୍ରତିଲକ୍ଷଣେ ଶୋଭନ ।
ନ ଦେଖି ଏ ତିନି ଭୁବନ ॥ ୧୭୮
ଶ୍ରବଣେ କୁଣ୍ଡଳ ଝଳକେ ।
ତୁଳନା ନାହିଁ ତିନିଲୋକେ ॥ ୧୭୯
କନକ ମେଖଳା ନିତମ୍ବୀ ।
ଚାରୁ ସୁସଞ୍ଚ ତାର ନାଭି ॥ ୧୮୦
ଗମଇ ମତ୍ତଗଜ ଠାଣି ।
ଚରଣେ ନୂପୁର ବାଜେଣି ॥ ୧୮୧
କର୍ଣ୍ଣାଭିରାମ ସୁମଧୁର ।
ଶ୍ରବଣେ କାମଦର୍ପହର ॥ ୧୮୨
ରତ୍ନସମୂହେ ଝଟକନ୍ତି ।
ପଥେ କି ଦେବତା ଗମନ୍ତି ॥ ୧୮୩
ସେ ନବଯୌବନ-ଶୋଭିନୀ ।
ସମ ବର୍ତ୍ତୁଳ ପୀନସ୍ତନୀ ॥ ୧୮୪
ତା ବସ୍ତ୍ର ଅଞ୍ଚଳେ ଢାଙ୍କନ୍ତି ।
ଯେହ୍ନେ ବିଦ୍ୟୁତେ ଗଜମୋତି॥ ୧୮୫
ଅପାଙ୍ଗ-ଲଙ୍ଗିତ ବିଶିଖ ।
ଭୂରୁ କମାଣେ ସନ୍ଧି ଲାଖ ॥ ୧୮୬
ରାଜାକୁ ସତ୍ୱରେ ବିନ୍ଧିଲା ।
ତକ୍ଷଣେ ନୃପ ମୋହ ହେଲା ॥ ୧୮୭
ସେ ବୀର ଲଜ୍ଜା ପାଇ ମନେ ।
ନାରୀକି ପଚାରେ ଅଙ୍କନେ ॥ ୧୮୮
ଭୋ ସଖି ନାମ ଗୋତ୍ର ତୋର ।
କହ କିମର୍ଥେ ବନଘୋର ॥ ୧୮୯
ଭ୍ରମଣ କରୁଛୁ ସୁନ୍ଦରୀ ।
ସୁର-ମୁନୀନ୍ଦ୍ର ମନୋହାରୀ ॥ ୧୯୦
ଏ ଦିବ୍ୟପୁର- ଉପବନେ ।
କହ କି ଅଛି ତୋର ମନେ ॥ ୧୯୧
କି କାମ-ମୃଗ ବିଦାରଣେ ।
ବିହାର କରୁ ଏ କାରଣେ ॥ ୧୯୨
ମୋ କାମ-ଶତ୍ରୁ ବିନାଶନେ ।
ସଦନ ତେଜି ଏ ବିପିନେ ॥ ୧୯୩
ମୁଁ ନିଷ୍ଠେ ଜାଣିଲଇ ଚିତ୍ତେ ।
ସ୍ୱଗୁଣ ଘେନି ମୋର ହିତେ ॥ ୧୯୪

Dr. Sudhanshu Sekhar Mishra

ଏ ପୁରେ କରୁ ତୁ ବିହାର ।
ମୁଁ ଯେ ତୋହର ପରିଚାର ॥୧୯୫
ଭୋ ସଖି ଏ ତୋ ସଖୀଜନ ।
କହ କାହାର କିସ ନାମ ॥୧୯୬
ଏ ଦଶ ଏକୁ ଏକ ଶୋଭା ।
ଏ ତୁମ୍ଭ କି କରନ୍ତି ସେବା ॥୧୯୭
ଏ ସର୍ପ କେ ତୁମ୍ଭ ଛାମୁର ।
ପଞ୍ଚମସ୍ତକ କିପାଁ ତା'ର ॥୧୯୮
ଏହାଙ୍କ ନାମ-କର୍ମ ଯେତେ ।
ଭୋ ସଖି କହ ମୋ ଅଗ୍ରତେ ॥୧୯୯
ତୁମ୍ଭେ କି ଲଜ୍ଜାରୂପ ଧରି ।
ଧର୍ମ ପତିକି ଅନୁସରି ॥୨୦୦
କି ଅବା ତୁମ୍ଭେ ଗୋ ଭବାନୀ ।
ଶଙ୍ଖୋଳୁ ଅଛ ଶୂଳପାଣି ॥୨୦୧
କି ଅବା ତୁମ୍ଭେ ପଦ୍ମାଳୟା ।
ଲୋଡୁଛ କୃଷ୍ଣ-ପଦଛାୟା ॥୨୦୨
ତୁମ୍ଭେ କି ଅଟ ଅରୁନ୍ଧତୀ ।
ବାଞ୍ଛା କି କର ନିଜପତି ॥୨୦୩
ଭୋ ସଖି ତୋର ରୂପ-ପ୍ରଭା।
ଦେଖି ଟଳିବେ ସୁରଦେବା ॥୨୦୪
କାମୀଜନଙ୍କ ପୂର୍ଣ୍ଣ କାମ ।
ବାଞ୍ଛାକୁ ଅଟୁ କଳ୍ପଦ୍ରୁମ ॥୨୦୫
ଅଶେଷ ସୁଖ ସେ ଲଭନ୍ତି ।
କାମାଦି ଶତ୍ରୁ ବିନାଶନ୍ତି ॥୨୦୬
ମୁନିମୋହିନୀ ରୂପ ଧରି ।
ଏକାନ୍ତେ ଭ୍ରମୁ ତୁ କିଶୋରୀ ॥୨୦୭
ତୋ ଗୁଣ କୀର୍ତ୍ତିପ୍ରଭା ଚାହିଁ ।
ଦେବତା ପ୍ରାୟେ ମୁଁ ମଣଇଁ ॥୨୦୮
ଭୂମିରେ ନ ଚାଲେ ଦେବତା।
ଏଣୁ ମୋ' ମନେ ଗରୁ ଚିନ୍ତା ॥୨୦୯
ତୋ ଗୁଣ ବର୍ଣ୍ଣିବଇଁ କେତେ ।
ତୋ ସମ ନାହିଁ ଏ ଜଗତେ ॥୨୧୦
ଏବେ ନିଶ୍ଚୟେ ମୋତେ ଘେନି ।
ଏ ପୁରେ ବିହର କାମିନୀ ॥୨୧୧
ତୋହର ଲଜ୍ଜା-ଭାବ ସ୍ମିତ ।
ଏ କାମୀଜନଙ୍କୁ ପୀଡିତ ॥୨୧୨
ଅନଙ୍ଗ-ଶର ବାଧେ ମୋତେ।
ମୁଁ ଫେଡି କହିଲିଇଁ ତୋତେ ॥୨୧୩
ତୋ ମୁଖ ଅପାଙ୍ଗ-ଲକ୍ଷଣ ।
ସ୍ଖଳିତ ଏ ମୋର ଚରଣ ॥୨୧୪
ତୁ ଅନୁଗ୍ରହ ମୋତେ କର ।
ଏ କାମାନଳ ପରିହର ॥୨୧୫
ସେ ତାପେ ଦହି ମୁଁ ହେଉଛି ।
ତୁ ଶାନ୍ତି କର ଗୋ ମୃଗାକ୍ଷି ॥୨୧୬
ସଖି ତୋ ରୁଚିର ଆନନ ।
ଶୁଭ୍ର ସୁନ୍ଦର ସୁଲୋଚନ ॥୨୧୭
ଅଳକ କପୋଳେ ଝଳକେ ।
ଟେକିଣ ନ ଚାହୁଁ ତୁ କିକେ ॥୨୧୮
କହ ତୁ ମଧୁର ବଚନ ।
ନିଶ୍ଚେ ମୋ ଗଲାଟି ଜୀବନ ॥୨୧୯
ତୁ ଲଜ୍ଜାଭରେ ନ ଚାହୁଁଛୁ ।
ଭୋ ସଖି ପ୍ରାଣେ ତୁ ମାରୁଛୁ ॥୨୨୦
ତୁ ହସି ସୁମଧୁର ଭାଷ ।
ମୁଁ ନିଶ୍ଚେ ହେବି ତୋର ଦାସ ॥୨୨୧
ଅନେକ ବିନୟ-ବଚନ ।
ସେ ନାରୀବଶେ ପୁରଞ୍ଜନ ॥୨୨୨

ନାରଦ ଉବାଚ

ହେ ନୃପ ତୋର ପ୍ରାୟ ସେହି ।
ସ୍ତିରୀରେ ବଶ କଲା ଦେହୀ ॥୨୨୩
ପ୍ରଭୁତ୍ୱ ପଣ ସେ ତେଜିଲା ।
ତା ବଶେ ଜ୍ଞାନ ପାଶୋରିଲା ॥୨୨୪
ସ୍ତିରୀରେ ବଶ ଯେଉଁ ପ୍ରାଣୀ ।
ତାହାକୁ ମନୁଷ୍ୟେ ନ ଗଣି ॥୨୨୫
ଯେ ଅଶ୍ୱ ବିଡାଳ ଗର୍ଦ୍ଦଭ ।
ତା'ଙ୍କ ସମାନେ ସେହୁ ଜୀବ ॥୨୨୬
ପଣ୍ଡିତ ବୋଲି ତା ନ ଗଣି ।
ସ୍ତିରୀରେ ବଶ ଯେଉଁ ପ୍ରାଣୀ ॥୨୨୭
ଭୋ ନୃପ ମନେ ତୁ ବିଚାର।
କାହିଁ ପଣ୍ଡିତ ଜ୍ଞାନ ତାର ॥୨୨୮
ଏମନ୍ତ ସେ ଯେ ପୁରଞ୍ଜନ ।
ବୋଧିଲା ଚାଟୁବାକ୍ୟେ ମନ॥୨୨୯
ସନ୍ତୋଷ ଲଭିଲା ତରୁଣୀ ।
ତା'ର କାର୍ପଣ୍ୟ ବାକ୍ୟ ଶୁଣି ॥୨୩୦
ସେ ନାରୀ ବୁଝିଲା ମନର ।
ଏ କାମେ ହୋଇଛି ଅସ୍ଥିର ॥୨୩୧
ନୃପକୁ ଆତ୍ମହରା ଦେଖି ।
ଅଳପ ହସିଲା ସୁମୁଖୀ ॥୨୩୨
କହେ ଲଳିତ ସୁବଚନ ।
ଶୁଣ ହେ ବୀର ପୁରଞ୍ଜନ ॥୨୩୩
ଆମ୍ଭର ଭର୍ତ୍ତା କେହି ନାହିଁ ।
ବିହରୁଁ ଏ ପୁରରେ ରହି ॥୨୩୪
ସ୍ୱନାମ ଗୋତ୍ର ତା ନ ଜାଣି ।
ଏ ତନୁ କେ ଅଛି ନିର୍ମାଣି ॥୨୩୫
ଏତେକ ଜାଣୁ ଆମ୍ଭେମାନେ ।
ସକଳେ ଅଛୁ ଏ ଭୁବନେ ॥୨୩୬
ଅପରେ ନ ଜାଣୁ ନା କିଛି ।
ଏ ପୁରେ କେ ମୋତେ ରଖିଛି॥୨୩୭
ଦେଖ ଏ ଯେତେ ପରିଜନ ।
ଏ ମୋର ନୁହଁନ୍ତି ଅଭିନ୍ନ ॥୨୩୮
ଏହାଙ୍କ ନାମ-କର୍ମ-ଗୁଣ ।
ପୁଛିଲ ଶୁଣ ନୃପରାଣ ॥୨୩୯
ମୁଁ ଯେବେ ନିଦ୍ରାଗତ ହୋଇ।
ଏ ସର୍ପ ପୁର ଜଗିଥାଇ ॥୨୪୦
ଏ ଆମ୍ଭ ପାଳକ ପୁରର ।
ସକଳ-କାର୍ଯ୍ୟରେ ତତ୍ପର ॥୨୪୧
କରନ୍ତି ଆମ୍ଭ ଅନୁମତେ ।
ଯେ ଭୋଗବାଞ୍ଛା ଯାର ଚିତ୍ତେ॥୨୪୨
ଯେ ଶୁଭାଶୁଭ ଫଳ ଦେଇ ।
ବିଧି-ନିଷେଧ ମାର୍ଗେ ନେଇ ॥୨୪୩
ଏଣୁ ଆମ୍ଭିକ ପ୍ରିୟ ମୋର ।
ଯେଣୁ ଏ ସେବେ ନିରନ୍ତର ॥୨୪୪

Dr. Sudhanshu Sekhar Mishra

ଏହାର ବେନି-ପତ୍ନୀ ନାମ ।
ପ୍ରବୃତ୍ତି ନିବୃତ୍ତି ରାଜନ ॥୨୪୫
ପ୍ରବୃତ୍ତି ପତ୍ନୀ ନାମ ଯା'ର ।
ସେ ସେବେ ପ୍ରବୃତ୍ତି ମାର୍ଗର ॥୨୪୬
ନିବୃତ୍ତି ନାମେ ଯେ ଯୁବତୀ ।
ସେ ଧର୍ମ ମାର୍ଗେ ସେବେ ପତି॥୨୪୭
ସେ ବେନିନାରୀଙ୍କ କୁମର ।
କେ ସାଧୁ କେବା ଦୁରାଚାର ॥୨୪୮
ଏ ଯେତେ ପ୍ରବୃତ୍ତି ନନ୍ଦନ ।
ଯେ କାମ କ୍ରୋଧ ଅଭିମାନ ॥୨୪୯
ଅଜ୍ଞାନ ଲୋଭ ମୋହ ହିଂସା।
ବିବାଦ ତର୍କ ମିଥ୍ୟାଭାଷା ॥୨୫୦
ଅପରେ କହିବଇଁ କେତେ ।
ଏ ଆଦି ପୁତ୍ରେ ଛନ୍ତି ଯେତେ॥୨୫୧
ଏ ସର୍ବେ ଧର୍ମରେ ବିବାଦୀ ।
ପିତୃ ସେବନ୍ତି ନିରବଧି ॥୨୫୨
ଅଧର୍ମ-ମାର୍ଗେ ନିରନ୍ତର ।
ସୁସେବା କରନ୍ତି ପିଅର ॥୨୫୩
ଯେ କାମଭୋଗେ ତୁମ୍ଭ ଇଚ୍ଛା।
ସେ ଦେଇ ପୂରାଇବେ ବାଞ୍ଛା॥୨୫୪
ଏଣୁ ଏ ତୁମ୍ଭ ସଙ୍ଗେ ଥିବେ ।
ସେବାଦି କର୍ମରେ ତୋଷିବେ॥୨୫୫
ଏହାଙ୍କୁ କ୍ଷଣେ ନ ଛାଡିବ ।
ଆମ୍ଭରେ ଯେବେ ଦୟା ଥିବ॥୨୫୬
ଏ ଯେତେ ନିବୃତ୍ତି ନନ୍ଦନ ।
ଦୟା ବିବେକ ଧର୍ମ ଜ୍ଞାନ ॥୨୫୭
କ୍ଷମା ସନ୍ତୋଷ ଧୀର ଶାନ୍ତି ।
ଏ ଅନୁକ୍ରମେ ଯେତେ ଛନ୍ତି ॥୨୫୮
ଅଧର୍ମ-ମାର୍ଗେ ଏ ଦାରୁଣ ।
ଇଛନ୍ତି ପିତାର ମରଣ ॥୨୫୯
ଏ ନିଷ୍ଠେ ମାରି ନିଜ ତାତ ।
ରଖିବେ ପିତାର ପିତାନ୍ତ ॥୨୬୦
ଏଣୁ ଏହାଙ୍କୁ ପ୍ରତେଜିବ ।
ଭୋଗାଦି ବାଞ୍ଛା ଯେବେ ଥିବ॥୨୬୧

ଏ ଦୁଷ୍ଟେ ଅଧର୍ମ ନାଶନ୍ତି ।
ଭୋଗାଦି ସୁଖ ନ ଦେଖନ୍ତି ॥୨୬୨
ଯେ ପିତୃବଧେ ଛିଦ୍ର ବାଞ୍ଛା ।
ତୁମ୍ଭେ ପାଇବ କାହିଁ ରକ୍ଷା ॥୨୬୩
ତୁମ୍ଭେ ନ ଜାଣ ପୁରଞ୍ଜନ ।
କେ ସାଧୁ କେ ଅବା ଦୁର୍ଜନ॥୨୬୪
ଆମ୍ଭର କହିବା ଉଚିତ ।
ତୁମ୍ଭେ ଯେ ଆମ୍ଭ ନିଜକାନ୍ତ ॥୨୬୫
ସ୍ୱାମୀ କପଟୀ ଯେବା ନାରୀ।
ସେ ଟି ଅଜ୍ଞାନୀ ବ୍ୟଭିଚାରୀ॥୨୬୬
ତୁମ୍ଭେ ଯେ ଭୋଗାଦି ଈଶ୍ୱର।
ଇଚ୍ଛା-ସଂଯୋଗେ ଭୋଗ କର॥୨୬୭
ଏ ସର୍ବେ ଭୋଗ ବିନାଶିବେ ।
କାମାଦି ବାଞ୍ଛା ଏ ନ ଦେବେ॥୨୬୮
ଏହାଙ୍କ ସଙ୍ଗତେ ରାଜନ ।
ପଡି ହୋଇବ ଭୋଗେ ହୀନ॥୨୬୯
ଏ ପୁରେ ଭୋଗ-ବାଞ୍ଛା ଯା'ର।
ଏ ସଙ୍ଗ ନୁହେଁ ନୃପବର ॥୨୭୦
ତୁମ୍ଭେ ଏ ସଙ୍ଗ ପରିହର ।
ନିଶ୍ଚିନ୍ତେ ଏ ପୁରେ ବିହର ॥୨୭୧
ଏବେ ଆମ୍ଭର ସଙ୍ଗେ ତୁମ୍ଭେ।
ସୁକୃତ କରି ରହ ଦମ୍ଭେ ॥୨୭୨
ଏ ସଙ୍ଗ ସଙ୍ଗତେ ଆମ୍ଭର ।
ପ୍ରୀତି ନୋହିବ ନୃପବର ॥୨୭୩
ସେ ନାରୀ ବାକ୍ୟେ ନୃପମଣି।
ଅଜ୍ଞାନେ ମଜ୍ଜିଲା ନ ଜାଣି ॥୨୭୪
ଅଜ୍ଞାନ-ମାର୍ଗେ ଚିତ୍ତ ଦେଲା।
ସ୍ୱ ପର ଭେଦ ବୁଦ୍ଧି କଲା ॥୨୭୫
ତା'ର ସ୍ୱବଶେ ନେଲା ଦିନ।
ଅଜ୍ଞାନ ପୁରୁଷ ଯେସନ ॥୨୭୬
ଭୋ ସଖି ଯାବତ ଏ ପୁରେ।
ଥିବି ତୋ ଆଜ୍ଞା ଅନୁସାରେ॥୨୭୭
ଶୁଣି ସନ୍ତୋଷେ ସେ ସୁନ୍ଦରୀ।
ରାଜାଙ୍କୁ ଘେନିଲା ଆଦରି ॥୨୭୮

ହେ ନୃପ ଶୁଣ ପୁରଞ୍ଜନ ।
ଏ ମୋର ଯେତେ ପରିଜନ॥୨୭୯
ସୁସେବା କରିବେ ନିରତେ ।
ଯେ ଭୋଗବାଞ୍ଛା ତୁମ୍ଭ ଚିତ୍ତେ॥୨୮୦
ଏ ସର୍ବେ ନିତ୍ୟେ ନିଯୋଜିବେ।
ତୁମ୍ଭଙ୍କୁ କ୍ଷଣେ ନ ଛାଡିବେ ॥୨୮୧
ଯେ କାମ-ଭୋଗେ ଇଚ୍ଛା ମନ।
ଏ ନିତ୍ୟେ ଖଟିବେ ରାଜନ॥୨୮୨
ଭଜିବେ ଯେଝା ନିଜସ୍ଥାନେ।
ନିର୍ଭୟ-ଚିତ୍ତେ ତୋଷମନେ ॥୨୮୩
ଏମନ୍ତ ପ୍ରବୋଧ ବଚନ ।
କହିଣ ତୋଷିଲା ରାଜନ ॥୨୮୪
ତା' ବାକ୍ୟେ ରାଜା ବିମୋହିତ।
କନ୍ଦୁକ-ପ୍ରତିମା ଯେମନ୍ତ ॥୨୮୫
ତା' ବଶେ କହେ ଚାଟୁ ବାଣୀ।
ଭୋ କାମାନଳ ଉଦ୍ଧାରିଣୀ ॥୨୮୬
ପ୍ରମଦାକୁଳ ମଧ୍ୟେ ସାର ।
ତୋ ତୁଲେ ନାହିଁ ପଟାନ୍ତର ॥୨୮୭
ତୋ' ରୂପ ନିର୍ମାଣିଲା ବିହି ।
ଦେଖି ଅନଙ୍ଗ ଚିତ୍ତ ମୋହି ॥୨୮୮
ତୁ କାମ-ଶତ୍ରୁ ବିନାଶନେ ।
ଅଇଲୁ ଏ ମର୍ତ୍ତ୍ୟ-ଭୁବନେ ॥୨୮୯
ମୋହର ତୁଲେ କାମୀ ଯେତେ।
ନିସ୍ତାର ହେବେ ଏ ଜଗତେ ॥୨୯୦
କାମଯାଚକ ପ୍ରାଣୀଙ୍କର ।
ତୋ ବିନା ଅନ୍ୟ କାହିଁ ଆର॥୨୯୧
ଭୋ ସ୍ତିରୀରତ୍ନ ସୀମନ୍ତିନୀ ।
କେ ତୁମ୍ଭ ପିଅର ଜନନୀ ॥୨୯୨
କହ ତାହାଙ୍କ ନାମ ଗୁଣ ।
ଶ୍ରବଣେ ମୋର ନିସ୍ତାରଣ ॥୨୯୩
ତା' ବାକ୍ୟ ଶୁଣିଣ ହରଷେ ।
ସେ ନାରୀ କହେ ମନ୍ଦହାସେ॥୨୯୪
ଶୁଣ ହେ ଦେବ ପୁରଞ୍ଜନ ।
କହିବା ପୂର୍ବର ବିଧାନ ॥୨୯୫

Dr. Sudhanshu Sekhar Mishra

ଆମ୍ଭର କେ ବା ତାତମାତ ।
ନ ଜାଣି ଜନ୍ମର ଚରିତ ॥୨୯୬
ଏ ତୁମ୍ଭ ଆମ୍ଭ ଦେହଧାରୀ ।
ସଚରାଚର ଆଦି କରି ॥୨୯୭
ଏ ପଞ୍ଚଭୂତ ଦେହ ଯେତେ ।
କେ ଜାଣି ପାରେ ତା' ତଦନ୍ତେ ॥୨୯୮
ଯେସନେ ତୁମ୍ଭେ ନୃପରାଣ ।
ନ ଜାଣ ଜନ୍ମାଦି କାରଣ ॥୨୯୯
ଆମ୍ଭର ଏଣେ ନାହିଁ ଜ୍ଞାନ ।
ବିବେକୀ ବୁଝ ହେ ରାଜନ ॥୩୦୦
ତୁମ୍ଭେ କି ନ ଜାଣ ତୁମ୍ଭଙ୍କୁ ।
ଏ ଭେଦ ପଚାର ଆମ୍ଭଙ୍କୁ ॥୩୦୧
ଏକଇ ଆତ୍ମା ବେନି ଅଂଶ ।
ପ୍ରକୃତି ଭେଦେ ବହୁ ଦୃଶ୍ୟ ॥୩୦୨
ଈଶ୍ୱର-ଇଚ୍ଛା ଏ ବିହରେ ।
ପ୍ରକୃତି ଭେଦେ ସୃଷ୍ଟି କରେ ॥୩୦୩
ଏ ଘେନି କେ ଜାଣେ ତଦନ୍ତ ।
ଏ ମାୟା-ଜଡେ ବିମୋହିତ ॥୩୦୪
ସ୍ୱନାମ-ଗୋତ୍ରେ କିବା ଫଳ ।
ମୋ ଭାଗ୍ୟେ ତୁମ୍ଭେ ଯେ ମିଳିଲ ॥୩୦୫
ଆଜ ମୋ ଭାଗ୍ୟ ଅଗୋଚର ।
ଦେଖିଲି ନୟନେ ମୋହର ॥୩୦୬
ଯାକୁ ଅଷ୍ଟାଙ୍ଗ ଯୋଗଧ୍ୟାନେ ।
ଯୋଗୀ ଭାବନ୍ତି ଅନୁଦିନେ ॥୩୦୭
ସେ ତୁମ୍ଭେ ମୋ ଭାଗ୍ୟେ ଆଗତ ।
ଏଣୁ ମଣିଲି ଅଦଭୁତ ॥୩୦୮
ଏ ପୁରେ କରିବା ବିଶ୍ରାମ ।
ଭୁଞ୍ଜ ସ୍ୱଇଚ୍ଛାସୁଖେ କାମ ॥୩୦୯
ମୁଁ ଆଣି ସର୍ବ ନିଯୋଜିବି ।
ଏହାଙ୍କ ତୁଲେ ମୁଁ ସେବିବି ॥୩୧୦
ଏ ମୋର ନବମୁଖ-ପୁର ।
ଏ ପୁରେ ଅଧିଷ୍ଠାନ କର ॥୩୧୧
ମୋ ସଙ୍ଗେକର ରତି ଯୋଗ ।
ଏ ଶତ ସମ୍ବତ୍ସର ଭୋଗ ॥୩୧୨

ଏ ତୁମ୍ଭ ବିନୁ ଯେବା ଜନ ।
କେ ରତି କରେ ତା ସଙ୍ଗେଣ ॥୩୧୩
ସେ ଅପଣ୍ଡିତ ହୀନଦେହୀ ।
ତା ରତି ସୁଖେ ଜ୍ଞାନ ନାହି ॥୩୧୪
ନାହିଁ ତା ପରଲୋକ ଚିନ୍ତା ।
ନ ଜାଣେ କାଳର ବାରତା ॥୩୧୫
କେବଳ ପଶୁ ତୁଲ୍ୟ ସେହି ।
ତା ସଙ୍ଗେ କେବା ବିଳସଇ ॥୩୧୬
ତା' ପୁରେ ସର୍ବ କର୍ମ ସାଧି ।
ଧର୍ମାର୍ଥ-କାମ-ମୋକ୍ଷ ଆଦି ॥୩୧୭
ପୁତ୍ର କଳତ୍ର ସୁଖ ଯଶ ।
ଏ ପୁରେ ଏ ସର୍ବ ପ୍ରକାଶ ॥୩୧୮
ଯେ ଲୋକ ନିର୍ମଳ ବିଶୋକ ।
ତା'କୁ ଭାବନ୍ତି ଜ୍ଞାନୀଲୋକ ॥୩୧୯
ସେ ଲୋକ ଏଥି ସୁଖ ପାଇ ।
ଯେଣୁ ଏ ପୁରୀ ସୁଖମୟୀ ॥୩୨୦
ପିତୃ ଦେବତା ମହାଋଷି ।
ସୁଖ ଲଭନ୍ତି ଯହିଁ ଆସି ॥୩୨୧
ଏ ଭାବେ ଗୃହସ୍ଥ ଆଶ୍ରମ ।
ରଖଇ ସର୍ବ ଲୋକ ଧର୍ମ ॥୩୨୨
ଏମନ୍ତ ଦିବ୍ୟପୁରେ ଥାଇ ।
ଯେ ଭୋଗେ ବାଞ୍ଛା ନ କରଇ ॥୩୨୩
ତାହାକୁ ବୋଲିଟି ଅଜ୍ଞାନ ।
ବିବେକ ନୋହେ ତା'ର ମନ ॥୩୨୪
କେ ଅବା ଅଜ୍ଞାନ ଯୁବତୀ ।
ତୁମ୍ଭର ପ୍ରାୟେ ପାଇ ପତି ॥୩୨୫
ବିହାର ନ କରେ ତା ତୁଲେ ।
ତା ସ୍ୱାମୀ ଆସି ଯେବେ ମିଳେ ॥୩୨୬
ବିଅର୍ଥ ସେ ନାରୀ ଜୀବନ ।
ନ କଲା ଭୁଜେ ଆଲିଙ୍ଗନ ॥୩୨୭
ସ୍ୱଇଚ୍ଛା ଆସି ଯେବେ ମିଳେ ।
ବରଣ ନ କରେ ଯେ ଭଲେ ॥୩୨୮
ଧିକ ସେ ନାରୀର ଜୀବନ ।
ତା'ଙ୍କ ବିଶ୍ୱାସେ ଧର୍ମ ହୀନ ॥୩୨୯

ଯେ ସୁଖ-ଭୋଗ ନ ଇଚ୍ଛିବ ।
ସେ ବ୍ୟର୍ଥ-ଜୀବନେ ବଞ୍ଚିବ ॥୩୩୦
ତୁମ୍ଭେ ଯେ ବଡ ଭାଗ୍ୟବନ୍ତ ।
ଦୀନ-ଉଦ୍ଧାରଣେ ସାମନ୍ତ ॥୩୩୧
ଏବେ ଯେ ତୁମ୍ଭେ ଦୟାକରି ।
ଅଇଲ ମୋ ଦୁଃଖ ଉଦ୍ଧରି ॥୩୩୨
ଯେବେ ସଦୟ ମୋତେ ହେବ ।
ଶତେ ବରଷ ଏଥି ଥିବ ॥୩୩୩
ଏମନ୍ତ ଶୁଣି ତା' ବଚନ ।
ସେ ନାରୀ ବଶେ ପୁରଞ୍ଜନ ॥୩୩୪
ସେ ପୁରେ କଲେକ ବସତି ।
ଶତେ ବରଷ ରଙ୍ଗେ ମାତି ॥୩୩୫
ଗାୟକମାନେ ଯେ ଗାବନ୍ତି ।
ସେ ବେନି ବିହାର କରନ୍ତି ॥୩୩୬
ସେ ସଖୀମାନଙ୍କୁ ଘେନିଣ ।
ସରସୀ ଜଳରେ ପଶିଣ ॥୩୩୭
ନିଦାଘ କାଳେ ସେ କ୍ରୀଡନ୍ତି ।
ସେପୁର କେବେ ନ ଛାଡନ୍ତି ॥୩୩୮
ଏବେ ସେପୁର ଦ୍ୱାରମାନ ।
କହିବା ଯେ ଦିଗେ ଯେବଣ ॥୩୩୯
ଉର୍ଦ୍ଧ୍ୱେ ସପତ-ଦ୍ୱାର ତା'ର ।
ତା ଅଧୋଭାଗେ ବେନି ଦ୍ୱାର ॥୩୪୦
ଏ ଦ୍ୱାରମାନଙ୍କେ ନୃପତି ।
ଯେଝା ବିଷୟ ଆସ୍ୱାଦନ୍ତି ॥୩୪୧
ଏ ପୁରେ ଈଶ୍ୱରଟି ସେହି ।
ତାହାକୁ ନ ଜାଣନ୍ତି କେହି ॥୩୪୨
ଉପର ସପ୍ତଦ୍ୱାର ଶୁଣ ।
ଯେ ରୂପେ ହୋଇଛି ନିର୍ମାଣ ॥୩୪୩
ଯେ ପୂର୍ବେ ତହିଁ ପଞ୍ଚ ଦ୍ୱାର ଶୁଣ ।
ଅଗ୍ରେ କହିବା ନାମ ତା'ର ॥୩୪୪
ଖଦ୍ୟୋତା ଆବିର୍ମୁଖୀ ଦୁଇ ।
ଯେ ଦ୍ୱାରେ ରୂପ ସମ୍ପାଦଇ ॥୩୪୫
ନଳିନୀ ନାଳିନୀ ଯେ ଦ୍ୱାର ।
ଏ ପୂର୍ବଭାଗେ ଅଛି ତା'ର ॥୩୪୬

Dr. Sudhanshu Sekhar Mishra

ଏ ଦ୍ୱାରେ ଅବଧୂତ ସଖା ।
ସୁଗନ୍ଧ ଘେନୁଥାଇ ଏକା ॥୩୪୭
ମୁଖ୍ୟା ନାମେଣ ଏକ ଦ୍ୱାର ।
ଉଭୟ କର୍ମ ସାଧ୍ୟକର ॥୩୪୮
ବିବିଧ ଆସ୍ୱାଦ ବଚନ ।
ଏ ଦ୍ୱାରେ ଘେନେ ପୁରଞ୍ଜନ ॥୩୪୯
ରସ ଆସ୍ୱାଦ ବାକ୍ୟ ଦୁଇ ।
ଏ ବେନି ଦ୍ୱାରେ ସେ ଘେନଇ ॥୩୫୦
ଦେବହୂ ପିତୃହୂ ଯେ ନାମ ।
ଏ ବେନିଦ୍ୱାର ଦକ୍ଷ ବାମ ॥୩୫୧
ଯେ ଦ୍ୱାର ବିଷୟେ ରାଜନ ।
ଶବ୍ଦାଦି କରେ ସମ୍ପାଦନ ॥୩୫୨
ଦକ୍ଷିଣ ଉତ୍ତର ପଞ୍ଚାଳ ।
ରାଜ୍ୟ ପାଳଇ ମହୀପାଳ ॥୩୫୩
ପଶ୍ଚିମେ ଆସୁରୀ ତା' ନାମ ।
ସେ ବେନିଦ୍ୱାରେ ଯେବା କର୍ମ ॥୩୫୪
ଗ୍ରାମକ ନାମେ ଯେ ବିଷୟ ।
ଯାହାକୁ ବୋଲିଟି ବ୍ୟବାୟ ॥୩୫୫
ସେ ଦ୍ୱାରେ ପ୍ରଜା ଉତପତ୍ତି ।
ଦୁର୍ମଦ ସହିତେ ନୃପତି ॥୩୫୬
ନିର୍ଋତି ନାମଟି ଯାହାର ।
ମଳ ଉତ୍ସର୍ଗେ ସେହୁ ଦ୍ୱାର ॥୩୫୭
ବୈଶସ ବିଷୟକୁ ଯାଇ ।
ଲୁବ୍ଧକ ମନ୍ତ୍ରି ସଙ୍ଗେ ଥାଇ ॥୩୫୮
ଏ ପୁରେ ଯେତେକ ଅଛନ୍ତି ।
ଏ କେହି ଅନ୍ଧ ଯେ ନୁହଁନ୍ତି ॥୩୫୯
ନିର୍ବାକ ପେଶସ୍କୃତ ଦୁଇ ।
ଏ ଥାଇ ଅନ୍ଧ ରୂପେ ତହିଁ ॥୩୬୦
ଏକଇ ଅନ୍ଧେ ସେ ରାଜନ ।
କରଇ ଆଦାନ ପ୍ରଦାନ ॥୩୬୧
ଯେ ଆର ଅନ୍ଧ ତା ପୟର ।
ତହିଁ ଗମଇ ନୃପବର ॥୩୬୨
ସେ ରାଜା ଅନ୍ତପୁରେ ବସେ ।
ବିଷୁଚୀ ଘେନି ଥାଇ ପାଶେ ॥୩୬୩

ବିଷୁଚୀ ନାମେ ଯେହୁ ଏକ ।
ତାହାର ସର୍ବଦିଗେ ମୁଖ ॥୩୬୪
ନିତ୍ୟେ ସେ ରାଜା ସଙ୍ଗେ ଥାଇ ।
ଯେଣେ ପେଷଇ ତେଣେ ଯାଇ ॥୩୬୫
ସେ କ୍ଷଣେ ନ ଛାଡଇ ତା'କୁ ।
ଅନାଇ ଥାଇ ତ ଅଙ୍କାକୁ ॥୩୬୬
ଏ ରୂପେ ରାଜା ପୁରଞ୍ଜନ ।
ସେ ପୁରେ ଥାଇ ଅନୁକ୍ଷଣ ॥୩୬୭
ତହିଁ ସେ ମୋଦ ପାଉଥାଇ ।
ବିରସ କେବେ ନ ଭଜଇ ॥୩୬୮
କ୍ଷଣକେ ହୋଇ ହତଜ୍ଞାନ ।
କ୍ଷଣକେ ଲଭଇ ଚେତନ ॥୩୬୯
ସେ କାମସୁଖେ ଦେଇ ଚିତ୍ତ ।
ଏଣୁ ହୋଇଲା ଜ୍ଞାନହତ ॥୩୭୦
ତା' ପତ୍ନୀ ଯେଣେ ପ୍ରବର୍ତ୍ତଇ ।
ସେ ମାର୍ଗେ ରାଜନ ଗମଇ ॥୩୭୧
ସେ ମଦ୍ୟପାନ ଯେବେ କରେ।
ରାଜା ପିବଇ ସ୍ନେହ ଭରେ ॥୩୭୨
ଯେବେ ସେ କରଇ ଭୋଜନ।
ତା' ପ୍ରାୟେ ଭକ୍ଷଇ ରାଜନ ॥୩୭୩
ସେ ଯେବେ ଆନନ୍ଦ ଭଜଇ ।
ତା' ଲାଗି ରାଜା ମୋଦ ହୋଇ ॥୩୭୪
ସେ ଯେବେ କରଇ ରୋଦନ।
ତା ପଛେ ବିଳପେ ରାଜନ ॥୩୭୫
ସେ ଗୀତ ଗାବନ୍ତେ ସୁନ୍ଦରୀ ।
ରାଜନ ଗାଏ ଅନୁସରି ॥୩୭୬
ଆନନ୍ଦେ ହସେ ଯେବେ ରାଣୀ।
ତା' ଭାବେ ହସେ ନୃପମଣି ॥୩୭୭
ବଚନ କହନ୍ତେ ରମଣୀ ।
ସେ ଭାବେ କହେ ନୃପମଣି ॥୩୭୮
ସେ ଯେବେ ବ୍ୟଗ୍ର ଗତେ ଯାଇ।
ସେ ଭାବେ ରାଜନ ଗମଇଁ ॥୩୭୯
ତା' ପତ୍ନୀ କରନ୍ତେ ଆସନ ।
ସେ ଭାବେ ବସଇ ରାଜନ ॥୩୮୦

ଏମନ୍ତେ ସେ ନାରୀ ରାଜାକୁ ।
ସ୍ୱବଶେ ରଖିଲା ତାହାକୁ ॥୩୮୧
ତା' ବିନା ଆଜ୍ଞାରେ ରାଜନ ।
ନ କରେ ଅନ୍ୟ କର୍ମମାନ ॥୩୮୨
ତା' ବଶେ ହୋଇଲା ଆୟତ୍ତ।
ରାଜାର ଜନ୍ମ ହେଲା ବ୍ୟର୍ଥ ॥୩୮୩
ସେ କ୍ରୀଡାମୃଗ ଜୀବ ପ୍ରାୟେ ।
ସ୍ତିରୀବଶରେ ରହେରାୟେ ॥୩୮୪
ତୁମ୍ଭେ ଯେସନେ ଭୋ ରାଜନ ।
ସ୍ତ୍ରୀ ବଶେ ହରାଇଲ ଜ୍ଞାନ ॥୩୮୫
ସେ ଭାବେ ପୁରଞ୍ଜନ ରାୟେ ।
ସ୍ତ୍ରୀ ବଶେ ଜ୍ଞାନ କଲା କ୍ଷୟେ ॥୩୮୬
ସେ ଭାବେ ସେ ଶେଷ ହୋଇଲା।
ସେ ପୁଣ୍ୟମାର୍ଗ ଉପେକ୍ଷିଲା ॥୩୮୭
ତା ଦିନ ଗଲା ପତ୍ନୀ ବଶେ ।
ଅସତ୍ୟ ମିଥ୍ୟା ଅଭିଳାଷେ ॥୩୮୮
ଯେ ପ୍ରାଣୀ ସ୍ତିରୀବଶ ହୋ'ନ୍ତି ।
ସେ ପୂର୍ବ-ପୁଣ୍ୟ ବିନାଶନ୍ତି ॥୩୮୯
ଇହଲୋକରେ ଅପଯଶ ।
ଦେହାନ୍ତେ ନରକେ ପ୍ରବେଶ ॥୩୯୦
ସ୍ତିରୀଙ୍କ ସଙ୍ଗ-ଦୋଷେ ରାୟେ।
ଧର୍ମାଦି ଜ୍ଞାନମାର୍ଗ କ୍ଷୟେ ॥୩୯୧
ସ୍ତିରୀଙ୍କ ସଙ୍ଗ ଫଳ ଏହି ।
କିଞ୍ଚିତ ଶ୍ରେୟ ନାହିଁ ଯହିଁ ॥୩୯୨
ଏହା ତୁ ଶୁଦ୍ଧ ଚିତ୍ତେ ଧର ।
ଏ ସଙ୍ଗ ଦୂରେ ପରିହର ॥୩୯୩
ତୁ ଶାସ୍ତ୍ରମାର୍ଗେ ହେ ରାଜନ ।
ବିଚାରି କର ଅନୁମାନ ॥୩୯୪
ଏମନ୍ତେ ନାନା ଧର୍ମବାଟେ ।
ସେ ମୁନି ବୁଝାଏ ଉଚ୍ଚାଟେ ॥୩୯୫
ପ୍ରାଚୀନ ବରହିନାରଦ ।
ଏ ପୁରଞ୍ଜନର ସମ୍ବାଦ ॥୩୯୬
ଏହା ଯେ ଶ୍ରବଣେ ଶୁଣନ୍ତି ।
ଅଥବା ବଦନେ ଗୁଣନ୍ତି ॥୩୯୭

Dr. Sudhanshu Sekhar Mishra

ଖଣ୍ଡଇ ମାୟା ଦ୍ୱନ୍ଦ୍ୱ ବନ୍ଧ ।
ଜ୍ଞାନ ବର୍ଦ୍ଧିତ ଆତ୍ମା ଶୁଦ୍ଧ ॥୩୯୮

ଭଣଇ ଦାସ ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୩୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ପଞ୍ଚବିଂଶୋଽଧ୍ୟାୟଃ ॥

## ଷଡ଼୍‌ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ପୁଣି ନାରଦ ମହାମୁନି ।
କହନ୍ତି ହରିଭାବ ଘେନି ॥୧

### ନାରଦ ଉବାଚ

ଶୁଣ ପ୍ରାଚୀନ ନୃପବର ।
ସେ ପୁରଞ୍ଜନ ସେ ମନ୍ଦିର ॥୨
ରହିଲା ସ୍ତିରୀବଶ ଭୋଗେ ।
ଅଜ୍ଞାନ-ମୋହ-ଅନୁରାଗେ ॥୩
ସେ ଏକଦିନେ ଦଣ୍ଡଧର ।
ମୃଗୟା ଅର୍ଥେ ବନଘୋର ॥୪
ଉଦ୍ୟମ କଲା ସେ ରାଜନ ।
ସଙ୍ଗେ ଦୁର୍ଜୟ-ଭଟମାନ ॥୫
ରଥ ଆରୋହୀ ଶୀଘ୍ର ଗତି ।
ଅରଣ୍ୟେ ପ୍ରବେଶ ନୃପତି ॥୬
ସେ ପୁରଞ୍ଜନ୍ ଦିବ୍ୟଯାନ ।
ଅତି ସୁନ୍ଦର ନିରୁପମ ॥୭
ପଞ୍ଚ ତୁରଙ୍ଗ ରଥ ବହେ ।
ଗମନ୍ତି ପଞ୍ଚମାର୍ଗେ ହୟେ ॥୮
ଅଶେଷ ବେଗ ତାହାଙ୍କର ।
ଗମନେ ନ ପାରେ ସମୀର ॥୯
ସେ ବେନିଚକ୍ରେ ଶୋଭାବନ ।
ଏକଇ ଅକ୍ଷେ ନିବନ୍ଧନ ॥୧୦
ଧର୍ମ ଅଧର୍ମ ଚକ୍ର ଦୁଇ ।
ପବନ ଅଶ୍ୱ ରୂପେ ଯହିଁ ॥୧୧
ଧ୍ୱଜ ତ୍ରିବର୍ଣ୍ଣ ରୂପେ ସାଜେ ।
ସେ ରଥ ଉପରେ ବିରାଜେ ॥୧୨
ପଞ୍ଚବନ୍ଧନେ ସୁଶୋଭିତ ।
ଏକ ସାରଥୀ ତେଜବନ୍ତ ॥୧୩

ଏକଇ ନୀଡ ଶୋଭାବନ ।
ସେ ରାଜା ବସିବା ଆସନ ॥୧୪
ସେ ବେନି କୂବରେ ଶୋଭିତ ।
ପଞ୍ଚ ପ୍ରହରଣ ସଂଯୁତ ॥୧୫
ସପ୍ତ ଆବରଣ ସଙ୍ଗତି ।
ଏ ରୂପେ ସେ ରଥେ ଶୋଭନ୍ତି ॥୧୬
ସେ ହେମ ଭୂଷଣେ ଶୋଭନ ।
ସାଞ୍ଜୁଆ ପିନ୍ଧି ସେ ରାଜନ ॥୧୭
ବସିଲେ ମନୋଜ୍ଞ ବିମାନେ ।
ଦେଖି ଶଙ୍କିତ ରିପୁଜନେ ॥୧୮
ଅକ୍ଷୟ ତୂଣୀର ବାନ୍ଧିଣ ।
ଭୂପତି ଅତି ହରଷେଣ ॥୧୯
ସେ ଏକାଦଶ ସେନାପତି ।
ସଙ୍ଗତେ କରିଣ ନୃପତି ॥୨୦
ଚଳନ୍ତି ଅତ୍ୟନ୍ତ ହରଷେ ।
ଦିଗ ବିଦିଗ ଚାହିଁ ତୋଷେ ॥୨୧
ପଞ୍ଚମ-ପ୍ରସ୍ଥ ନାମ ଯେହି ।
ପ୍ରବେଶ ଅରଣ୍ୟରେ ଯାଇ ॥୨୨
କରେଣ ଧରି ଶରାସନ ।
ମୃଗୟା ଛଳେ ସେ ରାଜନ ॥୨୩
ଛାଡି ତା ପ୍ରିୟବତୀ ନାରୀ ।
ଏକାନ୍ତେ ଗଲା ନ ବିଚାରି ॥୨୪
ଆସୁରୀ ବୁଦ୍ଧି ଧରି ରାୟେ ।
କଠୋର ନିର୍ଦ୍ଦୟ ହୃଦୟେ ॥୨୫
ନାହିଁ ତା ଅନୁଗ୍ରହ ଚିତ୍ତେ ।
ମୃଗୟା ଛଳେ ବିମୋହିତେ ॥୨୬
ନିଶିତ-ବାଣ ଶରାସନ ।
ବଧିଲା ବନ୍ୟ-ପଶୁମାନ ॥୨୭

ସେ ରାଜା ହୋଇ ଅପଣ୍ଡିତ ।
ଲୋଭେ ବଧଇ ମୃଗଯୂଥ ॥୨୮
ଯେ ପ୍ରାଣୀ ଜୀବବଧ କରେ ।
ସେ ପଶୁଯୋନିରେ ବିହରେ ॥୨୯
ସେ ନୃପ ଅଜ୍ଞାନ ଅଧମ ।
ତା'ର ଆୟୁଷ-ବୁଦ୍ଧି ହୀନ ॥୩୦
ଅଜ୍ଞାନେ ଯେବା ଜୀବ ମାରେ ।
ସେ ଜନ ନରକେ ସଞ୍ଚରେ ॥୩୧
ଯଜ୍ଞେ କେବଳ ପଶୁ ବଧ ।
ଅବଶ୍ୟ କରି ହେ ବିବୁଧ ॥୩୨
ଯେ ପିତୃଦେବ-ଶ୍ରାଦ୍ଧ ଅର୍ଥେ ।
ପଶୁ ବଧିବ ବେଦମତେ ॥୩୩
ତେବେ ହେଁ ପଶୁ-ବଧ ତା'ର ।
କେବଳ ଦୁଃଖ ମହାଘୋର ॥୩୪
ଯେ ବେଦ କର୍ମ ନ କରନ୍ତି ।
ସେ ଆତ୍ମାବଧେ ଭାଗୀ ହୋନ୍ତି ॥୩୫
ଯେ ବିଧିହୀନେ ବଧ କରେ ।
ସେ ପ୍ରାଣୀ ସଂସାରୁ ନ ତରେ ॥୩୬
ଅଜ୍ଞାନେ ଧର୍ମ-ମାର୍ଗ ହୁଡେ ।
ଯା ଚିତ୍ତ ପଶୁବଧେ ବଢେ ॥୩୭
ତାହାର ମୋକ୍ଷ କାହୁଁ ଆଉ ।
ମନୁଷ୍ୟ ଜନ୍ମ ହୋଏ ଦୂର ॥୩୮
ସେ ପଶୁଯୋନିରେ ଭ୍ରମଇଁ ।
ଯାତନା-କର୍ମ ନ ଛାଡଇ ॥୩୯
ପଶୁର ଦେହେ ରୋମ ଯେତେ ।
ଜନ୍ମ ଲଭଇ ସେହିମତେ ॥୪୦
ଏହା ନ ଜାଣି ନୃପବର ।
ସେ ପଶୁ ବଧିଲା ଅପାର ॥୪୧

Dr. Sudhanshu Sekhar Mishra

ତାହାର ଘୋର ତୀକ୍ଷ୍ଣ-ବାଣ ।
ପଶୁଏ ଲଭିଲେ ମରଣ ॥୪୨
ବରାହ ଗୟଳ ହରିଣ ।
ଶଶା ମହିଷ ପଶୁଗଣ ॥୪୩
ମେଧ୍ୟ ଅମେଧ୍ୟ ପଶୁ ଯେତେ ।
ଇତ୍ୟାଦି ଜୀବ ଯେ ବନସ୍ତେ ॥୪୪
ଏମନ୍ତେ ନାନା ଜୀବ ମାରି ।
ସେ ଧର୍ମ ପଥ ନ ବିଚାରି ॥୪୫
ବନ ଭ୍ରମଣେ ନୃପବର ।
ବହୁତ ଶ୍ରମ ହେଲା ତା'ର ॥୪୬
କ୍ଷୋଭିତ କ୍ଷୁଧା ତୃଷାକୁଳେ ।
ଆତ୍ମା ପୀଡ଼ିତ ଶ୍ରମ ବଳେ ॥୪୭
ସତ୍ୱରେ ସଦନେ ପ୍ରବେଶ ।
ସ୍ନାନାଦି ଭୋଜନ ସୁବେଶ ॥୪୮
ସୁଶାନ୍ତି କରାଇ ଶରୀର ।
ଅତି ଆନନ୍ଦେ ନୃପବର ॥୪୯
ସୁଗନ୍ଧ ଦ୍ରବ୍ୟ ପୁଷ୍ପମାଳ ।
ଭୂଷଣ ହେଲା ମହୀପାଳ ॥୫୦
ଖଞ୍ଜିଣ ନାନା-ଆଭରଣ ।
ସ୍ୱକାମ-ଭୋଗେ ନୃପରାଣ ॥୫୧
ଇଛଇ ପତ୍ନୀର ସଙ୍ଗତି ।
ଅନଙ୍ଗ-ପୀଡାରେ ନୃପତି ॥୫୨
ପ୍ରବେଶ ଅନ୍ତପୁରେ ଯାଇ ।
ପତ୍ନୀ-ବିଷୟ ମନେ ଧ୍ୟାୟି ॥୫୩
ସକଳ ପୁରେ ସେ ରାଜନ ।
ଆପଣା ପତ୍ନୀକି ଖୋଜିଣ ॥୫୪
ନ ପାଇ ସେ ନିଜ ଯୁବତୀ ।
ସଖୀଙ୍କି ରାଇ ପଚାରନ୍ତି ॥୫୫
ବିଷାଦେ ପୁଛଇ ରାଜନ ।
ଶୁଣଗୋ ଏ ମୋର ବଚନ ॥୫୬
ମୋ ପ୍ରାଣସଖୀ ଛନ୍ତି କାହିଁ ।
କହି ସନ୍ତୋଷ କର ଦେହୀ ॥୫୭
ସେ ଅର୍ଦ୍ଧଆତ୍ମାଟି ମୋହର ।
ଅର୍ଦ୍ଧକେ କେ ଧରେ ଶରୀର ॥୫୮

ସଦନେ ଅଛନ୍ତି ନା ଭଲେ ।
ସଖୀଗଣଙ୍କ ସଙ୍ଗ ମେଳେ ॥୫୯
ତୁମ୍ଭେ ତାହାଙ୍କ ଅନୁଚର ।
କହ କୁଶଳ ତାହାଙ୍କର ॥୬୦
ଏମନ୍ତ ବିହ୍ୱଳ ରାଜନ ।
ବାତୁଳେ କହଇ ବଚନ ॥୬୧
ସେ ଯେ ମୋହର ପ୍ରାଣଶାଖୀ ।
ତା ବିନୁ ନ ବର୍ତ୍ତଇ ଏକା ॥୬୨
ଶୁଣ ଗୋ ସଖୀଗଣ ମୋର ।
ଏ ଗୃହଧର୍ମର ବେଭାର ॥୬୩
ପତ୍ନୀ ନ ଥିଲେ ନ ଶୋଭନ୍ତି ।
ଏ ରାଜସମ୍ପଦ-ବିଭୂତି ॥୬୪
ସେ ଗୃହେ ନାହିଁ ଯେବେ ମାତା ।
ସୁପୁତ୍ରବତୀ ପତିବ୍ରତା ॥୬୫
ସେ ଗୃହପତି ଜୀବ ହୀନ ।
ସୁଖେ ତା ନାହିଁ ପ୍ରୟୋଜନ ॥୬୬
ଯେସନେ ଚକ୍ରହୀନ ରଥ ।
ବସିଲେ କାହିଁ ସୁଖ ଜାତ ॥୬୭
ତେସନେ ଗୃହିଣୀ ବିହୀନେ ।
ଗୃହସ୍ଥ ନ ଶୋହେ ସଦନେ ॥୬୮
ଆତ୍ମା ବିହୁନେ ଯେହ୍ନେ ଦେହୀ ।
ତା ଗୃହ ତେହ୍ନେ ନ ଶୋଭଇ ॥୬୯
କହ ମୋ କାହିଁ ସୁଲକ୍ଷଣୀ ।
ସେ ମୋର ପ୍ରାଣ ଉଦ୍ଧାରିଣୀ ॥୭୦
ତା ବିନୁ ନ ସ୍ଫୁରଇ ଜ୍ଞାନ ।
କହି ଗୋ ରଖ ମୋ ଜୀବନ ॥୭୧
ବୁଡ଼ିଲି ମୁଁ ଦୁଃଖସାଗରେ ।
ଉଦ୍ଧରି ରଖ ପ୍ରାଣ ଭଲେ ॥୭୨
ତା ଶୁଣି ସଖୀଗଣ ଭୟେ ।
ବୋଲନ୍ତି ଶୁଣ ମହାରାୟେ ॥୭୩
ଆମ୍ଭେ ନ ଜାଣୁ ସେ କିପାଇଁ ।
ଭୂମିଶଯ୍ୟାରେ ଛନ୍ତି ଶୋଇ ॥୭୪
ଦେଖିଲେ ଦେଖ ମହାରାୟ ।
ଆମ୍ଭେ ନଜାଣୁ ଅଭିପ୍ରାୟ ॥୭୫

ଶୁଣିଣ ସତ୍ୱରେ ରାଜନ ।
ଅନ୍ତଃପୁରେ କଲା ଗମନ ॥୭୬
ରାଣୀକି ଦେଖି ସେ ରାଜନ ।
ସତ୍ୱରେ କଲା ଆଲିଙ୍ଗନ ॥୭୭
ଭୂମିରୁ କୋଳରେ ବସାଇ ।
ଅନେକ ଚାଟୁବାକ୍ୟ କହି ॥୭୮
କାମିନୀ ଦୁଃଖ-ବିମୋଚନେ ।
କହେ କାକୁସ୍ଥ ଭୟମନେ ॥୭୯
ଭୋ ସଖି ମୁଁ ଯେ ଅପରାଧୀ ।
ତୋ ସଙ୍ଗ ତେଜି ମୁଁ ଦୁର୍ବୁଦ୍ଧି ॥୮୦
ମୃଗୟା ଛଳେ ବନେ ଗଲି ।
ଏଣୁ ଅପ୍ରିୟ ତୋର ହେଲି ॥୮୧
ତୁ କ୍ଷମା ନ କଲେ ସୁନ୍ଦରୀ ।
ମୁଁ ପ୍ରାଣ ନ ପାରବି ଧରି ॥୮୨
ପତି ବିନୟ ବାକ୍ୟ ଶୁଣି ।
ମାନ ନ ତେଜେ ସେ ମାନିନୀ ॥୮୩
ଅନେକ ବିନୟେ ରାଜନ ।
ଚରଣେ ପଡ଼ିଲା ତକ୍ଷଣ ॥୮୪
ଚରଣ ଧରି ତା'ର ରାୟେ ।
ଅତି ବିଭ୍ରମ ଶୋକେ କହେ ॥୮୫
ଭୋ ସଖି ତୋର ଚିନ୍ତାଭରେ ।
ମୋ ପ୍ରାଣ ନ ରହେ ଶରୀରେ ॥୮୬
ସୁବାକ୍ୟ ହସି ଏବେ କହ ।
ବିକଳ ହେଉଅଛି ଦେହ ॥୮୭
ଭୋ ସ୍ତିରୀରତ୍ନ ଶିରୋମଣି ।
ମୋ କାମ ଦୁର୍ଗତି-ତାରିଣୀ ॥୮୮
ତୋ ବିନୁ ଅନ୍ୟ କେବା ପାରେ ।
ଏ ଦୋଷ କ୍ଷମା କରିବାରେ ॥୮୯
ଯେ ପୁଣ୍ୟବନ୍ତ ଭୃତ୍ୟ ଠାରେ ।
ଦୋଷେ ଦଣ୍ଡନ୍ତି ପ୍ରଭୁତ୍ୱରେ ॥୯୦
ଦୋଷାନୁକ୍ରମେ ପାଇ ଦଣ୍ଡ ।
ତା ଅପରାଧ ହୋଏ ଖଣ୍ଡ ॥୯୧
ଯେ ସ୍ୱାମୀ ଭୃତ୍ୟେ ନ ଦଣ୍ଡନ୍ତି ।
କପଟଭାବ ତାଙ୍କ ମତି ॥୯୨

Dr. Sudhanshu Sekhar Mishra

ସେ ନିତ୍ୟେ ଭୟ-ଦୁଃଖେ ଦହେ ।
ସେବକଭାବ କାହିଁ ରହେ ॥୯୩
ସ୍ୱାମୀ ସେବକେ ଯେବେ ଦଣ୍ଡି ।
ଦିଅନ୍ତି ଅନୁଗ୍ରହେ ମଣ୍ଡି ॥୯୪
ତା ଯେବେ ଭୃତ୍ୟ ନ ବୁଝଇ ।
ସେ ମୂଢ଼ ଅଧମ ଅଟଇ ॥୯୫
ତାହାର କାହିଁ ଜ୍ଞାନ-ବୁଦ୍ଧି ।
ଚିନ୍ତା-ବିଭ୍ରମେ ନିରବଧି ॥୯୬
ଯେସନେ ପିତା ଅଭିମାନେ ।
ବାଳକ ରୋଦେ ଭୟଛନ୍ନେ ॥୯୭
ସେ ପୁତ୍ର ଦୋଷ ନ ଧରନ୍ତି ।
ପୁଣି ବାଳକେ ଆଶ୍ୱାସନ୍ତି ॥୯୮
ସେ ରୂପେ ମୋର ଅଭିମାନ ।
ଭୋ ସଖି କର ବିମୋଚନ ॥୯୯
ମୁଁ ଯେ ତୁମ୍ଭର ନିଜ ପତି ।
ମୃଗୟା ଶ୍ରମେ ଦୁଃଖ ଅତି ॥୧୦୦
ଏବେ ତୁ ତେଜି ଅଭିମାନ ।
ଆପଣା କରି ମୋତେ ଘେନ॥୧୦୧
ହେ ନାରୀବର ଶୁଣ ଏବେ ।
ତୋ ଅପରାଧ ଆନ ଯେବେ॥୧୦୨
ବିପ୍ର ବୈଷ୍ଣବ ନୋହିଥିଲେ ।
ଅବଶ୍ୟ ଦଣ୍ଡିବଇଁ ଭଲେ ॥୧୦୩
ପଳାଇ ଏ ତିନିଭୁବନେ ।
ଯେବେ ପଶିବ ଭୟଛନ୍ନେ ॥୧୦୪
ତା'ରେ ଶରଣ ରଖେ କେବା
ତୋ ବିନୁ ଅନ୍ୟ ସୁରଦେବା॥୧୦୫

ଏବେ ମୋ ଚିନ୍ତା-ତାପ-ଜ୍ୱର ।
ତୋର କଟାକ୍ଷେ ଦୂର କର ॥୧୦୬
ଭୋ ସଖି ତୋ ଚାରୁ ଆନନ ।
ତିଳେ ହେଁ ଦେଖିଲେ ମଳିନ॥୧୦୭
ମୋର ଜୀବନ ହୋଏ ଦୁଃଖୀ ।
ସ୍ନାନାଦି ଭୋଜନ ଉପେକ୍ଷି ॥୧୦୮
ଏ ଶୁଭ୍ରତନୁ ତୋ ଧୂସର ।
ଶୟନ କରିଛୁ ଭୂମିର ॥୧୦୯
କେ ପ୍ରାଣୀ ଧରିବ ଜୀବନ ।
ଦେଖି ତୋ ବିବର୍ଣ୍ଣ-ବଦନ ॥୧୧୦
ସୁନ୍ଦର ସୁକାନ୍ତି ତୋ ପ୍ରଭା ।
ଦେଖି ଟଳିବେ ସୁରଦେବା ॥୧୧୧
ତୋର ପଙ୍କଜାରୁଣାଧର ।
ଅଶେଷ ଭୁବନ ସୁନ୍ଦର ॥୧୧୨
ସେ ମୁଖେ ହସି ମୃଦୁବାଣୀ ।
କହି ତୁ ରଖ ପ୍ରାଣମଣି ॥୧୧୩
ମୁଁ ଯେ ତୋହର ପ୍ରାଣସଖା ।
ମୃଗୟା ଶ୍ରମେ ଭ୍ରମି ଏକା ॥୧୧୪
ତୁ ଶାନ୍ତି କର ଗୋ ମୃଗାକ୍ଷି ।
ମୋ ପ୍ରାଣ ଶରୀରୁ ଛାଡୁଛି ॥୧୧୫
ବିପଦ କାଳେ ଯେ ଯୁବତୀ ।
ନିଜ ସ୍ୱାମୀକୁ ନ ସେବନ୍ତି ॥୧୧୬
ସେ ନାରୀ ଜ୍ଞାନହୀନ-ମତି ।
ଜନାପବାଦେ ସେ ମରନ୍ତି ॥୧୧୭
ସେ ସ୍ତିରୀକୁଳେ ଲଜ୍ଜା ପାଇ ।
ଉଭୟଲୋକ ତା'ର ନାହିଁ ॥୧୧୮

ଅନେକ ପ୍ରବୋଧ ବଚନ ।
କହିଣ ତୋଷିଲେ ରାଜନ ॥୧୧୯
ସେ ନାରୀ ମାନ ଦୂର କଲା ।
ସନ୍ତୋଷେ ସତ୍ୱରେ ଉଠିଲା ॥୧୨୦
ଏମନ୍ତେ ଶୁଣ ହେ ବିଦୁର ।
ସେ ପୁରଞ୍ଜନ ନୃପବର ॥୧୨୧
ତା ବଶେ ହୋଇଲା ଆୟତ୍ତ ।
ବିଭ୍ରମ ହେଲା ତା'ର ଚିତ୍ତ ॥୧୨୨
ଏ ସର୍ବ ଅନୁଭବ ବାଣୀ ।
ନାରଦ ନୃପରେ ବଖାଣି ॥୧୨୩
ଏ ସର୍ବ ଜ୍ଞାନମୟ ସାର ।
ଶୁଣନ୍ତେ ଖଣ୍ଡେ ମାୟା ଘୋର ॥୧୨୪
ଶ୍ରବଣେ ହରଇ ପ୍ରମାଦ ।
ନ ଲାଗେ ଗୃହବନ୍ଧ ଦ୍ୱନ୍ଦ୍ୱ ॥୧୨୫
ବିବେକ ହୋଏ ବୁଦ୍ଧିମତି ।
କୃଷ୍ଣ-ବିଷୟେ ବଢେ ମତି ॥୧୨୬
ଏ ସାଧୁଜନଙ୍କ ବିଚାର ।
ସଂସାରବନ୍ଧୁ ହୁଅ ପାର ॥୧୨୭
ଚତୁର୍ଥସ୍କନ୍ଧେ ଭାଗବତ ।
ଛବିଶ ଅଧ୍ୟାୟ ଚରିତ ॥୧୨୮
ଅମୃତ ଜ୍ଞାନମୟ ଗୀତ ।
କହିଲେ ବିପ୍ର ଜଗନ୍ନାଥ ॥୧୨୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ଷଡ଼ବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ସପ୍ତବିଂଶ ଅଧ୍ୟାୟ

ନାରଦ ଉବାଚ

କହନ୍ତି ବ୍ରହ୍ମାଙ୍କ ନନ୍ଦନ ।
ତଦନ୍ତେ ସେ ଯେ ପୁରଞ୍ଜନ ॥ ୧
ଅନେକମତେ ପ୍ରବୋଧିଲା ।
ରାଣୀର ମାନ ଦୂର କଲା ॥ ୨
ପ୍ରସନ୍ନ ବଦନେ ସୁନ୍ଦରୀ ।
ସ୍ନାନ ମାର୍ଜନା ବେଗେ ସାରି ॥୩
କୁଙ୍କୁମ କସ୍ତୁରୀ ଲଗାଇ ।
ସୁବାସଗନ୍ଧେ ମନ ମୋହି ॥୪।
କଜ୍ଜ୍ୱଳ ସିନ୍ଦୂର ମଣ୍ଡିଲା ।
ସୁଦିବ୍ୟ ବସନ ପିନ୍ଧିଲା ॥ ୫
ସୁଗନ୍ଧ ପୁଷ୍ପମାଳା ଦେଇ ।
କବରୀ ବାନ୍ଧିଲା ସଜାଇ ॥ ୬
ଖଞ୍ଜିଣ ନାନା ଅଳଙ୍କାର ।
ମୁକୁରେ ନିରେଖି ଶରୀର ॥୭
ଭୋଜନ ସାରି ଷଡ଼ରସେ ।
ତାମ୍ବୁଳ ଭୁଞ୍ଜିଲା ହରଷେ ॥୮
ନୃପତି ସମୀପେ ମିଳିଲା ।
ହସି ପଲଙ୍କେ ବିଜେ କଲା ॥ ୯
ସେ କାମବିକାରେ ରାଜନ ।
ରାଣୀକି କଲା ଆଲିଙ୍ଗନ ॥ ୧୦
ବିବିଧ ସକାମ ବିକାରେ ।
ହାସ୍ୟ କଟାକ୍ଷ ମନୋହରେ ॥ ୧୧
ଏକାନ୍ତ ରତିରସରଙ୍ଗେ ।
ସେ ରାଣୀ ପୁରଞ୍ଜନ ସଙ୍ଗେ ॥ ୧୨
ଭ୍ରୂ-କମାଣେ ସନ୍ଧି ଶର ।
ଦ୍ରୁହାସ କଟାକ୍ଷ ବିକାର ॥ ୧୩
ଷଟଚତ୍ୱାରିଂଶ ବିକାରେ ।
ସେ ରସ-ସଙ୍ଗମ ରତିରେ ॥ ୧୪
ରାତ୍ର ଦିବସ ନ ଜାଣିଲା ।
ଅଜ୍ଞାନ-ମୋହେ ନିମଜ୍ଜିଲା ॥ ୧୫

ସେ କାମଭୋଗେଣ ନୃପତି ।
ଫୁଟିଣ ଶାନ୍ତ ହେଲା ଅତି ॥ ୧୬
ଉପଧି କରି ପତ୍ନୀ କର ।
ସୁଖେ ଶୋଇଲା ନୃପବର ॥ ୧୭
ପଲଙ୍କେ ସୁଖେ ନିଦ୍ରା ଗଲା ।
ସେ କାଳ-ଗତି ନ ଜାଣିଲା ॥ ୧୮
ନିତ୍ୟେ ହରନ୍ତେ ଆୟୁ ବଳ ।
ସେ ରାଜା ହୋଇଲା ନିର୍ବଳ ॥ ୧୯
ସେ କାମ ଭୋଗେ ନୃପବର ।
ସ୍ତିରୀ ସଙ୍ଗମେ ମନ ସ୍ଥିର ॥ ୨୦
ଅଜ୍ଞାନେ କ୍ରୀଡାରସେ ରତ ।
ନ ଦେଲା ଜ୍ଞାନମାର୍ଗେ ଚିତ୍ତ ॥ ୨୧
ନବୀନ ବୟସ ରାଜନ ।
ନାଶିଲା ଏ ସ୍ତିରୀ ଭୋଗେଣ ॥ ୨୨
ନିମିଷ ମାତ୍ର ସେ ମଣିଲା ।
ଏ ଯୁବାକାଳ ବିନାଶିଲା ॥ ୨୩
ଏମନ୍ତେ ବହୁ ସମ୍ବତ୍ସର ।
କାମିନୀ ବଶେ ନୃପବର ॥ ୨୪
ଭୋଗାନ୍ତେ ପୁରଞ୍ଜନ ଠାରେ ।
ଜନ୍ମିଲେ ଦୁହିତା କୁମରେ ॥ ୨୫
ଏଗାରଶତ ଯେ କୁମର ।
ଜନ୍ମ ଲଭିଲେ ଆଦ୍ୟେ ତା'ର ॥ ୨୬
ଦଶ ଉତ୍ତର କନ୍ୟା ଶତ ।
ସୁଗୁଣଶୀଳେ ହେଲେ ଜାତ ॥ ୨୭
ସେ କନ୍ୟା-ପୁତ୍ରେ ବିଭା ଦେଇ ।
ନିଶ୍ଚିନ୍ତ ହେଲା ନରସାଇଁ ॥ ୨୮
ବିଭା-ନିର୍ବନ୍ଧେ ନିମଜ୍ଜିଲା ।
ଅର୍ଦ୍ଧେ ଆୟୁଷ ତା'ର ଗଲା ॥ ୨୯
ପୁତ୍ର-କନ୍ୟାଙ୍କ ପୁତ୍ର ଶହେ ।
ପଞ୍ଚାଳେ ବଞ୍ଚନ୍ତି ସେ ରାୟେ ॥୩୦
ଏ ସର୍ବେ ରାଜାର ଭଣ୍ଡାର ।
ଲୁଟିଣ କଲେ ସେ ବିହାର ॥୩୧

ତେବେ ହେଁ ମନେ କ୍ଷୋଭ ନାହିଁ ।
ବିଷୟ-ରସେ ମନ ମୋହି ॥୩୨
ଗାନ୍ଧର୍ବ ଭୋଗେ ସେ ନୃପତି ।
ବିଭ୍ରମେ ଅତି ମୂଢ ମତି ॥୩୩
ବିଷୟେ ମମତା ବଢ଼ାଇ ।
ବନ୍ଦୀ ହୋଇଲା ନୃପସାଇଁ ॥୩୪
ତଦନ୍ତେ ଘୋର ଯଜ୍ଞ କଲା ।
ଅନେକ ପଶୁଙ୍କୁ ବଧିଲା ॥୩୫
ଦେବତା-ପିତୃ-ଭୂତପତି ।
ସେ ଯଜ୍ଞେ ପୂଜିଲା ନୃପତି ॥୩୬
ଯେ ରୂପେ ତୁମ୍ଭେ ହେ ରାଜନ ।
କରୁଛ ଘୋର ଯଜ୍ଞ ମାନ ॥୩୭
ସେ ରୂପେ ପୁରଞ୍ଜନ ରାୟେ ।
ଅନେକ ପଶୁ କଲା କ୍ଷୟେ ॥୩୮
ବିଷୟ ଜଡେ ଉନମତ୍ତ ।
କୁଟୁମ୍ବେ ବନ୍ଦୀ କଲା ଚିତ୍ତ ॥୩୯
ତଦନ୍ତେ ପ୍ରବେଶିଲା କାଳ ।
ଯେ ହରେ ପ୍ରାଣୀ ଆୟୁବଳ ॥ ୪୦
ତାହାର ନାମ ଚଣ୍ଡବେଗ ।
ଗନ୍ଧର୍ବ-ରାଜ୍ୟ କରେ ଭୋଗ ॥ ୪୧
ଗନ୍ଧର୍ବମାନଙ୍କର ପତି ।
ଅତି ପ୍ରଚଣ୍ଡ ତା'ର ଗତି ॥ ୪୨
ତ୍ରିଶତଷାଠି ତା ପ୍ରମାଣ ।
ଗନ୍ଧର୍ବେ ଅତି ବଳବାନ ॥ ୪୩
ମିଥୁନ ଭାବେ କରି ସ୍ଥିତି ।
ଏତେ ଗନ୍ଧର୍ବୀ ତହିଁ ଥା'ନ୍ତି ॥ ୪୪
ଗନ୍ଧର୍ବ-ଗନ୍ଧର୍ବୀ ପ୍ରବଳ ।
କେ କୃଷ୍ଣ କେ ଅବା ଶୁକଳ ॥ ୪୫
ଏ ସର୍ବେ ଚଣ୍ଡବେଗଙ୍କର ।
ହୋଇଣ ଥା'ନ୍ତି ଅନୁଚର ॥ ୪୬
ସେ ଚଣ୍ଡବେଗ ଆଜ୍ଞା ପାଇ ।
ବେଢ଼ିଲେ ରାଜାପୁର ଯାଇ ॥ ୪୭

Dr. Sudhanshu Sekhar Mishra

ସେ ପୁରଞ୍ଜନ ଦିବ୍ୟପୁରୀ ।
ଗନ୍ଧର୍ବେ ବଳେ କ୍ରୁର କରି ॥୪୮
ସେ ନଗ୍ରେ ସେନାପତି ଏକ ।
ରକ୍ଷଣେ ଥିଲା ସେ ଅଧ୍ୟକ୍ଷ ॥୪୯
ତାହାର ନାମ ପ୍ରଜାଗର ।
ସେ ବେଗେ ମିଳିଲା ଆଗର ॥୫୦
ତାହାଙ୍କୁ ମାରି ଘଉଡ଼ିଲା ।
ଅନେକ ଘୋରଯୁଦ୍ଧ କଲା ॥୫୧
ସେ ଶତ-ସମ୍ବତ୍ସର ନିତ୍ୟେ ।
ଯୁଝିଲା ଗନ୍ଧର୍ବ ସଙ୍ଗତେ ॥୫୨
ଗନ୍ଧର୍ବେ ଅତି ବଳବାନ ।
ତାହାଙ୍କୁ ମାରି କଲେ କ୍ଷୀଣ ॥୫୩
କ୍ଷୀଣ ହୁଅନ୍ତେ ପ୍ରଜାଗର ।
ସେ ଘୋରତାପେ ନୃପବର ॥୫୪
ସେ ପୁରବାସୀ ଯେତେ ଥିଲେ ।
ସେ ସର୍ବେ ଆକୁଳେ ରୋଦିଲେ॥୫୫
ଅନ୍ୟତ୍ର ନ ପାରନ୍ତି ଯାଇ ।
ଦୁଃଖେ ରୋଦନ୍ତି କ୍ଷୋଭ ପାଇ ॥୫୬
ସେ ନଗ୍ରେ ନୃପ ପୁରଞ୍ଜନ ।
ସଙ୍ଗତେ ଘେନି ପ୍ରଜାଗଣ ॥୫୭
ପାଞ୍ଚାଳଦେଶେ ନାନା ସୁଖ ।
ଯେଣୁ ଭୁଞ୍ଜିଲା ଅବିବେକ ॥୫୮
ତା ଦିନ ପତ୍ନୀସ୍ନେହେ ଗଲା ।
କୁତ୍ସିତ-ସୁଖେ ନିମଜ୍ଜିଲା ॥୫୯
ଇନ୍ଦ୍ରିୟ-ରସେ ଅନୁରାଗୀ ।
ସେ ମୋକ୍ଷ ତେଜିଲା ଦୁର୍ଭାଗୀ ॥୬୦
ଅଳପ ସୁଖ-ଭୋଗେ ରତ ।
ନ ଦେଲା ଜ୍ଞାନମାର୍ଗେ ଚିତ୍ତ ॥୬୧
ନ କଲା ସେ ଭଲ ବିଚାର ।
ଏଣୁ ହୋଇଲା ଦୁଃଖ-ଘୋର ॥୬୨
ପ୍ରାଚୀନବର୍ହିଙ୍କୁ ନାରଦ ।
କହିଲେ ଅପୂର୍ବ ସମ୍ବାଦ ॥୬୩
କାଳର କନ୍ୟା ଏକ ଥିଲା ।
ତାହାକୁ କେହି ନ ବରିଲା ॥୬୪

ଏ ତିନିଲୋକେ ସେ ଭ୍ରମଇ ।
ଡରେ କେ ତାକୁ ବିଭା ନୋହି ॥୬୫
ସେ ଯାରେ ବର ଇଚ୍ଛା କରେ ।
ସେ ଦେଖି କମ୍ପେ ଥରହରେ ॥୬୬
ସେ ସର୍ବ-ଅଭାଗ୍ୟର ଧାମ ।
ଏଣୁ ଦୁର୍ଭାଗା ତା'ର ନାମ ॥୬୭
ସେ କନ୍ୟା ପୂର୍ବେ ଏକକାଳେ ।
ଯଯାତି ବଳେ ବିଭା ହେଲେ ॥୬୮
ତା ଠାରେ ବଇଭୋଗ ସାରି ।
ପୁତ୍ରକୁ ବରେ ଇଚ୍ଛା କରି ॥୬୯
ତାହାକୁ ଯଯାତି ରାଜନ ।
ପୁତ୍ରକୁ କଲେ ସମର୍ପଣ ॥୭୦
ତା ଜ୍ୟେଷ୍ଠ ଯେତେକ କୁମର ।
କେହି ନ କଲେ ଅଙ୍ଗୀକାର ॥୭୧
କନିଷ୍ଠପୁତ୍ର ପୁରୁ ଥିଲା ।
ସେ ପିତା ଆଜ୍ଞାରେ ବରିଲା ॥୭୨
ତାହାର ସଙ୍ଗେ ନୃପବଳା ।
ଅନେକ ଦିନ ଭୋଗ କଲା ॥୭୩
ବର ଇଚ୍ଛଇ ନିରନ୍ତରେ ।
ଦେଖିଣ ପ୍ରାଣୀ ତା'ଙ୍କ ଡରେ ॥୭୪
ଏମନ୍ତେ ସେ କାଳ ଦୁହିତୀ ।
ସେ ବରେ ନୋହେ ତୁଷ୍ଟମତି ॥୭୫
ତା କାମଭୋଗେ ବଳ ହରି ।
ତଦନ୍ତେ ସଂସାରେ ବିହରି ॥୭୬
ମୁଁ ଦିନେ ବ୍ରହ୍ମଲୋକ ଠାରୁ ।
ଏ ମହୀ ଭ୍ରମଣ ଇଚ୍ଛାରୁ ॥୭୭
ଆସନ୍ତେ କୃଷ୍ଣରସେ ରସି ।
ମୋତେ ଭେଟିଲା ଦୁଷ୍ଟାଆସି ॥୭୮
ବୋଇଲା ଶୁଣ ମୁନିବର ।
ମୋ କାମଦୁଃଖ ପରିହର ॥୭୯
ଯଦିତ୍ୱପଣ ମୋର ଜାଣେ ।
ତଥାପି ବରେ ଭ୍ରମ ପଣେ ॥୮୦
ତୁମ୍ଭ ମହିମା ଶୁଣି ନିତ୍ୟେ ।
ମୁଁ ଅନୁସରି ଅବିରତେ ॥୮୧

ଏବେ ଭେଟିଲି ଭାଗ୍ୟଫଳେ ।
ତୋ ସଙ୍ଗେ ରତି ତୋଷ ବଳେ ॥୮୨
ତୁମ୍ଭେ ଯେ ଦୟାଳୁ ଈଶ୍ୱର ।
ମୋ କାମ-ବାଞ୍ଛା ପୂର୍ଣ୍ଣକର ॥୮୩
ହେ ମୁନିଶ୍ରେଷ୍ଠ ଯୋଗେଶ୍ୱର ।
ମୋ ତୁଲେ ଗୃହଧର୍ମ କର ॥୮୪
ତୁମ୍ଭେ ମୋହର ନିଜ ପତି ।
ଏଣୁ ଅଇଲି ତୁମ୍ଭ କତି ॥୮୫
ପୁରୁଷ ସ୍ୱଧର୍ମଟି ଏହି ।
ପ୍ରାପତ-କନ୍ୟା ନ ତେଜଇ ॥୮୬
ଯାଚକ କନ୍ୟା ପ୍ରତେଜିଲେ ।
ସେ ସୁଖ ନ ଲଭଇ ଭଲେ ॥୮୭
ଯେ ସାଧୁଜନ ଏ ଜଗତେ ।
ପ୍ରିୟ ଅପ୍ରିୟ ସମ ଚିତ୍ତେ ॥୮୮
ପ୍ରାଣୀଙ୍କ ହିତାର୍ଥ କାରଣେ ।
ଏଣୁ ଭ୍ରମନ୍ତି ଅନୁକ୍ଷଣେ ॥୮୯
ଅନ୍ୟତ୍ର ବାଞ୍ଛା ନାହିଁ ମୋର ।
ଏ କାମ-ଶତ୍ରୁ ମୋ' ନିବାର ॥୯୦
ଭୋ ମୁନିବର ତୁମ୍ଭ ବିନେ ।
ମୋ ଚିତ୍ତ ନ ବଳଇ ଆନେ ॥୯୧
ଏ ତୁମ୍ଭ ଆମ୍ଭ କାମଭୋଗ ।
ଦଇବ କରିଛି ସଂଯୋଗ ॥୯୨
ଏମନ୍ତ ବାକ୍ୟ ତା'ର ଶୁଣି ।
ଆମ୍ଭେ ପ୍ରକୋପେ ତାକୁ ଭଣି ॥୯୩
ବୋଇଲୁ ତୁ ନୀଚ ଯୁବତୀ ।
ପ୍ରମଦାକୁଳେ ନୋହୁ ସତୀ ॥୯୪
କୁଳ-ଦୂଷଣ-କର୍ମ ତୋର ।
ନ ମରି ଧରିଛୁ ଶରୀର ॥୯୫
ତୋତେ ଦେଖିଲେ ଲଭି ଦୋଷ ।
ଅଶେଷ ପୁଣ୍ୟ ହୁଏ ନାଶ ॥୯୬
ଯେ ସ୍ତିରୀ ବିଟପୀ ସଂସାରେ ।
ଉଭୟଲୋକ ପରିହରେ ॥୯୭
ତୁ ଛାର କହିଲୁ ଏମନ୍ତ ।
ନ ଜାଣୁ ଆମ୍ଭେ ତପୋବନ୍ତ ॥୯୮

Dr. Sudhanshu Sekhar Mishra

ପାତ୍ର ଅପାତ୍ର ତୁ ନ ଜାଣୁ ।
ଦୂଷଣ କଥା ମୁଖେ ଭଣୁ ॥୯୯
ଶୁଣସି ତୁ ମୂଢ଼ ଅଜ୍ଞାନୀ ।
ଆମ୍ଭେ ଯେ ଅଟୁ ବ୍ରହ୍ମଜ୍ଞାନୀ ॥୧୦୦
ଗୃହସ୍ଥଧର୍ମ ଆମ୍ଭ ନାହିଁ ।
ତୋର ବରଣେ ଇଚ୍ଛା କାହିଁ ॥୧୦୧
ତୋହର ବରେ ଯେବେ ଇଚ୍ଛା ।
କହିବା ପୂରିବ ତୋ ବାଞ୍ଛା ॥୧୦୨
ଯବନମାନଙ୍କ ଈଶ୍ୱର ।
ତୁ ଯାଇ ବେଗେ ତାଙ୍କୁ ବର ॥୧୦୩
ଯେ କାମ ଭୋଗେ ତୋର ଇଚ୍ଛା ।
ସେ ତୋର ପୂରାଇବେ ବାଞ୍ଛା ॥୧୦୪
ତା ଶୁଣି ବିମୁଖେ ତରୁଣୀ ।
ସକ୍ରୋଧେ ଶାପ ମୋତେ ଭଣି ॥୧୦୫
ବୋଇଲା ଶୁଣ ମୁନିବର ।
ମୋ ପ୍ରୀତି-ଆଶା କଲୁ ଦୂର ॥୧୦୬
ତୁ ଏକଠାବେ ନ ରହିବୁ ।
ଜୀବନ୍ତେ ଯେତେକାଳ ଥିବୁ ॥୧୦୭
ବ୍ରହ୍ମାଣ୍ଡ ମଧ୍ୟେ ସ୍ଥାନ ଯେତେ ।
ଭ୍ରମଣ କରୁଥିବୁ ନିତ୍ୟେ ॥୧୦୮
କାହିଁ ତୁ ନ ଲଭିବୁ ସୁଖ ।
ଭୋଗାଦି ନାମେଣ ବିମୁଖ ॥୧୦୯
ଏ ଘୋରଶାପ ମୋତେ ଦେଇ ।
ବରିଲା ଭୟପତି ଯାଇ ॥୧୧୦
ଭୋ ଦେବ ଯବନ ଈଶ୍ୱର ।
ତୁ ବୀର ବଳେ ବଳୀୟାର ॥୧୧୧
ଏଣୁ ବରିଲି ମୁହିଁ ତୋତେ ।
ମୋର ବିନୟ ଘେନ ଚିତ୍ତେ ॥୧୧୨
ତୁମ୍ଭଙ୍କୁ ଯେବା ମାଗେ ଯାହା ।
ବିନାଶ ନୋହେ କାମ ତାହା ॥୧୧୩
ଶୁଣ ଯବନ ଅଧିପତି ।
ଏ ବେନିଲୋକେ ଶିଶୁମତି ॥୧୧୪
ଯେ ଲୋକ-ଶାସ୍ତ୍ରର ଭକତ ।
ଦ୍ରବ୍ୟ ହୋଇଲେ ଉପଗତ ॥୧୧୫
ଯାଚକ ଜନେ ତା ନ ଦେଇ ।
ଅଥବା ଦେଲେ ନ ଘେନଇ ॥୧୧୬
ଏ ବେନି ଶିଶୁ ସଙ୍ଗେ ସରି ।
ଏଣୁ ତାହାଙ୍କୁ ମୁଁ ନ ବରି ॥୧୧୭
ତୁମ୍ଭେ ଦୟାଳୁ ଶୂରବନ୍ତ ।
ଯବନମାନଙ୍କ ସାମନ୍ତ ॥୧୧୮
ମୁଁ କାମେ ତୁମ୍ଭଙ୍କୁ ଭଜିଲି ।
ଲଜ୍ଜା ସଙ୍କୋଚ ଉପେକ୍ଷିଲି ॥୧୧୯
ମୋ ସଙ୍ଗେ କର ବଇଭୋଗ ।
ହର ଦୁର୍ଜୟ କାମରୋଗ ॥୧୨୦
ପୁରୁଷ ସ୍ୱଧର୍ମଟି ଏହି ।
ଦୀନଜନଙ୍କୁ ଦୟା ବହି ॥୧୨୧
ମୁଁ ଜନ୍ମକାଳୁ କାମଦୁଃଖେ ।
ତୁ ମୋତେ ନ ତେଜ ବିମୁଖେ ॥୧୨୨
ଯାଚକ ଜନ ନ ତୋଷିଲେ ।
ସ୍ୱଧର୍ମ ନାଶ ଯାଇ ଭଲେ ॥୧୨୩
ତାର କାର୍ପଣ୍ୟ ବାକ୍ୟ ଶୁଣି ।
ଯବନେଶ୍ୱର ମନେ ଗୁଣି ॥୧୨୪
ଦେବଙ୍କ ଗୁପ୍ତ ଯେ ମରଣ ।
ଏହାରେ ସାଧିବି ପ୍ରମାଣ ॥୧୨୫
ଏମନ୍ତ ମନେ ବିଚାରିଲା ।
କନ୍ୟାକୁ ପ୍ରତିବାକ୍ୟ ଦେଲା ॥୧୨୬
ଶୁଣ ଗୋ କାଳର ଦୁହିତି ।
ତୋ ସମେ ବରିଅଛି ପତି ॥୧୨୭
ଆପଣା ସମାଧି-ଯୋଗରେ ।
ମୁଁ ବର ବରିଅଛି ତୋରେ ॥୧୨୮
ଏ ଯେତେ ଲୋକବୃନ୍ଦ ଛନ୍ତି ।
ତୋର ସମୀପେ ନ ଗଛନ୍ତି ॥୧୨୯
ତୋ ରୂପ ଦେଖି ଅମଙ୍ଗଳ ।
ଡରନ୍ତି ଏ ଲୋକ ସକଳ ॥୧୩୦
ତୁ ଯେ ଅଲକ୍ଷ୍ୟ ଯୋଗେଶ୍ୱରୀ ।
ତାହାଙ୍କୁ ଭୋଗକର ଧରି ॥୧୩୧
ଏକାକୀ ବୋଲି ଭୟ ଯେବେ ।
ମୋ ସେନା ସଙ୍ଗେ ନିଅ ତେବେ ॥୧୩୨
ଏ ସର୍ବେ ତୋର ସଙ୍ଗେ ଥିବେ ।
ତୋ ଆଜ୍ଞା କ୍ଷଣେ ନ ଛାଡ଼ିବେ ॥୧୩୩
ଏମନ୍ତେ ପ୍ରଜାନ୍ତ ବିନାଶ ।
ଏ ସର୍ବେ ହୋନ୍ତୁ ତୋର ବଶ ॥୧୩୪
ମୋହର ଭାଇ ଯେ ପ୍ରଜ୍ୱର ।
ତୁ ଭଗ୍ନୀ ହେବୁ ଯେ ମୋହର ॥୧୩୫
ଏକତ୍ରେ ଭାଇ ଭଗ୍ନୀ ଥିବ ।
ମୋ ସେନାଗଣ ସଙ୍ଗେ ନେବ ॥୧୩୬
ଲୋକେ ନ ଜାଣିବେ ତୋ ଗତି ।
ଭ୍ରମୁଣ ଥିବୁ ଚଉକତି ॥୧୩୭
ଜୀବଙ୍କ ଭୋଗ ଅନୁସାରେ ।
ପୀଡ଼ିବୁ ଲୋଭାଦି ବ୍ୟାଧିରେ ॥୧୩୮
ଏମନ୍ତ ଶିକ୍ଷା ତାକୁ ଦେଇ ।
ଅଗ୍ରେ ପେଷିଲା ଭଗ୍ନୀଭାଇ ॥୧୩୯
ତା ସୈନ୍ୟ ସର୍ବବ୍ୟାଧିଗଣ ।
ଘେନାଇ ଚଳେ ନୃପରାଣ ॥୧୪୦
ଅପରେ କାମ କ୍ରୋଧ ଯେତେ ।
ପାଉଣେ ଥା'ନ୍ତି ଅବିରତେ ॥୧୪୧
ଏ ସର୍ବେ ପ୍ରାଣୀ ଅଙ୍ଗେ ଯାଇ ।
କୁକର୍ମ ମାର୍ଗେ ଲୋଭେ ନେଇ ॥୧୪୨
ନିତ୍ୟେ ପୀଡ଼ନ୍ତି ଅନୁକ୍ଷଣ ।
ଜୀବକୁ ରୋଗ ପ୍ରଭେଦେଣ ॥୧୪୩

### ମୈତ୍ରେୟ ଉବାଚ

ଏମନ୍ତେ ଶୁଣ ହେ ବିଦୁର ।
ସେ କାଳକନ୍ୟା ଯେ ପ୍ରଜ୍ୱର ॥୧୪୪
ଯବନପତି ଆଜ୍ଞା ପାଇ ।
ଏ ସୈନ୍ୟବଳ ସଙ୍ଗେ ନେଇ ॥୧୪୫
ଭ୍ରମନ୍ତି ଏ ମହୀମଣ୍ଡଳେ ।
ହରନ୍ତି ଜୀବଆୟୁ ବଳେ ॥୧୪୬
ଭୋଗ ପ୍ରଲୋଭେ ବିନାଶନ୍ତି ।
ନିରତେ ଛିଦ୍ର ଉଦ୍ଦେଶନ୍ତି ॥୧୪୭
ପୃଥିବୀ ପର୍ଯ୍ୟଟନ କଲେ ।
କର୍ମାନୁସାରେ ଭୋଗ ଦେଲେ ॥୧୪୮

Dr. Sudhanshu Sekhar Mishra

ଚତୁର୍ଥସ୍କନ୍ଧେ ଭାଗବତ ।
ନାରଦ ପ୍ରାଚୀନ ଭକତ ॥୧୪୯
ଏ ପୁରଞ୍ଜନର ଆଖ୍ୟାନ ।
ସପ୍ତବିଂଶ ଅଧ୍ୟା ସମ୍ପୂର୍ଣ୍ଣ ॥୧୫୦
ଏହା ଯେ ଶ୍ରବଣେ ଶୁଣନ୍ତି ।
ସଂସାର-ବନ୍ଧୁ ନିସ୍ତରନ୍ତି ॥୧୫୧
ସେ ପ୍ରାଚୀନ ଗନ୍ଥ ପୁରାଣ ।
ନାରଦ ତାହାରେ ବଖାଣ ॥୧୫୨
ଭଣଇ ଜଗନ୍ନାଥ ଦାସ ।
ଏକାଳେ ହୋଇଲା ପ୍ରକାଶ ॥୧୫୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ସପ୍ତବିଂଶୋଽଧ୍ୟାୟଃ ॥

## ଅଷ୍ଟବିଂଶ ଅଧ୍ୟାୟ

ଶ୍ରୀକୃଷ୍ଣ ପାଦପଦ୍ମ ଚିନ୍ତି ।
ସହର୍ଷେ ମୈତ୍ରେୟ କହନ୍ତି ॥୧

ମୈତ୍ରେୟ ଉବାଚ

ତଦନ୍ତେ ଶୁଣ ହେ ବିଦୁର ।
ସେ ପୁରଞ୍ଜନର ବିଚାର ॥୨

ନାରଦ ଉବାଚ

ନାରଦ କହନ୍ତି ରାଜନ ।
ଏବେ କହିବା ଦିବ୍ୟଜ୍ଞାନ ॥୩
ଯବନ ଅଧିପତି ଯେହି ।
ତାହାର ନାମ ଭୟ କହି ॥୪
ସୈନ୍ୟାଦି ବ୍ୟାଧିଗଣେ ତା'ର ।
ସଙ୍ଗତେ ଥା'ନ୍ତି ନିରନ୍ତର ॥୫
ପ୍ରଜ୍ୱର କାଳକନ୍ୟା ବେନି ।
ଏହାଙ୍କୁ ରାଜା ସଙ୍ଗେ ଘେନି ॥୬
ଏ ସର୍ବେ ସଙ୍ଗତେ ଚଳନ୍ତି ।
ଯେ ଦିଗେ ବିଜୟେ ନୃପତି ॥୭
ସେ ଏକଦିନେ ନୃପବର ।
ସଙ୍ଗତେ ସୈନ୍ୟ ଜରା-ଜ୍ୱର ॥୮
ସେ ମହୀ ଭ୍ରମଣ କରନ୍ତେ ।
ଦେଖିଲା କାଳକର୍ମଗତେ ॥୯
ଯେ ପୁରେ ଥିଲା ପୁରଞ୍ଜନ ।
ତା ବେଗେ ବେଢ଼ିଲା ଯବନ ॥୧୦
ଯେ କିଛି ପୃଥ୍ୱୀରେ ବୈଭୋଗ ।
ସକଳ ସେ ପୁରେ ସଂଯୋଗ ॥୧୧
ସେ ପୁରେ ଦ୍ୱାରୀ ବୃଦ୍ଧ ଅହି ।
ନିର୍ଭୟେ ପୁର ଜଗିଥାଇ ॥୧୨
ଏ ପଞ୍ଚଭୂତେ ଦେହ ଯେତେ ।
ତା'କୁ ନ ଛାଡେ କଦାଚିତେ ॥୧୩
ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି ।
ତା'କୁ ଜିଣନ୍ତା କେହି ନାହିଁ ॥୧୪
ବ୍ରହ୍ମାଦି ସୁରମୁନି ଦେବା ।
ଭୟେ କରନ୍ତି ତାକୁ ସେବା ॥୧୫
ତା'କୁ ଜିଣନ୍ତା ଯେବା ଜନ ।
ନିଶ୍ଚିନ୍ତେ ରହେ ନିଜସ୍ଥାନ ॥୧୬
ଯବନେ ସେ ପୁର ନାଶିଲେ ।
ଯେ ପୁରେ ପୁରଞ୍ଜନ ଥିଲେ ॥୧୭
ସେ କାଳକନ୍ୟା ସଙ୍ଗେ ଥିଲା ।
ସତ୍ୱରେ ସେ ପୁରେ ପଶିଲା ॥୧୮
ବଳେ ସେ କଲା ବଇଭୋଗ ।
କାନ୍ତି ବଳ ବୀର୍ଯ୍ୟ ସଂଯୋଗ ॥୧୯
ସେ ନାରୀ ଯା'ରେ ସ୍ପର୍ଶଇ ।
ସେ ପ୍ରାଣୀ ଉଠି ନ ପାରଇ ॥୨୦
ଅଗ୍ରେ ସେ ନାରୀ ପ୍ରବେଶିଲା ।
ଯେତେ ଯବନବଳ ଥିଲା ॥୨୧
ସର୍ବେ ସେ ଦ୍ୱାରମାର୍ଗେ ଗଲେ ।
ପ୍ରବେଶି ପୁର ବିନାଶିଲେ ॥୨୨
ପୁର ଉଜାଡେ ଭୟ କରି ।
ସେ ପୁରଞ୍ଜନ ଦଣ୍ଡଧାରୀ ॥୨୩
ବହୁତ ସନ୍ତାପ ସେ କଲା ।
ନିର୍ବଳେ ଶଙ୍କିତେ ରହିଲା ॥୨୪
ସେ ରାଜା କ୍ରୋଧେ ଅଭିମାନୀ ।
ଦେଖିଲା ସ୍ୱକୁଟୁମ୍ବ ହାନି ॥୨୫
ସ୍ନେହାନୁବନ୍ଧ ନ ଛାଡଇ ।
ଆକୁଳେ ସନ୍ତାପେ ଶୋଚଇ ॥୨୬
ସେ କାଳକନ୍ୟା ଆସି ବେଗେ ।
ରାଜାକୁ କୋଳ କଲା ସୋଗେ ॥୨୭
ତା'ର ସ୍ପରଶେ ମହାରାୟେ ।
ହୋଇଲା ନଷ୍ଟ-କାନ୍ତି-କାୟେ ॥୨୮
କୃପଣ-ବିଷୟୀ ରାଜନ ।
ହୋଇଲା ତା' ସଙ୍ଗ ପାଇଣ ॥୨୯
ପ୍ରଜ୍ଞା ଯେ ହେଲା ତା'ର ନାଶ ।
ସଘନେ ଛାଡଇ ନିଃଶ୍ୱାସ ॥୩୦
ଯବନ-ଗନ୍ଧର୍ବେ ପଶିଲେ ।
ରାଜ ଐଶ୍ୱର୍ଯ୍ୟ ବିନାଶିଲେ ॥୩୧
ସେ ପୁର କ୍ଷୀଣ ଦେଖି ତା'ର ।
ପୁତ୍ରାଦି ଛାଡିଲେ ଆଦର ॥୩୨
ଆତ୍ମୀୟ ଲୋକ ଯେତେ କହି ।
ଦେଖିଲା ପୂର୍ବସ୍ନେହ ନାହିଁ ॥୩୩
ତା' ପତ୍ନୀଠାରେ ଯେତେ ପ୍ରୀତି ।
ଦେଖିଲା ଅସ୍ନେହ ଅନୀତି ॥୩୪
ଆତ୍ମାକୁ ଜରା ଗ୍ରସ୍ତ କଲା ।
ପଞ୍ଚାଳ ବିଷୟ ତା' ଗଲା ॥୩୫

Dr. Sudhanshu Sekhar Mishra

ଦୁରନ୍ତ ଚିନ୍ତା ପାଇ ରାୟେ ।
ନ ଦେଖେ ତରିବା ଉପାୟେ ॥୩୬
ସେ କନ୍ୟା ସ୍ମରଣେ ନିର୍ବଳ ।
ଏକାନ୍ତେ ଝୁରେ ମହୀପାଳ ॥୩୭
ନିର୍ବଳ ଦେଖି ନିଜ ଦେହ ।
ଛାଡିଲା ପୁତ୍ର ଆଦି ସ୍ନେହ ॥୩୮
ସ୍ୱ-ପରଲୋକ ଚିନ୍ତା ଗଲା ।
ସେ କାଳକନ୍ୟା ଏହା କଲା ॥୩୯
ସେପୁର ଛାଡିବାରେ ମନ ।
ରୋଦନ କରେ ଅନୁକ୍ଷଣ ॥୪୦
ନ ପାରେ ସହି ଦୁଃଖଘୋର ।
ସେ ନିଷ୍ଟେ ଛାଡିବ ଶରୀର ॥୪୧
ଭ୍ରମ ତା' ହେଲା ନିଜ ମତି ।
ଆତୁରେ ଭାଳଇ ନୃପତି ॥୪୨
ଭୟର ଅଗ୍ରଜ ପ୍ରଜ୍ୱର ।
ଆଚ୍ଛାଦି ରହିଲା ସେ ପୁର ॥୪୩
ଏ ସର୍ବେ ପୁରମାର୍ଗେ ରହି ।
ପ୍ରଚଣ୍ଡ ତେଜେ କୋପ ବହି ॥୪୪
ସାନ-ଭ୍ରାତାର ପ୍ରିୟ ଅର୍ଥେ ।
ସେ ପୁର ଦହିଲା ତୁରିତେ ॥୪୫
ପୁର ଦହନ ଯହୁଁ ହେଲା ।
ସେ ରାଜା ମହାଭୟ କଲା ॥୪୬
ସେ ପୁରବାସୀ ଯେତେ ଥିଲେ ।
ସଭୟେ ସକଳେ କମ୍ପିଲେ ॥୪୭
ଯବନେ ପୁର ଦେଲେ ଦହି ।
କାଳକନ୍ୟାର ପଛେ ରହି ॥୪୮
ସଭୟେ ନ ପାରନ୍ତି ଯାଇ ।
ଦୁଃଖେ ରୋଦନ୍ତି ଛନ୍ନ ହୋଇ ॥୪୯
ଯବନ-ପୁର ନେଲେ ବେଗେ ।
ସେ କାଳକନ୍ୟା ଘେନି ସଙ୍ଗେ ॥୫୦
ଭୟର ଅଗ୍ରଜ ପ୍ରଜ୍ୱର ।
ପୁର ନାଶିଲେ ବେଗେ ତା'ର ॥୫୧
ଦେଖିଣ ବିଷାଦେ ନୃପତି ।
ରୋଦନ କଲା ଭୟେ ଅତି ॥୫୨

ବହୁତ କଷ୍ଟେ ସେ ରାଜନ ।
ପୁର ଛାଡିତେ କଲା ମନ ॥୫୩
ଯେସନେ ବୃକ୍ଷକ୍ରୋଟେ ଅହି ।
ଅନଳ ତେଜ ତାପେ ଦହି ॥୫୪
ସେ ଯେହ୍ନେ ସେ ସ୍ଥାନ ଉପେକ୍ଷି ।
ରହେ ଅତ୍ୟନ୍ତ ଭୟେ ଦୁଃଖୀ ॥୫୫
ତେସନେ ଛାଡି ନିଜ ପୁରୀ ।
ସେ ରାଜା ବହୁ ଚିନ୍ତା କରି ॥୫୬
ହସ୍ତ ଚରଣ ତା' ନ ଚଳେ ।
ପୌରୁଷ ଗନ୍ଧର୍ବେ ହରିଲେ ॥୫୭
ଯବନ-ଶତ୍ରୁ ବ୍ୟାଧି ରୂପେ ।
କଷ୍ଟ ନିରୋଧ କଲା କୋପେ ॥୫୮
ମୂଢ଼ ଦୁର୍ମତି ସେ ରାଜନ ।
ରୋଦଇ ନ ଛାଡି ଜୀବନ ॥୫୯
ନ ଛାଡିପାରେ ସ୍ନେହ ଚିତ୍ତେ ।
ରାତ୍ର ଦିବସ ଭାଳେ ନିତ୍ୟେ ॥୬୦
ଏ ମୋର ପୁତ୍ର କନ୍ୟା ଯେତେ ।
ମୋ' ବିନା ବଞ୍ଚିବେ କେମନ୍ତେ ॥୬୧
ଜାମାତା ବନ୍ଧୁ ପରିଷଦ ।
ଅପରେ ଗୃହାଦି ସମ୍ପଦ ॥୬୨
ମୁଁ ଏବେ ପୁର ପ୍ରତେଜିଲେ ।
ଏ ସର୍ବେ ନ ବର୍ତ୍ତିବେ ଭଲେ ॥୬୩
ସ୍ୱପତ୍ନୀ ସହିତେ ରାଜନ ।
ଅନେକ କରନ୍ତି ରୋଦନ ॥୬୪
ମୁଁ ଏବେ ନିଶ୍ଚୟ ମରିବି ।
ଏ ବହୁ ଦୁଃଖ ନ ସହିବି ॥୬୫
ମୋହର ଅଭାବେ ଏ କାମିନୀ ।
ଭାଳିବ ସ୍ୱକୁଟୁମ୍ବ ଘେନି ॥୬୬
ବାଳକ କନ୍ୟା ଯେତେ ମୋର ।
ପାଇବେ ବହୁ ଦୁଃଖ ଘୋର ॥୬୭
ବିଦେଶୀ ରାଜା ରାଜ୍ୟ ନେବେ ।
ଏହାଙ୍କୁ ବହୁ ଦୁଃଖ ଦେବେ ॥୬୮
ବାଳକେ ହୋଇବେ ଅନାଥ ।
ତା' ଦେଖି ରୋଦିବ ବହୁତ ॥୬୯

ଏ ସ୍ତିରୀ ପ୍ରାଣ ଗୁଣମଣି ।
ମୋ ବିନୁ ନଶିବ ତରୁଣୀ ॥୭୦
ସ୍ନାନ ଭୋଜନ ମୁଁ ନ କଲେ ।
ଏ ରାଣୀ ନ କରେ ବିକଳେ ॥୭୧
ସୁଗୁଣବତୀ ମୋ' ଘରଣୀ ।
କେମନ୍ତେ ପ୍ରତେଜିବି ପୁଣି ॥୭୨
ଏହାର ଗୁଣ ଅଛି ଯେତେ ।
ମୁଁ କହି ପାରିବଇଁ କେତେ ॥୭୩
ସେ ମୋର କ୍ରୋଧ-କାଳ ଜାଣି ।
ଜ୍ଞାନେ ପ୍ରବୋଧେ ମୋ ତରୁଣୀ ॥୭୪
ମୁଁ ଯେବେ କ୍ରୋଧ ବହି ତା'ରେ ।
ସ୍ଥିର ସେ ରହଇ ଭୟରେ ॥୭୫
ମୋର ବିଚ୍ଛେଦ ଏ ସୁନ୍ଦରୀ ।
ବିରହ-ଦୁଃଖେ ନିତ୍ୟେ ଝୁରି ॥୭୬
ମୋହର ଆପଦ ଚିନ୍ତାକାଳେ ।
ସେ ପ୍ରତିବୋଧ ଦେଇ ଭଲେ ॥୭୭
ଏ ଗୃହଧର୍ମ ନ କରିବ ।
ବ୍ୟାକୁଳ ଚିନ୍ତାରେ ମଜ୍ଜିବ ॥୭୮
ଏ ପୁତ୍ର-କନ୍ୟା ନ ଚାହିଁବ ।
ମୋ' ଅନ୍ତେ ଅବଶ୍ୟ ମରିବ ॥୭୯
ଏ ପୁତ୍ର କନ୍ୟା ମାତୃ ହୀନେ ।
ଦୁଃଖିତ ହେବେ ଆଶ୍ରେ ବିନେ ॥୮୦
ମୋ' ଅନ୍ତେ ଏ ସର୍ବେ ମରିବେ ।
କିବା ଭକ୍ଷିବେ କାହିଁ ଥିବେ ॥୮୧
ଆଶ୍ରୟ ନ ପାଇ ଶୟନେ ।
ଅବଶ୍ୟ ମରିବେ ଆକୁଳେ ॥୮୨
ସମୁଦ୍ର ମଧ୍ୟେ ଯେହ୍ନେ ନାବ ।
ଭଗ୍ନେ ନଶନ୍ତି ପ୍ରାଣୀ ସର୍ବ ॥୮୩
ଏ ସର୍ବେ ତେସନେ ମରିବେ ।
ମୋ' ଅନ୍ତେ କେହି ନ ଜୀଇଁବେ ॥୮୪
ଏମନ୍ତ ଅଜ୍ଞାନ-ବୁଦ୍ଧିରେ ।
ସେ ନିତ୍ୟେ ବହୁ-ଶୋକ କରେ ॥୮୫
ଏମନ୍ତ ଭାଳନ୍ତେ ରାଜନ ।
କାଳ ହୋଇଲା ଅବସାନ ॥୮୬

Dr. Sudhanshu Sekhar Mishra

ରାଜାକୁ ଧରି ନେବା ପାଇଁ ।
ଭୟେ ମିଳିଲା ବେଗ ହୋଇ ॥୮୭
ପଶୁର ପ୍ରାୟ ବନ୍ଦୀ କଲା ।
ତକ୍ଷଣେ ଉପ୍ରୋଧ ତେଜିଲା ॥୮୮
ଧରିଣ ଯବନଙ୍କ ବଳେ ।
ଆପଣା ସ୍ଥାନକୁ ସେ ନେଲେ ॥୮୯
ତା' ଅନୁଚର ଯେତେ ଥିଲେ ।
ଜଣେ ହେଁ ସପକ୍ଷ ନୋହିଲେ ॥୯୦
ସେ ସର୍ବେ ଆକୁଳେ ଶୋଚନ୍ତି ।
ରାଜାକୁ ସୁମରି କାନ୍ଦନ୍ତି ॥୯୧
ଦ୍ୱାରେ ଯେ ଥିଲା ବୃଦ୍ଧ ଅହି ।
ସେ ଛାଡିଗଲା ବେଗ ହୋଇ ॥୯୨
ସେ ରାଜା ସଙ୍ଗତେ ଗମିଲା ।
ତା' ଅନ୍ତେ ପୁର ନଷ୍ଟ ଗଲା ॥୯୩
ଯବନବଳ ବଳବନ୍ତେ ।
ରାଜାକୁ ଧରି ଓଟାରନ୍ତେ ॥୯୪
ସେ ଅତି ବ୍ୟାକୁଳେ ରାଜନ ।
ରୋଦନ କରେ ଉଚ୍ଚସ୍ୱନ ॥୯୫
ମୃତ୍ୟୁଦଣ୍ଡେ ତା' ପାଡେ ଦେହୀ ।
ସେ ଦୁଃଖ କେବା ପାରେ ସହି ॥୯୬
ଯେସନେ ସୂଚୀ-ରନ୍ଧ୍ରଗତେ ।
ମତ୍ତ-ବାରଣ ଉଦ୍ଧୃତନ୍ତେ ॥୯୭
ତେସନେ ପୀଡ଼ିତ ଶରୀର ।
ଦୁଃସହ ଦୁଃଖ ମୃତ୍ୟୁଘୋର ॥୯୮
ଏମନ୍ତେ ପ୍ରାଣତ୍ୟାଗ କାଳେ ।
ଜୀବ ଭ୍ରମଇ ଦୟାକୁଳେ ॥୯୯
ସେ ରାଜା ଅଜ୍ଞାନ ହୋଇଲା ।
ବେଳେ ଶ୍ରୀହରି ନ ଚିହ୍ନିଲା ॥୧୦୦
ଶ୍ରୀକୃଷ୍ଣ ନ ଭଜିଲା ଯେଣୁ ।
ଏ ମୃତ୍ୟୁଭୟ ତା'ର ତେଣୁ ॥୧୦୧
ଯଜ୍ଞାଦି ପୁଣ୍ୟକର୍ମ ଯେତେ ।
ରକ୍ଷଣେ ନୋହିଲେ ସମର୍ଥେ ॥୧୦୨
ସେ କାମ୍ୟକର୍ମେ ଯଜ୍ଞ କରି ।
ଅନେକ ପଶୁ ଥିଲା ମାରି ॥୧୦୩

ନିର୍ଦ୍ଦୋଷ-ଜୀବଙ୍କୁ ରାଜନ ।
ଯଜ୍ଞେ ବଧିଲା ପ୍ରତିଦିନ ॥୧୦୪
ସେ ରୋଷ ମନେ ଧରିଥିଲେ ।
ତକ୍ଷଣେ ରାଜାକୁ ଭେଟିଲେ ॥୧୦୫
ବେଗେ ବେଢ଼ିଲେ ପଶୁଗଣ ।
କୁଠାର କଲେ ପ୍ରହାରଣ ॥୧୦୬
ନାନାଦି ତୀକ୍ଷ୍ଣ ଶସ୍ତ୍ର ଧରି ।
କାଟନ୍ତି ସେ ଦୁଃଖ ସୁମରି ॥୧୦୭
ତୁଳା ପ୍ରମାଣେ ଅବଶେଷେ ।
ସେ ପଶୁଗଣେ ଅତି ରୋଷେ ॥୧୦୮
ଭକ୍ଷନ୍ତି ଅସ୍ଥି ଶେଷ ଯାଏ ।
ନିର୍ଦ୍ଦୟ-ଚିତ୍ତେ ସେ ନିର୍ଭୟେ ॥୧୦୯
ଦୁଃସହ-ଦୁଃଖ-ପୀଡା ଯେତେ ।
ସହଇ କର୍ମର ଆୟତ୍ତେ ॥୧୧୦
ଏଣୁ କୁସଙ୍ଗ-ଦୋଷ ତା'ର ।
ହୋଇଲା ମହା-ଦୁଃଖ ଘୋର ॥୧୧୧
ସେ ସ୍ତିରୀବଶେ ବଶ ହୋଇ ।
ସେବକ ଜନ ପ୍ରାୟ ଥାଇ ॥୧୧୨
ତା' ବଶେ ହୋଇଲା ଅଧୀନ ।
ହରିଲା ତାର ପୂର୍ବ-ଜ୍ଞାନ ॥୧୧୩
ହରି-ଚରଣେ ନ ଭଜିଲା ।
ଏ ଘେନି ଏ କଷ୍ଟ ଲଭିଲା ॥୧୧୪
ପଡିଲା ଅକ୍ଷତମ ଘୋରେ ।
କିଛି ନ ସ୍ଫୁରେ ତା ମନରେ ॥୧୧୫
କୃଷ୍ଣ ଅଭାବେ ମୂଢ଼ମତି ।
ଏଣୁ ଦୁରନ୍ତ ମ୍ଳେଚ୍ଛଗତି ॥୧୧୬
ନରକେ ବହୁ ସମ୍ବତ୍ସର ।
ଭୋଗ ସେ କଲା ନୃପବର ॥୧୧୭
ପୀଡିତ କର୍ମର ଅବଶେଁ ।
ସେ ପୂର୍ବ-କର୍ମ ପାପ ଦୋଷେ ॥୧୧୮
ଏମନ୍ତେ ନାନା ଦୁଃଖେ ପଡି ।
ଯେଣୁ ସ୍ୱଧର୍ମ-ମାର୍ଗ ଛାଡ଼ି ॥୧୧୯
ଈଶ୍ୱର-ବାକ୍ୟ ବେଦବାଣୀ ।
ଅଜ୍ଞାନେ ତେଜିଲା ନ ଜାଣି ॥୧୨୦

ସେ ପାପ ଅନ୍ତେ ଜନ୍ମ ତା'ର ।
ବିଦର୍ଭ-ରାଜାର ମନ୍ଦିର ॥୧୨୧
ସେ ରାଜା ମରଣ ସମୟେ ।
ସ୍ତ୍ରୀ ସଙ୍ଗ ଭାବିଲା ହୃଦୟେ ॥୧୨୨
ତେଣୁ ସେ ପ୍ରମଦା ହୋଇଲା ।
ପୁରୁଷ ଅଙ୍ଗ ପ୍ରତେଜିଲା ॥୧୨୩
ସେ ପତିବ୍ରତା ସଙ୍ଗ ଫଳେ ।
ଜନ୍ମ ଲଭିଲା ସାଧୁକୁଳେ ॥୧୨୪
ଏଣୁ ସୁସଙ୍ଗେ ମୋକ୍ଷ ପ୍ରାଣୀ ।
ଜ୍ଞାନେ ଭକତି ପରିମାଣି ॥୧୨୫
ବିଦର୍ଭ-ମନ୍ଦିରେ ସୁନ୍ଦରୀ ।
ଜନ୍ମ ଲଭିଲା ଦେହ ଧରି ॥୧୨୬
ମଳୟଧ୍ୱଜ ନାମେ ରାଜା ।
ସେ କୃଷ୍ଣଭକ୍ତ ମହାତେଜା ॥୧୨୭
କନ୍ୟାର ରୂପ-ଗୁଣ ଶୁଣି ।
ଚିତ୍ତେ କଳ୍ପିଲା ନୃପମଣି ॥୧୨୮
ସେ ସୈନ୍ୟସାମନ୍ତ ସାଜିଲା ।
ବିଦର୍ଭ-ଦେଶେ ବିଜେ କଲା ॥୧୨୯
ସେ ରାଜା ସଙ୍ଗତେ ରାଜନ ।
ଯୁଦ୍ଧେ ଜିଣିଲା ରାଜ୍ୟ-ଧନ ॥୧୩୦
ବଳେ ହରିଲା ତା' ଦୁଲଣୀ ।
ବିବାହ କଲା ନୃପମଣି ॥୧୩୧
ମଳୟଧ୍ୱଜ ନୃପବର ।
ଦ୍ରାବିଡଦେଶେ ଅଧିକାର ॥୧୩୨
ସେ କନ୍ୟା ଗର୍ଭେ ତା' ସନ୍ତତି ।
ଜନ୍ମିଲା ସୁଗୁଣ ସୁମତି ॥୧୩୩
ସେ ରାଜା ସଦୃଶ କୁମାରୀ ।
ପ୍ରସବ କଲା ତା'ର ନାରୀ ॥୧୩୪
ଶ୍ରୀକୃଷ୍ଣ ସେବାରୁଚି ନାମ ।
ତା ନାମ ଦେଲେ ସେ ରାଜନ ॥୧୩୫
ସପତ ତନୟ ଅନ୍ତରେ ।
ଜନ୍ମିଲେ ସେ ନାରୀ ଉଦରେ ॥୧୩୬
ଶ୍ରବଣ କୀର୍ତ୍ତନ ଯେ ଆଦି ।
ଏ ସପ୍ତନାମେ ଭକ୍ତିସିଦ୍ଧି ॥୧୩୭

Dr. Sudhanshu Sekhar Mishra

ଏକୁ ଅନେକ ତାହାଙ୍କର ।
ଅର୍ବୁଦ ଅର୍ବୁଦ କୁମର ॥ ୧୩୮
ବଂଶର ସଂଖ୍ୟା ତା' ନ ଯାଇ ।
ଅସଂଖ୍ୟ ଅପ୍ରମିତ ହୋଇ ॥ ୧୩୯
ସେ ମନ୍ୱନ୍ତର ଭୋଗ କଲେ ।
ଆନନ୍ଦେ କୃଷ୍ଣଙ୍କୁ ଭଜିଲେ ॥ ୧୪୦
ମଳୟଧ୍ୱଜର ଦୁହିତା ।
ସେ ଜ୍ଞାନବତୀ ଧୃତବ୍ରତା ॥ ୧୪୧
ଅଗସ୍ତି ତା'ରେ ବିଭା ହେଲେ ।
ତା ଗର୍ଭେ ଦୃଢ଼ଚ୍ୟୁତ ହେଲେ ॥ ୧୪୨
ମଳୟଧ୍ୱଜ ରାଜରଷି ।
ପୁତ୍ରଙ୍କୁ ଡକାଇଲେ ବସି ॥ ୧୪୩
ବିଭାଗ କରି ରାଜ୍ୟ-ଖଣ୍ଡ ।
ପୁତ୍ରଙ୍କୁ ଦେଲେ ଛତ୍ର-ଦଣ୍ଡ ॥ ୧୪୪
କୃଷ୍ଣ ଭଜନେ ନରସାଇଁ ।
ରହିଲେ କୁଳାଚଳେ ଯାଇ ॥ ୧୪୫
ତା'ର ବୈଦର୍ଭୀ ନାମେ ଜାୟା ।
ଛାଡିଣ ଗୃହ-ସୁତ ମାୟ ॥ ୧୪୬
ସେ ରଜା ପଛେ ଗୋଡାଇଲା ।
ସୁଧାଂଶୁ ପଛେ ଶୋଭା ଗଲା ॥ ୧୪୭
ସେ କୁଳାଚଳ ଗିରିବର ।
ସକଳ ତୀର୍ଥଙ୍କ ମନ୍ଦିର ॥ ୧୪୮
ତୀର୍ଥଙ୍କ ନାମ ଏକା ଏକା ।
ଯେ ତାମ୍ରପର୍ଣ୍ଣୀ ବଟୋଦକା ॥ ୧୪୯
ଅପରେ ଚନ୍ଦ୍ରବସା ନାମ ।
ଏ ଆଦି ପୁଣ୍ୟତୀର୍ଥ ଧାମ ॥ ୧୫୦
କୃଷ୍ଣ-ଭକତି ସୁସାଧନେ ।
ତପ ଆଚରି ଶୁଦ୍ଧମନେ ॥ ୧୫୧
ସେ ପୁଣ୍ୟ-ତୀର୍ଥ-ଜଳେ ନିତି ।
ସ୍ନାନାଦି କର୍ମ ଯେ କରନ୍ତି ॥ ୧୫୨
ଦୁରନ୍ତ ବାହ୍ୟ-ଅନ୍ତଃମଳ ।
ସେ ଜଳେ ହୋଇଲା ନିର୍ମଳ ॥ ୧୫୩
ତପ ସାଧନେ ଅତିରେକ ।
ଭକ୍ଷିଣ ଫଳ-ମୂଳ-ଶାକ ॥ ୧୫୪

ପୁଷ୍ପ କୋମଳ ପତ୍ର ଜଳ ।
ତୃଣାଦି ଶଯ୍ୟାରେ ନିଶ୍ଚଳ ॥ ୧୫୫
କଠୋର ତପ ଆଚରିଲେ ।
ଶରୀର ତପେ ଶୁଖାଇଲେ ॥ ୧୫୬
ଶୀତ ଉଷ୍ଣାଦି ତ୍ରୟତାପ ।
କ୍ଷୁଧା ପିପାସା ତେଜି ଭୂପ ॥ ୧୫୭
ଦୁଃଖ-ସୁଖାଦି ସମ ତା'ରେ ।
ଶୋକ ହରଷ ଏକ କରେ ॥ ୧୫୮
ଏ ସର୍ବ ଜିଣି ସେ ରାଜନ ।
ନିର୍ମଳ ପ୍ରକାଶିଲା ମନ ॥ ୧୫୯
ମିତ୍ର ଅଇରି ସମ ତା'ର ।
ଲାଭ ଅଲାଭ ଏକାକାର ॥ ୧୬୦
ଏ ରୂପେ ଘୋର-ତପ କଲେ ।
ବ୍ରହ୍ମରେ ଆତ୍ମା ନିରୋପିଲେ ॥ ୧୬୧
ମନ ପବନ ବଶ କରି ।
ଦୁର୍ଜୟ-ଇନ୍ଦ୍ରିୟ ନିବାରି ॥ ୧୬୨
ଦୃଢ଼-ଆସନେ ନୃପବର ।
ସ୍ଥାଣୁ ସମାନେ ହୋଇ ସ୍ଥିର ॥ ୧୬୩
ଶତେ-ବରଷ ଦେବମାନେ ।
ନିଶ୍ଚଳେ ବସି ଯୋଗଧ୍ୟାନେ ॥ ୧୬୪
ଶ୍ରୀବାସୁଦେବେ କରି ରତି ।
ଦେହ-ବିଷୟ ନ ଜାଣନ୍ତି ॥ ୧୬୫
ଆତ୍ମାକୁ ଆତ୍ମାରେ ଦେଖିଲେ ।
ଆନନ୍ଦ-ସାଗରେ ବୁଡିଲେ ॥ ୧୬୬
ସେ ଆତ୍ମା ବ୍ୟାପିତ ସକଳ ।
ନ ଘେନେ ବିଷୟ ଜଞ୍ଜାଳ ॥ ୧୬୭
ନିଶ୍ଚେ ଜାଣିଲେ ମିଥ୍ୟାମୟେ ।
ଏ ସର୍ବ ସପନର ପ୍ରାୟେ ॥ ୧୬୮
ଯେସନେ ସ୍ୱପ୍ନ ମନୋରଥେ ।
ଭ୍ରମଇ ନିଦ୍ରାର ଆୟତ୍ତେ ॥ ୧୬୯
ନାନା ବିକାର ସେ ଦେଖଇ ।
ଶିର-ଛେଦନ ହେଉଥାଇ ॥ ୧୭୦
ପ୍ରତ୍ୟକ୍ଷେ ମଣେ ତାହା ସତ୍ୟ ।
ଅଜ୍ଞାନ-ମୋହେ ଭ୍ରମ ଚିତ୍ତ ॥ ୧୭୧

ତହିଁ ଆତ୍ମାର ଲିପ୍ତ ନାହିଁ ।
ଏ ରୂପେ ଆତ୍ମା ସର୍ବଦେହୀ ॥ ୧୭୨
ଯେ ହରି ଗୁରୁ ଭଗବାନ ।
କହିଣ ଥିଲେ ଦିବ୍ୟଜ୍ଞାନ ॥ ୧୭୩
ସେ ଜ୍ଞାନ-ଦୀକ୍ଷା-ଦୀପ ପାଇ ।
ଦେଖିଲେ ଆତ୍ମା ସର୍ବଠାଇଁ ॥ ୧୭୪
ବ୍ରହ୍ମକୁ ଆତ୍ମାରେ ଦେଖିଲେ ।
ଆତ୍ମାକୁ ବ୍ରହ୍ମେ ନିରୋପିଲେ ॥ ୧୭୫
ଯେ କିଛି ଭେଦବୁଦ୍ଧି ଥିଲା ।
ସେ ସର୍ବ ଅଜ୍ଞାନ ଖଣ୍ଡିଲା ॥ ୧୭୬
ଏ ରୂପେ ଛାଡି କଳେବର ।
ସେ ଯୋଗବଳେ ଯୋଗେଶ୍ୱର ॥ ୧୭୭
ନିଶ୍ଚଳ ଯୋଗାସନେ ରାୟେ ।
ଦିଶନ୍ତି ଧ୍ୟାନେ ଥିଲା ପ୍ରାୟେ ॥ ୧୭୮
ବିଦର୍ଭସୁତା ପତିବ୍ରତା ।
ଛାଡି ବିଷୟ-ଭୋଗ ଚିନ୍ତା ॥ ୧୭୯
ଖଣ୍ଡି ଅମ୍ବର ପରିଧାନ ।
ବେଣୀ-ପ୍ରବନ୍ଧ କେଶମାନ ॥ ୧୮୦
ପତି ସମୀପେ ବସିଥାଇ ।
ଦେଖନ୍ତେ ଅତି ଶୋଭା ପାଇ ॥ ୧୮୧
ଯେସନେ ଅଗ୍ନି ଶିଖା-ହୀନ ।
ସେ ରୂପେ ଦିଶନ୍ତି ରାଜନ ॥ ୧୮୨
ରାଜା ହୋଇଲେ ମୃତ୍ୟୁଗତ ।
ରାଣୀକି ନୋହିଲା ବିଦିତ ॥ ୧୮୩
ସୁସ୍ଥିର ଆସନେ ନୃପତି ।
ରାଣୀ ସେବାରେ ନ ଜାଣନ୍ତି ॥ ୧୮୪
ସ୍ୱାମୀ-ଚରଣେ ହସ୍ତ ଦେଲେ ।
ଉଷ୍ମତା-ଭାବ ନ ଜାଣିଲେ ॥ ୧୮୫
ଦେଖିଲେ ପ୍ରାଣ ନାହିଁ ଦେହେ ।
ରାଣୀ ଅଜ୍ଞାନ-ଶୋକ-ମୋହେ ॥ ୧୮୬
ଦୁରନ୍ତ ଚିନ୍ତାଭରେ ରାଣୀ ।
ପଡିଲା ମୃତ୍ୟୁ-ଶବ ଜାଣି ॥ ୧୮୭
ଅତି ବିଚ୍ଛେଦ ମନଦୁଃଖେ ।
ବଚନ ନ ସ୍ଫୁରେ ତା' ମୁଖେ ॥ ୧୮୮

Dr. Sudhanshu Sekhar Mishra

ଯୂଥ-କୁରଙ୍ଗୀ ସଙ୍ଗ ହୀନେ ।
ଏକାକୀ ଭାଳଇ ଯେସନେ ॥୧୮୯
ତେସନେ ରାଣୀ ଛନ୍ନ ହୋଇ ।
ଦୁଃଖେ ସେ ରୋଦନ କରଇ ॥୧୯୦
ନିକଟେ ଜ୍ଞାତି-ବନ୍ଧୁଜନ ।
ନ ଦେଖି ଅତି ଭୟେ ଛନ୍ନ ॥୧୯୧
ରୋଦଇ ବିଚିତ୍ର-ବିଳାପେ ।
ସେ ଘୋର ବନେ ମନସ୍ତାପେ॥୧୯୨
ଉଠ ହେ ନୃପତି କେଶରୀ ।
ଏ ଘୋରନିଦ୍ରା ପରିହରି ॥୧୯୩
କ୍ଷତ୍ରିୟ-ଧର୍ମ ଏ ନୁହଇଁ ।
ଶତ୍ରୁ ହସିବେ ନିନ୍ଦା ବହି ॥୧୯୪
ଏ ଯେ ଦୁର୍ଜୟ ଶୋକ ମୋର ।
ଭୋ ନାଥ ବେଗେ ପରିହର ॥୧୯୫
ଶୋକେ ଅଜ୍ଞାନ ମନତାପେ ।
ସେ ଅତି ରୋଦଇଁ ଦୁରାପେ ॥୧୯୬
ଉଦଧି-ଧର୍ମ ଏ ତୁମ୍ଭର ।
ଆରତ ଜନ ଦୁଃଖ ହର ॥୧୯୭
ପ୍ରଜାଏ ହୋଇବେ ନିରେଖ ।
ଆଶ୍ରୟ ନ ପାଇଁ ବିମୁଖ ॥୧୯୮
ରାଜତ୍ୱ-ଧର୍ମ ଏ ତୁମ୍ଭର ।
ଆରତ ଜନ ଦୁଃଖ ହର ॥୧୯୯
ଏମନ୍ତେ ଅତି ମନସ୍ତାପେ ।
କହେ ବିଭ୍ରମେ ସେ ବିଳାପେ ॥୨୦୦
ମୁଁ ଏବେ କେମନ୍ତେ ବଞ୍ଚିବି ।
କାହାର ଚରଣେ ସେବିବି ॥୨୦୧
ତୋ ମୁଖ-କମଳ ଅଭାବେ ।
ମୋ ପ୍ରାଣ ରହେ କିପାଁ ହୃଦେ॥୨୦୨
ଏ ମୂଢ଼-ଦାରୁଣ-ଜୀବନ ।
ନ ଯାଇ ରହିଛି ଅଜ୍ଞାନ ॥୨୦୩
ତା ଅଶ୍ରୁ ଉଦକ ନିର୍ଝରେ ।
ନୟନୁ ପଡଇ ଭୂମିରେ ॥୨୦୪
ହିମାଦ୍ରି-ଶିଖେ ଚନ୍ଦ୍ର ଯେହ୍ନେ ।
ତା' ମୁଖପଙ୍କଜ ତେସନେ ॥୨୦୫

କୁଚ-ଅମ୍ବର ଧୌତ କରି ।
ଯେହ୍ନେ ସ୍ରବିତ ସୁରବାରି ॥୨୦୬
ଏରୂପେ ଚିନ୍ତାର୍ଣ୍ଣବ-ଘୋରେ ।
ସେ ରାଣୀ ବୁଡ଼ିଲା ନିର୍ଭରେ ॥୨୦୭
ଏମନ୍ତେ ପତିପାଦେ ପଡି ।
ରୋଦଇ ଶିରେ କର ତାଡି ॥୨୦୮
ସେ ରାଣୀ କରନ୍ତେ ରୋଦନ ।
ବେଳ ହୋଇଲା ଅବସାନ ॥୨୦୯
ଏ ବନ-ଘୋରେ ସଙ୍ଗ ନାହି ।
ରୋଦନ କାଳଏ ନୁହଇଁ ॥୨୧୦
ସତ୍ୱରେ ଉଠିଣ ତରୁଣୀ ।
ଶୁଷ୍କ ଇନ୍ଧନ ବେଗେ ଆଣି ॥୨୧୧
ଚିତା ସଂଯୋଗି ବେଗବନ୍ତେ ।
ସେ ବନେ ନିର୍ଜନେ ଏକାନ୍ତେ ॥୨୧୨
ସ୍ୱାମୀଙ୍କି ତହିଁ ନିବେଶିଲା ।
ବିଧାନେ ମୁଖାଗ୍ନି ସେ ଦେଲା ॥୨୧୩
ଅନୁଗମନେ ଯିବା ପାଇଁ ।
ବସିଲା ସ୍ୱାମୀ-ପଦ ଧ୍ୟାୟି ॥୨୧୪
ଅନଳ ପ୍ରଦକ୍ଷିଣ କଲେ ।
ସ୍ୱାମୀ ସଙ୍ଗତେ ଯିବା ବେଳେ ॥୨୧୫
ଅଦଭୁତେ ବ୍ରାହ୍ମଣ ମିଳିଲେ ।
ସେ ତା'ର ପୂର୍ବେ ସଖା ଥିଲେ॥୨୧୬
ସେ ବିପ୍ର ରାଣୀ ହସ୍ତ ଧରି ।
କହେ ପ୍ରବୋଧି ଶାନ୍ତ କରି ॥୨୧୭

ବ୍ରାହ୍ମଣ ଉବାଚ

ଶୁଣ ସୁନ୍ଦରି ମନୋହାରୀ ।
କେ ତୁମ୍ଭେ ଅଟ କାହା ନାରୀ ॥୨୧୮
ଏ କେ ଶୟନେ ତୋ'ର କତି ।
କା ପାଇଁ ବିଳପୁ ଯୁବତୀ ॥୨୧୯
ସୁମରି କାନ୍ଦୁ ଯା'ର ପାଇଁ ।
ଏ ତୋର ଦୁଃଖ ନ ଘେନଇ॥୨୨୦
ତୁ ଯେ ବିଳପୁ ଅବିଚାରେ ।
ଏ ତୋର ସ୍ନେହ ଛାଡି ଦୂରେ ॥୨୨୧

ଗମିଲା ନିଜ କର୍ମବଳେ ।
ତୋତେ ନିବେଶି ଶୋକାନଳେ॥୨୨୨
ତୁ ତାହା ନ ବୁଝୁ ସୁନ୍ଦରୀ ।
ବିଅର୍ଥେ ମରୁ ଶୋକ କରି ॥୨୨୩
ଯେ ପତି ହୋଇଥିଲା ତୋରା
ସେ ଜୀବଆତ୍ମାଟି ମୋହର ॥୨୨୪
ଯେଣୁ ତୁ ଆତ୍ମା ନ ଚିହ୍ନିଲୁ ।
ଏଣୁ ଅଜ୍ଞାନେ ନିମଜ୍ଜିଲୁ ॥୨୨୫
ମୁଁ ପୂର୍ବସଖାଟି ତୋହର ।
ତୁ ପ୍ରାଣସଖୀ ଅଟୁ ମୋର ॥୨୨୬
ଆପଣା ସଖା ନ ଚିହ୍ନିଲୁ ।
ଏ ମାୟା ମୋହେ ନିମଜ୍ଜିଲୁ ॥୨୨୭
ତୁ ମୋତେ ଛାଡି ଏକା କରି ।
ଅଇଲୁ ମୃତ୍ୟୁଭୟ-ପୁରୀ ॥୨୨୮
ଏ ଭୂମି ବଇଭୋଗ କଲୁ ।
ମୋ ସଙ୍ଗ ଏ ରସୁ ତେଜିଲୁ ॥୨୨୯
ତୁ ଆମ୍ଭେ ଏକ ବେନିଅଂଶ ।
ଏ ମାନସରୋବରେ ବାସ ॥୨୩୦
ଏ ବେନିଅଂଶ ହଂସ ହୋଇ ।
ସେ ଗୃହ ଛାଡି ଯେ ନ ଯାଇ ॥୨୩୧
ସହସ୍ରେ ଯୁଗ ପରିଯନ୍ତେ ।
ମାନସେ ରହିଲୁ ଏକାନ୍ତେ ॥୨୩୨
ତୁ ମୋତେ ଛାଡିଣ ସେଠାରେ ।
ଅଇଲୁ ଏ ମହୀ ଭୋଗରେ ॥୨୩୩
ପ୍ରବେଶି ଏ ମର୍ତ୍ତ୍ୟମଣ୍ଡଳ ।
ଏଥି ଦେଖିଲୁ ଦିବ୍ୟସ୍ଥଳ ॥୨୩୪
ସେ ପୁରେ ଏକ ନାରୀ ଥିଲା ।
ସେ ତୋର ମନ ବନ୍ଦୀ କଲା ॥୨୩୫
ତା' ବଶେ ନୋହେ ତୋ ଆୟତ୍ତ ।
ମିଥ୍ୟାଭିଳାଷେ ମୋହ ଚିତ୍ତ ॥୨୩୬
ସେ ନଗ୍ରେ ପଞ୍ଚ-ଉପବନ ।
ନବ-ଦୁଆରେ ଶୋଭାବନ ॥୨୩୭
ସେ ନବଦ୍ୱାରେ ନିରୁପମ ।
ଦେବ-ମାନବେ ମନୋରମ ॥୨୩୮

Dr. Sudhanshu Sekhar Mishra

ରକ୍ଷଣେ ଏକ ଦ୍ୱାରପାଳ ।
ସେ ତ୍ରୟ କୋଠାରେ ବିସ୍ତାର ॥୨୩୯
ଅପରେ ଅଛି କୂଳ ଷଟ ।
ବସାଇ ଭଲେ ପଞ୍ଚ ହାଟ ॥୨୪୦
ପଞ୍ଚ ଯେ ପ୍ରକାରେ ପ୍ରକୃତି ।
ଏକଇ ନାରୀ ରୂପବତୀ ॥୨୪୧
ଏ ପଞ୍ଚଇନ୍ଦ୍ରିଙ୍କ ବିଷୟ ।
ଆରାମ ତହିଁରେ ନିଶ୍ଚୟ ॥୨୪୨
ଏକଇ ପ୍ରାଣ ତହିଁ ଦ୍ୱାରୀ ।
ସେ ନବଦ୍ୱାର ରକ୍ଷାକାରୀ ॥୨୪୩
ପୃଥିବୀ ଆପ ତେଜ ମାନ ।
ଏକା ସେ ତାହାର ସଦନ ॥୨୪୪
ଜ୍ଞାନ ଇନ୍ଦ୍ରିୟ ପାଞ୍ଚମନ ।
ତହିଁରେ ଷଟକୁଳ ଜାଣ ॥୨୪୫
ଏ କ୍ରିୟାଶକ୍ତି ତହିଁ ହାଟ ।
ପଞ୍ଚ ବିଷୟ ତହିଁ ବାଟ ॥୨୪୬
ପ୍ରକୃତି ପଞ୍ଚବିଂଶ ଗୁଣ ।
ଏ ରୂପେ ସେ ହାଟ ଭିଆଣ ॥୨୪୭
ଏ ପାପ-ପୁଣ୍ୟ କର୍ମ ଦୁଇ ।
କ୍ରୟ ବିକ୍ରୟ ତହିଁ ହୋଇ ॥୨୪୮
ଏ ସଙ୍ଗେ ମନ ସଞ୍ଚରଇ ।
ସୁକର୍ମ ବିକର୍ମ ଚଳଇ ॥୨୪୯
ସେ ହାଟେଶ୍ୱରୀ ବୁଦ୍ଧି ଥିଲା ।
ସେ ତୋର ମନ ବନ୍ଦୀ କଲା ॥୨୫୦
ତୁ ଭୋଗ କଲୁ ତାକୁ ତହିଁ ।
ମୋତେ ତୁ ସମ୍ପାଦିଲୁ ନାହିଁ ॥୨୫୧
ଏକାନ୍ତେ ନାରୀସଙ୍ଗ କଲୁ ।
ଏ ପାପଦଶା ତୁ ଲଭିଲୁ ॥୨୫୨
ନୋହୁ ତୁ ପୁରଞ୍ଜନୀ ପତି ।
ଏ ବୀର ନୋହେ ତୋର କାନ୍ତ ॥୨୫୩
ନୋହୁ ତୁ ବିଦର୍ଭ ଦୁହିତ ।
ଯା ଲାଗି ତୋର ଏ ଦୁର୍ଗତି ॥୨୫୪
ମୁଁ କରି ଅଛି ଏହୁ ମାୟା ।
ପୁରୁଷ-ପ୍ରକୃତିରେ କାୟା ॥୨୫୫
ଛାଡ ଏ ମାୟା-ମୋହ ମତି ।
ଆମ୍ଭେ ବେନି ହଂସ ସଙ୍ଗତି ॥୨୫୬
ଏ ତୁମ୍ଭ ଆମ୍ଭ ନୋହେ ଭିନ୍ନ ।
ଏ ବେନି ଏକ କରି ଚିହ୍ନ ॥୨୫୭
ଯେବା ପଣ୍ଡିତ ଜ୍ଞାନମତି ।
ଏ ବେନି ଭେଦ ନ କରନ୍ତି ॥୨୫୮
ଅଜ୍ଞାନେ ଜ୍ଞାନ ଧର୍ମଭେଦ ।
ଅବିଦ୍ୟା ବିଦ୍ୟାର ଏ ଖେଦ ॥୨୫୯
ଯେହ୍ନେ ମୁକୁରେ ଦେଖେ ଦେହୀ ।
ଏକଇ ଅଙ୍ଗ ଦିଶେ ଦୁଇ ॥୨୬୦
ମୁକୁର ନ ଥିଲେ ନ ଦିଶେ ।
ଏମନ୍ତ ଏ ଭେଦ ବିଶେଷେ ॥୨୬୧
ନାରଦ କହନ୍ତି ସଦୟେ ।
ଶୁଣ ପ୍ରାଚୀନ ନୃପରାୟେ ॥୨୬୨
ଏ ଯେ ଆଧ୍ୟାତ୍ମ ଦିବ୍ୟଜ୍ଞାନ ।
କହିଲୁ ପରୋକ୍ଷ ବାଦେଣ ॥୨୬୩
ପରୋକ୍ଷବାଦ ପ୍ରିୟ ହରି ।
ଏଣୁ ଯେ କହିଲୁ ବିସ୍ତାରି ॥୨୬୪
ଚତୁର୍ଥ ସ୍କନ୍ଧେ ଭାଗବତ ।
ଏ ପୁରଞ୍ଜନର ଚରିତ ॥୨୬୫
ଏ ଅଷ୍ଟବିଂଶତି ଅଧ୍ୟାୟରେ ।
ପ୍ରାକୃତଭାଷା ଏ ପ୍ରକାରେ ॥୨୬୬
ଏହା ଶ୍ରବଣେ ପ୍ରାଣୀଙ୍କର ।
ଖଣ୍ଡିବ ବହୁ ଦୁଃଖ ଘୋର ॥୨୬୭
ସନ୍ଥ ଚରଣେ ଦେଇ ଚିତ୍ତ ।
ବର୍ଣ୍ଣଇ ବିପ୍ର ଜଗନ୍ନାଥ ॥୨୬୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ଅଷ୍ଟାବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଉନତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ସେ ଯେ ପ୍ରାଚୀନନୃପବର ।
ନାରଦ ପାଦେ ଦେଇ ଶିର ॥୧
କହଇ ଅତି ହରଷରେ ।
ସେ ମୁନି ବ୍ରହ୍ମାର କୁମରେ ॥୨

### ପ୍ରାଚୀନବର୍ହି ଉବାଚ

ଭୋ ମୁନି ତୁମ୍ଭେ ଜ୍ଞାନପାର ।
କହିଲ ଅଧ୍ୟାତ୍ମ ବିଚାର ॥୩
ତୁମ୍ଭେ ଯେ ପରୋକ୍ଷବାଦେଣ ।
କହିଲ ଯେ ସାଂଖ୍ୟ କାରଣ ॥୪
ମୁଁ ହେଜି ନ ପାରିଲି ଚିତ୍ତେ ।
ଛେଦି ସଂଶୟ କହ ମୋତେ ॥୫
ଯେ ମାର୍ଗେ ବୁଝିବଇଁମୁହିଁ ।
ସେ ମାର୍ଗେ କହିବା ଗୋସାଇଁ ॥୬
ଯେବା ପଣ୍ଡିତ ଦୃଢମତି ।
ଏ ଅନୁଭବ ସେ ଜାଣନ୍ତି ॥୭
ଆମ୍ଭର ଏଣେ ନାହିଁ ଜ୍ଞାନ ।
ବିଷୟ-ଜଡେ ମନ ଛନ୍ନ ॥୮
ଏଣୁ ନ ଧରେ ଜ୍ଞାନେ ରତି ।
ବିବେକ ନୋହେ ଆତ୍ମ ମତି ॥୯
ଭୋ ମୁନି ଫେଡ ପୁଣ ତାହା ।
ମୋ ଅର୍ଥେ କହ ପୁଣ୍ୟଦେହା ॥୧୦
ସେ ପୁରଞ୍ଜନର ବିଚାର ।
ଶ୍ରବଣେ ଜ୍ଞାନ ହେବ ମୋର ॥୧୧
ଶୁଣି ନାରଦ ମହାଋଷି ।
ତା' ଭାବେ କହନ୍ତି ବିଶେଷି ॥୧୨

### ନାରଦ ଉବାଚ

ଶୁଣ ରାଜନ ସାବଧାନ ।
କହିବା ପରୋକ୍ଷ ଯେ ଜ୍ଞାନ ॥୧୩
ପୁରୁଷ ପୁରଞ୍ଜନ ଯେହି ।
କର୍ମରୁ ପୁର କଲା ସେହି ॥୧୪
କେ ଏକ ତ୍ରୟ ବେନିପାଦ ।
ବହୁ ଚତ୍ୱାର କେ ନିଷ୍ପାଦ ॥୧୫
ଏମନ୍ତେ ନାନା ପୁର କରି ।
ଏ ଜୀବ ତା ମଧ୍ୟେ ବିହରି ॥୧୬
ଅଜ୍ଞାତ-ସଖା ଯା'କୁ କହି ।
ଈଶ୍ୱର ନାମ ଅଟେ ସେହି ॥୧୭
ସେ ନାମ-ରୂପରୁ ବାହାର ।
ଏଣୁ ଅଜ୍ଞାତ ନାମ ତା'ର ॥୧୮
ସମଗ୍ର ପ୍ରକୃତି ଗୁଣକୁ ।
ପୁରୁଷ ଇଚ୍ଛିଲେ ଭୋଗକୁ ॥୧୯
ତେବେ ଏ ପୁର ନବଦ୍ୱାରେ ।
ରଚନା କରେ ସେ ବେଭାରେ ॥୨୦
ଯେ ପୁରେ ହସ୍ତପଦ ଘେନି ।
କରଇ କର୍ମ ଲାଭହାନି ॥୨୧
ସେ ପୁରେ ଥାଇ କରେ ଭୋଗ ।
ମାୟା ନିର୍ବନ୍ଧେ ଅନୁରାଗ ॥୨୨
ଏ ପୁରୁ ଅନ୍ୟ ପୁର ଯେହି ।
ଭୋଗ ସୁଖାଦି ନୋହେ ତହିଁ ॥୨୩
ଏ ଯେ ମାନବ କଳେବର ।
ଅଶେଷ ଦେହ ମଧ୍ୟେ ସାର ॥୨୪
ସେ ପୁର ମଧ୍ୟେ ଜୀବ ରହି ।
ଇନ୍ଦ୍ରି-ବିଷୟ ରସେ ମୋହି ॥୨୫
ବିବିଧ ସୁଖ ଭୋଗ ସାର ।
ଜୀବ ଭୁଞ୍ଜଇ ଏ ମନ୍ଦିର ॥୨୬
ସେ ପୁର ମଧ୍ୟେ ବୁଦ୍ଧି ନାରୀ ।
ଏକା ସେ ସର୍ବତ୍ର ବିହରି ॥୨୭
ସେ ଯେ ମମତ୍ୱେ ହୋଏ ଛନ୍ନ ।
ବୋଲଇ ଏ ମୋର ସଦନ ॥୨୮
ସେ ନାରୀ ବଶେ ଜୀବ ଥାଇ ।
ଇନ୍ଦ୍ରିୟ ଭୋଗେ ତୋଷ ହୋଇ ॥୨୯
ଇନ୍ଦ୍ରିୟଗଣ ବୁଦ୍ଧି ସଖା ।
ବିଷୟ ମାନେ ସଖୀ ଲେଖା ॥୩୦
ଯେ ଜ୍ଞାନ କର୍ମେନ୍ଦ୍ରିୟ ଗଣେ ।
ପୁରୁଷେ ଭୋଗ-ବିଷେ ଟାଣେ ॥୩୧
ଏ ଜ୍ଞାନ-କର୍ମ-ଇନ୍ଦ୍ରିଦଶ ।
ଏହାଙ୍କ ଭୋଗେ ଜୀବ ବଶ ॥୩୨
ଏ ପାପ ପୁଣ୍ୟ ଆଦି କରି ।
ବଳେ ଭୁଞ୍ଜଇ କର୍ମ ଧରି ॥୩୩
ଏ ପୁର ଦ୍ୱାରୀ ସର୍ପ ଯେହି ।
ଏ ଦେହେ ପ୍ରାଣ ଅଟେ ସେହି ॥୩୪
ସେ ପଞ୍ଚବୃତ୍ତିରେ ସଞ୍ଚାର ।
ଏଣୁ କହିଲୁଁ ପଞ୍ଚଶିର ॥୩୫
ପଞ୍ଚମସ୍ତକ ଏଣୁ ତା'ର ।
କହିଲୁ ତେଣୁ ନୃପବର ॥୩୬
ମହତ ଭଟ ଯାହା କହି ।
ମନର ନାମ ଅଟେ ସେହି ॥୩୭
ସେ ଦଶଇନ୍ଦ୍ରିଙ୍କ ନାୟକ ।
ତା'କୁ ଜିଣନ୍ତା ନାହିଁ ଲୋକ ॥୩୮
ତା'କୁ ଜିଣଇ ଯେବେ ଜନ ।
ସେ ଯୋଗୀ ଏ ତିନି ଭୁବନ ॥୩୯
ଉତ୍ତର ଦକ୍ଷିଣ ଯା' କହି ।
ରାଜା ପଞ୍ଚାଳ ଦେଶ ସେହି ॥୪୦
ଏ ପଞ୍ଚବିଷୟର ଆଳ ।
ଏହା ତୁ ବୁଝ ମହୀପାଳ ॥୪୧
ଇନ୍ଦ୍ରିୟ ଛିଦ୍ର ଯେତେ କହି ।
ଏ ପୁରେ ନବଦ୍ୱାର ସେହି ॥୪୨
ଏ ବେନି ଚକ୍ଷୁ ନାସା କର୍ଣ୍ଣ ।
ଯେ ମୁଖ ଗୁହ୍ୟ ଲିଙ୍ଗ ସ୍ଥାନ ॥୪୩
ଏହାକୁ ନବଦ୍ୱାର କହି ।
ଇନ୍ଦ୍ରିୟଗଣ ସ୍ଥାନ ଏହି ॥୪୪
ଏ ସଙ୍ଗେ ଜୀବର ଗମନ ।
ବିଷୟ କରେ ଆସ୍ୱାଦନ ॥୪୫
ନୟନ ମୁଖ ନାସା ତା'ର ।
ଏ ପୂର୍ବ ଦିଗ ପଞ୍ଚଦ୍ୱାର ॥୪୬

Dr. Sudhanshu Sekhar Mishra

ଉତ୍ତର ଦକ୍ଷିଣ ଯା' କହି ।
ଏ ବେନି କର୍ଣ୍ଣଦ୍ୱାର ସେହି ॥୪୭
ପଶ୍ଚିମ ଦିଗେ ବେନି ଦ୍ୱାର ।
ଏ ଲିଙ୍ଗ ଗୁହ୍ୟ ନୃପବର ॥୪୮
ଏ ନବଦ୍ୱାରେଣ ନିର୍ମିତ ।
ଯେଝା ବିଷୟେ ଆସ୍ୱାଦିତ ॥୪୯
ସେବନ୍ତି ଆତ୍ମାରେ ବିହରି ।
ଏକ ଆରେକ ଆଗସରି ॥୫୦
ଖଦ୍ୟୋତା ଆବିର୍ମୁଖୀ ଦୁଇ ।
ଚକ୍ଷୁର ନାମ ଏ ବୋଲାଇ ॥୫୧
ଏ ବେନିଦ୍ୱାରେ ପୁରଞ୍ଜନ ।
କରଇ ରୂପ ସମ୍ପାଦନ ॥୫୨
ନଳିନୀ ନାଳିନୀ ଯେ ଦୁଇ ।
ନାସିକା ନାମ ସେ ଅଟଇ ॥୫୩
ଏ ଦ୍ୱାରେ ଅବଧୂତ ନାମ ।
ଗନ୍ଧାଦି ଆମୋଦ ପବନ ॥୫୪
ସୁଗନ୍ଧ ଦୁର୍ଗନ୍ଧ ସହିତେ ।
ଏ ଦ୍ୱାରେ ଘେନଇ ନିରତେ ॥୫୫
ବଦନ ନାମେ ମୁଖ୍ୟ ଦ୍ୱାର ।
ରସଜ୍ଞ ବାକ୍ୟ ତା' ମଧୁର ॥୫୬
ସ୍ୱାଦୁ ଅସ୍ୱାଦୁ ଦ୍ରବ୍ୟ ଯେତେ ।
ଏ ଦ୍ୱାରେ ଆସ୍ୱାଦେ ନିରତେ ॥୫୭
ପିତୃହୂ ଦେବହୂ ଯେ ନାମ ।
ଏ ବେନି କର୍ଣ୍ଣ ଦକ୍ଷ ବାମ ॥୫୮
ପିତୃହୂ ଦକ୍ଷିଣ ଅଟଇ ।
ଦେବହୂ ବାମେଣ ବସଇ ॥୫୯
ଏ ବେନି ଇନ୍ଦ୍ରିୟେ ରାଜନ ।
ବାକ୍ୟାଦି ରସ ଆସ୍ୱାଦନ ॥୬୦
ଏ ସାରାସାର ଭାବ ଯେତେ ।
ଏ ଦ୍ୱାରେ ଘେନଇ ନିରତେ ॥୬୧
ଏ ଶ୍ରୁତିଯୁଗେ ପୁରଞ୍ଜନ ।
କରଇ ଶବ୍ଦ ଆସ୍ୱାଦନ ॥୬୨
ନିନ୍ଦା ସ୍ତବନ ବାକ୍ୟ ଯେତେ ।
ଏ ଦ୍ୱାରେ ଘେନନ୍ତି ଏ ନିତ୍ୟେ ॥୬୩

ପ୍ରବୃତ୍ତି ନିବୃତ୍ତି ଏ ଦୁଇ ।
ଶାସ୍ତ୍ର ପାଞ୍ଚାଳ ବୋଲି କହି ॥୬୪
ଏ ପିତୃଯାନ ଦେବଯାନ ।
ଗତିରେ କରନ୍ତି ଗମନ ॥୬୫
ଏ ମାର୍ଗେ ଥା'ନ୍ତି ନିରନ୍ତର ।
ସେ ଇଚ୍ଛା ସୁଖେ ନୃପବର ॥୬୬
ଆସୁରୀ ଦ୍ୱାର ଲିଙ୍ଗସ୍ଥାନ ।
ଦୁର୍ମଦ ଉପସ୍ଥର ନାମ ॥୬୭
ବ୍ୟାବାୟ ନାମ ରତି କହି ।
ପ୍ରଜା ସର୍ଜନ କରେ ତହିଁ ॥୬୮
ତା' ଅଧୋଭାଗେ ଗୁହ୍ୟଦ୍ୱାର ।
ନିରତି ନାମଟି ତାହାର ॥୬୯
ବୈଶସ ନାମ ନର୍କ କହି ।
ସେ ଦ୍ୱାରେ ମଳ ଉତ୍ସର୍ଗଇ ॥୭୦
ଅନ୍ଧ ବୋଲି ବୋଇଲୁ ଯାହା ।
ଏ ପାଣିପାଦ ବୋଲି ତାହା ॥୭୧
ଏ ବେନି ଇନ୍ଦ୍ରିଙ୍କ ବିଷୟ ।
କହିବା ଶୁଣ ତା' ନିର୍ଣ୍ଣୟ ॥୭୨
ଆଦାନ ପ୍ରଦାନ ସେ କରେ ।
ଯେଝା ବିଷୟ ଅଧିକାରେ ॥୭୩
ଦ୍ୱିତୀୟ ଅନ୍ଧ ଯେ ପୟର ।
କହିବା ଏଥିର ବିଚାର ॥୭୪
ଏ ଇନ୍ଦ୍ରି ଯୋଗେ ପୁରଞ୍ଜନ ।
କାମାର୍ଥେ କରଇ ଗମନ ॥୭୫
ଅନ୍ତର ପୁର ବୋଲି ଯାହା ।
ହୃଦୟପଦ୍ମ କହି ତାହା ॥୭୬
ବିଷୂଚି ନାମଟି ଯାହାର ।
ଏ ମନ ନାମ ନୃପବର ॥୭୭
ତା' ବଶେ ଥାଇଣ ପୁରୁଷ ।
ଭଜଇ ହରଷ ବିରସ ॥୭୮
ଏ ଜୀବ ପ୍ରକାଶ୍ୟେ ଚଳଇ ।
ବୁଦ୍ଧି ଯହିଁକି ପ୍ରବର୍ତ୍ତାଇ ॥୭୯
ତା ବଶେ ପୁରୁଷ ଅଧୀନ ।
କରଇ ନାନା କର୍ମମାନ ॥୮୦

ଏ ଦେହ ରଥ ସ୍ୱରୂପେଣ ।
ତୋତେ କହିଛି ନୃପରାଣ ॥୮୧
ଏ ରଥେ ଅଶ୍ୱରୂପ ହୋଇ ।
ଇନ୍ଦ୍ରିୟଗଣେ ଛନ୍ତି ରହି ॥୮୨
ପଞ୍ଚ ବିଷୟ ମାର୍ଗେ ହୟେ ।
ଗମନ୍ତି ସମ୍ବତ୍ସର ଯାଏ ॥୮୩
ଈଶ୍ୱର ଆଜ୍ଞାରେ ନିର୍ମିତ ।
ଏ ରଥେ ସକଳ ସଂଯୁତ ॥୮୪
ଏ ରଥେ ପୁଣ୍ୟ ପାପ ଦୁଇ ।
ସେ ଚକ୍ର ରୂପେ ତହିଁ ରହି ॥୮୫
ଧ୍ୱଜ ସ୍ୱରୂପେ ତିନିଗୁଣ ।
ରଥ ବନ୍ଧନ ପଞ୍ଚପ୍ରାଣ ॥୮୬
ବୁଦ୍ଧି ସାରଥି ରୂପେ ରହି ।
ଏ ମନ ରଶ୍ମି ଅଟେ ତହିଁ ॥୮୭
ହୃଦୟ ପଙ୍କଜରେ ରଥୀ ।
ବସିବା ଆସନ ତା' ତଥି ॥୮୮
ରଥ କୁବର ଦ୍ୱନ୍ଦ୍ୱ ଭାର ।
ଇନ୍ଦ୍ରି ବିଷୟ ତହିଁ ଶର ॥୮୯
ସପତ ଧାତୁ ଆବରଣ ।
ତା'ର ବିକ୍ରମ ମୂର୍ତ୍ତି ଜାଣ ॥୯୦
ଇନ୍ଦ୍ରିୟ ରସେ ରସୁଥାଇ ।
ସେ ମୃଗତୃଷ୍ଣାରେ ଧାମଇଁ ॥୯୧
ଯେ ଯାହା ବିଷୟେ ରସିଣ ।
ଆସ୍ୱାଦ କରି ଅନୁକ୍ଷଣ ॥୯୨
ଧନ୍ୟ ଯେ କର୍ମ ଏହାଙ୍କର ।
ଦୁର୍ଜୟ ଦୁଷ୍ଟ ଦୁରାଚାର ॥୯୩
ଏ ଜୀବ ଭୁଞ୍ଜେ ଇନ୍ଦ୍ରି ମୁଖେ ।
ଅଜ୍ଞାନମତି ମୋହ ଦୁଃଖେ ॥୯୪
ମୃଗତୃଷ୍ଣାରେ ଜଳ କରି ।
ଭୁଞ୍ଜଇ ମାୟା ମିଥ୍ୟା ଭରି ॥୯୫
କାଳର ଗତି ନ ଜାଣଇ ।
ଏ ମାୟାଭୋଗେ ମତ୍ତ ହୋଇ ॥୯୬
ଇନ୍ଦ୍ରିଙ୍କ ଅନ୍ୟାୟ ବିଷୟେ ।
ଭୁଞ୍ଜଇ ମୃଗୟାର ପ୍ରାୟେ ॥୯୭

Dr. Sudhanshu Sekhar Mishra

ନିରତେ ହରେ ନିଜ ପ୍ରାଣ ।
ନ ଜାଣେ ଏ ମୂଢ଼ ଅଜ୍ଞାନ ॥୯୮
ଏ ସମ୍ବତ୍ସର ରୂପେ କାଳ ।
ଚଣ୍ଡବେଗ ନାମେ ଭୂପାଳ ॥୯୯
ଗନ୍ଧ ଗନ୍ଧର୍ବୀ ଦିବା ନିଶି ।
ତ୍ରିଶତ-ଷାଠିଏ ପ୍ରକାଶି ॥୧୦୦
ଏ ସର୍ବେ କାଳ ସଙ୍ଗେ ଥା'ନ୍ତି ।
ଜୀବର ଆୟୁଷ ହରନ୍ତି ॥୧୦୧
କାଳ ଦୁହିତା ଯାକୁ କହି ।
ଜରାର ନାମ ଅଟେ ସେହି ॥୧୦୨
ସେ ପ୍ରାଣୀ ରୂପ କାନ୍ତି ହରେ ।
ଦେଖିଲେ ପ୍ରାଣୀ ତା'କୁ ଡରେ ॥୧୦୩
ଏଣୁ ତାହାକୁ ପ୍ରାଣୀ ଭଲେ ।
ବରଣେ କେହି ନ ଇଛିଲେ ॥୧୦୪
ସେ ମୃତ୍ୟୁ ତାରେ ଭଗ୍ନୀ ପ୍ରାୟେ ।
ସ୍ନେହେ ଆବୋରି ନିତ୍ୟେ ରହେ ॥୧୦୫
ସେ ପ୍ରାଣୀଙ୍କର ରୂପ ହରେ ।
ମୃତ୍ୟୁ ପର୍ଯ୍ୟନ୍ତ ପୀଡା କରେ ॥୧୦୬
ଯବନ ଅଧିପତି ଯେହି ।
ମୃତ୍ୟୁର ନାମ ଅଟେ ସେହି ॥୧୦୭
ଏ ମୃତ୍ୟୁ ଯମ ରୂପ ଧରି ।
ଜୀବ ବିନାଶେ ଅଧିକାରୀ ॥୧୦୮
ଯବନେ ତା'ର ସେନାପତି ।
ଏ ଆଧିବ୍ୟାଧି ଯେତେ ଛନ୍ତି ॥୧୦୯
ଏ ଜୀବ-ଶରୀରେ ପୀଡନ୍ତି ।
ଏଣୁ ଏ ମୃତ୍ୟୁର ସଙ୍ଗତି ॥୧୧୦
ପ୍ରଜ୍ୱାର ଆଦି ଯେତେ ଜ୍ୱର ।
ପ୍ରବେଶେ ନାଶନ୍ତି ଶରୀର ॥୧୧୧
ବିବିଧ ଦୁଃଖ ତାପତ୍ରୟେ ।
ପୀଡନ୍ତି ପ୍ରାଣ ଶେଷ ଯାଏ ॥୧୧୨
ଶତ ସମ୍ବତ୍ସର ପ୍ରମିତେ ।
ଶରୀରେ ଥା'ନ୍ତି ଅବିରତେ ॥୧୧୩
ପ୍ରାଣ ଇନ୍ଦ୍ରିୟ ମନ ଧର୍ମ ।
ନିର୍ଗୁଣ ଆତ୍ମାରେ ଅର୍ପିଣ ॥୧୧୪

ଏ କାମ ସୁଖ ଲବ ମାତ୍ରେ ।
ଭୁଞ୍ଜଇ ଦୁଃଖ ସୁଖ ଗାତ୍ରେ ॥୧୧୫
ଏ ମୋର ବୋଲି ଅହଙ୍କାର ।
ବହିଛି ଦୁଃଖ ନିରନ୍ତର ॥୧୧୬
ପରମଆତ୍ମା ଭଗବାନ ।
ସେ ସର୍ବହେତୁ ଚଇତନ ॥୧୧୭
ଯାବତ ତା'ଙ୍କୁ ନ ଜାଣଇ ।
ଏ ଜୀବ ଭ୍ରମେ ଭ୍ରମୁଥାଇ ॥୧୧୮
ତାବତ ପ୍ରକୃତି ଗୁଣରେ ।
ଏ ଜୀବ ପଡେ ମାୟା ଘୋରେ ॥୧୧୯
ଗୁଣାଭିମାନୀ ନିରନ୍ତରେ ।
ଅବଶେ କର୍ମରେ ସଞ୍ଚରେ ॥୧୨୦
ସାତ୍ତ୍ୱିକ ରଜ ତମ ଆଦି ।
କର୍ମେ ଯେ ହୋଏ ତ୍ରୟବିଧି ॥୧୨୧
ପୁରୁଷ ଯେ କର୍ମ କରଇ ।
ସେ ଅନୁସାରେ ଦେହ ବହି ॥୧୨୨
ସାତ୍ତ୍ୱିକ କର୍ମ ଯେବା କରେ ।
ଅଧିକ ପ୍ରକାଶ ଲୋକରେ ॥୧୨୩
ଏ ତିନିଲୋକେ ଯଶ ତାର ।
ଗାବନ୍ତି ଦେବାସୁର ନର ॥୧୨୪
ରାଜସ କର୍ମ ଯେ କରନ୍ତି ।
ଆଦ୍ୟରେ ସୁଖ ସେ ଲଭନ୍ତି ॥୧୨୫
ପଶ୍ଚାତେ ଲଭେ ବହୁ ଦୁଃଖ ।
ଏ ଭାବ ନ ଜାଣେ ମୂରୁଖ ॥୧୨୬
ତାମସ କର୍ମର ଯେ ଫଳ ।
ସେ ଶୋକ ଦୁଃଖ ମୋହ ଆଳ ॥୧୨୭
ଅଜ୍ଞାନ ଭାବେ ମୂଢଦେହୀ ।
ସ୍ୱକର୍ମ ବଶେ ଭ୍ରମୁ ଥାଇ ॥୧୨୮
କେବେ ପୁରୁଷ ନାରୀ ହୋଇ ।
ଏ ଚରାଚର ଭ୍ରମେ ସେହି ॥୧୨୯
ନପୁଂସ ଜନ୍ମ କେବେ ଧରେ ।
ଏ ରୂପେ କର୍ମ ଅନୁସାରେ ॥୧୩୦
କେବେ ବା ଦେବତନୁ ପାଇ ।
ମନୁଷ୍ୟ ଜନ୍ମ କେ ଲଭଇ ॥୧୩୧

ଖଗାଦି ପଶୁ ଚରାଚରେ ।
ସ୍ୱକର୍ମ ଭୁଞ୍ଜନ୍ତି ଧାମରେ ॥୧୩୨
ପଶୁ ପତଙ୍ଗ କୀଟ ଯେବେ ।
ଏ ଯୋନି ଲଭେ କର୍ମଭାବେ ॥୧୩୩
ଭୁଞ୍ଜନ୍ତି ସ୍ୱକର୍ମ ଆବୋରି ।
ଏ ପାପ ପୁଣ୍ୟ ଆଦି କରି ॥୧୩୪
ଯେସନେ କ୍ଷୁଧାତୁର ହୋଇ ।
ବିକଳେ କୁକୁର ଭ୍ରମଇ ॥୧୩୫
ଆହାର ଅର୍ଥେ ନିରନ୍ତରେ ।
ଭ୍ରମୁଣ ଥାଇ ନାନା ପୁରେ ॥୧୩୬
କାହିଁ ବା ଆହାର ମିଳଇ ।
କାହିଁ ନିର୍ଘାତେ ଦଣ୍ଡ ପାଇ ॥୧୩୭
କାହାରି ଚିତ୍ତେ ଦୟା ନାହିଁ ।
ପଥେ ଗମନ୍ତେ ପାଡେ କେହି ॥୧୩୮
ସର୍ବେ ବୋଲନ୍ତି ମାର ମାର ।
ଦୁଷ୍ଟ ସଜ୍ଜନ ଆଦି ନର ॥୧୩୯
ତା ଭାବେ କର୍ମ ଶତ୍ରୁପଣେ ।
ନିରତେ ଦଣ୍ଡେ ଅନୁକ୍ଷଣେ ॥୧୪୦
ପ୍ରାଭବ ଭର୍ତ୍ସନା ଅନେକ ।
ପାଇ ସେ ଭ୍ରମେ ଅତିରେକ ॥୧୪୧
ସେ ରୂପେ ଏ ଜୀବ ସଂଜାତ ।
ସ୍ୱକର୍ମବଳେ ଆତଜାତ ॥୧୪୨
ଏଣୁ ଏ କାମ ଆଶେ ମୋହି ।
ନିରତେ କର୍ମେ ଭ୍ରମେ ମହୀ ॥୧୪୩
କେବେ ବା ଉର୍ଦ୍ଧ୍ୱେ ଭୋଗକରେ ।
କେବେ ବା ଅଧୋ ମଧ୍ୟ ପୁରେ ॥୧୪୪
ଏମନ୍ତ ଉଚ୍ଚ-ନୀଚେ ଭ୍ରମି ।
କର୍ମ ଭୁଞ୍ଜଇ ଦୁଃଖେ ଶ୍ରମୀ ॥୧୪୫
ସ୍ୱବଶ ନୋହେ ପ୍ରିୟା-ପ୍ରିୟେ ।
କାହିଁ ବା ଦୁଃଖ-ସୁଖ ଭୟେ ॥୧୪୬
କାହିଁ ଦଣ୍ଡାଦି ପରାଭବ ।
କାହିଁ ଐଶ୍ୱର୍ଯ୍ୟ ବଇଭୋଗ ॥୧୪୭
ଏ ଦୁଃଖ-ସୁଖାଦି ସହିତେ ।
ଆତ୍ମା ବନ୍ଧନ ଏ ସଙ୍ଗତେ ॥୧୪୮

Dr. Sudhanshu Sekhar Mishra

ଏଣେ ତା' ନୋହେ ପ୍ରତିକାର।
ଦୁଃସହ ଦୁଃଖ ମହାଘୋର ॥୧୪୯
ଯାବତ ତାପତ୍ରୟ ଅଛି ।
ତାବତ ସୁଖ ନାହିଁ କିଛି ॥୧୫୦
ଯେବେ ପ୍ରତିକାର ଇଛଇ ।
ଅତି ଦୁଃଖରେ ଦୁଃଖୀ ହୋଇ॥୧୫୧
ଯେସନେ ପ୍ରାଣୀ ଶିରଭାର ।
ଉଶ୍ୱାସି ରଖଇ କନ୍ଧର ॥୧୫୨
ସେ କି ତାହାର ଭାର ନୋହେ।
ତେସନ ଦୁଃଖ ପ୍ରତି ଦେହେ ॥୧୫୩
କର୍ମର କର୍ମଟି କେବଳ ।
ନୋହେ ଏକାନ୍ତ ପ୍ରତିକାର ॥୧୫୪
ଅବିଦ୍ୟା ମାର୍ଗ କର୍ମ ଦୁଇ ।
କର୍ମେ କି କର୍ମ ନାଶ ହୋଇ॥୧୫୫
ଯେସନେ ଶୟନେ ସ୍ୱପନ ।
ଦେଖଇ ବିବିଧ ବିଧାନ ॥୧୫୬
ପ୍ରତୀତ ହୋଏ ନିଦ୍ରାଗତେ ।
ଅସତ୍ୟ ମଣେ ତା' ଜାଗ୍ରତେ॥୧୫୭
ତେସନେ କର୍ମେ କର୍ମ ନାଶେ।
ଧାମଇଁ ମିଥ୍ୟା ଅଭିଳାଷେ ॥୧୫୮
ଯାବତ ଆତ୍ମଜ୍ଞାନ ନାହିଁ ।
ସଂସାରେ ନିବୃତ୍ତି ତା' କାହିଁ ॥୧୫୯
ଉପାଧି ବିଷୟକୁ ମନ ।
ବଳେ ଆଣଇ ସନ୍ନିଧାନ ॥୧୬୦
ସ୍ୱପନ ପ୍ରତ୍ୟକ୍ଷ ସେ କରେ ।
କୁମତି-ଜନ ଏ ସଂସାରେ ॥୧୬୧
ଅନର୍ଥ ହେତୁ ଏ ସଂସାର ।
ନିରତେ ଘୋର ଭୟଙ୍କର ॥୧୬୨
ନିରତେ ଗତାଗତେ ଭ୍ରମି ।
ଜନ୍ମ-ମରଣେ ପଥ ଶ୍ରମି ॥୧୬୩
ଏଣୁ ଜୀବର ପାର ନାହିଁ ।
ଏ ଚରାଚରେ ଭ୍ରମେ ମୋହି॥୧୬୪
ପରମଗୁରୁ ଭଗବାନ ।
ତା' ପାଦେ ଭକ୍ତି ଭାବେ ଧ୍ୟାନ ॥୧୬୫

ତେବେ ଏ ସଂସାର ବିନାଶ।
ଏ ବିନେ ବନ୍ଦୀ ମୋହପାଶ ॥୧୬୬
ଯାବତ କୃଷ୍ଣ ନ ଭଜଇ ।
ତାବତ ଜୀବଗତି କାହିଁ ॥୧୬୭
ଯେବେ ଭକତି ଯୋଗେ ନର।
ଭଜଇ ଗୋବିନ୍ଦ ପୟର ॥୧୬୮
ତେବେ ବୈରାଗ୍ୟ ଜ୍ଞାନ ଜାତ।
ପ୍ରକାଶି ନାଶଇ ଦୁରିତ ॥୧୬୯
ସେ ଜ୍ଞାନେ କୃଷ୍ଣପାଦେ ମତି।
ହରି ଭଜନେ ହୋଏ ରତି ॥୧୭୦
ଶ୍ରଦ୍ଧାନୁଭାବେ ଗୁଣ ଗାଇ ।
ରୋମ ପୁଲକେ ଅଶ୍ରୁବହି ॥୧୭୧
ଜ୍ଞାନ-ଭକତି-ଯୋଗାନଳେ ।
ଦହନ ହୋନ୍ତି ଅମଙ୍ଗଳେ ॥୧୭୨
ତେବେ ସେ ଜ୍ଞାନଯୋଗେ ହରି ।
ଲଭଇ କର୍ମ ପରିହରି ॥୧୭୩
ଯେ ଭଗବତ ସାଧୁଜନେ ।
ବିଶ୍ରାମ କରନ୍ତି ଯେ ସ୍ଥାନେ ॥୧୭୪
କୃଷ୍ଣ ଚରିତ ଅନୁକ୍ଷଣେ ।
ଗାବନ୍ତି ଶୁଣନ୍ତି ଶ୍ରବଣେ ॥୧୭୫
ବିଷୟ ସୁଖ ନ ଘେନନ୍ତି ।
ନିରତେ ନାମ ଆସ୍ୱାଦନ୍ତି ॥୧୭୬
ସେ ସ୍ଥାନେ ନାମ-ସୁଧା-ନଈ ।
ଶ୍ରବଣେ ସର୍ବଦିଗେ ଯାଇ ॥୧୭୭
ପବିତ୍ର କରେ ତ୍ରିଭୁବନ ।
ଶ୍ରୋତା ବକତା ଯେତେ ଜନ ॥୧୭୮
ଶ୍ରବଣେ ପଶି ପାପ ଦହେ ।
ଛାଡ଼ଇ ଜନ୍ମ ମୃତ୍ୟୁ ଭୟେ ॥୧୭୯
ଅନଳ ସ୍ମରଣେ ଯେସନ ।
ଦହଇ ସୂକ୍ଷ୍ମ-ବସ୍ତ-ମାନ ॥୧୮୦
ଯେ ଶ୍ରୁତିଦ୍ୱାରେ ତା' ପିବନ୍ତି।
ଏ ମାୟାବନ୍ଧୁ ନିସ୍ତରନ୍ତି ॥୧୮୧
ଏ ଶୋକ ମୋହ ପରିହରେ।
ସ୍ୱଚ୍ଛନ୍ଦେ ଭବବନ୍ଧୁ ତରେ ॥୧୮୨

ଯେଣୁ ଅଜ୍ଞାନ ଶୋକ ମୋହେ।
ବିବେକହୀନେ ଦୁଃଖ ସହେ ॥୧୮୩
ଏଣୁ ଶ୍ରୀକୃଷ୍ଣେ ନୋହେ ରତି।
ତା' ନାମେ ନ ବଳଇ ମତି ॥୧୮୪
ଭ୍ରମେ ଭ୍ରମଇ ତା'ର ମନ ।
ନୁହଇ ନିଜ ଆତ୍ମଜ୍ଞାନ ॥୧୮୫
କୃଷ୍ଣ ସ୍ମରଣ ନ ସ୍ଫୁରଇ ।
ଅଜ୍ଞାନ ଜଡଭାବେ ଥାଇ ॥୧୮୬
ଯାବତ ସାଧୁସଙ୍ଗ ତା'ର ।
ନୋହିଛି ଶୁଣ ନୃପବର ॥୧୮୭
ତାବତ ନୋହେ ସଦଗତି ।
ଯଜ୍ଞାଦି କର୍ମେ ନ ତରନ୍ତି ॥୧୮୮
ନିଶ୍ଚୟେ କହିଲୁ ରାଜନ ।
ସତ୍ସଙ୍ଗ ଭକ୍ତି ଉପାଦାନ ॥୧୮୯
କୃଷ୍ଣ ପ୍ରାପତ ମାର୍ଗ ଏହି ।
ଅନ୍ୟତ୍ର ଜୀବଗତି ନାହିଁ ॥୧୯୦
ଯେ ସଙ୍ଗୁ ଭବାର୍ଣ୍ଣବ ପାର ।
ଅଶେଷ ଯେ ମାର୍ଗେ ନିସ୍ତାର॥୧୯୧
ବ୍ରହ୍ମା ଶଙ୍କର ଦକ୍ଷ ମନୁ ।
ବିଶୁଦ୍ଧ ସନକାଦି ତନୁ ॥୧୯୨
ମରୀଚି ଅତ୍ରି ଅଙ୍ଗିରସ ।
ପୁଲହ ପୁଲସ୍ତ୍ୟ ପ୍ରକାଶ ॥୧୯୩
କ୍ରତୁ ଅଗସ୍ତି ବଶିଷ୍ଠାଦି ।
ଅପରେ ଯେତେ ବ୍ରହ୍ମବାଦୀ ॥୧୯୪
ଭୃଗ୍ୱାଦି ଆମ୍ଭେ ଯେତେ ମୁନି।
ଅଦ୍ୟାପି ନ ପାରିଲୁ ଚିହ୍ନି ॥୧୯୫
ଆମ୍ଭେ ସମାଧି ଯୋଗବଳେ।
ଦେଖି ନ ଦେଖୁଁ ତା'କୁ ତୋଳେ ॥୧୯୬
ସେ ଦେଖି ଦେଖାନ୍ତି ସର୍ବଙ୍କୁ।
ଦୃଷ୍ଟିର ଦୃଷ୍ଟି ବୋଲି ତା'ଙ୍କୁ ॥୧୯୭
ସେ ଆତ୍ମା ସର୍ବଜୀବ ହେତୁ।
ଜୀବ ଭ୍ରମେ ନ ଜାଣି ତତ୍ତ୍ୱ ॥୧୯୮
ଯେ ବେଦଶାସ୍ତ୍ରେ ଅଗୋଚର।
ଅଦୃଶ୍ୟ ଅତିସୂକ୍ଷ୍ମତର ॥୧୯୯

Dr. Sudhanshu Sekhar Mishra

ଏଣୁ କେ ବେଦମାର୍ଗେ ଜାଣେ
ଅବ୍ୟକ୍ତ ବ୍ରହ୍ମ ସୁରଗଣେ ॥୨୦୦
ସେ ବେଦ ଦୁସ୍ତର ବିସ୍ତାର ।
ତାହାର ନାହିଁ ଅନ୍ତଃ ପାର ॥୨୦୧
ବେଦବିହିତ ଯେତେ କର୍ମ ।
ଯଜ୍ଞ ଆଚରି ମୁନି ଭ୍ରମ ॥୨୦୨
କ୍ଷୀଣ ମନ୍ତ୍ରେ ଲିଙ୍ଗ ଦେବତା ।
ବାଞ୍ଛନ୍ତି ଧ୍ୟାନେ କର୍ମେ ଶ୍ରୋତା ॥୨୦୩
ରତି ନିମନ୍ତେ କର୍ମଫଳ ।
କର୍ମ ବିନାଶେ ଜ୍ଞାନବଳ ॥୨୦୪
ମଳିନ ବୁଦ୍ଧି ଯେବା ହୋନ୍ତି ।
ସେମାନେ ବେଦ କର୍ମ ଚିନ୍ତି ॥୨୦୫
ଇନ୍ଦ୍ରାଦି ଦେବଙ୍କୁ ପୂଜନ୍ତି ।
ଏଣୁ ଏ ବ୍ରହ୍ମ ନ ଜାଣନ୍ତି ॥୨୦୬
ଅଜ୍ଞାନୀ ବୋଲି ତା'ଙ୍କୁ ଜାଣ ।
ଯେ ଆତ୍ମା ନ କଲା ପ୍ରମାଣ ॥୨୦୭
ଯାହାର ଆତ୍ମାଜ୍ଞାନ ନାହିଁ ।
ସଂସାରୁ ସେ ତରିବ କାହିଁ ॥୨୦୮
ସେ ହରି ଯା'ରେ କରେ ଦୟା ।
ତା' ମତି ବେଦେ ନିଷ୍ଠା ନୋହେ ॥୨୦୯
ସେ ଆତ୍ମାତତ୍ତ୍ୱେ ହରି ପାଇ ।
ତାହା ନ ବୁଝି କର୍ମେ ବାଇ ॥୨୧୦
ତୁ ରାଜା କର୍ମକାଣ୍ଡେ ଭୋଳା ।
ତୋ' ଯଜ୍ଞକର୍ମୁ ମହୀସ୍ଥଳ ॥୨୧୧
ଅଛାଦି ପ୍ରାଚୀନଗ୍ର ତୋ'ର ।
କୁଶେ ପୂରିଲା ନୃପବର ॥୨୧୨
ପ୍ରଜାଏ ଶସ୍ୟ କରଷଣେ ।
ନ ପାରି କ୍ଷୁଧା ପ୍ରତୋଷଣେ ॥୨୧୩
ଅନ୍ନ ବିହୀନେ ସର୍ବଜନ୍ତୁ ।
ଦୁର୍ଭିକ୍ଷେ ମଲେ ତୋ'ର ହେତୁ ॥୨୧୪
ଏ ସର୍ବଜୀବ ବିନାଶିଲୁ ।
ଏ ହତ୍ୟା ଦୋଷେ ଭାଗୀ ହେଲୁ ॥୨୧୫
ତୁ ବିପ୍ରବାକ୍ୟେ ବିମୋହିତ ।
ନ ଜାଣି ବେଦର ବୃତ୍ତାନ୍ତ ॥୨୧୬

ଏ ଯଜ୍ଞକର୍ମେ ହେଲୁ ଅନ୍ଧ ।
ନ ଜାଣୁ ତୁ ଆତ୍ମା ଦୁର୍ବୋଧ ॥୨୧୭
ଯେ କର୍ମ ମୋକ୍ଷ ମାର୍ଗଦୂର ।
ତୁ ତାହା ନ କଲୁ ବିଚାର ॥୨୧୮
ପରମତତ୍ତ୍ୱେ ନୋହେ ମତି ।
ଲଭିବୁ ଦୁଃସହ ଦୁର୍ଗତି ॥୨୧୯
ଏ ବିପ୍ରେ ତୋ' ହିତ ନ ଜାଣି ।
ନରକ ମାର୍ଗେ ତୋତେ ଟାଣି ॥୨୨୦
ଏହାଙ୍କ ବାକ୍ୟେ ତୁ ରାଜନ ।
ଭ୍ରମେ ହୋଇଲୁ ହତଜ୍ଞାନ ॥୨୨୧
ତୁ ଗୃହ-କୂପେ ଜନ୍ମଅନ୍ଧ ।
ଏ ବିପ୍ରେ କର୍ମକାଣ୍ଡେ ବଦ୍ଧ ॥୨୨୨
ଅନ୍ଧକୁ ଅନ୍ଧ ପଥ କହି ।
ସେ ଯେହ୍ନେ କାର୍ଯ୍ୟେ ନ ଘଟଇ ॥୨୨୩
ତେସନେ ଏହାଙ୍କ ବଚନ ।
ହେ ରାଜା ଚିତ୍ତେ ତୁ ନ ଘେନ ॥୨୨୪
ତୋତେ ଭଣ୍ଡିଲେ ଧନ ଆଶେ ।
ଇନ୍ଦ୍ରିୟ-ସୁଖ ଗୃହବାସେ ॥୨୨୫
ତୋ' ପୂର୍ବପୁଣ୍ୟ ବିନାଶିଲେ ।
ଜୀବ ହିଂସନେ ଶିକ୍ଷା ଦେଲେ ॥୨୨୬
ହରି ଆଶ୍ରିତ କର୍ମ ଯେତେ ।
ନ କହି ଭ୍ରମାଇଲେ ତୋତେ ॥୨୨୭
ଏ ବିପ୍ରେ ନ ଜାଣନ୍ତି ତାହା ।
ତେଣୁ ଭଣ୍ଡିଲେ ନରନାହା ॥୨୨୮
ତୁ ତର୍କି ନ ପାରି ରାଜନ ।
ବିଅର୍ଥେ ଗଲା ତୋ'ର ଦିନ ॥୨୨୯
ଯେ କର୍ମେ ହରି ତୋଷ ହୋଏ ।
ତାହାକୁ କର୍ମ ବୋଲି ରାୟେ ॥୨୩୦
ଉତ୍ତମ ବିଦ୍ୟା ହେ ରାଜନ ।
ଯେ ହରି କରନ୍ତି ଭଜନ ॥୨୩୧
ଜ୍ଞାନୀଙ୍କ ମଧ୍ୟେ ସେହୁ ବର ।
ଯେ ହରିକର୍ମେ ତତପର ॥ ୨୩୨
ଯଜ୍ଞାଦି ଦାନ ପୁଣ୍ୟ ସେହି ।
ଯେବେ ଜୀବରେ ଦୟା ବହି ॥୨୩୩

ସର୍ବଭୂତରେ ଆତ୍ମା ହରି ।
ପ୍ରକୃତି ସ୍ୱରୂପେ ବିହରି ॥୨୩୪
ସେ ଏକ ଆତ୍ମା ବେନି ଅଂଶ ।
ପ୍ରକୃତି ଭେଦେ ବହୁ ଦୃଶ୍ୟ ॥୨୩୫
ଏମନ୍ତ ହରିରେ ଶରଣ ।
ତୁ ଯାଇ ପଶ ନୃପରାଣ ॥୨୩୬
ସେ ସର୍ବଆତ୍ମା ପ୍ରିୟ ହରି ।
ଯାନାମ ଆଶ୍ରେ ଭବୁ ତରି ॥୨୩୭
ସେ କାଳଭୟ ବିନାଶନ୍ତି ।
ନିର୍ଭୟେ ନିଶ୍ଚିନ୍ତେ ରହନ୍ତି ॥୨୩୮
ଏ କଥା ଯେ ବୁଝେ ପଣ୍ଡିତ ।
ସେ ସର୍ବ ଗୁରୁଟି ଅଚ୍ୟୁତ ॥୨୩୯
ତୁମ୍ଭର ସନ୍ଦେହ ଫେଡିଲୁ ।
ଏ ଆତ୍ମଜ୍ଞାନ ଶିକ୍ଷା ଦେଲୁ ॥୨୪୦
ଅପରେ ଗୁପ୍ତ ଦୃଷ୍ଟାନ୍ତର ।
ତୋତେ କହିବା ନୃପବର ॥୨୪୧
ତା' ତୋତେ ବୁଝାନ୍ତେ ରାଜନ ।
ତେବେ ନୋହିଲା ତୋର ଜ୍ଞାନ ॥୨୪୨
କୁସୁମବାଡି ମଧ୍ୟେ ମୃଗ ।
ଇଚ୍ଛଇ ମଇଥୁନ ଯୋଗ ॥୨୪୩
ହରିଣୀ ବଶେ ବଶ ହୋଇ ।
ଅଜ୍ଞାନେ ମୃତ୍ୟୁ ନ ଜାଣଇ ॥୨୪୪
ଅଳପ ସୁଖ-ଲୋଭେ ମତି ।
ଭ୍ରମର-ଗୀତେ ଡେରି ଶ୍ରୁତି ॥୨୪୫
ତା' ଅଗ୍ରେ ବୃକମାନେ ଛନ୍ତି ।
ତା' ମାଂସ ଭକ୍ଷଣ କରନ୍ତି ॥୨୪୬
ତାହାଙ୍କ ମୁଖକୁ ରାଜନ ।
ସତ୍ୱରେ କରଇ ଗମନ ॥୨୪୭
ତା' ପଛେ ବ୍ୟାଧ ଗୋଡାଇଛି ।
ସଘନେ ବାଣ ସେ ବିନ୍ଧୁଛି ॥୨୪୮
ତାହାକୁ ନ କରିଣ ଭୟେ ।
ଆନନ୍ଦେ ମୃଗୀରସେ ରହେ ॥୨୪୯
ଭେଦିଣ ବ୍ୟାଧ ତୀକ୍ଷ୍ଣ ଶର ।
ମିଳାଇ ଅର୍ଦ୍ଧ ତା ଶରୀର ॥୨୫୦

Dr. Sudhanshu Sekhar Mishra

ଗଲା ନ ଜାଣେ କାମସୁଖେ ।
ତେବେ ଉଚ୍ଛୁଡ଼ି ଲତା ଭକ୍ଷେ ॥୨୫୧
କାହାକୁ ନ କରିଣ ଭୟେ ।
ସଧୀରେ ଲତା ବୃକ୍ଷୁ ଖାଏ ॥୨୫୨
ଏମନ୍ତ ମୃଗ କେ ରାଜନ ।
ବିବେକୀ ଖୋଜ ତୁ ବହନ ॥୨୫୩
ତେବେ ଜାଣିବା ସାଧୁମତି ।
ବିଷୟ ରସ ତ୍ୟାଗ ଗତି ॥୨୫୪
ଏ ଅନୁଭବ ବୁଝି ରାୟେ ।
ବିବେକୀ ଜାଣିବୁ ଥୋକାଏ ॥୨୫୫
ତା' ଶୁଣି ସଂଭ୍ରମେ ରାଜନ ।
ମୁନିଙ୍କି ଚାହିଁ ତୋଷମନ ॥୨୫୬
କହେ ବିନୟ ଶୁଦ୍ଧଚିତ୍ତେ ।
ଅତି ଆନନ୍ଦେ ହରଷିତେ ॥୨୫୭

ରାଜା ଉବାଚ

ଆମ୍ଭର ଏଣେ ନାହିଁ ମତି ।
ବିବେକୀ ନୋହେ ଆତ୍ମଗତି ॥୨୫୮
ଯେବେ ମୋହେରେ ଦୟା ବହୁ ।
ଏ କଥା ଫେଡ଼ି ମୋତେ କହ ॥୨୫୯
ତୁମ୍ଭେ ଦୟାଳୁ ଯୋଗେଶ୍ୱର ।
ସକଳ ଘଟେ ଦୟାପର ॥୨୬୦
ମୁଁ ବୁଝି ନ ପାରିଲି ଚିତ୍ତେ ।
ଛାଡୁ ସଂଶୟ କହ ମୋତେ ॥୨୬୧
କେ ମୃଗ ବୃକ ବ୍ୟାଧ କେହି।
ଭୋ ମୁନିବର ଦେବା କହି ॥୨୬୨

ନାରଦ ଉବାଚ

ଶୁଣ ରାଜନ ଶୁଦ୍ଧଚିତ୍ତେ ।
ତା ଫେଡ଼ି କହିଦେବା ତୋତେ ॥୨୬୩
ହେ ରାଜା ମୃଗରୂପ ତୁହି ।
ତୋ ପତ୍ନୀଗଣେ ପୁଷ୍ପଦେହୀ ॥୨୬୪
ସେ ତୋତେ ବେଢ଼ି ଅଗ୍ରେଛନ୍ତି।
ତୋ ପ୍ରାଣ ବିବାଦେ ନାଶନ୍ତି ॥୨୬୫
ତୁ ତାହା ତର୍କି ନ ପାରିଲୁ ।
ସୁବେଶେ ତାହାଙ୍କୁ ପୂଜିଲୁ ॥୨୬୬

ସପାଗ୍ନି ସ୍ତିରୀ ଯେ ଦୁର୍ଜନ ।
ବିଶ୍ୱାସ ନ ଯିବ ଏମାନ ॥୨୬୭
ତାଙ୍କ ବଶେ ନିମଜ୍ଜିଲୁ ।
ପ୍ରାଣୁ ଅଧିକ ସ୍ନେହ କଲୁ ॥୨୬୮
ସେ ତୋର ବଶ କଲେ ମନ ।
ବନ୍ଧନେ ପଶୁଏ ଯେସନ ॥୨୬୯
ଏ ତୋତେ ନିଶ୍ଚୟ ନାଶିବେ ।
ତୋ ସ୍ନେହଭରେ ପ୍ରାଣ ନେବେ ॥୨୭୦
ଏ ସଙ୍ଗଦୋଷୁ ନୃପବର ।
ହୋଇବ ମୋକ୍ଷମାର୍ଗ ଦୂର ॥୨୭୧
ତୁ ଅନୁଭବେ ବୁଝ ଏବେ ।
ତୋତେ କହିବା ଫେଡ଼ି ଭାବେ ॥୨୭୨
କୁସୁମବନ ବୋଲି ଯାହା ।
ନାରୀଙ୍କ ଧର୍ମ କହି ତାହା ॥୨୭୩
ତା ସଙ୍ଗେ ଏ ପୁରୁଷବର ।
କରଇ ଅଜ୍ଞାନେ ବିହାର ॥୨୭୪
ବିଷୟ ସୁଖେ ଉନମତ୍ତ ।
ସୁରତି ରସେ ଦେଇ ଚିତ୍ତ ॥୨୭୫
ଭ୍ରମରେ ଯେହ୍ନେ ଗୁଞ୍ଜରନ୍ତି ।
ତେସନେ ଯୁବତୀ ଭାଷନ୍ତି ॥୨୭୬
ସେ ବାକ୍ୟେ କର୍ଣ୍ଣ ଡେରିଥାଇ ।
କାଳ-ବୃକକୁ ଭୟ ନାହିଁ ॥୨୭୭
ତା ପଛେ କାଳ ଗୋଡ଼ାଇଛି ।
ଏକଥା ଜୀବ ନ ବୁଝୁଛି ॥୨୭୮
ଏବେ ତୁ ବୁଝ ମହୀପତି ।
ଏ ମୃଗତୃଷ୍ଣା ଜୀବଗତି ॥୨୭୯
ଆପଣେ ଚିତ୍ତେ ତୁ ବିଚାର ।
ଏମନ୍ତ ବୁଦ୍ଧି ଦୃଢ଼େ ଧର ॥୨୮୦
ଶ୍ରବଣ ନଦେଇ ବିଷୟେ ।
ଏ ସର୍ବହିତେ କର ଲୟେ ॥୨୮୧
କାମୁକ କାମ ସୁଖ ପାଇଁ ।
ଗୃହ-କାରଣେ ବନ୍ଦୀ ହୋଇ ॥୨୮୨
ଯେହ୍ନେ ମଧୁପ ମଧୁ ଆଶେ ।
ଲୋଭେ ବନ୍ଧନ ପଦ୍ମକୋଷେ ॥୨୮୩

ଅବଶେ ସ୍ନେହ ନ ତେଜିଲା ।
ପଦ୍ମ ମୁଦ୍ରିତେ ପ୍ରାଣ ଦେଲା ॥୨୮୪
ସେ ରୂପେ ସ୍ତିରୀ ମୁଖାମ୍ବୁଜେ।
ଯହିଁ ଯୋଗୀନ୍ଦ୍ର ଯୋଗ ଭାଞ୍ଜେ ॥୨୮୫
ପୁଣ୍ୟାଦି କର୍ମ କରେ ନାଶ ।
ଏଣୁ ସ୍ତିରୀଙ୍କ ସଙ୍ଗ ଦୋଷ ॥୨୮୬
ସତ୍ୟ ଶଉଚ ଦୟା ଧର୍ମ ।
ଅପରେ ଯେବା ଶ୍ରେୟକର୍ମ ॥୨୮୭
ଏ ସର୍ବ କରଇ ବିନାଶ ।
ସେ ସଙ୍ଗେ ନାହିଁ ସୁଖ ଲେଶ ॥୨୮୮
ତୁ ଗୃହ ଛାଡ଼ି ହରି ଭଜ ।
ବିଷୟ କର୍ମ ଦୂରେ ତେଜ ॥୨୮୯

ରାଜା ଉବାଚ

ତା' ଶୁଣି ବୋଲଇ ରାଜନ ।
ଭୋ ମୁନି ଏ ତୁମ୍ଭ ବଚନ ॥୨୯୦
ବିଚାରି ବୁଝିଲଇଁ ଚିତ୍ତେ ।
ମୋ ରାଜ୍ୟେ ବିପ୍ରେ ଛନ୍ତି ଯେତେ ॥୨୯୧
ଏ ସର୍ବେ ନ ଜାଣନ୍ତି ଜ୍ଞାନ ।
ବିଦ୍ୟା ବିଭ୍ରମେ ଅଭିମାନ ॥୨୯୨
ସେ ଯେବେ ଜାଣନ୍ତେ ନା ଏହା।
କିପାଇଁ ନ କହନ୍ତେ ତାହା ॥୨୯୩
ଏଣୁ ଏ କର୍ମେ ମୋତେ ଟେକି ।
ଯେଣୁ ଅଟନ୍ତି ଅବିବେକୀ ॥୨୯୪
ଭୋ ମୁନି ତୁମ୍ଭ ପ୍ରାୟେ ଯେତେ।
ସାଧୁଏ ଅଛନ୍ତି ଜଗତେ ॥୨୯୫
ସେ ତୁମ୍ଭ ପ୍ରାୟେ ଦୟା କରି ।
କେହି ନ ଆସନ୍ତି ମୋ' ପୁରୀ ॥୨୯୬
ଏ କଥା କହ ମୁନିବର ।
ମୋର ସଂଶୟ ହେଉ ଦୂର ॥୨୯୭
ଏମନ୍ତେ ଦେବ ମହାଋଷି ।
କହନ୍ତି ତା ବାକ୍ୟ ପ୍ରଶଂସି ॥୨୯୮

ନାରଦ ଉବାଚ

ତୁ ଯାହା ପୁଚ୍ଛିଲୁ ରାଜନ ।
କହିବା ଏଥିର ବିଧାନ ॥୨୯୯

Dr. Sudhanshu Sekhar Mishra

ଯେ ପଦ୍ମନାଭ ପଦାଶ୍ରିତ ।
ତେଣେ ଭାବିତ ଯା'ର ଚିତ୍ତ ॥୩୦୦
ସ୍ୱର୍ଗାପବର୍ଗ ତୁଚ୍ଛ ମଣି ।
ତୋ ରାଜଭୋଗ ମୃତ୍ୟୁ ଗଣି ॥୩୦୧
ଏଣୁ ସାଧବେ ତାହା ଦେଖି ।
ଭୟେ ବିମୁଖ ତା' ଉପେକ୍ଷି ॥୩୦୨
ଆତ୍ମା ବିଯୋଗେ ପିଣ୍ଡ ଯେହ୍ନେ ।
ସଭୟେ ତେଜନ୍ତି ଯେସନେ ॥୩୦୩
ତେସନେ ଏ ରାଜ-ବିଭୂତି ।
ଭୟେ ସାଧବେ ନ ଇଚ୍ଛନ୍ତି ॥୩୦୪
ତୁ ରାଜା ଚିତ୍ତେ ପରିମାଣ ।
ଭୋଗାଦି ଅନର୍ଥ କାରଣ ॥୩୦୫
ତା' ଶୁଣି ସଂଭ୍ରମେ ରାଜନ ।
ଚିନ୍ତା ବିମୁଖେ ଖେଦମନ ॥୩୦୬

ରାଜା ଉବାଚ

ଏ ବିପ୍ରଗଣେ ଅନୁକ୍ଷଣେ ।
କହନ୍ତି ଯଜ୍ଞାଦି କାରଣେ ॥୩୦୭
ଏହାଙ୍କ ଶିକ୍ଷା କର୍ମ ଯେତେ ।
ଛାଡିଲା ତୁମ୍ଭ ବାକ୍ୟମତେ ॥୩୦୮
ଏ କର୍ମେ ଯୋଗାଜନ ମୋହେ ।
ଏଣୁ ପ୍ରତୀତ ସର୍ବଠାଏ ॥୩୦୯
ଏକ ସଂଶୟ ମୋର ଅଛି ।
ଭୋ ମୁନି କହ ପଚାରୁଛି ॥୩୧୦
ଯେ ଦେହେ ପ୍ରାଣୀ କର୍ମକରେ।
ତା' ଛାଡି ପରଲୋକେ ଗଲେ॥୩୧୧
କର୍ମ ଭୁଞ୍ଜାଇ ଅନ୍ୟ ଦେହେ ।
ଏ କଥା ସର୍ବବେଦ କହେ ॥୩୧୨
କର୍ତ୍ତା ଭୋକତା ବେନି ଭେଦ।
ଏ ବେନି ସଂଶୟ ମୋ ଛେଦ ॥୩୧୩
ଫେଡିଣ କହିବା ଗୋସାଇଁ ।
ଆବର ସଂଶୟ ଅଛଇ ॥୩୧୪
ତାହା ପୁଚ୍ଛଇ ମୂଢ଼ଭାବେ ।
ମୋ ମନ ସୁମରୁଛି ଏବେ ॥୩୧୫

ବେଦ ବିହିତ ଯେତେ କର୍ମ ।
ଲୋକ ଆଚରେ ବିଧି ଧର୍ମ ॥୩୧୬
କର୍ମ ଉତ୍ତାରେ ତା' ନ ଜାଣି ।
କି ରୂପେ କର୍ମ ଭୁଞ୍ଜେ ପ୍ରାଣୀ॥୩୧୭
ଅଦୃଷ୍ଟ କର୍ମେ ସଂଯୋଗଇ ।
ଏଣେ ସଂଶୟ ମୋର ହୋଇ ॥୩୧୮
ଏମନ୍ତ ରାଜା ମୁଖୁ ଶୁଣି ।
ନାରଦ କହେ ମନେ ଗୁଣି ॥୩୧୯

ନାରଦ ଉବାଚ

ଶୁଣ କହିବା ନୃପରାଣ ।
ଏ ବେନି ସଂଶୟ ଫେଡିଣ ॥୩୨୦
ଯେ ଦେହେ ଜୀବ କର୍ମ କରେ ।
ପରଲୋକେ ତା' ଭୋଗ କରେ ॥୩୨୧
ଯେ ପାପପୁଣ୍ୟ ତା'ର ଥାଇ ।
ସେକାଳେ ତାହା ସେ ଭୁଞ୍ଜାଇ ॥୩୨୨
ଏ ସ୍ଥୂଳଦେହ ଗଲେ ନାଶ ।
ଏ ଲିଙ୍ଗ ଅନ୍ୟ ଦେହେ ବାସ ॥୩୨୩
କର୍ତ୍ତା ଭୋକତା ନୋହେ ଭିନ୍ନ ।
ସ୍ୱପ୍ନେ ଦୃଷ୍ଟାନ୍ତର ଯେସନେ ॥୩୨୪
ଶୟନେ ଦେହ ପଡ଼ିଥାଇ ।
ଶ୍ୱାସ କ୍ଷେପଣ ନ ଜାଣଇ ॥୩୨୫
ଏ ଦେହ ସ୍ନେହ ପରିହରି ।
ଏ ମନ ଲିଙ୍ଗଦେହ ଧରି ॥୩୨୬
ଅନ୍ୟଭୂତ କର୍ମ ବ୍ୟାପାର ।
ଏ ମନ କରେ ଅଙ୍ଗୀକାର ॥୩୨୭
ଏ ମନ୍ତ ଜାଣି ଦୃଷ୍ଟାନ୍ତରେ ।
ଏମନ୍ତ ଅନ୍ୟତ୍ର ଶରୀରେ ॥୩୨୮
ଧରିଣ ସ୍ଥୂଳଦେହ ମନ ।
ମୁଁ କୁଳଶ୍ରେଷ୍ଠ ବିଦ୍ୱଜ୍ଜନ ॥୩୨୯
ଏ ପୁତ୍ର-ଦାରାଦି ମନ୍ଦିର ।
ବୋଲିଣ କରେ ଅହଙ୍କାର ॥୩୩୦
ଏ ଅଭିମାନ କର୍ମ କରେ ।
ସ୍ୱକର୍ମ ବଶେ ଦେହ ଧରେ ॥୩୩୧

କର୍ମ ନ ଥିଲେ ଜନ୍ମ ନାହିଁ ।
ତା ପୂର୍ବକର୍ମ ଭୋଗ କାହିଁ ॥୩୩୨
ଏ ମନ ଲିଙ୍ଗ ଦେହ ବେନି ।
ଭୋଗାର୍ଥେ ସ୍ଥୂଳ ଦେହ ଘେନି ॥୩୩୩
ଯାହା ତୁ ପୁଚ୍ଛିଲୁ ନୃପତି ।
ବିନଷ୍ଟକର୍ମ ଉତପତ୍ତି ॥୩୩୪
ତା' ଫେଡି କହିବାକ ତୋତେ ।
ସଂଶୟ ଫିଟିବ ଯେମନ୍ତେ ॥୩୩୫
ଏ ଜ୍ଞାନ କର୍ମ ଭେଦେ ଦୁଇ ।
ଇନ୍ଦ୍ରିୟ କର୍ମାଦି କରଇ ॥୩୩୬
ଏ ପୁଣ୍ୟପାପାଦି ବିଷୟ ।
କରଇ ଏ ମନ ଇନ୍ଦ୍ରିୟ ॥୩୩୭
ଚିତ୍ତ ବିଷୟ କର୍ମ ଜାଣି ।
ନୋହିଲେ କେବା ପରିମାଣି ॥୩୩୮
ଏ ରୂପେ ଜାଣ ଚିତ୍ତବୁଦ୍ଧି ।
ଭୁଞ୍ଜାଇ ପୂର୍ବକର୍ମ ସିଦ୍ଧି ॥୩୩୯
କର୍ମ ନ ଥିଲେ ଭୋଗ କାହିଁ।
ବିବେକୀ ବୁଝ ନରସାଇଁ ॥୩୪୦
ଏ ପ୍ରତିଲକ୍ଷ୍ୟେ ଦୃଷ୍ଟାନ୍ତର ।
ତୋତେ କହିବା ନୃପବର ॥୩୪୧
ତୋ' ଅନ୍ୟ ଦେହ ଥାଉଁ ଏବେ ।
ଏ ଦେହେ ବୁଝ ଅନୁଭବେ ॥୩୪୨
ଜାଗ୍ରତେ ଯେତେ ରୂପମାନ ।
ଏ ଦେହେ ଭାବିଥାଇ ମନ ॥୩୪୩
ଦୃଷ୍ଟି ଶ୍ରବଣେ ଯେ ବିଷୟ ।
ସ୍ୱପନ ଗତେ ସେ ଉଦୟ ॥୩୪୪
ଏ ଲିଙ୍ଗଦେହ ଧରି ମନ ।
ବିଷୟକର୍ମ କରେ ଧ୍ୟାନ ॥୩୪୫
ବିଷୟକର୍ମେ ହୋଇ ବଶ ।
ଆନନ୍ଦେ ଘେନେ ଭୋଗରସ ॥୩୪୬
ଯେ କଥା ଅନୁଭବି ନାହିଁ ।
ସ୍ୱପନେ ଦେଖିବ ତା' କାହିଁ ॥୩୪୭
ଏହାର ପୂର୍ବକର୍ମ ଦୋଷ ।
ଯାବତ ନୋହିଛି ବିନାଶ ॥୩୪୮

Dr. Sudhanshu Sekhar Mishra

ତା ଅନ୍ୟଦେହେ ଭୋଗ କରେ।
ସେ ଶୁଭାଶୁଭ ତା' ବେଭାରେ ॥୩୪୯
ପୂର୍ବ ଅକର୍ମ- ଦୋଷେ ଜୀବ।
ଜନ୍ମି ଲଭଇ ମୂଢ଼ଭାବ ॥୩୫୦
ଫଳାନୁସାରେ ଦେହ ପାଇ ।
ପୁଣ ସେ କର୍ମେ ପ୍ରବେଶଇ ॥୩୫୧
ଯାହା ଏ ଅନୁଭବି ନାହିଁ ।
ଏ ମନ ଚୁଇଁବ ତା' କାହିଁ ॥୩୫୨
ଶୁଣ ରାଜନ ସାବଧାନ ।
ସକଳ କର୍ମେ ସାକ୍ଷୀ ମନ ॥୩୫୩
ମନଟି ସୁଖଦୁଃଖ ଦାତା ।
ଏ ପାପପୁଣ୍ୟର କରତା ॥୩୫୪
ମନହୁଁ କର୍ତ୍ତା ଆର ନାହିଁ ।
ଇନ୍ଦ୍ରିୟ ଗୁଣ ଅର୍ଥ ବହି ॥୩୫୫
ତା' ପୂର୍ବ ଶୁଭାଶୁଭ କର୍ମ ।
ସେ ଅନୁସାରେ ଲଭେ ଜନ୍ମ ॥୩୫୬
କେ ଦାତା କୃପଣ ଇଶ୍ୱର ।
ସାଧୁ ଦୁର୍ଜନ କେବା ଚୋର ॥୩୫୭
ଏ ମନ କର୍ମର ଆୟତ୍ତେ ।
ଭ୍ରମଇ ଦୁଃଖସୁଖେ ନିତ୍ୟେ ॥୩୫୮
ଏ ବର୍ତ୍ତମାନ ଦେହେ ଯାହା ।
ଯେ ରୂପେ ଦେଖି କରେ ସ୍ନେହା ॥୩୫୯
ତା' ଅନାଗତ ଦେହେ ଦେଖେ ।
ଏ ବର୍ତ୍ତମାନ ଦେହୀ ପକ୍ଷେ ॥୩୬୦
ଯେ କଥା ଅନୁଭବି ନାହିଁ ।
ସ୍ୱପ୍ନରେ କେବେ ବା ଦିଶଇ ॥୩୬୧
ସମୁଦ୍ର ଗିରିଶିଖେ ଯେହ୍ନେ ।
ପ୍ରତୀତ କରଇ ସେ ମନେ ॥୩୬୨
ନକ୍ଷତ୍ର ଆଦି ଗ୍ରହମାନ ।
ଦିବସେ ଦୃଶ୍ୟ ଦୁର୍ଘଟନ ॥୩୬୩
ଆପଣା ଶିରଚ୍ଛେଦ ହୋଇ ।
ଏ ବିପରୀତ ସେ ଦେଖଇ ॥୩୬୪
ମିଥ୍ୟାଭିଳାଷେ ଏହୁ ଭ୍ରମ ।
ପ୍ରତ୍ୟକ୍ଷ କରେ ତାହା ମନ ॥୩୬୫

ଏ ସବ ନିଦ୍ରାଦୋଷେ ଜାଣେ ।
ଦେଶ-କାଳ-କ୍ରିୟା ପ୍ରମାଣେ ॥୩୬୬
ଇନ୍ଦ୍ରିୟ ବିଷୟ ସକଳ ।
ମନରେ ହୋନ୍ତି ସବୁ ଠୁଳ ॥୩୬୭
ସେ ସର୍ବେ ହୋନ୍ତି ଯା'ନ୍ତି ନିତ୍ୟେ।
ଏଣୁ ଏ ମନ ବିପରୀତେ ॥୩୬୮
ଯେ ମନ କୃଷ୍ଣପାଦତଳେ ।
ସତ୍ତ୍ୱ-ନିଷ୍ଠାରେ ଥାଇ ଭୋଳେ॥୩୬୯
ଏ ବିଶ୍ୱ ପ୍ରକାଶ ହୁଅଇ ।
ସଂଯୋଗେ ପରିପ୍ରକାଶଇ ॥୩୭୦
ତଥାପି ବିଷୟ ପ୍ରବଳ ।
ମନକୁ କରଇ ଚଞ୍ଚଳ ॥୩୭୧
ଯେହ୍ନେ ଚନ୍ଦ୍ରକୁ ରାହୁ ଗ୍ରାସେ ।
ତେସନ ଗୁଣେ ମନ ମିଶେ ॥୩୭୨
ଏ ଗୁଣ ସମୂହ ଅନାଦି ।
ଯାବତ ଅଛି ମନ ବୁଦ୍ଧି ॥୩୭୩
ତାବତ ଅହଙ୍କାର ବହେ ।
ଯେଣୁ ତ୍ରିଗୁଣ ଅଛି ଦେହେ ॥୩୭୪
ଏ ପ୍ରାଣ-ମାର୍ଗର ସନ୍ତାପେ ।
ସ୍ୱପନ-ମୂର୍ଚ୍ଛା-ଉପତାପେ ॥୩୭୫
ଏ ଗୁଣ ଜ୍ଞାନ ନ ଛାଡଇ ।
ମୃତ୍ୟୁ ପ୍ରଜ୍ୱର କାଳେ ସେହି ॥୩୭୬
ଏ ଗର୍ଭବାସେ ଥିଲା ଯେବେ ।
ବାଲ୍ୟ ଅବସ୍ଥା ଅବା ଯେବେ ॥୩୭୭
ଏ ଲିଙ୍ଗ ସୂକ୍ଷ୍ମରୂପେ ରହେ ।
କେବଳ ପ୍ରକାଶିତ ନୋହେ ॥୩୭୮
ଯେସନେ କହୁ-ତିଥି ପାଇ ।
ଚନ୍ଦ୍ରକିରଣ ନ ଦିଶଇ ॥୩୭୯
ସେ ରୂପେ ବାଲ୍ୟାଦି କାଳରେ।
ଏ ଗୁଣ ପ୍ରକାଶ ନ କରେ ॥୩୮୦
ଗୁଣେ ବନ୍ଧନ ଲିଙ୍ଗ ଦେହ ।
କର୍ମରେ କରୁଥାଇ ସ୍ନେହ ॥୩୮୧
ଏ ଦେହ ଯେକାଳେ ନ ଥାଇ ।
ତେବେ ତା ଜନ୍ମ ଅବା କାହିଁ॥୩୮୨

ବିଷୟ ଧ୍ୟାନ ଯେଣୁ ଅଛି ।
ତେଣୁ ଏ ଶରୀର ଧରିଛି ॥୩୮୩
ସ୍ୱପ୍ନ ଦୃଷ୍ଟାନ୍ତର କରିଣ ।
ଭୋଗାଦି ବୁଝ ନୃପରାଣ ॥୩୮୪
ନାରଦ ବଚନ ଶୁଣିଣ ।
କହଇ ପ୍ରାଚୀ ନୃପରାଣ ॥୩୮୫

ରାଜା ଉବାଚ

ଭୋ ମୁନିବର ତୁମ୍ଭେ ଶୁଣ ।
ଜୀବର କି କି କହ ଗୁଣ ॥୩୮୬
ଯାହାକୁ ଜୀବ ବୋଲି କହ ।
ତାହାର କିବା ରୂପ ଦେହ ॥୩୮୭
ନାରଦ ଶୁଣି ନୃପବାଣୀ ।
ଆନନ୍ଦଚିତ୍ତେ ମନେ ଗୁଣି ॥୩୮୮
ବୋଲନ୍ତି ଶୁଣ ନୃପବର ।
ସ୍ୱରୂପ କହିବା ଜୀବର ॥୩୮୯
ଶବଦ ଆଦି ମାତ୍ରା ପଞ୍ଚ ।
ଅପରେ ତ୍ରିଗୁଣ ପ୍ରପଞ୍ଚ ॥୩୯୦
ଦଶଇନ୍ଦ୍ରିୟ ପଞ୍ଚପ୍ରାଣ ।
ଯେ ମନ ବୁଦ୍ଧି ସଙ୍ଗତେଣ ॥୩୯୧
ଏହାଙ୍କୁ ଲିଙ୍ଗ-ଦେହ କହି ।
ଯାବତ ଚେତନା ଏ ବହି ॥୩୯୨
ତାବତ ଜୀବ ବୋଲି ଜାଣ ।
ଯେଣୁ ଏ ଘେନେ ଦେହଗୁଣ॥୩୯୩
ଦେହାଦି ଛାଡେ ଘେନେ ଏହି।
ଶୋକ ହରଷ ବେନି ବହି ॥୩୯୪
ଯେସନେ ତୃଣେ ଜୋକମାନ ।
ଏକକୁ ଧରି ଛାଡେ ଆନ ॥୩୯୫
ସେ ରୂପେ ଏ ଲିଙ୍ଗ-ଶରୀର ।
ଦେହ ସମ୍ଭବେ ବୁଝ ବୀର ॥୩୯୬
ଯାବତ ଅନ୍ୟଦେହ ନୋହେ।
ତାବତ ଅଛି ପୂର୍ବଦେହେ ॥୩୯୭
ଏ ପୂର୍ବକର୍ମ ନ ଛାଡଇ ।
ସଙ୍ଗତେ ଘେନି ତା' ଭୁଞ୍ଜଇ ॥୩୯୮

Dr. Sudhanshu Sekhar Mishra

ଯାବତ ଅଛି ମାୟା ଦ୍ୱନ୍ଦ୍ୱ ।
ତାବତ ଏ କର୍ମେ ସେ ବନ୍ଧ ॥୩୯୯
ଏ ଜୀବ ପଡି ମାୟାବନ୍ଧେ ।
କର୍ମ କରଇ ନାନାଛନ୍ଦେ ॥୪୦୦
ଏ ମାୟାବନ୍ଧ ଛାଡେ ଯେବେ ।
କୃଷ୍ଣଚରଣେ ଭଜେ ତେବେ ॥୪୦୧
ସକଳ-ଘଟେ ଆତ୍ମା ରୂପେ ।
ଯେ ହରି ଛନ୍ତି ଦେହ-କୂପେ ॥୪୦୨
ସୃଷ୍ଟି-ପାଳନ-ସଂହାରଣ ।
ଯାହାର ତହୁଁ ଏ ଭିଆଣ ॥୪୦୩
ତା' ପାଦେ ଭଜିଲେ ମୁକତି ।
ତା' ବିନୁ ନାହିଁ ଅନ୍ୟଗତି ॥୪୦୪

ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର ।
ସୁମନେ ଶୁଣ ହେ ବିଦୁର ॥୪୦୫
ଜୀବ ଆତ୍ମାର ଗତି ମାନ ।
ନାରଦମୁନି ପ୍ରଭେଦେଣ ॥୪୦୬
ରାଜାଙ୍କୁ କହିଲେ ବୁଝାଇ ।
ଏ ଲିଙ୍ଗ-ଶରୀର ଭେଦାଇ ॥୪୦୭
ଶୁଣି ସାନନ୍ଦ ନୃପବର ।
ଉଠି ଯୋଡିଲା ବେନିକର ॥୪୦୮
ସାଷ୍ଟାଙ୍ଗେ କରି ଦଣ୍ଡବତ ।
ହରଷେ ହୋଇ କୃତକୃତ୍ୟ ॥୪୦୯
ରୋମ ଉଦ୍‌ଗମ ଅଶ୍ରୁପାତ ।
ବୋଲଇ ହୋଇ ହରଷିତ ॥୪୧୦
ଭୋ ମୁନିବର ଯୋଗେଶ୍ୱର ।
ମୋ' ମୋହବନ୍ଧ କଲ ଦୂର ॥୪୧୧
ଏବେ ନିଷ୍କାମଭାବ ମୁହିଁ ।
କି ରୂପେ କରିବି ଗୋସାଇଁ ॥୪୧୨
ତୋ' ସଙ୍ଗ ଛାଡିଲେ ଗୋସାଇଁ ।
ମୋ' ମନ ନରହିବ କାହିଁ ॥୪୧୩
ଏଥିକୁ କହିବା କାରଣ ।
ତୁମ୍ଭେ ସର୍ବଜ୍ଞ ସର୍ବଜାଣ ॥୪୧୪

କହିବା ମୋତେ ଦୟାଚିତ୍ତ ।
କେମନ୍ତେ ହେବି ବନ୍ଧମୁକ୍ତ ॥୪୧୫
ପ୍ରସନ୍ନେ କହ ମୁନିବର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୪୧୬
ଏମନ୍ତେ ତା'ର ବାକ୍ୟେ ତୋଷି ।
କହେ ନାରଦ ମହାଋଷି ॥୪୧୭
ନିରତେ ସାଧୁ-ସଙ୍ଗ ଯେବେ ।
ମନ ନିଶ୍ଚଳ ରହେ ତେବେ ॥୪୧୮
ଏ ବିନେ ଅନ୍ୟତ୍ର ରାଜନ ।
ନ ଦେଖି ମନ ସମାଧାନ ॥୪୧୯
ସେ ସାଧୁସଙ୍ଗ ସେବା ଫଳେ ।
ଜ୍ଞାନ-ଭକତି-ଯୋଗବଳେ ॥୪୨୦
ଜନ୍ମ-ବିନାଶ-ଲିଙ୍ଗ ତୋ'ର ।
ତେବେ ଛାଡିବ ନୃପବର ॥୪୨୧
ଅପରେ ନାହିଁ ମୋକ୍ଷ ଆର ।
ନ ଦେଖି ଶୁଣ ନୃପବର ॥୪୨୨
ତା' ଶୁଣି ପଚାରେ ନୃପତି ।
କିରୂପେ ସାଧୁଙ୍କୁ ସେବନ୍ତି ॥୪୨୩
କହ ବିଧାନ ମୁନିବର ।
ଅଳପେ ସାଧି ମୋକ୍ଷ-ଦ୍ୱାର ॥୪୨୪
ହସି ନାରଦ ମହାଋଷି ।
ତା' ବାକ୍ୟେ କହନ୍ତି ପ୍ରତୋଷି ॥୪୨୫
ଶୁଣ ରାଜନ ଶୁଦ୍ଧ-ଚିତ୍ତେ ।
ବିଧାନ କହିବା ଯୁଗତେ ॥୪୨୬
ଏ ସର୍ବ-ଚିନ୍ତା ପରିହର ।
ମନ-ଇନ୍ଦ୍ରିୟ ଦୃଢ଼େ ଧର ॥୪୨୭
ଏକାଗ୍ର-ଚିତ୍ତେ ତୁ ନିଶ୍ଚଳେ ।
ବସ ତୁ ହୃଦୟ-ନିର୍ମଳେ ॥୪୨୮
ଯେ ଧର୍ମାଚାର ସାଧୁଜନ ।
ସେ ଧର୍ମ କର ତୁ ରାଜନ ॥୪୨୯
ସାଧୁଙ୍କ ମୁଖୁଁ ହରିରସ ।
ଶ୍ରବଣ-ପୁଟେ କର ଗ୍ରାସ ॥୪୩୦
ସେ ନାମାମୃତ ପାନେ ମତ୍ତ ।
ଯେ ପ୍ରାଣୀ ଭଜେ ଅବିରତ ॥୪୩୧

ତା'ଙ୍କୁ ପ୍ରତୋଷ ସାଧୁଜନେ ।
ଯେଣୁ ଦୟାଳୁ ନିଷ୍କିଞ୍ଚନେ ॥୪୩୨
ସାଧୁଙ୍କ ସେବାକର୍ମ ଏହି ।
ଯେ କୃଷ୍ଣରସ ଆସ୍ୱାଦଇ ॥୪୩୩
ଏବେ ତୁ ଶୁଣ ମହୀପାଳ ।
କପିଳାଶ୍ରମେ ବେଗେ ଚଳ ॥୪୩୪
ସେ ମୁନିବର ଆଶ୍ରେ ତୋ'ର ।
ଖଣ୍ଡିବ ଜନ୍ମ-ବନ୍ଧ-ଘୋର ॥୪୩୫
ତା' ଶୁଣି ସତ୍ୱରେ ରାଜନ ।
ପୁତ୍ରକୁ ଡକାଇ ବହନ ॥୪୩୬
ରାଜ୍ୟ-ପାଳନେ ଆଜ୍ଞା ଦେଲା ।
ଦଣ୍ଡ-ଛତ୍ରାଦି ସମର୍ପିଲା ॥୪୩୭
ସେ ସର୍ବ ତେଜି ନୃପବର ।
ମୁନିଙ୍କି କହେ ଯୋଡିକର ॥୪୩୮
ଭୋମୁନି ଯେବେ ଆଜ୍ଞା ହୋଇ ।
ମୋ' ପତ୍ନୀ ପ୍ରବୋଧି ଆସଇ ॥୪୩୯
ରାଜ୍ୟ-ବିଭବ ଦେଇ ତା'ଙ୍କୁ ।
ନିଶ୍ଚିନ୍ତେ ଯିବଇଁ ବନକୁ ॥୪୪୦
ଏମନ୍ତ ବାକ୍ୟ ଶୁଣି ତା'ର ।
କୋପେ ବୋଲନ୍ତି ମୁନିବର ॥୪୪୧
ତୁ ବଡ ଅଜ୍ଞାନୀ ମୂରୁଖ ।
ନ ଜାଣୁ ପରଲୋକ ଦୁଃଖ ॥୪୪୨
ଏମନ୍ତ କହି ମୁନିବର ।
ଶ୍ୱାସ ଉପେକ୍ଷି ଚିନ୍ତାଭର ॥୪୪୩
ସେ ସ୍ତିରୀ ମୁଖାବଲୋକନ ।
କେ କାମୀ ତେଜିବ ଅଜ୍ଞାନ ॥୪୪୪
ଯହିଁ ଯୋଗୀନ୍ଦ୍ରେ ଭ୍ରମ ଯା'ନ୍ତି ।
ତା' ମୁଖୁଁ କେ ମୂଢ଼ ତରନ୍ତି ॥୪୪୫
ତୃଣାଦି ଯେହ୍ନେ ହୁତାଶନେ ।
ସ୍ମରଣେ ହୋନ୍ତି ଦହ୍ୟମାନେ ॥୪୪୬
ତେସନେ ସ୍ତିରୀ-ସଙ୍ଗ-ଦୋଷ ।
ଦେଖନ୍ତେ ଜ୍ଞାନ ହେବ ଧ୍ୱଂସ ॥୪୪୭
ଯେଣୁ ପ୍ରମଦା ନାମ ତା'ର ।
ତା' ମୁଖେ ପଡି କେ ନିସ୍ତାର ॥୪୪୮

Dr. Sudhanshu Sekhar Mishra

ଏମନ୍ତ କହି ଅନୁରାଗେ ।
ତା' କର ଧରି ମୁନି ବେଗେ ॥୪୪୯
ପଶ୍ଚିମ-ଦ୍ୱାର-ମାର୍ଗେ ନେଇ ।
ବାହାର କରି ବେଗେ ଦେଇ ॥୪୫୦
ତକ୍ଷଣେ ନିଜ-ଲୋକେ ଗଲେ ।
ବ୍ରହ୍ମାଙ୍କ ଛାମୁରେ ମିଳିଲେ ॥୪୫୧
ସେ ଯେ ପ୍ରାଚୀନ ନୃପବର ।
ମୁନିଙ୍କ ଭୟେ ଛନ୍ନାତୁର ॥୪୫୨
ପ୍ରବେଶ କପିଳଆଶ୍ରମେ ।
ଗମିଲା ପଥ ପଦ-ଶ୍ରମେ ॥୪୫୩
ସେ ମୁନିବର ପାଶେ ଯାଇ ।
ତପ ଆଚରି ଯୋଗ ଧ୍ୟାୟି ॥୪୫୪
ଏକାଗ୍ର-ଚିତ୍ତେ ମହାରାଜ ।
ଭଜିଲେ ହରି-ପାଦାମ୍ବୁଜ ॥୪୫୫

ମନ-ପବନ ଦୃଢ଼େ ଧରି ।
ସର୍ବ କୁସଙ୍ଗ ପରିହରି ॥୪୫୬
ସେ ହରି-ଚରଣ-ପ୍ରସନ୍ନେ ।
ଗମିଲେ ବୈକୁଣ୍ଠ ଭୁବନେ ॥୪୫୭
ଶୁଣ ବିଦୁର ଜ୍ଞାନମୟେ ।
ନାରଦ ନୃପରେ ସଦୟେ ॥୪୫୮
ପରୋକ୍ଷ-ବାଦେ ଆତ୍ମଜ୍ଞାନ ।
କହିଲେ ଦିବ୍ୟ-କଥା-ମାନ ॥୪୫୯
ଏହା ଯେ ଶ୍ରବଣ କରନ୍ତି ।
ଅଥବା ବଦନେ ଗୁଣନ୍ତି ॥୪୬୦
ସେ ସର୍ବେ ହୋନ୍ତି ମୋକ୍ଷ ପର ।
କହିଲୁ ବ୍ରହ୍ମତତ୍ତ୍ୱ-ସାର ॥୪୬୧
ଆତ୍ମା ବନ୍ଧନୁ ମୁକ୍ତ ହୋଏ ।
ଅଜ୍ଞାନେ ଗୃହବାସ ନୋହେ ॥୪୬୨

ପରୋକ୍ଷ ତତ୍ତ୍ୱଜ୍ଞାନ ସାର ।
ତୋ' ଆଗେ କହିଲୁ ବିଦୁର ॥୪୬୩
ଏବେ ଶ୍ରବଣେ କିବା ଇଚ୍ଛା ।
କହ ସଂଶୟ ତେଜି ବାଞ୍ଛା ॥୪୬୪
ଏମନ୍ତ ମୁନି ମୁଖୁଁ ଶୁଣି ।
ଶିରେ ନିବେଶି ବେନି-ପାଣି ॥୪୬୫
କହଇ ବିପ୍ର ଜଗନ୍ନାଥ ।
ମୈତ୍ରେୟ-ବିଦୁର-ଚରିତ ॥୪୬୬
ଚତୁର୍ଥ ସ୍କନ୍ଧେ ଏହୁ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୪୬୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ
ବିଦୁରମୈତ୍ରେୟ ସମ୍ବାଦେ
ପ୍ରାଚୀନବର୍ହି ନାରଦ ସମ୍ବାଦେନାମ
ଏକୋନତ୍ରିଂଶୋଽଧ୍ୟାୟଃ ॥

---

## ତ୍ରିଂଶ ଅଧ୍ୟାୟ

ବିଦୁର ଉବାଚ

ତଦନ୍ତେ ପଚାରେ ବିଦୁର ।
ଶୁଣ ମୈତ୍ରେୟ ମୁନିବର ॥୧
ତୁମ୍ଭେ ଯେ କହିଥିଲ ପୂର୍ବେ ।
ତପେ ପ୍ରଚେତା ଭାଇ ସର୍ବେ ॥୨
ସେମାନେ ରୁଦ୍ରଗୀତା ସ୍ତବେ ।
ହରି ଭଜିଲେ ଏକଭାବେ ॥୩
କହ ହେ ଦେବଗୁରୁ-ଶିଷ୍ୟ ।
ତାହାଙ୍କ ସିଦ୍ଧି ହେଲା କିସ ॥୪
ସେ ସର୍ବେ ବଡ଼ ଭାଗ୍ୟବନ୍ତ ।
ଦେଖିଲେ ଉମାଦେବୀକାନ୍ତ ॥୫
ସେ ତା'ଙ୍କୁ ରୁଦ୍ରଗୀତା ଦେଲେ ।
ସେ ତହିଁ ଯୋଗଶିକ୍ଷା କଲେ ॥୬
ହରିଙ୍କି ପାଇଲେ କେମନ୍ତେ ।
ଇହକାଳରେ କିବା ଅନ୍ତେ ॥୭

ଏ କଥା କହ ମୁନିବର ।
ତାହା ଶ୍ରବଣେ ଇଚ୍ଛା ମୋର ॥୮

ମୈତ୍ରେୟ ଉବାଚ

ଶୁଣ ବିଦୁର ସୁଚେତନ ।
ତଦନ୍ତେ ଯେବଣ ବିଧାନ ॥୯
ସେ ପିତାବାକ୍ୟେ ହୋଇ ତୋଷ ।
ତପ ସାଧନେ ଭାଇଦଶ ॥୧୦
ବାଟରେ ଭେଟିଲେ ଈଶାନ ।
ସେ ତା'ଙ୍କୁ ଦେଲେ ଦିବ୍ୟଜ୍ଞାନ ॥୧୧
ସେ ଦୀକ୍ଷା ପାଇ ଦଶଭାଇ ।
ସମୁଦ୍ରେ ପ୍ରବେଶିଲେ ଯାଇ ॥୧୨
ବୁଡିଣ ସମୁଦ୍ର ମଧ୍ୟରେ ।
ତପ ସାଧିଲେ ନିରାହାରେ ॥୧୩
ଅୟୁତ-ସମ୍ବତ୍ସର ଯାଏଁ ।
ତପ ସାଧିଲେ ଏକଠାଏଁ ॥୧୪

ତଦନ୍ତେ ଦେବ ନାରାୟଣ ।
ଦର୍ଶନ ଦେଲେ ତତକ୍ଷଣ ॥୧୫
ହରିଙ୍କ କାନ୍ତି ଶୋଭା କଳା ।
ତା' ଦେଖି ତା'ଙ୍କ ଦୁଃଖ ଗଲା ॥୧୬
ଖଗେନ୍ଦ୍ର-ପୃଷ୍ଠେ ଦିବ୍ୟଅଙ୍ଗେ ।
ଯେହ୍ନେ ଜୀମୂତ ମେରୁଶୃଙ୍ଗେ ॥୧୭
ପୀତବସନ ପରିଧାନ ।
ଯେହ୍ନେ ତଡିତେ ନବଘନ ॥୧୮
ଅତି ସୁନ୍ଦର ସୁଭୂଷଣ ।
ସୁଗ୍ରୀବେ ରତ୍ନମଣିଗଣ ॥୧୯
ରତ୍ନ ସମୂହେ ଶୁଦ୍ଧକାନ୍ତି ।
ସେ ଦିଗ ତିମିର ନାଶନ୍ତି ॥୨୦
ଶୋଭନେ ନାହିଁ ପଟାନ୍ତର ।
ଅଶେଷ-ଭୁବନ-ସୁନ୍ଦର ॥୨୧
ମକର-କୁଣ୍ଡଳ ଶ୍ରବଣେ ।
ଖଚିତ ନାନା ମଣିଗଣେ ॥୨୨

Dr. Sudhanshu Sekhar Mishra

କଞ୍ଜବଦନ ଶୋଭାକର ।
ଅନଙ୍ଗ-କୋଟି-ଦର୍ପହର ॥୨୩
ଶିରେ କିରୀଟ ଶୋଭମାନ ।
କାମ ନିନ୍ଦିତ ତନୁବର୍ଣ୍ଣ ॥୨୪
ଅଷ୍ଟ ଆୟୁଧ କରେ ଛନ୍ତି ।
ସେବକେ ସେବନ କରନ୍ତି ॥୨୫
ଦେବ-ସମୂହେ ମୁନିଜନେ ।
ସ୍ତୁବନ୍ତି ନିଗମ-ବଚନେ ॥୨୬
ଖଗେନ୍ଦ୍ର-ପକ୍ଷ-ନାଦ-ସ୍ୱର ।
ସୁର-ମୁନୀନ୍ଦ୍ର ମନୋହର ॥୨୭
ଶୁଭଇ ସାମଗାନ ପ୍ରାୟେ ।
ଶୁଣି କିନ୍ନରଜନ ମୋହେ ॥୨୮
ପୀନ ଆୟତ ଅଷ୍ଟଭୁଜ ।
ସୁର ଅଇରି ନାଶେ ବୀଜ ॥୨୯
ତା' ମେଧ୍ୟେ ଶୋହେ ବନମାଳ ।
ମଧୁ-ଲୋଭିତ ଭୃଙ୍ଗକୁଳ ॥୩୦
ଭ୍ରମିଣ ଗୁଞ୍ଜରନ୍ତି ପାଶେ ।
ଲୋଭିତ ମକରନ୍ଦ ଆଶେ ॥୩୧
ଶୋଭନେ ନାହିଁ ପଟାନ୍ତର ।
ମନ-ବଚନେ ଅଗୋଚର ॥୩୨
ନାହିଁ ପ୍ରତୁଲ୍ୟ ରୂପ ଶୋଭା ।
ଅଗ୍ରେ ହୋଇଲେ ଆସି ଉଭା ॥୩୩
ତାହାଙ୍କୁ ଦେଖି ଦଶଭାଇ ।
ଚରଣେ ପ୍ରଣମିଲେ ଯାଇ ॥୩୪
ସନ୍ତୋଷ ତା'ଙ୍କୁ ଦାମୋଦର ।
କହନ୍ତି ବଚନ ମଧୁର ॥୩୫

ଭଗବାନ ଉବାଚ

ଶୁଣ ହେ ନୃପତି-ନନ୍ଦନ ।
ତୁମ୍ଭରେ ହୋଇଲୁ ପ୍ରସନ୍ନ ॥୩୬
ଯେଣୁ କଠୋର-ତପ କଲ ।
ଏଣୁ ହୋଇବ ତୁମ୍ଭ ଭଲ ॥୩୭
ହେ ପୁତ୍ରେ ବରମାଗ ଦେବା ।
ଯେଣୁ ଆମ୍ଭରେ କଲ ସେବା ॥୩୮
ଯେଣୁ ଗୋବିନ୍ଦେ ଦଶଭାଇ ।
ସେବିଲ ଭେଦାଭେଦ ନୋହି ॥୩୯
ସମାନଧର୍ମ ସମଶୀଳ ।
ଏଣୁ ଆମ୍ଭଙ୍କୁ ତୋଷ କଲ ॥୪୦
ତୁମ୍ଭର ଗୁଣ-କୀର୍ତ୍ତି-ଯଶ ।
ଶ୍ରବଣେ କଳୁଷ ବିନାଶ ॥୪୧
ଯେ ନର ଶଯ୍ୟାରୁ ଉଠିଣ ।
ତୁମ୍ଭରେ କରିବ ସ୍ମରଣ ॥୪୨
ନୋହିବ ତା'ଙ୍କ ଭାଇ ଭେଦ ।
ସେମାନେ ନ ପାଇବେ ଖେଦ ॥୪୩
ସକଳ-ଭୂତେ ସମଭାବ ।
ଖଣ୍ଡିବେ ଦୁଃଖ-ପରାଭବ ॥୪୪
ଯେ ନିତ୍ୟେ ପ୍ରଭାତ-ସନ୍ଧ୍ୟାରେ ।
ଏ ରୁଦ୍ରଗୀତା ସ୍ତବକରେ ॥୪୫
ମୁଁ ତା'ରେ ଦେଇ କାମ୍ୟବର ।
ଶୋଭନ ହେବ ମତି ତା'ର ॥୪୬
ଯେଣୁ ଏ ତୁମ୍ଭେ ଦଶଭାଇ ।
ପିତାର ଆଜ୍ଞା ଶିରେ ବହି ॥୪୭
ସନ୍ତୋଷେ ତପ ଆଚରିଲ ।
ଏଣୁ ଲଭିବ କୀର୍ତ୍ତି ଭଲ ॥୪୮
ବିମଳ ସୁଯଶ ତୁମ୍ଭର ।
ବିଖ୍ୟାତ ରହିବ ସଂସାର ॥୪୯
ତଦନ୍ତେ କିଛିକାଳ ଅନ୍ତେ ।
ଏ ତୁମ୍ଭ ପତ୍ନୀ ଗର୍ଭଗତେ ॥୫୦
ହୋଇବ ଏକଇ ତନୟ ।
ସେ ହେବ ବ୍ରହ୍ମଗୁଣମୟ ॥୫୧
ଯେ ପୁତ୍ର ଆତ୍ମବୀର୍ଯ୍ୟବଳେ ।
ପୂରିବ ଏ ଲୋକ ଶୟଳେ ॥୫୨
ବଂଶର ସଂଖ୍ୟା ତ ନ ଥିବ ।
ସୃଷ୍ଟି ସୃଜନ ତେବେ ହେବ ॥୫୩
ଯେ କନ୍ୟା ବିଭା ହେବ ତୁମ୍ଭେ ।
କହିବା ତା'ର ଜନ୍ମ ଏବେ ॥୫୪
ଶୁଣ ହେ ନୃପତିନନ୍ଦନେ ।
ସେ କଣ୍ଡୁଋଷି ତପୋବନେ ॥୫୫
ତପ ସାଧନ ମୋକ୍ଷ ଆଶେ ।
ବସି ନିର୍ଜନ-ଘୋର-ଦେଶେ ॥୫୬
ତାଙ୍କ ଆଶ୍ରମ ଅନୁସରି ।
ଆଇଲା ଏକଇ ସୁନ୍ଦରୀ ॥୫୭
ପ୍ରମ୍ଳୋଚା ନାମ ଯେ ତାହାର ।
ଅପ୍ସରାଗଣେ ଶ୍ରେଷ୍ଠ ସାର ॥୫୮
ତାହାଙ୍କୁ ଦେଖି ମୁନିବର ।
ଅନଙ୍ଗେ ହୋଇଲେ ଅସ୍ଥିର ॥୫୯
ଛାଡି ତପସ୍ୟା ଆଦି ଧ୍ୟାନ ।
ତା' ରୂପେ ପାଶୋରିଲେ ଜ୍ଞାନ ॥୬୦
ତା'ର ସଙ୍ଗତେ ମୁନିବର ।
ଗୃହସ୍ଥଧର୍ମେ ସୁବିଚାର ॥୬୧
ବଞ୍ଚିଲେ କାମଭୋଗେ ତୋଷେ ।
ଅଜ୍ଞାନେ ଇନ୍ଦ୍ରିୟ-ଅବଶେ ॥୬୨
ଏମନ୍ତେ କିଛି କାଳନ୍ତରେ ।
ଅମୋଘ-ବୀର୍ଯ୍ୟ ତା' ଉଦରେ ॥୬୩
ରହିଲା କାଳ-କର୍ମ ଫଳେ ।
ବିଧି-ସଂଯୋଗେ କର୍ମବଳେ ॥୬୪
ତାହାର ଗର୍ଭେ ଏକକନ୍ୟା ।
ହୋଇଲା ରୂପଗୁଣେ ଧନ୍ୟା ॥୬୫
କନ୍ୟାକୁ ଛାଡି ସେ ସୁନ୍ଦରୀ ।
ତକ୍ଷଣେ ଗଲା ନିଜ ପୁରୀ ॥୬୬
ସେ ବନେ ଯେତେ ବୃକ୍ଷ ଥିଲେ ।
ସର୍ବେ କନ୍ୟାକୁ ଘେନିଗଲେ ॥୬୭
ସେ କନ୍ୟା କ୍ଷୁଧାର ବିକଳେ ।
ରୋଦନ କରେ ବୃକ୍ଷମୂଳେ ॥୬୮
ତାହାକୁ ଦେଖି ନିଶାକର ।
ଦୟା ବସିଲା ତା' କଣ୍ଠର ॥୬୯
ତର୍ଜନୀ ଅଙ୍ଗୁଳି ତାଙ୍କର ।
ତା' ମୁଖେ ଦେଲେ ନିଶାକର ॥୭୦
ଚନ୍ଦ୍ରର କରେ ସୁଧା ଥିଲା ।
ତା' ପାନେ କ୍ଷୁଧା ଦୂର ହେଲା ॥୭୧
ଏମନ୍ତେ ସେ ବନେ ସୁନ୍ଦରୀ ।
ରହିଲା କର୍ମ ଅନୁସରି ॥୭୨

Dr. Sudhanshu Sekhar Mishra

ସେ ଗୁଣବତୀ କନ୍ୟାସାର ।
ତା' ଅନୁରୂପେ ତୁମ୍ଭେ ବର ॥୭୩
ଆମ୍ଭର ଭକ୍ତ ତୁମ୍ଭ ପିତା ।
ସୃଷ୍ଟି-ସର୍ଜନେ କରି ଚିନ୍ତା ॥୭୪
ଏଣୁ ତୁମ୍ଭଙ୍କୁ ଆଜ୍ଞା ଦେଲେ ।
ଏ ସୃଷ୍ଟିକର ତୁମ୍ଭେ ଭଲେ ॥୭୫
ଏଣୁ ଯେ ତୁମ୍ଭେ ଦଶଭାଇ ।
ସେ କନ୍ୟା ବିଭା ହୁଅ ଯାଇ ॥୭୬
ସମାନଧର୍ମୀ ତୁମ୍ଭେମାନେ ।
ଏ ମୋର ବାକ୍ୟେ ତୋଷମନେ ॥୭୭
ସେ କନ୍ୟା ତୁଲେ ସୃଷ୍ଟିକର ।
ସେ ଯୋଗ୍ୟ ଅଟଇ ତୁମ୍ଭର ॥୭୮
ସହସ୍ରବର୍ଷ ଦେବମାନେ ।
ଜୀବିତେ ରହ ସୁକଲ୍ୟାଣେ ॥୭୯
ପୃଥିବୀ ମୁଖେ ଭୋଗକର ।
ତ୍ରିବିଧତାପ ପରିହର ॥୮୦
ମୋ ପାଦେ କରିବ ଭକତି ।
ବୈକୁଣ୍ଠେ ଲଭିବ ବସତି ॥୮୧
ଏ କର୍ମବନ୍ଧ ବିନାଶିବ ।
ବିଷୟଭୋଗ ନ ଲାଗିବ ॥୮୨
ଭୋଗାନ୍ତେ ମୋକ୍ଷ ଦଶଭାଇ ।
ହେବ ସଂଶୟ ଏଥି ନାହିଁ ॥୮୩
ଏ ଗୃହଧର୍ମେ ବସ୍ତୁ ଯେତେ ।
ମୋତେ ସମର୍ପି ଶୁଦ୍ଧଚିତ୍ତେ ॥୮୪
ଉଦାସୀଜନ ପ୍ରାୟ ହୋଇ ।
ମୋର ଭକତି ହୃଦେ ଧ୍ୟାୟି ॥୮୫
ମୁଁ ବ୍ରହ୍ମ ପରମ ପୁରୁଷ ।
ସକଳଘଟେ ମୋ' ପ୍ରକାଶ ॥୮୬
ଯେ ମୋର ଭକତି ଲଭନ୍ତି ।
ସେ ଆର କିଛି ନ ଜାଣନ୍ତି ॥୮୭
ତାଙ୍କୁ ନ ଲାଗେ ମାୟାମୋହ ।
ଛିଡେ ଦୁର୍ଜୟ-ବନ୍ଧ-ସ୍ନେହ ॥୮୮
ତାହାଙ୍କୁ ଗୃହ ନ ଲାଗଇ ।
ମୋ ଭକ୍ତିବଳେ ନିସ୍ତରଇ ॥୮୯

ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁର ।
ଏମନ୍ତ କହନ୍ତେ ଈଶ୍ୱର ॥୯୦
ଅଞ୍ଜଳି କରି ଦଶଭାଇ ।
ପ୍ରଣାମ କରନ୍ତି ବିନୋୟି ॥୯୧
ଶ୍ରୀମୁଖ ନିରେଖି ଚାହିଁଲେ ।
ଆନନ୍ଦସାଗରେ ବୁଡ଼ିଲେ ॥୯୨
ଦୂ ରତ ହେଲା ରଜ ତମ ।
ଖଣ୍ଡିଲେ ବିଷୟ ବିଭ୍ରମ ॥୯୩
ସଂଭ୍ରମେ ନ ପାରନ୍ତି ଚାହିଁ ।
ରୋମ ପୁଲକେ ଅଶ୍ରୁ ଦେହୀ ॥୯୪
ଆନନ୍ଦ ସାଗରେ ବୁଡ଼ିଣ ।
କହନ୍ତି ଗଦ୍‌ଗଦ ବଚନ ॥୯୫
ଦେହ ଜୀବନ ପାଶୋରିଲେ ।
ଚରଣ-ପଙ୍କଜେ ନମିଲେ ॥୯୬
ସ୍ତୁତି କରଣେ ଶକ୍ୟ ନୋହି ।
ପ୍ରେମ ଆନନ୍ଦେ ପୂର୍ଣ୍ଣ ଦେହୀ ॥୯୭
ସ୍ତୁତି କରନ୍ତି ଏକେ ଏକେ ।
ବାକ୍ୟେ ନ ସ୍ଫୁରେ ଅଶ୍ରୁଦକେ ॥୯୮

ପ୍ରଚେତଗଣ ଉବାଚ

ନମସ୍ତେ ପ୍ରଭୁ ନାରାୟଣ ।
ଅଶେଷ ଦୁଃଖ ନିବାରଣ ॥୯୯
ଉଦାର ଗୁଣ ଯେ ତୁମ୍ଭର ।
ତୋ' ନାମ ବେଦେ ଅଗୋଚର ॥୧୦୦
ତୁମ୍ଭର ବେଗ ବଳବନ୍ତ ।
ମନ-ବଚନେ ନୋହେ ଅନ୍ତ ॥୧୦୧
ଇନ୍ଦ୍ରିୟଗଣ ନ ଜାଣନ୍ତି ।
କି ରୂପେ ଜାଣିବେ ତୋ' ଗତି ॥୧୦୨
ଏମନ୍ତ ପ୍ରଭୁ ଯେ ଈଶ୍ୱର ।
ସେ ପାଦେ ଆମ୍ଭ ନମସ୍କାର ॥୧୦୩
ତୁମ୍ଭେ ବିଶୁଦ୍ଧ ଶାନ୍ତରୂପେ ।
ବସ ନିର୍ମଳ-ମନ-କୂପେ ॥୧୦୪
ନମସ୍ତେ ପ୍ରଭୁ ଭଗବାନ ।
ଏ ଭବୁ କର ପରିତ୍ରାଣ ॥୧୦୫
ଜଗତ ଉଦେ ସ୍ଥିତି ଲୟେ ।
ହୋଇ ଯେ ଅଛି ଗୁଣମୟେ ॥୧୦୬
ମାୟା-ଗୁଣରୁ ରୂପ ଧରି ।
ସୃଷ୍ଟି ସର୍ଜନେ ଅଧିକାରୀ ॥୧୦୭
ନୋହିଲେ ତୁମ୍ଭେ ଶୁଦ୍ଧସତ୍ତ୍ୱ ।
କେହି ନ ପାନ୍ତି ତୁମ୍ଭ ତତ୍ତ୍ୱ ॥୧୦୮
ନମୋ ଶ୍ରୀକୃଷ୍ଣ ବାସୁଦେବ ।
ସକଳ-ସାତ୍ୱତ-ପ୍ରଭବ ॥୧୦୯
କମଳନାଭିଟି ଯାହାର ।
ସେ ପାଦେ ମୋର ନମସ୍କାର॥୧୧୦
ନମସ୍ତେ କମଳମାଳିନେ ।
ପଙ୍କଜଲୋଚନ-ଚରଣେ ॥୧୧୧
କମଳ-କିଞ୍ଜଳ୍କ ଯେସନ ।
ନିର୍ମଳ-ବସନ ତେସନ ॥୧୧୨
ସେ ପୀତବାସଙ୍କୁ ନମଇଁ ।
ଚରଣେ ପରିମୁଣ୍ଡା ଯାଇ ॥୧୧୩
ସକଳଭୂତେ ଯା'ର ବାସ ।
ସେ ସାକ୍ଷୀ ରୂପେ ସୁପ୍ରକାଶ ॥୧୧୪
ସେ ରୂପ ଭାବି ପ୍ରଣମିଲୁ ।
ଯେଣୁଟି ଦର୍ଶନ ଲଭିଲୁ ॥୧୧୫
ଭୋ ପ୍ରଭୁ ତୁମ୍ଭେ ଭଗବାନ ।
ଏ ଦୟା କରିବ କେ ଆନ ॥୧୧୬
ଆମ୍ଭଙ୍କୁ ଏ ରୂପ ଦେଖାଇ ।
ଦୁରିତଖଣ୍ଡିଲ ଗୋସାଇଁ ॥୧୧୭
ଏ ରୂପ ଯେ କରେ ଦର୍ଶନ ।
ସେ ଦୁଃଖେ ନୁହଁନ୍ତି ଭାଜନ ॥୧୧୮
ଭୋନାଥ ମହିମା ତୋ' ଯେତେ
ଦେଖିଲୁ ପ୍ରଭୁପଣ ତେତେ ॥୧୧୯
ବୁଝିଲୁ ତୁମ୍ଭେ ଦୟାସିନ୍ଧୁ ।
ଯେ ହୀନ-ଦୀନଜନ-ବନ୍ଧୁ ॥୧୨୦
ଆମ୍ଭେ ଯେ ଅତି ଦୀନହୀନ ।
ଆମ୍ଭଙ୍କୁ କର ନିସ୍ତାରଣ ॥୧୨୧

Dr. Sudhanshu Sekhar Mishra

ଯେଉଁ ସ୍ମରଣେ ଆହେ ନାଥ ।
ସୁଶାନ୍ତି ଲଭି ସୁଖ ଜାତ ॥୧୨୨
ବୁଝିଲୁ ତୁମ୍ଭେ ଦୂରେ ନାହିଁ ।
ହୃଦୟପଦ୍ମେ ଗୁପ୍ତେ ଥାଅ ॥୧୨୩
ଏଣୁ ଭକତ-ଚିତ୍ତ-କଥା ।
ଜାଣିଣ ପାଅ ମନେ ବ୍ୟଥା ॥୧୨୪
ଯେଣୁ ତୋ ସର୍ବଘଟେ ବାସ।
ଭକ୍ତ ଡାକିଲେ ଶୀଘ୍ର ଆସ ॥୧୨୫
ଭୋ ନାଥ ଜଗତଗୋସାଇଁ ।
ଏଣୁ ଉଭାରେ ବର ନାହିଁ ॥୧୨୬
ତୁମ୍ଭେ ଜଗତ-ଗୁରୁ-ପତି ।
ପ୍ରସନ୍ନ ହୋଇଲ ତଡ଼ତି ॥୧୨୭
ଏ ବର ହେବ କି ଆମ୍ଭର ।
ଭୋ ନାଥ ତୁମ୍ଭେ କୃପାକର ॥୧୨୮
ତୁମ୍ଭ ବିଭୂତି ଅନ୍ତନାହିଁ ।
ଏଣୁ ଅନନ୍ତ ନାମକହି ॥୧୨୯
ପାରିଜାତକ ପୁଷ୍ପ ପାଇ ।
ସାରଙ୍ଗ ଅନ୍ୟ କି ଲୋଡଇ ॥୧୩୦
ଲଭିଣ ତୋ' ପାଦକମଳ ।
ଅନ୍ୟ ଏ ବରେ କିବା ଫଳ ॥୧୩୧
ଭୋ ନାଥ ନିବେଦୁଁ ଛାମୁରେ ।
ଏ ଆଜ୍ଞା ହେବ କି ଆମ୍ଭରେ॥୧୩୨
ଯାବତ ତୁମ୍ଭ ମାୟା ଘେନି ।
ଜନ୍ମ ଲଭିବୁ ନାନା ଯୋନି ॥୧୩୩
ସ୍ୱକର୍ମବଶେ ଦେହ ବହି ।
ଭୋଗ ନ କଲେ ନାଶ ନୋହି ॥୧୩୪
ନିଜସ୍ୱ କର୍ମ ଭୁଞ୍ଜୁଥିବୁ ।
ତୋ' ସଙ୍ଗୀ ସଙ୍ଗତ ଲଭିବୁ ॥୧୩୫
ସୁକର୍ମ ସୁଯଜ୍ଞ ସୁଦାନ ।
ତୋ' କଥାମୃତ ନିତ୍ୟେ ପାନ ॥୧୩୬
ସୁତୀର୍ଥେ ସୁବିପ୍ରଙ୍କ ଗୋଷ୍ଠୀ ।
ତୋ' ସେବା ସ୍ମରଣ ମୁକତି ॥୧୩୭
ତୋ' ଭକ୍ତସଙ୍ଗର ମହିମା ।
କେ ଜାଣିପାରେ ଗୁଣସୀମା ॥୧୩୮

ସେ ସଙ୍ଗୁ ଯେବା ସୁଖ ହୋଇ ।
ସେ ସୁଖ ସ୍ୱର୍ଗେ ଅଛି କାହିଁ ॥୧୩୯
ଯହିଁ ମୁକତି ତୁଲ୍ୟ ନୋହେ ।
ମନୁଷ୍ୟ ସୁଖ କାହିଁ ରହେ ॥୧୪୦
ଆମ୍ଭେ ବୁଝିଲୁ ଅନୁଭବେ ।
ସାଧୁ-ସଙ୍ଗମେ ସୁଖ ଲଭେ ॥୧୪୧
ତା' ତୁଲେ ନୋହେ ସ୍ୱର୍ଗ-ମୋକ୍ଷ।
ଏ ମର୍ତ୍ତ୍ୟଭୋଗ ଅତି ତୁଚ୍ଛ ॥୧୪୨
ଯେ ଠାରେ ସାଧୁଏ ବସନ୍ତି ।
ଯେ ନିତ୍ୟେ ହରି-ଯଶ ଗା'ନ୍ତି ॥୧୪୩
ତୋ' ଅବତାର ପୁଣ୍ୟ ଯଶ ।
ଯେ ଯଶେ କଲୁଷ ବିନାଶ ॥୧୪୪
ଗାବନ୍ତି ତୋ' ନାମ ଚରିତ ।
ତୋ ଯଶ-କର୍ମ ଅବିରତ ॥୧୪୫
ଯେ ତାହା ପିବେ ଶ୍ରୁତିଦ୍ୱାରେ।
ଜ୍ଞାନେ ଅଜ୍ଞାନେ ପାପ ହରେ॥୧୪୬
ତେବେ ବିଷୟ ଶାନ୍ତ ହୋଏ।
ଜୀବେ ବଇରୀଭାବ ନୋହେ ॥୧୪୭
ଅହିଂସା-ଧର୍ମ ହୋଏ ଜାତ ।
ତହୁଁ ଉଦ୍ବେଗ ନୋହେ ଚିତ୍ତ ॥୧୪୮
ଯେ ହରିଦାସଙ୍କର ଗତି ।
ଯା' ପାଦେ ଭକତେ ସେବନ୍ତି ॥୧୪୯
ସଙ୍ଗ ଉପେକ୍ଷି ସାଧୁଜନେ ।
ଏକାନ୍ତେ ଥା'ନ୍ତି ତୁମ୍ଭ ଧ୍ୟାନେ ॥୧୫୦
ସେ ନିତ୍ୟେ ଭୂମି ପର୍ଯ୍ୟଟନ୍ତି ।
ଭ୍ରମିଣ ପ୍ରାଣୀ ନିସ୍ତାରନ୍ତି ॥୧୫୧
ତୀର୍ଥାଦି କରନ୍ତି ପବିତ୍ର ।
ଏମନ୍ତ ସାଧୁଙ୍କ ଚରିତ ॥୧୫୨
ତାହାଙ୍କ ଦର୍ଶନ ଯାହାଙ୍କୁ ।
ନ ରୁଚେ କହିବା ଆମ୍ଭଙ୍କୁ ॥୧୫୩
ତୁମ୍ଭର ପ୍ରିୟସଖା ରୁଦ୍ର ।
ସେ ପ୍ରଭୁ ଦୟାର ସମୁଦ୍ର ॥୧୫୪
ପାଇଲୁ ତା'ଙ୍କ ସଙ୍ଗ ଯେଣୁ ।
ତେଣୁ ତରିଲୁ ଘୋରବଣୁ ॥୧୫୫

ସେ ସାଧୁସଙ୍ଗ ଭାଗ୍ୟେ କରି।
ତୋତେ ଦେଖିଲୁ ନରହରି ॥୧୫୬
ଏ ଭବ-ବ୍ୟାଧି ମହାଘୋର ।
ଚିକିତ୍ସା ନାହିଁ ଯେ ଏଥିର ॥୧୫୭
ଏଥକୁ ବୈଦ୍ୟ ଅଟ ତୁମ୍ଭେ ।
ଏଣୁ ଆଶ୍ରୟ କଲୁ ଆମ୍ଭେ ॥୧୫୮
ତୋହର ନାମ ଦୀନବନ୍ଧୁ ।
ତୁହି କରୁଣାମୟ ସିନ୍ଧୁ ॥୧୫୯
ଆମ୍ଭେ ଯେ ଦୀନ ଅଭାଜନ ।
ପଶିଲୁ ତୋ' ପାଦେ ଶରଣ ॥୧୬୦
ରଖ ନ ରଖ ଭାବଗ୍ରାହୀ ।
ତୋ' ବିନୁ ଅନ୍ୟ ଗତି ନାହିଁ॥୧୬୧
ତୋର ପ୍ରସନ୍ନେ ଭଗବାନ ।
କେବଳ ଆମ୍ଭର ଜୀବନ ॥୧୬୨
ଏ ଚତୁର୍ବର୍ଗ ଆଶ୍ରେ ଯହିଁ ।
ଅନ୍ୟତ୍ର ତୋଷେ ଶକ୍ୟ ନାହିଁ ॥୧୬୩
ଏଣୁ ଯେ ତୋ' ପାଦକମଳେ।
ଶରଣାଶ୍ରିତ ଏ ଶୟଳେ ॥୧୬୪
ସେ କାଳଦଣ୍ଡ ପରିହରେ ।
ଆନନ୍ଦ-ସାଗରେ ବିହରେ ॥୧୬୫
ଭେନାଥ ଆମ୍ଭେ ଦଶଭାଇ ।
ବେଦ ପଢ଼ିଲୁ ଯେତେଠାଇଁ ॥୧୬୬
ଗୁରୁଙ୍କ ଚରଣ ପୂଜିଲୁ ।
ବୃଦ୍ଧ-ବ୍ରାହ୍ମଣ ସେବା କଲୁ ॥୧୬୭
ଅହିଂସା ଧର୍ମ ବ୍ୟବହାରେ ।
ବନ୍ଧୁଙ୍କୁ ତୋଷିଲୁ ସଂସାରେ ॥୧୬୮
ଅନେକ କାଳ ସିନ୍ଧୁଜଳେ ।
ତପସ୍ୟା କଲୁ ନିରାହାରେ ॥୧୬୯
ଯେତେକ କଷ୍ଟେ ତପ କଲୁ ।
ତୋ' ପାଦେ ଏହା ସମର୍ପିଲୁ॥୧୭୦
ଗୁରୁସେବନ ଆଦି ଯେତେ ।
ତୁମ୍ଭ ପ୍ରତୋଷେ ହେଉ ନିତ୍ୟେ॥୧୭୧
ଆମ୍ଭର ବର ପ୍ରଭୁ ଏହି ।
ଆବର ବରେ ଇଚ୍ଛା ନାହିଁ ॥୧୭୨

Dr. Sudhanshu Sekhar Mishra

ମନୁ ବିଧାତା ରୁଦ୍ର ଆଦି ।
ଅପରେ ଯେତେ ଶୁଦ୍ଧବୁଦ୍ଧି ॥୧୭୩
ତୁମ୍ଭ ମହିମା ଅନ୍ତ କେହି ।
ଏ ଦେଖି ନ ପାରିଲେ ଯହିଁ ॥୧୭୪
ସେ ତୁମ୍ଭ ରୂପ ଧ୍ୟାଉଥା'ନ୍ତି ।
ହୃଦୟ-କମଳେ ଭାବନ୍ତି ॥୧୭୫
ସେ ସର୍ବେ ଜ୍ଞାନର ସାଗର ।
ସ୍ତବନ କରନ୍ତି ତୁମ୍ଭର ॥୧୭୬
ଆମ୍ଭେ ବାଳକ ଜ୍ଞାନହୀନ ।
ବିଦ୍ୟାରେ ନୋହିଛୁ ପ୍ରବୀଣ ॥୧୭୭
ତଥାପି ଜ୍ଞାନ ଅନୁସାରେ ।
ମନ ଅର୍ପିଲୁ ତୁମ୍ଭଠାରେ ॥୧୭୮
ସେ ଦୋଷ କ୍ଷମ କୃପାଦେହୀ।
ତୁମ୍ଭେ କେବଳ ଭାବଗ୍ରାହୀ ॥୧୭୯
ନମସ୍ତେ ପ୍ରଭୁ ଶୁଦ୍ଧସମ ।
ପରମ-ପୁରୁଷ-ଉତ୍ତମ ॥୧୮୦
ତୁମ୍ଭେ ଯେ ସତ୍ୟ ବାସୁଦେବ ।
ଆମ୍ଭଙ୍କୁ ଅନୁଗ୍ରହ ଥିବ ॥୧୮୧
ତୁମ୍ଭ ଚରଣେ ପ୍ରଣମିତ ।
ଆମ୍ଭଙ୍କୁ ରଖ ଜଗନ୍ନାଥ ॥୧୮୨

ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁରେ ।
ଏମନ୍ତେ ପ୍ରଭୁଙ୍କ ଛାମୁରେ ॥୧୮୩
ସ୍ତୁତି ପଠନେ ଦଶଭାଇ ।
ଶୁଣି ସନ୍ତୋଷ ଭାବଗ୍ରାହୀ ॥୧୮୪
ସେ ସର୍ବେ ହରି ରୂପ ଚାହିଁ ।
ସନ୍ତୋଷ ନ ଭଜିଲେ କେହି ॥୧୮୫
ମନଆନନ୍ଦେ ସେ ଭାବନ୍ତି ।
ଏ ରୂପେ ହରି ଯେବେ ଥା'ନ୍ତି॥୧୮୬
ସତୃଷ୍ଣ-ନୟନେ ଦେଖିବା ।
ନିରତେ ଚରଣେ ସେବିବା ॥୧୮୭
ଏମନ୍ତେ ସେ ବାଞ୍ଛନ୍ତେ ମନ ।
ହରି ହୋଇଲେ ଅନ୍ତର୍ଦ୍ଧାନ ॥୧୮୮

ସେ ଯେ ପ୍ରଚେତା ଭାଇଦଶ।
ଆକୁଳେ ଚାହିଁ ଦଶଦିଶ ॥୧୮୯
ନ ଦେଖି ପ୍ରଭୁ ଚକ୍ରଧର ।
ସେ ଦିଗେ କରି ନମସ୍କାର ॥୧୯୦
ବିଚ୍ଛେଦ-ଶୋକେ ନିମଜ୍ଜିଲେ।
ସେ ଦୁଃଖସାଗରେ ବୁଡିଲେ ॥୧୯୧
ପଡିଲେ ମୃତ୍ୟୁତୁଲ୍ୟ ଜାଣି ।
ସେ ହରି ବିଚ୍ଛେଦେ ଧରଣୀ ॥୧୯୨
ଆତ୍ମାବିହୀନେ ଯେହ୍ନେ ଦେହୀ।
ଶୂନ୍ୟ ପ୍ରକାଶେ ସର୍ବଠାଇଁ ॥୧୯୩
ପୁଣି ସଚେତ ଜ୍ଞାନ ପାଇ ।
ଜଳୁ ଉଠିଲେ ଦଶଭାଇ ॥୧୯୪
ଧୀରେ ଚାହାଁନ୍ତେ ଦଶଦିଗ ।
ଦ୍ରୁମେ ଆଚ୍ଛନ୍ନ ଭୂମିଭାଗ ॥୧୯୫
ଆକାଶ-ଘୋଟି ବେଢିଛନ୍ତି ।
ଦେଖିଣ ପ୍ରକୋପେ ଜଳନ୍ତି ॥୧୯୬
ସର୍ବେ ବିଚାରି ଏକମନେ ।
ବୃକ୍ଷ ନ ରଖିବା ଭୁବନେ ॥୧୯୭
ଅଗ୍ନି-ପବନ ବେଗେ ଦୁଇ ।
ମୁଖରୁ ଜାତ କଲେ ସେହି ॥୧୯୮
ସେ ଅଗ୍ନି ପବନେ ବଢ଼ିଲା ।
ସକଳ ଦ୍ରୁମ ଭସ୍ମକଲା ॥୧୯୯
ଅନଳ ଅନିଳ ପ୍ରତାପେ ।
ଅତି ଉତ୍ସର୍ଗେ ଧୂମ ବ୍ୟାପେ ॥୨୦୦
ବ୍ରହ୍ମାଣ୍ଡ-ଘୋଟେ ଅନ୍ଧକାର ।
ଅଦୃଶ୍ୟ ଚନ୍ଦ୍ର ଦିବାକର ॥୨୦୧
ତା' ଦେଖି ବେଗେ ପିତାମହ।
ଜାଣିଲେ ଗଲା ମହୀରୁହ ॥୨୦୨
ନିଜଲୋକରୁ ବିଜେ କଲେ ।
ସେ ଦ୍ରୁମ ବିନାଶୁଁ ରଖିଲେ ॥୨୦୩
କ୍ରୋଧସାନ୍ତ୍ୱନା କରି ତା'ଙ୍କ ।
ପ୍ରବୋଧି କହିଲେ ଅନେକ ॥୨୦୪
ହେ ପ୍ରଚେତସଗଣେ ଶୁଣ ।
ବୃକ୍ଷେ ହୋଇଲେ ଅତି କ୍ଷୀଣ॥୨୦୫

ତୁମ୍ଭେ ଯେ ଅଟ ସର୍ବଜ୍ଞାନୀ ।
କପାଁ କରୁଛ ସୃଷ୍ଟି ହାନି ॥୨୦୬
ତୁମ୍ଭେ ପାଳନେ ପ୍ରଜାପତି ।
ପ୍ରାଣୀଙ୍କ ହିତେ ଉତପତ୍ତି ॥୨୦୭
ଏବେ ଯେତେକ ବୃକ୍ଷ ଶେଷ ।
ରହନ୍ତୁ ଯାଇ ବନଦେଶ ॥୨୦୮
ବୃକ୍ଷଙ୍କୁ ଡାକି ପଦ୍ମଯୋନି ।
ବୋଇଲେ କନ୍ୟା ଆସ ଘେନି ॥୨୦୯
ଦଶଭାଇଙ୍କି କନ୍ୟା ଦେଇ ।
ନିର୍ଭୟେ ବନେ ରହ ଯାଇ ॥୨୧୦
ପାଦପେ ବିଧି-ବାକ୍ୟ ଶୁଣି ।
ତାହାଙ୍କୁ କନ୍ୟା ଦେଲେଆଣି ॥୨୧୧
ସେ କନ୍ୟା ନାମ ଯେ ମାରିଷା।
ପଦ୍ମଲୋଚନୀ ପିକଭାଷା ॥୨୧୨
ସୁଚାରୁ ତନୁ ଚନ୍ଦ୍ରାନନୀ ।
ଦେଖି ମୋହିତ ସୁର ମୁନି ॥୨୧୩
ଭ୍ରୂଭଙ୍ଗଯୁଗଳ ସୁନ୍ଦର ।
ଅତନୁ-ଚାପ-ପ୍ରଭାହର ॥୨୧୪
ଅପାଙ୍ଗେ ମୁନି-ମନ-ମୋହେ।
ତା' ରୂପେ ରତି ସମ ନୋହେ॥୨୧୫
ସେ ସର୍ବଲକ୍ଷଣେ ସୁନ୍ଦର ।
ତା ତୁଲ୍ୟ ନାହିଁ ପଟାନ୍ତର ॥୨୧୬
ବିଧି ବୋଇଲେ ପ୍ରଚେତସ ।
ଏ କନ୍ୟା ବର ତୁମ୍ଭେ ଦଶ ॥୨୧୭
ଏ ପତ୍ନୀଗର୍ଭରେ ତୁମ୍ଭର ।
ହୋଇବ ଯେବଣ କୁମର ॥୨୧୮
ସେ ପୁତ୍ର ହେତୁ ଏ ଜଗତେ।
ପ୍ରଜା ହୋଇବେ ଅପ୍ରମିତେ ॥୨୧୯
ତୁମ୍ଭର ହେବ ପଉରୁଷ ।
ସଂସାରେ ଆଚ୍ଛାଦିବ ଯଶ ॥୨୨୦
ଏମନ୍ତ ଧାତାର ବଚନେ ।
ସନ୍ତୋଷ ଭଜିଲେ ସେମାନେ॥୨୨୧
ତକ୍ଷଣେ କନ୍ୟାକୁ ବରିଲେ ।
ବିଧାତା ନିଜପୁରେ ଗଲେ ॥୨୨୨

Dr. Sudhanshu Sekhar Mishra

ତଦନ୍ତେ ସେ ଯେ ଦଶଭାଇ ।
ବସିଲେ ନୃପାସନେ ଯାଇ ॥ ୨ ୨ ୩
ଯେ ବିଷ୍ଣୁ-ବାକ୍ୟେ ପ୍ରଚେତସ ।
ସୁଖେ ପାଳିଲେ ପ୍ରଜାଦେଶ ॥ ୨ ୨ ୪
ଅନେକ ଦାନ-ଯଜ୍ଞ କଲେ ।
ହରିଙ୍କି ସ୍ୱଧର୍ମେ ତୋଷିଲେ ॥ ୨ ୨ ୫
ତଦନ୍ତେ ଶୁଣ ହେ ବିଦୁର ।
ସେ କନ୍ୟା ଉଦରେ ତାଙ୍କର ॥ ୨ ୨ ୬
ଜନ୍ମିଲେ ଦକ୍ଷ ପ୍ରଜାପତି ।
ଯେ ପୂର୍ବେ ବ୍ରହ୍ମାର ସନ୍ତତି ॥ ୨ ୨ ୭
ପୂର୍ବେ ନିନ୍ଦିଲେ ଶିବ ଯେଣୁ ।
ଗର୍ଭ-ଯାତନା-ଦୁଃଖ ତେଣୁ ॥ ୨ ୨ ୮
ସେ ପାପବୀଜ କୂଟେ ଥିଲା ।
କେବେ ହେଁ ମୋଚନ ନ ଗଲା ॥ ୨ ୨ ୯
ସାଧୁଙ୍କ ଅପରାଧ ଦୋଷ ।
ସେ କୋଟିକଳ୍ପେ ନୋହେ ନାଶ ॥ ୨ ୩ ୦
ଚାକ୍ଷୁଷ ମନ୍ୱନ୍ତର ଅନ୍ତେ ।
ପୂର୍ବ ଶରୀର ଲୋପ ଯା'ନ୍ତେ ॥ ୨ ୩ ୧
ସେ ଦକ୍ଷ ଜନମ ଲଭିଲେ ।
ଏବେ ଯେ ପ୍ରଜା ସୃଷ୍ଟି କଲେ ॥ ୨ ୩ ୨
ଜନ୍ମିଲା ମାତ୍ରକେ କୁମର ।
ତା' ତେଜ ହେଲାକ ଅପାର ॥ ୨ ୩ ୩
ତେଜସ୍ୱୀମାନେ ଯେତେ ଥିଲେ ।
ତା' ତେଜେ ସର୍ବେ ଲୀନହେଲେ ॥ ୨ ୩ ୪
ସେ ସର୍ବକର୍ମେ ଦକ୍ଷ ଯହୁଁ ।
ତା' ନାମ ଦକ୍ଷ ହେଲା ତହୁଁ ॥ ୨ ୩ ୫
ବିବିଧ ମତେ ପ୍ରଜାପତି ।
ସୃଷ୍ଟି ସେ କଲେ ମହାମତି ॥ ୨ ୩ ୬
ତାହାଙ୍କୁ ପ୍ରଜାରକ୍ଷା ପାଇଁ ।
ନିଯୋଗ କଲେ ବେଦସାଇଁ ॥ ୨ ୩ ୭
ଦ୍ୱିତୀୟ ଦକ୍ଷ ଜନ୍ମକଥା ।
ଶୁଣ ବିଦୁର ଶୁଦ୍ଧଚେତା ॥ ୨ ୩ ୮
ଯେଣୁ ସେ ପ୍ରଜା ସୃଷ୍ଟି କଲେ ।
ତେଣୁ ରାଜତ୍ୱ ପ୍ରତେଜିଲେ ॥ ୨ ୩ ୯
ଏଣୁ ଏ ଧ୍ରୁବବଂଶେ ରାଜ ।
ନୋହିଲେ ହେ ବ୍ୟାସତନୁଜ ॥ ୨ ୪ ୦
ପ୍ରିୟବ୍ରତରେ ରାଜ୍ୟ ଦେଲେ ।
ସେ ଦକ୍ଷ-ବାକ୍ୟେ ସୃଷ୍ଟି କଲେ ॥ ୨ ୪ ୧
ସେ ପ୍ରିୟବ୍ରତର ଚରିତ ।
ପଞ୍ଚମ ସ୍କନ୍ଧରେ ବ୍ୟକତ ॥ ୨ ୪ ୨
ପୂର୍ବେ ପଚାରିଥିଲୁ ମୋତେ ।
ପ୍ରଚେତା-ବଂଶାନୁଚରିତେ ॥ ୨ ୪ ୩
ସେ ଧ୍ରୁବବଂଶେ ଉତପନ ।
ପ୍ରାଚୀନବରହୀ-ନନ୍ଦନ ॥ ୨ ୪ ୪
ବିସ୍ତାରି କହିବାକ ତୋତେ ।
ପ୍ରଚେତା ଜ୍ଞାନ-ଉପଗତେ ॥ ୨ ୪ ୫
ଏହା ଯେ ଶ୍ରବଣେ ଶୁଣନ୍ତି ।
ତ୍ରିତାପ-ଭୟ ନିବାରନ୍ତି ॥ ୨ ୪ ୬
ତିରିଶ ଅଧ୍ୟା ଏହୁ ବାଣୀ ।
ମୈତ୍ରେୟ ବିଦୁରେ ବଖାଣି ॥ ୨ ୪ ୭
ଏ ଶୁକ-ପରୀକ୍ଷ ସମ୍ବାଦ ।
ହରଇ ଅଶେଷ-ଆପଦ ॥ ୨ ୪ ୮
ଇହ ଲୋକରେ ହୋଏ ଯଶ ।
ଅନ୍ତେ ତା' ବଇକୁଣ୍ଠେ ବାସ ॥ ୨ ୪ ୯
ଗ୍ରହାଦି ପୀଡା ଶତ୍ରୁଭୟ ।
ଏ ସର୍ବଦୁଃଖ ହୋଏ କ୍ଷୟ ॥ ୨ ୫ ୦
କହଇ ଦାସ ଜଗନ୍ନାଥ ।
ଚତୁର୍ଥ ସ୍କନ୍ଧେ ଭାଗବତ ॥ ୨ ୫ ୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଚତୁର୍ଥସ୍କନ୍ଧେ ତ୍ରିଂଶୋଽଧ୍ୟାୟଃ ॥

---

## ଏକତ୍ରିଂଶ ଅଧ୍ୟାୟ

ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ ।
ତଦନ୍ତେ ଯେବଣ ବିଧାନେ ॥ ୧
ସେ ଦଶଭାଇ ଜ୍ଞାନ ପର ।
ହରିଆଦେଶ ଘେନି ଶିର ॥ ୨
ଅନେକକାଳ ଭୋଗଅନ୍ତେ ।
ବୈରାଗ୍ୟ ଉପୁଜିଲା ଚିତ୍ତେ ॥ ୩
ରାଜ-ବିଭୂତି ପତ୍ନୀ ତୁଲେ ।
ପୁତ୍ରେ ସମର୍ପି ବନେ ଗଲେ ॥ ୪
ପଶ୍ଚିମଜଳଧି-ତଟରେ ।
ରହିଲେ ସିଦ୍ଧ-ଆଶ୍ରମରେ ॥ ୫
ଜାଜଳି ନାମେ ଦ୍ୱିଜବର ।
ଯହିଁ ହୋଇଲେ ସିଦ୍ଧେଶ୍ୱର ॥ ୬
ତହିଁ ସେମାନେ ତପ କରି ।
ପୂଜିଲେ ବ୍ରହ୍ମସୂତ୍ରେ ହରି ॥ ୭
ଏ ମନ-ବଚନ-ଲୋଚନ ।
ସେ ଜୟ କଲେ ପ୍ରାଣ-ମନ ॥ ୮
ଆସନଆଦି ଦୃଢ଼ କଲେ ।
ସୁଶାନ୍ତ-ବିଗ୍ରହ ହୋଇଲେ ॥ ୯
ଏମନ୍ତ ସମୟେ ବିଦୁର ।
ନାରଦ ବ୍ରହ୍ମାଙ୍କ କୁମର ॥ ୧ ୦
ମିଳିଲେ ସେହିଠାବେ ଆସି ।
ସେମାନେ ଛନ୍ତି ତପେ ବସି ॥ ୧ ୧
ଦେଖି ନାରଦ-ମୁନିବର ।
ସେମାନେ ଉଠିଲେ ସତ୍ୱର ॥ ୧ ୨
ବେଗେ ଆସନ ଆଣି ଦେଲେ ।
ଚରଣଯୁଗ ପ୍ରକ୍ଷାଳିଲେ ॥ ୧ ୩
ଅତି ଆନନ୍ଦେ ଦଶଭାଇ ।
ଭାବେ ପୂଜିଲେ ଅର୍ଘ୍ୟ ଦେଇ ॥ ୧ ୪

Dr. Sudhanshu Sekhar Mishra

ସୁଖେ ବସିଲେ ମୁନିବର ।
ସେମାନେ ଅଗ୍ରେ ଯୋଡ଼ିକର ॥୧୫
ରୋମ-ପୁଲକେ ଅଶ୍ରୁପନ୍ତି ।
ଆନନ୍ଦେ ବସି ପଚାରନ୍ତି ॥୧୬
ଆମ୍ଭେ କି ଭାଗ୍ୟ କରିଥିଲୁ ।
ଏ ତୁମ୍ଭ ଦର୍ଶନ ଲଭିଲୁ ॥୧୭
ଭୋ ମୁନି ଏ ତୁମ୍ଭ ଭ୍ରମଣ ।
ଅଜ୍ଞାନୀଜନ ଉଦ୍ଧାରଣ ॥୧୮
ନିର୍ଭୟ ହେତୁ ପ୍ରାଣୀଙ୍କର ।
ତୁମ୍ଭ ଦର୍ଶନ ମୁନିବର ॥୧୯
ଯେସନେ ସୂର୍ଯ୍ୟର ଉଦୟ ।
ଅଶେଷ-ପ୍ରାଣୀ-ସୁଖମୟ ॥୨୦
ତେସନେ ତୁମ୍ଭ ଦରଶନ ।
ଖଣ୍ଡଇ ତ୍ରିତାପ-ଅଜ୍ଞାନ ॥୨୧
ଭୋ ମୁନି ମନଖେଦ ଯେତେ ।
କହିବୁଁ ତୁମ୍ଭର ଅଗ୍ରତେ ॥୨୨
ପୂର୍ବେ ଯେ ପ୍ରଭୁ ଭଗବାନ ।
କହିଣ ଥିଲେ ଦିବ୍ୟଜ୍ଞାନ ॥୨୩
ଆମ୍ଭେ ଯେ ଗୃହଧର୍ମେ ପଡ଼ି ।
ସେ ଦିବ୍ୟଜ୍ଞାନ ଦେଲୁ ଛାଡ଼ି ॥୨୪
ଭୋ ମୁନି କର ଅନୁଗ୍ରହ ।
ସେ ତତ୍ତ୍ୱଜ୍ଞାନ ଏବେ କହ ॥୨୫
ଏ ଭବ-ସାଗର ଦୁସ୍ତର ।
ସେଜ୍ଞାନେ ହୋଇବୁଁ ନିସ୍ତାର ॥୨୬
ମୈତ୍ରେୟ କହନ୍ତି ଭାରତ ।
ଏମନ୍ତ ବୋଲନ୍ତେ ପ୍ରଚେତ ॥୨୭
ଶୁଣି ନାରଦ-ତପୋଧନ ।
ଉତ୍ତମ ଶ୍ଳୋକେ କଲେ ଧ୍ୟାନ ॥୨୮
ଧ୍ୟାନ କରନ୍ତେ ମୁନିବର ।
ରୋମପୁଲକେ କଳେବର ॥୨୯
କୃଷ୍ଣ-ବିଷୟେ ନିମଜ୍ଜିଲେ ।
ଦେହ-ଜୀବନ ପାଶୋରିଲେ ॥୩୦
ତକ୍ଷଣେ ପାଇ ଦିବ୍ୟବୁଦ୍ଧି ।
ତାହାଙ୍କୁ କହନ୍ତି ପ୍ରବୋଧି ॥୩୧

ନାରଦ ଉବାଚ

ଶୁଣ ନୃପତି ଧର୍ମଶୀଳ ।
ଯେ କର୍ମେ ହୋଇବ କୁଶଳ ॥୩୨
କହିବା ତହିଁର ବିଧାନ ।
ଯହିଁରେ ହେବ ତୁମ୍ଭ ଜ୍ଞାନ ॥୩୩
ମନୁଷ୍ୟ ଜନ୍ମ-କର୍ମ ସେହି ।
ହରିଙ୍କ ସେବା ହୋଏ ଯହିଁ ॥୩୪
ହରିଭଜନ ଯେବେ ନାହିଁ ।
ଏଥୁ ଅଭାଗ୍ୟ ପରେ କାହିଁ ॥୩୫
ଯେ ତିନିବେଦ କର୍ମ କହେ ।
ସେ କର୍ମେ ପ୍ରାଣୀ ମୋକ୍ଷ ନୋହେ॥୩୬
ଭବୁ ତରିବ ସେ ବା କାହିଁ ।
ଯାବତ ହରି ନ ଭଜଇ ॥୩୭
ଯେ ଦେବଆୟୁଷେ ଜୀବନ୍ତି ।
ହରି ନ ଭଜି ନ ତରନ୍ତି ॥୩୮
ଯେଣୁ ସେ ବିଷୟେ ପ୍ରମତ୍ତ ।
ନ ଦେଲା କୃଷ୍ଣପାଦେ ଚିତ୍ତ ॥୩୯
ସୁସାଧ୍ୟ କଲେ ବିଦ୍ୟାମାନ ।
ଅପରେ ଯେତେ ତପଦାନ ॥୪୦
ଏ ସର୍ବ ତା'ର ଅକାରଣ ।
ଯେବେ ନ ଭଜେ ନାରାୟଣ ॥୪୧
ଯେତେକ କବିତ୍ୱ-ବଚନ ।
ବ୍ୟର୍ଥ କି କାର୍ଯ୍ୟେ ପ୍ରୟୋଜନ ॥୪୨
ବିଫଳ-ବୁଦ୍ଧି ହେଲା ତା'ର ।
ନ କଲା ଯେ କୃଷ୍ଣ-ବିଚାର ॥୪୩
ଇନ୍ଦ୍ରିୟ ବଳ ତେଜ ଘେନି ।
ଏଣୁ କି ଭବୁ ତରେ ପ୍ରାଣୀ ॥୪୪
ଅଷ୍ଟାଙ୍ଗଯୋଗ ସାଂଖ୍ୟ ଆଦି ।
ସନ୍ନ୍ୟାସ-ଧର୍ମ ବେଦବାଦୀ ॥୪୫
ଏ ସର୍ବ ଜୀବ ନ ତାରନ୍ତି ।
ଭୋଗାଦି-ଫଳ ବାଞ୍ଛା ଦ୍ୟନ୍ତି ॥୪୬
ଅପରେ ଯେତେ ଶ୍ରେୟକର୍ମ ।
ଇହ ସଂସାରେ ଲୋକଧର୍ମ ॥୪୭

ଏ ସର୍ବକାଳେ ନ ଘଟନ୍ତି ।
ଯେବେ ହରିଙ୍କି ନ ଭଜନ୍ତି ॥୪୮
ଏ ଯେତେ କର୍ମ ଶ୍ରେୟବିଧି ।
ଯଜ୍ଞାଦି କର୍ମ ଅଷ୍ଟସିଦ୍ଧି ॥୪୯
ସେ ସର୍ବ-ଅନ୍ତରାତ୍ମା-ହରି ।
ଯେ ଭଲମନ୍ଦେ ଅଧିକାରୀ ॥୫୦
କର୍ମାନୁସାରେ ଦେହେ ରହି ।
ପ୍ରାଣୀଙ୍କି କର୍ମଭୋଗ ଦେଇ ॥୫୧
ତେଣୁ ସେ ଆତ୍ମା ସର୍ବଭୂତେ ।
ସକଳ ପ୍ରିୟ ସେ ଏମନ୍ତେ ॥୫୨
ଯେବେ ହରିଙ୍କି ସେବା କରି ।
ଆତ୍ମାକୁ ଉଦ୍ଧାରନ୍ତି ହରି ॥୫୩
ଏ ସର୍ବ-ଫଳଦାତା ହରି ।
ପ୍ରାଣୀ ନ ଜାଣି ଭ୍ରମି ମରି ॥୫୪
ଦୁଃଖ-ଗହନେ କରେ ଆଶ ।
ଏ କର୍ମେ ମୂଢ଼ ଅବିଶ୍ୱାସ ॥୫୫
ଯେ ହରି ସର୍ବଭୂତେ ଥାଇ ।
କର୍ମାନୁସାରେ ଫଳ ଦେଇ ॥୫୬
ସକଳ-ପ୍ରିୟ ସେ ମୁରାରି ।
ସେ ଭଲମନ୍ଦେ ଅଧିକାରୀ ॥୫୭
ତାହାଙ୍କୁ ଯେ ପ୍ରାଣୀ ଭଜନ୍ତି ।
ତେବେ ଏ ଭବୁ ନିସ୍ତରନ୍ତି ॥୫୮
ଏମନ୍ତ ମହିମା ଯାହାର ।
ସେ ପ୍ରଭୁ କରନ୍ତି ଉଦ୍ଧାର ॥୫୯
ଯେସନେ ସର୍ବ-ତରୁ-ମୂଳେ ।
ଜଳ ସିଞ୍ଚନ ନେଇ କଲେ ॥୬୦
ତାହାର ଭୁଜ-ସ୍କନ୍ଧ-ଶାଖା ।
ସର୍ବେ ସନ୍ତୋଷ ମୂଳେ ଏକା ॥୬୧
ପ୍ରାଣକୁ ଉପହାର ଦେଲେ ।
ସନ୍ତୋଷ ଇନ୍ଦ୍ରିୟ-ସକଳେ ॥୬୨
ଏମନ୍ତେ ହରିଙ୍କର ସେବା ।
କଲେ ସନ୍ତୋଷ ସର୍ବଦେବା ॥୬୩
ହରିଟି ସର୍ବ-ଦେବ-ମୂଳ ।
ଯେତେ ପ୍ରପଞ୍ଚ-ସୂକ୍ଷ୍ମମୂଳ ॥୬୪

Dr. Sudhanshu Sekhar Mishra

ସକଳ-ଆତ୍ମା-ଅନ୍ତ ହରି ।
ଯେ ପାଦ ଆଶ୍ରେ ପ୍ରାଣୀ ତରି ॥୬୫
ଯେସନେ ରବିଠାରୁ ଜଳ ।
ପ୍ରଭବି ପ୍ରକାଶେ ଶୟଳ ॥୬୬
କାଳେ ସେ ରବିତେଜେ ପୁଣି ।
ପ୍ରବେଶ ହୋନ୍ତି ସର୍ବପ୍ରାଣୀ ॥୬୭
ସେ ରୂପେ ଏ ଗୁଣ ପ୍ରବାହ ।
ଏ ଚରାଚର-ଭୂତ-ଦେହ ॥୬୮
ଏ ସର୍ବେ ହରିରୁ କ୍ଷରନ୍ତି ।
କାଳେ ସେ ତହିଁ ପ୍ରବେଶନ୍ତି ॥୬୯
ଜଗତ ହରିଙ୍କ କିରଣ ।
ସୂର୍ଯ୍ୟର ପ୍ରଭାଟି ଯେସନ ॥୭୦
ତା' ତହିଁ ସର୍ବ-ଶକ୍ତି ଥା'ନ୍ତି ।
ଯେବେ ସେ ଜାଗ୍ରତ ଲଭନ୍ତି ॥୭୧
ତେବେ ସେ ଦ୍ରବ୍ୟ-କ୍ରିୟା-ଜ୍ଞାନ ।
ହୁଅଇ ଭେଦ-ଭ୍ରମମାନ ॥୭୨
ଯେହ୍ନେ ଆକାଶେ ଘନପନ୍ତି ।
ତମ-ବିଜୁଳି ପ୍ରକାଶନ୍ତି ॥୭୩
ତେମନ୍ତେ ପରମ-ବ୍ରହ୍ମରେ ।
ସକଳ-ଶକ୍ତି ଏ କ୍ରମରେ ॥୭୪
ହୁଅନ୍ତି ନୁହଁନ୍ତି ସେ କାଳେ ।
ସର୍ବ-ସତ୍ତ୍ୱାଦି ଗୁଣଜାଳେ ॥୭୫
ସେ ଆତ୍ମା ଅଶେଷ-ଦେହୀଙ୍କ ।
ପୁରୁଷ ପ୍ରଧାନ ସେ ଏକ ॥୭୬
କାଳ ହିଁ ତାହାଙ୍କୁଟି କହି ।
ଗୁଣ-ପ୍ରବାହ-ହେତୁ ସେହି ॥୭୭
ତାହାଙ୍କୁ ଭଜ ଏକଭାବେ ।
ସଂସାରୁ ନିସ୍ତରିବ ଯେବେ ॥୭୮
ସକଳ-ଭୂତେ ଦୟା କର ।
ଯହିଁ ତହିଁରେ ତୋଷ ଧର ॥୭୯
ଇନ୍ଦ୍ରିୟବର୍ଗ ବିନାଶିଲେ ।
ହରିଙ୍କି ପାଇବ ଭଜିଲେ ॥୮୦
ବିଶୁଦ୍ଧ ହୋଏ ଯେବେ ମନ ।
ବିନାଶ ହୋନ୍ତି ଚେଷ୍ଟାମାନ ॥୮୧
ଏମନ୍ତ ଭକ୍ତି ଯେବେ ଚିତ୍ତେ ।
ବିଶୁଦ୍ଧ-ହୃଦ ଅବିରତେ ॥୮୨
ତହିଁ ବସନ୍ତି ଭଗବାନ ।
ନ ଯା'ନ୍ତି ତହୁଁ ଅନ୍ୟସ୍ଥାନ ॥୮୩
ଏ ବିନେ ଯେ ଆନ କୁଯୋଗୀ ।
ବିଷୟସୁଖେ ନିତ୍ୟେ ଭୋଗୀ ॥୮୪
ତାହାଙ୍କ ପୂଜା ନ ଘେନନ୍ତି ।
ଯେଣୁ ସେ ରସକୁ ଜାଣନ୍ତି ॥୮୫
ବିଦ୍ୟାଦି ଧନେ ଯେଉଁ ଜନେ ।
ରହନ୍ତି ଅହଂକାର ମନେ ॥୮୬
ଯେ ସାଧୁ ଅକିଞ୍ଚନ ଦେଖି ।
ହତଆଦରେ ଦୂରେ ପେକ୍ଷି ॥୮୭
ଧନ ବିନାଶ ହେତୁ କରି ।
ଯେ ସାଧୁସେବା ପରିହରି ॥୮୮
ଅତ୍ୟନ୍ତ ମୂଢ଼ ସେ ପାମର ।
ଧନରେ ଅତି ସ୍ନେହ ତା'ର ॥୮୯
ଏମନ୍ତ ପ୍ରାଣୀ ଯେ ଅଟନ୍ତି ।
ଅଜ୍ଞାନେ ଧର୍ମ ନଜାଣନ୍ତି ॥୯୦
ତାଙ୍କୁ ବିମୁଖ ନରହରି ।
ସାଧୁ-ଦୂଷଣ ହେତୁ କରି ॥୯୧
ତାହାଙ୍କ ନିକଟେ ନ ଆସେ ।
ବସନ୍ତି ଅକିଞ୍ଚନ ପାଶେ ॥୯୨
ସେ ପରିପୂର୍ଣ୍ଣ ସର୍ବ ଭାବେ ।
ବଶ ନୁହଁନ୍ତି ଧନ-ଲୋଭେ ॥୯୩
ନିଜ ଭକତ-ବଶ ହରି ।
ଭକ୍ତ-ଡାକକୁ ଅନୁସରି ॥୯୪
ଏମନ୍ତ ମହିମା ତାହାର ।
ସେ ପାଦେ ନ ସେବେ ପାମର॥୯୫
ଦାରା-ତନୟ-ମୋହେ ଜଡ଼ି ।
ଦୁଃଖ-ଗହନେ ସୁଖ ଲୋଡ଼ି ॥୯୬
ଅଜ୍ଞାନ ଭାବେ ଦମ୍ଭେ ଥା'ନ୍ତି ।
ଯେ ଅନ୍ୟ-ଦେବଙ୍କୁ ସେବନ୍ତି ॥୯୭
ଯେ ହରି ଛାଡ଼ି ସେବେ ଆନ ।
ଯେ ପ୍ରଭୁ ଭକତ-ଅଧୀନ ॥୯୮
ସେ ପାଦପଦ୍ମ ଛାଡ଼ି ସେହି ।
ଅନ୍ୟ ଭଜନେ ମନଦେଇ ॥୯୯
ଏ ସେବା ଛାଡ଼ି ଅନ୍ୟ ସେବେ ।
କେମନ୍ତେ ଭବୁ ନିସ୍ତରିବେ ॥୧୦୦
ତାହାଙ୍କୁ ବୋଲି ମୂଢ଼ମତି ।
ସେ ପ୍ରାଣୀ ଭବୁ ନ ତରନ୍ତି ॥୧୦୧
ଯାହାର ଅଛି ଦିବ୍ୟଜ୍ଞାନ ।
ସେ କାହିଁ ଭଜେ ଦେବ ଅନ୍ୟ ॥୧୦୨
ସେ ହରିପାଦେ ସର୍ବସୁଖ ।
ଆଶ୍ରୟେ ଛେଦେ ଭବ ଦୁଃଖ॥୧୦୩

ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁର ।
ଏମନ୍ତେ ଦେବ-ମୁନିବର ॥୧୦୪
ସେ ପ୍ରଚେତସ ତପ ଠାବେ ।
ଏ ଜ୍ଞାନ କହିଲେ ସ୍ୱଭାବେ ॥୧୦୫
ଅପରେ ହରିଗୁଣମାନ ।
କହି ତୋଷିଲେ ତା'ଙ୍କ ମନ ॥୧୦୬
ତକ୍ଷଣେ ବ୍ରହ୍ମଲୋକେ ଗଲେ ।
ସେ ସର୍ବେ ସନ୍ତୋଷେ ରହିଲେ ॥୧୦୭
ଶୁଣ ବିଦୁର ଜ୍ଞାନବନ୍ତ ।
ନାରଦ ମୁଖରୁ ନିର୍ଗତ ॥୧୦୮
ହରିଙ୍କ ନାମ ଯଶ ଗୁଣ ।
ଯେବା ଭାବନ୍ତି ଅନୁକ୍ଷଣ ॥୧୦୯
ସେ ସର୍ବେ କାମାର୍ଥ ଲଭନ୍ତି ।
ରତ୍ୟାଦି-ପାପ ବିନାଶନ୍ତି ॥୧୧୦
ଶୁଣି ସାନନ୍ଦ ନୃପଗଣେ ।
ହରି ଭଜିଲେ ଅନୁକ୍ଷଣେ ॥୧୧୧
ଅନ୍ତେ ସେ ହରିଙ୍କି ଲଭିଲେ ।
ନାରଦ-ହେତୁ ନିସ୍ତରିଲେ ॥୧୧୨
ଏ ଘେନି ସତସଙ୍ଗ ପ୍ରାଣୀ ।
ଆଦରି ଲଭେ ଚକ୍ରପାଣି ॥୧୧୩
ଏ ବିନେ ନାହିଁ ସଦଗତି ।
ଶୁଣ ବିଦୁର ଗୁହ୍ୟ ଅତି ॥୧୧୪

Dr. Sudhanshu Sekhar Mishra

ସାଧୁଙ୍କ ସଙ୍ଗେ ପ୍ରୀତି କର ।
ମାନସ-ମୋହ ଯାଉ ଦୂର ॥ ୧୧୫
ଯେତେ ସଂଶୟ ହୃଦଗତ ।
ପଚାରିଥିଲୁ ଯେ ବୃତ୍ତାନ୍ତ ॥ ୧୧୬
ସାର ଉଦ୍ଧରି ଶାସ୍ତ୍ରମତେ ।
କହିଲୁ ଶିରୀ ଭାଗବତେ ॥ ୧୧୭
ନାରଦ-ପ୍ରଚେତ-ସମ୍ବାଦ ।
ଶ୍ରୀହରି-କ୍ଷଣ-ଗୁଣ-ବାଦ ॥ ୧୧୮
ଯେଡି ମୁଁ କହିଲଇଁ ତାହା ।
ସଂଶୟ କରିଥିଲୁ ଯାହା ॥ ୧୧୯

ଶୁକ ଉବାଚ

କହନ୍ତି ଶୁକମହାମୁନି ।
ଶୁଣ ପରୀକ୍ଷ ତତ୍ତ୍ୱଜ୍ଞାନୀ ॥ ୧୨୦
ମୈତ୍ରେୟ ଯେତେକ କହିଲେ ।
ବିଦୁର ବିନୟେ ଶୁଣିଲେ ॥ ୧୨୧
ଆନନ୍ଦେ ରୋମ-ପୁଲକିତ ।
ଭାବ-ଗଦ୍‌ଗଦେ ଅଶ୍ରୁପାତ ॥ ୧୨୨
ଆନନ୍ଦ-ସାଗରେ ବୁଡିଲେ ।
ଦେହ-ଜୀବନ ପାଶୋରିଲେ ॥ ୧୨୩
ଧରି କହେ ମୁନିଚରଣ ।
ଭୋ ମୁନି କର ଉଦ୍ଧାରଣ ॥ ୧୨୪
ତୁମ୍ଭ ପ୍ରସନ୍ନେ ତତ୍ତ୍ୱଜ୍ଞାନ ।
ପାଇ ଛାଡିଲା ମୋହମାନ ॥ ୧୨୫

ଭୋ ମୁନି ତୁମ୍ଭେ ଜ୍ଞାନସାର ।
ଦେଖାଇଦେଲ ତମପାର ॥ ୧୨୬
ଏମନ୍ତ ଜ୍ଞାନୀ ଯେତେ ହୋଇ ।
ସେ ପ୍ରାଣୀ ହରିଙ୍କି ଲଭଇ ॥ ୧୨୭
ମୁଁ ଏବେ ହେଲି ମୋକ୍ଷପାର ।
ତୁମ୍ଭ ପ୍ରସନ୍ନେ ମୁନିବର ॥ ୧୨୮
ଭୋ ମୁନି ଆଜ୍ଞା ହେବ ଯେବେ ।
ନିଜ ସଦନେ ଯିବି ତେବେ ॥ ୧୨୯
ଏମନ୍ତ କହିଣ ଆନନ୍ଦେ ।
ନମିଲା ମୁନିଙ୍କର ପାଦେ ॥ ୧୩୦
ସେ ତା'ଙ୍କୁ ତୋଷେ ଆଜ୍ଞା ଦେଲେ ।
ନିଶ୍ଚିନ୍ତେ ଆସନେ ରହିଲେ ॥ ୧୩୧
ହସ୍ତିନା ଗମିଲେ ବିଦୁର ।
ଦେଖିବା ଅର୍ଥେ ସହୋଦର ॥ ୧୩୨
ଛାଡି ସକଳ-ମାୟା-ମୋହେ ।
ଗମିଲା ମାତ୍ର ଭ୍ରାତୃସ୍ନେହେ ॥ ୧୩୩
ଆନନ୍ଦମନେ ସ୍ନେହ ଅତି ।
ପରୀକ୍ଷେ କହେ ଶୁକଯତି ॥ ୧୩୪
ଶୁଣ ରାଜନ ଦଣ୍ଡଧର ।
ସେ ଯେ ପ୍ରାଚୀନ ନୃପବର ॥ ୧୩୫
ତାହାଙ୍କ ପୁଣ୍ୟ-ଯଶ-କୀର୍ତ୍ତି ।
ଯେ ନିତ୍ୟେ ଶୁଣେ ଦୃଢ଼ମତି ॥ ୧୩୬
ତା' ଯଶ-ଆୟୁଷ ବଢ଼ଇ ।
ବିପୁଳ-ଭୋଗ ନ ଛାଡ଼ଇ ॥ ୧୩୭

ଅଷ୍ଟ ଐଶ୍ୱର୍ଯ୍ୟ ଭୋଗ ତୋଷେ ।
ସୁକୀର୍ତ୍ତି ରହେ ଚତୁର୍ଦ୍ଦିଶେ ॥ ୧୩୮
ଦେହାନ୍ତେ ଗତି ହୁଏ ତା'ର ।
ସେ ପ୍ରଭୁ କରନ୍ତି ନିସ୍ତାର ॥ ୧୩୯
ଭଣଇ ବିପ୍ର ଜଗନ୍ନାଥ ।
ଏ କୃଷ୍ଣ ଅଜ୍ଞାରୁ ଭକତ ॥ ୧୪୦
ଗୁପତେ ବହୁକାଳ ଥିଲା ।
ହରି ଅଜ୍ଞାରୁ ଉଦେ ହେଲା ॥ ୧୪୧
ହରି ହରି ଭାବନା କରୁଁ ।
ସଂଶୟ ଛାଡିଲା ମନରୁ ॥ ୧୪୨
ସେ ବ୍ରହ୍ମ ଅନନ୍ତ ମହିମା ।
କେ କହିପାରେ ଗୁଣସୀମା ॥ ୧୪୩
ଅମୃତ ଚରିତ ଏ ବାଣୀ ।
ଶ୍ରବଣେ ନିସ୍ତରିବେ ପ୍ରାଣୀ ॥ ୧୪୪
ହୋଇବ ଭବବନ୍ଧ ନାଶ ।
ସୁଜନେ କୃଷ୍ଣପାଦେ ରସ ॥ ୧୪୫
ଚତୁର୍ଥ ସ୍କନ୍ଧ ହେଲା ଶେଷ ।
ହୃଦରେ ଚିନ୍ତ ହୃଷୀକେଶ ॥ ୧୪୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସହିତାୟାଂ
ଚତୁର୍ଥସ୍କନ୍ଧେ ପ୍ରଚେତ ଉପାଖ୍ୟାନଂ
ନାମ ଏକତ୍ରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

অ

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ପଞ୍ଚମ ସ୍କନ୍ଧ

Dr. Sudhanshu Sekhar Mishra

# ପଞ୍ଚମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ମୈତ୍ରେ ଉବାଚ

ପରମ-ପୁରୁଷ ଗୋବିନ୍ଦ ।
ଅରୁଣ-ଚରଣାରବିନ୍ଦ ॥୧
ତହୁଁ ଗଳଇ ମକରନ୍ଦେ ।
ତାହା ଯେ ପିବନ୍ତି ଆନନ୍ଦେ ॥୨
ଶ୍ରଦ୍ଧାଯୁକ୍ତରେ ଚିନ୍ତାକରି ।
ହେଳେ ତରନ୍ତି ଭବବାରି ॥୩
ପରମଭକ୍ତି ସେ ଲଭଇ ।
କରୁଣା କରନ୍ତି ଗୋସାଇଁ ॥୪
ତାହାଙ୍କ ଚରଣେ ବନ୍ଦଇ ।
ପଞ୍ଚମସ୍କନ୍ଧେ ଗୀତ ଗାଇ ॥୫
କହଇ ବିପ୍ର ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୬
ଶୁକ ପରୀକ୍ଷିତ ସମ୍ବାଦ ।
ଶୁଣିଲେ ତୁଟେ ଭବବନ୍ଧ ॥୭

ପରୀକ୍ଷିତ ଉବାଚ

ଭୋ ମୁନି ରାଜା ପ୍ରିୟବ୍ରତ ।
ସେ ଆତ୍ମାରାମ ଭାଗବତ ॥୮
ଗୃହେ ରମିଲା ତାର ମନ ।
ପ୍ରାରବ୍‌ଧ-କର୍ମରେ ବନ୍ଧନ ॥୯
ନିଶ୍ଚୟେ ମୁକ୍ତସଙ୍ଗ ଯା'ର ।
ଏମନ୍ତ ପ୍ରାଣୀମାନଙ୍କର ॥୧୦
କିପାଁ ଏ ଗୃହେ ମନ ରହେ ।
ଭୋ ମୁନି ଫେଡିବା ସନ୍ଦେହେ ॥୧୧
ନିଶ୍ଚେ ମହତଲୋକଙ୍କର ।
ଉତ୍ତମ ଶ୍ଳୋକ କଥାସାର ॥୧୨
ନିବୃତ୍ତଚିତ୍ତ ସେ ହୁଅନ୍ତି ।
ସେ କିପାଁ ବ୍ୟର୍ଥ ଆଚରନ୍ତି ॥୧୩
ଏ ମୋତେ ସଂଶୟ ବହୁତ ।
ଯେ ପ୍ରାଣୀ ଗୃହେ ମୋହଚିତ୍ତ ॥୧୪
ତା' ମତି କୃଷ୍ଣ-ବିଷୟରେ ।
ହୋଇଲା କେମନ୍ତ ପ୍ରକାରେ ॥୧୫
ଏମନ୍ତ ରାଜା ମୁଖୁଁ ଶୁଣି ।
ମୁନି କହନ୍ତି ପରିମାଣି ॥୧୬

ଶୁକ ଉବାଚ

ଯାହା ତୁ କରିଲୁ ପ୍ରଶନ ।
ଧନ୍ୟ ରାଜନ ତୋ ବଚନ ॥୧୭
ଉତ୍ତମଶ୍ଳୋକ ଯେ ଗୋବିନ୍ଦ ।
ତାହାଙ୍କ ଚରଣାରବିନ୍ଦ ॥୧୮
ତହୁଁ ଅମୀୟରସ ବହେ ।
ସେ ରସ ଯେବା ପ୍ରାଣୀ ପିଏ ॥୧୯
ଭକତ ସାଧୁ ସେହୁ ଜନ ।
ପରମହଂସ ଦିବ୍ୟଜ୍ଞାନ ॥୨୦
ତାହାର କୃଷ୍ଣକଥା ବିନେ ।
କେବେହେଁ ମନ ନୋହେ ଆନେ ॥୨୧
ଅନ୍ୟ ଯେ ଗୁଣକଥାମାନ ।
ଇଚ୍ଛା ନ କରନ୍ତି ସେ ଜନ ॥୨୨
ତେଣୁ ସେ ନୃପ ପ୍ରିୟବ୍ରତ ।
ଗୁଣରେ ହୋଇଲା ପୂଜିତ ॥୨୩
ମୁନି ପରମ-ଭାଗବତ ।
ନାରଦ ଲୋକରେ ବିଖ୍ୟାତ ॥୨୪
ତାହାଙ୍କ ଚରଣ ସେବାରେ ।
ସର୍ବକଲୁଷ ଗଲା ଦୂରେ ॥୨୫
ତକ୍ଷଣେ ସତ୍ତ୍ୱଗୁଣ ହୋଇ ।
ବ୍ରହ୍ମଯଜ୍ଞରେ ଦୀକ୍ଷା ପାଇ ॥୨୬
ପିତାର ଆଜ୍ଞା ଘେନି ଶିରେ ।
ଅବନୀ ପାଳନ ବିଚାରେ ॥୨୭
ତେଣେ ନ ଇଚ୍ଛେ ନୃପବର ।
ଉତ୍ତମ ସତ୍ତ୍ୱଗୁଣ ତାର ॥୨୮
ଅଖିଳଲୋକଙ୍କ ଜୀବନ ।
ଅନାଦିନାଥ ନାରାୟଣ ॥୨୯
ତାହାଙ୍କ ଚରଣାରବିନ୍ଦେ ।
ଚିତ୍ତ ନିବେଶି ଅପ୍ରମାଦେ ॥୩୦
ପ୍ରବୃତ୍ତ ସଂସାର ବେଭାର ।
ତହୁଁ ମନକୁ କରି ଦୂର ॥୩୧
ନିଶ୍ଚୟ ଜାଣି ପରାଭବ ।
ଇଚ୍ଛଇ ନାହିଁ ରାଜ୍ୟ ଲାଭ ॥୩୨
ଏଥି ଉତ୍ତାରେ ଭଗବାନ ।
ଦେବଙ୍କ ଯେ ଆଦି କାରଣ ॥୩୩
ରାଜାର ଗୁଣମାନ ଘେନି ।
ଜନ କୁଶଳେ ଆତ୍ମଯୋନି ॥୩୪
ନିଗମ ନିଜ ଗୁଣେ ଥାଇ ।
ଭୁବନୁ ଅଇଲେ ଗୋସାଇଁ ॥୩୫
ଗଗନ ମଧ୍ୟେ ଚନ୍ଦ୍ର ଯେହ୍ନେ ।
ବିରାଜି ଶୋହେ ତାରାଗଣେ ॥୩୬
ନିର୍ମଳ ପୂଜା ଉପହାରେ ।
ପୂଜିଲେ ତାଙ୍କୁ ଦେବବରେ ॥୩୭
ପଥରେ ଯୂଥ ଯୂଥ ହୋଇ ।
ସିଦ୍ଧ ଗନ୍ଧର୍ବେ ଗୀତ ଗାଇ ॥୩୮
ଚାରଣ ମୁନିଙ୍କ ସହିତେ ।
ଗାୟନ କଲେ ଯେଝାମତେ ॥୩୯
ଗନ୍ଧମାର୍ଦ୍ଦନ ଗିରି ତଳେ ।
ଶୋଭା କରାଇ ବିଜେ କଲେ ॥୪୦
ହଂସଯାନରେ ଆଗମନ ।
ହରିଣ୍ୟଗର୍ଭ ଯା'ର ନାମ ॥୪୧
ସେଠାରେ ଥାଇଣ ନାରଦ ।
ବନ୍ଦିଲେ ପିତା ପଦ୍ମପାଦ ॥୪୨
ମନୁ ସହିତେ ନୃପବର ।
ଆନନ୍ଦେ ଯୋଡି ବେନିକର ॥୪୩

Dr. Sudhanshu Sekhar Mishra

ପିତାମହଙ୍କୁ ସେ ନମିଲା ।
ଚରଣେ ଶିର ନିବେଶିଲା ॥୪୪
ପ୍ରିୟବ୍ରତର ପୂଜା ଘେନି ।
କୋମଳବାକ୍ୟେ ପଦ୍ମଯୋନି ॥୪୫
ସଦୟେ ଚାହିଁ ବେଦବର ।
ରାଜାଙ୍କୁ ବୋଲନ୍ତି ଉତ୍ତର ॥୪୬

ବ୍ରହ୍ମା ଉବାଚ

ହେ ପ୍ରିୟବ୍ରତ କହୁଁ ତୋତେ ।
କ୍ରୋଧ ନ କର ତୋ'ର ଚିତ୍ତେ ॥୪୭
ଆମ୍ଭେ ନାରଦ ଆଦି ଯେତେ ।
ଯା' ଆଜ୍ଞା ବହୁ ଅନାୟତ୍ତେ ॥୪୮
ତପସ୍ୟା ବିଦ୍ୟା ଯୋଗ କରି ।
ପଣ୍ଡିତପଣକୁ ଆଚରି ॥୪୯
ଧର୍ମେ ବା ଅର୍ଥେ କେହୁ ଏଡି ।
ଈଶ୍ୱର ଇଚ୍ଛାକୁ ନ ପାରି ॥୫୦
ଜନ୍ମ ମରଣ କର୍ମେ ପାଇ ।
ଜୀବ ଶରୀରକୁ ବହଇ ॥୫୧
ଶୋକ-ମୋହକୁ ନିତ୍ୟେ ପାଇ ।
ସୁଖ ଦୁଃଖକୁ ସେ ଭୁଞ୍ଜଇ ॥୫୨
ଦଉଡି ନାସାରନ୍ଧ୍ରେ ଦେଇ ।
ପଶୁକୁ ଯେସନେ ବୁହାଇ ॥୫୩
ଈଶ୍ୱର ବାକ୍ୟ ଗୁଣ ବଳେ ।
ଜୀବ ଭ୍ରମଇ ଏ ଶୟଳେ ॥୫୪
ଦ୍ୱିପଦ ଚତୁଷ୍ପଦ ଯେତେ ।
ସର୍ବେ ବନ୍ଧନ ସେହିମତେ ॥୫୫
ଦୁଃଖସୁଖ କର୍ମ ଗୁଣରେ ।
ଏମାନ ଘେନି ସଙ୍ଗତରେ ॥୫୬
ଈଶ୍ୱର ସୃଷ୍ଟିର କରତା ।
ସକଳେ ତାହାଙ୍କୁ ସେବନ୍ତା ॥୫୭
ସେହି ଈଶ୍ୱରବଶେ ଦେହୀ ।
ଅନ୍ଧର ପ୍ରାୟ ଭ୍ରମୁଥାଇ ॥୫୮
ଦେଖୁ ଦେଖୁଣ ଭ୍ରମୁ ଥାଇ ।
ଏ କଥା ମୂଢ ନ ଜାଣଇ ॥୫୯

ବିମୁକ୍ତ ହେଲେ ହେଁ ପୁରୁଷ ।
ପ୍ରାରବ୍ଧ ଭୁଞ୍ଜଇ ଅବଶ୍ୟ ॥୬୦
ନିଦ୍ରାକୁ ପାଇ ଯେହ୍ନେ ନରେ ।
ସ୍ୱପ୍ନ ଦେହରେ ଭୋଗ କରେ ॥୬୧
ପ୍ରମତ୍ତ-ପ୍ରାଣୀମାନଙ୍କର ।
କେବେହେଁ ଭ୍ରମ ନୋହେ ଦୂର ॥୬୨
ଲୋଭାଦିମାନଙ୍କରେ ଯୁତ ।
ଯେଣୁ ହୁଅଇ ଅବିରତ ॥୬୩
ଯେ ବୁଧ ଜିଣେ ଇନ୍ଦ୍ରିମାନ ।
ତାହାର ଗୃହ କର୍ମମାନ ॥୬୪
ବନ୍ଧନ ନ କରେ ତାହାରେ ।
ନିର୍ଭୟେ ଭ୍ରମେ ସେ ଗୃହରେ ॥୬୫
ଲୋଭାଦି ଜିଣନ୍ତି ଯେ ଜନ ।
ଗୃହେ ନ ରମେ ତା'ର ମନ ॥୬୬
ଦୁର୍ଗ ମଧ୍ୟରେ ଥାଇ ଯେହ୍ନେ ।
ଜିଣି ପ୍ରବଳ ଶତ୍ରୁଗଣେ ॥୬୭
ଗୃହ ମଧ୍ୟରେ ଦେଇ ମନ ।
ଲୋଭାଦି ନାଶିବ ତେସନ ॥୬୮
ଇନ୍ଦ୍ରିୟ ଜିଣନ୍ତେ ସେ ନର ।
ଆନନ୍ଦେ ଭ୍ରମିବ ସଂସାର ॥୬୯
ତୁ ପଦ୍ମନାଭ-ପଦାଶ୍ରିତ ।
ସର୍ବସଙ୍ଗରୁ ହୋଇ ମୁକ୍ତ ॥୭୦
କରି ସଂସାର-ସୁଖ ଲାଭ ।
ଅନ୍ତେ ପରମଗତି ଲାଭ ॥୭୧

ଶୁକ ଉବାଚ

ଏମନ୍ତ ତ୍ରିଭୁବନେ ପୁରି ।
ଭଗବାନଙ୍କ ଆଜ୍ଞାକାରୀ ॥୭୨
ବିନୟେ ବ୍ରହ୍ମା ଉପଦେଶେ ।
ସ୍ୱୀକାର କଲା ସେ ବିଶ୍ୱାସେ ॥୭୩
ନାରଦ ରାଜା ପ୍ରିୟବ୍ରତେ ।
ପୂଜିତ ହୋଇ ଯଥୋଚିତେ ॥୭୪
ନିଷ୍କଳଆତ୍ମା ନିଜସ୍ଥାନେ ।
ଗମିଲେ ଚତୁରଆନନେ ॥୭୫

ଶୁଣ ରାଜନ ପରୀକ୍ଷିତ ।
ତଦନ୍ତେ ରାଜା ପ୍ରିୟବ୍ରତ ॥୭୬
ବ୍ରହ୍ମାଙ୍କ ଜ୍ଞାନବାକ୍ୟ ଶୁଣି ।
ଆପଣେ ଅକିଞ୍ଚନ ମାନି ॥୭୭
ମନରେ ଭାଳନ୍ତି ରାଜନ ।
ପାଳିବି ବ୍ରହ୍ମାଙ୍କ ବଚନ ॥୭୮
ନାରଦ ବାକ୍ୟେ ମନ ଦେଇ ।
ମନୁ ଆତ୍ମଜେ ମହୀ ଦେଇ ॥୭୯
ବିଷମ-ବିଷୟାକୁ ତେଜି ।
ରହେ ସାତ୍ତ୍ୱିକଭାବେ ମଜ୍ଜି ॥୮୦
ଏଥୁ ଅନ୍ତରେ ପୃଥିବୀରେ ।
ନିଯୁକ୍ତ ହୋଇଲା କ୍ରମରେ ॥୮୧
ଅଖିଳ-ଜଗତ-ବନ୍ଦନ ।
ନିବେଶି କୃଷ୍ଣପାଦେ ମନ ॥୮୨
ଆଦିପୁରୁଷ ପାଦେ ଧ୍ୟାୟି ।
ମନ ନିବେଶି ନିତ୍ୟେ ତହିଁ ॥୮୩
ପୃଥିବୀ ପରିପାଳନରେ ।
ଚିତ୍ତ ସେ ଦେଲା ନିରନ୍ତରେ ॥୮୪
ଯେ ବିଶ୍ୱକର୍ମା ପ୍ରଜାପତି ।
ତାର ଦୁହିତା ବିର୍ହିଷ୍ମତୀ ॥୮୫
ସେ କନ୍ୟା ବରି ନରନାଥ ।
ବିଭା ହୋଇଲା ଯଥୋଚିତ ॥୮୬
ଦଶ ଆତ୍ମଜ ତା'ର ତହିଁ ।
ଜନ୍ମିଲେ ଗୁଣ-ତେଜ ବହି ॥୮୭
ଏକ ଦୁହିତା ରୂପବତୀ ।
ନାମ ଯାହାର ଉର୍ଜସ୍ୱତୀ ॥୮୮
ଆଗ୍ନୀଧ୍ର ଇଧ୍ମଜିହ୍ୱ ଦୁଇ ।
ତୃତୀୟ ଯଜ୍ଞବାହୁ ହୋଇ ॥୮୯
ସବନ ଘୃତପୃଷ୍ଠ ଆଉ ।
ହିରଣ୍ୟରେତା ମହାବୀର ॥୯୦
ବୀତିହୋତ୍ର ଯେ ମେଧାତିଥି ।
କବି ଏ ଦଶନାମ ଖ୍ୟାତି ॥୯୧
ଏ ଦଶନାମ ପୁତ୍ରଙ୍କର ।
ଏଥିର ମଧ୍ୟେ ତିନି ସାର ॥୯୨

Dr. Sudhanshu Sekhar Mishra

ମହାବୀର କବି ସବନ ।
ଉର୍ଦ୍ଧ୍ୱରେତା ଏ ତନିଜଣ ॥୯୩

ପରମହଂସ ଦୀକ୍ଷା ଧରି ।
ସକଳ ଚେଷ୍ଟା ପରିହରି ॥୯୪

ସର୍ବଜୀବରେ କୃପାମୟ ।
ଶ୍ରୀବାସୁଦେବେ କରି ଲୟ ॥୯୫

ଭୟେ ଆରତ-ପ୍ରାଣୀଙ୍କର ।
ଶରଣ-ରକ୍ଷଣ-ଶ୍ରୀଧର ॥୯୬

ସେ ପଦ୍ମପାଦ ଆଶ୍ରୟରୁ ।
ନିରତେ ନାମ କୀର୍ତ୍ତନରୁ ॥୯୭

ପରମଭକ୍ତି ପ୍ରଭାବରେ ।
ଦୟା ବହିଲେ ପ୍ରାଣୀଠାରେ ॥୯୮

ଭାବେ ନିର୍ମଳଚିତ୍ତ ହୋଇ ।
ହରି ସର୍ବଭୂତେ ଦେଖଇ ॥୯୯

ସେ ମହାପ୍ରଭୁ ନାରାୟଣେ ।
ନିତ୍ୟେ ଭଜିଲେ ଦାସପଣେ ॥୧୦୦

ପ୍ରିୟବ୍ରତଙ୍କ ଅନ୍ୟନାରୀ ।
ଥିଲା ସେ ଅତୀବ ସୁନ୍ଦରୀ ॥୧୦୧

ଦ୍ୱିତୀୟ ପତ୍ନୀ ଗର୍ଭେ ତା'ର ।
ହୋଇଲେ ତିନି ଯେ କୁମର ॥୧୦୨

ଉତ୍ତମ ତାମସ ରୈବତ ।
ମନୁରେ ହୋଇଲେ ବିଖ୍ୟାତ ॥୧୦୩

ଏମନ୍ତ ପୁତ୍ରମାନ ଘେନି ।
ସେ ରାଜା ଚିରକାଳ ପୁଣି ॥୧୦୪

ସୁବାହୁ ବଳବୀର୍ଯ୍ୟ ଧରି ।
ପୃଥିବୀ ନିଷ୍କଣ୍ଟକ କରି ॥୧୦୫

ସେ ରାଜା ପୁରୁଷାର୍ଥ କରି ।
ଧରମପଥକୁ ଆଚରି ॥୧୦୬

ସେ ରାଜା ପତ୍ନୀ ବିଷୟରେ ।
ପ୍ରତି ଦିବସ ସ୍ନେହଭରେ ॥୧୦୭

ସେ ପତ୍ନୀ ନବ-ଯଉବନେ ।
ମନ୍ଦହାସ ଅବଲୋକନେ ॥୧୦୮

ବିହାର ତା'ର ସଙ୍ଗେ କରି ।
ତା' ବଶ ନୋହି ଦଣ୍ଡଧାରୀ ॥୧୦୯

ବିବିଧ-କ୍ରୀଡା ନାନାରଙ୍ଗେ ।
ଦିନ ହରଇ ତା'ର ସଙ୍ଗେ ॥୧୧୦

ଏମନ୍ତେ ରାଜା ପ୍ରିୟବ୍ରତ ।
ରାଜ୍ୟ ପାଳନେ ହେଲା ରତ ॥୧୧୧

ପ୍ରଜାଙ୍କୁ ପାଳନ୍ତି ହରଷେ ।
ଏକାଦଶ-ଅର୍ବୁଦ-ବର୍ଷେ ॥୧୧୨

ତାହାଙ୍କ ବେନିଭୂଜ ତେଜେ ।
ବିପକ୍ଷପକ୍ଷ ତା'ଙ୍କୁ ଭଜେ ॥୧୧୩

ଏମନ୍ତ ନିର୍ଭୟ-ମନରେ ।
ଆନନ୍ଦେ ସଂସାରେ ବିହରେ ॥୧୧୪

ମେରୁକୁ ସୂର୍ଯ୍ୟ ଯେବେ ଯାଏ ।
ତେଜରେ ପ୍ରକାଶ ସେ ହୋଏ ॥୧୧୫

ତେଜେ ସୂର୍ଯ୍ୟତେଜ ଗଞ୍ଜଇ ।
ତପସ୍ୟାବଳେ ବିରାଜଇ ॥୧୧୬

ଆରୋହି ଜ୍ୟୋତିର୍ମୟ-ରଥେ ।
ପ୍ରକାଶ କରାଇବା ଅର୍ଥେ ॥୧୧୭

ରଜନୀ ଦିବସେ ଭ୍ରମଇ ।
ଦ୍ୱିତୀୟସୂର୍ଯ୍ୟ ପ୍ରାୟ ହୋଇ ॥୧୧୮

ତପସ୍ୟାବଳୁ ପ୍ରିୟବ୍ରତ ।
ସାଧିଲା ଅବ୍ୟକ୍ତ ଏ ବ୍ରତ ॥୧୧୯

ଏମନ୍ତ ଜାଣି ବେଦପତି ।
ଆସି ମିଳିଲେ ତା'ର କତି ॥୧୨୦

ସସ୍ନେହେ କହେ ବେଦବର ।
ଏ ନୋହେ ତୁମ୍ଭ ଅଧିକାର ॥୧୨୧

ସେ ରାଜା ରଥର ଚକ୍ରର ।
ହୋଇଲା ଯେତେକ ବିସ୍ତାର ॥୧୨୨

ତେଣୁ ସପତସିନ୍ଧୁ ହେଲା ।
ପୃଥିବୀ ସାତଭାଗ କଲା ॥୧୨୩

ଶାକ ଶାଲ୍ମଳୀ ଜମ୍ବୁ ପ୍ଳକ୍ଷ ।
କୁଶ ପୁଷ୍କର ଆଉ କ୍ରୌଞ୍ଚ ॥୧୨୪

ଏପରି ସପ୍ତଦ୍ୱୀପ ହେଲା ।
ସେ ରାଜା ଆନନ୍ଦେ ବୁଡିଲା ॥୧୨୫

ଆନନ୍ଦମନେ ଦଣ୍ଡଧାରୀ ।
ଏହା ସେ କର୍ମରେ ବିଚାରି ॥୧୨୬

ଏମନ୍ତେ ରାଜା ପ୍ରିୟବ୍ରତ ।
ସଂସାରକାର୍ଯ୍ୟେ ହେଲା ରତ ॥୧୨୭

ପୁତ୍ରଙ୍କୁ ଅଧିପତି କଲେ ।
ରାଜ୍ୟ ବିଭାଗ କରିଦେଲେ ॥୧୨୮

ଦୁହିତା ଉର୍ଜସ୍ୱତୀ ନାମ ।
ତାହାକୁ ଶୁକ୍ରେ କଲା ଦାନ ॥୧୨୯

ତାହାର କନ୍ୟା ଅନୁପମ ।
ହୋଇଲା ଦେବଯାନୀ ନାମ॥୧୩୦

ଏଣୁ ଅନ୍ତରେ ରାଜା ଚିତ୍ତେ ।
ବୈରାଗ୍ୟ ଉପୁଜେ ନିରତେ ॥୧୩୧

ମନେ ବିଚାରି ନୃପନାଥ ।
ସ୍ୱନିନ୍ଦା କଲାକ ବହୁତ ॥୧୩୨

ସ୍ତ୍ରୀସଙ୍ଗେ ଆସକ୍ତ ହୋଇଲି ।
ବଡ଼ ଅସାଧୁପଣ କଲି ॥୧୩୩

ଏଣୁ ଇନ୍ଦ୍ରିୟେ ବଶ ହୋଇ ।
ଅବିଦ୍ୟା-ବିଷୟରେ ଥାଇ ॥୧୩୪

ଏଣୁ ଏ ଧିକ ମୋ ଜୀବନ ।
ବିସ୍ମୟେ ଭାଳନ୍ତେ ରାଜନ ॥୧୩୫

ଇଷ୍ଟ ଦେବତା-ପ୍ରସାଦରେ ।
ବୈରାଗ୍ୟ ଜାତ ତା' ମନରେ ॥୧୩୬

ବିଷୟ-ଚେଷ୍ଟା ପାଶୋରିଲା ।
ଇନ୍ଦ୍ରିୟମାନ ନିରୋଧିଲା ॥୧୩୭

ରାଜସମ୍ପଦ ନ ଇଛିଲା ।
ପୁତ୍ରଙ୍କୁ ଭାଗ କରି ଦେଲା ॥୧୩୮

ସ୍ୱପତ୍ନୀ ତେଜି ମୃତପ୍ରାୟେ ।
ମୁକ୍ତି ଇଛିଲା ନୃପରାୟେ ॥୧୩୯

ମହାନୁଭାବ ଭଗବାନ ।
ନାରଦ ବ୍ରହ୍ମାର ନନ୍ଦନ ॥୧୪୦

ତାହାଙ୍କ ପଥ ଆଶ୍ରେ କଲା ।
ନିଶ୍ଚୟେ ନିବୃତ୍ତ ହୋଇଲା ॥୧୪୧

ଯେଉଁ ରାଜାର ଏତେ କୃତ୍ୟ ।
ଗାୟନ କରନ୍ତି ଜଗତ ॥୧୪୨

ପ୍ରିୟବ୍ରତର କଲାକର୍ମ ।
ଏହା କେ କରିବାକୁ କ୍ଷମ ॥୧୪୩

Dr. Sudhanshu Sekhar Mishra

ତାହାର ରଥଚକ୍ର-ମାଗେ ।
ସପ୍ତସମୁଦ୍ର ପୃଥ୍ୱୀଭାଗେ ॥୧୪୪
ଭାଗ-ବିଭାଗ ମହୀ କରି ।
ଦ୍ୱୀପ-ଉପଦ୍ୱୀପ ବିସ୍ତାରି ॥୧୪୫
ଯେବା କଲା ମନୁକୁମର ।
ପୃଥିବୀ-ସ୍ୱର୍ଗେ ଅଗୋଚର ॥୧୪୬
ସେ ପ୍ରିୟବ୍ରତର ମହିମା ।
ତ୍ରୈଲୋକ୍ୟେ ନାହିଁନା ଉପମା ॥୧୪୭
ପ୍ରିୟ ଅଖିଳ ଜନଙ୍କର ।
ମହାମହିମା ଅଗୋଚର ॥୧୪୮
ପ୍ରିୟବ୍ରତ ରାଜା ଚରିତ ।
କହଇ ଦାସ ଜଗନ୍ନାଥ ॥୧୪୯

ଇତି ଶ୍ରୀମଦ୍‌ଭାଗବତେ ମହାପରାଣେ
ପାରମହଂସ୍ୟାଂ
ସଂହିତାୟାଂ ପଞ୍ଚମସ୍କନ୍ଧେ ପ୍ରିୟବ୍ରତ
ବିଜୟେ ପ୍ରଥମୋଽଧ୍ୟାୟଃ ॥

---

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ଏ ଅନ୍ତରେ ।
ପିତାର ଆଜ୍ଞା ଘେନି ଶିରେ ॥୧
ଜମ୍ବୁଦ୍ୱୀପରେ ପ୍ରଜାଜନ ।
ଆଗ୍ନୀଧ୍ର କରଇ ପାଳନ ॥୨
ଏମନ୍ତେ କେତେଦିନ ଗଲା ।
ଆଗ୍ନୀଧ୍ର ମନେ ବିଚାରିଲା ॥୩
ସନ୍ତୋଷ ପିତୃଲୋକଙ୍କର ।
କେମନ୍ତେ ହୋଇବ ମୋହାର ॥୪
ଏମନ୍ତ ମନେ ବିଚାରିଲା ।
ମନ୍ଦରଗିରିରେ ମିଳିଲା ॥୫
ସୁରବନିତା କ୍ରୀଡାସ୍ଥାନେ ।
ପଶିଲା ଗହନ କାନନେ ॥୬
ସଂସାରକରତାଙ୍କୁ ଧ୍ୟାୟି ।
ବସିଲା ସ୍ଥିରମନ ହୋଇ ॥୭
ତାହା ଜାଣିଲେ ଭଗବାନ ।
ଯେ ବ୍ରହ୍ମା ସୃଷ୍ଟିର କାରଣ ॥୮
ସଭାରେ କରଇ ଗାୟନ ।
ଯାହାର ପୂର୍ବଚିତ୍ତି ନାମ ॥୯
ଅତି ସୁନ୍ଦରୀ ଅପସରୀ ।
ତାକୁ ପେଷିଲେ ବେଗ କରି ॥୧୦
ଆଗ୍ନୀଧ୍ର ତପୋବନ ଲାଗେ ।
ମିଳିଲା ଅପସରୀ ବେଗେ ॥୧୧
ଅତିମଞ୍ଜୁଳ ମନୋହର ।
ବିବିଧ-ବିଟପୀ-ଅପାର ॥୧୨
ଘନ-ନିବିଡ-ଲତାମାନ ।
ଅଛନ୍ତି ନାନା-ପକ୍ଷୀଗଣ ॥୧୩
କର୍ଣ୍ଣାଭିରାମ-ଧ୍ୱନିମାନ ।
କରନ୍ତି ହରଷିତ ମନ ॥୧୪
ସ୍ୱଚ୍ଛ ନିର୍ମଳ ସ୍ୱାଦୁ ବାରି ।
ବିବିଧ-ଜଳାଶୟେ ପୂରି ॥୧୫
କୁକ୍କୁଟ-କାରଣ୍ଡବ-ହଂସ ।
କରନ୍ତି ରୁଚିର-ବିଳାସ ॥୧୬
କାନନେ ନାନା ପୁଷ୍ପସାର ।
ପଦ୍ମ-ପୂରିତ-ସରୋବର ॥୧୭
ମନ୍ଦପବନ ବହେ ନିତ୍ୟେ ।
ତା' ଦେଖି କନ୍ୟା ତୋଷଚିତ୍ତେ ॥୧୮
କରଇ ଲଳିତେ ଗାୟନ ।
ବିନ୍ୟାସେ ପାଦଗତିମାନ ॥୧୯
ଚରଣେ ନୂପୁର ତାହାର ।
ଧ୍ୱନି କରଇ ମନୋହର ॥୨୦
ଅତି ମଞ୍ଜୁଳ-ତାନ ଶୁଣି ।
ନୃପ କୁମର-ଶିରୋମଣି ॥୨୧
ସମାଧିଯୋଗରୁ ତାହାର ।
ନୟନକମଳଯୁଗଳ ॥୨୨
ଈକ୍ଷିତେ ବିକଶିତ କଲା ।
ମନ୍ଦ-ମଧୁରେ ସେ ଚାହିଁଲା ॥୨୩
ନିକଟେ ତା'ର ମୁଖ ଦେଖି ।
ପିଛାଡି ନ ପାରଇ ଆଖି ॥୨୪
ଭ୍ରମର-ମତି ସେ ଯେସନ ।
ପୁଷ୍ପ ଲୋଡଇ ବନେବନ ॥୨୫
ଦେବମାନବ ଆଦି ଯେତେ ।
ଉଲ୍ଲାସ ହୁଅନ୍ତି ଜଗତେ ॥୨୬
ବିହାର-ଅବଲୋକନରେ ।
ସୁସ୍ୱର-ବଚନ-ମଧୁରେ ॥୨୭
ପ୍ରାଣୀର ମନକୁ ସେ ନେଇ ।
ଅନଙ୍ଗେ ଅସ୍ଥିର କରଇ ॥୨୮
ସେ ଯେତେବେଳେ ବାକ୍ୟ କହି ।
ବଦନୁ ସୁଗନ୍ଧ ବାସଇ ॥୨୯
ତେଣେ ଲୁବ୍ଧ-ଭୃଙ୍ଗଗଣେ ।
ଭ୍ରମନ୍ତି ତା'ର ସନ୍ନିଧାନେ ॥୩୦
ତେଣୁ ନ ପାରେ ବେଗେ ଯାଇ ।
ପବନେ ବସନ ଚଳଇ ॥୩୧
ତା ଦେଖି ନୃପତିନନ୍ଦନ ।
ହୋଇଲା ଅନଙ୍ଗେ ଅଧୀନ ॥୩୨
ଜଡ ପରାୟେ ସେ ହୋଇଲା ।
କାହୁଁ ତୁ ଅଇଲୁ ବୋଇଲା ॥୩୩
ବନଦେବତା ମାୟାକରି ।
ବନେ କି ଖୋଜୁ ବନ ହେରି ॥୩୪
କାମର ଅସ୍ତ୍ରମାନ ଯୋଖି ।
କି ଅର୍ଥେ ବୁଲୁ ତୁ ମୃଗାକ୍ଷି ॥୩୫
ମୃଗାକ୍ଷି କହ ତୁ ବଚନ ।
ମୃଗକୁ ଲୋଡୁ କି କାରଣ ॥୩୬

Dr. Sudhanshu Sekhar Mishra

ତୋ' ବେନି କମଳଲୋଚନ ।
ନିଶ୍ଚୟ ଅନଙ୍ଗର ବାଣ ।।୩୭
କାହାକୁ ବିନ୍ଧିବୁ ସୁନ୍ଦରି ।
କହ ତୁ ମାୟା ଦୂରକରି ।।୩୮
ଯେଉଁ ଲୋକରେ ଦୟାକରି ।
ଅନଙ୍ଗ-ଅନଳେ ନ ମାରି ।।୩୯
ତୋହର ଶିରୁ ଶ୍ଲଥ ହୋଇ ।
କୁସୁମମାନ ପଡୁଛଇଁ ।।୪୦
ଚରଣ-ପଙ୍କଜେ ତୋହର ।
ମଧୁର ବାଜଇ ନୂପର ।।୪୧
ଶରୀର ପୁଲକ ତୋହର ।
ଉରରେ ଘନ-କୁଚଭାର ।।୪୨
କି ଅବା ଚକ୍ରବାକ ବେନି ।
ଶରୀରେ ବହିଛୁ ଭାମିନି ।।୪୩
ମଧ୍ୟଭାଗ ଯେ କୃଶ ତୋର ।
ଦିଶଇ ଅତି ମନୋହର ।।୪୪
ଯହିଁ ମୋ ନୟନଯୁଗଳ ।
ଆଶ୍ରୟ କଲାକ ନିଶ୍ଚଳ ।।୪୫
ମୋହର ତପୋବନ ଭୂଇଁ ।
ଅତି ସୁଗନ୍ଧ କଲୁ ତୁହି ।।୪୬
ଯାହାର ନୟନ-ଗୋଚର ।
ହୋଇବ ରୂପଗୁଣ ତୋର ।।୪୭
ସେ କି ଅନଙ୍ଗବଶ ନୋହି ।
ରହିବ ଏମନ୍ତ କେ ଦେହୀ ।।୪୮
ଅଦ୍ଭୁତ-ସୁଧାରସ-ସାର ।
ଆନନ୍ଦ କରଇ ଅଧର ।।୪୯
ସୁରଙ୍ଗ ଦିଶଇ ବାହାର ।
କି ଅବା ଦେବା ପଟାନ୍ତର ।।୫୦
ବିଷ୍ଣୁକଳାକୁ କି ତୁ ଧରି ।
ମର୍ତ୍ତ୍ୟକୁ ଅଇଲୁ ସୁନ୍ଦରି ।।୫୧
ମକର କୁଣ୍ଡଳ ତୋ' କର୍ଣ୍ଣେ ।
ଚଞ୍ଚଳ ମୀନ କି ନୟନେ ।।୫୨
ଏ ତୋର ଦନ୍ତପନ୍ତି ଦୁଇ ।
ଡାଳିମ୍ବ-ବୀଜକୁ ଗଞ୍ଜଇ ।।୫୩
ଯେ ତୋର କରପଦ୍ମେ ଧରି ।
ପତଙ୍ଗ ଖେଳାଉ ସୁନ୍ଦରି ।।୫୪

ତା'ର ଭ୍ରମଣ କରିବାରେ ।
ମୋ ଚିତ୍ତ ଭ୍ରମ ସେହୁ କରେ ।।୫୫
ଏ ବନ-ସରୋବରେ ମୁହିଁ ।
କଷ୍ଟେ ତପସ୍ୟା ଆଚରଇଁ ।।୫୬
ତପ କି ପୂର୍ଣ୍ଣହେଲା ମୋର ।
ଯେଣୁ ତୁ ନୟନ ଗୋଚର ।।୫୭
କି ଅବା ପ୍ରଭୁ ପ୍ରସନ୍ନରେ ।
ସୁନ୍ଦରି ମିଳିଲୁ ଛାମୁରେ ।।୫୮
ପ୍ରସନ୍ନ ହୁଅ ମୋତେ ତୁହି ।
ମିତ୍ରଭାବରେ ମୁଁ ଭଜଇ ।।୫୯
ତୋତେ ନ ଛାଡିବଇଁ ମୁହିଁ ।
ବ୍ରହ୍ମା କି ଦେଲେ ପଠିଆଇ ।।୬୦
ତୋ ରୂପ ଦେଖି ମୋର ମନ ।
ରହିଲା ନିଶ୍ଚଳେ ନୟନ ।।୬୧
ହେ ପୀନସ୍ତନି ଶୁଭ୍ରକେଶି ।
ତୁ ମୋତେ ଘେନ ଗୋ ଆଶ୍ୱାସି ।।୬୨
ଚିତ୍ତ ମୋହର ତୋର ତହିଁ ।
ନିଶ୍ଚଳେ ରହିଲା ଗୋ ସହି ।।୬୩
ସଫଳ କର ତୁହି ଏହା ।
ସ୍ୱଭାବେ ତୁ ତ ପୁଣ୍ୟଦେହା ।।୬୪
ଏମନ୍ତେ ଅନୁନୟ-ବାଣୀ ।
ବିବିଧେ କହେ ନୃପମଣି ।।୬୫
ମଧୁର-କୋମଳବଚନ ।
କହି ହରିଲା କନ୍ୟାମନ ।।୬୬
ନୃପକୁମର ରୂପ ଗୁଣ ।
ବିଦ୍ୟା-ଯୌବନ-ଶୂରପଣ ।।୬୭
ଏମନ୍ତ ଗୁଣେ କନ୍ୟାମନ ।
ତକ୍ଷଣେ ହୋଇଲା ବନ୍ଧନ ।।୬୮
ଆଗ୍ନୀଧ୍ର ସଙ୍ଗତେ ସୁନ୍ଦରୀ ।
ଲକ୍ଷେବରଷ ଭୋଗ କରି ।।୬୯
ଜମ୍ବୁଦ୍ୱୀପରପତି ତୁଲେ ।
ବିବିଧଭୋଗ ସେ ଭୁଞ୍ଜିଲେ ।।୭୦
ସେ ପୂର୍ବଚିତ୍ତି ଗର୍ଭୁଜାତ ।
ହୋଇଲେ ଆଗ୍ନୀଧ୍ରର ସୁତ ।।୭୧
ନାଭି ରମ୍ୟକ କିଂପୁରୁଷ ।
କୁରୁ ଭଦାଶ୍ୱ ହରିବର୍ଷ ।।୭୨

ହିରଣ୍ମୟ ଯେ ଇଳାବୃତ୍ତ ।
କେତୁମାଳ ଏ ନବସୁତ ।।୭୩
ବରଷ-ବରଷକେ ତା'ର ।
ହୋଇଲା ଏ ନବ କୁମର ।।୭୪
ଗୃହକୁ ପୂର୍ବଚିତ୍ତି ତେଜି ।
ବ୍ରହ୍ମାଚରଣେ ପୁଣ ଭଜି ।।୭୫
ମାତାର ପୁଣ୍ୟବଳୁ କରି ।
କୁମରେ ଧର୍ମକୁ ଆଚରି ।।୭୬
ପିତା-ବିଭାଗ-ଅନୁମତେ ।
ଜମ୍ବୁଦ୍ୱୀପକୁ ଯଥୋଚିତେ ।।୭୭
ଭୋଗ ସେ କରନ୍ତି କୁମରେ ।
ପିତାର ଆଜ୍ଞା ଘେନି ଶିରେ ।।୭୮
ଏ ଅନ୍ତେ ଆଗ୍ନୀଧ୍ର ରାଜନ ।
ସକାମେ କରି କର୍ମମାନ ।।୭୯
ସେ କିଛିଦିନ ଅନନ୍ତରେ ।
ଗମିଲେ ସେ ପିତୃଲୋକରେ ।।୮୦
ପିତା ପିତୃଲୋକ ଅନ୍ତରେ ।
ପୁତ୍ରେ ତା' ବିଭା ଯେ ସଂସାରେ ।।୮୧
ମେରୁର କନ୍ୟାମାନ ଯେତେ ।
ବିଭା ହୋଇଲେ ବେଦମତେ ।।୮୨
ପ୍ରତିରୂପା ଯେ ନାରୀ ରମ୍ୟା ।
ମେରୁଦେବୀ ଯେ ଲତା ଶ୍ୟାମା ।।୮୩
ଉଗ୍ରଦଂଷ୍ଟ୍ରୀ ଯେ ଦେବବୀତି ।
ଭଦ୍ରା ଯେ ଏ ନବ ଦୁହିତୀ ।।୮୪
ଏ ରୂପେ ଥିଲେ ଯେ ମେରୁର ।
ନବକନ୍ୟକା ମନୋହର ।।୮୫
ତାହାଙ୍କୁ ବିବାହ ହୋଇଲେ ।
ଧର୍ମରେ ପୃଥିବୀ ପାଳିଲେ ।।୮୬
କହଇ ବିପ୍ର ଜଗନ୍ନାଥ ।
ଆଗ୍ନୀଧ୍ରସୁତଙ୍କ ଚରିତ ।।୮୭

ଇତିଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଆଗ୍ନୀଧ୍ରବର୍ଣ୍ଣନଂ ନାମ
ଦ୍ୱିତୀୟୋଽଧ୍ୟାଂୟଃ ॥

---

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

### ଶୁକ ଉବାଚ

ଆଗ୍ନୀଧ୍ରସୁତଙ୍କ ମଧ୍ୟରେ ।
ନାଭିଙ୍କ ପୁତ୍ର ନୋହିବାରେ ॥୧

ବାଞ୍ଛା କରି ପୁତ୍ରକାମରେ ।
ତା' ପତ୍ନୀ ମେରୁଦେବୀଠାରେ ॥୨

ଭଗବାନ - ଯଜ୍ଞପୁରୁଷେ ।
ସେ ରାଜା ଭଜିଲା ବିଶ୍ୱାସେ ॥୩

ନାଭି ଯେ ଶୁଦ୍ଧଭାବ ଧରି ।
ମନ୍ତ୍ରେ ଆହୁତି ହବି-ବଳି ॥୪

ତାହାର ଶ୍ରଦ୍ଧାଭାବୁଁ କରି ।
ଯଜ୍ଞେ ପ୍ରସନ୍ନ ନରହରି ॥୫

ଭଗବାନ-ଭକ୍ତବତ୍ସଳ ।
ସେ ସର୍ବଆତ୍ମାର କୁଶଳ ॥୬

ରାଜାର ସନ୍ତୋଷ ନିମନ୍ତେ ।
ସ୍ୱଚ୍ଛନ୍ଦେ ଅତି ହୃଷ୍ଟଚିତ୍ତେ ॥୭

ମନ-ନୟନାନନ୍ଦ-ବେଶ ।
ଅଗ୍ନିରେ ହୋଇଲେ ପ୍ରକାଶ ॥୮

ଭୁଜଯୁଗଳ ବେନିକରି ।
ପୀତବସନ ଛନ୍ତି ଧରି ॥୯

ଶଙ୍ଖ-କମଳ ବାମେ ଧରି ।
ଦକ୍ଷିଣକରେ ଗଦା ଅରୀ ॥୧୦

ତେଜେ ବିରାଜମାନ ହୋଇ ।
କୌସ୍ତୁଭମଣି କଣ୍ଠେ ଶୋହି ॥୧୧

ଅମୂଲ୍ୟରତ୍ନ-ମୁକ୍ତାହାର ।
ବିରାଜମାନ ହୃଦୟର ॥୧୨

ବିବିଧମଣିମାନଙ୍କରେ ।
ନିର୍ମିତ ମୁକଟ ଶିରରେ ॥୧୩

କୁଣ୍ଡଳ-କଙ୍କଣ-ସୁନ୍ଦର ।
କଟୀମେଖଳା ରତ୍ନସାର ॥୧୪

ହାର କେୟୂର ଯେ ନୂପୁର ।
ଏ ଆଦି ଭୂଷଣ ଶରୀର ॥୧୫

ସେ ଯଜ୍ଞ ବରଣକର୍ତ୍ତାର ।
ଉତ୍ସୁକ ହୃଦୟେ ଅପାର ॥୧୬

ନିର୍ଦ୍ଧନ-ଗୃହପତି ଧନେ ।
ପ୍ରାପତ କୋଟିନିଧି ଯେହ୍ନେ ॥୧୭

ତେମନ୍ତ ହୋଇ ଦ୍ୱିଜଗଣ ।
ଯଜ୍ଞରେ ଥିଲେ ଯେତେ ଜନ ॥୧୮

ପରମ-ହରଷକୁ ପାଇ ।
ନମିଲେ ଶିରେ କର ଦେଇ ॥୧୯

ଭୋନାଥ ପରମକାରଣ ।
ତୁମ୍ଭର ଆମ୍ଭେ ଭୃତ୍ୟଗଣ ॥୨୦

ସର୍ବପୂରିତ ତୁ ଠାକୁର ।
ସେବା ତୁ ଘେନ ହେ ଆମ୍ଭର ॥୨୧

ତୋହର ଚରଣାରବିନ୍ଦେ ।
ନମିଲୁ ପରମ ଆନନ୍ଦେ ॥୨୨

ତୋ'ର ଭିଆଣ ଏ ଜଗତ ।
ପ୍ରକୃତି-ପୁରୁଷ ବିଦିତ ॥୨୩

ତ୍ରିଗୁଣେ ଜୀବ ବନ୍ଦୀ ହୋଇ ।
ତୋ'ର ମାୟାରେ ଭ୍ରମୁଥାଇ ॥୨୪

ଯେତେ ସୃଷ୍ଟିର କର୍ତ୍ତାମାନ ।
ସେ ସର୍ବେ ତୋହର ଅଧୀନ ॥୨୫

ଭୋନାଥ ତୋହର ମହିମା ।
ସଂଖ୍ୟାରେ କେ କରିବ ସୀମା ॥୨୬

ତୋ'ର ଆକୃତି-ରୂପ -ନାମ ।
ଧ୍ୟାନେ କରନ୍ତି ନିରୂପଣ ॥୨୭

ସାକ୍ଷାତେ ନୁହଁଇ ଗୋଚର ।
ଭୋ ପ୍ରଭୁ ରୂପଗୁଣ ତୋ'ର ॥୨୮

ତୋହର ନାମ ଉଚ୍ଚାରଣ ।
ସକଳ-ପାପ-ବିଧ୍ୱଂସନ ॥୨୯

ଅଖିଳ-ବ୍ରହ୍ମାଣ୍ଡ-ଠାକୁର ।
ତୁ ନାଥ କରୁଣାସାଗର ॥୩୦

ତୋହର ଯେତେ ଭକ୍ତଜନେ ।
ଆନନ୍ଦେ ପ୍ରସନ୍ନ ବଦନେ ॥୩୧

ସଲିଳ-ଦୂର୍ବା-ତୁଳସୀରେ ।
ପୂଜନ୍ତି ତୋହର ପୟରେ ॥୩୨

ତେଣୁ ତୁ ପରମପୁରୁଷ ।
ପ୍ରସନ୍ନ ହେଉ ହୃଷୀକେଶ ॥୩୩

ଏ ଯଜ୍ଞ ହୋଇଲା ସଫଳ ।
ଯେଣୁ ପ୍ରସନ୍ନ ଆଦିମୂଳ ॥୩୪

ସୁଫଳ କି ଅବା ଅପରେ ।
ହୋଇବ ଏଥୁ ଅଧିକରେ ॥୩୫

ବାଳକବୁଦ୍ଧି ସେ ଯେସନେ ।
ତେମନ୍ତ ପ୍ରାୟ ଆମ୍ଭେମାନେ ॥୩୬

ପୂର୍ଣ୍ଣ ଯେ ପରମ-ପୁରୁଷେ ।
ଯଜ୍ଞ ଯେ କରୁ ତୋ' ବିଶ୍ୱାସେ ॥୩୭

ପରମ-ଦୟାର ସାଗର ।
ରାଜାଙ୍କୁ ପ୍ରଭୁ କୃପା କର ॥୩୮

ଏମନ୍ତ ସ୍ତୁତି ଶ୍ରବଣରେ ।
ଜଗତ ପ୍ରଭୁ ସେ ଅଗ୍ନିରେ ॥୩୯

ରାଜାର ଚକ୍ଷୁର ଗୋଚର ।
ହୋଇଲେ ଅତି ମନୋହର ॥୪୦

ଯେ ଅବଶେଷ ପାପ ଥିଲା ।
ତକ୍ଷଣେ ସର୍ବ ଦୂର ଗଲା ॥୪୧

ପୁଣି ବୋଲନ୍ତି ଦ୍ୱିଜଗଣ ।
ଭୋନାଥ ସାବଧାନେ ଶୁଣ ॥୪୨

ଜ୍ଞାନ ଅନଳେ ପାପ ଦହି ।
ତୋ' ପାଦପଦ୍ମଯୁଗ ଧ୍ୟାୟି ॥୪୩

ଯେ ଆତ୍ମାରାମ-ମୁନିଗଣ ।
ସେବନ୍ତି ତୋହର ଚରଣ ॥୪୪

ଏ ତୋ'ର ଗୁଣକର୍ମମାନ ।
କରନ୍ତି ଅବିରତେ ଧ୍ୟାନ ॥୪୫

Dr. Sudhanshu Sekhar Mishra

ତୁ ନାଥ ଅଖିଳଠାକୁର ।
ପରମମଙ୍ଗଳର ଘର ॥୪୬
ଆମ୍ଭେ ସ୍ୱଭାବେ ହୀନଜନ ।
କରିବୁଁ ତୋହର ସ୍ମରଣ ॥୪୭
ସକଳ-କଲୁଷ-ନାଶନ ।
ନିର୍ମଳ ତୋ'ଗୁଣ ଗାୟନ ॥୪୮
ଆମ୍ଭର ମରଣଦଶାରେ ।
ତୋ' ନାମ ଥିବ ବଚନରେ ॥୪୯
ଏମନ୍ତ ଆଜ୍ଞା ପ୍ରଭୁ କର ।
ଅଖିଳବ୍ରହ୍ମାଣ୍ଡଠାକୁର ॥୫୦
ଏବେ ତୁ ଶୁଣ ଭାବଗ୍ରାହୀ ।
ଏ ରାଜା ପୁତ୍ରକାମୀ ହୋଇ ॥୫୧
ତୋ'ର ପ୍ରସାଦୁ ଏ କୁମର ।
ମାଗଇ ସଦୃଶରେ ତୋ'ର ॥୫୨
ସ୍ୱର୍ଗ ଭୋଗ ଯେ ମୋକ୍ଷପଦ ।
ସକଳ ଦେଉ ତୁ ଗୋବିନ୍ଦ ॥୫୩
ଏ ପୁତ୍ର ମାଗଇ ଯେମନ୍ତେ ।
ତୁଷ ମାଗିବା ଧନବନ୍ତେ ॥୫୪
ଏଥୁ ଅନ୍ତରେ ସେ ରାଜନ ।
ନିଶ୍ଚଳ ଚିତ୍ତେ କରି ଧ୍ୟାନ ॥୫୫
ଈଶ୍ୱର-ଶ୍ରୀମୁଖକୁ ଚାହିଁ ।
ଗଦ୍ଗଦେ ବଚନ ବୋଲଇ ॥୫୬

ଭୋ ନାଥ ପରମମଙ୍ଗଳ ।
ପ୍ରସନ୍ନ ହୁଅ ଆଦିମୂଳ ॥୫୭
ଏ ତୋ'ର ଚରଣାରବିନ୍ଦ ।
ଆଶ୍ରୟ ନ କରି ଗୋବିନ୍ଦ ॥୫୮
ଏ ଭବସାଗରେ ଯେ ଜନ ।
ମାୟାର ହୁଅନ୍ତି ଅଧୀନ ॥୫୯
ସେ ମୂଢ଼ପ୍ରାଣୀମାନଙ୍କର ।
ଭୋ ନାଥ ଏମନ୍ତ ବେଭାର ॥୬୦
ତୋ'ର ଚରଣେ ନ ଭଜନ୍ତି ।
ଅଜ୍ଞାନେ ସଂସାରେ ପଡନ୍ତି ॥୬୧
ସକଳକର୍ତ୍ତା ତୁ ଈଶ୍ୱର ।
ତୋ'ର ଭିଆଣ ଏ ସଂସାର ॥୬୨
ଏମନ୍ତେ ନାଭି-ସ୍ତୁତି ଶୁଣି ।
ଦେବାଧିଦେବଶିରୋମଣି ॥୬୩
ଅଖିଳ-ବୃନ୍ଦାରକଗଣ ।
ସେବନ୍ତି ଯାହାର ଚରଣ ॥୬୪
ସଦୟ ଚିତ୍ତେ ଭଗବାନ ।
କହନ୍ତି କୋମଳ ବଚନ ॥୬୫

ଭଗବାନ ଉବାଚ

ହେ ସର୍ବ ମୁନିଜନ ଯେତେ ।
ସ୍ତୁତିରେ ବଶ କଲ ମୋତେ ॥୬୬

ମୋହର ସଦୃଶ ଏହା ସୁତ ।
ମାଗିଲ ଏ ବଡ଼ ଅଦ୍ଭୁତ ॥୬୭
ମୋହର ରୂପ ତ ଅପାର ।
କି ରୂପେ ହୋଇବି କୁମର ॥୬୮
ତପସ୍ୟା-ବ୍ରହ୍ମବାକ୍ୟମାନ ।
ବିଅର୍ଥ ହୋଇବ କେସନ ॥୬୯
ବ୍ରହ୍ମାର କୁଳ ଏ ହୁଅଇ ।
ମୋହର ପାଳିବା ଯୋଗାଇ ॥୭୦
ଏବେ ମୁଁ ପୁତ୍ରରୂପ ହୋଇ ।
ଅଂଶରେ ଅବତରିବଇଁ ॥୭୧
ରାଜା ସହିତେ ମୁନିଗଣ ।
ଶୁଣିଲେ ଏମନ୍ତ ବଚନ ॥୭୨
ଏତେକ କହି ନାରାୟଣ ।
ଅଗ୍ନିରେ ହେଲେ ଅନ୍ତର୍ଦ୍ଧାନ ॥୭୩
ଏମନ୍ତେ ମୁନି ଯଜ୍ଞ କରି ।
ପ୍ରସନ୍ନ କରାଇଲେ ହରି ॥୭୪
ରାଜାର ପ୍ରିୟଭାବ ବହି ।
ସେ ପ୍ରଭୁ ମେରୁଦେବୀ ଠହିଁ ॥୭୫
ସଂସାରେ ଧର୍ମ ବିସ୍ତାରିଣ ।
ଅବତରିଲେ ନାରାୟଣ ॥୭୬
ବୋଲଇ ଦାସ ଜଗନ୍ନାଥ ।
ରାଜା-ଯଜ୍ଞସ୍ତୁତି-ଚରିତ ॥୭୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ନାଭିଚରିତେ
ଋଷଭାବତାରୋ ନାମ
ତୃତୀୟୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଚତୁର୍ଥ ଅଧ୍ୟାୟ

ଶୁକ ଉବାଚ

ଏଥୁଅନ୍ତରେ ଶୁଣ ରାୟେ ।
ନାଭିରେ ହୋଇଲା ତନୟେ ॥୧
ଯେତେ ଲକ୍ଷଣ କୃଷ୍ଣଠାରେ ।
ସକଳ ଅଛି ସେ କୁମରେ ॥୨
ଶାନ୍ତି-ବୈରାଗ୍ୟ ଗୁଣ ଯେତେ ।
ଐଶ୍ୱର୍ଯ୍ୟ ଆଦି ଏ ସମସ୍ତେ ॥୩
ଅତି ସୋହାଗେ ବହୁଧନେ ।
ପାଳିତ ହୋଇ ପ୍ରତିଦିନେ ॥୪
ଶୁକ୍ଳପକ୍ଷେ ଚନ୍ଦ୍ର ଯେହ୍ନେ ।
ବଢ଼ଇ ପୁତ୍ର ଦିନୁଦିନେ ॥୫
ଅମାତ୍ୟଆଦି ପ୍ରଜା ଯେତେ ।
ଦେବତା-ବ୍ରାହ୍ମଣ ସହିତେ ॥୬
ଅବନୀତଳେ ଯେତେ ଜନ ।
ସାନନ୍ଦ ହେଲା ତା'ଙ୍କ ମନ ॥୭
ତାହାର ବାଳରୂପ-ଗୁଣ ।
ଅତି ଅଦ୍ଭୁତ ଯେ ଲକ୍ଷଣ ॥୮
ଦେଖି ତାହାର ଚିହ୍ନ ବର୍ଣ୍ଣ ।
ପିତା ଋଷଭ ଦେଲେ ନାମ ॥୯
ଯେବେ ତାହାଙ୍କ ସଙ୍ଗତରେ ।
ବିବାଦ କଲେ ପୁରନ୍ଦରେ ॥୧୦
ସେ ଭଗବାନ ଯୋଗେଶ୍ୱର ।
ଋଷଭ ନାମଟି ଯାହାର ॥୧୧
ଆପଣା ଯୋଗମାୟା ବଳେ ।
ଇନ୍ଦ୍ରଙ୍କୁ ନିଗ୍ରହ ଯେ କଲେ ॥୧୨
ନାଭି ସେ କର୍ମମାନ ଦେଖି ।
ଲୋତକେ ପୂର୍ଣ୍ଣ କଲା ଆଖି ॥୧୩
ଆନନ୍ଦେ ଗଦଗଦ ହୋଇ ।
ହେ ପୁତ୍ର ହେ ତାତ ବୋଲଇ ॥୧୪
ସେ ଭଗବାନ ଯୋଗେଶ୍ୱର ।
ପୁରାଣ-ପୁରୁଷ-ଠାକୁର ॥୧୫

ମାୟାରେ ଅଂଶରୂପ ହୋଇ ।
ଲୀଳାରେ ଶରୀର ବହଇ ॥୧୬
ତାହାଙ୍କୁ ପୁତ୍ରଭାବେ କରି ।
ବଦନେ ବଚନ ଉଚ୍ଚାରି ॥୧୭
ସ୍ନେହଭାବରେ ସେ ଭଜିଲା ।
ପରମବ୍ରହ୍ମକୁ ପାଇଲା ॥୧୮
ଏଥୁଅନ୍ତରେ ନୃପମଣି ।
ପୁତ୍ରର ବୁଦ୍ଧି-ବଳ ଜାଣି ॥୧୯
ଆତ୍ମୀୟ-ବ୍ରାହ୍ମଣଙ୍କୁ ରାଇ ।
ରାଜଦ୍ୱପଣ ପୁତ୍ରେ ଦେଇ ॥୨୦
ଯେ ମେରୁଦେବୀ ପତ୍ନୀ ତା'ର ।
ସଙ୍ଗତେ ଘେନି ନୃପବର ॥୨୧
ବଦରିକାଶ୍ରମେ ରହିଲା ।
ପରମତପ ଆଚରିଲା ॥୨୨
ସମାଧିଯୋଗରେ ରାଜନ ।
ଚିନ୍ତଇ ପ୍ରଭୁ ଭଗବାନ ॥୨୩
କେତେହେଁ ଦିନ ତପ କଲା ।
ଅନ୍ତେ ସେ ମୁକତି ଲଭିଲା ॥୨୪
ଯା' ଯଶ ଏ ବେନିଶ୍ଳୋକରେ ।
ଗାୟନ କରନ୍ତି ସଂସାରେ ॥୨୫
ଏମନ୍ତ ସଂସାରେ କେ ହେବ ।
ନାଭିର କର୍ମକୁ କରିବ ॥୨୬
ଯାହାର ଶୁଦ୍ଧଭାବୁଁ କରି ।
ପୁତ୍ର ହୋଇଲେ ନରହରି ॥୨୭
ସେ ରାଜା ବିପ୍ରଭକ୍ତ ହୋଇ ।
ଯଜ୍ଞେ ପୂଜିଲେ ଭାବଗ୍ରାହୀ ॥୨୮
ଅଗ୍ନିରେ ପ୍ରଭୁ ଚକ୍ରଧର ।
ଦେଖିଲେ ନୟନ-ଗୋଚର ॥୨୯
ଏଥୁଅନ୍ତରେ ନୃପ ଶୁଣ ।
ସେ ଯେ ଋଷଭଭଗବାନ ॥୩୦

ଗୁରୁକୁଳରେ ବାସ କଲେ ।
ଲୋକରେ ଧର୍ମ ଦେଖାଇଲେ ॥୩୧
ସମସ୍ତ ବିଦ୍ୟା ପୂର୍ଣ୍ଣ କରି ।
ଗୁରୁଙ୍କ ଆଜ୍ଞା ଶିରେ ଧରି ॥୩୨
ଗୃହସ୍ଥଧର୍ମ ଆଚରଣ ।
କରନ୍ତେ ସଂସାର-ପାଳନ ॥୩୩
ଗୁରୁ ସନ୍ତୋଷେ ଦେଲେ ବର ।
ହୋଇବ ଶତେକ କୁମର ॥୩୪
ଏମନ୍ତେ ଗଲା କେତେଦିନ ।
ଋଷଭ ସେ ମହାରାଜନ ॥୩୫
ବେଦଉକତ ଧର୍ମମତେ ।
ବିଭା ହୋଇଲେ ଯଥୋଚିତେ ॥୩୬
ପୂର୍ବେ ଇନ୍ଦ୍ରର ହୋଇ ଦତ୍ତ ।
ଯେ କନ୍ୟା ଜୟନ୍ତୀ ବିଦିତ ॥୩୭
ତହିଁ ବିବିଧ ଭୋଗକରି ।
ଆନନ୍ଦେ ସ୍ୱଚ୍ଛନ୍ଦେ ବିହରି ॥୩୮
ଯଥାକାଳରେ ତାହାଙ୍କର ।
ହୋଇଲେ ଶତେକ କୁମର ॥୩୯
ଏହାଙ୍କ ମଧ୍ୟେ ମହାବୀର ।
ଜ୍ୟେଷ୍ଠ ଯେ ଭରତ କୁମର ॥୪୦
ଏ ଭୂମି ଯାହାର ନାମରେ ।
ଭାରତ ବୋଲାଇ ସଂସାରେ ॥୪୧
ଏ ଜ୍ୟେଷ୍ଠ ଭରତ ଅନ୍ତରେ ।
ହୋଇଲେ ଋଷଭ କୁମରେ ॥୪୨
ଯେ ଇଳାବର୍ତ୍ତ କୁଶାବର୍ତ୍ତ ।
ଇନ୍ଦ୍ରସ୍ପୃକ ଯେ ବ୍ରହ୍ମାବର୍ତ୍ତ ॥୪୩
ମଳୟ କେତୁ ଯେ ନନ୍ଦନ ।
ବିଦର୍ଭ ଆଉ ଭଦ୍ରସେନ ॥୪୪
କୀକଟ ଆଦି ନବପୁତ୍ର ।
ପଛେ କହିବା ତା' ଚରିତ ॥୪୫

Dr. Sudhanshu Sekhar Mishra

ଏହାଙ୍କ ଯେ ନବ ଅନୁଜ ।
ଶୁଣ କହିବା ମହାରାଜ ॥୪୬
ସେ କବି ହରି ଅନ୍ତରୀକ୍ଷ ।
ଏ ତିନି ଦାନଧ୍ୟାନେ ଦକ୍ଷ ॥୪୭
ପ୍ରବୁଦ୍ଧ ଯେ ପିପ୍ପଳାୟନ ।
ଷଷ୍ଠରେ ଆବିର୍ହୋତ୍ର ନାମ ॥୪୮
ଦ୍ରୁମିଳ ଚମସ ଏ ଦୁଇ ।
କରଭାଜନ ନବଭାଇ ॥୪୯
ଏ ନବ ଶ୍ରେଷ୍ଠଭାଗବତ ।
ପବିତ୍ର କଲେ ଏ ଜଗତ ॥୫୦
ପରେ ବସୁଦେବ ନାରଦ ।
ନେମିଜନଙ୍କ ଯେ ସମ୍ବାଦ ॥୫୧
ସେଠାରେ ବର୍ଣ୍ଣିବୁ ସମସ୍ତ ।
ଶୁଣ ରାଜନ ପରୀକ୍ଷିତ ॥୫୨
ଏକାଶୀପୁତ୍ରଙ୍କ ଚରିତ ।
ଶୁଣ କହିବା ଏକଚିତ୍ତ ॥୫୩
ଶ୍ରୋତ୍ରିୟ ସୁଶୀଳ ମହାନ୍ତ ।
ପିତା ଆଜ୍ଞାରେ ଅନୁଗତ ॥୫୪
ଯଜ୍ଞାଦି କର୍ମରେ ନିପୁଣ ।
ହୋଇଲେ ବିଶୁଦ୍ଧ-ବ୍ରାହ୍ମଣ ॥୫୫
ଏଥୁ ଉତ୍ତାରେ ସେ ଈଶ୍ୱର ।
ଋଷଭନାମେ ଯୋଗେଶ୍ୱର ॥୫୬

ସେ ନିତ୍ୟ ଅବ୍ୟୟ ଅନନ୍ତ ।
ପରମାନନ୍ଦ ସେ ଅଚ୍ୟୁତ ॥୫୭
ମାୟାରେ ନରଦେହ ଧରି ।
ଅନେକକାଳ ସେ ବିହରି ॥୫୮
ଧର୍ମ ଆଚର-ଶିକ୍ଷାମାନ ।
ଦିଅନ୍ତି ପ୍ରଜା ପୁତ୍ରେ ଦାନ ॥୫୯
ପରମ ଦୟାଳୁ ସେ ପୁଣ ।
ସର୍ବଭୂତରେ ମିତ୍ରପଣ ॥୬୦
ପ୍ରତିପାଳନ୍ତି ପ୍ରଜାଜନ ।
ପୁତ୍ରକୁ ପିତାହିଁ ଯେସନ ॥୬୧
ବେଦପ୍ରମାଣେ ମୁନିଗଣ ।
ଯେ ପଥ କରନ୍ତି ଦର୍ଶନ ॥୬୨
ସେହିପ୍ରକାରେ ନୃପବର ।
ପାଳନ କରନ୍ତି ସଂସାର ॥୬୩
ଉତ୍ତମସ୍ଥଳେ ଶୁଦ୍ଧକାଳେ ।
ନାନାସମ୍ଭାରେ ସେ ନିଷ୍ଠଳେ ॥୬୪
ମନ୍ତ୍ର ସମ୍ପାଦି ଅନୁକ୍ରମେ ।
ସଙ୍କଳ୍ପ କରି ଶୁଦ୍ଧମନେ ॥୬୫
ଏମନ୍ତ କଲେ ଯଜ୍ଞ ଶତେ ।
ବେଦ-ବିହିତ-ଯଥୋଚିତେ ॥୬୬
ଋଷଭ ପରିପାଳେ ମହୀ ।
ଏମନ୍ତ କେ ଅବା ଅଛଇ ॥୬୭

ଦରିଦ୍ର ଖଳ ହିଂସ୍ର ବାଦୀ ।
ଅବିଦ୍ୟାବନ୍ତ ଯେ ପ୍ରସିଦ୍ଧି ॥୬୮
ଦ୍ରବ୍ୟେ ଯେ ଯାଚନା କରଇ ।
ଏମନ୍ତ ଜନ କେହି ନାହିଁ ॥୬୯
ଶ୍ରୀକୃଷ୍ଣଭକ୍ତି ବିନୁ ଆର ।
ଆନ ନ ବାଞ୍ଛନ୍ତି ସେ ନର ॥୭୦
ଏବେ ହୋ ଶୁଣ ସାବଧାନେ ।
ଋଷଭ ବୁଲୁଁ ଏକଦିନେ ॥୭୧
ବ୍ରହ୍ମରଷି-ସଭାରେ ଯାଇ ।
ତନୟମାନେ ଛନ୍ତି ଯହିଁ ॥୭୨
କୋମଳ-ମଧୁର ବଚନେ ।
ଶିକ୍ଷା କରାନ୍ତି ଯେ ରାଜନେ ॥୭୩
କହନ୍ତି ହିତବାକ୍ୟମାନ ।
ଶୁଣନ୍ତି ଯେତେ ସଭାଜନ ॥୭୪
ବୋଲଇ ଜଗନ୍ନାଥ ଦାସ ।
ଋଷଭ ନାରାୟଣ ଅଂଶ ॥୭୫
ତା'ଙ୍କ ଚରିତ ଯେ ଶୁଣନ୍ତି ।
ସେ ପ୍ରାଣୀ ସଂସାରୁ ତରନ୍ତି ॥୭୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଚତୁର୍ଥୋଽଧ୍ୟାୟଃ ॥

---

## ପଞ୍ଚମ ଅଧ୍ୟାୟ

ଋଷଭ ଉବାଚ

ଭୋ ପୁତ୍ରମାନେ ସାବଧାନ ।
ହୋଇଣ ଶୁଣ ମୋ' ବଚନ ॥୧
ଯେ ପ୍ରାଣୀ କାମ୍ୟକର୍ମମାନ ।
ନିରତେ କରେ ଆଚରଣ ॥୨
ସେ ପ୍ରାଣୀ ବ୍ୟର୍ଥ ଏ ସଂସାରେ ।
ପଡେ ନରକେ ମହାଘୋରେ ॥୩
ଯେ ବ୍ରହ୍ମକର୍ମ ସତ୍ତ୍ୱଗୁଣ ।
ତପେ ଅନନ୍ତ-ଆରାଧନ ॥୪

ନିର୍ମାଣମାର୍ଗ ଏ ବିଦିତ ।
ଶୁଣ କହିବା ପୁତ୍ରେ ସତ୍ୟ ॥୫
ସ୍ତିରୀସଙ୍ଗମ ଆଦି ଯେତେ ।
ଏ ଘୋରତମ ଶତସୁତେ ॥୬
ଏ ସର୍ବ ଦୂରେ ପରିହରି ।
ମହାନ୍ତଜନ ସେବା କରି ॥୭
ମହାନ୍ତପ୍ରାଣୀ ଅଟେ ସେହି ।
ପ୍ରଶାନ୍ତ-ସାଧୁ ସେ ବୋଲାଇ ॥୮
ଯେ ଜନ କ୍ରୋଧ ବିବର୍ଜିତ ।
ତାହାର ସୁହୃଦ ଜଗତ ॥୯

ସେ ପ୍ରାଣୀ ମୋର ପଦ୍ମପାଦେ ।
ମନ ଅର୍ପଇ ଅପ୍ରମାଦେ ॥୧୦
ଯେ ଜନ ଜାୟା ଗୃହ ଧନ ।
ତନୟ-କ୍ଲେଶ ନାନାକର୍ମ ॥୧୧
କରଇ ନାନାଭ୍ରମ ହୋଇ ।
ଯାବତ ମୋତେ ନ ଭଜଇ ॥୧୨
ଅନିତ୍ୟ-ଦେହ ନିତ୍ୟ କରେ ।
ସେ ସାଧୁ ନୋହଇ ସଂସାରେ ॥୧୩
ତାବତ ପରାଭବ ପାଇ ।
ଯାବତ ଆତ୍ମା ନ ଚିହ୍ନଇ ॥୧୪

Dr. Sudhanshu Sekhar Mishra

ଯାବତ ନାନାକର୍ମ କରେ ।
ମନ ବଢ଼ାଇ ନିରନ୍ତରେ ॥୧୫
ତାବତ କର୍ମବଶ ହୋଇ ।
ନାନା ଶରୀରେ ସେ ଭ୍ରମଇ ॥୧୬
ଅବ୍ୟୟ-ବାସୁଦେବ ମୁହିଁ ।
ମୋରେ ଯାହାର ପ୍ରୀତି ନାହିଁ ॥୧୭
ସେ ନୋହେ ଦେହବନ୍ଧୁଁ ପାର ।
ଯେଣୁ ନ ଚିହ୍ନେ ସେ ଈଶ୍ୱର ॥୧୮
ସ୍ୱପନପ୍ରାୟ ଦେହେ ନର ।
କରଇ ନାନା ଅହଙ୍କାର ॥୧୯
ନିଦ୍ରାରେ ଯେତେ ସୁଖଭୋଗ ।
ଜାଗ୍ରତେ ନ ପାଇ ତା' ଲାଭ ॥୨୦
ଗୃହବନ୍ଧର ଏ କାରଣ ।
ନାରୀ ସଙ୍ଗତେ ଅନୁଦିନ ॥୨୧
ସ୍ତିରୀ-ପୁରୁଷ ଭାବବହି ।
ତହିଁରେ ମନକୁ ବାନ୍ଧଇ ॥୨୨
ମୋହର ଗୃହ ମୋର ଧନ ।
ବୋଲେ ମାୟାରେ ହୋଇ ଛନ୍ନ ॥୨୩
ତାବତ କର୍ମବନ୍ଧମାନ ।
ନୋହଇ ତାହାର ଖଣ୍ଡନ ॥୨୪
ଯେବେଟି ପଦ୍ମପାଦେ ମୋର ।
ଆଶ୍ରୟ କରଇ ସେ ନର ॥୨୫
ପାଦପଲ୍ଲବଯୁଗ ଧରି ।
ତରଇ ଏ ଭବ-ଲହରୀ ॥୨୬
ଅଖିଳଗୁରୁ ମୁହିଁ ହରି ।
ମୋତେ ଭଜିବ ଦେହ ଧରି ॥୨୭
ନିବୃତ୍ତଚିତ୍ତ ହୋଇ ନର ।
ଭକ୍ତି କରିବ ମୋ' ପୟର ॥୨୮
ବ୍ୟସନ-ହିଂସାକୁ ଛାଡିବ ।
ତପରେ ମୋତେ ଆରାଧିବ ॥୨୯
ମୋହର ଗୁଣକର୍ମ ନାମ ।
ନିରତେ କରିବ କୀର୍ତ୍ତନ ॥୩୦
ଏକାନ୍ତଭାବ ମୋହଠାରେ ।
ଭୋ ପୁତ୍ରେ କରନ୍ତି ଯେ ନରେ ॥୩୧

ଇନ୍ଦ୍ରିୟଗୁଣଙ୍କୁ ନିବାରି ।
ଅଧ୍ୟାତ୍ମବିଦ୍ୟାକୁ ଆଚରି ॥୩୨
ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟ କରେ ।
ପ୍ରଶାନ୍ତ-ସତ୍ୟ-ବଚନରେ ॥୩୩
ମୋହର ଭାବଭକ୍ତିମାନ ।
ଚିତ୍ତେ ଚିନ୍ତଇ ଅନୁକ୍ଷଣ ॥୩୪
ଭବଜଳରୁ ସେ ତରଇ ।
ଗୃହବନ୍ଧନ ତା'ର ନାହିଁ ॥୩୫
ସ୍ୱକର୍ମ କରି ଏ ସଂସାରେ ।
ଯେ ଅର୍ପେ ମୋହର ପୟରେ ॥୩୬
ତାହାର କର୍ମବନ୍ଧ ମୁହିଁ ।
ଅକ୍ଲେଶେ ନିଶ୍ଚୟ ଛେଦଇଁ ॥୩୭
ଆତ୍ମାର ଶ୍ରେୟକର୍ମଠାରେ ।
ଶ୍ରଦ୍ଧା ନ କରନ୍ତି ପାମରେ ॥୩୮
ଅଳପସୁଖ ହେତୁକରି ।
ଅନ୍ୟୋନ୍ୟ-ହିଂସାକୁ ଆଚରି ॥୩୯
ଅଶେଷଦୁଖର କାରଣ ।
କରନ୍ତି ହୋଇ ମତିଭ୍ରମ ॥୪୦
ମୃଗତୃଷ୍ଣାର ପ୍ରାୟେ ହୋଇ ।
ଅବିଦ୍ୟାସମୂହେ ଭ୍ରମଇ ॥୪୧
ଅନ୍ଧ ଯେସନେ ପଥେ ଯାଇ ।
କଣ୍ଟକ-ଦୁର୍ଗମେ ଭ୍ରମଇ ॥୪୨
ଭକତିଯୋଗେ ଯେ ସଂସାରେ ।
ନିକଟ-ମୃତ୍ୟୁ ନ ନିବାରେ ॥୪୩
ସେ ନୋହେ ଗୁରୁ ମିତ୍ର ପିତା ।
ପତି ଜନନୀ ବା ଦେବତା ॥୪୪
ମୂଢ଼ ଜାଣିବ ଏହା କାହିଁ ।
ନିତ୍ୟେ ମାୟାରେ ଭ୍ରମୁଥାଇ ॥୪୫
ଭୋପୁତ୍ରେ ଶୁଣ ମୋ' ଉତ୍ତର ।
ଏ ଯେ ମୋହର କଳେବର ॥୪୬
ଅଷ୍ଟାଙ୍ଗଯୋଗଧ୍ୟାନେ ମୋତେ ।
ମୁନି ଚିନ୍ତନ୍ତି ଅବିରତେ ॥୪୭
ଯେଣୁ ଆମ୍ଭର ତୁମ୍ଭେ ସୁତ ।
ପରମ ଶ୍ରେଷ୍ଠ-ଭାଗବତ ॥୪୮

ଏବେ ଏମନ୍ତ ତୁମ୍ଭେ କର ।
ଭରତ ଜ୍ୟେଷ୍ଠ ଯେ ତୁମ୍ଭର ॥୪୯
ଅକ୍ଲେଶବୁଦ୍ଧିରେ ସମସ୍ତେ ।
ତାହାଙ୍କୁ ଭଜ ଯଥୋଚିତେ ॥୫୦
ମୋର ବଚନ ଧରି ଶିରେ ।
ସୁଖେ ଭ୍ରମିବ ଏ ସଂସାରେ ॥୫୧
ସର୍ବଭୂତରେ ମୁହିଁଥାଇ ।
ସୁଖଦୁଃଖାଦି ମୁଁ ଭୁଞ୍ଜାଇ ॥୫୨
ଭୂତ-ଗନ୍ଧର୍ବ ସେ ମାନବ ।
ପ୍ରମଥଗଣ ଯେତେ ଦେବ ॥୫୩
ଯେ ବ୍ରହ୍ମସୁତ ଦକ୍ଷଆଦି ।
ମୋର ଶରୀର ଯେ ପ୍ରସିଦ୍ଧି ॥୫୪
ସର୍ବଦେହର ମଧ୍ୟେ ସାର ।
ସଂସାରେ ବିପ୍ର-କଳେବର ॥୫୫
ଶ୍ରଦ୍ଧାରେ ଶୁଦ୍ଧଚିତ୍ତେ ଯେହି ।
ଯେ ଦ୍ରବ୍ୟ ବିପ୍ରଙ୍କୁ ଦିଅଇ ॥୫୬
ସନ୍ତୋଷେ ମୁଁ ତାହା ଭୁଞ୍ଜାଇ ।
ଯଜ୍ଞେ ସନ୍ତୋଷ ତେତେ ନୋହି ॥୫୭
ଯମନିୟମଦମେ ମୋତେ ।
ବିପ୍ରେ ପୂଜନ୍ତି ଯଥୋଚିତେ ॥୫୮
ସକଳ ପରଙ୍କର ପର ।
ମୁହିଁ ଅନନ୍ତ-ଯୋଗେଶ୍ୱର ॥୫୯
ସ୍ୱର୍ଗମୋକ୍ଷର ଦାତା ମୁହିଁ ।
ମୋ' ବିନୁ ଅନ୍ୟ କେହି ନାହିଁ ॥୬୦
ଯେ ପ୍ରାଣୀ ଅକିଞ୍ଚନ ହୋଇ ।
ମୋହର ପାଦେ ମନ ଦେଇ ॥୬୧
ତାହାର ଯେତେ କର୍ମମାନ ।
ସକଳ କରଇ ଗ୍ରହଣ ॥୬୨
ମୋହର ପୂଜା ତୁମ୍ଭେମାନେ ।
କରିବ ଯଥାର୍ଥ-ବିଧାନେ ॥୬୩
ପବିତ୍ର ଅବଲୋକନରେ ।
ସ୍ଥିର-ମନ-ବାକ୍ୟ-ବୁଦ୍ଧିରେ ॥୬୪
ମୋହର ଅନୁଗ୍ରହ ବିନେ ।
ସଂସାରେ ଯେତେ ପ୍ରାଣୀମାନେ ॥୬୫

Dr. Sudhanshu Sekhar Mishra

ଶମନ-ପାଶ-ବନ୍ଧନରୁ ।
କେ ଅବା ତରିବ ସଂସାରୁ ॥୬୬

ଶୁକ ଉବାଚ

ଏମନ୍ତ ଶିକ୍ଷା ପୁତ୍ରେ ଦେଇ ।
ଋଷଭ ପ୍ରଭୁ ଭାବଗ୍ରାହୀ ॥୬୭
ପ୍ରାଣୀଙ୍କ ନିସ୍ତାର କାରଣେ ।
ଧର୍ମ ବିସ୍ତାରିଲେ ଆପଣେ ॥୬୮
ଶତେତନୟ ମଧ୍ୟେ ସାର ।
ଜ୍ୟେଷ୍ଠ ଯେ ଭରତକୁମର ॥୬୯
ପରମ-ଭାଗବତ ସେହି ।
ନିରତେ ପ୍ରଭୁଙ୍କୁ ଭଜଇ ॥୭୦
ସାଧୁସଙ୍ଗତେ ଅନୁଗତ ।
ତାହାର ଗୁଣ ଯେ ବହୁତ ॥୭୧
ଅବନୀ ପାଳିବାର ପାଇଁ ।
ରାଜତ୍ୱପଣ ତାଙ୍କୁ ଦେଇ ॥୭୨
ଯେ ମୁକ୍ତି ଧର୍ମ ମହାମୁନି ।
ଜ୍ଞାନ-ବୈରାଗ୍ୟ-ଭକ୍ତି ଘେନି ॥୭୩
ତାହାଙ୍କ ଲକ୍ଷଣେ ଆଚରି ।
ଋଷଭ ପ୍ରଭୁ ନରହରି ॥୭୪
ବାହ୍ୟ-ଶରୀର-ମାତ୍ର ଧରି ।
ଉନ୍ମତ୍ତରୂପକୁ ଆଚରି ॥୭୫
ମୁକୁଳା କରି କେଶପାଶ ।
ଗଗନ କରି କଟିବାସ ॥୭୬
ଯେହ୍ନେ ବଧିର ଜଡ଼ ମୂକ ।
ଅନ୍ଧ ପିଶାଚ ଉନ୍ମାଦକ ॥୭୭

ଏମନ୍ତ ଅବଧୂତବେଶ ।
ଧରି ସେ ବ୍ରହ୍ମାଣ୍ଡର ଈଶ ॥୭୮
ପ୍ରାଣୀଙ୍କି ବଚନ ନ କହି ।
ମଉନ ବ୍ରତକୁ ସେ ଲଇ ॥୭୯
ସକଳ-ପୁର-ଗ୍ରାମ-ଗିରି ।
ଘୋର କାନନ ଆଦିକରି ॥୮୦
ଦୁର୍ଜନ-ଦୁଷ୍ଟଙ୍କ ବଚନ ।
ପ୍ରହାର ଆଦି ଅପମାନ ॥୮୧
ଏ ପରାଭବକୁ ସେ ସହି ।
ସୁଖେ ଭ୍ରମନ୍ତି ଏକା ମହୀ ॥୮୨
ଆପଣାଠାରେ ଚିତ୍ତ ଥୋଇ ।
ନିତ୍ୟ ଆନନ୍ଦମନା ହୋଇ ॥୮୩
ଅତି ସୁନ୍ଦର ସୁକୁମାର ।
ଚରଣଯୁଗ ବେନିକର ॥୮୪
ବିପୁଳ ଉଚ୍ଚ ବକ୍ଷସ୍ଥଳ ।
ମଞ୍ଜୁଳ ବଦନକମଳ ॥୮୫
ଅତି ସୁନ୍ଦର ତା' ଶରୀର ।
ଈଷତହାସ ବିମ୍ବାଧର ॥୮୬
ନବ-ନଳୀନଦଳ ଯେହ୍ନେ ।
ଲୋଚନଯୁଗଳ ତେସନେ ॥୮୭
ସୁରଙ୍ଗ ସୁନ୍ଦର କପୋଳ ।
ନିଗୂଢ଼ କର୍ଣ୍ଣ ସୁମଞ୍ଜୁଳ ॥୮୮
ସେ ରୂପ ଦେଖିଣ ନୟନେ ।
ଟଳନ୍ତି ସୁରପତ୍ନୀମାନେ ॥୮୯
କୁସୁମାୟୁଧବାଣେ ମନ ।
ତକ୍ଷଣେ ହୋଏ ଅଚେତନ ॥୯୦

ସୁନ୍ଦର ଶରୀର ମଳିନ ।
ଦିଶିଲେ ଆନୁ ଆନ ବର୍ଣ୍ଣ ॥୯୧
ସଂସାରେ ଯେତେ ଦୁଷ୍ଟପ୍ରାଣୀ ।
ଯୋଗ ଭାଙ୍ଗିବେ ଏହା ଜାଣି ॥୯୨
ଯେ ବ୍ରତ ଅତିଭୟଙ୍କର ।
ଅଜଗରର ଯେ ଆଚାର ॥୯୩
ସେ ଅଜଗରପ୍ରାୟ ହୋଇ ।
ରହିଲେ ନିଜରୂପ ଧ୍ୟାୟି ॥୯୪
ଏମନ୍ତେ କହିବଇଁ କେତେ ।
ଅଷ୍ଟାଙ୍ଗଯୋଗ ନାନାମତେ ॥୯୫
କରି ସେ କଇବଲ୍ୟ ଦାତା ।
ଯେ ପ୍ରଭୁ ଜଗତକରତା ॥୯୬
ଏମନ୍ତେ ନାନାଯୋଗ ଚିନ୍ତି ।
ସେ ହରି ଭକତର ଗତି ॥୯୭
ସକଳଭୂତ ଆତ୍ମା ସେହି ।
ଋଷଭ ଅଂଶେ ଦେହ ବହି ॥୯୮
ପରମପ୍ରଭୁ ଯୋଗେଶ୍ୱର ।
ସେ ଯୋଗ ସାଧିଲେ ଅପାର ॥୯୯
ସେ ପ୍ରଭୁ ଚରଣେ ସନ୍ତତ ।
ନିଶ୍ଚଳେ ରହୁ ମୋର ଚିତ୍ତ ॥୧୦୦
କହଇ ଦାସ ଜଗନ୍ନାଥ ।
ଋଷଭ ଗୋବିନ୍ଦ ଚରିତ ॥୧୦୧
ସୁଜନେ ଚିତ୍ତେ ଏହା ଭାବ ।
ସଂସାରୁ ଯେମନ୍ତେ ତରିବ ॥୧୦୨
ଗୁରୁଦୀକ୍ଷାକୁ ମନେ କରି ।
ଭବସାଗରୁ ହେବ ପାରି ॥୧୦୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଋଷଭଦେବାନୁ ଚରିତେ
ପଞ୍ଚମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

### ପରୀକ୍ଷିତ ଉବାଚ

ମୋର ସଂଶୟ ହୃଦଗତେ ।
ଭୋ ମୁନି ଫେଡ଼ ଦୟାଚିତ୍ତେ ॥୧
ଯେ ଇଚ୍ଛାବିହାରୀ ପୁରୁଷ ।
ସକଳକର୍ମର ଯେ ଈଶ ॥୨
ଏ ରୂପେ କିବା କାର୍ଯ୍ୟ ତା'ର ।
ସଂଶୟ ଫେଡ ମୁନିବର ॥୩
ଅଷ୍ଟ ଐଶ୍ୱର୍ଯ୍ୟଦାତା ହୋଇ ।
କଷ୍ଟେ କ୍ଳେଶିତ କାହିଁପାଇଁ ॥୪

### ଶୁକ ଉବାଚ

ଯେ ପ୍ରଶ୍ନ କଲ ହେ ରାଜନ ।
କହଇ ଶୁଣ ସାବଧାନ ॥୫
ଐଶ୍ୱର୍ଯ୍ୟପଦ ଆଦି ଯେତେ ।
ନିତ୍ୟେ କଦର୍ଥନ୍ତି ସମସ୍ତେ ॥୬
ଏ ମନ ଚଞ୍ଚଳ ସ୍ୱଭାବ ।
କେବେ ହେଁ ବିଶ୍ୱାସ ନ ଯିବ ॥୭
ଯାହାର ମୂଳ କାମ ଲୋଭ ।
ଶୋକ ମୋହ ଯେ କ୍ରୋଧ ଗର୍ବ ॥୮
ଏ ସର୍ବ ଯାର ମୂଳ ହୋଇ ।
ପ୍ରାଣୀଙ୍କି ବନ୍ଧନ କରଇ ॥୯
କେ ଏହା ସାଧୁ କରି ମଣେ ।
ମୂଢ଼ ପାମର ଜନ ବିନେ ॥୧୦
ଏବେ ହୋ ଶୁଣ ମହୀପାଳ ।
ସେ ଯେ ଋଷଭ-ଅବତାର ॥୧୧
ଅଖିଳ-ଲୋକପାଳ-ବର ।
ବନ୍ଦନ୍ତି ଚରଣେ ଯାହାର ॥୧୨
ସେ ଦେବ ନାନା ବିଲକ୍ଷଣ ।
ଜଡ଼ର ପ୍ରାୟ ଆଚରଣ ॥୧୩
ଭ୍ରମନ୍ତି ନାନା ଦେଶ-ଗ୍ରାମେ ।
ଯୋଗ ଶିଖାଇ ଯୋଗଧର୍ମେ ॥୧୪

## ଷଷ୍ଠ ଅଧ୍ୟାୟ

ଏମନ୍ତେ ଗଲା କେତେଦିନ ।
ଶୁଣ ରାଜନ ଏକମନ ॥୧୫
ଋଷଭ ମନେ ବିଚାରିଲେ ।
ଏ ଦେହ ଛାଡ଼ିବୁ ବୋଇଲେ ॥୧୬
ଆତ୍ମାରେ ଆତ୍ମାକୁ ବୁଡ଼ାଇ ।
ଇନ୍ଦ୍ରିୟବୃତ୍ତେ ମନ ନାହିଁ ॥୧୭
ଏମନ୍ତ ମୁକ୍ତଲିଙ୍ଗରୂପ ।
ହୋଇଲେ ଈଶ୍ୱର-ସ୍ୱରୂପ ॥୧୮
ମୃତ୍ପିଣ୍ଡ ପ୍ରାୟେ ଦେହ ମଣି ।
ସ୍ୱଚ୍ଛନ୍ଦେ ବିହରିଲେ ଜ୍ଞାନୀ ॥୧୯
ଦକ୍ଷିଣେ କର୍ଣ୍ଣାଟଦେଶରେ ।
ମିଳିଲେ କୁଟକଗିରିରେ ॥୨୦
ତହିଁର ଉପବନେ ସେହି ।
ବୁଲନ୍ତି ମୁକ୍ତକେଶ ହୋଇ ॥୨୧
ଏମନ୍ତେ ପବନ ବେଗରେ ।
ଅଗ୍ନି ଜଳିଲା ଅତିଖରେ ॥୨୨
ବନସ୍ତ-ବୃକ୍ଷ-ଜୀବମାନ ।
ଶୀଘ୍ର ସେ କରଇ ଦହନ ॥୨୩
ସେ ଜଡ଼ରୂପ ଯୋଗେଶ୍ୱର ।
ପଶିଲେ ଅଗ୍ନିର ଭିତର ॥୨୪
ଅନଳତେଜ ଅତିଖର ।
ଦହିଲା ତାହାଙ୍କ ଶରୀର ॥୨୫
ପାଷଣ୍ଡପଣ ଯହୁଁ ହୋଇ ।
କୁପଥମାନଙ୍କୁ ସେ ଲଇ ॥୨୬
କଳିଯୁଗରେ ନରନାଥ ।
ଏ ଯେ ଋଷଭଦେବ-ପଥ ॥୨୭
ନ ବୁଝି ପାଷଣ୍ଡ ବହୁତ ।
ବାହ୍ୟ-ଆଚାରେ ଅବଧୂତ ॥୨୮
ଶୌଚ-ପବିତ୍ର ଦୂରକରି ।
ଦେବତାନିନ୍ଦାକୁ ଆଚରି ॥୨୯
କଳିର ଆଚର ଯେସନ ।
ତହିଁରେ ହୋଇ ମତିଭ୍ରମ ॥୩୦
ଦେବ-ବ୍ରାହ୍ମଣ-ଯଜ୍ଞମାନ ।
ନିନ୍ଦା କରିବେ ଅନୁକ୍ଷଣ ॥୩୧
ସୁକର୍ମପଥକୁ ଛାଡ଼ିବେ ।
କୁମାର୍ଗମାନ ଆଚରିବେ ॥୩୨
ଶୁଣ କହିବା ନୃପବର ।
ଏ ଯେ ଋଷଭ-ଅବତାର ॥୩୩
ରଜ ଗୁଣରେ ଜାତ ଯେତେ ।
ତାହାଙ୍କ କଇବଲ୍ୟ ଅର୍ଥେ ॥୩୪
ତାହାଙ୍କ ଗୁଣ ଏ ସଂସାରେ ।
ଗାୟନ କରୁଛନ୍ତି ନରେ ॥୩୫
ସପତସିନ୍ଧୁ ମଧ୍ୟେ ଥାଇ ।
ଦ୍ୱୀପ ବରଷ ଯେତେ ହୋଇ ॥୩୬
ଭାରତବର୍ଷ ତହିଁ ଧନ୍ୟ ।
ଯହିଁରେ ଜନ୍ମି ପ୍ରାଣୀମାନ ॥୩୭
ଅଖିଳଜନର ଠାକୁର ।
ତାହାଙ୍କ ଜନ୍ମ-ଅବତାର ॥୩୮
ଗାୟନ କରନ୍ତି ହରଷେ ।
ଯେଣେ ଅଜ୍ଞାନ-ପାପ ନାଶେ ॥୩୯
ଧନ୍ୟ ଏ ପ୍ରିୟବ୍ରତ ବଂଶ ।
ଯହିଁ ଜନ୍ମିଲେ ବିଷ୍ଣୁଅଂଶ ॥୪୦
ଧନ୍ୟ ସେ ରାଜାମଧ୍ୟେ ଶ୍ରେଷ୍ଠ ।
ଭକତ ମଧ୍ୟରେ ଗରିଷ୍ଠ ॥୪୧
ଏହାର ତୁଲ୍ୟ କେ ଅପର ।
ଯେ ବଂଶେ ଦେବ-ଯୋଗେଶ୍ୱର ॥୪୨
ବେଦ ବ୍ରାହ୍ମଣ ଗୋରୁ ଆଦି ।
ଦେବତା ନର ନେ ପ୍ରସିଦ୍ଧି ॥୪୩
ଏ ସର୍ବ ଗୁରୁ ଭଗବାନ ।
ଋଷଭ ପରମ-କାରଣ ॥୪୪
ତାହାଙ୍କ ଅଦଭୁତ-କର୍ମ ।
ବିଶୁଦ୍ଧ ଯେତେ ଆଚରଣ ॥୪୫
ପ୍ରାଣୀମାନଙ୍କ ପାପହର ।
ପରମ-ମଙ୍ଗଳ-ମନ୍ଦିର ॥୪୬

Dr. Sudhanshu Sekhar Mishra

ଶ୍ରଦ୍ଧାରେ ଶୁଣନ୍ତି ଯେ ନର ।
ହରଷେ କରନ୍ତି ବିଚାର ॥୪୭
ଚଞ୍ଚଳଚିତ୍ତ ସ୍ଥିର କରି ।
ଯେ ଅବା ବଦନେ ଉଚ୍ଚାରି ॥୪୮
ତା' ମତି କୃଷ୍ଣର ପଦରେ ।
ରହଇ ଅତି ଦୃଢ଼ତରେ ॥୪୯
ପରମ-କୃପାମୟ ତହିଁ ।
ନିଶ୍ଚଳ-ଭକତି ଲଭଇ ॥୫୦
ଯେ ଭକ୍ତିପ୍ରସାଦରୁ ନର ।
ସଂସାରବନ୍ଧୁ ହୋ'ନ୍ତି ପାର ॥୫୧
ବିଷୟଜଳେ ବୁଡୁଥାଇ ।
ଭକ୍ତିଭେଳାରେ ସେ ତରଇ ॥୫୨

ସେ ସର୍ବପୁରୁଷାର୍ଥ ପାଇ ।
ଯା'ର ପ୍ରସାଦୁ ମୋକ୍ଷ ହୋଇ ॥୫୩
ଶୁଣ କହିବା ନୃପବର ।
ଯେ ଯଦୁବଂଶର ଠାକୁର ॥୫୪
ତାହାର ଭୃତ୍ୟ ତୁ ରାଜନ ।
ସେ ଯେ ଅନାଦି-ଭଗବାନ ॥୫୫
ନାନାଦି ଅବତାର ବହି ।
ସଂସାରୁ ପ୍ରାଣୀଙ୍କି ତାରଇ ॥୫୬
ଭକ୍ତିରେ ତା'ଙ୍କୁ ଯେ ଭଜଇ ।
ସେ ପ୍ରଭୁ ତା'ରେ ମୋକ୍ଷ ଦେଇ ॥୫୭
ଯେ ନିତ୍ୟ-ଆନନ୍ଦ-ଶରୀର ।
ତାହାର ତୃଷ୍ଣା ଆଦି ଦୂର ॥୫୮

ପରମ-କଲ୍ୟାଣ-କାରଣ ।
ଲୋକରେ ଦୟା ପରାୟଣ ॥୫୯
ସେ ଯେ ଋଷଭ-ଯୋଗେଶ୍ୱର ।
ତାହାଙ୍କୁ ମୋର ନମସ୍କାର ॥୬୦
କହଇ ଦାସ ଜଗନ୍ନାଥ ।
ଭାଷାପ୍ରବନ୍ଧେ ଭାଗବତ ॥୬୧
ସେ ପ୍ରଭୁ ଋଷଭ-ଚରଣେ ।
ମୋ ମନ ରହୁ ଅନୁକ୍ଷଣେ ॥୬୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଋଷଭଦେବାନୁଚରିତେ
ଷଷ୍ଠୋଽଧ୍ୟାୟଃ ॥

---

## ସପ୍ତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ପରୀକ୍ଷିତ ।
ଋଷଭ ଉତ୍ତାରେ ଯେମନ୍ତ ॥୧
କହିବା ତହିଁର ଉଦନ୍ତ ।
ରାଜନ ହୁଅ ଏକଚିତ୍ତ ॥୨
ଭରତ ମହାଭାଗବତ ।
ଋଷଭେ ହୋଇଣ ସମ୍ଭୂତ ॥୩
ତାହାଙ୍କ ଆଜ୍ଞା ଶିରେ ଘେନି ।
ଆନନ୍ଦେ ପାଳନ୍ତି ମେଦିନୀ ॥୪
ବିଶ୍ୱରୂପର କନ୍ୟା ସେହି ।
ପଞ୍ଚଜନୀକୁ ବିଭା ହୋଇ ॥୫
ପଞ୍ଚକୁମର ଯେ ତାହାର ।
ହୋଇଲେ ଅତି ମନୋହର ॥୬
ଧୂମ୍ରକେତୁ ଯେ ସୁଦର୍ଶନ ।
ସୁମତି ରାଷ୍ଟ୍ରଭୃତ ନାମ ॥୭
ଅପରେ ଆବରଣ ନାମ ।
ହୋଇଲେ ଅତି ଅନୁପମ ॥୮
ଏ ଦେଶ ଅଜନାଭ ଥିଲା ।
ଭରତୁଁ ଭାରତ ହୋଇଲା ॥୯

ଏମନ୍ତେ ଶୁଣ ପରୀକ୍ଷିତ ।
ବିଷ୍ଣୁଭକତ ସେ ଭରତ ॥୧୦
ଦେବ-ବ୍ରାହ୍ମଣ-ପ୍ରଜାଜନ ।
ସ୍ୱଚ୍ଛନ୍ଦେ କରଇ ପାଳନ ॥୧୧
ଯେ ଯାହା ଧର୍ମଅନୁସାର ।
ଆନ ନ କରନ୍ତି ଆଚାର ॥୧୨
ଯେ ଦର୍ଶ-ପୌର୍ଣ୍ଣମାସ ଆଦି ।
ଚାତୁର୍ମାସ୍ୟ ଯଜ୍ଞ ପ୍ରସିଦ୍ଧି ॥୧୩
ଅଗ୍ନିହୋତ୍ର ଯେ ପଶୁ-ସୋମ ।
ଏ ଆଦି ଯେତେ ଯଜ୍ଞମାନ ॥୧୪
ଶ୍ରଦ୍ଧାରେ ଯାଗଯଜ୍ଞ କରି ।
ପୂଜନ୍ତି ଦେବ ନରହରି ॥୧୫
ଯଜ୍ଞେ ସକଳଦେବ ତୋଷି ।
ଯେଯାହା ଭାବେ ରାଜଋଷି ॥୧୬
ନାନାଯଜ୍ଞରେ ସେ ରାଜନ ।
ସନ୍ତୋଷେ ପୂଜେ ଭଗବାନ ॥୧୭
ସର୍ବଦେବତାମୂଳ ସେହି ।
ଅଶେଷ-ପ୍ରଭୁ-ଭାବଗ୍ରାହୀ ॥୧୮

ଅଖିଳଦେବଙ୍କ ଈଶ୍ୱର ।
ସକଳ-ବ୍ରହ୍ମାଣ୍ଡ-ଠାକୁର ॥୧୯
ତାହାଙ୍କ ଚରଣାରବିନ୍ଦେ ।
ମନ ନିବେଶି ଅପ୍ରମାଦେ ॥୨୦
ସକଳ ଯଜ୍ଞଅବସାନେ ।
ଦେବେ ସନ୍ତୋଷ ହୋଇ ମନେ ॥୨୧
ପରମକଲ୍ୟାଣ ସେ କରି ।
ହରଷେ ଗଲେ ଯେଜା ପୁରୀ ॥୨୨
ସୁକର୍ମ-ପ୍ରସାଦୁ ରାଜାର ।
ନିର୍ମଳ ହେଲା କଳେବର ॥୨୩
ସତ୍ତ୍ୱଗୁଣରେ ନୃପମଣି ।
ମନେ ଚିନ୍ତଇ ଚକ୍ରପାଣି ॥୨୪
ଆକାଶପ୍ରାୟ ଯେ ଈଶ୍ୱର ।
ଶୁଦ୍ଧ ନିର୍ମଳ ସତ୍ତ୍ୱସାର ॥୨୫
ପରମବ୍ରହ୍ମ ବାସୁଦେବ ।
ଅନାଦିପୁରୁଷ ମାଧବ ॥୨୬
ନାନାଲକ୍ଷଣେ ବିରାଜିତ ।
ଚତୁରଭୁଜେ ସେ ଶୋଭିତ ॥୨୭

Dr. Sudhanshu Sekhar Mishra

ଶ୍ରୀବସ୍ତ୍ର କଉସ୍ତୁଭମଣି ।
ଗଦା କମଳ ଚକ୍ରପାଣି ॥୨୮
ଶଙ୍ଖ ଶୋହଇ ବାମକରେ ।
ବନମାଳା ଯେ ଲମ୍ବେ ଉରେ ॥୨୯
ଏ ଆଦି ଯେତେ ଚିହ୍ନ-ବର୍ଣ୍ଣ ।
ଚିନ୍ତା କରଇ ସେ ରାଜନ ॥୩୦
ଅତିଭକତି ନାରାୟଣେ ।
ହୋଇଲା ତା'ର ଦିନୁଦିନେ ॥୩୧
ଏମନ୍ତେ ଗଲା କେତେଦିନ ।
ଶୁଣ ସୁମନେ ହେ ରାଜନ ॥୩୨
ଲକ୍ଷେବରଷ ସେ ରାଜନ ।
ଅବନୀ କରିଣ ପାଳନ ॥୩୩
ସକଳକର୍ମ ସାଧ୍ୟ କଲେ ।
ପୁତ୍ରଙ୍କୁ ରାଇ ଆଜ୍ଞା ଦେଲେ ॥୩୪
ରାଜସମ୍ପଦ ଯଥୋଚିତେ ।
ବିଭାଗ କରି ଯେଝାମତେ ॥୩୫
ଦେଇ ସେ ଋଷଭକୁମର ।
ଆପଣେ ହୋଇଲେ ବାହାର ॥୩୬
ପୁଲହଋଷିଙ୍କ ଆଶ୍ରମ ।
ତହିଁକି କଲେକ ଗମନ ॥୩୭
ଅଦ୍ୟାପି ହରି -ଭଗବାନ ।
ଯହିଁ ଅଛନ୍ତି କରି ସ୍ଥାନ ॥୩୮
ତହିଁର ନଦୀ ଶୁଦ୍ଧଜଳ ।
ସୁଖେ ସେବନ୍ତି ମୁନିକୁଳ ॥୩୯
ତାହର ଗଣ୍ଡକୀ ଯେ ନାମ ।
ସ୍ମରଣେ ପାପ-ବିନାଶନ ॥୪୦
ପୁଲହାଶ୍ରମ ଯେ ଗହନ ।
ବିବିଧ ଦ୍ରୁମରେ ଶୋଭନ ॥୪୧

ନାନା କୁସୁମେ ପରିମଳ ।
ନିର୍ମଳ ସୁଶୀତଳ ଜଳ ॥୪୨
ମଳୟପବନ ନିରତେ ।
ତହିଁ ଭରତ ଶୁଦ୍ଧ ଚିତ୍ତେ ॥୪୩
କୋମଳ ତୁଳସୀରଦଳ ।
ସୁସ୍ୱାଦୁ ପକ୍ୱ ଫଳମୂଳ ॥୪୪
ଅନ୍ୟ ଯେ ବନ୍ୟ-ଉପହାର ।
ନିବେଦି ଗୋବିନ୍ଦ ପୟର ॥୪୫
ଇନ୍ଦ୍ରିୟଗଣଙ୍କୁ ନିବାରି ।
ବିଷୟରସ ଦୂର କରି ॥୪୬
ନିତ୍ୟେ ଗୋବିନ୍ଦ-ଆରାଧନ ।
କରଇ ହରଷେ ରାଜନ ॥୪୭
ମହାପୁରୁଷ ସେବା ବିନେ ।
ଅନ୍ୟ ସେ ନ ଭାବଇ ମନେ ॥୪୮
ଜଗତ-ପ୍ରଭୁ ନାରାୟଣେ ।
ଶ୍ରଦ୍ଧା ବଢାଇ ଅନୁକ୍ଷଣେ ॥୪୯
କୈବଲ୍ୟଦାତା ନାମ ଧରି ।
ହୃଦୟ ଗଦଗଦ କରି ॥୫୦
ରୋମପୁଲକ ଅଶ୍ରୁପାତ ।
ହରଷ ତନୁ ଅବିରତ ॥୫୧
ଏମନ୍ତ ପ୍ରଭୁ ଯେ ଗୋବିନ୍ଦ ।
ଅରୁଣ-ଚରଣାରବିନ୍ଦ ॥୫୨
ଆସ୍ୱାଦ କରି ଅବିରତେ ।
ପରମଭକ୍ତି ଯୋଗମତେ ॥୫୩
ଗଭୀର-ହ୍ରଦ-ହୃଦୟରେ ।
ଚିତ୍ତ ବୁଡାଇ ନିରନ୍ତରେ ॥୫୪
ନିତ୍ୟେ ଯେ ପ୍ରଭୁ ସେବା ତା'ର ।
ବିସ୍ମର କଲା ନୃପବର ॥୫୫

ଏଥୁ ଅନ୍ତରେ ସେ ରାଜନ ।
ଅଜିନ କରି ପରିଧାନ ॥୫୬
ଶିରେ କପିଳ-ଜଟାଭାର ।
ଶରୀର ଦିଶଇ ସୁନ୍ଦର ॥୫୭
ସୂର୍ଯ୍ୟମଣ୍ଡଳେ ଧ୍ୟେ ଯୋଜନ ।
ବ୍ରହ୍ମରୂପକୁ କରି ଧ୍ୟାନ ॥୫୮
ଏମନ୍ତ ବାକ୍ୟ ଅନୁମାନେ ।
ବୋଲଇ ହରଷିତ ମନେ ॥୫୯
ହେ ପରଂବ୍ରହ୍ମ ତୁ ସବିତା ।
ନିଖିଳ-କର୍ମଫଳଦାତା ॥୬୦
ଇଚ୍ଛାମାତ୍ରକେ ସୃଷ୍ଟି କରୁ ।
ସକଳ ଜୀବେ ପ୍ରତିପାଳୁ ॥୬୧
ତୋ ତେଜେ ସର୍ବବୁଦ୍ଧି ସ୍ଫୁରେ ।
ଶରଣ ଗଲି ତୋ ପୟରେ ॥୬୨
ସେ ପରାପର-ବ୍ରହ୍ମରୂପ ।
ତା'ଙ୍କୁ ଚିନ୍ତଇ ନିତ୍ୟେ ନୃପ ॥୬୩
ଭରତ କର୍ମ ଅନୁସରି ।
ସୁଜନେ ଚିନ୍ତ ନରହରି ॥୬୪
ସେ ପ୍ରଭୁ ଚରଣାରବିନ୍ଦେ ।
ମନ ନିବେଶି ଅପ୍ରମାଦେ ॥୬୫
କହଇ ଦାସ ଜଗନ୍ନାଥ ।
ଶ୍ରୀକୃଷ୍ଣ-ଭଜନ-ଚରିତ ॥୬୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପଞ୍ଚମସ୍କନ୍ଧେ ଭରତଚରିତେ ଭଗବତ୍‌ପରିଚର୍ଯ୍ୟାୟାଂ ସପ୍ତମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଅଷ୍ଟମ ଅଧ୍ୟାୟ

ଶୁକଉବାଚ

ଶୁଣ ରାଜନ ସାବଧାନେ ।
ମହାନଦୀରେ ଏକଦିନେ ॥୧
ସ୍ନାନ-ଆହ୍ନିକକ୍ରିୟା ସାରି ।
ଭରତ ଗୋବିନ୍ଦ ସୁମରି ॥୨
ତିନିମୁହୂର୍ତ୍ତ ଜଳେ ରହି ।
ଏକାନ୍ତେ ବିଷ୍ଣୁଙ୍କୁ ଭଜଇ ॥୩
ତକ୍ଷଣେ ଦେଖେ ମହୀପାଳ ।
ହରିଣୀ ହୋଇ ତୃଷାକୁଳ ॥୪
ମିଳିଲା ଜଳାଶୟତୀରେ ।
ଜଳ ପିଅଇ ସେ ସଧୀରେ ॥୫
ଏମନ୍ତ ସମୟେ ରାଜନ ।
ଶୁଭିଲା ସିଂହର ଗର୍ଜନ ॥୬
ଡେଇଁଲା ମୃଗେନ୍ଦ୍ର ଭୟରେ ।
ପଳାଏ ଅତି ଦୂରାନ୍ତରେ ॥୭
ସେ ମୃଗବଧୂ ଯେ ଗର୍ଭିଣୀ ।
ଜଳ ପିଅନ୍ତେ ଛନ୍ନପୁଣି ॥୮
ଜଳପାନରେ ତୃଷା ତା'ର ।
ପୂର୍ଣ୍ଣ ନୋହିଲା ନୃପବର ॥୯
ଚାରିଦିଗରେ ସେ ନୟନ ।
ବୁଲାଇ ଅତି ଛନ୍ନଛନ୍ନ ॥୧୦
ନିକଟେ ସିଂହ ପ୍ରାୟ ମଣି ।
ଅତି କାତରେ ସେ ହରିଣୀ ॥୧୧
ଜଳୁ ଉଠିଣ ଧାଡିକାରେ ।
ଡେଇଁଲା ମରଣ କାତରେ ॥୧୨
ସ୍ୱଭାବେ ଗର୍ଭ ହୋଇଥିଲା ।
ସେ ଗର୍ଭ ଜଳରେ ପଡିଲା ॥୧୩
ଗର୍ଭ ନିପାତେ ଖେଦମତି ।
ପ୍ରାଣ ତେଜିଲା ମୃଗସତୀ ॥୧୪
ନଦୀରେ ଦେଖି ମୃଗବାଳ ।
ସେ ଯେ ଭରତ-ମହୀପାଳ ॥୧୫

ମାତାର ମୃତ୍ୟୁ ତା'ର ଦେଖି ।
ଦୟାରେ ଅଶ୍ରୁପୂର୍ଣ୍ଣ ଆଖି ॥୧୬
ଚିତ୍ତେ ଆକୁଳ ନୃପବର ।
ପ୍ରବେଶେ ବାଳକ ପାଶର ॥୧୭
ମୃଗନନ୍ଦନ ଘେନି କରେ ।
ଆଶ୍ରମେ ମିଳିଲେ ସତ୍ୱରେ ॥୧୮
ସେ ମୃଗନନ୍ଦନର ତହିଁ ।
ଅତ୍ୟନ୍ତ ସ୍ନେହଭର ହୋଇ ॥୧୯
ନିତ୍ୟେ କୋମଳ-ତୃଣାଙ୍କୁର ।
ଲୋଡି ଆଣଇ ନୃପବର ॥୨୦
ଯାହା ସେ କରେ ଅଭିଳାଷ ।
ତା' ଦେଇ କରେ ମନତୋଷ ॥୨୧
ତା' ସେବା ନିରତେ କରଇ ।
ମାୟାରେ ମତିଭ୍ରମ ହୋଇ ॥୨୨
ନିୟମ-ସନ୍ଧ୍ୟା-ତପ ଯେତେ ।
ବିସ୍ମର ହେଲା ନୃପ ଚିତ୍ତେ ॥୨୩
କେତେ ହେଁ ଦିନ ଅନନ୍ତର ।
ପ୍ରଭୁର ସେବା କଲା ଦୂର ॥୨୪
ଜଗତ ପିତାମାତା ହରି ।
ତା'ର ଚରଣ ଚିତ୍ତେ ଧରି ॥୨୫
ଦାରା ତନୟ ଆଦି ଯେତେ ।
ସକଳ ଦୂରକରି ଚିତ୍ତେ ॥୨୬
ଏ ଭାବେ ଥିଲା ସେ ରାଜନ ।
ଦେଖ ଏହାର ମୂଢ଼ପଣ ॥୨୭
ସକଳ କର୍ମ ଦୂର କଲା ।
ମୃଗବାଳକେ ମନ ଦେଲା ॥୨୮
ବିଚାରେ ମାତାପିତା ଭାଇ ।
ଏହାର ଆନ କେହି ନାହିଁ ॥୨୯
ଆଶ୍ରୟ କରିଅଛି ମୋତେ ।
ମୁଁ ତା'କୁ ତେଜିବି କେମନ୍ତେ ॥୩୦
ଏ ସାଧୁକର୍ମର କାରଣ ।
ଏମନ୍ତ ଚିନ୍ତିଣ ରାଜନ ॥୩୧

ଆସନ-ଶୟନ-ଗମନେ ।
ସ୍ନାନ-ଭୋଜନ-ଜଳପାନେ ॥୩୨
ମୃଗବାଳକେ ମନ ତା'ର ।
ନିମିଷମାତ୍ର ନୋହେ ଦୂର ॥୩୩
କାଷ୍ଠ-ପଳାଶ ଆଣିବାରେ ।
ଯେବେ ସେ ଯାଇ ବନସ୍ତରେ ॥୩୪
ମୃଗବାଳକ ଘେନି ସଙ୍ଗେ ।
ପଥେ ଚଳଇ ନାନାରଙ୍ଗେ ॥୩୫
ବାଳକ ଚଳି ନ ପାରଇ ।
ଭରତ ମନେ ବିଚାରଇ ॥୩୬
ଅତ୍ୟନ୍ତ ସ୍ନେହବଶ ହୋଇ ।
କନ୍ଧେ ତାହାକୁ ସେ ବହଇ ॥୩୭
ହୃଦରେ ଆରୋପି ହରଷେ ।
ବାହୁରେ ଭିଡେ ସ୍ନେହବଶେ ॥୩୮
ସ୍ନାନ-ଭୋଜନବେଳେ ତା'ର ।
କ୍ଷଣେ ହେଁ ନ କରେ ଅନ୍ତର ॥୩୯
ଏଥି ଉତ୍ତାରେ କିଛିଦିନେ ।
ମୃଗଶାବକ ଗଲା ବନେ ॥୪୦
ସେ ଅବସରେ ନୃପବର ।
ନ ଦେଖି ମୃଗର କୁମର ॥୪୧
ଅସ୍ଥିରେ ତାହାକୁ ଲୋଡଇ ।
ପୁଣି ସେ ଯେବେଟି ଦେଖଇ ॥୪୨
ଚଞ୍ଚଳଚିତ୍ତ ସ୍ଥିର କରେ ।
ଆଶିଷ ବାଞ୍ଛଇ ତାହାରେ ॥୪୩
ହେ ବତ୍ସ ମୋହର କଲ୍ୟାଣ ।
ଶୁଭ କରନ୍ତୁ ନାରାୟଣ ॥୪୪
ଯେବେ ନିମିଷେ ନ ଦେଖଇ ।
ଶୋକ-ସାଗରେ ସେ ବୁଡଇ ॥୪୫
କୃପଣ ଦ୍ରବ୍ୟକୁ ଯେସନ ।
ଚଉର୍ଯ୍ୟ କରି ନେଲେ ଆନ ॥୪୬
ତେମନ୍ତ ପ୍ରାୟେ ମହୀପାଳ ।
କ୍ଷଣେ ନ ଦେଖି ମୃଗବାଳ ॥୪୭

Dr. Sudhanshu Sekhar Mishra

ବିହ୍ୱଳେ ହୃଦୟ କାତର ।
ଲୋଡଇ ମୃଗର କୁମର ॥୪୮
ଭ୍ରମେ ବୋଲଇ ବାକ୍ୟମାନ ।
ମଲା କି ମୃଗରନନ୍ଦନ ॥୪୯
କି କର୍ମ କଲି ମୁଁ କିରାତ ।
କେଣେ ମୋ ଗଲା ମୃଗସୁତ ॥୫୦
ମୃଗବାଳକ ସୁକଲ୍ୟାଣେ ।
ଚରୁ କି ଥିବ ଉପବନେ ॥୫୧
ପ୍ରଭୁ କି ରଖିଥିବେ ତା'ରେ ।
ଦେଖିବି ନୟନଗୋଚରେ ॥୫୨
କି ଅବା ମୃଗବାଳେ ମୋର ।
ଭକ୍ଷିଲେ ଶୃଗାଳ କୁକୁର ॥୫୩
ରବିର ଅସ୍ତକାଳ ହୋଇ ।
ମୋ' ମୃଗସୁତ ନ ଦିଶଇ ॥୫୪
ଶୋକେ ଆକୁଳ ମୋର ଦେହୀ ।
କେଣେ ହେଁ ମୃଗବାଳ ନାହିଁ ॥୫୫
ସେ ମୃଗରାଜର କୁମର ।
ମନୋଜ୍ଞ-ଗମନ ତାହାର ॥୫୬
କ୍ଷଣକେ ଆଶ୍ରମଲୋକର ।
ଦୁଃଖ ଖଣ୍ଡଇ ନିରନ୍ତର ॥୫୭
ମିଥ୍ୟାରେ ଚକ୍ଷୁବୁଜି ମୁହିଁ ।
କ୍ଷଣମାତ୍ରକ ଯେବେ ରହି ॥୫୮
ଚକିତ ପ୍ରାୟେ ସେ ହୁଅଇ ।
ମୋହର ଅଗ୍ରତେ ଲୋଟଇ ॥୫୯
ଋଷିକୁମରଙ୍କର ସଙ୍ଗେ ।
ଖେଳୁ ଯେ ଥାଇ ନାନାରଙ୍ଗେ ॥୬୦
କୋମଳତୃଣାଙ୍କୁରମାନ ।
ବାଳକେ ଦିଅନ୍ତି ବହନ ॥୬୧
ସେ ସର୍ବସୁଖ ଦୂର ହେଲା ।
ମୃଗକୁମର କେଣେ ଗଲା ॥୬୨
ସେ ମୋର କୃଷ୍ଣସାରବାଳ ।
ମୃଦୁ ତାହାର ପାଦତଳ ॥୬୩
କୋମଳ ଖୁରପୁଟପନ୍ତି ।
ସେ ମୋର ଦ୍ରବିଣ-ସମ୍ପତ୍ତି ॥୬୪

ମୃଗଶାବକ ଖୋଜିବାର ।
ନୃପତି ହୋଇଲା ବାହାର ॥୬୫
ପଥରେ ପଦଚିହ୍ନ ଦେଖି ।
କହଇ ନିରେଖି ନିରେଖି ॥୬୬
ଧନ୍ୟ ପୃଥିବୀ ତୋ'ର ପୁଣ୍ୟ ।
ଏ ଚିହ୍ନ କଲୁ ତୁ ଧାରଣ ॥୬୭
ବିପ୍ରଙ୍କ ଯଜ୍ଞସ୍ଥାନ ପ୍ରାୟେ ।
ତୋ' ଦେହ ଶୋଭାକୁ ଯେ ପାଏ ॥୬୮
ପୁଣି ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଲା ।
ଯହୁଁ ସେ ଚନ୍ଦ୍ରକୁ ଦେଖିଲା ॥୬୯
ତହିଁ ଦେଖିଣ ମୃଗଚିହ୍ନ ।
ଭାବିଲା ନିଜ ମନେ ମନ ॥୭୦
ମୃଗଶାବକ ଦେଖି ଏକ ।
ଦୟାରେ କି ତାରାନାୟକ ॥୭୧
ସିଂହଭୟରୁ ରକ୍ଷା କଲେ ।
ଆପଣା ନିକଟେ ରଖିଲେ ॥୭୨
ଅତ୍ୟନ୍ତ ସୁଖକୁ ସେ ଦେଇ ।
ତା' ବିନୁ ମୋର କେହି ନାହିଁ ॥୭୩
ଏ ଯେ ଆଶ୍ରମ-ମୁନିଗଣ ।
କରନ୍ତି ନାନା ଶୁଭକର୍ମ ॥୭୪
ହରଷଚିତ୍ତେ ମୁନିଗଣ ।
କରନ୍ତି ତାହାରେ କଲ୍ୟାଣ ॥୭୫
ମୃଗେନ୍ଦ୍ର ଭୟରୁ ତାହର ।
ମାତା ଯେ ଛାଡ଼ିଲା ଶରୀର ॥୭୬
ତେଣୁ ମୁଁ ଲଭିଲି ତାହାରେ ।
ଏବେ ସେ ଗଲା ବନଘୋରେ ॥୭୭
ଏମନ୍ତେ ଶୁଣ ମହୀପାଳ ।
କ୍ଷଣେ ନ ଦେଖି ମୃଗବାଳ ॥୭୮
ବ୍ୟର୍ଥକର୍ମରେ ସେବା ତା'ର ।
ସୁକର୍ମ ତେଜି ନୃପବର ॥୭୯
ପୂର୍ବତପସ୍ୟା ହତ ତା'ର ।
ଶୁଭକର୍ମକୁ କଲା ଦୂର ॥୮୦
ଅଖିଳ-ବ୍ରହ୍ମାଣ୍ଡ-କାରଣ ।
ଅନାଦିନାଥ-ନାରାୟଣ ॥୮୧

ତା'ର ଚରଣ ଦୂର କରି ।
ମୃଗବାଳକେ ମନ ଧରି ॥୮୨
ମୋକ୍ଷପଦକୁ ପ୍ରତିବନ୍ଧ ।
ସେ ମୃଗବାଳ ପଶୁମନ୍ଦ ॥୮୩
ତହିଁ ମମତା ରାଜା କଲା ।
ଯୋଗଅଭ୍ୟାସ ନ ଜାଣିଲା ॥୮୪
ତାହାକୁ ଥୋଇ ହୃଦାସନେ ।
ଭୁଲିଲା ଜଗତ କାରଣେ ॥୮୫
ମୃଗର ଲାଳନ-ପାଳନ ।
ଏଣେ ହରଇ ସେହୁ ଦିନ ॥୮୬
ଏମନ୍ତେ କେତେ ଦିନ ଗଲା ।
ଆୟୁଷ ଶେଷ ତା ହୋଇଲା ॥୮୭
ଏମନ୍ତେ ଶୁଣ ହେ ରାଜନ ।
କାଳର ହେଲା ସେ ଅଧୀନ ॥୮୮
ସମୀପେ ଦେଖି ମୃଗବାଳ ।
ଶୋକରେ ହୋଇଲା ବିକଳ ॥୮୯
ପୁତ୍ରର ପ୍ରାୟେ ସ୍ନେହଭରେ ।
ମନ ଅର୍ପିଲା ତାହାଠାରେ ॥୯୦
ଅତ୍ୟନ୍ତ ଶୋକକରି ମନେ ।
ପ୍ରାଣ ଛାଡ଼ିଲା ତତକ୍ଷଣେ ॥୯୧
ମୃଗର ତହିଁ ମନ ଥିଲା ।
ତେଣୁ ସେ ମୃଗଜନ୍ମ ହେଲା ॥୯୨
ମୃଗଜନ୍ମଟି ସେ କାରଣୁ ।
ଶୁଣ ହେ ଅଭିମନ୍ୟୁ-ତନୁ ॥୯୩
ପୂର୍ବଜନ୍ମର କଥା ତା'ର ।
ସ୍ମରଣ କଲା ନୃପବର ॥୯୪
ମୃଗଙ୍କ ସଙ୍ଗେ ବନେ ଥାଇ ।
ଅରଣ୍ୟେ ବୁଲଇ ସେ ମହୀ ॥୯୫
ବୁଲନ୍ତେ ଏକଦିନକର ।
ବୃକ୍ଷର ମୂଳେ ମୁନିବର ॥୯୬
ବ୍ରହ୍ମସାଧନେ ଚିତ୍ତ ଦେଇ ।
ମନକୁ ବ୍ରହ୍ମରନ୍ଧ୍ରେ ଥୋଇ ॥୯୭
ତା' ଦେଖି ରାଜା ବିଚାରଇ ।
ମୁଁ ଯେ ହୋଇଣ ଥିଲି ଏହି ॥୯୮

Dr. Sudhanshu Sekhar Mishra

ମନରେ ଜାଣି ସେ ରାଜନ ।
ବିକଳେ ହୋଇ ଛନ୍ନଛନ୍ନ ॥୯୯
ମୃଗଜନ୍ମର ଯେ କାରଣ ।
ମନେ ଜାଣିଲା ସେ ରାଜନ ॥୧୦୦
ପ୍ରଭୁର ସେବା ଭ୍ରଷ୍ଟ ହୋଇ ।
ମନେ ବହୁତ ତାପ ପାଇ ॥୧୦୧
ଅତ୍ୟନ୍ତ ଶୋକ କରି ମନେ ।
ବୋଲଇ ଲୋତକନୟନେ ॥୧୦୨
ଭ୍ରଷ୍ଟ ହୋଇଲି ମୁଁ ପାମର ।
ପ୍ରଭୁର ସେବା କଲି ଦୂର ॥୧୦୩
ସମସ୍ତ ତପକୁ ହୁଡିଣ ।
ବିବିଧ-ଯଜ୍ଞ-ଶୁଭକର୍ମ ॥୧୦୪
ନାମଶ୍ରବଣ ଉଚ୍ଚାରଣ ।
ନିରତେ କରି ଆରାଧନ ॥୧୦୫
ସକଳ-ଆତ୍ମା ଭଗବାନ ।
ମନ ଅର୍ପିଲି ଅନୁଦିନ ॥୧୦୬

ଯେଣୁ ସେ ସକଳ ଛାଡିଲି ।
ମୃଗବାଳକେ ମନ ଦେଲି ॥୧୦୭
ତେଣୁ ଏ ଜୀବନ ମୋହର ।
ପାଇଲା ମୃଗର ଶରୀର ॥୧୦୮
ଏମନ୍ତ ମନରେ ବିଚାରି ।
ଚଞ୍ଚଳଚିତ୍ତ ସ୍ଥିର କରି ॥୧୦୯
ଆପଣା ମାତା ଯେ ହରିଣୀ ।
ତାହାକୁ ତେଜି ନୃପମଣି ॥୧୧୦
ପ୍ରଭୁର ଅତି ପ୍ରିୟସ୍ଥାନ ।
ଯେ ତୀର୍ଥ ଶାଳଗ୍ରାମ ନାମ ॥୧୧୧
ପରମସାଧୁ ଭକ୍ତଜନେ ।
ଅଛନ୍ତି ଯହିଁ ମୁନିମାନେ ॥୧୧୨
ତହିଁକି ଶୀଘ୍ର ଚଳିଯାଇ ।
ରହିଲା ମୃତ୍ୟୁବାଟ ଚାହିଁ ॥୧୧୩
କୁସଙ୍ଗ-ସଙ୍ଗକୁ ସେ ଡରି ।
ମନେ ଚିନ୍ତଇ ନରହରି ॥୧୧୪

ନୀରସଦଳ ସେ ଭକ୍ଷଇ ।
ମୃଗଶରୀର ଯିବା ପାଇଁ ॥୧୧୫
ମନରେ କରଇ ବିଚାର ।
କେମନ୍ତେ ଯିବ ଏ ଶରୀର ॥୧୧୬
ଏମନ୍ତେ ଶୁଣ ହେ ରାଜନ ।
କେତେହେଁ ଗଲା ତହିଁ ଦିନ ॥୧୧୭
ସେ ତୀର୍ଥଜଳରେ ତାହାର ।
ତେଜିଲା ମୃଗକଳେବର ॥୧୧୮
ଯେ ପ୍ରଭୁ ବ୍ରହ୍ମାଣ୍ଡ କାରଣ ।
ବ୍ରହ୍ମା ଚିନ୍ତଇ ଯା ଚରଣ ॥୧୧୯
ସେ ଚକ୍ରଧର ନାରାୟଣ ।
ପଦପଙ୍କଜ ସୁମରିଣ ॥୧୨୦
କହଇ ଦାସ ଜଗନ୍ନାଥ ।
ସାଧୁଙ୍କ ହିତେ ଭାଗବତ ॥୧୨୧
ପଞ୍ଚମସ୍କନ୍ଧେ କୃଷ୍ଣବାଣୀ ।
ଶୁଣି ସଂସାରୁ ତରପ୍ରାଣୀ ॥୧୨୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଭରତଚରିତେ
ଅଷ୍ଟମୋଽଧ୍ୟାୟଃ ॥

## ନବମ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ ।
ଏ ଅନନ୍ତରେ ସେ ଭରତ ॥୧
ସନ୍ଧ୍ୟାଦି ତପ ଶମଦମ ।
ତିତିକ୍ଷା ଆଦି ଯେ ନିୟମ ॥୨
ଜ୍ଞାନୀଙ୍କ ମଧ୍ୟେ ଶ୍ରେଷ୍ଠବର ।
ଦ୍ୱିଜ ଆଙ୍ଗୀରସ-ପ୍ରବର ॥୩
ଏ ସବୁ ଗୁଣେ ଗୁଣୀ ସେହି ।
ପତ୍ନୀ ତାହାଙ୍କ ଥିଲା ଦୁଇ ॥୪
ଜ୍ୟେଷ୍ଠଭାର୍ଯ୍ୟାର ନବସୁତ ।
ପିତାଙ୍କ ତୁଲ୍ୟେ ଗୁଣବନ୍ତ ॥୫

କନିଷ୍ଠାଭାର୍ଯ୍ୟା ଗର୍ଭଜାତ ।
ଏକ ଦୁହିତା ଏକ ସୁତ ॥୬
ଏ ସୁତ ମହାଭାଗବତ ।
ସେହି ସେ ରାଜର୍ଷି ଭରତ ॥୭
ମୃଗଦେହକୁ ତ୍ୟାଗ କରି ।
ତଦନ୍ତେ ବିପ୍ରରୂପ ଧରି ॥୮
ଦ୍ୱିଜଙ୍କ ପୁତ୍ରଭାବ ବହି ।
ଜନ୍ମ ଲଭିଲେ ତା'ଙ୍କ ତହିଁ ॥୯
ଅପରେ ତା'ର ସହୋଦର ।
ଉତ୍ତମ-ସାଧୁଶୀଳପର ॥୧୦
ସେ ସାଧୁସଙ୍ଗରୁ ରାଜନ ।
ତାହାର ହେଲା ଶୁଦ୍ଧଜ୍ଞାନ ॥୧୧

ଯେଣୁ କର୍ମବନ୍ଧ ଖଣ୍ଡନ ।
ଶ୍ରୀକୃଷ୍ଣ ନାମ-କର୍ମ-ଗୁଣ ॥୧୨
ତାହା ଶୁଣଇ ଅବିରତେ ।
ପଦାରବିନ୍ଦ ଧାୟି ଚିତ୍ତେ ॥୧୩
ପ୍ରଭୁଙ୍କ କୃପାରୁ ରାଜନ ।
ପୂର୍ବଜନ୍ମର କଥାମାନ ॥୧୪
ସ୍ମରଣ ହୋଇଲା ତାହାର ।
ଅସାଧୁ ସଙ୍ଗକୁ ତା' ଡର ॥୧୫
ଉନ୍ମତ୍ତ ଜଡ ଯେ ବଧିର ।
ପ୍ରାୟେ ସେ ବ୍ରାହ୍ମଣ-କୁମର ॥୧୬
ଅଶେଷ-ଜ୍ଞାନେ ଶ୍ରେଷ୍ଠ ହୋଇ ।
କପଟ ଲୋକରେ ଦେଖାଇ ॥୧୭

Dr. Sudhanshu Sekhar Mishra

ତେବେହେଁ ପୁତ୍ରଠାରେ ତା'ର ।
ସ୍ନେହ ହେବାରୁ ନୃପବର ॥୧୮
ସୁସାଧୁ ପଣ ଦେଖିତାର ।
ସଂସ୍କାର କଲାକ କୁମର ॥୧୯
ବେଦ-ଉଚିତ-କର୍ମ ଯେତେ ।
ଦଶକର୍ମରେ ଯଥୋଚିତେ ॥୨୦
ଶୁଣ ପରୀକ୍ଷ ନୃପବର ।
ସେ ଯେଉଁ ବ୍ରାହ୍ମଣକୁମର ॥୨୧
ଶଉଚ ଆଚମନ ବିଧି ।
ବ୍ରାହ୍ମଣ-କର୍ମ ଯେ ପ୍ରସିଦ୍ଧି ॥୨୨
ଗୁରୁଙ୍କ ଉପଦେଶ ବିନେ ।
ଜାଣିଲା ସେ ଯେ ଅନୁମାନେ ॥୨୩
ପୁତ୍ରର ଶୁଦ୍ଧମନ ଜାଣି ।
ସେ ଯେ ବ୍ରାହ୍ମଣ-ଶିରୋମଣି ॥୨୪
ଅତ୍ୟନ୍ତ ସ୍ନେହଭର ହୋଇ ।
ମନ ଅର୍ପିଲା ତା'ର ତହିଁ ॥୨୫
ଓଁକାର ଆଦି ବେଦସାର ।
ବ୍ୟାହୃତି-ପ୍ରଣବ-ଅକ୍ଷର ॥୨୬
ସାବିତ୍ରୀ-ମୂଳମନ୍ତ୍ର-ସାର ।
ସାନନ୍ଦେ ଦେଲେ ବିପ୍ରବର ॥୨୭
ଯଜନଆଦି ଷଟକର୍ମ ।
ଏ ଯେ ବ୍ରାହ୍ମଣ ନିଜଧର୍ମ ॥୨୮
ପୁରୁଷସୂକ୍ତଆଦି ଯେତେ ।
ସର୍ବ କହିଲେ ଯଥୋଚିତେ ॥୨୯
ପୁତ୍ରସ୍ନେହରେ ବିପ୍ରବର ।
ଶିକ୍ଷା କରନ୍ତି ନିରନ୍ତର ॥୩୦
ସମ୍ପୂର୍ଣ୍ଣ ନୋହୁ ମନୋରଥ ।
ଏମନ୍ତେ ଶୁଣ ନରନାଥ ॥୩୧
ଆୟୁଷଶେଷେ ସେ ବ୍ରାହ୍ମଣ ।
କାଳର ହୋଇଲା ଅଧୀନ ॥୩୨
ଦ୍ୱିଜଙ୍କ କନିଷ୍ଠ ରମଣୀ ।
ଉଭରପୁତ୍ର ସଙ୍ଗେ ଘେନି ॥୩୩
ଆପଣା ଜ୍ୟେଷ୍ଠ-ସପତ୍ନୀରେ ।
ସମର୍ପି ଦେଲ ସ୍ନେହଭରେ ॥୩୪

ଆପଣେ ପତିର ସଙ୍ଗତେ ।
ଚଳିଲା ହରଷିତ ଚିତ୍ତେ ॥୩୫
ଏମନ୍ତେ ପିତାର ଅନ୍ତରେ ।
ସେ ଯେ ବ୍ରାହ୍ମଣର କୁମରେ ॥୩୬
ଜଡ ଯେ ବ୍ରାହ୍ମଣ କୁମର ।
ତା' ଠାରେ କଲେ ହତାଦର ॥୩୭
ତାହାର ପ୍ରଭାବ ନ ଜାଣି ।
ଜଡ଼ର ପ୍ରାୟେ ତାକୁ ମଣି ॥୩୮
ଜଡ଼ ବଧିର ଯେ ଉନ୍ମତ୍ତ ।
ଏମନ୍ତ ରୂପ ସେ ଭରତ ॥୩୯
ଦ୍ୱିପଦ ନର ପଶୁମତେ ।
ଏହାଙ୍କୁ ଦେଖନ୍ତି ଏମନ୍ତେ ॥୪୦
ସେ ପରାଧୀନ ପ୍ରାୟ ହୋଇ ।
ଲୋକରେ କର୍ମକୁ କରଇ ॥୪୧
ଲୋକେ ଶ୍ରଦ୍ଧାରେ ଯାହା ଦେଇ ।
ପରମତୋଷେ ତା' ଭୁଞ୍ଜଇ ॥୪୨
ଇନ୍ଦ୍ରିୟପ୍ରୀତି ନିମିତ୍ତରେ ।
କେବେହେଁ ଆହାର ନ କରେ ॥୪୩
ନିବୃତ୍ତ ହୋଇ ସର୍ବଠାରେ ।
ପରମ ଆନନ୍ଦେ ବିହରେ ॥୪୪
ଦୁଃଖସୁଖରେ ସମ ତା'ର ।
ହୃଦେ ନ କରେ ଅହଙ୍କାର ॥୪୫
ଗ୍ରୀଷ୍ମ ବରଷା ଶୀତ ବାତ ।
ସକଳ ସହେ ସେ ଭରତ ॥୪୬
ଦିଶଇ ମହାମଣି ସମ ।
ଶରୀର ଅତି-ସ୍ଥୂଳ-ପୀନ ॥୪୭
ଅତ୍ୟନ୍ତ ବ୍ରହ୍ମତେଜ ବହି ।
ଜଡ଼ର ପ୍ରାୟେ ସେ ଭ୍ରମଇ ॥୪୮
ଆହାରଆଦି ସର୍ବଠାରେ ।
ସେ ଥାଇ ନିଗ୍ରହ-ବେଭାରେ ॥୪୯
ତଥାପି ଶୁଣ ହେ ରାଜନ ।
ତାହାର ନିଜ ଭ୍ରାତାଗଣ ॥୫୦
କୃଷିରକ୍ଷଣ କାରଣରେ ।
ନିଯୁକ୍ତ କରନ୍ତି ତାହାରେ ॥୫୧

ଭ୍ରାତୃବଚନ ଅନୁମତେ ।
କୃଷି ରଖଇ ଯଥୋଚିତେ ॥୫୨
ମୃଗ ବରାହଙ୍କୁ ନିବାରି ।
ଥାଇ ସେ ନିରତେ ଆବୋରି ॥୫୩
ଶୁଣ ହେ ଅଭିମନ୍ୟୁ ବଳା ।
ଏମନ୍ତେ କେତେଦିନ ଗଲା ॥୫୪
ଏମନ୍ତେ ସାବଧାନେ ଶୁଣ ।
ବୃଷଳପତି ଯେ ରାଜନ ॥୫୫
ଅତ୍ୟନ୍ତ ପୁତ୍ରକାମୀ ହୋଇ ।
ଦେବୀଙ୍କି ମହାପଶୁ ସହି ॥୫୬
ଶକ୍ତି-ଭକ୍ତିରେ ଦୃଢ଼ ସେହି ।
ଅନ୍ୟଦେବତା ନ ଜାଣଇ ॥୫୭
ତାହାର ପ୍ରସାଦରୁ କରି ।
ଅନେକ-ସମ୍ପଦ ତାହାରି ॥୫୮
ଗ୍ରାମ-ଅନ୍ତରେ ଦେବୀବାସ ।
ମଧୁ-ମାଂସରେ ବଡ଼ ତୋଷ ॥୫୯
ଚଣ୍ଡୀର ସନ୍ତୋଷ କାରଣେ ।
ବିନାଶେ ନରପଶୁଗଣେ ॥୬୦
ରୁଧିର-ମାଂସେ ତୋଷ ହୋଇ ।
ନିତ୍ୟେ ଚଣ୍ଡିକା ବିହରଇ ॥୬୧
ତାହାର ପୂଜା ଅନୁସରି ।
ରାଜସେବକେ ପଶୁ ଧରି ॥୬୨
ନରପଶୁ ଏ ଯତ୍ନ କରି ।
ରଖନ୍ତି ନିରତେ ପାହାରୀ ॥୬୩
ଦଇବେ ଅଭିମନ୍ୟୁବଳା ।
ସେ ନରପଶୁ କେଣେ ଗଲା ॥୬୪
ତାହାର ପଥ ଅନୁସରେ ।
ଧାଇଁଲେ ତା'ର ଅନୁଚରେ ॥୬୫
ନିଶି ଅନ୍ଧାର ଘୋର ତମେ ।
ଖୋଜନ୍ତି ନାନାଦିଗ ଗ୍ରାମେ ॥୬୬
ପଶୁ ନ ପାଇ ଅନୁଚରେ ।
ନିରାଶ ହୋଇଲେ ଅନ୍ତରେ ॥୬୭
ଗୃହକୁ କରନ୍ତେ ଗମନ ।
ଦେଖିଲେ ବିପ୍ରର ନନ୍ଦନ ॥୬୮

Dr. Sudhanshu Sekhar Mishra

ଇତର ପ୍ରାୟ ତା'ଙ୍କୁ ମଣି ।
ଜଡ଼ର ପ୍ରଭାବ ନ ଜାଣି ॥୬୯
ବନ୍ଧନ କରି ତତକ୍ଷଣେ ।
ସ୍ୱାମୀର କର୍ମ-ସମ୍ପାଦନେ ॥୭୦
ଚଣ୍ଡିକାଗୃହେ ପ୍ରବେଶିଲେ ।
ସ୍ୱାମୀଙ୍କି ସମର୍ପିଣ ଦେଲେ ॥୭୧
ସୁଗନ୍ଧ-ଶୀତଳ ଜଳରେ ।
ସ୍ନାହାନ କରାଇ ବିଧିରେ ॥୭୨
ଶୁଭ୍ର-ନିର୍ମଳ-ବସ୍ତ୍ର ଦେଲେ ।
ନାନାଭୂଷଣେ ସେ ମଣ୍ଡିଲେ ॥୭୩
ବିବିଧ-ସ୍ୱାଦୁଦ୍ରବ୍ୟମାନ ।
ତାହାଙ୍କୁ କରାନ୍ତି ଭୋଜନ ॥୭୪
ସୁଗନ୍ଧ-ଚନ୍ଦନାଦି ଦେଲେ ।
ମାଳାଏ କଣ୍ଠେ ଲମ୍ୱାଇଲେ ॥୭୫
ମୃଦଙ୍ଗ ଶଙ୍ଖ ଭେରୀ ସ୍ୱନ ।
ଆନନ୍ଦେ କରନ୍ତି ଗାୟନ ॥୭୬
ଏମନ୍ତେ ନାନାବିଧିମତେ ।
ସ୍ଥାପିଲେ ଦେବୀର ଅଗ୍ରତେ ॥୭୭
ବୃଷଳପତି ଏ ଅନ୍ତରେ ।
ତୀକ୍ଷ୍ଣ-ଖଡଗ ଧରି କରେ ॥୭୮
ତାହାର ରୁଧିରକୁ ଦେଇ ।
ଦେବୀ ସନ୍ତୋଷ ହେବା ପାଇଁ ॥୭୯
ଏମନ୍ତେ ଶୁଣ ହେ ରାଜନ ।
ବୃଷଳେ ହୋଇ ମତିଭ୍ରମ ॥୮୦
ଧନସମ୍ପଦ ମଦେ କରି ।
ତମଗୁଣକୁ ଆଶ୍ରା କରି ॥୮୧
ଈଶ୍ୱରଅଂଶକୁ ଯେ ଧରେ ।
ହିଂସା କରନ୍ତି ସେ ତାହାରେ ॥୮୨
ଦାରୁଣକର୍ମ ତାହାଙ୍କର ।
ପ୍ରତ୍ୟକ୍ଷେ ବ୍ରାହ୍ମଣକୁମର ॥୮୩
କୃଷ୍ଣର କଳାବନ୍ତ ଯେହି ।
ତାହାଙ୍କୁ କଦର୍ଥନ୍ତି ନେଇ ॥୮୪
ଯେ ସର୍ବଭୂତେ ସମଚିତ୍ତ ।
ବିଷ୍ଣୁ ଜପଇ ଅବିରତ ॥୮୫
ତାହାଙ୍କୁ ପଶୁରେ ବିଚାରି ।
ନିକଟେ ହେଲା ଖଡ୍‌ଗ ଧରି ॥୮୬
ଏବେ ହୋ ଶୁଣ ପରୀକ୍ଷିତ ।
ବ୍ରାହ୍ମଣ-ତେଜ ଅପ୍ରମିତ ॥୮୭
ଜ୍ୱାଳା-କରାଳ-ଦୁର୍ବିସହ ।
ତେଣୁ ସେ ଦଗ୍‌ଧଦେବୀ ଦେହ ॥୮୮
ଭକ୍ତଙ୍କ ପ୍ରତି ହିଂସା ଦେଖି ।
ଦେବୀ ମନରେ କୋପ ରଖି ॥୮୯
ପ୍ରତିମା ପରିତ୍ୟାଗ କଲେ ।
ଭକ୍ତକୁ କୋଳରେ ଘେନିଲେ ॥୯୦
ତକ୍ଷଣେ ଉଗ୍ରମୂର୍ତ୍ତି ହୋଇ ।
ଉଠିଲେ ଅତି ରୋଷବହି ॥୯୧
ସେ ଦେବୀ ଚଣ୍ଡୀ ଭଦ୍ରକାଳୀ ।
ଅତ୍ୟନ୍ତ କୋପେ ପରଜ୍ୱଳି ॥୯୨
ଭ୍ରୂକଟୀ କୁଟୀଳ ତାହାର ।
ବଦନ ଦିଶେ ଭୟଙ୍କର ॥୯୩
ଦନ୍ତ ଦିଶନ୍ତି ବିକରାଳ ।
ଅରୁଣ ନୟନଯୁଗଳ ॥୯୪
ଚଣ୍ଡାଟ୍ଟହାସ ଘୋରସ୍ୱନ ।
ପୂର୍ଣ୍ଣ ନୋହିଛି ଦେବୀମନ ॥୯୫
ଧାଇଁଲେ ଅତି ଶୀଘ୍ରତରେ ।
ପାପିଷ୍ଠମାନଙ୍କ ଉପରେ ॥୯୬
ତାହାର ହସ୍ତୁ ଖଡ୍‌ଗ ଘେନି ।
ଶୁଣ ହେ ନୃପଶିରୋମଣି ॥୯୭
ଶାଣିତ ଅସି ତୀକ୍ଷ୍ଣଧାର ।
ଛେଦିଲେ ତାହାଙ୍କର ଶିର ॥୯୮
ପରମ ସନ୍ତୋଷକୁ ପାଇ ।
ଆପଣାଗଣ ସଙ୍ଗେ ଲଇଁ ॥୯୯
ରୁଧିର ସୁରା କରି ପାନ ।
ଭୋଳେ ହୋଇଲେ ମନେ ଛନ୍ନ ॥୧୦୦
ଦେବୀର ଯେତେ ପାରିଷଦ ।
ଆନନ୍ଦେ କରି ଗୀତନାଦ ॥୧୦୧
ମସ୍ତକମାନ ହସ୍ତେ ଧରି ।
ହରଷେ ବୁଲନ୍ତି ବିହରି ॥୧୦୨
ଶୁଣ ରାଜନ ସାବଧାନେ ।
ସେ ଯେ ବୃଷଳ ପାପୀମାନେ ॥୧୦୩
ସାଧୁଙ୍କୁ କରି ପରାଭବ ।
ଆପଣେ ନାଶ ଗଲେ ସର୍ବ ॥୧୦୪
ବିଷ୍ଣୁଭକତ ଯେତେ ନରେ ।
ଦୟା ବହନ୍ତି ସର୍ବଠାରେ ॥୧୦୫
ବଇର ହିଂସା ଦୂରେ ତେଜି ।
ସେ ପାଦପଦ୍ମ ହୃଦେ ଭଜି ॥୧୦୬
ପରମହଂସ-ଭାଗବତ ।
ତାହାଙ୍କୁ ରଖନ୍ତି ଅଚ୍ୟୁତ ॥୧୦୭
କହଇ ଦାସ ଜଗନ୍ନାଥ ।
ପଞ୍ଚମସ୍କନ୍ଧେ ଭାଗବତ ॥୧୦୮
ପ୍ରଭୁ ପଦାରବିନ୍ଦ ତଳେ ।
ମନ ମୋ' ରହିବ ନିଶ୍ଚଳେ ॥୧୦୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟା ସଂହିତାୟାଂ
ପଞ୍ଚମସ୍କନ୍ଧେ ଜଡ଼ଭରତ ଚରିତେ
ନବମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

ଶୁକ ଉବାଚ

ଏଥୁ ଅନ୍ତରେ ଏକଦିନେ ।
ଶୁଣ ରାଜନ ସାବଧାନେ ॥୧
ସିନ୍ଧୁପତି ଯେ ରହୂଗଣ ।
ସେ ରାଜା ବିଷ୍ଣୁ ପରାୟଣ ॥୨
ତାହାର ଏକ ଶ୍ରେଷ୍ଠଭୃତ୍ୟେ ।
ରାଜାର ଗମନ ନିମନ୍ତେ ॥୩
ବିମାନ ବହିବାର ପାଇଁ ।
ଏକ ପୁରୁଷେ ସେ ଲୋଡଇ ॥୪
ଦଇବଯୋଗ ଦେଖ ତା'ର ।
ସେ ବିଷ୍ଣୁଅଂଶ ବିପ୍ରବର ॥୫
ସେଠାରେ ହେଲା ଉପସ୍ଥିତ ।
ତା'କୁ ଦେଖିଲା ନୃପଦୂତ ॥୬
ହରଷମନେ ବିଚାରଇ ।
ଏହାର ତୁଲ୍ୟ କେହି ନାହିଁ ॥୭
ଅତିବଳିଷ୍ଠ ଏ ଶରୀର ।
ବିମାନ ବହିବ ନିକର ॥୮
ଏମନ୍ତେ ଶୀଘ୍ରେ ଘେନିଗଲା ।
ବିମାନ ବୁହାରେ ଖଞ୍ଜିଲା ॥୯
ତହିଁ ନିଯୁକ୍ତ ନର ସଙ୍ଗେ ।
ବିମାନ ବହିଲା ସେ ରଙ୍ଗେ ॥୧୦
ସାକ୍ଷାତେ ବିଷ୍ଣୁଭକ୍ତ ସେହି ।
ପର ଅଧୀନ ପ୍ରାୟ ହୋଇ ॥୧୧
ସେ ଯେ ପରମ-ଭାଗବତ ।
ଏ କର୍ମ ତା'ର ଅନୁଚିତ ॥୧୨
ପୂର୍ବେ ଯେ ପାପକର୍ମ କଲା ।
ଅସାଧୁ-ସଙ୍ଗକୁ ଭଜିଲା ॥୧୩
ସେହି ସକାଶୁ ଏହିଗତି ।
ଶୁଣ ତୁ ଏକମନେ ଚିନ୍ତି ॥୧୪
ବିମାନ ବହି ନ ଜାଣଇ ।
ବିଷମସମେ ସେ ଚଳଇ ॥୧୫
କ୍ଷୁଦ୍ର-ଜୀବଙ୍କ ମୃତ୍ୟୁଭୟେ ।
ପାଦ ନ କ୍ଷେପନ୍ତି ନିର୍ଭୟେ ॥୧୬
ତେଣୁ ବିମାନ ବକ୍ର ହୋଇ ।
ରାଜା ଦେହରେ କଷ୍ଟ ପାଇ ॥୧୭
ବିମାନ ବୁହା ପୁରୁଷରେ ।
ନୃପ କହଇ କୋପଭରେ ॥୧୮
ବିଷମସମ ଭାବ ହୋଇ ।
ବିମାନ ବହ କାହିଁ ପାଇଁ ॥୧୯
ପ୍ରଭୁବଚନ କୋପଭରେ ।
ଶୁଣି କମ୍ପନ୍ତି ସେ କିଙ୍କରେ ॥୨୦
ଅତ୍ୟନ୍ତ ଭୟଚିତ୍ତ ହୋଇ ।
ଜଡ଼କୁ ଦେଲେ ସେ ଦେଖାଇ ॥୨୧
ଭୋନାଥ ଆମ୍ଭ ଦୋଷ ନାହିଁ ।
ଏ ଯେ ପୁରୁଷ ନ ଚଳଇ ॥୨୨
ଏହାର ବକ୍ରଗତି ପାଇଁ ।
ବିମାନ ବକ୍ରଭାବ ହୋଇ ॥୨୩
ଭୋନାଥ ଶୁଣ ସାବଧାନେ ।
ପୁଣି ହିଁ ଚଳଇ ବିଷମେ ॥୨୪
ଏହାର ସଙ୍ଗତେ ରାଜନ ।
ବହି ନ ପାରିବୁ ବିମାନ ॥୨୫
ଏହାର ସଂସର୍ଗ ଦୋଷରେ ।
ଆମ୍ଭଙ୍କୁ ଦଣ୍ଡିବ ବେଭାରେ ॥୨୬
ଏମନ୍ତେ ଭୃତ୍ୟବାକ୍ୟ ଶୁଣି ।
ସେ ଯେ ରାଜନ ଶିରୋମଣି ॥୨୭
ଏହାଙ୍କୁ ସଂସର୍ଗ ଦୋଷରେ ।
କିପାଁ ଦଣ୍ଡିବା ଅବିଚାରେ ॥୨୮
ରାଜା ସ୍ୱଭାବେ ସାଧୁ ହୋଇ ।
ରଜୋଗୁଣରୁ କ୍ରୋଧ ବହି ॥୨୯
ବିଷ୍ଣୁଭକତ ନୃପବର ।
ଭରତେ ବୋଲନ୍ତି ଉତ୍ତର ॥୩୦
ପୁଷ୍ଟ ପୃଥୁଳ ତୋ ଶରୀର ।
କଠିନ ପୀନ ଗ୍ରୀବା ତୋ'ର ॥୩୧
ସ୍ଖଳିତେ ଚଳୁ କି କାରଣ ।
ଏ ତୋ'ର ଦେହ ନିଷ୍କାରଣ ॥୩୨
ଏ କ୍ଷୁଦ୍ରେ ତୋ'ର ସଙ୍ଗତରେ ।
ବିମାନ ବୁହନ୍ତି ତତ୍ପରେ ॥୩୩
ବ୍ୟର୍ଥ ତୋହର କଳେବର ।
ମିଥ୍ୟାରେ ବହୁ ତୁ ଶରୀର ॥୩୪
ଏମନ୍ତେ ଶୁଣ ପରୀକ୍ଷିତ ।
ସେ ଯେ ବ୍ରାହ୍ମଣ ବିଷ୍ଣୁଭକ୍ତ ॥୩୫
ଏମନ୍ତ ବଚନେ ମଉନ ।
ସ୍ୱଭାବେ ବହନ୍ତି ବିମାନ ॥୩୬
ପୁଣି ବିମାନ ବକ୍ର ହେଲା ।
ସେ ରାଜା ଅତି କୋପ କଲା ॥୩୭

ରାଜା ଉବାଚ

ଆରେ ପାମର ମୂଢ଼ଚିତ୍ତ ।
ଜୀବନ ଥାଉଁ ତୁହି ମୃତ ॥୩୮
ମୋହର ଅଙ୍ଗେ କଷ୍ଟ ଦେଉ ।
ପ୍ରମତ୍ତଭାବକୁ ତୁ ବହୁ ॥୩୯
ଯମର ପ୍ରାୟ ମୁଁ ଅଟଇ ।
ଦୁଷ୍ଟଙ୍କ ଦର୍ପ ବିନାଶଇ ॥୪୦
ତୋହର ମତ୍ତଭାବ ମୁହିଁ ।
ଆଜହୁଁ ଦୂର କରିବଇଁ ॥୪୧
ଏମନ୍ତେ ଅତି ନିନ୍ଦାମାନ ।
ଜଡକୁ କଲା ସେ ରାଜନ ॥୪୨
ରଜୋଗୁଣରୁ ତମ ତା'ର ।
ତମୋଗଣରୁ ଅହଙ୍କାର ॥୪୩
ସେ ଯେ ବ୍ରାହ୍ମଣର କୁମର ।
ସକଳଭୂତେ ଦୟାପର ॥୪୪
ଈଷତହାସ୍ୟ-ବଦନରେ ।
ବଚନ କହନ୍ତି ରାଜାରେ ॥୪୫

Dr. Sudhanshu Sekhar Mishra

ବ୍ରାହ୍ମଣ ଉବାଚ

ଭୋ ନୃପ ଶୁଣ ସାବଧାନେ ।
ତୁମ୍ଭେ ଯା କହିଲ ବଚନେ ॥୪୬
ହେ ବୀର ଭାର ନାମ ଯେହି ।
ଭାର ବହଇ ଅବା କେହି ॥୪୭
ଗମନ କରି ନ ପାରଇ ।
ଅତିହିଁ ସ୍ଥୂଳ ମୋର ଦେହୀ ॥୪୮
ଜୀବନ ମୃତ ଯେ ବୋଇଲ ।
ସେ କଥା ସତ୍ୟଟି କହିଲ ॥୪୯
ଯେ ସ୍ଥୂଳ କୃଶ ଆଧି ବ୍ୟାଧି ।
କ୍ଷୁଧା ପିପାସା ଭୟ ଆଦି ॥୫୦
ନିଦ୍ରା ବିହାର କ୍ରୋଧ ଯେତେ ।
ମଦ ଅହଙ୍କାର ସହିତେ ॥୫୧
ଯା' ଦେହେ ଅଭିମାନ ଥାଇ ।
ତାହାର ତହିଁ ଏତେ ଥାଇ ॥୫୨
ମୋର ଦେହରେ ଏତେ ନାହିଁ ।
ଏଣୁ ଜୀବନମୃତ ମୁହିଁ ॥୫୩
ବିଶେଷ କହିଲି ରାଜନ ।
ବ୍ରହ୍ମବିଚାରେ ଏ ବଚନ ॥୫୪
କେ ଅବା କାହାରେ ବହଇ ।
ଏମନ୍ତ ମୁହିଁ ନ ଦେଖଇ ॥୫୫
କେବା ଈଶ୍ୱର କେ କିଙ୍କର ।
ଏମନ୍ତ ନ ଦେଖି ଅପର ॥୫୬
ତୁମ୍ଭେ ଆମ୍ଭରେ ଏ ବଚନ ।
କେମନ୍ତେ କହିଲ ରାଜନ ॥୫୭
ଆମ୍ଭେ କି କରିବୁ ତୁମ୍ଭରେ ।
ସ୍ୱଭାବେ ଏ ଜଡ଼-ଶରୀରେ ॥୫୮
ପ୍ରମତ୍ତ-ଜଡ଼ଭାବେ ମୁହିଁ ।
ବିମାନ କେବେ ବହିନାହିଁ ॥୫୯

ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର ।
ସେ ଯେ ବ୍ରାହ୍ମଣର କୁମର ॥୬୦
ସୁଶୀଳ ସାଧୁ ସମଚିତ୍ତ ।
ବିଶେଷେ ଶ୍ରୀକୃଷ୍ଣଭକତ ॥୬୧
ରାଜାର ବାକ୍ୟ ଅନୁସାରେ ।
ଏମନ୍ତ କହି ସେ ମଧୁରେ ॥୬୨
ପ୍ରାରବ୍ଧକର୍ମ କ୍ଷୟପାଇଁ ।
ପୁଣି ବହନ୍ତି ତୁନିହୋଇ ॥୬୩
ଏମନ୍ତେ ଶୁଣ ନୃପବର ।
ବିଷୟକର୍ମ କରି ଦୂର ॥୬୪
ତତ୍ତ୍ୱଜିଜ୍ଞାସା ନିମନ୍ତରେ ।
ରାଜା ଯେ ଥାଏ ସ୍ନେହଭରେ ॥୬୫
ବିପ୍ର ବଚନେ ତତ୍ତ୍ୱଜ୍ଞାନ ।
ବିଷୟ ଭ୍ରମ ତା' ଖଣ୍ଡନ ॥୬୬
ଅମୃତପ୍ରାୟ ତା'ଙ୍କ ବାଣୀ ।
ମନେ ଚିନ୍ତିଲା ନୃପମଣି ॥୬୭
ତକ୍ଷଣେ ଶୀଘ୍ରତର ହୋଇ ।
ବିମାନୁ ପଡିଲା ଓହ୍ଲାଇ ॥୬୮
ବ୍ରାହ୍ମଣ ପାଦଯୁଗଳରେ ।
ଶିର ସମର୍ପି ଭୟାତୁରେ ॥୬୯
ବୋଲଇ ବାକ୍ୟ ଗଦଗଦ ।
କ୍ଷମା କରିବା ଅପରାଧ ॥୭୦
କେ ତୁମ୍ଭେ କହ ସ୍ୱାମୀ ମୋରେ ।
କରୁଣାକର ଏ କିଙ୍କରେ ॥୭୧
ଗୁପତଭାବେ ଭ୍ରମୁଥାଅ ।
ବ୍ରାହ୍ମଣଭାବ ତୁମ୍ଭ ଦେହ ॥୭୨
କି ଅବା ଅବଧୂତ-ବର ।
କେମନ୍ତେ ମିଳିଲ ଏଠାର ॥୭୩
କାହିଁ ତୁମ୍ଭର ନିଜସ୍ଥାନ ।
କେମନ୍ତେ ବହିଲ ବିମାନ ॥୭୪
ଏ ଯେତେ ଅପରାଧ ମୋର ।
କ୍ଷମା ତୁ କର ଦ୍ୱିଜବର ॥୭୫
ଇନ୍ଦ୍ରାଦି ଯେତେ ଦେବାସୁର ।
ପବନ ଅଗ୍ନିଦିବାକର ॥୭୬
ଏହାଙ୍କ କ୍ରୋଧକୁ ମୋହର ।
ଭୟ ଯେ ନାହିଁ ଦ୍ୱିଜବର ॥୭୭
ବ୍ରାହ୍ମଣ ଅପମାନେ ମୋର ।
ହୃଦ କମ୍ପଇ ଥରହର ॥୭୮
ଏଣୁ ଅପରାଧ ମୋହର ।
କ୍ଷମାକରିବା ବିପ୍ରବର ॥୭୯
ଅଶେଷଜ୍ଞାନର କାରଣ ।
ତୁ ନାଥ ବିଷ୍ଣୁପରାୟଣ ॥୮୦
ଅଜ୍ଞାନ-ପ୍ରାଣୀମାନଙ୍କରେ ।
ଦେଖାଉ ଏଜଡ଼ ଶରୀରେ ॥୮୧
ତୋହର ଯେତେ ବାକ୍ୟମାନ ।
ଗ୍ରଥିତ ହୋଇଅଛି ଜ୍ଞାନ ॥୮୨
ସକଳବର୍ଣ୍ଣଗୁରୁ ତୁହି ।
ତୋତେ ମୁଁ ପ୍ରଶନ କରଇ ॥୮୩
ଜ୍ଞାନ-ସ୍ୱରୂପ ତୋ' ଶରୀର ।
ଭୋନାଥ ମୋତେ କୃପାକର ॥୮୪
ଅଦ୍ଭୁତ-ଜଡ଼ରୂପ ହୋଇ ।
ପ୍ରାଣୀଙ୍କ ହିତେ ଭ୍ରମୁ ତୁହି ॥୮୫
ଭୋନାଥ ବିପ୍ର-ଯୋଗେଶ୍ୱର ।
ମୁଁ ମୂଢ଼ ପତିତ ପାମର ॥୮୬
କେମନ୍ତେ ତୋତେ ଚିହ୍ନିବଇଁ ।
ସ୍ୱଭାବେ ଗୃହବନ୍ଧେ ଥାଇ ॥୮୭
ଏ ଯେ ମୋହର ଅନୁଚର ।
ଅତ୍ୟନ୍ତ ମୂଢ଼ ଦୁରାଚାର ॥୮୮
ଅଜ୍ଞାନହେତୁ ଆଣି ଦେଲେ ।
ବିଧାତାଘଟଣାର ବଳେ ॥୮୯
ଭାର ବହିଲେ ଶ୍ରମ ହୋଇ ।
ତୁ କପାଁ ବୋଲୁ ଶ୍ରମ ନାହିଁ ॥୯୦
ସକଳ ବସ୍ତୁ ଏ ଜଗତେ ।
ମିଥ୍ୟାତୁ ବୋଲୁ ବା କେମନ୍ତେ ॥୯୧
ଘଟାଦି ଯେବେ ମିଥ୍ୟା ହୋଇ ।
କେମନ୍ତେ ଜଳ ଆଣି ତହିଁ ॥୯୨
ଆତ୍ମାର ସ୍ଥୂଳ କୃଶଭାବ ।
କେମନ୍ତେ ନୁହଁଇ ସମ୍ଭବ ॥୯୩
ଅଗ୍ନିର ତାପ ପାତ୍ରେ ଯାଇ ।
ସେ ତାପେ ଜଳ ଉଷ୍ମ ହୋଇ ॥୯୪

Dr. Sudhanshu Sekhar Mishra

ତହୁଁ ତଣ୍ଡୁଳ ତାପ ପାଇ ।
ଅନ୍ନ ରୂପରେ ସିଦ୍ଧ ହୋଇ ॥୯୫
ଇନ୍ଦ୍ରିରୁ ପ୍ରାଣେ ପ୍ରାଣୁ ମନେ ।
ଜୀବ ତା ଭୁଞ୍ଜଇ ତକ୍ଷଣେ ॥୯୬
ତେସନ ଦେହ ଗ୍ରୀଷ୍ମତାପେ ।
ସେ ତାପ ଇନ୍ଦ୍ରିଗଣେ ବ୍ୟାପେ ॥୯୭
ଉପାଧି ଧର୍ମ ପୁରୁଷର ।
କେମନ୍ତେ ବୋଲୁ ନୁହେ ତା'ର ॥୯୮
ତୁ ଯେ ବୋଇଲୁ ଏହା ସତ୍ୟ ।
କେ ଅବାପ୍ରଭୁ କେବା ଭୃତ୍ୟ ॥୯୯
ତଥାପି ରାଜାପ୍ରଜାଭାବ ।
ଅବଶ୍ୟ ସଂସାରେ ରହିବ ॥୧୦୦

ବିଚାର କରି ଧର୍ମାଧର୍ମ ।
କରିବ ଦଣ୍ଡ ଯେ ପାଳନ ॥୧୦୧
କୃଷ୍ଣ ଆଦେଶ ମଣି କଲେ ।
ପାପ ନ ଲାଗେ ତାକୁ ଭଲେ ॥୧୦୨
ମୁଁ ତୋତେ କଲି ଅପମାନ ।
ଏ ଦୋଷ ମୋହର ନ ଘେନ ॥୧୦୩
ତୋହର ମାନଅପମାନ ।
ତୁଲ୍ୟ ବା ବୋଲିବୁ ଏସନ ॥୧୦୪
ତଥାପି ମହତ-ଲଂଘନ ।
ଦୋଷେ ମୁଁ ନାଶ ଯିବି ଜାଣ ॥୧୦୫
ଏଣୁ ମାଗଇ କ୍ଷମାକର ।
ଯେଣୁ ତୁ କାତରବତ୍ସଳ ॥୧୦୬

ଶୁଣ ପରୀକ୍ଷ ସାବଧାନେ ।
ସେ ବିପ୍ର ନୃପତି ବଚନେ ॥୧୦୭
ଜ୍ଞାନ ବୈରାଗ୍ୟ ଆଦି କରି ।
ସକଳ ଅଛି ତହିଁ ପୂରି ॥୧୦୮
ଗୋବିନ୍ଦ-ପାଦପଦ୍ମ-ତଳେ ।
ମନ ତୁ ରୁହାଅ ନିଶ୍ଚଳେ ॥୧୦୯
ପଞ୍ଚମସ୍କନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୧୦
କୃଷ୍ଣଚରିତ ସୁଧାରସ ।
କହଇ ଜଗନ୍ନାଥଦାସ ॥୧୧୧

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଦଶମୋଽଧ୍ୟାୟଃ ॥

## ଏକାଦଶ ଅଧ୍ୟାୟ

### ଜଡ଼ଭରତ ଉବାଚ

ହେ ନୃପ ଶୁଣ ସାବଧାନେ ।
ତୁ ଯେ କହିଲୁ ଅନୁମାନେ ॥୧
ମୂର୍ଖ-ପଣ୍ଡିତ ଦୁଇମତ ।
ଏ କଥା ଅଟଇ ଉଚିତ ॥୨
ତଥାପି ପଣ୍ଡିତ ତୁ ନୋହୁ ।
ପଣ୍ଡିତପ୍ରାୟେ କଥା କହୁ ॥୩
କେ କାହା ସ୍ୱାମୀ କେବା ଭୃତ୍ୟ ।
ଏମନ୍ତ ଜାଣ ନରନାଥ ॥୪
ଅଜ୍ଞାନବଶୁ ଦେଖୁ ଭିନ୍ନ ।
ତତ୍ତ୍ୱବିଚାରେ ସର୍ବସମ ॥୫
ଅପରେ ଶୁଣ ହେ ରାଜନ ।
ଗୃହ କର୍ମରେ ଯେଉଁଜନ ॥୬
ସୁକର୍ମବିଦ୍ୟାକୁ ଆଚରେ ।
ତତ୍ତ୍ୱଜ୍ଞାନକୁ ମନେ ଧରେ ॥୭
ପଣ୍ଡିତ ବୋଲିବା ତାହାରେ ।
ସେ ଶୁଦ୍ଧ ଏ ଘୋର-ସଂସାରେ ॥୮

ସେ ସାଧୁ ବୋଲାଇ ସଂସାରେ ।
ପ୍ରାଣୀଙ୍କି ଯେବା ଦୟାକରେ ॥୯
ଦଣ୍ଡିବା ଶକ୍ତି ଯାର ଥାଇ ।
ସେ ଯେବେ କ୍ଷମା ଆଚରଇ ॥୧୦
ସାଧୁଙ୍କ ଶ୍ରେଷ୍ଠ ସେହୁ ନର ।
ସୁଖଦୁଃଖରୁ ସେ ବାହାର ॥୧୧
ଅପରେ ଶୁଣ ନୃପବର ।
ଯାବତ ପ୍ରାଣୀମାନଙ୍କର ॥୧୨
ସତ୍ତ୍ୱ ରଜ ତମ ଗୁଣରେ ।
ମନ ରହଇ ଦୃଢତରେ ॥୧୩
ଯେ ଗୁଣ ଯାହାର ହୁଅଇ ।
ସେ ଗୁଣେ ପ୍ରାଣୀ ପ୍ରକାଶଇ ॥୧୪
କୁଶଳ ମନ୍ଦଭାବେ ଦୁଇ ।
ମଧ୍ୟମ ଭାବକୁ ବହଇ ॥୧୫
ଧରଇ ଗୁଣ ଅନୁସାରେ ।
ରୂପ ଗୁଣ ନାମ ବେଭାରେ ॥୧୬

ଯେ ଦୁଃଖସୁଖ ଆଦି କରି ।
ଲଭଇ କର୍ମକୁ ଆବୋରି ॥୧୭
ଦେଖ ଏ ଅନିତ୍ୟ-ଶରୀର ।
ମାୟା-ଚରିତ ଆତ୍ମାସାର ॥୧୮
ତାହାର ଗୁଣ ଅନୁସାରେ ।
ପ୍ରାଣୀ ଯେ କର୍ମମାନ କରେ ॥୧୯
କ୍ଷେତ୍ରଭାବକୁ ସେ ବହି ।
ସକଳ-ସାକ୍ଷୀ ହୋଇ ରହି ॥୨୦
ତେଣୁ କହନ୍ତି ବେଦସାର ।
ଗୁଣନିର୍ଗୁଣ ଏ ବିଚାର ॥୨୧
ସଗୁଣେ ପ୍ରାଣୀମାନଙ୍କର ।
ନାନାବ୍ୟସନର ଆଚାର ॥୨୨
ନିର୍ଗୁଣଭାବକୁ ଯେ ଧରେ ।
ସେ ପ୍ରାଣୀ ଭବସିନ୍ଧୁ ତରେ ॥୨୩
ଘୃତ-ପ୍ରଦୀପ ପ୍ରାୟେ ହୋଇ ।
ସଗୁଣେ ସଂସାରେ ଭ୍ରମଇଁ ॥୨୪

Dr. Sudhanshu Sekhar Mishra

ଦ୍ରବ୍ୟ ସ୍ୱଭାବ କାଳ କର୍ମ ।
ଆଶ୍ରୟ ଅଙ୍ଗ ହେ ରାଜନ ॥୨୫
ମାୟାରବଳେ ଏ ସଂସାରେ ।
ପ୍ରାଣୀମାନଙ୍କ ମନ ହରେ ॥୨୬
କ୍ଷେତ୍ରଜ୍ଞଭାବକୁ ଆଚରି ।
ଶରୀର ରହିଛି ଆବୋରି ॥୨୭
ପ୍ରତ୍ୟକ୍ଷଭାବେ କେବେ ଥାଇ ।
କେବେ ବା ପ୍ରାଣୀ ନ ଜାଣଇ ॥୨୮
ଶୁଦ୍ଧ-ଅଶୁଦ୍ଧ ଏ ଶରୀରେ ।
ଦେଖଇ ଭୁଞ୍ଜଇ ବିକାରେ ॥୨୯
ଅପରେ ଶୁଣ ହେ ରାଜନ ।
କ୍ଷେତ୍ରଜ୍ଞ ପୁରୁଷ-ପୁରାଣ ॥୩୦
ପରମଆତ୍ମା ଜ୍ୟୋତିର୍ମୟ ।
ଅନାବୃତ ସେ ସର୍ବଦେହ ॥୩୧
ସେ ନାରାୟଣ ଭଗବାନ ।
ବାସୁଦେବ ଆଦିକାରଣ ॥୩୨
ଯା'ର ସ୍ମରଣେ ପାପମାନ ।
ବିଶେଷେ ହୁଅନ୍ତି ଖଣ୍ଡନ ॥୩୩
ସ୍ୱକୀୟ-ମାୟାରେ ଜଗତ ।
କ୍ରୀଡା କରଇ ଅବିରତ ॥୩୪
ସ୍ଥାବରଜଙ୍ଗମାଦି ଠାରେ ।
ପବନ ଯେସନେ ସଞ୍ଚରେ ॥୩୫
ତେମନ୍ତ ହୋଇ ସର୍ବଠାରେ ।
କ୍ଷେତ୍ରଜ୍ଞରୂପେ ସେ ବିହରେ ॥୩୬
ଯାବତକାଳ ପ୍ରାଣୀମନ ।
ମାୟାକୁ ନ କରେ ଖଣ୍ଡନ ॥୩୭
ଷଡ଼ଅରି ନ ଜିଣଇ ।
ବିମୁକ୍ତସଙ୍ଗ ସେ ନୁହଇ ॥୩୮
ପ୍ରଭୁଙ୍କୁ ଏ ରୂପେ ନ ଜାଣେ ।
ତାବତ ଭ୍ରମେ ଅକାରଣେ ॥୩୯
ସଂସାର-ତାପେ ଗ୍ରସ୍ତମନ ।
ସେ ଯେ ଅନାଦି ନାରାୟଣ ॥୪୦
ଯାବତ ତା'ଙ୍କୁ ନ ଚିହ୍ନଇ ।
ଶୋକ-ମୋହରେ ଭ୍ରମୁଥାଇ ॥୪୧
ତୁ ଏବେ ଶୁଣ ନୃପବର ।
ସେ ଯେ ବ୍ରହ୍ମାଣ୍ଡର ଠାକୁର ॥୪୨
ଅଖିଳପ୍ରାଣୀଙ୍କର ଗୁରୁ ।
ଯା'ର ମହିମା ମହାମେରୁ ॥୪୩
ତାହାର ଚରଣାରବିନ୍ଦେ ।
ମନ ନିବେଶି ଅପ୍ରମାଦେ ॥୪୪
ମାୟା-କପଟ ଏ ସଂସାର ।
ତୁ ଏହା ଶୀଘ୍ର ପରିହର ॥୪୫
ପଞ୍ଚମସ୍କନ୍ଧେ ବିପ୍ରବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୪୬
ସେ ପ୍ରଭୁ ପାଦକମଳରେ ।
ମନ ମୋ' ରହୁ ନିରନ୍ତରେ ॥୪୭
କହଇ ବିପ୍ର ଜଗନ୍ନାଥ ।
ହରିଚରିତ ଭାଗବତ ॥୪୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପଞ୍ଚମସ୍କନ୍ଧେ ବ୍ରାହ୍ମଣରହୂଗଣସମ୍ବାଦେ ଏକାଦଶୋଽଧ୍ୟାୟଃ ॥

---

## ଦ୍ୱାଦଶ ଅଧ୍ୟାୟ

ରହୂଗଣ ଉବାଚ

ନମଇଁ ପ୍ରଭୁ ବିପ୍ରବର ।
ପ୍ରାଣୀଙ୍କ ହିତେ ତୋ ଶରୀର ॥୧
ସ୍ୱଇଚ୍ଛା-ବିହାର ତୋହର ।
ନମସ୍ତେ ଦୟାର ସାଗର ॥୨
ବେଶରେ ତୁହି ଅବଧୂତ ।
ମାୟାରୂପରେ ତୁ ଯେ ସ୍ଥିତ ॥୩
ଗୁପତଭାବେ ଭ୍ରମୁ ତୁହି ।
ତୋହର ମାୟା କେ ଜାଣଇ ॥୪
ବିଅର୍ଥେ ପ୍ରାଣୀ ଆତଯାତ ।
ତୁ ଯେ ମାୟାର ପରେ ସ୍ଥିତ ॥୫
ବ୍ୟାଧିରେ ପୀଡିତ ଯେ ଜନ ।
ତାହର ଔଷଧି ଯେସନ ॥୬
ନିଦାଘ-ଆତପେ ପୀଡିତ ।
ତାହାକୁ ଯେହ୍ନେ ଜଳଶୀତ ॥୭
ସଂସାର-ଦୁଃଖ-ଦାବାନଳ ।
ତହିଁ ମୁଁ ହୋଇଲି ଆକୁଳ ॥୮
ପୀୟୂଷରସ ତୁମ୍ଭ ବାଣୀ ।
ପିଇ ତରିଲି ଦ୍ୱିଜମଣି ॥୯
ସଂଶୟ ମନରୁ ମୋହର ।
ତୁମ୍ଭେ ଛେଦିବ ବିପ୍ରବର ॥୧୦
ଅଜ୍ଞାନ-ଜଡ଼ଭାବ ଥିଲେ ।
ତାହା ଛେଦିବ ତୁମ୍ଭେ ଭଲେ ॥୧୧
ଅଧ୍ୟାତ୍ମଯୋଗ ତୋ ବଚନ ।
ଶୁଣି ସନ୍ତୋଷ ମୋର ମନ ॥୧୨
ତତ୍ତ୍ୱଜ୍ଞାନରେ ପ୍ରାଣୀଙ୍କର ।
ମନ ନୋହଇ ଦୃଢ଼ତର ॥୧୩
ଯେତେ ଏ କ୍ରିୟାଫଳମାନ ।
କହିଲ ଈଶ୍ୱର-ଅଧୀନ ॥୧୪
ପରମତତ୍ତ୍ୱ ଏ ବେଭାର ।
ପୃଥୁଳବୁଦ୍ଧି ମାନଙ୍କର ॥୧୫
ଏ ଯେ ସଂଶୟ ମନେ ମୋର ।
ଭୋ ବିପ୍ର ଛେଦନ ତୁ କର ॥୧୬

ଜଡ଼ଭରତ ଉବାଚ

ପାର୍ଥିବ-ବିକାର ଯେହୁଟି ।
ଭାରକୁ ବହଇ ସେହିଟି ॥୧୭

Dr. Sudhanshu Sekhar Mishra

ଶ୍ରମ ଯେ ହୋଇବ କାହାର ।
ଏହାକୁ ବୁଝ ନୃପବର ॥୧୮
ଶରୀରେ ଅଛି ଯେ ଚରଣ ।
ତହିଁ ଉପରେ ଗୁଲ୍‌ଫ ଜାଣ ॥୧୯
ଜାନୁ ଉରୁ ଯେ ମଧ୍ୟଦେଶ ।
ବକ୍ଷସ୍ଥଳ ଯେ ସ୍କନ୍ଧଦେଶ ॥୨୦
ସ୍କନ୍ଧରେ ବିମାନ ଅଛଇ ।
କେ ତା'ର ଭାରକୁ ବହଇ ॥୨୧
ତହିଁରେ ଅବୟବ ବହି ।
ସୌବୀର ରାଜା ବସିଛଇଁ ॥୨୨
ସେ ଅଟେ ପାର୍ଥିବ-ବିକାର ।
ଏହା ତୁ ନୃପ ହେତୁକର ॥୨୩
ଏହି ବିକାରେ ଅଭିମାନ ।
ତୋହର ହୋଇଛି ରାଜନ ॥୨୪
ଏ ଯେ ସଂସାରେ ପ୍ରାଣୀମାନେ ।
ନୃପସେବକ ନାମ ଭିନ୍ନେ ॥୨୫
କେହୁ କାହାକୁ ନମସ୍କାର ।
କରଇ ଆଚାର ବେଭାର ॥୨୬
ଏ ଜୀବମାନେ ବସି ତହିଁ ।
ନାନା-କୁକଥାମାନ କହି ॥୨୭
ମୁଁ ନୃପ ବୋଲି ଅହଙ୍କାର ।
ଏ ମୃତ୍ୟୁଲୋକଙ୍କ ବେଭାର ॥୨୮
ପ୍ରାଣୀଙ୍କି ଦଣ୍ଡ ଦେଉ ତୁହି ।
ଏମନ୍ତେ ନାନାକଥା କହି ॥୨୯
ପ୍ରମତ୍ତଭାବକୁ ଧଇଲୁ ।
ଏଣୁ ତୁ ମୋତେ ନ ଚିହ୍ନିଲୁ ॥୩୦
ଦେଖ ଏ ଅଖିଳସଂସାର ।
ଜନ୍ମଇଁ ଯହୁଁ ଚରାଚର ॥୩୧
ଯା' ତହୁଁ ନାନା ଯାହାପରେ ।
ବଡ଼ତି ନାହିଁ ଏ ସଂସାରେ ॥୩୨
ପରମ ଅଣୁ ସୂକ୍ଷ୍ମ ସ୍ଥୂଳ ।
ଏ ଆଦି ଯେତେକ ସକଳ ॥୩୩
ତା ବିନୁ ଅନ୍ୟ କେହି ନାହିଁ ।
ଅଜ୍ଞାନମତି ନ ଜାଣଇ ॥୩୪
ବୃହତ କ୍ଷୁଦ୍ର ଆଦି ଯେତେ ।
ନିର୍ଜୀବ ସଜୀବ ସହିତେ ॥୩୫

ଦ୍ରବ୍ୟ ସ୍ୱଭାବ କାଳ କର୍ମ ।
ପୃଥକଭାବ ଯେହୁ ନାମ ॥୩୬
ଜ୍ଞାନ ବିଶୁଦ୍ଧ ସେ ଅଟଇ ।
ପରମଆତ୍ମା-ରୂପ ବହି ॥୩୭
ଏକ ଅନେକ ସର୍ବ ସେହି ।
ପ୍ରଭୁଙ୍କ ବିନୁ ଆନ ନାହିଁ ॥୩୮
ସର୍ବଜ୍ଞପୁରୁଷ ଅଚ୍ୟୁତ ।
ତାହାର ଲୀଳା ଏ ଜଗତ ॥୩୯
ସେ ପ୍ରଭୁ ଅଖିଳକାରଣ ।
ମୁନିଏ କରନ୍ତି ଗାୟନ ॥୪୦
ହେ ରହୂଗଣ ସାବଧାନେ ।
ଶୁଣ ତୁ ମୋହର ବଚନେ ॥୪୧
ବିବିଧ-ତପ ଯଜ୍ଞକର୍ମ ।
କି ଅବା ବେଦଅଧ୍ୟୟନ ॥୪୨
ଏ ଆଦି ଯେତେ ହେ ରାଜନ ।
ସକଳ-ଶ୍ରେଷ୍ଠ ଭକ୍ତଜନ ॥୪୩
ଯା' ପାଦରଜେ ପାପମାନ ।
ନିଃଶେଷେ ହୁଅନ୍ତି ଖଣ୍ଡନ ॥୪୪
ଉତ୍ତମଶ୍ଳୋକ କଥାସାର ।
ଯେ ପ୍ରାଣୀ କରନ୍ତି ଉଚ୍ଚାର ॥୪୫
ଗ୍ରାମ୍ୟକଥାରେ ତା'ର ମତି ।
କେବେହେଁ ନୁହଁଇ ସଙ୍ଗତି ॥୪୬
ଯେବେ ନିଶ୍ଚଳଭାବେ ମନ ।
ପ୍ରଭୁରେ କରଇ ଅର୍ପଣ ॥୪୭
ତାହାଙ୍କୁ ପ୍ରଭୁ ଭାବଗ୍ରାହୀ ।
ସତ୍ତ୍ୱପ୍ରଧାନ-ମତି ଦେଇ ॥୪୮
ଏବେ ତୁ ଶୁଣ ନୃପମଣି ।
ଆମ୍ଭର ପୂର୍ବଜନ୍ମ-ବାଣୀ ॥୪୯
ଭରତ ନାମେ ରାଜା ମୁହିଁ ।
ବ୍ରହ୍ମାର ବଂଶେ ଜାତ ହୋଇ ॥୫୦
ସର୍ବସମ୍ପଦ ଦୂର କଲି ।
ନିଷ୍ଠେ ପ୍ରଭୁଙ୍କୁ ଭଜିଲି ॥୫୧
ପୂର୍ବଅର୍ଜିତ କର୍ମଫଳ ।
ମୃଗବାଳକେ ମତିଭୋଳ ॥୫୨
ଯେଣୁ ଅସାଧୁସଙ୍ଗ କଲି ।
ମୃଗଶରୀର ମୁଁ ପାଇଲି ॥୫୩

ପୂର୍ବଜନ୍ମର ପୁଣ୍ୟ ଥିଲା ।
ପ୍ରଭୁଙ୍କ କରୁଣା ହୋଇଲା ॥୫୪
ତେଣୁ ପୂର୍ବର କଥାମାନ ।
ମୋହର ହୋଇଲା ସ୍ମରଣ ॥୫୫
ଏବେ ହୋ ଶୁଣ ନୃପବର ।
ଲଭିଲି ବ୍ରାହ୍ମଣ-ଶରୀର ॥୫୬
ଏଣୁ ସଙ୍ଗକୁ ମୁହିଁ ଡ଼ରି ।
ଏ ଜଡ଼ରୂପକୁ ଆବୋରି ॥୫୭
ଭ୍ରମଇଁ ଏ ଘୋର-ସଂସାରେ ।
କର୍ମବନ୍ଧନ ଖଣ୍ଡିବାରେ ॥୫୮
ଏକାକୀ ନିବୃତ୍ତ-ବେଭାରେ ।
ମନ ନିବେଶି କୃଷ୍ଣଠାରେ ॥୫୯
ଶୁଣ ରାଜନ ଏକମନେ ।
ଏଣୁ ସଂସାରେ ପ୍ରାଣୀମାନେ ॥୬୦
ଅସତ-ସଙ୍ଗୁ ମୋକ୍ଷ ନୋହେ ।
ନାନାଯୋନିରେ ଦେହ ବହେ ॥୬୧
ସାଧୁସଙ୍ଗତେ ସଙ୍ଗ ଯା'ର ।
ପବିତ୍ର ହୁଏ ତା' ଶରୀର ॥୬୨
ନିଶ୍ଚଳମତି ସେ ହୁଅଇ ।
ସଂସାରସାଗରୁ ତରଇ ॥୬୩
ସାଧୁସଙ୍ଗତି ପ୍ରଭାବରେ ।
ପ୍ରଭୁର କୃପା ହୋଇ ତା'ରେ ॥୬୪
ସେ ଯେ ଅନାଦି ଚକ୍ରଧର ।
ଜଗତବନ୍ଧୁ ଦାମୋଦର ॥୬୫
ସେ ପ୍ରଭୁ ପଦ୍ମପାଦତଳେ ।
ମୋ' ମନ ରହିବ ନିଶ୍ଚଳେ ॥୬୬
ଜଡ଼ଭରତ-ତତ୍ତ୍ୱବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୬୭
ବୋଲଇ ବିପ୍ର ଜଗନ୍ନାଥ ।
ପଞ୍ଚମସ୍କନ୍ଧେ ଭାଗବତ ॥୬୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ
ବ୍ରାହ୍ମଣ-ରହୂଗଣ ସମ୍ବାଦେ
ଦ୍ୱାଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତ୍ରୟୋଦଶ ଅଧ୍ୟାୟ

ଜଡ଼ଭରତ ଉବାଚ

ଏ ପଥ ଅତ୍ୟନ୍ତ-ଦୁର୍ଗମ ।
ପ୍ରବୃତ୍ତିମାର୍ଗ ଯା'ର ନାମ ॥୧
ମାୟାରେ ତହିଁ ପ୍ରବେଶିଣ ।
ଯେ ଭବ ଗହନ-ଅରଣ୍ୟ ॥୨
ସତ୍ତ୍ୱ-ରଜ-ତମର ମତେ ।
ପୃଥକଭାବେ କର୍ମ ଚିନ୍ତେ ॥୩
ସଂସାର-ଅରଣ୍ୟେ ଭ୍ରମଇଁ ।
ସୁଖର ଲେଶ ତାର ନାହିଁ ॥୪
ଯେମନ୍ତେ ବଣିଜାରମାନେ ।
ଅର୍ଥଅର୍ଜନ ଲୋଭମନେ ॥୫
ଏ ଯେ ସଂସାର ମହାଘୋର ।
ଅରଣ୍ୟ ଅତି ଭୟଙ୍କର ॥୬
ଏଥି ନିବେଶେ ମୂଢ଼ ମନ ।
ନାନାଯାତନାର ଯେ ସ୍ଥାନ ॥୭
ଯେ ବନେ ଷଡ଼ଇନ୍ଦ୍ରି-ଚୋର ।
ନାନାଭୋଗରେ ତତପର ॥୮
ଦେଖ ସଂସାରେ କୁନାୟକ ।
ବୁଦ୍ଧି-ସାରଥି ଅବିବେକ ॥୯
ଶୃଗାଳତୁଲ୍ୟ ଦାରାପୁତ୍ର ।
ସେ ବନେ ଅଛନ୍ତି ନିରତ ॥୧୦
ଯେ ଯାହା ମତେ ଆକର୍ଷନ୍ତି ।
ମେଷକୁ ଯେହ୍ନେ ବୃକପନ୍ତି ॥୧୧
ସେ ବନେ ଲତା ତୃଣ ଗୁଳ୍ମ ।
ଗହ୍ୱରପ୍ରାୟ କାମ୍ୟକର୍ମ ॥୧୨
ଦୁର୍ଜନ-ମଶକାଦି ତେଣେ ।
ପୀଡ଼ନ୍ତି କଠୋର-ଦଂଶନେ ॥୧୩
ଗାନ୍ଧର୍ବପୁରପ୍ରାୟ ଦେହେ ।
ମଣେ ଅସତ୍ୟ ସତ୍ୟପ୍ରାୟେ ॥୧୪
ନିବାସ ପଶୁ ଯେ ଦ୍ରବିଣ ।
ତହିଁରେ ହୋଇ ହୃଷ୍ଟମନ ॥୧୫
କରଇ ତହିଁ ଆତ୍ମବୁଦ୍ଧି ।
ଏମନ୍ତ ବନେ ସେ ଦୁର୍ବୁଦ୍ଧି ॥୧୬
ବାତ-ଭ୍ରମିତ ରେଣୁ ଲାଗି ।
ଚକ୍ଷୁ ହୁଅଇ ଦୁଃଖଭାଗୀ ॥୧୭
ବିବିଧ-ଘୋରସ୍ୱନ ଲାଗି ।
କର୍ଣ୍ଣ ହୁଅଇ ଦୁଃଖଭାଗୀ ॥୧୮
ଉଲ୍ଲୁକଆଦି ଘୋରବାଣୀ ।
ଆତ୍ମା ଦୁଃଖିତ ତାହା ଶୁଣି ॥୧୯
କ୍ଷୁଧାପୀଡିତ ଯେବେ ହୋଇ ।
ନିଷ୍ଫଳ-ବୃକ୍ଷକୁ ଧାମଇଁ ॥୨୦
କେବେ ବା ମୃଗତୃଷ୍ଣା ଦେଖି ।
ତୃଷାରେ ଧାମଇଁ ନିରେଖି ॥୨୧
ନିରାଶ ହୋଇଣ ତହିଁରେ ।
ଧାମଇଁ ଶୁଷ୍କନଦୀତୀରେ ॥୨୨
ଅନ୍ୟୋନ୍ୟଭାବକୁ ସେ ବହି ।
ନିର୍ଦ୍ଧନ-ପ୍ରାଣୀଙ୍କି ମାଗଇ ॥୨୩
ଦାରା ତନୟ ଅଗ୍ନି ପ୍ରାୟେ ।
ତହିଁ କ୍ରୀଡ଼ଇ ମାୟାମୋହେ ॥୨୪
କେବେହେଁ ଶାନ୍ତି ନ ଭଜଇ ।
ପୁଣି ଉଦ୍‌ବେଗ-ମନ ହୋଇ ॥୨୫
ବିବିଧ-ଶୋକ-ଦୁଃଖ ପାଇ ।
ପରମକ୍ଳେଶକୁ ଲଭଇ ॥୨୬
ଗାନ୍ଧର୍ବପୁରେ ପ୍ରବେଶିଣ ।
ପ୍ରମୋଦଲଭେ ଏକକ୍ଷଣ ॥୨୭
କଣ୍ଟକ-ଦୁର୍ଗମ-ପାଷାଣେ ।
ନିରତେ ଭ୍ରମେ ଅକାରଣେ ॥୨୮
ବିମନ ହୋଇ ଦୁଃଖପାଇ ।
କ୍ଷଣକେ ପୁଣି ପାଶୋରଇ ॥୨୯
ଅନ୍ତର-ବାହାରେ ଯନ୍ତ୍ରିତ ।
ପ୍ରାଣୀ ହୁଅଇ ଅବିରତ ॥୩୦
କୁଟୁମ୍ବ ପାଇଁ ନାନାପାପ ।
ବିପକ୍ଷପକ୍ଷେ ବହେ କୋପ ॥୩୧
ଦୁଷ୍ଟଜନ୍ତୁରେ ପୀଡ଼ା ପାଇ ।
ବିପିନେ ନିରତେ ଭ୍ରମଇଁ ॥୩୨
ଅନ୍ଧ ଯେସନେ ଅନ୍ଧକୂପେ ।
ପଡ଼ଇ କର୍ମର ବିପାକେ ॥୩୩
ସେ ଭବବନେ କଦାଚିତ ।
ପରଯୋଷିତେ ହୋଇରତ ॥୩୪
ତା ସ୍ୱାମୀ ଦେଖିଲେ ଦଣ୍ଡଇ ।
ତହିଁରେ ବ୍ୟଥିତ ହୁଅଇ ॥୩୫
କାହିଁ ବା ଶୀତ ବର୍ଷା ବାତ ।
ଗ୍ରୀଷମେ ହୁଅଇ ପୀଡିତ ॥୩୬
ଧନବିହୁନେ ଗୃହ ନାହିଁ ।
ଶଯ୍ୟା ଆସନ ଅବା କାହିଁ ॥୩୭
ଲୋଡ଼ଇ ପୁଣି ପରଧନ ।
ତେଣେ ହୁଅଇ ହାନିମାନ ॥୩୮
ଦୁଃଖେ ଅର୍ଜିତ ଯେତେ ଧନ ।
କେହି ବା ହରାଇ ବିପନ୍ନ ॥୩୯
ତାହାଙ୍କୁ ତେଜି ଅନ୍ୟେ ଯା'ନ୍ତି ।
ପୁଣି ଲେଉଟି ନ ଆସନ୍ତି ॥୪୦
ଏ ମୋର ଭୂମି ମୋର ଗୃହ ।
ପଣ୍ଡିତେ କରନ୍ତି କଳହ ॥୪୧
ଯେ ସର୍ବ ଶ୍ରୀକୃଷ୍ଣେ ଅର୍ପଇ ।
ତା' ଗତି ପାଇବେ ସେ କାହିଁ ॥୪୨
ବାଳଭାଷିତେ ମୋହ ହୋଇ ।
ଯୋଷିତ-ଭୁଜଲତା କେହି ॥୪୩
ଆଶ୍ରୟ କରି କାଳତରେ ।
ପାଷଣ୍ଡ ସଙ୍ଗତେ ବିହରେ ॥୪୪
ତହିଁ ବଞ୍ଚିତ ହୋଇ ପୁଣ ।
ହଂସର ତୁଲ୍ୟ ବିପ୍ରଗଣ ॥୪୫
ସଙ୍ଗେ ବିହରେ କିଛିକାଳ ।
ତା'ଙ୍କ ଆଚାର କୁଳଶୀଳ ॥୪୬

Dr. Sudhanshu Sekhar Mishra

ଦେଖି ନ ମଣେ ତାକୁ ଇଷ୍ଟ ।
ମର୍କଟ ସଙ୍ଗେ ହୁଏ ଭ୍ରଷ୍ଟ ॥୪୭
କେବେ ବା ପ୍ରମାଦ ବଶରେ ।
ପଡଇ ଗିରି କନ୍ଦରରେ ॥୪୮
ପୁଣି ଭ୍ରମଇଁ ଛାଡି କରି ।
ନିର୍ଭୟ-ପଥକୁ ଆବୋରି ॥୪୯
ତହିଁ ଅତି-କଷ୍ଟରୁ ନର ।
ବାହୁଡି ଭ୍ରମଇଁ ଅପାର ॥୫୦
ପୁଣି ଆତ୍ମାର ତତ୍ତ୍ୱବାଣୀ ।
କ୍ଷଣକେ ପାଶୋରଇ ପ୍ରାଣୀ ॥୫୧
ମାୟା-ଚରିତ ଏ ସଂସାର ।
ନିସ୍ତାର ନୋହେ ମୂଢନର ॥୫୨
ନାନାକୁକର୍ମରେ ଭ୍ରମନ୍ତି ।
ଆତ୍ମା-କାରଣ ନ ଜାଣନ୍ତି ॥୫୩
ହେ ରହୂଗଣ ଏ ସଂସାର ।
ଦୁର୍ଗମପଥ ଯେ ଏହାର ॥୫୪
ସେ ଜୀବଆତ୍ମା ଏଣୁ ତୁଲ୍ୟ ।
ଜାଣଇ ପ୍ରାଣୀ-ମନ୍ଦଭଲ ॥୫୫
ସୁଜିତଆତ୍ମା ହୋଇ ତହିଁ ।
ହରିସେବାରେ ମନଦେଇ ॥୫୬
ଜ୍ଞାନଖଡଗ ଧରି କର ।
ନିଶ୍ଚିନ୍ତେ ଏଥୁ ହୁଅ ପାର ॥୫୭

ରହୂଗଣ ଉବାଚ

ସାଧୁମାନଙ୍କ ଜନ୍ମସାର ।
ସଂସାରେ କିବା ଜନ୍ମ ଆର ॥୫୮
ଯେ ଜନ ହୃଷୀକେଶ-ଗୁଣ ।
ବଦନେ କରେ ଉଚ୍ଚାରଣ ॥୫୯
ଶ୍ରବଣେ ଶୁଣି ଯଶଗାଇ ।
ସୁସାଧୁ ସଙ୍ଗତେ ବସଇ ॥୬୦

ଭୋ ସ୍ୱାମୀ ତୁମ୍ଭ ପାଦରେଣୁ ।
ମୋ' ଦେହେ ଲାଗିଲାକ ଯେଣୁ ॥୬୧
ସର୍ବଦୁରିତ କ୍ଷୟଗଲା ।
ମନ ମୋ' ନିର୍ମଳ ହୋଇଲା ॥୬୨
ଅବିଦ୍ୟାକର୍ମ ଯେ ମୋହର ।
ଭୋ ସ୍ୱାମୀ ସମାଗମେ ତୋର ॥୬୩
ଅବିବେକାଦି ଯେ ପ୍ରମାଦେ ।
ହତ ହୋଇଲେ ତୋ ପ୍ରସାଦେ ॥୬୪
ନମଇଁ ମହତ-ଈଶ୍ୱର ।
ନମସ୍ତେ ଶିଶୁରୂପଧର ॥୬୫
ତୁ ନାଥ ଯୁବାରୂପଧର ।
ତୋତେ ମୋହର ନମସ୍କାର ॥୬୬
ଅବଧୂତରୂପକୁ ଧରି ।
ପୃଥିବୀ ପର୍ଯ୍ୟଟନ କରି ॥୬୭
ଏମନ୍ତ ରୂପ ଯେ ତୁମ୍ଭର ।
ତୋ' ପାଦେ ମୋର ନମସ୍କାର ॥୬୮
ଏ ରୂପ ଧରି ଯେ ବ୍ରାହ୍ମଣ ।
ପୃଥିବୀ କରେ ପର୍ଯ୍ୟଟନ ॥୬୯
ପ୍ରଜାଙ୍କ କୁଶଳ ନିମନ୍ତେ ।
ଭାବେ ଭ୍ରମଣ ଏ ଜଗତେ ॥୭୦

ଶୁକ ଉବାଚ

ଏମନ୍ତେ ରହୂଗଣ ବାଣୀ ।
ସାନନ୍ଦେ ଶୁଣି ବିପ୍ରମଣି ॥୭୧
ପରମ-କରୁଣାକୁ ବହି ।
ରହୂଗଣକୁ ତତ୍ତ୍ୱ କହି ॥୭୨
ହରଷ ହୋଇ ରହୂଗଣ ।
ବନ୍ଦିଲେ ତାହାଙ୍କ ଚରଣ ॥୭୩
ରାଜାର ପୂଜାକୁ ଘେନିଲେ ।
ଧରଣୀ-ଭ୍ରମଣେ ଗମିଲେ ॥୭୪

ସେ ନରପତି ରହୂଗଣ ।
ପରମତତ୍ତ୍ୱକୁ ପାଇଣ ॥୭୫
ଆତ୍ମା ଅବିଦ୍ୟା ଧ୍ୟାନ ଯେତେ ।
ଦେହ ଅହଙ୍କାର ସହିତେ ॥୭୬
ତକ୍ଷଣେ ଛାଡ଼ିଲା ସକଳ ।
ଶୁଣ ପରୀକ୍ଷ ମହୀପାଳ ॥୭୭
ଆଶ୍ରିତ-ଭାଗବତଜନ ।
ଏଡ଼େ ପ୍ରଭାବ ହେ ରାଜନ ॥୭୮

ପରୀକ୍ଷିତ ଉବାଚ

ଯେତେ ପ୍ରକାରେ ଏ ସଂସାର ।
ବର୍ଣ୍ଣିଲେ ବ୍ରାହ୍ମଣ-କୁମର ॥୭୯
ଯେ ଭାଗବତ-ଶ୍ରେଷ୍ଠନର ।
ଜାଣିବ ତହିଁର ବିଚାର ॥୮୦
ଏହାଙ୍କ ବାକ୍ୟ ଅନୁସରି ।
ଯେ ପ୍ରାଣୀ ହେତୁରେ ନ ଧରି ॥୮୧
ତାଙ୍କର କି ଗତି ଅପାର ।
ଏ ଯେ ଦୁରଧିଗମ୍ୟ ମୋର ॥୮୨
ତାହାର ସଂଘଟନ ଯେତେ ।
ବୁଝାଇ କହ ମୋ' ଅଗ୍ରତେ ॥୮୩
ତୁ ଅନୁଗ୍ରହ କରି କହ ।
ମୋହର ଫେଡିବା ସନ୍ଦେହ ॥୮୪
ସେ ବିପ୍ର ରହୂଗଣ ବାଣୀ ।
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ॥୮୫
ସକଳ ପାପୁ ସେ ତରନ୍ତି ।
ଅନ୍ତେ କୈବଲ୍ୟକୁ ଲଭନ୍ତି ॥୮୬
କହଇ ବିପ୍ର ଜଗନ୍ନାଥ ।
ପଞ୍ଚମସ୍କନ୍ଧେ ଭାଗବତ ॥୮୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ତ୍ରୟୋଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଚତୁର୍ଦ୍ଦଶ ଅଧ୍ୟାୟ

ଶୁକ ଉବାଚ

ଏ ଯେଉଁ ସଂସାର-ଅରଣ୍ୟ ।
ତହିଁରେ ଯେତେ ଜୀବଗଣ ॥୧
ବେପାରୀ ବଣିଜାର ପ୍ରାୟେ ।
ସଂସାରମାର୍ଗେ ଭ୍ରମୁଥାଏ ॥୨
ଭଗବାନ ପ୍ରଭୁ ଈଶ୍ୱର ।
ଯେ ବିଷ୍ଣୁ ଅଖିଳଠାକୁର ॥୩
ତା'ର ମାୟାରେ ମୋହ ହୋଇ ।
ଏ ଜୀବ କିଛି ନ ଜାଣଇ ॥୪
ଦେହାଭିମାନୀ ହୋଇ ନର ।
ସତ୍ତ୍ୱାଦିଗୁଣେ ତାହାଙ୍କର ॥୫
କୁଶଳ-ଅକୁଶଳ ଦୁଇ ।
ମିଶ୍ରଣେ ନିର୍ମିତ ଯେ ହୋଇ ॥୬
ବିବିଧ ଦେହମାନ ବହି ।
ସଂଯୋଗ ବିଯୋଗ ସେ ହୋଇ ॥୭
ଏଣେ ନିର୍ମିତ ଯେ ସଂସାର ।
ଇନ୍ଦ୍ରିୟଦ୍ୱାରେ ତା ବିହାର ॥୮
ଦୁର୍ଗମମାର୍ଗ ଏ ସଂସାର ।
ଶ୍ମଶାନ ପ୍ରାୟ ଭୟଙ୍କର ॥୯
ଏହାକୁ ମୂଢ ନ ଜାଣଇ ।
ବିଷ୍ଣୁ ମାୟାରେ ମୋହ ହୋଇ ॥୧୦
ଘୋର-ଅରଣ୍ୟ ଏ ସଂସାର ।
ଏଥିରେ ରତ ମୂଢ଼ନର ॥୧୧
ବିବିଧ ବିଫଳ ଯେ କର୍ମ ।
ତେଣେ ହୁଅଇ ମତିଭ୍ରମ ॥୧୨
ପ୍ରଭୁଙ୍କ ଚରଣାରବିନ୍ଦ ।
ସ୍ୱାଦୁ ସୁଗନ୍ଧ ମକରନ୍ଦ ॥୧୩
ତାହାକୁ ଆସ୍ୱାଦ ଯେ କରି ।
ଅଛନ୍ତି ସେ ପଦ ଆବୋରି ॥୧୪
ତାହାଙ୍କ ଠାରେ ଏ ସଂସାର ।
ହୁଅଇ ସୁଖର ଆକର ॥୧୫

ପାପ ନାଶଇ ସୁଖ ଦେଇ ।
ଏମନ୍ତ ପଦବୀ ସେ ହୋଇ ॥୧୬
ସେ ପଥ ଆଶ୍ରୟ ନ କରି ।
ଭ୍ରମନ୍ତି ମାୟାକୁ ଆବୋରି ॥୧୭
ଏ ଦେହେ ଯେତେ ଇନ୍ଦ୍ରିଗଣ ।
ଚଉର ବୋଲି ତା'ଙ୍କୁ ଜାଣ ॥୧୮
ପରମଗୁରୁ ଆରାଧନ ।
ଏ ଆଦି ଯେତେ ଶୁଭକର୍ମ ॥୧୯
ବହୁ କୃଚ୍ଛାଦି ତପଫଳ ।
ବଳେ ହରନ୍ତି ମହୀପାଳ ॥୨୦
ଦୃଷ୍ଟିରେ ବସ୍ତୁରୂପ ଦେଖି ।
କରେ ସ୍ପରଶ ଉପଲକ୍ଷି ॥୨୧
ଶବଦ ଶୁଣଇ କର୍ଣ୍ଣରେ ।
ଆସ୍ୱାଦ କରଇ ଜିହ୍ୱାରେ ॥୨୨
ଏ ଆଦି ଯେତେ ଇନ୍ଦ୍ରିଗଣ ।
ନାନା-ଉପଭୋଗ କାରଣ ॥୨୩
ଗ୍ରାମ୍ୟ-ଭୋଗରେ ଭୋଳ ହୋଇ ।
ଅଜିତେନ୍ଦ୍ରିୟ ଯେତେ ଦେହୀ ॥୨୪
କରନ୍ତି ଆତ୍ମାପୁଣ୍ୟ ଦୂର ।
ତେଣୁ ସେ ମୂଢ଼ ନୃପବର ॥୨୫
ଅଥବା କୁଟୁମ୍ବ ବିଷୟେ ।
ଅପତ୍ୟ-ସ୍ନେହ ମାୟାମୋହେ ॥୨୬
କଦର୍ଯ୍ୟ-କୁଟୁମ୍ବ-ଭରଣ ।
ମୋହେ ହୁଅନ୍ତି ହତଜ୍ଞାନ ॥୨୭
ଦାରା ତନୟ ନାମ ବହି ।
ବ୍ୟାଘ୍ର ଶୃଗାଳ ପ୍ରାୟ ହୋଇ ॥୨୮
ନାଶନ୍ତି ତା'ର ଧର୍ମ-ଧନ ।
ମେଷ ଶାବକକୁ ଯେସନ ॥୨୯
ଯେସନେ କୃଷିକାରୀ ଜନେ ।
ଅନୁବସର କରଷଣେ ॥୩୦

ଯେ ତୃଣ ଗୁଳ୍ମ ଲତା ଆଦି ।
ନିଃଶେଷେ ନ ପାରନ୍ତି ଛେଦି ॥୩୧
ସେ ବୀଜ କେବେ ନଷ୍ଟ ନୋହେ ।
ପୁଣି ସେ କ୍ଷେତ୍ରେ ଉଦେ ହୋଏ ॥୩୨
ସେ ରୂପେ ଏ ଯେ ଗୃହାଶ୍ରମ ।
କର୍ମନାଶନେ ନୋହେ କ୍ଷମ ॥୩୩
ଦଂଶ ମଶକ ନୀଚଜନ ।
କ୍ରୀଡା କରିଣ ହରେ ଧନ ॥୩୪
ଶଲଭ ଶକୁନ୍ତ ତସ୍କର ।
ମୂଷିକ ଆଦି ପୀଡା ଘୋର ॥୩୫
ଅବିଦ୍ୟା-କାମ୍ୟକର୍ମେ ମନ ।
ଜଡିଣ ଥାଇ ଅନୁକ୍ଷଣ ॥୩୬
ବାସନା କ୍ଷୀଣ ତା'ର ନୋହି ।
ଏ ନରଲୋକେ ଭ୍ରମୁଥାଇ ॥୩୭
ଗନ୍ଧର୍ବ-ନଗର ପରାୟେ ।
ମିଥ୍ୟାକୁ ସତ୍ୟେ ଦେଖେ ରାୟେ ॥୩୮
ଏ ଯେ ଗନ୍ଧର୍ବ ନଗରରେ ।
ବିଷୟ-ମୃଗତୃଷ୍ଣାତୁରେ ॥୩୯
ମଦ୍ୟ ମାଂସ ଯେ ସ୍ତ୍ରୀ ସଙ୍ଗମ ।
ନିରତେ ଏଣେ ହୋଏ ଭ୍ରମ ॥୪୦
ଦାରା ତନୟ ଗୃହେ ଥାଇ ।
କେବଳ କ୍ଲେଶକୁ ଲଭଇ ॥୪୧
ଅଶେଷ ଦୋଷଙ୍କର ସ୍ଥାନ ।
ଅଗ୍ନି-ପୁରୀଷ ଯେ ସୁବର୍ଣ୍ଣ ॥୪୨
ତେଣେ ସେ ଦେଇଥାଇ ବୁଦ୍ଧି ।
ସୁବର୍ଣ୍ଣ-ଅର୍ଜନେ ଅବଧି ॥୪୩
ଯେସନେ ଶୀତାତୁରଜନେ ।
ପିଶାଚ ଅଗ୍ନି ଦେଖି ବନେ ॥୪୪
ଅଗ୍ନିମଣି ତାକୁ ପ୍ରତ୍ୟକ୍ଷେ ।
ଧାଇଁ ଛୁଟଇ ତା'ର ପଛେ ॥୪୫
ସ୍ୱଭାବେ ଅଗ୍ନି ସେ ନୁହଇ ।
ତା'କୁ ପାଇବ ଅବା କାହିଁ ॥୪୬

Dr. Sudhanshu Sekhar Mishra

କେବେ ବା ଗୃହାଶ୍ରମକର୍ମେ ।
ମନ ନିବେଶି ସେ ଯେ ଭ୍ରମେ ॥୪୭
କେବେହେଁ କୁଟୁମ୍ବ ଆବୋରି ।
ବାତ-ଉପମା ସେ ଯେ ନାରୀ ॥୪୮
ତାହାଙ୍କ ଅଙ୍କ ଆଶ୍ରେ କରେ ।
ଧୂଳି-ଉପମା ତା' ସ୍ନେହରେ ॥୪୯
ତେଣେ ତା' ଦୃଷ୍ଟି ଆବରଣେ ।
ଦିଗ ଦେବତାଙ୍କୁ ନ ଜାଣେ ॥୫୦
ପାପ ଆଚରେ ମତିଭ୍ରମେ ।
ଶାସ୍ତ୍ରମର୍ଯ୍ୟାଦା ଅତିକ୍ରମେ ॥୫୧
କେବେହେଁ ଦେହ ମିଥ୍ୟା ମାନି।
ନିବୃତ୍ତମନ ହୋଏ ପ୍ରାଣୀ ॥୫୨
ନିଦ୍ରାରେ ସ୍ୱପ୍ନପ୍ରାୟ କରି ।
କ୍ଷଣକେ ପୁଣି ତା' ପାଶୋରି ॥୫୩
କେବେ ଉଲ୍ଲୁକ ଅବା ଝିଲ୍ଲି ।
କର୍କଶରାବଠାରୁ ବଳି ॥୫୪
ରିପୁ ବା ରାଜକୁଳଜନ ।
କରନ୍ତି ଯେ ଅବା ଭର୍ତ୍ସନ ॥୫୫
ତେଣେ ବ୍ୟଥିତଚିତ୍ତ ହୋଇ ।
ବଧିରପ୍ରାୟ ରହିଥାଇ ॥୫୬
ଯେତେ ସୁକୃତ-କର୍ମଫଳ ।
ଭୋଗର ଅନ୍ତେ ମହୀପାଳ ॥୫୭
ଜୀବନମୃତ ଯେତେ ଧନୀ ।
ତାହାଙ୍କୁ ଅନୁସରେ ପ୍ରାଣୀ ॥୫୮
ପ୍ରାଣୁ ଅଧିକ ସ୍ନେହ ଭରେ ।
ସେ ଧନ ରଖେ ନିରନ୍ତରେ ॥୫୯
ଦେବ ଅତିଥି ପିତୃଜନ ।
ନ ଦିଏ ନ କରେ ଭୋଜନ ॥୬୦
ଏଣୁ ଅସତସଙ୍ଗେ ନର ।
ଲଭଇ ପାଷଣ୍ଡ ଶରୀର ॥୬୧
ଉଭୟଲୋକେ ଦୁଃଖ ପାଏ ।
ଏମନ୍ତ ଜାଣ ନରରାୟେ ॥୬୨
କେବେ ବା କ୍ଷୁଧା ତୃଷାଭରେ ।
ଅତି ପୀଡ଼ିତ ହୋଇ ନରେ ॥୬୩

ପିତା ପୁତ୍ର ଯେ ଅନ୍ୟ ଅନ୍ୟେ ।
ନାଶନ୍ତି ପୁଣି ଅନ୍ନବିନେ ॥୬୪
ଗୃହ ଦ୍ରବିଣ ଦାରା ସୁତ ।
ଏ ଆଦି ଯେତେ ପ୍ରିୟଅର୍ଥ ॥୬୫
ତହିଁ କ୍ଲେଶିତ କେହି ହୋଇ ।
ବନଅନଳେ ଯେହ୍ନେ ଦହି ॥୬୬
କେବେ ବା ରାଜା ହରେ ଧନ।
ନାନାକ୍ଲେଶରେ ଦୁଃଖମନ ॥୬୭
ଜୀବନମୃତ ପ୍ରାୟ ହୋଇ ।
କେବେ ବା କ୍ଷଣେ ସେ ରହଇ॥୬୮
କେବେ ବା ପିତୃ-ପିତାମହେ ।
ଚିନ୍ତାରେ ଲଭେ ସ୍ୱପ୍ନ ପ୍ରାୟେ ॥୬୯
କେବେ ବା ଗୃହାଶ୍ରମ-କର୍ମେ ।
ମନନିବେଶି ମାୟାଭ୍ରମେ ॥୭୦
ପାପ-ଅନଳେ ଦେହ ଧରି ।
ନିତ୍ୟ ଭ୍ରମଇଁ କର୍ମକରି ॥୭୧
ଲୌକିକ-କର୍ମେ କ୍ଲେଶଜାତ ।
କ୍ଷଣକ୍ଷଣକେ ଦୁଃଖଚିତ୍ତ ॥୭୨
କଣ୍ଟକ-ଦୁର୍ଗମ-ପର୍ବତେ ।
ଆରୋହେ ନାନା କଷ୍ଟମତେ ॥୭୩
କେବେ ବା କୁଟୁମ୍ବ ଆବୋରି ।
ବିଷୟା-ବିଷ ପାନକରି ॥୭୪
କ୍ଷୁଧା-ଅନଳେ ଦହି ହୁଏ ।
ତେଣୁ କୁଟୁମ୍ବେ କ୍ରୋଧ ବହେ ॥୭୫
କେବେ ସେ ନିଦ୍ରା-ଅଜଗରେ ।
ଅଜ୍ଞାନତମେ ଶୋଇ ମରେ ॥୭୬
ଶ୍ମଶାନ ଶବ ପ୍ରାୟ ହୋଇ ।
ସୁଖଦୁଃଖକୁ ନ ଜାଣଇ ॥୭୭
ଦୁର୍ଜନଦ୍ୱନ୍ଦ୍ୱେ ଦୁଃଖକରି ।
ଉନ୍ନିଦ୍ର-ଭାବକୁ ଆଚରି ॥୭୮
ବ୍ୟଥିତ-ହୃଦୟକୁ ପାଇ ।
ଅନ୍ଧ ଯେସନେ କଷ୍ଟେ ଥାଇ ॥୭୯
ଅଜ୍ଞାନଭାବୁ କଷ୍ଟଚିତ୍ତେ ।
ପଡ଼ଇ ଅନ୍ଧତମେ ଅନ୍ତେ ॥୮୦

ସକାମେ ହରି ପରଧନ ।
କେବେ ତା ନ କରେ ପ୍ରଦାନ ॥୮୧
ନିରତେ ପରଦାରା ସେବି ।
ପରକଥାରେ ପରାଭବି ॥୮୨
ସ୍ୱାମୀରେ ଦ୍ରୋହ ଚିନ୍ତା କରେ ।
ଦୁର୍ଗମ-ନରକ ଆବୋରେ ॥୮୩
ଏମନ୍ତେ ଆତ୍ମା-କର୍ମଫଳେ ।
ପ୍ରାଣୀ ଭ୍ରମନ୍ତି ଏ ଶୟଳେ ॥୮୪
ଜନ୍ମବାସନାଫଳେ ତା'ର ।
ପୁଣି ଜନ୍ମଇ ଏ ସଂସାର ॥୮୫
ଶୁଣ ରାଜନ ଏକମନେ ।
ଯେବେ ଏ କର୍ମେ କର୍ମୀମାନେ॥୮୬
ଛେଦନ୍ତି କୃଷ୍ଣେ ଆଶ୍ରେ କରି ।
ତେବେ ସଂସାରୁ ପ୍ରାଣୀ ତରି ॥୮୭
ଶୀତ ବରଷା ଯେ ତପତି ।
ତ୍ରିତାପତାପେ ଦୁଃଖମତି ॥୮୮
ଏ ଆଦି ନିବାରଣ ସେହି ।
କେବେ ହେଁ କରି ନ ପାରଇ ॥୮୯
ଦୁରନ୍ତଚିନ୍ତାମଗ୍ନ ହୋଇ ।
ବିଷର୍ଣ୍ଣଭାବରେ ରହଇ ॥୯୦
କେବେହେଁ ନାନା ଗୀତନାଦେ।
ଦୈବର ବିଭୂତି ସମ୍ପଦେ ॥୯୧
କେବେହେଁ ହୃଦେ ନ ଚିନ୍ତିବ।
ବିଷ୍ଣୁର ପାଦେ ମନଦେବ ॥୯୨
ଆନର ଧନ ଆନେ ଦେଇ ।
ସ୍ୱଭାବେ ଦ୍ୱନ୍ଦ୍ୱ ଉପୁଜାଇ ॥୯୩
ଏ ଯେ ସଂସାର ଘୋରପଥ ।
ନାନା ଉପସର୍ଗ ସହିତ ॥୯୪
ଦ୍ୱେଷଭାବକୁ ଲୋକେ ପାଇ ।
ଅନ୍ତେ ସେ ନରକ ଲଭଇ ॥୯୫
ଏ ଭାବେ ଆଶ୍ରେ କରି ପ୍ରାଣୀ ।
ଏ ଭବ ଅନୁଭବେ ଜାଣି ॥୯୬
ଶୋକ-ଲୋଭାଦି ମୋହମାନ ।
ମାତ୍ସର୍ଯ୍ୟ ଈର୍ଷ୍ୟା ଅଭିମାନ ॥୯୭

Dr. Sudhanshu Sekhar Mishra

ସୁଖ ଦୁଃଖ ବା ଅପମାନ ।
ରାଗ ଦ୍ୱେଷ ଯେ କ୍ଷୁଧା ଜନ୍ମ ॥୯୮
ପିପାସାଆଦି ବ୍ୟାଧି ଯେତେ ।
ଜରା-ମରଣାଦି ସହିତେ ॥୯୯
ଦେବମାୟାରେ ମୋହ ହୋଇ ।
ନାରୀର ବଶଭାବ ବହି ॥୧୦୦
ତା' ଭୁଜଲତାରେ ବନ୍ଧନ ।
ତା' ସ୍ନେହେ ମନ କରି ଛନ୍ନ ॥୧୦୧
ତା' ଅବଲୋକନ-ବିହାରେ ।
ତେଣେ ଆସକ୍ତ ମୂଢ଼ନରେ ॥୧୦୨
ସୁତ-ଦୁହିତାଙ୍କ ବଚନେ ।
ଶ୍ରୁତି ନିବେଶି ଅନୁକ୍ଷଣେ ॥୧୦୩
ତାହାଙ୍କ କୋମଳବଚନ ।
ଶ୍ରବଣେ ପୀୟୁଷ ଯେସନ ॥୧୦୪
ହୃଦୟେ ହରଷିତ ହୋଇ ।
ଆଶାକୁ ତହିଁରେ ବଳାଇ ॥୧୦୫
ଦୁର୍ବଳଆତ୍ମା ଯେ ଅଟନ୍ତି ।
ଜୀବକୁ ନରକେ କ୍ଷେପନ୍ତି ॥୧୦୬
କେବେ ବା ଅଖିଳଈଶ୍ୱର ।
ବିଷ୍ଣୁ ଭଗବାନ ଠାକୁର ॥୧୦୭
ଯାହାର କାଳଚକ୍ରେ କରି ।
ସଂସାରସମୂହ ସଂହରି ॥୧୦୮
ସକଳ ବଶଟି ତାହାର ।
ଏମନ୍ତ ପ୍ରଭୁ ଯେ ଈଶ୍ୱର ॥୧୦୯
ତାହାର କାଳଚକ୍ର କରେ ।
ଭ୍ରମଇଁ ଅଖିଳସଂସାରେ ॥୧୧୦
ଯେ ଯଜ୍ଞପୁରୁଷ ଠାକୁର ।
ତାହାଙ୍କୁ କରି ଅନାଦର ॥୧୧୧
ପାଷଣ୍ଡଭାବକୁ ଆଚରି ।
ନାନାଦେବତା ସେବାକରି ॥୧୧୨
ଆତ୍ମାର ଗତି ନ ବିଚାରି ।
ବିବିଧ କୁପଥ ଆଚରି ॥୧୧୩
ନିଗମ-ଅନାଚାର-କର୍ମ ।
କରନ୍ତି ହୋଇ ମତିଭ୍ରମ ॥୧୧୪

ପାଷଣ୍ଡଭାବରେ ବିଦିତ ।
ଆତ୍ମାକୁ କରନ୍ତି ବଞ୍ଚିତ ॥୧୧୫
ଅଗ୍ନିହୋତ୍ରାଦି ସହିତରେ ।
ବଞ୍ଚଇ ଶୂଦ୍ର -ପରକାରେ ॥୧୧୬
ମୈଥୁନଭାବ ଅନୁକ୍ଷଣେ ।
ଆକୁଳ କୁଟୁମ୍ବପୋଷଣେ ॥୧୧୭
ଅଜ୍ଞାନ-ପାଷଣ୍ଡ ବେଭାରେ ।
ନିରତେ ସ୍ତ୍ରୀବଶେ ବିହରେ ॥୧୧୮
ଅତି-କୃପଣବୁଦ୍ଧି ହୋଇ ।
ଅନ୍ୟୋନ୍ୟେ ସ୍ନେହଭାବ ବହି ॥୧୧୯
ତା' ମୁଖ ଚାହେଁ ଅନୁକ୍ଷଣେ ।
ପ୍ରତେକି ପିତୃମାତୃଗଣେ ॥୧୨୦
ବିସ୍ମରି ମୃତ୍ୟୁକାଳ ତହିଁ ।
ଅଜ୍ଞାନେ ସ୍ୱଚ୍ଛନ୍ଦେ ଭ୍ରମଇଁ ॥୧୨୧
ବାନର-ପଶୁର ସମାନ ।
ମୈଥୁନେ ହରୁଥାଇ ଦିନ ॥୧୨୨
ପରମ-ଉତ୍ସବ ମଣଇ ।
ଦାରାତନୟମଧ୍ୟେ ରହି ॥୧୨୩
ମୃତ୍ୟୁ-ଅଜଗର ଭୟରେ ।
ପଶଇ ଗିରି-କନ୍ଦରରେ ॥୧୨୪
ଶୀତ ତପତ ଦୁଃଖମାନ ।
ଦୈବ୍ୟର ବିଭୂତିବ୍ୟସନ ॥୧୨୫
ଦୁସ୍ତର ଚିନ୍ତାମଗ୍ନ ହୋଇ ।
ବିକଳଭାବରେ ରହଇ ॥୧୨୬
କେବେହେଁ ଏକାନ୍ତେ ରମଇଁ ।
କେବେହେଁ କ୍ଷୀଣଧନ ହୋଇ ॥୧୨୭
ଦ୍ରବ୍ୟ-ସଂଗ୍ରହେ ଯେ ସ୍ୱଭାବ ।
ଶଯ୍ୟା ଆସନ ଆଦିଭୋଗ ॥୧୨୮
ସକଳ-ଉପଭୋଗ ତା'ର ।
ଦ୍ରବ୍ୟ-ବିହୀନେ ହୋଏ ଦୂର ॥୧୨୯
ପୁଣି କେବେହେଁ ମନୋରଥ ।
ଦ୍ରବ୍ୟ-ଲାଳସେ ଭ୍ରମେ ଚିତ୍ତ ॥୧୩୦
ପୁଣି କେବେହେଁ ଦ୍ରବ୍ୟ ପାଇଁ ।
ମତି ତାହାର ତୁଷ୍ଟ ହୋଇ ॥୧୩୧

ସୁଖବିହାର ଆଦି ଯେତେ ।
ଇଚ୍ଛଇ କଳତ୍ର ସହିତେ ॥୧୩୨
ଏମନ୍ତ ଚିତ୍ତବୃତ୍ତି ସଙ୍ଗେ ।
ବୁଡଇ ସ୍ନେହ-ଅନୁରାଗେ ॥୧୩୩
ତେଣୁ ସେ ପୂର୍ବ-ବାସନାରେ ।
ବିବିଧ ଶରୀରେ ପ୍ରଚରେ ॥୧୩୪
ତେଣୁ ସଂସାରପଥେ ନର ।
ନାନା କ୍ଲେଶ ବ୍ୟାଧି ଶରୀର ॥୧୩୫
ପୁଣି ଜନ୍ମିଣ ନାଶ ଯାଇ ।
ନାନା ଆପଦକୁ ଭୁଞ୍ଜଇ ॥୧୩୬
ନାନା ଶୋକ ମୋହ ତାପରେ ।
ପୀଡିତ ହୋଏ ତା' ଶରୀରେ ॥୧୩୭
ଅସାଧୁ-ବନ୍ଧନେ ବଞ୍ଚଇ ।
ସେ ପଥ ପାର ନ ଦେଖଇ ॥୧୩୮
ଯେ ପଥ ଅତ୍ୟନ୍ତ ନିର୍ମଳ ।
ସୁସାଧୁ ନର ଯହିଁ ଠୁଳ ॥୧୩୯
ଅଗମ୍ୟ ରାଜରଷିଙ୍କର ।
ଯେ ପଥ ଅତି ଅଗୋଚର ॥୧୪୦
ମାୟାକୁ ପରିହାର କରି ।
ଯେ କର୍ମେ ଆୟୁର୍ବଳ ସାରି ॥୧୪୧
ସେ ପଥ ପାର ନ ଦେଖନ୍ତି ।
ଲେଉଟି ସଂସାରେ ଭ୍ରମନ୍ତି ॥୧୪୨
ଏଣୁ ରଷିଏ ଶ୍ରଦ୍ଧାଚିତ୍ତେ ।
ଗାବନ୍ତି ଭରତଚରିତେ ॥୧୪୩
ଭରତ୍ ରାଜରଷିବର ।
ତା' ପଥ ଅତି ଅଗୋଚର ॥୧୪୪
ଯୋଗର ଅନୁଶୀଳ କରେ ।
ଯେ ମାର୍ଗେ ଅମର ଶରୀରେ ॥୧୪୫
ଆପଦ-ନରକୁ ବିମୁକ୍ତ ।
ଯାହାକୁ ଭାବନ୍ତି ଜଗତ ॥୧୪୬
ପ୍ରାଣୀର ମନୋରଥ ପଥେ ।
ଅଗମ୍ୟ ଅଟଇ ଯୁଗତେ ॥୧୪୭
ଏମନ୍ତ କେବା ନରଦେବ ।
ତା ପଥେ ପଥିକ ହୋଇବ ॥୧୪୮

Dr. Sudhanshu Sekhar Mishra

ଗରୁଡ଼ପକ୍ଷୀ ଗତି ଯହିଁ ।
ମକ୍ଷିକା ଗତି ତହିଁ କାହିଁ ॥ ୧୪୯
ଦୁସ୍ତ୍ୟଜ ସୁତ ଦାରା ଧନ ।
ସୁହୃଦ ରାଜ୍ୟ ଗୃହମାନ ॥ ୧୫୦
ଏହା ଯେ ତୁଚ୍ଛପ୍ରାୟେ ବୁଝେ ।
ଉତ୍ତମଶ୍ଳୋକ ପାଦେ ଭଜେ ॥ ୧୫୧
ଯାହାର ସାମ୍ରାଜ୍ୟ-ବିଭବ ।
ତ୍ରିଦଶମାନଙ୍କୁ ଦୁର୍ଲଭ ॥ ୧୫୨
ଏହା ନ ଦେଖି ସାଧୁ ଚିତ୍ତେ ।
ମହତ ଗୁରୁପାଦଗତେ ॥ ୧୫୩
ସେବିଣ ମନ-ବୁଦ୍ଧି ଦେଇ ।
ଥିଲେ ଯେ ମନକୁ ବୁଡାଇ ॥ ୧୫୪
ହେ ଯଜ୍ଞଧର୍ମ ତପୋମୟ ।
ବିଧି-ନିପୁଣ ଯୋଗଦେହ ॥ ୧୫୫
ସାଂଖ୍ୟଯୋଗରେ ଯେହୁ ସାର ।
ହେ ପ୍ରଭୁ ପ୍ରକୃତି ଈଶ୍ୱର ॥ ୧୫୬
ହେ ନାରାୟଣ କୃଷ୍ଣ ହରି ।
ଏମନ୍ତ ନାମ ମୁଖେ ଧରି ॥ ୧୫୭
ଛାଡିଲେ ମୃଗକଳେବର ।
କି ଅବା ଦେବା ପଟାନ୍ତର ॥ ୧୫୮
ହେ ଭାଗବତ ପରୀକ୍ଷିତ ।
ବିଶୁଦ୍ଧକର୍ମା ଯେ ଭରତ ॥ ୧୫୯
ଏହା ଗୁଣ-ଚରିତମାନ ।
ପଢ଼ନ୍ତି ଶୁଣନ୍ତି ଯେ ଜନ ॥ ୧୬୦
ଆୟୁଷ ଯଶ ଧର୍ମ ତା'ର ।
ଲଭଇ ମଙ୍ଗଳ ଅପାର ॥ ୧୬୧
ଏହା ଯେ ଶୁଣେ ଶୁଦ୍ଧଚିତ୍ତେ ।
ଭରତ ଉପାଖ୍ୟାନ ଗିତେ ॥ ୧୬୨
କୃଷ୍ଣଚରଣେ ଭକ୍ତି ତା'ର ।
ଅଶେଷପାପୁ ହୋଏ ପାର ॥ ୧୬୩
ଯେବେ ହୋଇବ ସିନ୍ଧୁ ପାର ।
ଗୋବିନ୍ଦପାଦେ ଆଶ୍ରେ କର ॥ ୧୬୪
ପ୍ରଭୁ-ପଦାରବିନ୍ଦଗତେ ।
ମନ ମୋ' ରହୁ ଅବିରତେ ॥ ୧୬୫
ପଞ୍ଚମସ୍କନ୍ଧେ ଭାଗବତ ।
ସୁଜନେ ଶୁଣ ଦେଇ ଚିତ୍ତ ॥ ୧୬୬
ଅମୃତ-ରସମୟ-ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥ ୧୬୭
ବୋଲଇ ଜଗନ୍ନାଥ ଦାସ ।
ଭରତ-ଗୀତ-କଥାରସ ॥ ୧୬୮

ଇତିଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ପଞ୍ଚମସ୍କନ୍ଧେ
ଭରତୋପାଖ୍ୟାନେ
ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ ।
ଭରତବଂଶାନୁଚରିତ ॥ ୧
ସୁମତି ତାହାର ତନୟେ ।
ଋଷଭପଥେ ସେ ଆଶ୍ରୟେ ॥ ୨
ପାଷଣ୍ଡଜନେ କଳିଯୁଗେ ।
ଧର୍ମକଳ୍ପିବେ ତା'ଙ୍କ ମାର୍ଗେ ॥୩
ବେଦ ଯେତେକ ଅଛି କହି ।
ତହିଁରେ ଏ ଦେବତା ନାହିଁ ॥୪
ତାହାର ବୃଦ୍ଧସେନା ନାମ ।
ଭାର୍ଯ୍ୟା ଅଟଇ ଅନୁପମ ॥୫
ସୁମତି-ପତ୍ନୀଠାରେ ସୁତ ।
ହୋଇଲା ନାବ ଦେବଜିତ ॥୬
ତାହାର ହୋଇଲା କୁମର ।
ଦେବଦ୍ୟୁମନ ନାମ ତା'ର ॥୭
ପରମେଷ୍ଠୀ ତା'ର କୁମର ।
ଜନ୍ମିଲା ଧେନୁମତୀ ଠାର ॥୮
ସୁବର୍ଚ୍ଚଳା ଯେ ପତ୍ନୀ ତା'ର ।
ଜନ୍ମିଲା ପ୍ରତୀହ କୁମର ॥ ୯
ଏ ଆତ୍ମବିଦ୍ୟା ବ୍ୟାଖ୍ୟାକରି ।
ଭଜିଲା ପ୍ରଭୁ ନରହରି ॥ ୧୦
ତାହାର ପ୍ରତିହର୍ତ୍ତା ନାମ ।
ତନୟ ହୋଇଲେ ଜନମ ॥ ୧୧
ପ୍ରତିହର୍ତ୍ତାର ଯେ କୁମର ।
ବେନି ହୋଇଲେ ନୃପବର ॥ ୧୨
ଭୂମାନ ଅଜ ଯେ କୁମର ।
ହୋଇଲେ ସ୍ତୁତିଠାରେ ତାର ॥ ୧୩
ଉଦ୍‌ଗୀଥ ଭୂମାର ଯେ ସୁତ ।
ଋଷିକୁଲ୍ୟାର ତହୁଁ ଜାତ ॥ ୧୪
ଦେବକୁଲ୍ୟାର ତହିଁ ତା'ର ।
ହୋଇଲା ପ୍ରସ୍ତାବ କୁମର ॥ ୧୫
ନିରୁତ୍ସାୟାର ତହିଁ ତା'ର ।
ଜନ୍ମିଲା ବିଭୁ ଯେ କୁମର ॥ ୧୬
ରତିର ଠାରେ ଯେ ବିଭୁର ।
ପୃଥୁଷେଣ ବୋଲି କୁମର ॥ ୧୭
ଆକୂତି ଠାରେ ତା'ର ସୁତ ।
ନକ୍ତ ନାମରେ ସେ ବିଦିତ ॥ ୧୮
ନକ୍ତରାଜାର ଯେ କୁମର ।
ହୋଇଲା ଗୟ ନୃପବର ॥ ୧୯
ସେ ବିଷ୍ଣୁଅଂଶକୁ ବହଇ ।
ନାନା ଲକ୍ଷଣେ ପୂର୍ଣ୍ଣ ହୋଇ ॥ ୨୦
ସ୍ୱଧର୍ମେ ପ୍ରଜାପାଳନରେ ।
ମନ ତାହାର ନିରନ୍ତରେ ॥ ୨୧

Dr. Sudhanshu Sekhar Mishra

ଯେ ମହାପୁରୁଷ ଈଶ୍ୱର ।
ଅନାଦିନାଥ ନିରାକାର ।।୨୨
ସେ ସର୍ବଦେବଙ୍କର ବର ।
ପରମବ୍ରହ୍ମ ଯୋଗେଶ୍ୱର ।।୨୩
ତାହାଙ୍କ ତହିଁ ମନ ଦେଇ ।
ପରମଭକ୍ତିଭାବ ବହି ।।୨୪
ସତ୍ତ୍ୱପ୍ରଧାନମତି ହୋଇ ।
ଆନନ୍ଦେ ପାଳଇ ସେ ମହୀ ।।୨୫
ତାହାର ଗୁଣ ମହୀତଳେ ।
ଗାୟନ କରନ୍ତି ସକଳେ ।।୨୬
ଗୟର ସମ କେ ସଂସାରେ ।
ଯଜ୍ଞାଦିକର୍ମ କରିବାରେ ।।୨୭
ଯାହାର ଭକ୍ତିଭାବୁଁ କରି ।
ବଶ ହୋଇଲେ ନରହରି ।।୨୮
ଯାହାକୁ ଦକ୍ଷକନ୍ୟାଯାକ ।
ସନ୍ତୋଷେ କଲେ ଅଭିଷେକ ।।୨୯
ସକଳତୀର୍ଥୁ ଜଳ ନେଇ ।
ରାଜଦ୍ରପଣ ତା'କୁ ଦେଇ ।।୩୦
ତାହାର ପ୍ରଜାସୁଖ ପାଇଁ ।
ବହୁତ ଶସ୍ୟ ଦେଲା ମହୀ ।।୩୧
ମହୀରେ ଯେତେ ନୃପବର ।
ଖଟନ୍ତି ତାହାର ପୟର ।।୩୨
ସଂଗ୍ରାମେ ଯାହାର ଚରିତ ।
ସ୍ତୁତି କରନ୍ତି ଶୂରବନ୍ତ ।।୩୩
ଯାହାର ଯଜ୍ଞମାନଙ୍କରେ ।
ସନ୍ତୋଷ ହେଲେ ଦ୍ୱିଜବରେ ।।୩୪

ଇନ୍ଦ୍ର-ସୂର୍ଯ୍ୟାଦି ଦେବ ଯେତେ ।
ସନ୍ତୁଷ୍ଟ ହୋଇଲେ ସମସ୍ତେ ।।୩୫
ଏ ଅନନ୍ତରେ ପରୀକ୍ଷିତ ।
ତାହାର ହେଲେ ତିନିସୁତ ।।୩୬
ସୁଗତି ଚିତ୍ରରଥ ନାମ ।
ତୃତୀୟ ଯେ ଅବରୋଧନ ।।୩୭
ଚିତ୍ରରଥର ପତ୍ନୀଠାର ।
ସମ୍ରାଟ ହୋଇଲେ କୁମର ।।୩୮
ଉତ୍କଳାପତ୍ନୀଠାରେ ତା'ର ।
ମରୀଚି ହୋଇଲା କୁମର ।।୩୯
ତା ପତ୍ନୀ ବିନ୍ଦୁମତୀ ଠାରେ ।
ବିନ୍ଦୁମାନ ହେଲା କୁମରେ ।।୪୦
ବିନ୍ଦୁମାନର ଯେ କୁମର ।
ମଧୁ ହୋଇଲା ନୃପବର ।।୪୧
ତା'ର ବୀରବ୍ରତ କୁମର ।
ଭୋଜା ନାମରେ ପତ୍ନୀ ତା'ର ।।୪୨
ତାହାର ତହୁଁ ବେନିସୁତ ।
ମନ୍ଥୁ ପ୍ରମନ୍ଥୁ ଯେ ବିଦିତ ।।୪୩
ମନ୍ଥୁର ସତ୍ୟାଠାରେ ସୁତ ।
ଭୌବନ ହୋଇଲେ ବିଦିତ ।।୪୪
ଦୂଷଣା-ପତ୍ନୀଠାରେ ତା'ର ।
ତୋଷ୍ଟା ସେ ହୋଇଲା କୁମର ।।୪୫
ବିରୋଚନାର ତହିଁ ତା'ର ।
ବିରଜ ହୋଇଲା କୁମର ।।୪୬
ଶୁଣ ରାଜନ ପରୀକ୍ଷିତ ।
ବିରଜ-ପୁତ୍ର ହେଲେ ଶତ ।।୪୭

ଏହାଙ୍କ ମଧ୍ୟେ ଶ୍ରେଷ୍ଠତର ।
ଶତଜିତ ପୁତ୍ର ତାହାର ।।୪୮
ବିଷୂଚୀ ପତ୍ନୀଠାରେ ତା'ର ।
କନ୍ୟା ଗୋଟିଏ ଯେ ଅପର ।।୪୯
ଶୁଣ ରାଜନ ପରୀକ୍ଷିତ ।
ଏମନ୍ତେ ଲୋକେ ହୋଇ ଜାତ ।।୫୦
ପ୍ରିୟବ୍ରତର ବଂଶମାନ ।
ବିରଜ ପ୍ରଭାବୁଁ ରାଜନ ।।୫୧
ବିଷ୍ଣୁପ୍ରଭାବୁ ଦେବେ ଯେହ୍ନେ ।
ଶୋଭିତ ହୋଇଲେ ତେସନେ ।।୫୨
ବିଦିତ ହେଲେ ସର୍ବସ୍ଥାନେ ।
ବିଷ୍ଣୁ ଭକତି ବିଦ୍ୟମାନେ ।।୫୩
ପ୍ରିୟବ୍ରତର ବଂଶମାନ ।
ସୁଜନେ ସାବଧାନେ ଶୁଣ ।।୫୪
ଏଣୁ କୃଷ୍ଣର ପାଦତଳେ ।
ଭକତି ହୋଇବ ନିଶ୍ଚଳେ ।।୫୫
କହଇ ବିପ୍ର ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ।।୫୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ
ପ୍ରିୟବ୍ରତବଂଶାନୁକୀର୍ତ୍ତନମ୍‌ନାମ
ପଞ୍ଚଦଶୋଽଧ୍ୟାୟଃ ।।

---

Dr. Sudhanshu Sekhar Mishra

## ଷୋଡ଼ଶ ଅଧ୍ୟାୟ

### ରାଜନ ଉବାଚ

ଏ ଭୂମିମଣ୍ଡଳ ବିସ୍ତାର ।
ତୁମ୍ଭେ କହିଲ ମୁନିବର ॥୧
ଯାବତ ସୂର୍ଯ୍ୟର ପ୍ରକାଶ ।
ନକ୍ଷତ୍ର ଚନ୍ଦ୍ରଙ୍କର ବାସ ॥୨
ପ୍ରିୟବ୍ରତ-ରଥଚରଣ ।
ଯାବତ କରିଛି ଭ୍ରମଣ ॥୩
ତହୁଁ ଯେ ଗର୍ତ୍ତ ଉପୁଜିଲା ।
ସପତସିନ୍ଧୁ ସେ ହୋଇଲା ॥୪
ଏହା କହିଲ ବିପରୀତ ।
ଅପରେ କି କି ଦ୍ୱୀପ ସାତ ॥୫
ଏହାର କେତେ ପରିମାଣ ।
ଅପରେ ଯେତେକ ଲକ୍ଷଣ ॥୬
ଏ ସର୍ବ କହ ମୁନିବର ।
ଶୁଣିତେ ଶରଧା ମୋହର ॥୭
ଅଖିଳ-ବ୍ରହ୍ମାଣ୍ଡ-କାରଣ ।
ଅନନ୍ତ ଯା'ର ନାମ-ଗୁଣ ॥୮
ଯେ ସ୍ଥୂଳରୂପ ଭଗବାନ ।
ସେ ଜ୍ୟୋତିର୍ମୟ ସୂକ୍ଷ୍ମ ବ୍ରହ୍ମ ॥୯
ପରମ ପରଙ୍କର ପର ।
ଯେ ବାସୁଦେବ ଚକ୍ରଧର ॥୧୦
ତାହାଙ୍କ ଚରଣାରବିନ୍ଦେ ।
ମନ ମୋ' ରହୁ ଅପ୍ରମାଦେ ॥୧୧
ଯେଣୁ ତୁମ୍ଭର ଅଗୋଚର ।
ନାହିଁ ଏ ବ୍ରହ୍ମାଣ୍ଡ ମଧ୍ୟର ॥୧୨
ଏଣୁ ଏ ମୋହର ସନ୍ଦେହ ।
ଭୋ ମୁନି ବିସ୍ତାରିଣ କହ ॥୧୩
ଶୁଣ ପରୀକ୍ଷ ନୃପବର ।
ମାୟାରେ ପ୍ରଭୁଙ୍କ ଶରୀର ॥୧୪
ସଂସାର ଯାହାର ଭିଆଣ ।
ଅଶେଷପୁର ଯା'ର ସ୍ଥାନ ॥୧୫
ତାହାଙ୍କ ରୂପ ଗୁଣ ନାମ ।
ବର୍ଣ୍ଣନେ କେବା ଅଛି କ୍ଷମ ॥୧୬
ନର ଅମର ଯେବେ ହୋଇ ।
ତେବେ ସେ ବର୍ଣ୍ଣି ନ ପାରଇ ॥୧୭
ତଥାପି କିଛି ଶ୍ରେଷ୍ଠ କରି ।
କହିବା ଶୁଣ ଦଣ୍ଡଧାରୀ ॥୧୮
ଭୂଗୋଳଚକ୍ରର ବର୍ଣ୍ଣନ ।
ରାଜନ ସାବଧାନେ ଶୁଣ ॥୧୯
ଏ ଜମ୍ବୁଦ୍ୱୀପ ନୃପବର ।
ବିକଚକମଳ ଆକାର ॥୨୦
ଅତି ଅଦ୍ଭୁତ ଏହି ସ୍ଥଳ ।
ଲକ୍ଷେକ ଯୋଜନ ବିସ୍ତାର ॥୨୧
ଏ ମଧ୍ୟେ ନବ ଯେ ବରଷ ।
ସହସ୍ରଯୋଜନ ପ୍ରକାଶ ॥୨୨
ମହତ ନବ୍‌ପର୍ବତରେ ।
ବିଭାଗ ହୋଏ ଯେ ଯାହାରେ ॥୨୩
ଏ ନବବ୍‌ରଷ ମଧ୍ୟରେ ।
ବର୍ଷ ଇଳାବୃତ ନାମରେ ॥୨୪
ଯାହାର ନାଭିଦେଶ ତହିଁ ।
ପର୍ବତରାଜ ବିରାଜଇ ॥୨୫
ସୁବର୍ଣ୍ଣମୟ ବିରାଜିତ ।
ଅତି ସୁନ୍ଦର ଅଦଭୁତ ॥୨୬
ଯାହାର ମସ୍ତକ ପ୍ରମାଣ ।
ବିତ୍ରଶ ସହସ୍ର-ଯୋଜନ ॥୨୭
ଷୋଳସହସ୍ର ଯେ ଯୋଜନ ।
ତାହାର ମୂଳ ପରିମାଣ ॥୨୮
ସୁବର୍ଣ୍ଣଶୃଙ୍ଗ ତିନି ତା'ର ।
ମହୀରେ ସ୍ତମ୍ଭର ଆକାର ॥୨୯
ପୂର୍ବ ଭାଗରେ ତିନି ଗିରି ।
ନୀଳ ଧବଳ ରୂପ ଧରି ॥୩୦
ଲବଣସିନ୍ଧୁ ନିକଟରେ ।
ବେନିସହସ୍ର ଯେ ବିସ୍ତାରେ ॥୩୧
ନିଷଧ ହେମକୂଟ ଆଦି ।
ଦକ୍ଷିଣେ ଏହାଙ୍କ ପ୍ରସିଦ୍ଧି ॥୩୨
ଏହା ଦକ୍ଷିଣେ ଗିରିବର ।
ହିମାଳୟ ନାମ ତାହାର ॥୩୩
ପୂର୍ବହୁଁ ଯଥାକ୍ରମେ ତା'ର ।
ଅୟୁତଯୋଜନ ବିସ୍ତାର ॥୩୪
ପୂର୍ବେ ପଶ୍ଚିମେ ମାଲ୍ୟବାନ ।
ବିଶାଳ ଯେ ଗନ୍ଧମାର୍ଦ୍ଦନ ॥୩୫
ଦ୍ୱିସସ୍ରଯୋଜନ ବିସ୍ତାର ।
ଅଛଇ ଜଗତେ ପ୍ରଚାର ॥୩୬
ଭଦ୍ରାଶ୍ୱ କେତୁମାଳ ଆଦି ।
ଏହାଙ୍କ ସୀମା ସେ ପ୍ରସିଦ୍ଧି ॥୩୭
ମାନ୍ଦର ଯେ ମେରୁମାନ୍ଦର ।
ସୁପାର୍ଶ୍ୱ ଆଦି ଗିରିବର ॥୩୮
ସ୍ୱର୍ଣ୍ଣଗିରି ଚତୁର୍ଭାଗରେ ।
ଅଛନ୍ତି ବେଷ୍ଟିତ ଆକାରେ ॥୩୯
ବୃକ୍ଷ ନ୍ୟାଗ୍ରୋଧ ଆମ୍ରସାର ।
ଜମ୍ବୁ କଦମ୍ବ ଏ ଚତ୍ୱାର ॥୪୦
ପର୍ବତପ୍ରାୟେ ଉଚ୍ଚଶିର ।
ଯୋଜନସହସ୍ର ବିସ୍ତାର ॥୪୧
ଚତ୍ୱାର-ସିନ୍ଧୁ ତା ନିକଟେ ।
ବିରାଜେ ନାନା ଶୁଭ୍ରତଟେ ॥୪୨
ମଧୁକ୍ଷୀର ଯେ ଇକ୍ଷୁ ଜଳ ।
ଯହିଁ ସକଳ ଦେବମେଳ ॥୪୩
ଯେ ଯାହା ମତେ କରି ଧ୍ୟାନ ।
ପ୍ରଭୁଙ୍କୁ କରନ୍ତି ଭଜନ ॥୪୪
ସେ ଜଳ ଅତି ଚମତ୍କାର ।
ସେବନେ ତୁଷ୍ଟ ଯୋଗୀବର ॥୪୫
ଭଦ୍ର ଚୈତ୍ରରଥ ନନ୍ଦନ ।
ବୈଭ୍ରାଜ୍ ଚାରି ଉପବନ ॥୪୬
ଯହିଁ ଅମରବୃନ୍ଦମାନ ।
କ୍ରୀଡା କରନ୍ତି ଅନୁକ୍ଷଣ ॥୪୭

Dr. Sudhanshu Sekhar Mishra

କାମିନୀ ସଙ୍ଗତେ ଘେନିଣ ।
ଯହିଁ ଅନଙ୍ଗ ମୂର୍ତ୍ତିମାନ ॥୪୮

ଏକାଦଶ ଶତଯୋଜନ ।
ମନ୍ଦର-ଗିରିକ୍ରୋଟ ଜାଣ ॥୪୯

ଅତ୍ୟନ୍ତ-ତୁଙ୍ଗ ବୃକ୍ଷବର ।
ସୁରଙ୍ଗ-ଦଳ ଫଳ ତା'ର ॥୫୦

ସୁଗନ୍ଧ ଅମୃତ ସୁସ୍ୱାଦ ।
ରସ ଗଳଇ ବିଶାରଦ ॥୫୧

ସେଠାରୁ ଅରୁଣୋଦା ସାର ।
ମନ୍ଦରୁ ହୋଇଛି ବାହାର ॥୫୨

ମେରୁମନ୍ଦରୁ ଜମ୍ବୁଫଳ ।
ପାଚି ପଡଇ ମହୀତଳ ॥୫୩

ହସ୍ତୀପ୍ରମାଣେ ଫଳ ତା'ର ।
ରସ ଗଳଇ ଯେ ଅପାର ॥୫୪

ତହିଁରୁ ଜମ୍ବୁନଦ ଜାତ ।
ଶୁଣ ସୁମନେ ପରୀକ୍ଷିତ ॥୫୫

ତାହାର ଜଳ-ସଂଯୋଗରେ ।
ସୁବର୍ଣ୍ଣ ହୋଇଛି କ୍ଷିତିରେ ॥୫୬

ମହା କଦମ୍ବ-ତରୁବର ।
ତହିଁର ମଧ୍ୟରେ କ୍ରୋଟର ॥୫୭

ପରମଧାରା ରୂପ ହୋଇ ।
ତହୁଁ ଯେ ମଧୁ ପ୍ରସରଇ ॥୫୮

ଇଳାବୃତକୁ ବେଢ଼ି କରି ।
ସୁଗନ୍ଧ ଆମୋଦ ପ୍ରସରି ॥୫୯

ତା'ର ସ୍ପରଶୁ ଯେ ପବନ ।
ସୁଗନ୍ଧ ଶତେକଯୋଜନ ॥୬୦

କୁମୁଦଗିରି-ତଟଦେଶେ ।
ବିଶାଳବଟ ଯେ ପ୍ରକାଶେ ॥୬୧

ତାହାର କନ୍ଦରୁ ବାହାର ।
ସୁସ୍ୱାଦୁ ପୟୋରାଶି ସାର ॥୬୨

ଇଳାବୃତର ଯେ ଉତ୍ତରେ ।
ପ୍ରଜାଏ ସୁସ୍ଥ ଯା'ର ନୀରେ ॥୬୩

ଯାବତ ଜୀବ ସୁଖୀ ହୋଇ ।
ଅଛନ୍ତି ଯା'ର ଜଳ ପିଇ ॥୬୪

କୁରଙ୍ଗ କୁଶୁମ୍ଭ କୁରର ।
ବୈକଙ୍କ ତ୍ରିକୁଟ ଶିଶିର ॥୬୫

ବୈଦୂର୍ଯ୍ୟ ନିଷଦ ରୁଚକ ।
କପିଳ ଶିନୀବାସ ଶଙ୍ଖ ॥୬୬

ଋଷଭ ଯାରୁଧି ପତଙ୍ଗ ।
କାଳଞ୍ଜର ଯେ ହଂସ ନାଗ ॥୬୭

ନୀରଦ ଆଦି ଯେ ବିଦିତ ।
ଏମନ୍ତ ବିଂଶ ଯେ ପର୍ବତ ॥୬୮

ମେରୁକର୍ଣ୍ଣିକା ଚାରିପାଶେ ।
ବିରାଜେ କେଶର-ସଦୃଶେ ॥୬୯

ଜଠର ଦେବକୁଟ ଦୁଇ ।
ମେରୁର ପୂର୍ବଭାଗେ ରହି ॥୭୦

ବେନିସହସ୍ର ଉଚ୍ଚତାର ।
ଅଠରଯୋଜନ ବିସ୍ତାର ॥୭୧

ପବନ ପାରିପାତ୍ର ଦୁଇ ।
ତାହାର ପଶ୍ଚିମେ ଶୋଭଇ ॥୭୨

କୈଳାସ କରବୀର ଦୁଇ ।
ଦକ୍ଷିଣପାଶେ ବିରାଜଇ ॥୭୩

ଉତ୍ତରେ ତ୍ରିଶୃଙ୍ଗ ମକର ।
ଅଛନ୍ତି ବେନିଗିରିବର ॥୭୪

ଏ ଅଷ୍ଟଗିରି ମଧ୍ୟଦେଶେ ।
ସୁବର୍ଣ୍ଣଗିରି ଯେ ପ୍ରକାଶେ ॥୭୫

ସୁବର୍ଣ୍ଣଗିରି ଅଗ୍ରଦେଶେ ।
ବ୍ରହ୍ମାର ସଦନ ପ୍ରକାଶେ ॥୭୬

ଅୟୁତଯୋଜନ ସେ ହୋଇ ।
ନାନାକୁସୁମେ ସୁବାସଇ ॥୭୭

ହେମକଳସ ତୁଙ୍ଗ ସାର ।
କି ଅବା ଦେବା ପଟାନ୍ତର ॥୭୮

ଚାରିଦିଗରେ ଯେ ତାହାର ।
ଇନ୍ଦ୍ରାଦିଲୋକପାଳଙ୍କର ॥୭୯

ଯଥାକ୍ରମରେ ଯେଝାମତେ ।
ନିର୍ମିତ ପୁର ଯଥୋଚିତେ ॥୮୦

ଆନନ୍ଦ ହୋଇ ଯଥୋଚିତେ ।
ବିହାର କରନ୍ତି ସମସ୍ତେ ॥୮୧

ଅଷ୍ଟଦିଗପାଳଙ୍କ ପୁର ।
ସୁସଞ୍ଚ ଅତି ମନୋହର ॥୮୨

ପଞ୍ଚମସ୍କନ୍ଧେ ଏହୁ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୮୩

ପ୍ରଭୁ-ପଦାରବିନ୍ଦତଳେ ।
ମୋମନ ରହୁ ସୁନିଶ୍ଚଳେ ॥୮୪

କହଇ ଦାସ ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ॥୮୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଭୁବନକୋଷ ବର୍ଣ୍ଣନଂ
ନାମ ଷୋଡ଼ଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ସପ୍ତଦଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ ।
ସେ ଯଜ୍ଞପୁରୁଷ ଅଚ୍ୟୁତ ॥ ୧
ମାୟାବାମନ ଅବତାର ।
ତାହାଙ୍କ ବାମ ଯେ ପୟର ॥ ୨
ଯାହା କନିଷ୍ଠଅଙ୍ଗୁଳିରେ ।
ବ୍ରହ୍ମାଣ୍ଡ ଭାଜିଲା ନିର୍ଭରେ ॥୩
ତହୁଁ ଅଦ୍ଭୁତ ଜଳଧାର ।
କି ଅବା ଦେବା ପଟାନ୍ତର ॥ ୪
ଦୁରିତ ନାଶଇ ସ୍ମରଣେ ।
ପ୍ରାଣୀ ତରନ୍ତି ସ୍ନାନପାନେ ॥ ୫
ତହୁଁ ଗଳିଣ ଅତିଖରେ ।
ପଡ଼ିଲା ତୁଙ୍ଗ-ପର୍ବତରେ ॥୬
ଧରାରେ ଅବତୀର୍ଣ୍ଣ ହୋଇ ।
ଜୀବଙ୍କ କଲ୍ୟାଣ ସାଧଇ ॥୭
ଧ୍ରୁବ ପରମଭାଗବତ ।
ଜାଣିଲେ ବିଷ୍ଣୁ ପଦାମୃତ ॥୮
ଭକ୍ତିଯୋଗରେ ବଶ ହୋଇ ।
ଆନନ୍ଦେ ରୋମ ପୁଲକାଇ ॥ ୯
ମାର୍ଜନ କରିବା ନିମନ୍ତେ ।
ଶିରରେ ଘେନିଲେ ତୁରିତେ ॥ ୧୦
ତେଣୁ ସପତମୁନିଗଣ ।
ପ୍ରଭାବ ଜାଣି ତତକ୍ଷଣ ॥ ୧୧
ସକଳଆତ୍ମା-ଭଗବାନେ ।
ତପ ସମାଧି ଯୋଗଧ୍ୟାନେ ॥ ୧୨
ମୋକ୍ଷ-କାରଣେ ସେ ଭଜନ୍ତି ।
ପ୍ରଭୁର ମହିମା ଗୁଣନ୍ତି ॥ ୧୩
ସେ ଜଳ ପାଇ ତୁଷ୍ଟ ହୋଇ ।
ଜଟାରେ ଥୋଇଲେ ସେ ନେଇ ॥ ୧୪
ସେ ଗଙ୍ଗା ସ୍ୱର୍ଗରୁ ଗମିଲା ।
ଚନ୍ଦ୍ରମଣ୍ଡଳ ଆଚ୍ଛାଦିଲା ॥ ୧୫
ତାହାକୁ ଲକ୍ଷ୍ୟ କରି ଗଲା ।
ବ୍ରହ୍ମ ସଦନେ ସେ ପଡ଼ିଲା ॥ ୧୬
ତହୁଁ ସେ ଚାରିଧାରା ହୋଇ ।
ଚତୁର୍ଦ୍ଧାରୂପକୁ ବହଇ ॥ ୧୭
ଶୁଣ ପରୀକ୍ଷ ନୃପବର ।
ଏ ନାମ ଚାରିଟି ତାହାର ॥ ୧୮
ସୀତା ଅଳକନନ୍ଦା ଦୁଇ ।
ଚକ୍ଷୁ ଭଦ୍ରା ନାମକୁ ବହି ॥ ୧୯
ଚାରିଦିଗରେ ଏ ଭ୍ରମନ୍ତି ।
ସିନ୍ଧୁରେ ପ୍ରବେଶ ହୁଅନ୍ତି ॥ ୨୦
ବ୍ରହ୍ମସଦନୁ ସୀତା ଯାଇ ।
କେଶରାଚଳେ ସେ ପଡଇ ॥ ୨୧
ଅଧ-ଅଧରେ ଭ୍ରମିଯାଇ ।
ଗନ୍ଧମାର୍ଦ୍ଦନେ ସେ ପଡ଼ଇ ॥ ୨୨
ତାହାର ଶୃଙ୍ଗରେ ବିହରି ।
ଭଦ୍ରାଶ୍ୱବର୍ଷ ଶୁଦ୍ଧ କରି ॥ ୨୩
କ୍ଷୀରସିନ୍ଧୁର ପୂର୍ବଭାଗେ ।
ପ୍ରବେଶ କରିଅଛି ବେଗେ ॥ ୨୪
ବ୍ରହ୍ମାସଦନୁ ଚକ୍ଷୁ ଯାଇ ।
ମାଲ୍ୟବନ୍ତଶିଖେ ପଡ଼ଇ ॥ ୨୫
କେତୁମାଳର ମଧ୍ୟ ଦେଇ ।
ପଶ୍ଚିମ-ସମୁଦ୍ରେ ମିଶଇ ॥ ୨୬
ମେରୁଶିଖରୁ ଭଦ୍ରା ଯାଇ ।
ଉତ୍ତରଦିଗେ ସେ ଭ୍ରମଇଁ ॥ ୨୭
ଉତ୍ତରକୁରୁ ବେଢି ଖରେ ।
ସମୁଦ୍ରେ ମିଶଇ ଉତ୍ତରେ ॥ ୨୮
ଅଳକନନ୍ଦା ନାମ ହୋଇ ।
ବହୁଗିରିରେ ସେ ଭ୍ରମଇ ॥ ୨୯
ସୁବର୍ଣ୍ଣଗିରି ହିମାଳୟ ।
ତାହାକୁ କରି ସେ ଆଶ୍ରୟ ॥୩୦
ଅତିପ୍ରଖର ବେଗବଶେ ।
ପଡ଼ଇ ଭାରତ ବରଷେ ॥୩୧
ତହୁଁ ଲବଣ-ସିନ୍ଧୁଜଳେ ।
ପ୍ରବେଶ ହୁଅଇ ନିଶ୍ଚଳେ ॥୩୨
ଅନ୍ୟ ଯେ ନଦନଦୀ ଯେତେ ।
ଶତସହସ୍ର ଯେଯାମତେ ॥୩୩
ନାନାଗିରିରୁ ଜାତ ହୋଇ ।
ସିନ୍ଧୁରେ ପ୍ରବେଶନ୍ତି ଯାଇ ॥୩୪
ଭାରତବରଷ ରାଜନ ।
ଏ କର୍ମକ୍ଷେତ୍ର ବୋଲି ଜାଣ ॥୩୫
ଅପରେ ଅଷ୍ଟ ଯେ ବରଷ ।
ସ୍ୱର୍ଗଲୋକଙ୍କର ଏ ବାସ ॥୩୬
ତହିଁ ପୁରୁଷଙ୍କ ଆୟୁଷ ।
ଦଶ ସହସ୍ର ଯେ ବରର୍ଷ ॥୩୭
ଦେବତା ତୁଲ୍ୟ ପରାକ୍ରମ ।
ନିତ୍ୟେ ସେ ଦିଶନ୍ତି ନବୀନ ॥୩୮
ପରମ ଆନନ୍ଦେ ସେ ନିତ୍ୟେ ।
ବିହାର ଯୁବତୀ ସଙ୍ଗତେ ॥୩୯
ସ୍ୱର୍ଗଭୋଗ ଶେଷଭାଗରେ ।
ଦେବେ ରହନ୍ତି ସେହି ପୁରେ ॥୪୦
ତହିଁରେ ଦେବଶ୍ରେଷ୍ଠମାନେ ।
ଆନନ୍ଦେ ହରଷିତମନେ ॥ ୪୧
ସୁରସୁନ୍ଦରୀବୃନ୍ଦମେଳେ ।
ବିହାର କରନ୍ତି ନିଶ୍ଚଳେ ॥୪୨
ଷଡ଼ଋତୁ ଏକସମୟେ ।
ଯହିଁ ଅଛନ୍ତି ଏକଠାଏ ॥୪୩
ନାନାକୁସୁମ ନାନାଫଳ ।
ସୁଗନ୍ଧ ସମୀର ଶୀତଳ ॥୪୪
ବିକଚ ନାନା ପୁଷ୍ପଭରେ ।
ଲତାଏ ବେଷ୍ଟିତ ଉପରେ ॥୪୫
ସଦନଆକାରେ ଆଚ୍ଛାଦି ।
ବୃକ୍ଷ ଲତାରେ ଛନ୍ଦାଛନ୍ଦି ॥୪୬
ଅତି ମଞ୍ଜୁଳ ମନୋରମ ।
ନିବିଡ଼ ଲତାର ସଦନ ॥୪୭

Dr. Sudhanshu Sekhar Mishra

ପର୍ବତ-ଦ୍ରୋଣି ସୁଶୀତଳେ ।
ନିର୍ମଳ ନାନା ଶୀତଜଳେ ॥୪୮
ରୁଚିରପଙ୍କଜ ସୁନ୍ଦର ।
ସୁସଞ୍ଚ ଦିଶେ ସରୋବର ॥୪୯
ଜଳରେ ରାଜହଂସମାନେ ।
କ୍ରୀଡନ୍ତି ହରଷିତ ମନେ ॥୫୦
ଜଳ କୁକ୍‌କୁଟ କଳହଂସ ।
ଚକ୍ର କାରଣ୍ଡବ ସାରସ ॥୫୧
ମଧୁରେ ନାନା ଧ୍ୱନି କରି ।
ଜଳେ ସେ କ୍ରୀଡନ୍ତି ବିହରି ॥୫୨
ଏମନ୍ତେ ନାନା ସୁଖସ୍ଥଳେ ।
ସୁରସୁନ୍ଦରୀବୃନ୍ଦ ମେଳେ ॥୫୩
ଅମରବୃନ୍ଦ ତୋଷଚିତ୍ତେ ।
ସର୍ବେ ରମନ୍ତି ଏକଚିତ୍ତେ ॥୫୪
ଉପର ବଳେ ତାହାଙ୍କର ।
କରୁଣା କରନ୍ତି ଶ୍ରୀଧର ॥୫୫
ନବବରଷେ ହେ ରାଜନ ।
ସେ ଯେ ଅନାଦି ନାରାୟଣ ॥୫୬
ଲୋକର ନିସ୍ତାର କାରଣେ ।
ଅଛନ୍ତି ପ୍ରଭୁ ଅନୁକ୍ଷଣେ ॥୫୭
ଯେ ପୁଣ୍ୟ ଇଳାବୃତବର୍ଷ ।
ଭବ ଯେ ଏକଇ ପୁରୁଷ ॥୫୮
ଭବାନୀ-ଶାପ ଯୋଗୁଁ ତହିଁ ।
ଅନ୍ୟ ପୁରୁଷ ବାସ ନାହିଁ ॥୫୯
ନ ଜାଣି କେହି ତହିଁ ଗଲେ ।
ତକ୍ଷଣେ ସ୍ତ୍ରୀଭାବରେ ମିଳେ ॥୬୦
ତାହାଙ୍କ ଶାପର କାରଣ ।
ପଛେ କହିବା ହେ ରାଜନ ॥୬୧
ଭବାନୀ କୋଟିନାରୀ ମେଳେ ।
ଯାହାଙ୍କ ପଦରେ ଖଟିଲେ ॥୬୨
ସେ ମହାପୁରୁଷଙ୍କ ଶକ୍ତି ।
ଘେନନ୍ତି ଚତୁର୍ବିଧମୂର୍ତ୍ତି ॥୬୩
ଚତୁର୍ଥୀ ତାମସୀ ଯେ ଜାଣ ।
ଯାହାର ନାମ ସଙ୍କର୍ଷଣ ॥୬୪
ତହିଁ ସ୍ତୁବନ୍ତି ଶିବ ଧ୍ୟାନେ ।
ତାମସୀ-ମୂର୍ତ୍ତି ସଙ୍କର୍ଷଣେ ॥୬୫

ରୁଦ୍ର ଉବାଚ

ନମସ୍ତେ ପୁରାଣପୁରୁଷ ।
ଅଶେଷଗୁଣ ଯହିଁ ବାସ ॥୬୬
ଅବ୍ୟକ୍ତ ଅନନ୍ତ କାରଣ ।
ଭଜଇ ତୋହର ଚରଣ ॥୬୭
ବ୍ରହ୍ମ ଈଶ୍ୱର ପର ତୁହି ।
ପ୍ରକୃତି ଥାଇ ତୋର ତହିଁ ॥୬୮
ଭୂତଭାବନ ତୋର ନାମ ।
ତୋ' ନାମେ ଏ ଭବଖଣ୍ଡନ ॥୬୯
ଯାହାର ନାମ ଗୁଣ କର୍ମ ।
ମନ-ବଚନେ ନୋହେ ଗମ୍ୟ ॥୭୦
ତୋ' ତମ-ମାୟା-ଗୁଣେ ଛନ୍ଦି ।
ସଂସାର କରିଅଛୁ ବନ୍ଦୀ ॥୭୧
ମଧୁ-ଆସବେ ତାମ୍ରବର୍ଣ୍ଣ ।
ଶୋଭଇ ଯାହାର ଲୋଚନ ॥୭୨
ଦିଶଇ ଅତି ଭୟଙ୍କର ।
ନାଗବଧୂଙ୍କ ମନୋହର ॥୭୩
ଯାହାର ସଦୃଶ ଅପରେ ।
ନାହିଁ ଏ ବ୍ରହ୍ମାଣ୍ଡ ଭିତରେ ॥୭୪
ଉତ୍ପତ୍ତି-ପ୍ରଳୟ-ପାଳନ ।
ଏ ସର୍ବ ଯାହାର ଭିଆଣ ॥୭୫
ଯାହାର ଆଦି-ଅନ୍ତ ନାହିଁ ।
ଅନନ୍ତ ନାମ ସେ ବୋଲାଇ ॥୭୬
ଯା'ର ଅସଂଖ୍ୟଶିରେ ମହୀ ।
ସର୍ଷପପ୍ରାୟେ ବିରାଜଇ ॥୭୭
ଯାହାର ଠାରୁଁ ଜନ୍ମ ହୋଇ ।
ଅଜ ଏ ସଂସାର ସର୍ଜଇ ॥୭୮
ବ୍ରହ୍ମାଦି ଆମ୍ଭେ ଯେ ସକଳେ ।
ସେବିଛୁ ଯା'ର ପାଦତଳେ ॥୭୯
ରଜ୍ଜୁବନ୍ଧନ ପ୍ରାୟ ହୋଇ ।
ଯନ୍ତ୍ରିତ ହୋଇଅଛୁ ରହି ॥୮୦
ଅନୁଗ୍ରହରୁଚି ଯାହାର ।
ଭିଆଣ କରୁଁ ଏ ସଂସାର ॥୮୧
ତ୍ରିଗୁଣସଙ୍ଗତେ ବନ୍ଧନ ।
ଯା'ର ମାୟାରେ ପ୍ରାଣୀ ମନ ॥୮୨
ତ୍ରିଗୁଣବଶେ ମୋହି ହୋଇ ।
ଜନ୍ମର ତତ୍ତ୍ୱ ନ ଜାଣଇ ॥୮୩
ତେସନ ମାୟାକୁ ବିସ୍ତାରି ।
ଯେ ପ୍ରଭୁ ଜଗତେ ବିହରି ॥୮୪
ତାହାଙ୍କୁ ମୋର ନମସ୍କାର ।
ଯେ ପ୍ରଭୁ ଜଗତଠାକୁର ॥୮୫
ସୁଜନେ ଶୁଣ ଏହୁବାଣୀ ।
ପଞ୍ଚମସ୍କନ୍ଧେ ପରିମାଣି ॥୮୬
ସେ ପ୍ରଭୁ ଚରଣାରବିନ୍ଦେ ।
ମନ ନିବେଶି ଅପ୍ରମାଦେ ॥୮୭
କହଇ ବିପ୍ର ଜଗନ୍ନାଥ ।
ସୁଜନେ ଶୁଣ ଏକଚିତ୍ତ ॥୮୮
ମୁହିଁ ପାମର ଦୁରାଚାର ।
ଭୋ ନାଥ ମୋତେ କୃପାକର ॥୮୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ପଞ୍ଚମସ୍କନ୍ଧେ
ସପ୍ତଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଅଷ୍ଟାଦଶ ଅଧ୍ୟାୟ

ଶୁକ ଉବାଚ

ଭଦ୍ରାଶ୍ୱ ବରଷ ବିଧାନ ।
ରାଜନ ଶୁଣ ସାବଧାନ ॥ ୧
ଭଦ୍ରଶ୍ରବା ନାମ ତାଙ୍କର ।
ସାକ୍ଷାତେ ଧର୍ମର କୁମର ॥ ୨
ତାହାର କୁଳେ ହୋଇ ଜାତ ।
ଯେତେକ ପୁରୁଷ ବିଦିତ ॥ ୩
ଅଖିଳ-ବ୍ରହ୍ମାଣ୍ଡ-କାରଣ ।
ଅନନ୍ତ ପ୍ରଭୁ ନାରାୟଣ ॥ ୪
ତାହାଙ୍କ ସନ୍ତୋଷ କାରଣେ ।
ପରମ ସମାଧି ବିଧାନେ ॥ ୫
ପ୍ରଭୁ ଯେ ଧର୍ମରୂତ ବହି ।
ଅଛନ୍ତି ପ୍ରାଣୀହିତ ପାଇଁ ॥ ୬
ତାହାଙ୍କ ସେବାରେ ନିରତେ ।
ଅଛନ୍ତି ଯେ ଯାହାରମତେ ॥ ୭
ପରମ ପ୍ରିୟଭାବ ଧରି ।
ଏହି ସ୍ତବରେ ସ୍ତୁତି କରି ॥ ୮

ଭଦ୍ରଶ୍ରବାଗଣ ଉବାଚ

ନମଇଁ ଧର୍ମ-ଅବତାର ।
ଆତ୍ମା-ଶୋଧନ ପ୍ରାଣୀଙ୍କର ॥ ୯
ତୁମ୍ଭର ଲୀଳା ଚମତ୍କାର ।
ବୁଦ୍ଧି-ଜ୍ଞାନର ଅଗୋଚର ॥ ୧୦
ଶରୀରମାତ୍ରେ ଯେ ଅଛଇ ।
ତଥାପି ପ୍ରାଣୀ ନ ଜାଣଇ ॥ ୧୧
ଯାର ମାୟାରେ ମୋହି ହୋଇ ।
ମୃତ୍ୟୁକୁ ଦେଖି ନ ଦେଖଇ ॥ ୧୨
ଜୀବ ଯେ ମୃତ୍ୟୁର ଅଧୀନ ।
ନ ଭାବେ ଏହା କଦାଚନ ॥ ୧୩
ଦେଖଇ ଜୀବ ଅନୁକ୍ଷଣେ ।
ମରନ୍ତି ଆତ୍ମୀୟସ୍ୱଜନେ ॥ ୧୪

ତାହାଙ୍କ ଦେହ ଅବିରତେ ।
ଭସ୍ମ ହେଉଛି ନିତ୍ୟେନିତ୍ୟେ ॥ ୧୫
ଆପଣେ ମଣି ଚିରଞ୍ଜୀବ ।
ପାପଆଚରେ ମୂଢ଼ଜୀବ ॥ ୧୬
ମିଥ୍ୟାସଂସାର ମୂର୍ଖଜନେ ।
ସତ୍ୟ କରନ୍ତି ଅନୁକ୍ଷଣେ ॥ ୧୭
ଜ୍ଞାନୀମାନେ ଏ ସଂସାରର ।
କହନ୍ତି ବିଶ୍ୱକୁ ନଶ୍ୱର ॥ ୧୮
ତଥାପି ଯାହାର ମାୟାରେ ।
ପଣ୍ଡିତେ ଭ୍ରମନ୍ତି ସଂସାରେ ॥ ୧୯
ଆତ୍ମତତ୍ତ୍ୱଜ୍ଞ ଯୋଗୀମାନ ।
ସମାଧି ଯୋଗରେ ପ୍ରମାଣ ॥ ୨୦
ସର୍ବଦା ପ୍ରତ୍ୟକ୍ଷ କରନ୍ତି ।
ତେବେହେଁ ମାୟାରେ ବୁଡ଼ନ୍ତି ॥ ୨୧
ସେ ଅଜ ବ୍ରହ୍ମାଣ୍ଡଠାକୁର ।
ତାହାଙ୍କୁ କରୁ ନମସ୍କାର ॥ ୨୨
ସକଳ-ଆବରଣ ହୋଇ ।
ଯାହାର ଆବରଣ ନାହିଁ ॥ ୨୩
ଏ କଥା ଉଚିତ ତୋହର ।
କାର୍ଯ୍ୟ କାରଣ ତୁ ଠାକୁର ॥ ୨୪
ନାନା ଶରୀରବନ୍ତ ହୋଇ ।
ସର୍ବ ଭୋଗକୁ ଭୁଞ୍ଜୁ ତୁହି ॥ ୨୫
ତୁ ନାଥ ସକଳ ଈଶ୍ୱର ।
ତୋତେ ଆମ୍ଭର ନମସ୍କାର ॥ ୨୬
ଜ୍ଞାନ-ବିଜ୍ଞାନ-ଯୁକ୍ତି ବଳେ ।
ତୁମ୍ଭର ଚରଣ ନ ମିଳେ ॥ ୨୭
ବେଦେ ତୁ ବିଶ୍ୱର ବିଧାତା ।
ସୃଷ୍ଟି ସ୍ଥିତି ପ୍ରଳୟକର୍ତ୍ତା ॥ ୨୮
ଯେବେ ପ୍ରଚଣ୍ଡ ଦୈତ୍ୟଗଣ ।
ବେଦକୁ କଲେ ଅପମାନ ॥ ୨୯
ପ୍ରଳୟ-ଅବସାନେ ତୁହି ।
ହୟଗ୍ରୀବମୂର୍ତ୍ତିକି ବହି ॥ ୩୦

ରସାତଳରୁ ଉଦ୍ଧରିଲୁ ।
ବ୍ରହ୍ମା ମାଗନ୍ତେ ତା'କୁ ଦେଲୁ ॥ ୩୧
ତୁ ସତ୍ୟସଙ୍କଳ୍ପଠାକୁର ।
ନମଇଁ ତୁମ୍ଭର ପୟର ॥ ୩୨
ଏମନ୍ତେ ନାନା ସ୍ତୁତିମତେ ।
ସେବନ୍ତି ତା'ଙ୍କ ପାଦଗତେ ॥ ୩୩
ନୃସିଂହ ନାମେ ଯେ ଠାକୁର ।
ଅଛନ୍ତି ହରିବରଷର ॥ ୩୪
ତାହାଙ୍କ ରୂପର କାରଣ ।
ପଛେ କହିବା ହେ ରାଜନ ॥ ୩୫
ପରମଭାଗବତଜନ ।
ମହାପୁରୁଷ ହେ ରାଜନ ॥ ୩୬
ଦୈତ୍ୟଦାନବ-କୁଳମଣି ।
ସୁଶୀଳ ସାଧୁ ସତ୍ୟବାଣୀ ॥ ୩୭
ପ୍ରହ୍ଲାଦ ନାମ ସେ ବହଇ ।
ପ୍ରଭୁଙ୍କ ଅତି ପ୍ରିୟ ସେହି ॥ ୩୮
ଇନ୍ଦ୍ରିୟଗୁଣ ସେ ନିବାରି ।
ଚଞ୍ଚଳମନ ସ୍ଥିର କରି ॥ ୩୯
ସେ ସ୍ଥଳଲୋକଙ୍କ ସହିତେ ।
ପ୍ରଭୁଙ୍କୁ ଚିନ୍ତେ ଅବିରତେ ॥ ୪୦
ଏହି ସ୍ତବରେ ସ୍ତୁତି କରି ।
ସେବଇ ପ୍ରଭୁ ନରହରି ॥ ୪୧
ତୁ ପ୍ରଭୁ ଜଗତ କାରଣ ।
ନୃସିଂହ ରୂପୀ ଭଗବାନ ॥ ୪୨
ତୁ ଯେ ଜଗତଜୀବ ହରି ।
ତୁ ଅଛୁ ସର୍ବଘଟେ ପୂରି ॥ ୪୩
ତେଜଙ୍କ ତେଜରୂପେ ତୁହି ।
ଅଛୁ ଯେ ପ୍ରକଟିତ ହୋଇ ॥ ୪୪
ହେ ବଜ୍ରଦଂଷ୍ଟ୍ର ବଜ୍ରନଖ ।
ତୁମ୍ଭ ଚରଣେ ମୋତେ ରଖ ॥ ୪୫
କର୍ମ ବାସନା ଦଗ୍ଧ କର ।
ଅଜ୍ଞାନତମ ବେଗେ ହର ॥ ୪୬

Dr. Sudhanshu Sekhar Mishra

ଭୋ ନାଥ ଜୀବର ଜୀବନ ।
ବିଶ୍ୱକୁ କର ତୁ କଲ୍ୟାଣ ॥୪୭
ନମସ୍ତେ ପ୍ରଭୁ ଦଇତ୍ୟାରି ।
ଯାହାର ତେଜେ ଦିଗ ପୂରି ॥୪୮
ନଖଙ୍କ ତେଜ ପରକାଶ ।
ରବିକିରଣ କରେ ନାଶ ॥୪୯
କରାଳଦଂଷ୍ଟ୍ର ସେ ବଦନ ।
ଅଗ୍ନିର ପ୍ରାୟ ସେ ଲୋଚନ ॥୫୦
ଯାହାର ନାମେ ଦୁଷ୍ଟ ଡରେ ।
ନମଇଁ ତାହାର ପୟରେ ॥୫୧
ଭୋନାଥ ତୋହର ପ୍ରସାଦେ ।
ପ୍ରାଣୀ ତରନ୍ତି ଅପ୍ରମାଦେ ॥୫୨
ତୋହର ଅଭୟ-ଚରଣେ ।
ମନ ମୋ ରହୁ ଅନୁକ୍ଷଣେ ॥୫୩
ଦାରା ତନୟ ଗୃହେ ମୋର ।
ଏ ମନ ନୋହୁ ଭୋ ଈଶ୍ୱର ॥୫୪
ତୁମ୍ଭର ଭକ୍ତଜନସଙ୍ଗେ ।
ସୁଖେ ବଞ୍ଚିବି ନାନାରଙ୍ଗେ ॥୫୫
ଆତ୍ମାର ପ୍ରିୟ ଯେ ଅପରେ ।
ନାହିଁ ଏ ଅଖିଳ-ସଂସାରେ ॥୫୬
ସକଳ ଆତ୍ମାର ଠାକୁର ।
ଏଣୁ ତୁ ପ୍ରିୟ ପ୍ରାଣୀଙ୍କର ॥୫୭
ଯେ ଜନ ଚରଣେ ତୋହର ।
ସର୍ବସ୍ୱ ଦେଇ ରହେ ସ୍ଥିର ॥୫୮
ତାହାଙ୍କ ଅନ୍ତରର ମଳ ।
ଭୋଦେବ କରୁ ତୁ ନିର୍ମଳ ॥୫୯
ତୋହର ନାମ ସୁମରଣ ।
ଅଶେଷ ପାପର ଖଣ୍ଡନ ॥୬୦
ଏମନ୍ତ ଯାହାର ପ୍ରଭାବ ।
ତାହାଙ୍କୁ କେବା ନ ସେବିବ ॥୬୧
ତୋହର ତହିଁ ଭକ୍ତି ଯା'ର ।
ପୂଜ୍ୟ ସେ ଦେବମାନଙ୍କର ॥୬୨
ସକଳ ଗୁଣ ତାଙ୍କଠାରେ ।
ଆଶ୍ରୟ କରନ୍ତି ନିର୍ଭରେ ॥୬୩

ତୋର ଅଭକ୍ତ ଯେଉଁ ଜନ ।
ସଂସାରେ ବନ୍ଧନ କାରଣ ॥୬୪
ଯେହ୍ନେ ସକଳ ମୀନଗଣ ।
ଜଳରେ କରନ୍ତି ଭ୍ରମଣ ॥୬୫
ତେସନେ ଯେତେ ଦେହୀଗଣ ।
ତୋ' ମଧ୍ୟେ କରେ ବିଚରଣ ॥୬୬
ଏହା ଜାଣିଣ ଯେହୁ ନର ।
ଭଜଇ ନୃସିଂହ ପୟର ॥୬୭
ଅଶେଷ ଭୟରୁ ତରଇ ।
କର୍ମବନ୍ଧନ ତା'ର କାହିଁ ॥୬୮
ଶୁଣ ରାଜନ ମନତୋଷେ ।
କେତୁମାଳ ନାମେ ବରଷେ ॥୬୯
ଅଖିଳ-ବ୍ରହ୍ମାଣ୍ଡ-କାରଣ ।
କାମଦେବରୂପ ଧରିଣ ॥୭୦
ଲକ୍ଷ୍ମୀର ସନ୍ତୋଷ କାରଣେ ।
ବିହାର କରନ୍ତି ଆପଣେ ॥୭୧
ସେ ସ୍ଥଳଲୋକ ପୁଣ୍ୟଫଳେ ।
ନାନା-ବିହାର ସୁଖଭୋଳେ ॥୭୨
ଅତି ଲଳିତ ଗତି ତା'ର ।
ବିଳାସ ନାନା ମନୋହର ॥୭୩
ରୁଚିର ହାସ ଲୀଳାମାନ ।
କଟାକ୍ଷେ ଯେ ଅବଲୋକନ ॥୭୪
ବିକଚ-ବଦନାରବିନ୍ଦ ।
ନିନ୍ଦଇ ପୂର୍ଣ୍ଣମୀର ଚାନ୍ଦ ॥୭୫
ଲଳିତ ହାସ ସୁଖଭୋଳେ ।
ଲକ୍ଷ୍ମୀ ସଙ୍ଗତେ କୁତୂହଳେ ॥୭୬
କ୍ରୀଡା କରନ୍ତି ସୁଖମନେ ।
ଇନ୍ଦ୍ରିୟଭୋଗ ଅନୁମାନେ ॥୭୭
ପ୍ରଜାପତି-ଦୁହିତା ସଙ୍ଗେ ।
ତହିଁରେ ଲକ୍ଷ୍ମୀଦେବୀ ରଙ୍ଗେ ॥୭୮
ପରମ-ସମାଧି-ଯୋଗରେ ।
ସ୍ତୁତି କରନ୍ତି ବିଷ୍ଣୁଠାରେ ॥୭୯
ନମସ୍ତେ ପ୍ରଭୁ ହୃଷୀକେଶ ।
ସକଳ ଗୁଣେ ତୁ ପ୍ରକାଶ ॥୮୦

ଷୋଡଶ-କଳାବନ୍ତ ତୁହି ।
ବେଦ ତୋହର ନିଜ ଦେହୀ ॥୮୧
ସକଳଆତ୍ମା ତୁ ଈଶ୍ୱର ।
ଅମୃତମୟ ତୋ' ଶରୀର ॥୮୨
ତୁମ୍ଭେ ପରମ-ମନୋହର ।
ତୁ' ନାଥ ଶୁଭଙ୍କ ଈଶ୍ୱର ॥୮୩
ଅତି ସୁଶୀଳ ଶାନ୍ତ ତୁହି ।
ତୋ' ତହୁଁ ଆନ କେହି ନାହିଁ ॥୮୪
ଭୋ ନାଥ ତୋ' ପାଦକମଳ ।
ସେବି ଲଭନ୍ତି ପୁଣ୍ୟଫଳ ॥୮୫
ତୋହର ଭକ୍ତ ଯେ ହୁଅଇ ।
ତାଙ୍କୁ ସଙ୍କଟୁ ତାରୁ ତୁହି ॥୮୬
ତୋ' ପାଦ-ସରୋରୁହ ଦୁଇ ।
ନିରତେ ଯେମନ୍ତେ ସେବଇ ॥୮୭
ଏମନ୍ତ ଆଜ୍ଞା ମୋତେ କର ।
ଭୋ ନାଥ କରୁଣାସାଗର ॥୮୮
ଯେ ତୋତେ ମନେ ଆରାଧଇ ।
ତାହାର ମନୋରଥ ତୁହି ॥୮୯
ତୋହର ପରସନ୍ନ ତା'ର ।
ସକଳ ହୁଅଇ ସୁଫଳ ॥୯୦
ତେଣୁ ତୁ ତ୍ରୈଲୋକ୍ୟଈଶ୍ୱର ।
ଦ୍ୱିତୀୟ ନାହିଁ ପଟାନ୍ତର ॥୯୧
ଭୋ ନାଥ ତୁମ୍ଭେ ନାନାଦେହ ।
ସାଧୁଙ୍କ ନିସ୍ତାରଣେ ବହ ॥୯୨
ତୁମ୍ଭର ଚେଷ୍ଟା ଏ ସଂସାରେ ।
ବ୍ରହ୍ମାଦି କେବା ଜାଣିପାରେ ॥୯୩
ରମ୍ୟକ ବରଷ ଚରିତ ।
ଶୁଣ ରାଜନ ପରୀକ୍ଷିତ ॥୯୪
ପ୍ରଭୁର ମତ୍ସ୍ୟ-ଅବତାର ।
ଦେବମାନବେ ଅଗୋଚର ॥୯୫
ଅତି ସୁନ୍ଦର ରୂପରାଶି ।
ମନୁର ବଂଶ ତହିଁ ବସି ॥୯୬
ସେ ରୂପ ଆରାଧନା ପାଇଁ ।
ଏମନ୍ତ ସ୍ତୁତି ଯେ କରଇ ॥୯୭

Dr. Sudhanshu Sekhar Mishra

ନମସ୍ତେ ପରମ ଈଶ୍ୱର ।
ଯାହାର ଯଶ ଅଗୋଚର ॥ ୯୮
ବିସ୍ତାର-ମତ୍ସ୍ୟ ତୋ’ ଶରୀର ।
ତୁ ପ୍ରଭୁ ସର୍ବପ୍ରାଣୀଙ୍କର ॥ ୯୯
ଥାଉ ଯେ ଅନ୍ତର-ବାହାରେ ।
ତୋ’ ମାୟା କେବା ଜାଣିପାରେ ॥ ୧୦୦
ତୋହର ମାୟା-ମୀନ-ଦେହୀ।
ଦେବମାନବେ ଦେଖା ନାହିଁ ॥ ୧୦୧
ସଂସାର-ସାଗରେ ତୋ’ ଜନ୍ମ ।
ମାୟାତରଙ୍ଗ ଯହିଁ ଭ୍ରମ ॥ ୧୦୨
ପରମ ମହାବଳୀ ହେଉ ।
ସଂସାରେ ନାନା ଦେହ ବହୁ ॥ ୧୦୩
ତୁ ସର୍ବ ଜଗତଠାକୁର ।
ତୋ’ ପାଦେ ମୋର ନମସ୍କାର ॥ ୧୦୪
ହିରଣ୍ମୟ ବରଷ ବାଣୀ ।
ରାଜନ ଶୁଣ ପରିମାଣି ॥ ୧୦୫
ଅଖିଳ-ବ୍ରହ୍ମାଣ୍ଡ-ଠାକୁର ।
ଧରିଣ କୂର୍ମର ଶରୀର ॥ ୧୦୬
ଅର୍ଯ୍ୟମା ତୁଲେ ପିତୃଗଣେ ।
ଯେତେ ଅଛନ୍ତି ସେହିସ୍ଥାନେ ॥ ୧୦୭
ତାହାଙ୍କୁ ଘେନି ପିତୃପତି ।
ପ୍ରଭୁଙ୍କୁ ଆନନ୍ଦେ ସେବନ୍ତି ॥ ୧୦୮
ଏମନ୍ତେ ନାନା ସ୍ତୁତିମତେ ।
ସେବନ୍ତି ପ୍ରଭୁ-ପାଦଗତେ ॥ ୧୦୯
ନମଇଁ ସର୍ବ -ସତ୍ତ୍ୱଗୁଣ ।
ଲକ୍ଷି ନୋହଇ ଯା’ର ସ୍ଥାନ ॥ ୧୧୦
ନମସ୍ତେ ପ୍ରଭୁ କୂର୍ମଦେହୀ ।
ତୋ’ ପଦେ ରଖ ହେ ଗୋସାଇଁ ॥ ୧୧୧

ତୋର ଅଶେଷ ନାମ ଗୁଣ ।
ନମଇଁ ପ୍ରଭୁ ଭଗବାନ ॥ ୧୧୨
ନିଜ ମାୟାରେ ଦେହଧରି ।
ଅଶେଷ ଦେହକୁ ଆବୋରି ॥ ୧୧୩
ନାନା-ଜନ୍ମର ଏ ପ୍ରସିଦ୍ଧି ।
ତୋ’ ପଦ୍ମପାଦେ ମୋର ବୁଦ୍ଧି ॥ ୧୧୪
ଭୋ ଦେବ ତୁହି ଜରାୟୁଜ ।
ତୁହି ତ ଅଣ୍ଡଜ ସ୍ୱେଦଜ ॥ ୧୧୫
ତୁହିତ ପ୍ରଭୁ ଭଗବାନ ।
ଉଦ୍ଭିଦ ସ୍ଥାବର ଜଙ୍ଗମ ॥ ୧୧୬
ଦେବତା ଋଷି ପିତୃଭୂତ ।
ଇନ୍ଦ୍ରିୟ ଆଦି ଯେ ସମସ୍ତ ॥ ୧୧୭
ଆକାଶ ଗ୍ରହ ମହୀସ୍ଥଳ ।
ଗିରି କାନନ ନାନାଜଳ ॥ ୧୧୮
ଦିଗ ବରଷ ଯେ ସାଗର ।
ଏ ସର୍ବ ନାମଟି ତୋହର ॥ ୧୧୯
ବ୍ରହ୍ମାଣ୍ଡେ ଯେତେକ ଅଛନ୍ତି ।
କବିଏ ଯେତେ ବିଚାରନ୍ତି ॥ ୧୨୦
ସେ ସର୍ବରୂପ ତୁ ଠାକୁର ।
ନମଇଁ ତୋହର ପୟର ॥ ୧୨୧
ଉତ୍ତରକୁରୁ ବରଷର ।
ବରାହ ରୂପୀ ମହୀଧର ॥ ୧୨୨
କୂର୍ମର ଅନ୍ତେ ତହିଁ ମହୀ ।
ଆନନ୍ଦେ ସ୍ତୁତି ସେ କରଇ ॥ ୧୨୩
ନମଇଁ ଅନାଦି ଅବ୍ୟୟ ।
ସକଳ ଯଜ୍ଞ ତୋର ଦେହ ॥ ୧୨୪

ତ୍ରିଯୁଗ ନାମରୂପଧର ।
ନମଇଁ ତୋହର ପୟର ॥ ୧୨୫
ନିବୃତ୍ତତୃଷ୍ଣ ଜ୍ଞାନୀଜନ ।
ମାୟାଟି ଯା’ ନାମେ ଖଣ୍ଡନ ॥ ୧୨୬
ସୃଷ୍ଟି ଉଦୟ ସ୍ଥିତି ଲୟ ।
ତ୍ରିଗୁଣ ଘେନି ବହେ ଦେହ ॥ ୧୨୭
ସେ ତୋ’ର ମାୟାରେ ଭ୍ରମନ୍ତି।
ତୋ’ ମାୟା କେହି ନ ଜାଣନ୍ତି॥ ୧୨୮
ସର୍ବ କର୍ମର ତୁ ଈଶ୍ୱର ।
ଭୋ ନାଥ ତୋତେ ନମସ୍କାର॥ ୧୨୯
ସଂଗ୍ରାମେ ନାଶୁ ଦୁଷ୍ଟଗଣ ।
ମାୟା-ଶୂକର ରୂପେ ଜନ୍ମ ॥ ୧୩୦
ଅଗ୍ର ଦନ୍ତରେ ମୋର ପ୍ରାଣ ।
ଉଦ୍ଧାର କଲୁ ନାରାୟଣ ॥ ୧୩୧
ତୁମ୍ଭର ପାଦପଦ୍ମ-ଦୁଇ ।
ଆନନ୍ଦେ ମୁହିଁ ଯେ ନମଇଁ ॥ ୧୩୨
ବରାହ-ଧରଣୀର ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥ ୧୩୩
ସୁଜନଜନଙ୍କ ପୟରେ ।
ମୋ’ ମନ ରହୁ ନିରନ୍ତରେ ॥ ୧୩୪
କହଇ ବିପ୍ର ଜଗନ୍ନାଥ ।
ଶ୍ରୀକୃଷ୍ଣ-ଚରିତ-ଅମୃତ ॥ ୧୩୫

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଭୁବନକୋଷ ବର୍ଣ୍ଣନଂ
ନାମ ଅଷ୍ଟାଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଊନବିଂଶ ଅଧ୍ୟାୟ

ଶୁକ ଉବାଚ

କିଂପୁରୁଷବରଷ ବାଣୀ ।
ରାଜନ ଶୁଣ ପରିମାଣି ॥୧
ସୀତାରମଣ ପ୍ରଭୁ ରାମ ।
ତାହାଙ୍କ କନିଷ୍ଠ ଲକ୍ଷ୍ମଣ ॥୨
ପରମ ପ୍ରଭୁ ଯେ ଈଶ୍ୱର ।
ତାହାଙ୍କୁ ହନୁ ମହାବୀର ॥୩
ପରମ ଭାଗବତ ସେହି ।
ନିଶ୍ଚଳେ ଭକ୍ତିଯୋଗ ଲଇଁ ॥୪
ପ୍ରଭୁ ପଦାରବିନ୍ଦ ତଳେ ।
ସେବଇ ମନର ନିଶ୍ଚଳେ ॥୫
ଶ୍ରୀରାମ କଥା ପୁଣ୍ୟତମ ।
ଗନ୍ଧର୍ବେ କରନ୍ତି ଗାୟନ ॥୬
ଆର୍ଷ୍ଟିଷେଣ ସହିତ ତହିଁ ।
ହନୁ ଶୁଣଇ ତୋଷ ହୋଇ ॥୭
ଏମନ୍ତ କରନ୍ତି ଗାୟନ ।
ସ୍ତୁତି କରନ୍ତି ଏ ବଚନ ॥୮
ଉତ୍ତମଶ୍ଳୋକ ତୁ ଠାକୁର ।
ନମଇଁ ତୋହର ପୟର ॥୯
ସକଳ ଲକ୍ଷଣ ତୋ ତହିଁ ।
ସକଳ ଶ୍ରେଷ୍ଠ ତୁ ଗୋସାଇଁ ॥୧୦
ସର୍ବ-ବନ୍ଦନ ତୁ ଠାକୁର ।
ତୋତେ ମୋହର ନମସ୍କାର ॥୧୧
ନମଇଁ ବ୍ରହ୍ମାଣ୍ଡ ଈଶ୍ୱର ।
ସକଳ ଦେବଙ୍କର ବର ॥୧୨
ମହାପୁରୁଷ ମହାରାଜ ।
ନମଇଁ ବ୍ରହ୍ମାଣ୍ଡର ବୀଜ ॥୧୩
ସ୍ୱତେଜେ କରି ତିନିଗୁଣ ।
ବିନାଶ କରୁ ନାରାୟଣ ॥୧୪
ପ୍ରଶାନ୍ତ-ସାଧୁ ତୁ ଠାକୁର ।
ଜ୍ଞାନୀଙ୍କ ଜ୍ଞାନେ ତୁ ଗୋଚର ॥୧୫
ତୋହର ନାମ ରୂପ ଯେତେ ।
କେହି ନ ଜାଣନ୍ତି ଜଗତେ ॥୧୬
ମାୟାସଂସାରେ ତୋର ଜନ୍ମ ।
ରାକ୍ଷସ-ସଂହାର-କାରଣ ॥୧୭
ଅନ୍ୟଥା କାହିଁ ଭଗବାନ ।
ସୀତାହରଣେ କ୍ଷୋଭ ମନ ॥୧୮
ମାନବଶିକ୍ଷାର ନିମନ୍ତେ ।
ତୋହର ଜନ୍ମ ଏ ଜଗତେ ॥୧୯
ଅଖିଳ-ବ୍ରହ୍ମାଣ୍ଡ-ଠାକୁର ।
ତୁମ୍ଭେ ବା କି କରି ନ ପାର ॥୨୦
ତେବେ ପତ୍ନୀର ନିମିତ୍ତରେ ।
କ୍ଳେଶ ମାନବ-ଅବତାରେ ॥୨୧
ଏ କି ତୋହରେ ସମ୍ଭବଇ ।
ଭୋ ନାଥ ତୋର ମାୟା ଏହି ॥୨୨
ଜନ୍ମ ମରଣ ଯା'ର ନାହିଁ ।
ଅଖିଳପ୍ରଭୁ ଭାବଗ୍ରାହୀ ॥୨୩
ସୁର-ଅସୁର ଆଦି କରି ।
ବ୍ରହ୍ମାଣ୍ଡେ ଯେତେ ଦେହଧାରୀ ॥୨୪
ଏ ସର୍ବଆତ୍ମା ଯେ ଈଶ୍ୱର ।
କି ଅବା ଅକର୍ତ୍ତବ୍ୟ ତୋର ॥୨୫
ଉତ୍ତରକୋଶଳରେ ଜାତ ।
ଯେ ପ୍ରଭୁ ନରଦେହବନ୍ତ ॥୨୬
ସେ ରାମ ପାଦତଳେ ମୁହିଁ ।
ସହସ୍ରେ ପ୍ରଣାମ କରଇ ॥୨୭
ଶୁଣ ରାଜନ ମନତୋଷେ ।
ଏବେ ଯେ ଭାରତବରଷେ ॥୨୮
ନର ନାରାୟଣ ସେ ହରି ।
କଳ୍ପେ ପର୍ଯ୍ୟନ୍ତ ଦେହଧରି ॥୨୯
ସାଧୁଙ୍କ ପରିତ୍ରାଣ ପାଇଁ ।
ସଂସାରେ ରୂପବନ୍ତ ହୋଇ ॥୩୦
ଭ୍ରମନ୍ତି ଆତ୍ମାଗୁଣ ମତେ ।
ନାରଦ ତାକୁ ଯଥୋଚିତେ ॥୩୧
ଭକ୍ତିରେ ସାଧୁଜନ ମେଳେ ।
ସ୍ତୁତି କରନ୍ତି ଯେ ନିଶ୍ଚଳେ ॥୩୨
ନମସ୍ତେ ସ୍ୱଭାବ-ସୁଶୀଳ ।
ତୋ ରୂପ ଚରିତ୍ର ନିର୍ମଳ ॥୩୩
ଋଷିଙ୍କ ବର ତୁ ଠାକୁର ।
ତୋତେ ମୋହର ନମସ୍କାର ॥୩୪
ନର-ନାରାୟଣ ଶରୀର ।
ପରମହଂସ ତୁ ଠାକୁର ॥୩୫
ସକଳ ଆତ୍ମଭୂତ ତୁହି ।
ତୋ' ପାଦପଦ୍ମେ ପ୍ରଣମଇଁ ॥୩୬
ସକଳ କର୍ତ୍ତା ତୁ ଈଶ୍ୱର ।
ନାହିଁ ତୋହର ଅହଙ୍କାର ॥୩୭
ତୁ ଯେ ମାନବ କଳେବର ।
ଶରୀରଭୋଗ ନାହିଁ ତୋର ॥୩୮
ସକଳ ଦେଖୁ ତୁ ଠାକୁର ।
ଗୁଣରେ ଦୋଷ ନାହିଁ ତୋର ॥୩୯
ସକଳ ଗୁଣେ ତୋ' ବିହାର ।
ସର୍ବବିଷୟେ ନିର୍ବିକାର ॥୪୦
ତୋହର ତହିଁ ଯା'ର ମନ ।
ତାହାର ସଂସାର ଖଣ୍ଡନ ॥୪୧
ଦାରା ତନୟ ଧନ ଘର ।
ଏଣେ ଅର୍ପିତ ମନ ଯା'ର ॥୪୨
ସେ ତୋତେ ପାଇବେଟି କାହିଁ ।
ଶ୍ରମ କେବଳ ତାଙ୍କ ଦେହୀ ॥୪୩
ଏ ମୋର ମୂଢ଼ମତି ତୁହି ।
ବିନାଶ କର ଭାବଗ୍ରାହୀ ॥୪୪
ଏ ତୋର ପାଦେ ମୋର ମନ ।
ନିଶ୍ଚଳେ ରହୁ ଭଗବାନ ॥୪୫

Dr. Sudhanshu Sekhar Mishra

ଏ ଯେ ଭାରତବରଷର ।
ପର୍ବତ ଅଛନ୍ତି ଅପାର ॥୪୬
ମଳୟ ଋଷଭ କୂଟକ ।
ମଙ୍ଗଳ ପ୍ରସ୍ଥ ଯେ ମୈନାକ ॥୪୭
କୋଲ୍ଲ ସହ୍ୟ ଦ୍ରୋଣ ତ୍ରିକୂଟ ।
ଦେବଗିରି ବିନ୍ଧ୍ୟ ବେଙ୍କଟ ॥୪୮
ବାରିଧାର ଯେ ଋଷ୍ୟମୂକ ।
ଋକ୍ଷଗିରି ଯେ ଗୋକାମୁଖ ॥୪୯
ପାରିଯାତ୍ର ଯେ ଶୁକ୍ତିମାନ ।
ଚିତ୍ରକୂଟ ଯେ ଗୋବର୍ଦ୍ଧନ ॥୫୦
କାମଗିରି କକୁଭ ନୀଳ ।
ରୈବତକ ଯେ ଇନ୍ଦ୍ରକୀଳ ॥୫୧
ମହେନ୍ଦ୍ର ଶ୍ରୀଶୈଳ ସମେତେ ।
ଅଛନ୍ତି ଶତ ସସ୍ର ମତେ ॥୫୨
ଆବର ନଦନଦୀ ଆଦି ।
ଶତସହସ୍ର ଯେ ପ୍ରସିଦ୍ଧି ॥୫୩
ଚନ୍ଦ୍ରବସା ଯେ ତାମ୍ରପର୍ଣ୍ଣୀ ।
ଅବଟୋଦା ଯେ ପୟସ୍ୱିନୀ ॥୫୪
କୃତମାଳା କାବେରୀ ପୁଣ୍ୟା ।
ଶର୍କରାବର୍ତ୍ତା କୃଷ୍ଣା ବେଣ୍ୟା ॥୫୫
ବୈହାୟସୀ ଯେ ତୁଙ୍ଗଭଦ୍ରା ।
ଭୀମରଥୀ ତାପ୍ତି ନିର୍ବିନ୍ଧ୍ୟା ॥୫୬
ଗୋଦାବରୀ ରେବା ସୁରସା ।
ପୟୋଷ୍ଣୀ ନର୍ମଦା ଯେ ବିଶ୍ୱା ॥୫୭
ଚର୍ମଣ୍ୱତୀ ଶୋଣ ତ୍ରିସାମା ।
ସରୟୂ ଶତଦ୍ରୁ ସୁଷୋମା ॥୫୮
ବ୍ରହ୍ମପୁତ୍ର ଯେ ମନ୍ଦାକିନୀ ।
ଯମୁନା ବିତସ୍ତା ଅସିକ୍ନୀ ॥୫୯
ମହାନଦୀ ଯେ ବେଦସ୍ମୃତି ।
ଋଷିକୁଲ୍ୟା ଯେ ରୋଧସ୍ୱତୀ ॥୬୦
କୌଶିକୀ ସିନ୍ଧୁ ସରସ୍ୱତୀ ।
ଚନ୍ଦ୍ରଭାଗା ଯେ ଷଷ୍ଠବତୀ ॥୬୧
ଦୃଶଦ୍ୱତୀ ପୁଣି ଗୋମତୀ ।
ମରୁତବୃଦ୍ଧା ସପ୍ତବତୀ ॥୬୨

ଏ ପୁଣ୍ୟଜଳ ସ୍ନାନପାନ ।
କରି ତରନ୍ତି ପ୍ରକାଜନ ॥୬୩
ତତ୍ତ୍ୱଜ୍ଞ-ଯୋଗୀ ଋଷିମାନେ ।
କର୍ମ କରନ୍ତି ଏହି ସ୍ଥାନେ ॥୬୪
ଏହି ବରଷେ ହେ ରାଜନ ।
କର୍ମରୁ ପ୍ରାଣୀ ହୋନ୍ତି ଜନ୍ମ ॥୬୫
ଶୁକ୍ଳ ଲୋହିତ କୃଷ୍ଣ ବର୍ଣ୍ଣ ।
କର୍ମରୁ ଲଭେ ପ୍ରାଣୀ ଜନ୍ମ ॥୬୬
ସାତ୍ତ୍ୱିକ ରାଜସ ତାମସ ।
କର୍ମରେ ଦେବତା ମାନସ ॥୬୭
ଯେ ପ୍ରାଣୀ ଦୃଢ କରେ ମନ ।
ସକଳ-ତୀର୍ଥେ କୃଷ୍ଣନାମ ॥୬୮
ସ୍ୱର୍ଗ ନରକ ଭୂମିଭାଗ ।
କର୍ମଅଧୀନେ କରେ ଭୋଗ ॥୬୯
ଯେ ପ୍ରାଣୀ ସର୍ବଭୂତପର ।
କୃଷ୍ଣରେ ମତିଚି ଯାହାର ॥୭୦
ସର୍ବଭୂତରେ ଆତ୍ମା ସେହି ।
ଅଖିଳ-ବ୍ରହ୍ମାଣ୍ଡ-ଗୋସାଇଁ ॥୭୧
ସେ ବାସୁଦେବ ଚକ୍ରଧର ।
ତାହାର ତହିଁ ମତି ଯା'ର ॥୭୨
ଭକତିଯୋଗ ଦୃଢ଼ତାରେ ।
ସେ ପ୍ରାଣୀ କର୍ମବନ୍ଧୁ ତରେ ॥୭୩
ମହାପୁରୁଷ ପ୍ରସଙ୍ଗରେ ।
ହେଳାରେ ଶ୍ରଦ୍ଧାରେ ବା କରେ ॥୭୪
ଦେବେ ତାହାର ଗୁଣ-କର୍ମ ।
ଆନନ୍ଦେ କରନ୍ତି ଗାୟନ ॥୭୫
ଧନ୍ୟ ଜୀବନ ତା'ର ସାର ।
ମୁକୁନ୍ଦ ପାଦେ ମତି ଯା'ର ॥୭୬
ଭାରତେ ମାନବ-ଜନ୍ମରେ ।
ସେ ପ୍ରାଣୀ ଶ୍ରେଷ୍ଠ ସର୍ବଠାରେ ॥୭୭
ଦୁଷ୍କର-ଜପ-ତପମାନ ।
ତଥିରେ କି ଅବା କାରଣ ॥୭୮
ଯଜନ ଆଦି ଷଟକର୍ମ ।
ଭକ୍ତି-ବିହୀନେ ନିଷ୍କାରଣ ॥୭୯

ପ୍ରଭୁ-ପଦାରବିନ୍ଦ ସାର ।
ସୁମତି ନାହିଁଟି ଯାହାର ॥୮୦
କଳ୍ପ-ଆୟୁଷ ସୁଖମାନ ।
ଏହୁ ସକଳ ବ୍ୟର୍ଥଶ୍ରମ ॥୮୧
କ୍ଷଣେ ଆୟୁଷ ଭାରତରେ ।
ମନ ଯାହାର କୃଷ୍ଣଠାରେ ॥୮୨
ସେ ପ୍ରାଣୀ ସର୍ବଶ୍ରେଷ୍ଠ ହୋଇ ।
ତାହାର ସମ କେହି ନାହିଁ ॥୮୩
ପ୍ରାଣ-ପ୍ରୟାଣ ସମୟରେ ।
ଯେବେ ମାନସେ କୃଷ୍ଣ-ସ୍ମରେ ॥୮୪
କ୍ଷଣକେ କର୍ମକୁ ଛେଦଇ ।
ବୈକୁଣ୍ଠପଦକୁ ଲଭଇ ॥୮୫
ବୈକୁଣ୍ଠକଥା ସୁଧାରସ ।
ଯେ ସ୍ଥଳେ ନ ହୁଏ ପ୍ରକାଶ ॥୮୬
କୃଷ୍ଣଆଶ୍ରିତ ପ୍ରାଣୀମାନ ।
ଯହିଁ ନାହାନ୍ତି ସାଧୁଜନ ॥୮୭
ସୁଯଜ୍ଞ-ମହୋତ୍ସବ ଆଦି ।
ଯେ ସ୍ଥଳେ ନାହିଁ ଭକ୍ତି ସିଦ୍ଧି ॥୮୮
ଇନ୍ଦ୍ରର ପୁର ଯେବେ ହୋଇ ।
ତହିଁରେ ବାସ ନ ଯୋଗାଇ ॥୮୯
ମାନବ ଜନ୍ମ ହୋଇ ନର ।
ଜ୍ଞାନେ ଅଜ୍ଞାନ ଧ୍ୱଂସ ଯା'ର ॥୯୦
ତଥାପି ପ୍ରଭୁଙ୍କ ଭଜନ ।
ତେଜଇ ହୋଇ ମତେ ଛନ୍ନ ॥୯୧
ନାନାଯୋନିରେ ଜନ୍ମ ହୋଇ ।
କର୍ମବନ୍ଧନେ ସେ ପଡଇ ॥୯୨
ଶ୍ରଦ୍ଧାରେ ଯେତେ ଯେତେ ନରେ ।
ଘୃତ ଦିଅନ୍ତି ଅଗ୍ନିଠାରେ ॥୯୩
ନାନା-ଦେବତା ରୂପ ହୋଇ ।
ଯଜ୍ଞ ଭୁଞ୍ଜନ୍ତି ଭାବଗ୍ରାହୀ ॥୯୪
ମାୟାରେ ପୃଥକ ସେ ହୋଇ ।
ତତ୍ତ୍ୱ ତା ବିନୁ କେହି ନାହିଁ ॥୯୫
ତାଙ୍କୁ ଭଜନ୍ତି ଯେତେ ପ୍ରାଣୀ ।
ତାହାଙ୍କୁ ମନୁଷ୍ୟରେ ଗଣି ॥୯୬

Dr. Sudhanshu Sekhar Mishra

ଇଚ୍ଛା ନ କଲେ ଫଳ ଦେଇ ।
ଯେଣୁ ତା ନାମ ଭାବଗ୍ରାହୀ ॥୯୭
ପଦପଲ୍ଲବ ଭଜନରେ ।
ଯାହାର ମନ ନିରନ୍ତରେ ॥୯୮
ସେ ଭକ୍ତପ୍ରାଣୀମାନଙ୍କରେ ।
କରୁଣା କରନ୍ତି ବେଭାରେ ॥୯୯
ଦେବେ ବୋଲନ୍ତି ସ୍ୱର୍ଗେ ଥାଇ ।
ଭାରତବର୍ଷେ ଜନ୍ମ ହୋଇ ॥୧୦୦
ଯହିଁ ହରିର ସ୍ମୃତି ଜାତ ।
ହରି ଚରଣେ ସେବାବନ୍ତ ॥୧୦୧

ଶୁକ ଉବାଚ

ଜମ୍ବୁଦ୍ୱୀପରେ ନୃପବର ।
ଯେ ଅଷ୍ଟ ଉପଦ୍ୱୀପ ସାର ॥୧୦୨
ଅଶ୍ୱ ଖୋଜନ୍ତେ ବସୁନ୍ଧରୀ ।
ସଗରପୁତ୍ରଙ୍କରେ କରି ॥୧୦୩
ଗର୍ତ୍ତ ହୋଇଲା ଚାରିଦିଗ ।
ଏଣୁ ଏ ଅଷ୍ଟଦ୍ୱୀପ ଭାଗ ॥୧୦୪
ଶୁଣ ହେ ପରୀକ୍ଷ ରାଜନ ।
ଯେ ଅଷ୍ଟ ଉପଦ୍ୱୀପ ନାମ ॥୧୦୫
ସୁବର୍ଣ୍ଣପ୍ରସ୍ଥ ନାମେ ଏକ ।
ଚନ୍ଦ୍ରଶୁକ୍ଳ ନାମ ଆରକ ॥୧୦୬
ତୃତୀୟ ନାମ ଆବର୍ତ୍ତନ ।
ଚତୁର୍ଥ ମନ୍ଦରହରିଣ ॥୧୦୭
ରମଣକ ନାମ ପଞ୍ଚମ ।
ଷଷ୍ଠର ପାଞ୍ଚଜନ୍ୟ ନାମ ॥୧୦୮
ସିଂହଳ ଲଙ୍କା ନାମ ହୋଇ ।
ଆବର ଉପଦ୍ୱୀପ ଦୁଇ ॥୧୦୯
ବରଷ-ବିଭାଗ ସମେତେ ।
ଜମ୍ବୁଦ୍ୱୀପର ଯଥୋଚିତେ ॥୧୧୦
ତୁମ୍ଭ ପ୍ରଶନ ଅନୁସାରେ ।
ଭୋ ନୃପ କହିଲୁ ତୁମ୍ଭରେ ॥୧୧୧
ଦ୍ୱୀପ ବରଷ ବନ ଗିରି ।
ସକଳକର୍ତ୍ତା ନରହରି ॥୧୧୨
ସେ ପ୍ରଭୁ ଚରଣାରବିନ୍ଦେ ।
ମୋ' ମନ ରହୁ ଅପ୍ରମାଦେ ॥୧୧୩
କହଇ ବିପ୍ର ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ॥୧୧୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଜମ୍ବୁଦ୍ୱୀପବର୍ଣ୍ଣନଂ ନାମ
ଏକୋନବିଂଶୋଽଧ୍ୟାୟଃ ॥

---

## ବିଂଶ ଅଧ୍ୟାୟ

ଶୁକ ଉବାଚ

ଏ ଅନନ୍ତରେ ହେ ରାଜନ ।
ପ୍ଲକ୍ଷ ଆଦି ଯେ ଦ୍ୱୀପମାନ ॥୧
ବରଷ-ଲକ୍ଷଣ ପ୍ରମାଣ ।
କହିବା ସାବଧାନେ ଶୁଣ ॥୨
ଜମ୍ବୁଦ୍ୱୀପ ଯେତେ ପ୍ରମାଣ ।
ପ୍ଲକ୍ଷ ଯେ ତହିଁରେ ଦ୍ୱିଗୁଣ ॥୩
ଜମ୍ବୁବୃକ୍ଷେ ଏ ଦ୍ୱୀପ ଖ୍ୟାତ ।
ପ୍ଲକ୍ଷରେ ସେ ଦ୍ୱୀପ ବିଖ୍ୟାତ ॥୪
ସପତଜିହ୍ୱ ଅଗ୍ନି ତହିଁ ।
ଅପରେ ଛନ୍ତି ଯେତେ ରହି ॥୫
ପ୍ରିୟବ୍ରତର ସେ ନନ୍ଦନ ।
ଇଧ୍ମଜିହ୍ୱ ତାହାର ନାମ ॥୬
ସେ ଦ୍ୱୀପ ସମଭାଗ କରି ।
ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥୭
ସପତପୁତ୍ରେ ଯେଝାମତେ ।
ସପ୍ତବରଷ ଯଥୋଚିତେ ॥୮
କଳ୍ପେ ପର୍ଯ୍ୟନ୍ତ ଭୋଗକଲେ ।
ସ୍ୱଚ୍ଛନ୍ଦେ ଅବନୀ ମଣ୍ଡଳେ ॥୯
ବରଷ ନାମ ଶୁଣ ତୁହି ।
ଶିବ ଯବସ ଶାନ୍ତ ହୋଇ ॥୧୦
ସୁଭଦ୍ର କ୍ଷେମ ଯେ ଅମୃତ ।
ଅଭୟ ନାମ ଏ ଯେ ସପ୍ତ ॥୧୧
ତହିଁରେ ଛନ୍ତି ଗିରି-ସାତ ।
ନଦୀ ହିଁ ସାତ ତହିଁ ଖ୍ୟାତ ॥୧୨
ଏଥେ ଯେତେକ ଗିରିମାନ ।
ଅଛନ୍ତି ଶୁଣ ହେ ରାଜନ ॥୧୩
ମଣିକୂଟ ଯେ ଇନ୍ଦ୍ରସେନ ।
ବଜ୍ରକୂଟ ଯେ ଜ୍ୟୋତିଷ୍ମାନ ॥୧୪
ହିରଣ୍ୟଷ୍ଠୀବ ମେଘମାଳ ।
ସୁପର୍ଣ୍ଣଶୃଙ୍ଗ ସେତୁଶୈଳ ॥୧୫
ସାବିତ୍ରୀ ଆଙ୍ଗିରସୀ ବେନି ।
ଅରୁଣା ନୃମଣା ତଟିନୀ ॥୧୬
ସୁପ୍ରଭାତା ଯେ ସତ୍ୟମ୍ଭରା ।
ବିଖ୍ୟାତ ଆର ରତମ୍ଭରା ॥୧୭
ଏ ମହାନଦୀମାନେ ତହିଁ ।
ଏଣୁ ଏ ସ୍ଥଳୀ ବିରାଜଇ ॥୧୮
ତହିଁର ଜଳ ସ୍ନାନ ପାନେ ।
ମାନବ-ପଶୁ-ଜୀବମାନେ ॥୧୯
ସକଳ ପାପ ଦୂର କରି ।
ସୁଖେଣ ଅଛନ୍ତି ବିହରି ॥୨୦
ଦେବଙ୍କ ଆୟୁଷ ପ୍ରମାଣେ ।
ଜୀବନ୍ତି ତହିଁ ପ୍ରାଣୀମାନେ ॥୨୧
ଯଜ୍ଞ-ଯୋଗ ନାନା ପ୍ରକାରେ ।
ସୂର୍ଯ୍ୟଙ୍କୁ ପୂଜନ୍ତି ସେ ନରେ ॥୨୨
ସ୍ତୁତି କରନ୍ତି ଏ ବଚନେ ।
ଶୁଣ ରାଜନ ସାବଧାନେ ॥୨୩
ବିଷ୍ଣୁଙ୍କ ସ୍ୱରୂପକୁ ଧରି ।
ଅଖିଳ ପ୍ରକାଶ ଯେ କରି ॥୨୪

Dr. Sudhanshu Sekhar Mishra

ତୁ ସତ୍ୟବ୍ରହ୍ମ ଯେ ପୁରୁଷ ।
ସକଳଭୂତେ ତୋର ବାସ ॥୨୫

ତୁ ଯେ ଅଶେଷ ବହୁ ନାମ ।
ତୋ ପାଦେ ଆମ୍ଭର ପ୍ରଣାମ ॥୨୬

ସେ ପଞ୍ଚଦ୍ୱୀପ ପ୍ଲକ୍ଷ ଆଦି ।
ଏଥିରେ ଯେତେକ ପ୍ରସିଦ୍ଧି ॥୨୭

ସେ ଦ୍ୱୀପବାସୀଙ୍କ ଆୟୁଷ ।
ଇନ୍ଦ୍ରିୟ ବଳ ଯେ ସାହସ ॥୨୮

ସ୍ୱଇଚ୍ଛାମତେ ସେ ହୁଅଇ ।
ଉତପତ୍ତିରୁ ଯେଝାତହିଁ ॥୨୯

ପ୍ଲକ୍ଷଦ୍ୱୀପର ଚାରିପାଶେ ।
ଇକ୍ଷୁରସ ସିନ୍ଧୁ ପ୍ରକାଶେ ॥୩୦

ଏହାକୁ ଦ୍ୱିଗୁଣ ବିସ୍ତାର ।
ଶାଲ୍ମଳଦ୍ୱୀପ ନୃପବର ॥୩୧

ସୁରାସମୁଦ୍ର ବେଢି ତାରେ ।
ଅଛଇ ବଳୟ ଆକାରେ ॥୩୨

ସେ ଦ୍ୱୀପେ ଯା'ର ଅଧିକାର ।
ପ୍ରିୟବ୍ରତର ସେ କୁମର ॥୩୩

ଯଜ୍ଞବାହୁ ତାହାର ନାମ ।
ସେ ସାଧୁ ବିଷ୍ଣୁ ପରାୟଣ ॥୩୪

ଏ ଦ୍ୱୀପ ସପ୍ତଭାଗ କରି ।
ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥୩୫

ବିଭାଗେ ତା'ର ସପ୍ତସୁତେ ।
ନେଲେ ସେ ଯେ ଯାହାର ମତେ ॥୩୬

ସେ ସାତକୁମରଙ୍କ ନାମ ।
ଶୁଣ ରାଜନ ସାବଧାନ ॥୩୭

ପାରିଭଦ୍ର ଯେ ସୁରୋଚନ ।
ଦେବବର୍ଷ ଯେ ଆପ୍ୟାୟନ ॥୩୮

ରମଣକ ଯେ ଅବିଜ୍ଞାତ ।
ସୌମନସ୍ୟ ଏ ଭାଇ ସାତ ॥୩୯

ଏହି ବରଷେ ନଦୀ ଗିରି ।
ଏତେ ଅଛନ୍ତି ଦଣ୍ଡଧାରୀ ॥୪୦

ଶତଶୃଙ୍ଗ ଯେ ପୁଷ୍ପବର୍ଷ ।
ମୁକୁନ୍ଦ କୁନ୍ଦ ଯେ ସ୍ୱରସ ॥୪୧

ସହସ୍ରଶ୍ରୁତିର ସହିତେ ।
ବାମଦେବ ସପ୍ତପର୍ବତେ ॥୪୨

ପ୍ରଥମ ନଦୀ ଅନୁମତି ।
ଦ୍ୱିତୀୟ ସିନୀବାଲୀ ଖ୍ୟାତି ॥୪୩

ତୃତୀୟ ସରସ୍ୱତୀ ହୋଇ ।
କୁହୁ ରଜନୀ ପୁଣ ଦୂଇ ॥୪୪

ଆବର ନନ୍ଦା ରାକା ପୁଣ ।
ନଦୀଙ୍କ ଏହି ସପ୍ତନାମ ॥୪୫

ବର୍ଷବାସୀ ପୁରୁଷ ନାମ ।
ଶ୍ରବଣ କର ତୁ ରାଜନ ॥୪୬

ଶ୍ରୁତଧର ଯେ ବୀର୍ଯ୍ୟଧର ।
ବସୁନ୍ଧର ଯେ ଇଷନ୍ଧର ॥୪୭

ଏ ଯେ ବରଷ ପ୍ରାଣୀମାନେ ।
ତପ ଆରଧି ଦିନେଦିନେ ॥୪୮

ସେ ରାଜା ଭଗବାନ ସୋମ ।
ତାହାଙ୍କୁ କରନ୍ତି ବନ୍ଦନ ॥୪୯

ଭୋ ନାଥ ତୋର ସୁଧାରସ ।
ପିତୃ ଦେବତାଙ୍କ ସନ୍ତୋଷ ॥୫୦

ଆମ୍ଭେ ତୋ ଚରଣେ ଶରଣ ।
ଅମୃତପଦ ଯେ କାରଣ ॥୫୧

ଔଷଧିନାଥ ନମୋନମ ।
ନମସ୍ତେ କଳାପୂର୍ଣ୍ଣ ସୋମ ॥୫୨

ଘୃତ-ସମୁଦ୍ର ମଧ୍ୟଦେଶେ ।
କୁଶଦ୍ୱୀପ ନାମ ପ୍ରକାଶେ ॥୫୩

କ୍ରମେ ସେ ସିନ୍ଧୁଦ୍ୱୀପ ମାନ ।
ପୂର୍ବକୁ ଅପରେ ଦ୍ୱିଗୁଣ ॥୫୪

ପ୍ରିୟବ୍ରତର ସେ ନନ୍ଦନ ।
ହିରଣ୍ୟରେତା ତା'ର ନାମ ॥୫୫

କୁଶଦ୍ୱୀପରେ ସେ ରାଜନ ।
ତାହାର ସପତ ନନ୍ଦନ ॥୫୬

ସେ ଦ୍ୱୀପ କ୍ରମେ ଭାଗକରି ।
ପୁତ୍ରଙ୍କୁ ଦେଲେ ଦଣ୍ଡଧାରୀ ॥୫୭

ସପତ ବରଷକୁ କଲା ।
ଯେ ଯାହାମତେ ତାଙ୍କୁ ଦେଲା ॥୫୮

ସକଳ ସମ୍ପଦ ଛାଡିଲା ।
ଆପଣେ ତପ ଆଶ୍ରେ କଲା ॥୫୯

ବସୁଦାନ ଯେ ସ୍ତୁତ୍ୟବ୍ରତ ।
ଦୃଢ଼ରୁଚି ଯେ ନାଭିଗୁପ୍ତ ॥୬୦

ବସୁ ବିବିକ୍ତ ନାମ ଆଉ ।
ବାମଦେବ ଯେ ପୁତ୍ରେ ଏହୁ ॥୬୧

ନଦୀ ପର୍ବତ ସୀମା କରି ।
ବେଭାରେ ଦେଲା ଦଣ୍ଡଧାରୀ ॥୬୨

ଗିରିଙ୍କ ନାମ ମହୀପାଳ ।
ଚକ୍ର ଚତୁଃଶୃଙ୍ଗ କପିଳ ॥୬୩

ଚିତ୍ରକୂଟ ଯେ ଊର୍ଦ୍ଧ୍ୱରୋମ ।
ଦେବାନୀକ ଗିରି ଦ୍ରବିଣ ॥୬୪

ରସକୁଲ୍ୟା ଯେ ମିତ୍ରବୃନ୍ଦା ।
ମଧୁକୁଲ୍ୟା ଯେ ଶ୍ରୁତବିନ୍ଦା ॥୬୫

ଦେବଗର୍ଭା ଯେ ଘୃତଚ୍ୟୁତା ।
ମନ୍ତ୍ରମାଳା ଗିରି ଦୁହିତା ॥୬୬

ଏ ସପ୍ତନଦୀ ଜଳପାନେ ।
ସୁଖେ ବଞ୍ଚନ୍ତି ତହିଁ ଜନେ ॥୬୭

ଅଗ୍ନିଦେବତାଙ୍କୁ ଯେ ସ୍ମରି ।
ଅଛନ୍ତି ଏକମନ କରି ॥୬୮

ପରମବ୍ରହ୍ମର ମୂରତି ।
ତୋ ରୂପ ଯୋଗୀଜନେଚିନ୍ତି ॥୬୯

ସଂସାରେ ଯେତେ ସାଧୁଜନ ।
ଯଜ୍ଞେ କରନ୍ତି ତୋ ଅର୍ଚ୍ଚନ ॥୭୦

ଏମନ୍ତେ ନାନାସ୍ତୁତି ମତେ ।
ଅଗ୍ନି ପୂଜନ୍ତି ଯଥୋଚିତେ ॥୭୧

କ୍ଷୀରସିନ୍ଧୁ ମଧ୍ୟ ଭାଗରେ ।
ଦ୍ୱୀପ ଯେ କ୍ରୌଞ୍ଚ ନାମ ଧରେ ॥୭୨

କ୍ରୌଞ୍ଚନାମେ ଯେ ଗିରିବର ।
ତା ନାମେ ନାମ ସେ ଦ୍ୱୀପର ॥୭୩

ପ୍ରିୟବ୍ରତର ପୁତ୍ର ହୋଇ ।
ଘୃତପୃଷ୍ଠ ନାମ ବହଇ ॥୭୪

ସେ ଦ୍ୱୀପେ ରାଜତ୍ୱ ତାହାର ।
ସପତ ତାହାଙ୍କ କୁମର ॥୭୫

Dr. Sudhanshu Sekhar Mishra

ସପ୍ତବରଷ ପୁତ୍ରେ ଦେଇ ।
ନିଶ୍ଚଳେ କୃଷ୍ଣଙ୍କୁ ଭଜଇ ॥୭୬
ମଧୁରୁହ ଯେ ମେଘପୃଷ୍ଠ ।
ସୁଧାମା ଆମ ଯେ ଭ୍ରାଜିଷ୍ଠ ॥୭୭
ଲୋହିତାର୍ଣ୍ଣ ଯେ ବନସ୍ପତି ।
ଏ ସପ୍ତ ନାମେ ବର୍ଷ ଖ୍ୟାତି ॥୭୮
ଶୁକ୍ଳ ବର୍ଦ୍ଧମାନ ଭୋଜନ ।
ଉପବର୍ହଣ ନାମେ ଆନ ॥୭୯
ନନ୍ଦ ନନ୍ଦନ ବେନି ଖ୍ୟାତ ।
ସର୍ବତୋଭଦ୍ର ମିଶି ସାତ ॥୮୦
ଅଭୟା ଶୁକ୍ଳା ତୀର୍ଥବତୀ ।
ଅମୃତୌଘା ଯେ ରୂପବତୀ ॥୮୧
ଆର୍ଯ୍ୟକା ଯେ ପବିତ୍ରବତୀ ।
ଏ ସପ୍ତନଦୀ ନାମ ଖ୍ୟାତି ॥୮୨
ଏସବୁ ନଦୀଙ୍କର ଜଳ ।
ଅତୀବ ପବିତ୍ର ନିର୍ମଳ ॥୮୩
ସେ ଜଳ କରି ନିତ୍ୟେ ପାନ ।
କ୍ରୌଞ୍ଚଦ୍ୱୀପେ ସେ ଯେତେ ଜନ॥୮୪
ପୁରୁଷ ଋଷଭ ଦ୍ରବିଣ ।
ଦେବକ ନାମରେ ସେ ପୁଣ ॥୮୫
ଯାହାର ଜଳ ପାନ କରି ।
ଦେବଦେହକୁ ପ୍ରାଣୀ ଧରି ॥୮୬
ପୂଜନ୍ତି ବରୁଣଙ୍କୁ ଯାର ।
ସଲିଳମୟ କଳେବର ॥୮୭
ହେ ଆପମୟ ତୁ ଈଶ୍ୱର ।
ଭୁବନ ପବିତ୍ର ତୁ କର ॥୮୮
ତୁମ୍ଭର ପାଦରେ ବନ୍ଦନ ।
ଆମ୍ଭରେ ତେଣୁ କରି ମନ ॥୮୯
ତୁମ୍ଭର ଆପରେ ବହନ ।
ଆମ୍ଭର ପୂତ କର ମନ ॥୯୦
ଆମ୍ଭଙ୍କୁ ଅନୁକମ୍ପା କର ।
ବାହ୍ୟାଭ୍ୟନ୍ତର ପାପ ହର ॥୯୧
ଏ ଅନନ୍ତରେ ପରୀକ୍ଷିତ ।
ଶାକଦ୍ୱୀପର ଯେ ତଦନ୍ତ ॥୯୨

ବତିଶଲକ୍ଷ ଯେ ଯୋଜନ ।
ଶାକଦ୍ୱୀପର ପରିମାଣ ॥୯୩
ଦଧିସମୁଦ୍ର ବେଢି ତା'ରେ ।
ଅଛି ଯେ ବଳୟ ପ୍ରକାରେ ॥୯୪
ତହିଁରେ ଶାକ-ତରୁବର ।
ସୁଗନ୍ଧ କରଇ ବିସ୍ତାର ॥୯୫
ପ୍ରିୟବ୍ରତର ସେ କୁମର ।
ମେଧାତିଥି ନାମ ଯାହାର ॥୯୬
ରାଜତ୍ୱପଣ କରି ତହିଁ ।
ଶାକଦ୍ୱୀପକୁ ସେ ପାଳଇ ॥୯୭
ଦ୍ୱୀପକୁ ସାତଭାଗ କରି ।
ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥୯୮
ତାହାଙ୍କ ପୁତ୍ରଙ୍କର ନାମ ।
କହିବା ଶୁଣ ହେ ରାଜନ ॥୯୯
ପବମାନ ଯେ ମନୋଭାବ ।
ଧୂମ୍ରାନୀକ ଯେ ପୁରୋଜବ ॥୧୦୦
ଚିତ୍ରରେଫ ଯେ ବହୁରୂପ ।
ବିଶ୍ୱାଧାର ଏ ସାତନୃପ ॥୧୦୧
ସପ୍ତବରଷ ଯେଝାମତେ ।
ଦେଇ ଏ ପୁତ୍ରେ ଯଥୋଚିତେ॥୧୦୨
ପ୍ରଭୁପାଦରେ ଚିତ୍ତ ଦେଲା ।
ତପୋବନରେ ସେ ରହିଲା ॥୧୦୩
ସେ ଦ୍ୱୀପ ପର୍ବତଙ୍କ ନାମ ।
କହିବା ଶୁଣ ହେ ରାଜନ ॥୧୦୪
ସହସ୍ରସ୍ରୋତ ଦେବପାଳ ।
ମହାନସ ଶତକେସର ॥୧୦୫
ଗିରି ବଳଭଦ୍ର ଈଶାନ ।
ଉରୁଶୃଙ୍ଗ ଯେ ସାତନାମ ॥୧୦୬
ଅପରାଜିତା ନିଜଧୃତି ।
ଆୟୁର୍ଦ୍ଦା ଯେ ସହସ୍ରଶ୍ରୁତି ॥୧୦୭
ଉଭୟସୃଷ୍ଟି ପଞ୍ଚପଦୀ ।
ଅନଘା ଆଦି ସପ୍ତନଦୀ ॥୧୦୮
ସେ ବରଷର ଯେ ପୁରୁଷ ।
ଋତବ୍ରତ ଆଦି ବିଶେଷ ॥୧୦୯

ପବନରୂପୀ ଭଗବାନ ।
ତାହାଙ୍କୁ କରନ୍ତି ସେବନ ॥୧୧୦
ପରମଯୋଗ-ସମାଧିରେ ।
ସ୍ତୁତି କରନ୍ତି ସେ ପ୍ରଭୁରେ ॥୧୧୧
ଭୋ ଦେବ ପବନ ଆକାର ।
ତୋତେ ଆମ୍ଭର ନମସ୍କାର ॥୧୧୨
ପ୍ରାଣୀଙ୍କ ଅନ୍ତର ବାହାରେ ।
ତୁ ନାଥ ଥାଉ ନିରନ୍ତରେ ॥୧୧୩
ଦଧିସିନ୍ଧୁ ପରେ ରାଜନ ।
ପୁଷ୍କରଦ୍ୱୀପ ଯେ ଦ୍ୱିଗୁଣ ॥୧୧୪
ସ୍ୱାଦୁଜଳସିନ୍ଧୁ ତାହାରେ ।
ବେଢିଛି ବଳୟ ଆକାରେ ॥୧୧୫
ତହିଁ କମଳ ବିରାଜିତ ।
ସୁବର୍ଣ୍ଣମୟ ଲକ୍ଷପତ୍ର ॥୧୧୬
ସେହି କମଳେ ଭଗବାନ ।
ବସନ୍ତି ଯେ କମଳାସନ ॥୧୧୭
ଯାହାର ନାମ ଦ୍ୱୀପବର ।
ଲୋକପ୍ରସିଦ୍ଧ ଯେ ପୁଷ୍କର ॥୧୧୮
ଏ ଦ୍ୱୀପମଧ୍ୟେ ନୃପବର ।
ପର୍ବତ ମାନସଉତ୍ତର ॥୧୧୯
ବିସ୍ତାର ଅଯୁତଯୋଜନ ।
ଚାରିଦିଗରେ ହେ ରାଜନ ॥୧୨୦
ଇନ୍ଦ୍ରାଦି ଲୋକପାଳଙ୍କର ।
ଅଛଇ ଏଥି ଚାରିପୁର ॥୧୨୧
ମେରୁ ଭ୍ରମନ୍ତେ ଦିନକର ।
ଉପରେ ଭ୍ରମେ ଚକ୍ର ତା'ର ॥୧୨୨
ଏ ଦ୍ୱୀପପତି ବୀତିହୋତ୍ର ।
ପ୍ରିୟବ୍ରତଙ୍କର ଏ ପୁତ୍ର ॥୧୨୩
ଧାତକି ରମଣକ ଦୁଇ ।
ବୀତିହୋତ୍ରର ପୁତ୍ର ହୋଇ ॥୧୨୪
ଏ ଦ୍ୱୀପେ ତା'ଙ୍କ ଅଧିକାର ।
ଶୁଣ ପରୀକ୍ଷ ନୃପବର ॥୧୨୫
ସେ ସ୍ଥଳଲୋକଙ୍କ ସହିତେ ।
ଏହି ସ୍ତୁତିରେ ଯଥୋଚିତେ ॥୧୨୬

Dr. Sudhanshu Sekhar Mishra

ଯେ ବ୍ରହ୍ମରୂପୀ ଭଗବାନ ।
ତାହାଙ୍କୁ କରନ୍ତି ଭଜନ ॥ ୧୨୭
ବର୍ଷଦ୍ୱୟର ବାସୀଗଣ ।
ଭଜନ୍ତି ନିତ୍ୟେ ପଦ୍ମାସନ ॥ ୧୨୮
ଯାହାଙ୍କ ଚରଣାରବିନ୍ଦ ।
ନିତ୍ୟେ ବାଞ୍ଛନ୍ତି ମୁନିବୃନ୍ଦ ॥ ୧୨୯
ଭକ୍ତିଯୋଗରେ ସାଧୁଗଣ ।
ପୂଜନ୍ତି ଯାହାଙ୍କ ଚରଣ ॥ ୧୩୦
ସେ ବ୍ରହ୍ମ ବିଶ୍ୱରୂପ ହୋଇ ।
ଅଖିଳ-ସୃଷ୍ଟିକି ଭିଆଇ ॥ ୧୩୧
ଏ ବ୍ରହ୍ମରୂପୀ ଯେ ଠାକୁର ।
ନମଇଁ ତାହାଙ୍କ ପୟର ॥ ୧୩୨
ଏହାର ପରେ ପରୀକ୍ଷିତ ।
ଲୋକାଲୋକ ନାମେ ପର୍ବତ ॥ ୧୩୩
ତାହାର ମଧ୍ୟେ ଯେଉଁ ସ୍ଥଳ ।
କାଞ୍ଚନଭୂମି ମହୀପାଳ ॥ ୧୩୪
ମେରୁ-ମାନସ ମଧ୍ୟ ଦେଶେ।
କାଞ୍ଚନଭୂମି ଯେ ପ୍ରକାଶେ ॥ ୧୩୫
ଯେଣୁ ଏହାର ଅନନ୍ତରେ ।
ଗତାଗତ ନାହିଁ ଅପରେ ॥ ୧୩୬
ଏଣୁ ଏ ଲୋକାଲୋକ ନାମ।
ଏ ସର୍ବ ଈଶ୍ୱରଭିଆଣ ॥ ୧୩୭
ଏହୁ ଯେ ଭୂଗୋଳ ରାଜନ ।
ପଞ୍ଚାଶକୋଟି ଯେ ବିସ୍ତୀର୍ଣ୍ଣ ॥ ୧୩୮
ପୃଥ୍ୱୀର ଚାରିଭାଗ ସମ ।
ଏ ଲୋକାଲୋକ ଗିରି ନାମ॥ ୧୩୯

ଅଖିଳ ଜଗତର ଗୁରୁ ।
ଯେ ଆତ୍ମଯୋନି ମହାମେରୁ ॥ ୧୪୦
ଅଖିଳ ଲୋକଙ୍କର ହିତେ ।
ଏହା ଉପରେ ଯଥୋଚିତେ ॥ ୧୪୧
ଦିଗଗଜପତିଏ ଚତ୍ୱାରେ ।
ରଖିଲେ କ୍ରମେ ସେ ବେଭାରେ ॥ ୧୪୨
ଏ ଚାରି ଗଜପତି ନାମ ।
ଭୋ ନୃପ ଶୁଣ ତୁ ଆପଣ ॥ ୧୪୩
ଋଷଭ ନାମ ଯେ ଏକର ।
ପୁଷ୍କରଚୂଡ଼ ଯେ ଅପର ॥ ୧୪୪
ଅପରାଜିତ ଯେ ବାମନ ।
ଶେଷ ଦୁଇର ଏହି ନାମ ॥ ୧୪୫
ଏହାଙ୍କ ବଳ ନିମନ୍ତରେ ।
ଅଖିଳ-ବ୍ରହ୍ମାଣ୍ଡ-ଠାକୁରେ ॥ ୧୪୬
ସେନାଦିପାରିଷଦବରେ ।
ନାନା ଆୟୁଧ ଧରି କରେ ॥ ୧୪୭
ସେ ହସ୍ତୀ ରକ୍ଷଣର ପାଇଁ ।
ରଖିଲେ ପ୍ରଭୁ ଭାବଗ୍ରାହୀସ୍ୱ ॥ ୧୪୮
ନାନା ଅଳଙ୍କାରକୁ ଦେଇ ।
ବିଚିତ୍ରବେଶକୁ କରାଇ ॥ ୧୪୯
ଆପଣେ ଗଦା ଧରି କରେ ।
ବୁଲନ୍ତି ଲୋକାଲୋକ ପରେ॥ ୧୫୦
ବରଷ ଦ୍ୱୀପ ନଦୀ ଗିରି ।
ତୁମ୍ଭରେ କହିଲୁ ବିସ୍ତାରି ॥ ୧୫୧
ଲୋକାଲୋକଗିରି ଅନ୍ତରେ ।
ଈଶ୍ୱରସୃଷ୍ଟି ଅଗୋଚରେ ॥ ୧୫୨

ଅଣ୍ଡ ମଧ୍ୟରେ ରବି ସ୍ଥିତି ।
ଭୂମି ସ୍ୱର୍ଗର ମଧ୍ୟବର୍ତ୍ତୀ ॥ ୧୫୩
ସୂର୍ଯ୍ୟ ଭୂମିର ଯେ ଅନ୍ତର ।
କହନ୍ତି ମଧ୍ୟ ବ୍ରହ୍ମାଣ୍ଡର ॥ ୧୫୪
ସୂର୍ଯ୍ୟଅଣ୍ଡ ମଧ୍ୟରେ ମଧ୍ୟ ।
ପଞ୍ଚାଶକୋଟି ଯେ ପ୍ରସିଦ୍ଧ ॥ ୧୫୫
ବୈରାଜରୂପେ ଗ୍ରହେଶ୍ୱର ।
ପ୍ରବିଷ୍ଟ ମୃତାଣ୍ଡ ମଧ୍ୟର ॥ ୧୫୬
ମୃତଅଣ୍ଡରେ ଉଦେ ହୋନ୍ତି ।
ମାର୍ତ୍ତଣ୍ଡ ନାମକୁ ବହନ୍ତି ॥ ୧୫୭
ହିରଣ୍ୟ ଅଣ୍ଡୁ ଯେ ସମ୍ଭବ ।
ତେଣୁ ନାମ ହିରଣ୍ୟଗର୍ଭ ॥ ୧୫୮
ଦିଶ ଆକାଶ ସୂର୍ଯ୍ୟ କରି ।
ବିଭାଗ ହୋଇ ଦଣ୍ଡଧାରୀ ॥ ୧୫୯
ଦେବ ତୀର୍ଯ୍ୟକ ନର ଆଦି ।
ସରୀସୃପ ବୃକ୍ଷ ପ୍ରସିଦ୍ଧି ॥ ୧୬୦
ଆତ୍ମାର ଚକ୍ଷୁରୂପ ସେହି ।
ସେ ସୂର୍ଯ୍ୟ ଅଖିଳ ଗୋସାଇଁ ॥ ୧୬୧
ତା' ଶକ୍ତି ଜଗତେ ପ୍ରକାଶ ।
ଜଗତ ତମ କରେ ନାଶ ॥ ୧୬୨
ବିଷ୍ଣୁର ରୂପ ସେ ସାକ୍ଷତ ।
କହଇ ବିପ୍ର ଜଗନ୍ନାଥ ॥ ୧୬୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟା ସଂହିତାୟାଂ
ପଞ୍ଚମସ୍କନ୍ଧେ ଭୁବନକୋଷବର୍ଣ୍ଣନେ
ବିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଏକବିଂଶ ଅଧ୍ୟାୟ

ଶୁକ ଉବାଚ

ଭୁବନକୋଷ ପରିମାଣ ।
କହିଲୁ ଯେତେକ ଲକ୍ଷଣ ॥୧॥
ଏମନ୍ତ ଦିବିମଣ୍ଡଳର ।
ଲକ୍ଷଣ ଶୁଣ ନୃପବର ॥୨॥
ଚଣକ ବେନିଫାଳ ଯେହ୍ନେ ।
ଏକକୁ ଆରେକ ସମାନେ ॥୩॥
ତେସନ ଧରା ପରିମାଣ ।
ଦିବିମଣ୍ଡଳ ଯେ ସମାନ ॥୪॥
ଏ ବେନି ମଧ୍ୟେ ଯେ ଆକାଶ ।
ସଂଲଗ୍ନ ତା' ଉଭୟ ପାର୍ଶ୍ୱ ॥୫॥
ଏ ମଧ୍ୟଅନ୍ତରୀକ୍ଷେ ରହି । ସୂର୍ଯ୍ୟ
ତ୍ରିଲୋକକୁ ତାପଇ ॥୬॥
ଅୟନ ବେନିଭାଗ ହୋଇ ।
ଉତ୍ତର-ଦକ୍ଷିଣେ ଭ୍ରମଇଁ ॥୭॥
ମନ୍ଦ କ୍ଷିପ୍ର ବା ବେଗସମ ।
ଦିନ ରାତି ବେନି ରାଜନ ॥୮॥
ମକରଠାରୁ ରାଶି ଯେତେ ।
ଦୀର୍ଘ-ହ୍ରସ୍ୱ ଜାଣ ଯୁଗତେ ॥୯॥
ବିଷୁବେ ସମାନକୁ ପାଇ ।
ପୁଣି ଦୀର୍ଘ-ହ୍ରସ୍ୱେ ବଢଇ ॥୧୦
ତୁଳା ମେଷ ବିଷୁବ ପାଇ ।
ଅହୋରାତ୍ର ସମାନ ହୋଇ ॥୧୧
ଏସବୁ ଯେ ପରିବର୍ତ୍ତନ ।
ସୁଧୀ କରନ୍ତି ପରିମାଣ ॥୧୨
ନ'କୋଟି ଏକାବନଲକ୍ଷ ।
ଯୋଜନ ପ୍ରମାଣ ପ୍ରତ୍ୟକ୍ଷ ॥୧୩
ମାନସୋତ୍ତରଗିରି ତହିଁ ।
ଇନ୍ଦ୍ରର ପୁର ବିରାଜଇ ॥୧୪
ପୂର୍ବଭାଗରେ ସେ ମେରୁର ।
ଦେବଧାନୀ ନାମ ତାହାର ॥୧୫

ଯମର ପୁର ତା ଦକ୍ଷିଣେ ।
ବିରାଜେ ସଂଯମନୀ ନାମେ ॥୧୬
ପଶ୍ଚିମେ ପୁର ବରୁଣର ।
ନିମ୍ନୋଚନୀ ନାମ ତାହାର ॥୧୭
ଉତ୍ତରଭାଗେ ଚନ୍ଦ୍ରପୁରୀ ।
ନାମ ତାହାର ବିଭାବରୀ ॥୧୮
ତହିଁ ଉଦୟ ମଧ୍ୟ ଅସ୍ତ ।
ନିଶୀଥକାଳ ଯେ ବିଦିତ ॥୧୯
ସୁମେରୁ ଚତ୍ୱାରଦିଗରେ ।
ପ୍ରାଣୀ ପ୍ରବୃତ୍ତି-ନିବୃତ୍ତିରେ ॥୨୦
ଅହର୍ନିଶି ଭାବରେ ରହି ।
ପ୍ରାଣୀଙ୍କ ସମୟ ହୁଅଇ ॥୨୧
ବାମାବର୍ତ୍ତନ କରି ତହିଁ ।
ନିତ୍ୟେ ଆଦିତ୍ୟ ସେ ଭ୍ରମଇଁ ॥୨୨
ଉଦୟ କାଳେ ଯେ ଲକ୍ଷଣ ।
ଅସ୍ତକାଳରେ ସେହି ପୁଣ ॥୨୩
ଦ୍ୱିକୋଟିଦ୍ୱାଦଶଯୋଜନ ।
ଲକ୍ଷରେ କରି ପରିମାଣ ॥୨୪
ପଞ୍ଚଦଶଘଟିକା ବେଳେ ।
ଇନ୍ଦ୍ରର ପୁରୁ ଅବହେଳେ ॥୨୫
ଯମର ପୁରରେ ପ୍ରବେଶ ।
ସେଠାରେ କରନ୍ତି ପ୍ରକାଶ ॥୨୬
ଏଥୁଁ ବରୁଣଆଦି ଯେତେ ।
ଆଦିତ୍ୟ ଭ୍ରମନ୍ତି ସେ ନିତ୍ୟେ ॥୨୭
ଚନ୍ଦ୍ରାଦି ଯେତେ ଗ୍ରହମାନ ।
ଏହି କ୍ରମରେ ସେ ଭ୍ରମଣ ॥୨୮
ଜ୍ୟୋତିଷଚକ୍ର ଏ ପ୍ରକାରେ ।
ଭ୍ରମଇଁ ଚତ୍ୱାର-ଦିଗରେ ॥୨୯
ଆଦିତ୍ୟ ରଥର ଗମନ ।
ମୁହୂର୍ତ୍ତିକରେ ହେ ରାଜନ ॥୩୦

ଚଉତ୍ରିଂଶଲକ୍ଷ ଯୋଜନ ।
ଅଷ୍ଟଶତଅଧିକ ପୁଣ ॥୩୧
ଇନ୍ଦ୍ରାଦି ସର୍ବଦେବ ପୁରେ ।
ଏ କ୍ରମେ ଭ୍ରମନ୍ତି ନିଶ୍ଚଳେ ॥୩୨
ଶତେକ ପାଖୁଡା ପଦ୍ମର ।
ସୂଚି ମାରନ୍ତେ ନୃପବର ॥୩୩
ସେ ଯେହ୍ନେ ତତ୍କାଳେ ଗଳଇ ।
ତେସନେ ଶୀଘ୍ର ସେ ଚଳଇ ॥୩୪
ଦ୍ୱାଦଶ ଅର ନାମ ତା'ର ।
ସେ ରଥେ ଏକ ଚକ୍ରବର ॥୩୫
ସୁମେରୁ-ମସ୍ତକ ଉପରେ ।
କ୍ରମେ ସେ ମାନସଉତ୍ତରେ ॥୩୬
ତୈଳଯନ୍ତ୍ରର ପ୍ରାୟ ହୋଇ ।
ରବିର ରଥ ସେ ଭ୍ରମଇଁ ॥୩୭
ରଥର ଗର୍ଭ ପରିମାଣ ।
ଷଡ୍‌ତ୍ରିଂଶ ଲକ୍ଷ ଯୋଜନ ॥୩୮
ଚତୁର୍ଥଭାଗ ଉଚ୍ଚ ହୋଇ ।
ଯୁଗ ସେ ବିସ୍ତାରେ ଅଟଇ ॥୩୯
ସପତଛନ୍ଦ ଅଶ୍ୱ ହୋନ୍ତି ।
ଆଦିତ୍ୟଦେବଙ୍କୁ ବହନ୍ତି ॥୪୦
ଅରୁଣ ସାରଥି ତହିଁରେ ।
ତପତଅଶ୍ୱ ଯେଝାଠାରେ ॥୪୧
ଅଙ୍ଗୁଷ୍ଠ-ପବମାତ୍ର ହୋଇ ।
ଷାଠିସହସ୍ର ମୁନି ତହିଁ ॥୪୨
ବିଦିତ ସେ ବାଳଖିଲ୍ୟାରେ ।
ରବିରଥ ଅଗ୍ରଭାଗରେ ॥୪୩
ମୁନିଏ ସର୍ବେ ନାନାମତେ ।
ସ୍ତୁତି କରନ୍ତି ଯଥୋଚିତେ ॥୪୪
ଅନ୍ୟ ଯେ ନାନା ଋଷିଗଣ ।
ଗନ୍ଧର୍ବ ସିଦ୍ଧ ଯେ ଚାରଣ ॥୪୫

Dr. Sudhanshu Sekhar Mishra

ସକଳ ଯକ୍ଷଙ୍କର ବର ।
ଅପ୍‌ସରାଗଣେ ଯେଝାଠାର ॥୪୬
ଯେ ଯାତୁଧାନ ନାଗମାନ ।
ସଙ୍ଗତେ ଘେନି ଯେଝାଗଣ ॥୪୭
ଅପ୍‌ସରାଗଣ ନୃତ୍ୟଗୀତେ ।
ଏମନ୍ତେ ଯେ ଯାହାର ମତେ ॥୪୮
ସେ ସୂର୍ଯ୍ୟରୂପୀ ଭଗବାନ ।
ଅଖିଳ-ଆତ୍ମାର କାରଣ ॥୪୯
ତାହାଙ୍କ ଚରଣାରବିନ୍ଦେ ।
ନମନ୍ତି ପରମ ଆନନ୍ଦେ ॥୫୦

ଯେ ଯାହା କର୍ମ ଅନୁମତେ ।
ସେବନ୍ତି ତା'ଙ୍କ ପାଦଗତେ ॥୫୧
ନବକୋଟିଲକ୍ଷ ଯୋଜନ ।
ଅଧିକ ଲକ୍ଷ ଏକାବନ ॥୫୨
କ୍ଷଣମାତ୍ରକେ ଭଗବାନ ।
ବେନିସହସ୍ର ଯେ ଯୋଜନ ॥୫୩
ଏମନ୍ତ କୋଷ ଯେ ଭୁବନ ।
ସେ ସୂର୍ଯ୍ୟ କରନ୍ତି ଭ୍ରମଣ ॥୫୪
ଅଖିଳ ଅନାଦି କାରଣ ।
ସେ ସୂର୍ଯ୍ୟରୂପକୁ ଧରିଣ ॥୫୫

ଭ୍ରମନ୍ତି ପ୍ରାଣୀଙ୍କର ହିତେ ।
ତାହାଙ୍କ ପାଦପଦ୍ମଗତେ ॥୫୬
ମୁଁ ଯେ ପାମର ମୂଢଚିତ୍ତ ।
ତହିଁରେ ରହୁ ଅବିରତ ॥୫୭
ଅଚିନ୍ତ୍ୟ ତାହାଙ୍କ ଚରିତ ।
କହଇ ଦାସ ଜଗନ୍ନାଥ ॥୫୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ
ଜ୍ୟୋତିଶ୍ଚକ୍ରସୂର୍ଯ୍ୟରଥମଣ୍ଡଳବର୍ଣ୍ଣନଂ
ନାମ ଏକବିଂଶୋଽଧ୍ୟାୟଃ ॥

---

## ଦ୍ୱାବିଂଶ ଅଧ୍ୟାୟ

### ପରୀକ୍ଷିତ ଉବାଚ

ଭୋ ମୁନି ଏଥିର ତଦନ୍ତ ।
ଶୁଣିଲେ ଯିବିଇଁ ପ୍ରତୀତ ॥୧
ଆଦିତ୍ୟଦେବ ଯଥୋଚିତେ ।
ମେରୁ ପ୍ରଦକ୍ଷିଣ କରନ୍ତେ ॥୨
ଦ୍ୱାଦଶରାଶିଙ୍କ ସମ୍ମୁଖେ ।
ଭୋଗ ସେ କରନ୍ତି ପ୍ରତ୍ୟକ୍ଷେ ॥୩
ଆଦିତ୍ୟଗତି ବ୍ୟଗ୍ରତର ।
ତହିଁରେ କେମନ୍ତେ ସଞ୍ଚାର ॥୪
ଏଣେ ତ ମୋହର ସନ୍ଦେହ ।
ଭୋ ମୁନି ତଦନ୍ତ ତୁ କହ ॥୫

### ଶୁକ ଉବାଚ

ସେ କାଳରୂପୀ ଭଗବାନ ।
ଲୋକଙ୍କ ମଙ୍ଗଳ କାରଣ ॥୬
ବେଦମୟବପୁ ଆପଣ ।
ଦ୍ୱାଦଶ ଭାବେ କରିଭିନ୍ନ ॥୭
ସୂର୍ଯ୍ୟଙ୍କ ରୂପକୁ ଯେ ଧରି ।
ଅଛନ୍ତି ଅନ୍ତରୀକ୍ଷ ପୂରି ॥୮

ତା'ଙ୍କ ପ୍ରଭାବେ ଋତୁମାନ ।
କରନ୍ତି ଶୀତାଦି ବିଧାନ ॥୯
ପ୍ରଭୁଙ୍କ ଏମନ୍ତ ବିଧାନ ।
ଚିନ୍ତନ୍ତି ବେଦବିଦମାନ ॥୧୦
ବିର୍ଣ୍ଣାଶ୍ରମାଚାରୀ ଉକତ ।
ହୁଅନ୍ତି ଇନ୍ଦ୍ରାଦି ଭକତ ॥୧୧
ତାହାଙ୍କ ମତେ ଭଗବାନ ।
ଇନ୍ଦ୍ରାଦି ରୂପେ ଅବତୀର୍ଣ୍ଣ ॥୧୨
ଲୋକଙ୍କ ଆତ୍ମା ଏ ଆଦିତ୍ୟ ।
ଆକାଶ ମଣ୍ଡଳେ ବିଦିତ ॥୧୩
ସ୍ୱର୍ଗ ପୃଥିବୀ ମଧ୍ୟେ ରହି ।
ନିରତେ ଆକାଶେ ଭ୍ରମଇଁ ॥୧୪
କୁରାଳଚକ୍ର ପ୍ରାୟେ ହୋଇ ।
ଆଦିତ୍ୟ ରଥ ଯେ ଭ୍ରମଇଁ ॥୧୫
ରାଶି ନକ୍ଷତ୍ର ଆଦି ଯେତେ ।
ତହିଁରେ ଭ୍ରମନ୍ତି ସମସ୍ତେ ॥୧୬
କୁରାଳଚକ୍ରର ସହିତେ ।
ପିପିଳିକାଦି ଜନ୍ତୁମତେ ॥୧୭
ସେ କାଳଚକ୍ର ଏକ ଦେଶେ ।
ଭ୍ରମନ୍ତି ଯେ ଯାହା ପ୍ରକାଶେ ॥୧୮

ଧ୍ରୁବ ସୁମେରୁ ପ୍ରଦକ୍ଷିଣ ।
କରି ଭ୍ରମନ୍ତି ଅନୁକ୍ଷଣ ॥୧୯
ଆଦି ପୁରୁଷ ଭଗବାନ ।
ଧରଣୀ କଲେ ଉଦ୍ଧାରଣ ॥୨୦
ତ୍ରୟୀମୟ ଯେ ତା'ଙ୍କ ମୂର୍ତ୍ତି ।
କର୍ମ-ବିଶୁଦ୍ଧିରେ ତା' ଚିନ୍ତି ॥୨୧
ସେ ମୂର୍ତ୍ତି ଦ୍ୱାଦଶ ପ୍ରକାର ।
କରିଣ ବ୍ରହ୍ମାଣ୍ଡଠାକୁର ॥୨୨
ଷଡ଼ଋତୁ ବସନ୍ତ ଆଦି ।
ଏ ଥିରେ ଯେତେକ ପ୍ରସିଦ୍ଧି ॥୨୩
ଯେ ଋତୁକାଳେ ଯେ ହୁଅନ୍ତି ।
ଆପଣେ ବିଧାନ କରନ୍ତି ॥୨୪
ଆଶ୍ରମମତେ ନାନାପଥେ ।
ନାନାକର୍ମରେ ଯଥୋଚିତେ ॥୨୫
ମହାପୁରୁଷ ମହାଜନେ ।
ନାନାଯୋଗରେ ଶ୍ରଦ୍ଧାମନେ ॥୨୬
ଯେ ତା'ଙ୍କ ଚରଣେ ସେବନ୍ତି ।
ସକଳ ପାପୁ ସେ ତରନ୍ତି ॥୨୭
ପରମ କଲ୍ୟାଣ ଲଭନ୍ତି ।
ଅନ୍ତେ ପରମଗତି ପା'ନ୍ତି ॥୨୮

Dr. Sudhanshu Sekhar Mishra

ଏମନ୍ତେ ଶୁଣ ନୃପବର ।
ସେ ସୂର୍ଯ୍ୟଆତ୍ମା ପ୍ରାଣୀଙ୍କର ॥୨୯
ପୃଥିବୀ ଆକାଶ ମଧ୍ୟରେ ।
କାଳଚକ୍ରରେ ଏ ଶୂନ୍ୟରେ ॥୩୦
ଦ୍ୱାଦଶମାସକୁ ଭଜନ୍ତି ।
ସମ୍ୱତ୍ସର ନାମ ବହନ୍ତି ॥୩୧
ମାସକେ ବେନିପକ୍ଷ କରି ।
ଭୁଞ୍ଜନ୍ତି ଅହୋରାତ୍ର କରି ॥୩୨
ସେ ବେନି ମାସେ ଏକ ଋତୁ ।
ଛ ଋତୁ ସମ୍ୱତ୍ସର ହେତୁ ॥୩୩
ଯେ କାଳ ନଭ ଅର୍ଦ୍ଧଭାଗେ ।
ରହନ୍ତି କାଳଚକ୍ର ଲାଗେ ॥୩୪
ତା'କୁ ଅୟନ ବୋଲି କହି ।
ଶୁଣ ରାଜନ ମନ ଦେଇ ॥୩୫
ଦ୍ୟାବାପୃଥିବୀର ସହିତେ ।
ନଭୋମଣ୍ଡଳକୁ ଯାବତେ ॥୩୬
ରବି ଭୁଞ୍ଜନ୍ତି ଯେତେକାଳେ ।
ସମ୍ୱତ୍ସରଟି ବୋଲି ତାରେ ॥୩୭
ଏ ଅନନ୍ତରେ ହେ ରାଜନ ।
ଚନ୍ଦ୍ରର ଏ ରୂପେ ଗମନ ॥୩୮
ଲକ୍ଷେଯୋଜନର ଅନ୍ତରେ ।
ସୂର୍ଯ୍ୟର ଠାରୁ ସେ ବିହରେ ॥୩୯
ପ୍ରବଳଗତି ତା'ର ଖରେ ।
ଚନ୍ଦ୍ର ଭୁଞ୍ଜନ୍ତି ଯେ ବେଭାରେ ॥୪୦
ସୂର୍ଯ୍ୟଙ୍କ ଭୋଗ ବେନିପକ୍ଷେ ।
ବେନିନକ୍ଷତ୍ର ପାଦରକ୍ଷେ ॥୪୧
ପକ୍ଷଭୋଗକୁ ଏକଦିନେ ।
ଭୁଞ୍ଜନ୍ତି ଅହୋରାତ୍ର ମାନେ ॥୪୨
ଏ ଅନନ୍ତରେ ନୃପବର ।
ବର୍ଦ୍ଧିତକଳା-ଶଶଧର ॥୪୩
ଅହୋରାତ୍ର ସେ ଦେବଙ୍କର ।
ସେ ଶୁକ୍ଳପକ୍ଷରେ ବିହାର ॥୪୪
କ୍ଷୀଣକଳାରେ ପିତୃଙ୍କର ।
ଅହୋରାତ୍ର ହେ ନୃପବର ॥୪୫

ସେ ଯେ ସକଳ ପ୍ରାଣୀଙ୍କର ।
ଜୀବନଭୂତ-ଶଶଧର ॥୪୬
ଭୁଞ୍ଜନ୍ତି ତ୍ରିଂଶତମୂହୂର୍ତ୍ତ ।
ଏକନକ୍ଷତ୍ର ଯଥୋଚିତ ॥୪୭
ଏଣୁ ସେ ଅନାଦିପୁରୁଷ ।
ଷୋଡ଼ଶକଳା ସେ ବିଶେଷ ॥୪୮
ଅମୃତଶରୀରକୁ ଧରି ।
ପ୍ରାଣୀଙ୍କୁ ଆପ୍ୟାୟନ କରି ॥୪୯
ମନୁଷ୍ୟ ପଶୁପକ୍ଷୀ ଆଦି ।
ସରୀସୃପ ବୃକ୍ଷ ପ୍ରସିଦ୍ଧି ॥୫୦
ଏହାଙ୍କ ହୃଦରେ ବସନ୍ତି ।
ଏଣୁ ସେ ସର୍ବସୁଖ ଦ୍ୟନ୍ତି ॥୫୧
ଏହାର ଉର୍ଦ୍ଧ୍ୱେ ହେ ରାଜନ ।
ତୃତୀୟ ଲକ୍ଷ ଯେ ଯୋଜନ ॥୫୨
ଭ୍ରମନ୍ତି ନକ୍ଷତ୍ର ସକଳେ ।
ଜଗତପିତାର କୌଶଳେ ॥୫୩
ଏ ସବୁ ନକ୍ଷତ୍ର ବିଖ୍ୟାତ ।
ଅଭିଜିତ ତାରା ସହିତ ॥୫୪
ନକ୍ଷତ୍ର ଯେ ଅଷ୍ଟାବିଂଶତି ।
ମେରୁର ଦକ୍ଷିଣେ ବସନ୍ତି ॥୫୫
ଦ୍ୱିଲକ୍ଷ ତାହାର ଉପରେ ।
ଉଶନା ବାସ ଯେଉଁଠାରେ ॥୫୬
ଆଦିତ୍ୟ ପ୍ରାୟ ନାନାଗତି ।
ପାରୁଶେ ତାଙ୍କର ବସତି ॥୫୭
ଲୋକର ଯେ ଶୁଭ କଲ୍ୟାଣ ।
ଏଥେଁ ସେ ନିତ୍ୟ ପରାୟଣ ॥୫୮
ଏ ଗ୍ରହ ସଞ୍ଚାର ଯେ ହେଲେ ।
ବୃଷ୍ଟି ହୁଅନ୍ତି ମହୀତଳେ ॥୫୯
ଶୁକ୍ରଙ୍କ କାର୍ଯ୍ୟର ସମାନ ।
ବୁଧର କାର୍ଯ୍ୟର ପ୍ରମାଣ ॥୬୦
ଶୁକ୍ରଙ୍କ ଉପର-ଭାଗରେ ।
ଦ୍ୱିଲକ୍ଷଯୋଜନ ଅନ୍ତରେ ॥୬୧
ସର୍ବଦା ବୁଧ ତହିଁ ରହି ।
ଜୀବଙ୍କ କଲ୍ୟାଣ ସାଧଇ ॥୬୨

ବୁଧ ନାମେ ଯେ ଚନ୍ଦ୍ରସୁତ ।
ତହିଁରେ ତାହାଙ୍କର ସ୍ଥିତ ॥୬୩
ପ୍ରାଣୀର ସୁଖେ ସେହୁ ଥାଇ ।
ଯେବେ ସେ ସୂର୍ଯ୍ୟ ବେଗ ହୋଇ ॥୬୪
ଅତିଗମନ ଖରତରେ ।
ଅନାବୃଷ୍ଟିକି ସେ ଆଚରେ ॥୬୫
ଦ୍ୱିଲକ୍ଷଯୋଜନ ଅନ୍ତରେ ।
ମଙ୍ଗଳ ବୁଧଙ୍କ ଉପରେ ॥୬୬
ଏଥି ଅନ୍ତରେ ଏହା ରହି ।
ପ୍ରାଣୀଙ୍କ ମନ୍ଦ ଯେ କରଇ ॥୬୭
ଏକରାଶିରେ ତିନିପକ୍ଷ ।
ମଙ୍ଗଳ ଭୁଞ୍ଜଇ ପ୍ରତ୍ୟକ୍ଷ ॥୬୮
ବକ୍ରଭାବରେ ଭୋଗକରେ ।
ଏ କ୍ରମେ ଦ୍ୱାଦଶରାଶିରେ ॥୬୯
ମଙ୍ଗଳ ଉପର ଭାଗରେ ।
ଦ୍ୱିଲକ୍ଷଯୋଜନ ଅନ୍ତରେ ॥୭୦
ତହିଁ ଅଛନ୍ତି ବୃହସ୍ପତି ।
ଯେ ଦେବପୁରୋହିତ ହୋନ୍ତି ॥୭୧
ଏକରାଶିରେ ସେ ବରଷେ ।
ଭୋଗ ଯେ କରନ୍ତି ସନ୍ତୋଷେ ॥୭୨
ସେ ବୃହସ୍ପତି ଭଗବାନ ।
ବ୍ରାହ୍ମଣକୁଳର କଲ୍ୟାଣ ॥୭୩
ଯେବେ ସେ ବକ୍ରଗତି ହୋଇ ।
କଦର୍ଯ୍ୟେଫଳକୁ ଦିଅଇ ॥୭୪
ତହୁଁ ଦ୍ୱିଲକ୍ଷଯୋଜନରେ ।
ରହି ଅଛନ୍ତି ଶନିଶ୍ଚରେ ॥୭୫
ଏକରାଶିରେ ଭୋଗ ତା'ର ।
ତିରିଶମାସ ନୃପବର ॥୭୬
ଅଶାନ୍ତି ସକଳେ କରଇ ।
ଅଧିକ କେ ଅବା ଭୁଞ୍ଜଇ ॥୭୭
ତହିଁ ଉପରେ ହେ ରାଜନ ।
ଏକାଦଶଲକ୍ଷ ଯୋଜନ ॥୭୮
ଋଷିଙ୍କ ବାସ ଯେ ସେଠାରେ ।
ସେ କୃପା କରନ୍ତି ପ୍ରାଣୀରେ ॥୭୯

Dr. Sudhanshu Sekhar Mishra

ଲୋକଙ୍କ ଭାବନ୍ତି କୁଶଳ ।
ଅଶେଷ-କରୁଣାର ମୂଳ ॥୮୦
ବିଷ୍ଣୁ ପଦକୁ ନିତ୍ୟେ ଚିନ୍ତି ।
ପ୍ରଦକ୍ଷିଣରେ ଭ୍ରମୁଛନ୍ତି ॥୮୧

ସେ ମୁନିଗଣଙ୍କ ପୟରେ ।
ମୋ ଚିତ୍ତ ରହୁ ନିରନ୍ତରେ ॥୮୨
କହଇ ବିପ୍ର ଜଗନ୍ନାଥ ।
ପଞ୍ଚମସ୍କନ୍ଧେ ଭାଗବତ ॥୮୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ରବର୍ଣ୍ଣନେ
ଦ୍ୱାବିଂଶୋଽଧ୍ୟାୟଃ ॥

---

## ତ୍ରୟୋବିଂଶ ଅଧ୍ୟାୟ

ଶୁକ ଉବାଚ

ଏଥୁ ଅନ୍ତରେ ହେ ରାଜନ ।
ତ୍ରୟୋଦଶଲକ୍ଷଯୋଜନ ॥୧
ସେ ସ୍ଥାନ ବିରାଜଇ ତହିଁ ।
ବିଷ୍ଣୁର ସ୍ଥଳ ତା'କୁ କହି ॥୨
ଯହିଁ ପରମ-ଭାଗବତ ।
ଧ୍ରୁବ ଉତ୍ତାନପାଦସୁତ ॥୩
ଅଛନ୍ତି କଶ୍ୟପ ସଙ୍ଗତେ ।
କାଳଯଷ୍ଟିର ସେବାମତେ ॥୪
କଳ୍ପେ ପର୍ଯ୍ୟନ୍ତେ ସୁଖଭୋଳେ ।
ପ୍ରଭୁଙ୍କୁ ଭଜନ୍ତି ନିଶ୍ଚଳେ ॥୫
ସେ ଭାଗବତ ଧ୍ରୁବବାଣୀ ।
ପୂର୍ବେ କହିଛୁଁ ନୃପମଣି ॥୬
ଗ୍ରହ ନକ୍ଷତ୍ର-ଜ୍ୟୋତିର୍ଗଣ ।
ଧ୍ରୁବର ସହିତେ ରାଜନ ॥୭
ଈଶ୍ୱରସୃଷ୍ଟି ଅନୁସାରେ ।
ଏବେ ଦିଶଇ ସେ ଲୋକରେ ॥୮
କାଳଚକ୍ରରେ ଭ୍ରମେ ଜାଣ ।
ବେଗେ ଭ୍ରମନ୍ତି ଅନୁକ୍ଷଣ ॥୯
ମେରିରେ ପଶୁଗଣ ଯେହ୍ନେ ।
ସକଳେ ଭ୍ରମନ୍ତି ତେସନେ ॥୧୦
ମଣ୍ଡଳଆକାରରେ ତହିଁ ।
ଯେ ଯାହା ସ୍ଥାନରେ ଭ୍ରମହିଁ ॥୧୧
ନକ୍ଷତ୍ର-ଗ୍ରହ ଆଦି ଯେତେ ।
ଏହି ପ୍ରକାରେ ସେ ସମସ୍ତେ ॥୧୨

କାଳର ଚକ୍ରେ ଯେ ଭ୍ରମଣ ।
ବାହାର-ଅନ୍ତରେ ଭ୍ରମିଣ ॥୧୩
କଳ୍ପାନ୍ତଯାଏଁ ସେ ପ୍ରକାରେ ।
ଅଛନ୍ତି ବିବିଧ-ବେଭାରେ ॥୧୪
ଶୂନ୍ୟମଣ୍ଡଳେ ମେଘମାଳେ ।
ଯେସନେ ଥା'ନ୍ତି ବାୟୁବଳେ ॥୧୫
ଯେହ୍ନେ ଶ୍ୟେନାଦି ପକ୍ଷୀମାନେ ।
ପବନବଳେ ଥା'ନ୍ତି ଶୂନ୍ୟେ ॥୧୬
କର୍ମଅଧୀନେ ଜ୍ୟୋତିର୍ଗଣେ ।
ଶୂନ୍ୟରେ ଭ୍ରମନ୍ତି ତେସନେ ॥୧୭
ପ୍ରକୃତିପୁରୁଷଙ୍କ ଭୋଗ ।
ତହିଁରେ ହୁଅନ୍ତି ସଂଯୋଗ ॥୧୮
କର୍ମବନ୍ଧନ ନିମିତ୍ତରେ ।
ପତନ ନୁହଁନ୍ତି ଭୂମିରେ ॥୧୯
ଏ ଅନନ୍ତରେ ନୃପବର ।
ଏ ଜ୍ୟୋତିଶ୍ଚକ୍ର ଶିଶୁମାର ॥୨୦
ଏମନ୍ତ କରି କେ ବର୍ଣ୍ଣଇ ।
କହିବା ଶୁଣ ମନ ଦେଇ ॥୨୧
ଯେ ପ୍ରଭୁ ଅଖିଳ କାରଣ ।
ଶ୍ରୀବାସୁଦେବ ନାରାୟଣ ॥୨୨
ତାହାଙ୍କ ଯୋଗର ମୂରତି ।
ଶରୀର କୁଣ୍ଡଳ ଆକୃତି ॥୨୩
ଅଧୋବଦନ ତାହାଙ୍କର ।
ପୁଚ୍ଛରେ ନିବାସ ଧ୍ରୁବର ॥୨୪
ଲାଙ୍ଗୁଳେ ପ୍ରଜାପତି ବାସ ।
ଅନଳ ଧର୍ମ ଯେ ସୁରେଶ ॥୨୫

ଧାତା ବିଧାତା ପୁଚ୍ଛମୂଳେ ।
ସପତରଷି କଟିସ୍ଥଳେ ॥୨୬
ଦକ୍ଷିଣାବର୍ତ୍ତ ପ୍ରାୟ ହୋଇ ।
କୁଣ୍ଡଳ ଆକାର ସେ ଦେହୀ ॥୨୭
ତା'ର ଦକ୍ଷିଣଅଂଶଗତେ ।
ନକ୍ଷତ୍ରମାନ ଯେ ସମସ୍ତେ ॥୨୮
ଅଭିଜିତ ଆଦି ଏ ଗଣ ।
ବାମପାରୁଶେ ତା'ଙ୍କ ସ୍ଥାନ ॥୨୯
ପୁନର୍ବସୁ ଯେ ପୁଷ୍ୟା ଦୁଇ ।
ବାମ-ଦକ୍ଷିଣ-ଶ୍ରେଣୀ ତହିଁ ॥୩୦
ଆକାଶଗଙ୍ଗା ଯେ ପୃଷ୍ଠରେ ।
ବିରାଜେ ଅତି ଶୁଭ୍ରତରେ ॥୩୧
ବାମ ଦକ୍ଷିଣ ପାଦଦେଶେ ।
ଆରାଦ୍ରା ଅଶ୍ଳେଷା ପ୍ରକାଶେ ॥୩୨
ଉତ୍ତରାଷାଢ଼ା ଅଭିଜିତ ।
ସବ୍ୟ-ଦକ୍ଷିଣ-ଘ୍ରାଣେ ସ୍ଥିତ ॥୩୩
ଶ୍ରବଣା ପୂର୍ବାଷାଢ଼ା ଦୁଇ ।
ବାମ-ଦକ୍ଷିଣ-ନେତ୍ରେ ରହି ॥୩୪
ଧନିଷ୍ଠା ମୂଳା ବେନିଜନେ ।
ଦକ୍ଷିଣ ବାମ ବେନିକର୍ଣ୍ଣେ ॥୩୫
ମଘାଦି ଆଠ ଯେ ବିଦିତ ।
ବାମ ଅସ୍ଥିରେ କ୍ରମେ ସ୍ଥିତ ॥୩୬
ମୃଗଶିରାଦି ଦକ୍ଷିଣରେ ।
ଜ୍ୟେଷ୍ଠା ଶତଭିଷା ସ୍କନ୍ଧରେ ॥୩୭
ଉତ୍ତର ଅଧର ହନୁରେ ।
ଅଗସ୍ତି ଶମନ କ୍ରମରେ ॥୩୮

Dr. Sudhanshu Sekhar Mishra

ମୁଖରେ ଅଙ୍ଗାରକ ଶୋହେ ।
ଉପସ୍ଥେ ଶନିଶ୍ଚର ରହେ ॥୩୯
ଆଦିତ୍ୟ ବକ୍ଷସ୍ଥଳେ ବସେ ।
ବୃହସ୍ପତି କକୁଦଦେଶେ ॥୪୦
ହୃଦୟେ ନାରାୟଣ ସ୍ଥିତି ।
ଚନ୍ଦ୍ରମା ମନରେ ବସନ୍ତି ॥୪୧
ନାଭିରେ ଉଶନା ପ୍ରକାଶ ।
ସ୍ତନରେ ଅଶ୍ୱିନୀର ବାସ ॥୪୨
ପ୍ରାଣ-ଅପାନେ ବୁଧ ବସେ ।
ଗଳାରେ ରାହୁ ଯେ ପ୍ରକାଶେ ॥୪୩
ସର୍ବ ଅଙ୍ଗରେ କେତୁସ୍ଥାନ ।
ଏ ଅନୁକ୍ରମେ ହେ ରାଜନ ॥୪୪
ରୋମମୂଳରେ ତାରାଗଣ ।
ବିଚିତ୍ରରୂପ ନାରାୟଣ ॥୪୫
ଏ ରୂପେ ସର୍ବଦେବ ସେହି ।
ଯେ ଜନ ଶୁଚିମନ୍ତ ହୋଇ ॥୪୬
ସନ୍ଧ୍ୟାରେ ଦେଖି ସ୍ତବ କରେ ।
ଅଶେଷ ପାପୁଁ ସେ ନିସ୍ତରେ ॥୪୭
ଏ ସ୍ତବ ତୁଣ୍ଡେ ଉଚ୍ଚାରିଣ ।
ସ୍ତୁତି କରିବ ସାବଧାନ ॥୪୮
ନମଇଁ ଜ୍ୟୋତିର୍ଲୋକମୟ ।
କାଳ ଅଦ୍ଭୁତ ଯାର ଦେହ ॥୪୯
ସକଳଦେବ-ସ୍ୱାମୀ ତୁହି ।
ତୋ ପାଦେ ଆନନ୍ଦେ ନମଇଁ ॥୫୦
ଗ୍ରହ ନକ୍ଷତ୍ର ରାଶିଗଣ ।
ସର୍ବାଧି-ଦେବ ନାରାୟଣ ॥୫୧
ତ୍ରିକାଳସନ୍ଧ୍ୟାରେ ଯେ ନର ।
ସ୍ମରଣେ କରେ ନମସ୍କାର ॥୫୨
ଅହୋରାତ୍ରର ପାପ ତା'ର ।
ଦହନ ହୋଏ ନୃପବର ॥୫୩
ସେ ପ୍ରଭୁ ସ୍ୱୟଂ ଯୋଗେଶ୍ୱର ।
ଅନାଦି ବ୍ରହ୍ମାଣ୍ଡ ଠାକୁର ॥୫୪
ତାହାଙ୍କ ଚରଣ କମଳେ ।
ମୋ ଚିତ୍ତ ରହୁ ନିରନ୍ତରେ ॥୫୫
କହଇ ଦାସ ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୫୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ପଞ୍ଚମସ୍କନ୍ଧେ ଶିଶୁମାର ସଂସ୍ଥାବର୍ଣ୍ଣନଂ ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

---

## ଚତୁର୍ବିଂଶ ଅଧ୍ୟାୟ

ଶୁକ ଉବାଚ

ଆଦିତ୍ୟଠାରୁ ଅଧୋମେଳେ ।
ଅୟୁତ ଯୋଜନର ତଳେ ॥୧
ଭ୍ରମ ଆକାରେ ରାହୁ ସ୍ଥିତି ।
ଏମନ୍ତ କେ ଅବା କହନ୍ତି ॥୨
ସ୍ୱଭାବେ ସିଂହିକାନନ୍ଦନ ।
ଏ ଟି ଅସୁର ଭୋ ରାଜନ ॥୩
ଯେଣୁ ପ୍ରଭୁର କୃପା ହୋଇ ।
ଅଜରାମର ଏହା ଦେହୀ ॥୪
ଏହାର ଜନ୍ମକର୍ମମାନ ।
ପଛେ କହିବା ହେ ରାଜନ ॥୫
ଅଧୋଭାଗରେ ଯେ ପଡ଼ଇ ।
ତରଣିମଣ୍ଡଳ ହୁଅଇ ॥୬
ଅୟୁତଯୋଜନ ବିସ୍ତାର ।
ଲୋକରେ ଖ୍ୟାତ ନୃପବର ॥୭
ଦ୍ୱାଦଶ ସହସ୍ରଯୋଜନ ।
ଚନ୍ଦ୍ରମଣ୍ଡଳ ପରିମାଣ ॥୮
ତ୍ରୟୋଦଶସହସ୍ରଯୋଜନ ।
ରାହୁମଣ୍ଡଳ ଯେ ବିସ୍ତୀର୍ଣ୍ଣ ॥୯
ଏ ରାହୁ ସୁଧାପାନ ବେଳେ ।
ଚନ୍ଦ୍ର-ସୂର୍ଯ୍ୟଙ୍କ ମଧ୍ୟେ ମିଳେ ॥୧୦
ତା' ଦୁହେଁ କଲେ ବ୍ୟବଧାନ ।
ତାହା ଜାଣିଲେ ଭଗବାନ ॥୧୧
ବୈରାନୁବନ୍ଧଭାବେ ତହିଁ ।
ଚନ୍ଦ୍ର-ସୂର୍ଯ୍ୟ ଗ୍ରାସିବାପାଇଁ ॥୧୨
ଧାମଇଁ ବେଗବନ୍ତ ହୋଇ ।
ତା' ଦେଖି ବ୍ରହ୍ମାଣ୍ଡଗୋସାଇଁ ॥୧୩
ରକ୍ଷା ନିମନ୍ତେ ସୁଦର୍ଶନ ।
ରଖି ଅଛନ୍ତି ଭଗବାନ ॥୧୪
ଚକ୍ରର ଅତିତେଜ ପାଇଁ ।
ନିକଟୁ ନିବୃତ୍ତ ହୁଅଇ ॥୧୫
ଚକିତ ହୋଇଣ ତାହାର ।
ଉଦ୍‌ବେଗ ହୁଅଇ ଅନ୍ତର ॥୧୬
ତାହାକୁ ଉପରାଗ ନାମ ।
ଏ ଲୋକେ କରନ୍ତି ଗାୟନ ॥୧୭
ତାହାର ତଳେ ନୃପବର ।
ସିଦ୍ଧ ଚାରଣ ବିଦ୍ୟାଧର ॥୧୮
ଏହାଙ୍କ ସଦନ ନିର୍ମିତ ।
ଏହାର ତଳେ ପରୀକ୍ଷିତ ॥୧୯
ଯକ୍ଷ ପିଶାଚ ଭୂତ ପ୍ରେତ ।
ଏହାଙ୍କ ଗୃହ ଯେ ନିର୍ମିତ ॥୨୦
ଯାବତ ବାୟୁର ସଞ୍ଚାର ।
ଯାବତ ଗତି ଜଳଧର ॥୨୧
ଭୂମିମଣ୍ଡଳ ହେ ରାଜନ ।
ତା ତଳେ ଶତେକଯୋଜନ ॥୨୨
ଗମନ କରନ୍ତି ଶୂନ୍ୟରେ ।
ସୁପର୍ଣ୍ଣଆଦି ପକ୍ଷୀବରେ ॥୨୩
ଭୂମିମଣ୍ଡଳର ବର୍ଣ୍ଣନ ।
କହିତ ଅଛୁ ହେ ରାଜନ ॥୨୪
ଅବନୀତଳର ବେଭାର ।
କହିବା ଶୁଣ ନୃପବର ॥୨୫

Dr. Sudhanshu Sekhar Mishra

ସପତଭୂବିବରେ କରି ।
ସପ୍ତଭୁବନ ଦଣ୍ଡଧାରୀ ।।୨୬
ଅତଳ ବିତଳ ସୁତଳ ।
ତଳାତଳ ଯେ ମହାତଳ ।।୨୭
ରସାତଳ ଯେ ମହୀପାଳ ।
ସପ୍ତମେ ବିଦିତ ପାତାଳ ।।୨୮
କ୍ରମେ ଏ ଅୟୁତଯୋଜନ ।
ଏକ ଏକର ଯେ ପ୍ରମାଣ ।।୨୯
ବିଳସ୍ୱର୍ଗ ନାମ ଏହାର ।
ସ୍ୱର୍ଗୁ ଅଧିକ ସୁଖକର ।।୩୦
କାମ ଐଶ୍ୱର୍ଯ୍ୟ ନାନାଭୋଗ ।
ପରମାନନ୍ଦ ସୁଖଯୋଗ ।।୩୧
ନାନା ରତ୍ନରେ ଦିବ୍ୟପୁର ।
ସୌରଭେ ଭୁବନ ସୁନ୍ଦର ।।୩୨
ବିବିଧ-କ୍ରୀଡାର ମନ୍ଦିର ।
ସୁସଜ୍ଜସ୍ଥଳ ମନୋହର ।।୩୩
ଏ ସ୍ଥଳେ କ୍ରୀଡନ୍ତି ଆନନ୍ଦେ ।
ସେ ସ୍ଥଳବାସୀ ଜୀବବୃନ୍ଦେ ।।୩୪
କାଦ୍ରବ ଦାନବ ଦଇତ୍ୟେ ।
ଅପତ୍ୟ ପତ୍ନୀର ସହିତେ ।।୩୫
ଗନ୍ଧର୍ବ ବିଦ୍ୟାଧର ଯେତେ ।
ଅପ୍‌ସରାଗଣଙ୍କ ସହିତେ ।।୩୬
ମାୟାବୀ ମୟଦୈତ୍ୟ ଯହିଁ ।
ନିର୍ମାଣ କରି ଯେ ଅଛଇ ।।୩୭
ନାନାମଣିରେ ଦିବ୍ୟପୁର ।
ବିଚିତ୍ର ବୈଦୂର୍ଯ୍ୟର ଘର ।।୩୮
ସଭା ଚତ୍ୱର ଯେ ଗୋପୁର ।
ବିବିଧ ନାନାମଣି ସାର ।।୩୯
ମିଥୁନ ଶୁକ ପାରାବତ ।
କୃତ୍ରିମ-ମଣିରେ ନିର୍ମିତ ।।୪୦
ଶାରିକାଆଦି ପକ୍ଷୀମାନ ।
ବିବିଧ ପ୍ରକାର ଭିଆଣ ।।୪୧
ମଣିମଦନ ଉଚ୍ଚ ସାର ।
ଶୋହଇ ଅତି ମନୋହର ।।୪୨

ବିଚିତ୍ର-ଚିତ୍ର ଉପବନ ।
ସୌରଭ ହରେ ପ୍ରାଣୀମନ ।।୪୩
କୁସୁମ ଫଳ ଅତିଭରେ ।
ବିଟପୀ ଲାଗନ୍ତି ଭୂମିରେ ।।୪୪
କୋମଳ ପଲ୍ଲବ ସୁରଙ୍ଗ ।
ପକ୍ଷୀମିଥୁନ ଯହିଁ ସଙ୍ଗ ।।୪୫
ବିବିଧ ଜଳାଶୟମାନ ।
କ୍ରୀଡନ୍ତି ନାନା ବିହଙ୍ଗମ ।।୪୬
ଧ୍ୱନି କରନ୍ତି ମନୋହର ।
ଋଷିଙ୍କ ତପ କ୍ଷୋଭକର ।।୪୭
ନୀରଜ କୁମୁଦ କହ୍ଲାର ।
ଏହାଙ୍କ ବନେ ତା'ଙ୍କ ଘର ।।୪୮
ସେ ପକ୍ଷୀଗଣ ଦିବ୍ୟସ୍ୱନ ।
ଶ୍ରବଣେ ହରେ ପ୍ରାଣୀମନ ।।୪୯
ସ୍ୱର୍ଗହୁଁ ଅତି ମନୋହର ।
ସେ ସ୍ଥାନମାନ ନୃପବର ।।୫୦
ଅହିଙ୍କ ଶିରେ ମଣିମାନ ।
ଯହିଁ ହରଇ ଅନ୍ଧତମ ।।୫୧
ସେ ଭୂମି ଅତି ଅନୁପମ ।
ତହିଁ ତ ନାହିଁ ରାତ୍ରଦିନ ।।୫୨
ଆଧିର ପରାଭବ ନାହିଁ ।
ଦେହରେ ରୋଗ ନ ଲାଗଇ ।।୫୩
ପୁରୁଷ-ଯୁବତୀମାନର ।
ଏଣୁ ଯେ ସୁନ୍ଦର ଶରୀର ।।୫୪
ତେଣୁ ସେ ଶରୀର-ଭେଦରେ ।
ଶରୀରକାନ୍ତି ନାହିଁ ସରେ ।।୫୫
ଯଶ-ସମ୍ପଦ ତା'ଙ୍କ ତହିଁ ।
ନିତ୍ୟ ପ୍ରକାଶ ଅଛି ଯହିଁ ।।୫୬
ତହିଁର ନରନାରୀମାନ ।
ପରମମଙ୍ଗଳ ଭାଜନ ।।୫୭
ଶ୍ରୀହରି ଚକ୍ର ବିନୁ ତହିଁ ।
ଅବସ୍ଥା ମୃତ୍ୟୁ ଭୟ ନାହିଁ ।।୫୮
ଅତଳେ ଅଛି ମହୀପାଳ ।
ମୟର ପୁତ୍ର ନାମ ବଳ ।।୫୯

ତାହାର ମାୟା ଦୃଢ଼ତରେ ।
ଅଦ୍ୟାପି ସଂସାରେ ପ୍ରଚରେ ।।୬୦
ବଳାସୁର ଜୃମ୍ଭଣେ ଜନ୍ମି ।
ସ୍ୱୈରିଣୀ ପୁଂଶ୍ଚଳୀ କାମିନୀ ।।୬୧
ହାଟକ ନାମେ ମାୟାରସ ।
ତାହାକୁ ପିଅନ୍ତେ ପୁରୁଷ ।।୬୨
ବିଳାସ-ଅବଲୋକନରେ ।
ନାନା ପ୍ରକାରେ କ୍ରୀଡା କରେ ।।୬୩
ଅୟୁତ-ମହାଗଜବଳ ।
ହୁଅଇ ତହୁଁ ପୁରୁଷର ।।୬୪
ବିତଳେ ଶମ୍ଭୁଭଗବାନ ।
ହାଟକେଶ୍ୱର ଯା'ର ନାମ ।।୬୫
ପ୍ରଜାପତି-ସୃଷ୍ଟି ନିମନ୍ତେ ।
ଅଛନ୍ତି ଭବାନୀ ସହିତେ ।।୬୬
ଏହାଙ୍କ ବୀର୍ଯ୍ୟୁ ଜାତ ହୋଇ ।
ହାଟକୀ ନାମେ ନଦୀ ବହି ।।୬୭
ତା'ର ସଂସର୍ଗୁ ଜାତ ହୋଇ ।
ସୁବର୍ଣ୍ଣ ହାଟକ ବୋଲାଇ ।।୬୮
ଅସୁରଙ୍କର ବଧୂଗଣ ।
ତାହାକୁ କରନ୍ତି ଭୂଷଣ ।।୬୯
ବିରୋଚନଙ୍କ ପୁତ୍ର ବଳି ।
ଅଛନ୍ତି ସୁତଳରେ ମିଳି ।।୭୦
ଉଦାରଶ୍ରବା ପୁଣ୍ୟଶ୍ଳୋକ ।
ଯାହାକୁ ବୋଲନ୍ତି ତ୍ରିଲୋକ ।।୭୧
ଇନ୍ଦ୍ରର ପ୍ରିୟଭାବ ବହି ।
ଅଖିଳ-ବ୍ରହ୍ମାଣ୍ଡ-ଗୋସାଇଁ ।।୭୨
ଅଦିତି ତହୁଁ ଜାତ ହୋଇ ।
ବଟୁବାମନ ରୂପ ବହି ।।୭୩
ନାନା-ସମ୍ପଦ ତା'ର ହରି ।
ପୁଣି ଦୟାକଲେ ମୁରାରି ।।୭୪
ଇନ୍ଦ୍ରାଦିସୁର ତହୁଁ ବଳି ।
ସମ୍ପତ୍ତି ଦେଲେ ବନମାଳୀ ।।୭୫
ପୂଜ୍ୟ ଅଖିଳ ଦେବଙ୍କର ।
ଅନାଦି-ପ୍ରଭୁ ଯେ ଈଶ୍ୱର ।।୭୬

Dr. Sudhanshu Sekhar Mishra

ସ୍ୱକର୍ମେ ତା'ଙ୍କୁ ଆରାଧିଣ ।
ସୁଖେ ସେ ଅଛନ୍ତି ରାଜନ ॥୭୭
ସେ ସର୍ବବୀଜ ଭଗବାନ ।
ପରମଆତ୍ମା ସୂକ୍ଷ୍ମ ବ୍ରହ୍ମ ॥୭୮
ଯେ ତୀର୍ଥପଦ ଜଗନ୍ନାଥ ।
ସକଳ-ଦେଶକାଳ-ପାତ୍ର ॥୭୯
ତାହାଙ୍କୁ ଶ୍ରଦ୍ଧାଯୁକ୍ତ ହୋଇ ।
ସ୍ଥିରମନରେ ଭୂମି ଦେଇ ॥୮୦
ବିଳସ୍ୱର୍ଗକୁ ଭୋଗ କରେ ।
ନାନା-ଐଶ୍ୱର୍ଯ୍ୟର ବେଭାରେ ॥୮୧
ଯାଚଞ୍ଚା ଛଳେ ଯେ ଉପାୟେ ।
ତହିଁରେ କରି ଦେବରାୟେ ॥୮୨
ତ୍ରିଲୋକ ବ୍ୟାପିଲେ ଶରୀରେ ।
ଶେଷ ନରହିଲା ସଂସାରେ ॥୮୩
ଯେ ଇନ୍ଦ୍ରେ ଅନୁଗ୍ରହ କରି ।
ଇନ୍ଦ୍ରର ଭ୍ରାତୃଭାବ ଧରି ॥୮୪
ଜନ୍ମିଲେ ବ୍ରହ୍ମାଣ୍ଡଠାକୁର ।
ଯାହା ନିମନ୍ତେ ନୃପବର ॥୮୫
ସେ ସର୍ବଭାବ ଭଗବାନ ।
ଅଖିଳ-ଗୁରୁ ନାରାୟଣ ॥୮୬
ଯାହାର ଦ୍ୱାରେ ଗଦା ଧରି ।
ଅଛନ୍ତି ପ୍ରଭୁ ଯେ ଉଭାରି ॥୮୭
ତାହାର ଅଧୋଦେଶେ ଯେହି ।
ତଳାତଳ ନାମ ବୋଲାଇ ॥୮୮
ମୟଦାନବ ଯେ ପୂର୍ବରେ ।
ଦ୍ରୋହ ଚିନ୍ତିଲା ଚକ୍ରଧରେ ॥୮୯
ସ୍ୱପୁର ତ୍ରୟ ଦଗ୍ଧ କଲା ।
ତେଣୁ ସେ ବରକୁ ଲଭିଲା ॥୯୦
ମାୟାବୀମାନଙ୍କର ବର ।
ଐଶ୍ୱର୍ଯ୍ୟ ଲଭି ସେ ଅସୁର ॥୯୧
ଅଭୟ ବରକୁ ସେ ପାଇ ।
ତଳାତଳରେ ଯେ ଅଛଇ ॥୯୨

ସୁଦରଶନ ଚକ୍ର ଡରେ ।
ଶରଣ ପଶିଲା ଶମ୍ଭୁରେ ॥୯୩
ସେ ଭୟ ତା'ର ଦୂର କରି ।
ରଖିଲେ ଶିବ ଶୂଳଧାରୀ ॥୯୪
ନିର୍ଭୟ ହୋଇ ସେ ଦାନବ ।
ସେ ସ୍ଥଳେ ଭୁଞ୍ଜଇ ବିଭବ ॥୯୫
ତାହାର ଅଧୋଭାଗ ଦେଶେ ।
ମହାତଳପୁର ପ୍ରକାଶେ ॥୯୬
ତହିଁରେ ନାନା ନାଗ ଆଦି ।
କ୍ରୋଧବଶ ନାମ ପ୍ରସିଦ୍ଧି ॥୯୭
କୁହକ କାଳୀୟ ସୁଷେଣ ।
ତକ୍ଷକ ପ୍ରଧାନ ଏମାନ ॥୯୮
ସୁଦୀର୍ଘକାୟ ବଳବନ୍ତ ।
ତହିଁ ଅଛନ୍ତି ପରୀକ୍ଷିତ ॥୯୯
ନିତ୍ୟ ସେ ଗରୁଡ଼ଙ୍କ ଭୟେ ।
ଉଦ୍‌ବେଗ ହୋଏ ତା'ଙ୍କ କାୟେ ॥୧୦୦
ଦାରା ତନୟ ବନ୍ଧୁ ସଙ୍ଗେ ।
ବିହାର କରନ୍ତି ସେ ରଙ୍ଗେ ॥୧୦୧
ତାହାର ତଳେ ମହୀପାଳ ।
ଯେ ପୁର ନାମ ରସାତଳ ॥୧୦୨
ଦୈତ୍ୟ-ଦାନବ ପତିମାନ ।
କବଚ କାଳେୟ ହିରଣ୍ୟ ॥୧୦୩
ଅତ୍ୟନ୍ତ-ବଳବନ୍ତ ହୋନ୍ତି ।
ଦେବଙ୍କ ଦ୍ରୋହ ସେ ଚିନ୍ତନ୍ତି ॥୧୦୪
ସକଳ ଲୋକର କାରଣ ।
ମହାପୁରୁଷ ନାରାୟଣ ॥୧୦୫
ମହାନୁଭାବ ସେ ଯେ ହରି ।
ତାହାଙ୍କ ଅତିତେଜେ କରି ॥୧୦୬
ଗୃହୀତବଳ ସେ ଦାନବେ ।
ସେ ସ୍ଥଳେ ଥା'ନ୍ତି ଉଦବେଗେ ॥୧୦୭
ଇନ୍ଦ୍ରଦୂତୀର ବାକ୍ୟ ଶୁଣି ।
ନିତ୍ୟେ ଡରନ୍ତି ନୃପମଣି ॥୧୦୮

ତାହାର ତଳେଟି ପାତାଳ ।
ତହିଁ ଅଛନ୍ତି ନାଗବଳ ॥୧୦୯
ବାସୁକି ଆଦି ନାଗବଳ ।
ଶଙ୍ଖ କୁଳିକ ଯେ କମ୍ବଳ ॥୧୧୦
ମହାଶଙ୍ଖ ଯେ ଆରାଶ୍ୱେତ ।
ଧନଞ୍ଜୟ ଯେ ଦେବଦତ୍ତ ॥୧୧୧
ଧୃତରାଷ୍ଟ୍ର ଯେ ଶଙ୍ଖଚୂଡ଼ ।
ଯେ ମହାଭୋଗୀ ଅଶ୍ୱତର ॥୧୧୨
ଏ ଯେତେ ମହାଭୋଗୀମାନେ ।
ବସନ୍ତି ପାତାଳଭୁବନେ ॥୧୧୩
ପଞ୍ଚ-ସପତ-ଦଶଶିର ।
ଅନେକ-ଫଣା ତାହାଙ୍କର ॥୧୧୪
ଏହାଙ୍କ ମହାମଣିମାନ ।
ପ୍ରକାଶେ ଆଦିତ୍ୟ ଯେସନ ॥୧୧୫
ପାତାଳ ବିବର ତିମିର ।
ସ୍ୱତେଜେ କରନ୍ତି ଯେ ଦୂର ॥୧୧୬
ରାଜନ ସପତପାତାଳ ।
କହିଲୁ ଯେଝା ବାସସ୍ଥଳ ॥୧୧୭
ପଞ୍ଚମସ୍କନ୍ଧେ ଏ ବର୍ଣ୍ଣନ ।
ସୁଜନେ ସାବଧାନେ ଶୁଣ ॥୧୧୮
କୃଷ୍ଣଚରଣେ ମନ ଦିଅ ।
ସୁଜନେ ନିତ୍ୟେ ଏହା ଗାଅ ॥୧୧୯
କୃଷ୍ଣପଦାରବିନ୍ଦ ରସ ।
ସ୍ନେହରେ କର ଏହା ଗ୍ରାସ ॥୧୨୦
କହଇ ଜଗନ୍ନାଥ ଦାସ ।
ଶ୍ରୀଭାଗବତ ସୁଧାରସ ॥୧୨୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ
ରାହ୍ୱାଦିସ୍ଥିତିବିଳସ୍ୱର୍ଗମର୍ଯ୍ୟାଦା
ନିରୂପଣଂ ନାମ
ଚତୁର୍ବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚବିଂଶ ଅଧ୍ୟାୟ

### ଶୁକ ଉବାଚ

ପାତାଳ ତଳେ ହେ ରାଜନ ।
ତିରିଶ-ସହସ୍ର-ଯୋଜନ ॥ ୧
ତାମସୀକଳା ଯେ ବିଶେଷ ।
ଅନନ୍ତନାମ ପରକାଶ ॥ ୨
ଯେ ବିଷ୍ଣୁଅଂଶେ ଜନ୍ମ ହୋଇ ।
ସଙ୍କରଷଣ ନାମ ବହି ॥୩
ଅନନ୍ତ ମୂରତି ଠାକୁର ।
ସହସ୍ରମସ୍ତକ ତାହାର ॥୪
ତାହାର ଏକଇ ଶିରରେ ।
ମହୀମଣ୍ଡଳ ଅଛି ସ୍ଥିରେ ॥୫
ଯେ ସୃଷ୍ଟି କରଇ ସଂହାର ।
ଭ୍ରୂକୁଟି କରିଣ କରାଳ ॥୬
ଏକାଦଶରୁଦ୍ର ଯେ ହୋଇ ।
ସଙ୍କରଷଣ ସେ ବୋଲାଇ ॥୭
ତିନି ଲୋଚନ ତିନି ଶିର ।
ପ୍ରଚଣ୍ଡ ଶୂଳଟି ଯାହାର ॥୮
ଭକ୍ତିରେ ଅହିପତିମାନ ।
ଯାହାଙ୍କୁ କରନ୍ତି ବନ୍ଦନ ॥୯
ଯାହାର ଚରଣକମଳ ।
ବିରାଜେ ନଖର ମଣ୍ଡଳ ॥ ୧୦
ଶିରମଣିରେ ନଖପନ୍ତି ।
ଚନ୍ଦ୍ରକୁ ଜିଣି ବିରାଜନ୍ତି ॥ ୧୧
କୁଣ୍ଡଳ-ପ୍ରଭାରେ ମଣ୍ଡିତ ।
ଗଣ୍ଡ ମଣ୍ଡଳ ହୃଷ୍ଟଚିତ୍ତ ॥ ୧୨
ତାହାଙ୍କ ଚରଣାରବିନ୍ଦେ ।
ଚକ୍ଷୁ ନିବେଶନ୍ତେ ଆନନ୍ଦେ ॥ ୧୩
ପରମଭକ୍ତି ଯୋଗମତେ ।
ଉଦିତ ହୋଏ ହୃଦଗତେ ॥ ୧୪
ଯାହାଙ୍କୁ ବିବିଧ-ବିଧାନେ ।
ସେବନ୍ତି ନାଗପତ୍ନୀ ମାନେ ॥ ୧୫
ଯେ ଧରେ ରୂପ ମନୋହର ।
ବିଶୁଦ୍ଧ ଧବଳ ଶରୀର ॥ ୧୬
ବିପୁଳ ବକ୍ଷସ୍ଥଳ ତା'ର ।
କୁଙ୍କୁମ ଚନ୍ଦନେ ରୁଚିର ॥ ୧୭
ହଳମୂଷଳ କରେ ଯା'ର ।
କି ଅବା ଦେବା ପଟାନ୍ତର ॥ ୧୮
ରଜତ ସ୍ତମ୍ଭ ଭୂଜ ଦୁଇ ।
ମନ୍ଦସ୍ମିତରେ ମୁଖ ଶୋହି ॥ ୧୯
ମଦ୍ୟେ ଘୂର୍ଣ୍ଣିତ ସୁଲୋଚନ ।
ବିସ୍ତାର ଅରୁଣ ବଦନ ॥ ୨୦
ସେ ଯେ ଅନନ୍ତ ଭଗବାନ ।
ଅନନ୍ତ ଗୁଣର ନିଧାନ ॥ ୨୧
ସେ ଆଦିଦେବ ଯେ ଈଶ୍ୱର ।
କ୍ରୋଧକୁ କରିଣ ସଂହାର ॥ ୨୨
ଲୋକପାଳନ ନିମନ୍ତରେ ।
ତହିଁ ଅଛନ୍ତି ସେ ଠାକୁରେ ॥ ୨୩
ଉରଗ ସୁର ଯେ ଅସୁର ।
ସିଦ୍ଧ ଗନ୍ଧର୍ବ ବିଦ୍ୟାଧର ॥ ୨୪
ଅଶେଷ ମୁନିଗଣ ଯେତେ ।
ଆନନ୍ଦେ ଯେ ଯାହାର ମତେ ॥ ୨୫
ଅପରେ ପାରିଷଦ ଗଣେ ।
ସେବନ୍ତି ଯାହାର ଚରଣେ ॥ ୨୬
ନବତୁଳସୀ ଫୁଲ ଶିରେ ।
ଗନ୍ଧ ଆମୋଦଇ ପ୍ରଖରେ ॥ ୨୭
ଗନ୍ଧେ ମଧୁକର ନିକର ।
ଧ୍ୱନି କରନ୍ତି ମନୋହର ॥ ୨୮
ବନମାଳାଏ କଣ୍ଠେ ଧରି ।
କୁଣ୍ଡଳ ଅତି ମନୋହାରୀ ॥ ୨୯
ସୁନ୍ଦର ଭୁଜ ଲମ୍ବମାନ ।
ମହେନ୍ଦ୍ରବାରଣ ଯେସନ ॥୩୦
ଧ୍ୟାନ ଶ୍ରବଣ ଯୋଗସାରେ ।
ମୁନି ଚିନ୍ତନ୍ତି ଯା ମନରେ ॥୩୧
କଳିକଲୁଷ କର୍ମଗ୍ରନ୍ଥି ।
ଅବିଦ୍ୟା ନାଶ ଯେ କରନ୍ତି ॥୩୨
ଶ୍ରଦ୍ଧା-ଆରତେ ଯେବା ଜନ ।
ଯେବେ କରଇ ସୁମରଣ ॥୩୩
ଯେ ଏହା କରନ୍ତି ସକଳ ।
କରୁଣା ବହେ ଆଦିମୂଳ ॥୩୪
ଯାହାର ଅନୁଭବମାନ ।
ନାରଦମୁନି ହେ ରାଜନ ॥୩୫
ବ୍ରହ୍ମା-ସଭାରେ ବିସ୍ତାରିଲେ ।
ସକଳେ ଶୁଣି ନିସ୍ତରିଲେ ॥୩୬
ଯାହାର କଟାକ୍ଷକୁ ପାଇ ।
ଉତ୍ପତ୍ତି ସ୍ଥିତି ଲୟ ହୋଇ ॥୩୭
ଯା'ର ମୂରତି କୃପାମୟୀ ।
ସତ ଅସତ ଯା'ର ଦେହୀ ॥୩୮
ସୁଜନ-ମନ ହରିବାରେ ।
ମୃଗେନ୍ଦ୍ର ପ୍ରାୟ ଲୀଳା କରେ ॥୩୯
ଯାହାର ନାମ ସୁମରଣ ।
ଶ୍ରବଣ କୀର୍ତ୍ତନ ରାଜନ ॥୪୦
ଘୋର-ଦୁର୍ଗମେ ନର ଥାଇ ।
ଯେବେ ଆରତେ ସୁମରଇ ॥୪୧
ଆପଦ ଯାଇ ତା'ର ଦୂର ।
ସକଳ-ପାପୁ ହୋଏ ପାର ॥୪୨
ଆଶ୍ରୟ ହୋଇଲେ ତାହାର ।
ମୋକ୍ଷକୁ ଲଭେ ସେ ନିର୍ଭର ॥୪୩
ଭୂଗୋଳ ନାନା ନଦୀ ଗିରି ।
ଦ୍ୱୀପ ସମୁଦ୍ର ଆଦି କରି ॥୪୪
ଯାହାର ମସ୍ତକେ ଜଗତ ।
ସ୍ଥିରେ ଅଛଇ ପରୀକ୍ଷିତ ॥୪୫

Dr. Sudhanshu Sekhar Mishra

ଅତି ବିକ୍ରମ ଯେ ପୁରୁଷ ।
କେ କହୁଁ ତା ରୂପ ବିଶେଷ ॥୪୬
ଯେ ଆତ୍ମତନ୍ତ୍ର ଭଗବାନ ।
ତା'ର ଅଶେଷ ଗୁଣଗ୍ରାମ ॥୪୭
ଲୀଳାମାତ୍ରକେ ଏ ସଂସାର ।
ଯେ ଧରିଅଛି ବିଶ୍ୱଭାର ॥୪୮
ଏମନ୍ତ ପ୍ରଭାବ ଯାହାର ।
ଦୁରିତହାରୀ ସେ ଠାକୁର ॥୪୯
ଏବେ କହିଲୁ ଜୀବଗତି ।
କର୍ମରୁ ଯେ ଯାହା ଭୁଞ୍ଜନ୍ତି ॥୫୦
ଯାହାର ସ୍ଥାନଟି ଯେମନ୍ତ ।
ସକଳ କରିଲୁଁ ବିଦିତ ॥୫୧
ଯାହାର ଯେମନ୍ତ ଲକ୍ଷଣ ।
ଯେ ଧର୍ମ ଯା'ର ଆଚରଣ ॥୫୨
ଯେ ଉଚ୍ଚ-ନୀଚ ଜୀବଜନ୍ତୁ ।
ଯାହାର ଯେ କର୍ମ ଯେହେତୁ ॥୫୩
ତୁମ୍ଭ ପ୍ରଶନ ଅନୁସାରେ ।
ସକଳ କହିଲୁ ତୁମ୍ଭରେ ॥୫୪
ଏବେ କି ତୁମ୍ଭ ଅଭିଳାଷ ।
ଅପରେ କହିବୁଁ ବିଶେଷ ॥୫୫
ଅଖିଳ-ବ୍ରହ୍ମାଣ୍ଡ-କାରଣ ।
ଅନାଦି ପ୍ରଭୁ ନାରାୟଣ ॥୫୬
ସେ ପ୍ରଭୁ ଚରଣେ ମୋ ମତି ।
ଅନବରତେ ହେଉ ସ୍ଥିତି ॥୫୭
କହଇ ଜଗନ୍ନାଥ ଦାସ ।
ହରିଚରିତ ସୁଧାରସ ॥୫୮
ସୁଜନେ ଶୁଣ ଦେଇମନ ।
ଫିଟିବ ଭବର ବନ୍ଧନ ॥୫୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ଭୂବିବର ବିଧି
ଉପବର୍ଣ୍ଣନଂ ନାମ
ପଞ୍ଚବିଂଶୋଽଧ୍ୟାୟଃ ॥

---

## ଷଡ଼୍‌ବିଂଶ ଅଧ୍ୟାୟ

ପରୀକ୍ଷିତ ଉବାଚ

ବିଚିତ୍ରଗତି ଲୋକଙ୍କର ।
ତୁମ୍ଭେ କହିଲ ମୁନିବର ॥୧
ଏ କଥା ସଂଶୟ ମୋ ମନେ ।
ଏବେ କହିବା ବିଦ୍ୟମାନେ ॥୨
ଏବେ କହିବା ଫଳଭାବ ।
ଯେମନ୍ତେ ତରଇ ଅର୍ଣ୍ଣବ ॥୩

ଶୁକ ଉବାଚ

ତ୍ରିଗୁଣେ ବିଚିତ୍ର ହୁଅଇ ।
ଶୁଣ ପରୀକ୍ଷ ମନଦେଇ ॥୪
କର୍ତ୍ତାରମତେ ଫଳପାଇ ।
ଶ୍ରଦ୍ଧା-ଅଶ୍ରଦ୍ଧା ବେନି ହୋଇ ॥୫
ସାତ୍ତ୍ୱିକକର୍ମୀ ହୁଏ ସୁଖୀ ।
ରାଜସକର୍ମୀ ସୁଖୀଦୁଃଖୀ ॥୬
ତାମସ ଦୁଃଖୀ ଯେ ବିମୂଢ଼ ।
ଏ ତତ୍ତ୍ୱ ବୁଝେ ନାହିଁ ମୂଢ଼ ॥୭
ଯେତେ ଅଧର୍ମକାରୀଗଣ ।
ସଦା ଯେ ତମର ଅଧୀନ ॥୮
ତମୋଗୁଣଙ୍କ ଏହି ବ୍ରତ ।
ଲଭନ୍ତି ଫଳ ବିପରୀତ ॥୯
ସକଳ ଏକଭାବ ହୋଇ ।
କେବେହେଁ କେହି ନ ଭଜଇ ॥୧୦
ଏ ଅନନ୍ତରେ ଏବେ ଶୁଣ ।
ନିଷିଦ୍ଧ ଅଧର୍ମ ଲକ୍ଷଣ ॥୧୧
ଧର୍ମ ଅଧର୍ମ ବେନି ମତ ।
ଶ୍ରଦ୍ଧା ଅଶ୍ରଦ୍ଧା ଯେ ବିଦିତ ॥୧୨
ସମାନ କର୍ମଫଳମାନ ।
କାହାରି ନୁହଁଇ ରାଜନ ॥୧୩
ଯେତେ ଅବିଦ୍ୟା କାମ୍ୟକର୍ମ ।
ଏହା ଲକ୍ଷଣ ପରିଣାମ ॥୧୪
ଗତି ଯେ ଶତ ଶତ ମତ ।
ପ୍ରବୃତ୍ତ ହୁଏ ପରୀକ୍ଷିତ ॥୧୫
ଏହାର ଗତି ଅଗୋଚର ।
ବିସ୍ତାରି ବର୍ଣ୍ଣିବୁ ଅପର ॥୧୬

ପରୀକ୍ଷିତ ଉବାଚ

ଭୋ ମୁନି ତ୍ରିଲୋକ ବାହାରେ ।
ନରକ କିବା ଅନ୍ତରାଳେ ॥୧୭
କିବା ତ୍ରିଭୁବନ ମଧ୍ୟରେ ।
କହିବା ସାବଧାନେ ମୋରେ ॥୧୮

ଶୁକ ଉବାଚ

ସେ ତତ୍ତ୍ୱ ଶୁଣ ତୁ ରାଜନ ।
କହନ୍ତି ଋଷି ହୃଷ୍ଟମନ ॥୧୯
ତ୍ରିଜଗତର ଅନ୍ତରାଳ ।
ଦକ୍ଷିଣଦିଗେ ମହୀପାଳ ॥୨୦
ଭୂମିର ତଳେ ଜଳପରେ ।
ଅଗ୍ନିଷ୍ୱାତ୍ତସଭା ତହିଁରେ ॥୨୧
ସକଳ ପିତୃଗଣ ଯେତେ ।
ସ୍ୱଗୋତ୍ର କଲ୍ୟାଣ ନିମନ୍ତେ ॥୨୨
ଯହିଁ ବସନ୍ତି ହେ ରାଜନ ।
ତହିଁ ଅନ୍ତକ ଭଗବାନ ॥୨୩
ଅନ୍ତେ ଜୀବକୁ ସେ ନିଅନ୍ତି ।
ଯମପୁରୁଷେ ଦଣ୍ଡ ଦ୍ୟନ୍ତି ॥୨୪
ଦୋଷ ଯେ କର୍ମ ଅନୁସରି ।
ଯେ ପ୍ରାଣୀ ଯାହା ଥାଇ କରି ॥୨୫

Dr. Sudhanshu Sekhar Mishra

ଭଗବତ-ଆଜ୍ଞା ଲଂଘିଣ ।
ବିପଥେ ଯେ କରେ ଗମନ ॥୨୬
ତାହାଙ୍କୁ ନେଇ ଦଣ୍ଡଧର ।
ଦଣ୍ଡ ଯେ ଦିଅନ୍ତି ଅପାର ॥୨୭
ଏକବିଂଶତି ପରକାରେ ।
ନରକେ ଅଛନ୍ତି ଯହିଁରେ ॥୨୮
ଯେ ରୂପ ଯେ ନାମ ଲକ୍ଷଣ ।
କହିବା ଶୁଣ ହେ ରାଜନ ॥୨୯
ଅନ୍ଧକୂପ ଯେ ଅସିପତ୍ର ।
ଶୂକରମୁଖ କାଳସୂତ୍ର ॥୩୦
ରୌରବ ମହା ଯେ ନରକ ।
ଅନ୍ଧତାମିସ୍ର କୁମ୍ଭୀପାକ ॥୩୧
ତାମିସ୍ର ଯେ କୃମିଭୋଜନ ।
ସନ୍ଦଂଶ ତପ୍ତସୂର୍ମି ନାମ ॥୩୨
ବଜ୍ରକଣ୍ଟକ ଶାଳମାଳ ।
ବଇତରଣୀ ମହୀପାଳ ॥୩୩
ପ୍ରାଣରୋଧ ଯେ ବିଶସନ ।
ପୂୟୋଦ ସାରମେୟାଦନ ॥୩୪
ଅପରେ ଅବୀଚି ରାଜନ ।
ଲାଳାଭକ୍ଷ ଯେ ଅୟଃପାନ ॥୩୫
ଶୂଳପ୍ରୋତ କ୍ଷାର କର୍ଦ୍ଦମ ।
ଯେବା ରକ୍ଷୋଗଣ ଭୋଜନ ॥୩୬
ଅବଟନିରୋଧନ ଆର ।
ଦନ୍ଦଶୂକ ନାମେ ଅପର ॥୩୭
ସୂଚୀମୁଖ ପର୍ଯ୍ୟାବର୍ତ୍ତନ ।
ଅଷ୍ଟବିଂଶତି ଏହୁ ନାମ ॥୩୮
ଏ ଯେ ନରକ ମହୀପାଳ ।
ବିବିଧ ଯାତନାର ସ୍ଥଳ ॥୩୯
ପରସ୍ତିରୀ ଅପତ୍ୟ ଧନ ।
ଯେ ପ୍ରାଣୀ କରଇ ହରଣ ॥୪୦
ସେ କାଳପାଶେ ବନ୍ଦୀ ହୋଇ ।
ଯମର ପୁରେ ଦୁଃଖ ପାଇ ॥୪୧
ତାମିସ୍ରନରକେ ପଡ଼ଇ ।
ନାନା ଯାତନା ସେ ଭୁଞ୍ଜଇ ॥୪୨

କ୍ଷୁଧା-ପିପାସାରେ ପୀଡ଼ିତ ।
ହୋଇ ସେ ଦଣ୍ଡରେ ତାଡ଼ିତ ॥୪୩
ନାନା ତର୍ଜ୍ଜନା ଯେ ପ୍ରହାର ।
ଯେତେ ଯାତନା ଭୟଙ୍କର ॥୪୪
ପରମକଷ୍ଟ ପାଇ ତହିଁ ।
କ୍ଷଣକ୍ଷଣକେ ମୋହ ଯାଇ ॥୪୫
ଅନ୍ଧତାମିସ୍ରେ ଏ ପ୍ରକାରେ ।
ଯାତନା ପ୍ରାଣୀ ଭୋଗକରେ ॥୪୬
କପଟେ ପରଦାରା ହରି ।
ଯେବେ ତାମିସ୍ର ନ ଉବୁରି ॥୪୭
ତେବେ ପଡ଼ଇ ସେ ଯେ ତହିଁ ।
ଯାତନା-ସିନ୍ଧୁରେ ବୁଡ଼ଇ ॥୪୮
ନଷ୍ଟ ହୁଅଇ ମତି ତା'ର ।
ଦୃଷ୍ଟି ନାଶଇ ନୃପବର ॥୪୯
ମୁହିଁ ମୋହର ଭାବ ବହି ।
ପ୍ରାଣୀଦ୍ରୋହକୁ ଯେ ଚିନ୍ତଇ ॥୫୦
କୁଟୁମ୍ବ ପାଇଁ ହିଂସା ବହି ।
ସେ ପ୍ରାଣୀ ରୌରବେ ପଡଇ ॥୫୧
ସେ ଜୀବ ହିଂସନ୍ତି ସଂସାରେ ।
ତାହାଙ୍କୁ ପର ଯେ ଲୋକରେ ॥୫୨
ରୌରବ ମୂର୍ତ୍ତି ଜୀବ ହୋଇ ।
ସେଠାରେ ତାହାଙ୍କୁ ହିଂସଇ ॥୫୩
ମହାରୌରବ ଏହି ମତ ।
ଯହିଁ କ୍ରୂରଜୀବ ବିଦିତ ॥୫୪
ତହିଁରେ ଯେ ପ୍ରାଣୀ ପଡ଼ଇ ।
ରୌରବ-କ୍ରବ୍ୟାଦ ତା ଖାଇ ॥୫୫
ଯେ ନର ପଶୁପକ୍ଷୀମାନ ।
ପ୍ରାଣ ଥାଉଁ କରେ ରନ୍ଧନ ॥୫୬
ରାକ୍ଷସୁଁ ବଳି ସେହି ହୋଇ ।
କୁମ୍ଭୀପାକରେ ସେ ପଡଇ ॥୫୭
ତପତ-ତଇଲେ ତାହାର ।
ରନ୍ଧନ ହୁଅଇ ଶରୀର ॥୫୮
କାଳସୂତ୍ର ନରକ ନାମ ।
ବିସ୍ତାର ଅୟୁତ ଯୋଜନ ॥୫୯

ତାମ୍ରମୟ ଯେ ଭୂମିତାର ।
ଉପରେ ଥାଇ ଯେ ଭାସ୍କର ॥୬୦
ଅଧୋଭାଗରେ ଅଗ୍ନିଥାଇ ।
ଏମନ୍ତ ନରକ ଅଟଇ ॥୬୧
ଯେ ନର ବ୍ରହ୍ମହତ୍ୟା କରେ ।
ସେ ତହିଁ ପଡଇ ନିର୍ଭରେ ॥୬୨
ତପତ-ସୁବର୍ଣ୍ଣ ଫୁଟଇ ।
ତହିଁ ସେ ଦଗଧ ହୁଅଇ ॥୬୩
କ୍ଷଣକେ ଉଠଇ ଲୋଟଇ ।
ବସଇ ବ୍ୟାକୁଳେ ଧାମଇଁ ॥୬୪
କ୍ଷୁଧା ପିପାସା ପୀଡାମାନ ।
କ୍ଷଣକେ ହୁଏ ଅଚେତନ ॥୬୫
ପଶୁର ଦେହେ ରୋମଯେତେ ।
ବର୍ଷ ତାବତ ସେହିମତେ ॥୬୬
ଅତ୍ୟନ୍ତ ଯାତନା ଭୁଞ୍ଜଇ ।
ସେ ପ୍ରାଣୀ ତହିଁ ପଡିଥାଇ ॥୬୭
ଯେ ନିଜ ଧର୍ମପଥ ଛାଡି ।
ବେଦବଚନ ନିନ୍ଦେ ହୁଡି ॥୬୮
ପାଷଣ୍ଡ ବୋଲି ତାକୁ କହି ।
ଅସିପତ୍ରରେ ସେ ପଡଇ ॥୬୯
ଲୌହମୁଦ୍ଗର ତା' ଉପରେ ।
ପ୍ରହାର କରନ୍ତି ନିର୍ଭରେ ॥୭୦
ଅଦୋଷେ ଦଣ୍ଡନ୍ତି ଯେ ନରେ ।
ପାପ ଭୁଞ୍ଜନ୍ତି ତମଘୋରେ ॥୭୧
ଅତ୍ୟନ୍ତ ପାପରାଶି ବହି ।
ଶୂକରମୁଖେ ସେ ପଡ଼ଇ ॥୭୨
ତହିଁରେ ପୁରାଇ ନିର୍ଭରେ ।
ନାନା ଆୟୁଧର ପ୍ରହାରେ ॥୭୩
ଇକ୍ଷୁଦଣ୍ଡର ପ୍ରାୟ କରି ।
ତାକୁ ପେଷନ୍ତି ଦଣ୍ଡଧାରୀ ॥୭୪
ଅତ୍ୟନ୍ତ କଷ୍ଟକୁ ସେ ପାଇ ।
କ୍ଷଣ କ୍ଷଣକେ ମୋହ ଯାଇ ॥୭୫
ଏ ଯେ ସଂସାରେ ନରଦେହୀ ।
କ୍ଷୁଦ୍ରପ୍ରାଣୀଙ୍କୁ ପୀଡା ଦେଇ ॥୭୬

Dr. Sudhanshu Sekhar Mishra

ହିଂସଇ ଜ୍ଞାନହୀନ ମତେ ।
ସନ୍ତାପ ଲଭଇ ତେମନ୍ତେ ॥୭୭

ସେ ପ୍ରାଣୀ ପରଲୋକେ ଯାଇ ।
ଅନ୍ଧକୂପରେ ପଡିଥାଇ ॥୭୮

ଯେ ଗ୍ରାସ ନ ବାଣ୍ଟି ଭୁଞ୍ଜଇ ।
ବାୟସ ତୁଲ୍ୟ ତାକୁ କହି ॥୭୯

ନରକ ଯେ କୃମି ଭୋଜନ ।
ନରକମାନଙ୍କେ ଅଧମ ॥୮୦

ଶତ ସହସ୍ର ଯେ ଯୋଜନ ।
ଯେ କୃମିକୁଣ୍ଡ ପରିମାଣ ॥୮୧

ତହୁଁ ପଡ଼ଇ ସେହୁ ନର ।
ଉଗ୍ର-ଯାତନାର ଯେ ଘର ॥୮୨

କୃମିକୁ ଭକ୍ଷଇ ସେ ଜନ ।
ତାକୁ ଭକ୍ଷନ୍ତି କୃମିମାନ ॥୮୩

ଯାବତ କର୍ମ କ୍ଷୟ ନୋହେ ।
ତାବତ ତହିଁ ସେହୁ ରହେ ॥୮୪

ବିପ୍ରର ଦ୍ରବ୍ୟ ଯେ ହରଇ ।
ସନ୍ଦଂଶେ ପୀଡା ସେ ଲଭଇ ॥୮୫

ଅଗମ୍ୟା ସ୍ତିରୀ ଯେ ଗମଇ ।
ତପ୍ତସୂର୍ମିରେ ସେ ପଡ଼ଇ ॥୮୬

ନାରୀ ବା ଅଗମ୍ୟ ପୁରୁଷେ ।
ଚିତ୍ତ ବଳାଇ ରତି ଆଶେ ॥୮୭

ତପତ ଲୌହମୂର୍ତ୍ତିମାନ ।
ତାକୁ କରାନ୍ତି ଆଲିଙ୍ଗନ ॥୮୮

ପୁରୁଷ ରୂପ ସ୍ତିରୀ ଠାରେ ।
ସ୍ତିରୀଏ ପୁରୁଷ ବେଭାରେ ॥୮୯

ଅଗମ୍ୟ ପଶ୍ୱାଦି ଗମନ ।
କରଇ ପାଷଣ୍ଡ ଯେ ଜନ ॥୯୦

ବଜ୍ରକଣ୍ଟକଶାଳଳୀରେ ।
ଆରୋହ କରାନ୍ତି ତାହାରେ ॥୯୧

ଯେ ରାଜପୁରୁଷ ଅପର ।
କରନ୍ତି ଧର୍ମସେତୁ ଦୂର ॥୯୨

ଧର୍ମ ଆଚରେ ଯେହୁ ନର ।
ତାଙ୍କୁ ହିଂସନ୍ତି ଯେ ପାମର ॥୯୩

ସେ ଅନ୍ତେ ବଇତରଣୀରେ ।
ପାପିଷ୍ଟେ ପଡ଼ନ୍ତି ନିର୍ଭରେ ॥୯୪

ନିରୟ ପରିଖା ଯାହାର ।
ଏମନ୍ତ ଯେଉଁ ନଦୀବର ॥୯୫

ତହିଁର ଜଳଜନ୍ତୁମାନ ।
ପାପୀଙ୍କୁ କରନ୍ତି ଭକ୍ଷଣ ॥୯୬

ମୂତ୍ର ପୁରୀଷ ଯେ ଶୋଣିତ ।
ନଖ ମେଦ ଅସ୍ଥି ବହୁତ ॥୯୭

ଏଥି ପଡ଼ିଣ ତାପ ପାଇ ।
ବାସନା କର୍ମ ସୁମରଇ ॥୯୮

ବୃଷଳୀଗମନ ଯେ କରେ ।
ଶୌଚ ଆଚାର ପରିହରେ ॥୯୯

ନିର୍ଲ୍ଲଜ୍ଜଭାବକୁ ବହଇ ।
ନିତ୍ୟେ ନିୟମକୁ ଛାଡଇ ॥୧୦୦

ଅନ୍ତେ ସେ ପୂୟୋଦେ ପଡ଼ଇ ।
ଶ୍ଳେଷ୍ମା ଯେ ମଳମୂତ୍ର ଯହିଁ ॥୧୦୧

ଅତି ବୀଭତ୍ସ ଯେ ଭୋଜନ ।
ତାହାକୁ ଭୁଞ୍ଜାଇ ସେ ଜନ ॥୧୦୨

ମୃଗୟାବିହାରେ ଯେ ନର ।
ପ୍ରବୃତ୍ତ ହୋଇ ବାରମ୍ବାର ॥୧୦୩

ମୃଗାଦି ବାଳପଶୁମାନ ।
ବହୁତ ମାରନ୍ତି ରାଜନ ॥୧୦୪

ବିବିଧବାଣେ ଯମଦୂତ ।
ତାକୁ ପ୍ରହାରନ୍ତି ବହୁତ ॥୧୦୫

କପଟଯଜ୍ଞେ ଯେହୁ ନରେ ।
ଦମ୍ଭ ଆଚରି ପଶୁ ମାରେ ॥୧୦୬

ସେ ଲୋକ ବିଶସନ ନାମେ ।
ନରକେ ପଡ଼ନ୍ତି ସମାନେ ॥୧୦୭

ପତ୍ନୀକି ରେତକୁ ପିଆଇ ।
ଯେ ଜନ କାମବଶ ହୋଇ ॥୧୦୮

ଅମୂତ୍ର ରେତ ଯେ କୁଲ୍ୟାରେ ।
ରେତକୁ ପିଆନ୍ତି ତାହାରେ ॥୧୦୯

ଯେ ନର ଗୃହେ ଅଗ୍ନି ଦେଇ ।
କପଟେ ଗରଳ ଭୁଞ୍ଜାଇ ॥୧୧୦

ସେ ପରଲୋକ ଯେବେ ଯାଇ।
ବିବିଧଯାତନା ଭୁଞ୍ଜଇ ॥୧୧୧

ଉଗ୍ରଦଶନ ଶ୍ୱାନ ଶତ ।
ତାକୁ ଭୁଞ୍ଜନ୍ତି ଅବିରତ ॥୧୧୨

ସାକ୍ଷ୍ୟରେ ମିଥ୍ୟା ଯେ କହଇ ।
ଅବୀଚି-ନରକେ ପଡ଼ଇ ॥୧୧୩

ଅଧକୁ ହୁଅଇ ତା' ଶିର ।
ନରକ ଭୁଞ୍ଜାଇ ପାମର ॥୧୧୪

ଯାହାର ଶ୍ରେଷ୍ଠ ଯେଉଁ ଜନ ।
ସେ ତାଙ୍କୁ ନ କରେ ବନ୍ଦନ ॥୧୧୫

କ୍ଷାରକର୍ଦ୍ଦମେ ସେ ପଡ଼ଇ ।
ବହୁତ ଯାତନା ଭୁଞ୍ଜଇ ॥୧୧୬

ଯେ ପ୍ରାଣୀ ନରମେଧ କରେ ।
ଦେବତା-ସନ୍ତୋଷ-ପ୍ରକାରେ ॥୧୧୭

ସ୍ତିରୀ ବାଳକ ପଶୁ ମାରେ ।
ଡାକିନୀରୂପେ ସେ ସଞ୍ଚରେ ॥୧୧୮

ସେହି ବାଳକ-ପଶୁମାନେ ।
ପ୍ରବେଶି ଯମର ସଦନେ ॥୧୧୯

ରାକ୍ଷସରୂପକୁ ଆଚରି ।
ଶୋଣିତ ପିବନ୍ତି ତାହାରି ॥୧୨୦

ସେ ସ୍ତିରୀ ପୁରୁଷ ରକତ ।
ଖାଇ ହୁଅନ୍ତି ମଦେ ମତ୍ତ ॥୧୨୧

ନାଚନ୍ତି ଗାୟନ୍ତି ହରଷେ ।
ଯେମନ୍ତ ରାକ୍ଷସ-ପୁରୁଷେ ॥୧୨୨

ବିବିଧ ରଜ୍ଜୁର ପ୍ରକାରେ ।
ଯେ ନର ଗ୍ରାମ୍ୟଅରଣ୍ୟରେ ॥୧୨୩

ବିଶ୍ୱାସୀ-ପଶୁଙ୍କୁ ମାରଇ ।
ସେ ନର ନରକେ ପଡ଼ଇ ॥୧୨୪

ପାଶେ ବନ୍ଧନ ହୋଇ ସେହି ।
କ୍ଷୁଧା-ତୃଷାରେ ପୀଡା ପାଇ ॥୧୨୫

ବୃକ କୁକ୍କୁର ଗୃଧ୍ରଗଣ ।
ତୁଣ୍ଡରେ କରନ୍ତି ତାଡନ ॥୧୨୬

ବିବିଧ-କ୍ଳେଶକୁ ଲଭଇ ।
ଆପଣା କର୍ମ ସୁମରଇ ॥୧୨୭

Dr. Sudhanshu Sekhar Mishra

ଉଗ୍ରସ୍ୱଭାବ ଯେଉଁ ନରେ ।
ପ୍ରାଣୀଙ୍କୁ ଉଦବେଗ କରେ ॥ ୧୨୮
ଦନ୍ଦଶୂକ ଘୋର ନରକେ ।
ପଡ଼ନ୍ତି ଯାଇ ପରଲୋକେ ॥ ୧୨୯
ପଞ୍ଚ ବା ସପ୍ତମୁଖ ଯାର ।
ଏମନ୍ତ ଦନ୍ଦଶୂକବର ॥ ୧୩୦
ଅନେକ ଅଛନ୍ତି ତହିଁରେ ।
ଭକ୍ଷନ୍ତି ସେ ପାପୀ ଶରୀରେ ॥ ୧୩୧
ଯେ ଗର୍ତ୍ତଆଦି କଷ୍ଟସ୍ଥଳେ ।
ପ୍ରାଣୀଙ୍କି ଥୋଇ ଅବହେଳେ ॥ ୧୩୨
ଦ୍ୱାର ରୁନ୍ଧଇ ମୁଦ ଦେଇ ।
ସେ ନର ନରକେ ପଡ଼ଇ ॥ ୧୩୩
ଗର୍ତ୍ତେ ପାମରକୁ ଥୁଅନ୍ତି ।
ସଧୂମଅଗ୍ନି ଦ୍ୱାରେ ଦ୍ୟନ୍ତି ॥ ୧୩୪
ପୂର୍ବେ ଯେ ଆସି ଯାଇ ନାହିଁ
ଅତିଥି ଭାବରେ ଆସଇ ॥ ୧୩୫
ଗୃହେ ନ ରଖି ତାକୁ ଯେବେ ।
ଅବଲୋକଇ କ୍ରୋଧଭାବେ ॥ ୧୩୬
କର୍କଶବାକ୍ୟ ତାକୁ କହି ।
ଅନ୍ତେ ସେ ନରକେ ପଡଇ ॥ ୧୩୭
ବଜ୍ରତୁଣ୍ଡ ଯେ ଗୃଧ୍ର କଙ୍କ ।
କାକ ସହିତେ ଯେବା ବକ ॥ ୧୩୮
ଦୀର୍ଘଚଞ୍ଚୁରେ ଚିରି ତା'ର ।
ଚକ୍ଷୁ ଖୋଳନ୍ତି ନୃପବର ॥ ୧୩୯
ଯେ ଅହଙ୍କାରେ ଛନ୍ନ ହୋଇ ।
ପ୍ରାଣୀଙ୍କି କଟାକ୍ଷେ ଚାହିଁଇ ॥ ୧୪୦
କୁଟିଳହୃଦୟ ଭାବରେ ।
ଜୀବର ମନ୍ଦକୁ ଆଚରେ ॥ ୧୪୧

ଅନ୍ତେ ସେ ଯାଇ ପରଲୋକେ ।
ପଡେ ନରକ ସୂଚୀମୁଖେ ॥ ୧୪୨
ତହିଁରେ ପାପୀର ଶରୀର ।
ପୀଡନ୍ତି ଯମର କିଙ୍କର ॥ ୧୪୩
ଏମନ୍ତ ପ୍ରକାରେ ରାଜନ ।
ଶତଶତ-ନରକମାନ ॥ ୧୪୪
ଅଛନ୍ତି ଯମର ସଦନ ।
ତହିଁ ପାପୀଙ୍କ ନିଜସ୍ଥାନ ॥ ୧୪୫
ଯେ ଯେତେ କର୍ମ ଆଚରଇ ।
ସେ ରୂପେ ଫଳ ସେ ଭୁଞ୍ଜଇ ॥ ୧୪୬
ନିବୃତ୍ତି ମାର୍ଗର ଲକ୍ଷଣ ।
ଆଗେ ତ କହିଛୁଁ ରାଜନ ॥ ୧୪୭
ଏ ଚତୁର୍ଦ୍ଦଶଭାଗ ହୋଇ ।
ବ୍ରହ୍ମାଣ୍ଡକୋଷ ଏ ବୋଲାଇ ॥ ୧୪୮
ପୁରାଣ ଅନୁମାନ କରି ।
ତୁମ୍ଭରେ କହିଲୁଁ ବିସ୍ତାରି ॥ ୧୪୯
ଯେ ଭାଗବତ ନାରାୟଣ ।
ମହାପୁରୁଷ ଭଗବାନ ॥ ୧୫୦
ଗରିଷ୍ଠରୂପ ତାହାଙ୍କର ।
ମାୟାଗୁଣରେ ନୃପବର ॥ ୧୫୧
ଯେତେକ ବର୍ଣ୍ଣିଲଇଁ ମୁହିଁ ।
ସକଳରୂପ ସେ ଅଟଇ ॥ ୧୫୨
ଯେ ନର ଶ୍ରଦ୍ଧାବନ୍ତ ହୋଇ ।
ପଢଇ ଶୁଣଇ ଶୁଣାଇ ॥ ୧୫୩
ସେ ସାଧୁଭକ୍ତ ଶୁଦ୍ଧନର ।
ପରମଆତ୍ମା ଯେ ଈଶ୍ୱର ॥ ୧୫୪
ଅଚିନ୍ତ୍ୟରୂପଟି ଯାହାର ।
ପରମସୂକ୍ଷ୍ମରୁ ଯେ ପର ॥ ୧୫୫

ଅତିସୂକ୍ଷ୍ମରୁ ସୂକ୍ଷ୍ମତର ।
ଦେବଙ୍କୁ ଯାହା ଅଗୋଚର ॥ ୧୫୬
ସୁଗତି ଲଭଇ ସେ ଜନ ।
ପରମଶ୍ରେଷ୍ଠ ତା ଜୀବନ ॥ ୧୫୭
ଦ୍ୱୀପ ବରଷ ନଦୀ ଗିରି ।
ସର୍ବ ସମୁଦ୍ର ଦଣ୍ଡଧାରୀ ॥ ୧୫୮
ପାତାଳ ଦିଗ ଯେ ନରକ ।
ଭାଗ ଲକ୍ଷଣ ଯେତେ ଲୋକ॥ ୧୫୯
ଈଶ୍ୱର ସ୍ଥୁଳ ଯେ ଶରୀର ।
ଆଶ୍ରୟ ସକଳଜୀବର ॥ ୧୬୦
ଏ ସର୍ବ ବିଭାଗ ପ୍ରକାରେ ।
ଭୋ ନୃପ କହିଲୁ ତୁମ୍ଭରେ ॥ ୧୬୧
କହଇ ଜଗନ୍ନାଥ ଦାସ ।
ପଞ୍ଚମସ୍କନ୍ଧେ ସୁଧାରସ ॥ ୧୬୨
ସାଦରେ ପିଅ ସାଧୁପ୍ରାଣୀ ।
ତରିବ ଭବତରଙ୍ଗିଣୀ ॥ ୧୬୩
ଏ ଯେ ସଂସାର-ସିନ୍ଧୁ-ଘୋର ।
ଦୁଷ୍ଟଜନରେ ଭୟଙ୍କର ॥ ୧୬୪
ପାଦପଲ୍ଲବଯୁଗ ଧରି ।
ସୁଖେ ତରିବ ଭବବାରି ॥ ୧୬୫
ତା ବିନୁ ଅନ୍ୟଗତି ନାହିଁ ।
ତାହି କରିବେ ଭାବଗ୍ରାହୀ ॥ ୧୬୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ପଞ୍ଚମସ୍କନ୍ଧେ ନରକାନୁବର୍ଣ୍ଣନଂ ନାମ
ଷଡ୍‌ବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ଷଷ୍ଠ ସ୍କନ୍ଧ

Dr. Sudhanshu Sekhar Mishra

## ଷଷ୍ଠସ୍କନ୍ଧ

### ପ୍ରଥମ ଅଧ୍ୟାୟ

ନମଇଁ ନୃସିଂହ ଚରଣ ।
ଅନାଦି ପରମ କାରଣ ॥୧

ଶୁକ ଚରଣେ ପ୍ରଣମିତ ।
ହୋଇ ବୋଲନ୍ତି ପରୀକ୍ଷିତ ॥୨

ପରୀକ୍ଷିତ ଉବାଚ

ଏକ ସଂଶୟ ମୋର ମନ ।
ତେଣୁ ମୁଁ କରି ନିବେଦନ ॥୩

ଭୋ ଭାଗବତ ତୁମ୍ଭେ ଆଦ୍ୟେ ।
କହିଲ ଯା ଦ୍ୱିତୀୟସ୍କନ୍ଧେ ॥୪

ଆଦ୍ୟରେ ଭଗବାନ ବ୍ରହ୍ମା ।
ଅଷ୍ଟ ଐଶ୍ୱର୍ଯ୍ୟ ସୁଖ ସୀମା ॥୫

ନିବୃତ୍ତିମାର୍ଗେ ଯା' କହିଲେ ।
ତା ଯୋଗେଶ୍ୱର ନ ଜାଣିଲେ ॥୬

ନିବୃତ୍ତି ମାର୍ଗେ ଚକ୍ରପାଣି ।
କେବଳ ଯୋଗେ ତା' ବଖାଣି ॥୭

ଯୋଗେ ଲଭନ୍ତି ପ୍ରଜାପତି ।
କ୍ରମେ ତାଙ୍କର ସଙ୍ଗେ ମୁକ୍ତି ॥୮

ଆଉ ପ୍ରବୃତ୍ତିମାର୍ଗ ଯେହି ।
ସ୍ୱର୍ଗାଦିସୁଖ ଯହିଁ ପାଇ ॥୯

ପ୍ରକୃତି ବିଳୟ ଅଭାବେ ।
ଜନ୍ମ ମରଣ ଜୀବ ଲଭେ ॥୧୦

କେମନ୍ତ ରୂପେ ତା ପ୍ରକାଶ ।
ବିଷ୍ଣୁର ମାୟାରେ ପ୍ରବେଶ ॥୧୧

ସ୍ଥିର ସମୂହ ଦୁଷ୍ଟଗଣ ।
ପ୍ରବୃତ୍ତି ସୃଷ୍ଟି ନୋହେ ଭିନ୍ନ ॥୧୨

ପୁଣି ହୁଏ ସେ ପୁଣି ଯାଏ ।
ଯେ ମାର୍ଗ କହିଲ ତୃତୀୟେ ॥୧୩

ଯେ ନାନା ଅଧର୍ମ ଲକ୍ଷଣ ।
ନରକମାନଙ୍କ ବର୍ଣ୍ଣନ ॥୧୪

ଯେ ସ୍ୱାୟମ୍ଭୁବ ମନୁ ଆଦି ।
କହିଲ ଚତୁର୍ଥେ ସମ୍ପାଦି ॥୧୫

ଉତ୍ତାନପାଦ ପ୍ରିୟବ୍ରତ ।
ଏ ବେନି ବଂଶାନୁଚରିତ ॥୧୬

ଦ୍ୱୀପ ବରଷ ମହୀଧର ।
ନଦୀ ଉଦ୍ୟାନ ଯେ ସାଗର ॥୧୭

ପୃଥିବୀ ମଣ୍ଡଳର ସ୍ଥାନ ।
ସୂର୍ଯ୍ୟମଣ୍ଡଳ ଜ୍ୟୋତିର୍ଗଣ ॥୧୮

ଚନ୍ଦ୍ର ତାରକା ଆଦି କରି ।
ଭାଗ ବିବର ଅନୁସରି ॥୧୯

ଯେମନ୍ତ ପ୍ରକାରେ ଈଶ୍ୱର ।
ରଚିଲେ ଅଖିଳ ସଂସାର ॥୨୦

ନାନା ପ୍ରକାରେ ଯେ ନରକ ।
ପ୍ରାଣୀ ସଞ୍ଚରନ୍ତି ଅନେକ ॥୨୧

ଉଗ୍ର ଯାତନାକୁ ଭୁଞ୍ଜନ୍ତି ।
କି କଲେ ତହିଁ ନ ପଡ଼ନ୍ତି ॥୨୨

ବିଶେଷ କରି ମହାଭାଗ ।
କହ ତୁ ଭାବେ ମୋର ଆଗ ॥୨୩

ମନ ବଚନ ଶରୀରରେ ।
ଯେ ପ୍ରାଣୀ ପାପକାର୍ଯ୍ୟ କରେ ॥୨୪

ଇହଲୋକରେ ଦେହ ଧରି ।
ଯେବେ ପ୍ରାୟଶ୍ଚିତ୍ତ ନ କରି ॥୨୫

କି ଅବା ପରମଈଶ୍ୱରେ ।
ପୂଜା ନ କରେ ଭକ୍ତିଭରେ ॥୨୬

ଅଥବା ନାମସଂକୀର୍ତ୍ତନେ ।
ଶ୍ରଦ୍ଧା ନ କରେ ଭଗବାନେ ॥୨୭

ବିଶେଷେ ଯାତନା ନରକ ।
ସେ ପ୍ରାଣୀ ଲଭେ ଅତିରେକ ॥୨୮

ଯେବଣ ପ୍ରକାରେ ଭିଷକ ।
କରଇ ଚିକିତ୍ସା ଅନେକ ॥୨୯

ରୋଗରୁ ଗୁରୁ ଲଘୁ ଜାଣି ।
ନିଦାନ କଥା ପରିମାଣି ॥୩୦

ତେମନ୍ତ ମରଣର ଆଗେ ।
ସଂଯତମନା ହୋଇ ବେଗେ ॥୩୧

ପାପର ନିବାରଣ ଅର୍ଥେ ।
କରିବ ସଦ୍ୟ ପ୍ରାୟଶ୍ଚିତ୍ତେ ॥୩୨

ପରୀକ୍ଷିତ ଉବାଚ

ପାପ ଅହିତ ପରିମାଣି ।
ତଥାପି ବିଷୟାରେ ପ୍ରାଣୀ ॥୩୩

ପାପରେ ପୁଣି ହିଁ ପ୍ରବର୍ତ୍ତେ ।
କି କାର୍ଯ୍ୟ ତେବେ ପ୍ରାୟଶ୍ଚିତ୍ତେ ॥୩୪

କେବେ ବା ପାପୁ ନିବର୍ତ୍ତଇ ।
ପୁଣି ହିଁ ପାପ ଆଚରଇ ॥୩୫

ଏଥୁ ଅନ୍ତରେ ପ୍ରାୟଶ୍ଚିତ୍ତେ ।
କୁଞ୍ଜରସ୍ନାନ କଲା ମତ ॥୩୬

ଏମନ୍ତ ରାଜନ ବଚନେ ।
ଶୁକ କହନ୍ତି ତୋଷମନେ ॥୩୭

କର୍ମରେ କରି କର୍ମମାନ ।
ନିଗ୍ରହ କରନ୍ତି ଯେ ଜନ ॥୩୮

କର୍ମ ସମୂଳେ ନାଶ ନୋହି ।
ଏହାର ସ୍ୱଭାବଟି ଏହି ॥୩୯

ଅଜ୍ଞାନୀ ଅଧିକାରୀ ଯେଣୁ ।
ବିଫଳ ପ୍ରାୟଶ୍ଚିତ୍ତ ତେଣୁ ॥୪୦

ସୁପଥ୍ୟ ଗ୍ରାସ ଯେ ନ କରେ ।
ତାହାକୁ ବ୍ୟାଧି ପୀଡା କରେ ॥୪୧

Dr. Sudhanshu Sekhar Mishra

ଏହି ନିୟମ ଯେ କରନ୍ତି ।
କର୍ମେ କଲ୍ୟାଣ ସେ ଲଭନ୍ତି ॥୪୨
ଦେହ ବଚନ ବୁଦ୍ଧି ଘେନି ।
ଯେ ପାପ କରିଥାଏ ପ୍ରାଣୀ ॥୪୩
ତପସ୍ୟା ଯମ ନିୟମରେ ।
ସମ ଦମ ତ୍ୟାଗ ଶୌଚରେ ॥୪୪
ସତ୍ୟ ବ୍ରହ୍ମଚର୍ଯ୍ୟ ଦୀକ୍ଷାରେ ।
ଜ୍ଞାନୀ ନାଶନ୍ତି ପାପଘୋରେ ॥୪୫
ଯେସନେ ଦହଇ ସକଳ ।
ବେଣୁର ଗୁଳ୍ମ ଦାବାନଳ ॥୪୬
ତେସନେ ଭକ୍ତିଯୋଗୁ କରି ।
ଗୋବିନ୍ଦ ଚରଣ ସୁମରି ॥୪୭
ମଳୟ ଚନ୍ଦନ ଯେସନ ।
ଅଗ୍ନିପାରୁଶେ ଯେହ୍ନେ ହେମ ॥୪୮
ଗୋବିନ୍ଦ ପାଦେ ଆଶ୍ରେ କରେ ।
ତେଣୁ ଅଘତିମିର ହରେ ॥୪୯
ଅଶେଷ ପାପମାନ ନାଶେ ।
ତମ ଯେସନେ ରବିତ୍ରାସେ ॥୫୦
ହେ ରାଜା ଅଘବନ୍ତ ଯେହି ।
ତପେ ପବିତ୍ର ତେତେ ନୋହି ॥୫୧
ଯେମନ୍ତ କୃଷ୍ଣର ବିଷୟେ ।
ପ୍ରାଣ ଅର୍ପିଲେ ଶୁଦ୍ଧ ହୋଏ ॥୫୨
ସୁଶୀଳ ସାଧୁ ଯେଉଁ ଜନ ।
ନାରାୟଣରେ ପରାୟଣ ॥୫୩
ତାହାଙ୍କ ଭକ୍ତିପଥମାନ ।
ଲୋକର କଲ୍ୟାଣ କାରଣ ॥୫୪
ସେ ନିତ୍ୟେ ଥାନ୍ତି ପରହିତେ ।
ଜଗତ ଦେଖେ ଆମ୍ଭଗତେ ॥୫୫
ଶୁଣ ରାଜନ ପରିମାଣି ।
କୃଷ୍ଣ-ବିମୁଖ ଯେତେ ପ୍ରାଣୀ ॥୫୬
ତାହାଙ୍କ ତପେ ଯେତେ ଫଳ ।
ସକଳ ହୁଅଇ ନିଷ୍ଫଳ ॥୫୭
ଶ୍ରୀକୃଷ୍ଣ-ପାଦପଦ୍ମ ଦୁଇ ।
ତା ଗୁଣେ ଅନୁରାଗୀ ହୋଇ ॥୫୮

ତାହାର ଯେଉଁ ଲୟ ଧ୍ୟାନ ।
ନିବେଦନରେ ତନୁ ମନ ॥୫୯
ଯେ ଏକାବେଳେ ବୋଲେ ନାମ ।
ସ୍ୱପ୍ନେ ସେ ନ ଦେଖଇ ଯମ ॥୬୦
ଯା ଦୂତ ଦଣ୍ଡ-ପାଶଧର ।
ନ ଦେଖେ ଚିହ୍ନ ତାହାଙ୍କର ॥୬୧
ଯେ ଇତିହାସ ପୁରାତନ ।
କହିବା ଶୁଣ ସାବଧାନ ॥୬୨
ବିଷ୍ଣୁଙ୍କ ଦୂତ ଯମଦୂତ ।
ସମ୍ବାଦ ଅତି ଅଦ୍ଭୁତ ॥୬୩
କାନ୍ୟକୁବ୍ଜ ନାମେ ଦେଶ ।
ଅଜାମିଳର ତହିଁ ବାସ ॥୬୪
ଆଶ୍ରମେ ଦ୍ୱିଜ ସେ ବୋଲାଇ ।
ସ୍ୱଭାବେ ଦାସୀପତି ହୋଇ ॥୬୫
ସଦାଚାରକୁ ନଷ୍ଟ କରି ।
ଦାସୀର ସଂସର୍ଗ ଆଚରି ॥୬୬
କୈତବ ଚୌର୍ଯ୍ୟପଣେ ଥାଇ ।
କୁତ୍ସିତକର୍ମ ଆଚରଇ ॥୬୭
ଏମନ୍ତେ କେତେଦିନ ଗଲା ।
ତାହାର ପୁତ୍ର ଉପୁଜିଲା ॥୬୮
ସେ ନଗ୍ରେ ଥାଇ ଦାସୀପତି ।
ପୁତ୍ରପାଳନେ ସଦା ମତି ॥୬୯
ଅଠାଶୀ ବରଷେ ତାହାର ।
କାଳ ହୋଇଲା ନୃପବର ॥୭୦
ବୃଦ୍ଧବୟସେ ତାର ସୁତ ।
ହୋଇଲା ଦଶ ପରିମିତ ॥୭୧
କନିଷ୍ଠ ନାମ ନାରାୟଣ ।
ପିତାର ଆନନ୍ଦ କାରଣ ॥୭୨
ତାହାର ତହିଁ ଚିତ୍ତ ଥାଇ ।
ଅନ୍ୟତ୍ର କେବେହେଁ ନ ଦେଇ ॥୭୩
ବାଳକ ସ୍ୱଭାବେ ଅଲ୍ୟାଳ ।
ବଚନ କହଇ ମୃଦୁଳ ॥୭୪
ତାହାର ଲୀଳାମାନ ଦେଖି ।
ହରଷ କେ ପାରିବ ଲେଖି ॥୭୫

ଭୋଜନ-ଜଳପାନ ବେଳେ ।
ନାନାପ୍ରକାରେ ସୁଖ ଭୋଳେ ॥୭୬
ବାଳକ-ସ୍ନେହେ ବଶ ହୋଇ ।
ଅଗ୍ରଭୋଜନ ତା'କୁ ଦେଇ ॥୭୭
ମରଣ ନ ଜାଣଇ ମୂଢ଼ ।
ବାଳକ-ସ୍ନେହେ ଚିତ୍ତ ଦୃଢ଼ ॥୭୮
ମରଣକାଳ ଉପଗତ ।
ତକ୍ଷଣେ କରି ଦୃଢ଼ଚିତ୍ତ ॥୭୯
ବାଳକ ନାମ ନାରାୟଣ ।
ମତି ନିବେଶିଲା ତକ୍ଷଣ ॥୮୦
ଯମର ଦୂତ ପାଶ କରେ ।
ମିଳିଲେ ତା'ର ସମୀପରେ ॥୮୧
ଉଚ୍ଚପୁରୁଷ ଭୟଙ୍କର ।
ବକ୍ର ବଦନ ମହାଘୋର ॥୮୨
ଲମ୍ବଲୋମ ସର୍ବଶରୀର ।
ଦେଖି ଅଜାମିଳ କାତର ॥୮୩
ଦୂରେ ବାଳକସଙ୍ଗେ ମିଳି ।
ତାହାର ପୁତ୍ର କରେ କେଳି ॥୮୪
ଗଭୀରସ୍ୱରେ ଉଚ୍ଚ କରି ।
ଡାକିଲା ପୁତ୍ରନାମ ଧରି ॥୮୫
ଇନ୍ଦ୍ରିୟ-ଆକୁଳେ ତକ୍ଷଣ ।
ଡାକିଲା ପୁତ୍ର ନାରାୟଣ ॥୮୬
ମଲା ଅଜାମିଳ ବ୍ରାହ୍ମଣ ।
ସେ ନାମ କରି ସଂକୀର୍ତ୍ତନ ॥୮୭
ଯମର ଦୂତେ ଥିଲେ ବେଢ଼ି ।
ହସ୍ତରେ ପାଶରଜ୍ଜୁ ଧରି ॥୮୮
ଶୁଣି ତା ମୁଖୁ ନାରାୟଣ ।
ଆସି ମିଳିଲେ ବିଷ୍ଣୁଗଣ ॥୮୯
ଏମନ୍ତେ ବିଷ୍ଣୁଦୂତେ ମିଳି ।
ଗନ୍ଧ-ଆମୋଦେ ଦିଗ ପୂରି ॥୯୦
ରୂପେ କି ଦେବା ପଟାନ୍ତର ।
ସୁବର୍ଣ୍ଣବେତ ଧରି କର ॥୯୧
ପୀତବସନ ପହରଣ ।
ଦିଶନ୍ତି ଦଗ୍ଧସ୍ୱର୍ଣ୍ଣବର୍ଣ୍ଣ ॥୯୨

Dr. Sudhanshu Sekhar Mishra

ସେ ଅଜାମିଳହୃଦୟରୁ ।
ଜୀବକୁ ଆକର୍ଷଣ କରୁ ॥୯୩
ଯମଦୂତଙ୍କୁ ବିଷ୍ଣୁଦୂତେ ।
ବଳେ ନିବାରିଲେ ତୁରିତେ ॥୯୪
ବଇବସ୍ୱତ ପ୍ରଭୁ ଯାର ।
ସେ ଦୂତମାନଙ୍କ ଉପର ॥୯୫
ପ୍ରହାର କଲେ ବିଷ୍ଣୁଦୂତେ ।
ତାଙ୍କୁ କହନ୍ତି ଯମଦୂତେ ॥୯୬
ବିଷ୍ଣୁଦୂତମାନଙ୍କୁ କହି ।
ତୁମ୍ଭେ ନିବାର କାହିଁ ପାଇଁ ॥୯୭
ଧର୍ମରାଜର ଆଜ୍ଞାମାନ ।
କପାଇଁ କରୁଛ ଲଂଘନ ॥୯୮
କାହାର ତୁମ୍ଭେମାନେ ଦୂତ ।
କାହୁଁ ବା ଅଇଲ ତୁରିତ ॥୯୯
କିପାଇଁ ଆମ୍ଭଙ୍କୁ ନିରୋଧ ।
କିବା ଉତ୍ତମ ତୁମ୍ଭେ ସିଦ୍ଧ ॥୧୦୦
କିବା ଦେବତା ତୁମ୍ଭେମାନେ ।
ଥାଅ ଦେବଙ୍କ ସନ୍ନିଧାନେ ॥୧୦୧
ତୁମ୍ଭର ଚକ୍ଷୁ ପଦ୍ମତୁଲ୍ୟ ।
ବିରାଜେ କିରୀଟ କୁଣ୍ଡଳ ॥୧୦୨
ଉରେ ଲମ୍ବଇ ବନମାଳ ।
ଶୋଭିତ ଯେ ପୀତ ଦୁକୂଳ ॥୧୦୩
ସର୍ବ ଲକ୍ଷଣ ତୁମ୍ଭ ଦେହ ।
ଚାରୁ ଚତ୍ୱାର ଭୁଜ ବହ ॥୧୦୪
ଶଙ୍ଖ ଚକ୍ର ଗଦା କମଳ ।
ଏଣେ ଶୋଭିତ ଯେ ତୁମ୍ଭର ॥୧୦୫
ଧନୁ ଖଡ୍‌ଗ ତୂଣ ଶର ।
ଏ ସର୍ବ ଆୟୁଧ ତୁମ୍ଭର ॥୧୦୬
ଦିଗମାନଙ୍କର ତିମିର ।
ଆତ୍ମକାନ୍ତିରେ କଲ ଦୂର ॥୧୦୭
ଆମ୍ଭେ ଧର୍ମରାଜ-କିଙ୍କର ।
କପାଁ ନିରୋଧ ତୁମ୍ଭେ କର ॥୧୦୮
କି ହେତୁ ଏମନ୍ତ ଆଚର ।
କହିବା ଆମ୍ଭର ଆଗର ॥୧୦୯

ଆମ୍ଭମାନଙ୍କୁ ଦୟା ବହ ।
କିହେତୁ କିବା ପରିଚୟ ॥୧୧୦

ଶୁକ ଉବାଚ

ଯମଦୂତଙ୍କ କଥା ଅନ୍ତେ ।
ହସି କହନ୍ତି ବିଷ୍ଣୁଦୂତେ ॥୧୧୧
ମେଘ-ଗମ୍ଭୀର ପ୍ରାୟେ ବାଣୀ ।
ଯମଦୂତଙ୍କ ଆଗେ ଭଣି ॥୧୧୨

ବିଷ୍ଣୁଦୂତ ଉବାଚ

ତୁମ୍ଭେ ଦୂତ ଧର୍ମରାଜାର ।
ତାହାଙ୍କ ଆଜ୍ଞା ଯେବେ କର ॥୧୧୩
ଧର୍ମ ଅଧର୍ମର ଲକ୍ଷଣ ।
କହିବା ଆମ୍ଭର ଆଗେଣ ॥୧୧୪
ପ୍ରାଣୀ କି କଲେ ଦଣ୍ଡପାଇ ।
ଦଣ୍ଡର ସ୍ଥାନ କେବା ହୋଇ ॥୧୧୫
ଦଣ୍ଡକୁ ସହଇ କେମନ୍ତେ ।
ମନୁଷ୍ୟ-ଜନ୍ତୁ ଏ ଜଗତେ ॥୧୧୬

ଯମଦୂତ ଉବାଚ

ବେଦବିହିତ ଯେତେ କର୍ମ ।
ସେହି ସଂସାରେ ନିତ୍ୟଧର୍ମ ॥୧୧୭
ତା' ବିନୁ ଅନ୍ୟକର୍ମ ଯେତେ ।
ଅଧର୍ମ ବୋଲି ଶାସ୍ତ୍ରମତେ ॥୧୧୮
ସାକ୍ଷାତେ ବେଦ ନାରାୟଣ ।
ଏ ନିଶ୍ଚେ ବ୍ରହ୍ମାର ବଚନ ॥୧୧୯
ଏ ବେଦ ଆପଣା ଶକ୍ତିରେ ।
ସତ୍ତ୍ୱ ରଜ ତମଗୁଣରେ ॥୧୨୦
ଗୁଣ ନାମ କ୍ରିୟା ରୂପରେ ।
ଯଥାତଥାରେ ଭିନ୍ନ କରେ ॥୧୨୧
ସୂର୍ଯ୍ୟ ଚନ୍ଦ୍ର ଦିଗ ଆକାଶ ।
ପବନ ସଂଧ୍ୟା ଅହର୍ନିଶ ॥୧୨୨
ଦେବ ଭୂ ଜଳ ଅଗ୍ନି ଧର୍ମ ।
ଦେହୀ ଧର୍ମର ସାକ୍ଷୀ ଜାଣ ॥୧୨୩
ପାପକୁ ଏଣେ କରି ଜାଣି ।
ଦଣ୍ଡର ସ୍ଥାନ ପରିମାଣି ॥୧୨୪

କର୍ମଆୟତ୍ତ ହୋଇ ଜନ ।
ଦଣ୍ଡରେ ହୁଅଇ ଭାଜନ ॥୧୨୫
ଆହେ ନିଷ୍ପାପ ପ୍ରାଣୀମାନେ ।
କର୍ମ କରନ୍ତି ଯେତେ ଜନେ ॥୧୨୬
ସତ୍‌କର୍ମ ଯେମାନେ କରନ୍ତି ।
ସ୍ୱକର୍ମ ଫଳ ସେ ଲଭନ୍ତି ॥୧୨୭
ମନ୍ଦକରମଯୁକ୍ତ ଯେହୁ ।
ସଫଳ ଲଭିବ ସେ କାହୁଁ ॥୧୨୮
ବିଧି ନିଷେଧ ବୈଦିକର୍ମ ।
ଏ ନିତ୍ୟେ କହନ୍ତି ଆଗମ ॥୧୨୯
ବିହିତକର୍ମ ଯେ କରଇ ।
ତା'ର ପାପକୁ ଭୟ ନାହିଁ ॥୧୩୦
ନିଷେଧକର୍ମ କରେ ଯେହୁ ।
ସକଳ ଦଣ୍ଡ ସହେ ସେହୁ ॥୧୩୧
ଏ ଘେନି ବେଦ ବ୍ରହ୍ମମୟେ ।
ସୁଜନ ବେଦମାର୍ଗେ ରହେ ॥୧୩୨
ଧର୍ମ ଅଧର୍ମ ଆଚରଣ ।
କରନ୍ତି ଯେହୁ ପ୍ରାଣୀମାନ ॥୧୩୩
ସେ ପ୍ରାଣୀମାନେ ଅବନୀରେ ।
ଫଳାଫଳକୁ ଭୋଗକରେ ॥୧୩୪
ହେ ଦେବଶ୍ରେଷ୍ଠ ତୁମ୍ଭେମାନେ ।
ସଂସାରେ ପ୍ରାଣୀମାନେ ଯେହ୍ନେ ॥୧୩୫
ତ୍ରିବିଧ-ଲକ୍ଷଣ ଲଭନ୍ତି ।
ଯେ ଯଥାକର୍ମ ଆଚରନ୍ତି ॥୧୩୬
ଗୁଣ ବିଚିତ୍ରଭାବୁଁ କରି ।
ପ୍ରାଣୀଙ୍କ ବିଷୟ ଆଚରି ॥୧୩୭
କାଳର ବର୍ତ୍ତମାନ ଗୁଣ ।
ଭୂତ ଭବିଷ୍ୟତ ପ୍ରମାଣ ॥୧୩୮
ତେସନେ ପ୍ରାଣୀ ଇହଜନ୍ମ ।
ପ୍ରକାଶ କରେ ଧର୍ମାଧର୍ମ ॥୧୩୯
ଯେ ଧର୍ମରାଜ ଜନ୍ତୁସାଇଁ ।
ସେ ସଂଯମନୀପୁରେ ଥାଇ ॥୧୪୦
ପ୍ରାଣୀର ଅନ୍ତର୍ଯ୍ୟାମୀ ହୋଇ ।
ଧର୍ମ ଅଧର୍ମକୁ ଜାଣଇ ॥୧୪୧

Dr. Sudhanshu Sekhar Mishra

ତମୋଗୁଣରେ ଯୁକ୍ତ ହୋଇ ।
ସତ୍ତ୍ୱଗୁଣକୁ ନ ଭାବଇ ॥୧୪୨

ଏ ଦେହେ ଅହମିକା ବହି ।
ଜନ୍ମ ଅକାରଣେ ନାଶଇ ॥୧୪୩

ଜ୍ଞାନ କରମ ଦଶେନ୍ଦ୍ରିୟ ।
ମନ ଆଉ ପଞ୍ଚବିଷୟ ॥୧୪୪

ଏ ଷଟଦଶ ଲିଙ୍ଗ ଦେହେ ।
ଏ ଜୀବ ଭୁଞ୍ଜଇ ବିଷୟେ ॥୧୪୫

ଯେ ଅବା ପଞ୍ଚଭୂତ ଗୁଣ ।
ସୃଷ୍ଟିକି କରଇ ଭିଆଣ ॥୧୪୬

ମହତତତ୍ତ୍ୱ ଅହଙ୍କାର ।
ଏ ଆଦି ଯେତେକ ଅପର ॥୧୪୭

ତ୍ରିଗୁଣଶକ୍ତି ଆଦି ଯେତେ ।
ଏହାକୁ ଧରି ହୃଦଗତେ ॥୧୪୮

ଏମନ୍ତ ପ୍ରକାରେଣ ଦେହୀ ।
ହରଷ-ଶୋକକୁ ଲଭଇ ॥୧୪୯

ତେଣୁ ଷଡବର୍ଗ ଅଜିତ ।
କରଇ କର୍ମ ବିପରୀତ ॥୧୫୦

କୋଶକାରର ପ୍ରାୟ ହୋଇ ।
କର୍ମରେ ଆତ୍ମାକୁ ରୋଧଇ ॥୧୫୧

ଏଥୁ ଅନ୍ତରେ ପୁଣି ସେହି ।
ତହିଁ ରହଇ ମୋହ ହୋଇ ॥୧୫୨

ସ୍ୱଭାବେ କର୍ମବଶ ହୋଇ ।
ନିରତେ କର୍ମକୁ କରଇ ॥୧୫୩

ଏଥୁ ଅନ୍ତରେ ପୁଣ ସେହି ।
ଅଦୃଷ୍ଟବଶେ ଦେହ ବହି ॥୧୫୪

ମାତାପିତାର ଅନୁରୂପ ।
ଲଭଇ ସ୍ଥୂଳ-ସୂକ୍ଷ୍ମରୂପ ॥୧୫୫

ପ୍ରକୃତି ସଙ୍ଗରୁ ପୁରୁଷ ।
ସର୍ବକର୍ମକୁ କରେ ନାଶ ॥୧୫୬

ପୂର୍ବବୃତ୍ତାନ୍ତ ଏବେ ଶୁଣ ।
ବେଦସମ୍ପୂର୍ଣ୍ଣ ଏ ବ୍ରାହ୍ମଣ ॥୧୫୭

ଧର୍ମଜ୍ଞ ଶୀଳବନ୍ତ ପୁଣ ।
ସୁଶାନ୍ତ ସୁଜ୍ଞାନୀ ନିପୁଣ ॥୧୫୮

ମୃଦୁ ମନ୍ତ୍ରଜ୍ଞ ଶୁଚିଦାତା ।
ସତ୍ୟବଚନ ଧୃତବ୍ରତା ॥୧୫୯

ଅତିଥି ବୃଦ୍ଧ ଗୁରୁ ଅଗ୍ନି ।
ଏହାଙ୍କ ସେବା ଶିରେ ଘେନି॥୧୬୦

ସର୍ବଭୂତରେ ମିତ୍ରପଣ ।
କୋପବର୍ଜିତ ସାଧୁଗୁଣ ॥୧୬୧

ଅଶେଷ-ଗୁଣ-ସ୍ଥାନ ଏହି ।
ସୁଶୀଳବୃତ୍ତିରେ ଜୀଅଇଁ ॥୧୬୨

ପିତୃ ଆଜ୍ଞାକାରୀ ବ୍ରାହ୍ମଣ ।
ଏକକାଳେ ବନେ ଗମିଣ ॥୧୬୩

ପୁଷ୍ପ ସମିଧ ଫଳ କୁଶେ ।
ଘେନି ଆସଇ ମନତୋଷେ ॥୧୬୪

ସ୍ତିରୀ ସହିତେ ବନେ ଥିଲା ।
କାମୀ ଶୂଦ୍ରକୁ ଏ ଦେଖିଲା ॥୧୬୫

ମଧୁପାନରେ ରକ୍ତନେତ୍ର ।
ବିହ୍ୱଳ ହୋଇଅଛି ଚିତ୍ତ ॥୧୬୬

ନୀବି ଖସିଛି ମତ୍ତଭରେ ।
ମୂଢ ଲଜ୍ଜାକୁ କରି ଦୂରେ ॥୧୬୭

ହାସ୍ୟ ଗାୟନ କ୍ରୀଡାରସେ ।
ଲୀଳା କରଇ ତା'ର ପାଶେ ॥୧୬୮

କନ୍ଦର୍ପେ ଲିପ୍ତମନ ହୋଇ ।
ଭୁଜେ ଆଲିଙ୍ଗନ କରଇ ॥୧୬୯

ବିପ୍ର ସ୍ତିରୀକୁ ଦେଖି କରି ।
ଇନ୍ଦ୍ରିୟବଶେ ଅନୁସରି ॥୧୭୦

ଏମନ୍ତେ ତାହାକୁ ଦେଖିଲା ।
ମନରେ ମୋହିତ ହୋଇଲା ॥୧୭୧

ଆପଣା ଆତ୍ମା ସ୍ଥିର କରି ।
ମନରେ ବହୁତ ବିଚାରି ॥୧୭୨

ହେଲେ ହେଁ ସତ୍ତ୍ୱଗୁଣେ ସ୍ଥିତ ।
କନ୍ଦର୍ପେ ହୋଇଲା ପୀଡିତ ॥୧୭୩

ସ୍ତିରୀ-ବିଷୟେ ଅଭିରାମ ।
କପଟ ଗ୍ରହ ହୋଇ କାମ ॥୧୭୪

ତେଣେ ପ୍ରମତ୍ତମନ ତା'ର ।
ନିଜଧର୍ମକୁ କଲା ଦୂର ॥୧୭୫

ପୀନ-ଉରଜ ମନ ହରେ ।
ସ୍ନେହରେ ସ୍ତିରୀ ବିଷୟରେ ॥୧୭୬

ପରିତୋଷଣ ତାକୁ କରି ।
ସେବକମତେ ଆଜ୍ଞାକାରୀ ॥୧୭୭

କୋମଳବାକ୍ୟେ ମନ ହରି ।
ପ୍ରସନ୍ନ ଯେମନ୍ତେ ସୁନ୍ଦରୀ ॥୧୭୮

ନିଜ ଯୁବତୀ କୁଳସ୍ତିରୀ ।
ତେଜିଲା ବିପ୍ର ମନ୍ଦାଚାରୀ ॥୧୭୯

ସ୍ୱୈରିଣୀ ଅପାଙ୍ଗ ଇଙ୍ଗିତେ ।
ବନ୍ଦୀ ହୋଇଲା ତା'ର ଚିତ୍ତେ ॥୧୮୦

ତା ବିନୁ ନ ଜାଣଇ ଆନ ।
ତିଳେ ବିଚ୍ଛେଦ ନୋହେ ମନ ॥୧୮୧

ଅଧର୍ମବୁଦ୍ଧି ସେ ବ୍ରାହ୍ମଣ ।
ନିରତେ ବେଶ୍ୟା ପରାୟଣ ॥୧୮୨

ଧର୍ମେ ଅଧର୍ମେ ଧନ ଆଣି ।
ସନ୍ତୋଷ କରଇ ସ୍ୱୈରିଣୀ ॥୧୮୩

ଯେଉଁ କାରଣୁ ଲଙ୍ଘି ଶାସ୍ତ୍ର ।
ସ୍ୱୈରିଣୀରତ ଅବିରତ ॥୧୮୪

ଗର୍ହିତକର୍ମେ ପ୍ରବର୍ତ୍ତିଲା ।
ପୂର୍ବର ଧର୍ମ ନାଶ କଲା ॥୧୮୫

ଏଣୁ ଏ ପାପୀ ଦ୍ୱିଜେ ନେଇ ।
ଯମର ଛାମୁରେ ଦେବଇଁ ॥୧୮୬

ବୋଲଇ ଜଗନ୍ନାଥ ଦାସ ।
ଯମଦୂତେ ବେଦ ପ୍ରକାଶ ॥୧୮୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ
ଅଜାମିଳ ଉପାଖ୍ୟାନେ
ପ୍ରଥମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

### ଶୁକ ଉବାଚ

ଏମନ୍ତ ଯମଦୂତ ବାଣୀ ।
ବିଷ୍ଣୁ-ସେବକମାନେ ଶୁଣି ॥୧
ଶୁଣ ରାଜନ ଏ ଅନ୍ତରେ ।
ତାହାଙ୍କ ବାକ୍ୟ ଅନୁସାରେ ॥୨
ସକଳ ଧର୍ମ ସେ ଜାଣନ୍ତି ।
ଯମଦୂତଙ୍କୁ ବୋଲୁଛନ୍ତି ॥୩

### ବିଷ୍ଣୁଦୂତ ଉବାଚ

ଏ ତ ଅତ୍ୟନ୍ତ ଅଦଭୁତ ।
ଦେଖିଲୁ ତୁମ୍ଭର ଚରିତ ॥୪
ସମଦରଶୀ ସାଧୁଜନେ ।
ଅଧର୍ମ ସ୍ମରଣେ କେସନେ ॥୫
ଅଦଣ୍ଡ୍ୟ ଅପାପୀ ଯେ ପ୍ରାଣୀ ।
ତାହାଙ୍କୁ ବ୍ୟର୍ଥେ ଦଣ୍ଡ ପୁଣି ॥୬
ପ୍ରଜାମାନଙ୍କ ପିତା ହୋଇ ।
ସେ ଯେବେ ପ୍ରଜା ଶାସ୍ତି ଦେଇ ॥୭
ତେବେ ସେ କାହାର ଶରଣ ।
ହୋଇବ କହ ହେ କାରଣ ॥୮
ମହତେ ଯାହା ଆଚରିବେ ।
ଇତରେ ତାହା ହିଁ କରିବେ ॥୯
ସେ ଯାହା ପ୍ରମାଣ କରିବେ ।
ଲୋକେ ସେ ପଥ ଆଚରିବେ ॥୧୦
ଯାହାର ଅଙ୍କେ ଶିର ଦେଇ ।
ନିଶଙ୍କେ ଜନ ନିଦ୍ରା ଯାଇ ॥୧୧
ପଶୁ ଯେସନେ ସୁଖେ ଥାଇ ।
ଧର୍ମ-ଅଧର୍ମ ନ ଜାଣଇ ॥୧୨
ମିତ୍ର ସ୍ୱଭାବେ ଯା'ର ତହିଁ ।
ବିଶ୍ୱାସେ ଆତ୍ମା ସମର୍ପଇ ॥୧୩
ବିଶ୍ୱାସ ସର୍ବ ପ୍ରାଣୀଙ୍କର ।
ଦୟାପୂରିତ ଯା' ଶରୀର ॥୧୪
ବିଶ୍ୱାସୀ ପ୍ରାଣୀଙ୍କି କେମନ୍ତେ ।
ସେ ହିଂସା କରେ ହୃଦଗତେ ॥୧୫
କୋଟିଜନ୍ମର ଶୁଭଫଳ ।
କଲା ଏ ଦ୍ୱିଜ ଆଜାମିଳ ॥୧୬
ଯେଣୁ ଆକୁଳେ ନାରାୟଣ ।
ମଙ୍ଗଳ କଲା ଉଚ୍ଚାରଣ ॥୧୭
ଏଣୁ ଏ ପାପୀ ମନ୍ଦକୃତ୍ୟ ।
ସକଳ କଲା ପ୍ରାୟଶ୍ଚିତ୍ତ ॥୧୮
ଯେଣୁ ଚତୁରାକ୍ଷର ନାମ ।
ମୁଖେ ବୋଇଲା ନାରାୟଣ ॥୧୯
ଯେ ବ୍ରହ୍ମହତ୍ୟା ମଦ୍ୟପାନ ।
ଗୁରୁପତ୍ନୀ ଅଭିଗମନ ॥୨୦
ମିତ୍ର-ବିଷୟେ ଅପରାଧ ।
ସ୍ତିରୀ ରାଜ ପିତୃ ଗୋ ବଧ ॥୨୧
ଏ ଆଦି ପାପ ଅପସରେ ।
ସର୍ବଦୁରିତ ନିଶ୍ଚେ ହରେ ॥୨୨
ପ୍ରାଶ୍ଚିତ୍ତ ସର୍ବ ପ୍ରାଣୀଙ୍କର ।
ନାମ ଉଚ୍ଚାରଣ ବିଷ୍ଣୁର ॥୨୩
ତୁଣ୍ଡେ ବୋଲନ୍ତି ଯେବା ନର ।
ତରନ୍ତି ଏ ଭବସାଗର ॥୨୪
ଯାହାର ବିଷ୍ଣୁଭାବେ ମତି ।
ପାପରେ ଗ୍ରସ୍ତ ସେ ନୁହଁନ୍ତି ॥୨୫
ବ୍ରତ ପ୍ରାୟଶ୍ଚିତ୍ତ ଏମାନ ।
ଅଧିକ ତହୁଁ ହରିନାମ ॥୨୬
ଶୁଦ୍ଧସତ୍ତ୍ୱକୁ ପରକାଶେ ।
ପାପର ମୂଳବୀଜ ନାଶେ ॥୨୭
ଏଣୁ ଏହାକୁ ତୁମ୍ଭେମାନେ ।
ତେଜିଣ ଯାଅ ନିଜସ୍ଥାନେ ॥୨୮
ଏହାର ଯେତେ ପାପମାନ ।
ନିଶ୍ଚୟେ କଲା ଏ ଖଣ୍ଡନ ॥୨୯
ଯେଣୁ ଏ ଦ୍ୱିଜ ଅଜାମିଳ ।
ନିକଟେ ମରଣର କାଳ ॥୩୦
ତୁଣ୍ଡେ ଉଚ୍ଚାରି ନାରାୟଣ ।
ପ୍ରାଣ ଛାଡ଼ିଲା ତତକ୍ଷଣ ॥୩୧
ସଙ୍କେତ-ପରିହାସବେଳେ ।
ଗୀତାଳାପରେ ଯେବେ ହେଲେ ॥୩୨
ବୈକୁଣ୍ଠନାମ ଉଚ୍ଚାରଇ ।
ତା'ର କଳୁଷ ନ ରହଇ ॥୩୩
ପତନ ସ୍ଖଳନ ଭଗ୍ନରେ ।
ନାନାପ୍ରକାରେ ଯେ ସୁମରେ ॥୩୪
ତୁଣ୍ଡେ ଉଚ୍ଚାରେ ରାମନାମ ।
ତାହାକୁ ନ ଦଣ୍ଡଇ ଯମ ॥୩୫
ଅଳ୍ପ ବହୁତ ପାପମାନ ।
ପ୍ରାୟଶ୍ଚିତ୍ତ ହିଁ ଯଥାକ୍ରମ ॥୩୬
ପାପର ଗୁରୁ ଲଘୁ ଜାଣି ।
ମୁନି କହନ୍ତି ପରିମାଣି ॥୩୭
ତପ ସମାଧି ଜପ ଦାନେ ।
ପାପ ନାଶନ୍ତି ମୁନିଜନେ ॥୩୮
ପାପର ବୀଜ ନାଶ ନୋହି ।
ଚିତ୍ତ ନିର୍ମଳ ନୋହେ ତହିଁ ॥୩୯
ଯେମନ୍ତେ ଶ୍ରୀହରି କୀର୍ତ୍ତନେ ।
ପାଦପଙ୍କଜ ସେବାଧ୍ୟାନେ ॥୪୦
ଜ୍ଞାନେ ଅଜ୍ଞାନେ ଯେଉଁପ୍ରାଣୀ ।
ସ୍ମରଣ କରେ ଚକ୍ରପାଣି ॥୪୧
ନାମ କରନ୍ତି ସଙ୍କୀର୍ତ୍ତନ ।
ପାପକୁ ନାଶନ୍ତି ବହନ ॥୪୨
ଯେସନେ ବହୁ କାଷ୍ଠ ରାଶି ।
ଅନଳ ପ୍ରବେଶେ ବିନାଶି ॥୪୩
ରୋଗ ଶରୀରେ ଉପଗତ ।
ହେଲେ ଔଷଧ ବଳବନ୍ତ ॥୪୪

Dr. Sudhanshu Sekhar Mishra

ଅଜ୍ଞାନେ ପ୍ରୟୋଗ ହୋଇଲେ ।
ତେମନ୍ତ ନାମ ଉଚ୍ଚାରିଲେ ॥୪୫
ତେବେ ସେ ଆତ୍ମାଗୁଣୁ ତା'ର ।
ସେ କି ନ କରେ ଉପକାର ॥୪୬
ଶୁକ କହନ୍ତି ଅନୁରାଗେ ।
ବିଷ୍ଣୁଚରିତ ସୁଧାଭାଗେ ॥୪୭

ଶୁକ ଉବାଚ

ବିଷ୍ଣୁଦୂତଙ୍କ ଧର୍ମବାଣୀ ।
କୃତାନ୍ତଦୂତମାନେ ଶୁଣି ॥୪୮
ଅଜାମିଳକୁ ପାଶୁ ଫେଇ ।
ମୃତ୍ୟୁରୁ ଦେଲେ ବାହୁଡାଇ ॥୪୯
ଯମର ଦୂତମାନେ ଗଲେ ।
ସ୍ୱାମୀଙ୍କି ସମସ୍ତ କହିଲେ ॥୫୦
ପାଶରୁ ମୁକ୍ତ ଅଜାମିଳ ।
ଦେହ ଲଭିଲା ତତକାଳ ॥୫୧
ବିନାଶି ସର୍ବଭୟ ତା'ର ।
ଶିରରେ ଦେଇ ବେନିକର ॥୫୨
ବିଷ୍ଣୁଦୂତଙ୍କୁ ନମସ୍କାର ।
ଉତ୍ସୁକ ହୋଇଛି ମନର ॥୫୩
ପ୍ରସନ୍ନମୁଖ ଦେଖି ତା'ର ।
ଜାଣିଲେ ବିଷ୍ଣୁର କିଙ୍କର ॥୫୪
ତକ୍ଷଣେ ଅନ୍ତର୍ଦ୍ଧାନ ହୋଇ ।
ତା'ର ନିକଟୁ ଗଲେ ସେହି ॥୫୫
ଗୁଣଆଶ୍ରିତ ବେଦସିଦ୍ଧ ।
ଯେ ଭାଗବତ-ଧର୍ମଶୁଦ୍ଧ ॥୫୬
ଯମ-ବିଷ୍ଣୁଦୂତଙ୍କ ବାଣୀ ।
ଗୋବିନ୍ଦ-ଗୁଣ ବିପ୍ରମଣି ॥୫୭
ତକ୍ଷଣେ ଚରଣାରବିନ୍ଦେ ।
ଭକ୍ତି ଲଭିଲା ଅପ୍ରମାଦେ ॥୫୮
ଶ୍ରୀକୃଷ୍ଣ ଚରିତ ଶ୍ରବଣେ ।
ପୂର୍ବର ଅଶୁଭ ସ୍ମରଣେ ॥୫୯
ମହାସନ୍ତାପ ମନେ କଲା ।
ତକ୍ଷଣେ ବିଷ୍ଣୁ ସୁମରିଲା ॥୬୦

ଅହୋ ମୋହର ବଡ କଷ୍ଟ ।
ଅଜିତ ଇନ୍ଦ୍ରିୟ ମୁଁ ନଷ୍ଟ ॥୬୧
ସୁକର୍ମ କଲି ମୋର କ୍ଷୀଣ ।
କଲି ମୁଁ ବୃଷଳୀ-ଗମନ ॥୬୨
ଅଧର୍ମ ଆଚରଣ କରି ।
କାଟିଲି ଦିବସ-ଶର୍ବରୀ ॥୬୩
ଧିକ ମୋହର ମନ୍ଦକୃତ୍ୟ ।
କୁଳରେ କଳଙ୍କ ବିଦିତ ॥୬୪
ତେଜିଣ ନିଜ ପତ୍ନୀ ସତୀ ।
ରମିଲି ମୁଁ ନୀଚ ଅସତୀ ॥୬୫
ବୃଦ୍ଧମୋହର ତାତମାତ ।
ମୋର ବିହୁନେ ଅରକ୍ଷିତ ॥୬୬
ତପସ୍ୱୀରୂପେ ଥା'ନ୍ତି ବନେ ।
ତା'ଙ୍କୁ ତେଜିଲି ଅକାରଣେ ॥୬୭
କି ଏ ଅର୍ଜିତକର୍ମ ମୋର ।
ନରକେ କଲି ନିଜଘର ॥୬୮
ବିଧି ହୋଇଲା ବିଡମ୍ବନ ।
ଲଭିବି ନରକ ଦାରୁଣ ॥୬୯
ଧର୍ମ-ହିଂସକ ପାପୀ ଯହିଁ ।
ନାନା-ଯାତନା ଭୁଞ୍ଜୁ ଥାଇ ॥୭୦
କି ଏ ସ୍ୱପନ ଅଦଭୁତେ ।
ନୟନେ ଦେଖିଲି ସାକ୍ଷାତେ ॥୭୧
ପାଶଦଉଡି ହସ୍ତେ କରି ।
ଯେ ମୋତେ ନେଉଥିଲେ ଧରି॥୭୨
ଏ ତ ଆଶ୍ଚର୍ଯ୍ୟ ବଡ ଏଣେ ।
କ୍ଷଣକେ ଚାଲିଗଲେ କେଣେ ॥୭୩
ଏ ଅନ୍ତେ ସିଦ୍ଧ ଚାରିଜଣ ।
ତାଙ୍କର ରୂପ ମନୋରମ ॥୭୪
ପାଶେ ବନ୍ଧନ ମୋତେ କରି ।
ଅଧୋଭୂମିକୁ ନେଉଁ ଧରି ॥୭୫
ଛଡାଇ ଦେଲେ ଏହିକ୍ଷଣି ।
କ୍ଷଣକେ ଗଲେ କାହିଁ ପୁଣି ॥୭୬
ମୁଁ ତ ଅଟଇ ପାପୀହୀନ ।
ମୋହର ଦେବ-ଦରଶନ ॥୭୭

ଏଣୁ ହୋଇଲା ଏ ମଙ୍ଗଳ ।
ଆତ୍ମା ମୋ ହୋଇଲା ସୁଫଳ ॥୭୮
ଅଶୁଚି ଦାସୀପତି ମୁହିଁ ।
ମୋ' ଠହୁଁ ପାପୀ ଅଛି କାହିଁ ॥୭୯
ମୋହର ମରଣର କାଳେ ।
ନାମକୀର୍ତ୍ତନ ଅବହେଳେ ॥୮୦
ଜିହ୍ୱା ମୋ କେମନ୍ତେ ବୋଇଲା ।
ଶ୍ରୀକୃଷ୍ଣ ମୋତେ ଦୟାକଲା ॥୮୧
ମୁଁ କାହିଁ ଧୂର୍ତ୍ତ ପାପୀବର ।
ବିପ୍ରକୁଳର ଲଜ୍ଜାକର ॥୮୨
ସର୍ବ ମଙ୍ଗଳର କାରଣ ।
ବୈକୁଣ୍ଠନାମ ଉଚ୍ଚାରଣ ॥୮୩
କେମନ୍ତେ ବୋଇଲଇଁ ମୁହିଁ ।
ଦୟା ଯେ କଲେ ଭାବଗ୍ରାହୀ ॥୮୪
ଇନ୍ଦ୍ରି-ଅଜିତ ମୁଁ ଅଟଇ ।
ଏମନ୍ତ କରିବଇଁ ମୁହିଁ ॥୮୫
ଯେମନ୍ତେ ଆତ୍ମାଭୋଗ ଛାଡି ।
ବ୍ରହ୍ମଭାବରେ ରହେ ବୁଡି ॥୮୬
ଅବିଦ୍ୟା-କାମକର୍ମୁ ଜନ୍ମ ।
ମୋଚନ କରି ଏ ବନ୍ଧନ ॥୮୭
ସର୍ବଭୂତରେ ଶାନ୍ତ ହୋଇ ।
ଦୟା ବହିବି ଚିତ୍ତେ ମୁହିଁ ॥୮୮
ଏ ମାୟାଗ୍ରସ୍ତ ମୋରମନ ।
ନିଶ୍ଚୟ କରିବି ମୋଚନ ॥୮୯
ଯେଉଁ ମାୟାରେ ମୋହ ମୁହିଁ ।
କ୍ରୀଡା-କୁରଙ୍ଗ ପ୍ରାୟ ହୋଇ ॥୯୦
ଦେହ ସମ୍ପଦ ମୋର ଯେତେ ।
ଅକ୍ଷୟ-ଦମ୍ଭ ଅବିରତେ ॥୯୧
ଏହାଙ୍କୁ ତେଜି ଶୁଦ୍ଧମନ ।
କୃଷ୍ଣ ଚରଣେ ହେଉ ଲୀନ ॥୯୨

ଶୁକଉବାଚ

ଏମନ୍ତେ ଜାତ ଦିବ୍ୟଜ୍ଞାନ ।
ଯେଣୁ ତା ସାଧୁ ଦରଶନ ॥୯୩

Dr. Sudhanshu Sekhar Mishra

ତେଜିଣ ସକଳ-ବନ୍ଧନ ।
ଗଙ୍ଗାଦ୍ୱାରକୁ ଆଗମନ ॥ ୯୪
ଦେବସଦନେ ବିପ୍ର ଯାଇ ।
ନିଶ୍ଚଳ ମନେ ଯୋଗ ଧ୍ୟାୟି ॥ ୯୫
ଇନ୍ଦ୍ରିୟ ନିଗ୍ରହ କରିଣ ।
ବ୍ରହ୍ମେ ନିବେଶି ସ୍ଥିରମନ ॥ ୯୬
ସକଳ-ଗୁଣ ପରିହରି ।
ଆତ୍ମାକୁ ସମାଧିରେ ଧରି ॥ ୯୭
ପରମବ୍ରହ୍ମେ ମନ ଦେଲା ।
ମନକୁ ତହିଁ ନିବେଶିଲା ॥ ୯୮
ବ୍ରହ୍ମଭବନେ ସ୍ଥିରମନ ।
ଦେଖିଲା ବିଷ୍ଣୁଦୂତମାନ ॥ ୯୯
ପୂର୍ବେ ଯେ ରୂପ ଦେଖିଥିଲା ।
ପୁଣି ଦେଖନ୍ତେ ପ୍ରଣମିଲା ॥ ୧୦୦
ଗଙ୍ଗାଜଳରେ ଦ୍ୱିଜବର ।
ତେଜିଲା ନିଜ କଳେବର ॥ ୧୦୧
ତକ୍ଷଣେ ବିଷ୍ଣୁ ଦୂତପ୍ରାୟେ ।
ହୋଇଲା ତାର ଦିବ୍ୟକାୟେ ॥ ୧୦୨
ବିଷୟ-ଦୁର୍ଗତି ଖଣ୍ଡନ ।
ବେଷ୍ଟିତ ହୋଇ ବିଷ୍ଣୁଗଣ ॥ ୧୦୩
ହେମବିମାନ ଅରୋହିଲା ।
ତକ୍ଷଣେ ବିଷ୍ଣୁଲୋକେ ଗଲା ॥ ୧୦୪
ଦାସୀପତି ପତିତକର୍ମ ।
ନଷ୍ଟ ତାହାର ସର୍ବଧର୍ମ ॥ ୧୦୫

ବ୍ରତ-ବିହୀନ ନିନ୍ଦାଚାର ।
ନରକେ ପଡନ୍ତା ଶରୀର ॥ ୧୦୬
ଈଶ୍ୱର-ନାମ-ଗ୍ରହଣରୁ ।
ତତ୍କାଳ ମୁକ୍ତି ନରକରୁ ॥ ୧୦୭
ମୋକ୍ଷବାଞ୍ଛିତ ନରଙ୍କର ।
କୃଷ୍ଣକୀର୍ତ୍ତନୁ ନାହିଁ ପର ॥ ୧୦୮
କର୍ମବନ୍ଧନର ଛେଦନ ।
ଏହାର ସମ ନାହିଁ ଆନ ॥ ୧୦୯
ଯେ ମନରଜ-ତମେ ଥାଇ ।
କର୍ମେ ମଳିନ ସେ ହୁଅଇ ॥ ୧୧୦
ପରମ ଗୁହ୍ୟ ଅଘ ନାଶ ।
ନାମ-ମାହାତ୍ମ୍ୟ ଇତିହାସ ॥ ୧୧୧
ସେ ଯେବେ କୃଷ୍ଣନାମ ଧରେ ।
ଅଶେଷ-ପାତକ ନିବାରେ ॥ ୧୧୨
ଶୁଣଇ ଶ୍ରଦ୍ଧାଯୁକ୍ତ ହୋଇ ।
ବଦନେ କୀର୍ତ୍ତନ କରଇ ॥ ୧୧୩
ସେ ପ୍ରାଣୀ ନରକେ ନ ଯାଇ ।
ଯମଯାତନା ତାକୁ ନାହିଁ ॥ ୧୧୪
ତେବେ ନିର୍ମଳ ପ୍ରାଣୀ ହୋଏ ।
ନିଶଙ୍କେ ବିଷ୍ଣୁଲୋକେ ରହେ ॥ ୧୧୫
ଦେଖ ବ୍ରାହ୍ମଣ ପାପୀ ଥିଲା ।
ଅନ୍ତେ କୃଷ୍ଣଙ୍କୁ ସୁମରିଲା ॥ ୧୧୬
ଦେଖି ନିକଟେ ତା ମରଣ ।
ପୁତ୍ରର ନାମ ନାରାୟଣ ॥ ୧୧୭

ନାମକୁ ଆକୁଳେ ଉଚ୍ଚାରି ।
ଭବସାଗରୁ ହେଲା ପାରି ॥ ୧୧୮
ସକଳ ପାପେ ଅଧିକାରୀ ।
ସେହି ଲଭିଲା ନରହରି ॥ ୧୧୯
ସର୍ବ-ଦୁଷ୍କୃତ ତା'ର ଗଲା ।
ପରମପଦ ସେ ଲଭିଲା ॥ ୧୨୦
ଶ୍ରଦ୍ଧାରେ ନାମ ଯେ ଉଚ୍ଚାରେ ।
ତା'ର ମହିମା କେ ବିସ୍ତାରେ ॥ ୧୨୧
ଶୁଣ ରାଜନ ପୁଣ୍ୟଆତ୍ମା ।
ଗୋବିନ୍ଦ-ନାମର ମହିମା ॥ ୧୨୨
ନିଶ୍ଚଳଚିତ୍ତେ କୃଷ୍ଣଭଜ ।
ଏ ଭବବନ୍ଧମାୟା ତେଜ ॥ ୧୨୩
ଶ୍ରୀକୃଷ୍ଣନାମର ମହିମା ।
ଶୁକ କହିଲେ ଗୁଣସୀମା ॥ ୧୨୪
ସୁଜନେ ଏଣେ ଚିତ୍ତକର ।
ଏ ମାୟାବନ୍ଧନୁ ନିସ୍ତର ॥ ୧୨୫
ବୋଲଇ ଦାସ ଜଗନ୍ନାଥ ।
ଷଷ୍ଠସ୍କନ୍ଧରେ ଭାଗବତ ॥ ୧୨୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ଅଜାମିଳ ଉପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

ଶୁକ ଚରଣେ ଦେଇ କର ।
ବୋଲେ ପରୀକ୍ଷ ନୃପବର ॥୧

ପରୀକ୍ଷିତ ଉବାଚ

ଆପଣା ଦୂତ ବାକ୍ୟ ଶୁଣି ।
କି ବା ବୋଇଲେ ଦଣ୍ଡପାଣି ॥୨
ଯମରାଜାର ଆଜ୍ଞାହତ ।
ଯେଣୁ ହୋଇଲା ବିପରୀତ ॥୩
ବିଷ୍ଣୁଦୂତରେ ଯମଦୂତ ।
ଯେଣୁ ହୋଇଲେ ପରାଜିତ ॥୪
ଯାହାର ବଶ ସର୍ବଜନେ ।
ଏ ତ ବିଚିତ୍ର ମୋର ମନେ ॥୫
ଯମଦଣ୍ଡର ଭଗ୍ନ କାହିଁ ।
ପୂର୍ବେ ଶୁଣିଲା କେହି ନାହିଁ ॥୬
ଏବେ ମୁଁ ଶୁଣିଲି ଅଦ୍ଭୁତ ।
ଭୋ ମୁନି କହିବା ତଦନ୍ତ ॥୭
ତୁମ୍ଭର ତହୁଁ ଅନ୍ୟ କେହୁ ।
ସଂଶୟ ଛେଦିବ ମୋ ତହୁଁ ॥୮

ଶୁକ ଉବାଚ

ବିଷ୍ଣୁଦୂତରେ ଯମଦୂତ ।
ଯେଣୁ ହୋଇଲେ ପରାଜିତ ॥୯
ଯମର ଛାମୁରେ ମିଳିଲେ ।
ସକଳ ବାରତା କହିଲେ ॥୧୦

ଯମଦୂତଉବାଚ

ସଂସାରେ ଜନ୍ତୁ ଛନ୍ତି ଯେତେ ।
ଏହାଙ୍କ ଶାସ୍ତି ଅବା କେତେ ॥୧୧
ତ୍ରିବିଧକର୍ମ ଯେ କରନ୍ତି ।
କା ତହୁଁ ସେ ଫଳ ଭୁଞ୍ଜନ୍ତି ॥୧୨
ଯେବେ ଏ ଅଖିଳଲୋକର ।
ଦଣ୍ଡର କରତା ଅପାର ॥୧୩
କାହାର ମୃତ୍ୟୁ ଅବା କାହିଁ ।
ଅମୃତ ଅଛି ଅବା ନାହିଁ ॥୧୪
କର୍ମର ବଶ ହୋଇ ଜନ୍ତୁ ।
ଶାସ୍ତି ଲଭନ୍ତି କର୍ମ-ହେତୁ ॥୧୫
ତେଣୁ ଏ ଶାସ୍ତା ଏକଜଣ ।
ଯେହ୍ନେ ଦୁଷ୍ଟଶାସ୍ତା ରାଜନ ॥୧୬
ଏଣୁ ଅଶେଷ-ଜନ୍ତୁଙ୍କର ।
ତୁମ୍ଭେ ଯେ ଶାସ୍ତା ଦଣ୍ଡଧର ॥୧୭
ଈଶ୍ୱରମାନଙ୍କ ଈଶ୍ୱର ।
ଶୁଭ-ଅଶୁଭର ଠାକୁର ॥୧୮
ତୁମ୍ଭର ଦଣ୍ଡ ଏବେ ନାହିଁ ।
ପାପିଷ୍ଟଜନଙ୍କର ତହିଁ ॥୧୯
ଅଦ୍ଭୁତ-ସିଦ୍ଧ ଚାରିଜଣ ।
ତୁମ୍ଭଙ୍କୁ କଲେ ଅବଜ୍ଞାନ ॥୨୦
ତୁମ୍ଭ ଆଦେଶ ଘେନି ଶିରେ ।
ଆମ୍ଭେ ଆଣୁଥିଲୁ ପାପୀରେ ॥୨୧
ଯାତନାଗୃହକୁ ଆଣନ୍ତେ ।
ମୋଚନ କରିଣ ତୁରିତେ ॥୨୨
ପାଶକୁ ଛେଦିଲେ ପ୍ରତ୍ୟକ୍ଷେ ।
ସେ ସିଦ୍ଧେ ଗଲେ ଅନ୍ତରୀକ୍ଷେ ॥୨୩
ଆଣନ୍ତେ ସେ ପାପୀ ବ୍ରାହ୍ମଣ ।
ଆସି ମିଳିଲେ ସିଦ୍ଧଗଣ ॥୨୪
ତାହାର ପୁତ୍ର ନାରାୟଣ ।
ଡାକିଲା ତା ନାମ ଧରିଣ ॥୨୫
ଆମ୍ଭର ରୂପକୁ ଡରିଲା ।
ତେଣୁ ତା ବାଳକେ ଡାକିଲା ॥୨୬
ବୋଇଲେ ସର୍ବପାପ ଗଲା ।
ଯେଣୁ ଏ ନାମ ଉଚ୍ଚାରିଲା ॥୨୭
ତାହାଙ୍କୁ ଭୟମାନ ପାଇ ।
ଛାଡି ଯେ ଦେଲୁ ଦଣ୍ଡସାଇଁ ॥୨୮
ଶୁଣିବା କ୍ଷମ ହେଉଁ ଯେବେ ।
ଏ କଥା କହ ପ୍ରଭୁ ତେବେ ॥୨୯
ଯେ କ୍ଷଣେ ସେ ପାପୀ ଦୁର୍ଜନ ।
ଉଚ୍ଚାର କଲା ନାରାୟଣ ॥୩୦
ତକ୍ଷଣେ ଆସି ସେ ମିଳିଲେ ।
ଭୟ ନ କର ହୋ ବୋଇଲେ ॥୩୧

ଶୁକ ଉବାଚ

ଦୂତଙ୍କ ବାକ୍ୟ ଶୁଣି ଯମ ।
ଆନନ୍ଦେ ହରଷବଦନ ॥୩୨
ଶ୍ରୀକୃଷ୍ଣ-ଅଭୟଚରଣ ।
ତକ୍ଷଣେ କରି ସୁମରଣ ॥୩୩
ଅତ୍ୟନ୍ତ ପ୍ରୀତ ହୋଇ ମନେ ।
ବୋଲନ୍ତି ଶୁଣ ଭୃତ୍ୟଗଣେ ॥୩୪

ଯମ ଉବାଚ

ମୋ ତହୁଁ ଅନ୍ୟ ଶ୍ରେଷ୍ଠ ପୁଣ ।
ଜଗତ ଯାହାର ଭିଆଣ ॥୩୫
କାର୍ପାସୁ ଯେହ୍ନେ ବସ୍ତ୍ର ହୋଇ ।
ବିଶ୍ୱ ତେମନ୍ତ ତାର ତହିଁ ॥୩୬
ଯାହାଙ୍କ ଅଂଶରୁ ଜଗତ ।
ଜନ୍ମ ପାଳନ ପୁଣି ହତ ॥୩୭
ଯାହାର ନାମ-ତତ୍ତ୍ୱଗୁଣ ।
ବନ୍ଧନ କରେ ପ୍ରାଣୀମନ ॥୩୮
ରଜ୍ଜୁରେ ଯେହ୍ନେ ଗୋରୁ ଥାଇ ।
କେଣିକି ନ ପାରଇ ଯାଇ ॥୩୯
ନିୟମ-ଡ଼ୋରେ ତାହାଙ୍କର ।
ବନ୍ଧା ହୋଇଛି ଚରାଚର ॥୪୦
ନାନା କର୍ମରେ ବନ୍ଧା ହୋଇ ।
ଜଗତ ଯାହାକୁ ସେବଇ ॥୪୧
ମୁହିଁ ମହେନ୍ଦ୍ର ନଇରତି ।
ବରୁଣ ଆଦି ଦିଗପତି ॥୪୨

Dr. Sudhanshu Sekhar Mishra

ସୋମ ଅନଳ ମହେଶ୍ୱର ।
ପବନ ବ୍ରହ୍ମା ଦିବାକର ॥୪୩
ବିଶ୍ୱେଦେବା ଯେ ବସୁ ଯେତେ ।
ରୁଦ୍ର ମରୁଦ୍ଗଣ ସହିତେ ॥୪୪
ସିଦ୍ଧ କିନ୍ନର ସାଧ୍ୟ କରି ।
ସଂସାରେ ଯେତେ ଅଧିକାରୀ ॥୪୫
ସଂସାରକର୍ତ୍ତା ଆଉ ଯେତେ ।
ଭୃଗୁ ଆଦି ଋଷି ସହିତେ ॥୪୬
ଏ ଆଦି ଯେତେକ କହିଲୁଁ ।
ତାହାର ମାୟା ନ ଜାଣିଲୁଁ ॥୪୭
କେ ବା ଜାଣିବ ତା ମହିମା ।
ପ୍ରଭୁର ନାମ ଗୁଣ ସୀମା ॥୪୮
ଇନ୍ଦ୍ରି ହୃଦୟ ବାକ୍ୟ ମନେ ।
ଯାହାକୁ ନ ଜାଣନ୍ତି ଜନେ ॥୪୯
ସର୍ବ ଶରୀରେ ଆତ୍ମାରୂପ ।
ଯେ ଇନ୍ଦ୍ରିୟଙ୍କର ଅଧିପ ॥୫୦
ସେ ପ୍ରଭୁ ଆତ୍ମାତନ୍ତ୍ରେ ଥାଇ ।
ସଂସାର ଚେଷ୍ଟା ସେ କରଇ ॥୫୧
ତାହାର ଦୂତଗଣେ କରି ।
ତାହାର ରୂପ-ଗୁଣ ଧରି ॥୫୨
ସଂସରେ ନିର୍ଭୟେ ବିହରେ ।
ହେଲେ ଅଶେଷ ପ୍ରାଣୀ ତାରେ ॥୫୩
ଦେବେ ପୂଜିତ ତେଜଯୁକ୍ତ ।
ଅଦି ଅଦ୍ଭୁତ ବିଷ୍ଣୁଦୂତ ॥୫୪
ଭକ୍ତିମନ୍ତ ପ୍ରାଣୀମାନଙ୍କୁ ।
ଶତ୍ରୁ ସକାଶରୁ ତାହାଙ୍କୁ ॥୫୫
ଆତ୍ମଭୟରୁ ସେ ରଖନ୍ତି ।
ସର୍ବତ୍ର ସ୍ଥାନେ ବିରାଜନ୍ତି ॥୫୬
ବିଷ୍ଣୁ ବିଷୟେ ଯେଉଁ ଧର୍ମ ।
ଅଜ୍ଞାତ ଦେବ ଋଷିଗଣ ॥୫୭
ସିଦ୍ଧ ଅସୁର ଯେ ଚାରଣ ।
ମନୁଷ୍ୟ ବିଦ୍ୟାଧରମାନ ॥୫୮
ଏ ସର୍ବେ ଜାଣିବେ କେମନ୍ତ ।
ଯାହାର ମହିମା ଅନନ୍ତ ॥୫୯

ସ୍ୱୟମ୍ଭୁ ନାରଦ କୁମାର ।
ଶିବ କପିଳ ମନୁବର ॥୬୦
ପ୍ରହ୍ଲାଦ ଭୀଷ୍ମ ଜନକ ।
ମୁହିଁ ଦ୍ୱାଦଶ ବଳି ଶୁକ ॥୬୧
ହେ ଦୂତେ ଶୁଣ ମୋର ବାଣୀ ।
ବିଷ୍ଣୁ ଭକତି ଏତେ ଜାଣି ॥୬୨
ଗୁପତ ବିଶୁଦ୍ଧ ଦୁର୍ବୋଧ୍ୟ ।
ଯେ ଧର୍ମ ଜାଣି ମୃତ୍ୟୁ ଛେଦ ॥୬୩
କୃଷ୍ଣଚରଣେ ଯାର ମନ ।
ସଂସାରେ ଶ୍ରେଷ୍ଠ ସେହୁ ଜନ ॥୬୪
ନାମ ଉଚ୍ଚାରନ୍ତି ଯେ ବାରେ ।
ଶ୍ରୀକୃଷ୍ଣଭକ୍ତ ବୋଲି ତା'ରେ ॥୬୫
ଭାଗବତ ଯେ ବିଷ୍ଣୁବାଣୀ ।
ପରମଧର୍ମ ପରିମାଣି ॥୬୬
ହେ ଦୂତେ ଗୋବିନ୍ଦର ନାମ ।
ମହିମା ଦେଖ ଉଚ୍ଚାରିଣ ॥୬୭
ଅଜାମିଳହିଁ ଯେ ନାମରୁ ।
ମୁକ୍ତ ହେଲା ମୃତ୍ୟୁ ପାଶରୁ ॥୬୮
ଏ ତ ଅକର୍ମ କରୁଥାଇ ।
କୃଷ୍ଣ ତା ଗତି ନ ଜାଣଇ ॥୬୯
ତେଣୁ ପେଷିଲି ଦୂତ ତାରେ ।
ଏବେ ପଶିଲା ଶ୍ରୀପୟରେ ॥୭୦
ତୁମ୍ଭଙ୍କୁ ଦେଖି ଭୟ କଲା ।
ନାରାୟଣ ବୋଲି ବୋଇଲା ॥୭୧
ତକ୍ଷଣେ ସର୍ବପାପ ଗଲା ।
ମୋ ପାଶୁ ମୁକତ ହୋଇଲା ॥୭୨
ଯଜ୍ଞାଦି କରି ମୂଢ଼ମତି ।
ନାନା କର୍ମରେ ପ୍ରବର୍ତ୍ତନ୍ତି ॥୭୩
ନାମ ମହିମା ନ ଜାଣନ୍ତି ।
ବିଷ୍ଣୁମାୟାରେ ମୋହି ହୋନ୍ତି ॥୭୪
ଶ୍ରୀକୃଷ୍ଣ ନାମ ସଙ୍କୀର୍ତ୍ତନ ।
ପ୍ରାଣୀଙ୍କ ପାପ ବିମୋଚନ ॥୭୫
ଏମନ୍ତେ ଯେ ପ୍ରାଣୀ ପଣ୍ଡିତ ।
କୃଷ୍ଣ ସୁମରେ ଅବିରତ ॥୭୬

ତାହାଙ୍କୁ ମୋର ଦଣ୍ଡ ନାହିଁ ।
ପାତକ ଯେତେ ତାଙ୍କ ଥାଇ ॥୭୭
ସକଳ ପାପ ହୋଏ ଭଙ୍ଗ ।
ଯେଣୁ ଈଶ୍ୱର ପରସଙ୍ଗ ॥୭୮
ସମଦରଶୀ ସାଧୁଜନ ।
ଯେମାନେ ବିଷ୍ଣୁପରାୟଣ ॥୭୯
ଦେବତା ସିଦ୍ଧ ତାହାଙ୍କର ।
ଯଶ କରନ୍ତି ସୁବିସ୍ତାର ॥୮୦
ପରମଈଶ୍ୱର ଗଦାରେ ।
ରକ୍ଷିତ ହୁଅନ୍ତି ସେନରେ ॥୮୧
ତାହାଙ୍କ ଦଣ୍ଡରେ ମୋହର ।
କେବେହେଁ ନାହିଁ ଅଧିକାର ॥୮୨
ମୁକୁନ୍ଦପାଦ-ଅରବିନ୍ଦ ।
ନିତ୍ୟେ ସ୍ରବଇ ମକରନ୍ଦ ॥୮୩
ତହିଁ ବିମୁଖ ଯେଉଁଜନ ।
ତାହାଙ୍କୁ କରିଣ ବନ୍ଧନ ॥୮୪
ଆଣି ତାହାଙ୍କୁ ମୋ ଅଗ୍ରତେ ।
ଯାତନା ଦେବ ଅବିରତେ ॥୮୫
ନିର୍ଲୋଭ ଯେ ପରମହଂସ ।
ଦାହାଙ୍କୁ ନ କରି ଜିଂଘାସ ॥୮୬
ଗୃହବନ୍ଧନେ ମନ ଦେଇ ।
ନିତ୍ୟେ ଅସାଧୁ ସଙ୍ଗେ ଥାଇ ॥୮୭
ଜିହ୍ୱାରେ ନ ବୋଲଇ ନାମ ।
ନ ଚିନ୍ତେ ହରିପାଦପଦ୍ମ ॥୮୮
କୃଷ୍ଣର ପାଦେ ଚିତ୍ତ ଦେଇ ।
କେବେହେଁ ସ୍ତୁତି ନ କରଇ ॥୮୯
ବିଷ୍ଣୁର କର୍ମରେ ବର୍ଜିତ ।
ନିରତେ କୁସଙ୍ଗେ ଆଶ୍ରିତ ॥୯୦
ଏମନ୍ତ ଭାବେ ଯେତେ ପ୍ରାଣୀ ।
ଯାତନା ଦିଅ ତାଙ୍କୁ ଆଣି ॥୯୧
ଏମନ୍ତ ଦୂତ ଆଗେ କହି ।
ଯମ କହନ୍ତି **କୃଷ୍ଣଧ୍ୟାୟି** ॥୯୨
ମୋର ଦୂତଙ୍କ ଅପରାଧ ।
କ୍ଷମା କରିବା ପଦ୍ମପାଦ ॥୯୩

Dr. Sudhanshu Sekhar Mishra

ଶ୍ରୀହରି ପୁରୁଷ ପୁରାଣ ।
କ୍ଷମା କରନ୍ତୁ ନାରାୟଣ ॥୯୪
ପଣ୍ଡିତେ ଯାର ପଦ୍ମପାଦେ ।
ସେବନ୍ତି ନିତ୍ୟେ ଅପ୍ରମାଦେ ॥୯୫
ତାହାଙ୍କୁ ମୋର ନମସ୍କାର ।
ଏ ଅପରାଧ କ୍ଷମା କର ॥୯୬

ଶୁକ ଉବାଚ

ଏଣୁଟି ହରି ସଙ୍କୀର୍ତ୍ତନ ।
ଜଗତ ମଙ୍ଗଳ କାରଣ ॥୯୭
ମହତ ଲୋକମାନଙ୍କର ।
ଏକାନ୍ତଭକ୍ତି ନୃପବର ॥୯୮
ଈଶ୍ୱର ଉଦ୍ଦାମ ଚରିତ ।
ଶୁଣି ଗାବନ୍ତି ଅବିରତ ॥୯୯

ଶ୍ରୀକୃଷ୍ଣ ପାଦପଙ୍କଜରେ ।
ଯେ ନିତ୍ୟେ ମଧୁପାନ କରେ॥୧୦୦
ଯେ ପ୍ରାଣୀ ମାୟାବନ୍ଧ ମୋହେ।
ନ ପଡେ ଯାତନା ସମୂହେ ॥୧୦୧
ଯେ ଜନ ଲୋଭମୋହେ ପଡ଼ି।
ରଜ ତମରେ ଥାଇ ଜଡ଼ି ॥୧୦୨
ତାହାର ପୁନଃପୁନଃ ହୋଇ ।
ରଜତାମସ ଉପୁଜଇ ॥୧୦୩
ଏମନ୍ତ ଯମବାକ୍ୟ ଶୁଣି ।
ବିଷ୍ଣୁମହିମା ପରିମାଣି ॥୧୦୪
ଯମକିଙ୍କର ଭୟଚିତ୍ତ ।
ବୋଲନ୍ତି ଏ କି ବିପରୀତ ॥୧୦୫
ଗୋବିନ୍ଦ ଆଶ୍ରେ ଯେତେ ଜନେ ।
ତାହାଙ୍କୁ ଭୟକଲେ ମନେ ॥୧୦୬

ସେ ଦିନଠାରୁ ହେ ରାଜନ ।
ଦେଖିଲେ ଭୟେ ହୋନ୍ତି ଛନ୍ନ॥୧୦୭
ମଳୟଗିରିତଟେ ବସି ।
କୃଷ୍ଣ-ମହିମା ପରଶଂସି ॥୧୦୮
କହିଲେ କୁମ୍ଭଜନ୍ମମୁନି ।
ଗୁପତ ଇତିହାସ ବାଣୀ ॥୧୦୯
ସୁଜନେ ଶୁଣି ଚିତ୍ତେ ଧର ।
ଶ୍ରୀକୃଷ୍ଣନାମ ଆଶ୍ରେ କର ॥୧୧୦
ଦାସ ଜଗନ୍ନାଥ ବୋଲଇ ।
କୃଷ୍ଣମହିମା ଯମ କହି ॥୧୧୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ ଯମପୁରୁଷ ସମ୍ବାଦେ ତୃତୀୟୋଽଧ୍ୟାୟଃ ॥

---

## ଚତୁର୍ଥ ଅଧ୍ୟାୟ

ପରୀକ୍ଷିତ ଉବାଚ

ଦେବ ଅସୁର ନର ନାଗ ।
ତୁମ୍ଭେ କହିଲ ମହାଭାଗ ॥୧
ମୃଗ-ପକ୍ଷୀଙ୍କ ସୃଷ୍ଟି ଯେତେ ।
କହିଲ ମୋହର ଅଗ୍ରତେ ॥୨
ଯେତେ ସ୍ୱୟମ୍ଭୁ-ମନ୍ୱନ୍ତରେ ।
ସଂକ୍ଷେପେ କହିଲ ମୋହରେ ॥୩
ସେ ମନ୍ୱନ୍ତରେ ଭଗବାନ ।
ଯେ ଅନୁସର୍ଗର ବିଧାନ ॥୪
ଯେମନ୍ତ ଆତ୍ମାଶକ୍ତି ଘେନି ।
ସର୍ଜିଲେ ପ୍ରଭୁ ଅନ୍ତର୍ଯ୍ୟାମୀ ॥୫
ସେକଥା ଶୁଣିବାକୁ ମୋର ।
ଶ୍ରଦ୍ଧା ବଳିଲା ମୁନିବର ॥୬

ସୂତ ଉବାଚ

ରାଜାର ପ୍ରଶ୍ନ ଶୁଣି କର୍ଣ୍ଣେ ।
ଆନନ୍ଦେ ହରଷ ବଦନେ ॥୭
ଭୋ ମୁନିଗଣେ ଶୁଣ ତାହା ।
ନୃପେ କହିଲେ ଶୁକ ଯାହା ॥୮
ଚିତ୍ତେ ଶ୍ରୀକୃଷ୍ଣପଦ ଧ୍ୟାୟି ।
କହନ୍ତି ରାଜା ମୁଖ ଚାହିଁ ॥୯

ଶୁକ ଉବାଚ

ବୋଲନ୍ତି ଶୁଣ ହେ ରାଜନ ।
ଈଶ୍ୱର ସୃଷ୍ଟିର ବିଧାନ ॥୧୦
ଯେବେ ପ୍ରଚେତା ଭାଇଦଶ ।
ସମୁଦ୍ରୁ ଉଠି ଦଶଦିଶ ॥୧୧
ଚାହିଁଲେ ବହୁ ଦ୍ରୁମମାନ ।
ପୃଥିବୀ କଲା ଆଚ୍ଛାଦନ ॥୧୨
ବୃକ୍ଷମାନଙ୍କୁ ଦେଖି ତେଲେ ।
ତପେ ଦୀପିତ କୋପାନଳେ ॥୧୩
ମୁଖରୁ ଅଗ୍ନି-ବାୟୁ ଦୁଇ ।
ସର୍ଜିଲେ ବୃକ୍ଷକ୍ଷୟ ପାଇଁ ॥୧୪

ପବନ-ଅଗ୍ନିରେ ଦହନ ।
ବୃକ୍ଷେ ହୋଇଲେ ଯହୁଁ କ୍ଷୀଣ ॥୧୫
ତା ଦେଖି ଶୁଣ ପରୀକ୍ଷିତ ।
ଚନ୍ଦ୍ର ହୋଇଲେ ଉପଗତ ॥୧୬
କ୍ରୋଧ-ସାନ୍ତ୍ୱନା କରିବାରେ ।
ତାଙ୍କୁ ବୋଇଲେ ସୁଧାକରେ ॥୧୭
ଭୋ ସ୍ୱାମୀମାନେ ତୁମ୍ଭେ ଶୁଣ ।
ବୃକ୍ଷେ ହୋଇଲେ ଅତି କ୍ଷୀଣ ॥୧୮
ଦହନ ନ କରଟି ଆଉ ।
ତୁମ୍ଭେ ଯେ ପତି ପ୍ରଜାଙ୍କର ॥୧୯
ପ୍ରଜାପତିଙ୍କ ପତି ହରି ।
ଅବ୍ୟୟ ପୁରୁଷ ମୁରାରି ॥୨୦
ଔଷଧି ବନସ୍ପତି ଯେତେ ।
ତାର ସଞ୍ଚିଲା ଏ ଜଗତେ ॥୨୧
ସଂସାରେ ଭକ୍ଷ୍ୟ ଭୋଜ୍ୟ ଅନ୍ନ ।
ସେ ବିଭୁ କରିଛି ସର୍ଜନ ॥୨୨

Dr. Sudhanshu Sekhar Mishra

ଚର-ଅଚର ଆଦି ଯେତେ ।
ପାଦ-ଅପାଦର ସହିତେ ॥୨୩
ଅହସ୍ତ-ହସ୍ତଯୁକ୍ତ ଯେହୁ ।
ଦ୍ୱିପଦ-ଚତୁଷ୍ପଦ କେହୁ ॥୨୪
ତୁମ୍ଭେ ଏ ସକଳେ ସର୍ଜିବ ।
ସଂସାରେ ଛନ୍ତି ଯେତେ ଜୀବ ॥୨୫
ପ୍ରଜାର ସୃଷ୍ଟି କରିବାରେ ।
ଯେଣୁ ଅଇଲ ଏ ସଂସାରେ ॥୨୬
ମୋ ବାଣୀ ଶୁଣ ସାବଧାନ ।
ଦହନ ନ କର ଏ ବନ ॥୨୭
ପିତା ପିତାମହ ତୁମ୍ଭର ।
ସେବିତ ପ୍ରପିତାମହର ॥୨୮
ନ କର ସତ୍ୟ ମାର୍ଗ ଦୂର ।
କ୍ରୋଧ ଅନଳ ଦୂରକର ॥୨୯
ବାଳକ-ବନ୍ଧୁ ପିତାମାତା ।
ନୟନ-ବନ୍ଧୁ ଲୋମପତା ॥୩୦
ଭିକ୍ଷୁକ-ବନ୍ଧୁ ଗୃହୀଜନ ।
ଅଜ୍ଞର ବନ୍ଧୁ ସୁଜ୍ଞଜନ ॥୩୧
ସ୍ତିରୀର ବନ୍ଧୁ ସ୍ୱାମୀ ନିଜ ।
ପ୍ରଜାର ବନ୍ଧୁ ମହାରାଜ ॥୩୨
ଜୀବର ହୃଦଗତେ ହରି ।
ଅଛନ୍ତି ଆତ୍ମରୂପ ଧରି ॥୩୩
ସେ ସର୍ବ ସମାନ ଦେଖଇ ।
ତାହାର ଶତ୍ରୁମିତ୍ର ନାହିଁ ॥୩୪
ଜୀବେ ସମାନ ଯେ ଦେଖଇ ।
ତାହାକୁ ଜ୍ଞାନୀ ବୋଲି କହି ॥୩୫
କ୍ରୋଧକୁ ଜିଣେ ଯେଉଁ ନର ।
ସେ ଜାଣ ତ୍ରିଗୁଣୁଁ ବାହାର ॥୩୬
ଅନନ୍ତ ଗୁଣ ବୋଲି ତାରେ ।
ନିର୍ଭୟେ ବୁଲଇ ସଂସାରେ ॥୩୭
କଲ୍ୟାଣ ହୋଇବ ତୁମ୍ଭର ।
ଶେଷ ଦ୍ରୁମଙ୍କୁ ରକ୍ଷା କର ॥୩୮
ବୃକ୍ଷ-ପାଳିତ ଯେଉଁ କନ୍ୟା ।
ସେ ହେଉ ତୁମ୍ଭ ମନୋରମା ॥୩୯

ଏତେକ କହି ରାଜା ସୋମ ।
ଆନନ୍ଦେ ହରଷ ବଦନ ॥୪୦
କନ୍ୟାକୁ ଆଣି ତା'ଙ୍କୁ ଦେଲେ ।
ହରଷେ ନିଜପୁରେ ଗଲେ ॥୪୧
ସେମାନେ କନ୍ୟା ପ୍ରାପ୍ତ ହୋଇ।
ବିବାହ ହେଲେ ଦୟାବହି ॥୪୨
ତାହାଙ୍କ ବୀର୍ଯ୍ୟେ ସେ କନ୍ୟାରୁ।
ଜନ୍ମିଲେ ଦକ୍ଷ ବେଦବର ॥୪୩
ଯାହାର ପ୍ରଜାର ସର୍ଜନେ ।
ପ୍ରଜା ପୂରିଲେ ତ୍ରିଭୁବନେ ॥୪୪
ଏମନ୍ତେ ଦକ୍ଷପ୍ରଜାପତି ।
ସର୍ଜିଲେ ସର୍ବଭୂତସ୍ଥିତି ॥୪୫
ମାନସେ ବୀଜେ ଅବା ଯାହା ।
ସର୍ଜିଲେ ଶୁଣ କହୁଁ ତାହା ॥୪୬
ପ୍ରଥମେ ମନୁଁ କଲା ଜାତ ।
ସେ ପ୍ରଜାପତି ଲୋକନାଥ ॥୪୭
ଦେବ ଅସୁର ନର ଆଦି ।
ଆକାଶ ଜଳ ସ୍ଥଳ ସିଦ୍ଧି ॥୪୮
ପ୍ରଜା ଅବୃଦ୍ଧି ଦେଖି ଦକ୍ଷ ।
ମନରେ କଲେ ଅତି ଦୁଃଖ ॥୪୯
ବିନ୍ଧ୍ୟପର୍ବତକୁ ସେ ଯାଇ ।
ତପ ଆରମ୍ଭକଲେ ତହିଁ ॥୫୦
ତକ୍ଷଣେ କରି ଆଚମନ ।
ଯେ ତୀର୍ଥ ଅଘମରଷଣ ॥୫୧
ଯାହାର ଜଳ ସ୍ପରଶରେ ।
ସକଳ ପାପ ଯାଇ ଦୂରେ ॥୫୨
ତହିଁ ବସିଲେ ତପ କରି ।
ତୋଷିଲେ ପ୍ରଭୁ ନରହରି ॥୫୩
ଏହି ସ୍ତବରେ କଲେ ସ୍ତୁତି ।
ଯେଣେ ପ୍ରସନ୍ନ ଶିରୀପତି ॥୫୪

ପ୍ରଜାପତି ଉବାଚ

ନମସ୍ତେ ପ୍ରଭୁ ଆଦି ଧାତା ।
ଜୀବ-ମାୟାର ଯେ ନିୟନ୍ତା ॥୫୫

ଅଦୃଷ୍ଟ ଯାହାର ମହିମା ।
ଗୁଣ-ବୁଦ୍ଧିରେ ନୋହେ ସୀମା ॥୫୬
ଯାହାର ଆଜ୍ଞାରେ ଜଗତ ।
ନମସ୍ତେ ପ୍ରଭୁ ଆଦିଭୂତ ॥୫୭
ଯାହାର ସଖା ଅଟେ ଜୀବ ।
ନ ଜାଣେ ତାହାର ପ୍ରଭାବ ॥୫୮
ଏ ଦେହେ ସମାନ ବସଇ ।
ତଥାପି ଜୀବ ନ ଜାଣଇ ॥୫୯
ସଂସାରେ ଅଛି ପୂର୍ଣ୍ଣ ହୋଇ ।
ଯାହାର ଶତ୍ରୁ-ମିତ୍ର ନାହିଁ ॥୬୦
ଯାର ଚରିତ ଅସମ୍ଭବ ।
ନମସ୍ତେ ପ୍ରଭୁ ସ୍ୱୟମ୍ଭୁବ ॥୬୧
ପ୍ରକାଶ ଇନ୍ଦ୍ରିୟ ଗଣର ।
ଯେହେତୁ ବିଷୟ ଅଗୋଚର ॥୬୨
ଗୁଣର ଗୁଣ ପ୍ରାୟେ ହୋଇ ।
ସେ ମହେଶ୍ୱରଙ୍କୁ ନମଇଁ ॥୬୩
ଦେହ ଇନ୍ଦ୍ରିୟ ପ୍ରାଣ ମନ ।
ଯେ ଭୂତ ମାତ୍ରାଦି ପଞ୍ଚମ ॥୬୪
ଏମାନେ ନିଜ ସ୍ୱରୂପକୁ ।
ନ ଜାଣେ କେହି ଯେ କାହାକୁ ॥୬୫
ଜୀବ ଯେ ଏ ସର୍ବ ଜାଣଇ ।
ସେ ଜୀବ ଯାକୁ ନ ଜାଣଇ ॥୬୬
ସର୍ବଜ୍ଞ ଅନନ୍ତ ଅଟଇ ।
ତାହାଙ୍କୁ ଦଣ୍ଡବତ ମୁହିଁ ॥୬୭
ଯାହାର ଗୁଣ ଏ ସଂସାରେ ।
ଶ୍ରୁତି ସ୍ମୃତିରେ ଅଗୋଚରେ ॥୬୮
ସକଳ ଭୂତରେ ଯେ ଥାଇ ।
ତାହାକୁ କେହି ନ ଜାଣଇ ॥୬୯
ସମାଧିଯୋଗେ ଦୃଷ୍ଟି ସ୍ମୃତି ।
ବିନାଶେ ଯେ ହୋଏ ପ୍ରତୀତି ॥୭୦
କେବଳ ସ୍ୱରୂପ-ଜ୍ଞାନରେ ।
ଅଶେଷ ଘଟେ ଯେହୁ ପୂରେ ॥୭୧
ଯେ ହଂସ ଶୁଦ୍ଧଚିତ୍ତ ଘର ।
ତାହାଙ୍କୁ ମୋର ନମସ୍କାର ॥୭୨

Dr. Sudhanshu Sekhar Mishra

ହୃଦପଦ୍ମରେ ଯାକୁ ଧରି ।
ପଣ୍ଡିତେ ତପକୁ ଆଚରି ॥୭୩
ସର୍ବବିଷୟା ମାୟା ଯାର ।
ନିଃଶେଷମୋକ୍ଷ ସୁଖଘର ॥୭୪
ସର୍ବସ୍ୱରୂପ ସର୍ବନାମ ।
ସକଳ ଯାହାର ଭିଆଣ ॥୭୫
ସେ ପ୍ରଭୁ ହୁଅନ୍ତୁ ପ୍ରସନ୍ନ ।
ସର୍ବ କାରଣ ଭଗବାନ ॥୭୬
ଭଜନ କରନ୍ତି ଯେ ଜନେ ।
ବୁଦ୍ଧି ଇନ୍ଦ୍ରିୟର ବଚନେ ॥୭୭
ଯେ ପ୍ରଭୁ ଏଥୁଁ ଅଗୋଚର ।
ତାହାଙ୍କୁ ମୋର ନମସ୍କାର ॥୭୮
ଯାହା ଠାବରେ ଯାହା ତହୁଁ ।
ଯେ ସର୍ବରୂପ ଏକ ଦେହୁ ॥୭୯
ଯେ କାର୍ଯ୍ୟ କରାଇ କରଇ ।
ତାହାର ତହୁଁ ଆନ ନାହିଁ ॥୮୦
ପରମ ପରେ ଯେହୁ ପର ।
ଆଦ୍ୟହୁଁ ସିଦ୍ଧ ଯେ ଈଶ୍ୱର ॥୮୧
ଏମନ୍ତ ଯେହୁ ପରଂବ୍ରହ୍ମ ।
ତାହାଙ୍କୁ ନମସ୍କାର ମମ ॥୮୨
ନିଜ ଶକ୍ତିମାନେ ଯାହାର ।
ବକତାବାଦୀମାନଙ୍କର ॥୮୩
ବିବାଦ-ବିସମ୍ବାଦେ କରି ।
ପ୍ରାଣୀମାନଙ୍କ ଚିତ୍ତହରି ॥୮୪
ଏମନ୍ତ ଅନନ୍ତ ଯା ଗୁଣ ।
ନମଇଁ ତାହାର ଚରଣ ॥୮୫
ସଂସାରେ ଅସ୍ତି ନାସ୍ତି ଯେତେ ।
ବସ୍ତୁର ନିଷ୍ଠା ଏହିମତେ ॥୮୬
ସାଂଖ୍ୟଯୋଗରେ ପ୍ରବର୍ତ୍ତିତ ।
ସେ ସମ ଅଳପ ବହୁତ ॥୮୭
ଭିନ୍ନ ବିରୁଦ୍ଧ-ଧର୍ମ ସେହି ।
ତା ବିନୁ ଆନ କେହି ନାହିଁ ॥୮୮
ପଦ୍ମପାଦରେ ଯେ ଭଜଇ ।
ତାହାର ଅନୁଗ୍ରହ ପାଇ ॥୮୯
ଜନ୍ମଇ ନାମ-ରୂପ ଧରି ।
ଶରୀର ବହଇ ଯେ ହରି ॥୯୦
ସେ ପ୍ରଭୁ ହୁଅନ୍ତୁ ପ୍ରସନ୍ନ ।
ସର୍ବକାରଣ ଭଗବାନ ॥୯୧
ସ୍ୱକୃତଜ୍ଞାନ ପଥେ କରି ।
ସେ ପ୍ରଭୁ ସର୍ବଘଟେ ପୂରି ॥୯୨
ଶୋଭା ପାଉଛି ଅନୁକ୍ଷଣ ।
ଅଖିଳ-ପ୍ରାଣ-ନାରାୟଣ ॥୯୩
ପୃଥିବୀଗୁଣକୁ ବସାଇ ।
ଅନିଳ ଯେସନେ ବହଇ ॥୯୪
ସେ ପ୍ରଭୁ ମହିମା ଏମନ୍ତ ।
ପୂର୍ଣ୍ଣ-ମୋ କରୁ ମନୋରଥ ॥୯୫

ଶୁକ ଉବାଚ

ଏମନ୍ତେ ଦକ୍ଷ-ସ୍ତୁତି ଶୁଣି ।
ପ୍ରସନ୍ନ ହେଲେ ଚକ୍ରପାଣି ॥୯୬
ତକ୍ଷଣେ ଅଘମରଷଣ ।
ଆସି ମିଳିଲେ ନାରାୟଣ ॥୯୭
ଶୁଣ ହେ କୁରୁ ନୃପବର ।
ଭକ୍ତବତ୍ସଳ ଚକ୍ରଧର ॥୯୮
ଆରୋହି ଯାନ ଖଗରାଜ ।
ଲମ୍ବ ସୁନ୍ଦର ଅଷ୍ଟଭୁଜ ॥୯୯
ଶଙ୍ଖ ଚକ୍ର ଚର୍ମ ଖଡଗ ।
ଗଦା ଅସି ପାଶ ଶାରଙ୍ଗ ॥୧୦୦
ଧରିଣଛନ୍ତି ଅଷ୍ଟକର ।
ଅଦ୍‌ଭୁତ ରୂପ ମନୋହର ॥୧୦୧
ପୀତବସନ ଘନଶ୍ୟାମ ।
ବଦନ ଈକ୍ଷଣ ପ୍ରସନ୍ନ ॥୧୦୨
ନିବିଡଅଙ୍ଗେ ବନମାଳ ।
ଶୋଭିତ ମକରକୁଣ୍ଡଳ ॥୧୦୩
ଶ୍ରୀବତ୍ସ କଉସ୍ତୁଭ ସାଜେ ।
କିରୀଟ କଙ୍କଣ ବିରାଜେ ॥୧୦୪
କାଞ୍ଚି ଅଙ୍ଗଦ ରତ୍ନମୁଦି ।
ବଳୟ ନୂପୁର ପ୍ରସିଦ୍ଧି ॥୧୦୫
ରୂପ ତ୍ରୈଲୋକ୍ୟ ମନୋହର ।
ଧରିଣ ବ୍ରହ୍ମାଣ୍ଡଠାକୁର ॥୧୦୬
ନନ୍ଦ-ସୁନନ୍ଦ ଆଦି ଯେତେ ।
ବେଷ୍ଟିତ ହୋଇଣ ସମସ୍ତେ ॥୧୦୭
ବିଷ୍ଣୁଙ୍କୁ କରନ୍ତି ଭଜନ ।
ସିଦ୍ଧ ଗନ୍ଧର୍ବ ଯେ ଚାରଣ ॥୧୦୮
ଅତି ଅଦ୍ଭୁତ ରୂପ ହରି ।
ଦକ୍ଷ ଦେଖିଣ ଭୟ କରି ॥୧୦୯
ନମିଲେ ଦଣ୍ଡବତ ହୋଇ ।
ଆନନ୍ଦ କେ ପାରିବ କହି ॥୧୧୦
ହରଷେ ବିହ୍ୱଳିତ ମନ ।
ମୁଖରୁ ନ ସ୍ଫୁରେ ବଚନ ॥୧୧୧
ଇନ୍ଦ୍ରିୟଙ୍କରେ ପୂର୍ଣ୍ଣମନ ।
ନିର୍ଝର ହ୍ରାଦିନୀ ଯେସନ ॥୧୧୨
ମୋର ଭକତ ପ୍ରଜାକାମ ।
ଏମନ୍ତ ଜାଣି ଭଗବାନ ॥୧୧୩
ସକଳପ୍ରାଣୀଙ୍କର ମନ ।
ଜାଣନ୍ତି ପ୍ରଭୁ ନାରାୟଣ ॥୧୧୪
ପ୍ରଜାପତିଙ୍କି ଚାହିଁ ହରି ।
କିଛି ବୋଇଲେ ଦୟାକରି ॥୧୧୫

ଭଗବାନ ଉବାଚ

ହେ ପ୍ରଜାପତି ମହାଭାଗ ।
ତୁମ୍ଭରେ ମୋର ଅନୁରାଗ ॥୧୧୬
ଯେଣୁ ଭକତି ଦୃଢ଼ମନେ ।
ଭଜିଲ ମୋହର ଚରଣେ ॥୧୧୭
ତୋହର ତପେ ପ୍ରଜାନାଥ ।
ପ୍ରସନ୍ନେ ହେଲୁ ଉପଗତ ॥୧୧୮
ଯେଣୁ ତୋ ତପ ଜନହିତ ।
ପ୍ରସନ୍ନ ହେଲୁ ପ୍ରଜାନାଥ ॥୧୧୯
ଭକ୍ତମାନଙ୍କର ସନ୍ତତି ।
ନିରତେ ମନେ ମୁହିଁ ଚିନ୍ତି ॥୧୨୦
ବ୍ରହ୍ମା ଶଙ୍କର ମନୁବର ।
ତୁମ୍ଭେ ଇନ୍ଦ୍ରାଦି ଦେବବର ॥୧୨୧

Dr. Sudhanshu Sekhar Mishra

ଉଦ୍ଭବ ପ୍ରାଣୀମାନଙ୍କର ।
ତୁମ୍ଭେ ଯେ ବିଭୂତି ମୋହର ॥ ୧୨୨
ତପସ୍ୟା ମୋହର ହୃଦୟ ।
ବେଦ-ବେଦାଙ୍ଗ ମୋର ଦେହ ॥ ୧୨୩
କ୍ରିୟା ଆକୃତି ମୋର ଜାଣ ।
ଯଜ୍ଞ ମୋହର ଅଙ୍ଗମାନ ॥ ୧୨୪
ମୋହର ଆତ୍ମା ଧର୍ମ ଜାଣ ।
ଦେବତାମାନେ ମୋର ପ୍ରାଣ ॥ ୧୨୫
ବାହ୍ୟଅନ୍ତରେ ମୁହିଁ ଥାଇ ।
ସକଳ ଆଦିଭୂତ ମୁହିଁ ॥ ୧୨୬
ସଂସାରେ ସର୍ବରୂପ ହୋଇ ।
ଅବ୍ୟକ୍ତ ରୂପେ ମୁହିଁ ଥାଇ ॥ ୧୨୭
ନାମରେ ଅବଶେଷ ହୋଇ ।
ମୋ ତହୁଁ ଅନ୍ୟ କେହିନାହିଁ ॥ ୧୨୮
ଅନନ୍ତଗୁଣେ ମୁଁ ଅନନ୍ତ ।
ମୋର ଗୁଣରୁ ସର୍ବେ ଜାତ ॥ ୧୨୯

ଗୁଣ-ଶରୀରକୁ ଧଇଲେ ।
ସ୍ୱୟମ୍ଭୁ ଦେହକୁ ପାଇଲେ ॥ ୧୩୦
ସ୍ୱୟମ୍ଭୁ ସୃଜନେ ସଂସାର ।
ନ ଦେଖି ସମର୍ଥ ଆତ୍ମାର ॥ ୧୩୧
ସୃଷ୍ଟି କରିବା ଚିତ୍ତେ ଧରି ।
ଉଦ୍ୟମ କଲେ ସେ ବିଚାରି ॥ ୧୩୨
ବୋଇଲୁ ଆମ୍ଭ ବାକ୍ୟ କର ।
ଘୋର-ତପସ୍ୟାକୁ ଆଚର ॥ ୧୩୩
ସୃଷ୍ଟିକରତା ତୁମ୍ଭେ କାହିଁ ।
ତପର ବଳେ ସୃଷ୍ଟି ହୋଇ ॥ ୧୩୪
ପଞ୍ଚଜନର ଏ କୁମାରୀ ।
ଅସିକ୍ନୀ ନାମେ ଯେ ସୁନ୍ଦରୀ ॥ ୧୩୫
ଏହାକୁ ପତ୍ନୀଭାବେ ତୋର ।
ଗ୍ରହଣ କରି ସୃଷ୍ଟିକର ॥ ୧୩୬
ମୈଥୁନେ ହେବ ବଡ଼ ଶୋଭା ।
ଆନନ୍ଦେ ହୁଅ ଶୁଭେ ବିଭା ॥ ୧୩୭

ତୁମ୍ଭର ଠାରୁ ପ୍ରଜାଯେତେ ।
ମୈଥୁନେ ହୋଇବେ ଜଗତେ ॥ ୧୩୮
ମୋର ମାୟାରେ ମୋହିହେବେ ।
ହରଷେ ସଂସାର କରିବେ ॥ ୧୩୯

ଶୁକ ଉବାଚ

ଏତେକ କହି ଭଗବାନ ।
ଅଖିଳ-ସଂସାର-କାରଣ ॥ ୧୪୦
ସ୍ୱପ୍ନେ କହିଲା ପ୍ରାୟ କରି ।
ଅନ୍ତର ହୋଇଲେ ମୁରାରି ॥ ୧୪୧
ଏ ଦକ୍ଷପ୍ରଜାପତି କଥା ।
କଳ୍ପଭେଦର ଯେ ବ୍ୟବସ୍ଥା ॥ ୧୪୨
ବୋଲଇ ଦାସ ଜଗନ୍ନାଥ ।
ଶ୍ରୀକୃଷ୍ଣଚରିତ ଅମୃତ ॥ ୧୪୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ ଚତୁର୍ଥୋଽଧ୍ୟାୟଃ ॥

---

## ପଞ୍ଚମ ଅଧ୍ୟାୟ

ଶୁକ ଉବାଚ

ବିଷ୍ଣୁ ମାୟାର ପ୍ରଭାବରୁ ।
ପଞ୍ଚଜନକନ୍ୟା ଗର୍ଭରୁ ॥ ୧
ହର୍ଯ୍ୟଶ୍ୱନାମରେ ଅୟୁତ ।
ସେ ଦକ୍ଷ ଜନ୍ମାଇଲେ ସୁତ ॥ ୨
ପୃଥକଭାବ ତା'ଙ୍କ ନାହିଁ ।
ସକଳେ ଧର୍ମଶୀଳ ହୋଇ ॥ ୩
ପିତାର ଆଜ୍ଞା ଘେନି ଶିରେ ।
ପ୍ରଜାସର୍ଜନ କରିବାରେ ॥ ୪
ପଶ୍ଚିମଦିଗକୁ ଗମିଲେ ।
ସେଠାରେ ତୀର୍ଥେକ ଦେଖିଲେ ॥ ୫
ଯା ନାମ ନାରାୟଣସର ।
ସଙ୍ଗମେ ସେ ସିନ୍ଧୁସାଗର ॥ ୬
ସିଦ୍ଧମୁନିରେ ଯେ ସେବିତ ।
ସ୍ମରଣେ ପାପ କରେ ହତ ॥ ୭

ସେ ସରୋବରକୁ ଯେ ଯାଇ ।
ପରମହଂସଦୀକ୍ଷା ବହି ॥ ୮
ଯନ୍ତ୍ରିତ ସେ ପିତା-ଆଜ୍ଞାରେ ।
ନାନା-ଉଗ୍ରତପ ସାଧିଲେ ॥ ୯
ପ୍ରଜାର ବୃଦ୍ଧିକାମକଲେ ।
ତପସାଧନେ ମନ ଦେଲେ ॥ ୧୦
ନାରଦ ଆସି ତତକ୍ଷଣେ ।
କହିଲେ ମଧୁର-ବଚନେ ॥ ୧୧
ହର୍ଯ୍ୟଶ୍ୱେ ଶୁଣ ମୋ ଉତ୍ତର ।
କେମନ୍ତେ ତୁମ୍ଭେ ପ୍ରଜାକର ॥ ୧୨
ପୃଥ୍ୱୀର ପରିମାଣ କାହିଁ ।
କେବେ କି ଦେଖିଅଛ କେହି ॥ ୧୩
ତୁମ୍ଭେ ବାଳକବୁଦ୍ଧି କର ।
ସୃଷ୍ଟି କରିବାକୁ ବିଚାର ॥ ୧୪

ଏକଗୋଟି ଯେ ରାଜ୍ୟ ଅଛି ।
ଏକ ପୁରୁଷ ତହିଁ ଅଛି ॥ ୧୫
ଗହ୍ୱର ଗୋଟିଏ ଅଛଇ ।
ଯହିଁରୁ କେହି ନ ଫେରଇ ॥ ୧୬
ବହୁରୂପର ସ୍ତିରୀ ଏକ ।
ଅଛି ପୁଂଶ୍ଚଳୀ ପତିଏକ ॥ ୧୭
ନଦୀଏ ବହେ ବେନିଆଡେ ।
ଘର ପଚିଶ ପଦାର୍ଥରେ ॥ ୧୮
ବିଚିତ୍ରନାଦ ହଂସ ଆର ।
ପଦାର୍ଥ ଅଛଇ ଅପର ॥ ୧୯
କ୍ଷୁରବଜ୍ରରେ ଗଢା ହୋଇ ।
ନିରତେ ଭ୍ରମଣ କରଇ ॥ ୨୦
ତୁମ୍ଭେ ହୋ ନ ଜାଣ ଏମାନ ।
ନ ବୁଝି ପିତାର ବଚନ ॥ ୨୧

Dr. Sudhanshu Sekhar Mishra

କିପରି ସୃଷ୍ଟି କରିବାରେ ।
ମନ ବଳାଅ ଅବିଚାରେ ॥୨୨
ନାରଦତହିଁ କୂଟବାଣୀ ।
ହର୍ଯ୍ୟଶ୍ୱେ ଶୁଣି ମନେ ଗୁଣି ॥୨୩
ନିର୍ମଳବୁଦ୍ଧି ତାହାଙ୍କର ।
ଏମନ୍ତେ କରନ୍ତି ବିଚାର ॥୨୪
ପୃଥିବୀ ଜୀବ ନାମ ହୋଇ ।
ଅନାଦି ବାସନାକୁ ପାଇ ॥୨୫
ଯେଣୁ ଏ ବହଇ ଶରୀର ।
କାରଣ ଯେ ଆତ୍ମବନ୍ଧର ॥୨୬
ଅଦୃଶ୍ୟ ଏହାର ନିର୍ବାଣ ।
ତେଣୁ ନ ଜାଣି ପରିମାଣ ॥୨୭
ଅସତକର୍ମ ପ୍ରବର୍ତ୍ତନେ ।
କି ଅର୍ଥଲାଭ ଏ ସାଧନେ ॥୨୮
ଏକ ପୁରୁଷ ସେ ଈଶ୍ୱର ।
ସମସ୍ତ ସାକ୍ଷୀ ସେ ରାଜ୍ୟର ॥୨୯
ନିତ୍ୟ ମୁକତ ଭଗବାନ ।
ତେଣେ ତ ନାହିଁ ଆତ୍ମଜ୍ଞାନ ॥୩୦
ପୁରୁଷ ଯହିଁ ପ୍ରବେଶିଲେ ।
ବାହୁଡ଼ି ନ ଆସଇ ଭଲେ ॥୩୧
ପାତାଳଗତି ପ୍ରାୟ ହୋଏ ।
ଜ୍ୟୋତିସ୍ୱରୂପ ବ୍ରହ୍ମମୟେ ॥୩୨
ତହିଁରେ ଆତ୍ମ ନାହିଁ ଜ୍ଞାନ ।
ଏ ସୃଷ୍ଟିକର୍ମେ କି କାରଣ ॥୩୩
ଏ ବୁଦ୍ଧି ନାନାମାର୍ଗେ ଯାଇ ।
ଆତ୍ମାକାରଣ ନ ଜାଣଇ ॥୩୪
ରଜ ତମରେ ବିମୋହିତ ।
ପୁଂଶ୍ଚଳୀ ପରାୟେ ଚରିତ ॥୩୫
ପୁଂଶ୍ଚଳୀ ସଙ୍ଗେ କରି ଭାବ ।
କେବଳ ଶ୍ରମମାତ୍ର ଲାଭ ॥୩୬
କୁତ୍ସିତଭାର୍ଯ୍ୟା-ଗୃହୀ ଯେହ୍ନେ ।
ନିରତେ ବଞ୍ଚଇ କଷଣେ ॥୩୭
ଏଣୁ ଅସତ ଅବିବେକ ।
କର୍ମେ ବା କି ଲାଭ ଅଧିକ ॥୩୮

ଜନ୍ମ ମରଣ ବେନିଦିଗେ ।
ମାୟାନଦୀ ଯେ ବହେ ବେଗେ ॥୩୯
ତହିଁ ପଡ଼ିଣ ଜୀବ ଭ୍ରମେ ।
କି କାର୍ଯ୍ୟ ଅସତ କରମେ ॥୪୦
ପଚିଶ ତତ୍ତ୍ୱେ ଗଢ଼ା ଦେହ ।
ଶ୍ରୀହରି ତହିଁର ଆଶ୍ରୟ ॥୪୧
ତାହାଙ୍କୁ ନ ଜାଣିଣ ଭଲେ ।
କି ଲାଭ ତୁଚ୍ଛା କର୍ମ କଲେ ॥୪୨
ବିଚିତ୍ରନାଦ-ହଂସ ସେହି ।
ଅଧ୍ୟାତ୍ମଶାସ୍ତ୍ର ଯେ ବୋଲାଇ ॥୪୩
ତହିଁର ତତ୍ତ୍ୱ ନ ଜାଣିଲୁ ।
ଅସତ-କର୍ମରେ ଫୁଟିଲୁ ॥୪୪
ଯା ଚକ୍ର ତୀକ୍ଷ୍ଣ କ୍ଷୁରଧାର ।
ବଜ୍ର କଠିନ ଯେହୁ କାଳ ॥୪୫
ସ୍ୱତନ୍ତ୍ରେ କରଇ ଭ୍ରମଣ ।
ଜଗତ କରେ କରଷଣ ॥୪୬
ତାହାର ଗତିକି ନ ବୁଝି ।
ଅସତକର୍ମେ କିପାଁ ମଜ୍ଜି ॥୪୭
ଅଧ୍ୟାତ୍ମଶାସ୍ତ୍ର ପିତା ସମ ।
ନ ବୁଝି ତାହାର ମରମ ॥୪୮
ପ୍ରବୃତ୍ତିମାର୍ଗେ କରି କର୍ମ ।
କିପାଁ ହୋଇବା ତୁଚ୍ଛା ଭ୍ରମ ॥୪୯
ଏମନ୍ତ ମନେ ବିଚାରିଲେ ।
ହର୍ଯ୍ୟଶ୍ୱେ ଏକଚିତ୍ତ ହେଲେ ॥୫୦
ନାରଦେ କରି ପ୍ରଦକ୍ଷିଣ ।
ଗଲେ ଅନିବର୍ତ୍ତ ପଥେଣ ॥୫୧
ଅଚ୍ୟୁତ ବ୍ରହ୍ମ ହୃଷୀକେଶ ।
ଅଖିଳ-ପ୍ରଭୁ-ପୀତବାସ ॥୫୨
ଅଭୟ-ପାଦପଙ୍କଜରେ ।
ଅଖଣ୍ଡଚିତ୍ତ ହୋଇ ସ୍ଥିରେ ॥୫୩
ଆନନ୍ଦ ହୋଇ ମୁନିବର ।
ଗମନ କଲେ ନିଜପୁର ॥୫୪
ସୁତମାନଙ୍କ ନାଶ ଶୁଣି ।
ନାରଦକୃତ ବୋଲି ଜାଣି ॥୫୫

ପୁତ୍ରଙ୍କ ଗୁଣ ସୁମରିଲେ ।
ଦକ୍ଷ ଅନେକ ଶୋକ କଲେ ॥୫୬
ଅଜଙ୍କ ବାକ୍ୟେ ଶାନ୍ତ ହୋଇ ।
ପୁଣିହିଁ ଅସିକ୍ନୀର ତହିଁ ॥୫୭
ବୀର୍ଯ୍ୟଆଧାନ କଲେ ଦକ୍ଷ ।
ପୁତ୍ର ଜନ୍ମିଲେ ସବଳାଶ୍ୱ ॥୫୮
ସହସ୍ରପରିମିତ ହୋଇ ।
ସର୍ବେ ଜନ୍ମିଲେ ଦେହବହି ॥୫୯
ପିତାର ଆଜ୍ଞାକୁ ଧଇଲେ ।
ପ୍ରଜା-ସର୍ଜନେ ମନଦେଲେ ॥୬୦
ଯେ ନାରାୟଣ-ସରୋବର ।
ତହିଁ କି ଗଲେ ଖରତର ॥୬୧
ସେ ତୀର୍ଥ ସ୍ପରଶ ମାତ୍ରକେ ।
ଦହନ ହୋଇଲେ ପାତକେ ॥୬୨
ପରମବ୍ରହ୍ମ ଧ୍ୟାନ କରି ।
ମହତ ତପକୁ ଆଚରି ॥୬୩
କେତେହେଁ ଦିନ ନିରାହାରେ ।
ବଞ୍ଚିଲେ ପବନ ଆହାରେ ॥୬୪
ଏମନ୍ତ କରି ଆରାଧନ ।
ସ୍ମରଣ କଲେ ନାରାୟଣ ॥୬୫
ଓଁ ନମଃ ପ୍ରଭୁ ନାରାୟଣ ।
ଓଁ ନମଃ ପ୍ରଭୂ ଭଗବାନ ॥୬୬
ଅଶେଷ ପୁରୁଷ ପୁରାଣ ।
ଅନାଦି ପ୍ରଭୁ ନିରଞ୍ଜନ ॥୬୭
ବିଶୁଦ୍ଧ ସତ୍ତ୍ୱ ମହାହଂସ ।
ନମସ୍ତେ ପ୍ରଭୁ ହୃଷୀକେଶ ॥୬୮
ଏମନ୍ତ ପ୍ରକାରେ ରାଜନ ।
ପ୍ରଜା ନିମିତ୍ତେ ଦେଇ ମନ ॥୬୯
ତପ ସେ କରୁଥିଲେ ତହିଁ ।
ନାରଦମୁନି ତାଙ୍କୁ ଚାହିଁ ॥୭୦
କପଟ କରିଣ ବଚନ ।
ବୋଇଲେ ଶୁଣ ଋଷିଗଣ ॥୭୧
ଉଦ୍ଦେଶ୍ୟ ଭାଇମାନଙ୍କର ।
କିପାଇଁ ତୁମ୍ଭେ ହୋ ନ କର ॥୭୨

Dr. Sudhanshu Sekhar Mishra

ଭ୍ରାତୃବତ୍ସଳ ତୁମ୍ଭେମାନେ ।
ଏ କର୍ମ କରୁଛ କେସନେ ॥୭୩
ଭାଇର ଦୁଃଖେ ଯେହୁ ଦୁଃଖୀ ।
ସେ ପ୍ରାଣୀ ସର୍ବକାଳେ ସୁଖୀ ॥୭୪
ତାହାଙ୍କୁ ପୁଣ୍ୟବନ୍ତ କହି ।
ଦେବଙ୍କ ସଙ୍ଗେ ସ୍ୱର୍ଗେ ଥାଇ ॥୭୫
ଏମନ୍ତ କହି ତା'ଙ୍କ ଆଗେ ।
ନାରଦ ଗଲେ ଶୂନ୍ୟମାର୍ଗେ ॥୭୬
ସେ ପୁଣି ଭାଇମାନଙ୍କର ।
ଉଦ୍ଦେଶ୍ୟେ ଗଲେ ନୃପବର ॥୭୭
ଭାଇର ଖୋଜେ ଯେତେ ଗଲେ ।
ଅଦ୍ୟାପୀ ନିବୃତ୍ତ ନୋହିଲେ ॥୭୮
ପଶ୍ଚିମରାତ୍ରି ପ୍ରାୟ ହୋଇ ।
ନିବୃତ୍ତି ତା'ଙ୍କ ଆଉ କାହିଁ ॥୭୯
ଅନେକ କାଳ ଗଲା ଯହୁଁ ।
ଦକ୍ଷ ଜାଣିଲେ ପୁଣି ତହୁଁ ॥୮୦
ପୁତ୍ରମାନଙ୍କ ନାଶ ଶୁଣି ।
ନାରଦକୃତ ବୋଲି ଜାଣି ॥୮୧
ପୁତ୍ରଶୋକରେ ମୋହି ହୋଇ ।
ନାରଦେ ଅତି କ୍ରୋଧ ବହି ॥୮୨
ତକ୍ଷଣେ ନିକଟେ ମିଳିଲେ ।
ଦେଖି ନାରଦ ଭୟ କଲେ ॥୮୩
କୁପିତେ କମ୍ପାଇ ଅଧର ।
ନାରଦେ ବୋଲନ୍ତି ଉତ୍ତର ॥୮୪

ଦକ୍ଷ ଉବାଚ

ଅହୋ ଅସାଧୁ ସାଧୁଙ୍କର ।
ଚିହ୍ନକୁ ବହୁ ଅଙ୍ଗେ ତୋର ॥୮୫
ଯେଣୁ ମୋ ବାଳକଙ୍କୁ ତୁହି ।
ଭିକ୍ଷୁକ-ମାର୍ଗକୁ ଦେଖାଇ ॥୮୬
ତିନିଋଣରୁ ଯେ ଅମୁକ୍ତ ।
ନୋହିଛି କର୍ମ ସମାପତ ॥୮୭
ଶ୍ରେୟ-କାରଣ ତା'ଙ୍କ ତପ ।
କପାଁ ତୁ ନଷ୍ଟକଲୁ ପାପ ॥୮୮
କେମନ୍ତେ ଭକ୍ତବୋଲି ତୋତେ ।
ସକଳେ ବୋଲନ୍ତି ଜଗତେ ॥୮୯
ଈଶ୍ୱର ପାରିଷଦ ହେଉ ।
ମନ୍ଦକର୍ମରେ ନିତ୍ୟେ ଥାଉ ॥୯୦
ଯେ ଜନ କୃଷ୍ଣଭକ୍ତ ହୋଏ ।
ପ୍ରାଣୀଙ୍କୁ କରଇ ସଦୟେ ॥୯୧
ତୁ ମିତ୍ରଦ୍ରୋହୀ ପାପୀ ହେଉ ।
ଏ କର୍ମ କରେ ଅବା କେହୁ ॥୯୨
ନିର୍ଦ୍ଦୋଷଠାରେ ଶତ୍ରୁପଣ ।
କପାଇଁ କଲୁ ଅକାରଣ ॥୯୩
ସୁହୃଦଲୋକେ କ୍ରୋଧଭର ।
ତୋ ତହୁଁ ନାହିଁ ନା ଅପର ॥୯୪
ମୋହର ଯେଉଁ ସ୍ନେହପାଶ ।
ଛେଦିଣ କଲୁ ତୁ ନିରାଶ ॥୯୫
ପ୍ରାଣୀମାନଙ୍କ ସ୍ନେହପାଶ ।
ଏ ରୂପେ ନୁହଁଇ ବିନାଶ ॥୯୬
କଠୋର-ବୈରାଗ୍ୟ ସାଧନ ।
ଯହିଁ ସ୍ନେହପାଶ ଛେଦନ ॥୯୭
ବିଷୟକର୍ମ ଯେହୁ ଜନ ।
ନ ଜାଣି କରେ ଅନୁମାନ ॥୯୮
ତୋ ମତ ଅଳ୍ପବୁଦ୍ଧି-ଜ୍ଞାନେ ।
ହିତ-ଅହିତ ସେ ନ ଜାଣେ ॥୯୯
ତୁ ଯେଉଁ କାରଣରୁ କରି ।
ସାଧୁଙ୍କ ଅପ୍ରିୟ ଆଚରି ॥୧୦୦
ସ୍ୱକର୍ମବଦ୍ଧ ଗୃହମେଧି ।
ପରର ହିତେ ଯା'ର ବୁଦ୍ଧି ॥୧୦୧
ତାଙ୍କୁ ଅମାର୍ଗ ଦେଖାଇଲୁ ।
ବାରେକ ଆମ୍ଭେ ତା ସହିଲୁ ॥୧୦୨
ମୂଢ଼ ତୁ ଆମ୍ଭ ଶାପୁଁ କରି ।
ଲୋକବିଷୟେ ଅନାଚାରୀ ॥୧୦୩
ଭ୍ରମଣ କରୁଥିବୁ ତୁହି ।
ସ୍ଥିତି ନୋହିବ ତୋର କାହିଁ ॥୧୦୪

ଶୁକ ଉବାଚ

ଅସ୍ତୁ ବୋଲିଣ ଶାପଘେନି ।
ସାଧୁଜନ ନାରଦ ମୁନି ॥୧୦୫
ଏଣୁ କରି ସେ ସାଧୁବାଦ ।
ସକଳ ବୋଲନ୍ତି ନାରଦ ॥୧୦୬
ସେ ସେହି ରୂପେ ତା ଘେନିଲେ ।
ଦକ୍ଷ ଯେବଣ ଶାପ ଦେଲେ ॥୧୦୭
ନାରଦ ଶାପ କର୍ମବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୦୮
ବୋଲଇ ଦାସ ଜଗନ୍ନାଥ ।
ସଂସାର ହିତେ ଭାଗବତ ॥୧୦୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ନାରଦଶାପୋ ନାମ
ପଞ୍ଚମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଷଷ୍ଠ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ ଏ ଅନ୍ତରେ ।
ଦକ୍ଷ ଯେ ବ୍ରହ୍ମାଙ୍କ ଆଜ୍ଞାରେ ॥ ୧
ଭାରିଯା ଅସିକ୍ନୀଙ୍କ ଠାରେ ।
ଷାଠିଏକନ୍ୟା ଜନ୍ମାଇଲେ ॥ ୨
ଧର୍ମଙ୍କୁ ଦେଲେ କନ୍ୟା ଦ୍ୱଶ ।
କଶ୍ୟପେ ଦେଲେ ତ୍ରୟୋଦଶ ॥ ୩
ସପ୍ତବିଂଶତି ଚନ୍ଦ୍ର କରେ ।
ପ୍ରଦାନ କଲେ ଆନନ୍ଦରେ ॥ ୪
ଭୂତ ଅଙ୍ଗିରା କୃଶାଶ୍ୱଙ୍କୁ ।
ବେନି ବେନିଟି ଦେଲେ ତାଙ୍କୁ ॥ ୫
ଆବର ଚାରି ଯେ କନ୍ୟାଙ୍କୁ ।
ଅର୍ପିଲେ ତାର୍କ୍ଷ୍ୟକାଶ୍ୟପଙ୍କୁ ॥ ୬
ଏ ସର୍ବକନ୍ୟାଙ୍କର ନାମ ।
କହିବା ଶୁଣ ହେ ରାଜନ ॥ ୭
ପ୍ରଜାପତିଙ୍କ କନ୍ୟା ଯେତେ ।
ପୁତ୍ରବତୀ ହେଲେ ସମସ୍ତେ ॥ ୮
ଏହାଙ୍କ ପୁତ୍ର ପୌତ୍ରମାନେ ।
ପୂର୍ଣ୍ଣ ହୋଇଲେ ତ୍ରିଭୁବନେ ॥ ୯
ଧର୍ମ ଯେ କନ୍ୟାଙ୍କୁ ଗ୍ରହଣ ।
କଲେ ତାହାଙ୍କ ନାମ ଶୁଣ ॥ ୧୦
ଭାନୁ ଲମ୍ବା କକୁଭ ଜାମି ।
ମୁହୂର୍ତ୍ତା ବସୁ ଧର୍ମପତ୍ନୀ ॥ ୧୧
ବିଶ୍ୱା ସାଧ୍ୟ ଯେ ମରୁତ୍ୱତୀ ।
ସଙ୍କଳ୍ପା ନାମେ ଯେହୁ ସତୀ ॥ ୧୨
ଏବେ ତାହାଙ୍କ ପୁତ୍ର ନାମ ।
କହିବା ଶୁଣ ହେ ରାଜନ ॥ ୧୩
ଭାନୁର ପୁତ୍ର ହେ ରାଜନ ।
ଦେବଋଷଭ ଯେ ତା ନାମ ॥ ୧୪
ଋଷଭ ସୁତ ଇନ୍ଦ୍ରସେନ ।
ବିଦ୍ୟୋତ ଲମ୍ବାରୁ ଜନମ ॥ ୧୫
କକୁଭ ପୁତ୍ର ଯେ ସଙ୍କଟ ।
ତାହାର ତନୟ କୀକଟ ॥ ୧୬
ଦୁର୍ଗାଭିମାନୀ ଦେବଗଣ ।
ତା' ଠାରୁ ହୋଇଲେ ଜନମ ॥ ୧୭
ଜାମିର ପୁତ୍ର ସ୍ୱର୍ଗନାମ ।
ତା' ଠାରୁ ନନ୍ଦୀର ଜନମ ॥ ୧୮
ବିଶ୍ୱାର ତହୁଁ ବିଶ୍ୱଦେବା ।
ତାଙ୍କୁ ଅପୁତ୍ରିକ ବୋଲିବା ॥ ୧୯
ସାଧ୍ୟାର ସୁତ ସାଧ୍ୟଗଣ ।
ତା ତହୁଁ ଅର୍ଥସିଦ୍ଧି ଜନ୍ମ ॥ ୨୦
ଜୟନ୍ତ ମରୁତ୍ୱାନ ଦୁଇ ।
ଜନ୍ମିଲେ ମରୁତ୍ୱତୀ ତହିଁ ॥ ୨୧
ଜୟନ୍ତ ନାମେ ଯେ ପ୍ରକାଶ ।
ସେ ଅଟେ ବାସୁଦେବ ଅଂଶ ॥ ୨୨
ଉପେନ୍ଦ୍ର ବୋଲି ଜଗତରେ ।
ଯାକୁ ଜାଣନ୍ତି ବିଜ୍ଞନରେ ॥ ୨୩
ମୁହୂର୍ତ୍ତା ଗର୍ଭେ ଦେବଗଣ ।
ଜନ୍ମିଲେ ଅଖିଳକାରଣ ॥ ୨୪
ଏମାନେ ପ୍ରାଣୀହିତ ଚିନ୍ତି ।
ସ୍ୱକାମ ଫଳକୁ ଦିଅନ୍ତି ॥ ୨୫
ଯେ କାଳେ ଯେ ଫଳ ପ୍ରାଣୀରେ ।
ଦିଅନ୍ତି ମୁହୂର୍ତ୍ତ ରୂପରେ ॥ ୨୬
ସଙ୍କଳ୍ପ ସଙ୍କଳ୍ପାର ସୁତ ।
ତା' ଠାରୁ କାମ ହେଲା ଜାତ ॥ ୨୭
ବସୁର ଅଷ୍ଟବସୁ ସୁତ ।
କହିବା ଶୁଣ ପରୀକ୍ଷିତ ॥ ୨୮
ଧ୍ରୁବାର୍କ ଦୋଷ ଅଗ୍ନି ଦ୍ରୋଣ ।
ବିଭାବସୁ ବସୁ ଯେ ପ୍ରାଣ ॥ ୨୯
ଦ୍ରୋଣର ପତ୍ନୀ ଅଭିମତି ।
ତା' ଠାରୁ ହୋଇଲେ ଉତ୍ପତ୍ତି ॥ ୩୦
ହରଷ ଶୋକ ଭୟ ପୁଣ ।
ଏ ଆଦି ହୋଇ ଯେତେ ଗଣ ॥ ୩୧
ପ୍ରାଣର ଉର୍ଜସ୍ୱତୀ ନାମା ।
ପତ୍ନୀ ଯେ ଅତି ମନୋରମା ॥ ୩୨
ତା' ତହୁଁ ଏ ତିନି ଉଭବ ।
ସହ ଆୟୁ ଯେ ପୁରୋଜବ ॥ ୩୩
ଧରଣୀ ଜାୟା ଯେ ଧ୍ରୁବର ।
ତା' ॥ଗର୍ଭୁ ଜାତ ନାନାପୁର ॥ ୩୪
ଅର୍କ ନାମରେ ଯେ ବସୁର ।
ବାସନା ନାମେ ପତ୍ନୀ ତାର ॥ ୩୫
ତା ତହୁଁ ତର୍ଷାଦି ତନୟ ।
ବହୁତ ହୋଇଲେ ଉଦୟ ॥ ୩୬
ଅଗ୍ନିର ଭାର୍ଯ୍ୟା ଧାରା ହେଲେ ।
ବହୁପୁତ୍ର ସେ ପ୍ରସବିଲେ ॥ ୩୭
ପୁଣି ତା ତହୁଁ ସ୍କନ୍ଦ ହେଲେ ।
କୃତ୍ତିକା ପୁତ୍ର ବୋଲାଇଲେ ॥ ୩୮
ଶର୍ବରୀ ରମଣୀ ଦୋଷର ।
ତା' ତହୁଁ ଜନ୍ମ ଶିଶୁମାର ॥ ୩୯
ଯେ ଶିଶୁମାର ବିଷ୍ଣୁ ଅଂଶେ ।
ଜାତ ହୋଇଲେ ବସୁବଂଶେ ॥ ୪୦
ଈଶ୍ୱରଅଂଶ ସେ ଅଟଇ ।
ଜଗତବ୍ୟାପିତ ସେ ହୋଇ ॥ ୪୧
ବସୁ ବନିତା ଆଙ୍ଗିରସୀ ।
ତହୁଁ ବିଶ୍ୱକର୍ମା ପ୍ରକାଶି ॥ ୪୨
ସକଳକଳାମାନଙ୍କର ।
ସ୍ୱାମୀ ଅଟଇ ଜଗତର ॥ ୪୩
ସେ ବିଶ୍ୱକର୍ମା ବୀର୍ଯ୍ୟୁଜାତ ।
ଚାକ୍ଷୁସ ମନୁ ନାମେ ସୁତ ॥ ୪୪
ବିଶ୍ୱଦେବାଦି ସାଧ୍ୟ ଯେତେ ।
ମନୁର ପୁତ୍ର ଏ ଜଗତେ ॥ ୪୫
ବିଭାବସୁଙ୍କ ତିନିସୁତ ।
ଊଷା-ଗର୍ଭରୁ ହେଲେ ଜାତ ॥ ୪୬
ତାହାଙ୍କ ନାମ ଶୁଣ ନୃପ ।
ବ୍ୟୁଷ୍ଟ ରୋଚିଷ ଯେ ଆତପ ॥ ୪୭

Dr. Sudhanshu Sekhar Mishra

ଏ ତିନି ପୁତ୍ରଙ୍କ ମଧ୍ୟରେ ।
ଆତପ ନାମ ଅଟେ ଯାର ॥୪୮
ତା' ଠାରୁ ଦିବସ ଜନମ ।
ଯାହାର ନାମ ପଞ୍ଚଯାମ ॥୪୯
ଯା' ହେତୁ ପ୍ରାଣୀ ଜାଗରିତ ।
ସଂସାରେ ହୋନ୍ତି ଆତଯାତ ॥୫୦
ଏବେ ସେ ଭୂତଙ୍କର ବଂଶ ।
କହିବା ଶୁଣ ନରଈଶ ॥୫୧
ଯେ ପତ୍ନୀ ସ୍ୱରୂପା ନାମେଣ ।
ତା' ଠାରୁ ଜାତ ରୁଦ୍ରଗଣ ॥୫୨
ତାହାଙ୍କ ନାମ ଏକ ଏକ ।
କହିବା କର ହେ ବିବେକ ॥୫୩
ରୈବତ ଅଜ ଭବ ଭୀମ ।
ଉଗ୍ର ବୃଷାକପି ଯେ ବାମ ॥୫୪
ଅଜୈକପାଦ ଅହିର୍ବୁଧ୍ନ୍ୟ ।
ମହାନ ବହୁରୂପ ନାମ ॥୫୫
ରୁଦ୍ରର ପାରିଷଦ ଯେତେ ।
କହିବି ଏକେ ଏକେ କେତେ ॥୫୬
ପ୍ରେତ ବିନାୟକ ଯେ ଘୋର ।
ଏମନ୍ତେ ଜନ୍ମିଲେ ଅପାର ॥୫୭
ଏ ଏକାଦଶ ରୁଦ୍ରଗଣ ।
ଜନମ ହେଲେ ପୃଥ୍ୱୀରେଣ ॥୫୮
ଅଙ୍ଗିରସ ଯେ ପ୍ରଜାପତି ।
ତାହାର ପତ୍ନୀ ସ୍ୱଧାସତୀ ॥୫୯
ପିତୃଗଣଙ୍କୁ ସେ ଜନ୍ମାଇଁ ।
ଆବର ଶୁଣ ଯାହା କହି ॥୬୦
ସତୀର ଅଥର୍ବାଙ୍ଗି ରସ ।
ସୁତ ହୋଇଲେ ହେ ନରେଶ ॥୬୧
କୃଶାଶ୍ୱନାମେ ପ୍ରଜାପତି ।
ଅର୍ଚ୍ଚି ଧୀଷଣା ତା' ଯୁବତୀ ॥୬୨
ଧୂମକେତୁ ଯେ ଅର୍ଚ୍ଚିସୁତ ।
ଧୀଷଣା ଠାରୁ ଚାରିପୁତ୍ର ॥୬୩
ବେଦଶିରା ମନୁ ବୟୁନ ।
ଦେବଳ ଏ ଚାରିନନ୍ଦନ ॥୬୪

ତାର୍କ୍ଷ୍ୟ ନାମରେ ଯେ କଶ୍ୟପ ।
ତା' ପତ୍ନୀ ନାମ ଶୁଣ ନୃପ ॥୬୫
ବିନତା ପତଙ୍ଗୀ ଯାମିନୀ ।
କଦ୍ରୂ ଏ ଚାରୋଟି କାମିନୀ ॥୬୬
ବିନତା ଗରୁଡ ଅରୁଣ ।
ଦୁଇ ସନ୍ତାନ କଲେ ଜନ୍ମ ॥୬୭
ଗରୁଡ ବିଷ୍ଣୁଙ୍କ ବାହାନ ।
ସୂର୍ଯ୍ୟଙ୍କ ସାରଥି ଅରୁଣ ॥୬୮
ପତଙ୍ଗୀ ପତଙ୍ଗମାନଙ୍କୁ ।
ଯାମିନୀ ଶଲଭ ପୁତ୍ରଙ୍କୁ ॥୬୯
କଦ୍ରୂର ଗର୍ଭୁନାଗ ଯେତେ ।
ଉତ୍ପନ୍ନ ହୋଇଲେ ସମସ୍ତେ ॥୭୦
କୃତ୍ତିକା ଆଦି ଯେତେ ଋକ୍ଷ ।
ଚନ୍ଦ୍ରର ପତ୍ନୀ ଏ ପ୍ରତ୍ୟକ୍ଷ ॥୭୧
ନିତ୍ୟେ କେବଳ ରୋହିଣୀର ।
ପ୍ରେମରେ ବଶ ଶଶଧର ॥୭୨
ଦେଖନ୍ତେ କନ୍ୟାଙ୍କର ଦୁଃଖ ।
ଶାପ ବିହିଲେ କୋପେ ଦକ୍ଷ ॥୭୩
ସେ ଶାପୁ କ୍ଷୟ ରୋଗେ ସୋମ ।
ଦିନକୁ ଦିନ ହେଲେ କ୍ଷୀଣ ॥୭୪
ଦକ୍ଷଙ୍କୁ ପ୍ରସନ୍ନ କରାଇ ।
କଳା ଲଭିଲେ ପୁଣ ସେହି ॥୭୫
କୃଷ୍ଣ-ଶୁକ୍ଳରେ ଏହି କଳା ।
କ୍ରମରେ କ୍ଷୟ ବୃଦ୍ଧି ହେଲା ॥୭୬
ଏ ଅନନ୍ତରେ ମାତୃଗଣ ।
ତାହାଙ୍କ ନାମ କହୁଁ ଶୁଣ ॥୭୭
କଶ୍ୟପ-ପତ୍ନୀମାନଙ୍କର ।
କହିବା ନାମର ବିସ୍ତାର ॥୭୮
ଯାହାର ଅପତ୍ୟରୁ କରି ।
ଜଗତଯାକ ଅଛି ପୂରି ॥୭୯
କୀର୍ତ୍ତନ କଲେ ତା'ଙ୍କ ନାମ ।
ପ୍ରାଣୀ ଲଭନ୍ତି ସୁଖଧାମ ॥୮୦
ତେଣୁ ମୁଁ ତୁମ୍ଭର ନିକଟେ ।
ତାହାଙ୍କ ନାମକୁ ପ୍ରକଟେ ॥୮୧

ଅଦିତି ଦିତି ଦନୁ ତିନି ।
କାଷ୍ଠା ଅରିଷ୍ଟା ପୁଣ ବେନି ॥୮୨
ସୁରସା ଇଳା ମୁନି ପୁଣି ।
କ୍ରୋଧବଶା ତାମ୍ରା ତରୁଣୀ ॥୮୩
ସୁରଭି ସରମା ପ୍ରକାଶ ।
ତିମି ସହିତେ ତ୍ରୟୋଦଶ ॥୮୪
ଏହାଙ୍କର ଯେ ହେଲେ ସୁତ ।
କହିବା ଶୁଣ ପରୀକ୍ଷିତ ॥୮୫
ଜଳଜନ୍ତୁଏ ତିମିଠାରୁ ।
ଶ୍ୱାପଦେ ସରମା-ଗର୍ଭରୁ ॥୮୬
ଗୋରୁ ମହୀଷ ଆଦି ଯେତେ ।
ଦ୍ୱିଖୁର-ପଶୁ ଏ ସମସ୍ତେ ॥୮୭
ସୁରଭିଠାରୁ ହେଲେ ଜାତ ।
କହିବା ଶୁଣ ତାମ୍ରା ସୁତ ॥୮୮
ଶ୍ୟେନ-ଗୃଧ୍ରାଦି ବିହଙ୍ଗମ ।
ମୁନିର ଅପସରୀଗଣ ॥୮୯
ଦ୍ୱନ୍ଦଶୂକାଦି ସର୍ପ ଯେତେ ।
କ୍ରୋଧବଶାସୁତ ସମସ୍ତେ ॥୯୦
ଇଳାର ତହୁଁ ବୃକ୍ଷମାନ ।
ସୁରସା ସୁତ ଯାତୁଧାନ ॥୯୧
ଗନ୍ଧର୍ବେ ଅରିଷ୍ଟାର ପୁତ୍ର ।
କାଷ୍ଠାର ଏକଖୁର ସୁତ ॥୯୨
ଦନୁର ଏକଷଠିସୁତ ।
ଅଠର ପ୍ରଧାନ ଯେ ପୁତ୍ର ॥୯୩
ଶୁଣ କହିବା ହେ ରାଜନ ।
ଏହାଙ୍କ ଏକଏକ ନାମ ॥୯୪
ଦ୍ୱିମୂର୍ଦ୍ଧା ଅରିଷ୍ଟ ଶମ୍ବର ।
ହୟଗ୍ରୀବ ଯେ ଶଙ୍କୁଶିର ॥୯୫
ବିଭାବସୁ ଯେ ଅୟୋମୁଖ ।
ବୃଷପର୍ବା ଯେ ବିରୁପାକ୍ଷ ॥୯୬
ସ୍ୱର୍ଭାନୁ କପିଳ ଅରୁଣ ।
ପୁଲୋମା ଏକଚକ୍ର ଜାଣ ॥୯୭
ଧୂମ୍ରକେଶ ଅନୁତାପନ ।
ଦୁର୍ଜ୍ଜୟ ବିପ୍ରଚିତ୍ତି ନାମ ॥୯୮

Dr. Sudhanshu Sekhar Mishra

ସ୍ୱର୍ଭାନୁ କୁମାରୀ ସୁପ୍ରଭା ।
ନମୁଚି ତା'ଙ୍କୁ ହେଲେ ବିଭା ॥୯୯
ରାଜନ ଯେ ବୃଷପର୍ବାର ।
ଶର୍ମିଷ୍ଠା ନାମେ କନ୍ୟାବର ॥୧୦୦
ଅତି ସୁନ୍ଦରୀ କନ୍ୟା ଥିଲା ।
ଯଯାତି ତା'ଙ୍କୁ ବିଭା ହେଲା ॥୧୦୧
ଦନୁର ପୁତ୍ର ବୈଶ୍ୱାନର ।
ଚାରୋଟି କନ୍ୟା ହେଲେ ତାର ॥୧୦୨
ସେମାନେ ପରମାସୁନ୍ଦରୀ ।
କହିବା ନାମ ତାହାଙ୍କରି ॥୧୦୩
ଉପଦାନବୀ ହୟଶିରୀ ।
କାଳକା ପୁଲୋମା ସୁନ୍ଦରୀ ॥୧୦୪
ଉପଦାନବୀ କନ୍ୟା ତୁଲେ ।
ହିରଣ୍ୟାକ୍ଷ ଯେ ବିଭାହେଲେ ॥୧୦୫
ହୟଶିରୀ ନାମେ ସୁନ୍ଦରୀ ।
କ୍ରତୁର ସେହି ହେଲା ନାରୀ ॥୧୦୬
ପୁଲୋମା କାଳକା ଏ ଦୁଇ ।
କଶ୍ୟପ ସଙ୍ଗେ ବିଭା ହୋଇ ॥୧୦୭
ବ୍ରହ୍ମାଙ୍କ ଆଜ୍ଞା ପାଇ କରି ।
କଶ୍ୟପ ବିଭା ବେନିନାରୀ ॥୧୦୮
ଏ ଦୁଇକନ୍ୟାଙ୍କ ଗର୍ଭରୁ ।
ଦାନବେ କଶ୍ୟପ-ବୀର୍ଯ୍ୟରୁ ॥୧୦୯
ଷାଠିଏ ସହସ୍ର ସମ୍ଭୂତ ।
ସର୍ବେ ହୋଇଲେ ବଳବନ୍ତ ॥୧୧୦
ଇନ୍ଦ୍ରର ଅପ୍ରୀତି କରନ୍ତି ।
ନିତ୍ୟେ କୁକର୍ମ ଆଚରନ୍ତି ॥୧୧୧
ସର୍ବଦା ଯୁଦ୍ଧେ ରତ ହେଲେ ।
ଋଷିଙ୍କ ଯାଗ ବିନାଶିଲେ ॥୧୧୨
ପିତାର ପିତା ଯେ ତୋହର ।
ଅର୍ଜୁନ ନାମଟି ଯାହାର ॥୧୧୩
ସ୍ୱର୍ଗକୁ ଯାଇ କଲା ନଷ୍ଟ ।
ଦାନବ ବଳବନ୍ତ ଦୁଷ୍ଟ ॥୧୧୪
ଦାନବ ବିପ୍ରଚିତ୍ତି ନାରୀ ।
ସିଂହିକା ନାମଟି ତାହାରି ॥୧୧୫

ଏକ ଦାନବ ଶତେ ସୁତ ।
ତା' ଗର୍ଭୁ ହୋଇଲେ ସମ୍ଭୂତ ॥୧୧୬
ରାହୁ ତା ପ୍ରଥମ ନନ୍ଦନ ।
ଶତକନିଷ୍ଠ କେତୁ ନାମ ॥୧୧୭
ସେ ସର୍ବେ ଗ୍ରହମାନଙ୍କରେ ।
ବିଖ୍ୟାତ ହୋଇଲେ ସଂସାରେ ॥୧୧୮
ଏଥୁ ଅନ୍ତରେ ନୃପବର ।
ଅଦିତି ବଂଶର ବିଚାର ॥୧୧୯
ଯହିଁ ଶ୍ରୀବ୍ରହ୍ମାଣ୍ଡଠାକୁର ।
ଅଂଶେ ହୋଇଲେ ଅବତାର ॥୧୨୦
ଅର୍ଯ୍ୟମା ବିବସ୍ୱାନ ତ୍ୱଷ୍ଟା ।
ଧାତା ବିଧାତା ଯେ ସବିତା ॥୧୨୧
ପୂଷା ଭଗ ଆଉ ବରୁଣ ।
ମିତ୍ର ଶକ୍ର ଯେ ଉରକ୍ରମ ॥୧୨୨
ବିବସ୍ୱାନଙ୍କ ତହୁଁ ଜାତ ।
ଶ୍ରଦ୍ଧାଦେବ ହେଲେ ସାକ୍ଷାତ ॥୧୨୩
ସେ ଶ୍ରାଦ୍ଧଦେବ ମନୁ ନାମେ ।
ଖ୍ୟାତ ହୋଇଲା ଧରାଧାମେ ॥୧୨୪
ଭାଗ୍ୟବତୀ ଯାମୀ ଏ ଦୁଇ ।
ଯମ ଯମୁନା ପ୍ରସବଇ ॥୧୨୫
ଯେ ଯାମୀ ବଡବା ରୂପରେ ।
ଜନ୍ମାଇ ଅଶ୍ୱିନୀକୁମାରେ ॥୧୨୬
ଛାୟାରେ ଶନିଶ୍ଚର ସୁତ ।
ବିବସ୍ୱାନର ବୀର୍ଯ୍ୟୁ ଜାତ ॥୧୨୭
ଏ ଅନନ୍ତରେ ତା'ର ତହୁଁ ।
ସାବର୍ଣ୍ଣିମନୁ ଜାତ ହୋଇ ॥୧୨୮
କନ୍ୟାଏ ହୋଇଲା ଜନମ ।
ଯାହାର ପତି ସମ୍ବରଣ ॥୧୨୯
ମାତୃକା ପତ୍ନୀ ଅର୍ଜମାର ।
ବହୁତ ସୁତ ହେଲେ ତା'ର ॥୧୩୦
ଏ ସର୍ବ ମନୁଷ୍ୟଜାତିରେ ।
କଳ୍ପନା କଲେ ବେଦବରେ ॥୧୩୧
ପୂଷା ସ୍ୱଭାବେ ଅନପତ୍ୟ ।
ପୂର୍ବେ ତ ଥିଲା ଭଗ୍ନଦନ୍ତ ॥୧୩୨

ପୂର୍ବକାଳରେ ଦକ୍ଷ ପ୍ରତି ।
କୁପିତ ହେଲେ ଉମାପତି ॥୧୩୩
ତା' ଦେଖି ପୂଷା ନିଜ ଦନ୍ତ ।
ଦେଖାଇ ହସିଲା ବହୁତ ॥୧୩୪
ଏଣୁ ତା ଦନ୍ତ ଭଗ୍ନ ହୋଏ ।
ଏବେ କହିବା ଶୁଣ ରାୟେ ॥୧୩୫
ଦୈତ୍ୟ କନ୍ୟା ପତ୍ନୀ ତ୍ୱଷ୍ଟାର ।
ରଚନା ନାମ ସେ କନ୍ୟାର ॥୧୩୬
ଏହାଙ୍କ ସୁତ ଶୁଣ ନୃପ ।
ସନ୍ନିବେଶ ଯେ ବିଶ୍ୱରୂପ ॥୧୩୭
ଯାହାଙ୍କୁ ସୁରଗଣମାନେ ।
ବରିଲେ ପୁରୋହିତ ପଣେ ॥୧୩୮
ଶତ୍ରୁମଣ୍ଡଳା ଯେବେ ତା'ର ।
ସେ ଯେ ସ୍ୱଭାବେ ବଳିୟାର ॥୧୩୯
ତଥାପି ପୁରୋହିତ ପଣେ ।
ବରଣ କଲେ ଦେବଗଣେ ॥୧୪୦
ଯେବେ ସେ ଗୁରୁ ଆଙ୍ଗିରସ ।
ମନରେ ହୋଇ ଅସନ୍ତୋଷ ॥୧୪୧
ତା'ଙ୍କୁ ତେଜିଲେ ମୁନିରାଣ ।
ସେ ମୁନି ସକଳକାରଣ ॥୧୪୨
ସେ କଥା ସୁଜ୍ଞଜନ ହିତେ ।
ଏ ଷଷ୍ଠସ୍କନ୍ଧ ଭାଗବତେ ॥୧୪୩
ବୋଲଇ ଦାସ ଜଗନ୍ନାଥ ।
ଦକ୍ଷଙ୍କ ସୃଷ୍ଟି ଏ ଜଗତ ॥୧୪୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ ଷଷ୍ଠୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

ପରୀକ୍ଷିତ ଉବାଚ

କେଉଁ ହେତୁରୁ ଆଙ୍ଗିରସ ।
ଦେବଙ୍କୁ କଲେ ଅବିଶ୍ୱାସ ॥୧
ନିଜର ଶିଷ୍ୟ ଦେବଗଣେ ।
ବର୍ଜିଲେ ତା'ଙ୍କୁ କି କାରଣେ ॥୨
ଏ କଥା କହ ମୁନିବର ।
ଯେବେ କରୁଣା ମୋତେ କର ॥୩

ଶୁକ ଉବାଚ

ଶୁଣ କହିବା ଯା' ପଚାର ।
ଯେହେତୁ ଛାଡିଲେ ଅମର ॥୪
ଏକ କାଳରେ ପୁରୁହୂତ ।
ଐଶ୍ୱର୍ଯ୍ୟେ ହୋଇ ବିହ୍ୱଳିତ ॥୫
ନିରତେ ଅସତ-ମାର୍ଗରେ ।
ପ୍ରବୃତ୍ତ ହେଲେ ସେ ଗର୍ବରେ ॥୬
ପବନ ବସୁ ରୁଦ୍ରଗଣ ।
ଆଦିତ୍ୟ ଯେତେ ଋଭୁ ପୁଣ ॥୭
ବିଶ୍ୱଦେବା ସାଧ୍ୟ ସହିତେ ।
ଅଶ୍ୱିନୀକୁମାର ସମେତେ ॥୮
ସିଦ୍ଧ ଗନ୍ଧର୍ବ ଯେ ଚାରଣ ।
ବ୍ରହ୍ମା ଶଙ୍କର ମୁନିଗଣ ॥୯
କିନ୍ନର ବିଦ୍ୟାଧରଗଣ ।
ସେବିତ ଅପସରାମାନ ॥୧୦
ପତଙ୍ଗ ଉରଗ ଯେ ଆଦି ।
ସେବନ୍ତି ଯେ ଯାହା ପ୍ରସିଦ୍ଧି ॥୧୧
ସ୍ତୁତି କରନ୍ତି ବନ୍ଦୀଗଣ ।
ଆସ୍ଥାନେ ବସି ମଘବାନ ॥୧୨
ଲଳିତେ କେହୁ ଗୀତ ଗାଇ ।
ଚାମର ଧରି କେ ବିଞ୍ଚଇ ॥୧୩
ଚନ୍ଦ୍ରମଣ୍ଡଳ ପ୍ରାୟ ହୋଇ ।
ଯେ ଶ୍ୱେତଛତ୍ର ଶୋଭାପାଇ ॥୧୪

ସପ୍ତମ ଅଧ୍ୟାୟ

ଅନ୍ୟ ଯେ ପାରିଷଦଗଣ ।
ବିଞ୍ଚନ୍ତି ଘେନିଣ ବ୍ୟଜନ ॥୧୫
ଶଚୀ ସଙ୍ଗତେ ଦେବରାୟେ ।
ରତ୍ନଆସନରେ ବିଜୟେ ॥୧୬
ଏମନ୍ତ ସମୟେ ରାଜନ ।
କହିବା ଶୁଣ ଏକମନ ॥୧୭
ପରମଗୁରୁ ଦେବଙ୍କର ।
ପ୍ରବେଶ ହେଲେ ସେ ସଭାର ॥୧୮
ପୂଜିତ ମୁନିମାନଙ୍କର ।
ବନ୍ଦିତ ସୁରାସୁରଙ୍କର ॥୧୯
ତାହାଙ୍କ ପ୍ରତି ଆନ କରି ।
ଅଭିବାଦନକୁ ନ କରି ॥୨୦
ଏମନ୍ତେ ମୁନିଙ୍କି ଦେଖିଲେ ।
ଇନ୍ଦ୍ର ଆସନୁ ନ ଉଠିଲେ ॥୨୧
ସେଠାରୁ ଶୀଘ୍ରେ ଆଙ୍ଗିରସ ।
ମଉନେ ମନ୍ଦିରେ ପ୍ରବେଶ ॥୨୨
ଶ୍ରୀମଦେ ଇନ୍ଦ୍ରର ବିକ୍ରିୟା ।
ମନେ ଜାଣିଲେ ମୁନି ଏହା ॥୨୩
ତାହାଙ୍କ ବିନୁ କେ ପଣ୍ଡିତ ।
ସ୍ୱର୍ଗ-ରକ୍ଷଣେ ସମରଥ ॥୨୪
ତକ୍ଷଣେ ଇନ୍ଦ୍ରଜାଣି କରି ।
ଗୁରୁ-ଅପରାଧ ବିଚାରି ॥୨୫
ଆମ୍ଭାକୁ ଇନ୍ଦ୍ର ନିନ୍ଦା କଲେ ।
ଅନେକ ସନ୍ତାପ ପାଇଲେ ॥୨୬
ବଡ଼ ଅସାଧୁପଣ କଲି ।
ମୁଁ ଅଳ୍ପବୁଦ୍ଧିକି ପାଇଲି ॥୨୭
ଗୁରୁ-ଆଚାର୍ଯ୍ୟଙ୍କୁ ସଭାରେ ।
ନିନ୍ଦିଲି ଐଶ୍ୱର୍ଯ୍ୟ-ମଦରେ ॥୨୮
ମୁଁ ଦେବମାନଙ୍କ ଈଶ୍ୱର ।
କଲି ଅସୁରଙ୍କ ବେଭାରେ ॥୨୯
ଯେ ମହାରାଜ-ଚିହ୍ନ ବହି ।
ମନରେ ମଉଗର୍ବ ବହି ॥୩୦

ଧର୍ମଧରତା ଯେଉଁମାନେ ।
ସାଧୁ ପଣ୍ଡିତ ଯେତେ ଜନେ ॥୩୧
ତାହାଙ୍କୁ ଦେଖି ନ ଉଠନ୍ତି ।
ସେମାନେ ଧର୍ମ ନ ଜାଣନ୍ତି ॥୩୨
କୁପଥ ଦେଖାନ୍ତି ଯେ ଜନ ।
ନରକେ ପଡ଼ନ୍ତି ବହନ ॥୩୩
ତାହାଙ୍କ ବୋଲ ଯେ କରନ୍ତି ।
ପାଷଣଭେଳା ଆବୋରନ୍ତି ॥୩୪
ସ୍ୱଭାବେ ଗରୁ ଯେ ପାଷାଣ ।
ତାହାର ଆଶ୍ରୟେ ମରଣ ॥୩୫
ଏବେ ଅମରଗଣଙ୍କର ।
ଆଚାର୍ଯ୍ୟ ଅଗାଧବୁଦ୍ଧିର ॥୩୬
ମୁଁ ମୂଢ ସେହି ବ୍ରାହ୍ମଣର ।
ପୟରେ ମଣ୍ଡିବି ମୋ' ଶିର ॥୩୭
ତା'ଙ୍କୁ କରାଇଲେ ପ୍ରସନ୍ନ ।
ଦୁଃଖ ମୋ ହୋଇବ ଦହନ ॥୩୮
ଏମନ୍ତ ଚିନ୍ତା ମନେ କରି ।
ଗୁରୁ-ଭୁବନେ ଆଗୁ ସରି ॥୩୯
ଗୁରୁ ତା ଆଗମନ ଦେଖି ।
ଗୃହକୁ ଗଲେ ସେ ଉପେକ୍ଷି ॥୪୦
ଗୁରୁଦରଶନ ନ ପାଇ ।
ଭୟ-ଶୋକରେ ଯୁକ୍ତ ହୋଇ ॥୪୧
ଆମ୍ଭର ଅକୁଶଳ ଜାଣି ।
ଚିନ୍ତିତ ହେଲେ ବଜ୍ରପାଣି ॥୪୨
ଅସୁରମାନେ ତାହା ଜାଣି ।
ଶୁକ୍ର-ମନ୍ତ୍ରଣା ପରିମାଣି ॥୪୩
ଦେବଙ୍କ ନାଶ ବିଚାରନ୍ତି ।
ସ୍ୱଭାବେ ଦୁର୍ମଦ ହୁଅନ୍ତି ॥୪୪
ତାହାଙ୍କ ବାଣେ ମଘବାନ ।
ଦେବଙ୍କ ଦେହ ହେଲା କ୍ଷୀଣ ॥୪୫
ବ୍ରହ୍ମା-ଛାମୁକୁ ଦେବେ ଗଲେ ।
ଏ ସର୍ବକଥା ନିବେଦିଲେ ॥୪୬

Dr. Sudhanshu Sekhar Mishra

ଛନ୍ନଚିତ୍ତରେ ଦେବଗଣ ।
ନମିଲେ ବ୍ରହ୍ମାଙ୍କ ଚରଣ ॥୪୭
ଦୁଃଖିତ ଦେଖି ଦେବଗଣ ।
ସ୍ୱୟମ୍ଭୁ ଅଜ ଭଗବାନ ॥୪୮
ପରମକୃପାଯୁକ୍ତ ହୋଇ ।
କିଛି ବୋଇଲେ ସ୍ନେହବହି ॥୪୯

ବ୍ରହ୍ମା ଉବାଚ

ହେ ଦେବ ଶୁଣ କହୁଁ ଆମ୍ଭେ ।
ଅତ୍ୟନ୍ତ-ମନ୍ଦ କଲ ତୁମ୍ଭେ ॥୫୦
ଯେ ବ୍ରହ୍ମବାଦୀ ସୁବ୍ରାହ୍ମଣ ।
ତାହାଙ୍କୁ କଲ ଅବମାନ ॥୫୧
ତୁମ୍ଭଙ୍କୁ ସେ ପାପ-କାରଣେ ।
ଜିଣିଲେ ତେଣୁ ଶତ୍ରୁଗଣେ ॥୫୨
ତୁମ୍ଭଙ୍କୁ ନ ଜିଣନ୍ତି ବାଦେ ।
ଏବେ ଜିଣିଲେ ଅପ୍ରମାଦେ ॥୫୩
ହେ ଇନ୍ଦ୍ର ଶୁଣ ସାବଧାନେ ।
ଗୁରୁଙ୍କୁ ଲଙ୍ଘିଲ ଅଜ୍ଞାନେ ॥୫୪
ଶୁକ୍ରଙ୍କୁ ଆରାଧି ଅସୁର ।
ସୁଖେ ଲଭିଲେ ତୁମ୍ଭ ପୁର ॥୫୫
ଗୋ ବିପ୍ର ଗୋବିନ୍ଦ ଯାହାର ।
ଠାକୁର ବିଘ୍ନ କାହିଁ ତା'ର ॥୫୬
ଅଶେଷପ୍ରାଣୀଙ୍କ ଈଶ୍ୱର ।
ଶୁଭ କରିବେ ଚକ୍ରଧର ॥୫୭
ବିଶ୍ୱରୂପଙ୍କୁ ବେଗେ ଭଜ ।
ତୁମ୍ଭର କରିବେ ଯେ କାର୍ଯ୍ୟ ॥୫୮
ସେ ବିପ୍ର ପ୍ରସନ୍ନ ହୋଇଲେ ।
ତୁମ୍ଭର ଦୁଃଖ ଯିବ ଭଲେ ॥୫୯
ଶୁକ କହିଲେ ଶୁଣ ରାୟେ ।
ବ୍ରହ୍ମା ଯେ କହିଲେ ଉପାୟେ ॥୬୦
ଶୁଣି ଦେବତାଏ ହରଷ ।
ବ୍ରହ୍ମାଙ୍କ ଏହି ଉପଦେଶ ॥୬୧
ଋଷିଙ୍କ ଠାବକୁ ସେ ଗଲେ ।
ହରଷେ ଆଲିଙ୍ଗନ କଲେ ॥୬୨

ଏ ଅନନ୍ତରେ ହୃଷ୍ଟ ହୋଇ ।
ଦେବେ କହିଲେ କଥା ଏହି ॥୬୩
ଆମ୍ଭେ ଅତିଥି ହେଲୁ ଯହୁଁ ।
ତୁମ୍ଭ ଆଶ୍ରମେ ଶୁଭ ହେଉ ॥୬୪
ପିତୃମାନଙ୍କ କାର୍ଯ୍ୟ ପୂର୍ଣ୍ଣ ।
କର ଏ ଯଥୋଚିତ ଧର୍ମ ॥୬୫
ଉତ୍ତମପୁତ୍ରଙ୍କର ଧର୍ମ ।
ଯେ ପିତୃଗଣ ଶୁଶ୍ରୁଷଣ ॥୬୬
ଗୃହସ୍ଥଜନଙ୍କ ଏ ଧର୍ମ ।
ଅଧିକେ ବ୍ରହ୍ମଚାରୀ କର୍ମ ॥୬୭
ଆଚାର୍ଯ୍ୟ ବ୍ରହ୍ମାର ମୂରତି ।
ପିତା ପ୍ରତ୍ୟକ୍ଷେ ପ୍ରଜାପତି ॥୬୮
ଭ୍ରାତା ଯେ ମୂରତି ଇନ୍ଦ୍ରର ।
ମାତା ସାକ୍ଷାତ ପୃଥିବୀର ॥୬୯
ଭଗିନୀ ଦୟାର ମୂରତି ।
ଧର୍ମର ମୂରତି ଅତିଥି ॥୭୦
ଅଗ୍ନି-ମୂରତି ଅଭ୍ୟାଗତ ।
ଆତ୍ମାର ମୂର୍ତ୍ତି ସର୍ବଭୂତ ॥୭୧
ଶତ୍ରୁ ସକାଶୁ ପରାଭବ ।
ଯେଣେ ପିତାଙ୍କ ଆର୍ତ୍ତିଭାବ ॥୭୨
ଏହି କାରଣୁ ମୁନିବର ।
ତପସ୍ୟା ସାଧି ଦୂର କର ॥୭୩
ଗୁରୁ ଉପାଧ୍ୟାୟ ବ୍ରାହ୍ମଣ ।
ବ୍ରହ୍ମିଷ୍ଠ ଯେତେ ତୁମ୍ଭ ଗୁଣ ॥୭୪
ତୁମ୍ଭଙ୍କୁ କଲୁ ପୁରୋହିତ ।
ଶତ୍ରୁଙ୍କୁ ଜିଣିବୁ ତୁରିତ ॥୭୫
କାର୍ଯ୍ୟର ପ୍ରୟୋଜନ ପାଇଁ ।
କନିଷ୍ଠ-ପୂଜା ନିନ୍ଦା ନୋହି ॥୭୬
ବେଦରେ ଯା'ର ଜ୍ଞାନ ନାହିଁ ।
ଜ୍ୟେଷ୍ଠରେ ଯୋଗ୍ୟ ସେହୁ ନୋହି ॥୭୭
ବୟସେ ହେଲେ ହେଁ କନିଷ୍ଠ ।
ଜ୍ଞାନରେ ଅଟ ତୁମ୍ଭେ ଜ୍ୟେଷ୍ଠ ॥୭୮

ଶୁକ ଉବାଚ

ତାହାଙ୍କୁ ପୁରୋହିତ ପଣେ ।
ବରଣ କଲେ ଦେବଗଣେ ॥୭୯
ମୁନି ବିଶ୍ୱରୂପ ହସିଲେ ।
ଦେବତାମାନଙ୍କୁ ବୋଇଲେ ॥୮୦

ବିଶ୍ୱରୂପ ଉବାଚ

ଭୋ ଦେବଗଣେ କହୁଁ ଶୁଣ ।
ତୁମ୍ଭେ ଯେ ଅଖିଳକାରଣ ॥୮୧
ନିନ୍ଦିତ-କାର୍ଯ୍ୟ ପୌରୋହିତ୍ୟେ ।
କିପାଁ ଆରାଧ ତୁମ୍ଭେ ମୋତେ ॥୮୨
ହେ ଅଧୀଶ୍ୱର ତୁମ୍ଭେ ଶୁଣ ।
ଅର୍ଥେ ମୋ ନାହିଁ ପ୍ରୟୋଜନ ॥୮୩
କ୍ଷେତ୍ରରୁ ଧାନ୍ୟାଦି ଗ୍ରହଣ ।
କରି ବଞ୍ଚଇ ମୁହିଁ ଦିନ ॥୮୪
କପାଇଁ ତୁଚ୍ଛବୁଦ୍ଧି କରି ।
ପୁରୋହିତପଣ ଆଚରି ॥୮୫
ଅଜ୍ଞାନୀଲୋକ ଏହି କର୍ମ ।
ପାଇ ହୁଅନ୍ତି ମହାପ୍ରେମ ॥୮୬
ତଥାପି ତୁମ୍ଭର କଥାରେ ।
ଏହା କେ ଅସ୍ୱୀକାର କରେ ॥୮୭
କିନ୍ତୁ ତୁମ୍ଭେ ଯେ ମୋର ଗୁରୁ ।
ଆମ୍ଭେ ଯେ ଅବଜ୍ଞା ନ କରୁ ॥୮୮
ତୁମ୍ଭର ଯେତେ କଥାମାନ ।
ସାଧିବୁ ଶୁଣ ଦେବଗଣ ॥୮୯

ଶୁକ ଉବାଚ

ଏ ଅନନ୍ତରେ ବିଶ୍ୱରୂପ ।
ବରଣ ହୋଇ ଶୁଣ ନୃପ ॥୯୦
ଶ୍ରୀକୃଷ୍ଣ ବୋଲିଣ ସୁମରି ।
ପରମ ସମାଧିରେ କରି ॥୯୧
ଶୁକ୍ରର ବିଦ୍ୟାବଳୁ କରି ।
ଅସୁରଙ୍କର ଯଶ ଶିରୀ ॥୯୨
ନିଶ୍ଚୟେ କରିଥିଲେ ନାଶ ।
ଶୁଣ ରାଜନ ଇତିହାସ ॥୯୩

Dr. Sudhanshu Sekhar Mishra

ବୈଷ୍ଣବୀବିଦ୍ୟା ବୋଲି ଯାହା ।
ଇନ୍ଦ୍ରର ଅର୍ଥେ ଆଣି ତାହା ॥୯୪
ଇନ୍ଦ୍ରଙ୍କୁ ଆଣି ତାହା ଦେଲେ ।
ଯାହାକୁ ଅସୁରେ ଶଙ୍କିଲେ ॥୯୫
ସେ ବିଦ୍ୟାପ୍ରଭାବରୁ ଇନ୍ଦ୍ର ।
ଜିଣିଲା ଯେ ଦାନବବୃନ୍ଦ ॥୯୬
ମହତ ବିଶ୍ୱରୂପ ଧୀର ।
ଦେଲେ ଇନ୍ଦ୍ରଙ୍କୁ ବିଦ୍ୟାସାର ॥୯୭
ଇନ୍ଦ୍ରର ଗୁରୁଦ୍ରୋହ-ଦୋଷ ।
କହିଲେ ଜଗନ୍ନାଥ ଦାସ ॥୯୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ସପ୍ତମୋଽଧ୍ୟାୟଃ ॥

---

## ଅଷ୍ଟମ ଅଧ୍ୟାୟ

### ପରୀକ୍ଷିତ ଉବାଚ

ଶୁଣ ହେ ମୁନି ତପୋଧନ ।
ତୁମ୍ଭେ ଯେ କହିଲ ବିଧାନ ॥୧
କବଚ ନାରାୟଣ ରୂପ ।
ଇନ୍ଦ୍ରଙ୍କୁ ଦେଲେ ବିଶ୍ୱରୂପ ॥୨
ଯେଣେ ଇନ୍ଦ୍ର ରକ୍ଷିତ ହୋଇ ।
ସ୍ୱର୍ଗରେ ଭୋଗ ସେ ଭୁଞ୍ଜଇ ॥୩
ଗଜ ତୁରଙ୍ଗ ରିପୁବଳେ ।
ଲୀଳାମାତ୍ରକେ ଜିଣି ହେଳେ ॥୪
ତ୍ରୈଲୋକ୍ୟ ଅଶେଷ ସମ୍ପଦେ ।
ଭୁଞ୍ଜୁ ଅଛନ୍ତି ଅପ୍ରମାଦେ ॥୫
ଭୋ ସ୍ୱାମୀ ମୋତେ ଯେବେ ଦୟା ।
ବିସ୍ତାରି କହିବାକ ଏହା ॥୬
କେମନ୍ତ ବର୍ମ ନାରାୟଣ, ।
ଇନ୍ଦ୍ରର ରକ୍ଷାର କାରଣ ॥୭
ଯେ ବର୍ମବଳେ ଶତ୍ରୁଜିଣି ।
ସ୍ୱର୍ଗେ ନିର୍ଭୟ ବଜ୍ରପାଣି ॥୮
ରାଜା ବିନୟ ଦେଖି ମୁନି ।
କହନ୍ତି ତାର ଭାବ ଘେନି ॥୯

### ଶୁକ ଉବାଚ

ଇନ୍ଦ୍ର ନିମନ୍ତେ ହୋଇ ବୃତ ।
ପ୍ରସନ୍ନ ହୋଇ ପୁରୋହିତ ॥୧୦
ଯେ ବର୍ମ ନାମ ନାରାୟଣ ।
କହିଲେ ଏକମନେ ଶୁଣ ॥୧୧

### ବିଶ୍ୱରୂପ ଉବାଚ

କର ଚରଣ ଜଳେ ଧୋଇ ।
ଗଣ୍ଡୂଷ ଉଦଙ୍ମୁଖ ହୋଇ ॥୧୨
ମନ୍ତ୍ରରେ କରି ଅଙ୍ଗନ୍ୟାସ ।
ମଉନ ଶୁଚି ହୋଇ ତୋଷ ॥୧୩
ଯେବଣ ବର୍ମେ ନାରାୟଣ ।
ତୋଷ ହୋଇବେ ତତକ୍ଷଣ ॥୧୪
ନିକଟ ଭୟ ଯେତେବେଳେ ।
ଜାନୁ ଚରଣ ବକ୍ଷସ୍ଥଳେ ॥୧୫
ଉଦର ହୃଦୟ ମୁଖରେ ।
ଓଁକାର ଆଦି ଦେଇ ଶିରେ ॥୧୬
ଓଁକାର ଆଦି ନାରାୟଣ ।
ଉଚ୍ଚାର କରିବ ତକ୍ଷଣ ॥୧୭
କରେ କରିବ କରନ୍ୟାସ ।
ଯେ ବିଦ୍ୟା ଅକ୍ଷରଦ୍ୱାଦଶ ॥୧୮
ପ୍ରଣବ ଆଦି କରି ଯେତେ ।
କରିବ 'ୟ' କାର ପର୍ଯ୍ୟନ୍ତେ ॥୧୯
ଅଙ୍ଗୁଳି ଅଙ୍ଗୁଷ୍ଠି ପର୍ବରେ ।
ଯଥାକ୍ରମେ ଦେଇ ଅକ୍ଷରେ ॥୨୦
ହୃଦରେ ଦେଇଣ ଓଁକାର ।
ମସ୍ତକେ ଦେବ ସେ 'ବି' କାର ॥୨୧
'ଷ' କାର ଭ୍ରୂଯୁଗେ ଦେଇ ।
'ଣ' କାର ଶିଖାରେ ବସାଇ ॥୨୨
'ବେ' କାର ନୟନ ମଧ୍ୟରେ ।
'ନ' କାର ସକଳ ସନ୍ଧିରେ ॥୨୩
'ମ' କାର କରିବ ସ୍ମରଣ ।
ମନ୍ତ୍ର-ସ୍ୱରୂପେ ହୋଇ ଜନ୍ମ ॥୨୪
ବିଷ୍ଣବେ ନମଃ ଉଚ୍ଚାରିବ ।
ଓଁକାର ତହିଁ ଆଦ୍ୟେ ଦେବ ॥୨୫
ପରମ-ଆତ୍ମା ଏହି ମନ୍ତ୍ରେ ।
ଧ୍ୟାନ କରିବ ଅବିରତେ ॥୨୬
ଷଟ ଶକତି ରୂପ ଯୁତ ।
ଅନାଦି ଦିବ୍ୟ ଶୁଦ୍ଧସତ୍ତ୍ୱ ॥୨୭
ଯେ ହରି ଗରୁଡ଼ପୃଷ୍ଠରେ ।
ପାଦପଦ୍ମ ଦେଇଛି ଶିରେ ॥୨୮
ଯେ ଅଷ୍ଟବାହୁରେଣ କରି ।
ଚର୍ମ ଆସି ଗଦାକୁ ଧରି ॥୨୯
ଶଙ୍ଖ ପାଶ ଇଷୁ ଚାପରେ ।
ରଖନ୍ତୁ ମୋତେ ଚକ୍ରଧରେ ॥୩୦
ଯେ ଜଳେ ମତ୍ସ୍ୟରୂପ ହୋଇ ।
ସେ ପ୍ରଭୁ ରକ୍ଷାକରୁ ଦେହୀ ॥୩୧
ଜଳଜନ୍ତୁଙ୍କ ସକାଶରୁ ।
ରଖିବେ ବରୁଣ-ପାଶରୁ ॥୩୨
ମାୟାବାମନ ରୂପ ଛଳେ ।
ସେ ରକ୍ଷାକରୁ ଅବହେଳେ ॥୩୩
ତ୍ରିବିକ୍ରମ ରଖୁ ଭୂମିରେ ।
ବିଶ୍ୱରୂପ ଯେ ଆକାଶରେ ॥୩୪
ବନ ସଂଗ୍ରାମ ସଙ୍କଟରୁ ।
ଦୁର୍ଗମୁ ସେ ମୋତେ ଉଦ୍ଧରୁ ॥୩୫

Dr. Sudhanshu Sekhar Mishra

ଅସୁରଯୂଥର ଅଇରି ।
ନୃସିଂହ ମୋତେ ସେ ଉଦ୍ଧରି ॥୩୬
ଯାହାର ଅଟ୍ଟହାସ ଶୁଣି ।
କମ୍ପନ୍ତି ଏ ଦିଗ ଧରଣୀ ॥୩୭
ଦୈତ୍ୟପତ୍ନୀଙ୍କ ଗର୍ଭମାନେ ।
ପଡ଼ନ୍ତି ଯେ ହାସ-ନିଃସ୍ୱନେ ॥୩୮
ସେ ପ୍ରଭୁ ଯୁଦ୍ଧଆଦି ସ୍ଥଳେ ।
ମୋତେ ରଖନ୍ତୁ ଅବହେଳେ ॥୩୯
ପଥେ ରଖନ୍ତୁ ଯଜ୍ଞକଳ୍ପ ।
ଅଖିଳାଧାର ବିଶ୍ୱରୂପ ॥୪୦
ଦଶନେ ଅବନୀ ଯେ ଧରି ।
ମୋତେ ସେ ବରାହ ଉଦ୍ଧରି ॥୪୧
ଅଦ୍ରିକୂଟରେ ପର୍ଶୁରାମ ।
ପ୍ରବାସେ ରାମ ଯେ ଲକ୍ଷ୍ମଣ ॥୪୨
ଭରତ-ଅଗ୍ରଜଟି ଯେହୁ ।
ସେ ମୋ ରକ୍ଷକ ସଦା ହେଉ ॥୪୩
ଅଖିଳ-ଚିନ୍ତା-ପ୍ରମାଦରୁ ।
ସେ ନାରାୟଣ ରକ୍ଷାକରୁ ॥୪୪
ନରକ-ଶରୀରରୁ ମୋତେ ।
ରକ୍ଷା କରିବେ ଜଗନ୍ନାଥେ ॥୪୫
ଆବର ନରରୂପୀ ହରି ।
ରଖନ୍ତୁ ଗର୍ବରୁ ଉଦ୍ଧରି ॥୪୬
ବିପତ୍ତିମାନ ହୋଇ ଯେତେ ।
ରଖିବେ ଜଗନ୍ନାଥ ମୋତେ ॥୪୭
ଯୋଗଭ୍ରଷ୍ଟରୁ ଦତ୍ତାତ୍ରେୟ ।
ରଖନ୍ତୁ ହୋଇ ସେ ସଦୟ ॥୪୮
କପିଳରୂପୀ ଦେବହରି ।
ରଖନ୍ତୁ କର୍ମବନ୍ଧ ହରି ॥୪୯
ଅନଙ୍ଗପୀଡ଼ାରୁ ଜଗତେ ।
ସନତ୍କୁମାର ରଖୁ ମୋତେ ॥୫୦
ଦେବହେଳନାଦି ଦୋଷରୁ ।
ହୟଗ୍ରୀବ-ମୂର୍ତ୍ତି ଉଦ୍ଧରୁ ॥୫୧
ଦେବତାଆରାଧନବିଘ୍ନୁ ।
ନାରଦ ରଖନ୍ତୁ ମୋ ତନୁ ॥୫୨

କମଠରୂପୀ ଚକ୍ରଧର ।
ଅଶେଷପାପୁ ତ୍ରାହିକର ॥୫୩
ଅପଥ୍ୟଭୋଜନରୁ ମୋର ।
ଯେ ବ୍ୟାଧିଜନ୍ମେ ଅତିଘୋର ॥୫୪
ତାହା ନାଶିବେ ଧନ୍ୱନ୍ତରି ।
ଯେ ଦ୍ୱନ୍ଦ୍ୱଭୟଟି ମୋହରି ॥୫୫
ତହୁଁ ରଖିବେ ନାଭିସୁତ ।
ଋଷଭ ନାମେ ଯେ ବିଦିତ ॥୫୬
ଦୁର୍ବାଦ-ଜନସମୂହରୁ ।
ଯଜ୍ଞ ମୂରତି ରକ୍ଷା କରୁ ॥୫୭
ବଳବନ୍ତଙ୍କ ତହୁଁ ମୋତେ ।
ରଖନ୍ତୁ ବଳଦେବ ନିତ୍ୟେ ॥୫୮
ସର୍ପଙ୍କ ପ୍ରତାପରୁ ମୋତେ ।
ଶେଷରୂପୀ ରଖୁଯୁଗତେ ॥୫୯
ମୋହର ମନ ବୁଦ୍ଧି ବେନି ।
ରଖନ୍ତୁ ବ୍ୟାସ ମହାମୁନି ॥୬୦
ପାଷଣ୍ଡନିକର-ପ୍ରମାଦ ।
ତହୁଁ ରଖିବେ ଦେବବୁଦ୍ଧ ॥୬୧
ଧର୍ମପାଳନେ ଅବତାର ।
ଯେ ପ୍ରଭୁ କଳ୍କିରୂପଧର ॥୬୨
କଳିର ପାପ ନାଶ କରି ।
ରଖନ୍ତୁ କଳ୍କିରୂପଧାରୀ ॥୬୩
ହେ ଦେବ ଇନ୍ଦ୍ର ଏ ବିଧିରେ ।
ଧ୍ୟାୟିବ ଦିବା-ରଜନୀରେ ॥୬୪
ପ୍ରାତଃକାଳରେ କୃପା କରି ।
ମୋର ସକଳରିଷ୍ଟ ହରି ॥୬୫
କେଶବ ଗଦା ଧରି କରେ ।
ମୋତେ ରଖନ୍ତୁ ପ୍ରଭାତରେ ॥୬୬
ଗୋବିନ୍ଦ ବେଣୁ ଧରି କରେ ।
ରଖନ୍ତୁ ଦିବସଆଦ୍ୟରେ ॥୬୭
ପୂର୍ବାହ୍ଣେ ଶକ୍ତି ଧରି ହସ୍ତେ ।
ରଖନ୍ତୁ ନାରାୟଣ ମୋତେ ॥୬୮
ରଖନ୍ତୁ ବିଷ୍ଣୁ ଚକ୍ରଧର ।
ଦିବସ-ମଧ୍ୟମଭାଗର ॥୬୯

ଅପରାହ୍ଣରେ ମଧୁହାରୀ ।
ରଖନ୍ତୁ ଧନୁ କରେ ଧରି ॥୭୦
ରଖନ୍ତୁ ସାୟଂକାଳେ ମୋତେ ।
ତ୍ରିଧାମା-ମାଧବ ତୁରିତେ ॥୭୧
ପ୍ରଦୋଷେ ରଖୁ ହୃଷୀକେଶ ।
ଅଶେଷ ବ୍ରହ୍ମାଣ୍ଡର ଈଶ ॥୭୨
ଅର୍ଦ୍ଧରଜନୀ ବା ନିଶୀଥେ ।
ରଖନ୍ତୁ ପଦ୍ମନାଭ ମୋତେ ॥୭୩
ଶ୍ରୀବତ୍ସଧାମା ପରରାତ୍ରେ ।
ଖଡ଼୍ଗଆୟୁଧ ଧରି ହସ୍ତେ ॥୭୪
ଅନୁସନ୍ଧ୍ୟାରେ ଦାମୋଦର ।
ରାତ୍ରି ପ୍ରଭାତେ ବିଶ୍ୱେଶ୍ୱର ॥୭୫
କାଳମୂରତି-ଭଗବାନ ।
ରଖନ୍ତୁ ମୋହର ଜୀବନ ॥୭୬
ଯେ ଚକ୍ର ତେଜ ଏ ସଂସାରେ ।
ପ୍ରଳୟାନଳ ତୁଚ୍ଛ କରେ ॥୭୭
କୃଷ୍ଣରେ ପ୍ରଯୋଜିତ ହୋଇ ।
ନିର୍ଭୟେ ଜଗତେ ଭ୍ରମଇ ॥୭୮
ତା' ପାଦପଦ୍ମେ ମୋର ଶିର ।
ନିତ୍ୟେ କରଇ ନମସ୍କାର ॥୭୯
ସେ ଚକ୍ର ମୋର ଅରି-ସୈନ୍ୟ ।
ଦହନ କରିବ ବହନ ॥୮୦
ପବନ ସହ ହୁତାଶନ ।
ଦହଇ ଯେହ୍ନେ ଶୁଷ୍କତୃଣ ॥୮୧
ଗଦା ଅଶନି ପ୍ରାୟ ହୋଇ ।
ମୋର ବିପକ୍ଷ ଦେହେ ଯାଇ ॥୮୨
ସ୍ଫୁଲିଙ୍ଗେ ଚୂର୍ଣ୍ଣକର୍ ହିଆ ।
ତୁମ୍ଭେ ଅଖିଳନାଥ-ପ୍ରିୟା ॥୮୩
ମୁହିଁ ଅଟଇ ତା'ର ଦାସ ।
ମୋ' ଶତ୍ରୁପକ୍ଷ କର ନାଶ ॥୮୪
କୁଷ୍ମାଣ୍ଡ ବିନାୟକ ଯକ୍ଷ ।
ଗୁହ୍ୟକ ଭୂତଗଣ ରକ୍ଷ ॥୮୫
ପିଶାଚ ପ୍ରେତ ମାତୃଗଣ ।
ଶୀଘ୍ରେ କର ତୁ ପ୍ରମଥନ ॥୮୬

Dr. Sudhanshu Sekhar Mishra

ହେ ପାଞ୍ଚଜନ୍ୟ ଶଙ୍ଖସାର ।
କୃଷ୍ଣେ ପୂରିତ ହୋଇ ମୋର ।।୮୭
ଶତ୍ରୁର ହୃଦୟ କମ୍ପାଅ ।
ନିଃସ୍ୱନେ ମହାଭୟ ଦିଅ ।।୮୮
ତୁ ହେ ଖଡଗ ତୀକ୍ଷଣ ଧାର ।
ଅଶେଷ ରିପୁ ନାଶ କର ।।୮୯
କୃଷ୍ଣରେ ହୋଇ ପ୍ରଯୋଜିତ ।
ସକଳ ରିପୁ କର ଗ୍ରସ୍ତ ।।୯୦
ହେ ଶତଚନ୍ଦ୍ର ଧର୍ମ ଶୁଣ ।
ଯେତେ ଅଛନ୍ତି ରିପୁଗଣ ।।୯୧
ତାହାଙ୍କ ଲୋଚନ ଆଚ୍ଛାଦ ।
ଯେଣେ ହୋଇବ ଦୃଷ୍ଟିଭେଦ ।।୯୨
ଯହୁଁ ମୋ ଭୟଜାତ ହୋଇ ।
ଗ୍ରହ ମନୁଷ୍ୟ କେତୁ ଯେହି ।।୯୩
ଯେ ସରୀସୃପ ଭୂତ ଆଦି ।
ହିଂସକ ପାପ ମନ୍ଦବାଦୀ ।।୯୪
ଶ୍ରୀକୃଷ୍ଣ-ରୂପ-ଅସ୍ତ୍ର ନାମ ।
ଯେଣୁ ମୁଁ କଲି ସଂକୀର୍ତ୍ତନ ।।୯୫
ତା'ର ପ୍ରସାଦୁ ଯାଉ କ୍ଷୟ ।
ଏ ଯେତେ ସର୍ବଦୁଷ୍ଟଭୟ ।।୯୬
ଯେ ମୋର ଶ୍ରେୟ ଆଚରଣେ ।
ହିଂସା କରନ୍ତି ଦୁଷ୍ଟଗଣେ ।।୯୭
ଗରୁଡ ଭଗବାନ ମୋତେ ।
ରକ୍ଷା କରିବେ ଅବିରତେ ।।୯୮
ରଖିବେ ବିଶ୍ୱକ୍‌ସେନ-ହରି ।
ଅଶେଷ କଷ୍ଟୁ ମୋତେ ତାରି ।।୯୯
ବିଷ୍ଣୁର ନାମ ରୂପ ଯାନ ।
ଆବର ଆୟୁଧ ବାହନ ।।୧୦୦
ଏମାନେ ହୋଇ ପରସନ୍ନ ।
ଆପଦୁ କରିବେ ମୋଚନ ।।୧୦୧
ପ୍ରଭୁ ନିକଟେ ଯେତେ ଗଣ ।
ଅପରେ ବାହନ ଭୂଷଣ ।।୧୦୨
ବୁଦ୍ଧି ଇନ୍ଦ୍ରିୟ ମୋର ମନ ।
ସର୍ବେ ରଖନ୍ତୁ ମୋର ପ୍ରାଣ ।।୧୦୩

ଯେମନ୍ତେ ପ୍ରଭୁ ଭଗବାନ ।
ସତ-ଅସତର କାରଣ ।।୧୦୪
ଏହି କବଚୁ ମୋର ସର୍ବ ।
ନଷ୍ଟ ହୁଅନ୍ତୁ ଉପଦ୍ରବ ।।୧୦୫
ଆତ୍ମା ଅଶେଷ-ପ୍ରାଣୀଙ୍କର ।
ସକଳ-କାର୍ଯ୍ୟରୁ ବାହାର ।।୧୦୬
ଭୂଷଣ ଆୟୁଧ ସ୍ୱନାମ ।
ଧରନ୍ତି ସ୍ୱମାୟାରେ ଭିନ୍ନ ।।୧୦୭
ଏମନ୍ତ ପରମଈଶ୍ୱର ।
ରକ୍ଷାକରନ୍ତୁ ମୋ ଶରୀର ।।୧୦୮
ସର୍ବଜ୍ଞ ଭଗବାନ ହରି ।
ସର୍ବ-ସ୍ୱରୂପେ ରୂପ ଧରି ।।୧୦୯
ସଦା ସର୍ବତ୍ର ସର୍ବଠାରୁ ।
ସତ୍ୟ-ପ୍ରମାଣେ ରକ୍ଷାକରୁ ।।୧୧୦
ଦିଗ ବିଦିଗ ଅଧ ଉର୍ଦ୍ଧ୍ୱ ।
ରଖନ୍ତୁ ନରସିଂହ ଦେବ ।।୧୧୧
ସ୍ୱନରେ ଲୋକଭୟ ଧ୍ୱଂସେ ।
ସ୍ୱତେଜେ ସର୍ବତେଜ ନାଶେ ।।୧୧୨
ଭୋ ଇନ୍ଦ୍ର ଶୁଣ ମୋ ବଚନ ।
କହିଲି ବର୍ମ-ନାରାୟଣ ।।୧୧୩
ତୁମ୍ଭେ ଏ ବର୍ମକୁ ଧାରଣ ।
ଶରୀରେ କର ଦେବଗଣ ।।୧୧୪
ଅସୁରଯୂଥପଙ୍କୁ ଯୁଦ୍ଧେ ।
ଜୟ କରିବ ଅପ୍ରମାଦେ ।।୧୧୫
ହତ ହୋଇବେ ଯାତୁଧାନେ ।
ସ୍ୱର୍ଗ ଲଭିବେ ଦେବଗଣେ ।।୧୧୬
ତେଜ ଗୁଣ ଯେତେ ଆୟୁଧ ।
ପୁଣି ହିଁ ଲଭିବ ସମ୍ପଦ ।।୧୧୭
ମୋର ଭକତ ଲୋକଙ୍କର ।
ହିଂସା ନୋହିବ ପୁନର୍ବାର ।।୧୧୮
ପୁଣି କହନ୍ତି ବିଶ୍ୱରୂପ ।
କହିବା ଶୁଣ ସାଧୁ ନୃପ ।।୧୧୯
ଏ ବିଦ୍ୟା ଯାରତହିଁ ଥାଇ ।
ଯେ ଯାକୁ ଦୃଷ୍ଟିରେ ଦେଖଇ ।।୧୨୦

ପାଦେ ବା ସ୍ପରଶ କରଇ ।
ତୋ ଗାତ୍ରେ ଭୟ ନ ରହଇ ।।୧୨୧
ଏ ବିଦ୍ୟା ଯେହୁ ଧରିଥାଇ ।
ଭୀତି ତାହାର କାହିଁ ନାହିଁ ।।୧୨୨
ରାଜା ତସ୍କର ଗ୍ରହ ଆଦି ।
ଯେ ଦୁଷ୍ଟଗଣ ନାନାବ୍ୟାଧି ।।୧୨୩
ଏ ବିଦ୍ୟା ପୂର୍ବେ ଦ୍ୱିଜ ଏକ ।
ଧରିଣ ଥିଲା କଉଶିକ ।।୧୨୪
ମରୁଭୂମିରେ ବସି ସେହି ।
ଯୋଗ ଧାରଣେ ନିଜ ଦେହୀ ।।୧୨୫
ତେଜିଲା ତହିଁ ଦ୍ୱିଜବର ।
ଶୁଣ କହିବା ସୁନାସୀର ।।୧୨୬
ଗନ୍ଧର୍ବପତି ଏକଦିନେ ।
ତାହାର ଉପରେ ବିମାନେ ।।୧୨୭
ଯାଉଣ ଥିଲା ଚିତ୍ରରଥ ।
ଅମରକନ୍ୟାରେ ବେଷ୍ଟିତ ।।୧୨୮
ଯହିଁ ବ୍ରାହ୍ମଣ ମରିଥିଲା ।
ତାହାର ଉର୍ଦ୍ଧ୍ୱେ ଯହୁଁ ଗଲା ।।୧୨୯
ଗଗନୁ ପଡିଲା ତକ୍ଷଣେ ।
ବିମାନ ଗଲା ତା'ର କେଣେ।।୧୩୦
ପଡିଲା ଅଧୋମୁଖ ହୋଇ ।
ସଭୟେ ଚକିତେ ଚାହିଁଇ ।।୧୩୧
ବାଲଖିଲ୍ୟାର ବାକ୍ୟ ଶୁଣି ।
ତକ୍ଷଣେ ବିପ୍ର-ଅସ୍ଥି ଆଣି ।।୧୩୨
ନଦୀରେ ନେଇ ପକାଇଲା ।
ମନରେ ବିସ୍ମୟ ହୋଇଲା ।।୧୩୩
ସରସ୍ୱତୀରେ କରି ସ୍ନାନ ।
ଶୀଘ୍ରେ ସେ କଲାକ ଭୋଜନ ।।୧୩୪
ପୁଣି ବିମାନ ଆରୋହିଲା ।
ସୁଖେ ସେ ନିଜପୁରେ ଗଲା ।।୧୩୫

ଶୁକ ଉବାଚ

ଯେ ଏହା ଶ୍ରବଣରେ ଶୁଣି ।
ଆଦର କରି ଧରେ ପ୍ରାଣୀ ।।୧୩୬

Dr. Sudhanshu Sekhar Mishra

ସେ ସର୍ବପାପୁଁ ହୋଏ ପାର ।
ସର୍ବେ କରନ୍ତି ନମସ୍କାର ॥୧୩୭
ଇନ୍ଦ୍ର ବିଶ୍ୱରୂପର ତହୁଁ ।
ଏ ମହାବିଦ୍ୟା ଶିକ୍ଷାପାଇ ॥୧୩୮
ସଂଗ୍ରାମେ ଅସୁର ଜିଣିଲେ ।
ତ୍ରୈଲୋକ୍ୟେ ଲକ୍ଷ୍ମୀ ଭୋଗକଲେ ॥୧୩୯
ବୋଲଇ ଜଗନ୍ନାଥ ଦ୍ୱିଜ ।
ଗୋବିନ୍ଦନାମ ନିତ୍ୟେ ଭଜ ॥୧୪୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ନାରାୟଣବର୍ମ କଥନଂ
ନାମ ଅଷ୍ଟମୋଽଧ୍ୟାୟଃ ॥

---

## ନବମ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର ।
କୃଷ୍ଣମହିମା ଅଗୋଚର ॥୧
ଶୁଣ ହେ ସେ ବିଶ୍ୱରୂପର ।
ତ୍ରିଶିର ଥିଲା ନୃପବର ॥୨
ଏକମୁଖରେ ସୋମପାନ ।
କରଇ ସେହୁ ପ୍ରତିଦିନ ॥୩
ଦ୍ୱିତୀୟେ ସୁରାପାନ କରେ ।
ଅନ୍ନ ଭକ୍ଷଇ ତୃତୀୟରେ ॥୪
ସେ ବିଶ୍ୱରୂପ ବିନୟରେ ।
ଦେବଗଣଙ୍କୁ ଉଚ୍ଚସ୍ୱରେ ॥୫
ଡାକି ଦିଅଇ ହବିର୍ଭାଗ ।
ଯେଣୁ ସେମାନେ ପିତୃବର୍ଗ ॥୬
ଦେବମାନଙ୍କ ତହୁଁ ଆଣି ।
ଯଜ୍ଞର ଭାଗ ନୃପମଣି ॥୭
ଦେଲା ଅସୁରମାନଙ୍କରେ ।
ଯଜ୍ଞଭାଗକୁ ପରୋକ୍ଷରେ ॥୮
ଯଦ୍ୟପି ଦେବେ ପିତା ତାର ।
ତାହାଙ୍କୁ କରି ଅନାଦର ॥୯
ପୁଣି ସେ ମାତୃସ୍ନେହବଶ ।
ହୋଇଣ ଅର୍ଜିଲା ଅଯଶ ॥୧୦
ମାତୃପକ୍ଷରେ ସ୍ନେହକରି ।
ଏମନ୍ତ କର୍ମ ସେ ଆଚରି ॥୧୧
ଏମନ୍ତ ଦେବଙ୍କ ହେଳନ ।
ଦେଖି ତାହାର ମଘବାନ ॥୧୨
ସଭଯେ ହୋଇ ଖରତର ।
ରୋଷେ ଛେଦିଲେ ତା'ର ଶିର॥୧୩

ଯେ ମୁଣ୍ଡେ କରେ ସୋମପାନ ।
ତାହାକୁ କରନ୍ତେ ଛେଦନ ॥୧୪
ଜନ୍ମିଲା ହୋଇ ପକ୍ଷୀ ଏକ ।
ନାମ ତା ହୋଇଲା ଚାତକ ॥୧୫
ସୁରାପାୟୀ ଯେଉଁ ମସ୍ତକ ।
ଛେଦନ୍ତେ ସେ ହେଲା ଚଟକ ॥୧୬
ଅନ୍ନଭୋଜୀ ମସ୍ତକ ତା'ର ।
ହୋଇଲା ତିତ୍ତିର ଆକାର ॥୧୭
ଏମନ୍ତେ ସେ ବିଶ୍ୱରୂପର ।
ଇନ୍ଦ୍ର ଛେଦିଲେ ଯହୁଁ ଶିର ॥୧୮
କର ଅଞ୍ଜଳି ପ୍ରସାରିଣ ।
ବ୍ରହ୍ମହତ୍ୟା କଲେ ଗ୍ରହଣ ॥୧୯
ଏ ପାପୁ ଲୋକ କରେ ନିନ୍ଦା ।
ଇନ୍ଦ୍ର ପାଇଲେ ମନେ ବାଧା ॥୨୦
ଆତ୍ମାର ବିଶୁଦ୍ଧି ନିମନ୍ତେ ।
ବିଭାଗ କରି ଏହି ମତେ ॥୨୧
ସ୍ତିରୀ ଭୂ ଜଳ ଦ୍ରୁମଠାରେ ।
ଅର୍ପିଲେ ଏମନ୍ତ ପ୍ରକାରେ ॥୨୨
ଭୂମି ଘେନିଲେ ଭାଗ ଚାରି ।
ଖାତ ପୂରଣ ବର ବରି ॥୨୩
ବ୍ରହ୍ମହତ୍ୟା ତେଣୁ ଉଷରେ ।
ଅଦ୍ୟାପି ଦିଶଇ ଭୂମିରେ ॥୨୪
ଦ୍ରୁମେ ଯେ ଚାରିଭାଗ ନେଲେ ।
ଛେଦନେ ବଢ଼ିବାର ବରେ ॥୨୫
ନିର୍ଯ୍ୟାସରୂପେ ଏହାଙ୍କର ।
ପାପ ଦିଶଇ ନୃପବର ॥୨୬

କାମବଶରେ ସ୍ତିରୀଜନ ।
ସମ୍ଭୋଗୀ ହେବେ ପ୍ରତିଦିନ ॥୨୭
ଏରୂପେ ବରକୁ ପାଇଣ ।
ଚାରିଭାଗ କଲେ ଗ୍ରହଣ ॥୨୮
ରଜରୂପରେ ପ୍ରତିମାସ ।
ଏବେହେଁ ପାପ ହୋଏ ଦୃଶ୍ୟ ॥୨୯
ପାପର ଶେଷ ଚାରିଅଂଶ ।
ଜଳକୁ ଦେଇ ଦେବଈଶ ॥୩୦
ପୁଣି ସେ ଦେଲେ ତା'କୁ ବରେ।
ମିଶ୍ରିତ କ୍ଷୀରାଦି ଦ୍ରବ୍ୟରେ ॥୩୧
ସେ ପାପ ବୁଦ୍‌ବୁଦ-ଫେନରେ ।
ଅଦ୍ୟାପି ଦିଶଇ ସଂସାରେ ॥୩୨
ସେହି ଫେନକୁ ପକାଇଲେ ।
ଜଳର ପାପ ନାଶେ ଭଲେ ॥୩୩
ଏମନ୍ତ ପ୍ରକାରେ ହେ ନୃପ ।
ହରି-କଳ୍ପିତ ହେଲା ପାପ ॥୩୪
ଏ ଅନନ୍ତରେ ସେ ତ୍ୱଷ୍ଟାର ।
ଯେଣୁ ହତ ହେଲା କୁମର ॥୩୫
ପୁତ୍ରଶୋକରେ ଦୁଃଖୀ ହୋଇ ।
ଇନ୍ଦ୍ରର ଶତ୍ରୁ ବୃଦ୍ଧି ପାଇଁ ॥୩୬
ହୋମ ଆରମ୍ଭକୁ ବିଚାରି ।
ବୋଇଲେ ଅତି କ୍ରୋଧ କରି ॥୩୭
ଇନ୍ଦ୍ରର ଶତ୍ରୁ ହେଉ ଜାତ ।
ବେଗେ ଇନ୍ଦ୍ରକୁ କରୁ ହତ ॥୩୮
ଏମନ୍ତ ବୋଲି ସେ ବଚନ ।
କେତେ ଆହୁତି କଲା ଦାନ ॥୩୯

Dr. Sudhanshu Sekhar Mishra

ପୁରୁଷେ ତହିଁରୁ ବାହାର ।
ରୂପ ତା ଅତି ଭୟଙ୍କର ॥୪୦
ଯୁଗ-ଅନ୍ତକାଳେ ଯେମନ୍ତ ।
ପ୍ରାଣୀଙ୍କି ଯେସନେ କୃତାନ୍ତ ॥୪୧
ଦିନକୁଦିନ ଅତିଘୋର ।
ବଢ଼ଇ ବିଶ୍ୱରୂପ ତା'ର ॥୪୨
ଦଗଧ-ଗିରି ପ୍ରାୟେ ହୋଇ ।
ତାହାର ଶରୀର ଦିଶଇ ॥୪୩
କାନ୍ତି ତାହାର ବିରାଜଇ ।
କଳ୍ପାନ୍ତମେଘ ପ୍ରାୟ ହୋଇ ॥୪୪
ତପତ-ତମ୍ବାଶିଖା ଯେହ୍ନେ ।
କେଶ ତା ବିରାଜେ ତେସନେ ॥୪୫
ମଧ୍ୟାହ୍ନ-ରବି ପ୍ରାୟ ହୋଇ ।
ବେନିଲୋଚନ ବିରାଜଇ ॥୪୬
ଅନଳ-ତେଜ ପ୍ରାୟେ ତା'ର ।
ଏମନ୍ତ ଶୂଳ ଧରି କର ॥୪୭
ବୁଲାଇ ଅତି ଖରତର ।
ଶବଦ କରେ ମହାଘୋର ॥୪୮
ନୃତ୍ୟ କରଇ ମତ୍ତ ହୋଇ ।
ପାଦେ କମ୍ପାଇ ମହାମହୀ ॥୪୯
ଗିରିଗୁହା ପ୍ରାୟେ ବଦନ ।
ତେଣୁ କି ଗ୍ରାସିବ ଗଗନ ॥୫୦
ଜିହ୍ୱା ବୁଲାଉଛି ଏସନ ।
ଗିଳିବ କିବା ତ୍ରିଭୁବନ ॥୫୧
ଦନ୍ତ ଅତି ରୌଦ୍ର ଦିଶଇ ।
ପୁଣ ପୁଣ ହୋଇ ହସଇ ॥୫୨
ଭୀତ ହୋଇଣ ସର୍ବଜନ ।
ପଳାନ୍ତି ଘେନିଣ ଜୀବନ ॥୫୩
ତ୍ୱଷ୍ଟାର ପୁତ୍ର ଏ ଯେ ପାପ ।
ଲୋକେ ପାଇଲେ ବହୁ ତାପ ॥୫୪
ପରମ-ଦାରୁଣ-ଅସୁର ।
ଏଣୁ ବୃତ୍ର ନାମଟି ତାର ॥୫୫
ଇନ୍ଦ୍ର ଦେବଗଣ ସହିତେ ।
ମିଳିଲେ ତାହାର ଅଗ୍ରତେ ॥୫୬

ଯେ ଯାହା ଶସ୍ତ୍ର ଧରି କରେ ।
ପିଟିଲେ ବୃତ୍ରର ଉପରେ ॥୫୭
ଶସ୍ତ୍ର ଯେତେକ ଦେବଙ୍କର ।
ସବୁ ଗିଳିଲା ସେ ଅସୁର ॥୫୮
ଏ ଅନନ୍ତରେ ଦେବଗଣ ।
ବିସ୍ମୟେ ହୋଇ ହତଜ୍ଞାନ ॥୫୯
କୃଷ୍ଣରେ ମନ ସ୍ଥିର କଲେ ।
ମହାପୁରୁଷ ଆରାଧିଲେ ॥୬୦

ଦେବଗଣ ଉବାଚ

ପବନ ଆକାଶ ଯେ ଅଗ୍ନି ।
ଜଳର ସହିତେ ଅବନୀ ॥୬୧
ଏ ମହାଭୂତେ ହୋଇ ଏକ ।
ନିର୍ମିତ ହୋଇଛି ତ୍ରିଲୋକ ॥୬୨
ବ୍ରହ୍ମା ସହିତେ ଆମ୍ଭେମାନେ ।
ଉଦ୍‌ବେଗ ପାଉଅଛୁ ମନେ ॥୬୩
ଯାହାଙ୍କୁ ବଳି ଆମ୍ଭେମାନେ ।
ଦେଉଣ ସେବୁଁ ଅନୁକ୍ଷଣେ ॥୬୪
ଯେ କାଳ ଅନ୍ତକ ବୋଲାଇ ।
ସେ ଯାହାଠାରୁ ଭୟ ପାଇ ॥୬୫
ସେ ପ୍ରଭୁ ଆମ୍ଭର ଶରଣ ।
ହୁଅନ୍ତୁ ଅଖିଳକାରଣ ॥୬୬
ସେ ଅବିସ୍ମିତ ପୂର୍ଣ୍ଣକାମ ।
ପ୍ରଶାନ୍ତ ସର୍ବଭୂତେ ସମ ॥୬୭
ଏମନ୍ତ ଯେ ପରମେଶ୍ୱର ।
ତାହାଙ୍କୁ ତେଜି ଯେଉଁ ନର ॥୬୮
ଅନ୍ୟରେ ପଶଇ ଶରଣ ।
ତାହାଙ୍କୁ ମୂର୍ଖ ବୋଲି ଜାଣ ॥୬୯
ଶ୍ୱାନପୁଚ୍ଛକୁ ଧରି କରେ ।
ଅଗମ୍ୟସିନ୍ଧୁ କେହୁ ତରେ ॥୭୦
ନଉକାରୂପେଣ ସଂସାର ।
ଶୃଙ୍ଗରେ ବାନ୍ଧିଣ ଯାହାର ॥୭୧
ମନୁ ଅଛନ୍ତି ଦୁଃଖୁ ତରି ।
ଯାହାର ପ୍ରସାଦରୁ କରି ॥୭୨

ଏମନ୍ତ ଯେଉଁ ମହାବାହୁ ।
ତାରିବେ ବୃତ୍ରାସୁର ତହୁଁ ॥୭୩
ପୂର୍ବେ ସ୍ୱୟମ୍ଭୁ ପଡି ଜଳେ ।
ବାତେ ଉଲ୍ଲୋଳ-ଉର୍ମିମାଳେ ॥୭୪
ତେଣେ ଶବଦ ମହାଘୋରେ ।
ରଖିଲା ଯେ ନାଭିକମଳେ ॥୭୫
ସେ ଏକ ସଙ୍ଗେ ନାହିଁ କେହି ।
ସେ ଭୟୁ ରଖିଲାକ ଯେହି ॥୭୬
ଦୁରନ୍ତ-ପାପ ଯେ ଦାରୁଣ ।
ତହୁଁ ରଖନ୍ତୁ ନାରାୟଣ ॥୭୭
ଯେ ଏକ ଈଶ୍ୱର ଅଟଇ ।
ମାୟାରେ ଆମ୍ଭଙ୍କୁ ସର୍ଜଇ ॥୭୮
କରୁଛୁ ଜଗତ-ପାଳନେ ।
ଯାର ପ୍ରସାଦୁ ଆମ୍ଭେମାନେ ॥୭୯
ଯାହାର ମହିମା ପ୍ରସିଦ୍ଧି ।
ଆମ୍ଭେ ନ ଜାଣୁ ମନ୍ଦବୁଦ୍ଧି ॥୮୦
ଆମ୍ଭେ ଈଶ୍ୱର ବୋଲି ମାନି ।
ମୋହରେ ଯେସନେ ଅଜ୍ଞାନୀ ॥୮୧
ଶତ୍ରୁର ଠାରୁ ଆମ୍ଭେମାନେ ।
ଦୁଃଖ ପାଇଲୁ ଅନୁକ୍ଷଣେ ॥୮୨
ଋଷି ମନୁଷ୍ୟ ପଶୁ ଆଦି ।
ସଂସାରେ ଯେତେକ ପ୍ରସିଦ୍ଧି ॥୮୩
ଯେ ପ୍ରଭୁ ଧରି ଅବତାର ।
ଖଣ୍ଡନ୍ତି ଦୁଃଖକୁ ଆମ୍ଭର ॥୮୪
ଆମ୍ଭେଟି ସର୍ବେ ଅରକ୍ଷିତ ।
ରଖନ୍ତୁ ପ୍ରଭୁ ଜଗନ୍ନାଥ ॥୮୫
ସେ ଯୁଗେ-ଯୁଗେ ରକ୍ଷାକରୁ ।
ଯା'ର ମହିମା ମହାମେରୁ ॥୮୬
ପରମ-ପ୍ରଧାନ ପୁରୁଷ ।
ଅଖିଳ ସଂସାରର ଈଶ ॥୮୭
ଅଖିଳଜନ୍ତୁଙ୍କ ଶରଣ ।
ଏମନ୍ତ ଯେଉଁ ନାରାୟଣ ॥୮୮
ଆମ୍ଭେ ତାହାଙ୍କର ଶରଣ ।
ଆମ୍ଭଙ୍କୁ କରନ୍ତୁ କଲ୍ୟାଣ ॥୮୯

Dr. Sudhanshu Sekhar Mishra

### ଶୁକ ଉବାଚ

ଦେବଙ୍କ ସ୍ତୁତି ଏ ବଚନ ।
ଶୁଣି ସନ୍ତୋଷ ଭଗବାନ ॥୯୦
ପଶ୍ଚିମଦିଗେ ହେ ରାଜନ ।
ହୋଇଲେ ଆସି ସେ ପ୍ରସନ୍ନ ॥୯୧
ଶଙ୍ଖ ଚକ୍ର ଗଦା କମଳ ।
ଧରିଣ ପ୍ରଭୁ ଆଦିମୂଳ ॥୯୨
ଆତ୍ମାର ତୁଲ୍ୟ ଷୋଳଜଣ ।
ସେବୁ ଅଛନ୍ତି ଅନୁକ୍ଷଣ ॥୯୩
ଶ୍ରୀବତ୍ସ-କଉସ୍ତୁଭ ବିନେ ।
ପୂର୍ଣ୍ଣ ହୋଇଣ ସର୍ବଗୁଣେ ॥୯୪
ଶରଦ-କମଳ-ଲୋଚନ ।
ଦେବେ ଦେଖିଣ ହୃଷ୍ଟମନ ॥୯୫
ଇନ୍ଦ୍ରାଦି ଦଶଦିଗପାଳେ ।
ପ୍ରଭୁଙ୍କୁ ନମିଲେ ସକଳେ ॥୯୬
ଦଣ୍ଡବତ ପଡି ରାଜନ ।
ସ୍ତୁତି କଲେ ଧୀରେ ଉଠିଣ ॥୯୭

### ଦେବଗଣ ଉବାଚ

ତୁମ୍ଭେ ଯେ ସର୍ବଯଜ୍ଞବର ।
ତୁମ୍ଭଙ୍କୁ କରୁଁ ନମସ୍କାର ॥୯୮
ସକଳ ବୟୋଧିକ ତୁମ୍ଭେ ।
ତୁମ୍ଭ ଚରଣେ ନମୁଁ ଆମ୍ଭେ ॥୯୯
ଅଖିଳ-ଈଶ୍ୱର ଗୋସାଇଁ ।
ନମସ୍ତେ ପ୍ରଭୁ ଭାବଗ୍ରାହୀ ॥୧୦୦
ତୁ ପୁରୁହୂତି ଶ୍ରେଷ୍ଠପର ।
ନମସ୍ତେ ପ୍ରଭୁ ଚକ୍ରଧର ॥୧୦୧
ନିୟନ୍ତା ତୁହି ତ୍ରିଗୁଣର ।
ତୋହ ଗତି କ୍ରୀଡା ବିହାର ॥୧୦୨
ଏହା ସଂଖ୍ୟା କରିବା ପାଇଁ ।
ବିଧାତା ସମର୍ଥ ନୁହଇ ॥୧୦୩
ହେ ଭଗବାନ ବାସୁଦେବ ।
ନାରାୟଣ ମହାନୁଭାବ ॥୧୦୪

ଆଦି ପୁରୁଷ ସର୍ବେଶ୍ୱର ।
କେବଳ ଜଗତ ଆଧାର ॥୧୦୫
ପରମହଂସ ଲକ୍ଷ୍ମୀକାନ୍ତ ।
ଜଗୁଜୀବନ ଜଗନ୍ନାଥ ॥୧୦୬
ଭୋ ନାଥ ପରମମଙ୍ଗଳ ।
ପରମକଲ୍ୟାଣର ମୂଳ ॥୧୦୭
ଭୋନାଥ ତୁମ୍ଭେ ଆତ୍ମାରାମ ।
ସକଳକାର୍ଯ୍ୟେ ଉପଶମ ॥୧୦୮
ତୁ ସର୍ବ ପରମକାରଣ ।
ଅଖିଳଭୂତଙ୍କ ଭାବନ ॥୧୦୯
ପରମ-ଯୋଗ-ସମାଧିରେ ।
ଭଜନ ବିବିଧ ପ୍ରକାରେ ॥୧୧୦
ପରମ ହଂସ-ମୁନିଗଣେ ।
ସେବନ୍ତି ଯାହାର ଚରଣେ ।୧୧୧
ପରମହଂସ-ଦୀକ୍ଷା କରି ।
ଅଜ୍ଞାନ ଦୂରେ ପରିହରି ॥୧୧୨
ଏକାନ୍ତ-ଲୋକଙ୍କ ଆତ୍ମାରେ ।
ପ୍ରଭାବ ଯାହାର ବିହରେ ॥୧୧୩
ଏମନ୍ତ ପ୍ରଭୁ ତୁ ଈଶ୍ୱର ।
ନମସ୍ତେ ବ୍ରହ୍ମାଣ୍ଡ ଠାକୁର ॥୧୧୪
ତୋହର ମହିମା ବିହାର ।
ବ୍ରହ୍ମାରେ ନୁହଁଇ ଗୋଚର ॥୧୧୫
ଏ ମାୟା ଅଖିଳ-ସଂସାର ।
ଭୋ ଦେବ ଭିଆଣ ତୋହର॥୧୧୬
ତ୍ରିଗୁଣ ଘେନି ପ୍ରଭୁ ତୁହି ।
ସର଼୍ୁ ପାଳୁ ସଂହାରୁ ମହୀ ॥୧୧୭
ଭୋଦେବ ଏ ମାୟାସଂସାରେ ।
ତ୍ରିଗୁଣେ ଜଡି ଯେଉଁ ନରେ ॥୧୧୮
ପରତନ୍ତ୍ରରେ ବଶ ହୋଇ ।
ଶୁଭାଶୁଭ-କର୍ମ କରଇ ॥୧୧୯
ତାହାର ଶୁଭାଶୁଭ -ଫଳ ।
ତୁମ୍ଭର ତହିଁ ଆଦିମୂଳ ॥୧୨୦
ଭୋ ସ୍ୱାମୀ ତୁମ୍ଭେ ଆତ୍ମାରାମ ।
ସକଳ-କର୍ମେ ଉପଶମ ॥୧୨୧

ତୁ ସର୍ବବସ୍ତୁରୁ ବାହାର ।
ଏମନ୍ତ ମଣୁଁ ଚକ୍ରଧର ॥୧୨୨
ତୋ'ର ବିରୋଧ ନାହିଁ ପୁଣ ।
ଅପରୀକ୍ଷିତ ତୋ'ର ଗୁଣ ॥୧୨୩
ସଂଖ୍ୟା ନୁହଁଇ ତୋ ମହିମା ।
ତୋତେ ବା କେ କରିବ ସୀମା ॥୧୨୪
ବିତର୍କ ବିକଳ୍ପ ବିଚାର ।
ପ୍ରମାଣ ନ କରେ ଯାହାର ॥୧୨୫
ନାନା ବିଚାର ଶାସ୍ତ୍ର ଆଦି ।
ସଂସାରେ ଯେତେକ ପ୍ରସିଦ୍ଧି ॥୧୨୬
ଏହା ବିଚାରି ସାଧୁଜନେ ।
ତୋତେ ଚିନ୍ତନ୍ତି ଦିବ୍ୟଜ୍ଞାନେ॥୧୨୭
କ୍ଷଣକେ ମତି ତାହାଙ୍କର ।
ଭ୍ରମ କରାଉ ଚକ୍ରଧର ॥୧୨୮
ସକଳ ମାୟାମୟ ହେଉ ।
ନଟର ପ୍ରାୟେ ତୁ ଦେଖାଉ ॥୧୨୯
ଯଦ୍ୟପି ଏକରୂପ ହୁଅ ।
ନାନାରୂପକୁ ତୁମ୍ଭେ ବହ ॥୧୩୦
ସମ-ବିଷମ-ବୁଧଙ୍କର ।
ପ୍ରବେଶ ହେଉ ତୁ ମନର ॥୧୩୧
ରଜ୍ଜୁରେ ସର୍ପ ବୁଦ୍ଧି ଯେହ୍ନେ ।
ଏକ ତୁ ଦିଶୁ ଭିନ୍ନେ ଭିନ୍ନେ ॥୧୩୨
ବିଚାରେ ଏକବସ୍ତୁ ତୁହି ।
ସର୍ବ-ଈଶ୍ୱର ତୁ ଗୋସାଇଁ ॥୧୩୩
ସକଳ ଜଗତ-କାରଣ ।
ଶୋଭାପାଉଛି ସର୍ବ ଗୁଣ ॥୧୩୪
ପ୍ରତ୍ୟେକ ନାମ ରୂପ ଧରି ।
ଲକ୍ଷିତ ହେଉ ନରହରି ॥୧୩୫
ଏକତୁ ପରମପୁରୁଷ ।
ସକଳଠାରୁ ଅବଶେଷ ॥୧୩୬
ଭୋ ନାଥ ମହିମା ତୁମ୍ଭର ।
ଅମୃତ-ରସର ସାଗର ॥୧୩୭
ତାହା ଆସ୍ୱାଦ କରି ମନେ ।
ଏକାନ୍ତ ଭକ୍ତ ଯେଉଁଜନେ ॥୧୩୮

Dr. Sudhanshu Sekhar Mishra

ବିଷୟ ସୁଖ ଲେଶ ଛାଡ଼ି ।
ନିତ୍ୟେ ତୋ ରସେ ଥାନ୍ତି ବୁଡ଼ି॥ ୧୩୯
ସର୍ବାତ୍ମା ସର୍ବଭୂତ ପ୍ରିୟ ।
ଭଗବାନ ସ୍ୱରୂପ ହୁଅ ॥ ୧୪୦
ଏ ସର୍ବଗୁଣେ ପୂର୍ଣ୍ଣ ହୋଇ ।
କେ ତୋତେ ଜାଣେ ଭାବଗ୍ରାହୀ ॥ ୧୪୧
ଅନବରତେ ସ୍ଥିରମନ ।
ତୋ ପାଦେ କରି ନିବେଦନ॥ ୧୪୨
ହେ ମଧୁମଥନ ଈଶ୍ୱର ।
ଆମ୍ଭାକୁ ଚିହ୍ନେ ସାଧୁନର ॥ ୧୪୩
କମଳଚରଣେ ତୁମ୍ଭର ।
ସେବୁ ଅଛନ୍ତି ନିରନ୍ତର ॥ ୧୪୪
ଯେ ପାଦପଙ୍କଜରେ ଧ୍ୟାନ ।
ସଂସାରେ ଗତାଗତ ଜନ ॥ ୧୪୫
ନୁହଁଇ ଯାହାର ପ୍ରସାଦେ ।
ଗତି ଲଭଇ ଅପ୍ରମାଦେ ॥ ୧୪୬
ତ୍ରୈଲୋକ୍ୟପ୍ରଭୁ ଭଗବାନ ।
ହେ ତ୍ରିବିକ୍ରମ ତ୍ରିନୟନ ॥ ୧୪୭
ତିନିଲୋକର ମନୋହର ।
ଅନୁଭାବ-ରୂପ ଯାହାର ॥ ୧୪୮
ତୁମ୍ଭ ପ୍ରକୃତିରୁ ଉଦିତ ।
ଏମନ୍ତ ଯେତେକ ଦଇତ୍ୟ ॥ ୧୪୯
ଏହାଙ୍କ କର୍ମ-ଭାଗ୍ୟଫଳ ।
ଶାନ୍ତିକି କର ଆଦିମୂଳ ॥ ୧୫୦
ଆତ୍ମମାୟାରେ ସୁରନର ।
ମୃଗ ସହିତେ ଜଳଚର ॥ ୧୫୧
ଏ ଆଦି ଯେତେକ ଅପର ।
ଯଥା ଅପ୍ରାଧେ ଦଣ୍ଡ କର ॥ ୧୫୨
ଏମନ୍ତ ତୁମ୍ଭେ ଯେ ଈଶ୍ୱର ।
ବୃତ୍ରକୁ ଭୋନାଥ ସଂହର ॥ ୧୫୩
କହିଲୁ ପ୍ରଭୁ ଭବଗ୍ରାହୀ ।
ଯେବା ତୁମ୍ଭର ଇଚ୍ଛା ହୋଇ ॥ ୧୫୪
ତୋ'ର ତନୟ ହେଉ ଆମ୍ଭେ ।
ଭୋ ନାଥ ଆମ୍ଭ ପିତା ତୁମ୍ଭେ॥ ୧୫୫

ତୋହର ଚରଣନଳିନ ।
ବନ୍ଦିକରିଛି ଆମ୍ଭମନ ॥ ୧୫୬
ଆପଣାକରି ଆମ୍ଭମାନ ।
ରଖିଣଅଛୁ ଭଗବାନ ॥ ୧୫୭
ଆମ୍ଭଙ୍କୁ ଅନୁକମ୍ପା କରି ।
ଏହା ଦେଖାଅ ନରହରି ॥ ୧୫୮
ବିଶଦହାସ ମନୋହର ।
ବଦନ ଈକ୍ଷଣ ତୁମ୍ଭର ॥ ୧୫୯
ସ୍ରବୁଛି ଯହିଁ ମଧୁରସ ।
ଅମୃତସମ ପୀତବାସ ॥ ୧୬୦
ଆମ୍ଭର ତ୍ରାସ ଦୂରକର ।
ଭୋନାଥ ଶରଣ ତୋହର ॥ ୧୬୧
ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ ।
ଏହା କାରଣ ତୁମ୍ଭେ ହୁଅ ॥ ୧୬୨
ସକଳ ଜୀବେ ପୂର୍ଣ୍ଣ ହୋଇ ।
ଅକ୍ଷୟ-ବ୍ରହ୍ମ-ରୂପ ବହି ॥ ୧୬୩
ତୁ ସର୍ବ-ମାୟାମୟ-ରୂପ ।
ଅଶେଷ-ପ୍ରଧାନ-ସ୍ୱରୂପ ॥ ୧୬୪
ତୁ ଦେଶକାଳପାତ୍ର ହୋଇ ।
ସକଳଠାରେ ଅଛୁ ରହି ॥ ୧୬୫
ସକଳବ୍ୟାପୀ ଚକ୍ରଧର ।
ଆକାଶ ଶରୀର ତୋହର ॥ ୧୬୬
ପରମବ୍ରହ୍ମରୂପ ତୁହି ।
ଥାଉ ତୁ ଆତ୍ମାରୂପ ବହି ॥ ୧୬୭
ଆମ୍ଭେ ଅଗ୍ନିର କଣା ପ୍ରାୟେ ।
କିସ କହିବୁଁ ଦେବରାୟେ ॥ ୧୬୮
ଆମ୍ଭ ପରମଗୁରୁ ତୁହି ।
ତୋ ପାଦ-ଶତଦଳ ଦୁଇ ॥ ୧୬୯
ବିବିଧ ପାପକର୍ମ ମୋହେ ।
ସଂସାରେ ଯେବା ଶ୍ରମ ହୋଏ॥ ୧୭୦
ଛେଦଇ ଯେ ଦଳକମଳ ।
ଛାୟାରେ ଆମ୍ଭେ ତାର ମୂଳ ॥ ୧୭୧
ଆଶ୍ରୟକରି ଆମ୍ଭମନ ।
ଅଛି ହେ ପ୍ରଭୁ ଭଗବାନ ॥ ୧୭୨

ଆମ୍ଭର କାର୍ଯ୍ୟ ଆଦିମୂଳ ।
ଭୋ ନାଥ କର ତୁ ସଫଳ ॥ ୧୭୩
ହେ ପ୍ରଭୁ ଏ ତିନିଭୁବନ ।
ଗ୍ରାସୁଛି ତ୍ୱଷ୍ଟାର ନନ୍ଦନ ॥ ୧୭୪
ବଳ ଆୟୁଧ ଯେ ଆମ୍ଭର ।
ନାଶୁଛି ପାପୀ ବୃତ୍ରାସୁର ॥ ୧୭୫
ଏବେ ବିନାଶ କର ତା'କୁ ।
ହେ କୃଷ୍ଣ ଆମ୍ଭର ତେଜକୁ ॥ ୧୭୬
ନମସ୍ତେ ପ୍ରଭୁ ଶୁଦ୍ଧ-ହଂସ ।
ବିହାର ହୃଦୟ-ଆକାଶ ॥ ୧୭୭
ନମସ୍ତେ ପ୍ରଭୁ କୃଷ୍ଣ ତୁହି ।
ବ୍ରହ୍ମାଣ୍ଡେ ଯା'ର ଯଶ ଶୋହି॥ ୧୭୮
ଭବସାଗର ପଥଶ୍ରମ ।
ତୁ ତାହା ନାଶୁ ଭଗବାନ ॥ ୧୭୯
ପରମଗତି ଶ୍ରେଷ୍ଠଗତି ।
ନମସ୍ତେ ପ୍ରଭୁ ଦାଶରଥି ॥ ୧୮୦
ପବନ ଆକାଶ ଯେ ଅଗ୍ନି ।
ଜଳସହିତେ ଯେ ଅବନୀ ॥ ୧୮୧
ବ୍ରହ୍ମାଦି କରି ଆମ୍ଭେମାନେ ।
ଉଦ୍‌ବେଗ କରିଅଛୁ ମନେ ॥ ୧୮୨

ଶୁକ ଉବାଚ

ଏ ଅନନ୍ତରେ ହେ ରାଜନ ।
ସ୍ତୁତି କରନ୍ତେ ଦେବଗଣ ॥ ୧୮୩
ସାଦରେ ସ୍ତୁତି ଶୁଣି ହରି ।
ସନ୍ତୋଷ ହେଲେ ଦଇତ୍ୟାରି ॥ ୧୮୪
ଶୁଣି ସାନନ୍ଦ ଭଗବାନ ।
ଦେବଙ୍କୁ ବୋଲନ୍ତି ବଚନ ॥ ୧୮୫

ଭଗବାନ ଉବାଚ

ଏ ତୁମ୍ଭ ସୁବିଦ୍ୟା-ସ୍ତୁତିରେ ।
ସନ୍ତୋଷ ହେଲୁ ଦେବବରେ ॥ ୧୮୬
ଯେଉଁ ସ୍ତୁତିର ପରସାଦେ ।
ସ୍ତୁତି-ଭକତି ମୋର ପାଦେ ॥ ୧୮୭

Dr. Sudhanshu Sekhar Mishra

ତତ୍ତ୍ୱଙ୍କ ଏକାନ୍ତ ଯେ ମତି ।
ମୋ ତହୁଁ ଅନ୍ୟ ନ ବାଞ୍ଛନ୍ତି ॥୧୮୮

ମୁହିଁ ପ୍ରସନ୍ନ ହୋଏ ଯା'ରେ ।
କି ଅବା ଦୁର୍ଲ୍ଲଭ ତାହାରେ ॥୧୮୯

ଗୁଣରେ ବସ୍ତୁ ଯେ ଦେଖନ୍ତି ।
ଏମନ୍ତ କୃପଣ ଯେ ଛନ୍ତି ॥୧୯୦

ସେ ଆତ୍ମା-ଶ୍ରେୟ ନ ଜାଣନ୍ତି।
ସଂସାର ମୋହେ ସେ ପଡ଼ନ୍ତି ॥୧୯୧

ଯେ ବିଦ୍ୟାବନ୍ତ ଏ ଜଗତେ ।
ସେ ଶ୍ରେୟ ଚିନ୍ତେ ମୋକ୍ଷପଥେ ॥୧୯୨

ଇଚ୍ଛା ନ ରହଇ ତାହାର ।
ସର୍ବକାମ ଦେଇ ହସ୍ତର ॥୧୯୩

ହେ ଇନ୍ଦ୍ର ଯାଅ ହରଷେଣ ।
ତୁମ୍ଭର ହୋଇବ କଲ୍ୟାଣ ॥୧୯୪

ଅଥର୍ବଣ ଯେ ଋଷିବର ।
ମାଗ ତାହାଙ୍କର ଶରୀର ॥୧୯୫

ବିଦ୍ୟା ତପ ବ୍ରତେ ଯାହାର ।
ପବିତ୍ର ହୋଇଛି ଶରୀର ॥୧୯୬

ପ୍ରାର୍ଥନା ତୁମ୍ଭେମାନେ କଲେ ।
ଧର୍ମଙ୍କ ଅଙ୍ଗ ଦେବ ଭଲେ ॥୧୯୭

ଅସ୍ଥି ତାହାଙ୍କର ଆଣିବ ।
ଆୟୁଧ ବଜ୍ର ଗଢାଇବ ॥୧୯୮

ବିଶ୍ୱକର୍ମାନିର୍ମିତ କରି ।
ବଜ୍ରକୁ ଧରି ବଜ୍ରଧାରୀ ॥୧୯୯

ସେ ବଜ୍ରେ କରି ବୃତ୍ରାସୁର ।
ଛେଦିବ ଶୁଣ ପୁରନ୍ଦର ॥୨୦୦

ମୋହର ତେଜେ ଯୁକ୍ତ ହୋଇ।
ଶତ୍ରୁ ନାଶିବ ଦେବସାଇଁ ॥୨୦୧

ବୃତ୍ରକୁ କରି ପ୍ରାଣେ ହତ ।
ସ୍ୱର୍ଗ ଲଭିବ ଦେବଯୂଥ ॥୨୦୨

ଯେ ତେଜ ଯଶ ସେ ଆୟୁଧ ।
ପୁଣି ହିଁ ଲଭିବ ସମ୍ପଦ ॥୨୦୩

ମୋର ଭକତଲୋକଙ୍କର ।
ହିଂସା ନୋହିବ ପୁରନ୍ଦର ॥୨୦୪

ବୋଲଇ ଦାସ ଜଗନ୍ନାଥ ।
ଇନ୍ଦ୍ରକୁ କୃଷ୍ଣ କୃପାଚିତ୍ତ ॥୨୦୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ନବମୋଽଧ୍ୟାୟଃ ॥

---

## ଦଶମ ଅଧ୍ୟାୟ

### ଶୁକ ଉବାଚ

ଏ ରୂପେ ଇନ୍ଦ୍ରକୁ କହିଣ ।
ବିଶ୍ୱଭାବନ-ଭଗବାନ ॥୧

ଦେବତାମାନେ ଦେଖୁଥିଲେ ।
ତକ୍ଷଣେ ଅନ୍ତର୍ଦ୍ଧାନହେଲେ ॥୨

ଶ୍ରୀକୃଷ୍ଣ ଆଜ୍ଞା ପରମାଣେ ।
ମାଗିଲେ ଯାଇ ଦେବଗଣେ ॥୩

ମହତଋଷି ଆଥର୍ବଣ ।
ଯା' ତହୁଁ ଇନ୍ଦ୍ର-ପରିତ୍ରାଣ ॥୪

ହରଷେ ଋଷି ଆଥର୍ବଣ ।
ବୋଇଲେ ଦେବଗଣେ ଶୁଣ ॥୫

ଜନ୍ତୁଙ୍କ ପ୍ରାଣ ପରିତ୍ରାଣେ ।
ଦୁସ୍ତର-ଦୁଃଖ ନିବାରଣେ ॥୬

ତୁମ୍ଭେ ସ୍ୱଭାବେ ଦେବଗଣ ।
ମରଣଦୁଃଖକୁ ନ ଜାଣ ॥୭

ଜୀବନ ପାଇଁ ପ୍ରାଣୀଙ୍କର ।
ସୁତ-କଳତ୍ର ଏ ସଂସାର ॥୮

ଏମନ୍ତ ପ୍ରାଣୀ ଅଛି କାହିଁ ।
ଜୀବନ ମାଗିଲେ ଦିଅଇ ॥୯

ଯେବେ ମାଗିବେ ନାରାୟଣ ।
ତେବେ ବା କେ ଦେବ ଜୀବନ ॥୧୦

### ଦେବଗଣ ଉବାଚ

ଯେ ପ୍ରାଣୀ ସର୍ବଭୂତଠାରେ ।
ଆତ୍ମାର ପ୍ରାୟ ଦୟାକରେ ॥୧୧

ଈଷତମାତ୍ରେ ଦେଇ ପ୍ରାଣ ।
କରଇ ପ୍ରାଣୀ ପରିତ୍ରାଣ ॥୧୨

ତୁମ୍ଭର ପ୍ରାୟ ପୁଣ୍ୟଶ୍ଳୋକ ।
ଯେ ଅବା ପୁଣ୍ୟବନ୍ତ ଲୋକ ॥୧୩

ତାହାର ଏମନ୍ତ ବିଚାର ।
ସେ ନ ଜାଣଇ ପରାପର ॥୧୪

ଅଜ୍ଞାନ ପାଣୀ ଯେଉଁମାନେ ।
ପର ସଙ୍କଟ ଯେ ନ ଘେନେ ॥୧୫

ଯାଚଞ୍ଚା ଶ୍ରେଷ୍ଠଲୋକଙ୍କର ।
କେବେହେଁ ନୋହେ ହତାଦର ॥୧୬

### ଋଷି ଉବାଚ

ଭୋ ଦେବରାଜ ଦେବବୃନ୍ଦ ।
ଧର୍ମ କହିଲ ମୋକ୍ଷପ୍ରଦ ॥୧୭

ଏ ଯେ ମୋହର ନିଜ ଦେହ ।
ଛାଡ଼ିବି ନ କର ସନ୍ଦେହ ॥୧୮

ଦେହକୁ ଧରି ଯେଉଁଜନ ।
ନ କରେ ଯଶ-ପୁଣ୍ୟକର୍ମ ॥୧୯

ତାହାକୁ ଆତ୍ମଘାତୀ କହି ।
ସ୍ଥାବରୁ ଅଧିକଟି ସେହି ॥୨୦

ଯେ ପ୍ରାଣୀ ପରଦୁଃଖେ ଦୁଃଖୀ ।
ପରସୁଖରେ ମହାସୁଖୀ ॥୨୧

ଅବ୍ୟୟ ଅକ୍ଷୟ ଏ ଧର୍ମ ।
କହନ୍ତି ପୁଣ୍ୟଶୋକଜନ ॥୨୨

ଏ ବଡ଼ ଆଶ୍ଚର୍ଯ୍ୟ ଲୋକରେ ।
କ୍ଷଣଭଙ୍ଗୁର ଦେହେ ନରେ ॥୨୩

କରନ୍ତି ଆତ୍ମସ୍ୱାର୍ଥଭେଦ ।
ଇହଲୋକରେ ଅପବାଦ ॥୨୪

Dr. Sudhanshu Sekhar Mishra

ଶୁକ ଉବାଚ

ଏମନ୍ତ କହି ଆଥର୍ବଣ ।
ନିଷ୍କଳ କରି ଆତ୍ମାମନ ॥୨୫
ପରମବ୍ରହ୍ମେ ନିବେଶିଲେ ।
ସଂଯମେ ଶରୀର ଛାଡିଲେ ॥୨୬
ମନ-ବୁଦ୍ଧି ବ୍ରହ୍ମେ ନିବେଶି ।
ଏହି ଯୋଗରେ କରି ଋଷି ॥୨୭
ତେଜିଣ ଗଲେ ସେ ଶରୀର ।
ଜାଣିଲେ ଦେବ-ପୁରନ୍ଦର ॥୨୮
ଏଥୁ ଅନ୍ତରେ ଦେବରାଜ ।
ବିଶ୍ୱକର୍ମା-ନିର୍ମିତ ବଜ୍ର ॥୨୯
ମୁନି-ଅସ୍ଥିରେ ସୁନିର୍ମିତ ।
ଶ୍ରୀକୃଷ୍ଣ-ତେଜରେ ମିଶ୍ରିତ ॥୩୦
ବିଷ୍ଣୁ ଆଜ୍ଞାରେ ତତପର ।
ସେ ବଜ୍ର ଧରି ପୁରନ୍ଦର ॥୩୧
ସେ ଦେବଗଣରେ ବେଷ୍ଟିତ ।
ଆରୋହି ଗଜ-ଐରାବତ ॥୩୨
ମୁନିଗଣରେ ସ୍ତୁତ ହୋଇ ।
ତ୍ରୈଲୋକ୍ୟ ହରଷ କରାଇ ॥୩୩
ବୃତ୍ରମାରଣେ ଦେବରାଜ ।
ସୈନ୍ୟ ସହିତେ ହେଲେ ସଜ ॥୩୪
ଅଶେଷବଳ ସଙ୍ଗେ ଲଇଁ ।
ଅନ୍ଧକେ ଯେହ୍ନେ ରୁଦ୍ର ଧାଇଁ ॥୩୫
ଏ ଅନନ୍ତରେ ହେ ରାଜନ ।
କହିବା ଏକମନେ ଶୁଣ ॥୩୬
ସୁର-ଅସୁରଙ୍କର ରଣ ।
ଅତ୍ୟନ୍ତ-ପରମ-ଦାରୁଣ ॥୩୭
ତ୍ରେତୟାଯୁଗର ଆଦ୍ୟରେ ।
ହୋଇଲା ନର୍ମଦାତୀରରେ ॥୩୮
ରୁଦ୍ର ବସୁ ପୁଣି ଆଦିତ୍ୟେ ।
ବହ୍ନି ପିତୃ ଅଶ୍ୱିନୀସୁତେ ॥୩୯
ସାଧ୍ୟ ବିଶ୍ୱଦେବା ମରୁତ ।
ଋଭୁ ଦେବଗଣେ ବେଷ୍ଟିତ ॥୪୦
ବିରାଜମାନ ସମ୍ପଦରେ ।
ବଜ୍ରକୁ ଧରି ନିଜ କରେ ॥୪୧
ଏ ଭାବେ ଇନ୍ଦ୍ରକୁ ଦେଖିଲେ ।
ଅସୁରେ କ୍ରୋଧରେ ଧାଇଁଲେ ॥୪୨
ନମୁଚି ଦ୍ୱିମୂର୍ଦ୍ଧା ଶମ୍ବର ।
ଅନର୍ବା ଋଷଭ-ଅସୁର ॥୪୩
ହୟଗ୍ରୀବ ଯେ ବିପ୍ରଚିତ୍ତି ।
ଅୟୋମୁଖ ହେତି ପ୍ରହେତି ॥୪୪
ଶଙ୍କୁଶିରା ଯେ ବୃଷପର୍ବ ।
ଉତ୍କଳ ପୁଲୋମା-ଦାନବ ॥୪୫
ଦାନବ ଦୈତ୍ୟଗଣ ଦକ୍ଷ ।
ଅସଂଖ୍ୟ ଆବର ଯେ ରକ୍ଷ ॥୪୬
ସୁମାଳୀ ମାଳୀ ଆଦି ଯେତେ ।
ସୁବର୍ଣ୍ଣେ ହୋଇଣ ମଣ୍ଡିତେ ॥୪୭
ଇନ୍ଦ୍ରର ସେନାର ଅଗ୍ରତେ ।
ବଳେ ଓଗାଳିଲେ ତୁରିତେ ॥୪୮
ଇନ୍ଦ୍ରଙ୍କ ସେନାର ସମୂହ ।
କାଳହୁଁ ଅତି ଦୁରାଶୟ ॥୪୯
ନିଃଶଙ୍କେ ଦେଇ ସିଂହନାଦ ।
ପୂରିଲେ ଦାନବ ଦୁର୍ମଦ ॥୫୦
ଗଦା ପରିଘ ବାଣ ପ୍ରାସ ।
ମୁଦ୍‌ଗର ତୋମର ଅଶେଷ ॥୫୧
ଶୂଳ ଖଡ୍‌ଗ ପରଶ୍ୱଧ ।
ଶତଘ୍ନୀ ଭୂଷଣ୍ଡୀ ଆୟୁଧ ॥୫୨
ଏ ଯେତେ ଅସ୍ତ୍ରଶସ୍ତ୍ରମାନ ।
ଦେବଙ୍କୁ କଲେ ପ୍ରହାରଣ ॥୫୩
ଅସୁର-ଶର-ବରଷଣେ ।
ଦୃଶ୍ୟ ନୁହନ୍ତି ଦେବଗଣେ ॥୫୪
ପୁଣ ପୁଣ ହିଁ ପଡିବାରେ ।
ନକ୍ଷତ୍ର ଯେସନେ ମେଘରେ ॥୫୫
ଯେ ଶସ୍ତ୍ର-ତେଜ ଦାନବର ।
କିଛି ନ କଲା ଦେବଙ୍କର ॥୫୬
ଯେତେ ଅସୁରଙ୍କ ଆୟୁଧ ।
ସକଳ ଦେବେ କଲେ ଛେଦ ॥୫୭
ଏଥୁ ଅନ୍ତରେ ଶୂନ୍ୟହସ୍ତ ।
ଦାନବେ ଅତ୍ୟନ୍ତ କୋପିତ ॥୫୮
ଶିଳାର ସଙ୍ଗେ ଦ୍ରୁମମାନ ।
ଦେବଙ୍କୁ କଲେ ପ୍ରହାରଣ ॥୫୯
ପୁଣି ହିଁ ଇନ୍ଦ୍ର-ସୈନ୍ୟଗଣ ।
ତକ୍ଷଣେ କଲେ ତା' ଛେଦନ ॥୬୦
ପ୍ରତାପ ଦେଖି ଦେବଙ୍କର ।
କୋପେ ଦାନବେ ଖରତର ॥୬୧
ପୁଣି ପଥର ଘେନି କରେ ।
ପିଟିଲେ ଦେବଙ୍କ ଉପରେ ॥୬୨
ବିବିଧ ଗିରିଶୃଙ୍ଗମାନ ।
ଦେବଙ୍କୁ କଲେ ପ୍ରହାରଣ ॥୬୩
ଦୈତ୍ୟେ ନିଷ୍ଫଳକାର୍ଯ୍ୟ ହୋଇ ।
ଆତ୍ମା ଦେହକୁ ନିନ୍ଦା ବହି ॥୬୪
ଯାହାକୁ ରଖନ୍ତି ଈଶ୍ୱର ।
ଅସୁରେ କେତେକ ମାତର ॥୬୫
ଆତ୍ମାର ଦମ୍ଭ ଯହୁଁ ହତ ।
ଦେଖି ଅସୁରେ ଭୟଚିତ୍ତ ॥୬୬
ସ୍ୱଭାବେ ବିଷ୍ଣୁର ବିମୁଖ ।
ରଣେ ଲଭିଲେ ମହାଦୁଃଖ ॥୬୭
ସ୍ୱାମୀକି ଛାଡି ସଂଗ୍ରାମରେ ।
ପଳାଇଗଲେ ପ୍ରାଣଡରେ ॥୬୮
ବୃତ୍ର ଅସୁର-ଚୂଡ଼ାମଣି ।
ସୈନ୍ୟ ପଳାନ୍ତି ବୋଲି ଜାଣି ॥୬୯
ଆପଦ ଦେଖି ବୃତ୍ରାସୁର ।
କହଇ ବଚନ ମଧୁର ॥୭୦
ଅତି ଭୟରେ ରଣ ଛାଡି ।
ପଳାନ୍ତି ହୋଇ ମଡାମଡି ॥୭୧
ଏମନ୍ତ ଦେଖି ବୃତ୍ରାସୁର ।
ସୈନ୍ୟଙ୍କୁ ବୋଲଇ ଉତ୍ତର ॥୭୨
ହେ ବିପ୍ରଚିତ୍ତି ଅନର୍ବନ ।
ନମୁଚି ଶୁଣ ମୋ ବଚନ ॥୭୩
ଜାତ ହୋଇଲେ ଏ ସଂସାର ।
ମରଣ ଧ୍ରୁବଟି ତାହାର ॥୭୪

Dr. Sudhanshu Sekhar Mishra

ମୃତ୍ୟୁ ଯେ ଦ୍ୱିତୀୟ ପ୍ରକାର ।
ସାର ବୋଲନ୍ତି ଏ ସଂସାର ॥୭୫
ବ୍ରହ୍ମ-ଭାବନେ ଦେଇ ଚିତ୍ତ ।
ଯେ ପ୍ରାଣୀ ପ୍ରାଣ ହୋଏ ହତ ॥୭୬
ଯେ ରଣକ୍ଷେତ୍ରେ ପ୍ରାଣ ଦେଇ ।
ବୀରଶଯ୍ୟାରେ ରହେ ଶୋଇ ॥୭୭
ବୋଲଇ ଦାସ ଜଗନ୍ନାଥ ।
ଇନ୍ଦ୍ର-ବୃତ୍ର ଯୁଦ୍ଧ-ଚରିତ ॥୭୮
ସୁଜନେ ଏଣେ କର ଆଶ ।
ମୁଁ ତୁମ୍ଭ ଦାସଙ୍କର ଦାସ ॥୭୯
ଯେ ଏହା ଶ୍ରବଣେ ଶୁଣନ୍ତି ।
ସକଳ-ପାପକୁ ନାଶନ୍ତି ॥୮୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ ବୃତ୍ରାସୁର-ଯୁଦ୍ଧବର୍ଣ୍ଣନଂ ନାମ ଦଶମୋଽଧ୍ୟାୟଃ ॥

---

## ଏକାଦଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ-ବ୍ରହ୍ମବେତ୍ତା ।
ଇନ୍ଦ୍ର-ବୃତ୍ରର ଯୁଦ୍ଧକଥା ॥୧
ସ୍ୱାମୀର ଧର୍ମକଥା ଭୃତ୍ୟେ ।
ଆରତେ ନ ଘେନିଲେ ଚିତ୍ତେ ॥୨
ଶୁଣି ସମସ୍ତେ ପଳାଇଲେ ।
ସଭୟେ ସଂଗ୍ରାମ ଛାଡିଲେ ॥୩
କାଳଅନଳ-ତେଜେ ଯେହ୍ନେ ।
ଅସୁରଙ୍କର ସୈନ୍ୟମାନେ ॥୪
କାଳ-ପ୍ରତିକୂଳରୁ କରି ।
ଅନାଥ ପ୍ରାୟେ ସେ ଆଚରି ॥୫
ଗରୁଡ ପନ୍ନଗକୁ ଧରି ।
ତେସନେ ଦେବେ ଦୈତ୍ୟ ମାରି ॥୬
ସକଳେ ଇତସ୍ତତଃ ହୋଇ ।
ପଳାନ୍ତି ପ୍ରାଣଭୟ ପାଇ ॥୭
ଏମନ୍ତ ଦେଖି ସୈନ୍ୟଗଣ ।
ଅସୁର କୋପ ଗରୁଡାଣ ॥୮
ଦେବଙ୍କୁ ଆବୋରି ଆପଣେ ।
ଭର୍ତ୍ସନା କରଇ ବଚନେ ॥୯
ପଳାଉଛନ୍ତି ଯେ ଅସୁର ।
ତା'ଙ୍କୁ ପଛରୁ କିପାଁ ମାର ॥୧୦
ଭୟେ ପଳାନ୍ତି ଯେଉଁଜନ ।
ତା'ଙ୍କ ବଧ କି ଭଲ ମଣ ॥୧୧
ଏମନ୍ତ ବଳବନ୍ତଙ୍କର ।
ସ୍ୱର୍ଗ-ପ୍ରାପତି ଯେ ଦୁସ୍ତର ॥୧୨
ଏତେ ବୋଲିଣ ତା'ଙ୍କୁ କହି ।
ଦେବଗଣଙ୍କୁ କ୍ରୋଧ ବହି ॥୧୩
ଆତ୍ମ-ଶରୀର ପ୍ରକାଶିଲା ।
ଦେବଙ୍କୁ ଭୟ ଦେଖାଇଲା ॥୧୪
ଅସୁର କଲା ଘୋରନାଦ ।
ବ୍ରହ୍ମାଣ୍ଡେ ପୂରିଲା ଶବଦ ॥୧୫
ଲୋକେ ହୋଇଲେ ହତଜ୍ଞାନ ।
ଦେବେ ଶୁଣିଲେ ତା'ର ସ୍ୱନ ॥୧୬
ସେ ନାଦ ଶୁଣି ଦେବଗଣେ ।
ମୂର୍ଚ୍ଛିତ ହୋଇ ହତଜ୍ଞାନେ ॥୧୭
ବିକଳେ ପଡିଲେ ଭୂମିରେ ।
ବଜ୍ର ପଡିଲା ଯେହ୍ନେ ଶିରେ ॥୧୮
ଚକ୍ଷୁ ବୁଜିଣ ଦେବଗଣେ ।
ପଡି ଅଛନ୍ତି ଘୋରରଣେ ॥୧୯
ଦୁର୍ମଦ ରଣରଙ୍ଗେ ବୀର ।
ପାଦେ ମର୍ଦ୍ଦିଲା ବୃତ୍ରାସୁର ॥୨୦
ଅବନୀ କମ୍ପେ ପାଦଭରେ ।
ଶୂଳ ଘେନିଣ ନିଜ କରେ ॥୨୧
ଭ୍ରମଇ ସଂଗ୍ରାମ-ଭୂମିରେ ।
ଯେସନେ ମତ୍ତ-କରିବରେ ॥୨୨
ତାହାକୁ ଦେଖି ବଜ୍ରଧର ।
କୋପେ କମ୍ପଇ ଥରହର ॥୨୩
ମହାଗଦାରେ ଦେବବର ।
ବୃତ୍ରକୁ କଲେ ସେ ପ୍ରହାର ॥୨୪
ଦୁଃସହ-ଗଦା ଆସିବାରେ ।
ବୃତ୍ର ଧଇଲା ବାମକରେ ॥୨୫
ଇନ୍ଦ୍ରର ଗଦା ଘେନି କର ।
ସେହି ଗଦାରେ ବୃତ୍ରାସୁର ॥୨୬
ଐରାବତର କୁମ୍ଭସ୍ଥଳେ ।
ଦାନବ ପ୍ରହାରିଲା ବଳେ ॥୨୭
ତାହାର ଏ କର୍ମ ଦେଖିଣ ।
ସକଳେ କଲେ ଧନ୍ୟ ଧନ୍ୟ ॥୨୮
ବୃତ୍ର ଗଦାରେ ଐରାବତ ।
ବଜ୍ରରେ ଯେହ୍ନେ ଗିରିହତ ॥୨୯
ରଣେ ସେ ବିମୁଖ ହୋଇଲା ।
ଇନ୍ଦ୍ରକୁ ଘେନି ବାହୁଡିଲା ॥୩୦
ଅତ୍ୟନ୍ତ ହୋଇଣ ଆରତ ।
ବାହୁଡିଗଲା ଧନୁସାତ ॥୩୧
ଚକିତେ ହୋଇ ଛନ୍ନଚିତ୍ତ ।
ଏମନ୍ତେ ଦେବ ପୁରହୂତ ॥୩୨
ବୃତ୍ର ଅସୁର ପୁନର୍ବାର ।
ଇନ୍ଦ୍ରକୁ ନ କଲା ପ୍ରହାର ॥୩୩
ଇନ୍ଦ୍ର ଅମୃତସ୍ରାବୀ କର ।
ଦେଇଣ ହସ୍ତୀ କୁମ୍ଭସ୍ଥଳ ॥୩୪
ଆଶ୍ୱାସ କରି ଦେବବର ।
ରହିଲେ ବୃତ୍ରର ଆଗର ॥୩୫
ସଂଗ୍ରାମ କରିବାର ଆଶେ ।
ଇନ୍ଦ୍ରକୁ ଦେଖି ନିଜ ପାଶେ ॥୩୬

Dr. Sudhanshu Sekhar Mishra

ଭ୍ରାତାର ହନ୍ତା ବଜ୍ରାୟୁଧ ।
ଦେଖି ଅସୁର କଲା କ୍ରୋଧ ॥୩୭

ସ୍ମରଣ କଲା ଭ୍ରାତୃନାଶ ।
ଶୋକ-ମୋହେ ହୋଇ ବିରସ ॥୩୮

ବୋଲଇ ଇନ୍ଦ୍ର ମୋ' ବଚନ ।
ଶୁଣ ତୁ ହୋଇ ସାବଧାନ ॥୩୯

ଭାଗ୍ୟବଶରୁ ତୁ ମୋହର ।
ସଂଗ୍ରାମେ ମିଳିଲୁ ଛାମୁର ॥୪୦

ମୋହର ଭ୍ରାତୃନାଶକାରୀ ।
ଆଜ ନାଶିବି ତୋର ଶିରୀ ॥୪୧

ମୋହର ଶୂଳେ ହୃଦ ତୋର ।
ନିଶ୍ଚୟେ କରିବି ବିଦାର ॥୪୨

ଯେଉଁ କାରଣେ ମୋ' ଅଗ୍ରଜ ।
ଅପାପୀ ଆତ୍ମଜ୍ଞାନୀ ଦ୍ୱିଜ ॥୪୩

ଖଡ଼ଗେ କରି ତାର ଶିର ।
ଛେଦିଲୁ ତୁହି ଦୁରାଚାର ॥୪୪

ପଶୁର ପ୍ରାୟେକ ମାଇଲୁ ।
ସ୍ୱର୍ଗଭୋଗକୁ ବାଞ୍ଛା କଲୁ ॥୪୫

ଲଜ୍ଜା ସମ୍ପଦ ଦୟା କୀର୍ତ୍ତି ।
ସବୁ ଛାଡ଼ିଲୁ ମୂଢ଼ମତି ॥୪୬

ମୋର ତ୍ରିଶୂଳେ ତୋ ଶରୀର ।
ନାଶ ହୋଇବ ଦୁରାଚାର ॥୪୭

ଅଗ୍ନି ନ କରିବ ଦହନ ।
ଖାଇବେ ଗୃଧ୍ର କୃମି ଶ୍ୱାନ ॥୪୮

ଯେତେ ତୋ' ସଙ୍ଗେ ଦୁଷ୍ଟଜନେ ।
ଶସ୍ତ୍ର ଧରିଣଛନ୍ତି ରଣେ ॥୪୯

ଯେ ମୋତେ ପ୍ରହାରକୁ କଲେ ।
ତାହାଙ୍କୁ ଛାଡ଼ିବି କି ଭଲେ ॥୫୦

ତ୍ରିଶୂଳ କରିଣ ପ୍ରହାର ।
କନ୍ଧ ଛେଦିବି ଏହାଙ୍କର ॥୫୧

ଏଥିଉତ୍ତାରେ ପାଇ ଜ୍ଞାନ ।
ଇନ୍ଦ୍ରକୁ ବୋଲଇ ବଚନ ॥୫୨

ଭୋ ଇନ୍ଦ୍ର ଦେବଙ୍କ ଠାକୁର ।
କୁଶଳେ ମୋର ଶିର ହର ॥୫୩

ଆମ୍ଭାକୁ ବଳି ମୁହିଁ ଦେବି ।
ଶ୍ରୀକୃଷ୍ଣ-ଚରଣ ଭଜିବି ॥୫୪

ଭୋ ଦେବ ଦେବଙ୍କ ଈଶ୍ୱର ।
ବଜ୍ର କିପାଇଁ ନ ପ୍ରହାର ॥୫୫

ଅଗ୍ରେ ଯେ ଅଛି ଉଭା ହୋଇ ।
ସଂଶୟ କର କାହିଁପାଇଁ ॥୫୬

ଗଦା ପ୍ରାୟେ ବଜ୍ର ନ ମଣ ।
ବଜ୍ର ମୋ' ମରଣ କାରଣ ॥୫୭

ଆପଣା ତେଜେ ବଜ୍ରଧର ।
ଦେବଙ୍କ ଅଇରି ସଂହାର ॥୫୮

ବିଷ୍ଣୁ-ଯନ୍ତ୍ରିତ ଦେବବର ।
ବିଜୟ ହୋଇବ ତୁମ୍ଭର ॥୫୯

ସଙ୍କରଷଣ ଯଥୋଚିତେ ।
ଯାହା ସେ କହିଛନ୍ତି ମୋତେ ॥୬୦

ଶ୍ରୀକୃଷ୍ଣ-ପାଦପଙ୍କଜରେ ।
ମନ ମୁଁ ନିବେଶିବି ସ୍ଥିରେ ॥୬୧

ତୁମ୍ଭର ବଜ୍ରରେ ମୋହର ।
ହୋଇବ ମୋହପାଶ ଦୂର ॥୬୨

ଯେଗତି ଯୋଗୀ ଯୋଗେପାଇ ।
ସେ ଗତି ପାଇବଇଁ ମୁହିଁ ॥୬୩

ତିନିଭୁବନ ପ୍ରାଣୀଙ୍କର ।
ବହୁତ ସମ୍ପଦ ଯାହାର ॥୬୪

ଉଦ୍‌ବେଗ ଆଧି ଗର୍ବ ଆର ।
କଳତ୍ର ସ୍ନେହ ଯେ ଅପାର ॥୬୫

ତ୍ରିବର୍ଗ ଦୁଃଖ ଭକ୍ତଙ୍କର ।
ନାଶନ୍ତି ପ୍ରଭୁ ଚକ୍ରଧର ॥୬୬

ଦୁର୍ଲ୍ଲଭ ଯେ ପ୍ରଭୁ ପ୍ରସାଦ ।
ତେଣୁ ଲଭନ୍ତି ଅପ୍ରମାଦ ॥୬୭

ଭୋ ପ୍ରଭୁ ତୁମ୍ଭ ପଦ୍ମପାଦେ ।
ଭୃତ୍ୟର ଭୃତ୍ୟ ମୁଁ ଆନନ୍ଦେ ॥୬୮

ହୋଇବି ଏ ମୋହର ମନ ।
ସେବା କରିବି ଅନୁକ୍ଷଣ ॥୬୯

କୀର୍ତ୍ତନ-କର୍ମ ଯେ ତୁମ୍ଭର ।
କରୁ ମୋ' ବଚନ ଶରୀର ॥୭୦

ସ୍ୱର୍ଗଲୋକରେ ଇନ୍ଦ୍ର ପଦ ।
ବ୍ରହ୍ମଲୋକେ ବ୍ରହ୍ମସମ୍ପଦ ॥୭୧

ପାତାଳଭୋଗ ଯୋଗ ଯେହି ।
ସପତଦ୍ୱୀପେ ରାଜାହୋଇ ॥୭୨

ଏଣେ ମୋହର ନାହିଁ ଇଚ୍ଛା ।
ତୋ' ପାଦସେବାରେ ମୋ' ବାଞ୍ଛା ॥୭୩

ଯୋଗସିଦ୍ଧି ଅବା ମୋକ୍ଷରେ ।
କାର୍ଯ୍ୟ ମୋ' ନାହିଁ ଏହାଙ୍କରେ ॥୭୪

ଏକାନ୍ତଭକ୍ତି ତୁମ୍ଭ ପାଦ ।
ବାଞ୍ଛା କରଇ ଚକ୍ରାୟୁଧ ॥୭୫

ଅଜାତପକ୍ଷ-ଖଗ ଯେହ୍ନେ ।
ମାତା ଲୋଡ଼ଇ ଅନୁକ୍ଷଣେ ॥୭୬

କ୍ଷୁଧାର୍ତ୍ତ ହୋଇଣ ବାଛୁରୀ ।
ମାତାସ୍ତନକୁ ଇଚ୍ଛା କରି ॥୭୭

ପ୍ରବାସୀ-ପତି-ପ୍ରିୟା ଯେହ୍ନେ ।
ଲୋଡ଼ଇ ମୋ' ମନ ତେସନେ ॥୭୮

ଭୋ ପ୍ରଭୁ କମଳଲୋଚନ ।
ତୋ' ପାଦେ ରହୁ ମୋର ମନ ॥୭୯

ଆପଣା କର୍ମବନ୍ଧେ ଜଡ଼ି ।
ସଂସାରଚକ୍ରେ ଅଛି ପଡ଼ି ॥୮୦

ଏମନ୍ତ ପାପୀ ମୁହିଁ ଯହୁଁ ।
ଉତ୍ତମଲୋକ ସଙ୍ଗ ହେଉ ॥୮୧

ଯେ ଗୃହବନ୍ଧ-ପାଶ ମୋର ।
ଭୋ ନାଥ ଛେଦ ଦାମୋଦର ॥୮୨

ଦାରା-ତନୟ-ଗୃହେ ମୋର ।
ଭୋ ନାଥ ମନ ମୋ' ନ କର ॥୮୩

ଅସୁରବାଣୀ ସୁଧାମୟ ।
ଶୁଣି ସକଳ ପାପକ୍ଷୟ ॥୮୪

ଭୁବନମଙ୍ଗଳ ଏ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୮୫

ବୋଲଇ ଦାସ ଜଗନ୍ନାଥ ।
ଇନ୍ଦ୍ର-ବୃତ୍ରାସୁର ଚରିତ ॥୮୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ
ବୃତ୍ରସ୍ୟ ଇନ୍ଦ୍ରୋପଦେଶୋ ନାମ
ଏକାଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱାଦଶ ଅଧ୍ୟାୟ

ଶୁକ କହନ୍ତି ହରଷିତ ।
ଇନ୍ଦ୍ର - ବୃତ୍ରାସୁର ଚରିତ ॥୧

ଶୁକ ଉବାଚ

ଏମନ୍ତେ ସଂଗ୍ରାମେ ଅସୁର ।
ଛାଡିବ ବୋଲି କଳେବର ॥୨
ଜୟରୁ ଭଲ ମୋ' ମରଣ ।
ମନରେ କଲା ହେ ରାଜନ ॥୩
ଶୂଳ ଧରିଣ ବୃତ୍ରାସୁର ।
ଧାଇଁଲା ଇନ୍ଦ୍ରର ଉପର ॥୪
ଯେମନ୍ତେ କଇଟଭ ବୀର ।
ଧାଇଁଲା ବିଷ୍ଣୁଙ୍କ ଉପର ॥୫
ଯୁଗାନ୍ତଅଗ୍ନିପ୍ରାୟ ତେଜେ ।
ସେ ଶୂଳ ଅତ୍ୟନ୍ତ ବିରାଜେ ॥୬
ବୃତ୍ର ଅସୁରଚୂଡାମଣି ।
ଇନ୍ଦ୍ରଙ୍କୁ ପ୍ରହାରିଲା ଆଣି ॥୭
ଘୋରଶବଦ ରୋଷେ କଲା ।
ପାପିଷ୍ଠ ମଲୁ ତୁ ବୋଇଲା ॥୮
ଆକାଶୁ ଗ୍ରହ-ଉଲ୍‌କାମାନ ।
ଖସି ପଡିଲେ ତତକ୍ଷଣ ॥୯
ଦୁର୍ଜୟ ଦେଖିଣ ଅସୁର ।
ଭୟେ କମ୍ପିଲେ ସୁରନର ॥୧୦
ବଜ୍ର ଧରିଣ ଦେବରାଜ ।
ଛେଦିଲେ ତା'ର ଏକଭୁଜ ॥୧୧
ପରିଘ ଘେନି ଆରକରେ ।
ଧାଇଁଲା ଇନ୍ଦ୍ରର ଉପରେ ॥୧୨
କ୍ରୋଧରେ ପରିଘ ଉଞ୍ଚାଇ ।
ଇନ୍ଦ୍ରକୁ ପ୍ରହାରିଲା ନେଇ ॥୧୩
ଇନ୍ଦ୍ରହସ୍ତୁ ବଜ୍ର ଖସିଲା ।
ଅଧୋଭୂମିରେ ସେ ପଡିଲା ॥୧୪
ଅଦ୍ଭୁତ ଦେଖି ବୃତ୍ରକର୍ମ ।
ସୁର ଚାରଣ ସିଦ୍ଧଗଣ ॥୧୫
ସକଳେ କଲେ ଧନ୍ୟ ଧନ୍ୟ ।
ଇନ୍ଦ୍ର ସଙ୍କଟେ ଛନ୍ନ ମନ ॥୧୬
ଯେତେକ ସୈନ୍ୟ ଇନ୍ଦ୍ରଙ୍କର ।
ସକଳେ କଲେ ହାହାକାର ॥୧୭
ଲଜ୍ଜାରେ ବୃତ୍ରର ଅଗ୍ରତେ ।
ବଜ୍ର ନ ନେଲେ ଇନ୍ଦ୍ର ହସ୍ତେ ॥୧୮
ଇନ୍ଦ୍ରଙ୍କୁ ଚାହିଁ ବୃତ୍ରାସୁର ।
ବଚନ କହଇ ମଧୁର ॥୧୯

ବୃତ୍ର ଉବାଚ

ମନରେ ବିଷାଦ ନ କର ।
ବଜ୍ର ଧରିଣ ବେଗେ ମାର ॥୨୦
ଯୁଦ୍ଧ ଇଚ୍ଛଇ ଯେଉଁ ନର ।
ଦୁସ୍ତର ଜୟଟି ତାହାର ॥୨୧
ଯେ ଜନ ରଣେ ଭୀତ ହୋଇ ।
ଜୟର ଲେଶ ତା'ର ନାହିଁ ॥୨୨
ଉତ୍ପତ୍ତି-ପାଳନ-ସଂହାର ।
ଯେ ପ୍ରଭୁ ଏହାଙ୍କ ଈଶ୍ୱର ॥୨୩
ସର୍ବଜ୍ଞ ଆଦି ସନାତନ ।
ଅଖିଳ-ପୁରୁଷ ପୁରାଣ ॥୨୪
ତା' ବିନୁ ଜୟ ବା ଅଜୟ ।
କାହାର ବୋଲେ ହୋଇ କହ ॥୨୫
ଯେ ପ୍ରଭୁ ଅଖିଳର ଈଶ ।
ଅଖିଳଲୋକ ଯା'ର ବଶ ॥୨୬
କାଳସ୍ୱରୂପ ଯେ ଈଶ୍ୱର ।
ମୃତ୍ୟୁ ଅମୃତ୍ୟୁ ରୂପଧର ॥୨୭
ସକଳ ହେତୁ ସେ ଅଟଇ ।
ତାହାଙ୍କୁ ଅଜ୍ଞ ନ ଜାଣଇ ॥୨୮
କାଷ୍ଠର ପିତୁଳୀ ଯେସନ ।
ଜଗତ ତାହାର ଭିଆଣ ॥୨୯
ଯେମନ୍ତେ ଯନ୍ତ୍ରମୟ-ମୃଗ ।
ପ୍ରାଣୀ ତା' ବଶେ ମହାଭାଗ ॥୩୦
ପ୍ରକୃତି-ପୁରୁଷ ଯେ ଦୁଇ ।
ତା' ବିନୁ ଜଡପ୍ରାୟେ ହୋଇ ॥୩୧
ସୃଷ୍ଟିକରତା ଅବା କେହି ।
ତା' ବିନୁ ଯେତେକ ଅଛଇ ॥୩୨
ସକଳ ଆତ୍ମାରୂପ ସେହି ।
ଅଜ୍ଞାନୀ ଜାଣିବ ବା କାହିଁ ॥୩୩
ସେହି ପ୍ରାଣୀଙ୍କି ସୃଷ୍ଟିକରି ।
ପ୍ରତିପାଳନକୁ ଆଚରି ॥୩୪
ଗ୍ରାସଇ କାଳରୂପ ହୋଇ ।
ଧର୍ମ-ଅଧର୍ମ ରୂପ ସେହି ॥୩୫
ଆୟୁ ସମ୍ପଦ କୀର୍ତ୍ତି ଯେତେ ।
ପ୍ରାଣୀର ହୁଅଇ ଯୁଗତେ ॥୩୬
ସେ ଯା'କୁ ପ୍ରସନ୍ନ ହୁଅଇ ।
ଅଷ୍ଟ ଐଶ୍ୱର୍ଯ୍ୟ ତା'ର ହୋଇ ॥୩୭
ସୁଖ ଦୁଃଖ ମୃତ୍ୟୁ ଜୀବିତ ।
ଏ ସର୍ବ ଈଶ୍ୱର-ଆୟତ୍ତ ॥୩୮
ଏ ଘେନି ଇନ୍ଦ୍ର ସମ ହୁଅ ।
ହର୍ଷ-ବିଷାଦକୁ ନ ପାଅ ॥୩୯
ସେ ସତ୍ତ୍ୱ ରଜ ତମ ଜାଣ ।
ପ୍ରକୃତିଗୁଣ ଏ ପ୍ରମାଣ ॥୪୦
ଆତ୍ମାଟି ସାକ୍ଷୀ ବୋଲି ଜାଣ ।
ସେ ଯା'କୁ ହୁଅଇ ପ୍ରସନ୍ନ ॥୪୧
ସଂସାରେ ବନ୍ଧ ସେ ନୁହଇ ।
ସକଳ ପାପୁଁ ସେ ତରଇ ॥୪୨
ରଣରେ ଛିନ୍ନଭୁଜ ହୋଇ ।
ଭୋ ଇନ୍ଦ୍ର ଦେଖ ମୁଁ ଅଛଇ ॥୪୩
ଜୟ ବା ଅଜୟ କାହାର ।
ଜାଣିବ କେ ବିନା ଈଶ୍ୱର ॥୪୪
ଶରସମୂହ ପଣାକାଠି ।
ଏ ଚତୁରଙ୍ଗବଳ ଗୋଟି ॥୪୫

Dr. Sudhanshu Sekhar Mishra

ଜୀବନ ହୁଡ଼ ଜୁଆ ରଣେ ।
କେ ଜାଣି କେ ହାରେ କେ ଜିଣେ ॥୪୫

ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି ।
ବୃତ୍ରର ବାକ୍ୟ ଇନ୍ଦ୍ର ଶୁଣି ॥୪୭
ବୃତ୍ରକୁ ଧନ୍ୟ ଧନ୍ୟ କରି ।
ହସି ବୋଇଲେ ବଜ୍ରଧାରୀ ॥୪୮

ଇନ୍ଦ୍ର ଉବାଚ

ଆହେ ଦାନବ ସିଦ୍ଧ ତୁହି ।
ତେଣୁ ତୋ ସିଦ୍ଧମତି ହୋଇ ॥୪୯
ସକଳ-ଆତ୍ମାର ଈଶ୍ୱର ।
ଭଜିଲୁ ଚରଣ ତା'ଙ୍କର ॥୫୦
ଜଗମୋହିନୀ-ବିଷ୍ଣୁ ମାୟା ।
ଦାନବ ଛେଦିଲୁ ତୁ ତାହା ॥୫୧
ଅଇରିଭାବ କରି ଦୂର ।
କଲୁ ତୁ ସ୍ୱର୍ଲୋକ ଆଚାର ॥୫୨
ଅହୋ ଆଶ୍ଚର୍ଯ୍ୟ ବଡ଼ ମୋର ।
ସ୍ୱଭାବେ ରଜଗୁଣ ତୋ'ର ॥୫୩
ଅଖିଳବ୍ରହ୍ମାଣ୍ଡର ପତି ।
ତା ଠହିଁ ତୋ'ର ଦୃଢ଼ମତି ॥୫୪
ପରମବହ୍ମ ହରି ଯେହି ।
ତା ଠହିଁ ଯା'ର ଭକ୍ତି ହୋଇ ॥୫୫
ଅମୃତସିନ୍ଧୁରେ ସେ ଜନ ।
କ୍ରୀଡା କରିବ ଅନୁକ୍ଷଣ ॥୫୬
କି କାର୍ଯ୍ୟ କୂପଜଳେ ତା'ର ।
ସେ ସ୍ୱର୍ଗଭୋଗଟି ଅସାର ॥୫୭

ଶୁକ ଉବାଚ

ଅନ୍ୟୋନ୍ୟେ ଧର୍ମକୁ କହିଲେ ।
ପୁଣି ହିଁ ଯୁଦ୍ଧ ଆରମ୍ଭିଲେ ॥୫୮
ସମ୍ମୁଖେ ବୀର ଦୁଇଜଣ ।
କରି ଲାଗିଲେ ଘୋରରଣ ॥୫୯

ବୃତ୍ର ପରିଘ କରେ ଲଇ ।
ଇନ୍ଦ୍ରକୁ ପ୍ରହାରିଲା ଧାଇଁ ॥୬୦
ପରିଘ ଘେନି ବାମକରେ ।
ଶବଦ କଲା ମହାଘୋରେ ॥୬୧
କର ପରିଘ ଏକାବେଳେ ।
ଇନ୍ଦ୍ର ଛେଦିଲେ ଅବହେଳେ ॥୬୨
ବୃତ୍ରର ଗଲା ଦୁଇକର ।
ରକତେ ହୋଏ ଜରଜର ॥୬୩
ପକ୍ଷ ଛିଡ଼ନ୍ତେ ବଜ୍ରାଘାତେ ।
ଯେସନେ ଦିଶନ୍ତି ପର୍ବତେ ॥୬୪
ଆୟୁଧ ଭୁଜ ଯହୁଁ ଗଲା ।
ସେ ବୃତ୍ର ମହାକ୍ରୋଧ କଲା ॥୬୫
ଅଧର ଚାପି କ୍ରୋଧଭର ।
ଶରୀର ବିସ୍ତାରେ ଅସୁର ॥୬୬
ଅଧର ହନୁ ତା ଭୂମିରେ ।
ଉପର ହନୁ ତା ସ୍ୱର୍ଗରେ ॥୬୭
ଆକାଶ ଗଭୀର ମୁଖରେ ।
ଲିହଇ କଠୋର ଜିହ୍ୱାରେ ॥୬୮
କାଳର ପ୍ରାୟେ ଦନ୍ତମାନ ।
ଗ୍ରାସିବ ଯେହ୍ନେ ତ୍ରିଭୁବନ ॥୬୯
ଅତ୍ୟନ୍ତ ଶରୀର ବିସ୍ତାରି ।
ଧାମଇଁ ଯେହ୍ନେ ମହାଗିରି ॥୭୦
ପାଦେ ଅବନୀ କମ୍ପାଇଲା ।
ଇନ୍ଦ୍ରର ନିକଟେ ମିଳିଲା ॥୭୧
ଇନ୍ଦ୍ରକୁ ଗଜେନ୍ଦ୍ର ସହିତ ।
ଗିଳିଲା ବୃତ୍ର ମହାଦୈତ୍ୟ ॥୭୨
ସ୍ୱଭାବେ ଗିଳିଲା ଅସୁର ।
ଗଜକୁ ଯେହ୍ନେ ସର୍ପବର ॥୭୩
ଦେଖି ଇନ୍ଦ୍ରକୁ ଗିଳିବାର ।
ବ୍ରହ୍ମାଦି ଯେତେ ସୁରନର ॥୭୪
ସକଳେ କଲେ ହାହାକାର ।
ଇନ୍ଦ୍ରକୁ ଗିଳିଲା ଅସୁର ॥୭୫
ଅସୁର-ଉଦରରେ ଥାଇ ।
ନାଶ ନୋହିଲା ସୁରସାଇଁ ॥୭୬

ମହାପୁରୁଷ ଧ୍ୟାନ କରି ।
ଯୋଗମାର୍ଗକୁ ସେ ଆବୋରି ॥୭୭
ପେଟଚିରିଲେ ବଜ୍ରେ ତା'ର ।
ଗର୍ଭରୁ ହୋଇଲେ ବାହାର ॥୭୮
ଆପଣାବଳେ ଦେବବର ।
ବଜ୍ରେ ଛେଦିଲେ ତା'ର ଶିର ॥୭୯
ବଜ୍ର ହିଁ ଅତିବେଗେ ଗଲା ।
କନ୍ଧରୁ ମସ୍ତକ କାଟିଲା ॥୮୦
ସମ୍ପୂର୍ଣ୍ଣ ସମ୍ବତ୍ସର କାଳେ ।
ଶିର ତା' ପଡିଲାକ ତଳେ ॥୮୧
ଆକାଶେ ଦୁନ୍ଦୁଭି ତକ୍ଷଣେ ।
ଶବଦ କଲେ ଦେବଗଣେ ॥୮୨
ସିଦ୍ଧ-ଗନ୍ଧର୍ବ-ଋଷିଗଣେ ।
ଆନନ୍ଦେ ହରଷିତ ମନେ ॥୮୩
ବୃତ୍ରଶତ୍ରୁକୁ ସ୍ତୁତିକଲେ ।
ହରଷେ ପୁଷ୍ପ ବରଷିଲେ ॥୮୪
ବୃତ୍ରର ତହୁଁ ଜ୍ୟୋତିରୂପ ।
ବାହାର ହୋଇଲା ହେ ନୃପ ॥୮୫
ସକଳେ ଦେଖୁଥିଲେ ରହି ।
ସାଲୋକ୍ୟ ପାଇଲା ସେ ତହିଁ ॥୮୬
ବୋଲଇ ଦାସ ଜଗନ୍ନାଥ ।
ଇନ୍ଦ୍ର-ବୃତ୍ର-ଯୁଦ୍ଧ-ବୃତ୍ତାନ୍ତ ॥୮୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ
ସଂହିତାୟାଂ ଷଷ୍ଠସ୍କନ୍ଧେ ବୃତ୍ରବଧୋ
ନାମ ଦ୍ୱାଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତ୍ରୟୋଦଶ ଅଧ୍ୟାୟ

ଶୁକ ଉବାଚ

ବୃତ୍ର ହୋଇଲା ଯହୁଁ ହତ ।
ଶୁଣି ହରଷ ତ୍ରିଜଗତ ॥୧
ଯେତେ ଏ ଦିଗପାଳଗଣ ।
ନିଶ୍ଚିନ୍ତ ହୋଇଲେ ତକ୍ଷଣ ॥୨
ଇନ୍ଦ୍ରର ବିନୁ ଯେତେ ଜନ ।
ହରଷ ହୋଇଲେ ରାଜନ ॥୩
ଅମର ଦେବରଷିଗଣ ।
ପିତୃ ଦୈବତ ଯେତେ ପୁଣ ॥୪
ବ୍ରହ୍ମା ଶଙ୍କର ବଜ୍ରଧର ।
ଗଲେ ସେ ଯେ ଯାହା ମନ୍ଦିର ॥୫

ରାଜା ଉବାଚ

ଭୋ ମୁନି ହୁଅ ସାବଧାନ ।
ଏହା ଶୁଣିବାକୁ ମୋ' ମନ ॥୬
କିପାଁ ହରଷ ଦେବଗଣେ ।
ଇନ୍ଦ୍ର ବିଷାଦ କି କାରଣେ ॥୭
କିପାଇଁ ତାଙ୍କ ଦୁଃଖମନ ।
କହିବ ମୋତେ ତପୋଧନ ॥୮
କହିବା ଏଥିର କାରଣ ।
ନମଇଁ ତୁମ୍ଭର ଚରଣ ॥୯

**ଶୁକ ଉବାଚ**

ବୃତ୍ର ବିକ୍ରମ ଦେଖି ଦେବେ ।
ମହତ ଋଷି ଆଦି ସର୍ବେ ॥୧୦
କହିଲେ ଇନ୍ଦ୍ରଙ୍କୁ ସେ ଯାଇ ।
ଭୟେ ଉଦ୍ବେଗ ମନ ହୋଇ ॥୧୧
ଭୋଦେବଦେବଙ୍କ ଈଶ୍ୱର ।
ବୃତ୍ର ଅସୁରକୁ ସଂହର ॥୧୨
ବୃତ୍ର ଯେ ବ୍ରାହ୍ମଣକୁମର ।
ଇନ୍ଦ୍ର ନ କଲେ ସିଉକାର ॥୧୩

ଇନ୍ଦ୍ର ଉବାଚ

ଯେବେ ମାରିଲି ବିଶ୍ୱରୂପ ।
ଘେନିଲି ବ୍ରହ୍ମହତ୍ୟା ପାପ ॥୧୪
ଭୂ ଜଳ ସ୍ତିରୀ ଦ୍ରୁମମାନେ ।
ପାପ ଘେନିଲେ ବିଦ୍ୟମାନେ ॥୧୫
ଏବେ ବୃତ୍ରକୁ ବିନାଶିବି ।
କେମନ୍ତେ ପାପୁଁ ନିସ୍ତରିବି ॥୧୬

ଶୁକ ଉବାଚ

ଇନ୍ଦ୍ରବଚନେ ଋଷିଗଣ ।
ଶୁଣି ସେ କହନ୍ତି ବଚନ ॥୧୭

ଋଷିଗଣ ଉବାଚ

ଅଶ୍ୱମେଧ-ଯଜ୍ଞକୁ କରି ।
ଏ ପାପ ନାଶିବୁ ତୋହରି ॥୧୮
ମହାପୁରୁଷ ଆତ୍ମାପର ।
ଅଖିଳ-ଜଗତ-ଈଶ୍ୱର ॥୧୯
ଯେ ଦେବ ପ୍ରଭୁ ନାରାୟଣ ।
ଯଜ୍ଞରେ କରାଇ ପ୍ରସନ୍ନ ॥୨୦
ବୃତ୍ରର ବଧୁ ଦେବବର ।
ଅବହେଳାରେ ହେବୁ ପାର ॥୨୧
ବ୍ରାହ୍ମଣ ଗୁରୁ ପିତାମାତା ।
ଯେ ଜନ ଆଚାର୍ଯ୍ୟର ହନ୍ତା ॥୨୨
ଶ୍ୱାନକୁ ଖାଇ ଅବା ଯେହୁ ।
ଶୁଣ କହିବା ମହାବାହୁ ॥୨୩
ଯେବା ବୃଷଳୀପତି ହୋଇ ।
ସୁରାପାନ ଯେବା କରଇ ॥୨୪
ଗୋବିନ୍ଦନାମ ଯେହୁ ଧରେ ।
ଏ ସର୍ବ ପାପୁଁ ସେହୁ ତରେ ॥୨୫
ମହାଯଜ୍ଞକୁ କରି ତୁହି ।
ଜପିବୁ ପ୍ରଭୁ ଭାବଗ୍ରାହୀ ॥୨୬
ତା'ଙ୍କ ପ୍ରସନ୍ନେ ଦେବବର ।
ଦୁରିତ କେତେକ ମାତର ॥୨୭

ଶୁକ ଉବାଚ

ଶୁଣିଣ ଋଷିଙ୍କ ବଚନ ।
ଶତ୍ରୁ ମାଇଲେ ମଘବାନ ॥୨୮
ତକ୍ଷଣେ ବ୍ରହ୍ମହତ୍ୟା ଗଲା ।
ଇନ୍ଦ୍ରଦେବଙ୍କୁ ଆଶ୍ରେ କଲା ॥୨୯
ତାହାଙ୍କୁ ଦେଖି ଦୁଃଖ ପାଇ ।
ଦେବେନ୍ଦ୍ର ଗଲାକ ପଳାଇ ॥୩୦
ଚାଣ୍ଡାଳୀ ରୂପକୁ ଧଇଲା ।
ଇନ୍ଦ୍ରର ପଛେ ଗୋଡାଇଲା ॥୩୧
ବୃଦ୍ଧାରୂପକୁ ଧରି ସେହି ।
ଯକ୍ଷ୍ମାରୋଗରେ ଗ୍ରସ୍ତହୋଇ ॥୩୨
ଶୋଣିତପ୍ରାୟେ ବସ୍ତ୍ର ତା'ର ।
ବିବର୍ଣ୍ଣ କେଶ ମସ୍ତକର ॥୩୩
ରହ ରହ ବୋଲି ଡାକଇ ।
ଆମିଷଗନ୍ଧ ତା'ର ଦେହୀ ॥୩୪
ଆକାଶେ ସକଳଦିଗରେ ।
ଇନ୍ଦ୍ର ପଳାନ୍ତି ଖରତରେ ॥୩୫
ଉତ୍ତରଦିଗକୁ ସେ ଗଲେ ।
ମାନସରୋବରରେ ଲୁଚିଲେ ॥୩୬
ପୁଷ୍କରନାଳେ ଦେବବର ।
ଚଞ୍ଚଳମନ କରି ସ୍ଥିର ॥୩୭
ସହସ୍ରସମ୍ବତ୍ସର ତହିଁ ।
ବ୍ରହ୍ମଭାବନେ ମନ ଦେଇ ॥୩୮
ବ୍ରହ୍ମବଧରୁ ମୋକ୍ଷ ପାଇଁ ।
ରହିଲେ ନିରାହାର ହୋଇ ॥୩୯
ତାବତ ନହୁଷରାଜନ ।
ସ୍ୱର୍ଗରେ କଲେ ଇନ୍ଦ୍ରପଣ ॥୪୦
ବିଦ୍ୟା ତପସ୍ୟା ଯୋଗବଳେ ।
ସ୍ୱର୍ଗସମ୍ପଦ ଭୋଗକରେ ॥୪୧
ଐଶ୍ୱର୍ଯ୍ୟ ସମ୍ପଦଭୋଗରେ ।
ନହୁଷ ମଦାନ୍ଧବୁଦ୍ଧିରେ ॥୪୨
ଇନ୍ଦ୍ରପତ୍ନୀଙ୍କି ଇଚ୍ଛା କଲା ।
ସ୍ୱର୍ଗଲୋକରୁ ଚ୍ୟୁତ ହେଲା ॥୪୩
ନହୁଷ ସ୍ୱର୍ଗେ ଇନ୍ଦ୍ରହୋଇ ।
ବାରତା ଇନ୍ଦ୍ରାଣୀକୁ ଦେଇ ॥୪୪

Dr. Sudhanshu Sekhar Mishra

ଇନ୍ଦ୍ର ମୁଁ ସ୍ୱର୍ଗଭୁବନରେ ।
ତୁ ମୋତେ ଭଜ ଗୋ ବିଧିରେ ॥୪୫
ଇନ୍ଦ୍ରାଣୀ ଗୁରୁଙ୍କୁ କହିଲେ ।
ପ୍ରତିଉତ୍ତର ଗୁରୁ ଦେଲେ ॥୪୬
ଗୁରୁ ଏମନ୍ତ ବିଚାରିଲେ ।
ଅତି ଅସମ୍ଭବ ବୋଇଲେ ॥୪୭
ଅନେକ ତପସ୍ୟାର ଫଳେ ।
ମନୁଷ୍ୟ ହୋଇ ଦେବ ପାଳେ ॥୪୮
ବ୍ରାହ୍ମଣ କୋପ-ଶାପୁଁ କରି ।
ହତ ହୋଇବ ଏହା ଶିରୀ ॥୪୯
ନହୁଷେ ଏମନ୍ତ କହିବ ।
ଋଷିଙ୍କ କନ୍ଧେ ଦୋଳା ଥିବ ॥୫୦
ତୁମ୍ଭେ ଦୋଳାରେ ବସିଥିବ ।
ଆମ୍ଭର ପୁରକୁ ଆସିବ ॥୫୧
ଦେବେ ଯେ ତୁମ୍ଭଙ୍କୁ ଭଜିବୁ ।
ସ୍ୱର୍ଗେ ଇନ୍ଦ୍ରବୋଲି ଜାଣିବୁ ॥୫୨
ବ୍ରାହ୍ମଣେ କ୍ରୋଧ ଉପୁଜିବ ।
ତେବେ ସେ ସ୍ୱର୍ଗୁ ଚ୍ୟୁତ ହେବ॥୫୩
ଏମନ୍ତ ଗୁରୁଆଜ୍ଞା ଶୁଣି ।
ନହୁଷେ କହିଲେ ଇନ୍ଦ୍ରାଣୀ ॥୫୪
ଶୁଣି ହରଷ ନୃପମଣି ।
ଉତ୍ତମଋଷିଙ୍କି ସେ ଆଣି ॥୫୫
ଦୋଳା ବୁହାଇ ତା'ଙ୍କ କନ୍ଧେ ।
ସତ୍ୱରେ ଗମିଲେ ଆନନ୍ଦେ ॥୫୬
ଚଳଇ ଦୋଳା ମନ୍ଦଗତି ।
ତା ଦେଖି କୁପିତ ନୃପତି ॥୫୭
ସର୍ପ ସର୍ପ ବୋଲି ବୋଇଲା ।
ପାଦେ ଅଗସ୍ତିଙ୍କି ମାଇଲା ॥୫୮

ଅଗସ୍ତି କ୍ରୋଧଭର ହୋଇ ।
ନହୁଷକୁ ସେ ଶାପ ଦେଇ ॥୫୯
ତୁ ସର୍ପ ହୁଅ ବେଗ ହୋଇ ।
ଯେଣୁ ସଙ୍କଟ ଦେଲୁ ତୁହି ॥୬୦
ଏ ହେତୁ ନହୁଷ ସ୍ୱର୍ଗରୁ ।
ଚ୍ୟୁତ ହୋଇଲା ସେ ଶାପରୁ ॥୬୧
ମହାସର୍ପ ଯେ ସେ ହୋଇଲା ।
ମର୍ତ୍ତ୍ୟଲୋକରେ ସେ ପଡ଼ିଲା ॥୬୨
ଏବେ ହୋ ଶୁଣ ପରୀକ୍ଷିତ ।
ଇନ୍ଦ୍ରରାଜାର ଯେ ଚରିତ ॥୬୩
ପରମେଶ୍ୱର ଧ୍ୟାନ କରି ।
ବ୍ରହ୍ମହତ୍ୟା ପାପରୁ ତରି ॥୬୪
ସ୍ୱର୍ଗରେ ଇନ୍ଦ୍ର ପୁନର୍ବାର ।
ଦେବଙ୍କୁ ଘେନି ସେ ବିହାର ॥୬୫
ଇନ୍ଦ୍ରଙ୍କୁ ଦେବଋଷିମାନେ ।
ଅଶ୍ୱମେଧଯଜ୍ଞ ବିଧାନେ ॥୬୬
ମହାପୁରୁଷ - ଆରାଧନ ।
ଦୀକ୍ଷା କରାଇଲେ ରାଜନ ॥୬୭
ଏଅନନ୍ତରେ ଦେବମୟ ।
ସର୍ବାତ୍ମା-ପୁରୁଷ-ଅବ୍ୟୟ ॥୬୮
ଇନ୍ଦ୍ର ବ୍ରହ୍ମଋଷି ସହିତେ ।
ଆରାଧି ଅଶ୍ୱମେଧ ମତେ ॥୬୯
ବ୍ରହ୍ମବଧ ପାତକ ଭୟ ।
ଯଜ୍ଞହେତୁରୁ ହେଲା କ୍ଷୟ ॥୭୦
ରବିକିରଣେ ତମପ୍ରାୟେ ।
ସକଳପାପ ହେଲା କ୍ଷୟେ ॥୭୧
ଅଶ୍ୱମେଧରେ ବରି ଇନ୍ଦ୍ର ।
ମରୀଚିଆଦି ମୁନିବୃନ୍ଦ ॥୭୨

ଆରାଧି ପୁରୁଷପୁରାଣ ।
ସ୍ୱର୍ଗେ ହୋଇଲେ ସେ ରାଜନ ॥୭୩
ଯେ ଯଜ୍ଞପ୍ରସାଦରୁ କରି ।
ନିଷ୍ପାପ ହୋଏ ବଜ୍ରଧାରୀ ॥୭୪
ଅଶେଷପ୍ରାଣୀମାନଙ୍କର ।
ପାପକୁ କରଇ ଯେ ଦୂର ॥୭୫
ଏ ମହାଜ୍ଞାନ ସୁଖମୟୀ ।
ଯେ ଜନ ଶ୍ରଦ୍ଧାରେ ଶୁଣଇ ॥୭୬
ଭକତଜନର ବର୍ଣ୍ଣନ ।
ଇନ୍ଦ୍ର-ଜୟ-ମୋକ୍ଷ କାରଣ ॥୭୭
ଶ୍ରଦ୍ଧାରେ କରି ଯେ ପଢ଼ଇ ।
ଯେ ଅବା ଅଜ୍ଞାନେ ଶୁଣଇ ॥୭୮
ଗାୟନ କରି ପ୍ରତିଦିନ ।
ସର୍ବସିଦ୍ଧି ଲଭେ ସେ ଜନ ॥୭୯
ଶତ୍ରୁଙ୍କୁ ଜୟ ଧନ ଯଶ ।
ପାପମୋଚନ ଦୀର୍ଘାୟୁଷ ॥୮୦
ସର୍ବକଲ୍ୟାଣ ତା'ର ହୋଇ ।
ଧନ ଧାନ୍ୟ ଯଶ ଲଭଇ ॥୮୧
ହରିକୀର୍ତ୍ତନେ ସର୍ବ ହୋଇ ।
କଳିରେ ଆନଗତି ନାହିଁ ॥୮୨
ବୋଲଇ ଜଗନ୍ନାଥ ଦାସ ।
ଇନ୍ଦ୍ର ଯେ ପାପ କଲା ନାଶ ॥୮୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ଷଷ୍ଠସ୍କନ୍ଧେ ଇନ୍ଦ୍ରବିଜୟୋ ନାମ ତ୍ରୟୋଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଚତୁର୍ଦ୍ଦଶ ଅଧ୍ୟାୟ

ଶୁକ ଚରଣ ଧରି ରାଜା ।
ସାନନ୍ଦମନେ କଲେ ପୂଜା ॥୧

ପରୀକ୍ଷିତ ଉବାଚ

ଭୋ ମୁନି ଶୁଣ ସାବଧାନେ ।
ଏ ତ ସଂଶୟ ମୋର ମନେ ॥୨
ଭୋ ମୁନି ଅସମ୍ଭବ କଥା ।
ବୃତ୍ର ଅସୁରର ବ୍ୟବସ୍ଥା ॥୩
ରଜ ତାସମ ଭାବ ତା'ର ।
ପାପୀ ଅଟଇ ବୃତ୍ରାସୁର ॥୪
ଅଖିଳ-ହେତୁ ଭଗବାନେ ।
ତାହାର ମତି ବା କେସନେ ॥୫
ସତ୍ତ୍ୱପ୍ରଧାନ ଦେବଗଣ ।
ନିର୍ମଳଆତ୍ମା ମୁନିଜନ ॥୬
ମୁକୁନ୍ଦ-ପାଦପଙ୍କଜରେ ।
ଏହାଙ୍କ ମନ ନୋହେ ସ୍ଥିରେ ॥୭
ରଜଗୁଣରେ ଯୁକ୍ତ ହୋଇ ।
ସଂସାରେ ଯେତେକ ଅଛଇ ॥୮
ଏହାଙ୍କ ମଧ୍ୟେ କେହି ଜନ ।
ଶ୍ରେୟ କରଇ ଆଚରଣ ॥୯
ଏହାଙ୍କ ମଧ୍ୟେ କେହି ନରେ ।
ମୋକ୍ଷ ବାଞ୍ଛନ୍ତି ଏ ସଂସାରେ ॥୧୦
ତାହାଙ୍କ ମଧ୍ୟେ କେହି ଜନ ।
କଷ୍ଟେ ଲଭନ୍ତି ଭଗବାନ ॥୧୧
ଦୁର୍ଲ୍ଲଭ ମୁନିମାନଙ୍କର ।
ବିଷ୍ଣୁଭକତ ଯେଉଁ ନର ॥୧୨
କୋଟିକେ ଗୋଟିଏ ଯେ ଥାଇ।
ଶୁଣିମା ସାବଧାନ ହୋଇ ॥୧୩
ସ୍ୱଭାବେ ବୃତ୍ର ଅତିପାପ ।
ଲୋକଙ୍କୁ ଦେଇଅଛି ତାପ ॥୧୪
କେମନ୍ତେ ମହାଘୋରରଣେ ।
ତା' ମତି ହେଲା ନାରାୟଣେ ॥୧୫

ଏଣେ ସଂଶୟ ମନ ମୋର ।
ଫେଡ଼ି କହିବା ମୁନିବର ॥୧୬
ଯେ ବୃତ୍ର ଘୋରସଂଗ୍ରାମରେ ।
ବଳେ ତୋଷିଲା ବଜ୍ରଧରେ ॥୧୭

ସୂତ ଉବାଚ

ସନ୍ତୋଷେ ରାଜା ପ୍ରଶ୍ନ ଶୁଣି ।
ଆନନ୍ଦେ ଯେ ବାଦରାୟଣି ॥୧୮
ହରଷ ହୋଇ ମୁନିବର ।
ବଚନ କହନ୍ତି ମଧୁର ॥୧୯

ଶୁକ ଉବାଚ

ଶୁଣ ରାଜନ ଏକମନେ ।
ଯେ ଇତିହାସ ପୁରାତନେ ॥୨୦
ବେଦବ୍ୟାସଙ୍କ ବାକ୍ୟ ମୁହିଁ ।
ନାରଦ ତହୁଁ ଶୁଣିଛଇଁ ॥୨୧
ପୂର୍ବେ ଶୂରସେନ - ଦେଶର ।
ଥିଲା ଯେ ଏକ ନୃପବର ॥୨୨
ଚିତ୍ରକେତୁ ନାମ ତାହାର ।
କାମଧେନୁ ପୃଥ୍ୱୀ ଯାହାର ॥୨୩
ଦଶନିୟୁତ ପତ୍ନୀ ତା'ର ।
ରୂପେ କି ଦେବା ପଟାନ୍ତର ॥୨୪
ଯେତେକ ଥିଲେ ତା'ର ନାରୀ।
ପୁତ୍ର ଯେ ନୋହିଲା କାହାରି ॥୨୫
ରୂପେ ସୁନ୍ଦର ମନୋହର ।
ବିଦ୍ୟା ସମ୍ପଦ ମତି ଧୀର ॥୨୬
ଏ ସର୍ବଗୁଣ ଅଛି ତା'ର ।
ସୁତ ନ ଲଭି ଚିନ୍ତାଭର ॥୨୭
ଅମାତ୍ୟ ସମ୍ପଦ ସହିତେ ।
ପଟ୍ଟମହିଷୀ ତା'ର ଯେତେ ॥୨୮
କାମଦୁଘାର ପ୍ରାୟେ ମହୀ ।
ସୁଖ ନୋହିଲେ ତା'ର କେହି ॥୨୯

ଶୁଣ ରାଜନ ଏକଦିନେ ।
ସେ ଚିତ୍ରକେତୁର ଭୁବନେ ॥୩୦
ଅଙ୍ଗିରାଋଷି ବ୍ରହ୍ମସୁତ ।
ମିଳିଲେ ରାଜାର ଅଗ୍ରତ ॥୩୧
ସ୍ୱଇଚ୍ଛାଲୋକରେ ବିହାର ।
ମିଳିଲେ ଚିତ୍ରକେତୁ ପୁର ॥୩୨
ତାହାଙ୍କୁ ଦେଖି ନୃପବର ।
ସତ୍ୱରେ କଲେ ନମସ୍କାର ॥୩୩
ଉତ୍ତମ-ଆସନେ ବସାଇ ।
ପୂଜିଲେ ପାଦ୍ୟଅର୍ଘ୍ୟ ଦେଇ ॥୩୪
ସୁଖେ ଆସନେ ବସି ଋଷି ।
ଚିତ୍ରକେତୁକୁ ପରଶଂସି ॥୩୫
ଭକତି ଦେଖିଣ ତାହାର ।
ଆଶିଷ ଦେଲେ ମୁନିବର ॥୩୬
ରାଜାକୁ କରି ଆଶ୍ୱାସନ ।
କହନ୍ତି ମଧୁର-ବଚନ ॥୩୭
ହେ ରାଜା ଚିତ୍ରକେତୁ ଶୁଣ ।
ତୁମ୍ଭର ପରମ କଲ୍ୟାଣ ॥୩୮
ତୁମ୍ଭର ପାତ୍ରମନ୍ତ୍ରୀ ଯେତେ ।
କୁଶଳଟି କି ଏ ସମସ୍ତେ ॥୩୯
ଦାରା ତନୟ ଭୃତ୍ୟ ଯେତେ ।
ସୁହୃଦ ପରଜା ସହିତେ ॥୪୦
ଯାହାର ଆତ୍ମା ଆତ୍ମବଶ ।
ତାହାର ବଶ ଏ ଅଶେଷ ॥୪୧
ଯାହାର ଆତ୍ମା ବଶ ହୋଇ ।
ସର୍ବତ୍ର ପୂଜ୍ୟ ସେ ଅଟଇ ॥୪୨
ଆତ୍ମସମ୍ପଦ ତୋ'ର ଯେତେ ।
ଅମାତ୍ୟ ପୁରବାସୀ ଯେତେ ॥୪୩
ତୁମ୍ଭର ପ୍ରିୟ ନୋହେ କେହି ।
ଏମନ୍ତ ପ୍ରାୟ ମୁଁ ମଣଇଁ ॥୪୪

Dr. Sudhanshu Sekhar Mishra

ଚିନ୍ତା-ମଳିନ ମୁଖ ତୋର ।
ଅଲବ୍ଧକାମ ନୃପବର ॥୪୫

ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି ।
ସେ ରାଜା ମୁନିବାକ୍ୟ ଶୁଣି ॥୪୬
ହୃଦରେ ପୁତ୍ରକାମୀ ହୋଇ ।
ବିରସେ ମୁନିଙ୍କି କହଇ ॥୪୭

ଚିତ୍ରକେତୁ ଉବାଚ

ଭୋ ମୁନି ତୁମ୍ଭ ଅଗୋଚରେ ।
କି ଅବା ଅଛି ଏ ସଂସାରେ ॥୪୮
ପ୍ରାଣୀର ଅନ୍ତର ବାହାରେ ।
ଦେଖ ତପସ୍ୟା-ପ୍ରଭାବରେ ॥୪୯
ତଥାପି ଆଜ୍ଞା ପରମାଣେ ।
କହିବି ଶୁଣ ସାବଧାନେ ॥୫୦
ମନରେ ଯେବା ଚିନ୍ତା ମୋ'ର ।
ପ୍ରଶ୍ନ ଯେ କଲ ମୁନିବର ॥୫୧
ଦେବଗଣଙ୍କୁ ଯେ ଦୁର୍ଲ୍ଲଭ ।
ସାମ୍ରାଜ୍ୟ ସମ୍ପଦ ବିଭବ ॥୫୨
ପୁତ୍ର-ବିହୀନେ ମୋ'ର ଦେହୀ ।
କେବେହେଁ ସୁଖ ନ ଲଭଇ ॥୫୩
କ୍ଷୁଧା ତୃଷାରେ ଖିନ୍ନଜନ ।
ନ ଲୋଡେ ବିନୁ ଅନ୍ନପାନ ॥୫୪
ଭୋ ମହାଭାଗ ମୁନିବର ।
କେମନ୍ତେ ତରିବି ସଂସାର ॥୫୫
ପିତୃଋଣରୁ ମୋତେ ପାର ।
କରିବାହେଉ ମୁନିବର ॥୫୬
ପୁତ୍ର ଯେମନ୍ତେ ମୋ'ର ହୋଇ ।
ସଂସାର-ଦୁଃଖରୁ ତରଇ ॥୫୭

ଶୁକ ଉବାଚ

ରାଜାର ଶୁଣି ଏ ବଚନ ।
କୃପାଳୁ ବ୍ରହ୍ମାଙ୍କ ନନ୍ଦନ ॥୫୮
ଯଜ୍ଞ କରିଣ ମୁନିବର ।
ଆରାଧି ଅଖିଳ ଈଶ୍ୱର ॥୫୯

ରାଜାର ଜ୍ୟେଷ୍ଠ ଯେହୁନାରୀ ।
କୃତଦ୍ୟୁତି ନାମ ତାହାରି ॥୬୦
ଯଜ୍ଞର ଚରୁ ତା'କୁ ଦେଲେ ।
ରାଜାକୁ ଏମନ୍ତ କହିଲେ ॥୬୧
ଭୋ ଚିତ୍ରକେତୁ ନୃପବର ।
ହୋଇବ ଏକ ତୋ କୁମର ॥୬୨
ହରଷ-ଶୋକ ଦେବ ତୋତେ ।
କହି ଚଳିଲେ ଶୂନ୍ୟପଥେ ॥୬୩
ଚିତ୍ରକେତୁର ତହୁଁ ସେହି ।
କୃତଦ୍ୟୁତି ଯେ ମହାଦେଈ ॥୬୪
ଚରୁର ଭୋଜନ ମାତ୍ରକେ ।
ଗର୍ଭ ଧଇଲେ ସେହୁ ସୁଖେ ॥୬୫
ଅଙ୍ଗିରାମୁନିର ପ୍ରସାଦେ ।
ଗର୍ଭ ହୋଇଲା ଅପ୍ରମାଦେ ॥୬୬
ଅଗ୍ନିରୁ କୃତ୍ତିକା ଯେମନ୍ତ ।
ଗର୍ଭ ଧଇଲା ସେହିମତ ॥୬୭
ତାହାର ଗର୍ଭ ପ୍ରତିଦିନେ ।
ଶୁକ୍ଳପକ୍ଷର ଚନ୍ଦ୍ର ଯେହ୍ନେ ॥୬୮
ଚିତ୍ରକେତୁ-ତେଜେ ରାଜନ ।
ଗର୍ଭବଢ଼ିଲା ଦିନୁଦିନ ॥୬୯
ଏମନ୍ତେ ପୂର୍ଣ୍ଣ ସମ୍ବତ୍ସରେ ।
ଜନ୍ମିଲା ତାହର କୁମରେ ॥୭୦
ଶୂରସେନରେ ଯେତେ ଲୋକ ।
ହରଷ ଲଭିଲେ ଅନେକ ॥୭୧
ପରମାନନ୍ଦେ ସେ ରାଜନ ।
ତକ୍ଷଣେ କଲାକ ସ୍ନାହାନ ॥୭୨
ଶୁଚି ହୋଇଣ ନୃପବର ।
ଭୂଷିତ ହୋଇ ଅଳଙ୍କାର ॥୭୩
ବ୍ରାହ୍ମଣ ଆଣି ବେଦଧର୍ମ ।
କଲା ସେ ପୁତ୍ର ଜାତକର୍ମ ॥୭୪
ବ୍ରାହ୍ମଣେ ସୁବର୍ଣ୍ଣ ରଜତ ।
ଦେଲା ସେ ଧେନୁ ଶତଶତ ॥୭୫
ପୃଥିବୀ ଗଜ ହୟମାନ ।
ଦେଲା ସେ ବିବିଧବସନ ॥୭୬

ଯେ ଲୋକେ ଯାହା ବାଞ୍ଛାକଲେ ।
ମନ-ସନ୍ତୋଷେ ତା' ଲଭିଲେ ॥୭୭
ପ୍ରାଣୀ - ସନ୍ତୋଷେ ମଘବାନ ।
ବରଷା କରଇ ଯେସନ ॥୭୮
ପୁତ୍ର ଆୟୁଷ ଯଶ ଧର୍ମ ।
ବିବୃଦ୍ଧି ଅର୍ଥେ ଦେଲା ଦାନ ॥୭୯
କଷ୍ଟରେ ଲଭିଲା ଯେ ସୁତ ।
ତାଠାରେ ସ୍ନେହ ତା' ବହୁତ ॥୮୦
ଦରିଦ୍ର ଯେହ୍ନେ ଧନ ପାଇ ।
ତେସନେ ହରଷ ସେ ହୋଇ ॥୮୧
ମାତା ଯେ ଅତି ସ୍ନେହଭରେ ।
ମୋହ ହୋଇଲା ପୁତ୍ରଠାରେ ॥୮୨
କୃତଦ୍ୟୁତି ସପତ୍ନୀମାନେ ।
ଦୁଃଖିତ ସନ୍ତତି ବିହୀନେ ॥୮୩
ଚିତ୍ର କେତୁର ସ୍ନେହ ହୋଇ ।
ପୁତ୍ରବତୀ ଭାରିଯା ତହିଁ ॥୮୪
ଅନ୍ୟ ଯେ ପତ୍ନୀମାନେ ଥା'ନ୍ତି ।
ସେଭାବେ ନାହିଁ ସ୍ନେହମତି ॥୮୫
ଅପରେ ଦୁଃଖ ତାହାଙ୍କର ।
ରାଜାର ଯେଣୁ ଅନାଦର ॥୮୬
ସେମାନେ ମନେ ଦୁଃଖ କରି ।
ଆତ୍ମାର ନିନ୍ଦାକୁ ଆଚରି ॥୮୭
ପାପିଷ୍ଠୀ ଏହୁ କୃତଦ୍ୟୁତି ।
ଧିକ ଏହାର ଏ ସନ୍ତତି ॥୮୮
ଗୃହ ସମ୍ପଦ ଯେ ସ୍ୱାମୀର ।
ଧିକ ଏ ହେଉ ଦୁରାଚାର ॥୮୯
ଏ ସପତଣୀର ଚରଣେ ।
ଦାସୀ ହୋଇଲୁ ଅକାରଣେ ॥୯୦
ଦାସୀର କି ଅବା ସନ୍ତାପ ।
ଯେ ସେବେ ସ୍ୱାମୀର ସମୀପ ॥୯୧
ମାନ ନ ଲଭୁ ଆମ୍ଭେ କ୍ଷଣେ ।
ଦାସୀର ଦାସୀ ହୋଇ ଯେହ୍ନେ ॥୯୨
ସପତ୍ନୀ-ପୁତ୍ର-ବିଭୂତିରେ ।
ଅନ୍ଧ ହୋଇଲେ କ୍ରୋଧଭରେ ॥୯୩

Dr. Sudhanshu Sekhar Mishra

ସକଳେ ଏକଚିତ୍ତ ହେଲେ ।
ରାଜାର ହିଂସା ଆଚରିଲେ ॥୯୪
ଦାରୁଣଚିତ୍ତ ସ୍ତିରୀଜନ ।
କ୍ରୋଧେ ହୋଇଲେ ହତଜ୍ଞାନ ॥୯୫
ସ୍ୱାମୀକୁ ଅତି କ୍ରୋଧକଲେ ।
ଗରଳ କୁମରକୁ ଦେଲେ ॥୯୬
ଏହା ନ ଜାଣେ କୃତଦ୍ୟୁତି ।
ସପତ୍ନୀମାନଙ୍କର ଗତି ॥୯୭
ପୁତ୍ର ଶୁଆଇଥିଲା ଘରେ ।
ଗଲା ସେ ଗୃହ ଅଭ୍ୟନ୍ତରେ ॥୯୮
ଅନେକବେଳ ତହୁଁ ଗଲା ।
ପୁତ୍ର ଆଣିବ ମନେ କଲା ॥୯୯
ଧାଇକି ବୋଲଇ ଉତ୍ତର ।
ଭୋ ସଖି ପୁତ୍ର ଆଣ ମୋ'ର॥୧୦୦
ତାହାର ଆଜ୍ଞା ପାଇ ଧାଇ ।
ବାଳକ ନିକଟେ ମିଳଇ ॥୧୦୧
ଦେଖିଲା ଶୋଇଅଛି ପୁତ୍ର ।
ଲେଉଟି ପଡିଛି ତା ନେତ୍ର ॥୧୦୨
ପ୍ରାଣ ଇନ୍ଦ୍ରିୟ ନାହିଁ ତା'ର ।
ଦେଖି ସେ ପଡିଲା ଭୂମିର ॥୧୦୩
ହତ ହୋଇଲି ବୋଲି ଧାଇ ।
ପଡିଲା ଚେତନା ହରାଇ ॥୧୦୪
ବେନିକରରେ ହୃଦ ତାଡି ।
ଆରତେ ଛାଡିଲା ଯେ ରଡି ॥୧୦୫
ତା' ଶୁଣି ପାଟ ମହାଦେଈ ।
ଧାଇଁଲା ଅସମ୍ଭାଳ ହୋଇ ॥୧୦୬
ପୁତ୍ରର ନିକଟେ ମିଳିଲା ।
ମୃତପୁତ୍ରକୁ ସେ ଦେଖିଲା ॥୧୦୭
ରମ୍ଭାଦ୍ରୁମ କି ବାତଭରେ ।
ତେସନେ ପଡିଲା ଭୂମିରେ ॥୧୦୮
ତକ୍ଷଣେ ମୋହ ସେ ପାଇଲା।
କେଶ-ବସନ ଖସିଗଲା ॥୧୦୯
ରାଜାର ଅନ୍ତଃପୁରଜନ ।
ସ୍ତିରୀ ପୁରୁଷ ହେ ରାଜନ ॥୧୧୦

ରୋଦନ ଶୁଣିଣ ଅଇଲେ ।
ସମସ୍ତେ ଶୋକରେ ମଜ୍ଜିଲେ ॥୧୧୧
କହିବା ଶୁଣ ନୃପବର ।
ଯେତେକ ସପତ୍ନୀ ତାହାର ॥୧୧୨
ଅନ୍ତରେ ସୁଖ ସେ ଆଚରି ।
ବାହ୍ୟେ କପଟ-ଶୋକ କରି ॥୧୧୩
ପୁତ୍ର-ମରଣ ରାଜା ଶୁଣି ।
ମୃତ୍ୟୁର କାରଣ ନ ଜାଣି ॥୧୧୪
ମୋହରେ ନ ଦିଶଇ ପଥ ।
ପଦପାଦକେ ଜ୍ଞାନହତ ॥୧୧୫
ସ୍ନେହବନ୍ଧନୁ ଶୋକ ବଢ଼ି ।
ମୂର୍ଚ୍ଛିତ ହୋଇ ଛାଡେ ରଡି ॥୧୧୬
ଅମାତ୍ୟ ଆଦି ଯେତେଜନ ।
ଦେଖୁଅଛନ୍ତି ସେ ରାଜନ ॥୧୧୭
ମୃତବାଳକ-ପାଦତଳେ ।
ପଡ଼ିଲା ଯାଇ ମତିଭୋଳେ ॥୧୧୮
ଖସିଣ ପଡିଅଛି କେଶ ।
ବିଚିତ୍ର-ପରିଧାନ-ବାସ ॥୧୧୯
ଦୀର୍ଘନିଃଶ୍ୱାସ ସେ ଛାଡ଼ଇ ।
ନୟନୁ ଅଶ୍ରୁଜଳ ବହି ॥୧୨୦
ନିରୋଧ କଣ୍ଠଦ୍ୱାର ହୋଇ ।
ବଚନ ନ ପାରଇ କହି ॥୧୨୧
ପତିକୁ ଦେଖି ଶୋକଭର ।
ମରଣ ଦେଖି କୁମରର ॥୧୨୨
କୃତଦ୍ୟୁତି ଯେ ମହାଦେଈ ।
ବିଚିତ୍ର-ବିଳାପ କରଇ ॥୧୨୩
ସ୍ତନଯୁଗଳ ଯେ ତାହାର ।
ମଣ୍ଡିତ କୁଙ୍କୁମପଙ୍କର ॥୧୨୪
ଅଞ୍ଜନ ସହିତେ ଲୋତକ ।
ଧଉତ କଲା ତା'ର ବକ୍ଷ ॥୧୨୫
କେଶ ହୋଇଲା ଅସମ୍ଭାଳ ।
ଖସି ପଡ଼ିଲା ପୁଷ୍ପମାଳ ॥୧୨୬
କୁରରୀ ପ୍ରାୟେ ଶୋକଭରେ।
ରୋଦନ କରେ ଉଚ୍ଚସ୍ୱରେ ॥୧୨୭

ହେ ବିଧି ମତି ତୋ' ଦାରୁଣ।
ବାଳକ ପ୍ରାୟ ଆଚରଣ ॥୧୨୮
ସକଳ କରି ନିରିମାଣ ।
ଆପଣେ କରୁ ତୁ ଭଞ୍ଜନ ॥୧୨୯
ସାନ ମରଇ ବଡ ଥାଇ ।
ଏହାର ନିଦାନ ନ ପାଇ ॥୧୩୦
ଯେବେ ସଂସାରେ ପ୍ରାଣୀଙ୍କର ।
ଅକ୍ରମ ଜନ୍ମ ମରଣର ॥୧୩୧
ସ୍ନେହପାଶକୁ ବଢ଼ାଇଣ ।
କିପାଇଁ କରୁ ରଣଭଣ ॥୧୩୨
ଏମନ୍ତେ ସୃଷ୍ଟି ତୋ' ଭିଆଣ ।
ଅଜ୍ଞାନୀ ପରାଣୀ ଯେସନ ॥୧୩୩
ହେ ତାତ ତନୟ ମୋହର ।
ଦେଖୁ କି ନାହୁଁ ତୋ' ପିଅର॥୧୩୪
ଶୋକସାଗରେ ମୋତେ ଥୋଇ।
ଛାଡ଼ିଣ ନ ଯା ବାବୁ ତୁହି ॥୧୩୫
ମୁଁ ଯେ ପାପିଷ୍ଠୀ ଦୁଃଖୀଜନ ।
ତୁ ମୋତେ ନ ଯାଅ ଛାଡ଼ିଣ॥୧୩୬
ତୋ'ର ଆଶ୍ରୟେ ଅବା ମୁହିଁ।
ଦୁସ୍ତର ତମରୁ ତରଇ ॥୧୩୭
ଦାରୁଣଯମ-ବଶ ହୋଇ ।
ଛାଡ଼ି ନ ଯାଅ ମୋତେ ତୁହି॥୧୩୮
ଉଠ ହେ ନୃପତିନନ୍ଦନ ।
ଆନନ୍ଦେ କର ସ୍ତନ୍ୟପାନ ॥୧୩୯
ସମବୟସୀ ଯେ କୁମରେ ।
ଡାକୁଅଛନ୍ତି ବାବୁ ତୋରେ ॥୧୪୦
ବାଳୁତସଙ୍ଗେ ତୁ ବିହର ।
ବହୁତ ନିଦ୍ରା ଦୂରକର ॥୧୪୧
ମୋହର ଶୋକ ତୁ ନିବାର ।
ରୋଦନ୍ତି ପିଅର ତୋହର ॥୧୪୨
ହରଷ ଆନନ୍ଦପଙ୍କଜ ।
ତୋହର ନ ଦେଖି ତନୁଜ ॥୧୪୩
ଦାରୁଣଯମ କି ତୋହରେ ।
ଘେନାଇ ଗଲା ନିଜପୁରେ ॥୧୪୪

Dr. Sudhanshu Sekhar Mishra

ଏଣୁ ତୋ' କୋମଳବଚନ ।
ଶୁଣାଇ ନାହିଁରେ ନନ୍ଦନ ॥୧୪୫

ଶୁକ ଉବାଚ

ମୃତପୁତ୍ରର ଠାରେ ତା'ର ।
ବିଳାପ ଶୁଣି ନୃପବର ॥୧୪୬
ଚିତ୍ରକେତୁ ମଗ୍ନ ଶୋକରେ ।
ରୋଦନକରେ ଉଚ୍ଚସ୍ୱରେ ॥୧୪୭
ବିଳାପ ପତ୍ନୀର ସହିତେ ।
ନୃପର ଦେଖିଣ ସମସ୍ତେ ॥୧୪୮
ଯେତେ ଅମାତ୍ୟଆଦି ତା'ର ।
ରୋଦନ କଲେ ଉଚ୍ଚସ୍ୱର ॥୧୪୯
ସ୍ତିରୀ-ପୁରୁଷ ଯେତେଜନ ।
ସକଳେ ହେଲେ ଅଚେତନ ॥୧୫୦
ଏମନ୍ତେ ଶୁଣ ନୃପବର ।
ସକଳେ ଅତି-ଦୁଃଖତର ॥୧୫୧
ରାଜନ-ଦୁଃଖ ଦେଖି ମୁନି ।
ଅଙ୍ଗିରା ନାରଦଙ୍କୁ ଘେନି ॥୧୫୨
ଶୀଘ୍ରେଣ ବେନିଜନେ ଗଲେ।
ରାଜାର ନବରେ ମିଳିଲେ ॥୧୫୩
ବୋଲଇ ଦାସ ଜଗନ୍ନାଥ ।
ଚିତ୍ରକେତୁ-ଶୋକ-ଚରିତ ॥୧୫୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂସଂହିତାୟାଂ
ଷଷ୍ଠସ୍କନ୍ଧେ ଚିତ୍ରକେତୁବିଳାପୋ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ॥

---

## ପଞ୍ଚଦଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ସାନନ୍ଦେ କୁରୁଶ୍ରେଷ୍ଠ ।
ସେ ମୃତପୁତ୍ରର ନିକଟ ॥୧
ଶୋକରେ ଜ୍ଞାନଭ୍ରଷ୍ଟ ହୋଇ ।
ଚିତ୍ରକେତୁ ପଡି ଅଛଇ ॥୨
ନାରଦ-ଅଙ୍ଗିରସ ଦୁଇ ।
ମିଳିଲେ ତା'ର ପାଶେ ଯାଇ ॥୩
ଉତ୍ତମ-ବାକ୍ୟମାନ କହି ।
ବୋଧୁଅଛନ୍ତି ରାଜା ଚାହିଁ ॥୪
ଭୋ ଚିତ୍ରକେତୁ ନୃପବର ।
ତୁମ୍ଭେ ଯା' ପାଇଁ ଶୋକ କର ॥୫
ତୋହର ଏ କିସ ଅଟଇ ।
ତୁହି ଏହାର କି ବା ହୋଇ ॥୬
ଏହାର ପୂର୍ବେ ସୁତ ତୁହି ।
ପିତା ତୁ କେତେ ଜନ୍ମ ହୋଇ ॥୭
ଏବେ ତୁମ୍ଭର ସୁତ ଏହି ।
ସଂସାର-ମାୟା ଏ ଅଟଇ ॥୮
ଯେସନେ ନଦୀସ୍ରୋତଜଳେ ।
ବାଲୁକା ନ ରହେ ନିଶ୍ଚଳେ ॥୯
ସଂଯୋଗ-ବିଯୋଗ ହୁଅଇ ।
ବାଲୁକା ଭାସି ଯାଉଥାଇ ॥୧୦
ତେସନେ ପ୍ରାଣୀ ଯଥାକାଳେ ।
ଆସଇ ଯାଇ କର୍ମବଳେ ॥୧୧
ବୀଜରୁ ବୀଜ ହୋଇ ନୋହି ।
ପ୍ରାଣୀ ହିଁ ତେମନ୍ତ ଅଟଇ ॥୧୨
ଈଶ୍ୱରମାୟାରେ ଜଗତ ।
ଉତ୍ପତ୍ତି ନାଶ ସର୍ବଭୂତ ॥୧୩
ନର ଅମରଆଦି ଯେତେ ।
ଚର-ଅଚରଙ୍କ ସହିତେ ॥୧୪
ଜନ୍ମ-ମରଣ ଆଗପଛ ।
ହୁଅଇ ଦେଖ ତୁ ପ୍ରତ୍ୟକ୍ଷ ॥୧୫
ଭୂତରେ କରିଣ ଈଶ୍ୱର ।
ଜନ୍ମାଇ ଅଖିଳ-ସଂସାର ॥୧୬
ପ୍ରତିପାଳନ କରି ପୁଣ ।
ସଂହାର କରଇ ତକ୍ଷଣ ॥୧୭
ଆୟତ୍ତ ନୁହଁଇ କାହାର ।
ଯେହ୍ନେ ବାଳକ-ଖେଳଘର ॥୧୮
ଦେହରୁ ଦେହ ହୋଇ ଜାତ ।
ରାଜନ ଶୁଣ ଏକଚିତ୍ତ ॥୧୯
ବୀଜରୁ ବୀଜ ଯେହ୍ନେ ଜାତ ।
ଆତ୍ମାରୁ ନିର୍ମିତ ଜଗତ ॥୨୦
ଆତ୍ମା ଶରୀର ଭିନ୍ନ କରି ।
ପୂର୍ବେ ଯେ ବିଧାତା ବିଚାରି ॥୨୧
ଜାତି-ସଞ୍ଜ୍ଞାରେ କରେ ଭିନ୍ନେ ।
ସୁବର୍ଣ୍ଣେ ନାନାଦ୍ରବ୍ୟ ଯେହ୍ନେ ॥୨୨

ଶୁକ ଉବାଚ

ଉତ୍ତମ-ବାକ୍ୟ ବିପ୍ରଙ୍କର ।
ଶୁଣି ଆଶ୍ୱସ୍ତ ନୃପବର ॥୨୩
ମଳିନମୁଖ ଆପଣାର ।
ପୋଛିଣ କହଇ ମଧୁର ॥୨୪

ଚିତ୍ରକେତୁ ଉବାଚ

କେ ତୁମ୍ଭେ ବିପ୍ର ଦୁଇଜଣ ।
ଅଶେଷଜ୍ଞାନେ ପରିପୂର୍ଣ୍ଣ ॥୨୫
ଜ୍ଞାନୀମାନଙ୍କେ ତୁମ୍ଭେ ବର ।
ଅବଧୂତବେଶ ତୁମ୍ଭର ॥୨୬
ସ୍ୱଭାବେ ଗୁପ୍ତପ୍ରାୟ ହୋଇ ।
ଆସି ମିଳିଲ ତୁମ୍ଭେ ଦୁଇ ॥୨୭
ବିଷ୍ଣୁର ଦୂତପ୍ରାୟ ହୋଇ ।
ଭ୍ରମଣ କରୁଅଛ ମହୀ ॥୨୮
ମୋହର ପ୍ରାୟେ ଦୁଃଖୀ ହୋଇ ।
ସଂସାରେ ଯେ ଅବା ଅଛଇ ॥୨୯
ତାହାଙ୍କ ହିତ କରିବାରେ ।
ଭ୍ରମଣ ତୁମ୍ଭର ସଂସାରେ ॥୩୦
ଗୌତମ ଅସିତ ଦେବଳ ।
କୁମାର ବଶିଷ୍ଠ କପିଳ ॥୩୧
ମାରକଣ୍ଡ ବ୍ୟାସ ଅଙ୍ଗିରା ।
ରୋମଶ ଦତ୍ତ ବେଦଶିରା ॥୩୨

Dr. Sudhanshu Sekhar Mishra

ଦୁର୍ବାସା ଯାଜ୍ଞବଲ୍କ୍ୟ ମୁନି ।
କାତୃକର୍ଣ୍ଣ୍ୟ ବାଦରାୟଣି ॥୩୩
ଋତଧ୍ୱଜ ଯେ ଶ୍ରୁତଦେବ ।
ପଞ୍ଚଶିଖ ହିରଣ୍ୟନାଭ ॥୩୪
କୌଶଲ୍ୟ ନାରଦ ଆସୁରି ।
ଧୌମ୍ୟ ଚ୍ୟବନ ପତଞ୍ଜଳି ॥୩୫
ଋଭୁ ସହିତେ ସିଦ୍ଧେଶ୍ୱରେ ।
ଏମାନେ ଭ୍ରମନ୍ତି ସଂସାରେ ॥୩୬
ପ୍ରାଣୀଙ୍କ ମଙ୍ଗଳ କାରଣେ ।
ଭ୍ରମୁ ଅଛନ୍ତି ଅନୁକ୍ଷଣେ ॥୩୭
ସ୍ୱଭାବେ ଗ୍ରାମ୍ୟପଶୁ ମୁହିଁ ।
ଅନ୍ଧତମରେ ବୁଡିଛଇଁ ॥୩୮
କେ ତୁମ୍ଭେ ଦୁଇସିଦ୍ଧ କହ ।
ଜ୍ଞାନଦୀପକୁ ମୋତେ ଦିଅ ॥୩୯

ଅଙ୍ଗିରା ଉବାଚ

ହେ ଚିତ୍ରକେତୁ ନୃପବର ।
ମୁଁ ଦେଇଥିଲି ଏ କୁମର ॥୪୦
ଅଙ୍ଗିରା ନାମଟି ମୋହର ।
ଏ ଦେଖ ବ୍ରହ୍ମାଙ୍କ କୁମର ॥୪୧
ପରମ-ବିଷ୍ଣୁଭକ୍ତ ଏହି ।
ନାରଦ ବୋଲି ଯା'କୁ କହି ॥୪୨
ଶୋକସାଗରେ ମଗ୍ନ ତୋ'ର ।
ଦେଖିଲୁ ଯହୁଁ ନୃପବର ॥୪୩
ତୋହର ଯୋଗ୍ୟ ଏ ନୁହଁଇ ।
ଏହା ବିଚାରି ଆମ୍ଭେ ଦୁଇ ॥୪୪
ତୋ' ଠାରେ ଅନୁଗ୍ରହ କରି ।
ଅଇଲୁ ଶୁଣ ଦଣ୍ଡଧାରୀ ॥୪୫
ବ୍ରହ୍ମଣ୍ୟ-କୃଷ୍ଣଭକ୍ତ ହେଉ ।
ଶୋକେ ନ ବୁଡ଼ ମହାବାହୁ ॥୪୬
ପୂର୍ବେ ତୋ' ଗୃହେ ଆସିଥିଲି ।
ପରମଜ୍ଞାନ ଦେବି ବୋଲି ॥୪୭
ପୁତ୍ର-ବିଷୟେ ମନ ତୋ'ର ।
ଜାଣିଣ ଦେଲୁ ପୁତ୍ରବର ॥୪୮
ଏବେ ତୁ ପୁତ୍ରଶୋକଭର ।
ଅନୁଭବିଲୁ ନୃପବର ॥୪୯
ଐଶ୍ୱର୍ଯ୍ୟ ଦାରା ଗୃହ ଧନ ।
ଭୃତ୍ୟ ଅମାତ୍ୟ ପ୍ରିୟଜନ ॥୫୦
ବିଷୟ ରାଜ୍ୟ ସୈନ୍ୟ କୋଷ ।
ଆତ୍ମାପୂରଣେ ନୋହେ ତୋଷ ॥୫୧
ଏ ସର୍ବ ଶୋକ-ମୋହକର ।
ଭୟ ଉଦବେଗର ଘର ॥୫୨
କର୍ମକୁ ଧ୍ୟାୟି ଯେଉଁଜନ ।
କରଇ ନାନାକର୍ମମାନ ॥୫୩
ନାନାକର୍ମରେ ମନ ତା'ର ।
ପ୍ରବେଶ ହୋଏ ନିରନ୍ତର ॥୫୪
ଏମନ୍ତେ ଦେହୀମାନଙ୍କର ।
ଦେହଟି ଏ ମାୟାସଂସାର ॥୫୫
ବିବିଧ-କ୍ଳେଶ ଯେ ତାଙ୍କର ।
ସନ୍ତାପ କାରଣ ଅପାର ॥୫୬
ଏହି କାରଣୁ ହେ ରାଜନ ।
ଆତ୍ମାର ହିତେ କର ମନ ॥୫୭
ଏ ବିଶ୍ୱ-ସଂସାର ଅସାର ।
ଦେହର ଗତିକୁ ବିଚାର ॥୫୮
ଶୋକ ନ କରି ନୃପବର ।
ଆତ୍ମାମନକୁ ସ୍ଥିର କର ॥୫୯

ନାରଦ ଉବାଚ

ଏ ଯେ ମୋହର ମନ୍ତ୍ରଦୀକ୍ଷା ।
ଶୁଚି ହୋଇଣ କର ଶିକ୍ଷା ॥୬୦
ଏ ବିଦ୍ୟା ଧରି ସାତଦିନ ।
ଦେଖିବୁ ପ୍ରଭୁ ସଙ୍କର୍ଷଣ ॥୬୧
ପଦପଙ୍କଜଟି ଯାହାର ।
ଆଶ୍ରୟ କରିଣ ଶଙ୍କର ॥୬୨
ସର୍ବବିଷୟକୁ ଛାଡିଲେ ।
ତକ୍ଷଣେ ସେ ପଦ ଲଭିଲେ ॥୬୩
ତୁମ୍ଭେ ଏ ବିଦ୍ୟାର ପ୍ରସାଦେ ।
ତାହା ଲଭିବ ଅପ୍ରମାଦେ ॥୬୪
ଚିତ୍ରକେତୁ ଶୋକ-ଖଣ୍ଡନ ।
ସୁଜନେ ଏଣେ ଦିଅ ମନ ॥୬୫
ତୁମ୍ଭର ତାପ କ୍ଷୟ ଯାଉ ।
ଶରଣ ପଶ ମହାବାହୁ ॥୬୬
ନ ଲାଗେ ମୋହ ଶୋକପାଶ ।
ଅନ୍ତେ ଶ୍ରୀକୃଷ୍ଣ-ରସେ ରସ ॥୬୭
ବୋଲଇ ଦାସ ଜଗନ୍ନାଥ ।
ହରିଚରିତ ଭାଗବତ ॥୬୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଚିତ୍ରକେତୁସାନ୍ତ୍ୱନଂ ନାମ
ପଞ୍ଚଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ ।
ଅଦ୍ଭୁତ ଗୋବିନ୍ଦ ଚରିତ ॥୧
ଚିତ୍ରକେତୁ ଶୋକେ ମଜ୍ଜିଣ ।
ରହିଲା ସ୍ତମ୍ଭୀଭୂତେ ପୁଣ ॥୨
ନାରଦ ନାମ ନ ଜାଣିଲେ ।
ତହିଁକି ଉପାୟ ରଚିଲେ ॥୩
ଏବେ ତୁ ଏକମନେ ଶୁଣ ।
ମଲା ଯେ ନୃପତିନନ୍ଦନ ॥୪
ସେ ଶବପାଶେ ମୁନିଯାଇ ।
ବୋଲନ୍ତି ଜୀବ ଶୁଣ ତୁହି ॥୫
ଦେଖ ତୋ' ଜ୍ଞାତି - ସହୋଦର ।
ପଡିଣ ଅଛନ୍ତି ଭୂମିର ॥୬
ହେ ଜୀବ ଦେଖ ତୋ'ର ମାତା।
ଶୋକେ ମୋହିତ ତୋ'ର ପିତା॥୭
ବନ୍ଧୁବାନ୍ଧବ ଯେ ତୋହର ।
ଶୋକ-ମୋହରେ ଗୁରୁତର ॥୮
ଆପଣା କଳେବରେ ପଶ ।
ଶେଷ ତୋ' ଯେତେକ ଆୟୁଷ ॥୯
ସୁହୃଦଗଣେ ବୃତ ହୋଇ ।
ନାନାଭୋଗକୁ ଭୁଞ୍ଜ ତୁହି ॥୧୦
ନୃପଆସନେ ବିଜେ କର ।
ପିତାର ଶୋକ ମୋହ ହର ॥୧୧

ଜୀବ ଉବାଚ

କେଉଁ ଜନ୍ମରେ ଏ ମୋହର ।
ହୋଇଛନ୍ତି ମାତା ପିଅର ॥୧୨
ଦେବତା ମନୁଷ୍ୟ ପଶୁରେ ।
ମୁହିଁ ଭ୍ରମଇଁ ମୋ' କର୍ମରେ ॥୧୩
ଗୃହସ୍ଥ-ଗୃହଶ୍ୱାନ ଯେହ୍ନେ ।
ସେ ଯେହ୍ନେ ଭ୍ରମେ ଏଣେତେଣେ ॥୧୪

## ଷୋଡ଼ଶ ଅଧ୍ୟାୟ

ଏମନ୍ତ ପ୍ରାୟେ ଭ୍ରମ ମୋ'ର ।
ଭ୍ରମଇଁ ଅଶେଷ-ଯୋନିର ॥୧୫
ବାନ୍ଧବ ଜ୍ଞାତି ମିତ୍ର ଅରି ।
ଉଦାସୀନ ବା ଦ୍ୱେଷକାରୀ ॥୧୬
ଏ ସର୍ବେ ପରସ୍ପରେ ଥା'ନ୍ତି ।
କେବେ ବା ହୁଅନ୍ତି ନୁହଁନ୍ତି ॥୧୭
କ୍ରୟବିକ୍ରୟ ବ୍ୟବହାରେ ।
ଭ୍ରମନ୍ତି ନାନାଲୋକଠାରେ ॥୧୮
ହେମାଦି ପଣ୍ୟଦ୍ରବ୍ୟ ଯେହ୍ନେ ।
ଯୋନିରେ ଜୀବଟି ତେସନେ ॥୧୯
ସତ୍ୟ ଯେ ସମ୍ବନ୍ଧ ଲୋକରେ ।
ଅସତ୍ୟ ହୋଇ ସେ ବେଭାରେ॥୨୦
ସମ୍ବନ୍ଧ ଯାବତ ଯାହାର ।
ତାବତ ମମତା ତାହାର ॥୨୧
ଯାବତ ଦେହେ ଅହଙ୍କାର ।
ତାବତ ତହିଁ ଅଧିକାର ॥୨୨
ଦେହ ଛାଡିଲେ ଜୀବ ନିତ୍ୟ ।
ଆଉ ଦେହରେ କାହିଁ ସତ୍ତ୍ୱ ॥୨୩
ଏ ଜୀବ ନିତ୍ୟ ଯେ ଅବ୍ୟୟ ।
ସୂକ୍ଷ୍ମ-ସ୍ୱରୂପ ସର୍ବାଶ୍ରୟ ॥୨୪
ଆତ୍ମମାୟାଗୁଣରୁ କରି ।
ଆତ୍ମାର ସୃଷ୍ଟିକି ଆଚରି ॥୨୫
ଏହାର ଅତିପ୍ରିୟ କେହି ।
ଅପ୍ରିୟଜନ କେହି ନାହିଁ ॥୨୬
ଏହାର ନିଜ-ପର ନାହିଁ ।
କେବଳ ଗୁଣ-ଦୋଷ ରହି ॥୨୭
ଗୁଣ-ଦୋଷ କ୍ରିୟାର ଫଳ ।
ଗ୍ରହଣ ନ କରେ ସକଳ ॥୨୮
ଉଦାସୀନର ପ୍ରାୟ ହୋଇ ।
ପର-ଅପରକୁ ଦେଖଇ ॥୨୯
ଏମନ୍ତ ଏକ ସେ ଈଶ୍ୱର ।
ସଂସାର ନିର୍ମିତ ତାହାର ॥୩୦

ଶୁକ ଉବାଚ

ଏମନ୍ତ କହିଣ ବଚନ ।
ଜୀବ ଚଳିଲା ହେ ରାଜନ ॥୩୧
ବିସ୍ମୟେ ତା'ର ବନ୍ଧୁଗଣ ।
ଶୋକ ଛାଡିଲେ ତତକ୍ଷଣ ॥୩୨
ତା ତହୁଁ ଜ୍ଞାନକୁ ଶୁଣିଲେ ।
ସ୍ନେହ-ଶାଙ୍କୋଳିକି ଛେଦିଲେ ॥୩୩
ଏ ଅନନ୍ତରେ ଜ୍ଞାତିଜନ ।
ବେଦଉଚିତ କର୍ମମାନ ॥୩୪
ଲୋକବିଧିରେ ତାହାକଲେ ।
ସମସ୍ତ ତାପକୁ ଛାଡିଲେ ॥୩୫
ଯେ ଶୋକ ମୋହ ସ୍ନେହୁଁ ହୋଇ ।
ତାହା ଛାଡିଲେ ଜ୍ଞାନ ପାଇ ॥୩୬
ଚିତ୍ରକେତୁର ଯେତେ ନାରୀ ।
ଲାଜ ପାଇ ମନେ ବିଚାରି ॥୩୭
ବାଳକହତ୍ୟାପାପୁଁ କରି ।
ହତ ହୋଇଲା ତା'ଙ୍କ ଶିରୀ ॥୩୮
ବ୍ରାହ୍ମଣେ ପୁଛିଲେ ଉଚିତ ।
ବାଳକ-ହତ୍ୟା-ହତବ୍ରତ ॥୩୯
ଯମୁନାକୂଳକୁ ସେ ଗଲେ ।
ବାଳକହତ୍ୟା-ବ୍ରତ କଲେ ॥୪୦
ବ୍ରାହ୍ମଣଆଜ୍ଞା ପରମାଣେ ।
କଲେ ସେ ବେଦର ବିଧାନେ ॥୪୧
ଏମନ୍ତେ ଶୁଣ ହେ ରାଜନ ।
ଚିତ୍ରକେତୁ ବିପ୍ର-ବଚନ ॥୪୨
ତକ୍ଷଣେ ଶୁଣି ଜ୍ଞାନପାଇ ।
ଗୃହକୂପୁଁ ବାହାର ହୋଇ ॥୪୩
ଶୁଣି ଉଦୟ ହେଲା ଜ୍ଞାନ ।
ମନସଂଶୟ ତା' ଖଣ୍ଡନ ॥୪୪
ସରୋବର-ପଙ୍କରୁ ଯେହ୍ନେ ।
ଗଜ ବାହାର ବିଦ୍ୟମାନେ ॥୪୫

Dr. Sudhanshu Sekhar Mishra

ତେସନେ ରାଜା ସର୍ବଛାଡ଼ି ।
ଗୋବିନ୍ଦପାଦେ ଚିତ୍ତ ବଢ଼ି ॥୪୬
କାଳିନ୍ଦୀଜଳେ ସ୍ନାନକଲା ।
ପୁଣ୍ୟକ୍ରିୟାକୁ ଆଚରିଲା ॥୪୭
ମଉନବ୍ରତେ ମହାରାଜା ।
ମୁନିଚରଣେ କଲେ ପୂଜା ॥୪୮
ଏଥୁଅନ୍ତରେ ନୃପବର ।
ଭକତି ଦେଖିଣ ରାଜାର ॥୪୯
ନାରଦ ଅନୁଗ୍ରହ କଲେ ।
ଏ ଜ୍ଞାନ ତାହାଙ୍କୁ କହିଲେ ॥୫୦
ପରମାନନ୍ଦରେ ନିବୃତ୍ତି ।
ଧ୍ୟାନେ ଗୋବିନ୍ଦେ କଲା ସ୍ତୁତି ॥୫୧

ନାରଦ ଉବାଚ

ନମସ୍ତେ ପ୍ରଭୁ ନାରାୟଣ ।
ବାସୁଦେବ ସର୍ବକାରଣ ॥୫୨
ପ୍ରଦ୍ୟୁମ୍ନ ଅନିରୁଦ୍ଧ ବେନି ।
ନମସ୍ତେ ସଙ୍କର୍ଷଣ ପୁଣି ॥୫୩
ନମସ୍ତେ ଜ୍ଞାନର ଈଶ୍ୱର ।
ପରମାନନ୍ଦ-ମୂର୍ତ୍ତି ଯା'ର ॥୫୪
ନମସ୍ତେ ଶାନ୍ତ ଆତ୍ମାରାମ ।
ଅବ୍ୟୟରୂପ ପୂର୍ଣ୍ଣକାମ ॥୫୫
ନମସ୍ତେ ବଇକୁଣ୍ଠବାସୀ ।
ନମସ୍ତେ ପ୍ରଭୁ ବ୍ରହ୍ମରାଶି ॥୫୬
ସ୍ୱରୂପାନନ୍ଦ ଅନୁଭୂତି ।
ତେଣୁ ନିରସ୍ତ ଉର୍ମିଶକ୍ତି ॥୫୭
ଭୋ ହୃଷୀକେଶ ହେ ମହତ ।
ନମସ୍ତେ ମୂର୍ତ୍ତି ହେ ଅନନ୍ତ ॥୫୮
ମନବଚନ-ଅଗୋଚର ।
ମହିମା ନାମ ରୂପ ଯା'ର ॥୫୯
ଚିନ୍ମୟ ଯାହାର ଶରୀର ।
ରଖନ୍ତୁ ସଦସଦପର ॥୬୦
ଚିନ୍ତାମାତ୍ରକେ ଯେଉଁ ନାମ ।
ଖଣ୍ଡଇ ସର୍ବପାପମାନ ॥୬୧

ଅରୂପରେଖ ଭଗବାନ ।
ସଚରାଚର ବିଶ୍ୱଧାମ ॥୬୨
ଯାହାର ତହୁଁ ଏ ଜଗତ ।
ହେଉ ଅଛନ୍ତି ଆତଯାତ ॥୬୩
ମୃତ୍ତିକାଠାରୁ ନାନାପାତ୍ର ।
ଯେସନେ ହେଉଅଛି ଜାତ ॥୬୪
ସୃଷ୍ଟି ପ୍ରଳୟ ସ୍ଥିତି ଯହିଁ ।
ସେ ଯୋଗେଶ୍ୱରେ ମୁଁ ନମଇଁ ॥୬୫
ବୁଦ୍ଧି ଇନ୍ଦ୍ରିୟ ଆଦି ମନ ।
ଯାହାକୁ ନ ଜାଣଇ ପ୍ରାଣ ॥୬୬
ବାହ୍ୟ-ଅନ୍ତରେ ବ୍ୟାପ୍ତହୋଇ ।
ଆକାଶପ୍ରାୟ ଯେ ଅଛଇ ॥୬୭
ତାହାଙ୍କୁ ମୋର ନମସ୍କାର ।
ଯେ ପ୍ରଭୁ ଜଗତଠାକୁର ॥୬୮
ଅଶେଷ-କ୍ଷେତ୍ରେ ଯା' ବିହାର ।
ଅଚ୍ୟୁତ ପରମଈଶ୍ୱର ॥୬୯
ଦେହ ଇନ୍ଦ୍ରିୟ ପ୍ରାଣ ମନ ।
ବୁଦ୍ଧି ଅହଙ୍କାର ଚେତନ ॥୭୦
ଯା'ର ଆଜ୍ଞାରେ ଏ ନିର୍ମାଣ ।
କର୍ମରେ କରନ୍ତି ଭ୍ରମଣ ॥୭୧
ଭଗବାନ ମହାପୁରୁଷ ।
ଯାହାର ଭାବରେ ପ୍ରକାଶ ॥୭୨
ମହାବିଭୂତିର ଈଶ୍ୱର ।
ସକଳ-ଭକ୍ତଜନଙ୍କର ॥୭୩
କରକମଳଦଳେ କରି ।
ସେବିତ ଚରଣ ଯାହାରି ॥୭୪
ଏମନ୍ତ ପରମଈଶ୍ୱର ।
ତାହାଙ୍କୁ ମୋ'ର ନମସ୍କାର ॥୭୫

ଶୁକ ଉବାଚ

ଭକତରାଜାଙ୍କୁ ନାରଦେ ।
ଏ ବିଦ୍ୟା ଦେଲେ ଅପ୍ରମାଦେ ॥୭୬
ଅଙ୍ଗିରା ସହିତେ ରାଜନ ।
ଗଲେ ସେ ବ୍ରହ୍ମାର ଭୁବନ ॥୭୭

ଚିତ୍ରକେତୁ ସେ ବିଦ୍ୟାଘେନି ।
ଯେମନ୍ତ କହିଥିଲେ ମୁନି ॥୭୮
ଧଇଲା ସପ୍ତରାତ୍ର ସେହି ।
ପବିତ୍ର ନିରାହାର ହୋଇ ॥୭୯
ସପତରାତ୍ରେ ଅପ୍ରମାଦେ ।
ନାରଦବିଦ୍ୟାର ପ୍ରସାଦେ ॥୮୦
ବିଦ୍ୟାଧର-ଅଧିପପଣ ।
ଲଭିଲେ ଚିତ୍ରକେତୁରାଣ ॥୮୧
ଶୁଣ ରାଜନ ଏକମନେ ।
ଏ ଅନନ୍ତରେ କେତେଦିନେ ॥୮୨
ବିଦ୍ୟାରୁ କରି ଶୁଦ୍ଧମତି ।
ନିଶ୍ଚଳେ ଲଭିଲା ନୃପତି ॥୮୩
ଅନନ୍ତ ଦେବଦେବେଶ୍ୱର ।
ଗଲା ନିକଟେ ତାହାଙ୍କର ॥୮୪
ମୃଣାଳପ୍ରାୟ ଶୋଭାବନ ।
ନୀଳବସନ ପରିଧାନ ॥୮୫
ଶୋଭିତ କିରୀଟ କେୟୂର ।
ମେଖଳା କଙ୍କଣ ଆବର ॥୮୬
ପ୍ରସନ୍ନ ରୁଚିର ବଦନ ।
ଅରୁଣ ରାଜୀବଲୋଚନ ॥୮୭
ବେଢ଼ିଅଛନ୍ତି ସିଦ୍ଧେଶ୍ୱର ।
ଦେଖିଲା ଯାଇ ନୃପବର ॥୮୮
ତାହାଙ୍କ ଦରଶନ ପାଇ ।
ସକଳପାପୁଁ ମୁକ୍ତହୋଇ ॥୮୯
ଅନ୍ତଃକରଣ ଶୁଦ୍ଧହେଲା ।
ଅଶ୍ରୁରେ ଲୋଚନ ପୂରିଲା ॥୯୦
ଭକ୍ତିରୁ ରୋମାଞ୍ଚ ହୋଇଲା ।
ଆଦିପୁରୁଷଙ୍କୁ ନମିଲା ॥୯୧
ସେ ଚିତ୍ରକେତୁ ହୃଷ୍ଟହୋଇ ।
ନୟନଜଳେ ପାଦ ଧୋଇ ॥୯୨
ପ୍ରେମେ କୁଣ୍ଠିତକଣ୍ଠ ହୋଇ ।
ସ୍ତୁତି କରିଣ ନ ପାରଇ ॥୯୩
ହରଷେ ପୂର୍ଣ୍ଣଇନ୍ଦ୍ରିଗଣ ।
କ୍ରମରେ କରି ନିବାରଣ ॥୯୪

Dr. Sudhanshu Sekhar Mishra

ଜଗତଗୁରୁ ଗୁରୁବର ।
ଯାଦବ ବଂଶର ଠାକୁର ॥୯୫
ତାହାଙ୍କ ପାଦେ ଦେଇମନ ।
କହଇ ମଧୁରବଚନ ॥୯୬

ଚିତ୍ରକେତୁ ଉବାଚ

ତୁହି ଯେ ଅଜିତ ସ୍ୱଭାବେ ।
ଭକତ ତୋତେ ଜିତେ ଭାବେ ॥୯୭
ସୁସିଦ୍ଧଆତ୍ମା -ଲୋକଙ୍କର ।
ଜିତ ତୁ ହେଉ ହେ ଈଶ୍ୱର ॥୯୮
ଯେଣୁ ତୁ ଅତି ହିଁ କରୁଣ ।
ତେଣୁ ତୁ ଭକ୍ତର ଅଧୀନ ॥୯୯
ନିଷ୍କାମେ ଯେଣୁ ଯେ ଭଜନ୍ତି ।
ତେଣୁ ତୋହରେ ସେ ଜିଣନ୍ତି ॥୧୦୦
ଯେ ତୋତେ କରଇ ଭଜନ ।
ତା'ର କାମନା କରୁ ପୂର୍ଣ୍ଣ ॥୧୦୧
ଅତି ଦୟାଳୁ ରୂପଧର ।
ଜଗତ ବିଭବ ତୋହର ॥୧୦୨
ଅନାଦି ତୁହି ତୋ'ର ତହିଁ ।
ଉଦୟସ୍ଥିତି ଅନ୍ତ ହୋଇ ॥୧୦୩
ସୃଷ୍ଟିକରତା ଅଛି ଆଉ ।
ବୋଲଇ ଅଜ୍ଞ ଯେଉଁ ନର ॥୧୦୪
ପରମଅଣୁରୂପ ହେଉ ।
ମହତତେଜକୁ ତୁ ବହୁ ॥୧୦୫
ଆଦ୍ୟନ୍ତ ଅନ୍ତରାଳେ ସ୍ଥିତ ।
ଆଦ୍ୟନ୍ତ-ମଧ୍ୟ ତୋ' ରହିତ ॥୧୦୬
ହେ ଦେବ ପ୍ରାଣୀମାନଙ୍କର ।
ସାକ୍ଷୀରୂପକୁ ତୁମ୍ଭେ ଧର ॥୧୦୭
କ୍ଷିତି ଆଦି ଯେ ପଞ୍ଚଭୂତ ।
ଏଥିରେ ହୋଇଣ ନିର୍ମିତ ॥୧୦୮
ଯେହି ମହତ-ଅଣ୍ଡକୋଷ ।
ତାହାର ତୋ'ର ତହିଁ ବାସ ॥୧୦୯
ବିଷୟା-ଜଡେ ମୋହିହୋଇ ।
ଯେ ଜନ ବିଭୂତି ଚିନ୍ତଇ ॥୧୧୦
ତୋ' ପଦ୍ମଚରଣ ନ ଚିନ୍ତେ ।
ଗ୍ରାମର ପଶୁ ଯେ ଯୁଗତେ ॥୧୧୧
ଭୋ ପ୍ରଭୁ ତାହାର କଲ୍ୟାଣ ।
କେବେ ହେଁ ନୁହଁଇଟି ପୁଣ ॥୧୧୨
ଜ୍ଞାନାତ୍ମାମୟ ତୁ ଅଗୁଣ ।
ସକାମେ ଯେ ତୋ'ର ଚରଣ॥୧୧୩
ପୂଜନ୍ତି ଜନ୍ମ ତା'ଙ୍କ ନାହିଁ ।
ଭର୍ଜିତ ବୀଜ ପ୍ରାୟେ ହୋଇ ॥୧୧୪
ତୁମ୍ଭେ ଯେ ଭାଗବତଧର୍ମ ।
କହିଲ ପୁରୁଷଉତ୍ତମ ॥୧୧୫
ଅକିଞ୍ଚନ ଯେ ଆତ୍ମାରାମ ।
ଏମନ୍ତ ଯେଉଁ ମୁନିଜନ ॥୧୧୬
ମୋକ୍ଷ ନିମନ୍ତେ ସେହି ଧର୍ମ ।
କରନ୍ତି ନିତ୍ୟ ଉପାସନ ॥୧୧୭
ବିଷମମତିଟି ଯାହାର ।
ଏ ଧର୍ମୁ ସେ ଜନ ବାହାର ॥୧୧୮
ଯେଉଁ ଧର୍ମରେ ତୁହି ମୁହିଁ ।
ତୋହର ମୋ'ର ଭେଦ ନାହିଁ॥୧୧୯
କିବା କୁଶଳ ସେ ଲଭନ୍ତି ।
ସ୍ୱଦେହେ ପରେ ଯେ ପୀଡନ୍ତି ॥୧୨୦
ସ୍ୱଦ୍ରୋହେ ଆତ୍ମପୀଡ଼ା ପୁଣ ।
ପର ପୀଡ଼ନେ ଅଧରମ ॥୧୨୧
ବିହିତ ଧର୍ମ ଭାଗବତ ।
ନ ଛାଡେ କେବେ ପରମାର୍ଥ ॥୧୨୨
ସ୍ଥାବର ଚରଜୀବଙ୍କରେ ।
ଅଭିନ୍ନଭାବ ଯେହୁ କରେ ॥୧୨୩
ସେ ନିତ୍ୟ ପାଦପଦ୍ମେ ତୋ'ର ।
ସେବା କରଇ ନିରନ୍ତର ॥୧୨୪
ପାଷଣ୍ଡମତ ଯେଉଁନର ।
ଏ ପାଦ ଦୁର୍ଲ୍ଲଭ ତାହାର ॥୧୨୫
ଯେ ପାଦପଲ୍ଲବ ସୁଧାମ ।
ପରମମଙ୍ଗଳ ତା' ନାମ ॥୧୨୬
ଯେ ନାମ ସୁମରଣ କରି ।
ପ୍ରାଣୀ ସଂସାରୁ ଯା'ନ୍ତିତରି ॥୧୨୭
ହେ ଦେବଦେବ ନାରାୟଣ ।
ହେ ପ୍ରଭୁ ଅଖିଳକାରଣ ॥୧୨୮
ତୋ' ରୂପ ଦରଶନେ ମୁହିଁ ।
ପବିତ୍ର ହୋଇଲି ଗୋସାଇଁ ॥୧୨୯
ନାରଦ-ବଚନର ଫଳେ ।
ତୋତେ ଦେଖିଲି ଚର୍ମଡୋଳେ॥୧୩୦
ଜଗତଆତ୍ମା ହେ ଅନନ୍ତ ।
ସକଳ ଜାଣୁ ତୁ ତଦନ୍ତ ॥୧୩୧
ଏ ଘୋର ସଂସାରରେ ଜନ ।
କେ ତୋତେ ଜାଣୁଁ ଭଗବାନ॥୧୩୨
ତୁମ୍ଭେ ଆଦିତ୍ୟ ଦେବରାୟେ ।
ନର ଯେ ଖଦ୍ୟୋତ ପରାୟେ ॥୧୩୩
ଜଗତ ଉତ୍ପତ୍ତି ପାଳନ ।
ପ୍ରଳୟ ହେତୁ ନାରାୟଣ ॥୧୩୪
ପରମହଂସରୂପ ତୁହି ।
ନମସ୍ତେ ପ୍ରଭୁ ଭାବଗ୍ରାହୀ ॥୧୩୫
ଯା'ର ଶ୍ୱାସକୁ ଅନୁସରି ।
କମ୍ପିତହୋଏ ବସୁନ୍ଧରୀ ॥୧୩୬
ପ୍ରାଣୀସମୂହ ଦ୍ରୁମ-ଗିରି ।
ଅବନୀ ଅଛି ଯେହୁ ଧରି ॥୧୩୭
ସହସ୍ରମସ୍ତକ-ଈଶ୍ୱର ।
ନମସ୍ତେ ବ୍ରହ୍ମାଣ୍ଡଠାକୁର ॥୧୩୮

ଶୁକ ଉବାଚ

ଏମନ୍ତ ସ୍ତୁତି ତା'ର ଶୁଣି ।
ଅନନ୍ତ ପ୍ରଭୁ ହଳପାଣି ॥୧୩୯
ଯେ ଚିତ୍ରକେତୁ ବିଦ୍ୟାଧର ।
ତାହାଙ୍କୁ ବୋଲନ୍ତି ଉତ୍ତର ॥୧୪୦

ଭଗବାନ ଉବାଚ

ଶୁଣ ରାଜନ ପୁଣ୍ୟଦେହ ।
ମୋର ଭକତ ଅନୁଗ୍ରହ ॥୧୪୧
ନାରଦ ଅଙ୍ଗିରା ତୋହରେ ।
କହିଲେ ଯେଉଁ ବିଦ୍ୟାସାରେ॥୧୪୨

Dr. Sudhanshu Sekhar Mishra

ତେଣୁ ସିଦ୍ଧହୋଇ ରାଜନ ।
ପାଇଲୁ ମୋର ଦରଶନ ॥ ୧୪୩
ମୁଁ ସର୍ବପ୍ରାଣୀ ଆଦିଶେଷ ।
ଆତ୍ମାରୂପରେ ମୋର ବାସ ॥ ୧୪୪
ପରମବ୍ରହ୍ମ ଯା'ରେ କହି ।
ସେ ମୋର ଶରୀର ଅଟଇ ॥ ୧୪୫
ଯେ ଆତ୍ମା ବ୍ୟାପ୍ତ ଲୋକଠାରେ ।
ଲୋକବ୍ୟାପିତ ଯେ ଆତ୍ମାରେ ॥ ୧୪୬
ଉଭୟେ ବ୍ୟାପ୍ତହୋଇ ମୁହିଁ ।
ସଂସାରେ ଅଛି ଦେହ ବହି ॥ ୧୪୭
ଯେସନେ ନିଦ୍ରାପାଇ ନରେ ।
ବିଶ୍ୱକୁ ଦେଖନ୍ତି ଆତ୍ମାରେ ॥ ୧୪୮
ନିଦ୍ରାଉପେକ୍ଷି ପୁଣ ସେହି ।
ଏକଦେଶେ ଆତ୍ମା ଦେଖଇ ॥ ୧୪୯
ଉଠିଣ ଜ୍ଞାନପାଇ ଯେହ୍ନେ ।
ସକଳ ମିଥ୍ୟାକରି ମାନେ ॥ ୧୫୦
ଯେଉଁ ପୁରୁଷ ତା' ଦେଖଇ ।
ତାହାକୁ ଚିନ୍ତ ମନ ଦେଇ ॥ ୧୫୧
ଯାହାର ବଳେ ସୁପ୍ତ ହୋଇ ।
ସୁଖ ବା ସ୍ୱପନ ଜାଣଇ ॥ ୧୫୨
ସେ ଆତ୍ମା ନିର୍ଗୁଣ ଯେ ବ୍ରହ୍ମ ।
ସେହିଟି ମୁହିଁ ବୋଲି ଜାଣ ॥ ୧୫୩
ନିଦ୍ରାରେ ଜାଗ୍ରତରେ ପୁଣ ।
ଉଭୟେ ଯା ତହୁଁ ସ୍ମରଣ ॥ ୧୫୪
ଏ ମୋର ଭିନ୍ନଭାବ ଦୁଇ ।
ମୋ ବିନୁ ଅନ୍ୟ କେହି ନାହିଁ ॥ ୧୫୫
ଯେଣୁ ମୋ' ଭାବ ପ୍ରାଣୀମାନେ ।
ଚିନ୍ତନ୍ତି ଭିନ୍ନକରି ମନେ ॥ ୧୫୬
ଏଣୁ ଏ ଅଖିଳସଂସାରେ ।
ଜନ୍ମ-ମୃତ୍ୟୁ ଲଭନ୍ତି ନରେ ॥ ୧୫୭
ମନୁଷ୍ୟଜନ୍ମ ଆଶ୍ରେ କରି ।
ଜ୍ଞାନ-ବିଜ୍ଞାନେ ଦେହ ଧରି ॥ ୧୫୮
ଆତ୍ମାକୁ ନ ଜାଣେ ଯେ ନର ।
କେବେହେଁ ସୁଖ ନାହିଁ ତା'ର ॥ ୧୫୯
ଚେଷ୍ଟା କରଇ କାର୍ଯ୍ୟ ପାଇଁ ।
ନାନା-ଯାତନା ଲଭେ ତହିଁ ॥ ୧୬୦
ସଙ୍କଳ୍ପ ଛାଡି ଯେ ଭଜଇ ।
ମୋକ୍ଷର ଫଳକୁ ଲଭଇ ॥ ୧୬୧
ଦୁଃଖ-ନିବୃତ୍ତି ସୁଖ ପାଇଁ ।
ଦମ୍ପତିକର୍ମ ଆଚରଇ ॥ ୧୬୨
ସୁଖ ଦୁଃଖର ଭୋଗ ତହିଁ ।
କେବେ ଲଭଇ ନ ଲଭଇ ॥ ୧୬୩
ଏମନ୍ତ ବିଚାର ଯେ ଜାଣି ।
କର୍ମ କରଇ ଯେଉଁ ପ୍ରାଣୀ ॥ ୧୬୪
ସୂକ୍ଷ୍ମ ଆତ୍ମଗତି ତା' ଠାରେ ।
ବିମୁକ୍ତ ହୋଇ ସେ ସଂସାରେ ॥ ୧୬୫
ଜ୍ଞାନସମ୍ପନ୍ନ ହୋଇନର ।
ଭକ୍ତିକି ଲଭଇ ମୋହର ॥ ୧୬୬
ପ୍ରାଣୀର ପରଧର୍ମ ଏହି ।
ସମଦରଶୀ ଯେବେ ହୋଇ ॥ ୧୬୭
ଯୋଗ-ନିପୁଣ-ବୁଦ୍ଧି-ଲୋକ ।
ଜୀବପରମ ଦେଖେ ଏକ ॥ ୧୬୮
ଶ୍ରଦ୍ଧାରେ ଯେବେ ତୁ ରାଜନ ।
ଘେନିବୁ ମୋହର ବଚନ ॥ ୧୬୯
ଜ୍ଞାନସମ୍ପନ୍ନ ହୋଇ ତୁହି ।
ସିଦ୍ଧ ହୋଇବୁ ବେଗ ହୋଇ ॥ ୧୭୦
ତୁ ଏବେ ମୋର ପାଦେ ଭକ୍ତି ।
ଲଭିଣ ପାଅ ସିଦ୍ଧଗତି ॥ ୧୭୧
ସୁଖଦୁଃଖରେ ମୋର ଭାବ ।
କେବେହେଁ ତୋ ମନୁ ନଯିବ ॥ ୧୭୨

ଶୁକ ଉବାଚ

ଏମନ୍ତ କହି ବାସୁଦେବ ।
ଯେ ବିଷ୍ଣୁ ଋଷଭମାଧବ ॥ ୧୭୩
ଚିତ୍ରକେତୁକୁ ଆଶ୍ୱାସିଣ ।
ଜଗତଗୁରୁ ଭଗବାନ ॥ ୧୭୪
ଦେଖୁ ଯେ ଥିଲା ସେ ରାଜନ ।
କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ॥ ୧୭୫
ବୋଲଇ ଦାସ ଜଗନ୍ନାଥ ।
ଚିତ୍ରକେତୁ-ରାଜା-ଚରିତ ॥ ୧୭୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ଚିତ୍ରକେତୋଃ
ପରମାତ୍ମଦର୍ଶନଂ
ନାମ ଷୋଡ଼ଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ସପ୍ତଦଶ ଅଧ୍ୟାୟ

ଶୁକ ଉବାଚ

ଯେ ଦିଗେ ଅନନ୍ତ ଈଶ୍ୱର ।
ସେଠାରୁ ହୋଇଲେ ଅନ୍ତର ॥୧
ଚିତ୍ରକେତୁ ଯେ ବିଦ୍ୟାଧର ।
ସେ ଦିଗେ କରି ନମସ୍କାର ॥୨
ତକ୍ଷଣେ ହରଷ ହୋଇଲା ।
ଗଗନମାର୍ଗେ ଚଳିଗଲା ॥୩
ଲକ୍ଷେବରଷ ଅବ୍ୟାହତ ।
ବଳ-ଇନ୍ଦ୍ରିୟେ ହୋଇଯୁତ ॥୪
ସିଦ୍ଧ ଚାରଣ ମୁନିଯେତେ ।
ସ୍ତୁତି କରନ୍ତି ଅବିରତେ ॥୫
ମହାଯୋଗୀ ସେ ସିଦ୍ଧେଶ୍ୱର ।
ରହେ କୁଳାଚଳ ଦ୍ରୋଣିର ॥୬
ଆନନ୍ଦେ ବିଦ୍ୟାଧରୀ ସଙ୍ଗେ ।
କ୍ରୀଡା କରଇ ନାନାରଙ୍ଗେ ॥୭
ପରମଈଶ୍ୱରର ନାମ ।
କରାଇ କରଇ ଗାୟନ ॥୮
ସେ ପୁଣି ଅକାରଣେ କରି ।
ଐଶ୍ୱର୍ଯ୍ୟବଳେ ଗର୍ବକରି ॥୯
ପୂର୍ବର କର୍ମେଣ ତାହାର ।
ଦୁର୍ଗାଶାପେ ହେଲା ଅସୁର ॥୧୦
ତାହା କହିବା ଶୁଣ ନୃପ ।
ଯେମନ୍ତେ ପାଇଲା ସେ ଶାପ ॥୧୧
ଏକ ସମୟେ ସେ ରାଜନ ।
ଆରୋହୀ ଅମୂଲ୍ୟବିମାନ ॥୧୨
ତେଜେ ଗଞ୍ଜଇ ଦିନକର ।
ବିଷ୍ଣୁ ଦେଇଛି ତା'କୁ ବର ॥୧୩
ଗିରିଶ ଦେଖିବାର ପାଇଁ ।
ଗଲା ସେ ସିଦ୍ଧଗଣ ଲଇଁ ॥୧୪
ମୁନିଏ ଅଛନ୍ତି ପାଶରେ ।
ଦୁର୍ଗାଙ୍କୁ ବସାଇ କୋଳରେ ॥୧୫
ବାହୁରେ କରି ଆଲିଙ୍ଗନ ।
ବସି ଅଛନ୍ତି ତ୍ରିଲୋଚନ ॥୧୬
ତାହାଙ୍କ ନିକଟରେ ଯାଇ ।
ଉଚ୍ଚେ ହସିଣ ସେ ବୋଲଇ ॥୧୭

ଚିତ୍ରକେତୁ ଉବାଚ

ଧର୍ମବକତା ଲୋକଙ୍କର ।
ଜଗତଗୁରୁ ଏ ଶଙ୍କର ॥୧୮
ସଭାର ମଧ୍ୟେ ସ୍ତିରୀସଙ୍ଗେ ।
ମୈଥୁନଭାବେ ନାନାରଙ୍ଗେ ॥୧୯
ଶିରରେ ବହି ଜଟାଭାର ।
କେ କହୁ ତପ ଏହାଙ୍କର ॥୨୦
ଜଗତସ୍ୱାମୀ ବ୍ରହ୍ମବାଦୀ ।
ଅଷ୍ଟ ଐଶ୍ୱର୍ଯ୍ୟ ଯା'ର ସିଦ୍ଧି ॥୨୧
ଅଛନ୍ତି ପତ୍ନୀ ଅଙ୍କେ ଲଇଁ ।
ନିର୍ଲ୍ଲଜଲୋକ ପ୍ରାୟ ହୋଇ ॥୨୨
ଏକାନ୍ତେ ପ୍ରାକୃତସ୍ୱଭାବେ ।
ରହନ୍ତି ସ୍ତିରୀବଶ ଭାବେ ॥୨୩
ଏ ଯେ ସ୍ୱଭାବେ ଦେବବର ।
ଏହାଙ୍କୁ ବୋଲି ବ୍ରତଧର ॥୨୪
ସଭାରେ ମଧ୍ୟେ ସ୍ତିରୀ ଘେନି ।
ଅଛନ୍ତି ଯେହ୍ନେ ନୀଚଯୋନି ॥୨୫

ଶୁକ ଉବାଚ

ଏ ରୂପେ ଚିତ୍ରକେତୁଙ୍କର ।
ଶୁଣିଣ ଉପହାସ-ଗିର ॥୨୬
ଅଖିଳ ବ୍ରହ୍ମାଣ୍ଡ-ଠାକୁର ।
ଜାଣନ୍ତି ସକଳ ଅନ୍ତର ॥୨୭
ଈଶ୍ୱର ତୂଷ୍ଣୀଭୂତ ହୋଇ ।
ରହିଲେ କିଛିହିଁ ନ କହି ॥୨୮
ଅଗାଧବୁଦ୍ଧି ହେ ରାଜନ ।
ହସିଣ ହୋଇଲେ ମଉନ ॥୨୯
ଜାଣେ ସେ ଜିତେନ୍ଦ୍ରିୟ ମୁହିଁ ।
ସମୃଦ୍ଧିଲାଭେ ଗର୍ବ ବହି ॥୩୦
ବଡିମାପଣେ ବାରମ୍ବାର ।
ନିନ୍ଦିଲା ଶିବଙ୍କୁ ଅପାର ॥୩୧
ଈଶ୍ୱର ମହିମା ନ ଜାଣି ।
ଯେତେ ବୋଇଲା ପରିମାଣି ॥୩୨
ସେଠାରେ ଯେତେ ଦେବେଥିଲେ ।
ସେ ସର୍ବେ ଶୁଣି ତୁନି ହେଲେ ॥୩୩
ଚିତ୍ରକେତୁର ଏହି ରୀତି ।
ସହି ନ ପାରି ଭଗବତୀ ॥୩୪
ପାଞ୍ଚିଲେ ଦୁଷ୍ଟ ପାମରର ।
ଗର୍ବ ହୋଇଛି ଗୁରୁତର ॥୩୫
ଯୋଗ୍ୟ ନୁହଁଇ ଏ ପାମର ।
ଗନ୍ଧର୍ବରାଜନ ପଦର ॥୩୬
ବ୍ରହ୍ମା ନାରଦ ଭୃଗୁରଷି ।
ସେବନ୍ତି ଯା'ର ପାଦେ ଆସି ॥୩୭
ତାହାଙ୍କୁ କରେ ଅପମାନ ।
ଏଣୁ ଏ ଦଣ୍ଡକୁ ଭାଜନ ॥୩୮
ଜିତଇନ୍ଦ୍ରିୟ ଅଭିମାନୀ ।
ତାହାଙ୍କୁ ବୋଲନ୍ତି ଭବାନୀ ॥୩୯
ମନରେ ଦଣ୍ଡ ଅବଧାରି ।
ବୋଇଲେ ସମ୍ବୋଧନ କରି ॥୪୦

ଦୁର୍ଗା ଉବାଚ

ଶୁଣିମା ଜଗତ ଗୋସାଇଁ ।
ଏ ନୂଆ ଦଣ୍ଡଧର ହୋଇ ॥୪୧
ଆମ୍ଭର ପରା ଦୁଷ୍ଟଜନ ।
ନିର୍ଲ୍ଲଜ ଅଛନ୍ତି ଯେ ପୁଣ ॥୪୨
ତାହାଙ୍କ ଶାସନର ପାଇଁ ।
ଏଠାକୁ ଏବେ ଆସିଛଇଁ ॥୪୩
ଯେ ପଦ୍ମଯୋନି ଆଦିଛନ୍ତି ।
ଏମାନେ ଧର୍ମ ନ ଜାଣନ୍ତି ॥୪୪

Dr. Sudhanshu Sekhar Mishra

ବ୍ରହ୍ମାର ପୁତ୍ର ଛନ୍ତି ଯେତେ ।
ଭୃଗୁ-ନାରଦର ସହିତେ ॥୪୫
କୁମାର-କପିଳାଦି ଯେହି ।
ଧର୍ମକୁ ନ ଜାଣନ୍ତି କେହି ॥୪୬
ମୋର ନିକଟେ ନିତ୍ୟେ ଥା'ନ୍ତି ।
କେହି ତ ନିନ୍ଦା ନ କରନ୍ତି ॥୪୭
ନିତ୍ୟେ ଭଜନ ଏହାଙ୍କର ।
ପାଦ-ପଙ୍କଜ ହୃଦେ ଯା'ର ॥୪୮
ଜଗତଗୁରୁ ଯା ମହିମା ।
ସକଳ-ମଙ୍ଗଳର ସୀମା ॥୪୯
ଯେଣୁ ନିନ୍ଦିଲା ଏ ଈଶ୍ୱର ।
ଦଣ୍ଡକୁ ଯୋଗ୍ୟ ଏ ପାମର ॥୫୦
ଯୋଗ୍ୟ ନୁହଇ ଏ ପାମର ।
ବୈକୁଣ୍ଠ-ପଦ ଆଶ୍ରୟର ॥୫୧
ସ୍ଥିରମତି ଯେ ସାଧୁଜନ ।
ଯେ ପାଦ କରନ୍ତି ସେବନ ॥୫୨
ଏହି କାରଣେ ଦୁଷ୍ଟମତି ।
ଯାଅ ତୁ ଏଥେ ନାହିଁ ସ୍ଥିତି ॥୫୩
ପାପିଷ୍ଠ ଅସୁର ଯୋନିରେ ।
ଜନ୍ମ ତୁ ଲଭ ତମ ଘୋରେ ॥୫୪

ଶୁକ ଉବାଚ

ଶାପକୁ ପାଇଣ ରାଜନ ।
ବିମାନୁଁ ଓହ୍ଲାଇ ତକ୍ଷଣ ॥୫୫
ନତମସ୍ତକେ ସିଦ୍ଧପତି ।
ପ୍ରସନ୍ନ କରାଇଲା ସତୀ ॥୫୬

ଚିତ୍ରକେତୁ ଉବାଚ

ଭୋ ମାତ ଶୁଣ ମୋ ବଚନ ।
ଶାପ ମୁଁ ଘେନିଲି ଶିରେଣ ॥୫୭
ହେ ଦେବି ! ଅସୁର-ଯୋନିରେ ।
ଜନ୍ମ ଯେ ବିହିଲ ମୋହରେ ॥୫୮
ସେ ମୋର ପୂର୍ବ-ଅରଜନ ।
କହିବି ସାବଧାନେ ଶୁଣ ॥୫୯
ସଂସାରେ ଯେତେ ଜନ୍ତୁ ଛନ୍ତି ।
ଅଜ୍ଞାନ ମୋହରେ ବଞ୍ଚନ୍ତି ॥୬୦

ଭ୍ରମଣ କରି ଅନୁକ୍ଷଣ ।
ଭୁଞ୍ଜନ୍ତି ସୁଖଦୁଃଖମାନ ॥୬୧
ଈଶ୍ୱର-ମହିମା ନ ଜାଣି ।
ଯେତେ ବୋଇଲି ପରିମାଣି ॥୬୨
ସଭାର ମଧ୍ୟେ ଦୁଷ୍ଟମତି ।
ହେବାରୁ ପାଇଲି ଦୁର୍ଗତି ॥୬୩
ଯେ ଆତ୍ମାପର ଅବା କେହି ।
ଦୁଃଖସୁଖର କର୍ତ୍ତା ନୋହି ॥୬୪
ଯେ ଅଜ୍ଞପ୍ରାଣୀମାନେଛନ୍ତି ।
ଏହାଙ୍କୁ କର୍ତ୍ତା ବୋଲୁଥା'ନ୍ତି ॥୬୫
ଗୁଣର ପ୍ରବାହଟି ଏହି ।
ଶାପ ବା ଅନୁଗ୍ରହ କାହିଁ ॥୬୬
କି ଅବା ସ୍ୱର୍ଗ କି ନରକ ।
କି ଅବା ସୁଖ କିବା ଦୁଃଖ ॥୬୭
ଏକଇ ପ୍ରଭୁ ଆଦିମୂଳ ।
ମାୟାରେ ସୃଜଇ ସକଳ ॥୬୮
ଏହାଙ୍କ ବନ୍ଧ-ମୋକ୍ଷ ଦୁଇ ।
ଦୁଃଖସୁଖକୁ ଦେଇଥାଇ ॥୬୯
ଏକଇ ପୁରୁଷ ମୁରାରି ।
ନାହିଁ ତାହାର ମିତ୍ର-ଅରି ॥୭୦
ଜ୍ଞାତିବାନ୍ଧବ ନିଜ ପର ।
ପ୍ରିୟ-ଅପ୍ରିୟ ନାହିଁ ଯା'ର ॥୭୧
ସର୍ବଭୂତରେ ସମ ସେହି ।
ରାଗ-ଦ୍ୱେଷାଦି ତା'ର ନାହିଁ ॥୭୨
ତାହାର କ୍ରୀଡାରେ ଜଗତ ।
ହେଉଅଛନ୍ତି ଆତଯାତ ॥୭୩
ଏହାର ବନ୍ଧ-ମୋକ୍ଷ-ସୁଖ ।
ହିତ-ଅହିତ ଅବା ଦୁଃଖ ॥୭୪
ଏହାଙ୍କ ଜନ୍ମ ଅବା ମୃତ୍ୟୁ ।
ହୁଅଇ ତା'ର ଶକ୍ତି ହେତୁ ॥୭୫
ହେ ମାତ ହୋଇ ସାବଧାନ ।
ଶୁଣିମା ମୋହର ବଚନ ॥୭୬
ଶାପରୁ ମୋକ୍ଷ ହେବା ପାଇଁ ।
ତୁମ୍ଭଙ୍କୁ କିଛି ନ ମାଗଇ ॥୭୭

ସଭାରେ ମୁଁ ମନ୍ଦବଚନେ ।
ତୁମ୍ଭଙ୍କୁ ବୋଇଲି ଅଜ୍ଞାନେ ॥୭୮
ସାଧୁନିନ୍ଦନ ମୋର ବାଣୀ ।
କ୍ଷମା କରିବା ହେ ଭବାନି ॥୭୯

ଶୁକ ଉବାଚ

ପ୍ରସନ୍ନ କରି ଶିବ-ସତୀ ।
ସେ ଚିତ୍ରକେତୁ ନରପତି ॥୮୦
ଆପଣା ବିମାନେ ବସିଲା ।
ନିଜ ମନ୍ଦିରେ ବିଜେକଲା ॥୮୧
ଏ ଅନନ୍ତରେ ସେ ଈଶ୍ୱର ।
ଦୁର୍ଗାଙ୍କୁ କହନ୍ତି ଏ ଗିର ॥୮୨
ଋଷି ଦଇତ୍ୟ ସିଦ୍ଧଗଣ ।
ଶୁଣୁଅଛନ୍ତି ସେ ବଚନ ॥୮୩

ମହାଦେବ ଉବାଚ

ଅଦ୍ଭୁତକର୍ମା ଯେ ଈଶ୍ୱର ।
ପ୍ରଭାବ ଦେଖ ତା' ଭୃତ୍ୟର ॥୮୪
ନିସ୍ପୃହ-ମହାତ୍ମା ସେମାନେ ।
ସୁଶ୍ରୋଣି ! ଦେଖ ବିଦ୍ୟମାନେ॥୮୫
ବିଷ୍ଣୁଭକତ ଯେତେ ଜନେ ।
ଭୟ ତାହାଙ୍କ ନାହିଁ ମନେ ॥୮୬
ସ୍ୱର୍ଗ ବା ମୋକ୍ଷ ବା ନରକ ।
ସମାନ ଦେଖନ୍ତି ସେ ଲୋକ ॥୮୭
ଦେହୀର ଦେହ-ସଂଯୋଗରୁ ।
ପରମ-ଈଶ୍ୱର-ଲୀଳାରୁ ॥୮୮
ଜନ୍ମ ବା ମୃତ୍ୟୁ ଅବା ସୁଖ ।
ଶାପ ବା ଅନୁଗ୍ରହ -ଦୁଃଖ ॥୮୯
ପୁରୁଷ ଅବିବେକ ସେହି ।
ଏଭାବେ ଭିନ୍ନ ଯେ ଦେଖଇ ॥୯୦
ଯାହାର ବାସୁଦେବ ପ୍ରୀତି ।
ଶୁଦ୍ଧ ତାହାର ଦୃଢ଼ମତି ॥୯୧
ଜ୍ଞାନ ବୈରାଗ୍ୟ ଅଛି ଯା'ର ।
ପୃଥକଭାବ ନାହିଁ ତା'ର ॥୯୨
ମୁହିଁ ବିରଞ୍ଚି ଯେ କୁମାର ।
ନାରଦ ଆଦି ମୁନିବର ॥୯୩

Dr. Sudhanshu Sekhar Mishra

ଇନ୍ଦ୍ରାଦି ଯେତେ ଦେବବର ।
ନ ଜାଣୁ ମହିମା ତାହାର ॥୯୪
ତାହାର ପ୍ରିୟ ନାହିଁ କେହି ।
ଅପ୍ରିୟଜନ କେହି ନାହିଁ ॥୯୫
ମିତ୍ର ଅଇରି ନାହିଁ ଯା'ର ।
ସମାନ ଦେଖେ ଆତ୍ମପର ॥୯୬
ସକଳ ପ୍ରାଣୀଙ୍କର ପ୍ରିୟ ।
ଯେଣୁ ସେ ସର୍ବଭୂତମୟ ॥୯୭
ଏ ଚିତ୍ରକେତୁ ମହାଭାଗ ।
ତା' ଠାରେ ବିଷ୍ଣୁ ଅନୁରାଗ ॥୯୮
ସର୍ବତ୍ର ସମଦୃଷ୍ଟି ଏହି ।
ଅଚ୍ୟୁତ ପ୍ରିୟ ଯେହ୍ନେ ମୁହିଁ ॥୯୯
ମହାତ୍ମାପୁରୁଷ ଯେ ସେହି ।
ଏଣୁ ବିସ୍ମୟ ତା'ର ତହିଁ ॥୧୦୦
ନକର ସ୍ଥିରକର ମନ ।
ବିଷ୍ଣୁଭକତ ଏହୁଜନ ॥୧୦୧
ସମଦରଶୀ ଶାନ୍ତ ସେହି ।
ବିସ୍ମୟ ଏଥି ଅଛି କାହିଁ ॥୧୦୨

ଶୁକ ଉବାଚ

ଶିବଙ୍କ ଭାଗବତ ବାଣୀ ।
ହରଷେ ଶୁଣିଣ ଭବାନୀ ॥୧୦୩
ହେ ନୃପ ସ୍ଥିରକଲେ ମନ ।
ବିସ୍ମୟ ଛାଡିଲେ ବହନ ॥୧୦୪
ସେ ଚିତ୍ରକେତୁ ଏ ପ୍ରକାରେ ।
ଦେବୀର ଶାପ ଘେନିଶିରେ ॥୧୦୫
ତାହାର ଏ ସାଧୁ ଲକ୍ଷଣ ।
ଯେଣୁ କଲା ଶାପ ଗ୍ରହଣ ॥୧୦୬
ତ୍ୱଷ୍ଟାର ଦକ୍ଷିଣ-ଅଗ୍ନିରେ ।
ଜନ୍ମିଲା ଦାନବୀ-ଉଦରେ ॥୧୦୭
ବୃତ୍ର ହୋଇଲା ତା'ର ନାମ ।
ଜ୍ଞାନବିଜ୍ଞାନରେ ସମ୍ପନ୍ନ ॥୧୦୮
ସକଳ ତୁମ୍ଭଙ୍କୁ କହିଲୁ ।
ଆମ୍ଭଙ୍କୁ ଯେତେ ପ୍ରଶ୍ନ କଲୁ ॥୧୦୯
ଗୋବିନ୍ଦେ ମତି ବୃତ୍ରାସୁର ।
ଜନ୍ମର କାରଣ ତାହାର ॥୧୧୦
ଏ ଇତିହାସ ପୁଣ୍ୟସାର ।
ମହାତ୍ମା ଏ ଚିତ୍ରକେତୁର ॥୧୧୧

ବିଷ୍ଣୁଭକତ ପ୍ରାଣୀ ଯେହି ।
ତାହାଙ୍କ ଗୁଣ ଯେ ଶୁଣଇ ॥୧୧୨
ସକଳ ବନ୍ଧୁ ମୁକ୍ତ ହୋଇ ।
ବୈକୁଣ୍ଠପଦକୁ ଲଭଇ ॥୧୧୩
ଏ ଇତିହାସ ଯେ ପ୍ରଭାତେ ।
ଶୁଣାଇ ଶୁଣି ସ୍ଥିରଚିତ୍ତେ ॥୧୧୪
ହରି ସ୍ମରଣକୁ କରଇ ।
ପରମଗତିକି ଲଭଇ ॥୧୧୫
ନିରତେ ଭଜେ କୃଷ୍ଣପାଦ ।
ହରଇ ବିଷୟା-ବିଷାଦ ॥୧୧୬
ଭକ୍ତନୁଗ୍ରହ-ଭାବ ଏହି ।
ତାରନ୍ତି ପ୍ରଭୁ ଭାବଗ୍ରାହୀ ॥୧୧୭
ଏ ଗୀତେ ସ୍ଥିରକର ମନ ।
ଫିଟିବ ମୋହଭ୍ରାନ୍ତିମାନ ॥୧୧୮
ଗୋବିନ୍ଦ-ପାଦପଦ୍ମେ ଚିତ୍ତ ।
ନିବେଶି ଷଷ୍ଠସ୍କନ୍ଧ ଗୀତ ॥୧୧୯
ବୋଲଇ ଦାସ ଜଗନ୍ନାଥ ।
ଚିତ୍ରକେତୁ-ରାଜା ଚରିତ ॥୧୨୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଷଷ୍ଠସ୍କନ୍ଧେ ଚିତ୍ରକେତୁ ଶାପୋ ନାମ
ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ହରଷିତ ।
ସାନନ୍ଦେ ଶୁଣ ପରୀକ୍ଷିତ ॥୧
ସବିତା ପତ୍ନୀ ପୃଶ୍ନୀ ହୋଇ ।
ବ୍ୟାହୃତି ସାବିତ୍ରୀ ଯେ ତ୍ରୟୀ ॥୨
ଏ ତିନି କନ୍ୟାଟି ତାହାର ।
ପୁତ୍ରର ନାମ ଶୁଣ ତା'ର ॥୩
ଅଗ୍ନିହୋତ୍ର ଯେ ପଶୁ ସୋମ ।
ଚାତୁର୍ମାସ୍ୟ ଯେ ମହାଯଜ୍ଞ ॥୪
ଏ ରୂପେ ପୁତ୍ରଙ୍କର ନାମ ।
ଭଗର ବଂଶ ଏବେ ଶୁଣ ॥୫

ଭଗର ପତ୍ନୀ ସିଦ୍ଧିନାମ ।
ତା' ପୁତ୍ର ବିଭୁ ମହିମାନ ॥୬
ପ୍ରଭୁ ଆଶିଷ ଚାରିନାମ ।
କନ୍ୟାଏ ବରାରୋହା ଜନ୍ମ ॥୭
ଆଶିଷ ବରାରୋହା ତା'ର ।
କନ୍ୟା ହୋଇଲା ସେ ସିଦ୍ଧିର ॥୮
ଧାତାର ତହୁଁ ଚାରିସୁତ ।
କୁହୂ ଭାର୍ଯ୍ୟାରୁ ସାୟଂ ଜାତ ॥୯
ସିନୀବାଲୀର ପୁତ୍ର ଦର୍ଶ ।
ଅନୁମତିର ପୂର୍ଣ୍ଣମାସ ॥୧୦

ରାକାର ତହୁଁ ହେଲା ପ୍ରାତଃ ।
ଏ ରୂପେ ଧାତାବଂଶ ଖ୍ୟାତ ॥୧୧
ବିଧାତାର ଯେ କ୍ରିୟାପତ୍ନୀ ।
ତହୁଁ ହୋଇଲେ ପଞ୍ଚଅଗ୍ନି ॥୧୨
ବରୁଣ ଭାର୍ଯ୍ୟା ଚରଷଣୀ ।
ତାହାର ତହୁଁ ଭୃଗୁ ଜନ୍ମି ॥୧୩
ବାଲ୍ମୀକି ମହାଯୋଗେଶ୍ୱର ।
ବଲ୍ମୀକୁଁ ଜାତ ତାହାଙ୍କର ॥୧୪
ଅଗସ୍ତି ବଶିଷ୍ଠ ବ୍ରାହ୍ମଣ ।
କୁମ୍ଭରୁ ତାହାଙ୍କର ଜନ୍ମ ॥୧୫

Dr. Sudhanshu Sekhar Mishra

ରେବତୀ ମିତ୍ରୁଁ ପୁତ୍ରଜାତ ।
ପିପ୍ପଳ ଉତ୍ସର୍ଗ ଅରିଷ୍ଟ ॥୧୬
ପୌଲମୀ ଇନ୍ଦ୍ର ନିଜ ନାରୀ ।
ତିନିତନୟ ତାହାଙ୍କରି ॥୧୭
ଜୟନ୍ତ ଋଷଭକୁମର ।
ମୀଢୁଷ ଶୁଣ ନୃପବର ॥୧୮
ଉରୁକ୍ରମ ମାୟାବାମନ ।
ତାହାଙ୍କ ପତ୍ନୀ କୀର୍ତ୍ତି ନାମ ॥୧୯
ତା'ଠାରୁ ବୃହତ୍‌ଶ୍ଳୋକ ନାମ ।
ତନୟ ହୋଇଲା ଜନମ ॥୨୦
ସୌଭାଗ ଆଦି ତାହାଙ୍କର ।
କୁମର ହୋଇଲେ ଅପାର ॥୨୧
କଶ୍ୟପସୁତ ଯେ ବାମନ ।
ତାହାଙ୍କ ଜନ୍ମକର୍ମ ଗୁଣ ॥୨୨
ଅଦିତି ଗର୍ଭେ ତାହାଙ୍କର ।
ଯେମନ୍ତେ ହେଲା ଅବତାର ॥୨୩
ପଛେ ତାହାଙ୍କର ଚରିତ ।
କହିବା ଶୁଣ ଏକଚିତ୍ତ ॥୨୪
କଶ୍ୟପ-ବୀର୍ଯ୍ୟେ ଦିତିଗର୍ଭେ ।
ଦାନବବଂଶ ଶୁଣ ଏବେ ॥୨୫
କଶ୍ୟପବଂଶେ ଯେ ଦଇତ୍ୟ ।
ବଳି ପ୍ରହ୍ଲାଦ ଭାଗବତ ॥୨୬
ଅଶେଷ ତାହାଙ୍କ ଚରିତ ।
କହିବା ଶୁଣ ଏକଚିତ୍ତ ॥୨୭
ଦିତିର ବେନି ଯେ ନନ୍ଦନ ।
ଦୈତ୍ୟ-ଦାନବଙ୍କ ବନ୍ଦନ ॥୨୮
ହିରଣ୍ୟକଶିପୁ ପ୍ରଥମ ।
ଦ୍ୱିତୀୟେ ହରିଣ୍ୟାକ୍ଷ ନାମ ॥୨୯
ହିରଣ୍ୟକଶିପୁ ଯେ ବୀର ।
କୟାଧୁ ନାମେ ପତ୍ନୀ ତା'ର ॥୩୦
ଜମ୍ଭର କନ୍ୟା ସେ ଯୁଗତେ ।
ପ୍ରସବ କଲା ଚାରିସୁତେ ॥୩୧
ସଂହ୍ଲାଦ ଅନୁହ୍ଲାଦ ବୀର ।
ପ୍ରହ୍ଲାଦ ହ୍ଲାଦ ତା କୁମର ॥୩୨
ଏକ ଭଗିନୀ ତାହାଙ୍କର ।
ସିଂହିକା ନାମଟି ଯାହାର ॥୩୩
ରାହୁ ଯେ ତାହାର କୁମର ।
ଜନ୍ମ ବିପ୍ରଚିତ୍ତି-ବୀର୍ଯ୍ୟର ॥୩୪
ଅମୃତପାନେ ଚକ୍ରଧର ।
ଚକ୍ରେ ଛେଦିଲେ ତାରଶିର ॥୩୫
ଅମୃତପାନେ ସେ ନ ମଲା ।
ରାହୁ କେତୁ ଦ୍ୱିରୂପ ହେଲା ॥୩୬
ସଂହ୍ଲାଦ ପତ୍ନୀ କୃତ ନାମ ।
ସୁତ ତାହାର ପଞ୍ଚଜନ ॥୩୭
ଧମନୀ ପତ୍ନୀ ଯେ ହ୍ଲାଦର ।
ବାତାପି ଇଲ୍ୱଳ କୁମର ॥୩୮
ଅଗସ୍ତି ପେଟେ ମେଷରୂପେ ।
ଯେ ଭସ୍ମ ହୋଇଲା ସ୍ୱରୂପେ ॥୩୯
ଅନୁହ୍ଲାଦର ସୂର୍ମ୍ୟା ପତ୍ନୀ ।
ବାଷ୍କଳ ମହିଷ ଏ ବେନି ॥୪୦
ପ୍ରହ୍ଲାଦ ସୁତ ବିରୋଚନ ।
ଦେବୀ ତାହାର ପତ୍ନୀନାମ ॥୪୧
ତାହାର ବଳି ଯେ କୁମର ।
ତ୍ରୈଲୋକ୍ୟ ବିଖ୍ୟାତ ସେ ବୀର ॥୪୨
ଅଶନାଠାରେ ହେଲା ତା'ର ।
ବାଣ ଆଦି ଶତକୁମାର ॥୪୩
ବାଣର ପ୍ରତାପ ଯେ ତେଜ ।
ପଛେ କହିବା ମହାରାଜ ॥୪୪
ବାଣ ଆରାଧି ଈଶ୍ୱରଙ୍କୁ ।
ଲଭିଲା ପଣ ପ୍ରଭୃତ୍ୱକୁ ॥୪୫
ପୁରପାଳକ ହୋଇ ହର ।
ଅଦ୍ୟାପି ଅଛନ୍ତି ଯାହାର ॥୪୬
ଦିତିର ତନୟ ମରୁତ ।
ଊନପଚାଶ ରୂପେ ଜାତ ॥୪୭
ଜନ୍ମ ନିକଟେ ବଜ୍ରେ ହାଣି ।
ଦେବତା କଲେ ବଜ୍ରପାଣି ॥୪୮

### ପରୀକ୍ଷିତ ଉବାଚ

କେମନ୍ତେ ଅସୁର-ସ୍ୱଭାବ ।
ଛାଡ଼ିଲେ ଭୋ ମୁନି କହିବ ॥୪୯
ଇନ୍ଦ୍ରରେ ସପକ୍ଷ ହୋଇଲେ ।
କି ସାଧୁକର୍ମ ସେହି କଲେ ॥୫୦
ଶ୍ରଦ୍ଧା ଅଧିକ ଏଣୁ ମୋର ।
ଶୁଣିବି ବୋଲି ମୁନିବର ॥୫୧
ମୋହର ଜ୍ଞାନଉଦେ ଯହିଁ ।
ବିସ୍ତାରି କହିବା ଗୋସାଇଁ ॥୫୨

### ସୂତ ଉବାଚ

ଭକ୍ତିଚିତ୍ତରେ ରାଜାବାଣୀ ।
ଶୁଣିଣ ସେ ବାଦରାୟଣି ॥୫୩
ରାଜାଙ୍କୁ ଧନ୍ୟ ଧନ୍ୟ କରି ।
ଚଞ୍ଚଳଚିତ୍ତ ସ୍ଥିର କରି ॥୫୪
କହନ୍ତି ରାଜାମୁଖ ଚାହିଁ ।
ଶୁଣ ରାଜନ ମନଦେଇ ॥୫୫

### ଶୁକ ଉବାଚ

ହେ ରାଜା ସାବଧାନେ ଶୁଣ ।
ଯେ ତୋ'ର ପ୍ରଶନ କାରଣ ॥୫୬
ସେ ଦିତି କଶ୍ୟପଙ୍କ ନାରୀ ।
ଇନ୍ଦ୍ରର ପକ୍ଷ ମନେ ଧରି ॥୫୭
ବିଷ୍ଣୁରେ କରି ହତସୁତ ।
ତେଣୁ ହୋଇଣ ମୋହଗତ ॥୫୮
କ୍ରୋଧ-ଶୋକରେ ପରଜ୍ୱଳି ।
ଚିନ୍ତା କରଇ ମନେ ଭାଳି ॥୫୯
କନିଷ୍ଠ-ଭ୍ରାତୃହନ୍ତା ଏହି ।
କେବେ ମରିବ ପାପଦେହୀ ॥୬୦
କୁଟିଳ ହୃଦୟ ଏ ଜନ ।
ଏ ମଲେ ସୁଖେ ମୋ' ଶୟନ ॥୬୧
କୃମି ବିଷ୍ଠା ଭସ୍ମ ସମାନେ ।
ଯେ ଦେହ ହୋଏ ଅବସାନେ ॥୬୨
ସେ ଦେହ ପାଇଁ ପ୍ରାଣୀ ନାଶ ।
କରି ନରକେ ପରବେଶ ॥୬୩
ଯେ ପ୍ରାଣୀ ଆତ୍ମାକୁ ଜାଣଇଁ ।
ସେ ପାପେ ପ୍ରବର୍ତ୍ତଇ ନାହିଁ ॥୬୪
ଏ ଯେ ପାପିଷ୍ଠ ମୂଢ଼ମତି ।
ଏହାର ନାହିଁ ଧର୍ମଗତି ॥୬୫

Dr. Sudhanshu Sekhar Mishra

କେମନ୍ତେ ପୁତ୍ର ହେବ ଜାତ ।
ଇନ୍ଦ୍ରକୁ କରିବ ନିପାତ ॥୬୬
ଏହା ମୁଁ କରିବି ବିଧାନେ ।
ଏମନ୍ତ ବିଚାରିଣ ମନେ ॥୬୭
ଭର୍ତ୍ତାର ନିକଟେ ମିଳିଲା ।
ପ୍ରୀତିଭାବକୁ ଆଚରିଲା ॥୬୮
ନାନା-ପ୍ରକାରେ ସେବା କରି ।
ବିନୟଭାବକୁ ଆଚରି ॥୬୯
ପରମ-ପ୍ରୀତିଯୁକ୍ତ ହୋଇ ।
ମନୋଜ୍ଞବଚନ ବୋଲଇ ॥୭୦
ସସ୍ମିତ-ଅପାଙ୍ଗ-ବୀକ୍ଷଣେ ।
ସ୍ୱାମୀ ସ୍ୱବଶ କଲା ଗୁଣେ ॥୭୧
ଏମନ୍ତ କଶ୍ୟପ ଯେ ମୁନି ।
ପତ୍ନୀ-ବିନୟଭାବ ଘେନି ॥୭୨
ତାହାର ବଶ ସେ ହୋଇଲେ ।
ବାଞ୍ଛିତ ଦେବଇଁ ବୋଇଲେ ॥୭୩
ସ୍ତିରୀର ବଶ ହୋଇବାରେ ।
ବିଚିତ୍ର ନୁହଁଇ ସଂସାରେ ॥୭୪
ଆଦିସୃଷ୍ଟିରେ ପ୍ରଜାପତି ।
ପ୍ରାଣୀମାନଙ୍କୁ ସଞ୍ଜିଛନ୍ତି ॥୭୫
ପୁରୁଷ-ଅର୍ଦ୍ଧଅଙ୍ଗ ନାରୀ ।
ନର-ସ୍ୱଭାବେ ବଶ ସ୍ତିରୀ ॥୭୬
ଦିତି ଯେ ହୋଇ ସୁବେଶିତ ।
ପ୍ରଭୁ-ସେବାରେ ଉପଗତ ॥୭୭
ଦିତିରେ ହୋଇଣ ସେବିତ ।
ସେ ଯେ କଶ୍ୟପ ତପୋବନ୍ତ ॥୭୮
ପରମ ସନ୍ତୋଷ ହୋଇଲେ ।
ଏମନ୍ତ ବଚନ ବୋଇଲେ ॥୭୯

କଶ୍ୟପ ଉବାଚ

ବର ତୁ ମାଗ ଯେ ମନରେ ।
ପ୍ରସନ୍ନ ହୋଇଲି ତୋହରେ ॥୮୦
କାନ୍ତ-ପ୍ରସନ୍ନେ ସ୍ତିରୀଙ୍କର ।
ଦୁର୍ଲଭ କିବା ଇହପର ॥୮୧
ସ୍ୱାମୀଦେବତା ନାରୀଙ୍କର ।
ଦେବେ କହନ୍ତି ଧର୍ମସାର ॥୮୨
ସର୍ବଭୂତରେ ଆତ୍ମା ହୋଇ ।
ଅଛନ୍ତି ପ୍ରଭୁ ଭାବଗ୍ରାହୀ ॥୮୩
ସେ ପ୍ରଭୁ ନାନା ଦେବମତେ ।
ରୂପକୁ ଧରିଛି ଜଗତେ ॥୮୪
ଗୋବିନ୍ଦ ପୂଜନ୍ତି ଯେ ଜନେ ।
ନାନା ଯଜ୍ଞବେଦ ବିଧାନେ ॥୮୫
ଯେ ପତିବ୍ରତା ନାରୀମାନେ ।
ଆତ୍ମାଶ୍ରେୟକୁ ଚିନ୍ତି ମନେ ॥୮୬
ଅନ୍ୟୋନ୍ୟଭାବେ ଏ ଜଗତେ ।
ସ୍ୱାମୀ ପୂଜନ୍ତି ବେଦମତେ ॥୮୭
ସ୍ୱଭାବେ ମୁହିଁ ଗୋ ସୁନ୍ଦରି ।
ପ୍ରସନ୍ନ ହୋଇଲି ତୋହରି ॥୮୮
ଯେବା ଅଭିଳାଷ ତୋହରି ।
ପୂର୍ଣ୍ଣ କରିବି କୃଶୋଦରୀ ॥୮୯
ମୁଁ ଯେଉଁ ବର ଦେବି ତୋରେ ।
ଦୁର୍ଲଭ ଅନ୍ୟସ୍ତିରୀଙ୍କରେ ॥୯୦

ଦିତି ଉବାଚ

ଭୋସ୍ୱାମୀ ବର ଯେବେ ଦେବ ।
ଏକକୁମର ମୋ' ହୋଇବ ॥୯୧
ଅମର ହେବ ମୋର ସୁତ ।
ଇନ୍ଦ୍ରକୁ ନାଶିବ ଯୁକତ ॥୯୨
ଯେଣୁ ମୋ ପୁତ୍ର ମରାଇଲା ।
ପୁତ୍ରଶୋକକୁ ମତେ ଦେଲା ॥୯୩
ଶୁଣିଣ ଦିତିର ବଚନ ।
କଶ୍ୟପ ହୋଇଲେ ମଉନ ॥୯୪
ମନରେ ଗରୁ-ତାପଭର ।
କୋପେ ଚିନ୍ତନ୍ତି ମୁନିବର ॥୯୫
ଆଜ କି ଅଧର୍ମ ମହତ ।
ହୋଇଲା ମୋରେ ଉପଗତ ॥୯୬
ସ୍ତିରୀରେ କରି ମୋର ମନ ।
ହୋଇଲା ମହାହତଜ୍ଞାନ ॥୯୭
ଅନ୍ତେ ମୁଁ ଘୋର ନରକରେ ।
ନିଶ୍ଚୟେ ପଡ଼ିବି ନିର୍ଭରେ ॥୯୮
ସ୍ତିରୀର କି ଅବା ଏ ଦୋଷ ।
ସ୍ୱଭାବେ ସ୍ତିରୀ ଅବିଶ୍ୱାସ ॥୯୯
ଅବୋଧ ମୁହିଁ ଯେ ପାମର ।
ଧିକ ହେଉ ଏ ଜନ୍ମ ମୋ'ର॥୧୦୦
ଶରଦପଙ୍କଜ ଯେସନ ।
ସ୍ତିରୀମାନଙ୍କର ବଦନ ॥୧୦୧
ବଚନ ସୁଧାଶ୍ରବଣର ।
ହୃଦୟ ଯେହ୍ନେ କ୍ଷୁରଧାର ॥୧୦୨
ଏମନ୍ତ ସ୍ତିରୀଙ୍କ ସ୍ୱଭାବ ।
ଏହାଙ୍କ ଚେଷ୍ଟା କେ ଜାଣିବ ॥୧୦୩
ପ୍ରିୟ ନାହିଁକେ ସ୍ତିରୀଙ୍କର ।
କ୍ଷଣିକ-ବୁଦ୍ଧିଟି ଯାହାର ॥୧୦୪
ଯେ ପତି ପୁତ୍ର ଅବା ଭାଇ ।
ମାରନ୍ତି ନିଜ କାର୍ଯ୍ୟ ପାଇଁ ॥୧୦୫
ଅଥବା ଇତର-ଜନର ।
ହସ୍ତରେ କରନ୍ତି ସଂହାର ॥୧୦୬
କରି ଯେ ଅଛି ଅଙ୍ଗୀକାର ।
ଏହାରେ ଦେବି ବୋଲିବର ॥୧୦୭
ମୋହର ବାକ୍ୟ ମିଥ୍ୟା କାହିଁ ।
ଇନ୍ଦ୍ର ତ ବଧଯୋଗ୍ୟ ନୋହି ॥୧୦୮
ଏମନ୍ତ ହୋଇ ଯେ ବିଷୟ ।
ତହିଁକି କଳ୍ପିବା ଉପାୟ ॥୧୦୯
ଅତ୍ୟନ୍ତ ଚିନ୍ତାକରି ମୁନି ।
ଶୁଣ କହିବା ନୃପମଣି ॥୧୧୦
ଆତ୍ମାର ନିନ୍ଦାଭାବ ବହି ।
ବୋଲନ୍ତି ପତ୍ନୀମୁଖ ଚାହିଁ ॥୧୧୧

କଶ୍ୟପ ଉବାଚ

ଭୋ ସଖି ପୁତ୍ର ତୋ' ହୋଇବ ।
ନିଶ୍ଚୟ ଇନ୍ଦ୍ରକୁ ମାରିବ ॥୧୧୨
ଏକବରଷ ଶୁଚି ହୋଇ ।
ଏ ବ୍ରତ ଯେବେ ଧରୁ ତୁହି ॥୧୧୩
ତୋହର ପୁତ୍ର ଯେ ହୋଇବ ।
ଇନ୍ଦ୍ରହନ୍ତା ସେ ବୋଲାଇବ ॥୧୧୪

Dr. Sudhanshu Sekhar Mishra

କିନ୍ତୁ ବ୍ରତର ବିଘ୍ନ ହେଲେ ।
ଦେବଙ୍କ ମିତ୍ର ହେବ ଭଲେ ॥୧୧୫

ଦିତି ଉବାଚ

ଭୋ ସ୍ୱାମୀ ବ୍ରତ ଧରିବଇଁ ।
ବିଧାନ କହିବା ବୁଝାଇ ॥୧୧୬
ବ୍ରତ ଖଣ୍ଡନ ଯେ କରଇ ।
କି ଅବା ନିଷେଧ ଅଛଇ ॥୧୧୭

କଶ୍ୟପ ଉବାଚ

ପ୍ରାଣୀଙ୍କି ହିଂସା ନ କରିବ ।
କ୍ରୋଧରେ ଶାପକୁ ନ ଦେବ॥୧୧୮
ମିଥ୍ୟା ନ କହିବ ବଚନେ ।
ଛେଦିବ ନାହିଁ ନଖ-ରୋମେ॥୧୧୯
ଅମଙ୍ଗଳ ଯେ ଦ୍ରବ୍ୟ ହୋଇ ।
କେବେହେଁ ସ୍ପର୍ଶିବ ନାହିଁ ॥୧୨୦
ଜଳରେ ପଶିଣ ଯେ ସ୍ନାନ ।
କେବେହେଁ ନ କରିବ ଜାଣ॥୧୨୧
ଦୁର୍ଜନ ସଙ୍ଗତେ ଆଳାପ ।
ଆବର ନ କରିବ ପାପ ॥୧୨୨
ଅଧୌତବସ୍ତ୍ର ନ ପିନ୍ଧିବ ।
ଛଡାମାଳକୁ ନ ଘେନିବ ॥୧୨୩
ପର-ଉଚ୍ଛିଷ୍ଟ ଦେବୀଅନ୍ନ ।
କେବେ ନ କରିବ ଗ୍ରହଣ ॥୧୨୪
ଆମିଷ ନ କରି ଭୋଜନ ।
ହସ୍ତେ ନ କରି ଜଳପାନ ॥୧୨୫
ଉଚ୍ଛିଷ୍ଟ ହୋଇ ଜଳବିନେ ।
କେବେହେଁ ନ ରହିବ କ୍ଷଣେ॥୧୨୬
ବହୁ ବଚନ ନ କହିବ ।
ସନ୍ଧ୍ୟାରେ କେଶ ନ ମେଲିବ॥୧୨୭
ସଦ୍ଵରେ ଅସମ୍ଭାଳ ହୋଇ ।
କେବେ ବାହାର ହେବ ନାହିଁ॥୧୨୮
ଅଧୌତ-ଆର୍ଦ୍ରପଦ ଯେବେ ।
ଶୟନ ନ କରିବ ତେବେ ॥୧୨୯
ଉତ୍ତର-ପଶ୍ଚିମକୁ ଶିର ।
ଶୟନ ଉଭୟସନ୍ଧ୍ୟାର ॥୧୩୦

ଉଲଗ୍ନଭାବରେ ଶୟନ ।
ଏତେ ନ କରି ଆଚରଣ ॥୧୩୧
ଧଉତବସ୍ତ୍ର ପରିଧାନ ।
ଶୁଚି ହୋଇବ ଅନୁକ୍ଷଣ ॥୧୩୨
ପ୍ରାତଃକାଳରୁ ଉଠିକରି ।
ସର୍ବମଙ୍ଗଳ ବିଷ୍ଣୁସ୍ମରି ॥୧୩୩
ଲକ୍ଷ୍ମୀ ସହିତେ ନାରାୟଣ ।
ପୂଜିବ ଗୁରୁ ଗୋ-ବ୍ରାହ୍ମଣ ॥୧୩୪
ସଧବା-ସ୍ତିରୀଙ୍କି ଆଣିବ ।
ମାଳ-ଚନ୍ଦନେ ପୂଜା ଦେବ ॥୧୩୫
ଯଥାବିଧାନେ ନିଜପତି ।
ପୂଜିବ ସ୍ଥିରକରି ମତି ॥୧୩୬
ଯେ ଅନ୍ତର୍ଗତ-ଭଗବାନ ।
ତାହାଙ୍କୁ ଧ୍ୟାନ କରି ପୁଣ ॥୧୩୭
ନିଗମ-ପୁରାଣ ଶୁଣିବ ।
ବିଷ୍ଣୁରେ ମନଧ୍ୟାନ ଥିବ ॥୧୩୮
ପରମବ୍ରହ୍ମ ଯେ ପଦର ।
ଜପିବ ଦ୍ୱାଦଶଅକ୍ଷର ॥୧୩୯
ଅତିଥି ବ୍ରାହ୍ମଣ ପୂଜିବ ।
ମନସନ୍ତୋଷେ ତା'ଙ୍କୁ ଦେବ ॥୧୪୦
ଯେ ଭାବେ ଗୋବିନ୍ଦର ଭାବ ।
କହିଲେ ଏ ବ୍ରତ ଦୁର୍ଲ୍ଲଭ ॥୧୪୧
ଏକ ଅୟନ ଦୃଢ଼ଚିତ୍ତେ ।
ଧରିବ ପୁଂସବନବ୍ରତେ ॥୧୪୨
ତେବେ ଇନ୍ଦ୍ରହନ୍ତା କୁମର ।
ପାଇବୁ ଅଜର ଅମର ॥୧୪୩
ବ୍ରତକୁ ଧରିବି ବୋଇଲା ।
ଚଞ୍ଚଳଚିତ୍ତ ସ୍ଥିର କଲା ॥୧୪୪
କଶ୍ୟପ-ବୀର୍ଯ୍ୟ ଗର୍ଭେ ଧରି ।
ବିଧିରେ ବ୍ରତକୁ ଆଚରି ॥୧୪୫
ଦିତିର ଏମନ୍ତ ବିଧାନ ।
ଇନ୍ଦ୍ର ଜାଣିଲେ ହେ ରାଜନ ॥୧୪୬
ଦିତିର ବ୍ରତ ଦେଖିକରି ।
ଇନ୍ଦ୍ର ତା' ସେବାକୁ ଆଚରି ॥୧୪୭

ପବିତ୍ର ଶୁଚିମନ୍ତ ହୋଇ ।
ତାହାଙ୍କ ସଙ୍ଗତେ ବୁଲଇ ॥୧୪୮
ନିତ୍ୟେ ବନରୁ ପୁଷ୍ପଫଳ ।
ସମିଧ କୁଶ କନ୍ଦମୂଳ ॥୧୪୯
ପତ୍ର ଅଙ୍କୁର ଜଳ ଆଣି ।
ସମୀପେ ଦ୍ୟନ୍ତି ବଜ୍ରପାଣି ॥୧୫୦
ଏମନ୍ତେ ବ୍ରତ-ଛିଦ୍ର ତା'ର ।
ଇନ୍ଦ୍ର ଇଚ୍ଛଇ ନୃପବର ॥୧୫୧
ଯେମନ୍ତେ ବ୍ୟାଧ ଯେ ମୃଗର ।
ଛିଦ୍ର ଚାକଇ ନିରନ୍ତର ॥୧୫୨
କେବେହେଁ ବ୍ରତଛିଦ୍ର ସେହି ।
ଅନେକ ଯତ୍ନେ ନ ଦେଖଇ ॥୧୫୩
ତୀବ୍ରଚିନ୍ତାରେ ଇନ୍ଦ୍ର ମନ ।
ଛନ୍ନ ହୋଇଲା ହେ ରାଜନ ॥୧୫୪
ଶକ୍ର ବିଚାରୁଅଛି ମନେ ।
ମୋ ଶତ୍ରୁ ନାଶିବି କେସନେ॥୧୫୫
ଏମନ୍ତେ ଗଲା କେତେଦିନ ।
ଶୁଣ ବିଧାତା ବିଡ଼ମ୍ବନ ॥୧୫୬
ବ୍ରତରେ କୃଶ ହୋଇଛନ୍ତି ।
ସନ୍ଧ୍ୟାରେ ଏକଦିନେ ଦିତି ॥୧୫୭
ବିଧାତାବଶେ ମୋହ ହୋଇ ।
ଉଚ୍ଛିଷ୍ଟେ ଜଳସ୍ପର୍ଶ ନାହିଁ ॥୧୫୮
ପାଦଧଉତ ନ କରିଣ ।
କଲେ ସେ ଭୂମିରେ ଶୟନ ॥୧୫୯
ନିଦ୍ରାରେ ହତ ତା'ର ଜ୍ଞାନ ।
ଶକ୍ର ଦେଖିଲେ ବ୍ରତହୀନ ॥୧୬୦
ଯୋଗବଳରେ ଦେବଈଶ ।
ଦିତିର ଗର୍ଭରେ ପ୍ରବେଶ ॥୧୬୧
ସେ ବଜ୍ରଧର ବଜ୍ରଧରି ।
ସପତଖଣ୍ଡ ଗର୍ଭ କରି ॥୧୬୨
ଶୁଦ୍ଧକନକ ପ୍ରାୟ ହୋଇ ।
ଗର୍ଭ ତାହାର ବିରାଜଇ ॥୧୬୩
ବଜ୍ରରେ ସାତଖଣ୍ଡ ହୋଇ ।
ରୋଦନ କରନ୍ତି ଯେ ସେହି ॥୧୬୪

Dr. Sudhanshu Sekhar Mishra

ଏକକୁ ସାତଖଣ୍ଡ କରି ।
ନ କାନ୍ଦ ବୋଲେ ବଜ୍ରଧାରୀ ॥ ୧୬୫
ଯେ ସପ୍ତଖଣ୍ଡ ହୋଇଛନ୍ତି ।
ଇନ୍ଦ୍ରକୁ ବଚନ ବୋଲନ୍ତି ॥ ୧୬୬
ଭୋ ଇନ୍ଦ୍ର ତୁ ଆମ୍ଭମାନଙ୍କୁ ।
କିପାଇଁ ଭଜିଲୁ ହିଂସାକୁ ॥ ୧୬୭
ତୋହର ଆମ୍ଭେମାନେ ଭାଇ ।
ମରୁତ ଆମ୍ଭନାମ ହୋଇ ॥ ୧୬୮
ତୁମ୍ଭର ସଖାଭାବେ ଥିବୁ ।
ସୁରଭାବକୁ ଆଚରିବୁ ॥ ୧୬୯
ଇନ୍ଦ୍ର ବୋଇଲେ ଭାଇମାନେ ।
ଭୟ ନ କର ତୁମ୍ଭେ ମନେ ॥ ୧୭୦
ଅନନ୍ୟଭାବକୁ ଆଚର ।
ହୋଇବ ପାରିଷଦ ମୋର ॥ ୧୭୧

ଶୁକ ଉବାଚ

ମରୁତ ହୋଇ ଅଣଚାଶ ।
ରହିଲେ ଦେବରାଜ ପାଶ ॥ ୧୭୨
ଦିତିର ଗର୍ଭେ ଯେ ନ ମଲେ ।
ବିଷ୍ଣୁର ଅନୁକମ୍ପା ବଳେ ॥ ୧୭୩
ଅନେକ ବାର ସେହି ମାନ ।
କୁଳିଶେ ହୋଇଲେ ଛେଦନ ॥ ୧୭୪
ଦ୍ରୋଣକୁମର ଶରେ ତୁହି ।
ଯେମନ୍ତ ହେଲୁ କୁରୁସାଇଁ ॥ ୧୭୫
ମେଘ ଆଶ୍ରୟ କରି ସେହି ।
ରହିଲେ ଇନ୍ଦ୍ର ଆଜ୍ଞା ପାଇ ॥ ୧୭୬
ବାରେକ ଗୋବିନ୍ଦ ଭଜନେ ।
ପାପ ନାଶନ୍ତି ପ୍ରାଣୀମାନେ ॥ ୧୭୭
କିଛି ନିଉନ ସମ୍ୱତ୍ସର ।
ଯେଣୁ ପୂଜିଲା ସେ ଈଶ୍ୱର ॥ ୧୭୮
ଏହି କାରଣୁ ଇନ୍ଦ୍ରେ କରି ।
ପବନ ଦେବ ଦେହ ଧରି ॥ ୧୭୯
ଅସୁରଭାବକୁ ଛାଡ଼ିଲେ ।
ଅମରଭାବ ଆଚରିଲେ ॥ ୧୮୦
ନିଦ୍ରା ଉପେକ୍ଷିଣ ବସିଲେ ।
ଦିତି ପୁତ୍ରଙ୍କୁ ଅନାଇଲେ ॥ ୧୮୧
ଅନଳ ପ୍ରଭା ପ୍ରାୟ ହୋଇ ।
କୁମରମାନେ ଛନ୍ତି ରହି ॥ ୧୮୨
ଇନ୍ଦ୍ର-ସମେତେ ପୁତ୍ରଗଣେ ।
ଦେଖି ବିସ୍ମୟ ଦିତି ମନେ ॥ ୧୮୩
ଇନ୍ଦ୍ରର ଚାହିଁଣ ବଦନ ।
ଦିତି ଯେ ବୋଲନ୍ତି ବଚନ ॥ ୧୮୪
ଅଦିତି-ପୁତ୍ରଙ୍କୁ ମୋହର ।
ଭୟକୁ ଦେବ ଏ କୁମର ॥ ୧୮୫
ଏମନ୍ତ ମୁହିଁ ଇଚ୍ଛାକଲି ।
ଦୁସ୍ତର-ବ୍ରତ ଆଚରିଲି ॥ ୧୮୬
ହେ ତାତ ଏକଇ-କୁମର ।
ମୁହିଁ ଯେ ମାଗିଥିଲି ବର ॥ ୧୮୭
ସପତ-ସପ୍ତ ଏ କେସନେ ।
କହ ଏ କେବଣ ବିଧାନେ ॥ ୧୮୮
ତୋହର ମୁଖୁ ଏ ବିଧାନ ।
ଶୁଣିବି ମୁହିଁ ଭୋ ନନ୍ଦନ ॥ ୧୮୯
ସତ୍ୟ କହିବୁ ମୋର ଆଗେ ।
ମିଥ୍ୟା ନ କହି ଅନୁରାଗେ ॥ ୧୯୦

ଇନ୍ଦ୍ର ଉବାଚ

ଭୋ ମାତ ଶୁଣ ସାବଧାନ ।
କହଇ ଏଥିର ବିଧାନ ॥ ୧୯୧
ଭୂମିରେ କଲ ଯେ ଶୟନ ।
ନିଦ୍ରା ମୋହିତ ତବ ମନ ॥ ୧୯୨
ତୁମ୍ଭର ବ୍ରତ-ଛିଦ୍ର ଚାହିଁ ।
ନିକଟେ ମିଳିଲି ମୁଁ ଯାଇ ॥ ୧୯୩
ଗର୍ଭ ଛେଦିଲି ଆତ୍ମହିତେ ।
ବିଚାର ନାହିଁ ଧର୍ମପଥେ ॥ ୧୯୪
ଗର୍ଭକୁ ସାତଖଣ୍ଡ କରି ।
ଛେଦିଲି ଧର୍ମ ନ ବିଚାରି ॥ ୧୯୫
ସାତକୁମରେ ହେଲେ ଜାତ ।
ଏକକୁ କଲି ସାତ ସାତ ॥ ୧୯୬
ତେବେହେଁ ନ ମଲେ ଏ କେହି ।
ଏ ତ ସଂଶୟ ବଡ଼ ହୋଇ ॥ ୧୯୭
ସେବାରୁ ମହାପୁରୁଷର ।
ସିଦ୍ଧି ଯେ ହୋଇଛି ତୁମ୍ଭର ॥ ୧୯୮
ପରମେଶ୍ୱର-ଆରାଧନ ।
ସକଳମଙ୍ଗଳ କାରଣ ॥ ୧୯୯
ନିରତେ କରନ୍ତି ଯେ ନରେ ।
ଆତ୍ମଜ୍ଞାନୀ ବୋଲି ତାହାରେ ॥ ୨୦୦
ଭଗବାନର ଆରାଧନ ।
ଯେ ନର ନିଷ୍କାମ ମନେଣ ॥ ୨୦୧
ମୋକ୍ଷ ହିଁ ନ କରଇ ଇଚ୍ଛା ।
କେବଳ କୃଷ୍ଣରେ ସଦିଚ୍ଛା ॥ ୨୦୨
ନିତ୍ୟେ କରନ୍ତି ଯେ ଭଜନ ।
ସକଳଦୁଃଖ ତା' ମୋଚନ ॥ ୨୦୩
ଆତ୍ମପଦ ଯେ ଭଗବାନ ।
ତାହାଙ୍କୁ କଲେ ଆରାଧନ ॥ ୨୦୪
ତାହାର ନାହିଁ ଅକୁଶଳ ।
ସେ ସର୍ବ ପରମମଙ୍ଗଳ ॥ ୨୦୫
ଦୁର୍ଜନଭାବ ଏ ମୋହର ।
ଭୋ ମାତ ଦୋଷ କ୍ଷମାକର ॥ ୨୦୬
ସ୍ୱଭାବେ ବାଳିଶ ମୁଁ ହୋଇ ।
ତୁମ୍ଭର ସହିବା ଯୋଗାଇ ॥ ୨୦୭
ମୃତ୍ୟୁରୁ ଏ ଯେ ତୋ କୁମରେ ।
ରହିଲେ ତୁମ୍ଭର ଭାଗ୍ୟରେ ॥ ୨୦୮
ତୋହର ମୁହିଁ ଯେ କୁମର ।
ରହିବି ତୋର ବଚନର ॥ ୨୦୯

ଶୁକ ଉବାଚ

ଆଜ୍ଞା ମାଗିଣ ସୁନାସୀର ।
ଶୁଦ୍ଧଭାବ ଘେନି ମନର ॥ ୨୧୦
ମରୁତଗଣଙ୍କୁ ଘେନିଲେ ।
ଆନନ୍ଦେ ଦିତିଙ୍କି ନମିଲେ ॥ ୨୧୧

Dr. Sudhanshu Sekhar Mishra

ଶୁଣ ରାଜନ ଚୂଡ଼ାମଣି ।
ସ୍ୱର୍ଗକୁ ଗଲେ ବଜ୍ରପାଣି ॥୨୧୨
ଯେ ପ୍ରଶ୍ନ କଲୁ ତୁ ଆମ୍ଭରେ ।
କହିଲି ଜନହିତସାରେ ॥୨୧୩
ମଙ୍ଗଳ-ମରୁତଙ୍କ ଜନ୍ମ ।
ଈଶ୍ୱର-ମହିମା କଥନ ॥୨୧୪
ବୋଲଇ ଦାସ ଜଗନ୍ନାଥ ।
ଦେବ-ଅସୁରଙ୍କ ଚରିତ ॥୨୧୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ
ମରୁତ୍ ଉତ୍ପତ୍ତି କଥନେ ନାମ
ଅଷ୍ଟାଦଶୋଽଧ୍ୟାୟଃ ॥

---

## ଉନବିଂଶ ଅଧ୍ୟାୟ

ପରୀକ୍ଷିତ ଉବାଚ

ଭୋ ମୁନି ଶୁଣ ସାବଧାନ ।
ଯେ ବ୍ରତ ନାମ ପୁଂସବନ ॥୧
ତୁମ୍ଭେ ଯେ କହିଲ ବିଧାନ ।
ପୁଣି ଶ୍ରବଣେ ମୋର ମନ ॥୨
ଯେ ବ୍ରତ ପ୍ରସାଦରୁ କରି ।
ପ୍ରସନ୍ନ ହୁଅନ୍ତି ମୁରାରି ॥୩
ପ୍ରଥମେ ମାର୍ଗଶିର ମାସ ।
ଶୁକ୍ଳ ପ୍ରତିପଦ ଦିବସ ॥୪
ଭର୍ତ୍ତାର ଆଜ୍ଞା ପରମାଣେ ।
ବ୍ରତ କରିବେ ସ୍ତିରୀଗଣେ ॥୫
ଏ ବ୍ରତେ ହୋଇ ସର୍ବସିଦ୍ଧି ।
ଆଦରେ କଲେ ଯଥାବିଧି ॥୬
ବ୍ରାହ୍ମଣେ କରିଣ ବରଣ ।
ଶୁଣିବ ମରୁତଙ୍କ ଜନ୍ମ ॥୭
ଶୁଚି ହୋଇବ କରି ସ୍ନାନ ।
ଶୁକ୍ଳବସନ ପରିଧାନ ॥୮
ପୂର୍ବରୁ ଭୋଜନ ନ କରି ।
ଚଞ୍ଚଳମନ ସ୍ଥିରେ ଧରି ॥୯ ॥
ଲକ୍ଷ୍ମୀ ସହିତେ ଭଗବାନ ।
ପୂଜିବ ହୋଇ ତୋଷମନ ॥୧୦
ପଦ୍ମଚରଣ ଚିନ୍ତି ଧ୍ୟାନେ ।
ସ୍ତୁତି କରିବ ଏ ବିଧାନେ ॥୧୧
ହେ ନିରପେକ୍ଷ ପୂର୍ଣ୍ଣକାମ ।
ନମସ୍ତେ ପ୍ରଭୁ ଆତ୍ମାରାମ ॥୧୨

ନମୋ ମହାବିଭୁ ଈଶ୍ୱର ।
ସକଳ ସିଦ୍ଧିର ଠାକୁର ॥୧୩
ଅନନ୍ତଗୁଣେ ଯୁକ୍ତ ତୁହି ।
ନମସ୍ତେ ପ୍ରଭୁ ଭାବଗ୍ରାହୀ ॥୧୪
ଭୋ ଦେବି ଗୋବିନ୍ଦ ଘରଣି ।
ଅଶେଷଗୁଣେ ସୁଲକ୍ଷଣୀ ॥୧୫
ଲୋକମାତ ସୃଷ୍ଟିକାରଣ ।
ମୋହରେ ହୁଅ ତୁ ପ୍ରସନ୍ନ ॥୧୬
ନମଇଁ ତୋହର ଚରଣ ।
ଜଗତ ଯାହାର ଭିଆଣ ॥୧୭
ନମଇଁ ପ୍ରଭୁ ଭଗବତ ।
ମହାପୁରୁଷ ଆଦିଭୂତ ॥୧୮
ମହାବିଭୂତି-ପତି ତୁହି ।
ମହାବିଭୂତି-ଯୁକ୍ତ ହୋଇ ॥୧୯
ଅଖିଳ-ବ୍ରହ୍ମାଣ୍ଡ-ଈଶ୍ୱର ।
ଗ୍ରହଣ କର ଉପହାର ॥୨୦
ଏମନ୍ତ କରି ଆରାଧନ ।
ପୂଜିବ ଲକ୍ଷ୍ମୀ-ନାରାୟଣ ॥୨୧
ପାଦ୍ୟ ଅର୍ଘ୍ୟ ଯେ ଆବାହନ ।
ବିଧିରେ କରାଇ ସ୍ନାହାନ ॥୨୨
ଦିବ୍ୟବସନ ସମର୍ପିବ ।
ଶୁକ୍ଳଉତ୍ତରୀ ନିବେଦିବ ॥୨୩
ନାନାଭୂଷଣ ଗନ୍ଧଧୂପ ।
ପ୍ରସନ ଉପହାର ଦୀପ ॥୨୪
ଆବର ଯେତେ ଉପହାର ।
ସ୍ଥାପିବ ବିଷ୍ଣୁର ଛାମୁର ॥୨୫

ବିଷ୍ଣୁରେ ଦେଇ ଯେତେ ଦ୍ରବ୍ୟ ।
ଆନନ୍ଦେ ତାହା ସମର୍ପିବ ॥୨୬
କୃଷ୍ଣର ଯେତେ ଭାବରସ ।
ଆନନ୍ଦେ କରିବ ପ୍ରକାଶ ॥୨୭
ହବି ଆହୂତି ଯେ ଦ୍ୱାଦଶ ।
ଅନଳେ ଦେବ ଅବଶେଷ ॥୨୮
ନମୋ ଭଗବାନ ଈଶ୍ୱର ।
ମହାପୁରୁଷ ଦେବବର ॥୨୯
ମହାବିଭୂତିପତି ତୁହି ।
ସ୍ୱାହା ବୋଲି ଅର୍ପିବ ତହିଁ ॥୩୦
ଲକ୍ଷ୍ମୀ ଅଚ୍ୟୁତ ବେନିଜନ ।
ବରଦାୟକ ନରାୟଣ ॥୩୧
ଭକ୍ତିରେ ନିତ୍ୟେ ଯେ ପୂଜିବ ।
ସର୍ବସମ୍ପଦ ସେ ଲଭିବ ॥୩୨
ଭାବରେ ହୋଇ ଭକ୍ତିଯୁକ୍ତ ।
ସାଷ୍ଟାଙ୍ଗେ କରି ଦଣ୍ଡବତ ॥୩୩
ମନ୍ତ୍ର ଜପିବ ଦଶବାର ।
ଏ ସ୍ତୋତ୍ର କରିବ ଉଚ୍ଚାର ॥୩୪
ତୁମ୍ଭେ ଯେ ତ୍ରୈଲୋକ୍ୟ ଈଶ୍ୱର ।
ସକଳ-ବ୍ରହ୍ମାଣ୍ଡ-ଠାକୁର ॥୩୫
ସଂସାର-ପରମକାରଣ ।
ତୁମ୍ଭେ ଯେ ପ୍ରଭୁ ନାରାୟଣ ॥୩୬
ଏ ଯେ ସୂକ୍ଷ୍ମମାୟା-ପ୍ରକୃତି ।
ଦୁରନ୍ତ ଅଟଇ ଶକତି ॥୩୭
ଏହାର ତୁମ୍ଭେ ଅଧୀଶ୍ୱର ।
ସାକ୍ଷାତ ପୁରୁଷଙ୍କ ପର ॥୩୮

Dr. Sudhanshu Sekhar Mishra

ତୁମ୍ଭେ ସକଳ-ଯଜ୍ଞମୟ ।
ପତ୍ନୀରୂପରେ ଲକ୍ଷ୍ମୀ ହୁଅ ॥୩୯
ଅଶେଷ-କ୍ରିୟାର ଈଶ୍ୱରୀ ।
ଫଳଭୋକ୍ତା ନରହରି ॥୪୦
ଗୁଣାଦି ଗୁଣର କାରଣ ।
ତତ୍ତ୍ୱଭାବନ ଭଗବାନ ॥୪୧
ସର୍ବଶରୀରେ ଆତ୍ମା ତୁହି ।
ଲକ୍ଷ୍ମୀ ଇନ୍ଦ୍ରିୟ ପ୍ରାଣ ହୋଇ ॥୪୨
ନାମ ରୂପ ଏ ଭଗବତୀ ।
ଆଶ୍ରୟରୂପେ ତୁମ୍ଭ ସ୍ଥିତି ॥୪୩
ଯେମନ୍ତେ ତୁମ୍ଭେ ବ୍ରହ୍ମାଣ୍ଡର ।
ବର-ଦିଅନ୍ତା ହେ ଈଶ୍ୱର ॥୪୪
ତେମନ୍ତ ହୋଇ ଚକ୍ରଧର ।
ସର୍ବମଙ୍ଗଳ ହେଉ ମୋର ॥୪୫
ଲକ୍ଷ୍ମୀନିବାସ ଯେ ପୁରୁଷ ।
ଏହି ସ୍ତୁତିରେ କରି ତୋଷ ॥୪୬
ପୂଜିବ ଲକ୍ଷ୍ମୀନାରାୟଣ ।
ଯେ ପ୍ରଭୁ ବ୍ରହ୍ମାଣ୍ଡ-କାରଣ ॥୪୭
ପୂଜା-ଉପଚାର ଲେଛିବ ।
ସନ୍ତୋଷେ ଆଚମନ ଦେବ ॥୪୮
ଏଥିଉତ୍ତାରୁ ପୁନର୍ବାର ।
ଅର୍ଚ୍ଚନା କରିବ ଈଶ୍ୱର ॥୪୯
ଯଜ୍ଞ-ଉଚ୍ଛିଷ୍ଟ ଯେବାଥିବ ।
ମନ ସନ୍ତୋଷେ ତା' ଭକ୍ଷିବ ॥୫୦
ଚିତ୍ତରେ ହୋଇ ଭାବଭକ୍ତି ।
ପୁଣି କରିବ ନାନା ସ୍ତୁତି ॥୫୧
ସ୍ୱାମୀଙ୍କି ଭକ୍ତିରେ ପୂଜିବ ।
ଈଶ୍ୱରଭାବରେ ଚିନ୍ତିବ ॥୫୨
ନାନାପ୍ରୀତିରେ ବାକ୍ୟ ଭରି ।
ସ୍ୱାମୀ ତୋଷିବ ନିଜନାରୀ ॥୫୩
ପତ୍ନୀ ସହିତ ହୋଇ କରି ।
ସର୍ବକର୍ମ ସ୍ୱାମୀ ଆଚରି ॥୫୪

ଏ ବ୍ରତ ପତିପତ୍ନୀ ଦୁଇ ।
ଅଭାବେ ଏକା ବା କରଇ ॥୫୫
ଏ ବିଷ୍ଣୁବ୍ରତକୁ ଧରିବ ।
କେବେହେଁ ଭଗ୍ନ ନ କରିବ ॥୫୬
ଗନ୍ଧମାଲ୍ୟ ମଣିଭୂଷଣେ ।
ବ୍ରତେ ତୋଷିବ ବିପ୍ରଗଣେ ॥୫୭
ଭକ୍ତିରେ ଯୁକ୍ତ କରି ମନ ।
ନିୟମେ ଥିବ ପ୍ରତିଦିନ ॥୫୮
ସାକ୍ଷାଙ୍ଗେ ଈଶ୍ୱର ନମିବ ।
ସ୍ୱସ୍ଥାନେ ନେଇ ବସାଇବ ॥୫୯
ଭକ୍ତିଭାବରେ ବେନିଜନ ।
ନିର୍ମାଲ୍ୟ କରିବ ଭୋଜନ ॥୬୦
ସର୍ବକାମନା ପୂର୍ଣ୍ଣ ପାଇଁ ।
କରିବ ଭକ୍ତିଯୁକ୍ତ ହୋଇ ॥୬୧
ଏ ପୂଜାବିଧି ବାରମାସ ।
କରିବ ଏକଇ ବରଷ ॥୬୨
ଏ ମଧ୍ୟେ ମଳମାସ ଯେବେ ।
ଛାଡିବ-ଏକମାସ ତେବେ ॥୬୩
କାର୍ତ୍ତିକପୂର୍ଣ୍ଣିମା ଦିବସେ ।
ରହିବ ପୁଣି ଉପବାସେ ॥୬୪
ତାହାର ଯେଉଁ ପରଦିନ ।
ପ୍ରଭାତେ କରି ଆଚମନ ॥୬୫
ପୂର୍ବର ପ୍ରାୟେ କରି ପୁଣି ।
ବିଷ୍ଣୁ ଅର୍ଚ୍ଚିବ ତହୁଁ ଆଣି ॥୬୬
ଚରୁ ଘୃତ ସମିଧ କ୍ଷୀରେ ।
ହୋମ କରିବ ଏ ବିଧିରେ ॥୬୭
ଯଜ୍ଞବିଧାନେ ପାକ ଶେଷ ।
ଆହୁତି ଦେବ ଯେ ଦ୍ୱାଦଶ ॥୬୮
ଆଶିଷ ଘେନିବ ମସ୍ତକେ ।
ବ୍ରାହ୍ମଣମାନଙ୍କର ବାକ୍ୟେ ॥୬୯
ସାକ୍ଷାଙ୍ଗେ କରି ନମସ୍କାର ।
ଆଜ୍ଞା ଘେନିବ ବିପ୍ରଙ୍କର ॥୭୦

ଆଚାର୍ଯ୍ୟ କରିଣ ଅଗ୍ରତେ ।
ଶୁଚି ହୋଇ ବନ୍ଧୁ ସହିତେ ॥୭୧
ପତ୍ନୀକି ଚରୁ ଦେବ ନେଇ ।
ସୁପୁତ୍ର ସୌଭାଗ୍ୟର ପାଇଁ ॥୭୨
ଏ ବିଷ୍ଣୁବ୍ରତ ଯେ କରଇ ।
ବାଞ୍ଛିତଫଳ ସେ ଲଭଇ ॥୭୩
ଯେ ସ୍ତିରୀ ଏ ବ୍ରତ ଆଚରି ।
ସୌଭାଗ୍ୟ ଲଭେ ସେ ସୁନ୍ଦରୀ ॥୭୪
ଉତ୍ତମପୁତ୍ର ସ୍ୱାମୀ ଯଶ ।
ଏ ସର୍ବ ଲଭଇ ଅକ୍ଳେଶ ॥୭୫
ଏ ବ୍ରତେ କନ୍ୟା ଲଭେ ବର ।
ଉତ୍ତମଲକ୍ଷଣ ଯାହାର ॥୭୬
ବିଧବା ଅପୁତ୍ରିକ ନୋହି ।
ସେ ନାରୀ ନିଷ୍ପାପ ହୁଅଇ ॥୭୭
ଦୁର୍ଭଗା ସୌଭାଗ୍ୟ ଲଭଇ ।
ବିରୂପ ସୁରୂପ ହୁଅଇ ॥୭୮
ମୃତବତ୍ସିକା ଯେବା ନାରୀ ।
ଚିରଞ୍ଜିବୀ ପୁତ୍ର ତାହାରି ॥୭୯
ସର୍ବରୋଗରୁ ମୁକ୍ତ ହୋଇ ।
ନିର୍ମଳ ହୋଏ ତା'ର ଦେହୀ ॥୮୦
ସୌଭାଗ୍ୟବତୀ ଧନେଶ୍ୱରୀ ।
ଅନ୍ତେ ଲଭନ୍ତି ବିଷ୍ଣୁପୁରୀ ॥୮୧
ସକଳ କର୍ମର ଅନ୍ତରେ ।
ଯେ ଏହା ପଢ଼େ ନିରନ୍ତରେ ॥୮୨
ପିତୃଦେବତା ତୋଷ ହୋଇ ।
ବାଞ୍ଛିତଫଳ ତା'ରେ ଦେଇ ॥୮୩
ହୋମର ଅବସାନେ ତା'ର ।
ସନ୍ତୋଷ ଅଗ୍ନି ଚକ୍ରଧର ॥୮୪
ମରୁତଜନ୍ମ ହେ ରାଜନ ।
ତୁମ୍ଭେ ଯେ ମୋତେ କଲ ପ୍ରଶ୍ନ ॥୮୫
ଦିତିର ବ୍ରତ ଆଦି କରି ।
ତୋ' ଆଗେ କହିଲୁ ବିସ୍ତାରି ॥୮୬

Dr. Sudhanshu Sekhar Mishra

ଏଣେ ଯେ ହୋନ୍ତି ସାବଧାନ ।
ଲଭନ୍ତି ଧର୍ମ ଅର୍ଥ କାମ ।।୮୭
ଅନ୍ତେ ପଶନ୍ତି ହରିଦେହେ ।
ଶ୍ରୀମୁଖେ କହେ ଦେବରାୟେ ।।୮୮

ଏଣୁ ଯେ ସୁବୋଧ ପଣ୍ଡିତ ।
ନିତ୍ୟେ ଶୁଣିବ ଏ ଚରିତ ।।୮୯
ତାହାର ପାପବନ୍ଧ ନାହିଁ ।
ଅବଶ୍ୟ ବୈକୁଣ୍ଠ ଲଭଇ ।।୯୦

ବୋଲଇ ଦାସ ଜଗନ୍ନାଥ ।
ପବନ ଜନ୍ମର ଚରିତ ।।୯୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ବୈୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଷଷ୍ଠସ୍କନ୍ଧେ ପୁଂସବନବ୍ରତ କଥନଂ ନାମ ଏକୋନବିଂଶୋଽଧ୍ୟାୟଃ ।।

---

Dr. Sudhanshu Sekhar Mishra

## ସପ୍ତମ ସ୍କନ୍ଧ

### ପ୍ରଥମ ଅଧ୍ୟାୟ

ନମଇଁ ନୃସିଂହ ଚରଣ ।
ଅନାଦି ପରମ କାରଣ ॥୧
ଲୀଳା-ବିହାରେ ତନୁଧରି ।
ମର୍ତ୍ତ୍ୟେ କେ ପାରେ ସାଧକରି ॥୨
କୃଷ୍ଣ ଚରଣେ ଦେଇ ଚିତ୍ତ ।
ବୋଲନ୍ତି ବ୍ୟାସଙ୍କର ସୁତ ॥୩

ଶୁକ ଉବାଚ

ଏବେ ହୋ ଶୁଣ କୁରୁମଣି ।
ହରିଚରିତ ସୁଧାବାଣୀ ॥୪
ଜନ୍ମବାସନା କର୍ମଫଳେ ।
ପ୍ରାଣୀ ଭୁଞ୍ଜନ୍ତି ଏ ଶଯଳେ ॥୫
ସପ୍ତମ ସ୍କନ୍ଧେ ଭାଗବତେ ।
କହିବା ଶୁଣ ଏକଚିତ୍ତେ ॥୬
କହିବା ପଞ୍ଚତତ୍ତ୍ୱ ଗୁଣ ।
ଶୁଣ ନୃପତି ସାବଧାନ ॥୭
କର୍ମ ବାସନା ରୂପ ଧରି ।
ବେନି ପ୍ରକାରେ ସେ ସଞ୍ଚରି ॥୮
ଶୁଭ ଅଶୁଭ ବେନି ପଦେ ।
ପ୍ରକାଶ କରେ ହେତୁ ଭେଦେ ॥୯
ମହତ ଅପମାନ କୋପେ ।
ଅସୁର ଜନ୍ମ ପୁତ୍ର ରୂପେ ॥୧୦
ପୁଣ ମହତ ଅନୁଗ୍ରହେ ।
ସେ କର୍ମ ଶୁଭଫଳ ବହେ ॥୧୧
ଶୁଣ କହିବା ପ୍ରିୟ ଭାବେ ।
ଯେ ଯହିଁ ଯେମନ୍ତ ପ୍ରସ୍ତାବେ ॥୧୨
ବୈକୁଣ୍ଠେ ହରି ଦ୍ୱାରପାଳ ।
ଜୟ ବିଜୟ ମହାବଳ ॥୧୩
ସେ ବେନି ଭାଇ ହରିଦ୍ୱାରେ ।
ଖଟନ୍ତି ସେବା ଅନୁସାରେ ॥୧୪
ଚତୁଃସନଙ୍କ କୋପ ଫଳେ ।
ଜନ୍ମିଲେ ଅସୁରଙ୍କ କୁଳେ ॥୧୫
ବ୍ରାହ୍ମଣେ ଅପରାଧ କରି ।
ଜନ୍ମ ଲଭିଲେ ଦେହଧରି ॥୧୬

ଅସୁର ଅଂଶେ ଅବତାର ।
ହିରଣ୍ୟକଶିପୁ କୁମର ॥୧୭
ସେ ପଦ୍ମଚରଣରେ ମୁହିଁ ।
ନିରତେ ଶରଣ ପଶଇ ॥୧୮
ସପ୍ତମ ସ୍କନ୍ଧେ ପ୍ରହଲ୍ଲାଦ ।
ଚରିତ ଅମୃତ ସମ୍ବାଦ ॥୧୯
ନୃସିଂହ ଅମୃତ ଚରିତ ।
ଆଖ୍ୟାରେ ରହୁ ମୋ'ର ଚିତ୍ତ ॥୨୦
ସାଧୁ ସୁଜନେ କୃପାକର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୨୧
ଏମନ୍ତେ ଶୁଣ ହେ ରାଜନ ।
ହରି ଚରିତ ସୁଧାପାନ ॥୨୨
ସେ ପ୍ରହଲ୍ଲାଦ ଦୈତ୍ୟଦେହେ ।
ନାରଦ ମୁନି ଅନୁଗ୍ରହେ ॥୨୩
ଶ୍ରୀକୃଷ୍ଣ ଚରଣ-କମଳେ ।
ନିଶ୍ଚଳ ଭକ୍ତି-ଯୋଗବଳେ ॥୨୪
ଜନ୍ମ-ବାସନା-ହେତୁ ସ୍ମରି ।
କୃଷ୍ଣ ଭକତି ଦୃଢ଼େ ଧରି ॥୨୫
ବିଷ୍ଣୁ ଭକତ ହୋଇ ଯେବେ ।
ଭକତି କରେ ସେହୁ ଭାବେ ॥୨୬
ତାହାକୁ ରଖେ ଭଗବାନ ।
ନ ସହେ ଭକ୍ତ ଅପମାନ ॥୨୭
ଜୟ ବିଜୟ ବେନି ଭାଇ ।
ଅସୁର ଅଂଶେ ଜନ୍ମ ହୋଇ ॥୨୮
ହରିଙ୍କି ଅପରାଧ କଲେ ।
ତୃତୀୟ ଜନ୍ମେ ନିସ୍ତରିଲେ ॥୨୯
ଏଣୁ ପଣ୍ଡିତ ପ୍ରାଣୀମାନେ ।
ମହତ ଅନୁଗ୍ରହ ଧ୍ୟାନେ ॥୩୦
ଯତ୍ନ କରନ୍ତି ନିରନ୍ତରେ ।
ଆତ୍ମାକୁ ଆପଣେ ଉଦ୍ଧାରେ ॥୩୧
ଏ ଭାବ ମୁନିଗଣେ ଚିନ୍ତି ।
ଭବ ସାଗରୁ ତରିଯା'ନ୍ତି ॥୩୨

ଏ ଆଦି-ଅନ୍ତ ତୋତେ କହି ।
ଶୁଣ ପରୀକ୍ଷ ମନଦେଇ ॥୩୩
ଦିତି ଉଦରେ ଦେହ ବହି ।
ଜୟ ବିଜୟ ବେନି ଭାଇ ॥୩୪
ବିଷ୍ଣୁ ବଇରୀ ନିରନ୍ତରେ ।
ସ୍ୱଭାବେ ଅସୁର ବେଭାରେ ॥୩୫
ତାହାଙ୍କ କୁଳେ ପ୍ରହଲ୍ଲାଦ ।
ଶ୍ରୀକୃଷ୍ଣ ଭକ୍ତ ମଧ୍ୟେ ବୁଧ ॥୩୬
ଏ ପିତାପୁତ୍ର ମଧ୍ୟଗତେ ।
ପୂର୍ବ ବାସନା ଅନୁମତେ ॥୩୭
ମହାନ୍ତ-କୋପ-ଅନୁଗ୍ରହ ।
ବାସନା ଭେଦ ଏ ନିଶ୍ଚୟ ॥୩୮
ବାସନାବଳେ କର୍ମ ଜାତ ।
ଦଶ ଅଧ୍ୟାୟ ଏ ଚରିତ ॥୩୯
ପ୍ରଥମ ଅଧ୍ୟାରେ ପ୍ରସ୍ତାବ ।
କହିବା ପିତାପୁତ୍ର ଭାବ ॥୪୦
ହିରଣ୍ୟକଶିପୁ-କୁମର ।
କୃଷ୍ଣ ଭକତ ମଧ୍ୟେ ବର ॥୪୧
ବ୍ରାହ୍ମଣ ଶାପେ ବେନି ଭାଇ ।
ଅସୁର-ଅଂଶେ ଜାତ ହୋଇ ॥୪୨
ଇନ୍ଦ୍ରର ଅର୍ଥେ ଭଗବାନ ।
ଅସୁର କଲେକ ନିଧନ ॥୪୩
ତେଣୁ କଶ୍ୟପ ଋଷି-ନାରୀ ।
ସେ ଦିତି ମନେ କୋପ କରି ॥୪୪
ପୁତ୍ରଙ୍କ ମରଣ ବିଶ୍ୱାସେ ।
ନିର୍ଘାତେ ରୋଦେ ଦଶ ଦିଶେ ॥୪୫
ଏମନ୍ତ ଶୁକ ବାକ୍ୟ ଶୁଣି ।
ବୋଲେ ପାଣ୍ଡବ-ଚୂଡ଼ାମଣି ॥୪୬

ପରୀକ୍ଷିତ ଉବାଚ

ଭୋ ମୁନି ଶୁଣ ମୋ ବଚନ ।
ସେ ହରି ସର୍ବ ଘଟେ ପୂର୍ଣ୍ଣ ॥୪୭

Dr. Sudhanshu Sekhar Mishra

ପ୍ରିୟ ଅପ୍ରିୟ ନାହିଁ ଯା'ର ।
ବିଶେଷେ ଶରଣ ସୋଦର ॥୪୮
ସେ କିପାଁ ଇନ୍ଦ୍ରଙ୍କ ବୋଲରେ ।
ନିର୍ଦ୍ଦୟେ ଅସୁର ସଂହାରେ ॥୪୯
ବିଷମ ମତ ଏ ତାହାର ।
ଯେ ହରି ଜଗତ ସୋଦର ॥୫୦
ସୁରଗଣଙ୍କ ପକ୍ଷ ଧରେ ।
ନିଷ୍ଠୁରେ ଅସୁର ସଂହାରେ ॥୫୧
ଯେ ହରି ସର୍ବ ଜୀବଗତି ।
ସେ ନିକି ଆଚାରେ ଅନୀତି ॥୫୨
ଅଶେଷ ଜନ୍ତୁ ହୃଦେ ଥାଇ ।
ଅନ୍ତରେ ସର୍ବ ସେ ଦେଖଇ ॥୫୩
ଆତ୍ମାର ନିସ୍ତାରଣ କରେ ।
ସେ କିପାଁ ଭେଦବୁଦ୍ଧି ଧରେ ॥୫୪
ଦେବ-ଅସୁର ତା'ର ଦେହୀ ।
ସମ-ବିଷମ ତା'ର କାହିଁ ॥୫୫
ସ୍ୱଭାବେ ତ୍ରିଗୁଣ ଶରୀର ।
ଯେ ନିରଞ୍ଜନ ନିର୍ବିକାର ॥୫୬
ନିର୍ଗୁଣ ନିତ୍ୟ ଦେବପତି ।
ସକଳ ଭୂତେ ତା'ର ସ୍ଥିତି ॥୫୭
ଏଣୁ ଗୋବିନ୍ଦ ଗୁଣ କର୍ମେ ।
ସଂଶୟେ ମୋ'ର ଚିତ୍ତ ଭ୍ରମେ ॥୫୮
ପୁଚ୍ଛଇ ଚରଣେ ତୁମ୍ଭର ।
ମନୁ ସଂଶୟ ଦୂରକର ॥୫୯

ଶୁକ ଉବାଚ

ଭୋ ନୃପ ସାଧୁ ତୋ'ର ବାଣୀ ।
ତୁ ଯେ ପଚାରୁ ପରିମାଣି ॥୬୦
ଅଦ୍ଭୁତ କୃଷ୍ଣର ମହିମା ।
କେ ଜାଣିପାରେ ଗୁଣ ସୀମା ॥୬୧
ଏ ଗ୍ରନ୍ଥ ଭାଗବତ ଶୁଣ ।
କୃଷ୍ଣର ଭକତି ଲକ୍ଷଣ ॥୬୨
ପରମ-ଜ୍ଞାନମୟବାଣୀ ।
ଯେ ଶୁଣେ ଯେବା ମୁଖେ ଭଣି॥୬୩
ନାରଦ ଆଦି ମୁନିଗଣେ ।
ଯାହା ଗାବନ୍ତି ଅନୁକ୍ଷଣେ ॥୬୪
ବ୍ୟାସଚରଣେ ସେବି ମୁହିଁ ।
କହିବି ଯେ ଅବା ଜାଣଇ ॥୬୫
ସେ ହରି ସ୍ୱଭାବେ ନିର୍ଗୁଣ ।
ଅଜନ୍ମା ଅବ୍ୟକ୍ତ କାରଣ ॥୬୬
ସ୍ୱଭାବେ ସର୍ବଗୁଣ ପର ।
ବ୍ରହ୍ମା ଶଙ୍କରେ ଅଗୋଚର ॥୬୭
ସେ ମାୟା ଗୁଣ ଆଶ୍ରେ କରି ।
ବଧ୍ୟ ବଧିକ ରୂପ ଧରି ॥୬୮
ଯେ ସତ୍ତ୍ୱ ରଜ ତମ ଗୁଣ ।
ପ୍ରକୃତି ଏହାଙ୍କ କାରଣ ॥୬୯
ଆତ୍ମାର ଗୁଣ ଏ ନୁହନ୍ତି ।
ପ୍ରକୃତି ରୂପେ ପ୍ରକାଶନ୍ତି ॥୭୦
ଉଦୟ ଅସ୍ତ ଏକାବେଳେ ।
ନୁହଁନ୍ତି ଗୁଣ କାଳବଳେ ॥୭୧
ସୃଷ୍ଟି ପାଳନ କରେ ହରି ।
ସତ୍ତ୍ୱଗୁଣକୁ ଆଶ୍ରେ କରି ॥୭୨
ଦେବତା-ଋଷି ରୂପ ହୋଇ ।
ସ୍ୱଧର୍ମେ ସୃଷ୍ଟି ସେ ପାଳଇ ॥୭୩
ରଜଗୁଣକୁ ଆଶ୍ରେକରି ।
ଅସୁରମାନଙ୍କୁ ବିସ୍ତାରି ॥୭୪
ଯକ୍ଷ ରାକ୍ଷସ ତମଗୁଣେ ।
ସୃଜଇ କାଳର ପ୍ରମାଣେ ॥୭୫
ଜ୍ୟୋତିସ୍ୱରୂପେ ପ୍ରକାଶଇ ।
ବିଚାରେ କାହିଁ ନ ମିଶଇ ॥୭୬
କାଷ୍ଠ ସଂଯୋଗେ ଅଗ୍ନି ଯେହ୍ନେ ।
ଜଳେ ଯେସନେ ପତ୍ରସ୍ଥାନେ ॥୭୭
ଆକାଶେ ଯେହ୍ନେ ଜଳଘଟେ ।
ତେମନ୍ତ ରୂପେ ସେ ପ୍ରକଟେ ॥୭୮
ମାୟାରେ ନାନା ରୂପ ହୋଇ ।
ସେ ମାୟା ତା'କୁ ନ ଲାଗଇ ॥୭୯
ଏହା ବିଚାରି ମୁନିଜନେ ।
ଆତ୍ମାକୁ ଆତ୍ମା ଅନୁମାନେ ॥୮୦
ସଂଶୟ ନ କରନ୍ତି ମନେ ।
ହରି-ବିଷୟ କ୍ରୀଡ଼ାସ୍ଥାନେ ॥୮୧
ସେ କାଳମାୟା-ଯୋଗ-ଯୁତେ ।
ପୁର ସର୍ଜ୍ଜଇ ଏ ଜଗତେ ॥୮୨
ରଜ-ଗୁଣରେ ସୃଷ୍ଟି କରେ ।
କାରଣୁ ବ୍ରହ୍ମରୂପ ଧରେ ॥୮୩
ଦେବାଧି ଦେବ ଦେହ ମଧ୍ୟେ ।
ବସଇ ସତ୍ତ୍ୱ-ଅନୁବାଦେ ॥୮୪
ରମିବା ଅର୍ଥେ ଭାବଗ୍ରାହୀ ।
ଅଶେଷ ଜନ୍ତୁ ହୃଦେ ଥାଇ ॥୮୫
କ୍ରୀଡ଼ାର ଅନ୍ତେ ସେ ଆପଣେ ।
ସୃଷ୍ଟି-ସଂହରେ ତମୋଗୁଣେ ॥୮୬
ସେ ସୃଷ୍ଟି ଆଦ୍ୟ କାଳେ ହରି ।
ଜୀବ ପ୍ରକୃତି ରୂପ ଧରି ॥୮୭
ପ୍ରଧାନ ପୁରୁଷ ଏ ବେନି ।
ଜଗତ ପିଅର-ଜନନୀ ॥୮୮
ନିମିତ୍ତେ ଏହା ସଙ୍ଗେ ଘେନି ।
ହରିବିହରେ ଏ ମେଦିନି ॥୮୯
ତା'ଙ୍କ ଆଶ୍ରୟେ ସଙ୍ଗମେଳେ ।
ଜଗତ ଭିଆଇଲା କାଳେ ॥୯୦
ସେ କାଳ ହରି ଆଜ୍ଞା ଘେନି ।
ପ୍ରଧାନ-ପୁରୁଷ ଏ ବେନି ॥୯୧
ଉଭୟ ମତେ ନାନାଗୁଣେ ।
ହୋଇଲେ ସୃଷ୍ଟିର କାରଣେ ॥୯୨
ସେ ହରି କାଳ ରୂପ ଧରେ ।
ସାତ୍ତ୍ୱିକେ ଦେବଙ୍କୁ ଉଦ୍ଧରେ ॥୯୩
ଦେବଙ୍କ ପ୍ରିୟକର୍ମ କରେ ।
ଅସୁର ବଳକୁ ସଂହାରେ ॥୯୪
ଏଣୁ ସେ ପ୍ରଭୁ ଭଗବାନ ।
ବହଇ ସୁରପ୍ରିୟ ନାମ ॥୯୫
ରଜ ତାମସ ଗୁଣ ଯେତେ ।
ତା'ଙ୍କୁ ସଂହାରେ ଅବିରତେ ॥୯୬
ଏବେ ହେ ଶୁଣ ନରନାଥ ।
କୃଷ୍ଣ ଚରିତ ଭାଗବତ ॥୯୭
ତାହାଙ୍କ ମହିମା ବିଶେଷ ।
ଶୁଣ କହିବା ଇତିହାସ ॥୯୮
ରାଜୁସି ଯଜ୍ଞସଭା ଅନ୍ତେ ।
ଧର୍ମ ନନ୍ଦନର ଅଗ୍ରତେ ॥୯୯
ନାରଦ ମୁନି ଯାହା କହି ।
ସେ ସଭା ମଧ୍ୟେ ପାଞ୍ଚ ଭାଇ ॥୧୦୦

Dr. Sudhanshu Sekhar Mishra

ଦେବକୀ ନନ୍ଦନର ତୁଲେ ।
ଧର୍ମ ନନ୍ଦନ ପଚାରିଲେ ॥୧୦୧
ସେ ସଭା ମଧ୍ୟେ ଧର୍ମବଳୀ ।
ନୟନେ ଅଦ୍ଭୁତ ଦେଖିଲା ॥୧୦୨
ଶିଶୁପାଳର ପଞ୍ଚପ୍ରାଣ ।
ଗୋବିନ୍ଦେ ପଶିଲା ତକ୍ଷଣ ॥୧୦୩
ସଭାଲୋକଙ୍କ ଦୃଷ୍ଟିମାର୍ଗେ ।
ବିଜୁଳି ଯେହ୍ନେ ନୀଳମେଘେ॥୧୦୪

ଯୁଧିଷ୍ଠିର ଉବାଚ

ଭୋ ମୁନି ଅଦ୍‌ଭୁତ ଏ କଥା।
ଦେଖି ମୋ' ମନେ ଗରୁଚିନ୍ତା॥୧୦୫
ଅଷ୍ଟାଙ୍ଗ ଯୋଗେ ମୁନିଗଣ ।
ଚିନ୍ତନ୍ତି ଯେ ହରିଚରଣ ॥୧୦୬
ଏକାନ୍ତ ଭକ୍ତିଯୋଗେ ଚିନ୍ତି ।
ଯା' ରୂପ କେହି ନ ଦେଖନ୍ତି ॥୧୦୭
ଦେବମାନବେ ଅଗୋଚର ।
ଯେ ବ୍ରହ୍ମ ନିତ୍ୟ-ନିରାକାର ॥୧୦୮
ଏ ଦମଘୋଷର କୁମର ।
ସ୍ୱଭାବେ ଦୁଷ୍ଟ-ଦୁରାଚାର ॥୧୦୯
କୃଷ୍ଣେ ଅନେକ ନିନ୍ଦାକଲା ।
ସେ କିପାଁ କୃଷ୍ଣଙ୍କୁ ପାଇଲା ॥୧୧୦
ଏ ସଭା ମଧ୍ୟେ ଏକେ ମୁହିଁ ।
ତୁମ୍ଭର ଛାମୁରେ ପୁଚ୍ଛଇ ॥୧୧୧
କହ ହେ କେବଣ କାରଣେ ।
ଶୁଣନ୍ତୁ ସକଳେ ଶ୍ରବଣେ ॥୧୧୨
ବିଷ୍ଣୁଙ୍କୁ ବିଷ୍ଣୁଜନ-ମେଳେ ।
ଯେବା ନିନ୍ଦନ୍ତି ଜ୍ଞାନଭୋଳେ ॥୧୧୩
ସେ ପ୍ରାଣୀ ନରକେ ପଡ଼ନ୍ତି ।
ମହାନ୍ତେ ଏମନ୍ତ କହନ୍ତି ॥୧୧୪
ସେ ଦମଘୋଷ-ସୁତ ବାଣୀ ।
ସଭାରେ ଦନ୍ତବକ୍ତ୍ର ଶୁଣି ॥୧୧୫
ସେହି ଅନକେ ନିନ୍ଦାକଲା ।
ମୋତେ ତ ସନ୍ଦେହ ଲାଗିଲା ॥୧୧୬
ଏ ବେନି ଜନେ ନିନ୍ଦାକଲେ।
ସଭାର ମଧ୍ୟେ ଏକତୁଲେ ॥୧୧୭
କୃଷ୍ଣଙ୍କୁ ନିନ୍ଦା କରି ତୁଣ୍ଡେ ।
କିପାଁ ନ ଗଲେ ଯମ ଦଣ୍ଡେ ॥୧୧୮
କେବଣ ହେତୁ ବେନିବୀରେ।
ପଶିଲେ କୃଷ୍ଣର ଶରୀରେ ॥୧୧୯
ଏଣେ ଭ୍ରମଇ ମୋ'ର ମନ ।
ବନେ ଯେସନେ ହୁତାଶନ ॥୧୨୦
କାରଣ କହ ମୁନି ମୋତେ ।
ଶୁଣିଲେ ଯିବଇଁ ପରତେ ॥୧୨୧

ଶୁକ ଉବାଚ

ଏମନ୍ତେ ଧର୍ମ ସୁତ-ବାଣୀ ।
ଆନନ୍ଦେ ଶୁଣି ବ୍ରହ୍ମମୁନି ॥୧୨୨
କହନ୍ତି ରାଜାର ଅଗ୍ରତେ ।
ସକଳେ ଶୁଣନ୍ତି ଯେମନ୍ତେ ॥୧୨୩

ନାରଦ ଉବାଚ

ଏ ଯେତେ ନିନ୍ଦା-ସ୍ତୁତି ଅର୍ଥେ।
ମନୁଷ୍ୟ ଶରୀର ଜଗତେ ॥୧୨୪
ପ୍ରକୃତି-ପୁରୁଷ-ସଂଯୋଗେ ।
ଜନ୍ମଇଁ ଅବିବେକ ଭାବେ ॥୧୨୫
ବହଇ ହିଂସା ଅଭିମାନ ।
ଦଣ୍ଡ ପୌରୁଷ ସାବଧାନ ॥୧୨୬
ମୁହିଁ ମୋହର ବୋଲି ଜାଣେ।
ଯାବତ ବଶ ତିନିଗୁଣେ ॥୧୨୭
ଶରୀର ସ୍ୱଭାବ ଏମନ୍ତେ ।
ସଂସାର ମଧ୍ୟେ ଛନ୍ତି ଯେତେ ॥୧୨୮
ଆତ୍ମାଭିମାନେ ଦେହ ବହି ।
ଲୁବ୍ଧେ ପ୍ରାଣୀ ବଧ ହୋଇ ॥୧୨୯
ସେ ପୁଣି କୈବଲ୍ୟ ଆସ୍ଥାନେ।
ନ ଘଟେ ଆତ୍ମା-ଅନୁମାନେ ॥୧୩୦
ହରି ବିଷୟେ କର୍ମ ଯେତେ ।
କୈବଲ୍ୟ ଭୁଞ୍ଜେ ପ୍ରାଣୀ ଅନ୍ତେ ॥୧୩୧
କେ ଭଜେ ରିପୁ-ଅନୁବନ୍ଧେ ।
କେ ଅବା ମିତ୍ର ଭାବେ ସଧେ ॥୧୩୨
କେ ଅବା ଭଜେ ତା'କୁ ଡରେ।
କେ ଅବା ପ୍ରିୟ ଭାବ କରେ ॥୧୩୩
କେ କାମ ଭାବେ ଅନୁସରେ।
କେ ଅବା ସ୍ନେହେ ଚିନ୍ତା କରେ॥୧୩୪
ଏ ସର୍ବଜନେ ଅନ୍ତକାଳେ ।
ପଶନ୍ତି ଚରଣ କମଳେ ॥୧୩୫
ନିତ୍ୟେ ବଇରୀ ଭାବେ ଚିନ୍ତି।
ହରିଙ୍କି ଯେମନ୍ତେ ଲଭନ୍ତି ॥୧୩୬
ନିଶ୍ଚଳ ଚିତ୍ତେ ନିତ୍ୟେ ଧ୍ୟାୟୀ।
ଯୋଗୀଏ ଲଭିବେ ତା' କାହିଁ॥୧୩୭
ଏ ଭାବ ନିଶ୍ଚେ ମୋ'ର ମନେ।
ଏବେ ହୋ ଶୁଣ ସାବଧାନେ॥୧୩୮
ଭ୍ରମର ଯେତେ କୀଟ ମାରେ।
ନେଇ ସ୍ଥାପଇ ନିଜ ଘରେ ॥୧୩୯
ସେ କୀଟ ପ୍ରାଣ ଯିବାକାଳେ।
ସଭୟେ ଦେଖିଥାଇ ଡୋଳେ॥୧୪୦
ସ୍ୱଭାବେ ଭୟଯୋଗେ ମରେ।
ତା'ର ସ୍ୱରୂପ ଅନ୍ତେ ଧରେ ॥୧୪୧
ଏମନ୍ତେ କୃଷ୍ଣର ବିଷୟେ ।
ସେ ମାୟା ମନୁଷ୍ୟର ଦେହେ॥୧୪୨
ବଇରୀ ପଣେ ତା'କୁ ଚିନ୍ତି ।
ନିର୍ମଳ-ହୃଦୟେ ପଶନ୍ତି ॥୧୪୩
ଏ ଘେନି କାମ-କ୍ରୋଧ-ଭୟେ।
ଯେବା ଭଜନ୍ତି ମିତ୍ର ସ୍ନେହେ ॥୧୪୪
କୃଷ୍ଣ ବିଷୟେ ଚିତ୍ତ ଦେଇ ।
ଅନେକ ଗଲେ ମୋକ୍ଷ ହୋଇ ॥୧୪୫
ଗୋପ ନଗରେ ଗୋପୀ ଯେତେ।
କୃଷ୍ଣ ଭଜିଲେ କାମଚିତ୍ତେ ॥୧୪୬
ବ୍ରାହ୍ମଣ ପତ୍ନୀ ଦେବ ନାରୀ ।
ମଥୁରାପୁର-ମନୋହାରୀ ॥୧୪୭
ରାଜକୁମାରୀ-ଆଦି ଯେତେ ।
ତରିଲେ ଭାବି କାମଚିତ୍ତେ ॥୧୪୮
କଂସାଦି ଦୈତ୍ୟେ ଭୟ କଲେ।
ଅନ୍ତେ ସେ ଗୋବିନ୍ଦେ ପଶିଲେ॥୧୪୯
କ୍ଷତ୍ରିୟ-ଶିଶୁପାଳ ଆଦି ।
ତରିଲେ ହୋଇଣ ବିବାଦୀ ॥୧୫୦
ଯାଦବ-କୃଷ୍ଣ ବଂଶ ଯେତେ ।
ତୁ ଭକ୍ତ ଭ୍ରାତୃ ସ୍ନେହମତେ ॥୧୫୧

Dr. Sudhanshu Sekhar Mishra

ମୁହିଁ ତା' ଚରଣ କମଳେ ।
ଭକତି କରଇ ନିଶ୍ଚଳେ ॥୧୫୨
ପୂର୍ବେ ଯେ ବେଣ ସତ୍ୟଯୁଗେ ।
ନିତ୍ୟେ ଭଜିଲେ ଶତ୍ରୁ ଭାବେ ॥୧୫୩
ବ୍ରାହ୍ମଣ-ଶାପୁଁ ନାଶ ଗଲା ।
ଅନ୍ତେ ସେ ନରକେ ପଡ଼ିଲା ।୧୫୪
ଏଣୁ ହରିଙ୍କି ନାନା ମତେ ।
ଯେ ଭଜିପାରେ ଦୃଢ଼ ଚିତ୍ତେ ॥୧୫୫
ନିର୍ଭୟେ ଗୋବିନ୍ଦେ ପଶନ୍ତି ।
ଜନ୍ମ-ମରଣୁଁ ନିସ୍ତରନ୍ତି ॥୧୫୬
ଯେ ଦମଘୋଷର କାମିନୀ ।
ତୋହର ମାତାର ଭଗିନୀ ॥୧୫୭
ତା'ର ଉଦରୁ ବେନିବାଳ ।
ଯେ ଦନ୍ତବକ୍ର ଶିଶୁପାଳ ॥୧୫୮
ପୂର୍ବେ ଏ ହରିଦ୍ୱାରେ ଥିଲେ ।
ବ୍ରାହ୍ମଣ ଅପରାଧ କଲେ ॥୧୫୯
ଏ ବେନିଭାଇ ସହୋଦର ।
କୃଷ୍ଣ ସେବକ ମଧ୍ୟେ ବର ॥୧୬୦
ମହାନ୍ତ-ଅପରାଧ ଫଳେ ।
ଜନ୍ମିଲେ ଅସୁରର କୁଳେ ॥୧୬୧
ଏ ଜନ୍ମେ ମନୁଷ୍ୟ ଶରୀରେ ।
ଏବେ ମିଳିଲେ ହରିଦ୍ୱାରେ ॥୧୬୨
ନାରଦ ମୁଖୁଁ ଏ ଚରିତ ।
ଶୁଣି ବୋଲନ୍ତି ଧର୍ମସୁତ ॥୧୬୩

### ଯୁଧିଷ୍ଠିର ଉବାଚ

ଯେ ହରିନାମ ଉଚ୍ଚାରନ୍ତି ।
ସେ ସର୍ବସଂକଟୁ ତରନ୍ତି ॥୧୬୪
ଯେ ହରି-ଦ୍ୱାରପାଳ ପଣେ ।
ପାଶେ ଖଟନ୍ତି ଅନୁକ୍ଷଣେ ॥୧୬୫
ତାହାଙ୍କୁ କେବା ଶାପ ଦେଲା ।
ମୋତେ ତ ସନ୍ଦେହ ଲାଗିଲା ॥୧୬୬
ଯେ ବଇକୁଣ୍ଠ ପୁରେ ଥା'ନ୍ତି ।
ସେ ତ ସଂସାରେ ନ ପଡ଼ନ୍ତି ॥୧୬୭
ଦେହ ସମ୍ଭବ ଯହିଁ ନାହିଁ ।
ସେ କିପାଁ ବହେ ନରଦେହୀ ॥୧୬୮
କିକେ ହୋଇଲେ ଦୁରାଚାର ।
ଏଣୁ ସଂଶୟ ଚିତ୍ତେ ମୋ'ର ॥୧୬୯
ଭୋ ମୁନି ନମୁଁ ତୋ' ଚରଣ ।
କହ ଏ କେବଣ କାରଣ ॥୧୭୦
ଏମନ୍ତ ଯୁଧିଷ୍ଠି ବଚନ ।
ଶୁଣିଣ ବ୍ରହ୍ମାଙ୍କ ନନ୍ଦନ ॥୧୭୧
ଶୁଣ ରାଜନ ସାବଧାନେ ।
ଯେ କଥା ବିଷ୍ଣୁର ଭୁବନେ ॥୧୭୨
ବ୍ରହ୍ମାଙ୍କ ପୁତ୍ରେ ବେଦବାଦୀ ।
ସନକ ସନାତନ ଆଦି ॥୧୭୩
ସେ ଚାରି ଭାଇ ଏକ ଦିନେ ।
ଭ୍ରମନ୍ତି ଏ ତିନିଭୁବନେ ॥୧୭୪
ପୁଣି ସେ ଅନ୍ତରୀକ୍ଷେ ଗଲେ ।
ବିଷ୍ଣୁର ଭୁବନେ ମିଳିଲେ ॥୧୭୫
ପ୍ରବେଶ ହେଲେ ଦ୍ୱାରଦେଶେ ।
ବିଷ୍ଣୁର ଦର୍ଶନ ଲାଳସେ ॥୧୭୬
ପଞ୍ଚ ଷଟ ବରଷ ପ୍ରାୟେ ।
ସର୍ବେ ଦିଶନ୍ତି ଏକଦେହେ ॥୧୭୭
ବାଳସ୍ୱଭାବେ ଦିଗମ୍ବର ।
ସ୍ୱଭାବେ ବ୍ରହ୍ମାଙ୍କ କୁମର ॥୧୭୮
ମରୀଚି ଆଦି ମୁନିଗଣେ ।
ସେବନ୍ତି ତାହାଙ୍କ ଚରଣେ ॥୧୭୯
ତା'ଙ୍କୁ ବାଳକ ପ୍ରାୟେ ଚାହିଁ ।
ଜୟ ବିଜୟ ବେନି ଭାଇ ॥୧୮୦
ଉଲଗ୍ନ ଦେଖି ଦ୍ୱାରପାଳେ ।
ଦ୍ୱାର ନିରୋଧ କଲେ ବଳେ ॥୧୮୧
ତାହାଙ୍କ ମନ ହରିପାଦେ ।
ପଶି ନ ପାରିଲେ ପ୍ରମାଦେ ॥୧୮୨
ଦ୍ୱାରପାଳଙ୍କ ମୁଖ ଚାହିଁ ।
କୋପେ ବୋଇଲେ ଚାରିଭାଇ ॥୧୮୩
ତୁମ୍ଭେ ଯେ ଦୁଷ୍ଟ ବେନି ଭାଇ ।
ଏ ପୁରେ ଥିବା ନ ଯୋଗାଇ ॥୧୮୪
ଏ ପୁର ବଇକୁଣ୍ଠ ଧାମ ।
ଏଥେ ନପଶେ ରଜ ତମ ॥୧୮୫
ଏଥେ ନ ଥାଅ ଭାଇ ବେନି ।
ମର୍ତ୍ତ୍ୟେ ଜନ୍ମିବ ଦେହ ଘେନି ॥୧୮୬
ଅତି ପାପିଷ୍ଠ ତୁମ୍ଭ ଦେହ ।
ଅସୁରକୁଳେ ଜନ୍ମ ହୁଅ ॥୧୮୭
ତକ୍ଷଣେ ବିପ୍ରଶାପ ପାଇ ।
ଦ୍ୱାରୁ ଖସିଲେ ବେନି ଭାଇ ॥୧୮୮
ଉର୍ଦ୍ଧ୍ୱ-ଚରଣ ଅଧୋମୁଖ ।
ତକ୍ଷଣେ ଦେଖି ତା'ଙ୍କ ଦୁଃଖ ॥୧୮୯
ଦୟା ବସିଲା ତାଙ୍କ ଦେହି ।
ସ୍ନେହେ ବୋଇଲେ ଚାରିଭାଇ ॥୧୯୦
ଅସୁର ହୋଇ ବେନି ଜନ୍ମ ।
ନିତ୍ୟେ କରିବ ଦୁଷ୍ଟ କର୍ମ ॥୧୯୧
ତୃତୀୟ ଜନ୍ମେ ନର ହୋଇ ।
ଶାପୁଁ ତରିବ ବେନି ଭାଇ ॥୧୯୨
ବିଷ୍ଣୁଙ୍କୁ ଚିନ୍ତି ଅପରାଧ ।
ପୁଣି ଲଭିବ ବିଷ୍ଣୁ ପାଦ ॥୧୯୩
ପ୍ରଥମେ କଶ୍ୟପଙ୍କ ଘରେ ।
ଜନ୍ମିବ ଦିତିର ଉଦରେ ॥୧୯୪
ଜନ୍ମିଲେ ହରିଣ୍ୟକଶିପୁ ।
ହିରଣ୍ୟାକ୍ଷ ଯେ ମହାବପୁ ॥୧୯୫
ଦେବ-ଦାନବ ତା'ଙ୍କ ପାଦେ ।
ଖଟନ୍ତି ନିତ୍ୟେ ଅପ୍ରମାଦେ ॥୧୯୬
ହିରଣ୍ୟାକ୍ଷର ଗର୍ବ ଭରେ ।
ମହୀ କମ୍ପଇ ଥରହରେ ॥୧୯୭
ସେ କଷ୍ଟ ହରି ନ ସହିଲେ ।
ଶୂକର ରୂପକୁ ଧଇଲେ ॥୧୯୮
ଧରଣୀ ଉଦ୍ଧାରଣ ପାଇଁ ।
ବରୁଣ ପୁରେ ହେଲେ ଯାଇ ॥୧୯୯
ସେ ଦୁଷ୍ଟ ହିରଣ୍ୟାକ୍ଷ ବୀର ।
ଅସୀମ ବଳ ଅଟେ ଯା'ର ॥୨୦୦
ବରାହ ରୂପ ଦେଖି କୋପେ ।
ମିଳିଲା ଗୋବିନ୍ଦ ସମୀପେ ॥୨୦୧
ଅନେକ ଗଦାଯୁଦ୍ଧ କଲା ।
ଶବଦେ ବ୍ରହ୍ମାଣ୍ଡ କମ୍ପିଲା ॥୨୦୨
ବିଷ୍ଣୁର ଗଦାଘାତ ବଳେ ।
ପ୍ରାଣ ଛାଡ଼ିଲା ରସାତଳେ ॥୨୦୩
ବିଷ୍ଣୁ ନୃସିଂହ ରୂପ ଧରି ।
ହିରଣ୍ୟକଶିପୁ ବିଦାରି ॥୨୦୪

Dr. Sudhanshu Sekhar Mishra

ହିରଣ୍ୟକଶିପୁର ସୁତ ।
ପ୍ରହ୍ଲାଦ ଗୋବିନ୍ଦ ଭକତ ॥୨୦୫
ତା'କୁ ଅନେକ ଦୁଃଖ ଦେଇ ।
କୃଷ୍ଣ ଭଜନ ନ ସହଇ ॥୨୦୬
ସେ ପୁଣି ବିଷ୍ଣୁ ଭକ୍ତି ବଳେ ।
ଅଜୟେ ଏ ମହୀମଣ୍ଡଳେ ॥୨୦୭
ତା'କୁ ଅନେକ ଦୁଃଖ ଦେଲା ।
କେବେହେଁ ମାରି ନ ପାରିଲା॥୨୦୮
ଲୀଳାଏ ହରି ତା'କୁ ମାରି ।
ପୁଣି ଜନ୍ମିଲେ ଦେହ ଧରି ॥୨୦୯
ପୁଣି ରାକ୍ଷସୀ କୋଳେ ଯାଇ ।
ବିଶ୍ରବା ଗୃହେ ବେନି ଭାଇ ॥୨୧୦
କେଶିନୀ ଗର୍ଭେ ହୋଇ ଜନ୍ମ ।
ଅନେକ କଲେ ମନ୍ଦ କର୍ମ ॥୨୧୧
ରାବଣ କୁମ୍ଭକର୍ଣ୍ଣ ରୂପେ ।
ତ୍ରୈଲୋକ୍ୟ ବଶ କଲେ ଦର୍ପେ॥୨୧୨
ତାହାଙ୍କୁ ରାମ ରୂପେ ମାରି ।
ରାକ୍ଷସ ଜନ୍ମରୁ ଉଦ୍ଧରି ॥୨୧୩
ସେ ରାମଚରିତ ତୁ ସୁଖେ ।
ଶୁଣିବୁ ମାରକଣ୍ଡ ମୁଖେ ॥୨୧୪
ପୁଣି ସେ ମହୀତଳେ ଜାତ ।
ତୋ' ମାତା ଭଗିନୀର ସୁତ ॥୨୧୫
ଏବେ ତୋ ଯଜ୍ଞ ସଭା ମଧ୍ୟେ ।
କୃଷ୍ଣଙ୍କୁ ନିନ୍ଦି ଅପରାଧେ ॥୨୧୬
ଗୋବିନ୍ଦ ଚକ୍ରେ ଛେଦ ହୋଇ ।
ମୋକ୍ଷ ଲଭିଲେ ବେନି ଭାଇ॥୨୧୭
ବୈରାନୁବନ୍ଧେ କରି ଧ୍ୟାନ ।
ତେଣେ ପାଇଲେ ଦିବ୍ୟଜ୍ଞାନ॥୨୧୮
ତୃତୀୟ ଜନ୍ମେ ମୋକ୍ଷ ହୋଇ ।
ଜୟ ବିଜୟ ବେନି ଭାଇ ॥୨୧୯
ପୁଣି ମିଳିଲେ ନିଜ ପୁରେ ।
ବିଷ୍ଣୁର ବୈକୁଣ୍ଠ ଦୁଆରେ ॥୨୨୦
ଏମନ୍ତେ ଶୁଣି ଧର୍ମସୁତ ।
ମୁନି ଚରଣେ ଦେଇ ହସ୍ତ ॥୨୨୧
ଭାବେ ପୁଲକ ତା'ର ଦେହି ।
ବୋଲେ ନାରଦ ମୁଖ ଚାହିଁ ॥୨୨୨

ଯୁଧିଷ୍ଠିର ଉବାଚ

ହିରଣ୍ୟକଶିପୁର ସୁତ ।
ସେ ଯେବେ ଗୋବିନ୍ଦ ଭକତ ॥୨୨୩
ତାହାଙ୍କୁ ପୁତ୍ରସ୍ନେହ ଛାଡ଼ି ।
ନିଷ୍ଠୁର ପଥେ କିପାଁ ଚଢ଼ି ॥୨୨୪
ହିରଣ୍ୟକଶିପୁ କିପାଁଇ ।
ପୁତ୍ରକୁ ଦ୍ରୋହ ଆଚରଇ ॥୨୨୫
ଅସୁରେ ଜାତ ପ୍ରହ୍ଲାଦ ।
କିପାଁ ଭଜିଲା କୃଷ୍ଣପାଦ ॥୨୨୬
ବୋଲଇ ଦାସ ଜଗନ୍ନାଥ ।
ନାରଦ ଆଗେ କୁନ୍ତୀସୁତ ॥୨୨୭
ଯେ ପ୍ରଶ୍ନ ସଭା ମଧେ କଲା ।
ଶ୍ରୀଭାଗବତ କୃଷ୍ଣଲୀଳା ॥୨୨୮
ସପ୍ତମ ସ୍କନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୨୨୯
ଶ୍ରୀଶୁକ କହେ ତୋଷଚିତ୍ତେ ।
ପରୀକ୍ଷ ରାଜାର ଅଗ୍ରତେ ॥୨୩୦
ଶୁଣି ରାଜନ କୃତକୃତ୍ୟ ।
ବିଷ୍ଣୁ ଚରଣେ ଦେଲା ଚିତ୍ତ ॥୨୩୧
ଯେ ଭାବେ ପାର ଦୃଢ଼େ ଧରା ।
ପାରି କରିବେ ଚକ୍ରଧର ॥୨୩୨

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ପ୍ରହ୍ଲାଦ ଚରିତ
ଉପକ୍ରମେ ପ୍ରଥମୋଽଧ୍ୟାୟଃ ॥

---

## ଦ୍ୱିତୀୟ ଅଧ୍ୟାୟ

ନାରଦ ଉବାଚ

କହନ୍ତି ବ୍ରହ୍ମାଙ୍କ ନନ୍ଦନ ।
ରାଜନ ସାବଧାନେ ଶୁଣ ॥୧
ଅସୁର କୁଳେ ଜାତ ହୋଇ ।
ଜୟ-ବିଜୟ ବେନିଭାଇ ॥୨
ହିରଣ୍ୟ-ହିରଣ୍ୟାକ୍ଷ ବୀର ।
ତପେ ତୋଷିଲେ ବେଦବର ॥୩
ତିନିଭୁବନେ ମହାତେଜେ ।
ଅସୁର ବଳ ଘେନି ରାଜେ ॥୪
ହିରଣ୍ୟକଶିପୁ ଅସୁର ।
ବଳେ ହୋଇଲା ରାଜେଶ୍ୱର ॥୫
ଲୋକ ବିପ୍ଳବ ଭୟଙ୍କର ।
ତ୍ରାସେ କମ୍ପିଲେ ସୁରନର ॥୬
ତା'ର ଅନୁଜ ହିରଣ୍ୟାକ୍ଷ ।
ଗଦା-ସଂଗ୍ରାମେ ମହାଦକ୍ଷ ॥୭
ଦେବ-ମନୁଷ୍ୟ ତା'ର ତୁଲେ ।
ଗଦା ସଂଗ୍ରାମେ ଭାଜିଗଲେ ॥୮
ଏ ବେନି ଲୋକ ଜିଣି ବଳେ ।
ବିଜୟ କଲା ସେ ପାତାଳେ ॥୯
ବରୁଣ ପୁରେ ଯାଇ ମିଳି ।
ପ୍ରଚଣ୍ଡ ଗଦା ଉର୍ଦ୍ଧ୍ୱେ ତୋଳି ॥୧୦
ବୋଇଲା ମୋତେ ଯୁଦ୍ଧ ଦିଅ ।
ନୋହିଲେ ପାତାଳେ ନ ଥାଅ ॥୧୧
ମୋ'ର ଏ ପାତାଳ ଭୁବନ ।
ଏମନ୍ତେ ଗଲା କେତେଦିନ ॥୧୨
ଯଜ୍ଞ ବରାହ ରୂପ ହରି ।
ଦନ୍ତାଗ୍ରେ ଧରଣୀ ଉଦ୍ଧରି ॥୧୩
ସେ ହରି ଥିଲେ ତା'ର ପୁରେ ।
ତିନି ଭୁବନ ଉପକାରେ ॥୧୪
ଅସୁର ଦେଖି ଗଦାଧର ।
ଗଦାପ୍ରହାରେ କଲେ ଚୂର ॥୧୫
ହିରଣ୍ୟକଶିପୁ ତା' ଶୁଣି ।
କୋପେ କମ୍ପିଲା ଶିର ଧୁଣି ॥୧୬

Dr. Sudhanshu Sekhar Mishra

ଅଧର ଦଶନେ କାମୁଡ଼ି ।
ହା ହା ଶବଦେ ଶିର ତାଡ଼ି ॥୧୭
ଭ୍ରାତୃ ନିଧନେ ସେ ବିକଳେ ।
ଚାହିଁଲା ଆକାଶ ମଣ୍ଡଳେ ॥୧୮
ସଧୂମ ଦିଶେ ଦଶ ଦିଶ ।
ତା' ଦେଖି କଲା ମହାରୋଷ ॥୧୯
କରାଳ ଦନ୍ତ ଉଗ୍ର ଦୃଷ୍ଟି ।
ଲଲାଟେ କୁଟୀଳ ଭ୍ରୂକୁଟି ॥୨୦
ଶୂଳ ଉଞ୍ଚାଇ ସଭା ମଧ୍ୟେ ।
ବୋଲଇ ଭ୍ରାତୃ ଶୋକବାଦେ ॥୨୧
ଭୋ ଭୋ ଦାନବ ଦୈତ୍ୟଗଣ ।
କହଇ ସାବଧାନେ ଶୁଣ ॥୨୨
ଦିମୂର୍ଦ୍ଧା ତ୍ରିନେତ୍ର ସମ୍ବର ।
ହେ ଶତ ବାହୁ ହୟଶିର ॥୨୩
ନମୁଚି ହେ ପାକ ଇଲ୍ୱଳ ।
ହେ ବିପ୍ରଚିତ୍ତି ଶୁଣ ବୋଲ ॥୨୪
ପୁଲୋମା ଶକୁନି ସହିତେ ।
ଏ ମୋ'ର ସଭା ମଧ୍ୟେ ଯେତେ ॥୨୫
ମୋହର ବୋଲ ବେଗେ କର ।
ଏ ଶୋକ ସାଗରୁ ଉଦ୍ଧର ॥୨୬
ମୋ'ର ବଇରୀ ଦେବଲୋକେ ।
ମନୁଷ୍ୟ ମଧ୍ୟେ ଛନ୍ତି ଥୋକେ ॥୨୭
ହରିଙ୍କି ଭଜନ୍ତି ଯେ ନିତ୍ୟେ ।
ବିଚାର କରି ଏକମତେ ॥୨୮
ହରିର ପକ୍ଷ ଆଶ୍ରେ କଲେ ।
ମୋ'ର ଭ୍ରାତାକୁ ସଂହାରିଲେ ॥୨୯
ସେ ହରି ମୋହର ବଇରୀ ।
ଅତି ନିର୍ଦ୍ଦୟ ଅହଂକାରୀ ॥୩୦
ମାୟାରେ ନାନା ରୂପ ଧରେ ।
ଭକତ ସଙ୍ଗେ ସେ ବିହରେ ॥୩୧
ବାଳକ ପ୍ରାୟ ତା'ର ଗତି ।
ଏଣୁ ଅସ୍ଥିର ମୋ'ର ମତି ॥୩୨
ଏ ଶୂଳ ମାରି ତା' ଶରୀରେ ।
ତର୍ପଣ କରିବି ରୁଧିରେ ॥୩୩
ମୋ ଭାଇ ପ୍ରେତ କାର୍ଯ୍ୟ ଅର୍ଥେ ।
କହିଲି ତୁମ୍ଭର ଅଗ୍ରତେ ॥୩୪

ସେ ହରି ଦୁଷ୍ଟ ଦୁରାଚାର ।
ତା'ର ବିଶ୍ୱାସୀ ବେଗେ ମାର ॥୩୫
ସେ ମଲେ ମରିବେ ସକଳେ ।
ମୂଳ କାଟିଲେ ଯେହ୍ନେ ଡାଳେ ॥୩୬
ଯାବତ ନ ମରଇ ହରି ।
ତାବତ ଭ୍ରମ ବସୁନ୍ଧରୀ ॥୩୭
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଯେତେ ।
କୃଷ୍ଣ ଭଜନ୍ତି ଅବିରତେ ॥୩୮
ତପସ୍ୱୀ ଜନ ବେଗେ ମାର ।
ଯଜ୍ଞର ଅଗ୍ନି ନାଶକର ॥୩୯
ଋତ୍ୱିକ ଅଗ୍ନିହୋତ୍ର ଯେତେ ।
ତାହାଙ୍କୁ ମାର ଅବିରତେ ॥୪୦
ଯେ ଧର୍ମ କ୍ରିୟା ମୂଳ ହରି ।
ସେ ଥାଇ ସର୍ବଘଟେ ପୂରି ॥୪୧
ଋଷି ଦେବତା ପିତୃଗଣେ ।
ଯେ ଥା'ନ୍ତି ଧର୍ମ ପରାୟଣେ ॥୪୨
ଗୁରୁ ବ୍ରାହ୍ମଣ ଯହିଁ ତହିଁ ।
ବେଦ ପଠନେ ମନ୍ତ୍ରଧାୟୀ ॥୪୩
ଆଶ୍ରମବେତ୍ତା ଯହିଁ ପାଅ ।
ଜଳେ ବୁଡ଼ାଇ ଅଗ୍ନି ଦିଅ ॥୪୪
ଏମନ୍ତ ରାଜା ଆଜ୍ଞା ପାଇ ।
ଅସୁରେ ଗଲେ ସଜ ହୋଇ ॥୪୫
ସ୍ୱଭାବେ ଅସୁର ନିର୍ଦ୍ଦୟ ।
ପ୍ରାଣୀ ମାରଣେ ବଡ଼ ପ୍ରିୟ ॥୪୬
ଋଷି ଆଶ୍ରମ ତପୋବନେ ।
ତୀର୍ଥ ପବିତ୍ର ନାନା ସ୍ଥାନେ ॥୪୭
ତକ୍ଷଣେ ପଶି ଗ୍ରାମ ପୁରେ ।
ଗିରି-ବନସ୍ତ କ୍ଷେତ୍ର ଦ୍ୱାରେ ॥୪୮
ଖେଟ ଖର୍ବଟ ନାନା ସ୍ଥାନେ ।
ଋଷିଆଶ୍ରମ ତପୋବନେ ॥୪୯
ଗୋଋ ବ୍ରାହ୍ମଣ ଯଜ୍ଞସ୍ଥାନ ।
ଅନଳେ ଦହିଲେ ତକ୍ଷଣ ॥୫୦
ଖନିତ୍ର ଘେନି ମହାସୁରେ ।
ଭେଦିଲେ ପ୍ରାକାର ଗୋପୁରେ ॥୫୧
ସୁଗନ୍ଧ ପୁଷ୍ପ ବୃକ୍ଷ ଛେଦି ।
ଚୂତ ଚମ୍ପକ ତୁଳସାଦି ॥୫୨

ଚଳନ୍ତି ଗିରିବର ଭେଦି ।
ବୃକ୍ଷକୁ ପକାଇଲେ ଛେଦି ॥୫୩
ଅସୁର ବଳ ବେଗେ ବ୍ୟାପି ।
ଛେଦି ପକାଇଲେ ବିଟପୀ ॥୫୪
ଜୀବିକା-ବୃକ୍ଷ ଯେତେ ଥିଲେ ।
ପରଶୁ ହସ୍ତେ ତା' ଛେଦିଲେ ॥୫୫
ଏମନ୍ତ ରାଜାର ଆଦେଶେ ।
ଧର୍ମ ନାଶିଲେ ମହାରୋଷେ ॥୫୬
ନିରତେ ପ୍ରାଣୀ ନାଶ କଲେ ।
ଦେବେ ଆକାଶୁ ପଳାଇଲେ ॥୫୭
ଲୁଚିଲେ ବନ-ଗିରି-ଦ୍ରୋଣେ ।
ଯେହ୍ନେ କାନନେ ପଶୁଗଣେ ॥୫୮
ଏମନ୍ତ ପ୍ରାଣୀ ନାଶକରି ।
ଭ୍ରାତୃମରଣେ ଶୋକକରି ॥୫୯
ଭାଇର ପ୍ରେତ କାର୍ଯ୍ୟ କଲା ।
ଅନେକ ଅନ୍ନଦାନ ଦେଲା ॥୬୦
ତର୍ପଣ-ଶ୍ରାଦ୍ଧ କର୍ମ ସାରି ।
ଭ୍ରାତୃପୁତ୍ରଙ୍କୁ କୋଳେ ଧରି ॥୬୧
ତକ୍ଷଣେ ଅନ୍ତଃପୁରେ ଯାଇ ।
ସୁହୃଦ ଅସୁରଙ୍କୁ ରାଇ ॥୬୨
ଶକୁନି ସମ୍ବର ଧୃଷ୍ଟିକ ।
ଭୂତ ସନ୍ତାପନ ଯେ ବୃକ ॥୬୩
ଯେ କାଳନାଭ ମହାନାଭ ।
ହରିଚଶ୍ମଶ୍ରୁ ଉଇରବ ॥୬୪
ଉତ୍କଟ ବିକଟ ବସାଇ ।
ଅନୁଜ ପତ୍ନୀକି ଅନାଇଁ ॥୬୫
ତାହାର ନାମ ରୁଷାଭାନୁ ।
ସ୍ୱାମୀ ମରଣେ ମହାମନ୍ୟୁ ॥୬୬
ମାତା ସଙ୍ଗତେ ତା'କୁ ଆଣି ।
ବସାଇ କହେ ମଞ୍ଜୁବାଣୀ ॥୬୭

ହିରଣ୍ୟକଶିପୁ ଉବାଚ

ହେ ମାତା ବଧୂ ପୁତ୍ରେ ଶୁଣ ।
ଏ ମାୟା-ସଂସାର ଭିଆଣ ॥୬୮
ମୃତ ପ୍ରାଣୀକି ନ ସୁମରି ।
ଏ ଜୀବ ନୁହଇ କାହାରି ॥୬୯

Dr. Sudhanshu Sekhar Mishra

ବୀର ମରଣ ରିପୁମୁଖେ ।
ଲଭେ ଅକ୍ଷୟ ସ୍ୱର୍ଗ ସୁଖେ ॥୭୦
ତା'ର ମରଣେ ଚିନ୍ତା ନାହିଁ ।
ସ୍ୱର୍ଗେ ବସିଲା ମୋ'ର ଭାଇ ॥୭୧
ଏ ଭବ-ସଂସାର-ସାଗର ।
କୃଷ୍ଣର କ୍ରୀଡ଼ାର ମନ୍ଦିର ॥୭୨
ଏ ଭବେ କିଛି ସ୍ଥିର ନୋହେ ।
ପଥେ ପଥିକୀଜନ ପ୍ରାୟେ ॥୭୩
ପୂର୍ବଜନ୍ମର କର୍ମଫଳେ ।
ପ୍ରାଣୀଏ ମିଳନ୍ତି ସଂସାରେ ॥୭୪
ଜଳ ଛତ୍ରରେ ପ୍ରାଣୀ ଯେହ୍ନେ ।
ଶ୍ରମେ ମିଳନ୍ତି ଜଳପାନେ ॥୭୫
ବସିଣ ଜଳପାନ କରି ।
ତହୁଁ ଚଳନ୍ତି ଶ୍ରମ ସାରି ॥୭୬
ସେ ଯେହ୍ନେ ନୁହଇ କାହାରି ।
ସଂସାରେ ଘଟେ ସେହିପରି ॥୭୭
ଉପାଧି ବସ୍ତୁ ନାଶ ଯାଇ ।
ଆତ୍ମା କେବେ ହେଁ ନ ମରଇ ॥୭୮
ଏ ଆତ୍ମା ନିତ୍ୟ ସର୍ବଗତ ।
ଅବ୍ୟୟ ଶୁଦ୍ଧଗୁଣ ସତ୍ତ୍ୱ ॥୭୯
ସର୍ବଜ୍ଞ ସର୍ବପରେ ରହେ ।
ଆତ୍ମାରୁ ଆତ୍ମାରୂପ ବହେ ॥୮୦
ସେ ଆତ୍ମା ନିତ୍ୟ ସର୍ବଗତ ।
ଅବ୍ୟୟ ଶୁଦ୍ଧଗୁଣ ସତ୍ତ୍ୱ ॥୮୧
ବୃକ୍ଷର ଛାଇ ଜଳେ ଥିଲେ ।
ସେ ଜଳ ପବନେ ଚଳିଲେ ॥୮୨
ବୃକ୍ଷ ଚଳିଲା ପ୍ରାୟ ଦିଶେ ।
ଯେ ଯେହ୍ନେ ଉଦକେ ନମିଶେ ॥୮୩
ବାଳକେ କ୍ରୀଡ଼ାରେ ଘୂରନ୍ତି ।
ଭ୍ରମିଣ ଭୂମିରେ ପଡ଼ନ୍ତି ॥୮୪
ତାହାନ୍ତେ ଭ୍ରମଇ ସଂସାର ।
ଏମନ୍ତେ ମାୟା-କ୍ରୀଡ଼ାଘର ॥୮୫
ଏଣୁ ଏ ଭ୍ରମ ଗୁଣଦୋଷେ ।
ମନ ନ ରହଇ ବିଶ୍ୱାସେ ॥୮୬
ଅଦେହ ହୋଇ ଦେହବନ୍ତ ।
ଅଜ୍ଞାନୀ ଜନଙ୍କର ମତ ॥୮୭

ଅର୍ଜିଲା କର୍ମଫଳ ବଳେ ।
ପ୍ରାଣୀ ଭ୍ରମନ୍ତି ମହୀତଳେ ॥୮୮
ସଂସାର ସଂଯୋଗ-ବିଯୋଗେ ।
ଶୋକ ହରଷ ବେନିମାର୍ଗେ ॥୮୯
ଏ ଅର୍ଥେ ଇତିହାସ କହି ।
ଶୁଣ ଜନନୀ ମନଦେଇ ॥୯୦
ପୂର୍ବେ ଯେ ପ୍ରେତ-ବନ୍ଧୁତୁଲେ ।
ଯେବା ସମ୍ବାଦ ଯମ କଲେ ॥୯୧
ଶୁଣ ଜନନୀ ମନେତୋଷେ ।
ଯେ କଥା ଉଶୀନର ଦେଶେ ॥୯୨
ସୁଯଜ୍ଞ ନାମେ ରାଜା ଥିଲା ।
ଶତ୍ରୁ-ସଂଗ୍ରାମେ ପ୍ରାଣ ଦେଲା ॥୯୩
ତା' ଶୁଣି ତା'ର ଜ୍ଞାତି ଜନେ ।
ମିଳିଲେ ମୃତ ପିଣ୍ଡ ସ୍ଥାନେ ॥୯୪
ଦେଖିଲେ ରାଜାର ଶରୀର ।
ରୁଧିରେ ଧୂଳିରେ ଧୂସର ॥୯୫
ରତ୍ନକବଚ ଖଣ୍ଡ ଖଣ୍ଡ ।
ବିଭ୍ରମ ଅଳଂକାର ପିଣ୍ଡ ॥୯୬
ଶରେ ବିଚ୍ଛିନ୍ନ କଳେବର ।
ଶୟନ ଶ୍ମଶାନ-ଭୂମିର ॥୯୭
ବିବର୍ଣ୍ଣ କେଶ ତା'ର ମୁଣ୍ଡେ ।
ବହେ ରୁଧିର ଧାରା ତୁଣ୍ଡେ ॥୯୮
ଲଲାଟେ ଲୁଟିଛି ଲୋଚନ ।
ଓଷ୍ଠ ତା' ଦିଶଇ ବିବର୍ଣ୍ଣ ॥୯୯
ରଜେ କୁଣ୍ଠିତ ନାସା ଦ୍ୱାର ।
ଛିନ୍ନ ଆୟୁଧ ଅଛି କର ॥୧୦୦
ଏମନ୍ତେ ମିଳି ତା' ସମୀପେ ।
କାମିନୀଗଣ ଶୋକ ତାପେ ॥୧୦୧
ବନ୍ଧୁ ବାନ୍ଧବ ତୁଲେ ଯାଇ ।
କାନ୍ଦନ୍ତି ରାଜା ମୁଖ ଚାହିଁ ॥୧୦୨
ଭୋ ନାଥ ତୋହର ମରଣେ ।
ତୋ'ର ସକଳ ବଧୂ ଗଣେ ॥୧୦୩
ଜୀବନ ଥାଉଁ ଆମ୍ଭେ ମଲୁ ।
ବିଧି ଏମନ୍ତ ଭିଆଇଲୁ ॥୧୦୪
ହୃଦରେ ବେନି କରତାଡ଼ି ।
କାନ୍ଦନ୍ତି ମହୀତଳେ ପଡ଼ି ॥୧୦୫

ଚରଣ ପୁଣ ପୁଣ ଧରି ।
ଉଚ୍ଚେ କାନ୍ଦନ୍ତି ତା'ର ନାରୀ ॥୧୦୬
ଚରଣେ ସିଞ୍ଚୁ ଅଶ୍ରୁଜଳ ।
ଲୋତକେ ମିଶ୍ରିତ କଜ୍ଜଳ ॥୧୦୭
କୁଚ-କୁଙ୍କୁମ ଅଶ୍ରୁଜଳେ ।
ପଡ଼ଇ ରାଜା ପାଦତଳେ ॥୧୦୮
କେଶ-ବସନ ଅସମ୍ଭାଳ ।
ଶୁଭେ ରୋଦନ ମହାଗୋଳ ॥୧୦୯
ହା ହା ଦଇବ ତୁ ନିର୍ଦ୍ଦୟ ।
ଦୂରେ ଛେଦିଲୁ ଆମ୍ଭ ସ୍ନେହ ॥୧୧୦
ଅଦୃଷ୍ଟ ଅଚିନ୍ତିତ କର୍ମ ।
ଭିଆଇ କଲୁ ମତି ଭ୍ରମ ॥୧୧୧
ପୂର୍ବେ ଆମ୍ଭଙ୍କୁ ସୁଖ ଦେଲୁ ।
ଏବେ ତୁ ନିଷ୍ଠୁର ହୋଇଲୁ ॥୧୧୨
ପୁଣି ରାଜାର ପାଦଧରି ।
ଉଚ୍ଚେ କାନ୍ଦନ୍ତି ତା'ର ନାରୀ ॥୧୧୩
ଆମ୍ଭର ପ୍ରାଣନାଥ ତୁହି ।
ମୁହୂର୍ତ୍ତେ ତୋ' ମୁଖ ନ ଚାହିଁ ॥୧୧୪
କେମନ୍ତେ ଧରିବୁ ଜୀବନ ।
ଦିଶଇ ଦଶ ଦିଗ ଶୂନ୍ୟ ॥୧୧୫
କହ କେବଣ ଦିଗେ ଯିବୁ ।
ତୋ' ବିନୁ ଶରୀର ଦହିବୁ ॥୧୧୬
ଏମନ୍ତେ ପତି ପାଦ ଧରି ।
ଉଚ୍ଚେ ରୋଦନ୍ତି ସର୍ବନାରୀ ॥୧୧୭
ଦହନ କରି ନ ଦିଅନ୍ତି ।
ଦୁଃଖ ରହିଲେ ଗୋତ୍ରଜ୍ଞାତି ॥୧୧୮
ଏମନ୍ତେ ରବି ଅସ୍ତ ଗଲା ।
ଘୋର-ତିମିର ଆଚ୍ଛାଦିଲା ॥୧୧୯
ଅତି କାରୁଣ୍ୟ ତା'ଙ୍କ ଦେଖି ।
ସମନ ଭୁବନ ଉପେକ୍ଷି ॥୧୨୦
ଶୋକ-ନିବାରେ ଇଚ୍ଛା କରି ।
ଯମ ବାଳକ ରୂପ ଧରି ॥୧୨୧
ମିଳିଣ ତା'ଙ୍କ ସନ୍ନିଧାନେ ।
କହନ୍ତି କୋମଳ ବଚନେ ॥୧୨୨

ଯମ ଉବାଚ

ଆହେ ଅଦ୍ଭୁତ କର୍ମ ଦେଖ ।
ଏ ସର୍ବେ ବୟସେ ଅଧିକ ॥୧୨୩

Dr. Sudhanshu Sekhar Mishra

ବାଳକ ପ୍ରାୟେ ନ ଜାଣନ୍ତି ।
ବିମୋହେ ରୋଦନ କରନ୍ତି ॥୧୨୪
ଏ ପ୍ରାଣ ଯହୁଁ ଆସିଥିଲା ।
କର୍ମ-ସଙ୍ଗତେ କରି ଖେଳା ॥୧୨୫
ତହିଁକି ଗଲା କର୍ମ ଅନ୍ତେ ।
ଜାଣି ନ ଜାଣନ୍ତି କେମନ୍ତେ ॥୧୨୬
କର୍ମର ତୁଲେ ରହେ ଦେହୀ ।
କର୍ମ ସରିଲେ କେବା ରହି ॥୧୨୭
ଏଣୁ ଏ କର୍ମମୟ ଦେହୀ ।
କର୍ମୁ ଅଧିକ କେହି ନାହିଁ ॥୧୨୮
ଯହୁଁ ଅଇଲା ତା' ନ ଜାଣେ ।
ଦେହକୁ ନିତ୍ୟ ପ୍ରାୟ ମଣେ ॥୧୨୯
ଅନ୍ତେ ଯହିଁକି ପ୍ରାଣ ଯିବ ।
ଏହା ନ ଜାଣେ ବ୍ରହ୍ମା ଶିବ ॥୧୩୦
ସଂସାର ମଧ୍ୟେ ଦେହ ବହି ।
ବାଳକ-ଜନ୍ମେ ଧନ୍ୟ ମୁହିଁ ॥୧୩୧
ପିତା-ଜନନୀ ମୋ'ର ନାହିଁ ।
ବୁଲଇ ଅରକ୍ଷିତ ହୋଇ ॥୧୩୨
ବ୍ୟାଘ୍ର ଭଲ୍ଲୁକ ଜନ୍ତୁ ଯେତେ ।
କେହି ତ ନ ଭକ୍ଷିଲେ ମୋତେ ॥୧୩୩
ଗର୍ଭେ ଯେ ରକ୍ଷାକଲା ମୋତେ ।
ଏବେ ସେ ଅଛି ମୋ' ସଙ୍ଗତେ ॥୧୩୪
ଈଶ୍ୱର ଇଚ୍ଛାରେ ସର୍ଜଇ ।
ପାଳଇ ପୁଣି ସଂହାରଇ ॥୧୩୫
ତାହାର କ୍ରୀଡ଼ା ଏ ଜଗତ ।
କେ ଅବା ସୁତ ତାତ ମାତ ॥୧୩୬
ଯେ ପ୍ରାଣୀ ନିଜ ପଥ ଛୁଡ଼େ ।
ନିୟତ କର୍ମ ଯେବେ ଛାଡ଼େ ॥୧୩୭
କର୍ମ ତାହାକୁ କରେ ରକ୍ଷା ।
ଗୁରୁଙ୍କ ପ୍ରାୟେ ଦେଇ ଦୀକ୍ଷା ॥୧୩୮
ବାଳକ ଗୃହେ ଥାଇ ଯେବେ ।
କର୍ମେ ନ ଥିବ ଭାଗ୍ୟ ତେବେ ॥୧୩୯
ରକ୍ଷକ ଥିଲେ ହେଁ ମରଇ ।
ଅତି ଯତନେ ଯେବେ ଥାଇ ॥୧୪୦
ଯେ ବାଳ ବନେ ବିସର୍ଜିତ ।
ସ୍ୱଭାବେ ହୋଇ ଅରକ୍ଷିତ ॥୧୪୧

ତାହାକୁ ଦଇବ ରଖଇ ।
ବେଦ ପୁରାଣେ ଏହା କହି ॥୧୪୨
ଏଣୁ ପ୍ରାଣୀଏ କର୍ମ ଫଳେ ।
ଜନ୍ମ-ମରଣ ଏ ଶୟଳେ ॥୧୪୩
ଆତ୍ମା ସକଳ ଦେହେ ଥାଇ ।
ଶରୀରୁ ଭିନ୍ନ ସେ ଅଟଇ ॥୧୪୪
ଆତ୍ମାରୁ ଶରୀର ବିଖ୍ୟାତ ।
ମୋହ ଗହନେ ହୋଇ ଜାତ ॥୧୪୫
ଗୃହସ୍ଥ ଗୃହେ ଥାଇ ଯେହ୍ନେ ।
ଆତ୍ମାକୁ ଗୃହ ଅନୁମାନେ ॥୧୪୬
ଯେହ୍ନେ ବୁଦ୍‌ବୁଦ ଜଳୁ ଜାତ ।
ମାଟିରୁ ଘଟ ଯେ ସମ୍ଭୂତ ॥୧୪୭
ମୃତ୍ତିକା ଯେହ୍ନେ ଜଳେ ମାଡ଼ି ।
ଚକ୍ରେ ବସାଇ ରୂପ ଗଢ଼ି ॥୧୪୮
ଅଗ୍ନି ସଂଯୋଗେ ଦୃଢ଼େ ଦହି ।
ନାନା ପ୍ରକାରେ ବସ୍ତୁ ବିହି ॥୧୪୯
ସେ ଭାଣ୍ଡ ପ୍ରୟୋଜନ ଅନ୍ତେ ।
ପୁଣି ପଡ଼ଇ ଭୂମିଗତେ ॥୧୫୦
ସ୍ୱର୍ଣ୍ଣରୁ କୁଣ୍ଡଳ ହୁଅଇ ।
ବିନାଶେ ନିଜତ୍ୱ ରହଇ ॥୧୫୧
ମିଶଇ ବୁଦ୍‌ବୁଦ ଜଳରେ ।
ଘଟ ବିଲୀନ ମୃତ୍ତିକାରେ ॥୧୫୨
ତେସନେ କାଳ ଭୋଗେ ଜାତ ।
କର୍ମ ଭୋଗେଣ ଜୀବ ମୃତ ॥୧୫୩
ବିନଷ୍ଟ ହୁଅଇ ଶରୀର ।
ଆତ୍ମା ଚଳଇ ନିରନ୍ତର ॥୧୫୪
ଅନଳ ଯେହ୍ନେ ଦାରୁ ମଧ୍ୟେ ।
ଭିନ୍ନେ ପ୍ରକାଶେ ବସ୍ତୁ ଭେଦେ ॥୧୫୫
ପବନ ଦେହ ମଧ୍ୟେ ଥାଇ ।
ନାସିକା ରନ୍ଧ୍ରେ ସଞ୍ଚରଇ ॥୧୫୬
ସେହି ନ ଲାଗେ ତା'ର ଦେହେ ।
ସର୍ବ ସଞ୍ଚରି ଭିନ୍ନେ ରହେ ॥୧୫୭
ଆକାଶ ସର୍ବବ୍ୟାପୀ ହୋଇ ।
କାହାରି ସଙ୍ଗେ ଲିପ୍ତ ନୋହି ॥୧୫୮
ଏ ଜୀବ ପୁରୁଷ ତେମନ୍ତ ।
ସ୍ୱଭାବେ ତ୍ରିଗୁଣେ ଯନ୍ତ୍ରିତ ॥୧୫୯

ସୁଯଜ୍ଞ ରାଜା ଏ ନୁହଇ ।
ରୋଦନ କର କାହିଁ ପାଇଁ ॥୧୬୦
ଶ୍ରୋତା ବକତା ନାହିଁ ଏଥେ ।
ରୋଦନ ଶୁଣିବ କେମନ୍ତେ ॥୧୬୧
ଏ ଦେହ ମଧ୍ୟେ ଆତ୍ମା ଥାଇ ।
ଇନ୍ଦ୍ରିୟ ସଙ୍ଗେ ପ୍ରକାଶଇ ॥୧୬୨
ସେ ଏଥୁ ଗଲା ଅନ୍ତରୀକ୍ଷେ ।
ଦେଖ ଏ ମୃତ୍ତିକା ପ୍ରତ୍ୟକ୍ଷେ ॥୧୬୩
ପାର୍ଥିବ-ବିକାର ଏ ଦେହୀ ।
ପୃଥିବୀ ସଙ୍ଗେ ଅଛି ଶୋଇ ॥୧୬୪
ଯାହାକୁ ଶୋକ ତୁମ୍ଭେ କର ।
ସେ ପ୍ରାଣ ଏ ଦେହରୁ ପର ॥୧୬୫
ଏ ପଞ୍ଚଭୂତ ଇନ୍ଦ୍ରିଗଣ ।
ମନଟି ଏହାଙ୍କ କାରଣ ॥୧୬୬
ଆତ୍ମାଟି ଏହାଙ୍କର ସଙ୍ଗେ ।
ପ୍ରକାଶ ଉଚ୍ଚ-ନୀଚ ଅଙ୍ଗେ ॥୧୬୭
ସେ ନିଜ ତେଜେ ପ୍ରକାଶଇ ।
ଶରୀର ଘେନଇ ଛାଡ଼ଇ ॥୧୬୮
ଯାବତ ଆତ୍ମା ଦେହେ ଥାଇ ।
ତାବତ ଲିଙ୍ଗ ରୂପ ବହି ॥୧୬୯
ଏ ଜୀବ କର୍ମରେ ବନ୍ଧନ ।
ଏହା ନ ଜାଣେ ମୂଢ଼ ଜନ ॥୧୭୦
ଏଣୁ ଏ ଗତାଗତ-ପଥେ ।
କ୍ଳେଶ ଲଭଇ ଅବିରତେ ॥୧୭୧
ସେ ପୁଣି ମିଥ୍ୟା-କଳେବରେ ।
ଅତଥ୍ୟ ତଥ୍ୟ ପ୍ରାୟ ସ୍ଫୁରେ ॥୧୭୨
ଯେମନ୍ତେ ସ୍ୱପ୍ନ ମନୋରଥେ ।
ଭ୍ରମଇ ଇନ୍ଦ୍ରିୟଙ୍କ ଅର୍ଥେ ॥୧୭୩
ଦେଖଇ ସତ୍ୟ ପ୍ରାୟେ ତାହା ।
ନିଦ୍ରାର ଅନ୍ତେ ହୁଏ ମାୟା ॥୧୭୪
ଏହାଙ୍କୁ ନିତ୍ୟାନିତ୍ୟ ମତେ ।
ପଣ୍ଡିତେ ନ ଘେନନ୍ତି ଚିତ୍ତେ ॥୧୭୫
କର୍ମ ଅନ୍ୟଥା କେ କରିବ ।
ଯାହା ନ ମୁଞ୍ଚେ ବ୍ରହ୍ମା ଶିବ ॥୧୭୬
ଶୁଣ କହିବା ପୂର୍ବ ବାଣୀ ।
ମୁଁ ଯେ ବାଳକ, ଅଛି ଶୁଣି ॥୧୭୭

Dr. Sudhanshu Sekhar Mishra

ଲୁବ୍‌ଧ ପକ୍ଷୀଙ୍କ ମାରଣେ ।
ଦିନେ ପଶିଲା ଘୋର ବନେ ॥୧୭୮
ବୁଲଇ ହସ୍ତେ ପାଶ ଲଇ ।
ପକ୍ଷୀଙ୍କ କାଳ ପ୍ରାୟ ହୋଇ ॥୧୭୯
ଲତା ଗହଳେ ସେ ପଶିଲା ।
ଅନ୍ତରେ ଜାଲ ପ୍ରସାରିଲା ॥୧୮୦
ଆହାର ଜାଲ ତଳେ ଥୋଇ ।
ଲୁଚିଲା ଲତା ମଧ୍ୟେ ଯାଇ ॥୧୮୧
କୁଲିଙ୍ଗ ପକ୍ଷୀ ପତ୍ନୀ ମେଳେ ।
ବସି ଯେ ଥିଲା ବୃକ୍ଷ ଡାଳେ ॥୧୮୨
ଆହାର ଦେଖି ଜାଲ ତଳେ ।
ପଶିଲା କ୍ଷୁଧାର ବିକଳେ ॥୧୮୩
ଲୁବ୍ଧକ ଜାଲ ପାଶେ ଛନ୍ଦି ।
ତା'ର ପକ୍ଷିଣୀ ହେଲା ବନ୍ଦୀ ॥୧୮୪
ପତ୍ନୀ ବନ୍ଧନ ପତି ଦେଖି ।
ତକ୍ଷଣେ ଆସନ ଉପେକ୍ଷି ॥୧୮୫
ବୃକ୍ଷର ଉଚ୍ଚ ଡାଳେ ବସି ।
ନିର୍ଘାତେ ନିଃଶ୍ୱାସ ସାହାସି ॥୧୮୬
ଅତି ବ୍ୟାକୁଳେ ଦୁଃଖମନେ ।
ଲୋତକ ବହଇ ନୟନେ ॥୧୮୭
କର୍ମ ଆଦରି ଶୂନ୍ୟେ ଚାହିଁ ।
ବୋଲଇ ସୂର୍ଯ୍ୟଙ୍କୁ ଅନାଇ ॥୧୮୮
ହା ହା ଦଇବ ତୁ ନିର୍ଦ୍ଦୟ ।
ମୋ'ର ବିଷୟେ କଲୁ କୋହ ॥୧୮୯
କକ୍ଷଣ ଦେଲୁ ପତ୍ନୀ ହୀନେ ।
ଏ ଦେହ ଧରିବି କେସନେ ॥୧୯୦
ଶରୀର ଅର୍ଦ୍ଧଅଙ୍ଗ ନାରୀ ।
ଅର୍ଦ୍ଧକେ କେବା ଦେହ ଧରି ॥୧୯୧
ବାଳକେ ଅଛନ୍ତି ମୋ' ବାସେ ।
କି ଘେନି ଯିବି ତା'ଙ୍କ ପାଶେ॥୧୯୨
ତାହାଙ୍କ ଦେହେ ପକ୍ଷ ନାହିଁ ।
କେମନ୍ତେ ପୋଷିବଇଁ ମୁହିଁ ॥୧୯୩
ବାଳକେ ମୋ'ର ମାତୃହୀନେ ।
ଜୀବନ ଧରିବେ କେସନେ ॥୧୯୪
ମାତାଙ୍କୁ ଲୋଡ଼ିବେ ନିରତେ ।
ମୁଁ ତାହା ସହିବି କେମନ୍ତେ ॥୧୯୫

ଏମନ୍ତେ ବୃକ୍ଷ ଡାଳେ ଥାଇ ।
ବିକଳେ କୁଳିଙ୍ଗ କାନ୍ଦଇ ॥୧୯୬
ପତ୍ନୀର ଦେହେ ଦେଇ ମନ ।
କ୍ଷଣକ୍ଷଣକେ ଅଚେତନ ॥୧୯୭
ଏମନ୍ତେ ବ୍ୟାଧ ବୃକ୍ଷ ତଳେ ।
ମିଳିଲା ଚରଣ ନିଷ୍ଫଳେ ॥୧୯୮
ନାରାଚ ବିନ୍ଧି ତା'କୁ ମାରି ।
ମୁଦିଣ ଥୋଇଲା ପଞ୍ଜରୀ ॥୧୯୯
ତକ୍ଷଣେ ନିଜ ପୁରେ ଗଲା ।
ଶୁଣ ଗୋ ନୃପତି ଅବଳା ॥୨୦୦
ଆତ୍ମାର ଗତି ତ ନ ଜାଣ ।
ସୁଜନ ବଚନ ନ ଶୁଣ ॥୨୦୧
ଶତେ ବରଷ ଏହି ଠାବେ ।
ରୋଦନ କରୁଥିବ ଯେବେ ॥୨୦୨
ତେବେ କି ଉଠିବ ଶରୀର ।
ଏ ଜ୍ଞାନ ବୁଡ଼ିଲା ତୁମ୍ଭର ॥୨୦୩

ହିରଣ୍ୟକଶିପୁ ଉବାଚ

ବାଳକ ବଚନ ଏମନ୍ତେ ।
ଶୁଣି ସକଳ ଏକ ଚିତ୍ତେ ॥୨୦୪
ମାୟା ଛାଡ଼ିଲେ ଜ୍ଞାନ ପାଇ ।
ଉଠିଲେ ଏକୁ ଆର ଚାହିଁ ॥୨୦୫
ବୋଲନ୍ତି ମିଥ୍ୟା ଏ ସଂସାର ।
ଅନିତ୍ୟ ଜୀବନ ଶରୀର ॥୨୦୬
ଯମ ଏ ଉପଦେଶ ଦେଲା ।
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା ॥୨୦୭
ତହୁଁ ସେ ଜ୍ଞାତି ଗୋତ୍ର ମେଳେ ।
ରାଜାର ପ୍ରେତ କାର୍ଯ୍ୟ କଲେ ॥୨୦୮
ଏଣୁ ମୋ' ଅନୁଜ ମରଣେ ।
ଶୋକ କରିବା କି କାରଣେ ॥୨୦୯
ଏମନ୍ତ ମାୟା ଏ ସଂସାର ।
କେ ନିଜ କେବା ଅଛି ପର ॥୨୧୦
କହନ୍ତି ବ୍ରହ୍ମାଙ୍କ ନନ୍ଦନ ।
ଶୁଣ ରାଜନ ତୋଷମନ ॥୨୧୧
ନାରଦ ଯୁଧିଷ୍ଠିର ପାଶେ ।
ତତ୍ତ୍ୱ କହନ୍ତି ଇତିହାସେ ॥୨୧୨

ନାରଦ ଉବାଚ

ଏମନ୍ତ ଶୁଣି ପୁତ୍ର କଥା ।
ଶୋକ ଛାଡ଼ିଲା ରାଜମାତା ॥୨୧୩
ପୁତ୍ରବଧୂଙ୍କୁ ଶାନ୍ତି କରି ।
ତତ୍ତ୍ୱ ବଚନ ମନେ ଧରି ॥୨୧୪
ଦିତି ଛାଡ଼ିଲା ପୁତ୍ର ଶୋକ ।
ବ୍ରହ୍ମରେ ନିବେଶି ବିବେକ ॥୨୧୫
ନାରଦ ମୁନି ଅନୁରାଗେ ।
କହିଲେ ଧର୍ମସୁତ ଆଗେ ॥୨୧୬
ଏ ବାଣୀ ତତ୍ତ୍ୱଜ୍ଞାନ ସାର ।
ଶୁଣି ସଂସାରୁ ପ୍ରାଣୀ ତର ॥୨୧୭
ଦେଖ ଏ ତତ୍ତ୍ୱଦିବ୍ୟଜ୍ଞାନ ।
ବାସନାବଳେ ଭ୍ରମେ ମନ ॥୨୧୮
କହଇ ଦାସ ଜଗନ୍ନାଥ ।
ସପ୍ତମ ସ୍କନ୍ଧେ ଭାଗବତ ॥୨୧୯

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମସ୍କନ୍ଧେ ଦିତି ଶୋକାପନୟନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

ନାରଦ ଉବାଚ

କହନ୍ତି ବ୍ରହ୍ମାଙ୍କ ନନ୍ଦନ ।
ରାଜନ ସାବଧାନେ ଶୁଣ ॥୧
ଅନୁଜ ମରଣର ତାପେ ।
ମନ ନିଶ୍ଚଳ କଲା ତପେ ॥୨
ଅଜୟ-ଅମର ଶରୀର ।
ପାଇଁ ସାଧିବି ବେଦବର ॥୩
ଗୃହ ଉପେକ୍ଷି ତପଅର୍ଥେ ।
ମିଳିଲା ମନ୍ଦର ପର୍ବତେ ॥୪
ବସି ପର୍ବତଗୁହା ମଧ୍ୟେ ।
ତପସ୍ୟା କଲା ଯୋଗସାଧେ ॥୫
ହୋଇବି ତ୍ରିଭୁବନେ ରାଜା ।
ସର୍ବେ ହୋଇବେ ମୋ'ର ପ୍ରଜା ॥୬
ଏମନ୍ତ କଳ୍ପେ ତା'ର ମନେ ।
ରିପୁ ନ ଥିବେ ତ୍ରିଭୁବନେ ॥୭
ଊର୍ଦ୍ଧ୍ୱେ ସେ ବେନିକର ତୋଳି ।
ଗଗନେ ଚାହିଁଲା ନିରୋଳି ॥୮
ପାଦ ଅଙ୍ଗୁଷ୍ଠେ ମହୀଚାପି ।
ଦେହ ରହିଲା ଶୂନ୍ୟେ ବ୍ୟାପି ॥୯
ପିଙ୍ଗଳଜଟା ଶିରେ ସାଜେ ।
ପ୍ରଳୟ ରବି ପ୍ରାୟ ତେଜେ ॥୧୦
ତାହାର ଘୋର ତପଚାହିଁ ।
ଶୂନ୍ୟେ ମିଳିଲେ ଦେବେ ଯାଇଁ ॥୧୧
ଶତେ ବରଷ ଦେବମତେ ।
ତପେ ରହିଲା ଦୃଢ଼ ଚିତ୍ତେ ॥୧୨
କ୍ଷୁଧା ପିପାସା କଲା ଦୂର ।
କେବଳ ପବନ ଆହାର ॥୧୩
ତା'ର ମୂର୍ଦ୍ଧନୀ ମଧ୍ୟଗତ ।
ସଧୂମ-ଅନଳ ସମ୍ଭୂତ ॥୧୪
ତାପିଲା ଅଧଃ ଊର୍ଦ୍ଧ୍ୱେ ବ୍ୟାପି ।
ଦେଖି ଭୁବନଲୋକେ କମ୍ପି ॥୧୫
ନଦୀ ସମୁଦ୍ର ଦିଗ ଭୂଇଁ ।
କମ୍ପିଲେ ମହାଭୟ ପାଇ ॥୧୬
ଗଗନୁ ଗ୍ରହ ତାରା ତ୍ରାସେ ।
ଭୟେ ଖସିଲେ ଦଶଦିଶେ ॥୧୭
ଦେବେ କମ୍ପିଲେ ତାହା ଦେଖି ।
ସଭୟେ ଭୁବନ ଉପେକ୍ଷି ॥୧୮
ବିଚାର କରି ଏକେ ଏକେ ।
ସର୍ବେ ମିଳିଲେ ବ୍ରହ୍ମଲୋକେ ॥୧୯
ବ୍ରହ୍ମା-ଚରଣେ ପ୍ରଣମିଲେ ।
ଅନେକ ମତେ ସ୍ତୁତି କଲେ ॥୨୦

ଦେବଗଣ ଉବାଚ

ହେ ଧାତା ଜଗତ ଈଶ୍ୱର ।
ଆମ୍ଭେ ଯେ ଶରଣ ତୋହର ॥୨୧
ଦିତିସୁତର ତପ ଚାହିଁ ।
ଭୁବନେ ନ ପାରିଲୁ ରହି ॥୨୨
ଭୟେ ଅଇଲୁ ତୁମ୍ଭପୁର ।
ଆମ୍ଭଙ୍କୁ ରଖ ବେଦବର ॥୨୩
ତୋ'ର ସଞ୍ଜିତ ସର୍ବଲୋକ ।
ଆମ୍ଭଙ୍କୁ ମହାଭୟୁ ରଖ ॥୨୪
ଯେମନ୍ତେ ଲୋକନାଶ ନୋହେ ।
ତେମନ୍ତ କର ତୁ ଉପାୟେ ॥୨୫
ଅସୁର ତପ ତୋ'ର ଧ୍ୟାନେ ।
କିବା ସଂକଳ୍ପ ତା'ର ମନେ ॥୨୬
ସେ ନୋହେ ତୋତେ ଅଗୋଚର ।
ଆମ୍ଭେ ଯେ ତୋହର କିଙ୍କର ॥୨୭
ତଥାପି ତୋ'ର ପାଦଗତେ ।
କହିଲୁ ଲୋକରକ୍ଷା ଅର୍ଥେ ॥୨୮
ତୁମ୍ଭେ ଯେ ଘୋର ତପ କରି ।
ପୂର୍ବେ ତୋଷିଲ ନରହରି ॥୨୯
ତେଣୁ ଏ ବ୍ରହ୍ମଲୋକେ ସ୍ଥିତି ।
ପ୍ରଜାଭିଆଣେ ପ୍ରଜାପତି ॥୩୦
ଏ ବଳବନ୍ତ ଯୋଗବଳେ ।
ଯୋଗ-ସମାଧି ସୁନିଶ୍ଚଳେ ॥୩୧
ତପ ସାଧି ଜନ୍ମେ ଅନେକ ।
ସାଧ୍ୟ କରିବ ସର୍ବଲୋକ ॥୩୨
ଏତେ ବିଚାରେ ସତ୍ୟଲୋକେ ।
ବସିବ ତପେ ଆତ୍ମସୁଖେ ॥୩୩
ବ୍ରହ୍ମାଣ୍ଡ ସର୍ଜିବାର ଅର୍ଥେ ।
ଶ୍ରେୟ ବିଭୂତି କ୍ଷେମ ଯୁତେ ॥୩୪
ଏମନ୍ତ ତାହାର ବିଚାର ।
କହିଲୁ ଯାହା ଇଚ୍ଛା କର ॥୩୫
ଏବେ ଜଗତ ରକ୍ଷା କର ।
ତୁମ୍ଭେ ଯେ ଜଗତପିଅର ॥୩୬
ଏମନ୍ତ ବେଦବାକ୍ୟ ଶୁଣି ।
ସଙ୍ଗତେ ଭୃଗୁଦକ୍ଷ ଘେନି ॥୩୭
ଅପରେ ଯେତେ ବ୍ରହ୍ମମୁନି ।
ଘେନି ଚଳିଲେ ପଦ୍ମଯୋନି ॥୩୮
ଜନକୁଶଳ ମନେ ଭାଳି ।
ଦୈତ୍ୟର ତପସ୍ଥାନେ ମିଳି ॥୩୯
ଦେଖିଲେ ଅସୁର ଶରୀର ।
ସ୍ୱଭାବେ ଅତି ଭୟଙ୍କର ॥୪୦
ବଲ୍ମୀକ-କୀଟ ଆଚ୍ଛାଦିତ ।
ତୃଣ ପିପୀଲିକା ଭକ୍ଷିତ ॥୪୧
ମେଦ ଶୋଣିତ ମାଂସ ଚର୍ମ ।
ଅସ୍ଥି-ପଞ୍ଜରେ କୀଟ ଗ୍ରାମ ॥୪୨
ତପ ସାଧନେ କ୍ଷୀଣକାୟ ।
ମାଂସ ଶୋଣିତ ଶୁଷ୍କ ପ୍ରାୟ ॥୪୩
ତାହାର ତପ ଅତିରେକେ ।
ହେଲେ ତାପିତ ତିନିଲୋକେ ॥୪୪
ଦେହ ନ ଦିଶେ ତୃଣାଚ୍ଛନ୍ନେ ।
ମେଘେ ଆବୃତ ରବି ଯେହ୍ନେ ॥୪୫
ଏମନ୍ତ ଅସୁରର ଗତି ।
ଦେଖି ବିସ୍ମିତ ପ୍ରଜାପତି ॥୪୬
ଆରୋହି ନିଜ ହଂସ ଯାନ ।
କହନ୍ତି କୋମଳ ବଚନ ॥୪୭

ବ୍ରହ୍ମା ଉବାଚ

ଉଠ ହେ କଶ୍ୟପ କୁମର ।
ହୋଇଛି ତପ ସିଦ୍ଧି ତୋ'ର ॥୪୮

Dr. Sudhanshu Sekhar Mishra

ତପେ ତୋହର ତେଜ ଦେଖି ।
ଅଇଲୁ ଭୁବନ ଉପେକ୍ଷି ॥୪୯

ତୋହର ବରଦାତା ମୁହିଁ ।
ବାଞ୍ଛିତ ବର ମାଗ ତୁହି ॥୫୦

ତପେ ତୋ ପରି ସ୍ଥିର ମତି ।
କେ ଅବା ଭୁବନେ ଅଛନ୍ତି ॥୫୧

ଅଦ୍‌ଭୁତ ଦେଖିଲି ମୁଁ ତୋତେ ।
ତୋ' ସମ ନାହାନ୍ତି ଜଗତେ ॥୫୨

ପ୍ରାଣ ଅଛଇ ଅସ୍ଥି ଗତେ ।
ଧ୍ୟାନ ତୋହର ଅନ୍ତର୍ଗତେ ॥୫୩

ପୂର୍ବେ ଯେ ଥିଲେ ମୁନିଜନେ ।
ତପ ଆଚରି ଘୋରବନେ ॥୫୪

ତୋହର ପ୍ରାୟେ କେ ଅଛନ୍ତି ।
ନିରମ୍ବୁ-ଭକ୍ଷଣେ ରହନ୍ତି ॥୫୫

ଶତେ ବରଷ ଦେବ ମତେ ।
ତପ ସାଧିଲୁ ଏ ଜଗତେ ॥୫୬

ଭୂତ-ଭବିଷ୍ୟ-ବର୍ତ୍ତମାନେ ।
ଦେଖିଲା ନାହିଁ ତ୍ରିଭୁବନେ ॥୫୭

ଦୁଃସହ-ତପ ଏ ତୋହର ।
ମନ ବଚନେ ଅଗୋଚର ॥୫୮

ତୋ' ତପନିଷ୍ଠା ଦୃଢ଼ ଚିତ୍ତେ ।
ସ୍ୱଭାବେ ଜିଣିଲୁ ତୁ ମୋତେ ॥୫୯

ଏଣୁ ତୋ' ତପ ଦୃଢ଼ ଦେଖି ।
ଅଇଲି ଆସନ ଉପେକ୍ଷି ॥୬୦

ସିଦ୍ଧ ତୋହର ତପଦୀକ୍ଷା ।
ମାଗ ତୋ' ମନେ ଯେବା ଇଚ୍ଛା ॥୬୧

ଦେବଲୋକଙ୍କ ଦରଶନ ।
ନିଷ୍ଫଳ ନୋହେ କଦାଚନ ॥୬୨

ନାରଦ ଉବାଚ

ଏମନ୍ତ କହି ତା'କୁ ବାଣୀ ।
ଦୟା ସାଗର କୁଶପାଣି ॥୬୩

ତକ୍ଷଣେ କମଣ୍ଡଳୁ କରେ ।
ଜଳ ସିଞ୍ଚିଲେ ତା' ଉପରେ ॥୬୪

କୀଟ-ବଲ୍ମୀକ-ଭକ୍ଷ୍ୟ ଦେହୀ ।
ତକ୍ଷଣେ ଦିବ୍ୟ ରୂପ ହୋଇ ॥୬୫

ସର୍ବ ସମ୍ପୂର୍ଣ୍ଣ କଳେବର ।
ବଜ୍ରହୁଁ କଠିନ ଶରୀର ॥୬୬

ଯୁବା-ବୟସ ସୁଗଠନ ।
ଯୁବତୀ ମନ ବିମୋହନ ॥୬୭

ତପ୍ତକାଞ୍ଚନ ପ୍ରାୟେ ଦେହୀ ।
ତେଜେ ଅନଳ ରୂପ ଦହି ॥୬୮

ଲୋଚନ ଘଷି ଚାହିଁ ବେଗେ ।
ଧାତାକୁ ଦେଖେ ଶୂନ୍ୟ ମାର୍ଗେ ॥୬୯

ହଂସବାହାନ ରୂପ ଚାହିଁ ।
ନମିଲା ଦଣ୍ଡ ପ୍ରାୟ ହୋଇ ॥୭୦

ବ୍ରହ୍ମା-ଦରଶନ ଉତ୍ସବେ ।
ନିଷ୍ଠୁର ତପର ପ୍ରଭାବେ ॥୭୧

କର ଅଞ୍ଜଳି ଶିରେ ଦେଇ ।
ହରଷେ ରୋମ ପୁଲକଇ ॥୭୨

ଆନନ୍ଦେ ଅଶ୍ରୁ ଗଦଗଦେ ।
ସ୍ତୁତି କରଇ ପଦ୍ମପାଦେ ॥୭୩

ହିରଣ୍ୟକଶିପୁ ଉବାଚ

ନମସ୍ତେ ପ୍ରଭୁ ବେଦପତି ।
ତ୍ରିଲୋକ ତୋହର କୀରତି ॥୭୪

କଳ୍ପ ଅନ୍ତରେ କାଳବଳେ ।
ଘୋର ଅନ୍ଧାର ଏ ଶୟଳେ ॥୭୫

ନିଜ ଶରୀର ତେଜ ପୁଞ୍ଜେ ।
ଜଗତେ ଯେ ପ୍ରଭୁ ବିରାଜେ ॥୭୬

ଆତ୍ମା ତ୍ରିଗୁଣ ମାୟାଘୋରେ ।
ସର୍ଜଇ ପାଳଇ ସଂହରେ ॥୭୭

ଏଣୁ ତ୍ରିଗୁଣ-ଧାମ-ଯୁତେ ।
ପରମତତ୍ତ୍ୱ ନମୋସ୍ତୁତେ ॥୭୮

ଜ୍ଞାନ-ବିଜ୍ଞାନ ଆଦି କରି ।
ନମସ୍ତେ ବୀଜ-ଶକ୍ତିଧାରୀ ॥୮୯

ପ୍ରାଣ ଇନ୍ଦ୍ରିୟ ମନ ବୁଦ୍ଧି ।
ବିକାରେ ବ୍ୟକ୍ତ ଯେ ପ୍ରସିଦ୍ଧି ॥୮୦

ଜଗତ କଲ୍ୟାଣ ସ୍ୱରୂପୀ ।
ଜୀବକୁ ପ୍ରାଣବଳେ ବ୍ୟାପି ॥୮୧

ପ୍ରଜାପତିଙ୍କ ପତି ହୋଇ ।
ଇନ୍ଦ୍ରିୟ ଇନ୍ଦ୍ରିଅର୍ଥେ ବହି ॥୮୨

ତୁ ମହାଭୂତ ଗୁଣାଶ୍ରୟ ।
ସକଳ ଶ୍ରୁତି-ସ୍ମୃତିମୟ ॥୮୩

ତୁ ଦେବ ସପ୍ତତନ୍ତୁ ହେତୁ ।
ଚତୁରହୋତ୍ର ମୂଳତତ୍ତ୍ୱ ॥୮୪

ଆତ୍ମାର ଆତ୍ମା ତୁ ଅନାଦି ।
ଅନନ୍ତ ଅପ୍ରମେୟବାଦୀ ॥୮୫

ତୁ ନାଥ ଅନିମିଷ-କାଳ ।
ହରୁ ପ୍ରାଣୀଙ୍କ ଆୟୁର୍ବଳ ॥୮୬

ନିମିଷ ଆଦି ରୂପ ତୋ'ର ।
ତେଣୁ ପ୍ରାଣୀଙ୍କ ଆୟୁହର ॥୮୭

ତୋ'ର ସର୍ଜିତ ଏ ଜଗତ ।
ତୁ କୂଟ ଆତ୍ମା ରୂପେ ସ୍ଥିତ ॥୮୮

ତୁ ପରମେଷ୍ଠୀ ମହାଶ୍ରୟ ।
ଜୀବଲୋକର ଜୀବ ଦେହ ॥୮୯

ତୋ' ତହୁଁ ଅନ୍ୟ କେ ଜଗତେ ।
ପର ଅପର ଛନ୍ତି ଯେତେ ॥୯୦

ସଂସାରେ ବିଦ୍ୟା କଳା ଯେତେ ।
ତୋ'ର ଶରୀର ଏ ନିୟତେ ॥୯୧

ବ୍ରହ୍ମାଣ୍ଡ ତୋ'ର ତହୁଁ ଜାତ ।
ତୁ ଦେବ ତିନିପୁର ନାଥ ॥୯୨

ଜଗତହିତେ ତୋ'ର ଦେହୀ ।
ମନ ଇନ୍ଦ୍ରିୟ ଗୁଣଗ୍ରାହୀ ॥୯୩

ଏହାଙ୍କ ଭୋଗ କରୁ ଗୁଣ ।
ପରମପଦେ ତୋ'ର ସ୍ଥାନ ॥୯୪

ଅବ୍ୟକ୍ତ-ଆତ୍ମା ତୁ ନିର୍ଗୁଣ ।
ତୁ ନାଥ ପୁରୁଷ ପୁରାଣ ॥୯୫

ଅନନ୍ତ-ଅବ୍ୟକ୍ତ-ଶରୀର ।
ତୁ ନାଥ ବ୍ରହ୍ମାଣ୍ଡ ଭିତର ॥୯୬

ଚିତ-ଅଚିତ ଶକ୍ତିଯୁତ ।
ନମସ୍ତେ ପ୍ରଭୁ ଭାଗବତ ॥୯୭

ଯେବେ ତୁ ବର ଦେବୁ ମୋତେ ।
ଶୁଣ କହିବି ତୋ ଅଗ୍ରତେ ॥୯୮

ତୋ'ର ସଞ୍ଚିତ ସୃଷ୍ଟି ଯେତେ ।
ରୂପେ ଅଛନ୍ତି ଏ ଜଗତେ ॥୯୯

ତାହାଙ୍କ ହସ୍ତେ ନ ମରିବି ।
ଅଜରାମର ହୋଇଥିବି ॥୧୦୦

Dr. Sudhanshu Sekhar Mishra

ବ୍ରହ୍ମାଣ୍ଡ ଅନ୍ତର ବାହାରେ ।
ରଜନୀ କିବା ଦିବସରେ ॥୧୦୧
ନାନା ଅଧୁଧ ଛନ୍ତି ଯେତେ ।
କେବେହେଁ ନକାଟିବେ ମୋତେ ॥୧୦୨
ମୃତ୍ୟୁ ମୋ' ନର ପଶୁ ହସ୍ତେ ।
ନୋହିବ ଭୂମିଶୂନ୍ୟ ପଥେ ॥୧୦୩
ଜୀବେ ଅଜୀବେ ନ ମରିବି ।
ନିତ୍ୟେ ନିର୍ଭୟେ ମୁଁ ବଞ୍ଚିବି ॥୧୦୪
ସୁର ଅସୁର ସର୍ପଘାତେ ।
ବିଯୋଗ ନ କରିବେ ମୋତେ ॥୧୦୫

ସମରେ ମୋ'ର ତୁଲେ ବଳେ ।
କେହି ନ ଥିବେ ଏ ଶୟଳେ ॥୧୦୬
ହୋଇବି ତ୍ରିଭୁବନେ ରାଜା ।
ସର୍ବେ କରିବେ ମୋତେ ପୂଜା ॥୧୦୭
ଦିଗପାଳଙ୍କ ମଧ୍ୟଗତେ ।
ତୋହର ମହିମା ଯେମନ୍ତେ ॥୧୦୮
ମୋ ତପ-ମହିମା-ପ୍ରଭାବ ।
କେବେହେଁ ବିନାଶ ନୋହିବ ॥୧୦୯
ଏମନ୍ତେ ବ୍ରହ୍ମାର ସମ୍ମୁଖେ ।
ବର ମାଗିଲା ଆତ୍ମ ସୁଖେ ॥୧୧୦

କର ଅଞ୍ଜଳି ଶିରେ ଦେଇ ।
ବ୍ରହ୍ମାର ଶ୍ରୀମୁଖକୁ ଚାହିଁ ॥୧୧୧
ନାରଦ ଯୁଧିଷ୍ଠିର ବାଣୀ ।
ଯଜ୍ଞ ସଭାର ମଧ୍ୟେ ଭଣି ॥୧୧୨
ଅସୁର-ତପ ଫଳ ଶୁଣି ।
ଘୋର-ସଂସାରୁ ତର ପ୍ରାଣୀ ॥୧୧୩
ଭଣଇ ଦାସ ଜଗନ୍ନାଥ ।
ସପ୍ତମ ସ୍କନ୍ଧେ ଭାଗବତ ॥୧୧୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ ସପ୍ତମ
ସ୍କନ୍ଧେ ହିରଣ୍ୟକଶିପୋର୍ବରଯାଚନଂ
ନାମ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

### ନାରଦ ଉବାଚ

ଶୁଣ ରାଜନ ସ୍ଥିର ଚିତ୍ତେ ।
କହିବୁ ଯାହା ତୋ' ଅଗ୍ରତେ ॥୧
ହିରଣ୍ୟ-ତପେ ତୋଷ ହୋଇ ।
ବ୍ରହ୍ମା ବୋଲନ୍ତି ତା'କୁ ଚାହିଁ ॥୨

### ବ୍ରହ୍ମା ଉବାଚ

ଶୁଣ ହେ ଅସୁର ପୁଙ୍ଗବ ।
ତୋହର ତପ ଏ ଦୁର୍ଲ୍ଲଭ ॥୩
ଯେତେ ମାଗିଲୁ ବର ମୋତେ ।
ପ୍ରାଣୀଙ୍କି ଦୁର୍ଲ୍ଲଭ ଜଗତେ ॥୪
ତୋହର ତପେ ତୋଷ ହୋଇ ।
ଦେବି ଅନ୍ୟଥା ଏଥେ ନାହିଁ ॥୫
ହେଉ ତୋ ମନବାଞ୍ଛା ସିଦ୍ଧି ।
ଏମନ୍ତ କହି ବେଦନିଧି ॥୬
ତକ୍ଷଣେ ଗଲେ ଅନ୍ତର୍ଦ୍ଧାନେ ।
ବଢ଼ୟେ ଆପଣା ଭୁବେନ ॥୭
ଏମନ୍ତେ ବ୍ରହ୍ମାବର ପାଇ ।
ସୁବର୍ଣ୍ଣମୟ-ତନୁ ବହି ॥୮
ବିଷ୍ଣୁ ବିଷୟେ କ୍ରୋଧକରି ।
ଅନୁଜ-ମରଣ ସୁମରି ॥୯

ବଳେ ତ୍ରାସିଲା ଦଶଦିଶ ।
ତିନିଭୁବନ କଲା ବଶ ॥୧୦
ଦେବ ଅସୁର ନୃପସର୍ବ ।
ଉରଗ ଗରୁଡ଼ ଗନ୍ଧର୍ବ ॥୧୧
ସିଦ୍ଧ ଚାରଣ ବିଦ୍ୟାଧର ।
ଋଷି ପିତର ମନୁବର ॥୧୨
ପିଶାଚ ଯକ୍ଷ ରକ୍ଷଗଣ ।
ଭୂତ ବେତାଳ ରୁଦ୍ରଗଣ ॥୧୩
ସକଳ ପ୍ରାଣୀ ଦର୍ପହରି ।
ବିଶ୍ୱ-ସଂସାର ବଶ କରି ॥୧୪
ଦିଗପାଳଙ୍କ ଘରୁ ଆଣି ।
ଅମୂଲ୍ୟ ଧନରତ୍ନ ମଣି ॥୧୫
ସ୍ୱର୍ଗ ଭୁବନେ ଭୋଗ ଯେତେ ।
ବିଚିତ୍ର ରଥ ବଳ ଯୁଥେ ॥୧୬
ସକଳ ବଳେ ଆବୋରିଲା ।
ଇନ୍ଦ୍ରଭୁବନେ ବିଜେକଲା ॥୧୭
ବିଶ୍ୱକର୍ମାର ଶିଳ୍ପ ଯହିଁ ।
ଭୁବନେ ପଟାନ୍ତର ନାହିଁ ॥୧୮
ତ୍ରୈଲୋକ୍ୟ ଲକ୍ଷ୍ମୀ ଯହିଁ ବସେ ।
ଅଶେଷ ସମ୍ପଦ ପ୍ରକାଶେ ॥୧୯
ମର୍କତ ଭୂମି ଯହିଁ ସାଜେ ।
ପ୍ରବାଳ ପାବଛ ବିରାଜେ ॥୨୦

ସ୍ଫଟିକ ପାଚେରୀ ଆରମ୍ଭ ।
ନିର୍ମିତ ବଇଦୂର୍ଯ୍ୟ ସ୍ତମ୍ଭ ॥୨୧
ଉପରେ ବିଚିତ୍ର ବିତାନ ।
ମାଣିକ୍ୟ ଘଟିତ ଆସନ ॥୨୨
ଶଯ୍ୟା ରଚିତ ଯହିଁ ହୋଏ ।
ଦିଶନ୍ତି ଦୁଗ୍ଧଫେନ ପ୍ରାୟେ ॥୨୩
ଲମ୍ବଇ ମୁକୁତାର ଝରା ।
ସୁବର୍ଣ୍ଣ ପୁଷ୍ପ କେରାକେରା ॥୨୪
ଦିବ୍ୟ କାମିନୀଗଣ ତହିଁ ।
ଚଳନ୍ତି ଇତସ୍ତତ ହୋଇ ॥୨୫
ଚରଣେ ନୂପୁର ବାଜେଣୀ ।
ରତ୍ନ ମେଖଳାର ସାଜେଣି ॥୨୬
ରତ୍ନମେଖଳା ପୂର୍ଣ୍ଣ ଜ୍ୟୋତି ।
ତଡ଼ିତ ପ୍ରାୟ ଝଟକନ୍ତି ॥୨୭
ଆପଣା ମୁଖ ରତ୍ନ କାନ୍ଥେ ।
ହରଷେ ଦେଖନ୍ତି ଏକାନ୍ତେ ॥୨୮
ଏମନ୍ତେ ଇନ୍ଦ୍ରର ଭୁବନେ ।
ଅସୁର ବସେ ତୋଷମନେ ॥୨୯
ତିନି ଭୁବନେ ଏକ ରାଜା ।
ଦେବେ କରନ୍ତି ପାଦପୂଜା ॥୩୦
ପ୍ରଚଣ୍ଡ ତେଜେ ଆଜ୍ଞା କରେ ।
ଯମର ପ୍ରାୟେ ରୋଷ ଭରେ ॥୩୧

Dr. Sudhanshu Sekhar Mishra

ସୁଗନ୍ଧ ମଦ୍ୟ କେର ପାନ ।
ସ୍ୱଭାବେ ଘୂର୍ଣ୍ଣିତ ଲୋଚନ ।।୩୨
ତମ୍ଭାର ପ୍ରାୟେ ଚକ୍ଷୁ ଜଳେ ।
ଦେବେ ମିଳିଲେ ପାଦ ତଳେ ।।୩୩
ହସ୍ତରେ ଘେନି ଉପାୟନ ।
ଦିଶନ୍ତି ଅରକ୍ଷ ଯେସନ ।।୩୪
ସ୍ୱଭାବେ ତପ-ଯୋଗ-ବଳେ ।
ବିରାଜେ ଆଦିତ୍ୟ ମଣ୍ଡଳେ ।।୩୫
ସର୍ବ ଦେବତା ତା'ର ପାଶେ ।
ଖଟନ୍ତି ଜୀବନର ଆଶେ ।।୩୬
ବିଧାତା ବିଷ୍ଣୁ ମହେଶ୍ୱର ।
ଏହୁ ରହିଲେ ନିଜ ପୁର ।।୩୭
ଏହାଙ୍କୁ ଛାଡ଼ି ସର୍ବଦେବା ।
ତା'ର ଚରଣେ କଲେ ସେବା ।।୩୮
ଇନ୍ଦ୍ର ଆସନେ କରି ବିଜେ ।
ଇନ୍ଦ୍ର ହୁଁ ଅଧିକ ବିରାଜେ ।।୩୯
ଗନ୍ଧର୍ବେ ମିଳି ତା' ଚରଣେ ।
ସଙ୍ଗତେ ଅପସରାଗଣେ ।।୪୦
ତୁମ୍ବୁରୁ ନାରଦ ସହିତେ ।
ମିଳିଲେ ବିଶ୍ୱାବସୁ ଯେତେ ।।୪୧
ମିଳିଲେ ସିଦ୍ଧ ଋଷିଗଣେ ।
ସଭୟେ ଅସୁର ଚରଣେ ।।୪୨
ସ୍ତୁତି କରନ୍ତି ଅନୁକ୍ଷଣେ ।
ଗନ୍ଧର୍ବେ ନୃତ୍ୟ ଗୀତ ଗାନେ ।।୪୩
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
ଅପରେ ଯେ ଚାରି ଆଶ୍ରମେ ।।୪୪
ପୂଜନ୍ତି ପିତୃଦେବ ଯଜ୍ଞେ ।
ତା'ର ଚରଣେ ହବିର୍ଭାଗେ ।।୪୫
ସପତ ଦ୍ୱୀପ ମହୀ ତଳେ ।
ବିନାକର୍ଷଣେ ଶସ୍ୟ ଫଳେ ।।୪୬
ମଧୁ ସ୍ରବନ୍ତି ବୃକ୍ଷପନ୍ତି ।
ଗାବେ କହ୍ଲିତ କ୍ଷୀର ଦ୍ୟନ୍ତି ।।୪୭
ଫୁଲ-ଫଳରେ ଭୂମି ପୂରି ।
ହୋଇଲା କାମଧେନୁ ସରି ।।୪୮
ଷଡ଼ଋତୁ ଏ ଅନ୍ତରାଳେ ।
ଶୁଭେ ଖଟନ୍ତି ଯେଝା କାଳେ ।।୪୯

ସମୁଦ୍ରେ ରତ୍ନମାନ ଦ୍ୟନ୍ତି ।
ନଦୀଏ ଉର୍ମି ଉଛୁଳାନ୍ତି ।।୫୦
ଲବଣ ଇକ୍ଷୁ ସୁରା ଘୃତ ।
ଦଧି ଦୁଗ୍‌ଧ ଜଳେ ପୂରିତ ।।୫୧
ପର୍ବତ ଦ୍ରୋଣୀ କ୍ରୀଡ଼ା ସ୍ଥାନେ ।
ସକଳ ଋତୁ ପୁଷ୍ପମାନେ ।।୫୨
ଦିଗପାଳଙ୍କ ଗୁଣ ଯେତେ ।
ରହିଲେ ଅସୁର ଆୟତ୍ତେ ।।୫୩
ଏମନ୍ତେ ଦଶଦିଗ ଜିଣି ।
ସପତ ଦ୍ୱୀପେ ନୃପମଣି ।।୫୪
ସକଳ ଭୋଗ୍ୟ ଭୋଗ କଲା ।
କେବେହେଁ ସନ୍ତୋଷ ନୋହିଲା ।।୫୫
ବିଶେଷେ ତପ-ଗର୍ବ ମୋହ ।
ସ୍ୱଭାବେ ଅଜିତ ଇନ୍ଦ୍ରିୟ ।।୫୬
ଅଜିତ ଇନ୍ଦ୍ରିୟ ସନ୍ତୋଷେ ।
ମନ ବାରଣ ନିରଙ୍କୁଶେ ।।୫୭
ଅତୁଷ୍ଟ ଇନ୍ଦ୍ରିୟର ବଳେ ।
ଘୃତେ ଅନଳ ଯେହ୍ନେ ଜଳେ ।।୫୮
ଐଶ୍ୱର୍ଯ୍ୟ ମଦେ ମତ୍ତ ହୋଇ ।
ଈଶ୍ୱର ବାକ୍ୟ ନ ମାନଇ ।।୫୯
ଏ ଅନ୍ତେ ବହୁକାଳ ଗଲା ।
ସନକ-ଶାପ ପ୍ରବେଶିଲା ।।୬୦
ତାହାର ଉପଦ୍ରବ ଦେଖି ।
ତ୍ରିଦଶେ ଭୁବନ ଉପେକ୍ଷି ।।୬୧
ଅନ୍ୟତ୍ର ଶରଣ ନ ପାଇ ।
ସକଳ ଦେବେ ରୁଣ୍ଡ ହୋଇ ।।୬୨
ଭାଳନ୍ତି ଏକଚିତ୍ତ ହୋଇ ।
କାହିଁ ଲୁଚିବୁ ଆମ୍ଭେ ଯାଇ ।।୬୩
ଯେ ଦିଗେ ଛନ୍ତି ଚକ୍ରଧର ।
ତହିଁକି କଲେ ନମସ୍କାର ।।୬୪
ନିର୍ମଳ ଯୋଗୀଜନେ ଯହିଁ ।
ଗଲେ ପୁନରାବୃତ୍ତି ନାହିଁ ।।୬୫
ଏମନ୍ତେ ଏକମନେ ଭାଳି ।
କ୍ଷୀର ସମୁଦ୍ର ତୀରେ ମିଳି ।।୬୬
ଉନିଦ୍ର ପବନ ଭୋଜନ ।
ଡାକନ୍ତି ରଖ ଭଗବାନ ।।୬୭

ଅନେକ ମତେ କରି ସ୍ତୁତି ।
ଜଳଧି-ପୁଲିନେ ଭ୍ରମନ୍ତି ।।୬୮
ମସ୍ତକେ ଦେଇ ବେନିକର ।
ଡାକନ୍ତି ରଖ ଚକ୍ରଧର ।।୬୯
ମହାମହିମ ଭଗବାନ ।
ପରମ ଆତ୍ମା ନିରଞ୍ଜନ ।।୭୦
ବିଶୁଦ୍ଧ-ଆନନ୍ଦ-ସମୂହ ।
ନମସ୍ତେ ପ୍ରଭୁ ଦିବ୍ୟ ଦେହ ।।୭୧
ଏମନ୍ତେ ଦେବସ୍ତୁତି ଶୁଣି ।
ଶୁଭିଲା ଅନ୍ତରୀକ୍ଷ ବାଣୀ ।।୭୨
ମେଘ-ଗମ୍ଭୀର ପ୍ରାୟେ ସ୍ବରେ ।
ସାଧୁଜନଙ୍କ ଦୁଃଖ ହରେ ।।୭୩
ଭୟ ନ କର ଦେବଗଣ ।
ତୁମ୍ଭର ହୋଇବ କଲ୍ୟାଣ ।।୭୪
ମୋହର ଦରଶନ ଲାଭ ।
ଅଶେଷ ସମ୍ପଦ ସମ୍ଭବ ।।୭୫
ପାପୀ ଅସୁର ଦୁଷ୍ଟପଣେ ।
ଭୟେ କମ୍ପିଲେ ଦେବଗଣେ ।।୭୬
ଏ ଭୟ କରିବି ମୁଁ ଶାନ୍ତି ।
ତୁମ୍ଭେ ନ କର ମନେଭ୍ରାନ୍ତି ।।୭୭
ଅଳପ କାଳ ଦୁଃଖ ସହ ।
ନାଶିବି ତୁମ୍ଭର ସନ୍ଦେହ ।।୭୮
ବେଦ ବଚନ ପୁରାତନ ।
ଭୋଦେବ ସାବଧାନେ ଶୁଣ ।।୭୯
ଏ ଯେବେ ଦେବଙ୍କୁ ନିନ୍ଦିବ ।
ଗୋରୁ-ବ୍ରାହ୍ମଣ ବିନାଶିବ ।।୮୦
ସାଧୁଜନଙ୍କୁ ଦୁଷ୍ଟପଣେ ।
ଯେବେ ହିଂସିବ ଅକାରଣେ ।।୮୧
ନିର୍ଦ୍ଦୋଷ-ପ୍ରାଣୀଙ୍କର ମନେ ।
କ୍ଳେଶ-ସମ୍ପାଦେ ଅନୁକ୍ଷଣେ ।।୮୨
ମୋତେ କରିବ ରିପୁଭାବ ।
ତେବେ ଏ ବେଗେ ନାଶ ଯିବ ।।୮୩
ଏବେ ଏହାର ନିଜ ସୁତ ।
ହୋଇବ ଗୋବିନ୍ଦ ଭକତ ।।୮୪
ସମଦରଶୀ ସାଧୁ ଧୀର ।
ପ୍ରହଲ୍ଲାଦ ନାମ ତାହାର ।।୮୫

Dr. Sudhanshu Sekhar Mishra

ତାହାକୁ ଅସୁର ଲଂଘିବ ।
କୋପେ ଅନେକ ଦୁଃଖ ଦେବ ॥୮୬
ତାହାକୁ ସଙ୍କଟୁ ରଖିବି ।
ବ୍ରହ୍ମାର ବର ବିନାଶିବି ॥୮୭
ଉଶ୍ୱାସ କରି ମହୀଭାର ।
ଦୁଃଖ ବିନାଶିବି ତୁମ୍ଭର ॥୮୮
କହନ୍ତି ବ୍ରହ୍ମାର କୁମର ।
ଶୁଣ ହେ ରାଜା ଯୁଧିଷ୍ଠିର ॥୮୯

ନାରଦ ଉବାଚ

ଏମନ୍ତେ ଆକାଶର ବାଣୀ ।
ଶୁଣି ନମିଲେ ଚକ୍ରପାଣି ॥୯୦
ଗୋବିନ୍ଦ ବଚନେ ବିଶ୍ୱାସ ।
ଜାଣିଲେ ନିଶ୍ଚେ ଯିବ ନାଶ ॥୯୧
ବିଷ୍ଣୁଙ୍କ ପାଦ ପଦ୍ମେ ନମି ।
ଦେବେ ଚଳିଲେ ନିଜ ଭୂମି ॥୯୨
ଏବେ ହୋ ଶୁଣ ଧର୍ମସୁତ ।
ଭକତ ପ୍ରହ୍ଲାଦ ଚରିତ ॥୯୩
ଯାହା ଶୁଣନ୍ତେ ପ୍ରାଣୀ ଦେହେ ।
ଅଶେଷ ଦୁରିତ ନ ରହେ ॥୯୪
ହିରଣ୍ୟକଶିପୁର ପୁରେ ।
ତାହାର ପତ୍ନୀର ଉଦରେ ॥୯୫
ଜନ୍ମ ଲଭିଲେ ଚାରିସୁତ ।
ତେଜେ ବିରାଜେ କି ଆଦିତ୍ୟ ॥୯୬
ସେ ପ୍ରହ୍ଲାଦ ଜ୍ୟେଷ୍ଠସୁତ ।
କୃଷ୍ଣ ଭଜଇ ଅବିରତ ॥୯୭
ଗୁଣେ କି ଦେବା ପଟାନ୍ତର ।
କୃଷ୍ଣ ଭକତ ମଧ୍ୟେ ବର ॥୯୮
ସତ୍ୟ-ସମ୍ପନ୍ନ-ଶୀଳ ଗୁଣେ ।
ସେବଇ ବିଷ୍ଣୁର ଚରଣେ ॥୯୯
ସର୍ବଭୂତଙ୍କ ମଧ୍ୟେ ପ୍ରିୟ ।
ସ୍ୱଭାବେ ବିଜିତ-ଇନ୍ଦ୍ରିୟ ॥୧୦୦
ସନ୍ଥ ଚରଣେ ଦାସ ପ୍ରାୟେ ।
ଦୁଃଖୀଙ୍କି ସେବେ ପିତୃସ୍ନେହେ ॥୧୦୧
ସମାନେ ଭଜେ ଭ୍ରାତୃଭାବେ ।
ଗୁରୁଙ୍କୁ ଈଶ୍ୱର ସ୍ୱଭାବେ ॥୧୦୨

ବିଦ୍ୟାର୍ଥୀ ରୂପେ ସ୍ନେହ ସାର ।
ସ୍ୱଭାବେ ଗର୍ବ ନାହିଁ ତା'ର ॥୧୦୩
ଦୁଃଖେ ଦୁଃଖିତ ଚିତ୍ତ ନୋହେ ।
ଜ୍ଞାନ ଗୋଚର ସର୍ବ ସହେ ॥୧୦୪
ଅସୁର ବଂଶେ ଜାତ ହୋଇ ।
ଅସୁର ଭାବ ହୃଦେ ନାହିଁ ॥୧୦୫
ବିପଦେ ଧୀର ଭାବ ବହି ।
ସମସ୍ତ ନଶ୍ୱର ଭାବଇ ॥୧୦୬
ଇନ୍ଦ୍ରିୟ ବୁଦ୍ଧି ଜୟ କରି ।
ଶାନ୍ତ ଭାବରେ ଦେହ ଧରି ॥୧୦୭
ନିଷ୍କଳ ଦୃଷ୍ଟ-ଶ୍ରୁତଗୁଣେ ।
ବସ୍ତୁ-ଅବସ୍ତୁ ପରିମାଣେ ॥୧୦୮
ଦୁଃଖୀ ବାଳକ ପ୍ରାୟେ ରହେ ।
ସ୍ୱଭାବେ ତପକ୍ଲେଶ ସହେ ॥୧୦୯
ପ୍ରଶାନ୍ତ ଚିତ୍ତ ନିତ୍ୟେ ବହେ ।
ମଦମତ୍ସର ନାହିଁ ଦେହେ ॥୧୧୦
ତାହାର ମହାଗୁଣମାନ ।
ମୁନି କହନ୍ତି ପୁଣ ପୁଣ ॥୧୧୧
ସେ ପୁଣି ବିଷ୍ଣୁର ବିଷୟେ ।
ଲକ୍ଷିତେ ଅଲକ୍ଷିତେ ରହେ ॥୧୧୨
ସୁର ସଭାରେ ଯା'ର କଥା ।
ନିତ୍ୟେ ଗାବନ୍ତି ସାଧୁ ଗାଥା ॥୧୧୩
ଶତ୍ରୁଙ୍କୁ ମିତ୍ର ପ୍ରାୟ ଦିଶେ ।
ଯା'ର ମହିମା ବିଷ୍ଣୁ ଅଂଶେ ॥୧୧୪
ତାହାଙ୍କୁ ସାଧୁ ସଭା ମଧ୍ୟେ ।
ପ୍ରଶଂସା କରନ୍ତି ଆନନ୍ଦେ ॥୧୧୫
ଯା'ର ମହିମା ମୁନିଗଣେ ।
ଚିତ୍ତେ ଭାବନ୍ତି ଅନୁକ୍ଷଣେ ॥୧୧୬
ସ୍ୱଭାବେ ତା'ର ଶୁଦ୍ଧମତି ।
ହରି ଚରଣେ ନିତ୍ୟେ ରତି ॥୧୧୭
ବାଳକ ମେଳେ କ୍ରୀଡ଼ା କରେ ।
କ୍ରୀଡ଼ା-କନ୍ଦୁକ ନ ସୁମରେ ॥୧୧୮
ଜଡ଼ର ପ୍ରାୟ ହୋଇ ଖେଳେ ।
ଚିତ୍ତ ଗୋବିନ୍ଦ-ପାଦ ତଳେ ॥୧୧୯
ନ ଥାଏ ସଞ୍ଜ୍ଞା ତା'ର ଦେହେ ।
କୃଷ୍ଣେ ଆବିଷ୍ଟ ହୋଇଥାଏ ॥୧୨୦

ମନ ତା' ଗୋବିନ୍ଦ ଚରଣେ ।
ସଂସାର ସୁଖ ସେ ନ ମଣେ ॥୧୨୧
ଜାଗ୍ରତେ ଶୟନେ ଭୋଜନେ ।
ଭ୍ରମଣେ ବାକ୍ୟ-ଆଳାପନେ ॥୧୨୨
କୃଷ୍ଣ ଚରଣେ ଚିତ୍ତ ଦେଇ ।
ବିଷୟ ରସେ ଜ୍ଞାନ ନାହିଁ ॥୧୨୩
କୃଷ୍ଣ ଚରଣ ଚିନ୍ତା ବଳେ ।
କି ଅବା ବୋଲେ କିବା କରେ ॥୧୨୪
ନିର୍ଲ୍ଲଜ୍ଜ ପ୍ରାୟ ନୃତ୍ୟ କରେ ।
ହସି କାନ୍ଦଇ ଉଚ୍ଚସ୍ୱରେ ॥୧୨୫
କୃଷ୍ଣ ଗାୟନ ସେ ଆନନ୍ଦେ ।
ନିର୍ମଳ ଭକ୍ତି ଭାବ ଭେଦେ ॥୧୨୬
କୃଷ୍ଣର ଚେଷ୍ଟା ନିତ୍ୟେ କରେ ।
ସୁଜନଜନଙ୍କ ସଙ୍ଗରେ ॥୧୨୭
କୃଷ୍ଣ ଚରଣେ ଭାବେ ମଜ୍ଜି ।
ପୁଲକ କରେ ରୋମରାଜି ॥୧୨୮
ଆନନ୍ଦେ ଅଶ୍ରୁ ଝରଝର ।
ନିରତେ ବହେ ଚକ୍ଷୁଦ୍ୱାର ॥୧୨୯
କୃଷ୍ଣଚରଣ-ସେବା-ଭୋଳେ ।
ରମଇ ଅକିଞ୍ଚନ ମେଳେ ॥୧୩୦
ଆତ୍ମା-ନିବୃତ୍ତ ଅନୁକ୍ଷଣେ ।
ବିଷୟ ସଙ୍ଗ ଦୁଃଖ ମଣେ ॥୧୩୧
ଏମନ୍ତେ ପୁତ୍ରର ବିଷୟେ ।
ହିରଣ୍ୟକଶିପୁ ନିର୍ଦ୍ଦୟେ ॥୧୩୨
ଯାତନା କରେ ଅତିରେକେ ।
କେ ସହିପାରେ ନରଲୋକେ ॥୧୩୩

ଯୁଧିଷ୍ଠିର ଉବାଚ

ହେ ଦେବରଷି ସତ୍ୟବ୍ରତ ।
କହିଲ ଅଦ୍‌ଭୁତ ଚରିତ ॥୧୩୪
ନିଜ ସୁତକୁ ତାତ ଯେବେ ।
ଦଣ୍ଡିଲା ଶତ୍ରୁଜନ ଭାବେ ॥୧୩୫
ସେ ଶୁଦ୍ଧଚେତା ପ୍ରହ୍ଲାଦ ।
କିପାଇଁ ଅର୍ଜ୍ଜିଲା ପ୍ରମାଦ ॥୧୩୬
କୁପୁତ୍ରପଣ ଯେ କରନ୍ତି ।
ପିତାକୁ ରିପୁ ପ୍ରାୟ ଚିନ୍ତି ॥୧୩୭

Dr. Sudhanshu Sekhar Mishra

ପୁତ୍ର-କୁଶଳେ ଶିକ୍ଷା ଅଥେ ।
ପିତା ଚିନ୍ତଇ ଦିବାରାତ୍ରେ ॥୧୩୮
ନିଜ ପୁତ୍ରକୁ ପିତା କେବେ ।
ନ ଦଣ୍ଡେ ଅପର ସ୍ୱଭାବେ ॥୧୩୯
ସେ ପୁତ୍ର ପିତା-ଅନୁଚର ।
ସ୍ୱଭାବେ ଶୁଦ୍ଧ ସାଧୁ ଧୀର ॥୧୪୦
ଏହାକୁ କିପାଁ ଦୁଃଖ ଦେଲା ।
ମୋତେ ତ ସନ୍ଦେହ ଲାଗିଲା ॥୧୪୧
ଯେ ପିତା ପୁତ୍ରେ ଦିଏ ଦୁଃଖ ।
ସେ କଥା ମରଣୁଁ ଅଧିକ ॥୧୪୨
ଏଣୁ ଦୁଃଖିତ ମୋ'ର ମନ ।
କହ ହେ ବ୍ରହ୍ମାଙ୍କ ନନ୍ଦନ ॥୧୪୩

ଶୁକ ଉବାଚ

ଏମନ୍ତ ଧର୍ମସୁତ ବାଣୀ ।
ନାରଦ ସଭା ମଧ୍ୟେ ଶୁଣି ॥୧୪୪
କୃଷ୍ଣ ଚରଣେ ଦେଇ ଚିତ୍ତ ।
କହିଲେ ବିଷ୍ଣୁର ଚରିତ ॥୧୪୫
ସେ ବ୍ରହ୍ମମୁନିର ଚରଣେ ।
ସୁଜନେ ନମ ଅନୁକ୍ଷଣେ ॥୧୪୬
ତୁମ୍ଭର ହିତେ ଭାଗବତ ।
ଭାଷା-ପ୍ରବନ୍ଧେ କଲି ଗୀତ ॥୧୪୭
ସପ୍ତମ ସ୍କନ୍ଧେ ଏହି ତତ୍ତ୍ୱ ।
କହଇ ଦାସ ଜଗନ୍ନାଥ ॥୧୪୮

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ସପ୍ତମସ୍କନ୍ଧେ ପ୍ରହ୍ଲାଦ ଚରିତେ ଚତୁର୍ଥୋଽଧ୍ୟାୟଃ ॥

---

## ପଞ୍ଚମ ଅଧ୍ୟାୟ

ନାରଦ ଉବାଚ

ଅସୁର କୁଳେ ପୁରୋହିତ ।
ସର୍ବଜ୍ଞ ଶୁକ୍ର ଭୃଗୁସୁତ ॥୧
ମୁନିଙ୍କ ପୁତ୍ର ବେନି ଭାଇ ।
ଶଣ୍ଡ ଅମର୍କ ନାମେ ଦୁଇ ॥୨
ରାଜା ଆଚାର୍ଯ୍ୟ ତା'ଙ୍କୁ କଲେ ।
ପୁତ୍ରମାନଙ୍କୁ ପଢ଼ାଇଲେ ॥୩
ରାଜା ମନ୍ଦିରେ ବେନି ଭାଇ ।
ଦୈତ୍ୟ ପୁତ୍ରଙ୍କୁ ସଙ୍ଗେ ଲଇ ॥୪
ଯେ ଷଡ଼ନୀତି ରାଜକୁଳେ ।
ସର୍ବେ ପଢ଼ନ୍ତି ଏକମେଳେ ॥୫
ତାହାଙ୍କ ମଧ୍ୟେ ପ୍ରହ୍ଲାଦ ।
ସକଳ-ଶାସ୍ତ୍ରେ ହେଲେ ସିଦ୍ଧ ॥୬
ଗୁରୁଙ୍କ ମୁଖୁଁ ବେଳେ ଶୁଣି ।
ତକ୍ଷଣେ ଚିତ୍ତେ ପରିମାଣି ॥୭
ଚିତ୍ତ ନିର୍ମଳେ ତାହା ଜାଣେ ।
କେବଳ ମନେ ନ ପ୍ରମାଣେ ॥୮
ବିଚାର କରେ ଅନ୍ତର୍ଗତେ ।
କେ ରିପୁ କେ ମିତ୍ର ଜଗତେ ॥୯
ଏକଇ ଆତ୍ମା ନରହରି ।
ସମେ ସକଳ ଘଟେ ପୁରି ॥୧୦
ଏ କଥା ଅଟଇ ପ୍ରମାଣ ।
ସକଳ ଆତ୍ମା ନାରାୟଣ ॥୧୧
ଯେ ପାଠ ପଢ଼େ ବାହ୍ୟମତେ ।
ଦୃଢ଼େ ନ ଧରେ ଅନ୍ତର୍ଗତେ ॥୧୨
ଦିନେକ ପ୍ରହ୍ଲାଦ ଆଣି ।
କୋଳେ ବସାଇ ନୃପମଣି ॥୧୩
ଅନେକ ଅଳଙ୍କାର ଦେଇ ।
ସାନନ୍ଦେ ପୁତ୍ରକୁ ପୁଚ୍ଛଇ ॥୧୪

ହିରଣ୍ୟକଶିପୁ ଉବାଚ

ହେ ପୁତ୍ର ଶୁଣ ବାକ୍ୟ ମୋ'ର ।
ଯେ ଷଡ଼ନୀତି ରାଜାଙ୍କର ॥୧୫
ତୁ ତାହା ଗୁରୁ ମୁଖୁଁ ଶୁଣୁ ।
ସୁଦୃଢ଼ ଚିତ୍ତେ ନ ପ୍ରମାଣୁ ॥୧୬
ମୁଁ ଭଲେ ଶୁଣିଲଇଁ ତାହା ।
କହ ତୁ ସାଧୁ ମଣୁ ଯାହା ॥୧୭
ଯେ ରାଜନୀତି ଚିତ୍ତେ ଧରେ ।
କେବେ ହେଁ ଶତ୍ରୁକୁ ନ ଡରେ ॥୧୮
ସଂଗ୍ରାମେ ରିପୁ ଜୟ କରେ ।
ସେ ରାଜା ସୁଖ ଭୁଞ୍ଜେ ଭଲେ ॥୧୯
ବିଦ୍ୟା ପଢ଼ିଲୁ ଏତେ କାଳ ।
ଭଲ କି ମଣୁ ମୋତେ ବୋଲ ॥୨୦
ପିତା-ବଚନ ପୁତ୍ର ଶୁଣି ।
ଶିରେ ନିବେଶି ବେନି ପାଣି ॥୨୧
ସାନନ୍ଦେ ବାକ୍ୟ ଗଦଗଦ ।
କହେ ବାଳକ ପ୍ରହ୍ଲାଦ ॥୨୨
ଶୁଣ ଭୋ ତାତ ଏକଚିତ୍ତେ ।
ଯେ ସାଧୁ ମଣେ ମୋ'ର ମତେ ॥୨୩
ସଂସାର ସାଗର ପରାୟେ ।
ପ୍ରାଣୀଙ୍କୁ ଉଦବେଗ ଦିଏ ॥୨୪
ଦେଖ ଏ ଗୃହ-ଅନ୍ଧକୂପ ।
ଆତ୍ମା ନିପାତ ମହାତାପ ॥୨୫
ଏହାକୁ ଦୂରେ ପରିହର ।
ଅରଣ୍ୟେ କୃଷ୍ଣ ଆଶ୍ରେ-କର ॥୨୬
ସାଧୁ ମଣଇ ଏହା ଚିତ୍ତେ ।
ସତ୍ୟ କହିଲି ତୋ' ଅଗ୍ରତେ ॥୨୭

ନାରଦ ଉବାଚ

ଏମନ୍ତେ ପୁତ୍ରବାକ୍ୟ ଶୁଣି ।
ଶତ୍ରୁର ପକ୍ଷ ପ୍ରାୟ ମଣି ॥୨୮
ଉଚ୍ଚେ ହସିଲା ଅତିରେକ ।
ବୋଲଇ ପୁତ୍ର ଅବିବେକ ॥୨୯
ଏପରି ପରବୁଦ୍ଧି ବଳେ ।
ନଷ୍ଟ ହୁଅନ୍ତି ସର୍ବକାଳେ ॥୩୦
ଏହାର ବୁଦ୍ଧି କେ ହରିଲା ।
ଏ ମୋ'ର ଶତ୍ରୁକୁ ଭଜିଲା ॥୩୧
କୋଳୁ ବାଳକ ତଳେ ଥୋଇ ।
ବୋଲେ ସେବକ ମୁଖ ଚାହିଁ ॥୩୨
ଗୁରୁ ଭୁବନେ ନେଇ ଦିଅ ।
ଏ କଥା ଗୁରୁ ଆଗେ କହ ॥୩୩

Dr. Sudhanshu Sekhar Mishra

ଏ ମୋ'ର ବାଳକର ମନ ।
ବିଷ୍ଣୁ ବିଷୟେ କିବା ଛନ୍ନ ॥୩୪
ଏହାର ମନ ବିଷ୍ଣୁ ପକ୍ଷେ ।
ଯେମନ୍ତେ ନ ଘଟେ ପ୍ରତ୍ୟକ୍ଷେ ॥୩୫
ରାଜାର ଆଜ୍ଞା ଭୃତ୍ୟେ ପାଇ ।
ବାଳକ ଗୁରୁ ଘରେ ନେଇ ॥୩୬
ବ୍ରାହ୍ମଣ ଗୋଷ୍ଠୀ ମଧ୍ୟେ ଦେଲା ।
ରାଜା ବଚନ ଜଣାଇଲା ॥୩୭
ତା' ଶୁଣି ବିପ୍ର ଉଦବେଗେ ।
ବୋଲନ୍ତି ପ୍ରହଲ୍ଲାଦ ଆଗେ ॥୩୮
ସାଧୁ ବଚନ ବାକ୍ୟ ମତେ ।
କହନ୍ତି ହସ୍ତ ଧରି ହସ୍ତେ ॥୩୯
ହେ ବତ୍ସ ପ୍ରହଲ୍ଲାଦ ଶୁଣ ।
ସର୍ବଦା ହେଉ ତୋ' କଲ୍ୟାଣ ॥୪୦
ଆମ୍ଭଙ୍କୁ ଲାଗଇ ସଂଶୟ ।
ମିଥ୍ୟା ତୁ ତେଜି ସତ୍ୟ କହ ॥୪୧
ବାଳକ ବୁଦ୍ଧି ତୋ' ନ ଦେଖି ।
ଅଦ୍‌ଭୁତ ପ୍ରାୟେ ଉପଲକ୍ଷି ॥୪୨
ତୋହର ବୁଦ୍ଧି କେ ହରିଲା ।
ଶତ୍ରୁ-ଭଜନେ ଶିକ୍ଷା ଦେଲା ॥୪୩
କିବା ଏ ସ୍ୱଭାବ ତୋହର ।
ଆମ୍ଭଙ୍କୁ ଲାଗେ ଅଗୋଚର ॥୪୪
କହ କେ ତୋତେ ଦେଲା ଦୀକ୍ଷା ।
ଆମ୍ଭେ ଶ୍ରବଣେ କରୁ ଇଚ୍ଛା ॥୪୫
ଯାହାର ମାୟାବଳେ ଜନ ।
ସ୍ୱ-ପୁର ବୁଦ୍ଧି କରେ ଭିନ୍ନ ॥୪୬
ଯାହାର ନାହିଁ ପରାପର ।
ତାହାଙ୍କୁ ମୋ'ର ନମସ୍କାର ॥୪୭
ଯାହାଙ୍କ ଆଜ୍ଞା ପରମାଣେ ।
ପ୍ରାଣୀ ନିସ୍ତରେ ଭବ-ବଣେ ॥୪୮
ସେ ସର୍ବ ଆତ୍ମା ଯୋଗେଶ୍ୱର ।
ତାହାର ନାହିଁ ଆତ୍ମାପର ॥୪୯
ଯାହାକୁ ହରି କରେ ଦୟା ।
ତାହାର ଯାଏ ଭେଦ ମାୟା ॥୫୦
ବାସନା ବଳେ ସର୍ବଜନ୍ତୁ ।
ଭୁଞ୍ଜନ୍ତି ପରାପର-ହେତୁ ॥୫୧
ତାହାର ମାଗେ ଶିବ-ବ୍ରହ୍ମ ।
ଗତି ନ ଲଭି ହୋନ୍ତି ଭ୍ରମ ॥୫୨
ସେ ମୋ'ର ମନ ଭିନ୍ନ କଲା ।
ପର ଅପର ନ କହିଲା ॥୫୩
ଯେସନେ ଅୟସ୍କାନ୍ତ ଗୁଣେ ।
ଲୌହ ଭ୍ରମଇ ଆକର୍ଷଣେ ॥୫୪
ମୋହର ମନ ସେହି ମତେ ।
ଭ୍ରମଇ ବିଷ୍ଣୁର ଆୟତ୍ତେ ॥୫୫

ନାରଦ ଉବାଚ

ଗୁରୁଙ୍କୁ କହି ଏ ବଚନ ।
ପ୍ରହ୍ଲାଦ ହୋଇଲା ମଉନ ॥୫୬
ବାଳକ ବାଣୀ ଶୁଣି କର୍ଣ୍ଣେ ।
କୋପ ବସିଲା ଗୁରୁ ମନେ ॥୫୭
ସମୀପେ ଥିଲେ ରାଜାଲୋକ ।
ଗୁରୁ ହିଁ ରାଜାର ସେବକ ॥୫୮
କୋପେ କମ୍ପିଲେ ବାକ୍ୟ ଶୁଣି ।
ତକ୍ଷଣେ ଘରୁ ବେତ ଆଣି ॥୫୯
ରାଜାର ବଂଶେ ଦୁରାଚାର ।
ନିଷ୍ଟେ ଜନ୍ମିଲା କୁଳାଙ୍ଗାର ॥୬୦
ଦୁର୍ବୁଦ୍ଧିପଣ ଏ ବାଳକ ।
ଏହାକୁ ଦଣ୍ଡେ ହେଁ ନ ରଖ ॥୬୧
ଚନ୍ଦନ ବନେ କଣ୍ଟା ବୃକ୍ଷ ।
ଦେଖ ହୋ ଜନ୍ମିଲା ପ୍ରତ୍ୟକ୍ଷ ॥୬୨
କଣ୍ଟକ ବୃକ୍ଷ ଯେବେ ମାରି ।
ଚନ୍ଦନ ବନ ଯତ୍ନ କରି ॥୬୩
ତେବେ ନିର୍ଭୟେ ଭୋଗ କରି ।
କଣ୍ଟକ ଥିଲେ ନିତ୍ୟେ ଡରି ॥୬୪
ଚନ୍ଦନ ବନ ଦୈତ୍ୟଗଣ ।
ବିଷ୍ଣୁ ଯେ କୁଠାର ସମାନ ॥୬୫
କୁଠାର ବେଣ୍ଟ ଏହୁ ହୋଇ ।
ଏ ଥିଲେ ଆମ୍ଭ ଭଲ ନାହିଁ ॥୬୬
ଏମନ୍ତେ କରାଇଲେ ଭୟେ ।
ତର୍ଜିଲେ ବିବିଧ ଉପାୟେ ॥୬୭
ପୁଣି ଆଶ୍ୱସ ତା'କୁ କରି ।
ଗୁରୁ ପଢ଼ାନ୍ତି ହସ୍ତ ଧରି ॥୬୮
ଯେ ଧର୍ମ-ଅର୍ଥ-କାମ ଫଳେ ।
ସେ ବିଦ୍ୟା ପଢ଼ାଇଲେ ବଳେ ॥୬୯
ମୋକ୍ଷ ହିଁ ଅଛି ତା'ର ତହିଁ ।
ଏମନ୍ତେ ବାଳକେ ପଢ଼ାଇ ॥୭୦
ମାତାଙ୍କ ଆଗେ ନେଇ ଦେଲେ ।
ସେ ତା'କୁ ଅଳଙ୍କୃତ କଲେ ॥୭୧
ରାଜା ସମୀପେ ଦେଲେ ନେଇ ।
ତା' ଦେଖି ରାଜା ତୋଷ ହୋଇ ॥୭୨
ଚରଣ ତଳେ ପୁତ୍ର ଚାହିଁ ।
ତକ୍ଷଣେ କୋଳ କଲା ନେଇ ॥୭୩
ଆନନ୍ଦେ ଗାତ୍ରେ ହସ୍ତ ଦେଇ ।
ସ୍ନେହରେ କୋଳରେ ବସାଇ ॥୭୪
ପୁତ୍ର ସ୍ୱଭାବେ ପ୍ରୀତିକରି ।
କଲ୍ୟାଣ କରେ କୋଳେ ଧରି ॥୭୫
ପ୍ରସନ୍ନ ବଦନେ ଅନାଇଁ ।
ସଧୀରେ ପୁତ୍ରକୁ ବୋଲଇ ॥୭୬

ହିରଣ୍ୟକଶିପୁ ଉବାଚ

ହେ ପୁତ୍ର ଶୁଣ ମୋ' ବଚନ ।
ଗୁରୁ ଭୁବନେ ଏତେ ଦିନ ॥୭୭
ତୁ ଯେ ପଢ଼ିଲୁ ବାଳ ଭାବେ ।
ମୋ'ର ସମ୍ମୁଖେ କହ ଏବେ ॥୭୮
ଉତ୍ତମ ବିଦ୍ୟା ପୁତ୍ର କହ ।
ମୋ' ମନ ନ ରହୁ ସନ୍ଦେହ ॥୭୯

ପ୍ରହ୍ଲାଦ ଉବାଚ

ଶୁଣ ହେ ତାତ ମନଦେଇ ।
ଯେ ବିଦ୍ୟା ଉତ୍ତମ ମଣଇ ॥୮୦
ଶ୍ରୀକୃଷ୍ଣ ଶ୍ରବଣ କୀର୍ତ୍ତନ ।
ସ୍ମରଣ ଚରଣ ସେବନ ॥୮୧
ସର୍ବ ସମ୍ପଦ ସମର୍ପିବ ।
ଚରଣେ ଦାସ ପଣେ ଥିବ ॥୮୨
ସଖ୍ୟ ଭାବରେ ନେବ ଦିନ ।
କରିବ ଆତ୍ମ ନିବେଦନ ॥୮୩
ଏତେ ପ୍ରକାରେ ବିଷ୍ଣୁ ଭାବ ।
ନିରତେ ଚିତ୍ତେ ସୁମରିବ ॥୮୪
ଏହା ମୁଁ ଉତ୍ତମ ମଣଇ ।
କହିଲି ତୋ'ର ଆଗେ ମୁହିଁ ॥୮୫

Dr. Sudhanshu Sekhar Mishra

ଏ ନବ ଲକ୍ଷଣେ ଭକତି ।
ଯେ ନର ଗୋବିନ୍ଦେ କରନ୍ତି ।।୮୬
ଉତ୍ତମ ବିଦ୍ୟା ବୋଲି ତାହା ।
ଯେଣେ ନ ଲାଗେ ବିଷ୍ଣୁ ମାୟା ।।୮୭
ଏମନ୍ତ ପୁତ୍ର ମୁଖୁଁ ଶୁଣି ।
କୋପେ ଉଠିଲା ଶିର ଝୁଣି ।।୮୮
ଆରକ୍ତ ବେନି ଚକ୍ଷୁ ତା'ର ।
ପ୍ରଚଣ୍ଡେ କମ୍ପଇ ଅଧର ।।୮୯
ଗୁରୁ ପୁତ୍ରର ମୁଖ ଚାହିଁ ।
ବୋଲଇ କୋପ ଭର ହୋଇ ।।୯୦
ତୁ ବ୍ରହ୍ମ ବନ୍ଧୁ ଗୁରୁସୁତ ।
ଏ ତ ତୋହର ବିପରୀତ ।।୯୧
ମୋ'ର ବିପକ୍ଷ ସ୍ତୁତି ଯେତେ ।
ଏହା ଶିଖାଇଲୁ କେମନ୍ତେ ।।୯୨
ଅସାର ବିଦ୍ୟା ଶିଖାଇଲୁ ।
ତୁ ତ ଅବଜ୍ଞା ମୋତେ କଲୁ ।।୯୩
ଅସାଧୁ ଲୋକ ଏ ସଂସାରେ ।
ଅଛନ୍ତି କୈତବ ବେଭାରେ ।।୯୪
ତାହାଙ୍କ ଦୋଷ ତା'ଙ୍କୁ ମାରେ ।
ରୋଗ ଯେସନେ କଳେବରେ ।।୯୫
ଯେ ପ୍ରାଣୀ ବ୍ରହ୍ମହତ୍ୟା କରେ ।
ସେ କ୍ଷୟ ରୋଗୀ ଜନ୍ମାନ୍ତରେ ।।୯୬
ଯେ ନିତ୍ୟେ ମଦ୍ୟପାନ କରେ ।
ବିକଟଦନ୍ତ ତା' ଅଧରେ ।।୯୭
ସୁବର୍ଣ୍ଣ ହରି ଥାଇ ଯେବେ ।
କୁନଖୀ ହୋଇ ଜନ୍ମ ଲଭେ ।।୯୮
ଗୁରୁ କାମିନୀ ଯେହୁ ରତେ ।
ଧବଳ କୁଷ୍ଠ ମୁଖ ହସ୍ତେ ।।୯୯
ଏମନ୍ତେ ଅସୁର ବଚନେ ।
କହନ୍ତି ଗୁରୁଙ୍କ ନନ୍ଦନେ ।।୧୦୦

ଗୁରୁପୁତ୍ର ଉବାଚ

ମୋହର ଶିକ୍ଷା ଏ ନୁହଁଇ ।
ଆନ ବା ପଢ଼ାଇବ କେହି ।।୧୦୧
ତୋ'ର ପୁତ୍ରର ଏ ସ୍ୱଭାବ ।
ଜାଣି ତୁ ଚିନ୍ତ ପରାଭବ ।।୧୦୨

ନାରଦ ଉବାଚ

ଏମନ୍ତେ ଗୁରୁ ବାକ୍ୟ ଶୁଣି ।
ସଂଶୟ ଚିତ୍ତେ ନୃପମଣି ।।୧୦୩
ପୁତ୍ରକୁ ଚାହିଁ କୋପଭରେ ।
ବୋଲଇ କୁତ୍ସିତ-ବେଭାରେ ।।୧୦୪

ହିରଣ୍ୟକଶିପୁ ଉବାଚ

ଏ ବିଦ୍ୟା ଗୁରୁ ବାକ୍ୟ ନୋହେ ।
କେ ଅବା ତୋ'ର ମନ ମୋହେ ।।୧୦୫

ପ୍ରହ୍ଲାଦ ଉବାଚ

ଶୁଣ ହେ ତ୍ରୈଲୋକ୍ୟ ଈଶ୍ୱର ।
ମତିର ଗତି ଚକ୍ରଧର ।।୧୦୬
ଯେ ପ୍ରାଣୀ ଗୃହକୃତ୍ୟ କରେ ।
ତା' ମତି କୃଷ୍ଣ ନ ସୁମରେ ।।୧୦୭
ଗୁରୁବଚନ କି କରିବ ।
ଯାହାର ଯେମନ୍ତ ସ୍ୱଭାବ ।।୧୦୮
ଅସାଧ୍ୟ ଇନ୍ଦ୍ରିୟଙ୍କ ବଳେ ।
ଗୃହସ୍ଥ ପଡ଼େ ରସାତଳେ ।।୧୦୯
କୁଳ ବେଭାରେ ବଶ ହୋଇ ।
ଚର୍ବିତ ଚର୍ବଣ କରଇ ।।୧୧୦
ତାହାଙ୍କ ମତି କୃଷ୍ଣ ଠାବେ ।
କେବେହେଁ ନୋହେ ଭକ୍ତିଭାବେ ।।୧୧୧
ଯେ ପ୍ରାଣୀ ଦୁରାଶୟ ପଣେ ।
ଅନର୍ଥ ଅର୍ଥ ପ୍ରାୟେ ମଣେ ।।୧୧୨
ସେ କାହିଁ କୃଷ୍ଣଙ୍କୁ ପାଇବ ।
ଯେ ବ୍ରହ୍ମା ଶଙ୍କରେ ଦୁର୍ଲ୍ଲଭ ।।୧୧୩
ଯାହାର ମତି ଅର୍ଥ ଧାୟି ।
ସେ ପ୍ରାଣୀ ଲଭିବ ତା' କାହିଁ ।।୧୧୪
ଅନ୍ଧକୁ ଅନ୍ଧ ଯେହ୍ନେ ବହେ ।
ସେ ଈଶ ତନ୍ତେ ଭ୍ରମେ ମୋହେ ।।୧୧୫
ଏମନ୍ତ ପ୍ରାଣୀଙ୍କ ସ୍ୱଭାବ ।
କେମନ୍ତେ କୃଷ୍ଣଙ୍କୁ ଲଭିବ ।।୧୧୬
କୃଷ୍ଣ-ଚରଣ ପଦ୍ମ ଦୁଇ ।
ଏ ଘେନି ଲଭି ନ ପାରଇ ।।୧୧୭
ଯାହାର ଚରଣର ଅର୍ଥ ।
ସ୍ମରଣେ ଖଣ୍ଡଇ ଅନର୍ଥ ।।୧୧୮
ଯାହାଙ୍କ ଚରଣାରବିନ୍ଦ ।
ସେବି ନ ପାନ୍ତି ସୁରବୃନ୍ଦ ।।୧୧୯
ବିଷ୍ଣୁ ଭକତ ପାଦ ଧୂଳି ।
ଉଦକ ସଙ୍ଗେ ଶିରେ ବୋଳି ।।୧୨୦
ତହିଁ ଯେ ସ୍ନାନ ନ କରଇ ।
ହରିଙ୍କି ଲଭିବ ସେ କାହିଁ ।।୧୨୧
ଏମନ୍ତ କହି ଦୈତ୍ୟବଳା ।
ଅନ୍ତରେ ମଉନ ହୋଇଲା ।।୧୨୨
ଶୁଣି ଅସୁର କୋପାନଳେ ।
କୋଳରୁ ପକାଇଲା ତଳେ ।।୧୨୩
ରୋଷେ ଅରୁଣ ଚକ୍ଷୁ କଲା ।
ଅସୁର ଗଣେ ଆଜ୍ଞା ଦେଲା ।।୧୨୪

ହିରଣ୍ୟକଶିପୁ ଉବାଚ

ଶୁଣ ହେ ନଇରତଗଣ ।
ମୋ'ର ପୁତ୍ରର ଦୁଷ୍ଟ ପଣ ।।୧୨୫
ମରଣ ଅର୍ଜିଲା ବେଭାରେ ।
ଏହାକୁ ରାଜ୍ୟୁ କର ଦୂରେ ।।୧୨୬
ମୋ'ର ଅନୁଜ ନାଶ କରି ।
ଯେ ବିଷ୍ଣୁ ମୋହର ବଇରୀ ।।୧୨୭
ତାହାର ପକ୍ଷ ଏ ଧଇଲା ।
ନିଜ ସୁହୃଦ ଉପେକ୍ଷିଲା ।।୧୨୮
ବିଷ୍ଣୁର ଦାସ ପଣେ ରହେ ।
କେ ପ୍ରାଣ ଥାଉଁ ଏହା ସହେ ।।୧୨୯
ବିଷ୍ଣୁର ଆଶ୍ରେ ଏ ମୋହର ।
ନିଷ୍ଟେ କରିବ ଅପକାର ।।୧୩୦
ପିତା ସୁହୃଦ ପୁତ୍ରଙ୍କର ।
ଦୁସ୍ତ୍ୟଜ୍ୟ ଏ ଶାସ୍ତ୍ର ବେଭାର ।।୧୩୧
ଏ ପଞ୍ଚ ବରଷର ସୁତ ।
ପିତାମାତାରେ ଅଭକତ ।।୧୩୨
ପରର ପୁତ୍ର ହୋଇ ଯେବେ ।
ଆପଣା ହିତ ଅନୁଭାବେ ।।୧୩୩
ତାହାକୁ ଜାଣି ନିଜ ସୁତ ।
ରୋଗକୁ ଔଷଧ ଯେମନ୍ତ ।।୧୩୪
ଆପଣା ତହୁଁ ଜାତ ହୋଇ ।
ପରର ହିତେ ଯେବେ ଥାଇ ।।୧୩୫

Dr. Sudhanshu Sekhar Mishra

ବ୍ୟାଧିର ପ୍ରାୟ ଜନ୍ମ ତା'ର ।
ତା' ମଲେ ଆତ୍ମାର ନିସ୍ତାର ॥୧୩୬
ଯେ ଅଙ୍ଗେ ସର୍ପଘାତ କରେ ।
ସେ ଅଙ୍ଗ ଦୋଷେ ପ୍ରାଣୀମରେ ॥୧୩୭
ସେ ଅଙ୍ଗ ଛେଦି ପକାଇଲେ ।
ଦେହେ ଜୀବନ ରହେ ଭଲେ ॥୧୩୮
ଯେ ହିତ କରେ ପର ହୋଇ ।
ତା' ତହୁଁ ଆଉ ବନ୍ଧୁ କାହିଁ ॥୧୩୯
ଅହିତ କରେ ବନ୍ଧୁ ଯେବେ ।
ତାହାକୁ ଲେଖି ଶତ୍ରୁ ଭାବେ ॥୧୪୦
ଦେହରୁ ବ୍ୟାଧି ଜନ୍ମ ହୋଇ ।
ଆତ୍ମା ସହିତେ ସଂହାରଇ ॥୧୪୧
ଅରଣ୍ୟ ଅଉଷଧି ଆଣି ।
ରୋଗ-ସଙ୍କଟୁ ତରେ ପ୍ରାଣୀ ॥୧୪୨
ପର ଅପର ଏ ବିଚାର ।
କେ ରିପୁ କେବା ଆପଣାର ॥୧୪୩
ସୁହୃଦ ହୋଇ ଶତ୍ରୁ ପଣେ ।
ପାପ ଚିନ୍ତଇ ଅନୁକ୍ଷଣେ ॥୧୪୪
ନାନା-ଉପାୟେ ତା'କୁ ମାରି ।
ସେ ମଲେ ସୁଖେ ପ୍ରାଣ ଧରି ॥୧୪୫
ଯୋଗୀଙ୍କ ଯୋଗଧ୍ୟାନ କାଳେ ।
ଦୁଷ୍ଟ ଇନ୍ଦ୍ରିୟ ଯେବେ ବଳେ ॥୧୪୬
ତାହାକୁ ଯେବେ କରେ ସାଧ ।
ତେବେ ଲଭଇ ବ୍ରହ୍ମପଦ ॥୧୪୭
ଏ ମିତ୍ର ବେଶ ଧାରୀ ପର ।
ଏହାକୁ ବେଗେ ବଧ କର ॥୧୪୮
ଭୋଜନ ଶୟନ ଆସନେ ।
ଉପାୟ କର ତା' ମରଣେ ॥୧୪୯
ଏମନ୍ତେ ରାଜା ଆଜ୍ଞା ପାଇ ।
ଅସୁରେ ଅସ୍ତ୍ର ଘେନି ଧାଇଁ ॥୧୫୦
ବାଳକ-ନାଶ ମନେ ଚିନ୍ତି ।
ଶୂଳ ଅନ୍ତରୀକ୍ଷେ ବୁଲାନ୍ତି ॥୧୫୧
ସୁତୀକ୍ଷଣ ଦିଶେ ଦନ୍ତପନ୍ତି ।
କରାଳ-ବଦନେ ଚାହାନ୍ତି ॥୧୫୨
ତମ୍ବାର ବର୍ଣ୍ଣ ପ୍ରାୟେ ଦାଢ଼ି ।
ଶିରେ କପିଳ ଜଟା ବେଢ଼ି ॥୧୫୩

ନାଚନ୍ତି ଭଇରବ ନାଦେ ।
ଅସୁରେ ଛନ୍ଦି ପାଦ ପାଦେ ॥୧୫୪
ଶୂଳ ବୁଲାଇ ମହାଘୋରେ ।
ପିଟିଲେ ବାଳକ ଉପରେ ॥୧୫୫
ତା' ଦେଖି ଅସୁରକୁମର ।
ମନେ ଚିନ୍ତିଲା ଚକ୍ରଧର ॥୧୫୬
ଗୋବିନ୍ଦ ପଦେ ଚିତ୍ତ ଦେଇ ।
ବୋଲଇ ଅସୁରଙ୍କୁ ଚାହିଁ ॥୧୫୭
ତୁମ୍ଭର ଦେହେ ଯେବେ ହରି ।
ଆତ୍ମା-ସ୍ୱରୂପେ ଛନ୍ତି ପୂରି ॥୧୫୮
ସକଳ ଶସ୍ତ୍ରେ ହରି ଯେବେ ।
ଘଟଣେ ଛନ୍ତି ଆତ୍ମା ଭାବେ ॥୧୫୯
ଏ କଥା ସତ୍ୟ ଯେବେ ହୋଇ ।
ଶସ୍ତ୍ର ନ କାଟୁ ମୋ'ର ଦେହୀ ॥୧୬୦
ଶୁଣି ଅସୁର କୋପ ଭରେ ।
ଅନେକ-ଶସ୍ତ୍ର ପ୍ରହାରିଲେ ॥୧୬୧
ପ୍ରହଲ୍ଲାଦର ଦେହେ ବାଜି ।
ସକଳ ଶସ୍ତ୍ରେ ଗଲେ ଭାଜି ॥୧୬୨
ଅପୁଣ୍ୟବନ୍ତ-ପ୍ରାଣୀ ଦେହେ ।
ସାତ୍ୱିକ ଫଳ ଯେହ୍ନେ ନୋହେ ॥୧୬୩
ଅଦ୍‌ଭୁତ-କର୍ମ ତା'ର ଦେଖି ।
ତକ୍ଷଣେ ଆସନ ଉପେକ୍ଷି ॥୧୬୪
ଭିତରେ ପଶିଲା ଅସୁର ।
ଭୟରେ କମ୍ପେ ଥରହର ॥୧୬୫
ମନ୍ତ୍ରୀ-ସଙ୍ଗତେ ବିଚାରିଲା ।
ବାଳକ-ମରଣ ଚିନ୍ତିଲା ॥୧୬୬
ଐରାବତ ଆଦି ନାଗେ ।
ତାହାଙ୍କୁ ଅଣାଇଲା ବେଗେ ॥୧୬୭
ବୋଇଲା ଦନ୍ତାଘାତ କର ।
ଯେମନ୍ତେ ମରଇ କୁମର ॥୧୬୮
ଶୁଣି ଅନେକ ହସ୍ତୀ ତୁଳେ ।
ବାଳକ-ସୀମପେ ମିଳିଲେ ॥୧୬୯
ହସ୍ତୀଙ୍କି ଚାହିଁ ଦୈତ୍ୟବଳୀ ।
ଅନ୍ତରେ କୃଷ୍ଣ ସୁମରିଲା ॥୧୭୦
ମହା କ୍ରୋଧରେ ଗଜବରେ ।
ନିଷ୍ଠୁର-ଦନ୍ତର ଅଗ୍ରରେ ॥୧୭୧

ନିର୍ଘାତେ କରନ୍ତେ ପ୍ରହାର ।
ସକଳ-ଦନ୍ତ ହେଲା ଚୂର ॥୧୭୨
ଭୟେ ଭାଜିଲେ ହସ୍ତୀବଳ ।
ଦେଖି ଅସୁର କୋପାନଳ ॥୧୭୩
ତକ୍ଷକ ଆଦି ଅଷ୍ଟନାଗେ ।
ଥିଲେ ଯେ ଅନ୍ତରୀକ୍ଷ ମାର୍ଗେ ॥୧୭୪
ତାହାଙ୍କୁ ରାଇ ନୃପବର ।
ନିଷ୍ଠୁରେ ବୋଲଇ ଉତ୍ତର ॥୧୭୫
ଏ କୁଳାଙ୍ଗାର ମୋ କୁମର ।
ଏହାର ପ୍ରାଣ ବେଗେ ହର ॥୧୭୬
ନାଗଙ୍କୁ ଦେଖି ପ୍ରହଲ୍ଲାଦ ।
ଚିତ୍ତେ ଚିନ୍ତିଲା କୃଷ୍ଣପାଦ ॥୧୭୭
ତକ୍ଷଣେ କୋପେ ନାଗେ ଗଲେ ।
ବାଳକ ଶରୀରେ ଦଂଶିଲେ ॥୧୭୮
ମୁଖରୁ ଦନ୍ତ ଝଡ଼ିଗଲା ।
ନାଗଙ୍କ ଫଣା ବଥାଇଲା ॥୧୭୯
ନାଗେ ପଳାଇ ଗଲେ ବେଗେ ।
ଜୀବନ ଭୟେ ଦଶ ଦିଗେ ॥୧୮୦
ପୁଣି ସେ କୃତ୍ୟାହୋମ କଲା ।
ପର୍ବତ ଶିଖୁଁ କଚାଡ଼ିଲା ॥୧୮୧
ଶମ୍ବର ହସ୍ତେ ମାୟା କଲା ।
କେବେହେଁ ପ୍ରାଣ ତା' ନ ଗଲା ॥୧୮୨
ବନ୍ଧନ କରି ହସ୍ତପାଦ ।
ମେଳିଲା ଅଗାଧ ସମୁଦ୍ର ॥୧୮୩
ବନ୍ଧନ କରି ପ୍ରତିଦିନେ ।
ମରିବ ବୋଲଇ କେସନେ ॥୧୮୪
ଭର୍ତ୍ସନା କଲା ପ୍ରତିଦିନେ ।
ଗରଳ ଦେଲା ଅନ୍ନପାନେ ॥୧୮୫
କେତେହେଁ ଦିନ ଅଭୋଜନ ।
ବଞ୍ଚିଲା ଅସୁର ନନ୍ଦନ ॥୧୮୬
ହିମ ପବନ ଅଗ୍ନି ଜଳେ ।
ପର୍ବତ ଚାପି କୋପାନଳେ ॥୧୮୭
ନାନା ପ୍ରକାରେ କଷ୍ଟ ଦେଲା ।
କେବେ ହେଁ ବାଳକ ନ ମଲା ॥୧୮୮
ସ୍ୱଭାବେ ପାପ ତା'ର ନାହିଁ ।
ଦଣ୍ଡ ବାଧିବ ତାକୁ କାହିଁ ॥୧୮୯

Dr. Sudhanshu Sekhar Mishra

କେବେ ହେଁ ମାରି ନ ପାରିଲା ।
ଚିନ୍ତା ସାଗରେ ନିମଜ୍ଜିଲା ॥୧୯୦
ଜାଗ୍ରତ ସ୍ୱପ୍ନ ପ୍ରାୟେ ହୋଇ ।
କେବେ ହେଁ ଶାନ୍ତି ନ ଲଭଇ ॥୧୯୧
ଦେଖି ଏ ସକଳ ବିଷୟେ ।
କେତେ ନ ଚିନ୍ତିଲି ଉପାୟେ ॥୧୯୨
ଶତ୍ରୁର ପ୍ରାୟେ ପଛେ ଥା'ନ୍ତେ ।
କେବେ ହେଁ ନ ଡରଇ ଚିତ୍ତେ ॥୧୯୩
କଷଣ ଦେଲି ଯେତେ ମୁହିଁ ।
କିଛି ଏହାର ହେଲା ନାହିଁ ॥୧୯୪
ଶୂନ୍ୟଃଶେଫର ପ୍ରାୟେ ସହେ ।
କି ଆଉ କରିବି ଉପାୟେ ॥୧୯୫
ମହାନୁଭବ ଏ କୁମର ।
ମନ ବଚନେ ଅଗୋଚର ॥୧୯୬
ନିର୍ଭୟେ ଏତେ ଦୁଃଖ ସହେ ।
ଏଣୁ ମୋ' ଚିତ୍ତେ ମହାଭୟେ ॥୧୯୭
ଏହାର ତୁଲେ ବାଦ କଲେ ।
ପ୍ରାଣ ମୁଁ ନ ପାଇବି ଭଲେ ॥୧୯୮
ଏମନ୍ତେ ଭାଳି ମନଦୁଃଖେ ।
ଦଣ୍ଡେ ରହିଲା ଅଧୋମୁଖେ ॥୧୯୯
ସାଧୁ ବିଷୟେ ଦ୍ରୋହ କଲେ ।
କେବା ସଂସାରେ ଥିବ ଭଲେ ॥୨୦୦
ଗୁରୁ କୁମରେ ତାହା ଶୁଣି ।
ଅସୁର ମୁଖ ଚାହିଁ ଭଣି ॥୨୦୧

ଗୁରୁପୁତ୍ର ଉବାଚ

ଶୁଣ ହେ ନୃପ ଚୂଡ଼ାମଣି ।
ତପେ ତୁ ତ୍ରିଭୁବନ ଜିଣି ॥୨୦୨
ଆମ୍ଭର ସୁଖେ ଭୋଗକରୁ ।
ଯେହ୍ନେ ଅଚଳ-ମହାମେରୁ ॥୨୦୩
ତୋହର ରିପୁ ଏ ସଂସାରେ ।
ନ ଦେଖି ଶରୀର-ବେଭାରେ ॥୨୦୪
ଏ ବାଳକୁମର ତୋହର ।
ଏହାକୁ କିପାଁ ତୋ'ର ଡର ॥୨୦୫
ବାଳକ ଗୁଣ-ଦୋଷ ନାହିଁ ।
ସଂଶୟ କରୁ କିପାଁ ତୁହି ॥୨୦୬
ଯେବେ ସଂଶୟ ତୋ'ର ମନେ ।
କହିବା ଶୁଣ ସାବଧାନେ ॥୨୦୭
ଏହାକୁ ବରୁଣର ପାଶେ ।
ବନ୍ଧନ କର ତୁ ବିଶ୍ୱାସେ ॥୨୦୮
ନିକଟେ ରଖ ତୋ ଆୟତ୍ତେ ।
ଭୟ ନ ଲାଗୁ ତୋ'ର ଚିତ୍ତେ ॥୨୦୯
ବାଳୁତ ଦଶା ଏ ଛାଡ଼ିଲେ ।
ସୁବୁଦ୍ଧି ପ୍ରକାଶିବ ଭଲେ ॥୨୧୦
ବ୍ରହ୍ମାର ପୁରୁ ଆମ୍ଭ ତାତ ।
ତୋ' ପାଶେ ନ ଆସେ ଯାବତ ॥୨୧୧
ତାବତ ଥାଉ ଏହି ମତେ ।
ସଂଶୟ ନ କର ତୁ ଚିତ୍ତେ ॥୨୧୨
ଗୁରୁପୁତ୍ରଙ୍କ ବାକ୍ୟ ଶୁଣି ।
ସନ୍ତୋଷେ କହେ ନୃପମଣି ॥୨୧୩

ହିରଣ୍ୟକଶିପୁ ଉବାଚ

ଶୁଣ ହେ ଗୁରୁଙ୍କ କୁମର ।
ଏବେ ମୋହର ବୋଲ କର ॥୨୧୪
ଗୃହସ୍ଥାଶ୍ରମ ଧର୍ମ ଯେତେ ।
ସେ ରାଜଧର୍ମ ନୀତି ଯୁକ୍ତେ ॥୨୧୫
ତ୍ରିବର୍ଗ ଧର୍ମ-ଅର୍ଥ-କାମେ ।
ଯେମନ୍ତେ ପଢ଼େ ଅନୁକ୍ରମେ ॥୨୧୬
ଏମନ୍ତେ ରାଜାର ବଚନେ ।
ପ୍ରହ୍ଲାଦେ ଗୁରୁ ବେନିଜନେ ॥୨୧୭
ଅନେକ ଯତ୍ନେ ପଢ଼ାଇଲେ ।
ଅସୁର କୁମରଙ୍କ ତୁଲେ ॥୨୧୮
ଗୁରୁଙ୍କ ମୁଖୁଁ ଯେତେ ଶୁଣେ ।
ଅନ୍ତରେ ସାଧୁ ତା' ନ ମଣେ ॥୨୧୯
ଗୃହସ୍ଥ-ଧର୍ମର ବ୍ୟବସ୍ଥା ।
ଆମ୍ଭର ନିପାତ ଏ କଥା ॥୨୨୦
ଏ ଧର୍ମେ ମୋହିହୋନ୍ତି ଜନ ।
ଏଣେ କି ମୋ'ର ପ୍ରୟୋଜନ ॥୨୨୧
ଏମନ୍ତେ କରଇ ବିଚାର ।
ଏବେ ହୋ ଶୁଣ ନୃପବର ॥୨୨୨
ପଢ଼ଇ ବାଳକଙ୍କ ମେଳେ ।
ଗୁରୁ ଯେ ଗୃହ କର୍ମେ ଗଲେ ॥୨୨୩
ସେ ପ୍ରହଲ୍ଲାଦ ଦୟାବହି ।
ବୋଲେ ବାଳକ ମୁଖ ଚାହିଁ ॥୨୨୪
ଶୁଣ ହେ ଅସୁର କୁମରେ ।
ଯେ ବିଦ୍ୟା ସଂସାରୁ ଉଦ୍ଧରେ ॥୨୨୫
ମଞ୍ଚେ ମାନବ ଦେହ ବହି ।
ଆତ୍ମ ଜ୍ଞାନଟି ଯା'ର ନାହିଁ ॥୨୨୬
ତା'ର ଜୀବନ ଅକାରଣ ।
ଏବେ ହୋ ସାବଧାନେ ଶୁଣ ॥୨୨୭
ଏ ପିତାପୁତ୍ରଙ୍କ ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ॥୨୨୮
କହଇ ଦାସ ଜଗନ୍ନାଥ ।
ସପ୍ତମ ସ୍କନ୍ଧେ ଭାଗବତ ॥୨୨୯

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମସ୍କନ୍ଧେ ପ୍ରହ୍ଲାଦାନୁଚରିତେ
ପଞ୍ଚମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଷଷ୍ଠ ଅଧ୍ୟାୟ

ପ୍ରହ୍ଲାଦ ଉବାଚ

ଶୁଣ ହେ ଅସୁର ବାଳକେ ।
ଯେ ବିଦ୍ୟାସାର ନରଲୋକେ ॥୧
ଆହେ ବୟସ୍ୟେ ତୁମ୍ଭେ ଦେଖ ।
ମୃତ୍ୟୁ-ଅଧୀନ ଜୀବଲୋକ ॥୨
ମାୟାକ୍ରୀଡ଼ାରେ ଭୋଳ ହୋଇ ।
ତସ୍କର ଦେହେ ଜ୍ଞାନ ନାହିଁ ॥୩
ବାଳୁତ ଯୁବା ବୃଦ୍ଧଦେହୀ ।
କେବେହେଁ ମୃତ୍ୟୁ ନ ଡରଇ ॥୪
ଏ ଭାବ ଚିତ୍ତେ ଯେ ଚିନ୍ତନ୍ତି ।
ଅନ୍ତେ ସେ କୈବଲ୍ୟ ଭୁଞ୍ଜନ୍ତି ॥୫
ଯେବେ ଅଶେଷ ଗ୍ରନ୍ଥ ପଢ଼ି ।
ଆତ୍ମାର ଗତିପଥ ହୁଡ଼ି ॥୬
ପର-ଅପର ବୋଲି ଚିନ୍ତି ।
ସେ ମୃତ୍ୟୁ-ମୁଖେ ସଞ୍ଚରନ୍ତି ॥୭
ଯେ ଗୁରୁ କହେ ଶାସ୍ତ୍ର ମତେ ।
ଅର୍ଥକୁ ବୁଝାଇ ଅନର୍ଥେ ॥୮
ଅଜ୍ଞାନ ନିନ୍ଦିତ ବଚନେ ।
ନ ଘଟେ ଶାସ୍ତ୍ର ଅନୁମାନେ ॥୯
ସେ ଗୁରୁବାକ୍ୟେ କାର୍ଯ୍ୟ କିସ ।
ନିଷ୍ଫଳ ତା'ର ଉପଦେଶ ॥୧୦
ଆତ୍ମା-ଶରୀର ଉଦ୍ଧାରଣେ ।
ନ କହେ ଅଜ୍ଞାନ କାରଣେ ॥୧୧
ଏଣୁ ଏ ଆତ୍ମାଜ୍ଞାନୀ ଯେତେ ।
ଯତ୍ନ କରନ୍ତି ଆତ୍ମାହିତେ ॥୧୨
ଏଣୁ ଅଜ୍ଞାନୀଙ୍କ ବଚନ ।
ନ ମାନେ ଆତ୍ମଜ୍ଞାନୀ ଜନ ॥୧୩
ଅଜ୍ଞାନୀ ଅଜ୍ଞାନ ଦେଖାଏ ।
ଅନ୍ଧକୁ ଅନ୍ଧ ଯେହ୍ନେ ବାହେ ॥୧୪
ଜ୍ଞାନୀର ଶତ୍ରୁ-ମିତ୍ର ନାହିଁ ।
ନିତ୍ୟେ ଉଦାସିପଣେ ଥାଇ ॥୧୫
ଜନ୍ତୁର କର୍ମର ଆୟତ୍ତେ ।
ସଂପଦ ବିପଦ ଯୁଗତେ ॥୧୬
ଏ ମାୟାମୟ ଗୃହବାସେ ।
ପ୍ରାଣୀ ଯନ୍ତ୍ରିତ ମୋହପାଶେ ॥୧୭
ମନର ଚରଣେ ଶାଙ୍କୋଳି ।
ଏଣୁ ନ ପାରେ ପ୍ରାଣୀ ଚଳି ॥୧୮
ଏ ମାୟାବନ୍ଧ ଯା' ବଚନେ ।
ତୁଟଇ ଜ୍ଞାନ ଅନୁମାନେ ॥୧୯
ସେ ଗୁରୁବଚନ ପ୍ରମାଣି ।
ତେବେ ସଂସାରୁ ତରେ ପ୍ରାଣୀ ॥୨୦
ବିଅର୍ଥେ କ୍ରୀଡ଼ା ନିତ୍ୟେ ଚିନ୍ତି ।
ଆୟୁଷ କ୍ଷୟ ନ ଜାଣନ୍ତି ॥୨୧
ଏମନ୍ତେ ଅସୁରଙ୍କୁ ଚାହିଁ ।
ସେ ପ୍ରହଲ୍ଲାଦ ଦୟାବହି ॥୨୨
କହଇ ଭାଗବତ ଧର୍ମ ।
ଯେଣେ ତୁଟଇ ଭବଭ୍ରମ ॥୨୩
ଏମନ୍ତେ ଦୈତ୍ୟଶିଶୁ ଆଗେ ।
ପୁଣ କହନ୍ତି ଅନୁରାଗେ ॥୨୪
ଶୁଣ ବାଳକ ମୋ ବଚନ ।
ସଂସାରେ ଯେବା ବୁଧଜନ ॥୨୫
କୁମାର କାଳୁ ଭକ୍ତି ଭରେ ।
ଶରୀର ଅନିତ୍ୟ ବିଚାରେ ॥୨୬
ମନୁଷ୍ୟ ଶରୀର ଦୁର୍ଲ୍ଲଭ ।
ଏଣୁ ଗୋବିନ୍ଦେ କର ଭାବ ॥୨୭
ଯେ ହରି ସର୍ବଜୀବ ଦେହେ ।
ଆତ୍ମା ସୁହୃଦ ପ୍ରିୟ ପ୍ରାୟେ ॥୨୮
ବସଇ ଈଶ୍ୱର ସ୍ୱଭାବେ ।
ଏଣୁ ଭଜିବ ଆତ୍ମ ଲାଭେ ॥୨୯
ଏ ସୁଖ ଦୁଃଖ ଭୋଗ ଲାଭେ ।
କର୍ମର ବଳେ ତାହା ଲଭେ ॥୩୦
ଏଣୁ ନ କରି ପ୍ରତିଆଶ ।
ନିରତେ ହୋଇବ ସନ୍ତୋଷ ॥୩୧
ଦେଖ ଆୟୁଷ ଏ ଶରୀରେ ।
ଛିଦ୍ର ଘଟର ପ୍ରାୟେ ଝରେ ॥୩୨
ଏଣୁ ମୁକୁନ୍ଦ-ପାଦଯୁଗେ ।
ନିରତେ ଭଜ ମନଯୋଗେ ॥୩୩
ମରଣ ନିତ୍ୟେ ସନ୍ନିହିତ ।
ତା' ମୁଖେ ନ ପଡ଼ ଯାବତ ॥୩୪
ଯାବତ ସୁସ୍ଥ ଏ ଶରୀର ।
ବୃଦ୍ଧ ଅବସ୍ଥା ଅଛି ଦୂର ॥୩୫
ଯାବତ ଏ ଦୁର୍ଲ୍ଲଭ ଦେହେ ।
ଇନ୍ଦ୍ରିୟ ଶକ୍ତି ନଷ୍ଟ ନୋହେ ॥୩୬
ଯାବତ ଜୀବ ରହେ ଦେହେ ।
କାଳର ବଳେ କ୍ଷୟ ନୋହେ ॥୩୭
ତାବତ ଆତ୍ମା ନିସ୍ତାରଣେ ।
ଯତ୍ନ କରିବ ଅନୁକ୍ଷଣେ ॥୩୮
ତେବେ ଆତ୍ମାର ହିତକରେ ।
ଦୁର୍ଲ୍ଲଭ ମାନବ ଶରୀରେ ॥୩୯
ଏ ଜ୍ଞାନ ନ ବୁଝି ଯେ ହେଳେ ।
ବୋଲେ ସାଧିବି ବୃଦ୍ଧ କାଳେ ॥୪୦
ଗୃହେ ଲାଗିଲେ ଅଗ୍ନି ଯେହ୍ନେ ।
ଉଦ୍ୟମ କୂପର ଖନନେ ॥୪୧
ଏମନ୍ତ ଅଜ୍ଞାନୀଙ୍କ ମତି ।
କେବେ ହେଁ ସୁଖ ନ ଲଭନ୍ତି ॥୪୨
ସ୍ୱଭାବେ ଅଳପ ଆୟୁଷ ।
ଜୀବର ଶତେକ ବରଷ ॥୪୩
ଯେବେ ଅଜ୍ଞାନପଣେ ଥାଇ ।
ତାହାର ଅର୍ଦ୍ଧେ ନାଶ ଯାଇ ॥୪୪
ସ୍ୱଭାବେ ରାତ୍ରେ ନିଦ୍ରା କାଳେ ।
ଅର୍ଦ୍ଧଆୟୁଷ ଯାଇ ହେଳେ ॥୪୫
ବାଳକ ପୌଗଣ୍ଡ କୈଶୋରେ ।
ବିଂଶବରଷ ତହୁଁ ହରେ ॥୪୬
କାଳର ସ୍ୱଭାବ ଏମନ୍ତ ।
କ୍ରୀଡ଼ା ବିନୋଦେ କରେ ଗ୍ରସ୍ତ ॥୪୭
ପୁଣ ବିଂଶତି ବୃଦ୍ଧେ ଯାଇ ।
ବଞ୍ଚଇ ଅସମର୍ଥ ହୋଇ ॥୪୮
ଅପରେ ଯେ ଅବା ରହଇ ।
ତା' ଗୃହବନ୍ଧେ ପାସୋରଇ ॥୪୯
ଗୃହ ବନ୍ଧନେ ବନ୍ଦୀ ହୋଇ ।
ଆତ୍ମା ଉଦ୍ଧରି ନ ପାରଇ ॥୫୦

Dr. Sudhanshu Sekhar Mishra

ଅତି ଯନ୍ତ୍ରିତ ସ୍ନେହପାଶେ ।
ଦୁର୍ଜୟ ଇନ୍ଦ୍ରିୟ ଲାଳସେ ॥୫୧
ଅର୍ଥ ଅର୍ଜନେ ଅବିରତେ ।
ଲୋଭ ବଢ଼ଇ ତା'ର ଚିତ୍ତେ ॥୫୨
ପ୍ରାଣୁଁ ଅଧିକ ସ୍ନେହ କରେ ।
ସେ ତୃଷ୍ଣା କେବା ତେଜିପାରେ ॥୫୩
ଯେ ଧନଅର୍ଥେ ବିକେ ପ୍ରାଣ ।
ତାହାର କାହିଁ ପରିତ୍ରାଣ ॥୫୪
ତସ୍କର ପଣେ ଚୋରି କରେ ।
ସେବା କରଇ ଯାଇ ପରେ ॥୫୫
ବୋଇତେ ବସି ବଣିଜରେ ।
ଅଗାଧ ସିନ୍ଧୁ ଲୋଭେ ତରେ ॥୫୬
ନିରତେ ଗୃହବନ୍ଧେ ବଞ୍ଚେ ।
ଯକ୍ଷର ପ୍ରାୟେ ଧନ ସଞ୍ଚେ ॥୫୭
ଏକାନ୍ତେ କାମିନୀର ମେଳେ ।
କ୍ରୀଡ଼ା କରଇ କାମ ଭୋଳେ ॥୫୮
ପତ୍ନୀର ବାକ୍ୟ ଅନୁକ୍ଷଣେ ।
ଗୁରୁଙ୍କ ମନ୍ତ୍ର ପ୍ରାୟେ ମଣେ ॥୫୯
ବନ୍ଧୁବାନ୍ଧବ ବନ୍ଧନରେ ।
ବାଳକ ସ୍ନେହେ ମନହରେ ॥୬୦
ସ୍ନେହ ମମତା ଅବିରତେ ।
ଚିନ୍ତଇ ଅନୁରାଗ ଚିତ୍ତେ ॥୬୧
ଘରୁ ବାହାର ହୋଇ ଯେବେ ।
ପ୍ରବାସ କରଇ ସ୍ୱଭାବେ ॥୬୨
ତହିଁ ଜୀବନେ ସୁସ୍ଥ ନାହିଁ ।
ଭାଳଇ ଗୃହେ ମନ ଦେଇ ॥୬୩
ପୁତ୍ର ଦୁହିତା ସ୍ନେହଚିତ୍ତେ ।
ମନୋଜ୍ଞ ପତ୍ନୀ ଭାବ ଚିନ୍ତେ ॥୬୪
ତାତ ଜନନୀ ଭ୍ରାତ ସ୍ମରେ ।
ଏ ଭଲ ଥିବେ କି ମୋ' ପୁରେ॥୬୫
ମନୋଜ୍ଞ ଗୃହବସ୍ତୁ ଯେତେ ।
ଜୀବିକା ପଶୁ ଭୃତ୍ୟ ମତେ ॥୬୬
ଏ ରୂପେ କୋଷକାରୀ ପ୍ରାୟେ ।
ଅନ୍ତରେ ଅବିରତ ଧାୟେ ॥୬୭
ଲୋଭେ ଅତୃପ୍ତ କାମ ହୋଇ ।
ଜିହ୍ୱା ଉପସ୍ଥ ଭାବେ ଧାଇ ॥୬୮

ରହନ୍ତି ମୋହ ଭାବ ଚିତ୍ତେ ।
ସେ ପ୍ରାଣୀ ଛାଡ଼ିବେ କେମନ୍ତେ ॥୬୯
ଦୁସ୍ତର ଭବମୋହ ଚିତ୍ତେ ।
ସେ ପ୍ରାଣୀ ତରିବେ କେମନ୍ତେ ॥୭୦
ନିରତେ କୁଟୁମ୍ବ ପୋଷଣେ ।
ଆୟୁଷ କ୍ଷୟ ନ ପ୍ରମାଣେ ॥୭୧
ସର୍ବଦା ତାପତ୍ରୟେ ଦୁଃଖୀ ।
କୁଟୁମ୍ବ-ରାଗ ନ ଉପେକ୍ଷି ॥୭୨
ନିତ୍ୟେ ବିଭବ ଭବେ ଚିନ୍ତେ ।
କର୍ମେ ଯନ୍ତ୍ରିତ ଅବିରତେ ॥୭୩
ପଣ୍ଡିତ ପଣେ ସର୍ବ ଜାଣେ ।
ଆତ୍ମାର ଗତି ନ ପ୍ରମାଣେ ॥୭୪
ଯେ ଫଳ ଇହ ପରଲୋକେ ।
ତା' ଶୁଣି ଜାଣେ ଶାସ୍ତ୍ର ମୁଖେ ॥୭୫
କୁଟୁମ୍ବୀ ପଣେ ଗୃହ କରେ ।
କ୍ରୀଡ଼ା-ବିନୋଦେ ସେ ବିହରେ ॥୭୬
କୁଟୁମ୍ବ-ଗ୍ରସ୍ତ ଯାକୁ କରେ ।
ଉଭୟ ଲୋକୁ ନ ନିସ୍ତରେ ॥୭୭
ବିଭିନ୍ନ ଆତ୍ମା ପରଭାଗୀ ।
କାମ ସଙ୍କଳ୍ପେ ଅନୁରାଗୀ ॥୭୮
ବିମୂଢ଼ ମତି ଭବେ ଭ୍ରମେ ।
ଅନ୍ତେ ପଡ଼ଇ ଘୋର ତମେ ॥୭୯
ତୁମ୍ଭେ ସକଳେ ଏହା ଶୁଣି ।
ଆତ୍ମାର ହିତ ମନେ ଗୁଣି ॥୮୦
ବିଷୟ ନ କର ହୋ ସଙ୍ଗ ।
ଯେସନେ ଉଦଧି-ତରଙ୍ଗ ॥୮୧
ଏ ସଙ୍ଗ ଦୂରେ ପରିହର ।
ନାରାୟଣଙ୍କୁ ଆଶ୍ରେ କର ॥୮୨
ସେ ନାରାୟଣ ସର୍ବଧାତା ।
ଇଷ୍ଟିତେ କଇବଲ୍ୟ ଦାତା ॥୮୩
କୃଷ୍ଣଙ୍କୁ ଆଶ୍ରେ ଯେ କରନ୍ତି ।
ସେ ସର୍ବଦୁଃଖୁ ନିସ୍ତରନ୍ତି ॥୮୪
ଅସୁର ଭାବକୁ ଉପେକ୍ଷ ।
ଆତ୍ମାରେ ପ୍ରାୟ ସର୍ବ ଦେଖ ॥୮୫
ଏ ବିଷ୍ଣୁ ମାୟା ପାରାବାର ।
ବ୍ରହ୍ମାଣ୍ଡ ବାହ୍ୟ-ଅଭ୍ୟନ୍ତର ॥୮୬

ବ୍ରହ୍ମାଦି ସ୍ଥାବର ପର୍ଯ୍ୟନ୍ତେ ।
ଅବ୍ୟକ୍ତ ରୂପ ପଞ୍ଚଭୂତେ ॥୮୭
ଗୁଣ ଅଗୁଣ ଗୁଣ ସାମ୍ୟେ ।
ଏ ଆଦି ସର୍ବଘଟେ ରମେ ॥୮୮
ବସଇ ଏକ ଆତ୍ମା ହରି ।
ଭୁଞ୍ଜେ ଅବ୍ୟୟରୂପ ଧରି ॥୮୯
ଆତ୍ମା ସ୍ୱରୂପେ ସର୍ବଦେହେ ।
ଦୃଶ୍ୟ ଅଦୃଶ୍ୟ ଭାବେ ରହେ ॥୯୦
ନିର୍ଲେପ ନିର୍ବିଷୟ ମତେ ।
କହି କେ ପାରିବ ଜଗତେ ॥୯୧
କେବଳ ଆନନ୍ଦାନୁଭବେ ।
ଅଶେଷ-ଦେହେ ସର୍ବଜୀବେ ॥୯୨
ବାହ୍ୟ-ଅନ୍ତରେ ବ୍ୟାପି ରହେ ।
ଐଶ୍ୱର୍ଯ୍ୟଗୁଣ ସଙ୍ଗେ ବହେ ॥୯୩
ଏ ଘେନି ସର୍ବଭୂତେ ସାର ।
ପ୍ରାଣୀ ବିଷୟେ ଦୟାକର ॥୯୪
ସୁହୃଦ ଭାବ ଧରି ଚିତ୍ତେ ।
ହରିଙ୍କି ଲଭିବ ଯେମନ୍ତେ ॥୯୫
ଅସୁର ଭାବ ଦୂର କରି ।
ଯେଣେ ସନ୍ତୋଷ ହୋଏ ହରି ॥୯୬
ଏ ଭାବ ଦୃଢ଼କରି ଚିତ୍ତେ ।
ହରିଙ୍କି ଭଜ ଅବିରତେ ॥୯୭
ସେ ବିଷ୍ଣୁ ତୋଷଯାକୁ ଚିତ୍ତେ ।
କିବା ଅଲଭ୍ୟ ଏ ଜଗତେ ॥୯୮
ଅନନ୍ତ ଅବ୍ୟକ୍ତ ମହିମା ।
କି ଗୁଣେ ଦେବା ତା ଉପମା ॥୯୯
ତ୍ରିଗୁଣୁଁ କରେ ନିସ୍ତାରଣ ।
କୈବଲ୍ୟ ପରମ କାରଣ ॥୧୦୦
ସଂସାର ମଧ୍ୟେ ସାର ସେହି ।
ତା'ର ଚରଣୁଁ ଅନ୍ୟ ନାହିଁ ॥୧୦୧
ଏ ଘେନି କୃଷ୍ଣର ଚରଣେ ।
ପ୍ରାଣୀଏ ପଶନ୍ତି ଶରଣେ ॥୧୦୨
ତା'ଙ୍କ ଚରଣେ ସେବାକର ।
ଏ ବିଷ୍ଣୁ ମାୟାରୁ ନିସ୍ତର ॥୧୦୩
ଏବେ ହୋ ଶୁଣ ମୋ'ର ବାଣୀ ।
ଶ୍ରୀ ଭାଗବତ ଯେ ବଖାଣି ॥୧୦୪

Dr. Sudhanshu Sekhar Mishra

ଧର୍ମାର୍ଥ-କାମ ବେଦମତେ ।
ଏ ତିନି ବର୍ଗ ପରାପତେ ।।୧୦୫
ସାଧନ କରି ଶମଦମ ।
ଯଜ୍ଞାଦି ନାନାବିଧ କର୍ମ ।।୧୦୬
ସତ୍ୟ ବଚନ ବେଦ ବାଣୀ ।
ଏଥେ ସଂସାରୁ ତରେ ପ୍ରାଣୀ ।।୧୦୭
ନାନା ପ୍ରକାରେ ତପ ଦାହି ।
ଯେ ହରିପାଦେ ସମର୍ପଇ ।।୧୦୮
ଧନ୍ୟ ତା ଶରୀର-ଧାରଣ ।
ସେ ଲଭେ ପରମ କାରଣ ।।୧୦୯
ନିର୍ମଳ ଦୁର୍ଲ୍ଲଭ ଏ ଜ୍ଞାନ ।
ନିଗମ ସାର ଅନୁପମ ।।୧୧୦
ନାରଦ ମୁନିଙ୍କ ଅଗ୍ରତେ ।
ସୁପୁଣ୍ୟ ବଦରିକା ତୀର୍ଥେ ।।୧୧୧
ତପ ଆଚରି ଅନୁକ୍ଷଣ ।
ଅଛନ୍ତି ନର ନାରାୟଣ ।।୧୧୨
ନାରଦ ମୁନି ଶୁଦ୍ଧଚେତା ।
ପୁଛିଲେ ହରିଗୁଣ ଗାଥା ।।୧୧୩
ସେ ନାରାୟଣ ଶୁଦ୍ଧ ଭାବେ ।
ଯେ ବାଣୀ ବିବିଧ ପ୍ରସ୍ତାବେ ।।୧୧୪
ନାରଦ ମୁନିଙ୍କ ସନ୍ତୋଷେ ।
କହିଲେ ଜ୍ଞାନ ଉପଦେଶେ ।।୧୧୫
କୃଷ୍ଣର ପାଦପଦ୍ମ ଧୂଳି ।
ସାନନ୍ଦ ମନେ ଅଙ୍ଗେ ବୋଳି ।।୧୧୬
ସଂସାରେ ଅକିଞ୍ଚନ ଜନେ ।
ଯାହା ଭାବନ୍ତି ଶୁଦ୍ଧମନେ ।।୧୧୭
ପୂର୍ବେ ମୁଁ ନାରଦଙ୍କ ବାଣୀ ।
ମାତାଙ୍କ ଗର୍ଭେ ଥାଇ ଶୁଣି ।।୧୧୮
ଏ ବାଣୀ ଭାଗବତ କଥା ।
ଶୁଣନ୍ତେ ତୁଟେ ଭବବ୍ୟଥା ।।୧୧୯
ଭାବେ କହିଲି ତୁମ୍ଭ ଆଗେ ।
ହରିଚରିତ ଅନୁରାଗେ ।।୧୨୦
ଏମନ୍ତେ ପ୍ରହଲ୍ଲାଦ ବାଣୀ ।
ଭାବେ ଅସୁର ପୁତ୍ରେ ଶୁଣି ।।୧୨୧
ବୋଲନ୍ତି ପ୍ରହଲ୍ଲାଦ ଆଗେ ।
ତୁଲ୍ୟ ବୟସ ଅନୁରାଗେ ।।୧୨୨
ଶୁଣ ହେ ନୃପତି କୁମର ।
ଆମ୍ଭେ ଯେ ସଙ୍ଗତେ ତୋହର ।।୧୨୩
ତୋହର ଭିନ୍ନ ଗୁରୁ ନାହିଁ ।
ଏ ବିଦ୍ୟା ସମ୍ପାଦିଲୁ କାହିଁ ।।୧୨୪
ଏ ଗୁରୁପୁତ୍ରଙ୍କ ଚରଣେ ।
ଆମ୍ଭେ ଭଜିଲୁ ଅନୁକ୍ଷଣେ ।।୧୨୫
ତାହାଙ୍କ ଉପଦେଶ ଜାଣୁ ।
ତୁ ଏହା କେମନ୍ତେ ବଖାଣୁ ।।୧୨୬
ତୁହି ତ ବାଳକ ବେଭାରେ ।
ନିରତେ ଥାଉ ଅନ୍ତଃପୁରେ ।।୧୨୭
ସ୍ୱଭାବେ ସ୍ତିରୀଙ୍କ ମନ୍ଦିର ।
ଦେବଦାନବେ ଅଗୋଚର ।।୧୨୮
ତହିଁ ଭିତରେ ଥାଉ ତୁହି ।
ମହତ ସଙ୍ଗ ତୋ'ର ନାହିଁ ।।୧୨୯
ତେଣୁ ସଂଶୟ ଆମ୍ଭ ମନ ।
ନିହାର ବଳେ ଯେହ୍ନେ ଦିନ ।।୧୩୦
ତୋହର ପାଦେ ନମସ୍କାର ।
ସଂଶୟ ଛେଦ ତୁ ଆମ୍ଭର ।।୧୩୧
ଏମନ୍ତେ ଅସୁର ବାଳକେ ।
ତା'ର ସମୀପେ ଏକେ ଏକେ ।।୧୩୨
ଚରଣ ଧରି ପଚାରିଲେ ।
ବିଶ୍ୱାସ ବାକ୍ୟେ ପ୍ରବୋଧିଲେ ।।୧୩୩
ଏମନ୍ତ ଭାଗବତବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୧୩୪
ସପ୍ତମ ସ୍କନ୍ଧେ ଭାଗବତ ।
କହଇ ଦାସ ଜଗନ୍ନାଥ ।।୧୩୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମସ୍କନ୍ଧେ ପ୍ରହ୍ଲାଦ ଚରିତେ
ଷଷ୍ଠୋଽଧ୍ୟାୟଃ ।।

## ସପ୍ତମ ଅଧ୍ୟାୟ

ନାରଦ ଉବାଚ

ଏବେ ହୋ ଶୁଣ ପରୀକ୍ଷିତ ।
ଅସୁର ବାଳକ ଚରିତ ।।୧
ସେ ପ୍ରହଲ୍ଲାଦ ଦୟାମନେ ।
କହେ ବାଳକ ଅବଧାନେ ।।୨

ପ୍ରହଲ୍ଲାଦ ଉବାଚ

ଏବେ ହୋ ଶୁଣ ଦୈତ୍ୟସୁତେ ।
ଯାହା କହିବା ତୁମ୍ଭ ହିତେ ।।୩
ମୋହର ପିତା ତପ ଅର୍ଥେ ।
ଗଲେ ଯେ ମନ୍ଦର ପର୍ବତେ ।।୪
ନିଷ୍କଳ ତପ ତା'ର ଦେଖି ।
ବିବୁଧେ ଗଗନ ଉପେକ୍ଷି ।।୫
ଯୁଦ୍ଧ ଉଦ୍ୟମ କରି ହେଲେ ।
ମିଳିଲେ ଅବନୀମଣ୍ଡଳେ ।।୬
ହିରଣ୍ୟକଶିପୁ ଅସୁର ।
ସ୍ୱଭାବେ ପାପୀ ଦୁରାଚାର ।।୭
ସର୍ପକୁ ପିପୀଳିକା ଯେହ୍ନେ ।
ନାଶନ୍ତି ଆମ୍ଭ ପାପ-ଗୁଣେ ।।୮
ଏ ରୂପେ ତୁଚ୍ଛ-ମତ କରି ।
ବିବୁଧେ ସମର ଉଭାରି ।।୯
ଯେତେ ଅସୁର ଥିଲେ ପୁରେ ।
ଦେବଙ୍କୁ ଦେଖି ମହାଡ଼ରେ ।।୧୦
ନିଶସ୍ତ୍ର ହୋଇ ଶସ୍ତ୍ରାଘାତେ ।
ସଂଗ୍ରାମେ ଭାଜିଲେ ସମସ୍ତେ ।।୧୧
ଭୟେ ପଶିଲେ ଦଶ ଦିଶେ ।
ମିଳିଲେ ଘୋର ବନଦେଶେ ।।୧୨
ଗୃହ କଳତ୍ର ପୁତ୍ର ଏଡ଼ି ।
ସର୍ବ ସମ୍ପଦ ବେଗେ ଛାଡ଼ି ।।୧୩
ଜୀବନ ଘେନି ପଳାଇଲେ ।
ବିବୁଧେ ନବରେ ପଶିଲେ ।।୧୪

Dr. Sudhanshu Sekhar Mishra

ସର୍ବ ସମ୍ପଦ ଲୁଣ୍ଠ କରି ।
ମୋହର ଜନନୀଙ୍କି ଧରି ॥୧୫
ପଥେ ଚଳାଇ ନ୍ୟନ୍ତି ବେଗେ ।
ପିତାର ଭୟେ ଉଦବେଗେ ॥୧୬
ମୋର ଜନନୀ ଅତି ଭୟେ ।
ଚଳି ନ ପାରେ ଗୁରୁ-ଦେହେ ॥୧୭
ଅନେକ ଦୁଃଖ ଗରୁଶୋକେ ।
କୁରରୀ ପ୍ରାୟେ କାନ୍ଦେ ଦୁଃଖେ ॥୧୮
ଏମନ୍ତେ ଗଲେ କେତେ ଦୂର ।
କାନନେ ବ୍ରହ୍ମାଙ୍କ କୁମର ॥୧୯
ମୋ'ର ଜନନୀ ଦେଖି ପଥେ ।
ମିଳିଲେ ଦେବଙ୍କ ଅଗ୍ରତେ ॥୨୦
ବୋଲନ୍ତି ଇନ୍ଦ୍ର ମୁଖ ଚାହିଁ ।
ଏ କଥା ଉଚିତ ନୁହଁଇ ॥୨୧
ନିରପରାଧୀ ଏ ତୋହର ।
ଏହାକୁ ଛାଡ଼ ସୁନାଶିର ॥୨୨
ପରର ସତୀ ଏ ସୁନ୍ଦରୀ ।
ତୁ କିପାଁ ନେଉ ବଳେ ଧରି ॥୨୩
ଏହାର ଅପରାଧ ନାହିଁ ।
ବେଗେ ଏହାକୁ ଛାଡ଼ ତୁହିଁ ॥୨୪
ଏମନ୍ତେ ନାରଦ-ବଚନେ ।
ଇନ୍ଦ୍ର ବୋଲଇ ଭୟମନେ ॥୨୫

ଇନ୍ଦ୍ର ଉବାଚ

ଅସୁର ବୀର୍ଯ୍ୟ ଏହା ଗର୍ଭେ ।
ଏ ମୋ'ର ବଇରୀ ସ୍ୱଭାବେ ॥୨୬
ଯେ ପୁତ୍ର ଅଛି ଗର୍ଭେ ରହି ।
ତାହାର ତେଜ କେବା ସହି ॥୨୭
ସ୍ୱର୍ଗ ଘେନିବ ଏ ମୋହର ।
ଏହାକୁ ମୋ'ର ବଡ଼ ଡର ॥୨୮
ଏ ନାରୀ ମୋ'ର ପୁରେ ଥିବ ।
ଯାବତ ଗର୍ଭ-ପ୍ରସବିବ ॥୨୯
ଗର୍ଭକୁ ମାରି ସତୀ ପୁଣି ।
ଛାଡ଼ିବି ନିଜ ଘରେ ଆଣି ॥୩୦
ଏ କଥା ସଙ୍କଳ୍ପ ମୋହର ।
କହିଲି ଶୁଣ ମୁନିବର ॥୩୧

ଏମନ୍ତେ ଇନ୍ଦ୍ରବାକ୍ୟ ଶୁଣି ।
ନାରଦ ମନେ ଧ୍ୟାନେ ଜାଣି ॥୩୨
ବୋଇଲେ ଶୁଣ ସୁରନାଥ ।
ମୁହିଁ ଜାଣଇ ପୂର୍ବବୃତ୍ତ ॥୩୩

ନାରଦ ଉବାଚ

ଏହାର ଗର୍ଭେ ଯେ କୁମର ।
ନିଶ୍ଚେ ସେ ବଇଷ୍ଣବ ସାର ॥୩୪
ଅଶେଷ ଗୁଣେ ଗୁଣନିଧି ।
ଏହାର ଦେହେ ସର୍ବସିଦ୍ଧି ॥୩୫
କୃଷ୍ଣର ଏ ନିଜ ସେବକ ।
ଏବେ ଗର୍ଭର ତେଜ ଦେଖ ॥୩୬
ତୁ କାହିଁ ଏହାକୁ ମାରିବୁ ।
ଏହାର ଚରଣେ ସେବିବୁ ॥୩୭
ଏ କଥା ମୁନିମୁଖୁଁ ଶୁଣି ।
ଇନ୍ଦ୍ର ଯେ ମନେ ମନେ ଗୁଣି ॥୩୮
ନାରଦ ବାକ୍ୟେ ଶଚୀପତି ।
ଛାଡ଼ିଲା ଅସୁର-ଯୁବତୀ ॥୩୯
ଅତ୍ୟନ୍ତ ପ୍ରିୟଭାବ ଭରି ।
ମାତାଙ୍କୁ ପ୍ରଦକ୍ଷିଣ କରି ॥୪୦
ତକ୍ଷଣେ ନିଜ ପୁରେ ଗଲା ।
ଶୁଣ ହେ ଅସୁରଙ୍କ ବଳା ॥୪୧
ମୋ'ର ମାତାଙ୍କୁ ଆଗକରି ।
ଆଶ୍ୱାସ କରି ବ୍ରହ୍ମଚାରୀ ॥୪୨
ନିଜ ଆଶ୍ରମେ ମୁନି ଆଣି ।
ମୁଖେ ସିଞ୍ଚିଲେ ଶୀତପାଣି ॥୪୩
ବୋଲନ୍ତି ମଧୁର ବଚନ ।
ତୁ ଏଥେ ଥାଅ କେତେ ଦିନ ॥୪୪
ଯାବତ ସ୍ୱାମୀ ତପୁଁ ଆସେ ।
ତାବତ ଥାଅ ମୋ'ର ପାଶେ ॥୪୫
ମୁନି ବଚନେ ମୋ'ର ମାତା ।
ଛାଡ଼ିଲା ମନୁ ଦୁଃଖ-ଚିନ୍ତା ॥୪୬
ନିର୍ଭୟେ ମୁନିପାଶେ ରହି ।
ଭର୍ତ୍ତା ଆଗମେ ପଥ ଚାହିଁ ॥୪୭
ପରମ ଭକ୍ତି ମୁନିପାଦେ ।
ମୋ'ର ଜନନୀ ଅପ୍ରମାଦେ ॥୪୮

ସେବା କରଇ ନିରନ୍ତରେ ।
ମୁନି-ପ୍ରସନ୍ନ ଅନୁସାରେ ॥୪୯
ମୁନି-ଚରଣ ପରସାଦେ ।
ପ୍ରସବ ହେବ ଅପ୍ରମାଦେ ॥୫୦
ଏମନ୍ତ ମନେ କରି ଚିନ୍ତା ।
ସୁଖେ ରହିଲା ମୋ'ର ମାତା ॥୫୧
ଗୃହେ ନାରଦ ବ୍ରହ୍ମଚାରୀ ।
ମୋ'ର ମାତାଙ୍କୁ ଦୟାକରି ॥୫୨
ଦିନକୁ ଦିନ କହି ଜ୍ଞାନ ।
ଆନନ୍ଦ କରି ମାତା ମନ ॥୫୩
ନିର୍ମଳ-ଧର୍ମ-ତତ୍ତ୍ୱ ଯେତେ ।
କହନ୍ତି ମାତାଙ୍କ ଅଗ୍ରତେ ॥୫୪
କୃଷ୍ଣର ଅଶେଷ ସମ୍ପଦେ ।
କହନ୍ତି ମନର ଆନନ୍ଦେ ॥୫୫
ଯେତେ କହିଲେ ମହାମୁନି ।
ମୁଁ ତାହା ଗର୍ଭେ ଥାଇ ଶୁଣି ॥୫୬
ଜନନୀ ସ୍ୱଭାବେ ଅବଳା ।
କାଳେ ସେ ଜ୍ଞାନ ପାସୋରିଲା ॥୫୭
ନାରଦ ଅନୁଗ୍ରହ ମତେ ।
ଜ୍ଞାନ ରହିଲା ମୋ'ର ଚିତ୍ତେ ॥୫୮
ମୋ'ର ବଚନେ ଶ୍ରଦ୍ଧା କର ।
ଏ ଜ୍ଞାନ ହୋଇବ ତୁମ୍ଭର ॥୫୯
ନିର୍ମଳ ଜ୍ଞାନ ପ୍ରସରିବ ।
ଅବିଦ୍ୟା-ବନ୍ଧ ନାଶଯିବ ।୬୦
ନିର୍ମଳ ଜ୍ଞାନ ହେଲେ ଜାତ ।
ବିନାଶ ହୋଇବ ଦୁରିତ ॥୬୧
ସ୍ୱଭାବେ ମନୁଷ୍ୟ-ଶରୀରେ ।
ଜନ୍ମଇ ଏ ଷଡ଼ବିକାରେ ॥୬୨
ଆତ୍ମାର ନୁହଁଇ ସ୍ୱଭାବ ।
ଶୁଣ କହିବା ଜ୍ଞାନ ଭାବ ॥୬୩
ବୃକ୍ଷର ଫଳ ଯେହ୍ନେ କାଳେ ।
ପାଚି ପଡ଼ଇ ମହୀତଳେ ॥୬୪
ଷଡ଼ ବିକାରେ ନାଶ ଯାଇ ।
ଶରୀର ସ୍ୱଭାବଟି ଏହି ॥୬୫
ଗର୍ଭୁ ଶରୀର ଜନ୍ମ ହୋଇ ।
ବାଳକ-ସ୍ୱରୂପେ ବଢ଼ଇ ॥୬୬

Dr. Sudhanshu Sekhar Mishra

ପୌଗଣ୍ଡ କିଶୋର ତରୁଣ ।
ଜରାନ୍ତେ ଲଭଇ ମରଣ ॥୬୭
ଏ ଷଡ଼ ବିକାରେ ଶରୀର ।
ଆତ୍ମା ସ୍ୱଭାବେ ନିର୍ବିକାର ॥୬୮
ନିତ୍ୟ ଅବ୍ୟୟ ଶୁଦ୍ଧ ଏକ ।
କ୍ଷେତ୍ରଜ୍ଞ ଭାବେ ସର୍ବସାକ୍ଷ୍ୟ ॥୬୯
ସର୍ବ-ଆଶ୍ରୟ ସର୍ବବ୍ୟାପି ।
ନିଷ୍କ୍ରିୟ ଅନାବୃତ୍ତ-ରୂପୀ ॥୭୦
ଅସଙ୍ଗ ହେତୁ ବଦ୍ଧ ନୋହେ ।
ସ୍ୱପ୍ନ ଜାଗ୍ରତ ଯେହ୍ନେ ଦେହେ ॥୭୧
ବୁଦ୍ଧିର ଧର୍ମ ପ୍ରକାଶଇ ।
ସେ ପୁଣି ତା'କୁ ନ ଲାଗଇ ॥୭୨
ବସ୍ତୁ ସ୍ୱଭାବେ ବନ୍ଧ ନୋହେ ।
ଅଜ୍ଞାନେ ଦିଶେ ବଦ୍ଧ ପ୍ରାୟେ ॥୭୩
ଭୂତ ଭବିଷ୍ୟ ବର୍ତ୍ତମାନେ ।
ବସ୍ତୁ ପ୍ରକାଶେ ଭିନ୍ନେ ଭିନ୍ନେ ॥୭୪
ସେ ପୁଣି ରହେ ଶେଷ ହୋଇ ।
ପୂର୍ଣ୍ଣ ସ୍ୱଭାବେ ପ୍ରକାଶଇ ॥୭୫
ଏ ଘେନି ଦ୍ୱାଦଶ ପ୍ରକାର ।
ଆତ୍ମାର ଲକ୍ଷଣ ପ୍ରାଣୀଙ୍କର ॥୭୬
ଅହଙ୍କାରକୁ ପରିହରେ ।
ଦେହାଭିମାନ ଦୂର କରେ ॥୭୭
ଆତ୍ମ ଯୋଗରେ କରେ ଧ୍ୟାନ ।
ଏ ଦେହେ ଲଭେ ବ୍ରହ୍ମଜ୍ଞାନ ॥୭୮
ମୁହିଁ ମୋହର ବୋଲି ଯେତେ ।
ମିଥ୍ୟା ସ୍ୱଭାବ ଏ ଜଗତେ ॥୭୯
ଦେହାଦି-ଉପାଧି ବିଶେଷ ।
ମୋହରୁ ଜାତ ଯେତେ ଅଂଶ ॥୮୦
ମୂଢ଼-ସ୍ୱଭାବ ବେଗେ ତେଜ ।
ମୁକୁନ୍ଦ ପଦ୍ମପାଦେ ଭଜ ॥୮୧
ସୁବର୍ଣ୍ଣକାର ଯେହ୍ନେ ଜଳେ ।
ପାଷାଣୁ ସୁବର୍ଣ୍ଣ ଧୋଇଲେ ॥୮୨
ଘେନଇ ଅତି ଯତ୍ନ କରି ।
ସେହି ସ୍ୱଭାବ ବ୍ରହ୍ମଚାରୀ ॥୮୩
କ୍ଷେତ୍ରଜ୍ଞ କ୍ଷେତ୍ରରୁ ଉର୍ଦ୍ଧ୍ୱରେ ।
ଆତ୍ମାକୁ ଲଭେ ଅଭ୍ୟନ୍ତରେ ॥୮୪
ଅଷ୍ଟ ପ୍ରକୃତି ତିନିଗୁଣ ।
ଷୋଡ଼ଶ ବିକାର ଲକ୍ଷଣ ॥୮୫
ଏତେ ପ୍ରକାରେ ଭିନ୍ନ ଆତ୍ମା ।
ଏ ଭାବେ ବିଚାରେ ମହାତ୍ମା ॥୮୬
ଏତେ ପ୍ରକାରେ ଦେହ ଜାତ ।
ସ୍ଥାବର ଜଙ୍ଗମେ ବିଦିତ ॥୮୭
ଏ ଭାବେ ଯେ ଜନ ବିଚାରେ ।
ମାୟା ସମୂହ ପରିହରେ ॥୮୮
ଜୀବେ ଅଜ୍ଞାନ ବ୍ୟତିରେକେ ।
ଜ୍ଞାନ ସଞ୍ଚରି ଏକେ ଏକେ ॥୮୯
ସୃଷ୍ଟି ସ୍ଥିତି ଯେ ପ୍ରଳୟର ।
କାରଣ ବୁଝି ହେତୁକର ॥୯୦
ସୁଷୁପ୍ତି ସ୍ୱପ୍ନ ଜାଗରଣ ।
ବୁଦ୍ଧିର ଏ ତିନି ଲକ୍ଷଣ ॥୯୧
ଯା' ତହୁଁ ଅନୁଭବ ହୋଏ ।
ଅଧ୍ୟକ୍ଷ ପୁରୁଷ ସେ ଦେହେ ॥୯୨
ଆତ୍ମା ଏ ତିନିଗୁଣେ ଦେହେ ।
ପବନେ ଗନ୍ଧ ପ୍ରାୟେ ରହେ ॥୯୩
ଏ ତିନିଗୁଣ ନିବନ୍ଧନେ ।
ସଂସାରେ ମାୟା ଅନୁମାନେ ॥୯୪
ଅଜ୍ଞାନ ମୂଳ ଏ ଅନର୍ଥ ।
ସ୍ୱପ୍ନ ଯେସନେ ନିଦ୍ରାଗତ ॥୯୫
ଆତ୍ମାର ସ୍ୱପ୍ନ ଏ ଜଗତ ।
ଯେଣୁ ଏ ତ୍ରିଗୁଣେ ନିହିତ ॥୯୬
ତ୍ରିଗୁଣାତ୍ମକ କର୍ମବୀଜେ ।
ଅଙ୍କୁରି ସମସ୍ତ ଉପୁଜେ ॥୯୭
ଏ ବୀଜ ଅନଳ ସଂଯୋଗେ ।
ଦହନ କର ଯୋଗମାର୍ଗେ ॥୯୮
ଅନ୍ୟଥା ସହସ୍ର-ଉପାୟେ ।
କେ ସାଧି ପାରିବ ଏ ଦେହେ ॥୯୯
ଯେ ଭାବେ କୃଷ୍ଣେ ହୋଏ ରତି ।
ଭକ୍ତି-ଲକ୍ଷଣେ ତାହା ଚିନ୍ତି ॥୧୦୦
ଭକ୍ତି-ଲକ୍ଷଣେ ଗୁରୁ ସେବ ।
କୃଷ୍ଣେ ସମର୍ପି ସର୍ବଲାଭ ॥୧୦୧
ସଙ୍ଗ କରିବ ସାଧୁଜନ ।
ଏଣେ ଈଶ୍ୱର ଆରାଧନ ॥୧୦୨
ସେ କୃଷ୍ଣ କଥାର ଶ୍ରବଣେ ।
ଶ୍ରଦ୍ଧା କରିବ ଅନୁକ୍ଷଣେ ॥୧୦୩
କୃଷ୍ଣର ଯେତେ ନାମ ଗୁଣ ।
କରିବ ଶ୍ରବଣ କୀର୍ତ୍ତନ ॥୧୦୪
ପଦାରବିନ୍ଦ ଧ୍ୟାନ ବଳେ ।
ବଞ୍ଛିବ ବଇଷ୍ଣବ ମେଳେ ॥୧୦୫
ବିଷ୍ଣୁ ଭକତ ପାଦ ସେବି ।
ଭାବ ବିହ୍ୱଳ ବିଷ୍ଣୁ ଭାବି ॥୧୦୬
ସକଳ ଭୂତେ ଭଗବାନ ।
ଅଛନ୍ତି ବୋଲି ଜାଣି ପୁଣ ॥୧୦୭
ମନ-କର୍ମରେ ପ୍ରାଣୀ ସେବ ।
ଭାବୁକ ସଙ୍ଗେ କର ଭାବ ॥୧୦୮
ଏ ଭକ୍ତିଯୋଗ ବଳେ ପ୍ରାଣୀ ।
ଅଇରି ଷଡ଼ବର୍ଗ ଜିଣି ॥୧୦୯
କୃଷ୍ଣ ବିଷୟେ ଲଭେ ରତି ।
ଏ ଭାବେ ସଂସାରୁ ତରନ୍ତି ॥୧୧୦
ଏବେ ଅସୁର ପୁତ୍ରେ ଶୁଣ ।
ଯେଣେ ଜୀବର ପରିତ୍ରାଣ ॥୧୧୧
କୃଷ୍ଣର ଯେତେ ପ୍ରିୟକର୍ମ ।
ଯେବା ଅଧିକ ଗୁଣଗ୍ରାମ ॥୧୧୨
ଲୀଳା ଶରୀରେ ଯେତେ କଲା ।
ଅନନ୍ତ ବୀର୍ଯ୍ୟ ଗୁଣ ଖେଳା ॥୧୧୩
ସେ କଥା ଶୁଣି କର୍ଣ୍ଣ ଦ୍ୱାରେ ।
ପୁଲକ ଯାହାର ଶରୀରେ ॥୧୧୪
ଆନନ୍ଦେ ଅଶ୍ରୁଜଳ ବହେ ।
କଣ୍ଠ ଗଦ୍‌ଗଦେ ବାଣୀ କହେ ॥୧୧୫
ଆନନ୍ଦେ ଗାଏ କୃଷ୍ଣ ବାଣୀ ।
ଉଚ୍ଚେ କାନ୍ଦଇ ନାମ ଗୁଣି ॥୧୧୬
ନୃତ୍ୟ କରଇ ବେନିପାଦେ ।
ହରଷେ ଡାକେ ଉଚ୍ଚନାଦେ ॥୧୧୭
ଭୂତ ବେତାଳ ଗ୍ରହଗଣେ ।
ଲାଗିଲେ ଭୋଳ ହୋନ୍ତି ଯେହ୍ନେ ॥୧୧୮
ଉନ୍ମତ୍ତ ହୋଇ ଭାବ ଭୋଳେ ।
ହୁଁକାର ନାଦେ କୃଷ୍ଣ ବୋଲେ ॥୧୧୯
ଜନଙ୍କୁ କୃଷ୍ଣ ପ୍ରାୟେ ମଣେ ।
ନମଇଁ ତାହାଙ୍କ ଚରଣେ ॥୧୨୦

Dr. Sudhanshu Sekhar Mishra

ତୁଣ୍ଡେ ବୋଲଇ ରାମ ହରି ।
ହେ ଜଗନ୍ନାଥ ଦଇତାରି ॥୧୨୧
ହେ ନାରାୟଣ ଯଦୁପତି ।
ଭବସାଗରୁ କର ଗତି ॥୧୨୨
ହୃଦେ ଗୋବିନ୍ଦ ନାମ ଚିନ୍ତି ।
ନିର୍ଲ୍ଲଜ ପ୍ରାୟେ ବହେ ମତି ॥୧୨୩
ଏମନ୍ତ ଭାବେ ଯେତେବେଳେ ।
ଭଜଇ କୃଷ୍ଣ ପାଦ ମୂଳେ ॥୧୨୪
ଅଶେଷ-କର୍ମବନ୍ଧ-ପାଶେ ।
ତକ୍ଷଣେ ହୋଏ ସେହୁ ନାଶ ॥୧୨୫
କୃଷ୍ଣ ଚରଣେ ଭାବ କରେ ।
ଅଶେଷ-ବନ୍ଧନୁ ନିସ୍ତରେ ॥୧୨୬
କୃଷ୍ଣ ଭାବନେ ହୋଏ ଶୁଦ୍ଧି ।
ଚେତନା ଅହଙ୍କାର ବୁଦ୍ଧି ॥୧୨୭
ଏମନ୍ତ ବାହ୍ୟ-ଅଭ୍ୟନ୍ତର ।
ନିର୍ମଳେ ପ୍ରକାଶ ଶରୀର ॥୧୨୮
କର୍ମବାସନା ବୀଜବଳେ ।
ଜୀବ ସଞ୍ଚରେ ଏ ସୟଳେ ॥୧୨୯
କୃଷ୍ଣ ଭକତି ଯୋଗ ବଳେ ।
ପ୍ରକାଶ ପ୍ରଳୟ ଅନଳେ ॥୧୩୦
ସେ ଅଗ୍ନିତେଜେ କର୍ମବୀଜ ।
ତକ୍ଷଣେ ହୁଅଇ ଦହିଯ୍ୟ ॥୧୩୧
କର୍ମ ବିନାଶେ ଜୀବ ତରେ ।
ନିଶ୍ଚିନ୍ତେ କୃଷ୍ଣ ଆଶ୍ରେ କରେ ॥୧୩୨
କୃଷ୍ଣ ଆଶ୍ରୟେ ପ୍ରାଣୀଙ୍କର ।
ଶୁଭ-ଅଶୁଭ ହୋଏ ଦୂର ॥୧୩୩
ଏ ଶୁଭାଶୁଭ ଚକ୍ରେ ଥାଇ ।
ପ୍ରାଣୀ ଅଶେଷ-ଜନ୍ମ ପାଇ ॥୧୩୪
ସଂସାର ଚକ୍ର ଦୃଢ଼ ପାଶ ।
ହରି ଭଜନେ ହୋଏ ନାଶ ॥୧୩୫
ଏ ଜୀବ ବନ୍ଧୁ ମୋକ୍ଷ ହୋଇ ।
ବ୍ରହ୍ମ ନିର୍ବାଣେ ପଶେ ଯାଇ ॥୧୩୬
ପଣ୍ଡିତ ଜନଙ୍କର ମତ ।
କୃଷ୍ଣ ଭଜନ ବ୍ରହ୍ମତତ୍ତ୍ୱ ॥୧୩୭
ବାଳକେ ମୋ'ର ବୋଲ କର ।
ବେଳହୁଁ ଗୋବିନ୍ଦ ସୁମର ॥୧୩୮

ହରିଙ୍କି ଭଜ ଦୃଢ଼ ମନେ ।
କି ଦୁଃଖ କୃଷ୍ଣ-ଉପାସନେ ॥୧୩୯
ହରି ଅଶେଷ-ପ୍ରାଣୀ-ଦେହେ ।
କ୍ଷୁଦ୍ର-ଆକାଶ ପ୍ରାୟେ ରହେ ॥୧୪୦
ଆତ୍ମାର ସଖା ପଦ୍ମ ନାଭ ।
ଅନ୍ୟ ଭଜନେ କିବା ଲାଭ ॥୧୪୧
ଦେଖ ଏ ଧନ ଦାରା ସୁତ ।
ପଶୁ କୁଞ୍ଜର ଗୃହ କ୍ଷେତ୍ର ॥୧୪୨
ନାନା ସମ୍ପଦ ଅର୍ଥ କାମ ।
କ୍ଷଣ ଭଙ୍ଗୁର ସର୍ବ ଜାଣ ॥୧୪୩
ସ୍ୱପ୍ନର ପ୍ରାୟେ ମିଥ୍ୟା ହୋନ୍ତି ।
ଜୀବକୁ କିବା ଏ କରନ୍ତି ॥୧୪୪
ସମ୍ପଦ ନୁହଁଇ ନିଶ୍ଚଳ ।
ଯେସନେ ସମୁଦ୍ର ଉଲ୍ଲୋଳ ॥୧୪୫
ଏହା ନ ଜାଣି ମୂଢ଼ ଜନେ ।
ଏ ମାୟା ନିଗମ ବଚନେ ॥୧୪୬
ଯଜ୍ଞ ଆରମ୍ଭେ କରେ କର୍ମ ।
ଶ୍ରୁତି-ସଙ୍କୁଳେ ହୋଏ ଭ୍ରମ ॥୧୪୭
ସେ ଯଜ୍ଞ ଫଳ ବେନି ଲୋକେ ।
ଆବୋରି ଭୁଞ୍ଜେ ଏକେଏକେ ॥୧୪୮
କର୍ମ ସରିଲେ ପୁଣି ଟଳେ ।
ଭ୍ରମଇ ଏ ମାୟା ଶୟଳେ ॥୧୪୯
ଅଦୃଷ୍ଟ କୃତକର୍ମ ଫଳ ।
କେବେହେଁ ନୁହଁଇ ନିର୍ମଳ ॥୧୫୦
ଏ କର୍ମ ଦୂରେ ପରିହର ।
ଆତ୍ମାକୁ ମାୟାରୁ ଉଦ୍ଧର ॥୧୫୧
ଅନ୍ତରେ ଆତ୍ମା-ସୁଖ ଲାଭେ ।
କୃଷ୍ଣ ଚରଣ ଚିନ୍ତ ଭାବେ ॥୧୫୨
ଯେ ଅର୍ଥେ କର୍ମ ଇହଲୋକେ ।
କରଇ ପ୍ରାଣୀ ଏକେ ଏକେ ॥୧୫୩
ସେ କର୍ମ ଯେବେ ହରିପାଦେ ।
ଅର୍ପଇ ନାହିଁ ସେ ଆନନ୍ଦେ ॥୧୫୪
ନିମିଷେ ହରିଙ୍କୁ ନ ଭାବେ ।
ସେ ବିପରୀତ ଫଳ ଲଭେ ॥୧୫୫
ଦୁଃଖ ବିନାଶେ ସୁଖ ଅର୍ଥେ ।
ପ୍ରାଣୀ ଭ୍ରମନ୍ତି ଏ ଜଗତେ ॥୧୫୬

ଆପଦ ଦୁଃଖ ଭୁଞ୍ଜେ ନିତ୍ୟେ ।
ସୁଖ ନ ମିଳେ କଦାଚିତେ ॥୧୫୭
ଅଶେଷ କାମ ଭୋଗ ଅର୍ଥେ ।
କର୍ମ କରଇ ପ୍ରାଣୀ ନିତ୍ୟେ ॥୧୫୮
ସେ ଫଳ ପରଲୋକେ ପାଇ ।
ମିଳଇ ଅବା ନ ମିଳଇ ॥୧୫୯
ଯେ ଦେହ ପାଇଁ କର୍ମମାନ ।
କରଇ ତା'କୁ ଭଣି ଶ୍ୱାନ ॥୧୬୦
ଏ ଦାରା ସୁତ ଗୃହ ଧନ ।
ରାଜ୍ୟ ଭଣ୍ଡାର ଭୃତ୍ୟଜନ ॥୧୬୧
ମମତା ଆବୃତେ ଏ ଥା'ନ୍ତି ।
ଦିଶନ୍ତି ପୁଣି ନ ଦିଶନ୍ତି ॥୧୬୨
ଇନ୍ଦ୍ରିୟ ପ୍ରାୟେ ଦେହ ତୁଲେ ।
ସର୍ବେ ନଶନ୍ତି ଅନ୍ତଃକାଳେ ॥୧୬୩
ଅନର୍ଥ ଅର୍ଥ ପ୍ରାୟେ ମଣି ।
ମାୟା ସଂଗ୍ରହେ ସର୍ବ ପ୍ରାଣୀ ॥୧୬୪
ଏ ନିତ୍ୟ ଆନନ୍ଦ ସାଗରେ ।
ଚିତ୍ତ ମଜ୍ଜାଅ ନିରନ୍ତରେ ॥୧୬୫
ଦେହ ଧାରଣେ ଏତେ ଲାଭ ।
ଅସୁରମତି ଛାଡ଼ି ଭାବ ॥୧୬୬
ଦେଖ ଏ ଶରୀର-ଧାରଣ ।
ଜନ୍ମହୁଁ ଯାବତ ମରଣ ॥୧୬୭
ଏ ମଧ୍ୟେ ଅଶେଷ ଉପାୟେ ।
ଜୀବର କ୍ଲେଶ ମାତ୍ର ହୋଏ ॥୧୬୮
କର୍ମ ସଂଯୋଗ ଦେହ ବହି ।
ନିରତେ କର୍ମ ହିଁ ସଞ୍ଚଇ ॥୧୬୯
ଜନ୍ମ ମରଣ କର୍ମ ଫଳେ ।
ଭୁଞ୍ଜଇ ଅବିବେକ ବଳେ ॥୧୭୦
ଏ ଘେନି ଧର୍ମ ଅର୍ଥ କାମ ।
ଏ ତିନି ଜୀବର ଯେ ଭ୍ରମ ॥୧୭୧
ଏଣୁ ଭ୍ରମଇ ନିରନ୍ତରେ ।
କ୍ଷଣେ ନ ରହେ ସୁଖେ ଘରେ ॥୧୭୨
ଏଣୁ ସଂଶୟ ଦୂର କରି ।
ଅନ୍ତରେ ଭଜ ନରହରି ॥୧୭୩
ଆତ୍ମାର ପ୍ରିୟ ଯେ ଈଶ୍ୱର ।
ଚିତ୍ତ-ନିର୍ମଳେ ଆଶ୍ରେକର ॥୧୭୪

Dr. Sudhanshu Sekhar Mishra

ଏ ସୂକ୍ଷ୍ମ ଭୂତ ମହାଭୂତେ ।
ଜନ୍ମ କରାଏ ସ୍ୱ ଆୟତେ ॥୧୭୫
ସଂଯୋଗେ ଶରୀର ପ୍ରକାଶେ ।
କର୍ମ ସରିଲେ ପ୍ରାଣୀ ନଶେ ॥୧୭୬
ଦେବ ଅସୁର ନର ଯେବେ ।
ଯକ୍ଷ ଗନ୍ଧର୍ବ ଭକ୍ତି ଭାବେ ॥୧୭୭
ଭଜନ୍ତି ମୁକୁନ୍ଦ ଚରଣେ ।
ଜୀବର ପରମକାରଣେ ॥୧୭୮
ବିପ୍ର ଦେବତା ଋଷି ହୋଇ ।
ଯେବେ କୃଷ୍ଣଙ୍କୁ ନ ଭଜଇ ॥୧୭୯
ଅନେକ ବିଦ୍ୟାବାଦ କରେ ।
ସ୍ୱବୃତ୍ତି-କର୍ମେ ଦିନ ହରେ ॥୧୮୦
ଅନେକ ଦାନ ତପ ସାଧି ।
ଅଷ୍ଟାଙ୍ଗ ଯୋଗ କର୍ମନିଧି ॥୧୮୧
ଯଜ୍ଞ ଶଉଚ ବ୍ରତ ଯେତେ ।
ନାନା ଉପାୟ ଏ ଜଗତେ ॥୧୮୨
ଅଜ୍ଞାନ ବିଡ଼ମ୍ବନ ଏହି ।
ଏଣେ ଗୋବିନ୍ଦଙ୍କୁ ନ ପାଇ ॥୧୮୩

ଯେବେ ଜନ୍ମଇ ଅନ୍ତର୍ଗତେ ।
ନିର୍ମଳ ଭକ୍ତି ଅବିରତେ ॥୧୮୪
ତେବେ ଲଭଇ ଭଗବାନ ।
ଅନ୍ୟଥା ସର୍ବ ବିଡ଼ମ୍ବନ ॥୧୮୫
ଏଣୁ ଗୋବିନ୍ଦ ପାଦେ ଭଜ ।
ଅସୁର ବୁଦ୍ଧି ଦୂରେ ତେଜ ॥୧୮୬
ସେ ଆତ୍ମା ସୁବୁଦ୍ଧି ବିବେକ ।
ଆତ୍ମା ସମାନେ ସର୍ବ ଦେଖ ॥୧୮୭
ସକଳ ଘଟେ ବିଜେ ହରି ।
ସୂକ୍ଷ୍ମ ସ୍ୱରୂପେ ଛନ୍ତି ପୂରି ॥୧୮୮
ଏ ଭାବ ଜାଣି ଏ ଶୟଳେ ।
ଅନେକ ପ୍ରାଣୀ ନିସ୍ତରିଲେ ॥୧୮୯
ଅସୁର ଯକ୍ଷ ରକ୍ଷଗଣ ।
ସ୍ତିରୀ ଗୋପାଳ ଶୂଦ୍ରଜନ ॥୧୯୦
ମୃଗ ପତଙ୍ଗ ପାପୀ ଜୀବେ ।
ସର୍ବେ ତରିଲେ କୃଷ୍ଣ ଭାବେ ॥୧୯୧
ଏ ଜୀବଲୋକେ ଏ ଦୁର୍ଲ୍ଲଭ ।
ଏକାନ୍ତ ଚିତ୍ତେ ହରି ଭାବ ॥୧୯୨

ଜ୍ଞାନ ଲୋଚନେ ସର୍ବ ଦେଖ ।
ଆତ୍ମାକୁ ଆତ୍ମା ଭାବେ ରଖ ॥୧୯୩
ଉତ୍ତମ କର୍ମର ଲକ୍ଷଣ ।
ଦେଖ ଏ ଦୈତ୍ୟସୁତେ ପୁଣ ॥୧୯୪
ଅସୁର ପୁତ୍ରଙ୍କର ଆଗେ ।
ସେ ପ୍ରହ୍ଲାଦ ଅନୁରାଗେ ॥୧୯୫
ଯେତେ କହିଲେ ହରିବାଣୀ ।
ସୁଜନେ ତର ଏହା ଶୁଣି ॥୧୯୬
ସପ୍ତମ ସ୍କନ୍ଧେ ହରିଲୀଳା ।
ଏ ଭବ ସମୁଦ୍ରକୁ ଭେଳା ॥୧୯୭
ଭଣଇ ବିପ୍ର ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୧୯୮

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମସ୍କନ୍ଧେ ପ୍ରହ୍ଲାଦନୁଚରିତେ
ଦୈତ୍ୟପୁତ୍ରାନୁଶାସନଂ
ନାମ ସପ୍ତମୋଽଧ୍ୟାୟଃ ॥

---

## ଅଷ୍ଟମ ଅଧ୍ୟାୟ

ନାରଦ ଉବାଚ

ଏମନ୍ତେ ପ୍ରହ୍ଲାଦ ବାଣୀ ।
ବାଳକେ ସାବଧାନେ ଶୁଣି ॥୧
ଭାଳନ୍ତି ପୁଣି ମନେ ମନ ।
ନିନ୍ଦନ୍ତି ଗୁରୁଙ୍କ ବଚନ ॥୨
ଏଣେ ଆସ୍ୱର କାର୍ଯ୍ୟ ନାହିଁ ।
ଏମନ୍ତ ଭାଳି ସର୍ବେ ଯାଇ ॥୩
ଗୁରୁଙ୍କ ଆଗେ ଜଣାଇଲେ ।
ସଂକ୍ଷେପି ସକଳ କହିଲେ ॥୪
ଶିଷ୍ୟଙ୍କ ବାକ୍ୟ ଶୁଣି ଗୁରୁ ।
ମନେ ପାଇଲେ ଚିନ୍ତା ଗରୁ ॥୫
ଏକାନ୍ତ ବୁଦ୍ଧି ତ ଏହାର ।
ଅନ୍ୟେ ଅଲକ୍ଷ୍ୟ ଅଗୋଚର ॥୬
ସତ୍ୟ ସଂଯୁତେ ଆବୋରିଲା ।
ବାଳକ ବୁଦ୍ଧି ନାଶ କଲା ॥୭

ଯେବେ ଏହାର ବୋଲେ ଥିବେ ।
ସର୍ବ ବାଳକେ ନାଶ ଯିବେ ॥୮
ଏମନ୍ତ ହୃଦୟେ ବିଚାରି ।
ରାଜ ଦଣ୍ଡକୁ ଭୟ କରି ॥୯
ବେଗେ ରାଜାଙ୍କ ଆଗେ ଆସି ।
ବିସ୍ତାରି କହିଲେ ବିଶ୍ୱାସି ॥୧୦
ରାଜନ ଶୁଣି ସର୍ବକଥା ।
ମନେ ପାଇଲା ଗରୁବ୍ୟଥା ॥୧୧
ପୁତ୍ରର ଅନ୍ୟାୟ ବଚନ ।
ଶୁଣି ଅସୁର ଛନଛନ ॥୧୨
କ୍ରୋଧେ କମ୍ପଇ ତା' ଶରୀର ।
ସର୍ପ ଯେସନେ ଫୁଫୁକାର ॥୧୩
ଅନେକ ମତେ ବିଚାରିଲା ।
ପୁତ୍ରମାରଣେ ମନଦେଲା ॥୧୪

ଗୁରୁପୁତ୍ରଙ୍କ ବାକ୍ୟ ଶୁଣି ।
ପ୍ରଚଣ୍ଡ-କୋପେ ବୀରମଣି ॥୧୫
ଅରୁଣ ନୟନେ ସେ ଚାହେଁ ।
ପାପିଷ୍ଠ ପଣେ କାଳ ଭୟେ ॥୧୬
ପ୍ରହ୍ଲାଦ ପିତାଙ୍କ ଅଗ୍ରତେ ।
କର-ଅଞ୍ଜଳି ଦେଇ ମାଥେ ॥୧୭
ବିନୟ ଭାବେ ଅବନତ ।
ସ୍ୱଭାବ ଶୀଳ ଶାନ୍ତ ଦାନ୍ତ ॥୧୮
ଚରଣେ ନମସ୍କାର କଲେ ।
ସର୍ବବାଳକ ସଙ୍ଗମେଳେ ॥୧୯
ଏମନ୍ତେ ପୁତ୍ରକୁ ଅନାଇଁ ।
ଚିତ୍ତେ ପ୍ରଚଣ୍ଡ କୋପ ବହି ॥୨୦
ଗର୍ଜ୍ଜଇ ମନେ କରି ତାପ ।
ପାଦ ପ୍ରହାରେ ଯେହ୍ନେ ସର୍ପ ॥୨୧

Dr. Sudhanshu Sekhar Mishra

ସ୍ୱଭାବେ ଦାରୁଣ ଅସୁର ।
ଦିଶଇ ଯେହ୍ନେ ଦିବାକର ॥୨୨
ପ୍ରଳୟାନଳ-କୋପ ବହି ।
ବୋଲଇ ପୁତ୍ର ମୁଖ ଚାହିଁ ॥୨୩

ହିରଣ୍ୟକଶିପୁ ଉବାଚ

ଆରେ ଦୁର୍ବୃତ୍ତ ମନ୍ଦବୁଦ୍ଧି ।
ଅଧମ ଦୁଷ୍ଟ କୁଳଭେଦୀ ॥୨୪
ମୋହର କୋପେ ତିନିପୁର ।
ଭୟେ କମ୍ପନ୍ତି ଥରହର ॥୨୫
ତ୍ରାସେ କମ୍ପନ୍ତି ଦିଗପାଳେ ।
ନକ୍ଷତ୍ରେ ଗଗନ ମଣ୍ଡଳେ ॥୨୬
ନିର୍ଭୟଚିତ୍ତେ ମୂଢ଼ ପଣେ ।
ମୋ' ଆଜ୍ଞା ଭାଙ୍ଗି ଅପ୍ରମାଣେ ॥୨୭
କୁପୁତ୍ର ମୋ'ର କୁଳାଙ୍ଗାର ।
ଆଜି ପେଷିବି ଯମପୁର ॥୨୮
କାହାର ବୋଲେ ଦୁଷ୍ଟପଣେ ।
ମୋ' ଆଜ୍ଞା ଭାଙ୍ଗୁ କି କାରଣେ ॥୨୯

ପ୍ରହ୍ଲାଦ ଉବାଚ

ଶୁଣ ପିଅର ମୋ'ର ବାଣୀ ।
ତୁ ଯେ ତ୍ରୈଲୋକ୍ୟେ ବୀରମଣି ॥୩୦
ଏ କଥା ଅନୁଚିତ ତୋ'ର ।
କହଇ ଶୁଣ ନୃପବର ॥୩୧
ଯେଉଁ ପ୍ରଭୁର ବଳେ ମୁହିଁ ।
ଜୀବକୁ ସମାନ ମଣଇ ॥୩୨
ତୋ'ର ମୋହର ଅଦି କରି ।
ଅପରେ ଯେତେ ଦେହଧାରୀ ॥୩୩
ଜଗତେ ମହାବଳୀ ଯେତେ ।
ସ୍ଥାବର ଜଙ୍ଗମ ସହିତେ ॥୩୪
ବ୍ରହ୍ମାଦି ଯେତେ ସୁରଦେବା ।
ଯା'ର ଚରଣେ କରେ ସେବା ॥୩୫
ଯେ ହରି କାଳ-କର୍ମରୂପୀ ।
ଜଗଦୀଶ୍ୱର ବିଶ୍ୱବ୍ୟାପି ॥୩୬
ପ୍ରାଣୀଙ୍କ ବଳ ପ୍ରାଣ ସେହି ।
ବାହ୍ୟ ଅନ୍ତରେ ଶୁଦ୍ଧଦେହୀ ॥୩୭
ଇନ୍ଦ୍ର ଦେବତା ଇନ୍ଦ୍ରିଗଣ ।
ଇନ୍ଦ୍ରିୟ-ବିଷୟ କାରଣ ॥୩୮
ସେ ବିଷ୍ଣୁ ସଂସାର ସର୍ଜଇ ।
ତ୍ରିଗୁଣ ମାୟା ସଙ୍ଗେ ଲଇ ॥୩୯
ଭୁଞ୍ଜାଇ ଅଶେଷ ଶରୀରେ ।
କ୍ରୀଡ଼ାର ଅନ୍ତେ ଅନ୍ତଃକରେ ॥୪୦
ହେ ତାତ ଜାଣି ତା'ଙ୍କୁ ସ୍ମର ।
ଅସୁର ଭାବ ଦୂର କର ॥୪୧
ଆତ୍ମାକୁ ଆତ୍ମ ଜ୍ଞାନେ ରଖ ।
ସକଳ ଘଟେ ସମ ଦେଖ ॥୪୨
ଯେ ଭାବେ ରିପୁ-ମିତ୍ର ନାହିଁ ।
ସେ ଭାବେ ରହ ମନ ଧ୍ୟାୟି ॥୪୩
ମିତ୍ର ଉଦାସ ଶତ୍ରୁ ପଣେ ।
ମନହୁଁ ଅନ୍ୟ ନାହିଁ ଜଣେ ॥୪୪
ଏ ଭାବେ ଚିନ୍ତି ହୁଅ ସ୍ଥିର ।
କୃଷ୍ଣ-ସନ୍ତୋଷ କର୍ମ କର ॥୪୫
ତୁ ଯେ ବୋଲାଉ ବୀରମଣି ।
ଏ ତିନିଭୁବନେ କାରେଣୀ ॥୪୬
ଏ ତିନିଭୁବନ ଆବୋରି ।
ଭୁଞ୍ଜୁ ତୁ ଅକଣ୍ଟକ-ଶିରୀ ॥୪୭
ମନେ ବିଚାର କରୁ ତୁହି ।
ସଂସାରେ ରିପୁ ମୋ'ର ନାହିଁ ॥୪୮
ଭୋ ତାତ ଦୋଷ କର ତ୍ରାହି ।
କହିବି ଶୁଣ ମନ ଦେଇ ॥୪୯
ବ୍ରହ୍ମାଣ୍ଡେ ଯେତେ ଗୁଣ ଅଛି ।
ସେ ଗୁଣ ପିଣ୍ଡ ମଧ୍ୟେ ଲକ୍ଷି ॥୫୦
ଯେ ଷଡ଼ରିପୁ କାମ ଆଦି ।
ହୃଦୟ ମଧ୍ୟେ ଛନ୍ତି ଭେଦି ॥୫୧
ମନକୁ କରି ସେନାପତି ।
ଆତ୍ମାର ସମ୍ପଦ ଲୁଟନ୍ତି ॥୫୨
ଏ ଦଶଇନ୍ଦ୍ରି ଦିଗପାଳେ ।
ଆତ୍ମାକୁ ନାଶନ୍ତି ସମୂଳେ ॥୫୩
ଏହାଙ୍କୁ ଦେହେ ନ ନିବାରୁ ।
ମୁଁ ବୀର ବୋଲି ଗର୍ବ କରୁ ॥୫୪
ଏହାକୁ ଜିଣିବୁ ଯେମନ୍ତେ ।
ଏବେ ହୋ ଦୃଢ଼କର ଚିତ୍ତେ ॥୫୫

ନାରଦ ଉବାଚ

ଏମନ୍ତେ ପ୍ରହ୍ଲାଦ ବାଣୀ ।
ଅସୁର ଦେହ କମ୍ପେ ଶୁଣି ॥୫୬
ବୋଲଇ ପୁତ୍ର ମୁଖ ଚାହିଁ ।
ନିଶ୍ଚେ ମରିବୁ ଆଜ ତୁହି ॥୫୭
ଅଧିକ ଯେତେ କଥା କହୁ ।
ତୁ ଏ ଅସୁର ଜନ୍ମ ନୋହୁ ॥୫୮
ମୃତ୍ୟୁ ଯାହାର ସନ୍ନିଧାନ ।
ମନୁଁ ହରଇ ତା'ର ଜ୍ଞାନ ॥୫୯
ଆତ୍ମାର ଗତି ନ ପ୍ରମାଣି ।
ବାତୁଳ ଭାବେ କହୁ ବାଣୀ ॥୬୦
ଜୀବନ୍ତେ ଭାଗ୍ୟ ନାହିଁ ତୋ'ର ।
ବଚନ କହୁ ଅଗୋଚର ॥୬୧
ଏ ତିନି ପୁରେ ମୁଁ ଈଶ୍ୱର ।
ମୋ' ତହୁଁ କେବା ଅଛି ଆର ॥୬୨
କାହାର ବୋଲେ ତୁ ପାମର ।
ମୋ' ବାକ୍ୟେ ଅବଜ୍ଞା ତୋହର ॥୬୩
ସ୍ଥାବର ଜଙ୍ଗମ ସହିତେ ।
ମୁହିଁ ପାଳଇ ଏ ଜଗତେ ॥୬୪
ମୋ' ତହୁଁ ଯେବେ ଅଛି ଭିନ୍ନେ ।
ଈଶ୍ୱର ଏ ତିନିଭୁବନେ ॥୬୫
ତୁ ଯେ ବୋଲୁ ମୋ' ପ୍ରଭୁ ହରି ।
ଦୃଶ୍ୟେ ଅଦୃଶ୍ୟେ ଛନ୍ତି ପୂରି ॥୬୬
ଆଜ ତୁ ମୋହର ସମକ୍ଷେ ।
ହରିଙ୍କୁ ଦେଖାଅ ପ୍ରତ୍ୟକ୍ଷେ ॥୬୭
ସେ ଯେବେ ସର୍ବ ବ୍ୟାପି ଥାଇ ।
ଏ ସ୍ତମ୍ଭେ କିପାଁ ନ ଦିଶଇ ॥୬୮
ତୁ ଯେବେ ବୋଲୁ ମୋ'ର ସଖା ।
ପ୍ରତ୍ୟକ୍ଷେ ସ୍ତମ୍ଭ ମଧ୍ୟେ ଦେଖା ॥୬୯
ଆଜ ଛେଦିବି ତୋ'ର ଶିର ।
ଆସି ରଖୁ ତୋ ଚକ୍ରଧର ॥୭୦
ଏମନ୍ତେ ପିତାର ବଚନେ ।
ପ୍ରହ୍ଲାଦ ଭୟ କଲା ମନେ ॥୭୧
ବାଳକ କୃଷ୍ଣର ବିଶ୍ୱାସେ ।
ଚଞ୍ଚଳେ ଚାହେଁ ଦଶଦିଶେ ॥୭୨

Dr. Sudhanshu Sekhar Mishra

ଦେଖିଲା ସ୍ତମ୍ଭ ମଧ୍ୟେ ହରି ।
ଶଙ୍ଖ କମଳ ଚକ୍ରଧାରୀ ॥୭୩
ଉଦଣ୍ଡ-ଗଦା ଶୋହେ କରେ ।
ପ୍ରକାଶ ସ୍ତମ୍ଭର ଭିତରେ ॥୭୪
ବୋଲଇ ପିତାମୁଖ ଚାହିଁ ।
କପାଳେ ବେନିକର ଦେଇ ॥୭୫
ଭୋ ତାତ ସ୍ତମ୍ଭ ମଧେ ହରି ।
ଦେଖ ପ୍ରତକ୍ଷେ ଛନ୍ତି ପୂରି ॥୭୬
ଏମନ୍ତେ ପୁତ୍ରମୁଖୁଁ ଶୁଣି ।
କୋପେ ଅସୁର ନୃପମଣି ॥୭୭
ତେଇଁ ଉଠିଲା ଶିର ଝୁଣି ।
ଖଡ୍‌ଗ କରେ ବୀରମଣି ॥୭୮
ପୁତ୍ରକୁ ଚାହିଁ କୋପଦୃଷ୍ଟି ।
ଓଷ୍ଠେ ଚାପିଣ ଦନ୍ତ ପାଟି ॥୭୯
ତୀକ୍ଷ୍ଣ ଖଡ୍‌ଗ ଧରି କରେ ।
ଅସୁର ଉଠି କୋପ ଭରେ ॥୮୦
ସ୍ତମ୍ଭକୁ ଚାହିଁ କୋପଦୃଷ୍ଟି ।
ପ୍ରହାର କଲା ପାଦ-ମୁଷ୍ଟି ॥୮୧
ତକ୍ଷଣେ ଘୋର ନାଦ କରି ।
ସ୍ତମ୍ଭ ଭିତରେ ନରହରି ॥୮୨
ଅତି ଭୀଷଣ ଘୋରନାଦେ ।
ବ୍ରହ୍ମାଣ୍ଡ ପୂରିଲା ଶବଦେ ॥୮୩
ବ୍ରହ୍ମାଦି ଭୁବନପାଳକେ ।
ଭୟେ କମ୍ପିଲେ ଏକେ ଏକେ ॥୮୪
ଶବଦ ଶୁଭେ ଘଡ଼ଘଡ଼ି ।
ବ୍ରହ୍ମାଣ୍ଡ ପଡ଼ିଲା କି ଝଡ଼ି ॥୮୫
ଅଦ୍‌ଭୁତ ଘୋରନାଦ ଶୁଣି ।
କୋପେ ଧାଇଁଲା ଖଡ୍ଗ ଘେନି ॥୮୬
ଦେଖି କମ୍ପିଲେ ଦିଗପାଳ ।
ଧଇଲା ପ୍ରହଲ୍ଲାଦ ବାଳ ॥୮୭
ଦେଖିଲା ସ୍ତମ୍ଭେ କେହି ନାହିଁ ।
ବୋଲଇ-ପୁତ୍ରମୁଖ ଚାହିଁ ॥୮୮
ଆଜ ପେଷିବି ଯମପୁର ।
ଦେଖା ତୁ ସ୍ତମ୍ଭେ ଚକ୍ରଧର ॥୮୯
ସେ ପ୍ରଭୁ ଭକତ ବତ୍ସଳ ।
ଦେଖିଲେ ଭୃତ୍ୟର ବିକଳ ॥୯୦

ଯେ ହରି ସର୍ବଭୂତେ ପୂରି ।
ଭକ୍ତ ବଚନ ସତ୍ୟ କରି ॥୯୧
ସ୍ତମ୍ଭର ମଧ୍ୟେ ଦଇତ୍ୟାରି ।
ନରକେଶରୀ ରୂପ ଧରି ॥୯୨
ଅଦ୍‌ଭୁତ ରୂପ ଦେବରାୟେ ।
ଶୋହେ ମନୁଷ୍ୟ-ପଶୁକାୟେ ॥୯୩
ଅଦ୍‌ଭୁତ ରୂପ ଭୟଙ୍କର ।
ଦେଖି ବିଚାରଇ ଅସୁର ॥୯୪
ଏ ରୂପ ଦେଖିଲା ତ ନାହିଁ ।
ସ୍ତମ୍ଭେ ଏ ପ୍ରକାଶିଲା କାହିଁ ॥୯୫
ଦଗ୍‌ଧ ସୁବର୍ଣ୍ଣ ପ୍ରାୟେ ବର୍ଣ୍ଣ ।
କର୍କଶ-ପିଙ୍ଗଳ-ଲୋଚନ ॥୯୬
ସ୍ଫୁରିତ-କେଶର କମ୍ପନେ ।
ଜଳଦେ ଉଡ଼ିଲେ ଗଗନେ ॥୯୭
ବିସ୍ତାରତୁଣ୍ଡ ବେନିକକେ ।
ଜିହ୍ୱା ବୁଲାନ୍ତି ଅନ୍ତରାଳେ ॥୯୮
ବିକଟ-ଦନ୍ତ ବେନିପାଟି ।
ନିଷ୍ଠୁର ଚଞ୍ଚଳ ଭୃକୁଟୀ ॥୯୯
ଉର୍ଦ୍ଧ୍ୱେ ଚଳଇ କର୍ଣ୍ଣ ଦୁଇ ।
ଗିରି-ଗୁହାର ପ୍ରାୟେ ହୋଇ ॥୧୦୦
ନାସିକା-ରନ୍ଧ୍ର ଅନ୍ଧକାର ।
ବିସ୍ତାର ହନୁ ମହାଘୋର ॥୧୦୧
ଅଦୀର୍ଘ ସ୍ଥୂଳ ଗ୍ରୀବାଦେଶ ।
ଶରୀର ସ୍ପରଶେ ଆକାଶ ॥୧୦୨
ବିସ୍ତାର ବକ୍ଷସ୍ଥଳ ସାଜେ ।
କ୍ଷୀଣ ଉଦର ଯେ ବିରାଜେ ॥୧୦୩
ଚନ୍ଦ୍ରଗଉର ତନୁରୁହେ ।
ବିଶ୍ୱ ପୂରିତ ବିଶ୍ୱଦେହେ ॥୧୦୪
କର ଚରଣ ନଖାୟୁଧ ।
ତା' ଦେଖି କମ୍ପିଲେ ବିବୁଧ ॥୧୦୫
ଅସୁର ପଳାଇଲେ ତ୍ରାସେ ।
ଭୟେ ଲୁଚିଲେ ଦଶଦିଶେ ॥୧୦୬
ଏମନ୍ତ ରୂପ ଦେଖି ଆଗେ ।
ଦାନବ ପତି ମହାରାଗେ ॥୧୦୭
ଗଦା ବୁଲାଇ ଅତି ଖରେ ।
ଧାଇଁଲା ନୃସିଂହ ଉପରେ ॥୧୦୮

ଘୋର ଶବଦେ ମହାବୀର ।
ଦେଖି କମ୍ପିଲେ ସୁରନର ॥୧୦୯
ଯେ ହରି ମାୟାବୀଙ୍କ ବର ।
ତା' କାହିଁ ଜାଣିବ ଅସୁର ॥୧୧୦
ଧାମଇଁ ଗଦା ତୋଳି ହସ୍ତେ ।
ଅଗ୍ନିକି ପତଙ୍ଗ ଯେମନ୍ତେ ॥୧୧୧
ଗଦା ଉଞ୍ଚାଇ ମହାବୀର ।
ପିଟିଲା ନୃସିଂହ ଉପର ॥୧୧୨
ପୁଣି ପ୍ରହାରେ ବାମ-ଦକ୍ଷେ ।
ଦେବେ ଦେଖନ୍ତି ଅନ୍ତରୀକ୍ଷେ ॥୧୧୩
ଅତି ବିକ୍ରମ-ତେଜ ହସ୍ତେ ।
ଅଗ୍ନିକି ପତଙ୍ଗ ଯେମନ୍ତେ ॥୧୧୪
କର ପ୍ରସାରି ନରହରି ।
ତକ୍ଷଣେ ଅସୁରକୁ ଧରି ॥୧୧୫
ଗଦାଏ ଅଛି ତା'ର ହସ୍ତେ ।
ସର୍ପକୁ ଗରୁଡ଼ ଯେମନ୍ତେ ॥୧୧୬
ତକ୍ଷଣେ ଦାନବ ନୃପତି ।
ହସ୍ତରୁ ଗଳି ଚିତ୍ରଗତି ॥୧୧୭
ଗରୁଡ଼ ହସ୍ତୁ ଯେହ୍ନେ ନାଗ ।
ପଡ଼ି ଧାମଇଁ ଅତି ବେଗ ॥୧୧୮
ଓଷ୍ଠ କାମୋଡ଼ି ଅତି ବଳେ ।
ଦେଖି ଡରିଲେ ଦିଗପାଳେ ॥୧୧୯
ଅସାଧ୍ୟ ଦେଖି ଦେବଗଣେ ।
ମେଘେ ଲୁଚିଲେ ତତକ୍ଷଣେ ॥୧୨୦
ନୃସିଂହ ହସ୍ତୁ ଯା'ନ୍ତେ ଗଳି ।
ଦେବେ ଭାଳନ୍ତି ଶୂନ୍ୟେ ମିଳି ॥୧୨୧
ପୁଣି ଅସୁର ନାଦ କରି ।
ତକ୍ଷଣେ ଖଡ୍ଗ-ବର୍ମ ଧରି ॥୧୨୨
ଚର୍ମେ ଶୋଭିତ ଶତଚନ୍ଦ୍ର ।
ଦୁର୍ଜ୍ଜୟ ଅସୁର ନରେନ୍ଦ୍ର ॥୧୨୩
ଖଡ୍ଗ-ମଣ୍ଡଳ ଗତି ଦେଖି ।
ଭୟେ ବୁଜିଲେ ସର୍ବେ ଆଖି ॥୧୨୪
ଶୂନ୍ୟେ ଉଡ଼ଇ ବାହୁବଳେ ।
ପୁଣି ମିଳଇ ଭୂମି ତଳେ ॥୧୨୫
ଚଣ୍ଡାଟ ହାସେ ନରହରି ।
କୋପେଣ ଅସୁରକୁ ଧରି ॥୧୨୬

Dr. Sudhanshu Sekhar Mishra

ଦୃଢ଼େ ଚାପନ୍ତେ ପୁଣି ଗଳି ।
ତଳେ ପଡ଼ିଲା ମହାବଳୀ ॥୧୨୭
ପୁଣି ଧରନ୍ତି ଅତିବେଗେ ।
ବଳେ ଉଛୁଡ଼େ ଦଶଦିଗେ ॥୧୨୮
ପୁଣି ହିଁ ଚାପିଲେ ଅଧରେ ।
ମୂଷିକେ ଯେହ୍ନେ ସର୍ପ ଧରେ ॥୧୨୯
ସ୍ୱଭାବେ ଦୁର୍ଜ୍ଜୟ ଅସୁର ।
ବଜ୍ର ହୁଁ କଠିନ ଶରୀର ॥୧୩୦
ନୃସିଂହ-ହିରଣ୍ୟର ଯୁଦ୍ଧ ।
ଗଗନେ ଦେଖନ୍ତି ବିବୁଧ ॥୧୩୧
ସଂକ୍ଷେପି କହିବଇଁ କେତେ ।
ପୁରାଣ ମତେ ଭିନ୍ନ ଯେତେ ॥୧୩୨
ଉରୁ ଉପରେ ନରହରି ।
ଉତ୍ତାନ କରି ତା'କୁ ଧରି ॥୧୩୩
ବାମ ଦକ୍ଷିଣ ବେନିକରେ ।
ଲୀଳା ମାତ୍ରକେ ନଖାଙ୍କୁରେ ॥୧୩୪
ରୋଷେ ହୁଁକାର ନାଦ କରି ।
ହୃଦୟ କମଳ ବିଦାରି ॥୧୩୫
ଦେବେ ଦେଖନ୍ତି ଥାଇ ଶୂନ୍ୟେ ।
ସର୍ପକୁ ଗରୁଡ଼ ଯେସନେ ॥୧୩୬
ଅସୁର-ହୃଦୟ-ରୁଧିରେ ।
ତିନ୍ତିଲା ଲଲାଟ-କେଶରେ ॥୧୩୭
ସିଂହ ଯେସନେ ଗଜ ମୁଣ୍ଡେ ।
ବସି ବିଦାରେ ଧରି ତୁଣ୍ଡେ ॥୧୩୮
ଅସୁର ହୃଦୟ କମଳ ।
ବିଦାରି ଅନ୍ତ କଲେ ମାଳ ॥୧୩୯
କୋପେ ଚାହାଁନ୍ତେ ଦଶଦିଶେ ।
ଦୈତ୍ୟେ ମିଳିଲେ ଆସି ପାଶେ ॥୧୪୦
ନାନା ଆୟୁଧ ଧରି କରେ ।
ପିଟିଲେ ନୃସିଂହ ଉପରେ ॥୧୪୧
ତାହାଙ୍କୁ ଧରି ତତକ୍ଷଣେ ।
ନଖେ ବିଦାରିଲେ ଆପଣେ ॥୧୪୨
ସହସ୍ର ସହସ୍ର ଅସୁର ।
ସମରେ ଗଲେ ଯମପୁର ॥୧୪୩
ଅସୁର ବଳ ରଣେ ମାରି ।
କୋପେ ଧାଇଁଲେ ନରହରି ॥୧୪୪

ଜଟା କମ୍ପନ ଘୋରବାତେ ।
ମେଘେ ଉଡ଼ିଲେ ଶୂନ୍ୟପଥେ ॥୧୪୫
ଶବଦ ଶୁଭେ ଘଡ଼ଘଡ଼ି ।
ଗଗନମାର୍ଗେ ପଡ଼େ ହୁରି ॥୧୪୬
ଗ୍ରହ-ନକ୍ଷତ୍ର ମାଳମାଳ ।
ସ୍ୱର୍ଗୁ ପଡ଼ିଲେ ମହୀତଳ ॥୧୪୭
ଉର୍ଦ୍ଧ୍ୱେ ଚାହାଁନ୍ତେ କୋପାନଳେ ।
ଦେଖି ଡରିଲେ ଦିଗପାଳେ ॥୧୪୮
ନିଃଶ୍ୱାସବାତେ ସିନ୍ଧୁଜଳ ।
ଉଲ୍ଲୋଳ ଲହରୀ ସଙ୍କୁଳ ॥୧୪୯
ଦେବେ ଗଗନୁ ଗଲେ ତ୍ରାସେ ।
ଗଜେ ଉଡ଼ିଲେ ଅଷ୍ଟଦିଶେ ॥୧୫୦
ଶ୍ୱାସ-ପବନ-ଘାତ-ବଳେ ।
ବିମାନେ ଆକାଶ ମଣ୍ଡଳେ ॥୧୫୧
ଉଡ଼ିଲେ ସ୍ଥାନଭ୍ରଷ୍ଟ ହୋଇ ।
ପାଦ ବିଘାତେ କମ୍ପେ ମହୀ ॥୧୫୨
ନୃସିଂହ ଶରୀର ପବନେ ।
ପର୍ବତେ ଉଡ଼ିଲେ ଗଗନେ ॥୧୫୩
ଦିଶ ଆକାଶ ତେଜ ନାଶେ ।
ଧୂମ ଯେ ପ୍ରକାଶେ ଆକାଶେ ॥୧୫୪
ଦିଗ ଅଦୃଶ୍ୟ ଧୂମାକୂଳେ ।
ନିଃଶ୍ୱାସ ପବନ ନ ଚଳେ ॥୧୫୫
ଏମନ୍ତେ ଅସୁର ସଂହାରି ।
ସଭାର ମଧ୍ୟେ ବିଜେକରି ॥୧୫୬
ବସିଲେ ଅସୁର ଆସନେ ।
ଯେହୁ ପୂଜିତ ତ୍ରିଭୁବନେ ॥୧୫୭
ଦେଖି ଅସୁର ପଳାଇଲେ ।
ଯେ ଅବା ଅବଶେଷ ଥିଲେ ॥୧୫୮
ଶସ୍ତ୍ର ଧରନ୍ତା ନାହିଁ କେହି ।
ଭାଜିଲେ ଚଉଦିଗେ ଚାହିଁ ॥୧୫୯
ହିରଣ୍ୟକଶିପୁ ଅସୁର ।
ତ୍ରୈଲୋକ୍ୟ କଲା ସେହୁ କ୍ରୂର ॥୧୬୦
ସଂଗ୍ରାମେ ହରି ତା' ଜୀବନ ।
ସୃଷ୍ଟି ରଖିଲେ ଭଗବାନ ॥୧୬୧
ଅସୁର-ନିଧନ-ସମ୍ବାଦେ ।
ବିବୁଧେ ପରମ ଆନନ୍ଦେ ॥୧୬୨

ନନ୍ଦନ ବନୁଁ ପୁଷ୍ପ ତୋଳି ।
ଶୂନ୍ୟେ ସକଳ ଦେବେ ମିଳି ॥୧୬୩
ହରଷ ଲୋଚନେ ଅନାଇଁ ।
ମଙ୍ଗଳ ସ୍ୱରେ ଗୀତ ଗାଇ ॥୧୬୪
ମିଳି ସକଳ ସୁରନାରୀ ।
ସାନନ୍ଦେ ପୁଷ୍ପ ବୃଷ୍ଟି କରି ॥୧୬୫
ଶୂନ୍ୟେ ଅସୁରେ ଭୟେ ଭାଳି ।
ଥିଲେ ଯେ ଦଶଦିଗେ ମିଳି ॥୧୬୬
ଗଗନେ ବିମାନ-ସଙ୍କୁଳେ ।
ମିଳିଲେ ଦଶଦିଗ ପାଳେ ॥୧୬୭
ଦୁନ୍ଦୁଭି ବାଦ୍ୟନାଦ କଲେ ।
ଗନ୍ଧର୍ବେ ଅପସରା ମେଳେ ॥୧୬୮
ହରଷେ ନୃତ୍ୟ-ଗୀତ କରି ।
ଚିତ୍ତ ଆନନ୍ଦେ ମୋଦଭରି ॥୧୬୯
ବ୍ରହ୍ମା ଶଙ୍କର ଇନ୍ଦ୍ର ତୁଲେ ।
ଋଷିଏ ପିତୃ ସିଦ୍ଧ ମେଳେ ॥୧୭୦
ଉରଗ ବିଦ୍ୟାଧରଗଣ ।
ମନୁଏ ପ୍ରଜାପତି ପୁଣ ॥୧୭୧
ମିଳିଲେ ଗୁହ୍ୟକ ଚାରଣ ।
ଯକ୍ଷ କିଂପୁରୁଷ ଏମାନ ॥୧୭୨
ଆବର ବେତାଳ କିନ୍ନର ।
ଏ ଆଦି ଅଶେଷ ଅମର ॥୧୭୩
ମିଳିଲେ ବିଷ୍ଣୁ-ପାରିଷଦ ।
ସନକ ସୁନନ୍ଦ କୁମୁଦ ॥୧୭୪
କର ଅଞ୍ଜଳି ଶିରେ ଦେଇ ।
ମିଳିଲେ ବିଷ୍ଣୁ ପାଶେ ଯାଇ ॥୧୭୫
ପ୍ରଚଣ୍ଡ ତେଜ ମହାଘୋର ।
ଭୟେ ରହିଲେ କିଛି ଦୂର ॥୧୭୬
ରହିଲେ ସ୍ତମ୍ଭୀଭୂତ ହୋଇ ।
ସମୀପେ ନ ପାରିଲେ ଯାଇ ॥୧୭୭
ଭୟେ ଶଙ୍କିତ ଦିଗପାଳେ ।
ସ୍ତୁତି କରନ୍ତି ପାଦମୂଳେ ॥୧୭୮
ବ୍ରହ୍ମା ନୃସିଂହ ମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୧୭୯

ବ୍ରହ୍ମା ଉବାଚ

ନମସ୍ତେ ଅନନ୍ତ ମୂରତି ।
ଦୂରନ୍ତବୀର୍ଯ୍ୟ ତୋ'ର ଶକ୍ତି ॥୧୮୦

Dr. Sudhanshu Sekhar Mishra

ବିଚିତ୍ରବୀର୍ଯ୍ୟ ଶୁଦ୍ଧକର୍ମା ।
ଅଶେଷ ତୋହର ମହିମା ॥୧୮୧
ଗୁଣ-ସଂଯୋଗେ ଲୀଳାମତେ ।
ସଂସାର ସୃଷ୍ଟି-ସ୍ଥିତି-ଅନ୍ତେ ॥୧୮୨
ଅଶେଷ ଯାହାର ମହିମା ।
କେ କହିପାରେ ଗୁଣ ସୀମା ॥୧୮୩
ସେ ପ୍ରଭୁ ଚରଣାରବିନ୍ଦେ ।
ପ୍ରସନ୍ନ ଅର୍ଥେ ମୁହିଁ ବନ୍ଦେ ॥୧୮୪
ସେ ହରି ପ୍ରସନ୍ନ ହୁଅନ୍ତୁ ।
ସକଳେ ଅଭୟ ଦିଅନ୍ତୁ ॥୧୮୫

ରୁଦ୍ର ଉବାଚ

ଯୁଗାନ୍ତକାଳ ତୋ'ର କୋପ ।
ସ୍ୱଭାବେ ଅସୁର ଅଳପ ॥୧୮୬
ହେ ପ୍ରଭୁ ଭକତବତ୍ସଳ ।
ଦୁଷ୍ଟ-ଅସୁର ବିନାଶିଲ ॥୧୮୭
ତା' ପୁତ୍ର ଭକ୍ତ ପ୍ରହଲ୍ଲାଦ ।
ଆଶ୍ରା ନେଇଛି ତୁମ୍ଭପାଦ ॥୧୮୮
ତା' ସମ ଭକ୍ତ କେହି ନାହିଁ ।
ରଖ ତାହାକୁ ଭାବଗ୍ରାହୀ ॥୧୮୯
ଏ ସର୍ବ ତୋହର କିଙ୍କର ।
ଜଗତ ତୋ'ର ଲୀଳାଘର ॥୧୯୦

ଇନ୍ଦ୍ର ଉବାଚ

ଇନ୍ଦ୍ର ଅଞ୍ଜଳି ଶିରେ ଦେଇ ।
ବୋଲେ ନୃସିଂହ କର ତ୍ରାହି ॥୧୯୧
ଏ ମହାସୁର ମହାବେଗେ ।
ଯଜ୍ଞ ଆରମ୍ଭେ ହବିର୍ଭାଗେ ॥୧୯୨
ବଳେ ଭୁଞ୍ଜଇ ଏ ଆକର୍ଷି ।
ଆମ ହୃଦୟ ପଦ୍ମେ ପଶି ॥୧୯୩
ତୁ ନାଥ ସର୍ବ ପ୍ରାଣୀଙ୍କର ।
ହୃଦୟ ପଦ୍ମେ ତୋ'ର ଘର ॥୧୯୪
ସେ ପଦ୍ମ ଅସୁର-ଶଶାଙ୍କେ ।
ମୁଦ୍ରିତ ଥିଲା ଅତିରେକେ ॥୧୯୫
ତୁ ଏବେ ସୂର୍ଯ୍ୟ ରୂପ ଧରି ।
ହୃଦୟପଦ୍ମ ଭେଦ କରି ॥୧୯୬
ତୁ ତୋ'ର ଗୃହ ସମାଜିଲୁ ।
ଆମ୍ଭଙ୍କୁ ଯଜ୍ଞ ଭାଗ ଦେଲୁ ॥୧୯୭
ଏ ଘୋର-ସଂସାର-ସାଗରେ ।
ପ୍ରାଣୀ ଜୀବନ ନିରନ୍ତରେ ॥୧୯୮
ଗ୍ରସ୍ତ କରଇ କାଳ ବଳେ ।
କିବା କହିବୁ ଅନ୍ତରାଳେ ॥୧୯୯
ତୋ'ର ସେବକ-ପ୍ରାଣୀଙ୍କର ।
ତୁ ନାଥ ଶରଣ ସୋଦର ॥୨୦୦
ଋଷି ସକଳ ଏକମେଳେ ।
ସ୍ତୁତି କରନ୍ତି ପାଦ ତଳେ ॥୨୦୧

ଋଷିଗଣ ଉବାଚ

ତୋ'ର ଚରଣ ଧ୍ୟାନ ଅର୍ଥେ ।
ତପ ସମ୍ପାଦି ଏ ଜଗତେ ॥୨୦୨
ତୋ'ର ବଚନେ ଆମ୍ଭେ ରହି ।
ସଂସାରେ ବିପ୍ରଦେହ ବହି ॥୨୦୩
ସେ ତପ ସାଧିବାର କଷ୍ଟ ।
ବଳେ ହିରଣ୍ୟ କଲା ନଷ୍ଟ ॥୨୦୪
ତୋ'ର ବଚନେ ତୋତେ ଭାବି ।
ଦୃଢ଼େ ପଦାରବିନ୍ଦେ ସେବି ॥୨୦୫
ସେ ତପ ହରିଲା ଆମ୍ଭର ।
ନିଜ ପ୍ରତାପେ ଏ ଅସୁର ॥୨୦୬
ଏବେ ଏହାକୁ ନାଶ କରି ।
ଆମ୍ଭର ତପସ୍ୟା ଉଦ୍ଧରି ॥୨୦୭
ରଖିଲୁ ବିପ୍ର ଋଷି ଧର୍ମ ।
ତୁ ନାଥ ସର୍ବ-କୁଳ-କର୍ମ ॥୨୦୮

ପିତୃଗଣ ଉବାଚ

ଆମ୍ଭର ଶ୍ରାଦ୍ଧ କର୍ମ ଯେତେ ।
ପୁତ୍ରେ କରନ୍ତି ବେଦମତେ ॥୨୦୯
ଆମ୍ଭ ଦିବସା-ଶ୍ରାଦ୍ଧକାଳେ ।
ଅସୁର ଭୁଞ୍ଜେ ଆସି ବଳେ ॥୨୧୦
ତିଳ ଉଦକ ଯେତେ ତୀର୍ଥେ ।
ପୁତ୍ରେ କରନ୍ତି ଧର୍ମମତେ ॥୨୧୧
ସେ ଶ୍ରାଦ୍ଧ ଜଳେ ପାନ କରେ ।
ଅର୍ପିତ ଦାନ ବଳେ ହରେ ॥୨୧୨
ଆମ୍ଭର ଜଳପିଣ୍ଡ ଯେତେ ।
ଥିଲା ଅସୁର ଗର୍ଭଗତେ ॥୨୧୩
ନଖ ଅଙ୍କୁରେ ତାହା ଚିରି ।
ଆମ୍ଭଙ୍କୁ ଦେଲୁ ନରହରି ॥୨୧୪
ସିଦ୍ଧେ କହନ୍ତି ଯୋଡ଼ି କର ।
ଶୁଣିମା ଦେବ ଚକ୍ରଧର ॥୨୧୫

ସିଦ୍ଧଗଣ ଉବାଚ

ଆମ୍ଭର ଯୋଗସିଦ୍ଧ ଗତି ।
ବଳେ ହରିଲା ଦୈତ୍ୟପତି ॥୨୧୬
ତାହାକୁ ନଖେ ବିଦାରିଲୁ ।
ତୁ ନାଥ ଆମ୍ଭଙ୍କୁ ରଖିଲୁ ॥୨୧୭
ତୋ'ର ଚରଣେ ନମସ୍କାର ।
ଯେଣୁ ତୁ ଶରଣ ସୋଦର ॥୨୧୮
କର ପ୍ରସାରି ବିଦ୍ୟାଧରେ ।
ବୋଲନ୍ତି ନୃସିଂହ ଛାମୁରେ ॥୨୧୯

ବିଦ୍ୟାଧର ଉବାଚ

ଆମ୍ଭର ଅନ୍ତର୍ଦ୍ଧାନ-ଗତି ।
ତୋ'ର ପ୍ରସାଦେ ସେ ପ୍ରାପତି ॥୨୨୦
ତାହାକୁ ପଶୁବଧ ପ୍ରାୟେ ।
ସଂହାର କଲୁ ଦେବରାୟେ ॥୨୨୧
ମାୟା-ନୃସିଂହ-ଅବତାର ।
ଆମ୍ଭେ ଯେ ଶରଣ ତୋହର ॥୨୨୨
ନାଗ ସକଳେ ଜଣାବନ୍ତି ।
ଶୁଣ ହେ ପ୍ରଭୁ ଲକ୍ଷ୍ମୀପତି ॥୨୨୩

ନାଗଗଣ ଉବାଚ

ଆମ୍ଭ ଫଣାରେ ଯେତେ ମଣି ।
ଯା' ଗୃହେ ଉତ୍ତମ ରମଣୀ ॥୨୨୪
ସର୍ବ ହରିଲା ବାହୁବଳେ ।
ଅଜେୟ ଭୁବନ ମଣ୍ଡଳେ ॥୨୨୫
ସେ ଭୟ ନିବାରି ଗୋବିନ୍ଦ ।
ଆମ୍ଭଙ୍କୁ ଦେଲୁ ତୁ ଆନନ୍ଦ ॥୨୨୬
ତୁ ନାଥ ସଂସାର ଉଦ୍ଧର ।
ତୋ'ର ଚରଣେ ନମସ୍କାର ॥୨୨୭

ମନୁଗଣ ଉବାଚ

ବିଧାତା-ବଂଶେ ଅବତରି ।
ତୋହର ଆଜ୍ଞା ଶିରେ ଧରି ॥୨୨୮

Dr. Sudhanshu Sekhar Mishra

ମନୁ ବୋଲାଉଁ ଏ ଜଗତେ ।
ଆମ୍ଭେ ଯେ ତୋହର ଆୟତେ ॥୨୨୯
ଧର୍ମେ ସଂସାର-ଜନ ପାଳୁ ।
ତୁ ନାଥ ପରମ ଦୟାଳୁ ॥୨୩୦
ତୋ'ର କିଙ୍କର ଆମ୍ଭ ଦେହ ।
କିବା କରିବୁ ଆଜ୍ଞା ଦିଅ ॥୨୩୧
ପ୍ରଜାପତିଏ ସ୍ତୁତି କରି ।
ବୋଲନ୍ତି ଶୁଣ ନରହରି ॥୨୩୨

ପ୍ରଜାପତିଗଣ ଉବାଚ

ତୋ' ପ୍ରଜା ସୃଷ୍ଟିର ପାଳନେ ।
ଆମ୍ଭଙ୍କୁ ସୃଜି ବିଦ୍ୟମାନେ ॥୨୩୩
ରଖିଲୁ ପ୍ରଜାପାଳ କରି ।
ଆମ୍ଭେ ତୋ ଆଜ୍ଞା ଶିରେ ଧରି ॥୨୩୪
ସୃଷ୍ଟି-ପାଳନ କରୁ ଭଲେ ।
ମାନବ-ପ୍ରଜାପତି ତୁଲେ ॥୨୩୫
ଅସୁର-ଭୟ ଚିତ୍ତେ ବହି ।
ସ୍ଥାନେ ନ ପାରୁ ଆମ୍ଭେ ରହି ॥୨୩୬
ସେ ବୀର ତୋ'ର ନଖଘାତେ ।
ମରି ପଡ଼ିଛି ଭୂମିଗତେ ॥୨୩୭
ତୁ ସତ୍ତ୍ୱମୂର୍ତ୍ତି ଦାମୋଦର ।
ଏ ତୋ ନୃସିଂହ ଅବତାର ॥୨୩୮
ଜଗତ-ମଙ୍ଗଳ-ବିଧାନ ।
ସଂସାର ରଖ ଭଗବାନ ॥୨୩୯
ଗନ୍ଧର୍ବେ ନୃସିଂହ ଚରଣେ ।
କହନ୍ତି ଭକ୍ତି ଅନୁମାନେ ॥୨୪୦

ଗନ୍ଧର୍ବଗଣ ଉବାଚ

ଭୋ ନାଥ ତୋହର ବଚନେ ।
ନିତ୍ୟେ ଦେବଙ୍କ ସନ୍ନିଧାନେ ॥୨୪୧
ନୃତ୍ୟ-ଖଟଣି ଗୀତ ସ୍ୱରେ ।
ଖଟୁ ଯେ ଥିଲୁ ନିରନ୍ତରେ ॥୨୪୨
ଏବେ ତାଣ୍ଡବେ ଦୈତ୍ୟ ପାଶେ ।
ନିରତେ ଖଟୁ ଅବକାଶେ ॥୨୪୩
ଭୟେ ନ ପାରୁ ସ୍ଥାନେ ରହି ।
ତାହାର ଆଜ୍ଞା ଶିରେ ବହି ॥୨୪୪
ଉତ୍ପଥଗାମୀ ଜନଙ୍କର ।
କେବେହେଁ ନାହିଁ ସୁଖସାର ॥୨୪୫
ତୋହର ଚରଣ ପ୍ରସାଦେ ।
ଆମ୍ଭେ ବର୍ତ୍ତିଲୁ ଅପ୍ରମାଦେ ॥୨୪୬
ଚାରଣେ ମିଳିଣ ଭଣନ୍ତି ।
ଶୁଣ ହେ ପ୍ରଭୁ ଶିରୀପତି ॥୨୪୭

ଚାରଣଗଣ ଉବାଚ

ଭୋ ହରି ଚରଣ ତୋହର ।
ଚତୁର ବର୍ଗ ସୁଖକର ॥୨୪୮
ସଂସାର ନିବୃତ୍ତ କାରଣ ।
ଭୋ ନାଥ ତୋହର ଚରଣ ॥୨୪୯
ସେ ପାଦସେବା ଆମ୍ଭେ ଛାଡ଼ି ।
ଅସୁର ଘରେ ବନ୍ଦୀ ପଡ଼ି ॥୨୫୦
ସେ ଘୋର ଦୁଃଖ ଏବେ ଗଲା ।
ଯେଣୁ ଅସୁରବୀର ମଲା ॥୨୫୧
ଯକ୍ଷ ସକଳେ ମନ ସ୍ଥିରେ ।
କହନ୍ତି ନୃସିଂହ ଛାମୁରେ ॥୨୫୨

ଯକ୍ଷଗଣ ଉବାଚ

ସେବକ ଲୋକେ ଆମ୍ଭେ ତୋ'ର ।
ନିରତେ ଚରଣେ କିଙ୍କର ॥୨୫୩
ଅନେକ ପୁଣ୍ୟ ସାଧି ପୂର୍ବେ ।
ତୋ'ର ଚରଣ ସେବୁ ଆମ୍ଭେ ॥୨୫୪
ଆମ୍ଭକୁ ଦିତିସୁତ ନେଇ ।
ବାହାନ କରେ ଦୁଃଖ ଦେଇ ॥୨୫୫
ସେ ଦୈତ୍ୟ ଜନ ପରିତାପେ ।
ପ୍ରାଣ ଛାଡ଼ିଲା ତୋ'ର କୋପେ ॥୨୫୬
କହନ୍ତି କିଂପୁରଷ ମାନ ।
ଶୁଣିମା ପ୍ରଭୁ ଭଗବାନ ॥୨୫୭

କିଂପୁରୁଷଗଣ ଉବାଚ

ତୁ ମହାପୁରୁଷ ଈଶ୍ୱର ।
ଆମ୍ଭେ କିଂକରଗଣ ତୋ'ର ॥୨୫୮
କୁତ୍ସିତ-ପୁରୁଷ ଏ ନଷ୍ଟ ।
ସାଧୁ ବର୍ଜିତ ମହାଦୁଷ୍ଟ ॥୨୫୯
ଅନ୍ୟାୟ କର୍ମ ଆଚରିଲା ।
ତୋ'ର ପ୍ରତାପେ ନାଶଗଲା ॥୨୬୦

ବୈତାଳିକଗଣ ଉବାଚ

ଆମ୍ଭେ ସାଧୁଙ୍କ ସଭାମଧ୍ୟେ ।
ଯଜ୍ଞ-ଆରମ୍ଭ-ପରିବନ୍ଧେ ॥୨୬୧
ତୋ'ର ନିର୍ମଳ-ଯଶ ଗାଇ ।
ସତ୍କାର-ପୂଜା-ଧର୍ମ ପାଇ ॥୨୬୨
ଆନନ୍ଦେ ଭୁଞ୍ଜୁ ସାଧୁମେଳେ ।
ଏ ମହାସୁର ତାହା ବଳେ ॥୨୬୩
ତୋହର ଯଶ ନାଶ କଲା ।
ଆମ୍ଭଙ୍କୁ ମହାଦୁଃଖ ଦେଲା ॥୨୬୪
ଏ ଆମ୍ଭ ଦେହେ ବ୍ୟାଧି ଥିଲା ।
ତୋ' ଉଗ୍ରତେଜେ ନାଶ ଗଲା ॥୨୬୫
କିନ୍ନରଗଣ ହରି ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୨୬୬

କିନ୍ନରଗଣ ଉବାଚ

ତୋ'ର କିଙ୍କରଗଣ ଆମ୍ଭେ ।
ତୋ ଅନୁଗ୍ରହେ ଥାଉଁ ଦମ୍ଭେ ॥୨୬୭
ଏ ଦିତିସୁତ ମହାନଷ୍ଟ ।
ଆମ୍ଭଙ୍କୁ ଦେଲା ଅତି କଷ୍ଟ ॥୨୬୮
ଏବେ ଅସୁର ନାଶ କଲୁ ।
ଆମ୍ଭର ମାନ ଉଦ୍ଧରିଲୁ ॥୨୬୯
ତୁ ନାଥ ଦେବଙ୍କର ଦେବ ।
ଆମ୍ଭର ମଙ୍ଗଳ-ବିଭବ ॥୨୭୦
ଶ୍ରୀବିଷ୍ଣୁ-ପାରିଷଦ ଗଣ ।
ବୋଲନ୍ତି ଦେବଦେବ ଶୁଣ ॥୨୭୧

ବିଷ୍ଣୁପାରିଷଦଗଣ ଉବାଚ

ଭୋ ନାଥ ଏ ରୂପ ତୋହର ।
ଅଦ୍‌ଭୁତ ମହାଭୟଙ୍କର ॥୨୭୨
ନୟନେ ଦେଖି ସର୍ବଜନେ ।
ଭୟେ କମ୍ପିଲେ ତ୍ରିଭୁବନେ ॥୨୭୩
ତାହାଙ୍କ କର୍ମଦାତା ତୁହି ।
ଆମ୍ଭଙ୍କୁ ନାଥ କଲୁ ତ୍ରାହି ॥୨୭୪
ଯେଣୁ ନାଶିଲୁ ମହାସୁର ।
ଆମ୍ଭଙ୍କୁ ଅନୁଗ୍ରହ କର ॥୨୭୫

Dr. Sudhanshu Sekhar Mishra

କହେ ନାରଦ ମହାରଷି ।
ଶୁଣ ପାଣ୍ଡବ ସୋମବଂଶୀ ॥୨୭୬
ଏମନ୍ତେ ନୃସିଂହ ସମ୍ମୁଖେ ।
ସ୍ତୁତି ବଚନେ ଏକେ ଏକେ ॥୨୭୭
କହି କରାଇ ତୋଷ ମନ ।
ଏବେ ହୋ ସାଧୁଜନେ ଶୁଣ ॥୨୭୮
ନାରଦ ଯୁଧିଷ୍ଠିର ଆଗେ ।
ଯାହା କହିଲେ ଅନୁରାଗେ ॥୨୭୯
ସୁଜନେ ଜନେ ଏହା ଶୁଣି ।
ତରିବେ ଭବ ତରଙ୍ଗିଣୀ ॥୨୮୦
ଅଦ୍‌ଭୁତ ନୃସିଂହ-ଚରିତ ।
କହିଲା ଦାସ ଜଗନ୍ନାଥ ॥୨୮୧

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମସ୍କନ୍ଧେ ପ୍ରହ୍ଲାଦାନୁଚରିତେ
ଦୈତ୍ୟରାଜବଧୋନାମ ନୃସିଂହସ୍ତବୋ
ନାମାଷ୍ଟମୋଽଧ୍ୟାୟଃ ॥

## ନବମ ଅଧ୍ୟାୟ

### ନାରଦ ଉବାଚ

ବ୍ରହ୍ମାଦି ଯେତେ ଦେବଗଣେ ।
ନୃସିଂହ ମୂରତି ଦର୍ଶନେ ॥୧
କାତରେ ନାନା ସ୍ତୁତି କଲେ ।
ସମୀପେ ରହି ନ ପାରିଲେ ॥୨
ଲକ୍ଷ୍ମୀ ଅଣାଇ ଦେବଗଣେ ।
ବିଶ୍ୱାସେ ମିଳିଲେ ଚରଣେ ॥୩
ବୋଇଲେ ଯାଅ ଜନମାତ ।
ଶାନ୍ତି କରାଅ ତୋ'ର କାନ୍ତ ॥୪
ଦେବଙ୍କ ବଚନେ କମଳା ।
ଭାବେ କେତେହେଁ ଦୂର ଗଲା ॥୫
ଅଦୃଷ୍ଟ ପୂର୍ବ ରୂପ ଚାହିଁ ।
ସନ୍ନିଧେ ନ ପାରିଲେ ଯାଇ ॥୬
ନିକଟେ ପ୍ରହଲ୍ଲାଦ ଆଣି ।
ବିଶ୍ୱାସେ କହେ କୁଶପାଣି ॥୭
ନୃସିଂହ ପାଶ ବେଗେ ଯାଇ ।
ସ୍ତୁତିରେ ତୋଷ କର ତୁହି ॥୮
ଭୟେ ନ ପାରୁ ଆମ୍ଭେ ଯାଇ ।
ତକ୍ଷଣେ ବ୍ରହ୍ମା ଆଜ୍ଞା ପାଇ ॥୯
ନୃସିଂହ ନିକଟେ ମିଳିଲା ।
କରଅଞ୍ଜଳି ଶିରେ ଦେଲା ॥୧୦
ଚରଣ ତଳେ ଶିର ଦେଇ ।
ନମିଲା ଦଣ୍ଡବତ ହୋଇ ॥୧୧
ଦେଖି ନୃସିଂହ ଦୟାଚିତ୍ତେ ।
ଆନନ୍ଦେ ଧରି ତା'ଙ୍କୁ ହସ୍ତେ ॥୧୨
ଭୂମିରୁ ଟେକି ବସାଇଲେ ।
ହସ୍ତପଙ୍କଜ ଶିରେ ଦେଲେ ॥୧୩
ସେ ପଦ୍ମକରର ମହିମା ।
କି ଦେବା ତହିଁକି ଉପମା ॥୧୪
କାଳଭୁଜଙ୍ଗ ଭୟ ପାଇ ।
ଯେ ପ୍ରାଣୀ ଶରଣ ପଶଇ ॥୧୫
ସେ ପଦ୍ମକର ରଖେ ତା'ରେ ।
ବେଗେ ପଶଇ ସୁଖ ଘରେ ॥୧୬
ନୃସିଂହ କର ଲାଗି ଶିରେ ।
ଅଶୁଭ ଗଲା ଅତି ଦୂରେ ॥୧୭
ତକ୍ଷଣେ ଜ୍ଞାନ ପ୍ରକାଶିଲା ।
ଆନନ୍ଦେ ଅସୁରର ବଳା ॥୧୮
ନୃସିଂହ-ଚରଣ-କମଳେ ।
ମନ ନିରୋପିଲା ନିଷ୍ଟଳେ ॥୧୯
ରୋମ ପୁଲକ ତା'ର ଦେହେ ।
ଆନନ୍ଦେ ଅଶ୍ରୁଜଳ ବହେ ॥୨୦
ଏକାଗ୍ରେ ମନ ଦୃଢ଼ କରି ।
ସେ ରୂପ ଅନ୍ତର୍ଗତେ ଭରି ॥୨୧
ଚରଣେ ଦେଇ ବେନିପାଣି ।
କଣ୍ଠ ଗଦ୍‌ଗଦେ କହେ ବାଣୀ ॥୨୨
ବ୍ରହ୍ମାଦି ଦେବଙ୍କ ବିଷୟେ ।
ଯେଣେ ନୃସିଂହ ଦୟାବହେ ॥୨୩
ଆମ୍ଭର ନିସ୍ତାରଣ ଅର୍ଥେ ।
ସଂସାରୁ ତରିବା ନିମନ୍ତେ ॥୨୪
ତ୍ରିଚତ୍ୱାରିଂଶ ପଦ ଶ୍ଳୋକେ ।
ସ୍ତୁତି କରଇ ଏକେ ଏକେ ॥୨୫

### ପ୍ରହ୍ଲାଦ ଉବାଚ

ବ୍ରହ୍ମାଦି ସିଦ୍ଧ ମୁନିଗଣେ ।
ସ୍ୱଭାବ ସାତ୍ତ୍ୱିକ ଲକ୍ଷଣେ ॥୨୬
ଅମୃତ-ବଚନ-ପ୍ରବାହେ ।
ନିର୍ମଳ-ବିଶୁଦ୍ଧ-ହୃଦୟେ ॥୨୭
ନାନା ପ୍ରକାରେ ସ୍ତୁତି କରି ।
ଆରାଧି ନ ପାରିଲେ ହରି ॥୨୮
ମୁଁ ଛାର ଅସୁର ହୋଇଣ ।
କାହୁଁ ତୋଷିବି ନାରାୟଣ ॥୨୯
ଧନ ସତ୍‌କୁଳ ଅବା ରୂପ ।
ପଣ୍ଡିତ ପଣ ତେଜ ତପ ॥୩୦
ବଳ ପୌରୁଷ ବୁଦ୍ଧି ଯୋଗ ।
ଓଜ ବିଭୂତି ବାରମାର୍ଗ ॥୩୧
ଏ ଆଦି ଯେତେ ଗୁଣଗ୍ରାମ ।
ନୁହଁନ୍ତି ବିଷ୍ଣୁ ତୋଷେ କ୍ଷମ ॥୩୨
କେବଳ ଭକ୍ତିଯୋଗେ ତୋଷ ।
ଯେସନେ ଗଜେନ୍ଦ୍ର-ବିଶ୍ୱାସ ॥୩୩
ଦ୍ୱାଦଶ ଗୁଣେ ବିପ୍ର ଯୁକ୍ତ ।
ସେ ଯେବେ ନୋହେ ବିଷ୍ଣୁ ଭକ୍ତ ॥୩୪
ସେ ବିପ୍ରଶ୍ରେଷ୍ଠ ନ ବୋଲାଇ ।
ସଂସାରୁ ତରିବ ସେ କାହିଁ ॥୩୫
ଯେହୁ ଦ୍ୱାଦଶ ଗୁଣ ଧରେ ।
ସେ ବିପ୍ର ସଂସାର-ବେଭାରେ ॥୩୬
ସ୍ୱଭାବେ ସତ୍ୟ ଶମ ଦମ ।
ଅହିଂସା ତପ କ୍ଷମାଧର୍ମ ॥୩୭
ଆର୍ଜବ ଦାନ ବ୍ରତ ଧୃତି ।
ଶଉଚ ଶ୍ରୁତ ଆଦି କୃତି ॥୩୮
ଦ୍ୱାଦଶ ବ୍ରାହ୍ମଣ ଲକ୍ଷଣ ।
ବେଦେ ବର୍ଣ୍ଣିତ ଏତେ ଗୁଣ ॥୩୯
ଏମନ୍ତ ବିପ୍ର ହୋଇ ଯେବେ ।
ଭକ୍ତି ନ କରେ କୃଷ୍ଣ ଭାବେ ॥୪୦

Dr. Sudhanshu Sekhar Mishra

ଚଣ୍ଡାଳ ଜନ୍ମ ହୋଇ ଯେବେ ।
ମନ ଅର୍ପିଇ କୃଷ୍ଣ ଭାବେ ॥୪୧
ଆତ୍ମା ପବିତ୍ର ବେଗେ କରେ ।
ଚଣ୍ଡାଳ କୁଳକୁ ଉଦ୍ଧରେ ॥୪୨
ବ୍ରାହ୍ମଣ ସର୍ବମାନ୍ୟ ହୋଇ ।
ଆତ୍ମା ଉଦ୍ଧରି ନ ପାରଇ ॥୪୩
ଯେ ହରି ନିତ୍ୟ ଶୁଦ୍ଧଜ୍ଞାନ ।
ଆତ୍ମା ପ୍ରକାଶେ ନିରଞ୍ଜନ ॥୪୪
ସେ କାହିଁ ଅଜ୍ଞାନ-ସଂଙ୍କଳ୍ପେ ।
ଆଦର ନାନା ପୂଜା ରୂପେ ॥୪୫
ଯେଣୁ ଦୟାଳୁ ସେ ବୋଲାଇ ।
ଏଣୁ ଭରସା ପ୍ରାଣୀ ପାଇ ॥୪୬
କରନ୍ତି ପୂଜା ବିଧି ଯେତେ ।
ଆତ୍ମା ମଙ୍ଗଳ ପ୍ରାପ୍ତି ଅର୍ଥେ ॥୪୭
ସ୍ୱଭାବେ ନିଜ ମୁଖ ବେଶ ।
ଯେସନେ ଦର୍ପଣେ ପ୍ରକାଶ ॥୪୮
ତେଣୁ ଭରସା ପାଇ ମୁହିଁ ।
ଈଶ୍ୱର-ମହିମା ବର୍ଣ୍ଣଇ ॥୪୯
ଯଦ୍ୟପି ନୀଚ ଦେହ ମୋ'ର ।
ସ୍ତବନେ ନାହିଁ ଅଧିକାର ॥୫୦
ତଥାପି ବୁଦ୍ଧି ଯେତେ ମୋ'ର ।
ସ୍ତୁତି କରିବି ତୋ' ଛାମୁର ॥୫୧
ଅବିଦ୍ୟାବଳେ ଏ ସଂସାରେ ।
ଏ ଜୀବ ଅଶେଷ ପ୍ରକାରେ ॥୫୨
କର୍ମର ବଳେ ସଞ୍ଚରଇ ।
ତୋ'ର ଭଜନେ ସେ ତରଇ ॥୫୩
ତୁ ସତ୍ୟଧାମ ଦାମୋଦର ।
ମୁହିଁ ଯେ ତୋହର କିଙ୍କର ॥୫୪
ବ୍ରହ୍ମାଦି ଯେତେ ଦେବଗଣେ ।
ସେ ସର୍ବେ ତୋହର ଚରଣେ ॥୫୫
ତୋତେ ଚିନ୍ତନ୍ତି ଭୟଚିତ୍ତେ ।
ପାଦେ ସେବନ୍ତି ଅବିରତେ ॥୫୬
ଏଣୁ ସଂସାର ରକ୍ଷା ଅର୍ଥେ ।
ତୋ' ଅବତାର ଏ ଜଗତେ ॥୫୭
ତେଣୁ ତୋ' କୋପ ତୁ ସଂହର ।
ତୁ ନାଥ ଜଗତ ଈଶ୍ୱର ॥୫୮

ତୁ ଏ ଅସୁର ହତ କଲୁ ।
ସଂସାର ଭୟ ନିବାରିଲୁ ॥୫୯
ଆନନ୍ଦ ସାଧୁଙ୍କର ମନେ ।
ସର୍ପ-ବୃଶ୍ଚିକ-ନାଶେ ଯେହ୍ନେ ॥୬୦
ଲୋକେ ଆନନ୍ଦେ ସ୍ଥିରମନେ ।
ଭଜିଲେ ତୋହର ପ୍ରସନ୍ନେ ॥୬୧
ଶୁଣ ହେ ପ୍ରଭୁ ଚକ୍ରଧର ।
ଏ ରୂପ ମହାଭୟଙ୍କର ॥୬୨
ଏବେ ଏ ଭୟ ରୂପ ହର ।
ଲୋକଙ୍କ ଭୟକୁ ସଂହର ॥୬୩
ଜିହ୍ୱା ଚଞ୍ଚଳ ସୌଦାମିନୀ ।
ପ୍ରଳୟାଳନ ନେତ୍ର ବେନି ॥୬୪
ଭ୍ରୂକୁଟି କୁଟୀଳ ପ୍ରଚଣ୍ଡ ।
ଦଂଷ୍ଟ୍ରା କରାଳ ପାଟିତୁଣ୍ଡ ॥୬୫
ଅସୁର-ହୃଦୟ-ରୁଧିରେ ।
ତା' ଅନ୍ତ-ପୁଷ୍ପମାଳ ଭରେ ॥୬୬
କେଶର ଦିଶେ ଶୋଣି ବର୍ଣ୍ଣ ।
ରୁଧିରେ ରଙ୍ଗ ବେନିକର୍ଣ୍ଣ ॥୬୭
ତୁମ୍ବର ଘୋର ନାଦ ଶୁଣି ।
ପ୍ରଳୟ-ବଜ୍ର ପ୍ରାୟ ମଣି ॥୬୮
ଐରାବତ ଆଦି ନାଗେ ।
ପଳାଇ ଗଲେ ଅଷ୍ଟ ଦିଗେ ॥୬୯
ଅନଳ ପ୍ରାୟ ନଖପନ୍ତି ।
ଅସୁର ରୁଧିର ପିବନ୍ତି ॥୭୦
ଏମନ୍ତ ରୂପ ତୋ'ର ଚାହିଁ ।
ଭୋ ନାଥ ମୋ'ର ଭୟ ନାହିଁ ॥୭୧
ତୁ ନାଥ ଶରଣ-ବତ୍ସଳ ।
ଅବ୍ୟୟ ଆତ୍ମା ଆଦିମୂଳ ॥୭୨
ତୋ'ର ସଂସାର ଚକ୍ରେ ପଡ଼ି ।
ଆତ୍ମାର ନିଜ ପଥ ହୁଡ଼ି ॥୭୩
ସେ ମାୟାଚକ୍ର ମୋତେ ଘେନି ।
କାଳେ ଭ୍ରମଇ ନାନା ଯୋନି ॥୭୪
ସ୍ୱକର୍ମ ବନ୍ଧେ ମୋ' ଜୀବନ ।
ଏଣୁ ହରାଇ ନିଜ ଜ୍ଞାନ ॥୭୫
ଏବେ ତୋହର ପାଦମୂଳେ ।
ଶରଣ ପଶିଲି ନିଷ୍ଠଳେ ॥୭୬

ତୋତେ ନ ଭଜି ନାରାୟଣ ।
ମୋ'ର ଜୀବନ ଗତି ଶୁଣ ॥୭୭
ଏ ଘୋର ସଂସାର-ସାଗରେ ।
ଜନ୍ମ-ମରଣ ଅଭ୍ୟନ୍ତରେ ॥୭୮
ସଂଯୋଗ-ବିଯୋଗ ଅଜ୍ଞାନ ।
ଶୋକ-ଅନଳେ ଦହେ ମନ ॥୭୯
ଏ ଦେହେ ସର୍ବ ଦୁଃଖ ବ୍ୟାଧି ।
ତୋହର ଚରଣ ଔଷଧି ॥୮୦
ସେ ପାଦ ଛାଡ଼ି ମୁହିଁ ଦୂରେ ।
ଭ୍ରମଇଁ ଘୋର ଅନ୍ଧକାରେ ॥୮୧
ଏବେ ଏମନ୍ତ ଆଜ୍ଞା କର ।
ଯେମନ୍ତେ ସେବିବି ପୟର ॥୮୨
ତୁ ନାଥ ପ୍ରାଣୀଙ୍କ ଜୀବନ ।
ପ୍ରିୟ-ଦେବତା ବନ୍ଧୁଜନ ॥୮୩
ତୋହର ଲୀଳା-କ୍ରୀଡ଼ା ବାଣୀ ।
ବିରଞ୍ଚି ସଭା ମଧ୍ୟେ ଭଣି ॥୮୪
ମୁଁ ତୋ'ର ଲୀଳା ଗୁଣ ଗୁଣି ।
ତରିବି ଭବ-ତରଙ୍ଗିଣୀ ॥୮୫
ତୋ' ପାଦ-ପଦ୍ମବନ ମଧ୍ୟେ ।
ଯେ ହଂସ ଖେଳନ୍ତି ଆନନ୍ଦେ ॥୮୬
ତାହାଙ୍କ ସଙ୍ଗୀ ମୋତେ କର ।
ଏ ମାୟା-ସଂସାରୁ ଉଦ୍ଧର ॥୮୭
ବାଳକ ରକ୍ଷଣ ସଂସାରେ ।
ପିତାମାତା ହେଁ ନାହିଁ ପରେ ॥୮୮
ଅଗାଧ-ସମୁଦ୍ର ଲଙ୍ଘନେ ।
ପ୍ରାଣୀଙ୍କି ନଉକା ଯେସନେ ॥୮୯
ପଥେ-ତୃଷିତ-ପ୍ରାଣୀ ଯେହ୍ନେ ।
ଜୀବନ ରଖେ ଜଳପାନେ ॥୯୦
ବ୍ୟାଧିରେ ଆର୍ତ୍ତ ହେଲେ ଜନ ।
ଔଷଧି ହୁଅଇ ଶରଣ ॥୯୧
ମାତ୍ର ତୋ' ପାଦ କୃପା ବିନେ ।
ଏ କେହି ନୁହଁନ୍ତି କାରଣେ ॥୯୨
ଏମନ୍ତ ତୋ' ପଦ୍ମଚରଣେ ।
ଏଣୁ ମୁଁ ପଶିଲି ଶରଣେ ॥୯୩
ଭୋ ନାଥ ତୋ'ର ମାୟାବଳେ ।
ପ୍ରକୃତି ଏ ମାୟା ଶୟଳେ ॥୯୪

Dr. Sudhanshu Sekhar Mishra

କାଳର ବଳେ ସଙ୍ଗ ହୋଇ ।
ଯାହାକୁ ଯେମନ୍ତ ଭାବଇ ॥୯୫
ଯେଣେ ଯାହାକୁ ନିଯୋଜଇ ।
ସେ ଫଳ ତା'ର ହସ୍ତେ ଦେଇ ॥୯୬
କାହୁଁ ଆସଇ କାହିଁ ଥାଇ ।
କାହାକୁ କାହିଁ ନେଇ ଥୋଇ ॥୯୭
ଜୀବକୁ କରେ ନାନା ଗତି ।
ଏମନ୍ତେ ପ୍ରଧାନ ପ୍ରକୃତି ॥୯୮
ସେ ଜୀବ ତୋ'ର ସଙ୍ଗେ ରହେ ।
ଭାବେ ଭ୍ରମଇଁ ସର୍ବଦେହେ ॥୯୯
ଏ ଜୀବ ତୋ'ର ଅଂଶୁ ଜାତ।
ତୋହର ବଶ ଏ ଜଗତ ॥୧୦୦
କାଳର ବଳେ ବଶ ହୋଇ ।
ଦେହ-ବନ୍ଧନେ ବଦ୍ଧ ଦେହୀ ॥୧୦୧
ସଂସାର ଚକ୍ର ଷୋଡ଼ଶାରେ ।
କର୍ମେ ଭ୍ରମଇ ନିରନ୍ତରେ ॥୧୦୨
ଦଶଇନ୍ଦ୍ରିୟ ମନ ବନ୍ଧେ ।
ଶବ୍ଦ ସ୍ପର୍ଶ ରୂପ ଗନ୍ଧେ ॥୧୦୩
ରସେ ରସଇ ସର୍ବକାଳେ ।
ଏମନ୍ତେ ଭ୍ରମେ ମହୀତଳେ ॥୧୦୪
ଏମନ୍ତ ଚକ୍ରେ ଜୀବ ବସି ।
କର୍ମ-ବିଷୟ ରସେ ରସି ॥୧୦୫
ଚକ୍ରେ ଭ୍ରମଇ ଦୁଃଖ ସହି ।
ତୋ' ବିନୁ ତା'ର ମୋକ୍ଷ ନାହିଁ ॥୧୦୬
ନିତ୍ୟ ବିଜିତ ଆତ୍ମାଗୁଣ ।
ସ୍ୱତେଜବଳେ ନାରାୟଣ ॥୧୦୭
ଏ କାଳ ଆତ୍ମା ବଶ କରି ।
ବିସର୍ଗ-ଶକ୍ତିକି ବିସ୍ତାରି ॥୧୦୮
ସେ ସୃଷ୍ଟି କାଳଚକ୍ରେ ଥୋଇ।
ସେ ଚକ୍ରେ ଜୀବକୁ ବସାଇ ॥୧୦୯
ପେଡ଼ଇ ଇକ୍ଷୁଦଣ୍ଡ ପ୍ରାୟେ ।
ଏଣୁ ଡରଇ ମୋ'ର କାୟେ ॥୧୧୦
ଏବେ ମୁଁ ତୋ' ଶରଣାଗତ ।
ଚକ୍ରୁ ଉଦ୍ଧର ମୋତେ ନାଥ ॥୧୧୧
ମୁଁ ଏବେ ଦେଖିଲି ପ୍ରତ୍ୟକ୍ଷେ।
ଭୋ ନାଥ ତୋହର ସମକ୍ଷେ ॥୧୧୨

ବ୍ରହ୍ମାଣ୍ଡ ମଧ୍ୟେ ଯେତେ ଦେବା।
ମନୁଷ୍ୟ କରେ ତାଙ୍କୁ ସେବା ॥୧୧୩
ଇଚ୍ଛନ୍ତି ଅଇଶ୍ୱର୍ଯ୍ୟ ଭୋଗ ।
ସାତ୍ତ୍ୱିକ ସଂଯୋଗ ବିଯୋଗ ॥୧୧୪
ଏ ଦେବେ ମୋ'ର ପିତା ତ୍ରାସେ ।
ଦଣ୍ଡେ ନ ଥାନ୍ତି ଅବକାଶେ ॥୧୧୫
ତାହାର ଭ୍ରୂକୁଟୀ କୁଟୀଳେ ।
ଭୟେ ପଶନ୍ତି ଅନ୍ତରାଳେ ॥୧୧୬
ତୁ ଏବେ ତାହାକୁ ସଂହାରି ।
ରଖିଲୁ ସର୍ବଦେବ ଶିରୀ ॥୧୧୭
ତେଣୁ ଯେ ପ୍ରାଣୀଙ୍କ ଆଶିଷ ।
ଯେ ଫଳ ଏ ଭୂତ ଭବିଷ୍ୟ ॥୧୧୮
ଆୟୁ ସମ୍ପଦ ଭୋଗ ଅର୍ଥ ।
ଇନ୍ଦ୍ରିୟ ସୁଖର ପ୍ରାପତ ॥୧୧୯
ସେ ସର୍ବବାଞ୍ଛା ତୋ'ର ବଳେ।
କାଳ ହରଇ ଅବହେଳେ ॥୧୨୦
ତେଣେ ମୋହର କାର୍ଯ୍ୟ ନାହିଁ ।
ତୋ' ପାଦେ ରଖ ଭାବଗ୍ରାହୀ ॥୧୨୧
ତୋ' ମାୟା-ସଂସାର-ସାଗରେ।
ସ୍ୱପ୍ନ ମୃଗତୃଷ୍ଣା ପ୍ରକାରେ ॥୧୨୨
ଏ କଳେବରର ମହିମା ।
ଅଶେଷ ରୋଗଙ୍କର ସୀମା ॥୧୨୩
ଏ ସର୍ବ ଶ୍ରୁତି ମୁଖେ ଶୁଣି ।
ସ୍ୱପ୍ନର ପ୍ରାୟେ ପରିମାଣି ॥୧୨୪
ଅଛଇ ତୋ'ର ମାୟାମୋହେ ।
କେବେ ହିଁ ବିରକତ ନୋହେ ॥୧୨୫
କାମ ଅନଳ ମଧୁ ଲୋଭେ ।
କେମନ୍ତେ ଲିଭିବ ସ୍ୱଭାବେ ॥୧୨୬
ମୋହର ଜନ୍ମ ରଜଗୁଣେ ।
ଅଧିକ ତାମସ ଲକ୍ଷଣେ ॥୧୨୭
ଅସୁରକୁଳେ ଜାତ ମୁହିଁ ।
ତୋ' ଅନୁକମ୍ପା ଅବା କାହିଁ ॥୧୨୮
ଭୋ ନାଥ ମୋ'ର ଶିରେ ଆଣି ।
ପ୍ରସନ୍ନେ ଦେଲୁ ପଦ୍ମପାଣି ॥୧୨୯
ତୋ'ର ପ୍ରସାଦ ପଦ୍ମନାଭ ।
ବ୍ରହ୍ମା ଶଙ୍କରରେ ଦୁର୍ଲ୍ଲଭ ॥୧୩୦

କମଳା ତୋ'ର ହୃଦେ ଥାଇ ।
ତୋ' ଭାବ ଲଭି ନ ପାରଇ ॥୧୩୧
ତୋ'ର ମହିମା ଭାବଗ୍ରାହୀ ।
ପର-ଅପର ତୋର ନାହିଁ ॥୧୩୨
ଏ ଜୀବ ପରାପର ଜାଣେ ।
ସଂସାର ଗତି ନ ପ୍ରମାଣେ ॥୧୩୩
ଉତ୍ତମ ସେବା ତୋ ଚରଣେ ।
ଯେ ପ୍ରାଣୀ କରେ ଅନୁକ୍ଷଣେ ॥୧୩୪
ସେ ପାଦ ଯା'ରେ ଦୟା କରେ ।
ପ୍ରସନ୍ନ କଳ୍ପଦ୍ରୁମ ତାରେ ॥୧୩୫
ସେବାନୁରୂପେ ଫଳ ପାଇ ।
ପର-ଅପର ତୋ'ର ନାହିଁ ॥୧୩୬
ଏମନ୍ତେ ଭବବନ୍ଧ-କୂପେ ।
ବେଢ଼ି ଅଛନ୍ତି କାଳ ସର୍ପେ ॥୧୩୭
ସେ କୂପେ ପଡ଼ି ସର୍ବଜନେ ।
କାମ କଳ୍ପନ୍ତି ନିତ୍ୟ ମନେ ॥୧୩୮
ତାହାଙ୍କ ସଙ୍ଗତରେ ଥାଇ ।
ସେ କାମ କଳ୍ପୁଥାଇ ମୁହିଁ ॥୧୩୯
ନାରଦ ମୁନି ବେଦମୟ ।
ସେ ମୋତେ କଲେ ଅନୁଗ୍ରହ ॥୧୪୦
ଏଣୁ ସାଧୁଙ୍କ ସଙ୍ଗେ ଭାବି ।
ତୋ' ସେବା କେମନ୍ତେ ଛାଡ଼ିବି ॥୧୪୧
ଅନନ୍ତ ମୋ ପ୍ରାଣ ରକ୍ଷଣ ।
ପିଅର ମରଣ କାରଣ ॥୧୪୨
ଭକ୍ତ-ରକ୍ଷଣ ବାକ୍ୟ ମତେ ।
ତୋ' ଅବତାର ଏ ଜଗତେ ॥୧୪୩
ମୋ' ପିତା ଖଡ୍‌ଗ ଧରି ହସ୍ତେ।
ପ୍ରତିଜ୍ଞା କଲା ମୋ ଅଗ୍ରତେ ॥୧୪୪
ବୋଇଲା ଦେଖା ତୋ ଠାକୁର।
ନୋହିଲେ ଛେଦିବଇଁ ଶିର ॥୧୪୫
ମୁହିଁ ଈଶ୍ୱର ତିନି ପୁରେ ।
ମୋ' ତହୁଁ କେବା ଅଛି ପରେ ॥୧୪୬
ଏଣୁ ମୋ ବାକ୍ୟ ସତ୍ୟ କରି।
ତୋ' ଅବତାର ନରହରି ॥୧୪୭
ତୁ ଏ ଜଗତେ ଦେହ ଧରି ।
ଜନଙ୍କ ମଧ୍ୟେ ଅବତରି ॥୧୪୮

Dr. Sudhanshu Sekhar Mishra

ପ୍ରକାଶୁ ସ୍ଥୂଳ ସୂକ୍ଷ୍ମ ରୂପେ ।
ଏବେ ରହୁ ନିର୍ଲେପ ରୂପେ ॥୧୪୯

ତ୍ରିଗୁଣ ସର୍ଜୁ ଗୁଣମୟେ ।
ମାୟା ପ୍ରକାଶୁ ନାନାଦେହେ ॥୧୫୦

ବିହରୁ ଗୁଣ ମଧ୍ୟେ ପଶି ।
କେ କହୁ ତୋ' ରୂପ ବିଶେଷି ॥୧୫୧

ସତ ଅସତ ଏ ଜଗତ ।
ତୋ' ତହୁଁ ନାହିଁ ଭିନ୍ନ ମତ ॥୧୫୨

ମାୟାରେ ଆତ୍ମ ପର କରେ ।
ବିଅର୍ଥେ ବୁଦ୍ଧିରେ ବିଚାରେ ॥୧୫୩

ପ୍ରକାଶ ସ୍ଥିତି ଅନ୍ତ ସୃଷ୍ଟି ।
ତରୁ-ପଲ୍ଲବେ ଯେହ୍ନେ ଅଷ୍ଟି ॥୧୫୪

ତୁ ଏ ଜଗତେ ଆତ୍ମବଳେ ।
ଆତ୍ମାରେ ଥାଉ ଅନ୍ତଃକାଳେ ॥୧୫୫

ସୃଷ୍ଟି ସଂହାରି ମାୟାବଳେ ।
ନାଗ ଶୟନେ ତୁ ନିଶ୍ଚଳେ ॥୧୫୬

ତୋ' ନିଜ ସୁଖେ ଅନୁଭବ ।
ନିରୀହ ରୂପ ପଦ୍ମନାଭ ॥୧୫୭

ମୁଦ୍ରିତ ଲୋଚନେ ମୁରାରି ।
ନିଦ୍ରାକୁ ହୃଦରେ ସଂହାରି ॥୧୫୮

ତୁରୀୟେ ସୁଖେ ରହୁ ତୁହି ।
ତ୍ରିଗୁଣେ ତୋ'ର କାର୍ଯ୍ୟ ନାହିଁ ॥୧୫୯

ସେ ଗୁଣମୟ ତୋ' ଶରୀରେ ।
ଚେତଇ ନିଦ୍ରା ଅଭ୍ୟନ୍ତରେ ॥୧୬୦

କାଳର ବଳେ ତୋ' ନୟନେ ।
ଯୋଗ ସମାଧି ଅବସାନେ ॥୧୬୧

ତୋ' ନାଭି ମଧ୍ୟେ ଜଳ କଣେ ।
ବୀଜ ପ୍ରକାଶେ ତତକ୍ଷଣେ ॥୧୬୨

ବୀଜୁ ଯେସନେ ବଟ ହୋଇ ।
ପଦ୍ମ ମୃଣାଳ ପ୍ରକାଶଇ ॥୧୬୩

ସେ ପଦ୍ମ ମଧ୍ୟୁ ବ୍ରହ୍ମା ଜାତ ।
ନ ଜାଣେ ଆତ୍ମାର ବୃତ୍ତାନ୍ତ ॥୧୬୪

ତୁ ବୀଜ ଆତ୍ମା ତା ଶରୀରେ ।
ପ୍ରକାଶୁ ବାହ୍ୟ ଅଭ୍ୟନ୍ତରେ ॥୧୬୫

ତାହା ନ ଜାଣି ବେଦମୁଖ ।
ଆରତେ ଖୋଜିଲେ ଅନେକ॥୧୬୬

କାହୁଁ ଅଇଲି ବୋଲି ଚିନ୍ତି ।
ଭୟେ ଭାଳଇ ପ୍ରଜାପତି ॥୧୬୭

ପୁଣି ପଶିଲା ପଦ୍ମନାଳେ ।
ଶତେବରଷ ଯୋଗବଳେ ॥୧୬୮

ଅଙ୍କୁର ମାର୍ଗେ ବୀଜ ଲୋଡ଼ି ।
ଭ୍ରମିଲା ବହୁ ଦୁଃଖପଡ଼ି ॥୧୬୯

ଲୋଡ଼ି ନ ପାଇ ମହାଜଳେ ।
ପୁଣି ଉଠିଲା ପଦ୍ମନାଳେ ॥୧୭୦

ଭାଳଇ ପଦ୍ମ ମଧ୍ୟେ ରହି ।
ତୋ' ଅନ୍ତ ପାଇବ ସେ କାହିଁ ॥୧୭୧

ତୋତେ ନ ପାଇ ପ୍ରଜାପତି ।
ତପ ସାଧନେ କଲା ମତି ॥୧୭୨

ଅନେକ କାଳ ସାଧି ତପ ।
ଦେଖିବା ନିମନ୍ତେ ତୋ' ରୂପ ॥୧୭୩

ତୋ' ରୂପ କରି ଅନୁମାନେ ।
ଭୂମିରୁ ଗନ୍ଧମାତ୍ରା ଯେହ୍ନେ ॥୧୭୪

ସହସ୍ର-ବଦନ-ନୟନ ।
ସହସ୍ର-ଶିର-ନାସା-କର୍ଣ୍ଣ ॥୧୭୫

ସହସ୍ର-ଉର ସସ୍ରପାଦ ।
ସହସ୍ର ଭୁଜେ ସସ୍ତ୍ରାୟୁଧ ॥୧୭୬

ସେ ମାୟାମୟ ରୂପ ସୁଖେ ।
ବିଧାତା ଦେଖିଲା ସମ୍ମୁଖେ ॥୧୭୭

ତୋହର ଦେଖି ଦିବ୍ୟବେଶ ।
ବିଧାତା ହୋଇଲା ହରଷ ॥୧୭୮

ବ୍ରହ୍ମାର ଅର୍ଥେ ପଦ୍ମ ନାଭ ।
ରୂପ ପ୍ରକାଶ ହୟଗ୍ରୀବ ॥୧୭୯

ବିଷ୍ଣୁର ଯୋଗ ନିଦ୍ରା କାଳେ ।
କର୍ଣ୍ଣରୁ ମଳ ପଡ଼ି ଜଳେ ॥୧୮୦

ରଜ-ତାମସ-ଗୁଣେ ଜାତ ।
ମଧୁ-କୈଟଭ ବେନି ଦୈତ୍ୟ॥୧୮୧

ଦେବହେଳନ ମହାଘୋର ।
ତେଜ ପ୍ରଚଣ୍ଡ ଭୟଙ୍କର ॥୧୮୨

ତାହାଙ୍କୁ ମାରି ଶ୍ରୁତିଗଣ ।
ବ୍ରହ୍ମାଙ୍କୁ କଲୁ ସମର୍ପଣ ॥୧୮୩

ଏହି ପ୍ରକାରେ ନରହରି ।
ନୃ ପଶୁ ଋଷି ରୂପ ଧରି, ॥୧୮୪

ଦେବତା ଜଳଜନ୍ତୁ ରୂପେ ।
ତୋ ଅବତାର ମହାକଳ୍ପେ ॥୧୮୫

ଦୁଷ୍ଟ ନିବାରି ସନ୍ଥ ପାଳୁ ।
ତୁ ନାଥ ପରମ ଦୟାଳୁ ॥୧୮୬

ଯୁଗାନୁ ଧର୍ମେ ପାଳୁ ନାଥ ।
କଳିରେ ନୋହୁ ତୁ ତେମନ୍ତ ॥୧୮୭

ଏ ରୂପେ ଛନ୍ନ ରୂପ ହେଉ ।
ଏଣୁ ତ୍ରିଯୁଗ ତୁ ବୋଲାଉ ॥୧୮୮

ନିରତେ ମାୟାଜଡ଼େ ଛନ୍ନ ।
ପାପ-ସଙ୍କଳ୍ପେ ଦୁଷ୍ଟମନ ॥୧୮୯

ଏଣୁ ତୋ' କଥା ମୃତେ ରତି।
କେ କରିପାରେ ଦୃଢ଼ମତି ॥୧୯୦

କାମ-ସଂଙ୍କଳ୍ପେ ମୁଁ ଆତୁର ।
କାହୁଁ ଜାଣିବି ଗତି ତୋ'ର ॥୧୯୧

ଏ ଦେହେ ଇନ୍ଦ୍ରିୟଙ୍କ ଗୁଣ ।
ଭୋ ନାଥ ସାବଧାନେ ଶୁଣ ॥୧୯୨

ଆତ୍ମା ନ ରହି ହୃଦଗତେ ।
ଚଳଇ ଇନ୍ଦ୍ରିୟ ଆୟତ୍ତେ ॥୧୯୩

ରସ-ଲାଳସେ ଜିହ୍ୱା ଧରେ ।
ତୃଷିତେ ତୃଷା ବଳ କରେ ॥୧୯୪

ଉପସ୍ଥ ଧରେ କାମ ଭୋଗେ ।
ଗୁହ୍ୟ ଧରଇ ମଳୋତ୍ସର୍ଗେ ॥୧୪୫

ଶ୍ରବଣ ଶବ୍ଦ-ଅର୍ଥେ ଧରେ ।
ଗନ୍ଧାର୍ଥେ ନାସିକା-ବିବରେ ॥୧୪୬

ରୂପ ସଂଯୋଗେ ଦୃଷ୍ଟି ରହେ ।
ବଳ-ବିକ୍ରମ ଶକ୍ତି ବହେ ॥୧୪୭

ଏ ଇନ୍ଦ୍ରିଗଣ କର୍ମବଳେ ।
ପ୍ରାଣୀ ନାଶନ୍ତି ଅବହେଳେ ॥୧୪୮

ବହୁତ ଶପତଣୀ ଘରେ ।
ଗୃହସ୍ଥ ରମେ ନିରନ୍ତରେ ॥୧୪୯

ଯେ ଯେହ୍ନେ ପତ୍ନୀଙ୍କ ଆୟତ୍ତେ।
ନିରତେ ରମେ ନାନାମତେ ॥୧୫୦

ସେ ନାରୀଗଣେ ତା'ର ଚିତ୍ତ।
କରନ୍ତି ଆପଣା ଆୟତ୍ତ ॥୧୫୧

ଯେ ଯାହା ମତେ ସୁଖ ଚିନ୍ତି ।
ସ୍ୱାମୀ ଜୀବନ ସେ ହରନ୍ତି ॥୧୫୨

Dr. Sudhanshu Sekhar Mishra

ଏମନ୍ତେ କର୍ମପାଶ ବଳେ ।
ବଇତରଣୀ ଭବ ଜଳେ ॥୧୫୩
ଜନ୍ମ ମରଣ ପ୍ରାଣୀ ବହେ ।
ଅନ୍ୟୋନ୍ୟ ଘଟଣା-ପ୍ରବାହେ ॥୧୫୪
ସ୍ୱ-ପରଭେଦେ ପଥ ହୁଡ଼ି ।
ଯାତନା ମଧ୍ୟେ ଛନ୍ତି ଜଡ଼ି ॥୧୫୫
ତାହାଙ୍କ ମଧ୍ୟେ ମୁହିଁ ଥାଇ ।
ଆତ୍ମାର ଗତି ନ ଜାଣଇ ॥୧୫୬
ତୋ ପାଦେ ପଶିଲି ଶରଣ ।
ମୋତେ ଉଦ୍ଧର ନାରାୟଣ ॥୨୦୮
ଦୁଃଖୀଜନଙ୍କ ଉପକାରେ ।
ତୋ ସମ ନାହିଁ ନା ସଂସାରେ ॥୨୦୯
ସଂସାର ଉତ୍ପତ୍ତି ପାଳନ ।
ଈଷିତେ କରୁ ସଂହରଣ ॥୨୧୦
ମୂଢ଼ ପ୍ରାଣୀଙ୍କି ତୋ'ର ଦୟା ।
କେ ଜାଣିପାରେ ନାଥ ଏହା ॥୨୧୧
ଆରତ ଜନବନ୍ଧୁ ହେଉ ।
କରୁଣା ସିନ୍ଧୁ ନାମ ବହୁ ॥୨୧୨
ତୋହର ସେବକ ତାରଣେ ।
ତୁ ନାଥ ଥାଉ ଅନୁକ୍ଷଣେ ॥୨୧୩
ତୋ'ର ମହିମା-ଗୁଣ ଗୁଣି ।
ନିଶ୍ଚଳ ଚିତ୍ତେ ପରିମାଣି ॥୨୧୪
ଏଣୁ ମୋହର ଭୟ ନାହିଁ ।
ବଇତରଣୀ ମଧ୍ୟେ ଥାଇ ॥୨୧୫
ତୋରେ ବିମୁଖ ଯା'ର ମନ ।
ସେ ପ୍ରାଣୀ ସେ ଜଳେ ନିମଗ୍ନ॥୨୧୬
କୁଟୁମ୍ବ-ଭରଣ ନିମନ୍ତେ ।
ଭାର ବହଇ ଅବିରତେ ॥୨୧୭
ଇନ୍ଦ୍ରିୟ ସୁଖେ ଗୃହେ ରହେ ।
କୁଟୁମ୍ବ ସ୍ନେହେ ମାୟାମୋହେ॥୨୧୮
ଏ ଯେ ସକଳ ମୁନିଜନେ ।
ନିର୍ମଳ-ନିଶ୍ଚଳ-ଚିନ୍ତନେ ॥୨୧୯
ମାୟା-କଳ୍ପନା ଦୂର କରି ।
ମଉନ ବ୍ରତେ ବ୍ରହ୍ମଚାରୀ ॥୨୨୦
ବିଜନେ ରହନ୍ତି ନିରତେ ।
ଜପନ୍ତି ନିଜ ମୁକ୍ତି ଅର୍ଥେ ॥୨୨୧

ତାହାଙ୍କ ଚିନ୍ତା କାହିଁ ଏଣେ ।
ଯେ ବା ଭ୍ରମନ୍ତି ଭବ ବଣେ ॥୨୨୨
ଭ୍ରମେ ଭ୍ରମନ୍ତା ପ୍ରାଣୀଙ୍କର ।
ତୋ' ତହୁଁ ରକ୍ଷକ କେ ଆର ॥୨୨୩
ଏ ଗୃହେ ମୈଥୁନାଦି ସୁଖେ ।
ପ୍ରାଣୀ କ୍ରୀଡ଼ନ୍ତି ଦୁଃଖ ଶୋକେ॥୨୨୪
କଣ୍ଡୁ ଯେସନେ ନଖମାଝେ ।
ନିମିଷ ମାତ୍ର ସୁଖ ବୁଝେ ॥୨୨୫
କଣ୍ଡୁ ଅନ୍ତରେ ମହାଦୁଃଖ ।
ତେସନେ ଗୃହବନ୍ଧ-ସୁଖ ॥୨୨୬
ଏଣୁ ନରମେ ଜ୍ଞାନୀଜନ ।
ତୋ ପାଦପଦ୍ମେ ଦେଇ ମନ ॥୨୨୭
ମଉନ ବ୍ରତ ଶ୍ରୁତ ତପ ।
ସ୍ୱଧର୍ମ ଅଧ୍ୟୟନ ଜପ ॥୨୨୮
ଏକାନ୍ତ ସର୍ବସେବା-ବିଧି ।
ବ୍ୟାଖ୍ୟାନ ନିଶ୍ଚଳ-ସମାଧି ॥୨୨୯
ଜ୍ଞାନ-ଅମୃତ ଗୁରୁବାଣୀ ।
ସୁଜନେ ବୁଝ ପରିମାଣି ॥୨୩୦
ଏ ଦଶ ଅପବର୍ଗ ଅର୍ଥେ ।
ଅଜିତେନ୍ଦ୍ରିୟ ସାଧେ ଯେତେ ॥୨୩୧
ତାହାଙ୍କ ସୁଖ ଲେଶ ନାହିଁ ।
ମାୟା-ସଂସାରେ ଭ୍ରମୁଥାଇ ॥୨୩୨
ତୋ'ର ଚରଣ ଅବିରତ ।
ଜ୍ଞାନୀଜନଙ୍କ ହୃଦେ ସ୍ଥିତ ॥୨୩୩
ତୋତେ ଲଭନ୍ତି ଭାବଗ୍ରାହୀ ।
ଦାମ୍ଭିକେ ଲଭିବେ ତା' କାହିଁ॥୨୩୪
ଏ ସୃଷ୍ଟି ମଧ୍ୟେ ପଦ୍ମ ମୁଖ ।
ତୁ ନାଥ ହେଉ ସ୍ଥୂଳ ସୂକ୍ଷ୍ମ ॥୨୩୫
ବୀଜରୁ ଅଙ୍କୁର ଯେମନ୍ତ ।
ପ୍ରକାଶ କରେ ଏ ଜଗତ ॥୨୩୬
ସେ ବୀଜ-ଅଙ୍କୁର ତୋ' ଦେହ ।
ତୋ'ର ପ୍ରକାଶ ଏ ଉଭୟ ॥୨୩୭
ତୋତେ ଯେ ଭଜେ ଅବିରତେ ।
ତୋ' ରୂପ ଜାଣଇ ସେ ଚିତ୍ତେ ॥୨୩୮
ଭକତି ଯୋଗ ମାର୍ଗେ ସାଧେ ।
ଅନଳ ଯେହ୍ନେ ଦାରୁ ମଧ୍ୟେ ॥୨୩୯

ଗଗନ ସମୀର ଅନଳ ।
ଅବନୀ ଆଦି ମହାଜଳ ॥୨୪୦
ମାତ୍ରା-ସ୍ୱରୂପୀ ଇନ୍ଦ୍ରିଗଣ ।
ଚତୁର ଅନ୍ତର କରଣ ॥୨୪୧
ତୋ' ଅନୁଗ୍ରହେ ଦେହେ ରହି ।
ଗୁଣ ବିଗୁଣ ଯେତେ ହୋଇ ॥୨୪୨
ମନ ବଚନେ ଯେତେ କରି ।
ତୁ ସର୍ବରୂପ ନରହରି ॥୨୪୩
ତ୍ରିଗୁଣ ମହଦହଙ୍କାର ।
ମନ ପ୍ରକୃତି ଦେବ ନର ॥୨୪୪
ଏ ଆଦି ଅନ୍ତ ମଧ୍ୟେ ଥା'ନ୍ତି ।
କେବେହେଁ ତୋତେ ନ ଜାଣନ୍ତି॥୨୪୫
ସେ ଭାବ ଜାଣି ମୁନିଜନେ ।
ନିଶ୍ଚଳେ ରହନ୍ତି ମଉନେ ॥୨୪୬
ଭୋ ନାଥ ତୋ'ର ନାମ ସ୍ତୁତି ।
ତୋ' ପୂଜା କର୍ମେ ଯା'ର ମତି ॥୨୪୭
ନିତ୍ୟେ ଚିନ୍ତନ୍ତି ତୋ ଚରଣ ।
ତୋ' ପୁଣ୍ୟକଥନ ଶ୍ରବଣ ॥୨୪୮
ସୁପୁଣ୍ୟ କର୍ମ ଅର୍ପି ତୋତେ ।
ଏ ଷଡ଼ଅଙ୍ଗ ଭକ୍ତି ମତେ ॥୨୪୯
ଯେ ଅବା ସାଧନ୍ତି ଜଗତେ ।
ସେ ତୋତେ ଲଭନ୍ତି ନିଶ୍ଚିନ୍ତେ ॥୨୫୦
ଯେବେ ତୋ' ଭାବେ ନାହିଁ ମନ ।
ସେ ତୋ'ର ଭକ୍ତି ଭାବୁଁ ହୀନ ॥୨୫୧
ତୁ ନାଥ ଅନନ୍ତ ମୂରତି ।
ପରମଯୋଗୀଙ୍କର ଗତି ॥୨୫୨
ଯେ ତୋ'ର ଅଭୟଚରଣ ।
ତହିଁ ମୁ ନିଶ୍ଚୟେ ଶରଣ ॥୨୫୩

ଶୁକ ଉବାଚ

ଏମନ୍ତେ ଧର୍ମସୁତ ଆଗେ ।
ନାରଦ ମୁନି ଅନୁରାଗେ ॥୨୫୪
କହନ୍ତି ସଭା ମଧ୍ୟେ ବସି ।
ଶୁଣ ନୃପତି କୁରୁବଂଶୀ ॥୨୫୫

ନାରଦ ଉବାଚ

ଅସୁରସୁତ ବିଷ୍ଣୁ ଆଗେ ।
ଯେତେ ବର୍ଣ୍ଣିଲା ଭକ୍ତିମାର୍ଗେ ॥୨୫୬

Dr. Sudhanshu Sekhar Mishra

ଶୁଣି ସନ୍ତୋଷ ନାରାୟଣ ।
ଯେ ହରି ପରମ କାରଣ ॥୨୫୭
ସୁପ୍ରୀତେ ତା'ଙ୍କୁ କୋଳେ ଧରି।
ପ୍ରଚଣ୍ଡ କୋପ ପରିହରି ॥୨୫୮
କହନ୍ତି ମଧୁର-ବଚନ ।
ଶୁଣ ହେ ଅସୁର ନନ୍ଦନ ॥୨୫୯

ନୃସିଂହ ଉବାଚ

ସନ୍ତୋଷେ ଜାଣିଲି ତୋ' ଭାବ।
ଏ ନରଲୋକେ ସୁଦୁର୍ଲ୍ଲଭ ॥୨୬୦
ମୁଁ କାମ ପୂରାଏ ପ୍ରାଣୀର ।
ଆତ୍ମାନୁରୂପେ ମାଗ ବର ॥୨୬୧
ଯେ ପ୍ରୀତି ନ କରଇ ମୋତେ।
ମୁଁ ତାକୁ ଦୁର୍ଲ୍ଲଭ ଜଗତେ ॥୨୬୨
ମୋତେ ଯେ ଦେଖଇ ନୟନ।
ତା'ର କି ତପେ ପ୍ରୟୋଜନ ॥୨୬୩
ଏ ଘେନି ଜ୍ଞାନୀଜନ ଯେତେ।
ଭାବେ ଭଜନ୍ତି ନିତ୍ୟେ ମୋତେ ॥୨୬୪
ଚିତ୍ତ ପ୍ରସନ୍ନେ ବର ଦେଇ ।
ସର୍ବ ଆଶିଷ ପତି ମୁହିଁ ॥୨୬୫

ନାରଦ ଉବାଚ

ଏମନ୍ତ ବର-ଲୋଭ କହି ।
ମନ ମୋହିଲେ ଭାବଗ୍ରାହୀ ॥୨୬୬
ଏକାନ୍ତ ଭକ୍ତି ହୃଦେ ତା'ର ।
ବରେ ନ କଲା ଅଙ୍ଗୀକାର ॥୨୬୭
ଏମନ୍ତ ମହିମା ଯାହାର ।
ଦେବମାନବେ ଅଗୋଚର ॥୨୬୮
ଯେ ଏହା ଆରତେ ଶୁଣନ୍ତି ।
ପଢ଼ନ୍ତି ଅବା ନିତିନିତି ॥୨୬୯
ସେ ସର୍ବେ ସଙ୍କଟୁ ତରନ୍ତି ।
ହରିପାଦରେ ଲଭେ ଭକ୍ତି ॥୨୭୦
ଶୁଣ ସୁଜନେ ଏହୁ ରସ ।
ହରିବ ଦୁର୍ଗତି ଅଶେଷ ॥୨୭୧
ସେ ପ୍ରହଲ୍ଲାଦ ପାଦଗତ ।
ନମଇଁ ବିପ୍ର ଜଗନ୍ନାଥ ॥୨୭୨

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ପ୍ରହ୍ଲାଦଚରିତେ
ଭଗବତ୍‌ସ୍ତବୋନାମ
ନବମୋଽଧ୍ୟାୟଃ ॥

---

## ଦଶମ ଅଧ୍ୟାୟ

ନାରଦ ଉବାଚ

ବିଷ୍ଣୁର ବରଲୋଭ ଶୁଣି ।
ମନେ ବିଚାରେ ଭକ୍ତମଣି ॥୧
ଭକ୍ତିଯୋଗକୁ ବିଘ୍ନ ପ୍ରାୟେ ।
ମଣି ପ୍ରହ୍ଲାଦ କଲା ଭୟେ ॥୨
ହସି ନୃସିଂହ ମୁଖ ଚାହିଁ ।
ବୋଲଇ ଶିରେ କର ଦେଇ ॥୩

ପ୍ରହଲ୍ଲାଦ ଉବାଚ

ଭୋ ନାଥ ଶୁଣ ଚକ୍ରଧର ।
ବର-ପ୍ରସଙ୍ଗେ ମୋ'ର ଡର ॥୪
କାମେ ଆସକ୍ତ ପ୍ରାୟେ ମଣି ।
ବର ଯାଚିଲୁ ଚକ୍ରପାଣି ॥୫
ସ୍ୱଭାବେ କାମେ ମୁଁ ଆସକ୍ତ ।
ବର-ଲୋଭରେ ମୋହୁ ଚିତ୍ତ ॥୬
ମୋହର ମନ ତୋ'ର ପାଦେ ।
ତୁ ମୋତେ ନ କର ପ୍ରମାଦେ ॥୭
ଭୃତ୍ୟ-ଲକ୍ଷଣ ଜାଣିବାରେ ।
ସ୍ୱାମୀ ସ୍ୱଭାବ ଏ ସଂସାରେ ॥୮
କାମେ ଭ୍ରମାଇ ଭୃତ୍ୟ ଚିତ୍ତ ।
ଜାଣଇଁ ଭକ୍ତ କି ଅଭକ୍ତ ॥୯
ସଂସାର ବୀଜ ହୃଦଗନ୍ଥି ।
ତେଣେ ଭ୍ରମାଉ ମୋ'ର ମତି ॥୧୦
ସେ କଥା ଭଲେ ଜାଣେ ମୁହିଁ ।
ଏଣୁ ଅନ୍ୟଥା ନ ଘଟଇ ॥୧୧
ତୋତେ ଅଧିକ ପ୍ରାଣୀ ଯେବେ।
ତୋ'ର ଆଶିଷ ଚିତ୍ତେ ଭାବେ ॥୧୨
ଭୃତ୍ୟ ଲକ୍ଷଣ ତା' ନ ଜାଣି ।
ଯେ ଆତ୍ମାହିତ ନ ପ୍ରମାଣି ॥୧୩
ବଣିକ ସ୍ୱଭାବ ତାହାର ।
ସେ କାହିଁ ତରିବ ସଂସାର ॥୧୪
ଯେ ପ୍ରାଣୀ ଇଷ୍ଟ ଆଶା କରେ ।
ଭୃତ୍ୟ ନ ବୋଲିବ ତାହାରେ ॥୧୫
ସେ ସ୍ୱାମୀ ଭୃତ୍ୟେ କଷ୍ଟ ଦେଇ।
ତା' ସ୍ୱାମୀପଣ ରହେ ନାହିଁ ॥୧୬
ନିଷ୍କାମ ଭକ୍ତ ମୁହିଁ ତୋର ।
ତୁ ନାଥ ଭକତ ସୋଦର ॥୧୭
ରାଜାର ସେବକ ଯେସନେ ।
ବଞ୍ଚଇ ଆଜ୍ଞା ଅଲଂଘନେ ॥୧୮
ତଥାପି ତୋ'ର ତୋଷ ଅର୍ଥେ ।
ତୋ' ବାକ୍ୟ ପାଳିବା ଉଚିତେ ॥୧୯
ମାଗଇ ବର ତୋ'ର ପାଦେ ।
ଯେମନ୍ତେ ନ ପଡ଼େ ପ୍ରମାଦେ ॥୨୦
ଏମନ୍ତ ବର ଦିଅ ମୋତେ ।
ତୋ' ମାୟା ତରିବି ଯେମନ୍ତେ ॥୨୧
ଯେ କାମ ମୋ'ର ହୃଦେ ରହି ।
ବୃକ୍ଷ-ରୋପଣ ପ୍ରାୟେ ହୋଇ ॥୨୨
ପତ୍ର-କୁସୁମ-ଫଳ ଯେତେ ।
ମୂଳ ସଙ୍କୁଳେ ଜଡ଼େ ଚିତ୍ତେ ॥୨୩
ସେ ବୃକ୍ଷ ହୃଦରେ ନ ରହୁ ।
ଭୋ ନାଥ ଏହି ବର ହେଉ ॥୨୪
ଇନ୍ଦ୍ରିୟ ମନ ପ୍ରାଣ ସ୍ମୃତି ।
ଆତ୍ମା ସ୍ୱଧର୍ମ ଧୃତି ମତି ॥୨୫
ଲାଜ ସମ୍ପଦ ତେଜ ଜ୍ଞାନ ।
ସତ୍ୟ ସନ୍ତୋଷ ବ୍ରତମାନ ॥୨୬
ଯେ କାମେ ଏ ସର୍ବ ନାଶନ୍ତି ।
କେ କାମୁଁ ରଖ ଦାଶରଥି ॥୨୭
କାମ-ସଙ୍କଳ୍ପ ଯେତେ ଥାଇ ।
ଯେ ଜନ୍ମେ ପ୍ରାଣୀ ତା' ମୁଞ୍ଚଇ ॥୨୮

Dr. Sudhanshu Sekhar Mishra

ସେ ଜନ୍ମେ ମିଳେ ତୋ' ସମୀପେ ।
ତୋ' ସମେ ଅଇଶ୍ୱର୍ଯ୍ୟ କକ୍ଷେ ॥୨୯
ନମୋ ପୁରୁଷ ମହାତ୍ମନ ।
ନୃସିଂହ ରୂପୀ ଭଗବାନ ॥୩୦
ତୁ ବ୍ରହ୍ମ ପରମାତ୍ମା ତୁହି ।
ତୁ ହରି ତୋତେ ମୁଁ ନମଇଁ ॥୩୧
ଏମନ୍ତ ପ୍ରହଲ୍ଲାଦ ବାଣୀ ।
ଶୁଣି କହନ୍ତି ଚକ୍ରପାଣି ॥୩୨

## ନୃସିଂହ ଉବାଚ

କହନ୍ତି ପ୍ରଭୁ ଭଗବାନ ।
ଶୁଣ ହେ ଭକତ ପ୍ରଧାନ ॥୩୩
ଏକାନ୍ତ-ଭକ୍ତ ଯେ ମୋହର ।
ଏ ନିଶ୍ଚେ ତାହାର ବେଭାର ॥୩୪
କେବେ ମୋ' ଆଶିଷ ନ କକ୍ଷେ ।
ଯେ ଭୋଗ ଇହ ପରଲୋକେ ॥୩୫
ତୋ'ର ସଦୃଶ ଭକ୍ତ ଯେତେ ।
ନିଷ୍କାମେ ଛନ୍ତି ଏ ଜଗତେ ॥୩୬
ତୁ ଏବେ ମୋ'ର ବୋଲ କର ।
ଏ ଯେତେ କାଳ ମନ୍ୱନ୍ତର ॥୩୭
ଦୈତ୍ୟମାନଙ୍କ ମଧ୍ୟେ ରହି ।
ଅତୁଲ୍ୟ ଭୋଗ ଭୁଞ୍ଜି ତୁହି ॥୩୮
ତୁ ମୋତେ ସର୍ବଭୂତେ ଭଜ ।
ଯଜ୍ଞ ଈଶ୍ୱର ରୂପେ ପୂଜ ॥୩୯
କର୍ମ ବିନାଶି ଯୋଗବଳେ ।
ସାଧ ଏ ଅବନୀ ମଣ୍ଡଳେ ॥୪୦
ଶରୀର ଛାଡ଼ି କାଳବଳେ ।
ପଶିବୁ ମୋ' ପାଦକମଳେ ॥୪୧
ତୁ ଯେତେ ସ୍ତୁତି କଲୁ ମୋତେ ।
ସଂସାର ତାରଣ ନିମନ୍ତେ ॥୪୨
ରଜନୀ ଅନ୍ତେଃ ପ୍ରାତଃକାଳେ ।
ଆନନ୍ଦେ ହୃଦୟ ନିଶ୍ଚଳେ ॥୪୩
ମୋତେ ସ୍ମରିବେ ତୋ'ର ସଙ୍ଗେ ।
ପାପ ନ ରହୁ ତାଙ୍କ ଅଙ୍ଗେ ॥୪୪
ଅଶେଷ କର୍ମ-ବନ୍ଧ-ପାଶ ।
ତକ୍ଷଣେ ହୋଇବ ବିନାଶ ॥୪୫

ଏମନ୍ତେ ନରହରି ବାକ୍ୟେ ।
ଅସୁର ପୁତ୍ର ମନ ଶୋକେ ॥୪୬
ପ୍ରହ୍ଲାଦ କରଯୋଡ଼ି ପୁଣ ।
କହେ ନୃସିଂହ ଅଗ୍ରତେଣ ॥୪୭
ଶୁଣ ହେ ପ୍ରଭୁ ଭଗବାନ ।
ସକଳ ଭୂତେ ତୋ'ର ସ୍ଥାନ ॥୪୮
ତୁ ବରଦାତାଙ୍କ ଈଶ୍ୱର ।
ପିତାର ଅର୍ଥେ ମାଗେ ବର ॥୪୯
ତୁ ବ୍ରହ୍ମ ପ୍ରଭୁ ଚକ୍ରପାଣି ।
ତୋ'ର ମହିମା ସେ ନ ଜାଣି ॥୫୦
ତୋତେ ନିନ୍ଦିଲା କୋପମନେ ।
ବୋଲେ ଈଶ୍ୱର ମୁଁ ଭୁବନେ ॥୫୧
ଭ୍ରାତ-ମରଣେ କୋପ ବହି ।
ତୋହର ମହିମା ନିନ୍ଦଇ ॥୫୨
ତୋ' ଭକ୍ତ ବୋଲିକରି ମୋତେ ।
କ୍ରୋଧେ ହିଂସଇ ଅବିରତେ ॥୫୩
ସେ ପାପୁଁ ପିତାଙ୍କୁ ଉଦ୍ଧର ।
ଭୋ ନାଥ ମାଗେ ଏହି ବର ॥୫୪
ଅମୃତପୂର୍ଣ୍ଣ ଦୃଷ୍ଟି ତୋ'ର ।
ପଡ଼ଇ ଯାହାର ଉପର ॥୫୫
ପବିତ୍ର ଦୃଷ୍ଟି ଯାରେ ହୋଇ ।
ଅଙ୍ଗେ ଦୁରିତ ନ ରହଇ ॥୫୬
ଏମନ୍ତ ଶୁଣି ତା' ବଚନ ।
କହନ୍ତି ପ୍ରଭୁ ଭଗବାନ ॥୫୭

## ଭଗବାନ ଉବାଚ

ପ୍ରହ୍ଲାଦ ଶୁଣ ମୋ'ର ବାଣୀ ।
ତୋ ପିତା ମୋହର କାରେଣୀ ॥୫୮
କଶ୍ୟପ ମରିଚି ବିଧାତା ।
ସହିତେ ଉଦ୍ଧରିଲୁ ପିତା ॥୫୯
ଅପର କକ୍ଷେ ପିତୃ ଯେତେ ।
ସର୍ବେ ପବିତ୍ର ତୋ' ଚରିତେ ॥୬୦
ତାହାଙ୍କ କୁଳେ ତୋ'ର ଜନ୍ମ ।
ତୁ କଲୁ ସକଳ ପାବନ ॥୬୧
ମୋ'ର ଭକତ ଯହିଁ ଥାଇ ।
ସମଦରଶୀ ଶାନ୍ତ ହୋଇ ॥୬୨

ଜଗତେ ସାଧୁ ସେ ବୋଲାନ୍ତି ।
ପତିତେ ପବିତ୍ର କରନ୍ତି ॥୬୩
ପ୍ରାଣୀ-ହିଂସନ ତା'ଙ୍କ ନାହିଁ ।
ଯେ ଉଚ୍ଚ-ନିଚେ ଦେହ ବହି ॥୬୪
ମୋହର ଭାବେ ନିତ୍ୟେ ଥାନ୍ତି ।
ନିଷ୍କାମ ଭାବେ ମୋତେ ଚିନ୍ତି ॥୬୫
ଯେ ପୁଣି ଥା'ନ୍ତି ତାଙ୍କ ପଛେ ।
ସେ ମୋ'ର ଭକତ ପ୍ରତ୍ୟକ୍ଷେ ॥୬୬
ତୁ ମୋ'ର ଭକ୍ତମଧ୍ୟେ ସାର ।
ମହିମା ବର୍ଣ୍ଣିଲୁ ମୋହର ॥୬୭
ଏଣୁ ତୁ ବଇଷ୍ଣବ ବର ।
ମୋ'ର ବଚନ ଏବେ କର ॥୬୮
ମୋ'ର ଭକତଜନ ଯେତେ ।
ଯତ୍ନ କରନ୍ତି ପିତୃ ଅର୍ଥେ ॥୬୯
ପୁତ୍ର-ସ୍ୱଧର୍ମ ଏ ବେଭାର ।
ପିତାଙ୍କୁ ପ୍ରେତୁଁ କର ପାର ॥୭୦
ମୋ' ଅଙ୍ଗ-ସ୍ପର୍ଶରୁ ତୋ' ତାତ ।
ସ୍ୱଭାବେ ହୋଇଛି ମୁକତ ॥୭୧
ବେଦବାଦୀଙ୍କ ବାକ୍ୟ ଅର୍ଥେ ।
ପିତୃ ତର୍ପଣ କର ତୀର୍ଥେ ॥୭୨
ମୋ' ପାଦେ ମନ କର ସ୍ଥିର ।
ପିଣ୍ଡେ ତୁ ପିତାଙ୍କୁ ଉଦ୍ଧର ॥୭୩

## ନାରଦ ଉବାଚ

ନୃସିଂହ ଆଜ୍ଞା ଘେନି ଶିରେ ।
ପିତାର କର୍ମ ଗଙ୍ଗାତୀରେ ॥୭୪
ଆନନ୍ଦେ ହିରଣ୍ୟର ବଳା ।
ପିତୃ-ତର୍ପଣ-ପିଣ୍ଡ ଦେଲା ॥୭୫
ବିପ୍ରେ ମିଳିଲେ ବିଷ୍ଣୁ ବାକ୍ୟେ ।
ପ୍ରହଲ୍ଲାଦର ଅଭିଷେକେ ॥୭୬
କ୍ଷିତିମଣ୍ଡଳେ କଲେ ରାଜା ।
ନୃପେ କରନ୍ତି ପାଦ ପୂଜା ॥୭୭
ଅଦ୍‌ଭୁତ ଦେଖି ତା'ର କଥା ।
ଆନନ୍ଦ ମନେ ସେ ବିଧାତା ॥୭୮
ସର୍ବଦେବଙ୍କୁ ଘେନି ସଙ୍ଗେ ।
ମିଳିଲେ ନରସିଂହ ଆଗେ ॥୭୯

Dr. Sudhanshu Sekhar Mishra

ଆନନ୍ଦେ କର ଦେଇ ଶିରେ ।
ପବିତ୍ର ବାକ୍ୟେ ସ୍ତୁତି କରେ ॥୮୦

ବ୍ରହ୍ମା ଉବାଚ

ଭୋ ଦେବ ଦେବଙ୍କର ବର ।
ଅଖିଳ ଲୋକ ସୃଷ୍ଟି କର ॥୮୧
ଭୂତ ଭାବନ ସର୍ବ ସିଦ୍ଧି ।
ତୁ ନାଥ କରୁଣାବାରିଧି ॥୮୨
ଲୋକ ସନ୍ତାପୀ ଏ ଅସୁର ।
ଭୋ ନାଥ କଲୁ ତୁ ସଂହାର ॥୮୩
ମୋହର ତହୁଁ ବର ପାଇ ।
ମୋ ସୃଷ୍ଟି ମଧ୍ୟେ ମୃତ୍ୟୁ ନାହିଁ ॥୮୪
ତପର ତେଜ ବଳେ ଦୁଷ୍ଟ ।
ନିଗମମାର୍ଗ କଲା ନଷ୍ଟ ॥୮୫
ତୁ ନାଥ ତାହାକୁ ସଂହାରି ।
ରଖିଲୁ ବେଦମାର୍ଗ-ଶିରୀ ॥୮୬
ତାହାର ପୁତ୍ର ଭାଗ୍ୟବନ୍ତ ।
ଦୁର୍ଲ୍ଲଭ ବିଷ୍ଣୁଙ୍କ ଭକତ ॥୮୭
ତା'କୁ ରଖିଲୁ ପିତା ମାରି ।
ମରଣ-ସଙ୍କଟୁ ଉଦ୍ଧରି ॥୮୮
ଏ ନରସିଂହ ରୂପ ତୋ'ର ।
ଧ୍ୟାନେ ଚିନ୍ତିବେ ଯେତେନର ॥୮୯
ସର୍ବ ସଙ୍କଟୁ ହେବେ ପାର ।
ସ୍ମରଣେ ଫିଟିବ ଦୁସ୍ତର ॥୯୦
ଏମନ୍ତେ ବ୍ରହ୍ମାର ସ୍ତବନ ।
ଶୁଣି କହନ୍ତି ଭଗବାନ ॥୯୧

ଭଗବାନ ଉବାଚ

ଶୁଣ ବିଧାତା ମୋ' ଉତ୍ତର ।
ତପ ସନ୍ତୋଷ ଯେବା ବର ॥୯୨
ତପ ସମାଧି ଯୋଗ ସାଧେ ।
ନ ଦେବୁ ଅସୁରଙ୍କ ମଧ୍ୟେ ॥୯୩
ଦୁଷ୍ଟ ପ୍ରାଣୀଙ୍କି ବରଦାନ ।
ସର୍ପକୁ ଯେହ୍ନେ କ୍ଷୀରପାନ ॥୯୪
ବ୍ରହ୍ମାଙ୍କୁ ବୋଧି ଏ ବଚନ ।
ଅଦୃଶ୍ୟ ହେଲେ ଭଗବାନ ॥୯୫
ତକ୍ଷଣେ ଶୂନ୍ୟେ ବିଜେ କରି ।
ଲାବଣ୍ୟ ରୂପେ ଦେବହରି ॥୯୬
ଜୟଶବଦ ତ୍ରିଭୁବନେ ।
ପ୍ରହ୍ଲାଦ ଦେଖି ତୋଷମନେ ॥୯୭
ଶିର-ନିବେଶି ବ୍ରହ୍ମାପାଦେ ।
ନମିଲା ପରମ ଆନନ୍ଦେ ॥୯୮
ସକଳ ପ୍ରଜାପତିଗଣେ ।
ବନ୍ଦିଲା ଦେବଙ୍କ ଚରଣେ ॥୯୯
ସନ୍ତୋଷ ହୋଇ ପଦ୍ମଯୋନି ।
ସଙ୍ଗେ ସପତ ଋଷି ଘେନି ॥୧୦୦
ପ୍ରହ୍ଲାଦେ ସ୍ଥାପି ରାଜପଦେ ।
ଦୈତ୍ୟ-ଦାନବଙ୍କର ମଧ୍ୟେ ॥୧୦୧
ଅଶିଷ ଦେଲେ ଦେବଗଣେ ।
ହସ୍ତ ପ୍ରସାରି ଜଣେ ଜଣେ ॥୧୦୨
ପୂଜିଲା ବ୍ରହ୍ମା ଆଦିମୂଳେ ।
ଇନ୍ଦ୍ରାଦି ଦଶଦିଗ ପାଳେ ॥୧୦୩
ଅସୁର ପୁତ୍ର-ସୁପୂଜିତେ ।
ସର୍ବେ ପରମାନନ୍ଦ ଚିତ୍ତେ ॥୧୦୪
ସ୍ୱସ୍ଥାନେ ଗଲେ ଦେବଗଣ ।
ଏବେ ହୋ ଧର୍ମସୁତ ଶୁଣ ॥୧୦୫
ଜୟ-ବିଜୟ ବେନିଭାଇ ।
ବିଷ୍ଣୁଭୁବନ-ଦ୍ୱାରେ ଥାଇ ॥୧୦୬
ବ୍ରହ୍ମାକୁମର ଶାପ ଫଳେ ।
ଜନ୍ମ ଲଭିଲେ ଦିତି-କୋଳେ ॥୧୦୭
ବଇରୀ ଭାବ ହୃଦେ ଭରି ।
ବିଷ୍ଣୁ-ଦ୍ରୋହରେ କାଳ ହରି ॥୧୦୮
ହରିର ହସ୍ତେ ପ୍ରାଣ ଦେଇ ।
ପୁଣି ଜନ୍ମିଲେ ବେନି ଭାଇ ॥୧୦୯
ରକ୍ଷସୀ ଗର୍ଭେ ଅବତାର ।
ରାବଣ-କୁମ୍ଭକର୍ଣ୍ଣ ବୀର ॥୧୧୦
ସୀତା-ହରଣେ ରାମବାଣେ ।
ପ୍ରାଣ ଛାଡ଼ିଲେ ଘୋର ରଣେ ॥୧୧୧
ବଇରୀ ଭାବେ ଚିତ୍ତ ଦେଇ ।
ସଂଗ୍ରାମେ ମଲେ ବେନିଭାଇ ॥୧୧୨
ପୁଣି ଏ ଧରଣୀ ମଣ୍ଡଳେ ।
ଜନ୍ମ ଲଭିଲେ ରାଜକୁଳେ ॥୧୧୩
ଯେ ଦନ୍ତବକ୍ର ଶିଶୁପାଳ ।
ତେଜ ସ୍ୱଭାବେ ଅନର୍ଗଳ ॥୧୧୪
ବୈରାନୁବନ୍ଧେ ହରିଦେହେ ।
ସାଯୁଜ୍ୟ ଲଭିଲେ ସମୂହେ ॥୧୧୫
ଏମନ୍ତେ ଦୁଷ୍ଟ ରାଜାଗଣେ ।
ବିଷ୍ଣୁ ନିନ୍ଦିଲେ ରିପୁପଣେ ॥୧୧୬
ଅନ୍ତେ ପାଇଲେ ବିଷ୍ଣୁ ଗତି ।
ଯେସନେ କୀଟ ପେଶସ୍କୃତି ॥୧୧୭
ଯେ ପ୍ରାଣୀ ଯେମନ୍ତେ ଭଜଇ ।
ହୃଦେ ଭକତି ଭାବ ବହି ॥୧୧୮
ସେହି ପ୍ରକାରେ ଲଭେ ଗତି ।
ଯେହ୍ନେ ଗରିଷ୍ଠ ଚେଦିପତି ॥୧୧୯
ଏବେ ହୋ ଶୁଣ ନୃପବର ।
ହରି ମହିମା ଅଗୋଚର ॥୧୨୦
ଯେବେ ପୁଚ୍ଛିଲୁ ମୋତେ ଭାବେ ।
ସେ ହରି ଚରିତ ପ୍ରସ୍ତାବେ ॥୧୨୧
ସେ ସର୍ବ ପ୍ରଶ୍ନ ତୋ' ଅଗ୍ରତେ ।
କହିଲୁ ଯଥା ଶକ୍ତି ମତେ ॥୧୨୨
ଏ କୃଷ୍ଣ କଥା ସୁଧାରସ ।
ଆଦି ଅସୁରଙ୍କ ବିନାଶ ॥୧୨୩
ପ୍ରହଲ୍ଲାଦର ଏ ଚରିତ ।
ସ୍ୱଭାବେ ମହାଭାଗ୍ୟବନ୍ତ ॥୧୨୪
ଜ୍ଞାନ-ବିରକ୍ତି-ଭକ୍ତିବଳେ ।
ରହିଲା କୃଷ୍ଣ-ପାଦତଳେ ॥୧୨୫
ବିଷ୍ଣୁର ସର୍ଗ-ସ୍ଥିତି-ଅନ୍ତ ।
ଯେ ଗୁଣ-କର୍ମାନୁବର୍ଣ୍ଣିତ ॥୧୨୬
ଦେବ ଦାନବଙ୍କର ସ୍ଥାନ ।
କେବେହେଁ ନୁହଁଇନ ଆନ ॥୧୨୭
ହରିଭଜନ ଅବିରତ ।
ଏ ବିଷ୍ଣୁ ଜନଙ୍କର ମତ ॥୧୨୮
ଅଶେଷ ବଇଷ୍ଣବ ଧର୍ମ ।
ଏ ଜ୍ଞାନ-ଅଧ୍ୟାତ୍ମ-ବର୍ଣ୍ଣନ ॥୧୨୯
କୃଷ୍ଣ ମହିମା ପୁଣ୍ୟବାଣୀ ।
ଯେ ନର ଶ୍ରୁତିମାର୍ଗେ ଶୁଣି ॥୧୩୦
ଲୋକେ କହନ୍ତି ଶ୍ରଦ୍ଧାରସେ ।
ସର୍ବ ଦୁରିତ ଏ ବିନାଶେ ॥୧୩୧
ଏ ଆଦିପୁରୁଷଙ୍କ କଳା ।
ଶ୍ରୀ ନରସିଂହ ରୂପ ଲୀଳା ॥୧୩୨

Dr. Sudhanshu Sekhar Mishra

ଅସୁର-ବଧ-ଗତି-ବାଣୀ ।
ଯେ ମୁଖେ କହେ କର୍ଣ୍ଣେ ଶୁଣି ॥୧୩୩
ସନ୍ଥଜନଙ୍କ ପୁଣ୍ୟ କଥା ।
ଅଶେଷ ମୁନି ମଧ୍ୟେ ଗାଥା ॥୧୩୪
ପ୍ରସ୍ତାବେ ଶୁଣି ଜନ ମଧ୍ୟେ ।
ନିର୍ଭୟେ ଯାନ୍ତି କୃଷ୍ଣ ପାଦେ ॥୧୩୫
ତୁ ଯେ ପାଣ୍ଡବକୁଳେ ଜାତ ।
ତ୍ରୈଲୋକ୍ୟେ ମହାଭାଗ୍ୟବନ୍ତ॥୧୩୬
ଲୋକ-ନିସ୍ତାରେ ମୁନିଗଣେ ।
ତୋର ଭୁବନେ ଅନୁକ୍ଷଣେ ॥୧୩୭
ମିଳନ୍ତି ଘେନି ତୋ'ର ଭାବ ।
ତୋ' ଗୃହେ ବସେ ପଦ୍ମନାଭ॥୧୩୮
ଯା'ର ମହିମା ଦେବଗଣେ ।
ଲୋଡ଼ି ନ ପା'ନ୍ତି ବେଦ-ଭଣେ ॥୧୩୯
ଯେ ବ୍ରହ୍ମ-ନିର୍ବାଣ-ଦୁର୍ଲ୍ଲଭ ।
କୈବଲ୍ୟ ମୋକ୍ଷ ଅନୁଭବ ॥୧୪୦
ସେ ପ୍ରିୟ ସୁହୃଦ ତୋହର ।
ସୋଦର ମାତୁଳ କୁମର ॥୧୪୧
ସକଳ ଆତ୍ମା ସେ ପୂଜିତ ।
ଅଖିଳ ଗୁରୁ ଦଇବତ ॥୧୪୨
ତାହାର ମହିମା ବର୍ଣ୍ଣନେ ।
ଭବ ବିରଞ୍ଚି ଆଦି ଜନେ ॥୧୪୩
ବସ୍ତୁ ବୁଦ୍ଧିରେ ଭାବ ଚିନ୍ତି ।
କେବେ ହେଁ ବର୍ଣ୍ଣି ନ ପାରନ୍ତି॥୧୪୪
ମଉନେ ଭକ୍ତି ଯୋଗେ ଭଜି ।
କେବେହେଁ ନ ପାରନ୍ତି ଖୋଜି॥୧୪୫
ସେ ବଇଷ୍ଣବ ଜନ ଗତି ।
ତା' ପାଦେ ରହୁ ତୋ'ର ମତି॥୧୪୬
ସେ ହରି ତୋତେ ଦୟା କରୁ।
ତୋ' ଯଶ ଜଗତେ ବିସ୍ତାରୁ ॥୧୪୭
ପୂର୍ବେ ଯେ ଦେବାସୁର ଯୁଦ୍ଧେ।
ରୁଦ୍ରଙ୍କୁ ରଖିଲେ ପ୍ରମାଦେ ॥୧୪୮
ସେ ତୋ'ର କରୁ ସର୍ବ ଶୁଭ।
ସର୍ବଦା ଲଭ ତା'ର ଭାବ ॥୧୪୯
ଏ ବାଣୀ ମୁନିମୁଖୁଁ ଶୁଣି ।
କପାଳେ ଦେଇ ବେନିପାଣି ॥୧୫୦

ବୋଲେ ନାରଦ ମୁଖ ଚାହିଁ ।
ଭୋ ମୁନି କର ମୋତେ ତ୍ରାହି ॥୧୫୧

ଯୁଧିଷ୍ଠିର ଉବାଚ

କହ କେବଣ କାଳେ ହରି ।
ଈଶ୍ୱର-ତ୍ରାସ ଦୂର କରି ॥୧୫୨
ଅସୁର ବଳ କଲେ ନାଶ ।
ଯେ ହରି ଜଗତ-ବିଶ୍ୱାସ ॥୧୫୩
ଏମନ୍ତ ଧର୍ମସୁତ ବାଣୀ ।
ଶୁଣି କହନ୍ତି ବ୍ରହ୍ମମୁନି ॥୧୫୪

ନାରଦ ଉବାଚ

ପୂର୍ବେ ଯେ ଦେବାସୁର ରଣେ।
ଯୁଦ୍ଧେ ଜିଣିଲେ ଦେବଗଣେ ॥୧୫୫
ଅସୁରେ ପଳାଇ ବିଷାଦେ ।
ମୟଦଇତ୍ୟ ବେନି ପାଦେ ॥୧୫୬
କାତରେ ପଶିଲେ ଶରଣ ।
ଭଗ୍ନ ସଂଙ୍କଟେ ବୀରଗଣ ॥୧୫୭
ମୟଦଇତ୍ୟ ତାହା ଚାହିଁ ।
ଅସୁରଗଣେ ଦୟା ବହି ॥୧୫୮
ବିମାନ କଲା ତିନିପୁର ।
ଭିତରେ ଘୋର ଅନ୍ଧକାର ॥୧୫୯
କାଞ୍ଚନ ରୌପ୍ୟ ଲୌହମୟ ।
ଦେଖି ତ୍ରିଦଶେ କଲେ ଭୟ ॥୧୬୦
ଲକ୍ଷି ନ ପାରି ତା'କୁ ଭଲେ ।
ତା' ଗତି ଯିବା ଆସିବାରେ ॥୧୬୧
ବିତର୍କ ନୋହେ ପରିଚ୍ଛଦ ।
ପୂରିତ ଅଶେଷ ଆୟୁଧ ॥୧୬୨
ସେ ରଥେ ବସି ଦୈତ୍ୟଗଣେ।
ଦେବଙ୍କୁ ଆବୋରିଲେ ରଣେ॥୧୬୩
ତିନିଭୁବନ-ଲୋକଶିରୀ ।
ନାଶନ୍ତି ବଇର ସୁମରି ॥୧୬୪
ଆକୁଳେ ତ୍ରିଭୁବନ-ଲୋକେ ।
ଶିବ ଭଜିଲେ ଅତିରେକେ ॥୧୬୫
ଡାକନ୍ତି ରଖ ତ୍ରିଲୋଚନ ।
ତୋ' ପାଦେ ପଶିଲୁ ଶରଣ ॥୧୬୬
ଭୁବନେ ରହି ନ ପାରିଲୁ ।
ଅସୁର ଭୟେ ପଳାଇଲୁ ॥୧୬୭

ତ୍ରିପୁରେ ରହି ଅଲକ୍ଷିତେ ।
ପ୍ରଜା ନାଶିଲେ ଶସ୍ତ୍ରାଘାତେ ॥୧୬୮
ଶୁଣି ଈଶ୍ୱର ତୋଷମନ ।
ବୋଲନ୍ତି ମଧୁର-ବଚନ ॥୧୬୯
ଭୟ ନ କର ତୁମ୍ଭେ କେହି ।
ଅସୁର ସଂହାରିବି ମୁହିଁ ॥୧୭୦
ଏମନ୍ତ କହି ତ୍ରିଲୋଚନ ।
ହସ୍ତେ ଘେନିଲେ ଶରାସନ ॥୧୭୧
ଶର-ସନ୍ଧାନେ ସେ ବିମାନେ।
ଧରି ବିନ୍ଧିଲେ କୋପମନେ ॥୧୭୨
ରୁଦ୍ର ନାରାଚ ତେଜୋମୟ ।
ପ୍ରକାଶେ ସୂର୍ଯ୍ୟରଶ୍ମି ପ୍ରାୟ ॥୧୭୩
ଅଦୃଶ୍ୟପୁର ଦୃଶ୍ୟ ହୋଏ ।
ଭେଦିଲା ଅସୁରଙ୍କ ଦେହେ ॥୧୭୪
ଶିର ହୃଦୟ କର ଛିଡ଼ି ।
ପଡ଼ିଲେ ମହୀତଳେ ମାଡ଼ି ॥୧୭୫
ଜୀବନ୍ତେ ଭାଜିଲେ ଥୋକାଏ।
ଘୋର-ପ୍ରଚଣ୍ଡ ଶରଘାଏ ॥୧୭୬
ମୟଦଇତ୍ୟ ଦେଖି ତାହା ।
ଅସୁର ବଳେ କରି ଦୟା ॥୧୭୭
ମିଳିଲା ଅସୁର ସମୀପେ ।
ପ୍ରବେଶ କଲା ସୁଧାକୂପେ ॥୧୭୮
ଅମୃତ ରସ ଜଳ ସଙ୍ଗେ ।
ଲାଗିଲା ଅସୁରଙ୍କ ଅଙ୍ଗେ ॥୧୭୯
ବଜ୍ରର ପ୍ରାୟେ ଦେହ ଧରି ।
ଉଠିଲେ ଘୋରନାଦ କରି ॥୧୮୦
ପୁରେ ପ୍ରବେଶ ତତକ୍ଷଣ ।
ଦେଖି ଡରିଲେ ଦେବଗଣ ॥୧୮୧
ଯୁଝନ୍ତି ନାନାଶସ୍ତ୍ର ଘେନି ।
ଶବଦେ କମ୍ପଇ ମେଦିନୀ ॥୧୮୨
ଭୟେ ପଳାଇ ଦେବଗଣ ।
ଡାକନ୍ତି ରଖ ନାରାୟଣ ॥୧୮୩
ଦେଖି ଶଙ୍କର ମନଦୁଃଖ ।
ଭଗ୍ନ ସଙ୍କଟ ଅତିରେକ ॥୧୮୪
ବିମୁଖ ଦେଖିଣ ଶଙ୍କର ।
ଉପାୟ କଲେ ଚକ୍ରଧର ॥୧୮୫

Dr. Sudhanshu Sekhar Mishra

ବ୍ରହ୍ମାଙ୍କୁ ବତ୍ସାରୂପ କରି ।
କୃଷ୍ଣ ସୁରଭି ରୂପ ଧରି ॥୧୮୬
ବଦନ ରସକୂପେ ଭରି ।
ନିମିଷେ ପାନ କଲେ ହରି ॥୧୮୭
ଯେତେ ଅସୁର ଜଗିଥିଲେ ।
ନିଷେଧି କେହି ନ ପାରିଲେ ॥୧୮୮
ଚାହିଁ ଆସୁରଙ୍କ ବଦନ ।
ବୋଲଇ ମୟ ଯାତୁଧାନ ॥୧୮୯
ଦେବ ଅସୁର କିବା ନର ।
କର୍ମକୁ ନୁହଁନ୍ତି ଈଶ୍ୱର ॥୧୯୦
ଯେ କର୍ମ ଅତି ବଳୀୟାର ।
ସେ ନ ଜାଣଇ ଆତ୍ମାପର ॥୧୯୧
ସେ ନିଶ୍ଚେ ହାନୀଲାଭ କରେ।
କେବା ନିବାରି ତା’କୁ ପାରେ॥୧୯୨
ତକ୍ଷଣେ ପ୍ରଭୁ ନରହରି ।
ରୁଦ୍ର-ଶରୀରେ ତେଜ ଭରି ॥୧୯୩
ସେ ବିଷ୍ଣୁ ଶକ୍ତି ବଳେ ବଳ ।
ତେଜେ ବିରାଜେ ଅନର୍ଗଳ ॥୧୯୪
ବିରକ୍ତି ଜ୍ଞାନ ଧର୍ମ ବୁଦ୍ଧି ।
ଯେ ତପବିଦ୍ୟା କ୍ରିୟା ଆଦି ॥୧୯୫

ଏ ସପ୍ତଗୁଣ ସପ୍ତତେଜ ।
ରଥ ସାରଥି ମହାଧ୍ୱଜ ॥୧୯୬
ସାରଙ୍ଗ ଧନୁ ତ୍ରୋଣ ଶର ।
ରୁଦ୍ରଙ୍କୁ ଦେଲେ ଦାମୋଦର ॥୧୯୭
ଏ ଆଦି ନାନାଶସ୍ତ୍ର ଯେତେ ।
ରୁଦ୍ରଙ୍କୁ ଦେଲେ ଜଗନ୍ନାଥେ ॥୧୯୮
ବର୍ମେ ଆଚ୍ଛାଦି ଦେହ ହର ।
କରେ ଧଇଲେ ଧନୁଶର ॥୧୯୯
ମଧ୍ୟାହ୍ନ-ସମୟେ ଶଙ୍କର ।
ବିମାନେ ବିଜେ ରୋଷଭର ॥୨୦୦
ଅନଳଗର୍ଭ-ବାଣ ବିନ୍ଧି ।
ସର୍ବ ଅସୁର ବଳ ଛେଦି ॥୨୦୧
ତ୍ରିପୁର କଲେ ସେ ଦହନ ।
ହରଷ ଦେବଙ୍କର ମନ ॥୨୦୨
ବିମାନେ ଶତଶଙ୍ଖ ଶୂନ୍ୟେ ।
ଦୁନ୍ଦୁଭି-ବାଦ୍ୟ-ନାଦ ଘନେ ॥୨୦୩
ପିତୃ ଦେବତା ସିଦ୍ଧଗଣେ ।
ପୁଷ୍ପ ବରଷି ତତକ୍ଷଣେ ॥୨୦୪
କୁସୁମ-ବୃଷ୍ଟି ରୁଦ୍ର ଶିରେ ।
ଜୟ-ଶବଦ ନିରନ୍ତରେ ॥୨୦୫

ଆନନ୍ଦ ମନେ ଶୁଭଗାନେ ।
ନାଚନ୍ତି ଅପସରାଗଣେ ॥୨୦୬
ଏହି ପ୍ରକାରେ ତିନିପୁର ।
ଦହନ କଲେ ଦେବହର ॥୨୦୭
ବ୍ରହ୍ମାଦି ଦେବେ କଲେ ସ୍ତୁତି ।
ସ୍ୱଗୃହେ ଗଲେ ଉମାପତି ॥୨୦୮
ଏହି ପ୍ରକାରେ ନରହରି ।
ମାୟା-ମନୁଷ୍ୟ ରୂପ ଧରି ॥୨୦୯
ଯେ କର୍ମ କଲେ ଏ ଜଗତେ।
ମୁନି ବର୍ଣ୍ଣନ୍ତି ତାହା ଗୀତେ ॥୨୧୦
ଲୋକ-ପାବନ ଯା’ ମହିମା ।
ଏଣୁ କେ କହୁ ଗୁଣସୀମ ॥୨୧୧
ସପ୍ତମ ସ୍କନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୨୧୨
ଭଣଇ ବିପ୍ର ଜଗନ୍ନାଥ ।
ଗୀତ ପ୍ରବନ୍ଧେ ଭାଗବତ ॥୨୧୩

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ତ୍ରିପୁର ବିଜୟୋନାମ
ଦଶମୋଽଧ୍ୟାୟଃ ॥

---

## ଏକାଦଶ ଅଧ୍ୟାୟ

ନାରଦ ଉବାଚ

ନାରଦ ଯୁଧିଷ୍ଠିର ପାଶେ ।
କହନ୍ତି ଅଧ୍ୟା ଏକାଦଶେ ॥୧
ମନୁଷ୍ୟ-ବର୍ଣ୍ଣ ଧର୍ମ ଯେତେ ।
ଯେ ଚାରିବର୍ଣ୍ଣ ଏ ଜଗତେ ॥୨
ନ ଥା’ନ୍ତି ପାଷାଣ୍ଡଙ୍କ ମତେ ।
ଗୋବିନ୍ଦ ଭଜି ଶୁଦ୍ଧ ଚିତ୍ତେ ॥୩
ମୋକ୍ଷ ସାଧନ ଆଦି କରି ।
ଯେ କର୍ମେ ସିଦ୍ଧି ନରହରି ॥୪
ଦଶଅଧ୍ୟାରେ ମହାମୁନି ।
କହିଲେ ଭକ୍ତି ଜ୍ଞାନ ବେନି ॥୫
ପାଞ୍ଚ ଅଧ୍ୟାରେ ପୁଣି ଏବେ ।
କର୍ମଯୋଗକୁ ସେ କହିବେ ॥୬

ଶୁକ କହନ୍ତି ଭକ୍ତିମାର୍ଗେ ।
ଆନନ୍ଦେ ପରୀକ୍ଷିତ ଆଗେ ॥୭

ଶୁକ ଉବାଚ

ଶୁଣି ନାରଦ ମୁଖୁଁ କଥା ।
ସେ ଧର୍ମସୁତ ଶୁଦ୍ଧଚେତା ॥୮
ସେ ପ୍ରହଲ୍ଲାଦର ଚରିତ ।
ସୁସାଧୁ-ସଭା ମଧ୍ୟେ ଗୀତ ॥୯
ଉତ୍ତମ ମଧ୍ୟେ ଯେ ଅଗ୍ରଣୀ ।
ଯାହାର ଆତ୍ମା ଚକ୍ରପାଣି ॥୧୦
ତା’ର ଚରିତ ଧର୍ମସୁତ ।
ଶୁଣି ଆନନ୍ଦେ ହରଷିତ ॥୧୧
ବ୍ରହ୍ମାନନ୍ଦନ ପରିମୁଖେ ।
ପୁଣି ପୁଛିଲେ ଆତ୍ମ ସୁଖେ ॥୧୨

ଯୁଧିଷ୍ଠିର ଉବାଚ

ମନୁଷ୍ୟ ଜନ୍ମର ସ୍ୱଧର୍ମ ।
ଯେ ବର୍ଣ୍ଣେ ସାଧି ଯେବା କର୍ମ ॥୧୩
ଈଶ୍ୱର ବାକ୍ୟେ ଧର୍ମ ସାଧି ।
ଯେବା ଆଶ୍ରମେ ଯେବା ବିଧି ॥୧୪
ଧର୍ମ ସମ୍ପାଦି କର୍ମ ମଧ୍ୟେ ।
ଅନ୍ତେ ପଶନ୍ତି କୃଷ୍ଣ ପାଦେ ॥୧୫
ଏହା ଶୁଣିବି ଇଛା ମୋ’ର ।
ହେ ମୁନି ମୋତେ ଦୟା କର ॥୧୬
ତୁମ୍ଭେ ଯେ ପଦ୍ମ ଯୋନିସୁତ ।
ଜାଣ ସକଳ ପରମାର୍ଥ ॥୧୭
ସମାଧି ତପ ଜ୍ଞାନ ତୋ’ର ।
ସନ୍ତୋଷ ତୋତେ ବେଦବର ॥୧୮

Dr. Sudhanshu Sekhar Mishra

ଯେ ବିପ୍ର ନାରାୟଣ ପର ।
କି ଅବା ତା'ର ଅଗୋଚର ॥୧୯
କରୁଣାବନ୍ତ ଶାନ୍ତ ଦେହେ ।
ଯେବା ଅଛନ୍ତି ତୁମ୍ଭ ପ୍ରାୟେ ॥୨୦
ସେ ଗୁପ୍ତ ଧର୍ମକୁ ଜାଣନ୍ତି ।
ଯେ ଧର୍ମ ଅନ୍ୟେ ନ ଜାଣନ୍ତି ॥୨୧
କେବଳ ଦୟାସିନ୍ଧୁ ଧୀର ।
ଅଶେଷ ଜ୍ଞାନର ଈଶ୍ୱର ॥୨୨
ଏମନ୍ତେ ରାଜା ଭାବ ଘେନି ।
ହସି କହନ୍ତି ବ୍ରହ୍ମମୁନି ॥୨୩

ନାରଦ ଉବାଚ

ନମଇଁ ପ୍ରଭୁ ନରହରି ।
ଅଜନ୍ମା-ଜନ୍ମ-ରୂପ ଧରି ॥୨୪
ଅଶେଷ ପ୍ରାଣୀ ଧର୍ମସେତୁ ।
ପ୍ରକାଶ କଲେ ପାର ହେତୁ ॥୨୫
ସେ ସନାତନ-ଧର୍ମ-ବାଣୀ ।
ମୁଁ ନାରାୟଣ ମୁଖୁଁ ଶୁଣି ॥୨୬
ସକଳଲୋକ ଧର୍ମ ଅର୍ଥେ ।
କହିବି ନରନାଥ ତୋତେ ॥୨୭
ସେ ଅବତାର ଆତ୍ମା ଅଂଶେ ।
ଜନ୍ମ ଲଭିଲେ ଧର୍ମ ବଂଶେ ॥୨୮
ଦକ୍ଷ କନ୍ୟାର ଗର୍ଭେ ହରି ।
ଜନ୍ମିଲେ ଋଷି ରୂପ ଧରି ॥୨୯
ସଂସାର ଲୋକ ସିଦ୍ଧି କାମେ ।
ସେ ବସି ବଦରିକାଶ୍ରମେ ॥୩୦
ତପ ସାଧନ୍ତି ଦୃଢ଼ କରି ।
ନୃ-ନାରାୟଣ ରୂପ ଧରି ॥୩୧
ଯେ ହରି ସର୍ବଦେହେ ଆତ୍ମା ।
ଧର୍ମର ମୂଳ ଶୁଦ୍ଧକର୍ମା ॥୩୨
ତା'ର ବଚନ ଶ୍ରୁତିପଥେ ।
ଯେ ପ୍ରାଣୀ ଶୁଣେ ଅବିରତେ ॥୩୩
ଭକ୍ତି ସତ୍ୟାଦି ତା' ଚରଣ ।
ଆନନ୍ଦେ ପଶନ୍ତି ଶରଣ ॥୩୪
ସତ୍ୟ ଶଉଚ ଦୟା ତପ ।
ତିତିକ୍ଷା ଶମ ଦମ ଜପ ॥୩୫

ଅହିଂସା ବ୍ରହ୍ମଚର୍ଯ୍ୟ ତ୍ୟାଗ ।
ସାଧୁ ଶରୀର ରିପୁଭୋଗ ॥୩୬
ସନ୍ତୋଷ ସମଦୃଷ୍ଟି ସେବା ।
ଯେଣେ ସନ୍ତୋଷ ରଖିଦେବା ॥୩୭
କର୍ମେ ନିବୃତ୍ତି ଗ୍ରାମ୍ୟଧର୍ମ ।
ମଉନ ଆତ୍ମ ବିଚାରଣ ॥୩୮
ହୃଦେ ନିରୋଧ ଦୁଷ୍ଟମନ ।
ଏ ପ୍ରାଣୀ ସାଧାରଣ-ଧର୍ମ ॥୩୯
ତତ୍ତ୍ୱ-ଧାରଣା ତତ୍ତ୍ୱଜ୍ଞାନ ।
ଯା' ଦେଖି ରହିବ ଚେତନ ॥୪୦
ବିଷୟ କର୍ମ ଜାଣି ବ୍ୟର୍ଥ ।
କେବେ ନ ଦେବ ତହିଁ ଚିତ୍ତ ॥୪୧
ନ କରି ଅନ୍ୟ ଭୋଗାଭୋଗ ।
ଭୂତ ଅତିଥି ପୂଜ ଆଗ ॥୪୨
ଆତ୍ମା ଦେବତା ବୁଦ୍ଧି କରି ।
ଏ ଭାବେ ଗୃହେ ଥିଲେ ତରି ॥୪୩
ଶ୍ରୀକୃଷ୍ଣ ନାମ ଅନୁକ୍ଷଣ ।
ସ୍ମରଣ ଶ୍ରବଣ କୀର୍ତ୍ତନ ॥୪୪
ସେବା ପୂଜନ ଦାସପଣେ ।
ସୁସଖ୍ୟ ଆତ୍ମ ନିବେଦନ ॥୪୫
ପରମ ଧର୍ମ ଏ ପ୍ରସିଦ୍ଧି ।
ମନୁଷ୍ୟ-ଜନ୍ମର ଏ ବିଧି ॥୪୬
କୁଳ ଲକ୍ଷଣ ଧର୍ମ ଏହି ।
ଯେଣେ ସନ୍ତୋଷ ଭାବଗ୍ରାହୀ ॥୪୭
ଅଖିଳ-ସଂସ୍କାର-କାରଣେ ।
ବେଦ ଅଭ୍ୟାସିବେ ବ୍ରାହ୍ମଣେ ॥୪୮
ବ୍ରାହ୍ମଣ ଆଦି ତିନିବର୍ଣ୍ଣେ ।
ଯଜନ ଦାନ ଅଧ୍ୟୟନ ॥୪୯
ଜନ୍ମାଦି-କ୍ରିୟାକର୍ମ ଯେତେ ।
ଚତୁର-ଆଶ୍ରମ ସହିତେ ॥୫୦
ପଠନ ଆଦି ଷଟକର୍ମ ।
ବ୍ରାହ୍ମଣ-ଜନର ଏ ଧର୍ମ ॥୫୧
ରାଜାର ଧର୍ମ ପ୍ରଜା ରକ୍ଷା ।
ଆଦାନବିନେ ପଞ୍ଚଦୀକ୍ଷା ॥୫୨
ବାଣିଜ୍ୟ କୃଷି ଗୋରକ୍ଷଣ ।
ବୈଶ୍ୟଜନର ଏ ଲକ୍ଷଣ ॥୫୩

ଶୂଦ୍ରଜନର ଦ୍ୱିଜସେବା ।
ଯେଣେ ସନ୍ତୋଷ ସର୍ବଦେବା ॥୫୪
ଯେ ଧର୍ମ ଶ୍ରୁତି-ସ୍ମୃତି-ଭେଦେ ।
ତାହା ସାଧିବ ନିରାପଦେ ॥୫୫
ଆପଦେ ଅନ୍ୟବର୍ଣ୍ଣ କର୍ମେ ।
ସାଧି ବଞ୍ଚିବ ତିନି ବର୍ଣ୍ଣେ ॥୫୬
ବିପ୍ର-ଜୀବନ-ବୃତ୍ତି ଅର୍ଥେ ।
କୃଷି ଅଥବା ଅଯାଚିତେ ॥୫୭
ଧାନ୍ୟ-ଯାଚଞ୍ଚା ପ୍ରତିଦିନ ।
ଯେ ଅବା ବୃତ୍ତି ଶିଳୋଞ୍ଛନ ॥୫୮
ବାଣିଜ୍ୟ କରି ବା ବଞ୍ଚିବ ।
ନୀଚକୁ ସେବା ନ କରିବ ॥୫୯
ବିପ୍ର କ୍ଷତ୍ରିୟ ବେନି ବର୍ଣ୍ଣ ।
ବର୍ଜିବ ନିନ୍ଦାବୃତ୍ତି ମାନ ॥୬୦
ଏତେ ଲକ୍ଷଣ ତୋତେ କହି ।
ରାଜନ ଶୁଣ ମନଦେଇ ॥୬୧
ତପ ଶଉଚ ଶମ ଦମ ।
ସନ୍ତୋଷ ଋଜୁ କ୍ଷମା ଜ୍ଞାନ ॥୬୨
ସଦା ଅଚ୍ୟୁତ ଆତ୍ମା ସତ୍ୟ ।
ବିପ୍ରଲକ୍ଷଣ ଏ ବିହିତ ॥୬୩
ତେଜ ଶଉର୍ଯ୍ୟ ବୀର୍ଯ୍ୟ ଧୃତି ।
ତ୍ୟାଗ ସଂଯମ ସତ୍ୟ ଶାନ୍ତି ॥୬୪
ନିତ୍ୟେ ପ୍ରସନ୍ନ ବିପ୍ରରକ୍ଷା ।
କ୍ଷତ୍ରିୟ ଲକ୍ଷଣ ଏ ଦୀକ୍ଷା ॥୬୫
ଗୁରୁ ଅଚ୍ୟୁତ ଦେବେ ଭକ୍ତି ।
ତ୍ରିବର୍ଗ ସାଧଇ ଯେ ନିତି ॥୬୬
ଆସ୍ତିକ୍ୟ ଉଦ୍ୟମ ନୈପୁଣ୍ୟ ।
ବୈଶ୍ୟଜନର ଏ ଲକ୍ଷଣ ॥୬୭
ଅକପଟରେ ସ୍ୱାମୀ ସେବା ।
କେବେ ହେଁ ଚୋରି ନ କରିବା ॥୬୮
ସତ୍ୟ ଯେ ଗୋ-ବିପ୍ର ରକ୍ଷଣ ।
ମନ୍ତ୍ର ବିହୀନେ ଯଜ୍ଞକର୍ମ ॥୬୯
ସାଧୁ ବିନତି ଶୌଚକର୍ମ ।
ଶୂଦ୍ରଜନର ଏ ସ୍ୱଧର୍ମ ॥୭୦
ଏବେ ହୋ ଯୁଧିଷ୍ଠିର ଶୁଣ ।
ସ୍ତ୍ରିରୀ ଜନର ଯେ ଲକ୍ଷଣ ॥୭୧

Dr. Sudhanshu Sekhar Mishra

ସ୍ୱାମୀର ଚରଣ-କମଳେ ।
ସେବିବ ମନର ନିଷ୍ଠଳେ ॥୭୨
ସ୍ୱାମୀର ବନ୍ଧୁ ଥିବେ ଯେତେ ।
ତା'ଙ୍କ ତୋଷଣେ ଥିବ ନିତ୍ୟେ ॥୭୩
ପତିବ୍ରତାଙ୍କ ଏ ଲକ୍ଷଣ ।
ନିଗମ-ବଚନ ପ୍ରମାଣ ॥୭୪
ଗୃହମାର୍ଜନ ଉପଲେପ ।
ମଣ୍ଡନ ସାୟଂକାଳେ ଦୀପ ॥୭୫
ଶୌଚ ମାର୍ଜନ ତନୁ କେଶ ।
ହରିଦ୍ରା ସୁଗନ୍ଧ ଉତ୍କର୍ଷ ॥୭୬
ଶୁଦ୍ଧ ସୁନିତ୍ୟକର୍ମ ସ୍ନାନ ।
ପବିତ୍ର ସାତ୍ତ୍ୱିକ ଭୋଜନ ॥୭୭
ଆତ୍ମ-ମଣ୍ଡନ ନିରନ୍ତରେ ।
ଭୂଷଣ କଜ୍ଜ୍ୱଳ ସିନ୍ଦୁରେ ॥୭୮
ବିନୟେ ଦମେ ସାଧ୍ୱୀ ନାରୀ ।
ଯେ ଉଚ୍ଚନୀଚ କର୍ମ କରି ॥୭୯
ସର୍ବଦା ସ୍ନେହ ସତ୍ୟଶୀଳେ ।
ଭଜିବ ପତି କାଳେ-କାଳେ ॥୮୦
ସତ୍ୟ ବଚନେ ପ୍ରେମେ ସଦା ।
ପତିଙ୍କି ଭଜିବ ସର୍ବଦା ॥୮୧
ସନ୍ତୋଷ ଅଲୋଭ ସୁଦକ୍ଷ ।
ଧର୍ମଜ୍ଞ ପ୍ରିୟ ସତ୍ୟବାକ୍ୟ ॥୮୨

ଶୁଚି ସୁସ୍ନିଗ୍ଧେ ସେ ଆନନ୍ଦେ ।
ନିରତେ ସେବେ ସ୍ୱାମୀ ପାଦେ ॥୮୩
ସେବା କରିବ ଜନ୍ତୁ ଜନେ ।
ପରପୁରୁଷ ପିତୃଜ୍ଞାନେ ॥୮୪
ଯେ ନାରୀ ହରି ଭାବେ ନିତି ।
ସେବା କରନ୍ତି ନିଜ ପତି ॥୮୫
ସେ ନାରୀ ଲକ୍ଷ୍ମୀ ପ୍ରାୟ ହୋଇ ।
ପତିର ହସ୍ତେ ହସ୍ତ ଦେଇ ॥୮୬
ପତି ସଙ୍ଗତେ ବିଷ୍ଣୁ ଲୋକେ ।
ବସଇ ଆନନ୍ଦେ ଅଶୋକେ ॥୮୭
ଅନ୍ୟ ଜାତିର ଯେବା ଧର୍ମ ।
ନିୟତ କୁଳର ଯେ କର୍ମ ॥୮୮
ଏମନ୍ତ ଧର୍ମ ଯୁଗେ ଯୁଗେ ।
ଜାଣି ସେବନ୍ତି ଅନୁରାଗେ ॥୮୯
ବେଦ ଦୃଷ୍ଟିରେ ବିପ୍ରଜନେ ।
ଧର୍ମ କହନ୍ତି ଅବଧାନେ ॥୯୦
ଯେ ଧର୍ମେ ଇହ ପରଲୋକେ ।
ପ୍ରାଣୀ ତରନ୍ତି ଆତ୍ମ ସୁଖେ ॥୯୧
ବୃତ୍ତି-ସ୍ୱଭାବେ କ୍ରିୟା ଘେନି ।
ଯେ ଧର୍ମ ଇହପରେ ମାନି ॥୯୨
ବର୍ତ୍ତନ୍ତି-ସ୍ୱକର୍ମ କରଣେ ।
ସେ ନରେ ପଶନ୍ତି ନିର୍ଗୁଣେ ॥୯୩

ନିରତେ ତପ-ବ୍ରତ କରି ।
ବିଷ୍ଣୁ ମାୟାରୁ ଯା'ନ୍ତି ତରି ॥୯୪
ନିଷ୍କାମ ମାର୍ଗେ ଯେବେ ଭଜେ ।
ଅଙ୍କୁର ଯେହ୍ନେ ଦଗ୍‌ଧବୀଜେ ॥୯୫
କେହେହେଁ ବୃକ୍ଷ ସେ ନୁହଇ ।
ଯତ୍ନ କଲେ ହେଁ ନାଶ ଯାଇ ॥୯୬
କି ଅବା କାମ ଜଡ଼ଚିତ୍ତେ ।
ଯେବେ ସେବଇ ଅବିରତେ ॥୯୭
ତେବେ ବିରକ୍ତ ଚିତ୍ତ ହୋଏ ।
ବହୁତ ଘୃତେ ଅଗ୍ନି ପ୍ରାୟେ ॥୯୮
ସେ ବର୍ଣ୍ଣେ ଯେମନ୍ତ ଲକ୍ଷଣ ।
ବେଦେ ବର୍ଣ୍ଣନ୍ତି ମୁନିଗଣ ॥୯୯
ତା' ଅଧୋ ଉର୍ଦ୍ଧ୍ୱେ ଯେବେ ଦେଖି ।
ସେ ବର୍ଣ୍ଣ ମଧ୍ୟେ ତା'ଙ୍କୁ ଲେଖି ॥୧୦୦
ଏମନ୍ତ ଧର୍ମ ଅନୁବାଦେ ।
ମୁନି କହନ୍ତି ସଭା ମଧ୍ୟେ ॥୧୦୧
ଶୁଣି ସାନନ୍ଦ ଧର୍ମସୁତ ।
କହଇ ଦାସ ଜଗନ୍ନାଥ ॥୧୦୨

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ଯୁଧିଷ୍ଠିର ନାରଦ
ସମ୍ୱାଦେ ସଦାଚାର ନିର୍ଣ୍ଣୟୋ ନାମ
ଏକାଦଶୋଽଧ୍ୟାୟଃ ॥

## ଦ୍ୱାଦଶ ଅଧ୍ୟାୟ

ନାରଦ ଉବାଚ

ଶୁଣ ହେ ଧର୍ମର ନନ୍ଦନ ।
ବନସ୍ଥ-ବ୍ରହ୍ମଚାରୀ-ଧର୍ମ ॥୧
ଗୃହସ୍ଥ-ଭିକ୍ଷୁଧର୍ମ ଯେତେ ।
ଏବେ କହିବା ତୋ ଅଗ୍ରତେ ॥୨
ଗୁରୁ-ଭୁବନେ ବ୍ରହ୍ମଚାରୀ ।
ବସିବ ଦୃଢ଼ବ୍ରତ କରି ॥୩
ସ୍ୱଭାବେ ତପକ୍ଳେଶ ଯୁତେ ।
ନିରତେ ଥିବ ଗୁରୁହିତେ ॥୪

ସୁହୃଦ-ସୁଦୃଢ଼-ଲକ୍ଷଣେ ।
ଆଜ୍ଞା ବହିବ ଦାସ ପଣେ ॥୫
ଗୁରୁ ଅନଳ ସୁରୋତ୍ତମ ।
ତ୍ରିସନ୍ଧ୍ୟା କରିବ ପ୍ରମାଣ ॥୬
ଉଭୟ ସନ୍ଧ୍ୟାରେ ମଉନ ।
ଜପିବ ବ୍ରହ୍ମ-ସନାତନ ॥୭
ବେଦ ପଢ଼ିବ ନିରନ୍ତରେ ।
ଗୁରୁବଚନ ଧରି ଶିରେ ॥୮
ନିକଟେ ଥିବ ଶୁଦ୍ଧଚିତ୍ତେ ।
ଚରଣେ ନମି ବେନି ହସ୍ତେ ॥୯

ମେଖଳା ଚର୍ମ କଉପୀନ ।
ଦଣ୍ଡ କମଣ୍ଡଳୁ ଧାରଣ ॥୧୦
ଯଜ୍ଞୋପବୀତ ଦର୍ଭପାଣି ।
ଯେବା କଳ୍ପିତ ଅନ୍ନ ପାଣି ॥୧୧
ବିପ୍ର ଭୁବନୁ ମାଗି ଭିକ୍ଷା ।
ଦୃଢ଼େ ରଖିବ ଗୁରୁଦୀକ୍ଷା ॥୧୨
ପଞ୍ଚ ଭୁବନୁ ଯା' ପାଇବ ।
ଗୁରୁ-ସମୀପେ ସମର୍ପିବ ॥୧୩
ଯେ ଧର୍ମ ବ୍ରହ୍ମଚାରୀ ଦୀକ୍ଷା ।
ଗୁରୁ-ବଚନେ କରି ଭିକ୍ଷା ॥୧୪

Dr. Sudhanshu Sekhar Mishra

ଗୁରୁ-ଆଜ୍ଞାରେ ତା' ଭୁଞ୍ଜିବ ।
ନୋହିଲେ ଉପବାସେ ଥିବ ॥୧୫
ସୁଶାନ୍ତ ମନେ ବଞ୍ଚି ଦିନ ।
କରିବ ଉଶ୍ୱାସ ଭୋଜନ ॥୧୬
ଗୁରୁଙ୍କ କାର୍ଯ୍ୟେ ଦକ୍ଷପଣେ ।
ଶ୍ରଦ୍ଧା କରିବ ଅନୁକ୍ଷଣେ ॥୧୭
ଇନ୍ଦ୍ରିୟଗଣ କରି ବନ୍ଦୀ ।
ଚଞ୍ଚଳ ମନ ହୃଦେ ରୁନ୍ଧି ॥୧୮
ସ୍ତିରୀ ସ୍ତ୍ରୀବଶ ଲୋକମେଳେ ।
ସଙ୍ଗେ ନ ଥିବ ସର୍ବକାଳେ ॥୧୯
ନ ଶୁଣି ସ୍ତିରୀଙ୍କ ବଚନ ।
ନ କରି ମୁଖାବଲୋକନ ॥୨୦
କେଶ-ପ୍ରସାଧନ ମର୍ଦ୍ଦନ ।
ସ୍ନାହାନ ବେଶ ଆଦିକର୍ମ ॥୨୧
ଗୁରୁକାମିନୀଙ୍କ ଗୋଚରେ ।
ଦୃଢ଼େ ବର୍ଜିବ ଅତି ଦୂରେ ॥୨୨
ଯୁବତୀଜନ ଅଗ୍ନିସ୍ତମ୍ଭ ।
ପୁରୁଷ-ଦେହ ଘୃତକୁମ୍ଭ ॥୨୩
ଏଣୁ ଯୁବତୀ ଦୂର କରି ।
ଧର୍ମ ସାଧିବ ବ୍ରହ୍ମଚାରୀ ॥୨୪
ଜୀବ ଈଶ୍ୱର ଭେଦଜ୍ଞାନ ।
ଯାବତ ନ ଛାଡ଼ଇ ମନ ॥୨୫
ତାବତ ଥାଏ ଦ୍ୱୈତ ଭ୍ରମ ।
ଏ ସ୍ତିରୀ ଏ ପୁରୁଷ ଜ୍ଞାନ ॥୨୬
ଏଣୁ ତା' ଭୋଗେ ହୋଏ ମତି ।
ତେଣୁ ଛାଡ଼ିବ ସ୍ତ୍ରୀ ସଙ୍ଗତି ॥୨୭
ଏ ସର୍ବ ବ୍ରହ୍ମଚାରୀ-ବ୍ରତ ।
ପାଳିବ ଯତି ଯେ ଗୃହସ୍ଥ ॥୨୮
ସ୍ତିରୀ-ଗମନ ଋତୁକାଳେ ।
ଉଚିତ ଗୃହସ୍ଥାଶ୍ରମରେ ॥୨୯
ଅଞ୍ଜନ-ତଇଲ-ମର୍ଦ୍ଦନ ।
ସ୍ତିରୀ ବା ସ୍ତ୍ରୀ ମୂର୍ତ୍ତି ଦର୍ଶନ ॥୩୦
ଭୂଷା-ଲେପନ ମାଲ୍ୟଗନ୍ଧ ।
ତେଜିବ ବ୍ରହ୍ମଚାରୀ ମଦ୍ୟ ॥୩୧
ଏମନ୍ତେ ବଞ୍ଚି ଗୁରୁପୁରେ ।
ବେଦ-ଅଭ୍ୟାସ ନିରନ୍ତରେ ॥୩୨

ଅଙ୍ଗ-ଉପାଙ୍ଗ ବେଦ ପଢ଼ି ।
ଗୁରୁ-ସମୀପେ କରଯୋଡ଼ି ॥୩୩
ଉଭା ହୋଇଣ ଗୁରୁ ଆଗେ ।
ଆଜ୍ଞା ମାଗିବ ଅନୁରାଗେ ॥୩୪
ଗୁରୁ-ବଚନ ଶିରେ ଧରି ।
ତେବେ ବଞ୍ଚିବ ଗୃହକରି ॥୩୫
ଅଥବା ବନସ୍ତେ ପଶିବ ।
ସନ୍ୟାସ ମତେ ବା ବଞ୍ଚିବ ॥୩୬
ଗୁରୁ ଅନଳ ସର୍ବଦେହେ ।
ତୁଲ୍ୟେ ଦେଖିବ ବିଷ୍ଣୁ ମୟେ ॥୩୭
ଏହି ପ୍ରକାରେ ସାଧି ଧର୍ମ ।
ଯେବା ଆଶ୍ରମେ ଯେବା କର୍ମ ॥୩୮
ଯେବା ସାଧନ୍ତି ଅପ୍ରମାଦେ ।
ଅନ୍ତେ ପଶନ୍ତି କୃଷ୍ଣ ପାଦେ ॥୩୯
ଏବେ ହୋ ଶୁଣ ମହୀପତି ।
ଆଶ୍ରମ ବାନପ୍ରସ୍ଥ ଗତି ॥୪୦
ବନସ୍ତେ ଧର୍ମ ସାଧି ସୁଖେ ।
ଅନ୍ତେ ମିଳନ୍ତି ମୁନିଲୋକେ ॥୪୧
ଭକ୍ଷଣ-ଫଳ-ମୂଳ-ଶାକ ।
ଅଗ୍ନିରେ ନ କରିବ ପାକ ॥୪୨
ନବୀନ ଫଳମୂଳ ଲାଭେ ।
ପୁରୁଣା ତେଜିବ ସ୍ୱଭାବେ ॥୪୩
ବନ-ସମ୍ଭବ ବସ୍ତୁ ଘେନି ।
କାଳେ ପୂଜିବ ଇଷ୍ଟ ଅଗ୍ନି ॥୪୪
ଅଗ୍ନି-ରକ୍ଷଣ ଅର୍ଥେ ଘର ।
ଅଥବା ପର୍ବତ-କନ୍ଦର ॥୪୫
କେଶ-ଲୋମାଦି ନଖ ଶ୍ମଶ୍ରୁ ।
ଜଟିଳ କଷାବସ୍ତ୍ର ପାଂଶୁ ॥୪୬
ଦଣ୍ଡ କମଣ୍ଡଳୁ ଅଜିନ ।
ବୃକ୍ଷ-ବକଳ ପରିଧାନ ॥୪୭
ତ୍ରିସନ୍ଧ୍ୟା କରିବ ସ୍ନାହାନ ।
ବାଲୁକା-ମଣ୍ଡଳେ ଶୟନ ॥୪୮
ଏମନ୍ତେ ଦ୍ୱାଦଶ-ବତ୍ସର ।
ବନେ ବଞ୍ଚିବ ବ୍ରତଧର ॥୪୯
ଅଷ୍ଟ-ବରଷ କିବା ଅର୍ଦ୍ଧେ ।
ଧର୍ମ ସାଧିବ ଅପ୍ରମାଦେ ॥୫୦

ବେନିବରଷ କିବା ଏକ ।
ବଞ୍ଚିବ ଏ ବିଧି ବିବେକ ॥୫୧
ଧର୍ମ-ସାଧନେ ଅସମର୍ଥ ।
ଯେବେ ହୋଇବ ବ୍ୟାଧିଗ୍ରସ୍ତ ॥୫୨
ଆଗମ ନିଗମ ପ୍ରମାଣେ ।
ସନ୍ୟାସ କରିବ ତକ୍ଷଣେ ॥୫୩
ସଙ୍କଳ୍ପି ଅନଶନ-ବ୍ରତ ।
ହରିଚରଣେ ଦେଇ ଚିତ୍ତ ॥୫୪
ଯେ ସୃଷ୍ଟି ଶରୀର ଧାରଣେ ।
ନ୍ୟାସିବ ପରମ କାରଣେ ॥୫୫
ଗଗନେ ନ୍ୟାସି ଇନ୍ଦ୍ରଗଣେ ।
ନିଃଶ୍ୱାସ ନ୍ୟାସି ସମୀରଣେ ॥୫୬
ତେଜେ ତେଜକୁ ନ୍ୟାସ କରି ।
ଧାତୁ ସମୂହ ଜଳେ ଭରି ॥୫୭
ଅନଳେ ବଚନ ବିନାଶି ।
କ୍ଷିତି କାରଣେ ଶେଷ ନ୍ୟାସି ॥୫୮
କରଯୁଗଳ ଇନ୍ଦ୍ରେନ୍ୟାସି ।
ସୁଦୃଢ଼େ ସ୍ଥାପିବ ସନ୍ୟାସୀ ॥୫୯
ପାଦର ଗତି ନାରାୟଣେ ।
ଉପସ୍ଥ ପ୍ରଜାପତି ଗଣେ ॥୬୦
ଗୁହ୍ୟ ବିସର୍ଗ ମୃତ୍ୟୁ ଅଙ୍ଗେ ।
ଦିଗେ ସମର୍ପି ଶ୍ରୁତିଯୁଗେ ॥୬୧
ସ୍ୱରଣ ଗୁଣ ତ୍ୱଚେ ନ୍ୟାସି ।
ରୂପକୁ ଚକ୍ଷୁବଳେ ଗ୍ରାସି ॥୬୨
ରୂପେ ନିବେଶି ଦୃଷ୍ଟି ଗୁଣ ।
ଜିହ୍ୱାକୁ ରସେ ଗନ୍ଧେ ଘ୍ରାଣ ॥୬୩
ମାନକୁ ଚନ୍ଦ୍ରରେ ସଂହରି ।
ବୋଧକୁ ବୁଦ୍ଧି ମଧ୍ୟେ ଭରି ॥୬୪
ଅଶେଷ କର୍ମ ରୁଦ୍ର ଦେହେ ।
କ୍ରିୟାକୁ କର୍ତ୍ତବ୍ୟ ସମୂହେ ॥୬୫
ଚିତ୍ତକୁ ସତ୍ତ୍ୱଗୁଣେ ଭରି ।
ଗୁଣେ ବିକାରକୁ ସଂହରି ॥୬୬
କ୍ଷିତିକି ନ୍ୟାସ କରି ଜଳେ ।
ଜଳକୁ ବିନାଶି ଅନଳେ ॥୬୭
ଅନଳ ବିନାଶି ଅନିଳେ ।
ପବନ ଗଗନମଣ୍ଡଳେ ॥୬୮

Dr. Sudhanshu Sekhar Mishra

ଗଗନ ଅହଙ୍କାରେ ଭରି ।
ଅବ୍ୟକ୍ତେ ସମୂହ ସଂହାରି ॥୬୯
ମହତ ତତ୍ତ୍ୱେ ଅହଙ୍କାର ।
ମହତ ପ୍ରକୃତି ଗୋଚର ॥୭୦
ସେ ଗୁଣମୟ ସର୍ବବ୍ୟାପୀ ।
କ୍ଷର ଅକ୍ଷର ବେନିରୂପୀ ॥୭୧
ଚିନ୍ମାତ୍ର ଅକ୍ଷର ବିଶେଷ ।
ଜୀବ ପରମ ପରଂହଂସ ॥୭୨
ତହିଁ ପ୍ରବେଶ ଧ୍ୟାନ ମୟେ ।
କାଷ୍ଠ-ଦହନେ ଅଗ୍ନିପ୍ରାୟେ ॥୭୩
ଏମନ୍ତ ସୃଷ୍ଟିକି ସଂହରି ।
ବିଷ୍ଣୁ ମାୟାରୁ ଯା'ନ୍ତି ତରି ॥୭୪
ସୁଜନେ ବୋଲ ହରି ହରି ।
ଭବ ସାଗରୁ ହେବ ପାରି ॥୭୫
ଏମନ୍ତେ ତରେ ବାନପ୍ରସ୍ଥ ।
କହଇ ଜଗନ୍ନାଥ ଦାସ ॥୭୬

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ଯୁଧିଷ୍ଠିର ନାରଦ
ସମ୍ବାଦେ ସଦାଚାର ନିର୍ଣ୍ଣୟୋ ନାମ
ଦ୍ୱାଦଶୋଽଧ୍ୟାୟଃ ॥

---

## ତ୍ରୟୋଦଶ ଅଧ୍ୟାୟ

ନାରଦ ଉବାଚ

ଏବେ କହିବା ଯତି ଧର୍ମ ।
ସ୍ୱଭାବେ ଅବଧୂତ-କର୍ମ ॥୧
ମାୟାସଂସାର ଦୂର କରି ।
ବୁଲିବ ଦେହ ମାତ୍ର ଧରି ॥୨
ଗ୍ରାମେ ବଞ୍ଚିବ ଏକ ଦିନ ।
ଦ୍ୱିଦିନ ନ ରହିବ ପୁଣ ॥୩
ନିର୍ଜନେ ଦିଗମ୍ବର-ବେଶେ ।
ଯେବେ ପଶିବ ବନଦେଶେ ॥୪
କୌପୀନ କରିବ ବସନ ।
ଏକା ଭ୍ରମିବ ରାତ୍ରଦିନ ॥୫
କେବେ ହେଁ ନ କରିବ ସଙ୍ଗ ।
ସମୁଦ୍ରେ ଯେସନେ ତରଙ୍ଗ ॥୬
ସର୍ବଭୂତରେ ଶାନ୍ତପଣେ ।
ଶ୍ରୀନାରାୟଣ ପ୍ରାୟ ମଣେ ॥୭
ସତ ଅସତ ବିଶ୍ୱ ବେନି ।
ତୁଲେ ଭାବିବ ଆତ୍ମା ଘେନି ॥୮
ପରମବ୍ରହ୍ମ ଆତ୍ମା ସାର ।
ସର୍ବବ୍ୟାପିତ ନିରନ୍ତର ॥୯
ଜାଗ୍ରତ-ସ୍ୱପ୍ନ ମଧ୍ୟେ ରହି ।
ଆତ୍ମାର ଗତି ଆତ୍ମେ ଧ୍ୟାୟି ॥୧୦
ଆତ୍ମାର ବନ୍ଧ-ମୋକ୍ଷ ବେନି ।
ଲକ୍ଷିବ ମାୟା ମାତ୍ର ଘେନି ॥୧୧
ବସ୍ତୁ ସ୍ୱଭାବ ନାହିଁ ତା'ର ।
ଏଣୁ ସର୍ବଦା ନିର୍ବିକାର ॥୧୨
ବସ୍ତୁର ନିତ୍ୟାନିତ୍ୟ-ଭାବ ।
ଏଣୁ ଏ ଶରୀର ଅଧ୍ରୁବ ॥୧୩
ଜୀବର ଉତ୍ପତ୍ତି-ମରଣ ।
କାଳଟି ଏହାର କାରଣ ॥୧୪
ଏଣୁ ଶରୀର-ଧର୍ମ ଜାଣି ।
ଆତ୍ମାର ଗତି ପରିମାଣି ॥୧୫
ଅଶାସ୍ତ୍ରେ ନ କରିବ ରତି ।
ଜୀବିକା ଜ୍ୟୋତିଷ ପ୍ରଭୃତି ॥୧୬
ଦୂରେ ତେଜିବ ତର୍କବାଦ ।
ଯେ ଶାସ୍ତ୍ରେ ପକ୍ଷପାତ ଭେଦ ॥୧୭
ଅଭ୍ୟାସ ନ କରି ସେ ପଥେ ।
ଶିଷ୍ୟ ନ କରିବ ସଙ୍ଗତେ ॥୧୮
ବ୍ୟାଖ୍ୟାନ ନିଜ ପ୍ରୟୋଜନେ ।
କେବେ ହେଁ ନ କରିବ ମନେ ॥୧୯
ମଠାଦି ଗୃହକୁ ନିର୍ମାଣ ।
କେବେ ହେଁ ନୋହେ ଯତି ଧର୍ମ ॥୨୦
ସୁଶାନ୍ତ ବୁଦ୍ଧି ସମଚିତ୍ତ ।
ହୋଇବ ଅର୍ଥରେ ବିରକ୍ତ ॥୨୧
ଦୃଶ୍ୟ-ଅଦୃଶ୍ୟ ଭାବେ ଥିବ ।
ବାଇ ବାଳକ ଚେଷ୍ଟା ଭାବ ॥୨୨
ମୂକ ବଧିର ପ୍ରାୟେ ବେଶେ ।
ଭାବେ ବଞ୍ଚିବ ଆତ୍ମ ବଶେ ॥୨୩
ଶୁଣ ରାଜନ ସାବଧାନ ।
ଯେ ଇତିହାସ ପୁରାତନ ॥୨୪
ପ୍ରହ୍ଲାଦ ସଙ୍ଗେ ମୁନିବର ।
ନାମ ଯାହାର ଅଜଗର ॥୨୫
ଏ ବେନିଜନଙ୍କ ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ॥୨୬
ସେ ପ୍ରହଲ୍ଲାଦ ଏକ ଦିନେ ।
ମୃଗୟା ଅର୍ଥେ ଗଲେ ବନେ ॥୨୭
ଭୃତ୍ୟନିକର ଘେନି ସଙ୍ଗେ ।
ବନେ ବିହରେ କ୍ରୀଡ଼ା ରଙ୍ଗେ ॥୨୮
ଏମନ୍ତେ ସହ୍ୟଗିରି ତଟେ ।
କାବେରୀ ତଟେ ଭୂମି ପୃଷ୍ଠେ ॥୨୯
ଶୟନେ ଦେଖେ ମୁନିବର ।
ଶରୀର ଧୂଳିରେ ଧୂସର ॥୩୦
ସ୍ୱେଦ-କର୍ଦ୍ଦମେ ସେ ଭୂଷିତ ।
ସମ୍ମୁଖେ ଦେଖେ ବିପରୀତ ॥୩୧
କର୍ମ-ବଚନ-ଲିଙ୍ଗ-ବର୍ଣ୍ଣେ ।
ଲକ୍ଷି ନ ପାରେ ଅନୁମାନେ ॥୩୨
କିବା ଆଶ୍ରମ ଲକ୍ଷି ନୋହେ ।
ଶୟନ ବିପରୀତ-ଦେହେ ॥୩୩
ତାହାଙ୍କୁ ଦେଖି ପ୍ରହଲ୍ଲାଦ ।
ଭାବେ ନମିଲା ବେନିପାଦ ॥୩୪
ଲକ୍ଷଣେ ମଣି ତା'ର ଗତି ।
ବୋଲନ୍ତି ଅସୁରଙ୍କ ପତି ॥୩୫

ପ୍ରହ୍ଲାଦ ଉବାଚ

ଏ ସ୍ଥୂଳ ଶରୀର ତୋହର ।
ସ୍ୱଭାବେ ଦିଶଇ ସୁନ୍ଦର ॥୩୬

Dr. Sudhanshu Sekhar Mishra

ଭୋଗୀ ପୁରୁଷ ପ୍ରାୟେ ହୋଇ ।
ତୋ' ଦେହ ଦେଖି ପଚାରଇ ॥୩୭
ବିତ୍ତ-ଅର୍ଜନେ ଭୋଗୀଜନେ ।
ଭ୍ରମନ୍ତି ନଗର ବିପିନେ ॥୩୮
ଭୋଗର ବଳେ ପୁଷ୍ଟ ଦେହୀ ।
ଏ ଅନୁମାନେ ମୁ ମଣଇ ॥୩୯
ଉଦ୍ୟମ ନ କରି ତୁ ଧନେ ।
କିମ୍ବା ଶୋଇଛୁ ଘୋର ବନେ ॥୪୦
କେମନ୍ତେ ପୁଷ୍ଟ ତୋ' ଶରୀର ।
କହ ସଂଶୟ ଯାଉ ଦୂର ॥୪୧
କହ ତୁ ନ ଭଜି ମଉନ ।
ମୁଁ ଯେବେ ଶୁଣିବା ଭାଜନ ॥୪୨
ଯେ ଦକ୍ଷ ପଣ୍ଡିତ ଚତୁର ।
ବିଚିତ୍ର ବାକ୍ୟ ପ୍ରିୟକର ॥୪୩
ତା'ଙ୍କୁ ପୁଚ୍ଛିଲେ ସର୍ବ କହେ ।
ମନେ ଅହଙ୍କାର ନ ବହେ ॥୪୪
ଏମନ୍ତେ ପ୍ରହଲ୍ଲାଦ ବାଣୀ ।
ସେ ଅବଧୂତ କର୍ଣ୍ଣେ ଶୁଣି ॥୪୫
ତାହାର ଅମୃତ-ବଚନେ ।
କହଇ ହୃଷିତ ବଦନେ ॥୪୬

ଅବଧୂତ ଉବାଚ

ତୁ ପ୍ରହଲ୍ଲାଦ ଦୈତ୍ୟବର ।
ଜାଣଇଁ ମହିମା ତୋହର ॥୪୭
ସଂଶୟ ନାହିଁ ତୋ'ର ମନେ ।
ତୁ ଦେଖୁ ନିର୍ମଳ ନୟନେ ॥୪୮
ଯା'ର ହୃଦରେ ନାରାୟଣ ।
ବସଇ ପୁରୁଷ ପୁରାଣ ॥୪୯
ସେ ଭକ୍ତିବଳେ ତମଘୋର ।
ନାଶଇ ଯେହ୍ନେ ଦିବାକର ॥୫୦
ତୁ ମୋତେ ପଚାରିଲୁ ଯେବେ ।
ଶୁଣ କହିବା ତୋତେ ଭାବେ ॥୫୧
ଆତ୍ମାର ଶୁଦ୍ଧି ଯେ ଇଛନ୍ତି ।
ମହାନ୍ତ ପୁଚ୍ଛିଲେ କହନ୍ତି ॥୫୨
ଭବ-ବାହିନୀ ତୃଷ୍ଣା ନାମ ।
ତା'ର ପୂରଣେ କେହୁ କ୍ଷମ ॥୫୩

ସେ ତୃଷ୍ଣାବଳେ ମୁଁ ଜଗତେ ।
ଭ୍ରମିଲି କୋଟି ଜନ୍ମ ଶତେ ॥୫୪
ଅଶେଷ-ଯୋନି ଗର୍ଭବାସ ।
ତେବେ ହେଁ ନ ପୂରିଲା ଆଶ ॥୫୫
ଅର୍ଜିଲା କର୍ମଦୋଷେ ଭ୍ରମି ।
ଫୁଟି ହୋଇଲି ପଥଶ୍ରମୀ ॥୫୬
ଯେ ଶୁଭକର୍ମ ମୋ'ର ଥିଲା ।
ସେ ଫଳ ଏ ଜନ୍ମେ ଫଳିଲା ॥୫୭
ସ୍ୱଭାବେ ସ୍ୱର୍ଗ-ମୋକ୍ଷ ଦ୍ୱାର ।
ଦୁର୍ଲ୍ଲଭ ମନୁଷ୍ୟ ଶରୀର ॥୫୮
ସ୍ୱଧର୍ମ କଲେ ସ୍ୱର୍ଗବାସ ।
ଅଧର୍ମେ ନରକେ ପ୍ରବେଶ ॥୫୯
ଏ ବେନିଦ୍ୱାର ଯେ ତେଜନ୍ତି ।
ନିଶ୍ଚଳ ଯୋଗେ ଆତ୍ମା ଚିନ୍ତି ॥୬୦
ଭଜନ୍ତି ଗୋବିନ୍ଦ-ଚରଣେ ।
ତରନ୍ତି ଏ ଜନ୍ମ-ମରଣେ ॥୬୧
ମୁଁ ଏ ସଂସାର ସୁଖ ଦେଖି ।
ବିଚାରି ମନେ ହେଲି ଦୁଃଖୀ ॥୬୨
ଦ୍ୱନ୍ଦ୍ୱ ମୈଥୁନ ଗୃହବାସେ ।
ଇନ୍ଦ୍ରିୟ ସୁଖଭୋଗ ଆଶେ ॥୬୩
ଅନ୍ତେ ନରକେ ବିଶ୍ରାମନ୍ତି ।
ଏ ଘେନି ମନେ କଲି ଭ୍ରାନ୍ତି ॥୬୪
ଏଣୁ ମୁଁ ଗୃହଦ୍ୱନ୍ଦ୍ୱ ଏଡ଼ି ।
ତପ ସାଧଇ ଦୁଃଖେ ପଡ଼ି ॥୬୫
ପ୍ରବୃତ୍ତି ମାର୍ଗେ ନର ଦୁଃଖୀ ।
ନିବୃତ୍ତି ମାର୍ଗେ ହେଲି ସୁଖୀ ॥୬୬
ଏବେ ମୁଁ କୃଷ୍ଣର ପ୍ରସାଦେ ।
ନିବୃତ୍ତି-କର୍ମଯୋଗେ ସାଧେ ॥୬୭
ନିତ୍ୟେ ଭ୍ରମଇ ଆତ୍ମା ଭାବେ ।
ମନ ଆନନ୍ଦେ ସୁଖପ୍ଲବେ ॥୬୮
ମନ-ସଙ୍କଳ୍ପ-ଭୋଗ ତେଜି ।
ପ୍ରାରବ୍ଧ-ଭୋଗ ବନେ ଭୁଞ୍ଜି ॥୬୯
ଏଣୁ ଆତ୍ମାର ଅର୍ଥେ ମୁହିଁ ।
ସଙ୍କଳ୍ପି ଏକାନ୍ତେ ଭ୍ରମଇ ॥୭୦
ଏବେ ହୋ ପ୍ରହଲ୍ଲାଦ ଶୁଣ ।
ବିଷୟ-ବଶେ ଯେତେ ଗୁଣ ॥୭୧

ତାମସ ରଜଗୁଣ ତେଜେ ।
ବିବିଧ କାମ୍ୟକର୍ମ ଭଜେ ॥୭୨
ଆତ୍ମାର ହିତ ନ ସୁମରେ ।
ଅସାଧୁ ମାର୍ଗେ କର୍ମ କରେ ॥୭୩
ପ୍ରାଣୀ ଭ୍ରମନ୍ତି ଘୋର ପଥେ ।
ନାନା-ଯାତନା କର୍ମତନ୍ତେ ॥୭୪
ଘୋର-ସଂସାରେ ସଞ୍ଚରନ୍ତି ।
ଏ ଘେନି ମୋ'ର ମନେ ଭ୍ରାନ୍ତି ॥୭୫
ଦେଖ ଅଜ୍ଞାନେ ମୋହଛନ୍ନେ ।
ସଂସାରେ ସଞ୍ଚରନ୍ତି ଜନେ ॥୭୬
ଯେ ଜଳ ତୃଣେ ଆଚ୍ଛାଦିତ ।
ତାହା ନ ଇଚ୍ଛଇ ତୃଷିତ ॥୭୭
ମୃଗତୃଷ୍ଣାକୁ ଜଳ ମଣେ ।
ଭ୍ରମେ ଭ୍ରମଇ ଅକାରଣେ ॥୭୮
ତାହାର ଶ୍ରମ ମାତ୍ର ସାର ।
ଯେ ଆତ୍ମା ନ କରେ ବିଚାର ॥୭୯
କର୍ମ-ଆୟତ୍ତେ ଦେହ ବହି ।
ଆତ୍ମାର ସୁଖ ନ ଇଚ୍ଛଇ ॥୮୦
ସଙ୍କଳ୍ପି କ୍ରିୟା କରେ ଯେତେ ।
ନିଷ୍ଫଳ ହୋଏ କାର୍ଯ୍ୟ ଅନ୍ତେ ॥୮୧
ଆଧ୍ୟାତ୍ମ ଆଦି ଦୁଃଖ ଯେତେ ।
ଆତ୍ମା ନିପାତ ଯାର ଅନ୍ତେ ॥୮୨
ବିମୁକ୍ତ ନୋହେ ପ୍ରାଣୀ ଏଣେ ।
କି ପ୍ରୟୋଜନ ଅର୍ଥ କାମେ ॥୮୩
ଲୋଭୀ ପ୍ରାଣୀଙ୍କ ଦୁଷ୍ଟ-ମନ ।
ବଳେ ବନ୍ଧନ କରେ ଧନ ॥୮୪
ଧନୀଜନଙ୍କ ଦୁଃଖ ଦେଖି ।
ମୁଁ ଧନତୃଷ୍ଣାକୁ ଉପେକ୍ଷି ॥୮୫
ଦେଖଇ ଧନୀଙ୍କର ଦୁଃଖ ।
ନିଦ୍ରା-ଭୋଜନେ ନାହିଁ ସୁଖ ॥୮୬
ରାଜାର ଭୟ ନିତ୍ୟେ ଧନେ ।
ଚୌର ସ୍ୱପନ ଶତ୍ରୁଜନେ ॥୮୭
ଯେ ଅବା ଆସେ ଧନ ମାଗି ।
ତା ଦେଖି ଚିତ୍ତେ ଦୁଃଖଭାଗୀ ॥୮୮
ଅଶେଷ ଆପଦର ସ୍ଥାନ ।
ଏ ଧନମୂଳୁଁ ହୋଏ ଜନ୍ମ ॥୮୯

Dr. Sudhanshu Sekhar Mishra

ଯେ ଶୋକ ମୋହ ଲୋଭ କ୍ରୋଧ ।
ନିତ୍ୟେ ଉଦ୍‌ବେଗ ଯେ ପ୍ରମାଦ ॥୯୦
ଯାହାର ମୂଳୁଁ ଏ ସ୍ରବନ୍ତି ।
ଧନର ମୂଳେ ପ୍ରାଣଭୀତି ॥୯୧
ଏ ଘେନି ଯେ ପଣ୍ଡିତ ଜନେ ।
ଲୋଭ ତେଜନ୍ତି ଜାଣି ଧନେ ॥୯୨
ମଧୁମକ୍ଷିକା ଅଜଗର ।
ଏ ଜନ୍ମେ ଗୁରୁ ଏ ମୋହର ॥୯୩
ଯେ ବଇରାଗ ପରିତୋଷ ।
ଏହାଙ୍କ ଠହୁଁ ଉପଦେଶ ॥୯୪
ବୈରାଗ୍ୟ ସର୍ବକାମେ ମୋ'ର ।
ଏ ଶିକ୍ଷା ଦେଲା ମଧୁକର ॥୯୫
ଅନେକ ଦୁଃଖେ ଯେ ଅର୍ଜନ ।
ତାକୁ ବିନାଶି ହରେ ଆନ ॥୯୬
ଧନ ନ ଇଛି ତୋଷ ମନେ ।
ଭ୍ରମଇ ଯଥା ଲାଭ ଧନେ ॥୯୭
ମହାସର୍ପର ପ୍ରାୟେ ହୋଇ ।
ବଞ୍ଚଇ ଉପଦେଶ ଧ୍ୟାୟି ॥୯୮
ତଥାପି ଗୋବିନ୍ଦ ପ୍ରସନ୍ନେ ।
ନିତ୍ୟେ ଆନନ୍ଦ ମୋ'ର ମନେ ॥୯୯
ମୋ ଦେହେ ବଳ କାନ୍ତି ତୁଷ୍ଟି ।
ସୁଖ-ବର୍ଦ୍ଧନେ ଦେହ ପୁଷ୍ଟି ॥୧୦୦
ଏ ଭାବେ ବଞ୍ଚେ ମୋ'ର ଦେହୀ ।
ମୁଁ ସୁଖ ଦୁଃଖ ନ ଜାଣଇ ॥୧୦୧
ଅଳ୍ପ-ଆହାର କାହିଁ ପାଇ ।
କାହିଁବା ସମ୍ପୂର୍ଣ୍ଣ ଭୁଞ୍ଜଇ ॥୧୦୨
ସ୍ୱାଦୁ-ଅସ୍ୱାଦୁ ନ ମଣଇ ।
ଯେ ଦିନେ ଯେ ଅବା ମିଳଇ॥୧୦୩
ଗ୍ରାସକୁ ଅମୃତ ମଣଇ ।
ସୁମିଷ୍ଟ ମିଳେ ଅବା କାହିଁ ॥୧୦୪
କାହିଁବା କଟୁ ତିକ୍ତ ପାଇ ।
ମନ-ସନ୍ତୋଷେ ତା ଭୁଞ୍ଜଇ ॥୧୦୫
କାହିଁବା ଶ୍ରଦ୍ଧା-ଉପହୃତ ।
କାହିଁବା ମାନ୍ୟ ବିବର୍ଜିତ ॥୧୦୬
କାହିଁବା ଦଧିଅନ୍ନ ଘୃତ ।
କାହିଁବା ଲବଣ ବର୍ଜିତ ॥୧୦୭

ଅଳ୍ପ ବହୁତ ନ ବାରଇ ।
ଯହିଁ ଯା ମିଳେ ତୁଷ୍ଟ ତହିଁ ॥୧୦୮
ଏମନ୍ତେ ପୋଷଇ ଜୀବନ ।
ନିଶ୍ଚିନ୍ତ ମନେ ମୋ ଶୟନ ॥୧୦୯
ରାତ୍ର ଦିବସ ନ ଜାଣଇ ।
ଉଭୟ ଏକ ପ୍ରମାଣଇ ॥୧୧୦
ପାଟବସନ କାହିଁ ପିନ୍ଧି ।
କାହିଁ ବୁଲଇ ଚର୍ମ ବାନ୍ଧି ॥୧୧୧
ଚୀରାଣି ବସ୍ତ୍ର କାହିଁ ମିଳେ ।
କାହିଁ ବା ବଞ୍ଚଇ ବକଳେ ॥୧୧୨
କର୍ମ ଆଦରି ତୋଷମନେ ।
ବସଇ ଇଚ୍ଛା ସୁଖ ସ୍ଥାନେ ॥୧୧୩
କାହିଁ ବା ଧରଣୀ ଶୟନ ।
କାହିଁ ପାଷାଣ କାହିଁ ତୃଣ ॥୧୧୪
କାହିଁ ପ୍ରସାଦ ମଧ୍ୟେ ଥାଇ ।
କାହିଁ ପଲଙ୍କେ ନିଦ୍ରା ଯାଇ ॥୧୧୫
କାହିଁ ହଂସୂଳୀ ତୂଳୀ ପରେ ।
କାହିଁ ଶ୍ମଶାନେ ବନ ଘୋରେ॥୧୧୬
କାହିଁ ବା ସ୍ନାନ କରେ ଶୁଦ୍ଧେ।
ସୁବାସ ତଇଳ ସୁଗନ୍ଧେ ॥୧୧୭
କାହିଁ ଚନ୍ଦନ ଗନ୍ଧସାର ।
କାହିଁ ବା ନାନା ଅଳଙ୍କାର ॥୧୧୮
ସୁବାସ ପୁଷ୍ପମାଳ ଗନ୍ଧେ ।
କାହିଁ ବା ଗଜ ଅଶ୍ୱ କନ୍ଧେ ॥୧୧୯
କାହିଁ ବେଷ୍ଟିତ ପୀତାମ୍ବର ।
କାହିଁ ବା ଭସ୍ମ ଦିଗମ୍ବର ॥୧୨୦
କାହିଁ ବା ଜ୍ଞାନ ଥାଇ ଦେହେ।
କାହିଁ ଭ୍ରମଇ ଗୃହୀ ପ୍ରାୟେ ॥୧୨୧
କାହିଁ ପ୍ରମାଦ ଦେହେ ଥାଇ ।
କାହିଁ ବା ବୃକ୍ଷମୂଳେ ଶୋଇ ॥୧୨୨
ହେ ପ୍ରହଲ୍ଲାଦ ଶୁଣ ଧୀରେ ।
ଆଉ କହିବା ତୋ ଛାମୁରେ ॥୧୨୩
ବିଷୟ-ଜଡ଼େ ପ୍ରାଣୀ ଥାନ୍ତି ।
ନିଜ ସ୍ୱଭାବ ପ୍ରକାଶନ୍ତି ॥୧୨୪
କାହାକୁ ନିନ୍ଦା ସ୍ତୁତି ମୋ'ର ।
କେବେ ହେଁ ନ କରେ ବିଚାର॥୧୨୫

ସର୍ବପ୍ରାଣୀଙ୍କ ଶ୍ରେୟ ଚିନ୍ତି ।
ଏଣୁ ମୋ ମନେ ନାହିଁ ଭ୍ରାନ୍ତି॥୧୨୬
ଆନନ୍ଦେ ଗୋବିନ୍ଦ-ଚରଣେ ।
ଚିତ୍ତ ନିବେଶି ଅନୁକ୍ଷଣେ ॥୧୨୭
ଚିତ୍ତ-ବିକଳ୍ପ ହୋମ କରି ।
ତାହାକୁ ମନ ମଧ୍ୟେ ଭରି ॥୧୨୮
ମନ-ବିକାର ତତ୍ତ୍ୱେ ଥୋଇ ।
ଯେତେ ମାୟାକୁ ଭୟ ନାହିଁ ॥୧୨୯
ସେ ମାୟା ଆତ୍ମା ଅନୁଭୂତେ ।
ସତ୍ୟ ସଙ୍କଳ୍ପ ମୁନିମତେ ॥୧୩୦
ତେଣୁ ନିର୍ବିକାର ମୋ ମନ ।
ନିର୍ଗୁଣ-ବ୍ରହ୍ମେ କରି ଧ୍ୟାନ ॥୧୩୧
ଅମନ୍ତେ ଆତ୍ମା-ଅନୁଭୂତେ ।
କହିଲି ତୋହର ଅଗ୍ରତେ ॥୧୩୨
ଯେ ଲୋକ-ଶାସ୍ତ୍ର ମତ ଦୁଇ ।
ଏଣେ ବର୍ଜିତ ମୋ'ର ଦେହୀ॥୧୩୩
ତୁ ଯେଣୁ ବିଷ୍ଣୁର ଭକତ ।
ତେଣୁ କହିଲି ତୋ ଅଗ୍ରତ ॥୧୩୪
ତୁ ପ୍ରହ୍ଲାଦ କୃଷ୍ଣ ଦାସ ।
ଏଣୁ ମୁଁ ତୋହରେ ବିଶ୍ୱାସ ॥୧୩୫

ନାରଦ ଉବାଚ

ଏମନ୍ତେ ମୁନି ମୁଖୁଁ ଶୁଣି ।
ପରମହଂସ ଧର୍ମବାଣୀ ॥୧୩୬
ସେ ପ୍ରହଲ୍ଲାଦ ଜ୍ଞାନୀ ଧୀର ।
ସ୍ୱଭାବେ ବିଷ୍ଣୁର କିଙ୍କର ॥୧୩୭
ସେ ଅବଧୂତ ତତ୍ତ୍ୱବାଣୀ ।
ପ୍ରବାହ-ସୁଧା-ତରଙ୍ଗିଣୀ ॥୧୩୮
ସେ ପ୍ରହଲ୍ଲାଦ ଶୁଣି କର୍ଣ୍ଣେ ।
ବନ୍ଦିଲା ବିବିଧ-ସ୍ତବନେ ॥୧୩୯
ଆନନ୍ଦେ ନମି ତା ଚରଣେ ।
ସଦନେ ଗଲା ତତକ୍ଷଣେ ॥୧୪୦
ଶୁଣ ସୁଜନେ ଦୃଢ଼ଚିତ୍ତେ ।
ହରି-ଚରିତ ଭାଗବତେ ॥୧୪୧
ସପ୍ତମ ସ୍କନ୍ଧେ ଯେତେ ଧର୍ମ ।
ଯେ ଧର୍ମ ଅବଧୂତ-କର୍ମ ॥୧୪୨

Dr. Sudhanshu Sekhar Mishra

ପ୍ରହ୍ଲାଦ-ଅବଧୂତ କଥା ।
ଶୁଣନ୍ତେ ଖଣ୍ଡେ ଭବବ୍ୟଥା ॥୧୪୩
ଏଣେ ନିର୍ମଳ କର ଚିତ୍ତ ।
କହଇ ଦାସ ଜଗନ୍ନାଥ ॥୧୪୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ଯୁଧିଷ୍ଠିର ନାରଦ
ସମ୍ବାଦେ ଯତିଧର୍ମେ
ତ୍ରୟୋଦଶୋଽଧ୍ୟାୟଃ ॥

## ଚତୁର୍ଦ୍ଦଶ ଅଧ୍ୟାୟ

### ଯୁଧିଷ୍ଠିର ଉବାଚ

ଶୁଣ ହେ ବ୍ରହ୍ମାର ନନ୍ଦନ ।
ବନସ୍ଥ ଅବଧୂତ ଧର୍ମ ॥୧
ଶୁଣିଲି ଶାସ୍ତ୍ରର ପ୍ରସ୍ତାବେ ।
ଗୃହସ୍ଥ ଧର୍ମ କହ ଏବେ ॥୨
ଦେଶକାଳାଦି ଭେଦେ ଯହିଁ ।
ଅନେକ ଶ୍ରେୟ ଜାତ ହୋଇ ॥୩
ଯେ ବିଧି ଗୃହ-ଆଚରଣେ ।
ଆଗମ ନିଗମ ପ୍ରମାଣେ ॥୪
ଏମନ୍ତେ ଧର୍ମସୁତ-ବାଣୀ ।
ଶୁଣି କହନ୍ତି ବ୍ରହ୍ମମୁନି ॥୫

ନାରଦ ଉବାଚ

ଗୃହସ୍ଥ ରଜନୀ ପ୍ରଭାତେ ।
ଶୁଚି ନିର୍ମଳ ଶୁଦ୍ଧଚିତ୍ତେ ॥୬
ସ୍ମରିବ ନାରାୟଣ ନାମ ।
ହରି ଗୋବିନ୍ଦ କୃଷ୍ଣ ରାମ ॥୭
ପୁରୁଷୋତ୍ତମ ଦାମୋଦର ।
ବିଶ୍ୱସମ୍ଭବ ବିଶ୍ୱମ୍ଭର ॥୮
ଏ ଆଦି ପୁଣ୍ୟଶ୍ଳୋକ ଯେତେ ।
ନାମ-ସଂକୀର୍ତ୍ତନ ପ୍ରଭାତେ ॥୯
କୃଷ୍ଣେ ଅର୍ପଣ ନିତ୍ୟେ କରି ।
ଗୃହସ୍ଥ ଧର୍ମକୁ ଆଚରି ॥୧୦
ମହତ-ଜନେ ଉପାସନ ।
କରିବ ନିତ୍ୟେ କୃଷ୍ଣଧ୍ୟାନ ॥୧୧
କୃଷ୍ଣର ଅବତାର କଥା ।
ପୁରାଣ ଆଦି ଶାସ୍ତ୍ରଗୀତା ॥୧୨
ସଙ୍ଗ କରିବ ସାଧୁସଙ୍ଗେ ।
ଦିନ ବଞ୍ଚିବ ଶୁଣି ନିତ୍ୟେ ॥୧୩
ସାଧୁସଙ୍ଗତେ ଥୋଇ ମନ ।
ପୁତ୍ର କଳତ୍ର ଗୃହଜନ ॥୧୪
ତାହାଙ୍କୁ ସୁଖଭୋଗ ଦେଇ ।
ଆମ୍ଭାକୁ ସନ୍ତୋଷେ ଭୁଞ୍ଜାଇ ॥୧୫
ସମ୍ପଦ ସ୍ୱପ୍ନ ପ୍ରାୟ ମଣି ।
ଚିତ୍ତେ ଚିନ୍ତିବ ଚକ୍ରପାଣି ॥୧୬
ଯାବତ ପ୍ରୟୋଜନ ଅର୍ଥ ।
ଗୃହେ ସାଧିବ ନିତ୍ୟ ନିତ୍ୟ ॥୧୭
ବିରକ୍ତିଚିତ୍ତ ଅନ୍ତର୍ଗତେ ।
ଲୋକବେଭାର-ଜନ ସାଥେ ॥୧୮
ଭ୍ରାତ ସୁହୃଦ ତାତ ମାତ ।
ଜ୍ଞାତି ବାନ୍ଧବ ଦାରା ସୁତ ॥୧୯
ଯେ ବା ଇଚ୍ଛନ୍ତି ଯେ ବୋଲନ୍ତି ।
ଯେ ଭାବେ ସନ୍ତୋଷେ ରହନ୍ତି ॥୨୦
ମନ ସନ୍ତୋଷ ସୁଖ ଦେବ ।
ନିର୍ମଳେ ସର୍ବଦା ବଞ୍ଚିବ ॥୨୧
ଭୂମି ଗଗନ ଅନ୍ତରୀକ୍ଷେ ।
ଯେ ଧନ ମିଳିବ ପ୍ରତ୍ୟକ୍ଷେ ॥୨୨
କୃଷ୍ଣର ଦେଲା ପ୍ରାୟେ ବୁଝି ।
ସେ ଧନ ଦୁଃଖ ସୁଖେ ଭୁଞ୍ଜି ॥୨୩
ଦିନ ବଞ୍ଚିବ ହରି ଭାବେ ।
ଯତ୍ନ କରିବ ଧର୍ମଲାଭେ ॥୨୪
ଯାବତ ଦେହେ ପ୍ରାଣ ଥିବ ।
ତାବତ ସନ୍ତୋଷେ ବଞ୍ଚିବ ॥୨୫
ଲୋଭେ ଅଧିକ ଯେ ଚିନ୍ତନ୍ତି ।
ଚୋର ସମାନେ ଦଣ୍ଡ ପା'ନ୍ତି ॥୨୬
ଏବେ ହୋ ଶୁଣ ନୃପବର ।
କହିବା ସର୍ବ ଧର୍ମ ସାର ॥୨୭
କପି ମକ୍ଷିକା ଉଷ୍ଟ୍ର ଖଗ ।
ମୂଷିକ ଗର୍ଦ୍ଦଭ ଯେ ମୃଗ ॥୨୮
ଉରଗ ପତଙ୍ଗାଦି ଯେତେ ।
ତାହାଙ୍କୁ ପୁତ୍ର ପ୍ରାୟେ ଚିତ୍ତେ ॥୨୯
ଆମ୍ଭର ପ୍ରାୟେ ନିତ୍ୟେ ଦେଖି ।
ଅନ୍ତର ମନେ ନ ଉପେକ୍ଷି ॥୩୦
ତ୍ରିବର୍ଗ କଷ୍ଟେ ନ ସାଧିବ ।
ଯେ ଭାବେ ନିନ୍ଦନ୍ତି ସାଧବ ॥୩୧
ଯେ ଦ୍ରବ୍ୟ ଅତି କଷ୍ଟେ ପାଇ ।
ଯେ ସୁଖେ ଅତି ଲୋଭ ହୋଇ ॥୩୨
ଯେଣେ ବା ପରପୀଡ଼ା ହେବ ।
ଏ ତିନି ଚିତ୍ତେ ନ ଧରିବ ॥୩୩
ଯେ ଦେଶକାଳ-ପାତ୍ର ମତେ ।
ମିଳଇ କର୍ମର ଆୟତ୍ତେ ॥୩୪
ସେ ଭାବେ ପୋଷିବ ଜୀବନ ।
ଦେଖିବ ସକଳେ ସମାନ ॥୩୫
ଶ୍ୱାନ ଚଣ୍ଡାଳ ଅନ୍ୟ ଜାତି ।
ଆମ୍ଭର ପ୍ରାୟେ ତା'ଙ୍କୁ ଚିନ୍ତି ॥୩୬
ବିଭାଗେ ଭୋଗ ତା'ଙ୍କୁ ଦେବ ।
ଆମ୍ଭର ପରାୟେ ଭାବିବ ॥୩୭
ଏକ ଗୃହୀଣୀ ସଂଗ୍ରହଣ ।
ସ୍ୱଧର୍ମ ଗୃହର କାରଣ ॥୩୮
ଅର୍ଦ୍ଧାଙ୍ଗସମ ଅଟେ ନାରୀ ।
ସାତ୍ତ୍ୱିକେ ତାହା ଭୋଗ କରି ॥୩୯
ନିଯୋଗି ଅତିଥି ସେବନେ ।
ଯତ୍ନ କରିବ ନିଜ ଧର୍ମେ ॥୪୦
ଯା' ପାଇଁ ପିତା ଗୁରୁ ପ୍ରାଣ ।
ପ୍ରାଣୀ ହିଂସକ ହେଲେ ଜାଣ ॥୪୧

Dr. Sudhanshu Sekhar Mishra

ଅତିଥି-ସେବାରେ ସେ ନାରୀ ।
ଦେଇଣ ଆପଦୁଁ ଉଦ୍ଧରି ॥୪୨
ଆନେ ଅସାଧ ଯେଉଁ ହରି ।
ଏ ଭାବେ ତା'ଙ୍କୁ ସାଧେ କରି ॥୪୩
ଦେଖି ଏ ତୁଚ୍ଛ-କଳେବର ।
ଅନ୍ତେ ଭଜଇ ତ୍ରିପ୍ରକାର ॥୪୪
ଭସ୍ମ ପୁରୀଷ କୃମିସ୍ଥାନ ।
ଅବଶ୍ୟ ଭଜେ ଅବସାନ ॥୪୫
ସେ ଦେହେ ରହି ପତ୍ନୀମେଳେ ।
ଏ କାହିଁ ଆତ୍ମାର କୁଶଳେ ॥୪୬
ମଜ୍ଜଇ ସୁଧାପ୍ରାୟ ମଣି ।
କାହୁଁ ତରିବ ମୂଢ଼ପ୍ରାଣୀ ॥୪୭
ଯଜ୍ଞାବଶେଷ ସିଦ୍ଧଅନ୍ନେ ।
ଆହାର କଳ୍ପିବ ଜୀବନେ ॥୪୮
ଅଧିକେ ମମତା ନ ଥାଇ ।
ତେବେଟି ମହତ ବୋଲାଇ ॥୪୯
ଦେବତା ଋଷି ଭୂତଗଣେ ।
ଆତ୍ମା ଅତିଥି ପିତୃଜନେ ॥୫୦
ଏହାଙ୍କୁ ବିଷ୍ଣୁପ୍ରାୟେ ମଣି ।
ସନ୍ତୋଷେ ଦେବ ଅନ୍ନ ପାଣି ॥୫୧
ଆତ୍ମାଧିକାରେ ନାନାବିଧି ।
ଯଜ୍ଞର ସମ୍ଭାର ସମ୍ପାଦି ॥୫୨
ବିଧିବିଧାନ ବେଦମତେ ।
ଯଜ୍ଞ କରିବ ଅଗ୍ନିହୋତ୍ରେ ॥୫୩
ଅଗ୍ନିହୋତ୍ରର ଅବସାନେ ।
ବିପ୍ରଙ୍କୁ ତୋଷିବ ଭୋଜନେ ॥୫୪
ବ୍ରାହ୍ମଣ-ଦେହେ ଥାଇ ହରି ।
ଏଣୁ ଭୋଜନେ ପୂଜାକରି ॥୫୫
ବିପ୍ର ଭୋଜନେ ତୋଷ ଯେତେ ।
ସେ ନୋହେ ଯଜ୍ଞକୋଟି ଶତେ ॥୫୬
ଏ ଘେନି ଦେବତା-ବ୍ରାହ୍ମଣେ ।
ପୂଜା କରିବ ଅନୁକ୍ଷଣେ ॥୫୭
ଏଣୁ ବ୍ରାହ୍ମଣ-ମୁଖେ ଦେଇ ।
ପୂଜା କରିବ ଭାବଗ୍ରାହୀ ॥୫୮
ଆଶ୍ୱିନମାସ-କୃଷ୍ଣ ପକ୍ଷେ ।
ପିତୃଙ୍କୁ ପୂଜିବ ପ୍ରତ୍ୟକ୍ଷେ ॥୫୯

ସମ୍ଭାର ଯଥାଶକ୍ତି ମତେ ।
ପିତୃ ପୂଜିବ ଶ୍ରଦ୍ଧାଚିତ୍ତେ ॥୬୦
ଜ୍ଞାତି ସୁହୃଦ ବନ୍ଧୁଜନ ।
ଭୋଜନ ଦେବ ମିଷ୍ଟ ଅନ୍ନ ॥୬୧
ଏବେ ହୋ ଶୁଣ ମହୀପତି ।
ଗୃହସ୍ଥ ଜନର ଏ ଗତି ॥୬୨
ବେନି-ଅୟନ ବିଷୁବାନ୍ତେ ।
ଦିବସ କ୍ଷୟ ବ୍ୟତିପାତେ ॥୬୩
ଅକ୍ଷୟ ତୃତୀୟା ଦିବସେ ।
ଆଦିତ୍ୟ-ଶଶାଙ୍କର-ଗ୍ରାସେ ॥୬୪
ଦ୍ୱାଦଶୀ-ଶ୍ରବଣା-ସଂଯୋଗେ ।
ତୃତୀୟା ତିଥି କ୍ଷୟଭୋଗେ ॥୬୫
ଶୁକ୍ଳ-ନବମୀ ଉର୍ଜ୍ଜମାସେ ।
ଚତୁର ଅଷ୍ଟକା-ଦିବସେ ॥୬୬
ମାଘ-ସପ୍ତମୀ ଶୁକ୍ଳପକ୍ଷେ ।
ପୂର୍ଣ୍ଣିମା ମିଶି ମଘାରକ୍ଷେ ॥୬୭
ଦ୍ୱାଦଶୀ ଅନୁରାଧା ଭୋଗେ ।
ଶ୍ରବଣା ତ୍ରି-ଉତ୍ତରା ଯୋଗେ ॥୬୮
ଏ ତିନିଯୋଗେ ଏକାଦଶୀ ।
ଶ୍ରବଣା ଜନ୍ମରକ୍ଷେ ମିଶି ॥୬୯
ଶ୍ରେୟ-ସାଧନ-ଯୋଗ ଏତେ ।
ଗୃହସ୍ଥ ଧର୍ମ ସାଧ ଅର୍ଥେ ॥୭୦
ଏ ଦିନେ ଧର୍ମ କର୍ମ କଲେ ।
ଶ୍ରେୟ-ଆୟୁଷ ବଢ଼େ ଭଲେ ॥୭୧
ଏ ଦିନେ ତପ ହୋମ ସ୍ନାନ ।
ଯଜ୍ଞେ ଦେବତା-ଆରାଧନ ॥୭୨
ପିତୃଦେବତା ଭୂତଗଣେ ।
ଅନ୍ନ ଜଳ ତିଳ ତର୍ପଣେ ॥୭୩
ପତ୍ନୀର ସଂସ୍କାର କାଳରେ ।
ଅପତ୍ୟ-ସମ୍ଭବ ଦିନରେ ॥୭୪
ଜ୍ଞାତି-ମରଣେ ପ୍ରେତକାର୍ଯ୍ୟେ ।
ପୂଜିବ ବାନ୍ଧବ-ସମାଜେ ॥୭୫
ଏବେ ହୋ ଶୁଣ ଧର୍ମ ଶିଷ୍ୟ ।
କହିବା ପୁଣ୍ୟ ସ୍ଥାନ ଦେଶ ॥୭୬
ବିଷ୍ଣୁ ପ୍ରତିମା ବସେ ଯହିଁ ।
ସଚରାଚର ବିଶ୍ୱ ତହିଁ ॥୭୭

ସତ୍‌ପାତ୍ର-ଜନ ଲଭି ଯହିଁ ।
ସେ ପୁଣ୍ୟତମ-ଦେଶ କହି ॥୭୮
ବ୍ରାହ୍ମଣ କୁଳ ବସେ ଯହିଁ ।
ଦୟା ତପସ୍ୟା ବିଦ୍ୟା ବହି ॥୭୯
ବିଷ୍ଣୁର ପୂଜା ଯହିଁ ନିତ୍ୟେ ।
ସେ ପୁଣ୍ୟ ଦେଶ ବେଦମତେ ॥୮୦
ଗଙ୍ଗାଦି ନଦୀ ଯହିଁ ବହେ ।
ସେ ପୁଣ୍ୟକ୍ଷେତ୍ର ବେଦ କହେ ॥୮୧
ପୁଷ୍କର ଆଦି ସରୋବର ।
ଯହିଁ ବସନ୍ତି ବିଷ୍ଣୁ ହର ॥୮୨
ପ୍ରୟାଗ ପୁଲହ ଆଶ୍ରମ ।
ନୈମିଷାରଣ୍ୟ ପୁଣ୍ୟଧାମ ॥୮୩
ପ୍ରଭାସ କୁରୁ ବଙ୍ଗଗଳି ।
ଗୟା ମଥୁରା କୁଶସ୍ଥଳୀ ॥୮୪
ଯେ କାଶୀ ପମ୍ପା ବିନ୍ଦୁସର ।
ସେତୁବନ୍ଧ ଯେ ରାମେଶ୍ୱର ॥୮୫
ଆଶ୍ରମ ନର ନାରାୟଣ ।
ନନ୍ଦା ସୀତୟା ରାମାଶ୍ରମ ॥୮୬
ମହେନ୍ଦ୍ର ମଳୟ ପର୍ବତେ ।
ଏ ମଧ୍ୟେ କ୍ଷେତ୍ର ଛନ୍ତି ଯେତେ ॥୮୭
ଏ ସର୍ବସ୍ଥାନ ହରିପ୍ରିୟ ।
ତେଣୁ ଜଗତେ ପୁଣ୍ୟମୟ ॥୮୮
ସେ ପୁଣ୍ୟତମ ଦେଶ ଭାବି ।
ବିଷ୍ଣୁ ପ୍ରତିମା ଯହିଁ ସେବି ॥୮୯
କୈବଲ୍ୟ ଇଚ୍ଛା ଯା'ର ଚିତ୍ତେ ।
ଏ ଦେଶେ ସେହୁ ଥିବେ ନିତ୍ୟେ ॥୯୦
ଏବେ କହିବା ପାତ୍ର ଯେତେ ।
ଶୁଣ ରାଜନ ଶୁଦ୍ଧଚିତ୍ତେ ॥୯୧
ପୁରାଣ ପୁରୁଷ ମୁରାରି ।
ଯା'ର ଭିଆଣ ବସୁନ୍ଧରୀ ॥୯୨
ସଚରାଚର ଯା' ଶରୀର ।
ଋଷି ଦେବତା ବ୍ରହ୍ମା ହର ॥୯୩
ଅଗ୍ରେ ଚରଣ ପୂଜି ଯା'ର ।
ତ' ତହୁଁ ପାତ୍ର କେବା ଆର ॥୯୪
ଦେବତା ଋଷି ସିଦ୍ଧେଶ୍ୱର ।
ସନକ ଆଦି ଯଜ୍ଞେ ତୋ'ର ॥୯୫

Dr. Sudhanshu Sekhar Mishra

ସଭାରେ ସର୍ବଜନ ଥିଲେ ।
କୃଷ୍ଣଙ୍କୁ ଅଗ୍ରେ ପୂଜା କଲେ ॥୯୬
ଏଣୁ ସକଳ-ପାତ୍ର-ସାର ।
ଅଚ୍ୟୁତ ଅଟେ ନୃପବର ॥୯୭
ଜୀବ ରାଶିରେ ହୋଇ ବ୍ୟାପ୍ତ ।
ଯେ ଅଣ୍ଡକୋଷ ବୃକ୍ଷ ଶତ ॥୯୮
ସେ ବୃକ୍ଷ ମୂଳ ଯେଣୁ ହରି ।
ତାହାଙ୍କୁ ଯେହୁ ପୂଜା କରି ॥୯୯
ପୂଜିବା ଫଳ ଜଗତର ।
ନିଶ୍ଚେ ଲଭଇ ସେହୁ ନର ॥୧୦୦
ଯା'ର ଶରୀର ଜୀବରାଶି ।
ଯେ ଅଣ୍ଡକୋଷ ମୂଳେ ବସି ॥୧୦୧
ଯେ ହରି ସର୍ବଜୀବ-ମୂଳ ।
ଅଶେଷ ପୁଣ୍ୟକର୍ମ-ଫଳ ॥୧୦୨
ନାନା ପ୍ରପଞ୍ଚେ ପୁର କରି ।
ତା' ମଧ୍ୟେ ଜୀବ ରୂପ ଧରି ॥୧୦୩
ହୃଦୟ ପଦ୍ମ ମଧ୍ୟେ ଶୋହେ ।
ପୁରୁଷୋତ୍ତମ ନାମ ବହେ ॥୧୦୪

ତେଣୁ ପୁରୁଷ ପାତ୍ରୋତ୍ତମ ।
ଯେ ନିତ୍ୟେ ରମେ ଆତ୍ମାରାମ ॥୧୦୫
ଯେଣୁ ଏ ପୁରୁଷଙ୍କ ଦେହେ ।
ସେ ହରି ତାରତମ୍ୟେ ରହେ ॥୧୦୬
ଏ ଭାବେ ସଂଶୟ ବିଚାରି ।
ତ୍ରେତାଦି ଯୁଗେ ମୂର୍ତ୍ତି କରି ॥୧୦୭
ସଂସ୍କାର-ନିଗମ-ଆଗମେ ।
ପୂଜା କରନ୍ତି ଗ୍ରାମେ ଗ୍ରାମେ ॥୧୦୮
ସେ ପୂଜା ମାତ୍ରେ ତୋଷ ହେନ୍ତି ।
ବାଞ୍ଛିତଫଳ ନିତ୍ୟେ ଦ୍ୟନ୍ତି ॥୧୦୯
ଯେ ପ୍ରାଣୀ ପରେ ହିଂସା କରେ ।
ଦେବତା ପୂଜି ସେ ନ ତରେ ॥୧୧୦
ଏଣୁ ପୁରୁଷଙ୍କର ମଧ୍ୟେ ।
ଯେ ବିପ୍ର ଜ୍ଞାନୀ ବେଦ ସାଧେ ॥୧୧୧
ତା' ଠହୁଁ ପାତ୍ର ଆର ନାହିଁ ।
ସେ ବିପ୍ର ନିଶ୍ଚେ ବିଷ୍ଣୁଦେହୀ ॥୧୧୨
ଯେ କୃଷ୍ଣ ଆତ୍ମା ତ୍ରିଲୋକର ।
ବ୍ରାହ୍ମଣ ଦେବତା ତା'ଙ୍କର ॥୧୧୩

ଏଣୁ ସେ ବ୍ରାହ୍ମଣ ଚରଣ ।
ତ୍ରୈଲୋକ୍ୟ ନିସ୍ତାର କାରଣ ॥୧୧୪
ଏ ଭାବେ ଦେଶ କାଳ ପାତ୍ର ।
ଦୀକ୍ଷାଦି ଧର୍ମ ଦଇବତ ॥୧୧୫
ନାରଦ ମୁନି ଅନୁରାଗେ ।
କହିଲେ ଯୁଧିଷ୍ଠିର ଆଗେ ॥୧୧୬
ଏ ଭାଗବତ କୃଷ୍ଣବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୧୭
ଏହା ଯେ ପଢ଼ନ୍ତି ଶୁଣନ୍ତି ।
ସେ ଗୃହ ଦ୍ୱନ୍ଦ୍ୱେ ନ ପଡ଼ନ୍ତି ॥୧୧୮
ସପ୍ତମସ୍କନ୍ଧେ ଭାଗବତ ।
ଭଣଇ ଦାସ ଜଗନ୍ନାଥ ॥୧୧୯

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ସଦାଚାର ନିର୍ଣ୍ଣୟୋ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶ ଅଧ୍ୟାୟ

ଏ ପଞ୍ଚଦଶେ ବର୍ଣ୍ଣାଶ୍ରମ ।
ସାର ସଂଗ୍ରହେ ଯେବା ଧର୍ମ ॥୧
ପ୍ରାଣୀଙ୍କ ନିସ୍ତାର କାରଣେ ।
ମୋକ୍ଷ ଲକ୍ଷଣ ଯେ ପ୍ରମାଣେ ॥୨
ବର୍ଣ୍ଣିତ ନିଗମ ବଚନେ ।
ଶୁଣ ରାଜନ ସାବଧାନେ ॥୩
ରାଜସୂୟ ଯଜ୍ଞ-ସଭା ଚାହିଁ ।
କୁନ୍ତୀ ନନ୍ଦନ ଭାବବହି ॥୪
କହନ୍ତି ବ୍ରହ୍ମାଙ୍କ କୁମର ।
ଅଶେଷ ଜ୍ଞାନ ଧର୍ମସାର ॥୫

ନାରଦ ଉବାଚ

ବ୍ରାହ୍ମଣ କେବା କର୍ମ ନିଷ୍ଠା ।
ତପ ସାଧନେ କେ ପ୍ରତିଷ୍ଠା ॥୬
ବେଦ ପାଠନେ କା'ର ସିଦ୍ଧି ।
କେବା ନିସ୍ତରେ ଯୋଗସାଧି ॥୭

ଗୃହସ୍ଥ ପିତୃଶ୍ରାଦ୍ଧ କାଳେ ।
ଜ୍ଞାନୀ-ପୁରୁଷ ଯେବେ ମିଳେ ॥୮
ତାହାଙ୍କୁ ହବ୍ୟ-କାବ୍ୟ ଦାନ ।
କଲେ ଅନେକ ହୁଏ ପୁଣ୍ୟ ॥୯
ଜ୍ଞାନୀ ଅଭାବେ ଯଥାକ୍ରମେ ।
ଯେ ବିପ୍ରେ ଥା'ନ୍ତି ନିଜ ଧର୍ମେ ॥୧୦
ତାହାଙ୍କୁ ଯଥା ଭୋଗ ଦେଇ ।
ତେବେ ଉଚିତ ଫଳ ପାଇ ॥୧୧
ଶ୍ରାଦ୍ଧେ ଦେବତା-ଅର୍ଥେ ଦେଇ ।
ବରିବ ବିଶ୍ୱଦେବା ପାଇଁ ॥୧୨
ତୃତୀୟ ପିତୃସ୍ଥାନେ ବରି ।
ଆଭାବେ ଏକ ଏକ କରି ॥୧୩
ଉତ୍ତମ-ଦ୍ରବ୍ୟେ ଭୁଞ୍ଜାଇବ ।
ଶ୍ରାଦ୍ଧେ ବିସ୍ତାର ନ କରିବ ॥୧୪

ଯେ ଦ୍ରବ୍ୟ ଦେଶ-କାଳୋଚିତୋ ।
ମିଳିବ ଶ୍ରଦ୍ଧା ଅନୁମତେ ॥୧୫
ଯେ ପାତ୍ରେ ଯେବା ଅରହଣ ।
ବିସ୍ତାରେ ନୁହଁଇ ଘଟଣ ॥୧୬
ଏମନ୍ତେ ଦେବ-ପିତୃ-ଯଜ୍ଞେ ।
ଯେ'ବା ପୂଜନ୍ତି ହବ୍ୟ-କବ୍ୟେ ॥୧୭
ଉତ୍ତମ-ଫଳ ସେ ଲଭନ୍ତି ।
ଏ ଭବ ସଂସାର ତରନ୍ତି ॥୧୮
ଏଣୁ ଯେ ଦେଶ-କାଳ-ପାତ୍ରେ ।
ଆମିଷ ବର୍ଜ୍ଜି ବନଜାତେ ॥୧୯
ଯଥା ସଂସ୍କାରେ ଦେଇ ଅନ୍ନ ।
ବିଷ୍ଣୁଙ୍କୁ କରି ନିବେଦନ ॥୨୦
ଶ୍ରଦ୍ଧାରେ ସତପାତ୍ରେ ଦେଇ ।
ସେ ଶ୍ରାଦ୍ଧ କାମଧେନୁ ହୋଇ ॥୨୧

Dr. Sudhanshu Sekhar Mishra

ଭୁଞ୍ଜନ୍ତି ଅକ୍ଷୟ-କଲ୍ୟାଣ ।
ଏ ବାକ୍ୟେ ନିଗମ ପ୍ରମାଣ ।।୨୨
ଦେବ-ବ୍ରାହ୍ମଣ-ପିତୃ-ଭୂତେ ।
ସ୍ୱଜନ ଆଦି ବନ୍ଧୁ ଯୁତେ ।।୨୩
ଏହାଙ୍କୁ ବିଷ୍ଣୁ ଭାବେ ମଣି ।
ସନ୍ତୋଷେ ଦେବ ଅନ୍ନପାଣି ।।୨୪
ଯା' ଚିତ୍ତ ଧର୍ମ-ଉପଦେଶେ ।
ଶ୍ରାଦ୍ଧ କରିବ ନିରାମିଷେ ।।୨୫
ଯେ ଧର୍ମ ଲଭି ନିରାମିଷେ ।
ସେ କାହିଁ ଲାଭ ପଶୁହିଂସେ ।।୨୬
ସ୍ୱଧର୍ମେ ଇଚ୍ଛା ଯା'ର ଥିବ ।
କେବେହେଁ ପଶୁ ନ ହିଂସିବ ।।୨୭
ମାନସ-କାୟିକ-ବଚନେ ।
ନ କରି ପଶୁଙ୍କୁ ହିଂସନେ ।।୨୮
ଉତ୍ତମ-ଧର୍ମ ଯେ ଇଚ୍ଛଇ ।
ଏ ସମ ଧର୍ମ ଆଉ ନାହିଁ ।।୨୯
ଯଜ୍ଞର ଫଳ ଯେ ଜାଣନ୍ତି ।
ଅନିତ୍ୟ କର୍ମମୟ ଚିନ୍ତି ।।୩୦
ଆତ୍ମାସଂଯମ ଅଗ୍ନି ଜାଳି ।
ଇନ୍ଦ୍ରିୟ-ଅର୍ଥ-ଘୃତ ଢାଳି ।।୩୧
ଏ ଜ୍ଞାନଯଜ୍ଞେ ଦୃଢ଼ କରି ।
ବିଷ୍ଣୁ ମାୟାରୁ ଯା'ନ୍ତି ତରି ।।୩୨
ଯେ ଦବ୍ୟମୟ ଯଜ୍ଞ କରେ ।
ତାହାଙ୍କୁ ଦେଖି ସାଧୁ ଡରେ ।।୩୩
ଏହାର ଦେହେ ଜ୍ଞାନ ନାହିଁ ।
ଆମ୍ଭ ଜୀବନ ରଖେ କାହିଁ ।।୩୪
ଏ ଘେନି ଦୟା ଯା'ର ଚିତ୍ତେ ।
ଯଜ୍ଞ କରିବ ମୁନିମତେ ।।୩୫
ବିଧର୍ମ ପରଧର୍ମ ବେନି ।
ଆଭାସ ଉପମାକୁ ଘେନି ।।୩୬
ଛଳ ସମେତ ପଞ୍ଚ ଜାଣ ।
ଅଧର୍ମ ଶାଖା ଏ ପ୍ରମାଣ ।।୩୭
ଯେ ଧର୍ମେ ସ୍ୱଧର୍ମରେ ବାଧା ।
ସେ ଧର୍ମେ ନ କରିବ ଶ୍ରଦ୍ଧା ।।୩୮
ଯେ ଧର୍ମ ପରବାକ୍ୟେ କରି ।
ସେ ଧର୍ମେ କେବେହେଁ ନ ତରି ।।୩୯

ପାଷାଣ୍ଡ ଧର୍ମ ଉପଧର୍ମ ।
ଦମ୍ଭ ମତ୍ସରେ ଯେ'ବା କର୍ମ ।।୪୦
ଶାସ୍ତ୍ରର ତତ୍ତ୍ୱ ନ ବିଚାରି ।
ବାହ୍ୟ ଧର୍ମର ଧ୍ୱଜା ଧରି ।।୪୧
ଯେ ଶାସ୍ତ୍ରବାକ୍ୟ ଭେଦକରି ।
ଛଳ ଧର୍ମ ଯେ ତା'କୁ ବୋଲି ।।୪୨
ଧର୍ମ ଅଭ୍ୟାସ ମାତ୍ର ଧରି ।
ଆଶ୍ରମ ଧର୍ମ ପରିହରି ।।୪୩
ସ୍ୱଇଚ୍ଛେ ଏକ ଧର୍ମ କରି ।
ଆଭାସ ଧର୍ମ ତା'କୁ ବୋଲି ।।୪୪
ଯେ ଧର୍ମ ଆତ୍ମ ଶାନ୍ତି କରେ ।
କେ ତାହା ନିତ୍ୟେ ନ ସୁମରେ ।।୪୫
ନିର୍ଦ୍ଧନ-ପ୍ରାଣୀ ଯେବେ ହୋଇ ।
ଧର୍ମ ବା ଜୀବିକାର ପାଇଁ ।।୪୬
ଚେଷ୍ଟା ନ କରେ ବହୁଧନେ ।
ସନ୍ତୋଷ ଅଳପ-ଭୋଜନେ ।।୪୭
ସହଇ ଅଜଗର ଯେହ୍ନେ ।
ଆହାର ନ ବାଞ୍ଛଇ ମନେ ।।୪୮
ସନ୍ତୋଷ ଆତ୍ମା ଯେବା ନରେ ।
ଅନ୍ତେ ପଶନ୍ତି ସୁଖଘରେ ।।୪୯
ସେ ଧନଲୋଭେ ଅସନ୍ତୋଷ ।
ଭ୍ରମେ ଭ୍ରମଇ ଦଶଦିଶ ।।୫୦
ତହିଁରେ କଷ୍ଟ ସାର ହୋଏ ।
ସର୍ବ ସନ୍ତୋଷ ସୁଖମୟେ ।।୫୧
ଚର୍ମପାଦୁକା ଯା' ଚରଣେ ।
ସେ ଯେହ୍ନେ କଣ୍ଟକ-ପାଷାଣେ ।।୫୨
ଭୂମି ନ ଲଭେ କିଛି ଦୁଃଖ ।
ରାତ୍ର ଦିବସେ ଲଭେ ସୁଖ ।।୫୩
କଲେ କେବଳ ଜଳପାନ ।
ବଞ୍ଚେ ସନ୍ତୋଷେ ସୁଖେ ଦିନ ।।୫୪
ଜିହ୍ୱା-ଉପସ୍ଥେ ଲୋଭ ଯା'ର ।
ସେ ଗୃହପାଳ ପ୍ରାୟେ ନର ।।୫୫
ଯେ ବିପ୍ର ହୋଏ ଅସନ୍ତୋଷ ।
ତାହାର ତପ ବିଦ୍ୟା ଯଶ ।।୫୬
ଇନ୍ଦ୍ରିୟ-ଲୋଭେ ହୋନ୍ତି ନାଶ ।
ଅଜ୍ଞାନ-କର୍ମେ ହୋନ୍ତି ଧ୍ୱଂସ ।।୫୭

ଯେ ଜିହ୍ୱା-ଉପସ୍ଥକୁ ଜିଣି ।
ସନ୍ତୋଷ ଲଭଇ ଯେ ପ୍ରାଣୀ ।।୫୮
ସେ ପ୍ରାଣୀ ଇହପର ଲୋକେ ।
ଅଶେଷ ଫଳ ଭୁଞ୍ଜେ ଏକେ ।।୫୯
ଯେ ଜନ କ୍ଷୁଧା-ତୃଷାବନ୍ତ ।
ସେ ନିଶ୍ଚେ କାମ କରେ ଅନ୍ତ ।।୬୦
ହିଂସା ଉଦୟ ହୋଏ ଯା'ର ।
କ୍ରୋଧ ହୁଅଇ ଅନ୍ତ ତା'ର ।।୬୧
ଯେ ଜନ ସର୍ବଦିନ ଜିଣି ।
ଏକାନ୍ତେ ଭୁଞ୍ଜଇ ଧରଣୀ ।।୬୨
ସେ ଲୋଭେ ନ ପାରଇ ଜିଣି ।
ଶୁଣ ନୃପତି-ଚୂଡ଼ାମଣି ।।୬୩
ପଣ୍ଡିତ ଜନ ହୋଇ ଯେବେ ।
ନିରତେ ଅସନ୍ତୋଷ-ଭାବେ ।।୬୪
ଅଧୋଗମନ ତାହାଙ୍କର ।
ଶୁଣ ସୁମନେ ନୃପବର ।।୬୫
କାମକୁ ଜିଣେ ଅଂସକଳ୍ପେ ।
ପ୍ରାଣୀ ନାଶଇ ଯା'ର ଦର୍ପେ ।।୬୬
କାମର କ୍ଷୟେ କ୍ରୋଧ ଯାଏ ।
ଅର୍ଥ-ବର୍ଜନେ ଲୋଭ କ୍ଷୟେ ।।୬୭
ଭୟକୁ ଜିଣେ ତତ୍ତ୍ୱଜ୍ଞାନେ ।
ଶୋକ ମୋହକୁ କୃଷ୍ଣ ଧ୍ୟାନେ ।।୬୮
ମହାନ୍ତ ସେବା ଦମ୍ଭ ନାଶେ ।
ଯେ ଭବେ କୈବଲ୍ୟ ପ୍ରକାଶେ ।।୬୯
ତତ୍ତ୍ୱଜ୍ଞାନରେ ହୋଏ ମୁକ୍ତି ।
ଏ ଧର୍ମ ବୈଷ୍ଣବ ଭକ୍ତି ।।୭୦
ଯୋଗ ସାଧନେ ଯେତେ ବିଘ୍ନ ।
ତାହାକୁ ଖଣ୍ଡଇ ମଉନ ।।୭୧
ହିଂସାକୁ ଜିଣେ କାମତ୍ୟାଗେ ।
କାମକୁ ଜିଣେ ଯୋଗମାର୍ଗେ ।।୭୨
ଦୟା ପ୍ରାଣୀଙ୍କ ଭୟ ହରେ ।
ତ୍ରିତାପ ସମାଧି ସଂହରେ ।।୭୩
ସଞ୍ଜମ ଦେହବ୍ୟାଧି ହରେ ।
ନିଦ୍ରାକୁ ସାତ୍ତ୍ୱିକ-ଆହାରେ ।।୭୪
ରଜ-ତମକୁ ସତ୍ତ୍ୱଗୁଣେ ।
ସତ୍ତ୍ୱକୁ ଉପଶମେ ଜିଣେ ।।୭୫

Dr. Sudhanshu Sekhar Mishra

ଗୁରୁସେବନେ ସର୍ବଦୁଃଖେ ।
ପ୍ରାଣୀ ତରନ୍ତି ଆତ୍ମା ସୁଖେ ॥୭୬

ଯେ ଗୁରୁ ଜ୍ଞାନ-ଦାନ ଦେଇ ।
ତା'ଙ୍କୁ ଯେ ମନୁଷ୍ୟେ ଗଣଇ ॥୭୭

ସେ ଯେତେ ଧର୍ମ କରେ ଦେହେ ।
ନିଷ୍ଫଳ ହସ୍ତୀସ୍ନାନ ପ୍ରାୟେ ॥୭୮

ଯା' ଦେହେ ପ୍ରଭୁ ଚକ୍ରଧର ।
ପ୍ରସନ୍ନ ପୁରୁଷ ଈଶ୍ୱର ॥୭୯

ତା'ର ଚରଣ ସେବା ଅର୍ଥେ ।
ଅଜ୍ଞାନୀ ନୁହଁନ୍ତି ସମର୍ଥେ ॥୮୦

ତାହାକୁ ନର ପ୍ରାୟେ ମଣି ।
ଅଧୋଗମନେ ଯା'ନ୍ତି ପ୍ରାଣୀ ॥୮୧

ଏକାନ୍ତ ଭକ୍ତି ଯେଉଁ ପ୍ରାଣୀ ।
ସାଧଇ ଷଡ଼ରିପୁ ଜିଣି ॥୮୨

ସର୍ବ ନିୟମ ସାଧି ଜାଣେ ।
ନିଗମ-ବଚନ-ପ୍ରମାଣେ ॥୮୩

ଯେବେ ନ ଭଜେ ନରହରି ।
ସେ ଶ୍ରମ ଭାରେ ହୋନ୍ତି ଭାରି ॥୮୪

ବୃତ୍ତି-କଳ୍ପନେ ଯେତେ ଅର୍ଥ ।
ଯୋଗେ ନୁହନ୍ତି ସାମରଥ ॥୮୫

ଏମନ୍ତେ ଇଷ୍ଟାପୂର୍ତ୍ତିମାନେ ।
ଅନର୍ଥ କୃଷ୍ଣର ବିହୁନେ ॥୮୬

ଚିତ୍ତ-ବିଜୟେ ଯତ୍ନ ଯା'ର ।
ନିଃସଙ୍ଗେ କରଇ ବିହାର ॥୮୭

ଗୃହେ ଅସଙ୍ଗ ମନ ସୁଖେ ।
ଯୋଗ ସାଧଇ ଅତିରେକେ ॥୮୮

ଏକାନ୍ତେ ଏକମତେ ଥାଇ ।
ଅଳ୍ପ ଭୋଜନେ ତୋଷ ହୋଇ ॥୮୯

ଏକାନ୍ତ ମନେ ଶୁଚିଦେଶେ ।
ବସିବ ଆସନେ ଉଶ୍ୱାସେ ॥୯୦

ପବିତ୍ର ସ୍ଥିର ସୁଖମନେ ।
ଓଁକାର କରି ଉଚ୍ଚାରଣେ ॥୯୧

ବାମଚରଣ ଗୁହ୍ୟ ଦ୍ୱାରେ ।
ଦକ୍ଷିଣ ପାଦ ତା' ଉପରେ ॥୯୨

ଦେଇ ଟେକିବ ମେରୁଦଣ୍ଡ ।
ଭୁଜେ ଆମଣ୍ଡି ଜାନୁଖଣ୍ଡ ॥୯୩

ପ୍ରାଣ-ଅପାନ-ବାୟୁବଳେ ।
ରସନା ତୋଳି ତାଳୁ ମୂଳେ ॥୯୪

ନିଶ୍ଚଳ ଧ୍ୟାନ ଦୃଷ୍ଟି ଏକେ ।
ସାଧିବ ପୂରକ କୁମ୍ଭକେ ॥୯୫

ରେଚକେ କରି ତାକୁ ସମ ।
ନାସାଗ୍ରେ ସ୍ଥାପିବ ନୟନ ॥୯୬

ଯାବତ କାମନା ନ ତେଜେ ।
ତାବତ ସଞ୍ଜମ ନ ଭଜେ ॥୯୭

ଏଣୁ ନିଶ୍ଚଳେ ସ୍ଥାପି ମନ ।
କରିବ ନାସା ଅଗ୍ରେ ଧ୍ୟାନ ॥୯୮

ଅଗ୍ନିର ବଳେ କାମବନ ।
ଜ୍ଞାନେଣ ଇନ୍ଦ୍ରିୟ ଦହନ ॥୯୯

ଯୋଗ-ଅଭ୍ୟାସ ଧୀରେ କରି ।
ତହିଁ ରହିବ ମନ ଧରି ॥୧୦୦

ନିର୍ମଳ କରି ଚକ୍ଷୁଦ୍ୱାର ।
କର୍ମ-ସାଧିବ ନିରନ୍ତର ॥୧୦୧

ଅଭ୍ୟାସ-ବଳେ ଜିଣି ମନ ।
ଅଳପ ଅଳପ ସାଧନ ॥୧୦୨

ଏମନ୍ତ-ସାଧି ନିରନ୍ତରେ ।
ସୁଖେ ମିଳିବ ମୋକ୍ଷ ଦ୍ୱାରେ ॥୧୦୩

କାଷ୍ଠ-ବିହୁନେ ଅଗ୍ନି ପ୍ରାୟେ ।
ସକଳ କାମ ଲୀନ ହୋଏ ॥୧୦୪

ଯେ ଚିତ୍ତ ସର୍ବ ବୃତ୍ତି ତେଜେ ।
କାମାଦି ରିପୁକୁ ନ ଭଜେ ॥୧୦୫

ସେ ଚିତ୍ତ ମିଶେ ବ୍ରହ୍ମ ସୁଖେ ।
କେବେହେଁ ନ ପଡ଼ଇ ଦୁଃଖେ ॥୧୦୬

କେବେ ହେଁ ମାୟା ନ କଳ୍ପଇ ।
ଅନ୍ତରେ ରହେ ସୂକ୍ଷ୍ମ ହୋଇ ॥୧୦୭

ଯେ ପ୍ରାଣୀ ଗୃହଦ୍ୱନ୍ଦ୍ୱ ତେଜେ ।
ତ୍ରିବର୍ଗ ଛାଡ଼ି ବନ ଭଜେ ॥୧୦୮

ପୁଣି ମିଳଇ ଗୃହେ ଯାଇ ।
ନିର୍ଲ୍ଲଜ ସେହୁ ବାନ୍ତି ଖାଇ ॥୧୦୯

ଏ ଦେହେ ସୁଖ ଯେ ଲୋଡ଼ନ୍ତି ।
ଅଜରାମର ପ୍ରାୟ ଚିନ୍ତି ॥୧୧୦

ଜୀବନ ଅନ୍ତେ ଏ ଶରୀର ।
ଭସ୍ମ ପୁରୀଷ କୃମି ସାର ॥୧୧୧

ଏହାକୁ ସତ୍ୟ ପ୍ରାୟେ ମଣି ।
ଅଧର୍ମେ ପଶନ୍ତି ଯେ ପ୍ରାଣୀ ॥୧୧୨

ତାହାକୁ ବୋଲି ମୂଢ଼ଜନ ।
ନିଷ୍ଫଳ ତାହାଙ୍କ ଜୀବନ ॥୧୧୩

ଗୃହସ୍ଥ ଗୃହଧର୍ମ ଛାଡ଼ି ।
ଅନ୍ୟ ଆଶ୍ରମେ ଲୋଭ ବଢ଼ି ॥୧୧୪

ବ୍ରତକୁ ତେଜେ ବ୍ରହ୍ମଚାରୀ ।
ତପସ୍ୱୀ ଗ୍ରାମେ ବାସ କରି ॥୧୧୫

ସନ୍ନ୍ୟାସୀ ଇନ୍ଦ୍ରି ଲୋଭେ ରସେ ।
ଗ୍ରାମ-ଗହନେ ଯେବେ ପଶେ ॥୧୧୬

ଆଶ୍ରମ-ଭ୍ରଷ୍ଟ ଏତେ ପ୍ରାଣୀ ।
ଏହାଙ୍କୁ ଆଶ୍ରମେ ନ ଗଣି ॥୧୧୭

ଅଧର୍ମେ ବିଡ଼ମ୍ବନ-କର୍ମ ।
ବିଷ୍ଣୁ ମାୟାରେ ହୋଇ ଭ୍ରମ ॥୧୧୮

ବୁଲନ୍ତି ମାୟାରୂପ ଧରି ।
ତାହାଙ୍କୁ ସମ୍ଭାଷ ନ କରି ॥୧୧୯

ପରମଜ୍ଞାନ ଚିତ୍ତେ ଚିନ୍ତି ।
ଯେ ଆତ୍ମାଗତି ନ ଜାଣନ୍ତି ॥୧୨୦

ସେ କି କାରଣେ ଦେହ ଧରି ।
ବହୁ ଭୋଜନେ ପୁଷ୍ଟ କରି ॥୧୨୧

ଏବେ ହେ। ଶୁଣ ଯୁଧିଷ୍ଠିର ।
ଏ ନର-ଶରୀର ବେଭାର ॥୧୨୨

ଦେହ ବହିଲା ଯେବା ଅର୍ଥେ ।
କେବେହେଁ ନ ଭଜେ ତା' ଚିତ୍ତେ ॥୧୨୩

ବିଧାତା-ନିର୍ମାଣ-ବିଧାନ ।
ଏହା ନ ଜାଣେ ମୂର୍ଖଜନ ॥୧୨୪

ଦେହକୁ ରଥ ପ୍ରାୟେ ରଚି ।
ଦଶ-ତୁରଙ୍ଗ ଯହିଁ ଯୋଚି ॥୧୨୫

ଦଶ-ଇନ୍ଦ୍ରିୟ ଦଶ-ବାଜି ।
ମନ ରଶ୍ମିଏ ତହିଁ ଯୋଚି ॥୧୨୬

ଶବ୍ଦ ସ୍ପରଶ ରସ ଗନ୍ଧେ ।
ରୂପରେ ଚଳେ ଅନୁବନ୍ଧେ ॥୧୨୭

ସାରଥିପଣେ ବୁଦ୍ଧି ରହେ ।
ଏ ପଞ୍ଚମାର୍ଗେ ରଥ ବାହେ ॥୧୨୮

ଏ ନରଦେହ ବନ୍ଧ ଚିତ୍ତେ ।
ଛନ୍ଦ ବନ୍ଧନ ଈଶଯନ୍ତ୍ରେ ॥୧୨୯

Dr. Sudhanshu Sekhar Mishra

ପ୍ରାଣ ବସଇ ଏ ଶରୀରେ ।
ଦ୍ୱିପଞ୍ଚ ବାହ୍ୟ ଅଭ୍ୟନ୍ତରେ ॥୧୩୦
ସେ ପ୍ରାଣ ଅକ୍ଷରୂପ ଧରି ।
ବାହାର ଭିତରେ ସଞ୍ଚରି ॥୧୩୧
ଧର୍ମ ଅଧର୍ମ ଚକ ଦୁଇ ।
ଏ ଜୀବ ଅହଙ୍କାର ବହି ॥୧୩୨
ରଥେ ବସଇ ରଥୀ ରୂପେ ।
କର୍ମାନୁସାରେ ବଳ ଦର୍ପେ ॥୧୩୩
ପ୍ରଣବ ହସ୍ତେ ଧନୁ ତା'ର ।
ଅକାର ଉକାର ମକାର ॥୧୩୪
ଜୀବ କୁଶର ରୂପେ କରି ।
ପ୍ରଣବ ଧନୁ ହସ୍ତେ ଧରି ॥୧୩୫
ପରମ ଆତ୍ମା କରି ଲକ୍ଷ୍ୟ ।
ନାରାଚ ବିନ୍ଧିବ ପ୍ରତ୍ୟକ୍ଷ ॥୧୩୬
ସମ୍ମୁଖେ ଯେତେ ରିପୁ ଥିବେ ।
ଯୁଦ୍ଧେ ସକଳ ନାଶ ଯିବେ ॥୧୩୭
ଶୁଣ ରାଜନ ଶୁଦ୍ଧଚିତ୍ତେ ।
ସମ୍ମୁଖେ ରିପୁ ଛନ୍ତି ଯେତେ ॥୧୩୮
ଏ କାମ କ୍ରୋଧ ଶୋକ ମୋହ ।
ଲୋଭ ଅସୂୟା ମାୟା ଭୟ ॥୧୩୯
ମଦ ମତ୍ସର ଅପମାନ ।
ପ୍ରମାଦ ହିଂସା ମିଥ୍ୟାମାନ ॥୧୪୦
ରଜ ତାମସ ନିଦ୍ରା କ୍ଷୁଧା ।
ଏତେ ଶତ୍ରୁରେ ଯହିଁ ବାଧା ॥୧୪୧
ତ୍ରିଗୁଣମୟୀ ଯେ ପ୍ରକୃତି ।
ଏ ଆଦି ରିପୁ ଯେତେ ଛନ୍ତି ॥୧୪୨
ଏହାଙ୍କୁ ସମ୍ମୁଖେ ଆବୋରି ।
ଯେ ରଥୀ ପାରେ ଯୁଦ୍ଧେ ମାରି ॥୧୪୩
ରଥକୁ ଆତ୍ମା-ବଶ କରି ।
ଜ୍ଞାନ-ଖଡ଼ଗ ହସ୍ତେ ଧରି ॥୧୪୪
ସୁଖେ ଭୁଞ୍ଜଇ ସ୍ୱର୍ଗରାଜ୍ୟ ।
ଆନନ୍ଦେ ଅଷ୍ଟ ଅଇଶ୍ୱର୍ଯ୍ୟ ॥୧୪୫
ଯେବେ ଏ ରଥ ତ୍ୟାଗ କରି ।
ନିଶ୍ଚିନ୍ତେ ରହେ ମୋହଭରି ॥୧୪୬
ଏମନ୍ତେ ରିପୁ ଯେ ନ ମାରେ ।
ସେ କାହିଁ ଆତ୍ମ ସୁଖେ ତରେ ॥୧୪୭

ଯେବେ ଅଳସେ ରହେ ରଥେ ।
ତାହାଙ୍କୁ ବେଢ଼ନ୍ତି ସମସ୍ତେ ॥୧୪୮
ଅସାଧ୍ୟ-ଅଶ୍ୱ ଯେତେ ରଥେ ।
ସାରଥି ବିମ୍ୟାନ ସହିତେ ॥୧୪୯
ଦୁର୍ଗମ ମାର୍ଗେ ରଥ ନ୍ୟନ୍ତି ।
ଶତ୍ରୁଙ୍କ ମଧ୍ୟେ ପ୍ରବେଶନ୍ତି ॥୧୫୦
ସେ ଶତ୍ରୁଗଣେ ବଳେ କରି ।
ଅଶ୍ୱ ସାରଥି ରଥ ଧରି ॥୧୫୧
ସଂସାର-କୂପ ଅନ୍ଧକାରେ ।
କ୍ଷେପନ୍ତି ମୃତ୍ୟୁ ଭୟ ଘୋରେ ॥୧୫୨
ପ୍ରବୃତ୍ତି ନିବୃତ୍ତି ଏ କର୍ମ ।
ସଂସାରେ ବଇଦିକ ଧର୍ମ ॥୧୫୩
ପ୍ରବୃତ୍ତି-ପଥେ ସଞ୍ଚରନ୍ତି ।
ନିବୃତ୍ତେ ଅମୃତ ଭୁଞ୍ଜନ୍ତି ॥୧୫୪
ଯେ ଦ୍ରବ୍ୟମୟ ଯଜ୍ଞ କାମ ।
ଆବର ଅଗ୍ନିହୋତ୍ର ନାମ ॥୧୫୫
ପୂର୍ଣ୍ଣିମା ଅମାବାସ୍ୟା ଆଦି ।
ପଶୁ ଯେ ଚାତୁର୍ମାସ୍ୟା ବିଧି ॥୧୫୬
କୂପ ପ୍ରସାଦ ଉପବନ ।
ଏ ଆଦି ଇଷ୍ଟାପୂର୍ତ୍ତି କର୍ମ ॥୧୫୭
ହୁତ ପ୍ରହୁତ ଆଦି ଯେତେ ।
ପ୍ରବୃତ୍ତି ପଥ-କର୍ମ ଏତେ ॥୧୫୮
ସୂକ୍ଷ୍ମ ଦ୍ରବ୍ୟ ବିପାକମୟ ।
ଧୂମ ରଜନୀ ଅପକ୍ଷୟ ॥୧୫୯
ଦକ୍ଷିଣାୟନେ ସୋମ ବୁଧ ।
ଦରଶ ଓଷଧି ବିରୁଧ ॥୧୬୦
ଯେ ଅନ୍ନ ରେତରୁ ସମ୍ଭବ ।
ଏ ପିତୃଯାନ ପୁନର୍ଭବ ॥୧୬୧
ଏ ଅନୁରୂପେ ଏକେ ଏକେ ।
ଭବେ ଭ୍ରମନ୍ତି ଜୀବଲୋକେ ॥୧୬୨
ପ୍ରବୃତ୍ତି ମାର୍ଗ ଏ ପ୍ରମାଣ ।
ଏବେ ହୋ ଧର୍ମସୁତ ଶୁଣ ॥୧୬୩
ଦେବଙ୍କ ରାତ୍ର ଏ ବୋଲାଇ ।
ଶୁଣ ଦିବସ ଏବେ କହି ॥୧୬୪
ସମ୍ଭବୁଁ ମରଣ ପର୍ଯ୍ୟନ୍ତେ ।
ଦ୍ୱିଜ-ସଂସ୍କାର ବେଦ ମତେ ॥୧୬୫

ସେ ଦ୍ୱିଜ ଯେବେ ଜ୍ଞାନୀ ହୋଏ ।
ଯଜ୍ଞ କରଇ ନିଜ ଦେହେ ॥୧୬୬
ଇନ୍ଦ୍ରି ବନ୍ଧନ ଅର୍ଥେ କଣ୍ଠେ ।
ହୋମ କରଇ ଜ୍ଞାନଦୀପେ ॥୧୬୭
ମନେ କରିବ ଇନ୍ଦ୍ରି ଲୀନ ।
ବଚନେ ସଂହରିବ ମନ ॥୧୬୮
ବଚନ ସ୍ୱରେ ଲୀନ କରି ।
ସ୍ୱରକୁ ଓଁକାର ସଂହରି ॥୧୬୯
ଓଁକାର ବିନ୍ଦୁ ନାଦେ ଦେଇ ।
ବିନ୍ଦୁକୁ ପ୍ରାଣ ସଙ୍ଗେ ଥୋଇ ॥୧୭୦
ଜ୍ଞାନୀର ଏମନ୍ତ ଲକ୍ଷଣ ।
ଯେ ପଥେ ଯିବ ତାହା ଶୁଣ ॥୧୭୧
ଅଗ୍ନି ଆଦିତ୍ୟ ପ୍ରାତଃକାଳ ।
ପୂର୍ଣ୍ଣିମା ପକ୍ଷ ଯେ ଶୁକଳ ॥୧୭୨
ଏ ବ୍ରହ୍ମମାର୍ଗ ଅନୁପମ ।
ଉତ୍ତରାୟଣ ଏହା ନାମ ॥୧୭୩
ବିଶ୍ୱ-ତୈଜସ ପ୍ରାଜ୍ଞେ ଲୟ ।
ତୁରୀୟାତୀତେ ଆତ୍ମମୟ ॥୧୭୪
ଏ ଦେବଯାନ-ପଥ ଚିନ୍ତି ।
ଏ ମାର୍ଗେ ଭବେ ନ ମିଳନ୍ତି ॥୧୭୫
ଯେ ଆତ୍ମା-ଉପଶାନ୍ତ ଜନେ ।
ନିତ୍ୟେ ରହନ୍ତି ଆତ୍ମାଧ୍ୟାନେ ॥୧୭୬
ସେ ନ ପଡ଼ନ୍ତି ନରଲୋକେ ।
ନିଶ୍ଚିନ୍ତେ ଥା'ନ୍ତି ଆତ୍ମା ସୁଖେ ॥୧୭୭
ଏ ପିତୃ-ଦେବଯାନ-ପଥେ ।
ଯେ ଜନେ ଯା'ନ୍ତି ବେଦ ମତେ ॥୧୭୮
ଗମନାଗମନ କରନ୍ତି ।
ଜ୍ଞାନୀ ରହନ୍ତି ଏହା ଚିନ୍ତି ॥୧୭୯
ଯେ ଆଦିଅନ୍ତ ପ୍ରାଣୀଙ୍କର ।
ବ୍ୟାପିଛି ବାହ୍ୟ ଅଭ୍ୟନ୍ତର ॥୧୮୦
ପର-ଅପର ଯାହା ଦେହେ ।
ଯେ ଅବା ଜ୍ଞାନ ଜ୍ଞେୟ ହୋଏ ॥୧୮୧
ବଚନ ବାଚ୍ୟ ତମ ଜ୍ୟୋତି ।
ଦୃଶ୍ୟ ଅଦୃଶ୍ୟ ଯେ ଅଟନ୍ତି ॥୧୮୨
ଯେ ତା'ଙ୍କୁ ଯେମନ୍ତେ ଚିନ୍ତଇ ।
ଅଭ୍ୟାସ ମାତ୍ରେ ସେ ଦେଖଇ ॥୧୮୩

Dr. Sudhanshu Sekhar Mishra

ଭାବ-ପ୍ରମାଣେ ଦୃଶ୍ୟ ହୋଏ ।
ଦର୍ପଣେ ପ୍ରତିବିମ୍ବ ପ୍ରାୟେ ॥୧୮୪
ବସ୍ତୁ ନୁହଁଇ କଦାଚିତେ ।
ଏ ଭାବ ଘଟିବ କେମନ୍ତେ ॥୧୮୫
ଏଣୁ ନିଶ୍ଚଳ ଦୃଢ଼ ଚିତ୍ତେ ।
ଯେ ତା'ଙ୍କୁ ଚିନ୍ତେ ଅବିରତେ ॥୧୮୬
କର୍ମେ ଭଜନ୍ତି ତା'ର ପଥ ।
ଏ ଭାବ ନିଗମେ ସମ୍ମତ ॥୧୮୭
ଏ ଭୂମି ଆଦି ପଞ୍ଚଭୂତେ ।
ସେ ରହେ ବାହ୍ୟ ଅନ୍ତର୍ଗତେ ॥୧୮୮
ତା'ଙ୍କୁ ନ ପାଇ ଏକେ ଏକେ ।
ସେ ତାରତମ୍ୟ ଅତିରେକେ ॥୧୮୯
ବନ-ସମୂହେ ଲତା ଯେହ୍ନେ ।
ଜାଣିଲେ କର୍ମ ଅନୁମାନେ ॥୧୯୦
ବିଚାରେ ବହେ ଏକ ମୂଳେ ।
ଅନ୍ୟତ୍ର ନ ଲାଗେ ନିଶ୍ଚଳେ ॥୧୯୧
ତା' ଆଦି ଅନ୍ତ ଯେ ନ ଜାଣି ।
ଏହି ପ୍ରକାରେ ଭ୍ରମେ ପ୍ରାଣୀ ॥୧୯୨
ନିଦ୍ରା ଜାଗ୍ରତ ସ୍ୱପ୍ନ ମଧ୍ୟେ ।
ଯେ ରୂପେ ଏ ବିଧି ନିଷେଧେ ॥୧୯୩
ଯେ କ୍ରିୟା ଭାବ ଦ୍ରବ୍ୟ ମତେ ।
ମୁନି କହନ୍ତି ଶାସ୍ତ୍ର ମତେ ॥୧୯୪
ଜାଗ୍ରତ ସ୍ୱପ୍ନ ନିଦ୍ରା ଯେହ୍ନେ ।
ନ ଲାଗେ ଶୁଦ୍ଧ ଚଇତନେ ॥୧୯୫
କାର୍ଯ୍ୟକାରଣ ବସ୍ତୁ ଯେତେ ।
ଦେଖଇ-ପଟ-ତନ୍ତୁ ମତେ ॥୧୯୬
ଦେହରେ ଅବସ୍ତୁ-ବିକଳ୍ପ ।
ଏ ଭାବାଦ୍ୱୈତ କହି ନୃପ ॥୧୯୭
ଶରୀର ବହି ଏ ଜଗତେ ।
ଯେ କର୍ମ କରି ବେଦମତେ ॥୧୯୮
ହରି-ବିଷୟେ ସମର୍ପିଲେ ।
ବିଷ୍ଣୁ ମାୟାରୁ ତରେ ଭଲେ ॥୧୯୯
ଏହାର ନାମ କ୍ରିୟାଦ୍ୱୈତ ।
ଅପରେ ଶୁଣ ନରନାଥ ॥୨୦୦
ଶରୀର ଦାରା ସୁତ ଆଦି ।
ଅନ୍ୟ ବାନ୍ଧବ ଯେ ପ୍ରସିଦ୍ଧି ॥୨୦୧

ଯେ ଅର୍ଥ କର୍ମେ ଏହା ଦେଖି ।
ଏହାକୁ ଦ୍ରବ୍ୟାଦ୍ୱୈତ ଲେଖି ॥୨୦୨
ଯେ କର୍ମ ଯେଉଁ ଉପାୟରେ ।
ଯାହା ସକାଶୁଁ ଯେଉଁଠାରେ ॥୨୦୩
ଯାହାର ଯେ ନିଷେଧ ଥିବ ।
ବିନା ଆପଦେ ନ କରିବ ॥୨୦୪
ଏ ଆଦି ବେଦବାକ୍ୟ ଯେତେ ।
ଗୃହେ ଯେ ସାଧେ ଅବିରତେ ॥୨୦୫
କୃଷ୍ଣେ ନ କରେ ସମର୍ପଣ ।
ତା'ର ଜୀବନ ଅକାରଣ ॥୨୦୬
ଦେଖ ତୁ ଗୃହ ଧର୍ମେ ଥାଇ ।
ସଙ୍ଗତେ ଘେନି ଚାରିଭାଇ ॥୨୦୭
ରାଜ୍ୟ ବିହୁନେ ବନବାସେ ।
ଯେତେ ଭ୍ରମିଲୁ ନାନାଦେଶେ ॥୨୦୮
ଯା'ର ଚରଣେ ଆଶ୍ରେ କରି ।
ଘୋର-ସଙ୍କଟୁ ତୁ ନିସ୍ତରି ॥୨୦୯
ଏବେ ତୋହର ଦେଖ ଭାଗ୍ୟ ।
କଲୁ ରାଜସୂ ମହାଯାଗ ॥୨୧୦
ଲଭିଲୁ ପରମକାରଣ ।
ତୋତେ ସୁଲଭ ନାରାୟଣ ॥୨୧୧
ମୁହିଁ ଯେ ପୂର୍ବେ ଦେହବହି ।
କୃଷ୍ଣ ମାୟାରେ ଭ୍ରମି ହୋଇ ॥୨୧୨
ପୂର୍ବକଳ୍ପର ନାମ ଶୁଣ ।
ଗନ୍ଧର୍ବ ଉପବରହଣ ॥୨୧୩
ସେ କଳ୍ପ ଅନ୍ତେ ଦେହବହି ।
ଗନ୍ଧର୍ବ ଗଣ ମଧ୍ୟେ ଥାଇ ॥୨୧୪
ସ୍ୱଭାବେ ରୂପ-ଗୁଣ ମୋ'ର ।
ଅତି ସୁନ୍ଦର ମନୋହର ॥୨୧୫
ଗନ୍ଧର୍ବ-ନାରୀଗଣ ମଧେ ।
ଉନ୍ମତ୍ତ ରୂପେ ମୁଁ ଆନନ୍ଦେ ॥୨୧୬
ଯୁବତୀ ଗଣେ ପ୍ରିୟତମ ।
ଏମନ୍ତେ ଗଲା କିଛି ଦିନ ॥୨୧୭
ଏକ-ଦିବସେ ଦେବଗଣେ ।
ସମସ୍ତେ ମିଳି ପୁଷ୍ପବନେ ॥୨୧୮
ବ୍ରହ୍ମାଙ୍କର ଆଦି ବସି ।
ହରିଗାୟନ-ରସେ ରସି ॥୨୧୯

ଗନ୍ଧର୍ବଗଣ ଅଣାଇଲେ ।
ମୁହିଁ ଯେ ଥିଲି ତା'ଙ୍କ ତୁଲେ ॥୨୨୦
ଯୁବତୀଗଣ ମଧ୍ୟେ ଥାଇ ।
ଆନନ୍ଦେ ବୀଣା-ବାଦ୍ୟ ବାଇ ॥୨୨୧
ଆବୃତ ଅପସରାବୃନ୍ଦେ ।
ହସ୍ତ ନିବେଶି ତା'ଙ୍କ କନ୍ଧେ ॥୨୨୨
ନୃତ୍ୟ ମୁଁ କଲି ନାନା ମତେ ।
ତା' ଦେଖି ବ୍ରହ୍ମା କୋପଚିତ୍ତେ ॥୨୨୩
ଦେବହେଳନ କର୍ମ ଦେଖି ।
କୋପେ ଅରୁଣ କଲେ ଆଖି ॥୨୨୪
ବୋଇଲେ ମୋତେ କୋପ ବହି ।
ଯା' ବେଗେ ଶୂଦ୍ର ହୁଅ ତୁହି ॥୨୨୫
ବ୍ରହ୍ମାଙ୍କ ଶାପ-କୋପାନଳେ ।
ପଡ଼ିଲି ଅବନୀ ମଣ୍ଡଳେ ॥୨୨୬
ଲଭିଲି ଦାସୀଗର୍ଭେ ଜନ୍ମ ।
ଯେଣୁ ମୋ' ଥିଲା ଶୁଭକର୍ମ ॥୨୨୭
ତେଣୁ ମୁଁ ସେବି ବିପ୍ରପାଦ ।
ତରିଲି ଦୁର୍ଗମ-ପ୍ରମାଦ ॥୨୨୮
ବିପ୍ର-ଚରଣ ସେବା ଫଳେ ।
ପୁଣି ଜନ୍ମିଲି ବ୍ରହ୍ମା-କୋଳେ ॥୨୨୯
ତୋ'ର ଅଗ୍ରତେ ଗୃହଧର୍ମ ।
ବର୍ଣ୍ଣିଲି ଯଥା ବେଦକର୍ମ ॥୨୩୦
ଏହା ଶୁଣନ୍ତେ ପାପ ହରେ ।
ଯେ ଧର୍ମେ ଗୃହେ ଥାଇ ତରେ ॥୨୩୧
ତୁ ନରଲୋକେ ଭାଗ୍ୟବନ୍ତ ।
ଯେଣୁ ତୋ' ବାନ୍ଧବ ଅନନ୍ତ ॥୨୩୨
ତୋହର ଗୃହେ ନରହରି ।
ବସଇ ନର ରୂପ ଧରି ॥୨୩୩
ସେ ହରି ବ୍ରହ୍ମ-ନିରଞ୍ଜନ ।
ଧ୍ୟାନେ ନ ପା'ନ୍ତି ମୁନିଜନ ॥୨୩୪
କୈବଲ୍ୟ-ସୁଖ ଯେ ଭକ୍ତି ।
ପରମ ସୁଖଦ ତା'ର ସ୍ଥିତି ॥୨୩୫
ସେ ତୋ'ର ପ୍ରିୟ ଭଗବାନ ।
ସ୍ୱଭାବେ ମାତୁଳ ନନ୍ଦନ ॥୨୩୬
ଜଗତ ଆତ୍ମା ମହାଗୁରୁ ।
କେବା ମହିମା ବର୍ଣ୍ଣିପାରୁ ॥୨୩୭

Dr. Sudhanshu Sekhar Mishra

ବ୍ରହ୍ମାଶଙ୍କର ଆଦି ଦେବେ ।
ଯା'ର ମହିମା ନ ଜାଣିବେ ॥୨୩୮
ମଉନବ୍ରତ ତପ ଆଦି ।
ନିଶ୍ଚଳ ଧାରଣା ସମାଧି ॥୨୩୯
ନିର୍ମଳ ଭକ୍ତି-ଉପଶମେ ।
ନିର୍ବାଣ ଲଭେ ଯା'ର ନାମେ॥୨୪୦
ସାତ୍ତ୍ୱତଜନଙ୍କର ପତି ।
ସେ ହରି ହେଉ ଆତ୍ମଗତି ॥୨୪୧
ଶୁଣ ତୁ ରାଜା ଯୁଧିଷ୍ଠିର ।
ଗୋବିନ୍ଦ ପାଦେ ଆଶ୍ରେ କର॥୨୪୨

ଶୁକ ଉବାଚ

ଏମନ୍ତେ ବେଦଋଷି-ବାକ୍ୟେ ।
ପଞ୍ଚପାଣ୍ଡବେ ଏକେ ଏକେ ॥୨୪୩
କୃଷ୍ଣଚରଣେ ପୂଜା କଲେ ।
ନାରଦ ପାଦେ ପ୍ରଣମିଲେ ॥୨୪୪
ନାରଦ ଉଠିଣ ତକ୍ଷଣେ ।
ନମିଲେ ଶ୍ରୀକୃଷ୍ଣ ଚରଣେ ॥୨୪୫
ସେ କୃଷ୍ଣ ଆଜ୍ଞା ଘେନି ଶିରେ ।
ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ॥୨୪୬
ଏମନ୍ତେ ଦକ୍ଷ କନ୍ୟା ଗର୍ଭେ ।
ଯେତେ ଉପୁଜିଲେ ଦାନବେ॥୨୪୭
ଦେବ-ନାରଦ ଆଦି ଯେତେ ।
ପୂର୍ବେ ମୁଁ କହିଅଛି ତୋତେ ॥୨୪୮
ଏବେ କହିଲି ତୋତେ ଭାବେ ।
ଯେ ଯହିଁ ଦେବତା-ଦାନବେ॥୨୪୯
ସର୍ବ କହିଲି ତୋ' ଅଗ୍ରତେ ।
ସୁଜନେ ଶୁଣ ଏକଚିତ୍ତେ ॥୨୫୦
ହରିଚରିତ ଭାଗବତ ।
ନୃସିଂହ-ଚରିତ-ଅମୃତ ॥୨୫୧
ସପ୍ତମ ସ୍କନ୍ଧେ ଭାଗବତ ।
ସୁ ପୁଣ୍ୟ-ପ୍ରହ୍ଲାଦ ଚରିତ ॥୨୫୨
ଯେ ଏହା ଶ୍ରୁତିପଥେ ଶୁଣେ ।
ମନ-ବଚନେ ପରିମାଣେ ॥୨୫୩
ନୁହନ୍ତି ମାୟାରେ ମୋହିତ ।
ଭଣଇ ଦାସ ଜଗନ୍ନାଥ ॥୨୫୪
ଶୁଣି ସଂସାରୁ ତର ପ୍ରାଣୀ ।
ସୁଜନ ହିତେ ମୁହିଁ ଭଣି ॥୨୫୫
ସଂସାର-ସୁଖଦୁଃଖେ ଥାଇ ।
ମୂଢ଼ ତରିବେ ଏହା ଗାଇ ॥୨୫୬

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ସପ୍ତମ ସ୍କନ୍ଧେ ପ୍ରହ୍ଲାଦାନୁଚରିତେ
ଯୁଧିଷ୍ଠିରନାରଦ ସମ୍ବାଦେ
ସଦାଚାର-ନିର୍ଣ୍ଣୟେ
ନାମ ପଞ୍ଚୋଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଅଷ୍ଟମ ସ୍କନ୍ଧ

### ପ୍ରଥମ ଅଧ୍ୟାୟ

ହରଷେ ଅଭିମନ୍ୟୁ ସୁତ ।
ଶୁଣି ଗୋବିନ୍ଦର ଚରିତ ।।୧
ଶୁକ ଚରଣେ ଦେଇ କର ।
ବୋଲେ ପରୀକ୍ଷ ଦଣ୍ଡଧର ।।୨

ରାଜା ଉବାଚ

ବିଷ୍ଣୁ-ଚରିତ ତୁମ୍ଭ ମୁଖେ ।
ଶୁଣିଲି ଅଦୃଷ୍ଟ-ସୁପାକେ ।।୩
ଭୋ ମୁନି ଦୟାକର ମୋତେ ।
ସଂସାରୁ ତରିବି ଯେମନ୍ତ ।।୪
ମୋ' ଠାରେ ସ୍ନେହ ବହ ଯେବେ ।
ପ୍ରସନ୍ନ ଚିତ୍ତେ କହ ଏବେ ।।୫
ପୂର୍ବେ ଯେ ସ୍ୱାୟମ୍ଭୁବମନୁ ।
ପ୍ରତ୍ୟକ୍ଷେ ପଦ୍ମଯୋନି ତନୁ ।।୬
ତାହାଙ୍କ ବଂଶେ ଯେ ଚରିତ ।
ଯେ ପୂର୍ବେ ଭୂତ-ଭବିଷ୍ୟତ ।।୭
ବିସ୍ତାରେ ତୁମ୍ଭ ମୁଖୁଁ ଶୁଣି ।
ତରିବି ଭବ-ତରଙ୍ଗିଣୀ ।।୮
ଯେ ବଂଶେ ବିଶ୍ୱସୃଜକଗଣ ।
ମନୁଦୁହିତା ଗର୍ଭେ ପୁଣ ।।୯
ପୁତ୍ର-ପୌତ୍ରାଦି ଏ ଜଗତେ ।
ଯେବା ଚରିତ କଲେ ଯେତେ ।।୧୦
ଯେ ମନୁବଂଷା ଯେବା କୃତ୍ୟ ।
ଅଦ୍‌ଭୁତ ବିଷ୍ଣୁର ଚରିତ ।।୧୧
ଅଦ୍ୟାପି କବି-ଋଷିମାନେ ।
ଅଶେଷ-ଶାସ୍ତ୍ର-ଅନୁମାନେ ।।୧୨
ଗ୍ରନ୍ଥିଲେ କୃଷ୍ଣଗୁଣଗାଥା ।
ଅଶେଷ କର୍ମ ହରିକଥା ।।୧୩
ଯେ କଥା କର୍ଣ୍ଣ ରନ୍ଧ୍ରେ ପଶେ ।
ଅଶେଷ କଳୁଷ ବିନାଶେ ।।୧୪
ଯେ ମନୁ ଅନ୍ତରେ ଯେ କଥା ।
ବିଷ୍ଣୁ ଚରିତ ସାଧୁଗାଥା ।।୧୫
ଯେ ବର୍ତ୍ତମାନ ପୂର୍ବଭୂତେ ।
ଯେବା କରିବେ ଭବିଷ୍ୟତେ ।।୧୬
ସକଳ କହ ମୁନିବର ।
ଏ ଭବସାଗରୁ ଉଦ୍ଧର ।।୧୭
ଏମନ୍ତେ ପରୀକ୍ଷିତ ଆଗେ ।
ଶୁକ କହନ୍ତି ଅନୁରାଗେ ।।୧୮

ଶୁକ ଉବାଚ

ପ୍ରଥମ କଳ୍ପେ ମୁଁ ସମ୍ବାଦି ।
କହିଲି ସ୍ୱାୟମ୍ଭୁବ ଆଦି ।।୧୯
ଏ ଷଟ ମନୁବଂଶ ଯେତେ ।
ଦେବାଦି ମନୁଷ୍ୟ ପର୍ଯ୍ୟନ୍ତ ।।୨୦
ଆଦ୍ୟନ୍ତ ମଧ୍ୟେ କଲେ ଯେତେ ।
ପୂର୍ବେ ମୁଁ କହିଅଛି ତୋତେ ।।୨୧
ଆକୂତି ଦେବହୂତି ବେନି ।
ମନୁଦୁହିତା ବେନିଭଗ୍ନୀ ।।୨୨
ଧର୍ମଜ୍ଞାନର ଉପଦେଶେ ।
ପରମବ୍ରହ୍ମ ନିଜ ଅଂଶେ ।।୨୩
ଯଜ୍ଞବରାହ କଳ୍ପେ ପୂର୍ବେ ।
ଜନ୍ମିଲେ ଦେବହୂତି ଗର୍ଭେ ।।୨୪
କପିଳ ରୂପେ କଲେ ଯେତେ ।
ପୂର୍ବେ ମୁଁ କହିଅଛି ତୋତେ ।।୨୫
ଅକୂତି ଗର୍ଭେ ଯଜ୍ଞ ରୂପେ ।
ଯେ ଅବା କଲେ ପୂର୍ବକଳ୍ପେ ।।୨୬
ସେ କଥା ଶୁଣ ନୃପବର ।
ହରି-ଚରିତ ସୁଧାସାର ।।୨୭
ସେ ସ୍ୱାୟମ୍ଭୁବ ମନୁରାଜା ।
ସୃଷ୍ଟି-ସର୍ଜନେ ମହାତେଜା ।।୨୮
ସେ ପତ୍ନୀ ଶତରୂପା ସଙ୍ଗେ ।
ବିରକ୍ତ ଚିତ୍ତ କାମଭୋଗେ ।।୨୯
ବନେ ପଶିଲେ ତପ ଅର୍ଥେ ।
ସେ ପତିବ୍ରତାର ସମେତେ ।।୩୦
ସୁନନ୍ଦା-ତୀର୍ଥେ ଏକପାଦେ ।
ଉଭା ସେ ହୋଇ ଦୃଢ଼ବନ୍ଧେ ।।୩୧
ଗଗନ ଗତେ ମୁଖ କରି ।
ଚଞ୍ଚଳ-ଚିତ୍ତକୁ ନିବାରି ।।୩୨
ସୁଘୋର ତପେ ରହି ବନେ ।
ସେ ରାଜା ବିଚାରଇ ମନେ ।।୩୩

ମନୁ ଉବାଚ

ଯେ ହରି ଏ ବିଶ୍ୱ ସଂସାରେ ।
ଚେତନା ରୂପେ ହୃଦେ ପୂରେ ।।୩୪
ଚେତନ-ଅଚେତନ-ରୂପୀ ।
ଜାଗ୍ରତ ସ୍ୱପ୍ନ ମଧ୍ୟେ ବ୍ୟାପୀ ।।୩୫
ଧାତା ନ ଜାଣେ ଯା'ର ଅନ୍ତ ।
ତେଣୁ ସେ ବୋଲାଇ ଅନନ୍ତ ।।୩୬
ଏ ବିଶ୍ୱ ଆତ୍ମା ଯେହୁ ହୋଏ ।
ବିରାଜେ ସ୍ୱୟଂ ସର୍ବଦେହେ ।।୩୭
ସୃଜଇ ପାଳଇ ସଂହାରେ ।
ବାଳକ-ଲୀଳାରେ ବିହରେ ।।୩୮
ଦେଖନ୍ତା ପ୍ରାଣୀଙ୍କ ନ ଦିଶେ ।
ଦୃଶ୍ୟ ଅଦୃଶ୍ୟ ରୂପେ ମିଶେ ।।୩୯
ସକଳ ରୂପେ ଯା'ର ବାସ ।
ବିରାଜେ ଯେହ୍ନେ ଘଟାକାଶ ।।୪୦
ସେ ସର୍ବପ୍ରାଣୀଙ୍କ ମନ୍ଦିର ।
ଜୀମୂତ ମଧ୍ୟେ ଯେହ୍ନେ ନୀର ।।୪୧
ସୁପର୍ଣ୍ଣ ପୃଷ୍ଠେ ଯା'ର ସ୍ଥିତି ।
ତା' ପାଦେ ରହୁ ମୋ'ର ମତି ।।୪୨
ଆଦ୍ୟନ୍ତ ମଧ୍ୟ ଯାର ନାହିଁ ।
ସ୍ୱ ପର ଭେଦ ଅବା କାହିଁ ।।୪୩
ନ ମିଶେ ଅନ୍ତର ବାହାରେ ।
ଏ ମାୟା-ମୋହନ ସଂସାରେ ।।୪୪
ଏ ବିଶ୍ୱମୟ ଯେ ପ୍ରମାଣ ।
ସତ୍ୟ-ସ୍ୱରୂପ ପୂର୍ଣ୍ଣବ୍ରହ୍ମ ।।୪୫

Dr. Sudhanshu Sekhar Mishra

ଯେ ବିଶ୍ୱକାୟ ପୁରୁହୂତ ।
ବିଶ୍ୱ-ସୃଜନେ ଉପଗତ ॥୪୬
ବିମୋହ ମୋହ ପାଶେ ଛନ୍ଦି ।
ଯା'ର କ୍ରୀଡ଼ାରେ ବିଶ୍ୱ ବନ୍ଦି ॥୪୭
ସତ୍ୟ ପରମଜ୍ୟୋତି ଅଜ ।
ପୁରାଣ ପୁରୁଷ ବିରାଜ ॥୪୮
ଜୀବର ଜନ୍ମ ଆଦି ଯେତେ ।
ଧରେ ଆତ୍ମଶକ୍ତି ଆୟତ୍ତେ ॥୪୯
ନିରୀହ ଚେଷ୍ଟା-ବିବର୍ଜିତ ।
ସ୍ୱରୂପେ ଯେବେ ହୋଏ ସ୍ଥିତ ॥୫୦
ଏ ଭାବେ ଜାଣି ଋଷିଜନେ ।
କର୍ମ ଇଚ୍ଛନ୍ତି ଦୃଢ଼ମନେ ॥୫୧
ଯେ ଭାବେ କର୍ମ ହିଁ ନ ଫଳେ ।
ସେ ଭାବେ ଭଜନ୍ତି ନିଷ୍ଫଳେ ॥୫୨
ଈଶ୍ୱର ଭାବେ କର୍ମ କଲେ ।
ନିର୍ଗୁଣ ଲଭନ୍ତି ସେ ଭଲେ ॥୫୩
ଇଷ୍ଟ କରନ୍ତି ପ୍ରାଣୀଙ୍କର ।
ସେ ଭାବେ ଭଜେ ଦୁରାଚାର ॥୫୪
ଆତ୍ମାର ପୂର୍ଣ୍ଣଲାଭ ଅର୍ଥେ ।
ଯେ ତା'ଙ୍କୁ ଭଜନ୍ତି ଜଗତେ ॥୫୫
କେବେ ହେଁ ଭ୍ରଷ୍ଟ ସେ ନୁହନ୍ତି ।
ଅନ୍ତେ ଲଭନ୍ତି ବ୍ରହ୍ମଗତି ॥୫୬
ସକଳ ଆତ୍ମାର ଈଶ୍ୱର ।
ସ୍ୱଭାବେ ନାହିଁ ଅହଙ୍କାର ॥୫୭
ପୂର୍ଣ୍ଣ ଅନାଦି ନିରଞ୍ଜନ ।
କାହାର ନୋହେ ସେ ଅଧୀନ ॥୫୮
ସ୍ୱଭାବେ ନିଜ ମାର୍ଗେ ରହେ ।
କେ ଚିହ୍ନିପାରେ ତା'ଙ୍କୁ ଦେହେ ॥୫୯
ଏଣୁ ସେ ସଂସାରର ସାର ।
ତା' ପାଦେ ମୋ'ର ନମସ୍କାର ॥୬୦

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁ ସୁତ ।
ସେ ସ୍ୱାୟମ୍ଭୁବ ଦୃଢ଼ଚିତ୍ତ ॥୬୧
ଚିନ୍ତା କରନ୍ତେ ତପବଳେ ।
ସୁଦୃଢ଼ ସମାଧି ନିଶ୍ଚଳେ ॥୬୨
ଅସୁର-ଯାତୁଧାନ ଗଣେ ।
ବେଗେ ମିଳିଲେ ଘୋରବନେ ॥୬୩
ଭକ୍ଷିବା ପାଇଁ କ୍ଷୁଧା ଆଶେ ।
ବେଗେ ମିଳିଲେ ତା'ର ପାଶେ ॥୬୪
ତାହାଙ୍କୁ ଦେଖି ନରହରି ।
ଯଜ୍ଞପୁରୁଷ ରୂପ ଧରି ॥୬୫
ନିବାରି ଯାତୁଧାନ ଗଣ ।
ସ୍ୱର୍ଗ ପାଳିଲେ ନାରାୟଣ ॥୬୬
ସେ ମନୁ ଅନ୍ତେ ସ୍ୱାରୋଚିଷ ।
ଦ୍ୱିତୀୟ ମନୁ ସେ ବିଶେଷ ॥୬୭
ଅଗ୍ନିର ପୁତ୍ର ସେ ସ୍ୱଭାବେ ।
ରାଜତ୍ୱ କଲା ବିଶ୍ୱ ଭାବେ ॥୬୮
ଦ୍ୟୁମାନ ସୁଷେଣ ରୋଚିଷ ।
ଏ ଆଦି ତା'ର ପୁତ୍ର ଦଶ ॥୬୯
ସେ ମନୁ କାଳେ ସୁରନାଥ ।
ରୋଚନା ନାମେ ବଳବନ୍ତ ॥୭୦
ଯାହାର କାଳେ ଦେବଗଣ ।
ଦୂଷିତ ନାମେ ଉଚ୍ଚାରଣ ॥୭୧
ଋଷିଏ ଉର୍ଜ୍ଜସ୍ତମ୍ଭ ଆଦି ।
ଏ ସପ୍ତଋଷି ବ୍ରହ୍ମବାଦୀ ॥୭୨
ଯେ ବେଦଶିରା ନାମେ ମୁନି ।
ତୁଷିତା ନାମେ ତା' ଭାମିନୀ ॥୭୩
ଯେ ପତ୍ନୀ ଗର୍ଭେ ବିଭୂ ରୂପେ ।
ବିଷ୍ଣୁ ଜନ୍ମିଲେ ଆଦିକଳ୍ପେ ॥୭୪
ପୂର୍ବେ ଯେ ବାଳଖିଲ୍ୟା ରୂପେ ।
ଅଠାଶୀସସ୍ର ଆଦିକଳ୍ପେ ॥୭୫
ଯୋଗ-ଅଭ୍ୟାସେ ଉର୍ଦ୍ଧ୍ୱରେତା ।
ବିଷ୍ଣୁ-ଭଜନେ ବଳବନ୍ତା ॥୭୬
ବିଭୁର ଶିକ୍ଷା ଶିରେ ଧରି ।
ସେ ମୁନିଗଣେ ବ୍ରହ୍ମଚାରୀ ॥୭୭
କୁମାର-ବ୍ରତ ଆଚରିଲେ ।
ତେଣୁ ବାଳକ ସେ ହୋଇଲେ ॥୭୮
ତୃତୀୟ-ମନୁ ଯେ ଉତ୍ତମ ।
ସେ ପ୍ରିୟବ୍ରତର ନନ୍ଦନ ॥୭୯
ତା'ର ସୃଞ୍ଜୟ ଯଜ୍ଞହୋତ୍ର ।
ଏ ଆଦି ପୁତ୍ରେ ବଳବନ୍ତ ॥୮୦
ସେ କଳ୍ପେ ସପ୍ତଋଷି ଜନ ।
ବଶିଷ୍ଠ ଋଷିଙ୍କ ନନ୍ଦନ ॥୮୧
ପ୍ରମଦ ଆଦି ସପ୍ତସୁତେ ।
ସତ୍ୟ ଆଦି ଯେ ଦେବଯୂଥେ ॥୮୨
ସତ୍ୟଜିତ ଯେ ଦେବରାଜା ।
ହରି-ଭକତେ ମହାତେଜା ॥୮୩
ସୁନୃତା ଧର୍ମପତ୍ନୀ ଗର୍ଭେ ।
ପୁରୁଷୋତ୍ତମ ରୂପେ ପୂର୍ବେ ॥୮୪
ବହିଣ ସତ୍ୟସେନ ନାମ ।
ସତ୍ୟବ୍ରତଙ୍କ ସଙ୍ଗେ ପୁଣ ॥୮୫
ଜନ୍ମିଲେ ସତ୍ୟବ୍ରତ ତୁଲେ ।
ଶୁଣ ତୁ ଯେବା କର୍ମକଲେ ॥୮୬
ଯକ୍ଷ ରାକ୍ଷସ ଭୂତଗଣ ।
ପ୍ରାଣୀଙ୍କି କରନ୍ତି ଭକ୍ଷଣ ॥୮୭
ତାହାଙ୍କୁ ମାରି ସତ୍ୟ ସଙ୍ଗେ ।
ଧର୍ମ ରଖିଲେ ସତ୍ୟଯୁଗେ ॥୮୮
ଚତୁର୍ଥେ ପ୍ରିୟବ୍ରତ-ସୁତ ।
ତାମସ ଉତ୍ତମର ଭ୍ରାତ ॥୮୯
ଯେ ପୃଥୁ କେତୁ ଖ୍ୟାତି ନର ।
ଏ ଆଦି ଦଶ ତା' କୁମର ॥୯୦
ତା'ର ଅନ୍ତରେ ସ୍ୱର୍ଗପୁରେ ।
ତ୍ରିଶିଖ ନାମେ ସୁରେଶ୍ୱରେ ॥୯୧
ସତ୍ୟକ ହରି ବୀର ଆଦି ।
ଦେବତା ନାମେ ଏ ପ୍ରସିଦ୍ଧି ॥୯୨
ମୁନିଏ ଜ୍ୟୋତିର୍ଦ୍ଧାମ ଆଦି ।
ତାମସ ଅନ୍ତରେ ପ୍ରସିଦ୍ଧି ॥୯୩
ବୈଧୃତି ନାମେ ଦେବଗଣ ।
ଶୁଣ ହୋ ତାହାଙ୍କ ପ୍ରମାଣ ॥୯୪
କାଳେ ଯେ ବେଦ ନାଶ ଗଲେ ।
ସେ ମନ୍ୱନ୍ତରେ ସେ ରଖିଲେ ॥୯୫
ସେ ମନ୍ୱନ୍ତରରେ ଅଚ୍ୟୁତ ।
ହରିଣୀ ଉଦରେ ସମ୍ଭୂତ ॥୯୬
ତେଣୁ ବହିଲେ ହରି ନାମ ।
ରୂପେ ମୋହିତ କୋଟିକାମ ॥୯୭
ଯେ ହରିନାମ ଏ ସଂସାରେ ।
ଅଶେଷ ଦୁରିତ ସଂହରେ ॥୯୮

Dr. Sudhanshu Sekhar Mishra

ଯେ ରୂପେ ଗଜେନ୍ଦ-ମୋକ୍ଷଣ ।
କୁମ୍ଭୀର-ଦର୍ପ ନିବାରଣ ॥୯୯
କାଳେ କୁମ୍ଭୀର ମୁଣ୍ଡ ହାଣି ।
ଗଜ ରଖିଲେ ଚକ୍ରପାଣି ॥୧୦୦
ଯା' ନାମ ଭବନମଙ୍ଗଳ ।
ଦୁରିତବନ-ଦାବାନଳ ॥୧୦୧
ଏ କଥା ଶୁକ ମୁଖୁଁ ଶୁଣି ।
ପାଣ୍ଡବ ବଂଶ ଚୂଡ଼ାମଣି ॥୧୦୨
ଆନନ୍ଦେ ହୋଇ କୃତକୃତ୍ୟ ।
ବୋଇଲେ ନୃପ ପରୀକ୍ଷିତ ॥୧୦୩

ରାଜା ଉବାଚ

ଭୋ ମୁନି ଦୁର୍ଲ୍ଲଭ-ବଚନ ।
ଶୁଣି ଆନନ୍ଦ ମୋ'ର ମନ ॥୧୦୪
କେମନ୍ତେ ପ୍ରଭୁ ନରହରି ।
ଗଜ ରଖିଲେ ଗ୍ରାହ ମାରି ॥୧୦୫
କୁମ୍ଭୀର କେଉଁ ଜଳେ ଥିଲା ।
ଗଜକୁ କେମନ୍ତେ ଧଇଲା ॥୧୦୬
ସେ ଜଳଜୀବ ଜଳେ ଥାଇ ।
ହସ୍ତୀ-ସଂଯୋଗ ତା'ର କାହିଁ ॥୧୦୭
ହସ୍ତୀ ସବଳ ମହାକାୟେ ।
କୁମ୍ଭୀର କେତେ ବଳ ବହେ ॥୧୦୮
ଏ କଥା ସଂଶୟ ତ ମୋତେ ।
ଭୋ ମୁନି କହ ଶୁଦ୍ଧଚିତ୍ତେ ॥୧୦୯
ଏ ପୁଣ୍ୟକଥା ମହାଧନ୍ୟ ।
ମଙ୍ଗଳ ସର୍ବ ସ୍ୱସ୍ତ୍ୟୟନ ॥୧୧୦
ଏ ଯେ ପ୍ରସ୍ତାବ ହରିବାଣୀ ।
ଶ୍ରବଣମାର୍ଗେ ଯେବା ଶୁଣି ॥୧୧୧
ହରି ପ୍ରସାଦୁଁ ଭବୁ ତରେ ।
ନ ପଡ଼େ ମାୟା-ତମ-ଘୋରେ ॥୧୧୨

ସୂତ ଉବାଚ

ଏମନ୍ତେ ପରୀକ୍ଷିତ ବାଣୀ ।
ଆନନ୍ଦେ ଶୁକମୁନି ଶୁଣି ॥୧୧୩
ଗଙ୍ଗାର ତୀରେ ଅନ୍ତର୍ଜଳେ ।
ଅସଂଖ୍ୟ ମୁନିଗଣ ମେଳେ ॥୧୧୪
ଗୋବିନ୍ଦ ପଦେ ଦେଇ ଚିତ୍ତ ।
ବୋଲଇ ଦାସ ଜଗନ୍ନାଥ ॥୧୧୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଅଷ୍ଟମ ସ୍କନ୍ଧେ ମନ୍ୱନ୍ତରାନୁଚରିତେ ପ୍ରଥମୋଽଧ୍ୟାୟଃ ॥

---

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ରାଜନ ପରୀକ୍ଷିତ ॥୧
ପର୍ବତ ତ୍ରିକୂଟ ଯେ ନାମ ।
ସର୍ବ ସମ୍ପଦ ମୂଳଧାମ ॥୨
ଅୟୁତ-ଯୋଜନ ବସ୍ତୃତ ।
କ୍ଷୀର ସମୁଦ୍ରେ ସେ ଆବୃତ ॥୩
ଉଚ୍ଚ ସେ ଅୟୁତ ଯୋଜନ ।
ଦେଖନ୍ତେ ହରେ ପ୍ରାଣୀମନ ॥୪
ବିରାଜେ ଅଷ୍ଟଦିଗ ମଧ୍ୟେ ।
ଆନନ୍ଦ କରେ ଦେବବୃନ୍ଦେ ॥୫
ତୃତୀୟ ଶୃଙ୍ଗ ବହେ ଶିରେ ।
ସୁବର୍ଣ୍ଣ ରୌପ୍ୟ ଲୌହ ଧରେ ॥୬
ରତ୍ନ ଧାରଣ କରି ଅଙ୍ଗେ ।
ବିରାଜି ଶୋହେ ଦଶଦିଗେ ॥୭
ନାନାପ୍ରକାରେ ଲତା-ଗୁଳ୍ମ ।
ନିର୍ଝରତଟେ ବହୁଦ୍ରୁମ ॥୮
ନିର୍ଝର ଶବଦ ଗମ୍ଭୀର ।
ଅତି ସୁରମ୍ୟ ମନୋହର ॥୯
ନିର୍ଝର-ଜଳର ସମୂହେ ।
ଗିରି-ଚରଣ କିବା ଧୁଏ ॥୧୦
ନିର୍ଝର-ଭୂମି ବାୟୁବଳେ ।
ସ୍ୱର୍ଣ୍ଣ-ବାଲୁକା ଶୋହେ କୂଳେ ॥୧୧
ମର୍କତ-ପାଷାଣ-ସମୂହେ ।
ଶ୍ୟାମଳ ବର୍ଣ୍ଣେ ଭୂମି ଶୋହେ ॥୧୨
ସିଦ୍ଧ ଚାରଣ ବିଦ୍ୟାଧର ।
ଗନ୍ଧର୍ବ ସଙ୍ଗତେ କିନ୍ନର ॥୧୩
ଉରଗଗଣ ଯୂଥ ଯୂଥ ।
ଅପ୍ସରା ମିଳି ନୃତ୍ୟ ଗୀତ ॥୧୪
ଅରଣ୍ୟେ ନାନା-ପଶୁଗଣେ ।
ଗିରି-କନ୍ଦରେ ଘୋରବନେ ॥୧୫
ନାଦ କରନ୍ତି ମନୋହର ।
ମୟୂର କୋକିଳ ଭ୍ରମର ॥୧୬
ସରିତ ସରୋବର ନଦ ।
ମଣି ବାଲୁକା କୂଦ କୂଦ ॥୧୭
ଦେବକାମିନୀଗଣ ଯହିଁ ।
ସ୍ନାନ କରନ୍ତି ମୋଦ ବହି ॥୧୮
ତାହାଙ୍କ ଅଙ୍ଗରେ ଲେପିତ ।
ଗନ୍ଧ ଚନ୍ଦନ ପାରିଜାତ ॥୧୯
ସେ ଗନ୍ଧ ଶୀତଳ-ସମୀରେ ।
ସୁଗନ୍ଧେ ଦଶଦିଗ ପୂରେ ॥୨୦
ସେ ଗିରି-ଦ୍ରୋଣି ମଧ୍ୟେ ବନ ।
ବରୁଣ କ୍ରୀଡ଼ାର ଉଦ୍ୟାନ ॥୨୧
ଋତୁମାନ ନାମ ବନର ।
ସୁରକାମିନୀ କ୍ରୀଡ଼ାଘର ॥୨୨
ପର୍ବତେ ଅଳଙ୍କୃତ ବନ ।
ଫଳଫୁଲରେ ସୁଶୋଭନ ॥୨୩
ମନ୍ଦାର ପାଟଳୀ ଚମ୍ପକ ।
ପାରିଜାତକ କୁରୁବକ ॥୨୪
ଚୂତ ପିଆଳ ପନସକ ।
ଆମ୍ର ଅଶୋକ ଆମ୍ରାତକ ॥୨୫
କଦମ୍ବ ନାରିକେଳବନ ।
ଖର୍ଜ୍ଜୁର ଦାଡ଼ିମ୍ବ ଅର୍ଜ୍ଜୁନ ॥୨୬

Dr. Sudhanshu Sekhar Mishra

ମଧୁକ ଶାଳ ତାଳ ଶୋହେ ।
ତମାଳ ଆସନ ସମୂହେ ॥୨୭
ଅରିଷ୍ଟ ଉଡ଼ୁମ୍ବର ପ୍ଲକ୍ଷ ।
ନ୍ୟଗ୍ରୋଧ ଚନ୍ଦନ ରୁଦ୍ରାକ୍ଷ ॥୨୮
ନିମ୍ବ କେବିଦାର ସରଳ ।
କିଂଶୁକ ଦେବଦାରୁ କୁଳ ॥୨୯
ଦ୍ରାକ୍ଷା ଇକ୍ଷୁ ଯେ ରମ୍ଭାବନ ।
ବଦରୀ ଅଭୟା ଯେ ଦ୍ରୁମ ॥୩୦
ବେଲ ଜମ୍ବୀର କପିତ୍ଥକ ।
ଅଁଳା ପୁଣି ଭଲ୍ଲାତକ ॥୩୧
ଯହିଁ ବରୁଣ ସରୋବର ।
ସୁବର୍ଣ୍ଣ ପଦ୍ମ ମନୋହର ॥୩୨
କହ୍ଲାର କୁମୁଦ ଉତ୍ପଳ ।
ସ୍ୱଭାବେ ସୁଗନ୍ଧ ଶୀତଳ ॥୩୩
ବିକଚ-ଶତପତ୍ରେ ଶୋଭା ।
କିବା ଉପମା ଆନେ ଦେବା ॥୩୪
ମତ୍ତଭ୍ରମର ପକ୍ଷୀଗଣ ।
ନାଦ କରନ୍ତି ଅନୁକ୍ଷଣ ॥୩୫
ହଂସ କାରଣ୍ଡବ ସମୂହେ ।
ସାରସ ଚକ୍ରବାକ ଶୋହେ ॥୩୬
ଜଳକୁକ୍କୁଟ କୋଯଷ୍ଟିକ ।
କୂଜିତ କୋମଳ ଡାହୁକ ॥୩୭
ମତ୍ସ୍ୟ କଚ୍ଛପେ ଚଳେ ଜଳ ।
ପଦ୍ମ-ପରାଗରେ ଧୂସର ॥୩୮
କଦମ୍ବ ବଞ୍ଜୁଳକ ବେତ ।
ନୀପ କୀଚକ ଯୂଥ ଯୂଥ ॥୩୯
କୁନ୍ଦ ଅଶୋକ କୁରୁବକ ।
କୂଟଜ ଇଙ୍ଗୁଦି କୁବ୍ଜକ ॥୪୦
ଶିରୀଷ ପୁଣି ସ୍ୱର୍ଣ୍ଣଯୂଥୀ ।
ନାଗ ପୁନ୍ନାଗ ଆଉ ଜାତି ॥୪୧
ମଲ୍ଲିକା ଶତପତ୍ର ଶୋହେ ।
ମାଧବୀ ମାଳତୀ ସମୂହେ ॥୪୨
ଅନ୍ୟାନ୍ୟ ଜଳ ସ୍ଥଳ ଫୁଲ ।
ଷଡ଼ଋତୁରେ ସମତୁଲ ॥୪୩
ଏମନ୍ତେ ବନେ ଏକ ଦିନେ ।
ଗଜେନ୍ଦ୍ର ବିଚାରଇ ମନେ ॥୪୪

ଏ ଗ୍ରୀଷ୍ମକାଳେ ଏ ବନସ୍ତେ ।
ତୃଷାର୍ତ୍ତ ହୋଇଲୁ ସମସ୍ତେ ॥୪୫
ଜଳ ନ କରିଲେ ଆହାର ।
କେମନ୍ତେ ଧରିବା ଶରୀର ॥୪୬
ଏମନ୍ତ ମନେ ବିଚାରଇ ।
ଶୀତଳ-ଜଳ ଅଛି କାହିଁ ॥୪୭
ବ୍ୟାକୁଳେ ବନସ୍ତୁଁ ବାହାର ।
ତୃଷିତେ ଦିଶେ ଅନ୍ଧକାର ॥୪୮
ସେ ଗଜ ଆଶ୍ରେ ସେ ବନସ୍ତେ ।
ସୁଖେ ଚରନ୍ତି ପଶୁଯୂଥେ ॥୪୯
କଣ୍ଟକାକୀର୍ଣ୍ଣ ବେଣୁବନେ ।
ଭ୍ରମନ୍ତି ତୃଷିତ ବଦନେ ॥୫୦
ସ୍ୱଭାବେ ମତ୍ତଗଜ ଦନ୍ତା ।
ବନ-ବିହାରେ ବଳବନ୍ତା ॥୫୧
ଯା'ର ଚାଲନ୍ତେ ପାଦ ଲାଗି ।
ପଡ଼ନ୍ତି ବୃକ୍ଷ ଗୁଳ୍ମ ଭାଙ୍ଗି ॥୫୨
ତାହାର ମଦ-ଗନ୍ଧ ବାସେ ।
ପଶୁଏ ନ ଚରନ୍ତି ପାଶେ ॥୫୩
ବ୍ୟାଘ୍ର ଭଲ୍ଲୁକ ଖଡ୍‌ଗ ମୃଗ ।
ଯେବା ସଞ୍ଚରେ ମହୋରଗ ॥୫୪
ଶରଭ କୃଷ୍ଣସାର ହରି ।
ସେ ଶଲ୍ୟ ବୃକ ଯେ ଚମରୀ ॥୫୫
ବରାହ ମହିଷ ଶଶକ ।
ଗୋପୁଚ୍ଛ ଆଦି ଶାଳାବୃକ ॥୫୬
କ୍ଷୁଦ୍ର ହରିଣଗଣ ଯେତେ ।
ଚରନ୍ତି ଯେ ଯାହା ଆୟତେ ॥୫୭
ସେ ଗଜପତି ଗଜଯୂଥେ ।
ଅନେକ ଭ୍ରମିଲା ବନସ୍ତେ ॥୫୮
ବରୁଣ-ହ୍ରଦ-ତୀରେ ଯାଇ ।
ତୃଷିତ-ଲୋଚନେ ଅନାଇଁ ॥୫୯
ନିଦାଘ-ତାପେ କରୀଗଣ ।
ବ୍ୟାକୁଳ ବିଚଳିତ ମନ ॥୬୦
ମଦ ଜଳରେ ହୋଇ ଛନ୍ନ ।
ଅଙ୍ଗକୁ କଲେ ପ୍ରକମ୍ପନ ॥୬୧
ପଦ୍ମକୁ ତେଜି ଅଳିଗଣ ।
ହସ୍ତୀଙ୍କ ମଦ କଲେ ପାନ ॥୬୨

ଜଳ ଶୀତଳ ପୁଷ୍ପଗନ୍ଧେ ।
ଆଘ୍ରାଣ କରି ନାସାରନ୍ଧ୍ରେ ॥୬୩
କରିଣୀଯୂଥ ସଙ୍ଗେ ମିଶି ।
ସନ୍ତୋଷ ଶୀତଜଳେ ପଶି ॥୬୪
ସୁବର୍ଣ୍ଣ-ପଦ୍ମବନ-ମଧ୍ୟେ ।
ସକଳେ ପଶିଲେ ଆନନ୍ଦେ ॥୬୫
ସକଳେ ହରଷ ବଦନ ।
ସନ୍ତୋଷେ କଲେ ଜଳପାନ ॥୬୬
ଜଳ ତୋଳନ୍ତି ଥୋର ହସ୍ତେ ।
ସିଞ୍ଚନ୍ତି ଅନ୍ୟ ଅନ୍ୟଗାତ୍ରେ ॥୬୭
ନିଦାଘ କାଳେ ଶୀତଜଳେ ।
କ୍ରୀଡ଼ା କରନ୍ତି ସୁଖ ଭୋଳେ ॥୬୮
ଶବଦ ଶୁଭେ ଉଚ୍ଛଳିତ ।
ଯେସନେ ଜୀମୂତ-ଗର୍ଜ୍ଜିତ ॥୬୯
ଅଗାଧ-ଜଳେ ଗ୍ରାହ ଥିଲା ।
ଜଳେ ସେ ଶବଦ ଶୁଣିଲା ॥୭୦
ବେଗେ ଧାଇଁଲା କୋପମନେ ।
ମିଳିଲା ଗଜ ସନ୍ନିଧାନେ ॥୭୧
କେହି ନ ଦେଖେ ତା'କୁ ଜଳେ ।
କୁମ୍ଭୀର ଅତି କୋପାନଳେ ॥୭୨
ଧଇଲା ଗଜପତି-ପାଦ ।
ଶବଦ କରି ଘୋର ନାଦ ॥୭୩
ଦଇବ-ବଶେ ଯୋଗବଳେ ।
ହସ୍ତୀ ବିପତ୍ତି ଘୋର ଜଳେ ॥୭୪
ଗ୍ରାହ ଧଇଲା ଅକସ୍ମାତେ ।
ଗଜଚରଣ ଦୃଢ଼ଘାତେ ॥୭୫
ସେ ଗଜପତି ବଳବନ୍ତ ।
ବଜ୍ରହୁଁ ଆଣ୍ଟ ତା'ର ଦନ୍ତ ॥୭୬
କି କରିପାରେ ତା'ର ଦନ୍ତେ ।
ବିଷ୍ଣୁଙ୍କ ମାୟାର ଆୟତେ ॥୭୭
ଗଜ ସ୍ୱଭାବେ ମହାବଳୀ ।
ଚରଣ ନ ପାରିଲା ଚାଳି ॥୭୮
କରିଣୀଯୂଥ ତାହା ଦେଖି ।
ଦୁଃଖେ ହୋଇଲେ ଅଶ୍ରୁମୁଖୀ ॥୭୯
ସ୍ୱଭାବେ ଅତି ଶୀତ-ପାଣି ।
ଗଜ ନ ପାରେ ପାଦ ଆଣି ॥୮୦

Dr. Sudhanshu Sekhar Mishra

ସେ ହସ୍ତୀପଲ ତା'କୁ ଧରି ।
ଟାଣନ୍ତି ଘୋରନାଦ କରି ॥୮୧
ମୁଖରୁ ରୁଧିର ଗଳଇ ।
କେବେହେଁ ଗଜ ନ ଚଳଇ ॥୮୨
ବଳେ ଆଣନ୍ତି କିଛି ଦୂର ।
କୁମ୍ଭୀର ଅତି ବଳୀୟାର ॥୮୩
ପୁଣି ଗଭୀର-ଜଳେ ଭରେ ।
ସୁଦୃଢ଼-ଦନ୍ତେ ପାଦ ଧରେ ॥୮୪
ଏମନ୍ତେ ଗଜ-ଗ୍ରାହ ଯୁଦ୍ଧ ।
ଗଗନେ ଦେଖନ୍ତି ବିବୁଧ ॥୮୫
ଗଜ ଟାଣନ୍ତେ ଅତି ଖରେ ।
ପୁଣି କୁମ୍ଭୀର ଜଳେ ଭରେ ॥୮୬
ଏମନ୍ତେ ସହସ୍ର-ବରଷ ।
ଯୁଦ୍ଧ ନୋହିଲା ଅବଶେଷ ॥୮୭
ଏମନ୍ତେ ଦୀର୍ଘକାଳ ଜଳେ ।
ଗଜ-କୁମ୍ଭୀର ମହାବଳେ ॥୮୮
କ୍ଷୀଣ ହୋଇଲା ଗଜପତି ।
ସଙ୍ଗତେ ଥିଲେ ଯେତେ ହସ୍ତୀ ॥୮୯
ଦଣ୍ଡେ ଚରନ୍ତି ଘୋରବନେ ।
ଜଳେ ବଞ୍ଚନ୍ତି ଚିରଛନ୍ନେ ॥୯୦
ଗଜ କୁମ୍ଭୀର ଯୁଦ୍ଧ ଘାତେ ।
ସେ ଜଳେ ଜଳଜନ୍ତୁ ଯେତେ ॥୯୧
ଦୁଃଖିତେ ଛଟପଟ ହୋନ୍ତି ।
ଜଳୁ ପଳାଇ ନ ପାରନ୍ତି ॥୯୨
ଏହି ପ୍ରକାରେ ହୋଇ ଦୁଃଖି ।
ଗଜେ କାନ୍ଦନ୍ତି ତାହା ଦେଖି ॥୯୩
ଏମନ୍ତେ ପୂର୍ବ ପୁଣ୍ୟବଳେ ।
ବୁଦ୍ଧି ସ୍ଫୁରିଲା ତା'କୁ ଜଳେ ॥୯୪
ଅନ୍ତରେ କରଇ ବିଚାର ।
ସେ ହରି ସଂସାରର ସାର ॥୯୫
ସଙ୍କଟୁ କରେ ପରିତ୍ରାଣ ।
ଯେ ତା'ରେ ପଶନ୍ତି ଶରଣ ॥୯୬
କାଳଭୁଜଙ୍ଗ ଗ୍ରାସକାଳେ ।
ଯେ ତା'ଙ୍କୁ ଚିନ୍ତେ ଧ୍ୟାନବଳେ॥୯୭
ତାହାକୁ ଯେ କରେ ରକ୍ଷଣ ।
ତା' ପାଦେ ପଶିବି ଶରଣ ॥୯୮
ଗଜ-କୁମ୍ଭୀର ଯୁଦ୍ଧବାଣୀ ।
ଆନନ୍ଦେ ଶୁଣନ୍ତି ଯେ ପ୍ରାଣୀ ॥୯୯
ଜନ୍ମମରଣେ ନାହିଁ ଭ୍ରାନ୍ତି ।
ହେଳେ ସଙ୍କଟୁ ତରିଯା'ନ୍ତି ॥୧୦୦
ଗୀତ-ପ୍ରବନ୍ଧେ ପରକାଶ ।
କହଇ ଜଗନ୍ନାଥ ଦାସ ॥୧୦୧

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଗଜେନ୍ଦ୍ରୋପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ॥

---

## ତୃତୀୟ ଅଧ୍ୟାୟ

### ଶୁକ ଉବାଚ

ଶୁଣ ପାଣ୍ଡବ-ଚୂଡ଼ାମଣି ।
ଗଜେନ୍ଦ୍ର ବୋଲେ ମୋକ୍ଷବାଣୀ ॥୧
ଏମନ୍ତ ବୁଦ୍ଧି ସେ ବିଚାରି ।
ଚଞ୍ଚଳ ମନ ସ୍ଥିର କରି ॥୨
ପରମ-ଜପ ସେ ଜପିଲା ।
ଯେ ପୂର୍ବଜନ୍ମେ ଶିକ୍ଷା ଥିଲା ॥୩
ଶ୍ରୀକୃଷ୍ଣ ଆଦିବ୍ରହ୍ମପଦେ ।
ବୋଲେ ଆନନ୍ଦ ଗଦଗଦେ ॥୪

### ଗଜେନ୍ଦ୍ର ଉବାଚ

ନମସ୍ତେ ପ୍ରଭୁ ଭଗବାନ ।
ଅଶେଷ ବ୍ରହ୍ମାଣ୍ଡ ଜୀବନ ॥୫
ତୋ'ର ମହିମା ଚିଦାତ୍ମକ ।
ଅନାଦି ପୁରୁଷ ବିବେକ ॥୬
ଜୀବର ଆଦିବୀଜ ତୁହି ।
ପରମେଶ୍ୱରେ ନମେ ମୁହିଁ ॥୭
ଯାହାର ଦେହେ ହେ ବିଶ୍ୱ ବସେ ।
ଯା' ତହୁଁ ଏ ବିଶ୍ୱ ପ୍ରକାଶେ ॥୮
ଏ ବିଶ୍ୱ-ସର୍ଜନା ଯହିଁରେ ।
ସ୍ୱୟଂ ଯେ ବିଶ୍ୱରୂପ ଧରେ ॥୯
କାର୍ଯ୍ୟ-କାରଣରୁ ଯେ ପର ।
ତୁ ବ୍ରହ୍ମ ଶରଣସୋଦର ॥୧୦
ଏ ଯେ ସଂସାର ମାୟାବଳେ ।
ଆତ୍ମାରୁ କଳ୍ପେ ଯେ ନିଷ୍କଳେ ॥୧୧
ପ୍ରକାଶ କରି ତିରୋହିତ ।
କରଇ ଉର୍ଣ୍ଣନାଭ ବତ ॥୧୨
ମଧ୍ୟେ ଦେଖଇ ସାକ୍ଷୀ ରୂପେ ।
କ୍ରୀଡ଼ା କରଇ କଳ୍ପେ କଳ୍ପେ ॥୧୩
ସେ ହରି ରଖୁ ମୋ'ର ପ୍ରାଣ ।
ତା' ପାଦେ ପଶିଲି ଶରଣ ॥୧୪
କାଳେ ସକଳ ଜୀବଧରି ।
ଅନ୍ତକ ରୂପେଣ ସଂହରି ॥୧୫
ସକଳ ହେତୁ କରେ ଅନ୍ତ ।
ତମ-ନିବିଡ଼ ଘୋରପଥ ॥୧୬
ସେ ତମ ପରେ ସେହୁ ବସେ ।
ବିରାଜ ରୂପେ ପରକାଶେ ॥୧୭
ତା'ର ମହିମା ବିଚାରଣେ ।
ଏ ଯେତେ ଦେବେ ଋଷିଗଣେ ॥୧୮
କେହି ନ ଜାଣେ ପ୍ରଭୁ ତୋତେ ।
ଅନେକ-ଶାସ୍ତ୍ର-ଯୋଗମତେ ॥୧୯
କେ ପ୍ରାଣୀ ତତ୍ତ୍ୱ ତୋ' ଜାଣିବ ।
ଯହିଁ ଭ୍ରମନ୍ତି ବ୍ରହ୍ମାଶିବ ॥୨୦
ନଟ-ଆକୃତି ପ୍ରାୟେ ଖେଳେ ।
ଏ ମାୟା-ଗହନ-ଶୟଳେ ॥୨୧
ମନ-କର୍ମରୁ ଦୂର ଯେହି ।
ସେ ହରି ରଖୁ ମୋ'ର ଦେହୀ ॥୨୨
ଯା'ର ମହିମା ମୁନିଜନେ ।
ସକଳ-ଶାସ୍ତ୍ରେ ଅନୁମାନେ ॥୨୩
ବିମୁକ୍ତ-ସଙ୍ଗ ସାଧୁଜନେ ।
ତପ ସାଧନ୍ତି ଘୋରବନେ ॥୨୪
ଭୂତଙ୍କ ଆତ୍ମଭୂତ ଯେହୁ ।
ସେ ହରି ମୋ'ର ଗତି ହେଉ ॥୨୫

Dr. Sudhanshu Sekhar Mishra

ଯାହାର ଜନ୍ମକର୍ମ ନାହିଁ ।
ଅପର ଗୁଣଦୋଷ କାହିଁ ॥୨୬
ତଥାପି ଲୋକରକ୍ଷା ଅର୍ଥେ ।
ଆପେ ସମ୍ଭବ ଏ ଜଗତେ ॥୨୭
ସ୍ୱ ମାୟାବଳେ ଏ ଜଗତ ।
ସ୍ଥିତି ପାଳନ କରେ ଅନ୍ତ ॥୨୮
ଅରୂପରୂପ ଯେ ଅଦ୍‌ଭୁତ ।
ଆତ୍ମା ପ୍ରଦୀପ ସାକ୍ଷୀମତ ॥୨୯
ମନ-ବଚନେ ଅଗୋଚର ।
ପରମ ଆତ୍ମା ସୁଖଘର ॥୩୦
ସୂକ୍ଷ୍ମ-ନିର୍ମଳ ରୂପ ଯା'ର ।
ପଣ୍ଡିତଜନଙ୍କ ଗୋଚର ॥୩୧
ଯାହାକୁ ସତ୍ତ୍ୱଗୁଣେ ପାଇ ।
ନିଷ୍କାମଚିତ୍ତେ ଯେ'ବା ଧ୍ୟାୟି ॥୩୨
କୈବଲ୍ୟ ନାଥ ନମୋସ୍ତୁତେ ।
ନିର୍ବାଣ ସୁଖ ଯା ଉଦିତେ ॥୩୩
ତୁ ନାଥ ଶାନ୍ତ ଘୋରରୂପୀ ।
ମୂଢ଼ ଧର୍ମେଣ ବିଶ୍ୱବ୍ୟାପୀ ॥୩୪
ଯେ ନିର୍ବିଶେଷ ସାମ୍ୟରୂପ ।
ନମସ୍ତେ ଜ୍ଞାନ-ଘନ-ରୂପ ॥୩୫
କ୍ଷେତ୍ରଜ୍ଞରୂପୀ ନମୋନମ ।
ସର୍ବଜ୍ଞ ସାକ୍ଷୀ ନିଜଧାମ ॥୩୬
ସେ ଏ ଜଗତ ଆଦିମୂଳ ।
ମୂଳ ପ୍ରକୃତି ସୂକ୍ଷ୍ମସ୍ଥୂଳ ॥୩୭
ସର୍ବ-ଇନ୍ଦ୍ରିୟଗଣ ଦ୍ରଷ୍ଟା ।
ସର୍ବ ବିଷୟ ଆଦିସ୍ରଷ୍ଟା ॥୩୮
ଅଭକ୍ତ ଜନେ ଅପ୍ରକାଶ ।
ଭକତପଦେ ରବିତ୍ରାସ ॥୩୯
ଅଖିଳକାରଣ-ସ୍ୱରୂପୀ ।
ଅଦ୍‌ଭୁତ ରୂପେ ବିଶ୍ୱବ୍ୟାପୀ ॥୪୦
ସର୍ବ-ଆଗମ ବେଦସ୍ଥାନ ।
ନମସ୍ତେ ମୋକ୍ଷ ପରାୟଣ ॥୪୧
ସ୍ୱୟଂ ପ୍ରକାଶ ଗୁଣପାଶେ ।
ବନ୍ଧନ ନୋହୁ ତୁ ବିଶେଷେ ॥୪୨
ତୁ ଅପବର୍ଗ-ପରାୟଣ ।
ନମଇଁ ତୋହର ଚରଣ ॥୪୩

ତୁ ନାଥ କରୁଣାସାଗର ।
ତୋ' ପାଦେ ଶରଣ ମୋହର ॥୪୪
ଅଶେଷ-ଜନ୍ତୁ ହୃଦଗତେ ।
ତୋ'ର ପ୍ରକାଶ ଆତ୍ମାମତେ ॥୪୫
ସକଳ ଦେଖୁ ନାଥ ତୁହି ।
ତୋ' ଅନୁଭବ କେ ଜାଣଇ ॥୪୬
ତୁ ବ୍ରହ୍ମ ପରମମଙ୍ଗଳ ।
ନମସ୍ତେ ପ୍ରଭୁ ଆଦିମୂଳ ॥୪୭
ତୁ ନାଥ କରୁଣାସ୍ୱରୂପୀ ।
ତୃଣ-କାଷ୍ଠରେ ଅଛୁ ବ୍ୟାପୀ ॥୪୮
ମୋହର-ପ୍ରାୟ ପଶୁଗଣ ।
ବିପଦ ପାଶୁଁ କର ତ୍ରାଣ ॥୪୯
ଆତ୍ମା-ଆତ୍ମଜ-ଗୃହ-ବିତ୍ତେ ।
ମମତା କରେ ଦୃଢ଼ଚିତ୍ତେ ॥୫୦
ଯେ ପ୍ରାଣୀ ଗୃହବନ୍ଧେ ମଜେ ।
ସେ ତୋତେ କେବେହେଁ ନ ଭଜେ ॥୫୧
ଯେ ମୁକ୍ତସଙ୍ଗ ଏ ଜଗତେ ।
ସେ ତୋତେ ଭଜେ ଅବିରତେ ॥୫୨
ଏଣୁ ବିବେକୀ ପ୍ରାଣୀଙ୍କର ।
ତୁ ନାଥ ଶୁଭ-ସୁଖଘର ॥୫୩
ହେ ଜ୍ଞାନାତ୍ମକ ଭଗବାନ ।
ସର୍ବ-ଈଶ୍ୱର ନମୋନମଃ ॥୫୪
ଧର୍ମାର୍ଥ-କାମ-ଲୋଭୁ ମୁକ୍ତ ।
ନିଷ୍କାମେ ଭଜେ ଅବିରତ ॥୫୫
ଅନ୍ତେ ଲଭନ୍ତି ଇଷ୍ଟଗତି ।
ଦୁଃଖେ ସଙ୍କଟେ ନ ପଡ଼ନ୍ତି ॥୫୬
ଅବ୍ୟୟସ୍ଥାନେ ରହେ ମନ ।
ଏଣୁ ଲଭନ୍ତି ଦିବ୍ୟଜ୍ଞାନ ॥୫୭
ମୁଁ ଏବେ ଶରଣ ତୋହର ।
ଏ ଗ୍ରାହ-ମୁଖୁ କର ପାର ॥୫୮
ଏକାନ୍ତ ଚିତ୍ତେ ଯେ ଭଜନ୍ତି ।
ବିଷୟ ସୁଖ ନ ବାଞ୍ଛନ୍ତି ॥୫୯
ତୋ ଜ୍ଞାନ-ସୁଧା-ରସ ପାଇ ।
ଅଧିକ ବାଞ୍ଛା ତା'ଙ୍କ ନାହିଁ ॥୬୦
ଅତି ଅଦ୍‌ଭୁତ ତୋ ଚରିତ ।
ଆନନ୍ଦ ରୂପେ ସୁଲଳିତ ॥୬୧

ତୋ' କଥା-ସୁଧା-ସିନ୍ଧୁ-ଜଳେ ।
ଅବଗାହନ ସୁଖଭୋଳେ ॥୬୨
କରି ତରନ୍ତି ଦିବ୍ୟଦେହୀ ।
ଏଣୁ ତୋ' ମହିମା କେ କହି ॥୬୩
ଅକ୍ଷୟ କ୍ଷୟ ନାହିଁ ଯା'ର ।
ଯେ ବ୍ରହ୍ମ ପରମ ଈଶ୍ୱର ॥୬୪
ଅବ୍ୟକ୍ତ ଅଧ୍ୟାତ୍ମ ସ୍ୱରୂପୀ ।
ପରମ-ଯୋଗବଳେ ବ୍ୟାପୀ ॥୬୫
ଏଣୁ ଯେ ଅତିଦୂରେ ରହେ ।
ଅତ୍ୟନ୍ତ ସୂକ୍ଷ୍ମୁ ସୂକ୍ଷ୍ମ ହୋଏ ॥୬୬
ଅନନ୍ତ ଆଦି ପରିପୂର୍ଣ୍ଣ ।
ସେ ହରି ରଖୁ ମୋ' ଜୀବନ ॥୬୭
ମନବଚନ ତା' ଚରଣେ ।
ନିବେଦନ ମୋ' ଅନୁକ୍ଷଣେ ॥୬୮
ଏ ଘୋର-ଗ୍ରାହ-ବନ୍ଧ-ପାଶୁ ।
ଉଦ୍ଧରି ସେ ମୋତେ ଆଶ୍ୱାସୁ ॥୬୯
ଯା'ର ଅଳପ କଳା ଘେନି ।
ବ୍ରହ୍ମାଦି ଦେବ ସୁରମୁନି ॥୭୦
ସଂସାର ଚରାଚର ଯେତେ ।
ପ୍ରକାଶ ନାମ ରୂପ ମତେ ॥୭୧
ଅଗ୍ନି ସବିତା ଜ୍ୟୋତି ଯେହ୍ନେ ।
ପ୍ରକାଶି ପ୍ରବେଶନ୍ତି ତେହ୍ନେ ॥୭୨
ଗୁଣ ପ୍ରବାହ ଏ ସଂସାର ।
ଇନ୍ଦ୍ରିୟ ବୁଦ୍ଧି ଅହଙ୍କାର ॥୭୩
ଶରୀର ଆଦି ଏହି ମତେ ।
ପ୍ରବେଶ ହୋନ୍ତି ତା'ର ଗାତ୍ରେ ॥୭୪
ଯେ ନୋହେ ଦେବାସୁର ମର୍ତ୍ତ୍ୟ ।
ନ ସ୍ତିରୀ ନ ପୁରୁଷ ଗାତ୍ର ॥୭୫
ଜନ୍ମ ଶରୀର ପଶୁ ଆଦି ।
ରୂପେ ଅରୂପେ ନ ସମ୍ପାଦି ॥୭୬
କେବେହେଁ ନୋହେ କର୍ମଗୁଣ ।
ସତ୍ୟ ଅସତ୍ୟ ନୋହେ ଜାଣ ॥୭୭
ନିଃଶେଷ ଶେଷ ପରିପୂର୍ଣ୍ଣ ।
ଏଣୁ ଏ ଅନାଦି କାରଣ ॥୭୮
ନମସ୍ତେ ନମସ୍ତେ ଅନନ୍ତ ।
ଅସହ୍ୟ ବେଗ ବଳବନ୍ତ ॥୭୯

Dr. Sudhanshu Sekhar Mishra

ଯାହାର ଅଟେ ଶକ୍ତି-ତ୍ରୟ ।
ଅଖିଳ ବୁଦ୍ଧି ଗୁଣମୟ ॥୮୦
ପ୍ରପନ୍ନଜନ ଯେ ପାଳଇ ।
ଦୁରନ୍ତ ଶକ୍ତି ଯା'ର ଦେହୀ ॥୮୧
କୁତ୍ସିତ ଇନ୍ଦ୍ରିଗଣେ ଯା'ର ।
ମାର୍ଗ ନ କରାନ୍ତି ଗୋଚର ॥୮୨
ମୁଁ ଗ୍ରାହଗ୍ରସ୍ତେ ଗ୍ରସ୍ତ ହୋଇ ।
ଆତ୍ମା ଶରୀର ନ ଜାଣଇ ॥୮୩
ଯେ ହରି ସଂସାର-କାରଣ ।
ତା' ପାଦେ ପଶିଲି ଶରଣ ॥୮୪
ରଖୁ ନ ରଖୁ ସେ ଜାଣଇ ।
ତା' ବିନୁ ଆନଗତି ନାହିଁ ॥୮୫
ବୋଲନ୍ତି ବ୍ୟାସଙ୍କ ନନ୍ଦନ ।
ରାଜନ ସାବଧାନେ ଶୁଣ ॥୮୬

ଶୁକ ଉବାଚ

ଏମନ୍ତେ ଗଜରାଜ ସ୍ତୁତି ।
ଗୋବିନ୍ଦ ପାଦେ ଦେଇ ମତି ॥୮୭
ଇନ୍ଦ୍ରାଦି ଦେବେ ଗମ୍ୟ ନୋହେ ।
ଯେ ପୂର୍ବଭାଗ୍ୟର ଉଦୟେ ॥୮୮
ଗଜ ବିକଳ ଶୁଣି ହରି ।
ସତ୍ୱରେ ଚିତ୍ତେ ମୋଦଭରି ॥୮୯
ଯେ ହରି ସର୍ବ-ଦେବମୟେ ।
ଅଶେଷ ବିଶ୍ୱ ଯା'ର ଦେହେ ॥୯୦
ସର୍ବଦେବତା ମିଳି ସଙ୍ଗେ ।
ସ୍ତୁତି କରନ୍ତି ନାନାରଙ୍ଗେ ॥୯୧
ଗରୁଡ଼ ପୃଷ୍ଠେ ବିଜେ କରି ।
କରେ ପ୍ରଚଣ୍ଡ-ଚକ୍ର ଧରି ॥୯୨
ବେଗେ ମିଳିଲେ ଗଜ ପାଶେ ।
ବିବୁଧେ ଦେଖନ୍ତି ଆକାଶେ ॥୯୩
ଗଜେନ୍ଦ୍ର ସରୋବର-ଜଳେ ।
ଗ୍ରାହଗ୍ରସିତ ପାଦମୂଳେ ॥୯୪
ଦେଖଇ ଗରୁଡ଼-ପୃଷ୍ଠର ।
ଆକାଶେ ବିଜେ ଚକ୍ରଧର ॥୯୫
ପଦ୍ମ ଗୋଟିଏ ଘେନି ହସ୍ତେ ।
ଊର୍ଦ୍ଧ୍ୱେ ଚାହିଁଲା ଶୂନ୍ୟପଥେ ॥୯୬
ବେଗେ ନମିଲା ଶୁଣ୍ଢ ଟେକି ।
ଦେଖନ୍ତି ପ୍ରଭୁ ବନମାଳି ॥୯୭
ଚକ୍ର ବିରାଜେ ଦକ୍ଷକରେ ।
ସୂର୍ଯ୍ୟ କି ଉଦିତ ଅମ୍ବରେ ॥୯୮
ଡାକଇ ଆରତ ଭଞ୍ଜନ ।
ଭୋ ନାଥ ରଖ ମୋ' ଜୀବନ ॥୯୯
ହେ ନାରାୟଣ ବିଶ୍ୱଗୁରୁ ।
ଆରତଜନ ଦୁଃଖ ହରୁ ॥୧୦୦
ନମସ୍ତେ ପ୍ରଭୁ ଭଗବାନ ।
ତୁ ନାଥ ଜଗତ-ଜୀବନ ॥୧୦୧
ଗ୍ରାହ-ପୀଡ଼ିତ ଗଜ ଦେଖି ।
ତକ୍ଷଣେ ଗରୁଡ଼ ଉପେକ୍ଷି ॥୧୦୨
ଜଳେ ପଶିଲେ ଚକ୍ରପାଣି ।
ଚକ୍ରେ କୁମ୍ଭୀର ମୁଣ୍ଡ ହାଣି ॥୧୦୩
କୁମ୍ଭୀର ମୁଖୁଁ ବନମାଳୀ ।
ହସ୍ତୀ ଚରଣ ହସ୍ତେ ଟେକି ॥୧୦୪
ଦେଖନ୍ତି ଶୂନ୍ୟେ ଦିଗପାଳେ ।
ଗଜକୁ ଘେନି ବିଜେ କୂଳେ ॥୧୦୫
ଅଶେଷ ହରିର ମହିମା ।
କେ କହିପାରେ ଗୁଣସୀମା ॥୧୦୬
ଗଜକୁ ରଖିଲେ ଯେମନ୍ତେ ।
ଅଷ୍ଟମସ୍କନ୍ଧେ ଭାଗବତେ ॥୧୦୭
ଭାଷା-ପ୍ରବନ୍ଧେ ହରି ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୦୮
ବୋଲଇ ବିପ୍ର ଜଗନ୍ନାଥ ।
ସୁଜନେ ଶୁଣ ଏ ଚରିତ ॥୧୦୯

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଗଜେନ୍ଦ୍ର ମୋକ୍ଷଣେ
ତୃତୀୟୋଽଧ୍ୟାୟଃ ॥

---

## ଚତୁର୍ଥ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ହେତୁ ହୋଇ ।
ହରି-ଚରଣେ ମନ ଦେଇ ॥୧
ବରୁଣ ହ୍ରଦେ ଚକ୍ରପାଣି ।
ଗଜେନ୍ଦ୍ର ମୋକ୍ଷ କଲେ ଶୁଣି ॥୨
ଦେଖିବା ଅର୍ଥେ ଦେବଗଣେ ।
ମଙ୍ଗଳ-ସ୍ତୁତି ଉଚ୍ଚାରଣେ ॥୩
ବ୍ରହ୍ମା ଶଙ୍କର ଦେବଋଷି ।
ଗନ୍ଧର୍ବେ କୁସୁମ ବରଷି ॥୪
ହରିର କର୍ମ ପ୍ରଶଂସନେ ।
ମିଳିଲେ ଗଜ-ସନ୍ନିଧାନେ ॥୫
ଦେବଦୁନ୍ଦୁଭି ନାଦ କରି ।
ନୃତ୍ୟ କରନ୍ତି ଅପସରୀ ॥୬
ଗନ୍ଧର୍ବେ ଗୀତ ଗା'ନ୍ତି ସ୍ୱରେ ।
ମଙ୍ଗଳ ସ୍ତୁତି ଉପଚାରେ ॥୭
ଋଷି-ଚାରଣ-ସିଦ୍ଧଗଣେ ।
ଆଗମ-ନିଗମ ପ୍ରମାଣେ ॥୮
ପୁରୁଷୋତ୍ତମ ରୂପ ଚାହିଁ ।
ସ୍ତୁତି କରନ୍ତି ଭାବବହି ॥୯
ଭୂମି ଅନ୍ତରୀକ୍ଷ ଗଗନେ ।
ମଙ୍ଗଳ ସ୍ତୁତି ତୋଷମନେ ॥୧୦
କରନ୍ତି ଜୟ ଜୟ ବାଣୀ ।
କୁମ୍ଭୀର-ଦେହ ଜଳୁ ପୁଣି ॥୧୧
ତକ୍ଷଣେ ହୋଇଲା ବାହାର ।
କି ଅବା ଦେବା ପଟାନ୍ତର ॥୧୨
ରବି-ଶଶାଙ୍କ ଅଗ୍ନି ଗଞ୍ଜେ ।
ଅଦ୍ଭୁତ ରୂପ ତେଜପୁଞ୍ଜେ ॥୧୩
ଦେବଳ ଶାପୁଁ ପାର ଗଲା ।
ଯେ ବିଷ୍ଣୁ ଚକ୍ରେ ପ୍ରାଣ ଦେଲା ॥୧୪
ହୁହୁ ଗନ୍ଧର୍ବ ତା'ର ନାମ ।
ସ୍ୱଭାବେ ରୂପ ତେଜଧାମ ॥୧୫

Dr. Sudhanshu Sekhar Mishra

ଦେଖନ୍ତି ସର୍ବ ଦେବଗଣେ ।
ବିଷ୍ଣୁଚରଣେ ତୋଷମନେ ।।୧୬
ଶତପ୍ରଣାମ ଦଣ୍ଡବତେ ।
ନମିଲା ହରି ପାଦାଗ୍ରତେ ।।୧୭
ଉଠି ଅଞ୍ଜଳି ଶିରେ ଦେଇ ।
ଗାନ୍ଧାର-ରାଗେ ଗୀତ ଗାଇ ।।୧୮
ଆନନ୍ଦେ ନମିଲା ଚରଣେ ।
ହରିର ଆଜ୍ଞା ପରମାଣେ ।।୧୯
ଦେଖନ୍ତି ସର୍ବ ଦେବତାଏ ।
ଗମିଲା ଗନ୍ଧର୍ବର ଦେହେ ।।୨୦
ଗଜ ଯେ ଥିଲା କୃଷ୍ଣପାଶେ ।
ଗୋବିନ୍ଦ ଚରଣ-ସ୍ପରଶେ ।।୨୧
ତକ୍ଷଣେ ହୋଇ କୃତକୃତ୍ୟ ।
ଅଜ୍ଞାନ-ବନ୍ଧନୁ ବିମୁକ୍ତ ।।୨୨
ବିଷ୍ଣୁର ରୂପ ପରକାଶେ ।
ରତ୍ନକୁଣ୍ଡଳ ରବି ତ୍ରାସେ ।।୨୩
କଟୀର ପୀତବସ୍ତ୍ର ଶୋହେ ।
ହାର କେୟୂର ଜନ ମୋହେ ।।୨୪
ସୁନ୍ଦର ଶୋହେ ଚାରିଭୁଜ ।
ବିଷ୍ଣୁ-ଆୟୁଧ ଦିବ୍ୟତେଜ ।।୨୫
ତକ୍ଷଣେ ଦିବ୍ୟରୂପ ହୋଇ ।
ଗରୁଡ଼ ପୃଷ୍ଠରେ ଆରୋହି ।।୨୬
ଗରୁଡ଼ ଉଡ଼ି ମହାଶୂନ୍ୟେ ।
ପଶିଲା ବିଷ୍ଣୁର ଭୁବନେ ।।୨୭
ଶୁଣ ପରୀକ୍ଷ ନରନାଥ ।
ସେ ଗଜ ଇନ୍ଦ୍ରର ଚରିତ ।।୨୮
ଦ୍ରାବିଡ଼-ଦେଶେ ପାଣ୍ଡ୍ୟନାମ ।
ଶୁଭସୁନ୍ଦର ଗୁଣଧାମ ।।୨୯
ରାଜା ଯେ ଇନ୍ଦ୍ରଦ୍ୟୁମ୍ନ ନାମ ।
ବିଷ୍ଣୁର ବ୍ରତ ପରାୟଣ ।।୩୦
ସେ ରାଜା ବସି ଏକ ଦିନେ ।
ବିଷ୍ଣୁ ପୂଜନେ ଦୃଢ଼ମନେ ।।୩୧
ସେ ରାଜା ବସି କୂଳାଚଳେ ।
ମନ ନିବେଶି ପାଦମୂଳେ ।।୩୨
ମଉନବ୍ରତେ ଜପକରି ।
ଧ୍ୟାନେ ଚିନ୍ତଇ ନରହରି ।।୩୩
ଜଟା-କଳାପ ଶିରେ ସାଜେ ।
ପ୍ରକାଶେ ବନଭୂମି ତେଜେ ।।୩୪
ଅନେକ ଶିଷ୍ୟଗଣ ତୁଲେ ।
ଅଗସ୍ତିମୁନି ବିଜେ କଲେ ।।୩୫
ତାହାଙ୍କୁ ଦେଖି ନ ଉଠିଲା ।
ସୁଖେ ସମ୍ଭାଷଣ ନ କଲା ।।୩୬
ଏମନ୍ତେ ଦେଖି ମୁନିଗଣେ ।
ବେଗେ ଉଠିଲେ କୋପମନେ ।।୩୭
ବୋଲନ୍ତି ଏକ ଆରେ ଚାହିଁ ।
ଦେଖ ଏହାର ଜ୍ଞାନ ନାହିଁ ।।୩୮
ଅବଜ୍ଞା କଲା ବିପ୍ରଗଣେ ।
ଗଜର ପ୍ରାୟେ ମୂଢ଼ପଣେ ।।୩୯
ରାଜ ସମ୍ପଦ ଗର୍ବଭରେ ।
ବିପ୍ରଙ୍କୁ ଅମାନନା କରେ ।।୪୦
ଅନ୍ତେ ପଡ଼ିବ ତମଘୋରେ ।
କେବେହେଁ ଦୁଃଖୁଁ ନ ନିସ୍ତରେ ।।୪୧
ଏ ଧର୍ମ ଦୂଷଣ ପ୍ରସ୍ତାବେ ।
ଗଜ ଏ ହେବ ଏହି ଭାବେ ।।୪୨
ଗହନ-ବନେ ଚିରକାଳେ ।
ଗ୍ରାହ ଗ୍ରାସିବ ହ୍ରଦଜଳେ ।।୪୩
ଏମନ୍ତ ଶାପ ତା'କୁ ଦେଇ ।
ମୁନିଏ ଗଲେ ପଥ ବାହି ।।୪୪
ସେ ରାଜା ପ୍ରାଣତ୍ୟାଗ କାଳେ ।
ଗଜ ଦେଖିଲା ବେନି ଡୋଳେ ।।୪୫
ଯେ ଗଜଯୋନି ଜ୍ଞାନ ହରେ ।
ନିବାସ ଘନ-ବନ-ଘୋରେ ।।୪୬
ଯେଣୁ ଗୋବିନ୍ଦ ଭଜି ଥିଲା ।
ସେ ଭାବେ ହରି ସୁମରିଲା ।।୪୭
ଏମନ୍ତେ ଗଜ ମୋକ୍ଷ କରି ।
ନିଜ ଭୁବନେ ଗଲେ ହରି ।।୪୮
ଏବେ ହେ ପରୀକ୍ଷିତ ଶୁଣ ।
କହିଲି ଗଜେନ୍ଦ୍ର ମୋକ୍ଷଣ ।।୪୯
ଏ କଥା ଫଳ ଶୁଣ ଏବେ ।
ଯେ ନର ଶୁଣେ ଭକ୍ତି ଭାବେ ।।୫୦
ଯେ ଅବା ଉଚ୍ଚାରେ ବଦନେ ।
ଯେବା ପୁଚ୍ଛନ୍ତି ଅନ୍ୟ ଅନ୍ୟେ ।।୫୧
ସର୍ବ ସମ୍ପଦ ଯଶସ୍କର ।
କଳି-କଳୁଷ ଦୁଃଖ ହର ।।୫୨
ଦୁଷ୍ଟ ସ୍ୱପନ ଗ୍ରହପୀଡ଼ା ।
ସ୍ମରଣେ ନାଶେ ସର୍ବପୀଡ଼ା ।।୫୩
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
ଯେବା ଚିନ୍ତନ୍ତି ଏହା ବନେ ।।୫୪
ରଜନୀ ଅନ୍ତେ ଉଷାକାଳେ ।
କର-ବଦନ ଧୋଇ ଜଳେ ।।୫୫
ଗଜେନ୍ଦ୍ର ମୋକ୍ଷ ଯେ ଶୁଣନ୍ତି ।
କି ଅବା ବଦନେ ଗୁଣନ୍ତି ।।୫୬
ଦୁଃସ୍ୱପ୍ନ ଗ୍ରହପୀଡ଼ା ନାଶେ ।
ନିର୍ମଳ ଜ୍ଞାନ ପରକାଶେ ।।୫୭
ସକଳ ଦେବରଷି ମଧ୍ୟେ ।
ଗୋବିନ୍ଦ କହିଲେ ଆନନ୍ଦେ ।।୫୮
ଗଜେନ୍ଦ୍ର ମୁଖ ଚାହିଁ ହରି ।
କହନ୍ତି ଜନେ ଦୟାକରି ।।୫୯

ଭଗବାନ ଉବାଚ

ଗଜେନ୍ଦ୍ର ଶୁଣ ମୋ' ବଚନ ।
ଅଶେଷ ଦୁରିତ ଦହନ ।।୬୦
ଯେ ନର ଅହୋରାତ୍ର ଅନ୍ତେ ।
ଶୁଚି ନିର୍ମଳ ଶୁଦ୍ଧଚିତ୍ତେ ।।୬୧
ମୋତେ ସ୍ମରିବ ସଙ୍ଗେ ତୋ'ର ।
ଆବର ଏହି ସରୋବର ।।୬୨
ପର୍ବତ-କନ୍ଦର-କାନନ ।
ବେତ କୀଚକ ବେଣୁବନ ।।୬୩
ସୁରପାଦପ ଗୁଳ୍ମ ଆଦି ।
ପର୍ବତ-ତ୍ରିଶୃଙ୍ଗ ସମ୍ପାଦି ।।୬୪
ବ୍ରହ୍ମା-ଭୁବନ ମୋ ନିବାସ ।
ଶଙ୍କର ସ୍ଥାନ କପିଳାସ ।।୬୫
କ୍ଷୀରଜଳଧି ପ୍ରିୟ ମୋ'ର ।
ଯେ ଶ୍ୱେତଦୀପ ମନୋହର ।।୬୬
ଶ୍ରୀବତ୍ସ କଉସ୍ତୁଭ ମଣି ।
ଚତୁରଭୁଜ ପରିମାଣି ।।୬୭
ଶଙ୍ଖ କମଳ ଚକ୍ର ଗଦା ।
ଚତୁରଭୁଜେ ଶୋହେ ସଦା ।।୬୮

Dr. Sudhanshu Sekhar Mishra

ବିନତା ନନ୍ଦନ ଅନନ୍ତ ।
କମଳା ମୋ'ର ହୃଦେ ସ୍ଥିତ ।।୬୯
ବ୍ରହ୍ମା ଶଙ୍କର ଯେ ନାରଦ ।
ଭକତ ମଧ୍ୟେ ପ୍ରହଲ୍ଲାଦ ।।୭୦
ମତ୍ସ୍ୟ କଚ୍ଛପ କୋଳ ଆଦି ।
ଯେ ରୂପ ଅଛି ମୁଁ ସମ୍ପାଦି ।।୭୧
ଅଶେଷ ଗୁଣ କର୍ମ ଯେତେ ।
ମୋହର ଯଶ ଏ ଜଗତେ ।।୭୨
ରବି ଶଶାଙ୍କ ହୁତାଶନ ।
ପ୍ରଣବ ସତ୍ୟ ଯେ ବଚନ ।।୭୩
ଗୋ ବିପ୍ର ଆଦି ଧର୍ମ ଯେତେ ।
ଋଷି ଦେବତା ଯଜ୍ଞମତେ ।।୭୪
ଦକ୍ଷ ଦୁହିତା ମନୁ ଯେତେ ।
ପୂର୍ବେ ମୁଁ କହିଅଛି ତୋତେ ।।୭୫

ସୋମ କାଶ୍ୟପ ବଂଶ ଆଦି ।
ସୃଷ୍ଟି-ସର୍ଜନେ ଯେ ପ୍ରସିଦ୍ଧି ।।୭୬
ଗଙ୍ଗା କାଳିନ୍ଦୀ ସରସ୍ୱତୀ ।
ଅଇରାବତ ନନ୍ଦାବତୀ ।।୭୭
ଧ୍ରୁବାଦି ସପ୍ତଋଷି ଯେତେ ।
ଯେ ପୁଣ୍ୟଶ୍ଳୋକ ଏ ଜଗତେ ।।୭୮
ସ୍ମରଣେ ସର୍ବପାପ ହରେ ।
ଏ ଘୋର-ସଙ୍କଟୁ ନିସ୍ତରେ ।।୭୯

ଶୁକ ଉବାଚ

ଏମନ୍ତ କହି ଦେବବୃନ୍ଦେ ।
ସେ ହରି ପରମ ଆନନ୍ଦେ ।।୮୦
ଆରୋହି ଗରୁଡ଼ ଉପରେ ।
ତକ୍ଷଣେ ଗଲେ ନିଜ ପୁରେ ।।୮୧

ସୁଜନ ହିତେ ଭାଗବତ ।
କହଇ ଦାସ ଜଗନ୍ନାଥ ।।୮୨

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଗଜେନ୍ଦ୍ର ମୋକ୍ଷଣଂ
ନାମ ଚତୁର୍ଥୋଽଧ୍ୟାୟଃ ।।

---

## ପଞ୍ଚମ ଅଧ୍ୟାୟ

ଶୁକ କହନ୍ତି ଗଙ୍ଗାକୂଳେ ।
ସକଳ ମହାଋଷି ମେଳେ ।।୧

ଶୁକ ଉବାଚ

ହରି ଚରିତ ସୁଧାସାର ।
ଗଜ କୁମ୍ଭୀରର ନିସ୍ତାର ।।୨
ପ୍ରସନ୍ନେ କହି ରାଜା ଆଗେ ।
ପୁଣି କହନ୍ତି ଅନୁରାଗେ ।।୩
ଶୁଣ ହେ ଅଭିମନ୍ୟୁ ସୁତ ।
ଅଦ୍‌ଭୁତ ଗୋବିନ୍ଦ ଚରିତ ।।୪
ତୋତେ କହିଲୁ ହରିଗୁଣ ।
ମନୁ-ଚରିତ ଏବେ ଶୁଣ ।।୫
ପଞ୍ଚମେ ତାମସ-ସୋଦର ।
ରୈବତ ନାମେ ମନୁବର ।।୬
ଅର୍ଜୁନ ବଳି ବିନ୍ଧ୍ୟ ନାମ ।
ତା'ର ତନୟ ଅନୁପମ ।।୭
ଇନ୍ଦ୍ର ବସଇ ବିଭୁ ନାମ ।
ଘେନି ଦେବତା ଋଷିଗଣ ।।୮
ଦେବତା ଭୂତରୟ ଆଦି ।
ଏ ଭାବେ ଆମର ପ୍ରସିଦ୍ଧି ।।୯

ହିରଣ୍ୟରୋମା ବେଦଶିର ।
ଊର୍ଦ୍ଧ୍ୱବାହୁ ଯେ ମୁନିବର ।।୧୦
ବିକୁଣ୍ଠା ନାମେ ଶୁଭ୍ର ନାରୀ ।
ରୂପେ କମଳା ନୋହେ ସରି ।।୧୧
ବୈକୁଣ୍ଠପୁର ଲୋକ ସଙ୍ଗେ ।
ବିଷ୍ଣୁ ତାହାର ନିଜ ଅଙ୍ଗେ ।।୧୨
ଜନ୍ମ ହୋଇଲେ ନିଜଧାମ ।
ଏଣୁ ବୈକୁଣ୍ଠ ତା'ର ନାମ ।।୧୩
ବୈକୁଣ୍ଠପୁର ମନେ କଳ୍ପି ।
ଯହିଁ ବିଜୟେ ବିଶ୍ୱରୂପୀ ।।୧୪
ସେ ସର୍ବଲୋକ ନମସ୍କୃତ ।
ଶୁଣ ନୃପତି ପରୀକ୍ଷିତ ।।୧୫
ଲକ୍ଷ୍ମୀର ପ୍ରାର୍ଥନେ ମୁରାରି ।
କମଳା ତୁଳେ ପ୍ରୀତିକରି ।।୧୬
ନିବାସ କଲେ ପ୍ରିୟ ଭାବେ ।
ବିଷ୍ଣୁ ଭକତଙ୍କର ଲାଭେ ।।୧୭
ବୈକୁଣ୍ଠ ଗୁଣ ଭାବ ଯେତେ ।
ଭାବେ କହିଛି ତୋ' ଅଗ୍ରତେ ।।୧୮
ଏ ବିଷ୍ଣୁଗୁଣ ପରିମାଣୁ ।
କେ ଗଣିପାରେ ଭୂମିରେଣୁ ।।୧୯

ଶୁଣ ରାଜନ ମନତୋଷେ ।
ଏବେ କହିବା ମନୁବଂଶେ ।।୨୦
ଷଷ୍ଠରେ ଚକ୍ଷୁଷଙ୍କ ସୁତ ।
ଚାକ୍ଷୁସ ନାମେ ସେ ବିଦିତ ।।୨୧
ପୁରୁ ପୁରୁଷ ସୁଦ୍ୟୁମ୍ନ ଯେ ।
ପ୍ରମୁଖ ଚାକ୍ଷୁଷ ତନୁଜେ ।।୨୨
ଇନ୍ଦ୍ରର ନାମ ମନ୍ତ୍ରଦ୍ରୁମ ।
ଆପ୍ୟାଦି ଦେବଗଣ ନାମ ।।୨୩
ହବିଷ୍ଟ ବୀରକାଦି ମୁନି ।
ଉଦୟେ ନିଜଗୁଣ ଘେନି ।।୨୪
ସେ ମନୁ କାଳେ ଚକ୍ରଧର ।
ଦେବ ସମ୍ଭୂତିର ଉଦର ।।୨୫
ଅଜିତ ନାମେ ଭଗବାନ ।
ବୈରାଜ ଋଷିର ନନ୍ଦନ ।।୨୬
ଯେ ରୂପେ ସମୁଦ୍ର ମନ୍ଥିଲେ ।
ସୁରଗଣଙ୍କୁ ସୁଧା ଦେଲେ ।।୨୭
ଜଳେ ବୁଡ଼ନ୍ତେ ଗିରିବର ।
କୂର୍ମ ରୂପେ ଧରି ମନ୍ଦର ।।୨୮
ଅମୃତ ଦେଲେ ଦେବଗଣେ ।
ଅସୁର ମୋହି ସ୍ତିରୀପଣେ ।।୨୯

Dr. Sudhanshu Sekhar Mishra

ଶୁକ-ଚରଣ-ତଳେ ବସି ।
ବୋଲେ ପରୀକ୍ଷ କୁରୁବଂଶୀ ॥୩୦

ରାଜା ଉବାଚ

ଭୋ ମୁନି ଅସମ୍ଭବ କଥା ।
ସମୁଦ୍ର-ମନ୍ଥନ-ବ୍ୟବସ୍ଥା ॥୩୧
କିମର୍ଥେ ପ୍ରଭୁ ଜନାର୍ଦ୍ଦନ ।
କଲ୍ପିଲେ କ୍ଷୀରାବ୍ଧି-ମନ୍ଥନ ॥୩୨
କେମନ୍ତେ କୂର୍ମରୂପ ଧରି ।
ପୃଷ୍ଠେ ବହିଲେ ମହାଗିରି ॥୩୩
କେମନ୍ତେ ସର୍ବ ଦେବଗଣ ।
ସନ୍ତୋଷେ କଲେ ସୁଧାପାନ ॥୩୪
ଅନ୍ୟ ବା କି କି ଉପୁଜିଲା ।
କେତେ ବା ସମ୍ଭୃତ ହୋଇଲା ॥୩୫
ବିଷ୍ଣୁ-ଚରିତ ଅଗୋଚର ।
ଭ୍ରମନ୍ତି ବ୍ରହ୍ମା ଶିବ ସୁର ॥୩୬
ହରି-ମହିମା ତୁମ୍ଭ ମୁଖେ ।
ଶ୍ରବଣେ ପାନ କରି ସୁଖେ ॥୩୭
ତୃପତ ନୋହିଲା ମୋ' ପ୍ରାଣ ।
ଭୋ ମୁନି କର ପରିତ୍ରାଣ ॥୩୮
ଶୁକ କହନ୍ତି ବ୍ରହ୍ମମତେ ।
ସକଳ ଋଷିଙ୍କ ଅଗ୍ରତେ ॥୩୯

ସୂତ ଉବାଚ

ଏମନ୍ତେ ପରୀକ୍ଷିତ ବାଣୀ ।
ଶୁକ ଆନନ୍ଦ ମନେ ଶୁଣି ॥୪୦
ହରି-ମହିମା ସୁଖେ ମଜ୍ଜି ।
ଦଣ୍ଡେ ରହିଲେ ଚକ୍ଷୁ ବୁଜି ॥୪୧
ଅନ୍ତସ୍କରଣେ ହରି ଧାୟି ।
କହନ୍ତି ରାଜାମୁଖ ଚାହିଁ ॥୪୨

ଶୁକ ଉବାଚ

ପୂର୍ବେ ଯେ ଦେବାସୁର-ରଣେ ।
ଯୁଦ୍ଧେ ହାରିଲେ ଦେବଗଣେ ॥୪୩
ପଡ଼ିଲେ ଗତପ୍ରାଣ ପ୍ରାୟେ ।
ଜ୍ଞାନ ନ ଲଭନ୍ତି କେବେହେଁ ॥୪୪
ଦୁର୍ବାସା ମୁନିଙ୍କର କ୍ରୋଧ ।
ଧ୍ୱଂସିଲା ଇନ୍ଦ୍ରର ସମ୍ପଦ ॥୪୫
ଯଜ୍ଞାଦି କ୍ରିୟା ନାଶ ଗଲା ।
ଏ ତିନିଭୁବନ କମ୍ପିଲା ॥୪୬
ଇନ୍ଦ୍ର ନ ପାରେ ସ୍ୱର୍ଗେ ରହି ।
ବନେ ପଶିଲା ବେଗେ ଯାଇ ॥୪୭
ଭୟେ ନ ରହି ସ୍ୱର୍ଗଲୋକେ ।
ବନେ ବୁଲନ୍ତି ଏକେ ଏକେ ॥୪୮
ତ୍ରୈଲୋକ୍ୟ ଦିଶେ ଅନ୍ଧକାର ।
ଭୂମି କମ୍ପଇ ଥରହର ॥୪୯
ଲକ୍ଷ୍ମୀ ବିହୁନେ ତିନିଲୋକେ ।
ଦୁଃଖେ ମଜ୍ଜିଲେ ଅତିରେକେ ॥୫୦
ଏମନ୍ତେ ଦେବଲୋକେ ଚାହିଁ ।
ବାସବ ସଙ୍ଗେ ସଙ୍ଗ ହୋଇ ॥୫୧
ଦିଗପାଳଙ୍କୁ ସଙ୍ଗ କରି ।
ଅନେକ ପ୍ରକାରେ ବିଚାରି ॥୫୨
ନିସ୍ତାର ନ ପାରିଲେ ଚିନ୍ତି ।
ମନେ ପାଇଲେ ମହାଭୀତି ॥୫୩
ଏମନ୍ତେ କେତେଦିନ ରହି ।
ପୁଣି ସକଳେ ଗୁଣ୍ଠ ହୋଇ ॥୫୪
ବିଚାର କଲେ ଏକମତେ ।
କହିବା ବ୍ରହ୍ମାଙ୍କ ଅଗ୍ରତେ ॥୫୫
ଇନ୍ଦ୍ର ନ ଥିଲେ ସୃଷ୍ଟି କାହିଁ ।
ଆମ୍ଭେ ନ ପାରୁ ସ୍ୱର୍ଗେ ରହି ॥୫୬
ଲକ୍ଷ୍ମୀ-ବିହୀନେ ସୃଷ୍ଟି ନାଶେ ।
ସଂସାରେ ଘୋରତମ ଗ୍ରାସେ ॥୫୭
ଏମନ୍ତେ ବିଚାରି ସକଳେ ।
ଶକ୍ରର ସଙ୍ଗେ ଦେବବଳେ ॥୫୮
ସୁମେରୁ-ଊର୍ଦ୍ଧ୍ୱେ ବ୍ରହ୍ମସଭା ।
ଯହିଁ ସକଳ ଋଷିଦେବା ॥୫୯
ସେ ସଭା ମଧ୍ୟେ ଦେବଗଣେ ।
ନମିଲେ ଧାତାର ଚରଣେ ॥୬୦
ଇନ୍ଦ୍ରଙ୍କୁ କରି ଆଗୁଁସାର ।
ବୋଇଲେ ଶୁଣ ବେଦବର ॥୬୧
ଦୁର୍ବାସା-କୋପେ ଇନ୍ଦ୍ର ଦୁଃଖୀ ।
ଆମ୍ଭେ ସକଳେ ତାହା ଦେଖି ॥୬୨
ତ୍ରୈଲୋକ୍ୟ ଲକ୍ଷ୍ମୀ ଇନ୍ଦ୍ର ମୂଳେ ।
ସ୍ୱର୍ଗରେ ନ ରହେ ନିଶ୍ଚଳେ ॥୬୩
ଇନ୍ଦ୍ରର ତେଜ ଅସ୍ତ ଗଲା ।
ତେଣୁ ସମ୍ପଦ ନାଶ ହେଲା ॥୬୪
ଆମ୍ଭେ ତ ହୋଇଲୁ ଅନାଥ ।
ଋଷି ସକଳ ବେଦନାଥ ॥୬୫
ଏମନ୍ତେ ଦେବଙ୍କ ବଚନ ।
ଶୁଣି ପଦ୍ମଯୋନି ମଉନ ॥୬୬
ଆମ୍ଭେ ତ ହୋଇଲୁ ଅନାଥ ।
ଋଷି ସକଳ ବେଦନାଥ ॥୬୭
ଏମନ୍ତେ ଦେବଙ୍କ ବଚନ ।
ଶୁଣି ପଦ୍ମଯୋନି ମଉନ ॥୬୮
ଦଣ୍ଡେ ରହିଲେ ଛନ୍ନ ହୋଇ ।
ଦେବଙ୍କୁ ଚାହିଁ ବିଚାରଇ ॥୬୯
ଏ ଇନ୍ଦ୍ର ଆଦି ଦିଗ ପାଳେ ।
ଗଗନ-ଧରଣୀ-ପାତାଳେ ॥୭୦
ଯେତେ ଅଛନ୍ତି ରାଜାଗଣେ ।
ତେଜ ନ ଦେଖି ଲକ୍ଷ୍ମୀହୀନେ ॥୭୧
ଅଶୁଭ ପ୍ରାୟେ ତ ଦିଶଇ ।
ଏମନ୍ତେ ଦୁଃଖ ମନେ ବହି ॥୭୨
ପୁରୁଷୋତ୍ତମ ପାଦମୂଳେ ।
ଚିନ୍ତିଲେ ସମାଧି ନିଶ୍ଚଳେ ॥୭୩
ହରିପ୍ରସନ୍ନ ଲେଶ ପାଇ ।
ବୋଲନ୍ତି ଦେବଙ୍କୁ ଅନାଇଁ ॥୭୪
ଆନନ୍ଦ ମନେ ବେଦବର ।
ଦେବଙ୍କୁ ବୋଲନ୍ତି ଉତ୍ତର ॥୭୫

ବ୍ରହ୍ମା ଉବାଚ

ଶୁଣ ସକଳ ଦେବଗଣ ।
କହିବା ଏଥିର କାରଣ ॥୭୬
ବ୍ରହ୍ମା ଶଙ୍କର ଦେବଗଣ ।
ମନୁଷ୍ୟ ପଶୁ ଗୁଳ୍ମବନ ॥୭୭
ଯାହାର ଅଂଶ କଳା ବହି ।
ଆମ୍ଭେ ସକଳେ ବହୁ ଦେହୀ ॥୭୮
ସେ ହରି ଅବ୍ୟୟ ଈଶ୍ୱର ।
ଆମ୍ଭେ ଯେ ଶରଣ ତାହାର ॥୭୯
ଯାହାର ରିପୁ-ମିତ୍ର ନାହିଁ ।
ରକ୍ଷ-ଅରକ୍ଷ ତା'ର କାହିଁ ॥୮୦

Dr. Sudhanshu Sekhar Mishra

ତଥାପି ସୃଷ୍ଟି ସେ ସଞ୍ଚଇ ।
ସ୍ୱଭାବେ ତିନିଗୁଣ ବହି ॥୮୧
ସୃଷ୍ଟି କରଇ ରଜଗୁଣେ ।
ସତ୍ତ୍ୱେ ପାଳଇ ବିଷ୍ଣୁ ପଣେ ॥୮୨
ତାମସଗୁଣେ ସଂହାରଇ ।
ଅନ୍ତରେ ସର୍ବଗୁଣ ବହି ॥୮୩
ଏଣୁ ଜଗତ ଗୁରୁ ପାଦେ ।
ଶରଣ ପଶ ଅପ୍ରମାଦେ ॥୮୪
ତା'ର ମହିମା ସୁରପ୍ରିୟ ।
ସୁର-ରକ୍ଷଣେ ବହେ ଦେହ ॥୮୫
ଆମ୍ଭ କୁଶଳ ସେ କରିବ ।
ଅନାଦି ପ୍ରଭୁ ପଦ୍ମନାଭ ॥୮୬

### ଶୁକ ଉବାଚ

ଏମନ୍ତ ବୋଲି ପଦ୍ମଯୋନି ।
ସଙ୍ଗେ ସକଳ ଦେବ ଘେନି ॥୮୭
ଆନନ୍ଦେ ଜୟ ଜୟ ନାଦେ ।
ସର୍ବେ ମିଳିଲେ ବିଷ୍ଣୁ ପାଦେ ॥୮୮
ଯେ ବଇକୁଣ୍ଠ ଯୋଗଗମ୍ୟ ।
ପରମଆତ୍ମା-ପରଧାମ ॥୮୯
ପ୍ରକୃତି ନ ଜାଣଇ ଯାହା ।
ଯହିଁ ନ ପଶେ ବିଷ୍ଣୁ ମାୟା ॥୯୦
ଅଦୃଷ୍ଟ-ଅଶ୍ରୁତ-ଭୁବନେ ।
ଦେବେ ମିଳିଲେ ମହାଶୂନ୍ୟେ ॥୯୧
ଯହିଁ କି ଜୀବ ଆତ୍ମା ଗଲେ ।
ପୁଣି ନ ସଞ୍ଚରେ ଶୟଳେ ॥୯୨
ଧାତା କପୋଳେ କର ଦେଇ ।
ବୋଲେ ବୈକୁଣ୍ଠନାଥ ଧ୍ୟାୟୀ ॥୯୩

### ବ୍ରହ୍ମା ଉବାଚ

ସତ୍ୟ ଅନନ୍ତ ଅବିକାର ।
ଯେ ନିରଞ୍ଜନ ନିରାକାର ॥୯୪
ନିଜ ବିଭୂତି ଅଗୋଚର ।
ଜନ୍ତୁଙ୍କ ହୃଦେ ଯା'ର ଘର ॥୯୫
ମନରୁ ବେଗବନ୍ତ ଯେହି ।
ମନ-ବଚନେ ଭେଦ କାହିଁ ॥୯୬
ବରେଣ୍ୟ-ଦେବବର ପାଦେ ।
ଆମ୍ଭେ ମିଳିଲୁ ଅପ୍ରମାଦେ ॥୯୭
ସ୍ୱଭାବେ ମନ ପ୍ରାଣ ବୁଦ୍ଧି ।
ଏ ଯହିଁ ନ ପାରନ୍ତି ଭେଦି ॥୯୮
ଇନ୍ଦ୍ରିୟଗଣେ ଯେ ଅଦୃଶ୍ୟ ।
ଉନିଦ୍ର-ଭାବେ ଅବିନାଶ ॥୯୯
ଛାୟା-ଆତପେ ଯେ ନ ମିଶେ।
ଅକ୍ଷୟ-ଶୂନ୍ୟେ ପରକାଶେ ॥୧୦୦
ତ୍ରିଗୁଣ-ରୂପ ସେ ବୋଲାଇ ।
ଆମ୍ଭେ ଶରଣ ଗଲୁ ତହିଁ ॥୧୦୧
ଏ ଜୀବ ଚକ୍ରରୂପ ଧରେ ।
ମାୟାରେ ମଣ୍ଡଳେ ସଞ୍ଚରେ ॥୧୦୨
ତ୍ରିଗୁଣେ ତ୍ରିନାଭି ତାହାର ।
ଯେ ଚକ୍ରେ ପଞ୍ଚଦଶ ଅର ॥୧୦୩
ଦଶ ଇନ୍ଦ୍ରିୟ ପଞ୍ଚପ୍ରାଣ ।
ଅଷ୍ଟ ପ୍ରକୃତି ନେମି ଜାଣ ॥୧୦୪
ସେ ଚକ୍ର ଅକ୍ଷ ଆତ୍ମାରୂପୀ ।
ଯେ ଆଦି-ଅନ୍ତ-ମଧ୍ୟେ ବ୍ୟାପୀ ॥୧୦୫
ସେ ସତ୍ୟସ୍ୱରୂପ ଚରଣେ ।
ଆମ୍ଭେ ଯେ ପଶିଲୁ ଶରଣେ ॥୧୦୬
ଯାହାର ଜ୍ୟୋତି ପରକାଶ ।
ନିର୍ମଳ କରେ ଦଶଦିଶ ॥୧୦୭
ଯୋଗୀଏ ଯୋଗମାର୍ଗେ ଥାଇ ।
କାଳ ହରନ୍ତି ଯା'ରେ ଧ୍ୟାୟି ॥୧୦୮
କେହି ଯାହାର ମାୟାଭ୍ରମ ।
ତରଣେ ନ ହୁଅନ୍ତି କ୍ଷମ ॥୧୦୯
ଯା ମାୟା ଜଗତେ ସଞ୍ଚରେ ।
ଅନନ୍ତ ନାନାରୂପ ଧରେ ॥୧୧୦
ନିର୍ଜିତ ମାୟା ମାୟାଗୁଣ ।
ପରମ ପୁରୁଷ ପୁରାଣ ॥୧୧୧
ଜନ୍ତୁଙ୍କ ଦେହେ ସମରୂପୀ ।
ତେଜେ ସଞ୍ଚରେ ସର୍ବବ୍ୟାପୀ ॥୧୧୨
ତା'ର ଚରଣେ ନମସ୍କାର ।
ଯେ ପ୍ରଭୁ ପରମ ଈଶ୍ୱର ॥୧୧୩
ଏ ଦେବଗଣ ବ୍ରହ୍ମା ଆଦି ।
ସେ କ୍ରୀଡ଼ା-ଅର୍ଥରେ ସମ୍ପାଦି ॥୧୧୪
ସତ୍ତ୍ୱ-ସଂଯୋଗ ସୃଷ୍ଟି କରି ।
ତହିଁ ଯେ ସୂକ୍ଷ୍ମରୂପ ଧରି ॥୧୧୫
ଦିଶଇ-ଅନ୍ତର-ବାହିଯ୍ୟେ ।
ପ୍ରଦୀପ ଯେହ୍ନେ ଗୃହମାଝେ ॥୧୧୬
ଯାହାର ସୂକ୍ଷ୍ମ ଗତି ଆମ୍ଭେ ।
ଜାଣି ନ ପାରୁ ଜ୍ଞାନଦମ୍ଭେ ॥୧୧୭
ସଂସାର ମଧ୍ୟେ ଛନ୍ତି ଯେତେ ।
ସେ ଅବା ଜାଣିବେ କେମନ୍ତେ ॥୧୧୮
ଏ ମହୀ ଯା'ର ବେନିପାଦ ।
ସ୍ୱକୃତ-ପ୍ରାଣୀ ଚତୁର୍ବିଧ ॥୧୧୯
ଯେ କର୍ମ-ଗହଳେ ସଞ୍ଚରି ।
ଶରୀର ବହେ ନରହରି ॥୧୨୦
ମହାପୁରୁଷ ଆତ୍ମତନ୍ତ୍ର ।
ମହାବିଭୂତି ବ୍ରହ୍ମତତ୍ତ୍ୱ ॥୧୨୧
ପ୍ରସନ୍ନ ହେଉ ସେ ଆମ୍ଭଙ୍କୁ ।
ଶରଣ ପଶିଲୁ ତାହାଙ୍କୁ ॥୧୨୨
ଜଳ ଯାହାର ବୀର୍ଯ୍ୟ ହୋଇ ।
ସ୍ୱଭାବେ ତା'ର ତେଜ ବହି ॥୧୨୩
ଅଖିଳଲୋକ-ଲୋକପାଳେ ।
ତିନିଭୁବନ ଯାର ବଳେ ॥୧୨୪
ଭୂତ ସଞ୍ଚଇ ଜୀବ ରୂପେ ।
ସେ ହ୍ରାସ-ବୃଦ୍ଧି ଅନୁରୂପେ ॥୧୨୫
ମହାବିଭୂତି ବ୍ରହ୍ମ ଯେହୁ ।
ଆମ୍ଭ ବିଷୟେ ଦୟାବହୁ ॥୧୨୬
ସୋମ ଯାହାର ମନ ହୋଏ ।
ଦେବଙ୍କ ଅନ୍ନ-ଆୟୁ ବହେ ॥୧୨୭
ସ୍ଥାବରଙ୍କର ଯେ ଈଶ୍ୱର ।
ପ୍ରଜାଙ୍କ ରକ୍ଷା-ବୃଦ୍ଧି କର ॥୧୨୮
ମହାବିଭୂତି ବ୍ରହ୍ମରୂପ ।
ସେ ହରି ହରୁ ଆମ୍ଭ ତାପ ॥୧୨୯
ଯାହାର ମୁଖୁଁ ଅଗ୍ନିଜାତ ।
ତେଜେ ପ୍ରତାପଇ ଜଗତ ॥୧୩୦
କ୍ରିୟାକାଣ୍ଡ ନିମିତ୍ତେ ଜନ୍ମ ।
ସେ ସର୍ବସାଧେ ସିଦ୍ଧକର୍ମ ॥୧୩୧
ଅନ୍ତଃ-ସମୁଦ୍ରେ ଅଗ୍ନି ବହି ।
ଆହାର ରୂପେ ଯେ ଭୁଞ୍ଜଇ ॥୧୩୨

Dr. Sudhanshu Sekhar Mishra

ଯାହାର ଚକ୍ଷୁ ମାରତଣ୍ଡ ।
ତେଜେ ପ୍ରକାଶଇ ବ୍ରହ୍ମାଣ୍ଡ ॥୧୩୩
ସେ ଦେବପାଳ ତ୍ରୟୀମୟ ।
ବ୍ରହ୍ମର ସ୍ଥାନ ଶୁଦ୍ଧଦେହ ॥୧୩୪
ମୁକ୍ତିର ଦ୍ୱାର ସେ ବୋଲାଇ ।
ଅମୃତ ମୃତ୍ୟୁରୂପ ହୋଇ ॥୧୩୫
ଚରାଚରଙ୍କ ଦେହ-ପ୍ରାଣ ।
ଯେ କରେ ପ୍ରାଣୀ ପରିତ୍ରାଣ ॥୧୩୬
ପ୍ରକାଶେ ସହ-ଓଜ-ବଳେ ।
ଯାର ବିହାର ଏ ଶୟଳେ ॥୧୩୭
ଯା'ର ଶ୍ରବଣ ଦଶଦିଶ ।
ହୃଦୟ ପ୍ରକାଶେ ଆକାଶ ॥୧୩୮
ଯାହାର ନାଭି ଅନ୍ତରୀକ୍ଷ ।
ମସ୍ତକ ସ୍ୱର୍ଗ ଯା ପ୍ରତ୍ୟକ୍ଷ ॥୧୩୯
ପ୍ରାଣ ଇନ୍ଦ୍ରିୟ ଆତ୍ମାହେତୁ ।
ଯା'ର ପ୍ରସନ୍ନେ ଜ୍ଞାନତନ୍ତୁ ॥୧୪୦
ତ୍ରିଦଶ ଦେବଙ୍କର ନାଥ ।
ଇନ୍ଦ୍ର ଯାହାର ବଳୁଁ ଜାତ ॥୧୪୧
ଯାହାର ପ୍ରାଣେ ଜନ୍ତୁପ୍ରାଣ ।
ଏଣୁ ଏ ସର୍ବ ପରିତ୍ରାଣ ॥୧୪୨
ଯାହା ପ୍ରସାଦୁଁ ଦେବେ ହୋନ୍ତି ।
କ୍ରୋଧରୁ ହୋଏ ପଶୁପତି ॥୧୪୩
ବୁଦ୍ଧିରୁ ବ୍ରହ୍ମା ଜାତ ହୋଏ ।
ଲୋକେ ପ୍ରକାଶ ଯାର ଦେହେ ॥୧୪୪
ଇନ୍ଦ୍ରିୟ ଛିଦ୍ରୁ ଜାତ ଛନ୍ଦେ ।
ମେଢ୍ରୁଁ ପ୍ରଜାପତି ଆନନ୍ଦେ ॥୧୪୫
କମଳା ତା'ର ବକ୍ଷସ୍ଥଳ ।
ଛାୟା ସମ୍ଭବେ ପିତୃକୁଳ ॥୧୪୬
ଧର୍ମ-ଉଦିତ ସ୍ତନଯୁଗେ ।
ଅଧର୍ମ ଯା'ର ପୃଷ୍ଠ ଭାଗେ ॥୧୪୭
ସ୍ୱର୍ଗ ଯା' ଶିରୁଁ ଉତପନ୍ନ ।
ବିହାରୁ ଅପସରାଗଣ ॥୧୪୮
ଯେ ମହାବିଭୂତି ଶରଣ ।
ଆମ୍ଭଙ୍କୁ କରୁ ପରିତ୍ରାଣ ॥୧୪୯
ବିପ୍ର ଯାହାର ମୁଖୁଁ ଜାତ ।
ବ୍ରହ୍ମ ନିର୍ମାଣ ଗୁହ୍ୟତତ୍ତ୍ୱ ॥୧୫୦
କ୍ଷତ୍ରିୟ ଭୁଜୁଁ ଜନ୍ମ ବଳ ।
ଉରୁ ସମ୍ଭୂତ ବୈଶ୍ୟକୁଳ ॥୧୫୧
ଶୁଦ୍ର ଚରଣୁଁ ଉତପତ୍ତି ।
ଯେ ବ୍ରହ୍ମ ପରମ ବିଭୂତି ॥୧୫୨
ଉପର ଓଷ୍ଠୁ ପ୍ରୀତି ଜାତ ।
ଅଧରୁ ଲୋଭ ଯେ ସମ୍ଭୂତ ॥୧୫୩
କାନ୍ତି ଯାହାର ନାସିକାରୁ ।
ସମ୍ଭବ ହୁଅଇ ସ୍ପର୍ଶରୁ ॥୧୫୪
ପାଶବ୍ୟ କାମର ସମ୍ଭବ ।
ଯମ ଯାହାର ଜାତ ଭ୍ରୂବ ॥୧୫୫
କାଳ ସମ୍ଭବ ପକ୍ଷ୍ମଦେଶେ ।
କରାଳ ଦିଶେ ବେନିପାଶେ ॥୧୫୬
ଦ୍ରବ୍ୟ ବୟସ କର୍ମ ଗୁଣ ।
ଯା' ମାୟା ପ୍ରକାଶେ ଲକ୍ଷଣ ॥୧୫୭
ଯେ ଉପଶାନ୍ତି ଶକ୍ତି ବହେ ।
ଆମ୍ଭେ ଯେ ନମୁ ତା'ର ପାଏ ॥୧୫୮
ସତ୍ୟରେ ଯେ ପ୍ରତିପୂଜିତ ।
ମାୟା ଚରିତ ଗୁଣେ ସ୍ଥିତ ॥୧୫୯
ସେ ହରି ଦେଖାଉ ଶରୀର ।
ଯେ ନୋହେ କରଣେ ଗୋଚର ॥୧୬୦
ଯା' ସୁଖ ଦେଖିବାର ଅର୍ଥେ ।
ଶରଣ ଗଲୁ ପାଦଗତେ ॥୧୬୧
ସୁଜନେ କର ଏଣେ ଭାବ ।
ଯେ ନାବେ ସଂସାରୁ ତରିବ ॥୧୬୨
କଳି-କଲ୍ମଷ ନାଶ ପାଇଁ ।
ଏ ବିନୁ ଆନଗତି ନାହିଁ ॥୧୬୩
ବୋଲଇ ଦାସ ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତ ॥୧୬୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଅମୃତ ମନ୍ଥନ
ଆୟୋଜନେ ପଞ୍ଚମୋଽଧ୍ୟାୟଃ ॥

---

## ଷଷ୍ଠ ଅଧ୍ୟାୟ

### ଶୁକ ଉବାଚ

ଏମନ୍ତେ ଦେବସ୍ତୁତି ଶୁଣି ।
ଶୂନ୍ୟେ ପ୍ରକାଶ ଚକ୍ରପାଣି ॥୧
ସହସ୍ର-ସୂର୍ଯ୍ୟତେଜ ଦେଖି ।
ଦେବେ ବୁଜିଲେ ଭୟେ ଆଖି ॥୨
ଦିଗ ନ ପାରନ୍ତି ବିଚାରି ।
କେମନ୍ତେ ଦେଖିବେ ଶ୍ରୀହରି ॥୩
ରହିଲେ ଅନ୍ଧକାରଛନ୍ନେ ।
ଚାହିଁ ନ ପାରନ୍ତି ଗଗନେ ॥୪
ମଧ୍ୟେ ଯେ ବ୍ରହ୍ମା-ରୁଦ୍ର ଥିଲେ ।
ଟେକି ଅନ୍ତରୀକ୍ଷେ ଚାହିଁଲେ ॥୫
ଦେଖିଲେ ବିଷ୍ଣୁର ପ୍ରକାଶ ।
ଶରୀରେ ପୂରିଛି ଆକାଶ ॥୬
ନୀଳ-ମହୀନ୍ଦ୍ର ପ୍ରାୟେ ଦିଶେ ।
ଅରୁଣ-ଲୋଚନ ପ୍ରକାଶେ ॥୭
ବିକଚ-ପୁଣ୍ଡରୀକ ପ୍ରାୟେ ।
କର୍ଣ୍ଣେ କୁଣ୍ଡଳ ବେନି ଶୋହେ ॥୮
ତପ୍ତକାଞ୍ଚନ ପ୍ରାୟେ ବର୍ଣ୍ଣ ।
ପୀତବସନ ପରିଧାନ ॥୯
ପ୍ରସନ୍ନ ଚାରୁ ସର୍ବଅଙ୍ଗେ ।
ଶ୍ରୀମୁଖ ସୁନ୍ଦର ଭ୍ରୂଭଙ୍ଗେ ॥୧୦
ଅମୂଲ୍ୟ-ମୁକୁଟ ଲଲାଟେ ।
କାଞ୍ଚନ ଭୂଷଣ ପ୍ରକଟେ ॥୧୧
ଆଜାନୁଲମ୍ବେ ଚାରିଭୁଜେ ।
କେୟୂର କଙ୍କଣ ବିରାଜେ ॥୧୨
କାଞ୍ଚିକଳାପ ବଳୟରେ ।
ଶୋଭିତ ହାର-ନୂପୁରରେ ॥୧୩
କୌସ୍ତୁଭମଣି କଣ୍ଠେ ଶୋହେ ।
ତେଜ ପ୍ରକାଶେ ଜନମୋହେ ॥୧୪

Dr. Sudhanshu Sekhar Mishra

କମଳା ବନମାଳା ରଙ୍ଗେ ।
ହୃଦେ ଶୋହଇ ଅନୁରାଗେ ॥୧୫
ଏମନ୍ତ ରୂପ ଶୂନ୍ୟେ ଚିନ୍ତି ।
ଶିବ ସହିତେ ବେଦପତି ॥୧୬
ଧ୍ୟାନେ ଗୋବିନ୍ଦ ପାଦେ ପଡ଼ି ।
ସ୍ତୁତି କରନ୍ତି କରଯୋଡ଼ି ॥୧୭

ବ୍ରହ୍ମା ଉବାଚ

ଅଜ-ନିର୍ମଳ ଯେ ସ୍ୱଭାବେ ।
ସୃଷ୍ଟିପାଳନ-ସ୍ଥିତି ଲାଭେ ॥୧୮
ଅଗୁଣେ ବିଶ୍ରାମ ତୁମ୍ଭର ।
ମହିମା ଅମୃତ-ସାଗର ॥୧୯
ଅଣୁ ହିଁ ଅଣୁଭାବେ ହୋଇ ।
ସ୍ୱମାୟା ସୁଖେ ଯେ ଭଜଇ ॥୨୦
ମହାନୁଭବ ଏ ଜଗତେ ।
ମହାପୁରୁଷ ନମସ୍ତୁତେ ॥୨୧
ତୁ ନାଥ ସଂସାର-ଧାରଣ ।
ଏଣୁ ଅଶେଷ ମୁନିଗଣ ॥୨୨
ଆଗମ-ନିଗମ ସମ୍ପାଦି ।
ବିଚାରି ସାଂଖ୍ୟଯୋଗବିଧି ॥୨୩
ବେଦ-ବିହିତ ରବି ତଳେ ।
ମନ-ପବନ ସୁନିଷ୍ଠଳେ ॥୨୪
ତୋହର ରୂପ ଧ୍ୟାନ କରି ।
ମାୟା-ଗହନୁ ଯା'ନ୍ତି ତରି ॥୨୫
ତୁ ନାଥ ଆଦି-ମଧ୍ୟେ-ଅନ୍ତେ ।
ଯେବା କରାଉ ଆତ୍ମତନ୍ତେ ॥୨୬
ଜଗତେ ଆଦି-ମଧ ତୁହି ।
ମୃତ୍ତିକା ଘଟ ପ୍ରାୟେ ହୋଇ ॥୨୭
ତୋ' ରୂପ ବିଶ୍ୱେ ପ୍ରକାଶଇ ।
ସେ ରୂପ କେ ପାରିବ କହି ॥୨୮
ଆତ୍ମା-ଆଶ୍ରୟେ ମାୟାକରି ।
ତୁ ଏ ସଂସାର ରୂପ ଧରି ॥୨୯
ସଂସାରେ ପଶୁ ଆତ୍ମାରୂପେ ।
ସୁଖେ ବିହରୁ କଳ୍ପେ କଳ୍ପେ ॥୩୦
ନିର୍ମଳଚେତା ମୁନିଗଣେ ।
ତୋତେ ଦେଖନ୍ତି ଶୁଦ୍ଧମନେ ॥୩୧

ଯଥା ଅନଳ କାଷ୍ଠେ ଥାଏ ।
ଯେହ୍ନେ ଅମୃତ ଗୋରୁଦେହେ ॥୩୨
ଧରଣୀ ଦେହେ ଅନ୍ନ ଯେହ୍ନେ ।
ସଂଯୋଗେ କୃଷି-କରଷଣେ ॥୩୩
ମନୁଷ୍ୟ ନାନା ଯୋଗବଳେ ।
ଭଜନ୍ତି ତୋ' ପାଦ କମଳେ ॥୩୪
ନମିଣ ତୋ' ଚରଣ ତଳେ ।
ଭବସାଗରୁ ତରିଗଲେ ॥୩୫
ସର୍ବେ ନମନ୍ତି ତୋ' ଚରଣେ ।
ତୁ ଥାଉ ସଂସାର ଧାରଣେ ॥୩୬
ବାଞ୍ଛିତ ଅର୍ଥ ଫଳ ପାନ୍ତି ।
ନାନା ପ୍ରକାରେ ତୋତେ ଚିନ୍ତି ॥୩୭
ତୋ' ରୂପ ଆତ୍ମାଗତେ ଦେଖି ।
ସଂସାର ତେଜି ହୋନ୍ତି ସୁଖୀ ॥୩୮
ଯେସନେ ଗଜ ଦାବାନଳେ ।
ପ୍ରବେଶ କରେ ଗଙ୍ଗାଜଳେ ॥୩୯
ଆମ୍ଭେ ସକଳ ଲୋକପାଳେ ।
ଶରଣ ତୋ' ପାଦ କମଳେ ॥୪୦
ଏ ଦେହ ଅନ୍ତର-ବାହାରେ ।
ତୋ' ତହୁଁ କେବା ଅଛି ପରେ ॥୪୧
ଏ ଦେବଗଣେ ମୋ'ର ତୁଲେ ।
ଦକ୍ଷାଦି ପ୍ରଜାପତି ମେଳେ ॥୪୨
ତୋ' ଅନୁଗ୍ରହେ ବହୁଁ ଅଙ୍ଗ ।
ଅନଳୁ ଯେସନେ ସ୍ଫୁଲିଙ୍ଗ ॥୪୩
କିବା କହିବୁଁ ତୋ ଅଗ୍ରତେ ।
ଆମ୍ଭଙ୍କୁ ରଖ ଏ ଜଗତେ ॥୪୪

ଶୁକ ଉବାଚ

ଏମନ୍ତେ ବ୍ରହ୍ମା-ବାକ୍ୟ ଶୁଣି ।
ସଂସାରହିତ ମନେ ଗୁଣି ॥୪୫
ପରମ ସୁଖେ ତନୁ ପୂରି ।
ଧାତାଙ୍କୁ ଅନୁଗ୍ରହ କରି ॥୪୬
ଜଳଧି-ମନ୍ଥନ-ପ୍ରସଙ୍ଗେ ।
ଆତ୍ମା ପ୍ରକାଶ ଅନୁରାଗେ ॥୪୭
ପ୍ରସନ୍ନ ଚିତ୍ତେ ଭାବଗ୍ରାହୀ ।
କହନ୍ତି ବ୍ରହ୍ମା ମୁଖ ଚାହିଁ ॥୪୮

ଭଗବାନ ଉବାଚ

ଶୁଣ ହୋ ବ୍ରହ୍ମା-ଶିବ-ଦେବେ ।
ଯେବା କରିବି ତୁମ୍ଭ ଲାଭେ ॥୪୯
ତୁମ୍ଭର ଶ୍ରେୟ ଯେଉଁ ମତେ ।
କହିବା ଶୁଣ ଏକ ଚିତ୍ତେ ॥୫୦
ଅସୁରଙ୍କର ସଙ୍ଗେ ଯାଇ ।
ବସ ବିଶ୍ୱାସ ଭାବ ହୋଇ ॥୫୧
ନାନା ପ୍ରକାରେ ସନ୍ଧି କର ।
ପ୍ରଲୋଭେ ତା'ଙ୍କ ଚିତ୍ତ ହର ॥୫୨
ଯାବତ ସିଦ୍ଧ ନୋହେ କାର୍ଯ୍ୟ ।
ତାବତ ମିତ୍ର ଭାବେ ଭଜ ॥୫୩
ଅପଣା କାର୍ଯ୍ୟ ସିଦ୍ଧ ଅର୍ଥେ ।
ଶତ୍ରୁଙ୍କୁ ଭଜନ୍ତି ଜଗତେ ॥୫୪
କାର୍ଯ୍ୟ ସରିଲେ ନିଜ ଭାବେ ।
ସର୍ବେ ରହିବ ଆତ୍ମା ଲାଭେ ॥୫୫
ଅହି-ମୂଷିକ କରି ସନ୍ଧି ।
ଯେମନ୍ତେ ଆତ୍ମକାର୍ଯ୍ୟ ସାଧି ॥୫୬
ଅମୃତ ଅର୍ଥେ ଯତ୍ନ କର ।
ଯା' ପାନେ ହୋଇବ ଅମର ॥୫୭
ଶୁଣ କହିବା ଉପଦେଶ ।
ବେଗେ ଗହନ ବନେ ପଶ ॥୫୮
ଅମ୍ଳ-ଔଷଧି ଗୁଳ୍ମ ଯେତେ ।
ବନସ୍ଥୁ ଆଣ ଅପ୍ରମିତେ ॥୫୯
ପାଷାଣେ ଛେଚି ବାହୁବଳେ ।
ନିକ୍ଷେପ କ୍ଷୀରସିନ୍ଧୁ-ଜଳେ ॥୬୦
ସେ ଅମ୍ଳ-ଗୁଣେ ବସୁ ଦଧି ।
ଯେଣେ ଲଭିବ ସର୍ବସିଦ୍ଧି ॥୬୧
ଏ ଯେ ମନ୍ଦର ମହୀଧର ।
ମନ୍ଥନ ଦଣ୍ଡ ଏହା କର ॥୬୨
ବାସୁକି ନାଗ ରଜ୍ଜୁ କରି ।
ମନ୍ଥିବ ଦେବାସୁରେ ଧରି ॥୬୩
ମୋହର ବୋଲେ ମହାଜଳେ ।
ମନ୍ଥନ କର ଯା' ନିଷ୍ଠଳେ ॥୬୪
ତୁମ୍ଭେ ସେ ଅମୃତ ପିଇବ ।
ନିରାଶ ହୋଇବେ ଦାନବ ॥୬୫

Dr. Sudhanshu Sekhar Mishra

ଇନ୍ଦ୍ର ଲଭିବ ସର୍ବସିଦ୍ଧି ।
ସର୍ବ ସମ୍ପାଦିବ ଜଳଧି ॥୬୬
ଶାନ୍ତି-ବଚନେ କାର୍ଯ୍ୟ ପାଇ ।
ଆଗମ ଶାସ୍ତ୍ରେ ଏହା କହି ॥୬୭
ପ୍ରଥମେ ବାସୁକି ବଦନେ ।
ଗରଳ ଛାଡ଼ିବ ମନ୍ଥନେ ॥୬୮
ତହିଁକି ନ କରିବ ଭୟ ।
ମୁଁ ପୁଣି କରିବି ଉପାୟ ॥୬୯
ମନ୍ଥନେ ଲଭି ବସ୍ତୁ ଯେତେ ।
ଲୋଭ ନ କରିବ ଯୁକତେ ॥୭୦
ପ୍ରାଣୀ ଯେ ଲୋଭେ ନାନାମତେ ।
ବସ୍ତୁ ଆବୋରନ୍ତି ଜଗତେ ॥୭୧
ଏମନ୍ତ ଦେବଗଣେ କହି ।
ତକ୍ଷଣେ ଗରୁଡ଼ ଆରୋହି ॥୭୨
ନିଜ ଭୁବନେ ହରି ଗଲେ ।
ଭକତ-ପାରିଷଦ ତୁଲେ ॥୭୩
ରୁଦ୍ର-ବ୍ରହ୍ମାଦି ଦେବଗଣେ ।
ନମିଲେ ବିଷ୍ଣୁର ଚରଣେ ॥୭୪
ସକଳେ ହୋଇ ଏକଚିତ୍ତ ।
ବଳି-ଭୁବନେ ଉପଗତ ॥୭୫
ଦ୍ୱାରେ ଅସୁରେ ଯେତେ ଥିଲେ ।
ଦେବଗଣଙ୍କୁ ନିରୋଧିଲେ ॥୭୬
ଦେବ ନିଷେଧ କଥା ଶୁଣି ।
ଅସୁର-କୁଳ ଚୂଡ଼ାମଣି ॥୭୭
ସନ୍ଧି-ବିଗ୍ରହେ ସେ ଜାଣଇ ।
ବୋଲଇ ନିଜ ଗଣ ରାଇ ॥୭୮
ଦେବଙ୍କୁ ଛାଡ଼ ତୁମ୍ଭେ ଦ୍ୱାର ।
କି ଅବା କରିବେ ବିଚାର ॥୭୯
ଏମନ୍ତେ ବଳି ଆଜ୍ଞା ପାଇ ।
ଦ୍ୱାର ଛାଡ଼ିଲେ ଭାବ ବହି ॥୮୦
ବଳି-ନିକଟେ ଦେବେ ଯାଇ ।
ଜୟ ଶବଦ ଉଚ୍ଚେ ଗାଇ ॥୮୧
ବଳିକି ଦେଖିଲେ ଆସନେ ।
ବେଷ୍ଟିତ ଅସୁର-ଗହଣେ ॥୮୨
ସର୍ବ-ସମ୍ପଦ ଯା'ର ପୁରେ ।
କିବା ଉପମା ଦେବା ତା'ରେ ॥୮୩

ନିଜ ସମ୍ପଦ ଜଗୁ ରଞ୍ଜେ ।
ଦିଗପାଳଙ୍କ ତେଜ ଗଞ୍ଜେ ॥୮୪
ଇନ୍ଦ୍ର ଯେ ବଳି ମୁଖ ଚାହିଁ ।
ବିଶ୍ୱାସେ ବଚନ ବୋଲଇ ॥୮୫
ଶୁଣ ରାଜନ ଏକଚିତ୍ତେ ।
ଏ ତିନିଲୋକ ସୁଖ ଅର୍ଥେ ॥୮୬
ଦୁର୍ବାସା-ଶାପ ମହାଘୋର ।
ନାଶିଲା ସମ୍ପଦ ମୋହର ॥୮୭
ସୋମ-ସବିତା-ତେଜ ଗଲା ।
ନିବିଡ଼ ତମ ପ୍ରକାଶିଲା ॥୮୮
କମ୍ପଇ ଏ ତିନିଭୁବନ ।
ସର୍ବେ ହୋଇଲେ ଦୁଃଖେ ଛନ୍ନ ॥୮୯
ଏଣୁ ବିଷ୍ଣୁ ଭୁବନେ ଯାଇ ।
କହିଲୁଁ ବ୍ରହ୍ମା ରୁଦ୍ର ଲଇଁ ॥୯୦
ସେ ପୁରୁଷୋତ୍ତମ ବଚନ ।
ରାଜନ ତୋଷମନେ ଶୁଣ ॥୯୧
ବୋଇଲେ ଏ କ୍ଷୀରଜଳଧି ।
ଅମ୍ଳ-ସଂଯୋଗେ କର ଦଧି ॥୯୨
ମନ୍ଦର ଗିରିକି ଆଣିବ ।
ସମୁଦ୍ର ମଧ୍ୟରେ ସ୍ଥାପିବ ॥୯୩
ବାସୁକି ନାଗ ରଜ୍ଜୁ କରି ।
ଦେବ-ଦାନବେ ତାହା ଧରି ॥୯୪
ଯତନେ କରିବ ମନ୍ଥନ ।
ସୁଧା କରିବ ସୁଖେ ପାନ ॥୯୫
ଯେତେ ଉପୁଜିବ ମନ୍ଥନେ ।
ସକଳେ ମିଳି ତୋଷମନେ ॥୯୬
ସମାନ ଭାଗେ ଭୋଗକର ।
ସନ୍ତୋଷ ମନେ ଦେବାସୁର ॥୯୭
ସଂସାର ହେଉ ଏଣେ ରକ୍ଷା ।
ଏମନ୍ତ ବିଷ୍ଣୁ ଦେଲେ ଦୀକ୍ଷା ॥୯୮
ଏଣୁ ତୁମ୍ଭର ସଙ୍ଗେ ଆମ୍ଭେ ।
ମିଳିଲୁ ମନ୍ଥନ-ଆରମ୍ଭେ ॥୯୯
ତୁମ୍ଭ ଆମ୍ଭର ଏକଗତି ।
ଯାହା ବୋଲଇଲେ ଶିରୀପତି ॥୧୦୦
ଏମନ୍ତ ଇନ୍ଦ୍ରମୁଖୁଁ ଶୁଣି ।
ଅସୁର ମନେମନେ ଗୁଣି ॥୧୦୧

ବୋଇଲେ ଶୁଭକର୍ମ ଏହି ।
ବିଷ୍ଣୁ ମାୟାରେ ମନ ମୋହି ॥୧୦୨
ବଳି ସଙ୍ଗତେ ଉଠି ସର୍ବେ ।
ସମ୍ମତି କଲେ ପ୍ରିୟଭାବେ ॥୧୦୩
ଶମ୍ବରାରିଷ୍ଟ ନେମି ତୁଲେ ।
ଯେତେ ଦାନବବୀର ଥିଲେ ॥୧୦୪
ବିଷ୍ଣୁ-ମୋହନ-ମାୟା ମତେ ।
ହରଷ ଅସୁରଙ୍କ ଚିତ୍ତେ ॥୧୦୫
ଏମନ୍ତେ ଦେବାସୁରଗଣେ ।
ବେଗେ ମିଳିଲେ ଘୋରବନେ॥୧୦୬
ତୀକ୍ଷ୍ଣ କୁଠାରେ ବେଗେ ହାଣି ।
ଅମ୍ଳ-ଔଷଧି ଗୁଳ୍ମ ଆଣି ॥୧୦୭
ପର୍ବତେ ଛେଚି ପ୍ରତି ଶିଳେ ।
କ୍ଷୀର ସମୁଦ୍ରେ ପକାଇଲେ ॥୧୦୮
ବାସୁଦେବର କଥାବାଗେ ।
ଦଧି ହୋଇଲା ଅମ୍ଳ ଯୋଗେ॥୧୦୯
ଦେବ ଦାନବେ ଏକମନେ ।
ମିଳିଲେ ମେରୁ ସନ୍ନିଧାନେ ॥୧୧୦
ନାନା ତୀକ୍ଷଣ ଶସ୍ତ୍ର ଧରି ।
ଉପାଡ଼ି ଘୋର ନାଦ କରି ॥୧୧୧
ଇନ୍ଦ୍ରର ତୁଲେ ଦେବେ ଯେତେ ।
ଅସୁରେ ବଳିର ସମେତେ ॥୧୧୨
ସମସ୍ତେ ମୁଣ୍ଡେ ଗିରି କଲେ ।
ବଳେ କେତେହେଁ ଦୂର ନେଲେ॥୧୧୩
କାହୁଁ ବହିବେ ଗିରିବର ।
ଯେ ଗିରିବରଙ୍କ ଶିଖର ॥୧୧୪
ପଥେ ଆଣନ୍ତେ ଗିରିବରେ ।
ପଡ଼ିଲା ତାହାଙ୍କ ଉପରେ ॥୧୧୫
ଚୂର୍ଣ୍ଣ ହୋଇଲେ ମହାଭାରେ ।
ସକଳେ ପଡ଼ିଲେ ଭୂମିରେ ॥୧୧୬
ଶିର ଚରଣ ବାହୁ ଚୂରି ।
ପଥେ ପଡ଼ିଲା ମହାଗିରି ॥୧୧୭
ଦେବଙ୍କ ଦୁଃଖେ ଭଗବାନ ।
ତକ୍ଷଣେ ଗରୁଡ଼ ଆସନ ॥୧୧୮
ପଥେ ମିଳିଲେ ତା'ଙ୍କ ପାଶେ ।
ଦେବଙ୍କ ଭକତି ବିଶ୍ୱାସେ ॥୧୧୯

Dr. Sudhanshu Sekhar Mishra

କରେ ମନ୍ଦରଗିରି କଲେ ।
ଦେବ-ଅସୁରଙ୍କୁ ଚାହିଁଲେ ॥୧୨୦
ଅମୃତ-ନୟନେ ଅନାଇଁ ।
ଜୀବନ ଦେଲେ ଭାବଗ୍ରାହୀ ॥୧୨୧
ଲାଗନ୍ତେ ଗୋବିନ୍ଦର କର ।
ତକ୍ଷଣେ ପାଇଲେ ଶରୀର ॥୧୨୨
ଗୋବିନ୍ଦ ଏକ ହସ୍ତେ ଗିରି ।
ନିଶଙ୍କେ ନିଜ କୋଳେ ଧରି ॥୧୨୩
ଗରୁଡ଼ ଉଡ଼େ ଶୂନ୍ୟ ପଥେ ।
ଦେବ-ଦାନବ ବଳେ ସାଥେ ॥୧୨୪

କ୍ଷୀର ଜଳଧିତଟେ ମିଳି ।
ଦେବଅସୁର ବନମାଳୀ ॥୧୨୫
ଗରୁଡ଼-କନ୍ଧୁ ଗିରିବର ।
କୂଳେ ନିବେଶି ଚକ୍ରଧର ॥୧୨୬
ଗରୁଡ଼ ଗଲା ନିଜପୁର ।
ଶୁଣ ପରୀକ୍ଷ ନୃପବର ॥୧୨୭
ଦେବ-ଅସୁରଙ୍କର ଭାବ ।
ଯହୁଁ ଅମୃତ ଉଦଭବ ॥୧୨୮
ସୁଜନେ ଏଣେ ଚିତ୍ତ କର ।
ମାୟା-ସଙ୍କଟରୁ ନିସ୍ତର ॥୧୨୯

ବୋଲଇ ଦାସ ଜଗନ୍ନାଥ ।
ଅଷ୍ଟମ ସ୍କନ୍ଧେ ଭାଗବତ ॥୧୩୦

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଅମୃତ ମନ୍ଥନେ
ମନ୍ଦରାଚଳ ଆନୟନଂ ଆୟୋଜନେ
ନାମ ଷଷ୍ଠୋଽଧ୍ୟାୟଃ ॥

---

## ସପ୍ତମ ଅଧ୍ୟାୟ

ଶୁକ ଉବାଚ

ବ୍ୟାସ ନନ୍ଦନ ଅନୁରାଗେ ।
କହନ୍ତି ପରୀକ୍ଷିତ ଆଗେ ॥୧
ଦେବ-ଦାନବେ ଏକମେଳେ ।
ପ୍ରବେଶ ହୋଇଲେ ପାତାଳେ ॥୨
ବାସୁକି ନିକଟେ ମିଳିଲେ ।
ସମୁଦ୍ର-ମନ୍ଥନେ ବରିଲେ ॥୩
ଗୋବିନ୍ଦ ଆଜ୍ଞା ଶିରେ ଧରି ।
ଉଭୟ-ରୂପ ଅଙ୍ଗୀ କରି ॥୪
ଧରଣୀ ଧରି ଏକ ରୂପେ ।
ମିଳିଲେ କ୍ଷୀରୋଦ ସମୀପେ ॥୫
ଦେହେ ବେଷ୍ଟିତ ମହାଗିରି ।
ରହିଲା ବିଷ୍ଣୁ ରୂପ ଧରି ॥୬
ଦେବେ ସକଳେ ତୋଷମନେ ।
ଆରମ୍ଭ ସମୁଦ୍ର-ମନ୍ଥନେ ॥୭
ବାସୁକି ଫଣା ଆଗ ଧରି ।
ଦେବଙ୍କ ତୁଳେ ନରହରି ॥୮
ବୋଲନ୍ତି ଅସୁରଙ୍କୁ ଚାହିଁ ।
ତୁମ୍ଭେ ହୋ ପୁଚ୍ଛ ଧର ଯାଇ ॥୯
ହରି ବଚନ ଶୁଣି କର୍ଣ୍ଣେ ।
ଅସୁରେ ଭାଳି ଏକମନେ ॥୧୦
ବୋଇଲେ ବିଷ୍ଣୁ ମୁଖ ଚାହିଁ ।
ଏ କଥା ଉଚିତ ନୁହଇ ॥୧୧

ସ୍ୱଭାବେ ସର୍ପର ଲାଙ୍ଗୁଳ ।
କେବେହେଁ ନୁହଇ ମଙ୍ଗଳ ॥୧୨
ଆମ୍ଭେ ଦେବଙ୍କ ଅଗ୍ରେ ଜାତ ।
ପବିତ୍ର କଶ୍ୟପଙ୍କ ସୁତ ॥୧୩
ଧର୍ମ-ଅଧର୍ମ ଆମ୍ଭେ ଜାଣୁ ।
ଆଗମ-ନିଗମ ପ୍ରମାଣୁ ॥୧୪
ପ୍ରଖ୍ୟାତ-ଜନ-କୁଳ-ଶୀଳ ।
କେମନ୍ତେ ଧରିବୁ ଲାଙ୍ଗୁଳ ॥୧୫
ଆମ୍ଭର ଏଣେ କାର୍ଯ୍ୟ ନାହିଁ ।
ଏମନ୍ତେ ଭଗ୍ନଚିତ୍ତେ ରହି ॥୧୬
ସର୍ବ ଅସୁରେ ଏକମେଳେ ।
ରହିଲେ କ୍ଷୀର ସିନ୍ଧୁ କୂଳେ ॥୧୭
ବସିଲେ ଆରମ୍ଭ ଉପେକ୍ଷି ।
ପୁରୁଷୋତ୍ତମ ତାହା ଦେଖି ॥୧୮
ପୁଚ୍ଛ ଧଇଲେ ଶିରୀ ରଙ୍ଗେ ।
ସର୍ବ ଦେବତା ଘେନି ସଙ୍ଗେ ॥୧୯
ମନ୍ଦର ଧରି ବାହୁବଳେ ।
ସ୍ଥାପିଲେ କ୍ଷୀର ସିନ୍ଧୁ ଜଳେ ॥୨୦
ସ୍ୱଭାବେ ଗଭୀର ଜଳଧି ।
ଯୋଜନ ଶତଲକ୍ଷ ଭେଦି ॥୨୧
ଗିରି ପଡ଼ିଲା ରସାତଳେ ।
ଖୋଜି ନ ପାଇଲେ ସକଳେ ॥୨୨
ତୀରେ ଉଠିଲେ ଦୁଃଖମନେ ।
ବଦନ ଚାହିଁ ଅନ୍ୟ ଅନ୍ୟେ ॥୨୩

ନଶିଲା ନିଜ ପୁଷ୍ଟିକାର ।
ହୃଦେ କେ ବହୁ ଅହଙ୍କାର ॥୨୪
ଦଇବ-ମାୟା ଯୋଗବଳ ।
ଆରମ୍ଭ ହୋଇଲା ନିଷ୍ଫଳ ॥୨୫
ଦେବ-ଦାନବ ବିଷ୍ଣୁ ପାଶେ ।
ରହି ଚାହିଁଲେ ଦଶଦିଶେ ॥୨୬
ତାହାଙ୍କ ଦର୍ପ ଭଙ୍ଗ ଚାହିଁ ।
ମହାମହିମ ଭାବଗ୍ରାହୀ ॥୨୭
ପାତାଳୁଁ କୂର୍ମରୂପ ଧରି ।
ପୃଷ୍ଠେ ବସାଇ ମହାଗିରି ॥୨୮
ଉଠିଲେ ଟୋଳି ଗିରିବର ।
ତୀରେ ଦେଖନ୍ତି ଦେବାସୁର ॥୨୯
ଯେସନେ ସରୋବର ମଧ୍ୟେ ।
ପଦ୍ମ ପ୍ରକାଶ ହୋଏ ଉର୍ଦ୍ଧ୍ୱେ ॥୩୦
ଗିରି ଯୋଜନ-ଏକାଦଶ ।
ଜଳେ ରହିଲା ଅବଶେଷ ॥୩୧
ଗୋବିନ୍ଦ ଯୋଗମାୟା କରି ।
ତକ୍ଷଣେ ମାୟାରୂପ ଧରି ॥୩୨
ବହିଲେ ଗିରି ପୃଷ୍ଠଦେଶେ ।
ମସ୍ତକ ଲାଗିଲା ଆକାଶେ ॥୩୩
ଦେଖି ସାନନ୍ଦ ଦେବାସୁରେ ।
ବାସୁକି ଧରି ତେଜ ଭରେ ॥୩୪
ପର୍ବତେ ତିନିଗୁଣ କରି ।
ବେଢ଼ିଲେ ମନ୍ଥନ ଆବୋରି ॥୩୫

Dr. Sudhanshu Sekhar Mishra

ଦେବ-ଅସୁରେ ବେନିଭାଗେ ।
ବାସୁକି ଧରି ଅତିବେଗେ ॥୩୬
ହୁଂକାରେ କରନ୍ତି ମନ୍ଥନ ।
ଶୁଣ ହେ ପରୀକ୍ଷ ରାଜନ ॥୩୭
ପୃଷ୍ଠରେ ଗିରି ଘରଷଣେ ।
ଅନଳ ଉଠିଲା ବହନେ ॥୩୮
କଣ୍ଡୁ ଯେ କୂର୍ମପୃଷ୍ଠେ ଥିଲା ।
ତକ୍ଷଣେ ଉଶ୍ୱାସ ହୋଇଲା ॥୩୯
କଣ୍ଡୁ-ଘର୍ଷଣ ସୁଖ ବୁଝି ।
ସେ କୂର୍ମ ବେନି ଚକ୍ଷୁ ବୁଜି ॥୪୦
ସୁଖେ ନିଦ୍ରିତ ନାରାୟଣ ।
କେ ସହେ ଅଚଳ ଧାରଣ ॥୪୧
ପୁଣି ଗୋବିନ୍ଦ ଅନ୍ତରୀକ୍ଷେ ।
ମିଳିଲେ ଦେବଙ୍କ ପ୍ରତ୍ୟକ୍ଷେ ॥୪୨
ଦେବ-ଅସୁର ଅଳ୍ପବଳ ।
ଜାଣିଲେ ପ୍ରଭୁ ଆଦିମୂଳ ॥୪୩
ତକ୍ଷଣେ ପ୍ରଭୁ ଭାବଗ୍ରାହୀ ।
ଦେବ-ଦାନବ ମଧ୍ୟେ ଯାଇ ॥୪୪
ପଶିଲେ ତାହାଙ୍କର ଚିତ୍ତେ ।
ବଳ ହୋଇଲା ଅପ୍ରମିତେ ॥୪୫
ବାସୁକି ଦେହେ ନରହରି ।
ପଶିଲେ ବଳ-ରୂପ ଧରି ॥୪୬
ସହସ୍ର ଭୁଜେ ଶୂନ୍ୟପଥେ ।
ଗିରି ଆବୋରି ହୃଦଗତେ ॥୪୭
ରହିଲେ ପ୍ରଭୁ ନାରାୟଣ ।
ଶୂନ୍ୟେ ଦେଖନ୍ତି ଋଷିଗଣ ॥୪୮
ଗଗନେ ବିମାନ ଆରୋହି ।
ସ୍ତୁତି କରନ୍ତି ବିଷ୍ଣୁଧ୍ୟାୟି ॥୪୯
ପୁଷ୍ପ ବରଷି ବେଦନାଦେ ।
ମୁନିଏ ପରମ-ଆନନ୍ଦେ ॥୫୦
ଦେଖନ୍ତି ଅଧ-ଉର୍ଦ୍ଧ୍ୱେ ଚାହିଁ ।
ହରିହୁଁ ଆନ ନ ଦିଶଇ ॥୫୧
ପ୍ରହୃଷ୍ଟ ମନେ ସୁରାସୁରେ ।
ଗିରି ଘୂରାନ୍ତି ଅତି ଖରେ ॥୫୨
ମହାପର୍ବତ ଘରଷଣେ ।
ଜଳେ ଯେ ଥିଲେ ଜନ୍ତୁ ଗଣେ ॥୫୩

ଜଳଧି ମଧ୍ୟେ କ୍ଷୋଭ ପାଇ ।
ତୀରେ ରହିଲେ ସ୍ଥିର ହୋଇ ॥୫୪
ବାସୁକି ସହସ୍ର ବଦନେ ।
ନିଃଶ୍ୱାସ ଛାଡ଼େ ଘନଘନେ ॥୫୫
ତା'ର ନିଃଶ୍ୱାସ ଦାବାନଳ ।
ପୂରିଲା ଦିଗ-ଅନ୍ତରାଳ ॥୫୬
ନିଶ୍ୱାଃସ-ଅଗ୍ନି-ଧୂମ ଲାଗି ।
ଦେବ-ଦାନବେ ଦୁଃଖ ଭାଗୀ ॥୫୭
ଚାଳି ନ ପାରିଲେ ମନ୍ଦର ।
ତାହାଙ୍କୁ ଦେଖି ଚକ୍ରଧର ॥୫୮
ନିଃଶ୍ୱାସ ବାତେ ହତ ପ୍ରାଣ ।
ତାହା ଜାଣିଲେ ନାରାୟଣ ॥୫୯
ତକ୍ଷଣେ ଶୂନ୍ୟେ ମେଘମାଳ ।
ଶୀତଳ ବରଷନ୍ତି ଜଳ ॥୬୦
କ୍ଷୀରସମୁଦ୍ରେ ଶୀତବାତ ।
ଯେଣୁ ପେଷିଲେ ଜଗନ୍ନାଥ ॥୬୧
ବାସୁକି ଆଦି ଜଳଜୀବେ ।
ତାପୁଁ ତରିଲେ ଶୀତ ଭାବେ ॥୬୨
ଦେବଦାନବ ଦେହଗତେ ।
ମାଳା କଙ୍କଣ ଥିଲା ଯେତେ ॥୬୩
ସକଳ ଧୂମେ ହତପ୍ରଭ ।
ଅନାଇ ପ୍ରଭୁ ପଦ୍ମନାଭ ॥୬୪
ଜଳ ସିଞ୍ଚନେ ସୁସ୍ଥ କଲେ ।
ବଳି ସମେତେ ଯେତେ ଥିଲେ ॥୬୫
ଏମନ୍ତେ ବାସୁକି ଶରୀରେ ।
ଅତି ମନ୍ଥନ ଖେଦ ଭରେ ॥୬୬
ଗରଳ ଛାଡ଼ି ଅତି ଦୁଃଖେ ।
ବତାଶା ପ୍ରାୟ ସସ୍ରମୁଖେ ॥୬୭
ଜଳେ ପଡ଼ନ୍ତି ବିଷଜାଳେ ।
ଯେ ଜଳଜନ୍ତୁ ଥିଲେ ଜଳେ ॥୬୮
ବିକଳେ ବୁଲି ଛଟପଟେ ।
ପୁଣି ଗଭୀରେ ପୁଣି ତଟେ ॥୬୯
ସେ ବିଷ ବେଗବନ୍ତ ଜଳେ ।
ଦିଗ ପୂରିଲା ଅନ୍ତରାଳେ ॥୭୦
ଚକିତେ ଅଧ-ଉର୍ଦ୍ଧ୍ୱେ ମଧ୍ୟେ ।
ଜନ୍ତୁଏ ପଳାନ୍ତି ବିଷାଦେ ॥୭୧

ଡାକନ୍ତି ଉର୍ଦ୍ଧ୍ୱ ମୁଖ କରି ।
ରଖ ହେ ପ୍ରଭୁ ଶୂଳଧାରୀ ॥୭୨
ସହି ନ ପାରିବୁ କ୍ଷଣ ।
ତୋ' ପାଦେ ପଶିଲୁ ଶରଣ ॥୭୩
ହର ସମୀପେ ମୁନିଗଣ ।
ମିଳି କରନ୍ତି ପ୍ରଦକ୍ଷିଣ ॥୭୪
ଯେ ଦୁଃଖବନ-ଧୂମକେତୁ ।
ଅଶେଷ-ଅପବର୍ଗ-ହେତୁ ॥୭୫
ମିଳି ସକଳ ପ୍ରଜାପତି ।
ସନ୍ନିଧେ ବସାଇ ପାର୍ବତୀ ॥୭୬
ବିକଳେ ମିଳି ଶିବ ପାଶେ ।
ସ୍ତୁତି କରନ୍ତି ବିଷ ତ୍ରାସେ ॥୭୭

ପ୍ରଜାପତିଗଣ ଉବାଚ

ହେ ମହାଦେବ ସଦାଶିବ ।
କେ ଜାଣିପାରେ ତୋ'ର ଭାବ ॥୭୮
ତୁ ଭୂତ ଭାବନ-ଈଶ୍ୱର ।
ଆମ୍ଭର ପ୍ରାଣ ରକ୍ଷା କର ॥୭୯
ଏ ବିଷ ସଂସାର ଦହିବ ।
ଏଥୁଁ ଉଦ୍ଧର ସଦାଶିବ ॥୮୦
ସର୍ବ ଜଗତ-ବନ୍ଧ-ମୋକ୍ଷ ।
ତୁ ନାଥ ଈଶ୍ୱର ପ୍ରତ୍ୟକ୍ଷ ॥୮୧
କୁଶଳ ଇଚ୍ଛା ଯା'ର ମନେ ।
ସେ ତୋତେ ଚିନ୍ତେ ନିତ୍ୟେଧ୍ୟାନେ ॥୮୨
ଜଗତଗୁରୁ ନାଥ ତୁହି ।
ଯେ ତୋତେ ଶରଣ ପଶଇ ॥୮୩
ସ୍ୱଶକ୍ତି ତୋ'ର ଗୁଣମୟୀ ।
ଯେ ଭାବେ ସର୍ଗ-ସ୍ଥିତି ହୋଇ ॥୮୪
ପ୍ରଳୟ କରୁ ନାଥ ତୁହି ।
ତୁ ବ୍ରହ୍ମା-ବିଷ୍ଣୁ-ରୁଦ୍ରଦେହୀ ॥୮୫
ତୁ ବ୍ରହ୍ମ ପରମ ଗୁପତ ।
ସଦ-ଅସଦ ଭାବମତ ॥୮୬
ପ୍ରକାଶୁ ନାନା ଶକ୍ତି ରୂପେ ।
ତୁ ଆତ୍ମା ରୂପ ମୋହ କଳ୍ପେ ॥୮୭
ଜଗତ ଆଦି ଶବ୍ଦଯୋନି ।
ପ୍ରାଣ-ଇନ୍ଦ୍ରିୟ-ଗୁଣ ଘେନି ॥୮୮

Dr. Sudhanshu Sekhar Mishra

ତୁ କାଳଯଜ୍ଞ ସତ୍ୟରତ ।
ତୁ ବ୍ରହ୍ମ ଅଚ୍ଛିଦ୍ର ତ୍ରିବୃତ ॥୮୯
ଅନଳ ତୁମ୍ଭର ବଦନ ।
ଆଦିତ୍ୟ-ଶଶାଙ୍କ ଲୋଚନ ॥୯୦
ସର୍ବଦେବଙ୍କ ଆତ୍ମା ତୁମ୍ଭେ ।
ଅଶେଷ ଯଜ୍ଞର ଆରମ୍ଭେ ॥୯୧
ଏ ଭୂମି ତୋ'ର ପାଦବେନି ।
ତୋ' ବଳ ବହଇ ମେଦିନୀ ॥୯୨
କାଳ ତୋହର ନିଜ ଗତି ।
ତୋ'ର ବୃଷଣ ପ୍ରଜାପତି ॥୯୩
ଏ ଅଷ୍ଟଦିଗ ତୋ' ଶ୍ରବଣ ।
ତୋହର ରସନା ବରୁଣ ॥୯୪
ନଭ ତୋହର ନାଭିଦେଶ ।
ନିଃଶ୍ୱାସ ବାତ-ଅଣଚାଶ ॥୯୫
ପର୍ବତେ ତୋ' ଅଛି ସମୂହ ।
ବୃକ୍ଷ-ଔଷଧି ତନୁରୁହ ॥୯୬
ଏ ସପ୍ତଛନ୍ଦ ସପ୍ତଧାତୁ ।
ତୋ' ହୃଦ ଧର୍ମସ୍ଥିତି ହେତୁ ॥୯୭
ଭୋ ନାଥ ତୋ' ପଞ୍ଚବଦନ ।
ପଞ୍ଚୋପନିଷଦ ବଚନ ॥୯୮
ଅଷ୍ଟ ଉତ୍ତର ତିନିଶତ ।
ମନ୍ତ୍ର ବର୍ଗ ଯହୁଁ ଉଦିତ ॥୯୯
ତୋ' ପରମାତ୍ମ ତତ୍ତ୍ୱଧାମ ।
ଏଣୁ ତୋହର ଶିବନାମ ॥୧୦୦
ଜ୍ୟୋତି ସ୍ୱରୂପେ ତୋ'ର ବାସ ।
ତୁ ବ୍ରହ୍ମ ପରମ ପ୍ରକାଶ ॥୧୦୧
ଅଧର୍ମ ତୋ' ଶରୀର ଛାୟା ।
ତୋ'ର ଆଶ୍ରିତ ମୋହମାୟା ॥୧୦୨
ତୋ' ତିନିନେତ୍ର ତିନିଗୁଣ ।
ଯେ ଗୁଣେ ସଂସାର ଧାରଣ ॥୧୦୩
ଯେ ଛନ୍ଦୋମୟ ଶାସ୍ତ୍ରଇକ୍ଷା ।
ଯେ ଭାବେ ଋଷିଙ୍କର ଶିକ୍ଷା ॥୧୦୪
ଅଖିଳ-ଲୋକପାଳ ତୁହି ।
ତୋ' ଅନ୍ତ କେହି ନ ଜାଣଇ॥୧୦୫
ବିରଞ୍ଚି ବଇକୁଣ୍ଠ ଧାମ ।
ସୁରେନ୍ଦ୍ର ଗଣେ ନୋହେ ଗମ୍ୟ ॥୧୦୬

ପରମ ଜ୍ୟୋତି ତୋ' ଆନନ୍ଦ ।
କେବେହେଁ ଗୁଣେ ନୋହେଭେଦ॥୧୦୭
କାମ ତ୍ରିପୁର ଘୋରକାଳ ।
ଦକ୍ଷର ଯଜ୍ଞ ଧ୍ୱଂସ ଜଳ ॥୧୦୮
ଯେବା ଅଛନ୍ତି ଭୂତଦ୍ରୋହ ।
ଯେ ଅବା କ୍ରୋଧ ଲୋଭମୋହ ॥୧୦୯
ଏହାଙ୍କୁ କରୁ ତୁ ଦହନ ।
ତୁ ନାଥ ଆଦି ନିରଞ୍ଜନ ॥୧୧୦
ସୃଷ୍ଟିକୁ ଅନ୍ତଃକାଳେ ଧରି ।
ତୃତୀୟ ନେତ୍ର ତୁ ଆବୋରି ॥୧୧୧
ପ୍ରାଣୀଙ୍କି କରୁ ଆତଯାତ ।
ଏଣୁ ତୋ' ନାହିଁ ଆଦିଅନ୍ତ ॥୧୧୨
ଯେ ଆତ୍ମଜ୍ଞାନୀ ଏ ଜଗତେ ।
ତୋ' ପାଦ ଚିନ୍ତେ ଅବିରତେ॥୧୧୩
ଯେବା ତପସ୍ୟା କରି ଭଜେ ।
ତୋ' ରୂପ ଧ୍ୟାନଭାବେ ପୂଜେ॥୧୧୪
ତୋତେ ଆଶ୍ରୟ ଯେ କରନ୍ତି ।
ଏ ଘୋର ସଂସାରୁ ତରନ୍ତି ॥୧୧୫
ଆମ୍ଭେ ଯେ ଘୋର-ବିଷ-ଭୟେ ।
ଶରଣ ଗଲୁ ତୋ'ର ପାଏ ॥୧୧୬
ଏ ଘୋର ଭୟୁ କର ତ୍ରାଣ ।
ଭୋ ନାଥ ରଖ ଆମ୍ଭ ପ୍ରାଣ ॥୧୧୭

ଶୁକ ଉବାଚ

ତାହାଙ୍କ ଦୁଃଖ ଦେଖି ହର ।
କୃପାରେ ହୋଇଣ କାତର ॥୧୧୮
ସୁହୃଦ ସର୍ବଭୂତେ ସେହି ।
କହନ୍ତି ପ୍ରିୟାମୁଖ ଚାହିଁ ॥୧୧୯

ଶିବ ଉବାଚ

ଏ ବିଷ ତେଜେ ଦଶଦିଶ ।
କେବେ ହେଁ ନ ଦିଶେ ପ୍ରକାଶ॥୧୨୦
ଏଣୁ ବ୍ରହ୍ମାଣ୍ଡ ନାଶ ଗଲା ।
ଅକାଳେ ପ୍ରଳୟ ହୋଇଲା ॥୧୨୧
ଭୟେ କମ୍ପଇ ତିନିପୁର ।
ଆକାଶେ କମ୍ପେ ସୁରେଶ୍ୱର ॥୧୨୨

ଦେଖି ଭବାନୀ ପ୍ରଜାଙ୍କର ।
ଦୁଃଖ ହୋଇଲା ଭୟଙ୍କର ॥୧୨୩
ସମୁଦ୍ର ମନ୍ଥନୁ ଏ ଜାତ ।
ଏଥୁ ରଖିବା ମୋ' ଉଚିତ ॥୧୨୪
ଯେ କରେ ଦୀନ ଉପକାର ।
ସେ ଧର୍ମଜ୍ଞାନୀଙ୍କର ସାର ॥୧୨୫
ସାତ୍ତ୍ୱିକଧର୍ମ ସେ କରନ୍ତି ।
ଅଜ୍ଞାନୀ ଜନେ ନ ଜାଣନ୍ତି ॥୧୨୬
ଦୁଃଖୁଁ ଯେ ପରିତ୍ରାଣ କରେ ।
ସଙ୍କଟୁ ପ୍ରାଣୀଙ୍କି ଉଦ୍ଧରେ ॥୧୨୭
ତା' ଜନ୍ମ ଧନ୍ୟ ଏ ସଂସାରେ ।
ଯେ ରହେ ପର ଉପକାରେ ॥୧୨୮
ସାଧୁଜନଙ୍କର ଏ ଗତି ।
କେବେହେଁ ଧର୍ମ ନ ଛାଡ଼ନ୍ତି ॥୧୨୯
କ୍ଷଣଭଙ୍ଗୁର ଏ ଶରୀର ।
ସୁଧର୍ମ ପର ଉପକାର ॥୧୩୦

ଶୁକ ଉବାଚ

ଏମନ୍ତ ଶିବଙ୍କ ବଚନ ।
ଅମ୍ବିକା ଶୁଣି ତୋଷମନ ॥୧୩୧
ରୁଦ୍ର ଚରଣ ଶିରେ ଧରି ।
ମଧୁରେ କହନ୍ତି ଗଉରୀ ॥୧୩୨

ଅମ୍ବିକା ଉବାଚ

ଭୋ ନାଥ ଜଗତ ଈଶ୍ୱର ।
ଦେବଙ୍କ ବୋଲ ତୁମ୍ଭେ କର ॥୧୩୩
ଏ ଘୋର ବିଷ କର ଗ୍ରାସ ।
ସଂସାରେ ଥିବ ତୁମ୍ଭ ଯଶ ॥୧୩୪
ଧର୍ମ କରନ୍ତି ଯେତେ ପ୍ରାଣୀ ।
ତାହାଙ୍କୁ ତୋଷ ଚକ୍ରପାଣୀ ॥୧୩୫
ଏମନ୍ତେ ଗଉରୀ ବଚନେ ।
ରୁଦ୍ର ଉଠିଲେ ତୋଷମନେ ॥୧୩୬
କ୍ଷୀରାବ୍ଧି ତଟେ ବିଜେ କରି ।
କର ଅଞ୍ଜଳି ବିଷେ ଭରି ॥୧୩୭
ଉତ୍କଟ ଘୋର ମହାବିଷ ।
ଏକାବେଳକେ କଲେ ଗ୍ରାସ ॥୧୩୮

Dr. Sudhanshu Sekhar Mishra

ରଖିଲେ ଅଶେଷ ଭୁବନ ।
ଶୁଣ ହେ ପରୀକ୍ଷରାଜନ ॥୧୩୯
କଣ୍ଠ ଦିଶିଲା ନୀଳପ୍ରଭା ।
ସାଧୁଜନଙ୍କର ଏ ଶୋଭା ॥୧୪୦
ସାଧୁଜନଙ୍କ ମତ ଏହି ।
ଯେ ପରଦୁଃଖେ ଦୁଃଖୀ ହୋଇ ॥୧୪୧
କରନ୍ତି ପର ଉପକାର ।
ଧନ୍ୟ ଜୀବନ ତାହାଙ୍କର ॥୧୪୨
ଏମନ୍ତେ ରୁଦ୍ରକର୍ମ ଦେଖି ।
ସଂସାର ଜନେ ହେଲେ ସୁଖୀ॥୧୪୩
ବ୍ରହ୍ମା-ଗୋବିନ୍ଦ ଦେବମେଳେ।
ସର୍ବେ ଶଙ୍କରେ ପ୍ରଶଂସିଲେ ॥୧୪୪
ରୁଦ୍ର ପିବନ୍ତେ ଘୋର ବିଷ ।
କୂଳେ ଯେ ଥିଲା ଅବଶେଷ ॥୧୪୫
ବୃଶ୍ଚିକ-ଦନ୍ଦଶୂକଗଣ ।
ଭକ୍ଷିଲେ ବିଷ-ଶେଷକଣ ॥୧୪୬
ଏ କ୍ଷୀର ସାଗର-ମନ୍ଥନ ।
ଶୁଣି ପବିତ୍ର ହୁଅ ଜନ ॥୧୪୭
ସୁସାଧୁ ଜନଙ୍କର ହିତେ ।
ଅଷ୍ଟମସ୍କନ୍ଧେ ଭାଗବତେ ॥୧୪୮
ଭାଷା ପ୍ରବନ୍ଧେ ଗୀତନାଦେ ।
ଶୁଣ ସୁଜନେ ଅପ୍ରମାଦେ ॥୧୪୯
ବୋଲଇ ଦାସ ଜଗନ୍ନାଥ ।
ବିଷ ଭକ୍ଷିଲେ ଉମାକାନ୍ତ ॥୧୫୦

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଅଷ୍ଟମ ସ୍କନ୍ଧେ ଅମୃତ ମନ୍ଥନେ ସଦାଶିବ ବିଷପାନେ ସପ୍ତମୋଽଧ୍ୟାୟଃ ॥

---

## ଅଷ୍ଟମ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ତୋଷମନେ ।
ସଦାଶିବଙ୍କ ବିଷପାନେ ॥୧
ଦେବ ଦାନବ ମନତୋଷେ ।
ରୁଦ୍ର ବିରଞ୍ଚି ଘେନି ପାଶେ ॥୨
ପୁଣି ମନ୍ଥିଲେ କରି ମନ୍ୟୁ ।
ଜଳୁ ଉଠିଲା କାମଧେନୁ ॥୩
ସେ ଧେନୁ ଦେଖି ତୋଷମନେ।
ବ୍ରାହ୍ମଣେ ମିଳିଲେ ମନ୍ଥନେ ॥୪
ହରଷେ ଅଗ୍ନିହୋତ୍ର ଅର୍ଥେ ।
ମିଳିଲେ ଅଗ୍ନିହୋତ୍ରୀ ଯେତେ॥୫
ସ୍ୱଭାବେ ବିପ୍ରେ ବ୍ରହ୍ମବେତ୍ତା ।
ଅଗ୍ନି ପୂଜନେ ସାମରଥା ॥୬
ସେ କାମଧେନୁ ଘେନିଗଲେ ।
ଆନନ୍ଦ ମନେ ଯଜ୍ଞ କଲେ ॥୭
ପୁଣି ମନ୍ଥିଲେ ସୁରଦେବା ।
ଉଠିଲା ଅଶ୍ୱ ଉଚ୍ଚୈଶ୍ରବା ॥୮
ସେ ସର୍ବଲକ୍ଷଣେ ସୁନ୍ଦର ।
ଶଶାଙ୍କ ସଦୃଶ ପାଣ୍ଡୁର ॥୯
ସେ ଅଶ୍ୱ ଦେଖି ବଳି ଚିତ୍ତେ ।
ଶ୍ରଦ୍ଧା ବସିଲା ଅନ୍ତର୍ଗତେ ॥୧୦
ଈଶ୍ୱର ତା'ର ମନ ଜାଣି ।
ବୋଇଲେ ଇନ୍ଦ୍ର ଶୁଣ ବାଣୀ ॥୧୧
ତୋହର ଏ ଅଶ୍ୱ ଉଚିତେ ।
ସେ ନେଉ ଆମ୍ଭ ସନମତେ ॥୧୨
ପୁଣି ମନ୍ଥିଲେ ଏକ ଚିତ୍ତେ ।
ଉଠିଲା ଗଜ ଐରାବତେ ॥୧୩
ଚତୁର ଦନ୍ତ ଶୋଭାକର ।
କୈଳାଶ ପର୍ବତ ଆକାର ॥୧୪
ଇନ୍ଦ୍ରର ଗଜ ସେ ସ୍ୱଭାବେ ।
ତେଣୁ ନ ଇଚ୍ଛିଲେ ଦାନବେ ॥୧୫
ସେ ଗଜ ଇନ୍ଦ୍ର ଆବୋରିଲେ ।
ପୁଣି ମନ୍ଥନ ଯାଇ କଲେ ॥୧୬
ଅଷ୍ଟ ଦିଗଜ ଐରାବଣ ।
ଅଭ୍ରମୁ ଆଦି ପତ୍ନୀ ନାମ ॥୧୭
ପୁଣି ମନ୍ଥନେ ମହାଭାଗ ।
ଉଠିଲା ମଣି-ପଦ୍ମରାଗ ॥୧୮
କୌସ୍ତୁଭ ନାମେ ରତ୍ନ ହରି ।
ସ୍ନେହେ ଏହାକୁ ବକ୍ଷେ ଧରି ॥୧୯
ସୁନ୍ଦର ପୁଷ୍ପ ପାରିଜାତ ।
ସୁଗନ୍ଧେ ମୋହିଲା ଜଗତ ॥୨୦
ତକ୍ଷଣେ ଉଠିଲା ଗଗନେ ।
ମିଳିଲା ଶଚୀପତି ବନେ ॥୨୧
ପୁଣି ମନ୍ଥିଲେ ବାହୁବଳେ ।
ମନ୍ଦରଗିରି ସିନ୍ଧୁଜଳେ ॥୨୨
ଉଠିଲେ ଅପସରା ବୃନ୍ଦ ।
ସୁସ୍ୱରେ କରି ଗୀତନାଦ ॥୨୩
ରତ୍ନମେଖଳା କଟୀତଟେ ।
କୁଚେ କାଞ୍ଚୁଲା ସୁପ୍ରକଟେ ॥୨୪
ରତ୍ନଭୂଷଣେ ଶୋହେ ଗ୍ରୀବା ।
ରୂପେ କି ପଟାନ୍ତର ଦେବା ॥୨୫
ହାର କେୟୂର ଝଟକନ୍ତି ।
ଗଗନେ ଯେହ୍ନେ ତାରାପନ୍ତି ॥୨୬
ଚାହାନ୍ତେ କଟାକ୍ଷ-ଲୋଚନ ।
ଯେରୂପେ ତ୍ରୈଲୋକ୍ୟ ମୋହନ ॥୨୭
ଗଗନମାର୍ଗେ ଶୂନ୍ୟେ ଗଲେ ।
ଇନ୍ଦ୍ରର ଭୁବନେ ମିଳିଲେ ॥୨୮
ଅସୁରେ ମନେ ଦୁଃଖ ଭରି ।
ପୁଣି ମନ୍ଥିଲେ ଗିରି ଧରି ॥୨୯
ସୁନ୍ଦର ଦିଶେ ଦଶଦିଶ ।
ଧରଣୀ ହେଉଛି ଉଲ୍ଲାସ ॥୩୦
ଅମୃତ-ଶୁଭଲଗ୍ନ-ବେଳେ ।
ଲକ୍ଷ୍ମୀ ଉଠିଲେ ମହାଜଳେ ॥୩୧
ଦିଗ ପ୍ରସରେ ଦେହ ଝଳି ।
ଜୀମୂତେ ଯେସନେ ବିଜୁଳି ॥୩୨
କମଳା ରୂପ ଦେଖି ବନେ ।
ଲୋଭ ବସିଲା ସର୍ବମନେ ॥୩୩
ଲକ୍ଷ୍ମୀ-ବଦନ ଚାହିଁ ବେଗେ ।
ଇନ୍ଦ୍ର ମିଳିଲେ ପଦଯୁଗେ ॥୩୪
ରତ୍ନ ଆସନ ଦେଲେ ଆଣି ।
ଯହିଁ ବିଜୟେ କମଳିନୀ ॥୩୫

Dr. Sudhanshu Sekhar Mishra

ଜାହ୍ନବୀ ଆଦି ନଦୀ ଯେତେ ।
ସର୍ବେ ମିଳିଲେ ପାଦଗତେ ॥୩୬
ସୁବର୍ଣ୍ଣ କୁମ୍ଭେ ଜଳ ଭରି ।
ମୁନିଏ ରହିଲେ ଉଭାରି ॥୩୭
ଧରଣୀ ଦେଲା ଅଉଷଧି ।
ଅପରେ ଅଭିଷେକ ବିଧି ॥୩୮
ଅଇରାବତ ପୁଣ୍ଡରୀକ ।
ଏ ବେନି ହସ୍ତୀଙ୍କ ନାୟକ ॥୩୯
ସୁବର୍ଣ୍ଣ କୁମ୍ଭେ ନୀର ଭରି ।
ଢାଳିଲେ ଥୋର ହସ୍ତେ ଧରି ॥୪୦
ସୁରଭୀ ପଞ୍ଚାମୃତ ଧାରେ ।
ସିଞ୍ଚିଲା କମଳା ଉପରେ ॥୪୧
ମଧୁ-ମାଧବ ବେନିମାସେ ।
ମିଳିଲେ କୁସୁମ ସୁବାସେ ॥୪୨
ମିଳି ଅଶେଷ ମୁନିଗଣେ ।
ଆଗମ ନିଗମ ପ୍ରମାଣେ ॥୪୩
କଲେ ସେ ଅଭିଷେକ ବିଧି ।
ନିଗମ ମାର୍ଗେ ଯେ ପ୍ରସିଦ୍ଧି ॥୪୪
ଗନ୍ଧର୍ବେ କଲେ ଗୀତନାଦ ।
ନାଚନ୍ତି ଅପସରା ବୃନ୍ଦ ॥୪୫
ପଣବ ମୃଦଙ୍ଗ ଗୋମୁଖ ।
ମୁରଜ ଯନ୍ତ୍ର ଯେ ଆନକ ॥୪୬
କମ୍ବୁ କାହାଳ ବେଣୁସ୍ୱନ ।
ଗର୍ଜନ୍ତି ଶୂନ୍ୟପଥେ ଘନ ॥୪୭
ସକଳେ ମିଳି ଚଉପାଶେ ।
ସୁବାକ୍ୟ ବେଦମନ୍ତ୍ର ଘୋଷେ ॥୪୮
ହସ୍ତୀଏ ରତ୍ନ କୁମ୍ଭେ ନୀର ।
ଢାଳିଲେ କମଳାର ଶିର ॥୪୯
କ୍ଷୀର ଜଳଧି ଉଠି ତୋଷେ ।
ମିଳିଲା କମଳିନୀ ପାଶେ ॥୫୦
ପୀତପଟନୀ ବେନି ଦେଲା ।
ଅମ୍ଳାନ-ପଙ୍କଜର ମାଳା ॥୫୧
ବରୁଣ ଦେଲା ଦେବୀ ଗଳେ ।
ମତ୍ତ-ମଧୁପ ଯହିଁ ରୋଳେ ॥୫୨
ନାନା-ଭୂଷଣ ରତ୍ନଜ୍ୟୋତି ।
ସେ ବିଶ୍ୱକର୍ମା ପ୍ରଜାପତି ॥୫୩

ହାର କଙ୍କଣ ଅବତଂସ ।
ରତ୍ନ ଝଟକେ ରବିତ୍ରାସ ॥୫୪
ସେ ଦେବୀ ଅଭିଷେକ ଅନ୍ତେ ।
ପଙ୍କଜ ମାଳା ଘେନି ହସ୍ତେ ॥୫୫
ପାଦେ ଚଳନ୍ତେ ମହୀତଳେ ।
ରତ୍ନକୁଣ୍ଡଳ କର୍ଣ୍ଣେ ଲୁଳେ ॥୫୬
ସୁଶୁଭ୍ରହାସ ଶୁଭ୍ରଦନ୍ତୀ ।
ହୃଦେ ପୟୋଧର ଚଳନ୍ତି ॥୫୭
ମୁକୁତାହାର କୁଚ ଶିଖେ ।
କୁଙ୍କୁମ ଲେପନ ସୁରେଖେ ॥୫୮
ଚରଣେ ରଣିତ ନୂପୁର ।
ସୁଘୋଷ ଶୁଭଇ ମଧୁର ॥୫୯
ପଥେ ଚାଲନ୍ତେ ଜନମାତା ।
ରୂପେ କି ଦିଶେ ହେମଲତା ॥୬୦
ବିଷ୍ଣୁଚରଣେ ମନଦେଇ ।
ଆନନ୍ଦେ ବେନିପାଶେ ଚାହିଁ ॥୬୧
ଅଶେଷ-ବ୍ରହ୍ମାଣ୍ଡ କାରଣ ।
କହଇ ଯାହାର ଚରଣ ॥୬୨
ଯଦ୍ୟପି କନ୍ୟା ରୂପ ଧରେ ।
ମନ ନ ରମେ ଅନ୍ୟ ବରେ ॥୬୩
ଗନ୍ଧର୍ବ ସିଦ୍ଧି ଯକ୍ଷ ସୁର ।
ଥିଲେ ଯେ ଚାରଣ ଅସୁର ॥୬୪
ଯେଣୁ ମିଶ୍ରିତ ଦୋଷ ଗୁଣ ।
ତେଣୁ ତା'ଙ୍କରେ ନାହିଁ ମନ ॥୬୫
ଚଞ୍ଚଳା ପୁଣ ଏହି ମତେ ।
ବିଷ୍ଣୁ ଚରଣ ଚିନ୍ତି ଚିତ୍ତେ ॥୬୬
ଗୋବିନ୍ଦ ଗଳେ ମାଳାଦେଇ ।
ଅନଙ୍ଗା ଲୋଚନେ ଅନାଇଁ ॥୬୭
କୋଳେ ବସିଲେ ଜନ ମାତା ।
ଯେ ଜୀବ-ଜୀବନର ଦାତା ॥୬୮
ଗୋବିନ୍ଦ କୋଳେ ଲକ୍ଷ୍ମୀ ଦେଖି ।
ଅସୁରେ ମନ୍ଥନ ଉପେକ୍ଷି ॥୬୯
ତୁରୀ ମର୍ଦ୍ଦଳ ଶଙ୍ଖସ୍ୱନ ।
ନୃତ୍ୟ ଉତ୍ସବ ଘନ ଘନ ॥୭୦
ବ୍ରହ୍ମା ଶଙ୍କର ଆଦି ଯେତେ ।
ତକ୍ଷଣେ ମିଳିଲେ ସମସ୍ତେ ॥୭୧

ସକଳ ଦେବେ ମୋଦଭରି ।
ପୁଷ୍ପ-ବରଷି ସ୍ତୁତି କରି ॥୭୨
ଲକ୍ଷ୍ମୀ-କଟାକ୍ଷ ଦେହେ ଲାଗି ।
ସର୍ବେ ହୋଇଲେ ମୋକ୍ଷଭାଗୀ ॥୭୩
ସତ୍ୟାଦି ପୁଣ୍ୟଶୀଳ ଗୁଣେ ।
ଯୁକ୍ତ ହୋଇଲେ ତତକ୍ଷଣେ ॥୭୪
ବ୍ରହ୍ମାଶଙ୍କର ଆଦି ଦେବେ ।
ଲକ୍ଷ୍ମୀ-ଗୋବିନ୍ଦ ତୋଷଭାବେ ॥୭୫
ଲକ୍ଷ୍ମୀଙ୍କି ଦେଖି ବିଷ୍ଣୁ ଅଙ୍ଗେ ।
ମଙ୍ଗଳ ଗୀତ ସ୍ତୁତି ରଙ୍ଗେ ॥୭୬
ମିଳି ସକଳ ଦିଗପାଳେ ।
ପୁଷ୍ପ ବରଷିଲେ ଗହଳେ ॥୭୭
ଲକ୍ଷ୍ମୀ-ଗୋବିନ୍ଦ ମୁଖ ଦେଖି ।
ଦେବେ ହୋଇଲେ ସର୍ବସୁଖୀ ॥୭୮
ଶୀଳାଦି-ଅଷ୍ଟଗୁଣେ ଯୁତ ।
ସର୍ବେ ହୋଇଲେ କୃତକୃତ୍ୟ ॥୭୯
ଲକ୍ଷ୍ମୀଙ୍କି ନ ଲଭି ଅସୁରେ ।
ବିଗୁଣ ବହିଲେ ଅନ୍ତରେ ॥୮୦
ନିର୍ବଳ ହୋଇଲେ ସରାଗେ ।
ଲୋଭ ବସିଲା ହୃଦଭାଗେ ॥୮୧
ଉଦ୍‌ବେଗେ ହୋଇଲେ କାତର।
ଲଜ୍ଜା-ସ୍ୱଭାବ ଗଲା ଦୂର ॥୮୨
ପୁଣି ମନ୍ଥିଲେ ମନଦୁଃଖେ ।
ଚାହାନ୍ତି ଅନ୍ୟେ ଅନ୍ୟ ମୁଖେ ॥୮୩
ମନ୍ଥନେ ଉଠିଲା ବାରୁଣୀ ।
ରୂପେ ଶୋଭିତ କମଳିନୀ ॥୮୪
ଅସୁରେ ହସିଣ ଉନ୍ମତ୍ତେ ।
ସେ କନ୍ୟା ଲଭିଲେ ସମସ୍ତେ ॥୮୫
ପୁଣି ମନ୍ଥିଲେ ତୋଷମନେ ।
ପୌରୁଷେ ହରଷ ବଦନେ ॥୮୬
ଅଦ୍‌ଭୁତ ପୁରୁଷ ଉପୁଜେ ।
ତେଜେ ସକଳ ରୂପ ଗଞ୍ଜେ ॥୮୭
ହସ୍ତୀର ଶୁଣ୍ଢ ପ୍ରାୟେ ହୋଇ ।
ଆଜାନୁଲମ୍ବେ ଭୁଜ ଦୁଇ ॥୮୮
ସୁନ୍ଦର କମ୍ବୁ ଗ୍ରୀବା ସାଜେ ।
ଅରୁଣ ଲୋଚନ ବିରାଜେ ॥୮୯

Dr. Sudhanshu Sekhar Mishra

ଶ୍ୟାମ-ତରୁଣ ବୟ ଶୋହେ ।
ରତ୍ନ ଭୂଷଣ ମନ ମୋହେ ॥୯୦
ହୃଦେ ଲମ୍ବଇ ବନମାଳ ।
ସୁନ୍ଦର ଅଳକା କପୋଳ ॥୯୧
ସିଂହ ବିକ୍ରମ ଶୁଭ୍ର ଅଙ୍ଗ ।
ପୀତବସନ କଟୀଭାଗ ॥୯୨
ରତ୍ନ ବଳୟ ମଣିବନ୍ଧେ ।
ଅମୃତ କୁମ୍ଭ ଘେନି ସ୍କନ୍ଧେ ॥୯୩
ସେ ରୂପ ନାରାୟଣ ଅଂଶେ ।
ଧନ୍ୱନ୍ତରି ରୂପ ପ୍ରକାଶେ ॥୯୪
ସ୍ୱଭାବେ ଆୟୁର୍ବେଦ-ଗୁରୁ ।
ଧୀର ସ୍ୱଭାବେ ଯେହ୍ନେ ମେରୁ ॥୯୫
ଅସୁରଗଣ ତାହା ଦେଖି ।
ଧାଇଁଲେ ମନ୍ଥନ ଉପେକ୍ଷି ॥୯୬
ଲୁଟିଲେ ସର୍ବ ବସ୍ତୁ ବଳେ ।
ଦେବଙ୍କୁ କରି ଅବହେଳେ ॥୯୭
ଅମୃତକୁମ୍ଭ ଅତି ଖରେ ।
ଥିଲା ଯେ ଧ୍ୱନ୍ତରୀ କରେ ॥୯୮
ସେ କୁମ୍ଭ ବଳେ ଅପହରି ।
ଧାଇଁଲେ ଘୋର ନାଦ କରି ॥୯୯
ପ୍ରତାପେ ଗର୍ଜିଣ ଧାଇଁଲେ ।
ପର୍ବତ ଉପରେ ଉଠିଲେ ॥୧୦୦
ଦେବେ ଦୁଃଖିତ ମନ ହୋଇ ।
ଗୋବିନ୍ଦ ପାଦେ ଚିତ୍ତ ଦେଇ ॥୧୦୧
ବୋଲନ୍ତି ରଖ ନାରାୟଣ ।
ଘୋର ସଙ୍କଟୁ ଆମ୍ଭ ପ୍ରାଣ ॥୧୦୨
ଅମୃତ ଭକ୍ଷିଲେ ଅସୁରେ ।
ଆମ୍ଭେ କି ଥିବୁ ସ୍ୱର୍ଗପୁରେ ॥୧୦୩
ନିଶ୍ଚୟେ ହୋଇଲୁ ଅନାଥ ।
ଶରଣ ରଖ ଜଗନ୍ନାଥ ॥୧୦୪
ଏମନ୍ତ ଦେବଙ୍କ ବିକଳ ।
ଦେଖି ହସନ୍ତି ଆଦିମୂଳ ॥୧୦୫
ସ୍ୱଭାବେ ପରମ ଆନନ୍ଦ ।
ଭକ୍ତ ବତ୍ସଳ ଆଦିକନ୍ଦ ॥୧୦୬
ବୋଲନ୍ତି ଶୁଣ ଦେବତାଏ ।
ଚିତ୍ତେ ନ କରି ତମ୍ଭେ ଭୟେ ॥୧୦୭

ମୁଁ ଆଜ ଯୋଗ ମାୟା ଛଳେ ।
ଅମୃତ ଆଣିବଇଁ ହେଳେ ॥୧୦୮
ତକ୍ଷଣେ ଅସୁରଙ୍କ ଦେହେ ।
ହରି ପଶିଲେ ମାୟାମୋହେ ॥୧୦୯
ଅସୁର ଚିତ୍ତେ କ୍ରୋଧ ବହି ।
ବୋଲନ୍ତି ଏକୁ ଆରେ ଚାହିଁ ॥୧୧୦
କେହି କାହାକୁ ନ ଗଣନ୍ତି ।
ମୁଁ ଆଗେ ଭକ୍ଷିବି ବୋଲନ୍ତି ॥୧୧୧
ଦେବଙ୍କ ଭାଗ ଆଗେ ଦେବା ।
କେବୋଲେ ଆମ୍ଭେହେ ଭୁଞ୍ଜିବା ॥୧୧୨
ଆମ୍ଭର ତୁଲେ ଦେବେ ଦୁଃଖୀ ।
ଆମ୍ଭେ ଯେ ତାହାଙ୍କୁ ଉପେକ୍ଷି ॥୧୧୩
ବଳେ ଆଣିଲୁ ସୁଧାକୁମ୍ଭ ।
ଏମନ୍ତ ବହି ମହାଦମ୍ଭ ॥୧୧୪
କେହି କାହାକୁ ନ ଗଣନ୍ତି ।
ଧର୍ମ ଅଧର୍ମ ବିଚାରନ୍ତି ॥୧୧୫
ମଧ୍ୟେ ଅମୃତକୁମ୍ଭ ଥୋଇ ।
ବିଷ୍ଣୁମାୟାରେ ମନ ମୋହି ॥୧୧୬
ଏମନ୍ତ ସମୟେ ମୁରାରି ।
ତକ୍ଷଣେ ମାୟାରୂପ ଧରି ॥୧୧୭
ସ୍ୱରୂପେ ହୋଇଲେ କାମିନୀ ।
ଅଶେଷ ଜଗତ ମୋହିନୀ ॥୧୧୮
ଶ୍ୟାମଉତ୍ପଳ ସ୍ୱରୂପିଣୀ ।
କାମିନୀଗଣ ଶିରୋମଣି ॥୧୧୯
ବିବିଧ-ମଣିଗଣ ମାନ ।
ବିରାଜେ କେୟୂର କଙ୍କଣ ॥୧୨୦
ସୁନ୍ଦର ନାସା ଭୂରୁ ଶୋହେ ।
କଟାକ୍ଷେ ଜଗ୍ଗୁଜନ ମୋହେ ॥୧୨୧
ଉନ୍ନତ ନବ ଯଉବନ ।
ଯୌବନ ଭାରେ ମଝା କ୍ଷୀଣ ॥୧୨୨
ରଙ୍ଗ ଅଧରେ ଦନ୍ତପନ୍ତି ।
ହାସ ବଦନେ ଝଟକନ୍ତି ॥୧୨୩
ଉତ୍ଫୁଲ୍ଲ-ମଲ୍ଲୀମାନ ଶିରେ ।
ଶୋହେ ସୁନୀଳ କଳେବରେ ॥୧୨୪
ସୁଗ୍ରୀବ-କଣ୍ଠେ ଆଭରଣ ।
ସୁଭୂଜେ ଅଙ୍ଗଦ ଭୂଷଣ ॥୧୨୫

ବିରଜ ଆମ୍ବରେ ଭୂଷିତ ।
ଉଦର ନିତମ୍ବ ଶୋଭିତ ॥୧୨୬
କଟୀମେଖଳା ମନରଞ୍ଜେ ।
ଉଜ୍ଜ୍ୱଳ ମଣି ଗଣ ଗଞ୍ଜେ ॥୧୨୭
ଚରଣେ ନୂପୁର ବାଜେଣୀ ।
ସୀମନ୍ତ ମଧ୍ୟେ ଶୋହେ ମଣି ॥୧୨୮
ସର୍ବାଙ୍ଗେ ଭୂଷିତ ଭୂଷଣ ।
ଭୂରୁ-ବିଳାସ ବିମୋହନ ॥୧୨୯
ହାସ୍ୟେ ଅସୁର-ଚିତ୍ତ ହରି ।
ମୋହିନୀ ରୂପେ ବଶକରି ॥୧୩୦
ଚିତ୍ତେ ଅନଙ୍ଗ ଉଦ୍ଦୀପନ ।
ହରି ହରିଲେ ତା'ଙ୍କ ମନ ॥୧୩୧
ବ୍ରାହ୍ମଣ ଜଗନ୍ନାଥ କହେ ।
ଅସୁରେ ହରି ମାୟାମୋହେ ॥୧୩୨
ଅମୃତ ଭକ୍ଷଣ ପାସୋରି ।
ବିଷ୍ଣୁଙ୍କୁ ରହିଲେ ଆବୋରି ॥୧୩୩
ବିଷ୍ଣୁ-ମୋହିନୀ ରୂପ ବାଣୀ ।
ଶୁଣ ସଂସାରୁ ତର ପ୍ରାଣୀ ॥୧୩୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଭଗବନ୍ ମାୟା
ଉପଲମ୍ଭନଂ ନାମ ଅଷ୍ଟମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ନବମ ଅଧ୍ୟାୟ

ଶୁକ ଉବାଚ

ଅସୁରେ ବସି ଏକମେଳେ ।
ସୁଧା-ସମ୍ପୂର୍ଣ୍ଣ କୁମ୍ଭ କରେ ॥୧
ବିବିଧ-ପାନପାତ୍ର ଆଣି ।
ଏକ ଆରକେ ବାକ୍ୟ ଭଣି ॥୨
ସୁହୃଦପଣ ଦୂର କଲେ ।
ଦୁଷ୍ଟ-ଆଗ୍ରହ ଆଚରିଲେ ॥୩
ଏମନ୍ତେ ଶୁଣ ପରୀକ୍ଷିତ ।
ମୋହିନୀ ରୂପେ ଜଗନ୍ନାଥ ॥୪
ମିଳିଲେ ଅସୁରଙ୍କ ପାଶେ ।
ଅମୃତ-ହରଣ ବିଶ୍ୱାସେ ॥୫
ବିଷ୍ଣୁମୋହିନୀ ରୂପ ଦେଖି ।
ନିଶ୍ଚଳ କଲେ ସର୍ବେ ଆଖି ॥୬
ଚକିତେ ଅନ୍ୟ ଅନ୍ୟେ ଚାହିଁ ।
ବୋଲନ୍ତି ବିଷ୍ଣୁ ରୂପେ ମୋହି ॥୭
ଦେଖ ଏ ରୂପ କାନ୍ତି-ଧାମ ।
ନବଯୁବତୀ ଅନୁପମ ॥୮
କାହୁଁ ଅଇଲା କିବା ଅର୍ଥେ ।
ପାଦେ ଚାଲଇ ବୃଷ୍ଟି ପଥେ ॥୯
ଏମନ୍ତ କହି କନ୍ୟା ଆଗେ ।
ପଥେ ମିଳିଲେ ଯାଇ ବେଗେ ॥୧୦
ନିଷ୍ଫଳେ ନ ପାରନ୍ତି ଚାହିଁ ।
ବୋଲନ୍ତି କନ୍ୟା ପାଶେ ରହି ॥୧୧
ହେ ପଦ୍ମଲୋଚନି ସୁନ୍ଦରୀ ।
ଯୁବାଜନଙ୍କ ମନୋହାରୀ ॥୧୨
କି ତୋ'ର ନାମ କିବା ଅର୍ଥେ ।
କେଣେ ଅଇଲୁ କହ ଏଥେ ॥୧୩
କାହାର ପତ୍ନୀ ତୁ ବୋଲାଉ ।
ଜ୍ଞାନ ହରିଲୁ ଚାହୁଁ ଚାହୁଁ ॥୧୪
ଆମ୍ଭେ ଯେତେକ ଦେବାସୁରେ ।
ସିଦ୍ଧଗନ୍ଧର୍ବ ଯେ କିନ୍ନରେ ॥୧୫
ମୁନି ଚାରଣ ବିଦ୍ୟାଧର ।
ଯେ ଅନ୍ୟ ସିଦ୍ଧ ଯୋଗେଶ୍ୱର ॥୧୬
ଅଦୃଷ୍ଟପୂର୍ବ ରୂପ ତୁହି ।
ତୋତେ ତ କେହି ନ ଜାଣଇ ॥୧୭
ନିଶ୍ଚେ ଜାଣିଲୁ ତୋ' ବାରତା ।
ତୋତେ ବା ସର୍ଜିଲା ବିଧାତା ॥୧୮
ପ୍ରାଣୀଙ୍କ ଇନ୍ଦ୍ରିୟ ହରଣେ ।
ମୋହନ-ଅଜ୍ଞାନ-କାରଣେ ॥୧୯
ତୋ' ରୂପ ଅତି ମନୋହର ।
ତୁ ଏବେ ଆମ୍ଭ ବୋଲ କର ॥୨୦
ଆମ୍ଭେ ଯେ ଦେବତା ଦାନବେ ।
ଅମୃତ ପାନ ସମ ଭାବେ ॥୨୧
ଏ ବସ୍ତୁ ବେନିଭାଗ କରି ।
ଦିଅ ଗୋ ପରମା ସୁନ୍ଦରୀ ॥୨୨
କଶ୍ୟପପୁତ୍ର ଆମ୍ଭେ ଦୁଇ ।
କେବେ ଆମ୍ଭର ନ ପଡ଼ଇ ॥୨୩
ତୁ ଏ ଅମୃତ ଆମ୍ଭ ପାତ୍ରେ ।
ଦ୍ୱିଭାଗ କରି ଯଥାଅର୍ଥେ ॥୨୪
ପରଷି ଦିଅ ଶୁଦ୍ଧଚିତ୍ତେ ।
ସମାନ ଭାବେ ଆମ୍ଭ ପାତ୍ରେ ॥୨୫
କେବେହେଁ ନ କରିବୁ ଭେଦ ।
ଯେମନ୍ତେ ଉଭୟେ ଆନନ୍ଦ ॥୨୬
ଅସୁରଙ୍କର ବୋଲ ଶୁଣି ।
ମାୟା-ମୋହିନୀ-ଚକ୍ରପାଣି ॥୨୭
ମୋହନ-ମନ୍ଦହାସ ମୁଖେ ।
ଅପାଙ୍ଗ କଟାକ୍ଷ ସୁରେଖେ ॥୨୮
ଅମୃତ ସମାନ ବଚନ ।
କହନ୍ତି ଜଗତ ମୋହନ ॥୨୯

ଭଗବାନ ଉବାଚ

ତୁମ୍ଭେ ଯେ କଶ୍ୟପ-ନନ୍ଦନ ।
ଶୁଣ ହୋ ମୋହର ବଚନ ॥୩୦
ସ୍ୱଭାବେ ସ୍ୱାମୀ ମୋ'ର ନାହିଁ ।
କୁଳଟା-ବାଦ ମୋ'ର ତହିଁ ॥୩୧
ଅସତୀ-ନାରୀଙ୍କ ସ୍ୱଭାବ ।
ଶ୍ୱାନର ପ୍ରାୟେକ ଜାଣିବ ॥୩୨
ନିତ୍ୟେ ଲୋଡ଼ଇ ନୂଆଭାବ ।
କେ ଅବା ବିଶ୍ୱାସ କରିବ ॥୩୩
କହିଲି ତୁମ୍ଭ ଆଗେ ସତ ।
ଏମନ୍ତ ପଣ୍ଡିତଙ୍କ ମତ ॥୩୪

ଶୁକ ଉବାଚ

କନ୍ୟାର ଚତୁର ବଚନ ।
ଶୁଣି ଅସୁରେ ତୋଷମନ ॥୩୫
ଭାବ-ସୁଗଭୀର-ବଚନ ।
ମନୁଷ୍ୟେ ଯେହ୍ନେ ସୁଧାପାନ ॥୩୬
ଅମୃତ ଭାଣ୍ଡ ଆଣି ବେଗେ ।
ସମର୍ପି ଦେଲେ କନ୍ୟା ଆଗେ ॥୩୭
ହସି ବୋଇଲେ ତୋଷଚିତ୍ତେ ।
ଶୁଣ ରାଜନ ପରୀକ୍ଷିତେ ॥୩୮
ଅସୁରଙ୍କର ବୋଲ ଶୁଣି ।
ଆନନ୍ଦେ ପ୍ରଭୁ ଚକ୍ରପାଣି ॥୩୯
ଅମୃତଭାଣ୍ଡ କାଖେ ଧରି ।
ଅଳପ ହାସମୁଖ କରି ॥୪୦
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ।
ସଭୟେ ଅସୁରଙ୍କୁ ଚାହିଁ ॥୪୧

ସାଧୁ ଉବାଚ

ସାଧୁ ଅସାଧୁ ନ ଜାଣଇ ।
ତୁମ୍ଭେ ସମାନ ବେନିଭାଇ ॥୪୨
ବିଭାଗେ ଦେବି ସୁଧାରସ ।
ସଂସ୍କାର ହୋଇ ତୁମ୍ଭେ ବସ ॥୪୩

ଶୁକ ଉବାଚ

ଏମନ୍ତେ ମୋହିନୀ ବଚନେ ।
ଦେବ-ଦାନବେ ତୋଷମନେ ॥୪୪
ପ୍ରଥମେ ଉପବାସ କରି ।
ପ୍ରାତଃ ସ୍ନାହନ ସନ୍ଧ୍ୟା ସାରି ॥୪୫
ସନ୍ତୋଷ ଚିତ୍ତେ ହୋମ କଲେ ।
ଗୋ-ବିପ୍ର ଚରଣେ ପୂଜିଲେ ॥୪୬

Dr. Sudhanshu Sekhar Mishra

ଭୂତଙ୍କୁ ଦେଲେ ଭୂତବଳି ।
ସ୍ତୁତି ଯେ କଲେ ବିପ୍ରେ ମିଳି ॥୪୭
ଅହତ ବସ୍ତ୍ର ଯୁଗ ପିନ୍ଧି ।
ଶୋଭନ ଗନ୍ଧେ ନାନା ବିଧି ॥୪୮
କୁଶ ଆସନେ ସର୍ବେ ବସି ।
ବଦନ କଲେ ପୂର୍ବଦିଶି ॥୪୯
ଧୂପ ଆମୋଦ ଯଜ୍ଞଶାଳେ ।
ଆନନ୍ଦେ ବସିଲେ ସକଳେ ॥୫୦
ସୁଗନ୍ଧମାଳା ଦୀପପନ୍ତି ।
ଆବୋରି ପାନପତ୍ର ଛନ୍ତି ॥୫୧
ଯେ ଯଜ୍ଞଶାଳେ ନରହରି ।
ଅତି ମୋହିନୀ ରୂପ ଧରି ॥୫୨
ଅସୁରଙ୍କର ମନମୋହି ।
ଅମୃତକୁମ୍ଭ ତଳେ ଥୋଇ ॥୫୩
ଅତିମୋହନ ରୂପ ଦେଖି ।
ଦେବତା ଅସୁରଙ୍କ ଆଖି ॥୫୪
ରହିଲା ହରି-ବକ୍ଷସ୍ଥଳେ ।
ସୁସଙ୍ଗ କୁଚଯୁଗ ମୂଳେ ॥୫୫
ହରି ବିଚାର କଲେ ମନେ ।
ଅସୁରଙ୍କର ସୁଧାପାନେ ॥୫୬
ଦେବେ ହୋଇବେ ଅରକ୍ଷିତ ।
ଏ କଥା ନୁହଇ ଉଚିତ ॥୫୭
ସର୍ପକୁ କ୍ଷୀର ଯେ ପିଆନ୍ତି ।
ସର୍ପର ଘାତେ ସେ ମରନ୍ତି ॥୫୮
ଜାତି ସ୍ୱଭାବେ ନୃଶଂସକ ।
ଅସୁରେ ନୁହନ୍ତି ବିବେକ ॥୫୯
ଏମନ୍ତ ଚିନ୍ତିଣ ଶ୍ରୀପତି ।
ବୋଇଲେ ହୁଅ ବେନିପନ୍ତି ॥୬୦
ବାମ-ଦକ୍ଷିଣେ ମୋ'ର ବସ ।
କହି ହୁଅନ୍ତି ହସ ହସ ॥୬୧
ସ୍ୱରୂପେ ଅସୁରଙ୍କ ମନ ।
ବଳେ ହରିଲେ ଭଗବାନ ॥୬୨
ରୂପ ଦେଖନ୍ତି ହୋଇ ଛନ୍ନ ।
ବଦନୁ ନ ସ୍ଫୁରେ ବଚନ ॥୬୩
ଦକ୍ଷିଣେ ଦେବଗଣେ ଥିଲେ ।
ତାହାଙ୍କ ପାତ୍ରେ ସୁଧା ଦେଲେ ॥୬୪
ଅସୁରେ ସୁକୃତ ପାଳନେ ।
ନିଶ୍ଚଳେ ବସିଲେ ମଉନେ ॥୬୫
କାମିନୀ-ସମ୍ମତ ପାଳନେ ।
ଧର୍ମେ ରହିଲେ ଦୃଢ଼ମନେ ॥୬୬
ମାୟା ମୋହିଲେ ଚକ୍ରଧର ।
ବଦନେ ନଇଲା ଉତ୍ତର ॥୬୭
ଦେବଙ୍କୁ ପରଶିବା ବେଳେ ।
ରାହୁ ଯେ ଥିଲା ତା'ଙ୍କ ମେଳେ॥୬୮
ଗୁପତେ ବସି ଦେବବୃନ୍ଦେ ।
ଅମୃତ ଭକ୍ଷିଲା ଆନନ୍ଦେ ॥୬୯
ରବି-ଶଶାଙ୍କ ତାହା ଦେଖି ।
ଉଠିଲେ ଆସନ ଉପେକ୍ଷି ॥୭୦
ଚାହିଁଣ ଗୋବିନ୍ଦ-ବଦନେ ।
ନୟନେ ଠାରିଲେ ମଉନେ ॥୭୧
ସୁଦରଶନେ ତା'ର ଶିର ।
ବେଗେ ଛେଦିଲେ ଚକ୍ରଧର ॥୭୨
ତକ୍ଷଣେ ହୋଇ ବେନିଖଣ୍ଡ ।
ଅମୃତ ପାତ୍ରେ ପଡ଼େ ମୁଣ୍ଡ ॥୭୩
ଅମର ହୋଇଲା ତକ୍ଷଣ ।
ଦେଖି ସନ୍ତୋଷ ନାରାୟଣ ॥୭୪
ବୋଇଲେ ବର ମାଗ ତୁହିଁ ।
ରାହୁ ବୋଇଲା ବିଷ୍ଣୁ ଚାହିଁ ॥୭୫
ଭୋ ନାଥ ମୋ'ର ଅବଶେଷ ।
ଅବଶ୍ୟ କରିବଇଁ ଗ୍ରାସ ॥୭୬
ଶୁଣି ସନ୍ତୋଷ ମହାବାହୁ ।
ବୋଇଲେ ଏହି ବର ହେଉ ॥୭୭
ଏମନ୍ତ କହି ଭଗବାନ ।
ଗ୍ରହମଣ୍ଡଳେ ଦେଲେ ସ୍ଥାନ ॥୭୮
ତେଣୁ ସେ ରାହୁ ସର୍ବକାଳେ ।
ଗ୍ରାସଇ ରବିଚନ୍ଦ୍ର ବଳେ ॥୭୯
ବଇରୀ ବୁଦ୍ଧି ନ ଛାଡ଼ଇ ।
ଅୟନେ ଅୟନେ ଗୋଡ଼ାଇ ॥୮୦
ଦେବଙ୍କୁ ଦେଇ ସୁଧାପାନ ।
ତକ୍ଷଣେ ପ୍ରଭୁ ଭଗବାନ ॥୮୧
ଦେଖନ୍ତି ଦେବତା ଅସୁର ।
ମାୟା ଛାଡ଼ିଲେ ମାୟାଧର ॥୮୨
ମୋହିନୀରୂପ ଗଲା କେଣେ ।
ଯେ ରୂପ ଅମୃତ କାରଣେ ॥୮୩
କଠୋର-ସାଧେ ଭଗବାନ ।
ଦେବଙ୍କୁ ଦେଲେ ସୁଧାପାନ ॥୮୪
ଏ ରୂପେ ସୁରାସୁରଗଣେ ।
ସମାନ-ଦେଶ-କାଳ-ଧର୍ମେ ॥୮୫
ମନ୍ଥିଲେ ସିନ୍ଧୁ ତୁଲ୍ୟବଳେ ।
ଲଭିଲେ ବିପରୀତ ଫଳେ ॥୮୬
କୃଷ୍ଣର ପାଦ ଯେଣୁ ଧ୍ୟାୟୀ ।
ଦେବେ ଅମୃତ-ଫଳ ପାଇ ॥୮୭
ଅସୁରେ ନ ସେବି ଚରଣ ।
କର୍ମର ଫଳେ ହେଲେ ହୀନ ॥୮୮
ପୁତ୍ର-କଳତ୍ର ଦେହ ଅର୍ଥେ ।
ଯେ ଯାହା କରଇ ଯୁକତେ ॥୮୯
ତାହା ନ କଲେ କୃଷ୍ଣାର୍ପଣ ।
କେବଳ ଶ୍ରମମାତ୍ର ଜାଣ ॥୯୦
ମୂଳେ ସିଞ୍ଚିଲେ ସିନା ଜଳ ।
ବିକଶେ ବୃକ୍ଷ-ପତ୍ର-ଡାଳ ॥୯୧
ଶ୍ରୀକୃଷ୍ଣ ମାୟା ବିଦ୍ୟମାନେ ।
ଯେ ରୂପେ ସମୁଦ୍ର-ମନ୍ଥନେ ॥୯୨
ଦେବଙ୍କୁ ସୁଧାପାନ ଦେଇ ।
ନିଜ ଭୁବନେ ଭାବଗ୍ରାହୀ ॥୯୩
ଦେଖନ୍ତି ସ୍ୱର୍ଗଲୋକେ ମିଳି ।
ଗରୁଡ଼େ ବସି ବନମାଳୀ ॥୯୪
ଯେ ରୂପ ଗରୁଡ଼ ଆସନେ ।
ସୁଜନେ ଚିନ୍ତ ସ୍ଥିର ମନେ ॥୯୫
ବୋଲଇ ଦାସ ଜଗନ୍ନାଥ ।
ଅଷ୍ଟମ ସ୍କନ୍ଧେ ଭାଗବତ ॥୯୬

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଅମୃତମନ୍ଥନେ
ବିଷ୍ଣୁମୋହିନୀରୂପଧାରଣେ ଦେବଗଣ
ଅମୃତପାନେ ନବମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

କହନ୍ତି ବ୍ୟାସଙ୍କର ସୂତ ।
ଶୁଣ ସୁମନେ ପରୀକ୍ଷିତ ॥୧

ଶୁକ ଉବାଚ

କଠୋର ସାଧି ଯାତୁଧାନେ ।
ବିମୁଖ ହେଲେ ସୁଧାପାନେ ॥୨
କୃଷ୍ଣ ଭକତି ଯେଣୁ ନାହିଁ ।
ଅମୃତ ପାଇବେ ସେ କାହିଁ ॥୩
ଦେବଙ୍କୁ ଅମୃତ ପିଆଇ ।
ଗରୁଡ଼େ ବସି ଭାବଗ୍ରାହୀ ॥୪
ନିଜ ଭୁବନେ ଗଲେ ହରି ।
ଶୁଣ ପରୀକ୍ଷ ଦଣ୍ଡଧାରୀ ॥୫
ଏମନ୍ତେ ବିଷ୍ଣୁର ମୋହନେ ।
ନିରାଶ ହୋଇ ସୁଧାପାନେ ॥୬
ସର୍ବଦାନବ ଏକମତେ ।
ଜଣାଇ ବଳିର ଅଗ୍ରତେ ॥୭
ବଳି ସଙ୍ଗତେ ବିଚାରିଲେ ।
ଯୁଦ୍ଧର ଉଦ୍ୟମ ସେ କଲେ ॥୮
ଶତ୍ରୁଙ୍କ କାର୍ଯ୍ୟ ସିଦ୍ଧି ଦେଖି ।
ଭାଳି ସକଳେ ମନଦୁଃଖୀ ॥୯
ଦୈତ୍ୟ-ଦାନବ ଯୁଥେ ଯୁଥେ ।
ବିଚାର କଲେ ଏକମତେ ॥୧୦
ଦେବଙ୍କୁ ବାହୁବଳେ ମାରି ।
ସର୍ବସମ୍ପଦ ଯେବେ ହରି ॥୧୧
ତେବେ ସେ ଜୀବନ ଆମ୍ଭର ।
ସଂଗ୍ରାମେ ହୋଇବ ସୁଫଳ ॥୧୨
ଏମନ୍ତେ ମନରେ ବିଚାରି ।
ଧାଇଁଲେ କରେ ଶସ୍ତ୍ର ଧରି ॥୧୩
ଅମୃତପାନେ ଦେବଗଣ ।
ଇଛନ୍ତି ଦୈତ୍ୟସଙ୍ଗେ ରଣ ॥୧୪
ସ୍ୱଭାବେ ହରି-ପରାୟଣ ।
ସୁଧା ସେ କରିଛନ୍ତି ପାନ ॥୧୫
ଏମନ୍ତେ ଦେବାସୁର ରଣ ।
ସୁଘୋର ସୁଭୀମ ଦାରୁଣ ॥୧୬
ଶର ବରଷି ନିରନ୍ତରେ ।
ସମର କଲେ ଦେବାସୁରେ ॥୧୭
ଶବଦ କରି ବାହୁନାଦେ ।
ଯୁଝନ୍ତି ବିବିଧ-ଆୟୁଧେ ॥୧୮
ବଜାନ୍ତି ରଣଶଙ୍ଖ ଭେରୀ ।
ପଟହ ତୁରଙ୍ଗ ମହୁରୀ ॥୧୯
ସକଳ ମଙ୍ଗଳ ସୁବାଦ୍ୟେ ।
ଗଜ ତୁରଙ୍ଗ ଘୋରନାଦେ ॥୨୦
ଶୁଭିଲା ଶବଦ ତୁମୁଳେ ।
ପ୍ରଳୟସିନ୍ଧୁ କି ଉଛୁଳେ ॥୨୧
ଯୁଦ୍ଧ କରନ୍ତି ଏକେଏକେ ।
ଦନୁଜ ଗଣେ ବୃନ୍ଦାରକେ ॥୨୨
ଅଶ୍ୱକୁ ଅଶ୍ୱ ସଜ କଲେ ।
ହସ୍ତୀକି ହସ୍ତୀ ଘେନି ତୁଲେ ॥୨୩
ନାନା ବାହନେ ବିଜେ କରି ।
ରଣେ ଧାଇଁଲେ ଶସ୍ତ୍ର ଧରି ॥୨୪
ଓଟର ପୃଷ୍ଟେ କେ ବସନ୍ତି ।
କେ ଉଚ୍ଚ ଅଶ୍ୱେ ଆରୋହନ୍ତି ॥୨୫
ଗର୍ଦ୍ଦଭେ ବସି ଅବା ଖରେ ।
କେ ମୃଗ ବାନର ସ୍କନ୍ଧରେ ॥୨୬
କେ ବ୍ୟାଘ୍ରେ କେ ସିଂହଆରୋହେ ।
କେ ଗୃଧ୍ର କଙ୍କ ବକେ ଧାଏଁ ॥୨୭
ଶ୍ୱେନ ଭାସ ବା ତିମିଙ୍ଗିଳେ ।
ଶରଭେ ମହିଷେ କେ ଚଳେ ॥୨୮
କେ ଶିବା କେହୁ କୃକଲଶେ ।
ଶଶକେ କେ ଅବା ମାନୁଷ୍ୟେ ॥୨୯
ଅମୂଲ୍ୟ-ରତ୍ନ ଦଣ୍ଡଛତ୍ର ।
ନୀଳ ଲୋହିତ ଶ୍ୱେତପୀତ ॥୩୦
ବ୍ୟଜନ-ବରହୀ ଚାମରେ ।
ରଙ୍ଗଭୂଷଣ ପାଗ ଶିରେ ॥୩୧
ବିବିଧ ସଂଗ୍ରାମ-ଭୂଷଣେ ।
ଶୋଭନ୍ତି ଦେବାସୁର-ଗଣେ ॥୩୨
ବିବିଧ ତୀକ୍ଷ୍ଣେ ଶସ୍ତ୍ର ଭୁଜେ ।
ବିରାଜେ ରବି ରଶ୍ମି ତେଜେ ॥୩୩
ଏମନ୍ତେ ଦେବାସୁରେ ବଳେ ।
ସ୍ୱଭାବେ ବଳିଷ୍ଠ ସକଳେ ॥୩୪
ଅତି କୁପିତ ଦେବାସୁର ।
କି ଅବା ଦେବା ପଟାନ୍ତର ॥୩୫
ଶୋଭନ୍ତି ମହାବୀରେ ରଣେ ।
ଯେସନେ ଜଳଧି ମନ୍ଥନେ ॥୩୬
ଅସୁର ବଳେ ଝଟକନ୍ତି ।
ଯେ ବଳେ ବଳି ସେନାପତି ॥୩୭
ଶୁଣ ରାଜନ କହୁଁ ତୋତେ ।
ବଳି ମହିମା ଅପ୍ରମିତେ ॥୩୮
ମୟ-ନିର୍ମିତ ଘୋରଯାନ ।
ସ୍ୱଭାବେ ବୈହାୟସ ନାମ ॥୩୯
ସମର ଅର୍ଥେ ସଜ୍ଜ ଯେତେ ।
ସର୍ବପୂରିତ ମୟ ରଥେ ॥୪୦
ମନବଚନେ ଅଗୋଚର ।
ଦୃଶ୍ୟ ଅଦୃଶ୍ୟ ଭୟଙ୍କର ॥୪୧
ଏମନ୍ତ ରଥେ ବଳି ବସେ ।
ବୀରେ ବେଷ୍ଟିତ ଚଉପାଶେ ॥୪୨
ବାମ-ଦକ୍ଷିଣେ ମହାବୀରେ ।
ଛତ୍ର ଚାମର ଧରି କରେ ॥୪୩
ମଧ୍ୟେ ବିରାଜେ ବଳିପ୍ରଭା ।
କିବା ଉପମା ତା'କୁ ଦେବା ॥୪୪
ନକ୍ଷତ୍ରଗଣେ ପୂର୍ଣ୍ଣଶଶୀ ।
ଅସୁର ମଧ୍ୟେ ତେହ୍ନେ ଦିଶି ॥୪୫
ବଳି ସମୀପେ ପନ୍ତିପନ୍ତି ।
ମିଳିଲେ ସର୍ବ ଯୂଥପତି ॥୪୬
ଦେବ ଅସୁରେ ଘୋର ରଣେ ।
ବଳେ ଆବୋରି ଜଣେ ଜଣେ ॥୪୭
କରନ୍ତି ଅଦ୍‌ଭୁତ ସଂଗ୍ରାମ ।
ଶୁଣ ହୋ ଅସୁରଙ୍କ ନାମ ॥୪୮
ନମୁଚି ଶମ୍ବର ଯେ ବାଣ ।
ବିପ୍ରଚିତ୍ତି ଲୋହବଦନ ॥୪୯
ଦ୍ୱିମୂର୍ଦ୍ଧା କାଳନାଭ ହେତି ।
ଇଲ୍ୱଳ ଆଦି ସପ୍ରହେତି ॥୫୦

Dr. Sudhanshu Sekhar Mishra

ଶକୁନି ଭୂତ ସନ୍ତାପନ ।
ବଜ୍ରଦଶନ ବିରୋଚନ ॥୫୧
ହୟଗ୍ରୀବ ଯେ ଶଙ୍କୁଶିରା ।
କପିଳ ନାମେ ମହାବୀରା ॥୫୨
ଜୀମୂତ ଦୁନ୍ଦୁଭି ଅଦ୍‌ଭୁତ ।
ତାରକା ପୁଣି ଚକ୍ରଜିତ ॥୫୩
ଉତ୍କଳ ଶୁମ୍ଭ ଯେ ନିଶୁମ୍ଭ ।
ଅରିଷ୍ଟନେମି ପୁଣି ଜମ୍ଭ ॥୫୪
ତ୍ରିପୁରାଧିପ ଯେଉଁ ମୟ ।
ପୌଲମ ଅରିଷ୍ଟ କାଳେୟ ॥୫୫
ନିବାତକବଚ ସହିତେ ।
ଅପରେ ଦୈତ୍ୟବୀରଯେତେ ॥୫୬
ନ ପାଇ ଅମୃତର ଭାଗ ।
ମନେ ବହିଲେ ମହାରାଗ ॥୫୭
ଦେବଙ୍କୁ ଯୁଦ୍ଧ କରି ବଳେ ।
ଅସୁରେ ବେଢ଼ିଲେ ଗହଳେ ॥୫୮
କରନ୍ତି ସର୍ବେ ଶଙ୍ଖନାଦେ ।
ଦୁନ୍ଦୁଭି ତୁଲେ ବହୁବାଦ୍ୟ ॥୫୯
ଏମନ୍ତେ ବଳି ବଳ ଚାହିଁ ।
ସକଳ ଦେବେ କ୍ରୋଧ ବହି ॥୬୦
ସାଜିଲେ ସୁରପତି ସଙ୍ଗେ ।
ଅଶେଷ ଘୋର ରଣରଙ୍ଗେ ॥୬୧
ଐରାବତ ସ୍କନ୍ଧେ ବସି ।
ପୂର୍ଣ୍ଣିମା ରାତ୍ରେ ଯେହ୍ନେ ଶଶୀ ॥୬୨
ସେ ଯୂଥପତିଙ୍କି ଆବୋରି ।
ଆନନ୍ଦେ ବାଦ୍ୟନାଦ କରି ॥୬୩
ନିଜ ବାହନେ ଶସ୍ତ୍ର ତୁଲେ ।
ଅଶେଷ ଦେବେ ବିଜେ କଲେ ॥୬୪
ରଣସଙ୍କୁଳ ମହାଗୋଳେ ।
ସମୁଦ୍ରତୀରେ ବେନି ବଳେ ॥୬୫
ଶବଦ ଶୁଭଇ ତୁମୁଳେ ।
ମିଳିଲେ ସର୍ବଦିଗପାଳେ ॥୬୬
ଶସ୍ତ୍ର ଉଞ୍ଚାଇ କୋପମନେ ।
ନାମ ଡାକନ୍ତି ଅନ୍ୟ ଅନ୍ୟେ ॥୬୭
ନିକଟେ ମିଳି ଘୋରନାଦେ ।
ଯୁଦ୍ଧ କରନ୍ତି ମାଲବନ୍ଧେ ॥୬୮

ଇନ୍ଦ୍ରର ତୁଲେ ବଳି ଯୁଝେ ।
ଦାରୁଣ ଦେବାସୁର ମାଝେ ॥୬୯
ସ୍କନ୍ଦ ତାରକ ଅବହେଳେ ।
ଯୁଦ୍ଧ କରନ୍ତି ବାହୁବଳେ ॥୭୦
ବରୁଣ ହେତି ବେନିବୀରେ ।
ପ୍ରହେତି ମିତ୍ରେ ଯୁଦ୍ଧ କରେ ॥୭୧
ଯମର ତୁଲେ କାଳନାଭ ।
ବିଶ୍ୱକର୍ମା ମୟଦାନବ ॥୭୨
ଶମ୍ବର ତ୍ୱଷ୍ଟା ତୁଲେ ରଣ ।
ସବିତା ତୁଲେ ବିରୋଚନ ॥୭୩
ନମୁଚି ଯେ ଅପରାଜିତେ ।
ଅଶ୍ୱିନୀ ବୃଷପର୍ବା ସାଥେ ॥୭୪
ସୂର୍ଯ୍ୟର ତୁଲେ ବାଣାସୁର ।
ରାହୁର ତୁଲେ ନିଶାକର ॥୭୫
ପୁଲୋମା ସଙ୍ଗତେ ସମୀର ।
ଅନଳେ କାଳକେତୁ ବୀର ॥୭୬
ଶୁମ୍ଭ ନିଶୁମ୍ଭେ ଭଦ୍ରକାଳୀ ।
ଜମ୍ଭରେ ବୃଷାକପି ମିଳି ॥୭୭
ମହିଷେ ବିଭାବସୁ ଯୁଝେ ।
ଗହଳେ ଦେବାସୁର ମାଝେ ॥୭୮
ଇଲ୍ୱଳ ବାତାପି ସହିତେ ।
ରଣେ ପଶିଲେ ବ୍ରହ୍ମାପୁତ୍ରେ ॥୭୯
ସନକ ତୁଲେ ଅରିନ୍ଦମ ।
ନିର୍ଭୟେ କରନ୍ତି ସଂଗ୍ରାମ ॥୮୦
ଦୁର୍ମର୍ଷ ତୁଲେ ରତିପତି ।
ଉତ୍କଳେ ମାତୃକା ଯୁଝନ୍ତି ॥୮୧
ଗୁରୁ ଭାର୍ଗବେ ଯୁଦ୍ଧ ଘୋର ।
ନାରକା ତୁଲେ ଶନୈଶ୍ଚର ॥୮୨
ନିବାତକବଚ ମରୁତେ ।
କାଳେୟ ବସୁଙ୍କ ସଙ୍ଗତେ ॥୮୩
ପୌଲୋମା ବିଶ୍ୱଦେବା ସଙ୍ଗେ ।
ଯୁଦ୍ଧ କରନ୍ତି ରଣରଙ୍ଗେ ॥୮୪
ଦେବେ ଅସୁରଗଣ ସଙ୍ଗେ ।
ନିର୍ଘାତ ଯୁଦ୍ଧ ରଣରଙ୍ଗେ ॥୮୫
ରୁଦ୍ରଙ୍କ କ୍ରୋଧବଶ ଗଣ ।
ଆବୋରି କଲେ ଘୋରରଣ ॥୮୬

ଏମନ୍ତେ ମହାରଣ ମଧ୍ୟେ ।
ଦେବ ଦାନବ ବାହୁ ଯୁଦ୍ଧେ ॥୮୭
ସମସ୍ତେ ମାଲଯୁଦ୍ଧ ସାରି ।
ଧାଇଁଲେ କରେ ଶସ୍ତ୍ର ଧରି ॥୮୮
ଖଡ୍‌ଗ ତୋମର ଶର ବୃଷ୍ଟି ।
ଭୁଶୁଣ୍ଡି ଚକ୍ର ଗଦା ରିଷ୍ଟି ॥୮୯
ପଟିଶ ଶକ୍ତି ଉଲ୍ମୁ କରେ ।
ପ୍ରାସ ପରଶୁ କେ କୁଠାରେ ॥୯୦
ନିସ୍ତ୍ରିଂଶ ଭଲ୍ଲ ଯେ ମୁଦ୍‌ଗର ।
ପରିଘ ପୁଣି ଭିନ୍ଦିପାଳ ॥୯୧
ଏମନ୍ତେ ନାନାଶସ୍ତ୍ର ଭେଦି ।
ଅସୁରଙ୍କର ଶିର ଛେଦି ॥୯୨
ଗଜ ତୁରଙ୍ଗ ରଥ ରଥୀ ।
ଯୁଦ୍ଧେ ପଡ଼ିଲେ ପନ୍ତିପନ୍ତି ॥୯୩
ଶସ୍ତ୍ର ଖଣ୍ଡିତ କଳେବର ।
ନିରତେ ଗଳଇ ରୁଧିର ॥୯୪
ବାହୁ ହୃଦୟ ଶିର ଛିଡ଼ି ।
ପଡ଼ିଲେ ଦଶନ କାମୋଡ଼ି ॥୯୫
ନାନା-ଆଭରଣ-ଆୟୁଧେ ।
ଭୁଜ ସହିତେ ନାନାଛନ୍ଦେ ॥୯୬
ଗଜ ତୁରଙ୍ଗ ମୃତ୍ୟୁ ପିଣ୍ଡେ ।
ଆଛାଦି ରହେ ଭୂମି ଖଣ୍ଡେ ॥୯୭
କବନ୍ଧ ଉଠି ରଣ ମଧ୍ୟେ ।
ନୃତ୍ୟ କରନ୍ତି ବାଦ୍ୟନାଦେ ॥୯୮
ତୀକ୍ଷ୍ଣ ଖଡ଼ଗ କରେ ଧରି ।
ଧାମନ୍ତେ କମ୍ପେ ବସୁନ୍ଧରୀ ॥୯୯
ବଳି ଯେ ଇନ୍ଦ୍ର ସଙ୍ଗେ ଥିଲା ।
ଅନେକ ବାହୁ ଯୁଦ୍ଧ କଲା ॥୧୦୦
ଜିଣି ନ ପାରି ବାହୁ ଯୁଦ୍ଧେ ।
ବସିଲା ମୟାଯାନ ମଧ୍ୟେ ॥୧୦୧
ଧନୁକେ ଦଶ ଶର ଧରି ।
ଇନ୍ଦ୍ରେ ବିନ୍ଧିଲା କ୍ରୋଧ ଭରି ॥୧୦୨
ତିନି ନାରାଚ ଐରାବତେ ।
ବିନ୍ଧିଲା ଆହ୍ମାର-ଆୟତେ ॥୧୦୩
ଚାରି ଅଶ୍ୱଙ୍କୁ ଚାରିବାଣ ।
ବେଗେ ବିନ୍ଧିଲା ଦୈତ୍ୟରାଣ ॥୧୦୪

Dr. Sudhanshu Sekhar Mishra

ମାତଳି ସାରଥି ଇନ୍ଦ୍ରର ।
ଥିଲା ଯେ ରଥର ଉପର ॥୧୦୫
ଯହୁଁ ବିନ୍ଧିଲା ବୀର ଡାକି ।
ଇନ୍ଦ୍ର ଧାଇଁଲେ ତାହା ଦେଖି ॥୧୦୬
ବଳିର ଯେତେକ ନାରାଚ ।
ବେଗେ ଛେଦିଲେ ଦେବରାଜ ॥୧୦୭
ବଳିକି ଚାହିଁ ମନ୍ଦହାସେ ।
ବେଗେ ମିଳିଲେ ତା'ର ପାଶେ ॥୧୦୮
ଇନ୍ଦ୍ର ଅଦ୍‌ଭୁତ କର୍ମ ଚାହିଁ ।
ବଳି ଅତ୍ୟନ୍ତ କ୍ରୋଧ ବହି ॥୧୦୯
ପୁଣି ଶକ୍ତିଏ ଧରି କରେ ।
ପେଷିଲା ବାସବ ଉପରେ ॥୧୧୦
ଉଲ୍‌କା ଯେସନେ ଶୂନ୍ୟମାର୍ଗେ ।
ପଡ଼ି ବିରାଜେ ଦଶ ଦିଗେ ॥୧୧୧
ଯେ ଶକ୍ତି ବଳି ପେଷିଥିଲା ।
ଇନ୍ଦ୍ର ତା ଇଷିତେ ଛେଦିଲା ॥୧୧୨
ଏମନ୍ତେ ଶୂଳ କୁନ୍ତ ରଷ୍ଟି ।
ବଳି ହସ୍ତରୁ ଇନ୍ଦ୍ର କାଟି ॥୧୧୩
ହରଷେ କରେ ଶଙ୍ଖନାଦ ।
କ୍ଷୀଣ-ଶସ୍ତ୍ରେ ବଳି ସ୍ତବଧ ॥୧୧୪
ନ ପାରି ମାୟା ପ୍ରକାଶିଲା ।
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା ॥୧୧୫
ମାୟାରେ ଶିଳାବୃଷ୍ଟି ଘନେ ।
ମେଘ ଆଚ୍ଛାଦିଲା ଗଗନେ ॥୧୧୬
ଦେବଙ୍କ ଉପରେ ବରଷେ ।
ବିଜୁଳି ଯେହ୍ନେ ମେଘୁଁ ଖସେ ॥୧୧୭
ପୁଣି କ୍ଷଣକେ ବହୁ ବୃଷ୍ଟି ।
ଶୁଷ୍କ-ଇନ୍ଧନ କୋଟି କୋଟି ॥୧୧୮
ଦାବାଗ୍ନି ଦେବଙ୍କ ଉପରେ ।
ପଡ଼ନ୍ତି ମଣ୍ଡଳ ସମୀରେ ॥୧୧୯
ଶିଳା ବରଷେ ନିରନ୍ତରେ ।
ଗହଳେ ଦେବଙ୍କ ଉପରେ ॥୧୨୦
ପଡ଼ନ୍ତି ମହୋରଗଗଣ ।
ବୃଶ୍ଚିକ ବୃଷ୍ଟି ଅନୁକ୍ଷଣ ॥୧୨୧
ବରାହ ସିଂହ ବ୍ୟାଘ୍ର ହସ୍ତୀ ।
ସମ୍ମୁଖେ ଗର୍ଜନ କରନ୍ତି ॥୧୨୨

ଶତ ସହସ୍ର ଯାତୁଧାନୀ ।
ଅନେକ ଶାକିନୀ ଡାକିନୀ ॥୧୨୩
ବିବସ୍ତ୍ର ହୋଇ ଶୂଳ କରେ ।
ପିଟନ୍ତି ଦେବଙ୍କ ଉପରେ ॥୧୨୪
ରାକ୍ଷସେ ଛେଦ-ଭେଦ ନାଦେ ।
ସମରେ ଗଗନ ମଣ୍ଡଳେ ॥୧୨୫
ପ୍ରଳୟ କାଳେ ମେଘମାଳେ ।
ଯେସନେ ମିଳିଲେ ଆନନ୍ଦେ ॥୧୨୬
ଗଭୀର ଘୋର ନାଦ କରି ।
ସଘନେ ବରଷନ୍ତି ବାରି ॥୧୨୭
ପୁଣି କ୍ଷଣକେ ଅଗ୍ନି ବୃଷ୍ଟି ।
ନାରାଚ ପେଷେ କୋଟି କୋଟି ॥୧୨୮
ପ୍ରଳୟ ପ୍ରାୟେ ଅତିବେଗେ ।
ଅଗ୍ନି ବଢ଼ିଲା ଚାରିଦିଗେ ॥୧୨୯
ସମୁଦ୍ରେ ପ୍ରଳୟ ଲହରୀ ।
ଉଠିଲା ଘୋର ନାଦ କରି ॥୧୩୦
ପ୍ରଚଣ୍ଡ ବାତେ ଉର୍ମିଗଣ ।
ଉଠନ୍ତି ଦିଶଇ ଭୀଷଣ ॥୧୩୧
ଏମନ୍ତେ ଅସୁରଙ୍କ ମାୟା ।
ଦୃଶ୍ୟ-ଅଦୃଶ୍ୟ ନାନାକାୟା ॥୧୩୨
ନାନାପ୍ରକାର ମାୟାବଳେ ।
ଯୁଝିଲେ ଦେବଙ୍କର ତୁଲେ ॥୧୩୩
ଅସୁର ମାୟାବଳ ଦେଖି ।
ତ୍ରିଦଶେ ସମର ଉପେକ୍ଷି ॥୧୩୪
ବିକଳେ ଭ୍ରମନ୍ତି ଗଗନେ ।
ଅସୁର ମାୟାବଳେ ଛନ୍ନେ ॥୧୩୫
ରହି ନ ପାରି ସ୍ୱର୍ଗପଥେ ।
ବିଷ୍ଣୁଙ୍କୁ ଧ୍ୟାନ କଲେ ଚିତ୍ତେ ॥୧୩୬
ଦେବଙ୍କ ଭୟ ଦେଖି ହରି ।
ଗରୁଡ଼-ପୃଷ୍ଠେ ବିଜେ କରି ॥୧୩୭
ପୀତବସନ ପରିଧାନ ।
ସୁରଙ୍ଗ-କମଳ ଲୋଚନ ॥୧୩୮
ଯୁଦ୍ଧେ ଅଇଲେ ଅଷ୍ଟଭୁଜେ ।
କର୍ଣ୍ଣେ କୁଣ୍ଡଳ ରତ୍ନସାଜେ ॥୧୩୯
ଶ୍ରୀବତ୍ସ-କଉସ୍ତୁଭ ମଣି ।
ଅମୂଲ୍ୟ ରତ୍ନେ ସୁଖଞ୍ଜଣି ॥୧୪୦

ଦିବ୍ୟମୌକ୍ତିକ ହାର ସଙ୍ଗେ ।
ବିବିଧ ରତ୍ନମାଳା ଅଙ୍ଗେ ॥୧୪୧
ଶସ୍ତ୍ରେ ଶୋଭିତ ଦିଶେ କର ।
ଶଙ୍ଖାବ୍ଜ-ଗଦା ଚକ୍ରଧର ॥୧୪୨
ଏମନ୍ତ ରୂପେ ଦଇତ୍ୟାରି ।
ଦେବଙ୍କ ମଧ୍ୟେ ବିଜେକରି ॥୧୪୩
ଦେବଙ୍କୁ ମାୟା ଘୋଟିଥିଲା ।
ବିଷ୍ଣୁ-ଦର୍ଶନେ ନାଶ ଗଲା ॥୧୪୪
ତ୍ରିଦଶେ ଦେଖନ୍ତି ଆକାଶେ ।
ତମ ଯେସନେ ରବିତ୍ରାସେ ॥୧୪୫
ଜାଗ୍ରତେ ସ୍ୱପ୍ନ ଯେହ୍ନେ ମିଛ ।
ଏ ଭାବେ ଦେଖିଲେ ପ୍ରତ୍ୟକ୍ଷ ॥୧୪୬
ଅସୁର ମାୟା ନାଶ ଗଲା ।
ଦେବଙ୍କ ଆନନ୍ଦ ବଢ଼ିଲା ॥୧୪୭
ହରି-ସ୍ମରଣେ ବନ୍ଧ-ମୋକ୍ଷ ।
ଏ ଭାବେ ବୁଝିଲେ ପ୍ରତ୍ୟକ୍ଷ ॥୧୪୮
ଦେବଙ୍କ ମଧ୍ୟେ କାଳନେମି ।
ଲୁଚି ଯେ ଥିଲା ମାୟାଘେନି ॥୧୪୯
ଶୂଳ ବୁଲାଇ ଅନ୍ତରୀକ୍ଷେ ।
ମିଳିଲା ଗୋବିନ୍ଦ ସମକ୍ଷେ ॥୧୫୦
ପିଟନ୍ତେ ଗରୁଡ଼ ଉପରେ ।
ହରି ଧଇଲେ ବାମକରେ ॥୧୫୧
ସେ ଶୂଳ କାଳନେମି ମୁଣ୍ଡେ ।
ହରି ପ୍ରହାରିଲେ ପ୍ରଚଣ୍ଡେ ॥୧୫୨
ବାଜି ସହିତେ ମହାସୁର ।
ତକ୍ଷଣେ ହେଲା ଶତେ ଚୂର ॥୧୫୩
ମାଳୀ ସୁମାଳୀ ବେନିବୀରେ ।
ଦେଖି ମିଳିଲେ ଅତି ଖରେ ॥୧୫୪
ତ୍ରିଶୂଳ ଗୋବିନ୍ଦ ଉପରେ ।
ପ୍ରହାର କଲେ ମହାଘୋରେ ॥୧୫୫
ତାହାଙ୍କ ତେଜ ଦେଖି ହରି ।
ସୁଦରଶନ କରେ ଧରି ॥୧୫୬
ସେ ବେନିବୀର ମୁଣ୍ଡ ହାଣି ।
ଶଙ୍ଖଶବଦେ ଚକ୍ରପାଣି ॥୧୫୭
ମିଳିଲେ ଦେବାସୁର ମଧ୍ୟେ ।
ତ୍ରିଦଶେ ଦେଖନ୍ତି ଆନନ୍ଦେ ॥୧୫୮

Dr. Sudhanshu Sekhar Mishra

ସେ ହରି ଚରଣ କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ॥୧୫୯
ଅଷ୍ଟମ ସ୍କନ୍ଧେ ଭାଗବତ ।
ଅଦ୍‌ଭୁତ ଗୋବିନ୍ଦ ଚରିତ ॥୧୬୦
ଭାଷା-ପ୍ରବନ୍ଧେ ହରିଗୀତ ।
କହଇ ବିପ୍ର ଜଗନ୍ନାଥ ॥୧୬୧

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଅଷ୍ଟମ ସ୍କନ୍ଧେ ଦେବାସୁର ସଂଗ୍ରାମେ ଦଶମୋଽଧ୍ୟାୟଃ ॥

---

## ଏକାଦଶ ଅଧ୍ୟାୟ

କହନ୍ତି ବ୍ୟାସଙ୍କର ଚାଟ ।
ଶୁଣ ହେ ପରୀକ୍ଷିତ ରାଟ ॥୧

ଶୁକ ଉବାଚ

ହରିଙ୍କି ଦେଖି ଦେବଗଣେ ।
ପୁଣି ମିଳିଲେ ଘୋର ରଣେ ॥୨
ଗୋବିନ୍ଦ-ଅନୁକମ୍ପା ବଳେ ।
ସମରେ ରହିଲେ ନିଷ୍କଳେ ॥୩
ଇନ୍ଦ୍ର ପବନ ଆଦି ବଳେ ।
ବେଗେ ମିଳିଲେ ଦିଗପାଳେ ॥୪
ନିରତେ ଅସୁରଙ୍କ ଗାତ୍ରେ ।
ପ୍ରହାର କଲେ ନାନାଶସ୍ତ୍ରେ ॥୫
ଦେବଙ୍କ ଶସ୍ତ୍ରାଘାତେ ଫୁଟି ।
ଅସୁର ମଲେ କୋଟିକୋଟି ॥୬
ଅସୁରବଳ ଭଗ୍ନ ଦେଖି ।
ଇନ୍ଦ୍ର ଯେ ସମର ଉପେକ୍ଷି ॥୭
ବଳି ସମୀପେ ବେଗେ ମିଳି ।
ବଜ୍ର ଉଞ୍ଚାଇ ମହାବଳୀ ॥୮
ବୋଲଇ ଅତି କୋପମନେ ।
ଅତ୍ୟନ୍ତ କର୍କଶ ବଚନେ ॥୯
ତୁ ଯେ ବୋଲଉ ମହାବୀର ।
ସମ୍ଭାଳ ବଜ୍ରଘାତ ମୋ'ର ॥୧୦
ଏମନ୍ତ କହି ବଜ୍ର ଧରି ।
ବୁଲାଇ ଅନ୍ତରାଳ କରି ॥୧୧
ଶୂନ୍ୟେ ବୁଲାନ୍ତେ ଶସ୍ତ୍ରବର ।
ଦେଖି ଡରିଲେ ଦେବାସୁର ॥୧୨
ଅସୁରେ ଦେଖି ହାହାପଦେ ।
ବଳି ଗର୍ଜ୍ଜଇ ଘୋରନାଦେ ॥୧୩
ବଳି-ବଦନ ଇନ୍ଦ୍ର ଚାହିଁ ।
ନିନ୍ଦିତ-ବଚନ ବୋଲଇ ॥୧୪
ରେ ମୂଢ଼ ମୋତେ ମାୟା କରି ।
ଜିଣିବା ପ୍ରାୟ ମନେ ଧରି ॥୧୫
ନଟର ପ୍ରାୟେ ଛନ୍ଦ କଲୁ ।
ନିଜ ସ୍ୱଭାବ ଦେଖାଇଲୁ ॥୧୬
କୁହୁକେ ଯେହ୍ନେ ନଟଜନ ।
ମାୟାରେ ମୋହେ ପ୍ରାଣୀମନ ॥୧୭
ମାୟାର ବଳେ ସ୍ୱର୍ଗ ଜିଣି ।
ଇଚ୍ଛା କରନ୍ତି ଯେବା ପ୍ରାଣୀ ॥୧୮
ତାହାଙ୍କ ଦର୍ପ ଗଞ୍ଜି ବେଗେ ।
ମୁହିଁ କ୍ଷେପଇ ଅଧୋଭାଗେ ॥୧୯
ଏବେ ହୋ ମହାସୁର ତୋ'ର ।
ଅଙ୍ଗ କୁଳିଶୁଁ ରକ୍ଷାକର ॥୨୦
ଏ ବଜ୍ରେ ତୋ'ର ଶିର ଛେଦି ।
ରଖିବି ଅମରେ ସମ୍ପାଦି ॥୨୧
ଏବେ ମୋ ବଜ୍ରାଘାତ ସହ ।
ଜ୍ଞାତିଙ୍କ ତୁଲେ ଗୁଣ୍ଡ ହୁଅ ॥୨୨
ଏମନ୍ତେ ଇନ୍ଦ୍ରର ବଚନେ ।
ବଳି ବୋଲଇ କୋପମନେ ॥୨୩

ବଳି ଉବାଚ

କାଳର ବଳେ ଏ ସଂସାରେ ।
ଯୁଦ୍ଧେ ମିଳନ୍ତି ଯେତେ ବୀରେ ॥୨୪
ଜୟ ଅଜୟ କୀର୍ତ୍ତି ଯଶ ।
ଯେବା ରହଇ ଅବଶେଷ ॥୨୫
ଯୁଦ୍ଧେ ମାରିଣ ଜୟ ଘୋଷି ।
ମରଣେ ସ୍ୱର୍ଗେ ଯେଣୁ ବସି ॥୨୬
ଏଣୁ ଶୟଳେ ଯେତେ ଜନ ।
କାଳ ଗରାସେ ନିବନ୍ଧନ ॥୨୭
ପଣ୍ଡିତ ଜନ ଏହା ଜାଣି ।
ଧର୍ମ୍ମ-ଅଧର୍ମ୍ମ ପରିମାଣି ॥୨୮
ଶୋକ-ହରଷ ପଥେମନ ।
କେବେହେଁ ନ କରନ୍ତି ଛନ୍ନ ॥୨୯
ଆମ୍ଭେ ସକଳ ଏହା ଜାଣି ।
ଆଗମ-ନିଗମ ପ୍ରମାଣି ॥୩୦
ଏଣୁ ଏ ତୋହର ବଚନେ ।
ମର୍ମ୍ମ-ତାଡ଼ନ ଅନୁମାନେ ॥୩୧
ଆମ୍ଭେ ତା କେବେହେଁ ନ ଗଣୁ ।
ତୁମ୍ଭର ବୀରପଣ ଜାଣୁ ॥୩୨
ଶୁକ କହନ୍ତି ତୋଷମନ ।
ଶୁଣ ହେ ପରୀକ୍ଷ ରାଜନ ॥୩୩

ଶୁକ ଉବାଚ

ଏମନ୍ତ ଇନ୍ଦ୍ର ଆଗେ କହି ।
ବଳି ଧନୁରେ ଗୁଣ ଦେଇ ॥୩୪
ଆକର୍ଣ୍ଣ ପୂରି ଦଶବାଣ ।
ବେଗେ ବିନ୍ଧିଲା ଦୈତ୍ୟରାଣ ॥୩୫
ଇନ୍ଦ୍ର ଉପରେ ବେଗେ ବାଜି ।
ତଳେ ପଡ଼ିଲେ ସର୍ବେ ଭାଜି ॥୩୬
ଗଜ ଶରୀରେ ପୁଷ୍ପମାଳ ।
ବାଜି ପଡଇ ଜେହ୍ନେ ତଳ ॥୩୭
ଇନ୍ଦ୍ର ଅମୋଘ ବଜ୍ର ଧରି ।
ହୁଙ୍କାରେ ବଳିକି ପ୍ରହାରି ॥୩୮
ହୃଦୟେ ବାଜି ଶସ୍ତ୍ରଗୋଟି ।
ତକ୍ଷଣେ ବକ୍ଷସ୍ଥଳ ଫୁଟି ॥୩୯
ବଳି ପଡ଼ିଲା ମହୀତଳେ ।
ଶୂନ୍ୟେ ଦେଖନ୍ତି ଦିଗପାଳେ ॥୪୦
ବଳିକି ଭୂମିଗତ ଚାହିଁ ।
ଜମ୍ଭ ମିଳିଲା ବେଗେ ଯାଇ ॥୪୧
ଦେଖିଣ ସଖାର ମରଣ ।
ଆବୋରି କଲା ଘୋରରଣ ॥୪୨

Dr. Sudhanshu Sekhar Mishra

ସିଂହ-ବାହନେ ମହାବଳୀ ।
ହୁଙ୍କାର ନାଦେ ଗଦା ତୋଳି ॥୪୩
ଇନ୍ଦ୍ର ଉପରେ ପ୍ରହାରିଲା ।
ସେ ଗଦା ହସ୍ତୀରେ ବାଜିଲା ॥୪୪
ଗଦା-ପ୍ରହାରେ ଜ୍ଞାନ ହାରି ।
ଗଜ ପଡ଼ିଲା ଇନ୍ଦ୍ର ଧରି ॥୪୫
ଅଗ୍ରଚରଣ ବେନି ପାଡ଼ି ।
ଗର୍ଜଇ ମେଘ ଘଡ଼ଘଡ଼ି ॥୪୬
ପଡ଼ିଲା ଅଚେତନ ହୋଇ ।
ଦେଖି ମାତଳି ବେଗେ ଧାଇଁ ॥୪୭
ରଥେ ସହସ୍ର ଅଶ୍ୱ ଯୋଖି ।
ଇନ୍ଦ୍ର ନିକଟେ ଦେଲା ରଖି ॥୪୮
ବିମାନ ଦେଖି ସୁରପତି ।
ତକ୍ଷଣେ ତେଜି ନିଜ ହସ୍ତୀ ॥୪୯
ବିମାନେ ବସି ବଜ୍ର ହସ୍ତେ ।
ସମରେ ରହିଲା ଆୟତ୍ତେ ॥୫୦
ଜମ୍ଭ ମାତଳି-କର୍ମ ଚାହିଁ ।
ଧନ୍ୟ-ବଚନେ ପ୍ରଶଂସଇ ॥୫୧
ଜଳନ୍ତା ଶୂଳ ଧରି ବେଗେ ।
ପିଟିଲା ମାତଳିର ଅଙ୍ଗେ ॥୫୨
ସେ ଶୂଳ-ପ୍ରହାର ମାତଳି ।
ସହେ ସ୍ୱଭାବେ ମହାବଳୀ ॥୫୩
ଇନ୍ଦ୍ର ଧାଇଁଲା ଦେଖି ବେଗେ ।
ବଜ୍ର ପ୍ରହାରି ଜମ୍ଭ ଅଙ୍ଗେ ॥୫୪
ବେଗେ ନାଶିଲା ତା'ର ପ୍ରାଣ ।
ଶୁଣ ପାଣ୍ଡବ ନୃପରାଣ ॥୫୫
ଜମ୍ଭ ମରଣ ବଜ୍ରାଘାତେ ।
ଦେଖି ତାହାର ଜ୍ଞାତି ଯେତେ ॥୫୬
ନାରଦ ମୁଖୁଁ ବାକ୍ୟ ଶୁଣି ।
ଜୟ ଅଜୟ ନ ପ୍ରମାଣି ॥୫୭
ନମୁଚି ବଳ ପାକ ସଙ୍ଗେ ।
ଧାଇଁଲା ଶସ୍ତ୍ର ଘେନି ରାଗେ ॥୫୮
ଇନ୍ଦ୍ର ନିକଟେ ବେଗେ ମିଳି ।
ପୁରୁଷ ବାକ୍ୟେ ଦେଇ ଗାଳି ॥୫୯
ଶସ୍ତ୍ର ବରଷନ୍ତି ଗହଳେ ।
ଯେସନେ ଆକାଶ ମଣ୍ଡଳେ ॥୬୦
ପବନ ବଳେ ମେଘମାଳ ।
ପର୍ବତେ ବରଷନ୍ତି ଜଳ ॥୬୧
ଗର୍ଜନ କରି ବାଣପନ୍ତି ।
ରଥ ଉପରେ ବରଷନ୍ତି ॥୬୨
ବଳ ସହସ୍ରେ ଶର ସନ୍ଧି ।
ଅଶ୍ୱଙ୍କ ଉପରକୁ ବିନ୍ଧି ॥୬୩
ଦଶ ନାରାଚେ ଦେବରାଜ ।
ଛେଦିଲେ ସହସ୍ର ନାରାଜ ॥୬୪
ଶର ସମୂହ ଭଗ୍ନ ଗଲା ।
ତା' ଦେଖି ପାକ କୋପ କଲା ॥୬୫
ଧନୁ ଆକର୍ଷି କର୍ଣ୍ଣମୂଳେ ।
ବେନି ନାରାଚ କୋପାନଳେ ॥୬୬
ମାତଳି ଉପରେ ପ୍ରହାରେ ।
ଅଦ୍‌ଭୁତ ଘୋରନାଦ କରେ ॥୬୭
ନମୁଚି କରି ମହାରୋଷ ।
ବାଣ ବିନ୍ଧିଲା ପଞ୍ଚଦଶ ॥୬୮
ସୁବର୍ଣ୍ଣ ପକ୍ଷ ଲୌହମୁଖେ ।
ଇନ୍ଦ୍ର ତା' ଦୂରେ ଥାଇ ଦେଖେ ॥୬୯
ବିନ୍ଧି ଗର୍ଜଇ ଘୋର ରଣେ ।
ଜଳଦ ଅମ୍ବରେ ଯେସନେ ॥୭୦
ଏମନ୍ତେ ଅସୁରଙ୍କ ଶସ୍ତ୍ରେ ।
ଆଚ୍ଛାଦେ ଦେବରାଜ ରଥେ ॥୭୧
ବରଷାକାଳ ରବି ଯେହ୍ନେ ।
ଜୀମୂତ ଅଚ୍ଛାଦେ ଗଗନେ ॥୭୨
ଅସୁର-ରଣରଙ୍ଗ ଦେଖି ।
ଦେବେ ହୋଇଲେ ମହାଦୁଃଖୀ ॥୭୩
ଅନାଥ ହେଲେ ରିପୁ ଡରେ ।
ବଣିକେ ଯେହ୍ନେ ସିନ୍ଧୁନୀରେ ॥୭୪
ଅସୁରବଳ ମଧ୍ୟ ଗତେ ।
ଦେବେ ପଡ଼ିଲେ ଅନାୟତ୍ତେ ॥୭୫
ପିଞ୍ଜରେ ଯେହ୍ନେ ପକ୍ଷୀଗଣେ ।
ଇନ୍ଦ୍ର ଯେ ଥିଲେ ଘୋର ରଣେ ॥୭୬
ଆବୋରି ଥିଲେ ଯେ ଦାନବ ।
ଏମନ୍ତ ସମୟେ ବାସବ ॥୭୭
ବାହାର ହେଲେ ଦିବ୍ୟ ରଥେ ।
ରବି ଯେସନେ ନିଶି ଅନ୍ତେ ॥୭୮
ଅସୁର-ବାଣେ ଦେବେ ଦୁଃଖୀ ।
ସମ୍ଭ୍ରମେ ଇନ୍ଦ୍ର ତାହା ଦେଖି ॥୭୯
ବେଗେ ଧାଇଁଲେ ରଣ ମଧ୍ୟେ ।
ବଜ୍ର ଉଞ୍ଚାଇ ଘୋର ନାଦେ ॥୮୦
ସେ ଅଷ୍ଟଧାର ବଜ୍ରାଘାତେ ।
ଜୀମୂତେ ଯେହ୍ନେ ଘୋରବାତେ ॥୮୧
ବଳ ପାକର ଶିର ହାଣି ।
ଘୋର ଶବଦେ ବଜ୍ରପାଣି ॥୮୨
ଦେଖି ତା'ଙ୍କର ବନ୍ଧୁ କୁଳ ।
ବିକଳେ ପାଡ଼ନ୍ତି ଚହଳ ॥୮୩
ନମୁଚି ତା'ଙ୍କ ବଧ ଦେଖି ।
ଦଣ୍ଡେ ହୋଇଲା ଅଶ୍ରୁମୁଖୀ ॥୮୪
ଶୋକ ସାଗରେ ସେ ବୁଡ଼ିଲା ।
ପୁଣି କ୍ଷଣକେ କୋପକଲା ॥୮୫
ଲୌହ ନିର୍ମିତ ଶୂଳ କରେ ।
ଘେନି ଧାଇଁଲା ଧାଡିକାରେ ॥୮୬
ସେ ଶୂଳ ସୁବର୍ଣ୍ଣେ ବିରାଜେ ।
ଚଳ-ପ୍ରଚଳେ ଘଣ୍ଟି ବାଜେ ॥୮୭
ସେ ଶୂଳ ଘେନି ଅତି ବେଗେ ।
ମିଳିଲା ସୁରନାଥ ଆଗେ ॥୮୮
ଇନ୍ଦ୍ର ଉପରେ ପ୍ରହାରିଲା ।
ନିର୍ଭୟେ ସିଂହନାଦ କଲା ॥୮୯
ଶୂଳ ଆସନ୍ତେ ଶୂନ୍ୟ ପଥେ ।
ବାସବ ଧନୁ ଧରି ହସ୍ତେ ॥୯୦
ବାଣ ଛେଦିଲା ଶତେ ଖଣ୍ଡେ ।
ପାଷାଣ ଯେହ୍ନେ ଛତୁପିଣ୍ଡେ ॥୯୧
ପୁଣି କୁଳିଶେ ପୁରନ୍ଦର ।
ପେଷିଲା ନମୁଚି କନ୍ଧର ॥୯୨
ବଜ୍ର-ପ୍ରହାର ନ କାଟିଲା ।
କନ୍ଧରୁ ଚର୍ମ ନ ଛିଡ଼ିଲା ॥୯୩
ତା ଦେଖି ଇନ୍ଦ୍ର ବିଚାରଇ ।
ଅଦ୍‌ଭୁତ ଦେଖିଲା ତା ନାହିଁ ॥୯୪
ବଜ୍ରରୁ ବଞ୍ଚିଲା କେମନ୍ତେ ।
ଏ ବଡ଼ ସଂଶୟ ମୋ' ଚିତ୍ତେ ॥୯୫
ଏ ଶସ୍ତ୍ର ଅସୁରଙ୍କୁ ରଣେ ।
ପ୍ରହାର କଲି ଅକାରଣେ ॥୯୬

Dr. Sudhanshu Sekhar Mishra

ଏମନ୍ତେ ରଣ-ମଧ୍ୟଗତେ ।
ଶବଦ ଶୁଭେ ଅଦଭୁତେ ॥୯୭
ଶୁଣ ହେ ଶକ୍ର ଏକଚିତ୍ତେ ।
ନ ଭେଦେ ଶୁଷ୍କ ଆର୍ଦ୍ର ଶସ୍ତ୍ରେ ॥୯୮
ପୂର୍ବେ ଏ କଲା ତପ ଘୋର ।
ଏହାକୁ ଦେଇଅଛୁ ବର ॥୯୯
ଅଜେୟ ହୋଇଲା ସ୍ୱଭାବେ ।
ଅଜୟ ଯୁଦ୍ଧ ମହାର୍ଣ୍ଣବେ ॥୧୦୦
ଶୁଷ୍କ ଆର୍ଦ୍ରକ ଅସ୍ତ୍ରଶସ୍ତ୍ରେ ।
ଏଣୁ ନ ଭେଦେ ଏହା ଗାତ୍ରେ ॥୧୦୧
ଏବେ ତୁ ଶୁଣ ମଘବାନ ।
ଏହା ମରଣେ କର ଧ୍ୟାନ ॥୧୦୨
ଯେ ତୋତେ ଦିଶେ ଧ୍ୟାନମାର୍ଗେ ।
ତେଣେ ଜୀବନ ହରେ ବେଗେ ॥୧୦୩
ଏମନ୍ତେ ଶୂନ୍ୟବାଣୀ ଶୁଣି ।
ବାସବ ଧ୍ୟାନେ ମନେ ଗୁଣି ॥୧୦୪
ଧ୍ୟାନେ ଦେଖଇ ଜଳ-ଫେନ ।
ତା' ଦେଖି ବିଚାରଇ ମନ ॥୧୦୫
ଏ ଆର୍ଦ୍ର-ଶୁଷ୍କ ଯେ ବୋଲାଇ ।
ଏଣେ ନାଶିବି ତା'ର ଦେହୀ ॥୧୦୬
ଏମନ୍ତ ମନେ ବିଚାରନ୍ତେ ।
ଫେନ ମିଳିଲା ଆସି ହସ୍ତେ ॥୧୦୭
ନମୁଚି ଅଙ୍ଗେ ପ୍ରହାରିଲା ।
ତକ୍ଷଣେ ଶିର ତା' ଛିଡ଼ିଲା ॥୧୦୮
ସମରେ ନମୁଚି ମରଣେ ।
ମିଳିଲେ ଋଷିଦେବଗଣେ ॥୧୦୯
ଇନ୍ଦ୍ର ଉପରେ ପୁଷ୍ପବୃଷ୍ଟି ।
କରନ୍ତି ଚିତ୍ତେ ହୋଇ ତୁଷ୍ଟି ॥୧୧୦

ଗନ୍ଧର୍ବେ ଅପସରା ବୃନ୍ଦେ ।
ନୃତ୍ୟ କରନ୍ତି ଗୀତନାଦେ ॥୧୧୧
ଜୟଦୁନ୍ଦୁଭି ରଣେ ବାଜେ ।
ଦେବ-ଦାନବ ରଣମାଝେ ॥୧୧୨
ଏହି ପ୍ରକାରେ ଦିଗପାଳେ ।
ବରୁଣ ପବନ ଅନଳେ ॥୧୧୩
ଅସୁରବଳ ସର୍ବ ମାରି ।
ପଶୁଙ୍କୁ ଯେସନେ କେଶରୀ ॥୧୧୪
ଅସୁରବଳ ଭଗ୍ନ ଶୁଣି ।
ନାରଦେ ପେଷି କୁଶପାଣି ॥୧୧୫
ଦେବଗଣଙ୍କୁ ବୋଧ କଲେ ।
ଯୁଦ୍ଧ ନ କର ଆଜ୍ଞା ଦେଲେ ॥୧୧୬
ନାରଦ ସର୍ବ ଦେବଗଣେ ।
ପ୍ରବୋଧ କଲେ ଜଣେ ଜଣେ ॥୧୧୭
ବୋଲନ୍ତି ଦେବଗଣ ଚାହିଁ ।
ସମର କରୁଛ କିପାଇଁ ॥୧୧୮
ସିନ୍ଧୁ ମନ୍ଥନେ ପାଇ ପ୍ରାସ ।
ଅସୁରେ ହୋଇଲେ ନିରାଶ ॥୧୧୯
ତୁମ୍ଭେ ଅମୃତ ପାନ କରି ।
ଲଭିଲ ସ୍ୱର୍ଗ-ଶୁଭ-ଶିରୀ ॥୧୨୦
କହନ୍ତି ଶୁକ ବ୍ରହ୍ମଯତି ।
ଶୁଣ ପରୀକ୍ଷ ମହୀପତି ॥୧୨୧
ନାରଦ ବାକ୍ୟ ଶୁଣି ଭଲେ ।
ତ୍ରିଦଶେ ସମର ନ କଲେ ॥୧୨୨
ଅନନ୍ଦେ ନୃତ୍ୟ ଗୀତ କରି ।
ଦେବେ ଚଳିଲେ ସ୍ୱର୍ଗପୁରୀ ॥୧୨୩
ଯୁଦ୍ଧେ ଅସୁର ଯେତେ ଥିଲେ ।
ନାରଦ ବାକ୍ୟେ ବାହୁଡ଼ିଲେ ॥୧୨୪

ବ୍ରହ୍ମା ନନ୍ଦନ ବାକ୍ୟ ମାନି ।
ବଳିର ମୃତ୍ୟୁପିଣ୍ଡ ଘେନି ॥୧୨୫
ସକଳେ ମିଳି ଏକମେଳେ ।
ପଶ୍ଚିମ ଅସ୍ତଗିରି ଗଲେ ॥୧୨୬
ଯେ ଅବା ଶିର ଉର ଛିଡ଼ି ।
ରଣଭୂମିରେ ଥିଲେ ପଡ଼ି ॥୧୨୭
ଶୁକ୍ରର ମୃତ୍ୟୁ ସଞ୍ଜୀବନେ ।
ସକଳେ ଲଭିଲେ ଜୀବନେ ॥୧୨୮
ବଳିକି ଶୁକ୍ର ଘେନି କୋଳେ ।
ଆସନେ ବସାଇ ନିଶ୍ଚଳେ ॥୧୨୯
ଶୁକ୍ର-ସ୍ୱରଣେ ବଳି ସ୍ମୃତି ।
ଲଭିଲା ଇନ୍ଦ୍ରି ବଳ ବୃତ୍ତି ॥୧୩୦
ଶୁକ୍ରଙ୍କ ମନ୍ତ୍ରେ ତୋଷ ହୋଇ ।
ବଳି ଉଠିଲା ଜ୍ଞାନ ପାଇ ॥୧୩୧
ଯୁଦ୍ଧେ ହାରିବା କୋପାରମ୍ଭେ ।
ସଂହରି ରହେ ନିଜ ଦମ୍ଭେ ॥୧୩୨
ସୁଜନେ ଏଣେ କର ଭାବ ।
ଏ ଭାବେ ସଂସାରୁ ତରିବ ॥୧୩୩
ବୋଲଇ ଦାସ ଜଗନ୍ନାଥ ।
ଅମୃତ ବିଷ୍ଣୁର ଚରିତ ॥୧୩୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଦେବାସୁର ସଂଗ୍ରାମେ
ଏକାଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦ୍ୱାଦଶ ଅଧ୍ୟାୟ

ଶୁକ କହନ୍ତି ତୋଷମନ ।
ଶୁଣ ଅଭିମନ୍ୟୁ ନନ୍ଦନ ॥୧

### ଶୁକ ଉବାଚ

କୃଷ୍ଣ ଯେ ମୋହିନୀ ସ୍ୱରୂପେ ।
ଅମୃତ ହରି ମୋହକଛେ ॥୨
ଦେବଙ୍କୁ କରାଇଲେ ପାନ ।
ମାୟାମୋହିନୀ ଭଗବାନ ॥୩
ସେ କଥା ଶୁଣି ବିପରୀତ ।
ବୃଷେ ଆରୋହି ବିଶ୍ୱନାଥ ॥୪
ସକଳ ଭୂତଗଣ ମେଳେ ।
ଅମ୍ବିକା ଘେନି ନିଜ କୋଳେ ॥୫
ଦେଖିବା ଅର୍ଥେ ଗଲେ ହର ।
ଯହିଁ ବିଜୟ ମାୟାଧର ॥୬
ଗୋବିନ୍ଦ ରୁଦ୍ର ଦେଖି ତୋଷେ ।
ଆସନେ ବସାଇ ହରଷେ ॥୭
ପୂଜିଲେ ହରଗୌରୀ ପାଦେ ।
ରୋମହରଷ ଗଦଗଦେ ॥୮
ସାନନ୍ଦ ସେ ହରଗଉରୀ ।
ହରଷେ ହସ୍ତେ ହସ୍ତ ଧରି ॥୯
ସନ୍ତୋଷ କରି କୃଷ୍ଣମନ ।
ବୋଲନ୍ତି ମଧୁର-ବଚନ ॥୧୦

### ମହାଦେବ ଉବାଚ

ହେ ଦେବଦେବ ଜଗଦ୍‌ବ୍ୟାପୀ ।
ଜଗଦୀଶ୍ୱର ବିଶ୍ୱରୂପୀ ॥୧୧
ସର୍ବ ଶରୀରେ ଆତ୍ମାରୂପେ ।
ତୁ ନାଥ ବସୁ ମୋହ କଛେ ॥୧୨
ସକଳ ହେତୁ ତୋ' ଗୋଚର ।
ତୁ ନାଥ ଧର୍ମ ନିରାକାର ॥୧୩
ନାହିଁ ତୋ' ଆଦି ମଧ୍ୟ ଅନ୍ତ ।
ଏଣୁ ତୁ ବୋଲାଉ ଅନନ୍ତ ॥୧୪
ଚରଣ କମଳ ତୋହର ।
ଚିନ୍ତନେ ଶ୍ରେୟ ପ୍ରାଣୀଙ୍କର ॥୧୫
ବିଷୟ ସଙ୍ଗ ଦୂର କରି ।
ମୁନି ସନ୍ୟାସୀ ବ୍ରହ୍ମଚାରୀ ॥୧୬
ଚିନ୍ତନ୍ତି ତୋ ଚରଣ ହୃଦେ ।
ଅନ୍ତେ ପଶନ୍ତି ମୋକ୍ଷପଦେ ॥୧୭
ତୁ ପୂର୍ଣ୍ଣ ବ୍ରହ୍ମ ସୁଧାସାର ।
ନିର୍ଗୁଣ ବିଶୋକ-ମନ୍ଦିର ॥୧୮
ଆନନ୍ଦ ମାତ୍ର ନିର୍ବିକାର ।
ଅନ୍ୟୋନ୍ୟେ ଥାଇ ତୁ ଅନ୍ତର ॥୧୯
ବିଶ୍ୱର ହେତୁ ନିରଞ୍ଜନ ।
ସ୍ଥିତି ଉଦୟ ସଙ୍କ୍ରମନ ॥୨୦
ଆତ୍ମାର ଆତ୍ମାଜ୍ଞାନରୂପୀ ।
ଏଣୁ ଅଶେଷ-ଦେହବ୍ୟାପୀ ॥୨୧
ସୁବର୍ଣ୍ଣ କୁଣ୍ଡଳକ ପ୍ରାୟେ ।
ସ୍ୱଭାବେ ଅଭେଦ ତୋଦେହେ ॥୨୨
ଅଜ୍ଞାନୀ ଦମ୍ଭେ ତୋ'ର ଠାରେ ।
ବିକଳ୍ପ କରନ୍ତି ସଂସାରେ ॥୨୩
ତୁ ନିରୁପାଧି ତୋ'ର ଗୁଣେ ।
ଭେଦ କରନ୍ତି ଅକାରଣେ ॥୨୪
ସଦ ଅସଦ ପରେ ସ୍ଥିତି ।
ପରମ ପୁରୁଷ କେ ଚିନ୍ତି ॥୨୫
ସଦ ଅସଦ ଏକ ରୂପୀ ।
ଅବ୍ୟୟ ଆତ୍ମା ବିଶ୍ୱବ୍ୟାପୀ ॥୨୬
ତୁ ବ୍ରହ୍ମ ହେତୁ ଚିଦାନନ୍ଦ ।
ଅନାଦିକନ୍ଦ ଆଦିକନ୍ଦ ॥୨୭
ପ୍ରକୃତି ପୁରୁଷ ରୂପର ।
କେ ସାଂଖ୍ୟେ କରନ୍ତି ବିଚାର ॥୨୮
ଅନ୍ୟେ ବଦନ୍ତି ନବଶକ୍ତି ।
ଯେ ଅବା ଛନ୍ତି ପାଞ୍ଚରାତ୍ରି ॥୨୯
ଅବ୍ୟୟ ଆତ୍ମ ତନ୍ତ ରୂପୀ ।
ତୁ ନାଥ ଠୁଳ ଶୂନ୍ୟ ବ୍ୟାପୀ ॥୩୦
ମୁଁ ବ୍ରହ୍ମା ଦେବ ମୁନି ଯେତେ ।
ତୋ' ମାୟାବଳେ ଏ ଜଗତେ ॥୩୧
ତୋ' ରୂପ ନ ଜାଣନ୍ତି କେହି ।
ଦୁଷ୍ଟେ ଜାଣିବେ ଅବା କାହିଁ ॥୩୨
ଜଗତ ଜାତ ସ୍ଥିତି ନାଶ ।
ଭୂତଙ୍କ ଦେହେ ତୋ' ପ୍ରକାଶ ॥୩୩
ଜୀବର ବନ୍ଧ-ମୋକ୍ଷ ବେନି ।
ତୁ ନାଥ କରୁ ମାୟା ଘେନି ॥୩୪
ଆକାଶେ ଯେହ୍ନେ ବାୟୁ ରହେ ।
ପାର୍ଥିବ ରେଣୁ ବହେ ଦେହେ ॥୩୫
ତୋ' ଦେହେ କେହି ନ ଲାଗନ୍ତି ।
ଏମନ୍ତ ଈଶ୍ୱରର ଗତି ॥୩୬
ସଚରାଚର ତୋ'ର ଦେହେ ।
ପବନେ ରେଣୁ ପ୍ରାୟ ରହେ ॥୩୭
ତୁ ଏ ସଂସାର-ଉପକାରୀ ।
ତ୍ରିଗୁଣେ ନାନା ରୂପ ଧରି ॥୩୮
ଯେତେ ସାଧିଲୁ କ୍ରୀଡ଼ା ଅର୍ଥେ ।
ସେରୂପେ ଦେଖିଲି ମୁଁ ତୋତେ ॥୩୯
ଏବେ ଯେ ସମୁଦ୍ର ମନ୍ଥନେ ।
ଦେବ ଦାନବ ଏକ ମନେ ॥୪୦
ଅମୃତ ଅର୍ଥେ ଅନ୍ୟଅନ୍ୟେ ।
ତା' ଦେଖି ଦେବେ ଦୁଃଖମନେ ॥୪୧
ତୋତେ ଚିନ୍ତିଲେ ଧ୍ୟାନ କରି ।
ତୁ ନାଥ ମାୟା ରୂପ ଧରି ॥୪୨
ମୋହିନୀ ରୂପେ ଭଗବାନ ।
ମୋହିଲୁ ଅସୁରଙ୍କ ମନ ॥୪୩
ସେ ରୂପ ଦେଖାଅ ତୁ ମୋତେ ।
ଦେଖିବି ଗଉରୀ ସମେତେ ॥୪୪
ଯେ ରୂପ ପରମ ମଙ୍ଗଳେ ।
ମୁଁ ତା' ଦେଖିବି କୁତୂହଳେ ॥୪୫
ଏମନ୍ତେ ରୁଦ୍ରବାଣୀ ଶୁଣି ।
ହସି ବୋଲନ୍ତି ଚକ୍ରପାଣୀ ॥୪୬

### ଭଗବାନ ଉବାଚ

ଅସୁରେ ସୁଧା ନେଲେ ବଳେ ।
ମୁହିଁ ଯେ ଦେବଙ୍କ ବିକଳେ ॥୪୭
ମାୟାମୋହିନୀ ରୂପ ଧରି ।
ଅସୁରଗଣେ ମାୟା କରି ॥୪୮

Dr. Sudhanshu Sekhar Mishra

ଅମୃତ ଦେବଗଣେ ଦେଲି ।
ପୁଣି ସେ ରୂପ ସଂହରିଲି ॥୪୯
ଏବେ ତୁ ଦେଖିବାର ଆଶେ ।
ଯେବେ ମିଳିଲୁ ମୋ'ର ପାଶେ॥୫୦
ସେ ରୂପ ଦେଖାଇବି ମୁହିଁ ।
ଯେବେ ସମ୍ଭାଳି ପାରୁ ତୁହି ॥୫୧
କାମୀମାନଙ୍କ ମହାମୋହ ।
ପୁରୁଷ କେ ଧରିବ ଦେହ ॥୫୨
ଆନନ୍ଦେ ଶୁକମୁନି କହେ ।
ଶୁଣ ପରୀକ୍ଷ ମହାରାୟେ ॥୫୩

ଶୁକ ଉବାଚ

ଏମନ୍ତ କହି ଭଗବାନ ।
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥୫୪
ରୁଦ୍ର ଚାହାଁନ୍ତି ଦଶଦିଶେ ।
ଗଉରୀ ସଙ୍ଗେ ପ୍ରିୟବଶେ ॥୫୫
ଅଗ୍ରେ ଯେ ଅଛି ଉପବନେ ।
ନାନା କୁସୁମେ ତରୁଘନେ ॥୫୬
ତହିଁ ବିଜୟେ ଦଇତ୍ୟାରି ।
ଜଗମୋହିନୀ ରୂପ ଧରି ॥୫୭
କରେ କନ୍ଦୁକ ସାର ଶୋହେ ।
ଯେ ରୂପେ ଜଗୁଜନ ମୋହେ ॥୫୮
ନିତମ୍ବେ ବେଷ୍ଟିତ ଅମ୍ବର ।
କଟି-ମେଖଳା ରତ୍ନସାର ॥୫୯
ହୃଦେ କମ୍ପଇ ଘନ-କୁଚ ।
ହାର କଞ୍ଚଲା ଅତି ସଞ୍ଚ ॥୬୦
ଅତି ସୁସଞ୍ଚ କ୍ଷୀରମଞ୍ଚା ।
କି ପଟାନ୍ତର ଦେବା ଦୁଜା ॥୬୧
ସ୍ୱଭାବେ ଡମ୍ବରୁ ଆକାର ।
ଖଚିତ ନାନା ଅଳଙ୍କାର ॥୬୨
ଶିରସୀମନ୍ତ ମଣିମୟେ ।
ନୀଳ ଅଳେକ ମୁଖଶୋହେ ॥୬୩
ଶିରେ ସୁନ୍ଦର ଭୁରୂ ସାଜେ ।
ଚଞ୍ଚଳ-ଲୋଚନ ବିରାଜେ ॥୬୪
ଭାଲେ ସିନ୍ଦୁର ବିନ୍ଦୁ ସାଜେ ।
କମଳ ଲୋଚନ ବିରାଜେ ॥୬୫

ହେମକୁଣ୍ଡଳ ଶୋହେ କର୍ଣ୍ଣେ ।
ଦଶନ ହସିତ-ବଦନେ ॥୬୬
କବରୀ ମଧ୍ୟେ ପୁଷ୍ପ ଦିଶେ ।
କିଏ କନ୍ଦର୍ପ ଦେଖି ହସେ ॥୬୭
କବରୀ ଶ୍ଳଥ ଫିଟେ ବାସ ।
କରଇ କନ୍ଦର୍ପ ବିକାଶ ॥୬୮
ଅଳକା ଟୋଳେ ବାମକରେ ।
ସୁରଙ୍ଗ ଅଙ୍ଗୁଳି ଅଗ୍ରରେ ॥୬୯
କନ୍ଦୁକ ଦକ୍ଷକରେ ଧରି ।
ସେ ଲୀଳା ଲୁବ୍ଧେ ମୋଦଭରି ॥୭୦
ଏମନ୍ତ ରୂପ ହର ଦେଖି ।
ପିଛାଡ଼ି ନ ପାରନ୍ତି ଆଖି ॥୭୧
ଲୀଳା କଟାକ୍ଷେ ରୂପ ଚାହିଁ ।
ହୃଦୟେ ଚିତ୍ତ ନ ରହଇ ॥୭୨
ସ୍ୱଗଣ-ଗଉରୀ ସମେତେ ।
ସକଳେ ଚାହାନ୍ତି ଚକିତେ ॥୭୩
ଏମନ୍ତେ ମୋହିନୀର କରେ ।
ଥିଲା କନ୍ଦୁକ ଖସି ଧୀରେ ॥୭୪
ତକ୍ଷଣେ ଭୂମିରେ ପଡ଼ିଲା ।
ପଡ଼ି ଅନେକ ଦୂର ଗଲା ॥୭୫
କନ୍ଦୁକ ଆଣିବାର ଛଳେ ।
ବୃକ୍ଷ-ଉହାଡ଼େ ଅତି ଖରେ ॥୭୬
ଧାମନ୍ତେ ଅଦ୍ଭୁତ ଅବଳା ।
କୁଚରୁ ବସ୍ତ୍ର ଉଡ଼ିଗଲା ॥୭୭
ପବନେ ଉଡ଼େ ଜାନୁବାସ ।
ଜାନୁଯୁଗଳ ହେଲା ଦୃଶ୍ୟ ॥୭୮
ପବନେ ଉଡ଼ିଯା'ନ୍ତେ ବାସ ।
ରୂପ ଦେଖିଣ ହର ବଶ ॥୭୯
ବସ୍ତ୍ର ଟୋଳନ୍ତି ବାମହସ୍ତେ ।
ପୀଡ଼ିତ ଲଜ୍ଜା ଭୟ ଚିତ୍ତେ ॥୮୦
ଅଳକା ଅଙ୍ଗୁଳିର ଅଗ୍ରେ ।
କପୋଳୁ ଟୋଳେ ଅତି ବ୍ୟଗ୍ରେ॥୮୧
ଏମନ୍ତ ରୂପ ତା'ର ଦେଖି ।
ଶଙ୍କର ଗଉରୀ ଉପେକ୍ଷି ॥୮୨
ମନ ବୁଡ଼ିଲା ତା'ର ସଙ୍ଗେ ।
ମଦନବାଣ ପୀଡ଼େ ଅଙ୍ଗେ ॥୮୩

ଉମା ଦେଖନ୍ତେ ଲଜ୍ଜା ଛାଡ଼ି ।
ଧାମନ୍ତି କାମେ ମନ ବୁଡ଼ି ॥୮୪
ହରକୁ ଦେଖି ବେଗେ ଧାଇଁ ।
ବୃକ୍ଷ-ଗହଳେ ସେ ଲୁଚଇ ॥୮୫
ରୁଦ୍ର ଧାଇଁଲେ ଅତି ବେଗେ ।
ମିଳିଲେ ବୃକ୍ଷଙ୍କର ଲାଗେ ॥୮୬
ବୃକ୍ଷକୁ ବୃକ୍ଷ ଯା'ନ୍ତି ଗଳି ।
ହସ୍ତ ଦେଖାନ୍ତି ବେଗେ ଟୋଳି ॥୮୭
ଦେଖି ଧାମନ୍ତି ରୁଦ୍ର ବେଗେ ।
ବସନ ନାହିଁ କଟି ଭାଗେ ॥୮୮
ଜଟା-କଳାପ ଅସମ୍ଭାଳ ।
କପୋଳୁ ଗଳେ ଶ୍ରମ ଝାଳ ॥୮୯
କରିଣୀ ଦେଖି ଯେହ୍ନେ ଗଜ ।
ଧାମଇଁ ଉଚ୍ଚେ ଟୋଳି ଭୁଜ ॥୯୦
ରୁଦ୍ର ଧଇଲେ ତା'ଙ୍କୁ କୋଳେ ।
ଆବୋରି ବେନି ଭୁଜେ ବଳେ ॥୯୧
ପୁଣି ମୋହିନୀ କରୁ ଗଳି ।
ଧାମଇଁ ଜାନୁବସ୍ତ୍ର ଟୋଳି ॥୯୨
କବରୀ ଭାର ଫିଟି ତଳେ ।
ବିଞ୍ଚି ପଡ଼ନ୍ତି ଫୁଲମାଳେ ॥୯୩
ପୁଣି ଧରନ୍ତେ ହର କୋଳେ ।
ମୋହିନୀ ଗଳେ ଭୁଜତଳେ ॥୯୪
ମୁକୁଳା କେଶ ଅଧୋମୁଖେ ।
ଧାମଇଁ ବଦନ-ସୁରେଖେ ॥୯୫
ପୃଥୁ ନିତମ୍ବ ଚଳେ ଧୀରେ ।
ପୁଣି ଧଇଲେ ରୁଦ୍ର କୋଳେ ॥୯୬
ଏମନ୍ତେ ବିଷ୍ଣୁମାୟା ବଳେ ।
ଶଙ୍କର ମଦନ ଆକୁଳେ ॥୯୭
ବଇରୀ ବାଣେ ସେ ବିକଳେ ।
ପୁଣି ଧରନ୍ତି କାମ ଭୋଳେ ॥୯୮
ପୁଣି ପଳାନ୍ତି ଭୁଜ ଟୋଳି ।
ରୁଦ୍ର-ଶରୀରୁ ରେତ ଗଳି ॥୯୯
ସୁରଭୀ ଅର୍ଥେ ବୃକ୍ଷ ଯେହ୍ନେ ।
ଧାମଇଁ ଉଠିଣ ଅଞ୍ଚାନେ ॥୧୦୦
ରେତ ପଡ଼ିଲା ଯହିଁ ତହିଁ ।
ମୋହିନୀ ବେଶେ ମୋହ ପାଇ ॥୧୦୧

Dr. Sudhanshu Sekhar Mishra

ସୁନା ରୂପା ହେଲା ତକ୍ଷଣେ ।
ଲତା-ଗହନ-ଘୋର ବନେ ॥୧୦୨
ନଦୀ ପର୍ବତ ସରୋବରେ ।
ପଡ଼ଇ ରେତ ବୃଷ୍ଟି ଧାରେ ॥୧୦୩
ଏମନ୍ତେ ବିଷ୍ଣୁମାୟା ବଶେ ।
ଶଙ୍କର ଧାଇଁ ବନଦେଶେ ॥୧୦୪
ନିରାଶ ହୋଇ ନିବର୍ତ୍ତିଲେ ।
ଗଉରୀ ନିକଟେ ମିଳିଲେ ॥୧୦୫
ବିଷ୍ଣୁମାୟାରେ ମୋହି ମନ ।
ରୁଦ୍ର ହୋଇଲେ ଛନଛନ ॥୧୦୬
ଈଶ୍ୱର ଦୁଃଖ କୃଷ୍ଣ ଦେଖି ।
ମୋହିନୀ ଶରୀର ଉପେକ୍ଷି ॥୧୦୭
ନିଜ ମୂରତି ଧରି ହରି ।
ଶଙ୍କର ପାଶେ ବିଜେ କରି ॥୧୦୮
କହନ୍ତି ରୁଦ୍ର ମୁଖ ଚାହିଁ ।
କୋମଳ ବାକ୍ୟେ ଭାବଗ୍ରାହୀ ॥୧୦୯
ବୋଲନ୍ତି ପ୍ରଭୁ ଜଗନ୍ନାଥ ।
ଦେଖିଣ ଈଶ୍ୱର-ଆରତ ॥୧୧୦

ଭଗବାନ ଉବାଚ

ହେ ଦେବ ଦେବ ବିଶ୍ୱନାଥ ।
ତୁ ହେଲୁ ମାୟାରେ ମୋହିତ ॥୧୧୧
ଅଶେଷ ଜନ ମାୟାବଳେ ।
ଭ୍ରମନ୍ତି ଅବନୀ ମଣ୍ଡଳେ ॥୧୧୨
ନାନା ପ୍ରକାରେ ତନୁ ଧରି ।
କେବା ପାରିବ ମାୟା ତରି ॥୧୧୩
ଭୋ ରୁଦ୍ର ମହିମା ତୋହର ।
ଅଜ୍ଞାନୀ ଜନେ ଅଗୋଚର ॥୧୧୪
ଯେ ବିଷ୍ଣୁମାୟା ଗୁଣମୟୀ ।
ସେ ମାୟା କଳି ତ ନୁହଁଇ ॥୧୧୫
ତୁ ନାଥ ନିଜ ମାୟା ବଳେ ।
ତ୍ରିଗୁଣ ଗ୍ରାସୁ ଅନ୍ତଃକାଳେ ॥୧୧୬
ଶୁକ ଶ୍ରୀକୃଷ୍ଣ ପାଦ ଧ୍ୟାୟି ।
କହନ୍ତି ପରୀକ୍ଷିତ ଚାହିଁ ॥୧୧୭

ଶୁକ ଉବାଚ

ଶୁଣ ରାଜନ ଏକଚିତ୍ତେ ।
ହରଙ୍କୁ ପ୍ରବୋଧି ଏମନ୍ତେ ॥୧୧୮
ଶିବଙ୍କୁ ପ୍ରଦକ୍ଷିଣ କରି ।
ନିଜ ଭୁବନେ ଗଲେ ହରି ॥୧୧୯
ରୁଦ୍ର ଭବାନୀଗଣ ତୁଲେ ।
ନିଜ ଭୁବନେ ବିଜେ କଲେ ॥୧୨୦
ଋଷିଙ୍କ ମଧ୍ୟେ ହର ବସି ।
ବିଷ୍ଣୁଙ୍କ ମାୟା ପରଶଂସି ॥୧୨୧

ଈଶ୍ୱର ଉବାଚ

ଶୁଣ ଅଶେଷ ଋଷିବରେ ।
ବିଷ୍ଣୁର ମାୟା ଏ ଶୟଳେ ॥୧୨୨
ଅଶେଷ ଜନ-ମନ ହରେ ।
କେବା ଏ ସଂସାରୁ ନିସ୍ତରେ ॥୧୨୩
ଶୁଣ ଗୋ ପ୍ରିୟେ କହି ଯାହା ।
ଦେଖିଲ ବିଷ୍ଣୁଙ୍କର ମାୟା ॥୧୨୪
ମୁଁ ମାୟାଧରଙ୍କର ଈଶ ।
ତା' ମାୟା ଦେଖି କଲି ତ୍ରାସ ॥୧୨୫
ତା' ମାୟା ବଳେ ମୋହେ ଶିବ ।
ଆନ କେ ସେ ମାୟା ତରିବ ॥୧୨୬
ବିଷ୍ଣୁର ମାୟା ଅଗୋଚର ।
ଯହିଁ ଭ୍ରମନ୍ତି ବ୍ରହ୍ମାସୁର ॥୧୨୭
କହନ୍ତି ବ୍ୟାସଙ୍କ ତନୁଜ ।
ଶୁଣ ପରୀକ୍ଷ ମହାରାଜ ॥୧୨୮

ଶୁକ ଉବାଚ

ଏମନ୍ତ ଶ୍ରୀକୃଷ୍ଣ ମହିମା ।
କେ କହିପାରେ ଗୁଣସୀମା ॥୧୨୯
ଯେ ହରି ଜଗତ ଉଦ୍ଧରେ ।
କପଟେ କୂର୍ମରୂପ ଧରେ ॥୧୩୦
ତା'ର ଚରିତ ଶୁଣି କର୍ଣ୍ଣେ ।
ମୁଖେ ଗୁଣନ୍ତି ଯେବା ଜନେ ॥୧୩୧
ଯେ ଅବା ପ୍ରସ୍ତାବେ କହନ୍ତି ।
ଘୋର ସଂସାରୁ ତରିଯା'ନ୍ତି ॥୧୩୨
ଅଷ୍ଟମ ସ୍କନ୍ଧେ ହରି-ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୩୩
ବୋଲଇ ବିପ୍ର ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତ ॥୧୩୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଦେବାସୁର ସଂଗ୍ରାମେ
ଦ୍ୱାଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ତ୍ରୟୋଦଶ ଅଧ୍ୟାୟ

ଶ୍ରୀକୃଷ୍ଣ ପାଦ ହୃଦେ ଚିନ୍ତି ।
କହନ୍ତି ଶୁକ ବ୍ରହ୍ମଯତି ॥୧

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁସୁତ ।
ସପ୍ତମେ ମନୁବଂଶେ ଜାତ ॥୨
ସୂର୍ଯ୍ୟତନୟ ଅନୁପମ ।
ତାହାର ଶ୍ରାଦ୍ଧଦେବ ନାମ ॥୩
ବର୍ତ୍ତମାନ ଯା ଭୋଗକାଳ ।
ଯେ ଶୁଦ୍ଧ ସୁଗୁଣ ସୁଶୀଳ ॥୪
ତା'ର ସନ୍ତତି ହେଲେ ଯେତେ ।
ଶୁଣ କହିବି ଏକଚିତ୍ତେ ॥୫
ଈକ୍ଷ୍ୱାକୁ ନଭଗ ଶର୍ଯ୍ୟାତି ।
ଧୃଷ୍ଟ ନରିଷ୍ୟନ୍ତି ସନ୍ତତି ॥୬
ନାଭାଗ ଦିଷ୍ଟ ଯେ ସପ୍ତମ ।
କରୂଷ ପୃଷଧ୍ର ନବମ ॥୭
ଦଶମ ବସୁମାନ ନାମ ।
ବୈବସ୍ୱତର ଏ ନନ୍ଦନ ॥୮
ସେ ମନୁକାଳେ ଦେବଗଣ ।
ନାମ କହିବା ତା'ଙ୍କ ଶୁଣ ॥୯
ଆଦିତ୍ୟ ବସୁ ରୁଦ୍ର ବିଶ୍ୱ ।
ଅଶ୍ୱିନୀ ରଭୁ ଅଣଚାଶ ॥୧୦
ତାହାଙ୍କ ମଧ୍ୟେ ବେଦବର ।
ଇନ୍ଦ୍ରର ନାମ ପୁରନ୍ଦର ॥୧୧
ସେ ମନୁ କାଳେ ସପ୍ତରଷି ।
ଭ୍ରମନ୍ତି ଧ୍ରୁବଚକ୍ରେ ବସି ॥୧୨
କଶ୍ୟପ ଅତ୍ରି ଋଷିଶ୍ରେଷ୍ଠ ।
ତୃତୀୟ ମୁନି ଯେ ବଶିଷ୍ଠ ॥୧୩
ଗୌତମ ବିଶ୍ୱାମିତ୍ର ଦ୍ୱିଜ ।
ଜମଦଗ୍ନି ଯେ ଭରଦ୍ୱାଜ ॥୧୪
ଏ ଆଦି ନାମେ ସପ୍ତମୁନି ।
ଚକ୍ରେ ଭ୍ରମନ୍ତି କର୍ମ ଘେନି ॥୧୫
ବଇବସ୍ୱତ ମନୁ କଲ୍ପେ ।
ଗୋବିନ୍ଦ ବାମନ ସ୍ୱରୂପେ ॥୧୬
ଜନ୍ମିଲେ ଅଦିତି ଉଦରେ ।
କଶ୍ୟପ ଋଷିଙ୍କର ଘରେ ॥୧୭
ଏ ସପ୍ତମନ୍ୱନ୍ତର ଯେତେ ।
କହିଲୁ ତୁମ୍ଭର ଅଗ୍ରତେ ॥୧୮
ଏବେ ଭବିଷ୍ୟ ମନୁ ସପ୍ତ ।
ଶୁଣ ସୁମନେ ପରୀକ୍ଷିତ ॥୧୯
ବିଶ୍ୱକର୍ମାର କନ୍ୟା ବେନି ।
ସୂର୍ଯ୍ୟେ ବରିଲେ ଭାବ ଘେନି ॥୨୦
ରୂପେ ଦିଶନ୍ତି ଅନୁପମ ।
ତାହାଙ୍କ ସଂଜ୍ଞା ଛାୟା ନାମ ॥୨୧
ସୂର୍ଯ୍ୟର ତେଜ ଅସହନେ ।
ସଂଜ୍ଞା ଯେ ଅଶ୍ୱରୂପେ ବନେ ॥୨୨
ସୂର୍ଯ୍ୟ ରମିଲେ ତା'ର ତୁଲେ ।
ଅଶ୍ୱିନୀକୁମାର ଜନ୍ମିଲେ ॥୨୩
ପ୍ରଥମେ ସୂର୍ଯ୍ୟ ତୁଲେ ରମି ।
ସଂଜ୍ଞା ପ୍ରସବେ ଗର୍ଭ ତିନି ॥୨୪
ଯମ ଯମୁନା ଭାଇ ଭଗ୍ନୀ ।
ଜନ୍ମିଲେ ଶ୍ରାଦ୍ଧଦେବ ତିନି ॥୨୫
କହୁ ଅଛଇ ତୋତେ ଭାବେ ।
ଛାୟା-ଅପତ୍ୟ ଶୁଣ ଏବେ ॥୨୬
ସାବର୍ଣ୍ଣି ନାମେ ଏକ ସୁତ ।
କନ୍ୟା ତପତୀ ରୂପେ ଜାତ ॥୨୭
ତୃତୀୟ ପୁତ୍ର ଶନୈଶ୍ଚର ।
ଏବେ ହୋ ଶୁଣ ନୃପବର ॥୨୮
ସାବର୍ଣ୍ଣ ଅଷ୍ଟମନ୍ୱନ୍ତରେ ।
ଭର୍ଜିବ ସଂସାର ବେଭାରେ ॥୨୯
ନିର୍ମୋକ ବୀରଯସ୍କ ଆଦି ।
ସାବର୍ଣ୍ଣି ତନୟ ସମ୍ପାଦି ॥୩୦
ବିରଜ ଆଦି ଦେବଗଣେ ।
ଜନମ ସଂସାର କାରଣେ ॥୩୧
ତାହାଙ୍କ ପାଳନ ପ୍ରବନ୍ଧେ ।
ବଳି ବସିବ ଇନ୍ଦ୍ରପଦେ ॥୩୨
ତାହାଙ୍କୁ ଛଳିବେ ବାମନ ।
ଯଜ୍ଞେ ପୃଥିବୀ ଦେବେ ଦାନ ॥୩୩
ତିନି ଚରଣ ଦାନ ଦେଇ ।
ବାମନ ପାଦ ମୁଣ୍ଡେ ବହି ॥୩୪
କେତେହେଁ କାଳ ଦାନ ଫଳେ ।
ସେ ଭୋଗ ଭୁଞ୍ଜିବ ପାତାଳେ ॥୩୫
ସ୍ୱର୍ଗେ ବସିବ ଇନ୍ଦ୍ରପଣେ ।
ଅନ୍ତେ ପଶିବ ନାରାୟଣେ ॥୩୬
ସେ ବଳି କାଳେ ସପ୍ତମୁନି ।
ଉଦୟ ନିଜ ତେଜ ଘେନି ॥୩୭
ଯେ ରୂପେ ସଂସାର ଧାରଣ ।
ତାହାଙ୍କ ନାମ ଏବେ ଶୁଣ ॥୩୮
ଗାଲବ ଦୀପ୍ତିମାନ ରାମ ।
କୃପାଚାର୍ଯ୍ୟ ଦ୍ରୋଣ ନନ୍ଦନ ॥୩୯
ଅପରେ ଋଷ୍ୟଶୃଙ୍ଗ ବ୍ୟାସ ।
କହିଲି ଋଷିଙ୍କ ବିଶେଷ ॥୪୦
ଏ ଆଦି ସପ୍ତଋଷିଗଣେ ।
ବ୍ରହ୍ମାର ଆଜ୍ଞା ପରମାଣେ ॥୪୧
ହୋଇବେ ଭବିଷ୍ୟତ କାଳେ ।
ଅଛନ୍ତି ଆଶ୍ରମ ମଣ୍ଡଳେ ॥୪୨
ଏହି ସାବର୍ଣ୍ଣି ମନ୍ୱନ୍ତରେ ।
ବିଷ୍ଣୁ ଯେ ଦେବଗୁହ୍ୟ ଘରେ ॥୪୩
ସରସ୍ୱତୀର ଗର୍ଭୁ ଜାତ ।
ନାମରେ ସାର୍ବଭୌମ ଖ୍ୟାତ ॥୪୪
ସେ କାଳେ ବିଷ୍ଣୁ ନିଜ ଭାବେ ।
ବଳିକି ଇନ୍ଦ୍ରପଦ ଦେବେ ॥୪୫
ହୋଇବ ସେହୁ ସୁରେଶ୍ୱର ।
ଅମରପୁରେ ପୁରନ୍ଦର ॥୪୬
ତଦନ୍ତେ ଶୁଣ ହେ ରାଜନ ।
ନବମ ମନୁ ବିବରଣ ॥୪୭
ଏ ଅନ୍ତେ ବରୁଣ ନନ୍ଦନ ।
ଦକ୍ଷସାବର୍ଣ୍ଣି ଯେ ନବମ ॥୪୮
ପୁତ୍ର ଜନ୍ମିବେ ତା'ର ରେତୁ ।
ଯେ ଭୂତକେତୁ ଦୀପ୍ତକେତୁ ॥୪୯

Dr. Sudhanshu Sekhar Mishra

ପାରା ମରୀଚିଗର୍ଭ ଆଦି ।
ଏ ନାମେ ଦେବତା ପ୍ରସିଦ୍ଧି ॥୫୦
ଦେବ ଅଦ୍‌ଭୁତ ନାମେ ଇନ୍ଦ୍ର ।
ଭୋଗ କରିବ ସ୍ୱର୍ଗପଦ ॥୫୧
ଋଷିଏ ଦ୍ୟୁତିମାନ ଆଦି ।
ହୋଇବେ ସେ ମନୁ ସମ୍ପାଦି ॥୫୨
ବିପ୍ର ଯେ ଆୟୁଷ୍ମନ ଘରେ ।
ସେ ଅମ୍ବୁଧାରାର ଗର୍ଭରେ ॥୫୩
ଋଷଭ ନାମେ ଜାତ ହେବେ ।
ଇନ୍ଦ୍ରକୁ ସ୍ୱର୍ଗପଦ ଦେବେ ॥୫୪
ଦଶମେ ଉପଶ୍ଲୋକ ସୁତ ।
ବ୍ରହ୍ମସାବର୍ଣ୍ଣି ନାମେ ଖ୍ୟାତ ॥୫୫
ତା'ର କୁମରେ ବ୍ରହ୍ମବାଦୀ ।
ଜନ୍ମିବେ ଭୂତିଷେଣ ଆଦି ॥୫୬
ସୁକୃତି ସତ୍ୟ ହବିଷ୍ମାନ ।
ଜୟ ଆବର ମୂର୍ତ୍ତି ପୁଣ ॥୫୭
ଏ ଆଦି ଋଷିଏ ବ୍ରାହ୍ମଣ ।
ଏବେ ଦେବତା ନାମ ଶୁଣ ॥୫୮
ଦେବେ ବିରୁଦ୍ଧ ସୁବାସନ ।
ଇନ୍ଦ୍ରର ନାମ ଶମ୍ଭୁ ଜାଣ ॥୫୯
ବିଶ୍ୱସୃଜର ଘରେ ହରି ।
ବିଷୂଚି ଗର୍ଭେ ଅବତରି ॥୬୦
ବିଶ୍ୱକେସନ ନାମ ବହି ।
ପାଳିବେ ନିଜ ଧର୍ମେ ମହୀ ॥୬୧
ବିଶ୍ୱକେସନ ଶମ୍ଭୁ ସଙ୍ଗେ ।
ମିତ୍ର ହୋଇବେ ସତ୍ୟଯୁଗେ ॥୬୨
ଧର୍ମସାବର୍ଣ୍ଣି ମନୁ ହୋଇ ।
ପାଳିବେ ଏକାଦଶେ ମହୀ ॥୬୩
ସତ୍ୟ ଧର୍ମାଦି ସୁତ ଦଶ ।
ପାଳିବେ ମହୀସ୍ୱର୍ଗଦେଶ ॥୬୪
ନିର୍ବାଣ ରୁଚି ବିହଙ୍ଗମ ।
ଦେବଙ୍କ ନାମ କାଳଗମ ॥୬୫
ଇନ୍ଦ୍ର ହୋଇବେ ବଇଧୃତ ।
ଋଷି ଅରୁଣ ଆଦି ଖ୍ୟାତ ॥୬୬
ବୈଧୃତା ଗର୍ଭେ ଧର୍ମସେତୁ ।
ଜନମି ସେ ଆର୍ଯ୍ୟକ ରେତୁ ॥୬୭

ସେ ଇନ୍ଦ୍ରଧର୍ମସେତୁ ବଳେ ।
ତ୍ରୈଲୋକ୍ୟ ପାଳିବ ନିଶ୍ଚଳେ ॥୬୮
ରୁଦ୍ରସାବର୍ଣ୍ଣି ଯେ ଦ୍ୱାଦଶେ ।
ଜନ୍ମିବେ ନାରାୟଣ ଅଂଶେ ॥୬୯
ଯେ ଦେବବାନ ଉପଦେବ ।
ଦେବଶ୍ରେଷ୍ଠ ଆଦି ସମ୍ଭବ ॥୭୦
ଇନ୍ଦ୍ର ହୋଇବେ ଋତଧାମ ।
ହରିତ ଆଦି ଦେବେ ଜାଣ ॥୭୧
ତପୋମୂର୍ତ୍ତି ଆର ତପସ୍ୱୀ ।
ଅଗ୍ନୀଧ୍ରକାଦି ସପ୍ତଋଷି ॥୭୨
ସ୍ୱଧାମା ନାମେ ଦେବ ହରି ।
ସୁନୃତା ଗର୍ଭେ ଅବତରି ॥୭୩
ସତ୍ୟସହ ଯେ ବିପ୍ର ଘରେ ।
ସାଧିବେ ଏହି ମନ୍ୱନ୍ତରେ ॥୭୪
ଦେବସାବର୍ଣ୍ଣି ତ୍ରୟୋଦଶେ ।
ହୋଇବେ ନାରାୟଣ ଅଂଶେ ॥୭୫
ବିଚିତ୍ର ଚିତ୍ରସେନ ଆଦି ।
ଦେବସାବର୍ଣ୍ଣି ପୁତ୍ର ସାଧି ॥୭୬
ସୁକର୍ମ ସୁତ୍ରାମ ଏ ଆଦି ।
ଦେବତା ରୂପେଣ ପ୍ରସିଦ୍ଧି ॥୭୭
ଇନ୍ଦ୍ର ଯେ ଦିବସ୍ପତି ନାମେ ।
ସୁଖେ ବସିବ ସ୍ୱର୍ଗଗ୍ରାମେ ॥୭୮
ନିର୍ମୋକ ତତ୍ତ୍ୱଦର୍ଶମାନେ ।
ହୋଇବେ ସପ୍ତଋଷିଗଣେ ॥୭୯
ହରିର ଅଂଶେ ଯୋଗେଶ୍ୱର ।
ଔରସେ ଦେବହୋତ୍ରଙ୍କର ॥୮୦
ବୃହତୀ ଗର୍ଭେ ଜାତ ହେବେ ।
ଇନ୍ଦ୍ରଙ୍କୁ ସାହାଯ୍ୟ କରିବେ ॥୮୧
ଇନ୍ଦ୍ରସାବର୍ଣ୍ଣି ଚତୁର୍ଦ୍ଦଶେ ।
ହୋଇବେ ନାରାୟଣ ଅଂଶେ ॥୮୨
ଉରୁ ଗମ୍ଭୀରବୁଦ୍ଧି ଆର ।
ଜନ୍ମିବେ ତାହାର କୁମର ॥୮୩
ପବିତ୍ର ଚାକ୍ଷୁସ ନାମରେ ।
ଦେବତା ସେହି ମନ୍ୱନ୍ତରେ ॥୮୪
ହୋଇବେ ଶୁଚି ନାମେ ଇନ୍ଦ୍ର ।
ସୁଖେ ପାଳିବେ ଦେବବୃନ୍ଦ ॥୮୫

ଅଗ୍ନିବାହୁ ଯେ ଶୁଚି ଶୁଦ୍ଧ ।
ମାଗଧ ଆଦି ଋଷି ସିଦ୍ଧ ॥୮୬
ଏ ସର୍ବେ ନିତ୍ୟେ ତପସ୍ୱୀନ ।
ହୋଇବେ ଏ କଥା ପ୍ରମାଣ ॥୮୭
ବୃହଦଭାନୁ ଅବତାରେ ।
ବିଷ୍ଣୁ ଯେ ସତ୍ରାୟଣ ଘରେ ॥୮୮
ଜନ୍ମିବେ ବିତାନ ଉଦରେ ।
ଏବେ ହୋ ଶୁଣ ନୃପବରେ ॥୮୯
ଚତୁରଦଶ ମନୁ ଯେତେ ।
ଭାବେ କହିଲି ତୋ ଅଗ୍ରତେ ॥୯୦
କଳ୍ପାନ୍ତେ ମନୁ ଚତୁର୍ଦ୍ଦଶ ।
ଏ ଭାବେ ବ୍ରହ୍ମାର ଦିବସ ॥୯୧
ସହସ୍ରଯୁଗ ଏହି ମତେ ।
କଳ୍ପ ବୋଲାଇ ଏ ଜଗତେ ॥୯୨
ଏମନ୍ତେ ବେନିକଳ୍ପ ଗଲେ ।
ବ୍ରହ୍ମାର ଅହୋରାତ୍ର ଭଲେ ॥୯୩
ଏମନ୍ତେ ଶୁକ ମୁଖୁଁ ଶୁଣି ।
କହେ ପାଣ୍ଡବ-ଚୂଡ଼ାମଣି ॥୯୪

ରାଜା ଉବାଚ

ଏଭାବେ ବ୍ରହ୍ମାର ଦିବସ ।
ଭାଷନ୍ତି ମନୁ ଚତୁର୍ଦ୍ଦଶ ॥୯୫
ଯେ ମନୁକାଳେ ଯେବା କର୍ମ ।
ଯୁଗ ସ୍ୱଭାବେ ଯଥା ଧର୍ମ ॥୯୬
ବିଷ୍ଣୁର ଆଜ୍ଞା ପରମାଣେ ।
ଯେବା ସାଧିଲେ ଜଣେ ଜଣେ ॥୯୭
ସେ କଥା କହି ମୁନି ମୋତେ ।
କେ ଅବା କର୍ମ କଲେ କେତେ॥୯୮
ରାଜାର ତହୁଁ ଏହା ଶୁଣି ।
ଶୁକ କହନ୍ତି ମନେ ଗୁଣି ॥୯୯

ଶୁକ ଉବାଚ

ଯେ ମନୁ ମନୁର ତନୁଜେ ।
ଯେ ସପ୍ତଋଷି ସୃଷ୍ଟି ମାଝେ ॥୧୦୦
ଯେତେ ଏ ଇନ୍ଦ୍ର ଦେବଗଣ ।
ଏ ସର୍ବରୂପ ନାରାୟଣ ॥୧୦୧
ତା' ବିନୁ ଆନ ନାହିଁ କେହି ।
ସେ ସର୍ବ ଆତ୍ମା ମଧ୍ୟେ ରହି ॥୧୦୨

Dr. Sudhanshu Sekhar Mishra

ଯଜ୍ଞାଦି କ୍ରିୟା ତା' ଶରୀର ।
ସେ ହରି ଧର୍ମ-ନିରାକାର ॥୧୦୩
କଳ୍ପ ଅନ୍ତରେ କଳେବଳେ ।
ତ୍ରୈଲୋକ୍ୟ ମଜ୍ଜଇ ସଲିଳେ ॥୧୦୪
କାଳ ଗରାସେ ଶ୍ରୁତିପଥ ।
ତ୍ରୈଲୋକ୍ୟ ଦିଶଇ ଅନାଥ ॥୧୦୫
ଋଷି ସକଳେ ତପୋବଳେ ।
ଧର୍ମକୁ ଦେଖାନ୍ତି ଶୟଳେ ॥୧୦୬
ଧର୍ମ ପାଳନ୍ତି ମନୁଗଣେ ।
ଶ୍ରୁତି ସଂଯୋଗ ବିଚାରଣେ ॥୧୦୭
ଇନ୍ଦ୍ର ପାଳଇ ତ୍ରିଭୁବନ ।
ଆଦରି ବିଷ୍ଣୁର ବଚନ ॥୧୦୮

ସେ ହରି ସିଦ୍ଧରୂପ ବହେ ।
ଯୁଗାନୁକଳ୍ପେ ଜ୍ଞାନ କହେ ॥୧୦୯
ସେ ହରି ପ୍ରଜାପତି ରୂପେ ।
ସଂସାର-ସର୍ଜନକୁ କଳ୍ପେ ॥୧୧୦
ଆତ୍ମାର ମାୟାଯୋଗବଳେ ।
ନାନା ଶରୀରେ ଏ ଶୟଳେ ॥୧୧୧
ବିହାର କରେ ପଦ୍ମନାଭ ।
ଯା' ନାମ ଭବଜଳେ ନାବ ॥୧୧୨
ଦୃଶ୍ୟ-ଅଦୃଶ୍ୟେ ସେ ନ ମିଶେ।
କେବଳ ବୀଜ ରୂପେ ଦିଶେ ॥୧୧୩
କହିଲୁ କଳ୍ପ ସଂଖ୍ୟା ତୋତେ।
ଯକଳ୍ପେ ଭୁଞ୍ଜନ୍ତି ସେ ଯେତେ॥୧୧୪

ଯେ ଏହା ଶୁଣେ କର୍ଣ୍ଣପଥେ ।
ନିଶ୍ଚଳ ମନେ ଶୁଦ୍ଧଚିତ୍ତେ ॥୧୧୫
ଚିତ୍ତେ ନ ରହେ ଭବଭ୍ରାନ୍ତି ।
ଘୋର ସଂସାରୁ ତରିଯା'ନ୍ତି ॥୧୧୬
ବୋଲଇ ଦାସ ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତ ॥୧୧୭

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ମନ୍ୱନ୍ତରାନୁ ବର୍ଣ୍ଣନଂ
ନାମ ତ୍ରୟୋଦଶୋଽଧ୍ୟାୟଃ ॥

---

## ଚତୁର୍ଦ୍ଦଶ ଅଧ୍ୟାୟ

ଶୁକ ଚରଣ କରେ ଧରି ।
ବୋଲେ ପରୀକ୍ଷ ଦଣ୍ଡଧାରୀ ॥୧

ପରୀକ୍ଷିତ ଉବାଚ

ଭୋ ମୁନି ତୁମ୍ଭ ମୁଖୁଁ ଶୁଣି ।
ଦୁର୍ଗମ ଅସମ୍ଭବ ବାଣୀ ॥୨
ସଂଶୟ କଲି ମୁହିଁ ଚିତ୍ତେ ।
ସେ କଥା କହ ମୁନି ମୋତେ ॥୩
ବଳିର ଯଜ୍ଞ ଭଗ୍ନ ଅର୍ଥେ ।
ବାମନ ଜନ୍ମିଲେ କେମନ୍ତେ ॥୪
କାହାର ତପକର୍ମ ବଳେ ।
ଜନ୍ମ ଲଭିଲେ କାହା କୋଳେ ॥୫
ଧରଣୀ ତିନିପାଦ ଦାନେ ।
ବଳିକି ଛଳିଲେ ବାମନେ ॥୬
ସେ ପୂର୍ଣ୍ଣ-ସ୍ୱଭାମେ ଈଶ୍ୱର ।
ଅଶେଷ ଦ୍ରବ୍ୟେ ଅଧିକାର ॥୭
କୃପଣ ପ୍ରାୟେ ତା'କୁ ଧରି ।
କିପାଁ ବାନ୍ଧିଲେ ନରହରି ॥୮
ଏମନ୍ତେ ରାଜା-ବାକ୍ୟ ଶୁଣି ।
ଶୁକ କହନ୍ତି ମଞ୍ଜୁବାଣୀ ॥୯

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁସୁତ ।
ଅଦ୍ଭୁତ କୃଷ୍ଣର ଚରିତ ॥୧୦
ଯେମନ୍ତେ ବିପ୍ର ରୂପେ ଛଳେ ।
ବଳିକି ଚାପିଲେ ପାତାଳେ ॥୧୧
ପୂର୍ବେ ଯେ ଦେବାସୁର ରଣେ ।
ଯୁଦ୍ଧେ ଜିଣିଲେ ଦେବଗଣେ ॥୧୨
ବଳି ସହିତେ ମରିଗଲେ ।
ଶେଷେ ଦାନବ ଯେତେଥିଲେ ॥୧୩
ବଳିର ମୃତ୍ୟୁପିଣ୍ଡ ନେଇ ।
ପଶ୍ଚିମ-ଗିରିପୃଷ୍ଠେ ଥୋଇ ॥୧୪
ଶୁକ୍ରଙ୍କୁ ଆଣି ଗଉରବେ ।
ବିଶ୍ୱାସି କହିଲେ ଦାନବେ ॥୧୫
ଅସୁରଙ୍କର ଭାବ ଘେନି ।
ଶୁକ୍ର ଯେ ମୃତସଞ୍ଜୀବନୀ ॥୧୬
ମନ୍ତ୍ରେ ଜିଆଇଲେ ତକ୍ଷଣେ ।
ଯେ ଅବା ମରିଥିଲେ ରଣେ ॥୧୭
ସକଳେ ଉଠିଲେ ତକ୍ଷଣେ ।
ନମିଲେ ଶୁକ୍ରଙ୍କ ଚରଣେ ॥୧୮

ବୋଇଲେ ଶୁକ୍ର ମୁଖ ଚାହିଁ ।
ଅନାଥ ହୋଇଲୁ ଗୋସାଇଁ ॥୧୯
ଦେବେ ଯେ ଅମୃତ ଭକ୍ଷଣେ ।
ଅମର ହୋଇ ଘୋର ରଣେ ॥୨୦
ଆମ୍ଭଙ୍କୁ ମାରିଗଲେ ସର୍ବେ ।
ତୁମ୍ଭେ ଜୀବନ ଦେଲ ଏବେ ॥୨୧
ତୁମ୍ଭେ ଯେ ଆମ୍ଭର ସହାୟ ।
ଏବେ ହୋ କି କରିବୁ କହ ॥୨୨
ଏମନ୍ତେ ଅସୁରଙ୍କ ବାକ୍ୟେ ।
ଶୁକ୍ର ଚିନ୍ତିଲେ ବସି ଏକେ ॥୨୩
ବିଚାର କରି ଶୁଦ୍ଧଚିତ୍ତେ ।
କହନ୍ତି ବଳିର ଅଗ୍ରତେ ॥୨୪
ତୁ ମହାଯଜ୍ଞ ବେଗେ କର ।
ଯେମନ୍ତେ ଜିଣିବୁ ଅମର ॥୨୫
ଏମନ୍ତେ ଗୁରୁବାକ୍ୟ ଶୁଣି ।
ବଳି ଯଜ୍ଞର ବିଧି ଆଣି ॥୨୬
ଋତ୍ୱିକ ଆଣି ଜଣେ ଜଣେ ।
ବରିଲା ଯଜ୍ଞର କାରଣେ ॥୨୭
ତ୍ରିପୁର ଜୟ ନାମ କ୍ରତୁ ।
କଲା ଅମର ଜୟ ହେତୁ ॥୨୮

Dr. Sudhanshu Sekhar Mishra

ବ୍ରାହ୍ମଣେ ମିଳି ବେଦବାକ୍ୟେ ।
ମାର୍ଜନ କଲେ ଏକେ ଏକେ ॥୨୯
ତ୍ରିଲୋକ ମଧ୍ୟେ ରାଜା ଏକ ।
ଏ ଭାବେ କଲେ ଅଭିଷେକ ॥୩୦
ସୁବର୍ଣ୍ଣ ରଥ ମନ୍ତ୍ରତେଜେ ।
ବାହାର ହେଲା ଅଗ୍ନି ମାଝେ ॥୩୧
ହରିତବର୍ଣ୍ଣ ଅଶ୍ୱଜ୍ୟୋତି ।
ଯେସନେ ରବିରଥ ଗତି ॥୩୨
ଗଗନ ମାର୍ଗେ ରଥ ସାଜେ ।
ସୁବର୍ଣ୍ଣ ସିଂହ ଥାଇ ଧ୍ୱଜେ ॥୩୩
ହେମ ନିର୍ମିତ ଧନୁ ତୂଣେ ।
ଅଭେଦ କବଚ ଭୂଷଣେ ॥୩୪
ଅମ୍ଲାନ-ପଦ୍ମମାଳା ପୁଣି ।
ଗଲେ ପ୍ରହ୍ଲାଦ ଦେଲା ଆଣି ॥୩୫
ଭୃଗୁ ଯେ ଶଙ୍ଖ ଦେଲେ କରେ ।
ଯେ ନାଦେ ତ୍ରିଭୁବନେ ପୂରେ ॥୩୬
ବିପ୍ରେ ଅଶିଷ ମନ୍ତ୍ରବଳେ ।
ସ୍ୱସ୍ତିବାଚନ ସୁମଙ୍ଗଳେ ॥୩୭
ବିପ୍ରଙ୍କୁ ପ୍ରଦକ୍ଷିଣ କରି ।
ରୋମାଞ୍ଚ ଗାତ୍ରେ ମୋଦଭରି ॥୩୮
ପ୍ରହ୍ଲାଦ ପାଦେ ପ୍ରଣମିତ ।
ବଳି ଆରୋହି ଦିବ୍ୟରଥ ॥୩୯
ମାଳା କବଚ କଳେବରେ ।
ଧନୁ ଖଡ଼ଗ ଶୋହେ କରେ ॥୪୦
ରତ୍ନ-କେୟୂର ବାହୁ ମୂଳେ ।
ବିରାଜେ ମୁକୁଟ କୁଣ୍ଡଳେ ॥୪୧
ସେ ବଳି ରଥ ମଧ୍ୟେ ବସି ।
ଅନଳ ତେଜ ପ୍ରାୟ ଦିଶି ॥୪୨
ଅଷ୍ଟ ଐଶ୍ୱର୍ଯ୍ୟ ବଳ ତେଜେ ।
ଅସୁରବଳ ମଧ୍ୟେ ରାଜେ ॥୪୩
ଏମନ୍ତ ଦୈତ୍ୟବଳ ଘେନି ।
ଚଳନ୍ତେ କମ୍ପଇ ମେଦିନୀ ॥୪୪
ସକଳେ ହୋଇ ଏକମନ ।
ଦିଶେ କି ପିଇବେ ଗଗନ ॥୪୫
ଅସୁରସେନା ରଥେ ବସି ।
ଧାଇଁଲେ ଗଗନ ଗରାସି ॥୪୬

ଚଳନ୍ତେ କମ୍ପେ ଦଶଦିଶ ।
କେ ସହୁ ଅସୁରଙ୍କ ତ୍ରାସ ॥୪୭
ମିଳିଲେ ଇନ୍ଦ୍ରର ଭୁବନେ ।
ସକଳେ ବିଧିର ବିଧାନେ ॥୪୮
ନନ୍ଦନ ବନେ ପନ୍ତିପନ୍ତି ।
କଳ୍ପ-ପାଦପେ ବିରାଜନ୍ତି ॥୪୯
ବିହଙ୍ଗ ମିଥୁନେ ନାଚନ୍ତି ।
ମତ୍ତକୋକିଳେ ରାବ ଦ୍ୟନ୍ତି ॥୫୦
ହଂସ ସାରସ ଚକ୍ରବାକ ।
କାରଣ୍ଡବ ଆଦି ଡାହୁକ ॥୫୧
ପଲ୍ଲବ ଫଳ-ପୁଷ୍ପଭରେ ।
ପାଦପେ ଲୋଟନ୍ତି ଭୂମିରେ ॥୫୨
ନଳିନୀ ବନ ମନୋହର ।
ସୁର କାମିନୀ କ୍ରୀଡ଼ା ଘର ॥୫୩
ସୁସଞ୍ଚ ପରିଖା ଯେସନ ।
ଆକାଶ ଗଙ୍ଗାରେ ଭୂଷଣ ॥୫୪
ପାଚେରି ଦିଶେ ଅଗ୍ନିବର୍ଣ୍ଣ ।
ଅଟ୍ଟାଳୀ ଭେଦିଛି ଗଗନ ॥୫୫
ଦ୍ୱାରେ କବାଟ ହେମମୟେ ।
ଦେଖନ୍ତା ପ୍ରାଣୀ ମନ ମୋହେ ॥୫୬
ସ୍ଫଟିକମୟ ପୁରଦ୍ୱାର ।
ଯେହ୍ନେ ବିରାଜେ ନିଶାକର ॥୫୭
କେ କହୁ ରୂପରାଶି ସୀମା ।
ଯାହା ଗଢ଼ିଲା ବିଶ୍ୱକର୍ମା ॥୫୮
ସଭା ଚତ୍ୱର ପଥ ଶୋହେ ।
ତପସ୍ୱୀଜନ ମନ ମୋହେ ॥୫୯
ଅପୂର୍ବ ବିମାନ ସମୂହେ ।
ମଣି ନିର୍ମିତ ଝରା ଶୋହେ ॥୬୦
ପ୍ରବାଳ ବେଦିକା ବିରାଜେ ।
ମଣି ଶୋଭିତ ମହାତେଜେ ॥୬୧
ଦିବ୍ୟକାମିନୀ ଗଣ ଯହିଁ ।
ନବ ବୟସୀ ରୂପ ବହି ॥୬୨
ଶ୍ୟାମ-ବିରଜ ବସ୍ତ୍ର ଯୁତ ।
ଯହି ଚଳନ୍ତି ଯୂଥ ଯୂଥ ॥୬୩
ଶୋଭା ଦିଶନ୍ତି ନାନାବର୍ଣ୍ଣେ ।
ପ୍ରଦୀପ ଶିଖା-ଅଗ୍ନି ଯେହ୍ନେ ॥୬୪

କବରୀବନ୍ଧେ ଭୃଙ୍ଗମାଳା ।
ଅମର-ପ୍ରସୂନ ମେଖଳା ॥୬୫
ନାନାସୁଗନ୍ଧ ଲେପ ଦେହେ ।
ପ୍ରମୋଦେ ମୋଦ ବାୟୁ ବହେ ॥୬୬
ସୁବର୍ଣ୍ଣ କାନ୍ଥେ ଜଳା ରନ୍ଧ୍ରେ ।
ମୋହେ ଅଗୁରୁ ଧୂପ ଗନ୍ଧେ ॥୬୭
ମାର୍ଗେ ସୁଗନ୍ଧ ଧୂପ ଧୂଆଁ ।
ମଧ୍ୟେ ଚଳନ୍ତି ସୁରପ୍ରିୟା ॥୬୮
ପାଣ୍ଡୁର ଦିଶେ ପନ୍ତି ପନ୍ତି ।
ଧୂମମଣ୍ଡଳ ସଞ୍ଚରନ୍ତି ॥୬୯
ମଣିମଣ୍ଡିତ ହେମ କାନ୍ଥେ ।
ଛାୟା ଦିଶନ୍ତି ମାର୍ଗେ ଯା'ନ୍ତେ ॥୭୦
ଜଗତୀ ଅଟ୍ଟାଳୀ ସୁସଞ୍ଚେ ।
ପତାକା ଶୋହେ ଅତି ଉଚ୍ଚେ ॥୭୧
ମୟୂର ପାରାବତ ନାଦେ ।
ସଙ୍ଗୀତ ମଙ୍ଗଳ ଶବଦେ ॥୭୨
ମୃଦଙ୍ଗ ଶଙ୍ଖ ଭେରୀ ନାଦ ।
ତାଳ ମୁରଲୀ ବୀଣାବାଦ୍ୟ ॥୭୩
ତାଣ୍ଡବେ ନାନା ବାଦ୍ୟେ ଶୋହେ ।
ଗୀତ ପ୍ରବନ୍ଧେ ମନମୋହେ ॥୭୪
ଯେ ପୁର ଭୋଗେ ତପଦାହି ।
ପାପିଷ୍ଠେ ନ ପାରନ୍ତି ଯାଇ ॥୭୫
ଭୂତ ସନ୍ତାପୀ ଖଳ ଜନେ ।
ସୁଜନେ ପୀଡ଼ନ୍ତି ଅଜ୍ଞାନେ ॥୭୬
ଶଠ ହୃଦୟ କାମୀ ଲୋଭୀ ।
ଯେ ଚିତ୍ତେ ପରହିଂସା ଭାବି ॥୭୭
ସେ କାହିଁ ଯିବେ ସେ ଭୁବନେ ।
ଯାହା ଚିନ୍ତନ୍ତି ଯୋଗୀଜନେ ॥୭୮
ଏମନ୍ତେ ପୁରେ ରାତ୍ରକାଳେ ।
ବଳି ମିଳିଲା ବାହୁ ବଳେ ॥୭୯
ବେଗେ ରୁନ୍ଧିଲା ଅଷ୍ଟଦିଗ ।
କେ ସହୁ ଅସୁରଙ୍କ ବେଗ ॥୮୦
ଭୂମି ଗଗନ-ଅନ୍ତରାଳେ ।
ବାକ୍ୟ ନ ଶୁଭଇ ଚହଳେ ॥୮୧
ଶୁକ୍ରର ଶଙ୍ଖ କରେ ଘେନି ।
ବଳି କରଇ ଘୋର ଧ୍ୱନି ॥୮୨

Dr. Sudhanshu Sekhar Mishra

ଶବଦେ ଭୁବନ କମ୍ପିଲା ।
ସେ ରବେ ଇନ୍ଦ୍ର ଭୟ କଲା ॥୮୩
ବଳି-ଉଦ୍ୟମ ଇନ୍ଦ୍ର ଶୁଣି ।
ସଭୟ ଚିତ୍ତେ ମନେ ଗୁଣି ॥୮୪
ବିଚାର କଲା ଗୁରୁମେଳେ ।
କେମନ୍ତେ ରହିବି ନିଶ୍ଚଳେ ॥୮୫
ଅସୁରେ ଅମୃତ ନ ପାଇ ।
ସମରେ ମଲେ ରୋଷ ବହି ॥୮୬
ଶୁକ୍ରର ମୃତ୍ୟୁ ସଞ୍ଜୀବନେ ।
ପ୍ରାଣ ପାଇଲେ ଯାତୁଧାନେ ॥୮୭
କିବା ଉଦ୍ୟମ ପରିମାଣି ।
ଅଇଲେ ଆମ୍ଭେ ତ ନ ଜାଣି ॥୮୮
ଭୋ ଗୁରୁ ନମୁଁ ତୋ'ର ପାୟେ।
ସ୍ୱର୍ଗେ କେମନ୍ତେ ଥିବୁ ଭୟେ ॥୮୯
କହ କି କରିବୁ ଉପାୟେ ।
ଯାବତ ରଜନୀ ନ ପାହେ ॥୯୦
ଦେଖ ଏହାର ତେଜରାଶି ।
ଅଗ୍ନିର ଶିଖା ପ୍ରାୟେ ଦିଶି ॥୯୧
ମୁଖେ କି ଆକାଶ ପିଇବ ।
ତ୍ରିଦଶ ଜିହ୍ୱାରେ ଲେହିବ ॥୯୨
ଇନ୍ଦ୍ରର ବାକ୍ୟେ ବୃହସ୍ପତି ।
ଇନ୍ଦ୍ର କୁଶଳ ମନେ ଚିନ୍ତି ॥୯୩
ବୋଲନ୍ତି ଶୁଣ ସୁରପତି ।
ତୂ ବେଗେ ଛାଡ଼ ବାରସ୍ପତି ॥୯୪

ଶୁକ୍ର ଯେ ଅସୁରଙ୍କୁ ତାରି ।
ଚିତ୍ତେ ପ୍ରତିଜ୍ଞା ଅଛି କରି ॥୯୫
ସଙ୍କଳ୍ପ କରି ପୁରୋହିତେ ।
ଯଜ୍ଞ-କହିଲା ଇନ୍ଦ୍ର ଜିତେ ॥୯୬
ତାହାର ମନ୍ତ୍ରବଳ ତେଜେ ।
ତୁ କାହିଁ ଥିବୁ ଦେବରାଜ୍ୟେ ॥୯୭
ଜୀବନେ ଯେବେ ଅଛି କାର୍ଯ୍ୟ ।
ବେଗେ ଅମରାବତୀ ତେଜ ॥୯୮
ମୁଁ ଏହା ଜାଣେ ଯୋଗଧ୍ୟାନେ ।
ବଳି ଯେ ଶୁକ୍ରର ବଚନେ ॥୯୯
ଘୋର ସମରେ ତୋତେ ଜିଣି ।
ତିନିଭୁବନେ ବୀରମଣି ॥୧୦୦
ରାଜା ହୋଇବ ଯଜ୍ଞବଳେ ।
ତୁ ଏବେ ରହ ଯା ନିରୋଳେ ॥୧୦୧
ହରିଙ୍କି ପଶ ଯା ଶରଣ ।
ତୋତେ ରଖିବେ ନାରାୟଣ ॥୧୦୨
କାଳର ବଶେ ବଞ୍ଚ ଏବେ ।
ଚିନ୍ତି ଶ୍ରୀହରିପାଦ ଭାବେ ॥୧୦୩
ଯାବତ ବଳି ତେଜ ନାଶେ ।
ତାବତ ରହ ବନବାସେ ॥୧୦୪
ଦୁର୍ଗମେ କାମରୂପେ ଚର ।
ଯହିଁ ପର୍ବତ ବନ ଘୋର ॥୧୦୫
ଏମନ୍ତ ଗୁରୁବାକ୍ୟ ଶୁଣି ।
ଅମୃତ ପ୍ରାୟ ଚିତ୍ତେ ମଣି ॥୧୦୬

ମିଳି ସକଳ ଦେବଗଣେ ।
ଭୟେ ପଶିଲେ ଘୋରବନେ ॥୧୦୭
ଏମନ୍ତେ ରଜନୀ ପ୍ରଭାତେ ।
ବଳି ଅସୁରଙ୍କ ସମେତେ ॥୧୦୮
ବସିଲା ଇନ୍ଦ୍ରର ଆସନେ ।
ଭୃଗୁବଚନେ ତୋଷମନେ ॥୧୦୯
ଇନ୍ଦ୍ର ଆସନେ ବସି ତୋଷେ ।
ତ୍ରିଲୋକ କଲା ଆତ୍ମବଶେ ॥୧୧୦
ଶତାଶ୍ୱମେଧ ଯାଗ ଫଳେ ।
ସଂସାରେ ଯଶ ଲଭେ ହେଳେ॥୧୧୧
ସୁଜନେ ଏଣେ କର ମତି ।
ତରିବ ବିଷୟ ଦୁର୍ଗତି ॥୧୧୨
ମନ ନିବେଶ ହରିପାଦେ ।
ମାୟା ତରିବ ଅପ୍ରମାଦେ ॥୧୧୩
ମନବଚନେ ଭାବ ଏବେ ।
ତରିବ ବିଷ୍ଣୁ ମାୟା ଯେବେ ॥୧୧୪
ବୋଲଇ ଦାସ ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୧୧୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବଳିରାଜା ସ୍ୱର୍ଗବିଜୟେ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚଦଶ ଅଧ୍ୟାୟ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ସୁମନେ ପରୀକ୍ଷିତ ॥୧

ଶୁକ ଉବାଚ

ଏମନ୍ତେ ପୁତ୍ରଙ୍କର ରିଷ୍ଟ ।
ସେ ଦେବମାତା ମନେ କଷ୍ଟ ॥୨
ଇନ୍ଦ୍ରର ଇନ୍ଦ୍ରପଣ ଗଲା ।
ଗିରି-ଦୁର୍ଗମେ ଆଶ୍ରେ କଲା ॥୩
ଦେବେ ଲୁଚିଲେ ଘୋର ବନେ ।
ଶୁଣି ଅଦିତି ଦୁଃଖମନେ ॥୪
ରାତ୍ର-ଦିବସ ନ ଜାଣଇ ।
ନିରତେ ଥାଏ ଗୃହେ ଶୋଇ ॥୫
ତା'ର ଭୁବନେ ଏକ ବେଳେ ।
କଶ୍ୟପ ଋଷି ବିଜେ କଲେ ॥୬
ଅଦିତି ଶୟନ ସମୀପେ ।
କଶ୍ୟପ ବସି ମନସ୍ତାପେ ॥୭
ଦେଖିଲେ ଅଦିତି ଭୁବନ ।
ଅଷ୍ଟ ସମ୍ପଦ ଅତିହୀନ ॥୮
ଉତ୍ସବ ଆନନ୍ଦ ନ ଦିଶେ ।
ଆଦିତ୍ୟ ଯେହ୍ନେ ଧୂମ୍ରତ୍ରାସେ ॥୯
ଶୟନ ସେ କୁଶ ଆସନେ ।
ଚାହିଁଲେ ଅଦିତି ବଦନେ ॥୧୦
ଦେଖିଲେ ମୁଖେ ସୁଖ ନାହିଁ ।
ଶୋକ ଆକୁଳେ କମ୍ପେ ଦେହି ॥୧୧
ଶୋକ କଲୁଷ ଦେଖି ମନ ।
ବୋଲନ୍ତି ମରୀଚି ନନ୍ଦନ ॥୧୨
ଶୁଣ ସୁନ୍ଦରୀ ଶୁଦ୍ଧଚିତ୍ତେ ।
କହଇ ତୋହର ଅଗ୍ରତେ ॥୧୩
ବ୍ରହ୍ମା ସଞ୍ଚିତ ସୃଷ୍ଟି ମଧ୍ୟେ ।
ବ୍ରାହ୍ମଣେ ବସନ୍ତି ଆନନ୍ଦେ ॥୧୪
ତାହାଙ୍କ ଗୃହେ ଦୁଃଖ ନାହିଁ ।
ଏବେ ବିପରୀତ ଦେଖଇ ॥୧୫
ଧନସମ୍ପଦ ସୁଖ ନୋହେ ।
ଶୁଣ ନିଗମ ଯାହା କହେ ॥୧୬
ଅଶେଷ ବିଶ୍ବର ଜଗତ ।
କର୍ମଳ ବଳେ ଆତଯାତ ॥୧୭
ଶୁଭ-ଅଶୁଭ ଭାବବଳେ ।
କାଳ କ୍ରୀଡ଼ଇ ଅନ୍ତରାଳେ ॥୧୮
କାଳର ବଶ ଏ ସଂସାର ।
କେ ଭୃତ୍ୟ କେ ଅବା ଈଶ୍ବର ॥୧୯
ଭୋଗ ସମ୍ପଦ ଅର୍ଥ ଗୃହେ ।
ପ୍ରାଣୀ ସାଧନ୍ତି ଅତି ମୋହେ ॥୨୦
ଏ ଭାବେ ସଂସାର ରଚିତ ।
କିବା ହୋଇଲା ଆଚମ୍ବିତ ॥୨୧
ବିପ୍ର ଅତିଥି କିବା ଘରେ ।
କୁଟୁମ୍ବ ଭରଣ ବେଭାରେ ॥୨୨
ପୂଜା ନ ପାଇ ଏ ଭୁବନେ ।
କି ଅବା ଗଲେ ଦୁଃଖ ମନେ ॥୨୩
ଯା' ପୁରୁ ଅତିଥି ବାହୁଡ଼େ ।
ସେ ପ୍ରାଣୀ ପ୍ରେତ ମୁଖେପଡ଼େ ॥୨୪
ତା'ର ସଞ୍ଚିଲା ପୁଣ୍ୟ ଯେତେ ।
ଗମନ୍ତି ଅତିଥି ସଙ୍ଗତେ ॥୨୫
ଅଗ୍ନିରେ ଯଥାକାଳେ ହବି ।
ନ ଦେଇ ହୁଅ ପରାଭବୀ ॥୨୬
ମୋ'ର ପ୍ରବାସେ ତୋ'ର ଚିତ୍ତ ।
କିବା ହୋଇଲା ମୋହଗତ ॥୨୭
ଅଗ୍ନି ପୂଜନେ ଶୁଦ୍ଧମନେ ।
ସେ କାମଧେନୁ ଯଜମାନେ ॥୨୮
ସମ୍ପଦ ବିପ୍ରଜନେ ଦ୍ୟନ୍ତି ।
ଦେବେ ଯେ କଲ୍ୟାଣ ବାଞ୍ଛନ୍ତି ॥୨୯
ବିପ୍ର ଅଗ୍ନିକି ନ ପୂଜିଲେ ।
କଲ୍ୟାଣ ଲଭେ କାହିଁ ଭଲେ ॥୩୦
ହରିଙ୍କି କାହିଁ ସେ ପାଇବ ।
ଯାକୁ ନ ପାନ୍ତି ବ୍ରହ୍ମାଶିବ ॥୩୧
ଉଭୟ ଲୋକେ ନାହିଁ ସୁଖ ।
ସର୍ବଦା ଲଭନ୍ତି ବିମୁଖ ॥୩୨
ତୋ'ର ତନୁଜ ଦେବତାଏ ।
ସ୍ବର୍ଗେ ଅଛନ୍ତି ନା' ନିର୍ଭୟେ ॥୩୩
ଇନ୍ଦ୍ରର କୁଶଳ ନ ଦେଖି ।
କିବା ହୋଇଛୁ ମନେ ଦୁଃଖି ॥୩୪
ଏମନ୍ତେ ସ୍ବାମୀବାକ୍ୟ ଶୁଣି ।
କହଇ ଦକ୍ଷର ଦୁଲଣୀ ॥୩୫

ଅଦିତି ଉବାଚ

ଗୋରୁ-ବ୍ରାହ୍ମଣ ସୃଷ୍ଟି ଲୋକେ ।
ଏ ସର୍ବେ ଛନ୍ତି ନାନା ସୁଖେ ॥୩୬
ଧର୍ମ ହିଁ ଅଛି ମୋ'ର ପୁରେ ।
ଆଗମ ନିଗମ ବେଭାରେ ॥୩୭
ତ୍ରିବର୍ଗ ମୋହର ଭୁବନେ ।
କେବେହେଁ ନ ତୁଟଇ ଦିନେ ॥୩୮
ଅଗ୍ନି-ଅତିଥି ମୋ'ର ଗୃହେ ।
ନିରାଶ ନୁହନ୍ତି କେବେହେଁ ॥୩୯
ସକଳ ଶୁଭ ତୁମ୍ଭ ବଳେ ।
ଯେ ଯାହା କର୍ମର କୁଶଳେ ॥୪୦
ତୁମ୍ଭେ କହିଲ ଯେତେ ଧର୍ମ ।
ଗୃହସ୍ଥ ସ୍ବଭାବେ ଯେ କର୍ମ ॥୪୧
ସର୍ବସମ୍ପଦେ ମୋ'ର ଚିତ୍ତ ।
କେବେହେଁ ନୁହଁଇ ମୋହିତ ॥୪୨
ତୁମ୍ଭେ ଯେ ଦେବଙ୍କ କୁଶଳେ ।
ନିରତେ ଭଜ ଯୋଗବଳେ ॥୪୩
ଏ ସୃଷ୍ଟି ମଧ୍ୟେ ଯେତେ ଜନ ।
ସକଳେ ତ୍ରିଗୁଣେ ବନ୍ଧନ ॥୪୪
ଅର୍ଜିଲା କର୍ମର ଆୟତ୍ତେ ।
ଜନ୍ତୁ ସଞ୍ଚରନ୍ତି ଜଗତେ ॥୪୫
ତଥାପି ଭକ୍ତକୁ ଭଜନ୍ତି ।
ବ୍ରହ୍ମା ଶଙ୍କର ଲକ୍ଷ୍ମୀପତି ॥୪୬
ଶୁଣ ହେ ସ୍ବାମୀ ବ୍ରହ୍ମାସୁତ ।
ତୁମ୍ଭ ପ୍ରସାଦେ ମୋ'ର ଚିତ୍ତ ॥୪୭
ଦୁର୍ଲ୍ଲଭ ଚତୁର୍ବର୍ଗ ନୋହେ ।
ସେବକୀ ପଣେ ତୁମ୍ଭ ଗୃହେ ॥୪୮
ତୁମ୍ଭର ଚିତ୍ତ ପ୍ରକାଶିତେ ।
ଯେଧର୍ମ କହ ମୋ' ଅଗ୍ରତେ ॥୪୯

Dr. Sudhanshu Sekhar Mishra

ତୁମ୍ଭର ପୁତ୍ର ଦୁଇମତେ ।
ଦେବ-ଅସୁର ଏ ଜଗତେ ॥୫୦
ଏହାଙ୍କ ଭଲ ତୁମ୍ଭେ ଇଛ ।
ଏହା ମୁଁ ଦେଖଇ ପ୍ରତ୍ୟକ୍ଷ ॥୫୧
ମୋ' ପୁତ୍ରେ ସତ୍ତ୍ୱଗୁଣେ ଥା'ନ୍ତି ।
ଅସୁରେ ରଜ-ତମ ଚିନ୍ତି ॥୫୨
ପୀଡ଼ା କରନ୍ତି ସାଧୁଜନେ ।
ଧର୍ମ ରଖନ୍ତି ମୋ ନନ୍ଦନେ ॥୫୩
ମୋ' ସୁତେ ଅସୁରଙ୍କ ଡରେ ।
ଲୁଚିଲେ ବନ-ଗିରି-ଘୋରେ ॥୫୪
ଇନ୍ଦ୍ରକୁ ନ ଦେଖି ମୋ' ମନ ।
ନିରତେ ହୁଏ ଛନଛନ ॥୫୫
କହ କି କରିବି ଉପାୟେ ।
କେମନ୍ତେ ଇନ୍ଦ୍ର ସ୍ୱର୍ଗେ ରହେ ॥୫୬
ମୋ'ର ସପତ୍ନୀ ପୁତ୍ର ବଳେ ।
ବିଚାର କରି ଗୁରୁମେଳେ ॥୫୭
ଶୁକ୍ରର ମନ୍ତ୍ରବଳ ତେଜେ ।
ବଳି ବସିଲା ସ୍ୱର୍ଗରାଜ୍ୟେ ॥୫୮
ମିଳିଲେ ଅନେକ ଦାନବ ।
ହରିଲେ ଇନ୍ଦ୍ରର ବିଭବ ॥୫୯
ସେ ଏବେ ହୋଇ ସ୍ଥାନ ଭ୍ରଷ୍ଟ ।
ଅନେକ ପାଉଅଛି କଷ୍ଟ ॥୬୦
ମୋ' ତହୁଁ ଦୁଃଖୀ କେ ଶୟଳେ ।
କହିଲି ତୁମ୍ଭ ପାଦ ତଳେ ॥୬୧
ତୋ'ର କୁମରେ ଭଲେ ଥିବେ ।
ମୋ' ପୁତ୍ରେ ସ୍ୱସ୍ଥାନେ ରହିବେ ॥୬୨
ଏମନ୍ତ ଆଜ୍ଞା ମୋତେ କର ।
ତୁମ୍ଭେ ତ ବୁଦ୍ଧିରେ ଈଶ୍ୱର ॥୬୩
ଏମନ୍ତ ଅଦିତି ବଚନେ ।
କଶ୍ୟପ ବିଚାରନ୍ତି ମନେ ॥୬୪
ଦେଖ ଏ ବିଷ୍ଣୁମାୟା ବଳେ ।
ଜୀବର ବନ୍ଧନ ଶୟଳେ ॥୬୫
ପଞ୍ଚଭୌତିକ ଏ ଶରୀର ।
ଆତ୍ମା ନିର୍ଲେପ ନିରାକାର ॥୬୬
ଶରୀର ପତ୍ନୀ ପୁତ୍ର ଆଦି ।
ଏ ବିଷ୍ଣୁ ମାୟାରେ ସମ୍ପାଦି ॥୬୭

କେ ଏହା ଅନ୍ୟଥା କରିବ ।
ବ୍ରହ୍ମା ଶଙ୍କର ବାସୁଦେବ ॥୬୮
ପତ୍ନୀର ବଚନ ପ୍ରଶଂସି ।
କହନ୍ତି ପ୍ରଜାପତି ହସି ॥୬୯
ତୁ ଏବେ ମୋ'ର ବୋଲ କର ।
ହରି ଚରଣ ମନେ ଧର ॥୭୦
ସେ ହରି ତୋ'ର ମନଦୁଃଖ ।
ନିବାରି ଦେବେ ସ୍ୱର୍ଗସୁଖ ॥୭୧
ଆରତଜନ-ବନ୍ଧୁ ହରି ।
ସେ ପାରେ ଆରତ ନିବାରି ॥୭୨
ଯାର ଚରଣ ଆଶ୍ରେ କଲେ ।
ସଙ୍କଟୁ ତରେ ପ୍ରାଣୀ ଭଲେ ॥୭୩
ତା'ର ଚରଣେ ସେବା କର ।
ନିର୍ଭୟେ ମନଦୁଃଖୁଁ ତର ॥୭୪
କଶ୍ୟପ ମୁଖୁଁ ଏହା ଶୁଣି ।
ଅଦିତି କହେ ଯୋଡ଼ି ପାଣି ॥୭୫
ଭୋ ନାଥ କହ ବୁଦ୍ଧି ମୋତେ ।
ହରିଙ୍କି ସେବିବି କେମନ୍ତେ ॥୭୬
ଯେମନ୍ତେ ମୋ'ର ମନୋରଥ ।
ସଫଳ କରେ ଜଗନ୍ନାଥ ॥୭୭
ପୁତ୍ର ବସିବ ଇନ୍ଦ୍ରପଦେ ।
ଭୋନାଥ ନମେ ତୋ'ର ପାଦେ ॥୭୮
ଏମନ୍ତେ ପତ୍ନୀ-ବାକ୍ୟ ଶୁଣି ।
ବ୍ରହ୍ମାନନ୍ଦନ ମନେ ଗୁଣି ॥୭୯

କଶ୍ୟପ ଉବାଚ

ବୋଲନ୍ତି ଶୁଣ ମୋ' ଘରଣୀ ।
ହରିତୋଷଣ ସେବାବାଣୀ ॥୮୦
ଯେ ବ୍ରତେ ପ୍ରଭୁ ହୃଷୀକେଶ ।
ତୋହର ଉଦରେ ପ୍ରବେଶ ॥୮୧
ସେ ବିଷ୍ଣୁ ଦ୍ୱିଜ ଖର୍ବ ରୂପେ ।
ବଳିକି ଛଳି ଦାନକଳ୍ପେ ॥୮୨
ତୋ'ର ପୁତ୍ରକୁ ସେ ରଖିବ ।
ତୁ ଏବେ ହରି ପାଦେ ସେବ ॥୮୩
ହରିତୋଷଣ ବ୍ରତ କର ।
ଏ ଦୁଃଖ ସାଗରୁ ନିସ୍ତର ॥୮୪

ଶୁଣ କହିବା ବେଦମତେ ।
ଏ ବ୍ରତ କରିବୁ ଯେମନ୍ତେ ॥୮୫
ଫାଲଗୁନ-ଶକ୍ଳପକ୍ଷ-ଯୁତେ ।
ଦ୍ୱାଦଶ ଦିନ ପୟୋବ୍ରତେ ॥୮୬
ଅର୍ଚ୍ଚନ କରି ଭକ୍ତିବଳେ ।
ଶ୍ରୀକୃଷ୍ଣ ଚରଣ କମଳେ ॥୮୭
ସେବା କରିବ ଯେବା ମତେ ।
ଶୁଣ କହିବା କଣ୍ଟ ତୋତେ ॥୮୮
ପ୍ରାତହୁଁ ଅମାବାସ୍ୟା ଦିନ ।
ମନ୍ଦିରୁ ଗମିବ ବହନ ॥୮୯
ବରାହ ଦନ୍ତ ଖାତେ ଯାଇ ।
ମୃତ୍ତିକା ବାମ ହସ୍ତେ ଲଇଁ ॥୯୦
ଶୁଣ ମନ୍ତ୍ରିବ ଯେଉଁ ମନ୍ତ୍ରେ ।
ଅଙ୍ଗେ ଘେନିବ ଯେବା ତନ୍ତ୍ରେ ॥୯୧
ଭୋ ଦେବୀ ତୁ ଯେ ଅନ୍ତଃକାଳେ ।
ନିମଗ୍ନେ ଥିଲୁ ମହାଜଳେ ॥୯୨
ପାତାଳ-ଜଳ-ପଙ୍କେ ଥିଲୁ ।
ବରାହ-ଦଶନେ ଉଠିଲୁ ॥୯୩
ବରାହ-ଦନ୍ତ-ଅଗ୍ରବାସୀ ।
ତୁ ମୋ'ର ହର ପାପରାଶି ॥୯୪
ଏମନ୍ତେ ମୃତ୍ତିକା ମନ୍ତ୍ରିବ ।
ଶରୀର-ସର୍ବାଙ୍ଗେ ଲେପିବ ॥୯୫
ସ୍ନାନ କରିବ ପ୍ରାତଃକାଳେ ।
ସୂର୍ଯ୍ୟ-ଉଦୟେ ଶୁଦ୍ଧଜଳେ ॥୯୬
ମାର୍ଜନା ସାରି ଶୁଦ୍ଧଗାତ୍ରେ ।
ସଂଯମ ଆତ୍ମା ଶୁଦ୍ଧଚିତ୍ତେ ॥୯୭
ମୂର୍ତ୍ତିରେ ଅଥବା ଅନଳେ ।
ସ୍ଥଣ୍ଡିଳେ ଆଦିତ୍ୟମଣ୍ଡଳେ ॥୯୮
ଜଳେ ଅଥବା ଗୋରୁଗାତ୍ରେ ।
ଅର୍ଚ୍ଚନା କରିବ ଏ ମତେ ॥୯୯
ଏମନ୍ତେ ପୂଜା ସ୍ଥାନେ ଚିନ୍ତି ।
ଶୁଣ କରିବ ଯେବା ସ୍ତୁତି ॥୧୦୦
ନମସ୍ତେ ପ୍ରଭୁ ଭଗବାନ ।
ମହାପୁରୁଷ ଶୁଦ୍ଧଧାମ ॥୧୦୧
ହେ ଭଗବତ ନମସ୍ତୁତେ ।
ସାକ୍ଷୀ ସ୍ୱରୂପ ଏ ଜଗତେ ॥୧୦୨

Dr. Sudhanshu Sekhar Mishra

ସକଳ-ଭୂତର ନିବାସ ।
ନମସ୍ତେ ପ୍ରଧାନ ପୁରୁଷ ॥୧୦୩
ଚତୁର୍ବିଂଶତି-ଗୁଣ-ଜ୍ଞାତା ।
ଗୁଣ ସଂଖ୍ୟାନେ ହେତୁ କର୍ତ୍ତା ॥୧୦୪
ଦ୍ୱିଶିର ତ୍ରିଚରଣ ତୁହି ।
ଚଳଇ ଶୃଙ୍ଗ ତନୁ ଦେହୀ ॥୧୦୫
ସପତ ହସ୍ତ ଯଜ୍ଞ ରୂପୀ ।
ଆତ୍ମା ତୋ ତିନିବେଦେ ବ୍ୟାପୀ ॥୧୦୬
ନମସ୍ତେ ଶିବ-ରୁଦ୍ରବର ।
ନମସ୍ତେ ସର୍ବ-ଶକ୍ତିଧର ॥୧୦୭
ସକଳ ବିଦ୍ୟା ଅଧିପତି ।
ସର୍ବଭୂତଙ୍କ ଆତ୍ମାଗତି ॥୧୦୮
ହିରଣ୍ୟ ଗର୍ଭ ନମୋନମଃ ।
ଜଗତ-ପ୍ରାଣ ଆତ୍ମାରାମ ॥୧୦୯
ଯୋଗ-ଐଶ୍ୱର୍ଯ୍ୟ ଯା' ଶରୀର।
ଯୋଗର ହେତୁ ଯୋଗେଶ୍ୱର ॥୧୧୦
ନମସ୍ତେ ଆଦି ଦେବ ଦେବ ।
ନମସ୍ତେ ସଂସାର-ପ୍ରଭବ ॥୧୧୧
ନମସ୍ତେ ନର-ନାରାୟଣ ।
ନମସ୍ତେ ପରମ-କଲ୍ୟାଣ ॥୧୧୨
ନମୋ ମର୍କତ-ଶ୍ୟାମ-ଦେହ ।
ନମସ୍ତେ କମଳା-ଆଶ୍ରୟ ॥୧୧୩
ନମୋ ଗୋବିନ୍ଦ ପୀତବାସ ।
ନମସ୍ତେ ଭକତ-ବିଶ୍ୱାସ ॥୧୧୪
ନମସ୍ତେ ସର୍ବ ବରଦାତା ।
ନମସ୍ତେ ସର୍ବ ମାତାପିତା ॥୧୧୫
ଶରଣ ଜନେ ରକ୍ଷାକରୁ ।
ନମୋ ଭକତ-କଳ୍ପତରୁ ॥୧୧୬
ତୋ' ପାଦରେଣୁ ଧରି ଶିରେ।
ମୋକ୍ଷ-ସାଧନ ଯୋଗବଳେ ॥୧୧୭
ଯେ ପାଦପଦ୍ମେ ଭକ୍ତ ସେବେ।
ଭାବେ ଖଟନ୍ତି ଦେବୀଦେବେ॥୧୧୮
ତୋ' ପାଦ ସରୋଜ-ସୁବାସେ।
ଅଶେଷ ଭବଭୟ ନାଶେ ॥୧୧୯
ଏମନ୍ତେ ଆବାହନ କରି ।
ନିଶ୍ଚଳେ ଚିତ୍ତେ ଭାବଭରି ॥୧୨୦

ଏମନ୍ତେ ପାଦ୍ୟ ଅର୍ଘ୍ୟ ଆଦି ।
ଶ୍ରଦ୍ଧା-ଭକତିରେ ନିବେଦି ॥୧୨୧
ଅର୍ଚ୍ଚନାକରି ଗନ୍ଧମାଲ୍ୟେ ।
ପୂଜିବ ଆନନ୍ଦେ ନିଶ୍ଚଳେ ॥୧୨୨
ଉତ୍ତମବସ୍ତ୍ର-ଅଳଙ୍କାର ।
ସୁଗନ୍ଧ-ଧୂପ ମନୋହର ॥୧୨୩
ନୈବେଦ୍ୟ କରି ଷଡ୍‌ରସେ ।
ପୂଜିବ ପ୍ରପାନ-ପ୍ରୟାସେ ॥୧୨୪
ଦଧି-ଶାକର-ମଧୁ-ଘୃତେ ।
ସୁଶାଳି ଅନ୍ନ ଦୁଗ୍ଧ ଯୁତେ ॥୧୨୫
ନାନା ପ୍ରକାରେ ଭୋଗ ଦେଇ ।
ହୃଦେ ଭକତି ଭାବ ବହି ॥୧୨୬
ଯେ ମନ୍ତ୍ର ଦ୍ୱାଦଶ ଅକ୍ଷର ।
ଜପିବ ଶହେଆଠ ବାର ॥୧୨୭
ହୋମ କରିବ ହୁତାଶନେ ।
ଉଚ୍ଚାରି ମୂଳମନ୍ତ୍ର ଧ୍ୟାନେ ॥୧୨୮
ଶ୍ରୋତ୍ରିୟ-ବ୍ରାହ୍ମଣ ବସାଇ ।
ସୁସ୍ୱାଦୁ ଅନ୍ନ ଭୋଗ ଦେଇ ॥୧୨୯
ବିପ୍ରଙ୍କୁ ଦେଇ ଆଚମନ ।
ନିବେଦି ସୁମୁଖ ବାସନ ॥୧୩୦
ଅତିଥି ଅନ୍ଧ ରଙ୍କୀ ଦୁଃଖୀ ।
ତା'ଙ୍କୁ ଭୋଜନେ କରି ସୁଖୀ॥୧୩୧
ତାହାଙ୍କୁ ଅନ୍ନଦାନ ଦେଇ ।
ସନ୍ତୋଷେ ଚିତ୍ତେ ଆଜ୍ଞା ପାଇ ॥୧୩୨
ଅନ୍ନ ଭୁଞ୍ଜିବ ସାୟଂକାଳେ ।
ବାଳକ ପାଞ୍ଚ-ସାତ ମେଳେ ॥୧୩୩
ରାତ୍ରେ ବଞ୍ଚିବ ବିଷ୍ଣୁ ଗୀତେ ।
ସଂଯତ-ବ୍ରହ୍ମଚାରୀ-ବ୍ରତେ ॥୧୩୪
ରାତ୍ର ଅନ୍ତରେ ପ୍ରାତଃକାଳେ ।
ସ୍ନାନ କରିବ ଶୁଦ୍ଧ ଜଳେ ॥୧୩୫
ଯଥାର୍ଥ ବିଧି ସମଚିତ୍ତେ ।
ସୁଗନ୍ଧଜଳ ଦୁଗ୍ଧ ଯୁତେ ॥୧୩୬
ସ୍ନାନ କରାଇ ଦେବମୂର୍ତ୍ତି ।
ପୟ-ଭକ୍ଷଣେ ପୟୋବ୍ରତୀ ॥୧୩୭
ପୂର୍ବର ପ୍ରାୟେ ହୋମକରି ।
ବିପ୍ରମାନଙ୍କୁ ଭୋଜ୍ୟେ ବରି ॥୧୩୮

ଦ୍ୱାଦଶ ଦିନ ଏହି ମତେ ।
ବଞ୍ଚିବ ଶୁଚି ପୟୋବ୍ରତେ ॥୧୩୯
ଏମନ୍ତ ହରି-ଆରାଧନେ ।
ହୋମାଦି ବ୍ରାହ୍ମଣ ଭୋଜନେ ॥୧୪୦
ପ୍ରତୀପ ଦିନୁ ଏ ଅଭ୍ୟାସି ।
ଯାବତ ଶୁକ୍ଳ-ତ୍ରୟୋଦଶୀ ॥୧୪୧
ତ୍ରିକାଳେ କରିବ ସ୍ନାହାନ ।
ରଜନୀ ଧରଣୀ ଶୟନ ॥୧୪୨
ଅସାଧୁ-ଅଳାପ ତେଜିବ ।
ନିନ୍ଦିତ ଭୋଗ ନ କରିବ ॥୧୪୩
ହିଂସା ତେଜିବ ସର୍ବଭୂତେ ।
ବିଷ୍ଣୁ-ଆଶ୍ରୟ କରି ନିତ୍ୟେ ॥୧୪୪
ଏମନ୍ତେ ତ୍ରୟୋଦଶୀ ଦିନ ।
ବିଷ୍ଣୁଙ୍କୁ କରାଇ ସ୍ନାହାନ ॥୧୪୫
ଶାସ୍ତ୍ର-ପ୍ରମାଣେ ପଞ୍ଚାମୃତେ ।
କରିବ ବେଦବିଧି-ମତେ ॥୧୪୬
ପୂଜା କରିବ ଶୁଦ୍ଧଚିତ୍ତେ ।
ସମ୍ଭାର ଶକ୍ତି-ଅନୁମତେ ॥୧୪୭
ଶ୍ରୀହରି ରୂପ ଧ୍ୟାନେ ଧରି ।
ଅନଳେ ମନ୍ତ୍ରେ ହୋମ କରି ॥୧୪୮
ପାୟସ ଚରୁ ପଞ୍ଚାମୃତେ ।
ମନ୍ତ୍ର ଉଚ୍ଚାରି ଶୁଦ୍ଧଚିତ୍ତେ ॥୧୪୯
ନାନା ପ୍ରକାରେ ନଇବେଦ୍ୟ ।
କଟୁ ମଧୁର ଆଦି ସ୍ୱାଦ ॥୧୫୦
ନିବେଦି ବିଷ୍ଣୁ-ପ୍ରୀତିଅର୍ଥେ ।
ପୂଜା କରିବ ନାନା ମତେ ॥୧୫୧
ଅଗ୍ନିପୂଜନ କର୍ମ ସାରି ।
ଗୁରୁ-ଆଚାର୍ଯ୍ୟ ପାଦ ଧରି ॥୧୫୨
ଧନ-ବସନ-ଅଳଙ୍କାର ।
ଯେବା ଦକ୍ଷିଣା ବ୍ରତସାର ॥୧୫୩
ଋତ୍ୱିକ ଜନ ମନ ତୋଷି ।
ଦୁଃଖୀ-ଦରିଦ୍ରଙ୍କୁ ଅଶ୍ୱାସି ॥୧୫୪
ଭୋଜନେ ତୋଷି ସର୍ବପ୍ରାଣୀ।
ଯେଉଁଣେ ସନ୍ତୋଷ ଚକ୍ରପାଣି ॥୧୫୫
ସକଳ ଜ୍ଞାତି-ବନ୍ଧୁମେଳେ ।
ଭୋଜନ ସାରି ସାୟଂକାଳେ ॥୧୫୬

Dr. Sudhanshu Sekhar Mishra

ସୁବାଦ୍ୟ-ନୃତ୍ୟ-ଗୀତସ୍ୱରେ ।
ଉତ୍ସବ କରିବ ମନ୍ଦିରେ ॥୧୫୭
ଏମନ୍ତେ ପୟୋବ୍ରତ କରି ।
ଯେବା ଜଗତେ ନରନାରୀ ॥୧୫୮
ମନୋବାଞ୍ଛିତ ସେ ଲଭନ୍ତି ।
ଅନ୍ତେ ବିଷ୍ଣୁମାୟା ତରନ୍ତି ॥୧୫୯
ଏ ବ୍ରତ ବ୍ରହ୍ମାମୁଖୁଁ ପୂର୍ବେ ।
ମୁହିଁ ଯେ ଶୁଣିଛି ପ୍ରସ୍ତାବେ ॥୧୬୦
ତୁ ଯେଣୁ ମୋହର ଭାବିନୀ ।
ତେଣୁ କହିଲି ଭାବଘେନି ॥୧୬୧
ଏହା ତୁ ଶୁଦ୍ଧଚିତ୍ତେ ଧର ।
ଏ ବ୍ରତ ସର୍ବଯଜ୍ଞସାର ॥୧୬୨
ହରି-ସନ୍ତୋଷ ବ୍ରତ କର ।
ଦୁର୍ଗମ-ସଙ୍କଟୁ ଉଦ୍ଧର ॥୧୬୩
ସର୍ବଭୂତଙ୍କ ପୂଜା ଏହି ।
ଦାନ-ଯଜ୍ଞାଦି ଯେତେ ଧାୟି ॥୧୬୪
ଏ ବ୍ରତେ ଈଶ୍ୱର-ଅର୍ପଣ ।
ଚତୁରବର୍ଗର କାରଣ ॥୧୬୫
ଯମ-ନିୟମ ଏଣେ ସାଧି ।
ଏ ଧର୍ମେ ବିଷ୍ଣୁଙ୍କୁ ସମ୍ପାଦି ॥୧୬୬
ତୁ ଏହା ଏକମନେ ଧର ।
ହରି-ସନ୍ତୋଷ ବ୍ରତ କର ॥୧୬୭
ତୋ'ର ବାଞ୍ଛିତ ହରି ଦେବେ ।
ଦେବଙ୍କୁ ନିଶ୍ଚିନ୍ତେ ରଖିବେ ॥୧୬୮
କହଇ ଦାସ ଜଗନ୍ନାଥ ।
ଅଦିତି ଶୁଣି ପୟୋବ୍ରତ ॥୧୬୯
ଚିତ୍ତେ ଚିନ୍ତିଲା ଭଗବାନ ।
ସୁଜନେ ଏଣେ କର ଧ୍ୟାନ ॥୧୭୦

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ଅଦିତି-ପୟୋବ୍ରତ-
କଥନଂ ନାମ ପଞ୍ଚଦଶୋଽଧ୍ୟାୟଃ ॥

## ଷୋଡ଼ଶ ଅଧ୍ୟାୟ

ଶ୍ରୀକୃଷ୍ଣେ ଚିନ୍ତି ମନେମନ ।
କହନ୍ତି ବ୍ୟାସଙ୍କ ନନ୍ଦନ ॥୧

ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି ।
କଶ୍ୟପ ମୁଖୁଁ ଏହାଶୁଣି ॥୨
ଅଦିତି କଛି ଅନ୍ତର୍ଗତେ ।
ବିଧି ପୂର୍ବକ ପୟୋବ୍ରତେ ॥୩
ଦ୍ୱାଦଶ ଦିନ ବିଧିମତେ ।
ସଂଯମେ ରହିଲା ଯୁଗତେ ॥୪
ଏକାଗ୍ରଚିତ୍ତେ ହରିପାଦେ ।
ସେବା କଛିଲା ଅପ୍ରମାଦେ ॥୫
ସୁଦୃଢ଼ ମନ ବୁଦ୍ଧିବଳେ ।
ଇନ୍ଦ୍ରିଙ୍କି ନିରୋଧି ନିଶ୍ଚଳେ ॥୬
ଏକାନ୍ତ ଚିତ୍ତେ ହରିପାଦେ ।
ଧ୍ୟାନ ସମ୍ପାଦି ଅପ୍ରମାଦେ ॥୭
ଦ୍ୱାଦଶ ଦିନ ପୟୋବ୍ରତେ ।
ବିଷ୍ଣୁ ସେବିଲା ଅବିରତେ ॥୮
ଅଦିତି ପୟୋବ୍ରତ ତୋଷେ ।
ବିଷ୍ଣୁ ମିଳିଲେ ତା'ର ପାଶେ ॥୯
ଶରୀର କାନ୍ତି ନୀଳଘନ ।
ପୀତବସନ ପରିଧାନ ॥୧୦
ଆଜାନୁଲମ୍ବେ ଚାରିଭୁଜେ ।
ଗଦାବ୍ଜ-ଶଙ୍ଖ-ଚକ୍ର ସାଜେ ॥୧୧
ସମୀପେ ବିଷ୍ଣୁ ରୂପ ଦେଖି ।
ଉନ୍ମୀଳ କଲା ବେନି ଆଖି ॥୧୨
ଉଠିଲା ଅଶ୍ରୁ ଗଦଗଦେ ।
ଶିର ନିବେଶି ପଦ୍ମପାଦେ ॥୧୩
ଭୂମିରେ ଦଣ୍ଡବତେ ଶୋଇ ।
କର ଅଞ୍ଜଳି ଶିରେ ଦେଇ ॥୧୪
ଆନନ୍ଦ ସାଗରେ ବୁଡ଼ିଲା ।
ନିଜ ଶରୀର ପାସୋରିଲା ॥୧୫
ଶରୀର କମ୍ପିଲା ବିକଳେ ।
କଣ୍ଠ କୁଣ୍ଠିତ ଅଶ୍ରୁଜଳେ ॥୧୬
ବଦନୁ ବଚନ ନ ସ୍ଫୁରେ ।
ପ୍ରାଣ ହୋଇଲା କଣ୍ଠ ଦ୍ୱାରେ ॥୧୭
ଚକୋର ଚନ୍ଦ୍ର ଦେଖି ଯେହ୍ନେ ।
ଅମୃତ ପିଅଇ ଲୋଚନେ ॥୧୮
ମନି ନିବେଶି କୃଷ୍ଣ ପାଦେ ।
ଆନନ୍ଦେ ଶୋକ ଗଦଗଦେ ॥୧୯
ବୋଲଇ ବିଷ୍ଣୁମୁଖ ଚାହିଁ ।
ସାନନ୍ଦେ ଶିରେ କର ଦେଇ ॥୨୦

ଅଦିତି ଉବାଚ

ହେ ଯଜ୍ଞେଶ୍ୱର ଜଗନ୍ନାଥ ।
ତୋ'ର ଚରଣେ ସର୍ବତୀର୍ଥ ॥୨୧
ସର୍ବ ମଙ୍ଗଳ ତୋ'ର ନାମ ।
ରୂପ-ଅରୂପ ଅନୁପମ ॥୨୨
ଶରଣାଗତ ଦୁଖ ହର ।
ତୁ ନାଥ କରୁଣା ସାଗର ॥୨୩
କରୁଣାକର ବିଶ୍ୱବ୍ୟାପୀ ।
ବିଶ୍ୱ ଭାବନ ବିଶ୍ୱରୂପୀ ॥୨୪
ସ୍ଥିତି ଉତ୍ପତ୍ତି ସଂହାରଣ ।
ତୁ ନାଥ ପରମକାରଣ ॥୨୫
ଆୟୁ ସମ୍ପଦ ବୁଦ୍ଧି ଜ୍ଞାନ ।
ତୋ'ର ସନ୍ତୋଷେ ପାନ୍ତି ଜନ ॥୨୬
କୈବଲ୍ୟ ପ୍ରାପ୍ତ ତୋ ସନ୍ତୋଷେ ।
ଅନ୍ତେ ପରମପଦେ ମିଶେ ॥୨୭
ଭୋ ନାଥ ତୋ'ର ଶ୍ରୀଚରଣ ।
ଯେ ପ୍ରାଣୀ ପଶନ୍ତି ଶରଣ ॥୨୮
ସେ ସର୍ବ ଦୁର୍ଗତି ତରନ୍ତି ।
ଜନ୍ମ-ମରଣୁଁ ନିସ୍ତରନ୍ତି ॥୨୯
ଭୋନାଥ ପ୍ରଭୁ ଆଦିମୂଳ ।
ଶୁଣିମା ମୋହର ବିକଳ ॥୩୦
ଦୁଃଖେ କୁଣ୍ଠିତ ମୋ'ର ପ୍ରାଣ ।
ପଶିଲି ତୋ' ପାଦେ ଶରଣ ॥୩୧
ପୁତ୍ରେ ନ ରହି ସ୍ୱର୍ଗପୁରେ ।
ଲୁଚିଲେ ବନ-ଗିରି-ଘୋରେ ॥୩୨

Dr. Sudhanshu Sekhar Mishra

ସର୍ବ ଦାନବ ସଙ୍ଗେ ମିଳି ।
ବସିଲା ଇନ୍ଦ୍ରାସନେ ବଳି ॥୩୩
ଶୁକ୍ରର ଯଜ୍ଞତେଜ ବଳେ ।
ଭୟେ ଭାଜିଲେ ଦିଗପାଳେ ॥୩୪
ଇନ୍ଦ୍ର ହୋଇଲା ଅରକ୍ଷିତ ।
ତ୍ରାହି କରିବ ଜଗନ୍ନାଥ ॥୩୫
ମୋ'ର ପୁତ୍ରଙ୍କୁ ରକ୍ଷା କର ।
ଭୋଳାନାଥ ଶରଣ ତୋହର ॥୩୬
ସପତ୍ନୀ ଦୁଃଖ କି ନ ଜାଣୁ ।
ତୁ ନାଥ ଅନ୍ତର୍ଯ୍ୟାମୀ ଯେଣୁ ॥୩୭

ଶୁକ ଉବାଚ

ଶୁଣିଣ ଅଦିତି ବଚନ ।
ପ୍ରସନ୍ନେ କମଳଲୋଚନ ॥୩୮
ଅଦିତି ବଦନକୁ ଚାହିଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୩୯

ଭାଗବାନ ଉବାଚ

ଶୁଣ ଅଦିତି ଦେବମାତ ।
ଜାଣଇଁ ତୋ'ର ମନୋରଥ ॥୪୦
ବଳି ଯେ ବଳେ ସ୍ୱର୍ଗ ନେଲା ।
ବିକଳେ ଇନ୍ଦ୍ର ପଳାଇଲା ॥୪୧
ତା'ର ସଙ୍ଗତେ ଦେବଗଣେ ।
ପଶିଲେ ଗିରି-ଘୋର ବନେ ॥୪୨
ଏବେ ସେ ଆସି ସ୍ୱର୍ଗପୁରେ ।
ଶତ୍ରୁକୁ ଜିଣି ରଣଘୋରେ ॥୪୩
ସ୍ୱର୍ଗେ ସେ ବସିବ ନିଶ୍ଚିନ୍ତେ ।
ତୁ ଏହା କରିଅଛୁ ଚିତ୍ତେ ॥୪୪
ସମରେ ଅସୁର ମରଣେ ।
କାନ୍ଦିବେ ତା'ଙ୍କ ବଧୂଗଣେ ॥୪୫
ସ୍ୱାମୀ-ମରଣେ ଅତି ଦୁଃଖୀ ।
ତୁ ତାହା ଦେଖି ହେବୁ ସୁଖୀ ॥୪୬
ସ୍ୱର୍ଗେ ବସିବ ଇନ୍ଦ୍ର ତୋ'ର ।
ସଙ୍ଗତେ ଘେନି ସର୍ବ ସୁର ॥୪୭
ସକଳ ସମ୍ପଦ ମିଳିବ ।
ତ୍ରିଲୋକ ନିଶ୍ଚିନ୍ତେ ପାଳିବ ॥୪୮

ଏମନ୍ତେ ଚିତ୍ତେ କଚ୍ଛୁ ତୁହି ।
ଶୁଣ କହଇ ଯାହା ମୁହିଁ ॥୪୯
ଅସୁରେ ଯାଇ ସ୍ୱର୍ଗପୁର ।
ବଳେ ହୋଇଲେ ବଳୀୟାର ॥୫୦
ବଳି ସଙ୍ଗତେ ଘୋର ରଣେ ।
କାହିଁ ଜିଣିବେ ଦେବଗଣେ ॥୫୧
ଏ କଥା ଭଲେ ମୁଁ ଜାଣଇଁ ।
ତୋ'ର ପୁତ୍ରଙ୍କୁ ଭୟ ନାହିଁ ॥୫୨
ଯେମନ୍ତେ ତୋହର କୁମରେ ।
ସୁଖେ ବସିବେ ସ୍ୱର୍ଗପୁରେ ॥୫୩
ତୁ ଯେ ମୋହର ପାଦଗତେ ।
ସେବିଲୁ ପୟୋବ୍ରତ ମତେ ॥୫୪
ଏକଥା ଅନ୍ୟଥା ନୋହିବ ।
ଏହା ଜାଣନ୍ତି ବ୍ରହ୍ମାଶିବ ॥୫୫
ବ୍ରତେ ତୁ ତୋଷିଅଛୁ ମୋତେ ।
ଇନ୍ଦ୍ର-ସମ୍ପଦ ରକ୍ଷା ଅର୍ଥେ ॥୫୬
ମୋହର ସେବା-ବ୍ରତ ଫଳ ।
କେବେହେଁ ନୁହଁଇ ବିଫଳ ॥୫୭
ମୁଁ ନିଜ ଅଂଶେ ତୋ'ର ଗର୍ଭେ ।
ଜନ୍ମିବି ପୟୋବ୍ରତ ଭାବେ ॥୫୮
ଏ ବ୍ରତ ମହିମା ଏମନ୍ତ ।
ଅବଶ୍ୟ ମୋତେ ଲଭେ ସୁତ ॥୫୯
ତୋ'ର ପୁତ୍ରଙ୍କୁ ମୁଁ ରଖିବି ।
ଶତ୍ରୁଙ୍କ ଭୟ ନିବାରିବି ॥୬୦
ନିଶ୍ଚେ ରଖିବି ଦେବକୁଳ ।
ତୁ ସ୍ୱାମୀ ସଙ୍ଗେ କର ମେଳ ॥୬୧
ଏ ବ୍ରତଫଳ ଯେବେ ପାଇ ।
ବିଶ୍ୱାସେ ପରକୁ ନ କହି ॥୬୨
ସର୍ବ ସମ୍ପଦ ଲଭ ତୁହି ।
ଦେବମାତଙ୍କୁ ଏତେ କହି ॥୬୩
ତକ୍ଷଣେ ହୋଇଲେ ଅନ୍ତର ।
ଶୁଣ ପରୀକ୍ଷ ନୃପବର ॥୬୪
ଏମନ୍ତ ବିଷ୍ଣୁର ବଚନ ।
ଶୁଣି ଅଦିତି ତୋଷମନ ॥୬୫
ଆନନ୍ଦେ ପ୍ରଭୁ ହୃଷିକେଶ ।
କଶ୍ୟପ ଶରୀରେ ପ୍ରବେଶ ॥୬୬

ବିଷ୍ଣୁର ତେଜେ ବ୍ରହ୍ମଋଷି ।
ଉଦୟ-ରବି ପ୍ରାୟ ଦିଶି ॥୬୭
ଅମରଗୁରୁ-ଲଗ୍ନ ବେଳେ ।
ଉଚ୍ଚେ ଅଛନ୍ତି ଗ୍ରହବଳେ ॥୬୮
ମୁହୂର୍ତ୍ତ ନାମ ଅଭିଜିତ ।
ପତି-କାମିନୀ ଏକ ଯୁକ୍ତ ॥୬୯
ରତି ଆନନ୍ଦେ ରଜ-ବୀର୍ଯ୍ୟେ ।
ଗର୍ଭ-ସଞ୍ଚାର ଅତି ତେଜେ ॥୭୦
ଦାରୁ-ସଂଯୋଗେ ଅଗ୍ନି ଯେହ୍ନେ ।
ତେଜ ପ୍ରକାଶେ ଅନୁଦିନେ ॥୭୧
ଅଦିତି ବିଷ୍ଣୁ ଗର୍ଭେ ଧରି ।
ଶଶାଙ୍କ ପ୍ରାୟେ ମନୋହାରୀ ॥୭୨
ଦିଶଇ ଅତି ରୂପକାନ୍ତି ।
ବିଜୁଳି ଯେହ୍ନେ ଝଟକନ୍ତି ॥୭୩
ଦିନକୁ ଦିନ ଶୁଭ୍ରଜ୍ୟୋତି ।
ଯହିଁ ବିଜୟେ ବିଷ୍ଣୁମୂର୍ତ୍ତି ॥୭୪
ଅଦିତି-ଗର୍ଭର ସଞ୍ଚାର ।
ଜାଣିଲେ ପ୍ରଭୁ ବେଦବର ॥୭୫
ରଜନୀ-ଅର୍ଦ୍ଧକାଳେ ଆସି ।
ଅଦିତି ନିଦ୍ରାସ୍ଥାନେ ବସି ॥୭୬
ଗର୍ଭକୁ ଚାହିଁ ପ୍ରଜାପତି ।
ଆନନ୍ଦେ କଲେ ଦିବ୍ୟସ୍ତୁତି ॥୭୭

ବ୍ରହ୍ମା ଉବାଚ

ଜୟ ଅନନ୍ତ ଉରୁକ୍ରମ ।
ନମସ୍ତେ ପ୍ରଭୁ ତ୍ରିବିକ୍ରମ ॥୭୮
ନମୋ ବ୍ରହ୍ମଣ୍ୟ ଭାଗବତ ।
ନମସ୍ତେ ତ୍ରିଗୁଣ ଅଜିତ ॥୭୯
ନମସ୍ତେ ବିଶ୍ୱଗର୍ଭ-ରୂପୀ ।
ନମସ୍ତେ ତ୍ରୟବେଦ ବ୍ୟାପୀ ॥୮୦
ତ୍ରିନାଭ ତ୍ରିପୃଷ୍ଠ ତୋ' ନାମ ।
ଶିପିବିଷ୍ଟ ଯେ ତୋ'ର ଧାମ ॥୮୧
ଏ ସୃଷ୍ଟି ଆଦ୍ୟ-ମଧ୍ୟ-ଅନ୍ତେ ।
ତୁ ନାଥ ବିହରୁ ନିଶ୍ଚିନ୍ତେ ॥୮୨
ତୁ ସେ ଅନନ୍ତ ଶକ୍ତିଧର ।
ମନ-ବଚନେ ଅଗୋଚର ॥୮୩

Dr. Sudhanshu Sekhar Mishra

ତୁ କାଳରୂପେ ଏ ଜଗତ ।
ସୃଷ୍ଟି ପାଳନ କରୁ ଅନ୍ତ ।।୮୪
ତୃଣ ଯେସନେ ଜଳସ୍ରୋତେ ।
ପଶେ ଜଳଧି ଗର୍ଭଗତେ ।।୮୫
ଏ ସୃଷ୍ଟି ସଂହରୁ ତେମନ୍ତେ ।
ଅନନ୍ତ ଶୟନେ ନିଶ୍ଚିନ୍ତେ ।।୮୬
ସ୍ଥାବର ଆଦି ଜନ୍ତୁ ଚାରି ।
ତୁ ବସୁ ଆତ୍ମାରୂପ ଧରି ।।୮୭
ତୋ'ର ମାୟାର ବଳେ ଜନେ ।
ତୋ' ରୂପ ଜାଣିବେ କେସନେ ।।୮୮
ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତରେ ।
ତୋ' ତହୁଁ କେବା ଅଛି ପରେ ।।୮୯
ଜଳେ ପଡ଼ନ୍ତି ଯେତେ ପ୍ରାଣୀ ।
ଯେବେ ନ ଲଭନ୍ତି ତରଣୀ ।।୯୦
ସେ କାହିଁ ଜଳଧି ତରିବେ ।
ଯେ ନ ପଶନ୍ତି ତୋ'ରଭାବେ ।।୯୧
ଏମନ୍ତେ କରି ଦିବ୍ୟସ୍ତୁତି ।
ନିଜ ଭୁବନେ ପ୍ରଜାପତି ।।୯୨
ଆନନ୍ଦ ମନେ ବିଜେ କଲା ।
ଶୁଣ ରାଜନ ବିଷ୍ଣୁ ଲୀଳା ।।୯୩
ବାମନ ରୂପ ଧରି ଭାବେ ।
ବିଷ୍ଣୁ ଯେ ବଳି କି ଛଳିବେ ।।୯୪
ଏ ବାଣୀ ଏକମନେ ଶୁଣି ।
ନିସ୍ତର ଭାବ ତରଙ୍ଗିଣୀ ।।୯୫
ସଂସାର ଅନ୍ଧକୂପ ଥାଇ ।
ଏ ବିନୁ ଉପାୟ ତ ନାହିଁ ।।୯୬
କହିଲା ଦାସ ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ।।୯୭

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ପ୍ରାଦୁର୍ଭାବେ
ଷୋଡ଼ଶୋଽଧ୍ୟାୟଃ ।।

## ସପ୍ତଦଶ ଅଧ୍ୟାୟ

ଶ୍ରୀକୃଷ୍ଣ ଚିନ୍ତି ରାଜା ଚାହିଁ ।
ଶୁକ କହନ୍ତି ଭାବବହି ।।୧
ଶୁକ ଉବାଚ
ଶୁଣ ଅଭିମନ୍ୟୁ ନନ୍ଦନ ।
ଯେମନ୍ତେ ଜନ୍ମିଲେ ବାମନ ।।୨
ଅଦିତି ପୟୋବ୍ରତ ଫଳେ ।
ବିଷ୍ଣୁ ଜନ୍ମିଲେ ତା'ର କୋଳେ ।।୩
ତା'ଙ୍କ ଚରିତ ଶୁଣ ଏବେ ।
ଯେ ରୂପେ ବଳିକି ଛଳିବେ ।।୪
ବ୍ରହ୍ମାର ସ୍ତୁତି ଶୁଣି ତୋଷେ ।
ସେ ହରି ପରମ-ହରଷେ ।।୫
ଅମୃତ ବେଳେ ସୁଶରୀରେ ।
ହେଲେ ବାମନ ଅବତାରେ ।।୬
ଗଗନେ ଯେହ୍ନେ ଦିନକର ।
ବାମନ ଉଦରୁ ବାହାର ।।୭
ଅଦିତି ତହୁଁ ଭୂମିଗତେ ।
ବାମନ ଦେଖିଲେ ଅଗ୍ରତେ ।।୮
ନୀଳ ନୀରଦ ତନୁ ବର୍ଣ୍ଣ ।
ପ୍ରକାଶ କମଳ ଲୋଚନ ।।୯
ଆଜାନୁ ଲମ୍ବେ ଭୁଜ ଚାରି ।
ଶଙ୍ଖାବ୍ଜ ଗଦା ଚକ୍ର ଧରି ।।୧୦
ପୀତବସନ କଟୀଭାଗେ ।
ତଡ଼ିତ ଯେହ୍ନେ ନୀଳମେଘେ ।।୧୧
ରତ୍ନ କୁଣ୍ଡଳ କର୍ଣ୍ଣ ଯୁଗେ ।
ଶ୍ରୀବତ୍ସ ଚିହ୍ନ ହୃଦଭାଗେ ।।୧୨
ଉରେ ଲମ୍ବଇ ବନମାଳ ।
ସୁନ୍ଦର ଅଳକା କପୋଳ ।।୧୩
ମଣି ମୁକୁଟ ଶିରେ ସାଜେ ।
ରତ୍ନମେଖଳା କଟି ମାଝେ ।।୧୪
ନୂପୁର କଙ୍କଣ ବିରାଜେ ।
ତେଜେ ଅନଙ୍ଗ-ରୂପ ଗଞ୍ଜେ ।।୧୫
କଣ୍ଠେ ଶ୍ରୀ କଉସ୍ତୁଭମଣି ।
ଅମୂଲ୍ୟ ରତ୍ନ ସୁଖଞ୍ଜଣି ।।୧୬
ପ୍ରସନ୍ନ ଦଶଦିଗ ଦିଶେ ।
ସଲିଳେ କମଳ ପ୍ରକାଶେ ।।୧୭
ଜଳଧି ଉଚ୍ଛୁଳେ ଉଲ୍ଲୋଳେ ।
କାନନେ ନାନାପୁଷ୍ପ ଲୋଳେ ।।୧୮
ଋତୁ ବହଇ ଗୁଣମତେ ।
ପ୍ରସରେ ଶରଦ ବସନ୍ତେ ।।୧୯
ସୁଗନ୍ଧ ପବନେ ଆମୋଦ ।
ଗଗନେ ମଙ୍ଗଳ ଶବଦ ।।୨୦
ବ୍ରାହ୍ମଣ ଗଣେ ବେଦନାଦେ ।
ଅନଳ ପୂଜନ୍ତି ସମିଧେ ।।୨୧
ଗୋ ବିପ୍ର ଦେବ ଭୂ ପର୍ବତ ।
ଆକାଶ ହେଲେ ପ୍ରଫୁଲ୍ଲିତ ।।୨୨
ଭାଦ୍ରବ ମାସ ଶୁକ୍ଳପକ୍ଷେ ।
ଦ୍ୱାଦଶୀ ଶ୍ରବଣା ଯେ ଋକ୍ଷେ ।।୨୩
ମୁହୂର୍ତ୍ତ ନାମ ଅଭିଜିତ ।
ଗ୍ରହ ନକ୍ଷତ୍ର ସୁପ୍ରଶସ୍ତ ।।୨୪
ସର୍ବ ନକ୍ଷତ୍ର ତାରାଗଣେ ।
ପ୍ରଶସ୍ତ ମଙ୍ଗଳ ଦକ୍ଷିଣେ ।।୨୫
ବିଜୟା ଯୋଗର ମଧ୍ୟାହ୍ନେ ।
ଶଙ୍ଖଦୁନ୍ଦୁଭି ବାଦ୍ୟସ୍ୱନେ ।।୨୬
ମୃଦଙ୍ଗ ପଟହ ସମାନେ ।
ଶୁଭନ୍ତି ଭେରୀନାଦ ସ୍ୱନେ ।।୨୭
ବାଜନ୍ତି ଗୋମୁଖ ଆନକ ।
ପଣବ ତୂରୀ ଯେ ଅନେକ ।।୨୮
ଗୀତ ବିନୋଦ ନୃତ୍ୟରୋଳ ।
ଦିଗ ଉଚ୍ଛୁଳନ୍ତି ତୁମୁଳ ।।୨୯
ନାଚନ୍ତି ଅପସରାବୃନ୍ଦ ।
ଗନ୍ଧର୍ବେ ତାଳ ଯନ୍ତ୍ରବାଦ୍ୟ ।।୩୦

Dr. Sudhanshu Sekhar Mishra

ଦେବତା-ପିତୃ-ମୁନିଗଣେ ।
ଅଗ୍ନି ସହିତେ ଜଣେ ଜଣେ ॥୩୧
ସ୍ତୁବନ୍ତି ସିଦ୍ଧ-ବିଦ୍ୟାଧରେ ।
ତୁଲେ କିଂପୁରୁଷ-କିନ୍ନରେ ॥୩୨
ଚାରଣ ଯକ୍ଷ ରକ୍ଷ ଆଦି ।
ପିଶାଚ ଗୁହ୍ୟକ ପ୍ରସିଦ୍ଧି ॥୩୩
ସ୍ତୁତି-ବଚନେ ଗୀତସ୍ୱରେ ।
ପୁଷ୍ପ ବର୍ଷନ୍ତି ନିରନ୍ତରେ ॥୩୪
ଅଦିତି ପରେ ପୁଷ୍ପବୃଷ୍ଟି ।
ଯେଣେ ଖଣ୍ଡିବ ଜନ୍ମରିଷ୍ଟି ॥୩୫
ଅଦିତି ନିଜ ପୁତ୍ର ଦେଖି ।
ନିର୍ମଳ କଲା ବେନି ଆଖି ॥୩୬
ଶ୍ରୀହରି ନିଜ ଯୋଗ ତେଜେ ।
ଜନ୍ମିଲେ କଶ୍ୟପର ବୀର୍ଯ୍ୟେ ॥୩୭
କଶ୍ୟପ ଜୟ ଜୟ ବାଣୀ ।
ମଙ୍ଗଳ ବେଦବାକ୍ୟ ଭଣି ॥୩୮
ତକ୍ଷଣେ ପ୍ରଭୁ ଭଗବାନ ।
ରୂପ ପ୍ରକାଶିଲେ ବାମନ ॥୩୯
ଦେଖିଲେ ସର୍ବ ଦିଗପାଳେ ।
ଦେବୀ ଦେବତା ଅନ୍ତରାଳେ ॥୪୦
ବଟୁ ବାମନ ରୂପ ଦେଖି ।
ମୁନିଏ ଆଶ୍ରମ ଉପେକ୍ଷି ॥୪୧
କଶ୍ୟପ-ଆଶ୍ରମେ ମିଳିଲେ ।
ଜୟମଙ୍ଗଳ ସ୍ତୁତି କଲେ ॥୪୨
ବିଧାତା ଆଦି ମୁନି ତୁଲେ ।
ପୁତ୍ରର ଜାତକର୍ମ କଲେ ॥୪୩
ବାମନ-ଉପନୟ ଦେଖି ।
ସବିତା ଗଗନ ଉପେକ୍ଷି ॥୪୪
ସାବିତ୍ରୀ ମନ୍ତ୍ର କର୍ଣ୍ଣେ କହେ ।
ଯେତେ ସବିତା ତେଜ ବହେ ॥୪୫
ଗୁରୁ ପଇତା ଦେଲେ କନ୍ଧେ ।
କଶ୍ୟପ ମେଖଳା ଆନନ୍ଦେ ॥୪୬
ଅବନୀ କୃଷ୍ଣାଜିନ ଦେଲା ।
ଶଶାଙ୍କ ଦଣ୍ଡ ସମର୍ପିଲା ॥୪୭
ଅଦିତି ଦେଲା କଉପୀନ ।
ଆକାଶ କଲା ଛତ୍ର ଦାନ ॥୪୮

ମୁନିଏ କରେ ଦେଲେ ଦର୍ଭ ।
କମଣ୍ଡଳୁ ଯେ ବେଦଗର୍ଭ ॥୪୯
ଶାରଦା ଦେଲେ ଅକ୍ଷମାଳା ।
ଯେମନ୍ତେ ବୁଦ୍ଧି ଅନର୍ଗଳା ॥୫୦
କୁବେର ରାଜା ଶୁଦ୍ଧଚିତ୍ତେ ।
ଭିକ୍ଷାପାତ୍ରେକ ଦେଲା ହସ୍ତେ ॥୫୧
ଅମ୍ବିକା ଭିକ୍ଷା ଦେଲେ ଆଣି ।
ସଙ୍ଗତେ ବିପ୍ରଗଣ ଘେନି ॥୫୨
ମୁନିଏ ବ୍ରହ୍ମତେଜ ଦେଲେ ।
ସ୍ତୁତିବଚନେ ତୋଷ କଲେ ॥୫୩
କଶ୍ୟପ ହୋମ କରାଇଲେ ।
ବିଧାତା ପୁରୁଷର ବୋଲେ ॥୫୪
ଏମନ୍ତେ ବିପ୍ରରୂପ ଧରି ।
ପୂର୍ଣ୍ଣ ଆହୁତି ହୋମ କରି ॥୫୫
ତେଣେ ଶୁକ୍ର ଯେ ଯଜ୍ଞବିଧି ।
ବଳିର ଶତେ ଅଶ୍ୱମେଧି ॥୫୬
କରାଏ ନିଜ ମନ୍ତ୍ରବଳେ ।
ଅମରେ ସ୍ଥାପିବ ନିଶ୍ଚଳେ ॥୫୭
ସେ କଥା ଜାଣି ଭଗବାନ ।
ଯେ ରୂପ ଅଦ୍ଭୁତ ବାମନ ॥୫୮
ବଳି-ଭୁବନକୁ ଗମନ୍ତେ ।
ଭୂମି କମ୍ପଇ ପାଦଘାତେ ॥୫୯
ନର୍ମଦା ନଦୀର ଉତ୍ତରେ ।
ଭୃଗୁକଚ୍ଛେ ଯେ ବିପ୍ରବରେ ॥୬୦
ବଳିକି ଯଜମାନେ ବରି ।
ମିଳି ଭୃଗୁଙ୍କୁ ଆଗକରି ॥୬୧
ଯଜ୍ଞ କରନ୍ତି ମନ୍ତ୍ରବଳେ ।
ଯେମନ୍ତେ ଅମର ମଣ୍ଡଳେ ॥୬୨
ବଳି ବସିବ ଦୃଢ଼ ଚିତ୍ତେ ।
ନିର୍ଭୟେ କଳ୍ପ ପରିଯନ୍ତେ ॥୬୩
ଏମନ୍ତେ ବଳି-ଯଜ୍ଞବାଟେ ।
ବାମନ ମିଳିଲେ କପଟେ ॥୬୪
ରବି-କିରଣେ ତାରାପନ୍ତି ।
ଯେସନେ ହୋନ୍ତି ହତଜ୍ୟୋତି ॥୬୫
ଭାର୍ଗବ ଆଦି ପୁରୋହିତେ ।
ସଦସ୍ୟ ଯଜମାନ ଯେତେ ॥୬୬

ବାମନ-ତେଜେ ଅସ୍ତଗଲେ ।
ତମ ଯେସନେ ପ୍ରାତଃକାଳେ ॥୬୭
ରବି ଶଶାଙ୍କ କିବା ବହ୍ନି ।
ମିଳିଲେ ନିଜ ତେଜ ଘେନି ॥୬୮
କିବା ସନତ ବ୍ରହ୍ମସୁତ ।
ଯଜ୍ଞ ପ୍ରେକ୍ଷଣେ ଉପଗତ ॥୬୯
ଏମନ୍ତେ ଜାଣି ନ ପାରିଲେ ।
ବାମନ ତେଜେ ଅସ୍ତ ଗଲେ ॥୭୦
ମୁହୂର୍ତ୍ତେ ରହି ଖେଦମନେ ।
ଚାହାନ୍ତି ମୋହିତ ନୟନେ ॥୭୧
କରି ନ ପାରି ଅନୁମାନ ।
ସର୍ବେ ହୋଇଲେ ହତଜ୍ଞାନ ॥୭୨
ଉଦକ କମଣ୍ଡଳୁ ଘେନି ।
କରନ୍ତି ସାମବେଦ ଧ୍ୱନି ॥୭୩
ବିଷ୍ଣୁ ମିଳିଲେ ଯଜ୍ଞବାଟେ ।
ବଳି ନୃପତିର ନିକଟେ ॥୭୪
କଟିରେ ମର୍କତ ମେଖଳା ।
ଯଜ୍ଞୋପବୀତ ଅକ୍ଷମାଳା ॥୭୫
କନ୍ଧରେ କୃଷ୍ଣାଜିନ ଶୋହେ ।
ଉତ୍ତରୀ ପ୍ରାୟ ନିଜ ଦେହେ ॥୭୬
ଅଦ୍ଭୁତ ବାମନ ଶରୀର ।
ଶିରେ ବିରାଜେ ଜଟାଭାର ॥୭୭
ମାୟାବାମନ ରୂପ ଦେଖି ।
ତକ୍ଷଣେ ଆସନ ଉପେକ୍ଷି ॥୭୮
ଭୃଗୁ ସହିତେ ଶିଷ୍ୟ ଯେତେ ।
ଆସନୁ ଉଠିଲେ ତ୍ୱରିତେ ॥୭୯
ଅଞ୍ଜଳି ହସ୍ତ କରି ବେଗେ ।
ମିଳିଲେ ବାମନର ଆଗେ ॥୮୦
ବଳି ବାମନ ରୂପ ଚାହିଁ ।
ଆସନ ଦେଲା ବେଗେ ନେଇ ॥୮୧
ଚରଣେ ନମସ୍କାର କରି ।
କୁଶଳ ବାରତା ପଚାରି ॥୮୨
ପବିତ୍ର ଜଳେ ଧୋଇ ପାଦ ।
ଆନନ୍ଦେ କଣ୍ଠ ଗଦଗଦ ॥୮୩
ପାଦ ଉଦକ ଘେନି ଶିରେ ।
ରୋମ ହରଷ କଳେବରେ ॥୮୪

Dr. Sudhanshu Sekhar Mishra

ଯା'ର ଚରଣସ୍ପର୍ଶ-ଜଳ ।
ଖଣ୍ଡଇ ସର୍ବ ଅମଙ୍ଗଳ ॥୮୫
ଗିରିଶ ପରମ ଭକ୍ତିରେ ।
ଯେ ପାଦୋଦକ ଧରେ ଶିରେ ॥୮୬
ବଳି ଯେ ବେନିକର ଯୋଡ଼ି ।
କହେ ବାମନ ପାଦେ ପଡ଼ି ॥୮୭

ବଳି ଉବାଚ

ଭୋ ବିପ୍ର ନମୁଁ ତୋ' ଚରଣେ ।
ଅଶେଷ କୁଶଳ କାରଣେ ॥୮୮
ବ୍ରହ୍ମ ଋଷିଙ୍କ ତେଜ ପ୍ରାୟେ ।
ମୁହିଁ ଦେଖଇ ତୋ'ର ଦେହେ ॥୮୯
ତୁ ବ୍ରହ୍ମସ୍ୱରୂପ ସାକ୍ଷାତେ ।
ତୋ' ରୂପ ନାହିଁ ଏ ଜଗତେ ॥୯୦
କି ଅର୍ଥେ ତୋହର ଆଗମ ।
କହ ତୋହର କିସ ନାମ ॥୯୧
ମୋ' ପିତୃଗଣେ ଆଜ ତୋଷ ।
ପବିତ୍ର ମୋ'ର ଗୃହବାସ ॥୯୨
ଆଜ ମୋ' ସୁଫଳ ଜୀବନ ।
ଯେଣୁ ତୋହର ଆଗମନ ॥୯୩
ପବିତ୍ର ହୋଇଲା ମୋ' କୁଳ ।
ଲଭିଲି ଶତକ୍ରତୁ ଫଳ ॥୯୪
ଆଜ ଅନଳେ ଘୃତରାଶି ।
ଶୁଦ୍ଧେ ଜଳିବ ମୋତେ ତୋଷି ॥୯୫
ଏ ଭୂମି ପବିତ୍ର ମୋହର ।
ନିର୍ମଳ ଯେହ୍ନେ ସ୍ୱର୍ଗପୁର ॥୯୬
ଭୋ ବିପ୍ର ଦାନ ମାଗ ମୋତେ ।
ଯେ ଅବା ଇଚ୍ଛା କର ଚିତ୍ତେ ॥୯୭
ଗୋରୁ କାଞ୍ଚନ ଦିବ୍ୟପୁର ।
କିବା ପ୍ରସାଦ ମନୋହର ॥୯୮
ଗ୍ରାମ ପାଟଣା କନ୍ୟାଧନ ।
ଅମୂଲ୍ୟ ବସ୍ତୁ ରତ୍ନମାନ ॥୯୯
ଅନ୍ନବସନ ଆଦି ଯେତେ ।
ଭୋ ବିପ୍ର ମାଗ ତୋଷଚିତ୍ତେ॥୧୦୦
ଗଜ ତୁରଙ୍ଗ ସୁଖାସନ ।
ରଥ ପଲ୍ୟଙ୍କ ଯହିଁ ମନ ॥୧୦୧
କି ଅବା ଅଛି ତୋ'ର ଚିତ୍ତେ ।
ଭୋ ବିପ୍ର ମାଗ ଇଚ୍ଛା ଯେତେ ॥୧୦୨
ଦେବି ମୁଁ ସତ୍ୟ ମୋ' ବଚନ ।
ଦାରା ତନୟ ବା ଜୀବନ ॥୧୦୩
ଏମନ୍ତେ ବଳି ଶୁଦ୍ଧଚିତ୍ତେ ।
କହିଲା ବାମନ ଅଗ୍ରତେ ॥୧୦୪
ଏମନ୍ତ ବଳି ବାକ୍ୟ ଶୁଣି ।
ବାମନ ଧରି କୁଶ ପାଣି ॥୧୦୫
ମଙ୍ଗଳ ସ୍ୱରେ ବେଦଧ୍ୱନି ।
କରନ୍ତି ବଳି ମନଘେନି ॥୧୦୬
ତିନିଭୁବନ କମ୍ପେ ନାଦେ ।
ସୁଜନେ ଚିନ୍ତ କୃଷ୍ଣ ପାଦେ ॥୧୦୭
କହଇ ବିପ୍ର ଜଗନ୍ନାଥ ।
ଭାଷା ପ୍ରବନ୍ଧେ ଭାଗବତ ॥୧୦୮

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ପ୍ରାଦୁର୍ଭାବେ
ବଳିବାମନ ସମ୍ବାଦେ
ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶ ଅଧ୍ୟାୟ

ଶୁକ କହନ୍ତି ତୋଷମନେ ।
ଶୁଣ ପରୀକ୍ଷ ସାବଧାନେ ॥୧

ଶୁକ ଉବାଚ

ଏମନ୍ତେ ବଳି ବାକ୍ୟ ଶୁଣି ।
ସନ୍ତୋଷେ ପ୍ରଭୁ ପଦ୍ମପାଣି ॥୨
ବଳିର ବାକ୍ୟେ ପ୍ରୀତି କରି ।
ବଟୁ ବାମନ ରୂପ ଧରି ॥୩
ବୋଲନ୍ତି ମଧୁର ବଚନ ।
ଯେ ବାକ୍ୟ ମୋହେ ପ୍ରାଣୀମନ ॥୪

ଭଗବାନ ଉବାଚ

ହେ ବଳିରାଜା ତୁହି ଧନ୍ୟ ।
କୁଳ ଉଚିତ ତୋ' ବଚନ ॥୫
ଧର୍ମ ସଂଯୁତ ଯଶସ୍କର ।
ପାରଲୌକିକ ଧର୍ମପର ॥୬
ଯାହାର ବଂଶେ ପୁରୋହିତ ।
ଭାର୍ଗବ ପଦ୍ମଯୋନିସୁତ ॥୭
ପ୍ରହ୍ଲାଦ ଯା'ର ପିତାମହ ।
ବିଷ୍ଣୁ ଭଜନେ ମହାଶୟ ॥୮
ଏ କୁଳେ ନାହିଁ ବଳହୀନ ।
ନିଃସତ୍ତ୍ୱ କୃପଣ ଜୀବନ ॥୯
ବ୍ରାହ୍ମଣେ ଦାନ ତୁଚ୍ଛ କୁଳେ ।
ପ୍ରସିଦ୍ଧ ଭୁବନ ମଣ୍ଡଳେ ॥୧୦
ଯାହାର ବଂଶେ ରଣତୀର୍ଥ ।
ସଂଗ୍ରାମ ନୁହଁନ୍ତି ନିସତ ॥୧୧
ଅତିଥି ଆଗମନେ ସୁଖୀ ।
ଦୁଃଖୀଜନଙ୍କ ଦୁଃଖେ ଦୁଃଖୀ ॥୧୨
ନିର୍ମଳ ଯଶ ଯା'ର କୁଳେ ।
ବିଖ୍ୟାତ ଭୁବନମଣ୍ଡଳେ ॥୧୩
ପ୍ରହ୍ଲାଦ ଜାତ ଯେଉଁ କୁଳେ ।
ଯେହ୍ନେ ଶଶାଙ୍କ ତାରାମେଳେ ॥୧୪
ଯେ ବଂଶେ ହିରଣ୍ୟାକ୍ଷ ବୀର ।
ଦେବ-ଦାନବେ ଅଗୋଚର ॥୧୫
ହିରଣ୍ୟାକ୍ଷ ଯେ ଗଦାପାଣି ।
ଉଦଣ୍ଡେ ଭ୍ରମଇ ଧରଣୀ ॥୧୬
ତାହାର ସଙ୍ଗେ ଗଦାଯୁଦ୍ଧେ ।
କେହି ନ ମିଳେ ରଣ ମଧ୍ୟେ ॥୧୭
ଯଜ୍ଞବରାହ ରୂପେ ହରି ।
ଦନ୍ତାଗ୍ରେ ଧରଣୀ ଉଦ୍ଧରି ॥୧୮
ପାତାଳୁ ଆଗମନ କାଳେ ।
ସେ ବୀର ଥିଲା ମହାଜଳେ ॥୧୯
ଅନେକ ମାୟାଯୁଦ୍ଧ କଲା ।
ବିଷ୍ଣୁର ଗଦାଘାତେ ମଲା ॥୨୦

Dr. Sudhanshu Sekhar Mishra

ତା'ର ମହିମା ଚକ୍ରପାଣି ।
ଆନନ୍ଦେ ରୁଦ୍ର ଆଗେ ଭଣି ॥୨୧
ହରଗଉରୀଙ୍କ ଅଗ୍ରତେ ।
ସେ ବିଷ୍ଣୁ କହେ ତୋଷଚିତ୍ତେ ॥୨୨
ସେ ହରି ହିରଣ୍ୟାକ୍ଷ ମାରି ।
ଦନ୍ତାଗ୍ରେ ଧରଣୀ ଉଦ୍ଧରି ॥୨୩
ଆମ୍ଭାକୁ ବୀରଜୟୀ ମଣି ।
ସକଳ ସଭାମଧ୍ୟେ ଭଣି ॥୨୪
ତାହାର ବଧ ଶୁଣି ରଣେ ।
ହିରଣ୍ୟକଶିପୁ ତକ୍ଷଣେ ॥୨୫
ଭ୍ରାତୃ ମରଣେ କ୍ରୋଧ କରି ।
ପ୍ରଚଣ୍ଡ ଶୂଳ କରେ ଧରି ॥୨୬
ଶମନ ତୁଲ୍ୟ କୋପମନେ ।
ମିଳିଲା ବିଷ୍ଣୁର ଭୁବନେ ॥୨୭
ଗୋବିନ୍ଦ ତା'ର ଆଗମନ ।
ଦେଖିଣ ତେଜିଲେ ଆସନ ॥୨୮
କୃତାନ୍ତ ପ୍ରାୟ ଶୂଳ ତୋଳି ।
ଧାମଇଁ କୋପେ ମହାବଳୀ ॥୨୯
ସେ ବିଷ୍ଣୁମାୟା ଯୋଗବଳେ ।
ଅଦ୍‌ଭୁତ ଦେଖି ପଳାଇଲେ ॥୩୦
ଲୀଳାଏ ଯା'ନ୍ତେ ବନମାଳୀ ।
ଦେଖି ବିଚାରେ ମହାବଳୀ ॥୩୧
ଏ ମୋ'ର ମାରିଅଛି ଭାଇ ।
ନିଶ୍ଚୟେ ଶତ୍ରୁ ମୋ'ର ଏହି ॥୩୨
ଏହାକୁ ପ୍ରାଣେ ନାଶ କଲେ ।
ତେବେ ଜୀବନେ ଥିବି ଭଲେ ॥୩୩
ଏମନ୍ତ ଚିନ୍ତି ଶୂଳ ଧରି ।
ପଛେ ଧାଇଁଲା ରୋଷଭରି ॥୩୪
ବିଷ୍ଣୁ ପଳାନ୍ତି ତା'କୁ ଦେଖି ।
ସଂଭ୍ରମେ ଭୁବନ ଉପେକ୍ଷି ॥୩୫
ଯେଣେ ପଳାନ୍ତି ନରହରି ।
ଧାଏଁ ଅସୁର ଶୂଳ ଧରି ॥୩୬
ସେ ବିଷ୍ଣୁ କରନ୍ତି ବିଚାର ।
ସ୍ୱଭାବେ ଅଜେୟ ଅସୁର ॥୩୭
ଏହାକୁ ମାୟା ମୁଁ ନ କଲେ ।
କେମନ୍ତେ ପୁରେ ଥିବି ଭଲେ ॥୩୮

ଏହାର ହୃଦୟେ ମୁଁ ପଶି ।
ମାୟାରେ ମନକୁ ଆକର୍ଷି ॥୩୯
ଯେମନ୍ତେ ମୋତେ ଏ ନ ପାଇ।
ବିମୁଖେ ନିଜ ପୁରେ ଯାଇ ॥୪୦
ମୋ'ର ବିଷୟେ କରି କ୍ରୋଧ ।
କାଳେ ହୋଇବ ପ୍ରାଣେ ବଧ ॥୪୧
ଏମନ୍ତେ ବିଷ୍ଣୁ ବିଚାରିଲେ ।
ମାୟାରେ ଅନ୍ତର ହୋଇଲେ ॥୪୨
ତା'ର ଶରୀର ପ୍ରାଣରନ୍ଧ୍ରେ ।
ବିଷ୍ଣୁ ପଶିଲେ ଯୋଗବନ୍ଧେ ॥୪୩
ବିଷ୍ଣୁ ନ ଦେଖି ମହାକ୍ରୋଧେ ।
ଗର୍ଜିଲା ଭୟଙ୍କର ନାଦେ ।୪୪
ଆକାଶ ଦିଗ ଯେ ବିବର ।
ପୃଥିବୀ ସ୍ୱର୍ଗ ଯେ ସାଗର ॥୪୫
ସର୍ବତ୍ର ଅନ୍ୱେଷଣ କଲା ।
କୁତ୍ରାପି ହରି ନ ପାଇଲା ॥୪୬
ସେ ବୀର ବିଚାରଇ ମନେ ।
ଏ ତ ଭାଜିଲା ଭୟଛନ୍ନେ ॥୪୭
ନିଶ୍ଚୟ ବୈକୁଣ୍ଠକୁ ଗଲା ।
ଏମନ୍ତ ବୋଲି ବାହୁଡ଼ିଲା ॥୪୮
ପଥେ ଚଳନ୍ତେ ମନେ ଭାବି ।
ବୋଲଇ ଅବଶ୍ୟ ମାରିବି ॥୪୯
ସେ ମୋ'ର ଭ୍ରାତୃ-ହତ୍ୟାକାରୀ।
ଏମନ୍ତେ ମନେ କ୍ରୋଧଭରି ॥୫୦
ଜୀବନ ଥିବା ପରିଯନ୍ତେ ।
ବିଷ୍ଣୁ ନ ଭଜେ କୋପଚିତ୍ତେ ॥୫୧
ହରିର ତୁଲେ ବାଦ କଲା ।
ଅନ୍ତେ ସେ ବୈକୁଣ୍ଠକୁ ଗଲା ॥୫୨
ତା'ର ତନୟ ପ୍ରହଲ୍ଲାଦ ।
ତୋ' ପିତା ତାହାର ଦାୟାଦ ॥୫୩
ବିଷ୍ଣୁ ଭକତ ମହାଶୟ ।
ଦେବଦାନବେ ସେ ଅଜେୟ ॥୫୪
ଦେବଙ୍କ କପଟ ଜାଣିଲା ।
ବ୍ରାହ୍ମଣ ବୋଲି ଆୟୁ ଦେଲା ॥୫୫
ତାହାର ବଂଶେ ତୁହି ଜାତ ।
ସ୍ୱଭାବେ ଅଟୁ ଭାଗ୍ୟବନ୍ତ ॥୫୬

ବ୍ରହ୍ମାଣ୍ଡେ ମହିମା ତୋହର ।
ଏ କୁଳେ ଅତି ଯଶସ୍କର ॥୫୭
ତିନିଭୁବନେ ତୁ ଯେ ରାଜା ।
ସର୍ବେ କରନ୍ତି ପାଦପୂଜା ॥୫୮
ଏଣୁ ତୋହର ହସ୍ତେ ତୁହି ।
ନିବାସ ଅର୍ଥେ କିଛି ଭୂଇଁ ॥୫୯
ମୋହର ପାଦେ ପାଦ ତିନି ।
ମାପିଣ ଦିଅ ହେ ମେଦିନୀ ॥୬୦
ଦାରା ତନୟ ମୋ'ର ନାହିଁ ।
କେବଳ ବାସ୍ତୁ ମୁଁ ଇଛଇ ॥୬୧
ଏ ଭୂମି ଦାନ ଦିଅ ମୋତେ ।
ଯେମନ୍ତେ ରହିବି ନିଶ୍ଚିନ୍ତେ ॥୬୨
ତୁ ଅଟୁ ଜଗତ ଈଶ୍ୱର ।
ଆନେ କି ପ୍ରୟୋଜନ ମୋ'ର ॥୬୩
କହନ୍ତି ବ୍ୟାସଙ୍କ ତନୁଜ ।
ଶୁର ପରୀକ୍ଷ ମହାରାଜ ॥୬୪
ବଳି ବାମନ-ବାକ୍ୟ ଶୁଣି ।
ହସି କହଇ ମନେ ଗୁଣି ॥୬୫
ଭୋ ବିପ୍ର ଶୁଣ ମୋ' ଉତ୍ତର ।
ତୁ ଅଟୁ ବାଳକ ଶରୀର ॥୬୬
ବୃଦ୍ଧର ପ୍ରାୟେ କଥା କହୁ ।
ବିଚାରେ ବାଳକ ତୁ ନୋହୁ ॥୬୭
ସ୍ୱଭାବେ ବାଳବୁଦ୍ଧି ଘେନି ।
ନ ଜାଣୁ ଆତ୍ମା-ଲାଭ-ହାନି ॥୬୮
ଅଜ୍ଞାନ ପ୍ରାୟେ ବହୁମତି ।
ଏ ତୋ'ର ବିପରୀତ ଗତି ॥୬୯
ମୁହିଁ ତ୍ରିଲୋକେ ଏକ ରାଜା ।
ସର୍ବେ କରନ୍ତି ପାଦପୂଜା ॥୭୦
ତ୍ରିପାଦ ଭୂମି ମାଗୁଁ ମୋତେ ।
ଏ ଦାନ ଦେବି ମୁଁ କେମନ୍ତେ ॥୭୧
ଲୋକେ କରିବେ ଉପହାସ ।
ଏ କଥା ନୋହଇ ବିଶ୍ୱାସ ॥୭୨
ଯେ ବିପ୍ର ମୋ'ର ଦାନ ନେବ।
ସେ କିପାଁ ଆନକୁ ମାଗିବ ॥୭୩
ଏଣୁ ବହୁତ-ବୃତ୍ତିକାରୀ ।
ଭୋ ବିପ୍ର ମାଗ ବସୁନ୍ଧରୀ ॥୭୪

Dr. Sudhanshu Sekhar Mishra

ଏମନ୍ତ ବଳି ମୁଖୁଁ ଶୁଣି ।
ବଟୁ-ବାମନ କହେ ପୁଣି ॥୭୫

ବାମନ ଉବାଚ

ଶୁଣ ହୋ ବଳି ନୃପନାଥ ।
ଅଜ୍ଞାନୀ ଜନଙ୍କର ମତ ॥୭୬
ସମୁଦ୍ର ଆବରଣେ ମହୀ ।
ଏତେ ସମ୍ପଦ ଯେବେ ପାଇ ॥୭୭
ତେବେ ହେଁ ଆଶା ନ ପୂରଇ ।
ଶୁଣ ନୃପତି ମନଦେଇ ॥୭୮
ସପତ ଦ୍ୱୀପେ ଅଧିପତି ।
ଥିଲେ ଯେ ଅନେକ ନୃପତି ॥୭୯
ବେଣ ତନୟ ଗୟ ଆଦି ।
ଅସଂଖ୍ୟ ଅତୁଳ-ସମ୍ପତ୍ତି ॥୮୦
ସେ ଅର୍ଥ କାମ ଯେତେ କଲେ ।
ତୃଷ୍ଣାର ଅନ୍ତ ନ ପାଇଲେ ॥୮୧
ପୂର୍ବର କର୍ମଫଳ ଲଇ ।
ଯେ ଦିନେ ଯେ ଅବା ମିଳଇ ॥୮୨
ତେଣେ ସନ୍ତୋଷ ଚିତ୍ତ ଯାର ।
ସେ ପ୍ରାଣୀ ତ୍ରିଜଗତେ ସାର ॥୮୩
ସନ୍ତୋଷେ ତେଜ ବଢ଼େ ଭଲେ ।
ଘୃତେ ଅନଳ ଯେହ୍ନେ ଜଳେ ॥୮୪
ଯେ ଅର୍ଥ-କାମେ ଅସନ୍ତୋଷ ।
ହେଲେ ତା' ତେଜ ହୋଏନାଶ ॥୮୫
ଉଭୟ ଲୋକେ ସୁଖ ନାହିଁ ।
ସେ ପ୍ରାଣୀ ଥିବ ଅବା କାହିଁ ॥୮୬
ଅର୍ଜ୍ଜନେ ଅସନ୍ତୋଷ ହେଲେ ।
ଅତୁଷ୍ଟେ ପଡ଼ଇ ପାତାଳେ ॥୮୭
ଅତୁଷ୍ଟି ଜଳବିନ୍ଦୁ ହୋଇ ।
ଅଗ୍ନିର ତେଜ ସେ ଲିଭାଇ ॥୮୮
ଏଣୁ ସମ୍ପଦେ କାର୍ଯ୍ୟ ନାହିଁ ।
ତ୍ରିପାଦ ଭୂମି ଦିଅ ତୁହି ॥୮୯
ଏକଇ ମାତ୍ର ମୋ' ଜୀବନ ।
ଅଧିକେ କିବା ପ୍ରୟୋଜନ ॥୯୦
ଆନନ୍ଦେ କହେ ବ୍ୟାସସୁତ ।
ଶୁଣ ହେ ନୃପ ପରୀକ୍ଷିତ ॥୯୧

ଶୁକ ଉବାଚ

ଏମନ୍ତ ବିପ୍ର ଯହୁଁ ଭାଷି ।
ସେ ବାକ୍ୟ ଶୁଣି ବଳି ହସି ॥୯୨
ବୋଲଇ ଧରି କୁଶପାଣି ।
ତୋ' ପାଦେ ପ୍ରମାଣେ ଧରଣୀ ॥୯୩
ଦେବଇଁ ସତ୍ୟ ମୋ' ବଚନ ।
ଭୋ ବିପ୍ର ତୋଷଚିତ୍ତେ ଘେନ ॥୯୪
ଶୁକ୍ର ଯେ ବଳି ପାଶେ ଥିଲା ।
ଦାନର ନିର୍ଣ୍ଣୟ ଜାଣିଲା ॥୯୫
କର ଅଞ୍ଜଳି ବ୍ୟଗ୍ରେ ଧରି ।
ବଳିକି କହେ ଆଗସରି ॥୯୬

ଶୁକ୍ର ଉବାଚ

ଶୁଣ ହେ ବିରୋଚନ ସୁତ ।
ତୋ'ର ଦେଖଇଁ ବିପରୀତ ॥୯୭
ପାତ୍ର-ଅପାତ୍ର ତୁ ନ ଜାଣୁ ।
ବିପ୍ରଙ୍କୁ ଦାନେ ପରିମାଣୁ ॥୯୮
ଦେଖ ଏ ପ୍ରଭୁ ଭଗବାନ ।
କପଟେ ଶରୀର ବାମନ ॥୯୯
ବିବୁଧକୁଳ ରକ୍ଷା କାର୍ଯ୍ୟେ ।
ଜନ୍ମିଲେ କଶ୍ୟପର ବୀର୍ଯ୍ୟେ ॥୧୦୦
ଅଦିତି-ଗର୍ଭେ ଜାତ ହୋଇ ।
ଅଇଲେ ତୋର ମନମୋହି ॥୧୦୧
ଅର୍ଥ ଅନର୍ଥ ତୁ ନ ଜାଣି ।
ହସ୍ତେ ଧଇଲୁ କୁଶପାଣି ॥୧୦୨
ଦିତିର ଗର୍ଭେ ଜାତ ହୋଇ ।
ଏମନ୍ତ ଦେଖିଲା ତ ନାହିଁ ॥୧୦୩
ଏ ବିଷ୍ଣୁ ତୋ'ର ଯଶ ଶିରୀ ।
ମାୟା ବାମନ ରୂପେ ହରି ॥୧୦୪
ଇନ୍ଦ୍ରକୁ ଦେବ ବୁଦ୍ଧିବଳେ ।
ତୁ ମୂଢ଼ ପଶିବୁ ପାତାଳେ ॥୧୦୫
ତିନିଚରଣେ ତିନିପୁର ।
ସମ୍ପଦ ହରିବ ତୋହର ॥୧୦୬
ସର୍ବସ୍ୱ ବିଷ୍ଣୁ ହସ୍ତେ ଦେଇ ।
ତୁ ମୂଢ଼ ବିଶ୍ରାମିବୁ କାହିଁ ॥୧୦୭
ପାଦକେ ଅବନୀ ପୂରିବ ।
ଶରୀର ବ୍ରହ୍ମାଣ୍ଡେ ଘୋଟିବ ॥୧୦୮

ଦ୍ୱିତୀୟ ପାଦେ ହୃଷୀକେଶ ।
ବିକ୍ରମି ଘେନିବ ଆକାଶ ॥୧୦୯
ତୃତୀୟ ପାଦ କାହୁଁ ଦେବୁ ।
ନିଶ୍ଚୟେ ନରକେ ପଡ଼ିବୁ ॥୧୧୦
ସଙ୍କଳ୍ପ କରି ଦାନ ଅର୍ଥେ ।
ପଛେ ନ ଦ୍ୟନ୍ତି ଯେ ଯୁଗତେ ॥୧୧୧
ସେ କାହିଁ ଥିବେ ଏ ସଂସାରେ ।
ପଡ଼ନ୍ତି ଅନ୍ଧତମ ଘୋରେ ॥୧୧୨
ଯେ ଦାନେ ବୃତ୍ତି ଯାଏ ନାଶ ।
କୁଳ ସମ୍ପଦ ଧର୍ମ ଯଶ ॥୧୧୩
ସେ ଦାନ କେବେ ହେ ନ କରି ।
ଯଶ ସମ୍ପଦ ପରିହରି ॥୧୧୪
ଧର୍ମ ଅର୍ଥ ଯେ ଯଶ କାମ ।
ଆବର କୁଟୁମ୍ବ ପୋଷଣ ॥୧୧୫
ଏଥକୁ ରଖି ଦାନ କଲେ ।
ଆନନ୍ଦ ଲଭେ ପ୍ରାଣୀ ଭଲେ ॥୧୧୬
ପୂର୍ବେ ଯେ ସିଦ୍ଧ ମୁନି ଯେତେ ।
ସେ କହିଛନ୍ତି ଧର୍ମଶାସ୍ତ୍ରେ ॥୧୧୭
ତାହା କହିବା ତୋ' ଅଗ୍ରତେ ।
ରାଜନ ଶୁଣ ଏକ-ଚିତ୍ତେ ॥୧୧୮
ମନବଚନେ ସତ୍ୟକରି ।
ଓଁ କାର ବାକ୍ୟ ଯେ ଉଚ୍ଚାରି ॥୧୧୯
ଦେବି ମୁଁ ବୋଲି ସତ୍ୟ କରେ ।
କେ ତାହା ଜ୍ଞାନ ଥାଉଁ ହରେ ॥୧୨୦
ମିଥ୍ୟା ବୋଲିଟି ତା'ର ନାମ ।
ଜାଣ ହେ ଅସୁର ଉତ୍ତମ ॥୧୨୧
ଏ ଦେହ-ବୃକ୍ଷେ ମିଥ୍ୟା ମୂଳ ।
ସତ୍ୟ ଯେ ତା'ର ଫୁଲଫଳ ॥୧୨୨
ବୃକ୍ଷର ନାଶେ ନାଶ ଯା'ନ୍ତି ।
ବୃକ୍ଷର ମୂଳ ଥିଲେ ଥାନ୍ତି ॥୧୨୩
ସଙ୍କଳ୍ପ ସତ୍ୟ ନାଶ ଯା'ନ୍ତେ ।
ଅଙ୍କୁର ନୁହଇ ବିହିତେ ॥୧୨୪
ଅ କାର ଉ କାର ମ କାରେ ।
ଶବ୍ଦ ଉଚ୍ଚାରି ପ୍ରଣବରେ ॥୧୨୫
ଯେ ତାହା ଅଜ୍ଞାନେ ହରନ୍ତି ।
ନିଜ ଶରୀର ନ ଧରନ୍ତି ॥୧୨୬

Dr. Sudhanshu Sekhar Mishra

ରତି-ସମ୍ଭୋଗେ ନାରୀ ସଙ୍ଗେ ।
ବିବାହେ କନ୍ୟାବର ଯୋଗେ ॥୧୨୭
ବୃତ୍ତ୍ୟର୍ଥେ ପ୍ରାଣର ସଙ୍କଟେ ।
ଗୋରୁ-ବ୍ରାହ୍ମଣଙ୍କର କଷ୍ଟେ ॥୧୨୮
ମିଥ୍ୟା କହିଲେ ଯେବେ ତରେ।
ଏ କଥା କେ ଅବା ନ କରେ ॥୧୨୯
ଗୁରୁ ଏମନ୍ତ ବାକ୍ୟ କହି ।
ବଳି ତା' ବାକ୍ୟେ ମନ ଦେଇ ॥୧୩୦
ସଂଶୟ ରହିଲା ତା' ଚିତ୍ତେ ।
ଗୁରୁ ବଚନେ ଧର୍ମ ମତେ ॥୧୩୧
ବଳି-ବାମନ ବାକ୍ୟ ବନ୍ଧେ ।
ଯେମନ୍ତେ ଏ ଅଷ୍ଟମସ୍କନ୍ଧେ ॥୧୩୨
ସୁଜନେ ଶୁଣ ଏକ ଚିତ୍ତେ ।
ହରିଚରିତ ଭାଗବତେ ॥୧୩୩
ଶ୍ରୀହରି-ଚରିତ ଏ ଭାବ ।
ଭାବିଲେ ସଂସାରୁ ତରିବ ॥୧୩୪
ବୋଲଇ ବିପ୍ର ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତେ ॥୧୩୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ପ୍ରାଦୁର୍ଭାବେ
ବଳିବାମନ ସମ୍ବାଦେ
ଅଷ୍ଟାଦଶୋଽଧ୍ୟାୟଃ ॥

---

## ଊନବିଂଶ ଅଧ୍ୟାୟ

### ଶୁକ ଉବାଚ

ଶୁକ କହନ୍ତି ମୃଦୁବାଣୀ ।
ଶୁଣ ପାଣ୍ଡବ-ଚୂଡ଼ାମଣି ॥୧
ବଳି ଯେ ଅସୁରଙ୍କ ପତି ।
ସ୍ୱଭାବେ ଧର୍ମେ ଶୁଦ୍ଧମତି ॥୨
କୁଳ ଆଚାର୍ଯ୍ୟ ବାକ୍ୟ ଶୁଣି ।
ଧର୍ମ ଅଧର୍ମ ମନେ ଗୁଣି ॥୩
ତୁନି ହୋଇଲା କ୍ଷଣମାତ୍ର ।
ଶିଥିଳେ କମ୍ପମାନ ଗାତ୍ର ॥୪
କ୍ଷଣକେ ଗୁରୁ ମୁଖ ଚାହିଁ ।
ବୋଲଇ ଶିରେ କରଦେଇ ॥୫

### ବଳି ଉବାଚ

ଭୋ ଗୁରୁ ସତ୍ୟ ତୁମ୍ଭ କଥା ।
ଗୃହସ୍ଥ ଧର୍ମର ବ୍ୟବସ୍ଥା ॥୬
ଯେ ଧର୍ମେ ଅର୍ଥ କାମ ଯଶ ।
ବୃତ୍ତି ସହିତେ ଯିବ ନାଶ ॥୭
ଏବେ ମୁଁ ଧନେ ହୋଇ ଲୋଭୀ ।
ବିପ୍ରଙ୍କୁ କେମନ୍ତେ ଲଂଘିବି ॥୮
ସର୍ବଦେବତା ବିଷ୍ଣୁ ଦେହେ ।
ବ୍ରାହ୍ମଣ ଦେହେ ବିଷ୍ଣୁ ରହେ ॥୯
ଏକ ବିପ୍ରଙ୍କୁ ବଞ୍ଚାଇଲେ ।
ବ୍ରହ୍ମାଣ୍ଡ ନାଶ ଯାଇ ଭଲେ ॥୧୦
ମୁଁ ପ୍ରହଲ୍ଲାଦ ବଂଶେ ଜାତ ।
ଏ କଥା ଜଗତେ ବିଖ୍ୟାତ ॥୧୧
କେମନ୍ତେ ସତ୍ୟବାକ୍ୟ କହି ।
କପଟ କରି ମାୟା ବହି ॥୧୨
ଲଂଘିବି ପାପ-କର୍ମ-ବଳେ ।
ଅଯଶ ଲଭିବି ଶୟଳେ ॥୧୩
ସତ୍ୟ ଉପରେ ଧର୍ମ ନାହିଁ ।
ଏ କଥା ଭୂମି ଅଛି କହି ॥୧୪
ସର୍ବ ଅପ୍ରାଧ ସହିପାରେ ।
ମିଥ୍ୟାର ଭାରେ ମୁହିଁ ଡରେ ॥୧୫
ଅଧର୍ମ କରନ୍ତି ଯେ ଜନେ ।
ନରକେ ପଡ଼ନ୍ତି ସେମାନେ ॥୧୬
ନ ଡରେ ଦୁଃଖ ପାରାବାରେ ।
ନରକେ କିବା ମରଣରେ ॥୧୭
ସ୍ୱସ୍ଥାନ ଭ୍ରଷ୍ଟେ ନାହିଁ ତାପ ।
ବିପ୍ର-ଲଙ୍ଘଂନେ ମହାପାପ ॥୧୮
ଏ ଭୂମି ଛାଡ଼ି ଅନ୍ତକାଳେ ।
ମୁହିଁ ଗମିବି ଅନ୍ତରାଳେ ॥୧୯
ଏ ଭୂମି ବିପ୍ରକରେ ଦେଇ ।
କେମନ୍ତେ ଲଙ୍ଘିଂବଇଁ ମୁହିଁ ॥୨୦
ପ୍ରାଣୀଙ୍କ ହିତେ ସାଧୁଜନ ।
ତ୍ୟଜନ୍ତି ଏ ଧନ-ଜୀବନ ॥୨୧
ଦଧୀଚି ଆଦି ଋଷି ଯେତେ ।
ପୂର୍ବେ ଯେ ସାଧବ ସମସ୍ତେ ॥୨୨
ପୃଥିବୀ ଆତ୍ମବଶ କଲେ ।
ସଙ୍ଗତେ କିବା ଘେନିଗଲେ ॥୨୩
ମୋହର ବଂଶର ଅସୁରେ ।
ଏ ଭୂମି ମଧ୍ୟେ ଯେତେ ଥିଲେ ॥୨୪
ସେ ସର୍ବ କାଳେ ଅସ୍ତ ଗଲେ ।
ଯଶ ରହିଲା ମହୀତଳେ ॥୨୫
ସମରେ ଯେ ବୀରେ ପଶନ୍ତି ।
ଆତ୍ମ-ବିଚାର ନ କରନ୍ତି ॥୨୬
ଯେ ତୀର୍ଥେ ତ୍ୟଜନ୍ତି ଶରୀର ।
ସ୍ୱଧର୍ମେ କରନ୍ତି ବିଚାର ॥୨୭
ଯେ ସତପାତ୍ରେ ଦ୍ୟନ୍ତି ଦାନ ।
ସେ ସର୍ବେ ସାତ୍ତ୍ୱିକ-ଜୀବନ ॥୨୮
ଏ ସତ୍ୟ-ଧର୍ମ ଦୂର କରି ।
ତୁମ୍ଭ ବଚନ ମନେ ଧରି ॥୨୯
ଏ ମୋ'ର ଶରୀର ନ ଥିବ ।
ଏଥକୁ ସାକ୍ଷୀ ସଦାଶିବ ॥୩୦
ବ୍ରହ୍ମାର ବଂଶେ ଜାତ ହୋଇ ।
ଏମନ୍ତ କହ କାହିଁ ପାଇଁ ॥୩୧
ନିଶ୍ଚେ ଧରଣୀ ଦେବି ଦାନ ।
ଏଥକୁ ସାକ୍ଷୀ ଭଗବାନ ॥୩୨
ବେଦ-ବିଧାନ ଯେ ଜାଣନ୍ତି ।
ଆତ୍ମାକୁ ସର୍ବଭୂତେ ଚିନ୍ତି ॥୩୩
ଅନେକ ଯଜ୍ଞମତେ ଚିନ୍ତି ।
ଯା'ର ଚରଣ ନ ଲଭନ୍ତି ॥୩୪
ସେ ହରି ମୋତେ ଦୟା କରୁ ।
ଅଥବା ଶରୀର ସଂହାରୁ ॥୩୫

Dr. Sudhanshu Sekhar Mishra

ତହିଁକି ଚିନ୍ତା ମୋ'ର ନାହିଁ ।
ବିପ୍ରେ ଧରଣୀ ଦେବି ମୁହିଁ ॥୩୬
ଅଧର୍ମ-ମାର୍ଗେ ଯେବେ ମୋତେ ।
ବିପ୍ର ମାରିବ କୋପଚିତ୍ତେ ॥୩୭
ଏ ବ୍ରହ୍ମତନୁ ଇଷ୍ଟ ମୋ'ର ।
ମୁଁ ତ ଏହାର ନିର୍ବଇର ॥୩୮
ଛଦ୍ମେ ବ୍ରାହ୍ମଣ ରୂପ ଧରି ।
ବିଷ୍ଣୁ ମୋ' ସଙ୍ଗେ ବାଦ କରି ॥୩୯
ଯେବେ ମୋଡିବେ ଯୁଦ୍ଧେ ମୋତେ ।
ମୋ ତହୁଁ ଧନ୍ୟ କେ ଜଗତେ ॥୪୦
ବ୍ୟାସ ତନୟ କହେ ଧୀର ।
ଶୁଣ ପରୀକ୍ଷ ମହୀଧର ॥୪୧

ଶୁକ ଉବାଚ

ଏମନ୍ତ ଶୁଣି ବଳି ମୁଖେ ।
ସେ ଭୃଗୁସୁତ ମନଦୁଃଖେ ॥୪୨
ବଳିର ସତ୍ୟକଞ୍ଚ ଦେଖି ।
କ୍ରୋଧେ ଅରୁଣ କଲା ଆଖି ॥୪୩
କଟାକ୍ଷ ନୟନେ ଅନାଇଁ ।
ମୁଖେ କି ଅନଳ ଜଳଇ ॥୪୪
ନିର୍ଘାତେ କମ୍ପିତ-ନିଃଶ୍ୱାସେ ।
ବଳିକି ଶାପ ଦେଲା ରୋଷେ ॥୪୫

ଶୁକ୍ର ଉବାଚ

ତୁ ସତ୍ୟସନ୍ଧ ନୃପମଣି ।
ମୋହର ମହିମା ନ ଜାଣି ॥୪୬
ଗର୍ବ ବହିଲୁ ଯେବେ ଦୁଷ୍ଟ ।
ସର୍ବ ସମ୍ପଦୁ ହୁଅ ଭ୍ରଷ୍ଟ ॥୪୭
ଏମନ୍ତ ଗୁରୁଶାପ ପାଇ ।
ଧରଣୀ-ଦାନେ ମନଦେଇ ॥୪୮
ବାମନ ବେନି ପାଦ ଧରି ।
ବିଧି ପୂର୍ବକ ପୂଜା କରି ॥୪୯
ବଳିର ପତ୍ନୀ ବିନ୍ଧ୍ୟାବଳୀ ।
କଣ୍ଠେ ଭୂଷଣ ରତ୍ନମାଳି ॥୫୦
ଉଦକେ ପୂର୍ଣ୍ଣ ଘଟ ବେଗେ ।
ଘେନି ମିଳିଲା ସ୍ୱାମୀ ଆଗେ ॥୫୧

ବଳି ବାମନପାଦ ଯୁଗେ ।
ଜଳ ଢ଼ାଳିଲା ନେଇ ବେଗେ ॥୫୨
ପାଦ ଉଦକ ଘେନି ଶିରେ ।
ଆନନ୍ଦ ପୁଲକ ଶରୀରେ ॥୫୩
ଯେ ଜଳ ଭୁବନପାବିନୀ ।
କାନ୍ତକାମିନୀ ଶିରେ ଘେନି ॥୫୪
କୃତାର୍ଥ ହୋଇ କରଯୋଡ଼ି ।
କିଙ୍କର ପ୍ରାୟେ ପାଦେ ପଡ଼ି ॥୫୫
ଆନନ୍ଦ-ସାଗରେ ବୁଡ଼ିଲେ ।
ଶୂନ୍ୟେ ଯେ ଦେବେ ଦେଖୁଥିଲେ ॥୫୬
ଗନ୍ଧର୍ବଗଣ ବିଦ୍ୟାଧର ।
ସୁସିଦ୍ଧ ଚାରଣ କିନ୍ନର ॥୫୭
କରନ୍ତି ଜୟ ଜୟ ବାଣୀ ।
କୁସୁମ କଳ୍ପବୃକ୍ଷୁ ଆଣି ॥୫୮
ସିଞ୍ଚଣ ମନ୍ଦାକିନୀ-ବାରି ।
ପୁଷ୍ପ ବରଷି ସ୍ତୁତି କରି ॥୫୯
ସହସ୍ର ଦୁନ୍ଦୁଭି ଶବଦ ।
ବଜାନ୍ତି ଚତୁର୍ବିଧ ବାଦ୍ୟ ॥୬୦
ନୃତ୍ୟ କରନ୍ତି ଅପସରୀ ।
ମଙ୍ଗଳ ନାଦେ ମୋଦଭରି ॥୬୧
ଆଗରେ ଉଭା ତା'ର ରାଣୀ ।
ବଳି ଘେନିଲା କୁଶ ପାଣି ॥୬୨
ବେଦ-ବଚନେ ବାକ୍ୟ କରି ।
କାନ୍ତ-କାମିନୀ ମୋଦଭରି ॥୬୩
ବାମନ କଲେ ବେଦନାଦ ।
ଧରଣୀ ଦେଲା ତିନିପାଦ ॥୬୪
ଆତ୍ମସନ୍ତୋଷେ ଯେତେ ଧନ ।
ଦକ୍ଷିଣା ଦେଲା ଯଜମାନ ॥୬୫
ତା'ର ଦୁର୍ଲ୍ଲଭ କଥା ଶୁଣି ।
ଦେବେ କରନ୍ତି ଜୟବାଣୀ ॥୬୬
ବାମନ କରେ ଜଳ ଘେନି ।
ପାଦକେ ଢାଙ୍କିଲେ ଅବନୀ ॥୬୭
ବାମନ ବଳି-ମୁଖ ଚାହିଁ ।
ବୋଲନ୍ତି ଆଉ ମହୀ କାହିଁ ॥୬୮
ବଳି ବୋଇଲା ଦେବି ସ୍ୱର୍ଗ ।
ବାମନ ପାଦ ଦେଲେ ବେଗ ॥୬୯

ଦ୍ୱିତୀୟ ପାଦେ ସ୍ୱର୍ଗ ଝାମ୍ପେ ।
ଘୋର-ଶବଦେ ଦିଗ କମ୍ପେ ॥୭୦
ଅଦ୍‌ଭୁତ ବାମନ ଶରୀର ।
ପୂରିଲା ସ୍ୱର୍ଗ-ଅଭ୍ୟନ୍ତର ॥୭୧
ବଳି ଯେ ଆଚାର୍ଯ୍ୟ ସହିତେ ।
ଅଛନ୍ତି ବାମନ ଅଗ୍ରତେ ॥୭୨
ଦେଖଇ ବାମନ ଶରୀର ।
ଦେବଦାନବେ ଅଗୋଚର ॥୭୩
ନିର୍ଗୁଣ ଆତ୍ମା ସେ ସ୍ୱଭାବେ ।
କିବା ଉପମା ଦେବା ଏବେ ॥୭୪
ବେନିଚରଣ ଭୂ-ଆକାଶେ ।
ପର୍ବତଗଣ ଜଂଘ ଦେଶେ ॥୭୫
ବିହଙ୍ଗଗଣ ଜାନୁମୂଳେ ।
ଉଡ଼ନ୍ତି ଜନ୍ତୁ ଅନ୍ତରାଳେ ॥୭୬
ସନ୍ଧ୍ୟା ଦିଶଇ ବସ୍ତ୍ର ପ୍ରାୟେ ।
ନିଜ ସ୍ୱଭାବେ ବିଶ୍ୱକାୟେ ॥୭୭
ଗୁହ୍ୟ ଦେଶରେ ପ୍ରଜାପତି ।
ଜଘନେ ଅସୁରେ ବସନ୍ତି ॥୭୮
ନାଭି ପ୍ରଦେଶେ ନଭ ଦିଶେ ।
ସପତ ସିନ୍ଧୁ କୁକ୍ଷିଦେଶେ ॥୭୯
ଉରେ ବିରାଜେ ତାରାଗଣ ।
ଯେହ୍ନେ ଅଳଙ୍କାର-ଭୂଷଣ ॥୮୦
ଧର୍ମ ବିରାଜେ ହୃଦମଧ୍ୟେ ।
ନିଜ ଶରୀର ଅଧଉର୍ଦ୍ଧ୍ୱେ ॥୮୧
ସ୍ତନମଣ୍ଡଳେ ଋତ-ସତ୍ୟ ।
ମନେ ନିବାସ ନିଶାନାଥ ॥୮୨
କମଳା ହୃଦୟେ ବିରାଜେ ।
ବେନି କମଳ କରେ ସାଜେ ॥୮୩
କଣ୍ଠେ ବିରାଜେ ସାମବେଦ ।
ଆବର ଯେ ଅବା ଶବଦ ॥୮୪
ବାସବ ଆଦି ଦିଗପାଳେ ।
ଭୁଜେ ବସନ୍ତି ଅନ୍ତରାଳେ ॥୮୫
ଗଗନ ଦିଶେ ଶିର ଦେଶେ ।
ମେଘେ ଦିଶନ୍ତି କେଶପାଶେ ॥୮୬
ନାସିକା ମଧ୍ୟେ ହୋଇ ଶ୍ୱାସ ।
ବହେ ପବନ ଅଣଚାଷ ॥୮୭

Dr. Sudhanshu Sekhar Mishra

ବେନି ଲୋଚନେ ରବି ଦିଶେ ।
ବଦନେ ଅନଳ ପ୍ରକାଶେ ॥୮୮
ସପତ ଛନ୍ଦ ବାଣୀ ଦେଶେ ।
ଜିହ୍ୱାରେ ବରୁଣ ପ୍ରକାଶେ ॥୮୯
ବିଧି ନିଷେଧ ଭୂରୁ ଦେଶେ ।
ରାତ୍ର ଦିବସ ପକ୍ଷ୍ମେ ଦିଶେ ॥୯୦
ଲଲାଟେ କ୍ରୋଧ ପ୍ରକାଶଇ ।
ଅଧର ଓଷ୍ଠେ ଲୋଭ ବହି ॥୯୧
ସ୍ମରଣେ କନ୍ଦର୍ପ ରହଇ ।
ରେତେ ସଲିଳ ବିରାଜଇ ॥୯୨
ଅଧର୍ମ ପୃଷ୍ଠ ଦେଶେ ରହେ ।
କ୍ରମଣ ମାର୍ଗେ ଯଜ୍ଞ ଶୋହେ ॥୯୩
ଛାୟାରେ ମୃତ୍ୟୁ ବିରାଜଇ ।
ହସିତ ମାୟାରେ ବସଇ ॥୯୪
ବୃକ୍ଷ-ଔଷଧି ରୋମଗଣ ।
ଆଶ୍ରିତ ନାନା ପୁଷ୍ପବନ ॥୯୫
ନଦୀ-ସମୂହ ନାଡ଼ୀଦେଶେ ।
ଅଚଳକୁଳ ନଖେ ବସେ ॥୯୬
ବ୍ରହ୍ମା ବିରାଜେ ବୁଦ୍ଧି ମଧ୍ୟେ ।
ପ୍ରାଣେ ଦେବତା-ଋଷି-ସାଧେ ॥୯୭
ସ୍ଥାବର ଜଙ୍ଗମ ସହିତେ ।
କୀଟ ପତଙ୍ଗ ଦିଶେ ଗାତ୍ରେ ॥୯୮
ସର୍ବାଙ୍ଗେ ଦିଶେ ତିନିପୁର ।
ଦେବମାନବେ ଅଗୋଚର ॥୯୯
ନିଜ ଆୟୁଧ ଅଷ୍ଟଭୁଜେ ।
ଶଙ୍ଖ କମଳ ଚକ୍ର ସାଜେ ॥୧୦୦
ଗଦା ସାରଙ୍ଗ ଅସିବର ।
ତୂଣ ଅକ୍ଷଣ ବାଣ ଶର ॥୧୦୧
ସୁନନ୍ଦ ଆଦି ପାରିଷଦେ ।
ସମୀପେ ଖଟନ୍ତି ଆନନ୍ଦେ ॥୧୦୨
ଦିଗ ଉଭାରି ଦିଗପାଳେ ।
ମୁନି ବିବୁଧ ଅନ୍ତରାଳେ ॥୧୦୩
କିରୀଟ ଅଙ୍ଗଦ ଉଜ୍ଜ୍ୱଳ ।
ଶ୍ରବଣେ ମକର କୁଣ୍ଡଳ ॥୧୦୪
ଶ୍ରୀବତ୍ସ ଚିହ୍ନ ବନମାଳା ।
କଟୀରେ ସୁବର୍ଣ୍ଣ ମେଖଳା ॥୧୦୫
ବନମାଳର ଗନ୍ଧ ଆଶେ ।
ଭ୍ରମରେ ଉଡୁଛନ୍ତି ପାଶେ ॥୧୦୬
ପାଦକେ ଧରଣୀ ପୂରିଲା ।
ଦ୍ୱିତୀୟେ ସ୍ୱର୍ଗ ଗ୍ରସ୍ତ ହେଲା ॥୧୦୭
ଦିଗ ପୂରିଲା ଅଷ୍ଟଭୂଜେ ।
ମେଘେ ଦିଶନ୍ତି ଚୂଳ ମାଝେ ॥୧୦୮
ଏମନ୍ତେ ବାମନର ଦେହୀ ।
ତୃତୀୟ ପାଦ ଠାବ ନାହିଁ ॥୧୦୯
ମହତ-ଜନ-ତପ-ଲୋକେ ।
ଲୁଚିଲେ ବାମନ ମସ୍ତକେ ॥୧୧୦
ବୋଲଇ ଦାସ ଜଗନ୍ନାଥ ।
ଅଦ୍‌ଭୁତ ବାମନ ଚରିତ ॥୧୧୧
ସୁଜନେ ଚିନ୍ତ ଏକ ଚିତ୍ତେ ।
ଭାଷା ପ୍ରବନ୍ଧେ ଭାଗବତେ ॥୧୧୨
ବଳି-ବାମନର ପ୍ରସ୍ତାବ ।
ଶୁଣି ତ୍ରିତାପୁ ନିସ୍ତରିବ ॥୧୧୩

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ବିଶ୍ୱରୂପଦର୍ଶନ
ନାମ ଊନବିଂଶୋଽଧ୍ୟାୟଃ ॥

---

## ବିଂଶ ଅଧ୍ୟାୟ

କହନ୍ତି ବ୍ୟାସଙ୍କର ବଳା ।
ଶୁଣ ପରୀକ୍ଷ କୃଷ୍ଣଲୀଳା ॥୧

ଶୁକ ଉବାଚ

ବାମନ ବିଶ୍ୱରୂପ ଦେଖି ।
ବୁଝିଲେ ହରବ୍ରହ୍ମା ଆଖି ॥୨
ଭୟେ ମିଳିଲେ ବିଷ୍ଣୁ ପାଶେ ।
ଅଭୟ ଚରଣ ବିଶ୍ୱାସେ ॥୩
ଅମର ଆଦି ମୁନିଗଣେ ।
ନମିଲେ ବାମନ ଚରଣେ ॥୪
ସନନ୍ଦ ଆଦି ଯୋଗୀଜନେ ।
ବେଦ ଉପବେଦ ସୁମନେ ॥୫
ଯମ ନିୟମ ବେନିପାଶେ ।
ସର୍ବେ ମିଳିଲେ ମହାତ୍ରାସେ ॥୬
ତର୍କ ପୁରାଣ ଇତିହାସ ।
ଆଗମ ନିଗମ ପ୍ରକାଶ ॥୭
ଅପର ଯୋଗୀ ସିଦ୍ଧ ଯେତେ ।
ଜ୍ଞାନ-ଅନଳ ଜାଳି ଚିତ୍ତେ ॥୮
ଅଶେଷ କର୍ମବନ୍ଧ-ଫାଶି ।
ଯେ କରିଛନ୍ତି ଭସ୍ମରାଶି ॥୯
ବେଗେ ମିଳିଲେ ମୋଦଭରି ।
ସ୍ତୁତି-ବନ୍ଦନ ମୁଖେ କରି ॥୧୦
ହର ବିରଞ୍ଚି ତୋଷମନେ ।
କରସଂପୁଟ ଉପାୟନେ ॥୧୧
ବାମନ ପାଦତଳେ ଥୋଇ ।
ତକ୍ଷଣେ ବ୍ରହ୍ମା ଆଗ ହୋଇ ॥୧୨
ଯେ ବିଷ୍ଣୁ ନାଭିପଦ୍ମୁଁ ଜାତ ।
ଯାହାର ସର୍ଜିଲା ଜଗତ ॥୧୩
ଆନନ୍ଦେ ଭରି କମଣ୍ଡଳେ ।
ଶୁଚି ପବିତ୍ର ଶୁଦ୍ଧ ଜଳେ ॥୧୪
ମନ୍ତ୍ର ଉଚ୍ଚାରି କରେ ଘେନି ।
ଯେ ନୀର ଭୁବନ ପାବନୀ ॥୧୫
ବାମନ-ପାଦ ଶୂନ୍ୟେ ଗଲା ।
ବାଜନ୍ତେ ବ୍ରହ୍ମାଣ୍ଡ କମ୍ପିଲା ॥୧୬
ସେ ଅଣ୍ଡ ଭେଦି ଜଳରାଶି ।
ବେଗେ ବ୍ରହ୍ମାଣ୍ଡ ମଧ୍ୟେ ପଶି ॥୧୭

Dr. Sudhanshu Sekhar Mishra

ବିଷ୍ଣୁ-ଚରଣ ପଖାଳିଲା ।
ପତିତପାବନୀ ହୋଇଲା ॥୧୮
ସେ ଜଳ କମଣ୍ଡଳେ ଘେନି ।
ବିଷ୍ଣୁ ସମୀପେ ପଦ୍ମଯୋନି ॥୧୯
ସଙ୍ଗତେ ଘେନି ଦେବଗଣ ।
ଯେ ସିଦ୍ଧ କିନ୍ନର ଚାରଣ ॥୨୦
ଯେ ଯା'ର ଘେନି ଉପାୟନ ।
ମିଳିଲେ ବିଷ୍ଣୁ ସନ୍ନିଧାନ ॥୨୧
ନମି ବାମନ ପାଦତଳେ ।
ନିଜ ଅଧିକାର ନିଶ୍ଚଳେ ॥୨୨
ଗଙ୍ଗା ଯେ କମଣ୍ଡଳେ ଥିଲା ।
ବ୍ରହ୍ମା ବିଷ୍ଣୁପାଦେ ଢାଳିଲା ॥୨୩
ଶୁଦ୍ଧ ପବିତ୍ର ଜଳରାଶି ।
ଗୋବିନ୍ଦ ନଖ କୋଣେ ପଶି ॥୨୪
ତହୁଁ ଉଚ୍ଛୁଳି ଅନ୍ତରୀକ୍ଷେ ।
ପଡ଼ିଲା ମୁନିଙ୍କ ସମକ୍ଷେ ॥୨୫
ସୋମ ଆଦିତ୍ୟ ଲୋକ ଜିଣି ।
ସ୍ୱର୍ଗେ ପଡ଼ିଲା ତରଙ୍ଗିଣୀ ॥୨୬
ସୁମେରୁ ଶିଖେ ଅନ୍ତରୀକ୍ଷେ ।
ସେ ଜଳ ପଡ଼ିଲା ପ୍ରତ୍ୟକ୍ଷେ ॥୨୭
ଚତୁର ଦିଗେ ଚାରିଧାରେ ।
ପଡ଼ିଲା ଧରଣୀ ଉପରେ ॥୨୮
ସମୁଦ୍ରେ ମିଶେ ଚାରିଦିଗେ ।
ନଦୀ ସ୍ୱରୂପେ ଅତିବେଗେ ॥୨୯
ଏବେ ହୋ ଶୁଣ ମହୀପତି ।
ଚରଣ ଧୋଇ ପ୍ରଜାପତି ॥୩୦
ଘେନି ସୁଗନ୍ଧ ପୁଷ୍ପମାଳ ।
ଚନ୍ଦନ କର୍ପୂର ଶୀତଳ ॥୩୧
ସନ୍ନିଧେ ଧୂପ ଦୀପ ଥୋଇ ।
ଫଳ ଅକ୍ଷତ ଲାଜା ଦେଇ ॥୩୨
ଜୟ ଶବଦେ ସ୍ତୁତି ଭଣି ।
ନିର୍ମଳ ବାକ୍ୟେ ବେଦବାଣୀ ॥୩୩
ବିଷ୍ଣୁର ମହିମା ଉକତେ ।
ତାଣ୍ଡବ ବାଦ୍ୟ ନୃତ୍ୟଗୀତେ ॥୩୪
ଶଙ୍ଖଦୁନ୍ଦୁଭି ଶୂନ୍ୟେ ଘୋଷେ ।
ସର୍ବେ ମିଳିଲେ ବିଷ୍ଣୁପାଶେ ॥୩୫
ଅତି ଉଲ୍ଲାସେ ଜାମ୍ବବାନ ।
ମିଳିଲା ବିଷ୍ଣୁ ସନ୍ନିଧାନ ॥୩୬
ବିଷ୍ଣୁର ଯଶ ଗାଇ ତୋଷେ ।
ଯେ ଯଶ ପୂରେ ଦଶଦିଶେ ॥୩୭
ଏମନ୍ତ ମହୋତ୍ସବ ଦେଖି ।
ଅସୁର ଭୁବନ ଉପେକ୍ଷି ॥୩୮
ଦ୍ୱିପାଦ ଦାନେ ସ୍ୱର୍ଗ ମହୀ ।
ପୂରିଲା ବାମନର ଦେହୀ ॥୩୯
ସ୍ୱସ୍ଥାନେ ରହି ନ ପାରିଲେ ।
ବଳିର ସମୀପେ ମିଳିଲେ ॥୪୦
ଗୁରୁବଚନେ କୋପଚିତ୍ତେ ।
ବୋଲନ୍ତି ବଳିର ଅଗ୍ରତେ ॥୪୧

ଅସୁରଗଣ ଉବାଚ

ବ୍ରାହ୍ମଣ ନୋହେ ଏ ବାମନ ।
ପ୍ରତ୍ୟକ୍ଷେ ପ୍ରଭୁ ଭଗବାନ ॥୪୨
ମାୟାବୀମାନଙ୍କ ମୋହନ ।
କପଟେ ମାଗେ ଭୂମିଦାନ ॥୪୩
ମାୟାବୀମାନଙ୍କର ବର ।
ସମ୍ପଦ ହରିଲା ତୋହର ॥୪୪
ବାମନରୂପ ଏ ଜଗତେ ।
ଦେବଙ୍କ କାର୍ଯ୍ୟସିଦ୍ଧି ଅର୍ଥେ ॥୪୫
ଏ ବଳି ନିତ୍ୟେ ସତ୍ୟବ୍ରତ ।
ବିଶେଷେ ବ୍ରାହ୍ମଣ ଭକତ ॥୪୬
କେବେ ହେଁ ମିଥ୍ୟା ଏ ନ କହେ ।
ଦୁଃଖୀଜନଙ୍କୁ ଦୟା ବହେ ॥୪୭
ଆମ୍ଭର ପ୍ରଭୁ ଏ ରାଜନ ।
ନିଶ୍ଚେ ବଇରୀ ଏ ବାମନ ॥୪୮
ଆସ ଏହାକୁ ବଧ କର ।
ବଳିକି ସଙ୍କଟୁ ଉଦ୍ଧର ॥୪୯
ଏ ମଲେ ଶତ୍ରୁ ନାହିଁ ଦୁଜା ।
ବଳି ହୋଇବ ସ୍ୱର୍ଗେ ରାଜା ॥୫୦
ଆମ୍ଭେ କରିବୁ ତୋ'ର କାର୍ଯ୍ୟ ।
ହେ ଦୈତ୍ୟ ବଳି ମହାରାଜ ॥୫୧
ଏମନ୍ତ ବୋଲି ଏକ ଚିତ୍ତେ ।
ଅସୁରେ ଧାଇଁଲେ ତୁରିତେ ॥୫୨
ଶୂଳ ଖଡ୍ଗ ଧରି କରେ ।
ଧାଇଁଲେ ଘୋର ନାଦଭରେ ॥୫୩
ଶବଦେ ଭୁବନ କମ୍ପିଲା ।
ସିନ୍ଧୁ କି ଉଚ୍ଛୁଳି ପଡ଼ିଲା ॥୫୪
ତାହାଙ୍କୁ ଦେଖି ବିଷ୍ଣୁଗଣେ ।
ତକ୍ଷଣେ ଉଭାରିଲେ ରଣେ ॥୫୫
ମିଳିଲେ କରେ ଶସ୍ତ୍ର ଧରି ।
ଶଙ୍ଖ-ଶବଦେ ମୋଦ ଭରି ॥୫୬
ନନ୍ଦ ସୁନନ୍ଦ ଜୟ ଆଦି ।
ବିଜୟ ପ୍ରବଳ ସୁବୁଦ୍ଧି ॥୫୭
ବଳ କୁମୁଦ କୁମୁଦାକ୍ଷ ।
ବିନତାସୁତ ଆଦି ଦକ୍ଷ ॥୫୮
ବିଶ୍ୱକେସନ ଯେ ଜୟନ୍ତ ।
ସୁବାହୁ ପିଙ୍ଗଳୀ ସମସ୍ତ ॥୫୯
ସାତ୍ତ୍ୱତ ପୁଷ୍ପଦନ୍ତ ବୀର ।
ଶ୍ରୁତଦେବ ଯେ ମନୋହର ॥୬୦
ଦଶସହସ୍ର ହସ୍ତୀବଳ ।
ସ୍ୱଭାବେ ତେଜ ଅନର୍ଗଳ ॥୬୧
ବେଗେ ମିଳିଲେ ଘୋରରଣେ ।
କୁଞ୍ଜରେ ଯେହ୍ନେ ପଦ୍ମବନେ ॥୬୨
ଅସୁରବଳ ନାଶ ଦେଖି ।
ବଳି ହୋଇଲା ମନେ ଦୁଃଖୀ ॥୬୩
ଗୁରୁବଚନ ମନେ ସ୍ମରି ।
ବୋଲଇ ଜଣ ଜଣ କରି ॥୬୪
ହେ ବିପ୍ରଚିତ୍ତି ବ୍ୟଗ୍ରଗତି ।
ହେ ରାହୁ କଉଣପପତି ॥୬୫
ମୋ'ର ବଚନ ଚିତ୍ତେ ଧର ।
କେବେ ହେଁ ସମର ନ କର ॥୬୬
ଆମ୍ଭର ନୋହେ ଜୟକାଳ ।
ଈଶ୍ୱର-ମାୟା ଅନ୍ତରାଳ ॥୬୭
ଯେ ପ୍ରଭୁ ବଳେ ବଳବନ୍ତା ।
ପ୍ରାଣୀଙ୍କ ଦୁଃଖ-ସୁଖ ଦାତା ॥୬୮
ସେ ଯେ ଅଶେଷ ମାୟାଧର ।
ସଂସାର ଯା'ର ଖେଳ ଘର ॥୬୯
ସେ ଯା'କୁ କାଳେ ବାମ ହୋଇ ।
ତାହାର ଜୟ ଯଶ କାହିଁ ॥୭୦

Dr. Sudhanshu Sekhar Mishra

ଯେବେ ଦଇବ ଆମ୍ଭ ପକ୍ଷେ ।
ସୁକାଳ ହୋଇବ ପ୍ରତ୍ୟକ୍ଷେ ॥୭୧
ତେବେ ଜିଣିବା ଆମ୍ଭେ ରଣେ ।
ଏମନ୍ତ ବୋଧି ଜଣେ ଜଣେ ॥୭୨

ଶୁକ ଉବାଚ

ବଳି ବଚନ ବୀରେ ଶୁଣି ।
ଜୟଅଜୟ ପରିମାଣି ॥୭୩
ପୁଣି ମିଳିବୁ ଜୟକାଳେ ।
ଏମନ୍ତ ବୋଲି ରସାତଳେ ॥୭୪
ପଶିଲେ ମନେ କ୍ରୋଧଭରି ।
ଏବେ ହୋ ଶୁଣ ଦଣ୍ଡଧାରୀ ॥୭୫
ଗରୁଡ଼ ବିଷ୍ଣୁ ଆଜ୍ଞା ପାଇ ।
ବଳି ସମୀପେ କ୍ରୋଧ ବହି ॥୭୬
ବରୁଣ ପାଶ ଘେନି କରେ ।
ବଳିକୁ ଯଜ୍ଞର ଶାଳରେ ॥୭୭
ସୋମ-ଅଭିଷେକ-ଦିବସେ ।
ବଳିକୁ ବାନ୍ଧେ ଅତି ରୋଷେ ॥୭୮
ଶୁଭିଲା ହାହାକାର ନାଦ ।
ଅସୁରେ ଲଭିଲେ ବିଷାଦ ॥୭୯
ବଳିର ଦେଖିଣ ବନ୍ଧନ ।
ବୋଲନ୍ତି ପ୍ରଭୁ ଭଗବାନ ॥୮୦
ତୃତୀୟପାଦ ମୋ'ର କରେ ।
ଦେଲୁ ଯେ ଓଁକାର ଉଚ୍ଚାରେ ॥୮୧
ଭୂମି ଗଗନେ ବେନିପାଦ ।
ଆବର ପାଦ ଶୂନ୍ୟେ ଭେଦ ॥୮୨
ତୃତୀୟ ପାଦ ଏବେ ଦିଅ ।
ସଙ୍କଳ୍ପ ଦୋଷୁ ପାରି ହୁଅ ॥୮୩
ଯାବତ ଚନ୍ଦ୍ର ସୂର୍ଯ୍ୟ ଦିଶେ ।
ପବନ ଅନଳ ପ୍ରକାଶେ ॥୮୪
ତାବତ ଭୂମି ଏ ତୋହର ।
ମୁଁ ଯେ ଘେନିଲି ବେନିପୁର ॥୮୫
ତୃତୀୟ ପାଦେ ସ୍ଥାନ ଦେଇ ।
ତୁ ଏବେ ରହ ସୁଖୀ ହୋଇ ॥୮୬
ନ ଦେଲେ ପଡ଼ିବୁ ନରକେ ।
ଅଯଶ ହେବ ତିନି ଲୋକେ ॥୮୭
ଏମନ୍ତ ବଳି ଆଗେ କହି ।
ବିଷ୍ଣୁ ରହିଲେ ସ୍ଥିର ହୋଇ ॥୮୮
ବଳିର ସତ୍ୟ ଧ୍ୟାନ କରି ।
ମାୟାସଂସାରୁ ଯା'ନ୍ତି ତରି ॥୮୯
ସୁଜନେ ଏଣେ ମନ ଦିଅ ।
ଯେବେ ଖଣ୍ଡିବ ମାୟାମୋହ ॥୯୦
ବୋଲଇ ଦାସ ଜଗନ୍ନାଥ ।
ସୁଜନ ହିତେ ଭାଗବତ ॥୯୧

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ପ୍ରାଦୁର୍ଭାବେ
ବଳିନିଗ୍ରହୋ ନାମ ବିଂଶୋଽଧ୍ୟାୟଃ ॥

---

## ଏକବିଂଶ ଅଧ୍ୟାୟ

କହନ୍ତି ଶୁକମୁନି ହସି ।
ଶୁଣ ପାଣ୍ଡବ ବଂଶ-ଶଶୀ ॥୧
ରାଜନ ଶୁଣ ସ୍ଥିର ହୋଇ ।
ହରିଚରଣେ ମନ ଦେଇ ॥୨

ଶୁକ ଉବାଚ

ବଳିକି ହରି ଯେତେବେଳେ ।
ବନ୍ଧନ କଲେ ଦାନ ଛଳେ ॥୩
ବନ୍ଧନ-ଦୁଃଖେ ବଳି ମନ ।
ସାତ୍ତ୍ୱିକେ ନ ଭଜିଲା ଛନ୍ନ ॥୪
ବିଷ୍ଣୁର ପାଦେ ମନ ଦେଇ ।
କହନ୍ତି ଶ୍ରୀମୁଖକୁ ଚାହିଁ ॥୫

ବଳି ଉବାଚ

ଭୋ ନାଥ ମୋ'ର ବାକ୍ୟ ଯେବେ ।
ମୁହିଁ ଲଂଘିବି ମୂଢ଼ ଭାବେ ॥୬
ଏ କଥା କେବେହେଁ ନ ଘଟେ ।
ଯେବେ ଜୀବନ ମୋ'ର ତୁଟେ॥୭
ତୃତୀୟ ପାଦ ତୋ'ର ହସ୍ତେ ।
ଦେଇ ମୁଁ ଲଂଘିବି କେମନ୍ତେ ॥୮
ଚରଣ ଅଛି ଯେବେ ତୋ'ର ।
ଭୋନାଥ ଦିଅ ମୁଣ୍ଡେ ମୋ'ର ॥୯
ନରକେ ମୋ'ର ଭୟ ନାହିଁ ।
ପାଶ-ବନ୍ଧନ ନ ଡରଇ ॥୧୦
ତୋ'ର ନିଗ୍ରହେ ନାହିଁ ଭୟ ।
ଅସାଧୁବାଦେ ମୋ'ର ଭୟ ॥୧୧
ତୋ' ଅନୁଗ୍ରହ ଯା'ରେ ହୋଏ ।
ସେ ପ୍ରାଣୀ ସର୍ବଦୁଃଖ ସହେ ॥୧୨
ତୁ ନାଥ ଅସୁରଙ୍କ ପକ୍ଷେ ।
ପରୋକ୍ଷ-ଗୁରୁ ତୁ ପ୍ରତ୍ୟକ୍ଷେ ॥୧୩
ଆମ୍ଭର ଚକ୍ଷୁ ମଦେ ଅନ୍ଧ ।
ସତ୍ୟ ଯେ ମଣୁ ଏ ସମ୍ପଦ ॥୧୪
ଏ ମଦେ ଅଞ୍ଜନ ସଦୃଶ ।
ଦୟାରେ କରୁ ତୁ ପ୍ରକାଶ ॥୧୫
ବଇରୀ କରି ତୋ' ବିଷୟେ ।
ପୂର୍ବେ ଯେ ଥିଲେ ମହାରାୟେ ॥୧୬
ଅନ୍ତେ ଲଭିଲେ ତୋ ଚରଣ ।
ଯେ ଗତି ମୁନି-ସିଦ୍ଧଗଣ ॥୧୭
ତୁ ନାଥ ମୋତେ ଦୟା କଲୁ ।
ବରୁଣ ପାଶେ ଯା' ବାନ୍ଧିଲୁ ॥୧୮
ନିଗ୍ରହ କରୁ ଯେତେ ମୋତେ ।
ସେ ଭୟ ନାହିଁ ମୋ'ର ଚିତ୍ତେ ॥୧୯
ତୋ ଭକ୍ତ ମୋ'ର ପିତାମହ ।
ସାଧୁ ସୁଗୁଣ ମହାଶୟ ॥୨୦
ତୋ'ର ଚରଣେ ଆଶ୍ରେ କରି ।
ପିତାର ଦଣ୍ଡରୁ ନିସ୍ତରି ॥୨୧
ଜାଣଇ ମିଥ୍ୟା ଏ ସଂସାର ।
କେ ମିତ୍ର ବନ୍ଧୁ କେବା ପର ॥୨୨
କେବା ଜନନୀ ଭ୍ରାତା ତାତ ।
କିବା ସମ୍ପଦ ଏ ଜଗତ ॥୨୩

Dr. Sudhanshu Sekhar Mishra

ପତ୍ନୀ ତନୟ କେହି ନୋହେ ।
ସର୍ବେ ଯନ୍ତ୍ରିତ ମାୟା ମୋହେ ॥୨୪
ଏ ଯେତେ ସଂସାର ଦେଖଇ ।
ଜନ୍ମ ମରଣେ ହେତୁ ତୁହି ॥୨୫
ସେ ପୁଣି ଏମନ୍ତ ବିଚାରି ।
ତୋ' ପାଦେ ଚିତ୍ତ ଦୃଢ଼କରି ॥୨୬
ଅନ୍ତେ ପଶିଲା ତୋ'ର ପାଦେ ।
ମାୟାକୁ ଜିଣି ଅପ୍ରମାଦେ ॥୨୭
ରହିଲା ପାରିଷଦ ହୋଇ ।
ଜନ୍ମ-ମରଣ ଆଉ କାହିଁ ॥୨୮
ତୋ'ର ମହିମା ଭାବଗ୍ରାହୀ ।
ମୁଁ ମୂଢ଼ ଜାଣିବି ତା' କାହିଁ ॥୨୯
କହନ୍ତି ଶୁକ ବ୍ରହ୍ମପତି ।
ଶୁଣ ହେ ଉତ୍ତରା-ସନ୍ତତି ॥୩୦

ଶୁକ ଉବାଚ

ଏମନ୍ତେ କହୁଁ କହୁଁ ବଳି ।
ପ୍ରତ୍ୟକ୍ଷେ ଯେସନେ ବିଜୁଳି ॥୩୧
ଗଗନେ ଶୁଭେ ଶଙ୍ଖନାଦ ।
ତକ୍ଷଣେ ମିଳେ ପ୍ରହଲ୍ଲାଦ ॥୩୨
ବଳି ନମିଲା ତା'ଙ୍କୁ ଦେଖି ।
ବାମନ-ସଙ୍ଗତ ଉପେକ୍ଷି ॥୩୩
ବିଷ୍ଣୁର ପ୍ରାୟେ ତା'ର ତେଜ ।
ତୁଲ୍ୟ ନୋହିବେ ଗ୍ରହରାଜ ॥୩୪
ପୀତବସନ ପରଧାନ ।
ସୁନ୍ଦର ନଳିନ ନୟନ ॥୩୫
ଆଜାନୁ ବେନିବାହୁ ଶୋହେ ।
ରୂପେ ଅନଙ୍ଗ ସମ ନୋହେ ॥୩୬
ବଳି ଆନନ୍ଦ ଗଦଗଦେ ।
କଣ୍ଠେ କୁଣ୍ଠିତ ବାକ୍ୟ ରୁନ୍ଧେ ॥୩୭
ଚରଣେ ଦଣ୍ଡବତ ହୋଇ ।
ମନ-କଳ୍ପିତେ ଅର୍ଘ୍ୟ ଦେଇ ॥୩୮
ରହିଲା ପିତାମହ ପାଶେ ।
ବାମନ-ଅନୁଗ୍ରହ ଆଶେ ॥୩୯
ସେ ପ୍ରହଲ୍ଲାଦ ଅତି ବେଗେ ।
ନମିଲା ବିଷ୍ଣୁପାଦ ଯୁଗେ ॥୪୦

ନୟନେ ଅଶ୍ରୁଜଳ ଭରି ।
କର-ଅଞ୍ଜଳି ଶିରେ ଧରି ॥୪୧
ଆନନ୍ଦେ ଶୋକ ଗଦଗଦ ।
ସ୍ତୁତି କରଇ ପ୍ରହଲ୍ଲାଦ ॥୪୨

ପ୍ରହ୍ଲାଦ ଉବାଚ

ତୁ ନାଥ ଅନୁଗ୍ରହ ମନେ ।
ଏହାକୁ ସ୍ଥାପି ଇନ୍ଦ୍ରାସନେ ॥୪୩
ପୁଣି ଭ୍ରମାଉ ସୁଖସ୍ଥାନୁ ।
ଯେଣୁ ହୋଇଲା ତୋ'ର ମନ୍ୟୁ ॥୪୪
ନିଶ୍ଚୟ କଲୁ ଅନୁଗ୍ରହ ।
ଯେଣୁ ନାଶିଲୁ ମାୟାମୋହ ॥୪୫
ନମସ୍ତେ ଜଗତ ଈଶ୍ୱର ।
ନମସ୍ତେ ଶଙ୍ଖ-ଚକ୍ରଧର ॥୪୬
ତୁ ନାରାୟଣ ବିଶ୍ୱଗୁରୁ ।
ମହାମହିମ ମହାମେରୁ ॥୪୭
ତୁ ନାରାୟଣ ବିଶ୍ୱରୂପୀ ।
ବିଶ୍ୱ ସମ୍ଭୂତ ବିଶ୍ୱବ୍ୟାପୀ ॥୪୮
ଆତ୍ମାପ୍ରକାଶ ସର୍ବଭୂତେ ।
ଭୋ ନାଥ ନମସ୍ତେ ନମସ୍ତେ ॥୪୯

ଶୁକ ଉବାଚ

ପ୍ରହଲ୍ଲାଦର ଭକ୍ତି ଦେଖି ।
ହିରଣ୍ୟଗର୍ଭ ମନେ ସୁଖୀ ॥୫୦
ବେଗେ ନମିଲେ ବିଷ୍ଣୁପାଦେ ।
ଚତୁରମୁଖେ ବେଦନାଦେ ॥୫୧
ବଳିର ପତ୍ନୀ ଆସି ବେଗେ ।
ବିଷ୍ଣୁ ଚରଣେ ଅନୁରାଗେ ॥୫୨
ସ୍ୱାମୀ କଷଣେ ଅତି ଦୁଃଖୀ ।
ସ୍ତୁତି କରଇ ଅଶ୍ରୁମୁଖୀ ॥୫୩

ବିନ୍ଧ୍ୟାବଳୀ ଉବାଚ

ଭୋ ନାଥ ନିଜ କ୍ରୀଡ଼ାଅର୍ଥେ ।
ତୋ'ର ପ୍ରକାଶ ଏ ଜଗତେ ॥୫୪
ତୋହର ମହିମା ନ ଜାଣି ।
ଗର୍ବ ବହନ୍ତି ଯେତେ ପ୍ରାଣୀ ॥୫୫
ଜ୍ଞାନ ହରାନ୍ତି ସୁଖଭୋଳେ ।
ସେ କାହିଁଥିବେ ଏ ଶୟଳେ ॥୫୬

ତୋ' ପାଦ ସର୍ବ ସୁଖଘର ।
ଆମ୍ଭଙ୍କୁ ଅନୁଗ୍ରହ କର ॥୫୭
ବ୍ରହ୍ମା ବାମନ ମୁଖ ଚାହିଁ ।
ସ୍ତୁବନ୍ତି ଶିରେ କର ଦେଇ ॥୫୮

ବ୍ରହ୍ମା ଉବାଚ

ଭୂତଭାବନ ଭୂତଈଶ ।
ହେ ଦେବଦେବ ଜଗଦୀଶ ॥୫୯
ଏହାକୁ ନିଗ୍ରହ ତୁ କଲୁ ।
ସକଳ ସମ୍ପଦ ହରିଲୁ ॥୬୦
ସର୍ବସମ୍ପଦ ଦେଇ ତୋତେ ।
ଭ୍ରାନ୍ତି ନ କଲା କିଛି ଚିତ୍ତେ ॥୬୧
ନିର୍ମଳ ଚିତ୍ତେ ତୋ'ର ପାଦେ ।
ଅର୍ଘ୍ୟ ନିବେଶି ଅପ୍ରମାଦେ ॥୬୨
ତ୍ରିଲୋକଦାନ ତୋତେ ଦେଲା ।
ଚିତ୍ତେ ବିଷାଦ ନ ଚିନ୍ତିଲା ॥୬୩
ତୁ ନାଥ ସବୁ ସର୍ବଭୂତେ ।
ଏହାକୁ ବାନ୍ଧିଲୁ କେମନ୍ତେ ॥୬୪
ତୁ ନାଥ ସର୍ବଚିତ୍ତ ଜାଣୁ ।
କେ ତୋ'ର ମହିମା ବଖାଣୁ ॥୬୫

ଶୁକ ଉବାଚ

ବ୍ରହ୍ମା ବଚନ ଶୁଣି ହରି ।
ବଳିକି ଚିତ୍ତେ ଦୟା କରି ॥୬୬
ବୋଲନ୍ତି ପ୍ରଭୁ ଭଗବାନ ।
ବିଧାତା ଶୁଣ ମୋ ବଚନ ॥୬୭

ଭଗବାନ ଉବାଚ

ମୁଁ ଯାକୁ ଅନୁଗ୍ରହ ବହି ।
ତା' ସର୍ବ ସମ୍ପଦ ହରଇ ॥୬୮
ଯେ ଅର୍ଥ ମଦେ ମତ୍ତ ହୋଇ ।
ପର ଅପର ନ ଜାଣଇ ॥୬୯
ମୁଁ ଯେ ବସଇ ସର୍ବଭୂତେ ।
ମୋତେ ନ ଗଣେ ଗର୍ବଚିତ୍ତେ ॥୭୦
ଏ ଜୀବଆତ୍ମା ନିଜ କର୍ମେ ।
ମାୟାରେ ସର୍ବଭୂତେ ଭ୍ରମେ ॥୭୧

Dr. Sudhanshu Sekhar Mishra

ନାନା-ଯୋନିରେ ଜନ୍ମ ହୋଏ ।
ଜ୍ଞାନ ନ ଲଭେ ମାୟାମୋହେ ॥୭୨
ଜନ୍ମ କରମ ବୟ ରୂପ ।
ବିଦ୍ୟା ଐଶ୍ୱର୍ଯ୍ୟ ଧନାଧୀପ ॥୭୩
ଏଭାବେ ଯା'ର ଗର୍ବ ନାହିଁ ।
ମୋହର ଅନୁଗ୍ରହ ତହିଁ ॥୭୪
ଯେ ଜନ ମାନଗର୍ବ ବହେ ।
ଧନ ସମ୍ପଦ ରୂପ ଦେହେ ॥୭୫
ସେ ମୋତେ ଜାଣିବ କେମନ୍ତେ ।
ମାୟା-ମୋହିତ ଅବିରତେ ॥୭୬
ଏ ଯେ ଦାନବ ଦୈତ୍ୟରାଜା ।
ନିଜ ସ୍ୱଭାବେ ମହାତେଜା ॥୭୭
ଅସୁର ବୁଦ୍ଧି ନ ଘେନିଲା ।
ଗୁରୁ ବଚନ ନ ମାନିଲା ॥୭୮
ବନ୍ଧୁ-ବାନ୍ଧବ-ଜ୍ଞାତି ଯେତେ ।
ଏହାଙ୍କୁ ଛାଡ଼ିଲେ ସମସ୍ତେ ॥୭୯
କେବେ ହେଁ ସତ୍ୟ ନ ଛାଡ଼ିଲା ।
ମୋ'ର ବଚନେ ମନ ଦେଲା ॥୮୦

ଏ ଭୂମିଦାନ ଦେଲା ମୋତେ ।
ଏ ଲୋକେ ଥିବ ଏ କେମନ୍ତେ ॥୮୧
ଏହାକୁ ଦେବି ଦିବ୍ୟସ୍ଥାନ ।
ସ୍ୱର୍ଗହୁଁ ଦୁର୍ଲ୍ଲଭ ଭୁବନ ॥୮୨
ନିର୍ମିତ ବିଶ୍ୱକର୍ମା ପୁର ।
ଦେବ-ଦାନବେ ଅଗୋଚର ॥୮୩
ଯେ ପୁରେ ଆଧି-ବ୍ୟାଧି ନାହିଁ ।
କାଳର ତେଜ ନ ଲାଗଇ ॥୮୪
ସେ ପୁରେ ଥିବ ଏ ନିଶ୍ଚିନ୍ତେ ।
ସାବର୍ଣ୍ଣିମନୁ ପରିଯନ୍ତେ ॥୮୫
ସେ ମନୁକାଳେ ସ୍ୱର୍ଗପୁରେ ।
ବସିବ ଅମର ଶରୀରେ ॥୮୬
ଇନ୍ଦ୍ର ହୋଇବ ସ୍ୱର୍ଗଦେଶେ ।
ମୁଁ ଏବେ ଥିବି ଏହା ପାଶେ ॥୮୭
ନିଶ୍ଚିନ୍ତେ ଥାଉ ଏ ସୁତଳେ ।
ଦାରା ତନୟ ଜ୍ଞାତି ମେଳେ ॥୮୮
ଧନ ହିଁ ଥିବ ଅପ୍ରମିତ ।
ଶତ୍ରୁ ନୋହିବ ଉପଗତ ॥୮୯

ସୁଦରଶନ ତା' ଅଗ୍ରତେ ।
ଆବୋରି ଥିବ ଅବିରତେ ॥୯୦
ଦୈତ୍ୟଦାନବ ତା'ର ସଙ୍ଗେ ।
ନିରତେ ଥିବେ ମନ ରଙ୍ଗେ ॥୯୧
ମୁହିଁ ଯେ କରେ ଗଦା ଧରି ।
ଥିବଇଁ ତା' ପୁର ଆବୋରି ॥୯୨
ନିରତେ ଦେଖୁଥିବ ମୋତେ ।
ଥିବି ମୁଁ ଏହାର ଅଗ୍ରତେ ॥୯୩
ଏମନ୍ତ କହି ଭଗବାନ ।
ଫେଡ଼ିଲେ ବଳିର ବନ୍ଧନ ॥୯୪
ସେ ହରିଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୯୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନ ପ୍ରାଦୁର୍ଭାବେ
ବଳି-ବାମନ ସମ୍ବାଦୋ ନାମ
ଏକବିଂଶୋଽଧ୍ୟାୟଃ ॥

---

## ଦ୍ୱାତ୍ରିଂଶ ଅଧ୍ୟାୟ

ହରଷେ କହେ ବ୍ୟାସସୁତ ।
ଶୁଣ ରାଜନ ପରୀକ୍ଷିତ ॥୧

ଶୁକ ଉବାଚ

ଏମନ୍ତ ବିଷ୍ଣୁ ମୁଖୁଁ ଶୁଣି ।
ବଳି କୃତାର୍ଥ ପ୍ରାୟ ମଣି ॥୨
ସାଧୁ ସୁମତି ସେ ସ୍ୱଭାବେ ।
ପ୍ରସନ୍ନ ମନେ ପ୍ରିୟ ଭାବେ ॥୩
କର-ଅଞ୍ଜଳି ଶିରେ ଧରି ।
ରୋମ-ପୁଲକେ ଅଶ୍ରୁଭରି ॥୪
ପ୍ରଣାମ କରି ବିଷ୍ଣୁ ପାଦେ ।
ବୋଲେ ଆନନ୍ଦ ଗଦଗଦେ ॥୫

ବଳି ଉବାଚ

ମୋହର ଭାଗ୍ୟ ଏ ଜଗତେ ।
ଦାନ ମୁଁ ଦେଲି ତୋ'ର ହସ୍ତେ ॥୬

ବ୍ରହ୍ମା-ସୃଷ୍ଟିରେ ହୋଇ ଜନ୍ମ ।
କେବା ଲଭିବ ଏଡ଼େ କର୍ମ ॥୭
ଭୋ ନାଥ ଅନୁଗ୍ରହ ତୋ'ର ।
ଦିଗପାଳଙ୍କୁ ଅଗୋଚର ॥୮
କମଳା-ଆଶ୍ରୟ ଯେ ପାଦ ।
ଦୁର୍ଲ୍ଲଭ ଲଭିଲି ପ୍ରସାଦ ॥୯
କହନ୍ତି ଶୁକ ମୁନିବର ।
ଶୁଣ ପାଣ୍ଡବ ବଂଶ ଧର ॥୧୦

ଶୁକ ଉବାଚ

ଏମନ୍ତ ବିଷ୍ଣୁ ପାଦେ କହି ।
ପୁତ୍ର-କଳତ୍ର ସଙ୍ଗେ ଲଇ ॥୧୧
ବଳି ଯେ ବସିଲା ନିଶ୍ଚଳେ ।
ଗୋବିନ୍ଦ ଶ୍ରୀଚରଣ ତଳେ ॥୧୨
ବ୍ରହ୍ମାଙ୍କ ନାଦ ବେଗେ କରି ।
ନାଭିରୁ ପାଦ ଜାତ କରି ॥୧୩

ତାହାର ଶିରେ ପାଦ ଦେଇ ।
ଚାପିଲେ ବ୍ରହ୍ମାଣ୍ଡ ଗୋସାଇଁ ॥୧୪
ବଳି ଦେଖନ୍ତେ ବେନିଡୋଳେ ।
ଗୋବିନ୍ଦ ଚାପିଲେ ପାତାଳେ ॥୧୫
ଭକ୍ତବତ୍ସଳ ଭାବଗ୍ରାହୀ ।
ସୁତଳପୁରେ ଠାବ ଦେଇ ॥୧୬
ତତ୍କ୍ଷଣେ ସୁତଳେ ପ୍ରବେଶ ।
ଶୁଭିଲା ଜୟ ଜୟ ଘୋଷ ॥୧୭
ଇନ୍ଦ୍ରକୁ ଆଣି ତୋଷମନେ ।
ସ୍ଥାପିଲେ ଅମର ଭୁବନେ ॥୧୮
ଅଦିତି କଲା ପୟୋବ୍ରତ ।
ସଫଳ କଲେ ଜଗନ୍ନାଥ ॥୧୯
ଦେଖିଣ ନିଜ ନାତି ଗତି ।
କୃତାର୍ଥ ପ୍ରହଲ୍ଲାଦ ମତି ॥୨୦

Dr. Sudhanshu Sekhar Mishra

ଖଣ୍ଡିଲେ ଜଗତ ବିଷାଦ ।
ବଳି ଲଭିଲା ପଦ୍ମପାଦ ॥୨୧
ଏମନ୍ତେ ନମି ବିଷ୍ଣୁପାଦେ ।
ଆନନ୍ଦେ ଅଶ୍ରୁ ଗଦଗଦେ ॥୨୨
ହିରଣ୍ୟକଶିପୁକୁମର ।
ବୋଲଇ ଦେଖ ଭାଗ୍ୟ ମୋ'ର ॥୨୩
ଏ ଜଗନ୍ନାଥଙ୍କ ପ୍ରସାଦ ।
ଲଭି ନ ପାରେ ବ୍ରହ୍ମା ରୁଦ୍ର ॥୨୪
କମଳା ବକ୍ଷସ୍ଥଳେ ବସେ ।
କଟାକ୍ଷେ ଜନଦୁଃଖ ନାଶେ ॥୨୫
ସର୍ବଦା ସମୀପେ ବସଇ ।
ପ୍ରସାଦ ଲଭି ନ ପାରଇ ॥୨୬
ଯାହା ନ ଲଭେ ବାମଦେବ ।
ଆନ ବା କେ ତାହା ପାଇବ ॥୨୭
ଯେ ପାଦପଦ୍ମ-ରେଣୁ ଆଶେ ।
ଯୋଗୀଏ ଯୋଗ ସାଧିପ୍ରାସେ ॥୨୮
ଅଷ୍ଟାଙ୍ଗ ଯୋଗେ ପାଇ ତ୍ରାସ ।
ଚରଣେ କରୁଥା'ନ୍ତି ଆଶ ॥୨୯
ସେ କାହିଁ ଲଭିବେ ସେ ଭାବ ।
ଯାହା ନ ପାନ୍ତି ବ୍ରହ୍ମାଶିବ ॥୩୦
ଏମନ୍ତ ପ୍ରହଲ୍ଲାଦ କହି ।
ବାମନପାଦେ ଶିର ଦେଇ ॥୩୧
ଦେଖି ସନ୍ତୋଷ ଭଗବାନ ।
କହନ୍ତି କୋମଳ ବଚନ ॥୩୨

ଭଗବାନ ଉବାଚ

ପ୍ରହ୍ଲାଦ ଶୁଣ ମୋ' ଉତ୍ତର ।
ଯାଅ ତ ସୁତଳ ମନ୍ଦିର ॥୩୩
ଆନନ୍ଦେ ନିଜ ପୌତ୍ର ତୁଳେ ।
ସୁଖେ ବିହର ଜ୍ଞାତି ମେଳେ ॥୩୪
ମୁଁ ଥିବି ଗଦାପାଣି ହୋଇ ।
ନିତ୍ୟେ ଦେଖିବୁ ମୋତେ ତୁହି ॥୩୫
ମୋ' ଆହାଲ୍ଲାଦ ମୋ' ଦର୍ଶନ ।
ନାଶିବ କର୍ମର ବନ୍ଧନ ॥୩୬

ଶୁକ ଉବାଚ

ବିଷ୍ଣୁର ବଚନ ଶୁଣିଲା ।
ଅନେକ ମତେ ସ୍ତୁତି କଲା ॥୩୭
ପ୍ରହ୍ଲାଦ ସଙ୍ଗେ ଦୈତ୍ୟବଳ ।
ସକଳେ ମିଳିଲେ ସୁତଳ ॥୩୮
ଏବେ ହୋ ଶୁଣ ପରୀକ୍ଷିତ ।
ଅଦ୍‌ଭୁତ ଗୋବିନ୍ଦ ଚରିତ ॥୩୯
ଏଥୁ ଅନ୍ତରେ ସେ ବାମନ ।
ଶୁକ୍ରଙ୍କୁ ଆଜ୍ଞା ଦେଲେ ପୁଣ ॥୪୦
ଯାଗର ଶେଷ ତୁମ୍ଭେ କର ।
ବଳିକି ନ କର ବିଚାର ॥୪୧
ଯେ ଯଜ୍ଞେ ସନ୍ତୋଷ ଭୃଗୁର ।
ନ୍ୟୂନାତିରିକ୍ତ କାହିଁ ତା'ର ॥୪୨
ଶ୍ରୀକୃଷ୍ଣ ବାକ୍ୟେ ଭୃଗୁ ତୋଷ ।
ଯଜ୍ଞାବଶେଷ କରି ଶେଷ ॥୪୩
ଯଜ୍ଞାନ୍ତେ ସେ ଯଜ୍ଞପୁରୁଷ ।
ତକ୍ଷଣେ ହୋଇଲେ ସନ୍ତୋଷ ॥୪୪
ଯଜ୍ଞପୁରୁଷ ରୂପେ ହରି ।
ଅନଳକୁଣ୍ଡୁ ଅବତରି ॥୪୫
ଭୃଗୁବଦନ ଚାହିଁ ତୋଷେ ।
ବୋଲନ୍ତି ସ୍ୱଧର୍ମ ବିଶ୍ୱାସେ ॥୪୬
ଯଜ୍ଞେ ସ୍ୱଭାବେ ବ୍ରହ୍ମା ଆଦି ।
ବିପ୍ରେ ଅଛନ୍ତି ବେଦବାଦୀ ॥୪୭
ତାହାଙ୍କୁ ଗଉରବ କରି ।
କହନ୍ତି ଯଜ୍ଞ ରୂପଧାରୀ ॥୪୮

ଯଜ୍ଞପୁରୁଷ ଉବାଚ

ତୁ ବ୍ରହ୍ମସନାତନ ଶିଷ୍ୟ ।
ଜାଣୁ ତୁ ଏ ଭୂତ ଭବିଷ୍ୟ ॥୪୯
ଆଗମ ନିଗମ ବିଦିତ ।
ମୁଁ ତ ଦେଖିଲି ବିପରୀତ ॥୫୦
ଯଜ୍ଞ ସଙ୍କଳ୍ପ କଲୁ ହାଦେ ।
ବଳି ବସିବ ଇନ୍ଦ୍ର ପଦେ ॥୫୧
ଏବେ ତୁ କର୍ମଛିଦ୍ର ଦେଖି ।
ରହିଲୁ ଯଜ୍ଞକୁ ଉପେକ୍ଷି ॥୫୨
ଯଜ୍ଞ ଲଂଘନ-କର୍ମ କଲେ ।
କେମନ୍ତେ ବର୍ତ୍ତିବୁ ତୁ ଭଲେ ॥୫୩
ଏ ଯଜ୍ଞ ତୋହର ଗୋଚର ।
ତୁ ଏବେ ପୂର୍ଣ୍ଣାହୁତି କର ॥୫୪
ଫଳ ପାଇବ ଯଜମାନ ।
ତା' କୁଳେ ଥିବ ତୋ'ର ମାନ୍ୟ ॥୫୫

ଶୁକ ଉବାଚ

ଯଜ୍ଞ ପୁରୁଷ ମୁଖୁଁ ଶୁଣି ।
ଭୃଗୁ ଅନେକ ସ୍ତୁତି ଭଣି ॥୫୬
ଚାହିଁ ସେ ବାମନ ଚରଣ ।
ଯଜ୍ଞସ୍ୱରୂପୀ ନାରାୟଣ ॥୫୭
ବୋଲଇ ଯୋଡ଼ି ବେନିକର ।
ପୁଲକ ଆନନ୍ଦ ଶରୀର ॥୫୮
ଭୋ ନାଥ ଏ ଯଜ୍ଞଶରୀର ।
ଅଶେଷ ଜନ ଉପକାର ॥୫୯
କର୍ମର ଈଶ୍ୱର ତୁ ଯହିଁ ।
ତା' କର୍ମ ଛିଦ୍ର ହୋଇ କାହିଁ ॥୬୦
ଯେ ମନ୍ତ୍ର ଆଦି ଦେଶକାଳ ।
ଯେ ଛିଦ୍ର ହୁଅଇ ସକଳ ॥୬୧
ତୋ' ନାମ-କୀର୍ତ୍ତନେ ସଫଳ ।
ଅଛିଦ୍ର ହୁଅଇ ସକଳ ॥୬୨
ତୁ ପ୍ରଭୁ ସଂସାର-କାରଣ ।
ନମୋ ନମସ୍ତେ ନାରାୟଣ ॥୬୩
ଏମନ୍ତ ଆଜ୍ଞା ଘେନି ମାଥେ ।
ଶ୍ରୁବ ଧଇଲା ଦକ୍ଷହସ୍ତେ ॥୬୪
ଋତ୍ୱିକ ଋଷିଗଣ ସଙ୍ଗେ ।
ଆହୁତି ଦେଲା ବେଦମାର୍ଗେ ॥୬୫
ଆନନ୍ଦେ ହୋଇ ଦ୍ରବୀଭୂତ ।
ଭୃଗୁ ହୋଇଲେ କୃତକୃତ୍ୟ ॥୬୬
ଶ୍ରୀକୃଷ୍ଣପାଦ କରି ଧ୍ୟାନ ।
କହନ୍ତି ବ୍ୟାସଙ୍କ ନନ୍ଦନ ॥୬୭
ଏବେ ତୁ ଶୁଣ ହେ ରାଜନ ।
ବାମନ ରୂପେ ଭଗବାନ ॥୬୮
ବଳିର ହସ୍ତୁ ଘେନି ଦାନ ।
ପ୍ରକଟେ ଏ ତିନିଭୁବନ ॥୬୯
ଇନ୍ଦ୍ରକୁ ଇନ୍ଦ୍ରପଦେ ସ୍ଥାପି ।
ତିନିଭୁବନେ ତନୁ ବ୍ୟାପୀ ॥୭୦
ବିଷ୍ଣୁର ଦେଖି ଦିବ୍ୟଗତି ।
ସକଳ ଦେବେ ବେଦପତି ॥୭୧

Dr. Sudhanshu Sekhar Mishra

ଭୃଗୁ-ଅଙ୍ଗିରା ଘେନି ତୁଳେ ।
ପିତୃ-ରାଜର୍ଷି-ଦକ୍ଷ ମେଳେ ॥୭୨
କୁମାର ବେଳେ ଭୂତପତି ।
ମିଳିଲେ କଶ୍ୟପ-ଅଦିତି ॥୭୩
ଦିଗପାଳଙ୍କ ମଧ୍ୟେ ଆଣି ।
କଞ୍ଚକୁସୁମ ଗଙ୍ଗାପାଣି ॥୭୪
ବାମନେ କରି ଅଭିଷେକ ।
ସର୍ବସମ୍ପଦେ ମନ ସୁଖ ॥୭୫
ଅଶେଷ ନୃତ୍ୟ-ଗୀତ-ବାଦ୍ୟେ ।
ଇନ୍ଦ୍ରକୁ ସ୍ଥାପି ଇନ୍ଦ୍ର ପଦେ ॥୭୬
ସର୍ବସମ୍ପଦ ସଙ୍ଗେ ଘେନି ।
ମଙ୍ଗଳ-ବେଦନାଦେ ମୁନି ॥୭୭
ବ୍ରହ୍ମାଶଙ୍କର ତୋଷମନେ ।
ବାମନେ ବସାଇ ବିମାନେ ॥୭୮
ଆନନ୍ଦେ ପ୍ରଜାପତି ବୋଲେ ।
ସକଳେ ସ୍ୱର୍ଗପୁର ଗଲେ ॥୭୯

ଇନ୍ଦ୍ର ବାମନ ଭୁଜବଳେ ।
ସକଳ ଦିଗପାଳ ମେଳେ ॥୮୦
ନିଶ୍ଚିନ୍ତେ ସ୍ୱର୍ଗେ ସେ ବସିଲା ।
ଯେଣୁ ଅଦିତି ବ୍ରତ କଲା ॥୮୧
ଏବେ ହେ ପରୀକ୍ଷିତ ଶୁଣ ।
ବ୍ରହ୍ମାଶଙ୍କର ଦେବଗଣ ॥୮୨
ବାମନ ପାଦେ ସ୍ତୁତି କଲେ ।
ଆନନ୍ଦେ ନିଜ ପୁରେ ଗଲେ ॥୮୩
ବଳି-ବାମନର ପ୍ରସ୍ତାବେ ।
ପ୍ରତୋଷେ କହିଲୁ ତୋ' ଭାବେ ॥୮୪
ତୁ ଯେଣୁ ପଚାରିଲୁ ମୋତେ ।
ବାମନ ରୂପ ତୋ' ଅଗ୍ରତେ ॥୮୫
କହିଲୁ ଆଦି-ଅନ୍ତ କରି ।
ଯେ କଥା-ଶ୍ରବଣେ ନିସ୍ତରି ॥୮୬
ବିଷ୍ଣୁ-ମହିମା କେ କହିବ ।
ଯାହା ନ ଜାଣେ ବ୍ରହ୍ମାଶିବ ॥୮୭

ଭୂମିରେ ରେଣୁ ଅଛି ଯେତେ ।
ଆକାଶେ ନକ୍ଷତ୍ର ସହିତେ ॥୮୮
ମେଘ-ବରଷା ଯେତେ ଧାର ।
ଯେ ବିନ୍ଦୁ ପ୍ରକାଶ ନିହାର ॥୮୯
ଏହା ଗଣି ତ ଅତିରେକେ ।
ଜଗତେ ଅଛନ୍ତି ନା ଲୋକେ ॥୯୦
ହରି-ମହିମା ସଂଖ୍ୟାକାରୀ ।
ସଂସାରେ ନାହିଁ ଦେହଧରି ॥୯୧
ଅଦ୍‌ଭୁତ ଚରିତ ବାମନ ।
ଯେ କରେ ଶ୍ରବଣ କୀର୍ତ୍ତନ ॥୯୨
ସକଳ ବିଘ୍ନ ନାଶ ଯାଇ ।
ଅନ୍ତେ ପରମଗତି ପାଇ ॥୯୩
ସେ ହରି ଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୯୪

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ବାମନାବତାର ଚରିତେ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥

## ତ୍ରୟୋବିଂଶ ଅଧ୍ୟାୟ

ଚିନ୍ତି ଶ୍ରୀକୃଷ୍ଣ-ପଦାମ୍ବୁଜ ।
କହନ୍ତି ବ୍ୟାସଙ୍କ ତନୁଜ ॥୧

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁବଳା ।
ଏମନ୍ତ ଈଶ୍ୱରର ଲୀଳା ॥୨
ମାୟାକଳ୍ପିତ ଏ ସଂସାରେ ।
ମତ୍ସ୍ୟାଦି ନାନା ଅବତାରେ ॥୩
ଧର୍ମକୁ ପାଳେ ଯୁଗେଯୁଗେ ।
ସାଧୁଙ୍କୁ ରଖେ ଅନୁରାଗେ ॥୪
ଦୁଷ୍ଟ ନିବାରି ସନ୍ଥ ପାଳେ ।
ରୂପ ପ୍ରକାଶେ ଯଥାକାଳେ ॥୫
ତା' ରୂପ କେ କରିବ ଅନ୍ତ ।
ସ୍ୱଭାବେ ମହିମା ଅନନ୍ତ ॥୬
ଏମନ୍ତ ଶୁକମୁଖୁଁ ଶୁଣି ।
ଆନନ୍ଦ ମନେ ନୃପମଣି ॥୭
ବୋଲେ ଚରଣେ କର ଦେଇ ।
ଭୋ ମୁନି ନିସ୍ତରିଲି ମୁହିଁ ॥୮

ପରୀକ୍ଷିତ ଉବାଚ

ବୋଲ ଯେ ମୀନ ଅବତାର ।
ହୋଇଲେ ଜଗତ ଈଶ୍ୱର ॥୯
ନିନ୍ଦିତ ଜଳଚର ରୂପେ ।
ଦେହ ବହିଲେ କେଉଁ କଳ୍ପେ ॥୧୦
କେବଣ କାର୍ଯ୍ୟେ କିସ ଅର୍ଥେ ।
ପ୍ରସନ୍ନେ କହ ମୋ' ଅଗ୍ରତେ ॥୧୧
ତା'ର ଚରିତ ପାପହର ।
ଅଶେଷ ପ୍ରାଣୀ ସୁଖ ଘର ॥୧୨
ଅନାଦି ପ୍ରଭୁ ନାରାୟଣ ।
ମାୟାର ପରମ କାରଣ ॥୧୩
ସୂତ କହନ୍ତି ମୁନି ମଧ୍ୟେ ।
ଅତି ଆନନ୍ଦ ଗଦଗଦେ ॥୧୪

ସୂତ ଉବାଚ

ଶୁଣ ସକଳ ମୁନିଗଣେ ।
ଶୁକ ପରୀକ୍ଷ ଯା ବଖାଣେ ॥୧୫
ଏମନ୍ତେ ରାଜାବାକ୍ୟ ଶୁଣି ।
ପରମାନନ୍ଦ ଶୁକମୁନି ॥୧୬
ଅତି ହରଷେ ଗଦଗଦେ ।
କହନ୍ତି ପରମ ଆନନ୍ଦେ ॥୧୭

ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁସୁତ ।
କହିବା ବିଷ୍ଣୁର ଚରିତ ॥୧୮
ଅନାଦି ପ୍ରଭୁ ନାରାୟଣ ।
ଅଶେଷ ବ୍ରହ୍ମାଣ୍ଡ କାରଣ ॥୧୯
ଯେ ପ୍ରଭୁ ଜଗତ ଈଶ୍ୱର ।
ବ୍ରହ୍ମାଣ୍ଡ ଯା'ର ଖେଳଘର ॥୨୦

Dr. Sudhanshu Sekhar Mishra

ସୃଜଇ ପାଳଇ ସଂହରେ ।
ସଂସାରେ ନାନାରୂପ ଧରେ ॥୨୧
ଧର୍ମ ସ୍ଥାପନେ ଦେହ ଧରି ।
ଅଧର୍ମ ସମୂହ ନିବାରି ॥୨୨
ଅସାଧୁକୁଳ ସଂହାରିଣ ।
ସାଧୁଙ୍କୁ ରଖେ ନାରାୟଣ ॥୨୩
ଶୁଣ ତୁ ଯେବା ଅର୍ଥେ ହରି ।
ଇଚ୍ଛାରେ ମୀନରୂପ ଧରି ॥୨୪
ବ୍ରହ୍ମା ଯେ ସୃଷ୍ଟି-ଅନ୍ତଃକାଳେ ।
ବେଦପୁସ୍ତକ ଥୋଇ କୂଳେ ॥୨୫
ଜଳେ ପଶିଲେ ସନ୍ଧ୍ୟା କରି ।
ସେ ବେଦ ହୟଗ୍ରୀବ ହରି ॥୨୬
ଅଗାଧ-ଜଳେ ପଶିଗଲା ।
ବିଧାତା ବିଷ୍ଣୁଙ୍କୁ ଚିନ୍ତିଲା ॥୨୭
ଦାନବ ଦୁଷ୍ଟମତି ଜାଣି ।
ତକ୍ଷଣେ ପ୍ରଭୁ ଚକ୍ରପାଣି ॥୨୮
ଶଫରୀ ରୂପକୁ ଧଇଲେ ।
ସେ ମହାଜଳରେ ପଶିଲେ ॥୨୯
ଯେମନ୍ତେ ମାଇଲେ ଅସୁର ।
ବେଦ ଉଦ୍ଧରି ଚକ୍ରଧର ॥୩୦
ସେ କଥା ଶୁଣ ଏକଚିତ୍ତେ ।
ଭାବେ କହିବି ତୋ' ଅଗ୍ରତେ ॥୩୧
ପ୍ରବେଶ ବ୍ରହ୍ମାର ରଜନୀ ।
କଳ୍ପର ନାମ ଦୈନନ୍ଦିନି ॥୩୨
ଏମନ୍ତେ ପ୍ରଳୟ ନିକଟେ ।
ରାଜାଏ ଥିଲା ସିନ୍ଧୁ ତଟେ ॥୩୩
ତାହାର ନାମ ସତ୍ୟବ୍ରତ ।
ଅଶେଷ ଗୁଣରେ ଭୂଷିତ ॥୩୪
ସ୍ୱଭାବେ ବିଷ୍ଣୁ-ପରାୟଣ ।
ତପସାଧନେ ଦୃଢ଼ମନ ॥୩୫
ତପ ସାଧଇ ସିନ୍ଧୁତୀରେ ।
ଜଳ ଭକ୍ଷଣେ ଦିନ ହରେ ॥୩୬
ସେ ତପ ସାଧି କଳ୍ପ ଅନ୍ତେ ।
ମନୁ ହୋଇବ ଭବିଷ୍ୟତେ ॥୩୭
ଆଦିତ୍ୟ ବୀର୍ଯ୍ୟେ ଜନ୍ମ ହୋଇ ।
ସେ ଶ୍ରାଦ୍ଧ ଦେବ ନାମ ବହି ॥୩୮

ମନୁ ହୋଇବ ଏ ଜଗତେ ।
ହରି ସ୍ଥାପିବେ ତୋଷଚିତ୍ତେ ॥୩୯
ଏବେ ହୋ ଶୁଣ ନରପତି ।
ସେ ସତ୍ୟବ୍ରତ ରାଜା କୀର୍ତ୍ତି ॥୪୦
ସେ ସତ୍ୟବ୍ରତ ଏକକାଳେ ।
ମିଳିଲା କୃତମାଳା କୂଳେ ॥୪୧
ସେ ନଦୀଜଳେ ସ୍ନାନ କରି ।
ଗୋବିନ୍ଦ ନାମ ଚିତ୍ତେ ସ୍ମରି ॥୪୨
ସ୍ନାହାନ ସାରି ସନ୍ଧ୍ୟା ଅର୍ଥେ ।
ଜଳ ଅଞ୍ଜଳି କଲା ହସ୍ତେ ॥୪୩
ତକ୍ଷଣେ ପ୍ରଭୁ ନରହରି ।
ମାୟାରେ ମୀନରୂପ ଧରି ॥୪୪
ପଶିଲେ ଜଳାଞ୍ଜଳି ମଧ୍ୟ ।
ଶଫରୀ ରୂପେ ଆଦିକନ୍ଦ ॥୪୫
ସେ ସତ୍ୟବ୍ରତ ତା' ଦେଖିଲା ।
ଜଳ ଅଞ୍ଜଳି ପକାଇଲା ॥୪୬
ରାଜାର ହସ୍ତୁ ପଡ଼ି ଜଳେ ।
ସେ ମୀନ ଡାକିଲା ବିକଳେ ॥୪୭
ମହାକାରୁଣ୍ୟ ହେ ରାଜନ ।
ମୁଁ ଦୁଃଖୀ ତୁ' ଦୀନ ପାଳନ ॥୪୮
ଜଳେ ଯେ ପକାଇଲୁ ମୋତେ ।
ମୋ' ଜ୍ଞାତି ରିପୁ ଏ ସମସ୍ତେ ॥୪୯
ମୋତେ ଗିଳିବେ ବୋଲି ଡରେ ।
ପଶିଲି ତୋ'ର ଅଞ୍ଜଳିରେ ॥୫୦
ମୋତେ ଗିଳିବେ ଏହିକ୍ଷଣି ।
ମୋ' ପ୍ରାଣ ରଖ ନୃପମଣି ॥୫୧
ପ୍ରାଣୀ ଜୀବନ ରକ୍ଷା କଲେ ।
ଆପଣେ ରକ୍ଷା ପାଇ ଭଲେ ॥୫୨
ଏବେ ମୁଁ ତୋହର ଶରଣ ।
ପଶିଲି ରଖ ମୋ'ର ପ୍ରାଣ ॥୫୩
ଏମନ୍ତ ଶଫରୀ ବଚନେ ।
ସେ ରାଜା ଶୁଣି ଅବଧାନେ ॥୫୪
ଜଳଅଞ୍ଜଳି କରେ ଧରି ।
ମୀନକୁ ଜଳରୁ ଉଦ୍ଧରି ॥୫୫
ଜନ୍ତୁ ଜୀବନେ ଦୟା କରି ।
ଥୋଇଲା କମଣ୍ଡଳେ ଭରି ॥୫୬

ଜଳେ ତର୍ପଣ ବେଗେ ସାରି ।
ଗୃହେ ମିଳିଲେ ଦଣ୍ଡଧାରୀ ॥୫୭
ସେ ମୀନ କମଣ୍ଡଳ-ଜଳେ ।
ରହି ନ ପାରି ରାତ୍ରକାଳେ ॥୫୮
ବିକଳେ କରଇ ରୋଦନ ।
ମୋ' ପ୍ରାଣ ରଖ ହେ ରାଜନ ॥୫୯
ଚଳି ନ ପାରେ କମଣ୍ଡଳେ ।
ବେଗେ ତୁ ଥୁଅ ଅନ୍ୟ ଜଳେ ॥୬୦
ଏମନ୍ତ ଶଫରୀ ବଚନ ।
ଶୁଣି ସଂଭ୍ରମେ ସେ ରାଜନ ॥୬୧
ସେ ମୀନ କମଣ୍ଡଳୁ ଫେଇ ।
କଳସଜଳ ମଧ୍ୟେ ଥୋଇ ॥୬୨
ଏମନ୍ତେ ରାଜନୀ ପାହିଲା ।
ପୁଣି ସେ ମୀନ ଡାକ ଦେଲା ॥୬୩
ବୋଲଇ ଶୁଣ ଦଣ୍ଡଧର ।
କଳସୁ ମୋ' ପ୍ରାଣ ଉଦ୍ଧର ॥୬୪
ମୋ' ଦେହ କଳସେ ନ ଚଳେ ।
ବେଗେ ତୁ ଥୁଅ ଅନ୍ୟଜଳେ ॥୬୫
ଯେ ଜଳେ ଆନନ୍ଦେ ବିହରି ।
ଅଳପ ଜଳେ ପ୍ରାଣହାରି ॥୬୬
ତକ୍ଷଣେ କଳସୁଁ ଉଦ୍ଧରି ।
କୂପେ ଥୋଇଲା ଦଣ୍ଡଧାରୀ ॥୬୭
ମୁହୂର୍ତ୍ତେ କୂପ ମଧ୍ୟେ ରହି ।
ବିସ୍ତାର କଲା ତା'ର ଦେହୀ ॥୬୮
କୂପେ ସେ ଡାକଇ ବିକଳେ ।
ହେ ନୃପ ଥୁଅ ଅନ୍ୟ ଜଳେ ॥୬୯
କୂପେ ମୁଁ ନ ପାରଇ ରହି ।
ମୋ'ର ଜୀବନ ରଖ ତୁହି ॥୭୦
ଶଫରୀ ବାକ୍ୟେ ନୃପମଣି ।
କୂପୁଁ ଉଦ୍ଧରି ବେଗେ ଆଣି ॥୭୧
ତକ୍ଷଣେ ଖାତ ଜଳେ ଥୋଇ ।
ଖାତେ ପୂରିଲା ତା'ର ଦେହି ॥୭୨
ଡାକଇ ଜୀବନ ବିକଳେ ।
ଭୋ ନୃପ ରଖ ଅନ୍ୟ ଜଳେ ॥୭୩
ଏମନ୍ତେ ଖାତୁଁ ନେଇ ଧୀରେ ।
ବେଗେ ଥୋଇଲା ସରୋବରେ ॥୭୪

Dr. Sudhanshu Sekhar Mishra

ଦିବସେ ସରୋବରେ ରହି ।
ଜଳେ ନ ଚଳେ ତା'ର ଦେହୀ ॥୭୫
ପୁଣି ଡାକଇ ଭୟଙ୍କରେ ।
ଭୋ ନୃପ ଥୁଅ ଅନ୍ୟ ନୀରେ ॥୭୬
ତକ୍ଷଣେ ତଡ଼ାଗୁଁ ଉଦ୍ଧରି ।
ହ୍ରଦେ ରଖିଲା ଦଣ୍ଡଧାରୀ ॥୭୭
ସେ ମୀନ ଦଣ୍ଡେ ହ୍ରଦେ ରହେ ।
ତହିଁ ବଢ଼ିଲା ମହାକାୟେ ॥୭୮
ପୁଣି ଡ଼ାକିଲା ଘୋର ନାଦେ ।
ରାଜନ ରହି ନୋହେ ହ୍ରଦେ ॥୭୯
ତା' ଶୁଣି ହ୍ରଦୁଁ ଟେକି ବଳେ ।
କ୍ଷେପିଲା ସମୁଦ୍ରର ଜଳେ ॥୮୦
ସେ ମୀନ ପଡ଼ି ସିନ୍ଧୁଜଳେ ।
ଡାକିଲା ଜୀବନ ବିକଳେ ॥୮୧
ଭୋ ନୃପ ରଖ ମୋ'ର ପ୍ରାଣ ।
ତୋରେ ମୁଁ ପଶିଛି ଶରଣ ॥୮୨
ଶରଣ ଜନ ଉପେକ୍ଷିଲେ ।
କେ ତା'କୁ ପ୍ରଶଂସଇ ଭଲେ ॥୮୩
ଏ ଜଳେ ଜୀବ ଛନ୍ତି ଯେତେ ।
ବଳେ ଭକ୍ଷିବେ ଏମେ ମୋତେ॥୮୪
ଏମନ୍ତ ମୀନ ମୁଖୁଁ ଶୁଣି ।
ମନେ ବିଚାରେ ନୃପମଣି ॥୮୫
ଏ କି ଅଦ୍‌ଭୁତ କର୍ମ ମୁହିଁ ।
ଜଗତେ ଦେଖିଲି ତ ନାହିଁ ॥୮୬
କେଉଁ ଦେବତା ମାୟାବଳେ ।
ମୋତେ ଛଳଇ ମୀନ ଛଳେ ॥୮୭
କି ବୁଦ୍ଧି କରିବଇଁ ମୁହିଁ ।
ଭାଳଇ ମୀନ ମୁଖ ଚାହିଁ ॥୮୮
ବିଷ୍ଣୁର ମାୟାରେ ମୋହିତ ।
ଦଣ୍ଡେ ରହିଲା ସ୍ତମ୍ଭୀଭୂତ ॥୮୯
ପୁଣି କ୍ଷଣକେ ନୃପବର ।
କପୋଳେ ଦେଇ ବେନିକର ॥୯୦
ବୋଲଇ ମୀନ ମୁଖ ଚାହିଁ ।
ମୋହର ଧର୍ମ ରଖ ତୁହି ॥୯୧
କେଉଁ ଦେବତା ଆସି ଛଳେ ।
ମୋତେ ମୋହିଲୁ ମାୟାବଳେ ॥୯୨

ଏ ତୋ'ର ବିଶ୍ୱରୂପ ଦେହ ।
ମାୟା ନ କରି ସତ୍ୟ କହ ॥୯୩
ଏମନ୍ତ ଜଳଚର-ଦେହୀ ।
ଜଗତେ ଦେଖିଲା ତ ନାହିଁ ॥୯୪
ଭୋ ମୀନ ତୋହର ଶରୀରେ ।
ଶତେ-ଯୋଜନ-ହ୍ରଦ ପୂରେ ॥୯୫
ନିଶ୍ଚେ ଜାଣିଲି ତୋତେ ଆଜ ।
ତୁ ନାରାୟଣ ଦେବରାଜ ॥୯୬
ଅନାଦି ପ୍ରଭୁ ନିରଞ୍ଜନ ।
ଅବ୍ୟକ୍ତ-ରୂପ ଭଗବାନ ॥୯୭
ପ୍ରାଣୀଙ୍କ ନିସ୍ତାରଣ ଅର୍ଥେ ।
ମୀନ ଶରୀର ଏ ଜଗତେ ॥୯୮
ସ୍ଥିତି-ପାଳନ-ସଂହାରଣ ।
ତୁ ନାଥ ପରମକାରଣ ॥୯୯
ନମସ୍ତେ ଜଳଚର-ଦେହୀ ।
ଭୋନାଥ କର ମୋତେ ତ୍ରାହି ॥୧୦୦
ତୋ'ର ମାୟାରେ ଭ୍ରମ ହୋନ୍ତି ।
ହର ବିରଞ୍ଚି ସୁରପତି ॥୧୦୧
ତୁ ନାଥ ଜନ ଉପକାରେ ।
ନାନା ଶରୀରେ ଏ ସଂସାରେ॥୧୦୨
ତୋ' ଅବତାର ଭକ୍ତ ହିତେ ।
ଧର୍ମ-ସ୍ଥାପନ ଶୁଭ ଅର୍ଥେ ॥୧୦୩
କି କାର୍ଯ୍ୟେ ମୀନ ଅବତାର ।
କହ ହେ କମଳାର ବର ॥୧୦୪
ଏମନ୍ତ ରାଜାବାକ୍ୟ ଶୁଣି ।
କହନ୍ତି ପ୍ରଭୁ ଚକ୍ରପାଣି ॥୧୦୫

ଭଗବାନ ଉବାଚ

ଶୁଣ ରାଜନ ସତ୍ୟବ୍ରତ ।
ତୁ ଯେଣୁ ମୋହର ଭକତ ॥୧୦୬
ଯେ କାର୍ଯ୍ୟେ ମୀନରୂପ ମୋ'ର ।
କହୁଛି ଶୁଣ ନୃପବର ॥୧୦୭
ତେଣୁ ଅଇଲି ତୋତେ କହି ।
ଅଦ୍‌ଭୁତ ମୀନରୂପ ହୋଇ ॥୧୦୮
ମାୟାବୀ ପ୍ରଚଣ୍ଡ ଦାନବ ।
ନାମ ଯାହାର ହୟଗ୍ରୀବ ॥୧୦୯

ବ୍ରହ୍ମାର ବେଦ ହରି ବଳେ ।
ବେଗେ ପଶିଲା ମହାଜଳେ ॥୧୧୦
ପ୍ରଳୟ ଜଳେ ମୁଁ ବିହରି ।
ସେ ବେଦ ଉଦ୍ଧାରଣ କରି ॥୧୧୧
ରଖିବି ସଂସାରର ବୀଜ ।
ହରିବି ହୟଗ୍ରୀବ ତେଜ ॥୧୧୨
ତୁ ଏବେ ରହ ମୋ' ବଚନେ ।
ଆଜ ହୁଁ ଗଣି ସାତଦିନେ ॥୧୧୩
ପ୍ରଳୟ ଜଳେ ତିନିପୁର ।
ନାଶିବ ଶୁଣ ନୃପବର ॥୧୧୪
ଅଠରଖଣ୍ଡ ମେଘ ମିଳି ।
ସ୍ଫୁରିବ ପ୍ରଚଣ୍ଡେ ବିଜୁଳି ॥୧୧୫
ବହିଣ ଅଣଚାଷ ବାତ ।
ଆକାଶେ ବିଜୁଳି ପୂରିତ ॥୧୧୬
ଗଭୀର ନାଦେ ମେଘମାଳ ।
ପ୍ରଚଣ୍ଡେ ବରଷିବେ ଜଳ ॥୧୧୭
କ୍ଷଣକେ ସିନ୍ଧୁ ଉଛୁଳିବ ।
ଉଲ୍ଲୋଳ ଗଗନେ ମିଶିବ ॥୧୧୮
ସପତ ଋଷିଙ୍କ ମଣ୍ଡଳେ ।
ଜଳଧି ଲାଗିବ ଉଲ୍ଲୋଳେ ॥୧୧୯
ବ୍ରହ୍ମାର ରଜନୀ ହୋଇବ ।
ଏ ତିନିପୁର ନାଶ ଯିବ ॥୧୨୦
ତୁ ଏବେ ମୋ'ର ବୋଲ କର ।
ଔଷଧି ବୀଜ ସଙ୍ଗେ ଧର ॥୧୨୧
ତୋ'ର କୁଟୁମ୍ବଛନ୍ତି ଯେତେ ।
ସକଳ ଘେନିଣ ସଙ୍ଗତେ ॥୧୨୨
ଆଜହୁଁ ସପତ ଦିବସେ ।
ନାବ ମିଳିବ ଆସି ପାଶେ ॥୧୨୩
ଯେ ନାବ ସମୁଦ୍ରର କୂଳେ ।
ତୋତେ ମିଳିବ ସନ୍ଧ୍ୟାକାଳେ॥୧୨୪
ତୁ ତହୁଁ ବସ ସର୍ବ ଘେନି ।
ତରିବୁ ବ୍ରହ୍ମାର ରଜନୀ ॥୧୨୫
ଆଗତ କଳ୍ପ ପରିଯନ୍ତେ ।
ତୁ ଥିବୁ ଋଷିଙ୍କ ସଙ୍ଗତେ ॥୧୨୬
ସେ ନାବ ମୋ'ର ଶୃଙ୍ଗେ ବାନ୍ଧି ।
ମୁହିଁ ବିହରିବି ଜଳଧି ॥୧୨୭

Dr. Sudhanshu Sekhar Mishra

ବ୍ରହ୍ମା ରଜନୀକାଳ ଯେତେ ।
ସେ ନାବେ ଥିବୁ ତୁ ନିଶ୍ଚିନ୍ତେ॥୧୨୮
ସପତରଷି ସଙ୍ଗେ ଘେନି ।
ବଞ୍ଚିବୁ ବହ୍ମାର ରଜନୀ ॥୧୨୯
ସେ ମହାଜଳେ ଯେବେ ନାବ।
ପ୍ରଳୟ ପବନେ କମ୍ପିବ ॥୧୩୦
ତହିଁକି ନ କରିବୁ ଭୟ ।
କହଇ ଶୁଣ ମହାରାୟ ॥୧୩୧
ମୋହର ଶୃଙ୍ଗେ ସେ ନିଶ୍ଚଳେ ।
ବନ୍ଧନେ ଥିବ ଯୋଗବଳେ ॥୧୩୨
ପରମବ୍ରହ୍ମ ମୋ' ମହିମା ।
ଜାଣି ନ ପାରେ ହରବ୍ରହ୍ମା ॥୧୩୩
ମୋ' ଅନୁଗ୍ରହେ ମୋତେ ଜାଣି ।
ସଙ୍କଟୁ ତର ନୃପମଣି ॥୧୩୪
ଏମନ୍ତ କହି ଚକ୍ରଧର ।
ତକ୍ଷଣେ ହୋଇଲେ ଅନ୍ତର ॥୧୩୫
ଗୋବିନ୍ଦ ଆଜ୍ଞା ଘେନି ଶିରେ।
ରାଜା ମିଳିଲେ ସିନ୍ଧୁ ତୀରେ ॥୧୩୬
ଘେନାଇ ସର୍ବ ଅଉଷଧି ।
ରାଜାର ଯେତେକ ସମୃଦ୍ଧି ॥୧୩୭
ସମୁଦ୍ର ତୀରେ କୁଶ ପାଡ଼ି ।
କପୋଳେ ବେନିକର ଯୋଡ଼ି॥୧୩୮
ମୀନରୂପକୁ ଧ୍ୟାନ କରି ।
କୃଷ୍ଣଚରଣ ମନେ ଧରି ॥୧୩୯
ସମୁଦ୍ର ତୀରେ ସେ ରହିଲା ।
ଏମନ୍ତେ ସାତ ଦିନ ଗଲା ॥୧୪୦
ରାତ୍ରହୁଁ ମେଘ ସଙ୍ଗେ ମିଳି ।
ପ୍ରଚଣ୍ଡେ ପ୍ରକାଶେ ବିଜୁଳି ॥୧୪୧
ବହେ ପବନ ଅଣଚାଷ ।
ଶବଦେ କମ୍ପେ ଦଶଦିଶ ॥୧୪୨
ଘୋର ଶବଦେ ଜଳରାଶି ।
ହସ୍ତୀ-ଶୁଣ୍ଢ ପ୍ରାୟେ ବରଷି ॥୧୪୩
ସମୁଦ୍ର ଉଚ୍ଛୁଳିଲା ବେଗେ ।
ଘୋର ପ୍ରଚଣ୍ଡ ବାତ ଯୋଗେ॥୧୪୪
ଗୋବିନ୍ଦ ଆଜ୍ଞା ପରମାଣେ ।
ନାବ ମିଳିଲା ତତକ୍ଷଣେ ॥୧୪୫

ରଷିଏ ଶୂନ୍ୟମାର୍ଗୁ ଆସି ।
ରାଜା ସହିତେ ନାବେ ବସି ॥୧୪୬
ଦେଖିଲେ ସର୍ବ ଅଉଷଧି ।
ରାଜାର ଯେତେକ ସମୃଦ୍ଧି ॥୧୪୭
ସେ ନାବେ ରାଜା ସଙ୍ଗେ ବସି ।
ମୁନିଏ ରାଜାକୁ ପ୍ରଶଂସି ॥୧୪୮
ବୋଲନ୍ତି ତୁମ୍ଭେ ଭାଗ୍ୟବନ୍ତ ।
ସଙ୍କଟୁ ରଖିଲୁ ଆମ୍ଭନ୍ତ ॥୧୪୯
ଏବେ ଆମ୍ଭର ବୋଲକର ।
ଏ ନାବେ ବିଷ୍ଣୁଙ୍କୁ ସୁମର ॥୧୫୦
ତୋହର ଭାବେ ସେ ମାଧବ।
ଆମ୍ଭଙ୍କୁ ସଙ୍କଟୁ ତାରିବ ॥୧୫୧
ଏମନ୍ତେ ରଷିଙ୍କ ବଚନେ ।
ରାଜା ବସିଲା ବିଷ୍ଣୁ ଧ୍ୟାନେ ॥୧୫୨
ତକ୍ଷଣେ ପ୍ରଭୁ ନରହରି ।
ମିଳିଲେ ମୀନ ରୂପ ଧରି ॥୧୫୩
ଏକଇ ଶୃଙ୍ଗ ଶିରେ ସାଜେ ।
ରୂପେ ସୁବର୍ଣ୍ଣ ତେଜ ଗଞ୍ଜେ ॥୧୫୪
ମେରୁର ପ୍ରାୟେ ଅତିଦମ୍ଭ ।
ନିୟୁତ ଯୋଜନ ତ୍ବା ଲମ୍ବ ॥୧୫୫
ସେ ଶୃଙ୍ଗେ ନାବ ବାନ୍ଧି ବଳେ।
ସେ ରାଜା ବସିଲା ନିଶ୍ଚଳେ ॥୧୫୬
ସେ ନାବେ ମୁନିଙ୍କ ସଙ୍ଗତେ।
କୃଷ୍ଣଙ୍କୁ ଧ୍ୟାନ କଲା ଚିତ୍ତେ ॥୧୫୭
ମହାପ୍ରଳୟେ ନାବେ ବସି ।
ଗୋବିନ୍ଦ ବଚନେ ବିଶ୍ୱାସି ॥୧୫୮
ଆକୁଳେ ଶିରେ କର ଦେଇ ।
ବୋଲଇ ରଖ ଭାବଗ୍ରାହୀ ॥୧୫୯
ଏ ଘୋର ସଙ୍କଟ ତରଣେ ।
ଶରଣ ଗଲୁ ତୋ' ଚରଣେ ॥୧୬୦
କପୋଳେ ଦେଇ ବେନିକର।
ଗୋବିନ୍ଦ ଚିନ୍ତେ ନୃପବର ॥୧୬୧
ସପତରଷିଙ୍କ ବଚନେ ।
ନିଶ୍ଚଳେ ବସି ଯୋଗଧ୍ୟାନେ॥୧୬୨
ମନ-ବଚନ ହୃଦେ ଛନ୍ଦି ।
ଚଞ୍ଚଳ ଇନ୍ଦ୍ରିୟ ନିରୋଧି ॥୧୬୩

ଅନ୍ତରେ ମନ ସ୍ଥିର କଲା ।
ସୁମରି ଗୋବିନ୍ଦର ଲୀଳା ॥୧୬୪
ଆନନ୍ଦ ମନେ ସତ୍ୟବ୍ରତ ।
ସ୍ତୁବଇ ଯୋଡ଼ି ବେନିହସ୍ତ ॥୧୬୫

ରାଜା ଉବାଚ

ଭୋ ନାଥ ସଙ୍କଟ ତାରଣ ।
ତୋ' ପାଦେ ପଶିଲି ଶରଣ ॥୧୬୬
ଅଶେଷ ବ୍ରହ୍ମାଣ୍ଡ ଠାକୁର ।
ଏ ଘୋର ସଙ୍କଟୁ ଉଦ୍ଧର ॥୧୬୭
ଅନାଦି ଅବିଦ୍ୟାର ବଳେ ।
ପ୍ରାଣୀ ଭ୍ରମନ୍ତି ଏ ଶୟଳେ ॥୧୬୮
ଅଶେଷ-ବ୍ରହ୍ମାଣ୍ଡ-କାରଣ ।
ତୋ' ପାଦେ ରଖ ନାରାୟଣ॥୧୬୯
ଯାବତ ତୋ' ପାଦ ନ ଚିନ୍ତେ।
ତାବତ ସୁଖୀ କେ ଜଗତେ ॥୧୭୦
ତୁ ନାଥ ତାପତ୍ରୟୁ ତାରୁ ।
ଅଶେଷ ଗୁରୁଙ୍କର ଗୁରୁ ॥୧୭୧
ଅଜ୍ଞାନୀଜନ ଏ ଜଗତେ ।
ବନ୍ଧନ କର୍ମର ଆୟତ୍ତେ ॥୧୭୨
ସୁଖର ଲୋଭେ ଦୁଃଖେ ପଡ଼େ।
ଯାବତ ଭକ୍ତିମାର୍ଗ ଛୁଡ଼େ ॥୧୭୩
ତାବତ ସୁଖ ନାହିଁ ତା'ର ।
ଲଭଇ ଦୁଃଖ ମହାଘୋର ॥୧୭୪
ଯାବତ ନ ଜାଣଇ ତୋତେ ।
ତାବତ ଭ୍ରମଇଁ ଜଗତେ ॥୧୭୫
ତୋହର ମାୟା ଏ ସଂସାର ।
ଦୁର୍ଗମ ଘୋର ଅନ୍ଧକାର ॥୧୭୬
ତୋ'ର ଭଜନ ରବିତ୍ରାସ ।
ଆତ୍ମାର ତମ କରେ ନାଶ ॥୧୭୭
ତୁମ୍ଭ ପ୍ରସାଦାୟତ ଲେଶ ।
ଯେ ଗୁରୁଦେବେ ଅପ୍ରକାଶ ॥୧୭୮
ସମସ୍ତ ଇନ୍ଦ୍ରିଙ୍କ ପ୍ରକାଶ ।
ସୁଗତି ତୁମ୍ଭେ କର ଦୃଶ୍ୟ ॥୧୭୯
ବରଣ କରି ଗୁରୁ କଲୁ ।
ସକଳ କଲୁଷ ଛେଦିଲୁ ॥୧୮୦

Dr. Sudhanshu Sekhar Mishra

ମୂର୍ଖିକୁ ମୂର୍ଖ କଲେ ଗୁରୁ ।
ତରିକି ପାରେ ତମଘୋରୁ ॥୧୮୧
ଏ ଭୟେ ତୋ' ପାଦେ ସେବିଲୁ ।
ଜ୍ଞାନଦୀପକୁ ପ୍ରକାଶିଲୁ ॥୧୮୨
ତୁମ୍ଭେ ସକଳ ପ୍ରିୟବନ୍ଧୁ ।
ଗୁରୁର ଜ୍ଞାନେ କୃପାସିନ୍ଧୁ ॥୧୮୩
ଏ ମହାପ୍ରଭୁ ହୃଦେ ସ୍ଥିତି ।
ଜୀବ ନ ଜାଣେ ତୁମ୍ଭ ଗତି ॥୧୮୪
ହେ ପ୍ରଭୁ ବରଦ ଈଶ୍ୱର ।
ତୁମ୍ଭରେ ଶରଣ ମୋହର ॥୧୮୫
ହୃଦୟ-ମଳ-ଗ୍ରନ୍ଥି ନାଶ ।
ତୁମ୍ଭର ଶରୀର ପ୍ରକାଶ ॥୧୮୬
କହନ୍ତି ଶୁକ ମୁନିବର ।
ହୃଦୟେ ଚିନ୍ତି ଗଦାଧର ॥୧୮୭

ଶୁକ ଉବାଚ

ଏମନ୍ତ ଭାବେ ଦଣ୍ଡଧାରୀ ।
ଚିତ୍ତେ ଅନେକ ସ୍ତୁତି କରି ॥୧୮୮
ରହିଲା ସମାଧି ନିଷ୍ଠଳେ ।
ନାବେ ଗୋବିନ୍ଦ ପାଦମୂଳେ ॥୧୮୯
ଏମନ୍ତେ ଶୁଣ ନୃପମଣି ।
ତକ୍ଷଣେ ପ୍ରଭୁ ଚକ୍ରପାଣି ॥୧୯୦
ପ୍ରଳୟ ଜଳେ ମୀନରୂପ ।
ହୟଗ୍ରୀବର ହରି ଦର୍ପ ॥୧୯୧
ଜଳେ ଅସୁର ପ୍ରାଣହରି ।
ବ୍ରହ୍ମାର ବେଦକୁ ଉଦ୍ଧରି ॥୧୯୨
ମିଳିଲେ ନୃପତିର ଆଗେ ।
ସଦୟ ଚିତ୍ତେ ଅନୁରାଗେ ॥୧୯୩
ବୋଲନ୍ତି ରାଜାମୁଖ ଚାହିଁ ।
ସଂସାରେ ଭାଗ୍ୟବନ୍ତ ତୁହି ॥୧୯୪
ଏମନ୍ତ କହି ଭଗବାନ ।
ଆନନ୍ଦେ ଦେଲେ ତତ୍ତ୍ୱଜ୍ଞାନ ॥୧୯୫
ବୋଇଲେ ଦିବାକର ବଂଶେ ।
ଜନ୍ମ ଲଭିବୁ ଆୟୁ ଶେଷେ ॥୧୯୬
ବଇବସ୍ୱତ ମନୁ ହୋଇ ।
ପ୍ରଜା ପାଳିବୁ ଧର୍ମ ବହି ॥୧୯୭
ଏ ଜ୍ଞାନେ ତୋହର ଜୀବନ ।
ମନୁଙ୍କ ମଧ୍ୟେ ହେଉ ଧନ୍ୟ ॥୧୯୮
ଏ ମୋ'ର ମୀନଅବତାର ।
ଧ୍ୟାନେ ରହିବ ତୋ' ଅନ୍ତର ॥୧୯୯
ତୋହର ତୁଲେ ମୋ' ସମ୍ବାଦ ।
ଶୁଣନ୍ତେ ତୁଟଇ ପ୍ରମାଦ ॥୨୦୦
ଏମନ୍ତ କହି ଭଗବାନ ।
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥୨୦୧
ଅଷ୍ଟମସ୍କନ୍ଧେ ଏ ଚରିତ ।
ଅମୃତ ରସମୟ ଗୀତ ॥୨୦୨
ସୁଜନେ ଶୁଣ ଏକ ଚିତ୍ତେ ।
ସଂସାରୁ ତରିବ ଯେମନ୍ତେ ॥୨୦୩
ଖଣ୍ଡିବ ଅଶେଷ ଦୁର୍ଗତି ।
ସୁଜନେ ଏଣେ କର ମତି ॥୨୦୪
ବୋଲଇ ଦାସ ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତ ॥୨୦୫

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଅଷ୍ଟମ ସ୍କନ୍ଧେ ମତ୍ସ୍ୟାବତାର ଚରିତ
ଅନୁବର୍ଣ୍ଣନଂ ନାମ
ତ୍ରୟୋବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

# ନବମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଆନନ୍ଦେ ଅଭିମନ୍ୟୁସୁତ ।
ଶୁଣିଣ ଗୋବିନ୍ଦ ଚରିତ ॥୧
ବ୍ୟାସକୁମର ମୁଖ ଚାହିଁ ।
ବୋଲଇ ଶିରେ କର ଦେଇ ॥୨

ପରୀକ୍ଷିତ ଉବାଚ

ଭୋ ମୁନି ମନ୍ୱନ୍ତର କଥା ।
କହିଲ ସକଳ ବ୍ୟବସ୍ଥା ॥୩
ଯେ ମନ୍ୱନ୍ତରେ ଯେବା ଦେହୀ ।
ଧର୍ମ ରକ୍ଷଣେ ଭାବଗ୍ରାହୀ ॥୪
ଅନନ୍ତ ଯାହାର ମହିମା ।
କେ ଜାଣିପାରେ ଗୁଣ ସୀମା ॥୫
ତୁମ୍ଭେ କହିଲ ମୁନିଗଣେ ।
ବିଷ୍ଣୁର ମହିମା ପ୍ରମାଣେ ॥୬
ଦ୍ରବିଡ଼େଶ୍ୱର ସତ୍ୟବ୍ରତ ।
ସେ ରାଜରଷି ଦଇବତ ॥୭
ଅତୀତ କଳ୍ପାନ୍ତରେ ଥିଲା ।
ଭାବେ ସେ ବିଷ୍ଣୁଙ୍କୁ ଭେଟିଲା ॥୮
ନିତ୍ୟେ ଗୋବିନ୍ଦପାଦ ଧ୍ୟାୟି ।
ବିଷ୍ଣୁର ଠହୁଁ ଶିକ୍ଷା ପାଇ ॥୯
ପୁଣି ସେ ସୃଷ୍ଟି ଆଦିକାଳେ ।
କେମନ୍ତେ ବୈବସ୍ୱତକୁଳେ ॥୧୦
ବଇବସ୍ୱତ ମନୁ ହୋଇ ।
ଜନ୍ମ ଲଭିଲେ ଦେହବହି ॥୧୧
ପୁଣି ତାହାର ବୀର୍ଯ୍ୟେ ଜାତ ।
କେତେ ବା ହୋଇଲେକ ସୁତ ॥୧୨
ଇକ୍ଷ୍ୱାକୁ ଆଦି ଯେତେ ସୁତେ ।
ରାଜା ହୋଇଲେ ଏ ଜଗତେ ॥୧୩
ଏଣୁ ଆଦିତ୍ୟକୁଳେ ଯେତେ ।
କହିବା ବଂଶାନୁଚରିତେ ॥୧୪
କାହାର ବଂଶେ କେବା ହୋଇ ।
ଏ ଭୂମିତଳେ ଦେହ ବହି ॥୧୫

ଯେବା ଚରିତ କଲେ ଯେତେ ।
ଭୋ ମୁନି କହ ମୋ' ଅଗ୍ରତେ ॥୧୬
ମୋତେ ଏ ସଙ୍କଟୁ ଉଦ୍ଧର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୧୭
ଭୂତ ଭବିଷ୍ୟ ବର୍ତ୍ତମାନେ ।
ସମ୍ପୂର୍ଣ୍ଣ ବଂଶାନୁକୀର୍ତ୍ତନେ ॥୧୮
ଏବେ ଜଗତେ କଲା ଯାହା ।
କହିବା ମୋତେ ଯେବେ ଦୟା ॥୧୯

ସୂତ ଉବାଚ

ଏମନ୍ତେ ଋଷିଗଣ ମଧ୍ୟେ ।
ଉତ୍ତରାସୁତ ଅନୁବାଦେ ॥୨୦
ଶୁଣି ଆନନ୍ଦେ କୃତକୃତ୍ୟ ।
କହନ୍ତି ବ୍ୟାସଙ୍କର ସୁତ ॥୨୧

ଶୁକ ଉବାଚ

ଶୁଣ ହେ ନୃପ ପରୀକ୍ଷିତ ।
ଆଦିତ୍ୟ ବଂଶର ଚରିତ ॥୨୨
ହରି ମହିମା ଅପ୍ରମିତ ।
କେବା କଥନେ ସମରଥ ॥୨୩
ସଂକ୍ଷେପେ କହିବଇଁ ତୋତେ ।
ମୁଁ ଯୋଗବଳେ ଜାଣେ ଯେତେ ॥୨୪
ଏ ଭୂମି ମଧ୍ୟେ ଦେହ ବହି ।
ଶତେ ବରଷେ କେବା କହି ॥୨୫
ରବିର ବଂଶେ ନୃପ ଯେତେ ।
ଯେ ଯାହା କଲେ ଏ ଜଗତେ ॥୨୬
ଭକତ ଶିଷ୍ୟେ ଏହା କହି ।
ଏବେ ତୁ ଶୁଣ ମନ ଦେଇ ॥୨୭
ଯେବା ଉପୁଜେ ଯା'ର ଅଂଶେ ।
ବଇବସ୍ୱତ ମନୁବଂଶେ ॥୨୮
ଶୁଣ ପାଣ୍ଡବ ଚୂଡ଼ାମଣି ।
ପ୍ରଳୟ କାଳେ ବେଦବାଣୀ ॥୨୯

ଯେ ହରି ଅନାଦି କାରଣ ।
ଜଗତଆତ୍ମା ନାରାୟଣ ॥୩୦
ପୂର୍ବେ ଯେ ସଂସାର ସଂହରି ।
ଜଳେ ଅନନ୍ତଶଯ୍ୟା କରି ॥୩୧
ନିବିଡ଼ ଅନ୍ଧାରେ ଶୋଇଲେ ।
ତାହାଙ୍କୁ କେହି ନ ଦେଖିଲେ ॥୩୨
ସେ ପୁଣି ପ୍ରଳୟର ଅନ୍ତେ ।
ଉଭାନେ ଶୋଏ ଅନାୟତ୍ତେ ॥୩୩
ତା' ନାଭିକମଳୁ ପ୍ରକାଶ ।
ହୋଇଲା ହିରଣ୍ମୟକୋଷ ॥୩୪
ସୁବର୍ଣ୍ଣମୟ ଦିବ୍ୟରୂପୀ ।
ଉଠିଲା ମହାଜଳ ବ୍ୟାପୀ ॥୩୫
ସେ ପଦ୍ମକୋଷୁଁ ବ୍ରହ୍ମା ଜାତ ।
ଯା'ର ଶରୀରୁ ଏ ଜଗତ ॥୩୬
ଭୂମି ଭିଆଇ ଯୋଗବଳେ ।
ବସିଲା ସମାଧି ନିଶ୍ଚଳେ ॥୩୭
ବ୍ରହ୍ମାର ମନରୁ ବାହାର ।
ହୋଇଲା ମରୀଚି କୁମର ॥୩୮
କଶ୍ୟପ ତା'ର ଠହୁଁ ଜାତ ।
ଯା'ର ମହିମା ଅପ୍ରମିତ ॥୩୯
ଦକ୍ଷ ଦୁହିତା ବିଭା କଲା ।
ତା' ଠହୁଁ ସୂର୍ଯ୍ୟ ଉପୁଜିଲା ॥୪୦
ସୂର୍ଯ୍ୟର ପତ୍ନୀ ସଞ୍ଜ୍ଞା ନାମ ।
ଅତି ସୁନ୍ଦର ଅନୁପମ ॥୪୧
ତା'ର ଉଦରୁ ଦିବ୍ୟ ତନୁ ।
ହୋଇଲା ଶ୍ରାଦ୍ଧ ଦେବ ମନୁ ॥୪୨
ସେ ପୁଣି ଶ୍ରଦ୍ଧାକନ୍ୟା ଗର୍ଭେ ।
ଦଶକୁମର କଲା ଭାବେ ॥୪୩
ରୂପେ ଶୋଭିତ ଅନୁପମ ।
ଶୁଣ ହେ ତାହାଙ୍କର ନାମ ॥୪୪
ଇକ୍ଷ୍ୱାକୁ ନୃପ ପୁତ୍ରବେନି ।
ଶର୍ଯ୍ୟାତି ଦିଷ୍ଟ ଧୃଷ୍ଟ ଘେନି ॥୪୫

Dr. Sudhanshu Sekhar Mishra

ପୁଣି କରୁଷ ନରିଷ୍ୟନ୍ତ ।
ପୃଷଧ୍ର ନଭଗ ଉଦିତ ॥୪୬
ହୋଇଲେ ପୁଣି କବି ଆଦି ।
ଏ ରୂପେ ଦଶ ଯେ ପ୍ରସିଦ୍ଧି ॥୪୭
ସେ ଶ୍ରାଦ୍ଧଦେବ ପୁତ୍ର ଅର୍ଥେ ।
ବିଚାରି ବଶିଷ୍ଠ ସଙ୍ଗତେ ॥୪୮
ମିତ୍ରାବରୁଣ ଅର୍ଥେ ଇଷ୍ଟି ।
ଆରମ୍ଭ କଲା ପୁତ୍ର କଷ୍ଟି ॥୪୯
ଏମନ୍ତେ ତା'ର ଶ୍ରଦ୍ଧା ନାରୀ ।
ବଶିଷ୍ଠ ସଙ୍ଗତେ ବିଚାରି ॥୫୦
ବୋଲଇ ମୁହିଁ ପୟୋବ୍ରତା ।
ଯେମନ୍ତେ ହୋଇବ ଦୁହିତା ॥୫୧
ସେ ଅର୍ଥେ ତୁମ୍ଭେ ଯଜ୍ଞକର ।
ସେବଇ ଚରଣେ ତୁମ୍ଭର ॥୫୨
ତା' ଶୁଣି କୁଶକେତୁବଳା ।
ବିପ୍ରଙ୍କ ସଙ୍ଗେ ବିଚାରିଲା ॥୫୩
ଆହୁତି ଦେଲା ଅପ୍ରମିତ ।
ଏମନ୍ତେ କନ୍ୟା ହେଲା ଜାତ ॥୫୪
ତା' ରୂପ ଜଗତ ମୋହିଲା ।
ତାହାକୁ ଇଳା ନାମ ଦେଲା ॥୫୫
ରାତ୍ରେ ସେ କନ୍ୟା ରୂପ ଦେଖି ।
ସେ ମନୁ ଶୟନ ଉପେକ୍ଷି ॥୫୬
ବୋଲଇ ବିପ୍ରଙ୍କୁ ଅନାଇଁ ।
ଏମନ୍ତ ଦେଖିଲାତ ନାହିଁ ॥୫୭
ତୁମ୍ଭେ ସକଳେ ବ୍ରହ୍ମବେତ୍ତା ।
ଏ କର୍ମ ଅସମ୍ଭବ କଥା ॥୫୮
ବ୍ରାହ୍ମଣ କର୍ମ ତ ନୁହଁଇ ।
ଏମନ୍ତ କଲ କିସ ପାଇଁ ॥୫୯
ତୁମ୍ଭେ ଯେ ନିଜ ତପୋବଳେ ।
ଦଗ୍ଧ କଲୁଷ ଏ ଶୟଳେ ॥୬୦
ସଙ୍କଳ୍ପ ହୋଇଲା ଅନ୍ୟଥା ।
ଏ ବଡ଼ ଅସମ୍ଭବ କଥା ॥୬୧
ଅଜ୍ଞାନୀ ଜନଙ୍କର ମତ ।
ମୋର ସଙ୍କଳ୍ପ ବିପରୀତ ॥୬୨
ଏମନ୍ତେ ମନୁଙ୍କ ନିକଟେ ।
ବଶିଷ୍ଠ ମିଳି ଯଜ୍ଞବାଟେ ॥୬୩

ହୋତାଙ୍କ ବ୍ୟଭିଚାର ଜାଣି ।
ମନୁଙ୍କୁ କହନ୍ତି ଯେ ମୁନି ॥୬୪
ତୋହର ନିଜ ନାରୀ ବୋଲେ ।
ଦୁହିତା ଅର୍ଥେ ଯଜ୍ଞ କଲେ ॥୬୫
ମୁଁ ଏବେ ସାଧିବି ତୋ' ଅର୍ଥେ ।
କହିବି ବିଷ୍ଣୁଙ୍କ ଅଗ୍ରତେ ॥୬୬
ଯେମନ୍ତେ ଏ କନ୍ୟା ତୋହର ।
ହୋଏ ପୁରୁଷ କଳେବର ॥୬୭
ଏମନ୍ତ କହି ମହାଯତି ।
ବିଷ୍ଣୁଙ୍କୁ କଲେ ଦିବ୍ୟସ୍ତୁତି ॥୬୮
ବଶିଷ୍ଠ ସ୍ତୁତିବାକ୍ୟ ଶୁଣି ।
ତକ୍ଷଣେ ପ୍ରଭୁ ଚକ୍ରପାଣି ॥୬୯
ଇଳା କନ୍ୟାକୁ ବିଷ୍ଣୁ ଚାହିଁ ।
ବୋଇଲେ ପୁତ୍ର ହୁଅ ତୁହି ॥୭୦
ତକ୍ଷଣେ ପୁରୁଷ ହୋଇଲା ।
ସୁଦ୍ୟୁମ୍ନ ତା'ର ନାମ ହେଲା ॥୭୧
ନିଜ ଭୁବନେ ଗଲେ ହରି ।
ଏବେ ହୋ ଶୁଣ ଦଣ୍ଡଧାରୀ ॥୭୨
ଦେବଙ୍କ ବଚନ ସ୍ୱଭାବ ।
କେ ତାହା ଅନ୍ୟଥା କରିବ ॥୭୩
ଶୁଣ ରାଜନ ଶୁଦ୍ଧମନେ ।
ସେ ମନୁପୁତ୍ର ଏକ ଦିନେ ॥୭୪
ମୃଗୟା ଅର୍ଥେ ଘୋର ବନେ ।
ପଶିଲା ହରଷିତ ମନେ ॥୭୫
ଧନୁ କମାଣ ଧରି କରେ ।
ବସିଲା ଅଶ୍ୱର ଉପରେ ॥୭୬
ସେବକବଳ ତା'ର ଯେତେ ।
ଧାଇଁଲେ ଅଶ୍ୱ-ପୃଷ୍ଠ-ଗତେ ॥୭୭
ନାନା ଆୟୁଧ କରେ ଧରି ।
ପଶୁ ଖୋଜନ୍ତି ବନେ ହେରି ॥୭୮
ଗିରି କାନନେ ଲତା କୁଞ୍ଜେ ।
ଖୋଜି ଅନେକ ବୃକ୍ଷ ପୁଞ୍ଜେ ॥୭୯
ମୃଗ ନ ଦେଖି ଘୋରବନେ ।
ପଶିଲେ ଉତ୍ତର କାନନେ ॥୮୦
ମେରୁ ନିକଟେ ଖେଦମନେ ।
ମିଳିଲେ ସୁକୁମାର ବନେ ॥୮୧

ଯେ ବନେ ପ୍ରଭୁ ଶୂଳଧାରୀ ।
ସଙ୍ଗତେ ଘେନି ନିଜ ନାରୀ ॥୮୨
ନିରତେ ପୀଡ଼ିତ ମଦନେ ।
ଗଉରୀ ସଙ୍ଗତେ ନିର୍ଜନେ ॥୮୩
ନିତ୍ୟେ ରମନ୍ତି ସୁଖ ମନେ ।
ଆନନ୍ଦେ ପୁଷ୍ପିତ କାନନେ ॥୮୪
ସେ ବନେ ପଶି ମନୁବଳା ।
ଅନେକ ମୃଗ ବଧ କଲା ॥୮୫
ମୃଗଙ୍କୁ ମାରି ଅବହେଳେ ।
ଗ୍ରାମକୁ ଆସିବାର ବେଳେ ॥୮୬
ଅଶ୍ୱ ସହିତେ ସର୍ବ ଜନେ ।
ତକ୍ଷଣେ ସୁକୁମାର ବନେ ॥୮୭
ସର୍ବେ ହୋଇଲେ ସ୍ତିରୀଗଣ ।
ଅଶ୍ୱ ସହିତେ କୁଘଟଣ ॥୮୮
ଚାହାଁନ୍ତି ଅନ୍ୟେ ଅନ୍ୟ ମୁଖେ ।
ସର୍ବେ ରହିଲେ ମନଦୁଃଖେ ॥୮୯
ସ୍ତିରୀ ସ୍ୱଭାବେ କଲେ ଭ୍ରାନ୍ତି ।
ସଲଜ୍ଜେ ଚଳି ନ ପାରନ୍ତି ॥୯୦
ଶୁକ ବଦନୁଁ ବାକ୍ୟ ଶୁଣି ।
ବୋଲେ ପାଣ୍ଡବ ଚୂଡ଼ାମଣି ॥୯୧

ପରୀକ୍ଷିତ ଉବାଚ

ଭୋ ମୁନି ଅସମ୍ଭବ ବାଣୀ ।
ହୃଦୟ କମ୍ପିଲା ତ ଶୁଣି ॥୯୨
ନାରୀ ହୋଇଲେ କିସ ଅର୍ଥେ ।
ଏ କଥା କହ ମୋ' ଅଗ୍ରତେ ॥୯୩
ସୁଦ୍ୟୁମ୍ନ ମନୁର ନନ୍ଦନ ।
ପୁରୁଷ କଲେ ଭଗବାନ ॥୯୪
ସେ କିପାଁ କାମିନୀ ହୋଇଲା ।
ଅଶ୍ୱ ସହିତେ ମନୁବଳା ॥୯୫
କି ଅବା ବନେ ଥିଲା ଦୋଷ ।
କିବା ଶଙ୍କର କଲେ ରୋଷ ॥୯୬
କିପାଁ ହୋଇଲେ ସ୍ତିରୀ ଦେହ ।
ସଂଶୟ ଯାଉ ମୁନି କହ ॥୯୭
ମୁନି କହନ୍ତି ଅନୁରାଗେ ।
ଆନନ୍ଦେ ପରୀକ୍ଷିତ ଆଗେ ॥୯୮

Dr. Sudhanshu Sekhar Mishra

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁ ସୁତ ।
କହିବା ତହିଁର ଚରିତ ॥୯୯
ସପତ ଋଷି ଏକମେଳେ ।
ଶଂକର ଦରଶନ ଛଳେ ॥୧୦୦
ଦିଶନ୍ତି ରବି ତେଜ ପ୍ରାୟେ ।
ସେ ବନେ ଚଳନ୍ତି ନିର୍ଭୟେ ॥୧୦୧
ଦୂରୁ ତାହାଙ୍କ ରୂପ ଦେଖି ।
ଅମ୍ବିକା ଶଙ୍କର ଉପେକ୍ଷି ॥୧୦୨
ଶିବ ସଙ୍ଗମ ଛାଡ଼ି ବେଗେ ।
ବସ୍ତ୍ର ପିନ୍ଧିଲେ ବୃଷ ଲାଗେ ॥୧୦୩
ଲାଜେ ଲୁଚାଇ କଳେବର ।
ଭୟେ କମ୍ପନ୍ତି ଥରହର ॥୧୦୪
ଶଂକର ରହେ ଅଧୋମୁଖେ ।
ଚାହିଁ ନ ପାରି ମନଦୁଃଖେ ॥୧୦୫
ଏମନ୍ତ ମୁନିଗଣ ଚାହିଁ ।
ପାଦେହେଁ ନପାରନ୍ତି ଯାଇ ॥୧୦୬
ତାହାଙ୍କ ଗତି ଦେଖି ଛନ୍ନେ ।
ତକ୍ଷଣେ ଗଲେ ଅନ୍ୟବନେ ॥୧୦୭
ପଥ ଚଳନ୍ତି ମହାଶ୍ରମେ ।
ମିଳିଲେ ନାରାୟଣାଶ୍ରମେ ॥୧୦୮
ସେ କଥା ଜାଣି ଶୂଳପାଣି ।
ଅମ୍ବିକା ମୁଖ ଚାହିଁ ଭଣି ॥୧୦୯
ପୁରୁଷ ହୋଇ ଯେବେ ଏଥେ ।
ପ୍ରବେଶ ହୋଇବ ବନସ୍ତେ ॥୧୧୦
ତକ୍ଷଣେ ହେଉ ସ୍ତିରୀରୂପ ।
ଏମନ୍ତ ରୁଦ୍ର ଦେଲେ ଶାପ ॥୧୧୧
ସେ ଦିନୁ ମହାଦେବ-ରୋଷେ ।
ସେ ବନେ ପୁରୁଷ ନ ପଶେ ॥୧୧୨
ଏବେ ହୋ ଶୁଣ ନର ନାଥ ।
ମନୁତନୟ ବିପରୀତ ॥୧୧୩
ଅଶ୍ୱ ସହିତେ ଘୋରବନେ ।
ସର୍ବେ ଭ୍ରମନ୍ତି ଦୁଃଖମନେ ॥୧୧୪
ସେ ବନୁ ଗଲେ ଅନ୍ୟବନେ ।
ସୋମ ନନ୍ଦନ ତପସ୍ଥାନେ ॥୧୧୫
ଭ୍ରମନ୍ତି ଏକୁ ଆରେ ଧରି ।
ସ୍ୱଭାବେ ସର୍ବେ ମନୋହରୀ ॥୧୧୬
ତାହାଙ୍କ ମଧ୍ୟେ ଇଳା ଦେଖି ।
ସେ ବୁଧ ତପସ୍ୟା ଉପେକ୍ଷି ॥୧୧୭
ମନ କହିଲା କାମଭୋଳେ ।
ତକ୍ଷଣେ ଧରି ତା'ଙ୍କୁ କୋଳେ ॥୧୧୮
ବଳେ ରମିଲା ଚନ୍ଦ୍ରସୁତ ।
ତକ୍ଷଣେ ହେଲା ପୁତ୍ର ଜାତ ॥୧୧୯
ତାହାକୁ ଦେଖି ଗୁଣଧାମ ।
ଦେଲେ ସେ ପୁରୁରବା ନାମ ॥୧୨୦
ଏବେ ହୋ ଶୁଣ କୁରୁବୀର ।
ସେ ବନେ ମନୁର କୁମର ॥୧୨୧
କୁଳ ଆଚାର୍ଯ୍ୟ ସୁମରିଲେ ।
ତକ୍ଷଣେ ବଶିଷ୍ଠ ମିଳିଲେ ॥୧୨୨
ତାହାର ସ୍ତିରୀରୂପ ଚାହିଁ ।
ସେ ବ୍ରହ୍ମଋଷି ଦୟା ବହି ॥୧୨୩
ଯେମନ୍ତେ ପୁରୁଷ ହୋଇବ ।
ତକ୍ଷଣେ ସେବି ସଦାଶିବ ॥୧୨୪
ଅନେକ କଲେ ଦିବ୍ୟସ୍ତୁତି ।
ଶୁଣି ସନ୍ତୋଷ ପଶୁପତି ॥୧୨୫
ଆପଣା ବାକ୍ୟ ସତ୍ୟ ଅର୍ଥେ ।
ବଶିଷ୍ଠେ ଚାହିଁ ଦୟାଚିତ୍ତେ ॥୧୨୬
ବୋଲନ୍ତି ଅମ୍ବିକା ରମଣ ।
ବଶିଷ୍ଠ ମୋ'ର ବାକ୍ୟ ଶୁଣ ॥୧୨୭
ଏ ଯେ ତୋହର ଗୋତ୍ରେ ଜାତ ।
ସ୍ୱଭାବେ ଶ୍ରାଦ୍ଧଦେବ ସୁତ ॥୧୨୮
ମାସେ ଏ ହୋଇବ କାମିନୀ ।
ପୂର୍ବେ ବିଷ୍ଣୁର ବାକ୍ୟ ଘେନି ॥୧୨୯
ମାସେ ଏ ପୁରୁଷ ହୋଇବ ।
ଜୀବନ୍ତେ ଯେତେକାଳ ଥିବ ॥୧୩୦
ଏମନ୍ତ ତାକୁ ଦେଇ ବର ।
ତକ୍ଷଣେ ଗଲେ ଶୂଳଧର ॥୧୩୧
ଏମନ୍ତେ ଯେତେ କାଳ ଥିଲା ।
ମାସକେ ପୁରୁଷ ଅବଳା ॥୧୩୨
ରାଜ୍ୟ ସେ କଲା ଏହିମତେ ।
ନିଗମବାଣୀ ଅନୁମତେ ॥୧୩୩
ତାହାର ରାଜ୍ୟେ ପ୍ରଜାଜନେ ।
ବଞ୍ଚନ୍ତି ଦୁଃଖସୁଖ ମନେ ॥୧୩୪
ତା'ର ହୋଇଲେ ତିନିସୁତ ।
ଶୁଣ ରାଜନ ପରୀକ୍ଷିତ ॥୧୩୫
ଗୟ ଉତ୍କଳ ପୁତ୍ରବେନି ।
ବିମଳ ନାମେ ହୋଏ ତିନି ॥୧୩୬
ଦକ୍ଷିଣ ପଥେ ତିନି ରାଜା ।
ଧର୍ମେ ପାଳନ୍ତି ଜନପ୍ରଜା ॥୧୩୭
ଏମନ୍ତେ କେତେକାଳ ଗଲା ।
ସୁଦ୍ୟୁମ୍ନ ମନେ ବିଚାରିଲା ॥୧୩୮
ପୁରୁରବାକୁ ରାଜା କରି ।
ଛାଡ଼ିଲା ପ୍ରତିଷ୍ଠାନ ପୁରୀ ॥୧୩୯
ତପସାଧନେ ବନେ ଗଲା ।
ସେ ବନେ ଶରୀର ଛାଡ଼ିଲା ॥୧୪୦
ଚନ୍ଦ୍ରବଂଶର ଆଦ୍ୟପୀଢ଼ି ।
ସୁଜନେ ମନ କର ଦୃଢ଼ ॥୧୪୧
ବଂଶାନୁଚରିତ ଏ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୪୨
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୪୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ପ୍ରଥମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁ ସୁତ ।
କହିବା ବଂଶାନୁଚରିତ ॥୧
ସୁଦ୍ୟୁମ୍ନ ଶ୍ରାଦ୍ଧଦେବବଳା ।
ତପକରଣେ ବନେ ଗଲା ॥୨
ତପେ ଛାଡ଼ିଲା ନିଜ ତନୁ ।
ତା' ଶୁଣି ବୈବସ୍ୱତ ମନୁ ॥୩
ଅପୁତ୍ର-ଭୟେ ସେ ଉଚାଟେ ।
ମିଳିଲା ଯମୁନାର ତଟେ ॥୪
ଶତେ ବରଷ ଦେବ ମତେ ।
ସମାଧି କରି ଦୃଢ଼ ଚିତ୍ତେ ॥୫
ସନ୍ତତି ଅର୍ଥେ ସୂର୍ଯ୍ୟବଳା ।
ବିଷ୍ଣୁ ଚରଣେ ପୂଜା କଲା ॥୬
ଅନେକମତେ ସ୍ତୁତି କରି ।
ତୋଷିଲା ପ୍ରଭୁ ନରହରି ॥୭
ପ୍ରସନ୍ନ ହୋଇ ମହାବାହୁ ।
ବୋଇଲେ ଦଶପୁତ୍ର ହେଉ ॥୮
ଇକ୍ଷ୍ୱାକୁ ଆଦି ଦଶ ପୁତ୍ରେ ।
ହୋଇବେ କହି ଅଛି ତୋତେ ॥୯
ସେ ଦଶପୁତ୍ର ମଧ୍ୟେ ଏକ ।
ପୃଷଧ୍ର ନାମେ ସୁବିବେକ ॥୧୦
ବଶିଷ୍ଠ-ବାକ୍ୟେ ଗୋରୁ ପାଳେ।
ରାତ୍ରେ ବୀରାସନେ ନିଶ୍ଚଳେ ॥୧୧
ଏମନ୍ତେ ଏକଦିନ ରାତ୍ରେ ।
ମେଘ-ଅନ୍ଧାର ବୃଷ୍ଟି ପାତେ ॥୧୨
ଜନ୍ତୁଙ୍କ ଘୋର ନିଦ୍ରା କାଳେ ।
ଶାର୍ଦ୍ଦୂଳ ମିଳିଲା ଗୋକୁଳେ ॥୧୩
ଆଘ୍ରାଣେ ତା'ର ବାସ ପାଇ ।
ଭୟେ ଉଠିଲେ ସର୍ବ ଗାଈ ॥୧୪
ଭ୍ରମନ୍ତି ଇତସ୍ତତ ହୋଇ ।
ବ୍ୟାଘ୍ର ଧଇଲା ଏକ ଗାଈ ॥୧୫
ବେଗେ ଚାପିଲା ନଖ ଦାଢ଼େ ।
ପୁଣି ଆକର୍ଷି ଅତି ଗାଢ଼େ ॥୧୬
ସେ ଗୋରୁ ଭୟେ ରାବ ଦେଲା ।
ତା' ଶୁଣି ଉଠି ମନୁବାଳା ॥୧୭
ତୀକ୍ଷଣ ଖଡ଼ଗ ହସ୍ତେ ଘେନି ।
ନିବିଡ଼-ଅନ୍ଧାର-ରଜନୀ ॥୧୮
କପିଳା ଗୋଷ୍ଠେ ଥିଲା ଶୋଇ।
ଅନ୍ଧାରେ କେହି ନ ଜାଣଇ ॥୧୯
ଶାର୍ଦ୍ଦୂଳ ବୋଲି ତା'ର ଶିର ।
ଛେଦିଲା ମନୁର କୁମର ॥୨୦
ଖଡ଼ଗ ଶିଖା ବ୍ୟାଘ୍ର ମୁଣ୍ଡେ ।
ପଡ଼ି ଛିଡ଼ିଲା କର୍ଣ୍ଣ ଖଣ୍ଡେ ॥୨୧
ବ୍ୟାଘ୍ରର ଶିରେ ହୋଇ କ୍ଷତ ।
ପଥେ ବରଷିଲା ରକତ ॥୨୨
ପୃଷଧ୍ର ଜାଣେ ବ୍ୟାଘ୍ର ମଲା ।
ଏମନ୍ତେ ରଜନୀ ପାହିଲା ॥୨୩
ବଭ୍ରୁ ମରଣ କଥା ଶୁଣି ।
ବଶିଷ୍ଠ ତାହା ମନେ ଗୁଣି ॥୨୪
ମିଳିଲେ ପୃଷଧ୍ର ସମୀପେ ।
ତାହାଙ୍କୁ ଶାପ ଦେଲେ କୋପେ ॥୨୫
ତୁ ଯେ ବୋଲାଉ କ୍ଷତ୍ରିଦେହ ।
ଏବେ ତୁ କର୍ମେ ଶୂଦ୍ର ହୁଅ ॥୨୬
ଏମନ୍ତେ ଗୁରୁଶାପ ପାଇ ।
କପାଳେ କରାଞ୍ଜଳି ଦେଇ ॥୨୭
ଗୁରୁଙ୍କ ଶାପ ପରିହାରେ ।
ଊର୍ଦ୍ଧ୍ୱବଦନେ ତପ କରେ ॥୨୮
ବିଷ୍ଣୁର ଚରଣ କମଳେ ।
ସମାଧି କରି ଯୋଗ ବଳେ ॥୨୯
ଆତ୍ମାକୁ ଭାବି ଏକେ ଏକେ ।
ସକଳ ଭୂତେ ହରି ଦେଖେ ॥୩୦
ନିଗ୍ରହ କରି ଇନ୍ଦ୍ରିଗଣେ ।
ନିଃଶଙ୍କେ ନିବାସ ଅରଣ୍ୟେ ॥୩୧
ଯେବା ମିଳଇ ଯେତେବେଳେ ।
ସେ ଭକ୍ଷ କରେ ସନ୍ଧ୍ୟାକାଳେ ॥୩୨
ଶରୀର ଆତ୍ମାର ସଂଯତେ ।
ଜଡ଼ ବଧିର ଅନ୍ଧମତେ ॥୩୩
ଭୂମି କରଇ ପର୍ଯ୍ୟଟନ ।
ଏମନ୍ତେ ଗଲା କେତେଦିନ ॥୩୪
ଯହୁଁ ହୋଇଲା ଗ୍ରୀଷ୍ମକାଳ ।
ବିପିନେ ଉଠିଲା ଅନଳ ॥୩୫
ସେ ଅଗ୍ନି ମଧ୍ୟେ ଦେହ ଦେଲା।
ତକ୍ଷଣେ ଗୋବିନ୍ଦେ ପଶିଲା ॥୩୬
ତା' ଦେଖି ତା'ର ସାନଭାଇ ।
ବିଷୟା ରସେ ନରସଇ ॥୩୭
ରାଜ୍ୟ ବିସର୍ଜି ବନ୍ଧୁମେଳେ ।
ପଶିଲା ଅରଣ୍ୟ ଗହଳେ ॥୩୮
ନିରତେ ନାରାୟଣ ପାଦେ ।
ଭକତି କଲା ଅପ୍ରମାଦେ ॥୩୯
ଅନ୍ତେ ପଶିଲା ହରିଦେହେ ।
କିଶୋର ବୟସେ ବିମୋହେ ॥୪୦
କରୂଷ ତହୁଁ ଯେତେ ସୁତ ।
ରାଜା ହୋଇଲେ ବଳବନ୍ତ ॥୪୧
ସ୍ୱଭାବେ ବ୍ରହ୍ମଣ୍ୟ ଧାର୍ମିକ ।
ନିରତେ ବିଷ୍ଣୁର ସେବକ ॥୪୨
ଉତ୍ତରାପଥେ ହୋଇ ରାଜା ।
ଧର୍ମେ ପାଳିଲେ ଜନପ୍ରଜା ॥୪୩
ଧୃଷ୍ଟରୁ ଧାର୍ଷ୍ଟ କ୍ଷତ୍ରି ହୋଏ ।
ସେ ନ ପଡ଼ିଲେ ମାୟାମୋହେ ॥୪୪
ନିରତେ ଜ୍ଞାନଭାବେ ଜାଣି ।
ପୂଜିଲେ ପ୍ରଭୁ ଚକ୍ରପାଣି ॥୪୫
ହରିଭକତି ଭାବଭୋଳେ ।
ବସିଲେ ସମାଧି ନିଶ୍ଚଳେ ॥୪୬
ନୃଗର ପୁତ୍ର ଯେ ସୁମତି ।
ସୁମତି ପୁତ୍ର ଭୂତଜ୍ୟୋତି ॥୪୭
ବସୁ ଯେ ତାହାର ସନ୍ତତି ।
ସ୍ୱଧର୍ମେ ପାଳଇ ସେ କ୍ଷିତି ॥୪୮
ପ୍ରତୀକ ବସୁତହୁଁ ଜାତ ।
ଓଘବାନ ନାମେ ତା' ସୁତ ॥୪୯
ତାହାର କନ୍ୟା ଓଘବତୀ ।
ସୁଦରଶନ ତା'ର ପତି ॥୫୦

Dr. Sudhanshu Sekhar Mishra

ନରିଷ୍ୟନ୍ତର ଯେ ନନ୍ଦନ ।
ନାମ ତାହାର ଚିତ୍ରସେନ ॥୫୧
ଚିତ୍ରସେନର ପୁତ୍ର ଋକ୍ଷ ।
ତହୁଁ ମୀଢ୍ୱାନ ପ୍ରତ୍ୟକ୍ଷ ॥୫୨
ମୀଢ୍ୱର ପୁତ୍ର ନାମ ପୂର୍ଣ୍ଣ ।
ଇନ୍ଦ୍ରସେନ ତା'ର ନନ୍ଦନ ॥୫୩
ତାହାଙ୍କ ସୁତ ବୀତିହୋତ୍ର ।
ତା' ତହୁଁ ସତ୍ୟଶ୍ରବା ଜାତ ॥୫୪
ଉରୁଶ୍ରବା ତାହାଙ୍କ ସୁତ ।
ତା' ତହୁଁ ଜାତ ଦେବଦତ୍ତ ॥୫୫
ଅଗ୍ନିବେଶ୍ୟ ତା'ଙ୍କ ସନ୍ତତି ।
ତା' ତହୁଁ ଅଗ୍ନି ଉତପତ୍ତି ॥୫୬
ଅଗ୍ନିବେଶ୍ୟଙ୍କ ଦୁଇ ନାମ ।
ଯେ ଜାତୁକର୍ଣ୍ଣ ଯେ କାନୀନ ॥୫୭
ଏ ଦୁଇ ନାମେ ମହାଋଷି ।
ଜଗତ ମଧ୍ୟେ ସଦା ଘୋଷି ॥୫୮
ତା' ତହୁଁ ଅଗ୍ନିବେଶ୍ୟାୟନ ।
ବ୍ରାହ୍ମଣବଂଶ ଉତପନ୍ନ ॥୫୯
ନରିଷ୍ୟନ୍ତର ବଂଶମାନ ।
ସମସ୍ତ ଶୁଣିଲ ରାଜନ ॥୬୦
ଦିଷ୍ଟବଂଶର କଥାମାନ ।
ଏବେ ତୁ ଶୁଣ ହୋ ରାଜନ ॥୬୧
ନାଭାଗ ନାମେ ଦିଷ୍ଟସୁତ ।
କର୍ମେ ସେ ବୈଶ୍ୟଜାତି ପ୍ରାପ୍ତ ॥୬୨
ତାହାର ସୁତ ଭଲନ୍ଦନ ।
ବତ୍ସପ୍ରୀତି ତା'ର ନନ୍ଦନ ॥୬୩
ପ୍ରାଂଶୁ ତାହାର ସୁତ ହୋଏ ।
ଯା ରୂପ କନ୍ଦର୍ପକୁ ମୋହେ ॥୬୪
ପ୍ରମତି ନାମେ ତା'ର ସୁତ ।
ଖନିତ୍ର ତା'ର ବଂଶେ ଜାତ ॥୬୫
ଚାକ୍ଷୁଷ ନାମେ ତା'ର ପୁତ୍ର ।
ବିବିଂଶତି ତାହାର ସୁତ ॥୬୬
ତହିଁରୁ ରମ୍ଭ ହେଲା ଜାତ ।
ଶୁଣ ରାଜନ ପରୀକ୍ଷିତ ॥୬୭
ରମ୍ଭର ପୁତ୍ର ଖନୀନେତ୍ର ।
ପରମ ଧାର୍ମିକ ଯେ ଖ୍ୟାତ ॥୬୮

ତାହାର ସୁତ କରନ୍ଧମ ।
ତା' ତହୁଁ ଅବିକ୍ଷିତ ଜନ୍ମ ॥୬୯
ମରୁତ୍ତ ତାହାର ସନ୍ତତି ।
ସେ ଭୂମି ମଧ୍ୟେ ଚକ୍ରବର୍ତ୍ତୀ ॥୭୦
ସମ୍ବର୍ତ୍ତ ଅଙ୍ଗିରାର ବଳା ।
ଯାହାର ଯାଗ କରାଇଲା ॥୭୧
ସେ ଯଜ୍ଞେ ସର୍ବ ଦେବେ ଆସି ।
ନିତ୍ୟେ ଯଜ୍ଞକୁ ପରଶଂସି ॥୭୨
ବୋଲନ୍ତି ଯଜ୍ଞପାତ୍ରେ ଚାହିଁ ।
ଏମନ୍ତ ଦେଖିଲା ତ ନାହିଁ ॥୭୩
ହିରଣ୍ୟମୟ ବସ୍ତୁ ଦେଖି ।
ରସ ଭୋଜନେ ହୋଇ ସୁଖୀ ॥୭୪
ଇନ୍ଦ୍ର ମାତିଲେ ସୋମ ଖାଇ ।
ବିପ୍ରେ ମାତିଲେ ଦାନ ପାଇ ॥୭୫
ଯା'ର ସଭାରେ ବିଶ୍ୱଦେବା ।
ବାୟୁ ସମେତ କଲେ ସେବା ॥୭୬
ମରୁତ୍ତ ସୁତ ଦମ ନାମ ।
ଜଗତ ରୂପ ଦେଖେ ସମ ॥୭୭
ରାଜବର୍ଦ୍ଧନ ତା' ନନ୍ଦନ ।
ତା'ର ସୁଧୃତି ଅନୁପମ ॥୭୮
ସୁଧୃତି କୁମର ସୁମତି ।
ନର ନାମରେ ସେହୁ ଖ୍ୟାତି ॥୭୯
କେବଳ ତାହାର ନନ୍ଦନ ।
ତା'ର କୁମର ବନ୍ଧୁମାନ ॥୮୦
ତା'ର କୁମର ବେଗବାନ ।
ବନ୍ଧୁ ଯେ ତାହାର ନନ୍ଦନ ॥୮୧
ତା'ର ତନୁଜ ତୃଣବିନ୍ଦୁ ।
ତା' ରୂପେ ପଟାନ୍ତର ଇନ୍ଦୁ ॥୮୨
ତାହାର ପତ୍ନୀ ଅଳମ୍ବୁଷା ।
ଅପ୍ସରାଗଣେ ସେ ପ୍ରଶଂସା ॥୮୩
ତା' ଗର୍ଭେ ଇଡ଼ବିଡ଼ା ଜାତ ।
ବିଶ୍ରବା ମୁନି ଯାର କାନ୍ତ ॥୮୪
ବିଶ୍ରବା ଇଡ଼ବିଡ଼ା ଗର୍ଭେ ।
କୁବେର ଉପୁଜିଲେ ଭାବେ ॥୮୫
ସେ ମୁନି ଯୋଗେଶ୍ୱର ବଳା ।
ଆନନ୍ଦେ ପୁତ୍ରେ ଶିକ୍ଷା ଦେଲା ॥୮୬

ତୃଣବିନ୍ଦୁର ପୁତ୍ରଗଣ ।
ଏବେ ତାହାଙ୍କ ନାମ ଶୁଣ ॥୮୭
ବିଶାଳ ଶୂନ୍ୟବନ୍ଧୁ ଆର ।
ଧୂମ୍ରକେତୁ ଆଦି କୁମର ॥୮୮
ବୈଶାଳୀ ପୁରୀ ଯେ ନିର୍ମାଇ ।
ତା' ତହୁଁ ହେମଚନ୍ଦ୍ର ହୋଇ ॥୮୯
ଧୂମ୍ରାକ୍ଷ ନାମେ ତା'ର ସୁତ ।
ଏବେ ହୋ ଶୁଣ ନରନାଥ ॥୯୦
ସଂଯମ ତାହାର ତନୁଜ ।
ତହୁଁ କୃଶାଶ୍ୱ ଯେ ଦେବଜ ॥୯୧
କୃଶାଶ୍ୱ ପୁତ୍ର ସୋମଦତ୍ତ ।
ତା'ର ମହିମା ଅଦଭୁତ ॥୯୨
ଅନେକ ଅଶ୍ୱମେଧ କଲା ।
ପରମବ୍ରହ୍ମେ ସେ ପଶିଲା ॥୯୩
ସୁମତି ସୋମଦତ୍ତ ବଳା ।
ରୂପେ ବିରାଜେ କାମକଳା ॥୯୪
ତା'ର କୁମର ମହାଶୟ ।
ନାମ ଯାହାର ଜନ୍ମେଜୟ ॥୯୫
ବୈଶାଳୀପୁରେ ଏତେ ରାଜା ।
ସୁଖେ ପାଳିଲେ ଜନପ୍ରଜା ॥୯୬
ଯଶ ତାହାଙ୍କ ନିଜ ଧନ ।
ସକଳ ଗୁଣେ ବିଦ୍ୟମାନ ॥୯୭
ଏମନ୍ତେ କହିଲି ମୁଁ ତୋତେ ।
ଶୁଣ ପରୀକ୍ଷ ଏକଚିତ୍ତେ ॥୯୮
ବଂଶାନୁଚରିତ ଏ ବିଧି ।
ଯା'ର ସ୍ମରଣେ ସର୍ବସିଦ୍ଧି ॥୯୯
ଏହା ଯେ ଶୁଣନ୍ତି ଶୁଣାନ୍ତି ।
ଅପୁତ୍ର ସୁପୁତ୍ର ଲଭନ୍ତି ॥୧୦୦
କମଳା ରହେ ତା' ଭୁବନେ ।
ଯଶ ବଢ଼ଇ ଦିନେ ଦିନେ ॥୧୦୧
ଶୁଣ ସୁଜନେ ଏହା ନିତ୍ୟେ ।
ସଂସାରୁ ତରିବ ଯେମନ୍ତେ ॥୧୦୨
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୦୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଦ୍ୱିତୀୟୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ସାବଧାନେ ।
ମନୁର ବଂଶାନୁବିଧାନେ ॥୧
ଶର୍ଯ୍ୟାତି ନାମେ ମନୁସୁତ ।
ଶୁଣ ହୋ ତାହାର ଚରିତ ॥୨
ସ୍ୱଭାବେ ବ୍ରହ୍ମିଷ୍ଠ ହୋଇଲା ।
ଅଙ୍ଗିରା ଯଜ୍ଞେ ଦୀକ୍ଷା ଦେଲା ॥୩
ସୁକନ୍ୟା ନାମେ ତା'ର କନ୍ୟା ।
ହୋଇଲା ରୂପେ ଅନୁପମା ॥୪
ସେ କନ୍ୟା ପିତାର ସଙ୍ଗତେ ।
ଆନନ୍ଦେ ପଶିଲା ବନସ୍ତେ ॥୫
କୁମାରୀ ପାଞ୍ଚ ସାତ ସଙ୍ଗେ ।
ବନେ ଭ୍ରମଇ ଅତିରଙ୍ଗେ ॥୬
ସେ ବନେ ଭୃଗୁର ନନ୍ଦନ ।
ତପସ୍ୱୀ ନାମ ତା' ଚ୍ୟବନ ॥୭
ସେ ବନେ ନିଶ୍ଚଳ ଆସନେ ।
ବସିଲା ଯୋଗର ଧାରଣେ ॥୮
ରହିଲା ଅନେକ ବରଷ ।
ହୋଇଲା ଅସ୍ଥି ଚର୍ମ ଶେଷ ॥୯
ବଲ୍ମୀକ କୀଟ ତା'ର ଦେହେ ।
ମୁଖ ଢାଙ୍କିଲେ ମୃତ୍ତିକାଏ ॥୧୦
ବଲ୍ମୀକ କୁଦ ପ୍ରାୟ ଦିଶେ ।
କେବଳ ନୟନ ପ୍ରକାଶେ ॥୧୧
ଏମନ୍ତେ ରାଜକନ୍ୟା ଗଲା ।
ଚ୍ୟବନ ନିକଟେ ମିଳିଲା ॥୧୨
ବଲ୍ମୀକ କୁଦ ମଧ୍ୟେ ଭିନ୍ନ ।
ଦିଶଇ ମୁନିଙ୍କ ନୟନ ॥୧୩
ଅଦ୍‌ଭୁତ ବେନି ଜ୍ୟୋତି ଚାହିଁ ।
ସୁକନ୍ୟା ମନେ ବିଚାରଇ ॥୧୪
ଏ ତ ସୁନ୍ଦର ଜ୍ୟୋତି ଦିଶେ ।
ତେଜେ ତିମିର ବନେ ନାଶେ ॥୧୫
ଏମନ୍ତ ମନେ ପରିମାଣି ।
କଣ୍ଟକ ବୃକ୍ଷୁଁ କଣ୍ଟା ଆଣି ॥୧୬
ସେ ବେନି ଜ୍ୟୋତି କଲା କ୍ଷତ ।
ତକ୍ଷଣେ ସ୍ରବିଲା ରକତ ॥୧୭
ବଲ୍ମୀକ ମଧ୍ୟେ ଶୋଣି ବହେ ।
ଧାରା ଦିଶଇ ମୁନି ଦେହେ ॥୧୮
ମୁନିଙ୍କି ଅପରାଧ କଲା ।
ଶୁଣ ହେ ଅଭିମୁନ୍ୟବଳା ॥୧୯
ତକ୍ଷଣେ ରାଜାର ସମେତେ ।
ଅପରେ ଥିଲେ ଲୋକ ଯେତେ ॥୨୦
ସର୍ବେ ହୋଇଲେ ଅପରାଧୀ ।
ହୋଇଲା ମୂତ୍ରଦ୍ୱାରା ରୁନ୍ଧି ॥୨୧
ସୁକନ୍ୟା ସଙ୍ଗେ କନ୍ୟା ଯେତେ ।
ଥିଲେ ଯେ ରାଜାଙ୍କ ସଙ୍ଗତେ ॥୨୨
କେହି ନ ପାରେ ମୂତ୍ର କରି ।
କାନ୍ଦନ୍ତି ମୂତ୍ରଦ୍ୱାରା ଧରି ॥୨୩
ସର୍ବେ କରନ୍ତି ହାହାକାର ।
ଶୁଣି ଶର୍ଯ୍ୟାତି ନୃପବର ॥୨୪
ସକଳେ ପୁଚ୍ଛି ଦୁଃଖମନ ।
କନ୍ୟାକୁ ବୋଲନ୍ତି ବଚନ ॥୨୫
ତୁ ଯେ ବନସ୍ତେ ଭ୍ରମୁ ଥିଲୁ ।
କାହିଁକି ଅବା ଆଚରିଲୁ ॥୨୬
ସେ କର୍ମବଳେଟି ଏ ବ୍ୟାଧି ।
ରହିଲା ମୂତ୍ରଦ୍ୱାର ରୁନ୍ଧି ॥୨୭
ସର୍ବେ ମରିବା ଏହିକ୍ଷଣି ।
ସୁକନ୍ୟା କହେ ତାହା ଶୁଣି ॥୨୮
ଭୋ ତାତ ବଲ୍ମୀକ ଉପରେ ।
ଜ୍ୟୋତି-ଯୁଗଳ ଦେଖି ଖରେ ॥୨୯
ଅଦ୍‌ଭୁତ ପ୍ରାୟେ ମୁହିଁ ମଣି ।
କଣ୍ଟକ ବୃକ୍ଷୁଁ କଣ୍ଟା ଆଣି ॥୩୦
ଭେଦିଲି ସେ ଜ୍ୟୋତି ଅଦ୍‌ଭୁତ ।
ତକ୍ଷଣେ ସ୍ରବିଲା ରକତ ॥୩୧
ତା' ଶୁଣି ନୃପ ଅତିବେଗେ ।
ମିଳିଲା ବଲ୍ମୀକର ଆଗେ ॥୩୨
ସଂଭ୍ରମେ ବେନିକର ଯୋଡ଼ି ।
କହେ ବଲ୍ମୀକ ତଳେ ପଡ଼ି ॥୩୩
ଭୋ କୀଟ ବଲ୍ମୀକ ତୋ' ଦେହ ।
ରୁଧିର ବହେ କିମ୍ବା କହ ॥୩୪
ମୁଁ ତୋ'ର କଲି ଅପରାଧ ।
ତୋ'ଜ୍ୟୋତି କନ୍ୟା କଲାଭେଦ ॥୩୫
ସେ କନ୍ୟା ସ୍ୱଭାବେ ଚଞ୍ଚଳ ।
ସର୍ବେ ପାଇଲୁ ପ୍ରତିଫଳ ॥୩୬
ନିରୋଧ ହେଲା ମୂତ୍ରଦ୍ୱାରା ।
ରଖ ଶରଣ ଗଲି ତୋ'ର ॥୩୭
ଏମନ୍ତ ରାଜାବାକ୍ୟ ଶୁଣି ।
ଚ୍ୟବନ କହେ ଖେଦବାଣୀ ॥୩୮
ଭୋ ନୃପ ଭୃଗୁର କୁମର ।
ଚ୍ୟବନଋଷି ନାମ ମୋ'ର ॥୩୯
ମୁଁ ଏ ଅରଣ୍ୟେ ତପ କରି ।
ଚିନ୍ତଇ ପ୍ରଭୁ ନରହରି ॥୪୦
ଆସନେ ବସିଲି ନିଶ୍ଚଳ ।
ଏମନ୍ତେ ଗଲା କେତେକାଳ ॥୪୧
ବଲ୍ମୀକ କୀଟ ମୋ' ଶରୀରେ ।
ମାଂସ ରୁଧିର ଭକ୍ଷି ଖରେ ॥୪୨
ମୃତ୍ତିକା ମୋହର ଉପରେ ।
ମୁଖେ ଆଚ୍ଛାଦି ନିରନ୍ତରେ ॥୪୩
ଦେହ ଭକ୍ଷିଲେ ସ୍ୱାଦୁ ରସେ ।
କେବଳ ଅସ୍ଥି ରହେ ଶେଷେ ॥୪୪
ଏମନ୍ତ ମୁନିମୁଖୁଁ ଶୁଣି ।
ଚରଣେ ପଡ଼ି ନୃପମଣି ॥୪୫
ଧରିଣ ମୁନିଙ୍କ ଚରଣ ।
ବୋଲଇ କର ପରିତ୍ରାଣ ॥୪୬
ଏ ଯେ ସୁକନ୍ୟା ମୋ' ଦୁଲଣୀ ।
ଏ ହେଉ ତୋହର ଘରଣୀ ॥୪୭
ସତ୍ୟ ବଚନ ଏ ମୋହର ।
ଏଥକୁ ସାକ୍ଷୀ ଦିବାକର ॥୪୮
ଏମନ୍ତ ରାଜା ମୁଖୁଁ ଶୁଣି ।
ଚ୍ୟବନ କହେ ମଞ୍ଜୁବାଣୀ ॥୪୯
ଏ ଯେବେ ସତ୍ୟବାକ୍ୟ ତୋ'ର ।
ସ୍ରବୁ ସକଳ ମୂତ୍ରଦ୍ୱାର ॥୫୦

Dr. Sudhanshu Sekhar Mishra

ଶୁଣି ସେ ଚ୍ୟବନ ବଚନ ।
ଫିଟିଲା ମୂତ୍ର-ନିରୋଧନ ॥୫୧
ସର୍ବେ ଲଭିଲେ ପରିତ୍ରାଣ ।
ଏବେ ହୋ ପରୀକ୍ଷିତ ଶୁଣ ॥୫୨
ମୁନିଙ୍କି କନ୍ୟାଦାନ କରି ।
ରାଜା ଚଳିଲା ନିଜ ପୁରୀ ॥୫୩
ନିଜ ଜନଙ୍କ ସଙ୍ଗେ ମିଶି ।
ଚ୍ୟବନ ମହିମା ପ୍ରକାଶି ॥୫୪
ସୁକନ୍ୟା ଚ୍ୟବନ ସମୀପେ ।
ଖଟଇ ମନ ଅନୁରୂପେ ॥୫୫
ନିତ୍ୟେ କଳ୍ପିତ ଭିକ୍ଷା ଆଣି ।
ଯେ ମିଳେ ଶାକ କନ୍ଦ ପାଣି ॥୫୬
ଏମନ୍ତେ ଶୁଣ ନୃପବର ।
ବିଧାତା ବଳ ବଳୀୟାର ॥୫୭
ଏମନ୍ତେ କେତେକାଳ ଗଲା ।
ସୁକନ୍ୟା ରଜ ପ୍ରକାଶିଲା ॥୫୮
ସେ ଦିନ ପ୍ରଭାତର କାଳେ ।
ଅଶ୍ୱିନୀ କୁମାରେ ମିଳିଲେ ॥୫୯
ମୁନିଙ୍କି ନମସ୍କାର କରି ।
ବସିଲେ ଆସନ ଆବୋରି ॥୬୦
ଚ୍ୟବନ ଉଠି ମନତୋଷେ ।
ଅଶ୍ୱିନୀ କୁମାରଙ୍କ ପାଶେ ॥୬୧
ପାଦ୍ୟାର୍ଘେ ଚରଣ ପୂଜିଲେ ।
ଅନେକ ସ୍ତୁତିବାକ୍ୟ କଲେ ॥୬୨
ବୋଲନ୍ତି ବିଶ୍ୱାସ କରାଇ ।
ଦେବଙ୍କ ବୈଦ୍ୟ ତୁମ୍ଭେ ଦୁଇ ॥୬୩
ଯେ ତୁମ୍ଭ ନାମ ଉଚ୍ଚାରନ୍ତି ।
ରୋଗ-ପ୍ରବନ୍ଧୁ ସେ ତରନ୍ତି ॥୬୪
ଦେଖ ଏ ମୋହର ଶରୀର ।
ଜରା ଅବସ୍ଥା ଜରଜର ॥୬୫
ଶର୍ଯ୍ୟାତି କନ୍ୟା ମୋତେ ଦେଲା ।
ଭାବ ଅଭାବ ନ ଜାଣିଲା ॥୬୬
ଦେଖ ଏ କନ୍ୟା ପତିବ୍ରତା ।
ଏହାକୁ ହୁଅ ବରଦାତା ॥୬୭
ଏ ବୃଦ୍ଧ-ଦୁଃଖ ମୋର ହର ।
ଯୁବାବୟସ ମୋତେ କର ॥୬୮

ମୁଁ ପୁଣି ତୁମ୍ଭ ଉପକାରେ ।
କରିବି ଯଥାର୍ଥ ବେଭାରେ ॥୬୯
ତୁମ୍ଭେ ଯେ ଦେବବୈଦ୍ୟ ଦୋଷେ ।
ଯଜ୍ଞେ ନ ଲଭ ସୋମ ଅଂଶେ ॥୭୦
ଏବେ ମୁଁ ତୁମ୍ଭଙ୍କୁ ବରିବି ।
ଆନନ୍ଦେ ଯଜ୍ଞଭାଗ ଦେବି ॥୭୧
ଇନ୍ଦ୍ର କି କରିବ ମୋହର ।
ଯୁବା ଶରୀର ମୋତେ କର ॥୭୨
ଏମନ୍ତ ମୁନିମୁଖୁଁ ଶୁଣି ।
ଅଶ୍ୱିନୀ ସୁତେ ମନେ ଗୁଣି ॥୭୩
ବୋଲନ୍ତି ମୁନି ମୁଖ ଚାହିଁ ।
ଏ କଥା ଅନ୍ୟଥା ନୁହଇ ॥୭୪
ଅମ୍ଭର ସଙ୍ଗେ ସିଦ୍ଧହ୍ରଦେ ।
ସ୍ନାହାନ କର ଅପ୍ରମାଦେ ॥୭୫
ହୋଇବ କନ୍ଦର୍ପ ଶରୀର ।
ପ୍ରତ୍ୟକ୍ଷ ଦେଖ ମନ୍ତ୍ରବଳ ॥୭୬
ତା' ଶୁଣି ଚ୍ୟବନ ଆନନ୍ଦେ ।
ବେଗେ ପଶିଲେ ସିଦ୍ଧହ୍ରଦେ ॥୭୭
ତିନିହେଁ ହସ୍ତେ ହସ୍ତଧରି ।
ଜଳେ ବୁଡ଼ିଲେ ବୋଲି ହରି ॥୭୮
ତକ୍ଷଣେ ଏକରୂପ ହୋଇ ।
ଉଠିଲେ କନ୍ୟାମୁଖ ଚାହିଁ ॥୭୯
କି ଅବା ଦେବା ପଟାନ୍ତର ।
ରୂପେ ମୋହିଲେ ସୁରନର ॥୮୦
ସେ କନ୍ୟା ତୀରେ ଚାହିଁଥିଲା ।
ନିଜ ସ୍ୱାମୀକି ନ ଚିହ୍ନିଲା ॥୮୧
ବିକଳେ ହୋଇ ଛନ୍ନଛନ୍ନ ।
ଚାହିଁଣ ତାହାଙ୍କ ବଦନ ॥୮୨
କର ଅଞ୍ଜଳି ଶିରେ ଦେଇ ।
ବୋଲଇ ମୋତେ କର ତ୍ରାହି ॥୮୩
ମୁଁ ଯେବେ ସତ୍ୟ ପତିବ୍ରତା ।
ନିକଟେ ଦିଅ ମୋର ଭର୍ତ୍ତା ॥୮୪
ଅଶ୍ୱିନୀ ସୁତେ ତାହା ଶୁଣି ।
ସ୍ୱାମୀକି ଦେଲେ ତା'ର ଆଣି ॥୮୫
ଋଷିଙ୍କି ନମସ୍କାର ହୋଇ ।
ସ୍ୱର୍ଗେ ଚଳିଲେ ବେନିଭାଇ ॥୮୬

ଶୁଣ ହୋ ପରୀକ୍ଷିତ ଏବେ ।
ଶର୍ଯ୍ୟାତି ଯଜ୍ଞର ଆରମ୍ଭେ ॥୮୭
ଚ୍ୟବନ ଆଶ୍ରମେ ମିଳିଲା ।
ନୟନେ ଅଦ୍‌ଭୁତ ଦେଖିଲା ॥୮୮
ନିଜର କନ୍ୟାର ପାଶେ ବସି ।
ପୁରୁଷେ ଦିଶେ ତେଜ ରାଶି ॥୮୯
ସୁକନ୍ୟା ଆସି ପିତା ପାଦେ ।
ସ୍ୱଭାବେ ନମିଲା ଆନନ୍ଦେ ॥୯୦
ତାହାକୁ କଲ୍ୟାଣ ନ କରି ।
କନ୍ୟାକୁ ବୋଲେ କୋପକରି ॥୯୧
ଅଦ୍‌ଭୁତ କର୍ମ ଏ ତୋହର ।
ଅତ୍ୟନ୍ତ ବୃଦ୍ଧ ତୋ'ର ବର ॥୯୨
ତା'ର ଚରଣେ ସେବା ଛାଡ଼ି ।
ଯୁବା ପୁରୁଷେ ଲୋଭ ବଢ଼ି ॥୯୩
କେମନ୍ତେ ଚଳିଲା ତୋ' ମତି ।
ସଂସାରେ ଯେସନେ ଅସତୀ ॥୯୪
କୁଳ ଦୂଷଣ କର୍ମ କଲୁ ।
ବୃଦ୍ଧ ସ୍ୱାମୀକି ଉପେକ୍ଷିଲୁ ॥୯୫
ଜାର ପୁରୁଷେ କଲୁ ମତି ।
ଏ ବଡ଼ ତୋହର ଅନୀତି ॥୯୬
ଉଭୟ କୁଳ କଲୁ ନାଶ ।
ପରପୁରୁଷେ ତୋ' ବିଶ୍ୱାସ ॥୯୭
ଏ କର୍ମେ ପିତା-ପତି-ବଂଶ ।
ନରକେ କରାଇଲୁ ବାସ ॥୯୮
ଏମନ୍ତ ପିତାବାକ୍ୟ ଶୁଣି ।
ହସି ବୋଲଇ ତା' ଦୁଲଣୀ ॥୯୯
ଭୋ ତାତ ଭ୍ରାନ୍ତି ତୁ ନ କର ।
ଏହିଟି ମୋର ନିଜ ବର ॥୧୦୦
ଏମନ୍ତ ପିତାର ଅଗ୍ରତେ ।
ସର୍ବ କହିଲା ଆଦି ଅନ୍ତେ ॥୧୦୧
ଯେମନ୍ତେ ସ୍ୱର୍ଗ ବୈଦ୍ୟେ ଆସି ।
ସୁନ୍ଦର କଲେ ଜଳେ ପଶି ॥୧୦୨
ବୃଦ୍ଧକୁ ଯୁବା ରୂପ କଲେ ।
ରଥ ଆରୋହୀ ସ୍ୱର୍ଗେ ଗଲେ ॥୧୦୩
ଏମନ୍ତେ ପୁତ୍ରୀ ବାକ୍ୟ ଶୁଣି ।
ଅତି ଆନନ୍ଦ ନୃପମଣି ॥୧୦୪

Dr. Sudhanshu Sekhar Mishra

ତକ୍ଷଣେ ଦୁହିତା ବଚନ ।
ଅଦ୍‌ଭୁତ ଶୁଣି ସେ ରାଜନ ॥୧୦୫
ଅତି ଆନନ୍ଦେ ମୋଦ ଭରି ।
ନିଜ ଦୁହିତା କୋଳକରି ॥୧୦୬
ତକ୍ଷଣେ ନିଜପୁରେ ଗଲା ।
ଶୁଣ ହେ ଅଭିମନ୍ୟୁ ବଳା ॥୧୦୭
ନିଜ ଭୁବନେ ନୃପମଣି ।
ଚ୍ୟବନ ମୁନି ଗୃହେ ଆଣି ॥୧୦୮
ଆଗମ-ନିଗମ-ଉକତେ ।
ଯଜ୍ଞ ସେ କଲା ବିଧିମତେ ॥୧୦୯
ଚ୍ୟବନ ବାକ୍ୟେ ଯଜ୍ଞ ଘରେ।
ମିଳିଲେ ଅଶ୍ୱିନୀ କୁମାରେ ॥୧୧୦
ତାହାଙ୍କୁ ସୋମ ଦେବା ବେଳେ।
ଇନ୍ଦ୍ର ମିଳିଲା ଯଜ୍ଞଶାଳେ ॥୧୧୧
ବଜ୍ର ଉଞ୍ଚାଇ କୋପଭରେ ।
ନିଷେଧ କଲା ମନ୍ତ୍ରସ୍ୱରେ ॥୧୧୨
ତା' ଦେଖି ଚ୍ୟବନ ଉଠିଲେ।
ଇନ୍ଦ୍ରର ବଜ୍ରକୁ ସ୍ତମ୍ଭିଲେ ॥୧୧୩
ମାରି ନ ପାରି ବଜ୍ର କୋପେ।
ଇନ୍ଦ୍ର ଶରୀର ଭୟେ କମ୍ପେ ॥୧୧୪
ବୋଲଇ ମୁନିମୁଖ ଚାହିଁ ।
ଏ କଥା ଉଚିତ ନୁହଇ ॥୧୧୫
ଯଜ୍ଞେ ଏହାଙ୍କ ଭାଗ ନାହିଁ ।
ଆହୁତି ଦିଅ କାହିଁ ପାଇଁ ॥୧୧୬
ଚ୍ୟବନ ବୋଲେ ଇନ୍ଦ୍ରେ ଚାହିଁ।
ସତ୍ୟ ଯେ କରିଅଛି ମୁହିଁ ॥୧୧୭
ଏ ଯହୁଁ ଯୁବା କଲେ ମୋତେ।
ଆହୁରି ଦେବି ଯଜ୍ଞ ଅନ୍ତେ ॥୧୧୮
ଯଜ୍ଞରେ ଶେଷଭାଗ ପାଇ ।
ସନ୍ତୋଷ ହେବେ ବେନିଭାଇ ॥୧୧୯
ବ୍ୟାଧି ନାଶିବେ ଯଜମାନେ।
ଏମନ୍ତେ ଚ୍ୟବନ ବଚନେ ॥୧୨୦
ତୋଷ ହୋଇଲେ ସୁରନାଥ।
ମୁନି ଛାଡ଼ିଲେ ତା'ର ହସ୍ତ ॥୧୨୧
ସେଦିନୁ ସର୍ବଦେବେ ଯଜ୍ଞେ।
ତା'ଙ୍କୁ ସ୍ଥାପିଲେ ହବିର୍ଭାଗେ ॥୧୨୨

ଶେଷେ ସେ ସୋମଭାଗ ପା'ନ୍ତି ।
ଏବେ ହୋ ଶୁଣ ନରପତି ॥୧୨୩
ଏମନ୍ତେ ଯଜ୍ଞକର୍ମ ଫଳେ ।
ପୁତ୍ରେ ଜନ୍ମିଲେ ରାଜାକୁଳେ ॥୧୨୪
ଅତି ସୁନ୍ଦର ଅନୁପମ ।
ଶୁଣ ହେ ତାହାଙ୍କର ନାମ ॥୧୨୫
ଉତ୍ତାନବରହି ଆନର୍ତ୍ତ ।
ତୃତୀୟେ ଭୂରିସେନ ଜାତ ॥୧୨୬
ଶର୍ଯ୍ୟାତି ପୁତ୍ରେ ମହାତେଜେ।
ପ୍ରଜାପାଳିଲେ ଶୁଭେ ରାଜ୍ୟେ ॥୧୨୭
ଆନର୍ତ୍ତ ନାମେ ମଧ୍ୟ ସୁତ ।
ଶୁଣ ହେ ତାହାଙ୍କ ଚରିତ ॥୧୨୮
ସେ ନିତ୍ୟେ ହରି ସେବା କରେ।
ସେ ପୁଣ୍ୟେ ତା'ପତ୍ନୀ ଉଦରେ ॥୧୨୯
ରେବତ ନାମେ ପୁତ୍ର ଜାତ।
ହୋଇଲା ଅତି ବଳବନ୍ତ ॥୧୩୦
ସମୁଦ୍ର ମଧ୍ୟେ ପୁର କଲା ।
ତା' ନାମ କୁଶସ୍ଥଳୀ ଦେଲା ॥୧୩୧
ସେ ରାଜ୍ୟେ ବସି ଦିନାକେତେ।
ଭୋଗ ଭୁଞ୍ଜିଲା ନାନାମତେ ॥୧୩୨
ନିତ୍ୟେ ସେ ବିଷ୍ଣୁଙ୍କୁ ସେବଇ।
ତାହାର ଶତ୍ରୁ ନାହିଁ କେହି ॥୧୩୩
ତାହାର ଶତେ ପୁତ୍ର ଜାତ ।
ତାହାଙ୍କ ମଧ୍ୟେ ଜ୍ୟେଷ୍ଠଭ୍ରାତ ॥୧୩୪
କକୁଦ୍ମୀ ନାମ ତା'ର ହୋଏ ।
ଇନ୍ଦ୍ର କମ୍ପଇ ଯା'ର ଭୟେ ॥୧୩୫
ରେବତୀ ନାମେ କନ୍ୟା ତା'ର।
ସୁନ୍ଦରେ ନାହିଁ ପଟାନ୍ତର ॥୧୩୬
ସେ କନ୍ୟା ଘେନି ଅତି ଦୁଃଖେ।
ଦିନେ ମିଳିଲେ ବ୍ରହ୍ମଲୋକେ ॥୧୩୭
ଭୂମିରେ ନୃପତି କୁମର ।
ଯେତେ ମିଳିଲେ ତା'କୁ ବର ॥୧୩୮
ତା'ଙ୍କୁ ନ ଦେଲା କୁଳ ଶ୍ରେଷ୍ଠେ।
ମିଳିଲା ବ୍ରହ୍ମାଙ୍କ ନିକଟେ ॥୧୩୯
ସେ ବ୍ରହ୍ମା ଘେନି ମହାଜନ।
କରଇ ବିଷ୍ଣୁର କୀର୍ତ୍ତନ ॥୧୪୦

କ୍ଷଣେ ରହିଲେ ତା'କୁ ଦେଖି।
ସେ ଧାତା କୀର୍ତ୍ତନ ଉପେକ୍ଷି॥୧୪୧
ତକ୍ଷଣେ ଚାହିଁ ତା' ବଦନ ।
ବୋଲନ୍ତି ମଧୁର ବଚନ ॥୧୪୨
କିପାଁ ଅଇଲୁ ବ୍ରହ୍ମଲୋକେ ।
ଏ କନ୍ୟା ଘେନି ମନଦୁଃଖେ ॥୧୪୩
ବ୍ରହ୍ମା ବଚନେ ଦଣ୍ଡଧାରୀ ।
ଚରଣେ ନମସ୍କାର କରି ॥୧୪୪
ବୋଲଇ ଅତି ଦୁଃଖ ଭରେ ।
ଏ କନ୍ୟା ଦେବି କେଉଁ ବରେ ॥୧୪୫
ଏ କଥା ରାଜା ମୁଖୁଁ ଶୁଣି ।
ହସି ବୋଲନ୍ତି କୁଶପାଣି ॥୧୪୬
ଅଦ୍‌ଭୁତ୍ କଥା ଏ ତୋହର।
ଭୂମିରେ ନ ବରିଲୁ ବର ॥୧୪୭
ଯା' କଥା ଅଇଲୁ ତୁ କହି।
ଭୂମିରେ ତା'ଙ୍କ ବଂଶ ନାହିଁ॥୧୪୮
ବ୍ରହ୍ମାଣ୍ଡ ମଧ୍ୟେ କାଳ ବଳେ।
ଅନେକ ଯୁଗ ବହି ଗଲେ ॥୧୪୯
ତୋ' ପୁତ୍ର ନାତି ଯେତେ ଥିଲେ ।
କାଳର ବଳେ ନାଶ ଗଲେ ॥୧୫୦
ତୋ' ଗୋତ୍ର ନାହିଁ ରବି ତଳେ।
ଶୁଣ ହେ ଯେତେ ଯୁଗ ଗଲେ॥୧୫୧
ପ୍ରଚଣ୍ଡ କାଳଲୀଳା ବଳେ ।
ବିଷ୍ଣୁ ବିହରେ ରବି ତଳେ ॥୧୫୨
ସପତ ବିଂଶ ଚତୁର୍ଯୁଗ ।
ଭୂମିରେ କାଳ କଲା ଭୋଗ ॥୧୫୩
ଅଧିକ ତିନିଯୁଗ ଗଲା ।
କଳିର ଆଗମନ ହେଲା ॥୧୫୪
ଦ୍ୱାପର ଯୁଗ ଅବସାନ ।
ଏବେ ତୁ ଶୁଣ ମୋ' ବଚନ ॥୧୫୫
ଭାରା ନିବାରଣ ନିମନ୍ତେ ।
ବିଷ୍ଣୁ ଜନ୍ମିଲେ ଏ ଜଗତେ ॥୧୫୬
ଦେବକୀ-ଗର୍ଭେ ଦେହ ବହି।
ନୀଳ-ଧବଳ ରୂପ ହୋଇ ॥୧୫୭
ଅନନ୍ତ ବଳଭଦ୍ର ରୂପେ ।
ଜନ୍ମ ଲଭିଲେ ମୋହ କଶ୍ୱେ ॥୧୫୮

Dr. Sudhanshu Sekhar Mishra

ଏ କନ୍ୟାରତ୍ନ ତାଙ୍କୁ ଦେଇ ।
ଭବସାଗରୁ ତର ତୁହି ॥୧୫୯
ଏମନ୍ତ ବ୍ରହ୍ମା ମୁଖୁଁ ଶୁଣି ।
ଆନନ୍ଦ ମନେ ନୃପମଣି ॥୧୬୦
ତକ୍ଷଣେ ନିଜ ପୁରେ ଗଲା ।
ଶୁଣ ହୋ ଗୋବିନ୍ଦର ଲୀଳା ॥୧୬୧
ତାହାର ଯେତେ ଭାଇ ଥିଲେ ।
ଯକ୍ଷଙ୍କ ଭୟେ ପଳାଇଲେ ॥୧୬୨
ସେ କନ୍ୟା ବଳଭଦ୍ରେ ଦେଇ ।
ଅକ୍ଲାନନ୍ଦେ କୃତକୃତ୍ୟ ହୋଇ ॥୧୬୩
ତପକରଣେ ଶୁଦ୍ଧମନେ ।
ମିଳିଲା ବଦରିକାଶ୍ରମେ ॥୧୬୪
ଯାହା ବୋଇଲେ ନରହରି ।
ଭାଷା ପ୍ରବନ୍ଧେ ଗୀତ କରି ॥୧୬୫
ସୁଜନେ ଏଣେ ମତି କର ।
ତରିବ ସଂସାର-ସାଗର ॥୧୬୬
ଅନ୍ତେ ପାଇବ ଚକ୍ରଧର ।
ଏଣେ ବିଶ୍ୱାସ ନିତ୍ୟେ କର ॥୧୬୭
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୬୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ନବମସ୍କନ୍ଧେ ତୃତୀୟୋଽଧ୍ୟାୟଃ ॥

---

## ଚତୁର୍ଥ ଅଧ୍ୟାୟ

### ଶୁକ ଉବାଚ

ନାଭାଗ ନଭଗର ବଳା ।
ପୂର୍ବେ ସେ ବ୍ରହ୍ମଚର୍ଯ୍ୟ କଲା ॥୧
ଭାଇଏ ତା'ର ଭାଗ କାଟି ।
ସର୍ବ ସମ୍ପଦ ନେଲେ ବାଣ୍ଟି ॥୨
ଭାଇଙ୍କୁ ବୋଲେ ଭାଗ କାହିଁ ।
ପିତା ତୋ' ଭାଗେ ବୋଲେ ଭାଇ ॥୩
ପିତାଙ୍କୁ ବୋଲନ୍ତେ ତା' ଯାଇ ।
ସେ ବୋଲେ ଉଚିତ ନୁହଇ ॥୪
ବୋଇଲା ପୁଣି ଯାଅ ତୁହି ।
ଅଙ୍ଗିରସଙ୍କ ଯଜ୍ଞ ଯହିଁ ॥୫
ତାହାଙ୍କୁ ଦେବୁ ଉପଦେଶ ।
ଲଭିବୁ ଦ୍ରବିଣ ଅଶେଷ ॥୬
ପିତାର ବୋଲେ ଯଜ୍ଞେ ଗଲା ।
ଅନେକ ଧନ ସେ ଲଭିଲା ॥୭
ତା' ଘେନି ସେ ଯେ ବାଟେ ଆସେ ।
ମିଳିଲା କାଳିଆ ପୁରୁଷେ ॥୮
ବୋଲଇ ମୋ'ର ଧନ ନେଇ ।
ପଳାଇ ଯାଉ କାହିଁପାଇଁ ॥୯
ସେ ବୋଲେ ନ ଜାଣଇ କିଛି ।
ପିତା ବଚନେ ନେଉଅଛି ॥୧୦
ପୁରୁଷ ବୋଲେ ତୁ ପଚାର ।
ପିତାଙ୍କୁ ଏ ଧନ କାହାର ॥୧୧
ତହୁଁ ନାଭାଗ ବେଗେ ଗଲା ।
ସକଳ ପିତାଙ୍କୁ କହିଲା ॥୧୨
ପିତା ବୋଇଲେ ସତ୍ୟ ଏହା ।
ପୂର୍ବେ ଋଷି ଏ କଲେ ଯାହା ॥୧୩
ଯଜ୍ଞର ଶେଷ-ଧନ ଆଦି ।
ରୁଦ୍ରଙ୍କ ଭାଗ ବୋଲି ବିଧି ॥୧୪
ନାଭାଗ ତହୁଁ ବେଗେ ଗଲା ।
ରୁଦ୍ରେ ସକଳ ସମର୍ପିଲା ॥୧୫
ପିତା ପୁତ୍ରର ସତ୍ୟ ଜାଣି ।
ରୁଦ୍ର ବୋଲନ୍ତି ସାଧୁବାଣୀ ॥୧୬
ବୋଇଲେ ସର୍ବ ଘେନିଯାଅ ।
ଆବର ବ୍ରହ୍ମଜ୍ଞାନ ପାଅ ॥୧୭
ଏମନ୍ତେ ସେ ନାଭାଗ ରାଜା ।
ସୁଖେ ପାଳିଲା ଜନପ୍ରଜା ॥୧୮
ଅନେକ କାଳ ରାଜ୍ୟ କଲା ।
ଅନ୍ତେ ସେ ଗୋବିନ୍ଦେ ପଶିଲା ॥୧୯
ନାଭାଗ-ପୁତ୍ର ଅମ୍ବରୀଷ ।
ସେ ରାଜା ବିଷ୍ଣୁର ବିଶ୍ୱାସ ॥୨୦
ବ୍ରାହ୍ମଣ ଶାପ ନ ଲାଗିଲା ।
ତା' ଶୁଣି ଅଭିମନ୍ୟୁବଳା ॥୨୧
ଶୁକ ଚରଣ ବେନି ଧରି ।
ବୋଲେ ପରୀକ୍ଷ ଦଣ୍ଡଧାରୀ ॥୨୨

### ରାଜା ଉବାଚ

ନାଭାଗ ପୁତ୍ର ଅମ୍ବରୀଷ ।
ସେ ଯେବେ ବିଷ୍ଣୁର ବିଶ୍ୱାସ ॥୨୩
ବ୍ରାହ୍ମଣ ଶାପ ନ ଲାଗିଲା ।
ମୋତେ ତ ସନ୍ଦେହ ଲାଗିଲା ॥୨୪
ଯେ ବ୍ରହ୍ମଦଣ୍ଡ ବଜ୍ରଘୋର ।
କେମନ୍ତେ ତହୁଁ ହେଲା ପାର ॥୨୫
କି ଅବା ତା'ର ତପ ଫଳୁଁ ।
ତରିଲା ବ୍ରହ୍ମଶାପାନଳୁଁ ॥୨୬
ଏ କଥା କହ ମୁନି ମୋତେ ।
ସଂଶୟ ଲାଗିଲା ମୋ' ଚିତ୍ତେ ॥୨୭
ଏମନ୍ତ ରାଜା-ପ୍ରଶ୍ନ ଶୁଣି ।
ଶୁକ କହନ୍ତି ମଞ୍ଜୁବାଣୀ ॥୨୮

### ଶୁକ ଉବାଚ

ଶୁଣ ରାଜନ ଏକଚିତ୍ତେ ।
ଯେ ପ୍ରଶ୍ନ ବଂଶାନୁଚରିତେ ॥୨୯
ନାଭାଗସୁତ ଅମ୍ବରୀଷ ।
ଯେମନ୍ତେ ବିଷ୍ଣୁର ବିଶ୍ୱାସ ॥୩୦
ବ୍ରାହ୍ମଣ ଶାପ ନଲାଗିଲା ।
ଅନ୍ତେ ସେ ଗୋବିନ୍ଦେ ପଶିଲା ॥୩୧
ସେ ସପ୍ତଦ୍ୱୀପେ ଏକ ରାଜା ।
ସୁଖେ ପାଳଇ ଜନପ୍ରଜା ॥୩୨
ସାତ୍ତ୍ୱିକ-ସମ୍ପଦ ତାହାର ।
ବିବେକ କେ କରୁ ଗୋଚର ॥୩୩
ସପତ ଦ୍ୱୀପେ ରାଜାପଣେ ।
ପ୍ରଜା ପାଳଇ ଅନୁକ୍ଷଣେ ॥୩୪
ଶରୀର ସୁଖକୁ ନ ଲେଖେ ।
ସମ୍ପଦ ସ୍ୱପ୍ନ-ପ୍ରାୟ ଦେଖେ ॥୩୫
ଯେ ପ୍ରାଣୀ ସମ୍ପଦ ଇଚ୍ଛନ୍ତି ।
ଅନ୍ତେ ସେ ନରକେ ପଡ଼ନ୍ତି ॥୩୬

Dr. Sudhanshu Sekhar Mishra

ଏମନ୍ତ ନିଷ୍ଠେ ଜାଣି ମନେ ।
ହରି ଭଜଇ ତତ୍ତ୍ୱଜ୍ଞାନେ ॥୩୭
ବିଷ୍ଣୁଭକତ ଯେତେ ଜନ ।
ତାହାଙ୍କ ପାଦେ ତା'ର ମନ ॥୩୮
ସାଧୁଙ୍କ ପାଦେ ନିତ୍ୟେ ସେବେ ।
ସଂସାର ଆତ୍ମାରୂପେ ଭାବେ ॥୩୯
ହରିଚରଣ ଯୁଗେ ମନ ।
ବିଷ୍ଣୁ ଉଚ୍ଚାରଇ ବଦନ ॥୪୦
ବିଷ୍ଣୁର ମନ୍ଦିର ମାର୍ଜନେ ।
କର ଯୁଗଳ ଅନୁଦିନେ ॥୪୧
ଶ୍ରବଣ ଯୁଗ ତା' ସୁକଥା ।
ନିତ୍ୟେ ଶୁଣଇଁ କୃଷ୍ଣକଥା ॥୪୨
ନିରତେ ତାହାର ନୟନ ।
କଙ୍କ୍ଷଇ ବିଷ୍ଣୁ-ଦରଶନ ॥୪୩
ଶରୀର-ଚର୍ମ ଅନୁଦିନେ ।
କଙ୍କ୍ଷେ ବୈଷ୍ଣବ-ଆଲିଙ୍ଗନେ ॥୪୪
ହରିଚରଣ ପଦ୍ମଗନ୍ଧେ ।
ନିରତେ ନାସା ତା' ଆମୋଦେ ॥୪୫
ଶ୍ରୀକୃଷ୍ଣଚରଣ ତୁଳସୀ ।
ତା'ର ରସନା ତେଣେ ରସି ॥୪୬
ଚରଣ ଯୁଗ କଙ୍କ୍ଷେ ନିତ୍ୟେ ।
କୃଷ୍ଣ ମନ୍ଦିରେ ଉପଗତେ ॥୪୭
ବିଷ୍ଣୁ ଚରଣେ ନମସ୍କାର ।
ଶିର କଙ୍କ୍ଷଇ ନିରନ୍ତର ॥୪୮
ଚିତ୍ତ କଙ୍କ୍ଷର ଦାସପଣେ ।
ବୈଷ୍ଣବ ଚରଣ ସେବନେ ॥୪୯
ହରି-ଭକତ-ଜନେ ରତି ।
ନିରତେ କଙ୍କ୍ଷେ ତା'ର ମତି ॥୫୦
ଦେହ ବିଷୟ ତା'ର ଯେତେ ।
କଙ୍କ୍ଷଇ ହରିଭାବ ନିତ୍ୟେ ॥୫୧
ବିପ୍ର ଦେବତା ପାଦେ ସେବେ ।
ପ୍ରଜାଙ୍କୁ ଦେଖେ ବିଷ୍ଣୁଭାବେ ॥୫୨
ସକଳ ସମ୍ପଦ ପ୍ରସିଦ୍ଧି ।
ଭିଆଇ କରେ ଅଶ୍ୱମେଧି ॥୫୩
ବିପ୍ରଚରଣ ଦାନେ ପୂଜେ ।
ଯେ ଅଧିଯଜ୍ଞ ବିଧି ଭଜେ ॥୫୪

ଅସିତ ବଶିଷ୍ଠ ଗୌତମ ।
ସଙ୍ଗତେ ଘେନି ମୁନିଗଣ ॥୫୫
ବିପ୍ର-ସେବନ ଅନୁମତେ ।
ସରସ୍ୱତୀର ଅଭିସ୍ରୋତେ ॥୫୬
ତାହାର ଯଜ୍ଞସଭା ମଧ୍ୟେ ।
ତ୍ରିଦଶେ ଅତ୍ୟନ୍ତ ଆନନ୍ଦେ ॥୫୭
ମୁନି-ବ୍ରାହ୍ମଣ ମଧ୍ୟେ ବସି ।
ନିତ୍ୟେ ଯଜ୍ଞକୁ ପରଶଂସି ॥୫୮
ଦେବ-ମନୁଷ୍ୟ ସଭାଗତେ ।
ସର୍ବେ ଦିଶନ୍ତି ଏକମତେ ॥୫୯
ଦେବେ ସେ ସଭାମଧ୍ୟେ ଥା'ନ୍ତି ।
ସ୍ୱର୍ଗ-ଗମନ ନ ବାଞ୍ଛନ୍ତି ॥୬୦
କୃଷ୍ଣକୀର୍ତ୍ତନ ସଭା ମଧ୍ୟେ ।
ସକଳେ ଶୁଣନ୍ତି ଆନନ୍ଦେ ॥୬୧
ସ୍ୱର୍ଗର ପ୍ରାୟ ମହୀ ଦିଶେ ।
ଅଷ୍ଟମନିଧି ଯହିଁ ବସେ ॥୬୨
ଏମନ୍ତ ଭକ୍ତିଯୋଗ ବଳେ ।
ସେ ରାଜା ସରସ୍ୱତୀ କୂଳେ ॥୬୩
ସ୍ୱଧର୍ମେ ବିଷ୍ଣୁଙ୍କୁ ତୋଷିଲା ।
ସର୍ବକାମନା ଉପେକ୍ଷିଲା ॥୬୪
ଗୃହ ସମ୍ପଦ ଦାରା ସୁତ ।
ଜ୍ଞାତି ବାନ୍ଧବ ଇଷ୍ଟ ମିତ୍ର ॥୬୫
ରାଜସମ୍ପଦ ଆଦି ଯେତେ ।
ଯେ ଅଶ୍ୱ କୁଞ୍ଜର ସହିତେ ॥୬୬
ଅପରେ ଦିବ୍ୟବସ୍ତୁ ଯେତେ ।
ଇଚ୍ଛା ନ କରେ ତା'ର ଚିତ୍ତେ ॥୬୭
ନିରତେ ଗୋବିନ୍ଦ ଚରଣେ ।
ମନନିବେଶେ ଅନୁକ୍ଷଣେ ॥୬୮
ତାହାର ଶୁଦ୍ଧଚିତ୍ତ ଜାଣି ।
ଚକ୍ରକୁ ରାଇ ଚକ୍ରପାଣି ॥୬୯
ବୋଇଲେ ଅମ୍ବରୀଷ ମେଳେ ।
ତୁ ଚକ୍ର ଥିବୁ ସର୍ବକାଳେ ॥୭୦
ଏହାକୁ ରଖ ନିରନ୍ତରେ ।
ଯେମନ୍ତେ ସର୍ବଦୁଃଖୁଁ ତରେ ॥୭୧
ଏମନ୍ତେ ବିଷ୍ଣୁ ଆଜ୍ଞା ପାଇ ।
ସେ ଚକ୍ର ରକ୍ଷାକଲା ଯାଇ ॥୭୨

ସେ ରାଜା ପତ୍ନୀର ସମେତେ ।
ଉପାସେ ଏକାଦଶୀ ବ୍ରତେ ॥୭୩
କାର୍ତ୍ତିକ ଶୁକ୍ଳପକ୍ଷେ ହରି ।
ପୂଜିଲା ଉପବାସ କରି ॥୭୪
ପ୍ରଭାତ କାଳେ ମଧୁବନେ ।
କାଳନ୍ଦୀକୂଳେ ଏକଧ୍ୟାନେ ॥୭୫
ଆନନ୍ଦେ ପତ୍ନୀର ସମେତେ ।
ବିଷ୍ଣୁ ପୂଜିଲା ଦୃଢ଼ଚିତ୍ତେ ॥୭୬
ଦ୍ରବ୍ୟ ସମ୍ପାଦି ଅତିରେକେ ।
ପୂଜିଲା ମହାଅଭିଷେକେ ॥୭୭
ଉତ୍ତମ ବସ୍ତ୍ର ଅଳଙ୍କାର ।
ସୁଗନ୍ଧମାଲ୍ୟ ଉପହାର ॥୭୮
ସଙ୍ଗତେ ଘେନି ନିଜନାରୀ ।
ଏକାନ୍ତ ଭାବେ ପୂଜା କରି ॥୭୯
ଉତ୍ତମ ବ୍ରାହ୍ମଣ ବସାଇ ।
ସୁନ୍ଦର ଧେନୁମାନ ଦେଇ ॥୮୦
ଧେନୁକୁ କରି ଅଳଙ୍କାର ।
ସୁବର୍ଣ୍ଣ ଶୃଙ୍ଗ ରୌପ୍ୟ ଖୁର ॥୮୧
ବିବିଧ ବସ୍ତ୍ର ମଣ୍ଡି ଅଙ୍ଗେ ।
ଗନ୍ଧାଦି ଧୂପଦୀପ ସଙ୍ଗେ ॥୮୨
ପୃଷ୍ଠ-ପାରୁଷେ ତାମ୍ର କାଂସ୍ୟେ ।
ଧେନୁକୁ ମଣ୍ଡିଲା ହରଷେ ॥୮୩
ସୁଶୀଳା ବତ୍ସା ପୟୋସ୍ୱିନୀ ।
ମଣ୍ଡିଲା ଅଳଙ୍କାର ଘେନି ॥୮୪
ବିପ୍ର ବସାଇ ବାକ୍ୟ କଲା ।
ବତ୍ସା ସହିତେ ଧେନୁ ଦେଲା ॥୮୫
ସୁସ୍ୱାଦୁ ଅନ୍ନ ଷଡ଼ରସେ ।
ବିପ୍ରଙ୍କୁ ଭୁଞ୍ଜାଇ ସନ୍ତୋଷେ ॥୮୬
ବିପ୍ରଙ୍କ ପାଦଯୁଗେ ଲାଗି ।
ପାରଣା ଅର୍ଥେ ଆଜ୍ଞା ମାଗି ॥୮୭
ଉଦ୍ୟମ କଲା ନରପତି ।
ଏମନ୍ତେ ମିଳିଲା ଅତିଥି ॥୮୮
ଦୁର୍ବାସା ଶଂକରଙ୍କ ଅଂଶେ ।
ଯାହାଙ୍କୁ ଦେଖି ଦେବେ ତ୍ରାସେ ॥୮୯
ତାହାଙ୍କୁ ଦେଖି ନୃପମଣି ।
ଆସନ ପାଦାସନ ଆଣି ॥୯୦

Dr. Sudhanshu Sekhar Mishra

ପୂଜିଲା ଅତିଥି ସ୍ୱଭାବେ ।
ଆନନ୍ଦେ ଅତି ଗଉରବେ ॥୯୧
ପୁଣି ଚରଣ ତଳେ ପଡ଼ି ।
ରାଜା ବୋଲଇ କରଯୋଡ଼ି ॥୯୨
ଭୋ ମୁନି ପାରଣା ମୋହର ।
ମୋ ଗୃହେ କର ତୁ ଆହାର ॥୯୩
ତକ୍ଷଣେ ଅମ୍ବରୀଷ ବୋଲେ ।
ଦୁର୍ବାସା ଅଙ୍ଗୀକାର କଲେ ॥୯୪
ଆନନ୍ଦ ମନେ ଧ୍ୟାନ କରି ।
କାଳିନ୍ଦୀ ଜଳେ ମୋଦ ଭରି ॥୯୫
ବିଳମ୍ବେ ସ୍ନାନ-ସନ୍ଧ୍ୟା କଲେ ।
ନିଶ୍ଚିନ୍ତେ ବସି ନଦୀକୂଳେ ॥୯୬
ଏବେ ହେ ଶୁଣ ନୃପମଣି ।
ରାଜା ବିଷାଦ-ମନେ ଗୁଣି ॥୯୭
ପାରଣା ହୋଇଲା ଉଛୁର ।
ଅତିଥି ନଇଲା ମୋହର ॥୯୮
କେମନ୍ତେ କରିବି ଭୋଜନ ।
ଅବଜ୍ଞା କରି ମହାଜନ ॥୯୯
ଅର୍ଦ୍ଧ ମୁହୂର୍ତ୍ତେ ଅଛି ବେଳ ।
ଯଥାର୍ଥ ପାରଣାର କାଳ ॥୧୦୦
ଉଛୁର ପାରଣାର ବେଳା ।
ମୋତେ ତ ସଙ୍କଟ ପଡ଼ିଲା ॥୧୦୧
ଯେ କର୍ମ କଲେ ସାଧୁବାଣୀ ।
ରାଜା ବିଚାରେ ମନେ ଗୁଣି ॥୧୦୨
ଲୋକେ ବୋଲିବେ ମୋତେ ଶୁଣି ।
ଅଧର୍ମ କଲା ନୃପମଣି ॥୧୦୩
ପାରଣା କଲେ ବେଦମତେ ।
ଅଧର୍ମ ନ ଲାଗିବ ମୋତେ ॥୧୦୪
ଜଳ ଗଣ୍ଡୂଷେ କରି ପାନ ।
ଅତିଥି କରାଇ ଭୋଜନ ॥୧୦୫
ପଛେ ମୁଁ କରିବି ଆହାର ।
ଏତେ ବିଚାରି ନୃପବର ॥୧୦୬
ଜଳ ପାରଣା ଅପାରଣ ।
ଏ ଆଦି ନିଗମ ବଚନ ॥୧୦୭
ବିଚାରି ବ୍ରାହ୍ମଣଙ୍କ ତୁଲେ ।
ଜଳ ଗଣ୍ଡୂଷେ ପାନ କଲେ ॥୧୦୮

ତକ୍ଷଣେ ଜଳପାନ କରି ।
ଭୟେ ସୁମରେ ହରିହରି ॥୧୦୯
ଦୁର୍ବାସା ଆଗମନ ଚାହିଁ ।
ରାଜା ରହିଲେ ତୋଷ ହୋଇ ॥୧୧୦
ଦୁର୍ବାସା ଯମୁନାର କୂଳେ ।
ସ୍ୱକର୍ମ ସାରି ସାୟଂକାଳେ ॥୧୧୧
ମିଳିଲେ ଅମ୍ବରୀଷ ପାଶେ ।
ପାରଣା କରିବାର ଆଶେ ॥୧୧୨
ନୃପତି କରି ବହୁମାନ୍ୟ ।
ବୋଲଇ କରିବା ଭୋଜନ ॥୧୧୩
ଏମନ୍ତ ଅମ୍ବରୀଷ ବାଣୀ ।
ଦୁର୍ବାସା ମନେ ମନେ ଗୁଣି ॥୧୧୪
ସ୍ୱଭାବେ ସର୍ବଜ୍ଞାତା ପୁଣ ।
ଜାଣିଲେ କଲା ଏ ପାରଣ ॥୧୧୫
ରାଜାର ବଦନକୁ ଚାହିଁ ।
ବୋଲନ୍ତି କୋପଭର ହୋଇ ॥୧୧୬
ତୁ ଅନାଦର କରି ମୋତେ ।
ଜଳ ଯେ ଭକ୍ଷିଲୁ ଯୁଗତେ ॥୧୧୭
ଅତିଥି କଲୁ ଅବହେଳା ।
ଭୁଞ୍ଜିଲୁ ପାରଣାର ବେଳା ॥୧୧୮
ତୁ ଯେ ଅବଜ୍ଞା କଲୁ ମୋତେ ।
ଉଚ୍ଛିଷ୍ଟ ଭୁଞ୍ଜିବି କେମନ୍ତେ ॥୧୧୯
ତୁ ମୋତେ କଲୁ ଅବହେଳ ।
ଭୁଞ୍ଜ ଏ ଅଧର୍ମର ଫଳ ॥୧୨୦
ଏମନ୍ତ ବୋଲି କୋପଭରେ ।
ଜଟା ଉପାଡ଼ି ନିଜ କରେ ॥୧୨୧
ଭ୍ରୁକୁଟୀ କୁଟୀଳ ଲୋଚନ ।
ରାଜାଙ୍କୁ ବୋଲନ୍ତି ବଚନ ॥୧୨୨
ଦେଖ ଏ ନୃପତିର ଗତି ।
ସମ୍ପଦେ ହୋଇ ମୂଢ଼ମତି ॥୧୨୩
ଧର୍ମେ ବଞ୍ଚିତ ବିଷ୍ଣୁ ଭକ୍ତେ ।
ବୋଲେ ମୁଁ ଈଶ୍ୱର ସାକ୍ଷାତେ ॥୧୨୪
ଅତିଥି-ମତେ ପୂଜା କଲା ।
ପାରଣା ଅର୍ଥେ ନିମନ୍ତ୍ରିଲା ॥୧୨୫
ଭିକ୍ଷା ନ ଦେଇ ଆଗ ମୋତେ ।
ପାରଣା କଲା ଏ ଯୁଗତେ ॥୧୨୬

ମୋତେ ଯେ କଲା ଅବହେଳ ।
ସ୍ୱଦେହେ ଭୁଞ୍ଜୁ ତା'ର ଫଳ ॥୧୨୭
ଜଟାକୁ ଚାହିଁ ଆଜ୍ଞା ଦେଲେ ।
ଅନଳ ହୁଅ ତୁ ବୋଇଲେ ॥୧୨୮
ତକ୍ଷଣେ ହୁଁକାର କରାଳ ।
ଉଠିଲା କୃତିହା ଅନଳ ॥୧୨୯
ତେଜେ ଆଚ୍ଛାଦେ ଦଶଦିଶ ।
ପବନ ବହେ ଅଣଚାଷ ॥୧୩୦
ଧୂମ ପୂରିତ ଶୂନ୍ୟ ମଧ୍ୟେ ।
ବେଗେ ଧାଇଁଲା ଘୋରନାଦେ ॥୧୩୧
ପ୍ରଳୟାନଳ ପ୍ରାୟେ ହୋଇ ।
ମିଳିଲା ରାଜା ଆଗେ ଯାଇ ॥୧୩୨
ଜଳନ୍ତା ଖଡ୍ଗ କରେ ଧରି ।
ମିଳିଲା ଘୋରନାଦ କରି ॥୧୩୩
ଭୂମି କମ୍ପଇ ପାଦଘାତେ ।
ପର୍ବତ ଉଡ଼େ ଶ୍ୱାସ ବାତେ ॥୧୩୪
ଦେଖି ତାହାର ତେଜ କଳା ।
ରାଜା ଚରଣେ ନ ଘୁଞ୍ଚିଲା ॥୧୩୫
ତା'ର ବଦନ ରାଜା ଚାହିଁ ।
ମନେ ଚିନ୍ତିଲେ ଭାବଗ୍ରାହୀ ॥୧୩୬
ତକ୍ଷଣେ ବିଷ୍ଣୁଚକ୍ର ଆସି ।
କୋଟିଏ ସୂର୍ଯ୍ୟ ପ୍ରାୟେ ଦିଶି ॥୧୩୭
କୃତିହା ଅନଳ ଉପରେ ।
ପଡ଼ିଲା ମହାନାଦ ଭରେ ॥୧୩୮
ତକ୍ଷଣେ ଅନଳ ଲିଭିଲା ।
ଦିଗ-ଆକାଶ ପ୍ରକାଶିଲା ॥୧୩୯
ସୁଦରଶନ ତେଜ ଦେଖି ।
ଦୁର୍ବାସା ଭୟେ ବୁଜେ ଆଖି ॥୧୪୦
ବଦନେ ଦେଇ ବେନିକର ।
ଭୟେ କମ୍ପଇ ଥରହର ॥୧୪୧
ସଂଭ୍ରମେ ଚାହିଁ ନ ପାରିଲା ।
ଜୀବନ ଭୟେ ପଳାଇଲା ॥୧୪୨
ତା'ର ଭାଜିବା ଦେଖି ପଛେ ।
ଚକ୍ର ଧାଇଁଲା ଅନ୍ତରୀକ୍ଷେ ॥୧୪୩
ମଣ୍ଡୁକ ଦେଖି ସର୍ପ ଯେହ୍ନେ ।
ଧାମଇଁ ଗର୍ଜିତ ବଦନେ ॥୧୪୪

Dr. Sudhanshu Sekhar Mishra

ଦୁର୍ବାସା ଦଶଦିଶ ଚାହିଁ ।
ଭୟେ ନ ପାରଇ ପଳାଇ ॥୧୪୫
ପଶିଲା ମେରୁ-ଗୁହା ମଧ୍ୟେ ।
ସୁଦରଶନ ପଛେ ଖେଦେ ॥୧୪୬
ଦିଶ-ଆକାଶ-ଭୂମି ଗତେ ।
ବିବର-ସମୁଦ୍ର-ସହିତେ ॥୧୪୭
ଦିଗପାଳଙ୍କ ପୁରେ ଲୁଚେ ।
ଚକ୍ରକୁ ଦେଖେ ପଛେପଛେ ॥୧୪୮
ଯହୁଁ ଯହିଁକି ଧାମେ ବେଗେ ।
ସୁଦରଶନ ପଛେ ଲାଗେ ॥୧୪୯
ସୁଦରଶନ ତେଜ ଦେଖି ।
କେହି ନ ପାରେ ତା'କୁ ରଖି॥୧୫୦
କେଣେ ହେଁ ଠାବ ନ ପାଇଲା ।
ସତ୍ୟଲୋକକୁ ପଳାଇଲା ॥୧୫୧
ଶୂନ୍ୟେ ପଳାନ୍ତେ ମନଦୁଃଖେ।
ଭୟେ ପଶିଲା ବ୍ରହ୍ମଲୋକେ ॥୧୫୨
ବ୍ରହ୍ମାର ସମୀପେ ମିଳିଲା ।
ଶରଣ ସମ୍ଭାଳ ବୋଇଲା ॥୧୫୩
ବିଧାତା ରଖ ମୋ'ର ପ୍ରାଣ ।
ତୁମ୍ଭରେ ପଶିଲି ଶରଣ ॥୧୫୪
ଏମନ୍ତେ ମୁନିବାକ୍ୟ ଶୁଣି ।
ଉଚ୍ଚେ କହନ୍ତି କୁଶପାଣି ॥୧୫୫

ବ୍ରହ୍ମା ଉବାଚ

କଳାସ୍ୱରୂପୀ ଯେ ଈଶ୍ୱର ।
ଭ୍ରୂଭଙ୍ଗ ମାତ୍ରେ ଯା' ସଂସାର ॥୧୫୬
ମୁଁ ବ୍ରହ୍ମା ଈଶ୍ୱର ସହିତେ ।
ଭୃଗୁ ଦକ୍ଷାଦି ମୁନି ଯେତେ ॥୧୫୭
ପ୍ରଜା ଈଶ୍ୱର ଭୂତେଶ୍ୱର ।
ଦେବ ସହିତେ ସୁରେଶ୍ୱର ॥୧୫୮
ସେ ହରି ଆଜ୍ଞା ଶିରେ ଧରି ।
ଯେଝା ବିଷୟେ ଅଧିକାରୀ ॥୧୫୯
ଅଛୁଁ ସଂସାର ଲୋକହିତେ ।
ତା' ରିପୁ ରଖିବୁଁ କେମନ୍ତେ ॥୧୬୦
ଏମନ୍ତ ବିଧାତା ବଚନ ।
ଶୁଣି ଦୁର୍ବାସା ଛନଛନ ॥୧୬୧

ତହୁଁ ଚଳିଲା ମନଦୁଃଖେ ।
ବେଗେ ପଶିଲା ଶିବଲୋକେ॥୧୬୨
ଶଙ୍କର ଚରଣେ ପଡ଼ିଲା ।
ଶରଣ ସମ୍ଭାଳ ବୋଇଲା ॥୧୬୩
ଦୁର୍ବାସା ବାକ୍ୟ ଶୁଣି ହର ।
ସଂଭ୍ରମେ ବୋଲନ୍ତି ଉତ୍ତର ॥୧୬୪

ଶଙ୍କର ଉବାଚ

ଶୁଣ ଦୁର୍ବାସା ତୋତେ କହୁଁ ।
ଆମ୍ଭେ ଯାହାର ଆଜ୍ଞା ବହୁଁ ॥୧୬୫
ବ୍ରହ୍ମାଣ୍ଡ ପାଳନ ପ୍ରକାଶେ ।
ଯେବା ବିଷୟ ଜୀବକୋଷେ॥୧୬୬
କାଳର ବଳେ ଦୃଶ୍ୟାଦୃଶ୍ୟ ।
ଭ୍ରମନ୍ତି ସେ ଯୋନି ଅଶେଷ ॥୧୬୭
ତାହାଙ୍କ ମଧ୍ୟେ ଆମ୍ଭେ ଭ୍ରମି ।
ଗତ ଆଗତେ ପଥଶ୍ରମୀ ॥୧୬୮
ମୋ' ସଙ୍ଗେ ବ୍ରହ୍ମାଦିକୁମର ।
ନାରଦ ବ୍ରହ୍ମ ମୁନିବର ॥୧୬୯
କପିଳ ଦେବଳ ଆସୁରି ।
ଧର୍ମ ମରୀଚି ଆଦି କରି ॥୧୭୦
ଯେ ଅନ୍ୟ ସିଦ୍ଧ ମୁନିଜନ ।
ବେଦାନ୍ତ ପାର ଦରଶନ ॥୧୭୧
ଜାଣି ନ ପାରେ ତା'ର ମାୟା ।
ନିରତେ ଭ୍ରମାଏ ବିଷୟା ॥୧୭୨
ସେ ବିଷ୍ଣୁଚକ୍ର ନିବାରଣେ ।
ସମର୍ଥ ଅଛି କେ ଶରଣେ ॥୧୭୩
ତୁ ଏବେ ଚଳ ବିଷ୍ଣୁପୁର ।
ହରି ଚରଣେ ଆଶ୍ରେକର ॥୧୭୪
ସେ ତୋତେ ରଖିବେ ଶରଣ।
ଅନ୍ୟଥା ନାହିଁ ପରିତ୍ରାଣ ॥୧୭୫
ଦୁର୍ବାସା ମହେଶ ବଚନେ ।
ପଶିଲା ବିଷ୍ଣୁର ଭୁବନେ ॥୧୭୬
ଲକ୍ଷ୍ମୀ ସହିତେ ଯହିଁ ହରି ।
ଅଛନ୍ତି ଗୃହାଶ୍ରମ କରି ॥୧୭୭
ବିଷ୍ଣୁର ଚକ୍ର-ତେଜ ଭରେ ।
ଘର୍ମ-ଭୂଷିତ କଳେବରେ ॥୧୭୮

ଦୁର୍ବାସା ଶୋକ ଗଦଗଦେ ।
ପଡ଼ିଲା ବିଷ୍ଣୁ-ପଦ୍ମପାଦେ ॥୧୭୯
କାତରେ କମ୍ପଇ ଶରୀର ।
ଡାକଇ ପ୍ରଭୁ ରକ୍ଷାକର ॥୧୮୦
ଭୋ ନାଥ ଅନନ୍ତ ଅଚ୍ୟୁତ ।
ତୁ ସନ୍ଥଜନଙ୍କର ନାଥ ॥୧୮୧
ମୁଁ ତୋରେ ଅପରାଧ କରି ।
ଶରଣ ଗଲି ରଖ ହରି ॥୧୮୨
ମୁଁ ତୋ' ମହିମା ନ ଜାଣିଲି ।
ତେଣୁ ମୁଁ ସଙ୍କଟେ ପଡ଼ିଲି ॥୧୮୩
ତୋ'ର ସେବକେ ଅପରାଧ ।
କଲି ମୁଁ ରଖ ହେ ଗୋବିନ୍ଦ ॥୧୮୪
ତୋ'ର ଭକତ ତୋ'ର ଲୋକ ।
ମୋତେ ଏ ଚକ୍ରତେଜୁଁ ରଖ ॥୧୮୫
ଦୁର୍ବାସା ମୁଖ ଚାହିଁ ହରି ।
କହନ୍ତି ଅତି ମୋଦ ଭରି ॥୧୮୬

ଭଗବାନ ଉବାଚ

ମୁଁ ଭକ୍ତଜନର ଅଧୀନ ।
ମୋ' ତହୁଁ ଭକ୍ତ ନୋହେ ଭିନ୍ନ ॥୧୮୭
ଭକତ ଦେହ-ପ୍ରାଣ ମୁହିଁ ।
ସେବଇଁ ପରିଚାର ହୋଇ ॥୧୮୮
ସାଧୁଙ୍କ ହୃଦେ ମୁଁ ବସଇ ।
ତା'ଙ୍କ ଭକତି-ଭାବ ବହି ॥୧୮୯
ତା'ଙ୍କ ଭକତି-ପ୍ରୀତି ମୋତେ।
ଆନନ୍ଦ ଦେଉଥାଇ ଚିତ୍ତେ ॥୧୯୦
ଭକ୍ତଟି ମୋହର ଶରୀର ।
ତିଳେ ହେଁ ନାହିଁ ଅଭ୍ୟନ୍ତର ॥୧୯୧
ଭକ୍ତ ନିମନ୍ତେ ଦେହ ବହି ।
ସଂସାରେ ନାନା ରୂପ ହୋଇ॥୧୯୨
ଅତ୍ୟନ୍ତ ପ୍ରିୟ ମୋ'ର ଭକ୍ତ ।
ମୁଁ ଭକ୍ତଜନଙ୍କର ହିତ ॥୧୯୩
ଏ କଥା ମୁନିଙ୍କ ସଙ୍ଗମେ ।
ଜାଣନ୍ତି ଆଗମ ନିଗମେ ॥୧୯୪

Dr. Sudhanshu Sekhar Mishra

ତା' ତହୁଁ ପ୍ରିୟ କେହି ନାହିଁ ।
ଶୁଣ ଦୁର୍ବାସା ମନ ଦେଇ ॥୧୯୫
ଏକଥା ପରମ୍ପରା ବିଧି ।
ବେଦ-ପୁରାଣ ମାର୍ଗେ ସିଦ୍ଧି ॥୧୯୬
ଶରଣ ଯେ ମୋ'ର ଚରଣେ ।
ସମ୍ପଦ ତୁଚ୍ଛ ପ୍ରାୟେ ମଣେ ॥୧୯୭
ଦାରା ମନ୍ଦିର ସୁତ ଧନ ।
କେବେ ହେଁ ନ କଛେ ତା' ମନ ॥୧୯୮
ଯେ ପ୍ରାଣ ଛାଡ଼େ ମୋ'ର ହିତେ ।
ମୁଁ ତା'କୁ ଛାଡ଼ିବି କେମନ୍ତେ ॥୧୯୯
ମୋ'ର ବିଷୟେ ଚିତ୍ତ ସ୍ଥାପେ ।
ମୋତେ ଦେଖନ୍ତି ଆତ୍ମା ରୂପେ ॥୨୦୦
ମୁଁ ତାକୁ ଦିଶେ ସର୍ବଭୂତେ ।
ହୃଦୟେ ଥାଏଁ ଅବିରତେ ॥୨୦୧
ଭକ୍ତିରେ ମୋତେ ବଶ କରି ।
ନିଜ ପୁରୁଷେ ଯେହ୍ନେ ନାରୀ ॥୨୦୨

ମୋ'ର ଚରଣ ନିତ୍ୟେ ଚିନ୍ତି ।
ଚତୁର୍ଦ୍ଧା ମୁକ୍ତି ନ ବାଞ୍ଛନ୍ତି ॥୨୦୩
ଜନ୍ମ-ମରଣ ତା'ର ନାହିଁ ।
ସ୍ଥିତି ସଂହାର ଆଉ କାହିଁ ॥୨୦୪
ମୋ'ର ହୃଦୟ ଭକ୍ତଜନ ।
ମୁହିଁ ଟି ତାହାଙ୍କ ଜୀବନ ॥୨୦୫
ମୋ' ତହୁଁ ନ ଜାଣନ୍ତି ଆନ ।
ମୁଁ ତା'ଙ୍କ ପ୍ରିୟ ଇଷ୍ଟ ଧନ ॥୨୦୬
ଏବେ ମୋ ଭକ୍ତ-ଅପରାଧେ ।
ସୁଦରଶନ ତୋତେ ବାଧେ ॥୨୦୭
ଯେ ମୋ'ର ଭକ୍ତକୁ ପୀଡ଼ନ୍ତି ।
ମୋ' ଚକ୍ର ତେଜେ ନାଶ ଯା'ନ୍ତି॥୨୦୮
ବିପ୍ରେ ଯେ ତପ ବିଦ୍ୟା ବଳେ ।
ଶ୍ରେୟ କରନ୍ତି ଏ ଶୟଳେ ॥୨୦୯
ସେ ଯେବେ ଭକ୍ତକୁ ପୀଡ଼ନ୍ତି ।
ଉଭୟ ଲୋକ ନ ଲଭନ୍ତି ॥୨୧୦

ଏବେ ତୁ ଯାଆ ବେଗ ହୋଇ ।
ନାଭାଗ ପୁତ୍ର ଅଛି ଯହିଁ ॥୨୧୧
ତା'ରେ ଶରଣ ପଶ ଏବେ ।
ମୋ' ଚକ୍ରୁ ନିସ୍ତରିବୁ ଯେବେ ॥୨୧୨
ଗୋବିନ୍ଦ ଆଜ୍ଞା ପରମାଣେ ।
ଦୁର୍ବାସା ଗଲା ତତ୍କ୍ଷଣେ ॥୨୧୩
ହରିଭକତଙ୍କ ମହିମା ।
କେ କହିପାରେ ଗୁଣସୀମା ॥୨୧୪
ଭକ୍ତଚରଣ ସେବା ଫଳେ ।
ପ୍ରସନ୍ନ ହୋନ୍ତି ହରି ଭଲେ ॥୨୧୫
ସୁଜନେ ଚିନ୍ତ ହରିପାଦେ ।
ତରିବ ବିଷୟ ପ୍ରମାଦେ ॥୨୧୬
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୨୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଚତୁର୍ଥୋଽଧ୍ୟାୟଃ ॥

---

## ପଞ୍ଚମ ଅଧ୍ୟାୟ

ଶୁକ ଉବାଚ

ଏମନ୍ତେ ବିଷ୍ଣୁର ବଚନେ ।
ଦୁର୍ବାସା ଗଲେ ତୋଷମନେ ॥୧
ତକ୍ଷଣେ ଅମ୍ବରୀଷ ପାଦେ ।
ପଡ଼ିଲେ ଜୀବନ ପ୍ରମାଦେ ॥୨
ଚରଣ ତଳେ ତାଙ୍କୁ ଦେଖି ।
ସଂଭ୍ରମେ ଆସନ ଉପେକ୍ଷି ॥୩
ବିପ୍ର ଜୀବନ ରକ୍ଷା ଅର୍ଥେ ।
କର-ଅଞ୍ଜଳି ଦେଇ ମାଥେ ॥୪
ସୁଦରଶନ ମୁଖ ଚାହିଁ ।
ଡାକନ୍ତି କର ତ୍ରାହି ତ୍ରାହି ॥୫

ଅମ୍ବରୀଷ ଉବାଚ

ଭୋ ଚକ୍ର ତୋ' ମହିମା ଯେତେ ।
କେ କହିପାରେ ଏ ଜଗତେ ॥୬

ତୁ ଅଗ୍ନି ତୁ ଆଦିତ୍ୟ ସୋମ ।
ସର୍ବଜ୍ୟୋତିଙ୍କ ଗୁଣଧାମ ॥୭
ତୁ ଆପ କ୍ଷିତି ବାୟୁରୂପୀ ।
ବ୍ୟୋମ ପ୍ରକାଶେ ସର୍ବବ୍ୟାପୀ ॥୮
ତୁ ତନମାତ୍ର ଇନ୍ଦ୍ରିଗଣ ।
ବିରାଜପୁରୁଷ କାରଣ ॥୯
ଭୋ ଚକ୍ର ତୋତେ ନମସ୍କାର ।
ସ୍ୱଭାବେ ତୁ ସହସ୍ର ଅର ॥୧୦
ବିଷ୍ଣୁର ନିଜ ପ୍ରିୟ ତୁହି ।
ତୋ' ଭାବ ନ ଜାଣନ୍ତି କେହି ॥୧୧
ସକଳ ଶସ୍ତ୍ରତେଜ ହରୁ ।
ତୋ'ର ମହିମା ମହାମେରୁ ॥୧୨
ତୁ ଲୋକପାଳ ସର୍ବଆତ୍ମା ।
ତୁ ତେଜ-ପୁରୁଷ ମହାତ୍ମା ॥୧୩
ତୁ ସର୍ବ-ଧର୍ମ-କର୍ମ-ହେତୁ ।
ଅଧର୍ମକୁଳ ଧୂମକେତୁ ॥୧୪

ତ୍ରୈଲୋକପାଳ ଶୁଦ୍ଧଚେତା ।
ମନହୁଁ ବେଗ ବଳବନ୍ତା ॥୧୫
ତୋହର ନିଜ ତେଜ ତ୍ରାସେ ।
ସଂସାର ଘୋରତମ ନାଶେ ॥୧୬
ଶ୍ରୁତି ତୋ' ମହିମା ନ ଜାଣେ ।
କେବଳ ପ୍ରକାଶ ପ୍ରମାଣେ ॥୧୭
ସଦଅସଦ ରୂପ ତୋ'ର ।
ବ୍ରହ୍ମାଶିବଙ୍କୁ ଆଗୋଚର ॥୧୮
ଦାନବ ବଳେ ନରହରି ।
ତୋତେ ପେଷନ୍ତି ବେଗକରି ॥୧୯
ତୁ ଦୈତ୍ୟବଳ ମଧ୍ୟେ ପଶି ।
ସକଳ ନିଜ ତେଜେ ଧ୍ୱଂସି ॥୨୦
ଅସୁର ରଣେ ତୋ'ର ତେଜ ।
ଦେଖି କମ୍ପଇ ଗ୍ରହରାଜ ॥୨୧
ଏଣୁ ଜଗତ ତ୍ରାଣ ଅର୍ଥେ ।
ଖଳ ବିନାଶେ ଧରି ହସ୍ତେ ॥୨୨

Dr. Sudhanshu Sekhar Mishra

ତୋ' ବଳେ ବଳୀ ଗଦାଧର ।
ତୁ ଏବେ ମୋତେ ତ୍ରାହିକର ॥୨୩
ଏ ବିପ୍ର କୁଳଦେବ ମୋର ।
ଏହା ଜୀବନ ରକ୍ଷା କର ॥୨୪
ମୁଁ ଯେବେ ଦାନ ଯଜ୍ଞ କରି ।
ସ୍ୱଧର୍ମ ମାର୍ଗକୁ ଆଚରି ॥୨୫
ବ୍ରାହ୍ମଣ-ଚରଣକମଳେ ।
ଯେବେ ସେବନ ମୋ'ର କୁଳେ ॥୨୬
ଯେବେ ଗୋବିନ୍ଦ ପ୍ରୀତ ମୋତେ ।
ମୁଁ ସମେ ଦେଖେ ସର୍ବଭୂତେ ॥୨୭
ଏ ଧର୍ମେ ଯେବେ ମୋର ଦୀକ୍ଷା ।
ଏ ବିପ୍ର ପ୍ରାଣ ହେଉ ରକ୍ଷା ॥୨୮

ଶୁକ ଉବାଚ

ଏମନ୍ତ ଶୁଣି ତା' ବଚନ ।
ବିଷ୍ଣୁର ଚକ୍ର ସୁଦର୍ଶନ ॥୨୯
ତତକ୍ଷଣେ ନିଶାକର ପ୍ରାୟେ ।
ଶୀତଳ ଲାଗେ ବିପ୍ର ଦେହେ ॥୩୦
ଦୁର୍ବାସା ଜୀବନ ପାଇଲା ।
ସନ୍ତୋଷେ ଚକ୍ରକୁ ଚାହିଁଲା ॥୩୧
ଚକ୍ରକୁ ନମସ୍କାର କରି ।
ବୋଲେ ଦୁର୍ବାସା ବ୍ରହ୍ମଚାରୀ ॥୩୨

ଦୁର୍ବାସା ଉବାଚ

ଦେଖ ଅନନ୍ତଦାସଙ୍କର ।
ମହାମହିମା ଅଗୋଚର ॥୩୩
ଅପ୍ରାଧ କଲେ ହେଁ ସହନ୍ତି ।
ବିଷ୍ଣୁଙ୍କୁ ସର୍ବଦେହେ ଚିନ୍ତି ॥୩୪
ସାଧୁ କି ଅବା ନ ଉପେକ୍ଷେ ।
ହରି ସକଳ ଦେହେ ଦେଖେ ॥୩୫
ଯା' ନାମ ସୁମରଣ ମାତ୍ରେ ।
ଦୁରିତ ନରହଇ ଗାତ୍ରେ ॥୩୬
ସେ ତୀର୍ଥପଦ ଦାସ ଯେତେ ।
ଦୁଃଖ ନାଶନ୍ତି ଏ ଜଗତେ ॥୩୭
ଯେଣୁ ରଖିଲୁ ମୋ' ଜୀବନ ।
ତୋ'ର ମହିମା ଧନ୍ୟ ଧନ୍ୟ ॥୩୮
ଏମନ୍ତ ବିପ୍ର ମୁଖୁଁ ଶୁଣି ।
କପୋଳେ ଦେଇ ବେନିପାଣି ॥୩୯

ଅମ୍ବରୀଷ ଉବାଚ

ବୋଲେ ଦୁର୍ବାସା ମୁଖ ଚାହିଁ ।
ଭୋ ବିପ୍ର କର ମୋତେ ତ୍ରାହି ॥୪୦
ତୁ ଯେ ଅତିଥି ମୋ'ର କୁଳେ ।
ମିଳିଲୁ ପାରଣାର ବେଳେ ॥୪୧
ପାରଣା ଭୟେ ମୁଁ ଗୁପତେ ।
ଅପ୍ରାଧ କଲି ଦୁଷ୍ଟଚିତ୍ତେ ॥୪୨
ସେ ଅପରାଧ ମୋ ନ ଧର ।
ପାରଣା ମୋ'ର ଗୃହେ କର ॥୪୩
ଏମନ୍ତ ରାଜାର ବଚନେ ।
ପାରଣା କଲେ ତୋଷମନେ ॥୪୪
କଲ୍ୟାଣ କରି ଅମ୍ବରୀଷେ ।
ଅନେକ ମନର ହରଷେ ॥୪୫
ତତକ୍ଷଣେ ଶୂନ୍ୟମାର୍ଗେ ଗଲେ ।
ବ୍ରହ୍ମାର ଭୁବନେ ମିଳିଲେ ॥୪୬
କହିଲେ ଅମ୍ବରୀଷ ବାଣୀ ।
ବ୍ରହ୍ମା ସନ୍ତୋଷ ତାହା ଶୁଣି ॥୪୭
ରାଜାକୁ କଲେ ଧନ୍ୟଧନ୍ୟ ।
ଏବେ ହୋ ଶୁଣସି ରାଜନ ॥୪୮
ସେ ଅମ୍ବରୀଷ ଦଣ୍ଡଧାରୀ ।
ପୁତ୍ରକୁ ରାଜ୍ୟେ ରାଜା କରି ॥୪୯
ହରିଚରଣେ ମନ ଦେଇ ।
ପଶିଲା ଘୋର ବନେ ଯାଇ ॥୫୦
ପ୍ରାଣ ଛାଡ଼ିଲା ତପବଳେ ।
ପଶିଲା ବିଷ୍ଣୁର ମଣ୍ଡଳେ ॥୫୧
ସେ ଅମ୍ବରୀଷର ଆଖ୍ୟାନ ।
ଯେ କରେ ଶ୍ରବଣ କୀର୍ତ୍ତନ ॥୫୨
ହରିଚରଣ ମନେ ଚିନ୍ତି ।
ଅନ୍ତେ ସେ ଗୋବିନ୍ଦେ ପଶନ୍ତି ॥୫୩
ସୁଜନେ ଅମ୍ବରୀଷ ବାଣୀ ।
ସଂସାରୁ ତର ଏହା ଶୁଣି ॥୫୪
ଅମୃତ ରସମୟବାଣୀ ।
ଭକତ ମହିମା ବଖାଣି ॥୫୫
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୫୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ପଞ୍ଚମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଷଷ୍ଠ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
କହିବା ବଂଶାନୁଚରିତ ॥୧
ସେ ଅମ୍ବରୀଷ ପୁତ୍ର ତିନି ।
ବିରୂପ ଶମ୍ଭୁ କେତୁ ଘେନି ॥୨
ରୂପେ ଦିଶନ୍ତି ଅନୁପମ ।
ଅଶେଷ ଗୁଣେ ଗୁଣଧାମ ॥୩
ପୃଷଦଶ୍ୱ ବିରୂପ ପୁତ୍ର ।
ରଥୀତର ଯେ ତା'ର ସୁତ ॥୪
ସେ ରଥୀତର ଅପୁତ୍ରିକ ।
ଉପାୟ କଲା ସେ ଅନେକ ॥୫
କେବେହେଁ ପୁତ୍ର ତା' ନୋହିଲା ।
ଅଙ୍ଗିରା ତୁଲେ ବିଚାରିଲା ॥୬
ବୋଇଲା ମୋ'ର ପତ୍ନୀ ଗର୍ଭେ ।
ସନ୍ତତି କର ତୁମ୍ଭେ ଭାବେ ॥୭
କ୍ଷେତ୍ରଜ ପୁତ୍ର ହେଉ ମୋ'ର ।
ଅପୁତ୍ର ଦୁଃଖୁଁ କର ପାର ॥୮
ଏମନ୍ତ ରାଜାର ବଚନେ ।
ଅଙ୍ଗିରା କରି ଗର୍ଭାଧାନେ ॥୯
ଶତକୁମର ବ୍ରହ୍ମତେଜେ ।
ଜନ୍ମିଲେ ଅଙ୍ଗିରାର ବୀର୍ଯ୍ୟେ ॥୧୦
ସେ ପୁଣି ଅଙ୍ଗିର ହୋଇଲେ ।
କ୍ଷତ୍ରିୟ କ୍ଷେତ୍ର ଉପୁଜିଲେ ॥୧୧
ପୁଣି ମନୁର ଘ୍ରାଣୁଁ ଜାତ ।
ଇକ୍ଷ୍ୱାକୁ ନାମେ ହୋଏ ସୁତ ॥୧୨
ସେ ଇକ୍ଷ୍ୱାକୁର ବଂଶ ଯେତେ ।
କହିବା ଶୁଣ ଏକଚିତ୍ତେ ॥୧୩
ହୋଇଲେ ଶତେକ କୁମର ।
ତାହାଙ୍କ ମଧ୍ୟେ ବଂଶଧର ॥୧୪
ବିକୁକ୍ଷି ନିମି ଦଣ୍ଡ ନାମ ।
ଅତି ପ୍ରଶସ୍ତ ଗୁଣଗ୍ରାମ ॥୧୫
ଏ ତିନିପୁତ୍ର ଆଦି ଯେତେ ।
ରାଜା ହୋଇଲେ ଏ ଜଗତେ ॥୧୬
ପୂର୍ବେ ପଚିଶ ତା'ର ପୁତ୍ରେ ।
ରାଜା ହୋଇଲେ ଆର୍ଯ୍ୟାବର୍ତ୍ତେ ॥୧୭
ପଶ୍ଚିମେ ତା'ର ପଞ୍ଚବିଂଶେ ।
ଜ୍ୟେଷ୍ଠ ତିନିହେଁ ମଧ୍ୟଦେଶେ ॥୧୮
ଅପରେ ଦକ୍ଷିଣ ଉତ୍ତର ।
ଏବେ ହୋ ଶୁଣ ନୃପବର ॥୧୯
ଏମନ୍ତେ ପୁତ୍ରେ ପୁତ୍ରେ ତା'ର ।
ପୃଥିବୀ ଭାଙ୍ଗେ ନୃପବର ॥୨୦
ହେଲେ ସେ ନୃପତିକେଶରୀ ।
ତଦନ୍ତେ ଶୁଣ ଦଣ୍ଡଧାରୀ ॥୨୧
ଇକ୍ଷ୍ୱାକୁ ପିତୃଶ୍ରାଦ୍ଧ ଦିନେ ।
ବିକୁକ୍ଷି ରାଇ ସନ୍ନିଧାନେ ॥୨୨
ବୋଇଲେ ବନ ପଶୁଗଣ ।
ମୋ ପିତୃଶ୍ରାଦ୍ଧ ଅର୍ଥେ ଆଣ ॥୨୩
ତକ୍ଷଣେ ପିତା ଆଜ୍ଞା ପାଇ ।
ପଶିଲା ଘୋରବନେ ଯାଇ ॥୨୪
ଶବରଗଣ ତୁଲେ ଗଲା ।
ଅନେକ ପଶୁ ବଧକଲା ॥୨୫
ଶ୍ରାଦ୍ଧକୁ ଯୋଗ୍ୟ ଯେତେ ମାଂସ ।
ତାହାଙ୍କ ମଧ୍ୟେ ଏକ ଶଶ ॥୨୬
ଅରଣ୍ୟେ ପଥଶ୍ରମ ପାଇ ।
କ୍ଷୁଧାର୍ତ୍ତେ ଚଳି ନ ପାରଇ ॥୨୭
ଶଶା ଗୋଟିଏ ପତ୍ରେ ପୋଡ଼ି ।
ମାଂସ ଭକ୍ଷିଲା ଧର୍ମ ହୁଡ଼ି ॥୨୮
ଶେଷ ଯେତେକ ପଶୁ ଥିଲା ।
ପିତା ସମୀପେ ନେଇ ଦେଲା ॥୨୯
ସେ ପୁଣ ବଶିଷ୍ଠଙ୍କୁ ଆଣି ।
ଆନନ୍ଦେ ବୋଲେ ନୃପମଣି ॥୩୦
ଏ ପଶୁ ମାଂସେ ଶ୍ରାଦ୍ଧକର ।
ଏମନ୍ତ ଶୁଣି ମୁନିବର ॥୩୧
ବଶିଷ୍ଠ ରାଜା ବାକ୍ୟ ଶୁଣି ।
ସେ କଥା ଯୋଗବଳେ ଜାଣି ॥୩୨
ବୋଇଲେ ରାଜାମୁଖ ଚାହିଁ ।
ପ୍ରୋକ୍ଷଣେ ଯୋଗ୍ୟ ଏ ନୁହଇ ॥୩୩
ଦେବତା-ପିତୃଅର୍ଥେ ମାଂସ ।
କେମନ୍ତେ ଦେବି ଅବଶେଷ ॥୩୪
ତୋ'ର କୁମର କ୍ଷୁଧା ଅର୍ଥେ ।
ଶଶାଏ ଭକ୍ଷିଲା ବନସ୍ତେ ॥୩୫
ବନେ ଭକ୍ଷିଲା ଅଗ୍ରଭାଗ ।
ଏ ମାଂସ ଶ୍ରାଦ୍ଧେନୋହେ ଯୋଗ୍ୟ ॥୩୬
ଏମନ୍ତେ ଗୁରୁବାକ୍ୟ ଶୁଣି ।
କୋପେ ବୋଲଇ ନୃପମଣି ॥୩୭
ଏ ପୁତ୍ର ପାପିଷ୍ଠ-ପାମର ।
ଏହାକୁ ରାଜ୍ୟୁ ଦୂର କର ॥୩୮
ତକ୍ଷଣେ ରାଜାର ବଚନେ ।
ପୁରୁଁ ବାହାର କଲେ ଜନେ ॥୩୯
ସେ ପୁଣ ବିପ୍ରଙ୍କ ଚରଣେ ।
ସେବା କରଇ ଅନୁକ୍ଷଣେ ॥୪୦
ପିତାର ଅନ୍ତେ ରାଜା ହେଲା ।
ଶଶାଦ ନାମ ସେ ପାଇଲା ॥୪୧
ପୃଥିବୀ ଶାସନ ସେ କଲା ।
ଯଜ୍ଞେ ହରିଙ୍କୁ ଆରାଧିଲା ॥୪୨
ଶଶାଦ ପୁତ୍ର ପୁରଞ୍ଜୟ ।
ନାମ ତା' ହୋଏ ଇନ୍ଦ୍ରବାହ ॥୪୩
ପରୋପକାରେ ଧର୍ମ କଲା ।
କକୁସ୍ଥ ନାମ ସେ ବହିଲା ॥୪୪
ଏମନ୍ତେ ଶୁକବାକ୍ୟ ଶୁଣି ।
ବୋଲେ ପରୀକ୍ଷ ନୃପମଣି ॥୪୫
କକୁସ୍ଥ ନାମ ତା' କେମନ୍ତେ ।
ଏ କଥା କହ ମୁନି ମୋତେ ॥୪୬

ଶୁକ ଉବାଚ

ମୁନି ବୋଲନ୍ତି ଶୁଣ ରାୟେ ।
ଦେବେ ଯେ ଅସୁରଙ୍କ ଭୟେ ॥୪୭
ଦେବ ଦାନବ କୃତ ଯୁଗେ ।
ଯୁଦ୍ଧ ଆରମ୍ଭ କଲେ ରଙ୍ଗେ ॥୪୮
ଗୁରୁଙ୍କୁ ପୁଚ୍ଛିଲେ ଦୈବତେ ।
ସଂଗ୍ରାମେ ଜିଣିବୁ କେମନ୍ତେ ॥୪୯

Dr. Sudhanshu Sekhar Mishra

ବୋଲଇ ଅଙ୍ଗିରା କୁମର ।
ପୁରଞ୍ଜୟକୁ ଯୋଦ୍ଧା କର ॥୫୦
ତା'ର ନାରାଚେ ରିପୁଗଣେ ।
ବେଗେ ଭାଜିବେ ଘୋରରଣେ॥୫୧
ଶୁଣି ବିବୁଧେ ତୋଷ ହେଲେ ।
ପୁରଞ୍ଜୟକୁ ନିମନ୍ତ୍ରିଲେ ॥୫୨
ସେ ପୁଣି ଦେବବାକ୍ୟ ଶୁଣି ।
କପାଳେ ଦେଇ ବେନିପାଣି ॥୫୩
ବୋଲଇ ଇନ୍ଦ୍ର କନ୍ଧେ ବସି ।
ସଂଗ୍ରାମ କରିବି ସାହସି ॥୫୪
ନୋହିଲେ ଯୁଦ୍ଧ ନାହିଁ ମୋ'ର ।
ଏମନ୍ତ ଶୁଣି ତା' ଉତ୍ତର ॥୫୫
ହେଉ ବୋଇଲେ ସୁରଗଣେ ।
ଇନ୍ଦ୍ର ମିଳିଲେ ତତ୍‌କ୍ଷଣେ ॥୫୬
ସଂଗ୍ରାମେ ବୃଷରୂପ ହୋଇ ।
ପୁରଞ୍ଜୟ କନ୍ଧେ ଆରୋହି ॥୫୭
ସ୍ତୁତି କରନ୍ତି ଦେବଗଣେ ।
ସେ ପୁରଞ୍ଜୟ ଘୋରରଣେ ॥୫୮
ଅଭେଦ-ସେହ୍ନା ଦେହେ ଭରି ।
ଧନୁ-ନାରାଚ ହସ୍ତେ ଧରି ॥୫୯
ନିର୍ଭୟେ ଇନ୍ଦ୍ରକନ୍ଧେ ରହି ।
ତକ୍ଷଣେ ବିଷ୍ଣୁତେଜ ବହି ॥୬୦
ପଶ୍ଚିମ ଦିଗେ ବେଗେ ଗଲା ।
ଅସୁର ଭୁବନେ ମିଳିଲା ॥୬୧
ରୁନ୍ଧିଲା ଦେବ ଘେନି ସାଥେ ।
ପବନ ନ ବହଇ ପଥେ ॥୬୨
ଦେବ-ଦାନବ ଘୋରରଣ ।
ହୋଇଲା ଲୋମହରଷଣ ॥୬୩
ଅସୁରେ ନାନାଶସ୍ତ୍ର ଧରି ।
ଧାଇଁଲେ ଘୋରନାଦ କରି ॥୬୪
ତାହାର ବାଣ ଅଗ୍ନି ପ୍ରାୟେ ।
ପଡ଼ିଲା ଅସୁରଙ୍କ ଦେହେ ॥୬୫
ସମରେ ରହି ନ ପାରିଲେ ।
ପଳାଇ ନିଜ ପୁରେ ଗଲେ ॥୬୬
ଅସୁରବଳ ରଣେ ଜିଣି ।
ସକଳ ଧନରତ୍ନ ଆଣି ॥୬୭

ଇନ୍ଦ୍ରକୁ ଦେଇ ସବଧନ ।
ତୋଷିଲା ବିବୁଧଙ୍କ ମନ ॥୬୮
ଇନ୍ଦ୍ରାଦି ଦେବେ ବିଷ୍ଣୁ ବୋଲେ ।
କକୁତ୍ସ୍ଥ ନାମ ତା'କୁ ଦେଲେ ॥୬୯
ଏଣୁ ତା' ନାମ ଭୋ ରାଜନ ।
କହିଲୁ କଲୁ ଯେ ପ୍ରଶନ ॥୭୦
ତଦନ୍ତେ ଶୁଣ ଭୋ ରାଜନ ।
ବଂଶାନୁଚରିତ ବିଧାନ ॥୭୧
ଅନେନା ପୁରଞ୍ଜୟ ସୁତ ।
ପୃଥୁ ତାହାର ତହୁଁ ଜାତ ॥୭୨
ତା'ର ତନୟ ବିଶ୍ୱଗନ୍ଧି ।
ତା' ପୁତ୍ର ଚନ୍ଦ୍ର ନାମେ ସିଦ୍ଧି ॥୭୩
ତା' ସୁତ ଯୁବନାଶ୍ୱ ନାମ ।
ଶ୍ରାବସ୍ତ ତାହାର ନନ୍ଦନ ॥୭୪
ଶ୍ରାବସ୍ତୀପୁର ଯେ ନିର୍ମାଇ ।
ସପତଦ୍ୱୀପେ ରାଜା ହୋଇ ॥୭୫
ତା'ର କୁମର ବୃହଦଶ୍ୱ ।
ପବନୁଁ ବେଗ ଯାଇ ଅଶ୍ୱ ॥୭୬
ତା'ର ସୁତ କୁବଳୟାଶ୍ୱ ।
ଯେ ରାଜା ଉତଙ୍କେ ବିଶ୍ୱାସ ॥୭୭
ଏକ ବିଂଶ ସହସ୍ର ସୁତ ।
ତା'ଠାରୁ ହୋଇଲେ ସମ୍ଭୂତ ॥୭୮
ସେ ରାଜା ଉତଙ୍କର ହିତେ ।
ପୁତ୍ରଙ୍କୁ ଘେନିଣ ସଙ୍ଗତେ ॥୭୯
ସେ ଧୁନ୍ଧୁ ସଙ୍ଗେ ରଣ କରି ।
ରଣେ ତାହାର ପ୍ରାଣ ହରି ॥୮୦
ଧୁନ୍ଧୁ ଅସୁର ଯେଣୁ ବଧି ।
ତେଣୁ ଧୁନ୍ଧୁମାର ପ୍ରସିଦ୍ଧି ॥୮୧
ଧୁନ୍ଧୁ ମୁଖରୁ ଅଗ୍ନିଜ୍ୱାଳା ।
ପ୍ରଚଣ୍ଡ ଭାବେ ସେ ଜଳିଲା ॥୮୨
ସମସ୍ତେ ହେଲେ ଭସ୍ମୀଭୂତ ।
ରହିଲେ ମାତ୍ର ତିନିସୁତ ॥୮୩
ଦୃଢ଼ାଶ୍ୱ କପିଳାଶ୍ୱ ବେନି ।
ଭଦ୍ରାଶ୍ୱ ସହିତେ ସେ ତିନି ॥୮୪
ହର୍ଯ୍ୟଶ୍ୱ ଦୃଢ଼ାଶ୍ୱର ସୁତ ।
ତା' ତହୁଁ ନିକୁମ୍ଭ ସମ୍ଭୂତ ॥୮୫

ନିକୁମ୍ଭ ଠାରୁ ଯେ ଜନମ ।
ତାହାର ବହୁଳାଶ୍ୱ ନାମ ॥୮୬
କୃଶାଶ୍ୱ ନାମେ ତା'ର ସୁତ ।
ତା'ର ତନୟ ସେନଜିତ ॥୮୭
ତା' ସୁତ ଯବନାଶ୍ୱ ନାମେ ।
କେବେ ହେଁ ନରହିଲା ଗ୍ରାମେ॥୮୮
ଅପୁତ୍ର ପଣେ ଦୁଃଖମନେ ।
ପତ୍ନୀ ସମେତେ ଗଲା ବନେ ॥୮୯
ଶତେକ ପତ୍ନୀ ତା'ର ତୁଲେ ।
ଋଷିଙ୍କ ଆଶ୍ରମେ ମିଳିଲେ ॥୯୦
ଦେଖି ତାହାର ଶତେ ନାରୀ ।
ମୁନି ସକଳେ ଦୟାକରି ॥୯୧
ରାଜାର ପୁତ୍ର ଜନ୍ମ ଅର୍ଥେ ।
ଯଜ୍ଞ କରାଇଲେ ସମସ୍ତେ ॥୯୨
କଳସେ ତୀର୍ଥ ଜଳ ଭରି ।
ଗର୍ଭର ଅର୍ଥେ ମନ୍ତ୍ରି ବାରି ॥୯୩
ଯଜ୍ଞର ଶାଳେ ଘଟ ଥୋଇ ।
ସକଳେ ନିଦ୍ରାଗତେ ଶୋଇ ॥୯୪
ଏମନ୍ତେ ରାଜା ଯଜ୍ଞଶାଳେ ।
ଅତି ତୃଷିତ ଅନ୍ତରାଳେ ॥୯୫
ସହି ନ ପାରି ରାତ୍ର ଅନ୍ତେ ।
ଜଳ କଳସ ଘେନି ହସ୍ତେ ॥୯୬
ଦେଖିଲେ ସକଳେ ଅଜ୍ଞାନ ।
ତୃଷାର୍ତ୍ତେ କଲା ଜଳପାନ ॥୯୭
ଏମନ୍ତେ ପାହିଲା ରଜନୀ ।
ନିଦ୍ରା ତେଜିଲେ ସର୍ବମୁନି ॥୯୮
ଉଦୟ କାଳେ ମନ୍ତ୍ରସ୍ୱରେ ।
କୁମ୍ଭ ତୋଳିଲେ ବେନିକରେ ॥୯୯
ଦେଖିଲେ କୁମ୍ଭେ ଜଳ ନାହିଁ ।
ଚକିତେ ଚଉଦିଗେ ଚାହିଁ ॥୧୦୦
ବୋଲନ୍ତି ପାଇ ମନେ ଭ୍ରମ ।
କେ ପ୍ରାଣୀ କଲା ଏଡ଼େ କର୍ମ ॥୧୦୧
ମନ୍ତ୍ରିତ ପୁଂସବନ ବାରି ।
କେ ପାନ କଲା ତୃଷାଭରି ॥୧୦୨
ତକ୍ଷଣେ ବେନିକର ଯୋଡ଼ି ।
ମୁନିଙ୍କ ପାଦତଳେ ପଡ଼ି ॥୧୦୩

Dr. Sudhanshu Sekhar Mishra

ରାଜା ବୋଇଲା ମୁଁ ଅଜ୍ଞାନେ।
ତୃଷା ତୋଷିଲି ଜଳପାନେ ॥୧୦୪
ଶୁଣି ବ୍ରାହ୍ମଣେ କୋପବହି ।
ବୋଇଲେ ବିଷ୍ଣୁମାୟା ଏହି ॥୧୦୫
ପ୍ରାଣୀ ଯେ ଦଇବ ଅଧୀନ ।
ମାୟାର ବଳେ ହରେ ଜ୍ଞାନ॥୧୦୬
ବୋଇଲେ ରାଜାମୁଖ ଚାହିଁ ।
ଗର୍ଭ ଧଇଲୁ ଏବେ ତୁହି ॥୧୦୭
ଏବେ ତୋ' ଜୀବନ ସମ୍ଭାଳ ।
ଏମନ୍ତେ ଗଲା କେତେକାଳ॥୧୦୮
ଏମନ୍ତେ ପୁତ୍ର ଜନ୍ମକାଳେ ।
ରାଜା ଉଦର ବାହୁ ବଳେ ॥୧୦୯
ଦକ୍ଷିଣ କୁକ୍ଷି ବିଦାରିଲା ।
ତକ୍ଷଣେ ଭୂମିରେ ପଡ଼ିଲା ॥୧୧୦
ରାଜା ନମଲା ପୁଣ୍ୟବଳେ ।
ଉଭାରି ଦେଖନ୍ତି ସକଳେ ॥୧୧୧
ପୁତ୍ର ରୋଦଇ କ୍ଷୀର ଅର୍ଥେ ।
ତା' ଦେଖି ଇନ୍ଦ୍ର ଦୟାଚିତ୍ତେ ॥୧୧୨
ବୋଇଲେ ବିପ୍ରଙ୍କୁ ଅନାଇଁ ।
ରାଜାର ସ୍ତନଯୁଗ ନାହିଁ ॥୧୧୩
ଏ ପୁତ୍ର ଲୋଡୁଅଛି କ୍ଷୀର ।
ଏମନ୍ତ ବୋଲି ନିଜ କର ॥୧୧୪
ଅଙ୍ଗୁଳି ତା'ର ତୁଣ୍ଡେ ଦେଲା ।
ତକ୍ଷଣେ କ୍ଷୁଧା ତା' ହରିଲା ॥୧୧୫
ଇନ୍ଦ୍ର ବୋଲଇ ତା'କୁ ଚାହିଁ ।
ତୋହର ହୋଇଲି ମୁଁ ଧାଇ॥୧୧୬
ତୁ ଯେ ହୋଇଲୁ ବଳବନ୍ତ।
ଏଣୁ ତୋ' ନାମଟି ମାନ୍ଧାତା ॥୧୧୭
ସେ ପୁଣି ଚକ୍ରବର୍ତ୍ତୀ ହୋଇ।
ପାଳଇ ସପ୍ତଦ୍ୱୀପା ମହୀ ॥୧୧୮
ଇନ୍ଦ୍ର ତାହାକୁ ବର ଦେଲେ।
ଅଜୟ ହୁଅସି ବୋଇଲେ ॥୧୧୯
ସେ ପୁଣି ନିଜ ତେଜ ବଳେ।
ଅବନୀ ପାଳଇ ନିଶ୍ଚଳେ ॥୧୨୦
ତାହାର ତେଜେ ଦସ୍ୟୁଗଣ ।
ଭୟେ ପଳାନ୍ତି ଛାଡ଼ି ରଣ ॥୧୨୧

ଏଣୁ ସେ ନିଜ ତେଜ ଧାମ।
ପାଇଲା ତ୍ରସଦସ୍ୟୁ ନାମ ॥୧୨୨
ରାବଣ ଆଦି ଦସ୍ୟୁ ଯେତେ ।
ତ୍ରାସନ୍ତି ସେ ବସିଲେ ରଥେ॥୧୨୩
ଏମନ୍ତ ନାମ ଇନ୍ଦ୍ର ଦେଲା ।
ଅନେକ କାଳ ରାଜ୍ୟ କଲା ॥୧୨୪
ତା' ରିପୁ ନାହିଁ ଏ ଶୟଳେ।
ବଞ୍ଚିଲା ବିଷ୍ଣୁତେଜ ବଳେ ॥୧୨୫
ଅନେକ ମତେ ଯଜ୍ଞ କଲା।
ଦକ୍ଷିଣା ବିପ୍ରଗଣେ ଦେଲା ॥୧୨୬
ଯେ ହରି ସର୍ବ ଦେବମୟେ।
ଦେବେ ବସନ୍ତି ଯା'ର ଦେହେ ॥୧୨୭
ସେ ହରି ଯଜ୍ଞେ ତୋଷ କରି।
ସୁଖେ ପାଳିଲା ବସୁନ୍ଧରୀ ॥୧୨୮
ସୂର୍ଯ୍ୟର ତେଜ ଯେତେ ଦୂର।
ଯହିଁ ବା ଚନ୍ଦ୍ରମା ସମୀର ॥୧୨୯
ମାନ୍ଧାତା ତେତେଦୂର ରାଜା ।
ସର୍ବେ କରନ୍ତି ପାଦପୂଜା ॥୧୩୦
ସେ ପୁଣି ଶଶବିନ୍ଦୁ ପୁରେ ।
କନ୍ୟା ଲଭିଲା ସ୍ୱୟମ୍ବରେ ॥୧୩୧
ସେ କନ୍ୟା ଇନ୍ଦୁମତି ନାମ।
ରୂପରେ ଅଟେ ଅନୁପମ ॥୧୩୨
ତାହାର ଗର୍ଭେ ପୁତ୍ର ତିନି ।
ଜନ୍ମିଲେ ବିଷ୍ଣୁତେଜ ଘେନି ॥୧୩୩
ପୁରୁକୁସ୍ତ ଯେ ଅମ୍ବରୀଷ ।
ଏ ଆଦି ମୁଚୁକୁନ୍ଦ ଶେଷ ॥୧୩୪
ଏ ଅନ୍ତେ ପଞ୍ଚାଶ ଦୁହିତା ।
ଉତ୍ପତ୍ତି କଲେ ମାନ୍ଧାତା ॥୧୩୫
ସେ କନ୍ୟାଗଣ ବିଭାକାଳେ।
ସୌଭରିମୁନି ଯୋଗବଳେ ॥୧୩୬
ବିବାହ କଲେ କନ୍ୟାଗଣ ।
ସେ କଥା ଏକମନେ ଶୁଣ ॥୧୩୭
ସୌଭରିଋଷି ବୃନ୍ଦାବନେ ।
କାଳିନ୍ଦୀ ଜଳେ ଯୋଗଧ୍ୟାନେ॥୧୩୮
ତପ କରନ୍ତି ଦୃଢ଼ଚିତ୍ତେ ।
ଏମନ୍ତେ କିଛିକାଳ ଅନ୍ତେ ॥୧୩୯

ସମାଧି ଭାଜିଲା ଚଞ୍ଚଳେ ।
ସ୍ଥିରେ ଚାହିଁଲେ ନଦୀଜଳେ॥୧୪୦
ଦେଖିଲେ ମୀନଗଣ ମଧ୍ୟେ ।
ରୋହିତ ଖେଳଇ ଆନନ୍ଦେ ॥୧୪୧
ବାଳକ ମୀନ ତା' ଶରୀରେ।
କ୍ରୀଡ଼ନ୍ତି ପୁଚ୍ଛ ପୃଷ୍ଠ ଶିରେ ॥୧୪୨
ଏମନ୍ତ ହୋଇ ପ୍ରତିଦିନେ ।
ଖେଳନ୍ତି ମୁନି ସନ୍ନିଧାନେ ॥୧୪୩
ସୌଭରି ମୁନି ତାହା ଚାହିଁ ।
ଲାଳସଚିତ୍ତେ ବିଚାରଇ ॥୧୪୪
ଦେଖ ଏ ରୋହିତର ଭାଗ୍ୟ ।
କୁଟୁମ୍ବ ମଧ୍ୟେ ସୁଖ ଭୋଗ ॥୧୪୫
ମୁଁ ଏବେ କରି ଗୃହାଶ୍ରମ ।
ସାଧିବି ଯଥା କୁଳ ଧର୍ମ ॥୧୪୬
ଏତେ ବିଚାରି ତପ ଛାଡ଼ି ।
ଗୃହ କରଣେ ଚିତ୍ତ ବଢ଼ି ॥୧୪୭
ମାର୍ଗେ ଚଳନ୍ତି ସେ ବିଚାରି।
ବିବାହ ଅର୍ଥେ ବ୍ରହ୍ମଚାରୀ ॥୧୪୮
ଗୃହସ୍ଥ ନୋହେ ସେହୁ ଭଲେ।
ଦାରା ପରିଗ୍ରହ ନ କଲେ ॥୧୪୯
ଏତେ ବିଚାରି ଦୃଢ଼ଚିତ୍ତେ ।
ମିଳିଲେ ନୃପତି ଅଗ୍ରତେ ॥୧୫୦
ମୁନି ଆଗମ ରାଜା ଦେଖି ।
ଉଠିଲେ ଆସନ ଉପେକ୍ଷି ॥୧୫୧
ଅତିଥିମତେ ପୂଜା କଲେ ।
ଆସନେ ନେଇ ବସାଇଲେ॥୧୫୨
ଅନେକ ଗଉରବ କରି ।
ତା' ଦେଖି ମୁନି ସଉଭରି ॥୧୫୩
ବୋଇଲେ ରାଜା ମୁଖ ଚାହିଁ।
ବିଭା କରାଅ ମୋତେ ତୁହି॥୧୫୪
ଗୃହେ କହିଲା ମୋର ମନ।
କନ୍ୟାଏ ଦିଅ ମୋତେ ଦାନ॥୧୫୫
ମୋହର ସନ୍ତତି ହୋଇଲେ ।
ସ୍ୱଧର୍ମ ରଖିବୁ ତୁ ଭଲେ ॥୧୫୬
ଏମନ୍ତେ ମୁନି ମୁଖୁଁ ଶୁଣି ।
ରାଜା ବିଚାରେ ମନେ ଗୁଣି ॥୧୫୭

Dr. Sudhanshu Sekhar Mishra

ଏ ଅତିବୃଦ୍ଧ ଜରଜର ।
ବାତେ କମ୍ପଇ ତା' ଶରୀର॥୧୫୮
ବୃଦ୍ଧଙ୍କ ମଧ୍ୟେ ଅତିବୃଦ୍ଧ ।
ଗୃହ କରଣେ କଲେ ସଧ ॥୧୫୯
ମୋ'ର ଦୁହିତା ଅତି ସୁଖୀ ।
ଏହାକୁ ଦେଲେ ହେବ ଦୁଃଖୀ ॥୧୬୦
ନ ଦେଲେ ମୋ'ର ଭଲ ନାହିଁ ।
ଏତେ ବିଚାରି ମୁନି ଚାହିଁ ॥୧୬୧
ବୋଲଇ ଶିରେ ଦେଇ କର ।
ଭୋ ମୁନି ଶୁଣ ମୋ' ଉତ୍ତର ॥୧୬୨
ପଞ୍ଚାଶ କନ୍ୟା ଅଛି ମୋ'ର ।
ଅନ୍ତଃପୁରକୁ ବିଜେ କର ॥୧୬୩
ଯେ କନ୍ୟା ତୁମ୍ଭଙ୍କୁ ବରିବ ।
ସୁମନେ କରି ପ୍ରୀତିଭାବ ॥୧୬୪
ସେ କନ୍ୟା ନିଶ୍ଚେ ଦେବି ମୁହିଁ ।
ଏମନ୍ତେ ରାଜା ସତ୍ୟ ପାଇଁ ॥୧୬୫
ମୁନି ଉଠିଲେ ତୋଷ ହୋଇ ।
ତକ୍ଷଣେ ଅନ୍ତଃପୁରେ ଯାଇ ॥୧୬୬
ଦ୍ୱାରପାଳକୁ ରାଜା ଚାହିଁ ।
ବୋଇଲା ଘେନିଯାଅ ତୁହି ॥୧୬୭
ଯେ କନ୍ୟା ବରିବ ଏ ବର ।
ଦେବଇଁ ସତ୍ୟ ଏ ମୋହର॥୧୬୮
ଦ୍ୱାରପାଳର ହସ୍ତ ଧରି ।
ପୁରେ ପଶିଲେ ସଉଭରି ॥୧୬୯
ମିଳିଲେ କନ୍ୟାଙ୍କ ମନ୍ଦିରେ ।
ମାୟା-ମୋହନ-କଳେବରେ ॥୧୭୦
ରୂପେ କନ୍ଦର୍ପ ରୂପ ଗଞ୍ଜେ ।
ଜଗମୋହନ ତେଜ ପୁଞ୍ଜେ ॥୧୭୧
କନ୍ୟାଙ୍କୁ ଚାହିଁ ଦ୍ୱାରପାଳ ।
ଅଳପ ନମିଲା କପୋଳ ॥୧୭୨
ବୋଲଇ କନ୍ୟାଙ୍କୁ ଅନାଇଁ ।
ମୁଁ ତୁମ୍ଭ ପିତା ଆଜ୍ଞା ପାଇ ॥୧୭୩
ସଙ୍ଗତେ ଆଣିଅଛି ବର ।
ଯାହାର ଇଚ୍ଛା ତୁମେ ବର ॥୧୭୪
ଏକଇ କନ୍ୟା ଦେବେ ଦାନ ।
ଅଧିକେ ନାହିଁ ପ୍ରୟୋଜନ ॥୧୭୫

କନ୍ୟାଏ ତା'ର ରୂପ ଚାହିଁ ।
ନୟନ ପିଛା ନଚଳଇ ॥୧୭୬
ସର୍ବେ ଇଛନ୍ତି ତା'ର ସଙ୍ଗ ।
ଅନଳେ ଯେସନେ ପତଙ୍ଗ ॥୧୭୭
ଏକ ଆରେକ ଆଗ ହୋଇ ।
ବୋଲନ୍ତି ମୋ'ର ବର ଏହି ॥୧୭୮
ମୁହିଁ ବରିଲି ଆଗେ ବର ।
ନିଶ୍ଚୟେ ବର ଏ ମୋହର ॥୧୭୯
ଏମନ୍ତେ ଏକୁ ଆରେ ବାଦେ ।
ମୁନିଙ୍କି ବରିଲେ ଆନନ୍ଦେ ॥୧୮୦
ତକ୍ଷଣେ ଦ୍ୱାରପାଳ ଗଲା ।
ନୃପତି ଆଗେ ଜଣାଇଲା ॥୧୮୧
ବୋଲଇ ବିଧାତାର ମାୟା ।
କେ ଆନ କରେ ପ୍ରଭୁ ଏହା॥୧୮୨
ଦଇବବଳ ଆକର୍ଷଣେ ।
ସର୍ବେ ବରିଲେ ବରପଣେ ॥୧୮୩
ଶୁଣି ତାହାର ମୁଖୁଁ ବାଣୀ ।
ସଂଭ୍ରମଚିରେ ନୃପମଣି ॥୧୮୪
ଆନନ୍ଦେ କନ୍ୟାଦାନ କଲା ।
ଅନେକ ଯଉତୁକ ଦେଲା ॥୧୮୫
ପଞ୍ଚାଶ କନ୍ୟା ବିଭା କରି ।
ପୁରୁଁ ବାହାର ସଉଭରି ॥୧୮୬
ସମ୍ପଦ ସିଦ୍ଧି ଯୋଗବଳେ ।
ଗୃହସ୍ଥ-ଆଶ୍ରମ ନିଷ୍ଠଳେ ॥୧୮୭
ନାନାପ୍ରକାରେ ଭୋଗକଲେ ।
ଅନେକ ପୁତ୍ର ନାତି ତୁଲେ ॥୧୮୮
ଯେ ଭୋଗକଲେ ତା'ଙ୍କ ମନେ ।
ତକ୍ଷଣେ ମିଳେ ସନ୍ନିଧାନେ॥୧୮୯
ଦିଗପାଳଙ୍କ ଭୋଗ ଆଦି ।
ଅତୁଲ୍ୟ ଅମୂଲ୍ୟ ପ୍ରସିଦ୍ଧି ॥୧୯୦
ଏମନ୍ତ ଭୋଗ ଅନୁଦିନେ ।
ବିହାର ପୁଷ୍ପିତ କାନନେ ॥୧୯୧
ଏମନ୍ତେ କିଛିକାଳ ଗଲା ।
ବୈରାଗ୍ୟ ମନେ ଉପୁଜିଲା ॥୧୯୨
ନିଜ କପାଳେ ହସ୍ତ ମାରି ।
ତାପେ ବୋଲନ୍ତି ସଉଭରି ॥୧୯୩

ଦଇବ ବଳ ଦେଖ ମୋତେ ।
ତପ ମୁଁ କଲି ମୋକ୍ଷ ଅର୍ଥେ ॥୧୯୪
ଜଳେ ଅନାଇଁ ମୀନବଂଶେ ।
ଜ୍ଞାନ ହାରିଲି ସଙ୍ଗଦୋଷେ ॥୧୯୫
ଏକ ମୁଁ ଭଜିଲି ଅନେକ ।
ନିଶ୍ଚୟେ ପଡ଼ିବି ନରକ ॥୧୯୬
ଏମନ୍ତ ଭାଳି ସେ ଏକାନ୍ତେ ।
ତକ୍ଷଣେ ପଶିଲେ ବନସ୍ତେ ॥୧୯୭
ପତ୍ନୀ ସମେତେ ତପ ଦାହି ।
ଅନ୍ତେ ଲଭିଲେ ଭାବଗ୍ରାହୀ ॥୧୯୮
ସୁଜନେ ଶୁଣ ଏକଚିତ୍ତେ ।
ଯେ ଧର୍ମ ବଂଶାନୁଚରିତେ ॥୧୯୯
କହିଲି ଆତ୍ମାହିତ ବାଣୀ ।
ଯେଣେ ଭକତି ତତ୍ତ୍ୱ ଜାଣି ॥୨୦୦
ସଂସାର ଅନ୍ଧକୂପେ ଥାଇ ।
ଏ ବିନୁ ଆନଗତି ନାହିଁ ॥୨୦୧
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୨୦୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଷଷ୍ଠୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ତୁ ନରେଶ ।
ମାନ୍ଧାତା ପୁତ୍ର ଅମ୍ବରୀଷ ॥୧
ପିତାମହଙ୍କୁ ସେବା କଲା ।
ସେ ଫଳେ ସୁପୁତ୍ର ଲଭିଲା ॥୨
ତା' ସୁତ ଯୁବନାଶ୍ୱ ହୋଇ ।
ପାଳଇ ସପ୍ତଦ୍ୱୀପା ମହୀ ॥୩
ହାରୀତ ତାହାର କୁମର ।
ମାନ୍ଧାତା ବଂଶେ ସେ ପ୍ରବର ॥୪
ନାଗେନ୍ଦ୍ର ବାକ୍ୟେ ନାଗଯୂଥେ ।
ଗନ୍ଧର୍ବ ବଳକୁ ହାରନ୍ତେ ॥୫
ସେ ନାଗେ ଆସି ରାତ୍ର କାଳେ ।
ପୁରୁକୁତ୍ସକୁ ଘେନିଗଲେ ॥୬
ସକଳ ଭ୍ରାତୃଗଣ ଥାଇ ।
ନର୍ମଦା କନ୍ୟା ତା'କୁ ଦେଇ ॥୭
ପାତାଳ ପୁରେ ଘେନିଗଲେ ।
ଗନ୍ଧର୍ବବଳେ ଯୁଝାଇଲେ ॥୮
ସେ ପୁଣି ବିଷ୍ଣୁତେଜେ ବଳୀ ।
ଗନ୍ଧର୍ବବଳ ନାଶ କରି ॥୯
ମିଳି ସକଳ ନାଗବଳେ ।
ସନ୍ତୋଷ ବର ତା'କୁ ଦେଲେ ॥୧୦
ଯେ ପ୍ରାଣୀ ଶୟନର କାଳେ ।
ନର୍ମଦା ନାମ ତିନି ବେଳେ ॥୧୧
ରାତ୍ର ଦିବସ ସନ୍ଧ୍ୟା ସ୍ମରେ ।
ସର୍ପଭୟରୁ ସେ ନିସ୍ତରେ ॥୧୨
ଏବେ ହୋ ପୁରୁକୁତ୍ସ ବଂଶେ ।
କହିବା ଶୁଣ ତୁ ହରଷେ ॥୧୩
ସର୍ବସମ୍ପଦ ଗୁଣଗ୍ରାମ ।
ତା' ସୁତ ତ୍ରସଦ୍ଦସ୍ୟୁ ନାମ ॥୧୪
ସେ ବିଷ୍ଣୁତେଜେ ଅନର୍ଗଳା ।
ଯେ ଅନରଣ୍ୟ ଜାତ ହେଲା ॥୧୫
ହର୍ଯଶ୍ୱ ତାହାର ନନ୍ଦନ ।
ତହୁଁ ପ୍ରାରୁଣ ତ୍ରିବନ୍ଧନ ॥୧୬

ତା'ର ତନୟ ସତ୍ୟବ୍ରତ ।
ତ୍ରିଶଙ୍କୁ ନାମେ ଯେ ବିଦିତ ॥୧୭
ପିତାଙ୍କ ଶାପ ସେହୁ ଘେନି ।
ଲଭିଲା ଚଣ୍ଡାଳର ଯୋନି ॥୧୮
ବଶିଷ୍ଠ ଶାପ ମହାଘୋର ।
କୌଶିକ ତେଜେ ହେଲା ପାର ॥୧୯
ଶରୀର ଘେନି ସ୍ୱର୍ଗେ ଗଲା ।
ଉତ୍ତର ଆକାଶେ ବସିଲା ॥୨୦
ଜଗତେ ରହିଲା ତା' ଯଶ ।
ଅଦ୍ୟାପି ରାତ୍ରେ ହୋଏ ଦୃଶ୍ୟ ॥୨୧
ଦେବେ ତାହାକୁ କୋପ କଲେ ।
ଭୂମିରେ ପଡ଼ ତୁ ବୋଇଲେ ॥୨୨
ତକ୍ଷଣେ ଆଧୋମୁଖ ହୋଇ ।
ପଡ଼ନ୍ତେ କୌଶିକ ଅନାଇଁ ॥୨୩
ସ୍ତମ୍ଭନ କଲେ ବେଦମନ୍ତ୍ରେ ।
ପୁଣି ବସିଲା ନିଜ କ୍ଷେତ୍ରେ ॥୨୪
ତାହାର ସୁତ ହରିଶ୍ଚନ୍ଦ୍ର ।
ସପତ ଦ୍ୱୀପେ ସେ ନରେନ୍ଦ୍ର ॥୨୫
ତାହାର ଅର୍ଥେ ଅନ୍ୟୋଅନି ।
ବଶିଷ୍ଠ ବିଶ୍ୱାମିତ୍ର ବେନି ॥୨୬
ବହୁ ବରଷ ଯୁଦ୍ଧ କଲେ ।
ପକ୍ଷୀଙ୍କ ପ୍ରାୟ ରୂପ ହେଲେ ॥୨୭
ସେ ପୁଣି ଅପୁତ୍ରିକ ହୋଇ ।
ନାରଦ ମୁନିଙ୍କି ଅନାଇଁ ॥୨୮
ସନ୍ତତି ଅର୍ଥେ ପ୍ରଶ୍ନକଲା ।
ବିକଳେ ତ୍ରିଶଙ୍କୁର ବଳା ॥୨୯
ନାରଦ ମୁନି ତା' ପ୍ରସ୍ତାବେ ।
କହିଲେ ଆତ୍ମା ପ୍ରିୟ ଭାବେ ॥୩୦
ତୁ ଯାଇ ବରୁଣ-ଚରଣେ ।
ବିଶ୍ୱାସେ ପଶ ତା' ଶରଣେ ॥୩୧
ସେ ତୋତେ ପ୍ରସନ୍ନ ହୋଇଲେ ।
ସନ୍ତତି ଲଭିବୁ ତୁ ଭଲେ ॥୩୨
ଏମନ୍ତେ ନାରଦ ବଚନେ ।
ମିଳିଲେ ବରୁଣ ଭୁବନେ ॥୩୩

ବରୁଣ ଚରଣରେ ପଡ଼ି ।
ରାଜନ କହେ କରଯୋଡ଼ି ॥୩୪
ହେ ପ୍ରଭୁ କର ଅନୁଗ୍ରହ ।
ମୋହର ହେଉ ଯେ ତନୟ ॥୩୫
ପୁତ୍ର ଉପନ୍ନ ହେଲେ ମୋର ।
ଯଜ୍ଞେ ମୁଁ ଦେବି ତା'ର ଶିର ॥୩୬
ତା'ର ବଚନେ ତୁଷ୍ଟ ହେଲେ ।
ବରୁଣ ତୋଷେ ବର ଦେଲେ ॥୩୭
ବରୁଣ ବରେ ପୁତ୍ର ଜାତ ।
ନାମ ତା' ହୋଇଲା ରୋହିତ ॥୩୮
ଦେଖିଣ ପୁତ୍ରର ଜନମ ।
ରାଜାଙ୍କୁ କହନ୍ତି ବରୁଣ ॥୩୯
ହେ ନୃପ ମୋର ଯଜ୍ଞ କର ।
ଏବେ ତୋ' ହୋଇଲା କୁମର ॥୪୦
ବରୁଣ ବାକ୍ୟ ଶୁଣି କର୍ଣ୍ଣେ ।
ବିଚାରେ ହରିଶ୍ଚନ୍ଦ୍ର ମନେ ॥୪୧
ଏ ପୁତ୍ର ଅପବିତ୍ର ଶିଶୁ ।
ଯାଗେ କି ରୂପେ ହେବ ପଶୁ ॥୪୨
ଏହା ବିଚାରି ନରପତି ।
ବରୁଣେ କରଇ ବିନତି ॥୪୩
ଶୁଣିମା ହେଉ ପାଶହସ୍ତ ।
ଏ ପୁତ୍ର ମୋ'ର ଅପବିତ୍ର ॥୪୪
ମନୁଷ୍ୟ ପଶୁ ଭିଆଇଲେ ।
ଯଜ୍ଞ ମୁଁ କରିବଇଁ ଭଲେ ॥୪୫
ନିର୍ଦ୍ଦନ୍ତ ପଶୁ ଅସଂସ୍କାର ।
ଦନ୍ତ ନିର୍ଗମ ନାହିଁ ତା'ର ॥୪୬
ଦନ୍ତ ନ ଥିଲେ ଯଜ୍ଞ କାହିଁ ।
ଏମନ୍ତେ ଦିନାକେତେ ରହି ॥୪୭
ତୁଣ୍ଡେ ଜନ୍ମିଲା ତା'ର ଦନ୍ତ ।
ରାଜାଙ୍କୁ ବୋଲେ ପାଶହସ୍ତ ॥୪୮
ଦନ୍ତ ହୋଇଲା ତୋ' କୁମର ।
ତା' ମାଂସେ ମୋର ଯଜ୍ଞକର ॥୪୯
ବରୁଣ ମୁଖୁଁ ଏହା ଶୁଣି ।
ସେ ହରିଶ୍ଚନ୍ଦ୍ର ମନେ ଗୁଣି ॥୫୦

Dr. Sudhanshu Sekhar Mishra

ଦନ୍ତ ସମ୍ପୂର୍ଣ୍ଣେ ପଶୁ ଶୁଚି ।
ବରୁଣ ତାହା ଦେଖି ଘୁଞ୍ଚି ॥୫୧
ପୁଣି କେତେହେଁ ଦିନ ଗଲା ।
ସମ୍ପୂର୍ଣ୍ଣେ ଦନ୍ତ ଉପୁଜିଲା ॥୫୨
ଏବେ କି ବିଳମ୍ବ ତୋହର ।
ବରୁଣ ବୋଲେ ଯଜ୍ଞକର ॥୫୩
ବରୁଣେ ଚାହିଁ ରାଜା କହେ ।
ପ୍ରଥମ ଦନ୍ତ ଶୁଦ୍ଧ ନୋହେ ॥୫୪
ଏ ଦନ୍ତ ପଡ଼ି ଯେବେ ଉଠେ ।
ତେବେ ସେ ଯଜ୍ଞ ପଶୁ ଘଟେ ॥୫୫
ଏମନ୍ତେ କିଛି କାଳ ଅନ୍ତେ ।
ତୁଣ୍ଡୁ ପଡ଼ିଲେ ସର୍ବଦନ୍ତେ ॥୫୬
ପୁଣି ଉଠିଲେ ଏକ ତୁଲେ ।
ବରୁଣ ରାଜା ଚାହିଁ ବୋଲେ ॥୫୭
ଦନ୍ତ ହୋଇଲା ପୁନର୍ବାର ।
ଭୋ ରାଜା ଏବେ ଯଜ୍ଞକର ॥୫୮
ତା' ଶୁଣି ବୋଲେ ନୃପମଣି ।
ଏ ନୋହେ କୁଳଧର୍ମ ବାଣୀ ॥୫୯
କ୍ଷତ୍ରିୟ ବଂଶେ ହୋଇ ଜାତ ।
ଯାବତ ନୁହଁଇ ସମର୍ଥ ॥୬୦
ତାବତ୍ ମାଂସ ଶୁଦ୍ଧ ନୋହେ ।
ଏମନ୍ତ ବୋଲେ ପୁତ୍ର ସ୍ନେହେ ॥୬୧
ବରୁଣ ତା'ର ବାକ୍ୟ ମାନି ।
କିଛି ନ କହି ହେଲେ ତୁନି ॥୬୨
ଏମନ୍ତେ କାଳ ବଞ୍ଚାଇଲା ।
ତା' ଜାଣି ପୁତ୍ର ବିଚାରିଲା ॥୬୩
ପିତା ଯେ କରିଛନ୍ତି ସତ୍ୟ ।
ଅବଶ୍ୟ ଯଜ୍ଞେ ହେବି ହତ ॥୬୪
ପ୍ରାଣର ରକ୍ଷା ଚିନ୍ତା କଲା ।
ତକ୍ଷଣେ ଗ୍ରାମ ଉପେକ୍ଷିଲା ॥୬୫
ଧନୁ-କମାଣ ଘେନି କରେ ।
ପଶିଲା-ଗହନ ବନରେ ॥୬୬
ବନେ ବୁଲନ୍ତେ ଧର୍ମ ଗୁଣି ।
ଶୁଣିଲା ଅନ୍ତରୀକ୍ଷ ବାଣୀ ॥୬୭
ବରୁଣ ପିତା ବନ୍ଦି କଲା ।
ଯାବତ ଯଜ୍ଞ ନ ପାଇଲା ॥୬୮

ତେଣୁ ଉଦରେ ରୋଗ ଜାତ ।
ବରୁଣ ଶାପେ ହୋଇ ଗ୍ରସ୍ତ ॥୬୯
ଶୁଣି ରୋହିତ ଶୋକାକୁଳେ ।
ଗ୍ରାମକୁ ଆସିବାର ବେଳେ ॥୭୦
ଇନ୍ଦ୍ର ମିଳିଲା ଆସି ପଥେ ।
ବୋଲଇ ରୋହିତ ଅଗ୍ରତେ ॥୭୧
ଯଜ୍ଞ ନ କଲା ତୋ'ର ତାତ ।
କୋପେ ବରୁଣ କଲାଗ୍ରସ୍ତ ॥୭୨
ତୋତେ ଗ୍ରାସିବ କୋପ ବହି ।
ଏବେ ଅରଣ୍ୟେ ଥାଅ ତୁହି ॥୭୩
ଧର୍ମକୁ ଯେବେ ତୋ'ର ମନ ।
ଧରଣୀ କର ପର୍ଯ୍ୟଟନ ॥୭୪
ଅନେକ ପୁଣ୍ୟତୀର୍ଥ କର ।
ଧର୍ମେ ବିଶ୍ୱାସ ଯେବେ ତୋ'ର ॥୭୫
ଏମନ୍ତେ ଇନ୍ଦ୍ରର ବଚନେ ।
ରୋହିତ ତୀର୍ଥ କରେ ବନେ ॥୭୬
ପୁଣି ଗ୍ରାମକୁ ଇଚ୍ଛାକରେ ।
ଆସନ୍ତେ ଇନ୍ଦ୍ର ତା' ନିବାରେ ॥୭୭
ଏକ ଦ୍ୱିତୀୟ ତ୍ରି ଚତୁର୍ଥେ ।
ପଞ୍ଚମ ବର୍ଷେ ତା'କୁ ପଥେ ॥୭୮
ବୃଦ୍ଧ ବ୍ରାହ୍ମଣ ରୂପ ଧରି ।
ଗ୍ରାମ ଗମନେ ବିଘ୍ନ କରି ॥୭୯
ଷଡ଼ବରଷ ବନେ ଥିଲା ।
ଅନେକ ତୀର୍ଥ ସେ ଭ୍ରମିଲା ॥୮୦
ସପ୍ତବରଷେ ନିଜ ଗ୍ରାମେ ।
ମିଳିଲା ଯାଇ ତୀର୍ଥାଶ୍ରମେ ॥୮୧
ଶୁଣିଲା ଅଜୀଗର୍ତ୍ତ ମୁନି ।
ବିକିବା ଅର୍ଥେ ପୁତ୍ର ତିନି ॥୮୨
ତାହାଙ୍କ ପାଶେ ସେ ମିଳିଲା ।
ମଧ୍ୟମ ପୁତ୍ରକୁ କିଣିଲା ॥୮୩
ସେ ପୁତ୍ର ଶୁନଃଶେପ୍ ନାମ ।
ସକଳ ଗୁଣେ ଗୁଣଧାମ ॥୮୪
ପିତାର ଅଗ୍ରେ ନେଇ ଦେଲା ।
ତା' ଦେଖି ବରୁଣ ଛାଡ଼ିଲା ॥୮୫
ସେ ହରିଶ୍ଚନ୍ଦ୍ର ଆସି ପୁରେ ।
ଯଜ୍ଞ ଆରମ୍ଭିଲେ ସମ୍ଭାରେ ॥୮୬

ପୁରୁଷମେଧ ଯଜ୍ଞ ମତେ ।
ବିଷ୍ଣୁଙ୍କୁ ପୂଜି ବେଦପଥେ ॥୮୭
ଆଚାର୍ଯ୍ୟ ବିଶ୍ୱାମିତ୍ର କରି ।
ଜମଦଗ୍ନିଙ୍କୁ ବ୍ରହ୍ମା ବରି ॥୮୮
ବଶିଷ୍ଠ ସାମଗାନେ ବରି ।
ସମିଧ ହୋତା ତା'ଙ୍କୁ କରି ॥୮୯
ବରୁଣ ଅର୍ଥେ ଯଜ୍ଞ କଲା ।
ସକଳ ଦେବଙ୍କୁ ତୋଷିଲା ॥୯୦
ସନ୍ତୋଷ ହୋଇ ସୁରନାଥ ।
ଦେଲେ ସୁବର୍ଣ୍ଣମୟ ରଥ ॥୯୧
ଶୁନଃଶେଫର କଥା ଯେତେ ।
ପଛେ କହିବା ତୋ' ଅଗ୍ରତେ ॥୯୨
ଏମନ୍ତେ ମହାଯଜ୍ଞ ଅନ୍ତେ ।
ଦକ୍ଷିଣା ଦେଲା ବିଧିମତେ ॥୯୩
ବିଶ୍ୱାମିତ୍ରଙ୍କୁ ଭୂମି ଦେଲା ।
ସୁବର୍ଣ୍ଣ ରଥେ ବିଜେ କଲା ॥୯୪
ରାଜାର ସତ୍ୟବ୍ରତ ଚାହିଁ ।
ସନ୍ତୋଷ ବିଶ୍ୱାମିତ୍ର ହୋଇ ॥୯୫
ନିଷ୍କଳ ଗତି ଶୂନ୍ୟ ପଥେ ।
ନିଜ ଜନଙ୍କୁ ଘେନି ସାଥେ ॥୯୬
ଯେ ସ୍ଥାନେ ମନ ତା'ର ଧରେ ।
ଇଚ୍ଛାୟେ ଭ୍ରମଇ ଅମ୍ବରେ ॥୯୭
ତା'ର ଭକତି ଭାବ ଘେନି ।
ସନ୍ତୋଷେ ବିଶ୍ୱାମିତ୍ର ମୁନି ॥୯୮
ପରମ ଜ୍ଞାନ ତାକୁ ଦେଲେ ।
ଆକାଶେ ଥାଅ ତୁ ବୋଇଲେ ॥୯୯
ଆକାଶେ ଥାଅ ଦେବ ପ୍ରାୟୋ
ଅନ୍ତେ ପଶିବୁ ବିଷ୍ଣୁ ଦେହେ ॥୧୦୦
ଭାଷା ପ୍ରବନ୍ଧେ ହରିବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୦୧
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୦୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ସପ୍ତମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଅଷ୍ଟମ ଅଧ୍ୟାୟ

### ଶୁକ ଉବାଚ

ବୋଲନ୍ତି ଶୁକ ବ୍ରହ୍ମବେତ୍ତା ।
ଶୁଣ ରାଜନ ଶୁଦ୍ଧଚେତା ॥୧
ହରିତ ରୋହିତର ସୁତ ।
ଚମ୍ପ ତାହାର ତହୁଁ ଜାତ ॥୨
ଗ୍ରାମ ବସାଇ ନିଜ ନାମେ ।
ରହିଲା ଚମ୍ପାବତୀ ଗ୍ରାମେ ॥୩
ସୁଦେବ ତା'ର ସୁତ ହୋଏ ।
ବିଜୟ ତାହାର ତନୟେ ॥୪
ବୃକ ଯେ ତାହାର ସନ୍ତତି ।
ସ୍ୱଭାବେ ଅତି ଶୁଦ୍ଧମତି ॥୫
ବାହୁକ ତାହାର ନନ୍ଦନ ।
ତା' କଥା ଶୁଣ ହେ ରାଜନ ॥୬
ଶତ୍ରୁ ପୀଡ଼ିତ ବୃଦ୍ଧପଣେ ।
ଭୟେ ପଶିଲା ଘୋରବନେ ॥୭
ପତ୍ନୀ ସହିତେ ପଳାଇଲା ।
ଔର୍ବଙ୍କ ଆଶ୍ରମେ ମିଳିଲା ॥୮
ନମିଲା ମୁନିଙ୍କ ଚରଣେ ।
ବୃଦ୍ଧ ଶରୀରେ ଘୋରବନେ ॥୯
ସଭୟେ ଛାଡ଼ିଲା ଜୀବନ ।
ମୁନି ହୋଇଲେ ଦୁଃଖମନ ॥୧୦
ତା'ର କାମିନୀ ଶୋକମନେ ।
ପଶିବା ବେଳେ ହୁତାଶନେ ॥୧୧
ମୁନି ଜାଣିଲେ ତା'ର ଭାବ ।
ଉଦରେ ପାଞ୍ଚମାସ ଗର୍ଭ ॥୧୨
ବୋଇଲେ ଅନଳେ ନ ପଶ ।
ହୋଇବ ଏ ରାଜାର ବଂଶ ॥୧୩
ମୁନି ବଚନେ ସେ ଅବଳା ।
ଅନଳକୁଣ୍ଡେ ନ ପଶିଲା ॥୧୪
ଶୁଣ ରାଜନ ମନ ଦେଇ ।
ତା' ଗର୍ଭକଥା ତୋତେ କହି ॥୧୫
ସେ ଗର୍ଭ ସଞ୍ଚରଣ କାଳେ ।
ସପତ୍ନୀ ପାଞ୍ଚସାତ ମେଳେ ॥୧୬
ଗରଳ ଦେଲେ ଅନ୍ନସଙ୍ଗେ ।
ବିଷ ନ ଲାଗେ ତା'ର ଅଙ୍ଗେ ॥୧୭
ଗର୍ଭ ରଖିଲେ ଜଗନ୍ନାଥ ।
ଏବେ ହୋ ଶୁଣ ପରୀକ୍ଷିତ ॥୧୮
ସେ ଗର୍ଭ ପ୍ରସବର କାଳେ ।
ମୁନି ସକଳ କୁତୂହଳେ ॥୧୯
ବୋଲନ୍ତି ଗରଳ ସଙ୍ଗତେ ।
ଜନ୍ମ ଲଭିଲା ଏ ଯୁକତେ ॥୨୦
ଗରଳ ସଙ୍ଗେ ଜନ୍ମ ଯେଣୁ ।
ସଗର ନାମ ହେଉ ତେଣୁ ॥୨୧
ଏମନ୍ତେ ମୁନିଙ୍କ ସଙ୍ଗତେ ।
ସଗର ରାଜା ଦିନାକେତେ ॥୨୨
ଦିନକୁ ଦିନ ଅତି ତେଜା ।
ହୋଇଲା ଚକ୍ରବର୍ତ୍ତୀ ରାଜା ॥୨୩
ତା'ର ତନୁଜେ ବାହୁବଳେ ।
ସାଗର କଲେ ମହୀତଳେ ॥୨୪
ପିତା ଶତ୍ରୁକୁ ଯୁଦ୍ଧେ ଜିଣି ।
ସ୍ୱଗୃହେ ବନ୍ଦୀ କଲେ ଆଣି ॥୨୫
ଯେତେ ତାହାର ରିପୁମାନ ।
ଶୁଣ ହୋ ତାହାଙ୍କର ନାମ ॥୨୬
ଯବନ ତାଳଜଂଘ ଶକ ।
ହୈହୟ ବର୍ବର ଯେତେକ ॥୨୭
ଗୁରୁଙ୍କ ବାକ୍ୟେ ନ ମାଇଲା ।
ଶୁଣ ଯାହାକୁ ଯାହା କଲା ॥୨୮
ମୁଣ୍ଡିତକେଶ କାର କରି ।
କାହାକୁ କଲା ଶ୍ମଶ୍ରୁଧାରୀ ॥୨୯
କାହାର କଲା ମୁକ୍ତକେଶ ।
ଅର୍ଦ୍ଧମୁଣ୍ଡିତ କା'ର କେଶ ॥୩୦
କେତେକ ଅନ୍ତର୍ବାସ ହୀନ ।
ଅପରେ ବହିର୍ବାସ ଶୂନ୍ୟ ॥୩୧
କାହାର ବସନ ଉତାରି ।
ବିକୃତବେଶ ତା'ଙ୍କୁ କରି ॥୩୨
ଯବନ ବେଶ କା'କୁ କରି ।
ସ୍ୱଧର୍ମ ମାର୍ଗରୁ ଉତାରି ॥୩୩
ଏମନ୍ତ କରି ହୀନବେଶ ।
ଛାଡ଼ିଣ ଦେଲା ତା'ଙ୍କୁ ଦେଶ ॥୩୪
ସେ ପୁଣି ସଞ୍ଚି ନାନାବିଧି ।
କହିଲା ଶତେ ଅଶ୍ୱମେଧି ॥୩୫
ଔର୍ବ ମୁନିଙ୍କି ହୋତା କରି ।
ଯଜ୍ଞେ ପୂଜିଲା ନରହରି ॥୩୬
ଉତ୍ତମ ଅଶ୍ୱ ପଶୁ କଲା ।
ସେ ଅଶ୍ୱ ଇନ୍ଦ୍ର ଚୋରାଇଲା ॥୩୭
ଷାଠିଏ ସହସ୍ର କୁମର ।
ତା'ଙ୍କୁ ଡରଇ ସୁନାସୀର ॥୩୮
କହଇ ମରିବେ ଯେମନ୍ତେ ।
ଏମନ୍ତ ଭାଳି ସେ ଗୁପତେ ॥୩୯
କପିଳମୁନି ପାଦତଳେ ।
ଅଶ୍ୱ ବାନ୍ଧିଲା ରାତ୍ରକାଳେ ॥୪୦
ଅଶ୍ୱ ନ ଦେଖି ଯଜ୍ଞଦ୍ୱାରେ ।
ଖୋଜନ୍ତି ବ୍ରହ୍ମାଣ୍ଡ ଭିତରେ ॥୪୧
ସୁମତି ଗର୍ଭେ ଯେତେ ସୁତ ।
ବଳରେ ଅଟନ୍ତି ଦର୍ପିଷ୍ଟ ॥୪୨
ସେ ପୁଣି ପିତାଙ୍କ ଆଦେଶେ ।
ଅଶ୍ୱ ଖୋଜନ୍ତି ଦଶଦିଶେ ॥୪୩
ଖୋଜନ୍ତି ମହୀନବଖଣ୍ଡ ।
ଭକ୍ଷନ୍ତି ବିସ୍ତାରିଣ ତୁଣ୍ଡ ॥୪୪
ଉତ୍ତରଦିଗେ ଖୋଜିଗଲେ ।
କପିଳ ଆଶ୍ରମେ ମିଳିଲେ ॥୪୫
ଦେଖିଲେ ମୁନି ସନ୍ନିଧାନେ ।
ସେ ଅଶ୍ୱ ଅଛଇଁ ବନ୍ଧନେ ॥୪୬
କପିଳମୁନି ମୁଖ ଚାହିଁ ।
ବୋଲନ୍ତି ଅଶ୍ୱଚୋର ଏହି ॥୪୭
ଏହାକୁ ରଖି ନ ଯୋଗାଇ ।
ଏମନ୍ତ ଉଚ୍ଚବାଚ ହୋଇ ॥୪୮
ବୋଲନ୍ତି ଖଡ଼୍ଗ ଉଞ୍ଚାଇ ।
ଏହାର ଶିର ଛେଦ ନେଇ ॥୪୯
ଆମ୍ଭଙ୍କୁ ଦେଖି ଚକ୍ଷୁ ବୁଜେ ।
ଆମ୍ଭାକୁ ଦମ୍ଭ ପ୍ରାୟେ ବୁଝେ ॥୫୦

Dr. Sudhanshu Sekhar Mishra

ଏମନ୍ତ ଘୋରନାଦ କରି ।
ଧାଇଁଲେ କରେ ଶସ୍ତ୍ର ଧରି ॥୫୧
ଭୂମି କମ୍ପିଲା ତା'ଙ୍କ ପାଦେ ।
ଧ୍ୟାନ ଭାଜିଲା ଘୋରନାଦେ ॥୫୨
ଚାହାଁନ୍ତେ ଉନ୍ମୀଳ ଲୋଚନେ ।
ଅନଳ ଉଠିଲା ତକ୍ଷଣେ ॥୫୩
ମହତ ଅତିକ୍ରମ ଦୋଷେ ।
ନୟନ ଅଗ୍ନି ମହାରୋଷେ ॥୫୪
ଦେଖନ୍ତି ସ୍ୱର୍ଗେ ଦେବଗଣେ ।
ଭସ୍ମ ହୋଇଲେ ତତ୍‌କ୍ଷଣେ ॥୫୫
ଷାଠି-ସହସ୍ର ଏକାଥରେ ।
ମରିଲେ ସଗର କୁମରେ ॥୫୬
କେଶିନୀ ଗର୍ଭେ ଏକସୁତ ।
ଅସମଞ୍ଜସ ନାମେ ଖ୍ୟାତ ॥୫୭
ତା'ର କୁମର ଅଂଶୁମାନ ।
ସକଳ ଗୁଣେ ଗୁଣଧାମ ॥୫୮
ସେ ଥାଇ ପିତାମହ ହିତେ ।
ମନ ବଚନ କାୟେ ନିତ୍ୟେ ॥୫୯
ଅସମଞ୍ଜସ ଯା'ର ନାମ ।
କରେ ନିନ୍ଦିତ ଆଚରଣ ॥୬୦
ସେ ପୂର୍ବଜନ୍ମେ ଯୋଗୀ ଥିଲା ।
ସଙ୍ଗ ଦୋଷରୁ ଭ୍ରଷ୍ଟ ହେଲା ॥୬୧
ଏଣୁ ନିନ୍ଦିତ କର୍ମ କରେ ।
ଜ୍ଞାତିଙ୍କ ଅପ୍ରିୟ ଆଚରେ ॥୬୨
ଅସମଞ୍ଜସ ନାମ ଯେଣୁ ।
ଲୋକଙ୍କୁ ହିଂସା କରେ ତେଣୁ ॥୬୩
ଯୋଗବଳରୁ ଜାତିସ୍ମର ।
ଏ ଜନ୍ମେ ଅଛଇ ତାହାର ॥୬୪
ତେଣୁ ସେ ସଙ୍ଗ ପରିହରି ।
ଲୋକେ ନିନ୍ଦିତ କର୍ମ କରି ॥୬୫
ଶିଶୁମାନଙ୍କୁ ଧରି ବଳେ ।
ପକାଏ ସରଯୂର ଜଳେ ॥୬୬
ଦେଖି ତାହାର ମନ୍ଦପଣ ।
ଅଯୋଧ୍ୟାବାସୀ ପ୍ରଜାଗଣ ॥୬୭
ସଗରେ ଜଣାଇଲେ ଯାଇ ।
ଅତି ଦୁଃଖିତ ରାଜା ହୋଇ ॥୬୮
ସଗର ହୋଇଣ ଦୁଃଖିତ ।
ପୁତ୍ର ସ୍ନେହକୁ କଲା ତ୍ୟକ୍ତ ॥୬୯
ଘରୁ ବାହାର କରି ଦେଲା ।
ଯେଣୁ ସେ ପ୍ରଜାଙ୍କୁ ପୀଡ଼ିଲା ॥୭୦
ସେ ପୁଣି ଯୋଗବଳ କଲା ।
ମୃତ ବାଳକମାନ ଦେଲା ॥୭୧
ବାଳକ ପାଇ ତୋଷମନେ ।
ଅଯୋଧ୍ୟାବାସୀ ପ୍ରଜାଜନେ ॥୭୨
ବିସ୍ମିତ ହୋଇଲେ ସକଳେ ।
ଅସମଞ୍ଜସ ଯୋଗବଳେ ॥୭୩
ତା'ର ଅଦ୍ଭୁତକର୍ମ ଦେଖି ।
ସଗର ହେଲେ ମହାସୁଖୀ ॥୭୪
ଏବେ ହୋ ଶୁଣ ନରନାଥ ।
ସେ ଅଂଶୁମାନର ଚରିତ ॥୭୫
ସଗର ତା'ର ମୁଖ ଚାହିଁ ।
ବୋଇଲେ ଅଶ୍ୱ ଆଣ ଯାଇ ॥୭୬
ଏମନ୍ତେ ପିତାମହ ବାକ୍ୟେ ।
ସେ ଅଂଶୁମାନ ଗଲା ଏକେ ॥୭୭
ପିତୃବ୍ୟ-ଖାତ-ପଥେ ଗଲା ।
ପାତାଳେ ଅଶ୍ୱକୁ ଦେଖିଲା ॥୭୮
ଦେଖିଲା କପିଳ-ସମ୍ମୁଖେ ।
ବାନ୍ଧିଲା-ଅଶ୍ୱ ଅଛି ସୁଖେ ॥୭୯
କପିଳ ପାଦତଳେ ପଡ଼ି ।
ସେ ଅଂଶୁମାନ କରଯୋଡ଼ି ॥୮୦
ଅନେକ ସ୍ତୁତିବାକ୍ୟ ବଳେ ।
ପୂଜିଲା ଚରଣ କମଳେ ॥୮୧
ବୋଲଇ ଶିରେ କର ଦେଇ ।
ଭୋ ନାଥ କର ମୋତେ ତ୍ରାହି ॥୮୨
ଶକ୍ର ବିରଞ୍ଚି-ମହାଦେବ ।
ସେ କାହିଁ ଜାଣିବେ ତୋ' ଭାବ ॥୮୩
ତୁ ଜ୍ଞାନଘନେ ମୋହ ନାଶୁ ।
ସଂସାର ସ୍ୱତେଜେ ପ୍ରକାଶୁ ॥୮୪
ସନକ ଆଦି ମୁନି ଯେତେ ।
ବିଶେଷେ ଭାବନ୍ତି ସେ ତୋତେ ॥୮୫
ତୋ' ରୂପ ଜୀବ-ମୋକ୍ଷ ଅର୍ଥେ ।
ମୁଁ ତୋତେ ଜାଣିବି କେମନ୍ତେ ॥୮୬
ତୋ' ମାୟା ଜୀବ ଜ୍ଞାନ ହରେ ।
ସଂସାରେ ଜନ୍ମ-ମୃତ୍ୟୁ କରେ ॥୮୭
ଜୀବକୁ ଜ୍ଞାନ ଦେବା ଅର୍ଥେ ।
ତୋ'ର ପ୍ରକାଶ ଏ ଜଗତେ ॥୮୮
ଅବିଦ୍ୟା କର୍ମ ପଥେ ଜଡ଼େ ।
ତୋ' ମାୟା ଗହନ ନିବିଡ଼େ ॥୮୯
ଜୀବନ ବନ୍ଧନ ବିଶ୍ୱାସେ ।
ଦାରା-ତନୟ ଗୃହବାସେ ॥୯୦
ଏଣୁ ତୋ' ଚରଣ-କମଳେ ।
ତା' ଚିତ୍ତ ନ ରହେ ନିଶ୍ଚଳେ ॥୯୧
ଆଜଟି ନିସ୍ତରିଲି ମୁହିଁ ।
ଭୋ ନାଥ ତୋ' ଚରଣ ଚାହିଁ ॥୯୨

### ଶୁକ ଉବାଚ

ଏମନ୍ତେ ତା'ର ସ୍ତୁତି ଶୁଣି ।
ପ୍ରସନ୍ନଚିତ୍ତେ ମହାମୁନି ॥୯୩
ଅଂଶୁମାନର ମୁଖ ଚାହିଁ ।
ବୋଲନ୍ତି ଅନୁଗ୍ରହ ବହି ॥୯୪

### କପିଳ ଉବାଚ

ହେ ପୁତ୍ର ଅଶ୍ୱ ଘେନିଯାଅ ।
ତୋ' ପିତାମହ ପାଶେ ଦିଅ ॥୯୫
ଏ ଅଶ୍ୱେ ଯଜ୍ଞ ପୂଜା କରି ।
ବିଷମ ସଙ୍କଟୁ ନିସ୍ତରି ॥୯୬
ଏ ଯେ ତୋହର ପିତୃକୂଳେ ।
ଭସ୍ମ ହୋଇଲେ କୋପାନଳେ ॥୯୭
ଏହାଙ୍କ ମୋକ୍ଷ ଗଙ୍ଗାଜଳେ ।
ଅନ୍ୟଥା ନାହିଁ ଏ ଶୟଳେ ॥୯୮
ଏମନ୍ତେ କପିଳ ବଚନେ ।
ସେ ଅଂଶୁମାନ ତୋଷମନେ ॥୯୯
ତକ୍ଷଣେ ଅଶ୍ୱକୁ ଆଣିଲେ ।
ପିତାମହର ପାଶେ ଦେଲେ ॥୧୦୦
ସେ ଅଶ୍ୱମାଂସେ ଯଜ୍ଞ କରି ।
ବିଷମ ସଙ୍କଟୁ ନିସ୍ତରି ॥୧୦୧
ଅଂଶୁମାନକୁ ରାଜ୍ୟ ଦେଇ ।
କର୍ମବନ୍ଧନୁ ମୋକ୍ଷ ହୋଇ ॥୧୦୨

Dr. Sudhanshu Sekhar Mishra

ଔର୍ବି-ବଚନେ ବନେ ଗଲା ।
ଅନ୍ତେ ସେ ଗୋବିନ୍ଦ ଲଭିଲା ॥୧୦୩
ସୁଜନେ ଶୁଣିମା ଶ୍ରବଣେ ।
ଏ ହରିରସ ଅନୁକ୍ଷଣେ ॥୧୦୪
ଅବିଦ୍ୟା ବନ୍ଧୁ ପାର ହୋଇ ।
ଅନ୍ତେ ଲଭିବ ଭାବଗ୍ରାହୀ ॥୧୦୫
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୦୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଅଷ୍ଟମୋଽଧ୍ୟାୟଃ ॥

---

## ନବମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନୃପମଣି ।
କପିଳ ମୁଖୁଁ ବାକ୍ୟ ଶୁଣି ॥୧
ସେ ଅଂଶୁମାନ ଘୋର ବନେ ।
ବସିଲା ନିଶ୍ଚଳ ଆସନେ ॥୨
ମନପବନ ସଂଯମନେ ।
ସଂକଳ୍ପ ଗଙ୍ଗାର ଆଗମେ ॥୩
ଅନେକ କାଳ ତପ କଲା ।
ସେ ବନେ ପ୍ରାଣ ଉତ୍ସର୍ଗିଲା ॥୪
ତଦନ୍ତେ ତା' ପୁତ୍ର ଦିଲୀପ ।
ଗଙ୍ଗାର ଅର୍ଥେ କଲା ତପ ॥୫
ତଥାପି ଗଙ୍ଗା ନ ପାଇଲା ।
କାଳର ବଶେ ନାଶ ଗଲା ॥୬
ତା'ର କୁମର ଭଗୀରଥ ।
ଗଙ୍ଗା ଆଗମେ ତପଚିତ୍ତ ॥୭
ସେ ତପ କଲା ଘୋରବନେ ।
ବସିଲା ନିଶ୍ଚଳ ଆସନେ ॥୮
ତାହାର ତପବଳ ଭାବି ।
ସନ୍ତୋଷେ ମିଳିଲେ ଜାହ୍ନବୀ ॥୯
ବୋଲନ୍ତି ପ୍ରସନ୍ନ ବଦନେ ।
ବର ତୁ ମାଗ ତୋଷମନେ ॥୧୦
ତକ୍ଷଣେ ଶିରେ ଦେଇ କର ।
ବୋଲେ ମୋ' ପିତୃଙ୍କୁ ଉଦ୍ଧର ॥୧୧
କପିଳ ତେଜେ ଦଗ୍ଧ ହୋଇ ।
ତୋ' ବିନୁ ତା'ଙ୍କ ଗତି ନାହିଁ ॥୧୨
ଶୁଣି ବୋଲନ୍ତି ଭଗବତୀ ।
କେ ସହି ପାରିବ ମୋ' ଗତି ॥୧୩

ଗଗନୁ ଭୂମିରେ ପଡ଼ନ୍ତେ ।
ମହୀ ନ ଶିବ ମୋ'ର ଘାତେ ॥୧୪
ପାତାଳେ ପଡ଼ିବି ଯେ ମୁହିଁ ।
ମୋ' ଉଦ୍ଧାରଣେ କେହି ନାହିଁ ॥୧୫
କି ଅବା ଭୂମିକି ମୁଁ ଗଲେ ।
ମନୁଷ୍ୟେ ମୋ'ର ତହିଁ ଭଲେ ॥୧୬
ଧୋଇବେ ପାପ ତାହା ମୁହିଁ ।
ଧୋଇବି କାହିଁ ଚିନ୍ତ ତୁହି ॥୧୭
ବିଷ୍ଣୁଙ୍କ ଆଜ୍ଞାର ପ୍ରମାଣ ।
ନ ଗଲେ ନାହିଁ ପରିତ୍ରାଣ ॥୧୮
ଏମନ୍ତ ଗଙ୍ଗା ବାକ୍ୟ ଶୁଣି ।
ରାଜା ବୋଲନ୍ତି ମନେ ଗୁଣି ॥୧୯

ଭଗୀରଥ ଉବାଚ

ସାଧୁ ସନ୍ନ୍ୟାସୀ ଶାନ୍ତ ଦାନ୍ତ ।
ବ୍ରହ୍ମିଷ୍ଠ ଶୁଚି ଦୟାବନ୍ତ ॥୨୦
ଏହାଙ୍କ ଅଙ୍ଗସଙ୍ଗ ଫଳେ ।
ପାପ ହରଇ ଭୂମିତଳେ ॥୨୧
ତୁମ୍ଭର ପାପ ବିନାଶନେ ।
କ୍ଷମ କି ନୋହିବେ ସେମାନେ ॥୨୨
ତୋ' ବେଗ ରୁଦ୍ର ଅବା ସହେ ।
ଯେ ହର ବିଶ୍ୱଆତ୍ମା ବହେ ॥୨୩
ରୁଦ୍ରର ଦେହେ ଏ ଜଗତ ।
ବସନ ପ୍ରାୟେ ଓତଃପ୍ରୋତ ॥୨୪
ତୋହର ବେଗ ସହିବାରେ ।
ତା' ବିନୁ ଅଛି କେ ଅପରେ ॥୨୫
ଗଙ୍ଗା ବୋଇଲେ ଏଟି ସତ୍ୟ ।
ବେଗେ ତୁ ସେବ ବିଶ୍ୱନାଥ ॥୨୬

ଏମନ୍ତ ଗଙ୍ଗା-ବାକ୍ୟ ଶୁଣି ।
ଆନନ୍ଦେ ଗଲା ନୃପମଣି ॥୨୭
ସେବିଲା ଈଶ୍ୱର ଚରଣେ ।
ପିତୃଙ୍କ ଉଦ୍ଧାର କାରଣେ ॥୨୮
ସେ ଭଗୀରଥ ପୁଣ୍ୟବଳେ ।
ଶିବ ସନ୍ତୋଷ ଅଳ୍ପକାଳେ ॥୨୯
ହେ ଭଗୀରଥ ମାଗ ବର ।
ଦେବଇଁ ସତ୍ୟ ଏ ମୋହର ॥୩୦
ହେ ଦେବ ଶୁଣ ଶୂଳପାଣି ।
ମୋ' ପିତାମହଙ୍କ କାହାଣୀ ॥୩୧
କପିଳ କୋପେ ସେ ଜଳିଲେ ।
ମୋତେ ସେ ପ୍ରସନ୍ନ ହୋଇଲେ ॥୩୨
ବୋଇଲେ ଗଙ୍ଗାଙ୍କୁ ଆଣିଲେ ।
ତୋ' ପିତୃ ନିସ୍ତରିବେ ଭଲେ ॥୩୩
ଗଙ୍ଗା ପ୍ରସନ୍ନେ ମୋତେ ଚାହିଁ ।
ମୋ' ତେଜ ଶିବ ପାରେ ସହି ॥୩୪

ଶିବ ଉବାଚ

ବୋଇଲେ ଧରିବି ମୁଁ ଶିରେ ।
ଜଟାକଳପ ଅଭ୍ୟନ୍ତରେ ॥୩୫
ଜାହ୍ନବୀ ରୁଦ୍ରର ବଚନେ ।
ତକ୍ଷଣେ ସ୍ରବିଲେ ଗଗନେ ॥୩୬
ସ୍ୱଭାବେ ବିଷ୍ଣୁପାଦଜଳ ।
ସୁପୁଣ୍ୟ ଶୁଚି ସୁନିର୍ମଳ ॥୩୭
ଜଳେ ପୂରିଲା ଜଟାଭାର ।
ଧାରାଏ ତିନ୍ତିଲା ଶରୀର ॥୩୮
ରୁଦ୍ର-ଶରୀରୁ ଜଳରାଶି ।
ବହିଲା ଭୂମିତଳେ ଆସି ॥୩୯

Dr. Sudhanshu Sekhar Mishra

ଯେ ଗଙ୍ଗା ଭୁବନ-ପାବିନୀ ।
ତାହାଙ୍କୁ ଭଗୀରଥ ଘେନି ॥୪୦
ବସିଲା ବାୟୁବେଗ ରଥେ ।
ଗଙ୍ଗା ତାହାର ଅନୁପଥେ ॥୪୧
ପବିତ୍ର କରି ବେନିପାଶେ ।
ଲାଗିଲେ ଯେତେ ନଗ୍ର-ଦେଶେ ॥୪୨
ଧରଣୀ-ବିବରେ ପଶିଲେ ।
କପିଳ ଆଶ୍ରମେ ମିଳିଲେ ॥୪୩
ବିଷ୍ଣୁଙ୍କୁ ପ୍ରଦକ୍ଷିଣ କରି ।
ତହୁଁ ଚଳିଲେ ଶୀଘ୍ର କରି ॥୪୪
ସଗର-ସୁତେ ଯହିଁ ମିଳି ।
ଅନଳେ ଯାଇଥିଲେ ଜଳି ॥୪୫
ଜଳ ପଶିଲା ତା'ଙ୍କ ମଧ୍ୟେ ।
ତକ୍ଷଣେ ପରମ ଆନନ୍ଦେ ॥୪୬
ଜ୍ୟୋତି ସ୍ୱରୂପେ ସ୍ୱର୍ଗେ ଗଲେ ।
ଶୂନ୍ୟେ ଦେଖନ୍ତି ଦିଗପାଳେ ॥୪୭
କପିଳମୁନି କୋପାନଳ ।
ଦହଇ ଭୁବନ-ମଣ୍ଡଳ ॥୪୮
ଯେ ଜଳ ସ୍ପରଶନ ମାତ୍ରେ ।
ଦୁରିତ ନରହଇ ଗାତ୍ରେ ॥୪୯
ଅନନ୍ତ ଚରଣ ସ୍ମରଣେ ।
ଗଙ୍ଗା ସ୍ମରଣେ ପାପ ନାଶେ ॥୫୦
ସେ ଗଙ୍ଗାଜଳେ ଦେଇ ମନ ।
ଭବୁ ତରିଲେ ମୁନିଜନ ॥୫୧
ଏବେ ହୋ ଶୁଣ ପରୀକ୍ଷିତ ।
ସଗର-ବଂଶାନୁଚରିତ ॥୫୨
ସେ ଭଗୀରଥର ତନୟେ ।
ସ୍ୱଭାବେ ଶ୍ରୁତ ନାମ ବହେ ॥୫୩
ନାଭ ତାହାର ସୁତ ହୋଏ ।
ଅଶେଷ ଗୁଣ ଯା'ର ଦେହେ ॥୫୪
ସିନ୍ଧୁଦ୍ୱୀପ ତା'ର ନନ୍ଦନ ।
ତହୁଁ ଅୟୁତାୟୁ ଉତ୍ପନ୍ନ ॥୫୫
ତା' ସୁତ ଋତୁପର୍ଣ୍ଣ ଲେଖା ।
ନଳ ଯାହାର ପ୍ରାଣସଖା ॥୫୬

ଅକ୍ଷବିଦ୍ୟାରେ ଗରୁଚାଣ ।
ନଳକୁ ଶିଖାଇ ରାଜନ ॥୫୭
ଅଶ୍ୱବିଦ୍ୟାକୁ ନଳୁଁ ନେଇ ।
ବନେ ପଶିଲା ତପଧାୟି ॥୫୮
ତା'ର କୁମର ସର୍ବକାମ ।
ସ୍ୱଭାବେ ସର୍ବ ଗୁଣଧାମ ॥୫୯
ସୁଦାସ ତାହାର ସନ୍ତତି ।
ତା' ପୁତ୍ର ମଦୟନ୍ତୀ ପତି ॥୬୦
ତାହାର ମିତ୍ର ସହ ନାମ ।
କଳ୍ମାଷପାଦ ପୁଣି ନାମ ॥୬୧
ବଶିଷ୍ଠ ଗୁରୁ ଶାପ ପାଇଁ ।
ବନେ ରାକ୍ଷସ ଦେହ ବହି ॥୬୨
ସ୍ୱକର୍ମେ ଅପୁତ୍ର ହୋଇଲା ।
କୋପେ ବ୍ରାହ୍ମଣୀ ଶାପ ଦେଲା ॥୬୩
ଏ କଥା ଶୁକମୁଖୁଁ ଶୁଣି ।
ବୋଲେ ପରୀକ୍ଷ ନୃପମଣି ॥୬୪
ମହାତ୍ମା ସୌଦାସ କେମନ୍ତେ ।
ରାକ୍ଷସ ହୋଇଲା ବନସ୍ତେ ॥୬୫
କିବା ଅନୀତି ଆଚରିଲା ।
ଅପୁତ୍ର କିଗୁଣେ ହୋଇଲା ॥୬୬
ଏ କଥା କହ ମୁନିବର ।
ମୁଁ ଯେବେ ସେବକ ତୁମ୍ଭର ॥୬୭

ଶୁକ ଉବାଚ

ଶୁକ କହନ୍ତି ରାଜା ଚାହିଁ ।
ଶୁଣ ହୋ ସାବଧାନ ହୋଇ ॥୬୮
ସୌଦାସ ଚରିତ ଅଦ୍ଭୁତ ।
ଭଜିଲା କର୍ମର ଆୟତ୍ତ ॥୬୯
ବନେ ରାକ୍ଷସ ବେନିଭାଇ ।
ବୁଲନ୍ତି ନରମାଂସ ଖାଇ ॥୭୦
ସୌଦାସ ରାଜା ଶସ୍ତ୍ରହସ୍ତେ ।
ବନେ ପଶିଲା ପଶୁ ଅର୍ଥେ ॥୭୧
ସେ ବନେ ଥିଲେ ବେନିଭାଇ ।
ରାକ୍ଷସ ବ୍ୟାଘ୍ରରୂପ ହୋଇ ॥୭୨
ସେ ଦୁଇ ରାକ୍ଷସଙ୍କୁ ଦେଖି ।
ବାଣ ମାଇଲା ରାଜା ଲକ୍ଷି ॥୭୩

ବାଣେ ରାକ୍ଷସ ମରେ ଏକ ।
ତା'ର ଭାଇର କର୍ମ ଦେଖ ॥୭୪
ରାକ୍ଷସ ଭ୍ରାତୃବଧ ଦେଖି ।
ଅତ୍ୟନ୍ତ ହୋଇଲାକ ଦୁଃଖୀ ॥୭୫
ମନରେ ବିଚାର କରଇ ।
ଏ ଯେ ମାଇଲା ମୋର ଭାଇ ॥୭୬
ଏବେ ଏ ନିଜପୁରେ ଗଲେ ।
କରିବି ପ୍ରତିଫଳ ହେଲେ ॥୭୭
ଚିନ୍ତିଲା ପ୍ରତିକାର ମନେ ।
ମିଳିଲା ରାଜା ସନ୍ନିଧାନେ ॥୭୮
ବୋଲଇ ରାଜମୁଖ ଚାହିଁ ।
ତୁ ଯେ ମାଇଲୁ ମୋର ଭାଇ ॥୭୯
ତୁ ଏବେ ନିଜପୁରେ ଚଳ ।
ମୁହିଁ କରିବି ପ୍ରତିକାର ॥୮୦
ତଦନ୍ତେ ରାଜା ଗୃହେ ଗଲା ।
ଶୁଣ ହେ ଅଭିମନ୍ୟୁବଳା ॥୮୧
ଏମନ୍ତେ ଗଲା ଦିନାକେତେ ।
ବଶିଷ୍ଠ ନୃପତି ଅଗ୍ରତେ ॥୮୨
ମିଳିଲେ କ୍ଷୁଧାର କଷଣେ ।
ଆମିଷ ଭୋଜନ କାରଣେ ॥୮୩
ବୋଲନ୍ତି ନୃପତି ଅଗ୍ରତେ ।
ମାଂସ ଭୋଜନ ଦିଅ ମୋତେ ॥୮୪
ଏମନ୍ତ କହି ମୁନିଗଲେ ।
ସନ୍ଧ୍ୟାର ଅର୍ଥେ ଗଙ୍ଗାଜଳେ ॥୮୫
ବଶିଷ୍ଠ ଆଗମନ ଚାହିଁ ।
ସୂପକାରଙ୍କୁ ସେ ଅଣାଇଁ ॥୮୬
ବୋଲଇ ମାଂସ ପାକ କର ।
ଭୁଞ୍ଜିବେ ବ୍ରହ୍ମାଙ୍କ କୁମର ॥୮୭
ଶୁଣି ସୂପକାର ସୁଚିରେ ।
ଆମିଷ ରାନ୍ଧିଲେ ତ୍ୱରିତେ ॥୮୮
ଉତ୍ତମ ପଶୁଙ୍କର ମାଂସ ।
ଯେଣେ ବଶିଷ୍ଠ ମନ ତୋଷ ॥୮୯
ସେ ମଧ୍ୟେ ସୂପକାର ରୂପେ ।
ରାକ୍ଷସ ଭାଇ ଥିଲା ଗୋପ୍ୟେ ॥୯୦

Dr. Sudhanshu Sekhar Mishra

ସେ ନରମାଂସ ପାକ କରି ।
ସୁବର୍ଣ୍ଣପାତ୍ରେ ତାହା ଭରି ॥୯୧
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା ।
ଏମନ୍ତେ ବଶିଷ୍ଠ ମିଳିଲା ॥୯୨
ଭୋଜନେ ବସିଲେ ଆସନେ ।
ରାଜା ସମୀପେ ବିଧି ମାନ୍ୟେ ॥୯୩
ଏମନ୍ତେ ସୂପକାର ନେଲେ ।
ସୁବର୍ଣ୍ଣପାତ୍ରେ ମାଂସ ଦେଲେ ॥୯୪
ତକ୍ଷଣେ ମନୁଷ୍ୟର ମାଂସ ।
କରେ ଘେନିଲେ ଏକଗ୍ରାସ ॥୯୫
ଆଘ୍ରାଣ ନାସାରନ୍ଧ୍ରେ କଲେ ।
ତକ୍ଷଣେ ତଳେ ପକାଇଲେ ॥୯୬
ରାଜାର ବଦନ ଅନାଇଁ ।
ବୋଲନ୍ତି କୋପଭର ହୋଇ ॥୯୭
ମୋତେ ଯେ ଦେଲୁ ନରମାଂସ ।
ଏ ପାପେ ହୁଅ ତୁ ରାକ୍ଷସ ॥୯୮
ଅରଣ୍ୟେ ଦ୍ୱାଦଶ-ବରଷ ।
ଭକ୍ଷଣ କର ନରମାଂସ ॥୯୯
ଏମନ୍ତ ମୁନିବାକ୍ୟ ଶୁଣି ।
କୋପେ କମ୍ପିଲା ନୃପମଣି ॥୧୦୦
ବୋଲେ ମୁଁ ନୁହେଁ ଜ୍ଞାନଭ୍ରଂଶ ।
କେମନ୍ତେ ଦେଲି ନରମାଂସ ॥୧୦୧
ନ ଜାଣି ଶାପ ଦେଲ ଗୁରୁ ।
କେ ବ୍ରହ୍ମଶାପ ଆନ କରୁ ॥୧୦୨
ମୁଁ ଏବେ ପ୍ରତିଶାପ ଦେବି ।
ଏମନ୍ତ ବୁଦ୍ଧି ଚିତ୍ତେ ଭାବି ॥୧୦୩
ଜଳଅଞ୍ଜଳି କରେ କଲା ।
ବଶିଷ୍ଠ ଅଗ୍ରତେ ମିଳିଲା ॥୧୦୪
ରାଜାର କୋପ ଦେଖି ମନେ ।
ପତ୍ନୀ ମିଳିଲା ସନ୍ନିଧାନେ ॥୧୦୫
ତାହାର ମଦୟନ୍ତୀ ନାମ ।
ସକଳଗୁଣେ ଗୁଣଧାମ ॥୧୦୬
ବୋଲନ୍ତି ସ୍ୱାମୀ ମୁଖ ଚାହିଁ ।
ଏ କଥା ତୋତେ ନଘଟଇ ॥୧୦୭

ଗୁରୁଙ୍କୁ ଶିଷ୍ୟ ଶାପ ଦେଲେ ।
ଅଧର୍ମ ହୋଇବଟି ଭଲେ ॥୧୦୮
ଏ କଥା କେବେ ହେଁ ନ କର ।
ତା'ର ବଚନେ ନୃପବର ॥୧୦୯
ମନ୍ତ୍ରିତ ଜଳ କୋପଭରେ ।
ସିଞ୍ଚିଲା ଆପଣା ପୟରେ ॥୧୧୦
ତକ୍ଷଣେ ଅଜ୍ଞାନ ହୋଇଲା ।
କଲ୍ମାଷପାଦ ବୋଲାଇଲା ॥୧୧୧
କୋପେ ଚାହିଁଲା ଦଶଦିଶେ ।
ସକଳ ମାଂସ ପ୍ରାୟେ ଦିଶେ ॥୧୧୨
ତକ୍ଷଣେ ରାକ୍ଷସ ଶରୀରେ ।
ରାଜା ପଶିଲା ବନଘୋରେ ॥୧୧୩
ବନେ ରାକ୍ଷସ ଦେହବହି ।
ଭ୍ରମଇ ନରମାଂସ ଖାଇ ॥୧୧୪
ଏମନ୍ତେ ଗଲା କେତେଦିନ ।
ଶୁଣ ହେ ପରୀକ୍ଷ ରାଜନ ॥୧୧୫
ବିପ୍ରଦମ୍ପତି ଏକଦିନେ ।
ଆସନ୍ତି ଗହନ କାନନେ ॥୧୧୬
ପତ୍ନୀ ଯେ ପିତାଗୃହେ ଥିଲା ।
ଏମନ୍ତେ ରତୁ ଉପୁଜିଲା ॥୧୧୭
ସେ ବିପ୍ର ପୁତ୍ରୋତ୍ସବ ଆଶେ ।
ପତ୍ନୀ ଆଣନ୍ତେ ଗୃହବାସେ ॥୧୧୮
ସେ ବନେ ବିଧାତାର ବଳେ ।
ରାକ୍ଷସ ନିକଟେ ମିଳିଲେ ॥୧୧୯
ସ୍ୱଭାବେ ନିର୍ଜନ ବନସ୍ତ ।
ବୁଲନ୍ତି ହରାଇଣ ପଥ ॥୧୨୦
ସେ ରାଜା ଭୟଙ୍କର ରୂପେ ।
ମିଳିଲା ତାହାଙ୍କ ସମୀପେ ॥୧୨୧
ଗର୍ଜନ କରି ଭୟଙ୍କରେ ।
ବିପ୍ରକୁ ଧରି ବେନିକରେ ॥୧୨୨
ଭକ୍ଷଣେ ତୁଣ୍ଡ ବିସ୍ତାରଇ ।
ବ୍ରାହ୍ମଣୀ ବୋଲେ ତା'କୁ ଚାହିଁ ॥୧୨୩
ହେ ନୃପ ଅଧର୍ମ ନ କର ।
ଇକ୍ଷ୍ୱାକୁ ବଂଶେ ଯଶସ୍କର ॥୧୨୪

ତୁ ନୋହୁ ରାକ୍ଷସ-ଶରୀର ।
ପ୍ରତ୍ୟକ୍ଷେ ଦମୟନ୍ତୀ ବର ॥୧୨୫
ମୋ'ର ସ୍ୱାମୀଙ୍କି ଛାଡ଼ ତୁହି ।
ପୁଷ୍ପଉତ୍ସବ ମୋର ହୋଇ ॥୧୨୬
ସ୍ୱାମୀର ସଙ୍ଗେ ସଙ୍ଗ କରି ।
ପୁତ୍ର ସନ୍ତତି ଗର୍ଭେ ଧରି ॥୧୨୭
ସଂସାର ହୋଇବ ମୋହର ।
ଦୁର୍ଲ୍ଲଭ ନର କଳେବର ॥୧୨୮
ଦେବେ ବାଞ୍ଛନ୍ତି ଯାହା ଚିତ୍ତେ ।
ଏ କର୍ମ କରିବୁ କେମନ୍ତେ ॥୧୨୯
ଦେଖ ପଣ୍ଡିତ ମୋ'ର ସ୍ୱାମୀ ।
ତପ ସାଧନେ ପଥଶ୍ରମୀ ॥୧୩୦
ଏ ସର୍ବଭୂତେ ଦୟା ବହେ ।
ଦେବେ ବସନ୍ତି ଏହା ଦେହେ ॥୧୩୧
ଏହାର ବଧେ ସୃଷ୍ଟି ବଧ ।
ଏ ମଲେ ଲଭିବୁ ପ୍ରମାଦ ॥୧୩୨
ଏ କଥା ଯେବେ ମଣୁ ମିଛ ।
ତୁ ମୋତେ ଆଗ କରି ଭକ୍ଷ ॥୧୩୩
ମୋହର ଆଗେ ସ୍ୱାମୀ ମଲେ ।
ଜୀବନ ନ ଧରିବି ଭଲେ ॥୧୩୪
ଏମନ୍ତେ ଅନେକ କହିଲା ।
ତାହାର ଚରଣେ ପଡ଼ିଲା ॥୧୩୫
କାନ୍ଦଇ ପତିମୁଖ ଚାହିଁ ।
ତକ୍ଷଣେ ବ୍ୟାଘ୍ରପ୍ରାୟ ହୋଇ ॥୧୩୬
ବଶିଷ୍ଠ ଶାପେ ଜ୍ଞାନ ଗଲା ।
ତକ୍ଷଣେ ବିପ୍ରକୁ ଭକ୍ଷିଲା ॥୧୩୭
ସ୍ୱାମୀମରଣ ଦେଖି କୋପେ ।
ରାକ୍ଷସେ ଚାହିଁ ମନସ୍ତାପେ ॥୧୩୮
ବୋଲଇ ଶୁଣରେ ପାମର ।
ସ୍ୱାମୀଙ୍କି ନାଶିଲୁ ମୋହର ॥୧୩୯
ତୋହର ପତ୍ନୀ ସଙ୍ଗକାଳେ ।
ପ୍ରାଣ ତୁ ଛାଡ଼ ଅନ୍ତରାଳେ ॥୧୪୦
ଏମନ୍ତ ଶାପ ତା'କୁ ଦେଇ ।
ପଶିଲା ଅଗ୍ନିକୁଣ୍ଡେ ଯାଇ ॥୧୪୧

Dr. Sudhanshu Sekhar Mishra

ତକ୍ଷଣେ ଜୀବନ ଛାଡ଼ିଲା ।
ସ୍ୱଧର୍ମେ ପତି ସଙ୍ଗେ ଗଲା ॥୧୪୨
ଏମନ୍ତେ ମୁନି-ଶାପ-ଦୋଷ ।
ପୂରିଲା ଦ୍ୱାଦଶବରଷ ॥୧୪୩
ଶାପୁଁ ମୁକତ ରାଜା ହୋଇ ।
ମିଳିଲା ଅନ୍ତଃପୁରେ ଯାଇ ॥୧୪୪
ପତ୍ନୀ ସଙ୍ଗମ ଚିତ୍ତେ ଚିନ୍ତି ।
ତା' ଦେଖି ବୋଲେ ଦମୟନ୍ତୀ ॥୧୪୫
ବ୍ରାହ୍ମଣୀ ଶାପ ଦେଲା ତୋତେ ।
ମୋ' ଅଙ୍ଗ ଛୁଇଁବୁ କେମନ୍ତେ॥୧୪୬
ସ୍ତିରୀ ମୈଥୁନ ଆଶା ତେଜ ।
ଜୀବନେ ଯେବେ ଅଛି କାର୍ଯ୍ୟ॥୧୪୭
ଏମନ୍ତେ ତାହାର ବଚନେ ।
ରାଜା ବିଚାରେ ଦୁଃଖମନେ ॥୧୪୮
କେମନ୍ତେ ହୋଇବ ସନ୍ତତି ।
ନାନା ଉପାୟ ମନେ ଚିନ୍ତି ॥୧୪୯
ବଶିଷ୍ଠ ସମୀପେ ମିଳିଲା ।
ମୋ' ବଂଶ ରଖ ତୁ ବୋଇଲା ॥୧୫୦
ଏମନ୍ତେ ରାଜାର ବଚନେ ।
ତା'ର କାମିନୀ ଗର୍ଭଧାନେ ॥୧୫୧
ବଶିଷ୍ଠ ସଙ୍ଗେ ସଙ୍ଗ କରି ।
ଗର୍ଭ ହୋଇଲା ତା'ର ନାରୀ ॥୧୫୨
ସେ ଗର୍ଭ ସପତ-ବରଷେ ।
ଜନ୍ମ ନୋହିଲା ବୋଲି ରୋଷେ ॥୧୫୩
ଅଶ୍ମ ପ୍ରହାର ଗର୍ଭେ କଲା ।
ତକ୍ଷଣେ ପୁତ୍ର ଉପୁଜିଲା ॥୧୫୪
ନାମ ତା ଅଶ୍ମକ ହୋଇଲା ।
ଯେଣୁ ଅଶ୍ମଘାତ ବାଜିଲା ॥୧୫୫
ମୂଳକ ଅଶ୍ମକ ନନ୍ଦନ ।
ନାରୀକବଚ ତା'ର ନାମ ॥୧୫୬
ପରଶୁରାମ କ୍ଷୟ ବେଳେ ।
ସୁଖେ ରଖିଲା କ୍ଷତ୍ରିକୁଳେ ॥୧୫୭
ତାହାର ପୁତ୍ର ଦଶରଥ ।
ଐଡ଼ବିଡ଼ ଯେ ତା'ର ସୁତ ॥୧୫୮

ତା'ଠାରୁ ହେଲା ଉତପତ୍ତି ।
ଯେ ବିଶ୍ୱସହ ନରପତି ॥୧୫୯
ଖଟ୍ୱାଙ୍ଗ ତାହାର କୁମର ।
ଯୁଦ୍ଧେ ରଖିଲା ପୁରନ୍ଦର ॥୧୬୦
ସେ ମହୀତଳେ ଚକ୍ରବର୍ତ୍ତୀ ।
ଶୁଣ ରାଜନ ତା'ର ଗତି ॥୧୬୧
ଅସୁର ଯୁଦ୍ଧେ ଦେବଗଣେ ।
ତା'ଙ୍କୁ ବରିଲେ ଯୋଦ୍ଧାପଣେ ॥୧୬୨
ସେ ପୁଣି ରିପୁ ଜିଣି ଯୁଦ୍ଧେ ।
ମେଲାଣି ଇଚ୍ଛେ ଦେବମଧ୍ୟେ ॥୧୬୩
ଦେବେ ବୋଲନ୍ତି ରାଜା ଚାହିଁ ।
ଯେ ବର ଇଚ୍ଛା ମାଗ ତୁହି ॥୧୬୪
ରାଜା ବୋଲଇ ଇନ୍ଦ୍ର ଚାହିଁ ।
ବର କଳ୍ପିତ ମୋ'ର ନାହିଁ ॥୧୬୫
ଇନ୍ଦ୍ର ତାହାର ମୁଖ ଚାହିଁ ।
ବୋଇଲେ ତୁ ଯିବୁ କିପାଇଁ ॥୧୬୬
ମୁହୂର୍ତ୍ତେ ଅଛି ତୋ ଜୀବନ ।
ତା' ଶୁଣି ବୋଲଇ ରାଜନ ॥୧୬୭
ମୋହର ସ୍ୱର୍ଗେ କାର୍ଯ୍ୟ ନାହିଁ ।
କର୍ମଭୂମିକି ଯିବି ମୁହିଁ ॥୧୬୮
ଏମନ୍ତ ଇନ୍ଦ୍ର ଆଗ କହି ।
ମିଳିଲେ ନିଜପୁରେ ଯାଇ ॥୧୬୯
ମନ ନିବେଶି ହରିପାଦେ ।
ରୋମପୁଲକେ ଗଦଗଦେ ॥୧୭୦
ତକ୍ଷଣେ ରାଇ ଜନପ୍ରଜା ।
ଭୁଜ ଉଭାରି ବୋଲେ ରାଜା ॥୧୭୧
ମୁଁ ଯେ ବ୍ରହ୍ମଣ୍ୟ କୁଳେ ଜାତ ।
ବ୍ରାହ୍ମଣ ମୋର ଦଇବତ ॥୧୭୨
ଯେବା ଅଛଇ ମୋର ଧନ ।
ଦାରା-ତନୟ-ବନ୍ଧୁଜନ ॥୧୭୩
ଏ ସର୍ବ ହରି-ନିବେଦନ ।
ଶୁଣ ସକଳ ସାବଧାନ ॥୧୭୪
ସତ୍ୟ ମୁଁ କିଛି ନ ଦେଖୁଛି ।
ବିଷ୍ଣୁଙ୍କ ଠାରୁ ଅନ୍ୟ କିଛି ॥୧୭୫

ମୋ ମତି ଧର୍ମ ବ୍ୟତିରେକେ।
ହରିଙ୍କି ସର୍ବଭୂତେ ଦେଖେ ॥୧୭୬
ଯେ ତିନି ଭୁବନେ ଈଶ୍ୱର ।
ଇନ୍ଦ୍ର ଯାଚିଲେ ମୋତେ ବର॥୧୭୭
ଏ ବର ଯେବେ ସେ ପ୍ରମାଣେ ।
ମୋ' ଚିତ୍ତ ରହୁ ନାରାୟଣେ ॥୧୭୮
ବିଷ୍ଣୁର ମାୟାରେ ଜଗତ ।
ଦିଶଇ ଇନ୍ଦ୍ରଜାଲ ମତ ॥୧୭୯
ସେ ମାୟା ଛାଡ଼ି ହରିପାଦେ ।
ମୋ' ଚିତ୍ତ ରହୁ ଅପ୍ରମାଦେ ॥୧୮୦
ଏମନ୍ତ କହି ନୃପରାଣ ।
ତକ୍ଷଣେ ହାରିଲା ଜୀବନ ॥୧୮୧
ନିସ୍ତରି ଗଲା ମାୟାମୋହେ ।
ପଶିଲା ଗୋବିନ୍ଦର ଦେହେ ॥୧୮୨
ନିର୍ମଳ ବିଷ୍ଣୁର ଚରିତ ।
ସୁଜନ ଶୁଣ ଅବିରତ ॥୧୮୩
ବିଷୟା ବିଷକୁ ଅମୃତ ।
ଏଣେ ଯେ ହୋଇବ ମୁକତ ॥୧୮୪
ଶୁଣି ପୁରାଣ ଭାଗବତ ।
ଭାବ ହୋଇବ କୃତକୃତ୍ୟ ॥୧୮୫
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୮୬

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ନବମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ମହୀପତି ।
ଯେ ବଂଶେ ଯାହାର ସନ୍ତତି ॥୧
ଯେ କୁଳେ ଯେବା ଅଧିପତି ।
ଶୁଣନ୍ତେ ପାପ ବିନାଶନ୍ତି ॥୨
ଖଟ୍ୱାଙ୍ଗୁ ଦୀର୍ଘବାହୀ ନାମ ।
ପୁତ୍ର ହୋଇଲା ଗୁଣଧାମ ॥୩
ରଘୁ ତାହାର ତହୁଁ ଜାତ ।
ସକଳ ଗୁଣେ ସୁବିଖ୍ୟାତ ॥୪
ଅଜ ତାହାର ବୀର୍ଯ୍ୟେ ଜାତ ।
ତା'ର କୁମର ଦଶରଥ ॥୫
ସେ ଦଶରଥ ଘରେ ହରି ।
ଜନ୍ମିଲେ ନରଦେହ ଧରି ॥୬
ଚତୁର୍ଦ୍ଧା ରୂପେ ଦେବକାର୍ଯ୍ୟେ ।
ଜନ୍ମିଲେ ଦଶରଥ ବୀର୍ଯ୍ୟେ ॥୭
ରାମ ଲକ୍ଷ୍ମଣ ଶତ୍ରୁଘନ ।
ଭରତ ତୁଲେ ଚାରିଜଣ ॥୮
ସେ ରାମ ଚରିତ ତୁ ସୁଖେ ।
ଶୁଣିଛୁ ଋଷିଙ୍କର ମୁଖେ ॥୯
ପିତା ବଚନେ ରାଜ୍ୟ ଛାଡ଼ି ।
ପଦ୍ମ ଚରଣେ ଭୂମି ମାଡ଼ି ॥୧୦
ଲକ୍ଷ୍ମଣ ସୀତାର ସମେତେ ।
ଯେ ଦୁଃଖେ ବଞ୍ଚିଲେ ବନସ୍ତେ ॥୧୧
ସୁଗ୍ରୀବ ତୁଲେ ମିତ୍ର କରି ।
ବିରୂପ କଲେ ସେ ଅସୁରୀ ॥୧୨
ତା' ଶୁଣି ରାବଣ ଅଇଲା ।
ବନରୁ ସୀତା ହରି ନେଲା ॥୧୩
ପ୍ରିୟା ବିଚ୍ଛେଦେ ହୋଇ ଅନ୍ଧ ।
ସମୁଦ୍ରେ କଲେ ସେତୁବନ୍ଧ ॥୧୪
ପ୍ରଥମେ ବିଶ୍ୱାମିତ୍ର ସଙ୍ଗେ ।
ଯଜ୍ଞ ରଖିଲେ ଅନୁରାଗେ ॥୧୫
ମାରୀଚ ଆଦି ନିଶାଚରେ ।
ରାତ୍ରେ ମିଳିଲେ ଯଜ୍ଞଘରେ ॥୧୬
ଲକ୍ଷ୍ମଣ ତୁଲେ ତା ସଂହାରି ।
ମୁନିଙ୍କ ଯଜ୍ଞ ରକ୍ଷା କରି ॥୧୭
ସେ ପୁଣି ସୀତା ସ୍ୱୟମ୍ବରେ ।
ମିଳିଲେ ବିଦେହ ନଗରେ ॥୧୮
ଭାଙ୍ଗିଲେ ଈଶ୍ୱର-କୋଦଣ୍ଡ ।
ବାଳକେ ଯେହ୍ନେ ଇକ୍ଷୁଦଣ୍ଡ ॥୧୯
ଅଶେଷ ରାଜାଗଣ ଜିଣି ।
ସୀତାଙ୍କୁ ସ୍ୱୟମ୍ବରୁ ଆଣି ॥୨୦
ଅଯୋଧ୍ୟା ନଗରେ ଆସନ୍ତେ ।
ପରଶୁରାମ ବନପଥେ ॥୨୧
ବୋଲଇ ଶ୍ରୀରାମଙ୍କୁ ଚାହିଁ ।
ଧନୁ ଭାଙ୍ଗିଲୁ ବଳେ ତୁହି ॥୨୨
ମୋ' ଧନୁ ବେନିକରେ ବାହ ।
ନୋହିଲେ ସୀତା ମୋତେ ଦିଅ ॥୨୩
ଏମନ୍ତ ତା'ର ବାକ୍ୟଘୋରେ ।
ତା' ଧନୁ ଧରି ବାମକରେ ॥୨୪
ତକ୍ଷଣେ ଭୃଗୁପତି ବୋଲେ ।
ଜଂଘେ ବସାଇ ଗୁଣ ଦେଲେ ॥୨୫
ରାମର ଦେଖି ଘୋରତମ ।
ପାଦେ ନମିଲେ ପର୍ଶୁରାମ ॥୨୬
ସୀତାଙ୍କୁ ଆଣି ନିଜପୁରେ ।
ପ୍ରବେଶ ହୋଇଲେ ସତ୍ୟରେ ॥୨୭
ପିତା ଯେ ପତ୍ନୀବଶ ହୋଇ ।
ଯାହା ବୋଇଲା କଇକେୟୀ ॥୨୮
ମୋର ତନୟ ରାଜା ହେଉ ।
ତୋ' ସୁତ ରାମ ବନେ ଯାଉ ॥୨୯
ସେ ରାମ ପିତାର ବଚନେ ।
ତକ୍ଷଣେ ଚଳିଲେ ବିପିନେ ॥୩୦
ବନେ ବୁଲନ୍ତି ବେନିଭାଇ ।
ଜନକ ସୁତା ସଙ୍ଗେ ଲଇ ॥୩୧
ରାବଣ ଭଗ୍ନୀ ସୂର୍ପଣଖା ।
ମାୟାରେ ବଳେ ଦେଲା ଦେଖା ॥୩୨
ଲକ୍ଷ୍ମଣ ରଘୁନାଥ ବୋଲେ ।
ତା ନାସା ଶ୍ରବଣ ଛେଦିଲେ ॥୩୩
ତା' ଛଳେ ରାତ୍ରିଚରଗଣ ।
ଉଭାରି କଲେ ଘୋରରଣ ॥୩୪
ଖର ଦୂଷଣ ଯେ ତ୍ରିଶିର ।
ଯୁଦ୍ଧେ ମିଳିଲେ ମହାବୀର ॥୩୫
ସୂର୍ପଣଖାର ବନ୍ଧୁଗଣେ ।
ଯେତେ ମିଳିଲେ ଘୋରରଣେ ॥୩୬
ତା'ଙ୍କୁ ଛେଦିଲେ ତୀକ୍ଷ୍ଣ ଶରେ ।
ଅଶେଷଜନ ଉପକାରେ ॥୩୭
ଚଉଦ ସହସ୍ର ଯେ ବଳ ।
ଛେଦିଲେ ଦଶରଥ-ବାଳ ॥୩୮
ବରଷାଋତୁ ଆଗମନେ ।
ପଶିଲେ ରାମ ଘୋରବନେ ॥୩୯
ତିନ୍ତୁଳି ବୃକ୍ଷ ତଳେ ରହି ।
ପଲ୍ଲବେ କୁଟୀର ଭିଆଇ ॥୪୦
ସୀତାର ରୂପଗୁଣ କଥା ।
ଶୁଣି ରାବଣ ମନେ ବ୍ୟଥା ॥୪୧
ଚିତ୍ତ ପୀଡ଼ିତ କାମଶରେ ।
ରାକ୍ଷସ ପଶେ ଅନ୍ତଃପୁରେ ॥୪୨
ମାରୀଚ ରାବଣ ଆଦେଶେ ।
ମିଳିଲା ରଘୁନାଥ ପାଶେ ॥୪୩
ଅଦ୍ଭୁତ ବିଧାତାର ଯୋଗ ।
ବନେ ମିଳିଲା ମାୟାମୃଗ ॥୪୪
ବନେ ସୁବର୍ଣ୍ଣମୃଗ ଦେଖି ।
ରାମଙ୍କୁ ବୋଲେ ଚନ୍ଦ୍ରମୁଖୀ ॥୪୫
ଭୋ ନାଥ ମୋର କ୍ରୀଡ଼ା ଅର୍ଥେ ।
ସୁବର୍ଣ୍ଣ ମୃଗ ଦିଅ ମୋତେ ॥୪୬
ସେ ରାମ ନାରୀବଶ ହୋଇ ।
ଧନୁ-ନାରାଚ କରେ ନେଇ ॥୪୭

Dr. Sudhanshu Sekhar Mishra

ଧାଇଁଲେ ମୃଗବଧ ଅର୍ଥେ ।
ସେ ପଶେ ଗହନ ବନସ୍ତେ ॥୪୮
ତାହାକୁ ମାରିବାର କାଳେ ।
ଶବଦ କଲା ସେ ବିକଳେ ॥୪୯
ରଖ ହେ ଲକ୍ଷ୍ମଣ ଶୁଭିଲା ।
ଜାନକୀ ଲକ୍ଷ୍ମଣେ କହିଲା ॥୫୦
ଲକ୍ଷ୍ମଣେ ଯାଅ ବେଗ ହୋଇ ।
ସ୍ୱାମୀଙ୍କି ବିପତ୍ତି ପଡଇ ॥୫୧
ତକ୍ଷଣେ ଧନୁ ଧରି ହସ୍ତେ ।
ଗଲେ ଶ୍ରୀରାମଚନ୍ଦ୍ର ପଥେ ॥୫୨
ରାବଣ ମିଳି ବୃକ୍ଷତଳେ ।
ସୀତାଙ୍କୁ ନେଲା ଅନ୍ତରାଳେ ॥୫୩
ସୀତା ବିଚ୍ଛେଦେ ଦୁଃଖମନେ ।
ତହୁଁ ଚଳିଲେ ଅନ୍ୟବନେ ॥୫୪
ସ୍ତିରୀ ସଙ୍ଗତ ଦୋଷବାଦେ ।
ଅବଶ୍ୟ ପଡ଼ଇ ପ୍ରମାଦେ ॥୫୫
ତକ୍ଷଣେ ଏମନ୍ତ କହିଲେ ।
ଜଟାୟୁଶଙ୍କୁ ଦଗ୍ଧ କଲେ ॥୫୬
କବନ୍ଧ ନାମେ ମହାସୁର ।
ବେଗେ ନାଶିଲେ ପ୍ରାଣ ତା'ର ॥୫୭
ତହୁଁ ଚଳିଲେ ଦୁଃଖମନେ ।
ମିଳିଲେ ଋଷ୍ୟମୂକ ବନେ ॥୫୮
ସୁଗ୍ରୀବ ତୁଲେ ମିତ୍ର କରି ।
ସେ ବନେ ବାଳିକି ସଂହାରି ॥୫୯
ଅଙ୍ଗଦ ହନୁମାନ ତୁଲେ ।
ସମୁଦ୍ର ନିକଟେ ମିଳିଲେ ॥୬୦
ପ୍ରିୟା ବିଚ୍ଛେଦେ ଦୁଃଖମନ ।
ଜାଣିଲେ ବରୁଣ ରାଜନ ॥୬୧
ସ୍ୱଭାବେ ଦୁର୍ଗମ ଗଭୀର ।
ଭ୍ରମନ୍ତି ମଗର କୁମ୍ଭୀର ॥୬୨
ତକ୍ଷଣେ ନିଜ ରୂପ ଧରି ।
ରାମର ପାଦେ ନମସ୍କାରି ॥୬୩
ଅନେକ ସ୍ତୁତିବାକ୍ୟ କଲା ।
ସେତୁବନ୍ଧନେ ମାର୍ଗ ଦେଲା ॥୬୪
ବୋଲଇ ଭାବଭକ୍ତି ବହି ।
ରାବଣ ବଧ କରି ତୁହି ॥୬୫
ସକଳ ଅସୁର ସଂହାରି ।
ବେଗେ ତୁ ଲଭ ନିଜ ନାରୀ ॥୬୬
ତୋ ଯଶ ରହୁ ଦଶଦିଶେ ।
ମୁନିଏ ଗାଇବେ ହରଷେ ॥୬୭
ସୁଗ୍ରୀବ ନୀଳ ହନୁମନ୍ତ ।
ଅଙ୍ଗଦ ତୁଲେ କପିଯୂଥ ॥୬୮
ଚଳନ୍ତୁ ରକ୍ଷବଳ ସଙ୍ଗେ ।
ଲଙ୍କା ଗମନ କର ବେଗେ ॥୬୯
ନିକୁମ୍ଭ କୁମ୍ଭ ଇନ୍ଦ୍ରଜିତ ।
ଧୂମ୍ରାକ୍ଷ ଆଦି ଯେତେ ଯୂଥ ॥୭୦
ଏ ଆଦି ଯେତେ ଘୋରସୈନ୍ୟ ।
କୁମ୍ଭକର୍ଣ୍ଣାଦି ବୀରମାନ ॥୭୧
ଶୂଳ ଖଡ଼ଗ ଗଦା ରିଷ୍ଟି ।
ଭୂଷଣ୍ଡି ତୀକ୍ଷ୍ଣ ଶରବୃଷ୍ଟି ॥୭୨
ପ୍ରହାର ଅସୁର ସମୂହେ ।
ସମୂଳେ ହୋନ୍ତି ଯେଣେ କ୍ଷୟେ ॥୭୩
ସୁଗ୍ରୀବ ଲକ୍ଷ୍ମଣ ସହିତେ ।
ଗନ୍ଧମାଦନ ହନୁମନ୍ତେ ॥୭୪
ଏ ଆଦି ଋକ୍ଷବଳ ତୁଲେ ।
ରାବଣ ସଂହାର ତୁ ବଳେ ॥୭୫
ଏମନ୍ତ ବରୁଣର ବାଣୀ ।
ଶୁଣି ଚଳିଲେ ରଘୁମଣି ॥୭୬
ସଙ୍ଗତେ ଘେନି କପିବଳ ।
ଲଙ୍କାରେ ସଂଯୋଜି ଅନଳ ॥୭୭
ରାକ୍ଷସ ତୁଲେ ଯୁଦ୍ଧ କରି ।
ଅନେକ ବଳ ତା ସଂହାରି ॥୭୮
ସୀତାହରଣ ଦୋଷଫଳେ ।
ସଂଗ୍ରାମେ ନ ଶିଲେ ସକଳେ ॥୭୯
ଦେଖିଣ ବୀରଙ୍କ ମରଣ ।
ରଥ ଆରୋହିଲା ରାବଣ ॥୮୦
ମାତଳି ଘେନି ଦିବ୍ୟଯାନେ ।
ମିଳିଲା ରାମ ସନ୍ନିଧାନେ ॥୮୧
ରାମ ରାବଣ ମୁଖ ଚାହିଁ ।
କହନ୍ତି କୋପଭର ହୋଇ ॥୮୨
ମୋ' ନାରୀ ଆଣିଲୁ ଚୋରାଇ ।
ତପ ପ୍ରଭାବେ ଗର୍ବ ବହି ॥୮୩
ଆଜ ସରିଲା ତପ ଫଳ ।
ହେଲେ ଗଞ୍ଜିବି ତୋର ବଳ ॥୮୪
ଏମନ୍ତ କହି ରଘୁନାଥ ।
କୋପେ କୋଦଣ୍ଡ ଧରି ହସ୍ତ ॥୮୫
ବଜ୍ର ସମାନ ରାମଶର ।
ଭେଦିଲା ରାବଣ ହୃଦର ॥୮୬
ରଥୁଁ ପଡ଼ିଲା ଭୂମିତଳେ ।
ଦଶବଦନୁ ଶୋଣି ଗଳେ ॥୮୭
ଭୂମି କମ୍ପିଲା ଥରହର ।
ଶବଦ ଶୁଭେ ହାହାକାର ॥୮୮
ରାବଣ ହତ ଶୁଣି କର୍ଣ୍ଣେ ।
ସଂଭ୍ରମେ ଅନ୍ତଃପୁର ଜନେ ॥୮୯
ତକ୍ଷଣେ ମନ୍ଦୋଦରୀ ତୁଲେ ।
ରାକ୍ଷସୀଗଣ ଉଭାରିଲେ ॥୯୦
ରୋଦନ କରନ୍ତି ବିକଳେ ।
ଶବଦେ ଭୁବନ ଉଛୁଳେ ॥୯୧
ମିଳିଲେ ରଣଭୂମି ମଧ୍ୟେ ।
ସ୍ୱାମୀ ସମୀପେ ଶୋକନାଦେ ॥୯୨
ହୃଦରେ ବେନିକର ତାଡ଼ି ।
ହା ନାଥ ବୋଲି ପାଦେ ପଡ଼ି ॥୯୩
ରାକ୍ଷସ ନାରୀଙ୍କ ରୋଦନ ।
ପୂରିଲା ଧରଣୀ ଗଗନ ॥୯୪
କାନ୍ଦନ୍ତି ସ୍ୱାମୀ କୋଳେ ଧରି ।
ନାରୀଙ୍କ ତୁଲେ ମନ୍ଦୋଦରୀ ॥୯୫
ବଜ୍ର ସମାନ ରାମ ଶର ।
ଭେଦିଲା ତୋ'ର ହୃଦୟର ॥୯୬
ଭୋ ନାଥ ତୋହର ମରଣେ ।
ପଶିବୁ କାହାର ଶରଣେ ॥୯୭
ତିନିଭୁବନେ ବୀରପଣ ।
ଅନାଥ କଲୁ ନାରୀଗଣ ॥୯୮
ତୋ'ର ମରଣେ ଲଙ୍କାପୁରୀ ।
ଢାଳେ ହୋଇଲା ହତଶିରୀ ॥୯୯

Dr. Sudhanshu Sekhar Mishra

ତୁ ନାଥ କାମେ ଭୋଳ ହୋଇ।
ଛଳେ ହରିଲୁ ବଇଦେହୀ ॥୧୦୦
ସେ ଦୋଷ ତୋତେ ନାଶ କଲା ।
ମରଣଦଶା ଭିଆଇଲା ॥୧୦୧
ଅନାଥ କଲୁ ସର୍ବନାରୀ ।
ଆମ୍ଭ ସଙ୍ଗତେ ଲଙ୍କାପୁରୀ ॥୧୦୨
ଦେହକୁ କଲୁ ଗୁଧ୍ରଗ୍ରାସ ।
ନରକେ ହୋଇବୁ ପ୍ରବେଶ ॥୧୦୩
ଏମନ୍ତ କହି ନାରୀଗଣେ ।
ପ୍ରାଣ ଛାଡ଼ିଲେ ହୁତାଶନେ ॥୧୦୪
ରହିଲା ମନ୍ଦୋଦରୀ ଶେଷ ।
ଏବେ ହୋ ଶୁଣ କୁରୁଶିଷ ॥୧୦୫
ରାବଣ ଭାଇ ବିଭୀଷଣ ।
ଥିଲା ଯେ ଶ୍ରୀରାମେ ଶରଣ ॥୧୦୬
ତାହାକୁ ଦେଲେ ମନ୍ଦୋଦରୀ ।
ଲଙ୍କାରେ ଅଭିଷେକ କରି ॥୧୦୭
ବୋଇଲେ ପ୍ରଭୁ ରଘୁବୀର ।
ଏବେ ତୁ ପ୍ରେତକାର୍ଯ୍ୟ କର ॥୧୦୮
ଏମନ୍ତ ଆଜ୍ଞା ତା'କୁ ଦେଲେ।
ଅଶୋକ ବିପିନେ ମିଳିଲେ ॥୧୦୯
ସୀତା ଦେଖିଲେ ବେନି ଡୋଳେ।
ଅଧୋବଦନେ ବୃକ୍ଷ ମୂଳେ ॥୧୧୦
ରାମ-ବିଚ୍ଛେଦ ଦୁଃଖଭର ।
ଶୁଖିଛି ସୁରଙ୍ଗ ଅଧର ॥୧୧୧
ନୟନେ ଅଶ୍ରୁଜଳ ପୂରି ।
ହା ସୀତା ବୋଲି କରେ ଧରି ॥୧୧୨
ଜାନକୀ ପ୍ରଭୁ ମୁଖ ଚାହିଁ ।
ବେଗେ ଉଠିଲେ ଜ୍ଞାନ ପାଇ॥୧୧୩
ଆଦିତ୍ୟ ଦେଖି ପଦ୍ମ ଯେହ୍ନେ।
ଅନାଇଁ ଉନ୍ମୀଳ ଲୋଚନେ ॥୧୧୪
ଅଗ୍ନିରେ ପ୍ରବେଶ ହୋଇଲେ ।
ସ୍ୱାମୀର ସନ୍ତୋଷ ବିହିଲେ ॥୧୧୫
ଶ୍ରୀରାମହସ୍ତେ ହସ୍ତ ଦେଇ ।
କାଞ୍ଚନ ବିମାନ ଆରୋହି ॥୧୧୬

ଲକ୍ଷ୍ମଣ ହନୁମନ୍ତ ତୁଲେ ।
ରାମ ବିମାନେ ବିଜେ କଲେ॥୧୧୭
ବିଭୀଷଣକୁ ଦାଶରଥି ।
ଲଙ୍କାରେ କରି ଅଧିପତି ॥୧୧୮
ବୋଇଲେ ହୁଅ ତୁ ଅମର ।
ଏ ଲଙ୍କା କଳ୍ପେ ଭୋଗ କର॥୧୧୯
ବିଭୀଷଣକୁ ରାଜା କରି ।
ରାମ ବିଜୟେ ନିଜପୁରୀ ॥୧୨୦
ପିତା ଆଦେଶେ ବନବାସ ।
ପୂରିଲା ଚଉଦ ବରଷ ॥୧୨୧
ରାମ ବିଜୟେ ଇନ୍ଦ୍ର ଚାହିଁ ।
ସ୍ୱର୍ଗୁ କୁସୁମ ବରଷଇ ॥୧୨୨
ଗଗନେ ଦେବେ ପନ୍ତିପନ୍ତି ।
ରାମ-ବିଜୟ ଉଚ୍ଚାରନ୍ତି ॥୧୨୩
ରାମ-ବିଚ୍ଛେଦେ ଦୁଃଖମନେ ।
ଭରତ ଥିଲା ତପୋବନେ ॥୧୨୪
ତା'ର ଚରିତ ଶୁଣି କର୍ଣ୍ଣେ ।
ଯେବା କହିଲେ ମୁନିଜନେ ॥୧୨୫
କଠୋର ତପ ବନେ କରି ।
ସେ ବ୍ରହ୍ମଚାରୀ ରୂପ ଧରି ॥୧୨୬
ଯାବକ ଭକ୍ଷେ ଗୋରୁମୂତ୍ରେ ।
ବଲ୍କଳ ପିନ୍ଧି କଟିସୂତ୍ରେ ॥୧୨୭
ପିଙ୍ଗଳ ଜଟା ଶିରେ ବହେ ।
ରାତ୍ରେ ଭୂମିରେ ବୀର ଶୋଏ ॥୧୨୮
ରାମପାଦୁକା ଅଗ୍ରେ ଥୋଇ ।
ନିଶ୍ଚଳ ଚିତ୍ତେ ନିତ୍ୟେ ଧ୍ୟାୟି ॥୧୨୯
ସେ ରାମ ମୁନିଗଣ ତୁଲେ ।
ଭରତ ଆଶ୍ରମେ ମିଳିଲେ ॥୧୩୦
ତାହାର ହସ୍ତ ରାମ ଧରି ।
ସଦୟଚିତ୍ତେ କୋଳ କରି ॥୧୩୧
ରାମ ଲକ୍ଷ୍ମଣ ହନୁମନ୍ତ ।
ସଙ୍ଗତେ ଚଳିଲେ ଭରତ ॥୧୩୨
ରାମପାଦୁକା ଶିରେ ଶୋହେ ।
ତପସ୍ୱୀରୂପେ ଜନ ମୋହେ ॥୧୩୩

ମିଳିଲେ ଅଯୋଧ୍ୟା ନିକଟେ ।
ସରଯୂନଦୀ ପୂର୍ବତଟେ ॥୧୩୪
ରାମର ଆଗମନ-ପଥେ ।
ମିଳିଲେ ପାତ୍ର-ପୁରୋହିତେ ॥୧୩୫
ବେଦ-ଶବଦେ ବିପ୍ରଜନେ ।
ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ୱନେ ॥୧୩୬
ଦିବ୍ୟବିମାନ ଶ୍ରେଣୀ ସାଥେ ।
ବୀରେଧାମନ୍ତି ବେଗେ ପଥେ॥୧୩୭
ଧ୍ୱଜ ପତାକା ଶୋଭେ ସ୍ୱର୍ଣ୍ଣେ।
ଉତ୍ତମ ବାଜି ଗଜ ଯାନେ ॥୧୩୮
ଗଣିକାଯୂଥ ଅଗ୍ରେ ଶୋହେ ।
ମାର୍ଗେ ଚଳନ୍ତେ ଜନମୋହେ॥୧୩୯
ବିବିଧ ଉପାୟନ ହସ୍ତେ ।
ଜୟ ଶବଦ କରି ପଥେ ॥୧୪୦
ଯୁବତୀ ଘେନି ଦୀପାବଳୀ ।
ପଥେ ଦିଅନ୍ତ ହୁଳହୁଳି ॥୧୪୧
ବିପ୍ରଙ୍କୁ ଦେଖି ରଘୁନାଥ ।
ଶିରେ ନିବେଶି ବେନି ହସ୍ତ ॥୧୪୨
ତାହାଙ୍କୁ ନମସ୍କାର କଲେ ।
ସୀତା ଲକ୍ଷ୍ମଣ ଘେନି ତୁଲେ ॥୧୪୩
ଅଯୋଧ୍ୟାପୁର ଜନ ଯେତେ ।
ରାମ ଆଗମ ଦେଖି ପଥେ ॥୧୪୪
ରାମ ଲକ୍ଷ୍ମଣ ସୀତା ଚାହିଁ ।
ରଙ୍ଗେ ନାଚନ୍ତି ଗୀତ ଗାଇ ॥୧୪୫
ରାମ ପାଦୁକା ଘେନି ଶିରେ ।
ଭରତ ଚଳଇ ସଧୀରେ ॥୧୪୬
ଭରତ ଚଳେ ରାମ ପାଶେ ।
ବିବୁଧେ ଦେଖନ୍ତି ଆକାଶେ ॥୧୪୭
ଉତ୍ତମ ବ୍ୟଜନ-ରାମରେ ।
ସୁଗ୍ରୀବ ବିଭୀଷଣ ଧରେ ॥୧୪୮
ଅଞ୍ଜନାସୁତ ବୀରମଣି ।
ଚଳନ୍ତି ଶ୍ୱେତଛତ୍ର ଘେନି ॥୧୪୯
ଶତ୍ରୁଘ୍ନ କରେ ଧନୁଶର ।
ପଥେ ଦେଖନ୍ତି ସୁରନର ॥୧୫୦

Dr. Sudhanshu Sekhar Mishra

ଜାନକୀ କରେ କମଣ୍ଡଳ ।
ପୂରିତ ନାନା ତୀର୍ଥଜଳ ॥୧୫୧
ଅଙ୍ଗଦ ହସ୍ତେ ଖଡ୍ଗ ଶୋହି ।
ସୁବର୍ଣ୍ଣ ଶତଚନ୍ଦ୍ର ଯହିଁ ॥୧୫୨
ସ୍ତୁବନ୍ତି ବନ୍ଦୀ ନାରୀଯୂଥ ।
ମଧ୍ୟେ ବିଜୟ ରଘୁନାଥ ॥୧୫୩
ନକ୍ଷତ୍ର ମଧ୍ୟେ ଯେହ୍ନେ ଶଶୀ ।
ତ୍ରିଦଶେ କୁସୁମ ବରଷି ॥୧୫୪
ସଙ୍ଗତେ ଘେନି ତିନିଭାଇ ।
ମିଳିଲେ ଅନ୍ତଃପୁରେ ଯାଇ ॥୧୫୫
ସେ ପୁର ମହିମା ବର୍ଣ୍ଣିତ ।
ମଣ୍ଡଣିହସ୍ତୀ ଦ୍ୱାରେ ସ୍ଥିତ ॥୧୫୬
ନାନା ସୁଗନ୍ଧେ ପରିମଳ ।
ନାନା ସୁବାସିତ ଶୀତଳ ॥୧୫୭
ପ୍ରାସାଦ ଗୋପୁରାଦି ଶୋଭା ।
ଚିତ୍ରଦେବତା ଗୃହ କିବା ॥୧୫୮
ପତାକା ସୁବର୍ଣ୍ଣ କଳସ ।
ଶୋଭିତ ଦିଶେ ଦଶଦିଶ ॥୧୫୯
ପୁନ୍ନାଗ ନାରିକେଳ ଆଦି ।
ବସ୍ତ୍ର-ଜାଳକେ ଦର୍ପଣାଦି ॥୧୬୦
ତୋରଣା ବିଚିତ୍ର ଦିଶନ୍ତି ।
ପ୍ରଜାଙ୍କୁ ହରଷ ଦିଅନ୍ତି ॥୧୬୧
ଘେନିଣ ନାନା ଦ୍ରବ୍ୟମାନ ।
ଆନନ୍ଦେ କରନ୍ତି ଦର୍ଶନ ॥୧୬୨
ଆଶିଷ କରିଣ ବୋଲନ୍ତି ।
ପୂର୍ବେ ବରାହ ରୂପେ ପୃଥ୍ୱୀ ॥୧୬୩
ଉଦ୍ଧରି ରଖିଲ ଗୋସାଇଁ ।
ଏବେ ଶ୍ରୀରାମ ରୂପେ ତୁହି ॥୧୬୪
ସ୍ତିରୀ ପୁରୁଷେ ଗୃହ ଛାଡ଼ି ।
ଆରୋହି ଅଟ୍ଟାଳୀ ପାଚେରୀ ॥୧୬୫

ଦେଖିବା ପାଇଁଣ ଉତ୍ସୁକ ।
ବୀର ଦର୍ଶନେ ଯେଉଁ ସୁଖ ॥୧୬୬
ସର୍ବେ ସନ୍ତୋଷ ମନ ହୋଇ ।
କୁସୁମ ବରଷନ୍ତି ନେଇ ॥୧୬୭
ନମିଲେ ଗୁରୁପତ୍ନୀ ପାଦେ ।
କୌଶଲ୍ୟା ଚରଣେ ଆନନ୍ଦେ ॥୧୬୮
ରାମଙ୍କୁ ଦେଖି ମାତୃଗଣ ।
ଆନନ୍ଦେ କରନ୍ତି କଲ୍ୟାଣ ॥୧୬୯
ପ୍ରାଣକୁ ପାଇ ତନୁ ଯେହ୍ନେ ।
ଉଠଇ ହରଷ ବଦନେ ॥୧୭୦
ଆନନ୍ଦେ ଅଶ୍ରୁଜଳ ନେତ୍ରେ ।
ସିଞ୍ଚନ୍ତି ଶ୍ରୀରାମର ଗାତ୍ରେ ॥୧୭୧
ଶ୍ରୀରାମ ଶିରେ ଜଟା ଦେଖି ।
ସର୍ବେହୋଇଲେ ମନେ ଦୁଃଖୀ ॥୧୭୨
ତକ୍ଷଣେ ମିଳିଲେ ବ୍ରାହ୍ମଣେ ।
ବଶିଷ୍ଠ ଆଦି ମୁନିଗଣେ ॥୧୭୩
ମୁଣ୍ଡନ କଲେ ଜଟାଭାର ।
ଘେନାଇଁ ନାନା ଉପହାର ॥୧୭୪
ସୁବର୍ଣ୍ଣକୁମ୍ଭ ତୀର୍ଥଜଳେ ।
ରାମଙ୍କୁ ଅଭିଷେକ କଲେ ॥୧୭୫
ଉତ୍ତମ ବସ୍ତ୍ର ଅଳଙ୍କାର ।
ରତ୍ନମୁକୁଟ ବାନ୍ଧି ଶିର ॥୧୭୬
ଜାନକୀ ତୁଲେ ଅଭିଷେକ ।
ମିଳି ସକଳ ପ୍ରଜାଲୋକ ॥୧୭୭
ରାମଙ୍କୁ ପାଇ ପ୍ରଜାଜନେ ।
ସକଳେ ହରିଷତ ମନେ ॥୧୭୮
ଅପୁତ୍ର ପୁତ୍ର ପାଇ ଯେହ୍ନେ ।
ଆନନ୍ଦେ ହରଷ ବଦନେ ॥୧୭୯
ତ୍ରେତୟା ବର୍ତ୍ତମାନ କାଳେ ।
ଯେସନେ ସତ୍ୟଯୁଗ ମିଳେ ॥୧୮୦

ରାମ ହୋଇଲେ ରାଜ୍ୟେ ରାଜା।
ସତ୍ୟଯୁଗର ପ୍ରାୟେ ପ୍ରଜା ॥୧୮୧
କରନ୍ତି ସ୍ୱଧର୍ମ ଆଚାର ।
ଏବେ ହୋ ଶୁଣ କୁରୁବୀର ॥୧୮୨
ବନ ପର୍ବତ ନଦ ନଦୀ ।
ଦ୍ୱୀପ ବରଷ ସିନ୍ଧୁ ଭେଦି ॥୧୮୩
ପ୍ରଜାଙ୍କୁ କାମଧେନୁ ପ୍ରାୟ ।
ଭୂମି ହୋଇଲା ରସଦାୟ ॥୧୮୪
ନାଶିଲେ ଆଧିବ୍ୟାଧି ବ୍ୟଥା ।
ବୃଦ୍ଧ ହୋଇଲେ ସାମରଥା ॥୧୮୫
ସେ ରାମ ଏକପତ୍ନୀ ବ୍ରତ ।
ଆଚରେ ରାଜରଷି ମତ ॥୧୮୬
ଆଚରି ଗୃହମେଧି ଧର୍ମ ।
ଶୁଭେ ସକଳ କ୍ରିୟା କର୍ମ ॥୧୮୭
ଜାନକୀ ରାମର ଚରଣେ ।
ସ୍ୱଧର୍ମେ ଖଟେ ଅନୁକ୍ଷଣେ ॥୧୮୮
ପବିତ୍ର କଲେ ନିଜ ଅଂଶେ ।
ଜନମି ହରି ଯେଉଁ ବଂଶେ ॥୧୮୯
ସୁଜନେ ଚିନ୍ତ ଅବିରତ ।
ଆଦିତ୍ୟ ବଂଶାନୁଚରିତ ॥୧୯୦
ତରିବ ଏ ଭବ-ଜଳଧି ।
ଶ୍ରବଣେ ଶୁଣି ନିରବଧି ॥୧୯୧
କହଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୧୯୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଦଶମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଏକାଦଶ ଅଧ୍ୟାୟ

କହନ୍ତି ଶୁକ ମହାଯତି ।
ଶୁଣ ପରୀକ୍ଷ ଚକ୍ରବର୍ତ୍ତୀ ।।୧

ଶୁକ ଉବାଚ

ଶ୍ରୀରାମ ରାଜ୍ୟେ ହୋଇ ରାଜା ।
ଆନନ୍ଦେ ପାଳି ଜନପ୍ରଜା ।।୨
ଉତ୍ତମ କଲ୍ପେ ଯଜ୍ଞ କଲେ ।
ବଶିଷ୍ଠ ଆଦି ମୁନି ତୁଲେ ।।୩
ବିପ୍ରଙ୍କୁ ଚାରିବେଦୁଁ ବରି ।
ଦକ୍ଷିଣା ଦେଲେ ଚିତ୍ତ ଭରି ।।୪
ଭୂମିକି କରି ଚାରିଭାଗେ ।
ଦକ୍ଷିଣା ଦେଲେ ଅନୁରାଗେ ।।୫
ହୋତାଙ୍କୁ ପୂର୍ବଦିଗ ଦେଲେ ।
ଅଧ୍ୱର୍ଯ୍ୟୁ ପଶ୍ଚିମେ କଳ୍ପିଲେ ।।୬
ଉତ୍ତର ଦିଗ ସାମଗାନେ ।
ବ୍ରହ୍ମାଙ୍କୁ ଦକ୍ଷିଣ ବିଧାନେ ।।୭
ବ୍ରାହ୍ମଣେ ଦେଲେ ଚାରିଦିଶ ।
ଆଚାର୍ଯ୍ୟେ ଦେଲେ ଅବଶେଷ ।।୮
ସୀତା ସଙ୍ଗତେ ରଘୁପତି ।
ଆଚରି ଗୃହସ୍ଥଙ୍କ ଗତି ।।୯
ଅନେକ ବସ୍ତ୍ର-ରତ୍ନ-ଧନେ ।
ସନ୍ତୋଷ କରି ସର୍ବଜନେ ।।୧୦
ଆଚରି ଗୃହମେଧି-ଧର୍ମ ।
ବେଦ ବିହିତ ଯେତେ କର୍ମ ।।୧୧
ବ୍ରାହ୍ମଣେ ଦେଖି ସାଧୁକଥା ।
ମନେ ନ କଳ୍ପି ଅନ୍ୟ ଚିନ୍ତା ।।୧୨
ରାମର ନିକଟେ ମିଳିଲେ ।
ଅନେକ ସ୍ତୁତି ବାକ୍ୟ କଲେ ।।୧୩
କହିଲେ ପ୍ରିୟଭାବେ ବହି ।
ଭୋ ନାଥ ଏତେ କାର୍ଯ୍ୟ ନାହିଁ ।।୧୪
ଆମ୍ଭେ କହିଲୁ ବେଦଧର୍ମେ ।
ତୋତେ ନ ଜାଣି ମତିଭ୍ରମେ ।।୧୫
ତୋହର ରାଜ୍ୟ ତୁହି ନିଅ ।
ଆମ୍ଭର ହୃଦେ ସଦା ଥାଅ ।।୧୬

ଏମନ୍ତେ କିଛି ଦିନ ଗଲା ।
ଶୁଣ ହୋ ଗୋବିନ୍ଦର ଲୀଳା ।।୧୭
ଦିନେକ ରାମ ରାତ୍ରକାଳେ ।
ବୁଲନ୍ତି ନିଜ ଭୃତ୍ୟ ତୁଲେ ।।୧୮
ଯଶ ଅଯଶ କେ କି ଚିନ୍ତେ ।
ଏମନ୍ତେ ବିଚାରି ଗୁପତେ ।।୧୯
ଶୁଣିଲେ ଏକ ଗୃହାଶ୍ରମେ ।
ପତ୍ନୀକି ବୋଲେ ଗରୁତମେ ।।୨୦
ତୁ ଦୁଷ୍ଟା ନାରୀ ଘରୁ ଯାଅ ।
ମୁଁ ନ ଛୁଇଁବି ତୋ'ର ଦେହ ।।୨୧
ଅସତୀ ପରଗୃହାଶ୍ରମୀ ।
ମୁଁ ନୋହେ ରାମ ପ୍ରାୟେ କାମୀ ।।୨୨
ସେ ଯେହ୍ନେ ସୀତା ଘେନି ଘରେ ।
ଆନନ୍ଦେ ଗୃହାଶ୍ରମ କରେ ।।୨୩
ଏମନ୍ତ ଶୁଣି ତା'ର ମୁଖେ ।
ଗୃହେ ମିଳିଲେ ମନଦୁଃଖେ ।।୨୪
ଶୁଣିଣ ଲୋକ ଅପବାଦ ।
ଚିନ୍ତା ବସିଲା ରାମ ହୃଦ ।।୨୫
ଲୋକାପବାଦ ନ ସହିଲେ ।
ସୀତାରେ ରାମ କୋପ କଲେ ।।୨୬
ପ୍ରିୟାର ଗର୍ଭବାସ ଦେଖି ।
ତା'ର ବିଚ୍ଛେଦେ ହୋଇ ଦୁଃଖୀ ।।୨୭
ଏ ଲୋକ ଅପବାଦ ଭୟ ।
କରିବି କେଉଁଣ ଉପାୟ ।।୨୮
ଲକ୍ଷ୍ମଣେ ଡାକି ରଘୁନାଥ ।
ତା' ସଙ୍ଗେ ଭାଳିଲେ ଏକାନ୍ତ ।।୨୯
ବୋଇଲେ ସୀତାଙ୍କୁ ବିପିନେ ।
ନିବେଶି ଆସ ତୁ ବହନେ ।।୩୦
ତକ୍ଷଣେ ରାଜା ଆଜ୍ଞା ପାଇ ।
ସୀତାଙ୍କୁ ବନେ ନିବେଶଇ ।।୩୧
ସେ ମିଳେ ବାଲମୀକ ସ୍ଥାନେ ।
ବେନିକୁମର ଜାତ ବନେ ।।୩୨
ବାଲ୍ମୀକି ଭ୍ରାନ୍ତି ଛାଡ଼ି ମନ ।
ନିଜ କୁଟୀରେ ଦେଲେ ସ୍ଥାନ ।।୩୩

ବାଲ୍ମୀକି ଜାତକର୍ମ କଲେ ।
ପୁତ୍ର ଦୁହିଙ୍କ ନାମ ଦେଲେ ।।୩୪
ପ୍ରଥମ କୁଶ ନାମେ ଖ୍ୟାତ ।
ଅନ୍ୟ ଲବ ନାମେ ବିଦିତ ।।୩୫
ଏମନ୍ତେ କିଛିଦିନ ଅନ୍ତେ ।
ରାମ ଚଳିଲେ ସୀତା ପଥେ ।।୩୬
ରାମ ଆଗମ ଶୁଣି କର୍ଣ୍ଣେ ।
ତକ୍ଷଣେ ବରୁଣ-ଭୁବନେ ।।୩୭
ଜାନକୀ ହୋଇଲେ ପ୍ରବେଶ ।
ମନେ ଅନେକ କରି ରୋଷ ।।୩୮
ସୀତାର ନ ପାଇଁ ସନ୍ଦେଶ ।
ରାମ ଚଳିଲେ ନିଜ ଦେଶ ।।୩୯
ଲବ କୁଶଙ୍କୁ ସଙ୍ଗେ ନେଲେ ।
କୁଶଙ୍କୁ ଅଧିକାର ଦେଲେ ।।୪୦
ଅଙ୍ଗଦ ଚିତ୍ରକେତୁ ଦୁଇ ।
ଲକ୍ଷ୍ମଣ ବୀର୍ଯ୍ୟେ ଜାତ ହୋଇ ।।୪୧
ତକ୍ଷ ପୁଷ୍କଳ ବେନି ଭାଇ ।
ଭରତ ପତ୍ନୀ ଗର୍ଭେ ହୋଇ ।।୪୨
ସୁବାହୁ ଶ୍ରୁତସେନ ବୀର ।
ହୋଇଲେ ଶତ୍ରୁଘ୍ନ କୁମର ।।୪୩
ଭରତ ଦିଗବିଜେ କରି ।
କୋଟି ଗନ୍ଧର୍ବବଳ ମାରି ।।୪୪
ଯୁଦ୍ଧେ ପାଇଲା ଯେତେ ଧନ ।
ଦେଲା ସେ ରାମ ସନ୍ନିଧାନ ।।୪୫
ଶତ୍ରୁଘ୍ନ ଦିଗବିଜେ କରି ।
ଲବଣ ମଧୁପୁତ୍ର ମାରି ।।୪୬
ମଥୁରାପୁର ମଧୁବନେ ।
ପୁରୀ ସ୍ଥାପିଲେ ପ୍ରଜାଜନେ ।।୪୭
ଧନ ଶ୍ରୀରାମ ଆଗେ ଦେଲା ।
ପୁତ୍ରକୁ ତହିଁ ରାଜା କଲା ।।୪୮
ଲକ୍ଷ୍ମଣ ଚନ୍ଦ୍ରଜ୍ୟୋତି ପୁରୀ ।
ପୁତ୍ରକୁ ତହିଁ ରାଜା କରି ।।୪୯
ରାମ ଯେ ଜାନକୀ ବିଚ୍ଛେଦେ ।
ମନ ନ କଲ୍ପେ ରାଜପଦେ ।।୫୦

Dr. Sudhanshu Sekhar Mishra

ସୀତାର ଗୁଣ ଚିନ୍ତି ମନେ ।
ନିଦ୍ରା ନ ମାଡ଼ଇ ନୟନେ ॥୫୧
କଣ୍ଠ-କୁଣ୍ଠିତ ଶୋକେ ପୂରି ।
ଚିତ୍ତକୁ ନ ପାରନ୍ତି ଧରି ॥୫୨
ସ୍ତିରୀ ପୁରୁଷ ସଙ୍ଗ ଏହି ।
କେ ସହେ ନରଦେହ ବହି ॥୫୩
ସେ ଦିନୁ ବ୍ରହ୍ମଚର୍ଯ୍ୟ କରି ।
ରାମ ହୋଇଲେ ବ୍ରହ୍ମଚାରୀ ॥୫୪
ବର୍ଷସହସ୍ର ତ୍ରୟୋଦଶ ।
ନିରତେ ବ୍ରହ୍ମଚାରୀ ବେଶ ॥୫୫
ଅଖଣ୍ଡ ଅଗ୍ନିହୋତ୍ର କଲେ ।
ବଶିଷ୍ଠ ଆଦି ମୁନି ତୁଲେ ॥୫୬
ଦକ୍ଷିଣା ଦେଲେ ତୋଷ ଚିତ୍ତେ ।
ସନ୍ଧ୍ୟା-ମଧ୍ୟାହ୍ନେ ଅବିରତେ ॥୫୭
ସଂସାରେ ସ୍ଥାପି ନିଜ ଯଶ ।
ସ୍ୱଧାମେ ହୋଇଲେ ପ୍ରବେଶ ॥୫୮
ଲବକୁଶଙ୍କୁ ରାଜ୍ୟ ଦେଇ ।
ସକଳ ଜନପ୍ରଜା ରାଇ ॥୫୯
ଚତୁର୍ଦ୍ଧାରୂପେ ରଘୁନାଥ ।
ଚଳିଲେ ଉତ୍ତରର ପଥ ॥୬୦
ସ୍ଥାବର ଜଙ୍ଗମାଦି କୀଟ ।
ଘେନି ଚଳିଲେ ବଇକୁଣ୍ଠ ॥୬୧
ବୋଲନ୍ତି ଶୁକ ବ୍ରହ୍ମଋଷି ।
ଶୁଣ ହୋ ରାଜା କୁରୁବଂଶୀ ॥୬୨
ରାମ ଚରିତ ତୋ' ଅଗ୍ରତେ ।
ସଂକ୍ଷେପେ କହିଲି ମୁଁ ଯେତେ ॥୬୩
ଏହା ଯେ ଶ୍ରବଣେ ଶୁଣନ୍ତି ।
ଦୁର୍ଗମ ସଙ୍କଟୁ ତରନ୍ତି ॥୬୪
ରାମ ଚରିତ ପୁଣ୍ୟକଥା ।
ଯେଣେ ଖଣ୍ଡଇ ଭବବ୍ୟଥା ॥୬୫
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୬୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଏକାଦଶୋଽଧ୍ୟାୟଃ ॥

---

## ଦ୍ୱାଦଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ମହୀପତି ।
ଶ୍ରୀରଘୁନାଥଙ୍କ ସନ୍ତତି ॥୧
ଅତିଥି କୁଶର ନନ୍ଦନ ।
ନିଷଧ ତା'ର ତହୁଁ ଜନ୍ମ ॥୨
ନଭ ତାହାର ହୁଏ ସୁତ ।
ତା' ପୁତ୍ର ପୁଣ୍ଡରୀକ ଖ୍ୟାତ ॥୩
ତା' ପୁତ୍ର କ୍ଷେମଧନ୍ୱା ନାମ ।
ରୂପେ ସୁନ୍ଦର ଅନୁପମ ॥୪
ତା'ର କୁମର ଦେବାନୀକ ।
ଅନୀହ ତା'ର ପୁତ୍ର ଏକ ॥୫
ତା'ର ତନୟ ପାରିପାତ୍ର ।
ବଳସ୍ଥଳ ନାମ ତା' ସୁତ ॥୬
ତା'ର ସନ୍ତତି ବଜ୍ରନାଭ ।
ଅର୍କର ଅଂଶେ ସେ ସମ୍ଭବ ॥୭
ସଗଣ ତାହାର ତନୟେ ।
ବିଧୃତି ତାର ବୀର୍ଯ୍ୟେ ହୋଏ ॥୮
ହିରଣ୍ୟନାଭ ତା' ସନ୍ତତି ।
ଯୋଗ ବିଦ୍ୟାରେ ତା'ର ଖ୍ୟାତି ॥୯
ତା' ଗୁରୁ ଅଟନ୍ତି ଜୈମିନି ।
ତା' ଶିଷ୍ୟ ଯାଜ୍ଞବଲ୍କ୍ୟ ମୁନି ॥୧୦
ଅଭ୍ୟାସ ଯା'ର ଚାରିବେଦେ ।
ତେଜେ ହୃଦୟଗ୍ରନ୍ଥି ଭେଦେ ॥୧୧
ହିରଣ୍ୟନାଭର କୁମର ।
ପୁଷ୍ପ ଅଭ୍ୟାସ ଯଜ୍ଞେ ଯା'ର ॥୧୨
ତା'ର କୁମର ଧ୍ରୁବସନ୍ଧି ।
ଯା' ବଂଶେ ଥାନ୍ତି ଅଷ୍ଟନିଧି ॥୧୩
ତା'ର କୁମର ସୁଦର୍ଶନ ।
ତାହାର ପୁତ୍ର ଅଗ୍ନିବର୍ଣ୍ଣ ॥୧୪
ଶୀଘ୍ର ଜନମ ତାହାଠାରୁ ।
ତାହାର ସୁତ ଅଟେ ମରୁ ॥୧୫
ମରୁ ଯେ ଶୀଘ୍ରର ତନୟେ ।
ଯେ ନିତ୍ୟେ ଯୋଗକର୍ମ ଧ୍ୟାୟେ ॥୧୬
କଳାପ ଗ୍ରାମେ ବସି ଧ୍ୟାନେ ।
ଯନ୍ତ୍ରିତ ନିତ୍ୟେ ତତ୍ତ୍ୱଜ୍ଞାନେ ॥୧୭
ଯୋଗ ସାଧଇ ଯେବା ଅର୍ଥେ ।
ଶୁଣ କହିବା ତୋ' ଅଗ୍ରତେ ॥୧୮
କଳିର ଅନ୍ତେ ସୂର୍ଯ୍ୟବଂଶ ।
ସେ ପୁଣି କରିବ ପ୍ରକାଶ ॥୧୯
ପ୍ରସୁଶ୍ରୁତ ତା'ର ତନୟେ ।
ତା' ସୁତ ସନ୍ଧିନାମ ବହେ ॥୨୦
ଅମର୍ଷଣ ଯେ ତା'ର ସୁତ ।
ମହସ୍ୱାନ ଯେ ତହୁଁ ଜାତ ॥୨୧
ତା'ର କୁମର ବିଶ୍ୱବାହୁ ।
ତା'ର ମହିମା କେବା କହୁ ॥୨୨
ପ୍ରସେନଜିତ ତା'ର ପୁତ୍ର ।
ତକ୍ଷକ ନାମେ ତା'ର ସୁତ ॥୨୩
ବୃହଦବଳ ତା'ର ସୁତ ।
ତୋ' ପିତା ଅର୍ଥେ ରଣେ ହତ ॥୨୪
ଇକ୍ଷ୍ୱାକୁ ବଂଶେ ଯେତେ ରାଜା ।
ଧର୍ମେ ପାଳିଲେ ଜନପ୍ରଜା ॥୨୫
ଶୁଣ ପରୀକ୍ଷ କହୁଁ ଏବେ ।
ଭବିଷ୍ୟେ ଯେତେ ଉପୁଜିବେ ॥୨୬
ବୃହଦବଳ ପୁତ୍ର ଶୁଣ ।
ନାମ ହୋଇବ ବୃହଦ୍ରଣ ॥୨୭

Dr. Sudhanshu Sekhar Mishra

ତାହାର ପୁତ୍ର ଉରୁପ୍ରିୟ ।
ବତ୍ସବୃଦ୍ଧ ତା'ର ତନୟ ॥୨୮
ତା'ର କୁମର ପ୍ରତିବ୍ୟୋମ ।
ଭାନୁ ନାମେ ତା'ର ନନ୍ଦନ ॥୨୯
ଦିବାକ ତାହାର ସନ୍ତତି ।
ସେ ହେବ ଯୁଦ୍ଧେ ସେନାପତି ॥୩୦
ତା'ର ତନୟ ସହଦେବ ।
ତହୁଁ ବୃହଦଶ୍ୱ ସମ୍ଭବ ॥୩୧
ତା'ର କୁମର ଭାନୁମାନ ।
ପ୍ରତିକାଶ୍ୱ ତା'ର ନନ୍ଦନ ॥୩୨
ସୁପ୍ରତୀକ ତହୁଁ ସମ୍ଭବ ।
ତା' ପୁତ୍ର ହେବ ମରୁଦେବ ॥୩୩
ତା'ର ନନ୍ଦନ ସୁନକ୍ଷତ୍ର ।
ପୁଷ୍କର ହେବ ତା'ର ପୁତ୍ର ॥୩୪

ଅନ୍ତରୀକ୍ଷ ତା'ର ସନ୍ତତି ।
ତହୁଁ ସୁତପା ଉତପତ୍ତି ॥୩୫
ଅମିତ୍ରଜିତ ତା' ନନ୍ଦନ ।
ତା' ତହୁଁ ବୃହଦ୍ରାଜ ଜନ୍ମ ॥୩୬
ତା'ର ସନ୍ତାନ ରଣଞ୍ଜୟ ।
ତା' ପୁତ୍ର ନାମଟି ସଞ୍ଜୟ ॥୩୭
ତା' ସୁତ ଶାକ୍ୟ ନାମେ ଖ୍ୟାତ ।
ଶୁଦ୍ଧୋଦ ତାହାର ଅପତ୍ୟ ॥୩୮
ଲାଙ୍ଗଳ ତାହାର କୁମର ।
ପ୍ରସେନଜିତ ସୁତ ତା'ର ॥୩୯
ତାହାର ନନ୍ଦନ କ୍ଷୁଦ୍ରକ ।
ତା' ତହୁଁ ହୋଇବ ରଣକ ॥୪୦
ତା' ପୁତ୍ର ସୁରଥ ହୋଇବ ।
ସୁମିତ୍ର ପୁତ୍ରେ ଶେଷ ହେବ ॥୪୧

ଇକ୍ଷ୍ୱାକୁ ବଂଶେ ରାଜା ଯେତେ ।
ତୋତେ କହିଲି ଭବିଷ୍ୟତେ ॥୪୨
ସୁମିତ୍ର ଯାଏ କଳିଯୁଗେ ।
ଏତେ ନୃପତି ହେବେ ଭୋଗେ ॥୪୩
ଆଦିତ୍ୟବଂଶାନୁଚରିତ ।
ଯେ ଅବା ଭୂତ-ଭବିଷ୍ୟତ ॥୪୪
ତାହାଙ୍କ ଜନ୍ମ ଏ ସଂସାରେ ।
ଶୁଣନ୍ତେ ସର୍ବପାପ ହରେ ॥୪୫
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୪୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଦ୍ୱାଦଶୋଽଧ୍ୟାୟଃ ॥

---

## ତ୍ରୟୋଦଶ ଅଧ୍ୟାୟ

### ଶୁକ ଉବାଚ

ନିମି ଯେ ଇକ୍ଷ୍ୱାକୁର ସୁତ ।
ତା'ବଂଶେ ଯେତେ ରାଜା ଜାତ ॥୧
ଯେ କର୍ମ କଲେ ଅନୁଭବେ ।
ଶୁଣ କହିବା ତୋତେ ଏବେ ॥୨
ସେ ନିମି ବଶିଷ୍ଠ ସଙ୍ଗତେ ।
ବସି ଭାଳିଲା ଯଜ୍ଞ ଅର୍ଥେ ॥୩
ବଶିଷ୍ଠ ମୋ'ର ଯଜ୍ଞ କର ।
ଋତ୍ୱିଜେ ଚାରିବେଦୁଁ ବର ॥୪
ବଶିଷ୍ଠ ତା'ର ମୁଖ ଚାହିଁ ।
କହିଲେ ପ୍ରିୟଭାବ ବହି ॥୫
ଇନ୍ଦ୍ର ବରଣ କଲା ମୋତେ ।
ତୋ' ଯଜ୍ଞ କରିବି କେମନ୍ତେ ॥୬
ମୁଁ ଆଗେ ଇନ୍ଦ୍ରଯଜ୍ଞ ସାରି ।
ଋତ୍ୱିଜେ ଚାରିବେଦୁଁ ବରି ॥୭
ପଛେ କରିବି ଯଜ୍ଞ ତୋ'ର ।
ସେ ନିମି ନ ଦେଲା ଉତ୍ତର ॥୮
ବଶିଷ୍ଠ ଇନ୍ଦ୍ରଯଜ୍ଞେ ଗଲେ ।
ଅନ୍ୟ ବ୍ରାହ୍ମଣେ ନିମି ବୋଲେ ॥୯

ଯଜ୍ଞ ଆରମ୍ଭିଲେ ହରଷେ ।
ସଙ୍କଳ୍ପି ସହସ୍ର ବରଷେ ॥୧୦
ଏମନ୍ତେ ଇନ୍ଦ୍ରଯଜ୍ଞ ସାରି ।
ନିମିର ବାକ୍ୟ ସେ ସୁମରି ॥୧୧
ସେ ଯଜ୍ଞ କରିବାର ଆଶେ ।
ବେଗେ ମିଳିଲେ ନିମି ପାଶେ ॥୧୨
ଯଜ୍ଞ ଆରମ୍ଭ ଦେଖି ତା'ର ।
କୋପିଲେ ବ୍ରହ୍ମାଙ୍କ କୁମର ॥୧୩
ବୋଇଲେ କୋପଭର ହୋଇ ।
ମୋତେ ଅବଜ୍ଞା କଲୁ ତୁହି ॥୧୪
ତୋର ଜୀବନେ ନାହିଁ କାର୍ଯ୍ୟ ।
ମରଣ ହେଉ ତୋତେ ଆଜ ॥୧୫
ତା' ଶୁଣି ନିମି କୋପ ବହି ।
ବୋଇଲେ ଜୀବ ଛାଡ଼ ତୁହି ॥୧୬
ତକ୍ଷଣେ ନିମି ଶାପ ଫଳେ ।
ବଶିଷ୍ଠ ବସିଲେ ନିଶ୍ଚଳେ ॥୧୭
ଜୀବନ ଗଲା ଦେହୁ ଛାଡ଼ି ।
ତକ୍ଷଣେ ଶୂନ୍ୟମାର୍ଗେ ଉଡ଼ି ॥୧୮
ଉର୍ବଶୀ ଗର୍ଭେ ହେଲେ ଜନ୍ମ ।
ମିତ୍ରାବରୁଣଙ୍କ ନନ୍ଦନ ॥୧୯

ନିମି ଯେ ଯଜ୍ଞଶାଳେ ଥିଲେ ।
ତକ୍ଷଣେ ଜୀବନ ଛାଡ଼ିଲେ ॥୨୦
ଜୀବନ ଯଜ୍ଞଶାଳେ ପଶି ।
ରହିଲା ଯଜ୍ଞସ୍ତମ୍ଭେ ଗ୍ରାସି ॥୨୧
ନିମି ଶରୀରେ ବିପ୍ରଜନେ ।
ବିଚାର କଲେ ଅନୁମାନେ ॥୨୨
ତୈଳ ସୁଗନ୍ଧଦ୍ରବ୍ୟ ଦେଇ ।
ନିମି ଶରୀର ତହିଁ ଥୋଇ ॥୨୩
ବୋଇଲେ ପୂର୍ଣ୍ଣାହୁତି ଗଲେ ।
ଶରୀର ଦହିବା ଅନଳେ ॥୨୪
ଏମନ୍ତ ବୋଲି ଯଜ୍ଞ କଲେ ।
ସମ୍ପୂର୍ଣ୍ଣେ ପୂର୍ଣ୍ଣାହୁତି ଦେଲେ ॥୨୫
ଇନ୍ଦ୍ରାଦି ଦେବେ ଯେତେ ଥିଲେ ।
ସନ୍ତୋଷେ ସୋମପାନ କଲେ ॥୨୬
ବିପ୍ରେ ଯେ ଦକ୍ଷିଣା ପାଇଲେ ।
ଅନଳେ ଦହିବା ବୋଇଲେ ॥୨୭
ଦେବତା ଋଷି ତୋଷମନେ ।
ବର ଯାଚିଲେ ଯଜମାନେ ॥୨୮
ନିମିର ଦେହେ ପଶୁ ପ୍ରାଣ ।
ଆମ୍ଭେ କରିବା ପରିତ୍ରାଣ ॥୨୯

Dr. Sudhanshu Sekhar Mishra

ନିମି ଜୀବନ ସ୍ତମ୍ଭେ ଥିଲା ।
ଦେବଙ୍କୁ ପ୍ରତିବାକ୍ୟ କଲା ॥୩୦
ମୋ'ର ଶରୀରେ କାର୍ଯ୍ୟ ନାହିଁ ।
ଅସାର ଅନିତ୍ୟ ଏ ଦେହୀ ॥୩୧
ସକଳ ଦୁଃଖ ଏ ଶରୀରେ ।
ମରଣ ଭୟ ନିରନ୍ତରେ ॥୩୨
ଜନ୍ମ-ମରଣ ରାତ୍ରଦିନେ ।
ଅଶେଷ ବ୍ୟାଧି ଅନୁକ୍ଷଣେ ॥୩୩
ମୂତ୍ର ପୂରୀଷ କୃମିସ୍ଥାନ ।
ମାୟାରେ ହୋଏ ହତଜ୍ଞାନ ॥୩୪
କାମାଦିଶତ୍ରୁ ମଧ୍ୟେ ରହେ ।
ନିରତେ ଅହଙ୍କାର ବହେ ॥୩୫
ମାୟା-ସମୁଦ୍ରେ ନିତ୍ୟେ ବୁଡ଼େ ।
ଅନ୍ତେ ନରକ ପଥେ ପଡ଼େ ॥୩୬
ପୂରୀଷ ଭସ୍ମକୀଟ ଅନ୍ତେ ।
ଦୁର୍ଗନ୍ଧ କରଇ ନିରତେ ॥୩୭
ରୋଗଙ୍କ ମନ୍ଦିର ମାତର ।
ସ୍ୱଭାବେ ଦୁଃଖ ଏ ଶରୀର ॥୩୮
ଏମନ୍ତେ ନିମିର ବଚନେ ।
ସର୍ବଦେବତା ତୋଷମନେ ॥୩୯
ବୋଇଲେ ପ୍ରମାଣ ଏ ବାଣୀ ।
ପୁଣି କ୍ଷଣକେ ମନେ ଗୁଣି ॥୪୦

ଦେବଗଣ ଉବାଚ

ବୋଇଲେ ଶୁଣ ନରନାଥ ।
ଆମ୍ଭର ବର ନୋହେ ବ୍ୟର୍ଥ ॥୪୧
ସକଳ ଜନ୍ତୁଙ୍କ ଲୋଚନେ ।
ବସ ତୁ ନିମିଷ ବିଧାନେ ॥୪୨
ନିମିଷମତେ ସଂଖ୍ୟାକର ।
କାଳର ଗଣନା ବେଭାର ॥୪୩
ଏମନ୍ତ ଦେବଙ୍କ ବଚନେ ।
ବସିଲା ଜନ୍ତୁଙ୍କ ନୟନେ ॥୪୪
ଅଧ୍ୟାତ୍ମଗତି ନିତ୍ୟେ ତା'ର ।
ଏବେ ହୋ ଶୁଣ କୁରୁବୀର ॥୪୫
ଅରାଜ୍ୟଭୟେ ମହାଜନେ ।
ସକଳେ ବିଚାରିଲେ ମନେ ॥୪୬
ଆମ୍ଭେ ଯେ ବେଦ-ମନ୍ତ୍ରସ୍ୱରେ ।
କୁଶେ ମନ୍ଥିବା ଏ ଶରୀରେ ॥୪୭
ଯେମନ୍ତେ ପୁତ୍ର ଜନ୍ମ ହେବ ।
ନିର୍ଭୟେ ପ୍ରଜାଙ୍କୁ ପାଳିବ ॥୪୮
ଏମନ୍ତ ବିଚାରି ମନରେ ।
ତକ୍ଷଣେ ଜନ୍ମିଲା କୁମରେ ॥୪୯
କୁଶେ ମନ୍ଥିଲେ ବେଦସ୍ୱରେ ।
ତକ୍ଷଣେ ଜନ୍ମିଲା କୁମରେ ॥୫୦
ଜନ୍ମନ୍ତେ ଜନକ ହୋଇଲା ।
ବୈଦେହ ନାମ ବୋଲାଇଲା ॥୫୧
ମନ୍ଥନେ ମିଥିଳ ତା' ନାମ ।
ବହେ ଅଶେଷ ଗୁଣଗ୍ରାମ ॥୫୨
ଏମନ୍ତେ ନିମିରାଜବଳା ।
ମିଥିଳାପୁର ବସାଇଲା ॥୫୩
ତା' ସୁତ ଉଦାବସୁ ନାମ ।
ନନ୍ଦିବର୍ଦ୍ଧନ ତା' ନନ୍ଦନ ॥୫୪
ସୁକେତୁ ନାମେ ତା'ର ସୁତ ।
ତା'ର ସନ୍ତତି ଦେବରାତ ॥୫୫
ଦେବରାତରୁ ବୃହଦ୍ରଥ ।
ତା' ତହୁଁ ମହାବୀର୍ଯ୍ୟ ଜାତ ॥୫୬
ସୁଧୃତି ତାହାର କୁମର ।
ତା' ପୁତ୍ର ଧୃଷ୍ଟକେତୁ ବୀର ॥୫୭
ହର୍ଯ୍ୟଶ୍ୱ ତାହାର କୁମର ।
ମରୁ ତାହାଙ୍କ ବଂଶଧର ॥୫୮
ମରୁରୁ ପ୍ରତୀପକ ଜନ୍ମ ।
ତା' ସୁତ କୃତରଥ ନାମ ॥୫୯
ତା'ର କୁମର ଦେବମୀଢ଼ ।
ଯା' ଚିତ୍ତ ଯୋଗାଭ୍ୟାସେ ଦୃଢ଼ ॥୬୦
ବିଶ୍ରୁତ ତାହାର ସନ୍ତତି ।
ତା'ର କୁମର ମହାଧୃତି ॥୬୧
ତା' ସୁତ କୃତିରାତ ନାମ ।
ଜୀବେ ଅଶେଷ ଗୁଣଗ୍ରାମ ॥୬୨
ତା'ର ସନ୍ତତି ମହାରୋମ ।
ରୂପେ ଶଶାଙ୍କ ନୋହେ ସମ ॥୬୩
ସୁବର୍ଣ୍ଣରୋମା ତା' ତନୟେ ।
ତା' ତହୁଁ ହ୍ରସ୍ୱରୋମା ହୋଏ ॥୬୪
ତା'ର କୁମର ସୀରଧ୍ୱଜ ।
ତା'ର ମହିମା ମହାତେଜ ॥୬୫
ବିପ୍ରେ ଯେ ତା'ର ଯଜ୍ଞକାଳେ ।
ଭୂମିକି ଚଷିଲେ ଲଙ୍ଗଳେ ॥୬୬
ଲଙ୍ଗଳ ଅଗ୍ରେ ସୀତା ଜାତ ।
ଏଣୁ ସେ ସୀରଧ୍ୱଜ ଖ୍ୟାତ ॥୬୭
ତା'ର କୁମର କୁଶଧ୍ୱଜ ।
ଧର୍ମଧ୍ୱଜ ତା'ର ତନୁଜ ॥୬୮
ତା' ତହୁଁ ବେନିପୁତ୍ର ଜାତ ।
ଶୁଣ ହୋ ତାହାଙ୍କ ଚରିତ ॥୬୯
ସେ କୃତଧ୍ୱଜ ମିତଧ୍ୱଜ ।
ଶୁଣ ତାହାଙ୍କର ତନୁଜ ॥୭୦
କୃତଧ୍ୱଜର କେଶିଧ୍ୱଜ ।
ଖାଣ୍ଡିକ୍ୟ ଆନର ତନୁଜ ॥୭୧
ଖାଣ୍ଡିକ୍ୟ କେଶିଧ୍ୱଜ ବେନି ।
ସାଧିଲେ ଯୋଗବିଦ୍ୟା ଘେନି ॥୭୨
କେଶିଧ୍ୱଜର ଠାରୁ ଭୟେ ।
ପଳାଇ ଗଲା ଆନଠାଏ ॥୭୩
କେଶି ଧ୍ୱଜରୁ ଭାନୁମାନ ।
ତା'ର ତନୁଜ ଶତଦ୍ୟୁମ୍ନ ॥୭୪
ଶୁଚି ନାମରେ ତା' ତନୁଜ ।
ତା'ର ତନୁଜ ସନଦ୍ୱାଜ ॥୭୫
ଊର୍ଦ୍ଧକେତୁ ଯେ ତହୁଁ ଜାତ ।
ତାହାର ପୁତ୍ର ପୁରୁଜିତ ॥୭୬
ଅରିଷ୍ଟ ନେମି ସୁତ ତା'ର ।
ଶ୍ରୁତାୟୁ ତାହାର କୁମର ॥୭୭
ତା'ର ତନୟ ସୁପାର୍ଶ୍ୱକ ।
ତା' ସୁତ ଚିତ୍ରରଥ ଲେଖ ॥୭୮
କ୍ଷେମାଧି ନାମେ ତା'ର ସୁତ ।
ତା'ର ତନୟ ସମରଥ ॥୭୯
ତାହାର ପୁତ୍ର ସତ୍ୟରଥ ।
ଉପଗୁରୁ ଯେ ତା'ର ସୁତ ॥୮୦
ତାହାର ପୁତ୍ର ଉପଗୁପ୍ତ ।
ବସ୍ୱନନ୍ତ ଯେ ତା'ର ସୁତ ॥୮୧
ଯୁଯୁଧ ତା'ର ପୁତ୍ର ନାମ ।
ତା' ତହୁଁ ହେଲା ସୁଭାଷଣ ॥୮୨

Dr. Sudhanshu Sekhar Mishra

ତା' ସୁତ ଶ୍ରୁତ ତହୁଁ ଜୟ ।
ତାହାର ତନୟ ବିଜୟ ॥୮୩
ତା' ତହୁଁ ଋତ ହେଲା ଜାତ ।
ଶୁନକ ତାହାର ଯେ ସୁତ ॥୮୪
ବୀତହବ୍ୟ ଯେ ତା' ସନ୍ତତି ।
ତାହାର ତହୁଁ ଜାତ ଧୃତି ॥୮୫
ତାହାର ପୁତ୍ର ବହୁଳାଶ୍ୱ ।
ତା' ସୁତ କୃତି ମହାଯଶ ॥୮୬
ଜନକବଂଶେ ରାଜା ଯେତେ ।
କହିଲୁ ଭୂତ ଭବିଷ୍ୟତେ ॥୮୭
ସେ ସର୍ବେ ଯୋଗବିଦ୍ୟା ସାଧି ।
ତରିଲେ ସଂସାର ଜଳଧି ॥୮୮
ରବିର ବଂଶେ ରାଜା ଯେତେ ।
ସେ କଥା ବଂଶାନୁଚରିତେ ॥୮୯
ତୋତେ କହିଲି ପ୍ରିୟଭାବେ ।
ସୋମର ବଂଶ ଶୁଣ ଏବେ ॥୯୦
ବୋଲଇ ଦାସ ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୯୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ତ୍ରୟୋଦଶୋଽଧ୍ୟାୟଃ ॥

---

## ଚତୁର୍ଦ୍ଦଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ସୋମବଂଶ ଶୁଣ ।
ଯେବେ ତରିବ ତିନିଗୁଣ ॥୧
ସେ ବଂଶେ ପୁରୁରବା ଆଦି ।
ଯେ ଭାବେ ଯେ ଅବା ସମ୍ପାଦି ॥୨
ଯଶ ରହିଲା ମହୀତଳେ ।
ସର୍ବେ ଚଳିଲେ କାଳବଳେ ॥୩
ସହସ୍ରଶିର ଯେ ଅନନ୍ତ ।
ତା' ନାଭିପଦ୍ମୁଁ ବ୍ରହ୍ମାଜାତ ॥୪
ସୃଷ୍ଟିର ଅର୍ଥେ ସପ୍ତପୁତ୍ରେ ।
ଜନ୍ମ ହୋଇଲେ ବ୍ରହ୍ମାଗାତ୍ରେ ॥୫
ମରୀଚି ଆଦି ସପ୍ତଋଷି ।
ଧ୍ରୁବମଣ୍ଡଳ ରଥେ ବସି ॥୬
ଭ୍ରମନ୍ତି ଧ୍ରୁବଚକ୍ର-ବଳେ ।
ଉତ୍ତର-ଆକାଶ-ମଣ୍ଡଳେ ॥୭
ତାହାଙ୍କ ମଧ୍ୟେ ଅତ୍ରିମୁନି ।
ତପ କରନ୍ତି ଯୋଗ ଘେନି ॥୮
ଧ୍ୟାନ କରନ୍ତେ ଯୋଗବଳେ ।
ତା'ଙ୍କ ଲୋଚନ ଅଶ୍ରୁଜଳେ ॥୯
ପୁରୁଷେ ହୋଇଲା ପ୍ରକାଶ ।
ତେଜେ ଗଞ୍ଜିଲା ଦଶଦିଶ ॥୧୦
ଅମୃତମୟ ମନୋରମ ।
ତାହାର ନାମ ଦେଲେ ସୋମ ॥୧୧
ବିପ୍ର-ଔଷଧି-ଉଡୁଗଣେ ।
ବ୍ରହ୍ମା ସ୍ଥାପିଲେ ରାଜାପଣେ ॥୧୨
ସେ ସୋମ ରାଜସୂୟ କରି ।
ତିନି ଭୁବନେ ଅଧିକାରୀ ॥୧୩
ବଳେ ଜିଣିଲା ତିନିପୁର ।
ଏବେ ହୋ ଶୁଣ ନୃପବର ॥୧୪
ସୁନ୍ଦର ରୂପେ ମତ୍ତଗର୍ବେ ।
ନିରତେ ଭ୍ରମେ ସେ ସ୍ୱଭାବେ ॥୧୫
ଏମନ୍ତେ ବୃହସ୍ପତି ନାରୀ ।
ଗଙ୍ଗାର ଜଳେ ସ୍ନାନ କରି ॥୧୬
ରୂପେ ସୁନ୍ଦରୀ ମନୋହରା ।
ସ୍ୱଭାବେ ନାମ ତା'ର ତାରା ॥୧୭
ତାହାର ରୂପଗୁଣ ଚାହିଁ ।
ଅନଙ୍ଗବାଣେ ମୋହ ଯାଇ ॥୧୮
ସ୍ୱଭାବେ ଋତୁସ୍ନାନ କାଳେ ।
ସୋମ ହରିଲା ତା'କୁ ବଳେ ॥୧୯
ସେ କଥା ଶୁଣି ବୃହସ୍ପତି ।
ପତ୍ନୀ ହରଣେ ଦୁଃଖମତି ॥୨୦
ସୋମର ଦ୍ୱାରେ ରାତ୍ରେ ଗଲେ ।
ଅନେକ ପ୍ରକାରେ ମାଗିଲେ ॥୨୧
କେବେ ହେଁ ତାରାକୁ ନ ଦେଲା ।
ଅନେକ ଅପମାନ କଲା ॥୨୨
ସେ ଗୁରୁ ଦେବ ମଧ୍ୟେ ଆସି ।
ଇନ୍ଦ୍ରଙ୍କୁ କହିଲେ ବିଶେଷି ॥୨୩
ଇନ୍ଦ୍ରର ତୁଲେ ଦେବବଳ ।
ଚଳନ୍ତେ ଶୁଭେ ମୁଖଗୋଳ ॥୨୪
ଏ କଥା ଶୁଣି ଶୁକ୍ରବାଦେ ।
ମିଳିଲା ଅସୁରଙ୍କ ମଧ୍ୟେ ॥୨୫
ଅସୁରବଳ ସଙ୍ଗ କରି ।
ଧାଇଁଲେ ସୋମପକ୍ଷ ଧରି ॥୨୬
ଇନ୍ଦ୍ରର ତୁଲେ ଦେବଗଣ ।
ଏମନ୍ତେ ଦେବାସୁର ରଣ ॥୨୭
ପ୍ରକୋପେ ବଢ଼ିଲା ସଂଗ୍ରାମ ।
ତାରକାମୟ ଯୁଦ୍ଧନାମ ॥୨୮
ତାରାର ଅର୍ଥେ ଯୁଦ୍ଧ ଯେଣୁ ।
ତାରକାମୟ ନାମ ତେଣୁ ॥୨୯
ଏମନ୍ତେ ଘୋର ଯୁଦ୍ଧ କଲେ ।
ଅନେକ ଦେବାସୁର ମଲେ ॥୩୦
ଦେବ ଅସୁର ଘୋରରଣେ ।
ବ୍ରହ୍ମା ମିଳିଲେ ତତ୍‌କ୍ଷଣେ ॥୩୧
ରଣ ନିବାରି ଚତୁର୍ମୁଖ ।
ମିଳିଲେ ସୋମର ଅଗ୍ରତ ॥୩୨
ଅନେକ ଭର୍ତ୍ସନା ସେ କଲେ ।
ବୃହସ୍ପତିଙ୍କି ତାରା ଦେଲେ ॥୩୩
ସେ ଗୁରୁ ତାରାମୁଖ ଚାହିଁ ।
ବୋଲନ୍ତି ବ୍ରହ୍ମାଙ୍କୁ ଅନାଇଁ ॥୩୪
ଭୋ ତାତ ଦେଖ ତୋ' ଅଗ୍ରତେ ।
ଗର୍ଭ ଏ ଧରିଛି ଗୁପତେ ॥୩୫
କେମନ୍ତେ ଛୁଇଁବି ଶରୀର ।
ଏହାରେ କାର୍ଯ୍ୟ ନାହିଁ ମୋ'ର ॥୩୬
କାହାର ବୀର୍ଯ୍ୟ ଗର୍ଭେ ଅଛି ।
କେମନ୍ତେ ଜାଣିବା ତା' ଲକ୍ଷି ॥୩୭
ତାରାର ଗର୍ଭ ଚାହିଁ କୋପେ ।
ଗୁରୁ ବୋଲନ୍ତି ମନସ୍ତାପେ ॥୩୮

Dr. Sudhanshu Sekhar Mishra

ତୁ ମୋତେ ଛୁଇଁବୁ କେମନ୍ତେ ।
ଭସ୍ମ କରିବି ଆଜ ତୋତେ ॥୩୯
ଏମନ୍ତେ ଶୁଣି ସେ ଉତ୍ତର ।
କମ୍ପଇ ତାରାର ଶରୀର ॥୪୦
ତକ୍ଷଣେ ଗର୍ଭ ପ୍ରସବିଲା ।
ସୁନ୍ଦରେ ଜଗତ ମୋହିଲା ॥୪୧
କାନ୍ଦଇ ପଡ଼ି ଭୂମିଗତେ ।
ଆଶ୍ଚର୍ଯ୍ୟେ ଦେଖନ୍ତି ସମସ୍ତେ ॥୪୨
ସୁନ୍ଦର ଦେଖି ତା' ବଦନ ।
କମ୍ପିଲା ବୃହସ୍ପତି ମନ ॥୪୩
ବୋଲଇ ମୋର ପୁତ୍ର ଏହି ।
ସୋମ ବୋଲଇ ତାହା ଚାହିଁ ॥୪୪
ଦେଖ ଏ ମୋହର କୁମର ।
ମୋହର ପ୍ରାୟେକ ସୁନ୍ଦର ॥୪୫
ଗୁରୁ ବୋଲନ୍ତି ମୋ'ର ସୁତ ।
ଏମନ୍ତେ ହୋଇଲା ଅନର୍ଥ ॥୪୬
ସକଳ ମୁନିଗଣ ତୁଲେ ।
ତାରାକୁ ବିଶ୍ୱାସେ ପୁଛିଲେ ॥୪୭
ତା' ଶୁଣି ଅଧୋମୁଖୀ ହୋଇ ।
ତାରା ରହିଲା ଲଜ୍ଜା ପାଇ ॥୪୮
କୁମର ଭୂମିଗତେ ଥାଇ ।
ବୋଲେ ଜନନୀ ମୁଖ ଚାହିଁ ॥୪୯
ଦୁର୍ବୃତ୍ତପଣ ଏ ତୋହର ।
କହ ମୁଁ କାହାର କୁମର ॥୫୦
ନୋହିଲେ ଶାପ ଦେବି ତୋତେ ।
ଲଜ୍ଜା ହୋଇଲା ବଡ଼ ମୋତେ ॥୫୧
ଏମନ୍ତ ପୁତ୍ରବାକ୍ୟ ଶୁଣି ।
ତାରାକୁ ରାଇ କୁଶପାଣି ॥୫୨
ବୋଲନ୍ତି କୋମଳ ବଚନ ।
ନିର୍ଭୟ କରି ତାରା ମନ ॥୫୩
ଭୋ ମାତ ଲଜ୍ଜା ତୁ ନ କର ।
କହ ଏ କାହାର କୁମର ॥୫୪
ତା' ଶୁଣି ଅଧୋମୁଖୀ ହୋଇ ।
ବୋଲେ ସୋମର ପୁତ୍ର ଏହି ॥୫୫
ତକ୍ଷଣେ ସୋମ କୋଳ କଲା ।
ବ୍ରହ୍ମା ତାହାକୁ ନାମ ଦେଲା ॥୫୬

ବୋଧିଲା ରୂପଗୁଣେ ଯେଣୁ ।
ନାମ ହୋଇଲା ବୁଧ ତେଣୁ ॥୫୭
ସେ ବୁଧ ଇଳାକନ୍ୟା ଗର୍ଭେ ।
ମୁଁ ତୋତେ କହିଅଛି ପୂର୍ବେ ॥୫୮
ପୁରୁରବାକୁ ଜନ୍ମ କଲା ।
ଯେ କାଳେ ତପୋବନେ ଥିଲା ॥୫୯
ଏବେ ହୋ ଶୁଣ ନରନାଥ ।
ସୋମର ବଂଶାନୁଚରିତ ॥୬୦
ସୁରଭୁବନେ ଏକ ଦିନେ ।
ଉର୍ବଶୀ ଗନ୍ଧର୍ବ-ଗାୟନେ ॥୬୧
ମିତ୍ରାବରୁଣଙ୍କୁ ଲଙ୍ଘିଲା ।
ସେ ତା'ଙ୍କୁ କୋପେ ଶାପ ଦେଲା ॥୬୨
ବୋଇଲା ନରଲୋକେ ଯାଅ ।
ସ୍ୱର୍ଗ-ଭୁବନେ ତୁ ନ ଥାଅ ॥୬୩
ତକ୍ଷଣେ ଅଧୋମୁଖ ହୋଇ ।
ମିଳିଲା ନରଲୋକେ ଯାଇ ॥୬୪
ଗିରି-କନ୍ଦର-ବନେ ବୁଲେ ।
ସ୍ୱାମୀ ନ ଲଭେ ଆତ୍ମ ତୁଲେ ॥୬୫
ଏମନ୍ତେ ଭ୍ରମନ୍ତେ ତରୁଣୀ ।
ପୁରୁରବାକୁ ଦେଖେ ପୁଣି ॥୬୬
କନ୍ଦର୍ପପ୍ରାୟ ରୂପରାଶି ।
ତେଜେ ଗଞ୍ଜଇ ରବିଶଶୀ ॥୬୭
ଏମନ୍ତେ ତାହାର ସଙ୍ଗତେ ।
ଉର୍ବଶୀ ମିଳିଲା ଏକାନ୍ତେ ॥୬୮
ଉତ୍‌ଫୁଲ୍ଲ ହରଷ ଲୋଚନେ ।
ପୁରୁରବାର ସନ୍ନିଧାନେ ॥୬୯
ସେ ରାଜା ତା'ର ମୁଖ ଚାହିଁ ।
ତକ୍ଷଣେ କାମବଶ ହୋଇ ॥୭୦
ଗଭୀର-ବାକ୍ୟେ ତା'କୁ କହେ ।
ରୋମ-ହରଷ ସର୍ବଦେହେ ॥୭୧

ରାଜା ଉବାଚ

ଆସ ସୁନ୍ଦରି ବସ ଏଥେ ।
ଭଲେ ଅଇଲୁଟିକି ପଥେ ॥୭୨
ମିଳିଲୁ ମୋହର ସଙ୍ଗତେ ।
କହ ମୁଁ କି କରିବି ତୋତେ ॥୭୩

ମୋ' ସଙ୍ଗେ ରମ ତୁ ଏକାନ୍ତେ ।
ସୁନ୍ଦରି ରହି ଦିନାକେତେ ॥୭୪
ଉର୍ବଶୀ ବୋଲଇ ତୁରିତେ ।
ମୋହର ସଧ ଅଛି ତୋତେ ॥୭୫
ତୋ' ରୂପ ଦେଖି ହେ ରାଜନ ।
ଅନଙ୍ଗ ବାଧିଲା ମୋ 'ମନ ॥୭୬
ତୁ ମୋ'ର ତୁଲେ ସତ୍ୟକର ।
ନିଶ୍ଚେ ବରିବି ତୋତେ ବର ॥୭୭
ଦେଖ ଏ ମେଷପୁତ୍ର ଦୁଇ ।
ତୁଲେ ଅଛନ୍ତି ବେନିଭାଇ ॥୭୮
ଅତ୍ୟନ୍ତ ପ୍ରିୟ ଏ ମୋହର ।
ଏହାଙ୍କୁ ଯତ୍ନେ ରକ୍ଷାକର ॥୭୯
ଉଲଗ୍ନ ନ ଦେଖିବି ତୋତେ ।
ଘୃତ ଆହାର ମୋ'ର ନିତ୍ୟେ ॥୮୦
ଏ ସତ୍ୟ ପ୍ରତିପାଳୁ ଯେବେ ।
ତୋ' ସଙ୍ଗେ ରମିବଇଁ ତେବେ ॥୮୧
ଏମନ୍ତ ତା'ର ମୁଖୁଁ ଶୁଣି ।
ସତ୍ୟ ଯେ କଲା ନୃପମଣି ॥୮୨
ଉର୍ବଶୀରୂପେ ହୋଇ ବଶ ।
କଲା ସେ ଅନେକ ବିଶ୍ୱାସ ॥୮୩
ବିମାନେ ବସି ତା'ର ପାଶେ ।
ଗିରି-କାନନ-ନାନା ଦେଶେ ॥୮୪
ରମିଲା ହରଷିତ ମନେ ।
ଚଇତ୍ରରଥ ଆଦି ବନେ ॥୮୫
ଜଳ ବିହାର ନାନା ଦେଶେ ।
ପଦ୍ମ କୁମୁଦ ଗନ୍ଧ ବାସେ ॥୮୬
ଉର୍ବଶୀ ସଙ୍ଗେ ସଙ୍ଗ କଲା ।
ରାତ୍ର-ଦିବ୍ସ ନ ଜାଣିଲା ॥୮୭
ଏବେ ହୋ ଶୁଣ କୁରୁବଂଶୀ ।
ଇନ୍ଦ୍ର ଯେ ନ ଦେଖି ଉର୍ବଶୀ ॥୮୮
ବୋଲେ ଗନ୍ଧର୍ବଗଣ ଚାହିଁ ।
ଉର୍ବଶୀ ମୋର ଗଲା କାହିଁ ॥୮୯
ଗନ୍ଧର୍ବେ ବେନିକର ଯୋଡ଼ି ।
କହିଲେ ଇନ୍ଦ୍ରପାଦେ ପଡ଼ି ॥୯୦
ମିତ୍ରାବରୁଣ ଶାପ ଫଳେ ।
ଉର୍ବଶୀ ଅଛି ମର୍ତ୍ତ୍ୟପୁରେ ॥୯୧

Dr. Sudhanshu Sekhar Mishra

ରମଇ ପୁରୁରବା ତୁଲେ ।
ତା' ଶୁଣି ପୁରନ୍ଦର ବୋଲେ ॥୯୨
ତୁମ୍ଭେ ହୋ ମର୍ତ୍ତ୍ୟପୁରେ ଯାଇ ।
ଉର୍ବଶୀ ଆଣ ବେଗ ହୋଇ ॥୯୩
ସ୍ୱର୍ଗ ନ ଶୋହେ ତା' ବିହୀନେ ।
ଚନ୍ଦ୍ର ନ ଥିଲେ ରାତ୍ର ଯେହ୍ନେ ॥୯୪
ତକ୍ଷଣେ ଇନ୍ଦ୍ରଆଜ୍ଞା ଶିରେ ।
ଘେନି ଚଳିଲେ ମର୍ତ୍ତ୍ୟପୁରେ ॥୯୫
ରାତ୍ରେ ନିବିଡ଼ ଅନ୍ଧକାରେ ।
ମିଳିଲେ ପୁରୁରବା ପୁରେ ॥୯୬
ତକ୍ଷଣେ ଦେବମାୟାବଳେ ।
ଉର୍ବଶୀ ମେଷ ଚୋରାଇଲେ ॥୯୭
ସେ ବେନିମେଷ ଶୂନ୍ୟେ ଯା'ନ୍ତେ ।
ଉଚ୍ଚେ ରୋଦନ କଲେ ପଥେ ॥୯୮
ତା' ଶୁଣି ନିଦ୍ରାଭଙ୍ଗ ହୋଇ ।
ବିକଳେ ଉର୍ବଶୀ କାନ୍ଦଇ ॥୯୯
ବୋଲଇ ଶିରେ କର ଦେଇ ।
ମୋ' ପୁତ୍ର କେନେଲା ଚୋରାଇ ॥୧୦୦
ମୁଁ ଏଡ଼େ ହୀନେ ଆଶ୍ରେ କଲି ।
ଏ ପୁରେ ଅନାଥା ହୋଇଲି ॥୧୦୧
ଭୁଲିଲି ନପୁଂସକ ବୋଲେ ।
ପୁତ୍ରେମୋହର କେଣେ ଗଲେ ॥୧୦୨
ଏ ରାଜା ନାରୀଙ୍କର ପ୍ରାୟେ ।
ଶୋଇଛି ନିଦ୍ରାସୁଖ ମୋହେ ॥୧୦୩
ଯେସନେ ନ ପୁସକ ଶୋଇ ।
ଏମନ୍ତ ଦେଖିଲା ତ ନାହିଁ ॥୧୦୪

ଶୁକ ଉବାଚ

ଏମନ୍ତେ ରୋଦନ କରନ୍ତେ ।
ରାଜାର ଶୟନ ଏକାନ୍ତେ ॥୧୦୫
ଉର୍ବଶୀ କଟୁବାକ୍ୟ ଶୁଣି ।
ନିଦ୍ରା ତେଜିଲା ନୃପମଣି ॥୧୦୬
ବ୍ୟଥିତ ଉର୍ବଶୀ ବଚନେ ।
ଅଙ୍କୁଶେ କୁଞ୍ଜର ଯେସନେ ॥୧୦୭
ତକ୍ଷଣେ ଶୟନରୁ ଉଠି ।
ଖଡ଼ଗ କଲା ଦୃଢ଼ମୁଷ୍ଟି ॥୧୦୮
ଉଲଗ୍ନେ ରାଜା ଥିଲା ଶୋଇ ।
ଅନ୍ଧାରେ ଦେହ ନ ଦିଶଇ ॥୧୦୯
ପଥେ ସେ ରେରେକାର ରାବେ ।
ମେଷକୁ ଛାଡ଼ିଲେ ଗନ୍ଧର୍ବେ ॥୧୧୦
ସେ ମେଷ ଘେନି ବାମହସ୍ତେ ।
ମିଳିଲେ ଉର୍ବଶୀ ଅଗ୍ରତେ ॥୧୧୧
ଗନ୍ଧର୍ବେ ଶୂନ୍ୟମାର୍ଗେ ଥିଲେ ।
ବିଜୁଳି ତେଜ ପ୍ରକାଶିଲେ ॥୧୧୨
ରାଜା କଟୀରେ ବସ୍ତ୍ର ନାହିଁ ।
ଉଲଗ୍ନ ଦେଖି କୋପବହି ॥୧୧୩
ମେଷକୁ ଦେଖି ରାଜା ହସ୍ତେ ।
ଉର୍ବଶୀ ଗଲା ଶୂନ୍ୟପଥେ ॥୧୧୪
ସେ ରାଜା ମେଷ ଘେନିକରେ ।
ଆସି ମିଳିଲା ଅନ୍ତଃପୁରେ ॥୧୧୫
ବୋଲଇ ନିଅ ତୋ' ନନ୍ଦନ ।
ନ ଜାଣି କଲୁ ଯେ ରୋଦନ ॥୧୧୬
ଶୟନ ସ୍ଥାନେ ସେ ମିଳିଲା ।
ଖଟେ ଉର୍ବଶୀ ନ ଦେଖିଲା ॥୧୧୭
ଦୀପ ଆଣିଲା ତତ୍କ୍ଷଣେ ।
ଦେଖେ ଉର୍ବଶୀ ଗଲା କେଣେ ॥୧୧୮
ନ ଦେଖି ମୋହଗତେ ପଡ଼ି ।
କାନ୍ଦଇ ହୃଦେ କର ତାଡ଼ି ॥୧୧୯
ଉନ୍ମତ୍ତ ପ୍ରାୟେ ମହୀଭ୍ରମେ ।
ଗିରି-କାନନ-ଦୁର୍ଗ-ଗ୍ରାମେ ॥୧୨୦
ଭ୍ରମନ୍ତେ ଅତ୍ୟନ୍ତ ବ୍ୟାକୁଳେ ।
ଅଭୁତେ କରୁକ୍ଷେତ୍ରେ ମିଳେ ॥୧୨୧
ଉର୍ବଶୀ ସଖୀଜନ ମେଳେ ।
ଦେଖିଲା ସରସ୍ୱତୀ କୂଳେ ॥୧୨୨
ରାଜାଙ୍କୁ ଚାହିଁ ଅଧୋମୁଖୀ ।
ମନେ ହୋଇଲା ମହାଦୁଃଖୀ ॥୧୨୩
ରାଜା ଉର୍ବଶୀ ମୁଖ ଚାହିଁ ।
ବୋଲଇ ସ୍ନେହଭର ହୋଇ ॥୧୨୪
ରାଜାଙ୍କୁ ଦେଖି କୋପଭରେ ।
ଉର୍ବଶୀ ଗଲା କିଛି ଦୂରେ ॥୧୨୫
ପଛେ ଗୋଡ଼ାଇ କାମବଶେ ।
ସେ ରାଜା ବୋଲଇ ବିଶ୍ୱାସେ ॥୧୨୬

ରାଜା ଉବାଚ

ହେ ସଖି କ୍ଷଣେ ରହରହ ।
ନ ଛାଡ଼ ମୋହର ସେନେହ ॥୧୨୭
ତୁ ଘୋର କର୍ମ କିପାଁ କରୁ ।
ଭାବ ଅଭାବ ନବିଚାରୁ ॥୧୨୮
ମୋତେ ନ ଛାଡ଼ କୋପମନେ ।
ମୁଁ ଅଛି ତୋହର ବଚନେ ॥୧୨୯
ତୁ ମୋତେ ଦୂର କରି ଗଲେ ।
ଜୀବନ ଛାଡ଼ିବି ମୁଁ ଭଲେ ॥୧୩୦
ତୋ'ର ବିହୁନେ ମୋ' ଶରୀର ।
ଭକ୍ଷିବେ ଶୃଗାଳ କୁକ୍କୁର ॥୧୩୧
ଏମନ୍ତେ ରାଜାବାକ୍ୟ ଶୁଣି ।
ଉର୍ବଶୀ କହେ ମଧୁବାଣୀ ॥୧୩୨

ଉର୍ବଶୀ ଉବାଚ

ଭୋ ନାଥ ଶୁଣ ମୋ' ଉତ୍ତର ।
ସଂସାରେ ସ୍ତିରୀଙ୍କ ବେଭାର ॥୧୩୩
ସ୍ୱଭାବେ ଯେବା ଦୁଷ୍ଟା ନାରୀ ।
ତା'ସଙ୍ଗେ ବିଶ୍ୱାସ ନ କରି ॥୧୩୪
ବ୍ୟାଘ୍ର ଭଲ୍ଲୁକ ସଙ୍ଗେ ନର ।
ଯେସନେ ବିଶ୍ୱାସ-ବେଭାର ॥୧୩୫
ସ୍ତିରୀଙ୍କ ଦେହେ ଯେତେ ଗୁଣ ।
ରାଜନ ସାବଧାନେ ଶୁଣ ॥୧୩୬
ନିର୍ଦ୍ଦୟ କପଟ କଠିନ ।
ସାହସ ଆଦି ଚାରିଗୁଣ ॥୧୩୭
ଅଳପ କ୍ରୋଧେ ପ୍ରାଣ ନ୍ୟନ୍ତି ।
ପତି-ଭ୍ରାତାଙ୍କୁ ନଗଣନ୍ତି ॥୧୩୮
ଅଜ୍ଞାନ ଭାବେ ଥା'ନ୍ତି ନିତ୍ୟେ ।
ବାଞ୍ଛନ୍ତି କାମଭୋଗ ଚିତ୍ତେ ॥୧୩୯
ସ୍ୱଭାବେ ନିତ୍ୟେ ହୋନ୍ତି କାମୀ ।
ଇଛନ୍ତି ନବନବ ସ୍ୱାମୀ ॥୧୪୦
ନାରୀଙ୍କ ସ୍ୱଭାବ ଏମନ୍ତ ।
କିପାଁ ତୁ କରୁ ଦୁଃଖଚିତ୍ତ ॥୧୪୧
ଏବେ ତୁ ନିଜ ପୁରେ ଯାଅ ।
ଅବଶ୍ୟ ଲଭିବି ତୋ' ସ୍ନେହ ॥୧୪୨
ଆସିବି ସମ୍ୱତ୍ସର ଅନ୍ତେ ।
ରମିବି ତୋହର ସଙ୍ଗତେ ॥୧୪୩

Dr. Sudhanshu Sekhar Mishra

ଋତୁସ୍ନାନାନ୍ତେ ଏକଦିନେ ।
ରମିବି ତୋ'ର ସନ୍ନିଧାନେ ॥୧୪୪
ଅବଶ୍ୟ ହୋଇବ ସନ୍ତତି ।
ଏବେ ଉପାୟ କର ଚିନ୍ତି ॥୧୪୫
ଗନ୍ଧର୍ବଗଣ ପୂଜା କର ।
ସେ ତୋତେ ତୋଷେ ଦେବେବର ॥୧୪୬
ଏହାଙ୍କ ପ୍ରସନ୍ନେ ତୁ ମୋତେ ।
ପାଇବୁ ବରଷକ ଅନ୍ତେ ॥୧୪୭

ଶୁକ ଉବାଚ

ଏମନ୍ତେ ତା'ର ବାକ୍ୟ ଶୁଣି ।
ଆନନ୍ଦମନେ ନୃପମଣି ॥୧୪୮
ଗନ୍ଧର୍ବଗଣେ ପୂଜା କଲା ।
ଅନେକ ବଳିଭୋଜା ଦେଲା ॥୧୪୯
ସ୍ତୁତି କରଇ କରଯୋଡ଼ି ।
ଚରଣେ ଦଣ୍ଡବତେ ପଡ଼ି ॥୧୫୦
ତା'ର ଭକତି ଦେଖି ମନେ ।
ଗନ୍ଧର୍ବେ ପ୍ରସନ୍ନ ବଦନେ ॥୧୫୧
ମୃତ୍ତିକାଭାଣ୍ଡେ ଅଗ୍ନି ଥୋଇ ।
ରାଜା ସମୀପେ ଦେଲେ ନେଇ ॥୧୫୨
ବୋଇଲେ ଏଥେ ଯଜ୍ଞ କର ।
ଉର୍ବଶୀ ଆସିବ ତୋହର ॥୧୫୩
ଏମନ୍ତେ ଅଗ୍ନିଭାଣ୍ଡ ଦେଲେ ।
ରାଜାର ମନ ତୋଷ କଲେ ॥୧୫୪
ଗନ୍ଧର୍ବେ ଉର୍ବଶୀର ତୁଲେ ।
ତକ୍ଷଣେ ଶୂନ୍ୟମାର୍ଗେ ଗଲେ ॥୧୫୫

ସେ ରାଜା ଅଗ୍ନିଭାଣ୍ଡ ଘେନି ।
ଗନ୍ଧର୍ବଗଣ ବାକ୍ୟ ମାନି ॥୧୫୬
ରାତ୍ରେ ବୁଲନ୍ତେ ବୃକ୍ଷମୂଳେ ।
ଥୋଇଲେ ନିଶା ଅନ୍ତଃକାଳେ ॥୧୫୭
ଅଗ୍ନିକି ବୃକ୍ଷମୂଳେ ଥୋଇ ।
ମିଳିଲା ନିଜପୁରେ ଯାଇ ॥୧୫୮
ରହିଲା ପ୍ରଜାଜନ ହିତେ ।
ଏମନ୍ତେ ଗଲା ଦିନା କେତେ ॥୧୫୯
ଉର୍ବଶୀ ବାକ୍ୟେ ମନଦେଇ ।
ନିଶ୍ଚଳେ ମନ ନ ରହଇ ॥୧୬୦
ଏମନ୍ତେ ସତ୍ୟଯୁଗ ଗଲା ।
ଶୁଣ ହେ ଗୋବିନ୍ଦର ଲୀଳା ॥୧୬୧
ତ୍ରେତୟା ଯୁଗ ପ୍ରବେଶନେ ।
ରାଜା ଉର୍ବଶୀ ସ୍ମରି ମନେ ॥୧୬୨
ଅଗ୍ନି ଉଦ୍ଦେଶ୍ୟ ଦିନେ ଗଲା ।
ବନେ ଅନଳ ନ ଦେଖିଲା ॥୧୬୩
ଯେ ବୃକ୍ଷ ମୂଳେ ଥୋଇଗଲା ।
ସେ ବୃକ୍ଷ ଅଶ୍ୱ□ ହୋଇଲା ॥୧୬୪
ଅଶ୍ୱ□ ବୃକ୍ଷ ଶମୀ ବୃକ୍ଷେ ।
ରାଜନ ଦେଖିଲା ପ୍ରତ୍ୟକ୍ଷେ ॥୧୬୫
ସେ ବୃକ୍ଷ କାଷ୍ଠ ଗୃହେ ଆଣି ।
ସଞ୍ଚିଲା ଯଜ୍ଞର ଅରଣି ॥୧୬୬
ଅରଣି ମନ୍ଥନ ସେ କରି ।
ନିଗମ-ମନ୍ତ୍ରକୁ ଉଚ୍ଚାରି ॥୧୬୭
ଉର୍ବଶୀ ଧ୍ୟାନ କରି ମନେ ।
ଆହୁତି ଦେଲା ହୁତାଶନେ ॥୧୬୮

ଉର୍ବଶୀ ଯଜ୍ଞବଳେ ଆସି ।
ରାଜା ସଦନେ ମିଳେ ନିଶି ॥୧୬୯
ଯଜ୍ଞପୁରୁଷ ପରସନେ ।
ଉର୍ବଶୀ ମିଳେ ତା' ଭୁବନେ ॥୧୭୦
ଉର୍ବଶୀ ପୁରୁରବା ସଙ୍ଗେ ।
ପୁତ୍ରେ ଜନ୍ମିଲେ ରତିରଙ୍ଗେ ॥୧୭୧
ଅଗ୍ନିର ବର୍ଣ୍ଣପ୍ରାୟ ହୋଇ ।
ଜନ୍ମ ଲଭିଲେ ଷଡ଼ଭାଇ ॥୧୭୨
ରାଜା ବଞ୍ଚିଲେ ମନସୁଖେ ।
ନିଶ୍ଚିନ୍ତେ ତ୍ରେତାଯୁଗ ମୁଖେ ॥୧୭୩
ଆୟୁଷ ଅନ୍ତେ ପୁରୁରବା ।
ଅନଳ ପ୍ରାୟ ହୋଇ ପ୍ରଭା ॥୧୭୪
ଉର୍ବଶୀ ଧ୍ୟାନେ ମନ ଥିଲା ।
ଗନ୍ଧର୍ବ ଲୋକେ ସେ ମିଳିଲା ॥୧୭୫
ସୁଜନ ଜନଙ୍କର ହିତେ ।
ଭାଷା ପ୍ରବନ୍ଧେ ଭାଗବତେ ॥୧୭୬
ବୋଲଇ ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୭୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଚତୁର୍ଦ୍ଦଶୋଽଧ୍ୟାୟଃ ॥

---

## ପଞ୍ଚଦଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ସୋମର ବଂଶାନୁଚରିତ ॥୧
ଉର୍ବଶୀ ଗର୍ଭେ ବିଷ୍ଣୁ ତେଜେ ।
ଜନ୍ମିଲେ ପୁରୁରବା ବୀର୍ଯ୍ୟେ ॥୨
ସୁନ୍ଦର ପଣେ ନାହିଁ ସମ ।
ଶୁଣ ସେ ଷଡ଼ପୁତ୍ର ନାମ ॥୩

ଆୟୁ ଶ୍ରୁତାୟୁ ପୁଣି ରୟ ।
ସତ୍ୟାୟୁ ବିଜୟ ଯେ ଜୟ ॥୪
ଶ୍ରୁତାୟୁ ସୁତ ବସୁମାନ ।
ଏକନାମ ରୟ ନନ୍ଦନ ॥୫
ଶ୍ରୁତଞ୍ଜୟ ସତ୍ୟାୟୁ ସୁତ ।
ଜୟର ତନୟ ଅମିତ ॥୬
ବିଜୟ ତନୟ ଯେ ଭୀମ ।
ଭୀମର ପୁତ୍ର ଯେ କାଞ୍ଚନ ॥୭

ତା' ସୁତ ହେତ୍ରୁ ଜହ୍ନୁ ହୋଏ ।
ଗଣ୍ଡୂଷେ ଗଙ୍ଗା ଜଳ ପିଏ ॥୮
ଜହ୍ନୁର ସୁତ ପୁରୁ ନାମ ।
ବଳାକ ତାହାଙ୍କ ନନ୍ଦନ ॥୯
ଅଜକ ବଳାକର ସୁତ ।
କୁଶ ତା' ଠାରୁ ହେଲା ଜାତ ॥୧୦
ବଳାକସୁତ କୁଶ ହୋଇ ।
ସେ ଚାରି ପୁତ୍ରକୁ ଜନ୍ମାଇ ॥୧୧

Dr. Sudhanshu Sekhar Mishra

କୁଶାମ୍ବୁପୁତ୍ର ଯେ ପ୍ରଥମ ।
ତନୟ ଦ୍ୱିତୀୟ ସନ୍ତାନ ॥୧୨
ତୃତୀୟ ବସୁ ନାମେ ଖ୍ୟାତ ।
କୁଶନାଭ ଅଟେ ଚତୁର୍ଥ ॥୧୩
କୁଶାମ୍ବୁ ସୁତ ଗାଧି ନାମ ।
ଅତି ସୁନ୍ଦର ଗୁଣଧାମ ॥୧୪
ତାହାର କନ୍ୟା ସତ୍ୟବତୀ ।
ତା' କଥା ଶୁଣ ହୋ ନୃପତି ॥୧୫
ଋଚୀକ ନାମେ ବ୍ରହ୍ମଋଷି ।
କନ୍ୟା ମାଗିଲେ ତା'କୁ ଆସି ॥୧୬
ଦେଖିଣ ବୃଦ୍ଧ ତା' ଶରୀର ।
ସେ ଗାଧି ନ ବରିଲା ବର ॥୧୭
ବୋଲେ ଋଚୀକ ମୁଖ ଚାହିଁ ।
କନ୍ୟା ଲଭିବୁ ଯେବେ ତୁହି ॥୧୮
ହୋଇବୁ ମୋ'ର କନ୍ୟାବର ।
ତୁ ଏବେ ମୋ'ର ବୋଲ କର ॥୧୯
ସହସ୍ରଅଶ୍ୱ ମୋତେ ଦିଅ ।
ଚନ୍ଦ୍ରର ପ୍ରାୟ ଯା'ର ଦେହ ॥୨୦
କର୍ଣ୍ଣ ହୋଇବ ଶ୍ୟାମବର୍ଣ୍ଣ ।
ତେବେ ମୁଁ ଦେବି କନ୍ୟାଦାନ ॥୨୧
ଏମନ୍ତେ ରାଜାର ବଚନେ ।
ଋଚୀକ ବରୁଣ ଭୁବନେ ॥୨୨
ମିଳି ବରୁଣଙ୍କୁ ମାଗିଲେ ।
ବରୁଣ ସହସ୍ରଅଶ୍ୱ ଦେଲେ ॥୨୩
ସେ ଅଶ୍ୱ ଆଣି ମୁନି ଦେଲା ।
ସତ୍ୟବତୀକି ବିଭା ହେଲା ॥୨୪
ଋଚୀକ ପତ୍ନୀ ପୁତ୍ର ଅର୍ଥେ ।
ବିଚାରି ମାତାର ସହିତେ ॥୨୫
ପୁତ୍ର କାମନା କରି ବେନି ।
କାମନା କଲେ ଚରୁ ଘେନି ॥୨୬
ଯଜ୍ଞ ଆରମ୍ଭେ ପୁତ୍ର ଅର୍ଥେ ।
ଚରୁ ସଞ୍ଚିଲା ବେଦମନ୍ତ୍ରେ ॥୨୭
ମାତା ଦୁହିତା ଅର୍ଥେ ବେନି ।
ଚରୁ ସାଧିଲା ମହାମୁନି ॥୨୮
ସେ ଚରୁ ଦେଇ ପତ୍ନୀ ହସ୍ତେ ।
ଋଚୀକ ଗଲେ ସ୍ନାନ ଅର୍ଥେ ॥୨୯

ଯେ ଚରୁ କଲା ମହାତମା ।
ଶୁଣ ସେ ଚରୁର ମହିମା ॥୩୦
ଏକ କ୍ଷତ୍ରିୟ ବିପ୍ର ଏକ ।
ସେ ଚରୁ ବିପରୀତ ଦେଖ ॥୩୧
ସତ୍ୟବତୀର ମୁଖ ଚାହିଁ ।
ମାତା ବୋଲଇ ଭ୍ରାନ୍ତି ବହି ॥୩୨
ତୋ' ଚରୁ ମୋର ହସ୍ତେ ଦିଅ ।
ମୋଠାରେ ଯେବେ ଅଛି ସ୍ନେହ ॥୩୩
ଏମନ୍ତ ମାତା ମୁଖୁଁ ଶୁଣି ।
ତକ୍ଷଣେ ରାଜାର ଦୁଲଣୀ ॥୩୪
ଆପଣା ଚରୁ ମାତା ହସ୍ତେ ।
ଦେଲା ସେ ପ୍ରିୟଭାବ ମତେ ॥୩୫
ଚରୁ ଭୁଞ୍ଜିଲେ ବେନି ନାରୀ ।
ଏବେ ହୋ ଶୁଣ ଦଣ୍ଡଧାରୀ ॥୩୬
ଋଚୀକ ସ୍ନାନ ସାରି ଜଳେ ।
ଗୃହେ ମିଳିଲେ ରାତ୍ରକାଳେ ॥୩୭
ମିଳିଲେ ସତ୍ୟବତୀ ସଙ୍ଗେ ।
ପ୍ରଚଣ୍ଡ ତେଜ ତା'ର ଅଙ୍ଗେ ॥୩୮
ନିକଟେ ବସି ନ ପାରଇ ।
ବୋଲଇ ପତ୍ନୀମୁଖ ଚାହିଁ ॥୩୯
ତୁ ଘୋରକର୍ମ କିପାଁ କଲୁ ।
ତୋ' ଚରୁମାତା ହସ୍ତେ ଦେଲୁ ॥୪୦
ପ୍ରଚଣ୍ଡ ହୋଇବ ତୋ' ସୁତ ।
ତା' ତେଜେ କମ୍ପିବ ଜଗତ ॥୪୧
ଭ୍ରାତା ହୋଇବ ବ୍ରହ୍ମମୁନି ।
ସନ୍ତୋଷ-ଶମ-ଦମ ଘେନି ॥୪୨
ତା' ଶୁଣି ସତ୍ୟବତୀ ଭାଳେ ।
ପଡ଼ିଲା ସ୍ୱାମୀ ପାଦତଳେ ॥୪୩
କହେ କପୋଳେ ଦେଇ ହସ୍ତ ।
ପ୍ରଚଣ୍ଡ ନୋହୁ ମୋର ସୁତ ॥୪୪
ଋଚୀକ ପତ୍ନୀର ବଚନେ ।
ଭବିଷ୍ୟ ସୁମରିଲେ ମନେ ॥୪୫
ବୋଇଲେ ସୁତ ତୋ' ସୁତର ।
ହେଉ କ୍ଷତ୍ରିୟ ମହାବୀର ॥୪୬
ଏମନ୍ତେ ଋଚୀକ ବଚନେ ।
ପୁତ୍ର ଜନ୍ମିଲା ବିପ୍ରବର୍ଣ୍ଣେ ॥୪୭

ଅତି ସୁନ୍ଦର ସୁକୁମାର ।
ରୂପେ ମୋହିଲା ତିନିପୁର ॥୪୮
ତାହାର ଜମଦଗ୍ନି ନାମ ।
ତେଜେ ବିରାଜେ ଅଗ୍ନିସମ ॥୪୯
ପୁତ୍ର ପ୍ରସବି ସତ୍ୟବତୀ ।
ଭଜିଲା ନଦୀଙ୍କର ଗତି ॥୫୦
ସେ ନଦୀରୂପେ ବହିଗଲା ।
କୌଶିକୀ ନାମ ପୁଣ୍ୟଜଳା ॥୫୧
ରେଣୁକା ରେଣୁର ଦୁହିତା ।
ପୁଣ୍ୟ ପବିତ୍ର ଶୁଦ୍ଧଚିତ୍ତା ॥୫୨
ଅତି ସୁନ୍ଦରୀ ସୁକୁମାରୀ ।
ସେ କନ୍ୟା ଜମଦଗ୍ନି ବରି ॥୫୩
ତା' ଗର୍ଭେ ଜମଦଗ୍ନି ବୀର୍ଯ୍ୟେ ।
ପୁତ୍ରେ ଜନ୍ମିଲେ ବିଷ୍ଣୁତେଜେ ॥୫୪
ବସୁମଦାଦି ପୁତ୍ର ତୁଲେ ।
ପରଶୁରାମ ଉପୁଜିଲେ ॥୫୫
ସେ ବାସୁଦେବ ଅଂଶେ ଏକ ।
ହୈହୟ ରାଜା କୁଳାନ୍ତକ ॥୫୬
ପରଶୁ ଦକ୍ଷକରେ ଧରି ।
କୋପେ ଭ୍ରମିଲା ବସୁନ୍ଧରୀ ॥୫୭
ଯେ ଦୁଷ୍ଟ କ୍ଷତ୍ରିୟ ରାଜନ ।
ବ୍ରାହ୍ମଣେ ନ କରନ୍ତି ମାନ୍ୟ ॥୫୮
କ୍ଷତ୍ରିୟ ଗର୍ବେ ମତ୍ତ ଭ୍ରମେ ।
ଆବୃତ ହୋଇ ରଜ ତମେ ॥୫୯
ଏକବିଂଶ ବାର ଭ୍ରମିଲା ।
ଧରଣୀ କ୍ଷତ୍ରିହୀନ କଲା ॥୬୦

ପରୀକ୍ଷିତ ଉବାଚ

ଭୋ ମୁନି କହ ମୋ' ଅଗ୍ରତେ ।
ଦୁଷ୍ଟ କ୍ଷତ୍ରିୟ ଏ ଜଗତେ ॥୬୧
କ୍ଷତ୍ରିୟ ହଇହୟବଂଶ ।
କିବା ବିଷ୍ଣୁରେ କଲେ ଦୋଷ ॥୬୨
ଯେ ଦୋଷେ କରେ ଶସ୍ତ୍ର ଧରି ।
ନିକ୍ଷତ୍ର କଲେ ବସୁନ୍ଧରୀ ॥୬୩

ଶୁକ ଉବାଚ

କହନ୍ତି ଶୁକ ମୁନିବର ।
ଶୁଣ ହେ ଉତ୍ତରାକୁମର ॥୬୪

Dr. Sudhanshu Sekhar Mishra

ଅର୍ଜୁନ ନାମେ ବୀର ଅଂଶେ ।
ଜନ୍ମିଲେ ହଇହୟ ବଂଶେ ॥୬୫
ଦତ୍ତ ଯେ ନାରାୟଣ ଅଂଶ ।
ତା'ପାଦେ ହୋଇଲେ ବିଶ୍ୱାସ ॥୬୬
ଅନେକ ଆରାଧନା କଲେ ।
ସେ ତା'ଙ୍କୁ ତୋଷେ ବର ଦେଲେ ॥୬୭
ତପେ ସହସ୍ରଭୁଜ ଧରି ।
ତେଜ ସାମର୍ଥ୍ୟ ଯଶ ଶିରୀ ॥୬୮
ଅଣିମା ଆଦି ଅଷ୍ଟସିଦ୍ଧି ।
ଲଭିଲା ଅନେକ ସମୃଦ୍ଧି ॥୬୯
ଭ୍ରମଇ ଏ ତିନିଭୁବନେ ।
ପ୍ରଚଣ୍ଡ ଯେସନେ ପବନେ ॥୭୦
ଦିନେକ ସ୍ତିରୀଗଣ ସଙ୍ଗେ ।
ଦିଗବିଜୟ କଲା ରଙ୍ଗେ ॥୭୧
କାମିନୀ ସଙ୍ଗେ ରସ ଭୋଳେ ।
ପଶିଲା ରେବାନଦୀ ଜଳେ ॥୭୨
ବଇଜୟନ୍ତୀ ମାଳା ଗଳେ ।
ନାରୀଙ୍କ ସଙ୍ଗେ ଜଳେ ଖେଳେ ॥୭୩
ଜଳ ନିଷେଧି କ୍ରୀଡ଼ା କାଳେ ।
ନଦୀ ବାନ୍ଧିଲା ଭୁଜ ବଳେ ॥୭୪
ଭୁଜ ଉପରେ ଭୁଜ ଦେଲା ।
ନଦୀ ଜଳକୁ ବନ୍ଦୀ କଲା ॥୭୫
ନଦୀ ବହିଲା ପ୍ରତିସ୍ରୋତେ ।
ବାମ ଦକ୍ଷିଣେ ଗ୍ରାମ ଯେତେ ॥୭୬
ପର୍ବତ ଆଦି ଘୋରବନ ।
ସ୍ଥଳ-ଗଭୀର-ଦେବସ୍ଥାନ ॥୭୭
ପ୍ରଳୟ ପ୍ରାୟ ଜଳ ପୁରେ ।
କାମିନୀଗଣେ କ୍ରୀଡ଼ା କରେ ॥୭୮
ଏହି ସମୟେ ଦଶାନନ ।
ଦିଗବିଜୟେ କରି ମନ ॥୭୯
ମହିଷ୍ମତୀପୁର ସମୀପେ ।
ଶିବିର ନେଇ ତହିଁ ସ୍ଥାପେ ॥୮୦
ଜଳରେ ପ୍ଲାବିତ ଶିବିର ।
ଦେଖି କୁପିତ ଦଶଶିର ॥୮୧
ଅର୍ଜୁନ ପାଶେ ସେ ମିଳିଲା ।
ନିନ୍ଦିତ ବାକ୍ୟେ ଗାଳି ଦେଲା ॥୮୨

ତା' ଶୁଣି ସହସ୍ର ଅର୍ଜୁନ ।
ହେଳେ ବାନ୍ଧିଲା ଦଶାନନ ॥୮୩
ମର୍କଟ ପ୍ରାୟ ବାନ୍ଧି କରି ।
ବନ୍ଦୀଗାରେ ନେଇ ଭରି ॥୮୪
ଅନେକ ଦିନ ସେ ରଖିଲା ।
ଅବଜ୍ଞା କରି ଛାଡ଼ିଦେଲା ॥୮୫
ପୁଣି ଅର୍ଜୁନ ଏକ ଦିନେ ।
ମୃଗୟା ଅର୍ଥେ ଗଲା ବନେ ॥୮୬
ତାହାର ଅଶ୍ୱବଳ ଯେତେ ।
ରବିର କିରଣେ ତୃଷିତେ ॥୮୭
ବୁଲନ୍ତେ ଗିରି-ଘୋରବନେ ।
ମିଳିଲେ ଜମଦଗ୍ନି ସ୍ଥାନେ ॥୮୮
ରାଜାଙ୍କୁ ଦେଖି ମୁନିଜନେ ।
ବସାଇ ସୁବର୍ଣ୍ଣ ଆସନେ ॥୮୯
ପୂଜିଲେ ନାନା ଉପହାରେ ।
କଳ୍ପିତ-ଯଜ୍ଞ-ଧେନୁ କ୍ଷୀରେ ॥୯୦
ସର୍ବ ସୁବର୍ଣ୍ଣମୟ ଚାହିଁ ।
ଯେ କାମେ କାମଧେନୁ ଦୁହିଁ ॥୯୧
ଅଦ୍ଭୁତ ଦେଖି ନୃପମଣି ।
ସଙ୍କୋଚେ ମନେ ମନେ ଗୁଣି ॥୯୨
ଭୃତ୍ୟଙ୍କୁ ରାଇ ଆଜ୍ଞା ଦେଲା ।
ଏ ଧେନୁ ଘେନରେ ବୋଇଲା ॥୯୩
ମୁନିଙ୍କି ଅନାଦର କରି ।
ତକ୍ଷଣେ ଗଲା ଦଣ୍ଡଧାରୀ ॥୯୪
ସେ ଧେନୁ ବସ୍ସା ସଙ୍ଗେ ବାନ୍ଧେ ।
ପଥେ ଚଳନ୍ତେ ଧେନୁ କାନ୍ଦେ ॥୯୫
ରାଜା ଚଳିଲା ନିଜ ଗ୍ରାମ ।
ବନେ ଯେ ଥିଲେ ପର୍ଶୁରାମ ॥୯୬
ଯଜ୍ଞ ଆହୁତି ଭଙ୍ଗ ଶୁଣି ।
ଗୃହେ ମିଳିଲେ ଭୃଗୁମଣି ॥୯୭
ବସ୍ସା ସହିତେ ଧେନୁ ନେଲା ।
ପିତାଙ୍କୁ ଅନାଦର କଲା ॥୯୮
ଏ କଥା ଶୁଣି କୋପଭରେ ।
ତୀକ୍ଷ୍ଣ ପରଶୁ ଧରି କରେ ॥୯୯
କବଚେ ଆବୋରି ଶରୀର ।
କାନ୍ଧେ କାର୍ମୁକ ତୀକ୍ଷ୍ଣ ଶର ॥୧୦୦

ପଛେ ଧାଇଁଲେ କୋପମନେ ।
କୁଞ୍ଜର ଦେଖି ସିଂହ ଯେହ୍ନେ ॥୧୦୧
ପଛେ ଗୋଡ଼ାନ୍ତେ ପର୍ଶୁରାମ ।
ରାଜା ଦେଖିଲେ ଘୋରତମ ॥୧୦୨
ପରଶୁ ଦକ୍ଷକରେ ଧରି ।
ହରିଣଚର୍ମ ଦେହେ ଭରି ॥୧୦୩
ସୂର୍ଯ୍ୟର ପ୍ରାୟେ ତେଜ ଦେହେ ।
କପିଳ ଜଟା ଶିରେ ଶୋହେ ॥୧୦୪
ଦେଖି ପରଶୁରାମ ତେଜ ।
ପଥେ ରହିଲା ମହାରାଜ ॥୧୦୫
ସୈନ୍ୟଙ୍କୁ ଚାହିଁ ଆଜ୍ଞା ଦେଲା ।
ଅନେକ ଶସ୍ତ୍ର ପ୍ରହାରିଲା ॥୧୦୬
ଅଶ୍ୱ କୁଞ୍ଜର ସେନା ଯେତେ ।
ଶସ୍ତ୍ର ପେଷିଲେ ଅପ୍ରମିତେ ॥୧୦୭
ଗଦା ଖଡ଼ଗ ଶକ୍ତି ଯଷ୍ଟି ।
କୋପେ କରନ୍ତି ଶର ବୃଷ୍ଟି ॥୧୦୮
ଯୁଝନ୍ତି ଅତି କୋପମନେ ।
ସମୁଦ୍ରେ ମନ୍ଦର ଯେସନେ ॥୧୦୯
ପରଶୁ କୋପରେ ପ୍ରହାରି ।
ଅର୍ଦ୍ଧନିମିଷେ ସର୍ବ ମାରି ॥୧୧୦
ଭୁଜ କନ୍ଧର ଉର ଛିଡ଼ି ।
ସର୍ବେ ପଡ଼ିଲେ ଭୂମି ମାଡ଼ି ॥୧୧୧
ରୁଧିର ନଦୀ ଉଛେ ବହେ ।
ମାଂସ ଶୋଣିତ ମେଦମୟେ ॥୧୧୨
ମଲେ କ୍ଷଉଣୀ ସପ୍ତଦଶ ।
ରହିଲା ସସ୍ରବାହୁ ଶେଷ ॥୧୧୩
ସୈନ୍ୟ ମରଣେ ବହି ମନ୍ୟୁ ।
ଧଇଲା ପଞ୍ଚଶତ ଧନୁ ॥୧୧୪
ନାରାଚ ଯୋଚି ପଞ୍ଚଶତେ ।
ରହିଲା ରାମର ଅଗ୍ରତେ ॥୧୧୫
ବୃକ୍ଷରୁ ପତ୍ର ଯେହ୍ନେ ଝଡ଼େ ।
ରାମ ଉପରେ ଶସ୍ତ୍ର ପଡ଼େ ॥୧୧୬
ଦେଖି ତାହାର ବୀରଗତି ।
ବେଗେ ଧାଇଁଲେ ଭୃଗୁପତି ॥୧୧୭
କୁଠାରେ ସହସ୍ରେକ ଭୁଜ ।
ହେଳେ ଛେଦିଲେ ଭୃଗୁରାଜ ॥୧୧୮

Dr. Sudhanshu Sekhar Mishra

ତୀକ୍ଷ୍ଣ କୁଠାରେ ମୁଣ୍ଡ ହାଣି ।
ଭାରା ଉଶ୍ୱାସିଲେ ଧରଣୀ ॥୧୧୯
ପିତା ମରଣ ପୁତ୍ରେ ଦେଖି ।
ଭାଜିଲେ ସମର ଉପେକ୍ଷି ॥୧୨୦
ରାମ ସଂହରି ମହାମନ୍ୟୁ ।
ସଙ୍ଗତେ ଘେନି ଯଜ୍ଞଧେନୁ ॥୧୨୧
ଆନନ୍ଦମନେ ଯଜ୍ଞବାଟେ ।
ମିଳିଲେ ପିତାର ନିକଟେ ॥୧୨୨
ପିତା ସମୀପେ ଧେନୁ ଦେଇ ।
ଚରଣେ ଗଡ଼ଘାଲି ଶୋଇ ॥୧୨୩
ସଙ୍ଗତେ ଘେନି ତିନି ଭ୍ରାତେ ।
ଯୁଦ୍ଧକରଣ କଥା ଯେତେ ॥୧୨୪
କହିଲେ ପିତାର ଅଗ୍ରତେ ।
ତା' ଶୁଣି ପିତା ତୋଷଚିତ୍ତେ ॥୧୨୫
ବୋଇଲେ ରାମର ଅଗ୍ରତେ ।
ଭୋ ପୁତ୍ର ଶୁଣ ଏକଚିତ୍ତେ ॥୧୨୬

ହେ ରାମ ରାମ ମହାବାହୁ ।
ଶୁଣ ସୁମନେ ତୋତେ କହୁଁ ॥୧୨୭
ଶୁଭ ଅଶୁଭ ତୁ ନଜାଣି ।
ପାତକ କଲୁ ରାଜା ହାଣି ॥୧୨୮
ସର୍ବଦେବତା ରାଜା ଦେହେ ।
ବସନ୍ତି ସୂର୍ଯ୍ୟଜ୍ୟୋତି ପ୍ରାୟେ ॥୧୨୯
ଆମ୍ଭେ ଯେ ଜାତିରେ ବ୍ରାହ୍ମଣ ।
ସ୍ୱଭାବେ କ୍ଷମା ଆଚରଣ ॥୧୩୦
ବ୍ରହ୍ମା ଯେ ସର୍ବଦେବଗୁରୁ ।
କ୍ଷମା ପୂରିତ ଯେହ୍ନେ ମେରୁ ॥୧୩୧
ତେଣୁ ବସିଲା ସତ୍ୟଲୋକେ ।
ଅଶେଷ ଲକ୍ଷ୍ମୀ ଭୁଞ୍ଜେ ଏକେ ॥୧୩୨
କ୍ଷମା ଯାହାର ହୃଦେ ରହେ ।
ବିଷ୍ଣୁ ବସନ୍ତି ତା'ର ଦେହେ ॥୧୩୩
ଏଣୁ ଯେ ନୃପ ବଧ କରେ ।
ଦୁରିତୁଁ କେବେହେଁ ନ ତରେ ॥୧୩୪

ଏବେ ତୁ ତୀର୍ଥ ସେବା କର ।
ତୋ'ଠାରୁ ପାପ ହେବ ଦୂର ॥୧୩୫
ଚିତ୍ତେ ଚିନ୍ତିବୁ ନାରାୟଣ ।
ଅନ୍ୟଥା ନାହିଁ ପରିତ୍ରାଣ ॥୧୩୬
ପରଶୁରାମର କାହାଣୀ ।
ଯେ ନର ଶ୍ରୁତିପଥେ ଶୁଣି ॥୧୩୭
ନରକ ପଥେ ନାହିଁ ଭ୍ରାନ୍ତି ।
ହେଳେ ସେ ସଂସାରୁ ତରନ୍ତି ॥୧୩୮
ବୋଲଇ ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୩୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ପଞ୍ଚଦଶୋଽଧ୍ୟାୟଃ ॥

---

## ଷୋଡ଼ଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ପରଶୁରାମର ଚରିତ ॥୧
ପିତା ବଚନେ ବନେ ଗଲେ ।
ଅନେକ ତୀର୍ଥେ ସ୍ନାନ କଲେ ॥୨
ପୁଣି ସେ ବରଷକ ଅନ୍ତେ ।
ଗୃହେ ମିଳିଲେ ଶୁଦ୍ଧଚିତ୍ତେ ॥୩
ପିତା ଚରଣେ ନମସ୍କାର ।
କରି ରହିଲେ ନିଜପୁର ॥୪
ଏବେ ହୋ ଶୁଣ ନୃପମଣି ।
ରେଣୁକା ଗଲେ ଜଳ ଆଣି ॥୫
ଗଙ୍ଗାର ନିକଟେ ମିଳିଲେ ।
ସେ ଜଳେ ଗନ୍ଧର୍ବ ଦେଖିଲେ ॥୬
ଇନ୍ଦ୍ରକୁମର ଚିତ୍ରରଥ ।
ସଙ୍ଗତେ ଘେନି ନାରୀଯୂଥ ॥୭
ଅପ୍‌ସରାଗଣ ଘେନି ଜଳେ ।
କ୍ରୀଡ଼ା ସେ କରେ କୁତୂହଳେ ॥୮

ଦଣ୍ଡେ ରହିଲେ ତାହା ଦେଖି ।
ଜଳ ଆନୟନ ଉପେକ୍ଷି ॥୯
ହୋମର ବେଳ ନ ସୁମରି ।
ଗନ୍ଧର୍ବ କ୍ରୀଡ଼ା ଅନୁସରି ॥୧୦
ପୁଣି କ୍ଷଣକେ ଜ୍ଞାନ ପାଇ ।
ତକ୍ଷଣେ ଜଳକୁମ୍ଭ ନେଇ ॥୧୧
ସ୍ୱାମୀଙ୍କି ଶଙ୍କା ମନେ କଲେ ।
ତକ୍ଷଣେ ମନ୍ଦିରେ ମିଳିଲେ ॥୧୨
ଜଳ-କଳସ ଯଜ୍ଞ ଘରେ ।
ଥୋଇଲେ ସ୍ୱାମୀଙ୍କ ଗୋଚରେ ॥୧୩
ଅଞ୍ଜଳି କରି ବେନିକରେ ।
ରେଣୁକା ରହେ ଯଜ୍ଞଘରେ ॥୧୪
ରେଣୁକା ମୁଖ ଚାହିଁ ମୁନି ।
ପ୍ରଚଣ୍ଡ-କୋପେ ଜମଦଗ୍ନି ॥୧୫
ଜାଣିଲେ ଗନ୍ଧର୍ବର ମେଳେ ।
ମନ କଳିଲା ଗଙ୍ଗାଜଳେ ॥୧୬
ପୁତ୍ରଙ୍କୁ କୋପମୁଖେ ଚାହିଁ ।
ବୋଇଲେ ଶିର ଛେଦ ନେଇ ॥୧୭

ଗନ୍ଧର୍ବ ଦେଖି ଏହା ମନ ।
କଳିଲା ତାହାର ସଙ୍ଗମ ॥୧୮
ସ୍ୱଭାବେ ଦୁଷ୍ଟାନାରୀ ଏହି ।
ଏହାର ବଦନ ନ ଚାହିଁ ॥୧୯
ସେ ପୁତ୍ରେ ମାତୃସ୍ନେହ କଲେ ।
ମାତାର ଶିର ନ ଛେଦିଲେ ॥୨୦
ଅଧିକ କୋପଭର ହୋଇ ।
ବୋଲେ ପରଶୁରାମେ ଚାହିଁ ॥୨୧
ମାତା ସହିତେ ତିନିଭାଇ ।
କୁଠାରେ ଶିର ଛେଦ ନେଇ ॥୨୨
ସେ ରାମ ପିତା ଗୁଣ ଜାଣେ ।
ତପ ସମାଧି ପରମାଣେ ॥୨୩
ତକ୍ଷଣେ ପ୍ରହାରି କୁଠାର ।
ଛେଦିଲେ ମାତା ଭ୍ରାତା ଶିର ॥୨୪
ଦେଖିଣ ମୁନି ତୋଷ ହୋଇ ।
ପରଶୁରାମ ମୁଖ ଚାହିଁ ॥୨୫
ବୋଇଲେ ବର ଦେବି ତୋତେ ।
ଯେ ବାଞ୍ଛା କହ ତୋ'ର ଚିତ୍ତେ ॥୨୬

Dr. Sudhanshu Sekhar Mishra

ତକ୍ଷଣେ ପିତାପାଦେ ପଡ଼ି ।
ରାମ ବୋଲନ୍ତି କରଯୋଡ଼ି ॥୨୭
ଭୋ ତାତ ବର ଦେବ ଯେବେ ।
ଏ ସର୍ବେ ଜୀବନ ପାଇବେ ॥୨୮
ଶିର ଲାଗିବ ଯେଝା କନ୍ଧ ।
ମନେ ନ ଥିବ ତା'ଙ୍କ ବଧ ॥୨୯
ଅସ୍ତୁ ବୋଇଲେ ତପୋଧନ ।
ସେ ସର୍ବେ ପାଇଲେ ଜୀବନ ॥୩୦
ନିଦ୍ରିତଜନ ନିଦ୍ରା ଅନ୍ତେ ।
ଶରୀର ସମ୍ଭାଳେ ଯେମନ୍ତେ ॥୩୧
ପିତାର ତପୋବଳ ଜାଣି ।
ମାତା ଭ୍ରାତାଙ୍କ ଶିର ହାଣି ॥୩୨
ଏମନ୍ତେ କରି ଘୋର କର୍ମ ।
ରାମ ରଖିଲେ ନିଜ ଧର୍ମ ॥୩୩
ରାମର ଅଙ୍ଗସଙ୍ଗ ତୁଲେ ।
ମରଣୁଁ ସମସ୍ତେ ବଞ୍ଚିଲେ ॥୩୪
ଭାଇଙ୍କି ଘେନି ଏକଦିନେ ।
ରାମ ଯେ ଗଲେ ତପୋବନେ ॥୩୫
ତପ ଆରାଧି ବିଷ୍ଣୁଧ୍ୟାନେ ।
ନିଶ୍ଚଳେ ବସିଲେ ଆସନେ ॥୩୬
ତାହାଙ୍କ ଧ୍ୟାନ ଦେଖି ବନେ ।
ପଶୁପତଙ୍ଗ କୀଟମାନେ ॥୩୭
ଭୟେ ଶବଦ ନ କରନ୍ତି ।
ଏବେ ହୋ ଶୁଣ ନରପତି ॥୩୮
ସହସ୍ରାର୍ଜ୍ଜୁନର କୁମରେ ।
ପିତାର ମରଣର କାଳେ ॥୩୯
ଭାଜି ଯେ ଥିଲେ ଯେଝାମତେ ।
ସେ ପୁଣି ମିଳିଲେ ଏକାନ୍ତେ ॥୪୦
ମନେ ସୁମରି ଜମଦଗ୍ନି ।
ସଙ୍ଗେ ଅନେକ ବଳ ଘେନି ॥୪୧
ଛିଦ୍ର ଉଣ୍ଡିବା ସେ ବେଭାରେ ।
ରାତ୍ରେ ମିଳିଲେ ଅନ୍ଧକାରେ ॥୪୨
ହୃଦେ ସୁମରି ଘୋରତମ ।
ରୁନ୍ଧିଲେ ମୁନିଙ୍କ ଆଶ୍ରମ ॥୪୩
ମୁନି ଯେ ଥିଲେ ଯଜ୍ଞଶାଳେ ।
ବିଷ୍ଣୁଚରଣ ପୂଜା କାଳେ ॥୪୪

ବଇରୀ ସାଧିବାର ରୋଷେ ।
ବନ୍ଧନ କଲେ ଦୃଢ଼ପାଶେ ॥୪୫
ରେଣୁକା ରଖ ରଖ ବୋଲେ ।
ପଡ଼ି ତାହାଙ୍କ ପାଦତଳେ ॥୪୬
ରେଣୁକା ବଚନ ନ ଶୁଣି ।
ତୀକ୍ଷ୍ଣ ଖଡ଼ଗେ ମୁଣ୍ଡହାଣି ॥୪୭
ତକ୍ଷଣେ ଗଲେ ନିଜ ପୁରୀ ।
ଧନ ସମ୍ପଦ ଜୁର କରି ॥୪୮
ରେଣୁକା ଦୁଃଖ ଶୋକଭରେ ।
ରୋଦନ କଲେ ଉଚ୍ଚସ୍ୱରେ ॥୪୯
ଶିର-ହୃଦୟେ କରତାଡ଼ି ।
କାନ୍ଦଇ ଭୂମିଗତେ ପଡ଼ି ॥୫୦
ଉଚ୍ଚେ ଡାକଇ ରାମ ରାମ ।
ଭୋ ପୁତ୍ର ଆସ ତୁ ଆଶ୍ରମ ॥୫୧
ସଙ୍ଗତେ ଘେନି ତିନିଭାଇ ।
ଭୋ ପୁତ୍ର ବେଗେ ଆସ ଧାଇଁ ॥୫୨
ମାତା ରୋଦନ ବାୟୁବଳେ ।
ଶୁଭିଲା ରାମ କର୍ଣ୍ଣମୂଳେ ॥୫୩
ହେ ରାମ ରାମ ବାଣୀ ଶୁଣି ।
ସମାଧି ତେଜି ବୀର ମଣି ॥୫୪
ଭ୍ରାତାଙ୍କ ଘେନି ବେଗେ ଧାଇଁ ।
ମିଳିଲେ ନିଜାଶ୍ରମେ ଯାଇ ॥୫୫
ଯଜ୍ଞଭୁବନେ ଚାରିଭ୍ରାତ ।
ଦେଖିଲେ ଜମଦଗ୍ନି ହତ ॥୫୬
ପିତାଙ୍କ ଶିରଚ୍ଛେଦ ଦେଖି ।
ଭାଇଙ୍କ ତୁଲେ ରାମ ଦୁଃଖୀ ॥୫୭
ବିମୋହ-ଶୋକ-ଗୁରୁତରେ ।
ରୋଦନ କଲେ ଉଚ୍ଚସ୍ୱରେ ॥୫୮
ଭୋ ତାତ ସାଧୁ ତୁ ଧାର୍ମିକ ।
ସୁଜ୍ଞାନୀ ପଣ୍ଡିତ ବିବେକ ॥୫୯
ଆମ୍ଭଙ୍କୁ ଅରକ୍ଷିତ କରି ।
ନିଶ୍ଚିନ୍ତେ ଗଲ ସ୍ୱର୍ଗ ପୁରୀ ॥୬୦
ପିତାର ଶିର ନ ଦେଖିଲେ ।
ଭାଇଙ୍କି ଚାହିଁ ଆଜ୍ଞା ଦେଲେ ॥୬୧
ତୁମ୍ଭେ ହୋ ପ୍ରେତକାର୍ଯ୍ୟ କର ।
ଏମନ୍ତ କହି ବୀରବର ॥୬୨

ପରଶୁ ଧରି ଦକ୍ଷକରେ ।
ଦୁଃସହ-କୋପ ଗୁରୁତରେ ॥୬୩
ସଙ୍କଳ୍ପ କଲେ ଜଳ ଘେନି ।
ନିକ୍ଷତ୍ର କରିବି ମେଦିନୀ ॥୬୪
କ୍ଷତ୍ରିୟ ଅନ୍ତ କରିବାରେ ।
ପଥେ ଧାଇଁଲେ କୋପଭରେ ॥୬୫
ମିଳିଲେ ମାହିଷ୍ମତୀ ପୁରେ ।
ଦେଖନ୍ତି ଶୂନ୍ୟପଥେ ସୁରେ ॥୬୬
ଅର୍ଜ୍ଜୁନ ସ୍ୱବଂଶ ଛେଦିଲେ ।
ସଂଗ୍ରାମେ ମୁଣ୍ଡ ରୁଣ୍ଡ କଲେ ॥୬୭
ପର୍ବତ ପ୍ରାୟେ ମୁଣ୍ଡରାଶି ।
ଗ୍ରାମେ ସ୍ଥାପିଲେ ଭୃଗୁବଂଶୀ ॥୬୮
କ୍ଷତ୍ରିୟ-ମରଣ-ରୁଧିରେ ।
ନଦୀ ବଢ଼ିଲା ଭୟଙ୍କରେ ॥୬୯
ପିତୃ ତର୍ପଣ କରି ବିଧି ।
ନଦୀରେ ସେତୁ ବନ୍ଧ ବାନ୍ଧି ॥୭୦
ସ୍ଥାପି ନିକ୍ଷତ୍ର କରି ରୋଷେ ।
ପୁଣି ଧାଇଁଲେ ଅନ୍ୟଦେଶେ ॥୭୧
ତ୍ରିସପ୍ତବାର ମହୀଭୂମି ।
କୋପେ ନୋହିଲେ ପଥଶ୍ରମୀ ॥୭୨
କ୍ଷତ୍ରିୟଗଣ ଧରି ଆଣି ।
କୁଠାର ଧାରେ ଶିର ହାଣି ॥୭୩
ରୁଧିରେ ନବକୁଣ୍ଡ କଲେ ।
ପିତାଙ୍କୁ ତର୍ପଣେ ତୋଷିଲେ ॥୭୪
ସେ କୁରୁକ୍ଷେତ୍ରେ ଯଜ୍ଞ କରି ।
ବିପ୍ରଙ୍କୁ ଚାରିବେଦୁଁ ବରି ॥୭୫
ଦକ୍ଷିଣା ଦେଲେ ବିପ୍ରହସ୍ତେ ।
ଶୁଣ ରାଜନ କହୁଁ ତୋତେ ॥୭୬
ଶ୍ରୀକରେ ଘେନି ଜଳ କୁଶ ।
ହୋତାଙ୍କୁ ଦେଲେ ପୂର୍ବଦେଶ ॥୭୭
ଦକ୍ଷିଣ ବ୍ରହ୍ମା ହସ୍ତେ ଦେଲେ ।
ପଶ୍ଚିମ ଅଧ୍ୱର୍ଯ୍ୟୁ ବରିଲେ ॥୭୮
ଉତ୍ତର ଉଦ୍‌ଗାତା ହସ୍ତେ ।
ପ୍ରଦାନ କଲେ ସେ ପ୍ରଶସ୍ତେ ॥୭୯
ବେଦ ଉଚ୍ଚାରି ଚାରିକୋଣେ ।
ଦକ୍ଷିଣା ଦେଲେ ସେ ବ୍ରାହ୍ମଣେ ॥୮୦

Dr. Sudhanshu Sekhar Mishra

ମଧ୍ୟକୁ କୁରୁକ୍ଷେତ୍ର ତୁଲେ ।
କଶ୍ୟପ ହସ୍ତେ ରାମ ଦେଲେ ॥୮୧
ଏ ଆର୍ଯ୍ୟାବର୍ତ୍ତ ପୁଣ୍ୟଭୂମି ।
ଉପଦେଷ୍ଟାଙ୍କୁ ଦେଲେ ସ୍ୱାମୀ ॥୮୨
ସଭାପତିଙ୍କି କରି ତୋଷ ।
ଆଦରେ ଦେଲେ ଅବଶେଷ ॥୮୩
ତା'ପରେ ସରସ୍ୱତୀ କୂଳେ ।
ଯଜ୍ଞବଭୃଥ ସ୍ନାନ କଲେ ॥୮୪
ସେ ବ୍ରହ୍ମନଦୀ ଜଳେ ପଶି ।
ରବିର ତେଜ ପ୍ରାୟେ ଦିଶି ॥୮୫
ସେ ଯଜ୍ଞପୂର୍ଣ୍ଣେ ଜମଦଗ୍ନି ।
ଜ୍ଞାନ-ଲକ୍ଷଣ-ଦେହ ଘେନି ॥୮୬
ସପ୍ତଋଷିଙ୍କ ମଧ୍ୟେ ଧାମ ।
ସ୍ଥାପିଲେ ତାଙ୍କୁ ପର୍ଶୁରାମ ॥୮୭
ସେ ରାମ କମଳଲୋଚନ ।
ସ୍ୱଭାବେ ଭୃଗୁର ନନ୍ଦନ ॥୮୮
ଭବିଷ୍ୟ ମନ୍ୱନ୍ତର କାଳେ ।
ବ୍ରହ୍ମ-ବିସ୍ତାରେ ଯୋଗବଳେ ॥୮୯
ସିଦ୍ଧ ଗନ୍ଧର୍ବେ ସ୍ତୁତି କଲେ ।
ମହେନ୍ଦ୍ର ପର୍ବତେ ରହିଲେ ॥୯୦
ଏମନ୍ତେ ଭୃଗୁବଂଶେ ହରି ।
ନରଶରୀରେ ଅବତରି ॥୯୧
ଦୁଷ୍ଟ କ୍ଷତ୍ରିୟ ନାଶ କରି ।
ହେଲେ ଧରଣୀ ଭାରା ହରି ॥୯୨
ଗାଧିର ପୁତ୍ର ହୋଇ ଜନ୍ମ ।
ସଂସାରେ କଲେ ଯେତେ କର୍ମ ॥୯୩

କ୍ଷତ୍ରିୟ କର୍ମ ଏ ଶୟଳେ ।
ତେଜିଲେ ତପସ୍ୟାର ବଳେ ॥୯୪
ବ୍ରହ୍ମବର୍ଚ୍ଚସେ ଶ୍ରଦ୍ଧା କଲେ ।
ବିଶ୍ୱାମିତ୍ର ସେ ବୋଲାଇଲେ ॥୯୫
ବିଶ୍ୱାମିତ୍ରର ଶତେପୁତ୍ର ।
ସେହୁ ଜନ୍ମିଲେ ସପ୍ତଗୋତ୍ର ॥୯୬
ସେ ଗୋତ୍ରେ ମଧୁଛନ୍ଦ ଆଦି ।
ସର୍ବେ ଜନ୍ମିଲେ ବେଦବାଦୀ ॥୯୭
ଶୁନଃଶେଫଙ୍କୁ ପୁତ୍ର କରି ।
ଭାର୍ଗବବଂଶେ ତା'ଙ୍କୁ ବରି ॥୯୮
ନିଜ ସୁତଙ୍କୁ ରାଇ ଧୀରେ ।
କହିଲେ ନିଗମ ବେଭାରେ ॥୯୯
ଏହାଙ୍କୁ ଜ୍ୟେଷ୍ଠ ବୋଲି ମଣ ।
ଏ ତୁମ୍ଭ ଗୋତ୍ରର ବର୍ଦ୍ଧନ ॥୧୦୦
ଏ ହରିଶ୍ଚନ୍ଦ୍ର ଯଜ୍ଞ କାଳେ ।
ପିତା ବିକ୍ରୟ କଲା ବଳେ ॥୧୦୧
ରୋହିତ ପଶୁ ଅର୍ଥେ ନେଲା ।
ଏହାର ମାଂସେ ଯଜ୍ଞ କଲା ॥୧୦୨
ଏହାଙ୍କୁ ଦେବେ ତୋଷ ହୋଇ ।
ତକ୍ଷଣେ ମରଣୁଁ ଛିଆଇ ॥୧୦୩
ଥୋଇଲେ ମୋ' ପୁତ୍ରଙ୍କ ମେଳେ ।
ଦେବରାତ ତା' ନାମ ଦେଲେ ॥୧୦୪
ବିଶ୍ୱାମିତ୍ରଙ୍କ ଶତସୁତେ ।
ଜ୍ୟେଷ୍ଠ ଯେ ଥିଲେ ପଞ୍ଚାଶତେ ॥୧୦୫
ବୋଇଲେ ଏ ନୋହେ ଉଚିତ ।
ଏ ଜ୍ୟେଷ୍ଠ ହୋଇବ କେମନ୍ତ ॥୧୦୬

ପିତା ତାହାଙ୍କୁ ଦେଲେ ଶାପ ।
ମ୍ଳେଚ୍ଛ ହୁଅରେ ତୁମ୍ଭେ ପାପ ॥୧୦୭
ଆଉ ପଞ୍ଚାଶପୁତ୍ର ସାନ ।
ତାହାଙ୍କୁ କଲେ ଜ୍ୟେଷ୍ଠମାନ୍ୟ ॥୧୦୮
ସନ୍ତୋଷେ ବୋଲେ ବିଶ୍ୱାମିତ୍ର ।
ସକଳେ ହୁଅ ପୁତ୍ରବନ୍ତ ॥୧୦୯
ଏ ଶୁନଃଶେଫ ଅଟେ ବୀର ।
ଏହାଙ୍କୁ ସର୍ବେ ଅନୁସର ॥୧୧୦
ଶୁଣ ହୋ ରାଜା ପରୀକ୍ଷିତ ।
ଆବର ବିଶ୍ୱାମିତ୍ର ପୁତ୍ର ॥୧୧୧
ଅଷ୍ଟକ ଜୟ ହେ ହାରୀତ ।
କ୍ରତୁମତାଦି ଥିଲେ ସୁତ ॥୧୧୨
ଏ ରୂପେ କଉଶିକ ଗୋତ୍ର ।
ଦୁଇଭାଗରେ ହେଲା ଖ୍ୟାତ ॥୧୧୩
କୌଶିକ ଗୋତ୍ରର ପ୍ରବର ।
ଏଣୁ ଯେ ସପତ ପ୍ରକାର ॥୧୧୪
ସେ ପୁଣି ମନ୍ୱନ୍ତର କାଳେ ।
ଗୋତ୍ର ସ୍ଥାପିଲେ ରବିତଳେ ॥୧୧୫
ସୁଜନେ ଶୁଣ ତୋଷ ଚିତ୍ତେ ।
ଭାଷା ପ୍ରବନ୍ଧେ ଭାଗବତେ ॥୧୧୬
ଭୃଗୁର ବଂଶେ ହୋଇ ଜନ୍ମ ।
ସେ ହରି କଲେ ଯେତେ କର୍ମ ॥୧୧୭
ଶୁଣନ୍ତେ ସର୍ବ ପାପ ହରେ ।
ଅଶେଷ କର୍ମବନ୍ଧୁଁ ତରେ ॥୧୧୮
ବୋଲଇ ଦାସ ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୧୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଷୋଡ଼ଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ସପ୍ତଦଶ ଅଧ୍ୟାୟ

ଶୁକ ଉବାଚ

ଆୟୁ ଯେ ପୁରୁରବା ସୁତ ।
ଶୁଣ ହୋ ତାହାର ଚରିତ ॥୧
ନହୁଷ ତାହାର ତନୟେ ।
ଆବର କ୍ଷତ୍ରବୃଦ୍ଧ ହୋଏ ॥୨
ରଜୀ ରମ୍ଭ ଯେ ବୀର୍ଯ୍ୟବନ୍ତ ।
ଅନେନା ଆଦି ପଞ୍ଚସୁତ ॥୩
କ୍ଷତ୍ରବୃଦ୍ଧର ବଂଶ ଶୁଣ ।
ସୁହୋତ୍ର ତାହାର ନନ୍ଦନ ॥୪
ତାହାର ହେଲେ ତିନିସୁତ ।
କାଶ୍ୟ ଯେ କୁଶ ଗୃତ୍ସମଦ ॥୫
ଗୃତ୍ସମଦର ଯେ ସନ୍ତାନ ।
ଶୁନକ ବୋଲି ତା'ର ନାମ ॥୬
ଶୁନକ ମହାତେଜବନ୍ତ ।
ଶୌନକ ମୁନି ତହୁଁ ଜାତ ॥୭
ଜନ୍ମିଲେ ପିତୃତେଜ ଘେନି ।
ବେଦପାରଗ ମହାମୁନି ॥୮
କାଶ୍ୟର କାଶୀ ନାମେ ସୁତ ।
ରାଷ୍ଟ୍ର ତା' ତହୁଁ ହେଲା ଜାତ ॥୯
ଦୀର୍ଘତମା ତା'ର ନନ୍ଦନ ।
ତା' ପୁତ୍ର ଧନ୍ୱନ୍ତରୀ ନାମ ॥୧୦
ସେ ଆୟୁର୍ବେଦ ଭିଆଇଲା ।
ପ୍ରାଣୀଙ୍କ ବ୍ୟାଧି ନାଶ କଲା ॥୧୧
ସେ ଯଜ୍ଞଭୋଜୀ ବିଷ୍ଣୁ ଅଂଶ ।
ସ୍ମରଣେ ସର୍ବରୋଗ ନାଶ ॥୧୨
ତା'ର ସନ୍ତତି କେତୁମାନ ।
ଭୀମରଥ ତା'ର ନନ୍ଦନ ॥୧୩
ତାହାର ବୀର୍ଯ୍ୟେ ଦିବୋଦାସ ।
ଦ୍ୟୁମାନ ତାହାର ଯେ ଶିଷ ॥୧୪
ତା' ନାମ ପ୍ରତର୍ଦ୍ଦନ ଖ୍ୟାତ ।
କେ ଅବା ବୋଲେ ଶତ୍ରୁଜିତ ॥୧୫
ଋତଧ୍ୱଜ କୁବଳୟାଶ୍ୱ ।
ବୋଲନ୍ତି ପୁଣି ତା'କୁ ବତ୍ସ ॥୧୬
ଅଳର୍କ ଆଦି ତହୁଁ ଜନ୍ମ ।
ଶୁଣ ହୋ ତା'ର ଗୃହକର୍ମ ॥୧୭
ଷାଠିଏ ସହସ୍ର ବରଷ ।
ଅଧିକେ ଷଷ୍ଟିଶତ ଶେଷ ॥୧୮
ଅବନୀ ତଳେ ହୋଇ ରାଜା ।
ଧର୍ମେ ପାଳିଲେ ଜନପ୍ରଜା ॥୧୯
ସନ୍ତତି ଅଳର୍କର ପୁତ୍ର ।
ସୁନୀଥ ତା' ତହୁଁ ସମ୍ଭୂତ ॥୨୦
ପୁତ୍ର ତାହାର ସୁକେତନ ।
ଧର୍ମକେତୁ ତା'ର ନନ୍ଦନ ॥୨୧
ସତ୍ୟକେତୁ ତାହାର ସୁତ ।
ଧୃଷ୍ଟକେତୁ ତା'ର ଅପତ୍ୟ ॥୨୨
ସୁକୁମାର ତା'ର ତନୁଜ ।
ଅନେକ ଦିନ କଲା ରାଜ୍ୟ ॥୨୩
ତହୁଁ ଜନ୍ମିଲା ବୀତିହୋତ୍ର ।
ଭର୍ଗ ଯେ ତା'ର ତହୁଁ ଜାତ ॥୨୪
ତାହାର ପୁତ୍ର ଭାର୍ଗଭୂମି ।
ଏବେହୋ ଶୁଣ ନୃପମଣି ॥୨୫
ଏମାନେ କାଶୀବଂଶେ ରାଜା ।
ଧର୍ମେ ପାଳିଲେ ଜନପ୍ରଜା ॥୨୬
ତାହାଙ୍କ ନାମେ କର୍ମେ ଭୂମି ।
ଯମ ନ ପାରେ ଯହିଁ ଭ୍ରମି ॥୨୭
ରମ୍ଭର ପୁତ୍ର ଯେ ରଭସ ।
ଗମ୍ଭୀର ହୁଏ ତା'ର ବଂଶ ॥୨୮
ଅକ୍ରିୟ ଗମ୍ଭୀରର ସୁତ ।
ତା'କ୍ଷେତ୍ରେ ବିପ୍ର ହେଲେ ଜାତ ॥୨୯
ଅନେନା ଆୟୁର କୁମର ।
ଶୁଣ କହିବା ବଂଶ ତା'ର ॥୩୦
ଶୁଦ୍ଧ ଯେ ଅନେନାର ସୁତ ।
ତା' ତହୁଁ ଶୁଚି ହେଲା ଜାତ ॥୩୧
କହିବା ତାହାର ସନ୍ତତି ।
ତ୍ରିକକୁଦ ଧର୍ମ ସାରଥି ॥୩୨
ତା'ଠାରୁ ଶାନ୍ତରୟ ଜାତ ।
ସେ କୃତକୃତ୍ୟ ଆତ୍ମବନ୍ତ ॥୩୩
ଏ ଗୋତ୍ରେ ବ୍ରହ୍ମଜ୍ଞାନୀ ସୁତେ ।
ଜନ୍ମ ଲଭିଲେ ଏ ଜଗତେ ॥୩୪
ଏବେ ରଜୀର ପୁତ୍ର ଯେତେ ।
ଭାବେ କହିବା ତୋ' ଅଗ୍ରତେ ॥୩୫
ତା'ର କୁମର ପଞ୍ଚଶତ ।
ତେଜ ପ୍ରତାପ ଅପ୍ରମିତ ॥୩୬
ଅସୁରେ ଆସି ଅନ୍ତରାଳେ ।
ଇନ୍ଦ୍ରକୁ ଉଭାରିଲେ ବଳେ ॥୩୭
ଇନ୍ଦ୍ର ଦେବଙ୍କ ତୁଳେ ଆସି ।
ରଜୀକୁ କହିଲେ ବିଶ୍ୱାସି ॥୩୮
ଭୋ ରାଜା ତୋ'ର ପୁତ୍ରଗଣେ ।
ଜିଣିବେ ଅସୁରଙ୍କୁ ରଣେ ॥୩୯
ମୋତେ କହିଲେ ବୃହସ୍ପତି ।
ଅନ୍ୟଥା ନାହିଁ ଜୟେ ଗତି ॥୪୦
ଏମନ୍ତ କହି ଦେବଯୂଥ ।
ଘେନାଇ ପଞ୍ଚଶତ ସୁତ ॥୪୧
ସ୍ୱର୍ଗ ଆବୋରି ଯୁଦ୍ଧ କରି ।
ଅନେକ ଅସୁର ସଂହାରି ॥୪୨
ଇନ୍ଦ୍ରଙ୍କୁ ସ୍ୱର୍ଗରାଜ୍ୟ ଦେଲେ ।
ତା' ଦେଖି ଇନ୍ଦ୍ର ତୁଷ୍ଟ ହେଲେ ॥୪୩
ପୁଣି ସେ ରାଜ୍ୟ ରଜୀ ହସ୍ତେ ।
ନ୍ୟାସ କରିଲେ ସେ ବିଶ୍ୱସ୍ତେ ॥୪୪
ଇନ୍ଦ୍ରର ତୁଳେ ତା'ର ସୁତେ ।
ସ୍ୱର୍ଗେ ରହିଲେ ଦିନା କେତେ ॥୪୫
ଏମନ୍ତେ କେତେଦିନ ଅନ୍ତେ ।
ରଜୀ ଯେ ଗଲେ ସ୍ୱର୍ଗପଥେ ॥୪୬
ପିତାର ମରଣ ଅନ୍ତର ।
ଇନ୍ଦ୍ର ମାଗିଲେ ସ୍ୱର୍ଗପୁର ॥୪୭
ତଦନ୍ତେ ତାହାର ତନୁଜ ।
ଇନ୍ଦ୍ରଙ୍କୁ ନ ଦେଲେ ସେ ରାଜ୍ୟ ॥୪୮
ସ୍ୱର୍ଗ ସେ କଲେ ଅଧିକାର ।
ଇନ୍ଦ୍ରଙ୍କୁ କରି ଅନାଦର ॥୪୯
ରଜୀର ପୁତ୍ରେ ତା ନ ଦେଲେ ।
ଯାଗର ଭାଗମାନ ନେଲେ ॥୫୦

Dr. Sudhanshu Sekhar Mishra

ରଜୀ ତନୟଙ୍କର ମତି ।
ନାଶ କରିଲେ ବୃହସ୍ପତି ॥୫୧
ସ୍ଥାପିଲେ ଇନ୍ଦ୍ର ଅଧିକାରେ ।
ସୁଧର୍ମା ସଭାରେ ବେଭାରେ ॥୫୨
ଇନ୍ଦ୍ର ପାଇଲେ ସ୍ୱର୍ଗେ ସ୍ଥାନ ।
ଏବେ ତୁ ଶୁଣ ନୃପରାଣ ॥୫୩
କୁଶ ଯେ କ୍ଷତ୍ରବୃଦ୍ଧ ନାତି ।
ତାହାର ସୁତ ନାମ ପ୍ରତି ॥୫୪
ତାହାର ସନ୍ତାନ ସଞ୍ଜୟ ।
ତା'ର ତନୟ ହୋଏ ଜୟ ॥୫୫

ହର୍ଯ୍ୟବଳ ତାହାର ସୁତ ।
ତହୁଁ ସହଦେବ ସମ୍ଭୂତ ॥୫୬
ସହଦେବର ପୁତ୍ର ହୀନ ।
ତାହାର ସୁତ ଜୟସେନ ॥୫୭
ସଂକୃତି ତାହାର ତନୟ ।
ତାହାର ପୁତ୍ର ଅଟେ ଜୟ ॥୫୮
ସେ କ୍ଷାତ୍ରଧର୍ମେ ନିତ୍ୟେ ରତ ।
ମହାରଥୀ ନାମରେ ଖ୍ୟାତ ॥୫୯
ଏ ସର୍ବ କ୍ଷତ୍ରବୃଦ୍ଧ ବଂଶ ।
କହିଲୁ ଶୁଣିଲ ନରେଶ ॥୬୦

ଏବେ ନହୁଷ ବଂଶମାନ ।
କହିବୁ ଭବିଷ୍ୟ ପୁରାଣ ॥୬୧
ବଂଶାନୁଚରିତ ଏ ବାଣୀ ।
ଶୁଣି ସଂସାରୁ ତରପ୍ରାଣୀ ॥୬୨
ବୋଲଇ ବିପ୍ର ଜଗନ୍ନାଥ ।
ନବମସ୍କନ୍ଧେ ଭାଗବତ ॥୬୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ସପ୍ତଦଶୋଽଧ୍ୟାୟଃ ॥

---

## ଅଷ୍ଟାଦଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ ବ୍ରହ୍ମବେତ୍ତା ।
ନବମେ ବଂଶାନୁବ୍ୟବସ୍ଥା ॥୧
ନହୁଷ ବୀର୍ଯ୍ୟେ ଷଟସୁତେ ।
ତାହାଙ୍କ ନାମ କହୁଁ ତୋତେ ॥୨
ଯତି ଯଯାତି ଯେ ସଂଯାତି ।
ଆୟତି ବିୟତି ଯେ କୃତି ॥୩
ଦେହୀର ଇନ୍ଦ୍ରିୟ ଯେସନେ ।
ଜନ୍ମିଲେ ନହୁଷ ନନ୍ଦନେ ॥୪
ଯତିକି ରାଜପଣ ଦେଲା ।
ସେ ରାଜଭୋଗ ନ ଇଚ୍ଛିଲା ॥୫
ବୋଲଇ ଦୁଃଖମୟ ଏହି ।
ଏଣେ ମୋହର କାର୍ଯ୍ୟ ନାହିଁ ॥୬
ଆତ୍ମା ନ ମଜ୍ଜେ ରାଜସୁଖେ ।
ନିରତେ ରହେ ମନଦୁଃଖେ ॥୭
ଜାଣଇ ପିତାର ଆଚାର ।
ଋଷିଙ୍କି ବୁହାଇଲା ଭାର ॥୮
ଇନ୍ଦ୍ରାଣୀ ଅର୍ଥେ ପଥେ ଯା'ନ୍ତେ ।
କୋପ ବସିଲା ଋଷିଚିତ୍ତେ ॥୯
ବହି ନ ପାରି ମହାଭାର ।
ବୋଇଲେ ହୁଅ ଅଜଗର ॥୧୦

ଏମନ୍ତେ ଅଜଗର ହୋନ୍ତେ ।
ନିର୍ଜନ ଗହନ ବନସ୍ତେ ॥୧୧
ପଡ଼ି ଡାକିଲା କରି ଶୋକ ।
ଭୋ ଋଷିଗଣେ ମୋତେ ରଖ ॥୧୨
ତା'ର ବିକଳେ ମୁନିଗଣ ।
ବୋଇଲେ ଶୁଣ ଭୋ ରାଜନ ॥୧୩
ଦ୍ୱାପର ଯୁଗ ଅବଶେଷେ ।
ଧର୍ମନନ୍ଦନ କୁରୁବଂଶେ ॥୧୪
ଭୀମକୁ ବନେ ଖୋଜି ଯା'ନ୍ତେ ।
ଭେଟ ହୋଇବ ତୋ' ସଙ୍ଗତେ ॥୧୫
ଭୀମକୁ ବାନ୍ଧିଥିବୁ ତୁହି ।
ସେ ପୁଣି ତୋ'ର ପାସେ ଯାଇ ॥୧୬
ଧର୍ମ କହିବେ ତୋତେ ଯେବେ ।
ନିସ୍ତାର ତୋ'ର ହେବ ତେବେ ॥୧୭
ଏମନ୍ତ ନହୁଷଙ୍କୁ କହି ।
ସେ ମୁନି ଗଲେ ଦୟାବହି ॥୧୮
ସେ ପୁଣି ଯୁଧିଷ୍ଠିର ତୁଳେ ।
ଧର୍ମ ବିଚାର କରି ଭଲେ ॥୧୯
ସର୍ପ ଯୋନିରୁ ମୋକ୍ଷ ହୋଇ ।
ନିଜ ମନ୍ଦିରେ ମିଳେ ଯାଇ ॥୨୦
ସେ କଥା ଯତି ସ୍ମରି ମନେ ।
ନବସେ ନୃପତି ଆସନେ ॥୨୧

ଯଯାତି ଭ୍ରାତୃଗଣ ତୁଳେ ।
ରାଜା ହୋଇଲା ପିତୃ ବୋଲେ ॥୨୨
ସକଳ ରାଜ୍ୟେ ହୋଇ ରାଜା ।
ଧର୍ମେ ପାଳିଲା ଜନପ୍ରଜା ॥୨୩
ଶୁକ୍ର ଦୁହିତା ଦେବଯାନୀ ।
ଶର୍ମିଷ୍ଠା ବୃଷର ଦୁଲଣୀ ॥୨୪
ଯଯାତି ବରି ବରପଣେ ।
ବିବାହ କଲେ ଶୁଭକ୍ଷଣେ ॥୨୫
ଏମନ୍ତେ ଶୁକବାକ୍ୟ ଶୁଣି ।
ବୋଲେ ପରୀକ୍ଷ ନୃପମଣି ॥୨୬

ରାଜା ଉବାଚ

ଭୋ ମୁନି ଅସମ୍ଭବ ବାଣୀ ।
ସଂଶୟ ଲାଗିଲା ତ ଶୁଣି ॥୨୭
ଶୁକ୍ର ସ୍ୱଭାବେ ବ୍ରହ୍ମଋଷି ।
ପୁଣି ଅଟନ୍ତି ଭୃଗୁବଂଶୀ ॥୨୮
ବ୍ରାହ୍ମଣ କ୍ଷତ୍ରିୟ କେମନ୍ତେ ।
ବିବାହ କଲେ ବେଦମତେ ॥୨୯
ଏ ପ୍ରତିଲୋମ ପ୍ରାୟେ ମଣି ।
ଶୁକ ବୋଲନ୍ତି ତାହା ଶୁଣି ॥୩୦

ଶୁକ ଉବାଚ

ଦିନେକ ବୃଷପର୍ବା ଘରେ ।
ଶର୍ମିଷ୍ଠା କନ୍ୟା ଅନ୍ତଃପୁରେ ॥୩୧

Dr. Sudhanshu Sekhar Mishra

ସଖୀ ସହସ୍ରେ ଘେନି ସଙ୍ଗେ ।
ଜଳେ କ୍ରୀଡ଼ନ୍ତି ନାନା ରଙ୍ଗେ ॥୩୨
ସ୍ୱଭାବେ ନିଦାଘର କାଳେ ।
ଶୁକ୍ରଦୁହିତା ସଖୀମେଳେ ॥୩୩
କୁସୁମବନ ମଧ୍ୟେ ମିଳେ ।
ପୁଷ୍ପିତ ଦ୍ରୁମ ଶୀତ ଜଳେ ॥୩୪
ପୁଷ୍ପଭୂଷିତ ଭୂମି ଜଳେ ।
କ୍ରୀଡ଼ନ୍ତି ପକ୍ଷୀ କୁତୂହଳେ ॥୩୫
କହ୍ଲାର-ପଦ୍ମ-ପୁଷ୍ପ ଗନ୍ଧେ ।
ଭ୍ରମରଗଣ ମକରନ୍ଦେ ॥୩୬
ପୁଷ୍ପଜ ଗନ୍ଧେ ବାୟୁ ସ୍ଫୁରେ ।
ଶୀତଳ ଲାଗଇ ଶରୀରେ ॥୩୭
ସେ ଜଳେ ପଶି ସର୍ବକନ୍ୟା ।
ସ୍ୱଭାବେ କମଳଲୋଚନା ॥୩୮
ବସ୍ତ୍ର ପାଳଟି ହ୍ରଦ କୂଳେ ।
ଝାସି ପଶିଲେ ଶୀତଜଳେ ॥୩୯
କ୍ରୀଡ଼ନ୍ତି ଜଳେ ନାନାରଙ୍ଗେ ।
ଜଳ ସିଞ୍ଚନ୍ତି ଅଙ୍ଗୁ ଅଙ୍ଗେ ॥୪୦
ଏମନ୍ତେ ଉମା ମହେଶ୍ୱର ।
ଆରୋହି ବୃଷଭ ଉପର ॥୪୧
ବନେ ଚଳନ୍ତେ ତା'ଙ୍କୁ ଦେଖି ।
ବେଗେ ଉଠିଲେ ଶଶୀମୁଖୀ ॥୪୨
ସକଳେ ଉଠି ତା'ର ତୁଲେ ।
ସଂଭ୍ରମେ ବସନ ପିନ୍ଧିଲେ ॥୪୩
ଶର୍ମିଷ୍ଠା ସଂଭ୍ରମେ ନ ଜାଣି ।
ଦେବଯାନୀର ବସ୍ତ୍ର ଆଣି ॥୪୪
ସତ୍ୱରେ କଲା ପରିଧାନ ।
ତା' ଦେଖି ଦେବଯାନୀ ମନ ॥୪୫
କୋପେ କମ୍ପଇ ଥରହର ।
କଠୋର ବୋଲଇ ଉତ୍ତର ॥୪୬
ଦେଖ ଏ ଦାସୀମାତ୍ର ହୋଇ ।
ବସ୍ତ୍ର ପିନ୍ଧିଲା ମୋ'ର ନେଇ ॥୪୭
ଅବଜ୍ଞା କରି ମୋ' ବସନ ।
ଯଜ୍ଞର ହବି ଯେହ୍ନେ ଶ୍ୱାନ ॥୪୮
ଦେବେ ଯେ ଅତି ତପୋବଳେ ।
ବିଷ୍ଣୁବଦନୁ ଭୂମି ତଳେ ॥୪୯
ବ୍ରାହ୍ମଣ ହୋଇ ଜାତ ହେଲେ ।
ସର୍ବେ ତରନ୍ତି ତା'ଙ୍କ ବୋଲେ ॥୫୦
ଗୋବିନ୍ଦ ଯାହାର ବଚନେ ।
ନିତ୍ୟେ ସେବନ୍ତି ସନ୍ନିଧାନେ ॥୫୧
ତହିଁ ମୁଁ ଭୃଗୁବଂଶେ ଜାତ ।
ଆମ୍ଭର ଶିଷ୍ୟ ଏହା ତାତ ॥୫୨
ମୋ' ବସ୍ତ୍ର ପିନ୍ଧି ଗର୍ବ ମନେ ।
ଶୂଦ୍ରକୁ ବେଦବାକ୍ୟ ଯେହ୍ନେ ॥୫୩
ଏମନ୍ତେ ଦେବଯାନୀ କଥା ।
ଶୁଣି ଶର୍ମିଷ୍ଠା ମନେ ବ୍ୟଥା ॥୫୪
ବୋଲଇ ପୁରୁଷ ବଚନ ।
ସିଂହକୁ ଶୃଗାଳ ଯେସନ ॥୫୫
ଆପଣା ବୃତ୍ତାନ୍ତ ନ ଜାଣି ।
ମୋ' ଆଗେ କହୁ କଟୁବାଣୀ ॥୫୬
ସ୍ୱଭାବେ ଭିକ୍ଷୁକ ବୋଲାଉ ।
ଲଜ୍ଜା କି ମୁଖେ ତୁ ନପାଉ ॥୫୭
କାକମାନଙ୍କ ପ୍ରାୟ ହୋଇ ।
ଥାଅ ତୁ ଆମ୍ଭ ଘରେ ଚାହିଁ ॥୫୮
ରାଜାର ଦୁହିତାଟି ମୁହିଁ ।
ତୁ ମୋତେ କହୁ ଗର୍ବ ବହି ॥୫୯
ଏମନ୍ତେ ବହୁ କୋପକଲା ।
ସଖୀଙ୍କି ଚାହିଁ ଆଜ୍ଞା ଦେଲା ॥୬୦
ମାର ବୋଇଲା କୋପମନେ ।
ଶର୍ମିଷ୍ଠା ଧରି ତା' ବସନେ ॥୬୧
ଓଷ୍ଠ କାମୋଡ଼ି ଅତି କୋପେ ।
ତା' ବସ୍ତ୍ର ପକାଇଲା କୂପେ ॥୬୨
ପୁଣି ତାହାରି ହସ୍ତ ଧରି ।
କୂପେ କ୍ଷେପିଲା କୋପ କରି ॥୬୩
ଗଲା ସେ ଆପଣା ମନ୍ଦିର ।
ଏବେ ହୋ ଶୁଣ ନୃପବର ॥୬୪
ଯଯାତି ମୃଗୟାର ଅର୍ଥେ ।
ଥିଲା ସେ ଗହନ ବନସ୍ତେ ॥୬୫
ତୃଷିତେ ଜଳ ଅନ୍ୱେଷଣେ ।
କୂପ ଦେଖିଲା ତତ୍‌କ୍ଷଣେ ॥୬୬
କୂପକୁ ଚାହିଁ ନୃପମଣି ।
ଦେଖିଲା ଶୁକ୍ରର ଦୁଲଣୀ ॥୬୭
ଉଲଗ୍ନେ ବସ୍ତ୍ର ଖୋଜେ ଜଳେ ।
ତା' ଦେଖି ରାଜା ଅବହେଳେ ॥୬୮
ଉତ୍ତରୀବସ୍ତ୍ର ତା'କୁ ଦେଲା ।
କନ୍ୟାକୁ ଜଳୁ ଉଦ୍ଧରିଲା ॥୬୯
ଆନନ୍ଦେ ହସ୍ତେ ହସ୍ତ ଦେଇ ।
କୂଳେ ସ୍ଥାପିଲା ଦୟାବହି ॥୭୦
ସେ କନ୍ୟା ରାଜା ମୁଖ ଚାହିଁ ।
ଗଦ୍‌ଗଦେ ପ୍ରେମଭର ହୋଇ ॥୭୧
ବୋଲଇ ଶୁଣ ନୃପମଣି ।
ତୁ ଯେ ଧଇଲୁ ମୋର ପାଣି ॥୭୨
ତୁ ଅଟୁ ପର-ପୁରଞ୍ଜୟ ।
ଶୁଣ ତୁ ନିଗମ-ନିର୍ଣ୍ଣୟ ॥୭୩
ଯେ କନ୍ୟା ହସ୍ତ ହସ୍ତେ ଧରି ।
ସେ ନିଶ୍ଚେ ହୁଏ ତା'ର ନାରୀ ॥୭୪
ହସ୍ତ ତୁ ଦେଲୁ ମୋ'ର ହସ୍ତେ ।
ମୋ' ସ୍ୱାମୀ ଅନ୍ୟକେ ଜଗତେ ॥୭୫
ଦେଖିଲୁ ଶରୀର ମୋହର ।
କାହିଁ ଧରିବି ଆନ କର ॥୭୬
ଏ ଯେ ସମ୍ବନ୍ଧ କନ୍ୟାବର ।
ନିଶ୍ଚୟେ ସଞ୍ଚିଲେ ଈଶ୍ୱର ॥୭୭
ମୁଁ କନ୍ୟା ଥିଲି କୂପଜଳେ ।
ତୁ ମୋ'ର ହସ୍ତ ଧରି ବଳେ ॥୭୮
କୂଳେ ସ୍ଥାପିଲୁ ଦୟାବହି ।
ତୋ' ତହୁଁ ଅନ୍ୟ ବର ନାହିଁ ॥୭୯
ଏ ଶାସ୍ତ୍ରମତେ ବିଚାରନ୍ତେ ।
ବ୍ରାହ୍ମଣେ ନ ବରିବେ ମୋତେ ॥୮୦
କଚ ଯେ ବୃହସ୍ପତି-ବଳା ।
ପୂର୍ବେ ସେ ମୋତେ ଶାପ ଦେଲା ॥୮୧
ସେ ଶାପ ନୋହିଲା ଅନ୍ତର ।
ଏଣୁ କ୍ଷତ୍ରିୟ ବର ମୋ'ର ॥୮୨
ଶର୍ମିଷ୍ଠା ମୋ'ର ଭୁଜ ଧରି ।
କୂପେ କ୍ଷେପିଲା କୋପକରି ॥୮୩
ଗଲା ସେ ଆପଣା ମନ୍ଦିର ।
ଏବେ ହୋ ଶୁଣ ନୃପବର ॥୮୪
ଦଇବ ସଙ୍କେତ ଏ କଥା ।
କେ କରି ପାରିବ ଅନ୍ୟଥା ॥୮୫

Dr. Sudhanshu Sekhar Mishra

ତା'ର ବଚନ ରାଜା ଘେନି ।
ସମ୍ମତ କରି ହୋଇ ତୁନି ॥୮୬
ଯଯାତି ନିଜପୁରେ ଗଲା ।
ସେ କନ୍ୟା ମନେ ବିଚାରିଲା ॥୮୭
କହିବି ପିତା ଆଗେ ମୁହିଁ ।
ଯେମନ୍ତେ ବର ଲଭିବଇଁ ॥୮୮
ରୋଦନ କରି ମନଦୁଃଖେ ।
କହିଲା ପିତାର ସମ୍ମୁଖେ ॥୮୯
ଶର୍ମିଷ୍ଠା ଯେତେ କର୍ମ କଲା ।
ଯେମନ୍ତେ କୂପେ ପକାଇଲା ॥୯୦
ରାଜା ଉଦ୍ଧରିଲା ଯେମନ୍ତେ ।
କୂପୁଁ ତୋଳିଲା ଦକ୍ଷହସ୍ତେ ॥୯୧
ଏ କଥା ଯେମନ୍ତ ବିଧାନେ ।
କହିଲା ପିତା ସନ୍ନିଧାନେ ॥୯୨
ଶୁକ୍ର ଯେ ତା'ର ବୋଲ ଶୁଣି ।
ଭବିଷ୍ୟ କଥା ମନେ ଗୁଣି ॥୯୩
ବୋଲଇ ମୁଣ୍ଡେ ଦେଇ ହସ୍ତ ।
ଧିକ ମୋହର ପୌରୋହିତ୍ୟ ॥୯୪
ଏମନ୍ତେ ମନେ କୋପ କରି ।
ଦୁହିତା କର କରେ ଧରି ॥୯୫
ବୃଷପର୍ବାର ପୁରେ ଗଲେ ।
ସକୋପେ ରାଜାଙ୍କୁ ଭେଟିଲେ ॥୯୬
ଗୁରୁ ବଦନେ କୋପ ଦେଖି ।
ସଂଭ୍ରମେ ଆସନ ଉପେକ୍ଷି ॥୯୭
ଅନେକ ସ୍ତୁତିବାକ୍ୟ କହି ।
ଚରଣେ ଗଡ଼ଘାଲି ଶୋଇ ॥୯୮
ଶୁକ୍ରଙ୍କ କ୍ରୋଧ କ୍ଷଣମାତ୍ର ।
ରହଇ ସଂସାରେ ବିଦିତ୍ ॥୯୯
ବୋଲଇ ତା'ର ମୁଖ ଚାହିଁ ।
ଆମ୍ଭର ଦୁହିତା ଯେ ଏହି ॥୧୦୦
ଏ କନ୍ୟା ବାକ୍ୟ ତୁମେ ଘେନ ।
ଏହାର ଇଚ୍ଛା କର ପୂର୍ଣ୍ଣ ॥୧୦୧
ଯଯାତି କୂପୁଁ ଉଦ୍ଧରିଲା ।
ଏ କନ୍ୟା ହସ୍ତେ ହସ୍ତ ଦେଲା॥୧୦୨
ମୁଁ ଏବେ ବେଦବାକ୍ୟ ମତେ ।
ବ୍ରାହ୍ମଣେ ବରିବି କେମନ୍ତେ ॥୧୦୩

ଯେପରି କନ୍ୟା ହୁଏ ଶାନ୍ତି ।
ତା' ବେଗେ କର ତୁ ନୃପତି ॥୧୦୪
ଭୃଗୁଙ୍କ ବାକ୍ୟ ମନେ ଗୁଣି ।
ସେ ବୃଷପର୍ବା ନୃପମଣି ॥୧୦୫
ଦେବଯାନୀର ପାଶେ ଗଲା ।
ବିନୟ ହୋଇଣ କହିଲା ॥୧୦୬
ନିଜ କନ୍ୟାର ଦୋଷମାନ ।
ସମସ୍ତ କଲା ନିବେଦନ ॥୧୦୭
ତାହାର ସ୍ତୁତିବାକ୍ୟ ଶୁଣି ।
ସନ୍ତୁଷ୍ଟ ହୋଇ ଦେବଯାନୀ ॥୧୦୮
ନିଜର ଯାହା ଅଭିଳାଷ ।
ତା' ଆଗେ କଲାକ ପ୍ରକାଶ ॥୧୦୯
ବୋଲଇ ଶୁକ୍ରର ଦୁହିତା ।
ଶୁଣ ତୁ ଆମ୍ଭର ବାରତା ॥୧୧୦
ମୋ' ପିତା ଯହିଁ ମୋତେ ଦେବା
ଶର୍ମିଷ୍ଠା ମୋ'ର ସଙ୍ଗେ ଥିବ ॥୧୧୧
ମୁଁ ତା'ର ହେବି ଶ୍ରେଷ୍ଠ ନାରୀ ।
ତୋ' କନ୍ୟା ହେବ ପରିବାରୀ॥୧୧୨
କନ୍ୟାର ଠାରୁ ବାଣୀ ଶୁଣି ।
ଅସୁରରାଜ ହେଲା ତୁନି ॥୧୧୩
ଭାଳନ୍ତି ବୃଷପର୍ବା ରାୟେ ।
ବିପଦ ପଡ଼ିଲା ଥୋକାଏ ॥୧୧୪
ସଖୀ ସମେତ କନ୍ୟା ଆଣି ।
ବୋଲଇ ନିଅ ଦେବଯାନୀ ॥୧୧୫
ଏମନ୍ତେ ଶର୍ମିଷ୍ଠା ଅଇଲା ।
ଦେବଯାନୀର ଦାସୀ ହେଲା ॥୧୧୬
ଶର୍ମିଷ୍ଠା ଦେବଯାନୀ ତୁଲେ ।
ଯଯାତି ବରି ବିଭା କଲେ ॥୧୧୭
ଶୁକ୍ର ଯଯାତି ମୁଖ ଚାହିଁ ।
କହନ୍ତି ଶୁଣ ନୃପସାଇଁ ॥୧୧୮
ଶର୍ମିଷ୍ଠା ସଙ୍ଗେ ସହବାସ ।
କଲେ ଲଭିବୁ ଅତିକ୍ଳେଶ ॥୧୧୯
ଶର୍ମିଷ୍ଠା ତୁଲେ ଦିବ୍ୟନାରୀ ।
ଘେନି ଶତେକ ପରିବାରୀ ॥୧୨୦
ଖଟଇ ଦେବଯାନୀ ତୁଲେ ।
ଯଯାତି ସଙ୍ଗେ ଭାବଭୋଳେ॥୧୨୧

ଶର୍ମିଷ୍ଠା ରୂପ-ଗୁଣ ଦେହେ ।
ଯଯାତି ଦେଖି କାମେ ମୋହେ॥୧୨୨
ଦେବଯାନୀର ପୁତ୍ର ଦେଖି ।
ଶର୍ମିଷ୍ଠା ନିତ୍ୟେ ମନେ ଦୁଃଖୀ॥୧୨୩
ମିଳିଲା ରାଜାରେ ଏକାନ୍ତେ ।
ପ୍ରାର୍ଥନା କଲା ପୁତ୍ର ଅର୍ଥେ ॥୧୨୪
ତେଣୁ ସେ ହୋଇଲେ ମୋହିତ।
ଦଇବ ବଶେ ବୁଦ୍ଧି ହତ ॥୧୨୫
ଦେବଯାନୀକି ନ ସୁମରି ।
ଶର୍ମିଷ୍ଠା ବାକ୍ୟ ମନେ ଧରି ॥୧୨୬
ଶର୍ମିଷ୍ଠା ସଙ୍ଗେ ଏକମେଳେ ।
ରାଜା ଶୟନ ଋତୁକାଳେ ॥୧୨୭
ଶୁକ୍ରଙ୍କ ବାକ୍ୟ ହେଳା କଲା ।
ଶର୍ମିଷ୍ଠା ସଙ୍ଗେ ସଙ୍ଗ କଲା ॥୧୨୮
ଯଦୁ ତୁର୍ବସୁ ବେନିଭାଇ ।
ଦେବଯାନୀର ଗର୍ଭୁ ହୋଇ ॥୧୨୯
ଆବର ଶର୍ମିଷ୍ଠା ଗର୍ଭରୁ ।
ଜନ୍ମିଲେ ଦ୍ରୁହ୍ୟୁ ଅନୁ ପୁରୁ ॥୧୩୦
ସେ ଦେବଯାନୀ କୋପଭରେ ।
କହିଲା ପିତାର ଆଗରେ ॥୧୩୧
ପିତା ଚରଣତଳେ ପଡ଼ି ।
କାନ୍ଦଇ ବେନିକର ଯୋଡ଼ି ॥୧୩୨
ଶର୍ମିଷ୍ଠା ତୁଲେ ରାଜା ନିତ୍ୟେ ।
ରାତ୍ରିଦିବସ ତା' ସଙ୍ଗତେ ॥୧୩୩
ତାହାର ବଶ ପ୍ରାୟେ ରହେ ।
କୋପନୟନେ ମୋତେ ଚାହେଁ ॥୧୩୪
ଶର୍ମିଷ୍ଠା ପ୍ରେମବନ୍ଧ ଆଶେ ।
କେବେହେଁ ନମିଳେ ମୋ' ପାଶେ॥୧୩୫
ଏମନ୍ତେ ଦୁହିତା ବଚନେ ।
କୋପ ବସିଲା ଶୁକ୍ରମନେ ॥୧୩୬
ମିଳିଲା ରାଜାର ସମୀପେ ।
ଗରୁଡ଼ ମିଳେ ଯେସ୍ନେ ସର୍ପେ ॥୧୩୭
ବୋଇଲେ କୋପଭର ହୋଇ ।
ଅଧର୍ମ ଆଚରିଲୁ ତୁହି ॥୧୩୮
ମୋ'ର ଦୁହିତା କଲୁ ଦୂର ।
ଶର୍ମିଷ୍ଠା ମନୋହାରୀ ତୋ'ର ॥୧୩୯

Dr. Sudhanshu Sekhar Mishra

ତୁ ଏବେ ଜରାରୂପ ହୋଇ ।
ମନ୍ଦିରେ ଥାଅ ନିତ୍ୟେ ଶୋଇ ॥୧୪୦
ଏମନ୍ତ ଶାପ ଦେଲେ ମୁନି ।
ତକ୍ଷଣେ ବୃଦ୍ଧଦେହ ଘେନି ॥୧୪୧
ଯଯାତି ରହିଲା ଶୟନେ ।
ଉଠି ନ ପାରେ ରାତ୍ରଦିନେ ॥୧୪୨
ଏମନ୍ତେ ତା'ର ପାଞ୍ଚସୁତ ।
ଦେବିକନ୍ୟାର ଗର୍ଭୁ ଜାତ ॥୧୪୩
ହୋଇ ବଢ଼ିଲେ ଦିନେଦିନେ ।
ତେଜ ପ୍ରଚଣ୍ଡସୂର୍ଯ୍ୟ ଯେହ୍ନେ ॥୧୪୪
ଏମନ୍ତେ କିଛିଦିନ ଅନ୍ତେ ।
ଯଯାତି ଭୋଗ ମନେ ଚିନ୍ତେ ॥୧୪୫
ଭୋମୁନି ମୋତେ ଦୟାକର ।
ଏ କଷ୍ଟ ଯେଣେ ହୋଏ ପାର ॥୧୪୬
କାନ୍ଦିଣ ଜୀବନ ବିକଳେ ।
ପଡ଼ି ଭୃଗୁର ପାଦତଳେ ॥୧୪୭
ସ୍ୱଭାବେ ଦୁହିତାର ପତି ।
ବୋଲଇ ମୋତେ କର ଗତି ॥୧୪୮
ତା'ର ବିକଳ ଦେଖି ମୁନି ।
ବୋଇଲେ ଚିତ୍ତେ ଦୟା ଘେନି ॥୧୪୯
ବୋଲନ୍ତି ଶୁଣ ନୃପବର ।
ମୋର ବଚନ ଏବେ କର ॥୧୫୦
ସୁତକୁ ଜରାରୂପ ଦେଇ ।
ସଂସାର ଭୋଗକର ତୁହି ॥୧୫୧
ସେ ରାଜା ପୁତ୍ରଙ୍କୁ ଅଣାଇ ।
ବୋଲଇ ସମୀପେ ବସାଇ ॥୧୫୨
ହେ ପୁତ୍ରେ ଦେଖ ମୋ'ର ରୂପ ।
ଗୁରୁ ଯେ ମୋତେ ଦେଲେଶାପ ॥୧୫୩
ବୃଦ୍ଧ ହୋଇଲି ଯୁବାକାଳେ ।
ସୂର୍ଯ୍ୟ ଯେସନେ ସାୟଂକାଳେ ॥୧୫୪
ଦେଖ ଏ ମନୁଷ୍ୟ ଶରୀର ।
ବିଷ୍ଣୁର ଭୋଗର ମନ୍ଦିର ॥୧୫୫
ଇନ୍ଦ୍ରିୟଭୋଗେ ଜୀବ୍ର ରହେ ।
ଯଜ୍ଞପୁରୁଷ ବସେ ଦେହେ ॥୧୫୬
ଦେବେ ଇଛନ୍ତି ଯେ ଶରୀର ।
ନିସ୍ଫଳ ହୋଇଲା ମୋହର ॥୧୫୭

ଯଦୁଙ୍କୁ ବୋଲେ ନୃପବର ।
ତୁ ପୁତ୍ର ମୋ'ର ବୋଲକର ॥୧୫୮
ମୋ' ଜରା ଶରୀର ତୁ ନିଅ ।
ତୋ'ର ବୟସ ମୋତେ ଦିଅ ॥୧୫୯
ଭୋଗ ମୁଁ କରି ଦିନା କେତେ ।
ତୋ'ର ବୟସ ଦେବି ତୋତେ ॥୧୬୦
ଏମନ୍ତ ରାଜାର ବଚନେ ।
ଯଦୁ ବୋଲଇ କୋପମନେ ॥୧୬୧
ଦୁର୍ଲ୍ଲଭ ମନୁଷ୍ୟ ଶରୀର ।
ବିଷ୍ଣୁର ପୂଜାର ମନ୍ଦିର ॥୧୬୨
ଯଜ୍ଞପୁରୁଷ ଏହା ମଧ୍ୟେ ।
ବିଷୟ ଭୁଞ୍ଜଇ ଆନନ୍ଦେ ॥୧୬୩
ଦେବେ ନ ପାନ୍ତି ଯାହା ଭାବି ।
ମୁଁ ତାହା କେମନ୍ତେ ଛାଡ଼ିବି ॥୧୬୪
ଏମନ୍ତ ଯଦୁମୁଖୁଁ ଶୁଣି ।
କୋପେ ବୋଲଇ ନୃପମଣି ॥୧୬୫
ମୋ'ର ବଚନ ତୁ ନ କଲୁ ।
ରାଜଭୋଗକୁ ଇଛା କଲୁ ॥୧୬୬
ତୋ'ବଂଶେ ରାଜା ଯେ ହୋଇବ ।
ମୂର୍ଦ୍ଧନା ଫାଟି ପ୍ରାଣ ଯିବ ॥୧୬୭
ଏମନ୍ତ ଶାପ ତାକୁ ଦେଇ ।
ପୁତ୍ରଙ୍କୁ ଜଣେ ଜଣେ ରାଇ ॥୧୬୮
ତୁର୍ବସୁ ଦ୍ରୁହ୍ୟୁ ଅନୁ ତିନି ।
ରାଜା ବଚନେ ହେଲେ ତୁନି ॥୧୬୯
ପୁରୁ ଯେ ଥିଲା ରାଜା ପଛେ ।
ତକ୍ଷଣେ ମିଳିଲା ପ୍ରତ୍ୟକ୍ଷେ ॥୧୭୦
କପୋଳେ ବେନିକର ଯୋଡ଼ି ।
କହେ ନୃପତି ପାଦେ ପଡ଼ି ॥୧୭୧
ଭୋ ତାତ ମୋତେ ଆଜ୍ଞା ଦିଅ ।
ମୋ'ର ବୟସ ତୁମ୍ଭେ ନିଅ ॥୧୭୨
ତୋ' ବୃଦ୍ଧରୂପ ଦିଅ ମୋତେ ।
ମୋ' ରୂପେ ବଞ୍ଚ ଦିନାକେତେ ॥୧୭୩
ଏଦେହେ ଶୁଣ ନରରାଣ ।
କେ ବୁଝିପାରେ ପିତୃଋଣ ॥୧୭୪
ପିତାର ମନ ଜାଣି କରେ ।
ଉତ୍ତମ ପୁତ୍ର ସେ ବେଭାରେ ॥୧୭୫

ଶ୍ରଦ୍ଧାରେ ଆଜ୍ଞା ଯେ ପାଳଇ ।
ମଧ୍ୟମପୁତ୍ର ସେ ବୋଲାଇ ॥୧୭୬
ଶ୍ରଦ୍ଧା ବିହୀନେ ଯେହୁ ପାଳେ ।
ଅଧମପୁତ୍ର ସେ ଶୟଳେ ॥୧୭୭
ପିତାକୁ ଲଂଘେ ଯେ ଅଜ୍ଞାନ ।
ସେ ପିତା ମଳମୂତ୍ର ଜାଣ ॥୧୭୮
ଏମନ୍ତ କହି ନୃପବଳା ।
ପିତାଙ୍କୁ ନିଜରୂପ ଦେଲା ॥୧୭୯
ନିଶ୍ଚଳେ ରହିଲା ତା' ମନ ।
ଏମନ୍ତେ ଗଲା କେତେ ଦିନ ॥୧୮୦
ପୁରୁକୁ ଜରାରୂପ ଦେଇ ।
ରାଜା ହୋଇଲା ଦିବ୍ୟଦେହୀ ॥୧୮୧
ଭୋଗ ସେ କଲା ନାନାମତେ ।
ଇନ୍ଦ୍ରିୟଲାଳସା ଆୟତ୍ତେ ॥୧୮୨
ହୋଇଲା ସାତଦ୍ୱୀପେ ରାଜା ।
ଧର୍ମେ ପାଳିଲା ଜନପ୍ରଜା ॥୧୮୩
ନିଶ୍ଚିନ୍ତେ ଦେବଯାନୀ ସଙ୍ଗେ ।
ଭୋଗ ସେ କଲା ନାନାରଙ୍ଗେ ॥୧୮୪
ଅନେକ ଦାନଯଜ୍ଞ ମତେ ।
ସେବିଲା ବିଷ୍ଣୁପାଦ ଗତେ ॥୧୮୫
ଯେ ହରି ଦେହ ଏ ଜଗତ ।
ଆକାଶେ ଜଳଧର ମତ ॥୧୮୬
ସେ ହରିପାଦ ଦୃଢ଼େ ଚିନ୍ତି ।
ବିଷୟଭୋଗେ ନରପତି ॥୧୮୭
ଇନ୍ଦ୍ରିୟ ନ ପାରିଲା ଜିଣି ।
ବିଷୟ ଭୋଗ ମନେ ଗୁଣି ॥୧୮୮
ସୁଜନଜନେ ଏହା ଶୁଣି ।
ତରିବ ଭବତରଙ୍ଗିଣୀ ॥୧୮୯
କହଇ ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୯୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଅଷ୍ଟାଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଊନବିଂଶ ଅଧ୍ୟାୟ

ଶୁକ ଉବାଚ

ଯଯାତି ବସି ଏକଦିନେ ।
ଜ୍ଞାନ ପ୍ରକାଶିଲା ତା' ମନେ ॥୧
ଦେବଯାନୀର ମେଳେ ଥାଇ ।
ବୋଲଇ ତା'ର ମୁଖ ଚାହିଁ ॥୨
ଶୁଣ ସୁନ୍ଦରି ତୋ' ଅଧୀନ ।
ବିଷୟରସେ ମୋ'ର ମନ ॥୩
ପଶିଲା କାମ-ଅନ୍ଧକାରେ ।
ଭାସ୍କର ଯେହ୍ନେ ତମଘୋରେ ॥୪
ଶୁଣ ଭାର୍ଗବି ମୋ'ର କଥା ।
ପୂର୍ବେ ଯେ ଇତିହାସ ଗାଥା ॥୫
କହନ୍ତି ତତ୍ତ୍ୱଜ୍ଞାନୀ ଜନେ ।
ଗ୍ରାମ୍ୟଭୋଗକୁ ନିନ୍ଦି ମନେ ॥୬
ସେ କଥା କହୁ ତୋ'ର ଆଗେ ।
ଯେବା ବିଷୟ ଅନୁରାଗେ ॥୭
ଛାଗ ଛାଗୀଏ ଏକଦିନେ ।
ଚରିବା ଅର୍ଥେ ଗଲେ ବନେ ॥୮
ଛାଗୀ ଯେ ଜଳପାନ ଅର୍ଥେ ।
କୂପେ ପଡ଼ିଲା ଅନାୟତେ ॥୯
ସ୍ୱଭାବେ କାମୀ ଛାଗ ଜାତି ।
ତା'ର ଉଦ୍ଧାରେ କଲା ମତି ॥୧୦
କେବେହେଁ ଉଦ୍ଧାରି ନପାରେ ।
ନିରାଶେ ଗଲା ନିଜପୁରେ ॥୧୧
ସେ ବନେ ବୃଦ୍ଧଛାଗେ ଥିଲା ।
କୂପେ ସେ ଛାଗୀକି ଦେଖିଲା ॥୧୨
ବିଷାଣ ଅଗ୍ରେ ତା' ଉଦ୍ଧରି ।
କୂଳେ ସ୍ଥାପିଲା ଯତ୍ନକରି ॥୧୩
ସେ ଛାଗୀ କୂପରୁ ଅଇଲା ।
ଛାଗରେ ଅଭିଳାଷ କଲା ॥୧୪
ସେ ଛାଗ ତା'ର ସଙ୍ଗମେଳେ ।
ରମଣ କରେ ଅତିଭୋଳେ ॥୧୫
ଦିବା ରଜନୀ ନ ଜାଣଇ ।
ନିରତେ ତା'ର ସଙ୍ଗେ ଥାଇ ॥୧୬
ତଥାପି ନ ଲଭିଲା ତୃପ୍ତି ।
ଅଗ୍ନିରେ ଯେହ୍ନେ ଘୃତାହୁତି ॥୧୭
ଅନ୍ୟାନ୍ୟ ଛାଗୀ କାମବଶେ ।
ମିଳିଲେ ସେହି ଛାଗ ପାଶେ ॥୧୮
ସ୍ଥୂଳଶରୀର ଶ୍ମଶ୍ରୁମୁଖ ।
ରେତ ସେଚନେ ଅତି ଦକ୍ଷ ॥୧୯
ବଳିଷ୍ଠ ଦେଖି ସର୍ବଛାଗୀ ।
ତାହାର ପ୍ରତି ଅନୁରାଗୀ ॥୨୦
ସେ ଏକ ପୁରୁଷ ଯେ ଛାଗ ।
କଲାଛାଗୀଙ୍କି ଅନୁରାଗ ॥୨୧
ହୋଇଣ କାମ-ଗ୍ରହ-ଗ୍ରସ୍ତ ।
ଛାଗୀଙ୍କ ସଙ୍ଗେ ହେଲା ମତ୍ତ ॥୨୨
ଯେ ଛାଗୀ କୂପେ ପଡ଼ିଥିଲା ।
ଦେଖି ନିଜର ଅବହେଳା ॥୨୩
କାମୀଛାଗକୁ କଲା ତ୍ୟାଗ ।
ତା' ପ୍ରତି ହୋଇଣ ବିରାଗ ॥୨୪
ସତ୍ୱରେ ଛାଗୀ କଲା ଚଳି ।
ଛାଗ ଯେ ପକାଇ ବୋବାଳି ॥୨୫
ତାହାର ପଛେ ଗୋଡ଼ାଇଲା ।
ପଥେ ଛାଗୀକୁ ନ ଭେଟିଲା ॥୨୬
ଛାଗର ଅଧିସ୍ୱାମୀ ଘରେ ।
ସେ ଦୁହେଁ ମିଳିଲେ ସତ୍ୱରେ ॥୨୭
ଛାଗର ଲମ୍ବିତ ବୃଷଣ ।
ବ୍ରାହ୍ମଣେ କଲେକ ଛେଦନ ॥୨୮
ସେ କଥା ତତ୍ତ୍ୱଜ୍ଞାନୀ ଜନେ ।
କାମର ଭୋଗ ସ୍ମରି ମନେ ॥୨୯
ତାହାର ବୃଷଣକୁ ନେଲେ ।
ପୁଣି ତା' ଦେହେ ଲଗାଇଲେ ॥୩୦
ସେ କଥା କହୁଁ ତୋ'ର ଆଗେ ।
ଯେବା ବିଷୟେ ଅନୁରାଗେ ॥୩୧
ସେ ଛାଗୀ ଛାଗର ସହିତେ ।
ବିଷୟଭୋଗେ ଦିନା କେତେ ॥୩୨
କାଟିଲା ଆପଣା ଇଚ୍ଛାରେ ।
ତେବେ ସନ୍ତୋଷ ନୁହେଁ ଥରେ ॥୩୩
ସେ ଛାଗ ପ୍ରାୟେ ତୋ'ର ସଙ୍ଗେ ।
ମୁହିଁ ବୁଡ଼ିଲି ପ୍ରେମ ରଙ୍ଗେ ॥୩୪
ତୋହର ମାୟାରେ ମୋହିତ ।
ହୋଇ ନ ଜାଣେ ମୋର ହିତ ॥୩୫
ସପତ ଦ୍ୱୀପେ ରାଜା ହୋଇ ।
ଅଜ୍ଞାନେ ବଞ୍ଚାଇଲି ଦେହୀ ॥୩୬
ଭୂମିରେ ଯେତେ ଶସ୍ୟ ଥା'ନ୍ତି ।
ସୁବର୍ଣ୍ଣେ ସ୍ତିରୀ ପଶୁଜାତି ॥୩୭
ଯେ ପ୍ରାଣୀ କାମବଶ ହୋଇ ।
ଏ ସବୁ ତା'କୁ ନ ଅଣ୍ଟଇ ॥୩୮
କାମୀ ପୁରୁଷଙ୍କର ମନ ।
କେବେହେଁ ନୋହେ ସଞ୍ଜମନ ॥୩୯
ନିତ୍ୟେ ରମନ୍ତି କାମଭୋଗେ ।
ଅଗ୍ନି ଯେସନେ ଘୃତ ଯୋଗେ ॥୪୦
ସକଳଭୂତ ସଙ୍ଗ ଛାଡ଼ି ।
ଯେ ଆତ୍ମାଭାବେ ସୁଖେ ବୁଡ଼ି ॥୪୧
ଆତ୍ମାକୁ ଦେଖେ ସର୍ବଦେହେ ।
ତା' ସର୍ବଦିଗ ସୁଖମୟେ ॥୪୨
ଦୁର୍ଜନଜନଙ୍କର ମତି ।
ତୃଷ୍ଣାକୁ ଛାଡ଼ି ନ ପାରନ୍ତି ॥୪୩
ଯେ କରିପାରେ ସର୍ବଭକ୍ଷ ।
ତୃଷ୍ଣା ମାରଣେ ନୋହେ ଦକ୍ଷ ॥୪୪
ମାତା ଭଗିନୀ କନ୍ୟା ମେଳେ ।
କେବେହେଁ ନ ଥିବ ନିରୋଳେ ॥୪୫
ମନ ଯେ ଇନ୍ଦ୍ରିୟଙ୍କ ଗ୍ରାମ ।
ବଳେ ତାହାକୁ ନାହିଁ ସମ ॥୪୬
ପଣ୍ଡିତଜନ ମନ ହରେ ।
ଏଣୁ କେ ନାରୀ ସଙ୍ଗୁ ତରେ ॥୪୭
ଦେଖ ମୁଁ ସହସ୍ର ବରଷେ ।
ନିତ୍ୟେ ରମିଲି କାମବଶେ ॥୪୮
ନିରତେ ବିଷୟ ବ୍ୟସନେ ।
ମନ ରହିଲା ରାତ୍ରଦିନେ ॥୪୯
ମୁଁ ଏବେ ତୃଷ୍ଣା ଦୂର କରି ।
କୃଷ୍ଣ ଚରଣେ ମନ ଧରି ॥୫୦

Dr. Sudhanshu Sekhar Mishra

ନିର୍ମୋହ ହୋଇ ବନସ୍ଥଳେ ।
ରହିବି ପଶୁଗଣ ମେଳେ ॥୫୧
ଦୃଷ୍ଟ ଶ୍ରୁତକୁ ମିଥ୍ୟା କରି ।
ଧ୍ୟାନେ ସମ୍ଭାଷି ନରହରି ॥୫୨
ଯେ ନୋହେ ଆତ୍ମାର ବିନାଶୀ ।
ତାହାକୁ କହି ଆତ୍ମଦର୍ଶୀ ॥୫୩
ଏମନ୍ତ ପ୍ରିୟା ଆଗେ କହି ।
ପୁରୁକୁ ସମୀପେ ବସାଇ ॥୫୪
ତା'ର ବୟସ ତା'କୁ ଦେଲା ।
ବୃଦ୍ଧ ଶରୀର ଆବୋରିଲା ॥୫୫
ପୁରୁକୁ ରାଜ୍ୟେ କଲା ରାଜା ।
ଭଲେ ପାଳିବ ଜନପ୍ରଜା ॥୫୬
ଦ୍ରୁହ୍ୟୁକୁ ପୂର୍ବଦିଗ ଦେଲା ।
ଅନୁକୁ ଉତ୍ତରେ ସ୍ଥାପିଲା ॥୫୭

ଯଦୁକୁ ଦକ୍ଷିଣେ ବସାଇ ।
ପଶ୍ଚିମ ତୁର୍ବସୁକୁ ଦେଇ ॥୫୮
ଏମନ୍ତେ ରାଜ୍ୟ ବାଣ୍ଟିଦେଇ ।
ପୁତ୍ରଙ୍କୁ ପ୍ରିୟବାକ୍ୟ କହି ॥୫୯
ଆନନ୍ଦ ଦେଇ ସର୍ବମନେ ।
ତକ୍ଷଣେ ପଶିଲା ଅରଣ୍ୟେ ॥୬୦
ଆତ୍ମାରେ ଆତ୍ମା ଧ୍ୟାନ କରି ।
ଯୋଗ ଅଭ୍ୟାସେ ମନ ଧରି ॥୬୧
ପରମବ୍ରହ୍ମେ ସେ ପଶିଲା ।
ଶୁଣ ହେ ଅଭିମନ୍ୟୁବଳା ॥୬୨
ସେ କଥା ଦେବଯାନୀ ଶୁଣି ।
ସ୍ୱାମୀର ପଥ ମନେ ଗୁଣି ॥୬୩
ସଂସାର ସ୍ୱପ୍ନ ପ୍ରାୟ ମଣି ।
ଏମନ୍ତ ଭାଳି ସେ ତରୁଣୀ ॥୬୪

କୃଷ୍ଣଚରଣେ ମନ ଦେଲା ।
ବିଷ୍ଣୁମାୟାରୁ ତରିଗଲା ॥୬୫
ନବମସ୍କନ୍ଧେ ଭାଗବତ ।
ଯେ ଧର୍ମ ବଂଶାନୁଚରିତ ॥୬୬
ଭାଷା ପ୍ରବନ୍ଧେ ହରିକଥା ।
ଶୁଣନ୍ତେ ତୁଟେ ଭବବ୍ୟଥା ॥୬୭
ବ୍ରାହ୍ମଣ ଜଗନ୍ନାଥ କହେ ।
ସୁଜନେ ଏଣେ କର ଲୟେ ॥୬୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ
ଏକୋନବିଂଶୋଽଧ୍ୟାୟଃ ॥

---

## ବିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି ।
ଯେ ପୁରୁବଂଶର କାହାଣୀ ॥୧
ଯେବା ଯେମନ୍ତ କଲେ କର୍ମ ।
ଯେ ବଂଶମଧ୍ୟେ ତୋ'ର ଜନ୍ମ ॥୨
ସେ ବଂଶେ ରାଜଋଷି ଯେତେ ।
ସଂକ୍ଷେପେ କହିବି ମୁଁ ତୋତେ ॥୩
ଯେ ପୁତ୍ର ଜନ୍ମେଜୟ ନାମ ।
ସେ ପୁରୁବଂଶ ଗୁଣଧାମ ॥୪
ତାହାର ହୋଇଲା ନନ୍ଦନ ।
ନାମ ତାହାର ପ୍ରଚିନ୍ୱାନ ॥୫
ପ୍ରବୀର ତାହାର କୁମର ।
ମନସ୍ୟୁ ତା'ର ବଂଶଧର ॥୬
ତା'ର ତନୟ ଚାରୁପଦ ।
ସୁଦ୍ୟୁ ଯେ ତାହାର ଦାୟାଦ ॥୭
ତା'ର କୁମର ବହୁଗବ ।
ସଂଯାତି ତାହାର ସମ୍ଭବ ॥୮
ଅହଂଜାତି ତା'ର ତନୟେ ।
ରୌଦ୍ରାଶ୍ୱ ତା'ର ପୁତ୍ର ହୋଏ ॥୯

ଘୃତାଚୀ ଅପସରା ଗର୍ଭେ ।
ରୌଦ୍ରାଶ୍ୱ ପୁତ୍ରେ ବହୁଭାବେ ॥୧୦
ଏକୁ ଆରେକ ଅନୁପମ ।
ଶୁଣ ହୋ ତାହାଙ୍କର ନାମ ॥୧୧
ଋତେୟୁ କୁକ୍ଷେୟୁ ଏ ବେନି ।
ସ୍ଥଣ୍ଡିଳେୟୁ କୃତେୟୁ ଘେନି ॥୧୨
ଜଳେୟୁ ସନ୍ତତେୟୁ ଦୁଇ ।
ଧର୍ମେୟୁ ସତ୍ୟେୟୁ ବୋଲାଇ ॥୧୩
ବ୍ରତେୟୁ ବନେୟୁ ଏ ଦଶ ।
ଅପ୍‌ସରା ଗର୍ଭେ ପୁରୁବଂଶ ॥୧୪
ବିଷ୍ଣୁର ଅଂଶେ ଜାତ ହୋଇ ।
ସ୍ୱଧର୍ମେ ପାଳିଲେ ଏ ମହୀ ॥୧୫
ଋତେୟୁ ସୁତ ରନ୍ତିନାବ ।
ତହୁଁ ସୁମତି ଆର ଧ୍ରୁବ ॥୧୬
ଅପ୍ରତିରଥ ତିନି ଜାଣ ।
ଅପ୍ରତିରଥ ସୁତ କଣ୍ୱ ॥୧୭
ତା'ର ତନୟ ମେଧାତିଥି ।
ପ୍ରସ୍କଣ୍ୱ ତାହାର ସନ୍ତତି ॥୧୮
କଣ୍ୱର ବଂଶେ ଜାତ ହୋଇ ।
ସଂସାରେ ବ୍ରାହ୍ମଣ ବୋଲାଇ ॥୧୯

ରେଭି ଯେ ସୁମତିର ପୁତ୍ର ।
ଦୁଷ୍ମନ୍ତ ତା'ର ବୀର୍ଯ୍ୟେ ଜାତ ॥୨୦
ସୁନ୍ଦରେ ନାହିଁ ରୂପ ସୀମା ।
ଶୁଣ ହୋ ତାହାର ମହିମା ॥୨୧
ଦୁଷ୍ମନ୍ତ ରାଜା ଏକଦିନେ ।
ମୃଗୟା ଅର୍ଥେ ଗଲା ବନେ ॥୨୨
କଣ୍ୱଙ୍କ ଆଶ୍ରମେ ମିଳିଲା ।
ଅଦ୍ଭୁତ କନ୍ୟାଏ ଦେଖିଲା ॥୨୩
ଅଙ୍ଗ ଭୂଷଣ ଝଟକନ୍ତି ।
ଲକ୍ଷ୍ମୀଙ୍କ ପ୍ରାୟେ ଦିଶେ କାନ୍ତି ॥୨୪
ତାହାକୁ ଦେଖି କାମବଶେ ।
ସମ୍ଭୋଗ କରିବାର ଆଶେ ॥୨୫
ତା' ରୂପ ଦେବ-ମାୟାମୟୀ ।
ଦେଖିଣ ମନ ନରହଇ ॥୨୬
ଅଳପ ବଳ ଘେନି ସଙ୍ଗେ ।
ଦୁଷ୍ମନ୍ତ ମିଳେ ତା'ର ଆଗେ ॥୨୭
ଆନନ୍ଦେ ତା'ର ଦରଶନେ ।
ବୋଲଇ ପରିଗ୍ରହ ମନେ ॥୨୮
ହାସ୍ୟବଦନେ ତା'ର ପାଶେ ।
ମଧୁର ବାକ୍ୟେ ମନତୋଷେ ॥୨୯

Dr. Sudhanshu Sekhar Mishra

ହେ ଶୁଭେ କମଳ ନୟନି ।
କହ ତୁ କାହାର ନନ୍ଦିନୀ ॥୩୦
ନିର୍ଜ୍ଜନବନେ କିପାଁ ଅଛୁ ।
କହ କାହାକୁ ବର ଇଚ୍ଛୁ ॥୩୧
ତୋ’ ରୂପେ ଅଛି କେବା ସମ ।
କହ ତୋହାର କିସ ନାମ ॥୩୨
ନିଶ୍ଚେ ତୁ ରାଜାର ନନ୍ଦିନୀ ।
ଜାଣିଲି ତୋ’ର ରୂପ ଚିହ୍ନି ॥୩୩
ମୁଁ ଯେ ପୁରୁର ବଂଶେ ଜାତ ।
ଅଧର୍ମେ ନବଳେ ମୋ’ ଚିତ୍ତ ॥୩୪
ଏମନ୍ତ ରାଜାମୁଖୁଁ ଶୁଣି ।
ସେ କନ୍ୟା କହେ ପରିମାଣି ॥୩୫

ଶକୁନ୍ତଳା ଉବାଚ

ଶୁଣ ରାଜନ ଚୂଡ଼ାମଣି ।
ମୁଁ ବିଶ୍ୱାମିତ୍ରଙ୍କ ନନ୍ଦିନୀ ॥୩୬
ମେନକା ନାମେ ମୋ’ ଜନନୀ ।
ଦଇବେ ମୋର କର୍ମ ଘେନି ॥୩୭
ମୋତେ ପକାଇଗଲା ବନ ।
ପକ୍ଷୀଏ ମୋହର ଜୀବନ ॥୩୮
ପାଳିଲ ମୋତେ ସ୍ନେହ ବହି ।
ଏ ବନେ ଭକ୍ଷ୍ୟ ଭୋଜ୍ୟ ଦେଇ ॥୩୯
ମୁହିଁ ଯେ ଶକୁନ୍ତର ବାଳା ।
ତେଣୁ ମୋ’ ନାମ ଶକୁନ୍ତଳା ॥୪୦
ମୋହର ଜନ୍ମ କର୍ମମାନ ।
ସବୁ ଜାଣନ୍ତି ମୁନି କଣ୍ୱ ॥୪୧
ଜନ୍ମ ମୋ’ କଉଶିକ କୁଳେ ।
ମୁଁ ଏହା ଜାଣେ ଯୋଗବଳେ ॥୪୨
ତୁ ଯେବେ ମୋହର ବିଶ୍ୱାସ ।
ଆସ ମୋହର ପାଶେ ବସ ॥୪୩
ମୋହର ପୂଜା ଘେନ ତୁହି ।
ନୀବାର ଭୁଞ୍ଜ ଏଥେ ରହି ॥୪୪
ଏମେନ୍ତେ ତା’ର ମଞ୍ଜୁବାଣୀ ।
ଆନନ୍ଦମନେ ରାଜା ଶୁଣି ॥୪୫

ଦୁଷ୍ମନ୍ତ ଉବାଚ

ବୋଲଇ କନ୍ୟାମୁଖ ଚାହିଁ ।
ଭୋ ଶଶୀମୁଖି ଶୁଣ ତୁହି ॥୪୬
ତୁ ଜାତ କୌଶିକର ବଂଶେ ।
ତୋହର ଇଚ୍ଛା ମନତୋଷେ ॥୪୭
ଯେବେ ବରିବୁ ତୁହି ମୋତେ ।
ଏ ମୋର ସତ୍ୟ ବେଦମତେ ॥୪୮
ଏସନ ସତ୍ୟ ତା’କୁ କରି ।
ଗାନ୍ଧର୍ବମତେ କନ୍ୟା ବରି ॥୪୯
ସ୍ୱଭାବେ ପଣ୍ଡିତ ରାଜନ ।
ଜାଣଇ ସକଳ ବିଧାନ ॥୫୦
ବିବାହ କରି ତା’ର ସଙ୍ଗେ ।
ରାତ୍ରେ ବଞ୍ଚିଲା ରତିରଙ୍ଗେ ॥୫୧
ଆମୋଘବୀର୍ଯ୍ୟ ତା’ ସ୍ୱଭାବେ ।
ରହିଲା ଶକୁନ୍ତଳା ଗର୍ଭେ ॥୫୨
ପ୍ରଭାତେ ରାଜା ଗଲା ପୁର ।
କାଳେ ତା ଜନ୍ମିଲା କୁମର ॥୫୩
ସେ ବନେ କଣ୍ୱଋଷି ଥିଲେ ।
ବିଧାନେ ଜାତକର୍ମ କଲେ ॥୫୪
ତକ୍ଷଣେ ଉଠି ରାଜବଳା ।
ସ୍ୱଭାବେ ତେଜ ଅନର୍ଗଳା ॥୫୫
ସିଂହକୁ ବାମଭୁଜେ ଧରି ।
କ୍ରୀଡ଼ାକନ୍ଦୁକ ପ୍ରାୟେ କରି ॥୫୬
ରଜ୍ଜୁ ନିବେଶି ତା’ର ଗଳେ ।
କ୍ରୀଡ଼ାକନ୍ଦୁକ ପ୍ରାୟେ ଖେଳେ ॥୫୭
ପୁତ୍ରର ଦେଖି ବାଳଲୀଳା ।
ଅତ୍ୟନ୍ତ ତେଜ ଅନର୍ଗଳା ॥୫୮
ବିଷ୍ଣୁର ଅଂଶ ପ୍ରାୟେ ମଣି ।
ତକ୍ଷଣେ ଋଷିଙ୍କ ଦୁଲଣୀ ॥୫୯
ପୁତ୍ରର ହସ୍ତ ଧରି ବେଗେ ।
ମିଳିଲା ନିଜ ସ୍ୱାମୀ ଆଗେ ॥୬୦
ରାଜା ସେ ମାତାପୁତ୍ର ଦେଖି ।
ତକ୍ଷଣେ ବୁଜି ବେନିଆଖି ॥୬୧
ପତ୍ନୀ ପୁତ୍ରଙ୍କୁ ନ ଚିହ୍ନିଲା ।
ଭାବ ନ ଜାଣି ଉପେକ୍ଷିଲା ॥୬୨
ତକ୍ଷଣେ ଆକାଶର ବାଣୀ ।
ସେଠାରେ ସର୍ବଲୋକେ ଶୁଣି ॥୬୩
ଆତ୍ମାର ରୂପେ ପୁତ୍ରଜାତ ।
ଏ ନିଶ୍ଚେ ତୋ’ର ଦାରା ସୁତ ॥୬୪
ଯେ ପୁତ୍ର ଜାତ ନିଜଠାରୁ ।
ଉଦ୍ଧାର କରେ ସେ ନର୍କରୁ ॥୬୫
ତୁମ୍ଭେ କରିଛ ଗର୍ଭାଧାନ ।
ଏ କଥା ନୁହଁଇ ଯେ ଆନ ॥୬୬
ଆକାଶବାଣୀ ଶୁଣି କର୍ଣ୍ଣେ ।
ତକ୍ଷଣେ ରାଜା ତୋଷମନେ ॥୬୭
ଆଶ୍ୱାସ କରି ପୁତ୍ର ନାରୀ ।
ଗୃହେ ସ୍ଥାପିଲା ଦଣ୍ଡଧାରୀ ॥୬୮
ଏମନ୍ତେ ଦୁଷ୍ମନ୍ତର ଅନ୍ତେ ।
ସେ ରାଜା ହୋଇଲା ଜଗତେ ॥୬୯
ନାମ ଭରତ ନୃପବର ।
ପ୍ରକାଶେ ଯେହ୍ନେ ଦିବାକର ॥୭୦
ବିଷ୍ଣୁର ଅଂଶ ଯେ ରାଜନ ।
ଶରୀରେ ଦିଶେ ବିଷ୍ଣୁଚିହ୍ନ ॥୭୧
ଚକ୍ର ଦକ୍ଷିଣକରେ ଦିଶେ ।
ଚରଣେ କମଳ ପ୍ରକାଶେ ॥୭୨
ତାହାଙ୍କୁ ମିଳି ଋଷିଯୂଥେ ।
ସ୍ଥାପିଲେ ଅଭିଷେକ ମତେ ॥୭୩
ସେ ରାଜା ଅଭିଷିକ୍ତ ହୋଇ ।
ଧର୍ମେ ସେ ପୃଥିବୀ ପାଳଇ ॥୭୪
ଭରଦ୍ୱାଜଙ୍କ ଆଦେଶରେ ।
ସେ ରାଜା ଅଶ୍ୱମେଧ କରେ ॥୭୫
ପଞ୍ଚପଞ୍ଚାଶ ଅଶ୍ୱମେଧେ ।
କ୍ରମେ ସେ ଗଙ୍ଗାତଟେ ସାଧେ ॥୭୬
ଯଜ୍ଞରେ ବରି ଦ୍ୱିଜଗଣ ।
ଅନେକ ଦେଲା ଧନ ଦାନ ॥୭୭
ସେ ପୁଣି ଯମୁନାର ତୀରେ ।
ଅଷ୍ଟସପ୍ତତି ଯଜ୍ଞ କରେ ॥୭୮
ଅଗ୍ନିକୁ ବିଧିରେ ତୋଷିଲା ।
ବ୍ରାହ୍ମଣେ ଧେନୁଦାନ ଦେଲା ॥୭୯
ଏମନ୍ତ ନୃପ ଏକାବେଳେ ।
ଶତେ ତେତିଶ ଯଜ୍ଞ କଲେ ॥୮୦
ତେର ସହସ୍ର ଚଉରାଶୀ ।
ଧେନୁ ଉତ୍ସର୍ଗି ବିପ୍ରେ ତୋଷି ॥୮୧
ସହସ୍ର ସହସ୍ର ବ୍ରାହ୍ମଣ ।
ଯଜ୍ଞେ ପାଇଲେ ଗୋରୁଦାନ ॥୮୨

Dr. Sudhanshu Sekhar Mishra

ଚଉଦ ନିୟୁତ ଯେ ହସ୍ତୀ ।
ସେ ଯଜ୍ଞେ ଦେଲାକ ନୃପତି ॥୮୩
ତେତିଶ ଶତ ଅଶ୍ୱ ଦେଲା ।
ସେ ପୁଣି ଦୁଷ୍ମନ୍ତର ବଳା ॥୮୪
ଅନେକ ଦାନ ଯଜ୍ଞମତେ ।
ଧେନୁ କାଞ୍ଚନ ବସ୍ତ୍ର ଯୁକ୍ତେ ॥୮୫
ଭରତ କର୍ମକଲା ଯେତେ ।
ନୋହିବ ଭୂତ-ଭବିଷ୍ୟତେ ॥୮୬
କିରାତ ହୁଣ ଯେ ଯବନ ।
ପୌଣ୍ଡ୍ରକ କଙ୍କ ରାଜାଗଣ ॥୮୭
ଶକ ଖଗାଦି ମ୍ଲେଛ ଯେତେ ।
ସବୁ ଛେଦିଲା ଏ ଜଗତେ ॥୮୮
ପୂର୍ବେ ଯେ ଦାନବ ସକଳେ ।
ଦେବଗଣଙ୍କୁ ଜିଣି ବଳେ ॥୮୯
ଦେବାଙ୍ଗନାଙ୍କୁ ହରି ନେଇ ।
ପାତାଳେ ଲୁଚିଥିଲେ ଯାଇ ॥୯୦
ଭରତ ସେମାନଙ୍କୁ ମାରି ।
ପାତାଳୁ ଆଣିଲା ଉଦ୍ଧରି ॥୯୧
ଭରତରାଜା ରାଜ୍ୟକାଳେ ।
ପୃଥିବୀ ସ୍ୱର୍ଗ ଏକତୁଲେ ॥୯୨
ପୃଥିବୀ ସର୍ବଶସ୍ୟ ଦେଲା ।
ଯେଣୁ ଅନେକ ଯଜ୍ଞ କଲା ॥୯୩
ପ୍ରଜାଙ୍କ ଅଭିଳାଷମାନ ।
ସମସ୍ତ କଲା ସମ୍ପାଦନ ॥୯୪
ସପ୍ତବିଂଶତି ଯେ ସହସ୍ର ।
ବସର ପାଳିଲାକ ଦେଶ ॥୯୫

ସୈନ୍ୟ ସମ୍ପତ୍ତି ନିଜ ପ୍ରାଣ ।
ସମସ୍ତ କଲା ମିଥ୍ୟାଜ୍ଞାନ ॥୯୬
ଏବେ ହେ। ଶୁଣ ନରନାଥ ।
ଭରତ ରାଜାର ଚରିତ ॥୯୭
ସେହି ରାଜାର ତିନି ନାରୀ ।
ପୁତ୍ରମାନଙ୍କୁ ଜାତ କରି ॥୯୮
ରାଜା ବୋଲଇ ପୁତ୍ରେ ଚାହିଁ ।
ମୋ' ପୁତ୍ର ପରି ନ ଦିଶଇ ॥୯୯
ବ୍ୟଭିଚାରିଣୀ ଭୟେ ନାରୀ ।
ବାଳ-ପୁତ୍ରଙ୍କୁ ବଧ କରି ॥୧୦୦
ଦେଖି ସେ ରାଜବଂଶ ହତ ।
ଅତ୍ୟନ୍ତ ହୋଇଲା ଦୁଃଖିତ ॥୧୦୧
ମୋହର ଅନୁରୂପପୁତ୍ର ।
କେଉଁ ଉପାୟେ ହେବ ଜାତ ॥୧୦୨
ଏମନ୍ତ ମନେ ବିଚାରିଲା ।
ମରୁତ ସୋମଯାଗ କଲା ॥୧୦୩
ମରୁତଗଣ ତୁଷ୍ଟ ହେଲେ ।
ରାଜାଙ୍କୁ ପୁତ୍ରଦାନ ଦେଲେ ॥୧୦୪
ସେ ପୁତ୍ର ନାମ ଭରଦ୍ୱାଜ ।
ପୂର୍ବେ ସେ ଉତଥ୍ୟକ୍ଷେତ୍ରଜ ॥୧୦୫
ଏବେ ହେ। ଶୁଣ ନରନାଥ ।
ସେ ଭରଦ୍ୱାଜଙ୍କ ଚରିତ ॥୧୦୬
ଭ୍ରାତୃବଧୂ ଯେ ଗର୍ଭବତୀ ।
ପୂର୍ବେ ରମିଲେ ବୃହସ୍ପତି ॥୧୦୭
ମୈଥୁନେ ହୁଅନ୍ତେ ପ୍ରବୃତ୍ତ ।
ଅଜ୍ଞାନ କାମେ ହୋଇ ମତ୍ତ ॥୧୦୮

ଗର୍ଭେ ଯେ ଶିଶୁ ତା'ର ଥିଲା ।
ବୃହସ୍ପତିଙ୍କି ନିଷେଧିଲା ॥୧୦୯
ବଳାତ୍କାରେଣ ବୃହସ୍ପତି ।
ବୀର୍ଯ୍ୟଆଧାନ କଲେ ତଥି ॥୧୧୦
ଗର୍ଭ-ବାଳକ ପଦାଘାତେ ।
ବୀର୍ଯ୍ୟ ପଡ଼ିଲା ଭୂମିଗତେ ॥୧୧୧
ତେଣୁ ସେ ଲଜ୍ଜିତ ହୋଇଲେ।
ଗର୍ଭ-ଶିଶୁକୁ ଶାପ ଦେଲେ ॥୧୧୨
ମୋ' ବୀର୍ଯ୍ୟ ଯେଣୁ କଲୁ ରୋଧ ।
ତେଣୁ ତୁ ହୁଅ ଜନ୍ମ ଅନ୍ଧ ॥୧୧୩
ତକ୍ଷଣେ ପୁତ୍ର ହେଲା ଜାତ ।
ତା' ଦେଖି ତା' ମାତା ଚକିତ ॥୧୧୪
ତହୁଁ ଯେ ଭରଦ୍ୱାଜ ଜାତ ।
ତାହାଙ୍କୁ ପାଳିଲେ ମରୁତ ॥୧୧୫
ଭରତ-ଯଜ୍ଞେ ତୋଷ ହେଲେ।
ସେ ପୁତ୍ର ଏବେ ତା'କୁ ଦେଲେ ॥୧୧୬
ଭରତ କର୍ମ ଶୁଣି ପ୍ରାଣୀ ।
ତରିବେ ଭବ-ତରଙ୍ଗିଣୀ ॥୧୧୭
କହିଲା ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୧୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ବିଂଶୋଽଧ୍ୟାୟଃ ॥

---

## ଏକବିଂଶ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ଜ୍ଞାନଭାବେ ।
ଭରତବଂଶ ଶୁଣ ଏବେ ॥୧
ଭରଦ୍ୱାଜ ତା' ଦତ୍ତପୁତ୍ର ।
ଏଣୁ ବିତଥ ନାମେ ଖ୍ୟାତ ॥୨
ବିତଥ ପୁତ୍ର ମନ୍ୟୁଜାତ ।
ତା' ସୁତ ଜୟ ବୃହତ୍ କ୍ଷତ୍ର ॥୩

ତୃତୀୟେ ମହାବୀର୍ଯ୍ୟେ ନାମ ।
ଚତୁର୍ଥେ ନର ହେଲା ଜନ୍ମ ॥୪
ପଞ୍ଚମ ଗର୍ଗ ନାମେ ଖ୍ୟାତ ।
ଏମନ୍ତେ ହେଲେ ପଞ୍ଚସୁତ ॥୫
ନରର ତନୟ ସଂସ୍କୃତି ।
ତାହାର ଦୁଇଟି ସନ୍ତତି ॥୬
ପ୍ରଥମ ଗୁରୁ ନାମେ ଖ୍ୟାତ ।
ରନ୍ତିଦେବ ଦ୍ୱିତୀୟ ସୁତ ॥୭

ଯା' ଯଶ ଇହ-ପରଲୋକେ ।
ବିପ୍ରେ କହନ୍ତି ଏକେ ଏକେ ॥୮
ସ୍ୱଧର୍ମେ ଧନ ଲଭେ ଯେତେ ।
ନିତ୍ୟେ ଭୁଞ୍ଜାଏ ବୁଭୁକ୍ଷିତେ ॥୯
ନିରତେ ଅକିଞ୍ଚନ ପ୍ରିୟ ।
କୁଟୁମ୍ବେ ନ କରଇ ସ୍ନେହ ॥୧୦
କୁଟୁମ୍ବ କ୍ଲେଶେ ଦିନ ବଞ୍ଚେ ।
ଅତିଥି ଅର୍ଥେ ଧନ ସଞ୍ଚେ ॥୧୧

Dr. Sudhanshu Sekhar Mishra

ଘୃତ ପାୟସ ରସ ପାଣି ।
ନିତ୍ୟେ ପ୍ରୀତିରେ ସଞ୍ଚେ ଆଣି ॥୧୨
ଅତିଥି ଅର୍ଥେ ଧନ ସଞ୍ଚେ ।
କ୍ଷୁଧାର୍ତ୍ତ ଦେହେ ଗୃହେ ବଞ୍ଚେ ॥୧୩
ନିତ୍ୟେ ସଞ୍ଚଇ ପ୍ରାତଃକାଳେ ।
ଯେବା ମିଳଇ ଯେତେବେଳେ ॥୧୪
ତେଣୁ ସେ ହୋଇ ଧନହୀନ ।
କଷ୍ଟରେ ବଞ୍ଚୁଥାଇ ଦିନ ॥୧୫
କ୍ଷୁଧାର୍ତ୍ତ ହୋଇ ବଞ୍ଚେ ନିତ୍ୟେ ।
କୁଟୁମ୍ବଗଣଙ୍କ ସହିତେ ॥୧୬
ଅନ୍ନ ଅଭାବେ ତନୁ କ୍ଷୀଣ ।
ହେଲେ କୁଟୁମ୍ବେ ଅବସନ୍ନ ॥୧୭
ଅଠଚାଳିଶ ଦିନ ଗଲା ।
ଜଳମାତ୍ର ସେ ନ ପାଇଲା ॥୧୮
କ୍ଷୁଧାରେ କମ୍ପେ କଳେବର ।
ଜୀର୍ଣ୍ଣ ହୋଇଲା ତା' ଶରୀର ॥୧୯
ଶୁଣ ରାଜନ ଶୁଦ୍ଧମନେ ।
ତା'ର ମନ୍ଦିରେ ଏକଦିନେ ॥୨୦
ବିପ୍ର ମିଳିଲା ସନ୍ଧ୍ୟାକାଳେ ।
ତା'ର ଅତିଥି ପୂଜାବେଳେ ॥୨୧
ଆନନ୍ଦେ ଭିକ୍ଷା ତା'କୁ ଦେଲା ।
ତା' ଅନ୍ତେ ଶୂଦ୍ରେକ ମିଳିଲା ॥୨୨
ଯେ ଅବା ଅବଶେଷ ଅନ୍ନ ।
କୁଟୁମ୍ବ କରନ୍ତେ ଭୋଜନ ॥୨୩
ତାହାକୁ ବିଷ୍ଣୁପ୍ରାୟେ ମଣି ।
ବେଗେ ସେ ଭିକ୍ଷାଦେଲା ଆଣି ॥୨୪
ସେ ପୁଣି ଗୃହେ ଭୁଞ୍ଜି ଯା'ନ୍ତେ ।
ଶବର ଶ୍ୱାନର ସଙ୍ଗତେ ॥୨୫
ଦ୍ୱାରେ ମିଳିଲା ରାତ୍ରେ ଆସି ।
ବୋଲଇ ତା'ର ଦ୍ୱାରେ ବସି ॥୨୬
ଭୋ ରାଜା ଭିକ୍ଷା ଦିଅ ମୋତେ ।
ଭୁଞ୍ଜିବି ଶ୍ୱାନର ସଙ୍ଗତେ ॥୨୭
ଯେବା କୁଟୁମ୍ବ ଅର୍ଥେ ଥିଲା ।
ତକ୍ଷଣେ ତା'ର ହସ୍ତେ ଦେଲା ॥୨୮
ଶ୍ୱାନ ସମେତ ଅନ୍ନ ଖାଇ ।
ସେ ପୁଣି ଯା'ନ୍ତେ ତୋଷ ହୋଇ ॥୨୯
ଥିଲାକ ଜଳ ମାତ୍ର ଶେଷ ।
ଜଳେ ହୋଇବ ଜଣେ ତୋଷ ॥୩୦
ତାହାକୁ ଛଳିବା ନିମନ୍ତେ ।
ବିଷ୍ଣୁ ମିଳିଲେ ଜଳ ଅର୍ଥେ ॥୩୧
ବୋଇଲେ ଜାତି ମୋ' ଚଣ୍ଡାଳ ।
କର ପ୍ରଦାନ ମୋତେ ଜଳ ॥୩୨
କ୍ଷୁଧାରେ ଅତିଥି କାତର ।
କମ୍ପଇ ତା'ର କଳେବର ॥୩୩
ତା'ଠାରେ ଅତି ଦୟାବହି ।
ଅମୃତମୟ ବାକ୍ୟ କହି ॥୩୪
ଜଗଦୀଶ୍ୱରଠାରେ ମୁହିଁ ।
ଏମନ୍ତ ପ୍ରାର୍ଥନା କରଇ ॥୩୫
ଅଣିମା ଆଦି ନିଧି ଯେତେ ।
ମୁକ୍ତି ମୁଁ ନ ଇଚ୍ଛଇ ଚିତ୍ତେ ॥୩୬
ପ୍ରାଣୀର ଦୁଃଖରେ ଦୁଃଖିତ ।
ସର୍ବଦା ହେଉ ମୋ'ର ଚିତ୍ତ ॥୩୭
ହେ ପ୍ରଭୁ ମୋତେ ଦୟାକର ।
ମୁଁ କରେ ଲୋକ ଉପକାର ॥୩୮
ଏମନ୍ତେ ସ୍ତୁତିବାକ୍ୟ କହି ।
ସେ ରନ୍ତିଦେବ ନରସାଇଁ ॥୩୯
କ୍ଷୁଧା ତୃଷାରେ ହୋଇ ଶ୍ରାନ୍ତ ।
ଦେହ ଘୂର୍ଣ୍ଣନେ ଅତିକ୍ଳାନ୍ତ ॥୪୦
ତଥାପି ଦୁଃଖ ନ ବିଚାରି ।
ଶୋକ ବିଷାଦ ପରିହରି ॥୪୧
ପୁକ୍କଶ ଜୀବନ ଧାରଣେ ।
ଉପାୟ ଚିନ୍ତିଲାକ ମନେ ॥୪୨
ଯେ ଥିଲା ତା'ର ଜଳଅନ୍ନ ।
ପୁକ୍କଶେ କଲା ସମର୍ପଣ ॥୪୩
ନିଜେ ସେ ମୃତ ପ୍ରାୟେ ହେଲା ।
ତଥାପି ଅତିଥି ପୂଜିଲା ॥୪୪
ଏମନ୍ତେ ତା'ର ଭାବ ଚାହିଁ ।
ସନ୍ତୋଷ ଚିତ୍ତେ ଭାବଗ୍ରାହୀ ॥୪୫
ବୋଇଲେ ଅତି ଦୟାଚିତ୍ତେ ।
ତୋ' ଯଶ ରହୁ ଏ ଜଗତେ ॥୪୬
ଅନ୍ତେ ପାଇବୁ ମୋତେ ତୁହି ।
ଏମନ୍ତେ ବିଷ୍ଣୁ ବର ଦେଇ ॥୪୭
ଶୂନ୍ୟେ ଯେ ଗଲେ ଚକ୍ରଧର ।
ଏବେ ହୋ ଶୁଣ ନୃପବର ॥୪୮
ଦେଖି ତାହାର ଧୈର୍ଯ୍ୟପଣ ।
ବାସବ ଆଦି ଦେବଗଣ ॥୪୯
ସମ୍ମୁଖେ ତାହାର ମିଳିଲେ ।
ଆପଣା ମାୟା ଦୂର କଲେ ॥୫୦
ସନ୍ତୋଷେ ତା'ର ମୁଖ ଚାହିଁ ।
କହନ୍ତି ଶୁଣ ନରସାଇଁ ॥୫୧
ବ୍ରାହ୍ମଣ ଆଦି ବେଶ ଯେତେ ।
ମାୟାରେ ଦେଖାଇଲୁ ତୋତେ ॥୫୨
ତୋହର ଧୈର୍ଯ୍ୟପଣ ଦେଖି ।
ଆମ୍ଭେ ଅତ୍ୟନ୍ତ ହେଲୁ ସୁଖୀ ॥୫୩
ଦେବଙ୍କ ବାକ୍ୟ ଶୁଣି ରାଜା ।
ପ୍ରଣାମ କରି କଲା ପୂଜା ॥୫୪
କିଛି ହିଁ ତା'ଙ୍କୁ ନମାଗିଲା ।
ହରିଙ୍କ ପାଦେ ଚିତ୍ତ ଦେଲା ॥୫୫
ଏବେ ହୋ ଶୁଣ ନୃପବର ।
ସେ ରନ୍ତିଦେବ ନରେଶ୍ୱର ॥୫୬
ସେ ବାସୁଦେବଙ୍କ ଚରଣେ ।
ଚିତ୍ତ ନିବେଶି ଅନୁକ୍ଷଣେ ॥୫୭
ସର୍ବ ବିଷୟ କଲା ତ୍ୟାଗ ।
ଚିତ୍ତରେ ଜନ୍ମାଇ ବୈରାଗ୍ୟ ॥୫୮
ମାୟା ତାହାକୁ ନ ଲାଗିଲା ।
ଯେଣୁ ଈଶ୍ୱରେ ଚିତ୍ତ ଦେଲା ॥୫୯
ତାହାର ନିଜ ଆତ୍ମଜନ ।
ସକଳେ ବିଷ୍ଣୁପାଦେ ମଗ୍ନ ॥୬୦
ପରମଯୋଗ ସେ ଲଭିଲେ ।
ପରଂବ୍ରହ୍ମରେ ଲୀନ ହେଲେ ॥୬୧
ଗର୍ଗଙ୍କ ଠାରୁ ଶିନି ଜାତ ।
ଗାର୍ଗ୍ୟ ତାହାଙ୍କ ହେଲେ ପୁତ୍ର ॥୬୨
କ୍ଷତ୍ରିୟ ହୋଇ ଦ୍ୱିଜ ହେଲେ ।
ତପସ୍ୟା-ଆରାଧନା ଫଳେ ॥୬୩
ମନ୍ୟୁ-ନୃପର ଆର ପୁତ୍ର ।
ଯା' ନାମ ମହାବୀର୍ଯ୍ୟ ଖ୍ୟାତ ॥୬୪
ତାହାର ହୋଇଲା କୁମର ।
ଦୁରିତକ୍ଷୟ ନାମ ତା'ର ॥୬୫

Dr. Sudhanshu Sekhar Mishra

ତା'ଠାରୁ କବି ତ୍ରୟାରୁଣି ।
ପୁଷ୍କରାରୁଣି ପୁତ୍ର ତିନି ॥୬୬
ସେ ତିନିଜଣ ତପବଳେ ।
ବ୍ରାହ୍ମଣ ଭାବକୁ ବହିଲେ ॥୬୭
ମନ୍ୟୁର ଯେହୁ ପଞ୍ଚପୁତ୍ର ।
ଜ୍ୟେଷ୍ଠ ତହିଁରେ ବୃହତ୍‌କ୍ଷତ୍ର ॥୬୮
ହସ୍ତୀ ଯେ ତାହାର କୁମର ।
ବସାଇ ହସ୍ତିନା ନଗର ॥୬୯
ହସ୍ତୀର ହେଲେ ତିନିସୁତ ।
ଦ୍ୱିମୀଢ଼ ଅଜମୀଢ଼ ଖ୍ୟାତ ॥୭୦
ଅପର ପୁରୁମୀଢ଼ ଘେନି ।
ଏମନ୍ତେ ହେଲେ ପୁତ୍ର ତିନି ॥୭୧
ପ୍ରିୟ ମେଧାଦି ଦ୍ୱିଜଗଣ ।
ଅଜମୀଢ଼ ବଂଶେ ଉତ୍ପନ୍ନ ॥୭୨
ବୃହଦିଷୁ ଅଜମୀଢ଼ର ।
ତା' ସୁତ ବୃହଦ୍ଧନୁ ବୀର ॥୭୩
ତା'ର କୁମର ବୃହତ୍‌କାୟ ।
ଜୟଦ୍ରଥ ତା'ର ତନୟ ॥୭୪
ବିଶଦ ତା'ର ବୀର୍ଯ୍ୟେ ଜାତ ।
ତା'ର ତନୟ ସେନଜିତ ॥୭୫
ସେନଜିତରୁ ରୁଚିରାଶ୍ୱ ।
ବଷ ଯେ ଦୃଢ଼ହନୁ କାଶ୍ୟ ॥୭୬
ରୁଚିରାଶ୍ୱର ପୁତ୍ର ପାର ।
ପୃଥୁସେନ ତା'ର କୁମର ॥୭୭
ପାରର ନୀପ ନାମେ ପୁତ୍ର ।
ତାହାର ହେଲେ ଶତେ ସୁତ ॥୭୮
ଶୁକ କନ୍ୟା କୃତି ଗର୍ଭରେ ।
ସେ ଏକପୁତ୍ର ଲାଭ କରେ ॥୭୯
ଯାହାର ନାମ ବ୍ରହ୍ମଦତ୍ତ ।
ଯେ ନିତ୍ୟେ ଯୋଗଜ୍ଞାନେ ରତ ॥୮୦
ତାହାର ପତ୍ନୀ ସରସ୍ୱତୀ ।
ବିଷ୍ୱକ୍‌ସେନ୍ ତା'ର ସନ୍ତତି ॥୮୧
ସେ ବିଷ୍ୱକ୍‌ସେନ୍ ଯୋଗ କଲା ।
ଜୈଗୀଷବ୍ୟଙ୍କୁ ଆରାଧିଲା ॥୮୨
ଯୋଗଶାସ୍ତ୍ରର ତନ୍ତ୍ରମାନ ।
ଅନେକ କଲା ପ୍ରଣୟନ ॥୮୩

ତାହାର ସୁତ ଉଦକ୍‌ସ୍ୱନ ।
ଭଲ୍ଲାଟ ତା'ଠାରୁ ଜନମ ॥୮୪
ବୃହଦିଷୁର ବଂଶ ଏତେ ।
କହିଲୁ ତୋହର ଅଗ୍ରତେ ॥୮୫
ଏବେ ତୁ ଶୁଣ ନରନାଥ ।
ଦ୍ୱିମୀଢ଼ ବଂଶର ଚରିତ ॥୮୬
ଦ୍ୱିମୀଢ଼ ପୁତ୍ର ଯବୀନର ।
କୃତିମାନ ତା'ର କୁମର ॥୮୭
ସତ୍ୟଧୃତି ତା'ର ନନ୍ଦନ ।
ଦୃଢ଼ନେମି ତା ତହୁଁ ଜନ୍ମ ॥୮୮
ସୁପାର୍ଶ୍ୱ ତାହାର କୁମର ।
ସୁମତି ନାମେ ସୁତ ତା'ର ॥୮୯
ତା'ର ସୁତ ସନ୍ନତିମାନ ।
କୃତି ଯେ ତାହାର ନନ୍ଦନ ॥୯୦
ହିରଣ୍ୟନାଭ ତହୁଁ ଦୀକ୍ଷା ।
ପାଇ ଯେ ଯୋଗ କଲା ଶିକ୍ଷା ॥୯୧
ପ୍ରାଚ୍ୟ ସାମସଂହିତା ମାନ ।
କୃତି ତା' କଲା ଭିନ୍ନଭିନ୍ନ ॥୯୨
ସଂହିତା ଷଡ଼ଭାଗ କଲା ।
ଶିଷ୍ୟପ୍ରଶିଷ୍ୟେ ଶିକ୍ଷା ଦେଲା ॥୯୩
ଉଗ୍ରାୟୁଧ କୃତି ନନ୍ଦନ ।
କ୍ଷେମ୍ୟ ତା' ତହୁଁ ହେଲା ଜନ୍ମ ॥୯୪
ସୁବୀର କ୍ଷେମ୍ୟର ତନୟ ।
ତାହାର ପୁତ୍ର ରିପୁଞ୍ଜୟ ॥୯୫
ବହୁରଥ ଯେ ତା'ର ସୁତ ।
ଦ୍ୱିମୀଢ଼ ବଂଶେ ଏତେ ଖ୍ୟାତ ॥୯୬
ପୁରୁମୀଢ଼ ଯେ ନିଃସନ୍ତାନ ।
ଅଜମୀଢ଼ର ବଂଶ ଶୁଣ ॥୯୭
ନଳିନୀ ପତ୍ନୀ ଗର୍ଭେ ତା'ର ।
ନୀଳ ନାମେ ହେଲା କୁମର ॥୯୮
ନୀଳର ପୁତ୍ର ନାମ ଶାନ୍ତି ।
ତା'ଠାରୁ ଜନମ ସୁଶାନ୍ତି ॥୯୯
ସୁଶାନ୍ତି ତନୟ ପୁରୁଜ ।
ଅର୍କ ଯେ ତାହାର ତନୁଜ ॥୧୦୦
ଭର୍ମ୍ୟାଶ୍ୱ ତାହାର ନନ୍ଦନ ।
ପୁତ୍ର ତାହାର ପାଞ୍ଚଜଣ ॥୧୦୧

ମୁଦ୍‌ଗଲ ଯବନୀର ବେନି ।
ବୃହଦିଷୁ କାମ୍ପିଲ୍ୟ ଘେନି ॥୧୦୨
ଆବର ସଞ୍ଜୟ ସହିତେ ।
ଏ ରୂପେ ହେଲେ ପଞ୍ଚ ସୁତେ ॥୧୦୩
ପଞ୍ଚବିଷୟେ ସେ ସମର୍ଥ ।
ତେଣୁ ପାଞ୍ଚାଳ ନାମେ ଖ୍ୟାତ ॥୧୦୪
ମୁଦ୍‌ଗଲ ତହୁଁ ହେଲା ଖ୍ୟାତ ।
ମୌଦ୍‌ଗଲ୍ୟ ବ୍ରହ୍ମଣଙ୍କ ଗୋତ୍ର ॥୧୦୫
ମୁଦ୍‌ଗଲ ତହୁଁ ଉତ୍ପନ୍ନ ।
ହୋଇଲେ ଯମଜ ସନ୍ତାନ ॥୧୦୬
ମୁଦ୍‌ଗଲ ପୁତ୍ର କନ୍ୟା ଦେଖି ।
ଅତ୍ୟନ୍ତ ହୋଇଲାକ ସୁଖୀ ॥୧୦୭
ମୁଦ୍‌ଗଲ ପୁତ୍ର ଦିବୋଦାସ ।
କନ୍ୟାଏ ଅହଲ୍ୟା ପ୍ରକାଶ ॥୧୦୮
ଗୌତମ ହେଲେ ତା'ର ପତି ।
ଶତାନନ୍ଦ ତା'ର ସନ୍ତତି ॥୧୦୯
ସତ୍ୟଧୃତି ତାହାର ସୁତ ।
ସେ ଧନୁର୍ବେଦେ ସୁପଣ୍ଡିତ ॥୧୧୦
ତା'ର କୁମର ଶରଦ୍ୱାନ ।
ଅତି ସୁନ୍ଦର ବିଦ୍ୟମାନ ॥୧୧୧
ଉର୍ବଶୀ ଦେଖି ବନଦେଶେ ।
ତାହାର ରେତ କାମବଶେ ॥୧୧୨
ଧରି ନ ପାରି ରେତ ଦମ୍ଭେ ।
ତକ୍ଷଣେ ପଡ଼େ ଶର ଖମ୍ଭେ ॥୧୧୩
ପୁତ୍ର ଦୁହିତା ହୋଇ ଜାତ ।
ବନେ ହୋଇଲେ ଅରକ୍ଷିତ ॥୧୧୪
ଏମନ୍ତେ ପାହିଲା ରଜନୀ ।
ଶାନ୍ତନୁ କରେ ଧନୁ ଘେନି ॥୧୧୫
ମୃଗୟା ଅର୍ଥେ ବନେ ଗଲା ।
ସେ କନ୍ୟାପୁତ୍ରଙ୍କୁ ଦେଖିଲା ॥୧୧୬
ମନ ସନ୍ଦେହେ ବିଚାରଇ ।
ଅଦ୍ଭୁତ କନ୍ୟାପୁତ୍ର ଏହି ॥୧୧୭
କିଏ କାହାର କନ୍ୟା ସୁତେ ।
ବନେ ଅଛନ୍ତି ଅରକ୍ଷିତେ ॥୧୧୮
ଏମନ୍ତେ ଚିତ୍ତେ କୃପା କରି ।
କନ୍ୟାକୁମର କୋଳେ ଧରି ॥୧୧୯

Dr. Sudhanshu Sekhar Mishra

ମଦିରେ ମିଳି ସେ ରାଜନ ।
କନ୍ୟା କୁମରେ ଦେଲା ନାମ॥୧୨୦
କୃପାବଶରୁ କୃପ ନାମ ।
ଅତି ସୁନ୍ଦର ଅନୁପମ ॥୧୨୧
କନ୍ୟାର ନାମ କୃପୀ ଦେଲା ।
ଦ୍ରୋଣେ ତାହାକୁ ବିଭା କଲା॥୧୨୨
ଶୁଣ ସୁଜନେ ଏକଚିତ୍ତେ ।
ସଂସାରୁ ତରିବ ଯେମନ୍ତେ ॥୧୨୩
କୃଷ୍ଣଚରିତ ଅନୁସର ।
ଦୁର୍ଲ୍ଲଭ ମନୁଷ୍ୟ ଶରୀର ॥୧୨୪
ବୋଲଇ ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୨୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଏକବିଂଶୋଽଧ୍ୟାୟଃ ॥

---

## ଦ୍ୱାବିଂଶ ଅଧ୍ୟାୟ

ବ୍ୟାସକୁମର ଅତି ତୋଷେ ।
କହନ୍ତି ପରୀକ୍ଷିତ ପାଶେ ॥୧

ଶୁକ ଉବାଚ

ମିତ୍ରାୟୁ ଦିବୋଦାସ ସୁତ ।
ଚ୍ୟବନ ତା'ର ତହୁଁ ଜାତ ॥୨
ସୁଦାସ ତାହାର ନନ୍ଦନ ।
ତା' ସୁତ ସହଦେବ ଘେନ ॥୩
ସୋମକ ସହଦେବ ସୁତ ।
ତା' ବୀର୍ଯ୍ୟୁ ହେଲେ ଶତେପୁତ୍ର ॥୪
ତାହାଙ୍କ ମଧ୍ୟେ ଜନ୍ତୁ ଜ୍ୟେଷ୍ଠ ।
ପୃଷତ ଅଟଇ କନିଷ୍ଠ ॥୫
ଦ୍ରୁପଦ ତାହାର ନନ୍ଦନ ।
ତା'ର ତନୟ ଧୃଷ୍ଟଦ୍ୟୁମ୍ନ ॥୬
ଦ୍ରୌପଦୀ କନ୍ୟା ତା'ଙ୍କ ଘରେ ।
ସେ ଆଦିଶକ୍ତି ଜନ୍ମାନ୍ତରେ ॥୭
ସେ ଧୃଷ୍ଟଦ୍ୟୁମ୍ନଙ୍କର ରେତୁଁ ।
ଜନ୍ମ ଲଭିଲେ ଧୃଷ୍ଟକେତୁ ॥୮
ଭର୍ମ୍ୟାଶ୍ୱ ବଂଶେ ଏତେ ଜାତ ।
ପାଞ୍ଚାଳ ନାମେ ହେଲେ ଖ୍ୟାତ ॥୯
ପାଞ୍ଚାଳ ଦେଶ ରାଜା ପଣେ ।
ପ୍ରଜା ପାଳିଲେ ଶୁଭକ୍ଷଣେ ॥୧୦
ଅଜମୀଢ଼ର ସୁତ ଋକ୍ଷ ।
ତହୁଁ ସମ୍ବରଣ ପ୍ରତ୍ୟକ୍ଷ ॥୧୧
ସେ ପୁଣି କାଳିନ୍ଦୀର ଜଳେ ।
ସୂର୍ଯ୍ୟର କନ୍ୟା ସଙ୍ଗମେଳେ ॥୧୨
କୁରୁ ହୋଇଲା ତା'ର ବଂଶେ ।
ଏ କଥା ଶୁଣିଛୁ ଭବିଷ୍ୟେ ॥୧୩
କୁରୁର ପୁତ୍ର ହୋଏ ଚାରି ।
ପରୀକ୍ଷିତ ସୁଧନୁ ଆହୁରି ॥୧୪
ଜହ୍ନୁ ନିଷଧାଶ୍ୱ ସହିତେ ।
ଏ ରୂପେ ହେଲେ ଚାରିସୁତେ ॥୧୫
ସୁହୋତ୍ର ସୁଧନୁ ନନ୍ଦନ ।
ତାହାର ସୁତ ଯେ ଚ୍ୟବନ ॥୧୬
ଚ୍ୟବନ ସୁତ କୃତୀ ନାମ ।
ବସୁ ତାହାର ବୀର୍ଯ୍ୟେ ଜନ୍ମ ॥୧୭
ବସୁ ତନୟ ବୃହଦ୍ରଥ ।
କୁଶାମ୍ବ ଦ୍ୱିତୀୟ ଯେ ପୁତ୍ର ॥୧୮
ମତ୍ସ୍ୟ ତୃତୀୟ ପୁତ୍ର ହୁଏ ।
ପ୍ରତ୍ୟଗ୍ର ଚତୁର୍ଥ ବୋଲାଏ ॥୧୯
ଚେଦିପ ଆଦି ବହୁ ଭ୍ରାତ ।
ଉପରିଚର ବସୁ ପୁତ୍ର ॥୨୦
କୁଶାଗ୍ର ବୃହଦ୍ରଥ ସୁତ ।
ଋଷଭ ତା'ର ତହୁଁ ଜାତ ॥୨୧
ଋଷଭ ପୁତ୍ର ସତ୍ୟହିତ ।
ପୁଷ୍ପବାନ ଯେ ତା'ର ସୁତ ॥୨୨
ବୃହଦ୍ରଥର ବେନିନାରୀ ।
ଦୁର୍ବାସା ପାଦେ ସେବା କରି ॥୨୩
ଗର୍ଭର ଅର୍ଥେ ଚ୍ୟୁତ ଫଳ ।
ବାଣ୍ଟି ଖାଇଲେ ବେନିପାଳ ॥୨୪
ଋଷି ବଚନେ ତା'ଙ୍କ ବାଳେ ।
ଜନ୍ମ ହୋଇଲେ ବେନି ଫାଳେ ॥୨୫
ଜୀବନ ନାହିଁ ତା'ଙ୍କ ଦେହେ ।
କେ ଛାଡ଼ି ପାରି ପୁତ୍ର ସ୍ନେହେ ॥୨୬
ନିଶି ପର୍ଯ୍ୟନ୍ତେ କୋଳେ ବହି ।
ଶ୍ମଶାନେ ପକାଇଲେ ନେଇ ॥୨୭
ଏମନ୍ତେ ଶୁଣ ନରନାଥ ।
ଜରାରାକ୍ଷସୀ ଉପଗତ ॥୨୮
କ୍ଷୁଧା-ପୀଡ଼ନେ ଦେଶବନେ ।
ବୁଲଇ ଦୁର୍ଗମ ଶ୍ମଶାନେ ॥୨୯
ସ୍ୱଭାବେ ନରମାଂସ ଖାଇ ।
ଶ୍ମଶାନେ ମିଳିଲାକ ଯାଇ ॥୩୦
ଆନନ୍ଦେ ବେନିଖଣ୍ଡ ଧରି ।
କ୍ଷେପନ୍ତେ ବଦନ ବିସ୍ତାରି ॥୩୧
ଦେଖେ ବାଳକ ବେନିଖଣ୍ଡ ।
ତେଜେ ବିରାଜେ ମାରତଣ୍ଡ ॥୩୨
ବେନିଫାଳକୁ ଏକ କଲା ।
ସ୍ୱମନ୍ତେ ଜୀବନ୍ୟାସ ଦେଲା ॥୩୩
ଡାକଇ ଜୀବ ଜୀବ ରାବେ ।
ସେ ବେନିଖଣ୍ଡ ଏକଭାବେ ॥୩୪
ତକ୍ଷଣେ କୁମର ହୋଇଲା ।
ସୁନ୍ଦରେ ଜଗତ ମୋହିଲା ॥୩୫
ପୁଣି ସେ ତା'ର ମୁଖ ଚାହିଁ ।
ବୋଲଇ ଶିରେ ହସ୍ତ ଦେଇ ॥୩୬
ଅଜୟ ହୁଅ ନରଲୋକେ ।
ଅନେକ ରାଜା ଜିଣି ଏକେ ॥୩୭

Dr. Sudhanshu Sekhar Mishra

ଯେ ତୋତେ କରି ବେନିଫାଳ ।
କ୍ଷେପିବ ଭୂମି ଅନ୍ତରାଳ ॥୩୮
ଖଣ୍ଡେ ପଡ଼ିବ ସିନ୍ଧୁଜଳେ ।
ଦହିବ ବଡ଼ବା ଅନଳେ ॥୩୯
ତେବେ ପୂରିବ କାଳ ତୋ'ର ।
ଏବେ ତୁ ଅଜର ଅମର ॥୪୦
ଏମନ୍ତେ ଅସୁରୀ ସାଧନେ ।
ସେ ଜରାସନ୍ଧ ଅନୁଦିନେ ॥୪୧
ଅନେକ ରାଜ୍ୟ ଭୋଗ କଲା ।
ଅନ୍ତେ ଭୀମର ହସ୍ତେ ମଲା ॥୪୨
ତା'ର କୁମର ସହଦେବ ।
ତା' ବୀର୍ଯ୍ୟେ ସୋମାପି ସମ୍ଭବ ॥୪୩
ଶ୍ରୁତଶ୍ରବା ତାହାର ବଳା ।
ପରୀକ୍ଷିତ ନିଃସନ୍ତାନ ଥିଲା ॥୪୪
ଜହ୍ନୁର ତନୟ ସୁରଥ ।
ତା'ର ତନୟ ବିଦୂରଥ ॥୪୫
ତା'ର କୁମର ସାର୍ବଭୌମ ।
ତା' ତେଜେ କେହି ନୋହେ ସମ॥୪୬
ତା'ର କୁମର ଜୟସେନ ।
ରାଧିକ ତାହାର ନନ୍ଦନ ॥୪୭
ତା ଠାରୁ ଅତାୟୁ ହୋଏ ।
ଅକ୍ରୋଧନ ତା'ର ତନୟେ ॥୪୮
ତା'ର କୁମର ଦେବାତିଥି ।
ଋଷ୍ୟ ତା' ତହୁଁ ଉତ୍ପତ୍ତି ॥୪୯
ତାହାର ଆତ୍ମଜ ଦିଲୀପ ।
ତା' ପୁତ୍ର ନାମଟି ପ୍ରତୀପ ॥୫୦
ପ୍ରତୀପ ବୀର୍ଯ୍ୟେ ପୁତ୍ର ତିନି ।
ହୋଇଲେ ନିଜରୂପ ଘେନି ॥୫୧
ଦେବାପି ଶାନ୍ତନୁ ବାହ୍ଲୀକ ।
ସ୍ୱଭାବେ ସୁଜ୍ଞାନୀ ବିବେକ ॥୫୨
ଦେବାପି ପୂର୍ବଜାତି ସ୍ମରି ।
ରାଜ୍ୟେ ନୋହିଲା ଅଧିକାରୀ ॥୫୩
ସଂଯମେ ଯୋଗ-ଅଭ୍ୟାସନେ ।
ନିଶ୍ଚଳେ ରହିଲା ସେ ବନେ ॥୫୪
ପିତାର ବଚନ ନ କଲା ।
ଅରଣ୍ୟେ ନିର୍ଭୟେ ରହିଲା ॥୫୫

ସେ ପୁଣି କଳିଯୁଗ ଶେଷେ ।
ରାଜା ହୋଇବ ସୋମବଂଶେ ॥୫୬
ଶାନ୍ତନୁ ରାଜ୍ୟେ ହୋଇ ରାଜା ।
ଧର୍ମେ ପାଳିଲା ଜନପ୍ରଜା ॥୫୭
ପୂର୍ବଜନ୍ମରେ ତା'ର ନାମ ।
ମହାଭିଷ ବୋଲି ପ୍ରଧାନ ॥୫୮
ତା'ର ମହିମା ଶୁଣ ରାୟେ ।
ସେ ଯାକୁ ହସ୍ତ ଘେନି ଛୁଏଁ ॥୫୯
ସେ ଯେବେ ହୋଇଥିବ ଜୀର୍ଣ୍ଣ ।
ତକ୍ଷଣେ ଲଭିବ ଯୌବନ ॥୬୦
ଶାନ୍ତି ଲଭି ଯେ ସୁଖେ ରହେ ।
ତେଣୁ ସେ ଶାନ୍ତନୁ ବୋଲାଏ ॥୬୧
ଏମନ୍ତେ ତା'ର ରାଜ୍ୟ କାଳେ ।
ମେଘ ନଦିଶେ ଅନ୍ତରାଳେ ॥୬୨
ବୃଷ୍ଟି ନ କରେ ବଳାହକ ।
କ୍ଷୁଧା ପୀଡ଼ିତ ସର୍ବଲୋକ ॥୬୩
ଏମନ୍ତେ ଦ୍ୱାଦଶ ବରଷ ।
ବୃଷ୍ଟି ବିହୀନ ତା'ର ଦେଶ ॥୬୪
ଶାନ୍ତନୁ ବ୍ରାହ୍ମଣଙ୍କୁ ଚାହିଁ ।
ବୋଲଇ ଶିରେ କର ଦେଇ ॥୬୫
ଦେଖ ଦୁଃଖିତ ନରଲୋକ ।
ଜଳ ନ ମୁଞ୍ଚେ ବଳାହକ ॥୬୬
କିବା କଲ୍ମଷ ମୋ'ର ଅଛି ।
ଇନ୍ଦ୍ର ନ ବରଷେ ତା' ଲକ୍ଷି ॥୬୭
ଏମନ୍ତ ଶୁଣି ତା'ର ବାଣୀ ।
ବିପ୍ରେ ନିଗମେ ପରିମାଣି ॥୬୮
ବୋଇଲେ ପରବେତ୍ତା ଦୋଷେ ।
ଇନ୍ଦ୍ର ନ ବରଷେ ତୋ' ଦେଶେ ॥୬୯
ଜ୍ୟେଷ୍ଠେ ନ ଦେଇ ରାଜ୍ୟ ଶିରୀ ।
କନିଷ୍ଠ ଯେବେ ରାଜ୍ୟ କରି ॥୭୦
ଜ୍ୟେଷ୍ଠକୁ ବିବାହ ନ କରି ।
କନିଷ୍ଠ ଯେବେ କନ୍ୟା ବରି ॥୭୧
ଜ୍ୟେଷ୍ଠ ଭ୍ରାତାର ରାଜ୍ୟଭାଗ ।
ତୁମ୍ଭେ କରୁଛ ନିଜେ ଭୋଗ ॥୭୨
ସେ ପରିବେତ୍ତା ଅତି ଦୋଷେ ।
ତୋ' ଦେଶେ ଇନ୍ଦ୍ର ନ ବରଷେ ॥୭୩

ଏମନ୍ତ ବିପ୍ରମୁଖୁଁ ଶୁଣି ।
ଭୟେ ବୋଲଇ ନୃପମଣି ॥୭୪
ରାଜ୍ୟ ମୁଁ ଜ୍ୟେଷ୍ଠଭ୍ରାତେ ଦେଇ ।
ତପ ସାଧିବି ବନେ ରହି ॥୭୫
ସୁଖେ ଜୀଅନ୍ତୁ ଜନପ୍ରଜା ।
ଦେବାପି ରାଜ୍ୟେ ହେଉ ରାଜା ॥୭୬
ସଙ୍ଗେ ଘେନାଇ ବିପ୍ରଗଣେ ।
ଦେବାପି ରାଜ୍ୟ ସମର୍ପଣେ ॥୭୭
ଶାନ୍ତନୁ ଜ୍ୟେଷ୍ଠଭ୍ରାତା ପାଦେ ।
ପଡ଼ି ବୋଲଇ ଶୋକନାଦେ ॥୭୮
ହେ ଭ୍ରାତ ରାଜ୍ୟେ ହୁଅ ରାଜା ।
ସୁଖେ ଜୀଅନ୍ତୁ ଜନପ୍ରଜା ॥୭୯
ଦେବାପି ତା'ର ବୋଲ ଶୁଣି ।
କହିଲା ଧର୍ମ ପରିମାଣି ॥୮୦
ଦେଶୁଁ ବାହାର ହୋଇ ମୁହିଁ ।
ରାଜ୍ୟେ ମୋ' ପ୍ରୟୋଜନ ନାହିଁ ॥୮୧
ଏ ଅନ୍ତେ ରାଜା ମନ୍ତ୍ରୀଗଣ ।
କଲେ କପଟ ଆଚରଣ ॥୮୨
ବିଶ୍ୱାସୀ ବ୍ରାହ୍ମଣ ରାଇଲେ ।
ତାହାଙ୍କୁ କୁମନ୍ତ୍ରଣା ଦେଲେ ॥୮୩
ବୋଇଲେ ଶୁଣ ବିପ୍ରଗଣ ।
ଦେବାପି କାର୍ଯ୍ୟ କର ବିଘ୍ନ ॥୮୪
ଶୁଣି ସେ ବିପ୍ରେ ବେଗେ ଗଲେ ।
ଦେବାପି ନିକଟେ ମିଳିଲେ ॥୮୫
ପାଷଣ୍ଡ ମତ ପୁଷ୍ଟ ପୋଷ ।
କରି ସେ ଦେଲେ ଉପଦେଶ ॥୮୬
ତେଣୁ ତା' ବୁଦ୍ଧି ହେଲା ନଷ୍ଟ ।
ବେଦମାର୍ଗର ହେଲା ଭ୍ରଷ୍ଟ ॥୮୭
ବେଦକୁ ଯେଣୁ ନିନ୍ଦା କଲା ।
ତେଣୁ ସେ ପତିତ ହୋଇଲା ॥୮୮
ରାଜ୍ୟେ ନୋହିଲା ଅଧିକାରୀ ।
ପୁଣି ଶାନ୍ତନୁ ରାଜ୍ୟ କରି ॥୮୯
ତାହାର ଦୋଷ ନ ରହିଲା ।
ଦେବାପି ବେଦନିନ୍ଦା କଲା ॥୯୦
ତକ୍ଷଣେ ନିଗମ ବଚନେ ।
ଜୀମୂତେ ମିଳିଲେ ଗଗନେ ॥୯୧

Dr. Sudhanshu Sekhar Mishra

ଗମ୍ଭୀର ଘୋରନାଦ କରି ।
ତକ୍ଷଣେ ବରଷିଲେ ବାରି ॥୯୨
ଦେବାପି ମନେ ଜ୍ଞାନଭରି ।
କଳାପ ଗ୍ରାମ ଆଶ୍ରେ କରି ॥୯୩
ବିଶ୍ୱ ସଂସାରେ କାଳବଳେ ।
ସୋମବଂଶ ବିନାଶ ବେଳେ ॥୯୪
କଳିର ଥିବ ଅବଶେଷ ।
ସେ ପୁଣି ସ୍ଥାପି ସୋମବଂଶ ॥୯୫
ରାଜା ହୋଇବ ଦିନାକେତେ ।
ପ୍ରଜା ପାଳିବ ଧର୍ମଚିତ୍ତେ ॥୯୬
ମର୍ତ୍ତ୍ୟେ ସ୍ଥାପିବ ସୋମବଂଶ ।
ଯେ ଅବା ଥିବ ଅବଶେଷ ॥୯୭
ବହ୍ଲୀକ ବୀର୍ଯ୍ୟେ ସୋମଦତ୍ତ ।
ଭୂରି ଭୂରିଶ୍ରବା ତା' ସୁତ ॥୯୮
ଶଲକୁ ଘେନି ପୁତ୍ର ତିନି ।
ସୋମଦତ୍ତର ବୀର୍ଯ୍ୟେ ଜନ୍ମି ॥୯୯
ଶାନ୍ତନୁ ବୀର୍ଯ୍ୟେ ପୁତ୍ର ଜାତ ।
ଭୀଷ୍ମ ନାମରେ ଗଙ୍ଗାସୁତ ॥୧୦୦
ସେ ସର୍ବ ବୀର-ଶିରୋମଣି ।
ପରଶୁରାମେ ଯୁଦ୍ଧେ ଜିଣି ॥୧୦୧
ଶାନ୍ତନୁ ଦାସକନ୍ୟା ଗର୍ଭେ ।
ଚିତ୍ରାଙ୍ଗଦ ଯେ ଜାତ ପୂର୍ବେ ॥୧୦୨
ଯେ ଚିତ୍ରାଙ୍ଗଦ ନାମେ ସୁତ ।
ସେହି ଗନ୍ଧର୍ବେ ହେଲା ହତ ॥୧୦୩
ବିଚିତ୍ରବୀର୍ଯ୍ୟ ଅବରଜ ।
ଏବେ ହୋ ଶୁଣ କୁରୁରାଜ ॥୧୦୪
ସେ କନ୍ୟା ଗର୍ଭେ ଗଙ୍ଗାଜଳେ ।
ଧରି ଯେ ପରାଶର ବଳେ ॥୧୦୫
ବ୍ୟାସମୁନିଙ୍କି ଜନ୍ମ କରି ।
ସଂଭ୍ରମେ ତା'କୁ କୋଳେ ଧରି ॥୧୦୬
ବଦରୀ ବନେ ପକାଇଲେ ।
ଗୋବିନ୍ଦ ତାହାଙ୍କୁ ରଖିଲେ ॥୧୦୭
ସେ ବିଷ୍ଣୁ ଅଂଶେ ମହାମୁନି ।
ପ୍ରତ୍ୟକ୍ଷେ ବିଷ୍ଣୁତେଜ ଘେନି ॥୧୦୮
ହରିର ଅଂଶେ ଉତପନ୍ନ ।
ନାମ ତା' କୃଷ୍ଣ ଦ୍ୱୈପାୟନ ॥୧୦୯

ପଇଳ ଆଦି ଶିଷ୍ୟଗଣେ ।
ବିଦ୍ୟା ଅଭ୍ୟାସି ଜଣେ ଜଣେ ॥୧୧୦
ହୋଇଲେ ସର୍ବଶାସ୍ତ୍ର ବେତ୍ତା ।
ସକଳ ଗୁଣେ ଗୁଣବନ୍ତା ॥୧୧୧
ସେ ମୋତେ ରେତୁଁ ଜାତକଲେ ।
ଏ ଭାଗବତ ଶିକ୍ଷା ଦେଲେ ॥୧୧୨
ଏମନ୍ତେ କାଶୀରାଜ ଘରେ ।
ଭୀଷ୍ମ ଯେ କନ୍ୟା ସ୍ୱୟମ୍ବରେ ॥୧୧୩
ଦୁର୍ଗମ ଲାଖ ବିନ୍ଧି ବଳେ ।
ଅନେକ ନୃପତିଙ୍କ ମେଳେ ॥୧୧୪
ରାଜାଙ୍କୁ ଲାଖବିନ୍ଧି ଜିଣି ।
ଲଭିଲେ ନୃପତି ଦୁଲଣୀ ॥୧୧୫
ଅମ୍ବିକା ଆଉ ଅମ୍ବାଳିକା ।
କନ୍ୟାଏ ବର ବରି ଏକା ॥୧୧୬
ତାହାଙ୍କୁ ନିଜପୁରେ ଥୋଇ ।
ବିଚିତ୍ରବୀର୍ଯ୍ୟେ ବିଭା ଦେଇ ॥୧୧୭
ଅମ୍ବା ଯେ ଅନ୍ୟେ ନ ବରିଲା ।
ଭୀଷ୍ମଙ୍କୁ ମହାକ୍ରୋଧ କଲା ॥୧୧୮
ତପ ସାଧିଲା ନାନାମତେ ।
ପୂର୍ବେ ମୁଁ କହିଅଛି ତୋତେ ॥୧୧୯
ଦୁଇ ଭାର୍ଯ୍ୟାରେ ହୋଇ ରତ ।
ବିଚିତ୍ର ବୀର୍ଯ୍ୟେ କାମେ ମତ୍ତ ॥୧୨୦
ଯକ୍ଷ୍ମାରୋଗରେ ହୋଇ ଗ୍ରସ୍ତ ।
ଅଳ୍ପ କାଳରେ ହେଲା ହତ ॥୧୨୧
ସନ୍ତାନହୀନ କୁଳ ଦେଖି ।
ସମସ୍ତେ ହୋଇଲେକ ଦୁଃଖୀ ॥୧୨୨
ମାତାଙ୍କ ଆଦେଶକୁ ମାନି ।
ତା'ର ସୋଦର ବ୍ୟାସମୁନି ॥୧୨୩
ବିଚିତ୍ରବୀର୍ଯ୍ୟର କ୍ଷେତ୍ରରେ ।
ପୁଣି ସେ ଗର୍ଭାଧାନ କରେ ॥୧୨୪
ବ୍ୟାସଙ୍କ ବୀର୍ଯ୍ୟେ ତା'ଙ୍କ ଗର୍ଭେ ।
ପୁତ୍ରେ ଉପୁଜିଲେ ସ୍ୱଭାବେ ॥୧୨୫
ଜ୍ୟେଷ୍ଠକୁମର ଧୃତରାଷ୍ଟ୍ର ।
ପାଣ୍ଡୁ ଯେ ତାହାର କନିଷ୍ଠ ॥୧୨୬
ଦାସୀର ଉଦରେ ତାହାର ।
ପୁଣି ଯେ ଜନ୍ମିଲା ବିଦୁର ॥୧୨୭

ଧୃତରାଷ୍ଟ୍ରର ଶତେପୁତ୍ର ।
ଗାନ୍ଧାରୀ ଗର୍ଭେ ହେଲେ ଜାତ ॥୧୨୮
କନ୍ୟାଏ ଜନ୍ମେ ଅନୁପମ ।
ଦୁଃଶୀଳା ସେ କନ୍ୟାର ନାମ ॥୧୨୯
ଭ୍ରାତୃଗଣଙ୍କ ମଧ୍ୟେ ଶ୍ରେଷ୍ଠ ।
ସେ ଦୁର୍ଯ୍ୟୋଧନ ଅଟେ ଜ୍ୟେଷ୍ଠ ॥୧୩୦
ଅଗ୍ନିକାଋଷି ଶାପ ଫଳେ ।
ପଞ୍ଚବାଳକ ପାଣ୍ଡୁକୋଳେ ॥୧୩୧
ଜନ୍ମିଲେ ଅତି ଗୁଣବନ୍ତ ।
ତାହାଙ୍କ ସଖା ଯେ ଅନନ୍ତ ॥୧୩୨
ତା ପତ୍ନୀ କୁନ୍ତୀ ଗର୍ଭେ ଜାତ ।
ଯୁଧିଷ୍ଠିରାଦି ତିନି ସୁତ ॥୧୩୩
ଧର୍ମ ପବନ ଇନ୍ଦ୍ର ବୀର୍ଯ୍ୟେ ।
ତିନି ବାଳକ ମହାତେଜେ ॥୧୩୪
ମାଦ୍ରୀର ଗର୍ଭେ ପୁତ୍ର ଦୁଇ ।
ନକୁଳ ସହଦେବ ହୋଇ ॥୧୩୫
ଅଶ୍ୱିନୀକୁମାରଙ୍କ ବୀର୍ଯ୍ୟେ ।
ଜନ୍ମ ହୋଇଲେ ମହାତେଜେ ॥୧୩୬
ଏ ଯେ ହୋଇଲେ ପଞ୍ଚଭ୍ରାତ ।
ଏହାଙ୍କ ହେଲା ପାଞ୍ଚସୁତ ॥୧୩୭
ଦ୍ରୌପଦୀ ଗର୍ଭେ ହେଲେ ଜନ୍ମ ।
ଶୁଣ ହୋ ତାହାଙ୍କର ନାମ ॥୧୩୮
ଯୁଧିଷ୍ଠି ପୁତ୍ର ପ୍ରତିବିନ୍ଧ୍ୟ ।
ତା'କୁ ନଲାଗେ ବ୍ୟାଧି ଦ୍ୱନ୍ଦ୍ୱ ॥୧୩୯
ଭୀମର ପୁତ୍ର ଶ୍ରୁତସେନ ।
ଶ୍ରୁତକୀର୍ତ୍ତି ତାତ ଅର୍ଜୁନ ॥୧୪୦
ନକୁଳ ସୁତ ଶତାନୀକ ।
ସୁଜ୍ଞାନୀ ପଣ୍ଡିତ ବିବେକ ॥୧୪୧
ସହଦେବର ଯେ ନନ୍ଦନ ।
ତାହାର ଶ୍ରୁତକର୍ମା ନାମ ॥୧୪୨
ପୌରବୀଗର୍ଭେ ଧର୍ମସୁତ ।
ଦେବକ ସୁତ କଲେ ଜାତ ॥୧୪୩
ହିଡ଼ିମ୍ବୀ ଗର୍ଭେ ଭୀମବୀର୍ଯ୍ୟେ ।
ଜନ୍ମିଲା ଘଟୋତ୍କଚ ତେଜେ ॥୧୪୪
ପୁଣି ଭୀମର ବୀର୍ଯ୍ୟେ ଜାତ ।
କାଳୀର ଗର୍ଭେ ସର୍ବଗତ ॥୧୪୫

Dr. Sudhanshu Sekhar Mishra

ସହଦେବର ପୁତ୍ର ଜାତ ।
ବିଜୟା ଗର୍ଭରେ ସୁହୋତ୍ର ॥୧୪୬
କରେଣୁମତୀ ଗର୍ଭେ ପୁତ୍ର ।
ନକୁଳ ବୀର୍ଯ୍ୟେ ନରମିତ୍ର ॥୧୪୭
ଉଲୁପୀ ଗର୍ଭେ ଇରାବନ୍ତ ।
ଅର୍ଜୁନ ବୀର୍ଯ୍ୟେ ହେଲା ଜାତ॥୧୪୮
ମଣି ପୁରେଶ କନ୍ୟାଠାରେ ।
ପୁଣି ଅର୍ଜୁନର ଅଂଶରେ ॥୧୪୯
ବଭ୍ରୁବାହନ ଜନମିଲା ।
ପୁତ୍ରିକା ତନୟ ସେ ହେଲା ॥୧୫୦
ପୁତ୍ରିକା ଧର୍ମେ ଯେଣୁ ବରେ ।
ତେଣୁ ସେ ରାଜା ମଣିପୁରେ ॥୧୫୧
ସୁଭଦ୍ରା ଗର୍ଭେ ତୋ'ର ତାତ ।
ହୋଇଲେ ଅଭିମନ୍ୟୁ ଜାତ ॥୧୫୨
ସେ ମହାବୀର ବାହୁବଳେ ।
ଜିଣନ୍ତା ନାହିଁ ଭୂମି ତଳେ ॥୧୫୩
ଯେ କୁରୁବଂଶ ନିପାତନେ ।
ଦ୍ରୋଣନନ୍ଦନ ମହାବାଣେ ॥୧୫୪
ଯେ ଶର ବ୍ରହ୍ମଶିରା ନାମେ ।
ତୋ' ମାତା ଗର୍ଭେ ଅତି ତମେ ॥୧୫୫
ପେଷିଲା ଅପାଣ୍ଡବ ଅର୍ଥେ ।
ଉତ୍ତରା ଆସୁଥିଲା ପଥେ ॥୧୫୬
ବାଣ ଆସନ୍ତେ ଶୂନ୍ୟପଥେ ।
ତୋ' ମାତା ଡାକିଲା ଆରତେ ॥୧୫୭
ତକ୍ଷଣେ ବିଷ୍ଣୁ ଗର୍ଭଗତେ ।
ପଶିଲେ ଚକ୍ର ଘେନି ହସ୍ତେ ॥୧୫୮
ବ୍ରହ୍ମଶିରାକୁ ନାଶ କରି ।
ତୋତେ ରଖିଲେ ନରହରି ॥୧୫୯
ଏବେ ହୋ କହୁଁ ତୋ' ଅଗ୍ରତେ ।
ଯେ କର୍ମ ହେବ ଭବିଷ୍ୟତେ ॥୧୬୦
ଏ ଯେ ତୋହର ଚାରିସୁତେ ।
ଜନମେଜୟର ସମେତେ ॥୧୬୧
ଯେ ଶ୍ରୁତସେନ ଭୀମସେନ ।
କନିଷ୍ଠ ନାମ ଉଗ୍ରସେନ ॥୧୬୨
ଏ ଚାରିପୁତ୍ରେ ମିଳି ଏକେ ।
ତେଜେ ପ୍ରତାପ ଅତିରେକେ ॥୧୬୩

ବ୍ରାହ୍ମଣ ତେଜ ଶାପଗ୍ରସ୍ତେ ।
ତକ୍ଷକେ ଦଂଶିବେ ଯେତୋତେ॥୧୬୪
ସେ କୋପେ ସର୍ପଯଜ୍ଞ କରି ।
ତିନିଭୁବନୁ ସର୍ପ ମାରି ॥୧୬୫
ପୁଣି କରିବ ଅଶ୍ୱମେଧ ।
ଆଗମ ନିଗମ ସମ୍ମାଦି ॥୧୬୬
ସପତଦ୍ୱୀପେ ହୋଇ ରାଜା ।
ସୁଖେ ପାଳିବ ଜନପ୍ରଜା ॥୧୬୭
ତା'ର ତନୟ ଶତାନୀକ ।
ହୋଇବ ସୁଜ୍ଞାନୀ ବିବେକ ॥୧୬୮
ଯାଜ୍ଞବଲ୍କ୍ୟର ତହୁଁ ବେଦ ।
ପଢ଼ିବ ସେ ଉପନିଷଦ ॥୧୬୯
ଶୌନକ ତହୁଁ ଜ୍ଞାନକ୍ରିୟା ।
ଶାସ୍ତ୍ର ସାଧିବ ପୁଣ୍ୟଦେହା ॥୧୭୦
କୃପାଚାର୍ଯ୍ୟର ସନ୍ନିଧାନ ।
ଲଭିବ ଯେତେ ଅସ୍ତ୍ରଜ୍ଞାନ ॥୧୭୧
ସହସ୍ରାନୀକ ତା' ନନ୍ଦନ ।
ଅଶ୍ୱମେଧଜ ତହୁଁ ଜନ୍ମ ॥୧୭୨
ତହୁଁ ଅସୀମକୃଷ୍ଣ ଜାତ ।
ନେମିଚକ୍ର ତାହାର ସୁତ ॥୧୭୩
ହସ୍ତିନାପୁର ନଦୀସ୍ରୋତେ ।
କାଳେ ଯେ ବିନଷ୍ଟ ହୁଅନ୍ତେ ॥୧୭୪
ସେ ପୁଣି କୌଶାମ୍ବୀ ନଗରେ।
ବାସ କରିବ ଭବିଷ୍ୟରେ ॥୧୭୫
ହରିହରଙ୍କ ତୋଷ ଅର୍ଥେ ।
କରିବ ସାଧୁକର୍ମ ଯେତେ ॥୧୭୬
ଉପୁଜେ ନେମିଚକ୍ର ସୁତ ।
ତା'ର ସନ୍ତତି ଚିତ୍ରରଥ ॥୧୭୭
ତା'ର କୁମର କବିରଥ ।
ତାହାର ବୃଷ୍ଟିମାନ ସୁତ ॥୧୭୮
ସୁଷେଣ ତା'ର ତହୁଁ ଜାତ ।
ତାହାର କୁମର ସୁନୀଥ ॥୧୭୯
ନୃଚକ୍ଷୁ ତାହାର କୁମର ।
ତା' ପୁତ୍ର ହେବ ସୁଖୀନଳ ॥୧୮୦
ତାହାର ପୁତ୍ର ପରିପ୍ଲବ ।
ତା' ତହୁଁ ସୁନୟ ସମ୍ଭବ ॥୧୮୧

ମେଧାବୀ ତାହାର ତନୟ ।
ତା' ପୁତ୍ର ହେବ ନୃପଞ୍ଜୟ ॥୧୮୨
ତାହାର ପୁତ୍ର ନାମ ଦୂର୍ବ ।
ତା' ପୁତ୍ର ତିମି ନାମ ହେବ ॥୧୮୩
ତିମିର ପୁତ୍ର ବୃହଦ୍ରଥ ।
ସୁଦାସ ହେବ ତା'ର ସୁତ ॥୧୮୪
ଶତାନୀକ ଯେ ତା'ର ସୁତ ।
ଦୁର୍ଦ୍ଦମନ ଯେ ତହୁଁ ଜାତ ॥୧୮୫
ତା'ର କୁମର ବହୀନର ।
ଦଣ୍ଡପାଣି ତା'ର କୁମର ॥୧୮୬
ତାହାର ପୁତ୍ର ନିମି ନାମ ।
ତା' ତହୁଁ କ୍ଷେମକ ଜନମ ॥୧୮୭
ଏମନ୍ତ ବ୍ରହ୍ମକ୍ଷତ୍ର ଯୋନି ।
ଜନ୍ମ ହୋଇବେ ଦେହ ଘେନି ॥୧୮୮
କ୍ଷେମକ ଠାଇଁ ସୋମବଂଶ ।
ହୋଇବ କଳିଯୁଗେ ଶେଷ ॥୧୮୯
ଏବେ ହୋ ଶୁଣ କୁରୁରାଣ ।
ମଗଧ ଦେଶ ପରିମାଣ ॥୧୯୦
ମାର୍ଜାରି ସହଦେବ ସୁତ ।
ତା' ତହୁଁ ଶ୍ରୁତଶ୍ରବା ଜାତ ॥୧୯୧
ଆୟୁତାୟୁ ତା'ର ନନ୍ଦନ ।
ତା' ସୁତ ନିରମିତ୍ର ନାମ ॥୧୯୨
ତା'ର ସନ୍ତତି ସୁନକ୍ଷତ୍ର ।
ବୃହତ୍‌ସେନ ଯେ ତା'ର ପୁତ୍ର॥୧୯୩
କର୍ମଜିତ ତା'ର ତନୟ ।
ତାହାର ପୁତ୍ର ସୃତଞ୍ଜୟ ॥୧୯୪
ତା' ପୁତ୍ର ବିପ୍ର ତା'ର ସୁତ ।
ଶୁଚିରୁ ହେବ କ୍ଷେମ ଜାତ ॥୧୯୫
କ୍ଷେମ ଶୁଚିର ପୁତ୍ର ଜାଣ ।
ସୁବ୍ରତ କ୍ଷେମର ନନ୍ଦନ ॥୧୯୬
ସୁବ୍ରତ ସୁତ ଧର୍ମସୂତ୍ର ।
ଶମ ହୋଇବ ତା'ର ସୁତ ॥୧୯୭
ଶମର ପୁତ୍ର ଦ୍ୟୁମତ୍ସେନ ।
ସୁମତି ତାହାର ନନ୍ଦନ ॥୧୯୮
ସୁବଳ ତା'ର ପୁତ୍ର ନାମ ।
ସୁନୀଥ ତାହାର ନନ୍ଦନ ॥୧୯୯

Dr. Sudhanshu Sekhar Mishra

ତାହାର ପୁତ୍ର ସତ୍ୟଜିତ ।
ତା' ପୁତ୍ର ହେବ ବିଶ୍ୱଜିତ ॥୨୦୦
ତା' ଠାରୁ ରିପୁଞ୍ଜୟ ଜନ୍ମ ।
ବୃହଦ୍ରଥର ବଂଶ ଜାଣ ॥୨୦୧

ଏହି ଯେ ବୃହଦ୍ରଥ ବଂଶ ।
ଭବିଷ୍ୟେ ସହସ୍ର ବରଷ ॥୨୦୨
ରାଜା ହୋଇବେ ଏ ଜଗତେ ।
ସଂକ୍ଷେପି କହିଲି ମୁଁ ତୋତେ ॥୨୦୩

ସେ ହରିକଥା ଶୁଣି କର୍ଣ୍ଣେ ।
ସଂସାରୁ ତର ଜ୍ଞାନୀ ଜନେ ॥୨୦୪
କହିଲା ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୨୦୫

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଦ୍ୱାବିଂଶୋଽଧ୍ୟାୟଃ ॥

## ତ୍ରୟୋବିଂଶ ଅଧ୍ୟାୟ

ଶୁକ ଉବାଚ

ଅନୁର ବଂଶେ ତିନିସୁତ ।
ଶୁଣ ରାଜନ ପରୀକ୍ଷିତ ॥୧
ଚକ୍ଷୁ ପରେକ୍ଷୁ ବେନି ସୁତ ।
ତୃତୀୟେ ସଭାନର ଜାତ ॥୨
ସଭାନରରୁ କାଳନର ।
ସୃଞ୍ଜୟ ତାହାର କୁମର ॥୩
ଜନମେଜୟ ତା'ର ସୁତ ।
ତା'ଠାରୁ ମହାଶାଳ ଜାତ ॥୪
ତହୁଁ ଯେ ମହାମନା ଜାତ ।
ତାହାର ହେଲେ ଦୁଇ ସୁତ ॥୫
ସେ ମହାମନା ବୀର୍ଯ୍ୟେ ଘେନି ।
ତିତିକ୍ଷୁ ଉଶୀନର ବେନି ॥୬
ଶିବି ଯେ କୃମି ଦକ୍ଷ ବର ।
ଉଶୀନର ଚାରି କୁମର ॥୭
ଉଶୀନରର ବୀର୍ଯ୍ୟେ ଜାତ ।
ହୋଇଲେ ଜଗତେ ବିଦିତ ॥୮
ହୋଇଲେ ଶିବି ବୀର୍ଯ୍ୟେ ଜନ୍ମ ।
ଅଦ୍ଭୁତ ତାହାଙ୍କର କର୍ମ ॥୯
ବୃଷାଦର୍ଭ ସୁବୀର ଦୁଇ ।
ମଦ୍ର କେକୟ ଚାରିଭାଇ ॥୧୦
ତିତିକ୍ଷୁ ପୁତ୍ର ରଷଦ୍ରଥ ।
ଅଦ୍ଭୁତ ତାହାର ଚରିତ ॥୧୧
ତାହାର ପୁତ୍ର ନାମ ହୋମ ।
ସୁତପା ତାହାର ନନ୍ଦନ ॥୧୨

ସୁତପା ପୁତ୍ର ବଳି ହୋଇ ।
ବନେ ତପସ୍ୱୀ ରୂପ ବହି ॥୧୩
ରହିଲା ସଂସାର ଉପେକ୍ଷି ।
ସ୍ୱପନ ପ୍ରାୟେ ସର୍ବ ଦେଖି ॥୧୪
ବଳିର କ୍ଷେତ୍ରେ ଷଡ଼ାତ୍ମଜେ ।
ଜନ୍ମିଲେ ଦୀର୍ଘତମା ବୀର୍ଯ୍ୟେ ॥୧୫
ଅଙ୍ଗବଙ୍ଗ କଳିଙ୍ଗ ତିନି ।
ସୁହ୍ମ ପୁଣ୍ଡ୍ର ଯେ ଉଡ୍ର ଘେନି ॥୧୬
ଆପଣା ନାମେ ରାଜ୍ୟ କରି ।
ସୁଖେ ପାଳିଲେ ବସୁନ୍ଧରୀ ॥୧୭
ଏ ଷଡ଼ଦେଶେ ହୋଇ ରାଜା ।
ଧର୍ମେ ପାଳିଲେ ଜନପ୍ରଜା ॥୧୮
ଅଙ୍ଗ ତନୟ ଖନପାନ ।
ଦିବିରଥ ତା'ର ନନ୍ଦନ ॥୧୯
ଧର୍ମରଥ ଯେ ତା'ର ସୁତ ।
ତା' ତହୁଁ ଜନ୍ମ ଚିତ୍ରରଥ ॥୨୦
ସେ ଚିତ୍ରରଥ ବଂଶହୀନ ।
ରୋମପାଦ ତା' ଖ୍ୟାତ ନାମ ॥୨୧
ଦଶରଥର ସଖା ସେହି ।
ଅପୁତ୍ର ତା'ର ବଂଶ ଚାହିଁ ॥୨୨
ଶାନ୍ତା କନ୍ୟାକୁ ଦେଲା ନେଇ ।
ଅତି ଆନନ୍ଦେ ତୋଷ ହୋଇ ॥୨୩
ସେ ତା'କୁ ଋଷ୍ୟଶୃଙ୍ଗ ତୁଲେ ।
ବେଦବିଧାନେ ବିଭା ଦେଲେ ॥୨୪
ପୂର୍ବେ ସେ ରୋମପାଦ ଦେଶେ ।
ତା' ଦେଶେ ଇନ୍ଦ୍ର ନ ବରଷେ ॥୨୫

ମନ୍ତ୍ରୀ ବଚନେ ଜ୍ଞାନ ପାଇ ।
ହରିଣୀସୁତକୁ ଅଣାଇ ॥୨୬
ରାଜା ଆଦେଶେ ବେଶ୍ୟାଗଣ ।
ଗଲେ ସେ ମୁନି ତପୋବନ ॥୨୭
ତାହାଙ୍କ ନୃତ୍ୟବାଦ୍ୟ ଗୀତେ ।
ବିଭ୍ରମ ଜନ୍ମେ ଋଷି ଚିତ୍ତେ ॥୨୮
ଗଣିକା ନୃତ୍ୟଗୀତ ବଳେ ।
ଚିତ୍ତ ମଜ୍ଜିଲା କାମଭୋଳେ ॥୨୯
ଇନ୍ଦ୍ର ନିମନ୍ତେ ଯଜ୍ଞ ପୁଣ ।
ସେ ଋଷି କଲେ ନାନା କର୍ମ ॥୩୦
ଏମନ୍ତେ ଇନ୍ଦ୍ର ବରଷିଲା ।
ରାଜାର ସନ୍ତତି ହୋଇଲା ॥୩୧
ସନ୍ତାନ ହୀନ ଦଶରଥ ।
ତା'ର ସକାଶୁଁ ପୁତ୍ରପ୍ରାପ୍ତ ॥୩୨
ରୋମପାଦର ଯେଉଁ ସୁତ ।
ସେ ଚତୁରଙ୍ଗ ନାମେ ଖ୍ୟାତ ॥୩୩
ତା' ପୁତ୍ର ପୃଥୁଳାକ୍ଷ ହେଲା ।
ତାହାର ବୃହଦ୍ରଥ ବଳା ॥୩୪
ଆବର ବୃହଦ୍ଭାନୁ ନାମ ।
ତୃତୀୟେ ପୁଣି ବୃହତ୍କର୍ମ ॥୩୫
ବୃହଦ୍ରଥରୁ ବୃହନ୍ମନ ।
ତା' ପୁତ୍ର ଜୟଦ୍ରଥ ନାମ ॥୩୬
ବିଜୟ ତାହାର କୁମର ।
ତହୁଁ ଜନ୍ମିଲା ଧୃତିବୀର ॥୩୭
ତା'ର କୁମର ଧୃତବ୍ରତ ।
ସତ୍କର୍ମା ହେଲା ତା'ର ସୁତ ॥୩୮

Dr. Sudhanshu Sekhar Mishra

ଅଧିରଥ ତା'ର ନନ୍ଦନ ।
ବନେ ଭ୍ରମୁଁ ସେ ଏକଦିନ ॥୩୯
ଗଙ୍ଗାର ତୀରେ କ୍ରିଡ଼ାକାଳେ ।
ଦେଖେ ମଞ୍ଜୁଷା ଭାସେ ଜଳେ ॥୪୦
ମଞ୍ଜୁଷା ମଧ୍ୟେ ଶିଶୁ ଦେଖି ।
ରାଜା ହୋଇଲା ଅତି ସୁଖୀ ॥୪୧
ସେ ଶିଶୁ କୁନ୍ତୀ ଗର୍ଭଜାତ ।
କୁନ୍ତୀ ତାହାକୁ କଲା ତ୍ୟକ୍ତ ॥୪୨
ସେ ରାଜା ନିଃସନ୍ତାନ ଥିଲା ।
ଶିଶୁପୁତ୍ରକୁ ସେ ପାଳିଲା ॥୪୩
କନ୍ୟା କାଳରେ ଜନ୍ମିଥିଲା ।
କାନୀନ ସଞ୍ଜ୍ଞା ତେଣୁ ହେଲା ॥୪୪
ସେ ଅଧିରଥର ନନ୍ଦନ ।
ତାହାର ନାମ ହେଲା କର୍ଣ୍ଣ ॥୪୫
ତାହାର ବୃଷସେନ ସୁତ ।
ଏବେ ତୁ ଶୁଣ ନରନାଥ ॥୪୬
ଏବେ ତୁ ଦ୍ରୁହ୍ୟୁବଂଶ ଶୁଣ ।
ବଭ୍ରୁ ଯେ ତାହାର ନନ୍ଦନ ॥୪୭
ତା'ର ତନୟ ସେତୁ ନାମ ।
ଆରବ୍ଧ ତାହାର ନନ୍ଦନ ॥୪୮
ତାହାର ପୁତ୍ର ଯେ ଗାନ୍ଧାର ।
ଧର୍ମ ଯେ କୁମର ତାହାର ॥୪୯
ଧର୍ମର ପୁତ୍ର ନାମ ଧୃତ ।
ଦୁର୍ମନା ତାହାର ଯେ ପୁତ୍ର ॥୫୦
ତାହାର ପୁତ୍ର ଯେ ପ୍ରଚେତ ।
ହେଲେ ତାହାର ଶତେ ପୁତ୍ର ॥୫୧
ଉତ୍ତରେ ସେ ନାନା ଦେଶରେ ।
ରହିଲେ ମ୍ଳେଚ୍ଛ ଅଧିକାରେ ॥୫୨
ତୁର୍ବସୁ ତହୁଁ ବହ୍ନି ଜାତ ।
ଭର୍ଗ ତାହାର ହେଲା ସୁତ ॥୫୩
ତା'ର ପୁତ୍ର ଯେ ଭାନୁମାନ ।
ତ୍ରିଭାନୁ ତାହାର ନନ୍ଦନ ॥୫୪
କରନ୍ଧମ ଯେ ତା'ର ସୁତ ।
ତାହାର ତନୟ ମରୁତ ॥୫୫
ପୁରୁବଂଶରେ ହୋଇ ଜାତ ।
ଯା' ନାମ ଅଟଇ ଦୁଷ୍ମନ୍ତ ॥୫୬
ମରୁତ ତା'କୁ କଲା ପୁତ୍ର ।
ସେପୁଣି ରାଜ୍ୟ-ଲୋଭେ ଗ୍ରସ୍ତ ॥୫୭
ପୁଣି ସେ ବଂଶେ ପ୍ରବେଶିଲା ।
ଉଭୟ ରାଜ୍ୟ ଭୋଗ କଲା ॥୫୮
ଏମନ୍ତେ ଅନୁବଂଶ ଯେତେ ।
କହିଲି ବଂଶାନୁଚରିତେ ॥୫୯
ଯହିଁ ଅଶେଷ ନୃପଗଣ ।
ଏବେ ହୋ ଯଦୁବଂଶ ଶୁଣ ॥୬୦
ଯେ ବଂଶେ ପ୍ରଭୁ ଭାବଗ୍ରାହୀ ।
ଜନ୍ମିଲେ କୃଷ୍ଣ ଦେହ ବହି ॥୬୧
ଏ ବଂଶ ମହିମା ଶୁଣନ୍ତେ ।
ପାପ ନରହେ ହୃଦଗତେ ॥୬୨
ଯଦୁରାଜାର ଚାରି ସୁତେ ।
ଶୁଣ ତାହାଙ୍କ ନାମ ଯେତେ ॥୬୩
ସହସ୍ରଜିତ ରିପୁ ବେନି ।
ଆବର କ୍ରୋଷ୍ଟା ନଳ ଘେନି ॥୬୪
ସହସ୍ରଜିତ ତହୁଁ ଜାତ ।
ଶତଜିତ ନାମରେ ସୁତ ॥୬୫
ସହସ୍ରଜିତ ସୁତ ତିନି ।
ରୂପ ଲାବଣ୍ୟ ଗୁଣ ଘେନି ॥୬୬
ଯେ ମହାହୟ ବେଣୁହୟ ।
ହୈହୟ ନାମେ ମହାଶୟ ॥୬୭
ଧର୍ମ ଯେ ହୈହୟର ସୁତ ।
ନେତ୍ର ତାହାର ବୀର୍ଯ୍ୟେ ଜାତ ॥୬୮
କୁନ୍ତି ତାହାର ପୁତ୍ର ହୋଏ ।
ସୋହଞ୍ଜି କୁନ୍ତିର ତନୟେ ॥୬୯
ତାହାର ପୁତ୍ର ମହୀଷ୍ମାନ ।
ତା'ର କୁମର ଭଦ୍ରସେନ ॥୭୦
ଭଦ୍ରସେନର ତହୁଁ ଜନ୍ମି ।
ଦୁର୍ମଦ ଧନକ ଏ ବେନି ॥୭୧
କୃତାଗ୍ନି କୃତବୀର୍ଯ୍ୟେ ବେନି ।
କୃତୌଜା କୃତବର୍ମା ଘେନି ॥୭୨
ଧନକ ପୁତ୍ର ଏ ଜଗତେ ।
ବିଷ୍ଣୁର ତେଜ ଅପ୍ରମିତେ ॥୭୩
କୃତବୀର୍ଯ୍ୟ ସୁତ ଅର୍ଜ୍ଜୁନ ।
ସପତଦ୍ୱୀପେ ସେ ରାଜନ ॥୭୪
ଦତ୍ତାତ୍ରେୟଙ୍କୁ ସେବା କରି ।
ଯୋଗେ ହୋଇଲା ଅଧିକାରୀ ॥୭୫
ସେ କାର୍ତ୍ତବୀର୍ଯ୍ୟର ମହିମା ।
କେ କହିପାରେ ଗୁଣସୀମା ॥୭୬
ହୈହୟ ବଂଶେ ରାଜା ଯେତେ ।
ତପସ୍ୟା ଯଜ୍ଞ ଦାନ ମତେ ॥୭୭
ନାନା ପ୍ରକାରେ ଯେତେ ସାଧି ।
ଅଣିମା ଆଦି ଅଷ୍ଟନିଧି ॥୭୮
ପଞ୍ଚାଶୀ ସହସ୍ର ବରଷ ।
ସମ୍ପଦ ଭୁଞ୍ଜିଲା ଅଶେଷ ॥୭୯
ତାହାର ସମ ଏ ସଂସାରେ ।
କେହି ନୋହିଲେ ଅଧିକାରେ ॥୮୦
ତାହାର ସହସ୍ରେ ନନ୍ଦନ ।
ଯୁଦ୍ଧେ ସେ ହୋଇଲେ ନିଧନ ॥୮୧
ତା' ମଧ୍ୟେ ପାଞ୍ଚ ଯେ କୁମର ।
କ୍ଷତ୍ରିୟ ବଳେ ବଳୀୟାର ॥୮୨
ଜୟଧ୍ୱଜ ଯେ ଶୂରସେନ ।
ବୃଷଭ ମଧୁ ବିଦ୍ୟମାନ ॥୮୩
ଉର୍ଜ୍ଜିତ ଅଟଇ ପଞ୍ଚମେ ।
ଅଇରୀ କମ୍ପନ୍ତି ଯା' ନାମେ ॥୮୪
ଜୟଧ୍ୱଜର ତହୁଁ ଜାତ ।
ନାମ ତା' ତାଳଜଂଘ ଖ୍ୟାତ ॥୮୫
ଶତେ ନନ୍ଦନ ତା'ର ହୋଏ ।
ଯା' ନାମେ ରିପୁ କରେ ଭୟେ ॥୮୬
ଔର୍ବ ଋଷିଙ୍କ ବ୍ରହ୍ମତେଜେ ।
କ୍ଷତ୍ରିୟ ପଣେ ତା'ଙ୍କ ରାଜ୍ୟେ ॥୮୭
ସଗର ତା'କୁ କଲେ ହତ ।
ଏ ଯେ କ୍ଷତ୍ରିୟ ବୀର ସୁତ ॥୮୮
ତାହାଙ୍କ ମଧ୍ୟେ ଜ୍ୟେଷ୍ଠସୁତ ।
ତାହାର ନାମ ବୀତିହୋତ୍ର ॥୮୯
ମଧୁର ଶତେ ପୁତ୍ର ହୋଇ ।
ବୃଷ୍ଣି ତା' ମଧ୍ୟେ ଜ୍ୟେଷ୍ଠ ଥାଇ ॥୯୦
ମାଧବ ବୃଷ୍ଣି ଯେ ଯାଦବ ।
ଏଣୁ ଏ ଘୋଷନ୍ତି ସାଧବ ॥୯୧
ଯଦୁପୁତ୍ର କ୍ରୋଷ୍ଟାର ବୀର୍ଯ୍ୟେ ।
ବୃଜିନବାନ ଯେ ଉପୁଜେ ॥୯୨

Dr. Sudhanshu Sekhar Mishra

ତା' ପୁତ୍ର ସ୍ୱାହିତ ହୋଇଲା ।
ରୁଶେକୁ ଅଟେ ତାର ବଳା ॥୯୩
ତା'ର କୁମର ଚିତ୍ରରଥ ।
ତାହାର ଶଶବିନ୍ଦୁ ସୁତ ॥୯୪
ସେ ମହାଯୋଗୀ ମହାଭୁଜ ।
ଭୁବନଜିତ ତା'ର ତେଜ ॥୯୫
ଦଶସହସ୍ର ତା'ର ନାରୀ ।
ଅଶେଷ ଯଶେ ଅଧିକାରୀ ॥୯୬
ନାରୀ ଗୋଟିକେ ଲକ୍ଷେ ସୁତ ।
ଶଶବିନ୍ଦୁର ହେଲେ ଜାତ ॥୯୭
ଏମନ୍ତେ ଦଶସସ୍ର ଲକ୍ଷ ।
କୁମରେ ହୋଇଲେ ପ୍ରତ୍ୟକ୍ଷ ॥୯୮
ତାହାଙ୍କ ମଧ୍ୟେ ଷଡ଼ସୁତେ ।
ପୃଥୁଶ୍ରବାଦି ଏ ଜଗତେ ॥୯୯
ଧର୍ମ ଯେ ପୃଥୁଶ୍ରବା ବଳା ।
ତହୁଁ ଉଶନା ଜନମିଲା ॥୧୦୦
ଅଶ୍ୱମେଧରେ ସେ ଦୀକ୍ଷିତ ।
ହୋଇ କଲାକ ଯଜ୍ଞ ଶତ ॥୧୦୧
ରୁଚକ ନାମେ ତା'ର ସୁତ ।
ତା'ର କୁମର ପାଞ୍ଚ ଜାତ ॥୧୦୨
ରୁକ୍ମ ରୁକ୍ମେଷୁ ପୁରୁଜିତ ।
ପୃଥୁ ଜ୍ୟାମଘ ପାଞ୍ଚସୁତ ॥୧୦୩
ଜ୍ୟାମଘ ପତ୍ନୀ ଶୈବ୍ୟା ହୋଇ ।
କେବେହେଁ ପୁତ୍ର ନ ଲଭଇ ॥୧୦୪
ଜ୍ୟାମଘ ତା'କୁ କରି ଭୟ ।
ନ କଲା ଦାର ପରିଗ୍ରହ ॥୧୦୫
ସେ ରାଜା ଦିଗବିଜେ କରି ।
ଅନେକ ରିପୁବଳ ମାରି ॥୧୦୬
ନାନା ପ୍ରକାରେ ରିପୁ ଜିଣି ।
ଅନେକ ଧନରତ୍ନ ଆଣି ॥୧୦୭
କନ୍ୟାଏ ପାଇ ରୂପରାଶି ।
ତାହାଙ୍କ ସଙ୍ଗେ ରଥେ ବସି ॥୧୦୮
ମିଳିଲା ଆପଣା ଭୁବନେ ।
ଅନେକ ବାଦ୍ୟ ନାଦ ସ୍ୱନେ ॥୧୦୯
ଶୈବ୍ୟା ନାମେଣ ତା'ର ରାଣୀ ।
ଉତ୍ସବ ବାଦ୍ୟନାଦ ଶୁଣି ॥୧୧୦
ମନ୍ଦିରୁ ହୋଇଲା ବାହାର ।
ଭୂଷିତ ନାନା ଅଳଙ୍କାର ॥୧୧୧
ରଥକୁ ଚାହେଁ ବେନି ଡ଼ୋଳେ ।
କନ୍ୟାଏ ଅଛି ତା'ର କୋଳେ ॥୧୧୨
ଅତି ସୁନ୍ଦର ତା'ର ତନୁ ।
ଦେଖି ପାଇଲା ହୃଦେ ମନ୍ୟୁ ॥୧୧୩
ବୋଇଲା ରାଜାମୁଖ ଚାହିଁ ।
ଏ କନ୍ୟା ପାଇଲୁ ତୁ କାହିଁ ॥୧୧୪
ଶୈବ୍ୟା ବଚନ ଶୁଣି ରାୟେ ।
ହୃଦେ ପାଇଲା ମହାଭୟେ ॥୧୧୫
ବୋଇଲେ ମଧୁର ଉତ୍ତର ।
ଏ କନ୍ୟା ବଧୂ ଯେ ତୋହର ॥୧୧୬
ଶୈବ୍ୟା ବୋଲଇ କୋପ ବହି ।
ଏ ଜନ୍ମେ ତୋ'ର ପୁତ୍ର ନାହିଁ ॥୧୧୭
ଆଣିଲୁ ସପତଣୀ ଅର୍ଥେ ।
ଏବେ ତୁ ଭଣ୍ଡୁ ମୋ' ଅଗ୍ରତେ ॥୧୧୮
ଶୁଣି ସେ ଶୈବ୍ୟାର ବଚନ ।
ମଧୁରେ ବୋଇଲେ ରାଜନ ॥୧୧୯
ଏବେ ଯେ ପୁତ୍ର ଉପୁଜିବ ।
ଏ କନ୍ୟା ସେ ବିଭା ହୋଇବ ॥୧୨୦
ଅନେକ ହୋଇବ ମୋ' ବଂଶ ।
ତା ଶୁଣି ଶୈବ୍ୟା ହେଲା ତୋଷ ॥୧୨୧
ଭୁବନେ କଲା ସେ ପ୍ରବେଶ ।
ଆନନ୍ଦେ ହୋଇ ହସହସ ॥୧୨୨
ସନ୍ତୋଷ ହେଲେ ପିତୃଦେବେ ।
ପୁତ୍ର ହୋଇଲା ଶୈବ୍ୟାଗର୍ଭେ ॥୧୨୩
ସୁନ୍ଦରେ ଜଗତ ମୋହିଲା ।
ବିଦର୍ଭ ତା'କୁ ନାମ ଦେଲା ॥୧୨୪
ସେ କନ୍ୟା ପୁତ୍ରେ ବିଭାକଲା ।
ଶୁଣ ହୋ ଗୋବିନ୍ଦର ଲୀଳା ॥୧୨୫
ସୁଜନ ଜନେ ଏଣେ ଭାବ ।
ଏ ଘୋର ସଂସାରୁ ତରିବ ॥୧୨୬
ବୋଲଇ ଦାସ ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୧୨୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ତ୍ରୟୋବିଂଶୋଽଧ୍ୟାୟଃ ॥

## ଚତୁର୍ବିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ କୁରୁବୀର ।
ବିଦର୍ଭ ଜ୍ୟାମଘ କୁମର ॥୧
ଜ୍ୟାମଘ ରାଜକୁଳ ଜିଣି ।
ଯେ କନ୍ୟା ପୁରେ ଥିଲା ଆଣି ॥୨
ସେ କନ୍ୟା ବିଦର୍ଭେ ବରିଲା ।
ତା' ଗର୍ଭେ ପୁତ୍ର ଉପୁଜିଲା ॥୩
କୁଶ ଯେ କ୍ରଥ ଏହୁ ବେନି ।
ତୃତୀୟେ ରୋମପାଦ ଘେନି ॥୪
ବଭ୍ରୁ ଯେ ରୋମପାଦ ସୁତ ।
କୃତି ତାହାର ବୀର୍ଯ୍ୟେ ଜାତ ॥୫
ଉଶିକ ତାହାର ନନ୍ଦନ ।
ତା' ତାହୁଁ ଚେଦି ଉଦ୍‌ପନ୍ନ ॥୬
ଚୈଦ୍ୟାଦି ବଂଶେ ଜାତ ହୋଇ ।
ସ୍ୱଧର୍ମେ ପାଳିଲେ ସେ ମହୀ ॥୭
କ୍ରଥର ପୁତ୍ର କୁନ୍ତି ନାମ ।
ଧୃଷ୍ଟି ଯେ ତାହାର ନନ୍ଦନ ॥୮
ନିବୃତି ତା'ର ପୁତ୍ର ହୋଏ ।
ଦଶାର୍ହନାମେ ତା'ର ପୋଏ ॥୯
ବ୍ୟୋମ ଯେ ତାହାର ସନ୍ତତି ।
ତହୁଁ ଜିମୂତ ଉତପତି ॥୧୦
ବିକୃତି ତାହାର ନନ୍ଦନ ।
ତହୁଁ ଭୀମରଥ ଜନମ ॥୧୧

Dr. Sudhanshu Sekhar Mishra

ତାହାର ସୁତ ନର୍ବରଥ ।
ତହୁଁ ଦଶରଥ ସମ୍ଭୂତ ॥୧୨
ଶକୁନି ତାହାର ତନୟେ ।
କରନ୍ତି ପୁତ୍ର ତା'ର ହୋଏ ॥୧୩
ତା'ର ତନୟ ଦେବରାତ ।
ଯା'ର ମହିମା ଅପ୍ରମିତ ॥୧୪
ତା' ସୁତ ଦେବକ୍ଷତ୍ର ନାମ ।
ସୁନ୍ଦର ପଣେ ଗୁଣଧାମ ॥୧୫
ମଧୁ ତାହାର ବଂଶେ ଜାତ ।
କୁରୁବଂଶ ଯେ ତା'ର ସୁତ ॥୧୬
ଅନୁ ତାହାର ବୀର୍ଯ୍ୟେ ଜାତ ।
ତାହାର ସୁତ ପୁରୁହୋତ୍ର ॥୧୭
ଆୟୁ ଯେ ତା'ର ପୁତ୍ରମାନ ।
ସାତ୍ୱତ ତା'ଠାରୁ ଜନମ ॥୧୮
ତାହାର ହେଲେ ପୁତ୍ର ସାତ ।
ଶୁଣ କହିବା ପରୀକ୍ଷିତ ॥୧୯
ଭଜମାନ ଭଜି ଦିବ୍ୟକ ।
ବୃଷ୍ଣି ଦେବା ବୃଧ ଅନ୍ଧକ ॥୨୦
ମହାଭୋଜ ଏ ସପ୍ତାନାମ ।
ଏକୁ ଅନେକ ଗୁଣଧାମ ॥୨୧
ଭଜମାନର ପତ୍ନୀ ଦୁଇ ।
ଆଦ୍ୟରେ ତିନି ସୁତ ହୋଇ ॥୨୨
ନିମ୍ଳୋଚି ଧୃଷ୍ଟି ଯେ କିଙ୍କିଣ ।
ପରୀକ୍ଷ କହୁଁ ତୋତେ ଶୁଣ ॥୨୩
ଦ୍ୱିତୀୟ ପତ୍ନୀ ଗର୍ଭେ ଜାତ ।
ହୋଇଲେ ତା'ର ତିନିସୁତ ॥୨୪
ଶତ୍ରାଜିତ ସହସ୍ରାଜିତ ।
ଅୟୁତାଜିତ ତିନିଭ୍ରାତ ॥୨୫
ବଭ୍ରୁ ଯେ ଦେବାବୃଧ ସୁତ ।
ଜନେ ଗାଆନ୍ତି ତା' ଚରିତ ॥୨୬
ଦୂରରୁ ଯେତେ ଗୁଣ ଗୁଣି ।
ଅଧିକ ଦେଖୁଁ ପରିମାଣି ॥୨୭
ମନୁଷ୍ୟ ମଧ୍ୟେ ବଭ୍ରୁ ଶ୍ରେଷ୍ଠ ।
ଦେବାବୃଧ ଦେବଙ୍କ ଇଷ୍ଟ ॥୨୮
ସେ ଦୁଇ ପୁରୁଷଙ୍କ କୁଳେ ।
ଯେତେ ତରିଲେ ଭବଜଳେ ॥୨୯

ଷଡ଼ସହସ୍ର ପଞ୍ଚସଷ୍ଟି ।
ପୁଣି ଅଧିକ ଆଠଗୋଟି ॥୩୦
ଘୋର ସଂସାରୁ ତରିଗଲେ ।
ନିଶ୍ଚଳେ ମିଳିଲେ କୈବଲ୍ୟେ ॥୩୧
ସାତ୍ୱତ ବଂଶେ ଉତପନ୍ନ ।
ମହାଭୋଜ ତା' ଅଟେ ନାମ ॥୩୨
ଅତି ଧାର୍ମିକ ମହାଭୋଜ ।
ଅନେକ କାଳ କଲା ରାଜ୍ୟ ॥୩୩
ଯେତେ ଉପୁଜିଲେ ତା' ବଂଶେ ।
ଧରିଲେ ଭୋଜ ନାମକୁ ସେ ॥୩୪
ବୃଷ୍ଣିର ସୁମିତ୍ର ନନ୍ଦନ ।
ଅପରେ ଯୁଧାଜିତ ନାମ ॥୩୫
ତା'ର ସନ୍ତତି ହୋଏ ଶିନି ।
ଅନମିତ୍ରକୁ ଘେନି ବେନି ॥୩୬
ଅନମିତ୍ରର ପୁତ୍ର ନିମ୍ନ ।
ତା' ଅଂଶେ ଦୁଇପୁତ୍ର ଜନ୍ମ ॥୩୭
ପ୍ରସେନ ଶତ୍ରାଜିତ ନାମ ।
ହୋଇଲେ ତା'ର ଗୁଣଧାମ ॥୩୮
ହେ ନୃପ ଶୁଣ ମନଦେଇ ।
ଏବେ ଶିନିର ବଂଶ କହି ॥୩୯
ଶିନି ଯେ ଅନମିତ୍ର ସୁତ ।
ସତ୍ୟକ ତା'ର ବୀର୍ଯ୍ୟେ ଜାତ ॥୪୦
ତାହାର ପୁତ୍ର ଯୁଯୁଧାନ ।
ଜୟ ତାହାର ପୁତ୍ର ନାମ ॥୪୧
କୁଣି ତାହାର ତହୁଁ ଜାତ ।
ତାହାର ଯୁଗନ୍ଧର ସୁତ ॥୪୨
ଅପରେ ବୃଷ୍ଣିପୁତ୍ର ଦୁଇ ।
ଜନ୍ମିଲେ ବିଷ୍ଣୁତେଜ ବହି ॥୪୩
ଶ୍ୱଫଲ୍କ ଚିତ୍ରରଥ ବେନି ।
ଗାନ୍ଦିନୀ ଶ୍ୱଫଲ୍କ ଭାବିନୀ ॥୪୪
ଦ୍ୱାଦଶପୁତ୍ର ତା'ର ଘରେ ।
ଜନ୍ମିଲେ ଅତି ପୁଣ୍ୟତରେ ॥୪୫
ଅକ୍ରୁର ତହିଁ ଜ୍ୟେଷ୍ଠ ଜାଣ ।
ଶୁଣ ହୋ ତାହାଙ୍କର ନାମ ॥୪୬
ଆସଙ୍ଗ ସାରମେୟ ଦୁଇ ।
ମୃଦୁର ମୃଦୁଦ୍ୱି ଯେ ହୋଇ ॥୪୭

ଗିରି ଧର୍ମବୃଦ୍ଧ ସୁକର୍ମ ।
କ୍ଷତ୍ରୋପେକ୍ଷ ଅରିମର୍ଦ୍ଦନ ॥୪୮
ଗନ୍ଧମାଦ ଯେ ଶତ୍ରୁଘନ ।
ଦ୍ୱାଦଶେ ପ୍ରତିବାହୁନାମ ॥୪୯
ଆବର ଏକ କନ୍ୟା ଥିଲା ।
ସୁଚୀରା ନାମ ତା'ର ହେଲା ॥୫୦
ଅକ୍ରୁର ପୁତ୍ର ହୋଏ ବେନି ।
ଦେବ୍ୱା ଉପଦେବ ଘେନି ॥୫୧
ଚିତ୍ରରଥର ଯେ ଆତ୍ମଜ ।
ତିନି ଭୁବନେ ତା'ର ତେଜ ॥୫୨
ପୃଥୁ ଯେ ବିଦୁରଥ ଆଦି ।
ଏଣେ ବୃଷ୍ଣିବଂଶ ସମ୍ପାଦି ॥୫୩
କୁକୁର ଭଜମାନ ବେନି ।
ଶୁଚି କମ୍ବଳବର୍ହି ଘେନି ॥୫୪
ଏ ଚାରି ଅନ୍ଧକର ସୁତ ।
ଏବେ ହୋ ଶୁଣ ପରୀକ୍ଷିତ ॥୫୫
କୁକୁରସୁତ ବହ୍ନି ନାମା ।
ତାହାର ତନୟ ବିଲୋମା ॥୫୬
କପୋତରୋମା ତା'ର ସୁତ ।
ତା'ପୁତ୍ର ଅନୁ ନାମେ ଖ୍ୟାତ ॥୫୭
ତୁମ୍ବୁରୁ ଅଟେ ସଖା ତା'ର ।
ଅନ୍ଧକ ଅନୁର କୁମର ॥୫୮
ଦୁନ୍ଦୁଭି ଅନ୍ଧକର ସୁତ ।
ଅରିଦ୍ୟୋତ ଯେ ତା' ଅପତ୍ୟ ॥୫୯
ଅରିଦ୍ୟୋତ ଅଂଶେ ଉତ୍ପନ୍ନ ।
ପୁନର୍ବସୁ ନାମେ ସନ୍ତାନ ॥୬୦
ତାହାର ପୁତ୍ର କନ୍ୟା ହୋଏ ।
ଆହୁକ ଆହୁକୀ ବୋଲାଏ ॥୬୧
ଦେବକ ଉଗ୍ରସେନ ଦୁଇ ।
ଆହୁକ ତହୁଁ ଜାତ ହୋଇ ॥୬୨
ଦେବକ ପୁତ୍ର ଚାରି ହୋଏ ।
ନାମ ତାହାଙ୍କ ଶୁଣ ରାୟେ ॥୬୩
ଉପଦେବ ଯେ ଦେବବାନ ।
ସୁଦେବ ଯେ ଦେବବର୍ଦ୍ଧନ ॥୬୪
ପୁଣ ହୋଇଲେ କନ୍ୟା ସାତ ।
ଯା' ନାମ ଜଗତେ ବିଖ୍ୟାତ ॥୬୫

Dr. Sudhanshu Sekhar Mishra

ପ୍ରଥମେ ଧୃତଦେବା ହେଲା ।
ପରେ ଶାନ୍ତିଦେବା ଜନ୍ମିଲା ।।୬୬
ଉପଦେବା ଶ୍ରୀଦେବା ବେନି ।
ଦେବରକ୍ଷିତା କନ୍ୟା ଘେନି ।।୬୭
ସହଦେବା ଦେବକୀ ତୁଲେ ।
ଏମନ୍ତ ସାତକନ୍ୟା ହେଲେ ।।୬୮
ଦେବକ ସାତକନ୍ୟା ନେଇ ।
ବସୁଦେବଙ୍କୁ ବିଭା ଦେଇ ।।୬୯
ଏବେ ହୋ ଶୁଣ ନରନାଥ ।
ଉଗ୍ରସେନର ଯେତେ ସୁତ ।।୭୦
କଂସ ସୁନାମା ନ୍ୟଗ୍ରୋଧକ ।
କଙ୍କ ଶଙ୍କୁ ବେନି ବାଳକ ।।୭୧
ସୁହୂ ଯେ ସୃଷ୍ଟି ରାଷ୍ଟ୍ରପାଳ ।
ତୁଷ୍ଟି ଏ ଉଗ୍ରସେନ ବାଳ ।।୭୨
ଆବର ହେଲେ କନ୍ୟାପାଞ୍ଚ ।
ସୁନ୍ଦର ସୁରୂପ ସୁସଞ୍ଚ ।।୭୩
କଂସା ଯେ କଙ୍କବତୀ କଙ୍କା ।
ସୂରଭୂ ଯେ ରାଷ୍ଟ୍ରପାଳିକା ।।୭୪
ଏ କନ୍ୟା ବରି ବେଦମତେ ।
ବସୁଦେବର ଭାଇ ଯେତେ ।।୭୫
ବିବାହ କଲେ ଶୁଭବେଳେ ।
ଉଚିତେ ଗୃହକର୍ମ କଲେ ।।୭୬
ବିଦୁରଥର ଶୂର ସୁତ ।
ଭଜମାନ ତା' ବୀର୍ଯ୍ୟେ ଜାତ ।।୭୭
ଶିନି ତା'ର ହୁଏ ଆତ୍ମଜ ।
ଶିନିର ପୁତ୍ର ସ୍ୱୟଂ ଭୋଜ ।।୭୮
ହୃଦୀକ ତାହାର ନନ୍ଦନ ।
ତାହାର ତିନିପୁତ୍ର ଜାଣ ।।୭୯
ଦେବବାହୁ ଯେ ଶତଧନୁ ।
ଆବର କୃତବର୍ମା ସୂନୁ ।।୮୦
ଦେବମୀଢ଼ ଯେ ଶୂର ସୁତ ।
ତା' ପତ୍ନୀ ମାରିଷା ବିଖ୍ୟାତ ।।୮୧
ସେ ଦେବମୀଢ଼ ତା'ର ଗର୍ଭେ ।
ଦଶ ସନ୍ତତି କଲା ଭାବେ ।।୮୨
ବସୁଦେବ ଦେବଭାଗକ ।
ଦେବଶ୍ରବସ ଯେ ଆନକ ।।୮୩

ସୃଞ୍ଜୟ ଶ୍ୟାମକ ଯେ କଙ୍କ ।
ଶମୀକ ବତ୍ସକ ଯେ ବୃକ ।।୮୪
ବସୁଦେବର ଜନ୍ମ କାଳେ ।
ବାଦ୍ୟ ଶୁଭିଲା ଅନ୍ତରାଳେ ।।୮୫
ସ୍ୱଭାବେ ଆନକ-ଦୁନ୍ଦୁଭି ।
ଦିଶ ଆକାଶ ପୂରି ଶୁଭି ।।୮୬
ସେ ଯେଣୁ ବିଷ୍ଣୁର ନିଧାନ ।
ଆନକଦୁନ୍ଦୁଭି ତା' ନାମ ।।୮୭
ପୁଣି ହୋଇଲେ କନ୍ୟା ପାଞ୍ଚ ।
ସୁନ୍ଦର ସୁରୂପ ସୁସଞ୍ଚ ।।୮୮
ଯେ ପୃଥା ଆଉ ଶ୍ରୁତ ଦେବା ।
ଶ୍ରୁତକୀର୍ତ୍ତି ଯେ ଶ୍ରୁତଶ୍ରବା ।।୮୯
ରାଜାଧିଦେବୀଙ୍କି ଯେ ଘେନି ।
ଏ ପାଞ୍ଚ ବସୁଦେବ ଭଗ୍ନୀ ।।୯୦
ପୃଥା କନ୍ୟାକୁ ତା'ର ତାତ ।
କୁନ୍ତି ରାଜନେ କଲା ଦତ୍ତ ।।୯୧
ଯେଣୁ ତା' ନଥିଲା ସନ୍ତତି ।
ଏଣୁ ସେ କନ୍ୟା ନାମ କୁନ୍ତୀ ।।୯୨
ଦୁର୍ବାସା ମୁନି ଏକଦିନେ ।
ମିଳିଲେ ରାଜା ସନ୍ନିଧାନେ ।।୯୩
ପୃଥା ତାହାଙ୍କୁ ସେବା କଲା ।
ଦେବହୁତି ବିଦ୍ୟା ଲଭିଲା ।।୯୪
ବିଦ୍ୟାର ପରୀକ୍ଷା ନିମନ୍ତେ ।
ସୂର୍ଯ୍ୟଙ୍କୁ ରାଇଲା ଏକାନ୍ତେ ।।୯୫
ସେ ସୂର୍ଯ୍ୟଦେବ ତତ୍କ୍ଷଣ ।
ମିଳିଲେ ପୃଥା ସନ୍ନିଧାନ ।।୯୬
ଦେଖି ସେ ବିସ୍ମୟ ହୋଇଲା ।
ବିନୟ ବଚନ କହିଲା ।।୯୭
ହେ ଦେବ ପରୀକ୍ଷା ନିମନ୍ତେ ।
ତୁମ୍ଭଙ୍କୁ ଚିନ୍ତିଲି ମୁଁ ଚିତ୍ତେ ।।୯୮
ବିଦ୍ୟା ପ୍ରୟୋଗେ ହୋଇ ବଶ ।
ତୁମ୍ଭେ ମିଳିଲ ମୋ'ର ପାଶ ।।୯୯
ହେ ପ୍ରଭୁ ଦୋଷ କ୍ଷମାକର ।
ଦାସୀ ମୁଁ ତୁମ୍ଭ ଚରଣର ।।୧୦୦
ମୋ' ମନୋରଥ ହେଲା ପୂର୍ଣ୍ଣ ।
ସ୍ୱସ୍ଥାନେ କରନ୍ତୁ ଗମନ ।।୧୦୧

ତା'ବାକ୍ୟେ ସୂର୍ଯ୍ୟ ତୋଷ ହୋଇ ।
କହନ୍ତି କନ୍ୟା ମୁଖ ଚାହିଁ ।।୧୦୨
ହେ ପୃଥା ଶୁଣ ମୋ' ବଚନ।
ବ୍ୟର୍ଥ ନ ହୁଏ ମୋ' ଦର୍ଶନ ।।୧୦୩
ତୋ'ଠାରେ କରି ଗର୍ଭାଧାନ ।
ଆମ୍ଭେ ଚଳିବୁ ନିଜ ସ୍ଥାନ ।।୧୦୪
ଅବଶ୍ୟ ତୋ' ପୁତ୍ର ହୋଇବ।
ତୋତେ ସେ ଦୋଷ ନ ଲାଗିବ ।।୧୦୫
ଏମନ୍ତେ କଲେ ଗର୍ଭାଧାନ ।
ପୁତ୍ର ହୋଇଲା ତତ୍କ୍ଷଣ ।।୧୦୬
ପୁତ୍ରଶିଶୁକୁ ନିନ୍ଦା ଡରେ ।
ଭସାଇ ଦେଲେ ନଦୀ ଜଳେ।।୧୦୭
ତା' ପରେ ହୋଇଲାକି ଯାହା ।
ଶୁଣ କହିବି ନୃପନାହା ।।୧୦୮
ପାଣ୍ଡୁ ଯେ ତୋ ପ୍ରପିତାମହ ।
ପୃଥାକୁ କଲା ସେ ବିବାହ ।।୧୦୯
କାରୂଷ ବୃଦ୍ଧଶର୍ମା ନାମ ।
ଶ୍ରୁତ ଦେବାକୁ ବରେ ପୁଣ ।।୧୧୦
ବିବାହ କରି ବେଦମତେ ।
ତା'ଗର୍ଭେ ଉପୁଜିଲା ସୁତେ ।।୧୧୧
ତା' ଦେଖି ଡରେ ରିପୁଚକ୍ର ।
ତା' ନାମ ହେଲା ଦନ୍ତବକ୍ର ।।୧୧୨
କୈକେୟ ବଂଶେ ଧୃଷ୍ଟକେତୁ ।
ସେ ପୁଣି ନିଜ ବଂଶ ହେତୁ ।।୧୧୩
ଶ୍ରୁତକୀର୍ତ୍ତିକି ବିଭାକଲା ।
ତା' ପାଞ୍ଚପୁତ୍ର ଉପୁଜିଲା ।।୧୧୪
ସେ ସୁତ ସନ୍ତର୍ଦ୍ଦନ ଆଦି ।
ସ୍ୱଭାବେ ସର୍ବଗୁଣେ ସିଦ୍ଧି ।।୧୧୫
ଆବନ୍ତ୍ୟ ଶୂରସେନ ବଳା ।
ରାଜାଧିଦେବୀ ବିଭାକଲା ।।୧୧୬
ନାମ ତାହାର ଜୟସେନ ।
ତା' ଅଂଶେ ଦୁଇପୁତ୍ର ଜନ୍ମ ।।୧୧୭
ବିନ୍ଦ ଯେ ଅନୁବିନ୍ଦ ବେନି ।
ରାଜାଧିଦେବୀ ତହୁଁ ଜନ୍ମି ।।୧୧୮
ଚେଦି ରାଜନ ଦମଘୋଷ ।
ଶ୍ରୁତଶ୍ରବାକୁ ବରି ତୋଷ ।।୧୧୯

Dr. Sudhanshu Sekhar Mishra

ତା'ର କୁମର ଶିଶୁପାଳ ।
ସେ ବୀର ତେଜେ ଅନର୍ଗଳ ॥୧୨୦
ତାହାର ଜନ୍ମ ତୋତେ ଭାବେ ।
ମୁଁ ତାହା କହିଅଛି ପୂର୍ବେ ॥୧୨୧
ଦେବଭାଗର କଂସା ପତ୍ନୀ ।
ତା' ଗର୍ଭେ ଜାତ ସୁତ ବେନି ॥୧୨୨
ଚିତ୍ରକେତୁ ଯେ ବୃହଦ୍‌ବଳ ।
ତେଜେ ଏ ବେନି ଅନର୍ଗଳ ॥୧୨୩
ଦେବଶ୍ରବାର ବୀର୍ଯ୍ୟେ ଜାତ ।
କଂସାବତୀର ଦୁଇ ସୁତ ॥୧୨୪
ସୁବୀର ଇଷୁମାନ ବେନି ।
ଏମନ୍ତେ ଦୁଇ ପୁତ୍ର ଜନ୍ମି ॥୧୨୫
କଙ୍କ ଔରସେ କଙ୍କା ଗର୍ଭେ ।
ବକ ପ୍ରଥମେ ଜନ୍ମ ଲଭେ ॥୧୨୬
ତା' ପରେ ସତ୍ୟଜିତ୍ ଜନ୍ମି ।
ପୁରୁଜିତକୁ ଘେନି ତିନି ॥୧୨୭
ସୃଞ୍ଜୟ ପୁତ୍ର ବେନି ହୋଏ ।
ବୃଷ ଦୁର୍ମର୍ଷଣ ତନୟେ ॥୧୨୮
ହରିକେଶ ଯେ ହିରଣ୍ୟାକ୍ଷ ।
ଶ୍ୟାମକ ପୁତ୍ର ଯେ ପ୍ରତ୍ୟକ୍ଷ ॥୧୨୯
ବସ୍ତକ ମିଶ୍ରକେଶୀ ଗର୍ଭେ ।
ବୃକାଦି ସନ୍ତାନ ସମ୍ଭବେ ॥୧୩୦
ତକ୍ଷ ପୁଷ୍କରଶାଳ ଆଦି ।
ବୃକର ସନ୍ତାନ ପ୍ରସିଦ୍ଧି ॥୧୩୧
ଶମୀକ ପତ୍ନୀ ସୁଦାମିନୀ ।
ସୁମିତ୍ର ତା' ଗର୍ଭେ ଜନମି ॥୧୩୨
ଅର୍ଜୁନପାଳାଦି ତନୁଜେ ।
ଜନ୍ମିଲେ ଶମୀକର ବୀର୍ଯ୍ୟେ ॥୧୩୩
କର୍ଣ୍ଣିକା ଆନକର ମେଳେ ।
ଋତଧାମକୁ ପ୍ରସବିଲେ ॥୧୩୪
ପୁଣି ଜୟନାମେ ନନ୍ଦନ ।
ଆନକ ଅଂଶେ ଉତ୍ପନ୍ନ ॥୧୩୫
ବସୁଦେବର ଯେତେ ନାରୀ ।
ଶୁଣ ସୁମନେ ଦଣ୍ଡଧାରୀ ॥୧୩୬
ପୌରବୀ ରୋହିଣୀ ରୋଚନା ।
ମଦିରା ଭଦ୍ରା ଇଳା କନ୍ୟା ॥୧୩୭

ଦେବକୀ ଆଦି ବହୁ ନାରୀ ।
ସେ ବସୁଦେବ ବିଭାକରି ॥୧୩୮
ରୋହିଣୀ ଗର୍ଭେ ବସୁଦେବ ।
ଜନ୍ମାଏ ପୁତ୍ର ବଳଦେବ ॥୧୩୯
ଧ୍ରୁବ ସାରଣ ଆଉ ଗଦ ।
ବିପୁଳ କୃତ ଯେ ଦୁର୍ମଦ ॥୧୪୦
ପୌରବୀ ଗର୍ଭରେ ସୁଭଦ୍ର ।
ଭଦ୍ରବାହୁ ଦୁର୍ମଦ ଭଦ୍ର ॥୧୪୧
ଭୂତଆଦି ବାର ନନ୍ଦନ ।
ବସୁଦେବର ଅଂଶେ ଜନ୍ମ ॥୧୪୨
ମଦିରା ଗର୍ଭେ ଉପନନ୍ଦ ।
କୃତକ ଶୂର ପୁଣି ନନ୍ଦ ॥୧୪୩
ଭଦ୍ରାର ଉଦରେ ସମ୍ଭୂତ ।
କେଶୀ ନାମରେ ଏକ ସୁତ ॥୧୪୪
ବସୁଦେବର ଔରସରେ ।
ପୁଣି ସେ ରୋଚନା ଗର୍ଭରେ ॥୧୪୫
ହସ୍ତହେମାଙ୍ଗଦ ସହିତେ ।
ଜନ୍ମ ଲଭିଲେ ବହୁ ସୁତେ ॥୧୪୬
ଉରୁ ବଲ୍କଳାଦି ପୁତ୍ର ଶ୍ରେଷ୍ଠ ।
ସେ ଯଦୁବଂଶରେ ଗରିଷ୍ଠ ॥୧୪୭
ସେମାନେ ଇଳା ଗର୍ଭେ ଜାତ ।
ବସୁଦେବଙ୍କର ଅପତ୍ୟ ॥୧୪୮
ବିପୃଷ୍ଠ ନାମେ ଏକ ବଳୀ ।
ଧୃତଦେବାର ତହୁଁ ହେଲା ॥୧୪୯
ଶ୍ରମ ପ୍ରତିଶ୍ରୁତକୁ ଘେନି ।
ଶାନ୍ତି ଦେବାର ଗର୍ଭେ ଜନ୍ମି ॥୧୫୦
କଳ୍ପ ବର୍ଷାଦି ଦଶସୁତ ।
ଉପଦେବା ଗର୍ଭୁ ସମ୍ଭୂତ ॥୧୫୧
ବସୁ ହଂସ ଦୁଇ ସହିତ ।
ସୁବଂଶଆଦି ଷଡ଼ସୁତ ॥୧୫୨
ଦେବରକ୍ଷିତାର ନନ୍ଦନ ।
ଗଦାଦି ନବଗୋଟି ଜାଣ ॥୧୫୩
ସହଦେବାର ଗର୍ଭେ ଅଷ୍ଟ ।
ପୁରୁବିଶ୍ରୁତ ଯହିଁ ଜ୍ୟେଷ୍ଠ ॥୧୫୪
ଅଷ୍ଟବସୁଙ୍କୁ ପାଇ ସୁତ ।
ଧର୍ମ ଯେସନେ ହୃଷ୍ଟଚିତ୍ତ ॥୧୫୫

ସେ ରୂପେ ବସୁଦେବ ହୃଷ୍ଟ ।
ହୋଇଲେ ପାଇ ପୁତ୍ର ଅଷ୍ଟ ॥୧୫୬
ଦେବକୀ ଗର୍ଭରେ ସମ୍ଭୂତ ।
ବସୁଦେବଙ୍କ ଅଷ୍ଟସୁତ ॥୧୫୭
ପ୍ରଥମେ ହୋଇ କୀର୍ତ୍ତିମାନ ।
ପରେ ସୁଷେଣ ଭଦ୍ରସେନ ॥୧୫୮
ଋଜୁ ସମର୍ଦ୍ଦନ ସହିତେ ।
ଭଦ୍ରକୁ ଘେନି ଷଷ୍ଠସୁତେ ॥୧୫୯
ସପ୍ତମ ସୁତ ସଙ୍କର୍ଷଣ ।
ଅଷ୍ଟମେ ହରି ହେଲେ ଜନ୍ମ ॥୧୬୦
ଦେବକୀ ଗର୍ଭେ ଅଷ୍ଟସୁତ ।
ବସୁଦେବଙ୍କ ତହୁଁ ଜାତ ॥୧୬୧
ପୁଣି ଯେ କନ୍ୟାଏ ଜନ୍ମିଲା ।
ସୁଭଦ୍ରା ନାମ ତା'ର ହେଲା ॥୧୬୨
ସେ ତୋର ଅଟେ ପିତାମହୀ ।
ଏବେ ତୁ ଶୁଣ ନରସାଇଁ ॥୧୬୩
ଯେ କାଳେ ଧର୍ମ କ୍ଷୟ ହୁଏ ।
ଅଧର୍ମ ହୁଅଇ ଉଦୟେ ॥୧୬୪
ସେ କାଳେ ପ୍ରଭୁ ଭଗବାନ ।
ଆତ୍ମାକୁ କରନ୍ତି ସୃଜନ ॥୧୬୫
ଜଗତ ହିତେ ମୟାଧର ।
ଲୀଳାବିହାରେ ହରେ ଭାର ॥୧୬୬
ଏ ହରି ମାୟାର ନିୟନ୍ତା ।
ସଙ୍ଗ ରହିତ ସର୍ବକର୍ତ୍ତା ॥୧୬୭
ସପ୍ତମ ପ୍ରାଣୀ ହୃଦଗତେ ।
ସାକ୍ଷୀ ରୂପରେ ଥାଏ ନିତ୍ୟେ ॥୧୬୮
ମାୟାରେ ଖେଳଇ ଜଗତେ ।
ଜନ୍ମକର୍ମାଦି ପ୍ରାଣୀ ହିତେ ॥୧୬୯
ତା' ମାୟା ଚେଷ୍ଟା ଜୀବପକ୍ଷେ ।
ଅନୁଗ୍ରହ ରୂପ ପ୍ରତ୍ୟକ୍ଷେ ॥୧୭୦
ସୃଷ୍ଟି ସ୍ଥିତି ଲୟ କାରଣ ।
ଜୀବର ମୋକ୍ଷର ନିଦାନ ॥୧୭୧
ଅସଂଖ୍ୟ ଅକ୍ଷୌହିଣୀ ପତି ।
ଅସୁରେ ଜନ୍ମିଲେ ଏ କ୍ଷିତି ॥୧୭୨
ରାଜଚିହ୍ନ କରି ଧାରଣ ।
ପୃଥିବୀ କଲେ ଆକ୍ରମଣ ॥୧୭୩

Dr. Sudhanshu Sekhar Mishra

ପୃଥିବୀ ଭାରାକ୍ରାନ୍ତ ହୋଇ ।
ଧାରଣେ ସମର୍ଥ ନୁହଇ ॥୧୭୪
ଭାରା ହରଣ ଅର୍ଥେ ହରି ।
ଜଗତେ ନାନା ରୂପଧରି ॥୧୭୫
ହେ ନୃପ ଶୁଣ ଏକଚିତ୍ତେ ।
ସେ ହରି ମହିମା ଯେମନ୍ତେ ॥୧୭୬
ନିଜ ଇଚ୍ଛାରେ ଅବତରି ।
ଅସୁରଗଣଙ୍କୁ ସଂହାରି ॥୧୭୭
ଦେବେ ନ ପାନ୍ତି ଯା'ର ଅନ୍ତ।
ତା'ର ମାୟାରେ ହୋଇ ଭ୍ରାନ୍ତ ॥୧୭୮
ସେ ସଙ୍କର୍ଷଣର ସହିତେ ।
ଲୀଳାରେ ବିହରେ ଜଗତେ ॥୧୭୯
ଯଦ୍ୟପି ସର୍ବଶକ୍ତିମାନ ।
ଅଟଇ ଶ୍ରୀମଧୁସୂଦନ ॥୧୮୦
ସଙ୍କଳ୍ପ ମାତ୍ରେ ଭୂମିଭାର ।
ହରଣେ ସମର୍ଥ ତାହାର ॥୧୮୧
ତଥାପି ଭକ୍ତଙ୍କର ହିତେ ।
ତା' ଅବତାର ଏଜଗତେ ॥୧୮୨
କଳିଯୁଗରେ ଭକ୍ତ ଯେତେ ।
ତାହାଙ୍କ ଅନୁଗ୍ରହ ଅର୍ଥେ ॥୧୮୩
ପବିତ୍ର ଯଶ କର୍ମମାନ ।
ବିସ୍ତାର କଲେ ଭାଗବାନ ॥୧୮୪
ଯଶ ସ୍ମରଣେ ତମ ଧ୍ୱଂସ ।
ସକଳ ଶୋକ ହୁଏ ନାଶ ॥୧୮୫
ଶ୍ରେଷ୍ଠ ପବିତ୍ର ତୀର୍ଥ ବ୍ରତ ।
ସାଧୁଜନଙ୍କ କର୍ଣ୍ଣାମୃତ ॥୧୮୬
ଶ୍ରୋତ୍ର-ଅଞ୍ଜଳି ପଥେ ପାନ ।
କରେ ଯେ ଏକବାରେ ଜନ ॥୧୮୭
କର୍ମବାସନା କ୍ଷୟ ଦକ୍ଷ ।
ସେ ନର ହୁଅଇ ପ୍ରତ୍ୟକ୍ଷ ॥୧୮୮
ସେ ହେତୁ ଭୋଜ ବୃଷ୍ଣି ଯେତେ ।
ଅନ୍ଧକ ମଧୁର ସହିତେ ॥୧୮୯
କୁରୁ ସୃଞ୍ଜୟ ଆଦି ବଂଶ ।
ଆଦରେ ଗାବନ୍ତି ଯା' ଯଶ ॥୧୯୦
ତା'ର ଚରିତ ହୃଦେ ଚିନ୍ତି ।
ସ୍ୱଚ୍ଛନ୍ଦେ ସୁଖେ ବିହରନ୍ତି ॥୧୯୧

ସେ ପ୍ରଭୁ ଦେବ ଭଗବାନ ।
ତାହାଙ୍କୁ ହୁଏ ସୁପ୍ରସନ୍ନ ॥୧୯୨
ସ୍ନିଗ୍ଧ-ମଧୁର ମନ୍ଦହାସେ ।
ଉଦାର ବଚନ ବିଳାସେ ॥୧୯୩
ଅସମ ବିକ୍ରମ ଲୀଳାରେ ।
ସର୍ବାଙ୍ଗ ସୁନ୍ଦର ଶରୀରେ ॥୧୯୪
ତାହାଙ୍କୁ କରି ଆନନ୍ଦିତ ।
ସେମାନେ ମାୟାରେ ମୋହିତ ॥୧୯୫
କର୍ଣ୍ଣରେ ମକର କୁଣ୍ଡଳ ।
ସୁନ୍ଦର କପୋଳ ଯୁଗଳ ॥୧୯୬
ବିଳାସ ହାସେ ମୁଖ ଶୋଭା ।
କି ଅବା ପଟାନ୍ତର ଦେବା ॥୧୯୭
ନିତ୍ୟେ ତାହାର ମୁଖ ଦେଖି ।
ସେ ନର ନାରୀ ହେଲେ ସୁଖୀ ॥୧୯୮
ନେତ୍ର ଉତ୍ସବ ତା'ର ଶୋଭା ।
ଲୋକଲୋଚନ ମନଲୋଭା ॥୧୯୯
ତଥାପି ସେମାନଙ୍କ ନେତ୍ର ।
କଦାପି ନୋହେ ପରିତୃପ୍ତ ॥୨୦୦
ଭୁବନମୋହନ ସୁନ୍ଦର ।
ରୂପ ତାହାଙ୍କ ମନୋହର ॥୨୦୧
ନିମିଷମାତ୍ର ନ ଦେଖିଲେ ।
ଦୁଃଖିତ ହୁଅନ୍ତି ବିକଳେ ॥୨୦୨
ସେ ବସୁଦେବ ଘରେ ହରି ।
ଜନ୍ମିଲେ ନରଦେହ ଧରି ॥୨୦୩
ହରିଲେ ଧରଣୀର ଭାର ।
ଯେ ରୂପ ଦେଖି ଦେବାସୁର ॥୨୦୪
ପଶୁମନୁଷ୍ୟ ଆଦି ଯେତେ ।
ଶରୀର ଧରି ଏ ଜଗତେ ॥୨୦୫
କୀଟପତଙ୍ଗ ଆଦି କରି ।
ଯେ ରୂପ ଦେଖି ଗଲେ ତରି ॥୨୦୬
ତା'ର ମହିମା କେବା କହି ।
ପାରିବ ନରଦେହ ବହି ॥୨୦୭
ହେ ନୃପ ଶୁଣ ତୋଷଚିତ୍ତେ ।
ଅଦ୍ଭୁତ କର୍ମ ତା'ର ଯେତେ ॥୨୦୮
ସେ ବନ୍ଦୀଘରେ ନିଜ ରୂପେ ।
ଜନ୍ମି ଗୁପତେ ଗଲେ ଗୋପେ ॥୨୦୯

ତାହାଙ୍କୁ ପାଇ ବ୍ରଜବାସୀ ।
ସୁଖେ ବଞ୍ଚନ୍ତି ଦିବାନିଶି ॥୨୧୦
ରିପୁ ସଂହାରି ବଢ଼ି ବ୍ରଜେ ।
ମାରି ମଥୁରା କଂସରାଜ୍ୟେ ॥୨୧୧
ଦ୍ୱାରକାପୁରେ ବାସ କରି ।
ବିବାହ କରି ବହୁ ନାରୀ ॥୨୧୨
ଜନ୍ମାଇ ଅସଂଖ୍ୟ ନନ୍ଦନ ।
ଅନେକ କରି ଯଜ୍ଞମାନ ॥୨୧୩
ଲୋକଙ୍କୁ ଦେଇ ଯଜ୍ଞଶିକ୍ଷା ।
ନିଗମମାର୍ଗ କଲେ ରକ୍ଷା ॥୨୧୪
କୁରୁପାଣ୍ଡବ ମଧେ କଳି ।
ଭିଆଇ ବହୁ ସୈନ୍ୟ ମାରି ॥୨୧୫
ଧରଣୀ ଭାର ଅପହରି ।
ଅର୍ଜୁନେ ଦେଇ ଜୟଶିରୀ ॥୨୧୬
ଉଦ୍ଧବେ ଦେଇ ଆତ୍ମଜ୍ଞାନ ।
ଚଳିଲେ ଆପଣା ଭୁବନ ॥୨୧୭
ସୁଜନଜନ ଏହା ଶୁଣି ।
ଭକତି ହୃଦେ ପରିମାଣି ॥୨୧୮
ଏ ଭବଜଳୁ ତରିଯିବ ।
ଯାହା ନ ଲଭେ ବ୍ରହ୍ମାଶିବ ॥୨୧୯
ସେ ହରିଚରିତ ସୁମର ।
ମୁଁ ତୁମ୍ଭ ଚରଣେ କିଙ୍କର ॥୨୨୦
ବୋଲଇ ବିପ୍ର ଜଗନ୍ନାଥ ।
ନବମେ ବଂଶାନୁଚରିତ ॥୨୨୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ନବମସ୍କନ୍ଧେ ଶ୍ରୀସୂର୍ଯ୍ୟ ସୋମବଂଶ
ଅନୁକୀର୍ତ୍ତନେ ଯଦୁବଂଶାନୁକୀର୍ତ୍ତନଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ଦଶମ ସ୍କନ୍ଧ (ଗୋପଲୀଳା)

Dr. Sudhanshu Sekhar Mishra

# ଦଶମସ୍କନ୍ଧ
## (ଗୋପଲୀଳା)

ନାରାୟଣଂ ନମସ୍କୃତ୍ୟ
    ନରଂ ଚୈବ ନରୋତ୍ତମମ୍ ।
ଦେବୀଂ ସରସ୍ୱତୀଂ ବ୍ୟାସଂ
    ତତୋ ଜୟମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ
    ପଙ୍ଗୁଂ ଲଙ୍ଘୟତେ ଗିରିମ୍ ।
ଯତ୍କୃପା ତମହଂ ବନ୍ଦେ
    ପରମାନନ୍ଦମାଧବମ୍ ॥
ନିଗମ କଳ୍ପତରୋର୍ଗଳିତଂ ଫଳଂ
    ଶୁକମୁଖାଦମୃତଦ୍ରବସଂଯୁତମ୍ ।
ପିବତ ଭାଗବତଂ ରସମାଳୟଂ
    ମୁହୁରହୋ ରସିକାଭୁବିଭାବୁକାଃ ॥

ବନ୍ଦଇ ଦେବ ଲମ୍ବୋଦର ।
ପାଶ ଅଙ୍କୁଶ ବେନିକର ॥୧
ପୃଥୁଳ ଜଠର ସୁନ୍ଦର ।
ଗଜବଦନ ଗଣେଶ୍ୱର ॥୨
ଅନାଦି ନାଥର ନନ୍ଦନ ।
ଅମୃତପାନେ ତୋଷମନ ॥୩
ଯଜ୍ଞ ଆରମ୍ଭେ ତୋର ପୂଜା ।
ଉତ୍ତରୀ କଣ୍ଠେ ନାଗରାଜ ॥୪
ଶ୍ୟାମସୁନ୍ଦର ତନୁବର୍ଣ୍ଣ ।
ଅଶେଷ ବିଘ୍ନ-ବିନାଶନ ॥୫
ତୁମ୍ଭର ଜନକ ଜନନୀ ।
ଜଗତ ଜନକ ଜନନୀ ॥୬
ତୋର ମହିମା ମୁଖେକହି ।
କେ ପାରେ ନରଦେହ ବହି ॥୭
ହୁଅ ସଦୟ ଗଣନାଥ ।
କହିବି ଶ୍ରୀକୃଷ୍ଣ ଚରିତ ॥୮
ନମଇଁ ପ୍ରଭୁ ନରହରି ।
ହିରଣ୍ୟକଶିପୁ ବିଦାରି ॥୯
ଉଦିତ ରବି ଜିଣି ତେଜ ।
ସୁନ୍ଦର ଶୋହେ ଚତୁର୍ଭୁଜ ॥୧୦
କୁଣ୍ଡଳ ଶଶୀ ଦିନକର ।
ନକ୍ଷତ୍ର ମାଳା ହୃଦେହାର ॥୧୧
ବ୍ରହ୍ମାଣ୍ଡ ମାଳମାଳ ହୋଇ ।
ତୋ ଲୋମକୂପେ ଛନ୍ତି ରହି ॥୧୨
ଧର୍ମପାଳକ ତୁ ଜଗତେ ।
ଶରୀର ବହୁ ପ୍ରାଣୀ ହିତେ ॥୧୩
ଦୁଷ୍ଟ ନିବାରି ସନ୍ଥ ପାଳୁ ।
ତୁ ନାଥ ପରମ ଦୟାଳୁ ॥୧୪
କର ସୁଦୟା ନରହରି ।
ତୋ ଲୀଳା କହିବି ବିସ୍ତାରି ॥୧୫
ପରମ ମଙ୍ଗଳ ତୋ' ନାମ ।
ଖଣ୍ଡେ ସକଳ ବିଘ୍ନମାନ ॥୧୬
ଏଣୁ ମୋହର ନାହିଁ ଭୟେ ।
ଯାହାର ନାମ ଯମଜୟେ ॥୧୭
ବ୍ୟାସକୁମର ପାଦ ଧରି ।
ବୋଲେ ପରୀକ୍ଷ-ଦଣ୍ଡଧାରୀ ॥୧୮

ପରୀକ୍ଷିତ ଉବାଚ

ଭୋମୁନି ହୋଇବା ସଦୟେ ।
ମୋ ଚିତ୍ତ ରହୁ କୃଷ୍ଣପାୟେ ॥୧୯
ପାଣ୍ଡବ କୁଳେ ମୋର ଜନ୍ମ ।
ମୋହାର ବନ୍ଧୁ ଜନାର୍ଦ୍ଦନ ॥୨୦
ଦ୍ରୋଣ କୁମର ବାଣ-ତ୍ରାସେ ।
ମରିବି କହିଗଲେ ବ୍ୟାସେ ॥୨୧
ତା' ଶୁଣି ଜନନୀ ମୋହର ।
ଶରଣ ଗଲା ଚକ୍ରଧର ॥୨୨
ଗର୍ଭେ ପଡ଼ନ୍ତେ ଆସି ବାଣ ।
ମୋତେ ରଖିଲେ ନାରାୟଣ ॥୨୩
ତେଣୁ କୃଷ୍ଣ ଏ ଶରୀରର ।
କିଣିଲା ସେବକ ମୁଁ ତା'ର ॥୨୪
ତା'ର ଚରିତ କର୍ଣ୍ଣେ ଶୁଣି ।
ତରିବି ଭବ- ତରଙ୍ଗିଣୀ ॥୨୫
ଶ୍ରୀକୃଷ୍ଣ ଲୀଳାର ଚରିତ ।
ମୁଖ-ପଙ୍କଜୁଁ ତୋ'ର ଜାତ ॥୨୬
ଶ୍ରୁତି ଯୁଗଳେ ପାନ କରି ।
ହେଲେ ତରିବି ଭବ-ବାରି ॥୨୭
ପାଣ୍ଡବେ ଯାହାର ବିଶ୍ୱାସୁ ।
ତରିଲେ କୁରୁବଳ-ତ୍ରାସୁ ॥୨୮
ବସ୍ତାଚରଣ-ଜଳ ତୁଲ୍ୟେ ।
ହେଲେ ତରିଲେ କୁରୁବଳେ ॥୨୯
ସେ ହରିଚରିତ ଗହନ ।
ଧ୍ୟାନେ ଭାବନ୍ତି ମୁନିଜନ ॥୩୦
ଭବସାଗର ପରମାଦ ।
ବିଷୟା ବିଷକୁ ଏ ଗଦ ॥୩୧
ଚଣ୍ଡାଳୁ ବ୍ରହ୍ମପାଏ ଲୋକ ।
କେ ଶୁଣି ହୋଇବ ବିମୁଖ ॥୩୨
ଅଶେଷ ଜନ୍ତୁ ଦେହ ବହି ।
ଯେ କାଳରୂପେ ଅଛି ରହି ॥୩୩
ମାୟା ମନୁଷ୍ୟ ରୂପେ ଜାତ ।
ସଂହାରି ପାଳଇ ଜଗତ ॥୩୪
ମୃତ୍ୟୁ ଅମୃତ୍ୟୁ ବେନି ଦେଇ ।
ନିତ୍ୟେ ନିର୍ମଳ ଯା'ର ଦେହୀ ॥୩୫
ନବମସ୍କନ୍ଧେ ମୁହିଁ ଶୁଣି ।
ସେ କଥା ମନେ ମନେ ଗୁଣି ॥୩୬
ବିଚାର କଲି ଭ୍ରମଚିତ୍ତ ।
ଭୋ ମୁନି କହିବା ତଦନ୍ତ ॥୩୭
ଶ୍ରୀଭାଗବତର ସିଦ୍ଧାନ୍ତ ।
ଅମୃତ ରସମୟ ଗୀତ ॥୩୮
ଧାର୍ମିକ କୁଳେ ଯଦୁବଂଶେ ।
ଜନ୍ମ ହୋଇଲେ ନିଜ ଅଂଶେ ॥୩୯
ନୀଳ ଧବଳ ରୂପ ଦୁଇ ।
ଦେବକୀ ଗର୍ଭେ ଜାତ ହୋଇ ॥୪୦
କେମନ୍ତେ ରୋହିଣୀର ସୁତ ।
ରାମକୁ ବୋଲନ୍ତି ଜଗତ ॥୪୧

Dr. Sudhanshu Sekhar Mishra

ବେନି ଉଦରୁ ଏକ ଦେହ ।
ଭୋ ମୁନି ଫେଡ଼ିବା ସନ୍ଦେହ ॥୪୨
କେବଣ ହେତୁ ଭଗବାନ ।
ଗୁପତେ ଗଲେ ବୃନ୍ଦାବନ ॥୪୩
ଭକତ ତାରିବାର ଆଶେ ।
ରମିଲେ ବାଳକ ବିଶ୍ୱାସେ ॥୪୪
ପୁଣି କେତେହେଁ ଦିନେ ହରି ।
ମିଳିଲେ ମଥୁରା ନଗରୀ ॥୪୫
ଜଗତଜନଙ୍କର ଗୁରୁ ।
ଯା'ର ମହିମା ମହାମେରୁ ॥୪୬
କିମ୍ପା ଅନୀତି ଆଚରିଲେ ।
ସୋଦର ମଉଳା ମାଇଲେ ॥୪୭
ଏ କି ତାହାଙ୍କ ପରମାଣ ।
ଯାହାଙ୍କ ନାମ ନାରାୟଣ ॥୪୮
ମନୁଷ୍ୟ ରୂପେ ହୋଇ ଜନ୍ମ ।
କେତେ ବରଷ ଭୋଗକର୍ମ ॥୪୯
ଯାଦବ ସଙ୍ଗତେ ବିହରି ।
କେତେ କଳତ୍ର ଭୋଗକରି ॥୫୦
ଏ ଆଦି ଯେତେକ ଚରିତ ।
ଭୋ ମୁନି କହି ତୋଷ ଚିତ୍ତ ॥୫୧
ଦେଖ ମରଣକାଳ ମୋର ।
ଭୋ ମୁନି ତେଜିଲି ଆହାର ॥୫୨
ହରିଚରିତ ସୁଧା-ବାରି ।
ତୋର ବଦନୁଁ ପାନ କରି ॥୫୩
ଜଗତ ସଂହାରିଣୀ କ୍ଷୁଧା ।
ସେ ମୋତେ ନ କରଇ ବାଧା ॥୫୪

ସୂତ ଉବାଚ

ଶୁଣି ରାଜାର ସାଧୁ କଥା ।
ମୁନି-ପଣ୍ଡିତ ଶୁଦ୍ଧଚେତା ॥୫୫
କୃଷ୍ଣ ଚରଣେ ଦେଇ ଚିତ୍ତ ।
ବୋଲନ୍ତି ଶୁଣ ଭାଗବତ ॥୫୬

ଶୁକ ଉବାଚ

ସାଧୁ ଚରିତ ତୋ'ର ବୁଦ୍ଧି ।
କୃଷ୍ଣଚରଣେ ଚିତ୍ତ ଖେଦି ॥୫୭
ଗୋବିନ୍ଦେ ତୋ'ର ମନ ଯେତେ ।
ମୁଁ କହି ପାରିବିକି ତୋତେ ॥୫୮
ଗୋବିନ୍ଦ କଥା ପରଶନ ।
ହେଲେ ତାରଇ ତିନିଜଣ ॥୫୯
ଶ୍ରୋତା ବକତା ଯେ ପଚାରି ।
ଏ ତିନିଜଣେ ଯା'ନ୍ତି ତରି ॥୬୦
ତା' ପାଦ ଗଙ୍ଗାଜଳ ଯେହ୍ନେ ।
ତାରଇ ସ୍ନାନ-ପିଣ୍ଡଦାନେ ॥୬୧
ନାମ ମାତ୍ରକେ ପାପ ନାଶେ ।
ତାରଇ ସେ ତିନି ପୁରୁଷେ ॥୬୨
କହିବି କୃଷ୍ଣ ଲୀଳା ମାନ ।
ରାଜନ ହୁଅ ସାବଧାନ ॥୬୩
ଅସୁର ବଳ ପାଦଭରେ ।
ଭୂମି କମ୍ପିଲା ଥରହରେ ॥୬୪
ଭାରାରେ ଚଳି ନ ପାରଇ ।
ଅଧରୁ ରୁଧିର ଗଳଇ ॥୬୫
ଦିନକେ ବିଚାରଇ ବସି ।
କେ ମୋର ଶରୀର ଆଶ୍ୱାସି ॥୬୬
ଛାଡ଼ିବି ସଂସାର ଧାରଣ ।
ପଶିବି ବ୍ରହ୍ମାରେ ଶରଣ ॥୬୭
ମାୟା ସୁରଭି ରୂପ ହୋଇ ।
କାନ୍ଦଇ ଚଉଦିଗ ଚାହିଁ ॥୬୮
ବିଧାତା ନିକଟେ ମିଳିଲା ।
ନିଜ ବେଦନା ଜଣାଇଲା ॥୬୯
ବିଧାତା ଶୁଣି ତା' ବିକଳ ।
ସଙ୍ଗେ ଘେନିଲେ ଦେବଦଳ ॥୭୦
ଶଙ୍କର ଘେନି ସର୍ବେ ବେଗେ ।
ମିଳିଲେ କ୍ଷୀରସନ୍ଧୁ ଲାଗେ ॥୭୧
ଜଳଧି କୂଳେ ଦେବଗଣ ।
ଡାକନ୍ତି ରଖ ନାରାୟଣ ॥୭୨
ଅନେକ ଧାନ ସ୍ତୁତି କଲେ ।
ହରି ସନ୍ଦେଶ ନ ପାଇଲେ ॥୭୩
ଅନେକ ମତେ କରି ଧ୍ୟାନ ।
ବ୍ରହ୍ମା ପାଇଲେ ମନେ ଛନ୍ନ ॥୭୪
ଅନନ୍ତ ନ ଦେଖି ବିଧାତା ।
ମନେ ପାଇଲେ ଗୁରୁ ଚିନ୍ତା ॥୭୫
ସମାଧି ବସିଲେ ତକ୍ଷଣ ।
ଚିନ୍ତି ଅନାଦି-ନାରାୟଣ ॥୭୬
ବ୍ରହ୍ମାର ଦେଖିଣ ବିକଳ ।
କରୁଣା କଲେ ଆଦିମୂଳ ॥୭୭
ନିଦ୍ରାର ବଳେ ମନେ ହରି ।
ସ୍ୱପନେ କହିଲେ ମୁରାରି ॥୭୮
ବ୍ରହ୍ମାଙ୍କୁ ଦିଶିଲା ସ୍ୱପନ ।
କହନ୍ତି ପ୍ରଭୁ ନାରାୟଣ ॥୭୯
ଶୁଣ ବଚନ ମୋର ଧାତା ।
ମୁଁ ଯେ ଜଗତ ପିତାମାତା ॥୮୦
ସକଳ ମୋହର ଭିଆଣ ।
କେବଳ ଦେଲି ପରମାଣ ॥୮୧
ମୋର ବଚନ ଶିରେ ଧରି ।
ତୁ ଅଛୁ ଜଗତ ଆବୋରି ॥୮୨
ବେଦ ବିଚାରି ସୃଷ୍ଟି ପାଳୁ ।
ଅବନୀ ଭାରେ କିମ୍ପା ଭାଳୁ ॥୮୩
ମୁଁ ତାହା ଜାଣଇଟି ସର୍ବ ।
ନାଶିବି ଅସୁରଙ୍କ ଗର୍ବ ॥୮୪
ଏବେ ସକଳ ଦେବେ ଯାଅ ।
ମର୍ତ୍ତ୍ୟମଣ୍ଡଳେ ଜାତ ହୁଅ ॥୮୫
ଯାଦବ ଆଦି ସାତବଂଶ ।
କଂସକୁ ହୋଇବ ବିଶ୍ୱାସ ॥୮୬
ଗୋପୀ ଗୋପାଳ ରୂପ ହୋଇ ।
ଗୋପେ ଜନ୍ମିବ ଦେହ ବହି ॥୮୭
ମୁଁ ଜାତ ବାସୁଦେବ ଘରେ ।
ବଢ଼ିବି ଯାଇ ଗୋପପୁରେ ॥୮୮
ଷୋଳ ସହସ୍ର ଗୋପନାରୀ ।
ରମିବି ବୃନ୍ଦାବନେ ହେରି ॥୮୯
ଅନେକ ନାଶିବି ଅସୁର ।
ଖଣ୍ଡିବି ଅବନୀର ଭାର ॥୯୦
ଭକତ ଜନଙ୍କୁ ତାରିବି ।
ପୁଣି ସ୍ୱଧାମେ ବାହୁଡ଼ିବି ॥୯୧
ଏବେ ହେ ଯାଅ ତୁ ସତ୍ୱର ।
କହିବୁ ଦେବଙ୍କ ଆଗର ॥୯୨
ବେଗେ ହୁଅନ୍ତୁ ମଞ୍ଚେ ଜନ୍ମ ।
କହି ହୋଇଲେ ଅନ୍ତର୍ଦ୍ଧାନ ॥୯୩
ସ୍ୱପନ ଚେତି ବେଦବର ।
କହିଲେ ଦେବଙ୍କ ଆଗର ॥୯୪

Dr. Sudhanshu Sekhar Mishra

ଶୁଣି ସାନନ୍ଦ ଦେବଗଣେ ।
ନମିଲେ ଧାତାର ଚରଣେ ॥୯୫
ବୋଲନ୍ତି ଶୁଣ ବେଦବର ।
ଯାହା କହିଲେ ଚକ୍ରଧର ॥୯୬
ଅବନୀ ମଧ୍ୟେ ଦେହ ଧରି ।
ଗୋପେ ଯାଦବେ ଅବତରି ॥୯୭
ହୋଇବୁଁ ଏ ଆମ୍ଭର ସତ୍ୟ ।
କି କି କହିଲେ ଜଗନ୍ନାଥ ॥୯୮
ସେ କଥା କହ ପ୍ରଜାପତି ।
ଶୁଣି ନିର୍ମଳ ହେଉ ମତି ॥୯୯

ବ୍ରହ୍ମାଉବାଚ

ବହ୍ମାବୋଇଲେ ଦେବେ ଶୁଣ।
ଯାହା କହିଲେ ନାରାୟଣ ॥୧୦୦
ଯାଦବ ବସୁଦେବ ଘରେ ।
ଜନ୍ମିବେ ଦେବକୀ ଉଦରେ ॥୧୦୧
ହରିର କଳାରେ ଅନନ୍ତ ।
ଆଗେ ହୋଇବେ ଗର୍ଭଗତ ॥୧୦୨
ମାୟାର ଯୋଗ ବଳେ କରି ।
ଦେବକୀ ଗର୍ଭୁ ତାହା ହରି ॥୧୦୩
ରୋହିଣୀ ଗର୍ଭେ ତାହା ଥୋଇ।
ଦାସ ବତ୍ସଳ ଭାବଗ୍ରାହୀ ॥୧୦୪
ଆପଣେ ପ୍ରଭୁ ଜଗନ୍ନାଥ ।
ଦେବକୀ ଗର୍ଭେ ହେବେ ଜାତ॥୧୦୫
ଦୁର୍ଗାଙ୍କୁ ଯଶୋଦାର କୋଳେ।
ଜାତ କରିବେ ଯୋଗ ବଳେ॥୧୦୬
କୃଷ୍ଣଙ୍କୁ ବସୁଦେବ ନେଇ ।
ଆସିବ ନନ୍ଦ ଘରେ ଥୋଇ ॥୧୦୭
ଏମନ୍ତେ ତାରିବେ ସଂସାର ।
ଦାସ ବତ୍ସଳ ଦାମୋଦର ॥୧୦୮
ଶୁଣିଣ ବିଧାତା ବଚନ ।
ଦେବେ ଆନନ୍ଦ କଲେ ମନ ॥୧୦୯
ଚାହିଁଣ ଧରଣୀ ବଦନ ।
ବୋଇଲେ ଧନ୍ୟ ତୋ' ଜୀବନ ॥୧୧୦
ତୋ'ର ଉପରେ ଚକ୍ରଧାରୀ ।
ମନୁଷ୍ୟ ଦେହେ ଅବତରି ॥୧୧୧
ନାଶିବେ ତୋ'ର ଦୁଃଖରାଶି ।
ଆମ୍ଭେ ଦେଖିବୁ ବ୍ରହ୍ମରାଶି ॥୧୧୨
ଭୂମି ଆଶ୍ୱାସୀ ଦେବଗଣ ।
ଗଲେ ସେ ଯେ ଯାହା ଭୁବନ ॥୧୧୩
ଏବେ ହୋ ଶୁଣ ମହିପତି ।
ଯେମନ୍ତ କଲେ ଶିରୀପତି ॥୧୧୪
ହରିଚରଣେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ॥୧୧୫

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ
ପୂର୍ବାର୍ଦ୍ଧେ ଶ୍ରୀକୃଷ୍ଣ ଅବତାର
ଉପକ୍ରମେ ପ୍ରଥମୋଽଧ୍ୟାୟଃ ॥

---

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ବନ୍ଦଇ ନୃସିଂହ ଚରଣ ।
କହିବି ବିଷ୍ଣୁର ପୁରାଣ ॥୧
ଶୁକ ବୋଲନ୍ତି ଶୁଣ ରାୟେ ।
ମଞ୍ଜେ ଜନ୍ମିଲେ ଦେବତାୟେ ॥୨
ଭୋଜବଂଶରେ ଉତ୍ପନ୍ନ ।
ପ୍ରତାପୀ ରାଜା ସୁରସେନ ॥୩
ପୂର୍ବେ ମଥୁରା ପୁରେ ଥିଲା ।
ଅନେକ ନୃପତି ଜିଣିଲା ॥୪
ତେଣୁ କଟକ ମଧୁପୁରୀ ।
ଯହିଁ ବିଜୟ ନରହରି ॥୫
ସେ ରାଜା ଗୋବିନ୍ଦ ଭକତ ।
ତାହାର ଉଗ୍ରସେନ୍ ସୁତ ॥୬
ଦେବକ ନାମେ ତା'ର ଭ୍ରାତ ।
ଦେବକୀ ତାହାର ଦୁହିତ ॥୭
ରୂପେ କମଳା ନୋହେ ସରି ।
ସେ କନ୍ୟା ବସୁଦେବ ବରି ॥୮
ମାୟା ଭିଆଣ ପଦ୍ମନାଭ ।
କରନ୍ତି ବିବାହ ଉତ୍ସବ ॥୯
ବିଭା କରାଇ କନ୍ୟାବର ।
ଯାବତ ମଙ୍ଗଳ ବେଭାର ॥୧୦
ଜନବେଭାରେ ସେ ଦେବକ ।
ଅନେକ ଦେଲା ଯଉତୁକ ॥୧୧
ଚତୁର ସତ ହସ୍ତୀ ଦେଲା ।
କଣ୍ଠେ ଲମ୍ୱାଇ ରତ୍ନମାଳା ॥୧୨
ଅଠରଶତ ରଥ ଯୁତେ ।
ଅଶ୍ୱ ସେ ଦେଲା ସେହି ମତେ ॥୧୩
ବେନି ଶତେକ ପରିବାରୀ ।
ଦେଲା ସେ ଅଳଙ୍କାର ଭରି ॥୧୪
ବାଜଇ ଭେରୀ ତୁରୀ ବାଦ୍ୟ ।
କେ କହୁ ବିଭାର ଆନନ୍ଦ ॥୧୫
ରଥେ ବସାଇ କନ୍ୟାବର ।
ନବରୁ ହୋଇଲେ ବାହାର ॥୧୬
କୁସୁମ ବରଷନ୍ତି ଘେନି ।
ମଙ୍ଗଳ କଲେ ଦେବ ଧ୍ୱନୀ ॥୧୭
ଉଗ୍ରସେନର କଂସ ସୁତ ।
ଦେଖିଣ ହୋଇଲା ଉଷତ ॥୧୮
ଯାହାର ନାମେ ଦେବେ ଡ଼ରି ।
ଚାଲନ୍ତେ କମ୍ପେ ବସୁନ୍ଧରୀ ॥୧୯
ଶୁଦ୍ଧସୁବର୍ଣ୍ଣ ରଥେ ବସି ।
ରାଜାଏ କଂସକୁ ପ୍ରଶଂସି ॥୨୦
ଭଗିନୀ ପ୍ରିୟ ବନ୍ଧୁପଣେ ।
ରଥରେ ବସିଲା ଆପଣେ ॥୨୧
ଅଶ୍ୱ ଦଉଡ଼ି ଧରିକରେ ।
ରଥ ବାହିଲା ଧୀରେ ଧୀରେ ॥୨୨
ଥୋକାଏ ଦୂର ରଥଗଲା ।
ଆକାଶୁ ଶବଦ ଶୁଭିଲା ॥୨୩

Dr. Sudhanshu Sekhar Mishra

ତା' ଶୁଣି ଚାହିଁଲା ଗଗନେ ।
ଶବଦ ଶୁଭୁଅଛି ଶୂନ୍ୟେ ॥୨୪
ରେ ରେ ଅସୁର କଂସ ଶୁଣ ।
ନଜାଣୁ ଆପଣା ମରଣ ॥୨୫
ଯାହାର ବାହୁ ଅଛୁ ରଥ ।
ତୋତେ ମାରିବେ ତା'ର ସୁତ ॥୨୬
ଅଷ୍ଟମ ଗର୍ଭେ ଅବତରି ।
ମହୀ ରଖିବେ ତୋତେ ମାରି ॥୨୭
ଶୁଣି ଅନ୍ତରୀକ୍ଷ ବଚନ ।
ରଥରୁ ଓହ୍ଲାଇ ବହନ ॥୨୮
କରେ ଉଞ୍ଚାଇ କରବାଳ ।
ଧଇଲା ଦେବକୀର ଚୂଳ ॥୨୯
ବୋଲଇ ଭଲ ଏ ବିଚାର ।
କୁମାରୀ କାଲୁ ଯାକୁ ମାର ॥୩୦
ମୂଳୁଁ ମାରିଲେ ଯିବ ସରି ।
ଦେବଙ୍କ ସଙ୍ଗେ କିମ୍ପା କଳି ॥୩୧
ଅଧର ଚାପି ରୋଷେ ଚାହେଁ ।
କମ୍ପଇ ଦେବକୀର କାୟେ ॥୩୨
କଂସକୁ ବସୁଦେବ ଚାହିଁ ।
ଭୟେ ଚିନ୍ତଇ ଭାବଗ୍ରାହୀ ॥୩୩
କଂସର ଭୁଜ କରେ ଧରି ।
ବୋଲଇ ଶୁଣ ଦଣ୍ଡଧାରୀ ॥୩୪
ତୁ ଅଟୁ ମହତ ପୁରୁଷ ।
ସଂସାରେ ଅଛି ତୋ'ର ଯଶ ॥୩୫
ଧାର୍ମିକ ବୋଲନ୍ତି ସକଳେ ।
ଦେବକୀ ମାରୁ କିମ୍ପା ବଳେ ॥୩୬
ବିଭାର କାଳେ ଏଡ଼େ କର୍ମ ।
କେମନ୍ତେ ସହିବଟି ଧର୍ମ ॥୩୭
ଦେହର ସଙ୍ଗେ ମୃତ୍ୟୁ ଜାତ ।
ନାହିଁ ଏହାର ଆଦିଅନ୍ତ ॥୩୮
ବାଳକ ସ୍ଥବିର ତରୁଣ ।
ଅବଶ୍ୟ ଲଭିବେ ମରଣ ॥୩୯
ଦେହ ବହିଲେ ନିଶ୍ଚେ ମରି ।
ମରଣ ଛାରେ କିମ୍ପା ଡରି ॥୪୦
ଏ ଜୀବ ମରଣ ନିକଟେ ।
ବେଗେ ଚିନ୍ତଇ ଅନ୍ୟଘଟେ ॥୪୧

ଏହାର କଲା କର୍ମମାନ ।
ତେଣୁ ହୁଅନ୍ତି ସାବଧାନ ॥୪୨
କର୍ମର ବଶ ହୋଏ ଜନ୍ତୁ ।
ଜନ୍ମ ମରଣ କର୍ମ ହେତୁ ॥୪୩
ଜୋକ ଯେ ଏକଇ ଚରଣେ ।
ଯେସନେ ସଞ୍ଚରଇ ତୃଣେ ॥୪୪
ଜୀବ ଯେ କର୍ମେ ସଞ୍ଚରଇ ।
ଜନ୍ମ ମରଣ ନାମ ବହି ॥୪୫
ନିଦ୍ରାରେ ଯେସନେ ସ୍ୱପନ ।
ଦେଖିଣ ପାସୋରଇ ମନ ॥୪୬
ଦେହରେ ଥାଇ ଯେତେ କରି ।
ଜୀବ ଛାଡ଼ିଲେ ତା' ପାଶୋରି ॥୪୭
କରଇ ପରଲୋକ ଭୋଗ ।
ପୁଣ ହିଁ ରଜ ବୀର୍ଯ୍ୟ ଯୋଗ ॥୪୮
ଜନ୍ମିଣ ପାଶୋରଇ ତାହା ।
ଏମନ୍ତ ଅନାଦିର ମାୟା ॥୪୯
ଏକଇ ପୁରୁଷ ମୁରାରି ।
ସକଳଘଟେ ଛନ୍ତି ପୂରି ॥୫୦
ଶତେକ ଜଳଘଟ ଥୋଇ ।
ଚାହିଁଲେ ଆକାଶ ଦିଶଇ ॥୫୧
ପୁଣି ହିଁ କଲେ ଏକଗୋଟି ।
ତହିଁ ଆକାଶ ଥାଏ ଘୋଟି ॥୫୨
ଆକାଶ ନୁହଁଇଟି ଭିନ୍ନ ।
ନାଶ ହୁଅନ୍ତି ଘଟମାନ ॥୫୩
ଏମନ୍ତ ଆତ୍ମାର ବିବେକ ।
ଏହା ଜାଣନ୍ତି ଜ୍ଞାନୀ ଲୋକ ॥୫୪
ତୁ ଅଟୁ ମହତ ପୁରୁଷ ।
କିମ୍ପା ବହେଣୀ କରୁ ନାଶ ॥୫୫
ଜୀବ ମାରନ୍ତି ଆତ୍ମା ସୁଖେ ।
ଅନ୍ତେ ହେଁ ପଡ଼ନ୍ତି ନରକେ ॥୫୬
ଏ ସାନ ବହେଣୀ ତୋହର ।
ଏହାକୁ ରକ୍ଷାକର ବୀର ॥୫୭
ଶୁକ ବୋଲନ୍ତି ଶୁଣ ରାୟେ ।
ଅସୁର ସ୍ୱଭାବେ ନିର୍ଦ୍ଦୟେ ॥୫୮
ଧର୍ମବଚନ ନ ଶୁଣଇ ।
ବିଶେଷେ ତା'ର ଜ୍ଞାନ ନାହିଁ ॥୫୯

ଭଣୋଇ ବୋଲ ନ ଶୁଣିଲା ।
ପୁଣି ହିଁ ହାଣିବି ବୋଇଲା ॥୬୦
ଦେଖି ବସୁଦେବ ବିଚାରି ।
କାନ୍ଦିଣ ସୁମରେ ମୁରାରି ॥୬୧
ପୁଣି ବିଚାରୁଅଛି ମନେ ।
ଦେବକୀ ରଖିବି କେସନେ ॥୬୨
କେ ସହୁ ଏହାର ବିକଳ ।
ରଖିବି ଲାଭ ଦେଇ ମୂଳ ॥୬୩
କିବା ନୋହୁଣୁ ମୋର ସୁତ ।
କଂସ ହୋଇବ ପ୍ରାଣେ ହତ ॥୬୪
କିବା ନୋହିବ ମୋର ପୁଅ ।
ଜାଣନ୍ତି ପ୍ରଭୁ ଦେବରାୟ ॥୬୫
ଏମନ୍ତେ ମନେ ବିଚାରିଲା ।
କଂସର ମୁଖକୁ ଚାହିଁଲା ॥୬୬
ବୋଲନ୍ତି ଶୁଣ ବୀର କଂସ ।
ଛାଡ଼ ତୁ ବହେଣୀର କେଶ ॥୬୭
ଏହାର ସୁତ ତୋତେ ମାରି ।
ଏ ତୋ'ର ନୁହଁଇ ବଇରି ॥୬୮
ଏ ଯେତେ ଶିଶୁ ପ୍ରସବିବ ।
ତୋ'ର ନିକଟେ ଦେବି ସର୍ବ ॥୬୯
ତୁ ଅଟୁ ପୁରୁଷ ମହତ ।
ଏ ମୋ'ର ତିନିବାର ସତ୍ୟ ॥୭୦
ଶୁଣନ୍ତୁ ଦଶଦିଗ ଲୋକେ ।
ଏଠାରେ ଅଛନ୍ତି ଯେ ଥୋକେ ॥୭୧
ଏକଥା ମୋହର ପ୍ରମାଣ ।
ଏଥକୁ ସାକ୍ଷୀ ନାରାୟଣ ॥୭୨
ବସୁଦେବର ବୋଲ ଶୁଣି ।
କଂସ ହିଁ ମନେମନେ ଗୁଣି ॥୭୩
ବିଚାରି ମଣିଲା ବିଶ୍ୱାସ ।
ଛାଡ଼ିଲା ଦେବକୀର କେଶ ॥୭୪
ଆନନ୍ଦ ହୋଇ ସର୍ବଜନେ ।
ଗଲେ ସେ ଯେ ଯାହା ଭୁବନେ ॥୭୫
କେତେହେଁ ଦିନ ତହିଁ ଗଲା ।
ଦେବକୀ ଗର୍ଭ ଉପୁଜିଲା ॥୭୬
ବରଷ ବରଷକେ ସୁତ ।
ହୋଇଲା ଏକଇ ଦୁହିତ ॥୭୭

Dr. Sudhanshu Sekhar Mishra

ପ୍ରଥମେ ହୋଇଲା ତନୟେ ।
ରୂପେ ମୋହିଲା କାମ ପ୍ରାୟେ ॥୭୮
ସୁତକୁ ଦେଖି ବସୁଦେବ ।
ବିକଳେ ଚିନ୍ତଇ ମାଧବ ॥୭୯
ଏ ସୁତ ଦେବଇଁ କେମନ୍ତେ ।
ସତ୍ୟ ଯେ କରିଛି ଯୁକତେ ॥୮୦
ଦେବକୀ ମୁଖକୁ ଚାହିଁଲା ।
ହା କୃଷ୍ଣ ବୋଲି ଡାକ ଦେଲା ॥୮୧
କୋଳରେ ଘେନିଲା ତନୟ ।
ହୋଇଲା ହରଷ ବିସ୍ମୟ ॥୮୨
କଂସର ସଭାରେ ମିଳିଲା ।
ବାଳକ ତଳେ ଶୁଆଇଲା ॥୮୩
ଦେଖି ଚକିତ ସଭାଜନେ ।
କଂସ ବିଚାରୁଅଛି ମନେ ॥୮୪
ଏତ ନୋହଇ ମୋ' ବଇରୀ ।
ଅଷ୍ଟମଗର୍ଭ ମୋତେ ମାରି ॥୮୫
ଏହାର ମଣିଲି ମୁଁ ସତ୍ୟ ।
ନେଉ ଏହାର ନିଜ ସୁତ ॥୮୬
ହସିଣ ବସୁଦେବ ଚାହିଁ ।
କହଇ ବିଶ୍ୱାସ କରାଇ ॥୮୭
ତୋହରେ ମଣିଲି ମୁଁ ସତ୍ୟ ।
ନିଅ ତୋହର ନିଜ ସୁତ ॥୮୮
ଶୁଣି ବସୁଦେବ ଚକିତେ ।
କଂସକୁ ନ ଯାଇ ପରତେ ॥୮୯
କ୍ଷଣକେ ରହିଣ ବିଚାରି ।
ପୁଣି କୁମର କୋଳେ ଧରି ॥୯୦
ବାଟରେ କରଇ ବିଚାର ।
ଦୁଷ୍ଟ ଦାନବ ଦୁରାଚାର ॥୯୧
ଏବେ ମୁଁ ନେବି ବାହୁଡ଼ାଇ ।
ପୁଣି ମାରିବ କଂସ ନେଇ ॥୯୨
ଦେବକୀ କଷ୍ଟ ହେବ ବଡ଼ ।
କିସ କରିବି ମୁହିଁ ରାଢ଼ ॥୯୩
ହରି ଭିଆଣ କଲେ ଯାହା ।
ଅବଶ୍ୟ ଭୁଞ୍ଜିବିନା ତାହା ॥୯୪
ଏମନ୍ତେ ଦୁଃଖେ ସୁଖେ ଯାଇ ।
ଦେବକୀ ନିକଟେ ମିଳଇ ॥୯୫

ସୁତକୁ ଦେଲା ତା'ର କୋଳେ ।
କାନ୍ଦଇ ମାୟାମୋହ ଭୋଳେ ॥୯୬
ବିଚ୍ଛେଦ-ଦୁଃଖ-ମାତା-ଚିତ୍ତ ।
ପୁତ୍ରକୁ ପାଇଣ ଉଷତ ॥୯୭
ନିବିଡ଼ ସ୍ନେହେ କୋଳେ ଯାକି ।
ଆନନ୍ଦ କେ ପାରିବ ଲକ୍ଷି ॥୯୮
ରଜନୀ ହୋଇଲା ପ୍ରବେଶ ।
ମିଳିଲା ଅନ୍ତଃପୁରେ କଂସ ॥୯୯
ଶୀତଳ ମଣୋହି ସାରିଲା ।
ସୁଖେ ପଲ୍ୟଙ୍କେ ବିଜେକଲା ॥୧୦୦
ତକ୍ଷଣେ ମିଳିଲେ ନାରଦ ।
ଆନନ୍ଦେ କଲେ ବୀଣାନାଦ ॥୧୦୧
ଦେଖିଣ ତେଜିଲା ଶୟନ ।
ପ୍ରଣାମ କଲାକ ବହନ ॥୧୦୨
ନିଜ ଆସନେ ବସାଇଲା ।
ବିଶ୍ୱାସେ ଚରଣ ଚାପିଲା ॥୧୦୩
ଭକତି ଦେଖିଣ ନାରଦ ।
କହନ୍ତି ଶୋକ ଗଦଗଦ ॥୧୦୪
ଶୁଣ ଅସୁର ଚୂଡ଼ାମଣି ।
ତୋ'ର ମରଣ ମୁହିଁ ଶୁଣି ॥୧୦୫
ତୋ' ଦୁଃଖ ଦେଖି ମୁଁ ବିକଳୀ
ଦେଖ ନୟନେ ଅଶ୍ରୁଜଳ ॥୧୦୬
ଶୁଣ ଦାନବ ଶିରୋମଣି ।
ତୋ'ର ମରଣ ତଥ୍ୟବାଣୀ ॥୧୦୭
ଭୂମିର ଦେଖିଣ ବିକଳ ।
ଗୁହାରି କଲେ ଦେବବଳ ॥୧୦୮
ବ୍ରହ୍ମାର ତୁଲେ ଶୂଳପାଣି ।
କ୍ଷୀର ସମୁଦ୍ରେ ସ୍ତୁତିଭଣି ॥୧୦୯
ବ୍ରାହ୍ମାଙ୍କୁ କହିଲେ ଅନନ୍ତ ।
ମନୁଷ୍ୟେ ହୋଇବି ମୁଁ ଜାତ ॥୧୧୦
ମାରିବି ସକଳ ଅସୁର ।
ନାଶିବି ଅବନୀର ଭାର ॥୧୧୧
ଏମନ୍ତ କୂଟକଥା ମାନ ।
ଭିଆଣ କଲେ ଦେବଗଣ ॥୧୧୨
ଦେବକୀ ଅଷ୍ଟମ ଗର୍ଭର ।
ନିଶ୍ଚୟେ ମରଣ ତୋହର ॥୧୧୩

ବ୍ରହ୍ମାର ବଚନେ ମୁରାରି ।
ମାୟା ମନୁଷ୍ୟ ରୂପ ଧରି ॥୧୧୪
ତୋତେ ମାରିବେ ସେ ଅନନ୍ତ ।
ତୁ କିମ୍ପା ହୋଇଲୁ ନିଶ୍ଚିନ୍ତ ॥୧୧୫
ଦେବେ ଉପୁଜିଛନ୍ତି ଅଂଶେ ।
ଗୋପାଳ-ଯଦୁ-ଭୋଜବଂଶେ ॥୧୧୬
ନନ୍ଦ ଯଶୋଦା ଆଦି ଯେତେ।
କହିବି ଏକେ ଏକେ କେତେ॥୧୧୭
ଦେବକୀ ଦେବୀ ବସୁଦେବ ।
ଏ ଆଦି ଯେତେକ ଯାଦବ ॥୧୧୮
ତୋହାର ଯେତେକ ସେବକ ।
ଦେବତାମାନେ ଏଟି ଦେଖ ॥୧୧୯
ତୁ ଯହୁଁ ଦୁଷ୍ଟପଣ କଲୁ ।
କି ବୋଲି ବାଳକ ଛାଡ଼ିଲୁ ॥୧୨୦
କଂସ ବୋଇଲା ବ୍ରହ୍ମଚାରୀ ।
ଅଷ୍ଟମଗର୍ଭ ମୋ' ବଇରୀ ॥୧୨୧
ଆବର ଯେତେ ଗର୍ଭଶିଷ ।
ତହିଁ ମୋ' ପ୍ରୟୋଜନ କିସ ॥୧୨୨
କଂସର ଶୁଣି ଏ ଉତ୍ତର ।
ମୁନି କାଟିଲେ ଅଷ୍ଟଗାର ॥୧୨୩
ପ୍ରଥମେ ଗଣିଲେକ ଆଠ ।
ଛଦେଣ ବୁଝାଇଲେ ପାଠ ॥୧୨୪
ବାମଭାଗକୁ ଲେଉଟାଇ ।
ପୁଣି ଗଣିଲେ ପାଠ କହି ॥୧୨୫
ଯେଝାର ଠାରୁ ଆଠ ହୋନ୍ତି ।
ଶୁଣ ହୋ ଅସୁର ନୃପତି ॥୧୨୬
ଏହା ଛାଡ଼ିଲେ କେଉଁ ଯଶ ।
ଏଣେ ହୋ ପ୍ରୟୋଜନ କିସ ॥୧୨୭
ଏହା ତୁଁ ନ କଲେ ବିଚାର ।
ନିକଟେ ମରିବୁ ଅସୁର ॥୧୨୮
କଂସକୁ କରାଇ ଉଚାଟ ।
ନାରଦ ଗଲେ ଶୂନ୍ୟବାଟ ॥୧୨୯
ଏମନ୍ତ ମୁନିବାକ୍ୟ ଶୁଣି ।
କଂସ ହିଁ ମନେମନେ ଗୁଣି ॥୧୩୦
ଦୁଃଖେ ରଜନୀ ପୁହାଇଲା ।
ନିଜ ସଭାରେ ବିଜେକଲା ॥୧୩୧

Dr. Sudhanshu Sekhar Mishra

ଅସୁର ବଳ ଘେନି ସଙ୍ଗେ ।
ଧାଇଁଲା ପବନହୁଁ ବେଗେ ॥୧୩୨
ଦେବକୀ ମନ୍ଦିରେ ମିଳିଲା ।
କୋପେ ଅଧର କାମୋଡ଼ିଲା ॥୧୩୩
ଦେବକୀ ମୁଖକୁ ଅନାଇ ।
ବୋଲଇ କୋପଭର ହୋଇ ॥୧୩୪
ତୁ ଅଟୁ ବହେଣୀ ମୋହର ।
ମୋର ମରଣେ ତୋ' ବିଚାର ॥୧୩୫
ମୁଁ ଏହା ଜାଣିବି କେମନ୍ତେ ।
ଭିଣୋଇ ବୋଲେ ଗଳି ପ୍ରତେ ॥୧୩୬
ଏମନ୍ତେ ଅନେକ ବୋଇଲା ।
କୋଳୁଁ ବାଳକ ଘେନିଗଲା ॥୧୩୭
ବେନିଚରଣ କରେ ଧରି ।
ବୁଲାଇ ଅନ୍ତରାଳ କରି ॥୧୩୮
କୋପେ ଅନେକ ଗାଳିଦେଲା ।
ଶିଳା ଉପରେ କଚାଡ଼ିଲା ॥୧୩୯
ଦେବକୀ ବସୁଦେବ ଆଣି ।
ବନ୍ଧନକଲା ପାଦପାଣି ॥୧୪୦
ମାଡ଼ ମରାଇ ମହାରୋଷେ ।
ପାଦେ ଭରିଲା ଲୌହପାଶେ ॥୧୪୧

ଧନ-ସମ୍ପଦ କଲା କ୍ରୂର ।
ଆଣି ଭରିଲା ବନ୍ଦୀଘର ॥୧୪୨
ସାତକବାଟ ମହାବଳ ।
ଲୌହକିଳିଣୀ ଅନର୍ଗଳ ॥୧୪୩
ପ୍ରହରୀ ଶତେକ ଜଗାଇ ।
କହଇ ରୋଷଭର ହୋଇ ॥୧୪୪
ଦେବକୀ ଯେତେ ପ୍ରସବିବ ।
ମୋର ଛାମୁରେ ଜଣାଇବ ॥୧୪୫
ଯେ ମୋର ବୋଲ ନ କରିବ ।
ସେହି ମୋହର ଶତ୍ରୁ ହେବ ॥୧୪୬
ନିଜ ପିଅର ଅଣାଇଲା ।
ଅନେକ ମାଡ଼ ମରାଇଲା ॥୧୪୭
ଶାଙ୍କୋଳି ଦେଲା ବନ୍ଦୀଘରେ ।
ଅନେକ ଯାଦବ ସଙ୍ଗରେ ॥୧୪୮
ଅସୁର ସ୍ୱଭାବେଣ କଂସ ।
ମାଇଲା ଆପଣାର ବଂଶ ॥୧୪୯
କୋପ ସଂହରି ନିଜପୁରେ ।
ଅସୁର ପଶିଲା ଭିତରେ ॥୧୫୦
କଂସ ଜାଣଇ ଯୋଗବଳେ ।
ମୁଁ ଜାତ ଦାନବର କୁଳେ ॥୧୫୧

ଅନେକବାର ମୋତେ ମାରି ।
ମୋକ୍ଷ ନ ଦେଲେ ନରହରି ॥୧୫୨
ଏବେ ମାରିବ ହରି ମୋତେ ।
ଭାଗ୍ୟ ମୋ କେ କରିବ ଅନ୍ତେ ॥୧୫୩
ଏମନ୍ତ ମନେ ବିଚାରିଲା ।
ଯଦୁଙ୍କ ସଙ୍ଗେ ବାଦ କଲା ॥୧୫୪
ଶୁଣ ସୁଜନେ ଭାଗବତ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୧୫୫
ପଣ୍ଡିତେ ନ ଘେନିବା ଦୋଷ ।
କୃଷ୍ଣଚରିତ ସୁଧାରସ ॥୧୫୬
କହଇ ବିପ୍ର ଜଗନ୍ନାଥ ।
ହରିଚରଣେ ଦେଇ ଚିତ୍ତ ॥୧୫୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଁସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେପୂର୍ବାର୍ଦ୍ଧେ ଶ୍ରୀକୃଷ୍ଣ
ଅବତାର ଉପକ୍ରମେ
ଦ୍ୱିତୀୟୋଽଧ୍ୟାୟଂ ॥

---

## ତୃତୀୟ ଅଧ୍ୟାୟ

ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟ ।
କଂସ ପାଇଲା ମହାଭୟ ॥୧
ଦୂତ ପେଷିଲା ଚାରିଦିଗେ ।
ବିଶ୍ୱାସୀ ଦାନବଙ୍କ ସଙ୍ଗେ ॥୨
କଂସର ଯେତେ ମିତ୍ରଗଣ ।
ଆସି ମିଳିଲେ ଜଣେ ଜଣ ॥୩
ଚାଣୁର ତୃଣାବର୍ତ୍ତ ବୀର ।
ମୁଷ୍ଟିକ ଅଘା ଷଣ୍ଢାସୁର ॥୪
ଦ୍ୱିବିନ୍ଦ ନାମେଣ ବାନର ।
ପ୍ରଳମ୍ୱା ବକା ବସାସୁର ॥୫
ପୂତନା ନାମେଣ ରାକ୍ଷସୀ ।
ଆଗେ ମିଳିଲା ବୀରକେଶୀ ॥୬

ବାଣା ନାରକା ଜରାସନ୍ଧ ।
ସ୍ୱଭାବେ ଅଟନ୍ତି ଏ ମନ୍ଦ ॥୭
ଏମନ୍ତେ କହିବଇଁ କେତେ ।
କଂସର ମିତ୍ର ଛନ୍ତି ଯେତେ ॥୮
ଏହାଙ୍କୁ ବସାଇ ଆସନେ ।
କଂସ କହଇ ଖେଦ ମନେ ॥୯
ଶୁଣ ସକଳ ବୀରମଣି ।
ମୋହର କର୍ମଫଳ ବାଣୀ ॥୧୦
ନାରଦ କହିଗଲେ ମୋତେ ।
ଯଦୁଙ୍କୁ ନ ଯିବୁ ପରତେ ॥୧୧
ଯଦୁଙ୍କ ହାତେ ମୋ' ମରଣ ।
ଏ କଥା ଅଟଇ ପ୍ରମାଣ ॥୧୨
ଏମନ୍ତ କହିଗଲେ ମୁନି ।
ବ୍ରହ୍ମାକୁମର ମହାଜ୍ଞାନୀ ॥୧୩

ତୁମ୍ଭେ ଯେ ମୋହର ବିଶ୍ୱାସ ।
ଯଦୁଙ୍କୁ ବେଗେ କର ନାଶ ॥୧୪
ଶୁଣି ଅସୁରେ ପରଜ୍ୱଳି ।
ଯେସନେ ସମୁଦ୍ର ଉଚ୍ଛୁଳି ॥୧୫
ଯଦୁଙ୍କୁ ଦେଲେ କଷ୍ଟମାନ ।
ଯହୁଁ ରଖିବେ ଭଗବାନ ॥୧୬
ଯାଦବେ ଅସୁରଙ୍କ ଡରେ ।
ପଳାଇଗଲେ ଦେଶାନ୍ତରେ ॥୧୭
କେ କୁରୁ ନଗରେ ପଶିଲେ ।
ପାଞ୍ଚାଳ ଦେଶେ କେ ଲୁଚିଲେ ॥୧୮
ବିଦେହ ନିଷଧ କୋଶଳେ ।
ପଶିଲେ ଜୀବନ ବିକଳେ ॥୧୯
ଯେ ଅବା ଯାଇ ନ ପାରିଲେ ।
କଂସରେ ଶରଣ ପଶିଲେ ॥୨୦

Dr. Sudhanshu Sekhar Mishra

କେହୁ ସେବକ ପଣେ ଦାସ ।
କାହାକୁ ଦେଲା ଲୌହପାଶ ॥୨୧
ଏମନ୍ତେ ବରଷେ ପୂରିଲା ।
ପୁଣି ଦେବକୀ ପ୍ରସବିଲା ॥୨୨
ପ୍ରହରୀ ଜଣାଇଲା ଯାଇ ।
ଶୁଣି ଧାଇଁଲା ରୋଷ ବହି ॥୨୩
ଦେବକୀ ନିକଟେ ମିଳିଲା ।
କୋଳୁ ବାଳକ ଉଛୁଡ଼ିଲା ॥୨୪
ବେନିଚରଣ ଧରି କରେ ।
ବୁଲାଇ ପିଟିଲା ଶିଳାରେ ॥୨୫
ଏମନ୍ତେ ବରଷେ ବରଷ ।
ଛ'ପୁତ୍ର କଲା କଂସ ନାଶ ॥୨୬
ଦେଖିଣ ଦେବକୀ ବିକଳ ।
ଦୟାସାଗର ଆଦିମୂଳ ॥୨୭
ଅନନ୍ତ ରୂପ ଧରି ହରି ।
ଦେବକୀ ଗର୍ଭେ ବିଜେ କରି ॥୨୮
ଏ ରୂପେ ଅନନ୍ତ ପ୍ରକାଶ ।
ଗର୍ଭେ ହୋଇଲେ ଅଷ୍ଟମାସ ॥୨୯
ଦେବକୀ ନିଜ ଦେହ ଚାହିଁ ।
ବିକଳେ ନିଶ୍ୱାସ ଛାଡ଼ଇ ॥୩୦
କେତେ ପାତକ କଲି ପୂର୍ବେ ।
ପୁଣି ହୋଇଲା ଆସି ଗର୍ଭେ ॥୩୧
କେତେ ସହିବି ଗର୍ଭକଷ୍ଟ ।
ବିଧାତା କଲା ମୋତେ ହଟ ॥୩୨
ଗର୍ଭେ ଧରଇ ଦଶମାସ ।
କୋଳ ଧରିତେ ନାହିଁ ଆଶ ॥୩୩
ଏମନ୍ତ ବିଚାରି ବିକଳ ।
ନୟନୁ ବହେ ଅଶ୍ରୁଜଳ ॥୩୪
ଦାସବତ୍ସଳ ଭଗବାନ ।
ଜାଣିଲେ ଦେବକୀର ମନ ॥୩୫
ଦୁର୍ଗାଙ୍କୁ ନିକଟେ ବସାଇ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୩୬
ଅମ୍ବିକା ଶୁଣ ମୋ' ଉତ୍ତର ।
ବହନ ଯାଅ ମଞ୍ଚପୁର ॥୩୭
ମଥୁରା-କଂସ-ବନ୍ଦୀ-ଘରେ ।
ମିଳିବୁ ପ୍ରଥମ ପ୍ରହରେ ॥୩୮

ବନ୍ଦୀ କରିଛି କଂସରାୟେ ।
ଏକ ଶାଙ୍କୋଳି ବେନିପାୟେ ॥୩୯
ବସୁଦେବଙ୍କୁ ଯେତେବେଳେ ।
ଧରି ଆଣିଲା କଂସ ବଳେ ॥୪୦
ତାହାର ପତ୍ନୀ ନନ୍ଦଘରେ ।
ଯାଇ ଲୁଚିଲା କଂସଡ଼ରେ ॥୪୧
ରୋହିଣୀ ନାମ ବିଦ୍ୟମାନ ।
ତାହାର ଗର୍ଭ ଅଛି ଶୂନ୍ୟ ॥୪୨
ଦେବକୀ ଦେବୀ ନିଦ୍ରାକାଳେ ।
ଗର୍ଭ ହରିବୁ ଯୋଗବଳେ ॥୪୩
ମିଳିବୁ ନନ୍ଦ ଘରେ ଯାଇ ।
ରୋହିଣୀ-ଗର୍ଭେ ତାହା ଥୋଇ ॥୪୪
ଜନ୍ମିବୁ ଯଶୋଦା ଉଦରେ ।
ମୁଁ ପୁଣି ଯିବି ମଞ୍ଚପୁରେ ॥୪୫
ଦେବକୀ ଗର୍ଭେ ହେବି ଜାତ ।
ମୋତେ ଘେନିଣ ଯିବେ ତାତ ॥୪୬
ତୋତେ ଆଣିବେ ମୋତେ ଥୋଇ ।
ଏ କଥା ନ ଜାଣିବେ କେହି ॥୪୭
ଏମନ୍ତ କଂସର ମରଣ ।
ହସି କହନ୍ତି ନାରାୟଣ ॥୪୮
ମଞ୍ଚେ ହୋଇବୁ ତୁ ଯେ ଜାତା ।
ଜଗତେ ହୋଇବୁ ବିଖ୍ୟାତ ॥୪୯
ଲୋକେ କରିବେ ତୋତେ ପୂଜା ।
ଅନେକ ଦେବେ ବଳିଭୋଜା ॥୫୦
ଭକତେ ହୋଇବୁ ପ୍ରସନ୍ନ ।
ଅନେକ ହେବ ତୋର ନାମ ॥୫୧
ଜୟା ବିଜୟା ଭଦ୍ରକାଳୀ ।
ମଙ୍ଗଳା ଚଣ୍ଡିକା କଙ୍କାଳୀ ॥୫୨
କନ୍ୟକା କୃଷ୍ଣା ଯେ ମାଧବୀ ।
ଈଶାନୀ ଶାରଦା ବୈଷ୍ଣବୀ ॥୫୩
ଦୁର୍ଗା ଅମ୍ବିକା ନାରାୟଣୀ ।
ଏକୁ ଅନେକ ନାମ ଭଣି ॥୫୪
ଗ୍ରାମ ଗ୍ରାମକେ କରି ସ୍ଥାନ ।
ପୂଜନ୍ତେ ହୋଇବୁ ପ୍ରସନ୍ନ ॥୫୫
ଅନେକ ନାମ ତୋ' ଜଗତେ ।
ଅନ୍ତ ମୁଁ କରିବଇଁ କେତେ ॥୫୬

ପୂଜା କରିବେ ସର୍ବସ୍ଥାନେ ।
ରାଜା ପରଜା ଭକ୍ତମାନେ ॥୫୭
ସ୍ତୁତି ପଠନ ମନ୍ତ୍ର ଧ୍ୟାନ ।
ଷୋଡ଼ଶ ଉପଚାର ମାନ ॥୫୮
ଶୁଣ ବଚନ ଆଦିମାତା ।
ଫେଡ଼ ଦେବକୀ ମନଚିନ୍ତା ॥୫୯
ଦେବକୀ ଗର୍ଭୁ ତା' ଆଣିବୁ ।
ରୋହିଣୀ ଗର୍ଭରେ ଥୋଇବୁ ॥୬୦
ତାହାଙ୍କ ନାମ ସଙ୍କର୍ଷଣ ।
ଲୋକରେ ହୋଇବେ ପ୍ରମାଣ ॥୬୧
ନାମ ହୋଇବ ବଳରାମ ।
ବଳେ ନୋହିବେ କେହି ସମ ॥୬୨
ଶୁଣି ଆନନ୍ଦମନା ହୋଇ ।
ମଞ୍ଚେ ଚଳିଲେ ମହାମାୟୀ ॥୬୩
ହରି ଆଦେଶ ଘେନି ଶିରେ ।
ମିଳିଲେ ମଥୁରା ନଗରେ ॥୬୪
କଂସରାଜାର ବନ୍ଦୀଘରେ ।
ମିଳିଲେ ପ୍ରଥମ ପ୍ରହରେ ॥୬୫
ରାତ୍ରେ ଦେବକୀ ନିଦ୍ରାକାଳେ ।
ଗର୍ଭ ହରିଲେ ଯୋଗବଳେ ॥୬୬
ଅନନ୍ତ ଘେନି ମାୟାଦେହେ ।
ଥୋଇଲେ ରୋହିଣୀର ଗର୍ଭେ ॥୬୭
ଗର୍ଭ ସଂଯୋଗ ଦେବୀ କରି ।
ଦିନକୁ ଦିନ ଗର୍ଭ ଭାରି ॥୬୮
ସିଂହ ପୌର୍ଣ୍ଣମୀ ଦିନ ସାର ।
ରୋହିଣୀ ପ୍ରସବେ କୁମର ॥୬୯
ଧବଳ ଜ୍ୟୋତି ରୂପ ପୁଣି ।
ଶିରେ ଶୋହଇ ସପ୍ତଫଣୀ ॥୭୦
ଅପୁଅ ଘରେ ପୁଅ ଜାତ ।
ଆନନ୍ଦ ହୋଏ ନନ୍ଦ ଚିତ୍ତ ॥୭୧
ମୋହର ଘରେ ପୁତ୍ର ନାହିଁ ।
ଏ ମୋତେ କାରଣ ଅଟଇ ॥୭୨
ଯାହା ସେ ଦଇବ ନିର୍ମିତ ।
ଦୁର୍ଗା ହୋଇଲେ ଗର୍ଭଗତ ॥୭୩
ମିଳିଲେ ନନ୍ଦଘରେ ଯାଇ ।
କୃଷ୍ଣ ଜନ୍ମିବା ବାଟ ଚାହିଁ ॥୭୪

Dr. Sudhanshu Sekhar Mishra

ଦେବକୀ ଗର୍ଭେ ଯହୁଁ ଗଲା ।
ଲୋକେ ବୋଇଲେ ଭଲହେଲା ॥୭୫
ଭଲଟି ଗଲେ ନାରାୟଣ ।
ଦେବକୀ ନ ପାଉ କଷଣ ॥୭୬
ଥୋକେ ବୋଇଲେ ଭଲ ହେଲା ।
କଂସର ଡରେ ପଳାଇଲା ॥୭୭
ପୋଡୁ ଏ ଦେବକୀ ଭିଆଣ ।
କେ ବୋଲେ ଗର୍ଭେ ତା'ନ ଶୁଣ ॥୭୮
ଏଡ଼େ ମଡ଼ିଛୀ ଅଛି କାହିଁ ।
କେ ବୋଲେ ମୁଖ ତା'ନ ଚାହିଁ ॥୭୯
କାନ୍ଦି କେ ହୁଅନ୍ତି ବିକଳ ।
କେ ବୋଲେ ରଖ ଆଦିମୂଳ ॥୮୦
ଦେବକୀ ମନର କଷଣ ।
ଜାଣିଲେ ପ୍ରଭୁ ନାରାୟଣ ॥୮୧
ତେଜିଲେ ଜଳଧି ଶୟନ ।
ମଥୁରା ମିଳିଲେ ବହନ ॥୮୨
ବସୁଦେବର ଦେହେ ଯାଇ ।
ପଶିଲେ ଜ୍ୟୋତିରୂପ ହୋଇ ॥୮୩
ବିଷ୍ଣୁର ତେଜ ପରଚଣ୍ଡ ।
ଯେହ୍ନେ ଉଦିତ ମାରତଣ୍ଡ ॥୮୪
ଅମରଗୁରୁ ଲଗ୍ନ ବେଳେ ।
କାନ୍ତ କାମିନୀ ଏକମେଳେ ॥୮୫
ଜଗତ ମଙ୍ଗଳ ପୁରୁଷ ।
ଦେବକୀ ଉଦରେ ପ୍ରବେଶ ॥୮୬
ଉଦୟ କାଳେ ଯେହ୍ନେ ଶଶୀ ।
ପୂର୍ବ ଦିଗରୁ ପରକାଶି ॥୮୭
କୃଷ୍ଣଙ୍କୁ ଧରିଣ ଉଦର ।
ଦେବକୀ ଦିଶିଲା ସୁନ୍ଦର ॥୮୮
ଅନ୍ଧାର ବନ୍ଦୀଘରେ ତେଜ ।
ଯେହ୍ନେ ଉଦିତ ଗ୍ରହରାଜ ॥୮୯
ଦେବକୀ ଗର୍ଭବାସ କଥା ।
ଶୁଣି ପାଇଲା କଂସ ବ୍ୟଥା ॥୯୦
ଭୟେ ଚକିତ ମନେ ଛନ୍ନ ।
ମିଳିଲା ଦେବକୀ ଭୁବନ ॥୯୧
ସାତ କବାଟ ଫେଡ଼ାଇଲା ।
ଅନ୍ଧାର ଘରକୁ ଚାହିଁଲା ॥୯୨
ଉଦୟ ହୋଇ ଦିନକର ।
ଯେହ୍ନେ ନାଶଇ ତମ ଘୋର ॥୯୩
ଦେଖି ଚକିତ କଂସ ମନେ ।
ଭାଳି ବୋଲଇ ଭୟଛନ୍ନେ ॥୯୪
ନିଶ୍ଚୟେ ହୋଇଲା ମରଣ ।
ଏ ତ ଅନାଦି ନାରାୟଣ ॥୯୫
ଗର୍ଭେ ବିଜୟେ ବ୍ରହ୍ମରାଶି ।
ଏ ମୋର କାଳ ଦଣ୍ଡଫାଶି ॥୯୬
ଜୀବନ ନାଶିବ ମୋହର ।
ଦେବକୀ ବଡ଼ଇ ସୁନ୍ଦର ॥୯୭
ଏ ଯେତେ ଗର୍ଭ ପ୍ରସବିଲା ।
ଏମନ୍ତ ବେଳେ ନ ଦିଶିଲା ॥୯୮
କି ବୁଦ୍ଧି କରିବଇଁ ଆଜ ।
ମାରିଣ ଲଭିବଇଁ କାର୍ଯ୍ୟ ॥୯୯
ଏସନ ମନେ ବିଚାରଇ ।
ମୁନି ତ ଯାଇଛନ୍ତି କହି ॥୧୦୦
ଯାହା କହିଲେ ବ୍ରହ୍ମା ସୁତ ।
ସେ କଥା ନୋହଇ ବିଅର୍ଥ ॥୧୦୧
ଯାଦବେ ମୋହର ବଇରୀ ।
ମୋର ମରଣ ହେତୁ କରି ॥୧୦୨
ଦେବକୀ ବସୁଦେବ ଆଦି ।
ଏ ମୋର ଅଟନ୍ତି ବିବାଦୀ ॥୧୦୩
ଭିଣୋଇ ଗୁଣ କର୍ମମାନ ।
ଯୁବତୀ କଲା ଭିନ୍ନ ଭିନ୍ନ ॥୧୦୪
ଆତ୍ମବହେଣୀ ମୋର ଶଲ ।
ମୋହରେ ନ ଇଛଇ ଭଲ ॥୧୦୫
ସପ୍ତମଗର୍ଭ କେଣେ ନେଲା ।
ବୋଇଲା ଗର୍ଭ ଉଭେଇଲା ॥୧୦୬
ଏ ଯେ ମୋହର ଅପରାଧୀ ।
କିସ କରିବି ଏବେ ବୁଦ୍ଧି ॥୧୦୭
ହସ୍ତରେ ଅଛି ମୋ' ଉପାୟ ।
ଛାଡ଼ିଲେ ନ ପାଇବି କାୟ ॥୧୦୮
ଦେବକୀ ପକାଇବି ମାରି ।
ଗର୍ଭ ନାଶିବି ପେଟ ଚିରି ॥୧୦୯
ପୁଣି ବିଚାରୁଅଛି ମନେ ।
ଏ କର୍ମ କରିବି କେସନେ ॥୧୧୦
ଜୀବନ ପାଇଁ ଏଡ଼େ ପାପ ।
କରି ପାଇବି ମନେ ତାପ ॥୧୧୧
ଉଭୟ ଲୋକେ ସୁଖ ନାହିଁ ।
ନରକେ ପଡ଼ିବି ମୁଁ ଯାଇ ॥୧୧୨
ପାପର ମଧ୍ୟେ ପରମାଦ ।
ସ୍ତିରୀ ଗର୍ଭିଣୀ ଶିଶୁବଧ ॥୧୧୩
ଏ ତିନି କର୍ମ ଯେ କରନ୍ତି ।
ଜୀବନ ଥାଉଁ ସେ ମରନ୍ତି ॥୧୧୪
ତାହାର ମରିବାର କାଳେ ।
ନିନ୍ଦିତ ବୋଲନ୍ତି ସକଳେ ॥୧୧୫
ଇହଲୋକରେ ଅପଯଶ ।
ମରଣେ ନରକେ ପ୍ରବେଶ ॥୧୧୬
ଏମନ୍ତ ମନେ ବିଚାରିଲା ।
ଖଡ଼ଗ ଘେନି ବାହୁଡ଼ିଲା ॥୧୧୭
ମିଳିଲା ନିଜପୁରେ ଯାଇ ।
ଭାଳଇ ଚଉଦିଗ ଚାହିଁ ॥୧୧୮
ହରିଙ୍କି କଲା ମହାଭୟ ।
କ୍ଷଣ କ୍ଷଣକେ କମ୍ପେ କାୟ ॥୧୧୯
ଆସନ ଶୟନ ଭୋଜନେ ।
ସ୍ନାନ ବିହାର ଜଳପାନେ ॥୧୨୦
ଗୋଡ଼ାଇଛନ୍ତି ଯେହ୍ନେ ହରି ।
କମ୍ପଇ ମହାଭୟ କରି ॥୧୨୧
ବୃକ୍ଷ କାନନ ନଦୀ ଗିରି ।
ସକଳ ମଣେ ନରହରି ॥୧୨୨
ଏମନ୍ତେ ରଜନୀ ହୋଇଲା ।
ଘୋର ତିମିର ପ୍ରକାଶିଲା ॥୧୨୩
ବ୍ରହ୍ମାଶଙ୍କର ଇନ୍ଦ୍ର ତୁଲେ ।
ତେତିଶ କୋଟି ଦେବବଳେ ॥୧୨୪
ମିଳିଲେ ମଥୁରା ନବରେ ।
ଦେବକୀ ଦେବୀ ବନ୍ଦୀଘରେ ॥୧୨୫
ପ୍ରଣାମ କଲେ ଜଣେ ଜଣେ ।
ଶ୍ରୀକୃଷ୍ଣ ଜନନୀ ଚରଣେ ॥୧୨୬
ଗର୍ଭକୁ ଚାହିଁ ଗଙ୍ଗାଧର ।
ସ୍ତୁତି କରନ୍ତି ବେଦବର ॥୧୨୭
ବାସବ ଆଦି ଦିଗପତି ।
ଯେ ଯାହା ମନେକଲେ ସ୍ତୁତି ॥୧୨୮

Dr. Sudhanshu Sekhar Mishra

ଜୟ ଗୋବିନ୍ଦ ଦାମୋଦର ।
ସତ୍ୟ ବଚନ ସ୍ୱାମୀ ତୋ'ର ॥୧୨୯
ଆବୋରି ଅଛୁ ତିନି ସତ୍ୟ ।
ସୃଷ୍ଟିର ଆଦି ମଧ ଅନ୍ତ ॥୧୩୦
ସତ୍ୟେ ବ୍ରହ୍ମାଙ୍କୁ କଲୁ ଜାତ ।
ସତ୍ୟ ସ୍ୱରୂପ ତୁ ଅଚ୍ୟୁତ ॥୧୩୧
ସତ୍ୟେ ତୁ ପାଳୁ ବସୁନ୍ଧରୀ ।
ତୋ'ର ଭିଆଣ ନରହରି ॥୧୩୨
ସତ୍ୟର ହେଉ ତୁହି ସତ୍ୟ ।
ସତ୍ୟ ବଚନ ସତ୍ୟନେତ୍ର ॥୧୩୩
ସତ୍ୟେ ତୋହର ଆତଯାତ ।
ଆମ୍ଭେ ଜାଣିଲୁ ତୋ'ର ସତ୍ୟ ॥୧୩୪
ତୋ'ର ଏ ସଞ୍ଚିଲା ଶୟଳ ।
ଦୁଷ୍ଟ ନିବାରି ସନ୍ଥ ପାଳ ॥୧୩୫
ଅସାଧୁ ମାରି ସତ୍ୟପାଳ ।
ତୋହର ଶରଣ ସକଳ ॥୧୩୬
ସଂସାର ମଧ୍ୟେ ଦେହବୃକ୍ଷେ ।
ଏଥେ ତୁ ମିଳିଲୁ ପ୍ରତ୍ୟକ୍ଷେ ॥୧୩୭
ବୃକ୍ଷର ଯେତେ ଗୁଣମାନ ।
ଶରୀରେ ତୋହର ଭିଆଣ ॥୧୩୮
ଏକଇ ବୃକ୍ଷ ବେନିଫଳ ।
ଚତୁର ରସ ତିନିମୂଳ ॥୧୩୯
ପଞ୍ଚ ଶିକଡ଼ ତଳେ ଗଣ୍ଡି ।
ଆତ୍ମା ଏହାର ଷଡ଼ଗୋଟି ॥୧୪୦
ସାତ ବକଳ ଦେହେ ଜଡ଼ି ।
ଅଷ୍ଟମ ଡାଳେ ଛନ୍ତି ବେଢ଼ି ॥୧୪୧
ଗଣ୍ଡି ସ୍ୱଭାବେ ନବନେତ୍ର ।
ବିସ୍ତାର ହୋଇ ଦଶପତ୍ର. ॥୧୪୨
ଉପରେ ଛନ୍ତି ବେନି ପକ୍ଷୀ ।
ଏମନ୍ତ ବୃକ୍ଷ ଦେହେ ଲକ୍ଷି ॥୧୪୩
ମୁନି ବୋଲନ୍ତି ରାୟେ ଶୁଣ ।
ଦେହେ କହିବା ବୃକ୍ଷଗୁଣ ॥୧୪୪
ବୃକ୍ଷର ପ୍ରାୟେ ଦେହ ଏକ ।
ଫଳ ଯୋଡ଼ିଏ ଦୁଃଖସୁଖ ॥୧୪୫
ତାମସ ରଜ ସତ୍ତ୍ୱ ଗୁଣ ।
ଏହାର ମୂଳଟି ପ୍ରମାଣ ॥୧୪୬

ଧର୍ମ ସମ୍ପଦ କାମ ମୋକ୍ଷ ।
ଏ ଚାରି ରସଟି ପ୍ରତ୍ୟକ୍ଷ ॥୧୪୭
ଶବଦ ରୂପ ରସ ଗନ୍ଧ ।
ସ୍ପରଶ ପଞ୍ଚମୂଳ ଛନ୍ଦ ॥୧୪୮
ଜନ୍ମ ହୋଇଣ ଦେହ ବହି ।
ବାଳୁତ ରୂପେଣ ବଢ଼ଇ ॥୧୪୯
ତରୁଣ ବୃଦ୍ଧ କ୍ଷୟ ମୃତ୍ୟୁ ।
ଆତ୍ମବିକାର ଷଡ଼ ହେତୁ ॥୧୫୦
ଚର୍ମ ଶୋଣିତ ମାଂସ ମେଦ ।
ଅସ୍ଥି ମଜ୍ଜା ଯେ ଶୁକ୍ର ଛନ୍ଦ ॥୧୫୧
ସପତ ବକଳ ଏହାର ।
ମୁନି କହନ୍ତି ଜ୍ଞାନସାର ॥୧୫୨
ଭୂଜଳ ଅନଳ ସମୀର ।
ଖ ମନ ବୁଦ୍ଧି ଅହଙ୍କାର ॥୧୫୩
ଏ ଅଷ୍ଟଡାଳଟି ଏହାର ।
ନବମ ଛିଦ୍ର ନବଦ୍ୱାର ॥୧୫୪
ଦଶ ଇନ୍ଦ୍ରିୟ ପତ୍ର ଲେଖି ।
ଜୀବ ପରମ ବେନି ପକ୍ଷୀ ॥୧୫୫
ଏମନ୍ତ ବୃକ୍ଷ ରୂପ ବହି ।
ଭାରା ଉଶ୍ୱାସି ରଖ ମହୀ ॥୧୫୬
ଜଗତ ତୋର ତହୁଁ ଜାତ ।
ଲୟ ପାଳନ ଜଗନ୍ନାଥ ॥୧୫୭
ତୋର ମାୟାରେ ମୂର୍ଖ ଜନ ।
ଆତ୍ମାକୁ ଦେଖନ୍ତି ସେ ଭିନ୍ନ ॥୧୫୮
ଜ୍ଞାନୀଏ ଦେଖନ୍ତି ସେ ଏକ ।
ମାୟାରେ ଦିଶୁ ତୁ ଅନେକ ॥୧୫୯
ତୁ ଏ ସଂସାର ଦୁଃଖନାଶେ ।
ଶରୀର ବହୁ ନାନା ଅଂଶେ ॥୧୬୦
ସାଧୁଙ୍କୁ ଦିଶୁ ତୁ ନିର୍ମଳ ।
ଖଳଲୋଚନେ ଯେହ୍ନେ କାଳ ॥୧୬୧
ଯେ ତୋ'ର ପାଦେ ପଦ୍ମନାଭ ।
କରନ୍ତି ଆତ୍ମଜ୍ଞାନେ ଭାବ ॥୧୬୨
ତୋହର ନାମ ନାବ କରି ।
ହେଳେ ତରନ୍ତି ଭବବାରି ॥୧୬୩
ଭୋ ନାଥ କମଳଲୋଚନ ।
ମାୟାରେ ମୋହୁ ପ୍ରାଣୀ ମନ ॥୧୬୪

ଯେ ତୋ'ର ନାମ ନ'ଭଜନ୍ତି ।
ମାୟାପଟଳେ ବଣା ହୋନ୍ତି ॥୧୬୫
ତୀର୍ଥସେବନ-ଦାନ-ତପେ ।
ତରିଲୁ ବୋଲୁଥା'ନ୍ତି ଆପେ ॥୧୬୬
କରନ୍ତି ସିଦ୍ଧଙ୍କ ଉପାୟେ ।
ଭେଦନ୍ତି ବ୍ରହ୍ମଲୋକ ଯାଏ ॥୧୬୭
ତୋ'ପାଦେ ନ କରି ଆଦର ।
ହୃଦେ ବହନ୍ତି ଅହଙ୍କାର ॥୧୬୮
ତହୁଁ ପଡ଼ନ୍ତି ଦେହ ଘେନି ।
ଜନ୍ମ ହୁଅନ୍ତି ନାନା ଯୋନି ॥୧୬୯
ଯେ ତୋ'ର ତହିଁ ମିତ୍ରପଣେ ।
ଚିତ୍ତ ଖଟାନ୍ତି ଅନୁକ୍ଷଣେ ॥୧୭୦
ନିର୍ଭୟେ ଭ୍ରମନ୍ତି ସଂସାରେ ।
ନୃତ୍ୟ କରନ୍ତି ଯମ ଶିରେ ॥୧୭୧
ସତ-ନିର୍ମଳ-ଗୁଣ ଧରୁ ।
ଭକ୍ତଙ୍କ ପାଇଁ ଅବତରୁ ॥୧୭୨
ତପ-ସମାଧି-ଯୋଗ-କ୍ରିୟା ।
ବେଦେ କହନ୍ତି ମୁନି ଯାହା ॥୧୭୩
ତୋ ଆରାଧନୁଁ ନାହିଁ ଆନ ।
ତୁ ପୂରିଅଛୁ ସ୍ଥଳ ଶୂନ୍ୟ ॥୧୭୪
ତୁ ଯେବେ ନୋହିବୁ ଜଗତେ ।
ଅଜ୍ଞାନ ନାଶିବୁ କେମନ୍ତେ ॥୧୭୫
ଯେ ତୋତେ ଯେମନ୍ତ ଚିନ୍ତଇ ।
ଗୁଣ ପ୍ରକାଶୁ ଦେହ ବହି ॥୧୭୬
ତୋହର ଗୁଣ-କର୍ମମାନ ।
ସଂଖ୍ୟା କେ କରୁ ଭଗବାନ ॥୧୭୭
ମନ-ବଚନେ ହେଁ ନ ଜାଣି ।
କେବଳ ବେଦେ ପରିମାଣି ॥୧୭୮
ଶ୍ରବଣେ ତୋ'ର ନାମ ଶୁଣି ।
ତୋ ରୂପ ହୃଦେ ପରିମାଣି ॥୧୭୯
ତୋ'ପାଦପୂଜାର ବିଧାନ ।
ଏଣେ ଯେ ହୋନ୍ତି ସାବଧାନ ॥୧୮୦
ଜନ୍ମ ମରଣ ତା'ଙ୍କ ନାହିଁ ।
ଏମନ୍ତ ପ୍ରଭୁ ଭାବଗ୍ରାହୀ ॥୧୮୧
ତୋହର ପାଦୁଁ ଜାତ ମହୀ ।
ତା' ଦୁଃଖ ନ ପାରିଲୁ ସହି ॥୧୮୨

Dr. Sudhanshu Sekhar Mishra

ତୋହର ପାଦରଜ ଦେଇ ।
ଉଶ୍ୱାସ କର ନାଥ ମହୀ ॥୧୮୩
ସ୍ୱର୍ଗେ ପଶିବୁ ପଦ୍ମନାଭ ।
ତହିଁ ଦେଖିବୁ ତୋ'ର ଭାବ ॥୧୮୪
ଏ ତୋ'ର ଦେହବନ୍ତ ପଣ।
ଏବେ ଜାଣିଲୁ ନାରାୟଣ ॥୧୮୫
ମନୁଷ୍ୟ ଲୀଳାର ଯେ ଭାବ ।
ଯା'ରୂପ ନ ଜାଣନ୍ତି ଦେବ ॥୧୮୬
ମତ୍ସ୍ୟ କଚ୍ଛପ ନରସିଂହ ।
କୋଳ ବାମନ ହଂସ ହୟ ॥୧୮୭
ରାଜନ ଋଷିଦେବ ବଂଶେ ।
ଜନ୍ମ ତୁ ହେଉ ଯୋଗଅଂଶେ ॥୧୮୮
ତିନି-ଭୁବନେ ଦୁଃଖ ନାଶି ।
ଆମ୍ଭଙ୍କୁ ପାଳୁ ବ୍ରହ୍ମରାଶି ॥୧୮୯
ଅବନୀ ଭାରା ଏବେ ହର ।
ଭୋ ନାଥ ଶରଣ ତୋହର॥୧୯୦
ଏମନ୍ତେ ପାହିଲା ରଜନୀ ।
ଦେବକୀ ମୁଖ ଚାହିଁ ଭଣି ॥୧୯୧
ତୋ'ର ଉଦରେ ଜଗନ୍ନାଥ ।
ଜଗତ ରଖିବେ ତୋ'ସୁତ ॥୧୯୨
ଶୁଦ୍ଧ ଚୈତନ୍ୟ ରୂପ ଘେନି।
ପ୍ରକାଶ ହୋଇବେ ମେଦିନୀ॥୧୯୩
କଂସର ଭୟ ଛାଡ଼ ଆଇ ।
ଯାହାର ନାମେ ଦୁଃଖ ନାହିଁ॥୧୯୪
ଅରୁଣ ତେଜ ପ୍ରକାଶିଲା ।
ଦେବଙ୍କୁ ଉଚ୍ଚାଟ ଲାଗିଲା ॥୧୯୫
ବ୍ରହ୍ମାଶଙ୍କର ଆଗେ କରି ।
ଦେବେ ଚଳିଲେ ଯେଝାପୁରୀ ॥୧୯୬
ଶ୍ରୀହରି-ଚରଣେ ମୋ'ଚିତ୍ତ ।
ସୁଜନ ହିତେ କଲି ଗୀତ ॥୧୯୭
ଦଶମସ୍କନ୍ଧେ ହରିବାଣୀ ।
ଶୁଣି ନିର୍ମଳ ହୁଅ ପ୍ରାଣୀ ॥୧୯୮
ପୁରାଣ କଲି ଗୀତ ରସ ।
କହଇ ଜଗନ୍ନାଥ ଦାସ ॥୧୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଗର୍ଭଗତ ବିଷ୍ଣୋ ବ୍ରହ୍ମାଦି କୃତ ସ୍ତୁତିର୍ନାମ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

କହନ୍ତି ଶୁକମୁନି ହସି ।
କୃଷ୍ଣ ଚରିତ ପରଶଂସି ॥୧
ପରୀକ୍ଷ ମୁଖକୁ ଚାହିଁଲେ ।
ଆନନ୍ଦେ ଲୋଚନ ବୁଜିଲେ ॥୨
ସମାଧି କରି ଯୋଗଧାୟି ।
କୃଷ୍ଣ ପ୍ରସନ୍ନ ଲେଶ ପାଇ ॥୩
ପୁଣି କ୍ଷଣକେ ଚକ୍ଷୁ ଫେଇ ।
ହସି କହନ୍ତି ରାଜା ଚାହିଁ ॥୪

ଶୁକ ଉବାଚ

ଶୁଣ ହେ ଶ୍ରୀକୃଷ୍ଣର ଜନ୍ମ ।
ଯେଣେ ଖଣ୍ଡିବ ଭବଭ୍ରମ ॥୫
ଦେବକୀ ଦେବଗଣ ଦେଖି ।
ମନେ ବିଚାରେ ଶଶୀମୁଖୀ ॥୬
ମୁଁ ଅଟେ ମାନୁଷ ଯୁବତୀ ।
ଦେବେ କରନ୍ତି ମୋତେ ସ୍ତୁତି ॥୭
କି ଅବା ଉଦରେ ମୋହର ।
ବିଜୟ କଲେ ଚକ୍ରଧର ॥୮
ଯାଦବକୁଳ ନିସ୍ତାରଣେ ।
ପାପିଷ୍ଠ କଂସର ମରଣେ ॥୯
ଦେବଙ୍କ ଛଳେ ଅବତାର ।
ନାଶିବେ ଅବନୀର ଭାର ॥୧୦
ଏତେ ବିଚାରି ମହାମାୟା ।
କ୍ଷଣକେ ପାସୋରିଲା ତାହା ॥୧୧
ଯୋଗମାୟାର ଯୋଗବଳେ ।
ବିଷୟାରସ କାମଭୋଳେ ॥୧୨
ସୁତ ଲାଳସା ପରିବନ୍ଧେ ।
ତ୍ରିଗୁଣ ଭେଦ କୂଟଛନ୍ଦେ ॥୧୩
ମନ ମୋହିଲା ରାଜସୁତା ।
ନ ଜାଣେ ଗର୍ଭର ବ୍ୟବସ୍ଥା ॥୧୪
ମନୁଷ୍ୟ ଜନ୍ମର ସ୍ୱଭାବ ।
ଦେଖଇ ପତିବ୍ରତା ଗର୍ଭ ॥୧୫
ତଥ୍ୟ ନ କଲେ ରୂପ ହେଜି ।
କ୍ଷଣ କ୍ଷଣକେ ଚକ୍ଷୁ ବୁଜି ॥୧୬
ଶୁଖିଲା ଅଧର ଦଶନ ।
ଫିଟିଲା କଟୀ ପହରଣ ॥୧୭
ଶୁଖିଲା ପ୍ରାୟେ ବିମ୍ବାଧର ।
କମ୍ପିତ ମୁଖ ଭୁଜ ଉର ॥୧୮
ନାଭି ଲେଉଟି ଦିଶେ ଝଳି ।
ଟାଙ୍କୋରେ ତନୁ ରୋମାବଳୀ ॥୧୯
କ୍ଷଣ କ୍ଷଣକେ ଯୋଗନିଦ୍ରା ।
ଛାଡ଼ିଲା ସୁଖ ଭୋଗ ସୁଧା ॥୨୦
ନିବିଡ଼େ ଅବନୀ ଶୟନ ।
କ୍ଷଣେ ମଳୟ ହୁତାଶନ ॥୨୧
ତପତ ନିଃଶ୍ୱାସ ସମୀର ।
କର ଚରଣ ଥରହର ॥୨୨
କୋମଳପତ୍ର ଶଯ୍ୟା ଆଶେ ।
ମଳୟ ଚନ୍ଦନ ପ୍ରକାଶେ ॥୨୩
ସକଳ ସୁଖଭୋଗ ମାନ ।
କରାନ୍ତି ପ୍ରଭୁ ଭଗବାନ ॥୨୪
ଯେ ହେବ ଗୋବିନ୍ଦର ଆଇ ।
ତାହାର ପାପ-ବାଧା କାହିଁ ॥୨୫
ବିଚାର କରେ ଦେବୀ ମନେ ।
ଏ ଗର୍ଭ ସହିବି କେସନେ ॥୨୬

Dr. Sudhanshu Sekhar Mishra

ଛ ବେଳ ହେଲା ପରିହାର ।
ଏବେ ମୋ ପ୍ରକୃତି ଅନ୍ତରେ ॥୨୭
କି ଅବା କାଳଆଶ୍ରେ ମୋତେ ।
ଜୀବନ ହରିବ ଯୁଗତେ ॥୨୮
ଏମନ୍ତେ ଦିବାରାତ୍ର ବସି ।
ମନେ ଭାଳଇ ଶୁଭ୍ରକେଶୀ ॥୨୯
ଏମନ୍ତେ ଦୁଃଖ ସୁଖ ମନେ ।
ଦିନ ହରଇ ମନଛନ୍ନେ ॥୩୦
ଶୁଭେ ହୋଇଲା ଅଷ୍ଟମାସ ।
ପୃଥ୍ୱୀ ମଣ୍ଡିବେ ଶ୍ରୀନିବାସ ॥୩୧
ଶରଦ ହେମନ୍ତ ଅନ୍ତରେ ।
ବସନ୍ତ ଗ୍ରୀଷମ ବେଭାରେ ॥୩୨
ସୂର୍ଯ୍ୟଙ୍କ ତହୁଁ ଷଡ଼ରତୁ ।
ପ୍ରକାଶ ଜନସୁଖ ହେତୁ ॥୩୩
ରତୁଙ୍କ ମଧ୍ୟେ ଶ୍ରେଷ୍ଟବଳ ।
ସଂପୂର୍ଣ୍ଣ ବରଷାର କାଳ ॥୩୪
ଭାଦ୍ରବ ମାସ କୃଷ୍ଣପକ୍ଷେ ।
ସକଳ ଗ୍ରହେ ଛନ୍ତି ଉଚ୍ଚେ ॥୩୫
ଅଷ୍ଟମୀ ନିଶା ଅର୍ଦ୍ଧଭାଗେ ।
ରୋହିଣୀ ନକ୍ଷତ୍ର ସଂଯୋଗେ ॥୩୬
ବୃଷ ରାଶିରେ ନିଶାକର ।
ନକ୍ଷତ୍ର ଗ୍ରହେ ବଳୀୟାର ॥୩୭
ଗଭୀର ଘୋର ମେଘ ଘୋଷ ।
ବର୍ଗ ଉତ୍ତମ ନବଅଂଶ ॥୩୮
ଏହି ସମୟେ ସୁରରାୟେ ।
ଆକାଶେ ଉତ୍ସବ କରାଏ ॥୩୯
ଦୁନ୍ଦୁଭି-ବାଦ୍ୟ-ନାଦ ହେରି ।
ରଙ୍ଗେ ନାଚନ୍ତି ଅପସରୀ ॥୪୦
ଦେବେ କରନ୍ତି ପୁଷ୍ପବୃଷ୍ଟି ।
ଖଣ୍ଡିବେ ଗୋବିନ୍ଦ ଅରିଷ୍ଟି ॥୪୧
ଇନ୍ଦ୍ର ପବନଙ୍କୁ ହକାରି ।
ବୋଲଇ ଯାଅ ମଧୁପୁରୀ ॥୪୨
ମୋହର ଗନ୍ଧ ଗୁଣ ଘେନି ।
ଆନନ୍ଦେ ବହିବୁ ମେଦିନୀ ॥୪୩
କଂସର ବନ୍ଦୀଘରେ ଯାଇ ।
ବହିବୁ ମଳୟ ପୁରାଇ ॥୪୪

ଦିଗେ ଦିଶନ୍ତୁ ପରିମଳ ।
ବହିବୁ ସୁଗନ୍ଧ ଶୀତଳ ॥୪୫
ଇନ୍ଦ୍ରର ଆଜ୍ଞା ପାଇ ବେଗେ ।
ସମୀର ଚଳିଗଲା ଆଗେ ॥୪୬
ପବନ ଗଲା ମଧୁପୁରେ ।
ବହେ ସୁଗନ୍ଧ ରସଭରେ ॥୪୭
ନିର୍ମଳ ଦିଶିଲା ଗଗନ ।
ମହୀ ମଙ୍ଗଳ ବିଦ୍ୟମାନ ॥୪୮
ଗ୍ରାମ ପାଟଣା ପୁର ଘୋଷ ।
ମଙ୍ଗଳ ବାଦ୍ୟେ ଗୀତ ରସ ॥୪୯
ନଦୀଏ ଉଛୁଳିଲେ ଜଳେ ।
ପକ୍ଷୀଙ୍କ ନାଦ ବୃକ୍ଷଡ଼ାଳେ ॥୫୦
ସ୍ତବକ ପୁଷ୍ପ ବନେ ଫୁଟି ।
ବାସ ପ୍ରସରଇ ପ୍ରକଟି ॥୫୧
ବିପ୍ରେ ମଙ୍ଗଳ ବେଦନାଦେ ।
ଅନଳେ କ୍ଷେପନ୍ତି ସମିଧେ ॥୫୨
ଆନନ୍ଦ ହେଉଅଛି ମହୀ ।
କୃଷ୍ଣ ଜନ୍ମିବେ ଦେହ ବହି ॥୫୩
ବଥାଏ ଦେବକୀ ଉଦର ।
ସ୍ୱାମୀଙ୍କି ବୋଲନ୍ତି ଉତ୍ତର ॥୫୪
ଭୋ ନାଥ ଚିନ୍ତ ନାରାୟଣ ।
କେ ସହୁ ଗର୍ଭର କଷଣ ॥୫୫
ଶୁଣି ବସୁଦେବ ଉଠିଲା ।
ଦେବକୀ କଙ୍କାଳ ଧଇଲା ॥୫୬
ଆବୋରି ଗୋବିନ୍ଦ ସୁମରି ।
ଭୟେ ଚିନ୍ତଇ ନରହରି ॥୫୭
ଆକାଶେ ଉଦେ ନିଶାକର ।
ଦେବକୀ ଉଦରୁ ବାହାର ॥୫୮
ନୀଳ-ଜୀମୂତ ଦେହ କାନ୍ତି ।
ବଳୟ ମଣି ଝଟକନ୍ତି ॥୫୯
ପୀତବସନ କଟୀ ଶୋହେ ।
ରୂପେ କୋଟିଏ କାମ ମୋହେ ॥୬୦
କଟୀ-ମେଖଳା ସୁନା-ସୂତା ।
ଉତ୍ତରୀ ସୁବର୍ଣ୍ଣ ପଇତା ॥୬୧
କିରୀଟ କୁଣ୍ଡଳ କଙ୍କଣ ।
ପାଦେ ନୂପୁର ରୁଣଝୁଣ ॥୬୨

ଦିଶଇ ଶଙ୍ଖ ଚକ୍ର ତେଜ ।
ମର୍କତ ସ୍ତମ୍ଭ ଚାରିଭୁଜ ॥୬୩
ଗଦା କମଳ ଶଙ୍ଖଚକ୍ର ।
ଅଧର ଓଷ୍ଠ ରଙ୍ଗ ରେଖ ॥୬୪
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ ।
ରତ୍ନପାଦୁକା ବେନି ପାୟେ ॥୬୫
ଅପୂର୍ବ ରୂପେ ଯୋଗେଶ୍ୱର ।
ଦେବ ମାନବେ ଅଗୋଚର ॥୬୬
ଦେବକୀ ପ୍ରସବିଣ ସୁତ ।
ଶ୍ରମେ ହୋଇଲା ମୋହଗତ ॥୬୭
ପଛେ ଯେ ବସୁଦେବ ଥିଲା ।
କୃଷ୍ଣ ରୂପକୁ ଅନାଇଲା ॥୬୮
ସ୍ଥିରେ ଚାହିଁଲା ବସୁଦେବ ।
ଦେଖିଲା ଅନାଦି ମାଧବ ॥୬୯
କ୍ଷଣେ ରହିଲା ସ୍ଥିର ହୋଇ ।
କୃଷ୍ଣଙ୍କୁ ଚାହିଁ ବିଚାରଇ ॥୭୦
କୃଷ୍ଣ ହରିଲେ ପିତା ଜ୍ଞାନ ।
ଚକିତେ ବିଚାରଇ ମନ ॥୭୧
ମନରେ ଗଙ୍ଗାସ୍ନାନ କଲା ।
ଅୟୁତେ ଧେନୁ ଉତ୍ସର୍ଗିଲା ॥୭୨
ଏ ପୁତ୍ରେ କଂସ ନ ମାଇଲେ ।
ଦେବଇଁ ଅଳଙ୍କାର ତୁଲେ ॥୭୩
ଏ ପୁତ୍ର ନମଲେ ମୋହର ।
ପୁଜିବି ବିପ୍ରଙ୍କ ପୟର ॥୭୪
ଚାହିଁଲା ଗୋବିନ୍ଦ ବଦନ ।
ପୁଣି ପାଇଲା ଦିବ୍ୟଜ୍ଞାନ ॥୭୫
ଭୟେ କମ୍ପଇ ତା’ଶରୀର ।
ଏ ତ ଅନାଦି ଚକ୍ରଧର ॥୭୬
ମୁ ଛାର ମନୁଷ୍ୟ ଅଧମ ।
କିପାଁ ଏ ହୋଇଲା ପ୍ରସନ୍ନ ॥୭୭
କି ବୁଦ୍ଧି କରିବଇଁ ମୁହିଁ ।
କଂସକୁ ଡରେ ମୋର ଦେହୀ ॥୭୮
ବୋଲଇ ବସୁଦେବ ଶୋକେ ।
ଏ କିମ୍ୱା ଜାତ ମଞ୍ଚଲୋକେ ॥୭୯
ତେଜେ ଉଜ୍ଜ୍ୱଳ ବନ୍ଦୀଘର ।
ତିଳେ ହେଁ ନଦିଶେ ଅନ୍ଧାର. ॥୮୦

Dr. Sudhanshu Sekhar Mishra

କର ଅଞ୍ଜଳି ଶିରେ ଦେଇ ।
ସ୍ତୁତି କରଇ କୃଷ୍ଣ ଚାହିଁ ॥୮୧

ବସୁଦେବ ଉବାଚ

ତୋହର ଆଦି ଅନ୍ତ ନାହିଁ ।
ପ୍ରକୃତି ତୋତେ ନଲାଗଇ ॥୮୨
କେବଳ ସୂକ୍ଷ୍ମ ରୂପେ ଶୂନ୍ୟ ।
ମୁନିଙ୍କ ଚିତ୍ତେ ଜ୍ଞାନଗମ୍ୟ ॥୮୩
ତୋହର ମାୟାରେ ଜଗତ ।
ମହତ ଆଦି ପଞ୍ଚଭୂତ ॥୮୪
ତହିଁରେ ନୋହୁ ତୁ ପ୍ରବେଶ ।
ପ୍ରବେଶ ପ୍ରାୟ ତୋ' ପ୍ରକାଶ ॥୮୫
ବାହାର ଭିତରେ ଅନନ୍ତ ।
ସୃଷ୍ଟି କରୁ ତୁ ଆତଯାତ ॥୮୬
ବୁଦ୍ଧି ଲକ୍ଷଣ ଗୁଣ ଘେନି ।
ତୋତେ ଚିନ୍ତନ୍ତି ଆତ୍ମଜ୍ଞାନୀ ॥୮୭
କାହୁଁ ଦେଖିବେ ଦେହବନ୍ତ ।
ତୁ ଦେବ ଅନାଦି ଅଚ୍ୟୁତ ॥୮୮
ଜଗତ ତୋ'ର ତହୁଁ ଜାତ ।
ପାଳିଣ ପୁଣି କରୁ ଅନ୍ତ ॥୮୯
ଜଗତ ଉପୁଜିବା କାଳେ ।
ଅରୁଣ ବର୍ଣ୍ଣ ହେଉ ବେଳେ ॥୯୦
ପାଳିବା କାଳେ ଶୁକ୍ଳବର୍ଣ୍ଣ ।
ଜଗତେ ବୋଲାଉ ତୁ ଧର୍ମ ॥୯୧
ସଂହାର କାଳେ କୃଷ୍ଣରୂପ ।
ତୋର ବିହାର ମୋହକଳ୍ପ ॥୯୨
ତୁ ଏବେ ମୋରଘରେ ନାଥ ।
ଅଂଶେ ହୋଇଲୁ ଦେହବନ୍ତ ॥୯୩
ଜାଣିଲି ଯେତେକ ଅସୁର ।
ମାରି କରିବୁ ମହୀ ସ୍ଥିର ॥୯୪
ତୋ'ର ଜନମ ମୋ'ର ଘରେ ।
ଶୁଣିଣ କଂସ କୋପଭରେ ॥୯୫
ଛ ପୁତ୍ର ମାଇଲା ମୋହର ।
ତୁ କି ନ ଜାଣୁ ଚକ୍ରଧର ॥୯୬
ପ୍ରହରୀମାନେ ଜଗିଛନ୍ତି ।
ଶୁଣିବେ ବୋଲି ମନେ ଭୀତି ॥୯୭
କଂସକୁ କହିବେ ତୁରିତେ ।
ସେ ଆସି ମାରିବଟି ତୋତେ ॥୯୮
ତୋତେ ହୋ ତୁହି ରକ୍ଷାକର ।
ମୁଁ ଛାର ମନୁଷ୍ୟ ମାତର ॥୯୯
ଏମନ୍ତେ ଗଡ଼ଘାଲି ଶୋଇ ।
କମ୍ପଇ କୃଷ୍ଣ ମୁଖ ଚାହିଁ ॥୧୦୦
ଶୀତଳ ବହଇ ପବନ ।
ଦେବକୀ ପାଇଲା ଚେତନ ॥୧୦୧
ଚକ୍ଷୁ ଫେଇଣ ଚାହେଁ ଧୀରେ ।
ଯେହ୍ନେ ଉଦୟ ଦିନକରେ ॥୧୦୨
ଚାହିଁଲା ପୁତ୍ରର ବଦନ ।
ଚକିତେ ହୋଇ ଛନ୍ନଛନ୍ନ ॥୧୦୩
ଅପୂର୍ବ କାହୁଁ ଏ ଅଇଲା ।
ଜଗତେ ନାହିଁ ନା ଦେଖିଲା ॥୧୦୪
ଏ ତ ପୁରୁଷଙ୍କ ଉତ୍ତମ ।
କି ଅବା ପ୍ରଭୁ ଭଗବାନ ॥୧୦୫
ପୂର୍ଣ୍ଣ ଆନନ୍ଦ ଜ୍ଞାନମୟ ।
ଦେଖି ପାଇଲା ଦେବୀ ଭୟ ॥୧୦୬
ବିକଳେ ବେନିକର ଯୋଡ଼ି ।
ହା କୃଷ୍ଣ ବୋଲି ପାଦେ ପଡ଼ି ॥୧୦୭
ଚଞ୍ଚଳ ମନ କରି ସ୍ଥିର ।
ଦେବକୀ ବୋଲଇ ଉତ୍ତର ॥୧୦୮

ଦେବକୀ ଉବାଚ

ଭୋ ନାଥ ନିସ୍ତରିଲି ମୁହିଁ ।
ତୋହର ଆଦି ଅନ୍ତ ନାହିଁ ॥୧୦୯
ମନ ବଚନେ ହେଁ ନ ପାଇ ।
ପ୍ରସନ୍ନ ହୁଅ ମୋତେ ତୁହି ॥୧୧୦
ଜ୍ୟୋତିସ୍ୱରୂପ ନିରଞ୍ଜନ ।
ନିର୍ମଳ ପୁଣ୍ୟ ଦିବ୍ୟଜ୍ଞାନ ॥୧୧୧
ଦେବେ ଗୋଚର ନୋହେ ଯେହ୍ନୁ ।
ଅଧ୍ୟାତ୍ମଦୀପ ମହାବାହୁ ॥୧୧୨
ବ୍ରହ୍ମାର ଅନ୍ତେ ମହୀ ନାଶେ ।
ବ୍ରହ୍ମାଣ୍ଡ ଲୁଚନ୍ତି ଆକାଶେ ॥୧୧୩
ମନର ମୂଳେ ପଞ୍ଚଭୂତେ ।
ତୋହର ଦେହେ ଲୀନହୋନ୍ତେ ॥୧୧୪
ରବି ଶଶାଙ୍କ ନାହିଁ କେହି ।
ତୁ ମାତ୍ର ରହୁ ଶେଷ ହୋଇ ॥୧୧୫
ନିମିଷ ଆଦି ଯେଉଁ କାଳ ।
ତୋହର ଚେଷ୍ଟା ଅନ୍ତରାଳ ॥୧୧୬
ଏ ମର୍ତ୍ତ୍ୟେ ମୃତ୍ୟୁସର୍ପ ରୂପେ ।
ଦଂଶିବ ବୋଲି ମହାକୋପେ ॥୧୧୭
ଦେଖଇଁ ପ୍ରାଣୀଙ୍କି ନିରତ ।
କରଇ କ୍ଷଣେ କ୍ଷଣେ ଗ୍ରସ୍ତ ॥୧୧୮
ଶରଣ ତୋ'ର ପାଦେ ଯେହ୍ନୁ ।
ସେ ମୃତ୍ୟୁ ପାଇବଟି କାହୁଁ ॥୧୧୯
ବାହୁଡ଼ି ହୋଏ ଯେ ନିରାଶ ।
ସେ ପ୍ରାଣୀ ରହେ ତୋ'ର ପାଶ ॥୧୨୦
ତୁ ଏବେ ହରି ରଖ ତୋତେ ।
କଂସକୁ ନ ଯାଇ ପରତେ ॥୧୨୧
ମୋର ଉଦରୁ ତୋ'ର ଜାତ ।
ଲୋକେ କରିବେ କାହୁଁ ସତ ॥୧୨୨
ତୋ' ରୂପ ନ ଜାଣନ୍ତି କେହି ।
କଂସକୁ ଡରେ ମୋର ଦେହୀ ॥୧୨୩
ଶୁଣି ବୋଲନ୍ତି ନାରାୟଣ ।
ଭୋ ତାତ ଶୁଣ ମୋ' ବଚନ ॥୧୨୪
ବ୍ରହ୍ମା ଯେ ସୃଷ୍ଟି ଭିଆଇଲା ।
ତୁମ୍ଭ ଦୁହିଁଙ୍କି ଜାତ କଲା ॥୧୨୫
ପୃଶ୍ନି ସୁତପା ନାମ ବହି ।
ଜନ୍ମ ହୋଇଲ ତୁମ୍ଭେ ଦୁଇ ॥୧୨୬
ତା'ର ଆଦେଶ ଘେନି ଶିରେ ।
ମିଳିଲ ଗହନ ବନରେ ॥୧୨୭
ଅନେକ ଦୁଃଖେ ତପ କରି ।
ଜଳ ପବନ ପତ୍ର ଚରି ॥୧୨୮
ବରଷା ଗ୍ରୀଷ୍ମ ଶୀତ ହିମେ ।
ଶ୍ୱାସ ନିରୋଧି ମହାଶ୍ରମେ ॥୧୨୯
ଶତେ ବରଷ ଦେବମତେ ।
ତପ ସାଧିଲ ଦୃଢ଼ଚିତ୍ତେ ॥୧୩୦
ନିରତେ କଲ ମୋତେ ଧ୍ୟାନ ।
ମୁଁ ପୁଣି ହୋଇଲି ପ୍ରସନ୍ନ ॥୧୩୧

Dr. Sudhanshu Sekhar Mishra

ଆନନ୍ଦେ ଯାଚିଲି ମୁଁ ବର ।
ଜାଣିଲି ତୁମ୍ଭର ବିଚାର ॥୧୩୨
ମୋର ପ୍ରସନ୍ନ ଭାବ ଘେନି ।
ଭାବେ ବୋଇଲ ତୁମ୍ଭେ ବେନି ॥୧୩୩
ବୋଇଲ ଶୁଣ ଚକ୍ରଧର ।
ଆମ୍ଭର ହୋଇବ କୁମର ॥୧୩୪
ପ୍ରଥମେ ହୋଇଲି ମୁଁ ଜାତ ।
ନାମ ମୋ' ପୃଶ୍ନିଗର୍ଭ ଖ୍ୟାତ ॥୧୩୫
ଦ୍ୱିତୀୟେ କଶ୍ୟପ ଅଦିତି ।
ରୂପରେ ତୁମ୍ଭ ଉତପତ୍ତି ॥୧୩୬
ମୁଁ ପୁଣି ତୁମ୍ଭ ଗର୍ଭେ ଜାତ ।
ଉପେନ୍ଦ୍ର ବାମନ ବିଖ୍ୟାତ ॥୧୩୭
ମୋହର ନାମ ଭାବଗ୍ରାହୀ ।
ଜନ୍ମିଲି ପୁଣି ଦେହ ବହି ॥୧୩୮
ପୁତ୍ର ଲାଳସେ ପାଳି ମୋତେ ।
ପଶିବ ମୋ'ର ଦେହେ ଅନ୍ତେ ॥୧୩୯
ଦେବଙ୍କ ବଚନେ ମୁଁ ଜାତ ।
ଅସୁର କରିବି ନିପାତ ॥୧୪୦
ଆଉ କହିତେ ନାହିଁ ବେଳ ।
ମୋତେ ଘେନିଣ ବେଗେ ଚଳ ॥୧୪୧
ନନ୍ଦର ଘରେ ମୋତେ ଥୋଇ ।
କନ୍ୟାକୁ ଆଣ ପାଲଟାଇ ॥୧୪୨

ଶୁକ ଉବାଚ

ଏମନ୍ତ କହି ନରହରି ।
ନରବାଳୁତ ରୂପ ଧରି ॥୧୪୩
ଗୋବିନ୍ଦ ଆଜ୍ଞା ଘେନି ଶିରେ ।
କୋଳେ ଧଇଲା ଛକ୍ରଧରେ ॥୧୪୪
ଘେନିଣ ଦେବ ଚକ୍ରଧର ।
ଭୟେଣ ହୋଏ ଥରହର ॥୧୪୫
ଶ୍ରୀକୃଷ୍ଣ ଆଜ୍ଞା ପରମାଣେ ।
କବାଟ ଫିଟିଲା ତକ୍ଷଣେ ॥୧୪୬
ଫିଟିଲା ପୟର ଶାଙ୍କୋଳି ।
ପଥ କଢ଼ାଇଲା ବିଜୁଳି ॥୧୪୭
କୋଳରେ ଘେନି ନାରାୟଣ ।
ବାହାର ହୋଏ ତତ୍‌କ୍ଷଣ ॥୧୪୮
ନିଦ୍ରାରେ ମୋହିତ ସକଳ ।
ବୃଷ୍ଟି କରନ୍ତି ମେଘମାଳ ॥୧୪୯
ତିନ୍ତିବା ଦେଖି ଜଗନ୍ନାଥ ।
ଫଣା ଉହାଡ଼ିଲା ଅନନ୍ତ ॥୧୫୦
ଯାଆନ୍ତେ କୃଷ୍ଣଙ୍କୁ ଘେନିଣ ।
ପଥେ ଓଗାଳେ ଉଗ୍ରସେନ ॥୧୫୧
ବୋଲଇ କାହିଁର ରେ ଚୋରା ।
ନିଶାରେ ହୋଇଛୁ ବାହାର ॥୧୫୨
କଂସର ଜାଣିନାହୁଁ ବାନା ।
ଦେବଙ୍କ ଗର୍ବ କଲା ଚୂନା ॥୧୫୩
ମୁହିଁ ତାହାର ରିପୁ ମିତ୍ର ।
ଦେଖି ବୁଲଇ ରାତ୍ରେ ପଥ ॥୧୫୪
ଆଜ ହାଣିବି ତୋର ଶିର ।
ବନ୍ଧନ କରି ନେବି ଚୋର ॥୧୫୫
ଶୁଣି କମ୍ପଇ ବସୁଦେବ ।
ବିପତ୍ତି ଦେଲୁ ହା ଦଇବ ॥୧୫୬
ହା କୃଷ୍ଣ ବୋଲିଣ ବିକଳ ।
ନୟନୁ ବହେ ଅଶ୍ରୁଜଳ ॥୧୫୭
ବୋଲଇ ଉଗ୍ରସେନେ ଚାହିଁ ।
ପୁତ୍ରକୁ ନେଉଅଛି ମୁହିଁ ॥୧୫୮
ବୋଲଇ ଉଗ୍ରସେନ ବୀର ।
କାଲି ମାରିବ କଂସାସୁର ॥୧୫୯
ଯେତେ ବାଳକ ତୋ'ର ଜାତ ।
ସବୁଙ୍କୁ କରଇ ସେ ହତ ॥୧୬୦
ମୁଁ କେହ୍ନେ ଛାଡ଼ିଦେବି ପଥ ।
ଶୁଣିଲେ କୋପିବ ଦଇତ୍ୟ ॥୧୬୧
ଶୁଣି ଆରତ ବସୁଦେବ ।
ବିକଳେ ଚିନ୍ତଇ ମାଧବ ॥୧୬୨
କମ୍ପଇ ବସୁଦେବ କାୟେ ।
ବଚନ ନ କହଇ ଭୟେ ॥୧୬୩
ପିଅର ବିକଳ ଦେଖିଣ ।
ବୋଲନ୍ତି ପ୍ରଭୁ ନାରାୟଣ ॥୧୬୪
ଶୁଣ ହୋ ବୀର ଉଗ୍ରସେନ ।
ଆମ୍ଭେ ସେ ଦେବ ଭଗବାନ ॥୧୬୫
ଜନମ ହୋଇ ବନ୍ଦୀଘରେ ।
ଦେବକୀ ଦେବୀଙ୍କ ଉଦରେ ॥୧୬୬
ଏବେ ଯାଉଛୁ ଗୋପପୁର ।
ଏ କଥା ପ୍ରଘଟ ନ କର ॥୧୬୭
ଭାରା ଯେ ନ ସହଇ ମହୀ ।
ଉଶ୍ୱାସ କରିବଇଁ ମୁହିଁ ॥୧୬୮
ଶୁଣି ବୋଲଇ ଉଗ୍ରସେନ ।
ତୁ ଯେବେ ଦେବ ଭଗବାନ ॥୧୬୯
ଦେଖାଅ ଶଙ୍ଖଚକ୍ର ଚିହ୍ନ ।
ସଂପ୍ରତେ ଯିବ ମୋର ମନ ॥୧୭୦
ବେଦ ବଚନେ ଦେବମାନେ ।
କହନ୍ତି ଶାହାସ୍ତ୍ର ପୁରାଣେ ॥୧୭୧
ତୋହର ଚତୁର୍ଭୁଜ କର ।
ଦେଖାଅ ନିଜରୂପ ତୋ'ର ॥୧୭୨
ଭୃତ୍ୟର ତୋଷେ ଭାବଗ୍ରାହୀ ।
ଶଙ୍ଖଚକ୍ର ଚିହ୍ନ ଦେଖାଇ ॥୧୭୩
ଦେଖି ସାନନ୍ଦ ଉଗ୍ରସେନ ।
ଖଡଗ ପକାଇ ବହନ ॥୧୭୪
ବୋଲଇ ନିସ୍ତରିଲି ମୁହିଁ ।
ତୋ'ର ଶ୍ରୀମୁଖକୁ ଅନାଇଁ ॥୧୭୫
ଗୋପକୁ ଯିବ କିସ ଅର୍ଥେ ।
ମଥୁରା ନରହିଲ ଏଥେ ॥୧୭୬
ବୋଲନ୍ତି ଭକତବତ୍ସଳ ।
ଗୋକୁଳେ ସେବକ ମୋହର ॥୧୭୭
ଗୋପୀ ଅଛନ୍ତି ଷୋଳସସ୍ର ।
ସେ ଆମ୍ଭ ନିଜ ପ୍ରାଣ ଗାତ୍ର ॥୧୭୮
ଅଷ୍ଟମ ବରଷ ସଂପୂର୍ଣ୍ଣ ।
କଂସକୁ କରିବୁ ନିଧନ ॥୧୭୯
ତୋତେ ଦେବଙ୍କ ଅଇଶ୍ୱର୍ଯ୍ୟ ।
ଚିନ୍ତା ନ କର ଭୋଜରାଜ ॥୧୮୦
ଶୁଣି ସାନନ୍ଦ ଉଗ୍ରସେନ ।
ଚରଣେ କଲାକ ପ୍ରଣାମ ॥୧୮୧
ମୁଁ ତୋ'ର ଦାସର ସେବକ ।
ତେଣୁ ଦେଖିଲି ତୋ' ଶ୍ରୀମୁଖ ॥୧୮୨

Dr. Sudhanshu Sekhar Mishra

ଅନେକମତେ ସ୍ତୁତି କରି ।
ପୁଣି ଚରଣ ତଳେ ପଡ଼ି ॥୧୮୩
ଶ୍ରୀମୁଖେ ତା'କୁ ଆଜ୍ଞା ଦେଲେ।
ନୃପତି ହୋଇବୁ ବୋଇଲେ ॥୧୮୪
ସନ୍ତୋଷ ହୋଇ ନରହରି ।
ଉଗ୍ରସେନକୁ ଦେଲେ ଶାଢ଼ୀ ॥୧୮୫
ଦେଇ ବୋଲନ୍ତି ଦେବରାଜ ।
ଆଜହୁଁ ମଥୁରାରେ ରାଜ ॥୧୮୬
ଉଗ୍ରସେନକୁ ପୁଷ୍ପମାଳୀ ।
ହରଷେ କୃଷ୍ଣ ଦେଲେ ତୋଳି॥୧୮୭
ପାଟେ ବାନ୍ଧିଲା ଉଗ୍ରସେନ ।
ବୋଲଇ ଯାଅ ଭଗବାନ ॥୧୮୮
ଆନନ୍ଦେ ପଥ ଛାଡ଼ିଦେଇ ।
ବୋଲଇ ନିସ୍ତରିଲି ମୁହିଁ ॥୧୮୯
ତହୁଁ ଚଳିଲେ ଚକ୍ରଧାରୀ ।
ପାଛୋଟି ଯାଏ ଦଣ୍ଡଧାରୀ ॥୧୯୦
ଏମନ୍ତେ କିଛି ଦୂର ଗଲା ।
ଆଜ୍ଞା ପାଇଣ ବାହୁଡ଼ିଲା ॥୧୯୧
ହରଷ ଚିତ୍ତେ ବସୁଦେବ ।
ହୃଦେ ଚିନ୍ତଇ ପଦ୍ମନାଭ ॥୧୯୨
ନଦୀର ତୀରେ ଯାଇ ମିଳି ।
ଦେଖିଲା ଯମୁନା ଉଚ୍ଛୁଳି ॥୧୯୩
ଯମର ବହେଣୀ ଯୁକତ ।
ଗଭୀର କେ କରିବ ଅନ୍ତ ॥୧୯୪
ବହଇ ଅତି ଖରତର ।
ଫେନ-ସ୍ରୋତରେ ଭୟଙ୍କର ॥୧୯୫
ନଦୀରେ ପଶିଲା ବହନ ।
କାତରେ ଅତି ଭୟମନ ॥୧୯୬
ନାସାରେ ପଶନ୍ତେଣ ପାଣି ।
ଶିରେ ବସାଇ ଚକ୍ରପାଣି ॥୧୯୭
ବୁଡ଼ିଣ ଯା'ନ୍ତେ ବସୁଦେବ ।
ହୃଦେ ଚିନ୍ତଇ ବାସୁଦେବ ॥୧୯୮
ହରି ସୁମରେ ଯହୁଁ ଖରେ ।
ଯମୁନା ଜାଣିଲା ନିର୍ଭରେ ॥୧୯୯
ମୋହର ସୌଭାଗ୍ୟ ହୋଇଲା ।
ମାଧବ ଏଥେ ବିହରିଲା ॥୨୦୦
ପୂର୍ବେ ମୋ' ଯେତେ ପାପ ଥିଲା।
ଶ୍ରୀକୃଷ୍ଣ ଦର୍ଶନେ ଛାଡ଼ିଲା ॥୨୦୧
ନାନା ସ୍ତୁତିରେ ପାଦବନ୍ଦି ।
କୃତାର୍ଥ ହୋଇଲା କାଳିନ୍ଦୀ ॥୨୦୨
ତକ୍ଷଣେ ଜଳ ଛାଡ଼ିଗଲା ।
ଗୋଡ଼ ଝୁଣ୍ଟିଆଣି ହୋଇଲା ॥୨୦୩
ହରିଙ୍କି ଦେଖି ଭୟ କଲା ।
ବାଲିବନ୍ତରେ ବାଟ ଦେଲା ॥୨୦୪
ଚଳିଲେ ନଦୀ ପାର ହୋଇ ।
କୃଷ୍ଣଙ୍କୁ ହୃଦରେ ଲଗାଇ ॥୨୦୫
ମିଳିଲେ ଯାଇ ଗୋପପୁରେ ।
ସଭୟେ ନନ୍ଦର ମନ୍ଦିରେ ॥୨୦୬
ନିଦ୍ରା ମୋହିତ ସର୍ବଜନ ।
ଭୟେ ଚାହିଁଇ ଛନଛନ ॥୨୦୭
ପ୍ରସବ କରି ନନ୍ଦରାଣୀ ।
ଅଚେତେ ଶୟନ ଧରଣୀ ॥୨୦୮
ଅମ୍ବିକା ହୋଇଛନ୍ତି ଜାତ ।
ଜଗତ ନିଦ୍ରାରେ ମୋହିତ ॥୨୦୯
ଯଶୋଦା କୋଳେ କୃଷ୍ଣ ଥୋଇ ।
କନ୍ୟା ଆଣିଲା ପାଲଟାଇ ॥୨୧୦
ମିଳିଲା ଦେବକୀ ନିକଟ ।
ତକ୍ଷଣେ ପଡ଼ିଲା କବାଟ ॥୨୧୧
ଲାଗିଲା ଚରଣେ ଶାଙ୍କୋଳି ।
ଦୁହିତା ଛାଡ଼ିଲା ବୋବାଳି ॥୨୧୨
ହରି ଚରିତ ସୁଧାବାଣୀ ।
ଶୁଣି ନିର୍ମଳ ହୁଅ ପ୍ରାଣୀ ॥୨୧୩
ଶ୍ରୀକୃଷ୍ଣ ଜନ୍ମ ରସଭର ।
ଶୁଣି ସଂସାରୁ ହୁଅ ପାର ॥୨୧୪
ପରୀକ୍ଷେ କହେ ଶୁକମୁନି ।
ପୁରାଣ ରସଗୀତ ବାଣୀ ॥୨୧୫
ହରିଚରିତ ଭାଗବତ ।
କହଇ ଦାସ ଜଗନ୍ନାଥ ॥୨୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ କୃଷ୍ଣଜନ୍ମନି
ଚତୁର୍ଥୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚମ ଅଧ୍ୟାୟ

ଶୁଣି ସାନନ୍ଦମନେ ରାଜା ।
ମୁନିଚରଣେ କଲେ ପୂଜା ॥୧
ଆନନ୍ଦେ ଲୋଟଇ ଧରଣୀ ।
କୃତାର୍ଥ କୃଷ୍ଣଜନ୍ମ ଶୁଣି ॥୨
ଭକତି ଦେଖିଣ ତାହାର ।
କହନ୍ତି ବ୍ୟାସଙ୍କ କୁମର ॥୩

ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧାରୀ ।
ଶିଶୁକୁମାରୀ ରାବ କରି ॥୪
ଶୁଣି ପ୍ରହରୀ ବେଗେ ଗଲେ ।
କଂସ ଛାମୁରେ ଜଣାଇଲେ ॥୫
ଶୁଣି ଅସୁର ମହାବଳ ।
ବୋଲଇ ପୂରିଲା ମୋ' କାଳ ॥୬
ଶଯ୍ୟା ଉପେକ୍ଷି ବେଗେ ଉଠି ।
ଖଡ଼୍ଗ କଲା ଦୃଢ଼ମୁଷ୍ଟି ॥୭
ଧାଇଁଲା ପବନହୁଁ ଖରେ ।
ବେଗେ ମିଳିଲା ବନ୍ଦୀଘରେ ॥୮
ପିନ୍ଧିଲା ବସ୍ତ୍ର ଅସମ୍ଭାଳ ।
ଫିଟିଲା ଦୃଢ଼ବନ୍ଧ ବାଳ ॥୯
କବାଟ ପେଡ଼ାଇ ପଶିଲା ।
ଦେଖି ଦେବକୀ ଭୟ କଲା ॥୧୦
କଂସ କମ୍ପଇ କୋପଭରେ ।
ରତ୍ନମୁକୁଟ ଅଛି ଶିରେ ॥୧୧
ଦେଖିଣ କମ୍ପଇ ଦେବକୀ ।
କାନ୍ଦଇ ଅତି ଦୁଃଖେ ଦୁଃଖୀ ॥୧୨
ବୋଲଇ ଶୁଣ ନରନାଥ ।
ହୋଇଲା ଦୁହିତା ଏ ଜାତ ॥୧୩
ଏହାକୁ ସଂହାର ନ କର ।
ବଇରୀ ନୁହଁଇ ଏ ତୋ'ର ॥୧୪
ଯେବେ ତୁ କରିବୁ ସଂହାର ।
ପ୍ରାଣ ତେଜିବି ତୋ' ଉପର ॥୧୫
ଦୁହିତା ଦାନ ଦେଇ ରଖ ।
ନୋହିଲେ ହୋଇବି ନିରେଖ ॥୧୬
ସଙ୍ଖାଳି ହେଉ ବୃଦ୍ଧକାଳେ ।
ପଡୁଛି ତୋ'ର ପାଦତଳେ ॥୧୭
ତୋର ପୁତ୍ରକୁ ଏହା ଦେବି ।
ଆନନ୍ଦେ ବିଭା କରାଇବି ॥୧୮
ବହୁତ ଦେଲୁ ଗର୍ଭକଷ୍ଟ ।
ପୋଡୁ ନିର୍ଲ୍ଲଜ ମୋର ପେଟ ॥୧୯
ଆଉ ବୟସ ମୋର କାହିଁ ।
ପାରିବି ପୁତ୍ର ଉପୁଜାଇ ॥୨୦
ଶୁଣି ଦାନବ ମହାବଳୀ ।
କୋପେ କମ୍ପଇ ପରଜ୍ୱଳି ॥୨୧
ଦେଖିଣ ଚକିତ ଦେବକୀ ।
ଭୟେ ବୁଜିଲା ବେନି ଆଖି ॥୨୨
କୋଳରେ ଲୁଚାଇ ଦୁହିତା ।
ଶରଣ ଗଲି ରଖ ଭ୍ରାତା ॥୨୩
କଂସ ବୋଲଇ ଶିର ଝୁଣି ।
ତୁ ଛାର ମୋହର ବହେଣୀ ॥୨୪
ବସୁଦେବର ଦୋଷ ନାହିଁ ।
ତୁ ମୋତେ ଅଛୁ ବାଟ ଚାହିଁ ॥୨୫
ମୋର ମରଣ ତୋ'ର ସୁଖ ।
ତେଣୁ ପାଉଛୁ ତୁହି ଦୁଃଖ ॥୨୬
ତୁ କାହିଁ ଜାଣୁ ହରିମାୟା ।
ଅସୁରେ ବଡ଼ ସେ ନିର୍ଦ୍ଦୟା ॥୨୭
ନାନା ରୂପରେ ହୋଇ ଜାତ ।
ଅସୁର କରଇ ନିପାତ ॥୨୮
ବଇଲୋଚନ ବୀର ଥିଲା ।
ଭାରିଯା ରୂପେଣ ମାଇଲା ॥୨୯
ସ୍ତିରୀ ମୂରତି ଧରି ଚଣ୍ଡୀ ।
ଅନେକ ଦୈତ୍ୟ ଶିର ଖଣ୍ଡି ॥୩୦
ମହିଷ ମାରି ଦୁର୍ଗା ହୋଇ ।
ତା'ମାୟା ନ ଜାଣୁ ଲୋ ତୁହି ॥୩୧
ରକତବୀର୍ଯ୍ୟ ଚଣ୍ଡମୁଣ୍ଡ ।
ଘୋଟନ୍ତି ମହୀ ନବଖଣ୍ଡ ॥୩୨
ଦୁର୍ଗାର ହସ୍ତେ ପ୍ରାଣ ଦେଲେ ।
ଆବର ଯେତେ ଦୈତ୍ୟ ଥିଲେ ॥୩୩
ଛ ପୁତ୍ର ଦେଇ ମୁରୁଛିଲୁ ।
ଏବେ ତୁ ଦୁହିତା ଇଛିଲୁ ॥୩୪
ଦୁହିତା ଆଶ ଛାଡ଼ ଆଇ ।
ଏ ମୋର ବଇରୀ ଅଟଇ ॥୩୫
ଯାହା କହିଲେ ବିଶ୍ୱକେତୁ ।
ଅଷ୍ଟମ ଗର୍ଭ ମୋର ଶତ୍ରୁ ॥୩୬
ନାରଦ କହିଛନ୍ତି ମୋତେ ।
ମରିବି ତୋ'ର ପୁତ୍ର ହସ୍ତେ ॥୩୭
ଅଷ୍ଟମଗର୍ଭ ମୋ' ବଇରୀ ।
ଏହାକୁ ପକାଇବି ମାରି ॥୩୮
ଦେବକୀ ଦୁହିତା ସେନେହ ।
କଂସେ କରଇ ଗରୁ କୋହ ॥୩୯
ଚାହିଁଲା ଅଧର କାମୋଡ଼ି ।
କୋଳରୁ ଆଣିଲା ଉଛୁଡ଼ି ॥୪୦
ବେନିଚରଣ ଧରି କରେ ।
ବୁଲାଇ ପିଟିଲା ଶିଳାରେ ॥୪୧
ଯେ ଦେବୀ ଜଗତସଂହାରେ ।
କାହାର ବଳ ତା'କୁ ମାରେ ॥୪୨
କଂସର ହସ୍ତରୁ ଉଛୁଳି ।
ଆକାଶେ ଯେସନେ ବିଜୁଳି ॥୪୩
ତେଜେ ଦଶଦିଗ ବିରାଜେ ।
ବେନିଚରଣ ଅଷ୍ଟଭୁଜେ ॥୪୪
କେ କହୁ ଦେବୀ ଆଭରଣ ।
ଅଙ୍ଗଦ ନୂପୁର କଙ୍କଣ ॥୪୫
ଗନ୍ଧଚନ୍ଦନ-ପୁଷ୍ପମାଳୀ ।
ତେତିଶ କୋଟି ଦେବେ ମିଳି ॥୪୬
ସ୍ତୁତି କରନ୍ତି ସୁର ମୁନି ।
କଂସକୁ ବୋଲନ୍ତି ଭବାନୀ ॥୪୭
ରେ କଂସ ଶୁଣ ମୋ' ଉତ୍ତର ।
ତୋର ବଇରୀ ଚକ୍ରଧର ॥୪୮

Dr. Sudhanshu Sekhar Mishra

ସେ ତୋତେ କରିବେ ସଂହାର ।
ଆବର ଯେତେକ ଅସୁର ॥୪୯
ତୋହର ପାଇଁ ଦେହ ବହି ।
ଜାତ ହୋଇଲେ ଯହିଁ ତହିଁ ॥୫୦
ତୁ ମୋତେ ନ ଜାଣି କଟାଢୁ ।
ନିୟତ ପଥ କି କେ ହୁଡୁ ॥୫୧
ଦେବେ ଯେ ତୋହର ବଇରୀ ।
ତାହାଙ୍କ ବୋଲକୁ ତୁ ଡରି ॥୫୨
ଛ ପୁତ୍ର ମାଇଲୁ ଏହାର ।
ଧର୍ମକୁ ଛାଡ଼ିଲୁ ଅସୁର ॥୫୩
ଏବେ ମୁଁ କହୁଅଛି ତୋତେ ।
ହରିଙ୍କି ଭାବ ହୃଦଗତେ ॥୫୪
ସେ ବିଶ୍ୱମ୍ଭର ବିଶ୍ୱମୂର୍ତ୍ତି ।
ଭାବିଲେ ପାଇବୁ ମୁକତି ॥୫୫
ସେ ହରି ତୋହର ବଇରୀ ।
ତୋ'ର ମରଣେ ଅବତରି ॥୫୬
ସେ ଶୂନ୍ୟପୁରୁଷ ଗୋସାଇଁ ।
ତାହା ଭେଟିବୁ ଅବା କାହିଁ ॥୫୭
ଏବେ ତୁ ଶୁଣ କଂସ ବୀର ।
ଏ ତୋର ବହେଣୀ ସୋଦର ॥୫୮
ଏହାଙ୍କୁ ବନ୍ଦୀଘରୁ ଫେଡ଼ି ।
ବେନି ଚରଣତଳେ ପଡ଼ି ॥୫୯
ତୋଷିଣ ନିଅ ନିଜପୁର ।
ତୋ'ର ବଇରୀ ପିତାମ୍ବର ॥୬୦
କହି ଚଳିଲେ ନିଜସ୍ଥାନ ।
ଉଚ୍ଚାଟ କରି କଂସ ମନ ॥୬୧
ଯାହା କହିଲେ ଜଗନ୍ନାଥ ।
ଜଗତେ ହୋଇଲା ବିଖ୍ୟାତ ॥୬୨
ଦେବୀ ବଚନ କଂସ ଶୁଣି ।
ବିଚାର କଲା ମନେ ଗୁଣି ॥୬୩
ନ ଜାଣି ବିଧାତାର ଗତି ।
ସୋଦରେ କଲଇଁ ଅନୀତି ॥୬୪
ଅନେକ କଲଇଁ ମୁଁ ଦୋଷ ।
କେମନ୍ତେ ହୋଇବ ବିଶ୍ୱାସ ॥୬୫
କିସ କରିବି ବୋଲି ଭାଳି ।
ଚରଣେଁ ଫେଡ଼ିଲା ଶାଙ୍କୋଳି ॥୬୬

ଚାହିଁଲା ଦେବକୀ ବଦନ ।
ବୋଲଇ ମଧୁର ବଚନ ॥୬୭
ଦେବକୀ ବସୁଦେବ ଶୁଣ ।
ତୁମ୍ଭରେ କଲି ଦ୍ରୋହପଣ ॥୬୮
ମୁହିଁ ତ ସ୍ୱଭାବେ ଅସୁର ।
ଭଣଜା ମାଇଲି ମୋହର ॥୬୯
ତୁମ୍ଭଙ୍କୁ ଦେଲି ପୁତ୍ରକଷ୍ଟ ।
ମୋହର ଧର୍ମ କଲି ନଷ୍ଟ ॥୭୦
ସଂସାରେ କଲି ଅପଯଶ ।
ନରକେ ହୋଇବି ପ୍ରବେଶ ॥୭୧
ଦେହ ବହିଲେ ନିଶ୍ଚେ ମରି ।
ସଂସାର ନୁହଁଇ କାହାରି ॥୭୨
ବୃକ୍ଷର ତଳେ ଯେହ୍ନେ ଆସି ।
ପଥିକୀ ବିଶ୍ରାମନ୍ତି ବସି ॥୭୩
ପୁଣି ଚଳନ୍ତି ଶ୍ରମ ସାରି ।
ସେ ବୃକ୍ଷ ନୁହଁଇ କାହାରି ॥୭୪
ତେମନ୍ତ ମାୟା ଏ ସଂସାର ।
କେ ମାତା କେ ପିତା କୁମର ॥୭୫
ଅର୍ଜ୍ଜିଲା କର୍ମେ ଆତଯାତ ।
ମାୟାଭିଆଣ ତାତମାତ ॥୭୬
ବିଧି ବିଚାରେ ଯାହା କରି ।
ଭୁଞ୍ଜଇ ସେ ଫଳ ଆବୋରି ॥୭୭
ଦୋଷ କରିବା ମୋର କ୍ଷମା ।
ସ୍ୱଭାବେ ମୁହିଁ ଦୁରାତମା ॥୭୮
ଏମନ୍ତ ବୋଲି ଶୋକ କରି ।
ପାଦେ ପଡ଼ିଲା କରଯୋଡ଼ି ॥୭୯
ସହୃଦପଣ ଦେଖାଇଲା ।
ଅନେକ ଧନରତ୍ନ ଦେଲା ॥୮୦
ନିଜ ମନ୍ଦିରେ ଦେଲା ବାସ ।
ଅନେକ କରାଇ ବିଶ୍ୱାସ ॥୮୧
କଂସ ଭକତିଭାବ ଦେଖି ।
ସନ୍ତାପ ଛାଡ଼ିଲା ଦେବକୀ ॥୮୨
ସନ୍ତୋଷ ହୋଇ ବସୁଦେବ ।
ଦିନକୁ ଦିନ ବଡ଼ ଭାବ ॥୮୩
ଏମନ୍ତେ ରଜନୀ ପାହିଲା ।
କଂସ ସଭାରେ ବିଜେକଲା ॥୮୪

ଅସୁରଗଣଙ୍କୁ ବସାଇ ।
କହଇ ବିଶ୍ୱାସ କରାଇ ॥୮୫
ଶୂନ୍ୟେ ଚଣ୍ଡିକା ଯାହା ଭଣି ।
ସବୁ କହିଲା ପରିମାଣି ॥୮୬
କଂସର ଦେଖିଣ କାତର ।
ଅସୁରେ ବୋଲନ୍ତି ଉତ୍ତର ॥୮୭
ଶୁଣ ହୋ ଭୋଜନୃପମଣି ।
ଯାହା କହିଲେ ନାରାୟଣୀ ॥୮୮
ତୋହର ଆଜ୍ଞା ଘେନି ଶିରେ ।
ବୁଲିବୁ ସକଳ ଦେଶରେ ॥୮୯
ଦିନକଠାରୁ ଯେତେ ବାଳ ।
ସବୁରି ପୂରାଇବୁ କାଳ ॥୯୦
ଯେତେ ବାଳକ ବସୁନ୍ଧରୀ ।
ସକଳ ପକାଇବୁ ମାରି ॥୯୧
ତୁ କିମ୍ପା ଡରୁ ଦେବଗଣେ ।
ସେବନ୍ତି ତୋହର ଚରଣେ ॥୯୨
ତୋ ତୁଲେ କେ କରୁ ସଂଗ୍ରାମ ।
ଦେବେ ନୁହଁନ୍ତି ସରିସମ ॥୯୩
ତୋହର ଶୁଣି ଧନୁଘୋଷେ ।
ପଳାନ୍ତି ସଂଗ୍ରାମୁଁ ତରାସେ ॥୯୪
ଜୀବନ ପାଇଁ ଛାଡ଼ି ରଣ ।
ବେଗେ ପଳାନ୍ତି ଦେବଗଣ ॥୯୫
କେ ପିନ୍ଧି ନ ପାରନ୍ତି ବାସ ।
କାହାର ଭୟେ ଫିଟେ କେଶ ॥୯୬
ନିସତେ ନ ପଳାନ୍ତି ଯେହୁ ।
ନ ମାରି ତାଙ୍କୁ ଦୟା ବହୁ ॥୯୭
ଜୀବନ ପାଇଁ ଯା'ର ଆଶ ।
ସେ ତୋ'ର କରିବେଟି କିସ ॥୯୮
ତହୁଁ ଅଧିକ ତିନି ଦେବ ।
ବ୍ରହ୍ମା ଶଙ୍କର ପଦ୍ମନାଭ ॥୯୯
ଆତ୍ମାର ସୁଖେ ସେ ରମନ୍ତି ।
ସେ କିମ୍ପା ତୋତେ ବାଦ ଚିନ୍ତି ॥୧୦୦
ଅଗାଧ କ୍ଷୀରସିନ୍ଧୁ ଜଳେ ।
ଶୟନ ଅନନ୍ତର କୋଳେ ॥୧୦୧
ପାଦେ ଖଟନ୍ତି ବେନି ନାରୀ ।
ସୁଖେ ଶୟନ ଦେବ ହରି ॥୧୦୨

Dr. Sudhanshu Sekhar Mishra

ସେ କାହିଁ ତୋ'ର ତୁଲେ ରଣ।
ମିଥ୍ୟା କହିଲେ ଦେବଗଣ ॥୧୦୩
ବ୍ରହ୍ମା ତ ଥାଇ ତା'ର ସୁଖେ ।
ଚିନ୍ତା କରଇ ତିନିଲୋକେ ॥୧୦୪
ତପହୁଁ ନଜାଣଇ ଆନ ।
ଚିନ୍ତଇ ପ୍ରଭୁ ଭଗବାନ ॥୧୦୫
କୃଷ୍ଣହୁଁ ନ ଜାଣଇ କିଛି ।
ସେ କିପାଁ ତୋତେ ବାଦ ଇଛି ॥୧୦୬
ଈଶ୍ୱର ରହେ ଭୂତମେଳେ ।
ଅମ୍ବିକା ଥାଇ ତା'ର କୋଳେ ॥୧୦୭
ସେ କିପାଁ ସମର କରିବ ।
ନିତ୍ୟେ ଉଦାସୀ ସଦାଶିବ ॥୧୦୮
ଇନ୍ଦ୍ର ତ ବଳେ ନୋହେ ସରି।
ତୋତେ ତ ଦିଗପାଳେ ଡରି ॥୧୦୯
ତୋ'ର ବଇରୀ ଯେବେ ହରି ।
ସେ ଥାଇ ସର୍ବଘଟେ ପୂରି ॥୧୧୦
କେ ତା'କୁ ପାଇବ ତ୍ରିଲୋକେ।
ଶୁଣ କହିବା କଉତୁକେ ॥୧୧୧
ଦେବତାମାନେ ତା'ର ମୂଳ ।
ଯେ ଧର୍ମ ଧରିଛି ଶୟଳ ॥୧୧୨
ଦେବେ ତାହାର ତହୁଁ ଜନ୍ମ ।
ବେଦରୁ ଯେହ୍ନେ ନିତ୍ୟକର୍ମ ॥୧୧୩
ଗୋରୁ ବ୍ରାହ୍ମଣ ଯଜ୍ଞଦାନ ।
ତୀର୍ଥ ଦକ୍ଷିଣା ତପ ଶ୍ରମ ॥୧୧୪
ତପ କରନ୍ତି ଯେତେ ଲୋକେ ।
ବିଷ୍ଣୁଙ୍କୁ ଭଜନ୍ତି ଯେ ଥୋକେ ॥୧୧୫
ଶ୍ରଦ୍ଧା କରନ୍ତି ଯେହୁ ଧର୍ମେ ।
ଦୟା କରନ୍ତି ଦୁଃଖୀଜନେ ॥୧୧୬
କରନ୍ତି ପର ଉପକାର ।
ଯମଲୋକକୁ ଯା'ର ଡ଼ର ॥୧୧୭

ଏହାଙ୍କ ଦେହେ ଥାଇ ହରି ।
ଏ ମଲେ ମରଇ ମୁରାରି ॥୧୧୮
ଏ ଆମ୍ଭ ଉଚିତ ବିଚାର ।
ଏମନ୍ତେ ଶତ୍ରୁଯିବ ମା'ର ॥୧୧୯
ଅଇରୀ ବାଳକାଙ୍କୁ ମାରି ।
ନ ମଲେ ଦିନୁ ଦିନ ବଢ଼ି ॥୧୨୦
ଦେହରେ ବ୍ୟାଧି ଜନ୍ମକାଳେ।
ହେଳା ଯେ କରେ ସୁଖଭୋଳେ॥୧୨୧
ସେ ଯେହ୍ନେ ନିରତେ ବଢ଼ଇ।
ଶତ୍ରୁର ସ୍ୱଭାବଟି ଏହି ॥୧୨୨
ଆଜ୍ଞା ତୁ ଦିଅ ବେଗ କରି ।
ହରିଙ୍କି ପକାଇବୁ ମାରି ॥୧୨୩
ଭାଜିବୁ ପ୍ରସାଦ ଅଟାଳୀ ।
ଗୋରୁ ବ୍ରାହ୍ମଣ ଆଦି ମାରି ॥୧୨୪
ଯଜ୍ଞ ଭାଙ୍ଗିବୁ ମୁନିଙ୍କର ।
ଯେ ଧର୍ମନୀତିର ବେଭାର ॥୧୨୫
ଦ୍ୱାଦଶ ଦିବସ ବାଳକ ।
ଖୋଜି ମାରିବୁ ଲକ୍ଷ ଲକ୍ଷ ॥୧୨୬
ଧର୍ମ ବିଧ୍ୱଂସେ କର ଆଶ ।
ଦେବେ କରିବେ ଆନ କିସ ॥୧୨୭
ଏବେ ତୁ କର ସ୍ନାନ କର୍ମ ।
କୁଳର ଯେ ବିଧିବିଧାନ ॥୧୨୮
ଅସୁରବଳ ବୋଲ ଶୁଣି ।
କଂସ ଆନନ୍ଦମନେ ଗୁଣି ॥୧୨୯
ଅନେକ କଲା ପରଶଂସା ।
ହିତ ମଣିଲା ବିଷ୍ଣୁହିଂସା ॥୧୩୦
ଜଣ ଜଣକେ ଶାଢ଼ି ଦେଲା ।
ବଇରୀ ସଂହାର ବୋଇଲା ॥୧୩୧
ଅସୁରେ କଲାକ ବିଶ୍ୱାସ ।
ଅମୃତ ମଣିଲାକ ବିଷ ॥୧୩୨

କଂସ ଆଦେଶ ଘେନି ବେଗେ।
ଅସୁରେ ଗଲେ ଦଶଦିଗେ ॥୧୩୩
ତକ୍ଷଣେ ହୋଇ କାମରୂପୀ ।
ପଶିଲେ ବନ ଗିରିବ୍ୟାପୀ ॥୧୩୪
ଗ୍ରାମ ପାଟଣା ପୁର ଦେଶ ।
ଅନେକ ଶିଶୁ କଲେ ନାଶ ॥୧୩୫
ଦାନବବୁଦ୍ଧି ମୂଢ଼ପଣ ।
ସାଧୁଙ୍କୁ ଦିଅନ୍ତି ଜଞ୍ଜଣ ॥୧୩୬
କଂସ ବଇରୀ ଅଛି କାହିଁ ।
ନିତ୍ୟେ ଖୋଜନ୍ତି ଭାବଗ୍ରାହୀ ॥୧୩୭
ତାମସ ଗୁଣ ଆଚରିଲେ ।
ନିକଟେ ମରଣ ଲୋଡ଼ିଲେ ॥୧୩୮
ଆୟୁଷ ବଳ ଯଶ ଧର୍ମ ।
ଲୋକ ଆଶିଷ ଶୁଭକର୍ମ ॥୧୩୯
ଏ ଆଦି ସର୍ବନାଶ କରେ ।
ଯେ ହିଂସା କରିଥା'ନ୍ତି ପରେ॥୧୪୦
ସୁଜନେ ଶୁଣ ହରିକଥା ।
ଫିଟିବ ଭବବନ୍ଧ ବ୍ୟଥା ॥୧୪୧
କୀଟରୁ ବ୍ରହ୍ମଲୋକ ଯାଏ ।
ହିଂସକ ହରିଙ୍କି ନ ପାଏ ॥୧୪୨
ସେ ହରି ଦୁଃଖୀଙ୍କ ସୋଦର ।
ହିଂସା ନାଶିବେ ପ୍ରଭୁ ମୋ'ର॥୧୪୩
କୃଷ୍ଣର ପାଦେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ॥୧୪୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ପଞ୍ଚମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଷଷ୍ଠ ଅଧ୍ୟାୟ

ବ୍ୟାସକୁମର ମୁଖୁଁ ଶୁଣି ।
ଅମୃତ ଭାଗବତ ବାଣୀ ॥୧
ଆନନ୍ଦେ ପୁଲକିତ ହୋଇ ।
ମୁନିଚରଣେ ଶିର ଦେଇ ॥୨
ଉଠି ଯୋଡ଼ିଣ ବେନିକର ।
ରାଜନ ବୋଇଲ ଉତ୍ତର ॥୩

ପରୀକ୍ଷିତ ଉବାଚ

ଭୋ ମୁନି ହୋଇଲି ପବିତ୍ର ।
ଶୁଣି ଚରିତ ଭାଗବତ ॥୪
କୃଷ୍ଣଙ୍କୁ ବସୁଦେବ ନେଇ ।
ଅଇଲା ନନ୍ଦଘରେ ଥୋଇ ॥୫
ତହିଁକି କଲେ ବନମାଳୀ ।
ଶୁଣିବି କୃଷ୍ଣ ବାଳକେଳି ॥୬
କହି ପବିତ୍ର ମୋତେ କର ।
ସେବଇଁ ଚରଣେ ତୁମ୍ଭର ॥୭
ଶୁଣି ସାନନ୍ଦ ମୁନିବର ।
ବୋଲନ୍ତି ଶୁଣ ଦଣ୍ଡଧର ॥୮

ଶୁକ ଉବାଚ

ନିଦ୍ରା ଜଗତ ମୋହିଥିଲା ।
ପାଲଟି ବସୁଦେବ ନେଲା ॥୯
ଦେବକୀ କୋଳରେ ରଖିଲା ।
କଂସର ହସ୍ତୁ ଶୂନ୍ୟେ ଗଲା ॥୧୦
ଏମନ୍ତେ ପାହିଲା ରଜନୀ ।
ଶୁଣ ତୁ ବୀର ଚୂଡ଼ାମଣି ॥୧୧
ଚେତି ଚାହିଁଲା ନନ୍ଦରାଣୀ ।
ଚିଆଇଁ ଉଠି ସୁଲକ୍ଷଣୀ ॥୧୨
ଦେଖିଲା ହୋଇଛି ତନୟେ ।
ନନ୍ଦକୁ କହିଲେ ଥୋକାଏ ॥୧୩
ଶୁଣି ମିଳିଲା ବେଗେ ନନ୍ଦ ।
ପୁତ୍ରକୁ ଦେଖିଣ ଆନନ୍ଦ ॥୧୪
ଯେତେ ଯଶୋଦା ପରିବାରୀ ।
ରାଇ ଆଣିଲେ ଗୋପନାରୀ ॥୧୫
ବ୍ରାହ୍ମଣେ ମିଳିଲେ ଗହଳ ।
ଶୁଣିଲେ ପୁତ୍ର ଜନ୍ମ ଗୋଳ ॥୧୬
ନନ୍ଦ ଦେଖିଣ ଦ୍ୱିଜଗଣ ।
ତକ୍ଷଣେ ପୂଜିଲା ଚରଣ ॥୧୭
ବେଗେ ସେ ହୋଇ ଶୁଚିବନ୍ତ ।
କାଞ୍ଚନ ଆଣିଲା ବହୁତ ॥୧୮
ବ୍ରାହ୍ମଣେ କଲେ ବେଦଧ୍ୱନି ।
ମଙ୍ଗଳ ଶୁଭଲଗ୍ନ ଘେନି ॥୧୯
କରାଇ ଜାତକର୍ମ ବିଧି ।
ଦେବତା ପିତୃଙ୍କୁ ଆରାଧି ॥୨୦
ବିପ୍ରଙ୍କୁ ଅନେକ ପୂଜିଲା ।
ବେନିନିୟୁତ ଧେନୁ ଦେଲା ॥୨୧
ମଣ୍ଡିଣ ବସ୍ତ୍ର ଅଳଙ୍କାର ।
ଚନ୍ଦନ କୁସୁମ ଚାମର ॥୨୨
ତିଳପର୍ବତ ମାନ କରି ।
ଦେଲା କାଞ୍ଚନ ବସ୍ତ୍ର ଭରି ॥୨୩
ବିପ୍ରେ ପଢ଼ିଲେ ବେଦ ଚାରି ।
ରଙ୍ଗେ ନାଚନ୍ତି ଗୋପନାରୀ ॥୨୪
ସୂତ ମାଗଧ ବନ୍ଦୀ ମିଳି ।
ଗାବନ୍ତି ମଙ୍ଗଳ ଉଚ୍ଚାରି ॥୨୫
ବାଜଇ ବୀରତୂରୀ ଭେରୀ ।
ଆନନ୍ଦେ ମଙ୍ଗଳମହୁରୀ ॥୨୬
ନନ୍ଦର ଘରେ ପୁତ୍ରଜାତ ।
ଚହଳ ଶୁଭେ ଅପ୍ରମିତ ॥୨୭
ଗୋପନଗରେ ଯେତେ ଲୋକେ ।
ଚିଆଇଁ ଧାଇଁଛନ୍ତି ଥୋକେ ॥୨୮
ସୁଖେଣ ପାହିଲା ରଜନୀ ।
ବାହାର ହୋଇଲେ କାମିନୀ ॥୨୯
ଅଗଣା ଖରକି ପହଁରା ।
ଚନ୍ଦନ ଗୋଳି ଦ୍ୟନ୍ତି ଛେରା ॥୩୦
ଦୁଆରେ ସୁବର୍ଣ୍ଣ କଳସେ ।
ତୋରଣା ଲମ୍ବାନ୍ତି ହରଷେ ॥୩୧
ଗୋରୁଙ୍କୁ ମଣ୍ଡନ୍ତି ଗୋପାଳେ ।
ବସ୍ତ୍ର ଭୂଷଣ ଫୁଲମାଳେ ॥୩୨
ବୃଷଭ ସୁରଭି ବାଛୁରୀ ।
ହଳଦୀ ତେଲ ତାଙ୍କୁ ବୋଳି ॥୩୩
ଗଉଡ଼େ ଶୁଚିବନ୍ତ ହୋଇ ।
ଯେ ଯାହା ଅଳଙ୍କାର ନେଇ ॥୩୪
ହାର କଙ୍କଣ କର୍ଣ୍ଣଫୁଲ ।
ବାଜେଣୀ ନୂପୁର ଅମୂଲ୍ୟ ॥୩୫
ଏମନ୍ତେ ପିନ୍ଧି ଅଳଙ୍କାର ।
ହସ୍ତେ ଘେନିଲେ ଦୁର୍ବାଙ୍କୁର ॥୩୬
ଏକ ଆରକେ ଆଗ ହୋଇ ।
ମିଳିଲେ ନନ୍ଦଘରେ ଯାଇ ॥୩୭
ଗୋପୀଏ ନିତ୍ୟକର୍ମ ସାରି ।
ଦେହରେ ଅଳଙ୍କାର ଭରି ॥୩୮
ପିନ୍ଧିଲେ ନାନା ବସ୍ତ୍ରମାନ ।
ଆନନ୍ଦେ ମନ ଛନ୍ନ ଛନ୍ନ ॥୩୯
ହସ୍ତରେ ଘେନି ଅର୍ଘ୍ୟଥାଳୀ ।
ରଙ୍ଗେ ଚଳିଲେ ଗୋପବାଳୀ ॥୪୦
ଏକ ଆରକେ ଯା'ନ୍ତି ଜିଣି ।
ଚରଣେ ନୂପୁର ବାଜେଣୀ ॥୪୧
କେହି ଲେଉଟି ନ ଚାହାଁନ୍ତି ।
ଆକାଶେ ଯେହ୍ନେ ହଂସପନ୍ତି ॥୪୨
ଚଳନ୍ତି ଶ୍ରବଣେ କୁଣ୍ଡଳ ।
ନିତମ୍ବ କୁଚ ହେମମାଳ ॥୪୩
ଆକାଶେ ଦେବେ ଛନ୍ତି ଚାହିଁ ।
ଗୋପୀ ଚଳନ୍ତି ଗୀତଗାଇ ॥୪୪
ଯା'ନ୍ତେ ବିରାଜେ ମହୀସ୍ଥଳୀ ।
କ୍ଷଣ କ୍ଷଣକେ ହୁଳହୁଳି ॥୪୫
କବରୀ ଫିଟି ଫୁଲମାଳ ।
ଯା'ନ୍ତେ ପଡ଼ଇ ମହୀତଳ ॥୪୬
କୃଷ୍ଣଙ୍କୁ ଯାଉଛନ୍ତି ଦେଖି ।
ଆନନ୍ଦ କେ ପାରିବ ଲେଖି ॥୪୭

Dr. Sudhanshu Sekhar Mishra

ଦିଶଇ ନନ୍ଦ ନିଜ ବାସ ।
କି ଜିଣି ତପନ ତରାସ ॥୪୮
ଆକାଶ ମଣ୍ଡଣି ପରାୟେ ।
ତେଜେ ସକଳ ଶୋଭାପାଏ ॥୪୯
କି ଜିଣି ନବଗ୍ରହ ଜ୍ୟୋତି ।
ତ୍ରିବିଧ ରତ୍ନ ଝଟକନ୍ତି ॥୫୦
ଶ୍ୱେତ ସୁରଙ୍ଗ ପୀତବାସ ।
ବିବିଧ ଚାରୁବର୍ଣ୍ଣେ ବସ୍ତ୍ର ॥୫୧
ଯହିଁ ଗୋବିନ୍ଦ ଦେହ ଧରି ।
କେ ତାହା ବର୍ଣ୍ଣିବ ବିଚାରି ॥୫୨
ନନ୍ଦର ମନ୍ଦିରେ ମିଳିଲେ ।
ମଙ୍ଗଳ-ଗୀତ-ନାଦ କଲେ ॥୫୩
ଅନ୍ତୁଡ଼ିଶାଳେ ଯାଇ ମିଳି ।
ହାସ୍ୟେ କେ କରନ୍ତି ଢ଼ମାଳି ॥୫୪
ଯଶୋଦା କୋଳେ କୃଷ୍ଣ ଦେଖି ।
ନିର୍ମଳ କଲେ ଚର୍ମ ଆଖି ॥୫୫
ଅକ୍ଷତ କୃଷ୍ଣ ଶିରେ ଦ୍ୟନ୍ତି ।
ଆନନ୍ଦେ କଲ୍ୟାଣ କରନ୍ତି ॥୫୬
ବୋଲନ୍ତି ଯଶୋଦାଙ୍କୁ ଚାହିଁ ।
ଧନ୍ୟ ଜୀବନ ତୋର ଆଇ ॥୫୭
ଆମ୍ଭ ଆୟୁଷ ଘେନି କରି ।
ତୋ ପୁତ୍ର ବର୍ତ୍ତୁ ଯୁଗ ଚାରି ॥୫୮
ଏ ଆମ୍ଭ ଗୋକୁଳ ରଖିବ ।
ଏହାକୁ ରଖୁ ସଦାଶିବ ॥୫୯
ହଳଦୀ ତେଲ ଘେନି ଥୋକେ ।
ବୋଲନ୍ତି ଏକକୁ ଆରକେ ॥୬୦
ଖେମଟା ନାଦେ କରତାଳି ।
ଆନନ୍ଦେ ନାଚନ୍ତି ଗୁଆଳୀ ॥୬୧
କରେ ବଜାନ୍ତି କରତାଳି ।
ଢଗଢ଼ମାଳି ରଙ୍ଗକେଳି ॥୬୨
ବିଜୟ ପରମ ମଙ୍ଗଳ ।
ଆନନ୍ଦମାନଙ୍କର ମୂଳ ॥୬୩
ଗୋପାଳେ ଏକକୁ ଆରକେ ।
ସିଞ୍ଚନ୍ତି ଦୁଧଦଧି ଥୋକେ ॥୬୪
ଲବଣି ଘେନି ମରାମରି ।
ନାଚନ୍ତି ଏକୁ ଆରେ ଧରି ॥୬୫

ଆନନ୍ଦ ହୋଇ ନନ୍ଦରାୟେ ।
ଭଣ୍ଡାରେ ଫେଇଲେ ଥୋକାଏ ॥୬୬
ଅନେକ ଗୋରୁ ବସ୍ତ୍ର ଧନ ।
ତୋଷିଲେ ଜଣେ ଜଣେ ମନ ॥୬୭
ରୋହିଣୀ ନିକଟେ ମିଳିଲେ ।
ଅନେକ ଧନରତ୍ନ ଦେଲେ ॥୬୮
ଗୋପୀଙ୍କି କରାଇ ହରଷ ।
ଭୋଜନ ଦେଲେ ଷଡ଼ରସ ॥୬୯
ଶ୍ରୀକୃଷ୍ଣ ଜନ୍ମ ମନେ ଗୁଣି ।
ଗୋପେ ବିଜୟ କମଳିନୀ ॥୭୦
କେ କହୁ ଗୋପର ସମ୍ପଦ ।
ଯହିଁ ବିଜୟ ଆଦିକନ୍ଦ ॥୭୧
ଶୁଣ ହେ କୁରୁ ନୃପମଣି ।
ଜନ୍ମ ଉତ୍ସବ ଅନ୍ତେ ପୁଣି ॥୭୨
କଂସର ଆଡ଼ତିଆ ଥିଲା ।
ନନ୍ଦକୁ କ୍ଷଣେ ନଛାଡ଼ିଲା ॥୭୩
ଦଇବେ ଆକଟ ଅପାର ।
ନେବ ସେ ବରଷକ କର ॥୭୪
ଗୋପାଳମାନଙ୍କୁ ବସାଇ ।
ନନ୍ଦ ବୋଲଇ ଶୋକ ବହି ॥୭୫
କଂସ ଆକଟ ମୋତେ କରି ।
ମୁଁ ଆଜି ଯିବି ମଧୁପୁରୀ ॥୭୬
ପୁତ୍ରର ଚିନ୍ତା ତୁମ୍ଭେ କର ।
କହି ଚଳିଲା ଗୋପବୀର ॥୭୭
କଂସର ଛାମୁରେ ମିଳିଲା ।
ସୁନିଆଁ ଧନ ଗଣିଦେଲା ॥୭୮
ଆନନ୍ଦ ହୋଇ ଦଣ୍ଡଧାରୀ ।
ଦେଲା ସେ ଅଳଙ୍କାର ଭରି ॥୭୯
ମେଲାଣି ପାଇ ତତକ୍ଷଣ ।
କିଣିଲା ନାନା ଦ୍ରବ୍ୟମାନ ॥୮୦
ଗୋପନବରେ ଯେତେ ଲୋଡ଼ା ।
ତାଳ ଜମ୍ବିଳ ଆମ୍ବସଢ଼ା ॥୮୧
ଶକଟେ ଭରି ମନ ତୋଷେ ।
ଏମନ୍ତେ ଦିନ ଅବଶେଷେ ॥୮୨

ସାରିଲା ରନ୍ଧନ ଭୋଜନ ।
ନିରତେ ପୁତ୍ର ତହିଁ ମନ ॥୮୩
ଏମନ୍ତେ ରଜନୀ ହୋଇଲା ।
ଘୋର ତିମିର ପ୍ରକାଶିଲା ॥୮୪
ନନ୍ଦର ଆଗମନ ଶୁଣି ।
ବସୁଦେବ ତା ମନେ ଗୁଣି ॥୮୫
ସ୍ୱଭାବେ ନନ୍ଦ ମିତ୍ର ମୋର ।
ତା'ଘରେ ବେନି ମୋ କୁମର ॥୮୬
ତା'ର କୁଶଳେ ମୋର ଇଷ୍ଟ ।
ନ ପୁଣ ଜାଣେ କଂସ ଦୁଷ୍ଟ ॥୮୭
ଏମନ୍ତ ମନେ ବିଚାରିଲା ।
ନନ୍ଦର ନିକଟେ ମିଳିଲା ॥୮୮
ମିତ୍ର ଆଗମ ନନ୍ଦ ଦେଖି ।
ଉଠିଲା ଆସନ ଉପେକ୍ଷି ॥୮୯
ଆନନ୍ଦେ ହୋଇ କୋଳାକୋଳ ।
ବସିଲେ ଯାଇ ଏକମେଳ ॥୯୦
ପୂର୍ବର କଥାମାନ କହି ।
ଏକ ଆରକେ ଭାବବହି ॥୯୧
ବୋଲନ୍ତି ବସୁଦେବ ହସି ।
ନନ୍ଦ କୁଶଳ ପରଶଂସି ॥୯୨
ବୃଦ୍ଧ ବୟସେ ତୋ'ର ସୁତ ।
ଶୁଣି ହୋଇଲି କୃତକୃତ୍ୟ ॥୯୩
ମନୁଷ୍ୟ ଜନ୍ମର ଏ ସାର ।
ବୋଲନ୍ତି ସଂସାର ବେଭାର ॥୯୪
ଦାରା ତନୟ ବନ୍ଧୁଗଣ ।
ଧନସମ୍ପଦ ଏ କାରଣ ॥୯୫
ଏତେ ନ ଥିଲେ ଦୁଃଖ ପାଇ ।
ଉଭୟଲୋକେ ସୁଖ ନାହିଁ ॥୯୬
ଏ ପୁଣି ନୁହଁଇନା ସତ୍ୟ ।
ଦର୍ପଣେ ପ୍ରତିମା ଯେମନ୍ତ ॥୯୭
ଚିତ୍ରପ୍ରତିମା ପ୍ରାୟେ ଠୁଳ ।
ଯେମନ୍ତେ ସମୁଦ୍ର ଉଲ୍ଲୋଳ ॥୯୮
ଭଳେ ଅଛନ୍ତି ନା ଗୋ-କୁଳ ।
ତୃଣ ବୀରୁଧ କନ୍ଦମୂଳ ॥୯୯

Dr. Sudhanshu Sekhar Mishra

ଗୋପୀଏ ଅଛନ୍ତି ନା ଭଲେ ।
ରୋହିଣୀ ଯଶୋଦାର ତୁଲେ ॥୧୦୦
ମୋହର ରୋହିଣୀର ସୁତ ।
ତୁମ୍ଭେ ତାହାର ତାତମାତ ॥୧୦୧
ପିତା ବିଚ୍ଛେଦେ ଅରକ୍ଷିତ ।
ତୁମ୍ଭର ପାଳିବା ଉଚିତ ॥୧୦୨
ମୁଁ କି କରିବି ଉପକାର ।
ଏତେ ଅନ୍ତରେ ଗୃହ ମୋର ॥୧୦୩
ଜୀବନ୍ତେ ଏକୁ ଆର ସଖା ।
ମରଣେ ପରଲୋକେ ଦେଖା ॥୧୦୪
ଏମନ୍ତ ମିତ୍ରର ସ୍ୱଭାବ ।
ଆନନ୍ଦେ କହେ ବସୁଦେବ ॥୧୦୫
ନନ୍ଦ ଯେ ବସୁଦେବ ଚାହିଁ ।
ବୋଲଇ ଶୋକଭର ହୋଇ ॥୧୦୬
ଭୋ ମିତ୍ର ବଡ଼ାଇ ବିକଳ ।
ନୟନୁ ବହେ ଅଶ୍ରୁଜଳ ॥୧୦୭
ଦେବକୀ କଲା କେତେ ପାପ ।
ଅଳପ ଦିନେ ବହୁତାପ ॥୧୦୮
ପ୍ରସବେ ବରଷେ ବରଷ ।
ଛ ପୁତ୍ର କଂସ କଲା ନାଶ ॥୧୦୯
ଏବେ ଦୁହିତାଏ ହୋଇଲା ।
ତାହା ମାରିବ ବୋଲି ଗଲା ॥୧୧୦
ଦେବକୀ ତା'ର ଧରି କର ।
ବୋଲଇ ଏହାକୁ ନ ମାର ॥୧୧୧
ସଙ୍ଖାଳି ହେଉ ବୃଦ୍ଧକାଳେ ।
ପଡୁଛି ତୋ'ର ପାଦତଳେ ॥୧୧୨
ଦେବକୀ ବୋଲ ସେ ନ କଲା ।
କୋଳରୁ ଛଡ଼ାଇ ଆଣିଲା ॥୧୧୩
ଚରଣ ଧରି କଚାଡ଼ନ୍ତେ ।
ହସ୍ତରୁ ଗଲା ସେ ତୁରିତେ ॥୧୧୪
କଂସର ମୃତ୍ୟୁ ସେ କହିଲା ।
ଶୂନ୍ୟମାର୍ଗରେ ଚଳିଗଲା । ॥୧୧୫
ଏ କଥା କର୍ମର ଆୟତ୍ତ ।
ଜଗତ କର୍ମେ ଆତଯାତ ॥୧୧୬
ଏହା ଜାଣନ୍ତି ଜ୍ଞାନୀଲୋକ ।
ତେଣୁ ନ ଲାଗେ ଦୁଃଖସୁଖ ॥୧୧୭
ବୋଲଇ ବସୁଦେବ ଶୋକେ
ଯାହା ଅର୍ଜିଲି ପୂର୍ବଲୋକେ ॥୧୧୮
ସେ କଥା କର୍ମଟି ମୋହର ।
ଭୋ ମିତ୍ର ବେଗେ ଯାଅ ଘର॥୧୧୯
କଂସ ଆଦେଶ ଘେନି ଶିରେ ।
ଜଗତେ ବୁଲନ୍ତି ଅସୁରେ ॥୧୨୦
ମାରିବେ ଯେତେ ବାଳପୁଅ ।
ଭୋ ମିତ୍ର ଦଣ୍ଡେ ହେଁ ନ ରହ ॥୧୨୧
କହି ଚଳିଲେ ବସୁଦେବ ।
ନନ୍ଦର ମନ ଉଦ୍‌ବେଗ ॥୧୨୨
ଶୁଣିଣ ମିତ୍ରର ବଚନ ।
ନନ୍ଦର ମନ ଛନ୍ନ ଛନ୍ନ ॥୧୨୩
ଶକଟେ ନାନା ଦ୍ରବ୍ୟ ଭରି ।
ଭୟେ ସୁମରେ ନରହରି ॥୧୨୪
ବଜାଇ ଶଙ୍ଖ ଭେରୀ ତୁର ।
ନଗରୁ ହୋଇଲା ବାହାର ॥୧୨୫
କୃଷ୍ଣ ଆଦେଶ ଶିରେ ଘେନି ।
କହନ୍ତି ଶୁକ ମହାମୁନି ॥୧୨୬
ସୁଜନେ ଶୁଣ କୃଷ୍ଣଲୀଳା ।
ଏ ଭବସାଗରକୁ ଭେଳା ॥୧୨୭
ଏ ନାବେ ବସ ଭ୍ରାନ୍ତି ଛାଡ଼ି ।
ନ ମର ଭବଜଳେ ବୁଡ଼ି ॥୧୨୮
ପତ୍ନୀ ତନୟ ଗୃହବାସ ।
ଏଣେ ନ କରିବ ବିଶ୍ୱାସ ॥୧୨୯
ସମ୍ପଦ ସ୍ୱପ୍ନ ପ୍ରାୟ ଦୃଶ୍ୟ ।
ତେଣେ ନ କର ତୁମ୍ଭେ ଆଶ॥୧୩୦
ନିରତେ ଚିନ୍ତ ନରହରି ।
ନ ମର ଶୂନ୍ୟେ କୋଳକରି ॥୧୩୧
ଗୋବିନ୍ଦ ନାମେ ଜ୍ଞାନରସ ।
କହଇ ଜଗନ୍ନାଥ ଦାସ ॥୧୩୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ନନ୍ଦବସୁଦେବ
ସଙ୍ଗମୋ ନାମ ଷଷ୍ଠୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତମ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ ।
ନନ୍ଦ ଚଳିଲେ ବେଗେ ବେଗେ ॥୧
ବସୁଦେବର ବୋଲ ଶୁଣି ।
ମନେ ଚିନ୍ତଇ ଚକ୍ରପାଣି ॥୨
କଂସର ଆଦେଶେ ଅସୁରୀ ।
ପୂତନା ଚଉଦିଗେ ଫେରି ॥୩
ଗ୍ରାମ ପାଟଣା ପୁର ଦେଶ ।
ଅନେକ ଶିଶୁ କଲା ନାଶ ॥୪
ସ୍ତନଯୁଗଳେ ବିଷ ଭରି ।
ପିଆଇ ବାଳକ ସଂହାରି ॥୫
ଯହିଁ ବିଜୟ ଆଦିମୂଳ ।
ଆନନ୍ଦ ପରମ ମଙ୍ଗଳ ॥୬
କି କରି ପାରିବ ଅସୁରୀ ।
ଯାହାର ନାମେ ଯମ ଡ଼ରି ॥୭
ପୂତନା ବୁଲି ଚଉଦିଗେ ।
ମିଳିଲା ବୃନ୍ଦାବନ ଲାଗେ ॥୮
ରଜନୀ ହୋଇଲା ପ୍ରଭାତ ।
ଜାଣିଲେ ପ୍ରଭୁ ଜଗନ୍ନାଥ ॥୯
ଅନନ୍ତ ବିଚାରିଲେ ଚିତ୍ତେ ।
ପୂତନା ଅଇଲା ଗୁପତେ ॥୧୦
ଅନେକ ଶିଶୁ ଏ ମାଇଲା ।
ମୋହର ନୁହିଁଲ ସହିଲା ॥୧୧
ଦୁଷ୍ଟ ମାରଣେ ମୋର ଜନ୍ମ ।
ଅସୁରୀ କଲା ଏଡ଼େ କର୍ମ ॥୧୨
ଏମନ୍ତ କୃଷ୍ଣ ବିଚାରିଲେ ।
ପୂତନା ମନ ଆକର୍ଷିଲେ ॥୧୩
ରାକ୍ଷସୀ ବିଚାରଇ ବସି ।
ଏହି ନଗରେ ଯିବି ପଶି ॥୧୪
ଆକାଶେ ଉଦେ ଦିନକର ।
ଅସୁରୀ ମାୟାର ଭଣ୍ଡାର ॥୧୫

ମାୟାମୋହିନୀ ରୂପ ଧରି ।
ତିନିଭୁବନେ ନାହିଁ ସରି ॥୧୬
କି ତାକୁ ପଟାନ୍ତର ଦେବା ।
ଦେଖି ଢଳିବେ ସୁରଦେବା ॥୧୭
କବରୀଭାରେ ଫୁଲମାଳ ।
ସୁନ୍ଦର ଅଳକା କପୋଳ ॥୧୮
ପୃଥୁ ନିତମ୍ବ କୁଚ ଭାର ।
ସିଂହକଟୀକୁ ପଟାନ୍ତର ॥୧୯
ଝୀନ ପତନୀ ରଙ୍ଗବାସ ।
କଟୀମେଖଳା ରବିତ୍ରାସ ॥୨୦
କର୍ଣ୍ଣେ ଶୋଭିତ ରତ୍ନକାପ ।
ଶିରେ ସୀମନ୍ତ ଦିବ୍ୟରୂପ ॥୨୧
ଅଳପ କହଇ ବଚନ ।
ଅଣ୍ଡିର କୋକିଳ ଯେସନ ॥୨୨
ହରିଲା ଗୋପୀଙ୍କର ମନ ।
ବାଳ ତରୁଣ ବୃଦ୍ଧଜନ ॥୨୩
ପଦ୍ମ ଗୋଟିଏ ଘେନି କରେ ।
ଅସୁରୀ ଚାଲଇ ସଧୀରେ ॥୨୪
କୁଟୀଳ ଅଳକା କପୋଳେ ।
ବାମ ଅଙ୍ଗୁଳି ଅଗ୍ରେ ତୋଳେ ॥୨୫
ପୂତନା ରୂପ ଗୋପୀ ଦେଖି ।
ପିଛାଡ଼ି ନ ପାରନ୍ତି ଆଖି ॥୨୬
ଗୋଡ଼ାଇ ବୋଲନ୍ତି ଯୁବତୀ ।
କିଏ ତେଜିଲା ବାରସ୍ୱତୀ ॥୨୭
ଏମନ୍ତ ଦେଖିଲା ତ ନାହିଁ ।
କେ ବୋଲେ ଅମ୍ବିକାଟି ଏହି ॥୨୮
କେବୋଲେ ଶୁଣ ମୋ ଉତ୍ତର ।
କୃଷ୍ଣ ଜନ୍ମିଲେ ନନ୍ଦଘର ॥୨୯
କମଳା ଆସିଛନ୍ତି ଦେଖି ।
ଜଳଧି ଶୟନ ଉପେକ୍ଷି ॥୩୦
କେ ବୋଲେ ଅଟଇ ଏମନ୍ତ ।
ପୁରାଣେ ଶୁଣିଛୁ ତଦନ୍ତ ॥୩୧

ଏମନ୍ତେ ଜାଣି ନ ପାରିଲେ ।
ସକଳେ ପଛେ ଗୋଡ଼ାଇଲେ ॥୩୨
ବୋଲନ୍ତି ପୂତନାକୁ ଚାହିଁ ।
କାହୁଁ ଅଇଲୁ ମହାମାୟି ॥୩୩
ପୂତନା ବୋଲଇ ମଧୁରେ ।
ବାଳକ ଅଛି କାହାଘରେ ॥୩୪
ମୋର ତନୟ ଏବେ ମଲା ।
ସ୍ତନ ମୋ ନୋହଇ ସହିଲା ॥୩୫
କାହାର ପୁତ୍ର ଅଛି ମାଏ ।
ସ୍ତନ୍ୟ ପିଆଇବି ଥୋକାଏ ॥୩୬
ଏମନ୍ତେ କହିଣ ଉତ୍ତର ।
ଅସୁରୀ ଚାଲେ ଧୀର ଧୀର ॥୩୭
ମିଳିଲା ଯାଇ ନନ୍ଦ ଦ୍ୱାର ।
ଦ୍ୱାରୀକି ବୋଲଇ ଉତ୍ତର ॥୩୮
ଗୋପୀଏ ଗଲେ ଆଗସରି ।
ଭିତରେ ପଶିଲା ଅସୁରୀ ॥୩୯
ଯଶୋଦା ଦେଖିଣ ଚକିତ ।
କାହୁଁ ଅଇଲା ଅଦଭୁତ ॥୪୦
କି ଅବା ତ୍ରିପୁର ସୁନ୍ଦରୀ ।
ରୂପେ ତ ନାହିଁ ସମସରି ॥୪୧
ପୂତନା ପାଶେଣ ମିଳିଲା ।
ମଧୁର ବଚନ କହିଲା ॥୪୨
କାହୁଁ ଅଇଲୁ ମହାମାଣୀ ।
କି ଅବା ହରିର ଘରଣୀ ॥୪୩
କିମ୍ବା ମୋ ପୁରକୁ ଅଇଲୁ ।
ଏ ମୋର ମନକୁ ମୋହିଲୁ ॥୪୪
କିସ କରିବୁଁ ମୋତେ କହ ।
ଦେଖି ମୋ ରହୁନାହିଁ ଦେହ ॥୪୫
ପୂତନା ବୋଲଇ ଉତ୍ତର ।
ଶୁଣ କାମିନୀ ଭାଷା ମୋର ॥୪୬
ମୁଁ ହାଦେ ଦଇବଙ୍କ ନାରୀ ।
ଜାଣଇ ଭେଦ ମନ୍ତ୍ର କରି ॥୪୭

Dr. Sudhanshu Sekhar Mishra

ମୋହର କ୍ଷୀର କଲେ ପାନ ।
ପୁତ୍ର ହୋଇବେ ବଳବାନ ॥୪୮
ଯଶୋଦା ହୋଇଲେ ଉଷତ ।
ପୁତ୍ରେ ମୋ'ହେବେ ବଳବନ୍ତ ॥୪୯
ଏ ଯେବେ ମୋର ଘରେ ଥାଇ ।
ନିରତେ ପୁତ୍ରେ କ୍ଷୀର ଦେଇ ॥୫୦
ବେନିକୁଚକୁ ବେନି ସୁତ ।
ପିଇଣ ହେବେ ବଳବନ୍ତ ॥୫୧
ସ୍ୱାମୀର ଛାମୁରେ କହିବି ।
ବହୁତ ଧନବସ୍ତ୍ର ଦେବି ॥୫୨
ଯଶୋଦା ଏମନ୍ତ ବିଚାର ।
ଘରକୁ ଆଣିଲା ଅସୁରୀ ॥୫୩
ଏମନ୍ତେ ଶୁଣ କଥା ରସ ।
ପୁତନା ଚାହେଁ ପୀତବାସ ॥୫୪
ବାଳକ ସ୍ୱଭାବେ ଅନନ୍ତ ।
ନିଦ୍ରାରେ ଦିଶନ୍ତି ଅଚେତ ॥୫୫
ଯଶୋଦା ମନେ ବିଚାରଇ ।
ନିଦ୍ରାର ବେଳେ ଦେବି ମୁହିଁ ॥୫୬
ଏମନ୍ତ ବୋଲିଣ ବୋଇଲେ ।
କୃଷ୍ଣକୁ ଟୋଳିଣ ଧଇଲେ ॥୫୭
ଯଶୋଦା ଘେନି ବନମାଳୀ ।
ପୂତନା କୋଳେ ଦେଲେଟୋକି ॥୫୮
ତା' ଦେଖି ପୂତନା ହରଷେ ।
କ୍ଷୀର ସେ ଦେଲା ପୀତବାସେ ॥୫୯
କୃଷ୍ଣର ନଜାଣଇ ବଳ ।
ଆକର୍ଷି ନେଇ କଲା କୋଳ ॥୬୦
କୃଷ୍ଣର ମୁଖେ ଦେଲା ସ୍ତନ ।
ଗାଢ଼େ ଶୋଷିଲେ ଭଗବାନ ॥୬୧
ପଞ୍ଚ-ପରାଣ କ୍ଷୀର ସଙ୍ଗେ ।
ପଶିଲା ଗୋବିନ୍ଦର ଅଙ୍ଗେ ॥୬୨
ଜୀବ ଛାଡ଼ିଲା ଗଣ୍ଡିଛନ୍ଦ ।
ଅସୁରୀ କଲା ଘୋରନାଦ ॥୬୩
ନିଜ ଶରୀର ପ୍ରକାଶିଲା ।
ଛାଡ଼ ଛାଡ଼ ବୋଲି ଡ଼ାକିଲା ॥୬୪

ଶବଦେ କମ୍ପିଲା ବ୍ରହ୍ମାଣ୍ଡ ।
ମାଡ଼ି ପଡ଼ିଲା ଭୂମିଖଣ୍ଡ ॥୬୫
କର-ଚରଣ ପ୍ରସାରିଲା ।
ଦେଢ଼ ଯୋଜନ ଆବୋରିଲା ॥୬୬
ବୃକ୍ଷ ମନ୍ଦିର ଗୋରୁ ଘର ।
ଭାଜି ହୋଇଲେ ଶତେଚୂର ॥୬୭
ଶୁକ କହନ୍ତି ଶୁଣ ରାୟେ ।
କେ କହୁ ଅସୁରୀର କାୟେ ॥୬୮
ଲଙ୍ଗଳ ଈଶ ପ୍ରାୟ ଦନ୍ତ ।
ନାସିକା ପର୍ବତର ଅନ୍ତ ॥୬୯
ଖଣ୍ଡପର୍ବତ ସ୍ତନ ବେନି ।
ଖାଙ୍କର କେଶ ତା' ମୂର୍ଦ୍ଧନି ॥୭୦
ପିଙ୍ଗଳ ଚକ୍ଷୁର ସ୍ୱରୂପ ।
ଯେହ୍ନେ ଖୋଦିତ ଅନ୍ଧକୂପ ॥୭୧
ନଦୀର ତଟ ପ୍ରାୟ ଜଙ୍ଘ ।
ଭୁଜ ଦିଶଇ ସେତୁବନ୍ଧ ॥୭୨
ଶୁଖିଲା ହ୍ରଦ ତା' ଉଦର ।
ଦେଖି କମ୍ପିଲେ ସୁରନର ॥୭୩
ଗୋପରେ ପଡ଼ିଲାକି ହୁରି ।
ଭୟେ ପଳାନ୍ତି ନରନାରୀ ॥୭୪
ପଡ଼ି ଭାଜିଲା କାହା ମୁଣ୍ଡ ।
କାହାର ଦେହ ଖଣ୍ଡ ଖଣ୍ଡ ॥୭୫
ଦେଖି ଚକିତ ନନ୍ଦରାଣୀ ।
ଭୟେ ଚିନ୍ତଇ ଚକ୍ରପାଣି ॥୭୬
କ୍ଷଣକେ ହୋଇଲା ସଚେତ ।
ଉଠି ଲୋଡ଼ଇ ନିଜ ସୁତ ॥୭୭
ଗୋପୀଙ୍କି ବୋଲଇ ଉତ୍ତର ।
କେ ଘେନିଅଛ ମୋ' କୁମର ॥୭୮
ଆଣ ମୋହର କୋଳେ ଦିଅ ।
ପୁତ୍ର ନ ଦେଖି କମ୍ପେ ଦେହ ॥୭୯
ବହନ ଆଣ ପୁତ୍ର ଯାଇ ।
ମରିବି ତା ମୁଖ ନ ଚାହିଁ ॥୮୦
ଦେଖିଣ ଯଶୋଦା ବିକଳ ।
ଗୋପୀ ଧାମନ୍ତି ଅନ୍ତରାଳ ॥୮୧

ଭୟେ ଖୋଜନ୍ତି ଘରଦ୍ୱାର ।
ଦେଖିଲେ ପୂତନା ଉପର ॥୮୨
ବେନି ପର୍ବତ ମଧ୍ୟେ ରହି ।
ଯେସନେ ଶଶାଙ୍କ ଦିଶଇ ॥୮୩
ପୂତନା ସ୍ତନ ମଧ୍ୟେ ହରି ।
ଗୋପୀଏ ଯାଇ କୋଳକରି ॥୮୪
ପୁତ୍ରକୁ ଦେଖିଣ ବିସ୍ମୟେ ।
ଆନନ୍ଦ ହୋଇଲେ ଥୋକାଏ ॥୮୫
ନୟନେ ପୁତ୍ରକୁ ଦେଖିଣ ।
ଆନନ୍ଦ ଯଶୋଦାର ମନ ॥୮୬
କୋଳେ ଧରିଣ ଚୁମ୍ବ ଦେଇ ।
ନିଜ ମନ୍ଦିରେ ମିଳେ ଯାଇ ॥୮୭
ରୋହିଣୀ ଦେଖିଣ ଉଷତ ।
ଲୋକେ ହୋଇଲେ କୃତକୃତ୍ୟ ॥୮୮
ଗୋପି ମିଳିଲେ ବେଗେ ଯାଇ ।
ବୋଲନ୍ତି ଯଶୋଦାକୁ ଚାହିଁ ॥୮୯
ଆପଦୁଁ ତରିଲା କୁମର ।
ତୁ ଏବେ ରିଷ୍ଟ ଶାନ୍ତି କର ॥୯୦
ଶୁଣି ସାନନ୍ଦ ନନ୍ଦରାଣୀ ।
ପୁତ୍ରକୁ ଘେନିଲା ରୋହିଣୀ ॥୯୧
ବେଢ଼ି ବସିଲେ ଗୋପନାରୀ ।
ଯେତେ ଯଶୋଦା ପରିବାରୀ ॥୯୨
ବତ୍ସା ଗୋଟିଏ ଆଣିକରି ।
ତା' ଲାଞ୍ଜେ ପୁତ୍ର ଦେହ ଝାଡ଼ି ॥୯୩
ଗୋ ମୂତ୍ରେ କରାଇ ସ୍ନାହାନ ।
ଗୋରଜ କରନ୍ତି ଲେପନ ॥୯୪
ଗୋମୟେ ଦେଲେ ଠିଆ ଚିତା ।
ଯେ ପ୍ରଭୁ ଗୋ-ବ୍ରାହ୍ମଣ-ହିତା ॥୯୫
ହସ୍ତରେ ଦୂର୍ବାଙ୍କୁର ଘେନି ।
କଲ୍ୟାଣ କରନ୍ତି କାମିନୀ ॥୯୬
ଦ୍ୱାଦଶ ଅଙ୍ଗନ୍ୟାସ କରି ।
ଗୋପୀ ବୋଲନ୍ତି ନାମ ଧରି ॥୯୭
ଯାହାର ନାହିଁ ଆଦିଅନ୍ତ ।
ଚରଣ ରଖୁ ତୋ ଅନନ୍ତ ॥୯୮

Dr. Sudhanshu Sekhar Mishra

ଯଜ୍ଞପୁରୁଷ ଶିରୀଅଙ୍ଗ ।
ରକ୍ଷା କରନ୍ତୁ ବେନି ଜଂଘ ॥୯୯
ଅଚ୍ୟୁତ ରଖୁ କଟୀଭାଗ ।
ଗର୍ଭ ରଖନ୍ତୁ ପଦ୍ମନାଭ ॥୧୦୦
ହୃଦୟ ରଖୁ ହୟଗ୍ରୀବ ।
କଣ୍ଠ ତୋ ରଖୁ ବାସୁଦେବ ॥୧୦୧
ବିଷ୍ଣୁ ତୋ ରଖୁ ବେନିଭୁଜ ।
ବକ୍ଷ ତୋ ରଖୁ ଗ୍ରହରାଜ ॥୧୦୨
ଲଲାଟ ରଖୁ ସଦାଶିବ ।
ମୁଖ ତୋ' ରଖନ୍ତୁ ମାଧବ ॥୧୦୩
ତୋର ଅଗ୍ରତେ ଚକ୍ରଧର ।
ପୃଷ୍ଠ ତୋ' ରଖୁ ଗଦାଧର ॥୧୦୪
ସାରଙ୍ଗଧର ଏକ ପାଖ ।
ଖଡ଼ଗଧାରୀ ଆରପାଖ ॥୧୦୫
ଶଙ୍ଖ ତୋ' ରଖୁ ଚାରିକୋଣ ।
ଉପରେ ରଖୁ ନାରାୟଣ ॥୧୦୬
ଗରୁଡ଼ପତି ରଖୁ ତଳେ ।
ମଧୁସୂଦନ ଅନ୍ତରାଳେ ॥୧୦୭
ହୃଷିକେଶ ତୋ ଇନ୍ଦ୍ରିଗଣ ।
ରଖୁ ଗୋବିନ୍ଦ ପଞ୍ଚପ୍ରାଣ ॥୧୦୮
ଚିତ୍ତ ତୋ ଶ୍ୱେତଦ୍ୱୀପ-ପତି ।
ମାଧବ ରଖୁ ତୋ'ର ମତି ॥୧୦୯
ଖେଳନ୍ତେ ରଖୁ ବନମାଳୀ ।
ଶୟନେ କୃଷ୍ଣ ପ୍ରତିପାଳି ॥୧୧୦
ଚାଲନ୍ତେ ଭୋଜନେ ଶୟନେ ।
ରଖନ୍ତୁ ଶ୍ରୀ ମଧୁସୁଦନେ ॥୧୧୧
ଭୂତ ବେତାଳ ପ୍ରେତଜ୍ୱର ।
ଗ୍ରହ ଡାକିନୀ ନିଶାଚର ॥୧୧୨
ଦୁଷ୍ଟ ସ୍ୱପନ ଗ୍ରହପୀଡ଼ା ।
ବିଷ୍ଣୁ ନାଶନ୍ତୁ ସର୍ବଅଡ଼ା ॥୧୧୩
ନିର୍ଭୟ କରୁ ନରସିଂହ ।
ବଜ୍ର ତୋ ହେଉ ସର୍ବଦେହ ॥୧୧୪
ଆମ୍ଭ ଆୟୁଷ ତୋତେ ହେଉ ।
ତୋ ଦେହ ଚିରକାଳ ରହୁ ॥୧୧୫

ଅଶ୍ୱ[illegible]ମାଦି ସିଦ୍ଧ ସାତେ ।
ତାହାଙ୍କ ଆୟୁର୍ବଳ ଯେତେ ॥୧୧୬
ଏ ସର୍ବ ତୋର ଦେହେ ହେଉ ।
ତୋ ଯଶ ତିନିପୁରେ ଥାଉ ॥୧୧୭
ନ ଥାଉ ତୋତେ କେ ଜିଣନ୍ତା ।
ତିନି ଭୁବନେ ସାମରଥା ॥୧୧୮
ଏମନ୍ତେ ସ୍ନେହଭର ହୋଇ ।
ଯଶୋଦାକୋଳେ ଦେଲେନେଇ॥୧୧୯
ସ୍ତନ୍ୟ ପିଆଇ ନନ୍ଦରାଣୀ ।
ଭୟେ ଚିନ୍ତଇ ଚକ୍ରପାଣି ॥୧୨୦
ନନ୍ଦ ଯେ ଥିଲା ମଧୁବନେ ।
ଆସି ମିଳିଲା ରାତ୍ରମାନେ ॥୧୨୧
ଦେଖିଣ ପୂତନା ଶରୀର ।
ଭୟେ କମ୍ପଇ ଥରହର ॥୧୨୨
ମିତ୍ର ବଚନ ମନେ ଗୁଣି ।
ସୁମରି ବୃଦ୍ଧେ ପରିମାଣି ॥୧୨୩
ଗୋପାଳମାନଙ୍କୁ ରାଇଲା ।
ଦହନ କର ହୋ ବୋଇଲା ॥୧୨୪
ନନ୍ଦ ଆଜ୍ଞାରେ ଗୋପଜନ ।
ବୋଲନ୍ତି କରିବୁ ଦହନ ॥୧୨୫
ତକ୍ଷଣେ କରି ଖଣ୍ଡ ଖଣ୍ଡ ।
ଦହିଲେ ପୂତନାର ପିଣ୍ଡ ॥୧୨୬
ଅନଳେ ଦହନ୍ତେ ଅସୁରୀ ।
ଗନ୍ଧ ପ୍ରସରିଲା କସ୍ତୁରୀ ॥୧୨୭
ଆନନ୍ଦ ହୋଇଲେ ସକଳେ ।
ଗନ୍ଧ ଆମୋଦ ଦିଗ ପୂରେ ॥୧୨୮
ହରି ଭକ୍ଷିଲେ ଯା'ର କ୍ଷୀର ।
ସୁଗନ୍ଧ କେତେକ ମାତର ॥୧୨୯
ଅଷ୍ଟାଙ୍ଗଯୋଗେ ମୁନିଗଣେ ।
ଚିନ୍ତନ୍ତି ଯେ ହରିଚରଣେ ॥୧୩୦
କ୍ଷୀର ସଙ୍ଗତେ ପଞ୍ଚପ୍ରାଣ ।
ଶ୍ରୀକୃଷ୍ଣ ଦେହେ ହେଲା ଲୀନ॥୧୩୧
ପାମରୀ ସ୍ୱଭାବେ ଅସୁରୀ ।
ଅନେକ ପାପ ଥିଲା କରି ॥୧୩୨

ହତ୍ୟା କହିବା ତା'ର କେତେ ।
ଦେହରେ ଲୋମ ଅଛି ଯେତେ ॥୧୩୩
କୃଷ୍ଣଙ୍କୁ କୋଳେ ବସାଇଲା ।
ଶ୍ରୀମୁଖ ଚାହିଁ କ୍ଷୀର ଦେଲା ॥୧୩୪
ଦେବକୀ ନନ୍ଦ ଯଶୋବନ୍ତୀ ।
ବସୁଦେବଙ୍କ ଯହିଁ ଗତି ॥୧୩୫
ତହିଁକି ପେଷିଲେ ମୁରାରି ।
ଅସୁରୀ ଗଲା ଆଗସରି ॥୧୩୬
ଗୋପୀ ଗୋପାଳ ଯେତେ ଗାଈ
ଯାହାଙ୍କ କ୍ଷୀର କୃଷ୍ଣ ଖାଇ ॥୧୩୭
ବସିଲେ ଯେତେ ଜନ କୋଳେ ।
ସବୁ ତରିବେ ଏକାବେଳେ ॥୧୩୮
ଅସୁରୀ ଦହନ କରାଇ ।
ଘରେ ମିଳିଲେ ନନ୍ଦ ଯାଇ ॥୧୩୯
ପୂତନା ଆଗମନ ଲୋକେ ।
କହିଲେ ନନ୍ଦ ଆଗେ ଥୋକେ ॥୧୪୦
ନନ୍ଦ ଯେ ବିସ୍ମୟ ହୋଇଲେ ।
ସକଳେ କୃଷ୍ଣ ସୁମରିଲେ ॥୧୪୧
ଗୋପାଳେ ବୋଲନ୍ତି ଏମନ୍ତ ।
ଦେଖ ସଂସାର ଅଦଭୁତ ॥୧୪୨
ଜାଣିଲୁ ନନ୍ଦ ଭାଗ୍ୟବନ୍ତ ।
ଆପଦୁଁ ତରିଲା ତା ସୁତ ॥୧୪୩
ଆମ୍ଭର ଅଛି ପୁଣ୍ୟବଳ ।
ଗୋବିନ୍ଦ ରଖିବେ ଗୋକୁଳ ॥୧୪୪
ନିଜ ମନ୍ଦିରେ ନନ୍ଦ ମିଳି ।
କୋଳେ ବସାଇ ବନମାଳୀ ॥୧୪୫
ଶ୍ରୀକୃଷ୍ଣ ଶିରେ ଦେଇ କର ।
ଚୁମ୍ବନ ଦେଲାକ ଅପାର ॥୧୪୬
ବିପ୍ରଙ୍କୁ ରାଇ ଗ୍ରହ ଶାନ୍ତି ।
କରାଇ ଚିନ୍ତଇ ଶ୍ରୀପତି ॥୧୪୭
ନନ୍ଦର ଆଜ୍ଞାରେ ବ୍ରାହ୍ମଣେ ।
କରନ୍ତି ଶାନ୍ତି ଗ୍ରହଗଣେ ॥୧୪୮
ଯଜ୍ଞ ଉଚିତ ପ୍ରାୟଶ୍ଚିତ ।
କରନ୍ତି ଧର୍ମଶାସ୍ତ୍ର ମତ ॥୧୪୯

Dr. Sudhanshu Sekhar Mishra

ଷଡ଼ଅକ୍ଷର ମନ୍ତ୍ର ପଢ଼ି ।
ସିଞ୍ଚନ୍ତି କୁଶ ଘେନି ବାରି ॥୧୫୦
ସହସ୍ରେ ଧେନୁ-ବସ୍ତ୍ର ଦେଲେ।
ସୁବର୍ଣ୍ଣ ଅଳଙ୍କାର ତୁଳେ ॥୧୫୧
ପ୍ରସନ୍ନ ହୋଇ ବିପ୍ରଗଣ ।
କୃଷ୍ଣଙ୍କୁ କରନ୍ତି କଲ୍ୟାଣ ॥୧୫୨
ସକଳ ରିଷ୍ଟରୁ ଅଚ୍ୟୁତ ।
ତୋତେ ସେ କରନ୍ତୁ ମୁକତ ॥୧୫୩
ଜ୍ଞାତି-ଭୋଜନ ଦେଲେ ନନ୍ଦ।
ରିଷ୍ଟ ଖଣ୍ଡିବେ ଆଦିକନ୍ଦ ॥୧୫୪
ଆନନ୍ଦେ ହୋଇ କୃତକୃତ୍ୟ ।
କହନ୍ତି ବ୍ୟାସଙ୍କର ସୁତ ॥୧୫୫
ଯେ ଶୁଣେ କୃଷ୍ଣ-ବାଳକେଳି।
ଆନନ୍ଦ ହୋଇ ମନେ ଭାଳି ॥୧୫୬
ପୂତନା ମରଣର ବାଣୀ ।
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ॥୧୫୭
ଅସୁରୀ ତରିଲା ଯେମନ୍ତେ ।
ସୁଜନେ ଯିବ ସେହି ପଥେ ॥୧୫୮
ଭକତି କର ଦୃଢ଼ଚିତ୍ତେ ।
ହରି-ଭକତଙ୍କର ମତେ ॥୧୫୯
ଗୀତ-ବିନୋଦ ଭାଗବତ ।
କହିଲା ଦାସ ଜଗନ୍ନାଥ ॥୧୬୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ସପ୍ତମୋଽଧ୍ୟାୟଃ ॥

## ଅଷ୍ଟମ ଅଧ୍ୟାୟ

ରାଜା ଉବାଚ

ନମଇଁ କୃଷ୍ଣ-ପଦ୍ମପାଦ ।
ଏ ମୋର ଜୀବନ-ସମ୍ପଦ ॥୧
ପରୀକ୍ଷ ଶୁକମୁଖ ଚାହିଁ ।
ବୋଲନ୍ତି କୃତକୃତ୍ୟ ହୋଇ ॥୨
ଗୋପ ନବରେ ନରହରି ।
ମାଇଲେ ପୂତନା ଅସୁରୀ ॥୩
ଦେବଙ୍କ ଭୟ ନିବାରିଲେ ।
ନିଜ ଶରୀରେ ଠାବ ଦେଲେ ॥୪
ଯାହାର ନାହିଁ ମିତ୍ର-ଅରି ।
ଚାଣ୍ଡାଳୁଁ ବ୍ରହ୍ମ ଆଦି କରି ॥୫
ସାଧୁଙ୍କୁ ପାଳି ଦୁଷ୍ଟ ନାଶି ।
ଦୟାସାଗର ବ୍ରହ୍ମରାଶି ॥୬
ତାହାଙ୍କ ଯେତେ କର୍ମମାନ ।
ବାଳକ-ଚରିତ ବିଧାନ ॥୭
ଶୁଣି ଭଜନ୍ତି ଯେତେ ପ୍ରାଣୀ ।
ତରନ୍ତି ଭବ-ତରଙ୍ଗିଣୀ ॥୮
ମାୟା-ମନୁଷ୍ୟ ଅବତାର ।
ଖଣ୍ଡିବେ ଅବନୀର ଭାର ॥୯
ଆବର କଲେ ଗୋପେ ଯାହା ।
କହିବା ଯେବେ ମୋତେ ଦୟା ॥୧୦
ରାଜା ପ୍ରଶନ ବାକ୍ୟ ଶୁଣି ।
କହନ୍ତି ଶୁକ ମହାମୁନି ॥୧୧
କହିବା ଶୁଣ କୃଷ୍ଣକଥା ।
ଯେଣେ ତୁଟିବ ଭବବ୍ୟଥା ॥୧୨
ଅନ୍ତୁଡ଼ି ଉଠିଆରୀ ଦିନେ ।
ଆସି ମିଳିଲେ ଗୋପୀଜନେ ॥୧୩
ମଙ୍ଗଳ ଗୀତନାଦ କରି ।
ସ୍ନାନ କରାଇଲେ ମୁରାରି ॥୧୪
ବ୍ରହ୍ମଣ ମିଳିଲେ ଥୋକାଏ ।
ଆଶିଷ ଦେଲେ ମାଏପୋଏ ॥୧୫
ଆନନ୍ଦମନେ ନନ୍ଦରାୟେ ।
ଧନବସନ ଦାନ ଦିଏ ॥୧୬
ଗୋପୀ ଆନନ୍ଦ ଗୀତରସ ।
ନିଦ୍ରାମୋହିତ ପୀତବାସ ॥୧୭
ଶକଟତଳେ ବସ୍ତ୍ର ପାଡ଼ି ।
ଯଶୋଦା ଶୁଆଇ ମୁରାରି ॥୧୮
ନିଦ୍ରା କରଇ ଗୀତ ଗାଇ ।
ଗୋପୀଙ୍କିଦେଲେ ସେ ବଧାଇ ॥୧୯
ଅକ୍ଷତ ଦେଲେ ଜଣେ ଜଣ ।
ପୁତ୍ରକୁ କରନ୍ତି କଲ୍ୟାଣ ॥୨୦
ଏମନ୍ତେ କଂସର ଅସୁର ।
ନାମ ଶକଟାସୁର ବୀର ॥୨୧
କୃଷ୍ଣଙ୍କୁ ମାରିବାର ଆଶେ ।
ଶକଟ ଶରୀର ପ୍ରକାଶେ ॥୨୨
ତାହା ଜାଣିଲେ ଭାବଗ୍ରାହୀ ।
ବାଳୁତ ରୂପେ ଛନ୍ତି ଶୋଇ ॥୨୩
ନିଦ୍ରା ଭାଙ୍ଗନ୍ତେ ନାରାୟଣ ।
କାନ୍ଦି ଲୋଡ଼ନ୍ତି ମାତାସ୍ତନ ॥୨୪
ଗୋଳେ ନ ଶୁଣଇ ଗୁଆଳୀ ।
କୃଷ୍ଣ କାନ୍ଦନ୍ତି ପାଦ ଚାଳି ॥୨୫
ଶକଟେ ବାଜିଲା ପୟର ।
ଶବଦ କଲା ମହାଘୋର ॥୨୬
ଶକଟ ପଡ଼ିଲାକ ଝଡ଼ି ।
ଦେଖି ଚକିତ ଗୋପବାଳୀ ॥୨୭
ଦଧି ତଇଳ ଘୃତଭାଣ୍ଡ ।
ଭାଙ୍ଗି ହୋଇଲା ଖଣ୍ଡ ଖଣ୍ଡ ॥୨୮
ଶବଦ ଶୁଣି ଗୋପୀ ଧାଇଁ ।
ମିଳିଲେ ନନ୍ଦ ଆଦି ଯାଇ ॥୨୯
ଦେଖିଲେ ଯଶୋଦା କୁମର ।
ପଡ଼ିଛି ଶକଟ ତଳର ॥୩୦
କୃଷ୍ଣଙ୍କୁ ଆଣି କୋଳ କଲେ ।
ଏକକୁ ଆରେକ କହିଲେ ॥୩୧
ଏ କି ଆପଦ କାହିଁ ହୋଇ ।
ଏମନ୍ତ ଦେଖିଲା ତ ନାହିଁ ॥୩୨

Dr. Sudhanshu Sekhar Mishra

ଶକଟ ଭାଜିଲା କେମନ୍ତ ।
ବୁଝ ହୋ ଏହାର ତଦନ୍ତ ॥୩୩
ଯଶୋଦା ଦେବୀ ଭାଗ୍ୟବନ୍ତ ।
ଆପଦୁଁ ତରିଲା ବାଳୁତ ॥୩୪
ଶକଟ ଭାଜିଲା କେମନ୍ତେ ।
ଜାଣିଲେ ଯିବା ନା ପରତେ ॥୩୫
ବାଳକୁମରେ ତାହା ଶୁଣି ।
ବୋଲନ୍ତି ଆମ୍ଭେ ଅଛୁ ଜାଣି ॥୩୬
ଯଶୋଦାସୁତ ପାଦଘାତେ ।
ଶକଟ ଭାଜିଲା ଯୁକତେ ॥୩୭
ତହୁଁ ପୁରୁଷେ ଜାତ ହୋଇ ।
ଯୋଡ଼ି ବୋଇଲା କର ଦୁଇ ॥୩୮
ଅନେକ ବିନୋଇ କହିଲା ।
ବିମାନେ ବସି ସ୍ୱର୍ଗେ ଗଲା ॥୩୯
ଶୁଣି ହସିଲେ ବାଳ ବୋଲ ।
କୃଷ୍ଣର ନ ଜାଣନ୍ତି ବଳ ॥୪୦
ରୋଦନ କରନ୍ତେ ମୁରାରି ।
ଯଶୋଦାକୋଳେଦେଲେ ନାରୀ॥୪୧
କୁଗ୍ରହ ହେବା ମନେ ଚିନ୍ତି ।
ବିପ୍ରଙ୍କୁ ଆଣି ଗ୍ରହଶାନ୍ତି ॥୪୨
କରାଇ ପିଆଇଲେ ସ୍ତନ୍ୟ ।
ଆନନ୍ଦ ଯଶୋଦାର ମନ ॥୪୩
ଆନ ଶକଟ ଭିଆଇଲେ ।
ଦ୍ରବ୍ୟମାନଙ୍କୁ ସଜାଡ଼ିଲେ ॥୪୪
ବ୍ରାହ୍ମଣେ କଲେ ପଞ୍ଚାମୃତ ।
ଦେଖିଣ ନନ୍ଦ କୃତକୃତ୍ୟ ॥୪୫
ହରଷ ହୋଇ ଦେଲା ଦାନ ।
ଧେନୁ କାଞ୍ଚନ ବସ୍ତ୍ର ଅନ୍ନ ॥୪୬
ସନ୍ତୋଷ ହୋଇ ବିପ୍ରଗଣେ ।
କଲ୍ୟାଣ କଲେ ତୋଷମନେ ॥୪୭
ଆଚାର ବିଦ୍ୟାରେ ଭରସା ।
ପରେ ସେ ନ କରନ୍ତି ହିଂସା ॥୪୮
ଯାହା ବୋଲନ୍ତି ସିଦ୍ଧଜନେ ।
ଅନ୍ୟଥା ନୁହଇ ବଚନେ ॥୪୯
କହନ୍ତି ବ୍ୟାସଙ୍କ ନନ୍ଦନ ।
ଏମନ୍ତେ ଗଲା କେତେଦିନ ॥୫୦

କଂସର ଆଜ୍ଞାରେ ଦଇତ୍ୟ ।
ଗୋପେ ମିଳିଲା ତୃଣାବର୍ତ୍ତ ॥୫୧
ତାହା ଜାଣିଲେ ଦଇତ୍ୟାରି ।
ଯଶୋଦା କୋଳେ ଛନ୍ତି ଧରି ॥୫୨
ବିଚାର କଲେ ଚକ୍ରଧର ।
ଆଜ ସଂହାରିବି ଅସୁର ॥୫୩
ଜନନୀ କୋଳେ ହେଲେ ଗରୁ ।
ଯେହ୍ନେ ଅଚଳ ମହାମେରୁ ॥୫୪
ତକ୍ଷଣେ ଥୋଇଲା ଅବନୀ ।
ବିଚାର କଲା ଭୟ ଘେନି ॥୫୫
ବାଳୁତ ଏଡ଼େ ଗରୁପଣ ।
ନ ପୁଣ ପଡ଼ଇ କଷଣ ॥୫୬
ଶେଯେ ଶୁଆଇ ଗଲାଘର ।
କରଇ ବ୍ୟାପାର ବେଭାର ॥୫୭
କଂସର ଆଜ୍ଞା ପରମାଣେ ।
ଅସୁର ମିଳିଲା ତକ୍ଷଣେ ॥୫୮
ଗଗନେ ଘୋରନାଦ କରି ।
ଚକ୍ରପବନ ରୂପ ଧରି ॥୫୯
ଦିବସେ କଲା ଅନ୍ଧକାର ।
ଭୂମି କମ୍ପିଲା ଥରହର ॥୬୦
ବୃକ୍ଷେ ପଡ଼ିଲେ ମହୀତଳେ ।
ରେଣୁ ଉଡ଼ିଲେ ଅନ୍ତରାଳେ ॥୬୧
ଚାହିଁ ନ ପାରି ବେନିଘଡ଼ି ।
ଚକ୍ଷୁ ବୁଜିଲେ ନରନାରୀ ॥୬୨
ଚକ୍ରପବନ ଗଲା ଉଡ଼ି ।
କୃଷ୍ଣଙ୍କୁ ଦୈତ୍ୟ ନେଲା ହରି ॥୬୩
ପ୍ରକାଶେ ରବିର କିରଣ ।
ନିର୍ମଳ ଦିଶିଲା ଗଗନ ॥୬୪
ଘରୁ ବାହାରି ନନ୍ଦରାଣୀ ।
ପୁତ୍ରକୁ ଖୋଜଇ ଧରଣୀ ॥୬୫
କୃଷ୍ଣେ ନ ଦେଖି ହିଆକୋଡ଼ି ।
ଧାମଇଁ ପୁଣ ପୁଣ ପଡ଼ି ॥୬୬
ଘରବାହାରେ ପୁର ଲାଗେ ।
ବିକଳେ ଲୋଡ଼େ ଚଉଦିଗେ ॥୬୭
ଖୋଜି ନ ପାଇ ବନମାଳୀ ।
ତା' ଶୁଣି ମିଳିଲେ ଗୁଆଳୀ ॥୬୮

ଖୋଜନ୍ତି ଘରେ ଘରେ ପଶି ।
କାହିଁ ପାଇବେ ବ୍ରହ୍ମରାଶି ॥୬୯
ନ ଦେଖି ପ୍ରଭୁ ଚକ୍ରପାଣି ।
ମୋହେ ପଡ଼ିଲା ନନ୍ଦରାଣୀ ॥୭୦
ଗୋପୀ ଧଇଲେ ବେଗେ ଯାଇ ।
ସିଞ୍ଚନ୍ତି ମୁଖେ ନୀର ଦେଇ ॥୭୧
ଘଡ଼ିକେ ହୋଇଲା ସଚେତ ।
ଉଠି ଲୋଡ଼ଇ ନିଜ ସୁତ ॥୭୨
କେଶ ବସନ ଅସମ୍ଭାଳେ ।
ପଡ଼େ ଗୋପୀଙ୍କ ପାଦତଳେ ॥୭୩
କେ କହୁ ଯଶୋଦାର ଶୋକ ।
ଗୋପୀଙ୍କି ଚାହିଁଣ ନିରେଖ ॥୭୪
ବିକଳେ ଲୋଟଇ ଧରଣୀ ।
ଗୋପୀ କାନ୍ଦନ୍ତି ତାହା ଶୁଣି ॥୭୫
କେ କହୁ ଶୋକର ତଦନ୍ତ ।
ଗୋପୀ ହୋଇଲେ ମୋହଗତ ॥୭୬
ତାହା ଜାଣିଲେ ଜଗନ୍ନାଥ ।
ଆକାଶେ ଉଡୁଛି ଦଇତ୍ୟ ॥୭୭
ଶ୍ରୀକୃଷ୍ଣ ବିଚାରନ୍ତି ମନେ ।
ଅସୁର ମାରିବି କେସନେ ॥୭୮
ଏ ତ ନେଉଛି ଶୂନ୍ୟପଥେ ।
ଏତେ ବିଚାରି ଗୋପୀନାଥେ ॥୭୯
ଦାସବତ୍ସଳ ନନ୍ଦବଳା ।
ରୁନ୍ଧିଲେ ଅସୁରର ଗଳା ॥୮୦
କଣ୍ଠେ ଲମ୍ବିଲେ ବନମାଳୀ ।
ଅସୁର ନ ପାରିଲା ଚଳି ॥୮୧
ବ୍ରହ୍ମାଣ୍ଡ କୋଟି କୋଟି ମାଳେ ।
ବସନ୍ତି ଯା'ର ରୋମମୂଳେ ॥୮୨
ଅସୁର ଚାଳିବ ତା କାହିଁ ।
ଭାଳଇ ଚଉଦିଗ ଚାହିଁ ॥୮୩
ବାଳୁତ ପୁଅ ଏଡ଼େ ଗରୁ ।
ପକାଇ ଦେବି ପଡ଼ି ମରୁ ॥୮୪
ଧରିଣ କୃଷ୍ଣ ବାମହସ୍ତେ ।
ତା' କଣ୍ଠ ଚାପିଲେ ତୁରିତେ ॥୮୫
ବେନି ଲୋଚନ ଗଲା ଫୁଟି ।
ପ୍ରାଣ ଛାଡ଼ିଲା ତାଳୁ ଫାଟି ॥୮୬

Dr. Sudhanshu Sekhar Mishra

ଶବଦ କଲା ମହାଘୋର ।
ଶୁଣି କମ୍ପିଲେ ସୁରନର ॥୮୭
ଅସୁର ଘେନି କୃଷ୍ଣ କରେ ।
ପଡ଼ିଲେ ଶିଳାର ଉପରେ ॥୮୮
ଅସୁର ଦେହ ହେଲା ଚୂର ।
ଗୋପୀ ଦେଖିଲେ ଦାମୋଦର ॥୮୯
ଯମର ଘରୁ ଯେହ୍ନେ ଆସି ।
କୋଳ କରନ୍ତି ଗୋପୀ ହସି ॥୯୦
ଶିଳାରୁ ଘେନି ବନମାଳୀ ।
ଯଶୋଦାକୋଳେ ଦେଲେଟୋଳି ॥୯୧
ଗୋପୀ ଗୋପାଳ ଆଦି ନନ୍ଦ ।
କୃଷ୍ଣଙ୍କୁ ଦେଖିଣ ସାନନ୍ଦ ॥୯୨
ଗୋପାଳେ ନନ୍ଦଙ୍କୁ ଅନାଇ ।
ବୋଲନ୍ତି ଭାଗ୍ୟବନ୍ତ ତୁହି ॥୯୩

କାଳର ମୁଖୁଁ ଉବୁରିଲା ।
ପୁତ୍ରକୁ ଗୋବିନ୍ଦ ରଖିଲା ॥୯୪
ଶୀତଳ ଯଶୋଦାର କୋଳ ।
ଆପଦୁଁ ତରିଲା କୁମର ॥୯୫
ଅରିଷ୍ଟ ଦେଖି ନନ୍ଦ ମନେ ।
ଭାଳଇ ମିତ୍ରର ବଚନେ ॥୯୬
ଦିନେକ ପୁତ୍ର କୋଳେ ଘେନି ।
କ୍ଷୀର ପିଆନ୍ତେ ନନ୍ଦ ରାଣୀ ॥୯୭
କୃଷ୍ଣ ବଦନେ ଉଠେ ହାଇ ।
ଯଶୋଦା ତୁଣ୍ଡେ ଦେଲା ଚାହିଁ ॥୯୮
ଦେଖିଲା ଦର୍ପଣ ପରାୟେ ।
ବ୍ରହ୍ମାଣ୍ଡ ଦିଶେ କୃଷ୍ଣ ଦେହେ ॥୯୯
ଆକାଶ ଆଦି ଦିଗପାଳେ ।
ଗ୍ରହ ନକ୍ଷତ୍ର ମେଘମାଳେ ॥୧୦୦

ସପତ ସିନ୍ଧୁ ବସୁନ୍ଧରୀ ।
ନଦୀ କାନନ ଦିଗ ଗିରି ॥୧୦୧
ସ୍ଥାବର ଆଦି ସର୍ବଜନ୍ତୁ ।
ବିଶ୍ୱ ସଂସାରେ ଯେତେ ହେତୁ ॥୧୦୨
ଦେଖି ଚକିତମନେ ଚାହିଁ ।
ହୃଦେ ଚିନ୍ତଇ ଭାବଗ୍ରାହୀ ॥୧୦୩
ସଭୟେ ପୁତ୍ର କୋଳେ ଘେନି ।
ଘରେ ପଶିଲେ ନନ୍ଦରାଣୀ ॥୧୦୪
ଆନନ୍ଦ କେ ପାରିବ କହି ।
ଯାହାର ସୁତ ଭାବଗ୍ରାହୀ ॥୧୦୫
ନିଦ୍ରା ମୋହିତ ହୃଷିକେଶ ।
ନମଇଁ ଜଗନ୍ନାଥ ଦାସ ॥୧୦୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ନନ୍ଦବସୁଦେବ ସଙ୍ଗମୋ ନାମ ଅଷ୍ଟମ ଅଧ୍ୟାୟଃ ॥

## ନବମ ଅଧ୍ୟାୟ

### ଶୁକ ଉବାଚ

ଶୁଣ ଅଭିମନ୍ୟୁ-କୁମର ।
କହନ୍ତି ଶୁକ-ମୁନିବର ॥୧
ଗର୍ଗବଂଶରେ ମୁନି ଜାତ ।
ଯାଦବବଂଶ ପୁରୋହିତ ॥୨
ଧାର୍ମିକପଣେ ସମ ନାହିଁ ।
ଆଣିଲା ବସୁଦେବ ରାଇ ॥୩
ବସାଇ ପୂଜିଲା ପୟର ।
ଏକାନ୍ତେ ବୋଲଇ ଉତର ॥୪
ଭୋ ମୁନି ନନ୍ଦଘରେ ମୋର ।
ଅଛନ୍ତି ବେନି ଯେ କୁମର ॥୫
କଂସର ଡ଼ରେ ମୁହିଁ ନେଇ ।
ଗୋପରେ ଅଛଇଁ ଲୁଚାଇ ॥୬
ଏବେ ଗୋପକୁ ତୁମ୍ଭେ ଯାଅ ।
ମୋର ପୁତ୍ରଙ୍କୁ ନାମ ଦିଅ ॥୭

ଏହା ଜାଣିବ ଏକା ନନ୍ଦ ।
ଆନ ଜାଣିଲେ ହେବ ମନ୍ଦ ॥୮
ବସୁଦେବର ବୋଲ ଶୁଣି ।
ଗୋପେ ଚଳିଲେ ଗର୍ଗମୁନି ॥୯
ସାମଗାୟନ କରି ଧୀରେ ।
ମିଳିଲେ ନନ୍ଦର ମନ୍ଦିରେ ॥୧୦
ଦେଖି ଆସନୁ ନନ୍ଦ ଉଠି ।
ଥୋକାଏ ଅଇଲେ ପାଛୋଟି ॥୧୧
ପବିତ୍ର ଜଳେ ପାଦ ଧୋଇ ।
ଆସନେ ବସାଇଲା ନେଇ ॥୧୨
ଚରଣ ପୂଜି ଷଡ଼ଅର୍ଘ୍ୟେ ।
ବିନୟ ହୋଇ ସାଧୁ ଗାର୍ଗ୍ୟେ ॥୧୩
ଆନନ୍ଦ କରାଇଣ ମନ ।
ବୋଲଇ ମଧୁର ବଚନ ॥୧୪
ଭୋ ମୁନି ହୋଇଲି ନିର୍ମଳ ।
ଘେନି ତୁମ୍ଭର ପାଦଜଳ ॥୧୫

ଭୂତ ଭବିଷ୍ୟତ ବର୍ତ୍ତମାନ ।
ଏଣେ ତୁମ୍ଭର ଦିବ୍ୟଜ୍ଞାନ ॥୧୬
ଅନେକ ପୁଣ୍ୟ ଥିଲା ମୋର ।
ତେଣୁ ପୂଜିଲି ତୋ' ପୟର ॥୧୭
ଭିତରପୁରେ ମୁନି ନେଇ ।
କହଇ ଏକାନ୍ତେ ବସାଇ ॥୧୮
ଶୁଣ ପଣ୍ଡିତ ଚୂଡ଼ାମଣି ।
ମୋ ଘରେ ଅଛଇ ରୋହିଣୀ ॥୧୯
ବସୁଦେବର ଏ ତନୟ ।
ପୁଣି ହୋଇଛି ମୋର ପୁଅ ॥୨୦
ନାମକରଣ ଆଜ କର ।
ପ୍ରସନ୍ନ ହୋଇ ମୁନିବର ॥୨୧
କ୍ଷତ୍ରିୟ ସ୍ୱଭାବେ ଯୁକତେ ।
ସଂସ୍କାର କର ବେନିସୁତେ ॥୨୨
ତୋ ତହୁଁ ନ ଜାଣିବେ କେହି ।
ଏମନ୍ତ ମନ୍ଦିରେ ବସାଇ ॥୨୩

Dr. Sudhanshu Sekhar Mishra

ମୁନି ବୋଲନ୍ତି ନନ୍ଦ ଚାହିଁ ।
ଏ କଥା ମୋତେ ନ ଯୋଗାଇ ॥୨୪

ମୁଁ ଯଦୁବଂଶେ ପୁରୋହିତ ।
ଏ କଥା ସଂସାରେ ବିଦିତ ॥୨୫

ତୋହର ଘରେ କାର୍ଯ୍ୟ କଲେ ।
କଂସ ଜାଣିବ ତାହା ଭଲେ ॥୨୬

ବସୁଦେବର ପୁତ୍ର ଏହି ।
ପୂର୍ବେ ଅମ୍ବିକା ଗଲେ କହି ॥୨୭

ଦେବକୀ ଅଷ୍ଟମ ଗର୍ଭର ।
ନିଶ୍ଚୟେ ହୋଇଲା କୁମର ॥୨୮

କେ ଅବା ଆସିଅଛି ଥୋଇ ।
ପୁରୋହିତ ଯେ ଗଲେ ତହିଁ ॥୨୯

ଏମନ୍ତ ବିଚାରି ଅସୁର ।
ଘେନାଇ ଯିବ ମଧୁପୁର ॥୩୦

ନେଇ ମାରିବ ବେନିବାଳ ।
ଏ କଥା ଅନର୍ଥର ମୂଳ ॥୩୧

ଶୁଣି ବୋଲନ୍ତି ନନ୍ଦରାୟ ।
ଭୋ ମୁନି ନ କର ତୁ ଭୟ ॥୩୨

ତୋ ତହୁଁ ନଜାଣିବେ ଆନ ।
ଏମନ୍ତ ଅଛି ମୋର ସ୍ଥାନ ॥୩୩

କହି କରାଇ ସାବଧାନ ।
ଆଣିଲା ହୋମର ବିଧାନ ॥୩୪

ଦ୍ୱିଜ ବେଭାରେ ଶୁଚିମନ୍ତ ।
ସଂସ୍କାର କଲେ ବେନିସୁତ ॥୩୫

ଗର୍ଗ୍ୟ ଅଇଲେ ଯହିଁ ପାଇଁ ।
ଦେଖିଲେ ନନ୍ଦପୁତ୍ର ଦୁଇ ॥୩୬

ନୟନେ ଦେଖି ନିସ୍ତରିଲେ ।
ବେଦବଚନେ ସ୍ତୁତି କଲେ ॥୩୭

ବିଚାରି ହୃଦେ ପରିମାଣି ।
ଜ୍ଞାନଦର୍ଶନେ ମୁନିମଣି ॥୩୮

ସଭୟ କରି ହୃଦଗତେ ।
ଗୋବିନ୍ଦ ଭାବ ଅନୁମତେ ॥୩୯

ଭୋ ବ୍ରହ୍ମପୁରୁଷ ଶରୀର ।
ମର୍ତ୍ତ୍ୟେ ହୋଇଲ ଅବତାର ॥୪୦

ଅବନୀଭାରା ନାଶ ଅର୍ଥେ ।
ଅଂଶେଣ ହୋଇଲ ସମ୍ଭୂତେ ॥୪୧

ନାଶିବ ଦୁଷ୍ଟ ମହାମଲ୍ଲେ ।
ଯେତେ ଏ ଅଛନ୍ତି ଶୟନେ ॥୪୨

ଏମୋର ନୟନ ଆନନ୍ଦ ।
କେବଣ ତପ କଲା ନନ୍ଦ ॥୪୩

ଗୋରୁ ଗୋପାଳ ଗୋପସୁତ ।
ନଦୀ କାନନ ପରବତ ॥୪୪

ଗିରିକୁସୁମ ବନେ ଯେତେ ।
ଦ୍ୱାଦଶ-ବିପିନ ସହିତେ ॥୪୫

ଏହାଙ୍କ ଭାଗ୍ୟ କେହୁ କହୁ ।
ମାୟା-ମନୁଷ୍ୟ ମହାବାହୁ ॥୪୬

ଭୋ ନାଥ କମଳନୟନ ।
ଅଜନ୍ମା ହେଲ ତୁମ୍ଭେ ଜନ୍ମ ॥୪୭

ମୁଁ କୀଟ କୋଟିକେ ଅନ୍ତର ।
କିସ ବା ନାମ ଦେବି ତୋର ॥୪୮

ଅନନ୍ତ ଅବତାର ନାମ ।
ଅଂଶେ ହୋଇଲ ଗୁଣଧାମ ॥୪୯

ଏମନ୍ତ ଯେତେ ଗୁଣ କର୍ମେ ।
ସମସ୍ତ କହିଲେ ବଚନେ ॥୫୦

ମନେ ବିଚାରି ହୃଦେ ସ୍ତୁତି ।
କଲେ ସେ ଗାର୍ଗ୍ୟ ମହାଯତି ॥୫୧

ଆତ୍ମାର ଗୁଣ କର୍ମ ଅର୍ଥେ ।
କହନ୍ତି ନନ୍ଦର ଅଗ୍ରତେ ॥୫୨

ଶୁଣ ହେ ବ୍ରଜ ମହୀପତି ।
ଯେ ତୋର ପୁତ୍ର ନାମ ଗତି ॥୫୩

ରୋହିଣୀ ସୁତ ଏ ସୁନ୍ଦର ।
ଗୁଣେ ରଞ୍ଜିବ ସୁରନର ॥୫୪

ଏହାର ନାମ ରାମ ହେଉ ।
ଦେଖ ଆଜାନୁ ବେନି ବାହୁ ॥୫୫

ବଳ ଅଧିକୁ ବଳ ନାମ ।
ବେନି ସଂଯୋଗେ ବଳରାମ ॥୫୬

ଗୋବିନ୍ଦ ଆଜ୍ଞା ଘେନି ପୂର୍ବେ ।
ଦୁର୍ଗା ଆକର୍ଷି ଥିଲେ ଗର୍ଭେ ॥୫୭

ତେଣୁ ଯେ ନାମ ସଙ୍କର୍ଷଣ ।
ଦେଖ ସ୍ୱରୂପ ବିଚକ୍ଷଣ ॥୫୮

ଏ ଯେ ତୋହର ନିଜ ସୁତ ।
ଏହାର ଗୁଣ ଅପ୍ରମିତ ॥୫୯

ଏଯେତେ ଜନ୍ମ ମହୀତଳେ ।
ମୁହିଁ ଜାଣଇ ଯୋଗବଳେ ॥୬୦

ଯୁଗ ଯୁଗକେ ଆନ ବର୍ଣ୍ଣ ।
ଆବରେ ଯେତେ ଗୁଣ କର୍ମ ॥୬୧

ଏହାକୁ ନ ଜାଣନ୍ତି କେହି ।
ମୁଁ ଏହା ଅଳପ ଜାଣଇ ॥୬୨

ନାମ ଏହାର ଅଛି ଯେତେ ।
କହିବି ଏକେ ଏକେ କେତେ ॥୬୩

ଶ୍ୱେତ ଶୋଣିତ ପୀତ ଶ୍ୟାମ ।
ଯୁଗକୁ ଯୁଗ ଅନୁଆନ ॥୬୪

ଏବେ ଏହାର କୃଷ୍ଣ ନାମ ।
ଦୁଷ୍ଟ କରିବ ବିନାଶନ ॥୬୫

ପୂର୍ବେ ଏ ବସୁଦେବ ଘରେ ।
ଜନ୍ମିଲେ ଦେବକୀ ଉଦରେ ॥୬୬

ପିତା ଏହାର ବସୁଦେବ ।
ତେଣୁ ତା'ନାମ ବାସୁଦେବ ॥୬୭

ଯେତେକ ନାମଟି ଏହାର ।
ଅଳପ ଜାଣେ ବେଦବର ॥୬୮

ଏହାର ନାମ ଆଶ୍ରେ କରି ।
ହେଲେ ତରିବେ ଭବବାରି ॥୬୯

ପ୍ରଥମ ଯୁଗେ ଏହା ଗୁଣ ।
ହେ ନନ୍ଦ ସାବଧାନେ ଶୁଣ ॥୭୦

ବେଣରାଜାର ଅନ୍ତଃକାଳେ ।
ଭୂମି କମ୍ପିଲା ଟଳମଳେ ॥୭୧

ଏହାର ବଳ ଆଶ୍ରେ କରି ।
ସୁଖେ ବଞ୍ଚିଲେ ନରନାରୀ ॥୭୨

ଏହାର ନାମେ ଯା'ର ଭାବ ।
ସେ ପ୍ରାଣୀ ସଂସାରୁ ତରିବ ॥୭୩

ଦେଖ ଏହାର ବର୍ଣ୍ଣ ଚିହ୍ନ ।
ପ୍ରତ୍ୟକ୍ଷେ ବିଷ୍ଣୁର ସମାନ ॥୭୪

ଏଣେ ବିଶ୍ୱାସ ନନ୍ଦ କର ।
ତରିବୁ ଭବ ମହାଘୋର ॥୭୫

ଏମନ୍ତ କହି ନନ୍ଦ ଆଗେ ।
ମଥୁରା ଗଲେ ମୁନି ବେଗେ ॥୭୬

ନନ୍ଦ ସନ୍ତୋଷ ମନେ ଗୁଣି ।
କୃଷ୍ଣଙ୍କୁ ଘେନିଲା ରୋହିଣୀ ॥୭୭

Dr. Sudhanshu Sekhar Mishra

ଯଶୋଦା ରାମ ଘେନି କୋଳେ ।
ସ୍ତନ୍ୟ ପିଆନ୍ତି ସୁଖଭୋଳେ ॥୭୮
କେତେହେଁ ଦିନ ତହିଁ ଗଲା ।
ଶୁଣ ହୋ ଶ୍ରୀକୃଷ୍ଣର ଲୀଳା ॥୭୯
ଦିନେକ ରାମ ଶିରୀଧର ।
ମନ୍ଦିରୁ ହୋଇଲେ ବାହାର ॥୮୦
ଚାଲନ୍ତି ଆଗେ ଗୁଳଗୁଞ୍ଜା ।
କ୍ଷଣ କ୍ଷଣକେ ପଛଘୁଞ୍ଚା ॥୮୧
ଚରଣେ ନୂପୁର ବାଜେଣୀ ।
କରେ କଙ୍କଣ କଣ୍ଠେ ମଣି ॥୮୨
ଚାଲନ୍ତେ ଗୋପୀଙ୍କ ଅଗଣା ।
କର୍ଦ୍ଦମେ ପଡ଼ି ହୋନ୍ତି ବଣା ॥୮୩
ପୁଣି ଚାଲନ୍ତେ ପୁଣି ବାଜେ ।
ପଛକୁ ଚାହିଁ ଦେବରାଜେ ॥୮୪
ଚରଣେ ରୁଣ୍ଣୁଝୁଣ୍ଣୁ ନାଦେ ।
ଗୋବିନ୍ଦ ନାଚନ୍ତି ଆନନ୍ଦେ ॥୮୫
ଦେଖି ଧାମନ୍ତି ବେନିମାଏ ।
ରାମକୃଷ୍ଣଙ୍କ ପଙ୍କ କାୟେ ॥୮୬
କାଖେ ବସାଇ ଘରେ ଆଣି ।
ଧୁଅନ୍ତି ଘେନି ବାସପାଣି ॥୮୭
ଝୀନବସନେ ପୋଛି ଦେହ ।
କ୍ଷଣକ୍ଷଣକେ ମାୟାମୋହ ॥୮୮
ବେନି ମାତାଏ କୋଳେ ଧରି ।
ସ୍ତନ୍ୟ ପିଆନ୍ତି ପେଟଭରି ॥୮୯
ପାଟିକେ ଦୁଇ ଦୁଇ ଦନ୍ତ ।
ଦେଖିଣ ଯଶୋଦା ଉଛତ ॥୯୦
ରୋହିଣୀ ଦେଖିଣ ସାନନ୍ଦ ।
ପୁତ୍ରଙ୍କୁ କୋଳ କଲା ନନ୍ଦ ॥୯୧
ଦିନକୁ ଦିନ ବଳୀୟାର ।
ବଢ଼ନ୍ତି ରାମ ଦାମୋଦର ॥୯୨
ଗୋପାଳ ବାଳକଙ୍କ ମେଳେ ।
ଗୋପୀଏ ଧରୁଥା'ନ୍ତି କୋଳେ ॥୯୩
ଖେଳନ୍ତି ଗୃହ ଦାଣ୍ଡ ଭାଗେ ।
ବାଛୁରୀମାନଙ୍କର ସଙ୍ଗେ ॥୯୪
ଉଠନ୍ତି ବତ୍ସାଙ୍କ ଉପର ।
ଧୂଳି ଧୂସର କଳେବର ॥୯୫

ବତ୍ସାଏ ଉଠି ଯେ ପଳାନ୍ତି ।
ଲାଙ୍ଗୁଡ଼ ଧରି ଓଟାରନ୍ତି ॥୯୬
ପୁଣି ପଳାନ୍ତେ କର ଛାଡ଼ି ।
ତଳେ ପଡ଼ନ୍ତି ମୁହଁମାଡ଼ି ॥୯୭
ତୁଣ୍ଡରୁ ଗଳଇ ରୁଧିର ।
କାନ୍ଦନ୍ତି ବ୍ରହ୍ମାଣ୍ଡ ଠାକୁର ॥୯୮
ଘରୁ ବାହାର ହୋଇ ଗୋପୀ ।
କୃଷ୍ଣଙ୍କୁ ଚାହାନ୍ତି ନିରୋପି ॥୯୯
ଧୂଳି ଝାଡ଼ନ୍ତି ବସ୍ତ୍ର ଘେନି ।
କୋଳ କରନ୍ତି ପୁତ୍ର ବେନି ॥୧୦୦
ଘରେ ଶୁଆଉଁ ବସ୍ତ୍ର ପାଡ଼ି ।
ଲୋଟି ହୁଅନ୍ତି ଗଡ଼ାଗଡ଼ି ॥୧୦୧
କ୍ଷଣକେ ହୁଅନ୍ତି ବାହାର ।
କ୍ଷଣ କ୍ଷଣକେ ଆଗୁସାର ॥୧୦୨
ଗୋପୀ ଧରନ୍ତି ଯାଇ କୋଳେ ।
ଚୁମ୍ବନ ଦ୍ୟନ୍ତି କୁତୂହଳେ ॥୧୦୩
ନନ୍ଦର ଘରେ ଦ୍ୟନ୍ତି ନେଇ ।
କହନ୍ତି ଯଶୋଦାକୁ ଚାହିଁ ॥୧୦୪
ଏ ତୋର କେବଣ ବିଚାର ।
ପୁତ୍ର ନ ଥୋଉ କିମ୍ପା ଘର ॥୧୦୫
ଏକ ବାଳକେ ନ ସମ୍ଭାଳୁ ।
ବିପଦ ପଡ଼ିଲେ ଯେ ଭାଳୁ ॥୧୦୬
ଶୁଣି ଯଶୋଦା କୃଷ୍ଣ ଘେନି ।
ରାମଙ୍କୁ ସମ୍ଭାଳେ ରୋହିଣୀ ॥୧୦୭
ଦିନକୁ ଦିନ ଅପ୍ରମିତେ ।
ଘରେ ନ ରହନ୍ତି ବାଳୁତେ ॥୧୦୮
ଗୋ ଶୃଙ୍ଗ ଧରିଣ ନାଚନ୍ତି ।
ଅଗ୍ନିର ନିକଟେ ବୁଲନ୍ତି ॥୧୦୯
ଡେରିଲା ଖଣ୍ଡାକୁ ଚାଳନ୍ତି ।
ଶ୍ୱାନର ତୁଣ୍ଡେ ହସ୍ତ ଦ୍ୟନ୍ତି ॥୧୧୦
ପଡ଼ି ଲୋଟନ୍ତି ଜଳକୁଣ୍ଡେ ।
ହସ୍ତ ଭରନ୍ତି ସର୍ପତୁଣ୍ଡେ ॥୧୧୧
କଣ୍ଟା ଉପରେ ଗଡ଼ିଯା'ନ୍ତି ।
ମାର୍ଜ୍ଜାରୀ ପୁଅକୁ ଧରନ୍ତି ॥୧୧୨
ଖେଳନ୍ତି ଅତି ବଳୀୟାର ।
ଗୋକୁଳେ ରାମ ଦାମୋଦର ॥୧୧୩

ନିତ୍ୟେ ପୁତ୍ରଙ୍କୁ ଧରିଆଣି ।
ପିଟନ୍ତି ଯଶୋଦା ରୋହିଣୀ ॥୧୧୪
ବେପାର ନ ପାରନ୍ତି କରି ।
ପୁଣି ଆଣନ୍ତି କୋଳେ ଧରି ॥୧୧୫
ଦଣ୍ଡେ ହେଁ ନରହନ୍ତି ଘରେ ।
ବୁଲନ୍ତି ଗୋପୀଙ୍କ ମନ୍ଦିରେ ॥୧୧୬
ତୁଲ୍ୟବୟସ ଗୋପବାଳେ ।
ଖେଳନ୍ତି ରାମକୃଷ୍ଣ ତୁଲେ ॥୧୧୭
ଭାଙ୍ଗନ୍ତି କାହା ଦଧିଭାଣ୍ଡ ।
ବସ୍ତ୍ର ଚିରନ୍ତି ଖଣ୍ଡ ଖଣ୍ଡ ॥୧୧୮
କାହାର ପିଆନ୍ତି ବାଛୁରୀ ।
ଲବଣି ଖା'ନ୍ତି ଚୋରିକରି ॥୧୧୯
କନ୍ଦାନ୍ତି ଦୋଳିର କୁମର ।
ପାଣି ଡାଳନ୍ତି କା' ଉପର ॥୧୨୦
ସହି ନପାରି ଗୋପବାଳୀ ।
ନନ୍ଦର ଘରେ ଥୋକେ ମିଳି ॥୧୨୧
ଗୋପୀ କହନ୍ତି ଆଗବଢ଼ି ।
ଯଶୋଦା ପାଦତଳେ ପଡ଼ି ॥୧୨୨
ସମ୍ଭାଳ ତୋର ଘରଦ୍ୱାର ।
ଆମ୍ଭେ ନ ଥିବୁ ଗୋପପୁର ॥୧୨୩
କହିବୁ ଆଉ ଗୁଣକେତେ ।
ଶୁଣ ଗୋ କର୍ମ କଲା ଯେତେ ॥୧୨୪
ଜୀବିକା ବୁଡ଼ିଲା ଆମ୍ଭର ।
ବତ୍ସା ମେଲାନ୍ତି ତୋ' କୁମର ॥୧୨୫
ଘରେ ନ ଥାଉଁ ଯେତେବେଳେ ।
ଚୋରି କରଇ ଅବହେଳେ ॥୧୨୬
ଶିକା ଦଉଡ଼ି କାଟିଦେଇ ।
ଲବଣି କାନ୍ଥେ ଲେପୁଥାଇ ॥୧୨୭
ବସ୍ତ୍ର ଚିରଇ ଘରେ ପଶି ।
ବୋଇଲେ ବେଗେ ଯାଏ ରଷି ॥୧୨୮
ଭାଣ୍ଡ ଭାଙ୍ଗଇ ଲୁଚି ଲୁଚି ।
କଥାକେ ଯାଉଥାଏ ଘୁଞ୍ଚି ॥୧୨୯
ଖୋଜିଣ ଦୁଧ ସର ଖାଇ ।
କାହାର ଭାଣ୍ଡରେ ମୂତଇ ॥୧୩୦
ସର ନପାଏ ଯା'ର ଘରେ ।
ହାଣ୍ଡି ଭାଙ୍ଗଇ କୋପଭରେ ॥୧୩୧

Dr. Sudhanshu Sekhar Mishra

କିଛି ନପାଏ ଯା'ର ଘର ।
ଉଠଇ ଦୋଳିର ଉପର ॥୧୩୨
ଶୋଇଲା ପୁଅକୁ କନ୍ଦାଏ ।
ଗୋଡ଼ାଇ ଗଲେ ଗାଳିଦିଏ ॥୧୩୩
ଏକଇ ଗୋପୀ ରୋଷଭରେ ।
କହଇ ଯଶୋଦା ଆଗରେ ॥୧୩୪
ଯମୁନା ଯିବାବେଳେ ମୋର ।
ଘରେ ପଶିଲା ତୋ' କୁମର ॥୧୩୫
କବାଟ ଫେଡ଼ିଣ ମୋହର ।
ଘରେ ପଶଇ ଯେହ୍ନେ ଚୋର॥୧୩୬
ତା' ଦେଖି ବାହୁଡ଼ିଲି ମୁହିଁ ।
ଜଳାକବାଟି ବାଟେ ଚାହିଁ ॥୧୩୭
ଶିକାରେ ଅଛି ମୋର ସର ।
ଗମ୍ଭିରୀ ବଡ଼ଇ ଅନ୍ଧାର ॥୧୩୮
କିଛି ନ ପାଇ ମୋର ଘରେ ।
ପଶିଲା ଗମ୍ଭୀରି ଭିତରେ ॥୧୩୯
କି ମନ୍ତ୍ର ଜାଣେ ତୋର ପୁଅ ।
କୋଟିଏ ସୂର୍ଯ୍ୟ ଜିଣି ଦେହ ॥୧୪୦
ଘୋର ଅନ୍ଧାର ଗଲା କେଣେ।
ପୁଣି ଚାହିଁଲା ଏଣେତେଣେ ॥୧୪୧
ଦେଖିଲା ଶିକା ଅଛି ଉଚ୍ଚେ ।
ହସ୍ତ ନ ପାଇଲା ସୁସଞ୍ଚେ ॥୧୪୨
ରୋଳ ଆଣିଲା ଧାତିକାରେ ।
ଉଠିଲା ତଥିର ଉପରେ ॥୧୪୩
ସବୁ ଖାଇଲା ଦୁଧସର ।
ତୁଣ୍ଡୁ ମୋ' ନଇଲା ଉତ୍ତର ॥୧୪୪
ପୁଣି ଗୋପୀଏ ହୋଇ ଆଗେ ।
କୋପେକହଇ ବେଗେ ବେଗେ॥୧୪୫
ଭୋ ମାତ ଗଲି ନୀର ଆଣି ।
ତୋ' ସୁତ ଖାଇଲା ଲବଣି ॥୧୪୬
ଆସି ହୋଇଲି ବେଗେ ଘର ।
ବସିଛି ପିଣ୍ଡାର ଉପର ॥୧୪୭
ବୋଇଲା ଗଲୁ ଏତେବେଳ ।
ତୋ' ଘରେ ପଶିଥିଲା ଚୋର ॥୧୪୮
ମୁଁ ଏବେ ବସିଅଛି ଜଗି ।
ଖାଇବି ଆନଘରେ ମାଗି ॥୧୪୯

ଖରେ ପଶିଲି ଘରେ ମୁହିଁ ।
ଦେଖିଲି ଗଲାଣି ପଳାଇ ॥୧୫୦
ପୁଣି ଗୋପୀଏ ଆଗସରି ।
ବୋଲଇ ଶୁଣ ନନ୍ଦନାରୀ ॥୧୫୧
ଦିନେକ ମୋର ଘରେ ଗଲା ।
କରଅଞ୍ଜଳି ପ୍ରସାରିଲା ॥୧୫୨
ବୋଇଲା ଫୁଟିଲି ମୁଁ ପଥେ ।
ଲବଣି ଦିଅ ମୋର ହସ୍ତେ ॥୧୫୩
ହସ୍ତ ପୂରାଇ ଦିଅ ସର ।
ତୋ ଘରେ ନପଶିବ୍ ଚୋର ॥୧୫୪
ଶୁଣି ସାନନ୍ଦ ମନେ ମୁହିଁ ।
ସର ଲୁଚାଏ ଦେଲି ନେଇ ॥୧୫୫
ହସ୍ତ ନ ପୂରଇ ତାହାର ।
ବୋଲଇ ଆଣ ଧାତିକାର ॥୧୫୬
ପୁଣି ଥୋକାଏ ଦେଲି ନେଇ।
ଦେଖିଲି ହସ୍ତ ନ ପୂରଇ ॥୧୫୭
ଯେତେକ ଥିଲା ଘରେ ମୋର ।
ଦୁଧ ଲବଣି ଘୃତ ସର ॥୧୫୮
ସବୁ ଢାଳିଲି ବେଗେ ନେଇ ।
ଦେଖିଲି ହସ୍ତ ନ ପୂରଇ ॥୧୫୯
ପାଖ ପଡ଼ିଶା ଯେତେ ଘର ।
ସବୁ ଆଣିଲି ଘୃତ ସର ॥୧୬୦
କେବେହେଁ କର ନ ପୂରିଲା ।
ପୁଣି ହିଁ ଆଣ ଲୋ ବୋଇଲା॥୧୬୧
ଦେଖି ମୁଁ ହୋଇଲି ଚକିତ ।
ଏକା ଗ୍ରାସକେ ଗର୍ଭଗତ ॥୧୬୨
ହସ୍ତ ବୋଳିଲା ମୋର ମୁଣ୍ଡେ ।
ପଳାଇଗଲା ଦାଣ୍ଡେ ଦାଣ୍ଡେ ॥୧୬୩
ଗୋପୀଙ୍କ ଭାଷା ଶୁଣି ଶୁଣି ।
କୋପେ ବୋଲଇ ନନ୍ଦରାଣୀ॥୧୬୪
କୃଷ୍ଣର ଧରିଛନ୍ତି କର ।
ଭୟେ କମ୍ପନ୍ତି ଚକ୍ରଧର ॥୧୬୫
ଯଶୋଦା ବୋଲଇ ଲୋ ଶୁଣ ।
ଜାଣିଲି ପୁତ୍ର ଦୁଷ୍ଟପଣ ॥୧୬୬
ତୁମ୍ଭର ଜାଣିଲି ସଦୟେ ।
ଦେଲଟି ଲବଣି ଟିକାଏ ॥୧୬୭

ଏତେକେ ବୁଡ଼ିଲା ତୋ' ଘର ।
ଭଣ୍ଡ ଲୋ ମୋହର ଆଗର ॥୧୬୮
ବାଳୁତ ପୁଅ ହସ୍ତ କାହିଁ ।
ଶତେ ନଉତି ନପୂରଇ ॥୧୬୯
ଏତେ ଅନୀତି କଥା କହ ।
ଜାଣତ ଦୁଷ୍ଟ ମୋର ପୁଅ ॥୧୭୦
ଏ ଛାର ତୁମ୍ଭର ପ୍ରମାଣ ।
ଏଥକୁ ସାକ୍ଷୀ ନାରାୟଣ ॥୧୭୧
ଦାସବତ୍ସଳ ଭଗବାନ ।
ଚାହିଁଲେ ଗୋପୀଙ୍କ ବଦନ ॥୧୭୨
ଗୋପୀ କରିବେ ତା'ଙ୍କୁ କିସ ।
ଏମନ୍ତ ପ୍ରଭୁ ହୃଷୀକେଶ ॥୧୭୩
ମୋହନ କରି ହସ ହସ ।
ଗୋପୀ ହୋଇଲେ ସର୍ବେବଶ ॥୧୭୪
ତକ୍ଷଣେ ସ୍ନେହଭର ହୋଇ ।
ଗୋପୀଏ ଏକୁ ଆରେ ଚାହିଁ ॥୧୭୫
କୃଷ୍ଣର ମୁଖେ ଚୁମ୍ବ ଦେଇ ।
ଯେ ଯାହା ଘରକୁ ସେ ଯାଇ॥୧୭୬
ଶୁଣ ପରୀକ୍ଷ ମହୀପାଳ ।
ବାଳକଲୀଳା ନନ୍ଦବାଳ ॥୧୭୭
ଦିନେକ ରାମ ବନମାଳୀ ।
ବାଳକ ମେଳେ ଗଲେ ଖେଳି ॥୧୭୮
ଆନନ୍ଦେ କ୍ରୀଡ଼ାରଙ୍ଗେ ଫୁଟି ।
ତୁଣ୍ଡେ ଭରିଲେ କୃଷ୍ଣ ମାଟି ॥୧୭୯
ରାମ ଦେଖିଣ ଗଲେ ଖରେ ।
କହିଲେ ଯଶୋଦା ଛାମୁରେ ॥୧୮୦
ଶୁଣ ଜନନୀ ମୋ' ଉତ୍ତର ।
ମାଟି ଭକ୍ଷିଲା ତୋ' କୁମର ॥୧୮୧
ଯାଇ ମୁଁ ଧଇଲି ତା' ହସ୍ତ ।
ମାରଇ ବୋଲି ଭୟଚିତ୍ତ ॥୧୮୨
ବେଗେ ସେ ଛଡ଼ାଇଲା ହସ୍ତ ।
ମୋ ଅଙ୍ଗେ ମାଇଲା ବହୁତ ॥୧୮୩
ଶୁଣି ଯଶୋଦା ବେଗେ ଯାଇ।
ଧଇଲେ କୃଷ୍ଣ କର ଦୁଇ ॥୧୮୪
କୋପ ନୟନେ ଗୋପୀ ଚାହେଁ।
ଭୟେ କମ୍ପନ୍ତି ଦେବରାୟେ ॥୧୮୫

Dr. Sudhanshu Sekhar Mishra

ଯଶୋଦା କୋପେ ପରଜ୍ୱଳି ।
ଛାଟ ଉଞ୍ଚାଇ ଦେଲେ ଗାଳି ॥୧୮୬
ସର-ଲବଣି ତୁ ପକାଉ ।
କାହାର ବୋଲେ ମାଟି ଖାଉ ॥୧୮୭
ଆଜ ମାରିବି ତୋତେ ଘରେ।
କହିବି ପିତାଙ୍କ ଛାମୁରେ ॥୧୮୮
ପୋଏ କହିଲେ ଶୁଣ ମାଏ ।
ଭକ୍ଷିଲେ ମୃତ୍ତିକା ମୁଠାଏ ॥୧୮୯
ଶୁଣି ଯଶୋଦା କୋପ କରି ।
ଛାଟ ଉଞ୍ଚାଇ ଦେଲେ ଗାଳି ॥୧୯୦
ଅଞ୍ଚଳେ ବାନ୍ଧି ବେନି ହସ୍ତ ।
ଭୟେ କମ୍ପନ୍ତି ଗୋପୀନାଥ ॥୧୯୧
ଛାଟ ଉଞ୍ଚାନ୍ତେ ନନ୍ଦନାରୀ ।
କାନ୍ଦି କହନ୍ତି ନରହରି ॥୧୯୨
ଏହାଙ୍କ ଘରେ ମୁହିଁ ଯାଇ ।
ଲବଣି ଭୁଞ୍ଜାଇ ଚୋରାଇ ॥୧୯୩
ସେ ଘେନି କହୁଛନ୍ତି ଖଚ ।
ତୁଣ୍ଡ ମୋ' ଦେଖ ତୁ ପ୍ରତ୍ୟକ୍ଷ ॥୧୯୪
ବଳଦେବ ହିଁ ମୋତେ ହିଂସି।
ତୋଆଗେ କହିଲେ ସେ ଆସି ॥୧୯୫
ମୋ ତୁଣ୍ଡେ ଥିଲେ ସିନା ମାଟି।
ତେବେହେଁ ମୋତେ ଛାଟେପିଟି ॥୧୯୬
ହସ୍ତରୁ ବେଗେ ଛାଟ ପକା ।
ମାଏ ବୋଇଲେ ତୁଣ୍ଡ ଦେଖା ॥୧୯୭
ଶୁଣି ସାନନ୍ଦ ଚକ୍ରଧର ।
ବିସ୍ତାରି ଦେଖାନ୍ତି ଅଧର ॥୧୯୮
ତକ୍ଷଣେ ବେନିପାଟି ଧରି ।
ତୁଣ୍ଡେ ଚାହିଁଲେ ନନ୍ଦନାରୀ ॥୧୯୯
ଦେଖଇ ଅଶେଷ ବ୍ରହ୍ମାଣ୍ଡ ।
ସପତ-ମହୀ ନବଖଣ୍ଡ ॥୨୦୦
ସ୍ଥଳ ସାଗର ମହୀଧର ।
ଶଶୀ ନକ୍ଷତ୍ର ଦିବାକର ॥୨୦୧
ଦିଶ ଆକାଶ ଅନ୍ତରାଳ ।
ଗ୍ରହ ପବନ ମେଘମାଳ ॥୨୦୨
ସ୍ଥାବର ଆଦି ସର୍ବଜନ୍ତୁ ।
ବିଶ୍ୱସଂସାରେ ଯେତେ ହେତୁ ॥୨୦୩

ନଗ୍ର ପାଟଣା ପୁର ଗ୍ରାମ ।
ନଦୀ ପର୍ବତ ଘୋରବନ ॥୨୦୪
ମଥୁରାପୁର ଆଦି କରି ।
ଗୋପନଗର ନରନାରୀ ॥୨୦୫
ବାଳକ ମେଳେ ନନ୍ଦଦ୍ୱାରେ ।
କୃଷ୍ଣଙ୍କୁ ଘେନିଛନ୍ତି କରେ ॥୨୦୬
ରୋହିଣୀ ଛନ୍ତି ରାମ ଘେନି ।
ସ୍ତୁତି କରନ୍ତି ସୁର ମୁନି ॥୨୦୭
ଦେଖି ଚକିତ ନନ୍ଦରାଣୀ ।
ମୂର୍ଚ୍ଛିତେ ପଡ଼ିଲେ ଧରଣୀ ॥୨୦୮
ପୁଣି କ୍ଷଣକେ ପାଇ ଜ୍ଞାନ ।
ଭାଳଇ ଦେଖିଲି ସ୍ୱପନ ॥୨୦୯
କେଉଁ ଦେବତା ମାୟା କଲା ।
ମୋହର ମନକୁ ମୋହିଲା ॥୨୧୦
କି ଅବା ହୋଇଲଇଁ ବାଇ ।
ଜ୍ଞାନ ହାରିଲି ଗର୍ଭ ଚାହିଁ ॥୨୧୧
ଏ ବଡ଼ ପଡ଼ିଲା ସଂଶୟ ।
ଏବେ କି ବୁଦ୍ଧି ମୋର ମୋହ ॥୨୧୨
ଜଗତ ଦେଖିଲି ତ ଗର୍ଭେ ।
ଏହା ବୁଝିବି କେଉଁ ଭାବେ ॥୨୧୩
ପୁତ୍ରର କାହିଁ ଏଡ଼େ ଗର୍ଭ ।
ଏ କି ଅନାଦି ପଦ୍ମନାଭ ॥୨୧୪
ସିଦ୍ଧ ପୁରୁଷ ଅବା ଜାତ ।
ଏହାକୁ ବୋଲଇ ମୁଁ ସୁତ ॥୨୧୫
କିବା ଡାକିନୀ ମାୟା କଲା ।
ଗର୍ଭେ ତ ଏମନ୍ତ ଦିଶିଲା ॥୨୧୬
ନ ପୁଣ ପଡ଼ଇ ପ୍ରମାଦ ।
ଶୋକେ ଯଶୋଦା ଗଦଗଦ ॥୨୧୭
ଏତ ନୁହଁଇ ଭଲ ଚିହ୍ନ ।
ମୋହର ମନ ଛନ ଛନ ॥୨୧୮
ଏମନ୍ତ ଭାଳି ନନ୍ଦରାଣୀ ।
ମନ ବଚନ ଚିତ୍ତେ ଗୁଣି ॥୨୧୯
ନ ଜାଣି ବାଇ ପ୍ରାୟ ହୋଇ ।
ଭାଳଇ ଦଶଦିଗ ଚାହିଁ ॥୨୨୦
ପୁଣ କ୍ଷଣକେ ଅନୁମାନି ।
ଚିତ୍ତେ ଚିନ୍ତଇ ଭୟ ଘେନି ॥୨୨୧

ଯାହାର ମାୟାଘୋର ଭ୍ରମେ ।
ଜୀବ ଭ୍ରମଇ ପଥଶ୍ରମେ ॥୨୨୨
ମୁହିଁ ମୋହର ଏ ସଂସାର ।
ପତି ତନୟ ବନ୍ଧୁ ମୋର ॥୨୨୩
ସ୍ୱାମୀର ପତ୍ନୀ ମୁହିଁ ସରି ।
ସର୍ବ ସମ୍ପଦ ମୁଁ ଆବୋରି ॥୨୨୪
ଏ ଗୋପୀ ଗୋପ ଗୋରୁ ଧନ।
ସର୍ବ ଆବୋରି ମୋର ମନ ॥୨୨୫
ଯା'ର ମାୟାରେ ଏହି ମତି ।
ସେ ହରି ମୋତେ କରୁ ଗତି ॥୨୨୬
ଏତେ ବିଚାରି କଲା ଭୟ ।
ମାୟା ମୋହିଲେ ଦେବରାୟ ॥୨୨୭
ତକ୍ଷଣେ କୃଷ୍ଣେ କରି କୋଳ ।
ନମଇଁ ଦଶଦିଗ ପାଳ ॥୨୨୮
ଜୟ ଚଣ୍ଡିକା ଗୋ ମଙ୍ଗଳା ।
ରଖ ମୋ ଏକଇର ବଳା ॥୨୨୯
ଗଜବଦନ କ୍ଷେତ୍ରପାଳେ ।
ପୁତ୍ର ମୋ ରଖ ସର୍ବକାଳେ ॥୨୩୦
ନମଇଁ ଗୋବିନ୍ଦର ପାୟେ ।
ରିଷ୍ଟ ଖଣ୍ଡିବେ ମୋ' ତନୟେ॥୨୩୧
ଏମନ୍ତ ବୋଲି କୃଷ୍ଣେ ଘେନି ।
ଘରେ ମିଳିଲା ନନ୍ଦରାଣୀ ॥୨୩୨
ଗୋରଜ କୃଷ୍ଣଦେହେ ବୋଳି।
ଅନେକ କଲା ନିଉଛାଳି ॥୨୩୩
ପୁତ୍ରକୁ କରାଇ ସ୍ନାହାନ ।
ବ୍ରାହ୍ମଣେ ଦେଲା ମିଷ୍ଟଅନ୍ନ ॥୨୩୪
ସ୍ତନ୍ୟ ପିଆଇ କୋଳେ ଧରି ।
ନିଦ୍ରା କରାଇଲା ମୁରାରି ॥୨୩୫
ବୋଲେ ପରୀକ୍ଷ ଶୁକ ଚାହିଁ ।
ତୁମ୍ଭରେ ନିସ୍ତରିଲି ମୁହିଁ ॥୨୩୬
ନନ୍ଦ ଯଶୋଦାଙ୍କର ତପ ।
ଭୋ ମୁନି କହିବା ସ୍ୱରୂପ ॥୨୩୭
ଯାହାର ନାମ ହୃଦେ ଘେନି ।
ସଂସାରୁ ତରିଯା'ନ୍ତି ମୁନି ॥୨୩୮
ତପେ ବିଧାତା ଯାକୁ ଧ୍ୟାୟି ।
ଯା' ନାମ ଶଙ୍କର ଜପଇ ॥୨୩୯

Dr. Sudhanshu Sekhar Mishra

ଦେବେ ନ ଜାଣନ୍ତି ଯାହାକୁ ।
ସେ କେହ୍ନେ ପ୍ରାପତ ନନ୍ଦକୁ ॥୨୪୦
ଯଶୋଦା କଲା କେଡ଼େ ଭାଗ୍ୟ
ତାହାର କୋଳେ ପଦ୍ମନାଭ ॥୨୪୧
ଗର୍ଭରେ ଧରି ଦଶମାସ ।
ଦେବକୀ ହୋଇଲା ନିରାଶ ॥୨୪୨
କୃଷ୍ଣର ଏତେ ବଡ଼ ମାୟା ।
ଏହାରେ କଲେ ଏଡ଼େ ଦୟା ॥୨୪୩
କହିବା ମୋତେ ମୁନିବର ।
ନିର୍ମଳ ହେଉ ମୋ ଶରୀର ॥୨୪୪
ମୁନି କହନ୍ତି ତାହା ଶୁଣି ।
କୃଷ୍ଣଚରିତ ମନେ ଗୁଣି ॥୨୪୫
ଶୁଣ ରାଜନ କୃଷ୍ଣକଥା ।
ସୃଷ୍ଟିର ଆଦ୍ୟକାଳେ ଧାତା ॥୨୪୬
ଅଷ୍ଟବସୁଙ୍କୁ ଜାତ କଲା ।
ଜଣ ଜଣକେ ନାମ ଦେଲା ॥୨୪୭
ପୁତ୍ରଙ୍କ ମଧ୍ୟେ ସାଧୁ ଧୀର ।
ଦ୍ରୋଣବସୁ ନାମ ଯାହାର ॥୨୪୮
ପତ୍ନୀର ନାମ ତାର ଧରା ।
ସମ ନୁହଁଇ ଅପସରା ॥୨୪୯
ପୁତ୍ର-ବଧୂଙ୍କୁ ରାଜ ଧୀର ।
ଆଦେଶ ଦେଲେ ବେଦବର ॥୨୫୦
ବେଦପ୍ରମାଣେ ସୃଷ୍ଟି କର ।
ସଂସାର ହୋଇବ ତୁମ୍ଭର ॥୨୫୧
ଶୁଣି ଯୋଡ଼ିଲେ ବେନିକର ।
ମଧୁରେ କହନ୍ତି ଉତ୍ତର ॥୨୫୨

ବୋଲନ୍ତି ଶିରେ କର ଦେଇ ।
ଭୋ ତାତ ଏଣେ କାର୍ଯ୍ୟ ନାହିଁ ॥୨୫୩
ଆମ୍ଭର ଚିତ୍ତ ଅପ୍ରମାଦେ ।
ଭକତି ହେଉ କୃଷ୍ଣପାଦେ ॥୨୫୪
ତେବେ କରିବୁଁ ତୋ ବଚନ ।
ଭୋ ତାତ ହୋଇବା ପ୍ରସନ୍ନ ॥୨୫୫
ସନ୍ତୋଷେ ବୋଲେ ପ୍ରଜାପତି ।
ଗୋବିନ୍ଦେ ହେଉ ତୁମ୍ଭ ମତି ॥୨୫୬
ହରିଙ୍କି ଧ୍ୟାୟି ତପକରି ।
ଶୀତ ବରଷା ଅପହରି ॥୨୫୭
ସୂର୍ଯ୍ୟତେଜକୁ ନାହିଁ ଭୟେ ।
ତପ କରନ୍ତି କୃଷ୍ଣଲୟେ ॥୨୫୮
ତାହା ଜାଣିଲେ ନାରାୟଣ ।
ବ୍ରାହ୍ମଣ ରୂପେ ପରସନ୍ନ ॥୨୫୯
କୃଷ୍ଣ ଆରାଧି ତପ କରି ।
ପୁତ୍ର ମୋ ହୋଇବେ ମୁରାରି ॥୨୬୦
ଏହାଉଁ ଆନ କାର୍ଯ୍ୟ ନାହିଁ ।
ତୁମ୍ଭ ଚରଣେ କହିଲଇଁ ॥୨୬୧
ଶୁଣି ହସିଲେ ଭାବଗ୍ରାହୀ ।
କହନ୍ତି ଦୁହିଁଙ୍କି ଅନାଇ ॥୨୬୨
ଗୋପରେ ହୁଅ ଯାଇ ଜାତ ।
ତୁମ୍ଭେ ଯେ ହୋଇବ ମହତ ॥୨୬୩
ଦ୍ୱାପର ଯୁଗେ ଭାରା ନାଶେ ।
ଜନ୍ମ ହୋଇବେ ପୀତବାସେ ॥୨୬୪
ଦେବକୀ ଗର୍ଭେ ହୋଇ ଜାତ
କୃଷ୍ଣ ହୋଇବେ ତୁମ୍ଭ ସୁତ ॥୨୬୫

ପୁତ୍ର ବୋଲାଇବେ ତୁମ୍ଭର ।
ଅସୁର କରିବେ ସଂହାର ॥୨୬୬
ଏଗାର ବସ୍ତର ତୋ ଘରେ ।
ବଞ୍ଚିବେ ପୁତ୍ରସ୍ନେହ ଭରେ ॥୨୬୭
ଗୋପରେ କରିଣ ବିହାର ।
ବିଜେ କରିବେ ମଧୁପୁର ॥୨୬୮
ନିଜ ସ୍ୱରୂପ ଧରି ହରି ।
ତାହାଙ୍କ ଆଶା ପୂର୍ଣ୍ଣକରି ॥୨୬୯
ଏତେକ କହି ନାରାୟଣ ।
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥୨୭୦
କୃଷ୍ଣ ଆଦେଶ ଘେନି ଶିରେ ।
ଜନ୍ମ ହୋଇଲେ ଗୋପପୁରେ ॥୨୭୧
କୃଷ୍ଣଙ୍କୁ ତପବଳେ ପାଇଁ ।
ପାଳନ୍ତି ପିତାମାତା ହୋଇ ॥୨୭୨
ଶୁଣ ସୁଜନେ କୃଷ୍ଣବାଣୀ ।
ନିର୍ମଳ ହୁଅ ମନେ ଗୁଣି ॥୨୭୩
ପୁରାଣ ଗୀତବନ୍ଧେ କଲି ।
ରାମକୃଷ୍ଣଙ୍କ ବାଳକେଳି ॥୨୭୪
ଏଥକୁ ହୁଅ ଦୃଢ଼ଚିତ୍ତ ।
କହଇ ଦାସ ଜଗନ୍ନାଥ ॥୨୭୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ବିଶ୍ୱରୂପ
ଦର୍ଶନେ ନାମ ନବମୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

ଶୁକ ଉବାଚ

ନମଇଁ ପ୍ରଭୁ ବନମାଳୀ ।
ସୁଖସାଗର ବାଳକେଳି ॥୧
ଦିନେକ ଦେବୀ ଯଶୋବନ୍ତୀ ।
ସେବକୀମାନ ହକାରନ୍ତି ॥୨
ଆଜ୍ଞା ପ୍ରମାଣେ ଦାସୀଗଣେ ।
ଆସି ମିଳିଲେ ଜଣେ ଜଣେ ॥୩
ଯଶୋଦା ବୋଲନ୍ତି ଉତ୍ତର ।
ଘର ବେଭାର ତୁମ୍ଭେ କର ॥୪
ଦଧିମନ୍ଥିବି ଆଜ ମୁହିଁ ।
ଲବଣି କେତେ ଜାଣିବଇଁ ॥୫
ମନେ ଜାଣିଲେ ଭାବଗ୍ରାହୀ ।
ଭକ୍ତଜନଙ୍କ ସତ୍ୟ ପାଇଁ ॥୬
ଗୋପୀ ଯେ କହିଥିଲେ ଗତେ ।
ମୋହର କଥାମାନ ଯେତେ ॥୭
ସେକଥା କରିବଇଁ ସତ୍ୟେ ।
ଯଶୋଦା ଯିବନା ପରତେ ॥୮
ମାୟା ମୋହିଲେ ନରହରି ।
ଦାସଜନଙ୍କ ସତ୍ୟେ କରି ॥୯
ଏମନ୍ତ ବୋଲି ଆଜ୍ଞାଦେଲେ ।
ମନ୍ଥନ ଦଣ୍ଡ ଅଣାଇଲେ ॥୧୦
ମନ ଆନନ୍ଦେ ନନ୍ଦନାରୀ ।
ଦଧିଭାଣ୍ଡରେ ଖୁଆଭରି ॥୧୧
ଯଶୋଦା ହୋଇଲାକ ସଜ ।
ଯାହାର ସୁତ ଦେବରାଜ ॥୧୨
ପିନ୍ଧି ସୁରଙ୍ଗ ପାଟଶାଢ଼ି ।
ରତ୍ନମେଖଳା ଅଛି ଭିଡ଼ି ॥୧୩
ପୃଥୁଳ ନିତମ୍ବ ଯୁଗଳ ।
ସୁବର୍ଣ୍ଣ ଚୁଡ଼ି ବେନିକର ॥୧୪
ବେନିସ୍ତନରୁ କ୍ଷୀର ଝରେ ।
ନୂପୁର ବାଜଇ ପୟରେ ॥୧୫
ହୃଦରେ ହାର କର୍ଣ୍ଣେ କାପ ।
ଶିରେ ସୀମନ୍ତ ଦିବ୍ୟରୂପ ॥୧୬

ଖୁଆ ଦଉଡ଼ି ଧରି କରେ ।
ବାମ ଦକ୍ଷିଣେ ଚାଳେ ଧୀରେ ॥୧୭
ଦଉଡ଼ି ଟାଣିବାର ଡ଼ରେ ।
ବସ୍ତ୍ର ନରହେ ଦେବୀ ଶିରେ ॥୧୮
କବରୀ ଫିଟି ଲୋଟେ ତଳେ ।
ପୁଷ୍ପ ପଡ଼ନ୍ତି ମାଳେ ମାଳେ ॥୧୯
ହୃଦେ କମ୍ପନ୍ତି ପୟୋଧର ।
କଙ୍କଣ ନାଦ ବେନିକର ॥୨୦
ମୁଖେ ଶୋଭିତ ଶ୍ରମଝାଳ ।
ରଙ୍ଗ ଅଧରେ ସୁକପୋଳ ॥୨୧
ଦଧି ମନ୍ଥଇ ମନତୋଷେ ।
କୃଷ୍ଣ ମିଳିଲେ ତା'ର ପାଶେ ॥୨୨
ସ୍ତନ୍ୟ ପିଇବା ଆଶେ ହରି ।
ଜନନୀ ବସ୍ତ୍ର କରେ ଧରି ॥୨୩
ଦେଖି ଯଶୋଦା କୋପଭର ।
କୃଷ୍ଣଙ୍କୁ ବୋଲନ୍ତି ଉତ୍ତର ॥୨୪
ଯାଅ ନଧର ଏତେବେଳେ ।
ପଛେ ଘେନିବି ତୋତେକୋଳେ॥୨୫
ଶୁଣି କାନ୍ଦନ୍ତି ବନମାଳୀ ।
ଦେଖି ଯଶୋଦା ଦେଇ ଗାଳି ॥୨୬
କୃଷ୍ଣଙ୍କୁ କରାଇଲେ ତୁନି ।
ସୁସ୍ୱରେ କରି ଗୀତଧ୍ୱନି ॥୨୭
ବାଳୁତ କାଳୁ ଯେତେ ଜାଣି ।
ସୁମରି ଗାଏ ନନ୍ଦରାଣୀ ॥୨୮
କୋଇଲି ଛନ୍ଦେ ଗାଇ ଗୀତ ।
ଶୁଣି କାନ୍ଦନ୍ତି ଗୋପୀନାଥ ॥୨୯
ହସ୍ତ ବଢ଼ାଇ ଗୋପୀନାଥେ ।
ଖୁଆ ଧଇଲେ ବାମହସ୍ତେ ॥୩୦
ଯଶୋଦା ନପାରିଲା ଚାଳି ।
କୋଳେ ଧଇଲା ବନମାଳୀ ॥୩୧
ସ୍ତନ୍ୟ ପିଆଇ ତୋଷମନ ।
ଶ୍ରୀମୁଖେ ଦେଲାକ ଚୁମ୍ବନ ॥୩୨

ଶୁଣ ପରୀକ୍ଷ ଏକଚିତ୍ତ ।
ଏମନ୍ତ ହୋଇ ବିପରୀତ ॥୩୩
ଚୁଲିରେ ବସିଥିଲା କ୍ଷୀର ।
ଚାହିଁଲେ ପ୍ରଭୁ ଚକ୍ରଧର ॥୩୪
ତକ୍ଷଣେ ପଡ଼ିଲା ଉତୁରି ।
ଦେଖିଲା ଯଶୋଦା ସୁନ୍ଦରୀ ॥୩୫
କୃଷ୍ଣଙ୍କୁ ପକାଇଲା ତଳେ ।
ଅଜ୍ଞାନ-ମୋହ-ମାୟା-ଭୋଳେ ॥୩୬
ଧାମଇଁ କରେ ଜଳ ଘେନି ।
ପଡ଼ି କାନ୍ଦନ୍ତି ଅନ୍ତର୍ଯ୍ୟାମି ॥୩୭
କୋପ ବସିଲା କୃଷ୍ଣଙ୍କର ।
ଦନ୍ତେ କାମୋଡ଼ିଲେ ଅଧର ॥୩୮
ଉଠିଲେ ଭବସୁଖଦାତା ।
ଘରୁ ଆଣିଲେ ଶିଳପୁତା ॥୩୯
ପିଟିଲେ ଦଧିଭାଣ୍ଡେ ନେଇ ।
ଭାଜି ଗୋରସ ଗଲା ବହି ॥୪୦
ତା' ଦେଖି ଗୋବିନ୍ଦ କାତରେ ।
ଲୁଚିଲେ ଗମ୍ଭାରି ଭିତରେ ॥୪୧
ଘରେ ଲବଣି ଥିଲା ଯେତେ ।
ସବୁ ଖାଇଲେ ବେନିହସ୍ତେ ॥୪୨
କ୍ଷୀର ଉତାରି ଗୋପବାଳୀ ।
ପୁଣି ମନ୍ଥନ ସ୍ଥାନେ ମିଳି ॥୪୩
ଦେଖ ଚକିତ ଗାଲେ ହସ୍ତ ।
ଏଡ଼େ କରମ କଲା ସୁତ ॥୪୪
ବାଳୁତ କାଳୁ ଏଡ଼େ କୋପୀ ।
ସତ କହନ୍ତି ମୋତେ ଗୋପୀ ॥୪୫
ତାହାଙ୍କୁ ନିନ୍ଦିଲି ମୁଁ କୋପେ ।
ଏବେ ତ ଦେଖିଲି ସ୍ୱରୂପେ ॥୪୬
ଆଜ କରିବି ପ୍ରତିଫଳ ।
ଗୋପୀଏ ଛାଡ଼ନ୍ତି ଚହଲ ॥୪୭
ବଢ଼ିଲା କହୁଁ କହୁଁ କୋପ ।
ଯଷ୍ଟି ପ୍ରହାରେ ଯେହ୍ନେ ସର୍ପ ॥୪୮

Dr. Sudhanshu Sekhar Mishra

ଛାଟ ଲୁଚାଇ ପଛଭାଗେ ।
ମିଳିଲା ଗମ୍ଭୀରିର ଲାଗେ ॥୪୯
ଦ୍ୱାରେ ଚାହିଁଲେ ଦେବୀ ଧୀର ।
ଦେଖିଲେ ପ୍ରଭୁ ଦାମୋଦର ॥୫୦
ରୋଳ ଉପରେ ଗୋପୀନାଥ ।
ଶିକା ଧରିଣ ବାମହସ୍ତ ॥୫୧
ଶିକାରେ ଥିଲା ଯେ ଲବଣି ।
କୃଷ୍ଣ ତା' ବେନିକରେ ଆଣି ॥୫୨
ମାର୍ଜାରୀ ପାଞ୍ଚ ସାତ ମେଳେ ।
ଲବଣି ଖାନ୍ତି କୁତୂହଳେ ॥୫୩
ଦ୍ୱାରକୁ ଚାହିଁ ଚକ୍ରଧର ।
ଭୟେ କମ୍ପନ୍ତି ଯେହ୍ନେ ଚୋର ॥୫୪
ଦେଖି ଯଶୋଦା ପରଜ୍ୱଳି ।
ଯଷ୍ଟି ଉଞ୍ଚାଇ ଦେଲେ ଗାଳି ॥୫୫
ଆଜ କରିବି ଖଣ୍ଡ ଖଣ୍ଡ ।
ଛାଟେ ପିଟିବି ତୋର ପିଣ୍ଡ ॥୫୬
ଦେଖି ଚକିତ ଭାବଗ୍ରାହୀ ।
ରୋଳୁଁ ପଡ଼ିଲେ ବେଗେ ଡେଇଁ ॥୫୭
କୃଷ୍ଣ ପଳାନ୍ତି ଭୟ ଘେନି ।
ପଛେ ଗୋଡ଼ାନ୍ତି ନନ୍ଦରାଣୀ ॥୫୮
ପଳାନ୍ତି ପଛକୁ ଅନାଇଁ ।
ପଛେ ଯଶୋଦା ଛନ୍ତି ଧାଇଁ ॥୫୯
ଯାହାର ନାହିଁ ଆଦି ଅନ୍ତ ।
ଧ୍ୟାନେ ଚିନ୍ତନ୍ତି ମୁନି ସନ୍ତ ॥୬୦
ତାହାଙ୍କୁ ପୁତ୍ର ପ୍ରାୟେ ମଣି ।
ପଛେ ଧାମଇଁ ଗୋପାଳୁଣୀ ॥୬୧
ପୃଥୁ ନିତମ୍ବ ପାୟୋଧରେ ।
ଗୋଡ଼ାଇ ନପାରଇ ଖରେ ॥୬୨
ପୁଣି ଗୋଡ଼ାଇ ପଛେ ଝୁଣ୍ଟି ।
ଘଡ଼ିକେ ଉଠି ଘର୍ମେ ଫୁଟି ॥୬୩
ପୁଣି ଗୋଡ଼ାଇ ପୁଣ ପଡ଼ି ।
ପାୟେକ ଉଠିଣ ହାବୋଡ଼ି ॥୬୪
କେଶ ଫିଟିଲା ଶ୍ରମଝାଳେ ।
ଫୁଲ ପଡ଼ଇ ଫିଟି ତଳେ ॥୬୫
ଏମନ୍ତ ଯଶୋଦାର ଗତି ।
ଦେଖି ଆନନ୍ଦ ଶିରୀପତି ॥୬୬

ଯାହାର ଆଦି ଅନ୍ତ ନାହିଁ ।
ଯଶୋଦା ପାଇବ ତା' କାହିଁ ॥୬୭
ଜାଣିଣ ଯଶୋଦା ବିକଳ ।
ଲେଉଟି ଚାହେଁ ଆଦିମୂଳ ॥୬୮
ମନେ ବିଚାର ଭାବଗ୍ରାହୀ ।
ଯଶୋଦାଠାରେ ଦୟା ବହି ॥୬୯
ଯେବେ ମୁଁ ଯିବିଟି ପଳାଇ ।
କେ ମୋତେ ପାରିବ ଗୋଡ଼ାଇ ॥୭୦
ଏତେ ବିଚାରି ଦୟାନିଧି ।
ରଜ୍ଜୁରେ ହୋଇବଇଁ ବନ୍ଦୀ ॥୭୧
ମାତାର ଶ୍ରମ ମନେ ଜାଣି ।
ରହିଲେ ପ୍ରଭୁ ବେନୁପାଣି ॥୭୨
ଧାଇଁ ଧଇଲେ ଦେବୀ କରେ ।
ଛାଟ ଉଞ୍ଚାଇ କୋପଭରେ ॥୭୩
ଭୟେ କମ୍ପନ୍ତି ଚକ୍ରଧର ।
ଚକ୍ଷୁ ଘଷନ୍ତି ବାମକର ॥୭୪
କୃଷ୍ଣ ବିକଳ ଦେଖି ମାତା ।
ଛାଟ ପକାଇ କଲେ ଚିନ୍ତା ॥୭୫
ବୋଲଇ ବାନ୍ଧିବି ଏହାରେ ।
ବ୍ୟାପାର କରୁଥିବି ଘରେ ॥୭୬
ରୋଳେ ଖଟାଇ ଥିବି ନିତି ।
ଏଣେ ନ ଥିବ ମୋର ଭୀତି ॥୭୭
ଏତେ ବିଚାରି ନନ୍ଦନାରୀ ।
ରୋଳ ଆଣିଲା ବେଗ କରି ॥୭୮
ଦଉଡ଼ି ଦେଖି ମାତା ହାତେ ।
କାନ୍ଦନ୍ତି ପ୍ରଭୁ ଗୋପୀନାଥେ ॥୭୯
ଅଣ୍ଟାରେ ଯୋଚିଳାକ ନେଇ ।
ବେନି ଅଙ୍ଗୁଳ ନ ଅଣ୍ଟଇ ॥୮୦
ତକ୍ଷଣେ ଦୀର୍ଘ ରଜ୍ଜୁ ଆଣି ।
ନେଇ ଯୋଖିଲା ନନ୍ଦରାଣୀ ॥୮୧
ଯୋଖନ୍ତେ ପୁଣି ସେ ତୁଟିଲା ।
ବେନି ଅଙ୍ଗୁଳ ନ ଅଣ୍ଟିଲା ॥୮୨
ପୁଣି ଯୋଖିଲା ଖଣ୍ଡ ଦୁଇ ।
ବେନି ଅଙ୍ଗୁଳ ନ ଅଣ୍ଟଇ ॥୮୩
ପୁଣି ପଶିଲା ଘରେ ଯାଇ ।
ଦଉଡ଼ି ଆଣେ କନ୍ଧେ ବହି ॥୮୪

ଏମନ୍ତେ ଘରେ ଯେତେ ଥିଲା ।
ଯୋଖନ୍ତେ ପୁଣି ନଅଣ୍ଟିଲା ॥୮୫
ସାହି ପଡ଼ିଶା ଯେତେ ଘର ।
ଦଉଡ଼ି ଆଣେ କୋପଭର ॥୮୬
ତାହା ଯୋଖିଲା ବେଗେ ନେଇ ।
ଦେଖିଲା ପୁଣି ନଅଣ୍ଟଇ ॥୮୭
କେବେହେଁ ନ ପାରିଲା ବାନ୍ଧି ।
କରଚରଣ ତଳେ ରୁନ୍ଧି ॥୮୮
ଗୋପୀ ଅଇଲେ ତାହା ଶୁଣି ।
ଯଶୋଦା ବାନ୍ଧେ ପୁଣ ପୁଣି ॥୮୯
ଗୋପୀ ହସନ୍ତି ତାହା ଚାହିଁ ।
ସମସ୍ତେ ମୁଖେ ବସ୍ତ୍ର ଦେଇ ॥୯୦
ଏକ ଆରେକ କରତାଳି ।
ମାରନ୍ତି ହୋଇ କୁତୂହଳି ॥୯୧
ବୋଲନ୍ତି ପରିହାସ ବାଣୀ ।
ଦଉଡ଼ି ନ ପାରିଲୁ ଆଣି ॥୯୨
ରାଣୀ ବୋଲାଅ ଗୋପପୁରେ ।
ନାନା ଭଣ୍ଡାର ତୋର ଘରେ ॥୯୩
ଦଉଡ଼ି ନାହିଁ ତୋ' ଭୁବନେ ।
ବାଳକ ବାନ୍ଧିବୁ କେସନେ ॥୯୪
ଶୁଣି ଯଶୋଦା ଲାଜ ପାଇ ।
ରହିଲା ଭୂମିକୁ ଅନାଇ ॥୯୫
ସଂକୋଚେ ହୋଇ ଜରଜର ।
କାତରେ କମ୍ପଇ ଶରୀର ॥୯୬
କେଶ ବସନ ଅସମ୍ଭାଳ ।
ଖୋସାରୁ ଖସେ ଫୁଲମାଳ ॥୯୭
ଯଶୋଦା ଶ୍ରମ ଦେଖି ହରି ।
ନିଜ ବନ୍ଧନେ ମନକରି ॥୯୮
ତକ୍ଷଣେ ଦଉଡ଼ି ଅଣ୍ଟିଲା ।
କୃଷ୍ଣଙ୍କୁ ରୋଳେ ଖଟାଇଲା ॥୯୯
ଯେ ହରି ତିନିଗୁଣେ ଛନ୍ଦି ।
ସଂସାର କରିଅଛି ବନ୍ଦୀ ॥୧୦୦
ତାଙ୍କୁ ବାନ୍ଧିଲା ନନ୍ଦନାରୀ ।
ପୂର୍ବେ ଅନେକ ତପକରି ॥୧୦୧
ମାତାଙ୍କୁ ଯେତେ ଦୟା କଲେ ।
ବ୍ରହ୍ମା ଶଙ୍କର ନ ପାଇଲେ ॥୧୦୨

Dr. Sudhanshu Sekhar Mishra

କମଳା ସେବେ ପଦ୍ମପାଦ ।
ସେହି ନ ପାଇଲା ପ୍ରସାଦ ॥୧୦୩
ଭକତ ଜନେ ଯେତେ ଦୟା ।
ଜ୍ଞାନୀ ପାଇବେ କାହିଁ ତାହା ॥୧୦୪
ଜନନୀ ବାନ୍ଧିଗଲା ରୋଳେ ।
ଯାମଳା ଅର୍ଜୁନର ତଳେ ॥୧୦୫
ଗୃହ ବ୍ୟାପାରେ ଦେଲା ମନ ।
ଏବେ ତୁ ଶୁଣ ହୋ ରାଜନ ॥୧୦୬
କୃଷ୍ଣ ଚାହିଁଲେ ବୃକ୍ଷ ଦୁଇ ।
ବିଚାର କଲେ ଭାବଗ୍ରାହୀ ॥୧୦୭
ପୂର୍ବେ କୁବେର ବେନିସୁତେ ।
ବୃକ୍ଷ ହୋଇଲେ ଭୋଳ ଚିତ୍ତେ॥୧୦୮
ନାରଦ ତହୁଁ ଶାପ ପାଇ ।
ଅନେକ କାଳୁ ଛନ୍ତି ରହି ॥୧୦୯
ସେ ମୁନି ବୋଲିଛନ୍ତି ଯାହା ।
ଅବଶ୍ୟ କରିବି ମୁଁ ତାହା ॥୧୧୦
ଏତେ ବିଚାରି ବନମାଳୀ ।
ରୋଳ ଟାଣିଲେ ପାଦ ଚାଳି ॥୧୧୧
ମିଳିଲେ ବେନି ବୃକ୍ଷ ତଳେ ।
ଟେକି ଚହିଁଲେ ବେନି ଡୋଳେ ॥୧୧୨
ସେ ହରି ଚରଣପଙ୍କଜ ।
ସୁଜନଜନେ ନିତ୍ୟ ଭଜ ॥୧୧୩
ଏହା ଶୁଣନ୍ତେ ନରନାରୀ ।
ହେଲେ ତରିବେ ଭବବାରି ॥୧୧୪
ଶ୍ରୀକୃଷ୍ଣ ବାଳକ ଚରିତ ।
କହଇ ଦାସ ଜଗନ୍ନାଥ ॥୧୧୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଗୋପୀପ୍ରସାଦେ ଦଶମୋଽଧ୍ୟାୟଃ ॥

## ଏକାଦଶ ଅଧ୍ୟାୟ

ଶୁକ ବଚନ ଶୁଣି ରାୟେ ।
ପଡ଼ଇ ପୁନଃ ପୁନଃ ପାୟେ ॥୧
ମନ ଆନନ୍ଦେ ନୃପବର ।
ମୁନିଙ୍କି ବୋଲନ୍ତି ଉତ୍ତର ॥୨

ପରୀକ୍ଷିତ ଉବାଚ

ଭୋ ମୁନି କୁବେର କୁମରେ ।
ବୃକ୍ଷ ହୋଇଲେ ଗୋପପୁରେ ॥୩
କି ଦୋଷ କଲେ ନାରଦରେ ।
ଶାପ ପାଇଲେ କି ପାପରେ ॥୪
ଯାହାଙ୍କ ଦେହେ ନାହିଁ ରୋଷ ।
ବିଶେଷେ ଗୋବିନ୍ଦର ଦାସ ॥୫
ପିତାର ଦିଗପାଳ ପଦ ।
ଅର୍ଜିଲେ ଅନେକ ସମ୍ପଦ ॥୬
ଏଡ଼େ ଅନୀତି ଆଚରିଲେ ।
ନିର୍ଗୁଣ ମୁନିଙ୍କି ଚାଳିଲେ ॥୭
ତେଣୁ ହୋଇଲେ ବୃକ୍ଷ ଦୁଇ ।
ଗୋପ ନଗରେ ବେନିଭାଇ ॥୮
ସେକଥା କହ ମୁନିବର ।
ନିର୍ମଳ ହେଉ ମୋ ଶରୀର ॥୯
ମୁନି ବୋଲନ୍ତି ତାହା ଶୁଣି ।
କୃଷ୍ଣଚରିତ ମନେ ଗୁଣି ॥୧୦

ଶୁକ ଉବାଚ

ନଳକୂବର ମଣିଗ୍ରୀବ ।
ତପେ ତୋଷିଲେ ସଦାଶିବ ॥୧୧
ପ୍ରସନ୍ନ ହୋଇ ଉମାକାନ୍ତ ।
ବର ଯାଚିଲେ ବିଶ୍ୱନାଥ ॥୧୨
ଶୁଣି ସାନନ୍ଦ ବେନିଭାଇ ।
କହନ୍ତି ଶିରେ କର ଦେଇ ॥୧୩
ଆନ ସମ୍ପଦେ କାର୍ଯ୍ୟ ନାହିଁ ।
ଶୁଣିମା ତ୍ରୈଲୋକ୍ୟ ଗୋସାଇଁ ॥୧୪
ଶତେକ ଯକ୍ଷ-ଅପସରୀ ।
ଆମ୍ଭେ ରମିବୁ ବନେ ହେରି ॥୧୫
ଅସ୍ତୁ ବୋଇଲେ ଶୂଳପାଣି ।
ଦଇବ ମିଳାଇଲା ଆଣି ॥୧୬
କନ୍ୟା ସମେତେ ବେନିଭାଇ ।
ମିଳିଲେ ଗଙ୍ଗାତୀରେ ଯାଇ ॥୧୭
ବାରୁଣୀ ମଦ୍ୟ କଲେ ପାନ ।
ଭୋଳେ ହୋଇଲେ ହତଜ୍ଞାନ ॥୧୮
ଦଇବେ ନିଦାଘର କାଳ ।
ଡେଇଁ ପଶିଲେ ଗଙ୍ଗାଜଳ ॥୧୯
ବସ୍ତ୍ର ପାଳଟି ବୃକ୍ଷତଳେ ।
କନ୍ୟାଏ ପଶିଗଲେ ଜଳେ ॥୨୦
କରନ୍ତି ନାନା ରଙ୍ଗେ କେଳି ।
ହାସ-ପରିହାସ-ଢମାଳି ॥୨୧
ଏମନ୍ତ ସମୟେ ନାରଦ ।
ଯା'ନ୍ତେ କରନ୍ତି ବୀଣାବାଦ୍ୟ ॥୨୨
ଆଶ୍ରମ ନାମେ ବଦରିକା ।
ତହିଁକି ଯାଉଛନ୍ତି ଏକା ॥୨୩
ହରି ଭକତି ହୃଦେ ଧାୟୀ ।
ନାଚନ୍ତି ବୀଣାବାଦ୍ୟ ବାଇ ॥୨୪
କନ୍ୟାଏ ନାରଦଙ୍କୁ ଦେଖି ।
ତକ୍ଷଣେ କ୍ରୀଡ଼ାନ୍ତ ଉପେକ୍ଷି ॥୨୫
ଜଳୁ ଉତୁରି ଯେଝାମତେ ।
ବସ୍ତ୍ର ସେ ପିନ୍ଧିଲେ ତୁରିତେ ॥୨୬
ଭୟେ କମ୍ପନ୍ତି ଥରହର ।
ନ ପୁଣ କୋପେ ମୁନିବର ॥୨୭
ଲୁଚିଲେ ବୃକ୍ଷଙ୍କର ପଛେ ।
ନାରଦ ଦେଖନ୍ତି ପ୍ରତ୍ୟେକ୍ଷ ॥୨୮
ଜଳେ କ୍ରୀଡ଼ନ୍ତି ବେନିଭାଇ ।
ଦେଖିଲେ କନ୍ୟାମାନ ନାହିଁ ॥୨୯
ଭୋଳେ ଚାହାନ୍ତି ଦଶଦିଗେ ।
ବସ୍ତ୍ର ହିଁ ନାହିଁ କଟୀଭାଗେ ॥୩୦
ମଦ୍ୟେ ଅରୁଣ ବେନିଆଖି ।
ମୁନିଙ୍କି ଚାହାନ୍ତି ନିରେଖି ॥୩୧

Dr. Sudhanshu Sekhar Mishra

ଦେଖି ନାରଦ ମୁନିବର ।
ବୀଣା ଶବଦ କଲେ ସ୍ଥିର ॥୩୨
କୂଳେ ରହିଲେ ଆଡ଼ ହୋଇ ।
ଦୟାରେ ବିଚାରନ୍ତି ଚାହିଁ ॥୩୩
ଏ ବେନି କୁବେର ନନ୍ଦନ ।
ମଦେ ହୋଇଲେ ହତଜ୍ଞାନ ॥୩୪
ଦଇବ କଲା ଯାଙ୍କୁ ନାଶ ।
ତେଣୁ ହୋଇଲା ବୁଦ୍ଧିଭ୍ରଂଶ ॥୩୫
ସ୍ୱଭାବେ ରଜୋଗୁଣ ଛନ୍ଦେ ।
ଅଜ୍ଞାନ ହେଲେ ମୋହବନ୍ଧେ ॥୩୬
କେ ଏହା ପାରେ ଆନ କରି ।
ଯାବତ ଥାଇ ଦେହ ଧରି ॥୩୭
ବହୁତ ଥାଇ ଯା'ର ଧନ ।
ବନ୍ଧୁରେ ସେହି ଶ୍ରେଷ୍ଠ ଜନ ॥୩୮
ପର ରମଣୀ ଯେହୁ ହରେ ।
ଯେ ପ୍ରାଣୀ ମଦ୍ୟପାନ କରେ ॥୩୯
ଜୁଆ ଖେଳନ୍ତି ଭୋଳ ହୋଇ ।
ଚୋରି କରନ୍ତି ଲୋଭ ବହି ॥୪୦
ଐଶ୍ୱର୍ଯ୍ୟ ମଦର ଲକ୍ଷଣ ।
ତ୍ରିବିଧ ଅଟେ ଏହା ଜାଣ ॥୪୧
ବହୁ ସ୍ତ୍ରୀସଙ୍ଗ ସୁରାପାନ ।
ଦ୍ୟୁତ-କ୍ରୀଡ଼ାରେ ରସେ ମନ ॥୪୨
ଧିକ ଏ ଅଇଶ୍ୱର୍ଯ୍ୟ ଜାଣ ।
ପରରେ ଦିଅନ୍ତି କଷଣ ॥୪୩
ଏକ ଆରକେ ହିଂସା ବହି ।
ନରକେ ପଡୁଥା'ନ୍ତି ଯାଇ ॥୪୪
ନଶ୍ୱର-ଦେହକୁ ଅଜର ।
ଅମର ପରା କରି ସ୍ଥିର ॥୪୫
ଜୀବ ହିଂସନ୍ତି ଆନନ୍ଦରେ ।
ଶୋଚନା ନ ଥାଇ ମନରେ ॥୪୬
ମାଂସ ଭକ୍ଷଣେ ପଶୁ ମାରେ ।
ଯେ ଦୟା ଧର୍ମ ନ ବିଚାରେ ॥୪୭
ଦେହକୁ ବୋଲନ୍ତି ମୋହର ।
ପାପକୁ ନାହିଁ ଯା'ର ଡର ॥୪୮
ଅଜ୍ଞାନ ମୋହେ ହୋନ୍ତି ମତ୍ତ ।
ନରକେ ପଡ଼ନ୍ତି ତୁରିତ ॥୪୯

ଦେହରୁ ପ୍ରାଣ ଗଲେ ଛାଡ଼ି ।
ରହଇ ମୃତପିଣ୍ଡ ପଡ଼ି ॥୫୦
ଭୂଦେବ ନରଦେବ ହେଲେ ।
ଅନ୍ତେ ଏ ନାଶ ଲଭେ ଭଲେ ॥୫୧
ଏ ଦେହୁ ଜୀବ ଯିବା କାଳେ ।
ପଶଇ ଭସ୍ମକୀଟ ମେଳେ ॥୫୨
ଏ ଦେହ ପାଇଁ ମାରେ ଜନ୍ତୁ ।
ଅଜ୍ଞାନ ନରକର ହେତୁ ॥୫୩
ଜ୍ଞାନ ହୁଅଇ ଏତେ ଭ୍ରମ ।
ଜନ୍ମ ମରଣେ ପଥଶ୍ରମ ॥୫୪
ଏ ଦେହ କହିବା କାହାର ।
ମାତାପିତା ବା ବନ୍ଧୁଙ୍କର ॥୫୫
କି ଅନ୍ନଦାତା କି ରାଜାର ।
କି ଅଗ୍ନି ଶ୍ୱାନ ଶୃଗାଳର ॥୫୬
କି ଅବା ନିଜର ଏ ଦେହ ।
କେ ଏହା କରିବ ନିର୍ଣ୍ଣୟ ॥୫୭
ଅଥବା ବଳ ଅଛି ଯା'ର ।
ତାହାର ଏଥେ ଅଧିକାର ॥୫୮
ଅବ୍ୟକ୍ତ ତହୁଁ ଜାତ ହୋଇ ।
ପୁଣି ସେ ତହିଁରେ ମିଶଇ ॥୫୯
ଏ ଦେହ ପାଇଁ ଜନ୍ତୁ ମାରେ ।
ମୂଢ଼ ନ ହେଲେ କେବା କରେ ॥୬୦
ସମ୍ପଦ ମଦେ ଯେହୁ ଅନ୍ଧ ।
ସମ୍ପଦ-ନାଶ ତା ଔଷଧ ॥୬୧
ଦରିଦ୍ର ପଣେ ଦୁଃଖ ପାଇ ।
ଆତ୍ମାକୁ ଜଗତେ ଦେଖଇ ॥୬୨
କଣ୍ଟା ନ ବହେ ଯା ଚରଣ ।
ସେ କି ଜାଣଇ ସେ କଷଣ ॥୬୩
ସୁଖୀ ନ ଜାଣେ ପର ବ୍ୟଥା ।
ଜୀବ ମାରଣେ ସାମରଥା ॥୬୪
ଯାହାର ଦେହେ କ୍ଷତ ହୋଇ ।
ସେ ଜାଣେ ସୁଖଦୁଃଖ ଦୁଇ ॥୬୫
ଦରିଦ୍ର ଜନ କ୍ଲେଶ ପାଇ ।
ଇନ୍ଦ୍ରିୟ ଭୋଗେ ନ ରସଇ ॥୬୬
କ୍ଷୁଧାରେ ଶୁଷ୍କ ଯା' ଶରୀର ।
ସେ କାହୁଁ ହିଂସିବ ଅପର ॥୬୭

ଏଣୁ ଦୁଃଖୀର ଦୁଃଖୀପଣ ।
ପରମ ତପସ୍ୟା ସମାନ ॥୬୮
ହରି ଭକତ ସାଧୁଜନ ।
ସଙ୍ଗ ଲଭଇ ଅକିଞ୍ଚନ ॥୬୯
ସମ ମଣଇ ଦୁଃଖସୁଖେ ।
ତାହାକୁ ନାରାୟଣ ରଖେ ॥୭୦
ଏତେ ବିଚାରି ମୁନିବର ।
ଚଞ୍ଚଳ ଚିତ୍ତକଲେ ସ୍ଥିର ॥୭୧
ବୋଲନ୍ତି ଦୟାଭାବ ଚିତ୍ତେ ।
ନାଶ ଏ ଯିବେ ଏହି ମତେ ॥୭୨
ଦଇବେ ଗର୍ବ ଏହାଙ୍କର ।
ଅଜ୍ଞାନ ସଂସାର ବେଭାର ॥୭୩
ମାଗିଲେ ଶତେକନ୍ୟା ରତି ।
ଏ ମୂଢ଼େ କିଛି ନ ଜାଣନ୍ତି ॥୭୪
ଭୋଳ ହୋଇଲେ ମଦ୍ୟ ଖାଇ ।
ଏବେ ତରିବେ ବେନିଭାଇ ॥୭୫
ଦେହକୁ ନ ଜାଣନ୍ତି ଭୋଳେ ।
ବୃକ୍ଷ ହୋଇବେ ଏକତୁଳେ ॥୭୬
କୋପେ ବୋଲନ୍ତି ମୁନିବର ।
ଶୁଣ ହେ କୁବେର କୁମର ॥୭୭
ଅର୍ଜ୍ଜୁନ ବୃକ୍ଷ ରୂପ ହୋଇ ।
କାଳ ବଞ୍ଚିବ ବେନିଭାଇ ॥୭୮
ମୋତେ ଯେ ନଚିହ୍ନିଲ ବ୍ରହ୍ମ ।
ତେଣୁ ହୋଇବ ଉଚ୍ଚଦ୍ରୁମ ॥୭୯
ଏତେ ବୋଲିଣ ମୁନି ଗଲେ ।
କନ୍ୟାଏ ତାହାଙ୍କୁ କହିଲେ ॥୮୦
ଶାପ ବିହିଲେ ମହାଋଷି ।
ବୋଇଲେ ସ୍ଥାବର ହୁଅସି ॥୮୧
ଶୁଣି କମ୍ପିଲେ ଭାଇ ବେନି ।
ଯାଇ ଭେଟିଲେ ବ୍ରହ୍ମମୁନି ॥୮୨
ପାଦେ ପଡ଼ିଣ ମାଗି ଗତି ।
ବୋଇଲେ ଶୁଣ ବ୍ରହ୍ମପତି ॥୮୩
ଆମ୍ଭର ମତି-ଭୋଳପଣେ ।
ଗର୍ବ ବହିଲୁ ଅକାରଣେ ॥୮୪
ଅମୋଘ-ବଚନ ଏ ତୋର ।
ବିଅର୍ଥ ନୋହେ ମୁନିବର ॥୮୫

Dr. Sudhanshu Sekhar Mishra

ଉତ୍ତମକୁଳେ ହୋଇ ଜନ୍ମ ।
କଲୁ ଯେ ପାପ ନୀତିମାନ ॥୮୬
ଏମନ୍ତେ କାନ୍ଦି ଉଚ୍ଚସ୍ୱରେ ।
ବୋଲନ୍ତି କୁବେର-କୁମରେ ॥୮୭
ବିକଳ ଦେଖି ବ୍ରହ୍ମଋଷି ।
ବୋଇଲେ ବଚନ ଆଶ୍ୱାସି ॥୮୮
ଆମ୍ଭ ବଚନ ମିଥ୍ୟା ନୋହି ।
ବୃକ୍ଷ ହୋଇବ ବେନିଭାଇ ॥୮୯
ନନ୍ଦ-ବରଜେ ଦେହଧରି ।
ବୃକ୍ଷ ହୋଇବ ମର୍ତ୍ତ୍ୟପୁରୀ ॥୯୦
ଅଷ୍ଟାବିଂଶତି ଦ୍ୱାପରେଣ ।
ଜନ୍ମ ଲଭିବେ ନାରାୟଣ ॥୯୧
ବିଷ୍ଣୁର ଦିବ୍ୟରୂପ ଚାହିଁ ।
ସ୍ୱର୍ଗେ ଆସିବ ବେନିଭାଇ ॥୯୨
ଯହୁଁ କରୁଣା ଶୂଳ ପାଣି ।
ଶତେକ କନ୍ୟା ଦେଲେ ଆଣି ॥୯୩
ତୁମ୍ଭର ଶାପ ମୋକ୍ଷ ଯାଏ ।
ଏମାନେ ଥିବେ ସେହିଠାଏ ॥୯୪
ଈଶ୍ୱର ବର ନୋହେ ଆନ ।
ଆସି ରମିବ କନ୍ୟାମାନ ॥୯୫
ଅର୍ଜ୍ଜୁନବୃକ୍ଷ ରୂପ ହୋଇ ।
ଗୋପେ ଜନମ ବେନିଭାଇ ॥୯୬
ଶତେ-ବରଷ ଦେବମତେ ।
କୃଷ୍ଣଙ୍କୁ ଭେଟ ଶାପଅନ୍ତେ ॥୯୭
ଭକତି ହେଉ କୃଷ୍ଣପାଦେ ।
ଶାପୁଁ ତରିବ ଅପ୍ରମାଦେ ॥୯୮
ମୁନିଶାପରେ ବେନିଭାଇ ।
ବୃକ୍ଷ ହୋଇଲେ ଗୋପେ ଯାଇ ॥୯୯
ଶୁଣ ପାଣ୍ଡବ-ଚୂଡ଼ାମଣି ।
ରୋଳ ଟାଣିଲେ ଚକ୍ରପାଣି ॥୧୦୦
ବୃକ୍ଷରେ ଦେଇ ବେନିହସ୍ତ ।
ମନେ ଚିନ୍ତନ୍ତି ଗୋପୀନାଥ ॥୧୦୧
ନାରଦ-ବଚନ ମୋହର ।
ପାଳିବା ଉଚିତ ବେଭାର ॥୧୦୨
ଦାସବତ୍ସଳ ବ୍ରହ୍ମରାଶି ।
ବୃକ୍ଷଙ୍କ ମଧ୍ୟେ ଗଲେ ପଶି ॥୧୦୩

ରୋଳ ଲାଗନ୍ତେ ବେନିବୃକ୍ଷେ ।
ଗୋବିନ୍ଦ ଟାଣିଲେ ପ୍ରତ୍ୟେକ୍ଷେ ॥୧୦୪
ଉପୁଡ଼ି ଗଲା ବେନି ମୂଳ ।
ପଡ଼ି କମ୍ପିଲେ ପତ୍ର-ଡ଼ାଳ ॥୧୦୫
ଶବଦ ମେଘ-ଘଡ଼ଘଡ଼ି ।
ପଡ଼ିଲେ କୃଷ୍ଣ-ଦେହ ଛାଡ଼ି ॥୧୦୬
ଦେହ ଲାଗନ୍ତେ ଭାବଗ୍ରାହୀ ।
ବାହାର ହେଲେ ବେନିଭାଇ ॥୧୦୭
ଅନଳ ପ୍ରାୟେ ତେଜରାଶି ।
ଗଞ୍ଜନ୍ତି ଦିବାକର-ଶଶୀ ॥୧୦୮
କୃଷ୍ଣଙ୍କୁ ଦେଖି ବେନିଭାଇ ।
ଚରଣେ ଶିର ଦେଲେ ନେଇ ॥୧୦୯
ଚିତ୍ତ ନିବେଶି ପଦ୍ମପାଦେ ।
ବୋଲନ୍ତି ଶୋକ-ଗଦଗଦେ ॥୧୧୦
କୃଷ୍ଣ-ପରମାନନ୍ଦ ହରି ।
ପରମପୁରୁଷ-ମୁରାରି ॥୧୧୧
ଲୀଳାଏ କରି ବିଶ୍ୱମାୟା ।
ଭକ୍ତଜନରେ କରୁ ଦୟା ॥୧୧୨
ତୋହର ରୂପ ଗୁଣ ଯେତେ ।
ବିପ୍ରେ ଜାଣନ୍ତି ବେଦମତେ ॥୧୧୩
ପୃଥିବୀ ଆଦି ପଞ୍ଚଭୂତ ।
ମନ-ଇନ୍ଦ୍ରିୟ-ଆତ୍ମତତ୍ତ୍ୱ ॥୧୧୪
କାଳସ୍ୱଭାବେ ଜନ୍ମ-ମୃତ୍ୟୁ ।
ଜୀବ-ପରମ ଆତ୍ମା ହେତୁ ॥୧୧୫
ଭକତ ଜନ ନିସ୍ତାରଣେ ।
ଶରୀର ବହୁ ତୁ କାରଣେ ॥୧୧୬
ତୋ' ନାମ ପରମ ମଙ୍ଗଳ ।
ତ୍ରାହି କରିବା ଆଦିମୂଳ ॥୧୧୭
ଅଷ୍ଟାଙ୍ଗଯୋଗ ଧ୍ୟାନ କରି ।
ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ॥୧୧୮
ନାରଦ ଭେଟିବାର ଫଳେ ।
ତୋତେ ଦେଖିଲୁ ଚର୍ମ୍ମନେତ୍ରେ ॥୧୧୯
ଚକ୍ଷୁ-ଶ୍ରବଣ-ବୁଦ୍ଧି-ଶିର ।
ମନ-ବଚନ ବେନିକର ॥୧୨୦
ତୋହର ପାଦେ ନିତ୍ୟେ ଥାଉ ।
ତୋ' ନାମ ଧରି ଦିନ ଯାଉ ॥୧୨୧

ଅନେକ ଜନ୍ମେ ତପ କରି ।
ତୋତେ ଭେଟିଲୁ ନରହରି ॥୧୨୨
ତୋର ସେବକ ମିତ୍ରପଣେ ।
ଖଟିବୁ ତୋହର ଚରଣେ ॥୧୨୩
ଏମନ୍ତେ ବେନିକର ଯୋଡ଼ି ।
ଆଜ୍ଞା ମାଗିଲେ ପାୟେ ପଡ଼ି ॥୧୨୪
ହସି ବୋଲନ୍ତି ଭାବଗ୍ରାହୀ ।
ସାଧୁଙ୍କ ସଙ୍ଗ ଫଳ ଏହି ॥୧୨୫
ନାରଦ ଭେଟିବାର ଫଳୁ ।
ହେଲେ ତରିଲ ଭବଜଳୁ ॥୧୨୬
ମୋହର ପାଦେ ଯା'ର ମନ ।
ମୋ' ନାମ କରନ୍ତି କୀର୍ତ୍ତନ ॥୧୨୭
ପରେ କରନ୍ତି ଦୟାଚିତ୍ତ ।
ମାୟାରେ ନୁହନ୍ତି ମୋହିତ ॥୧୨୮
ଏହାଙ୍କ ଦରଶନ ପାଇ ।
ପାପ ତାହାଙ୍କୁ ନ ଲାଗଇ ॥୧୨୯
ଶୁଣ ହେ କୁବେର କୁମରେ ।
ନିଶ୍ଚିନ୍ତେ ଯାଅ ନିଜ ପୁରେ ॥୧୩୦
ଭକତି କରି ମୋର ପାଦେ ।
ମୋତେ ପାଇବ ଅପ୍ରମାଦେ ॥୧୩୧
କୃଷ୍ଣ-ବଚନ ଶିରେ ଧରି ।
ଉତ୍ତର ପଥେ ଗଲେ ଚଳି ॥୧୩୨
ଭକ୍ତ ବତ୍ସଳ ପୀତବାସ ।
କ୍ଷମା କରିବେ ମୋର ଦୋଷ ॥୧୩୩
ସେ ହରିଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ॥୧୩୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ନାରଦଶାପୋ
ଯାମଳାର୍ଜ୍ଜୁନ ମୋକ୍ଷେଣେ ନାମ
ଏକାଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱାଦଶ ଅଧ୍ୟାୟ

କୃଷ୍ଣ ଚରଣେ ଦେଇ ମନ ।
କହନ୍ତି ବ୍ୟାସଙ୍କ ନନ୍ଦନ ॥୧

ଶୁକ ଉବାଚ

ଶୁଣ ପରୀକ୍ଷ ମହୀପାଳ ।
ଗୋପରେ ଶୁଭିଲା ଚହଳ ॥୨
ଭାଜିଣ ବେନି ବୃକ୍ଷ ପଡ଼ି ।
ଶୁଭିଲା ମେଘ ଘଡ଼ଘଡ଼ି ॥୩
ଭୂମି କମ୍ପଇ ଥରହର ।
ଗୋପାଳ ହୋଇଲେ ବାହାର ॥୪
ବୋଇଲେ ଏକୁ ଆରେ ଚାହିଁ ।
ଏ କି ଶବଦ କାହୁଁ ହୋଇ ॥୫
ନିର୍ଘାତ ଶୁଭିଲା ତ ଗୋଳ ।
ଗଗନେ ନାହିଁ ମେଘମାଳ ॥୬
କାହୁଁ ଏ ଶବଦ ଶୁଭିଲା ।
ଜାଣିଲେ ଅର୍ଜୁନ ଭାଜିଲା ॥୭
ତକ୍ଷଣେ ମିଳିଲେ ସକଳେ ।
ଯାମଳା ଅର୍ଜ୍ଜୁନର ତଳେ ॥୮
ବୋଲନ୍ତି ଭାଜିଲା କେମନ୍ତ ।
ପବନ ନାହିଁ ବଳବନ୍ତ ॥୯
ଶସ୍ତ୍ରେ ଛେଦିଲା ନାହିଁ କେହି ।
ଭିତରେ ମଞ୍ଜାକିଲା ନାହିଁ ॥୧୦
କିମ୍ବା ପଡ଼ିଲା ମହୀତଳେ ।
ବେନି ଅର୍ଜ୍ଜୁନ ଏକାବେଳେ ॥୧୧
ଡାଳ ଦେଖନ୍ତେ ଏକ ଏକ ।
ଦେଖିଲେ ପଡ଼ିଛି ବାଳକ ॥୧୨
ଚକିତ ହୋଇ କଲେ କୋଳ ।
ବନ୍ଧନ ହୋଇଅଛି ରୋଳ ॥୧୩
କେ ନାରୀ କଲା ଏଡ଼େ କର୍ମ ।
ଚିହ୍ନିଲେ ଯଶୋଦା ନନ୍ଦନ ॥୧୪
ବାଳକେ ବୃକ୍ଷମୂଳେ ଥିଲେ ।
ଗୋପାଳମାନଙ୍କୁ କହିଲେ ॥୧୫
ଯଶୋଦା ରୋଳେ ବାନ୍ଧିଗଲା ।
ତଳେ ତା' ସୁତ କାନ୍ଦୁଥିଲା ॥୧୬
ବେନି ବୃକ୍ଷର ମଧ୍ୟେ ପଶି ।
ରୋଳ ସେ ଟାଣିଲା ଆକର୍ଷି ॥୧୭
ବୃକ୍ଷେ ପଡ଼ିଲେ ବେଗେ ଭାଙ୍ଗି ।
ଏହାର ଦେହ ଯହୁଁ ଲାଗି ॥୧୮
ବେନି ପୁରୁଷେ ଏହି ବୃକ୍ଷେ ।
ବାହାର ହୋଇଲେ ପ୍ରତ୍ୟେକ୍ଷ ॥୧୯
ତେଜେ ଗଞ୍ଜନ୍ତି ନିଶାକର ।
ଏହାର ପାଦେ ଦେଇ ଶିର ॥୨୦
କି କି ବୋଇଲେ ତା' ନ ଜାଣି।
ଉତ୍ତରେ ଗଲେ ଏହିକ୍ଷଣି ॥୨୧
ଶୁଣି ହସିଲେ ଗୋପ ଲୋକେ ।
ବୋଲନ୍ତି ଏକକୁ ଆରକେ ॥୨୨
ବାଳବଚନ କାହିଁ ସତ୍ୟ ।
ମାୟା ମୋହିଲେ ଗୋପୀନାଥ ॥୨୩
ବନ୍ଧନ କଟୀଭାଗୁଁ ଫେଇ ।
ନନ୍ଦରକୋଳେ ଦେଲେ ନେଇ ॥୨୪
ଶୁଣି ମିଳିଲେ ନନ୍ଦ ନାରୀ ।
କୃଷ୍ଣଙ୍କୁ ଆଣି କୋଳକରି ॥୨୫
ଗ୍ରହ ଶଙ୍କିତେ ବ୍ରଜବାଳୀ ।
କୃଷ୍ଣଙ୍କୁ କଲେ ନିଉଛାଳି ॥୨୬
ଆନନ୍ଦ କଲେ ଗୀତ ଗାଇ ।
କୃଷ୍ଣ ନାଚନ୍ତି ତାଳି ଦେଇ ॥୨୭
ଗୋପୀ ବୋଲନ୍ତି କୃଷ୍ଣ ଶୁଣ ।
ଘର ଭିତରୁ ଆଣ ମାଣ ॥୨୮
ପାଣ୍ଡୋଇ କଠାଉ ମସୁଣି ।
ଆଣ ତୁ ଦୁଧର ଦୁହୁଁଣୀ ॥୨୯
ଶୁଣି ଗୋବିନ୍ଦ ଘରେ ଯାଇ ।
ଆଣନ୍ତି କନ୍ଧେ ଶିରେ ବହି ॥୩୦
ଥୋଇ କରନ୍ତି କଉତୁକ ।
ଆହୁରି ଆଣିବଇଁ ଦେଖ ॥୩୧
ଭକତ ଜନଙ୍କୁ ସୁଫଳ ।
ଗୋପେ ଦେଖନ୍ତି ନନ୍ଦବାଳ ॥୩୨
ଭକତ ଜନେ ଦ୍ୟନ୍ତି ଦେଖା ।
ଗୋପେ ଅଇଲା କୋଳିବିକା ॥୩୩
ଡାକଇ କୋଳି କୋଳି ବାଣୀ ।
କୃଷ୍ଣ ଧାଇଁଲେ ତାହା ଶୁଣି ॥୩୪
ବସନ ନାହିଁ କଟୀଭାଗେ ।
ମିଳିଲେ ଧାନରାଶି ଲାଗେ ॥୩୫
ଧାନ ଆଞ୍ଜୋଳି ପେଟେ ଦେଇ ।
ବେଗେ ଧାଇଁଲେ ଭାବଗ୍ରାହୀ ॥୩୬
ମିଳିଲେ କୋଳିବିକା ଲାଗେ ।
ମାଣ ପାତିଲା ଦେଖି ବେଗେ ॥୩୭
କୃଷ୍ଣର ଦୃଷ୍ଟି ଅଛି ଫଳେ ।
ଧାନ ପଡ଼ିଲା ସବୁ ତଳେ ॥୩୮
ତକ୍ଷଣେ ଝାଡ଼ି ବେନିକର ।
ଆଞ୍ଜୋଳି କଲେ ଦାମୋଦର ॥୩୯
କର ପୂରୋଇ ଦେଲା ଫଳ ।
ବୋଲନ୍ତି ପ୍ରଭୁ ଚକ୍ରଧର ॥୪୦
ଭାଣ୍ଡେ ତ ଅଛି କେତେ କୋଳି।
ଟେକି ଚାହିଁଲେ ବନମାଳୀ ॥୪୧
ରତ୍ନ ହୋଇଲା ତତ୍କ୍ଷଣ ।
ଘରେ ମିଳିଲେ ନାରାୟଣ ॥୪୨
ଏବେ ହୋ ଶୁଣ ନରନାଥ ।
କୃଷ୍ଣର ବାଳକ ଚରିତ ॥୪୩
ଗୋକୁଳ ମଧ୍ୟେ ଏକ ନଦୀ ।
ବହଇ ବୃନ୍ଦାବନ ଭେଦି ॥୪୪
ସେ ନଦୀତୀରେ ଏକଦିନେ ।
ରାମ ଗୋବିନ୍ଦ ତୋଷମନେ ॥୪୫
ଖେଳନ୍ତି ନାନା କୁତୂହଳେ ।
ଗୋପବାଳକ ଗଣମେଳେ ॥୪୬
ଉଛୁର ଦେଖିଣ ରୋହିଣୀ ।
ଚଞ୍ଚଳେ ଗଲେ ପୁତ୍ରେ ଆଣି ॥୪୭
ଡାକନ୍ତି ମଧୁର ବଚନେ ।
ଗୋବିନ୍ଦ ନ ଶୁଣନ୍ତି କର୍ଣ୍ଣେ ॥୪୮

Dr. Sudhanshu Sekhar Mishra

କୋପେ ରୋହିଣୀ ବାହୁଡ଼ିଲା ।
ଯଶୋଦା ଛାମୁରେ କହିଲା ॥୪୯
ଶୁଣି ଯଶୋଦା ଗଲା ଖରେ ।
କୃଷ୍ଣ ଦେଖିଲା ନଦୀତୀରେ ॥୫୦
ପୁତ୍ରର ସ୍ନେହ-ମାୟା-ମୋହେ ।
ସ୍ତନଯୁଗଳୁ କ୍ଷୀର ବହେ ॥୫୧
କୃଷ୍ଣ-କମଳ-ମୁଖ ଚାହିଁ ।
ଡାକଇ ଅଙ୍ଗୁଳି ଦେଖାଇ ॥୫୨
ଆସ ମୋ ତାତ ପିଅ ସ୍ତନ୍ୟ ।
ଶ୍ରମେ ଆକୁଳ ତୋ' ବଦନ ॥୫୩
ଭୋଜନ ହୋଇଲା ଉଛୁର ।
ଆସ ତୁ ବେଗେ ଯିବା ଘର ॥୫୪
ହେ ରାମ ଆସ କୃଷ୍ଣ ଘେନି ।
ବହୁତ ଦେବଇଁ ଲବଣି ॥୫୫
ପିତା ଭୋଜନ-ବେଳ ହୋଇ ।
ସଙ୍ଗେ ଭୁଞ୍ଜିବ ବେନି ଭାଇ ॥୫୬
ବାଳକେ ଯା'ନ୍ତି ଯେଝା ଘର ।
ବେଳ ଯେ ହେଉଛି ଉଛୁର ॥୫୭
ଦେହ ତୋ ଧୂଳିରେ ଧୂସର ।
ଜନ୍ମ ନକ୍ଷତ୍ର ଆଜ ତୋ'ର ॥୫୮
ଅରିଷ୍ଟ-ଖଣ୍ଡନେ ତୋହର ।
ବିପ୍ରଙ୍କୁ ଗୋରୁ ଦାନ କର ॥୫୯
ଦେଖ ବାଳକେ ତୋ'ର ସଙ୍ଗେ ।
ବିବିଧ ଅଳଙ୍କାର ଅଙ୍ଗେ ॥୬୦
ସ୍ନାନ ଭୋଜନ ଆସି କର ।
ଦେବଇଁ ନାନା ଅଳଙ୍କାର ॥୬୧
ଏମନ୍ତ ବୋଲି ନନ୍ଦରାଣୀ ।
କରେ ଧରିଲେ ଚକ୍ରପାଣି ॥୬୨
ରାମଙ୍କୁ କାଖରେ ବସାଇ ।
ଘରେ ମିଳିଲେ ଦେବୀ ଯାଇ ॥୬୩
କରାଇ ସ୍ନାହାନ ଭୋଜନ ।
ରଞ୍ଜିଲେ ରାମକୃଷ୍ଣ ମନ ॥୬୪
ଭୋଜନ ସାରି ଆଚମନ ।
ଆନନ୍ଦେ କରାଇ ଶୟନ ॥୬୫
ବିପ୍ରଙ୍କୁ ଆଣି ସେ ଡ଼କାଇ ।
ତାହାଙ୍କୁ ଗୋରୁଦାନ ଦେଇ ॥୬୬

ଅସ୍ତ ହୋଇଲେ ଦିନକର ।
ଗୋପାଳେ କରନ୍ତି ବିଚାର ॥୬୭
ଏକ ଆରକେ ଅବହେଳେ ।
ନନ୍ଦର ଦ୍ୱାରେ ମେଳ ହେଲେ ॥୬୮
ବସିଲେ ନନ୍ଦ ଉପନନ୍ଦ ।
ମଧ୍ୟେ ଅନନ୍ତ ଆଦିକନ୍ଦ ॥୬୯
ଗୋପାଳେ କରନ୍ତି ବିଚାର ।
ଶୁଭ ନ ଦିଶେ ଗୋପପୁର ॥୭୦
କହ କି କରିବା ଉପାୟ ।
ପୁତ୍ରଙ୍କୁ ଉପୁଜିଲା ଭୟ ॥୭୧
ଶୁଣି ଉଠିଲେ ଉପନନ୍ଦ ।
ଯାହାର ଜୀବନ ଗୋବିନ୍ଦ ॥୭୨
ଜ୍ଞାନବୟସେ ବୃଦ୍ଧପଣ ।
ଗୋପଙ୍କୁ କହଇ କାରଣ ॥୭୩
ଶିରେ ନିବେଶି ବେନିକର ।
ସଭୟେ କହଇ ଉତ୍ତର ॥୭୪
ଚାଲ ନ ଥିବା ଗୋପପୁରେ ।
ଘର କରିବା ଆନ ଠାରେ ॥୭୫
ଅନେକ ପଡ଼ିଲା ପ୍ରମାଦ ।
ପୁତ୍ରେ ତ ଆମ୍ଭର ସମ୍ପଦ ॥୭୬
ଦେଖ ଯଶୋଦାପୁତ୍ର ସଙ୍ଗେ ।
ଆମ୍ଭ ବାଳକେ ନାଶଯିବେ ॥୭୭
ଅଳପ ଦିନେ ମହାଭୟେ ।
ଆପଦ ପଡ଼ିଲା ଥୋକାଏ ॥୭୮
ତୋ'ର ପୁତ୍ରକୁ ଦେଖ ନନ୍ଦ ।
କେତେ ନ ପଡ଼ିଲା ପ୍ରମାଦ ॥୭୯
ପୂତନା ମୁଖୁଁ ଅଛି ତରି ।
ଶୂନ୍ୟେ ଦଇତ୍ୟ ନେଲା ହରି ॥୮୦
ଶକଟ ଉପରେ ପଡ଼ିଲା ।
ସେ ବେଳେ ଗୋବିନ୍ଦ ରଖିଲା ॥୮୧
ଏବେ ତରିଲା ପରମାଦୁ ।
ଯାମଳା ଅର୍ଜ୍ଜୁନ ଆପଦୁ ॥୮୨
ଚାଲ ନ ଥିବା ଏ ନଗର ।
ନାଶ ନ ହେଉ ଗୋପପୁର ॥୮୩
ଯଶୋଦା ଯେବେ ନ ଛାଡ଼ିବ ।
ଏକା ପୁତ୍ରକୁ ନ ପାଇବ ॥୮୪

ଚାଲ ଆପଦ ନୋହୁ ଯିବା ।
ତେବେ ସେ ପୁତ୍ରଙ୍କୁ ପାଇବା ॥୮୫
ସକଳେ ଦୃଢ଼ କର ମନେ ।
ଘର କରିବା ବୃନ୍ଦାବନେ ॥୮୬
ବହୁତ ଫଳ କନ୍ଦମୂଳ ।
ନିର୍ମଳ ଯମୁନାର ଜଳ ॥୮୭
ପର୍ବତ ନାମେ ଗୋବର୍ଦ୍ଧନ ।
ଗୋରୁଙ୍କୁ ଅଛି ଜଳ ତୃଣ ॥୮୮
ଗୋପୀଗୋପାଳ ତୋଷ ହେବେ ।
ବହୁତ କ୍ଷୀର ଗାଈ ଦେବେ ॥୮୯
କାଲି ପ୍ରଭାତୁ ହୁଅ ସଜ ।
ଭାର ଶକଟ ବେଗେ ସାଜ ॥୯୦
ଗୋଧନ ଚଳିଯା'ନ୍ତି ବେଗେ ।
ଗୋପ ବାଳକେ ଘେନି ସଙ୍ଗେ ॥୯୧
ସୁଖେ ରହିବା ବୃନ୍ଦାବନେ ।
କିଛି ନ ଭାଳ ତୁମ୍ଭେ ମନେ ॥୯୨
ଶୁଣି ମଣିଲେ ଗୋପହିତ ।
ନିଜ ଭୁବନେ ଉପଗତ ॥୯୩
ଯେଝାରେ ଘେନିଣ ସମ୍ପଦ ।
ଯା'ନ୍ତେ କରନ୍ତି ଶିଙ୍ଗାନାଦ ॥୯୪
ନନ୍ଦ ଯଶୋଦା ଏକମେଳେ ।
ରୋହିଣୀ ସୁତ ଘେନି କୋଳେ ॥୯୫
ପାଶେ ଚଳନ୍ତି ଗୋପୀନାଥ ।
ଗାବନ୍ତି ନାନାରଙ୍ଗେ ଗୀତ ॥୯୬
ଶକଟମାନ ଯା'ନ୍ତେ ଖର ।
ଧୂଳିରେ ଛିନ୍ନ ଦିବାକର ॥୯୭
ମିଳିଲେ ବୃନ୍ଦାବନେ ଯାଇ ।
କୃଷ୍ଣଚରିତ ଗୀତ ଗାଇ ॥୯୮
ଗୋପାଳେ ଧନୁଶର ଘେନି ।
ନାନା ଶବଦେ ବେଣୁଧ୍ୱନି ॥୯୯
ଯାଇ ହୋଇଲେ ବୃନ୍ଦାବନ ।
ଆନନ୍ଦ ଗୋପୀଙ୍କର ମନ ॥୧୦୦
ଯେ ବନେ ବିଜେ ଗୋପୀନାଥ ।
ସର୍ବଦା ବହଇ ବସନ୍ତ ॥୧୦୧
ସୀମା ଆବୋରି ଗୋପପୁର ।
ଯେଝାରେ ତୋଳିଲେ ମନ୍ଦିର॥୧୦୨

Dr. Sudhanshu Sekhar Mishra

ଗ୍ରାମର ମଧ୍ୟେ ନନ୍ଦଘର ॥
ଯହିଁ ବିଜୟ ଦାମୋଦର ॥୧୦୩
କୃଷ୍ଣ ଦେଖିଲେ ଗୋବର୍ଦ୍ଧନ ।
ଯମୁନା ନଦୀ ବୃନ୍ଦାବନ ॥୧୦୪
ଦେଖି ସାନନ୍ଦ ବେନି ଭାଇ ।
ବୋଲନ୍ତି ନନ୍ଦକୁ ବସାଇ ॥୧୦୫
ଯେତେ ଅଛନ୍ତି ବତ୍ସା ଘରେ ।
ଆମ୍ଭେ ରଖିବୁ ନଦୀତୀରେ ॥୧୦୬
ଭୋ ତାତ ନାହିଁ ତୁ ନ କର ।
ବତ୍ସା ରଖିବୁ ଆମ୍ଭେ ତୋ'ର ॥୧୦୭
ନନ୍ଦ ବୋଇଲେ ତୋଷ ହୋଇ।
କାଲିହୁଁ ବତ୍ସା ରଖ ନେଇ ॥୧୦୮
ପିତାର ବଚନେ ମୁରାରି ।
ସାନନ୍ଦେ ଚରାନ୍ତି ବାଛୁରୀ ॥୧୦୯
ଗ୍ରାମ ନିକଟେ ଥା'ନ୍ତି ନିତ୍ୟେ।
ବନେ ନଯା'ନ୍ତି ଭୟଚିତ୍ତେ ॥୧୧୦
ବ୍ୟାଘ୍ର ଭଲ୍ଲୁକ ସିଂହ ତ୍ରାସେ ।
ବତ୍ସା ଚରାନ୍ତି ଗ୍ରାମ ପାଶେ ॥୧୧୧
ଗୋପାଳ ପୋଏ ଥା'ନ୍ତି ସଙ୍ଗେ ।
ଖେଳନ୍ତି ନାନା ରସ ରଙ୍ଗେ ॥୧୧୨
କ୍ଷଣ କ୍ଷଣକେ ବେଣୁନାଦ ।
କେ କହୁ କୃଷ୍ଣର ଆନନ୍ଦ ॥୧୧୩
ଏକ ଆରକେ ଭୁଜ ଧରି ।
ଯୁଝନ୍ତି ବାହାନାଦ କରି ॥୧୧୪
ବେଲ ଅଁଳା କଣ୍ଟା ଫଳେ ।
ତୋଳି ଆଣନ୍ତି ବୃକ୍ଷୁଁ ବାଳେ ॥୧୧୫
ଏକ ଆରେକେ ମରାମରି ।
ସାକ୍ଷୀ କରାନ୍ତି ରାମହରି ॥୧୧୬
ନାନା ପକ୍ଷୀଙ୍କ ନାଦ ଶୁଣି ।
ପୋଏ ନାଚନ୍ତି ତାହା ଶୁଣି ॥୧୧୭
ଦିନେ ଯମୁନାତୀରେ ହରି ।
ଆନନ୍ଦେ ଚରାନ୍ତି ବାଛୁରୀ ॥୧୧୮
କଂସ ଆଦେଶ ବତ୍ସାସୁର ।
ଆସି ମିଳିଲା ଧାଡିକାର ॥୧୧୯
କୃଷ୍ଣର ମୁଖକୁ ଚାହିଁଲା ।
ବାଛୁରୀ ରୂପକୁ ଧଇଲା ॥୧୨୦

ବତ୍ସା ଗହଳେ ଗଲା ପଶି ।
ରାମଙ୍କୁ ଦେଖାନ୍ତି ଶ୍ରୀବତ୍ସୀ ॥୧୨୧
ଦେଖ ଦଇତ୍ୟ ବତ୍ସା ପାଶେ ।
ଆମ୍ଭଙ୍କୁ ମାରିବାର ଆଶେ ॥୧୨୨
ମାୟା ବାଛୁରୀ ରୂପ ହୋଇ ।
କହି ହସନ୍ତି ଭାବଗ୍ରାହୀ ॥୧୨୩
ଅସୁର ବିଚାରଇ ମନେ ।
କୃଷ୍ଣଙ୍କୁ ମାରିବି କେସନେ ॥୧୨୪
ନିକଟେ ମିଳିଲେ ମୋହର ।
ପାଦେ କରିବି ଶତେ ଚୂର ॥୧୨୫
ତାହା ଜାଣିଲେ ନାରାୟଣ ।
ମୋହିଲେ କୁମାରଙ୍କ ମନ ॥୧୨୬
କଇଥ ଗଛ ଦେଖି ପୋଏ ।
ବୋଲନ୍ତି ରାମଙ୍କୁ ଥୋକାଏ ॥୧୨୭
ଏ ଫଳ ଦିଶଇ ସୁସଞ୍ଚ ।
ହସ୍ତ ନ ପାଏ ବଡ଼ ଉଚ୍ଚ ॥୧୨୮
ତୁ ରାମ ଅତି ବଳୀୟାର ।
ଫଳ ଥୋକାଏ ବୃକ୍ଷୁ ତୋଳ ॥୧୨୯
ଶୁଣି ସାନନ୍ଦ ବନମାଳୀ ।
ବତ୍ସା ନିକଟେ ଯାଇ ମିଳି ॥୧୩୦
ବେନିଚରଣ ଧରି କରେ ।
ବୁଲାଇ ପିଟିଲେ ବୃକ୍ଷରେ ॥୧୩୧
କରେ ଘୂରାନ୍ତେ ପ୍ରାଣ ଗଲା ।
ଜୀବନ ଗୋବିନ୍ଦେ ପଶିଲା ॥୧୩୨
ଦେବେ ଚକିତ ତାହା ଦେଖି ।
ବ୍ରହ୍ମା ହୋଇଲେ ଅତି ସୁଖୀ ॥୧୩୩
ଅସୁର ଦେହ ଲାଗି କରି ।
ଫଳ ପଡ଼ିଲା ବୃକ୍ଷୁ ଝଡ଼ି ॥୧୩୪
ବାଳକେ ଦେଖିଣ ଚକିତ ।
ବୋଲନ୍ତି ଧନ୍ୟ ନନ୍ଦସୁତ ॥୧୩୫
ଆନନ୍ଦେ ଦେବତାଏ ସ୍ତୁତି ।
କୃଷ୍ଣଙ୍କୁ କଲେ ପୁଷ୍ପବୃଷ୍ଟି ॥୧୩୬
ଏମନ୍ତେ ରାମ ବନମାଳୀ ।
ବତ୍ସା ରଖନ୍ତେ ବନେ କେଳି ॥୧୩୭
ସକାଳେ ଦଧି ଗୁଡ଼ ଅନ୍ନ ।
ଭୁଞ୍ଜନ୍ତି ରାମ ଭଗବାନ ॥୧୩୮

ନିତ୍ୟେ ଯମୁନାତୀରେ ଯାଇ ।
ବତ୍ସା ରଖନ୍ତି ବେନିଭାଇ ॥୧୩୯
ଗୋପାଳ ପୁଅ ଘେନି ସଙ୍ଗେ ।
ବନେ ବିହରି ନାନାରଙ୍ଗେ ॥୧୪୦
ବାଳକେ ଯେଝା ବତ୍ସା ଘେନି ।
ଚରାନ୍ତି କରି ବେଣୁ ଧ୍ୱନି ॥୧୪୧
ଦିନେ ନିଦାଘେ ଖରାବେଳେ ।
ମିଳିଲେ ଯାଇ ନଦୀକୂଳେ ॥୧୪୨
ବତ୍ସାଙ୍କୁ ପିଆଇ ବହନ ।
ସକଳେ କଲେ ଜଳପାନ ॥୧୪୩
କଂସର ମିତ୍ର ବକାସୁର ।
ସଧୀରେ ବିହରଇ ନୀର ॥୧୪୪
କୃଷ୍ଣଙ୍କୁ ଦେଖି କାମରୂପୀ ।
କ୍ଷଣ କ୍ଷଣକେ ତନୁବ୍ୟାପୀ ॥୧୪୫
ନିଜ ସ୍ୱଭାବେ ମହାକାୟେ ।
ଦେଖି ଡରିଲେ ଗୋପପୋଏ ॥୧୪୬
ଏ ବନେ ଏଡେ ବକ ଥାଇ ।
କହନ୍ତି ରାମଙ୍କୁ ଦେଖାଇ ॥୧୪୭
ଗୋପାଳ ପୋଏ ପରଶଂସି ।
ପର୍ବତଖଣ୍ଡ ପ୍ରାୟେ ଦିଶି ॥୧୪୮
ତ୍ରାସେ ଉଠିଲେ ବେଗେ ତୀର ।
ଦେଖି ଧାଇଁଲା ବକାସୁର ॥୧୪୯
ଘୋର ଶବଦ ବେଗେ କଲା ।
ତକ୍ଷଣେ କୃଷ୍ଣଙ୍କୁ ଗିଳିଲା ॥୧୫୦
କୃଷ୍ଣ ନ ଦେଖି ଗୋପବାଳେ ।
ଢଳି ପଡ଼ିଲେ ମହୀତଳେ ॥୧୫୧
ଉଠିଣ କରନ୍ତି ରୋଦନ ।
ଚକିତେ ଚାହିଁ ଛନ୍ନଛନ୍ନ ॥୧୫୨
ବକାର ତାଲୁ ମୂଳେ ରହି ।
ତାହା ଜାଣିଲେ ଭାବଗ୍ରାହୀ ॥୧୫୩
ଦାସବତ୍ସଳ ନରହରି ।
ବେଗେ ଅନଳ ରୂପ ଧରି ॥୧୫୪
ପ୍ରଳୟ ଅଗ୍ନି ଜିଣି ତେଜ ।
ତା'ଙ୍କୁ ଦହିଲେ ଦେବରାଜ ॥୧୫୫
ତକ୍ଷଣେ ଘୋର ନାଦକରି ।
କୃଷ୍ଣଙ୍କୁ ପକାଇ ଉଦ୍ଗାରି ॥୧୫୬

Dr. Sudhanshu Sekhar Mishra

ଧୀରେ ଛାଡ଼ିଲା ବକାସୁର ।
ସୁନ୍ଦର ଦିଶିଲା ଶରୀର ।।୧୫୭

ଦେଖି ଶ୍ରୀକୃଷ୍ଣ କଳେବର ।
ପୁଣି ଧାଇଁଲା ରୋଷଭର ।।୧୫୮

କୃଷ୍ଣର ଦେହେ କ୍ଷତ ନାହିଁ ।
ଅସୁର ମନେ ବିଚାରଇ ।।୧୫୯

ପୁଣି ବିଚାରୁଅଛି ମନେ ।
ଏହାକୁ ମାରିବି କେସନେ ।।୧୬୦

ଏହାର ସୁକୁମାର ପିଣ୍ଡ ।
ଥଣ୍ଟେ କରିବି ଖଣ୍ଡ ଖଣ୍ଡ ।।୧୬୧

ବିସ୍ତାରି ବେନିପାଟି ତୋଳି ।
ବେଗେ ଧାଇଁଲା ମହାବଳୀ ।।୧୬୨

ଶୂନ୍ୟେ ଦେଖନ୍ତି ଦେବଗଣ ।
ଆଗ ହୋଇଲେ ନାରାୟଣ ।।୧୬୩

କରେ ଧଇଲେ ବେନିପାଟି ।
ଅସୁର ନ ପାରିଲା ଉଠି ।।୧୬୪

ବାଳକ ମେଲେଣ ଶ୍ରୀହରି ।
ଚିରିଲେ ବେନିଫାଳ କରି ।।୧୬୫

ଦେଖି ସାନନ୍ଦେ ବୃନ୍ଦାରକେ ।
କୁସୁମ ବରଷିଲେ ଥୋକେ ।।୧୬୬

ଦୁନ୍ଦୁଭି ବାଦ୍ୟନାଦ କରି ।
ରଙ୍ଗେ ନାଚନ୍ତି ଅପସରୀ ।।୧୬୭

ବାଳକେ ଦେଖିଣ ଚକିତ ।
ମାୟା ମୋହିଲେ ଗୋପୀନାଥ ।।୧୬୮

ତକ୍ଷଣେ ଆଲିଙ୍ଗନ କରି ।
ଗୋଠକୁ ଆଣିଲେ ବାଛୁରୀ ।।୧୬୯

ପୋଏ କହିଲେ ଯେଝାଘରେ ।
ପୁଣି ମିଳିଲେ ନନ୍ଦଦ୍ୱାରେ ।।୧୭୦

ବକର ତୁଣ୍ଡୁ ଉବୁରିଲା ।
ଭାଗ୍ୟ ଗୋ ଯଶୋଦାର ଥିଲା ।।୧୭୧

ଶୁଣି ଚକିତ ଗୋପଗୋପୀ ।
କୃଷ୍ଣଙ୍କୁ ଚାହାନ୍ତି ନିରୋପି ।।୧୭୨

ବୋଲନ୍ତି ଧର୍ମ ତିନିଲୋକେ ।
ସତ୍ୟ ବେଭାର ଜନମୁଖେ ।।୧୭୩

ନିର୍ଦ୍ଦୋଷ ପ୍ରାଣୀ ହିଂସା କରି ।
ଆପଣେ ଯାଉଛନ୍ତି ମରି ।।୧୭୪

ଏ ପୋଏ ବାଳକ ସ୍ୱଭାବେ ।
ଏହାଙ୍କୁ ହିଂସନ୍ତି ଦାନବେ ।।୧୭୫

ତେଣୁ ହୁଅନ୍ତି ମୃତ୍ୟୁ ସଙ୍ଗ ।
ଅନଳେ ଯେସନେ ପତଙ୍ଗ ।।୧୭୬

ପଣ୍ଡିତଜନଙ୍କର କଥା ।
କେବେ ହେଁ ନୁହଁଇ ଅନ୍ୟଥା ।।୧୭୭

ଯାହା କହିଲେ ଗାର୍ଗ୍ୟଋଷି ।
ରାମକୃଷ୍ଣଙ୍କୁ ପରଶଂସି ।।୧୭୮

ସେ କଥା ହୋଇଲା ପ୍ରମାଣ ।
ଏହାଙ୍କୁ ରଖୁ ନାରାୟଣ ।।୧୭୯

ଆପଦ ଦେଖି ନନ୍ଦରାୟେ ।
ଶାନ୍ତି କରାଇଲେ ଥୋକାଏ ।।୧୮୦

ଗୋପେ ଗୋବିନ୍ଦ ଅଙ୍ଗସଙ୍ଗେ ।
ତରିଲେ ଭବଜଳୁ ରଙ୍ଗେ ।।୧୮୧

ସେ ହରି ଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ।।୧୮୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଦ୍ୱାଦଶୋଽଧ୍ୟାୟଃ।।

---

## ତ୍ରୟୋଦଶ ଅଧ୍ୟାୟ

ଶୁକ ଉବାଚ

ବୋଲନ୍ତି ବ୍ୟାସମୁନି ଶିଷ ।
ଶୁଣ ରାଜନ କୃଷ୍ଣରସ ।।୧

ଗୋପ ନଗରେ ଶିରୀରଙ୍ଗେ ।
ଖେଳନ୍ତି କୁମାରଙ୍କ ସଙ୍ଗେ ।।୨

ଦିନ ହରନ୍ତି ବୃନ୍ଦାବନେ ।
ଘରେ ମିଳନ୍ତି ରାତ୍ରମାନେ ।।୩

ଏମନ୍ତେ ବୃନ୍ଦାବନେ କେଳି ।
ରାମ ଗୋବିନ୍ଦ ଗୋପବାଳୀ ।।୪

ଦିନେକ ପ୍ରଭୁ ଦେବରାଜ ।
ରାତ୍ରହୁଁ ଉପେକ୍ଷିଲେ ଶେଯ ।।୫

ରଜନୀ ଅଛି ବେନି ଘଡ଼ି ।
ନିଦ୍ରା ଉପେକ୍ଷି ନରହରି ।।୬

ମାତାଙ୍କୁ ଡାକି ବନମାଳୀ ।
ପୟରେ କଲେ ନିଉଛାଳି ।।୭

ଆଜ ମୁଁ ନ ଭୁଞ୍ଜିବି ଘରେ ।
ଅନ୍ନ ପୁଡ଼ାଏ ଦିଅ ମୋରେ ।।୮

ଦଇବେ ନିଦାଘର କାଳ ।
ଖରା ଲାଗନ୍ତେ ବହେ ଝାଳ ।।୯

ଶୀତଳ ବେଳୁ ଯିବୁ ବନ ।
ଅନ୍ନ ତୁ ଦିଅ ଗୋ ବହନ ।।୧୦

ଶୁଣି ସାନନ୍ଦ ନନ୍ଦରାଣୀ ।
ଅନ୍ନ ବାଢ଼ିଲେ ଘରୁ ଆଣି ।।୧୧

ନାନା ବ୍ୟଞ୍ଜନ ଗୁଡ଼ ଦଧି ।
ପୁଡ଼ା ଗୋଟିଏ ଦେଲେ ବାନ୍ଧି ।।୧୨

ଶିକାରେ ଘେନି ଅନ୍ନ ପୁଡ଼ା ।
ଶିଙ୍ଗା କାହାଳୀ ବେତଯୋଡ଼ା ।।୧୩

ଛନ୍ଦ ଦଉଡ଼ି କନ୍ଧେ ଘେନି ।
ଗୋବିନ୍ଦ କଲେ ଶିଙ୍ଗାଧ୍ୱନି ।।୧୪

ଗୋପ କୁମରେ ଥିଲେ ଶୋଇ ।
କର୍ଣ୍ଣେ ଶୁଭିଲା ନାଦ ଯାଇ ।।୧୫

ବନେ ଭୁଞ୍ଜିବା ଆଜ ଅନ୍ନ ।
କରିବା କ୍ରୀଡ଼ାରସମାନ ।।୧୬

ରାତ୍ରେ ସଂକେତ କରିଥିଲେ ।
ପ୍ରଭାତେ ବେଣୁଧ୍ୱନି କଲେ ।।୧୭

ଯେ ଯାହା ନାମ ଧରି ଡାକି ।
ବାଳକେ ଶୟନ ଉପେକ୍ଷି ।।୧୮

Dr. Sudhanshu Sekhar Mishra

ନନ୍ଦର ଦ୍ୱାରେ ଯାଇ ମିଳି ।
ଦେଖିଲେ ରାମ ବନମାଳୀ ॥୧୯
ବୋଲନ୍ତି ପ୍ରଭୁ ଦେବରାଜ ।
ଆମ୍ଭର ପ୍ରାୟେ ହୁଅ ସଜ ॥୨୦
ଶୁଣି ମିଳିଲେ ଯେଝା ଘରେ ।
ଅନ୍ନ ଘେନିଲେ ବାମକରେ ॥୨୧
ବେଣୁ କଠଉ ଶିଙ୍ଗା ବେତ ।
ବାଛୁରୀ ଫେଇ ଯୂଥଯୂଥ ॥୨୨
ମୁରଲୀ ବଜାଇ ତୁରିତେ ।
ଆଗେ ମିଳିଲେ ନନ୍ଦସୁତେ । ॥୨୩
ଅନ୍ତ କରିବି କେତେ ମୁହିଁ ।
ବାଛୁରୀ ଗଣିତା ନ ଯାଇ ॥୨୪
ଚଳାଇ ବସ୍ସା ଯୂଥଯୂଥ ।
ପଛେ ବିଜୟେ ଗୋପୀନାଥ ॥୨୫
ବନେ ପଶନ୍ତି ଏକମେଳେ ।
ଶୁଭଇ ମୁଖରାଗ ଗୋଳେ ॥୨୬
ସକଳେ ଏକରୁଣ୍ଡ ହୋଇ ।
ନାଚନ୍ତି ଶିଙ୍ଗା ବେଣୁ ବାଇ ॥୨୭
ଖେମଟା ଛନ୍ଦେ କରତାଳି ।
ମଧ୍ୟେ ନାଚନ୍ତି ବନମାଳୀ ॥୨୮
ବିବିଧ ଅଳଙ୍କାର ଲାଇ ।
ନାଚନ୍ତି ମନେ ତୋଷ ହୋଇ ॥୨୯
ମଣି ମୁକୁତା କର୍ଣ୍ଣଫୁଲ ।
ନୂପୁର କଙ୍କଣ ଅମୂଲ୍ୟ ॥୩୦
କଟୀ ମେଖଳା ରତ୍ନ ଛନ୍ଦି ।
ଶିରେ ଗୁଞ୍ଜରା ପାଟି ବାନ୍ଧି ॥୩୧
ଶିରେ ମୟୂର ପୁଚ୍ଛ ଚୂଳ ।
କର୍ଣ୍ଣରେ କୋମଳ ପତର ॥୩୨
କଣ୍ଠେ ଶୋଭିତ ରତ୍ନହାର ।
ନିବିଡ଼ ସୁରଙ୍ଗ ଅଧର ॥୩୩
ରଙ୍ଗ ମୃତ୍ତିକା ଅଙ୍ଗେ ବୋଳି ।
ପଇତା ଗରଗଡ଼ ମାଳୀ ॥୩୪
କଙ୍କଣ ନୂପୁର ଶବଦେ ।
ନାଚନ୍ତି ଏକୁ ଆରେ ବାଦେ ॥୩୫
କେ କାହା ଅନ୍ନପୁଡ଼ା ବଳେ ।
ନେଇ ଲୁଚାନ୍ତି ବୁଦାତଳେ ॥୩୬

କେ କାନ୍ଦି କୃଷ୍ଣଙ୍କୁ କହନ୍ତି ।
ଆଜ୍ଞା ପ୍ରମାଣେ ଆଣି ଦ୍ୟନ୍ତି ॥୩୭
ଏକ ଆରକେ ପୀଢ଼ କରି ।
ଗୋଡ଼ାଇ ଛୁଅନ୍ତି ମୁରାରି ॥୩୮
କେ କାହା ନାମ ଧରି ବାଦେ ।
ଦୂରୁ ଡାକନ୍ତି ବେଣୁ ନାଦେ ॥୩୯
ଶୁକ କୋକିଳ ନାଦ ଶୁଣି ।
ପୋଏ ନାଚନ୍ତି ତାହା ଭଣି ॥୪୦
ପକ୍ଷୀ ଉଡ଼ନ୍ତେ ଛାୟା ଦେଖି ।
ଧାମନ୍ତି ବାଛୁରୀ ଉପେକ୍ଷି ॥୪୧
ଦେଖି ମୟୂର ହଂସ ଚାଲି ।
ପୋଏ ଚାଲନ୍ତି ପେଲାପେଲି ॥୪୨
ବକଙ୍କ ସଙ୍ଗେ ଯାଇ ବସି ।
ଭେକର ତୁଲେ ଯା'ନ୍ତି ଭାସି ॥୪୩
ବାନର ପୁଅଙ୍କୁ ଧରନ୍ତି ।
ଖେଳାଇ ପୁଣି ଛାଡ଼ି ଦ୍ୟନ୍ତି ॥୪୪
ସେ ଯାଇ ଉଠନ୍ତି ବୃକ୍ଷରେ ।
ପଲ୍ଲବେ ଲୁଚନ୍ତି କାତରେ ॥୪୫
ପୋଏ ହୁଅନ୍ତି ସେହି ମତ ।
ଡାକନ୍ତି ଆସ ଗୋପୀନାଥ ॥୪୬
ଆପଣା ଛାଇ ଦେଖି ଜଳେ ।
ହସନ୍ତି ନାନା କୁତୂହଳେ ॥୪୭
କାନନେ ପ୍ରତିନାଦ ଶୁଣି ।
ହସନ୍ତି ନାନା ଗାଳି ଭଣି ॥୪୮
ଏମନ୍ତେ ଗୋବିନ୍ଦର ମେଳେ ।
ବାଳକେ ନାନା କୁତୂହଳେ ॥୪୯
ଅନେକ ଜନ୍ମେ ତପ କରି ।
ନିକଟେ ପାଇଲେ ମୁରାରି ॥୫୦
କେ କହୁ ତା'ଙ୍କ ପୁଣ୍ୟଫଳ ।
ବେଦ ନ ଜାଣେ ଆଦିମୂଳ ॥୫୧
ଅନେକ ତପଯଜ୍ଞେ ବନ୍ଦି ।
ମନ ପବନ ହୃଦେ ଛନ୍ଦି ॥୫୨
ଜ୍ଞାନୀ ଚିନ୍ତନ୍ତି ଯୋଗବଳେ ।
ସେ ଖେଳେ ଗୋପାଳଙ୍କ ମେଳେ॥୫୩
ମନୁଷ୍ୟ ଦେହ ମଞ୍ଚେ ବହି ।
କେ ପାରେ ତା'ଙ୍କ ପୁଣ୍ୟ କହି ॥୫୪

ଯାହାର ପାଦ ଜଳ ପାଇ ।
ଆନନ୍ଦେ ଶଙ୍କର ନାଚଇ ॥୫୫
ଯା' ନାମ ଚାରି ବେଦ ଭଣେ ।
ସେହି ଗୋପାଳ ସଙ୍ଗେ ଜଣେ ॥୫୬
ଏମନ୍ତେ ଶୁଣ ନୃପମଣି ।
ଶ୍ରୀକୃଷ୍ଣ ମହିମା ନ ଜାଣି ॥୫୭
ଅଘା ନାମେଣ ସେ ଅସୁର ।
କଂସ ଆଦେଶ ଘେନି ଶିର ॥୫୮
ମିଳିଲା ବୃନ୍ଦାବନେ ଯାଇ ।
କଂସର ମିତ୍ରପଣ ହୋଇ ॥୫୯
ବୃକ୍ଷର ଉହାଡ଼େ ରହିଲା ।
ଗୋପାଳ ପୁଅଙ୍କୁ ଚାହିଁଲା ॥୬୦
ମଧ୍ୟେ ଦେଖିଲା ଭଗବାନ ।
ହୃଦରେ ଶ୍ରୀବତ୍ସ ଲାଞ୍ଛନ ॥୬୧
ବୋଲଇ ଏ ମୋର ବଇରୀ ।
ବେନି ସୋଦର ଅଛି ମାରି ॥୬୨
କଂସକୁ କରିବ ଏ ନାଶ ।
ଯାଦବେ ଏହାର ବିଶ୍ୱାସ ॥୬୩
ନିଶ୍ଚୟେ ରିପୁ ଏ ମୋହର ।
ମାରିଛି ବେନି ସହୋଦର ॥୬୪
ପୂତନା ବହେଣୀ ମୋହର ।
ଜ୍ୟେଷ୍ଠଭ୍ରାତ ମୋ' ବକାସୁର ॥୬୫
ଏହାଙ୍କୁ ଜଳ ତିଳ ଦେଇ ।
ଆଜ ଉଦ୍ଧାରି ବଇଁ ମୁହିଁ ॥୬୬
କୃଷ୍ଣ ବାଛୁରୀ ଗୋପ ପୋଏ ।
ମୋତେ ଦିଶନ୍ତି ତିଳ ପ୍ରାୟେ ॥୬୭
ଜିହ୍ୱା ମୋହର ତମ୍ବାପାତ୍ରୀ ।
କୁଶ ହୋଇବ ଦନ୍ତପନ୍ତି ॥୬୮
ଖର ନିଃଶ୍ୱାସ ମନ୍ତ୍ରସ୍ୱରେ ।
ତର୍ପଣ କରିବି ରୁଧିରେ ॥୬୯
ଗୋପେ ମିଳିବି ରାତ୍ରେ ଯାଇ ।
ଗିଳିବି ଯେତେ ଜନ୍ତୁ ଗାଈ ॥୭୦
ତେବେ ହୋଇବ ମନସ୍ଥିର ।
ଆକାଶେ ବସିବେ ସୋଦର ॥୭୧
ପୁଣି ବିଚାରୁ ଅଛି ରହି ।
ଗୋକୁଳେ ମୋର କାର୍ଯ୍ୟ ନାହିଁ ॥୭୨

Dr. Sudhanshu Sekhar Mishra

ବାଳକେ ବାଛୁରୀ ସହିତେ ।
ଏ ବନେ ଗିଳିବ ତୁରିତେ ॥୭୩
ପୁତ୍ରେ ନ ପାଇ ବାପ ମାଏ ।
ଭାଳିଣ ମରିବେ ଥୋକାଏ ॥୭୪
ପ୍ରାଣୀଙ୍କ ପ୍ରାଣ ପୁତ୍ରଦେହେ ।
ଏଣୁ ମରିବେ ମାୟାମୋହେ ॥୭୫
ଏମନ୍ତେ ସାଧିବି ବଇରୀ ।
ଗିଳିବି ସର୍ପରୂପ ଧରି ॥୭୬
ବିଚାର କଲା ଏହି ମତ ।
ଅସୁର ଅତି ବଳବନ୍ତ ॥୭୭
ଯାହାର ନାମେ ଦେବେ ଡରି ।
ଗଗନେ ପଡୁଥାଇ ହୁରି ॥୭୮
ଅମୃତ ଖାଇ ଦେବଗଣ ।
ଚିନ୍ତନ୍ତି ଅସୁର ମରଣ ॥୭୯
ଯେବେ ମରିବ ଅଘାସୁର ।
ଆମ୍ଭ ଅରିଷ୍ଟ ଯିବ ଦୂର ॥୮୦
ବ୍ରହ୍ମା ଡରନ୍ତି ନିରନ୍ତର ।
ଶୂନ୍ୟେ କମ୍ପନ୍ତି ସାତପୁର ॥୮୧
ଅଘାର ନାମେ ଥରହର ।
ଭୟେ କମ୍ପଇ ସୁନାସୀର ॥୮୨
ହୋଇଲା ଅଜଗର ରୂପୀ ।
ଯୋଜନ ଯାଏଁ ଦେହ ବ୍ୟାପି ॥୮୩
ପୂର୍ବ ଦିଗକୁ ମୁଖ କଲା ।
ସ୍ୱଭାବେ ତୁଣ୍ଡ ବିସ୍ତାରିଲା ॥୮୪
ଉପର ପାଟି କଲା ମେଘେ ।
ଅଧର ଓଷ୍ଠ ମହୀଭାଗେ ॥୮୫
ଜିହ୍ୱା ବୁଲାଇ ଅନ୍ତରାଳ ।
ଦନ୍ତପର୍ବତ ଶୃଙ୍ଗମାଳ ॥୮୬
ତୁଣ୍ଡ ଦିଶଇ ଅନ୍ଧକାର ।
ବିଷପବନ ଖରତର ॥୮୭
ପଶ୍ଚିମ ଦିଗେ ଯା'ନ୍ତି ଚଳି ।
ଗୋରୁ ଗୋପାଳ ବନମାଳୀ ॥୮୮
ମାୟା ଅସୁର ମୁଖ ଲାଗେ ।
ପୋଏ ମିଳିଲେ ଆସି ବେଗେ ॥୮୯
ବିଷ ପବନ ଖର ଶ୍ୱାସ ।
ଦେହେ ଲାଗନ୍ତେ ବଡ଼ ତ୍ରାସ ॥୯୦

ଚକିତେ ଚଉଦିଗେ ଚାହିଁ ।
ବୋଲନ୍ତି ଏକୁ ଆରେ ରହି ॥୯୧
କିଏ ଭାଜିଲା ଗିରିଖଣ୍ଡ ।
ବିସ୍ତାର କରିଅଛି ତୁଣ୍ଡ ॥୯୨
କେ ବୋଲେ ମେଘ କାମରୂପୀ ।
ଭୂମି ଗଗନେ ଅଛି ବ୍ୟାପୀ ॥୯୩
କେ ବୋଲେ ସର୍ପ ଏ ସ୍ୱରୂପ ।
ଅରୁଣ ବେନି ପାଟି ଦେଖ ॥୯୪
ଆମିଷ ପ୍ରାୟେ ପୂତିଗନ୍ଧ ।
ରୁକ୍ଷ ପବନ ମନ୍ଦମନ୍ଦ ॥୯୫
କେ ବୋଲେ ପୋଡୁଅଛି ବନ ।
ଜନ୍ତୁଏ ହୁଅନ୍ତି ଦହନ ॥୯୬
ତେଣୁ ଆମିଷଗନ୍ଧ ଦେଖ ।
ଏହାକୁ ଭଲେ ହୋ ନିରେଖ ॥୯୭
ବାମ ଦକ୍ଷିଣେ ଜିହ୍ୱା ଚାଳି ।
ଚାଞ୍ଛିଲା ବାଟ ପ୍ରାୟେ ଝଳି ॥୯୮
ଜାଣିଲୁ ସର୍ପ ଏ ଶରୀର ।
ମରଣ ହୋଇଲା ଆମ୍ଭର ॥୯୯
ଥୋକେ ବୋଲନ୍ତି କିମ୍ପା ଡର ।
ଆମ୍ଭର କୃଷ୍ଣ ବଳୀଆର ॥୧୦୦
ଯେବେ ଏ ଆମ୍ଭଙ୍କୁ ଗିଳିବ ।
ବକର ପ୍ରାୟେ ନାଶ ଯିବ ॥୧୦୧
କ୍ଷଣକେ ମରିବଟି ଏହି ।
ଏମନ୍ତେ ପଛକୁ ଅନାଇଁ ॥୧୦୨
ପଶିଲେ କରତାଳି ମାରି ।
ଆଗରେ ଅଡ଼ାନ୍ତି ବାଛୁରୀ ॥୧୦୩
କେ ବୋଲେ ଆଗ ହୋ ନପଶ ।
ନିକଟେ ନାହିଁ ପୀତବାସ ॥୧୦୪
ଚାହିଁଲେ କୃଷ୍ଣ ଛନ୍ତି ଦୂରେ ।
ଡାକନ୍ତି ଆସ ଖରତରେ ॥୧୦୫
ଦୂରୁ ଡାକନ୍ତି ଦାମୋଦର ।
ନ ପଶ ସର୍ପର ଉଦର ॥୧୦୬
ନ ଜାଣି ସର୍ବେ ଏକମେଳେ ।
ଯେତେ ବାଛୁରୀ ଗୋପବାଳେ ॥୧୦୭
କୃଷ୍ଣର ବୋଲ ନ ଶୁଣିଲେ ।
ଅସୁର ଉଦରେ ପଶିଲେ ॥୧୦୮

କୃଷ୍ଣ ଧାଇଁଲେ ମାୟାମୋହେ ।
ଡାକନ୍ତି ରହ ରହ ପୋଏ ॥୧୦୯
ତୁଣ୍ଡ ନିକଟେ ଚକ୍ରଧର ।
ଦେଖି ବିଚାରଇ ଅସୁର ॥୧୧୦
ଏହାର ନାମ ବାସୁଦେବ ।
ଏ ତ କଂସକୁ ସଂହାରିବ ॥୧୧୧
ଗର୍ଭେ ପଶିଲେ ମୋର ଯେତେ ।
ବଇରୀ ନୁହନ୍ତି ବାଳୁତେ ॥୧୧୨
ପ୍ରଭୁ ବଇରୀ ଗୋତ୍ରହତ ।
ଏହା ଯେ ନ କରେ ନିପାତ ॥୧୧୩
ତାହାର ଦେହ ଅକାରଣ ।
ସେ ଛାର କିସ ବଡ଼ପଣ ॥୧୧୪
ପ୍ରଭୁ ଝିଙ୍ଗାସ ଯେବେ ଶୁଣି ।
ନାନା ବିଚାରେ ପରିମାଣି ॥୧୧୫
ମାରି ପାରିଲେ ହୋଏ ଭଲ ।
ନିଜ ଶରୀରେ ଯେହୁ ଶଲ ॥୧୧୬
ଏ ମୋର ପ୍ରଭୁର ବଇରୀ ।
ବେନି ସୋଦର ଅଛି ମାରି ॥୧୧୭
ଗର୍ଭେ ପଶିବ ଯେତେବେଳେ ।
ପାଟି ପାଡ଼ିବି ଅବହେଳେ ॥୧୧୮
କୃଷ୍ଣ ଜାଣିଲେ ତା'ର ମନ ।
ବିଚାର କଲେ ଭଗବାନ ॥୧୧୯
ଯେବେ ନ ପଶିବଇଁ ମୁହିଁ ।
ବତ୍ସ ବାଳକ ମୁଁ ନ ପାଇ ॥୧୨୦
ଅସୁର ଉଦର ଅନଳ ।
ତୃଣ ପ୍ରାୟେକ ଗୋପବାଳ ॥୧୨୧
କି ବୁଦ୍ଧି କରିବଇଁ ଆଜ ।
ହେଳାଏ ହରାଇଲି କାର୍ଯ୍ୟ ॥୧୨୨
କେମନ୍ତେ ମାରିବି ଅସୁର ।
ବାଳକେ ହୋଇବେ ବାହାର ॥୧୨୩
କୃଷ୍ଣ ଚାହିଁଲେ ସ୍ଥିର ଦୃଷ୍ଟି ।
ଅସୁର ନ ପାଡ଼ଇ ପାଟି ॥୧୨୪
ଦେବେ ଦେଖନ୍ତି ଶୂନ୍ୟେ ରହି ।
ତୁଣ୍ଡେ ପଶିଲେ ଭାବଗ୍ରାହୀ ॥୧୨୫
ଦେବେ କରନ୍ତି ହାହାକାର ।
ପାଟି ପାଡ଼ିଲା ଅଘାସୁର ॥୧୨୬

Dr. Sudhanshu Sekhar Mishra

ଦେବଙ୍କୁ ଲାଗିଲା ବିଷାଦ ।
ଅସୁର ହୋଇଲା ଆନନ୍ଦ ॥୧୨୭
ସର୍ପ ଉଦରେ ଭଗବାନ ।
ଜାଣିଲେ ଦେବତାଙ୍କ ମନ ॥୧୨୮
ଦାସ ବତ୍ସଳ ନନ୍ଦବଳା ।
ରୁନ୍ଧିଲ ଦାନବର ଗଳା ॥୧୨୯
ଗିଳି ନ ପାରି ସେ ଦଇତ୍ୟ ।
ଶବଦ କଲା ଗର୍ଭଗତ ॥୧୩୦
ପ୍ରାଣ ହୋଇଲା ଛଟପଟ ।
ଫୁଲିଲା ଅସୁରର ପେଟ ॥୧୩୧
ଅସୁର ହେଲା ମହାକାୟ ।
କଣ୍ଠେ ବଢ଼ିଲେ ଦେବରାୟ ॥୧୩୨
ବଢ଼ନ୍ତେ ଗୋବିନ୍ଦ ଶରୀର ।
ତାଳୁ ଫାଟିଲା ଧାଡିକାର ॥୧୩୩
ପ୍ରାଣ ଗମିଲା ଶୂନ୍ୟପଥେ ।
କୃଷ୍ଣ ପଶିଲେ ଗର୍ଭଗତେ ॥୧୩୪
ଅଘାର ଜୀବ ଯିବା କାଳେ ।
ବାଳକ ବତ୍ସା ସବୁ ମଲେ ॥୧୩୫
ଅମୃତ ନୟନେ ଚାହିଁଲେ ।
ସକଳ ଜୀବନ ପାଇଲେ ॥୧୩୬
ଗର୍ଭ ଭିତରେ ଯେତେ ଥିଲେ।
କୃଷ୍ଣଙ୍କୁ ସମସ୍ତେ ଦେଖିଲେ ॥୧୩୭
କୃଷ୍ଣ ବୋଇଲେ ବତ୍ସା ଘେନି।
ବାହାର ହୁଅ ଏହିକ୍ଷଣି ॥୧୩୮
ଉପରେ ଦେଖି ତାଳୁ ଦ୍ୱାର ।
ଗୋପାଳେ ହୋଇଲେ ବାହାର ॥୧୩୯

ଆଗେ ବାଛୁରୀ କଲେ ପାରି ।
ଗର୍ଭେ ରହିଲେ ଦଇତ୍ୟାରି ॥୧୪୦
ଦେଖିଲେ ଗର୍ଭେ କେହି ନାହିଁ।
ବାହାର ହେଲେ ଭାବଗ୍ରାହୀ ॥୧୪୧
ଅଘା ଜୀବନ ଶୂନ୍ୟେ ଗଲା ।
ପୁଣି ଲେଉଟି ଅନାଇଲା ॥୧୪୨
ତାଳୁ ବାହାର ବ୍ରହ୍ମରାଶି ।
କଳାମେଘରୁ ଯେହ୍ନେ ଶଶୀ ॥୧୪୩
ଜୀବନ ଲେଉଟିଲା ବେଗେ ।
ତେଜ ବିରାଜେ ଦଶଦିଗେ ॥୧୪୪
ସ୍ୱର୍ଗେ ଦେଖନ୍ତି ଦେବତାଏ ।
ପଶିଲା ଗୋବିନ୍ଦର ଦେହେ ॥୧୪୫
ଦେଖି ଚକିତ ତିନିପୁର ।
ଦେବେ କରନ୍ତି ଜୟକାର ॥୧୪୬
କୁସୁମ ବରଷିଲେ ଆଣି ।
ବ୍ରାହ୍ମଣେ ବେଦସ୍ତୁତି ଭଣି ॥୧୪୭
ନାଚନ୍ତି ଅପସରୀ ବୃନ୍ଦ ।
ଗନ୍ଧର୍ବେ ଗୀତ ବାଦ୍ୟନାଦ ॥୧୪୮
ଆକାଶେ କଲେ ଜୟେ ଜୟେ ।
ଶୁଭିଲା ବ୍ରହ୍ମଲୋକ ଯାଏ ॥୧୪୯
ବ୍ରହ୍ମାର ସମାଧି ଭାଜିଲା ।
ହଂସ ବାହାନେ ବିଜେ କଲା ॥୧୫୦
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ ।
ସ୍ତୁତି କରଇ ତୋଷମନେ ॥୧୫୧
କୃଷ୍ଣ ମହିମା ବ୍ରହ୍ମା ଦେଖି ।
ତୋଷେ ବୁଜିଲେ ଅଷ୍ଟଆଖି ॥୧୫୨

କୃଷ୍ଣଚରିତ ମନେ ଗୁଣି ।
ଚତୁର ମୁଖେ ବେଦ ଭଣି ॥୧୫୩
ରାଜନ ଶୁଣ ସାବଧାନେ ।
ସଂଶୟ ନ କର ତୁ ମନେ ॥୧୫୪
ମନୁଷ୍ୟ ଦେହେ ଅବତାର ।
ପଞ୍ଚବରଷ ଦାମୋଦର ॥୧୫୫
ଘୋର ଦାନବ ସଂହାରିଲେ ।
ବତ୍ସାବାଳକ ଉଦ୍ଧାରିଲେ ॥୧୫୬
ସଂଶୟ ମନେ ତୁ ନ କର ।
କୃଷ୍ଣେ ପଶିଲା ଅଘାସୁର ॥୧୫୭
ମିତ୍ର ଅଇରି ନାହିଁ ଯା'ର ।
ଭାବକୁ ଥାଇ ନିକଟର ॥୧୫୮
ଯାହାର ପାଦପୂଜା କରି ।
ପ୍ରାଣୀ ତରନ୍ତି ଭବବାରି ॥୧୫୯
ଗୋପୀ ଗୋପାଳ ଯା'ର ସଙ୍ଗେ।
ତରିଲେ ଭବଜଳୁ ରଙ୍ଗେ ॥୧୬୦
ଏ କଥାମାନ କଉତୁକେ ।
ପୋଏ କହିଲେ ବରଷକେ ॥୧୬୧
ଆଜ ମାଇଲେ ସର୍ପ ହରି ।
ଶୁଣି ବିଷାଦ ନରନାରୀ ॥୧୬୨
ଯମୁନା ତୀରେ ଅଘାନାଶ ।
ଦେବଲୋକରୁ ଗଲା ତ୍ରାସ ॥୧୬୩
ଶ୍ରୀକୃଷ୍ଣ ଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ॥୧୬୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଅଘାସୁରବଧୋ
ନାମ ତ୍ରୟୋଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଚତୁର୍ଦ୍ଦଶ ଅଧ୍ୟାୟ

ସୂତ ଉବାଚ

ଅଘା ଦଇତ୍ୟ ନାଶ ଶୁଣି ।
ପରୀକ୍ଷ ମନେ ମନେ ଗୁଣି ॥୧
କୃଷ୍ଣ ଚରିତ ଅଗୋଚର ।
ଦେଖି ଚକିତ ବେଦବର ॥୨
ସନ୍ଦେହ ବାକ୍ୟ ଶୁଣି ରାୟେ ।
ନମଇଁ ଶୁକମୁନି ପାୟେ ॥୩

ରାଜା ଉବାଚ

ଭୋ ମୁନି ତୁ ତ ପୁଣ୍ୟଚେତା ।
ହରିବ ଏ ମୋହର ଚିନ୍ତା ॥୪
ସନ୍ଦେହ ଫେଡ଼ିବା ମୋହର ।
ମାୟା କି କଲେ ଚକ୍ରଧର ॥୫
ସର୍ପର ଗର୍ଭୁ ଦାମୋଦର ।
ତାରିଲେ ବାଛୁରୀ କୁମର ॥୬
ମାତାଙ୍କ ଆଗେ ଗୋପସୁତେ ।
କହିଲେ ବରଷକ ଅନ୍ତେ ॥୭
ସର୍ପ ଆମ୍ଭଙ୍କୁ ଗିଳିଥିଲା ।
ଆଜ ଗୋ ଶ୍ରୀକୃଷ୍ଣ ରଖିଲା ॥୮
ତୁମ୍ଭର ଉଦର ଶୀତଳ ।
କଲ୍ୟାଣ ନେଉ ନନ୍ଦବାଳ ॥୯
ଏମନ୍ତ ବୋଲିଣ କୁମରେ ।
କହିଲେ ଯେ ଯାହାର ଘରେ ॥୧୦
ଆବର କଥାଏ ସଂଶୟ ।
ଭୋ ମୁନିବର ମୋତେ କହ ॥୧୧
ଅଘା ଜୀବନ ଦେହୁ ଛାଡ଼ି ।
ଗଗନପଥେ ଥିଲା ଉଡ଼ି ॥୧୨
ସେ କେହ୍ନେ ବାହୁଡ଼ି ଅଇଲା ।
ଗୋବିନ୍ଦ ଶରୀରେ ପଶିଲା ॥୧୩
ଏ ବେନି କଥା ଅଗୋଚର ।
ବିଚାରି କହ ମୁନିବର ॥୧୪
ଏ ବଡ଼ ସଂଶୟ ମୋ' ଚିତ୍ତେ ।
ଭୋ ମୁନି ନ ଯାଇ ପରତେ ॥୧୫
ବରଷେ ଥିଲେ ପୋଏ କାହିଁ ।
କିବା ମୋହିଲେ ଭାବଗ୍ରାହୀ ॥୧୬
ଏ କଥା ମୋତେ କଉତୁକ ।
କାହିଁ ବଞ୍ଚିଲେ ବରଷକ ॥୧୭
ମୋର ଜୀବନ ହେଉ ସୁଖ ।
ତୋ ବାଣୀ ଶୁଣି ଯାଉ ଦୁଃଖ ॥୧୮
କ୍ଷତ୍ରିୟ ବଂଶେ ମୁହିଁ ଜାତ ।
ଧନ୍ୟ ମୋହର ତାତ ମାତ ॥୧୯
ହରିଚରିତ ସୁଧାଜଳ ।
ତୋ ମୁଖୁଁ ଗଳୁଛି ନିର୍ମଳ ॥୨୦
ସେଜଳେ ଧୋଇ ମୋର ଚିତ୍ତ ।
ମରଣେ ହୋଇବି ନିଶ୍ଚିନ୍ତ ॥୨୧

ସୂତ ଉବାଚ

ଶୁଣି ପରୀକ୍ଷ ବାଣୀ କର୍ଣ୍ଣେ ।
ମୁନି ବସିଲେ ଯୋଗଧ୍ୟାନେ ॥୨୨
ଆନନ୍ଦେ ପୁଲକିତ ହୋଇ ।
ଗୋବିନ୍ଦ ପାଦେ ଚିତ୍ତ ଦେଇ ॥୨୩
ବେନି ଲୋଚନୁ ବହେ ନୀର ।
ବୋଲନ୍ତି ଶୁଣ ନୃପବର ॥୨୪

ଶୁକ ଉବାଚ

ହରି ସେବକ ଶିରୋମଣି ।
ଶୁଣ ଶ୍ରୀଭାଗବତ ବାଣୀ ॥୨୫
ସାଧୁଙ୍କ ମଧ୍ୟେ ତୁହି ସାଧୁ ।
ତରିବୁ ଭବ ପରମାଦୁ ॥୨୬
ଯେତେ କହିଲି ଭାଗବତ ।
ତୋଷ ନୋହିଲା ତୋର ଚିତ୍ତ ॥୨୭
ତୁ ପୁଣ୍ୟ ପୁରୁଷ ବିବେକ ।
ହେଲେ ଜିଣିଲୁ ତିନିଲୋକ ॥୨୮
ସାଧୁଜନଙ୍କର ଏ ଗତି ।
ଯେସନେ ବିଟପୀ ଯୁବତୀ ॥୨୯
ସ୍ୱାମୀ ସେବାରେ ରହି ପୁଣ ।
ବିଟପେ ଦେଇଥାଇ ମନ ॥୩୦
ସଂସାରେ ଥାଇ ଯେ ଏମନ୍ତ ।
ନିକଟେ ପାଇ ସେ ଅନନ୍ତ ॥୩୧
ଏବେ ତୁ ଶୁଣ ସ୍ଥିର ହୋଇ ।
ଭାବ ସେବକେ ଏହା କହି ॥୩୨
ଯାହା ତୁ ପୁଚ୍ଛିଲୁ ନୃପତି ।
ବାଳୁତମାନଙ୍କର ଗତି ॥୩୩
ଅଘାର ଜୀବନ ମୋକ୍ଷଣ ।
ଆଗ କହିବା ତାହାଶୁଣ ॥୩୪
ପଛେ କହିବା ବନଭୋଜା ।
ଶୁଣ ତୁ ସୋମବଂଶୀ ରାଜା ॥୩୫
ଅଘାର ମୁଖେ ଦେବହରି ।
କଣ୍ଠରେ ରହିଲେ ଆବୋରି ॥୩୬
ତାଳୁ ଫାଟିଣ ପ୍ରାଣଗଲା ।
ଶ୍ରୀକୃଷ୍ଣ ମୁଖ ନ ଦେଖିଲା ॥୩୭
ମନେ ବିଚାର କଲା ଜୀବ ।
ସଂସାର ସୁଖ ପଦ୍ମନାଭ ॥୩୮
ଏହାର ଶ୍ରୀଚରଣ ଧରି ।
ଭବୁ ଶଙ୍କର ଗଲେ ତରି ॥୩୯
ମୋହର ଆନେ କିସ କାର୍ଯ୍ୟ ।
ଏ ସେ ଦେବାଧି ଦେବରାଜ ॥୪୦
ଏତେକ ବିଚାରି ଲେଉଟି ।
ଗର୍ଭେ ପଶିଲା ତାଳୁ ଫାଟି ॥୪୧
ଚାହିଁଲା ଶ୍ରୀକୃଷ୍ଣର ମୁଖ ।
ତେଜିଲା ଭବ ଭୟ ଦୁଃଖ ॥୪୨
ପ୍ରାଣ ପବନ ପଞ୍ଚଭୂତ ।
ଅଖଣ୍ଡ ସୁଖ ଜ୍ଞାନତତ୍ତ୍ୱ ॥୪୩
ଶ୍ରୀହରି ଶରୀରେ ମିଶିଲା ।
ନିର୍ବାଣ ମୁକ୍ତି ସେ ଲଭିଲା ॥୪୪
ଅର୍ଦ୍ଧ ଆକାଶେ ସୁରଗଣ ।
ଦେଖିଲେ ଅଘାର ମୋକ୍ଷଣ ॥୪୫
ବ୍ରହ୍ମ ଲୋକରୁ ବ୍ରହ୍ମାଆସି ।
ସନକ ଆଦି ବ୍ରହ୍ମଋଷି ॥୪୬

Dr. Sudhanshu Sekhar Mishra

ଦେଖିଣ ରିପୁ ମୋକ୍ଷ ଗତି ।
କୃଷ୍ଣଙ୍କୁ ପ୍ରଶଂସା କରନ୍ତି ॥୪୭
ବସିଣ ହଂସ ବାହାନରେ ।
ଚତୁର୍ବଦନେ ସ୍ତୁତି କରେ ॥୪୮
ପିତା ଦେଖିଲେ ବୃନ୍ଦାବନ ।
କାଳିନ୍ଦୀ ସକଳ ପୁଲୀନ ॥୪୯
ମନେ ବିଚାର ବେଦପତି ।
ଦେଖିବେ ପୁଅଙ୍କର ଗତି ॥୫୦
ଅନ୍ତର ହୋଇଣ ରହିଲେ ।
ଶୁଣ ରାଜନ ଏହା ଭଲେ ॥୫୧
ମରଣୁଁ ତରି ଗୋପବାଳେ ।
ମିଳିଲେ ଯମୁନାର କୂଳେ ॥୫୨
ନିର୍ମଳ ଦେଖି ବାଲିକୁଦ ।
ଶ୍ରୀକୃଷ୍ଣ ହୋଇଲେ ଆନନ୍ଦ ॥୫୩
ଗୋପାଳ ପୁଅଙ୍କୁ ଅନାଇଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୫୪
ଦେଖ ସୁସଞ୍ଚ ବାଲିକୁଦ ।
ଚାହାନ୍ତେ ଲାଗଇ ଆନନ୍ଦ ॥୫୫
ନିର୍ମଳ ଯମୁନାର ଜଳ ।
ପବନ ବହଇ ଶୀତଳ ॥୫୬
ନାନା କୁସୁମେ ଜଳ ସ୍ଥଳ ।
ସୁବାସ ବହେ ପରିମଳ ॥୫୭
ଶୁକ କୋକିଳ ନାଦ ଭଣି ।
ଭ୍ରମରେ ମନୋହର ଧ୍ୱନି ॥୫୮
ନବ ପଲ୍ଲବ ତରୁଗଣ ।
ମୟୂର କଣ୍ଠନାଦ ଶୁଣ ॥୫୯
ଏଠାରେ ହୁଅ ଏକମେଳ ।
ବୋଲନ୍ତି ପ୍ରଭୁ ଆଦିମୂଳ ॥୬୦
ବତ୍ସା କରନ୍ତୁ ଜଳପାନ ।
ସକଳେ କରିବା ସ୍ନାହାନ ॥୬୧
ଦେଖ କୋମଳ ଘାସ ତୀରେ ।
ବାଛୁରୀ ଚରନ୍ତୁ ସଧୀରେ ॥୬୨
ଅନ୍ନ ଭୋଜନ ବସି କର ।
ପଞ୍ଚପରାଣ ହେଉ ସ୍ଥିର ॥୬୩
ବେଳ ହିଁ ହେଉଛି ଉଛୁର ।
କ୍ଷୁଧାଏ ଦେହ ଥରହର ॥୬୪

ମରୁଣୁଁ ଉବୁରିଲ ଆଜି ।
ପେଟ ପୁରୋଇ ଅନ୍ନଭୁଞ୍ଜି ॥୬୫
ତୁମ୍ଭମାନଙ୍କୁ ଯେ ଯୋଗାଇ ।
ହସି ବୋଲନ୍ତି ଭାବଗ୍ରାହୀ ॥୬୬
କୃଷ୍ଣର ବୋଲ ଶୁଣି ପୋଏ ।
ହରଷ ହୋଇଲେ ଥୋକାଏ ॥୬୭
ଚାହିଁଲେ କୃଷ୍ଣଙ୍କୁ ଆନନ୍ଦେ ।
ଅନ୍ନ ଥୋଇଲେ ବାଲିକୁଦେ ॥୬୮
ବତ୍ସାଙ୍କୁ ଜଳ ପିଆଇଲେ ।
କୋମଳ ଘାସେ ଛାଡ଼ିଦେଲେ ॥୬୯
ସାରିଲେ ଗୋପ ପୋଏ ସ୍ନାନ ।
ସନ୍ତୋଷେ କଲେ ଜଳପାନ ॥୭୦
ତୀରେ ଉଠିଲେ ଧାଡିକାରେ ।
ଅନ୍ନ ଫେଇଲେ ଯେ ଯାହାରେ ॥୭୧
କେ ବୃକ୍ଷୁ ପତ୍ର ତୋଳି ଆଣି ।
ବିଷ୍ଣୁ ସୁମରି ସିଞ୍ଚେ ପାଣି ॥୭୨
ପାଷାଣ ଆଣନ୍ତି କେ ଯାଇ ।
ଅନ୍ନ ବାଢ଼ନ୍ତି ତାହା ଧୋଇ ॥୭୩
ବସ୍ତ୍ର ପାଡ଼ନ୍ତି ପୀତ ନୀଳ ।
କେ ବୃକ୍ଷୁ ଆଣନ୍ତି ବକଳ ॥୭୪
ଯେ ଯାହା ମତେ ଅନ୍ନ ଥୋଇ ।
କୃଷ୍ଣ ବୋଲନ୍ତି ତାହା ଚାହିଁ ॥୭୫
ଅନ୍ନ ଦେଖାଅ ସବୁ ମୋତେ ।
ବ୍ୟଞ୍ଜନ ଆଣିଛ କେ କେତେ ॥୭୬
ଶୁଣି ସାନନ୍ଦ ମନେ ପୋଏ ।
ମଧ୍ୟେ ବସିଲେ ଦେବରାୟେ ॥୭୭
ଯେ ଯାହା ଅନ୍ନପୁଡ଼ା ଫେଡ଼ି ।
କହନ୍ତି ବେନିକର ଯୋଡ଼ି ॥୭୮
ଦେଖ ଶ୍ରୀକୃଷ୍ଣ ମୋର ଭାତ ।
ବ୍ୟଞ୍ଜନ ଆଣିଛି ବହୁତ ॥୭୯
ବଗଡ଼ା ଅନ୍ନ କେ ଆଣିଲା ।
ବେଲ କରଡ଼ି ଲୁଣ ଅଁଳା ॥୮୦
କେ ବୋଲେ ଦଧିଅନ୍ନ ମୋର ।
ନିର୍ମଳ ଦେଖ ଦାମୋଦର ॥୮୧
କେ ବୋଲେ ସରୁଭାତ ମୁହିଁ ।
ଆଣିଛି ଖାଇବାର ପାଇଁ ॥୮୨

କେ ବୋଲେ ତୁଛା ଅନ୍ନ ମୋର।
ଭୁଞ୍ଜିବି ପଛେ ଗୋଳି ନୀର ॥୮୩
ଏମନ୍ତେ ନେଇ ଦେଖାଇଲେ ।
ବେଢ଼ି ଗୋବିନ୍ଦଙ୍କୁ ବସିଲେ ॥୮୪
ଶ୍ରୀକୃଷ୍ଣ ଭୁଞ୍ଜିବାର ଆଶେ ।
ବେଣୁ ଖୋଷିଲେ ବାମପାଶେ ॥୮୫
କାଖେ ଯାକିଲେ ଶିଙ୍ଗା ବେତ ।
ଅନ୍ନ ପୁଡ଼ାଏ ବାମହସ୍ତ ॥୮୬
ଅଙ୍ଗୁଳି ସନ୍ଧିରେ ଅଏଁଳା ।
ହୃଦେ ଲମ୍ବଇ ବନମାଳା ॥୮୭
ପୁଅଙ୍କୁ ବୋଲେ ଭାବଗ୍ରାହୀ ।
ବସ ମଣ୍ଡଳାକାର ହୋଇ ॥୮୮
ତୁମ୍ଭଙ୍କୁ ପରଷଇ ଅନ୍ନ ।
ନିଶ୍ଚିନ୍ତେ କର ହୋ ଭୋଜନ ॥୮୯
ଶ୍ରୀକୃଷ୍ଣ ବୋଲେ ବ୍ରଜପୋଏ ।
ବସି ମଣ୍ଡଳାକାର ହୋଏ ॥୯୦
ସହସ୍ରେ କେଶର କମଳ ।
ଯେହ୍ନେ ବେଷ୍ଟିତ ପଦ୍ମଦଳ ॥୯୧
ଶୋଭା ପାଇଲା ବୃନ୍ଦାବନ ।
ହରଷେ କରନ୍ତି ଭୋଜନ ॥୯୨
ସକଳ ପୁଅଙ୍କୁ ପରଷି ।
ମଧ୍ୟେ ବସିଲେ ବ୍ରହ୍ମରାଶି ॥୯୩
କୃଷ୍ଣର ଗୋଷ୍ଠୀ ପଦ୍ମପ୍ରାୟେ ।
ସ୍ୱର୍ଗେ ଦେଖନ୍ତି ଦେବତାଏ ॥୯୪
ବିବିଧ ମତେ ପରିହାସ ।
ଗୋପ କୁମରେ ହସ ହସ ॥୯୫
ଦିବ୍ୟ ବ୍ୟଞ୍ଜନ ମୁଖେ ଭରି ।
ବୋଲନ୍ତି ଶୁଣ ନରହରି ॥୯୬
ଏ ସ୍ୱାଦ ଅଧିକ ମୋହର ।
ଗ୍ରାସେ ଭୋଜନ ତୁମ୍ଭେ କର ॥୯୭
ଶ୍ରୀକୃଷ୍ଣ ଅଧରେ ଦିଅନ୍ତି ।
ଏକକୁ ଅରେକ କହନ୍ତି ॥୯୮
ଆନନ୍ଦ ଗୋପାଳଙ୍କ ମନ ।
ହରଷେ କରନ୍ତି ଭୋଜନ ॥୯୯
ଯଜ୍ଞ ଭୋକତା ବାଳକେଳି ।
ଦେଖନ୍ତି ସ୍ୱର୍ଗଲୋକେ ମିଳି ॥୧୦୦

Dr. Sudhanshu Sekhar Mishra

ମଧ୍ୟେ ବସାଇ ପୀତବାସ ।
ବାଳକେ ହୁଅନ୍ତି ହରଷ ॥୧୦୧
ଗୋବିନ୍ଦ କ୍ରୀଡ଼ାରସ ରଙ୍ଗେ ।
ଗୋପାଳ ବାଳକଙ୍କ ସଙ୍ଗେ ॥୧୦୨
ହରଷେ ହୋଇ ମତ୍ତଭୋଳ ।
ଏ କିସ ମଦନ ଗୋପାଳ ॥୧୦୩
ଅନ୍ନ ଲୋଚିଏ ଘେନି କରେ ।
ଦିଅନ୍ତି ପୁଅଙ୍କ ହସ୍ତରେ ॥୧୦୪
ସୋଏ ତା 'ଘେନି ଯା'ନ୍ତି ଦୂରେ ।
ଭୁଞ୍ଜନ୍ତି ଲତା ଅଭ୍ୟନ୍ତରେ ॥୧୦୫
ହସି ବୋଲନ୍ତି ପୁଣି ଆସି ।
ବୋଲନ୍ତି ଦେବ ବ୍ରହ୍ମରାଶି ॥୧୦୬
କେହୁ ବୋଲନ୍ତି ମୋତେ ଦିଅ ।
ହରଷ ନାଦ ଗହ ଗହ ॥୧୦୭
ପୁଣି ଦଅନ୍ତି ନନ୍ଦବାଳ ।
ଭୁଞ୍ଜନ୍ତି ନାଚନ୍ତି ଗୋପାଳ ॥୧୦୮
ହରି ଚହଳ ଘନ ଘନ ।
ଭୁଞ୍ଜନ୍ତି ପ୍ରଭୁ ଭଗବାନ ॥୧୦୯
ଏମନ୍ତେ ଅବଶେଷେ ଭୋଜି ।
ନୃତ୍ୟ କରନ୍ତି ମନମଜ୍ଜି ॥୧୧୦
ସ୍ୱର୍ଗେ ଦେଖନ୍ତି ଦେବବୃନ୍ଦ ।
ଗୋପାଳ ପୁଅଙ୍କ ଆନନ୍ଦ ॥୧୧୧
ବ୍ରହ୍ମା ଯେ ଦେଖୁଥିଲେ ଶୂନ୍ୟେ ।
ଆସି ମିଳିଲେ ବୃନ୍ଦାବନେ ॥୧୧୨
ଦେଖଣ ଗୋବିନ୍ଦର ଗତି ।
ମନେ ଚିନ୍ତଇ ବେଦପତି ॥୧୧୩
ଅଳପ ଦିନେ ଭଗବାନ ।
ଗୋକୁଳେ ପଡ଼ି ହେଲେ ଭ୍ରମା॥୧୧୪
ଆମ୍ଭାକୁ ନ ଚିହ୍ନଇ କିଛି ।
ଗୋପାଳମେଳେ ଭୁଞ୍ଜୁ ଅଛି ॥୧୧୫
ଏହାର ଅବିବେକ ପଣ ।
କେହ୍ନେ ବୋଲାଇ ନାରାୟଣ॥୧୧୬
ଏ କଥା ଜାଣିବା କେମନ୍ତେ ।
ସନ୍ଦେହ ଲାଗିଲା ତ ମୋତେ ॥୧୧୭
ଦେଖିଲି ଅସୁର ମୋକ୍ଷଣ ।
ଏବେ ଭୁଞ୍ଜଇ ପୁଡ଼ା ଅନ୍ନ ॥୧୧୮

ପୁଅଙ୍କ ଉଚ୍ଛିଷ୍ଟ ବ୍ୟଞ୍ଜନ ।
ଆପଣେ କରଇ ଭୋଜନ ॥୧୧୯
ଯେବେ ଅଟଇ ଚକ୍ରଧର ।
ମୋର ମାୟାରୁ ହେଉ ପାର ॥୧୨୦
ଏହାକୁ ମାୟା ମୁଁ କରିବି ।
ବତ୍ସା ବାଳକ ହରି ନେବି ॥୧୨୧
ଦେଖିବି ଏହାର ବିକଳ ।
କେମନ୍ତେ ରଖିବ ଗୋକୁଳ ॥୧୨୨
ଏମନ୍ତ ବିଚାରଇ ବସି ।
ଅନ୍ନ ଭୁଞ୍ଜନ୍ତି ବ୍ରହ୍ମରାଶି ॥୧୨୩
କୋମଳ ତୃଣ ଚରି ଚରି ।
ଗହନେ ପଶିଲେ ବାଛୁରୀ ॥୧୨୪
ମାୟାରେ ବ୍ରହ୍ମା ତାହା ହରି ।
ରଖିଲେ କମଣ୍ଡଳେ ଭରି ॥୧୨୫
ଗୋପାଳେ ବତ୍ସା ନ ଦେଖିଲେ ।
ଅନ୍ନଭୋଜନ ଉପେକ୍ଷିଲେ । ॥୧୨୬
ଚକିତେ ଚଉଦିଗେ ଚାହିଁ ।
ବୋଲନ୍ତି କୃଷ୍ଣଙ୍କୁ ଅନାଇଁ ॥୧୨୭
ବତ୍ସାଏ ଗଲେ କେଉଁ କତି ।
ଶୁଣିମା ପ୍ରଭୁ ଦାଶରଥି ॥୧୨୮
ନିକଟେ ବତ୍ସା ନ ଦିଶଇ ।
ଯେଝାରେ ଆଣିବୁ ଅଡ଼ାଇ ॥୧୨୯
ଶୁଣି ବୋଲନ୍ତି କୃଷ୍ଣ ହସି ।
ମୁହିଁ ଆଣିବି ବନେ ପଶି ॥୧୩୦
ସମସ୍ତେ ଏହିଠାରେ ଥାଅ ।
ଅନ୍ନ ବ୍ୟଞ୍ଜନ ସବୁ ଖାଅ ॥୧୩୧
ଆମ୍ଭେ ଆସିବୁ ବତ୍ସା ଲୋଡ଼ି ।
ବୋଲିଣ ଘେନିଲେ ଲଉଡି ॥୧୩୨
ସୁଖେ ଭୋଜନ ପାନ କର ।
କହି ଚଳିଲେ ବେଣୁଧର ॥୧୩୩
ପଞ୍ଚଗରାସ ତୁଣ୍ଡେ ଭରି ।
ଅନ୍ନ ପୁଡ଼ାଏ କରେ ଧରି ॥୧୩୪
ଗିରି କାନନ ନଦୀତୀରେ ।
ଖୋଜନ୍ତି ଝାଳ ଜରଜରେ ॥୧୩୫
କୃଷ୍ଣେ ନ ଦେଖି ବେଦପତି ।
ମିଳିଲେ କୁମରଙ୍କ କତି ॥୧୩୬

ମାୟାର ବଳେ ଜ୍ଞାନ ହରି ।
ପୁଅଙ୍କୁ କମଣ୍ଡଳେ ଭରି ॥୧୩୭
ତକ୍ଷଣେ ଘେନିଣ ଚଳିଲେ ।
ପର୍ବତ କ୍ରୋଟରେ ରଖିଲେ ॥୧୩୮
ବୃନ୍ଦାବନକୁ ଅନାଇଲେ ।
ନିଜ ଭୁବନେ ବିଜେ କଲେ ॥୧୩୯
ବତ୍ସା ନ ପାଇ ବନମାଳୀ ।
ପୁଣି ଭୋଜନ ସ୍ଥାନେ ମିଳି ॥୧୪୦
ଦେଖିଲେ ଗୋପପୋଏ ନାହିଁ ।
ଚକିତେ ଚଉଦିଗେ ଚାହିଁ ॥୧୪୧
ବାଳକେ କେଣେ ଗଲେ ବୋଲି ।
ଡାକନ୍ତି ଯେଝା ନାମ ଧରି ॥୧୪୨
ବତ୍ସା ବାଳକେ ବନେ ଖୋଜି ।
ଡାକନ୍ତି ଗତିପଥ ହେଜି ॥୧୪୩
ବୋଲନ୍ତି କିସ ବିପରୀତ ।
କେ ନେଲା ବତ୍ସା ଗୋପସୁତ॥୧୪୪
ବେଳ ହୋଇଲା ଅବସାନ ।
ଗୋରୁଏ ମିଳିଲେ ସଦନ ॥୧୪୫
ବତ୍ସା ନ ଦେଖି ଗାଈମାନେ ।
ଧାଇଁ ଲୋଡ଼ନ୍ତି ନାନା ସ୍ଥାନେ॥୧୪୬
ଗୋପାଳେ ରଖି ନ ପାରନ୍ତି ।
ଗୋରୁଏ ବନକୁ ଧାମନ୍ତି ॥୧୪୭
ଗୋରୁଙ୍କ ଦେଖିଣ ବିକଳ ।
ଗୋପାଳେ ପାଡ଼ନ୍ତି ଚହଳ ॥୧୪୮
ସହି ନ ପାରିଲାକ ନନ୍ଦ ।
ଡାକଇ ଗୋବିନ୍ଦ ଗୋବିନ୍ଦ ॥୧୪୯
ରାମ ଗୋବିନ୍ଦ ବନମାଳୀ ।
ନନ୍ଦ ଡାକିଲା ନାମ ଧରି ॥୧୫୦
ଡାକଇ ବୃନ୍ଦାବନେ ପଶି ।
ବତ୍ସା ନ ପାଇ ବ୍ରହ୍ମରାଶି ॥୧୫୧
ଧ୍ୟାନେ ନିରୋପି ଦେବେ ଚାହିଁ ।
ଜାଣିଲେ ପ୍ରଭୁ ଭାବଗ୍ରାହୀ ॥୧୫୨
ବିଧାତା ମୋତେ ମାୟା କରି ।
ବତ୍ସାବାଳକେ ନେଲା ହରି ॥୧୫୩
ମୋତେ ଦେଖାଇଲା ସ୍ୱଭାବ ।
ଆଜ ଗଞ୍ଜିବି ତା'ର ଗର୍ବ ॥୧୫୪

Dr. Sudhanshu Sekhar Mishra

ଗୋପ ଯୁବତୀଙ୍କର ହିତେ ।
ବ୍ରହ୍ମାଙ୍କୁ ଗଞ୍ଜିବା ନିମନ୍ତେ ॥୧୫୫
ଉଭୟ ରୂପ ଅଙ୍ଗୀକାର ।
ଜଗତନାଥ ମାୟାଧର ॥୧୫୬
ନିଜ ସ୍ୱାଭାବ ସୁମରିଲେ ।
ଆମ୍ଭେଟି ଈଶ୍ୱର ଜାଣିଲେ ॥୧୫୭
ବ୍ରହ୍ମା ଶଙ୍କର ମୋର ଦାସ ।
ସ୍ୱର୍ଗ ଭୁବନ ଚତୁର୍ଦ୍ଦଶ ॥୧୫୮
ଆମ୍ଭେ ତ ଅଟୁ ପ୍ରଜାପତି ।
ସଂସାର ସଂହାରଣ ନୀତି ॥୧୫୯
ମୋହର ସଞ୍ଚିଲା ଏ ସର୍ବ ।
କିପାଁ ମାଗିବି କଲା ଗର୍ବ ॥୧୬୦
ଦେବେ କରିବେ ଉପହାସ ।
ମାଗନ୍ତେ ନାହିଁ ପଉରୁଷ ॥୧୬୧
କୋଟି ବ୍ରହ୍ମାଣ୍ଡ ଗର୍ଭୁ ଜାତ ।
ବସ୍ସା ବାଳକ କେତେ ମାତ୍ର ॥୧୬୨
ମାୟା ଭିଆଣ ଜଗନ୍ନାଥ ।
ଗର୍ଭୁ ସକଳ କଲେ ଜାତ ॥୧୬୩
ଏମନ୍ତେ ପ୍ରଭୁ ନରହରି ।
ବତ୍ସାବାଳକ ରୂପଧରି ॥୧୬୪
ଯେତେ ବାଛୁରୀ ଗୋପସୁତ ।
କୃଷ୍ଣ ଦେହରୁ ହେଲେ ଜାତ ॥୧୬୫
ଯାହାର ଯେମନ୍ତ ସ୍ୱଭାବ ।
ମାୟାଭିଆଣ ପଦ୍ମନାଭ ॥୧୬୬
ବିବିଧ ବନ୍ଧେ କାଛା ପିନ୍ଧି ।
ଚୂଳେ ମୟୂରପୁଚ୍ଛ ବାନ୍ଧି ॥୧୬୭
ଗୁଞ୍ଜାରାପାଟି ଫୁଲମାଳେ ।
ରତ୍ନକୁଣ୍ଡଳ ଗଣ୍ଡସ୍ଥଳେ ॥୧୬୮
କର ପୟର ଶିକା ଡ଼ାଳି ।
କଣ୍ଠେ ମୁକୁତା ବିଦମାଳୀ ॥୧୬୯
ବେଣୁ କଠାଉ ଶିଙ୍ଗା ବେତ ।
ଯାହାର ସ୍ୱରୂପ ଯେମନ୍ତ ॥୧୭୦
ଯାହାର ବଚନ ଯେମନ୍ତ ।
ରୂପ ବୟସ ସେହି ମତ ॥୧୭୧
ଯେ ଯେତେ ଉଚ୍ଚ ସଞ୍ଚ ସ୍ଥୂଳ ।
ଯାହାର ଯେମନ୍ତ କୁନ୍ତଳ ॥୧୭୨

ଓଁକାରୁ ଯେହ୍ନେ ବେଦ କ୍ଷରି ।
ସର୍ବ-ସ୍ୱରୂପ ନରହରି ॥୧୭୩
ରୂପୁଁ ଅନେକ ରୂପ କଲେ ।
ବିଶ୍ୱ-ପ୍ରପଞ୍ଚ ଦେଖାଇଲେ ॥୧୭୪
ବେଳ ହୋଇଲା ଅବସାନ ।
ଗୋପେ ଚଳିଲେ ଭଗବାନ ॥୧୭୫
ଆପେ ବାଛୁରୀ ଆପେ ପୋଏ ।
ଆମ୍ଭାଙ୍କୁ ଆପଣେ ଅଡ଼ାଏ ॥୧୭୬
ପ୍ରବେଶ ଗୋପପୁର ଲାଗେ ।
ପୋଏ ନାଚନ୍ତି ନାନାରଙ୍ଗେ ॥୧୭୭
ମୁରଲୀ ଶୁଣି ଗୋପନାରୀ ।
ପାଛୋଟି ଗଲେ ଆଗସରି ॥୧୭୮
ପୁତ୍ରଙ୍କୁ ଦେଖି ସ୍ନେହଭରେ ।
ହୃଦେ ଚାପିଲେ ଟୋଳି କରେ ॥୧୭୯
ଯେଝା ବାଳକ ଧରି କୋଳେ ।
ସ୍ନେହ କରନ୍ତି କୁତୂହଳେ ॥୧୮୦
ଆନନ୍ଦ କେ ପାରିବ କହି ।
ସ୍ତନ୍ୟ ପିଆନ୍ତି ଚୁମ୍ବ ଦେଇ ॥୧୮୧
ଯଶୋଦା ରୋହିଣୀ ମିଳିଲେ ।
ରାମ-କୃଷ୍ଣଙ୍କୁ କୋଳ କଲେ ॥୧୮୨
ଆନନ୍ଦେ ପିଆବନ୍ତି ସ୍ତନ୍ୟ ।
ଶ୍ରୀମୁଖେ ଦିଅନ୍ତି ଚୁମ୍ବନ ॥୧୮୩
ବୋଲନ୍ତି ଲୁଚିଯିବି ତୋର ।
ଆଜ ତ ବନସ୍ତେ ଉଛୁର ॥୧୮୪
କୃଷ୍ଣ ବୋଲନ୍ତି ଶୁଣ ମାଏ ।
ଗଲୁଁ ଥୋକାଏ ଦୂର ଯାଏଁ ॥୧୮୫
ତେଣୁ ସେ ହୋଇଲା ଉଛୁର ।
ଭାବେ ଭଣିଲେ ଚକ୍ରଧର ॥୧୮୬
ଗୋବତ୍ସା ଗଲେ ଯେଝା ଘରେ ।
ଗୋପୀ ମିଳିଲେ ନିଜ ପୁରେ ॥୧୮୭
ପୁତ୍ରଙ୍କୁ ମାଜଣା କରାଇ ।
ଦଧି-ଲବଣି ଅନ୍ନ ଦେଇ ॥୧୮୮
ଯେଝାରେ କରାଇ ଶୟନ ।
ଆନନ୍ଦ ଗୋପୀଙ୍କର ମନ ॥୧୮୯
ରାତ୍ରେ ଅଇଲେ ବନୁଁ ଗାଈ ।
ହମ୍ବାଳି ଛାଡ଼ିଣ ବୋବାଇ ॥୧୯୦

କୋଳେ ଆବୋରି ବସ୍ସା ଲେହି ।
ସ୍ତନ ପିଆନ୍ତି ସ୍ନେହ ବହି ॥୧୯୧
କି ପୁଣ୍ୟ ଗୋପୀଜନଙ୍କର ।
କୋଳେ ଧଇଲେ ଚକ୍ରଧର ॥୧୯୨
ପୂର୍ବେ ଅଛନ୍ତି ତପ କରି ।
ସ୍ତନ୍ୟ ପିଆନ୍ତି ନରହରି ॥୧୯୩
ପୁଣ୍ୟ କେ କହୁ ତାହାଙ୍କର ।
ଯାହା ନ ପା'ନ୍ତି ବ୍ରହ୍ମା ହର ॥୧୯୪
ଏ କଥା ନଜାଣନ୍ତି କେହି ।
ମାୟା ଭିଆଣ ଭାବଗ୍ରାହୀ ॥୧୯୫
ନିତ୍ୟେ ଚରାନ୍ତି ବସ୍ସା ବନେ ।
ଗୋପେ ମିଳନ୍ତି ରାତ୍ରମାନେ ॥୧୯୬
ଏମନ୍ତେ ପୂରିଲା ବରଷ ।
ଶୁଣ ରାଜନ କୃଷ୍ଣ ରସ ॥୧୯୭
ଦିନେକ ରାମ ଘେନି ସଙ୍ଗେ ।
ବନେ ମିଳିଲେ ଶିରୀରଙ୍ଗେ ॥୧୯୮
ପର୍ବତ ନାମ ଗୋବର୍ଦ୍ଧନ ।
କାଳିନ୍ଦୀତୀରେ ବୃନ୍ଦାବନ ॥୧୯୯
ଗୋପକୁମର ଘେନି ହରି ।
ସେ ବନେ ଚରାନ୍ତି ବାଛୁରୀ ॥୨୦୦
ପର୍ବତେ ଗାଈ ଚରୁଥିଲେ ।
ତଳେ ବସ୍ସାଙ୍କୁ ଅନାଇଲେ ॥୨୦୧
ଦେଖି ଧାଇଁଲେ ଅତି ଖରେ ।
ତଳେ ମିଳିଲେ ସ୍ନେହଭରେ ॥୨୦୨
ଉର୍ଦ୍ଧ୍ୱେ ଲାଙ୍ଗୁଳ-ମୁଖ ହୋଇ ।
ପର୍ବତୁଁ ପଡ଼ନ୍ତେ ଓହ୍ଲାଇ ॥୨୦୩
ଗୋପାଳେ ଓଗାଳିଲେ ଆସି ।
କରେ ଲଉଡ଼ିମାନ ତ୍ରାସି ॥୨୦୪
ତା'ଙ୍କ ବାରଣ ନ ମାନିଲେ ।
ପର୍ବତ ତଳେଣ ମିଳିଲେ ॥୨୦୫
ଆବୋରି ଯେ ଯାହାର ବସ୍ସା ।
ହମ୍ବାଳି ଲିହିବାରେ ଇଚ୍ଛା ॥୨୦୬
ସ୍ତନ୍ୟ ପିଆନ୍ତି ଦେହ ଲିହି ।
ହୁଙ୍କାର ନାଦେ ସର୍ବ ଗାଈ ॥୨୦୭
ଓଗାଳି ନ ପାରି ଗୋପାଳେ ।
ଲଜ୍ଜାରେ ରହିଲେ ସକଳେ ॥୨୦୮

Dr. Sudhanshu Sekhar Mishra

ଗୋପାଳେ ଥିଲେ ଗିରି ପରେ ।
ତଳେ ମିଳିଲେ ଧାତିକାରେ ।।୨୦୯
ପୁତ୍ରଙ୍କୁ କହନ୍ତି ପିଅର ।
କିମ୍ବା ଆଣିଲ ବସ୍ତାପଲ ।।୨୧୦
ପିଇଲେ ସକଳ ବାଛୁରୀ ।
ଓଗାଳି ନ ପାରିଲୁ କରି ।।୨୧୧
ମାୟା କୁମାର ମୁଖ ଚାହିଁ ।
ଗୋପାଳେ ହୋଇଲେକ ମୋହି ।।୨୧୨
ନିଜ ବାଳକ ଦେଖି ତଳେ ।
ସ୍ନେହେକରିଲେ କାଖେ କୋଳେ ।।୨୧୩
ଚୁମ୍ବନ ଦେଇ ହୃଦେ ଚାପି ।
ସ୍ନେହେ ବୁଜିଲେ ବେନି ଆଖି ।।୨୧୪
ଗୋରୁ-ଗୋପାଳ ସ୍ନେହଭରେ ।
ଦେଖିଣ ରୋହିଣୀ-କୁମରେ ।।୨୧୫
ଭାଳନ୍ତି ବୃକ୍ଷତଳେ ରହି ।
ଏମନ୍ତ ଦେଖିଲା ତ ନାହିଁ ।।୨୧୬
ପୂର୍ବହୁଁ ସ୍ନେହ ତ ଅତ୍ୟନ୍ତ ।
ଏ କଥା ଜାଣିବା କେମନ୍ତ ।।୨୧୭
ମୋତେ ତ ସନ୍ଦେହ ଲାଗିଲା ।
କିମ୍ବା ଗୋବିନ୍ଦ ମାୟା କଲା ।।୨୧୮
ରାମ ଚାହିଁଲେ ଯୋଗବଳେ ।
ଯେତେ ବାଛୁରୀ ଗୋପବାଳେ ।।୨୧୯
ଦିଶନ୍ତି ଚାରି ଚାରି ଭୁଜ ।
କୋଟିଏ କାମ ଜିଣି ତେଜ ।।୨୨୦
ପୀତବସନ କଟୀ ମାଝେ ।
ମଣି କୁଣ୍ଡଳ ରବି ଗଞ୍ଜେ ।।୨୨୧
ଦେଖି ଚକିତ ହଳଧର ।
କୃଷ୍ଣଙ୍କୁ କହନ୍ତି ମଧୁର ।।୨୨୨
ଦେବତା ଋଷି ଏ ନୁହନ୍ତି ।
ତୋହର ପ୍ରାୟେକ ଦିଶନ୍ତି ।।୨୨୩
ନିଜ ବାଳକ-ବସ୍ତା କାହିଁ ।
ତୋ' ତହୁଁ ଆନ ନ ଦିଶଇ ।।୨୨୪
ମାୟା କି କରିଅଛୁ ମୋତେ ।
କେମନ୍ତେ ଯିବଇଁ ପରତେ ।।୨୨୫
ହସି ବୋଲନ୍ତି ନନ୍ଦବାଳା ।
ବ୍ରହ୍ମା କଷଣ ମୋତେ ଦେଲା ।।୨୨୬

ବନେ ଭୋଜନ ଦେଖି ମୋର ।
ହରିଲ ବାଛୁରୀ-କୁମର ।।୨୨୭
ଏମାନ ଭିଆଇଲି ମୁହିଁ ।
ଶୁଣିମା ସାବଧାନ ହୋଇ ।।୨୨୮
ଶୁଣି ସାନନ୍ଦ ବଳରାମ ।
କୃଷ୍ଣଙ୍କୁ ଦିଅନ୍ତି ଚୁମ୍ବନ ।।୨୨୯
ଗୋପେ ମିଳିଲେ ରାତ୍ରକାଳେ ।
ଶୟନ ଯଶୋଦାର କୋଳେ ।।୨୩୦
ରଜନୀ ହୋଇଲା ପ୍ରଭାତ ।
ବନେ ଚଳିଲେ ଗୋପୀନାଥ ।।୨୩୧
ବ୍ରହ୍ମା ଯେ ବସ୍ତା ହରି ନେଲା ।
ମଣ୍ଷଙ୍କୁ ବରଷେ ହୋଇଲା ।।୨୩୨
ବିଧାତା ବିଚାରଇ ମନେ ।
କୃଷ୍ଣେ ଭେଟିବି ବୃନ୍ଦାବନେ ।।୨୩୩
କେମନ୍ତ କଲେ ଦାମୋଦର ।
ଆଜ ଦେଖିବି ଗୋପପୁର ।।୨୩୪
ବ୍ରହ୍ମା ବିଚାରି ଏହା ମନେ ।
ବେଗେ ମିଳିଲା ବୃନ୍ଦାବନେ ।।୨୩୫
ଦେଖିଲା ଯମୁନାର କୂଳେ ।
ବସ୍ତା-ବାଳକ କୃଷ୍ଣମେଳେ ।।୨୩୬
ମୁରଲୀ ବାଇ ନାନାଛନ୍ଦେ ।
ବାଳକେ ନାଚନ୍ତି ଆନନ୍ଦେ ।।୨୩୭
ନିଶ୍ଚିନ୍ତେ ଚରାନ୍ତି ବାଛୁରୀ ।
ମଧ୍ୟେ ବିଜୟ ନରହରି ।।୨୩୮
ଦେଖି ଚକିତ ପ୍ରଜାପତି ।
ବନେ ଚାହିଁଇ ଚଉକତି ।।୨୩୯
ଚକିତ ଚିତ୍ତେ ଛନ୍ନ ଛନ୍ନ ।
ବିଧାତା ବିଚାରଇ ମନ ।।୨୪୦
ବସ୍ତା ବାଳକ ମୁହିଁ ନେଇ ।
ମାୟା ଶୟନେ ଅଛି ଥୋଇ ।।୨୪୧
ଏହାଙ୍କୁ କାହୁଁ ଭିଆଇଲା ।
ଏମନ୍ତ ବୋଲି ବାହୁଡ଼ିଲା ।।୨୪୨
ଦେଖିଲା ନିଜ ପୁରେ ଯାଇ ।
ବସ୍ତା ବାଳକେ ଛନ୍ତି ଶୋଇ ।।୨୪୩
ପୁଣି ମିଳିଲା ନଦୀତୀରେ ।
ବାଳକେ ଅଛନ୍ତି ସେଠାରେ ।।୨୪୪

ଆନନ୍ଦେ ଚରାନ୍ତି ବାଛୁରୀ ।
ନାଚନ୍ତି ବେଣୁନାଦ କରି ।।୨୪୫
ଉଭୟ ସଙ୍କଟେ ବିଧାତା ।
ମନେ ପାଇଲା ଗୁରୁ ଚିନ୍ତା ।।୨୪୬
ପୁଣି ଦେଖିଲା ଯାଇ ଘରେ ।
ଆସି ମିଳିଲା ନଦୀତୀରେ ।।୨୪୭
ବିଧାତା ବିଚାରି ଚକିତ ।
ବୋଲଇ ଏ କି ବିପରୀତ ।।୨୪୮
ମୋର ଭୁବନେ ଶୋଇଛନ୍ତି ।
ପୁଣି ଏ ବନେ ଚରୁଛନ୍ତି ।।୨୪୯
ଏହାଙ୍କୁ କାହୁଁ ଏ ଆଣିଲା ।
ମୋତେ ତ ସନ୍ଦେହ ଲାଗିଲା ।।୨୫୦
କି ବୁଦ୍ଧି କରିବଇଁ ଆଜ ।
ମୋତେ ହୋଇଲା ବଡ଼ ଲାଜ ।।୨୫୧
ଯେବେ ମୁଁ ବସ୍ତା ଦେବି ଆଣି ।
କୋପ କରିବେ ଚକ୍ରପାଣି ।।୨୫୨
କିବା ମୋହର ବଡ଼ପଣ ।
ହାସ୍ୟ କରିବେ ଦେବଗଣ ।।୨୫୩
କରିବି କେବଣ ଉପାୟ ।
ନ ପୁଣ କୋପେ ଦେବରାୟ ।।୨୫୪
କୋପ କରିଣ ଶିରୀବତ୍ସୀ ।
ଆନ ବ୍ରହ୍ମାଏ ଭିଆଇଛି ।।୨୫୫
ନୁହଇ ମୋହର ସଞ୍ଚିଲା ।
ଆନ ବ୍ରହ୍ମା କି ଭିଆଇଲା ।।୨୫୬
ବାଳକ ବାଛୁରୀ ଭିଆଇ ।
ଗୋବିନ୍ଦ ଅଛି କି ଲୁଚାଇ ।।୨୫୭
ନିଜ ମାୟାରେ ନିଜେ ଜଡ଼ି ।
ବ୍ରହ୍ମା ଭ୍ରମିଲା ପଥ ଛୁଡ଼ି ।।୨୫୮
ମାୟା ମୋହିଲେ ଭଗବାନ ।
ଆନ ମାୟା ଯେ ବିଡ଼ମ୍ବନ ।।୨୫୯
ଘୋର ଅନ୍ଧାର ରାତ୍ରମାନେ ।
କୁହୁଡ଼ି ଦିଶେ କି ଗଗନେ ।।୨୬୦
ଦିବସେ ଜୁଳୁଜୁଳା ପୋକ ।
ପ୍ରକାଶି ପାରେ କି ଆଲୋକ ।।୨୬୧
କ୍ଷଣେକେ ହୋଇଲା ସଚେତ ।
ପୁଣି ଚାହିଁଇ ଭୟଚିତ୍ତ ।।୨୬୨
ଯେତେ ବାଛୁରୀ ଗୋପବାଳେ ।
ବ୍ରହ୍ମାଙ୍କୁ ଦିଶନ୍ତି ସକଳେ ।।୨୬୩

Dr. Sudhanshu Sekhar Mishra

ନୀଳ-ଜଳଦ ତନୁକାନ୍ତି ।
ପୀତବସନ ଝଟକନ୍ତି ॥୨୬୪
ଶ୍ରବଣେ କୁଣ୍ଡଳ ବିରାଜେ ।
ରବିଶଶାଙ୍କ ତେଜ ଗଞ୍ଜେ ॥୨୬୫
ଶ୍ରୀବତ୍ସ ଚିହ୍ନ କଣ୍ଠେ ମଣି ।
କଟୀରେ ରତ୍ନ-ଓଡ଼ିଆଣି ॥୨୬୬
ମର୍କତସ୍ତମ୍ଭ ଭୁଜ ଚାରି ।
ଶଙ୍ଖ-କମଳ-ଗଦାଧାରୀ ॥୨୬୭
ଦକ୍ଷିଣ କରେ ଚକ୍ର ଶୋହେ ।
ରୂପେ କୋଟିଏ କାମ ମୋହେ ॥୨୬୮
କରେ କଙ୍କଣ ହୃଦେ ହାର ।
ଚରଣେ ବାଜେଣି ନୂପୁର ॥୨୬୯
କୋମଳ ତୁଳସୀର ମାଳେ ।
କଣ୍ଠୁ ଲମ୍ୱଇ ପାଦତଳେ ॥୨୭୦
ବିକଚ-କମଳ-ଲୋଚନ ।
ଅଧର ବିମ୍ବଫଳ ବର୍ଣ୍ଣ ॥୨୭୧
ଯା'ର ମହିମା ପରିମାଣି ।
ବେଦ-ପୁରାଣେ ନୋହେ ଜାଣି ॥୨୭୨
ସ୍ତୁତି କରନ୍ତି ସୁରମୁନି ।
ପାଦେ କିଙ୍କର ପଦ୍ମଯୋନି ॥୨୭୩
ଅଶେଷ ବ୍ରହ୍ମାଣ୍ଡ ଠାକୁର ।
ବ୍ରହ୍ମାଏ ଖଟନ୍ତି ପୟର ॥୨୭୪
ପୂଜନ୍ତି ନାନା ଉପହାରେ ।
ନୃତ୍ୟ କରନ୍ତି ଗୀତସ୍ୱରେ ॥୨୭୫
ସ୍ତମ୍ବରୁ ବ୍ରହ୍ମ ପରିଯନ୍ତେ ।
ବ୍ରହ୍ମାଣ୍ଡେ ଅଛନ୍ତି ଯେ ଯେତେ ॥୨୭୬
ପଞ୍ଚ ଇନ୍ଦ୍ରିୟ ପଞ୍ଚଭୂତ ।
ଯେ ଅଧିଷ୍ଠାତା ଦଇବତ ॥୨୭୭
ବୁଦ୍ଧି ଚେତନା ଅହଙ୍କାର ।
ଯେତେ ଏ ମନର ବିକାର ॥୨୭୮
ଯେଝା ବିଷୟ ଅନୁରୂପେ ।
ଖଟନ୍ତି ବ୍ରହ୍ମାଙ୍କ ସମୀପେ ॥୨୭୯
ଅଣିମା ଆଦି ଅଷ୍ଟନିଧି ।
କଳା ସ୍ୱଭାବେ କର୍ମସାଧି ॥୨୮୦
ସୃଷ୍ଟି କରନ୍ତି ଅପ୍ରମିତ ।
ଚଞ୍ଚଳ ବ୍ରହ୍ମାଙ୍କର ଚିତ୍ତ ॥୨୮୧
ଖଟନ୍ତି ଗୋବିନ୍ଦ ପୟର ।
ଦେଖି ଚକିତ ବେଦବର ॥୨୮୨
କୋଟି ଅଂଶରେ ତୁଲ୍ୟ ନୋହେ ।
ସ୍ୱରୂପ ବ୍ରହ୍ମାଙ୍କର ପ୍ରାୟେ ॥୨୮୩
ଏମନ୍ତ କୃଷ୍ଣମାୟା ଦେଖି ।
ଭୟେ ବୁଜିଲା ଅଷ୍ଟ ଆଖି ॥୨୮୪
ଯେସନେ ଦେବୀ ପୂଜା ଯୋଗେ ।
କାଷ୍ଠପିତୁଳା ଥୋଇ ଆଗେ ॥୨୮୫
ତେସନେ ହୋଇ ବେଦବର ।
ରହିଲା ଶ୍ରୀକୃଷ୍ଣ ଛାମୁର ॥୨୮୬
ବେଦେ ଗୋଚର ନୋହେ ଯେହୁ ।
ମହାମହିମ ମହାବାହୁ ॥୨୮୭
ପ୍ରମାଣି ନ ପାଇଲା ଅନ୍ତ ।
ବ୍ରହ୍ମା ହୋଇଲା ମୋହଗତ ॥୨୮୮
କଣ୍ଠେ ହୋଇଲା ପଞ୍ଚପ୍ରାଣ ।
ଜାଣିଲେ କମଳାରମଣ ॥୨୮୯
ଅଦୃଶ୍ୟ ଇନ୍ଦ୍ର ଜାଲ ମାୟା ।
ବିଶ୍ୱ ମୂରତି ଯା'ର କାୟା ॥୨୯୦
ମନେ ବିଚାରି ଚକ୍ରଧର ।
ଜାଣିଲେ ବ୍ରହ୍ମାର ଆତୁର ॥୨୯୧
ବୋଇଲେ ଅଳପ କର୍ମର ।
ଜ୍ଞାନ ହାରିଲା ବେଦବର ॥୨୯୨
ଏବେ କରିବା କର୍ମ ଯେତେ ।
ଧାତା କି ଜୀଇବ ଜୀବିତେ ॥୨୯୩
ବିଚାରି ପଟଳ କାଢ଼ିଲେ ।
ନିଜ ସ୍ୱରୂପ ଦେଖାଇଲେ ॥୨୯୪
ବ୍ରହ୍ମାଙ୍କୁ କୃଷ୍ଣ ଦୟା କଲେ ।
ମାୟା-ପଟଳ ଉହାଡ଼ିଲେ ॥୨୯୫
ଜ୍ଞାନ ପାଇଲା ପ୍ରଜାପତି ।
ଉଠି ଚାହିଁଲା ଚଉକତି ॥୨୯୬
ଦେଖିଲା ବୃନ୍ଦାବନ ଲାଗେ ।
ଲକ୍ଷ୍ମୀ ବିଜୟ ଚଉଦିଗେ ॥୨୯୭
ବନ୍ୟଜନ୍ତୁଙ୍କ ହିଂସା ନାହିଁ ।
ଚରନ୍ତି ମିତ୍ର ପ୍ରାୟ ହୋଇ ॥୨୯୮
ଦେଖିଲା କଦମ୍ବର ତଳେ ।
କୃଷ୍ଣ ନାଚନ୍ତି କୁତୂହଳେ ॥୨୯୯
ପୁଣି ଦେଖିଲା କେହି ନାହିଁ ।
ଚକିତେ ଚଉଦିଗେ ଚାହିଁ ॥୩୦୦
ସଭୟ ଚିତ୍ତେ ଛନଛନ ।
ଆରତେ ବୁଜିଲା ନୟନ ॥୩୦୧
ଘଡ଼ିକେ ପୁଣି ଅନାଇଲା ।
ଦେଖଇ ଗୋବିନ୍ଦର ଲୀଳା ॥୩୦୨
କରେଣ ଅନ୍ନପୁଡ଼ା ଘେନି ।
ବତ୍ସା ଖୋଜନ୍ତି ବନେ ଭ୍ରମି ॥୩୦୩
ଦେଖି ବାହନ ଉପେକ୍ଷିଲା ।
କୃଷ୍ଣର ନିକଟେ ମିଳିଲା ॥୩୦୪
ପାଦେ ପଡ଼ିଲା ବେଦବର ।
ଅବନୀ ଦିଶିଲା ସୁନ୍ଦର ॥୩୦୫
ନୀଳ-ପାଷାଣ ତଳେ ଥାଇ ।
ସୁବର୍ଣ୍ଣ ଯେମନ୍ତେ ଦିଶଇ ॥୩୦୬
ଚାରି ମୁକୁଟ ଶିରେ ଥିଲା ।
କୃଷ୍ଣର ଚରଣେ ଲାଗିଲା ॥୩୦୭
ବେନି ଚରଣେ ଶିର ଦେଇ ।
ଭୟେ ବୋଲଇ ତ୍ରାହି ତ୍ରାହି ॥୩୦୮
ପୂଜିଲା ଗୋବିନ୍ଦ ପୟର ।
ଦେଇ ବିବିଧ ଉପହାର ॥୩୦୯
ପାଦ ଧୋଇଲା ଚକ୍ଷୁ ଲୁହେ ।
ମନ ନିବେଶି କୃଷ୍ଣପାୟେ ॥୩୧୦
ଶତେକ ବେଳ ପାୟେ ପଡ଼ି ।
ଉଠିଲା ବେନିକର ଯୋଡ଼ି ॥୩୧୧
ସ୍ତୁତି କରଇ ଚାରିବେଦେ ।
ଆନନ୍ଦେ ଶୋକ ଗଦଗଦେ ॥୩୧୨
ସେ ହରି ଚରଣ-କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ॥୩୧୩
ବତ୍ସା-ହରଣ ଏହୁ ଛାନ୍ଦ ।
ଏଣେ ଛାଡ଼ିବ ମୋହ-ଫାନ୍ଦ ॥୩୧୪
ଗର୍ବ ଗଞ୍ଜନ ଯା'ର ବାନା ।
ଭକ୍ତ-ଜନଙ୍କ ବନ୍ଧୁ-ସେହ୍ନା ॥୩୧୫
ଭକ୍ତ ବତ୍ସଳ ନରହରି ।
ଯାହାର ନାହିଁ ମିତ୍ର ଅରି ॥୩୧୬
ଶ୍ରୀକୃଷ୍ଣ ପାଦେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ॥୩୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ବ୍ରହ୍ମା
ଗର୍ବଗଞ୍ଜନେ ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ପଞ୍ଚଦଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ପରୀକ୍ଷ ମହୀପତି ।
ବ୍ରହ୍ମାର ମନୁ ଗଲା ଭ୍ରାନ୍ତି ॥୧
ସଭୟେ ବେନି କରଯୋଡ଼ି ।
କ୍ଷଣ କ୍ଷଣକେ ପାୟେ ପଡ଼ି ॥୨
କୃଷ୍ଣ ଚରଣେ ଦେଇ ଶିର ।
ସ୍ତୁତି କରଇ ବେଦବର ॥୩
ନମସ୍ତେ ବ୍ରହ୍ମାଣ୍ଡ ଠାକୁର ।
ତୋହର ମାୟା ଏ ସଂସାର ॥୪
ତୋ ତନୁ ନୀଳଘନ ତ୍ରାସ ।
ବିଜୁଳି ପ୍ରାୟ ପୀତବାସ ॥୫
ଗୁଞ୍ଜାରା ପାଟି ଶିଖି ପୁଚ୍ଛ ।
ଏଣେ ନିର୍ମଳ ଚୂଳ ସଞ୍ଚ ॥୬
ଅଳପ ସ୍ମିତ ରଙ୍ଗ ମୁଖ ।
ଚିନ୍ତିଲେ ଖଣ୍ଡେ ଭବଦୁଃଖ ॥୭
ବନମାଳାଏ ଲମ୍ବେ ଉରେ ।
ଅନ୍ନପୁଡ଼ାଏ ବାମକରେ ॥୮
ବେତ ମୁରଲୀ ଶିଙ୍ଗା କରେ ।
କମଳା ସେବଇ ପୟରେ ॥୯
ଏ ଯେତେ ବାଛୁରୀ କୁମର ।
ତୋହର ଶରୀରୁ ବାହାର ॥୧୦
ତୋ ଅବତାର ମୋର ହିତେ ।
ସୁଖ ସମ୍ପଦ ଅବିରତେ ॥୧୧
ଇଚ୍ଛାରେ ହୋଇଅଛୁ ଜାତ ।
ତୋର ନିର୍ମାଣ ପଞ୍ଚଭୂତ ॥୧୨
ଏ ଦେହ ମହିମା ନ ଜାଣୁ ।
ମୁଁ ବ୍ରହ୍ମା ରୁଦ୍ର ମୁନିମନୁ ॥୧୩
ବୁଦ୍ଧି ବିଚାର ଅନୁମାନି ।
ବେଦ ପୁରାଣେ ପରିମାଣି ॥୧୪
ଯେ ଜ୍ଞାନଯୋଗେ ଇନ୍ଦ୍ରି ଜିଣେ ।
ତୋର ମହିମା ନ ପ୍ରମାଣେ ॥୧୫
ସେ ପ୍ରାଣୀ ହୁଅଇ ନିରାଶ ।
କେବଳ ଲଭେ ଦେହପ୍ରାସ ॥୧୬
ଜ୍ଞାନର ପଥ ଛାଡ଼ି ଥୋକେ ।
ତୋତେ ଚିନ୍ତନ୍ତି ସନ୍ଥ ଲୋକେ ॥୧୭
ସାଧୁଜନଙ୍କ ମୁଖୁ ଶୁଣି ।
ତୋର ମହିମା ମନେ ଗୁଣି ॥୧୮
ମନବଚନ କରି ଏକ ।
ହେଳେ ଜିଣନ୍ତି ତିନିଲୋକ ॥୧୯
ତୋର ଚରଣେ ଭାବ ଛାଡ଼ି ।
ଯେ ଯା'ନ୍ତି ଯୋଗପଥ ମାଡ଼ି ॥୨୦
ମନ ବଚନ ହୃଦେ ଛନ୍ଦି ।
ତପେ ଇନ୍ଦ୍ରିୟବଳ ରୁନ୍ଧି ॥୨୧
ଯେତେ କରନ୍ତି ଦେହଶ୍ରମ ।
ତୋର ମାୟାରେ ହୋନ୍ତି ଭ୍ରମ ॥୨୨
କେବଳ ଲାଭ ଦେହପ୍ରାସ ।
ସେ ପ୍ରାଣୀ ହୁଅନ୍ତି ନିରାଶ ॥୨୩
ତଣ୍ଡୁଳ ଆଶେ ଚଷୁ କୁଟି ।
ଯେହ୍ନେ ମରନ୍ତି ପ୍ରାଣୀ ଫୁଟି ॥୨୪
ନିରାଶ ହୋନ୍ତି ବେନିପଥ ।
ପଶୁ ଯୋନିରେ ହୋନ୍ତି ଜାତ ॥୨୫
ତୋତେ ନ ପାଇ ନରହରି ।
ଭ୍ରମନ୍ତି ତୋ' ମାୟା ଆବୋରି ॥୨୬
ପୂର୍ବେ ଅନେକ ମୁନିଜନ ।
ସେବିଲେ ତୋହର ଚରଣ ॥୨୭
ନିଜ କରମ ଫଳ ଭୁଞ୍ଜି ।
ତୋ' ଗତି ଏକୁ ଆରେ ହେଜି ॥୨୮
ପାଇଲେ ତୋ' ପରମ ପଦ ।
ଖଣ୍ଡିଲେ ବିଷୟ-ବିଷାଦ ॥୨୯
ନିର୍ମଳ ଆତ୍ମା ମୁନିଗଣେ ।
ତୋର ମହିମା ପରିମାଣେ ॥୩୦
ତୋର ବିକାର ନ ପାଇଲେ ।
ଭକତି ହେଜି ତରିଗଲେ ॥୩୧
ନିର୍ଗୁଣ ଆତ୍ମା ଗୁଣବନ୍ତ ।
ତୋର ମହିମା ଗୋପୀନାଥ ॥୩୨
ବ୍ରହ୍ମାଣ୍ଡେ ଦେହବନ୍ତ ହୋଇ ।
ତୋ' ଗୁଣ କେ ପାରିବ କହି ॥୩୩
ଭୂମିରେ ଯେତେ ରେଣୁଛନ୍ତି ।
ଆକାଶେ ଯେତେ ତାରାପନ୍ତି ॥୩୪
ବରଷା ଧାରା ପଡ଼େ ଯେତେ ।
କେ ଗଣିପାରେ ଏ ଜଗତେ ॥୩୫
ଏ ତିନି ଗଣନେ ସମର୍ଥ ।
କେହି ବା ଥିବେ ଏ ଜଗତ ॥୩୬
ତୋର ମହିମା ଗୁଣ ଗୁଣି ।
କେହି ନ ପାରେ ଚକ୍ରପାଣି ॥୩୭
ଯାହାକୁ ହେଉ ତୁ ସଦୟେ ।
ସେ ନ ପଡ଼ଇ ମାୟାମୋହେ ॥୩୮
ତୋର ଭକତି ହୃଦେ ହେଜି ।
ଅର୍ଜିଲା କର୍ମଫଳ ଭୁଞ୍ଜି ॥୩୯
ଚିତ୍ତ ନିବେଶି ତୋର ପାଦେ ।
ସଂସାରୁ ଯା'ନ୍ତି ମୋକ୍ଷପଦେ ॥୪୦
ଅଜ୍ଞାନ ପଣ ଦେଖ ମୋର ।
ତୋତେ ଭଣ୍ଡିଲି ମାୟାଧର ॥୪୧
ମାୟାବୀମାନଙ୍କର ଶ୍ରେଷ୍ଠ ।
ତୋ' ସଙ୍ଗେ କଲି ମାୟା-ହଟ ॥୪୨
ଅନଳ ଶିଖା କି ଅନଳ ।
ସଙ୍ଗତେ ହୋଇପାରେ ତୁଲ ॥୪୩
ଅଳପ ଲୋକେ ଅଧିକାର ।
ତୁ କିପାଁ ଦେଲୁ ଦାମୋଦର ॥୪୪
ଅଳପ ଲୋକେ ଆଧି ଦେଲେ ।
ସମ୍ଭାଳି ନ ପାରଇ ଭଲେ ॥୪୫
ବ୍ରହ୍ମା ବୋଲି ମୁଁ ବହି ଗର୍ବ ।
ତୋତେ ଭଣ୍ଡିଲି ପଦ୍ମନାଭ ॥୪୬
ଏଣୁ ହୋଇଲି ଅପରାଧୀ ।
ତୁ ନାଥ କରୁଣା ବାରିଧି ॥୪୭
ମୋ' ଅପରାଧ କ୍ଷମାକର ।
ଭୋ ନାଥ ଶରଣ ତୋହର ॥୪୮
ମୁଁ ତୋର ନାଭିପଦ୍ମୁଁ ଜାତ ।
ତୁ କି ନ ଜାଣୁ ଜଗନ୍ନାଥ ॥୪୯
ମୁଁ ତୋର ଯେତେକ ଅନ୍ତର ।
ତୁ କି ନ ଜାଣୁ ଚକ୍ରଧର ॥୫୦

Dr. Sudhanshu Sekhar Mishra

ଅବନୀ ଆଦି ପଞ୍ଚଭୂତେ ।
ମନ ଚେତନା ଅହଂକୃତେ ॥୫୧

ଜୀବ ପରମ ଭାବ ବହି ।
ବ୍ରହ୍ମାଣ୍ଡ ପାଳୁ ଭାବଗ୍ରାହୀ ॥୫୨

କେତେ ବ୍ରହ୍ମାଣ୍ଡ ରୋମମୂଳେ ।
ଉଡୁ ଅଛନ୍ତି ଅନ୍ତରାଳେ ॥୫୩

ଜଳାକବାଟି ବାଟେ ଯେହ୍ନେ ।
ରେଣୁଏ ଉଡ଼ନ୍ତି ଗଗନେ ॥୫୪

ମୁଁ ଏକ ଅଣ୍ଡ ମଧ୍ୟେ ରହି ।
ସପ୍ତ ଚାଖଣ୍ଡ ଦେହ ବହି ॥୫୫

ଅଛଇ ଜୀବ ଆତ୍ମା ଧରି ।
ତୋ' ମାୟା-ପଟଳ ଆବୋରି ॥୫୬

ଏତେ ଅନ୍ତର ତୋର ମୋର ।
ତୋତେ ଭଣ୍ଡିଲି ମୁଁ ପାମର ॥୫୭

ଗର୍ଭ ଭିତରେ ସୁତ ଥାଇ ।
ସେ ଯେହ୍ନେ ପାଦ ପ୍ରହାରଇ ॥୫୮

ସେ ଅପରାଧ ଚିତ୍ତେ ଘେନି ।
କୋପ କି କରଇ ଜନନୀ ॥୫୯

ତୋ' ନାଭିକମଳୁ ମୁଁ ଜାତ ।
ତୋତେ ଭଣ୍ଡିଲି ଜଗନ୍ନାଥ ॥୬୦

ତୋହର ଉଦରେ ପଶିଲି ।
ଅଶେଷ ବ୍ରହ୍ମାଣ୍ଡ ଦେଖିଲି ॥୬୧

ଜଳଧି ଶୟନର କାଳେ ।
ଏ କଥା ଜାଣନ୍ତି ସକଳେ ॥୬୨

ନଭ-ଅବନୀ ଦେହବ୍ୟାପୀ ।
ତୁ ନାଥ ନାରାୟଣ ରୂପୀ ॥୬୩

ସକଳ ନର ଆତ୍ମା ହେଉ ।
ତେଣୁ ନାରାୟଣ ବୋଲାଉ ॥୬୪

ପ୍ରଳୟଜଳେ ଥିଲୁ ଶୋଇ ।
ତୋ ରୂପ ଦେଖିଲଇଁ ମୁହିଁ ॥୬୫

ଦେଖି ସାନନ୍ଦ ମୋର ମନ ।
ତୁ କି ନଜାଣୁ ଜନାର୍ଦ୍ଦନ ॥୬୬

ମିଥ୍ୟା ନୁହଁଇ ନା ଏ କଥା ।
ତୋତେହେଁ ସାକ୍ଷୀ ତୋରମାତା ॥୬୭

ଗୋପାଳକୁମରଙ୍କ ମେଳେ ।
ମାଟି ଭକ୍ଷିଲୁ ଯେତେବେଳେ ॥୬୮

ଯଶୋଦା ଦେଖିଲା ତୋ ତୁଣ୍ଡ ।
ଉଦରେ ଅଶେଷ ବ୍ରହ୍ମାଣ୍ଡ ॥୬୯

ବାହାର ଭିତର ଆଚ୍ଛାଦି ।
ତୋ' ମାୟାବଳେ ଅଛୁ ଗୁନ୍ଧି ॥୭୦

ଏବେ ଏ ବୃନ୍ଦାବନେ ମୋତେ ।
ମାୟା ନ କଲୁ କେତେ କେତେ॥୭୧

ପ୍ରଥମେ ଦେଖିଲଇଁ ଏକ ।
କ୍ଷଣକେ ହୋଇଲୁ ଅନେକ ॥୭୨

ଯେତେ ବାଛୁରୀ ଗୋପପୋଏ ।
ଦିଶିଲେ ତୋହରି ପରାୟେ ॥୭୩

ନୀଳ ଶରୀର ଚାରିକର ।
ବ୍ରହ୍ମାଏ ଖଟନ୍ତି ପୟର ॥୭୪

ତୁହି ତୋହର ମାୟା ବହୁ ।
ବ୍ରହ୍ମା-ଶଙ୍କର ରୂପ ବହୁ ॥୭୫

ସୃଷ୍ଟିର ଅଗ୍ରେ ମୋତେ କରି ।
ସଙ୍ଖୋଳି ଦେଲୁ ବେଦଚାରି ॥୭୬

ଜଗତ କରାଇ ଭିଆଣ ।
ତୁ ତାହା ପାଳୁ ନାରାୟଣ ॥୭୭

ଭୂତ-ଭାବନ ରୂପ ବହୁ ।
ଭକତ ହିତେ ନିତ୍ୟେ ଥାଉ ॥୭୮

ଶଙ୍କର ରୂପେ କରୁ ଅନ୍ତ ।
ଏଣୁ ତୁ ବୋଲାଉ ଅନନ୍ତ ॥୭୯

ଦେବ ବ୍ରାହ୍ମଣ ଋଷି ପଶୁ ।
ଏତେ ଶରୀର ତୁ ପ୍ରକାଶୁ ॥୮୦

ଦୁଷ୍ଟ ନିବାରି ସନ୍ଥ ପାଳୁ ।
ଦୟାରେ ଧର୍ମ ତୁ ସମ୍ଭାଳୁ ॥୮୧

ସଂସାରେ ହେଉ ଅବତାର ।
ଦୁଷ୍ଟଦଳନ ବାନା ତୋର ॥୮୨

ତୁ ନାଥ ଧର୍ମ କରୁ ରକ୍ଷା ।
ଖଳନାଶନ ତୋର ଦୀକ୍ଷା ॥୮୩

କାହିଁ କିପରି କିସ ପାଇଁ ।
କେତେବେଳେ ବା ଖେଳୁ ତୁହି ॥୮୪

ବିସ୍ତାରି ତୋର ଯୋଗମାୟା ।
କେ ଜାଣିପାରେପ୍ରଭୁ ଏହା ॥୮୫

ଯୋଗେଶ୍ୱରଙ୍କୁ ଅଗୋଚର ।
ଭୋ ନାଥ ଏ ଲୀଳା ତୋହର ॥୮୬

ତେଣୁ ତୋ ମାୟାର ଜଗତ ।
ତୋ' ଠହୁଁ ହୋନ୍ତି ଆତଜାତ ॥୮୭

ବିଜୁଳି ଝଟକେ ଯେସନ ।
ମେଘରେ ଦିଶି ହୋନ୍ତି ଲୀନ ॥୮୮

ତୁନାଥ ପୁରୁଷ ପୁରାଣ ।
ଜ୍ୟୋତି ସ୍ୱରୂପ ଠୁଳଶୂନ୍ୟ ॥୮୯

ନିୟତ ପୂର୍ଣ୍ଣ ନିରଞ୍ଜନ ।
ଉପାଧିହୀନ ସୁଖପୂର୍ଣ୍ଣ ॥୯୦

ସକଳ ଜନ୍ତୁ ମଧ୍ୟେ ତୁହି ।
ବିହରୁ ଆତ୍ମାରୂପ ହୋଇ ॥୯୧

ଗୁରୁ ବଚନୁ ଜ୍ଞାନସାର ।
ପାଇ ଯେ କରନ୍ତି ବିଚାର ॥୯୨

ଭକ୍ତି ଭାବରେ ଜ୍ଞାନଲାଭ ।
ହୁଅଇ ଯା'ର ପଦ୍ମନାଭ ॥୯୩

ଭବ ଜଳଧି ସେ ତରନ୍ତି ।
ମାୟା-ପଟଳେ ନ ପଡ଼ନ୍ତି ॥୯୪

ଆତ୍ମାକୁ ଆତ୍ମଜ୍ଞାନେ ଜାଣି ।
ଚିନ୍ତା ନ କରେ ଯେଉଁ ପ୍ରାଣୀ ॥୯୫

ଅଜ୍ଞାନ ଭାବେ ଜ୍ଞାନ ନାଶ ।
ରଜ୍ଜୁରେ ଯେହ୍ନେ ସର୍ପତ୍ରାସ ॥୯୬

ଜୀବର ବନ୍ଧ-ମୋକ୍ଷ ଦୁଇ ।
ଅଜ୍ଞାନ ଭାବୁଁ ଜାତ ହୋଇ ॥୯୭

ତୋହର ତତ୍ତ୍ୱ ଯେ ଜାଣଇ ।
ତାହାର ବନ୍ଧ-ମୋକ୍ଷ ନାହିଁ ॥୯୮

ଆଦିତ୍ୟ ସଦା ପ୍ରକାଶିଲେ ।
ନ ଥା'ନ୍ତା ଦିବାରାତ୍ର ଭଲେ ॥୯୯

ତେସନେ ସଦା ସର୍ବସ୍ଥାନ ।
ସମାନ ଭାବେ ଅଛ ପୂର୍ଣ୍ଣ ॥୧୦୦

ତୋତେ ଯେ ନ ପାରନ୍ତି ଚିନ୍ତି ।
ଆତ୍ମାକୁ ବାହାରେ ଲୋଡ଼ନ୍ତି ॥୧୦୧

ଶ୍ରମ ଯେ ଲାଭ ତାହାଙ୍କର ।
ନାହିଁ ତୋ' ଭିତର ବାହାର ॥୧୦୨

ଯେ ତୋତେ ଶରୀରେ ଲୋଡ଼ନ୍ତି।
ସୂକ୍ଷ୍ମ ସ୍ୱରୂପ ରୂପେ ଚିନ୍ତି ॥୧୦୩

ଅଜ୍ଞାନ ନାଶେ ତାହାଙ୍କର ।
ଭବ ସାଗରୁ ହୋନ୍ତି ପାର ॥୧୦୪

Dr. Sudhanshu Sekhar Mishra

ଏ ଜ୍ଞାନୀ ଲୋକଙ୍କର ମତ ।
ତୋହର ଦୟାରେ ଅନନ୍ତ ॥୧୦୫
ତୋତେ ନିରୋପି ଏ ଶରୀରେ।
ଶରୀର-ଭ୍ରାନ୍ତି ଦୂର କରେ ॥୧୦୬
ନିକଟେ ସର୍ପ ଯା'ର ଥାଇ ।
ସେ କି ଆନକୁ ପାରେ ଚାହିଁ॥୧୦୭
ସର୍ପର ପ୍ରାୟ ତୋ' ସ୍ୱରୂପେ ।
ଜ୍ଞାନୀଏ ଜାଗରିତ ଆପେ ॥୧୦୮
ତୋର ଦୟାରେ ତୋତେ ଜାଣି।
ଭାବି ତରନ୍ତି ସାଧୁପ୍ରାଣୀ ॥୧୦୯
ତୋ' ଅନୁଗ୍ରହ ଯାରେ ନାହିଁ।
ବ୍ରହ୍ମାଣ୍ଡେ ଲୋଡ଼ିଲେ ନ ପାଇ ॥୧୧୦
କେତେ କହିବି ନାଥ ତୋତେ।
ଏମନ୍ତ ଆଜ୍ଞା ହେଉ ମୋତେ ॥୧୧୧
ନାନା-ଯୋନିରେ ଜାତ କର।
ତୋ'ର ସେବକ ମଧ୍ୟେ ବର॥୧୧୨
ଅପ୍ରାଧ କ୍ଷମାକର ମୋତେ ।
ତୋ' ପାଦେ ସେବଇଁ ଯେମନ୍ତେ ॥୧୧୩
ଗୋପେ ଅଛନ୍ତି ଯେତେ ଜନ ।
କେ ତା'ଙ୍କ ପୁଣ୍ୟ କରୁ ଆନ॥୧୧୪
ହୋଇଣ ବାଛୁରୀ-କୁମର ।
ସ୍ତନ୍ୟ ପିଇଲୁ ତାହାଙ୍କର ॥୧୧୫
ତୋ' ମନରଞ୍ଜନେ ଅନନ୍ତ ।
ଯଜ୍ଞେ ନୋହିଲେ ସମରଥ ॥୧୧୬
ନନ୍ଦ-ଯଶୋଦା ଗୋପୀ-ଗୋପା
ଅନେକ କରିଛନ୍ତି ତପ ॥୧୧୭
ତୁ ନାଥ ମିତ୍ର ତାହାଙ୍କର ।
ବ୍ରହ୍ମା-ଶଙ୍କରେ ଅଗୋଚର ॥୧୧୮
ତୋ'ପାଦ ପଦ୍ମରେ ଅମୃତ ।
ତେଣେ ଲୋଭିତ ଯା'ର ଚିତ୍ତ ॥୧୧୯
ମନ ଭ୍ରମରେ କରି ପାନ ।
ତେଜିବେ ତୋ' ମାୟା ଅଜ୍ଞାନ॥୧୨୦
କୀଟପତଙ୍ଗ ରୂପ ହୋଇ ।
ଗୋକୁଳେ ପଡ଼ିଥିବି ମୁହିଁ ॥୧୨୧
ଗୋପଜନଙ୍କ ପାଦଧୂଳି ।
ଦେହରେ ହେଉଥିବି ବୋଳି ॥୧୨୨
ଦେବେ ନ ପାନ୍ତି ଯା'ଙ୍କୁ ଖୋଜି।
ଗୋପୀଏ ମିତ୍ରପଣେ ଭଜି ॥୧୨୩
ପୂତନା କରି ଶତ୍ରୁପଣ ।
ତୋ'ଦେହେ ପଶି ହେଲା ଲୀନ॥୧୨୪
ଏଣୁ ତୋ' ନାହିଁ ମିତ୍ର ଅରି ।
ଜଗୁ ଜୀବନ ନରହରି ॥୧୨୫
ତୋର ଚରଣେ ଗୋପୀନାଥ।
ଶରଣ ନ ପଶେ ଯାବତ ॥୧୨୬
ତାବତ କାମ-କ୍ରୋଧ ବଳେ ।
ଡ଼କା କରନ୍ତି ଅବହେଳେ ॥୧୨୭
ଗୃହ ହୁଅଇ ବନ୍ଦିଘର ।
ମୋହ ଶାଙ୍କୁଳି ଏ ପୟର ॥୧୨୮
ଦାରା ତନୟ ମୋହେ ଜଡ଼ି ।
ଦୁଃଖ ସଂକଟେ ଥା'ନ୍ତି ପଡ଼ି ॥୧୨୯
ଶରଣ ଜନର ଆନନ୍ଦ ।
ବଢ଼ାଇବାକୁ ଆଦିକନ୍ଦ ॥୧୩୦
ଅରୂପ ହୋଇ ରୂପ ଧରୁ ।
ପୁତ୍ରାଦି ରୂପେ ଲୀଳା କରୁ ॥୧୩୧
ଯେ ବୋଲେ ତୋହର ମହିମା।
ଜାଣଇ ବୋଲି ଗୁଣସୀମା ॥୧୩୨
ସେ ଜାଣୁ ମୁହିଁ ତ ବହୁତ ।
ବିଚାରି ନ ପାଇଲି ଅନ୍ତ ॥୧୩୩
ତୁ ଅନ୍ତର୍ଯ୍ୟାମୀ ଜଗନ୍ନାଥ ।
ତୋ'ର ଏ ଦେହ ଏଜଗତ ॥୧୩୪
ଅଧିକ କି କହିବି ଆଉ ।
କିସ କରିବି ଆଜ୍ଞା ହେଉ ॥୧୩୫
ତୁ ବୃଷ୍ଣିବଂଶ-ଦିନକର ।
ପାଷଣ୍ଡ ଧର୍ମ-ତମ ହର ॥୧୩୬
ଭୂମି ଦେବତା ଗୋ-ବ୍ରାହ୍ମଣ ।
ସମୁଦ୍ରକୁ ଯେ ଚନ୍ଦ୍ର ସମ ॥୧୩୭
ଭାରା ନିବାରୁ ଦୁଷ୍ଟ ନାଶି ।
ନମୋ ନମସ୍ତେ ବ୍ରହ୍ମରାଶି ॥୧୩୮

ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟ ।
ବ୍ରହ୍ମା ଛାଡ଼ିଲା ମନୁ ଭୟ ॥୧୩୯
ପାଦେ ପଡ଼ିଲା ଶତେବାର ।
ବାହୁଡ଼ି ଗଲା ନିଜ ପୁର ॥୧୪୦
ବତ୍ସା ବାଳକ ଆଣିଦେଲା ।
ବିକଳେ କୃଷ୍ଣଙ୍କୁ ଚାହିଁଲା ॥୧୪୧
ବ୍ରହ୍ମାର ମୁଖକୁ ଅନାଇ ।
ବୋଲନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥୧୪୨
ହସି ବୋଲନ୍ତି ଚକ୍ରଧର ।
ବିଧାତା ଯାଅ ନିଜପୁର ॥୧୪୩
ବ୍ରହ୍ମାଣ୍ଡ ପାଳ ସୁଖେ ଯାଇ ।
ମୋହର ପାଦେ ଚିତ୍ତ ଦେଇ ॥୧୪୪
ଗୋବିନ୍ଦ ଆଜ୍ଞା ଘେନି ଶିରେ।
ବ୍ରହ୍ମା ଚଳିଲେ ନିଜପୁରେ ॥୧୪୫
ମାୟା ମୋହିଲେ ଦେବରାୟେ।
ଭୋଜନ କରୁଛନ୍ତି ପୋଏ ॥୧୪୬
କୃଷ୍ଣ ଆଣିଲେ ବତ୍ସା ଲୋଡ଼ି ।
ଅନ୍ନପୁଡ଼ାଏ କରେ ଧରି ॥୧୪୭
ଥୋକାଏ ତୁଣ୍ଡେ ଅଛି ଭାତ ।
ପୋଏ ଦେଖିଲେ ଗୋପୀନାଥ ॥୧୪୮
କୃଷ୍ଣର ଅଙ୍ଗୁ ବହେ ଝାଳ ।
ଡ଼ାକନ୍ତି ଆସ ନନ୍ଦବାଳ ॥୧୪୯
ଏକଇ ଗ୍ରାସ ନାହୁଁ ଖାଇ ।
ଲୋଡ଼ି ଆଣିଲୁ ବତ୍ସା ଯାଇ ॥୧୫୦
ଆସି ତୋହର ଠାବେ ବସ ।
ଶୁଣି ଗୋବିନ୍ଦ ହସ ହସ ॥୧୫୧
ଶୁଣ ରାଜନ ହରିରସ ।
ଯାହା କହିଲେ ବେଦବ୍ୟାସ ॥୧୫୨
ଗୋପାଳ କୁମର ବାଛୁରୀ ।
ଶରୀରୁ ଯାହା ଜାତ କରି ॥୧୫୩
ସର୍ବ ଶରୀରେ ସଂହରିଲେ ।
ସଙ୍ଗପୁଅଙ୍କୁ ଘେନି ତୁଲେ ॥୧୫୪
ଅନ୍ନ ଭୁଞ୍ଜନ୍ତି କୃଷ୍ଣ ବସି ।
ଗୋପାଳପୁଏ ପରଶଂସି ॥୧୫୫
ଭୋଜନ ସାରି ଜଳେ ଯାଇ ।
କର-ଚରଣ-ମୁଖ ଧୋଇ ॥୧୫୬
ବେଳ ହୋଇଲା ଅବସାନ ।
ଗୋପେ ଚଳିଲେ ଭଗବାନ ॥୧୫୭

Dr. Sudhanshu Sekhar Mishra

ପଥେ ଅଘାର ଦେହ ଚାହିଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୧୫୮
ନିତ୍ୟେ ଖେଳିବା ଏଥେ ପଶି।
ଶୁଣି ଗୋପାଳପୋଏ ହସି ॥୧୫୯
ଗ୍ରାମ ନିକଟେ ପୋଏ ଯାଇ ।
ଅତି ସାନନ୍ଦେ ବେଣୁ ବାଇ ॥୧୬୦
ମୟୂର ପୁଚ୍ଛ ଗୁଞ୍ଜାମାଳୀ ।
ଗୁଞ୍ଜାରା ପାଟି ରଙ୍ଗ ଡାଳି ॥୧୬୧
ଗୋରଜ ଶୋହେ କୃଷ୍ଣ ଦେହେ।
ବେଢ଼ି ନାଚନ୍ତି ଗୋପପୋଏ ॥୧୬୨
ଗୋପୀଙ୍କ ନୟନ ଆନନ୍ଦ ।
ହୃଦୟ ପୂର୍ଣ୍ଣିମାର ଚାନ୍ଦ ॥୧୬୩
ପୋଏ ମିଳିଲେ ଯେଝା ଘରେ।
କହିଲେ ମାତାଙ୍କ ଛାମୁରେ ॥୧୬୪
ସର୍ପ ଆମ୍ଭଙ୍କୁ ଗିଳୁଥିଲା ।
ଆପଦୁଁ ଗୋବିନ୍ଦ ରଖିଲା ॥୧୬୫
ସର୍ପ ଯେ ପାଟି ଫାଡ଼ିଥିଲା ।
କୃଷ୍ଣ ତା' ତାଳୁ ବିଦାରିଲା ॥୧୬୬
ସେବାଟେ ହୋଇଲୁ ବାହାର ।
ପଛେ ଗୋ ଥିଲା ଦାମୋଦର॥୧୬୭
ଶୁଣି ଚକିତ ଗୋପନାରୀ ।
ଭୟେ ବୋଲନ୍ତି ହରି ହରି ॥୧୬୮
ଶୁଣି ପରୀକ୍ଷ ନୃପବର ।
ଶୁକଙ୍କୁ ବୋଲଇ ଉତ୍ତର ॥୧୬୯

ପରୀକ୍ଷିତ ଉବାଚ

ଭୋ ମୁନି ନିଜ ସୁତ ପାଇ ।
କେମନ୍ତ କଲେ ଗୋପଗୋଈ॥୧୭୦
ମାୟା ବାଳକେ ସ୍ନେହ ଯେତେ।
ନିଜ ବାଳକେ କଲେ କେତେ॥୧୭୧
ଏଣେ ତ ମୋହର ସନ୍ଦେହ ।
ଭ୍ରାନ୍ତି ମୋ' ଯାଉ ମୁନି କହ ॥୧୭୨

ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ ।
ଜଗତ ଅଛି ମାୟାମୋହେ ୧୭୩
ଆମ୍ଭାକୁ ନ କରନ୍ତି ଚିନ୍ତା ।
ବିଷୟ-ଜଡ଼େ ବଳବନ୍ତା ॥୧୭୪
ସୁତ କଳତ୍ର ଦେହ ବିତ୍ତ ।
ସ୍ନେହେ ଜଡ଼ିତ ଅବିରତ ॥୧୭୫
ତଥାପି ଜାଣ ରାଜା ତୁହି ।
ଆମ୍ଭାହୁଁ ପ୍ରିୟ କେହି ନାହିଁ ॥୧୭୬
ସୁତ କଳତ୍ର ଦେହଭଙ୍ଗ ।
ଜରାବ୍ୟାଧିରେ କ୍ଷୀଣ ଅଙ୍ଗ ॥୧୭୭
ହେଲେ ହେଁ ପୁଣି ପ୍ରାଣୀ କେହି।
ଜୀବନ ଆଶା କି ଛାଡ଼ଇ ॥୧୭୮
କୃଷ୍ଣ ତୋ' ଜୀବର ଜୀବନ ।
କିମ୍ପା ନୋହିବେ ପ୍ରିୟତମ ॥୧୭୯
ଏଣେ ପୁତ୍ରଙ୍କୁ କଲେ ଦୟା ।
ବିଶେଷେ ଗୋବିନ୍ଦର ମାୟା ॥୧୮୦
ପୂର୍ବହୁଁ ଅତି ସ୍ନେହଭରେ ।
କୃଷ୍ଣେ ପାଳିଲେ ଗୋପପୁରେ॥୧୮୧
ସେ ହରିପାଦେ ଦେଇ ମନ ।
ନିରତେ କରଇ ଯେ ଧ୍ୟାନ ॥୧୮୨
ବିପଦେ ତା'ର ନାହିଁ ଭ୍ରାନ୍ତି ।
ଭବସାଗରୁ ତରି ଯା'ନ୍ତି ॥୧୮୩
କୁମାର କାଳେ ବନମାଳୀ ।
ଯେମନ୍ତ କଲେ ବାଳକେଳି ॥୧୮୪
ଷଡ଼ବରଷ ହୋଏ ଏବେ ।
ଯେତେକ କଲେ ବାଳଭାବେ ॥୧୮୫
ଏଣେ ତୁ ହୁଅ ସାବଧାନ ।
ଖଣ୍ଡିବୁ ମୋହ ଜଡ଼ ଭ୍ରମ ॥୧୮୬
ଦାସର ଦାସ ଜଗନ୍ନାଥ ।
ଗୀତେ ଗାଇଲା ଭାଗବତ ॥୧୮୭
ପଣ୍ଡିତେ ନ ଘେନିବ ଦୋଷ ।
ହରିଚରିତ ସୁଧାରସ ॥୧୮୮
କୃଷ୍ଣ ସବୁରି ଦେହେ ଥାଇ ।
ଯାହାକୁ ଯେମନ୍ତ ବୁଝାଇ ॥୧୮୯
କେ କରି ପାରିବ ତା' ଆନ।
ଚିତ୍ତକୁ ସାକ୍ଷୀ ଭଗବାନ ॥୧୯୦
ମୋ' ମନ ମୋହିଲେ ମୁରାରି ।
ପୁରାଣ ଗୀତ ଅର୍ଥ କରି ॥୧୯୧
ଏଣୁ ମୋହର ଜ୍ଞାନ ନାହିଁ ।
ବାଳୁତଜନ ପ୍ରାୟ ହୋଇ ॥୧୯୨
ସୁଜନେ ଏଣେ ମନ ଦେଲେ।
କୃଷ୍ଣ ଭେଟିବ ତୁମ୍ଭେ ଭଲେ ॥୧୯୩
ସେ ଦୟାନିଧି ହେଲେ ଭେଟ ।
ନ ଥିବ ଏ ସଂସାର କଷ୍ଟ ॥୧୯୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ବ୍ରହ୍ମାସ୍ତୁତିର୍ନାମ
ପଞ୍ଚଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଷୋଡ଼ଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ପରୀକ୍ଷିତ ।
ଶ୍ରୀକୃଷ୍ଣ ବାଳକ ଚରିତ ॥୧
ଷଡ଼ବରଷେ ନରହରି ।
କାନନେ ଚରାନ୍ତି ବାଛୁରୀ ॥୨
ଦିନକୁ ଦିନ ବଳୀୟାର ।
ଗାଈ ଜଗିଲେ ଦାମୋଦର ॥୩
ରୋହିଣୀସୁତ ଘେନି ସଙ୍ଗେ ।
ବନେ ଖେଳନ୍ତି ନାନା ରଙ୍ଗେ ॥୪
ଦିନେକ କୃଷ୍ଣ ବେଣୁନାଦେ ।
ବାଳକେ ମିଳିଲେ ଆନନ୍ଦେ ॥୫
କୃଷ୍ଣଙ୍କୁ ବେଢ଼ି ଗୋପବାଳେ ।
ବେଣୁ ବଜାନ୍ତି କୁତୂହଳେ ॥୬
ଆଗେ ଅଡ଼ାଇ ବତ୍ସା ଗାଈ ।
ମିଳିଲେ କୃଷ୍ଣ ବନେ ଯାଇ ॥୭
କୋମଳ ଘାସ ନାନା ଫୁଲ ।
କୋକିଳ ଶବଦେ ଚହଳ ॥୮
ମୟୁରନାଦ ଭୃଙ୍ଗ ମେଳେ ।
ଗନ୍ଧକୁସୁମ ଜଳସ୍ଥଳେ ॥୯
ନବପଲ୍ଲବ ତରୁସ୍ଥିତ ।
କୋମଳ ବହଇ ମରୁତ ॥୧୦
ପଦ୍ମ କୁମୁଦ ଗନ୍ଧ ଘେନି ।
ଆନନ୍ଦେ ବିରାଜେ ଅବନୀ ॥୧୧
ଦେଖିଣ ଆନନ୍ଦ ଶ୍ରୀରଙ୍ଗ ।
ବାଳକମେଳେ ରାମ ସଙ୍ଗ ॥୧୨
ଫଳ କୁସୁମ ତରୁଗଣେ ।
ଲାଗନ୍ତି ରାମର ଚରଣେ ॥୧୩
ଦେଖି ହସିଲେ ଦାମୋଦର ।
ରାମଙ୍କୁ ବୋଲନ୍ତି ମଧୁର ॥୧୪

ଶ୍ରୀକୃଷ୍ଣ ଉବାଚ

ଭୋ ଦେବ ଦେଖ ତରୁଗଣେ ।
ଲୋଟନ୍ତି ତୁମ୍ଭର ଚରଣେ ॥୧୫
ଦେବେ ନ ପାନ୍ତି ଯାହା ଖୋଜି ।
ତାହାଙ୍କୁ ତରୁଗଣେ ଭଜି ॥୧୬
ତରିବେ ଭବବନ୍ଧ ତାପୁଁ ।
ବୃକ୍ଷ ହୋଇଲେ କେଉଁ ପାପୁ ॥୧୭
ଏ ଯେ ଭ୍ରମର-ପକ୍ଷୀଗଣେ ।
ନାଦେ ଭଜନ୍ତି ତୋ' ଚରଣେ ॥୧୮
ଦେବେ ଗୁପତେ ବନଚାରୀ ।
ତୋତେ ପୂଜନ୍ତି ଧ୍ୟାନକରି ॥୧୯
ପକ୍ଷୀ ସ୍ୱରୂପେ ମୁନିଗଣେ ।
ମନ ନିରୋପି ତୋ' ଚରଣେ ॥୨୦
ଦେଖ ଏ ମୟୂରଙ୍କ ନୃତ୍ୟ ।
ମୃଗଯୁବତୀ ଯୂଥ ଯୂଥ ॥୨୧
ଗୋପୀଙ୍କ ପ୍ରାୟେ ଛନ୍ତି ରହି ।
ଦେଖନ୍ତି ନୟନ ପୂରୋଇ ॥୨୨
ଦେଖ ଗଭୀର ପିକନାଦ ।
ଶୁଣନ୍ତେ ଖଣ୍ଡେ ମନଖେଦ ॥୨୩
ସାଧୁଜନଙ୍କ ପ୍ରାୟେ ହୋଇ ।
ଭାବନ୍ତି ତୋ' ମୁଖ ଅନାଇଁ ॥୨୪
ଏ ପୁଣ୍ୟବନ୍ତ ମହୀଧର ।
ଲାଗୁଛି ତୋହର ପୟର ॥୨୫
ତୋ'ପାଦ ଲାଗି ବୃକ୍ଷଲତା ।
ପୁଣ୍ୟେ ହୋଇଲେ ବଳବନ୍ତା ॥୨୬
ନଦୀ ପର୍ବତ ଖଗ ମୃଗ ।
ନିଶ୍ଚେ ଲଭିବେ ମୋକ୍ଷଯୋଗ ॥୨୭

ଶୁକ ଉବାଚ

ଏମନ୍ତେ ରାମଙ୍କୁ ଦେଖାଇ ।
ମିଳିଲେ ନଦୀକୂଳେ ଯାଇ ॥୨୮
ଗାଈ ଚରାନ୍ତି ବେଣୁ ବାଇ ।
ଆନନ୍ଦ କେ ପାରିବ କହି ॥୨୯
ଗୋପାଳପୋଏ ଗୀତନାଦେ ।
ଶ୍ରୀକୃଷ୍ଣ ନାଚନ୍ତି ଆନନ୍ଦେ ॥୩୦
ଗୋପ କୁମରେ ପରଶଂସି ।
ମୁରଲୀନାଦେ ବ୍ରହ୍ମରାଶି ॥୩୧
ହଂସର ରାବ ଶୁଣି ଡ଼ାକି ।
ନାଚନ୍ତି ମୟୂରଙ୍କୁ ଦେଖି ॥୩୨
ଶୁକ କୋକିଳ ନାଦ ଶୁଣି ।
ମୁରଲୀ ନାଦେ ତାହା ଭଣି ॥୩୩
ଗୋରୁଙ୍କୁ ଡ଼ାକନ୍ତି ସୁସ୍ୱରେ ।
ଗମ୍ଭୀରେ ନାମ ଧରି ଧୀରେ ॥୩୪
ପକ୍ଷୀଙ୍କ ନାଦ ଶୁଣି ଡ଼ାକି ।
ପଶୁଙ୍କୁ ଚାହାଁନ୍ତି ନିରେଖି ॥୩୫
ବେଳ ହୋଇଲା ଅବସାନ ।
ଫୁଟିଲେ ରୋହିଣୀନନ୍ଦନ ॥୩୬
ରାମର ଶ୍ରମ ଅନୁସରି ।
ବୃକ୍ଷରେ ଉଠିଲେ ମୁରାରି ॥୩୭
କୋମଳ ପତ୍ର ବୃକ୍ଷୁ ଆଣି ।
ଶଯ୍ୟା ପାରିଲେ ଚକ୍ରପାଣି ॥୩୮
ତହିଁ ଶୁଆଇ ହଳଧରେ ।
ପାଦ ଚାପନ୍ତି ଧୀରେ ଧୀରେ ॥୩୯
ଗୋପାଳପୋଏ ନୃତ୍ୟ କରି ।
ମନ ତୋଷିଲେ ହଳଧାରୀ ॥୪୦
କେଳି କରନ୍ତି ନାନାରଙ୍ଗେ ।
ବେଣୁ ବଜାନ୍ତି କୃଷ୍ଣ ସଙ୍ଗେ ॥୪୧
ଉଠିଣ ରାମ ପରଶଂସି ।
ହସ୍ତ ଧଇଲେ ବ୍ରହ୍ମରାଶି ॥୪୨
କୃଷ୍ଣ କରନ୍ତି ରଙ୍ଗେ ନୃତ୍ୟ ।
ଗୋପାଳେ ବେଣୁନାଦେ ଗୀତ ॥୪୩
କୃଷ୍ଣର ଶ୍ରମ ଦେଖି ପୋଏ ।
ପଲ୍ଲବ ଆଣିଲେ ଥୋକାଏ ॥୪୪
ବୃକ୍ଷର ମୂଳେ ଶଯ୍ୟା କରି ।
ତହିଁ ଶୁଆଇଲେ ମୁରାରି ॥୪୫
ଜାନୁରେ ରଖି ସୀମସ୍ଥାନ ।
କେ ବସି ଚାପନ୍ତି ଚରଣ ॥୪୬

Dr. Sudhanshu Sekhar Mishra

ପତ୍ର-ବିଞ୍ଚଣା କରି ବିଞ୍ଚି ।
କେ ପାଣି କୃଷ୍ଣଦେହେ ସିଞ୍ଚି ॥୪୭
ସୁସ୍ୱରେ କଲେ ଗୀତରସ ।
ଯେଣେ ହୋଇବ ମନତୋଷ ॥୪୮
ଏମନ୍ତେ ଗୋପବାଳ ସଙ୍ଗେ ।
କୃଷ୍ଣ ଖେଳନ୍ତି ନାନାରଙ୍ଗେ ॥୪୯
ସୁଦାମା ନାମେ ଗୋପସୁତ ।
କୃଷ୍ଣର ମିତ୍ର ସେ ଯୁକତ ॥୫୦
ସୁବଳ ସ୍ତୋକକୃଷ୍ଣ ଆଦି ।
ଏମନ୍ତ ନାମ ପରସିଦ୍ଧି ॥୫୧
ରାମ ଗୋବିନ୍ଦ ମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୫୨
ଭୋ ରାମ ଶୁଣ ସାବଧାନ ।
ଆଗେ ଯେ ଦିଶେ ତାଳବନ ॥୫୩
ସୁପକ୍ୱଫଳ ରସମୟେ ।
ଦେଖ ଲୋଭିତ ଦେବତାଏ ॥୫୪
ପାଚିଣ ପଡୁଅଛି ତଳେ ।
ପୁରୁଷେ ପ୍ରମାଣ ବହଳେ ॥୫୫
ବୃକ୍ଷେ ଅଛଇ ଅପ୍ରମିତ ।
ଗନ୍ଧେ ଲୋଭିତ ଆମ୍ଭ ଚିତ୍ତ ॥୫୬
ପୂର୍ବେ ଏ ଫଳ ଲୋକେ ଖା'ନ୍ତି।
ଏବେ ତ ଯାଇ ନପାରନ୍ତି ॥୫୭
ଧେନୁକ ନାମେ ମହାସୁର ।
ସେ ତାଳବନେ ତା'ର ଘର ॥୫୮
ବନ୍ଧୁବାନ୍ଧବ ଅପ୍ରମିତେ ।
ସେ ବନେ ଅଛନ୍ତି ନିଶ୍ଚିନ୍ତେ ॥୫୯
ତାହାର ଭୟେ ଲୋକେ ଡ଼ରି ।
ତିନି ଭୁବନେପଡ଼େ ହୁରି ॥୬୦
ଦେବେ ଡ଼ରନ୍ତି ତାର ନାଏଁ ।
ପ୍ରଚଣ୍ଡେ ପବନ ନ ବହେ ॥୬୧
ଡ଼ରାଏ ଭୂତରୂପ ହୋଇ ।
ଲୋକେ ନ ଯା'ନ୍ତି ତାଳ ଖାଇ ॥୬୨
ସୀମା ଆବୋରି ପୁର କରି ।
ସେ ପୁରେ ପଶି ତ ନ ପାରି ॥୬୩
ଅପାରଦିନୁ ସେହୁ ବାଟ ।
ପଡ଼ି ଅଛଇ ନନ୍ଦଚାଟ ॥୬୪

ବୃଦ୍ଧେ କହନ୍ତି ପୂର୍ବବାଣୀ ।
ସେ ବନେ ଭୂତ ଥାଇ ପୁଣି ॥୬୫
ଡ଼ରି ନ'ଯାନ୍ତି ତହିଁ ଲୋକେ ।
ସେ ବନେ ନ ଆସନ୍ତି ଥୋକେ ॥୬୬
ତୁ ନାଥ ହୋଇଲେ ସଦୟେ ।
ସେ ଫଳ ଭୁଞ୍ଜିବୁ ଥୋକାଏ ॥୬୭
ଗୋପପୁରକୁ ନେବୁ ବହି ।
ଶୁଣି ହସନ୍ତି ବେନିଭାଇ ॥୬୮
ବୋଲନ୍ତି କଢ଼ାଅ ସେ ପଥ ।
ଆଗ ହୋଇଲେ ଗୋପୀନାଥ ॥୬୯
ତା' ଦେଖି ରୋହିଣୀକୁମର ।
ଧାଇଁଲେ ପବନହୁଁ ଖର ॥୭୦
ବେଗେ ପଶିଲେ ତାଳବନେ ।
ଗୋପାଳେ ମିଳିଲେ ବହନେ ॥୭୧
ରୋହିଣୀସୁତ ଆଗ ହୋଇ ।
ବୃକ୍ଷକୁ ଦେଲେ ଦୋହଲାଇ ॥୭୨
ଫଳ ଝାଡ଼ିଲେ ବୃକ୍ଷ ଚାଳି ।
ଘୋରଶବଦେ ମହାବଳୀ ॥୭୩
ବୃକ୍ଷକୁ ବୃକ୍ଷ ଦେହ ଲାଗି ।
ସକଳେ ପଡୁଛନ୍ତି ଭାଙ୍ଗି ॥୭୪
ଫଳ ପଡ଼ିଲା ସବୁ ଝଡ଼ି ।
ଶବଦ ମେଘ ଘଡ଼ଘଡ଼ି ॥୭୫
ବନରେ ଚହଳ ପଡ଼ିଲା ।
ତାଳ ବିପିନ ଭାଜିଗଲା ॥୭୬
ଧେନୁକାସୁର ବୀରମଣି ।
ଲୋକମୁଖରୁ ତାହା ଶୁଣି ॥୭୭
ପ୍ରତିଜ୍ଞା କରି ମହାବଳୀ ।
ବେଗେ ଧାଇଁଲା ପରଜ୍ୱଳି ॥୭୮
ଭାଜିବା ଦେଖି ତାଳବନ ।
ଅସୁର କଲା ଘୋର ସ୍ୱନ ॥୭୯
ଶବଦେ ଅବନୀ କମ୍ପିଲା ।
ରାମର ନିକଟେ ମିଳିଲା ॥୮୦
ବେନିଚରଣ ଟେକି ବେଗେ ।
ମାଇଲା ହଳଧର ଅଙ୍ଗେ ॥୮୧
କ୍ଷଣକେ ପଛଘୁଞ୍ଚା ଦେଇ ।
ପୁଣି ମାଇଲା ପାଦ ନେଇ ॥୮୨

ଗର୍ଦ୍ଦଭ ସ୍ୱଭାବେ ଶବଦ ।
କରି ମାଇଲା ବେନିପାଦ ॥୮୩
ଅନନ୍ତ କୋପେ ଗୁରୁତର ।
ଆକର୍ଷି ଧଇଲେ ପୟର ॥୮୪
ବେନି ଚରଣ ଧରି କରେ ।
ବୁଲାଇ ପିଟିଲେ ବୃକ୍ଷରେ ॥୮୫
କରେ ଘୂରାନ୍ତେ ହଳଧର ।
ଜୀବନ ଛାଡ଼ିଲା ଅସୁର ॥୮୬
ତାଳ ସଙ୍ଗତେ ମୃତପିଣ୍ଡ ।
ମାଡ଼ି ପଡ଼ିଲା ଭୂମିଖଣ୍ଡ ॥୮୭
ବନ୍ଧୁ କୁଟୁମ୍ବ ତା'ର ଯେତେ ।
ରାକ୍ଷସ ବଳ ଅପ୍ରମିତେ ॥୮୮
ଧାଇଁଲେ ଅତି ଖରତରେ ।
ମିଳିଲେ ରାମର ଛାମୁରେ ॥୮୯
ମାରନ୍ତି ପାଦଘାତ କରି ।
ଦେଖି ଧାଇଁଲେ ହଳଧାରୀ ॥୯୦
ପଛ-ଚରଣ କରେ ଧରି ।
ବୁଲାଇ ଅନ୍ତରାଳ କରି ॥୯୧
ଏକ ଆରକେ ପ୍ରହାରିଲେ ।
ନିମିଷ ମାତ୍ରେ ସଂହାରିଲେ ॥୯୨
ଅସୁରଙ୍କର ଦେହ ସଙ୍ଗେ ।
ତାଳ ପଡ଼ିଲା ଭୂମିଭାଗେ ॥୯୩
ମେଘ ଯେସନେ ଢ଼ାଙ୍କେ ଶୂନ୍ୟ।
ଅସୁର ଦେହେ ବ୍ୟାପେ ବନ ॥୯୪
ଦେଖି ସାନନ୍ଦ ଦେବତାଏ ।
ଆକାଶେ କଲେ ଜୟେ ଜୟେ ॥୯୫
ପୁଷ୍ପ ବରଷି ଦେବତାଏ ।
ନିର୍ଭୟ ହୋଇଲେ ଥୋକାଏ ॥୯୬
ତାଳ ଭୁଞ୍ଜିଲେ ଗୋପପୋଏ ।
ଘରକୁ ଆଣିଲେ ଥୋକାଏ ॥୯୭
ସେଦିନୁ ଗୋପ ନରନାରୀ ।
ନିର୍ଭୟେ ତାଳ ଭୋଗ କରି ॥୯୮
ସେ ବନେ ଚରାଇଲେ ଗାଈ ।
ନିଶ୍ଚିନ୍ତେ ଶିଙ୍ଗା ବେଣୁ ବାଇ ॥୯୯
ଦିନ ଅନ୍ତରେ ଗୋପେ ପଶି ।
ପଥେ ମୁରଲୀ ନାଦ ଘୋଷି ॥୧୦୦

Dr. Sudhanshu Sekhar Mishra

ଗୋପବାଳକ ମଧ୍ୟେ ଥାଇ ।
ରଙ୍ଗେ ନାଚନ୍ତି ବେନିଭାଇ ॥୧୦୧
ଗୋରଜ ଭୂଷଣ ଶରୀରେ ।
ଗୁଞ୍ଜା ମୟୂରପୁଚ୍ଛ ଶିରେ ॥୧୦୨
ହୃଦେ ଲମ୍ବଇ ବନମାଳ ।
କରେ ସୁରଙ୍ଗ ତାଳଫଳ ॥୧୦୩
ଗୋପୀଏ ରାମକୃଷ୍ଣ ଦେଖି ।
ନିର୍ମଳ କଲେ ଚର୍ମଆଖି ॥୧୦୪
ଶ୍ରୀକୃଷ୍ଣ ଚାହିଁ ରସଭରେ ।
ମିଳିଲେ ନନ୍ଦର ମନ୍ଦିରେ ॥୧୦୫
ଆନନ୍ଦେ ଯଶୋଦା ରୋହିଣୀ ।
କୋଳେ ବସାନ୍ତି ପୁତ୍ରେ ଆଣି ॥୧୦୬
ପୁତ୍ରଙ୍କୁ ମାଜଣା କରାଇ ।
ସର ଲବଣି ଅନ୍ନ ଦେଇ ॥୧୦୭
ଶେଯେ ଶୁଆଇ ପୁତ୍ରବେନି ।
ସୁସ୍ୱରେ କଲେ ଗୀତଧ୍ୱନି ॥୧୦୮
ଏମନ୍ତେ ବଞ୍ଚିଲେ ରଜନୀ ।
ପରୀକ୍ଷେ କହେ ଶୁକମୁନି ॥୧୦୯
ପ୍ରଭାତେ ଉଠି ଦାମୋଦର ।
ବନେ ଚଳିଲେ ଧାଡିକାର ॥୧୧୦
ଗୋପ କୁମରେ ଗାଈ ଘେନି ।
ଆନନ୍ଦେ କଲେ ବେଣୁଧ୍ୱନି ॥୧୧୧
ଘରେ ରହିଲେ ହଳଧର ।
କୃଷ୍ଣ ବିଜୟେ ନଦୀତୀର ॥୧୧୨
ଗୋରୁ ଚରାନ୍ତି ବନେପଶି ।
ରବି କିରଣ ପରକାଶି ॥୧୧୩
ତୃଷାରେ ନ ପାରନ୍ତି ଚଳି ।
କାଳିନ୍ଦୀ ହ୍ରଦେ ଯାଇ ମିଳି ॥୧୧୪
ସକଳେ କଲେ ଜଳପାନ ।
ତକ୍ଷଣେ ଛାଡ଼ିଲେ ଜୀବନ ॥୧୧୫
ଗୋରୁ ଗୋପାଳପୋଏ ମରି ।
ଦେଖି ଚକିତ ନରହରି ॥୧୧୬
ହ୍ରଦକୁ ଗୋବିନ୍ଦ ଅନାଇ ।
ବିଚାର କଲେ ଭାବଗ୍ରାହୀ ॥୧୧୭
ଗରୁଡ଼ ପକ୍ଷୀରାଜ ଡରେ ।
କାଳୀୟ ଅଛି କାଳିନ୍ଦୀରେ ॥୧୧୮
ତାହାର ବିଷେ ଜଳ ନାଶ ।
ଜନ୍ତୁଏ ନ କରନ୍ତି ଗ୍ରାସ ॥୧୧୯
ଏ ଜଳ ବୃନ୍ଦାବନେ ଥିଲେ ।
ପ୍ରାଣ ପାଇବ କେହୁ ଭଲେ ॥୧୨୦
ଭାରା ନିବାରେ ମୁହିଁ ଜାତ ।
ପୋଏ ହୋଇଲେ ପ୍ରାଣେ ହତ ॥୧୨୧
ନିର୍ବିଷ କରିବଇଁ ଆଜ ।
ଏଣେ ମୋହର ବଡ଼ କାର୍ଯ୍ୟ ॥୧୨୨
ଏତେ ବିଚାରି ଭାବଗ୍ରାହୀ ।
ଅମୃତ ନୟନେ ଅନାଇଁ ॥୧୨୩
ଗୋପବାଳକ ଗୋରୁ ସଙ୍ଗେ ।
ଜୀବନ ଦେଲେ ଶିରୀରଙ୍ଗେ ॥୧୨୪
ଗୋରୁ ବାଳକ ସଙ୍ଗ କରି ।
ଗୋପେ ମିଳିଲେ ନରହରି ॥୧୨୫
ସେ ହରିଚରଣ କମଳେ ।
ଚିତ୍ତ ମୋ ରହୁ ଭୃଙ୍ଗମେଳେ ॥୧୨୬
ହେ ଦୟାନିଧି ଦୟାକରି ।
ଏ ଦୀନ ଜନେ କର ପାରି ॥୧୨୭
କୃଷ୍ଣ ଚରିତ ଭାଗବତ ।
କହଇ ଦାସ ଜଗନ୍ନାଥ ॥୧୨୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଧେନୁକବଧୋ ନାମ ଷୋଡ଼ଶୋଽଧ୍ୟାୟଃ ॥

---

## ସପ୍ତଦଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ କୃଷ୍ଣ କଥା ।
ଯେଣେ ଖଣ୍ଡିବ ଭବବ୍ୟଥା ॥୧
ରଜନୀ ହୋଇଲା ପ୍ରଭାତ ।
ବନେ ଚଳିଲେ ଗୋପୀନାଥ ॥୨
ଗୋପ-ଗୋବତ୍ସା ସଙ୍ଗେ ଘେନି ।
ସୁସ୍ୱରେ କଲେ ବେଣୁ ଧ୍ୱନି ॥୩
ଗୋପାଳେ ବନୁ ପୁଷ୍ପ ତୋଳି ।
କାଳିନ୍ଦୀ ହ୍ରଦ ତଟେ ମିଳି ॥୪
ତୀରେ କଦମ୍ବ ତରୁ ବନ ।
ଦେଖି ବାଳକେ ତୋଷମନ ॥୫
ବୃକ୍ଷେ ଉଠିଲେ ଧାଡିକାରେ ।
ଗାଈ ଚରାନ୍ତି ନଦୀତୀରେ ॥୬
ଗୋବିନ୍ଦ ବୃକ୍ଷତଳେ ରହି ।
ବିଚାର କଲେ ଭାବଗ୍ରାହୀ ॥୭
ଗଭୀର ନିର୍ମଳ ଶୀତଳ ।
ବିଷେ ଦୂଷିତ ପୁଣ୍ୟଜଳ ॥୮
ଏ ଜଳେ କାଳୀୟ ନ ଥିବ ।
ଜଳ ପିଇବେ ସର୍ବଜୀବ ॥୯
ଏମନ୍ତ ମନେ ବିଚାରିଲେ ।
କଦମ୍ବ ବୃକ୍ଷରେ ଉଠିଲେ ॥୧୦
ଉଚ୍ଚ ଶିଖର ଡାଳେ ରହି ।
ହଲାନ୍ତି ଜଳକୁ ଅନାଇଁ ॥୧୧
ଶୁଣି ପରୀକ୍ଷ ମନତୋଷେ ।
ମୁନିଙ୍କି ବୋଲନ୍ତି ହରଷେ ॥୧୨

### ପରୀକ୍ଷିତ ଉବାଚ

ଭୋ ମୁନି କାଳିନ୍ଦୀ ହ୍ରଦର ।
କାଳୀୟ କରିଥିଲା ଘର ॥୧୩
ଗୋବିନ୍ଦେ କି କଲାକ ଦୋଷ ।
କିପାଁ ତା' ଗର୍ବ କଲେ ନାଶ ॥୧୪
ଅଗାଧ ଜଳୁଁ ହୃଷୀକେଶ ।
ସର୍ପକୁ ଦେଲେ ପରବାସ ॥୧୫
ଅନେକ ଦିନୁଁ ଥିଲା ଜଳେ ।
କି ଦୋଷ କଲା ପାଦତଳେ ॥୧୬

Dr. Sudhanshu Sekhar Mishra

କିମ୍ବା ନିବାସିଲେ ମୁରାରି ।
କହିବା ଶୁକ ବ୍ରହ୍ମଚାରୀ ॥୧୭
ହରିର ମହିମା ଅଶେଷ ।
ସଂସାର ହିତେ ପରକାଶ ॥୧୮
ମାୟା ମନୁଷ୍ୟ ଅବତାର ।
ଗୁପତେ ଛନ୍ତି ନନ୍ଦଘର ॥୧୯
ତା'ର ଚରିତ ଯେବା ଶୁଣି ।
ଅମୃତ ରସମୟ ବାଣୀ ॥୨୦
ସାଧୁଜନଙ୍କର ମତେ ।
କେ ଛାଡ଼ି ପାରିବ ତା' ଚିତ୍ତେ ॥୨୧
କହ ତାହାଙ୍କ ବାଳକେଳି ।
ବୋଲେ ପରୀକ୍ଷ ଦଣ୍ଡଧାରୀ ॥୨୨
କାଳୀୟ ଦର୍ପ ଚୂରି କେହ୍ନେ ।
ଏ କଥା ଶୁଣିବି ମୁଁ କର୍ଣ୍ଣେ ॥୨୩

ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ କୁମର ।
ଶୁଣ ପରୀକ୍ଷ ନୃପବର ॥୨୪
ଭାରା ନିବାରେ ନରହରି ।
ମନୁଷ୍ୟ ଦେହେ ଅବତରି ॥୨୫
ଦୁଷ୍ଟ ନିବାରି ସନ୍ଥ ପାଳି ।
ଦୟା ସାଗର ବନମାଳୀ ॥୨୬
କାଳୀୟ ବିଷେ ଜଳ ନାଶ ।
ଜନ୍ତୁଏ ନ କରନ୍ତି ଗ୍ରାସ ॥୨୭
ଗରଳ ଯୋଗେ ଜଳବାୟେ ।
ପକ୍ଷୀଏ ନ ଉଡ଼ନ୍ତି ଭୟେ ॥୨୮
ବିଶେଷେ ଗରଳ ଲହରୀ ।
ଜଳ ପିଅନ୍ତେ ଜନ୍ତୁ ମରି ॥୨୯
ଏମନ୍ତ ଦେଖି ବନମାଳୀ ।
ବିଚାର କଲେ ମନେ ଭାଳି ॥୩୦
ମୋହର ନୋହଇ ସହିଲା ।
କାଳୀ ଅନୀତି ଆଚରିଲା ॥୩୧
ଭାରା ନିବାରେ ମୋର ଜନ୍ମ ।
ଏମନ୍ତେ ବିଚାରିଣ ମନ ॥୩୨
ଦାସବତ୍ସଳ ହୃଷୀକେଶ ।
ଗାଢ଼େ ପିନ୍ଧିଲେ ପୀତବାସ ॥୩୩
ଆନନ୍ଦେ ବାହାସ୍ଫୋଟ ମାରି ।
କଦମ୍ବ ଡାଳେ କରେ ଧରି ॥୩୪
ଜଳେ ପଡ଼ିଲେ କୃଷ୍ଣ ଡେଇଁ ।
ଦେବେ ଦେଖନ୍ତି ସ୍ୱର୍ଗେ ରହି ॥୩୫
ଜଳ ଯେ ଉଚ୍ଛୁଳିଲା ବେଗେ ।
ଶତେକ ଧନୁ ଚାରିଦିଗେ ॥୩୬
କୃଷ୍ଣର ବଳ ଅପ୍ରମିତ ।
ସ୍ୱଭାବେ ମହିମା ଅନନ୍ତ ॥୩୭
ଖେଳନ୍ତି ବେନିଭୁଜ ତାଡ଼ି ।
ଶବଦ ମେଘ ଘଡ଼ଘଡ଼ି ॥୩୮
କାଳୀୟ ଶୁଣିଲା ପାତାଳେ ।
କିସ ଶବଦ ମୋର ଜଳେ ॥୩୯
ଦେଖିବ ବୋଲି ବିଜେକଲା ।
ସହସ୍ରଫଣା ଉଭାରିଲା ॥୪୦
ନୟନେ ଦେଖିଲା ମାଧବ ।
କୋପେ କମ୍ପଇ ଚକ୍ଷୁଶ୍ରବ ॥୪୧
ନୀଳଜୀମୂତ ଦେହକାନ୍ତି ।
ମଣିକଙ୍କଣ ଝଟକନ୍ତି ॥୪୨
ଶ୍ରୀବତ୍ସ ଚିହ୍ନ ପୀତବାସ ।
ରଙ୍ଗଅଧରେ ମନ୍ଦହାସ ॥୪୩
ନିଶ୍ଚିନ୍ତେ ଖେଳନ୍ତି ମୁରାରି ।
ସର୍ପ ଧାଇଁଲା କୋପ କରି ॥୪୪
କୋମଳ-ଚରଣେ ଦଂଶିଲା ।
ଦେହ ନିବିଡ଼େ ବନ୍ଦୀ କଲା ॥୪୫
ଗୋପାଳେ ବୃକ୍ଷଡ଼ାଳେ ଥିଲେ ।
ଜଳେ କୃଷ୍ଣଙ୍କୁ ଅନାଇଲେ ॥୪୬
କାଳୀୟ କରିଛି ବନ୍ଧନ ।
ଗରଳ ବହଇ ବଦନ ॥୪୭
ନାଗରେ ବନ୍ଧନ ଶରୀର ।
ଦେଖି ବାଳକେ ଥରହର ॥୪୮
ମନନୟନ କୃଷ୍ଣ ଦେହେ ।
ଢଳି ପଡ଼ିଲେ ଶୋକମୋହେ ॥୪୯
କାନ୍ଦନ୍ତି କୃଷ୍ଣଙ୍କୁ ଅନାଇଁ ।
ବିକଳ କେ ପାରିବ କହି ॥୫୦
ହୃଦେ ତାଡ଼ନ୍ତି ବେନି ପାଣି ।
ମୂର୍ଚ୍ଛିତେ ପଡ଼ିଲେ ଧରଣୀ ॥୫୧
ଗୋରୁଏ କୃଷ୍ଣଙ୍କୁ ଅନାଇଁ ।
କାନ୍ଦନ୍ତି ଚଉଦିଗ ଚାହିଁ ॥୫୨
କୃଷ୍ଣର ଦେହେ ଚକ୍ଷୁ ଦେଇ ।
ଚିତ୍ର-ପ୍ରତିମା ପ୍ରାୟ ରହି ॥୫୩
ବତ୍ସାଏ କାନ୍ଦିଣ ବିକଳ ।
ଆବୋରି କଦମ୍ବର ତଳ ॥୫୪
ଗୋକୁଳେ ପଡ଼ିଲା ଅରିଷ୍ଟି ।
ରୁଧିର ସଙ୍ଗେ ଜଳ ବୃଷ୍ଟି ॥୫୫
ଭୂମି କମ୍ପଇ ଥରହର ।
ଦିବସେ ଘୋର ଅନ୍ଧକାର ॥୫୬
ଗଗନେ ଶୁଭେ ଘୋରନାଦ ।
ତ୍ରିବିଧ ରିଷ୍ଟ ପରମାଦ ॥୫୭
ଦେଖି ଗୋପାଳେ ଖରତରେ ।
ମିଳିଲେ ନନ୍ଦର ମନ୍ଦିରେ ॥୫୮
ବୋଲନ୍ତି କାହିଁ ତୋ କୁମର ।
ରିଷ୍ଟ ପଡ଼ିଲା ଗୋପପୁର ॥୫୯
ଶୁଣି ଯଶୋଦା ଥରହର ।
ରାମର କରେ ଦେଇ କର ॥୬୦
ନନ୍ଦ ବୋଇଲା କୃଷ୍ଣ ନାହିଁ ।
ବନେ ଯେ ଘେନିଗଲା ଗାଈ ॥୬୧
ଅନନ୍ତ ଅଛି ମୋର ଘରେ ।
ରିଷ୍ଟ ପଡ଼ିଲା ଗୋପପୁରେ ॥୬୨
ନନ୍ଦ ହୋଇଲା ସ୍ତମ୍ଭୀଭୂତ ।
କାନ୍ଦଇ ପ୍ରାଣ କଣ୍ଠଗତ ॥୬୩
କି ବୁଦ୍ଧି କରିବଇଁ ମୁହିଁ ।
କେମନ୍ତେ କୃଷ୍ଣ ଦେଖିବଇଁ ॥୬୪
ଯଶୋଦା ଶୁଣି ମୋହମାନ ।
ଧରଣୀ ପଡ଼ି ଅଚେତନ ॥୬୫
ଶୁଣି କାନ୍ଦନ୍ତି ଗୋପନାରୀ ।
ଚହଳ ଚଉଦିଗେ ପୂରି ॥୬୬
ଲୋଡ଼ନ୍ତି ଯଶୋଦାର ସୁତ ।
କ୍ଷଣ କ୍ଷଣକେ ମୋହଗତ ॥୬୭
ସକଳେ ରାମ ଘେନି ସଙ୍ଗେ ।
ଚଳିଲେ ବୃନ୍ଦାବନ ଲାଗେ ॥୬୮

Dr. Sudhanshu Sekhar Mishra

ରୋହିଣୀ ସୁତ ମନେ ଗୁଣି ।
କୃଷ୍ଣ-ପ୍ରଭାବ ପରିମାଣି ॥୬୯
ଅଳପ ଅଳପ ହସିଲେ ।
ବଚନେ କିଛି ନକହିଲେ ॥୭୦
କୃଷ୍ଣ-ଚରଣଚିହ୍ନ ଚାହିଁ ।
ଚଳନ୍ତି ଅଙ୍ଗୁଳି ଦେଖାଇ ॥୭୧
କମଳ ଜବାଂକୁଶ ଚିହ୍ନ ।
ଗାଈଙ୍କ ପାଦ ଖୋଜମାନ ॥୭୨
କାଳିନ୍ଦୀ ନିକଟେ ମିଳିଲେ ।
ଗୋପ ଗୋବତ୍ସାଙ୍କୁ ଚାହିଁଲେ ॥୭୩
ହ୍ରଦେ ଦେଖିଲେ ଜଳରାଶି ।
ଲହରୀ ଗଗନେ ପ୍ରକାଶି ॥୭୪
ଜଳେ ଦେଖିଲେ ଦାମୋଦର ।
ନାଗରେ ବନ୍ଧନ ଶରୀର ॥୭୫
ବିଷ-ଅନଳେ ଅଚେତନ ।
ଗରଳ ବହଇ ବଦନ ॥୭୬
ଦେଖି ରୋଦନ୍ତି ଉଚ୍ଚସ୍ୱରେ ।
ଗୋରୁ-ଗୋପାଳ ତୀରେତୀରେ ॥୭୭
ଗୋପୀଙ୍କ ଦୃଷ୍ଟି କୃଷ୍ଣ ଦେହେ ।
କାନ୍ଦନ୍ତି ଅତି ମାୟାମୋହେ ॥୭୮
ବିକଳେ ହୋଇଲେ ମୂର୍ଚ୍ଛିତ ।
ନିର୍ଜୀବ ହୋଇ ଭୂମିଗତ ॥୭୯
ପ୍ରଳୟ ମଣିଲେ ଜଗତ ।
କୃଷ୍ଣର ଦେହେ ସର୍ପାଘାତ ॥୮୦
ଯଶୋଦା ଦେଖି ମୋହ ଗଲା ।
ଗୋପୀଙ୍କ ସାହସ ଉଡ଼ିଲା ॥୮୧
କୃଷ୍ଣଙ୍କୁ ଚାହିଁ ଅଚେତନ ।
ନନ୍ଦର ଦେହେ ନାହିଁ ଜ୍ଞାନ ॥୮୨
ବାଳୁତ କାଳୁ ଯେତେ ଗୁଣ ।
ସୁମରି କାନ୍ଦେ ପୁଣ ପୁଣ ॥୮୩
ଆହା ଦଇବ ଏହା କଲୁ ।
ସୁଖରେ ଭେଳା ବୁଡ଼ାଇଲୁ ॥୮୪
ଜଳେ ପଶନ୍ତେ କୃଷ୍ଣମାତ ।
ଗୋପୀ ଧଇଲେ ପାଦ ହସ୍ତ ॥୮୫

ନିଶ୍ଚୟ ଦେଖି ହଳଧର ।
ଅବୋରି କାଳିନ୍ଦୀର ତୀର ॥୮୬
ରାମ ବୋଲନ୍ତି ରହ ରହ ।
ଦେଖିବା ଶ୍ରୀକୃଷ୍ଣର ଦେହ ॥୮୭
ଗୋକୁଳ ମନ ଜାଣି ହରି ।
କାଳୀୟ ଅଛି ଦେହେ ଜଡ଼ି ॥୮୮
କୃଷ୍ଣର ଶରୀର ବଢ଼ିଲା ।
କାଳୀୟ ଛନ୍ଦି ନ ପାରିଲା ॥୮୯
କୃଷ୍ଣର ଦେହଭାଗ ଲାଗି ।
ସର୍ପର ଗଣ୍ଠି ଛନ୍ଦ ଭାଙ୍ଗି ॥୯୦
ତକ୍ଷଣେ କୃଷ୍ଣଙ୍କୁ ଛାଡ଼ିଲା ।
ସମ୍ଭାଳି ନ ପାରି ବୁଡ଼ିଲା ॥୯୧
ଉଠିଲା ଖଣ୍ଡେ ଦୂରେ ଯାଇ ।
ଗର୍ଜିଲା କୃଷ୍ଣଙ୍କୁ ଅନାଇ ॥୯୨
ଫଣା ସହସ୍ରେ ଉଭାରିଲା ।
ଗରଳ ଅଗ୍ନି ଉଦ୍‌ଗାରିଲା ॥୯୩
ଜିହ୍ୱା ବୁଲାଇ ଅନ୍ତରାଳେ ।
ନାଗ କୋଟିଏ ଛନ୍ତି ମେଳେ ॥୯୪
ନାଗେ କରନ୍ତି ଫୁ ଫୁ କାର ।
ବିଶେ ପିଙ୍ଗଳ ଦୃଷ୍ଟି ତା'ର ॥୯୫
କୋପେ କୃଷ୍ଣଙ୍କୁ ଗୋଡ଼ାଇଲା ।
ଶବଦେ ବ୍ରହ୍ମାଣ୍ଡ କମ୍ପିଲା ॥୯୬
ମାୟା ମନୁଷ୍ୟ ଅବତାର ।
ତୀରେ ଦେଖନ୍ତି ସୁର ନର ॥୯୭
ସର୍ପଙ୍କୁ ଚାହିଁ ନରହରି ।
ବୁଡ଼ିଲେ ସର୍ପେ ମାୟାକରି ॥୯୮
କାଳୀୟ ଖୋଜିଲା ଅନେକ ।
ଗଭୀର ଜଳ ଦୀର୍ଘପାଖ ॥୯୯
ଲୋଡ଼ି ନ ପାଇ ଦାମୋଦର ।
ପୁଣି ଟେକିଲା ନିଜ ଶିର ॥୧୦୦
କୃଷ୍ଣଙ୍କୁ ଦେଖିଲା ନିକଟେ ।
ଗୋପୀ-ଗୋପାଳେ ଜଳତଟେ ॥୧୦୧
ଦେଖି ପଳାନ୍ତି ଚକ୍ରଧର ।
ଘୂରିଲେ ମଣ୍ଡଳ ଆକାର ॥୧୦୨

ସର୍ପ ଗୋଡ଼ାଇ ନ ପାରିଲା ।
ଫୁଟିଣ ଗରଳ ଛାଡ଼ିଲା ॥୧୦୩
କୃଷ୍ଣଙ୍କୁ ଆଗ ପଛେ ଚାହିଁ ।
ଗର୍ଜଇ ରସନା ବୁଲାଇ ॥୧୦୪
ଦଂଶଇ ପୁନଃ ପୁନଃ ପାୟେ ।
ଗରଳ ଛାଡ଼େ କୃଷ୍ଣ ଦେହେ ॥୧୦୫
ଗୋବିନ୍ଦ କୋପେ ଗୁରୁତର ।
ଉଠିଲେ କାଳୀୟର ଶିର ॥୧୦୬
ସର୍ପର ଶିରେ ମଣି ଥିଲା ।
ଶ୍ରୀକୃଷ୍ଣ ଚରଣେ ଲାଗିଲା ॥୧୦୭
ମଣିର ତେଜ ରଙ୍ଗବର୍ଣ୍ଣ ।
ସୁନ୍ଦର ଶ୍ରୀକୃଷ୍ଣ ଚରଣ ॥୧୦୮
ତ୍ରିଭଙ୍ଗୀ ଛନ୍ଦେ ଉଭା ହୋଇ ।
ନାଚନ୍ତି ଗୋପାଳଙ୍କୁ ଚାହିଁ ॥୧୦୯
ଶ୍ରୀକୃଷ୍ଣ ନୃତ୍ୟ ଦେବେ ଚାହିଁ ।
ମିଳିଲେ ବୃନ୍ଦାବନେ ଯାଇ ॥୧୧୦
ତାଣ୍ଡବ ରସେ ଗୀତ ଗାଇ ।
ଗନ୍ଧର୍ବେ ବେଣୁ ବୀଣା ବାଇ ॥୧୧୧
ମୃଦଙ୍ଗ ତାଳ ବାଦ୍ୟ କରି ।
ରଙ୍ଗେ ନାଚନ୍ତି ଅପସରୀ ॥୧୧୨
କୁସୁମ ବରଷିଲେ ଆଣି ।
ଯେ ଯାହା ମତେ ସ୍ତୁତି ଭଣି ॥୧୧୩
ଶୁଣି ସାନନ୍ଦ ବନମାଳୀ ।
ନୃତ୍ୟ କରନ୍ତି ପାଦଚାଳି ॥୧୧୪
କାଳୀୟ ପ୍ରାଣ କଣ୍ଠାଗ୍ରତ ।
ସହସ୍ରେ ଫଣା ମୂରୁଛିତ ॥୧୧୫
ଯେବଣ ଫଣା ଉଚ୍ଚେ ଥାଇ ।
ତହିଁ ଉଠନ୍ତି କୃଷ୍ଣ ଡେ଼ଇଁ ॥୧୧୬
ରୋଷେ ନାଚନ୍ତି ପାଦ ଚାଳି ।
ରୁଧିର ସର୍ପ ମୁଖୁ ଗଳି ॥୧୧୭
କାଳୀୟ ମନେ ବିଚାରିଲା ।
ନିଶ୍ଚୟେ ମରଣ ହୋଇଲା ॥୧୧୮
ହରିରେ ପଶିବି ଶରଣ ।
ଡ଼ାକିଲା ରଖ ନାରାୟଣ ॥୧୧୯

Dr. Sudhanshu Sekhar Mishra

କାଳୀୟ ଶିରେ କୃଷ୍ଣ ଥାଇ ।
ଜାଣିଲେ ପ୍ରଭୁ ଭାବଗ୍ରାହୀ ॥୧୨୦
ଦାସବତ୍ସଳ ପୀତବାସ ।
ତକ୍ଷଣେ ହୋଇଲେ ଉଶ୍ୱାସ ॥୧୨୧
କାଳୀୟ ଜୀବନ ପାଇଲା ।
ଶ୍ରୀକୃଷ୍ଣ ମୁଖକୁ ଚାହିଁଲା ॥୧୨୨
ସଭୟେ ନ ପାରଇ କହି ।
ତ୍ରାସେ କମ୍ପଇ ତା'ର ଦେହି ॥୧୨୩
ଶତେକ ପତ୍ନୀ ତା'ର ଥିଲେ ।
ସ୍ୱାମୀର ମରଣ ଜାଣିଲେ ॥୧୨୪
ଶ୍ରୀହରି ମହିମା ଜାଣନ୍ତି ।
ନାମ ଜପନ୍ତି ଦିବାରାତି ॥୧୨୫
ସୁତ ଦୁହିତା ଆଗ କରି ।
କରେ ଘେନିଲେ ଅର୍ଘ୍ୟଥାଳୀ ॥୧୨୬
ଗନ୍ଧ ଚନ୍ଦନ ନାନାମଣି ।
ନିର୍ମଳ ପଦ୍ମମାଳ ଘେନି ॥୧୨୭
ଶ୍ରୀକୃଷ୍ଣ ନିକଟେ ମିଳିଲେ ।
ବାଳକ ତଳେ ଶୁଆଇଲେ ॥୧୨୮
ପାଦେ ପଡ଼ିଲେ ସର୍ପବାଳୀ ।
ଦେଖି ସାନନ୍ଦ ବନମାଳୀ ॥୧୨୯
କେଶ ବସନ ଅସମ୍ଭାଳ ।
ନୟନୁ ଝରେ ଅଶ୍ରୁଜଳ ॥୧୩୦
ଉଠି କରନ୍ତି ଜୟେ ଜୟେ ।
ସ୍ୱର୍ଗେ ଦେଖନ୍ତି ଦେବତାୟେ ॥୧୩୧
ବୋଲନ୍ତି ଶରଣ ତୋହର
ତ୍ରାହି କରିବା ଚକ୍ରଧର ॥୧୩୨
ଦୋଷୀକୁ ଦଣ୍ଡିବା ଯୁକତ ।
ଭାରା ନିବାରେ ତୁହି ଜାତ ॥୧୩୩
ତୋହର ଶତ୍ରୁ ମିତ୍ର ନାହିଁ ।
ତୋ'ର ଭିଆଣ ସର୍ବଦେହୀ ॥୧୩୪
ଭକତି କରନ୍ତି ଯେ ତୋ[illegible]
ଯେ ଅବା ଭଜେ ଶତ୍ରୁ[illegible] ॥୧୩୫
ଦୁହିଁଙ୍କୁ ଦେଉ ଏକଗତି ।
ଦୟାସାଗର ଦାଶରଥି ॥୧୩୬

ଆମ୍ଭଙ୍କୁ କଲୁ ଅନୁଗ୍ରହ ।
ହେଲେ ନାଶିଲୁ ଦମ୍ଭ ମୋହ ॥୧୩୭
ସର୍ପ ହୋଇଲା ପାପକାରୀ ।
ତୋତେ ପାଇଲା ନରହରି ॥୧୩୮
ଏହାରେ ତରିଲୁ ସକଳ ।
ବନ୍ଧୁ ବାନ୍ଧବ ନାଗକୁଳ ॥୧୩୯
ପୂର୍ବେ ଏ କେତେ ତପ କଲା ।
ଅନେକ ଅନ୍ନଦାନ ଦେଲା ॥୧୪୦
ଜଳ ଦେଉଳ ନାନାମତେ ।
ପ୍ରାଣୀଙ୍କି ଦୟା ହୃଦ୍‌ଗତେ ॥୧୪୧
ତୋ' ନାମ-କୀର୍ତ୍ତନେ ଆନନ୍ଦ ।
ତେଣୁ ପାଇଲା ପଦ୍ମପାଦ ॥୧୪୨
କେତେ ବା ଅଛି ତପକରି ।
ତୋ' ପାଦରଜ ଶିରେ ଧରି ॥୧୪୩
ଯାହା ପାଇଲା ବଳି ପୁଣି ।
ତପ କରଇ କମଳିନୀ ॥୧୪୪
ଯାହା ପାଇବେ ବୋଲି ପୁଣି ।
ତପ କରନ୍ତି ସୁରମୁନି ॥୧୪୫
ତୋ ପାଦରଜ ପାଇ ଜନେ ।
ଅଧିକ ନବାଞ୍ଛନ୍ତି ମନେ ॥୧୪୬
ସ୍ୱର୍ଗ ଭୋଗକୁ ତୁଚ୍ଛ କରି ।
ବ୍ରହ୍ମପଦକୁ ନବିଚାରି ॥୧୪୭
ଏକାଙ୍ଗରାଜପଣେ ସଧ ।
ଯୋଗ-ସମାଧି-ଚତୁର୍ବେଦ ॥୧୪୮
ଯୋଗସିଦ୍ଧିକୁ ନ ଇଚ୍ଛଇ ।
ନିର୍ବାଣପଦ ନ ମାଗଇ ॥୧୪୯
ଏଣେ ନୁହନ୍ତି ସାବଧାନ ।
ତୋ' ପାଦେ ଥାଇ ଯାର ମନ ॥୧୫୦
ଦୁର୍ଲ୍ଲଭ ଅଟୁ ଦୁଷ୍ଟ ଚିତ୍ତେ ।
ଏ ତୋତେ ପାଇଲା କେମନ୍ତେ ॥୧୫୧
ତମ ଗୁଣରେ ଅଛି ଭେଦି ।
ବିଶେଷେ ସର୍ପ ଏ ପ୍ରମାଦି ॥୧୫୨
ତୋତେ ଏ ନିକଟେ ପାଇଲା ।
ଯେଣୁ ଏ ପୂର୍ବେ ତପ କଲା ॥୧୫୩

ନିର୍ଗୁଣ-ଆତ୍ମା ଗୁଣବନ୍ତ ।
ନମସ୍ତେ ପ୍ରଭୁ ଜଗନ୍ନାଥ ॥୧୫୪
ପଞ୍ଚଭୂତଙ୍କ ଆତ୍ମା ତୁହି ।
ତୋହର ଆଦିଅନ୍ତ ନାହିଁ ॥୧୫୫
ଜ୍ଞାନବିଜ୍ଞାନ-ନିଧି ହେଉ ।
ତ୍ରିଗୁଣେ ମାୟାରୂପ ବହୁ ॥୧୫୬
ସୃଷ୍ଟି ପାଳନ କରୁ ଅନ୍ତ ।
ତୁ କାଳରୂପୀ ଗୋପୀନାଥ ॥୧୫୭
ଅନନ୍ତ ରୂପ ସୂକ୍ଷ୍ମମୟ ।
ତ୍ରିଗୁଣ-ଭେଦେ ବହୁ ଦେହ ॥୧୫୮
ନିଗମମତେ ମାୟାକରି ।
ଜଗତେ ହେଉ ରୂପଧାରୀ ॥୧୫୯
ତୋହର ଦେହେ ତିନିଲୋକେ ।
କର୍ମ ଭୁଞ୍ଜନ୍ତି ଦୁଃଖସୁଖେ ॥୧୬୦
ଯେ ତୋତେ ସାଧୁପଣେ ଭଜେ ।
ସେ ତୋ'ର ଦେଲାଫଳ ଭୁଞ୍ଜେ ॥୧୬୧
ତୋତେ ଯେ ନ ଜାଣଇ ଚିତ୍ତେ ।
ସେ ପ୍ରାଣୀ ତରିବେ କେମନ୍ତେ ॥୧୬୨
ଆମ୍ଭର ସ୍ୱାମୀ ଏକବେଳେ ।
ଦ୍ରୋହ ଯେ କଲା ପାଦତଳେ ॥୧୬୩
ଏ ଦୋଷ ସହିବା ମୁରାରି ।
ଆମେ ତୋହର ପରିବାରୀ ॥୧୬୪
ପ୍ରାଣ ଛାଡ଼ିବ ଏହିକ୍ଷଣି ।
ତୁ କି ନ ଜାଣୁ ଚକ୍ରପାଣି ॥୧୬୫
ଆମ୍ଭଙ୍କୁ ଦିଅ ସ୍ୱାମୀ ଦାନ ।
ତୋତେରେ ଶରଣ ଭଗବାନ ॥୧୬୬
ଏବେ କରିବୁ କିସ କହ ।
ବିଚାର କରି ଆଜ୍ଞା ଦିଅ ॥୧୬୭
ପରୀକ୍ଷେ ଶୁକ ମୁନି କହେ ।
ଶୁଣି ହରଷ ଦେବରାୟେ ॥୧୬୮
ନାଗକାମିନୀ ସ୍ତୁତି ଶୁଣି ।
ଦୟାସାଗର କମ୍ବୁପାଣି ॥୧୬୯
ପାଦ ପ୍ରହାର ଛାଡ଼ି କରି ।
ଉଶ୍ୱାସ ହୋଇଲେ ମୁରାରି ॥୧୭୦

Dr. Sudhanshu Sekhar Mishra

କାଳୀୟ ଜୀବନ ପାଇଲା ।
ଶ୍ରୀକୃଷ୍ଣ ମୁଖକୁ ଚାହିଁଲା ॥୧୭୧

ସଭୟେ ଶୋକ ଗଦଗଦେ ।
ପୁଣି ପଡ଼ଇ କୃଷ୍ଣପାଦେ ॥୧୭୨

କାଳୀୟ ଉବାଚ

ବୋଲଇ ଶୁଣ ନାରାୟଣ ।
ଜଗତ ତୋହର ଭିଆଣ ॥୧୭୩

ସର୍ପରେ ଜାତ କଲୁ ମୋତେ ।
ସ୍ୱଭାବ ଛାଡ଼ିବି କେମନ୍ତେ ॥୧୭୪

ତାମସଗୁଣେ ଜାତ କରି ।
ଗରଳେ କଲୁ ଅଧିକାରୀ ॥୧୭୫

ତେଣୁ ମୁଁ କ୍ରୋଧେ ବଶ ହୋଇ।
ସ୍ୱଭାବ ଛାଡ଼ି ନ ପାରଇ ॥୧୭୬

ତୋହର ମାୟା ଜାଣୁ ତୁହି ।
ଭୋନାଥ ରଖ ଭାବଗ୍ରାହୀ ॥୧୭୭

ତାମସଗୁଣେ ହୋଇ ବଦ୍ଧ ।
ତୋତେ ମୁଁ କଲି ଅପରାଧ ॥୧୭୮

ଏଣୁ ନିଷ୍ଠୁର ମୋ' ସ୍ୱଭାବ ।
ବିଚାରି ଦଣ୍ଡ ପଦ୍ମନାଭ ॥୧୭୯

ଯେ ତୋର ଇଚ୍ଛା ମୋତେ କର।
ତୋରେ ଶରଣ ଚକ୍ରଧର ॥୧୮୦

ସର୍ପ ବିକଳ କର୍ଣ୍ଣେ ଶୁଣି ।
ଦୟାସାଗର ବେଣୁପାଣି ॥୧୮୧

ବୋଲନ୍ତି ସର୍ପମୁଖ ଚାହିଁ ।
କାଳିନ୍ଦୀ ହ୍ରଦେ ନ ଥା' ତୁହି ॥୧୮୨

ବନ୍ଧୁବାନ୍ଧବ ଘେନି ସଙ୍ଗେ ।
ସମୁଦ୍ରେ ପଶ ଯାଇ ବେଗେ ॥୧୮୩

ଜଳଧି ଦ୍ୱୀପ ମଧଗତେ ।
ଗରୁଡ଼ ଭୟ ନାହିଁ ତୋତେ ॥୧୮୪

ମୋହର ପାଦ ତୋ'ର ଶିରେ ।
ଲାଗିଲା ସହସ୍ର ଫଣାରେ ॥୧୮୫

ଗରୁଡ଼ ଦେଖି ନିସ୍ତରିବ ।
ତୋହର ଚରଣେ ପଡ଼ିବ ॥୧୮୬

ନିର୍ଭୟ ହୋଇ ବେଗେ ଯାଅ।
ମୋର ଭକତି ହୃଦେ ବହ ॥୧୮୭

ଏଜଳ ଅମୃତ ମୁଁ କରି ।
ଗରଳ ଦୂରେ ପରିହରି ॥୧୮୮

ଏ ବନେ ଯେତେ ବନଚାରୀ ।
ଆନନ୍ଦେ ଜଳପାନ କରି ॥୧୮୯

ସୁଖେ ବଞ୍ଚିବେ ସର୍ବଜୀବେ ।
ଏ ବନେ ନିଶ୍ଚିନ୍ତେ ରହିବେ ॥୧୯୦

ଶୁଣ କାଳୀୟ ମୋ' ଉତ୍ତର ।
କହଇ ତୋତେ ଦେଇ ବର ॥୧୯୧

ତୋ'ର ମୋହର ଏ ଚରିତ ।
ଯେ ସୁମରିବେ ଅବିରତ ॥୧୯୨

ସର୍ପ-ବିଘାତେ ନାହିଁ ବାଧା ।
ଯେ ମୋତେ ସୁମରେ ତ୍ରିସନ୍ଧ୍ୟା॥୧୯୩

ଏ ଜଳେ ସ୍ନାହାନ କରିବେ ।
ପିତୃତର୍ପଣେ ପିଣ୍ଡ ଦେବେ ॥୧୯୪

ଆହାର ତେଜି ଉପବାସେ ।
ଜାଗର ଦେଇ ନଦୀପାଶେ ॥୧୯୫

ମୋ' ନାମେ ରଜନୀ ବଞ୍ଚିବେ।
ସକଳ ପାପୁଁ ସେ ତରିବେ ॥୧୯୬

ଶ୍ରୀହରି ଆଜ୍ଞା ଘେନି ଶିରେ ।
ତୀରେ ଉଠିଲା ଧାଡିକାରେ ॥୧୯୭

କୁଟୁମ୍ବ ଘେନିଣ ସଙ୍ଗରେ ।
ପୂଜିଲା ଗୋବିନ୍ଦ ପୟରେ ॥୧୯୮

ଗନ୍ଧଚନ୍ଦନ ରଙ୍ଗବାସ ।
ଅମୂଲ୍ୟ ରତ୍ନ ମଣି ତ୍ରାସ ॥୧୯୯

କମଳମାଳା କଣ୍ଠେ ଦେଇ ।
ନାଚେ ଆନନ୍ଦେ ଗୀତ ଗାଇ ॥୨୦୦

କୁଟୁମ୍ବ ଘେନି ପ୍ରଦକ୍ଷିଣ ।
କାଳୀୟ କଲା ପୁଣ ପୁଣ ॥୨୦୧

ଉତ୍ତରଦିଗକୁ ଚାହିଁଲା ।
ଗୋବିନ୍ଦ ଆଦେଶେ ଚଳିଲା ॥୨୦୨

ପଶିଲା ସାହେର ଭିତରେ ।
ହରିଚରଣ ବହି ଶିରେ ॥୨୦୩

ଜଳଧିପତି ପୂଜା କଲା ।
ନାଗ ଗୋତ୍ରଙ୍କୁ ଠାବ ଦେଲା ॥୨୦୪

କୃଷ୍ଣର ଅନୁରାଗୁଁ କରି ।
ପୂଜା ପାଇଲା ଖଗଅରି ୨୦୫

ସେଦିନୁ ଜଳପାନ କରି ।
ଆନନ୍ଦ ଗୋପ ନରନାରୀ ୨୦୬

ସେ ହରି ଚରଣ କମଳେ ।
ମନ ମୋ ରହୁ ସୁଖଭୋଳେ ୨୦୭

ସୁଜନେ ଶୁଣ ମୋ ବଚନ ।
କୃଷ୍ଣ ଚରଣେ ଦେଇ ମନ ୨୦୮

ହୃଦେ ଚିନ୍ତିବ ନରହରି ।
ସୁଖେ ତରିବ ଭବବାରି ୨୦୯

ଭକତଜନେ ଏଣେ ରସ ।
କହଇ ଜଗନ୍ନାଥ ଦାସ ୨୧୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
କାଳୀୟମୋକ୍ଷଣଂ ନାମ
ସପ୍ତଦଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଅଷ୍ଟାଦଶ ଅଧ୍ୟାୟ

### ରାଜା ଉବାଚ

ବୋଲନ୍ତି ଅଭିମନ୍ୟୁ ସୁତ ।
ଭୋ ମୁନି କହ ଭାଗବତ ॥୧
କେବଣ ହେତୁ କାଳୀସର୍ପ ।
ଛାଡ଼ିଲା ରମଣକ ଦ୍ୱୀପ ॥୨
ଗରୁଡ଼େ କରି ଅପରାଧ ।
ଲୁଚି ଯେ ଥିଲା କାଳୀ ହ୍ରଦ ॥୩
ହରିଚରଣ-ଚିହ୍ନ ଶିରେ ।
ଧରିଣ ଗଲା ନିଜ ପୁରେ ॥୪
ଏ କଥା କହ ମୁନି ମୋତେ ।
ସଂସାରୁ ତରିବି ଯେମନ୍ତେ ॥୫
କହନ୍ତି ଶୁକମୁନି ତୋଷେ ।
ଶ୍ରୀକୃଷ୍ଣ ଚରଣ ବିଶ୍ୱାସେ ॥୬

### ଶୁକ ଉବାଚ

ଶୁଣ ହୋ କାଳୀୟର କଥା ।
ତୁ ମୋକ୍ଷପଦେ ଶୁଦ୍ଧଚେତା ॥୭
ବ୍ରହ୍ମା ଯେ ବ୍ରହ୍ମାଣ୍ଡ ଭିଆଇ ।
ଯେ ଯାହା ରୂପେ ଠାବ ଦେଇ ॥୮
କାଳୀୟ ଆଦି ଯେତେ ସର୍ପେ ।
ଥୋଇଲା ରମଣକଦ୍ୱୀପେ ॥୯
ନିର୍ଭୟ ହୋଇଥା'ନ୍ତି ତହିଁ ।
ଗରୁଡ଼େ ବଳିଭୋଜା ଦେଇ ॥୧୦
ବନ-ଗହନେ ବୃକ୍ଷମୂଳେ ।
ଗରୁଡେ ପୂଜନ୍ତି ସକଳେ ॥୧୧
ମାସକେ ନାନା ଉପହାର ।
ପାଳି ପଡ଼ଇ ଯେଝାଘର ॥୧୨
ସେ ବଳିଭୋଜା ଦେଇ ତୋଷେ ।
ପୂଜନ୍ତି ଜୀବନର ଆଶେ ॥୧୩
ଏମନ୍ତେ କାଳୀୟର ଘରେ ।
ପାଳି ପଡ଼ିଲା ଏକବାରେ ॥୧୪
ନାଗେ କହିଲେ ତା'ର ଆଗେ ।
ଗରୁଡ଼ ପୂଜା ତୋ'ର ଭାଗେ ॥୧୫
ଶୁଣି କାଳୀୟ ତୋଷଚିତ୍ତେ ।
ସଞ୍ଚା ସେ କଲା ନାନା ମତେ ॥୧୬
ଦଇବେ ନାଗଙ୍କର ରାଜା ।
ଅନେକ କଲା ବଳିଭୋଜା ॥୧୭
ବୃକ୍ଷର ମୂଳେ ନେଇ ଥୋଇ ।
ଅନେକ ବାଦ୍ୟନାଦ ବାଇ ॥୧୮
କାଳୀୟ ବିଚାରଇ ଦେଖି ।
ଗରୁଡ଼ ବୋଲି କେଡ଼େପକ୍ଷୀ ॥୧୯
ଏତେକ ଭୋଜା ତା'ଙ୍କୁ ଦେବି ।
ତେବେ ସେ ନିର୍ଭୟ ହୋଇବି ॥୨୦
ଏ ବଡ଼ ଲଜ୍ଜା ମୋତେ ହୋଇ ।
ବାସୁକି ମୋର ସାନଭାଇ ॥୨୧
ଏକ ଫଣାକେ ମହୀଧରି ।
ମୁଁ କିମ୍ବା ଗରୁଡ଼କୁ ଡ଼ରି ॥୨୨
ସହସ୍ର ଫଣା ଅଛି ମୋର ।
ଗରୁଡ଼ କେଡେ ବଳୀୟାର ॥୨୩
ଏକା ପିଅର ପୁଅ ଆମ୍ଭେ ।
ସେ କିମ୍ବା ଏଡ଼େ ବଡ଼ ଦମ୍ଭେ ॥୨୪
ଆଜ ଗଞ୍ଜିବି ତାର ବଳ ।
ନିର୍ଭୟ ହେଉ ନାଗକୁଳ ॥୨୫
କେ ଅବା ନ ଜାଣନ୍ତି ମୋତେ ।
ବ୍ରହ୍ମାଣ୍ଡ ମଧ୍ୟେ ଛନ୍ତି ଯେତେ ॥୨୬
ଏତେ ବିଚାରି ସର୍ପ ମନେ ।
ସବୁ ଖାଇଲା ଦୁଷ୍ଟପଣେ ॥୨୭
ଯେତେକ ନାଗବଳ ଥିଲେ ।
ତାହାର ଦୁର୍ବୁଦ୍ଧି ଦେଖିଲେ ॥୨୮
ଭୟେ ହୋଇଲେ ଥରହର ।
ଖଗନାଥଙ୍କୁ ବଡ଼ ଡ଼ର ॥୨୯
ନାଗଙ୍କୁ ବୋଇଲାକ ରାଇ ।
ଏଠାରେ ନ ଥିବଟି କେହି ॥୩୦
ଯାଅରେ ବୋଲି ଆଜ୍ଞା ଦେଲା ।
ଆପଣେ ବନସ୍ତେ ରହିଲା ॥୩୧
ସହସ୍ରଫଣା ଫୁ ଫୁ କରି ।
ବଦନୁଁ ଗରଳ ଉଦ୍‌ଗାରି ॥୩୨
ଏମନ୍ତେ ରଜନୀ ହୋଇଲା ।
ଗରୁଡ଼ ପକ୍ଷୀ ବିଜେ କଲା ॥୩୩
ଗଗନ ପୂରିଲା ଶବଦେ ।
କାନନେ ମିଳିଲା ଆନନ୍ଦେ ॥୩୪
ବୃକ୍ଷମୂଳକୁ ଦେଲା ଚାହିଁ ।
ଦେଖିଲା ବଳିଭୋଜା ନାହିଁ ॥୩୫
ମନେ ପାଇଲା ଗରୁତାପ ।
ମିଳିଲା କାଳୀୟ ସମୀପ ॥୩୬
କୋପେ ଚାହିଁଇ ଖଗନାଥ ।
ଆବୋରି କାଳୀୟର ପଥ ॥୩୭
ଗର୍ଜ୍ଜେ ଗରୁଡ଼ କୋପଭରେ ।
କାଳୀୟ ମିଳିଲା ଛାମୁରେ ॥୩୮
ସହସ୍ରଫଣା ମେଘପ୍ରାୟେ ।
ଦଂଶିଲା ଗରୁଡ଼ର କାୟେ ॥୩୯
ଅର୍ଦ୍ଧଯୋଜନ ଘୁଞ୍ଚିଗଲା ।
ପୁଣି ହିଁ ଆଗେ ଓଗାଳିଲା ॥୪୦
ବିନତାସୁତ ବେଗେ ଧାଇଁ ।
ଚାପୋଡ଼େ ପ୍ରହାରିଲା ନେଇ ॥୪୧
ହରିଙ୍କି ବହଇ ଯେ କନ୍ଧେ ।
ସେ କି ପଡ଼ଇ ପରମାଦେ ॥୪୨
ଗରୁଡ଼ ପକ୍ଷଘାତ ପାଇ ।
କାଳୀୟ ମୂର୍ଚ୍ଛାଗତ ହୋଇ ॥୪୩
ଘଡ଼ିକେ ଚେତନା ପାଇଲା ।
ପବନୁଁ ବେଗେ ପଳାଇଲା ॥୪୪
କାଳନ୍ଦୀହ୍ରଦେ ପଶିଗଲା ।
ପାତାଳ-ବିବରେ ଲୁଚିଲା ॥୪୫
ନିର୍ଭୟେ ନିଶ୍ଚିନ୍ତେ ରହିଲା ।
ଗରୁଡ଼ ତହିଁ ନ ପଶିଲା ॥୪୬
କାଳୀୟ ଜାଣଇ ତଦନ୍ତେ ।
ଗରୁଡ଼ ନ ପଶଇ ଏଥ ॥୪୭

Dr. Sudhanshu Sekhar Mishra

ପୂର୍ବେ ସେ ଅଛି ଶାପ ପାଇ ।
କାଳିନ୍ଦୀ ହ୍ରଦକୁ ନ ଯାଇ ॥୪୮
ନିଶ୍ଚିନ୍ତେ ନାଗବଳ ସଙ୍ଗେ ।
ଜଳେ ରହିଲା ନବରଙ୍ଗେ ॥୪୯
ଗରୁଡ଼ ଦେଖି ବାହୁଡ଼ିଲା ।
ନିଜ ଭୁବନେ ବିଜେ କଲା ॥୫୦
ଶୁଣି ସାନନ୍ଦ ମହୀପତି ।
ମୁନିଙ୍କି ଚାହିଁ ତୋଷମତି ॥୫୧

ପରୀକ୍ଷିତ ଉବାଚ

ବୋଲଇ ନିସ୍ତରିଲି ମୁହିଁ ।
ତୋ'ର ବଚନେ ମନ ଦେଇ ॥୫୨
ଭୋ ମୁନି ଅସମ୍ଭବ କଥା ।
ଗରୁଡ଼ ମହା ବଳବନ୍ତା ॥୫୩
ଗୋବିନ୍ଦ ଯାହାର ଠାକୁର ।
କେ ତା'ର ତୁଲେ ବଳୀୟାର ॥୫୪
କାଳିନ୍ଦୀ ଜଳେ ନ ପଶିଲା ।
ମୋତେ ତ ସନ୍ଦେହ ଲାଗିଲା ॥୫୫
ହସି ବୋଲନ୍ତି ବ୍ୟାସସୁତ ।
ଶୁଣ ହୋ ନୃପତି ତଦନ୍ତ ॥୫୬

ଶୁକ ଉବାଚ

ପୂର୍ବେ ସେ ନଦୀତୀରେ ବନେ ।
ତପ କରନ୍ତି ମୁନିଜନେ ॥୫୭
ସୌଭରି ନାମେ ବ୍ରହ୍ମଋଷି ।
ତପ କରନ୍ତି ତଟେ ବସି ॥୫୮
ମୁନି ନିକଟେ ମୀନଗଣେ ।
କ୍ରୀଡ଼ା କରନ୍ତି ଅନୁକ୍ଷଣେ ॥୫୯
ବିଶ୍ୱାସ ଭାବେ ନିତିନିତି ।
ମୁନିଙ୍କି ନ କରନ୍ତି ଭୀତି ॥୬୦
ଦିନେକ ପ୍ରଭାତର କାଳେ ।
ଆସି ମିଳିଲେ ମତ୍ସ୍ୟବାଳେ ॥୬୧
ରୋହିତ ନାମେ ମତ୍ସ୍ୟରାଜ ।
ଖେଳଇ ଉଭାରିଣ ଲାଞ୍ଜ ॥୬୨
ମୀନ ବାଳକେ କ୍ରୀଡ଼ା କରି ।
ଦେଖନ୍ତି ମୁନି ସଉଭରି ॥୬୩
ଏମନ୍ତେ ଗରୁଡ଼ ମିଳିଲା ।
କାଳିନ୍ଦୀ ଜଳେ ଓହ୍ଲାଇଲା ॥୬୪
ଆହାର ଯତ୍ନେ ଖୋଜୁଥିଲା ।
ଜଳରେ ମୀନକୁ ଦେଖିଲା ॥୬୫
ନିଶ୍ଚଳେ ମୀନ ଚରୁଥିଲା ।
ଜଳ ହାନ୍ଦୋଳ କରିଦେଲା ॥୬୬
ନିଶ୍ଚିନ୍ତେ ବିହରଇ ମତ୍ସ୍ୟ ।
ମୁନି ତା' ଦେଖନ୍ତି ପ୍ରତ୍ୟକ୍ଷ ॥୬୭
ମୁନି ବୋଲନ୍ତି ରହ ରହ ।
ଏମାନେ ମୋର ନିଜ ଦେହ ॥୬୮
ଏହାକୁ ନ କର ଆହାର ।
ଏ ତୋ'ର କେବଣ ବେଭାର ॥୬୯
ଗରୁଡ଼ ନ ଶୁଣିଲା କର୍ଣ୍ଣେ ।
ରୋହିତେ ଗିଳିଲା ବହନେ ॥୭୦
ଦେଖି ଚକିତ ମୁନିବର ।
କୋପେ କମ୍ପିଲେ ଗୁରୁତର ॥୭୧
ବୋଲନ୍ତି ହରିଙ୍କି ଏ ବହି ।
ଏହାକୁ କୋପ ନ ଯୋଗାଇ ॥୭୨
ମୁହିଁ ଏହାକୁ କଲେ ନାଶ ।
କୋପ କରିବେ ପୀତବାସ ॥୭୩
ଏମନ୍ତେ ଚିତ୍ତ ସ୍ଥିର କରି ।
କୋପେ ବୋଲନ୍ତି ସଉଭରି ॥୭୪
ରେ ରେ ଗରୁଡ଼ ଏଡ଼େ ଗର୍ବ ।
ମୋତେ ଦେଖାଇଲୁ ସ୍ୱଭାବ ॥୭୫
ମୋହର ମନେ ଦେଲୁ ତାପ ।
ଉଚିତେ ଘେନ ମୋର ଶାପ ॥୭୬
କାଳିନ୍ଦୀ ହ୍ରଦେ ନ ପଶିବୁ ।
ଜୀବନେ ଯେତେ କାଳ ଥିବୁ ॥୭୮
ଯେବେ ପଶିବୁ ଦୁଷ୍ଟପଣେ ।
ଭସ୍ମ ହୋଇବୁ ତତ୍କ୍ଷଣେ ॥୭୯
ଶୁଣି ଗରୁଡ଼ ପଳାଇଲା ।
କାଳିନ୍ଦୀହ୍ରଦେ ନ ପଶିଲା ॥୮୦
ତାହା କାଳୀୟ ଜାଣିଥିଲା ।
ପଳାଇ ତହିଁ ସେ ଲୁଚିଲା ॥୮୧
ଲୁଚିଲାଠାରୁ ନେଇ ପୁଣି ।
ଏମନ୍ତ କଲେ ଚକ୍ରପାଣି ॥୮୨
ଶୁଣ ପରୀକ୍ଷ ଦଣ୍ଡଧାରୀ ।
କୂଳେ ବିଜୟ ନରହରି ॥୮୩
କାଳୀୟ ସ୍ୱକୁଟୁମ୍ବ ଘେନି ।
ପୂଜି ଯେ ଗଲା ପାଦବେନି ॥୮୪
କୃଷ୍ଣର ଦେଖିଣ ବଦନ ।
ଆନନ୍ଦ ଯଶୋଦାର ମନ ॥୮୫
ଗୋପୀ ଗୋପାଳେ ବେଗେଧାଇଁ ।
କୋଳ କରନ୍ତି ଚୁମ୍ବ ଦେଇ ॥୮୬
କୃଷ୍ଣଙ୍କୁ ପାଇଣ ସମସ୍ତେ ।
ଚିନ୍ତା ଛାଡ଼ିଲେ ହୃଦଗତେ ॥୮୭
କୃଷ୍ଣଙ୍କୁ ଦେଖି ହଳଧର ।
କୋଳ କରନ୍ତି ସ୍ନେହଭର ॥୮୮
ଗାଈ ଗୋବତ୍ସା ଦେଖି ତୋଷେ ।
ରହିଲେ ମନର ହରଷେ ॥୮୯
ଆସି ମିଳିଲେ ବିପ୍ରଜନ ।
ନନ୍ଦକୁ ବୋଲନ୍ତି ବଚନ ॥୯୦
ବୋଲନ୍ତି ଭାଗ୍ୟବନ୍ତ ତୁହିଁ ।
ଏମନ୍ତ ଦେଖିଲା ତ ନାହିଁ ॥୯୧
ଏତେ ଆପଦୁଁ ପୁତ୍ର ତରି ।
ନିଶ୍ଚୟେ ରଖିଲେ ମୁରାରି ॥୯୨
ପୂର୍ବେ ସୁକୃତ ଯା'ର ଥାଇ ।
ସକଳ ଦୁସ୍ତରୁ ତରଇ ॥୯୩
କାଳୀୟ ବିଷଜ୍ୱାଳାବାଏ ।
ପକ୍ଷୀଏ ନ ଉଡ଼ନ୍ତି ଭୟେ ॥୯୪
ଏଡ଼େ ଗରଳ କଲା ନାଶ ।
ପ୍ରତ୍ୟେକ୍ଷ ବିଷ୍ଣୁ ତୋ'ର ଶିଷ ॥୯୫
କଲ୍ୟାଣ ହେଉ ତୋ' କୁମରେ ।
ବୋଲି ଚଳିଲେ ବିପ୍ରବରେ ॥୯୬
ଏମନ୍ତ ହୋଇଲା ରଜନୀ ।
ଗୋପାଳେ ରାମକୃଷ୍ଣ ଘେନି ॥୯୭
ଗୋପକୁ ଯାଇ ନ ପାରିଲେ ।
ରଜନୀ ବଞ୍ଚିବା ବୋଇଲେ ॥୯୮

Dr. Sudhanshu Sekhar Mishra

କ୍ଷୁଧା-ପିପାସା-ଦୁଃଖ ଭରେ ।
ଶୋଇଲେ କାଳିନ୍ଦୀର ତୀରେ ॥୯୯
ଏମନ୍ତ ଶୁଣ ମହୀପତି ।
ଅଗ୍ନି ବେଢ଼ିଲା ଚଉକତି ॥୧୦୦
ଦଇବେ ନିଦାଘର କାଳ ।
ପବନ ବହଇ ପ୍ରବଳ ॥୧୦୧
ପ୍ରଳୟାନଳ ପ୍ରାୟ ହୋଇ ।
ବେଢ଼ିଲା ଗୋପାଳଙ୍କୁ ଯାଇ ॥୧୦୨
ନିଦ୍ରାରେ ନ ଜାଣନ୍ତି କେହି ।
ରଜନୀ ଅର୍ଦ୍ଧ ଅଛି ହୋଇ ॥୧୦୩
ପ୍ରତ୍ୟେକ୍ଷେ ଗୋପାଳେ ଦେଖିଲେ ।
ବେଗେ ଶୟନ ଉପେକ୍ଷିଲେ ॥୧୦୪
ଅଗ୍ନି ଜଳଇ ପରଖର ।
ପବନ ଯୋଗେ ବଳୀୟାର ॥୧୦୫
ଦେଖି ଗୋପାଳେ ଖରତରେ ।
ପଶିଲେ କାଳନ୍ଦୀ ଭିତରେ ॥୧୦୬
ଡାକନ୍ତି ରଖ ନାରାୟଣ ।
ଗୋକୁଳେ ତୋହର ଶରଣ ॥୧୦୭
ଆମ୍ଭଙ୍କୁ ସଂକଟୁ ତାରିଲୁ ।
ତୁ ନାଥ ପରମ ଦୟାଳୁ ॥୧୦୮
ଏବେ ଆପଦୁଁ ରଖ ତୁହି ।
ଅନାଥ ହୋଇଲୁ ଗୋସାଇଁ ॥୧୦୯
ଗାଈ ଗୋପାଳ ଗୋପ ଆଦି ।
ଅନଳ ଆଣିଲା ନିରୋଧି ॥୧୧୦
ଗୋକୁଳ କଷ୍ଟ ଦେଖି ହରି ।
ଅନନ୍ତମାୟା ଯୋଗକରି ॥୧୧୧
ଦାସବତ୍ସଳ ଗୋପୀନାଥ ।
ଅନଳ କଲେ ଗର୍ଭଗତ ॥୧୧୨
ମାୟାରେ ମେଘମାନେ ଆସି ।
ବୃଷ୍ଟି କରନ୍ତି ବନେ ପଶି ॥୧୧୩
ତକ୍ଷଣେ ଅନଳ ଲିଭିଲା ।
ରବି କିରଣ ପ୍ରକାଶିଲା ॥୧୧୪
ଶୁଭେ ପାହିଲା ଘୋର ନିଶି ।
ନିର୍ମଳ ଦଶ ଦିଗ ଦିଶି ॥୧୧୫
ଯେ ହରି ମହିମା ଅନନ୍ତ ।
ଅନନ୍ତ ଶକ୍ତି ଗୁଣେ ଯୁତ ॥୧୧୬
ଗୋପୀ-ଗୋପାଳେ ରକ୍ଷା କରି ।
ଗୋପେ ମିଳିଲେ ନରହରି ॥୧୧୭
ସେ ହରି ଚରଣାରବିନ୍ଦେ ।
ମୋ ମନ-ଭ୍ରମର ଆନନ୍ଦେ ॥୧୧୮
ନିଶ୍ଚିନ୍ତେ ମକରନ୍ଦ ରସ ।
ସେବଇ ଜଗନ୍ନାଥ ଦାସ ॥୧୧୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଦାବାଗ୍ନି
ମୋଚନଂ ନାମ
ଅଷ୍ଟାଦଶୋଽଧ୍ୟାୟଃ ॥

## ଊନବିଂଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ଅମୃତ କୃଷ୍ଣର ଚରିତ ॥୧
ଗୋପାଳେ ବୃନ୍ଦାବନେ ଥିଲେ ।
ସୁପ୍ତେ ରଜନୀ ପୁହାଇଲେ ॥୨
ରାମ ଗୋବିନ୍ଦ ଘେନି ସଙ୍ଗେ ।
ମିଳିଲେ ଗୋପପୁର ଲାଗେ ॥୩
ଯେଝା ମନ୍ଦିରେ ଗୋପେ ଯାଇ ।
କହନ୍ତି ବୃଦ୍ଧଙ୍କୁ ବସାଇ ॥୪
କୃଷ୍ଣର ଯେତେ କର୍ମମାନ ।
ଶୁଣି ସକଳେ ତୋଷମନ ॥୫
ମାୟାଗୋପାଳ ରୂପ ହୋଇ ।
କ୍ରୀଡ଼ା କରନ୍ତି ବେନିଭାଇ ॥୬
ଏମନ୍ତେ ଶୁଣ ପରୀକ୍ଷିତ ।
ସ୍ୱଭାବେ ସରିଲା ବସନ୍ତ ॥୭
ନିଦାଘ କାଳ ଆଗମନେ ।
ଘର୍ମ ନ ଲାଗେ ବୃନ୍ଦାବନେ ॥୮
ସର୍ବଦା ବସନ୍ତ ପବନ ।
ସଧୀରେ ବହେ ଦିନୁ ଦିନ ॥୯
ବସନ୍ତ ନୋହେ ନା ଦୁର୍ଲ୍ଲଭ ।
ଯେ ବନେ ଶ୍ରୀରାମ ମାଧବ ॥୧୦
ନଦୀ ନିର୍ଝର ଜଳନାଦ ।
ନିବିଡ଼ ଝିଙ୍କାରି ଶବଦ ॥୧୧
ଅତି ଶୀତଳ ବନସ୍ଥଳୀ ।
ନିର୍ଝର ଜଳକଣା ମିଳି ॥୧୨
ନଦୀ ତଡ଼ାଗ ପ୍ରସ୍ରବଣ ।
ପବନ ଯୋଗେ ସ୍ନିଗ୍ଧବନ ॥୧୩
ଜଳେ ଅଛନ୍ତି ପୁଷ୍ପ ଯେତେ ।
କମଳ କୁମୁଦ ସହିତେ ॥୧୪
ତାହାଙ୍କ ରେଣୁ ଘେନି ବଳେ ।
ପବନ ବହେ କୁତୂହଳେ ॥୧୫
ଏଣୁ ସେ ବୃନ୍ଦାବନ ଦେଶେ ।
ନିଦାଘ ଗ୍ରୀଷମ ନ ପଶେ ॥୧୬
ଘନ ଗହନ ବନଭୂମି ।
ତେଣୁ ନୁହଁନ୍ତି ଜୀବେ ଶ୍ରମୀ ॥୧୭
ଅତି ଗଭୀର ନଦୀଜଳେ ।
ଲହରୀ ଉଠେ ବାୟୁବଳେ ॥୧୮
ପଙ୍କ ଦ୍ରବଇ ବେନିତଟେ ।
ସେ ଜଳେ ଗ୍ରୀଷ୍ମ ତ୍ରାସ କଟେ ॥୧୯
ତେଣୁ ଏ ବନଭୂମି ଦେଶ ।
ନ ଲାଗେ ଆଦିତ୍ୟର ତ୍ରାସ ॥୨୦
ଅଗ୍ନିଣ ତେଜ ନ ଲାଗଇ ।
ଯହିଁ ବିଜୟ ଭାବଗ୍ରାହୀ ॥୨୧
ସ୍ୱଭାବେ କୁସୁମିତ ବନ ।
ମୃଗ ମୟୂର ପକ୍ଷୀସ୍ୱନ ॥୨୨
କୋକିଳ ସାରସ ନିକର ।
ଭ୍ରମରଧ୍ୱନି ମନୋହର ॥୨୩

Dr. Sudhanshu Sekhar Mishra

ଏମନ୍ତେ ପ୍ରଭୁ ବନମାଳୀ ।
ଗୋପବାଳକ ମଧ୍ୟେ କେଳି ॥୨୪
ଆନନ୍ଦେ ଗୀତ ବେଣୁଧ୍ୱନି ।
ଗାଈ-ଗୋବତ୍ସା ସଙ୍ଗେ ଘେନି ॥୨୫
ମିଳିଲେ ବୃନ୍ଦାବନେ ଯାଇ ।
ରଙ୍ଗେ ନାଚନ୍ତି ବେନିଭାଇ ॥୨୬
ସଦାବସନ୍ତ ବୃନ୍ଦାବନେ ।
ନାନା କୁସୁମ ଫଳମାନେ ॥୨୭
ଯହିଁ ଗୋବିନ୍ଦ ବନଚାରୀ ।
ବିଶେଷ ସଙ୍ଗେ ହଳଧାରୀ ॥୨୮
ଶୀତଳ ଛାୟା ବୃକ୍ଷତଳେ ।
ଭ୍ରମର ପନ୍ତି ଫୁଲଡ଼ାଳେ ॥୨୯
ଶୋଭିତ ସରୋବର ଫୁଲ ।
ସୁଗନ୍ଧ ଶୀତଳ ଅମୂଲ୍ୟ ॥୩୦
ଅରୁଣ ତେଜ ନ ଲାଗଇ ।
ବନର ବହ୍ନି ବନେ ଥାଇ ॥୩୧
କୋମଳ ତୃଣ ଯୂଥେ ଯୂଥେ ।
ଗୋରୁଏ ଚରନ୍ତି ନିଶ୍ଚିନ୍ତେ ॥୩୨
ଯମୁନା ଜଳ ବୃକ୍ଷମୂଳେ ।
ପବନ ବହଇ ଶୀତଳେ ॥୩୩
ବନକୁସୁମ ପରିମଳ ।
ଦେଖି ସାନନ୍ଦ ଆଦିମୂଳ ॥୩୪
ବାଳକକ୍ରୀଡ଼ା ସାବଧାନେ ।
କୃଷ୍ଣ ବିଜୟେ ବୃନ୍ଦାବନେ ॥୩୫
ସେ ବନେ ଚରାଇଲେ ଗାଈ ।
ଗୋପେ ନାଚନ୍ତି ବେଣୁ ବାଇ ॥୩୬
ଶିରେ ଗୁଞ୍ଜରା ଜାମୁଡ଼ାଳୀ ।
ରତ୍ନଭୂଷଣ ଫୁଲମାଳୀ ॥୩୭
ପ୍ରବାଳ-ବରହିସ୍ତବକ ।
ଧାତୁଭୂଷଣ ରଙ୍ଗରେଖ ॥୩୮
ବାଳକେ ରାମକୃଷ୍ଣ ମେଳେ ।
ଯୁଦ୍ଧ କରନ୍ତି ବାହୁବଳେ ॥୩୯
ରାମଗୋବିନ୍ଦ ଗୋପସୁତେ ।
ଖେଳନ୍ତି ନୃତ୍ୟଗୀତ ଯୁତେ ॥୪୦

କୃଷ୍ଣର ନୃତ୍ୟ ଗୋପେ ଦେଖି ।
ମିଳିଲେ ଗୋବତ୍ସା ଉପେକ୍ଷି ॥୪୧
କେ ତାଳି ବାଇ ମନୋହରେ ।
ଗମ୍ଭୀର ଗୀତନାଦ ସ୍ୱରେ ॥୪୨
ଶିଙ୍ଗା ମୁରଲୀନାଦ ପୁରି ।
କେ ସାଧୁ ଧନ୍ୟ ଧନ୍ୟ କରି ॥୪୩
ଦେବେଯେ ଥିଲେ ଶୂନ୍ୟପଥେ ।
ମିଳିଲେ କୃଷ୍ଣର ଅଗ୍ରତେ ॥୪୪
ମାୟାବାଳକ ରୂପ ହୋଇ ।
କୃଷ୍ଣର ଚଉପାଶେ ଥାଇ ॥୪୫
ସ୍ତୁତି କରନ୍ତି କୃଷ୍ଣ ରାମେ ।
ଭାଟେ ଯେସନେ ଗୁଣଗାନେ ॥୪୬
ଏକ ଆରକେ ସାଧୁଭଣି ।
ଶୁଣ ପାଣ୍ଡବ ଚୂଡ଼ାମଣି ॥୪୭
ତାଣ୍ଡବ ରସେ ସୁଖେ ହରି ।
ବୃନ୍ଦା ବନରେ କ୍ରୀଡ଼ା କରି ॥୪୮
କୃଷ୍ଣର ନୃତ୍ୟ ଦେଖି ପୋଏ ।
ରାମଙ୍କୁ ବେଢ଼ିଲେ ଥୋକାଏ ॥୪୯
ଖେମଟାରସେ ଗୀତ ଗାଇ ।
କେ ଧାଏଁ ଶିଙ୍ଗାନାଦ ଦେଇ ॥୫୦
ତାଳି ମୁରଲୀ ଗାଲତୁର ।
ନାଚନ୍ତି ବ୍ରହ୍ମାଣ୍ଡ ଠାକୁର ॥୫୧
ନୃତ୍ୟର ଅନ୍ତେ ପରଶଂସି ।
କେ ତହିଁ କହନ୍ତି ବିଶ୍ୱାସି ॥୫୨
ଥୋକେ କରନ୍ତି ନାନା ସ୍ତୁତି ।
ହରଷେ ପୁଷ୍ପ ପରଷନ୍ତି ॥୫୩
କୃଷ୍ଣ ସଙ୍ଗେ ନୃତ୍ୟ କରି ।
ବୁଲନ୍ତି ବୃନ୍ଦାବନେ ହେରି ॥୫୪
କେ ବଳେ ଏକୁ ଆରେ ଧରି ।
ଡାକନ୍ତି ବାହାନାଦ କରି ॥୫୫
କୃଷ୍ଣ ଉଠିଲେ ଉଚ୍ଚବୃକ୍ଷେ ।
ଫଳ ତୋଳିଲେ ନାନା ଶାଖେ ॥୫୬
ପୋଏ ତୋଳିଲେ ଯେଝାମତେ ।
ଅମର ଲୋକେ ଯୂଥେ ଯୂଥେ ॥୫୭

ଏକ ଆରକେ ମରାମରି ।
କେ ସାକ୍ଷୀ କରନ୍ତି ମୁରାରି ॥୫୮
କର ଚରଣ ଧରି ଛନ୍ଦେ ।
ଯୁଦ୍ଧ କରନ୍ତି ନାନା ବନ୍ଧେ ॥୫୯
କେ ପଛେ ଥାଇ ଚକ୍ଷୁ ବୁଜି ।
ନାମ ଧରନ୍ତି ମନେ ହେଜି ॥୬୦
ମୃଗଙ୍କ ପ୍ରାୟ କେହୁ ଧାଇଁ ।
ପକ୍ଷୀଙ୍କ ପ୍ରାୟ କେ ଉଡ଼ଇ ॥୬୧
ଭେକର ପ୍ରାୟ କେ ଡିଅଁନ୍ତି ।
ଚାଲନ୍ତି ଯେହ୍ନେ ହଂସପନ୍ତି ॥୬୨
ବସ୍ତ୍ର ବାନ୍ଧନ୍ତି ବୃକ୍ଷ ଡାଳେ ।
ଦୋଳି କରନ୍ତି କୁତୁହଳେ ॥୬୩
ପର୍ବତ କୁଞ୍ଜ ନଦୀକୂଳେ ।
ଖେଳନ୍ତି ରାମକୃଷ୍ଣ ମେଳେ ॥୬୪
ଗାଈ ଚରାଇ ବେଣୁବାଇ ।
ବନେ ଖେଳନ୍ତି ବେନି ଭାଇ ॥୬୫
ଏମନ୍ତେ କଂସ ଅନୁଚର ।
ବନେ ମିଳିଲା ନଦୀତୀର ॥୬୬
ପ୍ରଳମ୍ବ ନାମେ ମହାବଳୀ ।
ଲୁଚି ଦେଖଇ କୃଷ୍ଣକେଳି ॥୬୭
କ୍ଷଣକେ ସହି ନ ପାରିଲା ।
ଗୋପାଳ ରୂପେକ ହୋଇଲା ॥୬୮
ପ୍ରଳମ୍ବ ବିଚାରଇ ମନେ ।
କୃଷ୍ଣଙ୍କୁ ମାରିବି କେସନେ ॥୬୯
ପୁଅଙ୍କ ମେଳେ ଥିବି ବସି ।
ମୋର ନିକଟେ ଯେବେ ଆସି ॥୭୦
ମୁଣ୍ଡ ମୋଡ଼ିବି ଧରି କରେ ।
କହିବି କଂସର ଛାମୁରେ ॥୭୧
ଏମନ୍ତ ବିଚାରିଲା ମନେ ।
ଲତାରେ ଥାଇ ବୃନ୍ଦାବନେ ॥୭୨
ମାୟା ଗୋପାଳ ରୂପ ହୋଇ ।
ମିଳିଲା ଗୋପ ମଧ୍ୟେ ଯାଇ ॥୭୩
ତାହା ଜାଣିଲେ ଭାବଗ୍ରାହୀ ।
କହନ୍ତି ଗୋପାଳଙ୍କୁ ଚାହିଁ ॥୭୪

Dr. Sudhanshu Sekhar Mishra

ବାଳକେ ଶୁଣ ମୋ' ଉତ୍ତର ।
ମୁହିଁ ଜାଣଇଁ ଖେଳ୍ସାର ॥୭୫
ରାଜା ପରଜା ଖେଳ ଅଛି ।
ଆସ ଖେଳିବା ବଳ ଆଞ୍ଚି ॥୭୬
ଶୁଣି ସାନନ୍ଦ ମନେ ହସି ।
ରୁଣ୍ଡ ହୋଇଲେ ପୋଏ ଆସି ॥୭୭
ରାମ ଗୋବିନ୍ଦେ କରି ରାଜା ।
ସକଳେ ହୋଇଲେ ପରଜା ॥୭୮
ଅଧେ ହୋଇଲେ ରାମ ଆଡ଼େ ।
ଥୋକେ ହୋଇଲେ କୃଷ୍ଣବାଡ଼େ ॥୭୯
କୃଷ୍ଣ ବୋଇଲେ ଦୁଇ ଦୁଇ ।
ବଳ କଷିବା ଯୁଦ୍ଧ ବିହି ॥୮୦
ଯୋଡ଼ି ଯୋଡ଼ିଏ ଏକ ସଙ୍ଗେ ।
ଯୁଦ୍ଧ କରିବା ନାନା ରଙ୍ଗେ ॥୮୧
ଖେଳ ପାଞ୍ଚିଲେ ଗୋପପୋଏ ।
ମାୟା ଭିଆଣ ଦେବରାୟେ ॥୮୨
ଜଣ ଜଣକେ ନାମ ଧରି ।
ଯୁଦ୍ଧେ ପେଷିଲେ ନରହରି ॥୮୩
ଶ୍ରୀଦାମ ନାମ ଗୋପବାଳେ ।
ଯୁଝିଲା ଗୋବିନ୍ଦର ତୁଲେ ॥୮୪
ପ୍ରଲମ୍ବାସୁର ତୁଲେ ରାମ ।
କୃଷ୍ଣ ତୁଲେ ଭଦ୍ରସେନ ॥୮୫
ଏତେ ଭିଆଇ ଭାବଗ୍ରାହୀ ।
ବୋଲନ୍ତି ଗୋପାଳଙ୍କୁ ଚାହିଁ ॥୮୬
ଯୁଦ୍ଧ କରିବା ପୀଡ଼ କରି ।
ସଂଗ୍ରାମେ ଯେ ଯାହାକୁ ହାରି ॥୮୭
ଭାଣ୍ଡୀର ବଟ ତଳେ ନେଇ ।
ଥୋଇବ କନ୍ଧରେ ବସାଇ ॥୮୮
ହେଉ ବୋଇଲେ ଗୋପବାଳେ ।
ଯୁଝନ୍ତି ଯେ ଯାହାର ବଳେ ॥୮୯
ହାରିଲେ ବୃକ୍ଷମୂଳେ ନେଇ ।
ଛାଡ଼ନ୍ତି କନ୍ଧରେ ବସାଇ ॥୯୦
ଏମନ୍ତେ ପ୍ରଭୁ ଦଇତାରି ।
ଶ୍ରୀଦାମ ତୁଲେ ଯୁଦ୍ଧ କରି ॥୯୧
ତାହାକୁ ଯୁଦ୍ଧେ କୃଷ୍ଣ ହାରି ।
ବଟେ ଛାଡ଼ିଲେ କନ୍ଧେ କରି ॥୯୨
ଏବେ ହୋ ଶୁଣ ରସକଥା ।
ପ୍ରଳମ୍ବ ଅସୁର ବାରତା ॥୯୩
ପ୍ରଳମ୍ବାସୁର ରାମ ସଙ୍ଗେ ।
ପଡ଼ିଲା ପଞ୍ଝାପଞ୍ଝି ରଙ୍ଗେ ॥୯୪
ଯୁଦ୍ଧ କରନ୍ତେ ଗୁରୁତର ।
ରାମକୁ ହାରିଲା ଅସୁର ॥୯୫
ତକ୍ଷଣେ ବସାଇଲା କନ୍ଧେ ।
ଅସୁର ଭାଳଇ ଆନନ୍ଦେ ॥୯୬
ଏହାକୁ ବଟ ଯାଏ ନେଇ ।
ଘେନିଣ ପଳାଇବି ମୁହିଁ ॥୯୭
ମୁଣ୍ଡ ମୋଡ଼ିବି ବନେ ପଶି ।
ପୁଣି ମିଳିବ ଏଥେ ଆସି ॥୯୮
କୃଷ୍ଣ ପଡ଼ିବ ଯେତେବେଳେ ।
ଘେନି ଉଡ଼ିବି ଅନ୍ତରାଳେ ॥୯୯
କଂସ ଛାମୁରେ ଦେବି ନେଇ ।
ନିଶ୍ଚିନ୍ତେ ଭୁଞ୍ଜିବ ସେ ମହୀ ॥୧୦୦
ଏତେ ବିଚାରି ମହାସୁର ।
କନ୍ଧେ ବସାଇ ହଳଧର ॥୧୦୧
ଭାଣ୍ଡୀରବଟ ଗଲା ଜିଣି ।
ତାହା ଜାଣିଲେ ହଳପାଣି ॥୧୦୨
କୋଟିଏ ମେରୁ ଯେହ୍ନେ ଭାର ।
ଚଳି ନପାରିଲା ଅସୁର ॥୧୦୩
ତକ୍ଷଣେ ନିଜରୂପ ଧରି ।
ଅସୁର ଗଗନେ ସଞ୍ଚରି ॥୧୦୪
ନୀଳ-ଜୀମୂତ-ଦେହ କାନ୍ତି ।
ମଣିକଙ୍କଣ ଝଟକନ୍ତି ॥୧୦୫
ସ୍ୱଭାବେ ନାନା ଅଳଙ୍କାର ।
ତେଜେ ବିରାଜିଲା ଅସୁର ॥୧୦୬
କି ଅବା ଦେବା ପଟାନ୍ତର ।
ଯାହାର କନ୍ଧେ ହଳଧର ॥୧୦୭
ବିଜୁଳି ଯେହ୍ନେ କଳାମେଘେ ।
ଯେସନେ ଶଶାଙ୍କର ଲାଗେ ॥୧୦୮
ଗଗନେ ବେଗେ ଯାଉଅଛି ।
ତା' ଦେଖି ରାମ ମନେ ପାଞ୍ଚି ॥୧୦୯
ଭ୍ରୁକୁଟି କୁଟିଳ ପ୍ରପଞ୍ଚ ।
ବିକଟ ଦନ୍ତ ତୀକ୍ଷ୍ଣ ଉଚ୍ଚ ॥୧୧୦
ସୁବର୍ଣ୍ଣ ତେଜେ ଦେହ ଝଳି ।
ନୀଳମେଘରେ କି ବିଜୁଳି ॥୧୧୧
ତକ୍ଷଣେ ପ୍ରଭୁ ହଳଧର ।
ଜାଣିଲେ ନିଶ୍ଚୟ ଅସୁର ॥୧୧୨
ମୁଷ୍ଟିଏ ପ୍ରହାରିଲେ ମୁଣ୍ଡେ ।
ବଜ୍ର ଯେସନେ ଗିରିଖଣ୍ଡେ ॥୧୧୩
ମୁଣ୍ଡ ହୋଇଲା ଶତେ ଚୂର ।
ଶବଦ କଲା ମହାଘୋର ॥୧୧୪
ରୁଧିର ଉଦ୍‌ଗାରିଲା ମୁଖେ ।
ପଡ଼ିଲା ଗୋବର୍ଦ୍ଧନ ପାଖେ ॥୧୧୫
ଦେଖି ଚକିତ ଗୋପପୋଏ ।
ସ୍ୱର୍ଗେ ଯେ ଥିଲେ ଦେବତାଏ ॥୧୧୬
ସକଳେ ସାଧୁ ସାଧୁ ଭଣି ।
କୁସୁମ ବରଷିଲେ ଆଣି ॥୧୧୭
ରାମଙ୍କୁ ଧରି ଗୋପବାଳେ ।
କୋଳ କରିଣ ଚୁମ୍ବ ଦେଲେ ॥୧୧୮
ଅବନୀ ହୋଇଲା ଆନନ୍ଦ ।
ବାଳମୂରତି ଆଦିକନ୍ଦ ॥୧୧୯
ସେ ରାମଚରଣେ ବିଶ୍ୱାସ ।
ଶରଣ ଜଗନ୍ନାଥ ଦାସ ॥୧୨୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ପ୍ରଳମ୍ବବଧୋ
ନାମ ଊନବିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ବିଂଶ ଅଧ୍ୟାୟ

କହନ୍ତି ବ୍ୟାସମୁନି ସୁତ ।
ଶୁଣ ରାଜନ ପରୀକ୍ଷିତ ॥୧
ଖେଳନ୍ତି ରାମ ନରହରି ।
ଗୋରୁଏ ଗଲେ ବନେଚରି ॥୨
ଚରନ୍ତେ ତୃଣ ଲୋଭେ ଗାଈ ।
ପଶିଲେ ଗିରିକୁଞ୍ଜେ ଯାଇ ॥୩
ଅଜା ମହିଷୀ ଗୋରୁ ସଙ୍ଗେ ।
ପ୍ରବେଶ କୁଞ୍ଜବନ ଲାଗେ ॥୪
ଅନଳ ଆବୋରିଲା ଆସି ।
କୁଞ୍ଜ ଗହନେ ଛନ୍ତି ପଶି ॥୫
ବିକଳେ ଚଉଦିଗେ ଚାହିଁ ।
କାନ୍ଦନ୍ତି କୃଷ୍ଣ ମନେ ଧ୍ୟାୟି ॥୬
ପୋଏ ଯେ ଥିଲେ କୃଷ୍ଣ ସଙ୍ଗେ ।
ଖେଳୁଁ ଚାହିଁଲେ ଚାରିଦିଗେ ॥୭
ବିକଳେ ଖେଦମନେ ଧାଇଁ ।
ଲୋଡ଼ନ୍ତି ବନେ ବତ୍ସା ଗାଈ ॥୮
ଗୋରୁଙ୍କ ଖୋଜ ଅନୁସରି ।
ଡାକନ୍ତି ଗାଈ ନାମଧରି ॥୯
ଗାଈଙ୍କି ନ ଦେଖି ବିକଳ ।
ପଛେ ଅଛନ୍ତି ଆଦିମୂଳ ॥୧୦
ବତ୍ସା ନ ପାଇ କୁଞ୍ଜବନେ ।
ପୋଏ କାନ୍ଦନ୍ତି ଦୁଃଖମନେ ॥୧୧
ତୃଷିତ ହୋଇ ବାହୁଡ଼ିଲେ ।
କୃଷ୍ଣର ନିକଟେ ମିଳିଲେ ॥୧୨
ପୁଅଙ୍କ ଦୁଃଖ ଦେଖି ହରି ।
ବୃକ୍ଷେ ଉଠିଲେ ଅନୁସରି ॥୧୩
ନୀଳ-ଜୀମୂତ ଦେହ ହରି ।
ପୀତବସନ ବନମାଳୀ ॥୧୪
ମେଘ-ଗମ୍ଭୀର ରସଭରେ ।
ଗୋରୁଙ୍କୁ ଡାକନ୍ତି ସୁସ୍ୱରେ ॥୧୫
ଗୋରୁଏ ନାମ ଶୁଣି କର୍ଣ୍ଣେ ।
ହୁଙ୍କାର କଲେ ତୋଷମନେ ॥୧୬

ଏମନ୍ତେ ବେଢ଼ିଲା ଅନଳ ।
ଯେସନେ ପ୍ରଳୟର କାଳ ॥୧୭
ପବନ ବହେ ଖରତର ।
ପ୍ରଚଣ୍ଡ ତେଜ ମହାଘୋର ॥୧୮
ଅନଳ ଦେଖି ଗୋପବାଳେ ।
କୃଷ୍ଣଙ୍କୁ ଡାକନ୍ତି ବିକଳେ ॥୧୯
ହେ ରାମକୃଷ୍ଣ ଆସ ବେଗେ ।
ଅଗ୍ନି ବେଢ଼ିଲା ଚାରିଦିଗେ ॥୨୦
ଆମ୍ଭେ ତୋହର ବନ୍ଧୁବଳ ।
ତୋହରେ ଶରଣ ଗୋକୁଳ ॥୨୧
ମୁନି ବୋଲନ୍ତି ଶୁଣ ରାୟେ ।
ଗୋକୁଳେ କୃଷ୍ଣ କଲେ ଦୟେ ॥୨୨
କୃଷ୍ଣ ବୋଇଲେ ଯେଝାମତେ ।
ଚକ୍ଷୁ ଲୁଚାଅ ବେନିହସ୍ତେ ॥୨୩
ଶୁଣି ଲୋଚନେ କର ଦେଇ ।
ବୋଲନ୍ତି କୃଷ୍ଣ ତ୍ରାହି ତ୍ରାହି ॥୨୪
ଗୋବିନ୍ଦ ଯୋଗମାୟା ବଳେ ।
ଅଗ୍ନି ଗିଳିଲେ କଣ୍ଠନାଳେ ॥୨୫
ଗୋପକୁମରେ ବେଗେ ଧାଇଁ ।
ମିଳିଲେ ବଟତଳେ ଯାଇ ॥୨୬
ଭାଣ୍ଡୀର ତଳେ ଚକ୍ଷୁ ଫେଇ ।
ସଭୟେ ଚଉଦିଗେ ଚାହିଁ ॥୨୭
ଗୋରୁଏ ମିଳିଲେ ତକ୍ଷଣ ।
ରଙ୍ଗେ ନାଚନ୍ତି ନାରାୟଣ ॥୨୮
କୃଷ୍ଣଙ୍କୁ ଚାହିଁ ଗୋପପୋଏ ।
ଗୁପତେ ଭାଳନ୍ତି ଥୋକାଏ ॥୨୯
କି ଏ କେବଣ ଦେବତାଏ ।
ଜାତ ହୋଇଛି ନରଦେହେ ॥୩୦
ଅନେକ ସଙ୍କଟୁ ତାରିଲେ ।
ଯଶୋଦା ଭାଗ୍ୟେ ଜାତ କଲେ ॥୩୧
ଏମନ୍ତେ ଗୋପାଳଙ୍କ ମନ ।
ଜାଣିଲେ ପ୍ରଭୁ ଭଗବାନ ॥୩୨

ମାୟାରେ ମୋହିଲେ କୁମର ।
ବିଶ୍ୱପ୍ରପଞ୍ଚ ଖେଡ଼ଘର ॥୩୩
ଏମନ୍ତେ ରବି-ଅସ୍ତକାଳେ ।
ଗୋବିନ୍ଦ ଘେନି ଗୋପବାଳେ ॥୩୪
ଗୋପେ ହୋଇଲେ ପରବେଶ ।
ବେଣୁ ଶବଦେ ଗୀତରସ ॥୩୫
ଗୋପୀଏ ନ ଦେଖି ଶ୍ରୀପତି ।
ଘଡ଼ିକ ଯୁଗ ସେ ମଣନ୍ତି ॥୩୬
ରାମଗୋବିନ୍ଦ ମୁଖ ଚାହିଁ ।
ଚିନ୍ତା ଛାଡ଼ିଲେ ତୋଷ ହୋଇ ॥୩୭
ଘରେ କହିଲେ ପୁଅମାନେ ।
ଆମ୍ଭେ ଯେ ଗଲୁ ବୃନ୍ଦାବନେ ॥୩୮
ଖେଳ ଖେଳିଲୁ ବେନିବଳ ।
ରାଜା-ପରଜା ଖେଳ ସାର ॥୩୯
ପ୍ରଲମ୍ବ ନାମେଣ ଅସୁର ।
ଖେଳ ଭିତରେ ଥିଲା ବୀର ॥୪୦
ରାମକୁ ବହି ନେଉଥିଲା ।
ଜାଣି ସେ ମୁଥ ପ୍ରହାରିଲା ॥୪୧
ମୁଣ୍ଡ ହୋଇଲା ଶତେ ଚୂର ।
ଗର୍ଜିଣ ପଡ଼ିଲା ଅସୁର ॥୪୨
ଗୋବରଧନ ଗିରି ଲାଗେ ।
ପଡ଼ିଣ ଅଛି ମହୀଭାଗେ ॥୪୩
ତହୁଁଣ କୁଞ୍ଜ ବନେ ଗଲୁ ।
ଗାଈବାଛୁରୀ ନ ପାଇଲୁ ॥୪୪
ଲୋଡ଼ିଲୁ ଗହନ ବନରେ ।
ଆଗ୍ନି ବେଢ଼ିଲା ଧାଡିକାରେ ॥୪୫
ବନେ ଅନଳ ତେଜ ଦିଶି ।
ଡାକିଲୁ ରଖ ବ୍ରହ୍ମରାଶି ॥୪୬
ପ୍ରତ୍ୟକ୍ଷେ ଅନଳ ଦେଖିଲୁ ।
ଆରତେ କୃଷ୍ଣ ସୁମରିଲୁ ॥୪୭
କୃଷ୍ଣ ବୋଇଲେ ଆଖି ବୁଜ ।
ଅନଳ ଲିଭାଇବୁଁ ଆଜ ॥୪୮

Dr. Sudhanshu Sekhar Mishra

ତାହାର ବୋଲେ ଆଖିମାନ ।
ହସ୍ତରେ ବୁଜିଲୁ ବହନ ॥୪୯
ଦଣ୍ଡକେ ଫେଡ଼ିଣ ଚାହିଁଲୁ ।
ତେତେଢ଼େ ଅନଳ ନ ଦେଖିଲୁ ॥୫୦
କେବଣ ମନ୍ତ୍ର କୃଷ୍ଣ କଲା ।
ତେତେଢ଼େ ଅନଳ ଲିଭାଇଲା ॥୫୧
ପୁଅଙ୍କ କଥାମାନ ଶୁଣି ।
ବିଷାଦ ବରଜତରୁଣୀ ॥୫୨
ଗୋପାଳେ ହରଷ ବିସ୍ମୟେ ।
ତ୍ରାସ ଲାଗିଲା ସର୍ବଦେହେ ॥୫୩
ଯୋଗମାୟାରେ ମୋହ ହୋଇ ।
କ୍ଷଣକେ ପାସୋରିଲେ ତାହିଁ ॥୫୪
ପୁତ୍ରଙ୍କ ସ୍ନେହଭାବ ଘେନି ।
ଭଜନ୍ତି ଗୋପର କାମିନୀ ॥୫୫
ସୁଜନେ କୃଷ୍ଣପାଦେ ଚିନ୍ତ ।
ସଂସାରେ ନୁହଁ ଭ୍ରମଚିତ୍ତ ॥୫୬
ସମ୍ପଦ ସ୍ୱପ୍ନପ୍ରାୟ ଦେଖ ।
ଧ୍ୟାନେଣ ଚିନ୍ତ ପଦ୍ମମୁଖ ॥୫୭
ବ୍ରାହ୍ମଣ କୁଳେ ଜାତ ହୋଇ ।
ବିଷ୍ଣୁବାସନା ମୋର ନାହିଁ ॥୫୮
ସାଧୁଚରଣେ ଆଶ୍ରେ ମୋର ।
ଉଧର କୃଷ୍ଣ-ହଳଧର ॥୫୯
ହରିଚରଣେ ଦିଅ ମନ ।
ଯେ ହରି ବିପତ୍ତିନାଶନ ॥୬୦
ଆବର ଯେତେ ଦ୍ରବ୍ୟମାନ ।
ସେ ସର୍ବ ନିଶିର ସ୍ୱପନ ॥୬୧
ସଂସାରୁ ତରିବ ଯେମନ୍ତ ।
ଭଣଇଁ ଦାସ ଜଗନ୍ନାଥ ॥୬୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଦାବାଗ୍ନିପାନଂ
ନାମ ବିଂଶୋଽଧ୍ୟାୟଃ ॥

---

## ଏକବିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ହରିରସ ।
ତୁ ଅଟୁ ଗୋବିନ୍ଦର ଦାସ ॥୧
କୃଷ୍ଣ ମହିମା ଶୁଣି କର୍ଣ୍ଣେ ।
ଗୋପୀ ଗୋପାଳ ତୋଷମନେ ॥୨
ରାମକୃଷ୍ଣଙ୍କୁ ପରଶଂସି ।
କିଏ ଦେବତା ଏଥେ ଆସି ॥୩
ନୋହିଲେ ଏଡ଼େ କର୍ମ କାହିଁ ।
ବିଷମ ସଂକଟୁ ତାରଇ ॥୪
ପରମାନନ୍ଦ ମୁଖ ଚାହିଁ ।
ଚିନ୍ତା ଛାଡ଼ିଲେ ତୋଷ ହୋଇ ॥୫
ଏମନ୍ତେ ଗ୍ରୀଷ୍ମକାଳ ଗଲା ।
ବରଷା ଋତୁ ପ୍ରସରିଲା ॥୬
ସକଳ ଋତୁଙ୍କର ସାର ।
ଶସ୍ୟ-ସମ୍ପଦ ମଞ୍ଜୁପୁର ॥୭
ମେଘେ ମିଳିଲେ ଶୂନ୍ୟପଥେ ।
ବିଜୁଳି-ପବନ ସଙ୍ଗତେ ॥୮
ଭୂମି-ସାଗର ଶୂନ୍ୟ ବ୍ୟାପୀ ।
ନୀଳ ଜିମୂତ ବିଶ୍ୱରୂପୀ ॥୯
ଆକାଶ ମେଘାଛନ୍ନ ହୋଇ ।
ଜ୍ୟୋତି ପ୍ରକାଶ ନ ଦିଶଇ ॥୧୦
ଗୁଣେ ଆଛନ୍ନ ବ୍ରହ୍ମ ଯେହ୍ନେ ।
ଆକାଶ ନଦିଶେ ତେସନେ ॥୧୧
ଭୂମିର ରସ ଅଷ୍ଟମାସ ।
ଆଦିତ୍ୟ କରିଥିଲା ଗ୍ରାସ ॥୧୨
ତେଜେ ଅବନୀ ଦୁଃଖ ଚାହିଁ ।
ଜଳ ଛାଡ଼ିଲା ତୋଷ ହୋଇ ॥୧୩
ଘୋର-ଶବଦେ ମେଘମାଳ ।
ଗର୍ଜିଣ ବରଷନ୍ତି ଜଳ ॥୧୪
ପ୍ରାଣୀ-ଜୀବନ ଜଳରାଶି ।
କରୁଣାଚିତ୍ତରେ ବରଷି ॥୧୫
ପୃଥିବୀ ରବିତେଜ ତ୍ରାସେ ।
ତାପିତ ଥିଲା ଅଷ୍ଟମାସେ ॥୧୬
ଜଳ ପାଇଲା ତୋଷଚିତ୍ତେ ।
ତପସ୍ୱୀଜନଙ୍କର ମତେ ॥୧୭
ତପସ୍ୟା ଫଳ ଯେହ୍ନେ ପାଇ ।
ଭୁଞ୍ଜନ୍ତି ଅତି ସୁଖୀ ହୋଇ ॥୧୮
ଖଦ୍ୟୋତ କୀଟ ନିଶାମୁଖେ ।
ଜଗତ ଆବୋରିଲେ ସୁଖେ ॥୧୯
ପାଷଣ୍ଡେ ଯେହ୍ନେ କଳିଯୁଗେ ।
ବେଦ ନିନ୍ଦନ୍ତି ପାପ ଯୋଗେ ॥୨୦
ମଣ୍ଡୁକେ ମେଘନାଦ ଶୁଣି ।
ଗର୍ଜନ୍ତି ଆବୋରିଣ ପାଣି ॥୨୧
ରଜନୀ ଅନ୍ତେ ବିପ୍ରଜନେ ।
କରନ୍ତି ବେଦଧ୍ୱନି ଯେହ୍ନେ ॥୨୨
ଅଳପ ନଦୀଏ ପୂରିଲେ ।
ଲହରି ଘେନି ଉଚ୍ଛୁଳିଲେ ॥୨୩
ପୁଣି ଶୁଖନ୍ତି ଜଳଅନ୍ତେ ।
ଅଳପ ଲୋକଙ୍କର ମତେ ॥୨୪
ତୃଣରେ ଇନ୍ଦ୍ର ଗୋପ ମିଶି ।
ସୈନ୍ୟ ସଂପଦ ପ୍ରାୟ ଦିଶି ॥୨୫
ଛତୁଏ ଛତ୍ର ପ୍ରାୟ ହୋଇ ।
ରାଜାଙ୍କ ପ୍ରାୟ ଦିଶେ ମହୀ ॥୨୬
ନାନାପ୍ରକାରେ ଶସ୍ୟରାଶି ।
ଏଣେ ପୂରିତ ମହୀ ଦିଶି ॥୨୭
ଶସ୍ୟ-ସଂପଦେ କ୍ଷେତ୍ରମାନେ ।
ଦେଖି ଆନନ୍ଦ କୃଷିଜନେ ॥୨୮
ଦରିଦ୍ରଙ୍କର କୃଷିନାଶେ ।
ତାପ କରାଇଲେ ବିଶେଷେ ॥୨୯

Dr. Sudhanshu Sekhar Mishra

ଦଇବ ବଳ ଅବିଶ୍ୱାସେ ।
ତାପକେ ପାଇଲେ ବିଶେଷେ ॥୩୦
ଅଶେଷ ଜୀବ ଜଳସ୍ଥଳେ ।
ଜଳ ଭକ୍ଷିଲେ କୁତୂହଳେ ॥୩୧
ଦିନକୁ ଦିନ ପୁଷ୍ଟ ହୋଇ ।
ହରିସେବକ ପ୍ରାୟ ରହି ॥୩୨
ସମୁଦ୍ର-ନଦୀଙ୍କର ମେଳେ ।
କଲ୍ଲୋଳ ଉଠେ ପୁଣ୍ୟଜଳେ ॥୩୩
ଅଳପ ଯୋଗୀଙ୍କର ଚିତ୍ତ ।
ଯେହ୍ନେ ଚଞ୍ଚଳଗୁଣେ ଗ୍ରସ୍ତ ॥୩୪
ପର୍ବତେ ଜଳଧାରା ଘାଏ ।
ଛିଡ଼ନ୍ତେ ନ କରନ୍ତି ଭୟେ ॥୩୫
କୃଷ୍ଣ-ଆଶ୍ରିତ ପ୍ରାଣୀ ଯେହ୍ନେ ।
ଦୁଃଖିତ ନୁହନ୍ତି ବ୍ୟସନେ ॥୩୬
ପଥ ହୋଇଲା ତୃଣମୟ ।
ବାଟର ନ ମିଳିଲା ଥୟ ॥୩୭
ବ୍ରାହ୍ମଣେ ବେଦ ପାସୋରିଲେ ।
ଯେମନ୍ତେ ହ୍ୱନ୍ତି ପଚାରିଲେ ॥୩୮
ଜଗତବନ୍ଧୁ ମେଘମାଳେ ।
ବିଜୁଳି ନ ରହେ ନିଶ୍ଚଳେ ॥୩୯
ଗୁଣିପୁରୁଷ ଥାଇଁ ମେଳେ ।
ବିଟପୀ ମନ ଯେହ୍ନେ ଟଳେ ॥୪୦
ଜଳଦ ମଧ୍ୟେ ଇନ୍ଦ୍ରଚାପ ।
ଦିଶଇ ନୀଳ-ପୀତରୂପ ॥୪୧
ତୃତୀୟ ଗୁଣେ ହୋଇ ଯୁତ ।
ନିର୍ଗୁଣ-ପୁରୁଷ ଯେମନ୍ତ ॥୪୨
ଚନ୍ଦ୍ର ନଦିଶେ ମେଘାଚ୍ଛନ୍ନେ ।
ମିଥ୍ୟା-ବଚନେ ସତ୍ୟ ଯେହ୍ନେ ॥୪୩
ମୟୂରେ ଗିରିଶିଖେ ଥାଇ ।
ନୃତ୍ୟ କରନ୍ତି ମେଘେ ଚାହିଁ ॥୪୪
ଅତିଥି ଦେଖି ଭକ୍ତଜନେ ।
ଯେସନେ ତୋଷ ହ୍ୱନ୍ତି ମନେ ॥୪୫
ବୃକ୍ଷଙ୍କ ମୂଳେ ଜଳ ପଶି ।
ଫଳ-ପଲ୍ଲବ ପରକାଶି ॥୪୬
ତପର ଅନ୍ତେ ଫଳ ପାଇ ।
ତପସ୍ୱୀ ଯେହ୍ନେ ତୁଷ୍ଟ ହୋଇ ॥୪୭

ଜଳ କୁକ୍କୁଟ ଆଦି ହଂସ ।
ପଙ୍କ-କଣ୍ଟକେ କଲେ ବାସ ॥୪୮
ଦୁଃଖ-କଷଣେ ନରନାରୀ ।
ଯେସନେ ଗୃହେ ବାସକରି ॥୪୯
ଜଳପ୍ରବାହେ ବନ୍ଧ ଭାଙ୍ଗେ ।
ଯେହ୍ନେ ପାଷାଣ୍ଡେ ବେଦମାର୍ଗେ ॥୫୦
ପବନ ଯୋଗେ ମେଘ ବଢ଼ି ।
ଅମୃତ ପ୍ରାୟ ଜଳ ଛାଡ଼ି ॥୫୧
ବିପ୍ରଙ୍କ ବୋଲେ ମହୀପାଳେ ।
ଯେହ୍ନେ ଦିଅନ୍ତି ଦାନକାଳେ ॥୫୨
ବରଷା ରସେ ବନ ଭୂଇଁ ।
ଖର୍ଜ୍ଜୁର ଜମ୍ବୁମୟ ହୋଇ ॥୫୩
ଗୋରୁ ଗୋପାଳ ସଙ୍ଗେ ଘେନି ।
ବନେ ବିଜୟ ଭାଇବେନି ॥୫୪
ଗାଈଏ ସ୍ତନଭର ହୋଇ ।
କର୍ଦ୍ଦମେ ନପାରନ୍ତି ଯାଇ ॥୫୫
କୃଷ୍ଣର ଡାକ ଶୁଣି କର୍ଣ୍ଣେ ।
ନିକଟେ ମିଳିଲେ ବହନେ ॥୫୬
କାନନେ ଯେତେ ଜୀବ ଥିଲେ ।
ଗିରିକନ୍ଦରେ ଆଶ୍ରେ କଲେ ॥୫୭
ସକଳ ବୃକ୍ଷେ ମଧୁ ସ୍ରବେ ।
ବରଷା ଋତୁର ସ୍ୱଭାବେ ॥୫୮
ଗାଈ ଚରାନ୍ତି ନନ୍ଦବାଳ ।
ଭକ୍ଷନ୍ତି ଫଳ କନ୍ଦମୂଳ ॥୫୯
ବସନ୍ତି ବୃକ୍ଷଙ୍କର ତଳେ ।
ଦିନ ହରନ୍ତି କୁତୂହଳେ ॥୬୦
ଦଧିଅନ୍ନାଦି ଘରୁ ଆଣି ।
ଜଳ ନିକଟେ ଚକ୍ରପାଣି ॥୬୧
ଗୋପାଳ ମେଳେ ବେନିଭାଇ ।
ଭୁଞ୍ଜନ୍ତି ଶିଳାପରେ ଥୋଇ ॥୬୨
କୋମଳ ଘାସେ ପଶୁଗଣେ ।
ଚରନ୍ତି ମୁଦିତ ଲୋଚନେ ॥୬୩
ବରଷା ଦେଖି ବ୍ରହ୍ମରାଶି ।
ନିଜ ମହିମା ପରଶଂସି ॥୬୪
ବନେ ବୁଲନ୍ତି ନନ୍ଦବାଳ ।
ପ୍ରବେଶ ଶରଦର କାଳ ॥୬୫

ଶୁକ୍ଳ ମେଘ ଶୂନ୍ୟେ ଦିଶି ।
ବିଷ୍ଣୁର ତେଜ ପରକାଶି ॥୬୬
ଭୂମିରେ ଯେତେ ଜଳ ଥିଲା ।
ଶରଦେ ନିର୍ମଳ ହୋଇଲା ॥୬୭
ଭ୍ରଷ୍ଟ ଯୋଗୀଙ୍କ ଚିତ୍ତ ଯେହ୍ନେ ।
ପୁଣି ନିର୍ମଳ ଯୋଗ ଧ୍ୟାନେ ॥୬୮
ଶରଦ ଭୟେ ମେଘ ଗଲା ।
ଆକାଶ ନିର୍ମଳ ଦିଶିଲା ॥୬୯
ଭାଙ୍ଗିଲା ଜନ୍ତୁଙ୍କ ଗହଳ ।
ଜଳୁ ହରିଲା ପଙ୍କ-ମଳ ॥୭୦
ହରି ଭକତି ବଳେ ଯେହ୍ନେ ।
ପାତକ ନ ଲଗାଇ ମନେ ॥୭୧
ସକଳ ଜଳ ଛାଡ଼ି ମେଘେ ।
ଶୁଭ୍ର ଦିଶିଲେ ଶୂନ୍ୟମାର୍ଗେ ॥୭୨
ସଂସାର ମୋହ ଛାଡ଼ି ଜନେ ।
ଯେହ୍ନେ ଦିଶନ୍ତି ଯୋଗଧ୍ୟାନେ ॥୭୩
ପର୍ବତେ ଯେତେ ଜଳ ଥିଲା ।
ସଞ୍ଚରି ଭୂମିରେ ପଡ଼ିଲା ॥୭୪
ଉତ୍ତମ ଶିଷ୍ୟେ ତୋଷ ହୋଇ ।
ଗୁରୁ ଯେସନେ ଜ୍ଞାନ ଦେଇ ॥୭୫
ଅଳପ ଜଳେ ଜନ୍ତୁ ଥାଇ ।
ରବି କିରଣେ ଭୟ ପାଇ ॥୭୬
ଜୀବନ ଦିନୁ ଦିନ କ୍ଷୀଣ ।
ଦରିଦ୍ର-କୁଟୁମ୍ବ ଯେସନ ॥୭୭
ଗଭୀର ଜଳେ ମୀନ ଥିଲେ ।
ରବି କିରଣ ନ ଜାଣିଲେ ॥୭୮
ଜଳେ ରମନ୍ତି ତୋଷ ଚିତ୍ତେ ।
ଅଜ୍ଞାନୀ ଜନଙ୍କର ମତେ ॥୭୯
ଭୂମିରେ ପଙ୍କ ଧୀରେ ଧୀରେ ।
ଶୁଖିଲେ ଶରଦ ଶିଶିରେ ॥୮୦
ଯେସନେ ଯୋଗଲୟ ପାଇ ।
ଅଜ୍ଞାନ ଭାବ କ୍ଷୟ ଯାଇ ॥୮୧
ଶରଦ ଋତୁ ଗୁଣ ଭେଦି ।
ନିଶ୍ଚଳ ହୋଇଲା ବାରିଧି ॥୮୨
ବେଦ-ବେଦାନ୍ତେ ପାଇ ତତ୍ତ୍ୱ ।
ଯେସନେ ଜ୍ଞାନୀଙ୍କର ଚିତ୍ତ ॥୮୩

Dr. Sudhanshu Sekhar Mishra

କୃଷକେ ମିଳି ଧାନ୍ୟକ୍ଷେତ୍ରେ ।
ଜଳ ବାନ୍ଧିଲେ ଦୃଢ଼ମତେ ॥୮୪
ଯୋଗୀଏ ପବନର ବଳେ ।
ଇନ୍ଦ୍ରି ରୁନ୍ଧନ୍ତି ଯେହ୍ନେ କାଳେ ॥୮୫
ଶରଦ-ରବି-ତେଜ ଲାଗି ।
ଜନ୍ତୁଏ ହୋନ୍ତି ଦୁଃଖଭାଗୀ ॥୮୬
ରଜନୀନାଥ ତାହା ହରି ।
ଯେହ୍ନେ ଗୋବିନ୍ଦ ବ୍ରଜନାରୀ ॥୮୭
ନିର୍ମଳ ଦିଶେ ଶୂନ୍ୟପଥ ।
ଗ୍ରହ ନକ୍ଷତ୍ର ନିଶିନାଥ ॥୮୮
ଶବଦ ବ୍ରହ୍ମ ଜାଣି ଯେହ୍ନେ ।
ସାଧୁପୁରୁଷଙ୍କର ମନେ ॥୮୯
ନକ୍ଷତ୍ରଗଣ ମଧ୍ୟେ ଶଶୀ ।
ଅଖଣ୍ଡମଣ୍ଡଳ ପ୍ରକାଶି ॥୯୦
ଯାଦବ ଭୋଜବଂଶ ମଧ୍ୟେ ।
ଗୋବିନ୍ଦ ଯେସନେ ଆନନ୍ଦେ ॥୯୧
ଚନ୍ଦ୍ର କୁମୁଦ ଜଳରାଶି ।
ପବନ ପ୍ରସରନ୍ତେ ନିଶି ॥୯୨
ଗାଈ ହରିଣୀ ପକ୍ଷୀ ନାରୀ ।
ଶରଦ ଋତୁ ମଧ୍ୟେ ଚାରି ॥୯୩
ଇଚ୍ଛନ୍ତି ନିଜ ସ୍ୱାମୀ ସଙ୍ଗ ।
ମାୟାଭିଆଣ ଶିରୀରଙ୍ଗ ॥୯୪
କୁମୁଦ ବିନା ଜଳ ଫୁଲେ ।
ଆନନ୍ଦ ଦିବାକର ତୁଲେ ॥୯୫
ରାଜାର ତେଜେ ପ୍ରଜା ଯେହ୍ନେ ।
ଆନନ୍ଦ ହୋନ୍ତି ଚୋର ବିନେ ॥୯୬
ପୁରପାଟଣା ଗ୍ରାମ ଭୂଇଁ ।
ଚନ୍ଦ୍ର ଉତ୍ସବ ବିରାଜଇ ॥୯୭
କୃଷ୍ଣର ମାୟା ଶସ୍ୟରାଶି ।
ଦେଖି ମାନବେ ପରଶଂସି ॥୯୮
ଋଷି-ନୃପତି-ବଣିଜାରେ ।
ପ୍ରବାସ କଲେ ଯେ ଯାହାରେ ॥୯୯
ଆୟୁଷ ଅନ୍ତେ ଯେହ୍ନେ ସିଦ୍ଧେ ।
କାଳେ ଭୁଞ୍ଜନ୍ତି ବ୍ରହ୍ମପଦେ ॥୧୦୦
ମୁନି କହନ୍ତି ରାଜା ଆଗେ ।
ବାଳକ ଲୀଳା ରସ ଭାବେ ॥୧୦୧
ଶରଦ କାଳେ ବନଚାରୀ ।
ରାମ ଗୋପାଳ ନରହରି ॥୧୦୨
ହରି ଚରିତ ଭାଗବତ ।
କହଇ ଦାସ ଜଗନ୍ନାଥ ॥୧୦୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ପ୍ରାବୃଟ୍ ଶରଦ୍ ବର୍ଣ୍ଣନଂ ନାମ ଏକବିଂଶୋଽଧ୍ୟାୟଃ ॥

---

## ଦ୍ୱାବିଂଶ ଅଧ୍ୟାୟ

ଶୁକ ଉବାଚ

ଶରଦ କାଳର ସ୍ୱାଭାବେ ।
ଗୋବିନ୍ଦ ବୃନ୍ଦାବନ ଠାବେ ॥୧
ନଦୀ ପୋଖରୀ ଜଳରାଶି ।
ସୁଗନ୍ଧ ଫୁଲେ ପରଶଂସି ॥୨
ବନକୁସୁମ ତରୁଡାଳେ ।
ଶୁକ କୋକିଳ ଭୃଙ୍ଗମେଳେ ॥୩
ବନଗହନ ଗିରିତଳେ ।
ଗାଈ ଚରାନ୍ତି ଗୋପବାଳେ ॥୪
ଆନନ୍ଦେ ବେଣୁ ନାଦକରି ।
ବନେ ବିଜୟ ନରହରି ॥୫
କୃଷ୍ଣ ମୁରଲୀ ନାଦ ଶୁଣି ।
ଗୋପୀଏ ଏକୁ ଆରେ ଭଣି ॥୬
କୃଷ୍ଣଲୀଳାରେ ଚିତ୍ତ ଦେଇ ।
ଅନଙ୍ଗରସ ଭାବେ ମୋହି ॥୭
ମର୍ମ ନିବେଶି କୃଷ୍ଣ ପାଦେ ।
ଗୋପୀଏ କହନ୍ତି ଆନନ୍ଦେ ॥୮
ଶୁଣ ଗୋ ସଖୀ କୃଷ୍ଣ କଥା ।
କାନନେ ଯେମନ୍ତ ବ୍ୟବସ୍ଥା ॥୯
ମୟୂରପୁଚ୍ଛ ଶିରେ ଶୋହେ ।
ତରୁଣୀଜନ ମନ ମୋହେ ।୧୦
କର୍ଣ୍ଣେ ଖଞ୍ଜିତ କନିଅର ।
ସୁନ୍ଦର ସୁରଙ୍ଗ ଅଧର ॥୧୧
ପୀତବସନ କଟୀତଟେ ।
ଲମ୍ବଇ ବନମାଳା କଣ୍ଠେ ॥୧୨
ବିବିଧ ନଟବେଶ ହୋଇ ।
ମଧୁରେ ବେଣୁ ନାଦ ବାଇ ॥୧୩
ଆନନ୍ଦେ ଶିଶୁଗଣ ସଙ୍ଗେ ।
କ୍ରୀଡ଼ନ୍ତି ବୃନ୍ଦାବନ ଲାଗେ ॥୧୪
ମୁରଲୀନାଦ ଶୁଭେ ବନେ ।
ଭୋ ସଖି ଶୁଣ ସାବଧାନେ ॥୧୫
ଗୋପାଳ ମେଳେ ନନ୍ଦସୁତ ।
ଗୋରୁ ଚରାନ୍ତି ଗୋପୀନାଥ ॥୧୬
ଚକ୍ଷୁ ବହନ୍ତି ଯେତେ ପ୍ରାଣୀ ।
କେ ପାରୁ ତା'ଙ୍କ ପୁଣ୍ୟ ଗଣି ॥୧୭
ଗୋପାଳ ମେଳେ କୃଷ୍ଣ ଦେଖି ।
ନିର୍ମଳ କଲେ ଚର୍ମ ଆଖି ॥୧୮
ଚୂତ ପଲ୍ଲବେ ଶିଖିପୁଚ୍ଛ ।
କଟୀରେ ପୀତ ନୀଳକାଛ ॥୧୯
ହୃଦେ କଦମ୍ବ ପଦ୍ମମାଳ ।
ରଙ୍ଗ ମୃତ୍ତିକା ଶ୍ରମଝାଳ ॥୨୦
ଗୋପାଳ ମେଳେ ବେନିଭାଇ ।
କି ପଟାନ୍ତର ଦେବା ସହି ॥୨୧
ରଙ୍ଗସଭାର ତଳେ ସାର ।
ଯେହ୍ନେ ଯୁଗଳ ନୃତ୍ୟକାର ॥୨୨
ଦେଖ ଗୋ ମୁରଲୀର ଭାଗ୍ୟ ।
ଅମୃତ ଅଧରେ ସଂଯୋଗ ॥୨୩
ଅନେକ ଜନ୍ମେ ପୁଣ୍ୟ ଦାହି ।
କୃଷ୍ଣ ଅଧର ପୁଟେ ଥାଇ ॥୨୪

Dr. Sudhanshu Sekhar Mishra

ସବୁ ଖାଇଲା ସୁଧାରସ ।
ଗୋପୀଙ୍କି ନାହିଁ ଅବଶେଷ ॥୨୫
ଗୋପୀଙ୍କ ଠାରେ ଗର୍ବ ବହେ ।
ସୁହୃଦ ସପତଣୀ ପ୍ରାୟେ ॥୨୬
ନଦୀଏ ହୋଇ ସ୍ଥିରଗତି ।
ବୃକ୍ଷେ ଅଶ୍ରୁଜଳ ସ୍ରବନ୍ତି ॥୨୭
ଭୂମି ଆନନ୍ଦ ବୃନ୍ଦାବନେ ।
ଗୋବିନ୍ଦ-ପାଦପଦ୍ମ-ଚିହ୍ନେ ॥୨୮
କୃଷ୍ଣ-ମୁରଲୀନାଦ ଚାହିଁ ।
ଜନ୍ତୁଙ୍କ ଚକ୍ଷୁ ନ ଚଳଇ ॥୨୯
ମୃଗ ମୟୂର ପଶୁ ଯେତେ ।
ଗିରିକନ୍ଦରେ ଯୂଥେ ଯୂଥେ ॥୩୦
ଧନ୍ୟ ଏ ହରିଣ ଯୁବତୀ ।
ବେଣୁ ଶୁଣନ୍ତି କୃଷ୍ଣ କତି ॥୩୧
ଆବୋରି କୃଷ୍ଣ ମୁଖସାର ।
ନୟନେ ଦ୍ୟନ୍ତି ଉପହାର ॥୩୨
ଦେବକାମିନୀ ଶୂନ୍ୟେ ଥାଇ ।
ମୁରଲୀ ନାଦେ ମନଦେଇ ॥୩୩
ବଦନ-ନୟନ-ଆନନ୍ଦ ।
ଶୁଣି ମୋହନ-ବେଣୁନାଦ ॥୩୪
ବିମାନେ ଥାଇ ମୋହମାନ ।
ଫିଟିଲା କବରୀ-ବସନ ॥୩୫
ଗୋରୁଏ କୃଷ୍ଣ-ଗୀତ ଶୁଣି ।
ଚଳି ନ ପାରନ୍ତି ଧରଣୀ ॥୩୬
ତୃଣ କବଳ ତୁଣ୍ଡେ କରି ।
ବେଣୁ ଶୁଣନ୍ତି କର୍ଣ୍ଣ ଡେରି ॥୩୭
ବତ୍ସାଏ ସ୍ତନେ ମୁଖ ଦେଇ ।
ବେଣୁ ଶୁଣନ୍ତି ସ୍ଥିର ହୋଇ ॥୩୮
ପକ୍ଷୀଏ ମୁନିଙ୍କର ତୁଲେ ।
ଧ୍ୟାନ କରନ୍ତି ବୃକ୍ଷ ଡାଳେ ॥୩୯
ନଦୀଏ ଶୁଣି ବେଣୁଗୀତ ।
ଅନଙ୍ଗବାଣେ ମୋହଗତ ॥୪୦
ଉର୍ମିର ଛଳେ ଭୁଜ ଟେକି ।
କୋଳ କରିବେ ବନମାଳୀ ॥୪୧
କମଳ ଉପହାର ଦେଇ ।
ପୂଜା କରନ୍ତି ପାଦ ଦୁଇ ॥୪୨
ଇନ୍ଦ୍ର ଯେ ଦେଖୁଥିଲା ରହି ।
ମୁରଲୀ ନାଦେ ଚିତ୍ତ ଦେଇ ॥୪୩
ରାମ-ଗୋବିନ୍ଦ ଗୋପମେଳେ ।
ଫୁଟିଲେ ଶ୍ରମ ଘର୍ମ ଝାଳେ ॥୪୪
ଦଇବେ ଗୋବିନ୍ଦର ମିତ୍ର ।
ଉପରେ କଲା ମେଘଛତ୍ର ॥୪୫
ଶବରନାରୀମାନେ ଧନ୍ୟ ।
ଶୁଣ ଗୋ ତାହାଙ୍କର ପୁଣ୍ୟ ॥୪୬
ସ୍ତିରୀଙ୍କ ସ୍ତନ ବିଲେ ପନ ।
କୁଙ୍କୁମ ଅଗୁରୁ ଚନ୍ଦନ ॥୪୭
କୃଷ୍ଣର ପାଦଯୁଗେ ଥିଲା ।
କୋମଳ ଘାସେ ଗୋ ଲାଗିଲା ॥୪୮
କୃଷ୍ଣର ଶୁଣି ବେଣୁସ୍ୱନ ।
ଅନଙ୍ଗେ ହୋଇଲେ ଅଜ୍ଞାନ ॥୪୯
କୁଙ୍କୁମ ତୃଣ ମଧୁଁ ଟେକି ।
ସ୍ତନ-ବଦନେ ତାହା ବୋଳି ॥୫୦
ବେଗେ ଛାଡ଼ିଲେ ମନତାପ ।
ଦେଖନ୍ତି ରାମକୃଷ୍ଣ ରୂପ ॥୫୧
ଦେଖ ଗୋ ଗିରି ଗୋବର୍ଦ୍ଧନ ।
ପୂର୍ବେ ଅନେକ କଲା ପୁଣ୍ୟ ॥୫୨
ହରି ସେବକ ଶିରୋମଣି ।
କୋମଳ ତୃଣ କନ୍ଦପାଣି ॥୫୩
ଏ ଉପହାରେ ସେ ଆନନ୍ଦ ।
ପୂଜିଲା ଗୋବିନ୍ଦର ପାଦ ॥୫୪
ଗୋରୁ-ଗୋପାଳ ଘେନି ସଙ୍ଗେ ।
ବେଣୁ ବଜାନ୍ତି କୃଷ୍ଣ ରଙ୍ଗେ ॥୫୫
ପ୍ରାଣୀଙ୍କି କଲେ ବିପରୀତ ।
ମୋହିତ ହୋଇଲେ ସମସ୍ତ ॥୫୬
ଶୁଣ ରାଜନ ତୋଷଚିତ୍ତେ ।
ଗୋପୀ କହନ୍ତି ଖେଦମତେ ॥୫୭
କୃଷ୍ଣର ପାଦେ ମନଦେଇ ।
ଦିନ ହରନ୍ତି ମୁଖ ଚାହିଁ ॥୫୮
ଗୋବିନ୍ଦ ମୁରଲୀର ନାଦ ।
ଶୁଣନ୍ତେ ଖଣ୍ଡଇ ଆପଦ ॥୫୯
ସୁଜନେ ଶୁଣ ବେଣୁଗୀତ ।
କହଇ ଦାସ ଜଗନ୍ନାଥ ॥୬୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ବେଣୁଗୀତଂ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତ୍ରୟୋବିଂଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର ।
ଶୁଣ ରାଜନ ରସଭର ॥୧
ଶରଦଋତୁ ପୂର୍ଣ୍ଣ ହେଲା ।
ହେମନ୍ତ ଋତୁ ପ୍ରସରିଲା ॥୨
କୃଷ୍ଣ-ଆଦେଶେ ଗୋପପୁରୀ ।
ଯେତେ ଉପୁଜିଲେ କୁମାରୀ ॥୩
କୃଷ୍ଣ ଭଜନ ପୁଣ୍ୟଫଳେ ।
ରମିଲେ ବୃନ୍ଦାବନ ସ୍ଥଳେ ॥୪
ତୁଲ୍ୟବୟସୀ ନବବେଶେ ।
ଖେଳନ୍ତି ନାନା ଖେଳରସେ ॥୫
ହେମନ୍ତ ଋତୁ ଦେଖି ବନେ ।
କଳ୍ପିଲେ ଗଉରୀ ପୂଜନେ ॥୬
ବେଣୁ-ଶବଦେ ଗୀତରସ ।
ଗୋପୀଏ ହୋଇଲେ ହରଷ ॥୭
ହବିଷ୍ୟ ଭୁଞ୍ଜି ଏକବାରେ ।
ଦେବୀ ପୂଜନ୍ତି ନଦୀତୀରେ ॥୮
ଅଳପ ରାତ୍ର ଥାଉଁ ନିତ୍ୟେ ।
ଯମୁନା ଯା'ନ୍ତି ତୋଷଚିତ୍ତେ ॥୯
ସ୍ନାହାନ ସାରି ଶୀତଜଳେ ।
ବାଲୁକା ସ୍ଥାପି ନଦୀତୀରେ ॥୧୦
ପୂଜନ୍ତି ନାନା ଦ୍ରବ୍ୟଘେନି ।
ଜୟ ଶବଦେ ଗୀତ ଧ୍ୱନି ॥୧୧
ହର ଗଉରୀ କରି ଧ୍ୟାନ ।
ମନେ ଚିନ୍ତନ୍ତି ଭଗବାନ ॥୧୨
ପୂଜାର ଅନ୍ତେ ପାଦେ ପଡ଼ି ।
ଗୁପତେ କରନ୍ତି ଗୁହାରି ॥୧୩
ହେ କାତ୍ୟାୟନି ମହାମାୟି ।
ପରମ ଯୋଗେଶ୍ୱରୀ ତୁହି ॥୧୪
ଭୋ ମାତ ଶଙ୍କର-ଯୁବତୀ ।
ନନ୍ଦକୁମର ଦିଅ ପତି ॥୧୫
ଆନ ବରେଣ କାର୍ଯ୍ୟ ନାହିଁ ।
ପ୍ରସନ୍ନ ହୁଅ ମାତ ତୁହି ॥୧୬
ଷୋଳ ସହସ୍ର ଗୋପନାରୀ ।
ବର ଇଚ୍ଛିଲେ ନରହରି ॥୧୭
ଏକ ଅରକେ ନ ଜାଣନ୍ତି ।
ମନେ ବରିଲେ କୃଷ୍ଣେପତି ॥୧୮
ବୋଲନ୍ତି କୃଷ୍ଣ ବର ହେଉ ।
ତା' ପାଦ ସେବି ଦିନ ଯାଉ ॥୧୯
କୃଷ୍ଣ-ରମଣଭାବ ଆଶେ ।
ତପ ସାଧିଲେ ଏକମାସେ ॥୨୦
ପ୍ରଭାତୁଁ ଉଠି ଗୋପବାଳୀ ।
ଆନନ୍ଦେ ଦେଲେ ହୁଳହୁଳି ॥୨୧
ଚାଲନ୍ତି ଯୂଥ ଯୂଥ ହୋଇ ।
ମଙ୍ଗଳ ନାଦେ ଗୀତ ଗାଇ ॥୨୨
ଏକ ଆରେକ ଭୁଜ କନ୍ଧେ ।
କୃଷ୍ଣ ଭଜନ୍ତି ଗୀତବନ୍ଧେ ॥୨୩
ବିବିଧ ହାସ୍ୟରସ ଭରେ ।
ମିଳିଲେ ଯମୁନାର ତୀରେ ॥୨୪
ବସ୍ତ୍ର ପାଲଟି କୂଳେ ଥୋଇ ।
ଜଳେ ପଶିଲେ ଗୀତଗାଇ ॥୨୫
ଅନନ୍ଦ କେ କରିବ ଅନ୍ତ ।
ଯାହା ରମିବେ ଗୋପୀନାଥ ॥୨୬
ଏକ ଆରକେ ଜଳ ଫିଙ୍ଗେ ।
ବୁଡ଼ି ଉଠନ୍ତି ନାନା ରଙ୍ଗେ ॥୨୭
ବୁଡ଼ନ୍ତି ଏକୁ ଆରେ ଧରି ।
ମୁଖେ ସିଞ୍ଚନ୍ତି ଫୁ ଫୁ କରି ॥୨୮
କରନ୍ତି ହାସ୍ୟ-ପରିହାସ ।
ଏମନ୍ତେ ଜଳେ ଖେଳରସ ॥୨୯
ଶୁଣ ପରୀକ୍ଷ ନୃପବର ।
ତାହା ଜାଣିଲେ ଦାମୋଦର ॥୩୦
ଗୋପବାଳକ ଘେନି ସଙ୍ଗେ ।
ମିଳିଲେ ନଦୀତୀରେ ରଙ୍ଗେ ॥୩୧
କୂଳେ ଦେଖିଲେ ବସ୍ତ୍ରରାଶି ।
ପବନେ କହନ୍ତି ବିଶ୍ୱାସି ॥୩୨
ଶୁଣ ପବନ ମୋର ବାଣୀ ।
ବସ୍ତ୍ର ତୁ ଥୁଅ ବୃକ୍ଷେ ଆଣି ॥୩୩
ଗୋବିନ୍ଦ ଆଜ୍ଞା ଘେନି ଶିରେ ।
ପବନ ବହିଲା ସଧୀରେ ॥୩୪
ତକ୍ଷଣେ ପ୍ରଭୁ ଦାମୋଦର ।
ଉଠିଲେ କଦମ୍ବ ବୃକ୍ଷର ॥୩୫
ବସ୍ତ୍ର ଯେ ନଦୀତୀରେ ଥଲା ।
ପବନ ଯୋଗେ ଉଡ଼ିଗଲା ॥୩୬
କଦମ୍ବ ବୃକ୍ଷେ ଯାଇ ପଡ଼ି ।
ଦେଖି ହସନ୍ତି ନରହରି ॥୩୭
ଗୋପଙ୍କୁ ଚାହିଁ ଆଦିକନ୍ଦ ।
ବୋଇଲେ ଡାଳେ ବସ୍ତ୍ର ବାନ୍ଧ ॥୩୮
ଆଜ୍ଞା ପାଇଣ ଗୋପପୋଏ ।
ବୃକ୍ଷରେ ଉଠିଲେ ନିର୍ଭୟେ ॥୩୯
ଗୋପାଳେ ଉଠି ବୃକ୍ଷ ଡାଳେ ।
ବସ୍ତ୍ର ବାନ୍ଧିଲେ ମାଳେ ମାଳେ ॥୪୦
ବାଳକେ ବୃକ୍ଷ ଡାଳେ ଥାଇ ।
ନାଚନ୍ତି କରତାଳି ଦେଇ ॥୪୧
ମୁରଲୀ ଧ୍ୱନି ଉଚ୍ଚସ୍ୱର ।
ମଧ୍ୟେ ବିଜୟ ଦାମୋଦର ॥୪୨
ଗୋପୀଏ ଥିଲେ ଜଳ ମଧ୍ୟେ ।
କର୍ଣ୍ଣେ ଶୁଣିଲେ ବେଣୁ ନାଦେ ॥୪୩
ସଂଭ୍ରମେ ଛାଡ଼ି ଜଳକେଳି ।
ବୃକ୍ଷକୁ ଚାହାନ୍ତି ନିରୋଳି ॥୪୪
ବୋଲନ୍ତି ବୃକ୍ଷେ ଏତ କିସ ।
ଦେଖ ଗୋ ଦଇବ ଭବିଷ୍ୟ ॥୪୫

Dr. Sudhanshu Sekhar Mishra

ଏଠାକୁ କେମନ୍ତେ ଅଇଲା ।
ବାଳକ ମେଳେ ନନ୍ଦବାଳୀ ॥୪୬
କେବୋଲେ ଏ ବନେ ନ ଥାଇ ।
ଆଜ ଅଇଲା କିସ ପାଇଁ ॥୪୭
କେବୋଲେ ଭଲ ତ ହୋଇଲା ।
ବ୍ରତ ଗୋ ଆଜହୁଁ ସରିଲା ॥୪୮
କେ ବୋଲେ ଦେଖ ବୃକ୍ଷ ଡାଳେ ।
ଅନେକ ଉଡ଼ଇ ଚିରାଳେ ॥୪୯
କୂଳକୁ ଚାହିଁଣ ବୋଲନ୍ତି ।
ମରଣ ହୋଇଲା ଏଘାନ୍ତି ॥୫୦
ପାଲଟା ବସ୍ତ୍ର କୂଳେ ନାହିଁ ।
ଚକିତେ ଚଉଦିଗେ ଚାହିଁ ॥୫୧
ବୋଲନ୍ତି ବସ୍ତ୍ର କେଣେ ଗଲା ।
ଏଡ଼େ ଗୋ ପବନ ବହିଲା ॥୫୨
ଉଡ଼ି କେବଣ ଦିଗେ ଗଲା ।
ଲଜ୍ଜା ତ ମରଣୁଁ ବଳିଲା ॥୫୩
କିସ କରିବୁ ଆଜ ଜଳେ ।
କନ୍ୟାଏ ଭାଳନ୍ତି ବିକଳେ ॥୫୪
ଦାସବତ୍ସଳ ଭାବଗ୍ରାହୀ ।
କହନ୍ତି ଗୋପୀଙ୍କୁ ଅନାଇ ॥୫୫
ବସ୍ତ୍ର ଗୋ ବନେ ପଡ଼ିଥିଲା ।
ପବନ ଉଡ଼ାଇ ଆଣିଲା ॥୫୬
ରୁଣ୍ଡାଇ ବସ୍ତ୍ର ଆମ୍ଭେ ଆଣି ।
ବୃକ୍ଷେ ବାନ୍ଧିଲୁ ଏହିକ୍ଷଣି ॥୫୭
ଏ ଯେବେ ତୁମ୍ଭର ହୋଇଲା ।
ଆମ୍ଭର ଯଶ ଉପୁଜିଲା ॥୫୮
ଯେ ଯାହା ବସ୍ତ୍ର ଆସି ନିଅ ।
ଶୀତଳ ଜଳେ ଗୋ ନ ଥାଅ ॥୫୯
ଶୁଣି ଚକିତ ଗୋପବାଳୀ ।
ବୋଲନ୍ତି ପଡ଼ିଲୁ ପଞ୍ଝାଳି ॥୬୦
ଏକ ଆରକେ ମୁଖ ଚାହିଁ ।
ବୋଲନ୍ତି ଗାଲେ ହସ୍ତ ଦେଇ ॥୬୧
କେମନ୍ତେ ଉପେକ୍ଷିବା ଲାଜ ।
ମରଣୁଁ ବଳିଲା ତ ଆଜ ॥୬୨

ଶ୍ରୀକୃଷ୍ଣ ମୁଖକୁ ଅନାଇ ।
ବୋଲନ୍ତି କୋପଭର ହୋଇ ॥୬୩
ତୁ ଅଟୁ ଯଶୋଦା କୁମର ।
ପିଅର ନନ୍ଦ ମହାଖୁଡ଼ ॥୬୪
ଜାଣିଲୁ ତୋର ବଡ଼ପଣ ।
ଆମ୍ଭର ବସ୍ତ୍ର ବେଗେ ଆଣ ॥୬୫
ପକାଇ ଦିଅ ବେଗେ କାଢ଼ି ।
ବୃକ୍ଷୁ ପାଲଟା ଆମ୍ଭ ଶାଢ଼ୀ ॥୬୬
ଏଡ଼େ ନିର୍ଲ୍ଲଜପଣ ତୋ'ର ।
କେବେ ଶିଖିଲୁ ବେଣୁଧର ॥୬୭
ଶୁଣି ବୋଲନ୍ତି ଦାମୋଦର ।
ଏ ବଡ଼ ଅନୀତି ତୁମ୍ଭର ॥୬୮
ଯେ ପ୍ରାଣୀ ପରଉପକାରୀ ।
ତାହାକୁ ପଥେ ନେଇ ମାରି ॥୬୯
ପବନ ନେଉଥିଲା ବଳେ ।
ଆଣି ବାନ୍ଧିଲି ବୃକ୍ଷଡାଳେ ॥୭୦
ତହିଁର ଫଳ ମୁଁ ପାଇଲି ।
ତୁମ୍ଭଙ୍କୁ ବସ୍ତ୍ର ଯେ ଯାଚିଲି ॥୭୧
ମୁଁ ତ ନ କଲି ପରିହାସ ।
ତୁମ୍ଭେତ ମୋହର ବିଶ୍ୱାସ ॥୭୨
ଏବେ ଗୋ ବସ୍ତ୍ର ଆସି ନିଅ ।
ନ ଜାଣି କେତେ ଗାଳି ଦିଅ ॥୭୩
ମୋହର ଦେହେ ମିଥ୍ୟା ନାହିଁ ।
ହସି ବୋଲନ୍ତି ଭାବଗ୍ରାହୀ ॥୭୪
ଶୁଣି ସାନନ୍ଦମନ ହୋଇ ।
ଗୋପୀ ବୋଲନ୍ତି କୃଷ୍ଣେ ଚାହିଁ ॥୭୫
ତୁ କୃଷ୍ଣ ଗୋପପୁର ସାର ।
ବନ୍ଧୁବାନ୍ଧବ ଆମ୍ଭେ ତୋର ॥୭୬
ବସ୍ତ୍ର ପକାଇ ଦିଅ ତଳେ ।
ପଡୁଛୁ ତୋର ପାଦତଳେ ॥୭୭
ଶ୍ୟାମସୁନ୍ଦର ତୋ ଚରଣେ ।
ସେବା କରିବୁ ଦାସୀପଣେ ॥୭୮
ତୁ ଯେବେ ନ ଦେବୁ ପକାଇ ।
କହିବୁ କଂସ ଆଗେ ଯାଇ ॥୭୯

ଶୁଣି ବୋଲନ୍ତି ଚକ୍ରଧର ।
ତୁମ୍ଭେ ହୋ ଦାସୀ ଯେବେ ମୋର ॥୮୦
ତେବେ କରିବ ମୋ' ଉତ୍ତର ।
ନ ଜାଣି କିମ୍ବା କୋପ କର ॥୮୧
ଯେ ଯାହା ବସ୍ତ୍ର ବାଛି ନିଅ ।
ନ ଦେଲେ ରାଜା ଆଗେ କହ ॥୮୨
କଂସକୁ କିସ ମୋର ଡ଼ର ।
ସୋଦର ମଉଳା ମୋହର ॥୮୩
ତାହାକୁ ମୋର ଭୟ ନାହିଁ ।
ଅନ୍ୟାୟ ନ କଲି ନା ମୁହିଁ ॥୮୪
ବସ୍ତ୍ର ପବନ ନେଉଥିଲା ।
ଆଣିବା ଦୋଷ ମୋ' ହୋଇଲା ॥୮୫
ଏ କଥା ତୁମ୍ଭଙ୍କୁ ଯୋଗାଇ ।
ଧର୍ମ ହିଁ ଅଛଇ ଅନାଇ ॥୮୬
ତୁମ୍ଭେ ଅଧର୍ମେ ଯିବ ନାଶ ।
ରାଜା କରିବ ମୋର କିସ ॥୮୭
କୃଷ୍ଣ ମୋହନ କଥା ଶୁଣି ।
ଗୋପୀଏ ମନେ ମନେ ଗୁଣି ॥୮୮
କଣ୍ଠ-ପ୍ରମାଣ ଜଳେ ଥାଇ ।
କମ୍ପନ୍ତି କୃଷ୍ଣ ମୁଖ ଚାହିଁ ॥୮୯
ହରିଙ୍କୁ ଜିଣି ନ ପାରିଲେ ।
ନିର୍ଭୟେ ଲାଜ ଉପେକ୍ଷିଲେ ॥୯୦
ଯୋନି ଆଚ୍ଛାଦି ବାମକରେ ।
ତୀରେ ଉଠିଲେ ଲାଜଭରେ ॥୯୧
ଦୟାସାଗର ଭାବଗ୍ରାହୀ ।
ବୃକ୍ଷର ଡାଳୁ ବସ୍ତ୍ର ଫେଇ ॥୯୨
ପାଲଟାବସ୍ତ୍ର ଘେନି କନ୍ଧେ ।
ବୃକ୍ଷରୁ ଓହ୍ଲାଇ ଆନନ୍ଦେ ॥୯୩
ଗୋପୀଙ୍କ ଶୁଦ୍ଧଭାବ ଚାହିଁ ।
ହସି ବୋଲନ୍ତି ଭାବଗ୍ରାହୀ ॥୯୪
ଏ ନୁହେଁ ତୁମ୍ଭର ଉଚିତ ।
ବିଶେଷ କରିଅଛ ବ୍ରତ ॥୯୫
ବିବସ୍ତ୍ର ହୋଇ ଦିଅଁ ଆଗେ ।
ତୀରେ ଉଠିଲ ଆସି ବେଗେ ॥୯୬

Dr. Sudhanshu Sekhar Mishra

ଏ ବଡ଼ ଅପରାଧ ହୋଇ ।
ନରକେ ପଡ଼ିବଟି ଯାଇ ॥୯୭
ଏ ଦୋଷ ନ ଥାଉ ତୁମ୍ଭର ।
ଦେବତା କର ନମସ୍କାର ॥୯୮
ହସି ବୋଲନ୍ତେ ବନମାଳୀ ।
ଶୁଣି ଚକିତ ଗୋପବାଳୀ ॥୯୯
କପାଳେ ଦେଇ ଏକ କର ।
ଦେବତା କଲେ ନମସ୍କାର ॥୧୦୦
ଦେଖି ବୋଲନ୍ତି ଯଦୁପତି ।
ଶୁଣ ଗୋ ବରଜ ଯୁବତୀ ॥୧୦୧
ଏକ ହସ୍ତକେ ନମସ୍କାର ।
ଏ ତୁମ୍ଭ କେଉଣ ଆଚାର ॥୧୦୨
ଶାସ୍ତ୍ର ଶୁଣିଲା ତୁମ୍ଭ ନାହିଁ ।
ମୁଁ ତାହା ଅଳପ ଜାଣଇ ॥୧୦୩
ଶୁଣ ଗୋ ନାରୀ ଏକଚିତ୍ତେ ।
ବିପ୍ରେ କହନ୍ତି ବେଦମତେ ॥୧୦୪
ଯେ ଦେବ ଗୁରୁ ଏକକରେ ।
ନମନ୍ତି ଅଜ୍ଞାନବେଭାରେ ॥୧୦୫
ତାହାର ଛେଦି ଯେବେ କର ।
ସେ ଅପରାଧୁଁ ହୋଇପାର ॥୧୦୬
ନୋହିଲେ ଯେତେ ଜନ୍ମ ହୋଇ ।
କରଯୁଗଳ ତା ନ ଥାଇ ॥୧୦୭
ଶୁଣି କୁମାରୀ ରସଭର ।
କପାଳେ ଦେଲେ ବେନିକର ॥୧୦୮
ହୃଦୟେ ଲାଜ ଭୟ ନାହିଁ ।
ଦେଖି ସାନନ୍ଦ ଭାବଗ୍ରାହୀ ॥୧୦୯
ନିର୍ମଳଚିତ୍ତ ତାହାଙ୍କର ।
ଜାଣିଲେ ବ୍ରହ୍ମାଣ୍ଡଠାକୁର ॥୧୧୦
ଗୋପୀଙ୍କ ଭାବେ ତୋଷହୋଇ ।
ଯେ ଯାହା ବସ୍ତ୍ର ଦେଲେ ନେଇ ॥୧୧୧
ଗୋପୀଏ ପିନ୍ଧି ଯେଝା ବାସ ।
ମନସାନନ୍ଦେ ହସହସ ॥୧୧୨
ଦେବତା ପୂଜାର ବିଧାନେ ।
କୃଷ୍ଣଙ୍କୁ ବରିଛନ୍ତି ମନେ ॥୧୧୩

ଲାଜେ ରହିଲେ ଶିରପୋତି ।
କୃଷ୍ଣଙ୍କୁ ଚାହିଁ ନ ପାରନ୍ତି ॥୧୧୪
କୃଷ୍ଣ ଜାଣିଲେ ତା'ଙ୍କ ମନ ।
ଗୋପୀଙ୍କି ହୋଇ ସାବଧାନ ॥୧୧୫
ହସି କହନ୍ତି ଜନାର୍ଦ୍ଦନ ।
ମୁହିଁ ଜାଣଇଁ ତୁମ୍ଭ ମନ ॥୧୧୬
ଯାହା ମାଗିଲ ଦିଅଁ ପୂଜି ।
ସେ କଥା ଅଛଇ ମୁଁ ହେଜି ॥୧୧୭
ମୁହିଁ କରିବି ତାହା ସତ୍ୟ ।
ବୋଲନ୍ତି ପ୍ରଭୁ ଗୋପୀନାଥ ॥୧୧୮
ମୋର ଚରଣେ ଯା'ର ଚିତ୍ତ ।
ପୁଣି ବିଷୟେ ହେଲେ ରତ ॥୧୧୯
ଜନ୍ମ-ମରଣ ତା'ର ନାହିଁ ।
ଭାଜିଲାଧାନ ପ୍ରାୟ ହୋଇ ॥୧୨୦
ଏ ବୃନ୍ଦାବନେ ଗୁପ୍ତେ ଥାଇ ।
ତୁମ୍ଭଙ୍କୁ ରମିବଇଁ ମୁହିଁ ॥୧୨୧
ସଂକଳ୍ପ କଲ ବ୍ରତ କରି ।
ହସି ବୋଲନ୍ତି ନରହରି ॥୧୨୨
ଏମନ୍ତେ କୃଷ୍ଣଆଜ୍ଞା ପାଇ ।
ଗୋପୀଏ ଗଲେ ତୋଷ ହୋଇ॥୧୨୩
ଗୋବିନ୍ଦପାଦେ ଚିତ୍ତ ଥୋଇ ।
ମିଳିଲେ ନିଜ ପୁରେ ଯାଇ ॥୧୨୪
ଗୋପାଳ ମେଳେ ଦାମୋଦର ।
ଗାଇ ଚରାଇ ଗଲେ ଦୂର ॥୧୨୫
ନିଦାଘ ରବିତେଜ ଲାଗି ।
ପୋଏ ହୋଇଲେ ଦୁଃଖଭାଗୀ ॥୧୨୬
ଚରାନ୍ତି ଗୋରୁ ଗୋପମେଳେ ।
ଶୀତଳ ତରୁଛାୟା ତଳେ ॥୧୨୭
ବୃକ୍ଷକୁ ଚାହିଁ ଦାମୋଦର ।
କହନ୍ତି ପୁଅଙ୍କ ଆଗର ॥୧୨୮
ହେ ସ୍ତୋକକୃଷ୍ଣ ମିତ୍ର ମୋର ।
ଶ୍ରୀଦାମ ଅର୍ଜୁନ ସୁବଳ ॥୧୨୯
ଅଂଶୁ ବିଶାଳ ଦେବପ୍ରସ୍ଥ ।
ଦେଖ ଏ ବୃକ୍ଷଙ୍କ ମହତ୍ତ୍ୱ ॥୧୩୦

ପରେ କରନ୍ତି ଉପକାର ।
ସୁଜନ ପ୍ରାଣୀଙ୍କ ବେଭାର ॥୧୩୧
ଶୀତ ବରଷା ଗ୍ରୀଷ୍ମ ଦୁଃଖ ।
ସହି ଆମ୍ଭଙ୍କୁ ଦ୍ୟନ୍ତି ସୁଖ ॥୧୩୨
ଧନ୍ୟ ଜୀବନ ଏହାଙ୍କର ।
ସାଧନ୍ତି ପ୍ରାଣୀ ଉପକାର ॥୧୩୩
ସୁଜନ ଘରେ ଯେହ୍ନେ ଯାଇ ।
ଅତିଥି ନିରାଶ ନୁହଇ ॥୧୩୪
ପତ୍ର କୁସୁମ ଫଳ ଛାଇ ।
ମୂଳ ବକଳ ଦାରୁ ଦେଇ ॥୧୩୫
କ୍ଷାର ଅଙ୍ଗାର ଭସ୍ମ ଅଠା ।
ଗୃହକୁ ସାଜି ବାଡ଼ କଣ୍ଟା ॥୧୩୬
ଏତେ ପ୍ରକାରେ ସେବା କରି ।
ନିତ୍ୟେ ଏ ପରଉପକାରୀ ॥୧୩୭
ଏହାଙ୍କ ପ୍ରାୟେ ଯେବେ ହୋଇ ।
ସଂସାର ମଧ୍ୟେ ଦେହ ବହି ॥୧୩୮
ମନ-ବଚନ-ଧନେ କରି ।
ଯେ ହୋଏ ପର-ଉପକାରୀ ॥୧୩୯
ଦିନ ହରନ୍ତି ଦୁଃଖ ସୁଖେ ।
ସେ ଧନ୍ୟ ଇହପରଲୋକେ ॥୧୪୦
ପୁଷ୍ପ-ପଲ୍ଲବ-ଫଳ-ଦଳେ ।
ତରୁର ଲମ୍ବ ଡ଼ାଳ ତଳେ ॥୧୪୧
ଗୋରୁ ଗୋପାଳ ଘେନି ସଙ୍ଗେ ।
ମିଳିଲେ ଯମୁନାର ଲାଗେ ॥୧୪୨
ଶୀତଳ ଜଳ ପାନକରି ।
ବୃକ୍ଷର ତଳେ ନରହରି ॥୧୪୩
କୃଷ୍ଣଙ୍କୁ ଚାହିଁ ଗୋପବାଳେ ।
କହନ୍ତି କ୍ଷୁଧାର ଆକୁଳେ ॥୧୪୪
ସେ ରାମ କୃଷ୍ଣର ଅଗ୍ରତ ।
ନମଇଁ ଦାସ ଜଗନ୍ନାଥ ॥୧୪୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧ ପୂର୍ବାର୍ଦ୍ଧେ
ଗୋପୀବସ୍ତ୍ରାପହାରୋ
ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଚତୁର୍ବିଂଶ ଅଧ୍ୟାୟ

ଶୁକ ଉବାଚ

ପରୀକ୍ଷେ ଚାହିଁ ଶୁକମୁନି ।
କହନ୍ତି କୃଷ୍ଣଭାବ ଘେନି ॥୧
ବାଳକେ କୃଷ୍ଣକୁ ଅନାଇଁ ।
ବୋଲନ୍ତି ଶିରେ କରଦେଇ ॥୨
ହେ ରାମକୃଷ୍ଣ କର ତ୍ରାହି ।
କ୍ଷୁଧାରେ କମ୍ପୁଅଛି ଦେହୀ ॥୩
ଆଣିତ ନ ପାରିଲୁ ଅନ୍ନ ।
ରାତ୍ରହୁଁ କଲ ବେଣୁସ୍ୱନ ॥୪
ଘର ହୋଇଲା ଦୂରପଥ ।
ଆଜ ତ ହୋଇଲୁ ଅନାଥ ॥୫
ବାଳକ ବୋଲ ଶୁଣି କର୍ଣ୍ଣେ ।
ଗୋବିନ୍ଦ ବିଚାରନ୍ତି ମନେ ॥୬
ଅନେକ ଜନ୍ମେ ଦୁଃଖ ସହି ।
ବ୍ରାହ୍ମଣୀଛନ୍ତି ମୋତେ ଧ୍ୟାୟି ॥୭
ତାହାଙ୍କୁ ନିସ୍ତାରିବି ଆଜ ।
ଏଣେ ମୋହର ବଡ଼କାର୍ଯ୍ୟ ॥୮
ପୁଅଙ୍କ ମୁଖ ଚାହିଁ ହସି ।
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥୯
ଏ ଯେ ଦିଶଇ ଧୂମବର୍ଣ୍ଣ ।
ନିକଟେ ଅଶୋକ-ବିପିନ ॥୧୦
ଯଜ୍ଞ କରନ୍ତି ବିପ୍ରେ ଯହିଁ ।
ତହିଁକି ଯାଅ ବେଗ ହୋଇ ॥୧୧
ବିଚାରି ବେଦ-ବ୍ରହ୍ମଦୀକ୍ଷା ।
ଯଜ୍ଞେ କରନ୍ତି ସ୍ୱର୍ଗ ଇଚ୍ଛା ॥୧୨
ଧନ-ବସନ-ଅନ୍ନ ଭୋଜା ।
ଅତିଥି କରୁଥାନ୍ତି ପୂଜା ॥୧୩
ଅତିଥିମତେ ତୁମ୍ଭେ ଯାଅ ।
ମୋର ମାଗିଲା ବୋଲି କହ ॥୧୪
ରାମ ଅଛନ୍ତି କୃଷ୍ଣ ସଙ୍ଗେ ।
ଅନ୍ନପୁଡ଼ାଏ ଦିଅ ବେଗେ ॥୧୫
ଶୁଣି ସାନନ୍ଦମନ ହୋଇ ।
ଯଜ୍ଞେ ମିଳିଲେ ପୋଏ ଯାଇ ॥୧୬

କପୋଳେ ଦେଇ ବେନିକର ।
ନ ମିଳେ ବିପ୍ରଙ୍କ ପୟର ॥୧୭
ଉଠିଲେ ଶିରେ କର ଦେଇ ।
କହନ୍ତି ବିପ୍ରଙ୍କୁ ଅନାଇଁ ॥୧୮
ଶୁଣିମା ସାବଧାନ ହୋଇ ।
ବନେ ବିଜୟ ବେନିଭାଇ ॥୧୯
ରାମ-ଗୋବିନ୍ଦ ଗୋପମେଳେ ।
ଫୁଟିଲେ କ୍ଷୁଧାର ବିକଳେ ॥୨୦
ଅଶୋକ ବୃକ୍ଷତଳେ ରହି ।
ଆମ୍ଭଙ୍କୁ ଦେଲେ ପଠିଆଇ ॥୨୧
ଅନ୍ନପୁଡ଼ାଏ ସ୍ୱାମୀ ଦେବ ।
ଭୁଞ୍ଜିବେ ଶ୍ରୀରାମ-ମାଧବ ॥୨୨
ଘରୁ ଆଣନ୍ତି ପ୍ରତିଦିନେ ।
ବନେ ଭୁଞ୍ଜନ୍ତି ତୋଷମନେ ॥୨୩
ରାତ୍ର ହିଁ ବନେ ଆଗସରି ।
ଅନ୍ନ ଯେ ଅଇଲୁ ପାସୋରି ॥୨୪
ଏଠାକୁ ଦୂର ଗୋପପୁର ।
କ୍ଷୁଧାଏ କମ୍ପଇ ଶରୀର ॥୨୫
ଆମ୍ଭଙ୍କୁ ରାଇ କୃଷ୍ଣ ପେଷି ।
ଅଛନ୍ତି ବୃକ୍ଷତଳେ ବସି ॥୨୬
ତାହାଙ୍କୁ ଯେବେ କର ସ୍ନେହ ।
ଅନ୍ନପୁଡ଼ାଏ ବେଗେ ଦିଅ ॥୨୭
ଯଜ୍ଞର ସ୍ୱଭାବ ଏମନ୍ତ ।
ଅତିଥି ପୂଜିବା ଯୁକତ ॥୨୮
ବ୍ରାହ୍ମଣେ ଶୁଣି ନ ଶୁଣିଲେ ।
ମନଚଞ୍ଚଳେ ଯଜ୍ଞ କଲେ ॥୨୯
ହରିର ମାୟାଚକ୍ରେ ପଡ଼ି ।
ଅଳପକର୍ମେ ପୁଣ୍ୟ ଲୋଡ଼ି ॥୩୦
ମନ ବୁଡ଼ାଇଛନ୍ତି ଯଜ୍ଞେ ।
ବ୍ରାହ୍ମଣ ଜନ୍ମର ସ୍ୱଭାବେ ॥୩୧
ଯେ ହରି ଦେଶକାଳ ପାତ୍ର ।
ଯଜ୍ଞାଦିଧର୍ମର ଦୈବତ ॥୩୨

ଯଜ୍ଞଭୋକତା ଆଦି କରି ।
ସର୍ବସମ୍ପଦ ନରହରି ॥୩୩
ପରମବ୍ରହ୍ମ ନ ଚିହ୍ନିଲେ ।
ମନୁଷ୍ୟବୁଦ୍ଧି ଆଚରିଲେ ॥୩୪
ଦେବା ନ ଦେବା ନ ବୋଇଲେ ।
ଗୋପାଳେ ନିରାଶ ହୋଇଲେ ॥୩୫
ଘଡ଼ିଏ ଥାଇ ଦୁଃଖସୁଖେ ।
ପୁଣି ମିଳିଲେ କୃଷ୍ଣପାଖେ ॥୩୬
ବୋଲନ୍ତି ଶିରେ କରଦେଇ ।
ଅନ୍ନ ମାଗିଲୁ ଆମ୍ଭେ ଯାଇ ॥୩୭
ତୋକଥା ଶୁଣି ନ ଶୁଣିଲେ ।
ଦେବା ନ ଦେବା ନ ବୋଇଲେ ॥୩୮
ଆମ୍ଭେ ଅଇଲୁ ଦୁଃଖପାଇ ।
ଶୁଣି ହସନ୍ତି ବେନିଭାଇ ॥୩୯
ବୋଲନ୍ତି ଶୁଣ ଗୋପପୋଏ ।
ଯାଅ ବ୍ରାହ୍ମଣଘର ଯାଏ ॥୪୦
ବ୍ରାହ୍ମଣୀମାନେ ଛନ୍ତି ଘରେ ।
ସେ ମୋତେ ଜାଣନ୍ତି ଅନ୍ତରେ ॥୪୧
ମୋ ଭାବ ନିତ୍ୟେ ସେ ଚିନ୍ତନ୍ତି ।
ମୋହର ଦର୍ଶନ ଇଚ୍ଛନ୍ତି ॥୪୨
ତାହାଙ୍କୁ ଅନ୍ନ ମାଗ ଯାଇ ।
ଭୁଞ୍ଜିବା ଉଦର ପୂରାଇ ॥୪୩
ବାଳକେ ଦୟା ସେ କରନ୍ତି ।
ଅତିଥି ଧର୍ମମତେ ଥାନ୍ତି ॥୪୪
ନାନାବ୍ୟଞ୍ଜନ ଆଣି ଦେବେ ।
ବେଗେ ବାହୁଡ଼ିଯାଅ ଏବେ ॥୪୫
ଗୋବିନ୍ଦ ଆଜ୍ଞା ଘେନି ଶିରେ ।
ପୋଏ ଚଳିଲେ ବିପ୍ରଘରେ ॥୪୬
ବ୍ରାହ୍ମଣୀମାନେ ଛନ୍ତି ବସି ।
ଅଳକ ତିଳକ ପ୍ରକାଶି ॥୪୭
ସ୍ତିରୀ ସ୍ୱଭାବେ ଅଳଙ୍କାର ।
ମଙ୍ଗଳନାଦେ ଗୀତସ୍ୱର ॥୪୮

Dr. Sudhanshu Sekhar Mishra

କୃଷ୍ଣରନାମ ତୁଣ୍ଡେ ଗାଇ ।
ପୋଏ ମିଳିଲେ ଘରେ ଯାଇ ॥୪୯
ଚରଣେ ଗଡ଼ଘାଲି ଶୋଇ ।
ବୋଲନ୍ତି ଶିରେ କରଦେଇ ॥୫୦
ଶୁଣିମା ସାବଧାନେ ମାଏ ।
ଆମ୍ଭେ ସକଳ ଗୋପପୋଏ ॥୫୧
ରାମ-ଗୋବିନ୍ଦ ଆମ୍ଭ ତୁଲେ ।
ବନରେ ଗାଈ ରଖୁଥିଲେ ॥୫୨
କ୍ଷୁଧା-ଅନଳେ ଦୁଃଖଶ୍ରମେ ।
ବିଜୟ ଅଶୋକ ବିପିନେ ॥୫୩
ଆମ୍ଭଙ୍କୁ ରାଇ ବେନିଭାଇ ।
ଏଥକୁ ଦେଲେ ପଠିଆଇ ॥୫୪
ଅନ୍ନପୁଡ଼ାଏ ମାଏ ଦେବ ।
ଭୁଞ୍ଜିବେ ଶ୍ରୀରାମ-ମାଧବ ॥୫୫
ବହନ ଦିଅ ମାଏ ଅନ୍ନ ।
ତେବେ ସେ ପାଇବେ ଜୀବନ ॥୫୬
ଆମ୍ଭର ଦେଖୁଅଛ ଦେହ ।
ଦେବା ନ ଦେବା ବେଗେ କହ ॥୫୭
ଶୁଣି ଉଷତ ବିପ୍ରନାରୀ ।
ସକଳ ଚରଚା ପାସୋରି ॥୫୮
ଆନନ୍ଦେ ପୁଲକିତ ହୋଇ ।
ନୟନୁ ଅଶ୍ରୁଜଳ ବହି ॥୫୯
କୃଷ୍ଣର ନାମ ଜପୁଛନ୍ତି ।
ଫିଟିଲା ଭବବନ୍ଧ-ଭ୍ରାନ୍ତି ॥୬୦
ତକ୍ଷଣେ ଶୁଚିମନ୍ତ ହୋଇ ।
ଘରେ ପଶିଲେ ବେଗେ ଯାଇ ॥୬୧
ଅନ୍ନ ବ୍ୟଞ୍ଜନ ଷଡ଼ରସେ ।
ଆନନ୍ଦେ ବାଢ଼ିଲେ ବିଶେଷେ ॥୬୨
ବିବିଧପାତ୍ରେ ଅନ୍ନ ଘେନି ।
ବାହାର ହୋଇଲେ କାମିନୀ ॥୬୩
ଆନନ୍ଦେ ଦେଲେ ହୁଳହୁଳି ।
ଯେସନେ ସମୁଦ୍ର ଉଚ୍ଛୁଳି ॥୬୪
ସମ୍ପଦ ତୁଚ୍ଛପ୍ରାୟ କରି ।
ଏକ ଆରକେ ଆଗସରି ॥୬୫
ବିପ୍ରେ ଯେ ଯଜ୍ଞଶାଳେ ଥିଲେ ।
ଗୋଡ଼ାଇ ଆଗେ ଓଗାଳିଲେ ॥୬୬

ବୋଲନ୍ତି କୋପଭର ହୋଇ ।
ତୁମ୍ଭଙ୍କୁ କେହୁ କଲାବାଇ ॥୬୭
ଗୋପାଳେ ବନେ ବେଣୁବାଇ ।
ବୁଲନ୍ତି ଗାଈଙ୍କି ଚରାଇ ॥୬୮
ତା'ଙ୍କ ନିକଟେ ତୁମ୍ଭେ ଗଲେ ।
ଆଉ କି ଥିବ ଜାତି-କୁଳେ ॥୬୯
ଭଲେ ବାହୁଡ଼ିଯାଅ ଘର ।
ଗଉଡ଼େ ବନେ ବଳୀୟାର ॥୭୦
ବ୍ରାହ୍ମଣୀ ନ ଶୁଣିଲେ ତାହା ।
କୃଷ୍ଣରେ ବଳିଛି ଉତ୍ସାହା ॥୭୧
ଗହଳେ ଗଲେ ପେଲା ପେଲି ।
ସ୍ୱାମୀଙ୍କି ପକାଇଲେ ଠେଲି ॥୭୨
ସମୁଦ୍ରେ ଆସନ୍ତେ ଲହରୀ ।
ତା' ବାଲିବନ୍ଧ କି ଆବୋରି ॥୭୩
କୃଷ୍ଣ ଭକ୍ତିରେ ବଳବନ୍ତା ।
ତେଣୁ ସେ ସ୍ୱାମୀଙ୍କି ଜିଣନ୍ତା ॥୭୪
ବ୍ରାହ୍ମଣେ ଧରି ନ ପାରିଲେ ।
ଯଜ୍ଞଶାଳକୁ ବାହୁଡ଼ିଲେ ॥୭୫
ଏକ ବ୍ରାହ୍ମଣୀ କ୍ଷୀଣଦେହୀ ।
ଗହଳେ ନ ପାରିଲା ଯାଇ ॥୭୬
ଦରିଦ୍ରପଣେ ଦୁଃଖ ପାଇ ।
ଅନ୍ନ-ବସନ ନ ମିଳଇ ॥୭୭
କୃଷ୍ଣହୁଁ ନ ଜାଣଇ ଆନ ।
ମନ-ବଚନେ ନିତ୍ୟେ ଧ୍ୟାନ ॥୭୮
ଅନେକ ଜନ୍ମେ ଦୁଃଖ ପାଇ ।
ତାହା ଜାଣନ୍ତି ଭାବଗ୍ରାହୀ ॥୭୯
ତାହାର ସ୍ୱାମୀ ଧରି କରେ ।
ନେଇ ବାନ୍ଧିଲା ନିଜ ଘରେ ॥୮୦
ମାଡ଼ ମାଇଲା ରୋଷଭରେ ।
ରୋଳେ ବାନ୍ଧିଲା ଧାଡିକାରେ ॥୮୧
ଦ୍ୱାର କବାଟ ଆଣ୍ଟେ କିଳି ।
ଯଜ୍ଞଶାଳାରେ ଯାଇ ମିଳି ॥୮୨
ବ୍ରାହ୍ମଣୀ ହୋଇଲା ମୂର୍ଚ୍ଛିତ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୮୩
ପୁଣି କ୍ଷଣକେ ଜ୍ଞାନ ପାଇ ।
ବୋଲଇ କାନ୍ଦି କୃଷ୍ଣ ତ୍ରାହି ॥୮୪

ଗଲେ ଯେ ବିପ୍ରନାରୀମାନେ ।
ମିଳିଲେ ଅଶୋକ-ବିପିନେ ॥୮୫
ବୃକ୍ଷର ତଳେ ଗୋପମେଳେ ।
କୃଷ୍ଣ ଦେଖିଲେ ଚର୍ମଡ଼ୋଳେ ॥୮୬
ଶ୍ୟାମସୁନ୍ଦର ତନୁ ବର୍ଣ୍ଣ ।
ପୀତବସନ ଶୋଭାବନ ॥୮୭
କଙ୍କଣ କୁଣ୍ଡଳ ବିରାଜେ ।
ତେଜେ କୋଟିଏ କାମଗଞ୍ଜେ ॥୮୮
ରଙ୍ଗମୃତ୍ତିକା ଅଙ୍ଗେ ବୋଳି ।
ମୟୂରପୁଚ୍ଛ ଗୁଞ୍ଜମାଳୀ ॥୮୯
ଆମ୍ବବଉଳ ଜାମୁଡ଼ାଳ ।
ହୃଦେ ଲମ୍ବଇ ବନମାଳ ॥୯୦
ପାଦେ କଠାଉ ରଙ୍ଗସାର ।
ଶ୍ରୀଦାମ କନ୍ଧେ ବାମକର ॥୯୧
ଦକ୍ଷିଣ କରେ ପଦ୍ମଘେନି ।
ଧୀରେ ଘୂରାନ୍ତି ଅନ୍ତର୍ଯ୍ୟାମି ॥୯୨
କର୍ଣ୍ଣରେ ନୀଳ ଉତପଳ ।
ସୁନ୍ଦର ଅଳକା କପୋଳ ॥୯୩
ଯେସନେ ନଟବର ବେଶ ।
ରଙ୍ଗ ଅଧରେ ମନ୍ଦହାସ ॥୯୪
ଈଷିତ ହାସ୍ୟମୁଖ ହୋଇ ।
ବ୍ରାହ୍ମଣୀମାନଙ୍କୁ ଅନାଇଁ ॥୯୫
ବ୍ରାହ୍ମଣନାରୀ କୃଷ୍ଣ ଦେଖି ।
ପିଛାଡ଼ି ନ ପାରନ୍ତି ଆଖି ॥୯୬
ଦେହ ତିନ୍ତିଲା ଅଶ୍ରୁଜଳେ ।
ଅନ୍ନ ଥୋଇଲେ କାଖୁଁ ତଳେ ॥୯୭
ତକ୍ଷଣେ ଶିରେ କର ଦେଇ ।
ବୋଲନ୍ତି କୃଷ୍ଣ ତ୍ରାହି ତ୍ରାହି ॥୯୮
ଅନଳ ଦେଖିଣ ପତଙ୍ଗ ।
ଯେହ୍ନେ ହୁଅନ୍ତି ଉଦ୍‌ବେଗ ॥୯୯
ବୋଲନ୍ତି କରିବା ଗୋ କୋଳ ।
ଜୀବନ ହୋଇବ ସୁଫଳ ॥୧୦୦
କେ ବୋଲେ ଏମନ୍ତ ନୁହଁଇ ।
ବ୍ରାହ୍ମଣେ ନ ଦେବେଟି ଯାଇ ॥୧୦୧
ପରପୁରୁଷ କୋଳ କଲେ ।
ବିପ୍ରେ ଦଣ୍ଡିବେ ଘରେ ଗଲେ ॥୧୦୨

Dr. Sudhanshu Sekhar Mishra

ଏମନ୍ତ ବିଚାରନ୍ତି ରହି ।
କୃଷ୍ଣବଦନେ ଚକ୍ଷୁ ଦେଇ ॥୧୦୩
କଣ୍ଟ-କୁଣ୍ଠିତ ରସଭର ।
ଅଧର କମ୍ପେ ଥରହର ॥୧୦୪
ପୁଣ ପୁଲକଭରେ କୁଚ ।
ଜାନୁ କମ୍ପଇ ଘନଘଞ୍ଚ ॥୧୦୫
ପଡ଼ିଲେ ପଞ୍ଚଶରେ ଘାରି ।
କୃଷ୍ଣଙ୍କୁ ଦେଖି ବିପ୍ରନାରୀ ॥୧୦୬
ଆତ୍ମା ହୋଇଲା ମୋହଗତ ।
ପଞ୍ଚପରାଣ କଣ୍ଠାଗ୍ରତ ॥୧୦୭
ଚକ୍ଷୁ ବୁଜିଲେ ଭାବଭରେ ।
କୃଷ୍ଣଙ୍କୁ ଦେଖିଲେ ଭିତରେ ॥୧୦୮
ହୃଦୟେ ଦେଖି ନାରାୟଣ ।
ନିବିଡ଼େ କଲେ ଆଲିଙ୍ଗନ୍ ॥୧୦୯
ତାପ ଛାଡ଼ିଲେ ବିପ୍ରନାରୀ ।
ଜନ୍ମମରଣ ଆଦିକରି ॥୧୧୦
ଯେହ୍ନେ ଜ୍ଞାନୀଙ୍କ ସଙ୍ଗ ପାଇ ।
ବିଷୟଖେଦ ନ ଲାଗଇ ॥୧୧୧
ଜ୍ଞାନକୁ ପାଇ ଦିନେ ଦିନେ ।
ତାପ ଛାଡ଼ନ୍ତି ଯେହ୍ନେ ଜନେ ॥୧୧୨
ପୁଣି କ୍ଷଣକେ ଚକ୍ଷୁ ଫେଇ ।
ଦେଖନ୍ତି ନୟନ ପୁରାଇ ॥୧୧୩
ଚିତ୍ରପ୍ରତିମା ପ୍ରାୟ ହୋଇ ।
ମନ ବୁଡ଼ିଲା କୃଷ୍ଣ ତହିଁ ॥୧୧୪
ଜାଣିଲେ ପ୍ରଭୁ ଭଗବାନ ।
ବୋଲନ୍ତି ମଧୁର ବଚନ ॥୧୧୫
ଭଲେ ଅଇଲଟିକି ପଥେ ।
ମୋ' ରୂପ ଦେଖିବା ନିମନ୍ତେ ॥୧୧୬
ଆସଗୋ ବିପ୍ରନାରୀଗଣ ।
ନମଇଁ ତୁମ୍ଭର ଚରଣ ॥୧୧୭
ତୁମ୍ଭ ଚରଣରେଣୁ ଶିରେ ।
ଘେନି ସଂସାରୁ ପ୍ରାଣୀ ତରେ ॥୧୧୮
ବସ ଏ ବୃକ୍ଷତଳେ ଆଇ ।
ମୋତେ ଅଇଲ ଅନ୍ନ ଦେଇ ॥୧୧୯
ଆଜ ପବିତ୍ର ମୋର ଦେହୀ ।
ହୋଇବ ଯଜ୍ଞଅନ୍ନ ଖାଇ ॥୧୨୦

ତୁମ୍ଭଙ୍କୁ କି କରିବା ସେବା ।
ବିଚାରି ମୋତେ ଆଜ୍ଞା ଦେବା ॥୧୨୧
ଜ୍ଞାନୀଏ ଆତ୍ମଜ୍ଞାନ ପାଇ ।
ଧ୍ୟାନେ ଚିନ୍ତନ୍ତି ମୋର ଦେହୀ ॥୧୨୨
ତୁମ୍ଭର ସ୍ୱାମୀ ସେବା ପ୍ରାୟେ ।
ଜ୍ଞାନୀ କରନ୍ତି ମୋତେ ଲୟେ ॥୧୨୩
ଏବେ ଦେଖିଲ ମୋ' ଶରୀର।
ନିଜ ମନ୍ଦିରେ ବିଜେକର ॥୧୨୪
ତୁମ୍ଭର ସ୍ୱାମୀପାଦେ ସେବ ।
ଯେବେ ଏ ସଂସାରୁ ତରିବ ॥୧୨୫
ବେଗେ ଘରକୁ ଯାଅ ଆଇ ।
ପୂର୍ଣ୍ଣଆହୂତି ବେଳ ହୋଇ ॥୧୨୬
ତୁମ୍ଭଙ୍କୁ ଘେନି ବିପ୍ରବରେ ।
ପୁଣ୍ୟ ସାଧିବେ ନିଜ ଘରେ ॥୧୨୭
ଶୁଣି ଗୋବିନ୍ଦ ମୁଖୁଁ ବାଣୀ ।
ବିକଳେ ବୋଲନ୍ତି ବ୍ରାହ୍ମଣୀ ॥୧୨୮
ଭୋ ନାଥ କମଳଲୋଚନ ।
ଅଶେଷ ଦୁଃଖ ବିମୋଚନ ॥୧୨୯
ତୋହର ଆଦିଅନ୍ତ ନାହିଁ ।
ପ୍ରକୃତି ତୋତେ ନ ଜାଣଇ ॥୧୩୦
ଅଶେଷ-ବ୍ରହ୍ମାଣ୍ଡ-ଗୋସାଇଁ ।
ଏମନ୍ତ ବୋଲ କାହିଁପାଇଁ ॥୧୩୧
ଆମ୍ଭେ ଛାଡ଼ିଲୁ ମୋହପାଶ ।
ତୋହର ପାଦମୂଳେ ଆଶ ॥୧୩୨
ତୋହର ଚରଣ ତୁଳସୀ ।
କବରୀଭାରେ ତାହା ଖୋସି ॥୧୩୩
କବରୀଭାର ସଜ କରି ।
ତୋପାଦେ ସେବିବୁଁ ମୁରାରି ॥୧୩୪
ଖଟିବୁ ପାଦପଦ୍ମତଳେ ।
ଅଶେଷ ଜନ୍ମ ପୁଣ୍ୟଫଳେ ॥୧୩୫
ସ୍ୱାମୀ-ତନୟ-ବନ୍ଧୁ-ଗୁରୁ ।
ତେଜିଲୁଁ ତୋହର କୃପାରୁ ॥୧୩୬
ଅଷ୍ଟାଙ୍ଗ ଯୋଗଲୟେ ବସି ।
ତୋ' ରୂପ ଚିନ୍ତନ୍ତି ସନ୍ନ୍ୟାସୀ ॥୧୩୭
ତାହା ପାଇଲୁଁ ପୁଣ୍ୟବଳେ ।
ଭୋନାଥ ରଖ ପାଦତଳେ ॥୧୩୮

ଇଷ୍ଟ କୁଟୁମ୍ବେ କାର୍ଯ୍ୟ ନାହିଁ ।
ବଞ୍ଚିବୁ ତୋ ମୁଖ ଅନାଇଁ ॥୧୩୯
ଏଠାରୁ ଯେବେ ଆମ୍ଭେ ଯିବୁ ।
ଘରେ ତ ପଶି ନ ପାରିବୁ ॥୧୪୦
ବନ୍ଧୁ-ପିଅର-ପୁତ୍ର-ପତି ।
ଆମ୍ଭଙ୍କୁ ବୋଲିବେ ଅସତୀ ॥୧୪୧
ସଂସାରେ ନ ବୋଲିବେ ଭଲା।
ବିଚାରି କହ ଆଦିମୂଳ ॥୧୪୨
ଉଭୟକୁଳ ନ ପାଇଲୁ ।
ଏବେ ନିଶ୍ଚୟ ନାଶ ଗଲୁ ॥୧୪୩
କିସ କରିବୁ ଘରେ ଯାଇ ।
ତୋ' ତହୁଁ ଆନଗତି ନାହିଁ ॥୧୪୪
ହସି ବୋଲନ୍ତି ଭଗବାନ ।
ଏମନ୍ତ ନବିଚାର ମନ ॥୧୪୫
ମୋର ଚରଣେ ଚିତ୍ତ ଦେଇ ।
ଚଣ୍ଡାଳଘରେ ଯେବେ ଥାଇ ॥୧୪୬
ସଂସାର ତା'ର ପାଦେ ପୂଜେ।
ଯେ ମୋର ନାମ ନିତ୍ୟେଭଜେ ॥୧୪୭
ତୁମ୍ଭଙ୍କୁ ଦେଖି ସ୍ୱାମୀଗଣେ ।
ଖଟିବେ ତୁମ୍ଭର ଚରଣେ ॥୧୪୮
ତୁମ୍ଭଙ୍କୁ ନୟନେ ଦେଖିବେ ।
ଜନ୍ମ ମରଣ ପାଶୋରିବେ ॥୧୪୯
ମୋର ମହିମା ଶୁଣନାରୀ ।
ଯେମୋର ନିକଟେ ଆବୋରୀ ॥୧୫୦
ମୋକ୍ଷବିଧାନେ ଯେ ଭଜଇ ।
ମୋହର ତହିଁ ମନ ଦେଇ ॥୧୫୧
ମୋତେ ପାଇବା ଆଶେ ଜଗି ।
ବିଘ୍ନେ ହୁଅନ୍ତି ଦୁଃଖଭାଗୀ ॥୧୫୨
ମୋହର ଆଦି ଅନ୍ତ ନାହିଁ ।
ପ୍ରାଣୀ ପାଇବେ ମୋତେ କାହିଁ ॥୧୫୩
ଯେ ମୋତେ ଦୂରେ ଥାଇ ଚିନ୍ତି।
ସେ ମୋତେ ନିକଟେ ଦେଖନ୍ତି॥୧୫୪
ମନ-ବଚନ ଧ୍ୟାନ୍ତି ମୋତେ ।
ମୁଁ ଥାଇ ତା'ଙ୍କ ହୃଦଗତେ ॥୧୫୫
ବେଗେ ମନ୍ଦିରେ ଯାଆ ମାଏ।
ଚିତ୍ତ ନିବେଶି ମୋର ପାୟେ ॥୧୫୬

Dr. Sudhanshu Sekhar Mishra

ସଂସାରେ ସୁଖ ଭୋଗକରି ।
ଅନ୍ତେ ପାଇବ ମୋର ପୁରୀ ॥୧୫୭
ମୋ' ପାଦେ ତୁମ୍ଭ ମନଥାଉ ।
ମୋ' ନାମ ଧରି ଦିନ ଯାଉ ॥୧୫୮
ଏବେ ତୁମ୍ଭଙ୍କୁ ବୋଲୁଁ ଯାହା ।
ହେତୁ କରିଣ ଘେନ ତାହା ॥୧୫୯
ତୁମ୍ଭେ ସ୍ୱଭାବେ ସ୍ତିରୀଜନ୍ମ ।
ନଜାଣ ବେଦ ଅଧ୍ୟୟନ ॥୧୬୦
ଶାସ୍ତ୍ର ସ୍ମୃତି ଯେ ତୁମ୍ଭ ନାହିଁ ।
ନାମ ଭଜିବ ଗୀତ ଗାଇ ॥୧୬୧
ନିଶ୍ଚଳେ ନାମ-ଗୁଣ ଭଜି ।
ମୋତେ ପାଇବ ଗୁଣେ ରଞ୍ଜି ॥୧୬୨
ତୁମ୍ଭଙ୍କୁ ମୋର ବଡ଼ ଦୟେ ।
ଗୃହେ ଚଳିବା ଏବେ ମାଏ ॥୧୬୩
ଏ କଥା ଶୁଣି ବିପ୍ରନାରୀ ।
କୃଷ୍ଣବଚନ ଚିତ୍ତେ ଧରି ॥୧୬୪
ହରଷ-ବିସ୍ମୟେ ଆରତ ।
ଏବେ ହୋ ଶୁଣ ନରନାଥ ॥୧୬୫
କୃଷ୍ଣବଚନେ ଛାଡ଼ି ଭ୍ରାନ୍ତି ।
ପାଦେ ପଡ଼ିଲେ ବିପ୍ରସତୀ ॥୧୬୬
ଚରଣରେଣୁ ଘେନି ଶିରେ ।
ବ୍ରାହ୍ମଣୀ ଗଲେ ନିଜ ପୁରେ ॥୧୬୭
କୃଷ୍ଣର ପାଦେ ଚିତ୍ତ ଦେଇ ।
ଆନନ୍ଦ କେ ପାରିବ କହି ॥୧୬୮
ମଙ୍ଗଳ-ହୁଳହୁଳି-ନାଦେ ।
କର ନିବେଶି କାନ୍ଧେ କାନ୍ଧେ ॥୧୬୯
ମଙ୍ଗଳନାଦେ ଗୀତ ଗାଇ ।
ନାଚନ୍ତି କୃଷ୍ଣଭାବ ବହି ॥୧୭୦
ଶୁଣ ରାଜନ ଚୂଡ଼ାମଣି ।
ବନ୍ଧନେ ଥିଲା ଯେ ବ୍ରାହ୍ମଣୀ ॥୧୭୧
ଶୁଣିଲା ହୁଳହୁଳି ନାଦ ।
ବ୍ରାହ୍ମଣୀମାନଙ୍କ ଆନନ୍ଦ ॥୧୭୨
ଆତ୍ମାକୁ କହେ ରୋଷ ବହି ।
ନିର୍ଲ୍ଲଜ ଅଛୁ କାହିଁପାଇଁ ॥୧୭୩
ତୁ ଛାର ଅତ୍ୟନ୍ତ ପାତକୀ ।
କୃଷ୍ଣଙ୍କୁ ନ ପାରିଲୁ ଦେଖି ॥୧୭୪

ଯାହାର ନାମ ହୃଦେ ଧରି ।
ଶଙ୍କର ନିତ୍ୟେ ବ୍ରହ୍ମଚାରୀ ॥୧୭୫
ତୁ ଛାର ନ କଲୁ ଯେ ପୁଣ୍ୟ ।
ବ୍ରାହ୍ମଣୀମାନେ ବଡ଼ ଧନ୍ୟ ॥୧୭୬
କୃଷ୍ଣଙ୍କୁ ଦେଖିଲେ ନୟନେ ।
ଆଜ୍ଞା ଶୁଣିଲେ ବେନିକର୍ଣ୍ଣେ ॥୧୭୭
କିସ ପାଇବୁ ମୋ' ଶରୀରେ ।
ଦରିଦ୍ର ଦୁଃଖୀ ନିରନ୍ତରେ ॥୧୭୮
ଏତେ ବୋଲିଣ ମନକରି ।
ହୃଦରେ କୃଷ୍ଣନାମ ଧରି ॥୧୭୯
ଉଚ୍ଚେ ରଟିଲା ନାମ ଗୁଣ ।
ତ୍ରାହି କରିବା ନାରାୟଣ ॥୧୮୦
ହେ କୃଷ୍ଣ ପରମମଙ୍ଗଳ ।
ଦାସବତ୍ସଳ ଆଦିମୂଳ ॥୧୮୧
ମୁଁ ଛାର କୋଟିକେ ଅନ୍ତର ।
କାହିଁ ପାଇବି ତୋ' ପୟର ॥୧୮୨
ଏ ଛାର ଜୀବନ ନ ଥାଉ ।
ଗୋବିନ୍ଦନାମ ଶୁଣି ଯାଉ ॥୧୮୩
ମୁଣ୍ଡ ମାଇଲା ସ୍ତମ୍ଭେ ନେଇ ।
ପ୍ରାଣ ଛାଡ଼ିଲା କୃଷ୍ଣଧ୍ୟାୟି ॥୧୮୪
କୃଷ୍ଣର ପାଦେ ମନ ଥିଲା ।
ତୁଣ୍ଡରେ ନାମ ଉଚ୍ଚାରିଲା ॥୧୮୫
ତକ୍ଷଣେ ଦିବ୍ୟରୂପ ହୋଇ ।
ପଶିଲା କୃଷ୍ଣ-ଦେହେ ଯାଇ ॥୧୮୬
ଭକତବନ୍ଧୁ ଭାବଗ୍ରାହୀ ।
ହୃଦରେ ଠାବ ଦେଲେ ନେଇ ॥୧୮୭
ଏବେ ହୋ ଶୁଣ ମହୀପାଳ ।
ଶ୍ରୀକୃଷ୍ଣ-କ୍ରୀଡ଼ା-କୁତୂହଳ ॥୧୮୮
ଦାସବତ୍ସଳ ଭାବଗ୍ରାହୀ ।
ବୋଲନ୍ତି ପୁଅଙ୍କୁ ଅନାଇଁ ॥୧୮୯
ଅନ୍ନଭୋଜନ କର ବସି ।
ଆନନ୍ଦେ ନିଜ ଆତ୍ମା ତୋଷି ॥୧୯୦
ଶୁଣି ସାନନ୍ଦ ଗୋପପୋଏ ।
ସଙ୍ଗେ ଭୁଞ୍ଜିଲେ ଦେବରାୟେ ॥୧୯୧
ସ୍ୱର୍ଗେ ଦେଖନ୍ତି ଦେବତାଏ ।
ଗୋପଙ୍କ ସ୍ନେହ କୃଷ୍ଣଠାଇଁ ॥୧୯୨

ଏମନ୍ତ ଲୀଳା ବନମାଳୀ ।
ଗୋପୀ-ଗୋପାଳ ମେଳେ କେଳି ॥୧୯୩
ଅନନ୍ତ ପ୍ରଭୁ ଆଦିମୂଳ ।
ଗୋପେ ମିଳିଲେ ରାତ୍ରକାଳ ॥୧୯୪
ବ୍ରାହ୍ମଣେ ନିଜ ନାରୀ ଦେଖି ।
କୃଷ୍ଣର ଭାବ ଉପଲକ୍ଷି ॥୧୯୫
ବେଦ-ପୁରାଣେ ପରିମାଣି ।
ନିଷ୍ଠେ ଜାଣିଲେ ଚକ୍ରପାଣି ॥୧୯୬
ଭକତି ଦେଖି ନାରୀଙ୍କର ।
ମନେ ପାଇଲେ ଖେଦଭର ॥୧୯୭
ବୋଲନ୍ତି ଆତ୍ମନିନ୍ଦା କରି ।
କ୍ଷଣକ୍ଷଣକେ ନାମ ଧରି ॥୧୯୮
ଶ୍ରୀକୃଷ୍ଣେ କଲୁଁ ଅପରାଧ ।
ଧିକ ଆମ୍ଭର ବ୍ରହ୍ମପଦ ॥୧୯୯
ବେଦ-ପୁରାଣ ଯେତେ ପଢ଼ୁଁ ।
ଧିକ ଆମ୍ଭର ଆତ୍ମା ପୋଡ଼ୁ ॥୨୦୦
ବେଦ-ପୁରାଣ ଦୀକ୍ଷା ପାଇ ।
ଯେ କୃଷ୍ଣଭାବ ନ ଜାଣଇ ॥୨୦୧
ଧିକ ତାହାର ଜନ୍ମ-କର୍ମ ।
ଅନେକ ମତେ ହୋଏ ଭ୍ରମ ॥୨୦୨
ଏମନ୍ତ ବିଚାରି ବ୍ରାହ୍ମଣେ ।
ଧନ୍ୟ ବୋଲନ୍ତି ନାରୀଗଣେ ॥୨୦୩
ଯେ ଯାହା ପତ୍ନୀମୁଖ ଚାହିଁ ।
ତୋଷ ହୋଇଲେ ଯଜ୍ଞଦାହୀ ॥୨୦୪
କୃଷ୍ଣର ମାୟା ଅଗୋଚର ।
ଭ୍ରମନ୍ତି ବ୍ରହ୍ମାଶିବସୁର ॥୨୦୫
ଜଗତଗୁରୁପଣେ ଥାଇ ।
ବ୍ରାହ୍ମଣ ନାମ ଆମ୍ଭେ ବହି ॥୨୦୬
ସ୍ତିରୀଙ୍କି ନୋହିଲୁ ଭାଜନ ।
ଏହାଙ୍କ ନାହିଁ ଦିବ୍ୟଜ୍ଞାନ ॥୨୦୭
କେମନ୍ତେ କୃଷ୍ଣଙ୍କୁ ଜାଣିଲେ ।
ପୂର୍ବେ ଏ କେତେ ତପ କଲେ ॥୨୦୮
ଦେଖ ଆମ୍ଭର କର୍ମଫଳ ।
ଅନ୍ନ ମାଗିଲେ ଆଦିମୂଳ ॥୨୦୯
ଯଙ୍କେ ପୂଜୁଛୁଁ ଯା'ର ପାଦ ।
ପ୍ରତ୍ୟକ୍ଷେ ମିଳିଲେ ଗୋବିନ୍ଦ ॥୨୧୦

Dr. Sudhanshu Sekhar Mishra

ତାହାଙ୍କୁ ନ ଚିହ୍ନିଲୁ ମୋହେ ।
ଜୀବନ ଅଛି କିମ୍ବା ଦେହେ ॥୨୧୧
ଯେ ହରି ଦେଶ-କାଳ-ପାତ୍ର ।
ମଙ୍ଗଳ-ଦିବ୍ୟ-ବେଦତତ୍ତ୍ୱ ॥୨୧୨
ବିପ୍ର ଅନଳ ଦେବଗଣ ।
ଯଜ୍ଞକରତା ଜନାର୍ଦ୍ଦନ ॥୨୧୩
ସକଳ ପ୍ରଭୁ ଭଗବାନ ।
ନ ଜାଣି ହୋଇଲୁ ଅଜ୍ଞାନ ॥୨୧୪
କମଳା ଥାଇ ପାଦତଳେ ।
ବଦନ ନିରୋପି ନିଶ୍ଚଳେ ॥୨୧୫
ଚଞ୍ଚଳା ପଦ୍ମପାଦେ ସେବି ।
ଭାବି ନ ପାଇଲା ସାଧବୀ ॥୨୧୬
ଅନାଦି ପ୍ରଭୁ ଯୋଗେଶ୍ୱର ।
ଗୁପତେ ଅଛି ନନ୍ଦଘର ॥୨୧୭
ଜାଣି ନ ପାରିଲୁ ସକଳେ ।
କୃଷ୍ଣର ମାୟା-ଯୋଗ-ବଳେ ॥୨୧୮
ନମଉଁ ପ୍ରଭୁ ଯୋଗେଶ୍ୱର ।
ଗତି-ମୁକତି ଗଦାଧର ॥୨୧୯
ତୋହର ମାୟାଚକ୍ରେ ଭ୍ରମି ।
ଆମ୍ଭେ ବୋଲାଉ ନିତ୍ୟକର୍ମୀ ॥୨୨୦
ଅନେକ କଲୁ ଅପରାଧ ।
ତ୍ରାହି କରିବା ପଦ୍ମନାଭ ॥୨୨୧
ଏମନ୍ତ ବୋଲି ଗୋଡ଼ାଇଲେ ।
ବନେ ଅନେକ ଦୂର ଗଲେ ॥୨୨୨
କୃଷ୍ଣ ନ ଦେଖି ଘୋରବନେ ।
ବ୍ରାହ୍ମଣେ ବିଚାରନ୍ତି ମନେ ॥୨୨୩
ଗୋବିନ୍ଦ ବିଜେ ନନ୍ଦଘରେ ।
ଜାତ ହୋଇଲେ ମଧୁପୁରେ ॥୨୨୪
ଆମ୍ଭେ ନ ଯିବା ଗୋପପୁର ।
ନ ପୁଣ ଜାଣେ କଂସାସୁର ॥୨୨୫
ମଥୁରା ଯେତେବେଳେ ଯିବେ ।
କୃଷ୍ଣ କଂସକୁ ସଂହାରିବେ ॥୨୨୬
କୃଷ୍ଣେ ଦେଖିବା ରାମ ତୁଲେ ।
ଏମନ୍ତ ବୋଲି ବାହୁଡ଼ିଲେ ॥୨୨୭
ସୁଜନେ ଶୁଣ କର୍ଣ୍ଣଦ୍ୱାରେ ।
ନ ବୁଡ଼ ସଂସାର ସାଗରେ ॥୨୨୮
ସକଳ ପ୍ରାଣୀ ହୃଦେ ଥାଇ ।
ଭ୍ରମ କରାନ୍ତି ଭାବଗ୍ରାହୀ ॥୨୨୯
ତାହାର ନାମ ଉଚ୍ଚାରିଲେ ।
ଭ୍ରମ ନ ଥାଇ ଆତ୍ମାତୁଲେ ॥୨୩୦
କହିଲି ଏ ପରମତତ୍ତ୍ୱ ।
କୃଷ୍ଣସେବକ ବଳବନ୍ତ ॥୨୩୧
ରେ ମନ କୃଷ୍ଣ ଆଶ୍ରେକର ।
ସର୍ବ ଆପଦ ହେବ ଦୂର ॥୨୩୨
କହଇ ଦାସ ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ॥୨୩୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଯଜ୍ଞପତ୍ନୀ ଉଦ୍ଧରଣଂ ନାମ ଚତୁର୍ବିଂଶୋଽଧ୍ୟାୟଃ ॥

---

## ପଞ୍ଚବିଂଶ ଅଧ୍ୟାୟ

ଶୁଣ ରାଜନ ଚୂଡ଼ାମଣି ।
ଗୋପନଗରେ ଚକ୍ରପାଣି ॥୧
ରୋହିଣୀ ନନ୍ଦନର ତୁଲେ ।
ଦିନ ହରନ୍ତି ଗୋପମେଳେ ॥୨
ଗୋପାଳେ ମିଳି ଏକଦିନେ ।
ଇନ୍ଦ୍ରର ଉତ୍ସବ ବିଧାନେ ॥୩
ସକଳେ ବିଚାରନ୍ତି ବସି ।
କୃଷ୍ଣ ମିଳିଲେ ମଧ୍ୟେ ଆସି ॥୪
ଅଶେଷ-ବ୍ରହ୍ମାଣ୍ଡ-ଠାକୁର ।
ଜାଣନ୍ତି ଗୋପଙ୍କ ବିଚାର ॥୫
ଲୋକବେଭାରେ ଭାବଗ୍ରାହୀ ।
ବୋଲନ୍ତି ନନ୍ଦ ମୁଖ ଚାହିଁ ॥୬
ବୃଦ୍ଧ ଗୋପାଳେ ଛନ୍ତି ଯେତେ ।
ବିଶ୍ୱାସକର ଯେଝାମତେ ॥୭
ନନ୍ଦଙ୍କୁ ପୁଚ୍ଛନ୍ତି ଅନନ୍ତ ।
ଇନ୍ଦ୍ରଉତ୍ସବର ବୃତ୍ତାନ୍ତ ॥୮
ଭୋ ତାତ କେବଣ ଉତ୍ସବ ।
ଏ କଥା କହ ସର୍ବଭାବ ॥୯
ତୁମ୍ଭ ବିଚାର ଯଜ୍ଞମତେ ।
ଉଦ୍ଦେଶ୍ୟ ଜାଣିବୁ କେମନ୍ତେ ॥୧୦
କେବଣ ମତେ ସାଧ କରି ।
ଯଜ୍ଞ କରନ୍ତି ନରନାରୀ ॥୧୧
ଏ ଯଜ୍ଞ କଲେ କିସ ଫଳ ।
ହସି କହନ୍ତି ନନ୍ଦବାଳ ॥୧୨
ଭୋ ତାତ ହୋଇବା ପ୍ରସନ୍ନ ।
କହ ଏ ପୂଜାର ବିଧାନ ॥୧୩
ଗୁପତ ନ କର ପିଅର ।
ଏ ସାଧୁଜନଙ୍କ ବେଭାର ॥୧୪
ଭାବ-ସେବକେ ସତ୍ୟ କହି ।
ବିଶେଷ ତୋ'ର ପୁତ୍ର ମୁହିଁ ॥୧୫
ସମଦରଶୀ ଯା'ର ଚିତ୍ତ ।
ନାହିଁ ତାହାର ରିପୁ ମିତ୍ର ॥୧୬
ସଂସାରଧର୍ମେ ଥାଇ ଜନ୍ତୁ ।
ଇଚ୍ଛନ୍ତି ନାନାକର୍ମ ହେତୁ ॥୧୭
ଜାଣି ନ ଜାଣି ଫଳ ଆଶେ ।
କର୍ମସାଧନ୍ତି ମନତୋଷେ ॥୧୮
ଦଇବମତେ ଫଳ ହୋଇ ।
ଯେ ଯାହା କର୍ମବଳେ ପାଇ ॥୧୯
ବେଦପୁରାଣ-କ୍ରିୟା ଘେନି ।
କର୍ମ ସାଧନ୍ତି ବିପ୍ର ମୁନି ॥୨୦
ତୁମ୍ଭେ ସାଧିବ କେଉଁମତେ ।
ବିଚାରି କହ ତାତ ମୋତେ ॥୨୧

Dr. Sudhanshu Sekhar Mishra

କୃଷ୍ଣ ବଚନ ନନ୍ଦ ଶୁଣି ।
କୋଳେ ବସାଇ ଚକ୍ରପାଣି ॥୨୨
ବୋଲଇ ଶୁଣ ଦାମୋଦର ।
ପୂଜା କରିବୁ ସୁରେଶ୍ୱର ॥୨୩
ତା'ର ଆଜ୍ଞାରେ ମେଘମାଳ ।
ସଂସାରେ ବରଷନ୍ତି ଜଳ ॥୨୪
ମେଦିନୀ ଜଳଯୋଗ ପାଇ ।
ଅନେକ ଶସ୍ୟ ଉପୁଜାଇ ॥୨୫
ଜୀବିକା ହୋଇ ପ୍ରାଣୀଙ୍କର ।
ତେବେ ସେ ବଞ୍ଚଇ ସଂସାର ॥୨୬
ଶସ୍ୟ-ସମ୍ପଦ ଘେନି ଜନେ ।
ଯଜ୍ଞ କରନ୍ତି ତୋଷମନେ ॥୨୭
ନାନା ଦେବତା ଯଜ୍ଞେ ଦାହୀ ।
ପୂଜି ଅନେକ ଫଳ ପାଇ ॥୨୮
ଏମନ୍ତେ ଯେ ଯାହାର ମତେ ।
ଇନ୍ଦ୍ରଙ୍କୁ ପୂଜନ୍ତି ଜଗତେ ॥୨୯
ଯେ ଯାହା ମତେ ନାନା ଯାଗ ।
କରି ଲଭନ୍ତି ତିନିବର୍ଗ ॥୩୦
ଇଷ୍ଟଦେବତା ଶୁଭକାଳେ ।
ପୂଜା କରନ୍ତି ମହୀତଳେ ॥୩୧
ଯେ ନର ଲୋଭବଶ ହୋଇ ।
ଇଷ୍ଟଦେବତା ନ ପୂଜଇ ॥୩୨
ତାହାର ନାହିଁ ସୁଖଲେଶ ।
ଆପଦ ହୋଏ ପରବେଶ ॥୩୩
ନନ୍ଦ ବଚନ କୃଷ୍ଣ ଶୁଣି ।
ବୃଦ୍ଧ ଗୋପାଳେ ଯାହା ଭଣି ॥୩୪
ଇନ୍ଦ୍ର ବିଷୟେ କୋପକରି ।
ନନ୍ଦକୁ ବୋଲନ୍ତି ମୁରାରି ॥୩୫
କୃଷ୍ଣ ବୋଲନ୍ତି ଶୁଣ ତାତ ।
ଜଗତ କର୍ମେ ଆତଯାତ ॥୩୬
ଏ ଜୀବ ଆତ୍ମା କର୍ମ ଘେନି ।
ଗତ ଆଗତ ପଥଶ୍ରମୀ ॥୩୭
କର୍ମର ମତେ ଦୁଃଖସୁଖ ।
ଜନ୍ମମରଣ ହୋଏ ଦେଖ ॥୩୮
କର୍ମଟି ଦୁଃଖସୁଖଦାତା ।
ବିଶ୍ୱ ସଂସାରେ ବଳବନ୍ତା ॥୩୯

ଭୋ ତାତ କର୍ମପାଦେ ସେବ ।
କର୍ମହୁଁ ନାହିଁ ଅନ୍ୟ ଦେବ ॥୪୦
କର୍ମଭୁଞ୍ଜନ୍ତା ପ୍ରାଣୀଙ୍କର ।
ଇନ୍ଦ୍ର ତ ନୋହଇ ଠାକୁର ॥୪୧
କର୍ମ-ସଞ୍ଚଳା ଏ ଜଗତ ।
ସ୍ୱଭାବେ ହୋନ୍ତି ଆତଯାତ ॥୪୨
କର୍ମର ବଳେ ଦେହ ଘେନି ।
ଜୀବ ଭ୍ରମଇ ନାନାଯୋନି ॥୪୩
କର୍ମ ଯେ ଶତ୍ରୁମିତ୍ର ହୋଇ ।
ଗୁରୁଙ୍କ ପ୍ରାୟେ ଶିକ୍ଷା ଦେଇ ॥୪୪
ସକଳେ କର୍ମ ସେବା କର ।
କହନ୍ତି ପ୍ରଭୁ ଦାମୋଦର ॥୪୫
ଯେ ପ୍ରାଣୀ ନିଜକର୍ମ ଛାଡ଼ି ।
ଅନ୍ୟ ଜୀବିକା ଲୋଭେ ଲୋଡ଼ି ॥୪୬
ଦୁର୍ଗତିପଥ ଆବୋରୋନ୍ତି ।
ଯେସନେ ବିଟପୀ ଯୁବତୀ ॥୪୭
ଭୋ ତାତ ଶୁଣ କର୍ମକଥା ।
ବେଦପୁରାଣେ ଯେ ବ୍ୟବସ୍ଥା ॥୪୮
ବ୍ରାହ୍ମଣଆଦି ଚାରିବର୍ଣ୍ଣ ।
ଯେ ଯାହା ମତେ ବୃତ୍ତି ଭିନ୍ନ ॥୪୯
ବେଦବିଚାରେ ଷଟକର୍ମ ।
ବ୍ରାହ୍ମଣ ଜନର ଏ ଧର୍ମ ॥୫୦
ଭୂମିପାଳନ ଶୂରବନ୍ତ ।
ଦାନ-ପୌରୁଷ କ୍ଷତ୍ରିବୃତ୍ତ ॥୫୧
କୃଷି ବାଣିଜ୍ୟ ଗୋରୁବୃତ୍ତି ।
ବୈଶ୍ୟଜନଙ୍କର ଏ ଗତି ॥୫୨
ବ୍ରାହ୍ମଣପାଦେ ସେବାକରି ।
ଶୂଦ୍ରେ ହୋଇବେ ସୁଖଚାରୀ ॥୫୩
ଏ ଚାରି ବର୍ଣ୍ଣର ବେଭାର ।
ବୈଶ୍ୟଙ୍କ ମତଟି ଆମ୍ଭର ॥୫୪
ଭୋ ତାତ ଶୁଣ ଆଦିଅନ୍ତ ।
ଯେମନ୍ତ କହଇ ବେଦାନ୍ତ ॥୫୫
ସୃଷ୍ଟିର କାଳେ ନାରାୟଣ ।
ଆଗେ ସର୍ଜିଲା ତିନିଗୁଣ ॥୫୬
ରଜୋଗୁଣରୁ ବ୍ରହ୍ମା ହୋଇ ।
ସତ୍ତ୍ୱଗୁଣକୁ ବିଷ୍ଣୁ ପାଇ ॥୫୭

ରୁଦ୍ରଙ୍କୁ ଦେଲେ ତମୋଗୁଣ ।
ସୃଷ୍ଟି ପାଳନ ସଂହାରଣ ॥୫୮
ବ୍ରହ୍ମାଭିଆଣେ ମେଘମାଳ ।
ସଂସାରେ ବରଷନ୍ତି ଜଳ ॥୫୯
ଜନ୍ତୁ ଜୀବିକା ତେଣେ ହୋଇ ।
ଇନ୍ଦ୍ରେ ତ ପ୍ରୟୋଜନ ନାହିଁ ॥୬୦
ଇନ୍ଦ୍ରର ଭାଗ୍ୟେ ବଡ଼ପଣ ।
ଜଗତ ବିଷ୍ଣୁର ଭିଆଣ ॥୬୧
ଗ୍ରାମପାଟଣା ଦେଶ ପୁରେ ।
ଇନ୍ଦ୍ରକୁ ପୂଜିବେ ବେଭାରେ ॥୬୨
ବନଗହନେ ଆମ୍ଭ ଘର ।
ଗୋରୁ ଚରାଉ ନଦୀତୀର ॥୬୩
ନିର୍ଝର ଜଳପାନ କରି ।
ଆମ୍ଭ ଦେବତା ବନଗିରି ॥୬୪
ତୁମ୍ଭର ଯଜ୍ଞ ଯେବେ ସତ୍ୟ ।
କହଇ ଶୁଣ ଏକଚିତ୍ତ ॥୬୫
ଗୋରୁ ବ୍ରାହ୍ମଣ ପ୍ରୀତିଫଳେ ।
ଯଜ୍ଞ କରିବା ଗିରିତଳେ ॥୬୬
ପୂଜିବା ଗୋବର୍ଦ୍ଧନ ଶିରେ ।
ଯେ ଇନ୍ଦ୍ର ଯଜ୍ଞର ସମ୍ଭାରେ ॥୬୭
ଦ୍ୱିଗୁଣ କରି ବଳି ଭୋଜା ।
ସୁଖେ କରିବା ଗିରିପୂଜା ॥୬୮
ନାନା ବ୍ୟଞ୍ଜନ ଷଡ଼ରସ ।
ପିଷ୍ଟକ ପ୍ରଧାନ ପାୟସ ॥୬୯
ଗୋରସ ଘୃତ ସରପୁଳି ।
ନାନାପିଷ୍ଟକେ ଖଣ୍ଡ ବୋଳି ॥୭୦
ଅନଳ ପୂଜା ହୋମ କର ।
ରତ୍ୱିଜ ଚାରି ବେଦୁଁ ବର ॥୭୧
ପୂର୍ଣ୍ଣ ଆହୂତି ଯଜ୍ଞ ଅନ୍ତେ ।
ଦକ୍ଷିଣା ଦିଅ ଯଥୋଚିତେ ॥୭୨
ଗୋରୁ କାଞ୍ଚନ ତିଳ ଅନ୍ନ ।
ଅତିଥି ପୂଜାର ବିଧାନ ॥୭୩
ଯେ ଯାହା ମତେ ତୋଷ କରି ।
ସୁଖେ ଭୁଞ୍ଜିବେ ନରନାରୀ ॥୭୪
କୋମଳତୃଣ ଅନ୍ନ ସଙ୍ଗେ ।
ଗୋରୁଙ୍କୁ ଭୁଞ୍ଜାଇବା ରଙ୍ଗେ ॥୭୫

Dr. Sudhanshu Sekhar Mishra

ପର୍ବତେ ବଳି ଭୋଜା ଦେଇ ।
ସକଳେ ଅଳଙ୍କାର ଲାଇ ॥୭୬
କରିବା ଗିରି ପ୍ରଦକ୍ଷିଣ ।
ଆରାଧି ଅନଳ ବ୍ରାହ୍ମଣ ॥୭୭
ମୋହର ମତେ ଏ ଯୋଗାଇ ।
କୃଷ୍ଣ ବୋଲନ୍ତି ନନ୍ଦେ ଚାହିଁ ॥୭୮
ଶୁକ କହନ୍ତି ରାଜା ଆଗେ ।
ଶୁଣି ଗୋପାଳେ ଉଦ୍‌ବେଗେ ॥୭୯
କୃଷ୍ଣବଚନ ପ୍ରତିପାଳି ।
ନନ୍ଦକୁ ମଧ୍ୟେ ଘେନି ଭାଳି ॥୮୦
ଶ୍ରୀକୃଷ୍ଣ ବଚନ ପ୍ରଶଂସି ।
ମିଳିଲେ ଯେଝା ଘରେ ଆସି ॥୮୧
ଦ୍ୱିଗୁଣେ ନାନା ଦ୍ରବ୍ୟ ଘେନି ।
କରନ୍ତି ବାଦ୍ୟ ଶଙ୍ଖଧ୍ୱନି ॥୮୨
ପର୍ବତତଳେ ଯାଇ ମିଳି ।
କାମିନୀ ଦ୍ୟନ୍ତି ହୁଳହୁଳି ॥୮୩
ଯଜ୍ଞ ଆରମ୍ଭି ଗିରିତଳେ ।
ପୂଜିଲେ ଗୋ-ବିପ୍ର-ଅନଳେ ॥୮୪
ଯେ ଯାହା ମତେ ଦେଲେ ଦାନ ।
ସୁବର୍ଣ୍ଣ ବସ୍ତ୍ର ଗୋରୁ ଅନ୍ନ ॥୮୫
ଦେବ ଅତିଥି ତୋଷ କରି ।
ଭୋଜନ କଲେ ନରନାରୀ ॥୮୬
ବିବିଧ ଅଳଙ୍କାର ଲାଇ ।
ଗୋରୁ ବ୍ରାହ୍ମଣ ମଧ୍ୟେ ଥାଇ ॥୮୭
ପର୍ବତ କଲେ ପ୍ରଦକ୍ଷିଣ ।
ଗୋରୁଙ୍କୁ ଦେଲେ ଅନ୍ନ ତୃଣ ॥୮୮
ଶକଟ ମଣ୍ଡିଲେ ଗୋପାଳେ ।
ଦିବ୍ୟବସନ ରତ୍ନମାଳେ ॥୮୯
ବାଳକ କୋଳେ ଘେନି ନାରୀ ।
ନନ୍ଦ ଯଶୋଦା ଆଦିକରି ॥୯୦
ରୋହିଣୀ ଯଶୋଦାର ମେଳେ ।
ରାମ ଗୋବିନ୍ଦ ଘେନି କୋଳେ ॥୯୧
ଶଙ୍ଖ ମହୁରୀ ନାଦ ଭେରୀ ।
ମୁରଲୀ ନାଦେ ଗୀତ ସ୍ଫୁରି ॥୯୨
ବୁଲନ୍ତି ଗିରି ଚାରିଦିଗେ ।
କୃଷ୍ଣ ଆନନ୍ଦ ବଳି ଯୋଗେ ॥୯୩

ଗୋବିନ୍ଦ ଯୋଗମାୟା ବଳେ ।
ପର୍ବତ ଶିଖେ ବିଜେ କଲେ ॥୯୪
ଯଶୋଦା କୋଳେ ଛନ୍ତି ବସି ।
ଗୋପୀ ଗୋପାଳଙ୍କୁ ବିଶ୍ୱାସି ॥୯୫
ପର୍ବତ ଶିଖେ ବିଶ୍ୱରୂପୀ ।
ଟେକି ଚାହାଁନ୍ତି ଗୋପଗୋପୀ ॥୯୬
ବେନି ଯୋଜନ ଲମ୍ବେ ଭୁଜ ।
ଶିରେ ଲାଗଇ ଗ୍ରହରାଜ ॥୯୭
ଶ୍ୟାମସୁନ୍ଦର ତନୁବର୍ଣ୍ଣ ।
ଗୋପଙ୍କୁ ଚାହିଁ ସାବଧାନ ॥୯୮
ବୋଲନ୍ତି ହୋଇଲି ମୁଁ ତୋଷ ।
ତୁମ୍ଭର ପୂରାଇବି ଆଶ ॥୯୯
ନିଶ୍ଚିନ୍ତ ହୋଇଥାଅ ବନେ ।
ମୋହର ପୂଜାର ବିଧାନେ ॥୧୦୦
ଖଣ୍ଡିବି ସକଳ ଆପଦ ।
ଗୋକୁଳ ହୋଇବ ଆନନ୍ଦ ॥୧୦୧
ତଳେ ଲମ୍ବାଇ ବେନି ଭୁଜ ।
ବଳି ଭୁଞ୍ଜନ୍ତି ଗିରିରାଜ ॥୧୦୨
ଗୋପୀ ଗୋପାଳଙ୍କୁ ଅନାଇଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୧୦୩
ଦେଖ ହୋ ପର୍ବତ ମହିମା ।
ଯଜ୍ଞର ବଳେ ପୁଣ୍ୟକର୍ମା ॥୧୦୪
ପ୍ରସନ୍ନ ହୋଇଲେଟି ଆଜ ।
କିସ କରିବେ ଦେବରାଜ ॥୧୦୫
ଏତେହେଁ କାଳ କଲ ପୂଜା ।
ଦେବତା ନ ଖାଇଲା ଭୋଜା ॥୧୦୬
ଏମନ୍ତ ଦିଅଁ ଅଛି କାହିଁ ।
ହସ୍ତ ପ୍ରସାରି ବଳି ଖାଇ ॥୧୦୭
ଇନ୍ଦ୍ରର ଚିହ୍ନ ବର୍ଣ୍ଣ ନାହିଁ ।
ନ ଜାଣି ପୂଜ ବାଇ ହୋଇ ॥୧୦୮
ଏମନ୍ତ ନ ଦେଖିଲ ଦିନେ ।
ବଳି ଭୁଞ୍ଜଇ ତୋଷମନେ ॥୧୦୯
ଏବେ ତୁମ୍ଭର ଚିନ୍ତା ନାହିଁ ।
ନିଶ୍ଚିନ୍ତେ ଥିବ ଏହା ଧ୍ୟାୟି ॥୧୧୦
ଏ ଆମ୍ଭ ପୁରାଇବେ ଆଶା ।
ଏଣେ ସେ ଆମ୍ଭର ଭରସା ॥୧୧୧

ଏହାଙ୍କୁ ନମସ୍କାର କର ।
ଏ ଆମ୍ଭ ଜୀବନ ଠାକୁର ॥୧୧୨
ଏହାଙ୍କୁ ଅବଜ୍ଞା ଯେ କରି ।
ପଡ଼ିବେ ନରକ ଆବୋରି ॥୧୧୩
ଏ ଆମ୍ଭ ରଖିବେ ଗୋକୁଳ ।
ବୋଲନ୍ତି ପ୍ରଭୁ ଆଦିମୂଳ ॥୧୧୪
ଏମନ୍ତ କହି ବନମାଳୀ ।
ଆପଣେ କଲେ ନିଉଛାଳି ॥୧୧୫
ଦେଖି ଆନନ୍ଦ ଗୋପଗୋପୀ ।
ନମିଲେ ପର୍ବତ ନିରୋପି ॥୧୧୬
ବୋଲନ୍ତି ଆମ୍ଭେ ଭାଗ୍ୟବନ୍ତ ।
ପ୍ରତ୍ୟକ୍ଷେ ଦେଖିଲୁ ପର୍ବତ ॥୧୧୭
କଲ୍ୟାଣ ହେଉ ନନ୍ଦବାଳେ ।
ଏ ଆମ୍ଭ ରଖିବ ଗୋକୁଳେ ॥୧୧୮
ଏମନ୍ତ ପୂଜାବିଧି କଲେ ।
ଗୋପେ ମିଳିଲେ ସନ୍ଧ୍ୟାକାଳେ॥୧୧୯
କୃଷ୍ଣ ଚରିତ ପରଶଂସି ।
ମିଳିଲେ ନିଜ ପୁରେ ଆସି ॥୧୨୦
ସେ ହରିଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ॥୧୨୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ପଞ୍ଚବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଷଡ଼ବିଂଶ ଅଧ୍ୟାୟ

ପରୀକ୍ଷରାଜା ମୁଖ ଚାହିଁ ।
ଶୁକ କହନ୍ତି ତୋଷ ହୋଇ ॥୧

ଶୁକ ଉବାଚ

ଶୁଣ ହୋ କୁରୁନୃପମଣି ।
ସ୍ୱର୍ଗେ ଜାଣିଲେ ବଜ୍ରପାଣି ॥୨
କୃଷ୍ଣର ଦେଖି ଦୁଷ୍ଟପଣ ।
କୋପେ କମ୍ପିଲା ସୁରରାଣ ॥୩
କହଇ ଦେବଙ୍କୁ ବସାଇ ।
ମେଘ ପବନଙ୍କୁ ଅଣାଇ ॥୪
ପ୍ରଳୟକାରୀ ମେଘଗଣ ।
ଅନାଇଁ କହେ ମଘବାନ ॥୫
ଶୁଣ ପବନ ମେଘମାଳେ ।
ମୋ' ପୂଜା ଭାଙ୍ଗିଲେ ଗୋପାଳେ॥୬
ଯଶୋଦାସୁତ କୃଷ୍ଣ ବୋଲେ ।
ଗୋପାଳେ ମୋତେ ନ ମାନିଲେ ॥୭
ବାଳକ କୃଷ୍ଣ ବୋଲି ନାମ ।
ତା ବୋଲେ କଲେ ଏଡ଼େ କର୍ମ॥୮
ମନୁଷ୍ୟ ହୋଇ ବଳୀୟାର ।
ପୂଜା ଭାଙ୍ଗିଲା ଗୋପେ ମୋର ॥୯
ଗଉଡ଼େ କୃଷ୍ଣ ସଙ୍ଗେ ଭୋଳ ।
ମୁଁ ଆଜ ପୂରାଇବି କାଳ ॥୧୦
ଏ ଅପମାନ କେବା ସହି ।
ସ୍ୱର୍ଗରେ ଇନ୍ଦ୍ରପଦ ବହି ॥୧୧
ସମ୍ପଦ-ମତ୍ତଗର୍ବ ଅନ୍ଧେ ।
ସିନ୍ଧୁ ତରିବେ ବାଳିବନ୍ଧେ ॥୧୨
ଦଦରା ନାବେ ଯେହ୍ନେ ବସି ।
ସମୁଦ୍ରତରଣେ ସାହସୀ ॥୧୩
ଭବତରଣେ ପଥ ଛାଡ଼ି ।
ପଣ୍ଡିତେ ଧର୍ମଶାସ୍ତ୍ର ଛାଡ଼ି ॥୧୪
ଏମନ୍ତ ମଣିଲେ ଗୋପାଳେ ।
ନନ୍ଦବାଳକ କୃଷ୍ଣ ବୋଲେ ॥୧୫
ବାଳକ ସପତବରଷ ।
ତାବୋଲେ କରିଲେ ବିଶ୍ୱାସ ॥୧୬
ବାଳୁତ ପ୍ରାୟ ଖେଳୁଥାଇ ।
ପାଠପଠନ ନ ଜାଣଇ ॥୧୭
ଗାଇ ଚରାଇ ବନେ ବନେ ।
ଗୋପାଳ ସଙ୍ଗେ ବେଣୁସ୍ୱନେ ॥୧୮
ପଣ୍ଡିତ ପ୍ରାୟ ତା'କୁ ମଣି ।
ମୋହର ମହିମା ନ ଜାଣି ॥୧୯
ଏଡ଼େ ଅନୀତି ଆଚରିଲେ ।
ଆଜ ସଂଗ୍ରାମ କୃଷ୍ଣ ତୁଲେ ॥୨୦
ଜାଣିବା କୃଷ୍ଣ ଆଶ୍ରେ କରି ।
କେମନ୍ତେ ଥିବେ ଗୋପପୁରୀ ॥୨୧
ଗୋରୁ ଗୋପାଳ କୃଷ୍ଣ ଆଦି ।
ଏ ମୋର ଯଜ୍ଞଭଙ୍ଗେ ବାଦୀ ॥୨୨
ଏହାଙ୍କୁ କର ବେଗେ ନାଶ ।
ଆବୋରି ବୃନ୍ଦାବନଦେଶ ॥୨୩
ତୁମ୍ଭେ ପ୍ରଳୟ ଚାରିମେଘେ ।
ଗୋପେ ବରଷ ଯାଇ ବେଗେ ॥୨୪
ଶୁଣ ପବନ ଅଣଚାଶ ।
ଏ ଚାରିମେଘେ ତୁମ୍ଭେ ମିଶ ॥୨୫
ବିଜୁଳି ଘୋରନାଦ ଘେନି ।
ଶବଦେ କମ୍ପାଅ ମେଦିନୀ ॥୨୬
ବଜ୍ର ପାଷାଣ ସଙ୍ଗେ ବାରି ।
ବରଷ ଘୋରନାଦ କରି ॥୨୭
ମୁଁ ପୁଣି ତୁମ୍ଭ ପଛେ ଥାଇ ।
ଐରାବତରେ ଆରୋହୀ ॥୨୮
ବଜ୍ର ମାରିବି ନିରନ୍ତରେ ।
ଅନଳଜ୍ୟୋତି ପରଖରେ ॥୨୯
ନନ୍ଦସମ୍ପଦ କରି ନାଶ ।
ତେବେ ହୋଇବ ମନତୋଷ ॥୩୦
ରିପୁ ନ ସାଧନ୍ତି ଯେ ପ୍ରାଣୀ ।
ତାହାଙ୍କୁ ମନୁଷ୍ୟେ ନ ଗଣି ॥୩୧
ଶୁକ କହନ୍ତି ରାଜା ଆଗେ ।
ଇନ୍ଦ୍ରର ବୋଲେ ଚାରିମେଘେ ॥୩୨
ପବନ ଘେନି ଚଳିଗଲେ ।
ଗୋପନଗରକୁ ବେଢ଼ିଲେ ॥୩୩
ଗୋପନଗର ସୀମା ଯେତେ ।
ରୁନ୍ଧିଲେ ଦିଗ-ଶୂନ୍ୟପଥେ ॥୩୪
ବିଜୁଳିନାଦ ଖରତର ।
ଦିବସେ କଲେ ଅନ୍ଧକାର ॥୩୫
ପବନ ଘୋରନାଦ କରି ।
ଶବଦେ କମ୍ପେ ବସୁନ୍ଧରୀ ॥୩୬
ହସ୍ତୀର ଶୁଣ୍ଢ ପ୍ରାୟ ଜଳ ।
ଧାରା ବରଷନ୍ତି ଗହଳ ॥୩୭
ଜଳର ସଙ୍ଗେ ଶିଳା ପଡ଼ି ।
ଶବଦ ମେଘ ଘଡ଼ଘଡ଼ି ॥୩୮
ଦଣ୍ଡକେ ଉଛୁଳିଲା ମହୀ ।
ସ୍ଥଳ ଗଭୀର ନ ଦିଶଇ ॥୩୯
ଶୀତ ପବନ ସଙ୍ଗେ ବାରି ।
କମ୍ପନ୍ତି ଗୋପ ନରନାରୀ ॥୪୦
ଗୋପାଳେ ଦେଖି ବିପରୀତ ।
ବୋଇଲେ ହୋଇଲୁ ଅନାଥ ॥୪୧
ଯଶୋଦା ନନ୍ଦନର ବୋଲେ ।
ବିବାଦ କଲୁ ଇନ୍ଦ୍ରତୁଲେ ॥୪୨
ବାଳବଚନ ସତ୍ୟ କରି ।
ଅନାଥ ହେଲୁ ଗୋପପୁରୀ ॥୪୩
କାହାରେ ପଶିବୁଁ ଶରଣ ।
ଅକାଳେ ହୋଇଲା ମରଣ ॥୪୪
ଅନାଥ ହୋଇଲୁ ଗୋକୁଳ ।
ଡ଼ାକନ୍ତି ରଖ ଆଦିମୂଳ ॥୪୫
ହେ କୃଷ୍ଣ ତୋ'ର ବୋଲ କରି ।
ନିଶ୍ଚେ ବୁଡ଼ିଲା ଗୋପଶିରୀ ॥୪୬
ଗୋରୁଏ ଶିଳା ଜଳେ କମ୍ପି ।
କୃଷ୍ଣଙ୍କୁ ଚାହାଁନ୍ତି ନିରୋପି ॥୪୭
ଲାଙ୍ଗେ ଆଚ୍ଛାଦି ମୁଖଦେଶେ ।
ମିଳିଲେ ଗୋବିନ୍ଦର ପାଶେ ॥୪୮
ବୃଦ୍ଧ ବାଳକେ ଥରହର ।
ଡ଼ାକନ୍ତି ରଖ ଦାମୋଦର ॥୪୯
ତୋରେ ଶରଣ ଗୋପପୁର ।
ତୁ ନାଥ ଆମ୍ଭ ବଳୀୟାର ॥୫୦

Dr. Sudhanshu Sekhar Mishra

ତୁ ନାଥ ଆମ୍ଭର ପରାଣ ।
ତୋ ବେଳେ ଗଲା ଆମ୍ଭ ପ୍ରାଣ ॥୫୧
ଥୋକେ ବୋଲନ୍ତି କୃଷ୍ଣ ବୋଲେ ।
ବିବାଦ କଲୁଁ ଇନ୍ଦ୍ର ତୁଲେ ॥୫୨
ଏ କାହିଁ ରଖିବ ଗୋକୁଳ ।
ମନୁଷ୍ୟଜନ୍ମ ନନ୍ଦବାଳ ॥୫୩
ସକଳେ ହୋଇଲୁ ନିରେଖ ।
ଡ଼ାକନ୍ତି ନାରାୟଣ ରଖ ॥୫୪
ମଧୁସୂଦନ ଚକ୍ରଧର ।
ଅନାଦି ଧର୍ମ ନିରାକାର ॥୫୫
ତୋର ଶରଣୁଁ ଅନ୍ୟ ନାହିଁ ।
ଗୋକୁଳ ରଖ ଭାବଗ୍ରାହୀ ॥୫୬
ଇନ୍ଦ୍ରର ହୋଇଲୁଁ ବଇରୀ ।
ବୁଡ଼ିଲା ଗୋପପୁର ଶିରୀ ॥୫୭
ସକଳେ ହୋଇଲୁ ନିରାଶ ।
ଛାଡ଼ିଲୁଁ ଜୀବନର ଆଶ ॥୫୮
ଗୋପର ଦେଖିଣ ବିକଳ ।
ହସି ବୋଲନ୍ତି ନନ୍ଦବାଳ ॥୫୯
ଏତ ଅରତୁ ବରଷଣ ।
ପ୍ରଚଣ୍ଡ ପବନ ପାଷାଣ ॥୬୦
ବରଷା ଋତୁ ଏ ନୁହଁଇ ।
ଇନ୍ଦ୍ର ବରଷେ କୋପ ବହି ॥୬୧
ବାସବ ମୋତେ ନ ଜାଣଇ ।
ମନୁଷ୍ୟ ପ୍ରାୟେକ ମଣଇ ॥୬୨
ମୋହର ଜୀବନ ଗୋକୁଳ ।
ଏହାଙ୍କୁ କରଇ ବିକଳ ॥୬୩
ମୋତେ ସେ କଲା ଏଡ଼େ କର୍ମ ।
ଭୋଳେ ହୋଇଲା ମତିଭ୍ରମ ॥୬୪
ପୂର୍ବେ ଏ ଅଛି ତପ ଦାହୀ ।
ମୋହର ପାଦେ ଚିତ୍ତ ଦେଇ ॥୬୫
କେମନ୍ତେ ନାଶିବି ସମ୍ପଦ ।
ମୋହର ଦେଲା ଇନ୍ଦ୍ରପଦ ॥୬୬
ଏହାର ଗର୍ବ ଆଜ ନାଶି ।
ପୁଣି ମୁଁ ସ୍ଥାପିବି ଆଶ୍ୱାସି ॥୬୭
ମୋହର ଭାବ ଯେ ଜାଣଇ ।
ତାହାର ଦେହେ ଗର୍ବ ନାହିଁ ॥୬୮
ଗବିଗଞ୍ଜନେ ବାନା ମୋର ।
ଦୁଷ୍ଟଦଳନେ ଅବତାର ॥୬୯
ମୋର ସମ୍ପଦ ଗୋପପୁରୀ ।
ମୁହିଁ ସେ ଗୋପପୁର ଶିରୀ ॥୭୦
ମୋତେ ମାରିବ ବୋଲେ କୋପେ ।
ଇନ୍ଦ୍ର ହିଁ ଆସିଅଛି ଗୋପେ ॥୭୧
ଅଇରାବତ ସେ ଆରୋହି ।
ବଜ୍ର ମାରଇ ମୋତେ ଚାହିଁ ॥୭୨
ଆଜ ମୁଁ ରଖିବି ଗୋକୁଳ ।
କେ ସହୁ ଗୋରୁଙ୍କ ବିକଳ ॥୭୩
ଏମନ୍ତ ବିଚାରି ଅନନ୍ତ ।
ବଢ଼ାଇ ଦେଲେ ବାମହସ୍ତ ॥୭୪
ପର୍ବତ ଥିଲା ନଦୀତୀରେ ।
ଗୋବିନ୍ଦ ଉପାଡ଼ିଲେ ହେଳେ ॥୭୫
ଅଚଳ ମୂର୍ତ୍ତିବନ୍ତ ହୋଇ ।
ଶ୍ରୀଭୁଜେ ବସିଲାକ ଯାଇ ॥୭୬
ଜାଣି ସେ କୃଷ୍ଣ ନିଜ ଧାମ ।
ପର୍ବତ ତେଜିଲା ଆଶ୍ରମ ॥୭୮
କରେ ପର୍ବତ ବସାଇଲେ ।
ବିଶ୍ୱମୂରତି ପ୍ରକାଶିଲେ ॥୭୯
ଛତ୍ର ପ୍ରାୟେକ ଗିରି ଟେକି ।
ଡ଼ାକନ୍ତି ପ୍ରଭୁ ବନମାଳୀ ॥୮୦
ହେ ତାତ ମାତ ଗୋପବାଳେ ।
ବହନ ପଶ ଗିରିତଳେ ॥୮୧
ଗୋରୁ ଗୋପାଳ ଆଦିକରି ।
ସର୍ବସମ୍ପଦ ନରନାରୀ ॥୮୨
ନିର୍ଭୟ ହୋଇ ସର୍ବେ ପଶ ।
ମନେ ନ କର କିଛି ତ୍ରାସ ॥୮୩
ହସି ବୋଲନ୍ତି ପୀତବାସ ।
ତୁମ୍ଭେ ଯେ ମୋହର ବିଶ୍ୱାସ ॥୮୪
ମୋହର କରେ ଗିରି ଥିବ ।
ତୁମ୍ଭ ଯେ ମୋହର ବିଶ୍ୱାସ ॥୮୫
ପୁଷ୍ପ ହୁଁ ଉଶ୍ୱାସଟି ମୋତେ ।
ତୁମ୍ଭେ ନ ଯାଅ ଅପରତେ ॥୮୬
ତୁମ୍ଭର ହିତେ ଗରିବରେ ।
ଦେଖ ଟେକିଲି ବାମକରେ ॥୮୭
ତୁମ୍ଭେ ଯେ ମଲେ ହତ୍ୟା ମୋର ।
କହନ୍ତି ପ୍ରଭୁ ଦାମୋଦର ॥୮୮
ତୁମ୍ଭର ହିତେ ମୋର ଦେହୀ ।
ଜନ୍ମିଛି ନରଦେହ ବହି ॥୮୯
ମୋହର ବୋଲେ ଯଜ୍ଞ ଭାଜି ।
ଏବେ ହୋଇଲେ ଇନ୍ଦ୍ରେ ଗଞ୍ଜି ॥୯୦
ମୁଁ ଆଜ ରଖିବି ତୁମ୍ଭଙ୍କୁ ।
କିମ୍ପାଇ ଡ଼ର ବାସବକୁ ॥୯୧
ନିର୍ଭୟ ଚିତ୍ତେ ସର୍ବେ ପଶ ।
ପର୍ବତ ବଢ଼ଇ ଉଶ୍ୱାସ ॥୯୨
ଭୃତ୍ୟଙ୍କ ଛଳେ ନରହରି ।
ଟେକିଲେ ଗୋବର୍ଦ୍ଧନ ଗିରି ॥୯୩
କୃଷ୍ଣବଚନେ ସୁଖଭୋଳେ ।
ପଶିଲେ ପର୍ବତର ତଳେ ॥୯୪
ଯାହାର ଘରେ ଯେତେ ଦ୍ରବ୍ୟ ।
ପଶିଲେ ସଙ୍ଗେ ଘେନି ସର୍ବ ॥୯୫
ଗରିକନ୍ଦରେ ଗଲେ ପଶି ।
ଶ୍ରୀକୃଷ୍ଣ-ବଚନେ ବିଶ୍ୱାସି ॥୯୬
ଦାସବତ୍ସଳ ବନମାଳୀ ।
ପୁଷ୍ପର ପ୍ରାୟେ ଗିରି ଟେକି ॥୯୭
ବାମ-କନିଷ୍ଠ-ଅଙ୍ଗୁଳିରେ ।
ଗୋବିନ୍ଦ ବାସଇଲେ ଧୀରେ ॥୯୮
ଅଙ୍ଗୁଳି-ଅଗ୍ରେ ଗିରିଦେଖି ।
ଭୟେ ବୁଜିଲେ ସର୍ବେ ଆଖି ॥୯୯
ଗୋପୀଏ ଗୁରୁଙ୍କର ମେଳେ ।
ଅନାଇ କାନ୍ଦନ୍ତି ବିକଳେ ॥୧୦୦
ବୋଲନ୍ତି ଏବେ ନାଶଗଲୁ ।
ଗିରକନ୍ଦରେ ପ୍ରାଣ ଦେଲୁ ॥୧୦୧
ସାତ ବରଷ ପୁଅ କରେ ।
ପର୍ବତ ଅଙ୍ଗୁଳି ଅଗ୍ରରେ ॥୧୦୨
ଏ କେତେବେଳ ଧରିଥିବ ।
ପବନ ବହିଲେ ପଡ଼ିବ ॥୧୦୩
କୋପ କରିଛି ଇନ୍ଦ୍ରରାଜା ।
ଆମ୍ଭେ ନ ଦେଲୁ ବଳି ଭୋଜା ॥୧୦୪
ନନ୍ଦର ସୁତ ଆମ୍ଭ କାଳ ।
ତା ବୋଲେ ବୁଡ଼ିଲା ଗୋକୁଳ ॥୧୦୫

Dr. Sudhanshu Sekhar Mishra

ଏମନ୍ତେ ପର୍ବତକୁ ଚାହିଁ ।
ଗୋପୀଙ୍କ ଦେହେ ପ୍ରାଣ ନାହିଁ ॥୧୦୬
ସମସ୍ତ ଚକ୍ଷୁ ଏକମେଳେ ।
ଥୋଇଲେ କୃଷ୍ଣ କରତଳେ ॥୧୦୭
କ୍ଷୁଧା ପିପାସେ ନାହିଁ ମନ ।
ନିମିଷେ କଲେ ସାତଦିନ ॥୧୦୮
କୃଷ୍ଣର ମାୟାଯୋଗବଳେ ।
ରାତ୍ର ଦିବସ ନ ଜାଣିଲେ ॥୧୦୯
କୃଷ୍ଣଙ୍କୁ ବୋଲନ୍ତି ଗୋପାଳେ ।
ଗିରି ଧଇଲୁ ବାଳକାଳେ ॥୧୧୦
ଆମ୍ଭଙ୍କୁ ଲାଗୁଅଛି ଭୟ ।
ମରଣ ହୋଇଲା ନିଶ୍ଚୟ ॥୧୧୧
ଆସହୋ ଗୋପାଳେ ସମସ୍ତେ ।
ଗିରି ଧରିବା ଯେଝାମତେ ॥୧୧୨
ବାଳୁତ ପୁଅ ହସ୍ତେ ମେରୁ ।
ଏଡ଼େ ଅଚଳ ମହାଗରୁ ॥୧୧୩
ପଡ଼ିଲେ ସମସ୍ତେ ମରିବା ।
ଯେ ଯାହା ମତେ ଧରିଥିବା ॥୧୧୪
ଏତକ ବୋଲିଣ ଗୋପାଳେ ।
ଲଉଡ଼ି ଦେଲେ ଗରିମୂଳେ ॥୧୧୫
ଯେ ଯାହା ଅନୁରୂପେ ଧରି ।
ରହିଲେ ଗୋପ ନାରନାରୀ ॥୧୧୬
ଇନ୍ଦ୍ର ଯେ ଶୂନ୍ୟେ ରହିଥିଲା ।
ସପତ ଦିନ ବରଷିଲା ॥୧୧୭
ପ୍ରଳୟକାରୀ ମେଘମାଳ ।
ଫୁଟିଣ ହୋଇଲେ ନିର୍ଜଳ ॥୧୧୮
ପବନ ଚଳି ନ ପାରିଲେ ।
ଅଳପ ଅଳପ ବହିଲେ ॥୧୧୯
ବିଜୁଳି ମେଘେ ଲୀନ ହେଲା ।
ଶବଦ ନିଶ୍ଚଳ ହୋଇଲା ॥୧୨୦
ଦେଖି କମ୍ପିଲା ସୁରପତି ।
ଆରୋହି ଐରାବତ ହସ୍ତୀ ॥୧୨୧
ଆପଣା କରେ ବଜ୍ର ଘେନି ।
କୋପେ ଧାଇଁଲା ସସ୍ରଯୋନି ॥୧୨୨
ସହସ୍ର ଧାର ଶକ୍ତି ତୋଳି ।
ମନେ ଜାଣିଲେ ବନମାଳୀ ॥୧୨୩

ଇନ୍ଦ୍ର ଯେ ଆସୁଅଛି ରଙ୍ଗେ ।
ମାରିବ ଗୋବର୍ଦ୍ଧନ ଅଙ୍ଗେ ॥୧୨୪
ବଜ୍ରେ ପର୍ବତ ହେବ ଧ୍ୱଂସ ।
ଗୋପୀ ଗୋପାଳେ ଯିବେ ନାଶ ॥୧୨୫
ଏତେ ବିଚାରି ଚକ୍ରଧାରୀ ।
ପର୍ବତ ଚକ୍ରେଣ ଉହାଡ଼ି ॥୧୨୬
କୋପ ଯେ ହୋଇ ସୁରପତି ।
ବଜ୍ର ପ୍ରହାର କଲା ଧାତି ॥୧୨୭
ପର୍ବତେ ପଡ଼ି ବଜ୍ର ଶର ।
ଝଲକି ଉଠିଲା ଅନଳ ॥୧୨୮
ଦେଖି କ୍ରୋଧଇ ସୁରେଶ୍ୱର ।
ପୁଣି କଲାକ ସେ ପ୍ରହାର ॥୧୨୯
ବାସବ ଦେହେ ଶସ୍ତ୍ର ବାଜି ।
ପୁଣି ପିଟିଲା ଗଳଗାଜି ॥୧୩୦
ଚକ୍ରେ ପଡନ୍ତେ ବଜ୍ରଶର ।
ମୁଖରୁ ବହିଲା ରୁଧିର ॥୧୩୧
ସର୍ମ ପାଇଲା ସୁରପତି ।
ଜାଣିଲା ନିଶ୍ଚେ ଏ ଶ୍ରୀପତି ॥୧୩୨
ଇନ୍ଦ୍ରର କରେ ଶସ୍ତ୍ର ନାହିଁ ।
ବୋଲଇ ମେଘକୁ ଅନାଇ ॥୧୩୩
ଆଉ କି ଗର୍ବ ଅଛି ମୋର ।
ଗିରି ତୋଳିଲେ ଦାମୋଦର ॥୧୩୪
ରଖିଲେ ଗୋପପୁର ଶିରୀ ।
ଆସ ହୋ ଯିବା ନିଜ ପୁରୀ ॥୧୩୫
ଏମନ୍ତ ବୋଲି ବାହୁଡ଼ିଲା ।
ନିଜ ଭୁବନେ ବିଜେ କଲା ॥୧୩୬
କୃଷ୍ଣ ଯେ ଥିଲେ ଗିରି ତୋଳି ।
ଜାଣିଲେ ମେଘେ ଗଲେ ଚଳି ॥୧୩୭
ହାରିଣ ବାହୁଡ଼ିଲା ଇନ୍ଦ୍ର ।
ଜାଣିଲେ ପ୍ରଭୁ ଆଦିକନ୍ଦ ॥୧୩୮
ବୋଲନ୍ତି ଗୋପାଳଙ୍କୁ ଚାହିଁ ।
ବାହାର ହୁଅ ବେଗ ହୋଇ ॥୧୩୯
ଗଗନ ନିର୍ମଳ ଦିଶିଲା ।
ରବି କିରଣ ପ୍ରକାଶିଲା ॥୧୪୦
ସକଳ ଜଳ ନଦୀମାର୍ଗେ ।
ପଶିଲେ ସମୁଦ୍ର ସଂଯୋଗେ ॥୧୪୧

ପବନ ବହିଲା ଉଶ୍ୱାସ ।
ଦିଶିଲା ବନ ଦିଗ ଦେଶ ॥୧୪୨
ଏବେ ବାହାର ହୁଅ ବେଗେ ।
ନିର୍ମଳ ବନଭୂମି ଭାଗେ ॥୧୪୩
ପର୍ବତ ଧରି ନ ପାରଇ ।
ପଡ଼ିଲେ ମୋର ଦୋଷ ନାହିଁ ॥୧୪୪
ଶୁଣି ଗୋପାଳେ ଥରହର ।
ବାହାର ହୋଇଲେ ସତ୍ୱର ॥୧୪୫
ଯେ ଯାହା ଧନ ଦ୍ରବ୍ୟ ଲଇ ।
ବୃଦ୍ଧ ବାଳକ ବସ୍ସା ଗାଈ ॥୧୪୬
ବାହାର ହୋଇଲେ ସକଳେ ।
କୃଷ୍ଣ ଚାହିଁଲେ ଗିରିତଳେ ॥୧୪୭
ଦେଖିଲେ ତଳେ ନାହିଁ କେହି ।
ଗୋପୀ ଗୋପାଳ ବସ୍ସା ଗାଈ ॥୧୪୮
ପରମାନନ୍ଦ ତୋଷମନେ ।
ଗିରି ସ୍ଥାପିଲେ ଯଥାସ୍ଥାନେ ॥୧୪୯
ଦେଖନ୍ତି ସ୍ୱର୍ଗେ ଦେବତାଏ ।
ହରଷେ କଲେ ଜୟେ ଜୟେ ॥୧୫୦
ନିବେଶି ନିଜ ସ୍ଥାନେ ଗିରି ।
ଗୋପେ ମିଳିଲେ ନରହରି ॥୧୫୧
କୃଷ୍ଣଙ୍କୁ ଦେଖିଣ ଗୋପାଳେ ।
ଧରନ୍ତି ଜଣେ ଜଣେ କୋଳେ ॥୧୫୨
ଦଧି ଅକ୍ଷତ ଜଳ ଘେନି ।
କୃଷ୍ଣଙ୍କୁ ସିଞ୍ଚନ୍ତି କାମିନୀ ॥୧୫୩
ନନ୍ଦ ରୋହିଣୀ ଯଶୋଦନ୍ତୀ ।
କୃଷ୍ଣଙ୍କୁ କୋଳରେ ବସାନ୍ତି ॥୧୫୪
ଅଶିଷ ଦ୍ୟନ୍ତି ସ୍ନେହଭରେ ।
ଗୋରଜ ଲେପନ୍ତି ଶରୀରେ ॥୧୫୫
ଆକାଶେ ଥାଇ ଦେବନାରୀ ।
ସିଦ୍ଧ-ଚାରଣେ ସ୍ତୁତିକରି ॥୧୫୬
ଦୁନ୍ଦୁଭିବାଦ୍ୟ ଗୀତନାଦେ ।
ଗନ୍ଧର୍ବେ ମଙ୍ଗଳ ଶବଦେ ॥୧୫୭
ପୁଷ୍ପ ବରଷି ସ୍ତୁତି କରି ।
ରଙ୍ଗେ ନାଚନ୍ତି ଅପସରୀ ॥୧୫୮
ଦିନକୁ ଦିନ ଅତି ରସ ।
ଗୋକୁଳେ ରାମ ହୃଷୀକେଶ ॥୧୫୯

Dr. Sudhanshu Sekhar Mishra

କୃଷ୍ଣ ମହିମା ଦେଖି ଜନେ ।
ଆନନ୍ଦ ଗୋପାଳଙ୍କ ମନେ ॥୧୬୦
ହରି ମହିମା ହୃଦେ ଧରି ।
ଦିନ ବଞ୍ଚନ୍ତି ଗୋପନାରୀ ॥୧୬୧
ସେ ଗିରିଧର ପଦ୍ମପାଦେ ।
ମୋ ଚିତ୍ତ ରହୁ ଅପ୍ରମାଦେ ॥୧୬୨
ସେ ରାମକୃଷ୍ଣ ପାଦେ ଆଶ ।
କହଇ ଜଗନ୍ନାଥ ଦାସ ॥୧୬୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଷଡ଼ବିଂଶୋଽଧ୍ୟାୟଃ ॥

---

## ସପ୍ତବିଂଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ପାଣ୍ଡବ-ଚୂଡ଼ାମଣି ।
ନନ୍ଦନନ୍ଦନ କର୍ମବାଣୀ ॥୧
ଗୋପୀ ଗୋପାଳେ ଜୁଣ୍ଟ ହୋଇ ।
କହନ୍ତି ନନ୍ଦକୁ ବସାଇ ॥୨
ମନୁଷ୍ୟ ନୋହେ ତୋ ବାଳକ ।
ଏହାର କର୍ମମାନ ଦେଖ ॥୩
କେଉଁ ଦେବତା ଗୋପ୍ୟ ହୋଇ ।
ଜନ୍ମ ହୋଇଲା ଦେହ ବହି ॥୪
ଆମ୍ଭର ବଂଶେଜାତ ହୋଇ ।
ଏମନ୍ତ ଦେଖିଲା ତ ନାହିଁ ॥୫
ସାତ ବରଷ ତୋର ବାଳ ।
କରେ ଟେକିଲା ଗିରିବର ॥୬
ନଳିନୀ ଯେହ୍ନେ ଗଜ-କରେ ।
ପର୍ବତ ଟେକିଲା ସଧୀରେ ॥୭
ତିନିଦିନର ତୋର ସୁତ ।
ପୂତନା ପ୍ରାଣ କଲା ହତ ॥୮
ଅନ୍ତୁଡ଼ି ଉଠିଆରୀ ଦିନେ ।
ଶକଟ ଭାଙ୍ଗିଲା ଚରଣେ ॥୯
ଦିନେକ ଦ୍ୱାରେ ବସିଥିଲା ।
ତୃଣାବର୍ତ୍ତ ଯେ ହରିନେଲା ॥୧୦
ଗଗନେ ନେଇ ତା' ମାଇଲା ।
ଶିଳାରେ ପଡ଼ି ଉବୁରିଲା ॥୧୧
ଦଧିମନ୍ଥନ ବେଳେ ଧରି ।
ରୋଳେ ବାନ୍ଧିଲା ତୋର ନାରୀ ॥୧୨
ଘରୁ ବାହାର ହୋଇଗଲା ।
ବୃକ୍ଷର ତଳରେ ମିଳିଲା ॥୧୩
ବୃକ୍ଷ ମଧ୍ୟରେ ପଶିଗଲା ।
ଯାମଳା ଅର୍ଜୁନ ଭାଙ୍ଗିଲା ॥୧୪
ଅଘା ଦଇତ ବାଳକାଳେ ।
ମାଇଲା କୁମାରଙ୍କ ମେଳେ ॥୧୫
ଦିନେକ ବକ ଗିଳିଥିଲା ।
ସେ ପୁଣି କେମନ୍ତେ ଜାଣିଲା ॥୧୬
ବକାସୁରକୁ କରେ ଧରି ।
ଚିରିଲା ବେନିଫାଳ କରି ॥୧୭
ଧେନୁକା ତାଳବନେ ନାଶି ।
ଫଳ ଆଣିଲା ମନ ତୋଷି ॥୧୮
ପ୍ରଳମ୍ବା ଯୁଦ୍ଧେ ମରାଇଲା ।
ଗୋକୁଳ ଅନଳୁଁ ତାରିଲା ॥୧୯
ଜାଣୁ ନା କାଳୀୟର କଥା ।
କେ ତା'ରେ ଅଛି ସାମରଥା ॥୨୦
ହେଳେ ଗଞ୍ଜିଲା ତା'ର ବଳ ।
ଅମୃତ କଲା ବିଷଜଳ ॥୨୧
ଲୋଚନେ ତା'ର ମୁଖ ଚାହିଁ ।
ଗୋପୀଗୋପାଳେ ହେଉଁ ବାଇ ॥୨୨
ଆମ୍ଭର ବଡ଼ଇ ମୁହାଁସ ।
ବାଳକେ ନଛାଡ଼ନ୍ତି ପାଶ ॥୨୩
ଏବେ ଟେକିଲା ଗିରିବର ।
ସାତବରଷ ତୋ' କୁମର ॥୨୪
ଆମ୍ଭେ ପାଇଲୁ ମନେ ଶଙ୍କା ।
ନନ୍ଦ ତୁ ଏଥେ ଥାଅ ଏକା ॥୨୫
କିଏ ଅସୁର ତୋ'ର କୋଳେ ।
ଆମ୍ଭଙ୍କୁ ଗିଳିବ ସେ ହେଳେ ॥୨୬
ପଳାଇଯିବୁ ତୋର ପୁରୁ ।
ତୋର ସୁତକୁ ଆମ୍ଭେ ଡ଼ରୁ ॥୨୭
ଦଇବେ ଆମେ ରାଜଦ୍ରୋହୀ ।
ଏ ପୁରେ ନ ରହିବୁ କେହି ॥୨୮
ଯେତେ ଅସୁର ମଲେ ଏଥ ।
ସମସ୍ତେ ରାଜା ଅମାତ୍ୟ ॥୨୯
ରାଜବଇରୀ ପଣ ହୋଇ ।
କେ ପ୍ରଜା ନଗ୍ରେ ଥାଇ ରହି ॥୩୦
ଏବେ ହୋଇଲା ବଡ଼ ଭୟ ।
ଯଜ୍ଞ ଭାଙ୍ଗିଲା ତୋର ପୁଅ ॥୩୧
ଇନ୍ଦ୍ରର ତୁଲେ ବାଦ କରି ।
କେ ରହିପାରେ ମର୍ତ୍ତ୍ୟପୁରୀ ॥୩୨
ନନ୍ଦ ବୋଇଲା ତାହା ଶୁଣି ।
ଗୋପବଚନ ପରିମାଣି ॥୩୩
ଶୁଣ ସକଳ ଗୋପଜନ ।
ଗର୍ଗ ଋଷିଙ୍କର ବଚନ ॥୩୪
ପୁତ୍ରଙ୍କ ନାମକର୍ମ କାଳେ ।
ମୋତେ କହିଲେ ଏକମେଳେ ॥୩୫
ବୋଇଲେ ତୋର ପୁତ୍ରକଥା ।
ଜାଣଇଁ ଜନ୍ମର ବାରତା ॥୩୬
ଚାରିଯୁଗରେ ଚାରିବର୍ଣ୍ଣ ।
ଶୁକ୍ଳ ଶୋଣିତ ପୀତ ଶ୍ୟାମ ॥୩୭
ପୂର୍ବେ ଏ ବସୁଦେବ ଘରେ ।
ଜନ୍ମିଲା ଦେବକୀ ଉଦରେ ॥୩୮
ଏହାର ନାମ ବାସୁଦେବ ।
ବିଦିତ ବୋଲନ୍ତି ସାଧବ ॥୩୯
ଏହାର ନାମ ଗୁଣ ଯେତେ ।
ମୁହିଁ ଜାଣଇ ଯୋଗମତେ ॥୪୦
ଗୋକୁଳ ତାରିବ ଏ ଭଲେ ।
ସୁଖେ ବଞ୍ଚିବ ଏହା ତୁଲେ ॥୪୧

Dr. Sudhanshu Sekhar Mishra

ପୂର୍ବେ ସାଧବେ ସିଦ୍ଧେ ରହି ।
ତରିଲେ ଏହା ପାଦ ଧାୟି ॥୪୨
ଏହାର ପାଦେ ସେବା କରି ।
ହେଲେ ତରିବେ ନରନାରୀ ॥୪୩
ହେ ନନ୍ଦ ଶୁଣ ସାବଧାନ ।
ମନୁଷ୍ୟ ନୋହେ ତୋ' ନନ୍ଦନ ॥୪୪
ଦେଖ ଏହାର ବର୍ଣ୍ଣଚିହ୍ନ ।
ପ୍ରତ୍ୟକ୍ଷେ ବିଷ୍ଣୁର ସମାନ ॥୪୫
ଏମନ୍ତ କହିଗଲେ ମୁନି ।
ତାହାଙ୍କ ବୋଲ ଶିରେ ଘେନି ॥୪୬
ମଣିଲି ନାରାୟଣ ପ୍ରାୟ ।
ତୁମ୍ଭେ ନ କର ମନେ ଭୟ ॥୪୭
ପୁତ୍ରର ଜନ୍ମ ତିନିଦିନେ ।
ଅଇଲି ମଥୁରା ଭୁବନେ ॥୪୮
କଂସ ବିଡ଼ିଆକର ଘେନି ।
ରହିଲି ସେଦିନ ରଜନୀ ॥୪୯
ନବରେ ଦେଖି ବସୁଦେବ ।
ସେ ମୋର ପ୍ରିୟ ମିତ୍ରଭାବ ॥୫୦
ଏହାର ଯେତେ କଥାମାନ ।
ଯାହା କହିଲେ ତପୋଧନ ॥୫୧
ମୁଁ ହାଦେ ହେଜୁଥାଇ ବସି ।
ପ୍ରିୟବଚନ ଅହର୍ନିଶି ॥୫୨

ଆବର କଥା ଏକ ଶୁଣ ।
କହି ଅଛନ୍ତି ତପୋଧନ ॥୫୩
ଏ ପୁତ୍ର ଯେତେ ଯେତେ କଥା ।
ଏଥକୁ ନ କରିବୁ ବ୍ୟଥା ॥୫୪
ଯେତେ ଅରିଷ୍ଟ ତୋର ପୁରେ ।
ମରିବେ ଯେତେକ ଅସୁରେ ॥୫୫
ଏଥକୁ ନ ପାଇବୁ ଚିନ୍ତା ।
ତୋ' ପୁତ୍ର ପ୍ରତ୍ୟକ୍ଷେ ବିଧାତା ॥୫୬
ମୋତେ ଅଛନ୍ତି ଏତେ କହି ।
ଏଥକୁ ନ ବିଚାର କେହି ॥୫୭
ଏମନ୍ତ ନନ୍ଦ ମୁଖୁଁ ଶୁଣି ।
ଗର୍ଗବଚନ ମନେ ଗୁଣି ॥୫୮
ନନ୍ଦବଚନେ ମନଦେଇ ।
ଶଙ୍କା ଛାଡ଼ିଲେ କୃଷ୍ଣେ ଚାହିଁ ॥୫୯
ଆନନ୍ଦେ ଆଲିଙ୍ଗନ କରି ।
ମାୟା ମୋହିଲେ ନରହରି ॥୬୦
ଗୋପାଳେ ହୋଇଲେ ହରଷ ।
କୃଷ୍ଣଙ୍କୁ ଚାହିଁ ହସହସ ॥୬୧
ଆନନ୍ଦେ ଶିରେ କର ଦେଇ ।
ବୋଲନ୍ତି କୃଷ୍ଣ କର ତ୍ରାହି ॥୬୨
ବାସବ ତ୍ରାସୁ ଯେ ତାରିଲା ।
ପର୍ବତ କରେ ଉପାଡ଼ିଲା ॥୬୩

ସେ ଆମ୍ଭ ରଖୁ ସର୍ବକାଳେ ।
ଗୋରୁ ଗୋପାଳ ଏକମେଳେ ॥୬୪
ଶରଣ ଗଲୁଁ ତା'ର ପାଦେ ।
ଗୋପାଳେ ବୋଲନ୍ତି ଆନନ୍ଦେ ॥୬୫
ହରିଚରିତ ସୁଧାବାରି ।
ଶ୍ରୁତିଯୁଗଳେ ପାନ କରି ॥୬୬
ଆନନ୍ଦମନେ କର ଲୟ ।
ହେଲେ ତାରିବେ ଦେବରାୟ ॥୬୭
ସୁଜନଜନେ ଏଣେ ରସ ।
ହେଲେ ଖଣ୍ଡିବ ମୋହପାଶ ॥୬୮
ହରିଚରଣ ଆଶ୍ରା କର ।
ଆଉ ନ ଥିବ ଦୁଃଖ ଘୋର ॥୬୯
ବୋଲଇ ଦାସ ଜଗନ୍ନାଥ ।
ଗୀତ ପ୍ରବନ୍ଧେ ଭାଗବତ ॥୭୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ସପ୍ତବିଂଶୋଽଧ୍ୟାୟଃ ॥

---

## ଅଷ୍ଟାବିଂଶ ଅଧ୍ୟାୟ

ବ୍ୟାସନନ୍ଦନ ହରଷିତ ।
ବୋଲନ୍ତି ଶୁଣ ନରନାଥ ॥୧
କୃଷ୍ଣଙ୍କୁ କରି ଅପରାଧ ।
ଇନ୍ଦ୍ର ପାଇଲା ମନେ ଖେଦ ॥୨
ଭାଳଇ ମନର ବିଷାଦେ ।
ଦ୍ରୋହ ଯେ କଲି ପଦ୍ମପାଦେ ॥୩
ଅଜ୍ଞାନେ ହୋଇଲି ମୁଁ ବାଇ ।
ଆଉ ସମ୍ପଦ ମୋର କାହିଁ ॥୪
କାହାରେ ପଶିବି ଶରଣ ।
ନିଶ୍ଚୟ ହୋଇଲା ମରଣ ॥୫

ଯାହାର ମହିମା ଅନନ୍ତ ।
ହୃଦରେ ଅଛଇ ଜଗତ ॥୬
ତା'ରେ ବଇରୀପଣ ହୋଇ ।
କେ ଥିଲା ଥିବ ଦେହ ବହି ॥୭
କି ବୁଦ୍ଧି କରିବଇଁ ଆଜ ।
ଭୟେ କମ୍ପଇ ଦେବରାଜ ॥୮
ସୁରଭି ସ୍ୱର୍ଗପୁରେ ଥିଲା ।
ଇନ୍ଦ୍ରର ରୋଦନ ଶୁଣିଲା ॥୯
ବୋଲଇ ଇନ୍ଦ୍ର ମୁଖ ଚାହିଁ ।
ରୋଦନ କେଁରୁ କାହିଁପାଇଁ ॥୧୦

ଇନ୍ଦ୍ର ବୋଇଲେ ଶୁଣ ମାତ ।
କୃଷ୍ଣ ନ ଭାବି ଚଉମାଥ ॥୧୧
ବସା ବାଳକ ହରିନେଲା ।
ଆପଣା ଭୁବନେ ଥୋଇଲା ॥୧୨
କୃଷ୍ଣ ତା'ଜାଣି ବିଚାରିଲେ ।
ବସା ବାଳକ ଭିଆଇଲେ ॥୧୩
ଲଜ୍ଜା ପାଇଲେ ବେଦପତି ।
ବେଦେ ଅନେକ କଲେ ସ୍ତୁତି ॥୧୪
ଏ କଥା ଥିଲି ମୁହିଁ ଜାଣି ।
କାଳେ ପାସୋର ଗଲା ପୁଣି ॥୧୫

Dr. Sudhanshu Sekhar Mishra

ନ ଜାଣି ହୋଇଲଇଁ ବଣା ।
ଲୋଚନ ଥାଉ ହେଲି କଣା ॥୧୬
କେମନ୍ତେ ଚାହିଁବି ତା' ମୁଖ ।
ଏତେ ହୋଇଲା ବଡ଼ଦୁଃଖ ॥୧୭
ସୁରଭି ବୋଇଲେ ତୁ ଜାଣି ।
ଦ୍ରୋହ ଚିନ୍ତିଲୁ ଚକ୍ରପାଣି ॥୧୮
ଏମନ୍ତେ କଲୁ ଅପରାଧ ।
ସେ ତୋତେ ଦେଇଛି ସମ୍ପଦ ॥୧୯
ଅଜ୍ଞାନ ମତ୍ତବୁଦ୍ଧି ଫଳେ ।
ଦ୍ରୋହ ଯେ କଲୁ ପାଦତଳେ ॥୨୦
ମହିମା ନ ଜାଣୁ ତାହାର ।
ଅଶେଷ-ବ୍ରହ୍ମାଣ୍ଡ-ଠାକୁର ॥୨୧
ଦାସବତ୍ସଳ ପାଦଯୁଗେ ।
ଶରଣ ପଶଯାଇ ବେଗେ ॥୨୨
ତୋ'ର ରକ୍ଷକ କେହି ନାହିଁ ।
ବିଶ୍ୱ ସଂସାରେ ଦେହ ବହି ॥୨୩
ଶୋକ ସଂହରି ଦେବରାୟ ।
ଶରଣ ପଶ କୃଷ୍ଣପାୟେ ॥୨୪
ମୋହର ପଛେ ଥାଅ ତୁହି ।
କୃଷ୍ଣଙ୍କୁ ଭେଟାଇବି ନେଇ ॥୨୫
ସ୍ତୁତି କରିବି ତୋ'ର ପାଇଁ ।
ତାହାର ନାମ ଭାବଗ୍ରାହୀ ॥୨୬
ଚରଣେ ପଶ ଯା'ଶରଣ ।
ତୋତେ ରଖିବେ ନାରାୟଣ ॥୨୭
ଏମନ୍ତ କହି ଲୋକମାତ ।
ଘେନି ଚଳିଲେ ସୁରନାଥ ॥୨୮
ମିଳିଲେ ବୃନ୍ଦାବନେ ଯାଇ ।
ଜାଣିଲେ ପ୍ରଭୁ ଭାବଗ୍ରାହୀ ॥୨୯
ଗାଈ ଚରାଉଥିଲେ ବନେ ।
ଗୋପାଳମେଳେ ବେଣୁସ୍ୱନେ ॥୩୦
ଘୋର ଗହନେ ପଶିଗଲେ ।
ଗୋପାଳ ପୋଏ ନଜାଣିଲେ ॥୩୧
ଇନ୍ଦ୍ର ସୁରଭି ଯହିଁ ଛନ୍ତି ।
ଜାଣିଲେ ପ୍ରଭୁ ଶିରୀପତି ॥୩୨
ମିଳିଲେ ସୁରଭିର ଲାଗେ ।
ଇନ୍ଦ୍ର ହିଁ ଅଛି ପୃଷ୍ଠଭାଗେ ॥୩୩
ସୁରଭି ଦେଖି ତୋଷଚିତ୍ତେ ।
ନମିଲା କୃଷ୍ଣ ପାଦଗତେ ॥୩୪
ସ୍ତୁତି କରଇ କୃଷ୍ଣେ ଚାହିଁ ।
ବୋଲଇ ଶିରେ କରଦେଇ ॥୩୫
ଭୋ ନାଥ ଶୁଣ ନରହରି ।
ଇନ୍ଦ୍ର ଯେ ତୋତେ ହେୟ କରି ॥୩୬
ଘୋର ବରଷଣ ବିବାଦେ ।
ଦ୍ରୋହ ଯେ କଲା ପଦ୍ମପାଦେ ॥୩୭
ସମ୍ପଦ ଦେଇଛୁ ତାହାରେ ।
ଏବେ ଶରଣ ତୋ'ପୟରେ ॥୩୮
ଲୁଚିଣ ଅଛି ମୋର ପଛେ ।
ଭୋ ନାଥ ଦେଖନ୍ତି ପ୍ରତ୍ୟକ୍ଷେ ॥୩୯
ଶୁଣି ଚାହିଁଲେ ଗିରିଧରେ ।
ବାସବ ପଡ଼ିଲା ପୟରେ ॥୪୦
ଭୟେ କମ୍ପଇ ତା'ର ଦେହୀ ।
ଦନ୍ତେ ତିରଣ ଅଛି ଦେଇ ॥୪୧
ପୁଣି ଉଠିଲା ଭୟଚିତ୍ତେ ।
କର ଅଞ୍ଜଳି ଦେଇ ମାଥେ ॥୪୨
ଶିର ନିବେଶି ପଦ୍ମପାଦେ ।
ବୋଲଇ ଶୋକ ଗଦଗଦେ ॥୪୩

ଇନ୍ଦ୍ର ଉବାଚ

ଭୋ ନାଥ ଆଦିନିରଞ୍ଜନ ।
ଜ୍ୟୋତିପ୍ରକାଶ ମହାଶୂନ୍ୟ ॥୪୪
ଗୁଣେ ପ୍ରକାଶ ତୋ'ର ନାହିଁ ।
ଭକତହିତେ ବହୁ ଦେହୀ ॥୪୫
ମାୟା-ମୋହିତ-ଭବଜଳେ ।
ତୋର ବିହାର ଯୋଗବଳେ ॥୪୬
ଲୋଭର ମୂଳେ ଷଡ଼ ଅରି ।
ତୋହର ମହିମା ଆବୋରି ॥୪୭
ନିରତେ ଭ୍ରମାନ୍ତି ଶୟଳେ ।
ତୋହର ମାୟାଚକ୍ର ବଳେ ॥୪୮
ଜଗତ ହୋଏ ଆତଯାତ ।
ତୋହର ମାୟାରେ ଅନନ୍ତ ॥୪୯
ତୁହି ସେ ମାୟାକୁ ଆବୋରି ।
ଶରୀର ବହୁ ନରହରି ॥୫୦
ଦୁଷ୍ଟଙ୍କୁ ଦଣ୍ଡିବାରେ ଆଶେ ।
ସାଧୁଙ୍କୁ ରଖୁ ତୁ ବିଶ୍ୱାସେ ॥୫୧
ଜଗତ-ତାତ-ମାତ ତୁହି ।
ତୁ ଦଣ୍ଡଧର ଭାବଗ୍ରାହୀ ॥୫୨
ତୋହର ସମ୍ପଦ ଆବୋରି ।
ଯେ ବୋଲେ ମୋହରି ମୋହରି॥୫୩
ତାହାଙ୍କ ଗର୍ବ ନାଶିବାରେ ।
ଜନମ ହେଉ ଏ ସଂସାରେ ॥୫୪
ମୋହର ପ୍ରାୟେ ଜ୍ଞାନ ହାରି ।
ଯେ ତୋର ସମ୍ପଦ ଆବୋରି ॥୫୫
ଗର୍ବବହନ୍ତି ଦୁଷ୍ଟ ଚିତ୍ତେ ।
ତାହାଙ୍କୁ ଦଣ୍ଡୁ ତୁ ଉଚିତେ ॥୫୬
ଗର୍ବଗଞ୍ଜନ ତୋର ଦେଖି ।
ଭୟେ ମୁଦ୍ରିତ ବେନି ଆଖି ॥୫୭
ତକ୍ଷଣ ଗର୍ବ ଦୂରକରି ।
ତୋହର ମହିମା ସ୍ମରି ॥୫୮
ତୋତେ ଭଜନ୍ତି ସାଧୁଚିତ୍ତେ ।
ଖଳନାଶନ ଦେଖି ତୋତେ ॥୫୯
ଏବେ ମୁଁ କଲି ଅପରାଧ ।
ଭୋ ନାଥ ରଖ ପଦ୍ମପାଦ ॥୬୦
ଏ ଅପରାଧ କ୍ଷମାକର ।
ଭୋ ନାଥ ଶରଣ ତୋହର ॥୬୧
ଅଜ୍ଞାନମତେ ଭୋଗ ପାଇ ।
ଭୋଳ ହୋଇଲି ଭାବଗ୍ରାହୀ ॥୬୨
ଭାରାନିବାରେ ତୋ'ର ଜାତ ।
ତୋହର ସଞ୍ଚଳା ଜଗତ ॥୬୩
ଅବନୀଭାରା ନାଶ କରି ।
ସାଧୁଙ୍କୁ ରଖୁ ନରହରି ॥୬୪
ନମଇ ପରମ ମଙ୍ଗଳ ।
ପରମ ଆତ୍ମା ଆଦିମୂଳ ॥୬୫
ନମଇଁ ବସୁଦେବ ସୁତ ।
ଯାଦବବଂଶ ଦଇବତ ॥୬୬
ଶୁଦ୍ଧମୂରତି ଦିବ୍ୟଜ୍ଞାନ ।
ଇଚ୍ଛାଏ ହେଉ ନାନାବର୍ଣ୍ଣ ॥୬୭
ସକଳଜୀବ ଆଦିପିତା ।
ନମଇଁ କଇବଲ୍ୟଦାତା ॥୬୮

Dr. Sudhanshu Sekhar Mishra

ତୁ ଦେଲୁ ଇନ୍ଦ୍ରପଦ ମୋତେ ।
ଦ୍ରୋହ ଚିନ୍ତିଲି ମୁହିଁ ତୋତେ ॥୬୯
ଅଳପ ଲୋକ ମୁଁ ସ୍ୱଭାବେ ।
ମୋତେ ଥୋଇଲୁ ଇନ୍ଦ୍ରପଦେ ॥୭୦
ମୁଁ ଛାର ନୁହଇଁ ଭାଜନ ।
ତୁ କି ନ ଜାଣୁ ଭଗବାନ ॥୭୧
ଅଳପଲୋକେ ସୁଖ ଦେଲେ ।
ଆବୋରି ନ ପାରଇ ଭଲେ ॥୭୨
ଏଣୁ ହୋଇଲି ଅପରାଧୀ ।
ତୁ ନାଥ କରୁଣା ବାରିଧି ॥୭୩
ତୋ'ର ଚରଣୁଁ ନାହିଁ ଆନ ।
ଶରଣ ରଖ ଭଗବାନ ॥୭୪
ଶୁକ ବୋଲନ୍ତି ଶୁଣ ରାୟେ ।
କମ୍ପଇ ବାସବର କାୟେ ॥୭୫
ଦାସବତ୍ସଳ ଭାବଗ୍ରାହୀ ।
ବୋଲନ୍ତି ଇନ୍ଦ୍ରମୁଖ ଚାହିଁ ॥୭୬
ମେଘ-ଗମ୍ଭୀର ପ୍ରାୟ ବାଣୀ ।
ହସି କହନ୍ତି ଚକ୍ରପାଣି ॥୭୭

ଭଗବାନ ଉବାଚ

ଶୁଣ ହୋ ତ୍ରିଦଶର ନାଥ ।
ତୋ'ର ଦେଖିଲୁ ଦୁଷ୍ଟଚିତ୍ତ ॥୭୮
ମୋର ସମ୍ପଦେ ଅନ୍ଧ ହୋଇ ।
ମୋତେ ନ ଚିହ୍ନୁ ଗର୍ବ ବହି ॥୭୯
ତୋତେଟି ଅଛି ମୋର ଦୟା ।
ତେଣୁଟି ଦେଖାଇଲି ମାୟା ॥୮୦
ଭାଙ୍ଗିଲି ତୋ'ର ଯଜ୍ଞକର୍ମ ।
ତୁ ଯେଣୁ ହେଲୁ ମତିଭ୍ରମ ॥୮୧
ଛାଡ଼ିଲୁ ମୋର ପାଦଚିନ୍ତା ।
ସମ୍ପଦେ ହୋଇଲୁ ଅଚେତା ॥୮୨
ଯେ ମୋ ସମ୍ପଦେ ଅନ୍ଧ ହୋଇ ।
ଅଜ୍ଞାନେ ମୋତେ ନ ଜାଣଇ ॥୮୩
ସେ ଅପରାଧେ ଦଣ୍ଡ ପାଇ ।
ତାହାର ସୁଖ ଲେଶ ନାହିଁ ॥୮୪
ଯାହାକୁ ହୁଅଇ ସଦୟେ ।
ସମ୍ପଦ ହରଇ ଥୋକାଏ ॥୮୫
ପୁଣି ଜାଣଇ ଯେବେ ମୋତେ ।
ନାମ ଜପଇ ହୃଦଗତେ ॥୮୬
ମୋହର ଭାବେ ଯେ ପଶଇ ।
ଜନ୍ମ-ମରଣ ତାର ନାହିଁ ॥୮୭
ଏବେ ତୁ ନିଜପୁରେ ଯାଅ ।
ମୋହର ପାଦେ ଚିତ୍ତ ଦିଅ ॥୮୮
ମୋହର ଆଜ୍ଞା ଘେନି ଶିରେ ।
ଗର୍ବ ନ ଥାଉ ତୋ' ଶରୀରେ ॥୮୯
ଇନ୍ଦ୍ରକୁ ଦେଖି ତୋଷଚିତ୍ତ ।
ସୁରଭି ନମଇ ଅଚ୍ୟୁତ ॥୯୦
ତକ୍ଷଣେ ହୃଷ୍ଟମୁଖ ହୋଇ ।
ସ୍ତୁତି କରଇ କୃଷ୍ଣେ ଚାହିଁ ॥୯୧
ହେ କୃଷ୍ଣ ତୁ ପରମଯୋଗୀ ।
ବିଶ୍ୱ ସଂସାରେ ବିଶ୍ୱଭୋଗୀ ॥୯୨
ତୁ ଆମ୍ଭ ପାଳକ ଗୋପାଳ ।
ନମସ୍ତେ ପ୍ରଭୁ ଆଦିମୂଳ ॥୯୩
ଆମ୍ଭର ଇନ୍ଦ୍ର ଅଟୁ ତୁହି ।
ତୋ' ପାଦୁଁ ଅନ୍ୟ ଗତି ନାହିଁ ॥୯୪
ଗୋରୁ-ବ୍ରାହ୍ମଣ-ଦେବଙ୍କର ।
ତୁ ନାଥ ଶରଣ ସୋଦର ॥୯୫
ବ୍ରହ୍ମାବଚନେ ମୁହିଁ ତୋତେ ।
ପୂଜିବି ଅଭିଷେକ ମତେ ॥୯୬
ତୁ ନାଥ ଗୋକୁଳର ଇନ୍ଦ୍ର ।
ନାମ ମୁଁ ଦେବଇଁ ଗୋବିନ୍ଦ ॥୯୭
ତକ୍ଷଣେ ଇନ୍ଦ୍ର ଚଳିଗଲା ।
ମେଘମାନଙ୍କୁ ଆଜ୍ଞା ଦେଲା ॥୯୮
ଐରାବତ ଦିଗପାଳେ ।
ପାରିଜାତକ ଗଙ୍ଗାଜଳେ ॥୯୯
ବ୍ରହ୍ମଣେ ମିଳି ବେଦନାଦେ ।
କୃଷ୍ଣେ ସଞ୍ଚିଲେ ଇନ୍ଦ୍ରପଦେ ॥୧୦୦
ସୁରଭି କ୍ଷୀର ବରଷିଲା ।
ଗୋବିନ୍ଦ ବୋଲି ନାମ ଦେଲା॥୧୦୧
ନାରଦ ଆଦି ବିଦ୍ୟାଧରେ ।
ତୁମ୍ବୁରୁ ଚାରଣ କିନ୍ନରେ ॥୧୦୨
ଗୀତବିନୋଦେ ନୃତ୍ୟରଙ୍ଗେ ।
ସୁସ୍ୱରେ ବାଦ୍ୟନାଦ ସଙ୍ଗେ ॥୧୦୩
ପୁଷ୍ପ ବରଷି ସ୍ତୁତି ଭଣି ।
ସୁନ୍ଦର ଦିଶଇ ଧରଣୀ ॥୧୦୪
ସୁରଭି ପୟେ ଇନ୍ଦ୍ର ଜଳେ ।
ଆନନ୍ଦ ହୋଇଲେ ସକଳେ ॥୧୦୫
ମେଦିନୀ କ୍ଷୀର ନୀର ପାଇ ।
ବରଷାକାଳ ପ୍ରାୟ ହୋଇ ॥୧୦୬
ସରସ ହୋଇ ମହୀରୁହେ ।
ମଧୁ ବରଷିଲେ ଥୋକାଏ ॥୧୦୭
ଶସ୍ୟ ହୋଇଲା ଅକର୍ଷଣେ ।
ମଣିଏ ଉପୁଜିଲେ ବନେ ॥୧୦୮
ଗୋବିନ୍ଦ ନାମ ଶୁଣି କର୍ଣ୍ଣେ ।
ହିଂସା ଛାଡ଼ିଲେ ପଶୁଗଣେ ॥୧୦୯
ଗୋବିନ୍ଦ ଆଜ୍ଞା ଘେନି ଶିରେ।
ଦେବେ ଚଳିଲେ ନିଜପୁରେ ॥୧୧୦
ସୁରଭି ଗଲା ତୋଷ ହୋଇ ।
ଗୋବିନ୍ଦପାଦ ହୃଦେ ଧ୍ୟାୟି ॥୧୧୧
ସୁଜନେ ଗୋବିନ୍ଦର ପାଦେ ।
ଚିତ୍ତକୁ ମଜାଅ ଆନନ୍ଦେ ॥୧୧୨
ଗୋବିନ୍ଦ ନାମ ଭେଳା କରି ।
ହେଲେ ତରିବ ଭବବାରି ॥୧୧୩
ସେ ହରି କରୁଣା ସାଗର ।
ନିର୍ଦ୍ଦୟାଭାବ ନାହିଁ ତା'ର ॥୧୧୪
ବୋଲଇ ଦାସ ଜଗନ୍ନାଥ ।
ଗୋବିନ୍ଦପାଦେ ଦେଇ ଚିତ୍ତ ॥୧୧୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଇନ୍ଦ୍ରସ୍ତୁତିନାମ
ଅଷ୍ଟାବିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଊନତ୍ରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ରାଜରଷି ।
ନନ୍ଦ ଯେ କଲେ ଏକାଦଶୀ ॥୧
ପୂଜା କରାଇ ଚକ୍ରଧର ।
ରାତ୍ରେ ହୋଇଲେ ଉଜାଗର ॥୨
ଉଚ୍ଛୁର ପାରଣାର ବେଳା ।
ଯମୁନା ରାତ୍ର ଥାଉଁଗଲା ॥୩
ବରୁଣ ରାଜା ତାହା ଜାଣି ।
ଦୂତ ପେଷିଲା ପରିମାଣି ॥୪
ବୋଲଇ ଆଣ ହୋ ନନ୍ଦକୁ ।
ଏଠାରେ ଦେଖିବା କୃଷ୍ଣଙ୍କୁ ॥୫
ଆଜ୍ଞା ପ୍ରମାଣେ ଦୂତ ଗଲେ ।
ଯମୁନାଜଳେ ଲୁଚିଥିଲେ ॥୬
ଏମନ୍ତ ସମୟରେ ନନ୍ଦ ।
ଯମୁନା ସ୍ନାହାନେ ଆନନ୍ଦ ॥୭
ଡ଼ାଳ କଠଉ ବସ୍ତ୍ର କୂଳେ ।
ଥୋଇ ପଶିଲା ଯାଇ ଜଳେ ॥୮
ବରୁଣ ଦୂତେ ଲୁଚିଥିଲେ ।
ନନ୍ଦକୁ ଯାଇଣ ଧଇଲେ ॥୯
ନନ୍ଦ ବୋଲଇ ନାହିଁ ଦୋଷ ।
କାହାକୁ କଲି ଅବା କିସ ॥୧୦
କିପାଇଁ ଧରିନିଅ ମୋତେ ।
ଜାଣିଲେ ଯିବଇଁ ପରତେ ॥୧୧
ଗୋବିନ୍ଦ ମୋହର ତନୟ ।
ଧନକୁ ମୋର ନାହିଁ ଭୟ ॥୧୨
ଯେତେ ଲୋଡ଼ିବ ଧନ ଦେବି ।
ଦୋଷ କହିଲେ ମୁଁ ଜାଣିବି ॥୧୩
ନନ୍ଦର ବୋଲ ନ ଶୁଣିଲେ ।
ଦୂତେ ଯେ ଧରି ଘେନିଗଲେ ॥୧୪
ନନ୍ଦର ଧରି ବେନିକର ।
ମିଳିଲେ ବରୁଣ ଛାମୁର ॥୧୫

ଦେଖି ବରୁଣ ତୋଷ ହୋଇ ।
ନନ୍ଦକୁ ଆସନେ ବସାଇ ॥୧୬
ବୋଲଇ ନିସ୍ତରିଲି ଆଜ ।
ଏବେ ଦେଖିବି ଦେବରାଜ ॥୧୭
ଅନେକ ପୂଜା ସନମାନ ।
ନନ୍ଦକୁ କରଇ ବରୁଣ ॥୧୮
ପୂଜା ଗୌରବେ ନନ୍ଦ ରହି ।
ଏଣେ ଆଦିତ୍ୟ ଉଦେ ହୋଇ ॥୧୯
ଅମୃତ ପାକ ଯେ ସମ୍ଭାଇ ।
ଯଶୋଦା ଛନ୍ତି ବାଟ ଚାହିଁ ॥୨୦
ଅପାର ହୋଇଲାଣି ବେଳ ।
ରନ୍ଧନ ହୋଇଲା ଶୀତଳ ॥୨୧
ମନ ବଚନେ ଯଶୋବନ୍ତୀ ।
ଯେସନେ ଅନାଏ ଯୁବତୀ ॥୨୨
ବାରତା ନ ପାଇଲେ ଯହୁଁ ।
ମନ ଚଞ୍ଚଳ କଲେ ତହୁଁ ॥୨୩
ଏବେ ହେଁ ନଇଲେଟି ନନ୍ଦ ।
କି ଅବା ପଡ଼ିଲା ପ୍ରମାଦ ॥୨୪
ନନ୍ଦର କଲା ଯେତେ ଗୁଣ ।
ସୁମରି କରଇ କାରୁଣ୍ୟ ॥୨୫
ନନ୍ଦକୁ ନ ଦେଖି ଗୋପାଳେ ।
କାଳିନ୍ଦୀ ନିକଟେ ମିଳିଲେ ॥୨୬
ସ୍ନାନଶକୁନ ଦେଖି କୂଳେ ।
ଖୋଜନ୍ତି ଯାଇ ଜଳସ୍ଥଳେ ॥୨୭
ନ ଦେଖି ଅତି ଶୋକଭରେ ।
କହିଲେ ଯଶୋଦା ଆଗରେ ॥୨୮
ଯଶୋଦା ଶୁଣି ମୋହଗଲା ।
ନିଚେଷ୍ଟେ ଭୂମିରେ ଶୋଇଲା ॥୨୯
ଗୋପୀଏ ମିଳିଲେ ତୁରିତେ ।
ତୋଳି ଧଇଲେ କୃଷ୍ଣମାତେ ॥୩୦
ଉଠି ଲୋଡ଼ନ୍ତି ଯଶୋବନ୍ତୀ ।
ରୋଦନ୍ତି ଗୋକୁଳ ଯୁବତୀ ॥୩୧

ଉଚ୍ଚେ ରୋଦନ୍ତି ଗୋପପୁର ।
ନନ୍ଦକୁ ଗିଳିଲା କୁମ୍ଭୀର ॥୩୨
ଗୋପାଳେ ଧାଇଁ ଅତି ଖରେ ।
କହିଲେ ଗୋବିନ୍ଦ ଛାମୁରେ ॥୩୩
ଶୁଣି ଚକିତ ଭାବଗ୍ରାହୀ ।
କହନ୍ତି ରାମଙ୍କୁ ଅନାଇଁ ॥୩୪
ପିତାଙ୍କୁ ନେଇଛି ବରୁଣ ।
ପୂଜିବ ମୋହର ଚରଣ ॥୩୫
ଏମନ୍ତେ ଧାଇଁ ବେନିଭାଇ ।
ଯମୁନାତଟେ ହେଲେ ଯାଇ ॥୩୬
ଦେଖି ଧାମନ୍ତି ଯଶୋବନ୍ତୀ ।
ଯେସନେ ଅନାଥ ଯୁବତୀ ॥୩୭
ନନ୍ଦର କଲା ଯେତେ ଗୁଣ ।
ସୁମରି କରଇ କାରୁଣ୍ୟ ॥୩୮
ବୋଲଇ କୃଷ୍ଣମୁଖ ଚାହିଁ ।
ଅନାଥ ହୋଇଲି ତ ମୁହିଁ ॥୩୯
କୃଷ୍ଣ କହନ୍ତି ଶୁଣ ମାତ ।
ଏକ୍ଷଣି ଆଣିବି ମୁଁ ତାତ ॥୪୦
ଏଥକୁ କାନ୍ଦ କାହିଁପାଇଁ ।
ମୁହିଁ ଆଣିବି ତାତ ଯାଇ ॥୪୧
ରାମଙ୍କୁ ବୋଲନ୍ତି ଅଚ୍ୟୁତ ।
ତୁ ସ୍ୱାମୀ ରହିଥାଅ ଏଥ ॥୪୨
ମୁହିଁ ପିତାଙ୍କୁ ଆଣେ ଯାଇ ।
ବୋଲନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥୪୩
ସମସ୍ତେ ଯାଅ ନିଜ ଘରେ ।
କହି ଚଳିଲେ କୃଷ୍ଣ ଖରେ ॥୪୪
ବରୁଣପୁରେ ଦଇତ୍ୟାରି ।
ମିଳିଲେ ନିଜ ରୂପ ଧରି ॥୪୫
ଦେଖି ସାନନ୍ଦ ଜଳରାଜା ।
କୃଷ୍ଣଚରଣେ କଲା ପୂଜା ॥୪୬
ବିବିଧମତେ ଉପହାର ।
ଜାଣଇଁ ପୂଜାର ବେଭାର ॥୪୭

Dr. Sudhanshu Sekhar Mishra

ଅନେକ ମଣିରତ୍ନ ଦେଇ ।
ପୂଜା କରଇ ଜଳସାଇଁ ॥୪୮

ବନ୍ଦଇ କୃଷ୍ଣର ଚରଣେ ।
କୁଟୁମ୍ବ ଘେନି ପ୍ରଦକ୍ଷିଣେ ॥୪୯

ପୂଜି ପଡ଼ିଲା କୃଷ୍ଣପାଦେ ।
ବୋଲଇ ଶୋକ ଗଦଗଦେ ॥୫୦

ଆଜ ଜୀବନ ମୋର ଧନ୍ୟ ।
ଦେଖିଲି ପ୍ରଭୁ ନିରଞ୍ଜନ ॥୫୧

ସୁତ-କୁଟୁମ୍ବ-ଘରଦ୍ୱାର ।
ପବିତ୍ର ହୋଇଲା ମୋହର ॥୫୨

ଯାହାର ପାଦରଜ ପାଇ ।
ଜନ୍ମ ମରଣ ଭୟ ନାହିଁ ॥୫୩

ବ୍ରହ୍ମା ଶଙ୍କର ଯା'ର ନିତ୍ୟେ ।
ନାମ ଜପନ୍ତି ହୃଦଗତେ ॥୫୪

ତୋହର ପାଦେ ଧ୍ୟାନ କରି ।
ସୁଖେ ତରନ୍ତି ଭବବାରି ॥୫୫

ଅରୂପ ରୂପରାଶି ହୋଇ ।
ମନୁଷ୍ୟ ଦେହେ ବେନି ଭାଇ ॥୫୬

ଯେ ରୂପ ଦେଖିବାର ପାଇଁ ।
ନିରତେ ହୃଦରେ ଗୁଣଇ ॥୫୭

ବିଚାରେଁ ନନ୍ଦକୁ ଆଣିବି ।
ଗୋବିନ୍ଦ ଚରଣେ ପୂଜିବି ॥୫୮

ଭୋ ଦେବ ବାଞ୍ଛାକଳ୍ପତରୁ ।
ତୋ'ର ମହିମା ମହାମେରୁ ॥୫୯

ଯେ ଯାହା ମନେ ତହିଁ ବାଞ୍ଛି ।
ତୁ ତାହା ଦେଉ ଶିରୀବତ୍ସି ॥୬୦

ମୋହର ମନବାଞ୍ଛା ପୁରି ।
ଚରଣେ ଦେଖିଲି ମୁରାରି ॥୬୧

ଭୋ ନାଥ ଗର୍ବ ବହି ମୁହିଁ ।
ତୋର ପିତାକୁ ଆଣିଲଇଁ ॥୬୨

ତୋତେ ଦେଖିବା ମୋର ସଧ ।
ଭୋ ନାଥ କଲି ଅପରାଧ ॥୬୩

କ୍ଷମାସାଗର ନରହରି ।
ଶରଣସୋଦର ମୁରାରି ॥୬୪

ବରୁଣେ ଚାହିଁଣ ଶ୍ରୀବତ୍ସି ।
ବୋଇଲେ ତାତ କାହିଁ ଅଛି ॥୬୫

ଶୁଣି ଯାନନ୍ଦ ଜଳପତି ।
ନନ୍ଦକୁ ଆଣିଲା ତଡ଼ତି ॥୬୬

ବୋଇଲେ ଶିରେ ଦେଇ କର ।
ଭୋ ନାଥ ନିଅ ତୋ' ପିଅର ॥୬୭

ବରୁଣଭାବ ହୃଦେ ଘେନି ।
ଦାସବତ୍ସଳ ଅନ୍ତର୍ଯାମୀ ॥୬୮

ନନ୍ଦର କରେ ଦେଇ ହସ୍ତ ।
ଗୋପେ ମିଳିଲେ ଗୋପୀନାଥ ॥୬୯

ଗୋପାଳେ ଦେଖିଣ ହରଷ ।
ଆସି ମିଳିଲେ ନନ୍ଦପାଶ ॥୭୦

ନନ୍ଦକୁ ପୁଚ୍ଛନ୍ତି ବାରତା ।
ଯଶୋଦା ଛାଡ଼ିଲାକ ଚିନ୍ତା ॥୭୧

ନନ୍ଦ ବୋଲଇ ମୋତେ ହରି ।
ନେଲା ଯେ ଜଳ ଅଧିକାରୀ ॥୭୨

ଦେଖିଲା କୃଷ୍ଣର ବଦନ ।
ଆଣି ସମର୍ପି ତତ୍‌କ୍ଷଣ ॥୭୩

ଗୋପେ ବୋଲନ୍ତି ତାହା ଶୁଣି ।
ନନ୍ଦ-ବଚନ ପରିମାଣି ॥୭୪

ବୋଲନ୍ତି ବରୁଣ ଯେ ନେଲା ।
କୃଷ୍ଣଙ୍କୁ ଦେଖି ଛାଡ଼ିଦେଲା ॥୭୫

ନୋହିଲେ ମରନ୍ତା ପିଅର ।
ଭାଗ୍ୟ ଦିଶିଲା ଗୋପପୁର ॥୭୬

ନନ୍ଦ ଆନନ୍ଦମନ ହୋଇ ।
ବୋଲନ୍ତି ଗୋପାଳଙ୍କୁ ଚାହିଁ ॥୭୭

ଦେଖିଲି ବରୁଣ ଭୁବନ ।
ନିର୍ମଳ ହୋଇଲା ନୟନ ॥୭୮

ଗୋପେ ବୋଲନ୍ତି ତାହା ଶୁଣି ।
ନନ୍ଦବଚନ ମନେ ଗୁଣି ॥୭୯

ତୁ ଭାଗ୍ୟବନ୍ତ ଗୋପବୀର ।
ଯାର କୁମର ଦାମୋଦର ॥୮୦

ଆମ୍ଭେ ଦେଖିବୁ ତାହା କାହିଁ ।
ମର୍ତ୍ତ୍ୟେ ମାନବ ଦେହ ବହି ॥୮୧

ଆମ୍ଭର ଗତି ତୋ' କୁମର ।
ଗୋକୁଳ ଶରଣ ତାହାର ॥୮୨

ଗୋପଙ୍କ ମନ କୃଷ୍ଣ ଜାଣି ।
ମାୟା ମୋହିଲେ ଚକ୍ରପାଣି ॥୮୩

ବୋଲନ୍ତି ଜୀବର ବେଭାର ।
ଭ୍ରମଇଁ ମାୟାଜଡ଼ ଘୋର ॥୮୪

ଆପଣା ଗତି ନ ଜାଣଇ ।
ନାନା ଯୋନିରେ ଦେହ ବହି ॥୮୫

ଗୋପେ ମୋସଙ୍ଗେ ଭାବକଲେ ।
ଏହାଙ୍କୁ ଦେଖାଇବି ଭଲେ ॥୮୬

ତକ୍ଷଣେ ଦେଖାଇଲେ ନେଇ ।
ବରୁଣ ପୁର ଭାବଗ୍ରାହୀ ॥୮୭

ପୁଣି ଦେଖାଇ ନିଜପୁର ।
ଯେ ବଇକୁଣ୍ଠର ବେଭାର ॥୮୮

ଅନନ୍ତ ସତ୍ୟଜ୍ଞାନ ଜ୍ୟୋତି ।
ବ୍ରହ୍ମାଶଙ୍କର ଯାହା ଚିନ୍ତି ॥୮୯

ଗୋପ-ଗୋପାଳେ କରି ଦୟା ।
ମାୟାରେ ଦେଖାଇଲେ ତାହା ॥୯୦

ମାୟା ଛାଡ଼ିଲେ ଭଗବାନ ।
ଗୋପାଳେ ପାଇଲେ ଚେତନ ॥୯୧

ଶୁଣ ପରୀକ୍ଷ ପୁଣ୍ୟଦେହା ।
ଅକ୍ରୁର ଦେଖିବଟି ତାହା ॥୯୨

ଚେତନା ପାଇଲେ ଗୋପାଳେ ।
ଆନନ୍ଦେ କୃଷ୍ଣ କଲେ କୋଳେ ॥୯୩

ହରି ମହିମା ଗୋପେ ଦେଖି ।
ଆନନ୍ଦେ ନୟନେ ନିରେଖି ॥୯୪

ଚକିତେ ନିଜପୁରେ ଯାଇ ।
କହନ୍ତି ଗୋପୀଙ୍କି ବସାଇ ॥୯୫

ସେ ଗୋପୀ-ଗୋପାଳଙ୍କ ପାୟେ ।
ସୁଜନଜନେ କର ଲୟେ ॥୯୬

କୃଷ୍ଣ କରିବେ ମୋତେ ତ୍ରାହି ।
କୃଷ୍ଣହୁଁ ଅନ୍ୟଗତି ନାହିଁ ॥୯୭

କୃଷ୍ଣ ଚରଣେ ଅବିରତ ।
ନମଇଁ ଦାସ ଜଗନ୍ନାଥ ॥୯୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଊନତ୍ରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ତ୍ରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ ।
କୃଷ୍ଣଚରିତ ଭାଗବତ ॥୧
ଶରଦକାଳର ଯେ ଶଶୀ ।
ମଲ୍ଲିକାପୁଷ୍ପ ପ୍ରାୟେ ଦିଶି ॥୨
ଦେଖି ସାନନ୍ଦ ଦାମୋଦର ।
ମାୟାମନୁଷ୍ୟ ମାୟାଧର ॥୩
ଗୋବିନ୍ଦ ବିଚାରନ୍ତି ମନେ ।
ଆଜ ରମିବା ବୃନ୍ଦାବନେ ॥୪
ଷୋଳସହସ୍ର ଗୋପନାରୀ ।
ମୋତେ ବରିଲେ ତପ କରି ॥୫
ମୁଁ ତାଙ୍କ ପୂରାଇବି ଆଶ ।
ସେ ମୋର ଭକତ ବିଶ୍ୱାସ ॥୬
ଅନେକ ଜନ୍ମେ ତପ କରି ।
ଏବେ ହୋଇଲେ ଗୋପନାରୀ ॥୭
ରମିଣ ଦେବି ନିଜପୁର ।
ଆଜ ମୁଁ କରିବି ନିସ୍ତାର ॥୮
ଏତେ ବିଚାରି ବନମାଳୀ ।
ଘେନିଲେ ବିରହ ମୁରଲୀ ॥୯
ସ୍ୱଭାବେ ଶରଦର କାଳ ।
ପବନ ବହେ ପରିମଳ ॥୧୦
ଫୁଟିଲେ ଜଳସ୍ଥଳେ ଫୁଲ ।
ସୁଗନ୍ଧ ଶୀତଳ ଅମୂଲ୍ୟ ॥୧୧
ଗଗନେ ପ୍ରକାଶିଲା ଶଶୀ ।
ନିର୍ମଳ ବିରାଜଇ ନିଶି ॥୧୨
ଚନ୍ଦ୍ରମଣ୍ଡଳ ଅଖଣ୍ଡିତ ।
ଦେଖି ଉଷତ ଗୋପୀନାଥ ॥୧୩
ଲକ୍ଷ୍ମୀର ମୁଖପ୍ରାୟ ଦିଶି ।
କିରଣେ ଦଶଦିଗ ତୋଷି ॥୧୪
କାଳିନ୍ଦୀକୂଳେ ବ୍ରହ୍ମରାଶି ।
କଦମ୍ବ ତରୁ ମୂଳେ ବସି ॥୧୫
ରଜନୀ ଚିରକାଳ କଲେ ।
ମୟା ପଟଳ ପ୍ରକାଶିଲେ ॥୧୬
ବୋଇଲେ ହୁଅ ବ୍ରହ୍ମନିଶି ।
ସହସ୍ରଯୁଗ ଯାହା ଘୋଷି ॥୧୭
ତ୍ରିଭଙ୍ଗ ଛନ୍ଦେ ହୋଇ ଉଭା ।
ଚାରୁ ଅଧରେ ବେଣୁ ଶୋଭା ॥୧୮
ଗୋପୀଙ୍କ ନାମ ଧରି ଧୀରେ ।
ମୁରଲୀ ଡ଼ାକଇ ସୁସ୍ୱରେ ॥୧୯
ଗୋପୀଏ ଥିଲେ ନିଜ ପୁରେ ।
ନାଦ ଶୁଣିଲେ ଯେଝା ଘରେ ॥୨୦
ଦଣ୍ଡେ ଶୁଣିଲେ ସ୍ଥିର କରି ।
ବେଣୁ ଡ଼ାକଇ ନାମ ଧରି ॥୨୧
ଶୁଣି ହୋଇଲେ ଛନଛନ ।
ବ୍ୟାପାରେ ନ ଲାଗିଲା ମନ ॥୨୨
କର ଚରଣ ନଚଳଇ ।
ମଦନେ କମ୍ପୁଅଛି ଦେହୀ ॥୨୩
ନାଦେ ମୋହିଲେ ବନମାଳୀ ।
ଷୋଳସହସ୍ର ଗୋପବାଳୀ ॥୨୪
ଏକକୁ ଆରେକ ଲୁଚାଇ ।
ଧାଇଁଲେ ଅସମ୍ଭାଳ ହୋଇ ॥୨୫
ବୋଲନ୍ତି ନ ପୁଣ ଏକାଣି ।
ମୋତେ ହୋଇବ ସପତଣୀ ॥୨୬
ଆଗେ ମୁଁ ଯିବି ବୃନ୍ଦାବନେ ।
ରମିବି ନନ୍ଦର ନନ୍ଦନେ ॥୨୭
ଦେଖିବି ନୟନ ପୂରାଇ ।
ମୋହର ନାମେ ବେଣୁ ବାଇ ॥୨୮
କିମ୍ବା ଡ଼ାକଇ ରାତ୍ରକାଳେ ।
ଉଭାରି କଦମ୍ବର ମୂଳେ ॥୨୯
ଜଳକ୍ରୀଡ଼ାର ବେଳେ ଗଲା ।
ଆମ୍ଭର ବସ୍ତ୍ର ଚୋରି କଲା ॥୩୦
କଦମ୍ବବୃକ୍ଷେ ନେଇ ଥୋଇ ।
ମାଗିଲେ ବସ୍ତ୍ର ନ ଦିଅଇ ॥୩୧
ଉଲଗ୍ନେ ଜଳମଧ୍ୟେ ଥାଇ ।
ଶୀତେ କମ୍ପଇ ଆମ୍ଭ ଦେହୀ ॥୩୨
ଅନେକ ବିନୟ ହୋଇଲୁ ।
ଦନ୍ତରେ ତିରଣ ଧଇଲୁ ॥୩୩
ବୋଇଲା ଉଠିଆସ ଜଳୁ ।
ଯେ ଯାହା ବସ୍ତ୍ର ନିଅ ଡ଼ାଳୁ ॥୩୪
ଯେ ଯାହା ବସ୍ତ୍ର ଚିହ୍ନି ନିଅ ।
ନୋହିଲେ ଜଳମଧ୍ୟେ ଥାଅ ॥୩୫
ତା'ର ବଚନେ ଲଜ୍ଜା ଛାଡ଼ି ।
ଆଣି ପିନ୍ଧିଲୁ ଯେଝା ଶାଢ଼ୀ ॥୩୬
ଆମ୍ଭର ଶୁଦ୍ଧମନ ଜାଣି ।
ହସି ବୋଇଲେ ବେଣୁ ପାଣି ॥୩୭
ଦେବତା ପୂଜି ନଦୀତୀରେ ।
ମୋତେ ଯେ ବରିଅଛ ବରେ ॥୩୮
ସେ କଥା କରିବଇଁ ମୁହିଁ ।
ନିୟମ କଲେ ବେଣୁ ଛୁଇଁ ॥୩୯
ସେ କଥା ସୁମରିଲେ ଆଜ ।
ଆମ୍ଭର ଛଡ଼ାଇବେ ଲାଜ ॥୪୦
ପତି ତନୟ ଛନ୍ତି କୋଳେ ।
କେମନ୍ତେ ଯିବୁ ରାତ୍ରକାଳେ ॥୪୧
ନ ଗଲେ ନ ରହେ ଜୀବନ ।
କାଳ ହୋଇଲା ବେଣୁ ସ୍ୱନ ॥୪୨
ଏମନ୍ତେ ହୋଇଲେ ବାହାର ।
ମଦନେ କମ୍ପଇ ଶରୀର ॥୪୩
କେ ଗୋପୀ ଦୁହୁଁଥିଲା ଗାଈ ।
ବାଛୁରୀ ବାନ୍ଧି ଛନ୍ଦ ଦେଇ ॥୪୪
ମୁରଲୀ ଶୁଣି କର୍ଣ୍ଣମୂଳେ ।
ଦୁହୁଣୀ ପକାଇଲା ତଳେ ॥୪୫
ମୁରଲୀ ଧ୍ୱନି ଶୁଣି ବେଗେ ।
ଧାଇଁଲା ବୃନ୍ଦାବନ ଲାଗେ ॥୪୬
କେ ବସି କାଢୁଥିଲା ସର ।
ମୁରଲୀ ଶୁଣିଲା ସୁସ୍ୱର ॥୪୭
ଡ଼ାକଇ ତା'ର ନାମ ଧରି ।
ବେଗେ ଧାଇଁଲା ଗୋପନାରୀ ॥୪୮

Dr. Sudhanshu Sekhar Mishra

କେ କରୁଥିଲା ଦଧି ଯୋଗ ।
ଶୁଣି ଧାଇଁଲା ବେଗବେଗ ॥୪୯
କେ ଦୁଧ ଚୁଲିରେ ବସାଇ ।
ମୁରଲୀ ଶୁଣି ଗଲା ଧାଇଁ ॥୫୦
କେ କୋଳେ ବାଳକ ବସାଇ ।
ଦୁଧ ପିଆଉଁ ଗୀତ ଗାଇ ॥୫୧
କର୍ଣ୍ଣେ ଶୁଣିଲା ବେଣୁଧ୍ୱନି ।
ଡ଼ାକଇ ତା'ର ନାମ ଘେନି ॥୫୨
ବାଳକ ପକାଇଲା ତଳେ ।
ଧାଇଁଲା ମଦନ ବିକଳେ ॥୫୩
ସ୍ୱାମୀ ଶୟନସ୍ଥାନେ ଥାଇ ।
କେ ଗୋପୀ ଚରଣ ଚାପଇ ॥୫୪
ମୁରଲୀ ତା'ର ନାମ ଧରି ।
ଡାକଇ ଆସ ବେଗ କରି ॥୫୫
ପତି ଚରଣ ଥୋଇ ତଳେ ।
ବେଗେ ଧାଇଁଲା କାମଭୋଳେ ॥୫୬
କେ ବସି ଭୁଞ୍ଜୁଥିଲା ଅନ୍ନ ।
କର୍ଣ୍ଣେ ଶୁଣିଲା ବେଣୁସ୍ୱନ ॥୫୭
ବୋଲଇ ଆସ ତୁହି ବେଗେ ।
କୃଷ୍ଣଙ୍କୁ ଦେଖ ବନଭାଗେ ॥୫୮
ଶୁଣି ଭୋଜନ ଉପେକ୍ଷିଲା ।
ହସ୍ତ ପଖାଳି ନ ପାରିଲା ॥୫୯
ବେଗେ ଧାଇଁଲା ବୃନ୍ଦାବନ ।
ଯେଣେ ଶୁଭଇ ବେଣୁସ୍ୱନ ॥୬୦
କେ ବସି ଲିପୁଥିଲା ଘର ।
ମୁରଲୀ ଶୁଣିଲା କର୍ଣ୍ଣର ॥୬୧
ବୋଲଇ ଆସ ତୁ ବହନେ ।
ହରିଙ୍କି ରମ ବୃନ୍ଦାବନେ ॥୬୨
ଘର ବ୍ୟାପାର ଉପେକ୍ଷିଲା ।
ବେଗେ ସେ ବୃନ୍ଦାବନେ ଗଲା ॥୬୩
କେ ବସିଥିଲା ନିଜ ଘରେ ।
କଜ୍ଜ୍ୱଳପାତି ଘେନି କରେ ॥୬୪
ଏକ ଲୋଚନେ ରଞ୍ଜିଥିଲା ।
ତା' ନାମେ ମୁରଲୀ ଡ଼ାକିଲା ॥୬୫
ଧାମଇଁ ଅସମ୍ଭାଳ ହୋଇ ।
କଜ୍ଜ୍ୱଳପାତି କରେ ଲଇଁ ॥୬୬

କେ ଗୋପୀ ବସ୍ତ୍ରତଳେ ଥୋଇ ।
କୁଙ୍କୁମ ଶରୀରେ ଲେପଇ ॥୬୭
କର୍ଣ୍ଣେ ଶୁଣିଲା ବେଣୁଧ୍ୱନି ।
ଉଠିଲା କରେ ବସ୍ତ୍ର ଘେନି ॥୬୮
ଜ୍ଞାନ ହାରିଲା କାମଭୋଳେ ।
ପିନ୍ଧିଲା କନ୍ଧରୁ ଅଞ୍ଚଳେ ॥୬୯
କେ ଗୋପୀ କୃଷ୍ଣନାମ ଧରି ।
ଗୃହ ବ୍ୟାପାର ଗୃହେ କରି ॥୭୦
ଶୁଣିଲା କୃଷ୍ଣ-ବେଣୁନାଦ ।
ମଦନବାଣେ ତନୁ ଖେଦ ॥୭୧
କେହୁ ତାମ୍ବୁଳ ଭୁଞ୍ଜୁଥିଲା ।
ଅର୍ଦ୍ଧେକ ହସ୍ତରେ ଘେନିଲା ॥୭୨
କେହୁ ପାହୁଡ଼ ଗୋଡ଼ୁ କାଢ଼ି ।
ଲେଉଟି ନ ପାରିଲା ଭରି ॥୭୩
କେହି ତିଳକ ଘେନୁଥିଲା ।
ଅର୍ଦ୍ଧେ ତିଳକ ସେ ଲିହିଲା ॥୭୪
କେ ଗୋପୀ ରତ୍ନଚାପସରି ।
ଚରଣେ ବାନ୍ଧିଲା ପାସୋରି ॥୭୫
ମୁରଲୀନାଦ ଅନୁସରି ।
ବନେ ଧାଇଁଲା ଗୋପନାରୀ ॥୭୬
ଏମନ୍ତେ କହିବଇଁ କେତେ ।
ଷୋଳସହସ୍ର ଯେଝାମତେ ॥୭୭
କାହାର ସ୍ୱାମୀ ବଳବନ୍ତ ।
ଆଗରେ ଓଗାଳିଲା ପଥ ॥୭୮
କାହାର ପୁତ୍ର ଗୋଡ଼ାଇଲା ।
ଶ୍ୱଶୁର ଖୁଡୁତା ମଉଳା ॥୭୯
ଭାଇ ଭଣଜା ଇଷ୍ଟ ମିତ୍ର ।
ଆଗରୁ ଓଗାଳିଲେ ପଥ ॥୮୦
ବୋଲନ୍ତି ଗୋପୀଙ୍କି ଅନାଇ ।
ଏ କଥା ଉଚିତ ନୁହଁଇ ॥୮୧
ରଜନୀକାଳେ ଯାଅ ବନ ।
ଲଜ୍ଜା କି ଛାଡ଼ିଲା ବଦନ ॥୮୨
ଶୁଣି ବୋଲନ୍ତି ଗୋପବାଳୀ ।
ବନେ ବିଜୟ ବନମାଳୀ ॥୮୩
ଶୁଣ ଶୁଭଇ ବେଣୁନାଦ ।
ମୁରଲୀ ବଢ଼ଇ ଆନନ୍ଦ ॥୮୪

କ୍ଷଣେ ମୁରଲୀ ନାଦ ଶୁଣି ।
ଆମ୍ଭେ ଆସିବୁ ଏହିକ୍ଷଣି ॥୮୫
ଦାସବତ୍ସଳ ଭଗବାନ ।
ମୋହିଲେ ଗୋପାଳଙ୍କ ମନ ॥୮୬
ତୁଣ୍ଡରୁ ନ ଇଲା ଉତ୍ତର ।
ବାହୁଡ଼ିଗଲେ ଯେଝା ଘର ॥୮୭
ଏକ ଗୋପିକା କ୍ଷୀଣଦେହୀ ।
ଗହଳେ ନ ପାରିଲା ଯାଇ ॥୮୮
ତାହାର ସ୍ୱାମୀ କର ଧରି ।
ଘରେ ଆଣିଲା ନିଜ ନାରୀ ॥୮୯
ଗମ୍ଭାରୀ ଭିତରେ ବାନ୍ଧିଲା ।
ଅନେକ ମାଡ଼ ହିଁ ମାଇଲା ॥୯୦
ଦ୍ୱାରେ କବାଟ ଦେଲା କିଳି ।
ବିକଳେ କାନ୍ଦଇ ଗୁଆଳୀ ॥୯୧
ମୁରଲୀ ତା'ର ନାମ ଧରି ।
ଡ଼ାକଇ ଆସ ବେଗକରି ॥୯୨
ସେ ଗୋପୀ ବନ୍ଧନରେ ପଡ଼ି ।
କାନ୍ଦଇ ସ୍ତମ୍ଭେ ମୁଣ୍ଡକୋଡ଼ି ॥୯୩
କୃଷ୍ଣର ଦେହେ ଦେଇ ମନ ।
କ୍ଷଣକ୍ଷଣକେ ଅଚେତନ ॥୯୪
ସହି ନ ପାରି ତାପଭର ।
ବେନିଲୋଚନ କଲା ସ୍ଥିର ॥୯୫
ନୟନ ପିତୁଳି ଲେଉଟି ।
ଭିତରେ କଲା ଏକଦୃଷ୍ଟି ॥୯୬
ଧ୍ୟାନେ ଦେଖିଲା ଭଗବାନ ।
ନିର୍ଭରେ କଲା ଆଲିଙ୍ଗନ ॥୯୭
ଡ଼ାକିଲା କୃଷ୍ଣ ତ୍ରାହି ତ୍ରାହି ।
ପ୍ରାଣ ଛାଡ଼ିଲା ଚୁମ୍ବ ଦେଇ ॥୯୮
ଜୀବନ ଛାଡ଼ି ରସଭରେ ।
ପଶିଲା ଗୋବିନ୍ଦ ଶରୀରେ ॥୯୯
ଶୁଣି ପରୀକ୍ଷ ଦଣ୍ଡଧାରୀ ।
ମୁନି ଚରଣତଳେ ପଡ଼ି ॥୧୦୦
ବୋଲଇ ହେଲି କୃତକୃତ୍ୟ ।
ଶୁଣି ଚରିତ ଭାଗବତ ॥୧୦୧
ଭୋ ମୁନି ହୋଇଲି ଚକିତ ।
ତୁମ୍ଭେ କହିଲ ବିପରୀତ ॥୧୦୨

Dr. Sudhanshu Sekhar Mishra

ପରପୁରୁଷେ ମନ ଦେଇ ।
ଯେ ନାରୀ ଏକାନ୍ତେ ରମଇଁ ॥୧୦୩
ବିଟପୀବାଦ ହୋଇ ତାରେ ।
ନରକେ ପଡ଼ଇ ନିର୍ଭରେ ॥୧୦୪
ସେ କିମ୍ପା ଗୋବିନ୍ଦେ ପଶିଲା।
ମୋତେ ତ ସନ୍ଦେହ ଲାଗିଲା ॥୧୦୫
ସ୍ୱଭାବେ ସ୍ତିରୀ ଜନ୍ମ ହୋଇ ।
ଧର୍ମ-ଅଧର୍ମ ନ ଜାଣଇ ॥୧୦୬
ପରପୁରୁଷେ ମନ ଦେଲା ।
ସେ କିପାଁ କୃଷ୍ଣଙ୍କୁ ପାଇଲା ॥୧୦୭
ଶୁଣି ହସିଲେ ମୁନିବର ।
ବୋଲନ୍ତି ଶୁଣ ଦଣ୍ଡଧର ॥୧୦୮
ପୂର୍ବେ ମୁଁ କହିଅଛି ତୋତେ ।
ପୁରାଣ ଶିରୀଭାଗବତେ ॥୧୦୯
କୃଷ୍ଣଙ୍କୁ କରି ଶତ୍ରୁବଳ ।
ମୋକ୍ଷ ହେଇଲା ଶିଶୁପାଳ ॥୧୧୦
ଏ ଆଦି ଅରିପଣ କଲେ ।
ପଶିଲେ କୃଷ୍ଣର ଶରୀରେ ॥୧୧୧
ମିତ୍ର ସ୍ୱଭାବେ ଦାମୋଦର ।
ଏ ଆଦି ଯେତେ ମିତ୍ରବର ॥୧୧୨
ମିତ୍ର ଅଇରୀ ଯେଣୁ ନାହିଁ ।
ତରିଲେ ସୂକ୍ଷ୍ମପଦ ପାଇ ॥୧୧୩
ତାହାଙ୍କୁ ପ୍ରିୟପଣେ ସେବି ।
କିପାଁ ନୋହିବେ ମୋକ୍ଷଭାଗୀ ॥୧୧୪
ଭକତ ତାରିବାର ଆଶେ ।
ବ୍ରହ୍ମ ପ୍ରକାଶି ଅଛି ଅଂଶେ ॥୧୧୫
ନିର୍ଗୁଣ ହୋଇ ଗୁଣବନ୍ତ ।
ଦାସବତ୍ସଳ ଗୋପୀନାଥ ॥୧୧୬
ତାହାର ନାହିଁ କାମ କ୍ରୋଧ ।
ଏକଇ ସ୍ୱଭାବ ସୁହୃଦ ॥୧୧୭
ଯାହାର ମନ ହୋଏ ଲୟେ ।
ସେ ପ୍ରାଣୀ ପଶେ କୃଷ୍ଣଦେହେ ॥୧୧୮
ଏଣେ ତୁ ସନ୍ଦେହ ନ କର ।
ମହାମହିମା ଯୋଗେଶ୍ୱର ॥୧୧୯
ଏଣେ ନ କର ଖେଦଚିତ୍ତ ।
କହଇ ଶୁଣ ଭାଗବତ ॥୧୨୦

ଗୋପୀଏ ଗଲେ ରାତ୍ରକାଳେ ।
ମିଳିଲେ କଦମ୍ବର ତଳେ ॥୧୨୧
ଷୋଳସହସ୍ର ଗୋପବାଳୀ ।
ଦେଖିଲେ ପ୍ରଭୁ ବନମାଳୀ ॥୧୨୨
ନାନା କୁସୁମେ ପରିମଳ ।
ହୃଦେ ଲମ୍ବଇ ବନମାଳ ॥୧୨୩
ଗୁଞ୍ଜାରାପାଟି ତାଳୁମୂଳ ।
ଶ୍ରବଣେ ମକର କୁଣ୍ଡଳ ॥୧୨୪
ନୂପୁର କଙ୍କଣ ବିରାଜେ ।
ରତ୍ନମେଖଳା କଟିମାଝେ ॥୧୨୫
ପୀତବସନ ବେଣୁଧର ।
ନିବିଡ଼ ସୁରଙ୍ଗ ଅଧର ॥୧୨୬
କୋଟିଏ କାମ ନୋହେ ସରି।
ଦେଖି ଉଷତ ଗୋପନାରୀ ॥୧୨୭
ଅନଳ ଦେଖିଣ ପତଙ୍ଗ ।
ଯେହ୍ନେ ଧାମନ୍ତି ଉଦ୍‌ବେଗ ॥୧୨୮
ବେଢ଼ିଲେ ଶତେପୁର ହୋଇ ।
କହନ୍ତି କୃଷ୍ଣଙ୍କୁ ଅନାଇଁ ॥୧୨୯
ଗୋପୀଙ୍କି ଦେଖି ବନମାଳୀ ।
ବଦନୁ ଥୋଇଲେ ମୁରଲୀ ॥୧୩୦
କୋମଳ ମଧୁର ବଚନ ।
କହନ୍ତି ପ୍ରଭୁ ଭଗବାନ ॥୧୩୧
ଶୁଣ ଗୋ ବ୍ରଜବଧୂ ଜନେ ।
ତୁମ୍ଭେ ଅଇଲ କିପାଁ ବନେ ॥୧୩୨
ଗୋପର କହ ଭଲ କଥା ।
ନନ୍ଦ-ଯଶୋଦାଙ୍କ ବାରତା ॥୧୩୩
ଗୋପେ କି ଆପଦ ପଡ଼ିଲା ।
ମୋତେ ତ ସନ୍ଦେହ ଲାଗିଲା ॥୧୩୪
ଗୋରୁଗୋପାଳେ ନେଲେ ବାନ୍ଧି।
ତୁମ୍ଭେ ଅଇଲ ବନେ କାନ୍ଦି ॥୧୩୫
ସର୍ବ ସମ୍ପଦ କଲେ କ୍ରୁର ।
କି ଅବା ମିଳିଲେ ଅସୁର ॥୧୩୬
ଏମନ୍ତ ପ୍ରାୟ ମୁଁ ମଣଇ ।
କିପାଁ ଅଇଲ ବନେ ଧାଇଁ ॥୧୩୭
ଭଲେ ଅଇଲ ମୋ' ନିକଟେ ।
ବଣା ନୋହିଲ ବଣବାଟେ ॥୧୩୮

ପତି-ତନୟ ଛାଡ଼ି କରି ।
ଗୃହ କୀରତି ପରିହରି ॥୧୩୯
କିପାଁ ଅଇଲ ଘୋରବନ ।
ନୁହଇଁ ଉଚିତ ବିଧାନ ॥୧୪୦
ଭାଗ୍ୟେ ମୁଁ ବାଉଥିଲି ବେଣୁ ।
ମୋତେ ଭେଟିଲ ଆସି ତେଣୁ ॥୧୪୧
ରଜନୀ ହୋଇଛି ଅପାର ।
ବନ ଗହନ କୁଞ୍ଜ ଘୋର ॥୧୪୨
ବ୍ୟାଘ୍ର ଭଲ୍ଲୁକ ବନଜୀବେ ।
ତୁମ୍ଭଙ୍କୁ ଦେଖିଲେ ଖାଇବେ ॥୧୪୩
ବେଗେ ବାହୁଡ଼ିଯାଅ ଘର ।
ରଜନୀ ହେଉଛି ଉଛୁର ॥୧୪୪
ସ୍ୱଭାବେ ସ୍ତିରୀଜନ୍ମ ହୋଇ ।
ବନେ ତୁମ୍ଭର ଭୟ ନାହିଁ ॥୧୪୫
ନିଶ୍ଚେ ହୋଇବ ଆଜ ନାଶ ।
ମରଣେ କଲଟି ବିଶ୍ୱାସ ॥୧୪୬
ଯାଅ ନ ଥାଅ ବନଘୋରେ ।
ତୁମ୍ଭଙ୍କୁ ଲୋଡୁଥିବେ ଘରେ ॥୧୪୭
ମାତା ପିଅର ପୁତ୍ର ଭାଇ ।
ଲୋଡୁ ଯେ ଥିବେ ନାମ ରାଇ ॥୧୪୮
ଯେ ଯାହା ସ୍ୱାମୀ କୋପଚିତ୍ତେ ।
ଲୋଡ଼ିବେ ଘରଦ୍ୱାର ପଥେ ॥୧୪୯
ନ ପାଇ କରିବେଟି ରୋଷ ।
ତୁମ୍ଭେ ହୋଇବ ଜାତି ନାଶ ॥୧୫୦
ବନ୍ଧୁ ବାନ୍ଧବେ ତୁମ୍ଭ ଘର ।
ଅନ୍ନ ନ କରିବେ ଆହାର ॥୧୫୧
ଜଳ ହିଁ ନକରିବେ ପାନ ।
ତୁମ୍ଭେ ହୋଇବ ଜାତିହୀନ ॥୧୫୨
ନ ଜାଣି ଯେବେ ଗୋ ଅଇଲ ।
ବହନ କର ମୋର ବୋଲ ॥୧୫୩
ଦେଖିଲ ବନ ପରିମଳ ।
ନାନା କୁସୁମେ ନଦୀଜଳ ॥୧୫୪
ମଳୟ ପବନ ଶୀତଳ ।
ତରୁପଲ୍ଲବେ ଭୃଙ୍ଗମେଳ ॥୧୫୫
ବହନ ଯାଅ ଗୋପପୁର ।
ନିଜ ପତିଙ୍କି ସେବା କର ॥୧୫୬

Dr. Sudhanshu Sekhar Mishra

ଗାଈଙ୍କ ଗୋଡ଼େ ବସ୍ଥା ବାନ୍ଧି ।
ତୁମ୍ଭେ ଯେ ଦୁହୁଁଥିଲ ଛନ୍ଦି ॥୧୫୭
କ୍ଷୀର ନ ପାଇଣ ବାଛୁରୀ ।
କାନ୍ଦନ୍ତି ହମ୍ବା ରାବ କରି ॥୧୫୮
ବାଳକ ଧରିଥିଲ କୋଳେ ।
ପକାଇ ଅଇଲ ଯେ ତଳେ ॥୧୫୯
ଛିଡ଼ିଲା ଓଷ୍ଠ ଦନ୍ତ ପାଟି ।
କାନ୍ଦନ୍ତି ତୁଣ୍ଡେ ଭରି ମାଟି ॥୧୬୦
ବହନ ନିଜ ପୁରେ ଯାଅ ।
ସ୍ତନ୍ୟ ପିଆଇ ଗାଈ ଦୁହଁ ॥୧୬୧
ଯେବେ ଅଇଲ ବେଣୁ ନାଦେ ।
ମୋ' ରୂପ ଦେଖିବାର ସଧେ ॥୧୬୨
ଏବେ ଦେଖିଲ ମୋର ଦେହ ।
ଯାଅ ଗୋ ଦଣ୍ଡେ ହେଁ ନ ରହ ॥୧୬୩
ସ୍ୱାମୀଙ୍କ ସଙ୍ଗେ ପ୍ରୀତିକର ।
ଉଚିତ ଧର୍ମ ଗୋ ତୁମ୍ଭର ॥୧୬୪
ସ୍ୱାମୀର ଯେତେ ଇଷ୍ଟଜନ ।
ବାଳତନୟଙ୍କ ପୋଷଣ ॥୧୬୫
ଏ ନିତ୍ୟକର୍ମ ଗୋ ତୁମ୍ଭର ।
ପୁଣି ବୋଲନ୍ତି ବେଣୁଧର ॥୧୬୬
ପୂର୍ବ ଅର୍ଜିଲା କର୍ମ ଲଭ ।
ଯେ ଯାହା ସ୍ୱାମୀ ଗୋ ମିଳଇ ॥୧୬୭
ସେ ଯେବେ ହୋଏ ଅସୁନ୍ଦର ।
ଦୁଃଖୀ ଦରିଦ୍ର ବ୍ୟାଧିକର ॥୧୬୮
ତାହାଙ୍କୁ ନ କରିବ ସାନ ।
ସେ ବିଷ୍ଣୁଦେବଙ୍କ ସମାନ ॥୧୬୯
ତାହାଙ୍କ ପାଦେ ଏକଚିତ୍ତେ ।
ସେବା କରିବ ଅବିରତେ ॥୧୭୦
ଏ ମାୟା ସଂସାର ବେଭାର ।
ଯାହା ସଞ୍ଚିଲା ବେଦବର ॥୧୭୧
ଏହା ଯେ ନ କରନ୍ତି ଭଲେ ।
ନରକେ ଯା'ନ୍ତି ଅନ୍ତଃକାଳେ ॥୧୭୨
ପରପୁରୁଷେ ଚିତ୍ତ ଦେଇ ।
ଯେ ନାରୀ ରମେ ଦେହ ବହି ॥୧୭୩
ତାହାଙ୍କ ନାହିଁ ସୁଖ ଲେଶ ।
ନରକେ ହୁଅନ୍ତି ପ୍ରବେଶ ॥୧୭୪

ନିନ୍ଦିତ ହୋ'ନ୍ତି ବେନିଲୋକେ ।
ନିରାଶ ହୋ'ନ୍ତି ସ୍ୱାମୀ ସୁଖେ ॥୧୭୫
ବିଧବା ହୋନ୍ତି ଜନ୍ମ ସାତ ।
ଯେ ନାରୀ ସ୍ୱାମୀ ଅଭକତ ॥୧୭୬
ମୋତେ ଅଇଲ ଯେବେ ଦେଖି ।
ଏତେକେ ପୂରିଲାନି ଆଖି ॥୧୭୭
ଯେ ମୋତେ ଦୂରେ ଥାଇ ଚିନ୍ତି ।
ମନ ବଚନ ମୋତେ ଦ୍ୟନ୍ତି ॥୧୭୮
ବେଗେ ହୁଅନ୍ତି ଭବୁଁ ପାର ।
ଖଣ୍ଡଇ ଭ୍ରମ ତାହାଙ୍କର ॥୧୭୯
ଯେ ମୋର ନିକଟେ ରହଇ ।
ସେ ପ୍ରାଣୀ ମୋତେ ନ ଭଜଇ ॥୧୮୦
ମାୟାରେ ହୋଏ ଛନଛନ ।
ବିଷୟାଜଡ଼େ ଥାଇ ମନ ॥୧୮୧
ସେ ମୋତେ ପାଇବ କେମନ୍ତ ।
ହସି ବୋଲନ୍ତି ଗୋପୀନାଥ ॥୧୮୨
ମୁନି ବୋଲନ୍ତି ରାୟେ ଶୁଣ ।
ଯାହା କହିଲେ ନାରାୟଣ ॥୧୮୩
କେ ତାହା କରିବଟି ଆନ ।
ସବୁରି ପ୍ରଭୁ ଭଗବାନ ॥୧୮୪
ଗୋପିଏ କୃଷ୍ଣକଥା ଶୁଣି ।
ଚିନ୍ତା ବିକଳେ ମନେ ଗୁଣି ॥୧୮୫
ବଜ୍ରପଡ଼ିଲା ଯେହ୍ନେ ଶିର ।
ବଦନୁ ନ ଇଲା ଉତ୍ତର ॥୧୮୬
ନିଃଶ୍ୱାସ ବହେ ଖରତର ।
ଶୁଖିଲା ସୁରଙ୍ଗ ଅଧର ॥୧୮୭
ଦଶନେ ଅଧର କାମୋଡ଼ି ।
କରଯୁଗଳ ଶିରେ ତାଡ଼ି ॥୧୮୮
ଚରଣ ଅଙ୍ଗୁଳିର ଅଗ୍ରେ ।
ଭୂମି ଚିରନ୍ତି କାମ ବ୍ୟଗ୍ରେ ॥୧୮୯
କମ୍ପଇ ବିକଳେ ଶରୀର ।
ବେନି ଲୋଚନୁ ବହେ ନୀର ॥୧୯୦
ଅଞ୍ଜନ କୁଙ୍କୁମର ସଙ୍ଗେ ।
ଲୁହ ପଡ଼ଇ କୁଚଯୁଗେ ॥୧୯୧
ଦୁଃଖସାଗରେ ନିମଜ୍ଜିଲେ ।
ସଭୟେ ଲୋଚନ ବୁଜିଲେ ॥୧୯୨

ହୋଇଲେ ମୃତପିଣ୍ଡ ପ୍ରାୟେ ।
ଦେଖନ୍ତି ପ୍ରଭୁ ଦେବରାୟେ ॥୧୯୩
କୃଷ୍ଣ ନିଷ୍ଠୁର ବୋଲ ଶୁଣି ।
ଧର୍ମ ଅଧର୍ମ ମନେ ଗୁଣି ॥୧୯୪
ଯାହାର ପାଇଁ ଗୃହବାସ ।
ଛାଡ଼ିଲୁ ଜୀବନର ଆଶ ॥୧୯୫
ତା'ର ନିଷ୍ଠୁର କଥା ପାଇ ।
ଜୀବନ ଦଣ୍ଡେ ନ ରହଇ ॥୧୯୬
ବେନି ଲୋଚନ ଘଷି କରେ ।
କୃଷ୍ଣଙ୍କୁ ଚାହିଁଲେ ସଧୀରେ ॥୧୯୭
ପାଦେ ପଡ଼ିଲେ ଏକାବେଳେ ।
କହନ୍ତି ଜୀବନ ବିକଳେ ॥୧୯୮
ଶିର ଲଗାଇ ପଦ୍ମପାଦେ ।
ବୋଲନ୍ତି ଶୋକ ଗଦଗଦେ ॥୧୯୯
ଭୋ ନାଥ ପ୍ରଭୁ ଭାବଗ୍ରାହୀ ।
ଏମନ୍ତ ବୋଲୁ କାହିଁପାଇଁ ॥୨୦୦
ତୁ ନୋହୁ ଯଶୋଦାନନ୍ଦନ ।
ଅନାଦି ପ୍ରଭୁ ନିରଞ୍ଜନ ॥୨୦୧
ଆମ୍ଭେ ଅଭାଗୀ ଦୁଃଖିନାରୀ ।
ଆଉ କି ଯିବୁ ଗୋପପୁରୀ ॥୨୦୨
ଛାଡ଼ିଲୁ ବିଷୟା-ବିଷାଦ ।
ପାଇ ତୋହର ପଦ୍ମପାଦ ॥୨୦୩
ଲକ୍ଷ୍ମୀ ଯା' ନ ଛାଡ଼ଇ କ୍ଷଣେ ।
ଗଙ୍ଗା ରହିଲା ନଖକୋଣେ ॥୨୦୪
ସେ ପାଦ ପାଇ ଆମ୍ଭେ ସୁଖୀ ।
ଏବେ ହୋଇଲୁ ନିରିମାଖୀ ॥୨୦୫
ଆମ୍ଭଙ୍କୁ ତେଜୁ କାହିଁପାଇଁ ।
ତୋ' ତହୁଁ ଆନଗତି ନାହିଁ ॥୨୦୬
ତୋ' ପାଦପଙ୍କଜର ମୂଳେ ।
ଜ୍ଞାନୀ ଚିନ୍ତନ୍ତି ଯୋଗବଳେ ॥୨୦୭
ସେ ପାଦପଦ୍ମ ଆମ୍ଭେ ପାଇ ।
କାହିଁକି ଯିବୁ ଭାବଗ୍ରାହୀ ॥୨୦୮
ତୋହର ପାଇଁ ଦାମୋଦର ।
ଛାଡ଼ିଲୁ ପତି ସୁତ ଘର ॥୨୦୯
ଭଜନ୍ତି ଯେ ତୋହର ନାମ ।
ତାହାଙ୍କୁ ନାହିଁ ଦୁଃଖଶ୍ରମ ॥୨୧୦

Dr. Sudhanshu Sekhar Mishra

ଆମ୍ଭେ ତୋ ପାଦେ ଚିତ୍ତ ଦେଇ।
ନିରାଶ ହୋଇଲୁ ଗୋସାଇଁ ॥୨୧୧
ଉଭୟେ ନ ପାଇଲୁ କୂଳ ।
ତୁ ଯେ ବୋଲାଉ ଆଦିମୂଳ ॥୨୧୨
ଧର୍ମବକତାଙ୍କର ଗୁରୁ ।
ତୋ'ର ମହିମା ମହାମେରୁ ॥୨୧୩
ଯାହା ବୋଇଲୁ ବେଦମତେ ।
ଭୋନାଥ ଶୁଣ ଏକଚିତ୍ତେ ॥୨୧୪
ଏ ଯେ ତୋହର ସାଧୁପଣ ।
ସେବିବୁଁ ସ୍ୱାମୀଙ୍କ ଚରଣ ॥୨୧୫
ଏ କଥା ଉଚିତ ତୋହର ।
ଭୋ ନାଥ ଶୁଣ ବେଦସାର ॥୨୧୬
ତୁ ଯେ ସକଳ ପ୍ରାଣୀଙ୍କର ।
ଦେହ ଜୀବନର ଠାକୁର ॥୨୧୭
ଯେ ପ୍ରାଣୀ ତୋହରେ ଭଜଇ।
ତାହାର ଜନ୍ମବନ୍ଧ ନାହିଁ ॥୨୧୮
ଅନେକ ପୁଣ୍ୟ କରିଥିଲେ ।
ତୋ' ନାମ ଧରି ଅନ୍ତଃକାଳେ ॥୨୧୯
ଅଭୟବ୍ରହ୍ମେ ସେ ପଶନ୍ତି ।
ଆମ୍ଭର ନାହିଁ ମନେ ଭ୍ରାନ୍ତି ॥୨୨୦
ଆଉ କି ଗୋପପୁର ଯିବୁଁ ।
ପତି-ତନୟ ଆବୋରିବୁଁ ॥୨୨୧
ଆମ୍ଭର ତେଣେ ନାହିଁ ଆଶା ।
ତୋ ନାମ କରିଛୁ ଭରସା ॥୨୨୨
ମନ କି ନ ଜାଣୁ ଆମ୍ଭର ।
ଆଶା-ବିଶ୍ରାମ-ବାନା ତୋ'ର॥୨୨୩
କାଳିନ୍ଦୀତୀରେ ବ୍ରତ କରି ।
ପୂଜିଲୁ ଶଙ୍କର ଗଉରୀ ॥୨୨୪
ବର ମାଗିଲୁ ଆମ୍ଭେ ଯାହା ।
ଭୋ ନାଥ ନ ଜାଣୁ କି ତାହା ॥୨୨୫
ଆମ୍ଭର ବସ୍ତ୍ର ଚୋରି କରି ।
ତୁ ଯେ ବୋଇଲୁ ନରହରି ॥୨୨୬
ରମିବି ବୃନ୍ଦାବନେ ମୁହିଁ ।
ନିୟମ କଲୁ ବେଣୁ ଛୁଇଁ ॥୨୨୭
ଆମ୍ଭର ସାକ୍ଷୀ ଏ ମୁରଲୀ ।
କିପାଁ ପାସୋରୁ ବନମାଳୀ ॥୨୨୮

ତୋହର ଯେବେ ଦୟା ନାହିଁ।
କିପାଁ ରାଇଲୁ ବେଣୁ ବାଇ ॥୨୨୯
ଆମ୍ଭର ମନ ନିଜ ଘରେ ।
ବୁଡ଼ାଇ ଥିଲୁ ମୁହାଁସରେ ॥୨୩୦
ଶ୍ରବଣେ ମୁରଲୀ ଶୁଭିଲା ।
କରଚରଣ ନ ଚଳିଲା ॥୨୩୧
ଜୀବନ ହରିଲୁ ଆମ୍ଭର ।
ଏବେ ତ କହିଲୁ ନିଷ୍ଠୁର ॥୨୩୨
ଭୋ ନାଥ କର ପ୍ରାଣ ରକ୍ଷା ।
ଆମ୍ଭେ ପାଇଲୁ ବେଣୁ ଦୀକ୍ଷା ॥୨୩୩
ତୋ'ର ଅଧରାମୃତ ରସ ।
ଆମ୍ଭର ମୁଖରେ ବରଷ ॥୨୩୪
ଜୀବନ ରଖ ନନ୍ଦବାଳ ।
ଆମ୍ଭର ପୂରିଲାଟି କାଳ ॥୨୩୫
କ୍ରୋଟ-ଅନଳ ପ୍ରାୟ ହୋଇ ।
କାମ ଅନଳ ହୃଦ ଦହି ॥୨୩୬
ଲିଭାଅ ମୁଖୁଁ ରସ ଦେଇ ।
ଦାସବତ୍ସଳ ଭାବଗ୍ରାହୀ ॥୨୩୭
ଯେବେ ନ ରଖୁ ବନମାଳୀ ।
ମରିବୁ ସକଳ ଗୁଆଳୀ ॥୨୩୮
ହତ୍ୟା ହୋଇବ ତୋର କନ୍ଧେ ।
ଶୁଣି ହସନ୍ତି ଆଦିକନ୍ଦେ ॥୨୩୯
ଗୋପୀ ବୋଲନ୍ତି କୃଷ୍ଣେ ଚାହିଁ।
ପୂତନା ପ୍ରାଣ ଅଛୁ ଖାଇ ॥୨୪୦
ତୁ କାହିଁ ରଖିବୁ ଆମ୍ଭନ୍ତ ।
ନିଶ୍ଚୟେ ହୋଇଲୁ କୃତାନ୍ତ ॥୨୪୧
ମରିବୁ ତୋହର ଉପରେ ।
ଜୀବନ ନ ରହେ ଶରୀରେ ॥୨୪୨
ଭୋ ନାଥ ତୋହର ପୟରେ।
କମଳା ସେବେ ନିରନ୍ତରେ ॥୨୪୩
ଆମ୍ଭର ପ୍ରିୟ ଅଟୁ ତୁହି ।
ଆଶା ନ ଛେଦ ଭାବଗ୍ରାହୀ ॥୨୪୪
ତୋହର ପାଦର ତୁଳସୀ ।
ମାଳା କରିଣ ବ୍ରହ୍ମରାଶି ॥୨୪୫
କବରୀଭାର ସଜ କରି ।
ତୋ ପାଦେ ସେବିବୁ ମୁରାରି॥୨୪୬

ତୋହର ପାଦ ହୃଦଗତେ ।
ମୁନିଏ ଭଜୁଥାନ୍ତି ନିତ୍ୟେ ॥୨୪୭
ସେ ପାଦେ ପଶିଲୁ ଶରଣ ।
ଜୀବନ ରଖ ନାରାୟଣ ॥୨୪୮
ତୋ'ର ଚରଣ ନରହରି ।
ସ୍ତନ-ବଦନ-ଶିରେ ଧରି ॥୨୪୯
ଆମ୍ଭର ତାପ ହୃଦୁଁ ଯିବ ।
ଶରଣ ରଖ ପଦ୍ମନାଭ ॥୨୫୦
ତୋ'ର ସମ୍ପଦ ଭୋଗ କରି ।
ତୋ' ମୁଖ ଚାହିଁ ଦିନ ହରି ॥୨୫୧
ତୋ'ର ସୁନ୍ଦର ରୂପ ଦେଖି ।
ପିଛାଡ଼ି ନ ପାରୁଁ ଯେ ଆଖି ॥୨୫୨
ତୋହର ରୂପ ହୃଦେ ଗୁଣି ।
ବ୍ରହ୍ମାଣ୍ଡେ ଯେତେକ ତରୁଣୀ ॥୨୫୩
କେ ଦେହ ଧରିବ ନିର୍ଭେରେ ।
ଶୁଣିଲା ନାହିଁ ତିନିପୁରେ ॥୨୫୪
ତୋ' ରୂପ ଦେଖି ପଶୁ ବନେ ।
ପୁଲକ ହୋନ୍ତି ତରୁଗଣେ ॥୨୫୫
ବୋଲନ୍ତି ଶୁକ ମୁନିବର ।
ଶୁଣ ହୋ କୃଷ୍ଣ ରସ ସାର ॥୨୫୬
ଦେଖିଣ ଗୋପୀଙ୍କ ବିକଳ ।
ଦୟା ବସିଲା ଆଦିମୂଳ ॥୨୫୭
ଆନନ୍ଦେ ବେନିଭୁଜ ତୋଳି ।
ଆସ ବୋଇଲେ ବନମାଳୀ ॥୨୫୮
ବାହୁ ବିସ୍ତାରି କଲେ କୋଳ ।
ବିଶ୍ୱସ୍ୱରୂପୀ ଆଦିମୂଳ ॥୨୫୯
ଆକର୍ଷି ଆଣି ନିଜ କରେ ।
ହୃଦେ ଲଗାଇ କୋଳ କଲେ॥୨୬୦
ଟାକି ଯେ ଥିଲା ଯୋଗମାୟା।
ଶୂନ୍ୟରେ ବିକାଶିଲା କାୟା ॥୨୬୧
ଅତ୍ୟନ୍ତ ଦିବ୍ୟରୂପମାନ ।
ସୁରେଖ ତିଳକ ବଦନ ॥୨୬୨
ଅଙ୍ଗେ ଆଦିତ୍ୟରତ୍ନ ଶୋଭା ।
ଅଗ୍ନିଧଉତ ବାସ ପ୍ରଭା ॥୨୬୩
କପାଳେ ମଳୟ ଚନ୍ଦନ ।
ତାମ୍ବୁଳେ ସୁରଙ୍ଗ ବଦନ ॥୨୬୪

Dr. Sudhanshu Sekhar Mishra

ମେଘେ ବିଜୁଳି ଯେହ୍ନେ ଜାଣି ।
ସୁରେଖ ତିଳକ ତରୁଣୀ ।।୨୬୫
କୃଷ୍ଣର ବେନିଭୁଜେ ପଶି ।
ତାପ ଛାଡ଼ିଲେ ଶୁଭ୍ରକେଶୀ ।।୨୬୬
ତକ୍ଷଣେ ପାଇଲେ ଜୀବନ ।
ହରଷ ଗୋପୀଙ୍କର ମନ ।।୨୬୭
କୃଷ୍ଣଙ୍କୁ ବେଢ଼ିଲେ ଯୁବତୀ ।
ଗଗନେ ଯେହ୍ନେ ତାରାପନ୍ତି ।।୨୬୮
ଗୋପୀଏ ତୋଷମନ ହୋଇ ।
ପୁଷ୍ପ ତୋଳନ୍ତି ବନେ ଯାଇ ।।୨୬୯
ମାଳା ଗୁନ୍ଥିଲେ ଯତ୍ନ କରି ।
ବର ବରିଲେ ନରହରି ।।୨୭୦
କାଳିନ୍ଦୀ ବାଲିକୁଦେ ଯାଇ ।
ଗୋପୀଙ୍କ ମଧ୍ୟେ ଭାବଗ୍ରାହୀ ।।୨୭୧
ଯୋଗମାୟାର ବଳେ ହରି ।
ଷୋଳସହସ୍ର ରୂପ ଧରି ।।୨୭୨
ହୋଇଲେ ବେନି-ବେନିଜନା
ଗୋପୀ ରମିଲେ ଭଗବାନ ।।୨୭୩
ରତି ପଣ୍ଡିତ ବଳବନ୍ତ ।
ତୋଷିଲେ ଗୋପୀଙ୍କର ଚିତ୍ତ ।।୨୭୪
କୃଷ୍ଣରମଣ ରସ ପାଇ ।
ଜ୍ଞାନ ହାରିଲେ ସର୍ବଗୋଇ ।।୨୭୫

ସବୁରି ଦେହେ ନଖକ୍ଷତ ।
ସବୁ କୁଚରେ ପଦ୍ମହସ୍ତ ।।୨୭୬
ସକଳେ ଆଲିଙ୍ଗନ ପାଇ ।
ହରଷ ହୋଇ ସର୍ବଗୋଇ ।।୨୭୭
ମନେ ବିଚାର କଲେ ନାରୀ ।
ସ୍ୱାମୀର ଗର୍ବ ମନେ ଧରି ।।୨୭୮
ଆମ୍ଭର ପ୍ରାୟ ଭାଗ୍ୟବନ୍ତ ।
ନାହିଁ ନୋହିବ ଏ ଜଗତ ।।୨୭୯
ରମିଲୁ ଅନାଦି ପୁରୁଷ ।
ଆମ୍ଭରେ ହରି ହେଲେ ବଶ ।।୨୮୦
କୃଷ୍ଣ ଭକତ ଆମ୍ଭ ପ୍ରାୟେ ।
ସ୍ୱର୍ଗେ ନୋହିବେ ଦେବତାଏ ।।୨୮୧
ଏମନ୍ତେ ମନେ ଗର୍ବ ବହି ।
ତାହା ଜାଣିଲେ ଭାବଗ୍ରାହୀ ।।୨୮୨
ଗୋପୀଙ୍କ ଭାବ ଜାଣିବାରେ ।
ମାୟା ମୋହିଲେ ନଦୀତୀରେ ।।୨୮୩
ଗୋପୀଏ ବୃନ୍ଦାବତୀ ନାମେ ।
ଥିଲା ସେ କୃଷ୍ଣ ସନ୍ନିଧାନେ ।।୨୮୪
ପୂର୍ବେ ସେ ଅଛି ତପ କରି ।
ଗୋବିନ୍ଦ ତା'ର ଭୁଜ ଧରି ।।୨୮୫
ଛନ୍ଦିଲେ ଗୋପୀଙ୍କର ମନ ।
କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ।।୨୮୬

ବୋଲଇ ଦାସ ଜଗନ୍ନାଥ ।
ବନେ ନିରୋପି କୃଷ୍ଣପଥ ।।୨୮୭
ମୋହର ମନ ଗୋଡ଼ାଇଲା ।
କୃଷ୍ଣଙ୍କୁ ଭେଟ ନ ପାଇଲା ।।୨୮୮
ବାହୁଡ଼ି ହୋଇଲା ନିରାଶ ।
ସୁଜନେ ବୃନ୍ଦାବନେ ପଶ ।।୨୮୯
ମୁଁ ଅବା ହରିଙ୍କି ଅନାଇଁ ।
କାହିଁ ପାଇବି ଭାବଗ୍ରାହୀ ।।୨୯୦
ମୁଁ ଅବା କେତେକ ମାତର ।
କାହିଁ ପାଇବି ଚକ୍ରଧର ।।୨୯୧
ପାମର ହୀନ ମୋ'ର ବୁଦ୍ଧି ।
କୃଷ୍ଣ ଚରଣେ ମନ ଖେଦି ।।୨୯୨
ମୋ ଛାର ପାଇବଇଁ କାହିଁ ।
ଯାହାର ଆଦି ଅନ୍ତ ନାହିଁ ।।୨୯୩
ସେ ଦୟାମୟ ହରିପାଦେ ।
ମନ ମୋ' ରହୁ ଅପ୍ରମାଦେ ।।୨୯୫
ସୁଜନଜନଙ୍କର ହିତ ।
କହଇ ଦାସ ଜଗନ୍ନାଥ ।।୨୯୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଭଗବତୋ
ରସକ୍ରୀଡ଼ାବର୍ଣ୍ଣନଂ ନାମ
ତ୍ରିଂଶୋଽଧ୍ୟାୟଃ ।।

## ଏକତ୍ରିଂଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ ତୋଷମନେ ।
କୃଷ୍ଣ ଯେ ଗଲେ ଅନ୍ତର୍ଦ୍ଧାନେ ।।୧
ଗୋପଯୁବତୀ ନଦୀକୂଳେ ।
ଘଡ଼ିକେ ଜାଣିଲେ ସକଳେ ।।୨
କୃଷ୍ଣ ନ ଦେଖି ବନଘୋରେ ।
ଭୟେ ଚିନ୍ତନ୍ତି ସେ କାତରେ ।।୩
କମ୍ପନ୍ତି ଚଉଦିଗେ ଚାହିଁ ।
ରଜନୀ ଅଛି ଅର୍ଦ୍ଧ ହୋଇ ।।୪
ଶ୍ରୀକୃଷ୍ଣ ମାୟା ଘେନି ମେଘେ ।
ମିଳିଲେ ଶଶାଙ୍କର ଲାଗେ ।।୫

ଦେଖି ବିକଳ ଗୋପନାରୀ ।
ଡ଼ାକନ୍ତି କୃଷ୍ଣ ନାମ ଧରି ।।୬
ଭୋ ନାଥ ଆସ ତୁ ବହନ ।
ମେଘ ଆଚ୍ଛାଦିଲା ଗଗନ ।।୭
ବିଶେଷେ ଯମୁନାର ତୀରେ ।
ମେଘ ଅନ୍ଧାର ଘନଘୋରେ ।।୮
ଅନାଥ କରି ଗଲୁ କାହିଁ ।
ଅନ୍ଧାରେ ପଥ ନ ଦିଶଇ ।।୯
ଏମନ୍ତେ କରନ୍ତି ରୋଦନ ।
କ୍ଷଣ କ୍ଷଣକେ ଅଚେତନ ।।୧୦

ନିଶି ଅନ୍ଧାର ବନଘୋରେ ।
ରୋଦନ କଲେ ଉଚ୍ଚସ୍ୱରେ ।।୧୧
ବାଳୁତ ପ୍ରାୟ ହୋଇ କାନ୍ଦି ।
ଏକ ଅରକେ ଛନ୍ଦାଛନ୍ଦି ।।୧୨
କୃଷ୍ଣର ପ୍ରୀତି ଅନୁରାଗ ।
ଅଳପ ହାସ ମୁଖ ରଙ୍ଗ ।।୧୩
ମଧୁର ଚାହିଁବାର ରସେ ।
ମନ ନିବେଶି କୃଷ୍ଣ ପାଶେ ।।୧୪
ବାଳୁତ କାଳୁ ଯେତେ କଲା ।
ସୁମରି ଗୋବିନ୍ଦର ଲୀଳା ।।୧୫

Dr. Sudhanshu Sekhar Mishra

ମନ ନିବେଶି କୃଷ୍ଣ ଦେହେ ।
ଗୋପୀପଡ଼ିଲେ ଶୋକ ମୋହେ ॥୧୬
ପୁଣି ଉଠିଲେ ଜ୍ଞାନ ପାଇ ।
କହନ୍ତି ବାଇ ପ୍ରାୟ ହୋଇ ॥୧୭
କେ ବୋଲେ ମୁହିଁ ନାରାୟଣ ।
ସେବଲୋ ମୋହରି ଚରଣ ॥୧୮
କେ ବୋଲେ ମୁହିଁ ନନ୍ଦବାଳ ।
ଦେଖ ମୋ ଶିରେ ଗୁଞ୍ଜାମାଳ ॥୧୯
ପୁଣି ଗୋପୀଏ ଆଗସରି ।
ବୋଲଇ ମୁହିଁ ନରହରି ॥୨୦
ଦେଖ ମୋଶିଙ୍ଗା ବେଣୁ ବେତ ।
ମୁଖେ ବଜାଇ ବେନି ହସ୍ତ ॥୨୧
ତ୍ରିଭଙ୍ଗ ଛନ୍ଦେ ଉଭା ହୋଇ ।
ବୋଲଇ ନନ୍ଦସୁତ ମୁହିଁ ॥୨୨
କେ ବୋଲେ ଦେଖିଲଇଁ ହରି ।
ସଖୀ ଗୋଟିଏ ସଙ୍ଗକରି ॥୨୩
ଜାଣଇଁ ଏହି ପଥେ ଗଲା ।
ମୁରଲୀ ଘେନି ନନ୍ଦବଳା ॥୨୪
ପୁଣି ଉଠିଲେ ଧାଡିକାରେ ।
ପଶିଲେ ଲତାକୁଞ୍ଜ ଘୋରେ ॥୨୫
ଖୋଜନ୍ତି ପଶି ବନେ ବନ ।
ଡ଼ାକନ୍ତି ଆସ ନନ୍ଦନାନ ॥୨୬
ବାତୁଳଙ୍କର ପ୍ରାୟ ହୋଇ ।
ପୁଛନ୍ତି ଆକାଶକୁ ଚାହିଁ ॥୨୭
ବୋଲନ୍ତି ଚାହିଁ ତରୁଗଣ ।
ତୁମ୍ଭେ ଦେଖିଲ ନାରାୟଣ ॥୨୮
କ୍ରୋଟ ଭିତରେ ଥୋଇଅଛ ।
ଏ କଥା ଅଟଇ ପ୍ରତ୍ୟକ୍ଷ ॥୨୯
ଅଶ୍ୱତ୍ଥ ବଟ ଶାଳବୃକ୍ଷେ ।
ତୁମ୍ଭେ କି ଦେଖିଲ ପ୍ରତ୍ୟକ୍ଷେ ॥୩୦
ପଣସ ଅସନ ବକୁଳ ।
ଚମ୍ପା ବରୁଣ ନାଗେଶ୍ୱର ॥୩୧
ବିଶେଷେ ଉଚ୍ଚବୃକ୍ଷ ଅଟ ।
ଦେଖିଯେ ଥିବ ନନ୍ଦଚାଟ ॥୩୨
ତୁମ୍ଭେ ବୋଲିବ କିପାଁ ଲୋଡ଼ ।
ପରର ପାଇଁ ମୁଣ୍ଡକୋଡ଼ ॥୩୩

ଏମନ୍ତ ବୋଲ ଅବା ବୃକ୍ଷ ।
ଆମ୍ଭ ଜୀବନ ନନ୍ଦ ବତ୍ସ ॥୩୪
ମଧୁର ହାସ୍ୟେ ଆମ୍ଭ ମନ ।
ବାନ୍ଧିଣ ନେଲେ ନନ୍ଦନାନ ॥୩୫
ହେ କୁରୁବକ ନାଗେଶ୍ୱର ।
ଚମ୍ପା ପୁନ୍ନାଗ କନିଅର ॥୩୬
ତୁମ୍ଭ ପୀରତି ଘେନି ଚିତ୍ତେ ।
ଗୋବିନ୍ଦ ଗଲେ କି ଏ ପଥେ ॥୩୭
ତୁ ଯେ ତୁଳସୀ ହରିପ୍ରିୟା ।
ଲୁଚାଇ କରୁଅଛୁ ମାୟା ॥୩୮
ଗୋବିନ୍ଦ ହୃଦେ ଲମ୍ବିଥାଉ ।
ଆମ୍ଭେ ପଚାରିଲେ ନ କହୁ ॥୩୯
ଆମ୍ଭେ ତୋ' କଥା ଭଲେ ଜାଣି ।
ତୁ ଯେ ଆମ୍ଭର ସପତଣୀ ॥୪୦
ମାଳତୀ ମଲ୍ଲୀ ଜାଇ ଯୁଈ ।
ତୁମ୍ଭେ ଦେଖିଲ ଭାବଗ୍ରାହୀ ॥୪୧
କୃଷ୍ଣର ନଖକ୍ଷତ ଲାଗି ।
ନପୁଣ ହୋଇଛ ସୁହାଗୀ ॥୪୨
ହେ ଚୂତ ପଣସ ପିଆଳ ।
ଅସନ ଜମ୍ବୁ କୋବିଦାର ॥୪୩
ବେଲ ବକୁଳ ଲିମ୍ବଯୁଥେ ।
ଗୋବିନ୍ଦ ଗଲେ କି ଏପଥେ ॥୪୪
ତୁମ୍ଭେ ଯେ ଯମୁନାର ତୀରେ ।
ଥାଅ ଯେ ଫଳପୁଷ୍ପ ଭରେ ॥୪୫
ପରେଣ କର ଉପକାର ।
ଏ ତୁମ୍ଭ ମହତ ବିଚାର ॥୪୬
କହ ଶ୍ରୀକୃଷ୍ଣ ଗଲେ କାହିଁ ।
ମରିବୁ ତା ମୁଖ ନ ଚାହିଁ ॥୪୭
ଯା'ନ୍ତେ ଦେଖିଲେ ବନଦେଶେ ।
ଅବନୀ ନ ଦିଶଇ ଘାସେ ॥୪୮
ତାହାକୁ ଚାହିଁ ଗୋପନାରୀ ।
ବୋଲନ୍ତି ଦେଖିଲୁକି ହରି ॥୪୯
ଏଣେ ଯେ ଗଲେ କୃଷ୍ଣ ଧାଇଁ ।
ତାପାଦ ଲାଗି ତୋର ଦେହୀ ॥୫୦
ପୁଲକ ହୋଇ ଅଛି ଦେଖ ।
ଆମ୍ଭେ ଯେ ହୋଇଲୁ ନିରେଖ ॥୫୧

ହରିଣୀ ଯୂଥଙ୍କୁ ଅନାଇ ।
ବୋଲନ୍ତି ଶୋକଭର ହୋଇ ॥୫୨
ଆମ୍ଭେ ଜାଣିଲୁ ସତ୍ୟ ଆଜ ।
ତୁମ୍ଭେ ଦେଖିଲ ଦେବରାଜ ॥୫୩
ହରି-ଚରଣଯୁଗ ଦେଖି ।
ନିର୍ମଳ କରିଅଛ ଆଖି ॥୫୪
ଏକ ଗୋପିକା ପଛେ ଥାଇ ।
ବୋଲଇ ଗୋ୍ପୀଙ୍କି ଅନାଇଁ ॥୫୫
କୃଷ୍ଣ ଏବାଟେ ଯାଉଥିଲେ ।
କୁସୁମମାଳ ଛାଡ଼ିଗଲେ ॥୫୬
ବହନ ଆଣିଲା ସାଉଁଟି ।
ଦେଖାଇ କୁନ୍ଦମାଳ ଗୋଟି ॥୫୭
ଯେ ନାରୀ କୃଷ୍ଣେ ଘେନିଗଲା ।
ଏମାଳ ତା'ର ହୃଦେ ଥିଲା ॥୫୮
କୃଷ୍ଣର ଆଲିଙ୍ଗନ କାଳେ ।
ଛିଡ଼ି ଗୋ ପଡ଼ିଅଛି ତଳେ ॥୫୯
ତେଣୁ ଗୋ ସୁଗନ୍ଧ ଏହାର ।
ଏବେ ପାଇବା ଦାମୋଦର ॥୬୦
ପ୍ରିୟାର କାନ୍ଧେ ଦେଇ ହାତ ।
ଏପଥେ ଗଲେ ଗୋପୀନାଥ ॥୬୧
ପଦ୍ମଗୋଟିଏ ଘେନି କରେ ।
ବୃକ୍ଷଙ୍କ ଫଳପୁଷ୍ପ ଭରେ ॥୬୨
ପଶି ଯେ ଗଲେ ଏଇବାଟେ ।
ଦେଖିଣ ନମନ୍ତି ଉଚ୍ଚାଟେ ॥୬୩
ପୁଣି ଗୋପିଏ ବୃକ୍ଷେ ଚାହିଁ ।
ମାଳତୀ ଯା'ର ହୃଦେ ଥାଇ ॥୬୪
ବୋଲଇ କେତେ ସଉଭାଗୀ ।
ଦେଖ ଗୋ କୃଷ୍ଣ ନଖ ଲାଗି ॥୬୫
ପୁଲକ ହୋଇଛି ଶରୀର ।
ଯେଣୁ ଲାଗିଲା କୃଷ୍ଣକର ॥୬୬
ଏମନ୍ତେ ହୋଇ ଉନମତ୍ତ ।
କୃଷ୍ଣର ପାଦେ ଦେଇ ଚିତ୍ତ ॥୬୭
ନଟନାରୀଙ୍କ ହଟମତେ ।
ଗୁଣ ପ୍ରକାଶ କଲେ ଅନ୍ତେ ॥୬୮
ମିଳିଲେ ମହାବନ ଘୋରେ ।
କାଳିନ୍ଦୀପୁଲିନ ତଟରେ ॥୬୯

Dr. Sudhanshu Sekhar Mishra

ଉଜ୍ଜ୍ୱଳ ଚନ୍ଦ୍ରମା କିରଣ ।
ପିକ ଝିଙ୍କାରୀ ଶୁକ ତାନ ॥୭୦
ଏକାନ୍ତ ସ୍ଥାନେ ସର୍ବେ ବସି ।
କୃଷ୍ଣର ନାମ ଗୁଣ ଘୋଷି ॥୭୧
ଏକ ଗୋପିକା ଆଗ ସରି ।
କୋଳେ ଚାପିଲା ଗୋପନାରୀ ॥୭୨
ତାହାର କୁଚେ ମୁଖ ଦେଇ ।
ନିର୍ଭରେ ଦେଲାକ ପକାଇ ॥୭୩
ବୋଲଇ ମୁହିଁ ନାରାୟଣ ।
ଶୋଷିଲି ପୂତନାର ପ୍ରାଣ ॥୭୪
ମୋତେ ଲୋ ଭଜ ଗୋପନାରୀ ।
ଚାପଇ କରେ କର ଧରି ॥୭୫
ଏକ ଗୋପିକା ପଛେ ଥିଲା ।
ଚରଣେ ଛନ୍ଦି ପକାଇଲା ॥୭୬
ବୋଲଇ ମୁହିଁ ଦାମୋଦର ।
ପାଦେ ଶକଟ କଲି ଚୂର ॥୭୭
ଏକ ଗୋପୀକି କରି କାନ୍ଧେ ।
ପକାଇ ବୋଲଇ ଆନନ୍ଦେ ॥୭୮
ଦେଖ ମାଇଲି ତୃଣାବର୍ତ୍ତ ।
ମୁଁ ହାଦେ ଯଶୋଦାର ସୁତ ॥୭୯
କେ ଗୋପୀ ଉଦୁଖଳେ ଟାଣି ।
ଗୁରୁଣ୍ଡେ ବଜାଇ କିଙ୍କିଣୀ ॥୮୦
ବୋଲଇ ମୋତେ ସେବାକର ।
ମୁଁ ସେ ଲୋ ଯଶୋଦାକୁମର ॥୮୧
ମୋ ଗର୍ଭେ ଥିଲାଟି ଜଗତ ।
ଯାହା ଦେଖିଲା ମୋର ମାତ ॥୮୨
କେ ବେନି ରାମକୃଷ୍ଣ ହୋଏ ।
ବାଛୁରୀ ଗୋପାଳ ଥୋକାଏ ॥୮୩
ପୁଣି ହିଁ ଏକଇ ଗୋପୀଏ ।
ହୋଇଲା ବତ୍ସାସୁର ପ୍ରାୟେ ॥୮୪
ଏକ ଗୋପୀଏ ଧରି କରେ ।
ବୁଲାଇ ପିଟିଲା ବୃକ୍ଷରେ ॥୮୫
ବୋଲଇ ମୁହିଁ ଦାମୋଦର ।
ଦେଖ ମାଇଲି ବତ୍ସାସୁର ॥୮୬
ଆର ଗୋପୀଏ ବୃକ୍ଷଡ଼ାଳେ ।
ଧରି ଚିରିଲା ବେନିଫାଳେ ॥୮୭
ବୋଲେ ମୁଁ ଯଶୋଦା କୁମର ।
ଦେଖ ଚିରିଲି ବକାସୁର ॥୮୮
କେ ବୃକ୍ଷଡ଼ାଳେ ମୁଖ ଦେଇ ।
ଗୀତ ସୁସ୍ୱରେ ବେଣୁ ବାଇ ॥୮୯
ଏକର କନ୍ଧେ ଦେଇ ହସ୍ତ ।
ଚାଲଇ ଯେହ୍ନେ ଗୋପୀନାଥ ॥୯୦
ବୋଲଇ ମୁହିଁ ବେଣୁଧର ।
ଦେଖ ମୋ' ଚାଲିବା ସୁନ୍ଦର ॥୯୧
ପୁଣି ଗୋପୀଏ ଆଗସରି ।
ବୋଲଇ ହୃଦେ ହସ୍ତ ମାରି ॥୯୨
ଇନ୍ଦ୍ର ଛାରକୁ କିପାଁ ଡ଼ର ।
ଆଜ ତୋଳିବି ଗିରିବର ॥୯୩
କେତେ ଲୋ ବରଷିବ ଆଜ ।
ବଜ୍ର ପାଷାଣ ଦେବରାଜ ॥୯୪
ଶାଢ଼ୀ ପାଲଟି ବାମକରେ ।
ତୋଳିଲା ଅଙ୍ଗୁଳି ଅଗ୍ରରେ ॥୯୫
ଏକ ଗୋପିକା ବେଗେ ଧାଇଁ ।
ଆରକ ଶିରେ ପାଦ ଦେଇ ॥୯୬
ବୋଲଇ ପଳାଅ କାଳୀୟ ।
କାଳନ୍ଦୀ ହ୍ରଦରେ ନ ରହ ॥୯୭
ଖଳନାଶନ ବାନା ମୋର ।
ଅମୃତ କରିବଇଁ ନୀର ॥୯୮
ତୋହର ପ୍ରାୟ ଖଳଜନ ।
ନାଶିବୁ ଯେତେ ଦୁଷ୍ଟମାନ ॥୯୯
କେ ଗୋପୀ ଡ଼ାକଇ ସୁସ୍ୱରେ।
ନୟନ ବୁଜି ଧାଡିକାରେ ॥୧୦୦
ଅନଳ ଲିଭାଇବି ମୁହିଁ ।
ବସଲୋ ମୁଖେ କର ଦେଇ ॥୧୦୧
କେ ଗୋପୀ ଫୁଲମାଳ ଘେନି।
କୋପେ ବୋଲଇ ଶିର ଝୁଣି॥୧୦୨
ଲବଣୀ ଖାଉ ତୁ ଚୋରାଇ ।
ଗୋଳେ ବାନ୍ଧିବି ତୋତେ ନେଇ॥୧୦୩
ଆକର୍ଷି ପିନ୍ଧିଲା ବସନ ।
ବାନ୍ଧୁ ଅଛଇ ମନେ ମନ ॥୧୦୪
କେ ଗୋପୀ ଚାଲେ ଗୁଲୁଗୁଞ୍ଜା।
କଟୀରେ ରୋଳ ବସ୍ତ୍ର ସଞ୍ଜା ॥୧୦୫
ବୋଲଇ ମୁହିଁ ନାରାୟଣ ।
ଭାଙ୍ଗିଲି ଯାମଳା ଅର୍ଜୁନ ॥୧୦୬
ଏମନ୍ତେ କୃଷ୍ଣ ଗୁଣମାନ ।
ଦେହେ ପୁରୋଇ ଗୋପୀଜନ ॥୧୦୭
କଳ୍ପନା ଭାବେ ଗୁଣ ବହି ।
ଯେ ଆତ୍ମା ପୂର୍ଣ୍ଣାନନ୍ଦ ଦେହି ॥୧୦୮
ହେ ନୃପ ସଂଶୟ ନ କର ।
ଯେ ଗୋପୀ-ଗୋଧନ ଗୋପାଳ ॥୧୦୯
ଦ୍ୱାଦଶ ବୃନ୍ଦାବନ ଯେତେ ।
ସବୁ ହିଁ କୃଷ୍ଣ ଗର୍ଭଗତେ ॥୧୧୦
ଯେ ହରି ସେହୁ ଗୋପନାରୀ।
ଗୋପୀ ଗୋପାଳ କୃଷ୍ଣସରି ॥୧୧୧
ଏମନ୍ତେ ଗୋପୀ ବାଇପଣେ ।
ରାତ୍ରେ ବୁଲନ୍ତି ବନେ ବନେ ॥୧୧୨
ଯାଉଁ ଦେଖିଲେ ବାଲିକୂଦ ।
ପଡ଼ିଛି ଗୋବିନ୍ଦର ପାଦ ॥୧୧୩
ଚିହ୍ନିଲେ କୃଷ୍ଣପାଦ ବୋଲି ।
ଗୋପୀ ଧାଇଁଲେ ପେଲାପେଲି॥୧୧୪
ଧ୍ୱଜ ଅଙ୍କୁଶ ପଦ୍ମଚିହ୍ନ ।
ଦେଖି ଆନନ୍ଦ କଲେ ମନ ॥୧୧୫
କୃଷ୍ଣର ପାଦ ଅନୁସରି ।
ବନେ ଚାଲନ୍ତି ଗୋପନାରୀ ॥୧୧୬
ପୁଣି କେତେହେଁ ଦୂର ଯାଇ ।
ବୋଲନ୍ତି କୃଷ୍ଣ ପାଦ ଚାହିଁ ॥୧୧୭
ଦେଖ ଗୋ ଚରଣ ପାଖର ।
ପଡ଼ିଛି କାହାର ପୟର ॥୧୧୮
ଯାହାକୁ କୃଷ୍ଣ ଘେନିଗଲା ।
ସେ ତା'ର ପାଶେ ଯାଉଥିଲା॥୧୧୯
ଧନ୍ୟଗୋ ତାହାର ଜୀବନ ।
ମୋହିଲା ଯଶୋଦା ନନ୍ଦନ ॥୧୨୦
କେତେ ଏ କୃଷ୍ଣେ ଆରାଧିଲା।
ଏକାନ୍ତେ କୃଷ୍ଣଙ୍କୁ ରମିଲା ॥୧୨୧
ଯେ ପାଦ ବ୍ରହ୍ମା ତ୍ରିପୁରାରି ।
ଲଭିବା ପାଇଁ ଆଶା କରି ॥୧୨୨
ଲକ୍ଷ୍ମୀ ଯା ସେବଇ ନିରତେ ।
ଏ ତାହା ଲଭିଲା ଏକାନ୍ତେ ॥୧୨୩

Dr. Sudhanshu Sekhar Mishra

ତାହାର ପାଦ ବର୍ଣ୍ଣ ଚିହ୍ନ ।
ଦହଇ ଆମ୍ଭର ଜୀବନ ॥୧୨୪
କୃଷ୍ଣ ଅଧର ସୁଧାପାନ ।
ଯାହାଟି ଗୋପୀଙ୍କ ଜୀବନ ॥୧୨୫
ଏକାନ୍ତେ ନେଇ ପାନ କଲା ।
କେତେ ଗୋ ତପ କରିଥିଲା ॥୧୨୬
ପୁଣି ନଦେଖିଲେ ପୟର ।
ଗହଳେ ଅଛି ତୃଣାଙ୍କୁର ॥୧୨୭
ବୋଲନ୍ତି କୋମଳ ତା' ପାଦ ।
ଯେଣୁ ପାଇଲା ତୃଣେ ଖେଦ ॥୧୨୮
ତେଣୁ ତାହାକୁ କନ୍ଧେ କଲେ ।
ନ ଦିଶେ ପାଦଚିହ୍ନ ଭଲେ ॥୧୨୯
ପୁଣି କ୍ଷଣକେ ପାଦ ଦେଖି ।
ଗୋପୀଏ ଚାହାନ୍ତି ନିରେଖି ॥୧୩୦
ଦେଖ ଗୋ କୃଷ୍ଣ ପୟର ।
ଅଧିକେ ଦିଶଇ ଗଭୀର ॥୧୩୧
ଯାହାକୁ କୃଷ୍ଣ ନେଉଥିଲା ।
ସେ ବାମା ଫୁଟିଣ ରହିଲା ॥୧୩୨
କନ୍ଧେ ବସାଇ ନେଲା ପ୍ରାୟେ ।
ପାଦ ଗଭୀର ଦେଖ ମାଏ ॥୧୩୩
କୃଷ୍ଣ ଯାହାକୁ ନେଉଥିଲା ।
ଏଠାରେ କବରୀ ଖସିଲା ॥୧୩୪
କନ୍ଧୁ ଓହ୍ଲାଇ ତା'ର ଅର୍ଥେ ।
ଫୁଲ ତୋଳିଲା ପରା ଏଥେ ॥୧୩୫
ଅଗ୍ରପାଦରେ ଠିଆ ହୋଇ ।
ଦେଖ ଏ ଚିହ୍ନ ତ ଦିଶଇ ॥୧୩୬
ବସିଣ ଖୋଷିଛି କବରୀ ।
ପିଚା ଆକୃତି ଅନୁସରି ॥୧୩୭
ପାଦ ଉପରେ ତା'କୁ ତୋଳି ।
ଦେଖ ଗୋ ଫୁଲ ଅଛି ପଡ଼ି ॥୧୩୮
ରମଣ କଲା ତା'ର ତୁଲେ ।
କଥା ଥୋଇଲା ମହୀତଳେ ॥୧୩୯
ଦେଖ କାମିନୀ ଦୁଷ୍ଟପଣ ।
ବଶ ଗୋ କଲା ନାରାୟଣ ॥୧୪୦
ଶୁଣ ପରୀକ୍ଷ ରାସକେଳି ।
ଯାହାକୁ ନେଇ ବନମାଳୀ ॥୧୪୧

ସେ ଗୋପୀ କୃଷ୍ଣ ପଛେ ଥାଇ ।
ଗରବ ମନେ ବିଚାରଇ ॥୧୪୨
ମୁଁ ଯେ ମୋହିଲି ହରି ଚିତ୍ତ ।
ମୋ ତହୁଁ ନାହିଁ ଭାଗ୍ୟବନ୍ତ ॥୧୪୩
ତାହା ଜାଣିଲେ ଭାବଗ୍ରାହୀ ।
ଗର୍ବ ବହିଲା ଏହା ଦେହୀ ॥୧୪୪
ମାୟା ମୋହିଲେ ଗୋପୀ ମନ ।
କୃଷ୍ଣଙ୍କୁ ବୋଲଇ ବଚନ ॥୧୪୫
ଭୋ ନାଥ ନ ପାରଇ ଯାଇ ।
ନିଅତୁ କନ୍ଧରେ ବସାଇ ॥୧୪୬
ମୋହରେ ଅଛି ଯେବେ ମନ ।
ବିଶେଷେ ଘୋର ବୃନ୍ଦବନ ॥୧୪୭
ମୁଁ ଏବେ ନ ପାରଇ ଚାଲି ।
ଶୁଣି ହସିଲେ ବନମାଳୀ ॥୧୪୮
ବୋଇଲେ ବସ ମୋର କାନ୍ଧେ ।
କୃଷ୍ଣ ବସିଲେ ବାଲିକୁଦେ ॥୧୪୯
ଶୁଣି ଗୋପିକା ତୋଷ ହୋଇ ।
ବସିଲା କୃଷ୍ଣକାନ୍ଧେ ଯାଇ ॥୧୫୦
ଉଠିଲେ ପ୍ରଭୁ ଚକ୍ରଧର ।
କାମିନୀ ଧରିଅଛି ଶିର ॥୧୫୧
କେତେ ହେଁ ଦୂର ବନେ ଯାଇ ।
ଅନ୍ତର ହେଲେ ଭାବଗ୍ରାହୀ ॥୧୫୨
ଗୋପୀ ପଡ଼ିଲା ମୁଖ ମାଡ଼ି ।
ଅଧର ଓଷ୍ଠ ଗଲା ଛିଡ଼ି ॥୧୫୩
ଦଣ୍ଡେ ହୋଇଲା ମୂରୁଛିତ ।
ଉଠି ଲୋଡ଼ଇ ଗୋପୀନାଥ ॥୧୫୪
ସେ କାହିଁ ପାଇବ ମୁରାରି ।
ଗର୍ବଗଞ୍ଜନ ନରହରି ॥୧୫୫
ବିକଳେ ଚଉଦିଗେ ଚାହିଁ ।
କାନ୍ଦଇ ମୁଣ୍ଡେ କର ଦେଇ ॥୧୫୬
ଆସ ବହନ ଗୋପୀନାଥ ।
ଗହଳେ ନ ଦିଶଇ ପଥ ॥୧୫୭
ମୋତେ ନିଶ୍ଚୟେ ନାଶ କଲୁ ।
ଗୋପୀଙ୍କ ସଙ୍ଗ ଛଡ଼ାଇଲୁ ॥୧୫୮
ପୂର୍ବର ଭାଗ୍ୟେ ତୋତେ ଦେଖି ।
ଏବେ ହୋଇଲି ନିରିମାଖୀ ॥୧୫୯

ଏକା କରିଣ ମୋତେ ଆଣି ।
ସୁଖେ ରମିଲୁ ବେଣୁପାଣି ॥୧୬୦
ମୁଁ ଦୁଃଖୀ କଲି ଦ୍ରୋହ କର୍ମ ।
ମତେ ହୋଇଲି ମତିଭ୍ରମ ॥୧୬୧
କନ୍ଧରେ ବସାଅ ବୋଇଲି ।
ଅଜ୍ଞାନେ ଦେହ ପାସୋରିଲି ॥୧୬୨
ଅବଳାଜନ୍ମ ମାତ୍ର କେତେ ।
ଯହୁଁ ମୁଁ ରମିଲି ଏକାନ୍ତେ ॥୧୬୩
କି ଦୋଷ କଲି ମୁହିଁ ତୋରେ ।
ନିବେଶି ଗଲୁ ବନଘୋରେ ॥୧୬୪
ଏମନ୍ତେ କାନ୍ଦଇ ତରୁଣୀ ।
କୃଷ୍ଣ ହସିଲେ ତାହା ଶୁଣି ॥୧୬୫
ଭାବକୁ ନିକଟ ଗୋସାଇଁ ।
ଭାବେ ପାଲଟାବସ୍ଥା ବହି ॥୧୬୬
ନିକଟେ ଥାଇ ନ ଦିଶନ୍ତି ।
ଗରବ କ୍ଷଣେ ନ ସହନ୍ତି ॥୧୬୭
ଗୋପୀଏ ଯାଉଥିଲେ ବନେ ।
ତା'ର ରୋଦନ ଶୁଣି କର୍ଣ୍ଣେ ॥୧୬୮
ନିକଟେ ମିଳିଲେ ତାହାର ।
ତୋଳିଲେ ଧରି ବେନି କର ॥୧୬୯
ସଚେତ କରି ପଚାରିଲେ ।
ବୋଇଲେ ଥିଲୁ କୃଷ୍ଣ ତୁଲେ ॥୧୭୦
ଏକା କରିଣ ତୋତେ ଆଣି ।
କି କି ଗୋ କଲେ ବେଣୁପାଣି॥୧୭୧
ପୁରୁଷ ଦଇନ୍ୟ ବେଭାର ।
ପକାଇ ହୋଇଲା ଅନ୍ତର ॥୧୭୨
ତୋତେ ପକାଇ ଘୋରବନେ ।
ଗୋବିନ୍ଦ ଗଲେ କେଉଁସ୍ଥାନେ॥୧୭୩
ଏଡ଼େ ନିଷ୍ଠୁର ତା'ର ଦେହୀ ।
ପୂତନା ପ୍ରାଣ ଅଛି ଖାଇ ॥୧୭୪
ଅନେକ ହତ୍ୟା ଅଛି କରି ।
ଏବେ ଖାଇବ ଗୋପନାରୀ ॥୧୭୫
ଅଇଲୁ ତା'ର ବେଣୁସ୍ୱନେ ।
ଘୋର ଗହନ ବୃନ୍ଦାବନେ ॥୧୭୬
ଛାଡ଼ିଲୁ ଗୃହ ସୁତ କାନ୍ତ ।
ଏବନେ ହୋଇଲୁଁ ଅନାଥ ॥୧୭୭

Dr. Sudhanshu Sekhar Mishra

ଏମନ୍ତ ପଥ ଅନୁସରି ।
କାନ୍ଦନ୍ତି କୃଷ୍ଣଙ୍କୁ ସୁମରି ॥୧୭୮
ସଖୀକି ହୃଦେ କୋଳକରି ।
କାନ୍ଦନ୍ତି ଷୋଳସସ୍ର ନାରୀ ॥୧୭୯
ସାହେର ଶବଦ ରୋଦନ ।
ଉଚ୍ଚବିଳାପ ବହୁସ୍ୱନ ॥୧୮୦
ଚେତନା କରଇ ଅଥିର ।
ହୃଦରେ କ୍ରୋଧ ଗୁରୁତର ॥୧୮୧
ସଖୀକି ପଚାରନ୍ତି ପୁଣି ।
କାହିଁ ଛାଡ଼ିଲୁ ବେଣୁପାଣି ॥୧୮୨
ସେ ନାରୀ ସଖୀ ଆଗେ କହି
ଯାହା ସେ କଲେ ଭାବଗ୍ରାହୀ ॥୧୮୩
ତାହାର ଗର୍ବମାନ ଯେତେ ।
କହିଲା ସଖୀଙ୍କ ଅଗ୍ରତେ ॥୧୮୪
ଶୁଣି ବିକଳ ଗୋପନାରୀ ।
ଉଚ୍ଚେ ବିଳାପଧ୍ୱନି କରି ॥୧୮୫

କାନନେ ପଶିଲେ ସକଳେ ।
ଷୋଳସହସ୍ର ଏକାବେଳେ ॥୧୮୬
ବୃକ୍ଷଗହଳ ଛାୟା ଦେଖି ।
ଅନ୍ଧାର ପ୍ରାୟ ଉପଲକ୍ଷି ॥୧୮୭
ଭୟେ ବାହୁଡ଼ିଲେ ସକଳେ ।
ପୁଣି ମିଳିଲେ ନଦୀକୂଳେ ॥୧୮୮
ମନ ନିବେଶି କୃଷ୍ଣପାଦେ ।
କାନ୍ଦନ୍ତି ଶୋକ ଗଦଗଦେ ॥୧୮୯
ଦେହ-ସଂସାର ପାସୋରିଲେ ।
ମରଣପଥ ଆବୋରିଲେ ॥୧୯୦
କୃଷ୍ଣଚରଣେ ମନ ଦେଇ ।
କାନ୍ଦନ୍ତି ଶୋକଭର ହୋଇ ॥୧୯୧
ନିର୍ମଳ ବାଲୁକା ବିଶେଷି ।
ସକଳ ସଖୀ ତହିଁ ବସି ॥୧୯୨
ସମାଧି ଯୋଗଧ୍ୟାନ ପ୍ରାୟେ ।
କୃଷ୍ଣ ଚରଣେ କରି ଲୟେ ॥୧୯୩

କୋଟି ସମ୍ପଦ ଦୂର କଲେ ।
ବ୍ରହ୍ମପ୍ରଦୀପ ଦେଖାଇଲେ ॥୧୯୪
ସେ ଗୋପୀ ଗୋବିନ୍ଦର ପାୟେ ।
ସୁଜନ ଜନ କର ଲୟେ ॥୧୯୫
ହରିଚରିତ ଭାଗବତ ।
ଅମୃତ ରସମୟ ଗୀତ ॥୧୯୬
ଏଣେ କରିବା ମନତୋଷ ।
କହଇ ଜଗନ୍ନାଥ ଦାସ ॥୧୯୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ରାସକ୍ରୀଡ଼ାୟାଂ
କୃଷ୍ଣାନ୍ୱେଷଣଂ ନାମ
ଏକତ୍ରିଂଶୋଽଧ୍ୟାୟଃ ॥

---

## ଦ୍ୱାତ୍ରିଂଶ ଅଧ୍ୟାୟ

ଶୁକ ଉବାଚ

ଗୋପୀଏ ବସି ବାଲିକୁଦେ ।
କାନ୍ଦନ୍ତି ଶୋକ ଗଦଗଦେ ॥୧

ଗୋପୀଜନ ଉବାଚ

ଭୋ ନାଥ ଯଶୋଦା କୁମର ।
ତୋ ଜନ୍ମ କାଳୁଁ ଗୋପପୁର ॥୨
ଦାରିଦ୍ର୍ୟ ଦୁଃଖ ତ ନ ଜାଣି ।
ଆମ୍ଭର ଘରେ କମଳିନୀ ॥୩
ଅନେକ ହୋଇଲା ସମ୍ପଦ ।
କେ କହୁ ଆମ୍ଭର ଆନନ୍ଦ ॥୪
ଆମ୍ଭ ଜୀବନ ଅଟୁ ତୁହି ।
ତୋ ତହୁଁ ଅନ୍ୟ ଗତି ନାହିଁ ॥୫
ତୋ'ର ସମ୍ପଦ ଭୋଗ କରି ।
ତୋ' ମୁଖ ଚାହିଁ ଦିନ ହରି ॥୬
ମୁରଲୀନାଦେ ଅଣାଇଲୁ ।
ମୁଖୁଁ ଅମୀୟରସ ଦେଲୁ ॥୭

ଘୋର-ଗହନ-ବନେ ଥୋଇ ।
ଅନାଥ କରି ଗଲୁ କାହିଁ ॥୮
ଏବେ ଦେଖାଅ ପଦ୍ମମୁଖ ।
ବାରେ ଜୀବନ ଆମ୍ଭ ରଖ ॥୯
ତୋହର ଆଶେ ବ୍ରଜନାରୀ ।
ଏ ବନେ ତୋତେ ଅନୁସରି ॥୧୦
ଆମ୍ଭର ଆରତ ବିନାଶୁ ।
କୋଟିଏ କାମ ପ୍ରାୟେ ଦିଶୁ ॥୧୧
ତୋ'ର ସେବକ ଦୁଃଖ ନାଶୁ ।
ନିରେଖିଜନଙ୍କୁ ଆଶ୍ୱାସୁ ॥୧୨
ତୋର ସେବକ ଆମ୍ଭେମାନେ ।
ତୋ ମୁଖ ନ ଦେଖୁଁ ନୟନେ ॥୧୩
ପଥ ନ ଦିଶେ ରାତ୍ରକାଳେ ।
ବୁଡ଼ାଇ ଗଲୁ ଶୋକଜଳେ ॥୧୪
ଭୋ ନାଥ କମଳଲୋଚନ ।
ଦେଖାଅ ନିର୍ମଳ ବଦନ ॥୧୫

ତୋ' ମୁଖକମଳର ତେଜେ ।
ଶରଦ-ପଦ୍ମ-ଶିରୀ ଗଞ୍ଜେ ॥୧୬
ସେ ଧନେ କିଣିଲୁ ଆମ୍ଭନ୍ତ ।
ଏ ବନେ କଲୁ ତୁ ଅନାଥ ॥୧୭
ସୁରତନାଥ ତୁ ଆମ୍ଭର ।
କିଣିଲା ଦାସୀ ଆମ୍ଭେ ତୋ'ର ॥୧୮
ଯାହାକୁ କିଣି ଧନ ଦେଇ ।
କେ ତାହା ଛାଡ଼େ ଭାବଗ୍ରାହୀ ॥୧୯
ସେ କି ନୋହଇ ତା'ର ବଧ ।
ବେଦ ପୁରାଣେ ଏହି ବାଦ ॥୨୦
ଅନେକ ଦୁଃଖୁଁ ଅଛୁ ରଖି ।
ଏବେ ତୁ କଲୁ ନିରିମାଖୀ ॥୨୧
ବକ ଉଦକ ଅଘାସୁର ।
ଇନ୍ଦ୍ର ବରଷା ମହାଘୋର ॥୨୨
ବନ ଅନଳ ଷଣ୍ଢ ମୁଖୁଁ ।
ତୁ ନାଥ ରଖିଛୁ ଆମ୍ଭଙ୍କୁ ॥୨୩

Dr. Sudhanshu Sekhar Mishra

ତୋହର ପାଦ ଆଶ୍ରେ କରି ।
ଜନ୍ମ ମରଣକୁ ନ ଡ଼ରି ।।୨୪
ତୁ ନୋହୁଁ ଯଶୋଦା କୁମର ।
ଜୀବନ ଅଟୁ ପ୍ରାଣୀଙ୍କର ।।୨୫
ସକଳ ଜନ୍ତୁ ହୃଦେ ଥାଇ ।
ଅନ୍ତର ଜାଣୁ ଭାବଗ୍ରାହୀ ।।୨୬
ତୋତେ ଚିନ୍ତିଲା ବେଦବର ।
ନାଶିଲୁ ଅବନୀର ଭାର ।।୨୭
ତେଣୁ ଯାଦବକୁଳେ ଜାତ ।
ତୋହର ନାହିଁ ଆଦି ଅନ୍ତ ।।୨୮
ଭୋ ବୃଷ୍ଣିବଂଶ ଚୂଡ଼ାମଣି ।
ଆମ୍ଭର ଶିରେ ଦିଅ ପାଣି ।।୨୯
ତୋହର କର ବ୍ରହ୍ମରାଶି ।
ଜନ୍ମ ମରଣ ଭୟ ନାଶି ।।୩୦
ପଦ୍ମ ହୁଁ ଅତି ସୁକୁମାର ।
କମଳା ବରିଅଛି ବର ।।୩୧
ତୋହର ପାଦପଦ୍ମ ଦୁଇ ।
ବନେ ଗୋରୁଙ୍କ ପଛେ ଥାଇ ।।୩୨
ପ୍ରଣତଦେହୀ ପାପ ନାଶ ।
ଜଳଧିତନୟାନିବାସ ।।୩୩
ସହସ୍ର ଫଣା କାଳୀୟର ।
ସୁନ୍ଦର କଲା ଯେ ପୟର ।।୩୪
ଆମ୍ଭର କୁଚେ ତା' ଲଗାଅ ।
କାମ ଅନଳ ତୁ ଲିଭାଅ ।।୩୫
ତୋହର ମଧୁର ବଚନ ।
ହୃଦେ ଭାବନ୍ତି ମୁନିଜନ ।।୩୬
ଆମ୍ଭେ ତୋହର ପରିବାରୀ ।
ମୂର୍ଚ୍ଛିତ ହୋଇଲୁ ମୁରାରି ।।୩୭
ତୋ'ର ଅଧରୁ ସୁଧା ଦେଇ ।
ଜୀବନ ରଖ ଭାବଗ୍ରାହୀ ।।୩୮
ତୋ'ର ଚରିତ ସୁଧାବାରି ।
ଶ୍ରୁତିଯୁଗଳେ ପାନ କରି ।।୩୯
ଜନ୍ମ ମରଣ ତାପ ନାଶେ ।
ଦୁରିତମାନ ଦେହୁ ଧ୍ୱଂସେ ।।୪୦
ମଙ୍ଗଳ କରେ ଶ୍ରୁତିପଥେ ।
ଯେ ଯାହା ବିଚାରେ ଜଗତେ ।।୪୧

ତେଣେ ଯେ ହୋଇ ଉନମତ୍ତା ।
ସେ ନର ଚତୁର୍ବର୍ଗଦାତା ।।୪୨
ତୋ' ଦରହସିତ ବଦନ ।
କୋମଳ ମଧୁର ବଚନ ।।୪୩
ଧ୍ୟାନମଙ୍ଗଳ ତୋ' ବିହାର ।
ଏକାନ୍ତ କଥା ହୃଦହାର ।।୪୪
କପଟ ପ୍ରାୟ ତୋ'ର ରୀତି ।
ଆମ୍ଭର ମନ ଏ ଦହନ୍ତି ।।୪୫
ତୁ ନାଥ ଗୋରୁଙ୍କର ମେଳେ ।
କାନନେ ଯାଉ ଯେତେବେଳେ ।।୪୬
କୋମଳ ପାଦପଦ୍ମ ଚାହିଁ ।
ଆମ୍ଭର ହୃଦୟ ଦହଇ ।।୪୭
କଣ୍ଟା ପାଷାଣ ତୃଣ ଲାଗି ।
ନ ପୁଣ ହୋଏ ଦୁଃଖଭୋଗୀ ।।୪୮
ଯେବେ ଲୋଚନେ ଦେଖୁଁ ତାହା ।
ତେବେ ସେ ସ୍ଥିର ହୋଏ ହିଆ ।।୪୯
ବନୁ ଯେ ଆସୁ ଦିନଅନ୍ତେ ।
ଆତୁର ହୋଇ ଦେଖୁଁ ପଥେ ।।୫୦
କପୋଳେ କୁଟୀଳ କୁନ୍ତଳ ।
ହୃଦେ ଲମ୍ବଇ ବନମାଳ ।।୫୧
ଗୋରଜ ଦେଖି ତୋ'ର ଦେହେ ।
ଆମ୍ଭ ଜୀବନ କାମ ଦହେ ।।୫୨
ତୋ'ର ଅଭୟ ପଦ୍ମପାଦ ।
ଶରଣଜନଙ୍କ ସମ୍ପଦ ।।୫୩
କମଳା ଦଣ୍ଡେ ନ ଛାଡ଼ଇ ।
ଆପଦ କାଳେ ଯାହା ଧ୍ୟାୟି ।।୫୪
ଅନେକ ସୁଖ ପ୍ରସରଇ ।
ରଖ ଆମ୍ଭଙ୍କୁ ସ୍ତନେ ଦେଇ ।।୫୫
ସୁରତ ପଣେ ବଳୀୟାର ।
ଶୋକ ବିନାଶେ ପ୍ରାଣୀଙ୍କର ।।୫୬
ସୁସ୍ୱର ବେଣୁ ଯେ ଅଧରେ ।
ଜନ୍ମ ମରଣ ତାପ ହରେ ।।୫୭
ତୁ ସେ ଅଧର ସୁଧାରସ ।
ଦେଇ ଆମ୍ଭର ମନ ତୋଷ ।।୫୮
ଗୋରୁ ଚରାଇ ଯାଉ ବନେ ।
ତୋତେ ନ ଦେଖିଲେ ନୟନେ ।।୫୯

ନିମିଷ ଯୁଗ ପ୍ରାୟ ମଣୁ ।
ଗୁରୁ ଗଉରବ ନ ଗଣୁ ।।୬୦
ତୁ ଯେତେବେଳେ ଗୋପେ ପଶୁ ।
ପଥେ ମୁରଲୀ ନାଦ ଘୋଷୁ ।।୬୧
କୁଟୀଳ-କୁନ୍ତଳ-ବଦନ ।
ଦେଖି ନ ଚଳଇ ନୟନ ।।୬୨
ପତି ତନୟ ବନ୍ଧୁ ଭାଇ ।
ଆମ୍ଭେ ତେଜିଲୁ ତୋ'ର ପାଇଁ ।।୬୩
ସୁସ୍ୱରେ ଗାଉ ବେଣୁଗୀତ ।
ଆମ୍ଭେ ହୋଇଲୁ ମୂରୁଛିତ ।।୬୪
ରାତ୍ରେ ଆଣିଲୁ ଘୋରବନେ ।
ଆମ୍ଭଙ୍କୁ ତେଜିଲୁ କେସନେ ।।୬୫
ଏଡ଼େ ନିର୍ଦ୍ଦୟ ତୋ'ଶରୀର ।
ବିଶ୍ୱାସ ନାଶିଲୁ ଆମ୍ଭର ।।୬୬
ଶୁଣି ତୋ' ଏକାନ୍ତ ବଚନ ।
ହୃଦୟ ଦହଇ ମଦନ ।।୬୭
ଅଳପ ହାସ୍ୟ ମୁଖ ଦେଖି ।
ପିଛାଡ଼ି ନ ପାରୁ ଯେ ଆଖି ।।୬୮
ତୋହର ଶ୍ରୀମୁଖ ଅନାଇଁ ।
ଆମ୍ଭର ମନ ନ ରହଇ ।।୬୯
ଆମ୍ଭ ଆରତ ଖଣ୍ଡିବାରେ ।
ତୋର ଜନମ ଗୋପପୁରେ ।।୭୦
ସୁଫଳ କରଇ ସଂସାର ।
ଦେହୁ ଖଣ୍ଡଇ ତମଘୋର ।।୭୧
ତୋ' ପାଦୁଁ ଆନଗତି ନାହିଁ ।
ନିରାଶ ନ କର ଗୋସାଇଁ ।।୭୨
ଯେବେଣ ପାଦ ଆମ୍ଭେ ଧରି ।
ସ୍ତନେ ନ ଚାପୁ ଗୋପନାରୀ ।।୭୩
କର୍କଶସ୍ତନ ଯେ ଆମ୍ଭରି ।
ପ୍ରାସ କରିବ ବୋଲି ଡ଼ରି ।।୭୪
ସେ ବେନିପାଦେ ତୃଣାଙ୍କୁରେ ।
ଏବେ ଚାଲିଲୁ ବନଘୋରେ ।।୭୫
ନ ପୁଣ କ୍ଷତ ହୋଏ ପାଦ ।
ମନରେ ଲଭୁଛୁଁ ବିଷାଦ ।।୭୬
ତୋହର ଦାସ ଜଗନ୍ନାଥ ।
ସେ ପାଦେ ରଖ ଗୋପୀନାଥ ।।୭୭

Dr. Sudhanshu Sekhar Mishra

ବୁଡ଼ିଲି ଘୋର ଭବଜଳେ ।
ଉଦ୍ଧରି ଥୁଅ ନେଇ କୂଳେ ॥୭୮
ପୁରାଣରସ ଭାଗବତ ।
କହଇ ଦାସ ଜଗନ୍ନାଥ ॥୭୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ରାସକ୍ରୀଡ଼ାୟାଂ ଗୋପୀଗୀତଂ ନାମ
ଦ୍ୱାତ୍ରିଂଶୋଽଧ୍ୟାୟଃ ॥

---

## ତ୍ରୟତ୍ରିଂଶ ଅଧ୍ୟାୟ

କହନ୍ତି ଶୁକ ମହାମୁନି ।
ଶୁଣ ରାଜନ ଚୂଡ଼ାମଣି ॥୧
ଏମନ୍ତେ ବନେ ଗୋପନାରୀ ।
କାନ୍ଦନ୍ତି କୃଷ୍ଣନାମ ଧରି ॥୨
ଜୀବନ କୃଷ୍ଣପାଦେ ଦେଇ ।
ଦିଶ-ଆକାଶ ନ ଦିଶଇ ॥୩
ରୋଦନ ଉଚ୍ଚସ୍ୱରେ ଧ୍ୱନି ।
କ୍ଷତ ହରିଣୀପ୍ରାୟେ ଜାଣି ॥୪
ଗୋପୀଙ୍କ ରୋଦନ ଶବଦ ।
ରାତ୍ରେ କୋକିଳସ୍ୱର ନାଦ ॥୫
ଶୁକ ଝିଙ୍କାରୀ ପକ୍ଷୀକୁଳ ।
ଶୁଣିଲେ ଗୋପୀଙ୍କ ବିକଳ ॥୬
ପୃଥ୍ୱୀ ସହିତେ ଶୋକ କରି ।
ଆକାଶ ଦିଗେ ଧ୍ୱନି ପୂରି ॥୭
ଶ୍ରୀହରି ନାମ କୀରିତନ ।
ରୋଦନ କରି ଅଚେତନ ॥୮
ଭକ୍ତବତ୍ସଳ ଦୟାନିଧି ।
ଶରଣ ସୋଦର ବାରିଧି ॥୯
ଭକତଜନ ମୋକ୍ଷପାଳ ।
ଶୁଣିଲେ ଗୋପୀଙ୍କ ବିକଳ ॥୧୦
ଭାବକୁ ନିକଟ ମୁରାରି ।
ଗର୍ବ ଯେ କଲେ ଗୋପନାରୀ ॥୧୧
ବନେ ଅନେକ ଦୁଃଖ ଦେଇ ।
ତୋଷ ହୋଇଲେ ଭାବଗ୍ରାହୀ ॥୧୨
ଯେସନେ ଜଳଦେ ବିଜୁଳି ।
ଗୋପୀଙ୍କ ମଧ୍ୟେ ଯାଇ ମିଳି ॥୧୩

ନୀଳ ଶରୀର ପୀତବାସ ।
ମୁଖପଙ୍କଜେ ମନ୍ଦହାସ ॥୧୪
କଣ୍ଠେ ଲମ୍ବଇ ବନମାଳ ।
ସୁନ୍ଦର ମଦନଗୋପାଳ ॥୧୫
ଭୁଜ ବିସ୍ତାରି ନରହରି ।
ଡ଼ାକନ୍ତି ଆସ ଗୋପନାରୀ ॥୧୬
ଗୋପୀ ଚାହିଁଲେ ତାହା ଶୁଣି ।
ମଧ୍ୟେ ବିଜୟ ଚକ୍ରପାଣି ॥୧୭
ଜୀବନ ପାଇଲେ ସକଳେ ।
ଗୋପୀ ଉଠିଲେ ଏକାବେଳେ ॥୧୮
ପତଙ୍ଗଅନଳକୁ ଚାହିଁ ।
ଯେହ୍ନେ ପଡ଼ନ୍ତି ବେଗେ ଧାଇଁ ॥୧୯
ବହନ ବେଢ଼ିଲେ ମୁରାରି ।
ଧନ୍ୟଜୀବନ ବ୍ରଜନାରୀ ॥୨୦
ପରମଆତ୍ମା ପୁରୁଷକୁ ।
ପାଇଣ ଦମ୍ଭ କଲେ ବୁକୁ ॥୨୧
ଅଙ୍ଗୁଳି ଛନ୍ଦନ୍ତି କେ କରେ ।
ଚରଣ ଭିଡ଼ନ୍ତି ନିର୍ଭରେ ॥୨୨
କେ ବାହୁମୂଳେ କୋଳ କଲା ।
କେ ପାଦ ଅଙ୍ଗୁଳି ଧଇଲା ॥୨୩
କେ ପିଠି କୋଳକରି ରହି ।
କେ ଜାନୁ ଧଇଲାକ ଯାଇ ॥୨୪
କେ ମୁଖେ ମୁଖଭରି ଚାହେଁ ।
କେ ସ୍ତମ୍ଭ ପ୍ରାୟେ ହୋଇ ରହେ ॥୨୫
କେ ଗୋପୀ ନୟନ ଆକର୍ଷି ।
କଟାକ୍ଷ ଭାବେ ଦରହାସି ॥୨୬

ବେଢ଼ି ଧଇଲେ ନାରାୟଣ ।
ବିଚିତ୍ର ଭଙ୍ଗିମା କରିଣ ॥୨୭
ପଣତେ ବାନ୍ଧି ବନମାଳୀ ।
ଆନନ୍ଦେ ଦେଲେ ହୁଳହୁଳି ॥୨୮
କେ କୁଚ ପରେ ଆଲିଙ୍ଗନ ।
କେ ମୁଖେ ଦିଅନ୍ତି ଚୁମ୍ବନ ॥୨୯
କେ ଗୋପୀ ଅଧରେ ଅଧର ।
ତାମ୍ବୁଳ କରନ୍ତି ଆହାର ॥୩୦
କେ ବେନିହସ୍ତେ ପାଦ ଧରି ।
ସ୍ତନେ ଚାପଇ ଗୋପନାରୀ ॥୩୧
କେ ଗୋପୀ ହୃଦେ ହସ୍ତ ଦେଇ ।
କଟାକ୍ଷ-ନୟନେ ଅନାଇଁ ॥୩୨
କେ ଦୂରୁଁ ଚାହେଁ କୋପକରି ।
ସୁରଙ୍ଗ ଅଧର କାମୋଡ଼ି ॥୩୩
କେ ଯାଇ ନ ପାରେ ଗହଳେ ।
ଧୀରେ ଚାହିଁଇ ବେନିଡ଼ୋଳେ ॥୩୪
ଚକ୍ଷୁ ବୁଜିଣ ରସଭରେ ।
ଗୋବିନ୍ଦେ ଦେଖିଲା ଭିତରେ ॥୩୫
ଅଣ୍ଟାଳି କଲା ଆଲିଙ୍ଗନ ।
ତାପ ଛାଡ଼ିଲା ଗୋପୀମନ ॥୩୬
କେ ରୂପ ଦେଖି ଚକ୍ଷୁ ବୁଜି ।
ପୁଲକ କଲା ରୋମରାଜି ॥୩୭
ଆନନ୍ଦମନେ ଧ୍ୟାନ କଲା ।
ଯୋଗୀଙ୍କ ପ୍ରାୟେ ସେ ରହିଲା ॥୩୮
କୃଷ୍ଣର ଦର୍ଶନେ ଆନନ୍ଦ ।
ଛାଡ଼ିଲେ ମନୁ ଚିନ୍ତା ଖେଦ ॥୩୯

Dr. Sudhanshu Sekhar Mishra

ବ୍ରହ୍ମସମାଧି ଲଭି ଜନେ ।
ନିଶ୍ଚଳ ହୋନ୍ତି ଯୋଗଧ୍ୟାନେ ॥୪୦
ତକ୍ଷଣେ ଉଠିଲେ ମୁରାରି ।
ଆବୋରିଛନ୍ତି ବ୍ରଜନାରୀ ॥୪୧
ଯେସନେ ବ୍ରହ୍ମ ଗୁଣବନ୍ତ ।
ଅଧିକ ଶୋଭା ଗୋପୀନାଥ ॥୪୨
ଗୋପୀଙ୍କି ଘେନି ବନମାଳୀ ।
ଯମୁନା ବାଲିକୁଦେ ମିଳି ॥୪୩
କୁନ୍ଦ ମନ୍ଦାର ଫୁଲ ଗନ୍ଧ ।
ବିକାଶେ ଭ୍ରମର ସମ୍ପଦ ॥୪୪
ଶରଦଚନ୍ଦ୍ର ଯେହ୍ନେ ଝଳି ।
ନିର୍ମଳ ବିରାଜଇ ବାଲି ॥୪୫
କୃଷ୍ଣର ଦେହବର୍ଣ୍ଣ ଝଳି ।
ଯେସନେ ବିରାଜେ ବିଜୁଳି ॥୪୬
ପାଇଣ କୃଷ୍ଣ ଅଙ୍ଗସଙ୍ଗ ।
ତାପ ଛାଡ଼ିଲେ ଗୋପୀଅଙ୍ଗ ॥୪୭
ବ୍ରହ୍ମ ବିଚାରେ ଜ୍ଞାନ ପାଇ ।
ଯେହ୍ନେ ପଣ୍ଡିତ ତୋଷ ହୋଇ ॥୪୮
ପାଲଟି ପାଡ଼ିଲେ ବସନ ।
କୃଷ୍ଣଙ୍କୁ ବସାଇ ଆସନ ॥୪୯
ବୋଲନ୍ତି ବସ ପ୍ରାଣନାଥ ।
ବୁଲି ଯେ ଅଛ ଘୋରପଥ ॥୫୦
ବସ୍ତ୍ର ଆସନେ କୃଷ୍ଣ ବସି ।
ଗୋପୀଙ୍କ ମୁଖ ଚାହିଁ ହସି ॥୫୧
ଯାହାଙ୍କୁ ହୃଦେ ଯୋଗୀଜନେ ।
ବସାନ୍ତି କଳ୍ପିତ ଆସନେ ॥୫୨
ଦିବ୍ୟ କନକ ସିଂହାସନ ।
ପାଟପଟନି ବିଦ୍ୟମାନ ॥୫୩
ଅମରବୃନ୍ଦ ଏକମେଳେ ।
ଆସନ କରନ୍ତି ନିରୋଳେ ॥୫୪
ବସାଇ ନ ପାରନ୍ତି ହରି ।
ଧ୍ୟାନପଥରେ ଅନୁସରି ॥୫୫
ସେ ସ୍ୱାମୀ ପାଲଟା ବସନେ ।
ପାଡ଼ିଣ କଲେକ ଆସନେ ॥୫୬
ଭାବକୁ ହୋଏ ଏଡ଼େ ବାଇ ।
ପୂର୍ବେ ପାଲଟାବସ୍ତ୍ର ବହି ॥୫୭

ଗୋପୀଙ୍କ ଭାବ ହୃଦେ ଧରି ।
ମଧ୍ୟେ ବିଜୟ ନରହରି ॥୫୮
ଅଶେଷ-ବ୍ରହ୍ମାଣ୍ଡ-ଠାକୁର ।
ରୂପେ କି ଦେବା ପଟାନ୍ତର ॥୫୯
କୃଷ୍ଣେ ବସାଇ ଗୋପୀଜନେ ।
ଚାହାଁନ୍ତି କଟାକ୍ଷ ନୟନେ ॥୬୦
ହରିର ବେନିଭୁଜ ଧରି ।
କୋପେ ବୋଲନ୍ତି ଗୋପନାରୀ ॥୬୧
ତୁ ଧୂର୍ତ୍ତ ଚତୁର ନାଗର ।
ଆମ୍ଭଙ୍କୁ ଛାଡ଼ି ବନଘୋର ॥୬୨
ତୁ ପୁଣି ଯାଉ ଏକା ହୋଇ ।
ସଖୀ ଗୋଟିଏ ସଙ୍ଗେ ଲଇଁ ॥୬୩
ନିଶାରେ ଛାଡ଼ି ଗଲୁ କେଣେ ।
ଆମ୍ଭେ ବୁଲିଲୁ ବଣେ ବଣେ ॥୬୪
ଏଡ଼େ ନିଷ୍ଠୁର ତୋ'ର ଦେହୀ ।
ବିପିନେ ଛାଡ଼ି ଗଲୁ କାହିଁ ॥୬୫
ଆମ୍ଭେ ତ ନୋହୁ ତୋ'ର ରିପୁ ।
ତୋହର ନାମ ହୃଦେ ଜପୁ ॥୬୬
ଆମ୍ଭଙ୍କୁ ନିର୍ଦ୍ଦୟା ତୋହର ।
ଏବେ ଜାଣିଲୁ ବେଣୁଧର ॥୬୭
ବିଶ୍ୱାସେ ପୂତନା ପରାଣ ।
ପିଇ ଯେ ଅଛୁ ନାରାୟଣ ॥୬୮
ଏତେ କହିଣ ଗୋପନାରୀ ।
ବିମ୍ବଅଧର କରେ ଧରି ॥୬୯
ଶ୍ରୀମୁଖୁଁ କଲେ ମଧୁପାନ ।
ଆକର୍ଷି ଦେଲେକ ଚୁମ୍ବନ ॥୭୦
ଧନ୍ୟ ଜୀବନ ଗୋପବଧୂ ।
ଭାବେ ପାଇଲେ ସୁଖସିନ୍ଧୁ ॥୭୧
ସମସ୍ତେ ବେଢ଼ିଣ ବସିଲେ ।
ବିଚ୍ଛେଦ କଥା ପଚାରିଲେ ॥୭୨
ବୋଲନ୍ତି ଶୁଣ ପ୍ରାଣନାଥ ।
ଆମ୍ଭେ ଦେଖିଲୁ ବିପରୀତ ॥୭୩
ଭଜନ୍ତା ଜନେ କେ ଭଜଇ ।
ନ ଭଜିଲେ ବା ଭଜେ କେହି ॥୭୪
ଯେ ଯା'କୁ ଭାବେଣ ଭଜଇ ।
ସେ ପୁଣି ତାହାକୁ ତେଜଇ ॥୭୫

ଭୋ ନାଥ ତୋହର ପରାୟେ ।
ଭାବେ ନ ଭଜନ୍ତି ଥୋକାଏ ॥୭୬
ସେ ବେନିକୁଳ ନ ଭଜନ୍ତି ।
ଭୋ ନାଥ ଫେଡ଼ ମନୁ ଭ୍ରାନ୍ତି ॥୭୭
ଶୁଣି ବୋଲନ୍ତି କୃଷ୍ଣ ହସି ।
ବରଜଯୁବତୀ ଆଶ୍ୱାସି ॥୭୮
ଶୁଣ ସକଳ ଗୋପନାରୀ ।
ଯେ ଯାହା ଭାବେ ପ୍ରୀତିକରି ॥୭୯
ଏକ ଆରେକ ଉପକାରେ ।
ଭଜନ୍ତି ସଂସାର ବେଭାରେ ॥୮୦
ଯହିଁ ସୁହୃଦପଣ ନାହିଁ ।
ଭାବ ନ ଦେଖିଲେ ଛାଡ଼ଇ ॥୮୧
ଭାବ ନ ଦେଖିଲେ ଭଜଇ ।
ତାତ ଜନନୀ ପ୍ରାୟ ହୋଇ ॥୮୨
ତାହାକୁ ବୋଲି ବଡ଼ପଣ ।
ସେ ପାଇ ବିଷ୍ଣୁର ଚରଣ ॥୮୩
ଥୋକେ ଭକତ ନ ଭଜନ୍ତି ।
ଆତ୍ମବଡ଼ିମା ପ୍ରକାଶନ୍ତି ॥୮୪
ସେ ଗୁରୁଦ୍ରୋହ ଦୋଷ ପାଇ ।
ଉଭୟ ଲୋକେ ସୁଖ ନାହିଁ ॥୮୫
ଶୁଣ ଗୁଆଳୀ ସାବଧାନେ ।
ମୋତେ ଭଜନ୍ତି ଯେତେ ଜନେ ॥୮୬
ତାହାଙ୍କୁ ଭଜୁଥାଇ ମୁହିଁ ।
ମୁ ତାଙ୍କ ଭକତି ଜାଣଇଁ ॥୮୭
ମୋତେ ଯେ ଭକତି କରନ୍ତି ।
ନିଶ୍ଚଳ ହୋଏ ତାଙ୍କ ମତି ॥୮୮
ଦରିଦ୍ର ଯେହ୍ନେ ଧନ ପାଇ ।
ପ୍ରାଣୁ ଅଧିକ ସମ୍ଭାଳଇ ॥୮୯
କାଳେ ହରାଇ ସେହି ଧନ ।
ବିଷାଦ ହୋଏ ତାର ମନ ॥୯୦
ଭାଳଇ ଧନେ ମନ ଦେଇ ।
କ୍ଷୁଧା ପିପାସା ନ ଲାଗଇ ॥୯୧
ପୁଣି ପ୍ରାପତ ହୋଏ ଧନ ।
ଆତ୍ମାରୁ ଅଧିକେ ଯତନ ॥୯୨
ତେମନ୍ତ ହୋଇ ନରଲୋକେ ।
ଭକତି କରୁଥା'ନ୍ତି ଥୋକେ ॥୯୩

Dr. Sudhanshu Sekhar Mishra

ତୁମ୍ଭେ ତେମନ୍ତ ପ୍ରାୟେ ହୋଇ ।
ମୋହର ପାଦେ ଚିତ୍ତ ଦେଇ ॥୯୪
ଲୋକ ବେଭାର ବେଦପଥ ।
ଛାଡ଼ି ଭଜିଲ ଅବିରତ ॥୯୫
ପ୍ରେମେ ବିଳାପ କଲ ଯେତେ ।
ଶୁଣିଲି ତୁମ୍ଭର ସଙ୍ଗତେ ॥୯୬
ପଛେ ମୁଁ ଥାଇ ତୁମ୍ଭ ତୁଲେ ।
ଭକତି ଜାଣିଲଇଁ ଭଲେ ॥୯୭
ଗରବ କଲ ତୁମ୍ଭେ ଯାହା ।
ମନେ ମୁଁ ଜାଣିଲଇଁ ତାହା ॥୯୮
ସେ ଘେନି ହୋଇଲି ଅନ୍ତର ।
ଗର୍ବଗଞ୍ଜନ-ବାନା ମୋର ॥୯୯
ତୁମ୍ଭର ଗର୍ବ ଗଞ୍ଜିବାରେ ।
ଅଦୃଶ୍ୟ ହୋଇଲି ଅନ୍ଧାରେ ॥୧୦୦
ତୁମ୍ଭର ପ୍ରେମଭକ୍ତି ଜାଣି ।
ଆସି ମିଳିଲି ଏବେ ପୁଣି ॥୧୦୧
ଏ କଥା ମୋର ଭଲପଣ ।
ତୁମ୍ଭଙ୍କୁ ହୋଇଲା କାରଣ ॥୧୦୨
ଆବର ଗର୍ବ ନ କରିବ ।
ମୋ' ନାମ ନିରତେ ଭାବିବ॥୧୦୩
ମୋତେ ନ କର ତୁମ୍ଭେ ରୋଷ ।
ମୁଁ ତୁମ୍ଭ ପୁରାଇବି ଆଶ ॥୧୦୪
ତୁମ୍ଭର ଭାବ ମୁଁ ଜାଣଇ ।
ଛନ୍ଦ କୁଟିଳ ମାୟା ନାହିଁ ॥୧୦୫
ଅନେକ କାଳେହେଁ ତୁମ୍ଭର ।
ଶୁଝି ନ ପାରେ ଉପକାର ॥୧୦୬
ମୋହର ମାୟାର ଶାଙ୍କୋଳି ।
ଭାବେ କାଟିଲ ଗୋବାଳୀ ॥୧୦୭
ତୁମ୍ଭର ଜନ୍ମ ବନ୍ଧ ନାହିଁ ।
ମୋତେ କିଣିଲ ଭାବ ଦେଇ॥୧୦୮
ମୋ'ର ଭକତି ଯେ ଲୋଡ଼ନ୍ତି ।
ସେ ମୋ'ର ପଥ ଆବୋରନ୍ତି ॥୧୦୯
ମୁହିଁ ଠାକୁର ତାହାଙ୍କର ।
ସୁଜନଜନଙ୍କ ବେଭାର ॥୧୧୦
କହଇ ଦାସ ଜଗନ୍ନାଥ ।
ମୁଁ କୃଷ୍ଣ ସେବକର ଭୃତ୍ୟ ॥୧୧୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ରାସକ୍ରୀଡ଼ାୟାଂ
ଗୋପୀସାନ୍ତ୍ୱନଂ ନାମ
ତ୍ରୟତ୍ରିଂଶୋଽଧ୍ୟାୟଃ ॥

---

## ଚତୁସ୍ତ୍ରିଂଶ ଅଧ୍ୟାୟ

କହନ୍ତି ବ୍ୟାସଙ୍କ ତନୁଜ ।
ଶୁଣ ପରୀକ୍ଷ ମହାରାଜ ॥୧

ଶୁକ ଉବାଚ

ଗୋପୀଏ କୃଷ୍ଣ ବୋଲ ଶୁଣି ।
ଚିନ୍ତା ଛାଡିଲେ ମନେ ଗୁଣି ॥୨
ସେ ବାଳିକୁଦେ ହୃଷୀକେଶ ।
ଆରମ୍ଭ କଲେ କେଳିରସ ॥୩
ରାସଉତ୍ସବେ ବ୍ରଜନାରୀ ।
ଏକର କର ଆରେ ଧରି ॥୪
ଅନନ୍ତ ମାୟାଯୋଗ କରି ।
ଷୋଳସହସ୍ର ରୂପ ଧରି ॥୫
ଗୋପୀ କେ ଗୋବିନ୍ଦ ଗୋଟିଏ।
ସ୍ୱର୍ଗେ ଦେଖନ୍ତି ଦେବତାଏ ॥୬
କେ କଣ୍ଠତଟେ ଭିଡ଼ି ତୋଷେ ।
ଚୁମ୍ବନ ଦିଅନ୍ତି ହରଷେ ॥୭
କୃଷ୍ଣର ଦେଖି କ୍ରୀଡ଼ାରସ ।
ତ୍ରିଦଶେ ହୋଇଲେ ହରଷ ॥୮
ଗନ୍ଧର୍ବ ଯକ୍ଷ ଅପସରୀ ।
ବିମାନେ ଗଗନେ ସଞ୍ଚରି ॥୯
ଦେଖନ୍ତି ଗୋବିନ୍ଦର କେଳି ।
ସପତ-ସ୍ୱର୍ଗଲୋକେ ମିଳି ॥୧୦
ଦୁନ୍ଦୁଭିନାଦ ଗୀତସ୍ୱରେ ।
କୁସୁମ ବରଷନ୍ତି ଶିରେ ॥୧୧
ଗନ୍ଧର୍ବେ ଅପସରୀ ମେଳେ ।
ନୃତ୍ୟ କରନ୍ତି ରସଭୋଳେ ॥୧୨
ହରି-ବିନୋଦେ ବ୍ରଜନାରୀ ।
ଆନନ୍ଦେ ବୃନ୍ଦାବନେ ପୁରି ॥୧୩
ଅମରେ ସ୍ୱଦାରା ସହିତେ ।
ବିମାନେ ବସି ଶୂନ୍ୟପଥେ ॥୧୪
ଦେଖନ୍ତି ଗୋବିନ୍ଦର ନୃତ୍ୟ ।
ସମସ୍ତେ ହୋଇ ମୋହଗତ ॥୧୫
ଗୋପୀଙ୍କ ଢ଼ଳିବାର ଗତି ।
ଅଙ୍ଗଭଙ୍ଗିମା ଝଲକନ୍ତି ॥୧୬
ବଳୟ ନୂପୁର ଶବଦେ ।
କିଙ୍କିଣି ତାଳ ଗୀତନାଦେ ॥୧୭
କେହି ନ ଶୁଣନ୍ତି ଗହଳେ ।
କୃଷ୍ଣର ମାୟାଯୋଗ ବଳେ ॥୧୮
ନୀଳପର୍ବତ ମଧ୍ୟେ କରି ।
ଯେସନେ ସୁବର୍ଣ୍ଣପାଚେରୀ ॥୧୯
ଗୋପୀଙ୍କ ମଧ୍ୟେ ଶିରୀରଙ୍ଗ ।
ସୁନ୍ଦର କୋଟିଏ ଅନଙ୍ଗ ॥୨୦
ନୃତ୍ୟ କରନ୍ତି ଗୋପନାରୀ ।
ଗୀତେ ମୋହିଲେ ନରହରି ॥୨୧
ବେନି ଯୁବତୀ କନ୍ଧେ କର ।
ଦେଇଣ ଉଭା ଚକ୍ରଧର ॥୨୨
ଏ ବିଧି ସବୁ ନାରୀ କନ୍ଧେ ।
ଭୁଜଯୁଗଳ ଦେଇ ଛନ୍ଦେ ॥୨୩
ଯେହ୍ନେ କନକକଣ୍ଠି ବେନି ।
ମଧ୍ୟରେ ଶୋହେ ନୀଳମଣି ॥୨୪
ହୋଇଣ ଅନେକ ପୀରତି ।
ମଣ୍ଡଳ ଆକାର ଯୁବତୀ ॥୨୫
ପାଦ ଚାଳନ୍ତି ଅଙ୍ଗଭଙ୍ଗେ ।
ଭ୍ରୂକୁଟି କୁଟିଳ ଅପାଙ୍ଗେ ॥୨୬

Dr. Sudhanshu Sekhar Mishra

କୁଚମଣ୍ଡଳୁ ବସ୍ତ୍ର ଚଳି ।
ନାଚନ୍ତି ଦେଇ କରତାଳି ॥୨୭
ମୁଖେ ଶୋହଇ ଶ୍ରମଝାଳ ।
କବରୀ ଖସି ଫୁଲମାଳ ॥୨୮
ବସ୍ତ୍ର ପଡ଼ଇ ଫିଟି ତଳେ ।
କଟୀମେଖଳା ଅସମ୍ଭାଳେ ॥୨୯
ବିଜୁଳି ଯେହ୍ନେ ନୀଳମେଘେ ।
ଦିଶନ୍ତି ଗୋବିନ୍ଦର ଲାଗେ ॥୩୦
ଗୋପୀଏ ମିଳି ନୃତ୍ୟରସେ ।
ଗାବନ୍ତି ଗୀତ ମନତୋଷେ ॥୩୧
ଅତି ସୁସ୍ୱରେ କଲେ ଗାନ ।
ଶବଦେ ପୂରିଲା ଗଗନ ॥୩୨
ଏକ ଗୋପିକା କୃଷ୍ଣ ସଙ୍ଗେ ।
ଆଳାପ କଲା ଗୀତରାଗେ ॥୩୩
ଷଡ୍‌ଜ ଆଦି ପଞ୍ଚସ୍ୱର ।
ମୋହିଲା କମଳାର ବର ॥୩୪
ସେ ନାଦ ଘେନି ଆର ଗୋପୀ ।
ଆଳାପ କଲାକ ନିରୋପି ॥୩୫
ଧ୍ରୁବତାଳରେ ବିଶ୍ରାମିଲା ।
ଶୁଣି ହସନ୍ତି ନନ୍ଦବଳା ॥୩୬
କେ ଶ୍ରମେ କୃଷ୍ଣ ପାଶେ ଥାଇ ।
ଭୁଜେ ଆଲିଙ୍ଗନ କରଇ ॥୩୭
କୃଷ୍ଣର କନ୍ଧେ ଦେଇ ହସ୍ତ ।
ଶିଥିଳ ହେଲା ଝୀନବସ୍ତ୍ର ॥୩୮
କବରୀ ଫିଟି ଫୁଲମାଳେ ।
ଅବନୀ ପଡ଼ିଲେ ଗହଳେ ॥୩୯
ଶ୍ରୀକୃଷ୍ଣ ଭୁଜ ଧରି ଗୋପୀ ।
ଆଘ୍ରାଣ କଲା ଶ୍ୱାସ କ୍ଷେପି ॥୪୦
ଚନ୍ଦନେ ସାମଳିଲା ହୋଇ ।
ଉତ୍ପଳ ପ୍ରାୟେକ ବାସଇ ॥୪୧
ଆଘ୍ରାଣ କରି ନାସା ଦ୍ୱାରେ ।
ରୋମାଞ୍ଚ ହୋଇଲା ଶରୀରେ ॥୪୨
କେ ଗୋପୀ ନାଟଶ୍ରମ ପାଇ ।
ଗୋବିନ୍ଦ କର୍ଣ୍ଣମୂଳେ ଯାଇ ॥୪୩

କୁଣ୍ଡଳ ତଳେ ମୁଖ ଦେଲା ।
ଚୁମ୍ବନ୍ତେ ତାମ୍ବୁଳ ପାଇଲା ॥୪୪
କେ ଭୁଜ ଧରି କୁଚେ ଚାପି ।
କେ ମୁଖେ ଚାହାଁନ୍ତି ନିରୋପି ॥୪୫
କଟିମେଖଳା କ୍ଷୁଦ୍ରଘଣ୍ଟି ।
ଶବଦ କରି ନୃତ୍ୟେ ଫୁଟି ॥୪୬
ଗୋବିନ୍ଦ କର ଦେଇ ଶିରେ ।
ଶ୍ରମ ଛାଡ଼ିଲେ ସୁଖଭରେ ॥୪୭
କୃଷ୍ଣଙ୍କୁ କାନ୍ତପଣେ ପାଇ ।
ଗୋପୀ ରମିଲେ ତୋଷ ହୋଇ ॥୪୮
ହରିର କଣ୍ଠେ ଭୁଜ ଦେଇ ।
ତୋଷେ ରମିଲେ ଗୀତ ଗାଇ ॥୪୯
ନୀଳ ଉତ୍ପଳ ଗୋପୀ କର୍ଣ୍ଣେ ।
ଅଳକେ ଶୋହେ ଝାଳ ଶ୍ରମେ ॥୫୦
ବଳୟ ନୂପୁର ଶବଦେ ।
ଗୋବିନ୍ଦ ନାଚନ୍ତି ଆନନ୍ଦେ ॥୫୧
ଭ୍ରମିଣ ରଙ୍ଗେ ନୃତ୍ୟକରି ।
ରାସ ଉତ୍ସବେ ବ୍ରଜନାରୀ ॥୫୨
କବରୀ ଫିଟି ଫୁଲମାଳ ।
କଟିମେଖଳା ଅସମ୍ଭାଳ ॥୫୩
ଏମନ୍ତେ ନାନାରସ ବନ୍ଧେ ।
ଗୋବିନ୍ଦ ରମନ୍ତି ଆନନ୍ଦେ ॥୫୪
କୁବେର ଯେହ୍ନେ ଗିରିଶିଖେ ।
କିନ୍ନରୀ ରମେ ଆତ୍ମା ସୁଖେ ॥୫୫
ବାଳକ ନିଜ ବିମ୍ବ ଦେଖି ।
ଖେଳଇ ଯେହ୍ନେ ହୋଇ ସୁଖୀ ॥୫୬
କୃଷ୍ଣର ଅଙ୍ଗସଙ୍ଗ ଲାଗି ।
ଗୋପୀ ହୋଇଲେ ଶ୍ରମଭାଗୀ ॥୫୭
କେଶ ବସନ ସ୍ତନବାସ ।
ଖସିଲେ ଭୂଷଣ ଅଶେଷ ॥୫୮
କୃଷ୍ଣର କ୍ରୀଡ଼ାରସ ଦେଖି ।
ତ୍ରିଦଶବଧୂଜନେ ସୁଖୀ ॥୫୯
ନକ୍ଷତ୍ରଗଣ ଚନ୍ଦ୍ର ସଙ୍ଗେ ।
ସକଳେ ପୀଡ଼ିଲେ ଅନଙ୍ଗେ ॥୬୦

ଗୋପୀକେ କୃଷ୍ଣରୂପ ହୋଇ ।
ଲୀଳାବିନୋଦେ ଭାବଗ୍ରାହୀ ॥୬୧
ଯାହାର ନାହିଁ ରୂପରେଖ ।
ଗୋପୀଙ୍କି ଦେଲେ ଆତ୍ମା ସୁଖ ॥୬୨
ଗୋପୀଙ୍କ ମୁଖେ ଘର୍ମ ଚାହିଁ ।
କରେ ପୋଛନ୍ତି ଭାବଗ୍ରାହୀ ॥୬୩
ଯେ ଯାହା ଅଳଙ୍କାର ଭରି ।
ଗୋପୀ ଚାହାନ୍ତି ନରହରି ॥୬୪
କୃଷ୍ଣ ନଖକ୍ଷତ ପାଇଁ ।
ଆନନ୍ଦେ ପୁଲକିତ ହୋଇ ॥୬୫
କୃଷ୍ଣର କର୍ମଗୁଣ ମୁଖେ ।
କହନ୍ତି ଏକକୁ ଆରକେ ॥୬୬
ବ୍ରଜକାମିନୀ ଘେନି ସଙ୍ଗେ ।
ସ୍ତନକୁଙ୍କୁମ କୃଷ୍ଣ ଅଙ୍ଗେ ॥୬୭
ବ୍ରହ୍ମଯାମିନୀ ଅବଶେଷ ।
ସମୟ ଜାଣି ହୃଷିକେଶ ॥୬୮
ଜଳକ୍ରୀଡ଼ାକୁ ମନ କରି ।
ଗୋପୀଙ୍କି ଘେନି ବନମାଳୀ ॥୬୯
ପଶିଲେ କାଳିନ୍ଦୀ ଭିତରେ ।
ଶ୍ରମ-ଆରତ ଖଣ୍ଡିବାରେ ॥୭୦
କରିଣୀଯୂଥେ ଗଜ ଯେହ୍ନେ ।
ଗୋପୀଙ୍କ ଶ୍ରମ ଜାଣି ମନେ ॥୭୧
ଗୋବିନ୍ଦ ଦେହେ ଗୋପନାରୀ ।
ଜଳ ସିଞ୍ଚନ୍ତି କରେ ଧରି ॥୭୨
କଟାକ୍ଷେ ଚାହାଁନ୍ତି ଶ୍ରୀମୁଖ ।
ଖଣ୍ଡିଲେ କୋଟିଜନ୍ମ ଦୁଃଖ ॥୭୩
ବିମାନେ ଥାଇ ଦେବନାରୀ ।
ପୁଷ୍ପ ବରଷି ସ୍ତୁତି କରି ॥୭୪
ଗଜେନ୍ଦ୍ର ପ୍ରାୟ ରଙ୍ଗମେଳେ ।
ଲୀଳା ବିନୋଦେ ନଦୀଜଳେ ॥୭୫
ଚନ୍ଦ୍ର କିରଣେ ବନଭୂମି ।
ସୁନ୍ଦର ପ୍ରକାଶେ ଯାମିନୀ ॥୭୬
ବ୍ରଜଅବଳା ଘେନି ସଙ୍ଗେ ।
କୃଷ୍ଣ କ୍ରୀଡ଼ନ୍ତି ସୁଖରଙ୍ଗେ ॥୭୭

Dr. Sudhanshu Sekhar Mishra

ଯାହାର ନାହିଁ ରସଚ୍ୟୁତ ।
ଅଚ୍ୟୁତ ନାମ ତେଣୁ ଖ୍ୟାତ ।।୭୮
ଶୁଣି ଅଭିମନ୍ୟୁନନ୍ଦନ ।
ଚାହିଁଲେ ଶୁକଙ୍କ ବଦନ ।।୭୯
ସଭୟେ କହଇ ମଧୁର ।
ଚରଣେ ଦେଇ ବେନିକର ।।୮୦

ପରୀକ୍ଷିତ ଉବାଚ

ଭୋ ମୁନି ଅସମ୍ଭବ ବାଣୀ ।
ସଂଶୟ ଲାଗିଲା ତ ଶୁଣି ।।୮୧
ମନୁଷ୍ୟ ଅଂଶେ ଜାତ ହୋଇ ।
ଅଖିଳ-ବ୍ରହ୍ମାଣ୍ଡ-ଗୋସାଇଁ ।।୮୨
ଅଧର୍ମ ନାଶିବାର ଆଶେ ।
ଜାତ ହୋଇଲେ ଯଦୁବଂଶେ ।।୮୩
ଧର୍ମପାଳକ ନରହରି ।
ସେ କିପାଁ ଅଧର୍ମ ଆଚରି ।।୮୪
ଜଗତଜନ ଗୁରୁ ପିତା ।
ନୀତି ଅନୀତି ଅଧିଷ୍ଠାତା ।।୮୫
ଯା' ନାମ ମୁକତିପସରା ।
ସେ କିପାଁ କଲେ ପରଦାରା ।।୮୬
ମହାନିଶାରେ ଜଳେ ପଶି ।
କ୍ରୀଡ଼ା କଲେକ ବ୍ରହ୍ମରାଶି ।।୮୭
ବେଦ-ବିରୋଧୀ କର୍ମ କରି ।
ନିଷେଧବନ୍ଧ ପରିହରି ।।୮୮
ସଂସାରେ ନୁହିଁଇ ଏ ଭଲ ।
କର୍ମକାଣ୍ଡକୁ ଯେହୁ ସଲ ।।୮୯
ଈଶ୍ୱର ହୋଇ ହୀନକର୍ମ ।
କିପାଁ ଛାଡ଼ିଲେ ନିଜ ଧର୍ମ ।।୯୦
ନିଜ ମହିମା ଆମ୍ନାରତ ।
ସେ କିମ୍ପା କଲେ ବିପରୀତ ।।୯୧
କି ଅଭିପ୍ରାୟ ନ ଜାଣଇ ।
ସଂଶୟ ଛେଦ ମୋ ଗୋସାଇଁ ।।୯୨
ରାଜା ବଦନ ଚାହିଁ ମୁନି ।
କହନ୍ତି କୃଷ୍ଣ ଭାବ ଘେନି ।।୯୩

ଶୁକ ଉବାଚ

ଶୁଣ ରାଜନ ଭାଗବତ ।
ଏ ବଡ଼ଲୋକଙ୍କର ମତ ।।୯୪
ଏହାଙ୍କ କର୍ମ ବିପରୀତ ।
ଯେଣୁ ଏ ତେଜେ ବଳବନ୍ତ ।।୯୫
ତେଣୁଟି ଦୋଷଗୁଣ ନାହିଁ ।
ଅଗ୍ନି ଯେସନେ ସର୍ବ ଦହି ।।୯୬
ସତ୍ୟପୁରୁଷ ଆମ୍ନାରତ ।
ଆବୋରି ଅଛଇ ଜଗତ ।।୯୭
ତୁ ଅବା ବେଦକର୍ମ କହୁ ।
ବେଦପାଦରୁ ଜନ୍ମ ଯେହୁ ।।୯୮
ତେଣୁ ସେ ନମାନନ୍ତି ତାହା ।
ଖଟାନ୍ତି ପରିଚାରେ ଯାହା ।।୯୯
ଏହାଙ୍କ ମତ ଯେ ଆଚରି ।
ମନବଚନେ ଦେହ ଧରି ।।୧୦୦
ତୁ ଅବା ବୋଲୁ ମହିଲୋକେ
ଏକଥା କରିବେଟି ଥୋକେ ।।୧୦୧
ବଡ଼ର କର୍ମ ଅନୁସରି ।
ସାନ କି ତାହା କରିପାରି ।।୧୦୨
ଯେବେ କରିବେ ମୂଢ଼ପଣେ ।
ନାଶ ହୋଇବେ ତତ୍‌କ୍ଷଣେ ।।୧୦୩
ଜଳଧିମନ୍ଥନର ବିଷ ।
ରୁଦ୍ରହୁଁ ଆନେ ନାହିଁ ଗ୍ରାସ ।।୧୦୪
କୃଷ୍ଣ ଯେ ଧଇଲେ ମନ୍ଦର ।
ଦ୍ୱାଦଶଯୁଗ ଗିରିବର ।।୧୦୫
ଆନର ଶକ୍ୟ ନୋହେ କରି ।
ଅଙ୍ଗୁଳି ଅଗ୍ରେ ଗିରି ଧରି ।।୧୦୬
ଏହାଙ୍କ ବଚନ ହିଁ ସତ୍ୟ ।
ଆନ ନ କରନ୍ତି ଏମନ୍ତ ।।୧୦୭
ଯେ ବୁଦ୍ଧିମନ୍ତ ସାଧୁ ଧୀର ।
ସେ ନ କରିବେ ଏ ବେଭାର ।।୧୦୮
ଈଶ୍ୱର ଆଦିଙ୍କର ମତ ।
ଅଳପଜନେ ବିପରୀତ ।।୧୦୯
ପଶୁ-ମନୁଷ୍ୟ-ଦେବଙ୍କର ।
ଈଶ୍ୱରଙ୍କର ସେ ଈଶ୍ୱର ।।୧୧୦
ଯାହାର ଦେହବୁଦ୍ଧି ନାହିଁ ।
ଶୁଭ-ଅଶୁଭ ତାର କାହିଁ ।।୧୧୧
ଯାହାର ପାଦପଦ୍ମ ଧୂଳି ।
ଆନନ୍ଦ ହୋଇ ଶିରେ ବୋଳି ।।୧୧୨
ନିଷ୍କଳ ଯୋଗେ ଶ୍ରମ କରି ।
କର୍ମ ନାଶନ୍ତି ବ୍ରହ୍ମଚାରୀ ।।୧୧୩
ଯାହାର ପଦ୍ମପାଦ ବାରି ।
ଆନନ୍ଦେ ଶିବ ଶିରେ ଧରି ।।୧୧୪
ତାହାର ଜନ୍ମବନ୍ଧ ନାହିଁ ।
ଇଚ୍ଛା ସମ୍ପଦ ଯା'ର ଦେହୀ ।।୧୧୫
ଗୋପୀ ଗୋପାଳ ଆଦିକରି ।
ଜନ୍ତୁ ଜୀବନ ଯେ ଆବୋରି ।।୧୧୬
ଜଗତଜନ ତାରିବାରେ ।
ଯେ ଜାତ ମନୁଷ୍ୟ ଶରୀରେ ।।୧୧୭
ତା'ର ଚରିତ ମନେ ଚିନ୍ତି ।
ଭକତିପଥ ଆବୋରନ୍ତି ।।୧୧୮
ଗୋପେ ଗୋବିନ୍ଦ ମାୟା ମୋହି ।
କୋପ ନ କଲେ ଗୋପୀ ଚାହିଁ ।।୧୧୯
ପାଶେ ଥିବାର ପ୍ରାୟେ ମଣି ।
ଗୋପାଳେ ଦେଖନ୍ତି ତରୁଣୀ ।।୧୨୦
ପୂର୍ବହୁଁ ଅଧିକ ସେନେହ ।
ଯୁବତୀଜନେ ନାହିଁ କୋହ ।।୧୨୧
ଶୁଣ ରାଜନ କୃଷ୍ଣରସ ।
ବ୍ରହ୍ମଯାମିନୀ ହେଲା ଶେଷ ।।୧୨୨
ଏମନ୍ତେ ରଜନୀ ପାହିଲା ।
ଗଗନେ ଅରୁଣ ଦିଶିଲା ।।୧୨୩
କୃଷ୍ଣର ଅଙ୍ଗସଙ୍ଗ ପାଇ ।
ଗୋପୀଏ ଗଲେ ତୋଷ ହୋଇ ।।୧୨୪
କୃଷ୍ଣ ଚରଣେ ଦେଇ ମନ ।
ମିଳିଲେ ଯେ ଯାହା ଭୁବନ ।।୧୨୫
ଗୋପୀ ଗୋବିନ୍ଦ କେଳିବନ ।
ଏଣେ ଯେ ହୋନ୍ତି ସାବଧାନ ।।୧୨୬

Dr. Sudhanshu Sekhar Mishra

ଭକତି ହୃଦେ ପରିମାଣି ।
ଏଣେ ଭେଟିବେ ଚକ୍ରପାଣି ॥୧୨୭
ସକଳ ଦୁରିତରୁ ତରେ ।
ସେ ନ ପଡ଼ଇ ମାୟା ଘୋରେ ॥୧୨୮
ବୋଲଇ ଦାସ ଜଗନ୍ନାଥ ।
ରାସଉତ୍ସବ ଭାଗବତ ॥୧୨୯
ସୁଜନଜନେ ଏହା ଚିନ୍ତି ।
ଏଣେ ଛାଡ଼ିବ ମନଭ୍ରାନ୍ତି ॥୧୩୦
ଭକତି ହୋଇବ ତୁମ୍ଭର ।
ହେଳେ ତରିବ ମାୟାଘୋର ॥୧୩୧
ମୁଁ ଛାର ହୀନ ମୂଢ଼ପଣେ ।
ସେବଇ ତୁମ୍ଭର ଚରଣେ ॥୧୩୨
ମୋହର ନ ଘେନିବା ଦୋଷ ।
ଗୀତେ କହିଲି କୃଷ୍ଣରସ ॥୧୩୩
ପୁରାଣ କଲି ଗୀତରସ ।
ଯାହା ବୋଇଲେ ପୀତବାସ ॥୧୩୪
କେ ତାହା କରିବଟି ଆନ ।
ସବୁରି ପ୍ରଭୁ ଭଗବାନ ॥୧୩୫
ଯହୁଁ ମୁଁ ହରିସେବା କଲି ।
ଭାବେଣ ତୃପତ ନୋହିଲି ॥୧୩୬
ଆଜ୍ଞା ମାଗିଲି ପାଦେ ପଡ଼ି ।
ଧ୍ୟାନ ଧାରଣା କର୍ମ ଛାଡ଼ି ॥୧୩୭
ମୋ ମନ ହୋଇଲା ପ୍ରସନ୍ନ ।
ଆଜ୍ଞା ଯେ ଦେଲେ ଭଗବାନ ॥୧୩୮
ପୁରାଣ ଦେଶଭାଷା ଗୀତ ।
ରଚିବୁ ଶିରୀଭାଗବତ ॥୧୩୯
ତୋହର ହୃଦେ ଆମ୍ଭେ ଥାଇ ।
ପଦକୁ ପଦ ଦେବୁ କହି ॥୧୪୦
ଅଠର ସହସ୍ର ଶୋଳକ ।
ଟୀକା ବଖାଣ ଏକୁ ଏକ ॥୧୪୧
ପୂର୍ବେ ପରୀକ୍ଷିତ ଆଗର ।
କହିଲେ ଶୁକ ମୁନିବର ॥୧୪୨
ତାହା ପ୍ରକାଶ ମଞ୍ଚେ କର ।
ଆଜ୍ଞା ସେ ଦେଲେ ଦାମୋଦର ॥୧୪୩
ତେଣୁ ମୁଁ ଏ ଗ୍ରନ୍ଥରେ ପଶି ।
ଗୀତ ପ୍ରବନ୍ଧରସେ ରସି ॥୧୪୪
ସୁଜନେ ଶୁଣ ଏକ ଚିତ୍ତେ ।
ହରିଙ୍କି ଭଜ ଅନୁବ୍ରତେ ॥୧୪୫
ପୁରାଣ ଶିରୀଭାଗବତ ।
ବେଦର ମଧ୍ୟେ ସାରସ୍ୱତ ॥୧୪୬
ଶୁକ କହିଲେ ଯେଉଁ କଥା ।
ଶୁଣିଲେ ଛାଡ଼େ ଭାବବ୍ୟଥା ॥୧୪୭
ଶ୍ରୀକୃଷ୍ଣ ଗୋପକ୍ରୀଡ଼ା ରସ ।
କହଇ ଜଗନ୍ନାଥ ଦାସ ॥୧୪୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ରାସକ୍ରୀଡ଼ା
ବର୍ଣ୍ଣନଂ ନାମ ଚତୁଃତ୍ରିଂଶୋଽଧ୍ୟାୟଃ ॥

---

## ପଞ୍ଚତ୍ରିଂଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ ପୁଣ୍ୟକର୍ମା ।
ଶୁଣ ହୋ ଶ୍ରୀକୃଷ୍ଣ ମହିମା ॥୧
ଦିନେକ ନନ୍ଦ ଆଦି ଲୋକେ ।
ତୀର୍ଥ ଉତ୍ସବ କଉତୁକେ ॥୨
ଅମ୍ବିକାପୂଜାର ବିଧାନେ ।
ଗୋପୀଗୋପାଳ ତୋଷମନେ ॥୩
ଶକଟେ ନାନାଦ୍ରବ୍ୟ ଭରି ।
ଗୋପୁଁ ବାହାର ନରନାରୀ ॥୪
କାନନେ ମିଳିଲେ ସକଳେ ।
ନିର୍ମଳ ସରସ୍ୱତୀ କୂଳେ ॥୫
ଗୋପାଳେ ନିତ୍ୟକର୍ମ ସାରି ।
ପୂଜିଲେ ଶଙ୍କର ଗଉରୀ ॥୬
ବିବିଧ ଦ୍ରବ୍ୟ ଉପହାରେ ।
ତୋଷିଲେ ଭବାନୀଶଙ୍କରେ ॥୭
ଗୋରୁ କାଞ୍ଚନ ମିଷ୍ଟଅନ୍ନ ।
ଶିବ ସନ୍ତୋଷେ ଦେଲେ ଦାନ ॥୮
ବୋଲନ୍ତି ଦେବ ତ୍ରିଲୋଚନ ।
ଆମ୍ଭରେ ହୋଇବା ପ୍ରସନ୍ନ ॥୯
ସୁଲଭ ଲତା ତୃଣ ଜଳ ।
ଯେମନ୍ତେ ଗୋରୁ ଦ୍ୟନ୍ତି କ୍ଷୀର ॥୧୦
ସର୍ବବିପଦ ବିଘ୍ନନାଶ ।
ଭୋ ଦେବଦେବ ବିଶ୍ୱବାସ ॥୧୧
ଏମନ୍ତ ବୋଲି ସ୍ତୁତି କଲେ ।
ହର-ଚଣ୍ଡିଙ୍କି ଆରାଧିଲେ ॥୧୨
ଆନନ୍ଦେ ବଞ୍ଚିଲେ ଦିବସ ।
ନୃତ୍ୟଖଟଣି ଗୀତରସ ॥୧୩
ବ୍ରତ ଆଚରି ଶୁଚିମନ୍ତେ ।
ସେବନେ ଶୋଇଲେ ନିଶ୍ଚିନ୍ତେ ॥୧୪
ନନ୍ଦ ସୁନନ୍ଦ ଆଦିକରି ।
ଗୋପର ଯେତେ ନରନାରୀ ॥୧୫
ରଜନୀ ଘୋର ଅନ୍ଧକାର ।
ଯଶୋଦା କୋଳେ ଦାମୋଦର ॥୧୬
ଘୋର ଗହନ ଅର୍ଦ୍ଧନିଶି ।
ସର୍ପେ ମିଳିଲା ତହିଁ ଆସି ॥୧୭
କେହି ନଦେଖିଲେ ନୟନେ ।
ମିଳିଲା ନନ୍ଦର ଶୟନେ ॥୧୮
ମୁଖ ବିସ୍ତାରି ମହାକାୟେ ।
କୋପେ ଗିଳିଲା କଣ୍ଠଯାଏ, ॥୧୯
ସର୍ପଉଦରେ ଥାଇ ନନ୍ଦ ।
ବିକଳେ ଡାକଇ ଗୋବିନ୍ଦ ॥୨୦
ହେ କୃଷ୍ଣ ସର୍ପ ବଳୀୟାର ।
ଗିଳିଲା ମୋହର ଶରୀର ॥୨୧
ବହନ ଆସ ବେନିଭାଇ ।
ପିତା ତୁମ୍ଭର ନାଶ ଯାଇ ॥୨୨
ନନ୍ଦର ଦେଖିଣ ବିକଳ ।
ଗୋପାଳେ ପାଡ଼ନ୍ତି ଚହଳ ॥୨୩

Dr. Sudhanshu Sekhar Mishra

ଉଠି ଧାଇଁଲେ ଧାତିକାରେ ।
କାଷ୍ଠ-ପାଷାଣ ଘେନି କରେ ॥୨୪
ସର୍ପ ଉପରେ ନେଇ ପିଟି ।
ନନ୍ଦ ଶରୀରେ ଅଛି ଘୋଟି ॥୨୫
କୃଷ୍ଣ ଧାଇଁଲେ ତାହା ଶୁଣି ।
ନିଦ୍ରା ଉପେକ୍ଷି ସେହିକ୍ଷଣି ॥୨୬
ସର୍ପକୁ ଦେଖି କୋପଭରେ ।
ପାଦ ପ୍ରହାରିଲେ ଉପରେ ॥୨୭
କୃଷ୍ଣର ଲାଗି ଶ୍ରୀପୟର ।
ପ୍ରାଣ ଛାଡ଼ିଲା ଅଜଗର ॥୨୮
ତକ୍ଷଣେ ନିଜ ରୂପ ହୋଇ ।
ତେଜେ ବିରାଜେ ବନଭୂଇଁ ॥୨୯
ଦିବ୍ୟପୁରୁଷ ଅବତାର ।
ତୁଲ୍ୟ ନୁହଁନ୍ତି ବିଦ୍ୟାଧର ॥୩୦
ଗଞ୍ଜାଇ ଦଶଦିଶ ଦେହେ ।
ପଡ଼ିଲା କୃଷ୍ଣ ପଦ୍ମପାୟେ ॥୩୧
ଦେଖି ତାହାର ଦିବ୍ୟଭେକ ।
ହସିଲେ ପ୍ରଭୁ ପଦ୍ମମୁଖ ॥୩୨
ବିବିଧ ରତ୍ନମାଳ ରେଖ ।
ଶରଦଚନ୍ଦ୍ର ପାୟେ ମୁଖ ॥୩୩
ବିବିଧ ଆଭରଣ ଦେହେ ।
ଶିର ଦେଇଛି କୃଷ୍ଣପାୟେ ॥୩୪
ବୋଲନ୍ତି ଦେବକୀନନ୍ଦନ ।
କୋମଳ ମଧୁର ବଚନ ॥୩୫
ଏ ତ ଅଟଇ ବିପରୀତ ।
ସର୍ପ ଉଦରୁ ତୋର ଜାତ ॥୩୬
ତୋ ରୂପେ ପଟାନ୍ତର ନାହିଁ ।
କିପାଇଁ ଥିଲୁ ସର୍ପ ହୋଇ ॥୩୭
କହ ଏ କେବଣ ବେଭାର ।
ଶୁଣିତେ ଶରଧା ମୋହର ॥୩୮
ସଂସାରେ ତୋ'ର ରୂପ ଦେଖି ।
ପିଛାଡ଼ି ନ ପାରନ୍ତି ଆଖି ॥୩୯
ଏଗତି ପାଇଲୁ କେମନ୍ତେ ।
ସର୍ପଶରୀର ବିପରୀତେ ॥୪୦
କୃଷ୍ଣବଚନ ଶୁଣି ଧୀରେ ।
କରଅଞ୍ଜଳି ଦେଇ ଶିରେ ॥୪୧

ବେନି ଲୋଚନୁ ବହେ ନୀର ।
ବୋଲଇ ଶୁଣ ବେଣୁଧର ॥୪୨
ଭୋ ନାଥ ଶୁଣିମା ଅନନ୍ତ ।
ମୁଁ ଇନ୍ଦ୍ର ଦେବତାର ସୁତ ॥୪୩
ଅତି ସୁନ୍ଦର ରୂପ ଦେଖି ।
ପିତା ମୋ' ନାମ ଉପଲକ୍ଷି ॥୪୪
ରୂପେ ମୋହିଲି ତିନିପୁର ।
ସୁଦରଶନ ନାମ ମୋର ॥୪୫
ଶୁଣିମା ପ୍ରଭୁ ଦାଶରଥି ।
ଗର୍ବେ ହୋଇ ମୁଢ଼ମତି ॥୪୬
ଦିନକେ ବସି ମୁହିଁ ରଥେ ।
ଗମନ କଲି ଶୂନ୍ୟପଥେ ॥୪୭
ଅଙ୍ଗିରା ଋଷିଙ୍କର ବାଳେ ।
ଖେଳନ୍ତି କଳ୍ପବୃକ୍ଷ ତଳେ ॥୪୮
ଦଇବେ ଋଷିଙ୍କ କୁମର ।
ତପସାଧନେ ଅସୁନ୍ଦର ॥୪୯
ତାହାଙ୍କୁ ବୋଇଲି ଧିକ୍କାରି ।
ଏ ଦେହ କିପାଁ ଅଛ ଧରି ॥୫୦
ଦେଖ ମୋହର ଦିବ୍ୟରୂପ ।
ଶ୍ରମେ କି ସାଧୁଅଛ ତପ ॥୫୧
ରକତ ମାଂସ ଦେହେ ନାହିଁ ।
ଶୁଭ୍ର ଦିଶିବ ତୁମ୍ଭେ କାହିଁ ॥୫୨
ମୁଖକୁ ନାହିଁ ପଟାନ୍ତର ।
ଯେସନେ ଚମ୍ପକ ବାନର ॥୫୩
କର ଚରଣ ବେକ ଜିଣି ।
ଯେସନେ ଭଲ୍ଲୁକ ଚାହାଣି ॥୫୪
ଏମନ୍ତ ଉପହାସ କଲି ।
ଖେଳର ସ୍ଥାନରେ ମିଳିଲି ॥୫୫
ଶୁଣି ଚାହିଁଲେ କୋପବହି ।
ବୋଇଲେ ସର୍ପ ହୁଅ ତୁହି ॥୫୬
କୁତ୍ସିତ ଅଜଗର ରୂପୀ ।
ରହିବୁ ବନଗିରି ବ୍ୟାପୀ ॥୫୭
ବନଗହନେ ପାଅ ଦୁଃଖ ।
ଯେହୁ ପଡ଼ିବ ତୋର ମୁଖ ॥୫୮
ସେ ବଳି ହୋଇବ ତୋହର ।
ପାଇଲେ କରିବୁ ଆହାର ॥୫୯

ଗରବ ବହିଲୁ ଯେ ମନେ ।
ସର୍ପ ତୁ ହୁଅ ବୃନ୍ଦାବନେ ॥୬୦
ଶୁଣି ଯୋଡ଼ିଲି ବେନିକର ।
ଭୟେ କମ୍ପିଲି ଥରହର ॥୬୧
ପଡ଼ି ତାହାଙ୍କ ପାଦତଳେ ।
କାନ୍ଦିଲି ଜୀବନ ବିକଳେ ॥୬୨
ମୋ'ର ବିକଳ ଦେଖି ମନେ ।
ଦୟା ବସିଲା ମୁନିଜନେ ॥୬୩
ବୋଇଲେ ଯାଅ ମଞ୍ଚପୁର ।
ଏ ଦେହେ ହୁଅ ଅଜଗର ॥୬୪
ମଥୁରା ବୃନ୍ଦାବନ ଲାଗେ ।
ଗୋବର୍ଦ୍ଧନର ପୂର୍ବଭାଗେ ॥୬୫
ସାରଦା ନଦୀର ଉତ୍ତରରେ ।
ଥାଅ ତୁ କୁଞ୍ଜବନ ଘୋରେ ॥୬୬
ଭାରା-ନିବାରଣେ ମୁରାରି ।
ମନୁଷ୍ୟଦେହେ ଅବତରି ॥୬୭
ଗୋପାଳ ମେଳେ ଯାତ୍ରାକାଳେ ।
ଭେଟିବୁ ସରସ୍ୱତୀକୂଳେ ॥୬୮
ନନ୍ଦକୁ ଗିଳିବୁ ତୁ ଯାଇ ।
ଦେଖି ଧାଇଁବେ ଭାବଗ୍ରାହୀ ॥୬୯
ତୋହର ଉପରେ ଶ୍ରୀଧର ।
କୋପେ ପ୍ରହାରିବେ ପୟର ॥୭୦
ତେବେ ହୋଇବୁ ଶାପୁଁ ପାର ।
ପୁଣି ଆସିବୁ ନିଜପୁର ॥୭୧
ତେଣୁ ହୋଇଲି ଅଜଗର ।
ତୁ ହରି କଲୁ ମୋତେ ପାର ॥୭୨
ତୁ ଯେ ଜଗତଜନ ବନ୍ଧୁ ।
ମୋତେ ଉଦ୍ଧର ଦୟାସିନ୍ଧୁ ॥୭୩
ମୋତେ ପ୍ରସନ୍ନ ହୁଅ ହରି ।
ପୁରାଣ- ପୁରୁଷ-ମୁରାରି ॥୭୪
ଲାଗିଣ ତୋହର ପୟର ।
ହୋଇଲି ବ୍ରହ୍ମଶାପୁଁ ପାର ॥୭୫
ଭୋନାଥ ଶରଣ ତୋହର ।
ଅଶେଷ-ବ୍ରହ୍ମାଣ୍ଡ-ଠାକୁର ॥୭୬
ଏବେ ମୁଁ ହୋଇଲି ମୁକତ ।
ମେଲାଣି ଦିଅ ଜଗନ୍ନାଥ ॥୭୭

Dr. Sudhanshu Sekhar Mishra

ତୋହର ନାମ କର୍ଣ୍ଣେ ଶୁଣି ।
ତରନ୍ତି ଭବଜଳୁଁ ପ୍ରାଣୀ ॥୭୮
ଧନଜୀବନ ଆଦି କରି ।
ପବିତ୍ର ହୋନ୍ତି ନରନାରୀ ॥୭୯
ତୋହର ପାଦ ଲାଗି ମୁହିଁ ।
ନିସ୍ତାର ହୋଇଲି ଗୋସାଇଁ ॥୮୦
ସୁଦରଶନ ଏତେ କହି ।
ପୟରେ ଶିର ଦେଲା ନେଇ ॥୮୧
କୃଷ୍ଣଙ୍କୁ ପ୍ରଦକ୍ଷିଣ କଲା ।
ତକ୍ଷଣେ ଗଗନେ ଚଳିଲା ॥୮୨
ଦେବବିମାନେ ବସି କରି ।
ଯାଇ ମିଳିଲା ସ୍ୱର୍ଗପୁରୀ ॥୮୩
ନନ୍ଦଙ୍କୁ ରଖିଲେ ଗୋବିନ୍ଦ ।
ଗୋପାଳେ ଦେଖିଣ ଆନନ୍ଦ ॥୮୪
କୃଷ୍ଣ ମହିମା ଗୁଣ ଦେଖି ।
ଗୋପଗୋପୀ ଭୟ ଉପେକ୍ଷି ॥୮୫
ସୁଖେ ପହିଲା ଘୋର ନିଶି ।
ରବିକିରଣ ପରକାଶି ॥୮୬
ହରଗଉରୀ ପୂଜା ସାରି ।
ଗୋପେ ଚଳିଲେ ନରନାରୀ ॥୮୭
ଗୋପାଳେ ସକଳ ସମ୍ଭାର ।
ଘେନି ଚଳିଲେ ଗୋପପୁର ॥୮୮
ଯା'ନ୍ତେ କହନ୍ତି କୃଷ୍ଣକଥା ।
ଛାଡ଼ିଲେ ମନୁ ଦୁଃଖ ଚିନ୍ତା ॥୮୯
ଇନ୍ଦ୍ର କୁମରେ କୃଷ୍ଣ ତାରି ।
ଗୋପେ ବିଜୟ ନରହରି ॥୯୦
ପରୀକ୍ଷେ ଶୁକମୁନି କହେ ।
ସୁଜନଜନେ କର ଲୟେ ॥୯୧
କହଇ ଦାସ ଜଗନ୍ନାଥ ।
ହରିଚରିତ ଭାଗବତ ॥୯୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଶ୍ରୀକୃଷ୍ଣ
ବିଜୟେ ସୁଦର୍ଶନ ମୋକ୍ଷଣଂ ନାମ
ପଞ୍ଚତ୍ରିଂଶୋଽଧ୍ୟାୟଃ ॥

## ଷଟ୍‌ତ୍ରିଂଶ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
କୃଷ୍ଣ ଚରିତ ଭାଗବତ ॥୧
ଦିନେକ ଦେବ ଦଇତ୍ୟାରି ।
ସଙ୍ଗତେ ଘେନି ଗୋପନାରୀ ॥୨
ବଳଦେବଙ୍କୁ ଘେନି ସଙ୍ଗେ ।
ମିଳିଲେ ବୃନ୍ଦାବନ ଲାଗେ ॥୩
ଶୀତଳ-ବସନ୍ତର ବାୟେ ।
ବନେ ବିଜୟ ଦେବରାୟେ ॥୪
ଶଶାଙ୍କ-କିରଣେ ରଜନୀ ।
ସୁନ୍ଦର ଦିଶେ ବନଭୂମି ॥୫
ରାମଗୋବିନ୍ଦ ଗୋପନାରୀ ।
ବିବିଧମତେ ନାନାକେଳି ।୬
ମଧେ ବିଜୟ ହଳଧର ।
ଗୋପୀ ସାନନ୍ଦେ ଗୀତସ୍ୱର ॥୭
କୃଷ୍ଣ କରନ୍ତି ଗୀତନାଦ ।
ହରିଲେ କାମିନୀ ବିଷାଦ ॥୮
କୁନ୍ଦ ମଲ୍ଲିକା ଗନ୍ଧସାର ।
ଶୀତଳ ବହଇ ସମୀର ॥୯
ଗୋବିନ୍ଦ ଗୀତ ଶୁଣି କର୍ଣ୍ଣେ ।
ମୂର୍ଚ୍ଛିତ ହେଲେ ପଶୁଗଣେ ॥୧୦
ପୁଲକ ହୋନ୍ତି ବୃକ୍ଷପନ୍ତି ।
ସ୍ୱର୍ଗେ ଦେବତା କଲେ ସ୍ତୁତି ॥୧୧
ଶୁଣି ଗୋବିନ୍ଦ ଗୀତନାଦ ।
ଗୋପୀ ପାଇଲେ ମନେ ଖେଦ ॥୧୨
କଟିମେଖଳା ଝୀନବାସ ।
କବରୀ ହୋଇଲା ଉଶ୍ୱାସ ॥୧୩
ମଦନଭୋଳେ ଗୀତଗାଇ ।
ଗୋପୀ ମୋହିଲେ ଭାବଗ୍ରାହୀ ॥୧୪
ଏମନ୍ତ ଶୁଣି ନରନାଥ ।
ସର୍ପେ ହୋଇଲା ଉପଗତ ॥୧୫
ପୂର୍ବେ ସେ କୁବେର କୁମର ।
ସର୍ପେ ହୋଇଲା ଶଙ୍ଖଚୂଡ଼ ॥୧୬
ଦେଖନ୍ତି ରାମ ବନମାଳୀ ।
ଗୋପୀଙ୍କ ମଧ୍ୟେ ଆସି ମିଳି ॥୧୭
ଉତ୍ତର ଦିଗୁଁ ଫୁଁଫୁ କରି ।
ଦେଖି ପଳାନ୍ତି ବ୍ରଜନାରୀ ॥୧୮
ଡ଼ାକନ୍ତି ରାମକୃଷ୍ଣ ରଖ ।
ଏବନେ ହୋଇଲୁ ନିରେଖ ॥୧୯
ଶାର୍ଦ୍ଦୁଳେ ଦେଖି ଗୋରୁପଲ ।
ଯେସନ୍ତେ ପଳାନ୍ତି ଅନ୍ତରାଳ ॥୨୦
ଶୁଣି ଧାଇଁଲେ ବେନିଭାଇ ।
ନଡ଼ର ବୋଲି ଡ଼ାକ ଦେଇ ॥୨୧
କରେ ଉପାଡ଼ି ବେନିଶାଳ ।
ମିଳିଲେ ଗୋପୀଙ୍କର ମେଳ ॥୨୨
ଯମର ଦୂତ ପ୍ରାୟେ ହୋଇ ।
ଦେଖି ଶଙ୍ଖଚୂଡ଼ ପଳାଇ ॥୨୩
ଗୋପକାମିନୀ ମଧେ ଥିଲା ।
ଜୀବନ ଭୟେ ପଳାଇଲା ॥୨୪
ତାହାର ଶିରେ ମଣି ଚାହିଁ ।
ବେଗେ ଧାଇଁଲେ ଭାବଗ୍ରାହୀ ॥୨୫
ପଛେ ରହିଲେ ହଳଧାରୀ ।
ଗୋପକାମିନୀଙ୍କି ଆବୋରି ॥୨୬
ପଛେ ଗୋଡ଼ାନ୍ତେ ନାରାୟଣ ।
ସର୍ପ ହୋଇଲା ବଳ କ୍ଷୀଣ ॥୨୭
ମୁଷ୍ଟି ପ୍ରହାରି ସର୍ପ ଶିରେ ।
ମଣି ଘେନିଲେ କୃଷ୍ଣ କରେ ॥୨୮
ଗୋବିନ୍ଦ ମୁଷ୍ଟି ଶିରେ ଲାଗି ।
ସର୍ପ ହୋଇଲା ମୋକ୍ଷଭାଗୀ ॥୨୯

Dr. Sudhanshu Sekhar Mishra

ଗୋବିନ୍ଦ ମଣି ଘେନି କରେ ।
ମିଳିଲେ ରାମର ଛାମୁରେ ॥୩୦
ରାମର କରେ ମଣି ଦେଇ ।
ପ୍ରଣାମ କଲେ ଭାବଗ୍ରାହୀ ॥୩୧
ସେ ରାମକୃଷ୍ଣ ପାଦଗତେ ।
ନମଇଁ ଦାସ ଜଗନ୍ନାଥେ ॥୩୨
କର ସୁଦୟା ବେନିଭାଇ ।
ମଗୁଛି ଭବେ ପଡ଼ି ମୁହିଁ ॥୩୩

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଦେ ପୂର୍ବାର୍ଦ୍ଧେ ଶଙ୍ଖଚୂଡ଼ବଧୋ
ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ॥

## ସପ୍ତତ୍ରିଂଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧାରୀ ।
ଗୋପନଗର ନରନାରୀ ॥୧
କୃଷ୍ଣ ବନକୁ ଯିବା ଚାହିଁ ।
କହନ୍ତି ଯଶୋଦା ବସାଇ ॥୨

### ଗୋପୀଜନ ଉବାଚ

ଶୁଣ ଗୋ ନନ୍ଦର ଘରଣୀ ।
ତୋ' ସୁତ କୃଷ୍ଣର କାହାଣୀ ॥୩
ବାଙ୍କନୟନ ଚାଳି ଧୀରେ ।
ମୁରଲୀ ଲଗାଇ ଅଧରେ ॥୪
ଅଙ୍ଗୁଳି ବେଣୁ ରନ୍ଧ୍ରେ ଦେଇ ।
ତ୍ରିଭଙ୍ଗ ଛନ୍ଦେ ଉଭା ହୋଇ ॥୫
ବାମକପୋଳ ଢ଼ାଳି ଧୀରେ ।
ନିବେଶି ବାମ ବାହୁମୂଳେ ॥୬
କପାଳେ କସ୍ତୁରୀ ବିରାଜେ ।
ପୀତବସନ କଟି ସାଜେ ॥୭
ଯମୁନା କଦମ୍ବର ମୂଳେ ।
ବେଣୁ ବଜାନ୍ତେ କୁତୂହଳେ ॥୮
ଆକାଶେ ସିଦ୍ଧଗଣ ତୁଳେ ।
ଦେବକାମିନୀ ମୋହ ଗଲେ ॥୯
ଲଜ୍ଜା ଛାଡ଼ିଲେ କାମଭୋଳେ ।
କେଶବସନ ଅସମ୍ଭାଳେ ॥୧୦
ଶୁଣ ଗୋ ବେଣୁଧର ମାତା ।
ତୋ'ର କୁମର ଚିତ୍ର କଥା ॥୧୧
ହୃଦେ ଲମ୍ବାଇ ବନମାଳ ।
ଅଳପ ହସି ତୋ'ର ବାଳ ॥୧୨
ବେଣୁ ବଜାଏ ଯେବେ ବନେ ।
ଆରତ ହୋନ୍ତି ଜନ୍ତୁଗଣେ ॥୧୩
ଗୋରୁ ମହିଷ ମୃଗଯୂଥ ।
ଶୁଣି ତୋ' ସୁତ ବେଣୁଗୀତ ॥୧୪
ତୃଣ କବଳ ଉପେକ୍ଷିଲେ ।
ମୁରଲୀ ନାଦେ ଚିତ୍ତ ଦେଲେ ॥୧୫
ବତ୍ସାଏ ମୁଖ ଦେଇ ସ୍ତନେ ।
ଶୁଣନ୍ତି ମୁଦ୍ରିତ ଲୋଚନେ ॥୧୬
ଚିତ୍ରପ୍ରତିମା ପ୍ରାୟ ହୋଇ ।
ଜନ୍ତୁଙ୍କ ଚକ୍ଷୁ ନ ଚଳଇ ॥୧୭
ପୁଷ୍ପ ସ୍ତବକେ ଶିଖୀ ପୁଚ୍ଛ ।
ରଙ୍ଗ ମୃତ୍ତିକା ମାଲକାଛ ॥୧୮
ଆମ୍ଭ କୁମର ଘେନି ସଙ୍ଗେ ।
ଗୋରୁଙ୍କୁ ଚରାନ୍ତି ସୁରଙ୍ଗେ ॥୧୯
ନଦୀଏ ନ ବହନ୍ତି ଘନେ ।
ଶୁଣି ତୋ' ସୁତ ବେଣୁସ୍ୱନେ ॥୨୦
ଅତି ସଧୀରେ ବହେ ବାରି ।
ପବନେ ଉଜାଣି ଲହରୀ ॥୨୧
ତା' ପାଦରଜେ ଚିତ୍ତ ଦେଇ ।
ବହଇ କି ସେ ସ୍ଥିର ହୋଇ ॥୨୨
ପବନ ଆଣିବ ଉଡ଼ାଇ ।
ଆମ୍ଭେ ତରିବୁ ରେଣୁ ପାଇ ॥୨୩
ଆଦି ପୁରୁଷ ପ୍ରାୟ ସେହି ।
ଆମ୍ଭ ବାଳକ ସଙ୍ଗେ ଥାଇ ॥୨୪
ଗିରି ନିକଟେ ପଶୁଗଣେ ।
ଚରନ୍ତି ତୃଣ ତୋଷମନେ ॥୨୫
ଗୋରୁଙ୍କ ନାମ ବେଣୁସ୍ୱନେ ।
ଡାକନ୍ତି ମଧୁର ବଚନେ ॥୨୬
ଲତାଏ ତରୁଙ୍କୁ ଆବୋରି ।
ଫଳ ପଲ୍ଲବ ପୁଷ୍ପେ ଭରି ॥୨୭
ଢ଼ାଳନ୍ତି ଚାମର ପରାଏ ।
ବସନ୍ତ ସୁଶୀତଳ ବାୟେ ॥୨୮
ବୃକ୍ଷେ ହୋଇଲେ ପୁଲକିତ ।
ଶୁଣି ତା' ମୁରଲୀର ଗୀତ ॥୨୯
ମଧୁ ବରଷିଲେ ଗହଳ ।
ଯେହ୍ନେ ନୟନୁ ଅଶ୍ରୁଜଳ ॥୩୦
ସୁନ୍ଦରବର ତୋ କୁମର ।
ତୁଳସୀମାଳ ଲମ୍ବେ ଉର ॥୩୧
ଗନ୍ଧେ ଭ୍ରମର ନ ଛାଡ଼ନ୍ତି ।
ବେଣୁ ଶବଦେ ଆବୋରନ୍ତି ॥୩୨
ନଦୀ ତଡ଼ାଗ ଜଳେ ଥାଇ ।
ହଂସ ସାରସେ ସ୍ଥିର ହୋଇ ॥୩୩
ମନ ନିରୋପି ବେଣୁସ୍ୱନେ ।
ମୁଦ୍ରିତ ହୋଇଲେ ଲୋଚନେ ॥୩୪
ନାନା କୁସୁମେ ବେଶ ହୋଇ ।
ରୋହିଣୀସୁତ ସଙ୍ଗେ ଥାଇ ॥୩୫
ବେଣୁ ଶବଦେ ତୋ'ର ବଳା ।
ଅଶେଷ ବ୍ରହ୍ମାଣ୍ଡ ମୋହିଲା ॥୩୬
ଇନ୍ଦ୍ରବଚନେ ମେଘମାଳେ ।
ସୁନ୍ଦର ଗଗନମଣ୍ଡଳେ ॥୩୭
ମିତ୍ରର ଶ୍ରମ ବନେ ଚାହିଁ ।
ମେଘେ ଢ଼ାଙ୍କିଲେ ଛତ୍ର ହୋଇ ॥୩୮
ଗୋପେ ବିବିଧ ରସେ ପୂରି ।
ଶିଖୁଛି ବେଣୁନାଦ କରି ॥୩୯
ସପତ ସ୍ୱରେ ବେଣୁବାଇ ।
ବାଙ୍କନୟନେ ରଙ୍ଗେ ଚାହିଁ ॥୪୦
ତୋ'ର ନନ୍ଦନ ବେଣୁସ୍ୱରେ ।
ବ୍ରହ୍ମାଶଙ୍କର ଇନ୍ଦ୍ରତୁଲେ ॥୪୧

Dr. Sudhanshu Sekhar Mishra

ମୁନିଙ୍କ ସଙ୍ଗେ ବନ ମଧ୍ୟେ ।
ମୋହ ହୋଇଲେ ବେଣୁନାଦେ ॥୪୨
ଅପୂର୍ବ ଶୁଣ କୃଷ୍ଣମାଏ ।
ଧ୍ୱଜ ଅଙ୍କୁଶ ପଦ୍ମପାୟେ ॥୪୩
ଚିତ୍ରିତ କଲା ବନଭୂଇଁ ।
ମତ୍ତମାତଙ୍ଗ ପ୍ରାୟ ହୋଇ ॥୪୪
ତା'ର ଚାଲିବା ଦେଖି ମାଏ ।
ଚାଲିତ ନ ପାରୁଁ ଭେଡ଼ାଏ ॥୪୫
ବୃଷଙ୍କ ଗତି ଆମ୍ଭେ ଭଳୁ ।
ଚାହିଁ ନ ପାରି ଚକ୍ଷୁ ବୁଜୁ ॥୪୬
ମଦନଶରେ ହେଉଁ ଭୋଳ ।
ଫିଟଇ କବରୀ ଅଞ୍ଚଳ ॥୪୭
ମଣି-ଗୁଞ୍ଜାରା ଶିରେ ଧରି ।
ଗାଈଙ୍କ ପଛେ ବନେଚାରୀ ॥୪୮
ତୁଳସୀମାଳା ଶୋହେ ହୃଦେ ।
ଭୁଜ ଗୋପାଳ ପୁଅ କନ୍ଧେ ॥୪୯
ମଧୁର ସ୍ୱରେ ବେଣୁବାଇ ।
ଚାଲନ୍ତି ଚଉଦିଗେ ଚାହିଁ ॥୫୦
ହରିଣୀଗଣ କୃଷ୍ଣ ଚାହିଁ ।
ବେଣୁ ଶବଦେ ଚିତ୍ତ ଦେଇ ॥୫୧
ଛାଡ଼ିଣ ସୁତ ଗୃହବାସ ।
କ୍ଷଣେ ନ ଛାଡ଼ନ୍ତି ତା' ପାଶ ॥୫୨
ସକଳ ଗୁଣଙ୍କର ସିନ୍ଧୁ ।
ମୁଖମଣ୍ଡଳ ପୂର୍ଣ୍ଣଇନ୍ଦୁ ॥୫୩
ଉତ୍ତରୀଛଳେ କୁନ୍ଦମାଳ ।
ସଙ୍ଗତେ ଗୋରୁ ଗୋପବାଳ ॥୫୪
କାଳିନ୍ଦୀତଟେ ତୋ' କୁମର ।
ହୃଦୟ ଭେଦିଲା ଆମ୍ଭର ॥୫୫
ପବନ ଯୋଗେ ବୃକ୍ଷଡ଼ାଳେ ।
ଲାଗନ୍ତି ତା'ର ପାଦତଳେ ॥୫୬
ତ୍ରିଦଶେ ବାଦ୍ୟନାଦ କରି ।
ସ୍ତୁତି କରନ୍ତି ବ୍ରହ୍ମଚାରୀ ॥୫୭
ବିବିଧ ଅଙ୍ଗଭଙ୍ଗୀ ତା'ର ।
ମହିମା କେ କରୁ ଗୋଚର ॥୫୮
ଇନ୍ଦ୍ରର ଛଳେ ତୋ' କୁମର ।
କରେ ତୋଳିଲା ଗିରିବର ॥୫୯

ବ୍ରହ୍ମା ଶଙ୍କର ଆଦିକରି ।
ବନ୍ଦିଲେ ତା'ର ପାଦ ଧରି ॥୬୦
ଗୋଧନ ଘେନି ଦିନ ଅନ୍ତେ ।
ଗୋପେ ସେ ଆସନ୍ତି ଉଷତେ ॥୬୧
ଗୋଧୂଳି ଭୂଷଣ ଶରୀର ।
ଜୀବନ ଦହେ ଗୋ ଆମ୍ଭର ॥୬୨
ଗୋପବାଳକ ଇଷ୍ଟଦାତା ।
ଦେବକୀ ଦେବୀ ଯା'ର ମାତା ॥୬୩
ନକ୍ଷତ୍ର ପ୍ରାୟ ଗୋପବାଳ ।
ତୋ' ସୁତ ଶଶାଙ୍କମଣ୍ଡଳ ॥୬୪
ବେନିଲୋଚନ ମତ୍ତଭୋଳେ ।
ନାଚେ ଗୋପାଳ ପୁଅମେଳେ ॥୬୫
ଗୋରୁଙ୍କ ଧୂଳି ମୁଖେ ମିଶି ।
ବଦରୀ ଫଳ ପ୍ରାୟ ଦିଶି ॥୬୬
ରତ୍ନକୁଣ୍ଡଳ କର୍ଣ୍ଣେ ଶୋହେ ।
ରୂପେ କୋଟିଏ କାମମୋହେ ॥୬୭
ଚାଲଇ ମତ୍ତଗଜ ଛନ୍ଦ ।
ମୁଖ ତା ପୂର୍ଣ୍ଣମୀର ଚାନ୍ଦ ॥୬୮
ଆମ୍ଭେ ଗୋ ଚାହିଁ ତା'ର ମୁଖ ।
ଖଣ୍ଡୁ ବିରହ ତାପ ଦୁଃଖ ॥୬୯

ଶୁକ ଉବାଚ

ନନ୍ଦଘରଣୀ ଆଗେଯାଇ ।
ଏମନ୍ତ କୃଷ୍ଣଲୀଳା କହି ॥୭୦
ଗୋପିଏ କୃଷ୍ଣ ପାଦେ ଚିତ୍ତ ।
ଦିନକୁ ଦିନ ଅପ୍ରମିତ ॥୭୧
ଛାଡ଼ିଲେ ଭବବନ୍ଧ-ଭ୍ରମ ।
କୃଷ୍ଣ ହୁଁ ନ ଜାଣନ୍ତି ଆନ ॥୭୨
ସେ ଗୋପୀଗୋପଙ୍କ ପୟରେ ।
ମନ ମୋ ରହୁ ନିରନ୍ତରେ ॥୭୩
ନାମ ମୋହର ଜଗନ୍ନାଥ ।
ଭକତି ଛାଡ଼ି ଅରକ୍ଷିତ ॥୭୪
ବ୍ରାହ୍ମଣକୁଳେ ଜାତ ହୋଇ ।
ହରି ଭକତି ମୋର ନାହିଁ ॥୭୫
ସୁଜନଜନେ ହରିପଥେ ।
ସେବକ କରି ନିଅ ମୋତେ ॥୭୬

ନିବିଡ଼-ମୋହ-ଜଡ଼େ ଥାଇ ।
କୃଷ୍ଣଚରଣେ ମନ କାହିଁ ॥୭୭
ଏ ଘୋର-ସଂସାର-ସାଗର ।
ଏଣେ ହୋ ବିଶ୍ୱାସ ନ କର ॥୭୮
ନିରତେ ଭଜ ଦୃଢ଼ଚିତ୍ତେ ।
ହରିଚରଣ ଅବିରତେ ॥୭୯
ବ୍ରହ୍ମ ହୁଁ କୀଟ ଜନ୍ମଯାଏ ।
ସକଳେ ଛାଡ଼ି ମାୟାମୋହେ ॥୮୦
କେବଳ ଗୋବିନ୍ଦ ଭରସା ।
ଛାଡ଼ ସକଳ ମାୟା ଆଶା ॥୮୧
ପଥିକ ଯେହ୍ନେ ପଥଶ୍ରମେ ।
ମିଳନ୍ତି ବୃକ୍ଷର ଆଶ୍ରମେ ॥୮୨
ଶ୍ରମ ସରିଲେ ଯେଝାମତେ ।
ଚଳନ୍ତି ବୃକ୍ଷ ଥାଇପଥେ ॥୮୩
ଏସନ ସଂସାର କୁଟୁମ୍ବ ।
ସୁଖ ଦୁଃଖରେ ପରାଭବ ॥୮୪
ଗୋବିନ୍ଦ ବିନା ଆଶ୍ରେ ତା'ର ।
ଅନ୍ୟଥା ନାହିଁ ପ୍ରତିକାର ॥୮୫
ପୁରାଣ ଶିରି ଭାଗବତ ।
ବାଇଙ୍କ ପ୍ରାୟେ କଲି ଗୀତ ॥୮୬
ପଣ୍ଡିତେ ନ କରିବା ହାସ ।
ତୁମ୍ଭ ଶ୍ରୀଚରଣେ ମୁଁ ଦାସ ॥୮୭
ବିନୋଇ ହୋଇଣ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ॥୮୮

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ବୃନ୍ଦାବନ
କ୍ରୀଡ଼ାୟାଂ ଗୋପିକାଯୁଗଳଗୀତଂ ନାମ
ସପ୍ତତ୍ରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଅଷ୍ଟତ୍ରିଂଶ ଅଧ୍ୟାୟ

### ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ୍ ।
ଗୋପେ ଅସୁର ଉପଗତ ।।୧
ଅରିଷ୍ଟ ନାମେ ଷଣ୍ଢରୂପୀ ।
ମିଳିଲା ବନଗିରି ବ୍ୟାପୀ ।।୨
ବୃଷଭରୂପୀ ମହାକାୟେ ।
ଅବନୀ ଖୋଳୁଅଛି ପାୟେ ।।୩
ଗର୍ଜଇ ଘୋରନାଦ କରି ।
ପାଦେ କମ୍ପଇ ବସୁନ୍ଧରୀ ।।୪
ଲାଞ୍ଜ ଉଭାରି ବେଗେ ଧାଇଁ ।
ଶୃଙ୍ଗେ ଖୋଳଇ ଉଚ୍ଚଭୂଇଁ ।।୫
ଅଳପ ଅଳପ ମୂତଇ ।
ଚକ୍ଷୁ ବୁଜିଣ ପୁଣ ଚାହିଁ ।।୬
ଶୁଣି ତାହାର ଘୋରନାଦ ।
ଗାଈ ଗୁଆଳୀଙ୍କ ବିଷାଦ ।।୭
ପତନ ହୋଇ ଗର୍ଭତଳେ ।
ଦେବେ ଡ଼ରନ୍ତି ସ୍ୱର୍ଗଆଳେ ।।୮
ପିଠି ଉପରେ ଚୂଳ ଦେଖି ।
ପର୍ବତ ପ୍ରାୟ ଉପଲକ୍ଷି ।।୯
ମେଘ ଦିଶନ୍ତି ତା' ଉପରେ ।
ଶୃଙ୍ଗଯୁଗଳ ତୀକ୍ଷଣଧାରେ ।।୧୦
ଅସୁର ବଡ଼ ଭୟଙ୍କର ।
ଗର୍ଜଇ ଅତି ଘୋରତର ।।୧୧
ଗୋପୀଗୋପାଳ ଦେଖି ଡ଼ରେ ।
ପଳାଇ ଗଲେ ବନଘୋରେ ।।୧୨
ଗୋରୁଏ ପଳାଇଲେ ଦେଖି ।
ଭୟେ ବୁଜିଲେ ବେନିଆଖି ।।୧୩
ପଡ଼ିଲା ଗୋପପୁରେ ହୁରି ।
ଡ଼ାକନ୍ତି କୃଷ୍ଣନାମ ଧରି ।।୧୪
ରଖ ଗୋକୁଳ ଦାମୋଦର ।
ଆମ୍ଭେ ଯେ ଶରଣ ତୋହର ।।୧୫
ବିକଳ ଦେଖିଣ ଗୋକୁଳ ।
ଧାଇଁଲେ ପ୍ରଭୁ ଆଦିମୂଳ ।।୧୬
ଆନନ୍ଦେ ତୋଳି ବେନି ଭୁଜ ।
ଡ଼ାକନ୍ତି ପ୍ରଭୁ ଦେବରାଜ ।।୧୭
ଭୟ ନ କର ତୁମ୍ଭେ କେହି ।
ଅସୁର ସଂହାରିବି ମୁହିଁ ।।୧୮
ଏମନ୍ତ ବୋଲି ନରହରି ।
ଡ଼ାକିଲେ ଷଣ୍ଢ ନାମ ଧରି ।।୧୯
ରେ ରେ ଦଇତ୍ୟ ଷଣ୍ଢାସୁର ।
କିପାଁ ଅଇଲୁ ଗୋପପୁର ।।୨୦
ଦୁଷ୍ଟଦଳନ ବାନା ମୋର ।
ଆଜି ପେଷିବି ଯମପୁର ।।୨୧
ଧାଇଁଲେ ବାହାନାଦ କରି ।
ସ୍ୱର୍ଗେ ଦେଖନ୍ତି ଦେବନାରୀ ।।୨୨
ଗୋବିନ୍ଦ ଦେଲେ କରତାଳ ।
ଶୁଣି ଅସୁର ଅସମ୍ଭାଳ ।।୨୩
ପଛେ ଅଛନ୍ତି ଭାବଗ୍ରାହୀ ।
ବାଳକକନ୍ଧେ ହସ୍ତ ଦେଇ ।।୨୪
କୃଷ୍ଣର ଶୁଣି କରତାଳି ।
କୋପେ ଅସୁର ପରଜ୍ୱଳି ।।୨୫
ଖୁରେ ଖୋଳଇ ମହୀସ୍ଥଳ ।
ଲାଞ୍ଜ ବୁଲାଇ ଅନ୍ତରାଳ ।।୨୬
ମେଘେ ଉଡ଼ିଲେ ଲାଞ୍ଜବାଏ ।
ନିଶ୍ୱାସ ଖରତର ବହେ ।।୨୭
ଆଗେ ଉଭାରି ଶୃଙ୍ଗ ଦୁଇ ।
ଚକ୍ଷୁ ବୁଜିଲା କୃଷ୍ଣେ ଚାହିଁ ।।୨୮
ଷଣ୍ଢ ଧାଇଁଲା ଧାଡିକାରେ ।
ବଜ୍ର ଯେସନେ ଇନ୍ଦ୍ରକରେ ।।୨୯
ଆଗ ହୋଇଲେ ଭାବଗ୍ରାହୀ ।
କରେ ଧଇଲେ ଶୃଙ୍ଗ ଦୁଇ ।।୩୦
ଅସୁର ନ ପାରିଲା ଯାଇ ।
ପଛକୁ ଦେଲେ ହାବୁଡ଼ାଇ ।।୩୧
ଅସୁର ପାଇ ମହାତ୍ରାସ ।
ଘୁଞ୍ଚିଲା ଭେଡ଼ା ଅଷ୍ଟାଦଶ ।।୩୨
ଯେହ୍ନେ ଉଭାରି ବେନିଗଜ ।
ପଛେ ଘୁଞ୍ଚିଲେ ଦେବରାଜ ।।୩୩
ଦଇତ୍ୟ ମୂର୍ଚ୍ଛାଗତ ହୋଇ ।
ପୁଣି ଉଠିଲା ଜ୍ଞାନ ପାଇ ।।୩୪
ଧାଇଁଲା ପବନହୁଁ ଖର ।
ଶୃଙ୍ଗ ଧଇଲେ ଚକ୍ରଧର ।।୩୫
ଅସୁର ଦେହେ ପାଦ ଦେଇ ।
ତଳେ ପାଡ଼ିଲେ ବେଗେ ନେଇ ।।୩୬
ପଛ ଚରଣ ପାଦେ ଚାପି ।
ମୁଣ୍ଡ ମୋଡ଼ିଲେ ବିଶ୍ୱରୂପୀ ।।୩୭
ଓଦା ବସନ ପ୍ରାୟେ ମୋଡ଼ି ।
ତା'ର ମସ୍ତକୁ ଶୃଙ୍ଗ ଝାଡ଼ି ।।୩୮
ମୁଖରୁ ବହିଲା ରୁଧିର ।
ବେଗେ ଛାଡ଼ିଲା ମୂତ୍ର ମଳ ।।୩୯
ଚାରିଚରଣ ପ୍ରସାରିଲା ।
ଗୋବିନ୍ଦ ମୁଖକୁ ଚାହିଁଲା ।।୪୦
ପ୍ରାଣ ଛାଡ଼ିଲା ମହାବଳୀ ।
ଦେଖନ୍ତି ସ୍ୱର୍ଗଲୋକେ ମିଳି ।।୪୧
ଦେବେ କରନ୍ତି ପୁଷ୍ପ ବୃଷ୍ଟି ।
ଶ୍ରୀକୃଷ୍ଣ ନାଶିଲେ ଅରିଷ୍ଟି ।।୪୨
ଏମନ୍ତେ ଅସୁର ନିବାରି ।
ଉଶ୍ୱାସ କଲେ ଗୋପପୁରୀ ।।୪୩
ଗୋପୀ-ଗୋପାଳ ନନ୍ଦମେଳେ ।
ସ୍ତୁତି କରନ୍ତି ପାଦତଳେ ।।୪୪
ଗୋପୀଏ ଚାହାଁନ୍ତି ଶ୍ରୀମୁଖ ।
ଖଣ୍ଡିଲେ ଭବଭୟ-ଦୁଃଖ ।।୪୫
କୃଷ୍ଣ ଚରଣେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ।।୪୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଷଣ୍ଢାସୁରମୋକ୍ଷଣଂ ନାମ
ଅଷ୍ଟତ୍ରିଂଶୋଽଧ୍ୟାୟଃ ।।

---

Dr. Sudhanshu Sekhar Mishra

## ଊନଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି ।
ସ୍ୱର୍ଗେ ଶୁଭିଲା ଜୟବାଣୀ ॥୧
ଆକାଶେ ଥିଲେ ଯେ ନାରଦ ।
ଜାଣିଲେ ଷଣ୍ଢାସୁର ବଧ ॥୨
ଆନନ୍ଦ ମନେ ଦେବ ଋଷି ।
କୃଷ୍ଣ ମହିମା ପରଶଂସି ॥୩
ମଥୁରା ନଗରେ ମିଳିଲେ ।
କଂସ ରାଜାର ସଭାତଳେ ॥୪
ଦେଖି ଉଠିଲା ଭୋଜବୀର ।
ନମିଲା ମୁନିଙ୍କ ପୟର ॥୫
ଆନନ୍ଦେ ଶିରେ କର ଦେଇ ।
ଆସନେ ବସାଇଲେ ନେଇ ॥୬
ସ୍ୱଭାବେ ଭୋଜବଂଶେ ରାଜା ।
ମୁନିଚରଣେ କଲା ପୂଜା ॥୭
କୁଶଳ ବାରତା ପଚାରି ।
ବିଶ୍ୱାସ କରି ପାଦ ଧରି ॥୮
କଂସର ଭକ୍ତିରେ ନାରଦ ।
କହନ୍ତି ପାଇ ମନେଖେଦ ॥୯
ତୁ ରାଜା ମୋହର ବିଶ୍ୱାସ ।
ହେଲେ ହୋଇବୁ ପ୍ରାଣେ ନାଶ ॥୧୦
ତୋତେ ମୋହର ଚିତ୍ତେ ଦୟା ।
ପୂର୍ବେ ମୁଁ କହିଗଲି ଯାହା ॥୧୧
ତୁ ରାଜା ନ ହେଜିଲୁ ମନେ ।
ଏବେ ମରିବୁ ଅଳ୍ପଦିନେ ॥୧୨
ଶୁଣିଲେ ପାଇବୁ ତୁ ଖେଦ ।
ମୁଖୁଁ ମୋ' ନସ୍ଫୁରଇ ପଦ ॥୧୩
ଦେବତାମାନେ ତୋ ବଇରୀ ।
ତୋ'ର ମରଣେ କୂଟ କରି ॥୧୪
ଗୋପେ ଯାଦବେ ଅବତାର ।
ଦେବକୀ ବସୁଦେବ ଘର ॥୧୫
ହରିଙ୍କି କରାଇଲେ ଜନ୍ମ ।
ଭିଣୋଇ କଲା ଏଡ଼େ କର୍ମ ॥୧୬

ଅଷ୍ଟମ ଗର୍ଭେ ଏହା ନାରୀ ।
ରାତ୍ରେ ପ୍ରସବିଲା ମୁରାରି ॥୧୭
ତୋ'ର ଭିଣୋଇ ତାହା ନେଇ ।
ଅଇଲା ନନ୍ଦଘରେ ଥୋଇ ॥୧୮
କନ୍ୟାଏ ଥିଲା ତା'ର ଘରେ ।
ତୁ ତାହା କଚାଡ଼ିଲୁ ଶିଳେ ॥୧୯
ଦେବଙ୍କ ବୋଲେ ମହାମାୟା ।
ହୋଇଲେ ବାଳରୂପ କାୟା ॥୨୦
ତୋହର ହାତୁ ଶୂନ୍ୟେ ଗଲା ।
ତେବେହେଁ ଜ୍ଞାନ ତୋ ନୋହିଲା ॥୨୧
କହିଲା ତୋର ମୃତ୍ୟୁଭେଦ ।
ତେବେହେଁ ନୋହିଲା ତୋ'ଖେଦ ॥୨୨
ରୋହିଣୀ ବସୁଦେବ ନାରୀ ।
ପଳାଇଗଲେ ତୋତେ ଡ଼ରି ॥୨୩
ତାହାର ଗର୍ଭ ହୋଇଥିଲା ।
ସେହି କ୍ରମରେ ପ୍ରସବିଲା ॥୨୪
ହରିର ଅଂଶେ ଅବତାର ।
ସେ ତୋତେ ମାରିବେଟି ବୀର ॥୨୫
ରାମ ଗୋବିନ୍ଦ ବେନିଭାଇ ।
ବଢ଼ିଲେ ଗୋପପୁରେ ଥାଇ ॥୨୬
ବସୁଦେବର ମିତ୍ର ନନ୍ଦ ।
ସେ ତୋତେକଲା ଏଡ଼େ ଛନ୍ଦ ॥୨୭
ପୂତନା ଆଦି ଷଣ୍ଢା ଯାଏ ।
ସବୁ ମାଇଲେ ବେନିପୋଏ ॥୨୮
ଇନ୍ଦ୍ରର ଦର୍ପ କରି ଚୂର ।
କରେ ତୋଳିଲା ଗିରିବର ॥୨୯
କାଳୀୟ କାଳିନ୍ଦୀରେ ଥିଲା ।
ତାହାର ଡ଼ରେ ପଳାଇଲା ॥୩୦
କେତେ କହିବି ଗୁଣ ତା'ର ।
ଦେବଦାନବେ ଅଗୋଚର ॥୩୧
ଏମନ୍ତ ବୋଲି ମୁନିବର ।
କହିଲେ ସମସ୍ତ ବିଚାର ॥୩୨

ଶୁଣି ଅସୁର ଥରହର ।
କାତରେ କମ୍ପଇ ଶରୀର ॥୩୩
ଖଡଗ ଧରି ନିଜ କରେ ।
ବେଗେ ଉଠିଲା କୋପଭରେ ॥୩୪
ବସୁଦେବଙ୍କୁ ଅଣାଇଲା ।
ଅନେକ ମାଡ଼ ମରାଇଲା ॥୩୫
ହାଣିବ ବୋଲି କୋପଭର ।
ନାରଦ ଧଇଲେ ତା' କର ॥୩୬
ନାରଦ ବଚନେ ବିଶ୍ୱାସ ।
ପାଦେ ଭରିଲା ଲୌହପାଶ ॥୩୭
ଧନସମ୍ପଦ କ୍ରୂର କଲା ।
ବନ୍ଦୀ ମନ୍ଦିରେ ରଖାଇଲା ॥୩୮
କଂସ ଆଗରେ ବ୍ରହ୍ମସୁତ ।
କହନ୍ତି ବଚନ ନିୟତ ॥୩୯
ଶୁଣ ତୁ ଭୋଜ ନୃପନାଥ ।
ମୁହିଁ କହଇ ତୋ'ର ହିତ ॥୪୦
କୃଷ୍ଣ ଯେ ତୋହର ବଇରୀ ।
ମର୍ତ୍ତ୍ୟମଣ୍ଡଳେ ଅବତରି ॥୪୧
ଅବଶ୍ୟ ମାରିବ ସେ ତୋତେ ।
କଂସ ତୁ ଜାଣିଥା ଯୁକତେ ॥୪୨
କୃଷ୍ଣଙ୍କୁ ସଂହାରିଲେ ତୁହି ।
ରାଜ୍ୟେଣ ଥିବୁ ସୁସ୍ଥ ହୋଇ ॥୪୩
ବହୁତ ଉପାୟ କରିବୁ ।
ବୀରଙ୍କ ହସ୍ତେ ମରାଇବୁ ॥୪୪
କେଶୀ ଯେ ଅଛି ତୋ'ର ପାଶ ।
ସେ ତୋ'ର ଜୀବନ ବିଶ୍ୱାସ ॥୪୫
ପାରଇ ନାନା ମୂର୍ତ୍ତି ଧରି ।
ତାହାକୁ ପେଷ ଦଣ୍ଡଧାରୀ ॥୪୬
ଏହାର ମରଣେ ତୋହର ।
ମାଲେ ଯେ ମୁଷ୍ଟିକ ଚାଣୂର ॥୪୭
ଏହାଙ୍କ ଥା'ନ୍ତେ କିସ ଭୀତି ।
ଯାଦବେ ତୋହର ଅପ୍ରୀତି ॥୪୮

Dr. Sudhanshu Sekhar Mishra

ଏମନ୍ତ କହି ବ୍ରହ୍ମସୁତ ।
ଆକାଶେ ଚଳିଲେ ତୁରିତ ॥୪୯
ମୁନି ଅନ୍ତରେ ଭୋଜରାୟେ ।
ଭାଳଇ ଜୀବନର ଭୟେ ॥୫୦
କେଶୀଦଇତ୍ୟଙ୍କୁ ଅଣାଇଁ ।
କହଇ ବିଶ୍ୱାସ କରାଇ ॥୫୧
ତୁ ମୋର ଭ୍ରାତ ସହୋଦର ।
ବହନ ଯାଆ ଗୋପପୁର ॥୫୨
ବସୁଦେବର ପୁତ୍ର ଦୁଇ ।
ରାମଗୋବିନ୍ଦ ବେନିଭାଇ ॥୫୩
ଗୁପ୍ତେ ନନ୍ଦଘରେ ଥାଇ ।
ବଢ଼ିଲେ ବଳବନ୍ତ ହୋଇ ॥୫୪
ଯେତେ ଅସୁର ମୋର ଗଲେ ।
ଗୋପରେ ଥାଇ ସଂହାରିଲେ ॥୫୫
ଦୁହିଁଙ୍କି କର ପ୍ରାଣେ ନାଶ ।
ଦେବି ସମ୍ପଦ ଗ୍ରାମ ଦେଶ ॥୫୬
ଜୀବନ ରହିବ ମୋହର ।
ହେ ଭ୍ରାତ ବିଳମ୍ୱ ନ କର ॥୫୭
କଂସର ଆଜ୍ଞା ଘେନି ଶିରେ ।
କେଶୀ ଚଳିଲା ଗୋପପୁରେ ॥୫୮
ଚାଣୁର ମୁଷ୍ଟିକର ମେଳେ ।
ଦର୍ପିଷ୍ଟ ମହାବଳୀୟାରେ ॥୫୯
ଗଜକୁବଳୟା ମାହୁନ୍ତ ।
ପାତ୍ର ସାମନ୍ତ ଇଷ୍ଟ ମିତ୍ର ॥୬୦
ଅଣାଇଁ କହଇ ଅସୁର ।
ଜଣ ଜଣକେ ଧରି କର ॥୬୧
ଭୋ ବୀର ମୁଷ୍ଟିକ ଚାଣୂର ।
କହି ଯେ ଗଲେ ମୁନିବର ॥୬୨
ବସୁଦେବ ତା' ପୁତ୍ରଦୁଇ ।
ଗୋପରେ ଅଇଲା ଲୁଚାଇ ॥୬୩
ଗୁପ୍ତେ ନନ୍ଦଘରେ ଥାଇ ।
ବଢ଼ିଲେ ବଳବନ୍ତ ହୋଇ ॥୬୪
ଯେତେକ ବୀର ମୋର ଗଲେ ।
ଗୋଟିଏ ବାହୁଡ଼ି ନଇଲେ ॥୬୫
ଦିନକୁ ଦିନ ବଳୀୟାର ।
କେମନ୍ତେ କରିବି ସଂହାର ॥୬୬

ତାହାଙ୍କୁ ଅଣାଇବି ଧରି ।
ଏଥେ ମାରିବି କୂଟ କରି ॥୬୭
ମାଲବିନ୍ଧାଣେ ମରାଇବି ।
ତେବେଟି ଜୀବନ ପାଇବି ॥୬୮
ସେ ମୋର ବୀରଙ୍କୁ ମାଇଲା ।
ବନସ୍ତେ କେହି ନ ଦେଖିଲା ॥୬୯
ମୁଁ ଆଣି ମଥୁରାରେ ଥୋଇ ।
ମାଲଙ୍କ ହସ୍ତେ ତାଙ୍କୁ ଦେଇ ॥୭୦
ମାରନ୍ତେ ଦେଖିବେ ସକଳ ।
ଯାଦବ ଭୋଜବଂଶ ବୀର ॥୭୧
ରଙ୍ଗସଭାଏ କରାଇବି ।
ଏମନ୍ତେ ଶତ୍ରୁ ସଂହାରିବି ॥୭୨
ତୁମ୍ଭେ ସକଳେ ମୋର ମିତ୍ର ।
ବେଗେ ନିବାର ନନ୍ଦସୁତ ॥୭୩
ଦେବଇଁ ସମ୍ପଦ ବହୁତ ।
ଗଜତୁରଙ୍ଗ ଯୂଥ ଯୂଥ ॥୭୪
ଶୁଣ ହୋ ପାତ୍ର ମନ୍ତ୍ରୀ ମୋର ।
ମଞ୍ଚା କରାଇବ ଅପାର ॥୭୫
ତୁମ୍ଭେ ସକଳେ ଦେଖୁଥିବ ।
ମୋହର ଶତ୍ରୁ ନାଶଯିବ ॥୭୬
ଦେବକୀ ବସୁଦେବ ଆସି ।
ମଞ୍ଚା ଉପରେ ଥିବେ ବସି ॥୭୭
ତୁମ୍ଭେ କରିବ ମାଲପଣ ।
ଦେଖିବେ ପୁତ୍ରଙ୍କ ମରଣ ॥୭୮
ମାହୁନ୍ତ ଥିବ ରଙ୍ଗଦ୍ୱାରେ ।
ବସି କୁବଳୟାପୀଡ଼ରେ ॥୭୯
ମାରିବ ସଭାତଳେ ନେଇ ।
ଦନ୍ତେ ଗୁନ୍ଥାଇ ବେନିଭାଇ ॥୮୦
ଅନେକ ଧନରତ୍ନ ଦେବି ।
ମୋହର ମଇତ୍ର କରିବି ॥୮୧
ଶୁଣ ହୋ ପାତ୍ରମନ୍ତ୍ରୀ ମୋର ।
ତୁମ୍ଭେ ଭିଆଅ ଧନୁଘର ॥୮୨
ଶୁକଳ ଚତୁର୍ଦ୍ଦଶୀ ଦିନେ ।
ପୂଜା କରିବ ରାତ୍ରମାନେ ॥୮୩
ଛେଳି ମହିଷ ବଳିଭୋଜା ।
କ୍ଷେତ୍ରପାଳଙ୍କୁ କର ପୂଜା ॥୮୪

ଘୋଷଣା ଦିଅ ଚାରିଦିଗେ ।
ଗ୍ରାମ ପାଟଣା ପୁରଲାଗେ ॥୮୫
ଜନପରଜା ରଙ୍କି ଦୁଃଖୀ ।
ଆସିବେ ଧନୁଯାତ୍ରା ଦେଖି ॥୮୬
ଦେବଇଁ ଧନ ବସ୍ତ୍ର ଅନ୍ନ ।
ତୁଳାପୁରୁଷ ଆଦିଦାନ ॥୮୭
ଏମନ୍ତ କହି କଂସ ଗଲା ।
ଭିତର ପୁରେ ବିଜେକଲା ॥୮୮
ଅକ୍ରୁର ନାମେ ମନ୍ତ୍ରୀବର ।
ଯାଦବ ବଂଶେ ବଳୀୟାର ॥୮୯
କଂସର ବିଶ୍ୱାସ ଅପାର ।
ଡ଼କାଇ ଆଣିଲା ସତ୍ୱର ॥୯୦
ତାହାର କରେ ହସ୍ତ ଦେଇ ।
କହଇ ଏକାନ୍ତେ ବସାଇ ॥୯୧
ଭୋ ମିତ ଶୁଣ ମୋ' ଉତ୍ତର ।
ବିଶ୍ୱାସୀ ଅଟୁ ତୁ ମୋହର ॥୯୨
ଇଷ୍ଟ ବନ୍ଧୁରେ ସତ୍ୟ କହି ।
ବେଦପୁରାଣେ ଏ ଅଛଇ ॥୯୩
ତୋ' ତହୁଁ ନାହିଁ ଅନ୍ୟ ମିତ୍ର ।
ତୁ ମୋର ପ୍ରାଣ ପଞ୍ଚଭୂତ ॥୯୪
ତୋହର ବଳେ ଆଜ ମୁହିଁ ।
ଶତ୍ରୁ ସଂହାରିତେ ଲୋଡ଼ଇ ॥୯୫
ଯେସନେ ବିଷ୍ଣୁ ଆଶ୍ରେ କରି ।
ଦେବେ ହୁଅନ୍ତି ସୁଖଚାରୀ ॥୯୬
ନନ୍ଦଗୋକୁଳେ ବେଗେ ଯାଅ ।
ମୋହର ହିତେ ଯେବେ ଥାଅ ॥୯୭
ତୋହର ବଳେ ମୁଁ ନିଶ୍ଚିନ୍ତ ।
ଭୋ ମିତ୍ର କହିଲିଟି ସତ୍ୟ ॥୯୮
ବସୁଦେବର ପୁତ୍ର ଦୁଇ ।
ରାମଗୋବିନ୍ଦ ବେନିଭାଇ ॥୯୯
ଥୋଇଲା ନେଇ ନନ୍ଦଘରେ ।
ଲୁଚାଇ ବସୁଦେବ ଡ଼ରେ ॥୧୦୦
ତୁ ବେଗେ ରଥ ଘେନିଯାଅ ।
ମୋର ଛାମୁରେ ଆଣିଦିଅ ॥୧୦୧
ଦେବକୀ ବିଭା ହେଲା ଯେବେ ।
ମୋତେ ଯା କହିଥିଲେ ଦେବେ॥୧୦୨

Dr. Sudhanshu Sekhar Mishra

ସେ କଥା ହୋଇଲା ଯୁକତୋ।
ନାରଦ କହିଗଲେ ମୋତେ ॥୧୦୩
ମୋତେ ମାରିବେ ବେନିଭାଇ ।
ଏ କଥା ଉଚିତ ନୁହଁଇ ॥୧୦୪
ଗୋକୁଳେ ଥାଇ ବଳୀୟାର ।
ମାଇଲେ ଅନେକ ଅସୁର ॥୧୦୫
ବାଳୁତ କାଳୁଁ ତା'ଙ୍କୁ ଧରି ।
ବେଗେ ମୁଁ ପକାଇବି ମାରି ॥୧୦୬
ତେବେ ମୋହର ମନସ୍ଥିର ।
ଭୋ ମିତ୍ର ଧରୁଅଛି କର ॥୧୦୭
ନନ୍ଦଯଶୋଦାଙ୍କର ସଙ୍ଗେ ।
ଘେନାଇ ଆସ ଯାଇ ବେଗେ ॥୧୦୮
ଗୋରସ ଆଣ ଶତେଭାର ।
ଧନୁ ଉତ୍ସବ ଯାତ୍ରା ମୋର ॥୧୦୯
ଅଣାଇ ମଥୁରା ନଗରେ ।
ବନ୍ଦୀ କରିବି ବନ୍ଦୀଘରେ ॥୧୧୦
ରାମଗୋବିନ୍ଦ ଅଣାଇବି ।
ହସ୍ତୀର ଦନ୍ତେ ଗୁନ୍ଥାଇବି ॥୧୧୧
ଯେବେ ଉବୁରିବେ ସେଠାରୁ ।
ମାଲେ ଅଛନ୍ତି ମହାମେରୁ ॥୧୧୨
ଏହାଙ୍କ ହସ୍ତେ ମରାଇବି ।
ତେବେ ସେ ଜୀବନ ପାଇବି॥୧୧୩
ମୋହାର ଯଦୁବଂଶ ବାଦୀ ।
ସବୁଙ୍କୁ ପକାଇବି ଛେଦି ॥୧୧୪
ନନ୍ଦଯଶୋଦା ବସୁଦେବ ।
ଦେବକୀ ଯେତେକ ଯାଦବ ॥୧୧୫
ଏହାଙ୍କୁ ପେଷି ଯମପୁର ।
ତେବେ ଜୀବନ ସ୍ଥିର ମୋର॥୧୧୬
ଉଗ୍ରସେନଙ୍କୁ ଧରି ଆଣି ।
ଏଠାରେ ପକାଇବି ହାଣି ॥୧୧୭
ଦେବକନାମେ ତା'ର ଭାଇ ।
ମୋର ମରଣ ସେ ଲୋଡ଼ଇ ॥୧୧୮
ମୋର ବଇରୀଛନ୍ତି ଯେତେ ।
ଭୋ ମିତ୍ର ମାରିବି ଏମନ୍ତେ ॥୧୧୯
ତେବେ ସେ ମହୀ ଅକଣ୍ଟକେ ।
ଭୋଗ କରିବି ମୁହିଁ ଏକେ ॥୧୨୦

ଶ୍ୱଶୁର ଜରାସନ୍ଧ ମୋର ।
ସଙ୍ଗାତ ଦ୍ୱିବିଦ ବାନର ॥୧୨୧
ଶୂର ନାରକା ବାଣାସୁର ।
ଅଛନ୍ତି ମହା ମହା ବୀର ॥୧୨୨
ଶାଲ୍ୱକ ଦନ୍ତବକ୍ର ବୀର ।
ପୁଣ୍ଡ୍ରକ କାଶୀ-ରାଜେଶ୍ୱର ॥୧୨୩
ଏ ମୋର ସମ ବଳୀୟାର ।
ମୋତେ ଡରଇ ସୁନାସୀର ॥୧୨୪
ଭୋ ମିତ୍ର ଯାଆ ବେଗ ହୋଇ।
ଧନୁ ଉତ୍ସବ ଯାତ୍ରା କହି ॥୧୨୫
ବହନ ଆଣ ବେନିଭାଇ ।
ମିତ୍ର ମୋହର ଯେବେ ତୁହି ॥୧୨୬
ସେ ବିଷ୍ଣୁଅଂଶେ ଜାତ ହୋଇ।
ରାମଗୋବିନ୍ଦ ବେନିଭାଇ ॥୧୨୭
ବିଚାରେ ବଳବାନ କରି ।
ତା'ଙ୍କ ମରଣ ମନେ ଧରି ॥୧୨୮
ଯେତେକ ବୀର ମୋର ଗଲେ।
ଗୋଟିଏ ବାହୁଡ଼ି ନଇଲେ ॥୧୨୯
ତାହାଙ୍କ ବଳ ପରିମାଣି ।
ବଳେ ନୋହଇ ତା'ଙ୍କୁ ଆଣି॥୧୩୦
ତୁ ଯେଣୁ ବିଷ୍ଣୁଭକ୍ତଜନ ।
ତୋରେ ସଦୟ ଭଗବାନ ॥୧୩୧
ବହନ କରି ଭାବେ କହି ।
ବେଗେ ତୁ ଘେନି ଆସ ଯାଇ ॥୧୩୨
ଟାଣ ନ କହି ଆଣ ବେଗେ ।
ରଥେ ବସାଇ ତୋର ସଙ୍ଗେ ॥୧୩୩
ତୋହର ଭକ୍ତିଭାବ ଘେନି ।
ଏଥେ ଆସିବେ ଭାଇ ବେନି॥୧୩୪
ଏମନ୍ତ କଂସ ବୋଲ ଶୁଣି ।
ଅକ୍ରୁର ମନେ ମନେ ଗୁଣି ॥୧୩୫

ଅକ୍ରୂର ଉବାଚ

ବୋଲଇ ଶୁଣ ନରନାଥ ।
ଏ କଥା ତୋହର ଉଚିତ ॥୧୩୬
ଶତ୍ରୁକୁ ବୁଦ୍ଧିବଳେ ମାରି ।
ତେବେ ଜୀବନ ସୁଖେ ଧରି ॥୧୩୭

କହଇ ଶୁଣ ନୃପବର ।
ଦଇବବଳ ବଳୀୟାର ॥୧୩୮
ଯେ ଯାହା କର୍ମଫଳ ବଳେ ।
ଭୋଗ କରନ୍ତି ମହୀତଳେ ॥୧୩୯
ମର୍ତ୍ତ୍ୟେମାନବ ଦେହ ବହି ।
ଲାଭ ଅଲାଭ ନ ଜାଣଇ ॥୧୪୦
ଯେ ଯାହା ପୂର୍ବେ ଥାଇ କରି।
ଭୁଞ୍ଜଇ ସେ ଫଳ ଆବୋରି ॥୧୪୧
ଶୋକ ହରଷ ବେନିପଥେ ।
ମିଳନ୍ତି କର୍ମର ଆୟତ୍ତେ ॥୧୪୨
କର୍ମ ଯେ ବଡ଼ ବୁଦ୍ଧିଦାତା ।
କର୍ମ ହିଁ ଅଲେଖ ବିଧାତା ॥୧୪୩
ଯେବେ ତୋ' କର୍ମ ବଳୀୟାର।
ଭୋଗ କରିବୁ ଦିବ୍ୟପୁର ॥୧୪୪
ବିବିଧ ରତ୍ନ ଅଶ୍ୱଗଜ ।
କରୀଦଶନଖଟ ଶେଯ ॥୧୪୫
ଅମୂଲ୍ୟପୁର ବାରସ୍ତ୍ରୀ ।
ଦେବେ କରିବେ ତୋତେ ସ୍ତୁତି ॥୧୪୬
ଯଦି ତୋ କର୍ମ ବିଡ଼ମ୍ବନ ।
ହୋଇବ ଅକାଳ ମରଣ ॥୧୪୭
ଭଣଜା ହସ୍ତେ ଯେବେ ମୃତ୍ୟୁ।
ଯାହା କହିଛି କୁଶକେତୁ ॥୧୪୮
ଏଥକୁ ନିଷତ ହୋଇଲେ ।
ଆଉ କି ଥିବ ଦେହ ଭଲେ ॥୧୪୯
ତୋହର ଆଜ୍ଞା ଶିରେ ଧରି ।
ଭୋ ରାଜା ଯିବି ଗୋପପୁରୀ॥୧୫୦
ଶୁଣି ସନ୍ତୋଷ ଭୋଜରାଜା ।
ଅକ୍ରୁରେ କଲା ଦିବ୍ୟପୂଜା ॥୧୫୧
କଂସ ପଶିଲା ନିଜ ପୁର ।
ଅକ୍ରୁର ହୋଇଲା ବାହାର ॥୧୫୨
ପଥେ ସେ ବିଚାରଇ ମନେ ।
କୃଷ୍ଣଙ୍କୁ ଦେଖିବି କେସନେ ॥୧୫୩
ସତେ କି ଦେଖିବି ଶ୍ରୀମୁଖ ।
ଖଣ୍ଡିବି କୋଟିଜନ୍ମ ଦୁଃଖ ॥୧୫୪
ମିଳିଲା ନିଜ ପୁରେ ଯାଇ ।
ଗୋବିନ୍ଦପାଦେ ଚିତ୍ତ ଦେଇ ॥୧୫୫

Dr. Sudhanshu Sekhar Mishra

କହଇ ଦାସ ଜଗନ୍ନାଥ ।
ଅକ୍ରୁର ସଜକଲା ରଥ ॥୧୫୬
ସେ ରଥ ପଛେ ଥାଇ ଧୀରେ ।
ମନ ମୋ' ଯାଉ ଗୋପପୁରେ ॥୧୫୭
ସୁଜନେ ଆସ ସଙ୍ଗମେଳେ ।
କୃଷ୍ଣ ଦେଖିବା ବେନିଡ଼ୋଳେ ॥୧୫୮
ଅକ୍ରୁର ରଥେ ମନ ଥୁଅ ।
ସଂସାର ବନ୍ଧେ ଧନ୍ଦି ନୁହଁ ॥୧୫୯
ବାରେ ଦେଖିଲେ କୃଷ୍ଣ ରୂପ ।
ଆଉ କି ଥିବ ମନେ ତାପ ॥୧୬୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଅକ୍ରୁରସମ୍ପ୍ରେଷଣଂ ନାମ
ଊନଚତ୍ୱାରିଂଶୋଽଧ୍ୟାୟଃ ॥

## ଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ କୃଷ୍ଣ ଲୀଳା ।
କେଶୀ ଯେ ବୃନ୍ଦାବନେ ଗଲା ॥୧
ରଜନୀ ହୋଇଲା ପ୍ରଭାତ ।
ଗଗନେ ଉଦେ ଛାୟାକାନ୍ତ ॥୨
ଅଶ୍ୱର ପ୍ରାୟେ ରୂପ ଧରି ।
ଦେଖି ଗଗନେ ଦେବେ ଡ଼ରି ॥୩
ମନହୁଁ ବେଗବନ୍ତ ହୋଇ ।
କୋପେ ଖୋଳଇ କ୍ଷୁରେ ମହୀ ॥୪
କାନ୍ଧର ବାଳ ଠିଆ କରି ।
ଗଗନେ ପଡୁଅଛି ହୁରି ॥୫
ବିମାନେ ବସି ଦେବତାଏ ।
ଉଡ଼ିଣ ଗଲେ ଲାଞ୍ଜବାଏ ॥୬
ଗୋରୁଏ ପଳାଇଲେ ଛନ୍ନେ ।
ପଶିଲେ ଗହନ ବିପିନେ ॥୭
କେଶୀର ନିଶ୍ୱାସ ପବନେ ।
ଉଡ଼ିଲେ ବୃକ୍ଷେ ଘୋର ଶୂନ୍ୟେ ॥୮
ଶବଦ ଶୁଣି ମହାଘୋର ।
ଗୋବିନ୍ଦ ହୋଇଲେ ବାହାର ॥୯
ଦେଖିଲେ ଗୋପର ବିକଳ ।
ଶୂନ୍ୟେ କମ୍ପନ୍ତି ଦିଗପାଳ ॥୧୦
ଶୁଣି ଦୈତ୍ୟର ଘୋରରଡ଼ି ।
ଦେବେ ଗଗନ ଗଲେ ଛାଡ଼ି ॥୧୧
ଦେଖିଲେ ମଦନ ଗୋପାଳ ।
ଅସୁର ତେଜ ଅନର୍ଗଳ ॥୧୨
ଧନ ସମ୍ପଦ ଦାରା ଛାଡ଼ି ।
ଲୋକେ ପଳାନ୍ତି ବନମାଡ଼ି ॥୧୩
କିଜାଣି ବେଢ଼ିଲା ଅନଳ ।
କି ଅବା ପ୍ରଳୟର କାଳ ॥୧୪
ଉଲ୍କାପାତ ଦିଶେ ମହୀ ।
ଦିବସେ ଅନ୍ଧକାର ହୋଇ ॥୧୫
କଂସର ହିତେ ମହାବଳୀ ।
ଲୋଡ଼ଇ ରାମ ବନମାଳୀ ॥୧୬
ଅସୁର ବିଚାରଇ ମନେ ।
କୃଷ୍ଣଙ୍କୁ ଦେଖିବି କେସନେ ॥୧୭
ଲୁଚାଇ ଅଛି ବସୁଦେବ ।
ମୋହର ଡରେ ପଳାଇବ ॥୧୮
ମୁଖ ବିସ୍ତାରି ବେଗେ ଧାଇଁ ।
ଆଜ ଗିଳିବି ବେନିଭାଇ ॥୧୯
ଏମନ୍ତ ବିଚାରି ଆନନ୍ଦେ ।
ମିଳିଲା ଗୋପପୁର ମଧ୍ୟେ ॥୨୦
ଗୋପବାଳକ ମଧ୍ୟେ ଥାଇ ।
ଦେଖିଲେ ପ୍ରଭୁ ଭାବଗ୍ରାହୀ ॥୨୧
ଗୋପକୁମର କନ୍ଧେ ହସ୍ତ ।
ଆଗ ହୋଇଲେ ଗୋପୀନାଥ ॥୨୨
ଗୋବିନ୍ଦ କଲେ ଶିଙ୍ଗାନାଦ ।
କେଶୀ ପାଇଲା ମନେ ଖେଦ ॥୨୩
ଜାଣିଲା ଏହି ନାରାୟଣ ।
ଶୋଷିଲା ପୂତନା ପରାଣ ॥୨୪
ଶକଟା ତୃଣା ବସ୍ତାସୁର ।
ଅଘା ପ୍ରଳମ୍ବା ମହାବୀର ॥୨୫
ଧେନୁକ ଷଣ୍ଢ ଆଦିକରି ।
ଏ ବନେ ମାଇଲା ମୁରାରି ॥୨୬
ଏହି ସେ ନନ୍ଦର କୁମର ।
ଜାଣି ଧାଇଁଲା ନିଶାଚର ॥୨୭
ମୁଖ ବିସ୍ତାରି କୋପଭରେ ।
ଧାଇଁଲା ପବନହୁଁ ଖରେ ॥୨୮
ମୁଖେ କି ପିଉଛି ଆକାଶ ।
ମିଳିଲା ଗୋବନ୍ଦର ପାଶ ॥୨୯
ଉଞ୍ଚାଇ ପଛ ବେନିପାଦେ ।
ମାଇଲା ଗୋବିନ୍ଦର ହୃଦେ ॥୩୦
ଶ୍ରୀକୃଷ୍ଣ ବଞ୍ଚାଇଲେ ତାହା ।
ବଜ୍ର ହୁଁ ଆଣ୍ଟ ଯା'ର ହିଆ ॥୩୧
ଚରଣ ଧରି ବାମକରେ ।
ପକାଇଦେଲେ କୋପଭରେ ॥୩୨
ଗରୁଡ଼ ଯେହ୍ନେ ନାଗ ଧରି ।
ପକାଇ ରହଇ ଆବୋରି ॥୩୩
ପୁଣି କ୍ଷଣକେ ଜ୍ଞାନ ପାଇ ।
କେଶୀ ଧାଇଁଲା ରୋଷ ବହି ॥୩୪
ବିସ୍ତାର ଦେଖି ତା'ର ତୁଣ୍ଡ ।
କୃଷ୍ଣ ଭରିଲେ ଭୁଜଦଣ୍ଡ ॥୩୫
ସର୍ପ ପଶଇ ଯେହ୍ନେ ବିଳେ ।
ଦେଖି ହସନ୍ତି ଗୋପବାଳେ ॥୩୬
ଦଇତ୍ୟ କାମୋଡ଼ିଲା କର ।
ଦନ୍ତ ତା ଝଡ଼ିଲା ଅଧର ॥୩୭
ତପତଫାଳ ପ୍ରାୟେ କର ।
ଚାପି ନ ପାରିଲା ଅସୁର ॥୩୮

Dr. Sudhanshu Sekhar Mishra

କେଶୀ ଉଦରେ କୃଷ୍ଣକର ।
ବଢ଼ିଲା ଯେହ୍ନେ ଗିରିବର ॥୩୯
ଗର୍ଭ ମନ୍ଥିଲେ ଭୁଜଦଣ୍ଡେ ।
ଖୁଆ ଯେସନେ ଦଧିଭାଣ୍ଡେ ॥୪୦
ନିରୋଧ ହୋଇ କଣ୍ଠଦ୍ୱାର ।
ବିସ୍ତାର କଲା ଚାରି କ୍ଷୁର ॥୪୧
ବେଗେ ଛାଡ଼ିଲା ମଳମୂତ୍ର ।
ପଡ଼ି ହୋଇଲା ମୂରୁଚ୍ଛିତ ॥୪୨
ବେନି ଲୋଚନ କଲା ସ୍ଥିର ।
ଜୀବନ ଛାଡ଼ିଲା ଅସୁର ॥୪୩
ଦେଖନ୍ତି ସ୍ୱର୍ଗେ ଦେବତାଏ ।
ପଶିଲା ଗୋବିନ୍ଦର ଦେହେ ॥୪୪
ପାଚିଲା ଫୁଟି ପ୍ରାୟେ ହୋଇ ।
ଅସୁର ପଡ଼ିଲା ମିଳାଇ ॥୪୫
ତାହାର ଗର୍ଭୁ ଦାମୋଦର ।
ଫେଇ ଆଣିଲେ ନିଜ କର ॥୪୬
ଦେଖି ଆନନ୍ଦ ଦେବତାଏ ।
ଆକାଶେ କଲେ ଜୟେ ଜୟେ ॥୪୭
ପୁଷ୍ପ ବରଷିଲେ ଗହଳେ ।
ସ୍ତୁତି କରନ୍ତି ଦେବବରେ ॥୪୮
କେଶୀ ମରଣ ଦେଖି ହସି ।
ଆସି ମିଳିଲେ ଦେବଋଷି ॥୪୯
ଏକାନ୍ତେ ଦେଖି ନରହରି ।
ସ୍ତୁତି କରନ୍ତି ପାଦେ ପଡ଼ି ॥୫୦
ଉଠି ଗୋବିନ୍ଦ ମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୫୧

ନାରଦ ଉବାଚ

ଭୋ କୃଷ୍ଣ ପ୍ରଭୁ ଯୋଗେଶ୍ୱର ।
ଯାଦବବଂଶର ଠାକୁର ॥୫୨
ଅଶେଷ ଜନ୍ତୁ ହୃଦଗତେ ।
ଜ୍ଞାନୀ ଚିନ୍ତନ୍ତି ଯୋଗମତେ ॥୫୩
ଜ୍ୟୋତି ସ୍ୱରୂପ ନିରଞ୍ଜନ ।
ସକଳ ଆତ୍ମାରେ ଅଭିନ୍ନ ॥୫୪
ମନ ବୁଦ୍ଧିରେ ଅଗୋଚର ।
ମହାପୁରୁଷ ତୁ ଈଶ୍ୱର ॥୫୫
ତୋହର ମାୟାକୁ ଆବୋରି ।
ଶରୀର ବହୁ ନରହରି ॥୫୬
ସଂସାର କରୁ ତୁ ଭିଆଣ ।
ସୃଷ୍ଟି ପାଳନ ସଂହାରଣ ॥୫୭
ଭାରା ନିବାରେ ଦେହ ବହି ।
ସାଧୁଙ୍କୁ ରଖୁ ଭାବଗ୍ରାହୀ ॥୫୮
ଦୁଷ୍ଟ ନିବାରି ରଖୁ ମହୀ ।
ମର୍ତ୍ତ୍ୟେ ଉଦରୁ ରୂପ ବହି ॥୫୯
ଲୀଳାଏ ମାଇଲୁ ଅସୁର ।
ଦେଖି ହରଷ ସୁର ନର ॥୬୦
ଦେବେ ନ ରହନ୍ତି ଆକାଶେ ।
ଏ କେଶୀ ଦଇତ୍ୟର ତ୍ରାସେ ॥୬୧
ଭୋ ନାଥ ଶୁଣ ଚକ୍ରଧର ।
ମାରିବୁ ମୁଷ୍ଟିକ ଚାଣୂର ॥୬୨
ଧନୁ ଭାଙ୍ଗିବୁ ବାମକରେ ।
ହସ୍ତୀ ମାରିବୁ ରଙ୍ଗଦ୍ୱାରେ ॥୬୩
କଂସ ମାରିବୁ ଚାରିଦିନେ ।
ରାଜ୍ୟ ନିବେଶି ଉଗ୍ରେସେନେ ॥୬୪
କଂସର ଅଷ୍ଟମଲ୍ଲ ନାଶି ।
ଯାଦବ ବଂଶକୁ ଆଶ୍ୱାସି ॥୬୫
କାଳ ଯବନ ଶଙ୍ଖାସୁର ।
ମୁର ନାରକା ବେଗେ ମାର ॥୬୬
ଇନ୍ଦ୍ରଭୁବନୁ ପାରିଜାତ ।
ବଳେ ଆଣିବୁ ଗୋପୀନାଥ ॥୬୭
ବୀରରାଜାଙ୍କ କନ୍ୟା ଆଣି ।
ବିଭା ହୋଇବୁ ଚକ୍ରପାଣି ॥୬୮
ଜରାସନ୍ଧର ଭୟେ ଯାଇ ।
ସମୁଦ୍ରେ ଦ୍ୱାରକା ଭିଆଇ ॥୬୯
ନୃଗରାଜାଙ୍କୁ ସୁଖ ଦେବୁ ।
କୃକଳାଶ ରୂପ ନାଶିବୁ ॥୭୦
ତୋହର ପୁରେ ଶକ୍ରାଜିତ ।
ତୋତେ ବରିବ ଗୋମ୍ନାନାଥ ॥୭୧
ସତ୍ୟଭାମାର ତୁଲେ ମଣି ।
ତୋହର ପାଦେ ଦେବ ଆଣି ॥୭୨
ଯମର ଘରୁ ପୁତ୍ର ଆଣି ।
ତୋଷିବୁ ଗୁରୁଙ୍କ ଘରଣୀ ॥୭୩
ଘୋର ଦଇତ୍ୟ ପୁଣ୍ଡରୀକ ।
ତାହାକୁ ମାରି ଦେବୁ ମୋକ୍ଷ ॥୭୪
ଦହନ କରି କାଶୀପୁର ।
ଯୁଦ୍ଧେ ମାରିବୁ ଦନ୍ତବକ୍ର ॥୭୫
ପାଣ୍ଡବ ଯଜ୍ଞସଭା ତଳେ ।
ଚକ୍ରେ ଛେଦିବୁ ଶିଶୁପାଳେ ॥୭୬
ଦ୍ୱାରକା ପୁରେ ବନମାଳୀ ।
ଯେତେ କରିବୁ ସୁଖକେଳି ॥୭୭
ମୁଁ ତାହା ଦେଖିବି ଲୋଚନେ ।
ପୁରାଣେ ଶୁଣିଅଛି କର୍ଣ୍ଣେ ॥୭୮
ଅର୍ଜୁନ ରଥେ ତୁ ସାରଥି ।
ମୁଁ ପୁଣି ଥିବି ତୋ'ର କତି ॥୭୯
ଅନେକ ରାଜା ସୈନ୍ୟବଳ ।
ସଂହାର କରିବୁ ଗୋପାଳ ॥୮୦
ଶୁଦ୍ଧ ବିବେକ ନିରଞ୍ଜନ ।
ଆଦି ଅନାଦି ସ୍ଥୁଳ ଶୂନ୍ୟ ॥୮୧
ଅଶେଷ ପୁଣ୍ୟଫଳ ଦାତା ।
ତୁମ୍ଭେ ଜଗତ ପିତାମାତା ॥୮୨
ଆପଣା ମହିମା ବିସ୍ତାରି ।
ଗୁଣ ପ୍ରକାଶୁ ନରହରି ॥୮୩
ମନୁଷ୍ୟ ଦେହେ ଅବତାର ।
ଯାଦବବଂଶର ଠାକୁର ॥୮୪
ଏମନ୍ତେ ବ୍ରହ୍ମାର ନନ୍ଦନ ।
ଆନନ୍ଦେ କଲେ ସାମଗାନ ॥୮୫
ଗୋବିନ୍ଦ ଆଜ୍ଞା ଶିରେ ଘେନି ।
ଗଲେ ନାରଦ ମହାମୁନି ॥୮୬
ଏମନ୍ତେ ଅସୁର ସଂହାରି ।
ଗୋପେ ବିଜୟ ନରହରି ॥୮୭

ଶୁକ ଉବାଚ

ଏବେ ହେ ଶୁଣ ନରନାଥ ।
କୃଷ୍ଣର ଲୀଳା ଭାଗବତ ॥୮୮
ଦିନେକ ପ୍ରଭୁ ଭଗବାନ ।
ବାଳକ ମେଳେ ଗଲେ ବନ ॥୮୯
ଗିରିକନ୍ଦରେ ଘୋରବନେ ।
ଗାଈ ଚରାନ୍ତି ତୋଷମନେ ॥୯୦

Dr. Sudhanshu Sekhar Mishra

ହସି ବୋଲନ୍ତି ଦାମୋଦର ।
ଏମନ୍ତ ଖେଳଅଛି ମୋର ॥୯୧
ଥୋକାଏ ହୁଅ ତୁମ୍ଭେ ଚୋର ।
ଥୋକାଏ ହୁଅ ରାତ୍ରପାଳ ॥୯୨
ଖେଳିବା କଦମ୍ବର ତଳ ।
ଏମନ୍ତ କହି ଆଦିମୂଳ ॥୯୩
ଥୋକାଏ ହୁଅ ପଶୁଗଣ ।
ଛାଗଳ ମହିଷ ହରିଣ ॥୯୪
ଥୋକାଏ ହୁଅ ଦଣ୍ଡୁଆସି ।
ହସି କହନ୍ତି ବ୍ରହ୍ମରାଶି ॥୯୫
ତକ୍ଷଣେ କରି ସନମତ ।
ପୋଏ ହୋଇଲେ ଯୂଥ ଯୂଥ ॥୯୬
ଥୋକେ ହୋଇଲେ ଗୃହବାସୀ ।
ଥୋକାଏ ଚୋର ଦଣ୍ଡୁଆସୀ ॥୯୭
ଏମନ୍ତେ ଖେଳଲୀଳା କରି ।
ଖେଳନ୍ତି ବନେ ନରହରି ॥୯୮
ଶୁଣ ରାଜନ ବିପରୀତ ।
ଅସୁର ମିଳିଲା ତୁରିତ ॥୯୯
ମୟଦଇତ୍ୟର କୁମର ।
ନାମ ତାହାର ବ୍ୟୋମାସୁର ॥୧୦୦
ମାୟାଗୋପାଳ ରୂପ ଧରି ।
ଅନେକ ନେଲା ଚୋରି କରି॥୧୦୧
ଗିରିକ୍ରୋଟରେ ଲୁଚାଇଲା ।
ଦ୍ୱାରେ ପାଷାଣ ଅଚ୍ଛାଦିଲା ॥୧୦୨
ଏମନ୍ତେ ନେଲା ବେଳ ଦଶ ।
ରହିଲେ ପାଞ୍ଚ ସାତ ଶେଷ ॥୧୦୩
ଗୋପକୁମରଙ୍କୁ ଅନାଇଁ ।
ଜାଣିଲେ ପ୍ରଭୁ ଭାବଗ୍ରାହୀ ॥୧୦୪
ଦଇତ୍ୟ ମୋତେ ମାୟା କଲା ।
ମୋର ବାଳକ ହରିନେଲା ॥୧୦୫

ଭଲା ମୁଁ କଲି ଖେଳ ରସ ।
ମୋର ଗୋପାଳେ ଗଲେ ନାଶ ॥୧୦୬
ଦଇତ୍ୟ ନେଇ ଗିରିବରେ ।
ଲୁଚାଇ ଢ଼ାଙ୍କିଛି ଦୁଆରେ ॥୧୦୭
କୃଷ୍ଣ ଧାଇଁଲେ ଧାଡିକାରେ ।
ମିଳିଲେ ପର୍ବତ କନ୍ଦରେ ॥୧୦୮
ବେନିବାଳକ ଯାକି କାଖେ ।
ଦଇତ୍ୟ ଚଳେ ଗିରିପାଖେ ॥୧୦୯
ତାହାର କେଶ ବାମକରେ ।
କୃଷ୍ଣ ଧଇଲେ କୋପଭରେ ॥୧୧୦
ତକ୍ଷଣେ ନିଜ ରୂପ ହୋଇ ।
ପଳାଇ ଲୋଡ଼ଇ ଛଡ଼ାଇ ॥୧୧୧
କୃଷ୍ଣ ଧଇଲେ ତାର ହସ୍ତ ।
ଘୂରାଇ ପକାଇଲେ ପଥ ॥୧୧୨
ପଶୁଙ୍କ ପ୍ରାୟ ମୁଣ୍ଡମୋଡ଼ି ।
ପଡ଼ିଲା ଦେଇ ଘୋରରଡ଼ି ॥୧୧୩
ତକ୍ଷଣେ ଛାଡ଼ିଲା ଜୀବନ ।
କୃଷ୍ଣର ଦେହେ ହେଲା ଲୀନ ॥୧୧୪
ପର୍ବତ କ୍ରୋଟଦ୍ୱାରେ ଯାଇ ।
ଦ୍ୱାର ଫେଇଲେ ଭାବଗ୍ରାହୀ ॥୧୧୫
ଗୋପବାଳକ ଉଦ୍ଧରିଲେ ।
ଦେବେ କୁସୁମ ବରଷିଲେ ॥୧୧୬
ଆନନ୍ଦେ ଘେନି ଗୋପବାଳ ।
ଗୋପେ ବିଜୟ ଆଦିମୂଳ ॥୧୧୭
ଏବେ ସରିଲା ବନକେଳି ।
ମଥୁରା ଯିବେ ବନମାଳୀ ॥୧୧୮
ତାରିଲେ ଗୋପ ନରନାରୀ ।
ଭକତ ବନ୍ଧୁ ଦଇତ୍ୟାରି ॥୧୧୯
ଭକତଜନ ତାରିବାରେ ।
ଗୋରୁ ଚରାଇ ବନଘୋରେ ॥୧୨୦

ବାଳକ ରୂପେ ଅବତାର ।
ବଢ଼ିଲେ ନନ୍ଦର ମନ୍ଦିର ॥୧୨୧
ମଥୁରାପୁର ନରନାରୀ ।
ପୂର୍ବେ ଅଛନ୍ତି ତପ କରି ॥୧୨୨
ନୟନେ ଦେଖି କୃଷ୍ଣରୂପ ।
ଖଣ୍ଡିବେ ଭବବନ୍ଧ ତାପ ॥୧୨୩
ସୁଜନଜନେ ଶୁଣ ଧୀରେ ।
କୃଷ୍ଣ ଚରିତ କର୍ଣ୍ଣଦ୍ୱାରେ ॥୧୨୪
ରାମଗୋବିନ୍ଦ ବାଳକେଳି ।
ଗୁନ୍ଥି ଲମ୍ବାଅ କଣ୍ଠେ ମାଳୀ ॥୧୨୫
ଚିତ୍ତ ନିରୋପି କୃଷ୍ଣ ପାୟେ ।
ନ ବୁଡ଼ ଭବଜଳେ ମୋହେ ॥୧୨୬
କହଇ ଦାସ ଜଗନ୍ନାଥ ।
ଗୀତ ବିନୋଦେ ଭାଗବତ ॥୧୨୭
ଭକତଜନେ ଏହା ଗାଇ ।
କୃଷ୍ଣଲୀଳାରେ ମନ ଦେଇ ॥୧୨୮
ହୋଇବ ଭବଜଳୁଁ ପାର ।
କୃପା କରିବେ ଦାମୋଦର ॥୧୨୯
ଭକତଜନଙ୍କର ହିତ ।
ରଚିଲି ଶିରୀଭାଗବତ ॥୧୩୦
ଶୁଣି ସୁଜନେ ହୁଅ ତୋଷ ।
କହଇ ଜଗନ୍ନାଥ ଦାସ ॥୧୩୧

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
କେଶୀବ୍ୟୋମାସୁରବଧୋ ନାମ
ଚତ୍ୱାରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଏକଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ କୁମର ।
ଶୁଣ ପରୀକ୍ଷ ନୃପବର ॥୧
ଏଣେ ତୁ ହୋଇବୁ ନିସ୍ତାରି ।
ହେଳେ ତରିବୁ ଭବବାରି ॥୨
କେଶୀ କି ଆଶ କରି କଂସ ।
ରଖି ଯେ ଅଛି ଯଦୁବଂଶ ॥୩
କେଶୀ ଅଇଲେ କାର୍ଯ୍ୟ କରି ।
ସମସ୍ତ ପକାଇବ ମାରି ॥୪
ଏମନ୍ତ ସମୟେ ସଭାର ।
ବାରତା କହିଲା ଡ଼ଗର ॥୫
କରଅଞ୍ଜଳି ଶିରେ ଦେଇ ।
ଚରଣେ ନିବେଶିଲା ଯାଇ ॥୬
ଡଗର ମୁଖେ ପରକାଶେ ।
କହିଲେ ଦ୍ରୋହ ମୋରଶେଷେ ॥୭
ନାହିଁତ କିଛି ତୋ'ର ଦ୍ରୋହ ।
ଯାହା ଦେଖିଲୁ ତାହା କହ ॥୮
କଂସର ଏ ବଚନ ଶୁଣି ।
ଡଗର କହେ ପରିମାଣି ॥୯
ପୂର୍ବିହୁଁ ଅଛଇ ଜଣାଇ ।
ପୂତନା ପଡ଼ିଲା ଗୋସାଇଁ ॥୧୦
ତୃଣା ଶକଟା ବତ୍ସାସୁର ।
ତିନିହେଁ ଗଲେ ଯମଆଳ ॥୧୧
ଅଘାର ଦେହ ନିସ୍ତାରଣ ।
ବିଚିତ୍ର ତାହାର ମରଣ ॥୧୨
ଧେନୁକ ପ୍ରଲମ୍ବ ଦଇତ୍ୟ ।
ତା' ଭାଇ ରାମ କଲା ହତ ॥୧୩
କଥାଏ କହିବି ଗୋସାଇଁ ।
ନୋହିଲେ ପ୍ରତେ ଯିବୁ ନାହିଁ ॥୧୪
ସାତବରଷର ବାଳୁତ ।
କରେ ତୋଳିଲା ପରବତ ॥୧୫
ପୋଏ ତୋଳନ୍ତି ଯେହ୍ନେ ଛତି ।
କୃଷ୍ଣର ବିକ୍ରମ ମୂରତି ॥୧୬

ବିବାଦେ ଇନ୍ଦ୍ର ହାରିଗଲା ।
କୃଷ୍ଣରେ ଶରଣ ପଶିଲା ॥୧୭
କାଳୀୟ କାଳିନ୍ଦୀ ହ୍ରଦରେ ।
ଫଣା ସେ ମର୍ଦ୍ଦିଲା ପୟରେ ॥୧୮
ଅରିଷ୍ଟ ଷଣ୍ଢ ଗୋପେ ଚଳି ।
ଯାଇ ମିଳିଲେ ଗୋପପୁରୀ ॥୧୯
ହୋଇଲେ ଲୀଳାମାତ୍ରେ ଶେଷ ।
ଜନନୀ ଦେଖିଲା ଅଶେଷ ॥୨୦
ଶୁଣ ତୁ ଭୋଜ ରାଜବଂଶୀ ।
ଏବେ ପଡ଼ିଲା ତୋ'ର କେଶୀ ॥୨୧
ଶୁଣି କମ୍ପିଲା ତା'ର ତନୁ ।
ଢଳି ପଡ଼ିଲା ସିଂହାସନୁଁ ॥୨୨
ପଡ଼ିଣ ମୂର୍ଚ୍ଛାଗତ ହେଲା ।
ଅଚେଷ୍ଟ ହୋଇଣ ରହିଲା ॥୨୩
ପୁଣ ସେ ପାଇଣ ଚେତନ ।
କଲାକ ବହୁତ ରୋଦନ ॥୨୪
ତୁ କେଶୀ ମୋର ପ୍ରାଣ ସାହା ।
ଛିଡ଼ି ପଡ଼ିଲା ମୋର ବାହା ॥୨୫
ତୋତେ ନ ଦେଖି ମୋର ଡ଼କା ।
ତୁ କେଶୀ ମୋର ପ୍ରାଣସଖା ॥୨୬
ବାଳୁତ କାଳୁ ଯେତେ ଗୁଣ ।
ସୁମରି କାନ୍ଦେ ନୃପରାଣ ॥୨୭
ଅନେକ ରୋଦନ ଚହଳ ।
ସଭାରେ ହୋଇଲା ବିକଳ ॥୨୮
ଶୋକ ଦେଖିଣ ମହାମଲ୍ଲେ ।
ପ୍ରତିଜ୍ଞା କରିଣ ତୋଳିଲେ ॥୨୯
ଆମ୍ଭେ ଯେ ତୋହର ସେବକ ।
ତୁ ରାଜା କରୁ କିମ୍ପା ଶୋକ ॥୩୦
ତୋ'ର ଆଦେଶେ ଦିଗପାଳ ।
ସ୍ୱର୍ଗେ ଜିଣିଲୁଁ ଆଖଣ୍ଡଳ ॥୩୧
ଏମନ୍ତ ପ୍ରତିଜ୍ଞା ତୋହର ।
ଏଥକୁ ଶୋଚନା ନ କର ॥୩୨

ରାମ ଗୋବିନ୍ଦ ବେନିଭାଇ ।
ପାରୁ କି ଏଥକୁ ଅଣାଇ ॥୩୩
ଦେଖିବୁ ବିଚିତ୍ର ସମର ।
ରାମକୃଷ୍ଣ ସଙ୍ଗେ ଆମ୍ଭର ॥୩୪
ଶୁଣି ସାନନ୍ଦ କଂସନୃପ ।
ମନରୁ ଛାଡ଼ିଲା ସନ୍ତାପ ॥୩୫
ବୀରଙ୍କୁ କହଇ ଉତ୍ତର ।
ସେ ମୋର ଆତ୍ମା ଉର ଶଲ୍ୟ ॥୩୬
ଉପାୟ କରି ତା'କୁ ଜିଣ ।
ତା' ହସ୍ତେ ମୋହର ମରଣ ॥୩୭
ଅକ୍ରୁର ପେଷୁଅଛି ମୁହିଁ ।
ଘେନି ଆସିବ ବେନିଭାଇ ॥୩୮
ନନ୍ଦ ଯଶୋଦା ଆଦି କରି ।
ସଭିଙ୍କି ପକାଇବି ମାରି ॥୩୯
କହିଣ ଭିତରକୁ ଗଲା ।
ଶୁଣ ହୋ ଅଭିମନ୍ୟୁ ବଳା ॥୪୦
କଂସ ଆଦେଶ ଘେନି ଶିରେ ।
ଅକ୍ରୁର ବସିଲା ରଥରେ ॥୪୧
ଅରୁଣ ତେଜ ପ୍ରକାଶିଲା ।
ଦିଗ ଆନନ୍ଦେ ବିକାଶିଲା ॥୪୨
ବ୍ରାହ୍ମଣେ ଉଠି ରାତ୍ର ଅନ୍ତେ ।
ସ୍ତୁତି କରନ୍ତି ବେଦମନ୍ତ୍ରେ ॥୪୩
ମଙ୍ଗଳସ୍ୱରେ ବେଦଧ୍ୱନି ।
ଚଳିଲେ ତପୋବନେ ମୁନି ॥୪୪
ଜନେ ସୁମରନ୍ତି ମୁରାରି ।
ଯେ ଯାହାମତେ ସ୍ତୁତି କରି ॥୪୫
ମଳିନ ହୋଇ ତାରାଗଣ ।
ନିର୍ମଳ ଦିଶିଲା ଗଗନ ॥୪୬
ଉତ୍ତରଦିଗେ ବଳୀୟାର ।
ପବନ ବହଇ ମଧୁର ॥୪୭
ଶଙ୍ଖଶବଦ ଦେବଆଳେ ।
ଅମର ଗୁରୁ ଲଗ୍ନ ବେଳେ ॥୪୮

Dr. Sudhanshu Sekhar Mishra

ଅଶ୍ୱ ଯୋଚିଲା ରଥଦାଣ୍ଡେ ।
ମଙ୍ଗଳ ମଥୁରାର ଦାଣ୍ଡେ ॥୪୯
ମନେ ଚିନ୍ତଇ ଭଗବାନ ।
ଅକ୍ରୂର ହରଷ ବଦନ ॥୫୦
ଚିନ୍ତଇ ପ୍ରଭୁ ଆଦିମୂଳ ।
ଆନନ୍ଦେ ବହେ ଅଶ୍ରୁଜଳ ॥୫୧
ପଦ୍ମଲୋଚନ ପାଦତଳେ ।
ଭାବଇ ମତ୍ତଭୃଙ୍ଗ ବଳେ ॥୫୨
ମନ ନିବେଶି କୃଷ୍ଣପାଦେ ।
ବୋଲଇ ଶୋକ ଗଦଗଦେ ॥୫୩
ପୂର୍ବେ କି କରିଅଛି ପୁଣ୍ୟ ।
ତପ ସମାଧି ଯଜ୍ଞ ଦାନ ॥୫୪
ଦେବ ବ୍ରାହ୍ମଣ ପୂଜା ହିତେ ।
ଧନ ବା ଦେଲି ଅପ୍ରମିତେ ॥୫୫
କି ଅବା ଅଛି ତପକରି ।
ଦେଖିବି ପ୍ରଭୁ ନରହରି ॥୫୬
ଦୁର୍ଲ୍ଲଭ ପ୍ରାୟ ମୁଁ ମଣଇଁ ।
କୃଷ୍ଣ ଭେଟିବି ଅବା କାହିଁ ॥୫୭
ବେଦ ପଠନ ଶୂଦ୍ରଜନେ ।
ଦୁର୍ଲ୍ଲଭ ଜଗତେ ଯେସନେ ॥୫୮
ଗୋବିନ୍ଦ ଦରଶନ ମୋତେ ।
କେମନ୍ତେ ଯିବଇଁ ପରତେ ॥୫୯
ଭବସାଗରେ ଦେହ ଧରି ।
କୋଟିକେ ଗୋଟଏ ବା ତରି ॥୬୦
ଏମନ୍ତେ ଦୁଃଖ ମୋ' ଦହନ ।
ଧନ୍ୟ ହୋଇବ ଦେହ ଜନ୍ମ ॥୬୧
ଯେ ପାଦପଦ୍ମ ଗୋପୀଜନେ ।
ହୃଦେ ଲଗାନ୍ତି ଅବଧାନେ ॥୬୨
ତହିଁ ଲାଗିବ ମୋର ଶିର ।
ଧନ୍ୟରେ ଜୀବନ ମୋହର ॥୬୩
ମୋହରେ କଂସ ଦୟା କରି ।
ଯେଣେ ଦେଖିବି ନରହରି ॥୬୪
ଅଶେଷଜନ୍ମ ଘୋରତମ ।
ଆଜ ଛାଡ଼ିବି ମାୟାଭ୍ରମ ॥୬୫
ପାଦଯୁଗଳ ନଖ ତେଜ ।
ଦେଖି ମୁଁ ନିସ୍ତରିବି ଆଜ ॥୬୬
ବ୍ରହ୍ମା ଶଙ୍କର ଆଦି ଦେବେ ।
ଚିନ୍ତା କରନ୍ତି ପାଦସେବେ ॥୬୭
ଗୋପୀଙ୍କ କୁଚଯୁଗେ ଥାଇ ।
କୁଙ୍କୁମ ଲାଗିଅଛି ଯହିଁ ॥୬୮
ଗୋପକୁମର ଘେନି ବନେ ।
ଗୋରୁ ଚରାନ୍ତି ଅବଧାନେ ॥୬୯
ନନ୍ଦମନ୍ଦିରେ ତା'ଙ୍କୁ ଦେଖି ।
ନିର୍ମଳ ହେବ ଚର୍ମଆଖି ॥୭୦
ଅଶେଷ ତୀର୍ଥଙ୍କର ଘର ।
ସେବନ୍ତି ବ୍ରହ୍ମାଶିବ ସୁର ॥୭୧
କଳ୍ପବୃକ୍ଷର ପ୍ରାୟ ହୋଇ ।
ସକଳ ବାଞ୍ଛାଫଳ ଦେଇ ॥୭୨
ସକଳ ସମ୍ପଦର ସାର ।
ସେବକଜନ ଦୁଃଖହର ॥୭୩
ଜନ୍ମମରଣ ପଥ ଦୁଇ ।
ଏଣେ ଯେ ଅଜ୍ଞାନେ ଭ୍ରମଇଁ ॥୭୪
ତାହାଙ୍କ ବିଶ୍ରାମ ମନ୍ଦିର ।
ଭବ-ନିଦାଘେ ଛତ୍ରସାର ॥୭୫
ଦେଖିବି ସୁନ୍ଦର କପୋଳ ।
ନାସା ଶ୍ରବଣ ବେନିଡ଼ୋଳ ॥୭୬
ଅଳପ ହାସ ରଙ୍ଗମୁଖ ।
ଗୁଞ୍ଜ ଅଳକାପାଟୀ ରେଖ ॥୭୭
ଶୁଭ ଲକ୍ଷଣ ଆଜଦିନେ ।
ଶୃଗାଳ ଯାଉଅଛି ବାମେ ॥୭୮
ଭାରା ନିବାରଣେ ମୁରାରି ।
ମର୍ତ୍ତ୍ୟେ ମାନବ ଦେହ ଧରି ॥୭୯
ଅତି ସୁନ୍ଦର ଦେଖି ରୂପ ।
ଖଣ୍ଡିବି କୋଟିଜନ୍ମ-ପାପ ॥୮୦
ଯାହାର ନାମ ଭାବଗ୍ରାହୀ ।
କାର୍ଯ୍ୟ-କାରଣ ଯା'ର ନାହିଁ ॥୮୧
ସେ ରୂପେ ପୂରାଇ ଲୋଚନ ।
ତେଜିବି ମାୟା ମୋହ ଭ୍ରମ ॥୮୨
ଯେ ଆତ୍ମାମାୟା ଯୋଗ କରି ।
ଗୋପୀ ଗୋପାଳ ମଧ୍ୟେ ହରି ॥୮୩
ଯାହାର ଗୁଣ କର୍ମ ଘେନି ।
ଦିନ ହରନ୍ତି ବ୍ରହ୍ମମୁନି ॥୮୪
ପ୍ରାଣ ଧରନ୍ତି ଦୁଃଖ ସୁଖେ ।
ପବିତ୍ର କରି ତିନିଲୋକେ ॥୮୫
ଏଣେ ଯାହାର ଚିତ୍ତ ନାହିଁ ।
ପଶୁଙ୍କ ପ୍ରାୟ ସେ କିଅଇ ॥୮୬
ଅଂଶେ ମାନବ ଦେହ ଧରି ।
ଯାଦବବଂଶେ ଅବତରି ॥୮୭
ଯଶ ବିସ୍ତାରି ଏହାଙ୍କର ।
ସତ୍ୟସ୍ୱରୂପ ଦାମୋଦର ॥୮୮
ଯା' ନାମ ପରମମଙ୍ଗଳ ।
ମହତଗତି ଆଦିମୂଳ ॥୮୯
କୋମଳ ମନୋହର ରୂପ ।
ଦେଖି ତରିବି ଭବକୂପ ॥୯୦
ଏ ଉଷାକାଳ ଶୁଭ ମୋତେ ।
ମଙ୍ଗଳ ମଥୁରାର ପଥେ ॥୯୧
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ ।
ରଥୁଁ ଓହ୍ଲାଇବି ବହନେ ॥୯୨
ରାମଗୋବିନ୍ଦ ପଦ୍ମପାଦେ ।
ପଡ଼ିବି ମୋକ୍ଷଫଳ ସଧେ ॥୯୩
ଯୋଗି ଚିନ୍ତନ୍ତି ଧ୍ୟାନବଳେ ।
ଦେଖିବି ଗୋପାଳଙ୍କ ମେଳେ ॥୯୪
ପାଦେ ପଡ଼ିବି ଯେତେବେଳେ ।
କୃଷ୍ଣଧରିବେ ମୋତେ କୋଳେ ॥୯୫
ଶିରେ ମୋ' ଦେବେ ପଦ୍ମକର ।
ନାଶିବେ ଦୁଃଖ ମହାଘୋର ॥୯୬
କାଳ-ଭୁଜଙ୍ଗ ଭୟ ପାଇ ।
ଯେ ନର ଶରଣ ପଶଇ ॥୯୭
ସେ ପଦ୍ମକର ରଖେ ତା'ରେ ।
ବେଗେ ପଶଇ ମୋକ୍ଷଦ୍ୱାରେ ॥୯୮
ଯେବଣ କରେ ଦାନ ଦେଇ ।
ବଳି ପାତାଳେ ଭୋଗ ପାଇ ॥୯୯
ଭୁଞ୍ଜଇ ପୂଜି କୃଷ୍ଣପାଦ ।
ସ୍ୱର୍ଗେ ପାଇବ ଇନ୍ଦ୍ରପଦ ॥୧୦୦
ରାସଉତ୍ସବେ ବୃନ୍ଦାବନେ ।
ଯେବଣ ଭୁଜେ ଗୋପୀଜନେ ॥୧୦୧
ସୁଗନ୍ଧ କୁଚେ ଲଗାଇଲେ ।
କାମ-ଅନଳ ଲିଭାଇଲେ ॥୧୦୨

Dr. Sudhanshu Sekhar Mishra

ଗୋପ କାମିନୀ ସ୍ୱେଦନୀରେ।
ପୋଛିଲେ କାମ-ସ୍ନେହଭରେ॥୧୦୩
ସେକର ଦେବେ ମୋର ମାଥେ
ଜନ୍ମ ସୁକୃତ ମହାପଥେ ॥୧୦୪
କଂସର ଦୂତ ବୋଲି ମୋତେ ।
କୋପ ନ ଥିବ କୃଷ୍ଣଚିତ୍ତେ ॥୧୦୫
ସେ ତାହା ଅଛଇନା ଜାଣି ।
ଯାହାର ନାମ ଅନ୍ତର୍ଯ୍ୟାମୀ ॥୧୦୬
ସକଳ ଜନ୍ତୁ ହୃଦେ ଥାଇ ।
ଭାବ-ଅଭାବ ସେ ଜାଣଇ ॥୧୦୭
ମୁଁ ଯେ ଚରଣତଳେ ପଡ଼ି ।
ଶିରେ ଅଞ୍ଜଳି ଥିବି ଯୋଡ଼ି ॥୧୦୮
ଅଳପ ହସି ବାଙ୍କେ ଚାହିଁ ।
ମୋତେ ଦେଖିବେ ଭାବଗ୍ରାହୀ ॥୧୦୯
ତକ୍ଷଣେ ହୋଇବି ନିର୍ମଳ ।
ଭୟ ଛାଡ଼ିଣ ରସେ ଭୋଳ ॥୧୧୦
ଅତି ଉଷତେ ସୁଖ ପାଇ ।
ବୋଲିବି କୃଷ୍ଣ ତ୍ରାହି ତ୍ରାହି ॥୧୧୧
ମୁଁ ତା'ର ଜ୍ଞାତି ସହୋଦର ।
ସୁହୃଦପଣେ ହେଁ ବେଭାର ॥୧୧୨
ମୋହର ବେନି ଭୁଜ ଧରି ।
ତୋଳିବେ ରାମ ଦଇତ୍ୟାରି ॥୧୧୩
ପବିତ୍ର ହୋଇବଇଁ ମୁହିଁ ।
କୋଟିଏ ତୀର୍ଥ ପୁଣ୍ୟ ପାଇ ॥୧୧୪
ନିକଟେ ଦେଖି ବ୍ରହ୍ମରାଶି ।
ଛେଦିବି କାଳଦଣ୍ଡପାଶି ॥୧୧୫
କୃଷ୍ଣର ଅଙ୍ଗସଙ୍ଗ ପାଇ ।
ଚାହିଁବି ଶିରେ କର ଦେଇ ॥୧୧୬
ଦାସବତ୍ସଳ ନରହରି ।
ମୋତେ ଡ଼ାକିବେ ନାମ ଧରି॥୧୧୭
ପବିତ୍ର ହୋଇବଇଁ ମୁହିଁ ।
ଆଉ ରହିବ ପାପ କାହିଁ ॥୧୧୮
ତେବେ ସେ ଜନ୍ମସୁଖ ମୋର ।
ସଂସାର ପ୍ରାଣୀଙ୍କର ସାର ॥୧୧୯
ତାହାର ନାହିଁ ମିତ୍ର ଅରି ।
ପ୍ରିୟ ଉଦାସ ଆଦିକରି ॥୧୨୦

ତଥାପି ଭକତର ହିତେ ।
ଭଜଇ ସୁରଦ୍ରୁମ ମତେ ॥୧୨୧
ରୋହିଣୀସୁତ ଦେଖି ମତେ ।
ବେଗେ କରିବେ କୋଳାଗ୍ରତେ॥୧୨୨
ଘରକୁ ନେଇ ମୋର ପାଶେ ।
ବସିବେ ସୁହୃଦ ବିଶ୍ୱାସେ ॥୧୨୩
ବନ୍ଧୁକୁଶଳ ପଚାରିବେ ।
ଜନ୍ମମରଣ ମୋ' ନାଶିବେ ॥୧୨୪
କଂସ ବିଚାରିଅଛି ଯାହା ।
ଗୋବିନ୍ଦ ଜାଣନ୍ତିନା ତାହା ॥୧୨୫
ରଥ ବାହିଲା ଖରତର ।
ଏମନ୍ତ କରିଣ ବିଚାର ॥୧୨୬
ସତ୍ୟସ୍ୱରୂପ ଦାମୋଦର ।
ହୃଦେ ଚିନ୍ତଇ ଚକ୍ରଧର ॥୧୨୭
ଅସ୍ତ ହୋଇଲେ ଦିନକର ।
ଗୋକୁଳେ ମିଳିଲା ଅକ୍ରୂର ॥୧୨୮
ବାଟେ ଦେଖିଲା ବାଲିକୁଦ ।
ପଡ଼ିଛି ଗୋବିନ୍ଦର ପାଦ ॥୧୨୯
ଧ୍ୱଜ ଅଙ୍କୁଶ ପଦ୍ମଚିହ୍ନ ।
ଦେଖି ସାନନ୍ଦ କଲା ମନ ॥୧୩୦
ପୁଲକ ହେଲା ରୋମରାଜି ।
ଅଶ୍ରୁ ଗଳଇ ଚକ୍ଷୁବୁଜି ॥୧୩୧
ରଥୁ ପଡ଼ିଲା ବେଗେ ଡ଼େଇଁ ।
ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥୧୩୨
ପାଦପଙ୍କଜ ଚିହ୍ନ ଧୂଳି ।
ଅକ୍ରୂର ଶିରେ ବେଗେ ବୋଳି॥୧୩୩
ଲୋଟଇ ପାଦଚିହ୍ନ ପରେ ।
ତାଡ଼ଇ ବେନିକର ଶିରେ ॥୧୩୪
ଅକ୍ରୂର ଥାଇ ନିଜ ଘରେ ।
ଯାହା ଶୁଣିଛି କର୍ଣ୍ଣଦ୍ୱାରେ ॥୧୩୫
ତାହାର ପାଦଚିହ୍ନ ପାଇ ।
ଉଠିଣ ଆନନ୍ଦେ ନାଚଇ ॥୧୩୬
ଆନନ୍ଦସାଗରେ ବୁଡ଼ିଲା ।
ଦେହ-ଜୀବନ ପାସୋରିଲା ॥୧୩୭
ଏମନ୍ତେ ଖଣ୍ଡେଦୂର ଯାଇ ।
ଅକ୍ରୂର ଦୂରୁ ଦେଲା ଚାହିଁ ॥୧୩୮

ଦେଖିଲା ଗୋପାଳଙ୍କ ମେଳେ ।
ଗୋରୁଏ ଅଛନ୍ତି ଗହଳେ ॥୧୩୯
ଗାଈ ଦୁହଁନ୍ତି ଗୋପପୋଏ ।
ଶବଦ ସମୁଦ୍ର ପରାୟେ ॥୧୪୦
କ୍ଷୀର ଢ଼ାଳନ୍ତି ଭାଣ୍ଡେ ନେଇ ।
ପୁଣ ଦୁହଁନ୍ତି ଗୀତ ଗାଇ ॥୧୪୧
ଯେ ଯାହା ଅନୁରୂପେ ରୂପ ।
ଦେଖଇ ଏକଇ ସ୍ୱରୂପ ॥୧୪୨
କଙ୍କଣ ନୂପୁର ବାଜେଣୀ ।
ବିବିଧ ଛନ୍ଦରେ କାଛେଣୀ ॥୧୪୩
ମୟୂରପୁଚ୍ଛ ଗୁଞ୍ଜା ଶିରେ ।
ସୁରଙ୍ଗ ପାଦୁକା ପୟରେ ॥୧୪୪
ଗୋରୁଙ୍କ ଲାଞ୍ଜଧୂଳି ସଙ୍ଗେ ।
ଭୂଷଣ ଗୋପାଳଙ୍କ ଅଙ୍ଗେ ॥୧୪୫
ଛନ୍ଦଦଉଡ଼ି ଧରି କରେ ।
ବାଛୁରୀ ଛନ୍ଦନ୍ତି ସଧୀରେ ॥୧୪୬
ଶ୍ରବଣେ ଶୋହଇ କୁଣ୍ଡଳ ।
କଣ୍ଠେ ଲମ୍ବଇ ବନମାଳ ॥୧୪୭
ଅକ୍ରୂର ଦେଖି ବିଚାରଇ ।
ରାମ ଗୋବିନ୍ଦ ନ ଚିହ୍ନଇ ॥୧୪୮
ସର୍ବେ ଦିଶନ୍ତି ଏକମତେ ।
ମୁଁ ଅବା ଜାଣିବି କେମନ୍ତେ ॥୧୪୯
ଦାସବତ୍ସଳ ଭଗବାନ ।
ଜାଣିଲେ ଅକ୍ରୂରର ମନ ॥୧୫୦
ତକ୍ଷଣେ ଦିବ୍ୟରୂପ ହୋଇ ।
ଗାଈ ଦୁହଁନ୍ତି ବେନିଭାଇ ॥୧୫୧
ଧବଳ ରୂପ ରାମକାୟେ ।
କୋଟିଏ ଚନ୍ଦ୍ର ସରି ନୋହେ ॥୧୫୨
ନୀଳ ପଟନୀ କଟି ଭରେ ।
ରଙ୍ଗବସନ ପାଗ ଶିରେ ॥୧୫୩
ଶିରେ ସପତ ନାଗଫଣୀ ।
କରେ କଙ୍କଣ କଣ୍ଠେ ମଣି ॥୧୫୪
କର୍ଣ୍ଣେ କୁଣ୍ଡଳ ରତ୍ନସାର ।
ନିବିଡ଼ ସୁରଙ୍ଗ ଅଧର ॥୧୫୫
କୃଷ୍ଣ ଦେଖିଲା ବାମପାଖେ ।
ଗୁଞ୍ଜା ମୟୂରପୁଚ୍ଛ ଶିଖେ ॥୧୫୬

Dr. Sudhanshu Sekhar Mishra

ନୀଳ ଜୀମୂତ ତନୁ ଶୋହେ ।
କୋଟିଏ କାମ ସରି ନୋହେ॥୧୫୭
ଶ୍ରବଣେ ମକରକୁଣ୍ଡଳ ।
ହୃଦେ ଲମ୍ବଇ ବନମାଳ ॥୧୫୮
ଶ୍ରୀବତ୍ସ ଚିହ୍ନ ପୀତବାସ ।
ରଙ୍ଗ ଅଧରେ ମନ୍ଦହାସ ॥୧୫୯
ରତ୍ନକଠାଉ ପାଦଯୁଗେ ।
ମଣିମେଖଳା କଟିଭାଗେ ॥୧୬୦
କ୍ଷୀର କଣିକା ନୀଳଦେହେ ।
ଦିଶନ୍ତି ନକ୍ଷତ୍ର ପରାୟେ ॥୧୬୧
ଲୋଚନ ପଦ୍ମପ୍ରାୟେ ଦିଶି ।
ମହାମହିମା ବ୍ରହ୍ମରାଶି ॥୧୬୨
ଅକ୍ରୁର ମନେ ବିଚାରଇ ।
ଭେଟିଲି ପ୍ରଭୁ ଭାବଗ୍ରାହୀ ॥୧୬୩
ଏ ସେ ରୋହିଣୀସୁତ ରାମ ।
ସୁନ୍ଦର ପଣେ ନାହିଁ ସମ ॥୧୬୪
ଆଜାନୁଭୁଜ ବଳୀୟାର ।
ମଝା ସିଂହକୁ ପଟାନ୍ତର ॥୧୬୫
ବିକ୍ରମ ସିଂହ ପ୍ରାୟେ ହୋଇ ।
ଏ ସେ ଗୋବିନ୍ଦ ବେନିଭାଇ॥୧୬୬
ସ୍ୱଭାବେ ବୟସ କିଶୋର ।
ଅଟନ୍ତି ବେନି ସହୋଦର ॥୧୬୭
ଗନ୍ଧଚନ୍ଦନ ଦେହେ ବୋଳି ।
କପୋଳେ ଶୋହେ ଗୋରୁଧୂଳି॥୧୬୮
ପ୍ରଧାନ ପୁରୁଷ ଏ ବେନି ।
ସଂସାର ପିଅର ଜନନୀ ॥୧୬୯
ମର୍କତ ରୌପ୍ୟ ଗିରି ଘେରି ।
ଶୋହେ କି କନକପାଚେରୀ ॥୧୭୦
ଅବନୀଭାରାର ଉଶ୍ୱାସେ ।
ଜନ୍ମ ହୋଇଲେ ଯଦୁବଂଶେ ॥୧୭୧
ତ୍ରୈଲୋକ୍ୟଠାକୁର ଗୋସାଇଁ ।
କଂସର ଡ଼ରେ ଗୋପେ ଥାଇ॥୧୭୨
ଦଶଦିଗର ତମ ନାଶେ ।
ନିଜ ସ୍ୱରୂପ ପରକାଶେ ॥୧୭୩
ରଥରୁ ଓହ୍ଲାଇ ଅକ୍ରୁର ।
ପାୟେ ଚାଳଇ ସ୍ନେହଭର ॥୧୭୪

ଗୋବିନ୍ଦ ନିକଟେ ମିଳିଲା ।
ସଂଭ୍ରମେ ଲୋଚନ ବୁଜିଲା ॥୧୭୫
ଅଭୟ ପାଦେ ଶିର ଦେଇ ।
ପଡ଼ିଲା ଦଣ୍ଡ ପ୍ରାୟ ହୋଇ ॥୧୭୬
ବେନି ନୟନୁଁ ବହେ ନୀର ।
କଣ୍ଠ ହୋଇଲା ଶୋକଭର ॥୧୭୭
କହି ନ ପାରି ଆତ୍ମ ନାମ ।
ମନେ ବୋଲଇ କୃଷ୍ଣ ରାମ ॥୧୭୮
ପୁଣି ଉଠିଲା ଭାବଭରେ ।
ପଡ଼ିଲା ରାମର ପୟରେ ॥୧୭୯
ଦେଖି ସାନନ୍ଦ ବେନିଭାଇ ।
ଉଠିଲେ ଅକ୍ରୁରକୁ ଚାହିଁ ॥୧୮୦
ଧରି ଅକ୍ରୁର ବେନିଭୁଜ ।
ତୋଳିଲେ ପ୍ରଭୁ ଦେବରାଜ ॥୧୮୧
ଚାପିଲେ ହୃଦରେ ଲଗାଇ ।
ଅକ୍ରୁର ବୋଲେ ତ୍ରାହି ତ୍ରାହି ॥୧୮୨
ପୁଣି ପଡ଼ଇ ପାଦତଳେ ।
ରାମ ଧଇଲେ ନେଇ କୋଳେ॥୧୮୩
ଅକ୍ରୁର ମୁଖେ ନୀର ଦେଇ ।
ବସ୍ତ୍ରେ ପୋଛିଲେ ଭାବଗ୍ରାହୀ ॥୧୮୪
ଶାନ୍ତ କରାଇ ସହୋଦର ।
କନ୍ଧେ ଘେନାଇ ବେନିକର ॥୧୮୫
ରାମ ଗୋବିନ୍ଦ କନ୍ଧେ କର ।
ସଧୀରେ ଚାଲଇ ଅକ୍ରୁର ॥୧୮୬
ଆନନ୍ଦସାଗରେ ବୁଡ଼ିଲା ।
ରାତ୍ର ଦିବସ ନ ଜାଣିଲା ॥୧୮୭
ଅକ୍ରୁରେ ଘେନି ବେନିଭାଇ ।
ମିଳିଲେ ନନ୍ଦଘରେ ଯାଇ ॥୧୮୮
ବନ୍ଧୁଜନଙ୍କର ବେଭାର ।
କରନ୍ତି ରାମ ଦାମୋଦର ॥୧୮୯
ପାଦ ଧୋଇଲେ ଚକ୍ରଧର ।
ବିଞ୍ଚନ୍ତି ରୋହିଣୀକୁମର ॥୧୯୦
ଆସନ ଦେଇ ଦାମୋଦର ।
ପୂଜିଲେ ଅକ୍ରୁର ପୟର ॥୧୯୧
ସ୍ୱଭାବେ ଖୁଡୁତା ଅକ୍ରୁର ।
ବନ୍ଧୁଜନର ଯେ ବେଭାର ॥୧୯୨

ମଧୁର କୋମଳ ବଚନ ।
କହି ତୋଷିଲେ ତା'ର ମନ ॥୧୯୩
ଅନ୍ନ ବ୍ୟଞ୍ଜନ ବାସପାଣି ।
ଗୋବିନ୍ଦ ପରଶିଲେ ଆଣି ॥୧୯୪
ଦଧି ଅଧାମ ଘୃତ ସର ।
ଦିଅନ୍ତି ରୋହିଣୀକୁମର ॥୧୯୫
ଏମନ୍ତେ ନାନା ଭଲ ଦ୍ରବ୍ୟ ।
ଅକ୍ରୁରେ ଭୁଞ୍ଜାଇଲେ ସର୍ବ ॥୧୯୬
ଅକ୍ରୁର ଭୁଞ୍ଜିଣ ଶୀତଳ ।
ଆଚମନକୁ ବାସନୀର ॥୧୯୭
ମୁଖ ପଖାଳି ବାସଗୁଆ ।
ଗୋବିନ୍ଦ ଭୁଞ୍ଜାନ୍ତି ବିଡ଼ିଆ ॥୧୯୮
ଗନ୍ଧଚନ୍ଦନ ଫୁଲମାଳ ।
ଦେଇ ବସିଲେ ପାଦତଳ ॥୧୯୯
ଅକ୍ରୁର ପାଦେ କର ଦେଇ ।
ଧୀରେ ଚାପନ୍ତେ ଭାବଗ୍ରାହୀ ॥୨୦୦
ରାମ ଚାପନ୍ତେ କରସ୍ଥଳ ।
ପୁଲକ ଅକ୍ରୁର ଶରୀର ॥୨୦୧
ଅକ୍ରୁର ଦେହୁ ଶ୍ରମ ଗଲା ।
ଆନନ୍ଦେ ନନ୍ଦ ପଚାରିଲା ॥୨୦୨
ଭୋ ମିତ୍ର କହିବା କୁଶଳ ।
ଭଲେ କି ଛନ୍ତି ଯଦୁକୁଳ ॥୨୦୩
କି ଆଉ ପଚାରିବି ମୁହିଁ ।
ଜୀବନ ଡ଼ରେ ଘରେ ରହି ॥୨୦୪
ଯାବତ ଅଛି ଭୋଜପତି ।
ଆମ୍ଭର କାହିଁ ଭଲଗତି ॥୨୦୫
ପଶୁମାରକ ଘରେ ଯେହ୍ନେ ।
ବନ୍ଦୀରେ ଥା'ନ୍ତି ପଶୁଗଣେ ॥୨୦୬
କଂସ ଜୀବନେ ଯେବେ ଥାଇ।
ଆମ୍ଭର ସୁଖ ଲେଶ ନାହିଁ ॥୨୦୭
ଭଗିନୀ ସହୋଦର ପୋଏ ।
କଂସ ଯେ ମାଇଲା ନିର୍ଦ୍ଦୟେ ॥୨୦୮
ତା'ର ପ୍ରଜାଙ୍କ କି କୁଶଳ ।
ସ୍ୱଭାବେ ଅଟଇ ଅସୁର ॥୨୦୯
ଏମନ୍ତ ବିଶ୍ୱାସେ ପଚାରି ।
ଅକ୍ରୁର କର କରେ ଧରି ॥୨୧୦

Dr. Sudhanshu Sekhar Mishra

ନୟନୁ ବହେ ଅଶ୍ରୁଜଳ ।
ଅକ୍ରୁର ଦେଖିଲା ବିକଳ ୨୧୧
ଉଠି ନନ୍ଦକୁ ଧରି କୋଳେ ।
ମୁଖ ଧୋଇଲା ବାସଜଳେ ୨୧୨
ଛାଡ଼ିଲା ଆପଣାର ଶ୍ରମ ।
ଶୁଣିଣ ମଧୁର ବଚନ ୨୧୩
ଥିଲା ଯେ ଦାସ ଜଗନ୍ନାଥ ।
ଶିରେ ନିବେଶି ବେନିହସ୍ତ ୨୧୪
ସୁଜନ ଜନ ପଢେ ଥାଇ ।
ରାମ ଗୋବିନ୍ଦ ମୁଖ ଚାହିଁ ୨୧୫
ଛାଡ଼ିଲା ଭବବନ୍ଧ-ତ୍ରାସ ।
ଗୀତେ ଭିଆଇ କୃଷ୍ଣରସ ୨୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଅକ୍ରୁର
ଆଗମନଂ ନାମ
ଏକଚତ୍ୱାରିଂଶୋଽଧ୍ୟାୟଃ ॥

---

## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

### ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ କୁମର ।
ଶୁଣ ପରୀକ୍ଷ ନୃପବର ॥୧
ପଲଙ୍କେ ବସାଇ ଅକ୍ରୁର ।
କୃଷ୍ଣ ଯେ ପୂଜିଲେ ପୟର ॥୨
ଯାହା ବିଚାରିଥିଲା ପଥେ ।
କୃଷ୍ଣ ପୂଜିଲେ ସେହିମତେ ॥୩
ଯାହାର ନାମ ପଦ୍ମନାଭ ।
ତାହାଙ୍କୁ କିସ ଅପୂରୁବ ॥୪
ଶୀତଳ ମଣୋହି କରାଇ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୫
ବନ୍ଧୁ ବିଷୟେ ରାଜା କଂସ ।
ଯେମନ୍ତେ କରିଛି ବିଶ୍ୱାସ ॥୬

### ଶ୍ରୀକୃଷ୍ଣ ଉବାଚ

କୃଷ୍ଣ ବୋଲନ୍ତି ଶୁଣ ତାତ ।
ଭଲେ ଅଇଲଟିକି ପଥ ॥୭
ବନ୍ଧୁ କୁଶଳ ଅଛ ଜାଣି ।
ଭୋ ତାତ କହ ପରିମାଣି ॥୮
ଯାବତ କୁଳବ୍ୟାଧି ହୋଇ ।
କଂସ ମାତୁଳ ମୋ' ଅଛଇ ॥୯
ତାବତ ସୁଖ କାହିଁ ଆଉ ।
ବନ୍ଧୁବାନ୍ଧବ ଯେତେ ମୋର ॥୧୦
ହୋଇଲେ ବଡ଼ ଦୁଃଖଭାଗୀ ।
ତାତ ଜନନୀ ମୋର ଲାଗି ॥୧୧
ସୁତମାରଣ ମୋର ବାଦେ ।
ଲୌହ ଶାଙ୍କୁଳି ବେନିପାଦେ ॥୧୨
ଆଜ ମୋହର ଭାଗ୍ୟ ଦେଖ ।
ଦେଖିଲି ଜ୍ଞାତିଜନ ମୁଖ ॥୧୩
ଭୋ ତାତ ତୋର ଆମଗନ ।
କହିବା କେବଣ କାରଣ ॥୧୪
କପଟ ନ କର ତୁ ମୋତେ ।
କହ ହରଷ ବହି ଚିତ୍ତେ ॥୧୫

### ଶୁକ ଉବାଚ

କୃଷ୍ଣବଚନ କର୍ଣ୍ଣେ ଶୁଣି ।
ଅକ୍ରୁର କହେ ମଞ୍ଜୁବାଣୀ ॥୧୬
ଭୋ ଦେବ ଯଦୁକୁଳ ଇନ୍ଦ୍ର ।
ଯୋଗୀଙ୍କ ଯୋଗ ପୂର୍ଣ୍ଣଚନ୍ଦ୍ର ॥୧୭
ମୁହିଁ ଅଇଲି ଯେଉଁ ପାଇ ।
ବଚନ ଶୁଣ ଭାବଗ୍ରାହୀ ॥୧୮
କଂସ କରିଛି ଯେତେ କର୍ମ ।
ଶୁଣିଲେ ଉପୁଜିବ ଶ୍ରମ ॥୧୯
ଯାଦବବଂଶେ ଦ୍ରୋହ କଲା ।
ବସୁଦେବଙ୍କୁ ହାଣୁଥିଲା ॥୨୦
ନାରଦ ଅନେକ କହିଲେ ।
ଖଡଗ ଛଡ଼ାଇ ଘେନିଲେ ॥୨୧
ମୁନିଙ୍କ ବୋଲେ ବେଳେ ରଖି ।
ପିଅର ଜନନୀ ତୋ ଦୁଃଖୀ ॥୨୨
ଧନୁ ଉତ୍ସବ ଯାତ୍ରା ଛଳେ ।
ଗୋପେ ପେଷିଲା ମୋତେ ବଳେ ॥୨୩
ତୋହର ଜନ୍ମ ଆମ୍ଭ ଘରେ ।
ନାରଦ କହିଲେ ଛାମୁରେ ॥୨୪
ଶୁଣି ଯେତେକ କଷ୍ଟ ଦେଲା ।
ଭୋ ନାଥ ନୁହଁଇ କହିଲା ॥୨୫
କିସ କହିବି ଆଉ ମୁହିଁ ।
ତୁ କି ନ ଜାଣୁ ଭାବଗ୍ରାହୀ ॥୨୬
ଅକ୍ରୁର ବୋଲ କୃଷ୍ଣ ଶୁଣି ।
ହସନ୍ତି ରାମ ଚକ୍ରପାଣି ॥୨୭
ନନ୍ଦକୁ ଚାହିଁ ବେନିଭାଇ ।
କହନ୍ତି ଅକ୍ରୁରେ ବସାଇ ॥୨୮
ନନ୍ଦକୁ ବୋଲନ୍ତି ଅକ୍ରୁର ।
ମଥୁରା ଯିବା ସଜକର ॥୨୯
ଧନୁ ଉତ୍ସବ ମଧୁପୁର ।
ଗୋରସ ଘେନି ଶତେ ଭାର ॥୩୦
ସରଲବଣୀ ଆଦିକରି ।
ଗୋପରେ ଯେତେ ନରନାରୀ ॥୩୧
ବହନ ସାଜ ରାତ୍ର ଥାଉଁ ।
କଂସ ରାଜାର କୋପନୋହୁ ॥୩୨
ଶକଟେ ନାନା ଦ୍ରବ୍ୟ ଭରି ।
ଆଗହୁଁ ଯା'ନ୍ତୁ ନରନାରୀ ॥୩୩
ରାଜା ହକରା ଚାରିଦିଗେ ।
ଲୋକେ ମିଳିବେ ଧନୁଯୋଗେ ॥୩୪
ଯେ ଯାହା ମତେ ପୂଜା କରି ।
ତୋଷ କରିବେ ଦଣ୍ଡଧାରୀ ॥୩୫
ରାଜନ ହୋଇ ସାବଧାନ ।
ଯେ ଯାହା ମତେ ଦେବେ ଦାନ ॥୩୬

Dr. Sudhanshu Sekhar Mishra

ଧନ ବସନ ଅଳଙ୍କାର ।
ଅନେକ କରିଛି ସମ୍ଭାର ॥୩୭
ଏମନ୍ତ କହି ରାଜା ଲୋକ ।
ନନ୍ଦକୁ ଦେଲାକ ଶ୍ରୀମୁଖ ॥୩୮
ନନ୍ଦ ଉଠିଣ ଘେନିକରେ ।
ଶ୍ରୀମୁଖ ଲଗାଇଲା ଶିରେ ॥୩୯
ପଢ଼ି ସାନନ୍ଦ ଗୋପବୀର ।
ଘୋଷଣା ଦେଲା ଗୋପପୁର ॥୪୦
ଗୋପାଳେ ବେଗେ ହୁଅ ସଜ ।
ଆଜ୍ଞା ଦେଇଛି ଭୋଜରାଜ ॥୪୧
ଧନୁଉତ୍ସବ ମଧୁପୁର ।
ଗୋରସ ଘେନି ଶତେ ଭାର ॥୪୨
ଯେ ଯାହା ମତେ ବେଗେ ଯାଅ ।
ରାତ୍ର ହୁଁ ଦଣ୍ଡେ ହେଁ ନରହ ॥୪୩
ବିଳମ୍ବ ନକର କେବେ ହେଁ ।
କୋପ କରିବ କଂସରାଏ ॥୪୪
ରାମଗୋବିନ୍ଦ ମୋର ସଙ୍ଗେ ।
ରଥେ ମଥୁରା ଯିବେ ବେଗେ ॥୪୫
ରାଜାଙ୍କୁ କରିବେ ଦର୍ଶନ ।
ଦେଖିବେ ଧନୁଯାତ୍ରାମାନ ॥୪୬
ରାତ୍ର ହୁଁ ଯାଅ ବେଗକରି ।
ଶକଟେ ଘୃତ ସର ଭରି ॥୪୭
ଗୋପରେ ଶୁଭିଲା ଘୋଷଣ ।
ମଥୁରା ଯିବେ ନରାୟଣ ॥୪୮
ରାଜାଙ୍କୁ ଦର୍ଶନ କରିବେ ।
ମଥୁରା କଟକେ ରହିବେ ॥୪୯
ବନ୍ଦୀ କରିବ ମଧୁପୁରେ ।
ଲୁଚିଯେ ଛନ୍ତି ନନ୍ଦଘରେ ॥୫୦
ଶୁଣି ଗୋପାଳେ ଛନ୍ନ ଛନ୍ନ ।
ବିକଳ ଗୋପୀଙ୍କର ମନ ॥୫୧
ଏକ ଆରକେ ମୁଖ ଚାହିଁ ।
କହନ୍ତି ବାଇ ପ୍ରାୟ ହୋଇ ॥୫୨
ଶୁଣ ଗୋ ସଖି ବିପରୀତ ।
ଆସି ଯେ ଅଛି କଂସଦୂତ ॥୫୩

ନନ୍ଦ ଗୋବିନ୍ଦ ଆଦିକରି ।
ମଥୁରା ଘେନିଯିବ ଧରି ॥୫୪
ନେଇ ମାରିବ ବେନିଭାଇ ।
ଆମ୍ଭର ନେବ ଗୋରୁଗାଈ ॥୫୫
କେ ବୋଲେ ନୁହଁଇ ଏମନ୍ତ ।
ମଥୁରାପୁରେ ଧନୁଯାତ ॥୫୬
ଯାତ୍ରାକୁ ଯିବେ ବେନିଭାଇ ।
ରଥ ଦେଇଛି ପଠିଆଇ ॥୫୭
ରାଜନିଯୋଗ ଆବୋରିବେ ।
ମଥୁରା କଟକେ ରହିବେ ॥୫୮
ନନ୍ଦ ଯଶୋଦା ଆଦି କରି ।
ଗୋପରେ ଯେତେ ନରନାରୀ ॥୫୯
ଗୋରସ ଦେବେ ରାଜା ଆଗେ ।
ଯାତ୍ରା ଦେଖିବେ ନବରଙ୍ଗେ ॥୬୦
ପୁଣି ଆସିବେ ଗୋପପୁର ।
ରହିବେ ରାମ ଦାମୋଦର ॥୬୧
ଶୁଣି ଗୁଆଳୀ ଶୋକବିଭେ ।
ଥୋକେ ବୋଲନ୍ତି ଏହିମତେ ॥୬୨
କି ବୁଦ୍ଧି କରିବା ଗୋ ଏବେ ।
କୃଷ୍ଣ ମଥୁରା ଯେବେ ଯିବେ ॥୬୩
କେମନ୍ତେ ବଞ୍ଚିବା ଗୋ ଦିନ ।
କୃଷ୍ଣ ଯେ ଆମ୍ଭର ଜୀବନ ॥୬୪
କହି କାତରେ କମ୍ପେ କାୟେ ।
ମୂର୍ଚ୍ଛିତେ ପଡ଼ିଲେ ଥୋକାଏ ॥୬୫
ଶିଶିରେ ଯେହ୍ନେ ପଦ୍ମବନ ।
କ୍ଷଣକେ ହୁଅଇ ଦହନ ॥୬୬
କାହାର ମୁଖ ଗଲା ଶୁଖି ।
କେ ଭାବେ ବୁଜେ ବେନିଆଖି ॥୬୭
କାହାର ଫିଟିଲା ଅଞ୍ଚଳ ।
କଟିମେଖଳା ଅସମ୍ଭାଳ ॥୬୮
କେ ଗଡ଼ି କାନ୍ଦଇ ଧରଣୀ ।
ଦେହ ଅବନୀ କେ ନ ଜାଣି ॥୬୯
ହା କୃଷ୍ଣ ବୋଲି ମୋହେ ପଡ଼ି ।
କେ ମୁଣ୍ଡେ ବେନିକର ତାଡ଼ି ॥୭୦

ଶିରେ କେ ମାରଇ ପଥର ।
ହା ହା ଗୋବିନ୍ଦ ହଳଧର ॥୭୧
କେ ବୋଲେ ଜାଣିବାଟି ଆଜ ।
ମୋର ମହିମା ତୁମ୍ଭେ ବୁଝ ॥୭୨
ଅକ୍ରୁର ସଂହାରିବି ଆଜ ।
କି କରିପାରେ ଭୋଜରାଜ ॥୭୩
ରାମଗୋବିନ୍ଦ ବେନିଭାଇ ।
ମୁଁ ହିଁ ଗୋ ଆସିବି ରୁହାଇ ॥୭୪
କଂସ କି କରିବ ମୋହର ।
ଆମ୍ଭର କୃଷ୍ଣ ବଳୀୟାର ॥୭୫
ଦେଖିଲଟିକି ଚକ୍ଷୁଦ୍ୱାରେ ।
ଗିରି ତୋଳିଲେ ବାମକରେ ॥୭୬
ପୂତନା ଆଦି କେଶୀ ଯାଏ ।
ଗୋବିନ୍ଦ ମାଇଲେ ନିର୍ଭୟେ ॥୭୭
ତାହାର ଭୁଜ ଆଶ୍ରେ କରି ।
ସୁଖେଣ ଗୋପରେ ବିହରି ॥୭୮
ଅକ୍ରୁର ମାରିବା ଗୋ ଆସ ।
କି କରି ପାରିବ ସେ କଂସ ॥୭୯
ଆଜ ଗୋବିନ୍ଦ ଗୋପୁଁଗଲେ ।
ଆମ୍ଭେ ମରିବା ଏକାବେଳେ ॥୮୦
କିସ କରିବା ଗୋପପୁର ।
କୃଷ୍ଣ ଯେ ଜୀବନ ଆମ୍ଭର ॥୮୧
ରାମଗୋବିନ୍ଦ ଅନୁରାଗ ।
ଅଳପସ୍ମିତ ମୁଖରଙ୍ଗ ॥୮୨
ହୃଦେ ସୁମରି ଲୁହ ବହି ।
ଚିତ୍ରପ୍ରତିମା ପ୍ରାୟ ରହି ॥୮୩
ସୁନ୍ଦର ଚାଲିବାର ଠାଣି ।
ଯେମନ୍ତ କହେ ମୃଦୁବାଣୀ ॥୮୪
ଅଳପ ହସି ବାଙ୍କେ ଚାହିଁ ।
କଟାକ୍ଷେ ଜଗତ ମୋହଇ ॥୮୫
ଯେତେ ସଙ୍କଟୁ ଅଛି ତାରି ।
କେତେ ଅସୁର ଅଛି ମାରି ॥୮୬
ଏଣେ ନିରୋପି ଶୋକମନ ।
କୃଷ୍ଣ ବିୟୋଗେ ଛନ ଛନ ॥୮୭

Dr. Sudhanshu Sekhar Mishra

ସକଳେ ହୋଇ ଏକଗୁଣ୍ଠ ।
ଶୋକେ ଚହଲ ଗୋପଦାଣ୍ଡ ॥୮୮
କାନ୍ଦନ୍ତି ଦଇବ ସୁମରି ।
ବିଚ୍ଛେଦ ଦୁଃଖେ ଗୋପନାରୀ ॥୮୯
ତୁ ହୋ ଦଇବ ବଡ଼ ମନ୍ଦ ।
ଗୋପନଗରେ କଲୁ ଛନ୍ଦ ॥୯୦
ସଂଯୋଗ କଲୁ କୃଷ୍ଣସଙ୍ଗ ।
ଏବେ ତ କରୁଛୁ ବିଯୋଗ ॥୯୧
ଆମ୍ଭର ନ ପୂରିଲା ଆଶ ।
ଅଳପେ କଲୁ ତୁ ନିରାଶ ॥୯୨
ନିଷ୍ଠୁର ସ୍ୱଭାବ ଟତା ହିଆ ।
ଆମ୍ଭରେ ନାହିଁ ତୋର ଦୟା ॥୯୩
ବାଳୁତ ପ୍ରାୟେ ତୋର କର୍ମ ।
କେମନ୍ତେ ସହିବଟି ଧର୍ମ ॥୯୪
ନୀଳକୁନ୍ତଳ ଚାରୁମୁଖ ।
ଦେଖିଲେ ଛାଡ଼େ ଭବଦୁଃଖ ॥୯୫
ମଧୁରହାସ ନାସା ରେଖ ।
ଦେଖିଲେ ପାଉଁ ମନେ ସୁଖ ॥୯୬
ସେ ସୁଖ କରାଉଛୁ ଦୂର ।
ଅସାଧୁ କର୍ମ ଏ ତୋହର ॥୯୭
ଏମନ୍ତେ ଅକ୍ରୂରଙ୍କୁ ଚାହିଁ ।
ବୋଲନ୍ତି କୋପଭର ହୋଇ ॥୯୮
ତୁ ଯେବେ ଅକ୍ରୂର ବୋଲାଉ ।
କ୍ରୂର ସ୍ୱଭାବ କିମ୍ପା ବହୁ ॥୯୯
ଆମ୍ଭର ଚକ୍ଷୁ ବନମାଳୀ ।
ତୁ ତାହା ନେଉଅଛୁ ଖୋଳି ॥୧୦୦
ନନ୍ଦକୁମର କୃଷ୍ଣ ସଙ୍ଗେ ।
ସୁହୃଦ କଲୁଁ ଭାବରଙ୍ଗେ ॥୧୦୧
ଛାଡ଼ିଲୁଁ ସୁତ ଧନଘର ।
ଲଜ୍ଜା ସ୍ୱଭାବ ବନ୍ଧୁବର ॥୧୦୨
ପୀରତି କରିଅଛୁ ନୂଆ ।
ଅକ୍ରୂର ନ ଛଡ଼ା ତୁ ଏହା ॥୧୦୩
ମଥୁରାନାରୀଙ୍କର ଭାଗ୍ୟ ।
ଶତଜନମେ ଯାଗଯଜ୍ଞ ॥୧୦୪
ସୁଖେ ପାହିବ ଆଜ ନିଶି ।
ଦେଖିବେ କୃଷ୍ଣ ଦ୍ୱାରେ ବସି ॥୧୦୫
ନଗ୍ରେ ପଶନ୍ତେ ବେନିଭାଇ ।
ବାମଦକ୍ଷିଣେ ଥିବେ ଚାହିଁ ॥୧୦୬
କଟାକ୍ଷେ ଦେଖି କୃଷ୍ଣରୂପ ।
ଛାଡ଼ିବେ କୋଟିଜନ୍ମତାପ ॥୧୦୭
କୃଷ୍ଣର ମୁଖପଦ୍ମରସ ।
ନୟନପାନେ ହୋଇ ତୋଷ ॥୧୦୮
ଗୁରୁ-ଗଉରବ ନ ଗଣି ।
ଦାଣ୍ଡେ ଦେଖିବେ ବେଣୁପାଣି ॥୧୦୯
ମଥୁରାପୁର ନାରୀଗଣ ।
ଚାହିଁ ମୋହିବେ ନାରାୟଣ ॥୧୧୦
ମଧୁର ହାସେ କୃଷ୍ଣମନ ।
ପଣତେ ବାନ୍ଧିବେ ବହନ ॥୧୧୧
ଏମନ୍ତେ ନାନାଭାବ କରି ।
ମନମୋହିବେ ନରହରି ॥୧୧୨
ଗୋବିନ୍ଦ ରତିରସେ ଜିତା ।
ଛାଡ଼ିବେ ଗୋପପୁର ଚିନ୍ତା ॥୧୧୩
ଭୁଲାଇ କୃଷ୍ଣ-ହଳଧର ।
ଛାଡ଼ି ନ ଦେବେ ଗୋପପୁର ॥୧୧୪
ଯାଦବ ଆଦି ସାତବଂଶ ।
ତାହାଙ୍କ ପୁଣ୍ୟ ଗୋ ଅଶେଷ ॥୧୧୫
ଆଜ ପାଇବେ ତପଫଳ ।
ଦେଖିବେ ମଦନଗୋପାଳ ॥୧୧୬
ଆମ୍ଭର ପୂର୍ବପାପେ ଜାଣ ।
ଅକ୍ରୂର ହୋଇଲା ଦାରୁଣ ॥୧୧୭
ଆମ୍ଭର ଦୁଃଖ ନ ଜାଣଇ ।
ମଥୁରା ନେବ ବେନିଭାଇ ॥୧୧୮
ଦେହରୁ ପ୍ରାଣ ନେବ ହରି ।
ଆଜ ମରିବୁ ଗୋପନାରୀ ॥୧୧୯
ଦେଖ ଗୋପାଳେ ଏଡ଼େ ମନ୍ଦା ।
ବିଚାର ନ କରଇ ନନ୍ଦ ॥୧୨୦
ପୁଅଙ୍କ ଭଲ ନ ଜାଣଇ ।
ଅକ୍ରୂର ବୋଲେ ପଠିଆଇ ॥୧୨୧
ଯଶୋଦା ନ ଜାଣଇ ଏହା ।
କେମନ୍ତେ ଧରିବଟି ହିଆ ॥୧୨୨
ଗଉଡ଼େ ବାଇ ପ୍ରାୟେ ହୋଇ ।
ସଜ ହୁଅନ୍ତି ଆଗେ ଯାଇ ॥୧୨୩
ଦଇବ ହୋଇଲା ବଇରୀ ।
ଆଜୁଁ ବୁଡ଼ିଲା ଗୋପଶିରୀ ॥୧୨୪
ଆସ ଗୋ ଓଗାଳିବା ପଥ ।
ଅକ୍ରୂର କେତେ ବଳବନ୍ତ ॥୧୨୫
ରଥ କରିବା ଖଣ୍ଡ ଖଣ୍ଡ ।
ଛେଦିବା ଅକ୍ରୂରର ମୁଣ୍ଡ ॥୧୨୬
କି କରି ପାରିବେ ଗୋପାଳେ ।
ରଥ ଭାଙ୍ଗିବା ଆମ୍ଭେ ବଳେ ॥୧୨୭
ଶୁଣି ଗୋ କଂସ କରୁ ରୋଷ ।
ଆମ୍ଭେ ନ ଥିବା ତା'ର ଦେଶ ॥୧୨୮
ଅର୍ଦ୍ଧନିମିଷେ କୃଷ୍ଣ ସଙ୍ଗ ।
ଛାଡ଼ି ମଣିବୁ ଶତେଯୁଗ ॥୧୨୯
ସେ ଆମ୍ଭ ଦୁଃଖର ସୋଦର ।
ଦଇବ କଲା ଏବେ ଦୂର ॥୧୩୦
ଆମ୍ଭର ରାସକେଳି ରସେ ।
ଜାଣନା ବୃନ୍ଦାବନ ଦେଶେ ॥୧୩୧
ନିମିଷେ ନ ପାଇ ମୁରାରି ।
କେମନ୍ତ ହେଲୁ ଗୋପନାରୀ ॥୧୩୨
ତକ୍ଷଣେ ପାଇ ବ୍ରହ୍ମରାଶି ।
ନିମିଷ କଲୁଁ ବ୍ରହ୍ମନିଶି ॥୧୩୩
ତାହାର ଗୁଣ ମନେ ଗୁଣି ।
ଏବେ ମରିବୁ ଗୋପାଳୁଣୀ ॥୧୩୪
ଗୋରୁ ଚରାଉଥାଇ ବନେ ।
ଗୋପେ ଆସଇ ରାତ୍ରମାନେ ॥୧୩୫
ଯେବେ ଗୋ ତା'ର ମୁଖ ଦେଖି ।
ପିଛାଡ଼ି ନ ପାରୁ ଯେ ଆଖି ॥୧୩୬
କଟାକ୍ଷ କରି ବେଣୁବାଇ ।
ଚାହିଁନ୍ତେ ଜଗତ ମୋହଇ ॥୧୩୭
ଏବେ ମଥୁରାପୁର ଗଲେ ।
କେମନ୍ତେ ବଞ୍ଚିବା ଗୋ ଭଲେ ॥୧୩୮

Dr. Sudhanshu Sekhar Mishra

ଏମନ୍ତ ହୋଇ ଗୋପନାରୀ ।
କୃଷ୍ଣ ବିଚ୍ଛେଦେ ତନୁ ଘାରି ॥୧୩୯
ଲାଜ ଛାଡ଼ିଲେ ଗୋପଦାଣ୍ଡେ ।
ତାଡ଼ନ୍ତି ବେନିକର ମୁଣ୍ଡେ ॥୧୪୦
ବିକଳେ ବୁଜନ୍ତି ନୟନ ।
କାନ୍ଦନ୍ତି ଧରି କୃଷ୍ଣନାମ ॥୧୪୧
ମୁକୁନ୍ଦ ଦାମୋଦର ହରି ।
ମାଧବ କୃଷ୍ଣ ଦଇତ୍ୟାରି ॥୧୪୨
ଜୀବନ ଗଲାଟି ଆମ୍ଭର ।
ମଥୁରା ନ ଯା ଦାମୋଦର ॥୧୪୩
ତୋତେ ନ ପାଇ ଭାବଗ୍ରାହୀ ।
ଦିନ ବଞ୍ଚିବୁ କାହା ଚାହିଁ ॥୧୪୪
ଅକ୍ରୁର ଆମ୍ଭ ଚକ୍ଷୁ ନେଲା ।
ଜୀବନ ଜିଉଁ ଜିଉଁ ମଲା ॥୧୪୫
ରୋଦନ ଶୁଣି ଗୋପୀଜନେ ।
ଅକ୍ରୁର କୋପକଲା ମନେ ॥୧୪୬
ବୋଲଇ ନନ୍ଦ ମୁଖ ଚାହିଁ ।
ଲେଉଟି ଯିବି ଆଜ ମୁହିଁ ॥୧୪୭
ବଳେ ପାରିବୁଟିକି ରହି ।
ଗୋପୀଏ ହେଉଛନ୍ତି ବାଇ ॥୧୪୮
କହନ୍ତି ଆନୁଆନ କରି ।
ରୁଣ୍ଡ ହୋଇଣ ସର୍ବନାରୀ ॥୧୪୯
ଜାଣୁନା କଂସର ମହିମା ।
ଗୋପନଗରେ ଯେତେ ବାମା ॥୧୫୦
କ୍ଷଣକେ କରିବ ନିପାତ ।
କିସ କରିବେ ବଳବନ୍ତ ॥୧୫୧
ଏହାଙ୍କୁ କରି ନିବାରଣ ।
ବେଗେଣ ଚଳ ମଧୁବନ ॥୧୫୨
ଲେଉଟିଗଲେ ଆଜ ମୁହିଁ ।
ଗୋପେ ପାରିବୁଟିକି ରହି ॥୧୫୩
ଦଣ୍ଡେ ହେଁ ନ କର ଉଛୁର ।
କୁଶଳ ଇଚ୍ଛା ଯେବେ ତୋ'ର ॥୧୫୪
ରାମଗୋବିନ୍ଦ ମୋତେ ଦେଇ ।
ନ ଯାଇ ପଛେ ଥାଅ ତୁହି ॥୧୫୫

ଯଶୋଦା ଅକ୍ରୁରକୁ ଚାହିଁ ।
କାନ୍ଦଇ କୃଷ୍ଣ କୋଳେ ଲଇଁ ॥୧୫୬
ରୋହିଣୀ ଘେନି ହଳଧରେ ।
ରୋଦନ କଲେ ଉଚ୍ଚସ୍ୱରେ ॥୧୫୭
ବଜ୍ର ପଡ଼ିଲା ଶିରେ ଜାଣି ।
କାନ୍ଦନ୍ତି ଯଶୋଦା-ରୋହିଣୀ ॥୧୫୮
ଦଇବ କଲୁ ବିପରୀତ ।
କାହାକୁ ସମର୍ପିବୁ ସୁତ ॥୧୫୯
ଜୀବନ ଥିବ ଆମ୍ଭ କାହିଁ ।
ମରିବୁ ପୁତ୍ରକୁ ନ ପାଇ ॥୧୬୦
ଯଶୋଦା କୃଷ୍ଣ ମୁଖ ଚାହିଁ ।
କାନ୍ଦଇ ମୁଖେ ଚୁମ୍ବ ଦେଇ ॥୧୬୧
ତୁ କୃଷ୍ଣ ଗଲେ ମଧୁପୁରୀ ।
ଜୀବନ ନ ପାରିବି ଧରି ॥୧୬୨
ଗୋରୁ ଚରାଉ ଯେତେବେଳେ ।
କାନନେ ଗୋପସୁତ ମେଳେ ॥୧୬୩
ଦଣ୍ଡେ ମୁଁ ନ ଦେଖିଲେ ତୋତେ ।
ନିମିଷ ହୁଏ ଯୁଗ ଶତେ ॥୧୬୪
ପୁଛଇଁ ଜଣେ ଜଣେ ମୁହିଁ ।
ପୁତ୍ର ମୋ' କେ ଦେଖିଛ କାହିଁ ॥୧୬୫
କ୍ଷତ-ହରିଣୀ ପ୍ରାୟ ହୋଇ ।
ରବିକିରଣେ ଚାହୁଁଥାଇ ॥୧୬୬
ବେଳ ତ ହୋଇଲା ଉଛୁର ।
କୃଷ୍ଣ ନ ଇଲା କିପାଁ ଘର ॥୧୬୭
ଅନ୍ନ ବ୍ୟଞ୍ଜନ ମୋତେ ପିତା ।
ତୋତେ ନ ଦେଖି ମୋର ଚିନ୍ତା ॥୧୬୮
ନିମିଷ ଯୁଗପ୍ରାୟ ହୋଇ ।
ଘରବାହାରେ ନ ରହଇ ॥୧୬୯
ତୋ'ର ବଦନ ଯେତେବେଳେ ।
ଦେଖଇ ନୟନ-ଯୁଗଳେ ॥୧୭୦
ତେବେ ମୋ' ଜୀବନ ପଶଇ ।
ସରଳବଣୀ ତୋତେ ଦେଇ ॥୧୭୧
ଏବେ ତୁ ମଧୁପୁର ଗଲେ ।
ମୁହିଁ ଯିବଇଁ ତୋର ତୁଲେ ॥୧୭୨

ପୁଣି ରାମକୁ କୋଳ କରି ।
ଶୋକେ ବୋଲଇ ନନ୍ଦନାରୀ ॥୧୭୩
ତୁ ରାମ ବଳେ ବଳୀୟାର ।
କୃଷ୍ଣ ମୋ' ନୁହଇ ଚତୁର ॥୧୭୪
ସଙ୍ଗ ତୁ ନ ଛାଡ଼ିବୁ ଦଣ୍ଡେ ।
ଗହଳ ମଥୁରାର ଦାଣ୍ଡେ ॥୧୭୫
ଏମନ୍ତ କହି ନନ୍ଦନାରୀ ।
ବେନିଲୋଚନୁ ବହେ ବାରି ॥୧୭୬
ଅକ୍ରୁର କୋପେ ପରଜ୍ୱଳି ।
ରୋଷେ ନନ୍ଦକୁ ଦେଲା ଗାଳି ॥୧୭୭
କୃଷ୍ଣ ସାରିଲେ ନିତ୍ୟକର୍ମ ।
ସଜ ହୋଇଲେ ବଳରାମ ॥୧୭୮
ଗୋପୀଙ୍କ ରୋଦନ ଚହଳ ।
ଗୋପରେ ଶୁଭୁଅଛି ଗୋଳ ॥୧୭୯
ପ୍ରଳୟ ସିନ୍ଧୁ ପ୍ରାୟ ମଣି ।
ବୋଲନ୍ତି ରାମଚକ୍ରପାଣି ॥୧୮୦
ଗୋପାଳେ ହୁଅ ଆଗୁସାର ।
ଗୋରସ ଶକଟ ସମ୍ଭାର ॥୧୮୧
ଅକ୍ରୁର ନିତ୍ୟକର୍ମ ସାରି ।
ରଥେ ତୋଳିଲା ରାମହରି ॥୧୮୨
ମଙ୍ଗଳବାଦ୍ୟ ଗୀତ ଧ୍ୱନି ।
ଆନନ୍ଦେ ଉଛୁଳେ ମେଦିନୀ ॥୧୮୩
ଆକାଶେ ଥାଇ ଦେବଲୋକେ ।
କୁସୁମ ବରଷନ୍ତି ଥୋକେ ॥୧୮୪
ଦିଗେ ଦିଶନ୍ତି ପରିମଳ ।
ପବନ ବହଇ ଶୀତଳ ॥୧୮୫
କୃଷ୍ଣର ପଥ ଅନୁକୂଳ ।
ଶୂନ୍ୟେ ମିଳିଲେ ମେଘମାଳ ॥୧୮୬
ଗଗନେ ଦୁନ୍ଦୁଭି ଶବଦ ।
ମଙ୍ଗଳ କଲେ ଗୀତନାଦ ॥୧୮୭
ଦେଖନ୍ତି ଦଶଦିଗପାଳେ ।
ବାହାର ହୋଇଲେ ଗୋପାଳେ ॥୧୮୮
ଶକଟ ଯା'ନ୍ତି ଯୂଥ ଯୂଥ ।
ଗୋରସ-ଭାର ଅପ୍ରମିତ ॥୧୮୯

Dr. Sudhanshu Sekhar Mishra

ବାଜଇ ମଙ୍ଗଳ-ମହୁରି ।
ମଥୁରା ଯିବେ ନରହରି ॥୧୯୦
ଗୋପୀଏ ଓଗାଳନ୍ତି ରଥ ।
କାହିଁକି ଯିବ ଗୋପୀନାଥ ॥୧୯୧
ଆମ୍ଭ ଜୀବନ ହସ୍ତେ ଘେନି ।
ମଥୁରା ଯାଅ ଭାଇବେନି ॥୧୯୨
ଏଡ଼େ ନିର୍ଦ୍ଦୟ ତୋ'ର ହିଆ ।
ଆମ୍ଭରେ ଛାଡ଼ିଲୁ ତୁ ଦୟା ॥୧୯୩
ଯେବେ ଅକ୍ରୁର ତୋତେ ଧରି ।
ନେଉଛି ମଥୁରା ନଗରୀ ॥୧୯୪
ଆମ୍ଭେ ସକଳେ ତୋର ସଙ୍ଗେ ।
ଥିବୁ ତୋ' ରଥ ଲାଗେ ଲାଗେ ॥୧୯୫
କଂସର ମୁଖେ ତୋତେ ଦେଇ ।
ଘରେ ରହିବୁ କିସ ପାଇଁ ॥୧୯୬
ଆମ୍ଭେ ତୋହର ସର୍ବବାଳୀ ।
ଗୋପ ନ ଛାଡ଼ ବନମାଳୀ ॥୧୯୭
କାକର ଘରେ ପିକ ପରି ।
ଏବେ ତ ପକାଉ ପାସୋରି ॥୧୯୮
ଶୁଣି ବୋଲନ୍ତି ଦାମୋଦର ।
କୋମଳ ବଚନ ଗଭୀର ॥୧୯୯
ଶୁଣ ଗୋ ସଖୀଜନେ ମୋର ।
ରାଜାର ଆକଟ ଅପାର ॥୨୦୦
ଦେଖ ଆମ୍ଭଙ୍କୁ ରଥେ ଭରି ।
ଅକ୍ରୂର ନେଉଅଛି ଧରି ॥୨୦୧
ଧନୁଉତ୍ସବ ରଙ୍ଗସଭା ।
ଆମ୍ଭେ ଗୋ ନୟନେ ଦେଖିବା ॥୨୦୨
ରାଜା ହୋଇବ ବଡ଼ ତୋଷ ।
ଆମ୍ଭଙ୍କୁ ଦେବ ଗ୍ରାମ ଦେଶ ॥୨୦୩
ଚାରିଦିଗରୁ ଲୋକେ ଆସି ।
ରଙ୍ଗସଭାରେ ଥିବେ ବସି ॥୨୦୪
ଅନେକ ଦୁରୁଁ ନରନାରୀ ।
ଅଣାଇଅଛି ଦଣ୍ଡଧାରୀ ॥୨୦୫
ଉତ୍ସବ ଦେଖି ତୋଷମନେ ।
ଆମେ ଆସିବୁ ଚାରିଦିନେ ॥୨୦୬

ତୁମ୍ଭେ ଗୋ ଯାଅ ଯେଝାଘରେ ।
ମନ ନିବେଶି ମୋ' ପୟରେ ॥୨୦୭
ଅକ୍ରୂର ଶୁଣି କୋପଭରେ ।
ରଥ ବାହିଲା ଧାଡିକାରେ ॥୨୦୮
ଗୋପୀଏ ଛାଡ଼ନ୍ତି ବୋବାଳି ।
ବାଳିରେ ନ ପାରନ୍ତି ଚାଲି ॥୨୦୯
ଆହା ଗୋବିନ୍ଦ ନନ୍ଦସୁତ ।
ବୋଲି ହୋଇଲେ ମୂର୍ଚ୍ଛିତ ॥୨୧୦
କଦଳୀ ଯେହ୍ନେ ବାତଘାତେ ।
ପଡ଼ିଲେ ଗୋପବାଳୀ ପଥେ ॥୨୧୧
ପଡ଼ିଣ ଗୋପୀ ଅଣାୟତେ ।
ଅଜ୍ଞାନ ମୋହେ ରାଜପଥେ ॥୨୧୨
ଗୋପୀ ବିକଳ କୃଷ୍ଣ ଚାହିଁ ।
ଗୋପାଳପୁଅଙ୍କୁ ସେ ରାଇ ॥୨୧୩
ଶ୍ରୀଦାମ ନାମେ ଗୋପବାଳ ।
ତା'ରେ ବିଶ୍ୱାସ ନନ୍ଦବାଳ ॥୨୧୪
ତାହାକୁ ନିକଟେ ଅଣାଇଁ ।
କହନ୍ତି ବିଶ୍ୱାସ କରାଇ ॥୨୧୫
ଗୋପୀଙ୍କି କହ ତୁ ବହନେ ।
ଆମ୍ଭେ ଆସିବୁ ଚାରିଦିନେ ॥୨୧୬
ଧନୁଉତ୍ସବ ମୁଁ ଦେଖିବି ।
ରାଜାର ମନକୁ ତୋଷିବି ॥୨୧୭
ମଥୁରା ନ ରହିବି ଦଣ୍ଡେ ।
ତୁମ୍ଭେ ଗୋ ଜଗିଥିବ ଦାଣ୍ଡେ ॥୨୧୮
ମୋତେ ଦେଖିବ ରାତ୍ରମାନେ ।
ନନ୍ଦମନ୍ଦିରେ ଚାରିଦିନେ ॥୨୧୯
ମୋହର ସତ୍ୟ ଏ ବଚନ ।
ଏଥକୁ ସାକ୍ଷି ନିରଞ୍ଜନ ॥୨୨୦
ଆବର କହିବୁ ତୁ ଯାହା ।
କହଇ ଶୁଣ ତୋରେ ତାହା ॥୨୨୧
ମୁଁ ଯେ ଭକତ ଭାବେ ବାଇ ।
ଭାବ ନିକଟେ ନିତ୍ୟେ ଥାଇ ॥୨୨୨
ଶରଦରାସ କାଳେ ଯାହା ।
ହୋଇଲେ ଯେତେକ ଉତ୍ସାହ ॥୨୨୩

ତାହାଙ୍କ ଭକ୍ତିଭାବ ଘେନି ।
ରମିଲି ସକଳ କାମିନୀ ॥୨୨୪
ସେ ମୋର ଦେହର ଜୀବନ ।
ଚକ୍ଷୁପିତୁଳୀ ନିରଞ୍ଜନ ॥୨୨୫
ଜୀବନ ଛାଡ଼ି ଯାଉଅଛି ।
ମୃତ୍ୟୁପିଣ୍ଡକୁ କେହୁ ଗଛି ॥୨୨୬
କେବଳ ରାଜକାର୍ଯ୍ୟ ସାରି ।
ତହିଁ ରହିବୁ ଦିନ ଚାରି ॥୨୨୭
ଏ କଥା ଗୋପୀଙ୍କି କହିବୁ ।
ଘରକୁ ପଠିଆଇ ଦେବୁ ॥୨୨୮
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
ଶ୍ରୀଦାମ ଗଲା ବେଗ ହୋଇ ॥୨୨୯
କହିଲା ଗୋପୀଙ୍କ ଆଗର ।
ବୋଇଲା ଯାଅ ଯେଝାଘର ॥୨୩୦
ଶୁଣି ଗୋପୀଏ ଛନ ଛନ ।
କୃଷ୍ଣର ତହିଁ ଦେଇ ମନ ॥୨୩୧
ରଥକୁ ଚାହାଁନ୍ତି ନିରୋପି ।
ଚିତ୍ରପ୍ରତିମା ପ୍ରାୟ ଗୋପୀ ॥୨୩୨
କେ ବୃକ୍ଷେ ଉଠିଲେ ବହନ ।
ରଥରେ ନିବେଶି ନୟନ ॥୨୩୩
ପୀଢ଼ାରେ ଉଠି କେ ଦେଖନ୍ତି ।
ବୃକ୍ଷ ଆରୋହି କେ ଚାହାଁନ୍ତି ॥୨୩୪
କେ ଉଚ୍ଚଶିଖେ ଉଠି ଡ଼ାକି ।
ରଥ-ପତାକେ ଦେଇ ଆଖି ॥୨୩୫
କେ ବୋଲେ ଯିବା ଧାଡିକାରେ ।
କୃଷ୍ଣ ଭେଟିବା ନଦୀତୀରେ ॥୨୩୬
ଏମନ୍ତେ କୁହାକୁହି ହୋନ୍ତେ ।
ବିମାନ ନ ଦିଶିଲା ପଥେ ॥୨୩୭
ହୋଇଲା ବିମାନ ଅଦୃଶ୍ୟ ।
ଗୋପୀଏ ହୋଇଲେ ନିରାଶ ॥୨୩୮
ନିଃଶ୍ୱାସ ଛାଡ଼ି ଖେଦଭରେ ।
ଜୀବନ ନ ରହେ ଶରୀରେ ॥୨୩୯
ଗୁରୁ ଗଉରବ ନ ଗଣି ।
ରାତ୍ର-ଦିବସ ଏକ ମଣି ॥୨୪୦

Dr. Sudhanshu Sekhar Mishra

ମନ ନିବେଶି କୃଷ୍ଣପାଦେ ।
ଗୋପୀଏ ରହିଲେ ବିଷାଦେ ॥୨୪୧
ଅକ୍ରୁର ତୋଷମନ ହୋଇ ।
ବନଗହନେ ରଥ ବାହି ॥୨୪୨
ପବନୁଁ ବେଗେ ରଥ ଗଲା ।
କାଳିନ୍ଦୀ ନିକଟେ ମିଳିଲା ॥୨୪୩
ରଥୁଁ ଓହ୍ଲାଇ ବେନିଭାଇ ।
ଜଳ ପିଇଲେ ତୋଷ ହୋଇ ॥୨୪୪
ନିର୍ମଳ କାଳିନ୍ଦୀର ଜଳ ।
ସ୍ୱଭାବେ ସୁସ୍ୱାଦୁ ଶୀତଳ ॥୨୪୫
ଶିରବଦନେ ଜଳସିଞ୍ଚି ।
କରଯୁଗଳେ ମୁଖପୋଛି ॥୨୪୬
ବୃକ୍ଷର ମୂଳେ ନେଇ ରଥ ।
ବସିଲେ ରାମଗୋପୀନାଥ ॥୨୪୭
ଅକ୍ରୁର ବେନିକର ଯୋଡ଼ି ।
କହଇ କୃଷ୍ଣପାଦେ ପଡ଼ି ॥୨୪୮
ଭୋନାଥ ହୋଇବା ପ୍ରସନ୍ନ ।
କରିବି ଯମୁନାରେ ସ୍ନାନ ॥୨୪୯
ଉଠି ତୋହର ମୁଖ ଚାହିଁ ।
ପବିତ୍ର ହୋଇବଇଁ ମୁହିଁ ॥୨୫୦
ବୋଲନ୍ତି ପ୍ରଭୁ ଭଗବାନ ।
ଯା' ବେଗେ କରତୁ ସ୍ନାହାନ ॥୨୫୧
ବହନ ଯିବା ମଧୁପୁର ।
ଅକ୍ରୁର ନ କର ଉଚ୍ଛୁର ॥୨୫୨
ରଥୁଁ ଓହ୍ଲାଇ ଖରତରେ ।
ପଶିଲା କାଳିନ୍ଦୀ ଭିତରେ ॥୨୫୩
ବୁଡ଼ିଲା ମାଧବ ସୁମରି ।
ଜଳେ ଦେଖିଲା ରାମହରି ॥୨୫୪
ଯେସନେ କୂଳେ ଗଲା ଚାହିଁ ।
ଦେଖିଲା ଜଳମଧ୍ୟେ ତା ହିଁ ॥୨୫୫
ଦେଖି ଚକିତମନ ହୋଇ ।
ବୋଲେ ଅଇଲେ କି ପଳାଇ ॥୨୫୬
କଂସର ଡ଼ରେ ରଥେ ବସି ।
ବେନି ସୋଦର ଜଳେ ପଶି ॥୨୫୭
ପଳାଇ ଯିବେ ଗୋପପୁର ।
ମୋତେ ମାରିବ କଂସାସୁର ॥୨୫୮

କି ବୁଦ୍ଧି କରିବଇଁ ମୁହିଁ ।
କୂଳେ ଯେ ଅଇଲି ବସାଇ ॥୨୫୯
ଡ଼ରେଣ ଗଲେ କି ପଳାଇ ।
ଉଠି କୂଳକୁ ଦେଲା ଚାହିଁ ॥୨୬୦
ଦେଖଇ ବୃକ୍ଷତଳେ ରଥ ।
ଅଛନ୍ତି ରାମ-ଗୋପୀନାଥ ॥୨୬୧
ଚକିତ ହୋଇଲା ଅକ୍ରୁର ।
ଭୟେ କମ୍ପଇ ଥରହର ॥୨୬୨
ବୋଲଇ ଜଳେ ଅନ୍ୟକିସ ।
ମୁହିଁ ଯେ ଦେଖିଲି ସଦୃଶ ॥୨୬୩
କି ମୋର ଚିତ୍ତ ହୋଏ ଭ୍ରମ ।
ହୋଇଲା ଅଦଭୁତ କର୍ମ ॥୨୬୪
ମିଥ୍ୟା ନୁହଁଇନା ସେ ଜଳେ ।
ପୁଣି ବୁଡ଼ିଲା ଆଉ ବେଳେ ॥୨୬୫
ଦେଖଇ ରତ୍ନମୟ-ପୁରେ ।
ସୁବର୍ଣ୍ଣ ବିମାନ ଉପରେ ॥୨୬୬
ସୁରଙ୍ଗ ରତ୍ନସିଂହାସନ ।
ଶୀତଳ ବହଇ ପବନ ॥୨୬୭
ଅନନ୍ତ ରୂପେ ହଳଧର ।
କୋଟିଏ ଚନ୍ଦ୍ର ପଟାନ୍ତର ॥୨୬୮
ସହସ୍ର ଫଣା ମଣି ଶିର ।
କଟି ଦୂକୁଳ ନୀଳାମ୍ବର ॥୨୬୯
ରୂପେ ଶୋଭିତ ଶିବଗିରି ।
କୋଟିଏ କାମ ନୋହେ ସରି ॥୨୭୦
ମଣିକୁଣ୍ଡଳ ବନମାଳ ।
ସୁରଙ୍ଗ ଅଳକ କପୋଳ ॥୨୭୧
କଟିମେଖଳା ରତ୍ନସାର ।
ନିବିଡ଼ ସୁରଙ୍ଗ ଅଧର ॥୨୭୨
ହାର କେୟୂର ଝଟକନ୍ତି ।
ଯେହ୍ନେ ଗଗନେ ତାରାପତି ॥୨୭୩
ଅନନ୍ତକୋଳେ ବନମାଳୀ ।
ନୀଳଜୀମୂତ ଦେହ ଝଳି ॥୨୭୪
ପୀତବସନ ବନମାଳ ।
ଶ୍ରବଣେ ମକର କୁଣ୍ଡଳ ॥୨୭୫
ସୁନ୍ଦର ନୀଳଭୁଜ ଚାରି ।
ଶଙ୍ଖ କମଳ ଗଦା ଅରୀ ॥୨୭୬

ବିକଚ-କମଳ-ଲୋଚନ ।
ସୁରଙ୍ଗ ହସିତ ବଦନ ॥୨୭୭
ଅନଙ୍ଗ ଚାପ ଭ୍ରୁରୁ ରେଖା ।
ସୁନ୍ଦର କପୋଳ ନାସିକା ॥୨୭୮
ରଙ୍ଗ ଅଧରେ ମନ୍ଦ ହାସ ।
କର୍ଣ୍ଣେ କୁଣ୍ଡଳ ରବିତ୍ରାସ ॥୨୭୯
ଦୀର୍ଘ ଶ୍ରୀଭୁଜ ଜାନୁଯାଏଁ ।
ଦିଶେ ମର୍କତ ସ୍ତମ୍ଭ ପ୍ରାୟେ ॥୨୮୦
ତୁଙ୍ଗ ହୃଦୟ ଶ୍ରୀନିବାସ ।
ଶ୍ରୀବତ୍ସ ଚିହ୍ନ ବାମପାଶ ॥୨୮୧
ଦକ୍ଷିଣାବର୍ତ୍ତ କମ୍ବୁଗ୍ରୀବ ।
ପେଟେ ତ୍ରିବଳୀ ପଦ୍ମନାଭ ॥୨୮୨
ନାଭି ଗଭୀର ମଝାକ୍ଷୀଣ ।
ବୃଶାଳକଟି ରତ୍ନଦାମ ॥୨୮୩
ନିତମ୍ବ କରୀକୁମ୍ଭ ଜିଣି ।
କଟିମେଖଳା ଓଡ଼ିଆଣୀ ॥୨୮୪
ଉଲଟରମ୍ଭା ଜାନୁ ଯୁଗ ।
ଗୁଛଯୁଗଳ ସଞ୍ଚତୁଙ୍ଗ ॥୨୮୫
ମାଣିକ୍ୟ ପ୍ରାୟ ନଖପନ୍ତି ।
ଅଙ୍ଗୁଳି ଅଗ୍ରେ ଝଟକନ୍ତି ॥୨୮୬
ନବପଲ୍ଲବ ପ୍ରାୟ ଝଳି ।
କୋମଳ ଦିଶଇ ଅଙ୍ଗୁଳି ॥୨୮୭
କମଳକୋଷ ପ୍ରାୟ ହୋଇ ।
ବେନି ଚରଣ ବିରାଜଇ ॥୨୮୮
ଅମୂଲ୍ୟରତ୍ନମୟ ରାଶି ।
ବିବିଧ ଅଳଙ୍କାର ମିଶି ॥୨୮୯
ଶିରେ ମୁକୁଟ ହୃଦେ ହାର ।
କଟିମେଖଳା ରତ୍ନସାର ॥୨୯୦
ଉତ୍ତରୀ ଯଜ୍ଞସୂତ୍ର କନ୍ଧେ ।
କୁଣ୍ଡଳ କର୍ଣ୍ଣଯୁଗଭାଗେ ॥୨୯୧
ରତ୍ନସମୂହ ତେଜରାଶି ।
ଚତୁର ଭୁଜ ପରକାଶି ॥୨୯୨
ଚକ୍ର କମଳ ଗଦା ଶଙ୍ଖ ।
ଗଣ୍ଡଯୁଗଳେ ରାହୁରେଖ ॥୨୯୩
ଶ୍ରୀବତ୍ସ ଚିହ୍ନ ହୃଦୟରେ ।
ବନମାଳାଏ ଲମ୍ବେ ଉରେ ॥୨୯୪

Dr. Sudhanshu Sekhar Mishra

ସୁନନ୍ଦ ଆଦି ପାରିଷଦେ ।
ପକାନ୍ତି ଚାମର ଆନନ୍ଦେ ॥୨୯୫
ସନକ ଆଦି ମୁନିଗଣେ ।
ଖଟନ୍ତି ଅଭୟଚରଣେ ॥୨୯୬
ବ୍ରହ୍ମା ଶଙ୍କର ଇନ୍ଦ୍ର ଘେନି ।
ସ୍ତୁତି କରନ୍ତି ସୁରମୁନି ॥୨୯୭
କିନ୍ନରୀ ତୁମ୍ବୁରୁ ନାରଦ ।
ବୀଣାଶବଦେ ଗୀତନାଦ ॥୨୯୮
ଭକତ ପ୍ରହ୍ଲାଦ ଆଦି ।
ଧ୍ରୁବଭୂଷଣ୍ଡ ବେଦବାଦୀ ॥୨୯୯
ନିର୍ମଳବାଣୀ ଯେଝାମତେ ।
ସ୍ତୁତି କରନ୍ତି ଦୃଢ଼ଚିତ୍ତେ ॥୩୦୦
କମଳା ଆଦି ଯେତେ ଦେବୀ ।
ଧୀରେ ଚରଣେ ଛନ୍ତି ସେବି ॥୩୦୧
ଏମନ୍ତ କୃଷ୍ଣରୂପ ଜଳେ ।
ଦେଖି ଅକ୍ରୂର ବେନିଡ଼ୋଳେ ॥୩୦୨
ରୋମାଞ୍ଚ ହୋଇଲା ଶରୀର ।
ଅଶ୍ରୁ ଗଳଇ ନିରନ୍ତର ॥୩୦୩
ଆନନ୍ଦେ କଣ୍ଠ ଗଦ ଗଦ ।
ମୁଖୁଁ ନସ୍ଫୁରଇ ଶବଦ ॥୩୦୪
ଜଳୁ ବାହାର ହୋଇ ଆସି ।
କୂଳେ ଦେଖିଲା ବ୍ରହ୍ମରାଶି ॥୩୦୫
ପାଦେ ପଡ଼ିଲା ବେଗେ ଯାଇ ।
ଉଠିଲା ଶିରେ କର ଦେଇ ॥୩୦୬
ସଭୟେ ବୁଜିଲା ନୟନ ।
ପୁଣି ଚାହିଁଲ ଛନଛନ ॥୩୦୭
ଆନନ୍ଦସାଗରେ ବୁଡ଼ିଲା ।
କରଅଞ୍ଜଳି ଶିରେ ଦେଲା ॥୩୦୮
ଭୟେ କମ୍ପିଲା ତା'ର ଦେହୀ ।
ସ୍ତୁତି କରଇ କୃଷ୍ଣ ଚାହିଁ ॥୩୦୯
କହଇ ଜଗନ୍ନାଥ ଦାସ ।
ଗୋବିନ୍ଦ ଚରଣେ ବିଶ୍ୱାସ ॥୩୧୦
କାଳିନ୍ଦୀଜଳେ ଦେଇ ଚିତ୍ତ ।
ସୁଜନେ ଚିନ୍ତ କୃଷ୍ଣପଥ ॥୩୧୧
ଜନ୍ମମରଣ ଭୟ ନାଶ ।
କୃଷ୍ଣ ଚରଣେ ହୁଅ ଦାସ ॥୩୧୨
ନିରତେ ଚିନ୍ତ ରାମହରି ।
ଭବସାଗରୁ ହୁଅ ପାରି ॥୩୧୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଅକ୍ରୁର
ପ୍ରତିଯାନେ ନାମ
ଦ୍ୱିଚତ୍ୱରିଂଶୋଽଧ୍ୟାୟଃ ॥

---

## ତ୍ରିଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ପରୀକ୍ଷ ଭାଗବତ ॥୧
ଅକ୍ରୁର ଶିରେ କର ଦେଇ ।
ବୋଲଇ କୃଷ୍ଣଙ୍କୁ ଅନାଇଁ ॥୨
ନମସ୍ତେ ଅନାଦି ପୁରୁଷ ।
ଅଖିଳ ଜ୍ୟୋତି ପରକାଶ ॥୩
ମାୟାର ହେତୁ ନାରାୟଣ ।
ନିର୍ଗୁଣ ପୁରୁଷ ପୁରାଣ ॥୪
ଅବ୍ୟକ୍ତ ବ୍ରହ୍ମ ନିରାକାର ।
ବ୍ରହ୍ମା ତୋ' ନାଭିରୁ ବାହାର ॥୫
ତୋହର ଠହୁଁ ଏ ଜଗତ ।
ଲୋକେ ହୁଅନ୍ତି ଆତଯାତ ॥୬
ପୃଥିବୀ ଉଦକ ଅନଳ ।
ପବନ ଆକାଶମଣ୍ଡଳ ॥୭
ମହତ ଆଦି ମହାଭୂତେ ।
ମନ ଇନ୍ଦ୍ରିୟ ଆଦି ଯେତେ ॥୮
ଇନ୍ଦ୍ରିୟ ଅର୍ଥେ ସୁରଗଣ ।
ଯେତେ ଏ ଜଗତେ ଭିଆଣ ॥୯
ଏମାନେ ତୋହର ଶରୀର ।
ତୁ ଆଦିଧର୍ମ ନିରାକାର ॥୧୦
ବ୍ରହ୍ମାଣ୍ଡେ ତୋ'ର ଦେହେ ଥା'ନ୍ତି ।
ତୋହର ରୂପ ନ ଜାଣନ୍ତି ॥୧୧
ତ୍ରିଗୁଣେ ବ୍ରହ୍ମା ଜଡ଼ ହୋଇ ।
ତୋ'ର ସ୍ୱରୂପ ନ ଜାଣଇ ॥୧୨
ସନକଆଦି ଯୋଗୀଜନେ ।
ପୂଜନ୍ତି ତୋହର ଚରଣେ ॥୧୩
ମହାପୁରୁଷ ଶୂନ୍ୟରୂପ ।
ଜୀବସଞ୍ଚାରେ ତିନିରୂପ ॥୧୪
କର୍ମଯୋଗୀଏ ବେଦପଥେ ।
ତୋତେ ପୂଜନ୍ତି ଯଜ୍ଞମତେ ॥୧୫
ଅଖିଳ କର୍ମ ଦେଇ ତୋତେ ।
ଜ୍ଞାନୀ ସେବନ୍ତି ଯୋଗମତେ ॥୧୬
ନିଶ୍ଚଳ-ସମାଧିରେ ମନ ।
ତୋ'ର ଚରଣେ କରିଧ୍ୟାନ ॥୧୭
ଯେ ବା ପୂଜନ୍ତି ଦୀକ୍ଷାମତେ ।
ତୋତେ ଦେଖନ୍ତି ସେ ଜଗତେ ॥୧୮
ଅନେକ ରୂପେ ଏକରୂପୀ ।
ତୋତେ ଜାଣିବ କେ ନିରୋପି ॥୧୯
ଶିବ ପୁରାଣର ଭକତେ ।
କେ ତୋତେ ଭଜେ ଶିବମତେ ॥୨୦
ଅନେକ ଋଷିଙ୍କ ସମେତେ ।
ଶଙ୍କର ପୂଜୁଥା'ନ୍ତି ତୋତେ ॥୨୧
ତୁନାଥ ସର୍ବଦେବମୟେ ।
ସର୍ବେ ଭଜନ୍ତି ତୋ'ର ପାୟେ ॥୨୨
ନାନା ଦେବଙ୍କୁ ସେ ଭଜନ୍ତି ।
ସେ ଭିନ୍ନ ବୁଦ୍ଧି ଆଚରନ୍ତି ॥୨୩
ଅନେକ କର୍ମଯୋଗେ ଭ୍ରମି ।
ଫୁଟି ହୁଅନ୍ତି ପଥଶ୍ରମି ॥୨୪
ନଦୀ ପୂରନ୍ତି ବୃଷ୍ଟିକାଳେ ।
ସମୁଦ୍ରେ ହୋନ୍ତି ଏକମେଳେ ॥୨୫
ସର୍ବଦେବତା ପୂଜା ଯେତେ ।
ଭଜନ ତୋ'ର ପାଦଗତେ ॥୨୬

Dr. Sudhanshu Sekhar Mishra

ତୋ'ର ପ୍ରକୃତି ତହୁଁ ଜାତ ।
ତାମସ ରଜଗୁଣ ସତ୍ତ୍ୱ ॥୨୭
ଇନ୍ଦ୍ରିୟଗୁଣ ଗଲେ ଛନ୍ଦି ।
ଜନ୍ତୁଏ ମାୟାଜଡ଼େ ବନ୍ଦୀ ॥୨୮
ତୋତେ ପାଇବେ ଅବା କାହିଁ ।
ତୋହର ଆଦିଅନ୍ତ ନାହିଁ ॥୨୯
ନମସ୍ତେ ପ୍ରଭୁ ଜ୍ଞାନଆଖି ।
ସକଳ ବୁଦ୍ଧିଙ୍କର ସାକ୍ଷୀ ॥୩୦
ଦେବ ମନୁଷ୍ୟ ପଶୁଆଦି ।
ତୋ' ମାୟାବଳେ ସର୍ବେବନ୍ଦୀ ॥୩୧
ଅନଳ ତୋର ମୁଖୁଁ ଜାତ ।
ଚରଣୁଁ ଅବନୀ ସମ୍ଭୂତ ॥୩୨
ଆଦିତ୍ୟ ତୋହର ନୟନ ।
ନାଭିରୁ ପ୍ରକାଶ ଗଗନ ॥୩୩
ଶ୍ରବଣୁଁ ତୋର ଦଶଦିଶ ।
ଶିର ତୋହର ସ୍ୱର୍ଗଦେଶ ॥୩୪
ଭୁଜ ତୋ ଦଶଦିଗପାଳ ।
ଉଦର ବଡ଼ବା ଅନଳ ॥୩୫
ପଞ୍ଚପବନ ତୋର ପ୍ରାଣ ।
ରୋମ ଔଷଧିବୃକ୍ଷ ପୁଣ ॥୩୬
ମେଘ ତୋହର କେଶ ଶିର ।
ତୋ ନଖ ଅସ୍ଥି ଗିରିବର ॥୩୭
ନିମିଷ ହୋନ୍ତି ଦିବାରାତ୍ରି ।
ତୋର ବୃଷଣ ପ୍ରଜାପତି ॥୩୮
ତୋହର ତେଜେ ଦେବରାଜ ।
ବୃଷ୍ଟି କରଇ ତୋର ବୀର୍ଯ୍ୟ ॥୩୯
ଅବ୍ୟୟ ପୂର୍ଣ୍ଣ ନିରଞ୍ଜନ ।
ତୋ ଦେହେ ଚଉଦଭୁବନ ॥୪୦
ବାସବ ଆଦି ଦେବଗଣେ ।
ସ୍ଥାବର ସିଦ୍ଧ ଯେ ଚାରଣେ ॥୪୧
ବ୍ରହ୍ମାଣ୍ଡେ ତୋହର ଶରୀରେ ।
ମଶା ଯେସନେ ଉଡ଼ୁମ୍ବରେ ॥୪୨
ମନର ଆଦିଅନ୍ତ ରୂପୀ ।
ଜଗତେ ଅଛୁ ନାଥ ବ୍ୟାପୀ ॥୪୩
ସଂସାର ଲୀଳାରେ ଶରୀର ।
ଭୋନାଥ ଯେତେ ରୂପ ତୋର ॥୪୪

ତେଣେ ନିର୍ମଳ ହୋଇ ଚିତ୍ତ ।
ତୋ ଯଶ ଭାବନ୍ତି ଜଗତ ॥୪୫
ନମସ୍ତେ ମତ୍ସ୍ୟ ରୂପଧାରୀ ।
ପ୍ରଳୟ ଉଦକ ବିହାରୀ ॥୪୬
ହେ ହୟଗ୍ରୀବ ତୋ ଶରଣ ।
ମଧୁ କଇଟଭ ଦଳନ ॥୪୭
କମଠରୂପୀ କଳେବର ।
ନମସ୍ତେ ଶଙ୍ଖଚକ୍ରଧର ॥୪୮
ଶୂକର ରୂପେ ମହୀ ଧରି ।
ନମସ୍ତେ ପ୍ରଭୁ ଦଇତ୍ୟାରି ॥୪୯
ନୃସିଂହ ରୂପୀ ତୋ' ଶରୀର ।
ନାଶିଲୁ ହିରଣ୍ୟ-ଅସୁର ॥୫୦
ବାମନ ରୂପେ ବଳି ଚାପି ।
ନମସ୍ତେ ତ୍ରିବିକ୍ରମ ରୂପୀ ॥୫୧
ଦୁଷ୍ଟ କ୍ଷତ୍ରିୟ ନିବାରଣ ।
ନମସ୍ତେ ପ୍ରଭୁ ଭୃଗୁରାମ ॥୫୨
ଜାନକୀ-ଛଳେ ଦାଶରଥି ।
କୋପେ ନାଶିଲୁ ଲଙ୍କପତି ॥୫୩
ନମୋ ଗୋବିନ୍ଦ ଦାମୋଦର ।
ଗିରି ତୋଳିଲୁ ବାମକର ॥୫୪
ନମସ୍ତେ ବସୁଦେବସୁତ ।
ରୋହିଣୀ ପୁତ୍ର ବଳବନ୍ତ ॥୫୫
ରୁକ୍ମିଣୀ ଦେବୀ ପୁତ୍ର ନାତି ।
ନମସ୍ତେ ଯଦୁ ଭୋଜପତି ॥୫୬
ବଉଦ୍ଧରୂପୀ ଶୁଦ୍ଧକର୍ମା ।
ଅସୁର ମୋହନେ ତୋ ବାନା ॥୫୭
ମ୍ଳେଚ୍ଛ କ୍ଷତ୍ରିୟ ବଳବନ୍ତ ।
କଳକୀ ରୂପେ କରୁ ଅନ୍ତ ॥୫୮
ତୋହର ମାୟାରେ ଜଗତ ।
ଅଜ୍ଞାନେ ହୋଇ ଆତଯାତ ॥୫୯
ପର ଆପଣା ବୋଲି ବୁଦ୍ଧି ।
ଭ୍ରମନ୍ତି ମାୟାଚକ୍ରେ ପଡ଼ି ॥୬୦
ମୋହର ଆତ୍ମା ପୁତ୍ର ଘର ।
ଦାରା ସମ୍ପଦ ବନ୍ଧୁ ମୋର ॥୬୧
ସପନ ପ୍ରାୟେ ଏ ଜଗତ ।
ଆବୋରି ଅଛି ମୋହପଥ ॥୬୨

ଅନିତ୍ୟ ସଂସାର ସାଗରେ ।
ମୁଁ ଯେ ବୁଡ଼ିଲି ଦୁଃଖଘୋରେ ॥୬୩
ଆତ୍ମାର ଗତି ନ ଜାଣଇ ।
ଭୋ ନାଥ ରଖ ଭାବଗ୍ରାହୀ ॥୬୪
ଶୀତଳ ଜଳ ଛାଡ଼ି ମୁହିଁ ।
ମୃଗତୃଷ୍ଣାକୁ ଅଛି ଧାଇଁ ॥୬୫
ତୃଷିତ ହୋଇଲି ଅପାର ।
ତୋତେ ନ ଜାଣି ଚକ୍ରଧର ॥୬୬
ଅଳପ ବଳ ନାଥ ମୋର ।
କର୍ମ ଅଶେଷ ବଳୀୟାର ॥୬୭
ମନ ପଶିଲା କର୍ମମେଳେ ।
ହାରିଲି ଇନ୍ଦ୍ରିୟଙ୍କ ବଳେ ॥୬୮
ଇନ୍ଦ୍ରିୟ ଅର୍ଥେ ବିପରୀତ ।
ହସ୍ତରୁ ପକାଇ ଅମୃତ ॥୬୯
ବିଷ ଭକ୍ଷଇ ସ୍ୱାଦୁ ମଣି ।
ଆତ୍ମାର ଗତି ନ ପ୍ରମାଣି ॥୭୦
ମନକୁ ନ ପାରଇ ଧରି ।
ତୁ ମୋତେ ରଖ ନରହରି ॥୭୧
ତୋହର ଚରଣ କମଳେ ।
ଶରଣ ରଖ ମୋତେ ବେଳେ ॥୭୨
ଅଭୟ ଚରଣ ତୋହର ।
ଅଜ୍ଞାନୀଜନେ ଅଗୋଚର ॥୭୩
ତୋହର ଭାବ ଯେ ଜାଣଇ ।
ତାହାର ଦୁଃଖ ଭୟ ନାହିଁ ॥୭୪
ସଂସାର ତୁଟଇ ତାହାର ।
ଯେ ତୋତେ କରଇ ବିଚାର ॥୭୫
ତୋର ଚରଣେ ଭଗବାନ ।
ନିଶ୍ଚଳ କର ମୋର ମନ ॥୭୬
ଜ୍ଞାନ-ବିଜ୍ଞାନ-ଦାତାରୂପୀ ।
ସର୍ବସଂପଦ ମାୟା ବ୍ୟାପୀ ॥୭୭
ପରମ ପୁରୁଷ ବିଧାତା ।
ଅନନ୍ତ ରୂପ ବଳବନ୍ତା ॥୭୮
ନମଇ ପ୍ରଭୁ ବାସୁଦେବ ।
ଭବସାଗରେ ସୁଖ-ନାବ ॥୭୯
ଇନ୍ଦ୍ରିୟମାନଙ୍କ ଈଶ୍ୱର ।
ଭୋ ନାଥ ଶରଣ ତୋହର ॥୮୦

Dr. Sudhanshu Sekhar Mishra

କହଇ ଦାସ ଜଗନ୍ନାଥ ।
ଅକ୍ରୁର ଜଳେ ଦେଖି ରଥ ॥୮୧
ଆନନ୍ଦେ କଲା ଯେତେ ସ୍ତୁତି ।
ସୁଜନେ ଏଣେ କର ମତି ॥୮୨

ଅକ୍ରୁର ସ୍ତୁତି ଯେ ଶୁଣନ୍ତି ।
ଭବସାଗରେ ନ ପଡନ୍ତି ॥୮୩
କର୍ମ ବାସନା ହୋଏ କ୍ଷୟ ।
ତାରନ୍ତି ପ୍ରଭୁ ଦେବରାୟ ॥୮୪

ଇତି ଶ୍ରୀମଦ୍‌ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଦେ ପୂର୍ବାର୍ଦ୍ଧେ ଅକ୍ରୁର
ସ୍ତୁତିର୍ନାମୋ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ॥

## ଚତୁଃଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁବଳା ।
ଅକ୍ରୁର ଜଳେ ସ୍ତୁତି କଲା ॥୧
ପୁଣ ଚରଣତଳେ ଶୋଇ ।
ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥୨
ଭକତବନ୍ଧୁ ଜନାର୍ଦ୍ଦନ ।
ଜଳେ ହୋଇଲେ ଅନ୍ତର୍ଦ୍ଧାନ ॥୩
ଯେସନେ ନଟଙ୍କର ଗତି ।
ପ୍ରସ୍ତାବ ସଦୃଶେ ଭଜନ୍ତି ॥୪
ଅକ୍ରୁରେ ଦେଖାଇ ଶରୀର ।
ତକ୍ଷଣେ ହୋଇଲେ ଅନ୍ତର ॥୫
ଅକ୍ରୁର ଥିଲା ପାୟେ ପଡ଼ି ।
ପୁଣି ଉଠିଲା କରଯୋଡ଼ି ॥୬
ଦେଖିଲା କେହି ନାହିଁ ଜଳେ ।
ଉଠି ଚାହିଁଲା ନଦୀକୂଳେ ॥୭
ବୃକ୍ଷର ମୂଳେ ରଥେ ଥାଇ ।
ଡ଼ାକନ୍ତି ପ୍ରଭୁ ଭାବଗ୍ରାହୀ ॥୮
ଅକ୍ରୁର ଦେଖି ତୋଷମନ ।
ବେଗେ ସାରିଲା ନିତ୍ୟକର୍ମ ॥୯
ଆସି ମିଳିଲା ରଥତଳେ ।
ପଡ଼ିଲା କୃଷ୍ଣପାଦତଳେ ॥୧୦
ହସି ବୋଲନ୍ତି ଦାମୋଦର ।
ଜଳେ ତ ବିଳମ୍ବ ତୋହର ॥୧୧
ମଥୁରା ଯିବା କେତେବେଳେ ।
କିସ ଦେଖିଲୁ ପୁଣ ଜଳେ ॥୧୨
ଗଗନ ଶୂନ୍ୟ ମହୀଭାଗେ ।
କି ଅବା ଦଶଦିଗ ଲାଗେ ୧୩

ଯାହା ଦେଖିଲୁ କହ ମୋତେ ।
ତେବେ ହେଁ ଯିବାଇଁ ପରତେ ॥୧୪
ଅକ୍ରୁର ଶିରେ କର ଦେଇ ।
କହଇ ଶ୍ରୀମୁଖେ ଅନାଇଁ ॥୧୫
ଜଳେ ଦେଖିଲି ମୁହିଁ ଯାହା ।
ଭୋ ନାଥ ନ ଜାଣୁ କି ତାହା ॥୧୬
ମୋତେ ପଚାରୁ ମାୟା କରି ।
ଭକତ-ସୋଦର ମୁରାରି ॥୧୭
ତୋହର ତହୁଁ ଆନ ନାହିଁ ।
ଜଳେ ଦେଖିଲି ତୋତେ ମୁହିଁ ॥୧୮
ଭୋ ନାଥ ସର୍ବଘଟେ ପୂରି ।
ସଂସାର ଅଛୁ ଯେ ଆବୋରି ॥୧୯
ତୋର ନ ଥିଲା ଅଛି କାହିଁ ।
ଜଳ ଅନଳ ସ୍ଥଳେ ତୁହି ॥୨୦
ବଣ ପର୍ବତ ତରୁଲତା ।
ମେରୁ ସମାନ ବଳବନ୍ତା ॥୨୧
ତୃଣ ସମାନ ତନୁକ୍ଷୀଣ ।
ରୂପକୁ ରୂପ ଭିନ୍ନ ଭିନ୍ନ ॥୨୨
ମୁଁ କାହିଁ ଜାଣିବି ଅଶେଷ ।
ଘୋଟି ଯେ ଅଛୁ ଦଶଦିଶ ॥୨୩
ମୁହିଁ ମାନବ ତନୁ ବହି ।
ଜାଣିପାରିବି ତାହା କାହିଁ ॥୨୪
ବ୍ରହ୍ମା ଶଙ୍କର ପୁରନ୍ଦର ।
ଲକ୍ଷ୍ମୀ ସାରଦା ଶୀତକର ॥୨୫
ସୂର୍ଯ୍ୟ ପବନ ଗ୍ରହଗଣ ।
ମୁନି ମାନବ ଜଣେ ଜଣ ॥୨୬
ସୁର ଅସୁର ଠାରେ ତୁହି ।
ସକଳଘଟେ ପୂର୍ଣ୍ଣ ହୋଇ ॥୨୭

ଏମାନେ ନ ପାଇଲେ ଲେଶ ।
ବିଶ୍ୱସଂସାରେ ତୋ' ପ୍ରକାଶ ॥୨୮
ଏତେ ବୋଲିଣ ପାଦତଳେ ।
ପଡ଼ିଲା ଆତ୍ମାର ବିକଳେ ॥୩୦
କୃଷ୍ଣ ବୋଲନ୍ତି ଶୁଣି ତାହା ।
ଅକ୍ରୁର ବେଗେ ରଥ ବାହା ॥୩୧
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
ରଥେ ବସିଲା ବେଗେ ଯାଇ ॥୩୨
ଗୋବିନ୍ଦ ପାଦେ ମନ ଦେଇ ।
ରଥ ବାହଇ ତୋଷ ହୋଇ ॥୩୩
ଆଦିତ୍ୟ ତେଜ ଅବସାନେ ।
ମିଳିଲା ମଥୁରା ଭୁବନେ ॥୩୪
ପଥେ ଯେ ଥିଲେ ନରନାରୀ ।
ରଥେ ଦେଖିଲେ ରାମହରି ॥୩୫
ଦେଖି ଅପୂର୍ବ ରୂପ ଦୁଇ ।
ପାଦ-ନୟନ ନ ଚଳଇ ॥୩୬
ଗ୍ରାମେ ପ୍ରବେଶ ଭଗବାନ ।
ଦେଖି ସାନନ୍ଦ ମନେ ମନ ॥୩୭
ବୋଲନ୍ତି ପ୍ରଭୁ ଜଗନ୍ନାଥ ।
ଅକ୍ରୁର ଦଣ୍ଡେ ରୁହା ରଥ ॥୩୮
ପଛେ ଅଛନ୍ତି ଗୋପବାଳ ।
ଏଠାରେ ହୋନ୍ତୁ ଏକମେଳ ॥୩୯
ଗୋରସ ଅଛି ଯେତେ ଭାର ।
ରାଜାର ଉଚିତ ଭଣ୍ଡାର ॥୪୦
ସକଳେ ଏକଗୁଣ୍ଡ ହୋଇ ।
ମିଳିବୁ ରାଜା ଆଗେ ଯାଇ ॥୪୧
ତେବେ ହୋଇବ ତୋର ଯଶ ।
ପାଇବୁ ଶାଢ଼ୀ ଗ୍ରାମ ଦେଶ ॥୪୨

Dr. Sudhanshu Sekhar Mishra

ଏମନ୍ତ କହୁଁ କହୁଁ ପଥେ ।
ଗୋପାଳେ ମିଳିଲେ ତୁରିତେ ॥୪୩
ଦେଖି ସାନନ୍ଦ ଭାବଗ୍ରାହୀ ।
ବୋଲନ୍ତି ଅକ୍ରୂରେ ରୁହାଇ ॥୪୪
ରଥୁଁ ଓହ୍ଲାଇ ଦାମୋଦର ।
ଅକ୍ରୂର ହସ୍ତେ ଦେଇ କର ॥୪୫
କୋମଳ ମଧୁର ବଚନ ।
ଆଶ୍ୱାସି ଅକ୍ରୂରର ମନ ॥୪୬
ଭୋ ତାତ ରଥ ଘେନିଯାଅ ।
ରାଜାର ଛାମୁରେ ଜଣାଅ ॥୪୭
ବୋଲ ଅଇଲେ ବେନିଭାଇ ।
ଅଇଲି ତୋଟାରେ ରୁହାଇ ॥୪୮
ସକଳେ ହୋଇ ଏକମେଳ ।
ସଙ୍ଗେ ଅଛନ୍ତି ଗୋପବାଳ ॥୪୯
ଧନ ଗୋରସ ଆଦି କରି ।
ଶକଟମାନଙ୍କରେ ଭରି ॥୫୦
ସକଳେ ହୋଇ ଏକସ୍ଥାନ ।
କାଲି କରିବେ ଦରଶନ ॥୫୧
ଏତେକ କହିଣ ଛାମୁର ।
ଭୋ ତାତ ଯାଅ ନିଜ ଘର ॥୫୨
ଆମ୍ଭେ ଦେଖିବୁ ମଧୁପୁର ।
କେମନ୍ତ ଦିଶଇ ସୁନ୍ଦର ॥୫୩
ଅକ୍ରୂର ଶିରେ କର ଦେଇ ।
ବୋଲଇ କୃଷ୍ଣମୁଖ ଚାହିଁ ॥୫୪
ଏ କଥା ନୁହଁଇ ଉଚିତ ।
ତୁ କି ନ ଜାଣୁ ଗୋପୀନାଥ ॥୫୫
ତୁମ୍ଭ ଦୁହିଁକି ଛାଡ଼ି କରି ।
ଜୀବନ ଥିବ କି ମୋହରି ॥୫୬
ଭକତବତ୍ସଳ ମୁରାରି ।
ମୋତେ ନ ଛାଡ଼ କୋପକରି ॥୫୭
ଭୋ ନାଥ ଆସ ମୋର ଘର ।
ବାନ୍ଧବ ଯେବେ ମୁଁ ତୁମ୍ଭର ॥୫୮
ପବିତ୍ର କର ମୋର ପୁର ।
ଅଶେଷ ବ୍ରହ୍ମାଣ୍ଡଠାକୁର ॥୫୯
ସଙ୍ଗତେ ରୋହିଣୀ କୁମର ।
ଯେତେ ଗୋପାଳେଛନ୍ତି ତୋର ॥୬୦

ସବୁନ୍ତ ଘେନି ମୋର ଘର ।
ବିଜୟ କର ଚକ୍ରଧର ॥୬୧
ତୋହର ପାଦରଜ-ନୀର ।
ପବିତ୍ର କରୁ ମୋର ଘର ॥୬୨
ପିତୃ ଯେ ଅଗ୍ନି ଦଇବତ ।
ଯାହା ଚିନ୍ତନ୍ତି ଅବିରତ ॥୬୩
ବଳି ଯେ ଧୋଇ ତୋ'ର ପାଦ ।
ପାଇଲା ଅଶେଷ ସମ୍ପଦ ॥୬୪
ଯଶ ରହିଲା ତିନିଲୋକେ ।
ଭକତି କଲା ସେହି ଏକେ ॥୬୫
ଗଙ୍ଗା ତୋ' ଚରଣୁ ବାହାର ।
ପବିତ୍ର କଲା ତିନିପୁର ॥୬୬
ଶଙ୍କର ବହିଅଛି ଶିରେ ।
ସଗରପୁତ୍ରେ ସ୍ୱର୍ଗେ ଗଲେ ॥୬୭
ତୁ ଦେବ ଦେବ ଜଗନ୍ନାଥ ।
ପୁଣ୍ୟକୀର୍ତ୍ତନ କୀର୍ତ୍ତିମନ୍ତ ॥୬୮
ଯଦୁଉତ୍ତମ ପୁଣ୍ୟଶ୍ଳୋକ ।
ନମଇଁ ଜଗତପାଳକ ॥୬୯
ଶୁଣି ବୋଲନ୍ତି ଚକ୍ରଧର ।
ଅକ୍ରୂର କନ୍ଧେ ଦେଇ କର ॥୭୦
ଭୋ ତାତ ଶୁଣ ମୋ ବଚନ ।
ମନେ ତୁ ନ ବିଚାର ଆନ ॥୭୧
ଅବଶ୍ୟ ଯିବି ତୋ'ର ପୁର ।
ସଙ୍ଗତେ ଘେନି ହଳଧର ॥୭୨
ଆଗେ ମୁଁ କଂସ ଦର୍ପ ଧ୍ୱଂସି ।
ବନ୍ଧୁବାନ୍ଧବ ମନତୋଷି ॥୭୩
ପଛେ ମୁଁ ଯିବି ତୋ'ର ପୁର ।
ଏ ସତ୍ୟବଚନ ମୋହର ॥୭୪
କୃଷ୍ଣ-ମୋହନ କଥା ଶୁଣି ।
ଅକ୍ରୂର ଗଲା ରଥ ଘେନି ॥୭୫
ଭୟେ ବିଚାର କରି ମନ ।
ନବରେ ପ୍ରବେଶି ବହନ ॥୭୬
ରଥ ରୁହାଇ ସିଂହଦ୍ୱାରେ ।
ଦର୍ଶନ କଲା ନୃପବରେ ॥୭୭
କଂସର ଆଗେ ଜଣାଇଲା ।
କୃଷ୍ଣଙ୍କୁ ଆଣିଲି ବୋଇଲା ॥୭୮

ନନ୍ଦ ସୁନନ୍ଦ ରାମ ସଙ୍ଗେ ।
ଗୋରସ ଗୋପାଳଙ୍କ ଲାଗେ ॥୭୯
ରୁଣ୍ଡ ହୋଇଲେ ଗଡ଼ଦ୍ୱାରେ ।
ଆଜକ ରହିଲେ ତୋଟାରେ ॥୮୦
କାଲି କରିବେ ଦରଶନ ।
ଶୁଣି ହରଷ କଂସମନ ॥୮୧
ସନ୍ତୋଷ ମନେ ଭୋଜବୀର ।
ଅକ୍ରୂରେ ଦେଲା ଉପହାର ॥୮୨
ରତ୍ନବସନ ଅଳଙ୍କାର ।
ମେଲାଣି ପାଇଲା ଅକ୍ରୂର ॥୮୩
କଂସକୁ କରି ତୋଷମନ ।
ମିଳିଲା ଆପଣା ଭୁବନ ॥୮୪
କୃଷ୍ଣ ପ୍ରବେଶ କଥା ଶୁଣି ।
କଂସ ଯେ ମନେ ମନେ ଗୁଣି ॥୮୫
ନିକଟ ହୋଇଲା ବଇରୀ ।
ଅନେକ ବୀର ଅଛି ମାରି ॥୮୬
ହରଷ-ବିସ୍ମୟେ ରାଜନ ।
ମନ ହୋଇଲା ଛନ ଛନ ॥୮୭
କ୍ଷୁଧା ପିପାସା ସୁଖ ଭୋଗ ।
ସବୁ ହୋଇଲା ବିଷଯୋଗ ॥୮୮
କୃଷ୍ଣର ତହୁଁ ଏକମନ ।
ଚିତ୍ତ ନିରୋପି କରେ ଧ୍ୟାନ ॥୮୯
ନିକଟ ହୋଏ ସଂଜୀବନୀ ।
କହଇ ଆନୁଆନ ବାଣୀ ॥୯୦
ଏମନ୍ତେ ଶୁଣ ନରନାଥ ।
କୃଷ୍ଣ ଚରିତ ଭାଗବତ ॥୯୧
କୃଷ୍ଣ ଯେ ଥିଲେ ଉପବନେ ।
ଗୋପାଳେ ମିଳିଲେ ବହନେ ॥୯୨
ତୋଟାରେ ହୋଇଲେକ ରୁଣ୍ଡ ।
ଆବୋରି ମଥୁରାର ଦାଣ୍ଡ ॥୯୩
ଯେ ଯାହା ମତେ ସାଜି ଘର ।
ନାନା ପ୍ରକାରେ ଉପହାର ॥୯୪
କରନ୍ତି ରନ୍ଧନ ଭୋଜନ ।
ହରଷ ଗୋପାଳଙ୍କ ମନ ॥୯୫
ଭୋଜନ ସାରି ବେନିଭାଇ ।
ଗୋପାଳ ପୁଅଙ୍କୁ ଅନାଇ ॥୯୬

Dr. Sudhanshu Sekhar Mishra

ବୋଲନ୍ତି ହୋଇ ହସହସ ।
ମଥୁରା ବୁଲିଯିବା ଆସ ॥୯୭
ବେଳ ହୋଇବ ଅବସାନ ।
ଥୋକାଏ ଦେଖିବା ଭୁବନ ॥୯୮
ଦେଖିବା ରାଜାର କଟକ ।
କେମନ୍ତ ଦିଶଇ ଛଟକ ॥୯୯
ଭିଆଇ ଧନୁଯାତ୍ରାଘର ।
କେମନ୍ତ କରିଛି ସମ୍ଭାର ॥୧୦୦
ଅକ୍ରୂର ହସ୍ତେ ଦେଇ ରଥ ।
ଆମ୍ଭଙ୍କୁ ଅଣାଇଛି ଏଥ ॥୧୦୧
ଏବେ କି କରିବ ଆମ୍ଭନ୍ତ ।
ହୋଇଲୁ ତାହାର ଆୟତ୍ତ ॥୧୦୨
ଆସ ହୋ ଯିବା ମଧୁପୁରୀ ।
ଆଗ ହୋଇଲେ ହଳଧାରୀ ॥୧୦୩
ଗୋପ କୁମରେ କୃଷ୍ଣ ସଙ୍ଗେ ।
ମିଳିଲେ ଗଡ଼ଦ୍ୱାରେ ଲାଗେ ॥୧୦୪
ଦେଖିଲେ ସ୍ଫଟିକେ ନିର୍ମିତ୍ ।
ଉଚ୍ଚ ପୁରୁଷ ପାଞ୍ଚସାତ ॥୧୦୫
ବେନିକବାଟ ହେମମୟେ ।
ଲୁହାର କିଳିଣୀ ଯୋଡ଼ାଏ ॥୧୦୬
ତୋରଣ ବେନି ବୃକ୍ଷ ବାନ୍ଧି ।
ବିବିଧ ଫଳଡ଼ାଳେ ଛନ୍ଦି ॥୧୦୭
ତମ୍ଭାର ପାଚେରୀ ବହଳ ।
ଖଣା ଗଭୀର ଶୁଦ୍ଧଜଳ ॥୧୦୮
ଭିତରେ ନାନା ବୃକ୍ଷମାନ ।
ଦେଖି ସାନନ୍ଦ କୃଷ୍ଣରାମ ॥୧୦୯
ଯେ ଯାହାମତେ ଅଳଙ୍କାର ।
ବେଦୀଏ ଦିଶନ୍ତି ସୁନ୍ଦର ॥୧୧୦
ଅଟ୍ଟାଳୀ ଉପରେ ସୁନ୍ଦର ।
ସୁନା କଳସ ଧ୍ୱଜସାର ॥୧୧୧
ଉପରେ ଶୋହେ ରତ୍ନମାଳା ।
ସ୍ଫଟିକ ହୀରାର ମେଖଳା ॥୧୧୨
ବୈଡୂର୍ଯ୍ୟ ମର୍କତ ମୁକୁତା ।
ଲମ୍ବନ୍ତି ମାଳ ମାଳ ଗୁନ୍ଥା ॥୧୧୩

ସୁବର୍ଣ୍ଣ କାନ୍ଥ ରତ୍ନ ଚାଳ ।
ଜଳାକବାଟି ପରିମଳ ॥୧୧୪
ପାରା ମୟୂର ନାଦ କରି ।
ଝିଙ୍କ କୋକିଳ ଶୁକ ଶାରୀ ॥୧୧୫
ଗଜ ତୁରଙ୍ଗଶାଳା ପାଖେ ।
ବରାହ ମୃଗ ଝାଙ୍କେଝାଙ୍କେ ॥୧୧୬
ବନକୁକ୍କୁଟ ରାଜହଂସୀ ।
ଦେଖି ଶ୍ରୀକୃଷ୍ଣ ପରଶଂସି ॥୧୧୭
ତହୁଁ ପଶିଲେ ପୁରେ ଯାଇ ।
ପୋଏ ଚାହାଁନ୍ତି ତୋଷ ହୋଇ॥୧୧୮
ଦେଖିଲେ ରାଜମାର୍ଗେ ହରି ।
ଚନ୍ଦନ ଛେରାଏ ପହଁରି ॥୧୧୯
ତଣ୍ଡୁଳ ଲାଜା ଦୁର୍ବାସଙ୍ଗେ ।
ନାରୀଏ ବନ୍ଦାନ୍ତି ସୁରଙ୍ଗେ ॥୧୨୦
ସବୁରି ଦ୍ୱାରେ ପୂର୍ଣ୍ଣକୁମ୍ଭ ।
ଦଧି ଅକ୍ଷତ ବସ୍ତ୍ରଲମ୍ବ ॥୧୨୧
ଫଳ ପଲ୍ଲବ ଦୀପାବଳୀ ।
ଶଙ୍ଖ ମହୁରି ହୁଳହୁଳି ॥୧୨୨
ଦ୍ୱାରେ କଦଳୀ ବେନିବୃକ୍ଷେ ।
ତୋରଣ ମାଳ ଧ୍ୱଜ ଉଚ୍ଚେ ॥୧୨୩
ଦ୍ୱାରର ଖମ୍ବେ ପାଟଶାଢ଼ୀ ।
ଉପରେ ଚାନ୍ଦୁଆ ଉହାଡ଼ି ॥୧୨୪
ବସୁଦେବର ବେନିସୁତେ ।
ଗୋପାଳ ମେଳେ ରାଜପଥେ ॥୧୨୫
ଦେଖି ଆନନ୍ଦ ନରନାରୀ ।
ପଡ଼ିଲା ରାଜପଥେ ହୁରି ॥୧୨୬
ନାନା ପସରା ହାଟବାଟେ ।
କାମିନୀ ଧାମନ୍ତି ଉଚ୍ଚାଟେ ॥୧୨୭
ବୃକ୍ଷ ଅଟ୍ଟାଳୀ ଆରୋହନ୍ତି ।
ପିଢ଼ାରେ ଉଠି କେ ଦେଖନ୍ତି ॥୧୨୮
କେ ନାରୀ ଚିତ୍ତ ଝଁନାୟତ୍ତେ ।
ବସ୍ତ୍ର ପିନ୍ଧିଲା ବିପରୀତେ ॥୧୨୯
ଅଙ୍ଗଭୂଷଣ ଆନୁ ଆନେ ।
ଅଞ୍ଜନ ଏକଇ ନୟନେ ॥୧୩୦

ଏକ ଶ୍ରବଣେ କାପ ଭରି ।
ନୂପୁର ଏକପାଦେ କରି ॥୧୩୧
ବଳୟ ଭରି ବାମହସ୍ତେ ।
କବରୀ ଫିଟିଅଛି ମାଥେ ॥୧୩୨
କେ ଭୁଞ୍ଜୁଥିଲା ଦଧିଭାତ ।
ଧାଇଁଲା ନ ପଖାଳି ହାତ ॥୧୩୩
ତୈଳ ଅଏଁଳା ଘେନି ଶିରେ ।
କେ ଅବା ଥିଲେ ନଦୀତୀରେ ॥୧୩୪
ସ୍ନାହାନ ଉପେକ୍ଷି ବହନ ।
ଧାଇଁଲେ ଶୁଣି ବାଦ୍ୟସ୍ୱନ ॥୧୩୫
ଶୋଇଲା ଲୋକଙ୍କୁ ଚିଆଇଁ ।
ଆସଗୋ ବୋଲି ବେଗେ ଧାଇଁ ॥୧୩୬
କାଖରୁ ବାଳକ ପକାଇ ।
ଧାମନ୍ତି କୃଷ୍ଣେ ମନ ଦେଇ ॥୧୩୭
ଦେଖିଣ ବସୁଦେବସୁତ ।
ନିର୍ମଳ କଲେ ଚର୍ମନେତ୍ର ॥୧୩୮
ମଥୁରାନାରୀଙ୍କର ମନ ।
ମୋହିଲେ ପ୍ରଭୁ ଭଗବାନ ॥୧୩୯
ଲଳିତଗତି ଦିବ୍ୟବେଶ ।
ରଙ୍ଗଅଧରେ ମନ୍ଦହାସ ॥୧୪୦
ମତ୍ତମାତଙ୍ଗ ପ୍ରାୟ ହୋଇ ।
କଟାକ୍ଷନୟନେ ଅନାଇଁ ॥୧୪୧
ମଥୁରାପୁରନାରୀଙ୍କର ।
ଉତ୍ସବ ହୋଇଲା ଅପାର ॥୧୪୨
ଯାହାର ଜନ୍ମ-କର୍ମ-ପଥେ ।
ବାରତା ଶୁଣୁଥିଲେ ନିତ୍ୟେ ॥୧୪୩
ଦେଖିଲେ ନୟନ ପୂରାଇ ।
ଗୋବିନ୍ଦ-ସୁଧାରସ ପାଇ ॥୧୪୪
ଭିତରେ କୃଷ୍ଣଙ୍କୁ ଦେଖିଲେ ।
ଆନନ୍ଦେ ଲୋଚନ ବୁଜିଲେ ॥୧୪୫
ହୃଦରେ ଭିଡ଼ି ଆଲିଙ୍ଗନ ।
କରି ଛାଡ଼ିଲେ ଖେଦମନ ॥୧୪୬
ବୃକ୍ଷ ଅଟ୍ଟାଳୀ ଗୃହେ ଥାଇ ।
ଆନନ୍ଦ ଲୋଚନେ ଅନାଇଁ ॥୧୪୭

Dr. Sudhanshu Sekhar Mishra

ହରଷେ କୁସୁମ ଅଞ୍ଜଳି ।
ଦେଇ କରନ୍ତି ହୁଳାହୁଳି ॥୧୪୮
ଅନ୍ଧେ ବନ୍ଧୁଙ୍କ କନ୍ଧେ ହସ୍ତ ।
ଦେଖି ଆସନ୍ତି ଗୋପୀନାଥ ॥୧୪୯
ବ୍ରହ୍ମଣେ ଆସି ରାଜଦାଣ୍ଡେ ।
କରଅଞ୍ଜଳି ଦେଇ ମୁଣ୍ଡେ ॥୧୫୦
ଦଧି ଅକ୍ଷତ ଗଙ୍ଗାନୀର ।
କୁସୁମ ଗନ୍ଧ ଉପହାର ॥୧୫୧
ଆନନ୍ଦେ କୃଷ୍ଣ ବଳରାମ ।
ବ୍ରାହ୍ମଣେ ପୂଜି ତୋଷମନ ॥୧୫୨
ମଥୁରାପୁର ଲୋକେ ମିଳି ।
ଦେଖିଲେ ରାମ ବନମାଳୀ ॥୧୫୩
କହନ୍ତି ଗୋପାଳଙ୍କ ଭାବ ।
ଶତ-ଜନମେ କେ ପାଇବ ॥୧୫୪
ଅନେକ ଜନ୍ମେ ତପ କରି ।
ଗୋପରେ ଯେତେ ନରନାରୀ ॥୧୫୫
ଗାଈ ମହିଁଷି ବନଭାଗେ ।
ଦିନ ବଞ୍ଚିଲେ କୃଷ୍ଣ ସଙ୍ଗେ ॥୧୫୬
ରାମ ଗୋବିନ୍ଦ ମୁଖ ଚାହିଁ ।
ଜନ୍ମ ମରଣ ଭୟ ନାହିଁ ॥୧୫୭
ଏମନ୍ତ ବୋଲୁଁ ବୋଲୁଁ ଲୋକେ ।
ରଜକ ମିଳିଲା ଛଟକେ ॥୧୫୮
ଭାଇ ସୋଦର ବନ୍ଧୁବଳ ।
ଘେନାଇଁ ରାଜା ମଡ଼ିଆଳ ॥୧୫୯
ଆଗେ ବାଜଇ ଶଙ୍ଖ ବେନି ।
ଚାଲଇ ମଡ଼ିଆଳ ଘେନି ॥୧୬୦
ଦେଖି ପଚାରିଲେ ମୁରାରି ।
କେ ଯାଏ ବାଦ୍ୟନାଦ କରି ॥୧୬୧
ଲୋକେ ବୋଇଲେ ଏ ରଜକ ।
ଅଟଇ କଂସର ସେବକ ॥୧୬୨
ନିତ୍ୟେ ଏ ମଡ଼ିଆଳ ନେଇ ।
ଯମୁନାନଦୀରେ କାଚଇ ॥୧୬୩
ଏ ନେଇ ଦେବ ଗନ୍ତାଘରେ ।
ଭୋଜ ନୃପତିଙ୍କ ଛାମୁରେ ॥୧୬୪

ଶୁଣି ଗୋବିନ୍ଦ ତୋଷ ହୋଇ ।
ଡ଼ାକନ୍ତି ରହ ରହ ଭାଇ ॥୧୬୫
ଆଗେ ଓଗାଳି ହଳଧର ।
ପୋଏ ବେଢ଼ିଲେ ଧାତିକାର ॥୧୬୬
ରଜକ ମୁଖ ଚାହିଁ ହସି ।
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥୧୬୭
ଦେଖିବା ରାଜା ମଡ଼ିଆଳ ।
ବସ୍ତ୍ର ତୁ ବେଗେ ଥୁଅ ତଳ ॥୧୬୮
ଆମ୍ଭେ ହୋ ବସୁଦେବସୁତେ ।
ଗୋପରେ ଥିଲୁ ଦିନାକେତେ ॥୧୬୯
ଦେଖିବା କେମନ୍ତ ସୁନ୍ଦର ।
କଂସ ରାଜାର ମଡ଼ିଆଳ ॥୧୭୦
ଯେବେ ତୁ ନ ଦେବୁ ଦେଖାଇ ।
ଆମ୍ଭଙ୍କୁ ଦିଅ ବସ୍ତ୍ର ଦୁଇ ॥୧୭୧
ନୀଳ ଧବଳ ଦେହ ଚାହଁ ।
ଆମ୍ଭ ଉଚିତେ ବସ୍ତ୍ର ଦିଅ ॥୧୭୨
ଆମ୍ଭେଟି ରାଜାର ଭଣଜା ।
ବସ୍ତ୍ର ତୁ ଦେଇଣ କହ ଯା ॥୧୭୩
ଶୁଣି ନୃପତି ହେବେ ତୋଷ ।
ସଂସାରେ ଥିବ ତୋର ଯଶ ॥୧୭୪
ରଜକ ଛଦ୍ମେଣ କାଳ ।
ନ ଶୁଣି ରାମକୃଷ୍ଣ ବୋଲ ॥୧୭୫
ପୁଣି ଚାଲଇ ପହଲାଇ ।
ଆଗ ହୋଇଲେ ଭାବଗ୍ରାହୀ ॥୧୭୬
ମିଳିଲେ ରୋହିଣୀର ବଳୀ ।
ଦେଖି ରଜକ କୋପ କଲା ॥୧୭୭
ଦଇବେ ରାଜାର ସେବକ ।
ରଜକ ସ୍ୱଭାବେ ମୂରୁଖ ॥୧୭୮
ବୋଲଇ ଧିକ୍କାର ବଚନ ।
ତୁମ୍ଭେ ଯେ ଅଟ ଜାତିହୀନ ॥୧୭୯
ତୁମ୍ଭର କୁଳମୂଳ ନାହିଁ ।
ବନେ ଚରାଉଥାଅ ଗାଈ ॥୧୮୦
ଗଉଡ଼ଜାତି ହୀନ ଲୋକ ।
ଶୃଗାଳ ପ୍ରାୟେ ତୁମ୍ଭ ମୁଖ ॥୧୮୧

ବାଇଙ୍କ ପ୍ରାୟ ଗାଈ ଘେନି ।
କରୁ ଯେ ଥାଅ ବେଣୁଧ୍ୱନି ॥୧୮୨
ଏଡ଼େ ଭରସା ଗର୍ବ ବହ ।
ରାଜା ମଡ଼ିଆଳ ରୁହାଅ ॥୧୮୩
ନିର୍ଲ୍ଲଜ ବୋଲି ଏହା ବୋଲ ।
ଜୀବନ ଥାଉଁ ଥାଉଁ ମଲ ॥୧୮୪
ତୁମ୍ଭର ପୂର୍ବେ ତପ ନାହିଁ ।
ଗଉଡ଼େ ଅଛ ଜାତ ହୋଇ ॥୧୮୫
ଜୀବନେ ଯେବେ ଅଛି ଆଶ ।
ବେଗେ ପଳାଅ ନିଜ ଦେଶ ॥୧୮୬
ରାଜାର ଲୋକେ ଏହା ଶୁଣି ।
ସବୁନ୍ତ ପକାଇବେ ହାଣି ॥୧୮୭
ତୁମ୍ଭେ ନ ମାଗ ମଡ଼ିଆଳ ।
ତୁମ୍ଭର ପୂରିବଟି କାଳ ॥୧୮୮
କଂସ ହିଁ ଅଛଇ ଅଣାଇ ।
ନିଶ୍ଚେ ମରିବ ବେନିଭାଇ ॥୧୮୯
ଜୀବନେ ମାରିବ ତୁମ୍ଭଙ୍କୁ ।
ବନ୍ଦୀ ସେ କରିବ ନନ୍ଦକୁ ॥୧୯୦
ହୋଇବ ତୁମ୍ଭେ ବିଷାବଳି ।
ଶୁଣି କୋପିଲେ ବନମାଳୀ ॥୧୯୧
ଚାପୁଡ଼େ ମାରି ବାମକର ।
ଛେଦିଲେ ରଜକର ଶିର ॥୧୯୨
ତାହାର ସଙ୍ଗେ ଯେତେ ଥିଲେ ।
ବସ୍ତ୍ର ପକାଇ ପଳାଇଲେ ॥୧୯୩
ରଜକ ଭୂମିରେ ପଡ଼ିଲା ।
ଜୀବନ ଗୋବିନ୍ଦେ ପଶିଲା ॥୧୯୪
ହସି ବୋଲନ୍ତି ଭଗବାନ ।
ବସ୍ତ୍ର ଯେ ଘେନ ଯେଝାମନ ॥୧୯୫
ରାମ ଫେଡ଼ିଲେ ବସ୍ତ୍ରପୁଡ଼ା ।
ଥିଲା ତହିଁରେ ଯେତେ ଯୋଡ଼ା ॥୧୯୬
ବାଛି ଘେନିଲେ ପୀତ ନୀଳ ।
ସୁନ୍ଦର ରାଜା ମଡ଼ିଆଳ ॥୧୯୭
ଗୋପାଳ ପୋଏ ଯେଝାମତେ ।
ବସ୍ତ୍ର ପିନ୍ଧିଲେ ତୋଷଚିତ୍ତେ ॥୧୯୮

Dr. Sudhanshu Sekhar Mishra

ଯେତେ ମଢ଼ିଆଳ ଉବୁରି ।
ପକାଇ ଗଲେ କୁଢ଼ କରି ॥୧୯୯
କନ୍ଧେ ପକାଇ ମଢ଼ିଆଳ ।
ଚାହାଁନ୍ତି ମଦନ ଗୋପାଳ ॥୨୦୦
ଥିଲା ଯେ କଂସ ବେଶକାରୀ।
ଆଗେ ମିଳିଲା କରଯୋଡ଼ି ॥୨୦୧
ବୋଲଇ ଶିରେ କର ଦେଇ ।
ରାଜାର ଗନ୍ତାୟତ ମୁହିଁ ॥୨୦୨
ବସ୍ତ୍ର ମୁଁ ପିନ୍ଧାଇବି ରଙ୍ଗେ ।
କାଛେଣି ନାନା ପରିଭଙ୍ଗେ ॥୨୦୩
ଶୁଣି ସାନନ୍ଦ ଗୋପୀନାଥ ।
ବସନ ଦେଲେ ତା'ର ହସ୍ତ ॥୨୦୪
ତକ୍ଷଣେ ପିନ୍ଧାଇଲା କାଛି ।
ରାମ ଗୋବିନ୍ଦେ ବଳ ଆଛି ॥୨୦୫
ବିବିଧମତେ ଅଳଙ୍କାର ।
ସ୍ୱଭାବେ ଦିଶିଲା ସୁନ୍ଦର ॥୨୦୬
ବସ୍ତ୍ର ପିନ୍ଧିଲେ ପୀତନୀଳ ।
ଉତ୍ସବ ଯେହ୍ନେ ପର୍ବକାଳ ॥୨୦୭
ବାଳକହସ୍ତୀ ବେଶକରି ।
ଯେସନେ ଆନନ୍ଦେ ବିହରି ॥୨୦୮
ରାମଗୋବିନ୍ଦ ସେହିମତେ ।
ଦିଶନ୍ତି ମଥୁରାର ପଥେ ॥୨୦୯
ଗୋବିନ୍ଦ ଗନ୍ତାୟତେ ଚାହିଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୨୧୦
ସମ୍ପଦ ହେଉ ତୋ' ଅନେକ ।
ବହୁତ ପୁତ୍ର ନାତି ଦେଖ ॥୨୧୧
ବଳ ତୋହର ଦେହେ ଥାଉ ।
ମୋହର ପାଦେ ଚିତ୍ତ ରହୁ ॥୨୧୨
ଅନ୍ତେ ପଶିବୁ ମୋର ଦେହେ।
କହି ଚଳିଲେ ଦେବରାୟେ ॥୨୧୩
ଚଳନ୍ତି ମଥୁରାଏ ହେରି ।
ଗୋପାଳ ପୋଏ ରାମହରି ॥୨୧୪
ସୁଦାମା ନାମେ ମାଳାକାର ।
କୃଷ୍ଣ ମିଳିଲେ ତା'ର ଘର ॥୨୧୫

ନାନା କୁସୁମେ ପରିମଳ ।
ପବନ ବହଇ ଶୀତଳ ॥୨୧୬
ମାଳୀର ଦ୍ୱାରେ ଉଭା ହୋଇ ।
ଡ଼ାକନ୍ତି ପ୍ରଭୁ ଭାବଗ୍ରାହୀ ॥୨୧୭
କୋମଳ ମଧୁର ବଚନ ।
ସୁଦାମା ଶୁଣି ତୋଷମନ ॥୨୧୮
ବାହାର ହୋଇଲା ବହନ ।
ଦେଖିଲା ରାମ ଭଗବାନ ॥୨୧୯
ଆନନ୍ଦେ ଗଡ଼ଘାଲି ଶୋଇ ।
ବୋଲଇ ନିସ୍ତରିଲି ମୁହିଁ ॥୨୨୦
ପତ୍ନୀ ଆଣିଲା ଜଳଝରି ।
ପାଦ ଧୋଇଲା ଯତ୍ନକରି ॥୨୨୧
ପାଦଉଦକ ଘେନି ଶିରେ ।
ସିଞ୍ଚିଲା ନେଇ ଘରଦ୍ୱାରେ ॥୨୨୨
ପତିପତ୍ନୀ ସେ ଜଳ ପାଇ ।
ନାଚନ୍ତି ଶିରେ କର ଦେଇ ॥୨୨୩
ଆନନ୍ଦ ସାଗରେ ବୁଡ଼ିଲେ ।
ଗୋବିନ୍ଦ ଚରଣେ ପୂଜିଲେ ॥୨୨୪
ଯେତେକ ଅର୍ଘ୍ୟ ଆଚମନ ।
ଧୂପ ଦୀପ ଗନ୍ଧ ଚନ୍ଦନ ॥୨୨୫
ରୋହିଣୀସୁତ କୃଷ୍ଣ ସଙ୍ଗେ ।
ପୂଜିଲା ପଦ୍ମପାଦଯୁଗେ ॥୨୨୬
ପୂଜାର ଅନ୍ତେ ପାଦେ ପଡ଼ି ।
ବୋଲଇ ଶିରେ କରଯୋଡ଼ି ॥୨୨୭
ଧନ୍ୟ ହୋଇଲା ଆଜଦିନ ।
ପବିତ୍ର ହେଲା ମୋର ଜନ୍ମ ॥୨୨୮
ନିର୍ମଳ ହୋଇଲା ମୋ' କୁଳ।
ଦେଖିଲି ପ୍ରଭୁ ଆଦିମୂଳ ॥୨୨୯
ପିତୃ ଦେବତା ଋଷି ଯେତେ ।
ତୋଷ ହୋଇଲେ ଆଜମୋତେ ॥୨୩୦
ଦେଖିଲି ପୁରୁଷ ପୁରାଣ ।
ଅନାଦି ପରମ କାରଣ ॥୨୩୧
ଅବନୀଭାରାର ଉଶ୍ୱାସେ ।
ଦେହ ବହିଲେ ନରଅଂଶେ ॥୨୩୨

ଏ ରୂପ ଅସୁର ନାଶନ ।
ସାଧୁଙ୍କୁ ଦେଲ ଆତ୍ମଜ୍ଞାନ ॥୨୩୩
ତୁମ୍ଭେ ଜଗତ ପିତାମାତ ।
ନାହିଁ ତୁମ୍ଭର ଆଦିଅନ୍ତ ॥୨୩୪
ସକଳଜନ୍ତୁଙ୍କ ଜୀବନ ।
ପାଳନ ହେତୁ ନିରଞ୍ଜନ ॥୨୩୫
ଭାବକରନ୍ତି ପ୍ରାଣୀ ଯେତେ ।
ତାହାଙ୍କୁ ଭାବୁ ଏକଚିତ୍ତେ ॥୨୩୬
ଭୋ ନାଥ ମୋତେ ଆଜ୍ଞାକର ।
କିମ୍ବା ଅଇଲ ମୋର ଘର ॥୨୩୭
ତୋହର ଆଜ୍ଞା ଶିରେ ଘେନି ।
ତରନ୍ତି ଭବଜଳୁଁ ପ୍ରାଣୀ ॥୨୩୮
ଏମନ୍ତ ବୋଲି ତୋଷମନେ ।
ପାଦେ ପଡ଼ିଲେ ବେନିଜନେ ॥୨୩୯
କୃଷ୍ଣ ବୋଇଲେ ଶୁଣ ତୁହି ।
ଆମ୍ଭେ ଅଇଲୁ ଯହିଁ ପାଇଁ ॥୨୪୦
ଦିଅ କୁସୁମମାଳମାନ ।
ଯାହାକୁ ଯେହୁ ଶୋଭାବନ ॥୨୪୧
ସୁଦମା କୃଷ୍ଣର ବଚନେ ।
ପଶିଲା ଆପଣା ଭୁବନେ ॥୨୪୨
ସୁଗନ୍ଧ କୁସୁମର ଗଭା ।
ସୁନ୍ଦର ଦିଶୁଅଛି ଶୋଭା ॥୨୪୩
କୃଷ୍ଣ ନିକଟେ ଦେଲା ନେଇ ।
ରାମ ଦେଖନ୍ତି ତାଟ ଫେଇ ॥୨୪୪
ରାମ ଗୋବିନ୍ଦ ବେନିଭାଇ ।
ତାଟୁ ଘେନିଲେ ମାଳ ଦୁଇ ॥୨୪୫
ଲମ୍ବାଇ ରାମକୃଷ୍ଣ ହୃଦେ ।
ସୁଦାମା ଚାହିଁଇ ଆନନ୍ଦେ ॥୨୪୬
ଚୂଳେ ବାନ୍ଧିଲା ବେନିଗଭା ।
ଦିଶନ୍ତି ରାମକୃଷ୍ଣ ଶୋଭା ॥୨୪୭
ତ୍ରିମୁଣ୍ଡି ଗଭା ଶିରେ ଦେଇ ।
ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥୨୪୮
ସୁଦାମା ମୁଖ ଚାହିଁ ହରି ।
ବୋଲନ୍ତି ରାମ କର ଧରି ॥୨୪୯

Dr. Sudhanshu Sekhar Mishra

ବର ତୁ ମାଗ ତୋଷମନେ ।
ତୋହର ବାଞ୍ଛା ଯେତେ ମନେ॥୨୫୦
ମାଳୀ ବୋଲଇ ଯୋଡ଼ିକର ।
ଶୁଣିମା ପ୍ରଭୁ ଦାମୋଦର ॥୨୫୧
ସର୍ବସମ୍ପଦ ଅଟୁ ତୁହି ।
ତୋ' ତହୁଁ ଅନ୍ୟଗତି ନାହିଁ ॥୨୫୨
ମୋର ସମ୍ପଦେ ନାହିଁ କାର୍ଯ୍ୟ ।
ଶୁଣିମା ପ୍ରଭୁ ଦେବରାଜ ॥୨୫୩
ତୋ'ର ଭକତ ଯେତେ ଜନେ ।
ସେବିବି ତାହାଙ୍କ ଚରଣେ ॥୨୫୪
ପ୍ରାଣୀଙ୍କ ହିତେ ମୋର ଦୟା ।
ଭୋ ନାଥ ମୋତେ ଦିଅ ଏହା॥୨୫୫
ଶୁଣି ସାନନ୍ଦ ମହାବାହୁ ।
ବୋଇଲେ ବାଞ୍ଛା ସିଦ୍ଧ ହେଉ॥୨୫୬
ମାଳୀର ମନ ତୋଷ କରି ।
ଧନ ଆୟୁଷ ଯଶ ଶିରୀ ॥୨୫୭
ଦେଇ ଚଳିଲେ ଦାମୋଦର ।
ଗୋପ କୁମରେ ହଳଧର ॥୨୫୮
କହଇ ଦାସ ଜଗନ୍ନାଥ ।
ଗୋବିନ୍ଦ ମଥୁରାର ପଥ ॥୨୫୯
ଏବେ ହୋଇବ ମହୀ ସ୍ଥିର ।
ଅସୁର କରିବେ ସଂହାର ॥୨୬୦
ଭକତଜନେ ଶୁଣି ଏହା ।
ଖଣ୍ଡିବେ ଘୋର ଜଡ଼ ମାୟା ॥୨୬୧
ଏଣେ ହରିଙ୍କି ଧ୍ୟାନ କରି ।
ଭବସାଗରୁ ଯିବ ତରି ॥୨୬୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ମଥୁରାପୁରପ୍ରବେଶୋ ନାମ
ଚତୁଃଚତ୍ୱାରିଂଶୋଽଧ୍ୟାୟଃ ॥

---

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ ବ୍ରହ୍ମଋଷି ।
ଶୁଣ ରାଜନ କୁରୁବଂଶୀ ॥୧
ସେଠାରୁ ଗଲେ ବନମାଳୀ ।
ଦେଖନ୍ତି ପୁରଜନେ ମିଳି ॥୨
ଚାଲନ୍ତେ ପ୍ରଭୁ ଦେବରାଜା ।
ବାଟରେ ମିଳିଲା କୁବୁଜା ॥୩
ସୁଗନ୍ଧପେଡ଼ି ଘେନି କାଖେ ।
ଚାଲଇ ପଥେ ତିନିବାଙ୍କେ ॥୪
ମୁଖ ତା' ଦିଶଇ ସୁନ୍ଦର ।
କଟାକ୍ଷେ ଚାହିଁଇ ମଧୁର ॥୫
ଗନ୍ଧଚନ୍ଦନ ନିତ୍ୟେ ନେଇ ।
କଂସର ଛାମୁରେ ଭେଟଇ ॥୬
ତା'ର ଚନ୍ଦନ ଦେଖି କଂସ ।
ମନେ ଅନେକ ହୋଏ ତୋଷ ॥୭
କୁବୁଜା କୃଷ୍ଣଙ୍କୁ ଦେଖିଲା ।
ସଭୟେ ପଥ ଉପେକ୍ଷିଲା ॥୮
ଲାଜରେ ଗଲା ଆଡ଼ ହୋଇ ।
ଦେଖନ୍ତି ରାମକୃଷ୍ଣ ଦୁଇ ॥୯
କୃଷ୍ଣ ମିଳିଲେ ତା'ର ପାଖେ ।
ବୋଲନ୍ତି କିସ ତୋର କାଖେ ॥୧୦
ଚନ୍ଦନ ପ୍ରାୟେକ ବାସଇ ।
କାହାକୁ ଦେବୁ ଏହା ନେଇ ॥୧୧
କହ ତୋହର ନାମ କିସ ।
ଦିଶୁଛୁ ଏମନ୍ତ ଭବିଷ୍ୟ ॥୧୨
କାହାର ପତ୍ନୀ ତୁ ବୋଲାଉ ।
ପିଠିରେ ତିନି କୁଜ ବହୁ ॥୧୩
କି କର୍ମେ ହୋଇଲୁ ଏମନ୍ତ ।
ଭୟ ନ କରି କହ ସତ୍ୟ ॥୧୪
ଆମ୍ଭେ ଗୋ ଅଟୁ ସହୋଦର ।
ରୋହିଣୀସୁତ ଦାମୋଦର ॥୧୫
ଦେଖ ଆମ୍ଭର ଦେହ ଶୂନ୍ୟ ।
ଥୋକାଏ ଦେବୁକି ଚନ୍ଦନ ॥୧୬
ଆମ୍ଭେ ହୋଇବୁ ତୋଷ ମନ ।
ପାଇବୁ ପରଲୋକ ଧର୍ମ ॥୧୭
ରାଜା ହୋଇବ ମନେତୋଷ ।
ଜଗତେ ଥିବ ତୋର ଯଶ ॥୧୮
କୁବୁଜା କୃଷ୍ଣ ବୋଲ ଶୁଣି ।
କହେ ଅମୀୟ ରସ ବାଣୀ ॥୧୯
ଯାହା ତୁ ପଚାରିଲୁ ସ୍ୱାମୀ ।
ସକଳଭୂତେ ଅନ୍ତର୍ଯ୍ୟାମୀ ॥୨୦
ତୁ ଅଟୁ ଜଗତ ସୁନ୍ଦର ।
ଦାସୀ ମୁଁ ହୋଇବି ତୋହର ॥୨୧
କଂସର ଅଟଇ ନିଯୋଗୀ ।
କରଇ ଚତୁଃସମ ଲାଗି ॥୨୨
ସ୍ୱାମୀ ତନୟ ମୋର ନାହିଁ ।
ଜନ୍ମହୁଁ କୁବୁଜା ଅଟଇ ॥୨୩
ବିରୂପ ଦେଖି ମୋର ଶୋଭା ।
କେହିନୋହିଲେ ମୋତେ ବିଭା ॥୨୪
ଜାତି ମୋହର ଘଟୁଆରୀ ।
ଜୀବିକା କଂସ-ସେବାକାରୀ ॥୨୫
ପିତା ମୋ' ଅପୁତ୍ରିକ ହୋଇ ।
କାଳେ ଲଭିଲା ସ୍ୱର୍ଗ ଭୂଇଁ ॥୨୬
ପିତାର ପୁତ୍ର ଯହୁଁ ନାହିଁ ।
ସେବା ଆବୋରିଅଛି ମୁହିଁ ॥୨୭
ମୋର ଚନ୍ଦନେ ନୃପ ତୋଷ ।
ଦେଇଛି ମୋତେ ତିନିଦେଶ ॥୨୮
ବହୁତ ଧନରତ୍ନ ମୋର ।
ଜୀବନ ହୋଇଲା ଅସାର ॥୨୯
ନିଷ୍ଫଳ ହୋଇଲା ମୋ' ଦେହୀ ।
ପୂର୍ବେ ଅର୍ଜିଲି ଯାହା ମୁହିଁ ॥୩୦

Dr. Sudhanshu Sekhar Mishra

ତୋ ରୂପ ଦେଖି ମୋର ମନ ।
ନିର୍ମଳ ହୋଇଲା ନୟନ ।।୩୧
ଏ ହାଦେ ରାଜାଗନ୍ଧପେଡ଼ି ।
ଦେଖାଇ କୃଷ୍ଣ ଆଗେ ଫେଡ଼ି ।।୩୨
ରାଜାର ଗନ୍ଧ ଏ ଅଟଇ ।
ତୁମ୍ଭ ଦୁହିଁଙ୍କି ଏ ଯୋଗାଇ ।।୩୩
ଥୋକାଏ ଦେବି ଗନ୍ଧ ତୋତେ ।
କଂସ କୋପିବଯେବେ ମୋତେ।।୩୪
ତାହାକୁ ନାହିଁ ମୋର ଡ଼ର ।
ତୁମ୍ଭେ ମୋହର ବଳୀୟାର ।।୩୫
ଏମନ୍ତ ବୋଲି ଗନ୍ଧ ଫେଇ ।
ଲେପିଲା କୃଷ୍ଣ ଅଙ୍ଗେ ନେଇ ।।୩୬
ନାଭିରୁ ଶିରଯାଏ ବୋଳି ।
ଆନନ୍ଦେ ଦେଲା ହୁଳହୁଳି ।।୩୭
କପାଳେ ଦେଲା ଠିଆ ଚିତା ।
କର୍ପୂର କସ୍ତୁରୀ ଶୋଭିତା ।।୩୮
ରାମଙ୍କୁ କଲା ସେହି ମତ ।
ଦେଖି ହସନ୍ତି ଗୋପୀନାଥ ।।୩୯
ଦୟାସାଗର ଦାମୋଦର ।
ଧଇଲେ କୁବୁଜାର କର ।।୪୦
ବେନିଚରଣେ ପାଦ ଦେଇ ।
ଓଷ୍ଠରେ ଅଙ୍ଗୁଳି ଲଗାଇ ।।୪୧
ଅଳପେ କରି ଦେଲେ ଟେକି ।
ପୋଏ ହସନ୍ତି ତାହା ଦେଖି ।।୪୨
ଲାଗନ୍ତେ ଚକ୍ରଧର କର ।
ତକ୍ଷଣେ ହୋଇଲା ସୁନ୍ଦର ।।୪୩
ତା' ତିନିକୁଜ କେଣେ ଗଲା ।
ରୂପେଣ ଅନଙ୍ଗ ମୋହିଲା ।।୪୪
ହୋଇଲା ଅପୂର୍ବ କାମିନୀ ।
ଦେଖି ଟଳିବେ ସୁର ମୁନି ।।୪୫
ଜଗତେ ନାହିଁ ପଟାନ୍ତର ।
ଦିଶଇ ଅତ୍ୟନ୍ତ ସୁନ୍ଦର ।।୪୬
ଦେଖି ଚକିତ ଦେବତାଏ ।
କୃଷ୍ଣ ହୁଁ ଆନେ ନ ଯୋଗାଏ ।।୪୭
କୁବୁଜା ନିଜ ରୂପ ଚାହିଁ ।
କୃଷ୍ଣଙ୍କୁ ଦେଖି ବିଚାରଇ ।।୪୮

ଏତ ଅନାଦି ବିଶ୍ୱକର୍ମା ।
ନାହିଁ ନା ଜଗତେ ଉପମା ।।୪୯
ଏ ମୋତେ କଲାକି ସୁନ୍ଦର ।
ଏ ଯେ ମୋହର ନିଜ ବର ।।୫୦
ଅନେକ ଅଛି ମୋର ଭାଗ୍ୟ ।
ଦଇବ କରିଛି ସଂଯୋଗ ।।୫୧
ଏମନ୍ତ କୁବୁଜା ବିଚାରି ।
ଧଇଲା କୃଷ୍ଣର ଉତ୍ତରୀ ।।୫୨
ଲଜ୍ଜା ହିଁ ନ କଲା ରାମଙ୍କୁ ।
ବୋଇଲା ଆସ ମୋ' ଘରକୁ ।।୫୩
ମୋର ମନ୍ଦିରେ ଆଜ ରହି ।
କାଲି ଭେଟିବ ନୃପସାଇଁ ।।୫୪
ତୁମୋତେ କଲୁ ଏଡ଼େ ରୂପ ।
ଭୋ ନାଥ ନ କରିବା କୋପ ।।୫୫
ଏ ଦେହ ହେଲେ ଆନେଭୋଗ୍ୟ ।
ଅନଳେ କରିବି ସଂଯୋଗ ।।୫୬
ତୁ ଆଜ ଗଲେ ମୋତେ ଛାଡ଼ି ।
ବଜ୍ର ପଡ଼ିବ ଶିରେ ମାଡ଼ି ।।୫୭
ଜୀବନ ରଖ ମୋର ଆଜ ।
ଶୁଣି ପାଇଲେ କୃଷ୍ଣ ଲାଜ ।।୫୮
ଗୋପକୁମରଙ୍କୁ ଅନାଇ ।
ବୋଇଲେ କୁବୁଜୀ ରୁହାଇ ।।୫୯
ଆମ୍ଭେ ଗୋ ଥିଲୁ ଗୋପପୁରୀ ।
ରାଜା ଅଣାଇ ଅଛି ଧରି ।।୬୦
କାଲି ଭେଟିବୁ ନୃପବର ।
ଛାମୁରେ ଦେଇ ଘୃତସର ।।୬୧
ମେଲାଣି ଦେଲେ କଂସ ରାୟେ ।
ସଙ୍ଗେ ନ ଥିବେ ଗୋପପୋଏ ।।୬୨
ଏବେ ଅଛନ୍ତି ସଙ୍ଗେ ଯେତେ ।
ଦଣ୍ଡେ ହେଁ ନ ଛାଡ଼ନ୍ତି ମୋତେ ।।୬୩
ମୋହର ଜ୍ୟେଷ୍ଠ ହଳଧର ।
ଦେଖ ଏ ଧରିଛନ୍ତି କର ।।୬୪
ରାଜା ମେଲାଣି ଘେନି ଶିରେ ।
ଏହାଙ୍କୁ ପେଶି ଗୋପପୁରେ ।।୬୫
ନିଶ୍ଚୟ ଯିବି ତୋ'ର ଘର ।
ସଙ୍ଗେ ନ ଥିବେ ହଳଧର ।।୬୬

ଏମନ୍ତେ ପ୍ରଭୁ ଭଗବାନ ।
ତୋଷିଲେ କୁବୁଜାର ମନ ।।୬୭
କୁବୁଜା ବେନିକର ଯୋଡ଼ି ।
ପୁଣି କହିଲା ପାଏ ପଡ଼ି ।।୬୮
ମୁଁ ଯାଇ ମଣ୍ଡୁଅଛି ଘର ।
ଭୋ ନାଥ ବିଳମ୍ବ ନ କର ।।୬୯
ମୁଁ ତୋତେ ନ ପାରିଲେ ଦେଖି ।
ଉପାଡ଼ି ପକାଇବି ଆଖି ।।୭୦
ମନ ମୋ' ଅଛି ତୋର ତହିଁ ।
ଉଚ୍ଛୁର ନ କର ଗୋସାଇଁ ।।୭୧
ଉତ୍ତରୀ ଛାଡ଼ିଲା କୁବୁଜା ।
କୃଷ୍ଣ ବୋଇଲେ ଘରେ ଯା ଯା ।।୭୨
ଗୋବିନ୍ଦ ପାଦେ ଚିତ୍ତ ଥୋଇ ।
କୁବୁଜା ଗଲା ତୋଷ ହୋଇ ।।୭୩
ଥିଲା ଯେ ବିପ୍ର ଜଗନ୍ନାଥ ।
ଗୋଡ଼ାଇ ଅଛି କୃଷ୍ଣ ପଥ ।।୭୪
ଗୋବିନ୍ଦ ଯା'ନ୍ତେ ଆଗସରି ।
ପଡ଼ିଲା ଧନୁଘରେ ହୁରି ।।୭୫
ବାଟେ ଯେ ଥିଲେ ବଣିଜାରେ ।
ପସରା ଘେନି ଯେ ଯାହାରେ ।।୭୬
ରାମ ଗୋବିନ୍ଦ ମୁଖ ଦେଖି ।
ନିର୍ମଳ କଲେ ଚର୍ମଆଖି ।।୭୭
ଯେଝାରେ ଘେନି ଉପହାର ।
ପୁଷ୍ପ ତାମ୍ବୁଳ ଗନ୍ଧସାର ।।୭୮
ଗୋପାଳକୁମରଙ୍କ ମେଳେ ।
ପୂଜିଲେ ବସୁଦେବବାଳେ ।।୭୯
କାମିନୀ ଚାହିଁ କୃଷ୍ଣ ମୁଖ ।
କନ୍ଦର୍ପବାଣେ ମନ ଦୁଃଖ ।।୮୦
କୃଷ୍ଣର ଦେହେ ଦେଇ ଡ଼ୋଳ ।
କେଶ ବସନ ଅସମ୍ଭାଳ ।।୮୧
ମଥୁରାପୁର ଲୋକେ ଚାହିଁ ।
ବୋଲନ୍ତି ବ୍ରହ୍ମାଣ୍ଡ ଗୋସାଇଁ ।।୮୨
ରାଜାର ଧନୁଘର କାହିଁ ।
ଆମ୍ଭଙ୍କୁ ଦେଖାଅସି ନେଇ ।।୮୩
ରାଜା ହିଁ ଅଛନ୍ତି ଅଣାଇ ।
ଆମ୍ଭେ ଦେଖିବୁ ଧନୁ ଯାଇ ।।୮୪

Dr. Sudhanshu Sekhar Mishra

ଲୋକେ ହୋଇଲେ ଆଗୁସାର ।
ପଛେ ଗୋବିନ୍ଦ ହଳଧର ॥୮୫
ଗୋପକୁମରେ ଗଲେ ଆଗେ ।
ମିଳିଲେ ଧନୁଘର ଲାଗେ ॥୮୬
ଦେଖିଲେ ରାଜା ଧନୁଘର ।
ଉତ୍ସବ ମଣ୍ଡଣି ବେଭାର ॥୮୭
ଧ୍ୱଜ ପତାକା କେରା କେରା ।
ତୋରଣେ ମୁକୁତାର ଝରା ॥୮୮
ଚାନ୍ଦୁଆ ଟାଣି ଫୁଲମାଳ ।
ଚିତ୍ରବିଚିତ୍ରେ ମଣ୍ଡି ଚାଳ ॥୮୯
ସପତ ଖମ୍ବେ ଧନୁ ଡ଼େରି ।
ବାଜଇ ମର୍ଦ୍ଦଳ ମହୁରି ॥୯୦
ସୁବର୍ଣ୍ଣଘଣ୍ଟି ଧନୁ ହୁଳେ ।
ଲମ୍ବେ ମୁକୁତା ରତ୍ନମାଳେ ॥୯୧
ବିବିଧ ଚାମର ଖଞ୍ଜାଣି ।
ଇନ୍ଦ୍ରର ଧନୁପ୍ରାୟ ମଣି ॥୯୨
ବାଜଇ ବୀର ତୂର ନାଦ ।
କେ କହୁ ଧନୁର ସମ୍ପଦ ॥୯୩
ଅନେକ ଦେଶୁଁ ରାଜାମାନେ ।
ମିଳିଲେ କଂସର ଭୁବନେ ॥୯୪
ଧନୁ ଦେଖନ୍ତି ନରନାରୀ ।
ଅଙ୍ଗେଣ ଅଳଙ୍କାର ଭରି ॥୯୫
ଆନନ୍ଦ ହୋଇ ଯୂଥ ଯୂଥ ।
ଗହଳ ଧନୁଘର ପଥ ॥୯୬
କାମିନୀ ଦ୍ୟନ୍ତି ହୁଳ ହୁଳି ।
ମିଳିଲେ ରାମ ବନମାଳୀ ॥୯୭
ପାହାରି ଧନୁ ଦ୍ୱାରେ ରହି ।
ଭିତରେ ନ ଦିଅନ୍ତି ଯାଇ ॥୯୮
କୃଷ୍ଣ ବୋଲନ୍ତି ଛାଡ଼ ଦ୍ୱାର ।
ଆମ୍ଭେ ଦେଖିବୁ ଧନୁଘର ॥୯୯
ଶୁଣି ପାହାରୀ ପରଜ୍ୱଳି ।
ରାମକୃଷ୍ଣଙ୍କୁ ଦ୍ୟନ୍ତି ଗାଳି ॥୧୦୦
ତୁମ୍ଭେ ଯେ ସ୍ୱଭାବେ ଗୋପାଳ ।
ରାଜ୍ୟେ କି କରୁଅଛ ଗୋଳ ॥୧୦୧
ତୁମ୍ଭର କୁଳମୂଳ ନାହିଁ ।
ବନେ ଚରାଉଥାଅ ଗାଈ ॥୧୦୨
ଆମ୍ଭଙ୍କୁ ରାଜା ଆଜ୍ଞା ନାହିଁ ।
ଦ୍ୱାରା ଛାଡ଼ିବୁ କାହିଁପାଇଁ ॥୧୦୩
ରାଜାଙ୍କ ଆଗେ ଜଣାଇଲେ ।
ଏଥେ ପଶିବ ତୁମ୍ଭେ ଭଲେ ॥୧୦୪
ଶୁଣି ବୋଇଲେ ଦାମୋଦର ।
ଆମ୍ଭର ପାଇଁ ଧନୁଘର ॥୧୦୫
ରାଜା ଅକ୍ରୁରେ ପଠିଆଇ ।
ଆମ୍ଭଙ୍କୁ ଅଛଇ ଅଣାଇ ॥୧୦୬
ଆମ୍ଭର ପାଇଁଟି ଉତ୍ସବ ।
ହସି ବୋଲନ୍ତି ପଦ୍ମନାଭ ॥୧୦୭
ପାହାରୀ ନ ଛାଡ଼ନ୍ତି ଦ୍ୱାର ।
ଆଗ ହୋଇଲେ ହଳଧର ॥୧୦୮
ଦେଖି ବେଢ଼ିଲେ ଆସି ଲୋକେ ।
କୋପେ ଜାକିଲେ ବେନିକାଖେ ॥୧୦୯
ଭୁଜ ଉପାଡ଼ି ପକାଇଲେ ।
ଦେଖି ଥୋକାଏ ପଳାଇଲେ ॥୧୧୦
ଦ୍ୱାର ଅର୍ଗଳି ଭାଙ୍ଗିଗଲା ।
ପାହାରୀ ଦ୍ୱାର ଛାଡ଼ିଦେଲା ॥୧୧୧
ପୁଣି ଯେ ଶସ୍ତ୍ରମାନ ଧରି ।
ରାଗେଣ ଧାଇଁଲେ ପାହାରୀ ॥୧୧୨
ରଜନୀମୁଖେ ଗୋଳବାଣୀ ।
ପଳାନ୍ତି ନରନାରୀ ଶୁଣି ॥୧୧୩
ରୋହିଣୀସୁତ ଆଗ ହୋଇ ।
ଯଷ୍ଟି ପ୍ରହାର କଲେ ନେଇ ॥୧୧୪
କେଶ ଧରିଣ ହଳଧର ।
ବୁଲାଇ ଫିଙ୍ଗିଲେ ଭୂମିର ॥୧୧୫
ଶତେ ପାହାରୀ ଗଲେ ନାଶ ।
ମାଇଲେ ରାମ ହୃଷିକେଶ ॥୧୧୬
ତକ୍ଷଣେ ସେଠାବରୁ ଚଳି ।
ପୁଣି ବହୁତ ଯୋଦ୍ଧା ମିଳି ॥୧୧୭
ଅନେକ ସୈନ୍ୟ ଜଗିଥିଲେ ।
ରାମକୃଷ୍ଣଙ୍କୁ ଓଗାଳିଲେ ॥୧୧୮
କରେଣ ଶସ୍ତ୍ରମାନ ଧରି ।
ଓଗାଳି କଲେ ଦ୍ୱାର ପାରି ॥୧୧୯
ଏଡ଼େରେ ସାହସ ତୁମ୍ଭର ।
ପଶିଲ ଆସି ଧନୁଘର ॥୧୨୦
ଗଉଡ଼ ହୋଇ ଏଡ଼େ ଟାଣ ।
ମଥୁରା କଲ ରଣଭଣ ॥୧୨୧
ବୋଲାଅ ନୃପତି ଭଣଜା ।
ତହୁଁ ଅଣାଇଅଛି ରାଜା ॥୧୨୨
ରାଜା ସୁହୃଦପଣ ଯହୁଁ ।
ସେ ଘେନି ନ ମାରନ୍ତି କେହୁ ॥୧୨୩
ରଜକ ମୁଣ୍ଡ ଛିଣ୍ଡାଇଲ ।
ରାଜାର ବସ୍ତ୍ର ଜୂର କଲ ॥୧୨୪
କୁବୁଜା ଚତୁଃସମ ପେଡ଼ି ।
ହାତରୁ ଘେନିଲ ଉଛୁଡ଼ି ॥୧୨୫
ଏବେ ପଶିଲ ଧନୁଘରେ ।
ମାଇଲ ଶତେ ଦ୍ୱାରପାଳେ ॥୧୨୬
ଶସ୍ତ୍ର ଧରିଣ ଯୁଦ୍ଧ କଲେ ।
ଏମନ୍ତ ବୋଲି ଆକ୍ରୋଶିଲେ ॥୧୨୭
ପୋଏ ଲଉଡ଼ିମାନ ଘେନି ।
ଦୈତ୍ୟଙ୍କୁ ପିଟିଲେକି ପୁଣି ॥୧୨୮
ଗୋପାଳେ ବୋବୀ ଦେଇ ଉଠି ।
ପ୍ରହାର କଲେ ଦୃଢ଼େ ଯଷ୍ଟି ॥୧୨୯
ଜଣ ଜଣକେ ଦଶବିଂଶ ।
ଗୋପାଳବଳ ନୋହେ ଶେଷ ॥୧୩୦
ଗୋଳ କରିଣ ପ୍ରହାରିଲେ ।
ଅସୁରେ ରହି ନ ପାରିଲେ ॥୧୩୧
ତ୍ରାଣ ପାଇଣ ପଳାଇଲେ ।
ଥୋକାଏ ପ୍ରାଣ ହରାଇଲେ ॥୧୩୨
ପଶିଲେ ରାମ ଦାମୋଦର ।
ଗୋପକୁମରଙ୍କ ସଙ୍ଗର ॥୧୩୩
ଗୋବିନ୍ଦ ପଶି ଅତି ଖରେ ।
ଧନୁ ଧଇଲେ ବାମକରେ ॥୧୩୪
ଇନ୍ଦ୍ରର ଧନୁପ୍ରାୟ ଶୋଭା ।
ରାମ ବୋଇଲେ ଗୁଣ ଦେବା ॥୧୩୫
ଧନୁରେ ଅଛି କେତେ ବଳ ।
ଗୁଣ ଘେନିଲେ ନନ୍ଦବାଳ ॥୧୩୬
ଗୋବିନ୍ଦ ପାଦେ ଧନୁ ମାଡ଼ି ।
ହୁଳେ ବସାଇ ଧନୁ ଭିଡ଼ି ॥୧୩୭
ତୋଳିଲେ ବାମ ଭୁଜେ ହରି ।
ଗୁଣ ଟଙ୍କାରି ନାଦ କରି ॥୧୩୮

Dr. Sudhanshu Sekhar Mishra

ଦକ୍ଷିଣ କର୍ଣ୍ଣ ଯାଏଁ ଟାଣି ।
ବଳ ଆଞ୍ଚିଲେ ଚକ୍ରପାଣି ॥୧୩୯
ଧନୁ ହୋଇଲା ବେନିଖଣ୍ଡ ।
ଶବଦ କଲା ପରଚଣ୍ଡ ॥୧୪୦
ଶୁଭିଲା ବ୍ରହ୍ମଲୋକ ଯାଏ ।
କଂସ ପାଇଲା ମନେ ଭୟେ ॥୧୪୧
ପାହାରୀ ଥିଲେ ଯେ ପଳାଇ ।
ଅଇଲେ ଧନୁଭଗ୍ନ ଚାହିଁ ॥୧୪୨
ମାରନ୍ତି ନାନା ଶସ୍ତ୍ର ଘେନି ।
ଚହଲେ କମ୍ପଇ ମେଦିନୀ ॥୧୪୩
ଦେଖି ଧାଇଁଲେ ହଳଧରେ ।
ଭାଙ୍ଗିଲା ଧନୁ ଘେନିକରେ ॥୧୪୪
ବୁଲାଇ ପିଟିଲେ କୋପରେ ।
ପାହାରୀ ଗଲେ ଯମପୁରେ ॥୧୪୫
ରାଜାର ଯେତେ ବଳ ଥିଲେ ।
ରାମର ହସ୍ତେ ପ୍ରାଣ ଦେଲେ ॥୧୪୬
ଦେଖିଣ ଅନନ୍ତ ମୂରତି ।
ଭୟେ କମ୍ପଇ ସୁରପତି ॥୧୪୭
କମ୍ପିଲେ ଦଶଦିଗପାଳେ ।
ଚହଳ ଆକାଶମଣ୍ଡଳେ ॥୧୪୮
ନିମିଷମାତ୍ରେ ଧନୁ ଭାଙ୍ଗି ।
କଂସର ବଳ ଦର୍ପ ଗଞ୍ଜି ॥୧୪୯
ଗୋବିନ୍ଦ ହୋଇଲେ ବାହାର ।
ଗୋପକୁମରେ ହଳଧର ॥୧୫୦
ଦେଖିଲେ ରବି ଅସ୍ତ ଗଲା ।
ହସି ବୋଲନ୍ତି ନନ୍ଦବାଳା ॥୧୫୧
ଚାଲ ହୋ ଯିବା ନିଜ ସ୍ଥାନ ।
କାଲି ଯେ ରାଜା ଦରଶନ ॥୧୫୨
ଏମନ୍ତ ବୋଲି ବାହୁଡ଼ିଲେ ।
ମଥୁରା ତୋଟାରେ ମିଳିଲେ ॥୧୫୩
କହନ୍ତି ଶୁକ ମୁନିବର ।
ଶୁଣ ରାଜନ ରସଭର ॥୧୫୪
ଅକ୍ରୁର ମୁଖ ଚାହିଁ କୋପେ ।
ଯାହାବୋଇଲେ ନାରୀ ଗୋପେ ॥୧୫୫
ବୋଇଲେ ମଥୁରା ଭୁବନେ ।
ଭାଗ୍ୟଟି କଲେ ନାରୀଜନେ ॥୧୫୬

ତାହାଙ୍କ ନୟନ ଆନନ୍ଦ ।
ଦେଖିବେ ପୂର୍ଣ୍ଣମୀର ଚାନ୍ଦ ॥୧୫୭
ଦେଖିଣ ରାମକୃଷ୍ଣ ମୁଖ ।
ଖଣ୍ଡିବେ କୋଟିଜନ୍ମ ଦୁଃଖ ॥୧୫୮
ସେ କଥା ହୋଇଲା ସ୍ୱରୂପ ।
ଦେଖିଲେ ରାମକୃଷ୍ଣ ରୂପ ॥୧୫୯
ଗୋପାଳେ ଦେଖି ମଧୁପୁର ।
କହନ୍ତି ନନ୍ଦର ଛାମୁର ॥୧୬୦
ଆମ୍ଭେ ତୋ' କୃଷ୍ଣସଙ୍ଗେ ଥାଇ ।
ମଥୁରା ଦେଖିଲୁ ଗୋସାଇଁ ॥୧୬୧
ନିର୍ମଳ ହୋଇଲା ନୟନ ।
ଆମ୍ଭ ଜୀବନ କଲୁ ଧନ୍ୟ ॥୧୬୨
ନନ୍ଦ ଯେ ଘେନି ବେନିସୁତ ।
କୋଳେ ବସାଇ ତୋଷଚିତ୍ତ ॥୧୬୩
ଚୁମ୍ବନ ଦେଲେ ନନ୍ଦରାୟେ ।
ପାଖେ ବସିଲେ ବେନିପାଏ ॥୧୬୪
ସ୍ନାହାନ କରାଇ ହରଷ ।
ଭୁଞ୍ଜାନ୍ତି ରାମ ହୃଷୀକେଶ ॥୧୬୫
ଛେନା ଗୋଟିକା ଦୁଧ ସର ।
ଗୋରସ ଅନେକ ପ୍ରକାର ॥୧୬୬
ଗୋପସୁତଙ୍କୁ ଘେନି ସଙ୍ଗେ ।
ଭୁଞ୍ଜାନ୍ତି ରାମକୃଷ୍ଣ ରଙ୍ଗେ ॥୧୬୭
ମଣୋହି ସାରି ଭଗବାନ ।
ଶୀତଳ ଜଳେ ଆଚମନ ॥୧୬୮
କର୍ପୂର ମୁଖବାସ ଗୁଆ ।
ତାମ୍ବୁଳ ଭୁଞ୍ଜାନ୍ତି ବିଡ଼ିଆ ॥୧୬୯
ଗନ୍ଧଚନ୍ଦନ ଅଙ୍ଗେ ବୋଳି ।
ବସିଲେ ରାମ ବନମାଳୀ ॥୧୭୦
ଚାମର ଗୋପପୁଅ କରେ ।
ଢ଼ାଳନ୍ତି ନାନା ଗୀତସ୍ୱରେ ॥୧୭୧
ପୁଷ୍ପ ବରଷି ସ୍ତୁତି କରି ।
ଶୋଇଲେ ରାମ ନରହରି ॥୧୭୨
କହଇ ଦାସ ଜଗନ୍ନାଥ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୧୭୩
ବୋଲନ୍ତି ଶୁକ ମୁନିବର ।
କୃଷ୍ଣ ଚରିତ ସୁଧାସାର ॥୧୭୪

ରଜନୀ ହୋଇଲା ବହୁତ ।
କଂସକୁ ଜଣାଇଲା ଦୂତ ॥୧୭୫
ଶୁଣନ୍ତୁ ଭୋଜ ନୃପଇନ୍ଦ୍ର ।
ଅବନୀପତି କୁଳଚନ୍ଦ୍ର ॥୧୭୬
ଅକ୍ରୁର ରାମକୃଷ୍ଣ ବେନି ।
ଗୋପବାଳକ ନନ୍ଦ ଘେନି ॥୧୭୭
ତୋଟାରେ ପ୍ରବେଶ ହୋଇଲେ ।
ନଗ୍ର ବିହାର କରିଗଲେ ॥୧୭୮
ଗୋପାଳ ପୁଅ ସଙ୍ଗେ ଘେନି ।
ଦାଣ୍ଡେ ଆସନ୍ତେ ଭାଇ ବେନି ॥୧୭୯
ରଜକ ବସ୍ତ୍ର ଘେନିଯା'ନ୍ତେ ।
ଗଉଡ଼େ ବେଢ଼ିଲେ ତୁରିତେ ॥୧୮୦
ରଜକେ କଲେ ପ୍ରାଣେ ନାଶ ।
ଫେଡ଼ିଣ ମଡ଼ିଆଳ ବାସ ॥୧୮୧
ଯେ ଯାହା ମତେ କ୍ରୂର କଲେ ।
ମାଳୀର ଦ୍ୱାରେଣ ମିଳିଲେ ॥୧୮୨
ଭୟେଣ ଫୁଲ ଦେଲା ମାଳୀ ।
ତହୁଁ ଅଇଲେ ବେଗେ ଚଳି ॥୧୮୩
କୁବୁଜା ଚତୁଃସମପେଡ଼ି ।
କାଖରୁ ଘେନିଲେ ଉଛୁଡ଼ି ॥୧୮୪
ଗନ୍ଧ ଚନ୍ଦନ ଚତୁଃସମ ।
ବୋଳି ହୋଇଲେ କୃଷ୍ଣରାମ ॥୧୮୫
ସଲଖ କଲେ ତିନିବାଙ୍କ ।
ଦେଖିଲେ କଟକର ଲୋକ ॥୧୮୬
କି ସେ ଈଶ୍ୱର ଅଂଶେ ଜାତ ।
ଏ କଥା ଲୋକେ ବିପରୀତ ॥୧୮୭
ଶୁଣ ତୁ ବୀର ଭୋଜବଂଶୀ ।
ଗଉଡ଼େ ଧନୁଘରେ ପଶି ॥୧୮୮
ଶତେ ପାହାରୀ ନାଶକଲେ ।
ଅନେକ ସଇନ ମାଇଲେ ॥୧୮୯
ଧନୁ ଆମଞ୍ଚି ଗୁଣ ଦେଲେ ।
ଓଟାରି ବେନିଖଣ୍ଡ କଲେ ॥୧୯୦
କଟକେ ପଡ଼ିଲା ଚହଳ ।
ଭାଜିଲେ ହାଟ ବଣିକାର ॥୧୯୧
ତୋଟାରେ ରନ୍ଧନ ଭୋଜନ ।
ସୁଖେଣ କଲେକ ଶୟନ ॥୧୯୨

Dr. Sudhanshu Sekhar Mishra

ବାରତା କହିଲାକି ଦୂତ ।
କଂସ ଭାଳଇ ଭୟ ଚିତ୍ତ ॥୧୯୩
ରଜନୀ ହୋଇଲା ଅପାର ।
ଶୁଣ ହୋ ରାଜାର ବିଚାର ॥୧୯୪
ଧନୁର ଭଗ୍ନ କଥା ଶୁଣି ।
କୃଷ୍ଣର କର୍ମ ମନେ ଗୁଣି ॥୧୯୫
ରଜକେ ପେଶି ଯମପୁର ।
ମୋହର ବସ୍ତ୍ର କଲେ ଚୂର ॥୧୯୬
କୁବୁଜା ଗନ୍ଧ ବଳେ ନେଇ ।
ସୁନ୍ଦର କଲେ ତା'ର ଦେହୀ ॥୧୯୭
ଏବେ ଭାଙ୍ଗିଲେ ଧନୁ ମୋର।
ବାଳକେ ଏଡ଼େ ବଳୀୟାର ॥୧୯୮
ଧନୁଘରେଣ ଯୋଦ୍ଧା ଯେତେ।
ସମସ୍ତେ ମଲେ ତା'ଙ୍କ ହସ୍ତେ॥୧୯୯
ନନ୍ଦର ଘରେ ବାଳକାଳେ ।
ଯେତେ ଅସୁର ମୋର ଗଲେ॥୨୦୦
ସବୁ ମାଇଲେ ବେନିଭାଇ ।
ବନେ ଚରାଉଥା'ନ୍ତି ଗାଈ ॥୨୦୧
ଏବେ ମୁଁ କରିବି କେମନ୍ତ ।
ଅଛନ୍ତି ମାଲ ଯେ ମାହୁନ୍ତ ॥୨୦୨
ଗଜ ମୋ' ଅଛି କୁବଳୟା ।
ନ ଜାଣି ବିଧାତାର ମାୟା ॥୨୦୩
କେମନ୍ତେ ରଖିବି ଜୀବନ ।
ଏମନ୍ତଭାଳି ଛନଛନ ॥୨୦୪
ନିଦ୍ରା ନ ମାଡ଼ଇ ନୟନେ ।
ଭାଳଇ ଅତି ଭୟମନେ ॥୨୦୫
ପୁଣି କ୍ଷଣକେ ନିଦ୍ରା ମୋହି ।
ସଭୟେ ପୁଣି ହିଁ ଚିଆଇଁ ॥୨୦୬
ଦେଖଇ ସ୍ୱପ୍ନ ନାନା ବର୍ଣ୍ଣ ।
ମରଣ ହେତୁଙ୍କର ଚିହ୍ନ ॥୨୦୭
ସୁବର୍ଣ୍ଣ କାନ୍ତେ ଦେହ ଛାଇ ।
ଦେଖଇ ତା'ର ମୁଣ୍ଡ ନାହିଁ ॥୨୦୮
ଦର୍ପଣେ ଆଦିତ୍ୟର ଜ୍ୟୋତି ।
ରାତ୍ରେ ଦେଖଇ ଭୋଜପତି ॥୨୦୯
ଦୀପେ ଦିଶନ୍ତି ଦୁଇ ଦୁଇ ।
ଚନ୍ଦ୍ର ହିଁ ତେମନ୍ତ ଦିଶଇ ॥୨୧୦

ଛାୟାର ଦେହେ ଛିଦ୍ରମୟେ ।
ନିଃଶ୍ୱାସ ଶୁଭେ ଶଙ୍ଖପ୍ରାୟେ ॥୨୧୧
ସୁବର୍ଣ୍ଣ ପ୍ରତିମାଏ ବୃକ୍ଷେ ।
କଂସକୁ ଦିଶଇ ପ୍ରତ୍ୟକ୍ଷେ ॥୨୧୨
ବୃକ୍ଷର ଡ଼ାଳେ ପଶୁଗଣ ।
ବରାହ ଶୃଗାଳ ହରିଣ ॥୨୧୩
ମୃତ୍ୟୁପିଣ୍ଡକୁ କରି କୋଳ ।
ସାନନ୍ଦେ ଗୀତନାଦେ ଭୋଳ॥୨୧୪
ଗର୍ଦ୍ଦଭ କନ୍ଧେ ଚଢ଼ିଯା'ନ୍ତେ ।
ବିଷ ଭକ୍ଷଇ ଲୌହପାତ୍ରେ ॥୨୧୫
ତଇଳେ ସିକ୍ତ ଦିଗମ୍ବର ।
ହୃଦରେ ରଙ୍ଗପୁଷ୍ପମାଳ ॥୨୧୬
ଦକ୍ଷିଣଦିଗେ ଯାଏ ଧାଇଁ ।
ଚୂଳ ବନ୍ଧନ ଶିରେ ନାହିଁ ॥୨୧୭
ଏମନ୍ତ ଦେଖଇ ସ୍ୱପନ ।
କ୍ଷଣକ୍ଷଣକେ ମୁହ୍ୟମାନ ॥୨୧୮
ଏମନ୍ତେ ପାହିଲା ରଜନୀ ।
କଂସ ଭାଳଇ ଭୟ ଘେନି ॥୨୧୯
ଯେମନ୍ତ ଦେଖିଲି ସ୍ୱପନ ।
ନିଶ୍ଚୟେ ହୋଇଲା ମରଣ ॥୨୨୦
କଂସ ଜାଣଇ ଯୋଗବଳେ ।
ଗୋବିନ୍ଦ ମାରିଅଛି ବେଳେ ॥୨୨୧
ସେ ବେଳେ ନୋହିଲି ମୁଁ ମୋକ୍ଷ।
ଏବେ ତ ଦେଖିବି ପ୍ରତ୍ୟକ୍ଷ ॥୨୨୨
ଉଦେ ହୋଇଲେ ଦିନକର ।
କଂସ ହିଁ ହୋଇଲା ବାହାର ॥୨୨୩
ରଙ୍ଗସଭାରେ ବିଜେ କଲା ।
ରାଜାମାନଙ୍କୁ ଅଣାଇଲା ॥୨୨୪
ଆସି ଯେ ଥିଲେ ରାଜାଗଣେ।
କଂସ ଡ଼ାକଇ ଜଣେ ଜଣେ ॥୨୨୫
ରାଜାଏ ଶମ୍ବରର ମୂଳେ ।
ନାରକାସୁର ଶିଶୁପାଳେ ॥୨୨୬
ବଜ୍ରକବଚ ବାଣାସୁର ।
ପୁଣ୍ଡ୍ରକ ଶାଲ୍ୱ ଦନ୍ତବକ୍ତ୍ର ॥୨୨୭
ଯୋଜନାବାହୁ ବଜ୍ରନାଭ ।
ଏ ଆଦି ଯେତେକ ଦାନବ ॥୨୨୮

ଏମାନେ ମହୀପତି ଛଳେ ।
ଆସି ଅଛନ୍ତି ସୈନ୍ୟବଳେ ॥୨୨୯
କାହାର ଭାଇ ପୁତ୍ର ନାତି ।
କେ ଆପେ ଖଟଇ ନୃପତି ॥୨୩୦
କ୍ଷତ୍ରିୟ ରବି-ସୋମ-ବଂଶ ।
କଂସର ଯେତେକ ବିଶ୍ୱାସ ॥୨୩୧
ନୃଗ କଳିଙ୍ଗ ଭଦ୍ରସେନ ।
ବିଦେହ ନୈଷଧ ରାଜନ ॥୨୩୨
କଂସର ପ୍ରିୟପଣେ ଆସି ।
ମିଳିଲେ ସୋମ-ସୂର୍ଯ୍ୟବଂଶୀ ॥୨୩୩
ଦଇବେ ଭୋଜ ଦଣ୍ଡଧାରୀ ।
ଅନେକ ମଞ୍ଚା ଅଛି କରି ॥୨୩୪
ମଣ୍ଡିଛି ନାନା ଉପହାରେ ।
ନିର୍ମଳ-ଦର୍ପଣ-ଚାମରେ ॥୨୩୫
ବିବିଧମତେ ବସ୍ତ୍ର ଦେଇ ।
ଉପରେ ଚାନ୍ଦୁଆ ଖଞ୍ଜାଇ ॥୨୩୬
ଲମ୍ବଇ ମୁକୁତାର ଝରା ।
ମାଳ କୁସୁମ କେରା କେରା ॥୨୩୭
କାଞ୍ଚନମୟ ସିଂହାସନ ।
ଦେଖିଲେ ତୋଷ ହୋଏ ମନ॥୨୩୮
ସୁଗନ୍ଧ ଧୂପ ଦୀପପାତ୍ର ।
ଉପରେ ଶୋହେ ଧ୍ୱଜ ଛତ୍ର ॥୨୩୯
ରାଜାଏ କଂସ ଆଜ୍ଞା ପାଇ ।
ମଞ୍ଚାରେ ବସିଛନ୍ତି ଯାଇ ॥୨୪୦
ରାଜା ଗୋଟିକେ ଏକ ମଞ୍ଚା ।
ସକଳ କରିଅଛି ସଞ୍ଚା ॥୨୪୧
ତାହାଙ୍କୁ ପୂଜି ଜଣେ ଜଣେ ।
ଚନ୍ଦନ କୁସୁମ ବସନେ ॥୨୪୨
ବିବିଧମତେ ଭୋଗ ଦେଇ ।
କହଇ ରାଜାଙ୍କୁ ଅନାଇ ॥୨୪୩
ତୁମ୍ଭେ ସକଳ ବନ୍ଧୁଜନେ ।
କହଇ ଶୁଣ ସାବଧାନେ ॥୨୪୪
ବସୁଦେବର ପୁତ୍ର ଦୁଇ ।
ବଢ଼ିଲେ ଗୋପପୁରେ ଥାଇ ॥୨୪୫
ଭିଣୋଇ କଲା ଏଡ଼େ ଛନ୍ଦ ।
ମୋତେ ଯେ ନ ଗଣଇ ନନ୍ଦ॥୨୪୬

Dr. Sudhanshu Sekhar Mishra

ଅନେକ ବଳ ମୋର ଥିଲେ ।
ରାମଗୋବିନ୍ଦ ସଂହାରିଲେ ॥୨୪୭
ବଳେ ମୋ' ଧନୁ ହିଁ ଭାଙ୍ଗିଲେ ।
ପାହାରୀମାନଙ୍କୁ ମାଇଲେ ॥୨୪୮
ରଜକ ମାରି ବସ୍ତ୍ର ଜୁର ।
ଗନ୍ଧ ଛଡ଼ାଇ ନେଲେ ମୋର ॥୨୪୯
ଗଉଡ଼ମେଳି ଏ ଭିଆଇ ।
ମୋତେ ମାରିବେ ବେନିଭାଇ ॥୨୫୦
ଏବେ ମୁଁ ଅଣାଇଲି ଧରି ।
ତାତ ଜନନୀ ଆଦିକରି ॥୨୫୧
ହସ୍ତୀର ହସ୍ତେ ମରାଇବି ।
ଏମନ୍ତେ ବଇରୀ ସାଧିବି ॥୨୫୨
ଯେବେ ସେଠାରୁ ଉବୁରିବେ ।
ମାଲଙ୍କ ହସ୍ତେ ପ୍ରାଣ ଦେବେ ॥୨୫୩
ମଞ୍ଚାରେ ବସି ପିତାମାତା ।
ଦେଖିବେ ପୁତ୍ରଙ୍କର ହତ୍ୟା ॥୨୫୪
ତୁମ୍ଭେ ସକଳେ ଦେଖୁଥିବ ।
ମୋହର ଶତ୍ରୁ ନାଶଯିବ ॥୨୫୫
ସେ ମୋର ଭଗ୍ନିର କୁମରେ ।
ଦ୍ରୋହ ପାଞ୍ଚିଲେ ମୋହଠାରେ॥୨୫୬
ତୁମ୍ଭେ ମୋହର ବନ୍ଧୁ ଶୁଣ ।
କହିଲି ହିତକଥା ପୁଣ ॥୨୫୭
ଏମନ୍ତ ବୋଲି ଭୋଜସାଇଁ ।
ରାଜାଙ୍କୁ ମଞ୍ଚାରେ ବସାଇ ॥୨୫୮
ବାଜଇ ବୀର ତୂର ବାଦ୍ୟ ।
କେ କହୁ କଂସର ସମ୍ପଦ ॥୨୫୯

ଚାଣୁର ମୁଷ୍ଟିକର ମେଳେ ।
ଶଲ ତୋଷଳ ଚାରିମାଲେ ॥୨୬୦
ଏହାଙ୍କ ତୁଲେ ଶତେ ମାଲ ।
ଅଣାଇ କହେ ଭୋଜପାଳ ॥୨୬୧
ତୁମ୍ଭର ବଳେ ମୋ' ଭରସା ।
ଆଜ ମୋ' ପୂରାଇବ ଆଶା ॥୨୬୨
ନନ୍ଦ-ଗୋପାଳଙ୍କୁ ଅଣାଇ ।
ଗୋରସ ଭଣ୍ଡାରେ ଥୁଆଇ ॥୨୬୩
ମଞ୍ଚାରେ ନେଇ ବସାଇଲା ।
ସମର ଦେଖିବୁ ବୋଇଲା ॥୨୬୪
ବସୁଦେବର ପୁତ୍ର ଦୁଇ ।
ଘରେ ଲୁଚାଇଥିଲୁ ନେଇ ॥୨୬୫
ବସୁଦେବର ମିତ୍ରପଣୁଁ ।
ତୋହର ଦୋଷ ନାହିଁ ତେଣୁ ॥୨୬୬
ବନ୍ଧୁର ହିତ କଲୁ ଯେବେ ।
ତା'ଙ୍କ ମରଣ ଦେଖ ଏବେ ॥୨୬୭
ନନ୍ଦଙ୍କୁ ମଞ୍ଚାରେ ବସାଇ ।
ବୋଲଇ ପାତ୍ର ମନ୍ତ୍ରୀ ଚାହିଁ ॥୨୬୮
ତୁମ୍ଭେ ହୋ ଥିବ ମୋର ପାଖେ ।
ମଞ୍ଚାରେ ବସି ଦେଖ ସୁଖେ ॥୨୬୯
ଆପଣେ ମଞ୍ଚାରେ ବସିଲା ।
ଦୂତଙ୍କୁ ରାଇ ଆଜ୍ଞା ଦେଲା ॥୨୭୦
ବେଗରେ ଯାଅ ମଧୁବନ ।
ରାମକୃଷ୍ଣଙ୍କୁ ଧରିଆଣ ॥୨୭୧
କଂସର ଆଜ୍ଞା ଘେନି ଶିରେ ।
ଦୂତେ ଚଳିଲେ ଧାଡିକାରେ ॥୨୭୨

ବୋଲଇ ଦାସ ଜଗନ୍ନାଥ ।
ଭେଟିଲେ ରାମ ଗୋପୀନାଥ ॥୨୭୩
ସେ ରାମକୃଷ୍ଣର ଚରଣେ ।
ସ୍ୱଜନେ ଚିନ୍ତ ଅନୁକ୍ଷଣେ ॥୨୭୪
ଗୋବିନ୍ଦ ଆଜ୍ଞା ଶିରେ ଲଇଁ ।
ଯାହା ବା ପାରିଲଇଁ କହି ॥୨୭୫
କହିଲେ ପ୍ରଭୁ ଚକ୍ରଧର ।
ପୁରାଣ ରସ ଗୀତସାର ॥୨୭୬
ଏଣୁ ନ କର ଖେଦମନ ।
ସବୁରି ପ୍ରଭୁ ଭଗବାନ ॥୨୭୭
ରୂପ-ଅରୂପ ଜ୍ଞାନଗୁରୁ ।
ଯାହା ମହିମା ମହାମେରୁ ॥୨୭୮
କୃଷ୍ଣଚରଣେ ମନ ଦେଇ ।
ସଂସାରୁ ତର ଏହା ଗାଇ ॥୨୭୯
ଏଣେ ହୋଇବ ଭବୁଁ ପାର ।
ତାରିବେ ଦେବ ଦାମୋଦର ॥୨୮୦
ଦୟାସାଗର ରାମହରି ।
ବିପଦୁଁ ଧରିବେ ଉଦ୍ଧରି ॥୨୮୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ମଲ୍ଲରଙ୍ଗ
ଉପବର୍ଣ୍ଣନଂ ନାମ
ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ବୋଲନ୍ତି ଶୁକ ମୁନିବର ।
ସାନନ୍ଦେ ଶୁଣ କୁରୁବୀର ॥୧
ରାମଗୋବିନ୍ଦ ମଧୁବନେ ।
ଭେଟିଲେ କଂସଦୂତମାନେ ॥୨
ନିକଟେ ଦୂତଙ୍କୁ ରୁହାଇ ।
ସ୍ନାହାନ କଲେ ବେନିଭାଇ ॥୩
ଭୋଜନ କଲେ ଦୁଧସର ।
ଆନନ୍ଦେ ନାନା ଉପହାର ॥୪
ବିବିଧ ରତ୍ନ ଅଳଙ୍କାର ।
ବସ୍ତ୍ର ପିନ୍ଧିଲେ ପୀତ ନୀଳ ॥୫
ମାଳ ଦୁନ୍ଦୁଭିଘୋଷ ଶୁଣି ।
ସାନନ୍ଦ କୃଷ୍ଣ ହଳପାଣି ॥୬
ଗୋପାଳ ପୋଏ ସଜ ହୋଇ ।
ମଧ୍ୟେ ବିଜୟ ବେନିଭାଇ ॥୭
ମଥୁରା ନଗରେ ପଶିଲେ ।
କଂସର ଦୂତେ ଆଗେ ଗଲେ ॥୮
ପଡ଼ଇ କ୍ଷଣେ କ୍ଷଣେ ହୁରି ।
ଉଲ୍କାପାତେ ବସୁନ୍ଧରୀ ॥୯
ଆକାଶେ ଧୂମମୟ ଜ୍ୟୋତି ।
ମେଘେ ଲୁଚିଲେ ଛାୟାପତି ॥୧୦
ପଥେ ଆସନ୍ତେ ଭାଇ ବେନି ।
ବିବିଧ ବାଦ୍ୟନାଦ ଧ୍ୱନି ॥୧୧
ଯୋଡ଼ି ମର୍ଦ୍ଦଳ ଶଙ୍ଖ ବାଜେ ।
ଶରଦମେଘ ଯେହ୍ନେ ଗର୍ଜେ ॥୧୨
ରାମଗୋବିନ୍ଦ ଦେଖି ପଥେ ।
ଲୋକେ ମିଳିଲେ ଯୂଥେଯୂଥେ ॥୧୩
ଏକ ଆରକେ ସଜ ହୋଇ ।
କାମିନୀଗଣେ ଛନ୍ତି ଧାଇଁ ॥୧୪
ସକଳେ ଘରଦ୍ୱାରା ଛାଡ଼ି ।
ଧାମନ୍ତି ରାଜପଥ ମାଡ଼ି ॥୧୫
ସ୍ତିରୀ ପୁରୁଷ ବାଳବୃଦ୍ଧେ ।
ଗୋବିନ୍ଦ ଦେଖିବାର ସଧେ ॥୧୬
ଆଗେ ଧାମନ୍ତି ବଳବନ୍ତ ।
ଗହଳ ମଥୁରାର ପଥ ॥୧୭
ଅନଳ ଦେଖିଣ ପତଙ୍ଗେ ।
ଯେହ୍ନେ ଧାମନ୍ତି ଉଦ୍‌ବେଗେ ॥୧୮
ଦେଖନ୍ତି ନରନାରୀ ମିଳି ।
ହରଷେ ଦେଇ ହୁଳହୁଳି ॥୧୯
ରାମଗୋବିନ୍ଦ ମୁଖ ଚାହିଁ ।
ନୟନ ପିଛାଡ଼ି ନୋହଇ ॥୨୦
ଦେହ ସଂସାର ପାସୋରିଲେ ।
ଆନନ୍ଦସାଗରେ ବୁଡ଼ିଲେ ॥୨୧
ସ୍ୱର୍ଗେ ଦେଖନ୍ତି ଦେବତାଏ ।
ରାମଗୋବିନ୍ଦର ବିଜୟେ ॥୨୨
ମଙ୍ଗଳନାଦେ ଅପସରୀ ।
ଦେଖନ୍ତି ଦିଗପାଳେ ମିଳି ॥୨୩
ପବନ ବହଇ ଶୀତଳ ।
ଶୂନ୍ୟେ ଉଡ଼ନ୍ତି ମେଘମାଳ ॥୨୪
ଜନଗହଳ ରାଜପଥେ ।
ଗୋବିନ୍ଦ ଦେଖନ୍ତି ଉଷତେ ॥୨୫
କହନ୍ତି ଏକ ଆରେ ଚାହିଁ ।
କାନ୍ଦି ହୃଦୟେ କର ଦେଇ ॥୨୬
ଦେଖ ଗୋ କଂସର ନିର୍ଦ୍ଦୟେ ।
କି ଦୋଷ କଲେ ବାଳପୋଏ ॥୨୭
ଲୁଚି ଏ ଥିଲେ ନନ୍ଦଘରେ ।
ସୋଦର ମଉଳାର ଡ଼ରେ ॥୨୮
କି ଦୋଷ କଲେ ଏ ତାହାର ।
ଦୁଷ୍ଟ ଦାନବ ଦୁରାଚାର ॥୨୯
ଏହାଙ୍କୁ ଆଣିଅଛି ଧରି ।
ବଳେ ମାରିବ ଘରେ ଭରି ॥୩୦
କେମନ୍ତେ ସହିବଟି ଧର୍ମ ।
ଏହାଙ୍କୁ କରି ଏଡ଼େ କର୍ମ ॥୩୧
ଏ ପୋଏ ଗୋପପୁରେ ଥିଲେ ।
କି ଅପରାଧ ଅବା କଲେ ॥୩୨
ଏହାଙ୍କୁ କରି ପ୍ରାଣେ ନାଶ ।
ଭାଙ୍ଗିବ ଗୋପପୁର ଦେଶ ॥୩୩
ଏହାଙ୍କ କଷ୍ଟ ଦେଖିବାରେ ।
ଚାଲ ନ ଥିବା ଏ ନଗରେ ॥୩୪
ହୃଦୟ ଧରିବା କେମନ୍ତେ ।
ଏହାଙ୍କୁ ନ ଦେଖିଲେ ନେତ୍ରେ ॥୩୫
ଏମନ୍ତ କହି ନରନାରୀ ।
ବିକଳେ ଚାହାନ୍ତି ମୁରାରି ॥୩୬
ହୃଦୟେ ବିଚାରି ବିକଳ ।
ନୟନୁ ବହେ ଅଶ୍ରୁଜଳ ॥୩୭
ରାମଗୋବିନ୍ଦ ଗୋପବାଳେ ।
ମିଳିଲେ କଂସ ରଙ୍ଗଦ୍ୱାରେ ॥୩୮
ଦେଖିଲେ ଦ୍ୱାରେ ଅଛି ଗଜ ।
ମାହୁନ୍ତ ହୋଇଅଛି ସଜ ॥୩୯
କୃଷ୍ଣଙ୍କୁ ଦେଖିଣ ମାହୁନ୍ତ ।
ଆକ୍ରୋଷି ଗଜ ବଳବନ୍ତ ॥୪୦
ଦ୍ୱାର ଆବୋରିଲା ବହନ ।
ମାରିବା ପ୍ରାୟ କୋପମନ ॥୪୧
ସ୍ୱଭାବେ ମତ୍ତ କରୀବର ।
ତେଜେ ପ୍ରଚଣ୍ଡ ମହାଘୋର ॥୪୨
ତାହା ଜାଣିଲେ ଭାବଗ୍ରାହୀ ।
ଗୋପାଳ ପୁଅଙ୍କୁ ରୁହାଇ ॥୪୩
ଦୃଢ଼େ ବାନ୍ଧିଲେ ତାଲୁ ଚୁଳ ।
ସୁନ୍ଦର ଅଳକାକପୋଳ ॥୪୪
ବସନ ବାନ୍ଧି ଆଣ୍ଟ କରି ।
ସଜ ହୋଇଲେ ହଳଧାରୀ ॥୪୫
ମାହୁନ୍ତ କୋପଭର ହୋଇ ।
ଅଳପ ଅଳପ ଟିପଇ ॥୪୬
ହସ୍ତୀ ଟିପଇ ପାଦ ଲଇଁ ।
ଦେଖି ଗୋବିନ୍ଦ ଆଗ ହୋଇ ॥୪୭
ବୋଇଲେ ଆଡ଼ହୁଅ ଭାଇ ।
ମାହୁନ୍ତ ଶୁଣି ନ ଶୁଣଇ ॥୪୮
ଶୁଣ ମାହୁନ୍ତ ମୋ' ଉତ୍ତର ।
ଆମ୍ଭଙ୍କୁ ଛାଡ଼ ରଙ୍ଗଦ୍ୱାର ॥୪୯
ରାଜା ଆମ୍ଭରେ କୋପମନ ।
ବେଗେ କରିବୁ ଦରଦଶନ ॥୫୦

Dr. Sudhanshu Sekhar Mishra

ଦ୍ୱାର ତୁ ଛାଡ଼ ବେଗ ହୋଇ ।
ଉଛୁର ବେଳ ନ ଯୋଗାଇ ॥୫୧
ଶୁଣି ମାହୁନ୍ତ କୋପକଲା ।
କୃଷ୍ଣର ବୋଲ ନ ଶୁଣିଲା ॥୫୨
ହସ୍ତୀର କୁମ୍ଭେ ଦେଇ କର ।
ଦନ୍ତ କରାଇଲା ଉଭାର ॥୫୩
କୃଷ୍ଣ ବୋଇଲେ ମାହୁନ୍ତକୁ ।
ମାରିବା ପ୍ରାୟେ ତ ସଳଖୁ ॥୫୪
ଜୀବନେ ଅଛି ଯେବେ କାର୍ଯ୍ୟ ।
ହସ୍ତୀ ଦୁଆରୁ ନିଅ ଆଜ ॥୫୫
ନୋହିଲେ ଯିବୁ ଯମପୁର ।
ହସ୍ତୀ ହିଁ ସଙ୍ଗତେ ତୋହର ॥୫୬
ଶୁଣି ମାହୁନ୍ତ ପରଜ୍ୱଳି ।
ହସ୍ତୀ ଟିପିଲା ପାଦଚାଳି ॥୫୭
କୃଷ୍ଣଙ୍କୁ ଦେଖି ଗଜ ଧାଇଁ ।
କାଳଦେବତା ପ୍ରାୟ ହୋଇ ॥୫୮
ପବନୁଁ ବେଗେ ଧାଇଁ ଖରେ ।
ଶୁଣ୍ଢ ପିଟିଲା କୃଷ୍ଣଶିରେ ॥୫୯
କେଶ ଧଇଲା ଧାଡିକାର ।
ଛଡ଼ାଇ ଗଲେ ଦାମୋଦର ॥୬୦
ଗୋବିନ୍ଦ ମାୟା ଯୋଗବଳେ ।
ରହିଲେ ହସ୍ତୀ ପେଟତଳେ ॥୬୧
ହସ୍ତୀ ଚାହିଁଇ ଚଉଦିଗେ ।
କୋପେ ଗର୍ଜଇ ଘୋରରଙ୍ଗେ ॥୬୨
ଆଘ୍ରାଣେ କୃଷ୍ଣ ବାସ ପାଇ ।
ପୁଣି ଧଇଲା ଶୁଣ୍ଢେ ନେଇ ॥୬୩
ପୁଣି ଛଡ଼ାଇ ତା'ର କର ।
ପଛେ ମିଳିଲେ ମାୟାଧର ॥୬୪
ହସ୍ତୀର ଲାଞ୍ଜ କରେ ଧରି ।
ପଛକୁ ଆଣିଲେ ଓଟାରି ॥୬୫
ପଚିଶଧନୁ ଯାଏଁ ଟାଣି ।
ରହିଲେ ପ୍ରଭୁ ଚକ୍ରପାଣି ॥୬୬
ସର୍ପର ଲାଞ୍ଜ ତୁଣ୍ଡେ ଭରି ।
ଯେସନେ ଗରୁଡ଼ ଓଟାରି ॥୬୭
ଲାଙ୍ଗୁଳ ଧରି ବନମାଳୀ ।
ବାମଦକ୍ଷିଣ ପାଖେ ଚାଳି ॥୬୮

ଗଜ ଚାହିଁଇ ଦୁଇପାଶେ ।
କୃଷ୍ଣଙ୍କୁ ଧରିବାର ଆଶେ ॥୬୯
ବତ୍ସାଙ୍କ ଲାଞ୍ଜ ପୋଏ ଧରି ।
ଯେମନ୍ତେ ହୋନ୍ତି ଘୂରାଘୂରି ॥୭୦
ଲାଙ୍ଗୁଳ ଛାଡ଼ି ଅତି ଖରେ ।
ଆଗ ହୋଇଲେ ରୋଷଭରେ ॥୭୧
ଚାପୁଡ଼େ ମାରି ହସ୍ତୀ ମୁଣ୍ଡେ ।
କୃଷ୍ଣ ପଳାନ୍ତି ରାଜଦାଣ୍ଡେ ॥୭୨
ପ୍ରଚଣ୍ଡକୋପେ ଖରତର ।
ଦେଖି ଧାଇଁଲା କରୀବର ॥୭୩
ଦେଖନ୍ତି ପୁର ନରନାରୀ ।
ଭୟେ ପଳାନ୍ତି ନରହରି ॥୭୪
ଶିର ଲାଗଇ ଥୋର-ହସ୍ତେ ।
ଲୋକେ ଦେଖନ୍ତି ରାଜପଥେ ॥୭୫
ପାଦର ଘାଏ ଧୂଳି ଉଡ଼ି ।
କୃଷ୍ଣ ପଡ଼ିଲେ ମୁଖ ମାଡ଼ି ॥୭୬
ତକ୍ଷଣେ ହୋଇଲେ ଅନ୍ତର ।
ମାହୁନ୍ତ ବୋଲେ ମାର ମାର ॥୭୭
କୃଷ୍ଣ ପଡ଼ିଲା ପ୍ରାୟ ମଣି ।
ଗଜ ମାଇଲା ଦନ୍ତ ଆଣି ॥୭୮
ଲୋକେ ହୋଇଲେ ହତଜ୍ଞାନ ।
ଡ଼ାକନ୍ତି ରଖ ନାରାୟଣ ॥୭୯
ଏଡ଼େ କରମ କଂସ କଲା ।
କେ ବୋଲେ ଜୀଉଁଜୀଉଁ ମଲା ॥୮୦
ଚାଲ ନ ଥିବା ଏହା ଦେଶେ ।
କଂସକୁ ଗାଳିଦ୍ୟନ୍ତି ରୋଷେ ॥୮୧
ଏମନ୍ତ ବୋଲୁଁ ବୋଲୁଁ ଜନେ ।
ଶ୍ରୀକୃଷ୍ଣ ମିଳିଲେ ବହନେ ॥୮୨
ନୀଳ-ଜୀମୂତ ଦେହ ଝଳି ।
ଝାଳ ଗଳଇ ଲାଗି ଧୂଳି ॥୮୩
ଡାକନ୍ତି ତୋଳି ବେନିକର ।
ହସ୍ତୀରେ ସମ୍ଭାଳ ତୋହର ॥୮୪
ଦେଖି ଚକିତ ନରନାରୀ ।
ଚାପୁଡ଼େ ମାଇଲେ ମୁରାରି ॥୮୫
ପଛେ ଯେ ଥିଲେ ହଳଧର ।
ହସ୍ତୀକି ମାଇଲେ ପଯର ॥୮୬

ଧାମାଇଁ ପଛକୁ ଅନାଇଁ ।
ମୁଠେ ମାଇଲେ କୃଷ୍ଣ ନେଇ ॥୮୭
ଗଜ ଚାହିଁଇ ଆଗପଛ ।
ମାହୁନ୍ତ ଟିପଇ ପ୍ରତ୍ୟକ୍ଷ ॥୮୮
ନ ଯାଇ ଆଗପଛେ ଡ଼ରେ ।
ଗର୍ଜଇ ଅତି କୋପଭରେ ॥୮୯
ମାହୁନ୍ତ ପୁଣି ହିଁ ଟିପଇ ।
ଦେଖି ପଳାନ୍ତି ବେନିଭାଇ ॥୯୦
ଦେଖିଣ ଗଜ କ୍ରୋପଭରେ ।
ଧାଇଁଲା ପବନହୁଁ ଖରେ ॥୯୧
କୃଷ୍ଣର ଶିରେ ଥୋର-ହସ୍ତ ।
ଦେଖି ପଳାନ୍ତି ଗୋପୀନାଥ ॥୯୨
ଧାଇଁଲେ ପବନ ହୁଁ ବେଗେ ।
ଘୂରି କୁମ୍ଭାରଚକ୍ର ମାର୍ଗେ ॥୯୩
ଗୋବିନ୍ଦ ଯୋଗମାୟା ବଳେ ।
ଘୂରାଇ ପକାଇଲେ ତଳେ ॥୯୪
ତଳେ ପଡ଼ନ୍ତେ ପ୍ରାଣଗଲା ।
ତକ୍ଷଣେ ଗୋବିନ୍ଦେ ପଶିଲା ॥୯୫
ଚରଣ ଦେଇ ଗଜମୁଣ୍ଡେ ।
ଦନ୍ତ ଧଇଲେ ଭୁଜଦଣ୍ଡେ ॥୯୬
ବେଗେ ଉପାଡ଼ି ବେନିକରେ ।
ପିଟିଲେ ମାହୁନ୍ତ ଉପରେ ॥୯୭
ମାହୁନ୍ତ ପ୍ରାଣ ବେଗେ ଗଲା ।
ଜୀବନ ଗୋବିନ୍ଦେ ପଶିଲା ॥୯୮
ରାମ ଗୋବିନ୍ଦ ବେନିଭାଇ ।
କନ୍ଧେ ଘେନିଲେ ଦନ୍ତ ଦୁଇ ॥୯୯
ରୁଧିର-ଭୂଷଣ ଶରୀର ।
ଝାଳ ଧୂଳିରେ ଜରଜର ॥୧୦୦
ମୁଖପଙ୍କଜେ ଝାଳ ଶୋଭା ।
କି ଅବା ପଟାନ୍ତର ଦେବା ॥୧୦୧
ଗୋପକୁମରେ ଛନ୍ତି ବେଢ଼ି ।
ପଶିଲେ ରଙ୍ଗଦ୍ୱାର ମାଡ଼ି ॥୧୦୨
କନ୍ଧେ ପକାଇ ଗଜଦନ୍ତ ।
ମିଳିଲେ ରାମ-ଗୋପୀନାଥ ॥୧୦୩
ଲୋକେ ପଶିଲେ ବଳୀୟାରେ ।
କେ ବେଗେ ଉଠିଲେ ବୃକ୍ଷରେ ॥୧୦୪

Dr. Sudhanshu Sekhar Mishra

ଜଗତୀ ଅଟ୍ଟାଳୀ ଆରୋହି ।
ଦେଖନ୍ତି ରାମକୃଷ୍ଣ ଦୁଇ ॥୧୦୫
ରଙ୍ଗସଭାରେ ଯେତେ ଲୋକେ ।
କେତେ କହିବା ଏକେ ଏକେ॥୧୦୬
ମାଲେ ଯେ ଥିଲେ ମଞ୍ଚାତଳେ ।
ରାମକୃଷ୍ଣଙ୍କୁ ଅନାଇଲେ ॥୧୦୭
ବଜ୍ର ପଡ଼ିଲା ପ୍ରାୟେ ଦେଖି ।
ଭୟେ ବୁଜିଲେ ବେନି ଆଖି ॥୧୦୮
ଯେତେ ଅଛନ୍ତି ପୁରନର ।
ତାହାଙ୍କୁ ଦିଶନ୍ତି ସୁନ୍ଦର ॥୧୦୯
କାମିନୀ-ଲୋଚନେ ଅନଙ୍ଗ ।
ଗୋପାଳ ପୋଏ ବାଳଅଙ୍ଗ ॥୧୧୦
ଅସୁର-ନୃପତିଙ୍କି କାଳ ।
ମାତାପିତାଙ୍କୁ ବେନିବାଳ ॥୧୧୧
କଂସକୁ ଦିଶେ ଯମ ପ୍ରାୟ ।
ଜ୍ଞାନୀଜନଙ୍କୁ ଜ୍ଞାନମୟ ॥୧୧୨
ଯୋଗୀଙ୍କ ନେତ୍ରେ ଜ୍ଞାନତତ୍ତ୍ୱ ।
ବୃଷ୍ଣିବଂଶକୁ ଦଇବତ ॥୧୧୩
ଏମନ୍ତେ ରାମକୃଷ୍ଣ ରୂପ ।
ଦିଶନ୍ତି ଯାହାକୁ ଯେ ରୂପ ॥୧୧୪
ସଭାର ତଳେ ବେନିଭାଇ ।
ଆକାଶେ ଦେବେ ଛନ୍ତି ଚାହିଁ॥୧୧୫
ବ୍ରହ୍ମା ଶଙ୍କର ଇନ୍ଦ୍ରମୂଳେ ।
ତେତିଶକୋଟି ଦେବ ବଳେ ॥୧୧୬
ଶୂନ୍ୟେ ଦେଖନ୍ତି ରାମହରି ।
ଗନ୍ଧର୍ବଗଣ-ଦେବନାରୀ ॥୧୧୭
କଂସ ଚାହିଁଲା ବେନିଭାଇ ।
ଭୟେ କମ୍ପଇ ତାର ଦେହୀ ॥୧୧୮
ଗଜ-ମାହୁନ୍ତ ଦ୍ୱାରେ ମାରି ।
ଦନ୍ତ ଅଛନ୍ତି କରେ ଧରି ॥୧୧୯
ନିଶ୍ଚୟ ମରଣ ହୋଇଲା ।
ଏମନ୍ତ ମନେ ବିଚାରିଲା ॥୧୨୦
କାତରେ କମ୍ପଇ ଶରୀର ।
ବଦନୁଁ ନ ଇଲା ଉତର ॥୧୨୧
ରଙ୍ଗସଭାର ତଳେ ଥାଇ ।
ରାମଗୋବିନ୍ଦ ବେନିଭାଇ ॥୧୨୨

ନାନା ବିଚିତ୍ର ବେଶ ହୋଇ ।
ଯେସନେ ନଟବର ଦୁଇ ॥୧୨୩
ଦେଖନ୍ତା ପ୍ରାଣୀଙ୍କର ମନ ।
ମୋହିଲେ ରାମ-ଭଗବାନ ॥୧୨୪
ମଞ୍ଚାରେ ଯେତେ ରାଜାଗଣେ।
ଗ୍ରାମ ପାଟଣା ପୁରଜନେ ॥୧୨୫
ହରଷ ବଶେ ଚକ୍ଷୁ ଫେଇ ।
ଦେଖନ୍ତି ରାମକୃଷ୍ଣ ଦୁଇ ॥୧୨୬
ଚକୋର ଦେଖି ଚନ୍ଦ୍ର ଯେହ୍ନେ ।
ତେସନେ ପିବନ୍ତି ନୟନେ ॥୧୨୭
ତୋଷ ନୋହିଲେ ମୁଖ ଚାହିଁ ।
ଚାହାନ୍ତେ ପିଆ ନଚଳଇ ॥୧୨୮
ପିଇବା ପ୍ରାୟେ ଚକ୍ଷୁଦ୍ୱାରେ ।
ଜିହ୍ୱା କି ଲିହିବ ଶରୀରେ ॥୧୨୯
ଆଘ୍ରାଣ କରି ନାସାଦ୍ୱାରେ ।
ଆଣି ଭିଡ଼ିବେ ବେନିକରେ ॥୧୩୦
ଏମନ୍ତ ହୋଇ ଉଦ୍‌ବେଗ ।
ଅଗ୍ନି କି ଯେସନେ ପତଙ୍ଗ ॥୧୩୧
ଯେମନ୍ତେ ଶୁଣୁଥିଲେ କର୍ଣ୍ଣେ ।
ପ୍ରତ୍ୟକ୍ଷ ଦେଖିଲେ ନୟନେ ॥୧୩୨
କୃଷ୍ଣର ରୂପ ଗୁଣମାନ ।
ଦେଖି ପାଇଲେ ଦିବ୍ୟଜ୍ଞାନ ॥୧୩୩
ଏକକୁ ଆରେକ ଅନାଇଁ ।
ବୋଲନ୍ତି ଅଙ୍ଗୁଳି ଦେଖାଇ ॥୧୩୪
ଏ ବେନି ବସୁଦେବ ସୁତେ ।
ଭାରା ନିବାରିବା ନିମନ୍ତେ ॥୧୩୫
ବିଷ୍ଣୁର ଅଂଶେ ଜାତ ହୋଇ ।
ନୀଳ ଧବଳ ରୂପ ଦୁଇ ॥୧୩୬
ଦେଖ ଏ କୃଷ୍ଣଦେହ କଳା ।
ଦେବକୀଗର୍ଭେ ଉପୁଜିଲା ॥୧୩୭
ଏହାକୁ ବସୁଦେବ ନେଇ ।
ଗୋପରେ ଅଇଲା ଲୁଚାଇ ॥୧୩୮
ବଢ଼ିଲେ ନନ୍ଦର ଭୁବନେ ।
ଏହି ବାଳକ ତିନିଦିନେ ॥୧୩୯
ଶୋଷିଲା ପୂତନା ପରାଣ ।
ଭାଙ୍ଗିଲା ଯାମଳା ଅର୍ଜୁନ ॥୧୪୦

ପାଦେ ଶକଟା କଲା ଚୂର ।
ନାଶିଲା ତୃଣାବର୍ତ୍ତ ବୀର ॥୧୪୧
ଅଘା ଧେନୁକା ବକ କେଶୀ ।
ବତ୍ସା ମାୟାବୀ ଷଣ୍ଢା ନାଶି ॥୧୪୨
କାଳୀୟ ଘଉଡ଼ିଲା ବଳେ ।
ଅମୃତ କଲା ବିଷଜଳେ ॥୧୪୩
ଗୋରୁମହିଷ ଗୋପଶିରୀ ।
ବନଅନଳୁ ଅଛି ତାରି ॥୧୪୪
ଇନ୍ଦ୍ରର ଦର୍ପ କଲା ଚୂର ।
କରେ ତୋଳିଲା ଗିରୀର ॥୧୪୫
ସପତ ଦିନ ବରଷିଲା ।
ଏହାର କରେ ଗିରି ଥିଲା ॥୧୪୬
ଗୋପୀଏ ଚାହିଁ ଏହା ମୁଖ ।
ଖଣ୍ଡିଲେ ଜନ୍ମବନ୍ଧ-ଦୁଃଖ ॥୧୪୭
ଯାଦବବଂଶ ଏ ରଖିବ ।
ଅବନୀଭାରା ଉଶ୍ୱାସିବ ॥୧୪୮
ଦେଖ ଏ ରୋହିଣୀକୁମର ।
କୋଟିଏ କାମ ପଟାନ୍ତର ॥୧୪୯
ଆଗେ ହୋଇଲେ ଗୋପେଜାତ ।
ଏହାଙ୍କ ବଳ ଅପ୍ରମିତ ॥୧୫୦
ଯୁଦ୍ଧେ ପ୍ରଳମ୍ବା ନାଶ କଲା ।
ବତ୍ସା ଧେନୁକା ସଂହାରିଲା ॥୧୫୧
ଏମନ୍ତ କହୁଁ କହୁଁ ଜନ ।
ବାଜିଲା ବୀରତୂର ମାନ ॥୧୫୨
ମାଲେ ଯେ ଥିଲେ ସଭାତଳେ ।
କୃଷ୍ଣର ନିକଟେ ମିଳିଲେ ॥୧୫୩
ଚାଣୂର ବୀର ଆଗ ହୋଇ ।
ବୋଲଇ କୃଷ୍ଣମୁଖ ଚାହିଁ ॥୧୫୪
ତୁ ପରା ଥିଲୁ ନନ୍ଦଘରେ ।
ରୋହିଣୀସୁତ ସଙ୍ଗତରେ ॥୧୫୫
ତୁମ୍ଭେ ଯେ ରାମବନମାଳୀ ।
ବୋଲଅ ବାହୁଯୁଦ୍ଧେ ବଳୀ ॥୧୫୬
ରାଜା ତୁମ୍ଭର କଥା ଶୁଣି ।
ଯୁଦ୍ଧର ପାଇଁ ଅଛି ଆଣି ॥୧୫୭
ଦେଖିବେ ଯୁଦ୍ଧକଉତୁକ ।
ରାଜାଏ ଅଛନ୍ତି ଅନେକ ॥୧୫୮

Dr. Sudhanshu Sekhar Mishra

ପ୍ରଜାଏ ରାଜାଙ୍କୁ ମନାଇଁ ।
ଭୋଗ କରନ୍ତି ସୁଖେ ମହୀ ॥୧୫୯
ରାଜାର ସମୀପେ ବସନ୍ତି ।
ଧନ୍ୟ ଇହଲୋକେ ବୋଲାନ୍ତି ॥୧୬୦
ରାଜାର ନୁହଁନ୍ତି ଯେ ପ୍ରିୟ ।
ତାହାଙ୍କ ସୁଖ କାହିଁ କହ ॥୧୬୧
ତୁମ୍ଭେ ଯେ ଗୋପାଳଙ୍କ ମେଳେ ।
ଗୋରୁ ଚରାଅ ନଦୀକୂଳେ ॥୧୬୨
ଦେହରେ ଘଷି ରଙ୍ଗମାଟି ।
ଲଲାଟେ ଗୁଞ୍ଜାରାର ପାଟି ॥୧୬୩
ଏକ ଆରକେ ବାହୁବଳେ ।
ମାଲ ବିନ୍ଧାଣ କୁତୂହଳେ ॥୧୬୪
ବାଳକ କାଳୁଁ ସାଧୁଅଛ ।
ଏବେ ତ ପ୍ରତ୍ୟକ୍ଷ ଦିଶୁଛ ॥୧୬୫
ତେଣୁ ତୁମ୍ଭର ସଙ୍ଗେ ଆମ୍ଭେ ।
ବିନ୍ଧାଣ କରିବା ଆରମ୍ଭେ ॥୧୬୬
ଯେତେ ଅଛନ୍ତି ରାଜାଗଣେ ।
ଗ୍ରାମ ପାଟଣା ପୁରଜନେ ॥୧୬୭
ସକଳେ ହୋଇବେ ପ୍ରସନ୍ନ ।
ତୋଷିବା କଂସରାଜା ମନ ॥୧୬୮
ମାଲଙ୍କ ଟାଣକଥା ଶୁଣି ।
କହନ୍ତି ପ୍ରଭୁ ଚକ୍ରପାଣି ॥୧୬୯
ଉଚିତବାଣୀ ଦେଶକାଳ ।
କହନ୍ତି ମଦନଗୋପାଳ ॥୧୭୦
ଯୁଦ୍ଧ ହିଁ ଇଚ୍ଛା ଆପଣାର ।
କହନ୍ତି ମନୁଷ୍ୟବେଭାର ॥୧୭୧
ଶୁଣ ଚାଣୁର ବୀରମଣି ।
ଉଚିତ ପ୍ରସ୍ତାବ ତୋ' ବାଣୀ ॥୧୭୨
ସ୍ୱଭାବେ ଆମ୍ଭେ ବନଲୋକ ।
ନ ଜାଣୁ ଯୁଦ୍ଧ କଉତୁକ ॥୧୭୩

ଧନ ଗୋରସ ଦେଇ ଖଟୁ ।
ରାଜା ଭଣଜା ଆମ୍ଭେ ଅଟୁ ॥୧୭୪
ଅଳପେ କରଇ ସଦୟ ।
ଆମ୍ଭ ମଉଳା କଂସରାୟ ॥୧୭୫
ବାଲ୍ୟତ୍ୱ ପୁଅଙ୍କର ମେଳେ ।
ଖେଳୁ କାନନ ନଦୀକୂଳେ ॥୧୭୬
ନାନା ଭିଆଣେ ଖେଳ ଖେଳି ।
ବନସ୍ତେ ଚରାଉଁ ବାଛୁରୀ ॥୧୭୭
ପୁଅଙ୍କ ଖେଳର ଉଚିତ ।
ଆମ୍ଭର ଯୁଦ୍ଧ ସେହିମତ ॥୧୭୮
ଏ ତ ନୁହଁଇ ଖେଳମୟେ ।
ତୁମ୍ଭେ ଯେ ପର୍ବତପରାୟେ ॥୧୭୯
ତୁମ୍ଭର ପ୍ରାୟ ଯେବେ ହୋଇ ।
ତେବେ ସେ ସଂଗ୍ରାମ ଯୋଗାଇ॥୧୮୦
ବାଳକ ଆମ୍ଭେ ବାଳମେଳେ ।
ଯୁଝିବୁ ରଙ୍ଗ-କୁତୂହଳେ ॥୧୮୧
ତୁମ୍ଭର ତୁଲେ ଯୁଦ୍ଧ କାହିଁ ।
ଏ କଥା ଉଚିତ ନୁହଁଇ ॥୧୮୨
ଅଧର୍ମ ହୋଇବଟି ଭଲେ ।
ତୁମ୍ଭେ ଯୁଝିଲେ ଆମ୍ଭ ତୁଲେ ॥୧୮୩
ସଭାକୁ ହୋଇବ ଧିକ୍କାର ।
ତା ଶୁଣି ହସଇ ଚାଣୂର ॥୧୮୪
ବୋଲଇ ପରୁଷ ବଚନ ।
କରାଇ କଂସ ସାବଧାନ ॥୧୮୫
ତୁମ୍ଭେ ଯେ ବାଳକ ବୋଲାଅ ।
କହିଲେ ଲଜ୍ଜା ହିଁ ନ ପାଅ ॥୧୮୬
ବାଳକୁମର ନୁହଁ ଯୁବା ।
ତୁମ୍ଭର ମହିମା କହିବା ॥୧୮୭
ଏଯେ ତୋହର ଜ୍ୟେଷ୍ଠ ରାମ ।
ବଳେ ତ ନାହିଁ ସରିସମ ॥୧୮୮

ସହସ୍ରେ ମତ୍ତଗଜ ଦେହା ।
ବଳ ବହଇ କୁବଳୟା ॥୧୮୯
ତାହାକୁ ଲୀଳାଏ ମାଇଲ ।
ଇଷିତେ ଦନ୍ତ ଉପାଡ଼ିଲ ॥୧୯୦
ରଜକ ମାରି ବାମକରେ ।
ଧନୁ ଭାଙ୍ଗିଲ ବଳାତ୍କାରେ ॥୧୯୧
ତୁମ୍ଭ ମହିମା ସର୍ବଜନେ ।
ଭଲେ ଜାଣନ୍ତି ତ୍ରିଭୁବନେ ॥୧୯୨
ଏମନ୍ତ ନ କହନା ଆର ।
ମୁଷ୍ଟିକ ବୋଲେ ଧରଧର ॥୧୯୩
ଅଧର କାମୁଡ଼ି ଚାଣୂର ।
ବୋଇଲା ରାମକୁ ତୁ ଧର ॥୧୯୪
କୃଷ୍ଣର ତୁଲେ ଯୁଦ୍ଧ ମୋର ।
ଏ ଯେ ବୋଲାଇ ବଳୀୟାର॥୧୯୫
ମୁଷ୍ଟିକ ରାମ ଆଗେ ରହି ।
କୋପେ ଅଧର କାମୋଡ଼ଇ ॥୧୯୬
କହଇ ଦାସ ଜଗନ୍ନାଥ ।
ଚାଣୂର ଧରି ଗୋପୀନାଥ ॥୧୯୭
ମୁଷ୍ଟିକ ରାମଙ୍କୁ ଧଇଲା ।
ସେଠାରେ ମନ ମୋ' ରହିଲା॥୧୯୮
ଦେଖ ହୋ ଗୋବିନ୍ଦର ରଣ ।
ସୁଜନେ ପଶିବା ଶରଣ ॥୧୯୯
ବାଳକ ସଙ୍ଗେ ଯୁଦ୍ଧ କରି ।
ଦେଖନ୍ତି ପୁରନରନାରୀ ॥୨୦୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
କୁବଳୟାପୀଡ଼ବଧୋ ନାମ
ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ବୀରରସ ।
କଂସ ଯେ ହୋଇଲା ହରଷ ॥୧
ରାମ ମୁଷ୍ଟିକ ଧରାଧରି ।
ଚାଣୂର ସଙ୍ଗେ ନରହରି ॥୨
ହସ୍ତଚରଣ ଛନ୍ଦାଛନ୍ଦି ।
ଗଜକୁ ଯେହ୍ନେ ଗଜବାନ୍ଧି ॥୩
ଏକ ଆରକେ ବଳୀୟାର ।
ମୁଷ୍ଟିକି ମୁଷ୍ଟି ପଡ଼ିତାଳ ॥୪
ଦେହୁ ଗଳଇ ଶ୍ରମଝାଳ ।
କେ ପଡ଼େ ଉପରେ କେ ତଳ ॥୫
ଜାନୁରେ ଜାନୁ ପରିବନ୍ଧ ।
କୋପେ କରନ୍ତି ବୀରନାଦ ॥୬
ମୁଣ୍ଡକୁ ମୁଣ୍ଡ ମରାମରି ।
ହୃଦରେ ହୃଦ ଭିଡ଼ାଭିଡ଼ି ॥୭
ଧରି ଘୁରାଇ ପୁଣି ଛାଡ଼ି ।
ପୁଣି ବସନ୍ତି ବେଗେ ମାଡ଼ି ॥୮
ପୁଣି ଛାଡ଼ିଣ ପଛଘୁଞ୍ଚି ।
ଧରନ୍ତି ବେଗେ ବଳ ଆଞ୍ଚି ॥୯
ଏକ ଆରକେ ଧରି ବେଗେ ।
ଗର୍ଜି ପଡ଼ନ୍ତି ଭୂମିଭାଗେ ॥୧୦
ପେଲି ପକାଇ ପୁଣି ଉଠି ।
ହୃଦେ ତାଡ଼ନ୍ତି ବଜ୍ରମୁଷ୍ଟି ॥୧୧
ପୁଣି ଧରନ୍ତି ତଳେ ମାଡ଼ି ।
ମୁଣ୍ଡକୁ ମୁଣ୍ଡ କୋଡ଼ାକୋଡ଼ି ॥୧୨
ରୁଧିର ବହେ ତାଳୁ ଫାଟି ।
ଦେହକୁ ଦେହ ପିଟାପିଟି ॥୧୩
ପର୍ବତ ପ୍ରାୟ ବେନି ମାଲେ ।
ଯୁଝନ୍ତି ରାମକୃଷ୍ଣ ତୁଲେ ॥୧୪
ଦେଖି ବୋଲନ୍ତି ନରନାରୀ ।
ଅନ୍ୟାୟ କଲା ଦଣ୍ଡଧାରୀ ॥୧୫
ବାଳକ ରାମକୃଷ୍ଣ ଦୁଇ ।
ମାଲଙ୍କ ସଙ୍ଗତେ ଯୁଝାଇ ॥୧୬
କେମନ୍ତେ ଦେଖୁଅଛି ଏହା ।
ହୃଦ୍‌ରେ ନ ବସଇ ଦୟା ॥୧୭
ମରାଇ ବାଳୁତ ପୁଅଙ୍କୁ ।
ଧର୍ମ କି ସହିବ ଏହାକୁ ॥୧୮
ସଭାରେ ବସି ବଡ଼ଲୋକେ ।
ଅଧର୍ମ କରୁଛନ୍ତି ଥୋକେ ॥୧୯
ସକଳେ କଂସ-ପ୍ରିୟକାରୀ ।
ଧର୍ମ ଅଧର୍ମ ନ ବିଚାରି ॥୨୦
ଯୁଦ୍ଧେ କେ ଅବା ବଳୀୟାର ।
ଏହା ନ କରନ୍ତି ବିଚାର ॥୨୧
ପର୍ବତପ୍ରାୟ ବେନିମାଲ ।
ବଜ୍ର-ଶରୀର ଏହାଙ୍କର ॥୨୨
ବାଳକ ପୁଅଙ୍କୁ ଅନାଅ ।
ଅତି ହିଁ ସୁକୁମାର ଦେହ ॥୨୩
ଏହା ସଭାରେ ଧର୍ମ ନାହିଁ ।
ଏଠାରେ ଥିବା ନ ଯୋଗାଇ ॥୨୪
ମୁନିଏ କହିଛନ୍ତି ପୂର୍ବେ ।
ବେଦ ପୁରାଣର ପ୍ରସ୍ତାବେ ॥୨୫
ଅଧର୍ମ-କୁଟସଭା ଯହିଁ ।
ପଣ୍ଡିତେ ନ ବସିବେ ତହିଁ ॥୨୬
ସଭାର ଦୋଷ ଯେ ଜାଣନ୍ତି ।
ବିଚାରି ପ୍ରବେଶ ନୁହନ୍ତି ॥୨୭
ଜାଣିଣ ଯେହୁ ପକ୍ଷ କହି ।
ନରକେ ପଡ଼ନ୍ତି ସେ ଯାଇ ॥୨୮
ଏମନ୍ତ ରାମକୃଷ୍ଣ ତୁଲେ ।
ସମର କରୁଛନ୍ତି ମାଲେ ॥୨୯
ଏକ ଆରକେ ଛିଦ୍ର ଟାକି ।
ନିଷ୍ଫଳ କରୁଛନ୍ତି ଆଖି ॥୩୦
ରାମଗୋବିନ୍ଦେ ଲୋକେ ଚାହିଁ ।
କହନ୍ତି ଅଙ୍ଗୁଳି ଦେଖାଇ ॥୩୧
ଦେଖ ଏ କୃଷ୍ଣର ବଦନ ।
ଗଳୁଛି ଝାଳକଣା ମାନ ॥୩୨
ଫୁଟିଲା ପଦ୍ମକୋଷ କିସେ ।
ଜଳ ସିଞ୍ଚିଲା ପ୍ରାୟ ଦିଶେ ॥୩୩
ଦେଖ ଏ ରାମର ବଦନ ।
ତମ୍ବାର ପ୍ରାୟେକ ଲୋଚନ ॥୩୪
ଏ ବେନି ଲୋଚନ ବଦନ ।
ଅଳପହାସେ ଶୋଭାବନ ॥୩୫
ଧନ୍ୟ ସେ ବ୍ରଜଭୂମି ଦେଶ ।
ପୁଣ୍ୟ ସେ କଲା ଗୋ ଅଶେଷ ॥୩୬
ମାୟା ମନୁଷ୍ୟ ରୂପ ଧରି ।
ଯହିଁ ବୁଲନ୍ତି ରାମହରି ॥୩୭
ଚିତ୍ର-ବିଚିତ୍ର ବନମାଳେ ।
ଗୋପାଳ ପୁଅଙ୍କର ମେଳେ ॥୩୮
ଗାଈ ଚରାଇ ବେଣୁସ୍ୱନେ ।
ପାଦେ ବୁଲନ୍ତି ବନେ ବନେ ॥୩୯
ଧ୍ୱଜ ଅଙ୍କୁଶ ଚିହ୍ନ ପାଦେ ।
ଶଙ୍କର ପୂଜନ୍ତି ଆନନ୍ଦେ ॥୪୦
ନନ୍ଦର ବ୍ରଜେ ଗୋପନାରୀ ।
ଅନେକ ଛନ୍ତି ତପକରି ॥୪୧
ଅପୂର୍ବ ରୂପ ଏହାଙ୍କର ।
ଦେଖି ତେଜିଲେ ଘରଦ୍ୱାର ॥୪୨
ପିବନ୍ତି ଚକ୍ଷୁଦ୍ୱାରେ ରୂପ ।
ଅଜ୍ଞାନୀଜନେ କରେ ତାପ ॥୪୩
ଦୋହନେ ମନ୍ଥନେ ରନ୍ଧନେ ।
ଲେପନେ ଦୋଳା ଅବଧାନେ ॥୪୪
ଅଗଣା ପିଣ୍ଡା ଛେରା ଦେଇ ।
ଯେତେ ବ୍ୟାପାର ଗୃହେ ଥାଇ ॥୪୫
ଏହାଙ୍କ ନାମ ଗାଇ ତୁଣ୍ଡେ ।
ଗୋପୀଏ ହାଟ ରାଜଦାଣ୍ଡେ ॥୪୬
ଏହାଙ୍କ ପାଦେ ଚିତ୍ତ ଦେଇ ।
ସୁସ୍ୱର କଣ୍ଠେ ଗୀତ ଗାଇ ॥୪୭

Dr. Sudhanshu Sekhar Mishra

ଧନ୍ୟ ତାହାଙ୍କର ଜୀବନ ।
କୃଷ୍ଣହୁଁ ନ ଜାଣନ୍ତି ଆନ ॥୪୮
ଗୋରୁ ଚରାଇ ବୃନ୍ଦାବନେ ।
ଏ ଯେ ଆସନ୍ତି ରାତ୍ରମାନେ ॥୪୯
ଯିବାର ବେଳେ ବେଣୁଗୀତ ।
ଶୁଣି ହୁଅନ୍ତି ମୂରୁଛିତ ॥୫୦
ଘରୁ ବାହାର ହୋଇ ଦେଖି ।
ନିର୍ମଳ କରୁଥା'ନ୍ତି ଆଖି ॥୫୧
ଏମନ୍ତ ବୋଲୁଁ ବୋଲୁଁ ଜନେ ।
କୋପ ବସିଲା କୃଷ୍ଣମନେ ॥୫୨
ମଞ୍ଚାରେ ବସି ତାତମାତ ।
ତାଡ଼ନ୍ତି ନିଜ ଶିରେ ହସ୍ତ ॥୫୩
ଦଇବ କରିଅଛି ଏହା ।
ଆମ୍ଭରେ ନାହିଁ ତା'ର ଦୟା ॥୫୪
ନନ୍ଦର ଘରେ ଲୁଚାଇଲୁ ।
ଏବେ କଂସର ମୁଖେ ଦେଲୁ ॥୫୫
ବିଧାତା ଦେଉଛି କଷଣ ।
ଦେଖିବୁ ପୁତ୍ରଙ୍କ ମରଣ ॥୫୬
ଦେବକୀ ପୁତ୍ରମୁଖ ଚାହିଁ ।
ବେନିନୟନୁ ଅଶ୍ରୁବହି ॥୫୭
ବୁଡ଼ିଲା ମହାଶୋକଜଳେ ।
ଧରିଛି ବସୁଦେବ କୋଳେ ॥୫୮
ମନୁଷ୍ୟ ମଣି କଲେ ଭ୍ରାନ୍ତି ।
ପୁତ୍ରଙ୍କ ବଳ ନ ଜାଣନ୍ତି ॥୫୯
ମାଲଙ୍କ ତୁଲେ ବେନିବାଳେ ।
ଯୁଦ୍ଧ କରନ୍ତି କୁତୂହଳେ ॥୬୦
କୃଷ୍ଣର ମୁଷ୍ଟିବଜ୍ରପ୍ରାୟ ।
କମ୍ପଇ ଚାଣୂରର କାୟ ॥୬୧
ମୂର୍ଚ୍ଛିତ ହୋଇ ମହାବଳୀ ।
ମୁଖରୁ ରୁଧିର ନିକିଳି ॥୬୨
ପୁଣି ଉଠିଲା ଜ୍ଞାନ ପାଇ ।
ଧାଇଁଲା ମୁଥେକ ଉଞ୍ଚାଇ ॥୬୩
କୃଷ୍ଣର ହୃଦରେ ପ୍ରହାରି ।
ଗର୍ଜଇ ବାହାନାଦ କରି ॥୬୪

ଚାଣୂର ମୁଷ୍ଟି ପଡ଼ି ହୃଦେ ।
ଗୋବିନ୍ଦ ନ ଘୁଞ୍ଚିଲେ ପାଦେ ॥୬୫
ଫୁଲମଣ୍ଡାଏ କରେ ଧରି ।
ଗଜ ଶରୀରେ ଯେହ୍ନେ ମାରି ॥୬୬
ଚାଣୂର କର କୃଷ୍ଣ ଧରି ।
ବୁଲାଇ ଅନ୍ତରାଳ କରି ॥୬୭
ଭୂମିରେ ପାଡ଼ିଲେ ତକ୍ଷଣ ।
ଚାଣୂର ଛାଡ଼ିଲା ଜୀବନ ॥୬୮
ଇନ୍ଦ୍ରଧ୍ୱଜର ପ୍ରାୟେ ପଡ଼ି ।
ଗୋବିନ୍ଦ କଲେ ସିଂହରଡ଼ି ॥୬୯
ଉଠିଲେ ଚାଣୂର ଉପରେ ।
ଅଳପ କେଶ ଧରି କରେ ॥୭୦
କୃଷ୍ଣଙ୍କୁ ଚାହିଁ ବଳରାମ ।
ଦେହେ ବସିଲା ଗରୁତମ ॥୭୧
ବଜ୍ରମୁଷ୍ଟିଏ ପ୍ରହାରିଲେ ।
ମୁଷ୍ଟିକ ମୁଣ୍ଡ ଚୂର କଲେ ॥୭୨
ମୁଖରୁ ରୁଧିର ଗଳଇ ।
ପଡ଼ିଲା ମୃତପିଣ୍ଡ ହୋଇ ॥୭୩
ପବନଘାତେ ମହାବୃକ୍ଷ ।
ଯେସନେ ପଡ଼ଇ ପ୍ରତ୍ୟକ୍ଷ ॥୭୪
ମାଲେକ କୂଟ ନାମେ ଥିଲା ।
ରାମର ନିକଟେ ମିଳିଲା ॥୭୫
ବାମମୁଷ୍ଟିରେ ମୁଣ୍ଡ ଚୂର ।
ପଡ଼ିଲା କରି ନାଦଘୋର ॥୭୬
ଶଳ ତୋଶଳ ମାଲ ଦୁଇ ।
ମିଳିଲେ କୃଷ୍ଣପାଶେ ଯାଇ ॥୭୭
ପାଦ ପ୍ରହାରନ୍ତେ ମୁରାରି ।
ମାଲେ ପଡ଼ିଲେ ନାଦ କରି ॥୭୮
ଆଉ ଯେତେକ ମାଲେ ଥିଲେ ।
ରଣ ଉପେକ୍ଷି ପଳାଇଲେ ॥୭୯
ମାଲେ ପଳାନ୍ତେ ବେନିଭାଇ ।
ଡ଼ାକନ୍ତି ପଳାଅ କିପାଁଇଁ ॥୮୦
ଗୋପକୁମରେ ଥିଲେ ସଙ୍ଗେ ।
ମିଳିଲେ ରାମକୃଷ୍ଣ ଆଗେ ॥୮୧

ମାଲ ବିନ୍ଧାଣ ଗରୁତର ।
ଭୂମି କମ୍ପଇ ଥରହର ॥୮୨
କୃଷ୍ଣର ମାଲଯୁଦ୍ଧ ଦେଖି ।
ଅସୁରେ ଚାହାଁନ୍ତି ନିରେଖି ॥୮୩
କୃତାନ୍ତ ପ୍ରାୟ ରୂପ ଦେଖି ।
ଡ଼ରେ ବୁଜିଲେ ବେନିଆଖି ॥୮୪
କମ୍ପଇ କଂସର ଶରୀର ।
ଦେଖି ହରଷ ସୁରନର ॥୮୫
ବୋଲନ୍ତି କୃଷ୍ଣ ସାଧୁ ସାଧୁ ।
ତରିଲେ ମାଲଙ୍କ ପ୍ରମାଦୁ ॥୮୬
ନୂପୁର କୃଷ୍ଣଙ୍କ ଚରଣ ।
ଚାଲନ୍ତେ ବାଜେ ରୁଣଝୁଣ ॥୮୭
ଶୁଭଇ ବୀରତୂର ଧ୍ୱନି ।
ସ୍ତୁତି କରନ୍ତି ସୁରମୁନି ॥୮୮
ପଡ଼ି ଅଛନ୍ତି ପଞ୍ଚମାଲେ ।
ସକଳେ ଭୟେ ପଳାଇଲେ ॥୮୯
ଦେଖିଣ ଉଗ୍ରସେନବଳା ।
ବାଦ୍ୟଶବଦ ରୁହାଇଲା ॥୯୦
କୋପେ ବୋଲଇ ଶିର ଝୁଣି ।
କରେ ଖଡଗ ଅଛି ଘେନି ॥୯୧
ଭୃତ୍ୟଙ୍କୁ ବୋଲଇ ବଚନ ।
ମାରରେ ଗୋପପୁର ଜନ ॥୯୨
ବସୁଦେବର ପୁତ୍ର ଦୁଇ ।
ରାଜ୍ୟ ବାହାରେ ଛାଡ଼ ନେଇ ॥୯୩
ନନ୍ଦସମ୍ପଦ ଗୋପପୁର ।
ବହନ କର ଯାଇ ଚୂର ॥୯୪
ନନ୍ଦ-ବସୁଦେବଙ୍କୁ ନିଅ ।
ଶିର ଛେଦିଣ ଶୂଳି ଦିଅ ॥୯୫
ଦେବକୀ ଉଗ୍ରେସେନ ମୂଳେ ।
ଚାରିହେଁ ବସିଥିବେ ଶୂଳେ ॥୯୬
ରାମକୃଷ୍ଣଙ୍କୁ ଧରି ନିଅ ।
ତାହାଙ୍କ ମରଣ ଦେଖାଅ ॥୯୭
ଶିର ଛେଦିବ ଏହାଙ୍କର ।
ତେବେ ସେ ଶତ୍ରୁଯିବେ ମୋର ॥୯୮

Dr. Sudhanshu Sekhar Mishra

ଯେତେ ଗୋପାଳପୁଅ ସଙ୍ଗେ ।
ହାଣି ପକାଅ ନେଇ ବେଗେ ॥୯୯
ଏମନ୍ତ କଂସମୁଖୁଁ ଶୁଣି ।
କୋପେ ଚାହିଁଲେ ଚକ୍ରପାଣି ॥୧୦୦
ବୋଇଲେ ପ୍ରଳାପ ଉତ୍ତର ।
କେତେରେ କହୁଛୁ ଅସୁର ॥୧୦୧
ଏଥି ସଙ୍ଗତେ ତୋ'ର ମୃତ୍ୟୁ ।
ଯାହା କହିଛି କୁଶକେତୁ ॥୧୦୨
ମରଣକାଳେ ପ୍ରାଣୀଙ୍କର ।
ଯେସନ ପ୍ରଳାପ ଉତ୍ତର ॥୧୦୩
ଜୀବନ ଯିବାର ନିକଟ ।
କିପାଁ ତୁ ହେଉ ଛଟପଟ ॥୧୦୪
ଯେତେ ଦିନକୁ ଥିଲା ଯୋଗ ।
ଅମୂଲ୍ୟରତ୍ନ କଲୁ ଭୋଗ ॥୧୦୫
ଈଶ୍ୱରେ ନିନ୍ଦିଲୁ ପାପିଷ୍ଠ ।
ତହିଁର ଫଳେ ମୃତ୍ୟୁକଷ୍ଟ ॥୧୦୬
କଂସର ମର୍ମକଥାମାନ ।
କହି ଚଳିଲେ ଭଗବାନ ॥୧୦୭
କଂସର ମଞ୍ଚାରେ ଉଠିଲେ ।
ସ୍ୱର୍ଗେ ଦେବତାଗଣ ଥିଲେ ॥୧୦୮
ଦେଖି କରନ୍ତି ଜୟ ଜୟ ।
ଅବନୀ ହୋଇଲା ନିର୍ଭୟ ॥୧୦୯
କୃଷ୍ଣଙ୍କୁ ଦେଖି କଂସ ଉଠି ।
ଖଡ଼ଗେ କଲାଦୃଢ଼ମୁଷ୍ଟି ॥୧୧୦
ଉଞ୍ଚାଇ ଗୋବିନ୍ଦ ଉପରେ ।
ଡ଼େଇଁ ପଡ଼ନ୍ତେ ରୋଷଭରେ ॥୧୧୧
ଛଞ୍ଚାଣ ପ୍ରାୟେ ଧାତିକାରେ ।
କେଶ ଧଇଲେ କୃଷ୍ଣ କରେ ॥୧୧୨
ଅସୁର ନ ପାରିଲା ଚଳି ।
କୃଷ୍ଣଙ୍କୁ ଚାହିଁଲା ନିରୋଳି ॥୧୧୩
ଚକ୍ଷୁର ବାଟେ ପ୍ରାଣ ଗଲା ।
କୃଷ୍ଣର ଶରୀରେ ପଶିଲା ॥୧୧୪
ନାଗ ଆବୋରି ଖଗପତି ।
ତେସନ ଗୋବିନ୍ଦର ଗତି ॥୧୧୫

ରତ୍ନମୁକୁଟ କଂସ ଶିରେ ।
କୃଷ୍ଣେ ଝିଙ୍କିଲେ ରୋଷଭରେ॥୧୧୬
କଂସକୁ ଧରି ବାମକରେ ।
ଗୋବିନ୍ଦ ମଞ୍ଚାର ଉପରେ ॥୧୧୭
ଜଗତସ୍ୱାମୀ ଯୋଗବଳେ ।
ପଡ଼ିଲେ ରଙ୍ଗସଭାତଳେ ॥୧୧୮
କଂସ ଉପରେ ଦାମୋଦର ।
ଅବନୀ ଦିଶିଲା ସୁନ୍ଦର ॥୧୧୯
ଯେତେ ଅସୁରରାଜା ଥିଲେ ।
କୃଷ୍ଣଙ୍କୁ ଦେଖି ପଳାଇଲେ ॥୧୨୦
ସମସ୍ତ ଲୋକେ ଛନ୍ତି ଚାହିଁ ।
ବିକ୍ରମସିଂହ ପ୍ରାୟ ହୋଇ ॥୧୨୧
କଂସର କେଶ ଧରି କରେ ।
କୃଷ୍ଣ ଝିଙ୍କିଲେ ରୋଷଭରେ ॥୧୨୨
ରଙ୍ଗସଭାର ତଳେ ଥାଇ ।
ମୃତପିଣ୍ଡକୁ ଘୋଷଡ଼ାଇ ॥୧୨୩
ଉତ୍ତାନ କରି ପକାଇଲେ ।
ଗୋପବାଳକେ ଡ଼େଇଁଗଲେ ॥୧୨୪
ଲୋକେ କରନ୍ତି ହାହାକାର ।
କେ ବୋଲେ ପଡ଼ିଲା ଅସୁର ॥୧୨୫
ଦେଖି ସାନନ୍ଦ ପୁରଜନ ।
ମଥୁରା ନାରୀଙ୍କର ମନ ॥୧୨୬
ଆକାଶୁ କୁସୁମ ବରଷି ।
ନିର୍ମଳ ଦଶଦିଗ ଦିଶି ॥୧୨୭
ପବନ ବହଇ ଶୀତଳ ।
ନିଷ୍ଫଳେ ଜଳଇ ଅନଳ ॥୧୨୮
ଆକାଶ ଦିଶିଲା ନିର୍ମଳ ।
ଖଣ୍ଡିଲା ଅବନୀର ଭାର ॥୧୨୯
ଜୟଶବଦ ଶୂନ୍ୟେ ପୂରି ।
ନୃତ୍ୟ କରନ୍ତି ଅପସରୀ ॥୧୩୦
ଗୀତବିନୋଦେ ବିଦ୍ୟାଧର ।
ଦୁନ୍ଦୁଭି ବାଜଇ ସୁସ୍ୱର ॥୧୩୧
ଦଇବେ କଂସ ଅବିରତେ ।
କୃଷ୍ଣଙ୍କୁ ଭୟ କରି ଚିତ୍ତେ ॥୧୩୨

ଜଳ ପିବନ୍ତେ କମ୍ପେ ଦେହୀ ।
ଭୋଜନ କରନ୍ତେ ଡ଼ରଇ ॥୧୩୩
ଭୟେ ନ ସ୍ମରଇ ବଚନ ।
ନିଦ୍ରା ନ ମାଡ଼ଇ ନୟନ ॥୧୩୪
ଯାହାକୁ ଡ଼ରୁଥାଇ ନିତ୍ୟେ ।
ପ୍ରତ୍ୟକ୍ଷ ଦେଖିଲା ଅଗ୍ରତେ ॥୧୩୫
ଦେହେ ପଶିଲା କଂସରାୟ ।
ଖଣ୍ଡିଲା ଜନ୍ମମୃତ୍ୟୁ ଭୟ ॥୧୩୬
ନିର୍ମଳ ଯୋଗୀଙ୍କି ଦୁର୍ଲ୍ଲଭ ।
କଂସକୁ ହୋଇଲା ସୁଲଭ ॥୧୩୭
କଂସର ଅଷ୍ଟଭ୍ରାତ ଥିଲେ ।
ମିଳିଲେ ରାମକୃଷ୍ଣ ତୁଲେ ॥୧୩୮
କଙ୍କ ନ୍ୟଗ୍ରୋଧ ଆଦିକରି ।
ଧାଇଁଲେ ଖଡ଼ଗ ଉଭାରି ॥୧୩୯
ଭାଇ ମରଣେ କ୍ରୋଧ ପାଇ ।
ବେଢ଼ିଲେ ଗୋବିନ୍ଦଙ୍କୁ ଯାଇ ॥୧୪୦
ଜଗତିଦ୍ୱାର ରୁନ୍ଧି ବୀରେ ।
କୁନ୍ତ ଶାବେଳୀ ଭାଲା କରେ॥୧୪୧
ଆଚ୍ଛାଦି କଲେ ମହାରଣ ।
ପଡ଼ିଲା କୋଟିବଜ୍ର ବାଣ ॥୧୪୨
ଦିବସ ହୋଇଲା ଅନ୍ଧାର ।
ବିଚିତ୍ର ଗତି କରବାଳ ॥୧୪୩
ଦେଖି ଧାଇଁଲେ ହଳଧର ।
ବୁଲାଇ ଲୌହର ମୂଷଳ ॥୧୪୪
ସିଂହ ଯେସନେ ଗଜଯୂଥେ ।
ପିଟନ୍ତି ଅତି ବଳବନ୍ତେ ॥୧୪୫
ଶସ୍ତ୍ରକୁ ଶସ୍ତ୍ର ପଡ଼ିତାଳ ।
ନ ପାରି ଘୁଞ୍ଚିଲେ ସକଳ ॥୧୪୬
ରାମର ବଜ୍ରଦଣ୍ଡ ଘାୟେ ।
ପଡ଼ିଲେ ଇନ୍ଦୁମତୀ ପୋଏ ॥୧୪୭
ଗତ ଜୀବନ ଅଷ୍ଟବୀର ।
ମୁଖରୁ ଗଳଇ ରୁଧିର ॥୧୪୮
ଦେଖି ସାନନ୍ଦ ଦେବଗଣ ।
ବଳଦେବଙ୍କ ବୀରପଣ ॥୧୪୯

Dr. Sudhanshu Sekhar Mishra

ପୁଷ୍ପବରଷି ସ୍ତୁତି କରି ।
ଜୟଶବଦେ ଅପସରି ॥୧୫୦
କଂସର ଅଷ୍ଟଭ୍ରାତା ମୂଳେ ।
ଯେତେ କାମିନୀ ପୁରେ ଥିଲେ॥୧୫୧
ବାହାର ହୋଇଲେ ବିକଳେ ।
କାନ୍ଦନ୍ତି ସ୍ୱାମୀ ଧରି କୋଳେ ॥୧୫୨
ମୁଣ୍ଡେ ହୃଦୟେ କରତାଡ଼ି ।
ଗଡ଼ନ୍ତି ମହୀତଳେ ପଡ଼ି ॥୧୫୩
ଭୋ ନାଥ ପ୍ରିୟ ମହୀପତି ।
ଅନାଥ ହୋଇଲୁ ଯୁବତୀ ॥୧୫୪
ଭୋ ନାଥ ମରଣେ ତୋହର ।
ମଥୁରା ନ ଦିଶେ ସୁନ୍ଦର ॥୧୫୫
ତୋର ବିଯୋଗେ ମଧୁପୁରୀ ।
ଏବେ ଦିଶିଲା ହତଶିରୀ ॥୧୫୬
ତୁ ନାଥ ପ୍ରାଣୀଙ୍କର ତୁଲେ ।
ଦ୍ରୋହ ଚିନ୍ତିଲୁ ସର୍ବକାଳେ ॥୧୫୭
ଅସୁରବୁଦ୍ଧି ତୋ'ର ମନ୍ଦ ।
ସାଧୁଙ୍କ ତୁଲେ କଲୁ ବାଦ ॥୧୫୮
ଧର୍ମକୁ ନିଶ୍ଚୟ ଛାଡ଼ିଲୁ ।
ଭଣଜା ହସ୍ତେ ପ୍ରାଣ ଦେଲୁ ॥୧୫୯
ପ୍ରାଣୀଙ୍କ ହୃଦୟେ ଅନନ୍ତ ।
ଜଗତ ଯା'ର ଗର୍ଭଗତ ॥୧୬୦
ବ୍ରହ୍ମାଣ୍ଡଠାକୁର ଶ୍ରୀହରି ।
ତାହାର ହୋଇଲୁ ବଇରୀ ॥୧୬୧
ତାହାର ସଙ୍ଗେ ବାଦ କଲୁ ।
ଅକାଳେ ପ୍ରାଣ ହରାଇଲୁ ॥୧୬୨
ସୃଷ୍ଟି ପାଳନ ଯା'ର ବାନା ।
ଭକତଜନ ବତ୍ସଳେହ୍ନା ॥୧୬୩
ସଂସାରେ ଧର୍ମରୂପ ହୋଇ ।
ଭାବ ଅଭାବ ସେ ଘେନଇ ॥୧୬୪
ତା'ର ମହିମା ତୁ ନ ଜାଣି ।
ଦ୍ରୋହ ଚିନ୍ତିଲୁ ଚକ୍ରପାଣି ॥୧୬୫
ମରିବା ଉଚିତ ତୋହର ।
ଅନାଥ କଲୁ ମଧୁପୁର ॥୧୬୬

କହନ୍ତି ବ୍ୟାସଙ୍କ ନନ୍ଦନ ।
ଗୋବିନ୍ଦ ଶୁଣିଲେ ରୋଦନ ॥୧୬୭
ଛାଡ଼ିଲେ କଂସେ କୋପମନ ।
ଦୟାସାଗର ଭଗବାନ ॥୧୬୮
ରାଜକାମିନୀ ମଧ୍ୟେ ଯାଇ ।
ବିଜୟ ବ୍ରହ୍ମାଣ୍ଡ ଗୋସାଇଁ ॥୧୬୯
ଲୋକବେଭାରେ ନରହରି ।
ଲୋଚନୁ ବହେ ଅଶ୍ରୁବାରି ॥୧୭୦
କାନ୍ଦନ୍ତି ମାଇଁଙ୍କରମେଳେ ।
ଗୋବିନ୍ଦ ମାୟା ଯୋଗ ବଳେ॥୧୭୧
ବୋଇଲନ୍ତି ମୋର କର୍ମ ମନ୍ଦ ।
ଦଇବ କରିଅଛି ଛନ୍ଦ ॥୧୭୨
ମୋହର କର୍ମେ ଭଲ ନାହିଁ ।
କଷ୍ଟ ମୁଁ ଯେତେ ପାଇଛଇଁ ॥୧୭୩
ଜାତ ହୋଇଲି ବନ୍ଦୀଘରେ ।
ପିତା ମୋ'ଘେନି ଗଲେ ଡ଼ରେ॥୧୭୪
ଲୁଚାଇ ନନ୍ଦର ମନ୍ଦିରେ ।
ସୋଦର ମଉଳାର ଡ଼ରେ ॥୧୭୫
ଗଉଡ଼ ପଣେ ଦିନ ନେଇ ।
ମୋହର କୁଳ ମୂଳ ନାହିଁ ॥୧୭୬
ସେବକ ପ୍ରାୟେ ନନ୍ଦ ଘରେ ।
ଗୋରୁ ଚରାଏ ବନଘୋରେ ॥୧୭୭
ଦିବସେ ନ ରହଇ ଘରେ ।
ଅନ୍ନପୁଡ଼ାଏ ଘେନି କରେ ॥୧୭୮
ବନେ ଭୁଞ୍ଜାଇ ଏକବେଳେ ।
ନିଦ୍ରା ନ ମାଡ଼େ ରାତ୍ରକାଳେ ॥୧୭୯
ରାତ୍ର ପାହିଲେ ବନେ ଯାଇ ।
ଏମନ୍ତେ ଜୀବନ ପୋଷଇ ॥୧୮୦
ଯେତେ ପଡ଼ିଲା ରିଷ୍ଟ ମତେ ।
ସୁମରି କହିବଇଁ କେତେ ॥୧୮୧
ମୁଁ ମୋର ଦୁଃଖ ଦୁଃଖେ ଥାଇ ।
ମଉଳା ତାହା ନ ଜାଣଇ ॥୧୮୨
ମାଇଲା ମୋର ଷଡ଼ଭାଇ ।
ମାତାପିତାଙ୍କୁ ଦୁଃଖ ଦେଇ ॥୧୮୩

ସୋଦର କଷ୍ଟ ବାଳବଧ ।
କେହି ତ ନ କଲ ବିରୋଧ ॥୧୮୪
ମତେ ମାରିବ ବିଚାରିଲା ।
ଅକ୍ରୁର ହସ୍ତେ ଅଣାଇଲା ॥୧୮୫
ଧନୁଯାତ୍ରା ଏ ମିଛେ କଲା ।
ଦ୍ୱାରେ ଗୋ ହସ୍ତୀଏ ଥୋଇଲା॥୧୮୬
ଦଇବେ ତହୁଁ ଉବୁରିଲି ।
ମାମୁଁଙ୍କ ଛାମୁରେ ମିଳିଲି ॥୧୮୭
ତେବେ ହେଁ ଦୟା ଗୋ ନ କଲା ।
ମାଲଙ୍କ ସଙ୍ଗେ ଯୁଝାଇଲା ॥୧୮୮
ତହୁଁ ଜୀଇଁଲି କର୍ମବଳେ ।
ମିଳିଲି ଯାଇ ମଞ୍ଚାତଳେ ॥୧୮୯
ବୋଇଲା କୋପଭର ହୋଇ ।
ତାଡ଼ାଇ ଦିଅ ବେନିଭାଇ ॥୧୯୦
ବସୁଦେବକୁ ନନ୍ଦ ସଙ୍ଗେ ।
ହାଣି ପକାଅ ନେଇ ବେଗେ ॥୧୯୧
ଦେବକୀ ସଙ୍ଗେ ଉଗ୍ରସେନ ।
ଶୂଳରେ ବସାଅ ବହନ ॥୧୯୨
ନନ୍ଦ ସମ୍ପଦ କର କ୍ରୂର ।
ରାମ ଗୋବିନ୍ଦ ବେଗେ ମାର॥୧୯୩
ଶୁଣି ମୋ' ଦେହ ଥରହର ।
ଜୀବନ ଉଡ଼ିଲା ମୋହର ॥୧୯୪
ବିକଳେ ଉଠିଲି ମଞ୍ଚାରେ ।
ତା' କୋପ ଶାନ୍ତି କରିବାରେ॥୧୯୫
ପାଦେ ପଡ଼ିଲି ମୁହିଁ ଯାଇ ।
ଧାଇଁଲା ଖଡ଼ଗ ଉଞ୍ଚାଇ ॥୧୯୬
ତା' ଦେଖି ହୋଇଲି ବିକଳ ।
ବେଗେ ଧଇଲା ମୋର ବାଳ॥୧୯୭
ମଞ୍ଚାରୁ ଦେଲା ଫୋପଡ଼ାଇ ।
ତଳେ ଗୋ ପଡୁଥିଲି ମୁହିଁ ॥୧୯୮
ବିକଳେ ଧଇଲି ପୟର ।
ପଡ଼ିଲା ମୋହର ଉପର ॥୧୯୯
ମଞ୍ଚାରୁ ପଡ଼ି ମାମୁଁ ମଲା ।
ମୋତେ ତ ଦଇବ ରଖିଲା ॥୨୦୦

Dr. Sudhanshu Sekhar Mishra

ମୋହର କର୍ମେ ନାହିଁ ଭୋଗ ।
ରାଜା ଭଣଜା ପଣେ ଯୋଗ ॥୨୦୧
ଅରଜି ଥିଲି ଯାହା ପୂର୍ବେ ।
ଫଳିଲା ମୋତେ ଆସି ଏବେ ॥୨୦୨
ମାୟା ସଂସାରେ ଏହି ମତେ ।
ଜନ୍ମମରଣ ବେନିପଥେ ॥୨୦୩
ପ୍ରାଣୀ ହୁଅନ୍ତି ଆତଜାତ ।
କର୍ମର ଫଳେ ସେ ପ୍ରାପତ ॥୨୦୪
ପଥୁକୀ ପଥଶ୍ରମ ପାଇ ।
ବସନ୍ତି ବୃକ୍ଷ ତଳେ ଯାଇ ॥୨୦୫
ଶ୍ରମ ସରିଲେ ଯେଝାମତେ ।
ଚଳନ୍ତି ବୃକ୍ଷ ଥାଇ ପଥେ ॥୨୦୬
ତେମନ୍ତ ପ୍ରାୟ ଜନ୍ତୁ ମିଳି ।
ମାୟା ସଂସାରେ ବିଷ୍ଣୁକେଳି ॥୨୦୭
ଜଗତଜୀବ ଏହି ମତେ ।
ସମସ୍ତେ ଯିବା ଶୂନ୍ୟପଥେ ॥୨୦୮
କେ ଆଗ ପଛ କେ ତୁରିତ ।
ସବୁରି ଦ୍ୱାରେ ଯମଦୂତ ॥୨୦୯
ଏଣେ ଯେ ନ କରନ୍ତି ଖେଦ ।
ତାହାଙ୍କୁ ନ ଲାଗେ ପ୍ରମାଦ ॥୨୧୦
ତୁମ୍ଭେ ଗୋ ଅର୍ଜିଅଛ ଯାହା ।
ଅବଶ୍ୟ ଭୁଞ୍ଜିବଟି ତାହା ॥୨୧୧
ଏମନ୍ତ ବୋଲି ଭଗବାନ ।
ମୋହିଲେ ମାଈଁଙ୍କର ମନ ॥୨୧୨
ଆଶ୍ୱାସ କରି କଂସନାରୀ ।
ବଦନ ପୋଛିଲେ ମୁରାରି ॥୨୧୩
ଜଣ ଜଣକେ ବୋଧ କଲେ ।
ଅନଳେ କଂସ ପୋଡ଼ାଇଲେ ॥୨୧୪
ରାମ ଗୋବିନ୍ଦ ବେନିଭାଇ ।
ପିତା଼ମାତାଙ୍କ ପାଶେ ଯାଇ ॥୨୧୫
କଷ୍ଟ ଦେଖିଣ ତାହାଙ୍କର ।
ନୟନୁ ବହେ ଅଶ୍ରୁଜଳ ॥୨୧୬
ମଞ୍ଚା ଉପରେ କୃଷ୍ଣରାମ ।
ପୟର ଦେଖି ଶୋକମନ ॥୨୧୭
ଚରଣୁଁ ବନ୍ଧନ ଫେଡ଼ାଇ ।
ପିତାମାତାଙ୍କ ମୁଖ ଚାହିଁ ॥୨୧୮
ଦେବକୀ ବସୁଦେବ ପାଦେ ।
ପଡ଼ିଲେ ଶୋକ ଗଦଗଦେ ॥୨୧୯
ଦେଖି ଚକିତ ତାତମାତ ।
ପୟର ଘୁଞ୍ଚାଇ ତୁରିତ ॥୨୨୦
ମନେ ଜାଣିଲେ ଅବହେଳେ ।
ବିଷ୍ଣୁମୂରତି ପାଦତଳେ ॥୨୨୧
ଭୟେ କମ୍ପନ୍ତି ଥରହର ।
ବୋଲନ୍ତି ଶରଣ ତୋହର ॥୨୨୨
ଅନାଦି ନାଥ ନିରଞ୍ଜନ ।
ଆମ୍ଭର ଦୋଷ ତୁ ନ ଘେନ ॥୨୨୩
ପୁତ୍ର ପ୍ରାୟେକ ତୋତେ ମଣି ।
ଯାହା ଚିନ୍ତିଲୁ ଚକ୍ରପାଣି ॥୨୨୪
ସେ ଦୋଷ ନ ଘେନ ଆମ୍ଭର ।
ଶରଣ ରଖ ଚକ୍ରଧର ॥୨୨୫
ଏମନ୍ତ ବୋଲି ବାପମାୟେ ।
ଚକ୍ଷୁ ବୁଜିଲେ ମହାଭୟେ ॥୨୨୬
ବୋଲନ୍ତି ଶୁକ ମୁନିବର ।
ଜାଣିଲେ ପ୍ରଭୁ ଦାମୋଦର ॥୨୨୭
ବଳଦେବଙ୍କୁ ଅନାଇଲେ ।
ବୋଇଲେ ଜ୍ଞାନ ଏ ପାଇଲେ॥୨୨୮
ଆମ୍ଭଙ୍କୁ ଚିହ୍ନିଲେ ଏ ଆଜ ।
କେମନ୍ତେ ହେବ ଦେବକାର୍ଯ୍ୟ॥୨୨୯
ଏମନ୍ତ ବୋଲି ବିଚାରିଲେ ।
ବିଷ୍ଣୁ ମାୟାକୁ ପ୍ରକାଶିଲେ ॥୨୩୦
ପିତାମାତାଙ୍କ ଦେହେ ଯାଇ ।
ପଶିଲେ ଶୋକମୋହ ହୋଇ॥୨୩୧
ସେ ମାୟାଧର ପାଦଗତ ।
ଭଜଇ ବିପ୍ର ଜଗନ୍ନାଥ ॥୨୩୨
କଂସ ଦାନବ ସଂହାରିଲେ ।
ଅବନୀ ଭାରା ନିବାରିଲେ ॥୨୩୩
ଭକତଜନଙ୍କର ବନ୍ଧୁ ।
ନାମ କରୁଣାମୟ ସିନ୍ଧୁ ॥୨୩୪
ଏଣେ ନିବେଶି କୃଷ୍ଣେମନ ।
ଶରଣ ପଶ ଭଗବାନ ॥୨୩୫
ବୁଡ଼ି ନ ମର ଭବଜଳେ ।
କଷ୍ଟ ସୁମରି ଉଠ କୂଳେ ॥୨୩୬
ବ୍ରାହ୍ମଣ କୁଳେ ଜାତ ହୋଇ ।
ବିଷ୍ଣୁ ବାସନା ମୋର ନାହିଁ ॥୨୩୭
ସ୍ୱପନେ କହିଲେ ମୁରାରି ।
ପୁରାଣ ଗୀତନାଦ କରି ॥୨୩୮
ରଚିବୁ ଶିରୀ ଭାଗବତ ।
ବେଦ ପୁରାଣେ ଯାହା ତତ୍ତ୍ୱ ॥୨୩୯
ଏଣୁ ମୋହର ଭୟ ନାହିଁ ।
ସୁଜନେ ଡର ଏହା ଗାଇ ॥୨୪୦
ସୁଜନେ ନ ଧର ମୋ ଦୋଷ ।
କହଇ ଜଗନ୍ନାଥ ଦାସ ॥୨୪୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ କଂସବଧୋ
ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର ।
ଶୁଣ ପରୀକ୍ଷ ନୃପବର ॥୧
ଜଗତବନ୍ଧୁ ଜନାର୍ଦ୍ଦନ ।
ମୋହିଲେ ପିତାମାତା ମନ ॥୨
ରାମର ମୁଖକୁ ଚାହିଁଲେ ।
ବିଷ୍ଣୁର ମାୟା ପ୍ରକାଶିଲେ ॥୩
ଅଶେଷ ଜୀବଜନ୍ତୁ ଦେହେ ।
ବିଶ୍ୱ ସଂସାରେ ମାୟାମୋହେ ॥୪
ତାତ ଜନନୀ ପାଦତଳେ ।
ରାମଗୋବିନ୍ଦ ଏକମେଳେ ॥୫
ପଡ଼ନ୍ତି ପୁଣ ପୁଣ ପାଦେ ।
କହନ୍ତି ଶୋକ ଗଦଗଦେ ॥୬
ହେ ତାତ ମାତ ଶୁଣ ମୋର ।
ଦଇବବଳ ବଳୀୟାର ॥୭
କଂସର ଡ଼ରେ ବେନିଭାଇ ।
ଏତେ ଦିବସ ଗୋପେ ଥାଇ ॥୮
ବାଳକକାଳେ ମାତା କୋଳେ ।
ସୁତେ ବସନ୍ତି ସୁଖ ଭୋଳେ ॥୯
ସେ ସୁଖ ନୋହିଲା ଆମ୍ଭର ।
କର୍ମର ଫଳ ବଳୀୟାର ॥୧୦
ତାତ ଜନନୀ ଉପକାର ।
ସୁଝିବ କେବଣ କୁମର ॥୧୧
ଗର୍ଭେ ବହନ୍ତି ଦୁଃଖ ସହି ।
ପୁଣି ପାଳନ୍ତି କ୍ଷୀର ଦେଇ ॥୧୨
ସର୍ବ ସମ୍ପଦ ପୁଣ ଦେଇ ।
ତାହାଙ୍କ ପୋଷଣେ ଜୀଅଇ ॥୧୩
ତାହାଙ୍କ ପ୍ରତି ଉପକାରେ ।
ଶତଜନମେ କେହୁ ପାରେ ॥୧୪
ସେ ତାତ ଜନନୀ ପୋଷଣେ ।
ସମର୍ଥ ନୁହନ୍ତି ଯେ ଜନେ ॥୧୫
ତାହାଙ୍କ ଜୀବନର ଅନ୍ତେ ।
ବେଗେ ମିଳନ୍ତି ଯମଦୂତେ ॥୧୬
କର-ଚରଣ ବାନ୍ଧି କୋପେ ।
ନିଅନ୍ତି ଯମର ସମୀପେ ॥୧୭
ନିରାଶ ପଥେ ସେ ବିକଳେ ।
କାନ୍ଦଇ କ୍ଷୁଧାର ଆକୁଳେ ॥୧୮
ତା'ର ବିକଳ ଦେଖି ପଥେ ।
କୋପେ ବୋଲନ୍ତି ଯମଦୂତେ ॥୧୯
ପିତାମାତାଙ୍କୁ ଦୁଃଖ ଦେଇ ।
ଜୀବନ ପୋଷିଲୁ ଯେ ତୁହି ॥୨୦
ଯେ ଅବା ପୁଣ୍ୟ ଥିଲା ତୋ'ର ।
ସେ ପାପେ ହୋଇଲା ଅନ୍ତର ॥୨୧
ଏବେ ଖାଇବୁ ଆଉ କିସ ।
ଏମନ୍ତ ବୋଲି ତା'ର ମାଂସ ॥୨୨
କାଟି ତାହାର ମୁଖେ ଦ୍ୟନ୍ତି ।
ନିର୍ଦ୍ଦୟେ ଯଷ୍ଟି ପ୍ରହାରନ୍ତି ॥୨୩
ଭୋ ତାତ ଶୁଣ ଏକଚିତ୍ତେ ।
ବିପ୍ରେ କହନ୍ତି ବେଦମତେ ॥୨୪
ତାତ ଜନନୀ ବୃଦ୍ଧକାଳେ ।
ନିଜ ଭାରିଜା ଶିଶୁମେଳେ ॥୨୫
ଗୋରୁ ବ୍ରାହ୍ମଣ ଗୁରୁଜନ ।
ଏହାଙ୍କୁ ନ ଦେଇ ଭୋଜନ ॥୨୬
ଯେ ପ୍ରାଣୀ ଆତ୍ମାକୁ ପୋଷନ୍ତି ।
ଜୀବନ ଥାଉଁ ସେ ମରନ୍ତି ॥୨୭
କଂସର ଡରେ ଗୋପେ ଥାଇ ।
ଦୁଃଖେ ବଢ଼ିଲୁ ବେନିଭାଇ ॥୨୮
ତୁମ୍ଭ ସେବାରେ ନାହିଁ ମନ ।
ନିଷ୍ଫଳେ ଗଲା ଏତେ ଦିନ ॥୨୯
ସେ ଦୋଷ କ୍ଷମାକର ତାତ ।
ଆମ୍ଭେ ହୋଇଲୁ ପରାୟତ ॥୩୦
ଏମନ୍ତ କହି ଦାମୋଦର ।
ମନ ମୋହିଲେ ତାହାଙ୍କର ॥୩୧
କୃଷ୍ଣ ବଚନେ ମାତାପିତା ।
ଛାଡ଼ିଲେ ମନୁ ଖେଦ ଚିନ୍ତା ॥୩୨
ଅତି ଆନନ୍ଦେ ବେନିଜନ ।
ପୁତ୍ରଙ୍କୁ ଦିଅନ୍ତି ଚୁମ୍ବନ ॥୩୩
କୋଳେ ବସାଇ ହୃଦେ ଭିଡ଼ି ।
ବେନିଲୋଚନୁ ବହେ ବାରି ॥୩୪
ବୁଡ଼ିଲେ ମାୟାମୋହ ଜଳେ ।
କଣ୍ଠ ନସ୍ଫୁରେ ଶୋକଭରେ ॥୩୫
ଏମନ୍ତେ ପ୍ରଭୁ ବ୍ରହ୍ମରାଶି ।
ତାତଜନନୀ ମନ ତୋଷି ॥୩୬
କୋମଳ-ମଧୁର-ବଚନେ ।
ମଞ୍ଚାରୁ ଉତୁରି ବହନେ ॥୩୭
ଉଗ୍ରସେନଙ୍କୁ ଅଣାଇଲେ ।
ରାଜଆସନେ ବସାଇଲେ ॥୩୮
ବୋଲନ୍ତି ପ୍ରଭୁ ଦେବରାଜା ।
ଆମ୍ଭେ ସକଳେ ତୋର ପ୍ରଜା ॥୩୯
ତୁ ଭୋଜବଂଶ ନୃପବର ।
ଆମ୍ଭେ ଖଟିବୁ ତୋ' ପୟର ॥୪୦
ଯଯାତି ନାମେ ମହାନୃପ ।
ଯଦୁଙ୍କୁ ଦେଇଅଛି ଶାପ ॥୪୧
ତେଣୁ ଯଦୁଙ୍କୁ ପାଟ ନାହିଁ ।
ରାଜା ହୋଇଲେ କ୍ଷୟ ଯାଇ ॥୪୨
ତୁ ଆମ୍ଭ ବୋଲେ ନୃପବର ।
ବହିବୁ ରାଜ୍ୟ ମହାଭାର ॥୪୩
ଏମନ୍ତ ବୋଲି ବନମାଳୀ ।
ଆପଣେ କଲେ ନିଉଛାଳି ॥୪୪
ସୁବର୍ଣ୍ଣ କୁମ୍ଭେ ଗଙ୍ଗାନୀର ।
ଦଧି ଅକ୍ଷତ ଗନ୍ଧସାର ॥୪୫
ଗୋବିନ୍ଦ ତୋଳି ନିଜ କରେ ।
ଢ଼ାଳିଲେ ଉଗ୍ରସେନ ଶିରେ ॥୪୬
ନାନା ଉତ୍ସବେ ଅଭିଷେକ ।
ସ୍ୱର୍ଗେ ଦେଖନ୍ତି ସୁରଲୋକ ॥୪୭
ବାଜଇ ବୀରତୂର ବାଦ୍ୟ ।
ମଥୁରା ହୋଇଲା ଆନନ୍ଦ ॥୪୮

Dr. Sudhanshu Sekhar Mishra

ଉଗ୍ରସେନଙ୍କୁ ରାଜା କରି ।
କୃଷ୍ଣ କହନ୍ତି କରଯୋଡ଼ି ॥୪୯
ଭ୍ରାନ୍ତି ତୁ ନ କର ମନରେ ।
ତୋ ରିପୁ ନହିଁ ଏ ସଂସାରେ ॥୫୦
ମୁହିଁ ଯାହାର ଆଜ୍ଞାକାରୀ ।
କେ ତା'ର ହୋଇବ ବଇରୀ ॥୫୧
ମହେନ୍ଦ୍ର ଆଦି ଦିଗପାଳେ ।
ଖଟିବେ ତୋ'ର ପାଦତଳେ ॥୫୨
ମର୍ତ୍ତ୍ୟରାଜାଙ୍କୁ ନାହିଁ ଡ଼ର ।
ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ॥୫୩
ଏମନ୍ତେ ରାଜପଦ ଦେଇ ।
ରାମଗୋବିନ୍ଦ ବେନିଭାଇ ॥୫୪
ଯେତେ ଡ଼ଗର ଥିଲେ ଦେଶେ ।
ଅଣାଇଁ କହନ୍ତି ବିଶ୍ୱାସେ ॥୫୫
ତୁମେ ହୋ ଯାଅ ଚାରିଦିଗେ ।
ମୋହର ଆଜ୍ଞା ଘେନି ବେଗେ ॥୫୬
ଯାଦବ ଆଦି ସାତବଂଶେ ।
ଯେବା ଅଛନ୍ତି ଯେଉଁ ଦେଶେ ॥୫୭
ବୋଲିବ ଆସ ହେ ନିର୍ଭୟେ ।
ତୁମ୍ଭଙ୍କୁ ଗୋବିନ୍ଦ ସଦୟେ ॥୫୮
ଏମନ୍ତ ବୋଲି ଆଜ୍ଞା ଦେଲେ ।
ବହନ ଆଣ ହୋ ବୋଇଲେ ॥୫୯
ତକ୍ଷଣେ ଡ଼ଗରାଏ ଯାଇ ।
ଚାରିଦିଗରେ ଆଜ୍ଞା କହି ॥୬୦
ଯେତେକ ଗୋବିନ୍ଦ ଉତ୍ତର ।
ସମସ୍ତ କହିଲେ ଡଗର ॥୬୧
ରାମଗୋବିନ୍ଦଙ୍କ ଚରିତ ।
ତୁମ୍ଭଙ୍କୁ ସଦୟ ବହୁତ ॥୬୨
ଏମନ୍ତ ଡଗରେ କହିଲେ ।
ତକ୍ଷଣେ ଆସ ହୋ ବୋଇଲେ ॥୬୩
ବନ୍ଧୁବାନ୍ଧବ ଆଦି କରି ।
ତକ୍ଷଣେ ଆଜ୍ଞା ଶିରେ ଧରି ॥୬୪
ସକଳେ ହୋଇଲେ ବାହାର ।
ଆସନ୍ତି ଅତି ଖରତର ॥୬୫
ରାମଗୋବିନ୍ଦଙ୍କୁ ଭେଟିଲେ ।
ସମସ୍ତେ ଆନନ୍ଦ ହୋଇଲେ ॥୬୬
ରାମଗୋବିନ୍ଦ ବେନିଜନ ।
କହିଲେ ମଧୁର ବଚନ ॥୬୭
ଜଣଜଣକେ ତୋଷ କରି ।
ଦାସବତ୍ସଳ ନରହରି ॥୬୮
ଯେଝାର ପୁରେ ଦେଲେ ବାସ ।
ଧନ ସମ୍ପଦ ଗ୍ରାମ ଦେଶ ॥୬୯
ଯାଦବେ କୃଷ୍ଣର ବିଶ୍ୱାସେ ।
ଗୃହେ ରହିଲେ ମନତୋଷେ ॥୭୦
ରାତ୍ର ଦିବସେ କୃଷ୍ଣମୁଖ ।
ଦେଖି ଛାଡ଼ିଲେ ମନୁଦୁଃଖ ॥୭୧
ବୃଦ୍ଧ ବାଳକ ରୂପ ନାହିଁ ।
ସକଳେ ଯୁବାପ୍ରାୟ ହୋଇ ॥୭୨
କୃଷ୍ଣର ଅପୂର୍ବ ବଦନ ।
ଦେଖି ହୋଇଲେ ତୋଷମନ ॥୭୩
ସେ କୃଷ୍ଣ ଚରଣେ ବିଶ୍ୱାସ ।
ଭଣଇ ଜଗନ୍ନାଥ ଦାସ ॥୭୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ଉଗ୍ରସେନ
ସିଂହାସନ ଆରୋହଣଂ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ॥

Dr. Sudhanshu Sekhar Mishra

ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ଦଶମ ସ୍କନ୍ଧ

(ଦ୍ୱାରକାଲୀଳା)

Dr. Sudhanshu Sekhar Mishra

## ଦଶମସ୍କନ୍ଧ - ଦ୍ୱାରକାଲୀଳା
## ଊନପଞ୍ଚାଶଦ୍ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ରାଜନ ପରିକ୍ଷିତ ॥୧
ରାମଗୋବିନ୍ଦ ଏକମେଳେ ।
ନନ୍ଦର ନିକଟେ ମିଳିଲେ ॥୨
କରଅଞ୍ଜଳି ଦେଇ ଶିରେ ।
ନମିଲେ ତାହାଙ୍କ ପୟରେ ॥୩
ନନ୍ଦର ଚରଣେ ପ୍ରଣମି ।
ଅଶେଷ ଜନ୍ତୁ ଅନ୍ତର୍ଯ୍ୟାମି ॥୪
ରାମଗୋବିନ୍ଦ ମାୟାବଳେ ।
ବସିଲେ ବେନିଭାଇ କୋଳେ ॥୫
ବେନିବାଳକ କୋଳେ କାଳି ।
ସ୍ନେହେ ବୁଜିଲେ ବେନି ଆଖି ॥୬
ଆନନ୍ଦେ ଅଶ୍ରୁଜଳ ବହେ ।
ନନ୍ଦକୁ ଚାହିଁ ଦେବରାୟେ ॥୭
କହନ୍ତି ଶୁଣ ଆହେ ତାତ ।
ଆମ୍ଭେ ତୁମ୍ଭର ବେନିସୁତ ॥୮
ତୁମ୍ଭେ ପାଳିଲ ସ୍ନେହ ବହି ।
ତାତ ଜନନୀ ପ୍ରାୟ ହୋଇ ॥୯
ଅନାଥ ବାଳକଙ୍କୁ ଆଣି ।
ଧର୍ମେ ପୋଷନ୍ତି ଯେଉଁ ପ୍ରାଣୀ ॥୧୦
ସେ ଧର୍ମପିଅର ଜନନୀ ।
ବୋଲନ୍ତି ବେଦମତେ ମୁନି ॥୧୧
ହେ ତାତ ଯାଅ ଗୋପପୁର ।
ବନ୍ଧୁବାନ୍ଧବ ଘେନି ତୋର ॥୧୨
ମୁଁ ଏଥି ରହି ଦିନାକେତେ ।
ବନ୍ଧୁବାନ୍ଧବ ମୋର ଯେତେ ॥୧୩
ତାହାଙ୍କୁ ନିଶ୍ଚିନ୍ତ କରାଇ ।
ଯେ ଯାହା ବାସ ତାଙ୍କୁଦେଇ ॥୧୪
ପଛେ ମୁଁ ଯିବି ଗୋପପୁର ।
ଭୋ ତାତ ବିଳମ୍ବ ନ କର ॥୧୫

ଏମନ୍ତ କହି ଭାବଗ୍ରାହୀ ।
ନନ୍ଦର ହସ୍ତେ ହସ୍ତ ଦେଇ ॥୧୬
କଂସର ଯେତେକ ଭଣ୍ଡାର ।
ନନ୍ଦକୁ ଦେଲେ ଦାମୋଦର ॥୧୭
ବୋଇଲେ ଗୋପେ ହୁଅ ରାଜା ।
ଆନନ୍ଦେ ପାଳ ଜନ ପ୍ରଜା ॥୧୮
ନନ୍ଦ ଗୋପାଳଙ୍କର ମନ ।
ମୋହିଲେ ପ୍ରଭୁ ଭଗବାନ ॥୧୯
ରାମଗୋବିନ୍ଦେ ଘେନି କୋଳେ ।
ଚୁମ୍ବନ ଦେଲେ ସୁଖଭୋଳେ ॥୨୦
ଯେତେ ବାଳକ କୃଷ୍ଣସଙ୍ଗେ ।
ଗୋପେ ବଢ଼ିଲେ ନବରଙ୍ଗେ ॥୨୧
କୃଷ୍ଣଙ୍କୁ ଜଣେ ଜଣେ ଧରି ।
ବୋଲନ୍ତି ଆଲିଙ୍ଗନ କରି ॥୨୨
ହେ ରାମକୃଷ୍ଣ ତୁମ୍ଭ ସଙ୍ଗେ ।
ବନେ ବଂଚିଲୁ ନାନାରଙ୍ଗେ ॥୨୩
ହେ ପ୍ରଭୁ ତୋର ଜନ୍ମକାଳୁ ।
ଆମ୍ଭେ ଯେ କ୍ଷଣେ ନ ଛାଡ଼ିଲୁ ॥୨୪
ଏବେ ଛାଡ଼ିଲ କିସପାଇଁ ।
ବଂଚିବୁ କାହା ମୁଖ ଚାହିଁ ॥୨୫
ଶୁଣି ବୋଲନ୍ତି ବେନିଭାଇ ।
ମୋହନ ନୟନେ ଅନାଇଁ ॥୨୬
ଗୋପାଳେ ଯାଅ ଯେଝା ଘର ।
ମନ ନିବେଶି ମୋ ପୟର ॥୨୭
ଆମ୍ଭର ମନ ତୁମ୍ଭ ଠହିଁ ।
ନିକଟେ ଯିବୁ ବେନିଭାଇ ॥୨୮
ଏମନ୍ତେ ଜଣେ ଜଣେ ତୋଷି ।
ଗୋପାଳ ପୁଅକୁ ଆଶ୍ୱାସି ॥୨୯
କୃଷ୍ଣର ଆଜ୍ଞା ନନ୍ଦ ପାଇ ।
କାନ୍ଦଇ ପୁଣ ପୁଣ ଚାହିଁ ॥୩୦
ପୁଣି ସେ ରାମକୃଷ୍ଣ ଲଇ ।
କୋଳେ ବସାଇ ଚୁମ୍ବ ଦେଇ ॥୩୧

ମନ ନିବେଶି କୃଷ୍ଣପାଦେ ।
ବୁଡ଼ିଲା ଶୋକ ଗଦଗଦେ ॥୩୨
ବାଜଇ ବୀରତୂର ବାଦ୍ୟ ।
ଘେନାଇ ସକଳ ସମ୍ପଦ ॥୩୩
ନନ୍ଦ ଚଳିଲା ଗୋପପୁର ।
ଶୁଣ ରାଜନ କୁରୁବୀର ॥୩୪
ଏ ଯେତେ ଦେଖି କୃଷ୍ଣଭାବ ।
ପୁତ୍ରଙ୍କୁ ପାଇ ବସୁଦେବ ॥୩୫
ଦ୍ୱିଜଙ୍କ ସଙ୍ଗେ ପୁରୋହିତ ।
ଅଣାଇଁ କହଇ ଉଚିତ ॥୩୬
ଏ ଯେ ମୋହର ବେନିବାଳେ ।
ଗୋପୁଁ ଅଇଲେ ଏତେକାଳେ ॥୩୭
ଏହାଙ୍କ କ୍ରିୟା-କର୍ମ ନାହିଁ ।
ସଂସ୍କାର କର ବେନିଭାଇ ॥୩୮
ବସୁଦେବର ବୋଲ ଶୁଣି ।
ବ୍ରାହ୍ମଣେ ରାମକୃଷ୍ଣ ଘେନି ॥୩୯
କଲେ ଯେ ବେଦ-କ୍ରିୟାକର୍ମ ।
କୁଳଉଚିତ ଯଥାଧର୍ମ ॥୪୦
ଆନନ୍ଦ ହୋଇ ବସୁଦେବ ।
ବିପ୍ରଙ୍କୁ କରାଇ ଉତ୍ସବ ॥୪୧
ଅୟୁତେ ଧେନୁ ବସ୍ତ୍ରାମୂଳେ ।
ମଣ୍ଡିଲା ନାନା ଅଳଙ୍କାରେ ॥୪୨
କୃଷ୍ଣର ଜନ୍ମକାଳେ ଯାହା ।
ମନେ କଳ୍ପିଲା ପୁଣ୍ୟଦେହା ॥୪୩
ବିପ୍ରଙ୍କୁ ଦେଲା ମନତୋଷେ ।
କଲ୍ୟାଣ କଲେ ସେ ହରଷେ ॥୪୪
ବସାଇ ରାମକୃଷ୍ଣ ଦୁଇ ।
ଆନନ୍ଦମନେ ବେଦ କହି ॥୪୫
ଗାୟତ୍ରୀମନ୍ତ୍ର ବିଦ୍ୟାଧର୍ମ ।
କୁଳଉଚିତ ଦଶକର୍ମ ॥୪୬
କରାଇ ଗଲେ ବିପ୍ରଜନେ ।
କୃତାର୍ଥ ବସୁଦେବ ମନେ ॥୪୭

Dr. Sudhanshu Sekhar Mishra

ଯେ ହରି ସର୍ବବିଦ୍ୟା ହେତୁ ।
ଦାନ ଆଶ୍ରମ ତପ ତତ୍ତ୍ୱ ॥୪୮
ମନୁଷ୍ୟ ଜନ୍ମ ଯଦୁପତି ।
ତେଣୁ ହୋଇଲେ ବିଦ୍ୟାଅର୍ଥୀ ॥୪୯
ଗୋବିନ୍ଦ ବିଚାରନ୍ତି କହି ।
ବିଦ୍ୟା ପଢିବା ଆମ୍ଭେ କାହିଁ ॥୫୦
ଶୁଣି ବୋଲନ୍ତି ହଳଧର ।
ଅବନ୍ତୀ ରାଜ୍ୟେ ବିପ୍ରବର ॥୫୧
କଶ୍ୟପ ଗୋତ୍ରେ ବିଦ୍ୟମାନ ।
ତାହାଙ୍କ ସାନ୍ଦୀପନୀ ନାମ ॥୫୨
ଏମନ୍ତ ଭାଳି ବେନିଭ୍ରାତେ ।
ବିଜୟ କଲେ ଏକରଥେ ॥୫୩
ରାମଗୋବିନ୍ଦ ଯୋଗବଳେ ।
ଅବନ୍ତୀ ନଗରେ ମିଳିଲେ ॥୫୪
ନିତି ଘେନନ୍ତି ଗୁରୁଦୀକ୍ଷା ।
ପାଠ ପଠନେ ବଡ଼ ଇଚ୍ଛା ॥୫୫
ପୂଜନ୍ତି ଗୁରୁଙ୍କ ଚରଣ ।
ଦେବତା ପ୍ରାୟେ ଆଚରଣ ॥୫୬
ସେବନ୍ତି ଗୁରୁଭାବ ଜାଣି ।
ଧର୍ମପାଳନେ ଚକ୍ରପାଣି ॥୫୭
ଭକତି ଦେଖି କୃଷ୍ଣରାମ ।
ଗୁରୁ ହୋଇଲେ ତୋଷମନ ॥୫୮
ପଢାନ୍ତି ବ୍ରହ୍ମ-ବେଦସାର ।
ସକଳ ଶାସ୍ତ୍ର ନିତ୍ୟାଚାର ॥୫୯
କହିଲେ ଧନୁର୍ବେଦ ରଙ୍ଗେ ।
ଧର୍ମ ମୀମାଂସା ନ୍ୟାୟ ସଙ୍ଗେ ॥୬୦
ଉପାୟ ଦଣ୍ଡ ତର୍କବିଧି ।
ଯେ ରାଜନୀତି ସର୍ବସିଦ୍ଧି ॥୬୧
ଯେ ହରି ସର୍ବଶାସ୍ତ୍ରମୟେ ।
କୋଟି ବ୍ରହ୍ମାଣ୍ଡ ଯାର ଦେହେ ॥୬୨
ଗୁରୁଙ୍କ ମୁଖୁଁ ଶୁଣି ବେଳେ ।
ସକଳ ବିଦ୍ୟା ଅବହେଳେ ॥୬୩
ରାମଗୋବିନ୍ଦ ମନତୋଷେ ।
ଚାରିଦିବସ ବେନିମାସେ ॥୬୪
ପଢି ସାନନ୍ଦ ବେନିଭାଇ ।
ବୋଲନ୍ତି ଶିରେ କରଦେଇ ॥୬୫

ଭୋ ବିପ୍ର ଆଜ୍ଞା ଯେବେ ହୋଇ ।
ଗୁରୁଦକ୍ଷିଣା ଆମ୍ଭେ ଦେଇ ॥୬୬
ପୂଜିବୁ ତୁମ୍ଭର ପୟର ।
ମେଲାଣି ଦିଅ ଯିବୁ ଘର ॥୬୭
ଶୁଣି ସାନନ୍ଦ ବିପ୍ରବର ।
କହିଲେ ପତ୍ନୀର ଆଗର ॥୬୮
ଶୁଣି ଭାବିନୀ ଚିତ୍ରକଥା ।
ରାମଗୋବିନ୍ଦ ବ୍ୟବସ୍ଥା ॥୬୯
ସକଳଶାସ୍ତ୍ର ଆମ୍ଭ ପାଶେ ।
ବସି ପଢିଲେ ବେନିମାସେ ॥୭୦
କେ କହୁ ତାହାଙ୍କ ମହିମା ।
ସକଳଗୁଣେ ସିଦ୍ଧକର୍ମା ॥୭୧
ଦୁହନ୍ତି ମନୁଷ୍ୟ ଶରୀର ।
କି ଅବା ରବି ସୁନାସୀର ॥୭୨
ଗୁରୁଦକ୍ଷିଣା ସେ ଯାଚନ୍ତି ।
କହ ତୁ ଫିଟୁ ମନଭ୍ରାନ୍ତି ॥୭୩
ଶୁଣି ସାନନ୍ଦ ବିପ୍ରନାରୀ ।
କହନ୍ତି ବେନିକର ଯୋଡ଼ି ॥୭୪
ଭୋ ନାଥ ଶୁଣ ମୋର ବାଣୀ ।
ଆମ୍ଭର ପୁରେ କମଳିନୀ ॥୭୫
ଅନେକ ସମ୍ପଦ ଆମ୍ଭର ।
ଜୀବନ ହୋଇଲା ଅସାର ॥୭୬
ସନ୍ତତି ନାହିଁ ଆମ୍ଭ ଘରେ ।
କି ସୁଖ ସଂସାର ବେଭାରେ ॥୭୭
ଆମ୍ଭର ପୁତ୍ରଗୋଟି ଥିଲା ।
ପ୍ରଭାସତୀର୍ଥେ ନାଶ ଗଲା ॥୭୮
ସେ ପୁତ୍ର ଯେବେ ଆଣିଦ୍ୟନ୍ତେ ।
ତେବେ ସେ ଜୀବନ ରଖନ୍ତେ ॥୭୯
ଆନ ସମ୍ପଦେ ନାହିଁ କାର୍ଯ୍ୟ ।
ଶୁଣି ସାନନ୍ଦମନେ ଦ୍ୱିଜ ॥୮୦
ରାମଗୋବିନ୍ଦ ମୁଖଚାହିଁ ।
ବୋଲନ୍ତି ଶୁଣ ମନଦେଇ ॥୮୧
ପ୍ରଭାସତୀର୍ଥେ ମୋ କୁମର ।
ମରିଛି ଦ୍ୱାଦଶବତ୍ସର ॥୮୨
ତାହାକୁ ଯେବେ ଦେବ ଆଣି ।
ତୋଷିବ ଆମ୍ଭର ଘରଣୀ ॥୮୩

ଯେବେ ପାରିବ ତାହା ଦେଇ ।
ତେବେ ଦକ୍ଷିଣା ମୋର ପାଇ ॥୮୪
ହୋଇବ କୃତାର୍ଥ ଜୀବନ ।
ତୁମ୍ଭେ ପାଇବ ଯଶ-ଧର୍ମ ॥୮୫
ଶୁଣି ସାନନ୍ଦମନ ହୋଇ ।
ରଥେ ବସିଲେ ବେନିଭାଇ ॥୮୬
ଗୋବିନ୍ଦ ଯୋଗମାୟା ବଳେ ।
ମିଳିଲେ ବାରାନିଧି କୂଳେ ॥୮୭
ବଳରାମଙ୍କୁ କୃଷ୍ଣ ଚାହିଁ ।
ଭୋ ପ୍ରଭୁ ଥାଅ କୂଳେ ରହି ॥୮୮
ରଥୁଁ ଓହ୍ଲାନ୍ତେ ନନ୍ଦବଳା ।
ତକ୍ଷଣେ ବରୁଣ ମିଳିଲା ॥୮୯
ଜଳୁଁ ବାହାର ବେଗେ ହୋଇ ।
କରଅଞ୍ଜଳି ଶିରେ ଦେଇ ॥୯୦
ବୋଇଲ ଶୁଣ ନାରାୟଣ ।
ଅଶେଷ ବ୍ରହ୍ମାଣ୍ଡ କାରଣ ॥୯୧
କିମ୍ପାଇ ଅଇଲ ମୋ ପୁର ।
ଶୁଣି ବୋଲନ୍ତି ଚକ୍ରଧର ॥୯୨
ଆମ୍ଭର ଗୁରୁପୁତ୍ର ନେଇ ।
ଲୁଚାଇ ଥୋଇଅଛୁ କାହିଁ ॥୯୩
ଆମ୍ଭେ ତୋଷିବୁ ଗୁରୁନାରୀ ।
ବରୁଣ ଆଣ ବେଗକରି ॥୯୪
ଶୁଣି ବରୁଣ ମହାଭୟେ ।
ପଡ଼ିଲା କୃଷ୍ଣପଦ୍ମପାଏ ॥୯୫
ଭୋ ନାଥ ଗୁରୁପୁତ୍ର କାହିଁ ।
ତୁ କି ନ ଜାଣୁ ଭାବଗ୍ରାହୀ ॥୯୬
ମୋର ଭିତରେ ଶଙ୍ଖାସୁର ।
ତୁ ଯେ ମାଇଲୁ ଚକ୍ରଧର ॥୯୭
ବ୍ରହ୍ମାଙ୍କୁ ଦେଲୁ ବେଦ ନେଇ ।
ତାହାର ପୁତ୍ରେକ ଅଛଇ ॥୯୮
ନାମ ତାହାର ପଞ୍ଚଜନ ।
ମାୟାବୀ ଅସୁରନନ୍ଦନ ॥୯୯
ସେ ଅବା ନେଇଅଛି ହରି ।
ଶୁଣି ସାନନ୍ଦ ନରହରି ॥୧୦୦
ବଳଦେବଙ୍କୁ ତୀରେ ଥୋଇ ।
ଜଳେ ପଶିଲେ କୃଷ୍ଣ ଯାଇ ॥୧୦୧

Dr. Sudhanshu Sekhar Mishra

ଅଗାଧଜଳେ ଭାବଗ୍ରାହୀ ।
ଧଇଲେ ଅସୁରକୁ ଯାଇ ॥୧୦୨
ମୁଷ୍ଟି ପ୍ରହାରିଲେ ପ୍ରଚଣ୍ଡ ।
ଶିର ହୋଇଲା ବେନିଖଣ୍ଡ ॥୧୦୩
ତାର ଉଦରେ ଭଗବାନ ।
ଖୋଜିଲେ ଗୁରୁଙ୍କ ନନ୍ଦନ ॥୧୦୪
ଖୋଜି ନ ପାଇ ପଦ୍ମମୁଖ ।
ତାର ଉଦରୁ ନାଭିଶଙ୍ଖ ॥୧୦୫
ଘେନି ବାହାର ବ୍ରହ୍ମରାଶି ।
ରାମର ସଙ୍ଗେ ରଥେ ବସି ॥୧୦୬
କହନ୍ତି କମଳାର ବର ।
ଭୋ ସ୍ୱାମୀ ଯିବା ଯମପୁର ॥୧୦୭
ଗୁରୁବାଳକ ଏଥେ ନାହିଁ ।
ଏମନ୍ତ ବୋଲି ରଥବାହି ॥୧୦୮
ଯାନ୍ତେ କରନ୍ତି ଶଙ୍ଖନାଦ ।
ଖଣ୍ଡିଲେ ଜନ୍ତୁଙ୍କ ବିଷାଦ ॥୧୦୯
ଯମର ଗଡ଼ଦ୍ୱାରେ ଯାଇ ।
ଗୋବିନ୍ଦ ଶଙ୍ଖନାଦ ବାଇ ॥୧୧୦
ଯମଯାତନା ଘୋରପଥେ ।
ନିବାସିଥିଲେ ପ୍ରାଣୀ ଯେତେ ॥୧୧୧
ଶୁଣି କୃଷ୍ଣର ଶଙ୍ଖନାଦ ।
ଖଣ୍ଡିଲେ ଘୋର-ପାପବନ୍ଧ ॥୧୧୨
ହୋଇଲେ ଚାରିଚାରି ଭୁଜ ।
ଶଙ୍ଖ କମଳ ଗଦାତେଜ ॥୧୧୩
ଚକ୍ରତେଜ ସହିତେ ଚିହ୍ନ ।
ତକ୍ଷଣେ ଉଠିଲେ ଗଗନ ॥୧୧୪
ଶଙ୍ଖ ଶବଦ ଘନେ ସ୍ଫୁରି ।
ଯମଭୁବନେ ପଡ଼େ ଛୁରି ॥୧୧୫
ଯମକୁ ଜଣାଇଲେ ଦୂତ ।
ବିଜୟ କଲେ ଗୋପୀନାଥ ॥୧୧୬
ତୋର ସମ୍ପଦ ଆଜ୍ଜି ଗଲା ।
ତା ଶୁଣି ଯମ ଭୟ କଲା ॥୧୧୭
ଚିତ୍ରଗୁପତ କର ଧରି ।
ବେଗେ ଭେଟିଲା ନରହରି ॥୧୧୮
କୃଷ୍ଣଚରଣ ତଳେ ପଡି ।
ଯମ ବୋଲଇ କରଯୋଡି ॥୧୧୯

ଭୋ ନାଥ ନିସ୍ତରିଲି ମୁହିଁ ।
ବିଜୟ କଲ କାହିଁପାଇଁ ॥୧୨୦
ଶୁଣି ବୋଲନ୍ତି ଶିରୀରଙ୍ଗ ।
ଗୁରୁଙ୍କ ପୁତ୍ର ଆଣ ବେଗ ॥୧୨୧
ତାର ମରଣକାଳ ଜାଣି ।
ତୋହର ଦୂତେ ଛନ୍ତି ଆଣି ॥୧୨୨
ମୋର ବଚନେ ଆଣ ତୁହି ।
ଆନ କେ ପାରିବଟି ନେଇ ॥୧୨୩
ଶୁଣି ସାନନ୍ଦ ଜନ୍ତୁନାଥ ।
କୃଷ୍ଣଙ୍କୁ ଦେଲା ଗୁରୁପୁତ୍ର ॥୧୨୪
ଗୁରୁ-ବାଳକ କର ଧରି ।
ରଥେ ବସିଲେ ଦଇତ୍ୟାରି ॥୧୨୫
ବସିଲେ ଯାଇ ରାମ ତୁଲେ ।
ଗୁରୁ-ବାଳକ ଘେନି କୋଳେ ॥୧୨୬
ଅବନ୍ତୀପୁରେ ବନମାଳୀ ।
ଗୁରୁ-ମନ୍ଦିରେ ବେଗେ ମିଳି ॥୧୨୭
ରଥୁଁ ଓହ୍ଲାଇ ଦାମୋଦର ।
ଗୁରୁକୁମର ଧରି କର ॥୧୨୮
ଭିତରେ ପଶି ବେନିଭାଇ ।
ଗୁରୁ-କାମିନୀ କୋଳେ ନେଇ ॥୧୨୯
ସୁତ ବସାଇ ପ୍ରଦକ୍ଷିଣ ।
ହସି ବୋଲନ୍ତି ନାରାୟଣ ॥୧୩୦
ତୁମ୍ଭର ପୁତ୍ର ମାଏ ନିଅ ।
ଦକ୍ଷିଣା ଦେବୁ ଆଜ୍ଞା ଦିଅ ॥୧୩୧
ଶୁଣି ଉଠିଲେ ଗୁରୁନାରୀ ।
ରାମ-ଗୋବିନ୍ଦ କର ଧରି ॥୧୩୨
କଲ୍ୟାଣ କରି ଚୁମ୍ବ ଦେଇ ।
ତୁମ୍ଭରେ ନିଉଛାଳି ହୋଇ ॥୧୩୩
ଆନ ସମ୍ପଦେ କାର୍ଯ୍ୟ ନାହିଁ ।
କୃତାର୍ଥ କଲ ପୁତ୍ର ଦେଇ ॥୧୩୪
ଏମନ୍ତ କହି ବେନିଜନ ।
ଚାହାଁନ୍ତି କୃଷ୍ଣର ବଦନ ॥୧୩୫
ଲୋଚନୁ ଅଶ୍ରୁଜଳ ବହେ ।
କୃଷ୍ଣ ମୋହିଲେ ମାୟାମୋହେ ॥୧୩୬
ତକ୍ଷଣେ ହୋଇ ତୋଷମନ ।
ଆନନ୍ଦେ କରନ୍ତି କଲ୍ୟାଣ ॥୧୩୭

ଯାଅ ମଥୁରା ବେନିଭାଇ ।
ଅକ୍ଷୟ ହେଉ ତୁମ୍ଭ ଦେହୀ ॥୧୩୮
ଯେତେ ପଢ଼ିଲ ମୋର ଠହୁଁ ।
ଅକ୍ଷୟ ହୋଇ ହୃଦେ ରହୁ ॥୧୩୯
ମୋର ଆୟୁଷ ଯଶ ଯେତେ ।
ତୁମ୍ଭଙ୍କୁ ହେଉ ପରାପତେ ॥୧୪୦
ତକ୍ଷଣେ ଗୁରୁ-ଆଜ୍ଞା ପାଇ ।
ରଥେ ବସିଲେ ବେନିଭାଇ ॥୧୪୧
ମନ ନିବେଶି ଗୁରୁପାଦେ ।
ମଥୁରା ଗଲେ ଅପ୍ରମାଦେ ॥୧୪୨
ଗୁରୁ-କାମିନୀ ପୁତ୍ର ପାଇ ।
ଆନନ୍ଦ କେ ପାରିବ କହି ॥୧୪୩
ବେନିସ୍ତନରୁ କ୍ଷୀର ଝରେ ।
ସ୍ତନ୍ୟ ପିଆନ୍ତି ସ୍ନେହଭରେ ॥୧୪୪
କେ କହୁ ଗୁରୁଙ୍କ ଆନନ୍ଦ ।
ଯାହାର ଶିଷ୍ୟ ଆଦିକନ୍ଦ ॥୧୪୫
ଏବେ ହୋ ଶୁଣ ନୃପବର ।
କୃଷ୍ଣ ମିଳିଲେ ମଧୁପୁର ॥୧୪୬
କୃଷ୍ଣ ଆଗମନେ ଆନନ୍ଦ ।
ଆସି ମିଳଲେ ଯଦୁବୃନ୍ଦ ॥୧୪୭
ଦେଖି ଆନନ୍ଦ ଭାଇବେନି ।
ହରଷ ପିଅର-ଜନନୀ ॥୧୪୮
ସେ ଆଦିକନ୍ଦ ପାଦତଳେ ।
ସୁଜନେ ଚିତ୍ତ ଧ୍ୟାନବଳେ ॥୧୪୯
କହଇ ଜଗନ୍ନାଥ ଦାସ ।
ହରିଚରିତ ସୁଧାରସ ॥୧୫୦

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଗୁରୁପୁତ୍ରାନୟନଂ
ନାମ ଉନପଞ୍ଚାଶତ୍ ଅଧ୍ୟାୟଃ ॥

---

Dr. Sudhanshu Sekhar Mishra

## ପଞ୍ଚାଶତ୍ ଅଧ୍ୟାୟ

ଶୁକ ଉବାଚ

ଶୁଣ ପାଣ୍ଡବ-ଚୂଡ଼ାମଣି ।
ମଥୁରାପୁରେ ଚକ୍ରପାଣି ॥୧
ସଂହାରି ଗଡ-ମାଲ-କଂସ ।
ଯଦୁଙ୍କୁ ଦେଇ ଗ୍ରାମଦେଶ ॥୨
ସକଳ ବେଦବିଦ୍ୟା ଜାଣି ।
ଯମର ଘରୁ ପତ୍ର ଆଣି ॥୩
ଗୁରୁଙ୍କୁ କରି ସନମାନ ।
ମୋହିଲେ ମଥୁରାଭୁବନ ॥୪
ଦୟାସାଗର ନରହରି ।
ମନେ ସୁମରି ଗୋପନାରୀ ॥୫
ଆନନ୍ଦେ ରଜନୀ ପାହିଲା ।
ରବିକିରଣ ପ୍ରକାଶିଲା ॥୬
ଉଦ୍ଧବେ ରାଇ ନରହରି ।
କହନ୍ତି କରେ କର ଧରି ॥୭
ତୁ ଦେବଗୁରୁଙ୍କର ଶିଷ୍ୟ ।
ଜ୍ଞାନ ତୋ ଅତି ହିଁ ବିଶେଷ ॥୮
ସୁବୁଦ୍ଧିଜନ ମଧ୍ୟେ ସାର ।
ଯାଦବକୁଳେ ମନ୍ତ୍ରୀବର ॥୯
ତୁ ଅଟୁ ମିତ୍ର ଯେଣୁ ମୋର ।
କହଇ ଶୁଣ ମୋ ଉତ୍ତର ॥୧୦
ଏକାନ୍ତେ ଭକ୍ତଥାଉ ତୁହି ।
ତୋହର ମନ ମୁଁ ଜାଣଇଁ ॥୧୧
ତୁ ମୋର ପ୍ରିୟ ଅଟୁ ଯେବେ ।
ଗୋପପୁରକୁ ଯାଅ ତେବେ ॥୧୨
ଅକ୍ରୁର ଯେତେବେଳେ ମୋତେ ।
ରଥେ ବସାଇ ଗୋପପଥେ ॥୧୩
ଆଣିଲାବେଳେ ଗୋପନାରୀ ।
ମୋହର ରଥ ଥିଲେ ଧରି ॥୧୪
ମୁଁ ତାଙ୍କୁ କହିଲି ବିଶ୍ୱାସେ ।
ଉତ୍ସବ ଦେଖିବାର ଆଶେ ॥୧୫
ତୁମ୍ଭେ ଗୋ ଥାଅ ସ୍ଥିରମନେ ।
ଆମ୍ଭେ ଆସିବୁ ଚାରିଦିନେ ॥୧୬
ତେଣୁ ସେ ଆମ୍ଭରେ ଭରଷା ।
କରିଣଥିବେ ପ୍ରତିଆଶା ॥୧୭
ମୋତେ ନ ଦେଖି ଖେଦମନ ।
ମରମେ ଦହଇ ମଦନ ॥୧୮
ନିମିଷେ ଶତଯୁଗ ମଣି ।
ଅଛନ୍ତି ଗୋପପୁର ତରୁଣୀ ॥୧୯
ତୁ ମୋର ଆଜ୍ଞା ଘେନିଯାଅ ।
ଗୋପ-କାମିନୀ ମଧ୍ୟେ କହ ॥୨୦
ଗୋପୀଙ୍କ ମନ ମୋର ତହିଁ ।
ମୁଁ ତାଙ୍କ ଜୀବନ ଅଟଇ ॥୨୧
ଦେହବେଭାର ମୋର ଅର୍ଥେ ।
ଛାଡ଼ି ଭଜିଲେ ମୋର ପଥେ ॥୨୨
ଇଷ୍ଟଦେବତା ତାଙ୍କ ମୁହିଁ ।
ମୋ ତହୁଁ ଆନଗତି ନାହିଁ ॥୨୩
ଏ ଲୋକଧର୍ମ ଛାଡ଼ି ମୋତେ ।
ଭଜନ୍ତି ଭକ୍ତିଭାବ ଚିତ୍ତେ ॥୨୪
ତାହାଙ୍କୁ ବହଇ ମୁଁ ହୃଦେ ।
ସେବନ୍ତି ମୋର ପଦ୍ମପାଦେ ॥୨୫
ପ୍ରିୟଜନଙ୍କ ପ୍ରିୟ ମୁହିଁ ।
ଦଇବେ ଦୂରେ ଅଛି ରହି ॥୨୬
ସଂସାର ଚେଷ୍ଟା ଛାଡ଼ି ଚିତ୍ତେ ।
ମୋର ସଙ୍ଗତି ଅବିରତେ ॥୨୭
ନିତ୍ୟେ ସୁମରି ମୋର ଗତି ।
କ୍ଷଣକ୍ଷଣକେ ମୋହ ଯାନ୍ତି ॥୨୮
ବିରହ-ବିଯୋଗେ କାତର ।
ମନ ନିବେଶି ମୋ ପୟର ॥୨୯
ଦେହ ଧରନ୍ତି ଅତିକଷ୍ଟେ ।
ପଞ୍ଚପରାଣ କଣ୍ଠତଟେ ॥୩୦
କୃଷ୍ଣ ଆସିବେ ଗୋପପୁର ।
ଏଣେ ଭରଷା ତାହାଙ୍କର ॥୩୧
ଏମନ୍ତେ କୃଷ୍ଣର ସନ୍ଦେଶ ।
ଘେନି ଉଦ୍ଧବ ମନେ ତୋଷ ॥୩୨
ଆନନ୍ଦେ ବସିଲା ବିମାନେ ।
ଚଳିଲା ବରଜ-ଭୁବନେ ॥୩୩
ଦିବସଶେଷେ ଗୋପେ ମିଳ ।
ଗଗନେ ଉଡ଼େ ଗୋରୁଧୂଳି ॥୩୪
ରବି ପଶ୍ଚିମେ ଅସ୍ତ ଗଲା ।
ଉଦ୍ଧବ ଗୋପରେ ମିଳିଲା ॥୩୫
ଗୋପେ ପଶନ୍ତେ ଗୋରୁଙ୍କର ।
ଧୂଳିରେ ଛନ୍ନ ଦିବାକର ॥୩୬
ଗାଈଏ ଋତୁ ଦେଖି ତୋଷେ ।
ଗର୍ଜିଣ ଧାଉଁଛନ୍ତି ବୃକ୍ଷେ ॥୩୭
ଗାଈଏ ସ୍ତନ କ୍ଷୀରଭାରେ ।
ବତ୍ସାଙ୍କୁ ଡ଼ାକନ୍ତି ହୁଙ୍କାରେ ॥୩୮
ଯେସନେ ସମୁଦ୍ର ଉଲ୍ଲୋଳ ।
ବତ୍ସାଏ ଧାମନ୍ତି ଗହଳ ॥୩୯
ଗୋରୁଦୋହନ ରାବ ସଙ୍ଗେ ।
ମୁରଲୀ ନାଦ ନବରଙ୍ଗେ ॥୪୦
ରାମଗୋବିନ୍ଦଙ୍କ ଚରିତ ।
ବେଣୁଶବଦେ ପୂରେ ଗୀତ ॥୪୧
ଗୋପୀଗୋପାଳ ରୂପବନ୍ତ ।
ସୁନ୍ଦର ଘର ଦ୍ୱାର ପଥ ॥୪୨
ଅଗ୍ନି ଅତିଥି ବିପ୍ରଗଣେ ।
ଗୁରୁଦେବତାଙ୍କ ପୂଜନେ ॥୪୩
ଧୂପ ପ୍ରଦୀପ ପୁଷ୍ପସାର ।
ସୁନ୍ଦର ଗୋପାଳଙ୍କ ପୁର ॥୪୪
ପୁଷ୍ପିତବନ ଚାରିଦିଗେ ।
ପକ୍ଷୀ ଭ୍ରମର ନାଦ ରଙ୍ଗେ ॥୪୫
ପଦ୍ମକୁମୁଦେ ଜଳରାଶି ।
ହଂସ-ସାରସେ ପରଶଂସି ॥୪୬
ଅତି ସୁନ୍ଦର ଗୋପପୁର ।
କି ଅବା ଦେବା ପଟାନ୍ତର ॥୪୭
ନନ୍ଦର ମନ୍ଦିରେ ଉତ୍ସବ ।
ଆନନ୍ଦେ ମିଳିଲେ ଉଦ୍ଧବ ॥୪୮
ନନ୍ଦ ଉଠିଲା ବେଗେ ଦେଖି ।
ତକ୍ଷଣେ ଆସନ ଉପେକ୍ଷି ॥୪୯
ଜାଣିଲା କୃଷ୍ଣର ଏ ଦୂତ ।
ଆନନ୍ଦେ ନନ୍ଦ କୃତକୃତ୍ୟ ॥୫୦

Dr. Sudhanshu Sekhar Mishra

କୃଷ୍ଣର ପ୍ରାୟ ତାଙ୍କୁ ମଣି ।
ପୂଜିଲା ଦେଇ ଅର୍ଘ୍ୟ ପାଣି ।।୫୧
ଦଧି ଶାକର କ୍ଷୀର ଅନ୍ନ ।
ଭୁଞ୍ଜି ଉଦ୍ଧବ ତୋଷମନ ।।୫୨
ତାମ୍ବୁଳ ମୁଖବାସ ଦେଇ ।
ପଲ୍ୟଙ୍କେ ବସାଇଲା ନେଇ ।।୫୩
ସୁଖେ ବସାଇ କୃଷ୍ଣଦୂତ ।
ନନ୍ଦ ହୋଇଲା କୃତକୃତ୍ୟ ।।୫୪
ଉଦ୍ଧବ ପଦେ ଦେଇ କର ।
ଶୋକେ କହଇ ଗୋପବୀର ।।୫୫
ତୁ ଭାଗ୍ୟବନ୍ତ ଯଦୁବୀର ।
ମିତ୍ର ବସୁଦେବ ମୋହର ।।୫୬
ତାର କୁଶଳେ ମୋର ଇଷ୍ଟ ।
ନିଶ୍ଚୟେ ମଲା କଂସ ଦୁଷ୍ଟ ।।୫୭
ସାଧୁଙ୍କୁ ଦିଏ ଯେ କଷଣ ।
ତାକୁ ସଂହାରେ ନାରାୟଣ ।।୫୮
କଂସର ସଙ୍କଟୁ ତାରିଲା ।
ବନ୍ଧୁବାନ୍ଧବ ଆବୋରିଲା ।।୫୯
ଏ କଥା ଭାଗ୍ୟଟି ଆମ୍ଭର ।
ଉଦ୍ଧବ ଶୁଣ ମୋ ଉତ୍ତର ।।୬୦
ତୁ ଯେ ଗୋବିନ୍ଦର ବିଶ୍ୱାସ ।
କ୍ଷଣେ ନ ଛାଡୁ ତାର ପାଶ ।।୬୧
କୃଷ୍ଣକୁ ମୋର ବଡ଼ ସ୍ନେହ ।
ତାର କୁଶଳ ମୋତେ କହ ।।୬୨
ଯଶୋଦା ଜନନୀ ତାହାର ।
ସୁହୃଦେ ଗୋପର କୁମର ।।୬୩
ଗୋରୁ ଗୋପାଳ ଗୋପପୁର ।
ସେ କୃଷ୍ଣ ଜୀବନ ଆମ୍ଭର ।।୬୪
ଏ ବୃନ୍ଦାବନ ଗୋବର୍ଦ୍ଧନ ।
ଯମୁନାଜଳ ରମ୍ୟସ୍ଥାନ ।।୬୫
ଉଦ୍ଧବ କହ ତୁ ବହନ ।
କୃଷ୍ଣ କି କରେ ସୁମରଣ ।।୬୬
ବନ୍ଧୁବାନ୍ଧବ ଦେଖିବାରେ ।
ସେ କୃଷ୍ଣ ଆସିବ କି ବାରେ ।।୬୭
ନିଶ୍ଚୟ ସତ୍ୟ କି ଉଦ୍ଧବ ।
ଦୟା କି କରିବେ ମାଧବ ।।୬୮
କେବେ ଦେଖିବୁ ତା ବଦନ ।
ସୁନ୍ଦର ଚକ୍ଷୁ ନାସା କର୍ଣ୍ଣ ।।୬୯
ରଙ୍ଗଅଧର ସ୍ମିତମୁଖ ।
ଦେଖିଲେ ଖଣ୍ଡେ ଭବଦୁଃଖ ।।୭୦
ଦାବାନଳର ମୁଖୁଁ ତାରି ।
ଇନ୍ଦ୍ର ବିବାଦେ ଗିରି ଧରି ।।୭୧
ବୃଷଭ ଅଘା ମଣିଚୂଡ଼ ।
ତୃଣ ଶକଟ ବକାସୁର ।।୭୨
ଅନେକ ମାରି ଘୋର ଦୁଷ୍ଟ ।
ଆମ୍ଭର ଫେଡ଼ିଲା ସଙ୍କଟ ।।୭୩
ଅପାଙ୍ଗ କଟାକ୍ଷ ଲୋଚନ ।
ସୁନ୍ଦର ହସିତ ବଦନ ।।୭୪
ମେଘ-ଗଭୀର ମୃଦୁବାଣୀ ।
ତାହାର ଲୀଳା ମନେ ଗୁଣି ।।୭୫
ଆମ୍ଭର କ୍ରିୟାକର୍ମ ଗଲା ।
ସୁମରି ଗୋବିନ୍ଦର ଲୀଳା ।।୭୬
ନଦୀ ପର୍ବତ ବନଭୂଇଁ ।
ଗୋବିନ୍ଦ ପାଦଚିହ୍ନ ଚାହିଁ ।।୭୭
ଯହିଁ ଯେମନ୍ତେ କ୍ରୀଡ଼ା କଲା ।
ଆମ୍ଭର ମନରୁ ନ ଗଲା ।।୭୮
ଚିତ୍ତ ନ ରହେ ହୃଦଗତେ ।
ଜୀବନ ଧରିବୁ କେମନ୍ତେ ।।୭୯
ଗର୍ଗବଚନ ମନେ ଗୁଣି ।
ନିଶ୍ଚୟେ ଅଛଇ ମୁଁ ଜାଣି ।।୮୦
ଯଦୁବଂଶର ସୁଖହିତେ ।
କେଉଁ ଦେବତା ଭୂମିଗତେ ।।୮୧
ଉଭୟ ରୂପେ ଅବତାର ।
ଜୀବନ ରହିଲା ଆମ୍ଭର ।।୮୨
ଦଶସହସ୍ର ମତ୍ତଗଜ ।
ବଳ ବହଇ ଭୋଜରାଜ ।।୮୩
ଚାଣୂର ମୁଷ୍ଟିକ ଯେମନ୍ତ ।
ଗଜ କୁବଳୟା ମାହୁନ୍ତ ।।୮୪
ଏହାଙ୍କୁ ଲୀଳାୟେ ସଂହାରି ।
ପଶୁଙ୍କୁ ଯେସନେ କେଶରୀ ।।୮୫
କଂସର ଯେଉଁ ଯାତ୍ରା ଧନୁ ।
ଉଦ୍ଧବ ତୁ ତ ଭଲେ ଜାଣୁ ।।୮୬
ସ୍ୱଭାବେ ଉଞ୍ଚ ତିନିତାଳ ।
ବଜ୍ରହୁଁ ଆଣ୍ଟୁଆର ବଳ ।।୮୭
ସେ ଧନୁ କଲା ବେନିଖଣ୍ଡ ।
ହସ୍ତୀ ଯେସନେ ଇକ୍ଷୁଦଣ୍ଡ ।।୮୮
ବରଷା ଦେଖି ଗୋପପୁର ।
ହସ୍ତେ ତୋଳିଲା ଗିରିବର ।।୮୯
ସପତଦିନ ବରଷିଲା ।
କୃଷ୍ଣ କରେ ଗିରି ଥିଲା ।।୯୦
ପ୍ରଳମ୍ବ ଧେନୁକା ଦଇତ ।
ଷଣ୍ଢ ଅସୁର ତୃଣାବର୍ତ୍ତ ।।୯୧
ବକା ମାୟାବୀ ବଳବନ୍ତ ।
ହସ୍ତୀ ତୋଳିଲା ଗିରିବର ।।୯୨
ଏହାଙ୍କୁ ହେଳାଏ ମାଇଲା ।
ଲୀଳାମାତ୍ରକେ ମୋର ବଳା ।।୯୩
ଶୁକ ବୋଲନ୍ତି ରାୟେ ଶୁଣ ।
ନନ୍ଦ ସୁମରି କୃଷ୍ଣଗୁଣ ।।୯୪
କଣ୍ଠକୁଣ୍ଠିତ ଶୋକନାଦେ ।
କାନ୍ଦଇ ପ୍ରାଣ କଣ୍ଠାଗତ ।।୯୫
ସୁତ ଲାଳସେ ଦୃଢ଼ ଚିତ୍ତ ।
ପଡ଼ଇ କୃଷ୍ଣଦୂତ ପାଦେ ।।୯୬
ପ୍ରେମ ଆନନ୍ଦ ହୃଦେ ଘେନି ।
ବିକଳେ ନନ୍ଦ ହେଲା ତୁନି ।।୯୭
ନନ୍ଦ କହଇ କୃଷ୍ଣକଥା ।
ଶୁଣି ଯଶୋଦା ମନେ ବ୍ୟଥା ।।୯୮
ପୁତ୍ରର ଗୁଣକର୍ମମାନ ।
ଶୁଣି ହୋଇଲା ହତଜ୍ଞାନ ।।୯୯
କ୍ଷୀର ବରଷି ପୟୋଧରେ ।
କାନ୍ଦଇ ଶୋକେ ଗୁରୁତରେ ।।୧୦୦
ଏମନ୍ତ ଶୋକ ତାଙ୍କ ଦେଖି ।
ଉଦ୍ଧବ ମନେ ଉପଲକ୍ଷ୍ୟି ।।୧୦୧
ନନ୍ଦ-ଯଶୋଦାଙ୍କର ଭାଗ୍ୟ ।
କୃଷ୍ଣ-ବିଷୟେ ଅନୁରାଗ ।।୧୦୨
ଦେଖି ଉଦ୍ଧବ ମନେ ଗୁଣି ।
ଆନନ୍ଦେ କହେ ମୃଦୁବାଣୀ ।।୧୦୩
ମୋ ବୋଲ ଶୁଣ ନନ୍ଦରାୟେ ।
ଜ୍ଞାନ ନ ହାର ମାୟାମୋହେ ।।୧୦୪

Dr. Sudhanshu Sekhar Mishra

ଏ ମହୀତଳେ ଯେତେ ଜନ ।
ତାହାଙ୍କ ମଧ୍ୟେ ତୁମ୍ଭେ ଧନ୍ୟ ॥୧୦୫
ଏଡ଼େ ଭକତି ଯୋଗସାର ।
ଗୋବିନ୍ଦ ବିଷୟେ ତୁମ୍ଭର ॥୧୦୬
ଏ ବଳରାମ ଶିରୀଧର ।
ଜଗତ ଜନନୀ ପିଅର ॥୧୦୭
ପ୍ରଧାନ ପୁରୁଷ ଏ ଦୁଇ ।
ଭଲେ ନିଗମ ନ ଜାଣଇ ॥୧୦୮
ଜୀବର ଜୀବନ ମୁରାରି ।
ପ୍ରକୃତି ରାମରୂପ ଧରି ॥୧୦୯
ସକଳଭୂତେ ଅନ୍ତର୍ଯ୍ୟାମୀ ।
ପୁରାଣ ପୁରୁଷ ଏ ବେନି ॥୧୧୦
ଜୀବର ଜ୍ଞାନ ଏ ଈଶ୍ୱର ।
ବିଷ୍ଣୁର ମାୟା ଅଗୋଚର ॥୧୧୧
ପ୍ରାଣ-ବିଯୋଗ-କାଳେ ଜନ ।
ତାହାଙ୍କ ପାଦେ ଦେଲେ ମନ ॥୧୧୨
ଅର୍ଜିଲା ଶୁଭାଶୁଭକର୍ମ ।
ତକ୍ଷଣେ କରଇ ଦହନ ॥୧୧୩
କୋଟିଏ ସୂର୍ଯ୍ୟ ତେଜ ବହି ।
ପରମବ୍ରହ୍ମେ ନିମଜ୍ଜଇ ॥୧୧୪
ଭାରା ନିବାରଣେ ଅନନ୍ତ ।
ମନୁଷ୍ୟେ ହୋଇଛନ୍ତି ଜାତ ॥୧୧୫
ଅଖିଳ-ଲୋକଆତ୍ମା-ହରି ।
ସୃଷ୍ଟି ପାଳନେ ଅଧିକାରୀ ॥୧୧୬
ତୁମ୍ଭର ଭାବ କୃଷ୍ଣ ତହିଁ ।
ଏମନ୍ତ ଦେଖିଲାତ ନାହିଁ ॥୧୧୭
ମନୁଷ୍ୟ ସାଧକର୍ମ ଯେତେ ।
ତୁମ୍ଭେ ନ କଲ ଅବା କେତେ ॥୧୧୮
ତୁମ୍ଭର ପ୍ରିୟ ସେ ମାଧବ ।
ନିକଟେ ଗୋପକୁ ଆସିବ ॥୧୧୯
କଂସ ସଂହାରି ରଙ୍ଗମଧ୍ୟେ ।
ସକଳ ଜନ ସୁଖ ସାଧେ ॥୧୨୦
ଯେ କଂସ ଜଗତର ଖଳ ।
ଭୟେ କମ୍ପନ୍ତି ଯଦୁବଳ ॥୧୨୧
ତାହାକୁ ମାରି ନରହରି ।
ଯାହା ବୋଇଲେ ହସ୍ତଧରି ॥୧୨୨

ସେ କଥା କରିବେ ତୁମ୍ଭର ।
ସତ୍ୟବଚନ ଏ ମୋହର ॥୧୨୩
ଖେଦ ନ କର ତୁମ୍ଭେ ହୃଦେ ।
କୃଷ୍ଣ ପାଇବ ଅପ୍ରମାଦେ ॥୧୨୪
ସେ ହରି ସର୍ବଭୂତ ଦେହେ ।
ନିବାସ ଆଦିତ୍ୟର ପ୍ରାୟେ ॥୧୨୫
ତାହାର ପ୍ରିୟ-ରିପୁ ନାହିଁ ।
ଉତ୍ତମ ମଧ୍ୟମ ନୋହଇ ॥୧୨୬
ସମ-ଅସମ ନାହିଁ ତାର ।
ଭାବକୁ ଥାଇ ନିକଟର ॥୧୨୭
ନାହିଁ ତାହାର ତାତ-ମାତ ।
ଦାରା-ତନୟ-ବନ୍ଧୁ-ମିତ୍ର ॥୧୨୮
ପରଆପଣା ଯାର ନାହିଁ ।
ତାହାର ଜନ୍ମମୃତ୍ୟୁ କାହିଁ ॥୧୨୯
ତ୍ରିବିଧକର୍ମ ନାହିଁ ତାର ।
ଯେତେ ଏ ଲୋକର ବେଭାର ॥୧୩୦
ଦେବ ମନୁଷ୍ୟ ପଶୁଯୋନି ।
ତାହାର ଯୋଗମାୟା ଘେନି ॥୧୩୧
ଜନ୍ତୁଏ ଆତଯାତ ହୋନ୍ତି ।
ଜଳଫୋଟକା ଯେହ୍ନେ ଥାନ୍ତି ॥୧୩୨
କେବଳ କ୍ରୀଡ଼ାରଙ୍ଗମତେ ।
ସାଧୁଙ୍କୁ ରଖିବା ନିମନ୍ତେ ॥୧୩୩
ଜଗତେ ବହଇ ଶରୀର ।
ଧର୍ମପାଳନେ ଶିରୀଧର ॥୧୩୪
ନିର୍ଗୁଣ ହୋଇ ଗୁଣେ ମିଶେ ।
ଜଗତ ପାଳିବାର ଆଶେ ॥୧୩୫
ସ୍ୱଭାବେ ଚେଷ୍ଟା ଯାର ନାହିଁ ।
ତ୍ରିଗୁଣେ ପ୍ରତିମା ନଚାଇ ॥୧୩୬
ସର୍ଜଇ ପାଳଇ ଜଗତ ।
ଅନନ୍ତ କରୁଥାଇ ଅନ୍ତ ॥୧୩୭
ଭ୍ରମନ୍ତା ପ୍ରାଣୀଙ୍କର ଯେହ୍ନେ ।
ସଂସାରେ ଭ୍ରମୁଥାଇ ଶୂନ୍ୟେ ॥୧୩୮
ସେ ଯେହ୍ନେ ସତ୍ୟପ୍ରାୟ ମଣି ।
ଆପଣା ଭ୍ରମକୁ ନ ଜାଣି ॥୧୩୯
ଚିତ୍ତରେ ମାୟାଭ୍ରମ ଲଇଁ ।
ବୋଲଇ କରୁଅଛି ମୁହିଁ ॥୧୪୦

ଏଟି ଜୀବର ଅହଙ୍କାର ।
ମାୟାଭିଆଣ ଏ ହରିର ॥୧୪୧
ତୁମ୍ଭେ ଯେ ବୋଲ ଦାମୋଦର ।
ନିଶ୍ଚୟ ଆମ୍ଭର କୁମର ॥୧୪୨
ସକଳ ଜନ୍ତୁ ଆତ୍ମଭୂତ ।
ତାତଜନନୀ ସେ ଅନନ୍ତ ॥୧୪୩
ସକଳ ଜୀବଆତ୍ମା ହରି ।
ମାୟାର ବଳେ ଅଛି ଧରି ॥୧୪୪
ଏଣୁ ସେ ଈଶ୍ୱର ବୋଲାଇ ।
ଜନ୍ମ ମରଣ ତାର ନାହିଁ ॥୧୪୫
ଯେତେ ହୋ ନନ୍ଦ ଦେଖୁ ତୁହି ।
ଭୂତଭବିଷ୍ୟ ଯେତେ ହୋଇ ॥୧୪୬
ସ୍ଥାବର ଜଙ୍ଗମ ଜଗତ ।
ଯେତେକ ଅଳପ ବହୁତ ॥୧୪୭
ହରିହୁଁ ନୁହଇଟି ଆନ ।
ସକଳ ପ୍ରଭୁ ଭଗବାନ ॥୧୪୮
ଉଦ୍ଧବ କହୁଁ ନନ୍ଦ ଆଗେ ।
ରଜନୀ ପାହିଲାକ ବେଗେ ॥୧୪୯
ଗୋପୀଏ ନିଦ୍ରାଗତେ ଥିଲେ ।
ଶୟନ ତେଜିଣି ଉଠିଲେ ॥୧୫୦
ବେଗେ ଜାଳିଲେ ଦୀପପନ୍ତି ।
ଦଧିମନ୍ଥନେ ଦୃଢମତି ॥୧୫୧
ବାସ୍ତୁମାର୍ଜନ ଛେରା ଦେଇ ।
ସୁବାସଜଳେ ମୁଖ ଧୋଇ ॥୧୫୨
ସ୍ୱଭାବେ ନାନା ଅଳଙ୍କାର ।
ଭୂଷଣ ମଣିରତ୍ନ ସାର ॥୧୫୩
ପ୍ରଦୀପ ତେଜେ ବିରାଜନ୍ତି ।
ଗଗନେ ଯେହ୍ନେ ତାରାପନ୍ତି ॥୧୫୪
ଖୁଆ ଦଉଡ଼ି ଧରି କରେ ।
ଦଧି ମନ୍ଥନ୍ତି ଧୀରେ ଧୀରେ ॥୧୫୫
କରେ କଙ୍କଣ ତାଡ଼ ଶୋହେ ।
ହୃଦରେ ହାର ଜନମୋହେ ॥୧୫୬
ସ୍ତନ ନିତମ୍ବ ହେମମାଳ ।
କୁଣ୍ଡଳ ଅଳକା କପୋଳ ॥୧୫୭
ଚଳନ୍ତି ମନ୍ଥନର ବେଳା ।
ରଙ୍ଗକମଳ ପ୍ରାୟେ ଡ଼ୋଳା ॥୧୫୮

Dr. Sudhanshu Sekhar Mishra

ପଦ୍ମଲୋଚନ ନାମ ଧରି ।
ଉଚ୍ଚେ ଗାବନ୍ତି ବ୍ରଜନାରୀ ।।୧୫୯
ଦଧିମନ୍ଥନର ଶବଦ ।
ସଙ୍ଗେ ମିଳିଲା ଗୀତନାଦ ।।୧୬୦
ସକଳ ମଙ୍ଗଳ ସେ ହରି ।
ଶୁଭିଲା ଦଶଦିଗ ପୂରି ।।୧୬୧
ଦଧିମନ୍ଥନେ ଗୀତନାଦ ।
ଶୁଣନ୍ତେ ଦେବତା ଆନନ୍ଦ ।।୧୬୨
ଦେବେ ବୋଲନ୍ତି ନିସ୍ତରିଲୁ ।
ନାମ ଭକ୍ତମୁଖୁଁ ଶୁଣିଲୁ ।।୧୬୩
ଏମନ୍ତେ ରଜନୀ ପାହିଲା ।
ରବିକିରଣ ପ୍ରକାଶିଲା ।।୧୬୪
ମନ୍ଥନ ସାରି ଗୋପୀ ସୁଖେ ।
କୁମ୍ଭ ଘେନିଣ ନିଜ କାଖେ ।।୧୬୫
ଯମୁନା ଯାଉଁ ଯାଉଁ ଧୀରେ ।
ଦେଖିଲେ ନନ୍ଦରାଜଦ୍ୱାରେ ।।୧୬୬
ସୁବର୍ଣ୍ଣରଥ ରତ୍ନମୟ ।
ଯୋଚିଲା ଅଛି ଚାରି ହୟ ।।୧୬୭
ଧ୍ୱଜେ ଶୋଭିତ ମଣିସାର ।
ତା ଦେଖି କରନ୍ତି ବିଚାର ।।୧୬୮
ଏ ଟି କାହାର ଦେଖ ରଥ ।
ଆବୋରି ଅଛି ରାଜପଥ ।।୧୬୯
ଇନ୍ଦ୍ରବିମାନ ପ୍ରାୟ ଦିଶେ ।
ଗୋପୀ ମିଳିଲେ ଯାଇ ପାଶେ ।।୧୭୦
ବୋଲନ୍ତି ଅକ୍ରୂର ଅଇଲା ।
ଯେ କୃଷ୍ଣେ ମଧୁପୁର ନେଲା ।।୧୭୧
ଥୋକେ ବୋଲନ୍ତି ମଲା କଂସ ।
ଅକ୍ରୂର ତାହାର ବିଶ୍ୱାସ ।।୧୭୨
ଆମ୍ଭ ଶୋଣିତ ମାଂସ ନେବ ।
କଂସକୁ କ୍ରିୟାପିଣ୍ଡ ଦେବ ।।୧୭୩
ଏମନ୍ତ କହୁଁ ଗୋପନାରୀ ।
ଉଦ୍ଧବ ନିତ୍ୟକର୍ମ ସାରି ।।୧୭୪
ଆସି ମିଳିଲା ଦିବ୍ୟରଥେ ।
ଗୋପୀ ଦେଖନ୍ତି ରାଜପଥେ ।।୧୭୫
ବୋଲଇ ବିପ୍ର ଜଗନ୍ନାଥ ।
ଗୋପୀ ବେଢ଼ିଲେ ଯାଇ ରଥ ।।୧୭୬
ସେ ଗୋପୀ ଉଦ୍ଧବର ପାଦେ ।
ସୁଜନେ ନମ ହୋ ଆନନ୍ଦେ ।।୧୭୭
ଭକତି ହୋଇବ ତୁମ୍ଭର ।
ତରିବ ଭବ ମହାଘୋର ।।୧୭୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ ନନ୍ଦଶୋକ
ଅପନୟନଂ ନାମ
ପଞ୍ଚାଶତ୍ ଅଧ୍ୟାୟ ।।

---

## ଏକପଞ୍ଚାଶତ୍ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ ମୁନିବର ।
ଶୁଣ ପରୀକ୍ଷ ନୃପବର ।।୧
ଉଦ୍ଧବେ ଦେଖି ଗୋପଗୋପୀ ।
ବଦନ ଚାହାଁନ୍ତି ନିରୋପି ।।୨
ଦଇବେ କୃଷ୍ଣ ଅନୁଚର ।
ତେଜେ ଗଞ୍ଜଇ ସୁରନର ।।୩
ଆଜାନୁ ଲମ୍ବେ ବେନିଭୁଜ ।
କମଳପ୍ରାୟେ ଚକ୍ଷୁତେଜ ।।୪
ପୀତବସନ କଟିମୂଳେ ।
କମଳମାଳ ବକ୍ଷସ୍ଥଳେ ।।୫
କର୍ଣ୍ଣେ କୁଣ୍ଡଳ ବେନି ଶୋହେ ।
ରୂପେ କନ୍ଦର୍ପ ସରି ନୋହେ ।।୬
ଦେଖି ବିସ୍ମିତେ ଗୋପୀଜନେ ।
ଚକିତେ ବିଚାରନ୍ତି ମନେ ।।୭
ଦେଖ ସୁନ୍ଦରବର ଏହୁ ।
କେ ବୋଲେ ଅଇଲା ଏ କାହୁଁ ।।୮
କୃଷ୍ଣଭୂଷଣ ଏହା ଦେହେ ।
କେ ବୋଲେ ଦିଶେ କୃଷ୍ଣପ୍ରାୟେ ।।୯
ଏମନ୍ତ ବୋଲି ଗୋପନାରୀ ।
ଉଦ୍ଧବରଥକୁ ଆବୋରି ।।୧୦
ଜାଣିଲେ କୃଷ୍ଣର ଏ ଦୂତ ।
ଆମ୍ଭର ପାଇ ଉପଗତ ।।୧୧
ଗୋପୀଙ୍କ ଦେଖି ସ୍ନେହଭାବ ।
ରଥରୁ ଓହ୍ଲାଇ ଉଦ୍ଧବ ।।୧୨
ଗୋପୀଙ୍କ ମଧ୍ୟରେ ପ୍ରବେଶ ।
ସକଳେ ହୋଇଲେ ହରଷ ।।୧୩
ଆନନ୍ଦେ କୃଷ୍ଣଦୂତେ ନେଇ ।
ପୂଜିଲେ ଆସନେ ବସାଇ ।।୧୪
ଉଦ୍ଧବେ ହରଷ କରାଇ ।
ଭକ୍ତିଭାବରେ କଥା କହି ।।୧୫
ବୋଲନ୍ତି ଆଜି ଶୁଭଦିନା ।
ଦେଖିଲୁ କୃଷ୍ଣ ଚିହ୍ନମାନ ।।୧୬
କୃଷ୍ଣ ଯେ ଆମ୍ଭର ଜୀବନ ।
ତା ବିନୁ ନ ରହଇ ମନ ।।୧୭
ଏମନ୍ତେ କୃଷ୍ଣଦୂତ ସଙ୍ଗେ ।
ଗୋପକାମିନୀ ଖେଦଯୋଗେ ।।୧୮
କ୍ଷଣକ୍ଷଣକେ ଶୋକମୋହେ ।
ନୟନୁ ଅଶ୍ରୁଜଳ ବହେ ।।୧୯
ବୋଲନ୍ତି ଶୁଣ କୃଷ୍ଣଦୂତ ।
ତୁମ୍ଭେ ଯେ ବଡ଼ ଭାଗ୍ୟବନ୍ତ ।।୨୦
ଜାଣିଲୁ ଉଦ୍ଧବ ତୋ ନାମ ।
ତୋତେ ବିଶ୍ୱାସ ଭଗବାନ ।।୨୧
ତାହାଙ୍କ ଅଙ୍ଗସଙ୍ଗ ତୁହି ।
ତୋତେ ପେଷିଲେ ଆମ୍ଭପାଇଁ ।।୨୨
ମାତା ପିଅର ପ୍ରିୟଭାବେ ।
ଉଦ୍ଧବ ଆସିଅଛୁ ଏବେ ।।୨୩
ସେ କୃଷ୍ଣ କିମ୍ପା ସୁମରିବ ।
ଆମ୍ଭର ଘେନିଗଲା ଜୀବ ।।୨୪
ସ୍ନେହବନ୍ଧନ ବନ୍ଧୁଙ୍କର ।
ବାନ୍ଧଇ ସୁରମୁନିନର ।।୨୫

Dr. Sudhanshu Sekhar Mishra

କାହାରି ବୋଲେ ଛାଡ଼ି ନୋହୋ ।
ବନ୍ଧୁ ବିଶ୍ୱାସେ ମାୟାମୋହେ ।।୨୬
ଶୁଣ ଉଦ୍ଧବ ଆମ୍ଭ ବାଣୀ ।
ମରୁଛୁଁ ଗୋପର ତରୁଣୀ ।।୨୭
ଯେ ଅବା ଅର୍ଥଭାବ ଜାଣି ।
ଭାବେ ଭଜନ୍ତି ଯେଉଁ ପ୍ରାଣୀ ।।୨୮
ଯାବତ ଥାଇ ଅର୍ଥଲାଭ ।
ତାବତ ଥାଇ ପ୍ରିୟଭାବ ।।୨୯
ପରପୁରୁଷେ ପ୍ରୀତି ବହି ।
ଯେ ନାରୀ ଜୀବନ ବହଇ ।।୩୦
ତାହାର କାହିଁ ସ୍ନେହ ମତ ।
ଧନରେ ପ୍ରୀତି ଅବିରତ ।।୩୧
କୁସୁମେ ଯେସନେ ଭ୍ରମର ।
ମଧୁ ପିଇଣ ଯାଇ ଦୂର ।।୩୨
ଉଦ୍ଧବ ଶୁଣ ବେଦସାରା ।
ସ୍ୱଭାବେ ସଂସାର ବେଭାର ।।୩୩
ସୁନ୍ଦର ପୁରୁଷ ନିର୍ଦ୍ଧନା ।
ଗଣିକା ଛାଡ଼ଇ ଯେସନ ।।୩୪
ରାଜାକୁ ଆଭାଜନ ଦେଖି ।
ପ୍ରଜା ଛାଡ଼ିଣ ହୋନ୍ତି ସୁଖୀ ।।୩୫
ବିଦ୍ୟା ପାଇଲେ ଶିଷ୍ୟେ ଗୁରୁ ।
ଯେସନେ ତେଜନ୍ତି ମନରୁ ।।୩୬
ଦକ୍ଷିଣା ପାଇ ବିପ୍ରଜନେ ।
ଯେହ୍ନେ ଛାଡନ୍ତି ଯଜମାନେ ।।୩୭
ଫଳ ସରିଲେ ବୃକ୍ଷ ଛାଡ଼ି ।
ପକ୍ଷୀଏ ଯେହ୍ନେ ଯାନ୍ତି ଉଡ଼ି ।।୩୮
ଅତିଥି ଅନ୍ନ ଭିକ୍ଷା ପାଇ ।
ଯେସନେ ଗୃହେ ନ ରହଇ ।।୩୯
ପୋଡିଲା ବନୁ ପଶୁ ଯେହ୍ନେ ।
ଛାଡି ପଳାନ୍ତି ଅନ୍ୟ ବନେ ।।୪୦
ପରପୁରୁଷ ପରନାରୀ ।
ଯେସନେ ରମିଣ ପାସୋରି ।।୪୧
ତେମନ୍ତେ କଲେ ବନମାଳୀ ।
ଛାଡି ସକଳ ଗୋପବାଳୀ ।।୪୨
ଏମନ୍ତ କହି ଗୋପନାରୀ ।
ବେନିଲୋଚନୁଁ ବହେ ବାରି ।।୪୩

ମନ ବଚନ କୃଷ୍ଣଦେହେ ।
ଛାଡିଲେ ଜୀବନର ମୋହେ ।।୪୪
ବାତୁଳ ପ୍ରାୟ ଉଚ୍ଚସ୍ୱର ।
ଛାଡିଲେ ଜୀବନର ମୋହେ ।।୪୫
କୃଷ୍ଣର ଲୀଳାକର୍ମମାନ ।
ସୁମରି କରନ୍ତି ରୋଦନ ।।୪୬
ଲାଜ ଛାଡ଼ିଲେ ଗୋପଦାଣ୍ଡେ ।
ବଜ୍ର ପଡ଼ିଲା ଯେହ୍ନେ ମୁଣ୍ଡେ ।।୪୭
ଆପଣା ହୃଦେ ଭାବ ଲଇଁ ।
କୃଷ୍ଣର ରୂପ ଗୁଣ ଧାୟି ।।୪୮
ବାଲୁତକାଳୁଁ ଯେତେ କଲା ।
ସୁମରି ଗୋବିନ୍ଦର ଲୀଳା ।।୪୯
ଅତି ସଙ୍କଟେ ଶୋକଜଳେ ।
ବୁଡ଼ିଣ କାନ୍ଦନ୍ତି ବିକଳେ ।।୫୦
ଉଦ୍ଧବ ପାଦତଳେ ପଡ଼ି ।
ଶୋକସାଗରେ ଗୋପୀ ବୁଡ଼ି ।।୫୧
ବାତୁଳ ପ୍ରାୟେ ଗୋପନାରୀ ।
ଉଚ୍ଚେ ବୋଲନ୍ତି ହରିହରି ।।୫୨
ଏମନ୍ତେ ଶୁଣ ନରପତି ।
ଗୋପୀଏ ନାମ ବୃନ୍ଦାବତୀ ।।୫୩
ଗହଳେ ଯାଇ ନ ପାରିଲା ।
ଅଳପ ନିକଟେ ବସିଲା ।।୫୪
ଗୋବିନ୍ଦ ଦେହେ ମନ ଦେଇ ।
ଚକ୍ଷୁ ବୁଜିଲା ଭାବ ବହି ।।୫୫
ଶ୍ରମେ ଚରଣ ପ୍ରସାରିଲା ।
ଶୁଣ ରାଜନ କୃଷ୍ଣଲୀଳା ।।୫୬
ଭ୍ରମର ଉଡୁଥିଲା ଶୂନ୍ୟେ ।
ବସିଲା ତାହାର ଚରଣେ ।।୫୭
ଅଙ୍ଗୁଳି ଅଗ୍ରେ ଧ୍ୱନି କରି ।
ଶୁଣି ଚାହିଁଲା ଗୋପନାରୀ ।।୫୮
କୃଷ୍ଣର ଦୂତପ୍ରାୟ ମଣି ।
ଚରଣ ମାଇଲା ତରୁଣୀ ।।୫୯
ପଡ଼ିଲା ଖଣ୍ଡେ ଦୂରେ ଯାଇ ।
କୋପେ ବୋଲଇ ତାକୁ ଚାହିଁ ।।୬୦
ମଧୁପ ଶୁଣ ମୋ ବଚନ ।
ତୋର ଠାକୁର ଜନାର୍ଦ୍ଦନ ।।୬୧

କୃଷ୍ଣର ଦୂତପ୍ରାୟ ମଣି ।
ଚରଣ ମାଇଲା ତରୁଣୀ ।।୬୨
ମଥୁରା-ନଗର-ତରୁଣୀ ।
ନିଶ୍ଚେ ମୋହିଲେ ଚକ୍ରପାଣି ।।୬୩
ସେ ଯେ ଆମ୍ଭର ସପତଣୀ ।
ଏକଥା ତ୍ରିଭୁବନେ ଜାଣି ।।୬୪
ତୁ ଷଟପଦ ତା ନ ଜାଣି ।
ଚରଣେ ଲାଗୁ ପୁଣ ପୁଣି ।।୬୫
ସୁନ୍ଦର ମଧୁପୁର ନାରୀ ।
ରାତ୍ରେ ରମିଲେ ନରହରି ।।୬୬
ଚନ୍ଦନ କୁଙ୍କୁମର ସଙ୍ଗେ ।
କୁସୁମମାଳ ତାର ଅଙ୍ଗେ ।।୬୭
କୃଷ୍ଣର ଦେହେ ଲାଗିଥିଲା ।
ରାତ୍ର ପାହିଲେ ପକାଇଲା ।।୬୮
ତହିଁ ଯେ ଥିଲୁ କୃଷ୍ଣ ପାଶେ ।
ପୁଷ୍ପେ ବସିଲୁ ଗନ୍ଧ ଆଶେ ।।୬୯
ମଧୁ ଚୁମ୍ବନ କଲୁ ଶୁଖେ ।
କୁଙ୍କୁମ ଲାଗି ଅଛି ମୁଖେ ।।୭୦
ଏଣୁ ତୋ ମୁଖେ ଲାଜ ନାହିଁ ।
ଚରଣେ ପଡୁ କାହିଁପାଇଁ ।।୭୧
କୃଷ୍ଣରେ ନାହିଁ ମୋର କାର୍ଯ୍ୟ ।
ତାହାରେ ହୋଇଲୁ ନିର୍ଲ୍ଲଜ ।।୭୨
ହରିସନ୍ଦେଶ ଯେବେ ଘେନି ।
ଅଇଲୁ ହୋଇ ପଥଶ୍ରମୀ ।।୭୩
ତାର ପ୍ରସାଦେ କାର୍ଯ୍ୟ ନାହିଁ ।
କହ ତୁ କୃଷ୍ଣ ଆଗେ ଯାଇ ।।୭୪
ମଥୁରାନାରୀଙ୍କର ମନ ।
ରଞ୍ଜାଇ କରୁ ସେ ପ୍ରସନ୍ନ ।।୭୫
ଯଦୁସଭାରେ ତା ପ୍ରସନ୍ନ ।
ଶୁଣି ହସନ୍ତୁ ସର୍ବଜନ ।।୭୬
ତାହାର ଦୂତ ଅଟୁ ତୁହି ।
ତୋହର ମୁଖେ ଲାଜ ନାହିଁ ।।୭୭
ମୋର ବଚନ ତୁ ଭ୍ରମର ।
ଶୁଣିଲେ ହୋଇବୁ ବିକଳ ।।୭୮
ଯମୁନା କଦମ୍ବର ମୂଳେ ।
ରାତ୍ରେ ବସିଲା କାମଭୋଳେ ।।୭୯

Dr. Sudhanshu Sekhar Mishra

ଗଭୀର ବେଣୁନାଦ କଲା ।
ଆମ୍ଭର ଜୀବନ ହରିଲା ॥୮୦
ସଂସାର ହୁଡି ତା ନିକଟେ ।
ମିଳିଲୁ ଯମୁନାର ତଟେ ॥୮୧
ଅନେକ କରାଇ କଷଣ ।
ପ୍ରସନ୍ନେ କଲା ଆଲିଙ୍ଗନ ॥୮୨
ଯେ ରସେ ଜଗତ ମୋହିଲା ।
ଆମ୍ଭର ମୁଖେ ଚୁମ୍ବ ଦେଲା ॥୮୩
ଅଧରୁ ସୁଧାପାନ ଦେଇ ।
ମଥୁରା ଗଲା ସେ ପଳାଇ ॥୮୪
ତୁ ଯେହ୍ନେ ପୁଷ୍ପେ ମଧୁ ଖାଉ ।
ନିବଡ଼େ ଆଲିଙ୍ଗନ ଦେଉ ॥୮୫
ପଳାଇ ନ ସମ୍ଭାଳୁ ତାହା ।
ତେମନ୍ତ କୃଷ୍ଣର ସେନେହା ॥୮୬
ତାହାର ପାଦେ ଅନୁବ୍ରତେ ।
କମଳା ଖଟଇ କେମନ୍ତେ ॥୮୭
ମାୟାମୋହନ କଥା କହି ।
ଲକ୍ଷ୍ମୀର ମନ ସେ ବାନ୍ଧଇ ॥୮୮
ଦୃଷ୍ଟି ହରଷ କାମଭୋଳେ ।
ତେଣୁ କମଳା ତାର କୋଳେ ॥୮୯
କିମ୍ପାଇଁ ରସୁ ମୋର ପାଶେ ।
ଗୋବିନ୍ଦ ଗାଉ ତୁ ହରଷେ ॥୯୦
ଆମ୍ଭର ନାହିଁ ଘରଦ୍ୱାର ।
କି ତୋର ଦେବା ଉପହାର ॥୯୧
ମଥୁରାନାରୀଙ୍କର ଆଗେ ।
ତାର ପ୍ରସଙ୍ଗ ଗାଅ ରଙ୍ଗେ ॥୯୨
ତାହାଙ୍କ ସଙ୍ଗେ ନାହିଁ ଭ୍ରାନ୍ତି ।
କୃଷ୍ଣର ଇଷ୍ଟ ସେ ଅଟନ୍ତି ॥୯୩
ସେ ତୋତେ ଇଷ୍ଟଫଳ ଦେବେ ।
ବେଗେ ମଥୁରା ଯାଅ ଏବେ ॥୯୪
ତିନିଭୁବନେ ଯେତେ ଛନ୍ତି ।
ସୁଗୁଣ ସୁନ୍ଦର ଯୁବତୀ ॥୯୫
ଦୁର୍ଲ୍ଲଭ ନୁହନ୍ତି ତାହାର ।
କୋଟିଏ କାମରୂପ ଯାର ॥୯୬
ପ୍ରସନ୍ନ ସୁନ୍ଦର ବଦନ ।
ହାସ୍ୟ କଟାକ୍ଷେ ମୋହେ ମନ ॥୯୭

ସେ କୃଷ୍ଣ ପଦରଜ ଆଶେ ।
କମଳା ଖଟିଥାଇ ପାଶେ ॥୯୮
ଆମ୍ଭେ କି ଜାଣୁ ତାର ଅନ୍ତ ।
ଯାହାର ମହିମା ଅନନ୍ତ ॥୯୯
ତଥାପି ଶୁଣ ହେ ଭ୍ରମର ।
କୃଷ୍ଣ ଯେ କରୁଣାସାଗର ॥୧୦୦
ଦରିଦ୍ରଲୋକେ ଯାର ଦୟା ।
ତାହାକୁ ବୋଲି ପୁଣ୍ୟଦେହୀ ॥୧୦୧
ତୁ ମୋର ଛାଡରେ ଚରଣ ।
ଜାଣିଲି ତୋର ଦୂତପଣ ॥୧୦୨
ମୁକୁନ୍ଦ ବୋଲେ ଚାଟୁବାଣୀ ।
ମୋ ଆଗେ କହୁ ପୁଣପୁଣି ॥୧୦୩
ବୋଧିବା ପ୍ରାୟ ତୋ ଭରସା ।
ଏଣେ ନ ପୂରେ ମୋର ଆଶା ॥୧୦୪
ଯା ତୁ ନ କହ ପୁଣ ପୁଣ ।
ଶୁଣ କହିବା ତାର ଗୁଣ ॥୧୦୫
ପତି ତନୟ ଇଷ୍ଟ ଭାଇ ।
ଆମ୍ଭେ ତେଜିଲୁ ତାର ପାଇଁ ॥୧୦୬
ତାହାର କଲାକର୍ମମାନ ।
ମନେ ପଡ଼ିଲେ ବୁଡ଼େ ଜ୍ଞାନ ॥୧୦୭
ଯେବେବେଳେ ରାମ ଅବତାର ।
ବଡ଼ ନିର୍ଦ୍ଦୟ ତା ଶରୀର ॥୧୦୮
ଏମନ୍ତେ ରାମେ ଦେଖି ଏକା ।
ଆସି ମିଳିଲା ସୂର୍ପଣଖା ॥୧୦୯
ଦେଖି ଶ୍ରୀରାମ ରୂପ ଗୁଣ ।
ଏକାନ୍ତେ ମାଗିଲା ରମଣ ॥୧୧୦
ନାସା ଶ୍ରବଣ ଛେଦି ତାର ।
ବିରୂପ କଲା ରଘୁବୀର ॥୧୧୧
ସୁଗ୍ରୀବ ଜ୍ୟେଷ୍ଠଭ୍ରାତା ବଳି ।
ବାନର ହୋଇ ମହାବଳୀ ॥୧୧୨
ତାକୁ ବଧିଲା ତୀକ୍ଷ୍ଣବାଣେ ।
ଶବର ଯେସନ ହରିଣେ ॥୧୧୩
ସୀତା ହରାଇ ବେନିଭାଇ ।
ବୁଲନ୍ତି ବନେବନେ ଯାଇ ॥୧୧୪
କାକ ଯେସନେ ପିଣ୍ଡ ପାଇ ।
ଖାଇ ଚରଣେ ତା ପକାଇ ॥୧୧୫

ବଳିକି କଲା ସେହିମତ ।
ଏଡ଼େ ନିର୍ଦ୍ଦୟ ଗୋପୀନାଥ ॥୧୧୬
ଏମନ୍ତ ରୂପେ ଗୁଣ ତାର ।
ତୁ ଆନ ନ କହ ଭ୍ରମର ॥୧୧୭
ତାର ଚରିତ କର୍ଣ୍ଣେ ଶୁଣି ।
ସଂସାର ମଧ୍ୟେ ଯେତେ ପ୍ରାଣୀ ॥୧୧୮
ସଂସାର-କର୍ମ ଛାଡ଼ିକରି ।
ବୁଲନ୍ତି ବନେ ବନଚାରୀ ॥୧୧୯
ପକ୍ଷୀଙ୍କ ପ୍ରାୟେ ଭିକ୍ଷା ମାଗି ।
କେହୁ ସନ୍ନ୍ୟାସୀ କେହୁ ଯୋଗୀ ॥୧୨୦
ହରିଙ୍କି କଲୁ ବଡ଼ ସ୍ନେହ ।
ସେ ପୁଣି ଏଡ଼ିକି ନିର୍ଦ୍ଦୟ ॥୧୨୧
ବ୍ୟାଧ ଯେସନେ ମୃଗ ମାରି ।
ଶବଦ ଘଣ୍ଟି ଚାଳେ ଧରି ॥୧୨୨
ସୁସ୍ୱରନାଦେ ଗାଇ ଗୀତ ।
ହରଇ ମୃଗ ପଶୁ ଚିତ୍ତ ॥୧୨୩
ତାହାର ନାଦ ଶୁଣି କର୍ଣ୍ଣେ ।
ଲୋଭେ ମିଳନ୍ତି ପଶୁଗଣେ ॥୧୨୪
ତାହାର ବାଣେ କ୍ଷତ ହୋଇ ।
ବିକଳେ ବନେ ସେ ପଳାଇ ॥୧୨୫
ରୁଧିରଧାରା କଳେବର ।
ଜୀବନ ଛାଡ଼ଇ ତାହାର ॥୧୨୬
ତେମନ୍ତ କଲା ନନ୍ଦବଳା ।
ଆମ୍ଭର କୁଚେ ନଖ ଦେଲା ॥୧୨୭
ବ୍ୟାପାର କରନ୍ତେ ତା ଦେଖି ।
ବିକଳେ ବୁଲୁଁ ବେନିଆଖି ॥୧୨୮
ଜୀବନ ତାର ଦେହେ ଥାଇ ।
କରଚରଣ ନ ଚଳଇ ॥୧୨୯
ଅନଙ୍ଗରୂପ ଦାମୋଦର ।
ତୁହିଁ ଯେ ଉପମନ୍ତ୍ରୀ ତାର ॥୧୩୦
କହିଲେ କହ ଆନ କଥା ।
କୃଷ୍ଣ ସନ୍ଦେଶେ ମନବ୍ୟଥା ॥୧୩୧
ଏମନ୍ତେ ଭ୍ରମରକୁ ଚାହିଁ ।
ପୁଣି ବୋଲଇ ଗୋପଗୋଇ ॥୧୩୨
ଗୋବିନ୍ଦ ସଖା ଅଟୁ ତୁହି ।
ପୁଣି ଅଇଲୁ କାହିଁପାଇଁ ॥୧୩୩

Dr. Sudhanshu Sekhar Mishra

ପ୍ରିୟ ପେଷିଲେ ମୋର ପାଇଁ ।
ମାଗ ତୁ କି ଦେବା ବଧାଇ ॥୧୩୪
ସାଧୁଜୀବନ ତୋର ଧନ୍ୟ ।
ମୋହର ଅଟୁ ବଡ଼ ମାନ୍ୟ ॥୧୩୫
ଏ ଗୋପପୁରେ ଅଛି ମୁହିଁ ।
କେମନ୍ତେ ଘେନିଯିବୁ ତୁହି ॥୧୩୬
ଏ କଥା କହ ନିର୍ଣ୍ଣେ ତୁହି ।
ଯେମନ୍ତେ ପ୍ରତେ ଯିବି ମୁହିଁ ॥୧୩୭
ଛାଡ଼ି ନ ପାରି ଯାର ସଙ୍ଗ ।
ଲକ୍ଷ୍ମୀ ବସଇ ବାମଅଙ୍ଗ ॥୧୩୮
ଶୁଣ ଭ୍ରମର ମୋ ଉତ୍ତର ।
କୃଷ୍ଣ ଯେ ଗଲେ ମଧୁପୁର ॥୧୩୯
ଅଛିଟି ଶ୍ରୀକୃଷ୍ଣ କୁଶଳେ ।
ଭାଇ ବଳରାମଙ୍କ ମେଳେ ॥୧୪୦
ପିତା ଜନନୀ ଗୋପକୁଳେ ।
କୃଷ୍ଣ କି ସମରଇ ବେଳେ ॥୧୪୧
ଆମ୍ଭର କଥା କୃଷ୍ଣ ମୁଖେ ।
ଭ୍ରମର ଶୁଣୁଟିକି ସୁଖେ ॥୧୪୨
କୃଷ୍ଣର ଭୁଜଦଣ୍ଡ ଦୁଇ ।
ଅଗୁରୁ ପ୍ରାୟେକ ବାସଇ ॥୧୪୩
ଶିରେ ଚାପିବୁ କହ କେବେ ।
ଆମ୍ଭର ପ୍ରିୟ ଅଟୁ ଯେବେ ॥୧୪୪
ତେବେ ଛାଡିବୁ ଅଭିମାନ ।
କହିଣ ହୋଇଲା ମଉନ ॥୧୪୫
କହନ୍ତି ବ୍ୟାସଙ୍କ ନନ୍ଦନ ।
ରାଜନ ଶୁଣ ସାବଧାନ ॥୧୪୬
କୃଷ୍ଣର ତହିଁ ଦୃଢ଼ଭାବ ।
ଗୋପୀଙ୍କୁ ଦେଖିଣ ଉଦ୍ଧବ ॥୧୪୭
ଗୋବିନ୍ଦ ଆଜ୍ଞା ଗୋପୀମଧେ ।
ଉଦ୍ଧବ କହଇ ଆନନ୍ଦେ ॥୧୪୮

ଉଦ୍ଧବ ଉବାଚ

ଶୁଣିବା ସର୍ବ ଗୋପୀଜନ ।
ତୁମ୍ଭ ଜୀବନ ବଡ଼ ଧନ୍ୟ ॥୧୪୯
ସକଳ ଲୋକେ ତୁମ୍ଭ ପୂଜା ।
କି ପଟାନ୍ତର ଦେବା ଦୁଜା ॥୧୫୦

ଗୋବିନ୍ଦ ପାଦେ ଯାର ମନ ।
ନିଶ୍ଚଳେ ହୋଏ ନିମଗନ ॥୧୫୧
ବ୍ରତ ସାଧନ ଦାନ ତପ ।
ବେଦପଠନ ହୋମ ଜପ ॥୧୫୨
ପ୍ରାଣସଂଯମ ଯୋଗମତେ ।
ଜୀବର ଶ୍ରେୟକର୍ମ ଯେତେ ॥୧୫୩
ବିଷ୍ଣୁର ଭକତି ସାଧନ ।
ଏଣେ ନିର୍ମଳ ତୁମ୍ଭମନ ॥୧୫୪
ଗୋବିନ୍ଦ ପାଦେ ଯାର ମନ ।
ନିଶ୍ଚଳେ ହୋଏ ନିମଗନ ॥୧୫୫
କୃଷ୍ଣରେ ଭକତି ତୁମ୍ଭର ।
ମୁନିମନୁଷ୍ୟେ ଅଗୋଚର ॥୧୫୬
ମନୁଷ୍ୟ ଜନ୍ମେ ତୁମ୍ଭ ଭାବ ।
ବ୍ରହ୍ମାଣ୍ଡମଧ୍ୟେ କେ ପାଇବ ॥୧୫୭
ତନୟ ପତି ଦେହଭାବ ।
ସ୍ୱଜନ ଭବନ ବାନ୍ଧବ ॥୧୫୮
ଛାଡି ଭଜିଲ କୃଷ୍ଣପାଦେ ।
ଦୁଃଖୁ ତରିଲ ଅପ୍ରମାଦେ ॥୧୫୯
ଏକାନ୍ତଭାବ କୃଷ୍ଣତହିଁ ।
ଦେବେ ପାଇବେ ଅବା କାହିଁ ॥୧୬୦
ତୁମ୍ଭର ହରିଭାବ ଦେଖି ।
ନିର୍ମଳ କଲି ଚର୍ମଆଖି ॥୧୬୧
ଶୁଣ ଗୋ ତୁମ୍ଭେ ଗୋପୀଜନେ ।
କହିବି ତୁମ୍ଭର ଛାମୁରେ ॥୧୬୨
ତୁମ୍ଭ ଭକତିଭାବ ଚିତ୍ତେ ।
ଗୋବିନ୍ଦ କହିଛନ୍ତି ଯେତେ ॥୧୬୩
ଉଦ୍ଧବ କୃଷ୍ଣର ବଚନ ।
କହେ କରାଇ ସାବଧାନ ॥୧୬୪
ଶୁଣ ଗୋ ତୁମ୍ଭେ ଗୋପୀଜନେ ।
ତୁମ୍ଭେ ଯେ ଦୁଃଖ କର ମନେ ॥୧୬୫
ତୁମ୍ଭ ବିୟୋଗ ମୋର ନାହିଁ ।
ପ୍ରାଣୀଙ୍କ ପ୍ରାଣ ମୁଁ ଅଟଇ ॥୧୬୬
ପ୍ରାଣୀଙ୍କ ଦେହେ ପଞ୍ଚଭୂତ ।
ଯେହ୍ନେ ଜଡ଼ିତ ଅବିରତ ॥୧୬୭
ମନର ସଙ୍ଗେ ପ୍ରାଣ ବୁଦ୍ଧି ।
ଦଶଇନ୍ଦ୍ରିୟ ଗୁଣେ ଛନ୍ଦି ॥୧୬୮

ମୋହର ଆତ୍ମାଭାବ ଦେଇ ।
ସର୍ଜି ପାଳଇ ସଂହାରଇ ॥୧୬୯
ମୋହର ମାୟା ଅନୁଭବ ।
ଭୂତ ଇନ୍ଦ୍ରିୟ ଗୁଣେ ସର୍ବ ॥୧୭୦
ଏ ଜୀବ ଆତ୍ମା ଗୁଣ ହୀନ ।
ବିବେକ ଶୁଦ୍ଧ ଚଇତନ ॥୧୭୧
ସୁଷୁପ୍ତି ସ୍ୱପ୍ନ ଉଜାଗର ।
ମନର ବୃତ୍ତି ଏ ବେଭାର ॥୧୭୨
ଇନ୍ଦ୍ରିୟଅର୍ଥେ ଯେଣେ ଧାୟି ।
ସ୍ୱପନ ସତ୍ୟପ୍ରାୟ ହୋଇ ॥୧୭୩
ନିଦ୍ରା ବିୟୋଗେ ପୁରୁଷଙ୍କୁ ।
ସେ ମାୟା ନ ଲାଗେ ତାହାଙ୍କୁ ॥୧୭୪
ଏ ଭାବେ ଜ୍ଞାନ ଯାର ହୋଇ ।
ସଂସାର ତାକୁ ନ ଲାଗଇ ॥୧୭୫
ବେଦବେଦାନ୍ତର ଏ ଅର୍ଥ ।
ମୁନିଙ୍କ ସାଂଖ୍ୟଯୋଗ ମତ ॥୧୭୬
ସନ୍ୟାସ ତପ ଧର୍ମ ସତ୍ୟ ।
ପଠନ ସାଧନ ସମେତ ॥୧୭୭
ମନ ନିରୋଧେ ସର୍ବସିଦ୍ଧ ।
ଜଳଧି ମଧ୍ୟେ ଯେହ୍ନେ ନଦୀ ॥୧୭୮
ତୁମ୍ଭଙ୍କୁ ମୋର ମାୟା ନାହିଁ ।
ତେଣୁ ରହିଲି ଦୂର ହୋଇ ॥୧୭୯
ଚନ୍ଦ୍ରକୁମୁଦ କେତେ ଦୂର ।
ପୀରତି ଅଜର ଅମର ॥୧୮୦
ତୁମ୍ଭ ନୟନ ମନ ସଙ୍ଗ ।
ବଢ଼ିବ ମୋର ଅନୁରାଗ ॥୧୮୧
ଯାହାର ସ୍ୱାମୀ ଥାଇ ଦୂରେ ।
ପ୍ରିୟାର ମନ ତା ସଙ୍ଗରେ ॥୧୮୨
ମନରୁ କ୍ଷଣେ ନ ଛାଡ଼ନ୍ତି ।
ଭାବ ହୃଦୟଗତେ ଚିନ୍ତି ॥୧୮୩
ଚକ୍ଷୁ ଗୋଚରେ ସ୍ୱାମୀ ଥିଲେ ।
ମନ ତା ନ ରହେ ନିଶ୍ଚଳେ ॥୧୮୪
ମୋହର ତହିଁ ଦେଇ ମନ ।
ଛାଡ଼ି ସକଳ ମାୟାଭ୍ରମ ॥୧୮୫
ନିରତେ ନାମ ସୁମରଣେ ।
ମୋ ଦେହ ପାଇବ ମରଣେ॥୧୮୬

Dr. Sudhanshu Sekhar Mishra

ଏ ବୃନ୍ଦାବନ ତମ୍ଭ ସଙ୍ଗେ ।
ଯେ ଗୋପୀ ରାସକ୍ରୀଡ଼ା ରଙ୍ଗେ ॥୧୮୭
ଯାଇ ନ ପାରି ସ୍ୱାମୀବଳେ ।
ପ୍ରାଣ ଛାଡ଼ିଲା ଧ୍ୟାନଭୋଳେ ॥୧୮୮
ଆକାଶେ ଥିଲେ ଦେବେ ତହିଁ ।
ପଶିଲା ମୋର ଦେହେ ଯାଇ ॥୧୮୯
କହନ୍ତି ଶୁକ ମହାମୁନି ।
ଗୋପୀଏ କୃଷ୍ଣକଥା ଘେନି ॥୧୯୦
ଉଦ୍ଧବ ମୁଖକୁ ଅନାଇଁ ।
କହନ୍ତି କୃଷ୍ଣଭାବ ଲଇଁ ॥୧୯୧

ଗୋପୀଗଣ ଉବାଚ

ଆମ୍ଭର ଭାଗ୍ୟ ହେ ଉଦ୍ଧବ ।
କଂସ ସଂହାରିଲେ ମାଧବ ॥୧୯୨
ଆବର ଦୁଷ୍ଟଦୈତ୍ୟ ମଲେ ।
ଯଦୁଙ୍କୁ କଷ୍ଟ ଦେଉଥିଲେ ॥୧୯୩
ସକଳ ଅର୍ଥ ସିଦ୍ଧ କରି ।
ସୁଖେ ଅଛନ୍ତି ରାମହରି ॥୧୯୪
ଯାଦବ ଭୋଜବଂଶ ଆଦି ।
କଂସର ଯେତେ ଥିଲେ ବାଦୀ ॥୧୯୫
କଂସକୁ ମାରି କଲେ ସୁଖୀ ।
ଦୁଷ୍ଟେ ଭାଜିଲେ ତାହା ଦେଖି ॥୧୯୬
ସଭିଙ୍କୁ କରାଇ ହରଷ ।
ତହିଁ ରହିଲେ ପୀତବାସ ॥୧୯୭
ମଥୁରାନରନାରୀଙ୍କର ମଧ୍ୟେ ।
କୃଷ୍ଣ କି ଅଛନ୍ତି ଆନନ୍ଦେ ॥୧୯୮
ଆମ୍ଭର କଥା ତାଙ୍କ ଆଗେ ।
ଗୋବିନ୍ଦ କହେ କି ପ୍ରସଙ୍ଗେ ॥୧୯୯
ତାହାଙ୍କ ସ୍ନେହଭାବ ଘେନି ।
ଛାଡ଼ିଲେ ଗୋପର କାମିନୀ ॥୨୦୦
ଏ ବୃନ୍ଦାବନେ ରାତ୍ରିକାଳେ ।
କୁନ୍ଦ କୁସୁମ ପରିମଳେ ॥୨୦୧
ନୂପୁର କଙ୍କଣ ଶବଦେ ।
ନାଚୁ ଯେ ଥିଲେ ଗୋପୀମଧ୍ୟେ ॥୨୦୨
ଆମ୍ଭର ସଙ୍ଗେ ରମୁଥାଇ ।
କୃଷ୍ଣ କି ତାହା ସୁମରଇ ॥୨୦୩
ରାସକ୍ରୀଡ଼ାରେ ଯେତେ କଲା।
କ୍ଷଣ କ୍ଷଣକେ ନାନା ଲୀଳା ॥୨୦୪
ଦେଖି ଚକିତ ଦେବଗଣ ।
ଦ୍ରବିଲା ସବୁଙ୍କରି ମନ ॥୨୦୫
ଆମ୍ଭେ ରମିଲୁ ତାର ଭାବେ ।
ତାହା କି ସୁମରଇ ଏବେ ॥୨୦୬
ହୃଦୟ କଥା ଯେତେ ତହୁଁ ।
ତାହାର ଭାବେ ହୃଦେ ବହୁ ॥୨୦୭
ଉଦ୍ଧବ କହ ତୁମ୍ଭେ ସତ ।
ଗୋପେ କି ଆସିବେ ଅନନ୍ତ ॥୨୦୮
ତାର ନ ପାଇ ଅଙ୍ଗସଙ୍ଗ ।
ଦହଇ ପ୍ରତିକ୍ଷଣେ ଅଙ୍ଗ ॥୨୦୯
ଆଶ୍ୱାସ କରି ନିଜ କରେ ।
ଜୀବନ ଦେବେ କି ଆମ୍ଭରେ ॥୨୧୦
ବରଷା ଜଳ ପାଇ ଯେହ୍ନେ ।
ଜୀବନ ପାନ୍ତି ତରୁ ବନେ ॥୨୧୧
ତାହାର ଆଶ୍ରେ ଭୃତ୍ୟ ହୋଇ ।
ଜୀବନ ରଖୁ ମୁଖ ଚାହିଁ ॥୨୧୨
ସେ ହରି ଆମ୍ଭଙ୍କୁ ତେଜିଲା ।
ମଥୁରାପୁରେ ବିଜେ କଲା ॥୨୧୩
କଂସକୁ ମାରି ରାଜ୍ୟ ପାଇ ।
ରାଜା ହୋଇଲେ କୃଷ୍ଣ ତହିଁ ॥୨୧୪
ରାଜକନ୍ୟାଙ୍କୁ ହେବେ ବିଭା ।
ଯାଦବ ମଧ୍ୟେ ଯାର ଶୋଭା ॥୨୧୫
କ୍ଷତ୍ରିୟ ବୃତ୍ତି ଆଚରିଲେ ।
ସେ କିମ୍ପା ଗୋପପୁଅ ତୁଲେ ॥୨୧୬
ଗୋରୁଙ୍କ ସଙ୍ଗେ ନେବେ ଦିନ ।
କିମ୍ପା ଭ୍ରମିବେ ବନେ ବନ ॥୨୧୭
ସେ କାହିଁ ଗୋପକୁ ଆସିବ ।
ଏମନ୍ତ ନ ଦେଖୁ ଉଦ୍ଧବ ॥୨୧୮
ସ୍ୱଭାବେ ଆମ୍ଭେ ବନଚାରୀ ।
ଲକ୍ଷ୍ମୀ ଯାହାର ପରିବାରୀ ॥୨୧୯
ସେ ପୁରନାରୀଙ୍କ ଆୟତ୍ତ ।
ତାର ବଚନ କାହିଁ ସତ୍ୟ ॥୨୨୦
ପିଙ୍ଗଳା ନାମେ ଥିଲା ବେଶ୍ୟ ।
ତାହାର ନ ପୂରିଲା ଆଶା ॥୨୨୧
ନିରାଶ ହୋଇଲା ସେ ଯେହ୍ନେ।
ଗୋପକାମିନୀ ଆମ୍ଭେ ତେହ୍ନେ॥୨୨୨
ଗୋବିନ୍ଦ ଲୀଳାରସ ପାଇ ।
ଆମ୍ଭେ ଗୋପୀଏ ତୋଷ ନୋହି ॥୨୨୩
ନଦୀ ପର୍ବତ ବନ ଦେଶେ ।
ଗମଇଁ ବେଣୁନାଦ ଘୋଷେ ॥୨୨୪
ଆମ୍ଭର ତୁଲେ ଯାହା କଲା ।
ଅନେକ ବୃନ୍ଦାବନେ ଲୀଳା ॥୨୨୫
ଏଣୁ ସେ କୃଷ୍ଣଭାବ ଜାଣି ।
ମନ ଦହଇ ପୁଣ ପୁଣି ॥୨୨୬
ଦେଖିତ ପଦ୍ମପାଦ ଛାୟା ।
କେମନ୍ତେ ପାସୋରିବୁ ତାହା ॥୨୨୭
ଲଳିତ ଗତି ହାସ ରଙ୍ଗେ ।
କୃଷ୍ଣ ଯେ ଚାହାନ୍ତି ତ୍ରିଭଙ୍ଗେ ॥୨୨୮
ମଧୁର ବଚନ ମୋହନ ।
କେମନ୍ତେ ପାସୋରିବୁ ମନ ॥୨୨୯
ହେ ନାଥ ରମାନାଥ ହରି ।
ଆରତଭଂଜନ ମୁରାରି ॥୨୩୦
ଆମ୍ଭର ଦେଖୁଅଛ ଦୁଃଖ ।
ଗୋକୁଳ ଶୋକଜଳୁ ରଖ ॥୨୩୧
କହନ୍ତି ଶୁକ ବ୍ରହ୍ମଚାରୀ ।
ତାପ ଛାଡ଼ିଲେ ବ୍ରଜନାରୀ ॥୨୩୨
କୃଷ୍ଣ ସଂଦେଶ ମନ ସ୍ଥିର ।
ପୂଜିଲେ ଉଦ୍ଧବ ପୟର ॥୨୩୩
କୃଷ୍ଣର ପ୍ରାୟେ ପୂଜା କରି ।
ଉଦ୍ଧବ ସଙ୍ଗେ ଗୋପନାରୀ ॥୨୩୪
କେତେହେଁ ଦିନ ଗୋପପୁରେ ।
ଗୋପୀଙ୍କ ମନ ତୋଷିବାରେ ॥୨୩୫
କୃଷ୍ଣର ରସ ଲୀଳା ଗାଇ ।
ଗୋପୀଙ୍କ ମନ ସେ ରଞ୍ଜାଇ ॥୨୩୬
ଯେତେ ଦିବସ ନନ୍ଦପୁରେ ।
ଉଦ୍ଧବ ରହିଲା ନିର୍ଭରେ ॥୨୩୭
କୃଷ୍ଣର କଥା ରସମୟ ।
ଗୋପୀ ବଂଚିଲେ କ୍ଷଣ ପ୍ରାୟ ॥୨୩୮
ଗୋପୀଙ୍କ ମନ ତୋଷ ପାଇଁ ।
ଉଦ୍ଧବ କହଇ ମଣାଇଁ ॥୨୩୯

Dr. Sudhanshu Sekhar Mishra

ଶୁଣ ସକଳ ବ୍ରଜନାରୀ ।
ତୁମ୍ଭରେ ତୁଷ୍ଟ ନରହରି ॥୨୪୦
ତୁମ୍ଭେ ଗୋ ବଡ଼ ଭାଗ୍ୟବନ୍ତ ।
ତୁମ୍ଭର ହୃଦ ଅବିରତ ॥୨୪୧
କୃଷ୍ଣହୁଁ ନ ଜାଣଇ ଆନ ।
ଯେ ପ୍ରଭୁ ଗୋପୀଙ୍କ ଜୀବନ ॥୨୪୨
ତାହା ଘେନିଲ ତୁମ୍ଭେ ହୃଦେ ।
ଈଶ୍ୱର ଗୁଣ ଅନୁବାଦେ ॥୨୪୩
ତୁମ୍ଭେ ଭେଦିଲ ସେହୁ ହରି ।
ଦେବ ମାନବେ ନାହିଁ ସରି ॥୨୪୪
ଗୋପୀ ବୋଲନ୍ତି ହେ ଉଦ୍ଧବ ।
ଆମ୍ଭର ପ୍ରାଣ ପଦ୍ମନାଭ ॥୨୪୫
ଆମ୍ଭର ଦେହ ଗୋପପୁରେ ।
ଜୀବନ କୃଷ୍ଣର ଶରୀରେ ॥୨୪୬
ମନବଚନ କୃଷ୍ଣ ପାଦେ ।
ବ୍ୟାପାର କରୁ ଘର ମଧେ ॥୨୪୭
ତୁମ୍ଭଙ୍କୁ କହିଲୁଟି ସତ୍ୟ ।
ଆମ୍ଭର ପ୍ରାଣ ଗୋପୀନାଥ ॥୨୪୮
ନଦୀ କାନନ ଗିରି ତଟେ ।
କୁସୁମତରୁ ନିକଟେ ॥୨୪୯
ଉଦ୍ଧବେ ଘେନି ଗୋପନାରୀ ।
ଦେଖାନ୍ତି କରେ କର ଧରି ॥୨୫୦
ଦେଖ ଉଦ୍ଧବ କୃଷ୍ଣଲୀଳା ।
ଯହିଁ ଯେମନ୍ତ କରିଥିଲା ॥୨୫୧
ଗୋପୀଙ୍କ ଦେଖି କୃଷ୍ଣଭାବ ।
ଆନନ୍ଦେ ବୋଲଇ ଉଦ୍ଧବ ॥୨୫୨
ଗୋପୀଙ୍କ ପାଦତଳେ ପଡ଼ି ।
ଉଦ୍ଧବ କହେ କରଯୋଡ଼ି ॥୨୫୩
ଏ ଗୋପୀମାନଙ୍କର ଜନ ।
ଏ ମହୀତଳେ ବଡ଼ ଧନ୍ୟ ॥୨୫୪
ଦେବେ ନ ଜାଣନ୍ତି ଯାହାଙ୍କୁ ।
ଗୋପୀଏ ପାଇଲେ ତାହାଙ୍କୁ ॥୨୫୫
ଗୋପୀଏ କରି ନିତ୍ୟେ ଧ୍ୟାନ ।
ନ ଜାଣି ପାଇଲେକ ଜ୍ଞାନ ॥୨୫୬
ବ୍ରହ୍ମାଶଙ୍କର ଆଦି କରି ।
ନିତ୍ୟେ ଚିନ୍ତନ୍ତି ଦୃଢେ ଧରି ॥୨୫୭
ଏ ଭାବ ଜାଣି ନ ପାରିଲେ ।
ଗୋପୀଙ୍କି ଚଉବର୍ଗ ଦେଲେ ॥୨୫୮
ଭାବି ନ ପାନ୍ତି ବ୍ରହ୍ମମୁନି ।
ଏ ଭାବ ଜାଣିଲେ କାମିନୀ ॥୨୫୯
କୃଷ୍ଣ ଗୀତନାଦେ ସୁଖୀ ।
ପ୍ରେମେ ବିହ୍ୱଳ ପଦ୍ମମୁଖୀ ॥୨୬୦
ଆଶା ବଢିଲା କୃଷ୍ଣଦେହେ ।
ଛାଡ଼ି ନ ପାରି ମାୟାମୋହେ ॥୨୬୧
କେମନ୍ତେ ଛାଡ଼ିବେ ମୁରାରୀ ।
ପଦ୍ମା ଯାହାଙ୍କୁ ଆଶ୍ରେ କରି ॥୨୬୨
ରାସଉତ୍ସବେ ଏ କାମିନୀ ।
କୃଷ୍ଣଚରଣ କରେ ଘେନି ॥୨୬୩
ସ୍ତନ-ବଦନ-କରେ ଚାପ ।
ଛାଡ଼ିଲେ ତିନିତାପ ଗୋପୀ ॥୨୬୪
ଏହାଙ୍କୁ ପଦରଜ ମୁହିଁ ।
ନିରତେ କପାଳେ ଘେନଇ ॥୨୬୫
ଏମନ୍ତେ ହୃଦେ ଲଭି ଭାବ ।
ମଥୁରା ଗମନେ ଉଦ୍ଧବ ॥୨୬୬
ଗୋପୀଙ୍କି ଆଜ୍ଞା ମାଗି ଧୀରେ ।
ନନ୍ଦ ଯଶୋଦାଙ୍କ ପୟରେ ॥୨୬୭
ଗୋପଙ୍କୁ ଆଲିଙ୍ଗନ ଦେଇ ।
ରଥେ ବସିଲେ ତୋଷହୋଇ ॥୨୬୮
ଗୋପୀଗୋପାଳ ଆଦି କରି ।
ରଥରେ ନାନାଦ୍ରବ୍ୟ ଭରି ॥୨୬୯
ଉଦ୍ଧବ ପାଶେ ନନ୍ଦ କାନ୍ଦେ ।
କହଇ ଅଶ୍ରୁ ଗଦଗଦେ ॥୨୭୦
ଆମ୍ଭର ମନୋବାଞ୍ଛା ଯେତେ ।
ସଙ୍କଳ୍ପ କରି ହୃଦଗତେ ॥୨୭୧
ସେ ସବୁ କୃଷ୍ଣପଦେ ଥାଉ ।
ତା ନାମ ଧରି ଦିନ ଯାଉ ॥୨୭୨
ଆମ୍ଭର ମନ ତାର ପାଦେ ।
ନିରତେ ରହୁ ଅପ୍ରମାଦେ ॥୨୭୩
ଆମ୍ଭେ ଯେ କର୍ମମାର୍ଗେ ଭ୍ରମି ।
ଫୁଟି ହୋଇଲୁ ପଥଶ୍ରମୀ ॥୨୭୪
ଈଶ୍ୱର ମାୟାତନ୍ତ୍ରେ ପଡ଼ି ।
ଜନ୍ମମରଣ ପଥ ଛୁଡ଼ି ॥୨୭୫
ଶୁଦ୍ଧ ଆଚାର ଜ୍ଞାନ ଭେଦେ ।
ଗତି ପାଇବୁ କୃଷ୍ଣପାଦେ ॥୨୭୬
କହନ୍ତି ବ୍ୟାସଙ୍କର ସୁତ ।
ଉଦ୍ଧବ ଗୋବିନ୍ଦର ଦୂତ ॥୨୭୭
ନମିଣ ଗୋପୀଙ୍କର ପାଦେ ।
ନନ୍ଦ ଯଶୋଦା ପାଦେ ବନ୍ଦେ ॥୨୭୮
ଉଦ୍ଧବ ହୋଇଣ ଆନନ୍ଦ ।
ମଥୁରା ଗଲେ ଅପ୍ରମାଦ ॥୨୭୯
ଗୋପୀଗୋପାଳ ଭାବ ଜାଣି ।
କୃଷ୍ଣଙ୍କୁ କହେ ପୁଣପୁଣି ॥୨୮୦
ବସୁଦେବର ପାଶେ ଯାଇ ।
ଆନନ୍ଦେ ରାମଙ୍କୁ ବସାଇ ॥୨୮୧
ଗୋପୀଙ୍କ ଉପହାର ଦ୍ରବ୍ୟ ।
ନିକଟେ ଥୋଇଲା ଉଦ୍ଧବ ॥୨୮୨
ଦେଖି ଆନନ୍ଦ ବସୁଦେବ ।
ହସନ୍ତି ଶ୍ରୀରାମ ମାଧବ ॥୨୮୩
ଉଦ୍ଧବ କହେ କଥାମାନ ।
ତୋଷ ହୋଇଲେ ଭଗବାନ ॥୨୮୪
ବ୍ରାହ୍ମଣ ଦାସ ଜଗନ୍ନାଥ ।
ଗୀତବିନୋଦେ ଭାଗବତ ॥୨୮୫
ଉଦ୍ଧବ ଜ୍ଞାନ ଯା କହିଲା ।
ଗୋପୀଗୋପାଳଙ୍କର ଲୀଳା ॥୨୮୬
ସେ କଥା ଶୁଣି ହୋଏ ତୋଷ ।
ମନେ ସୁମରି କୃଷ୍ଣରସ ॥୨୮୭
ସୁଜନେ ଶୁଣ କର୍ଣ୍ଣପଥେ ।
ଭକତି ହେବ ହୃଦଗତେ ॥୨୮୮
ନିରତେ ଭଜ ରାମହରି ।
ଏଣେ ତରିବ ଭବବାରି ॥୨୮୯
ସେ ଗୋପୀଗୋବିନ୍ଦ ଚରଣେ ।
ସୁଜନେ ଚିତ୍ତ ଅନୁକ୍ଷଣେ ॥୨୯୦

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ
ପୂର୍ବାର୍ଦ୍ଧେ ଉଦ୍ଧବ ପ୍ରତିଯାନେ ନାମ
ଏକ ପଞ୍ଚାଶତ୍ ଅଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦ୍ୱିପଞ୍ଚାଶତ୍ ଅଧ୍ୟାୟ

କହନ୍ତି ବ୍ୟାସଙ୍କ ନନ୍ଦନ ।
ଗୋବିନ୍ଦପାଦେ ଦେଇ ମନ ॥୧

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ଭକତ ବତ୍ସଳ ଅନନ୍ତ ॥୨
ମଥୁରାଦାଣ୍ଡେ ଗନ୍ଧ ଘେନି ।
କୁବୁଜା ନାମେ ଯେ କାମିନୀ ॥୩
କୃଷ୍ଣଙ୍କୁ ମାଗିଥିଲା ବର ।
ଭୋ ନାଥ ଯିବୁ ମୋର ପୁର ॥୪
ତାହାର ଭାବ ହୃଦେ ବହି ।
କରୁଣାସିନ୍ଧୁ ଭାବଗ୍ରାହୀ ॥୫
ଉଦ୍ଧବ ସଙ୍ଗେ ବିଜେକଲେ ।
କୁବୁଜା ଭୁବନେ ମିଳିଲେ ॥୬
ଗୋବିନ୍ଦ ଆଗମନ ଆଶେ ।
ଗୃହ ମଣ୍ଡିଛି ମନତୋଷେ ॥୭
ସୁନ୍ଦର ଗୃହ ଉପହାର ।
କି ଅବା ଦେବା ପଟାନ୍ତର ॥୮
ସୁଗନ୍ଧ ଧୂପଦୀପ ବାସ ।
ଅମୂଲ୍ୟମଣିରତ୍ନ ଦ୍ରାସ ॥୯
ଗନ୍ଧ ଚନ୍ଦନ ପରିମଳ ।
ପବନ ବହଇ ଶୀତଳ ॥୧୦
କାମ ଉପାୟ ସନ୍ଦୀପନ ।
ଦେଖି ମୋହିତ ହୁଏ ମନ ॥୧୧
ମୁକୁତା ପ୍ରବାଳ ଖଞ୍ଜଣି ।
ଉପରେ ଚନ୍ଦ୍ରାତପ ଟାଣି ॥୧୨
ରତ୍ନ ପଲଙ୍କେ ଶେଯ ପାଡ଼ି ।
ରତ୍ନପାଦୁକା ସୁନାପିଢି ॥୧୩
ସୁଗନ୍ଧ ଧୂପ ଥୋଇ ତଳେ ।
ଉପରେ ଲମ୍ବେ ଫୁଲମାଳେ ॥୧୪
କୃଷ୍ଣ ଆଗମ ପଥ ଚାହିଁ ।
କୁବୁଜା ଦେହେ ଜ୍ଞାନ ନାହିଁ ॥୧୫
ନିମିଷ ଯୁଗପ୍ରାୟ ମଣି ।
ରଜନୀ ଦିବସ ନ ଗଣି ॥୧୬
ଜାଣିଣ ପ୍ରଭୁ ନାରାୟଣ ।
ବିଜୟ କଲେ ତା ଭୁବନ ॥୧୭
ହରିଙ୍କି ନିଜ ଦ୍ୱାରେ ଦେଖି ।
ସଂଭ୍ରମେ ଆସନ ଉପେକ୍ଷି ॥୧୮
ସଙ୍ଗତେ ଘେନି ସଖୀଗଣ ।
ପୂଜିଲା ଗୋବିନ୍ଦ ଚରଣ ॥୧୯
ରତ୍ନପାଦୁକା ତଳେ ଥୋଇ ।
ସୁତୀର୍ଥ ଜଳେ ପାଦ ଧୋଇ ॥୨୦
କ୍ଷୀନବସନେ ପାଦ ପୋଛି ।
ନିଜ ମଥାରେ ଗର୍ଭେ ସିଞ୍ଚି ॥୨୧
ଅର୍ଘ୍ୟ ଆଚମନେ ତୋଷଇ ।
ଅଧରେ ମଧୁରସ ଦେଇ ॥୨୨
ଏମନ୍ତେ କୃଷ୍ଣଙ୍କୁ ପୂଜିଲା ।
ଉଦ୍ଧବ ନିକଟେ ମିଳିଲା ॥୨୩
ବିବିଧ ମତେ ଉପହାରେ ।
ପୂଜିଲା ଉଦ୍ଧବ ପୟରେ ॥୨୪
ରତ୍ନଆସନ ତଳେ ଥୋଇ ।
କୁବୁଜା ଗଲା ଭୋଳ ହୋଇ ॥୨୫
ଉଦ୍ଧବ ହରଷ ବଦନ ।
ଚରଣେ ଚାଳିଲା ଆସନ ॥୨୬
ଏକାନ୍ତେ ଭୂମିରେ ବସିଲା ।
କୃଷ୍ଣଚରଣେ ମନ ଦେଲା ॥୨୭
କୁବୁଜା ଗୃହ ମଧ୍ୟେ ଯାଇ ।
କୃଷ୍ଣଙ୍କୁ ପଲଙ୍କେ ବସାଇ ॥୨୮
ତାହାର ଭାବେ ବଶ ହରି ।
ରତ୍ନପଲଙ୍କେ ବିଜେକରି ॥୨୯
ଅଶେଷ ବ୍ରହ୍ମାଣ୍ଡ ଠାକୁର ।
କପଟେ ମନୁଷ୍ୟ ବେଭାର ॥୩୦
କୁବୁଜା କୁଙ୍କୁମ ଲେପିଣ ।
ତକ୍ଷଣେ ସାରିଲା ସ୍ନାହାନ ॥୩୧
କ୍ଷୀନ ବସନ ରତ୍ନସାର ।
ଘେନିଣ ନାନା ଅଳଙ୍କାର ॥୩୨
ହୃଦେ ଚନ୍ଦନ କଣ୍ଠେ ହାର ।
ତାମ୍ବୁଳେ ସୁରଙ୍ଗ ଅଧର ॥୩୩
ସୁଧା ଆସବ ପାନ କଲା ।
ଗୋବିନ୍ଦ ଛାମୁରେ ମିଳିଲା ॥୩୪
ହାସବଦନେ କାମବତୀ ।
କଟାକ୍ଷେ ମୋହିଲା ଶ୍ରୀପତି ॥୩୫
କୁବୁଜା ଚାହିଁ ବନମାଳୀ ।
ଡାକନ୍ତି ବେନିଭୁଜ ତୋଳି ॥୩୬
ନବସଙ୍ଗମେ ଲାଜ ପାଇ ।
କୁବୁଜା ନ ପାରଇ ଯାଇ ॥୩୭
ସଂକୋଚେ ଗମନ ସଧୀରେ ।
ରତ୍ନକଙ୍କଣ ବେନିକରେ ॥୩୮
ମାୟା ମୋହିଲେ ଭାବଗ୍ରାହୀ ।
ଲାଜ ଛାଡ଼ିଲା କୃଷ୍ଣେ ଚାହିଁ ॥୩୯
ଗୋବିନ୍ଦ ଭୁଜେ ଭୁଜ ଦେଇ ।
ପଲଙ୍କେ ବସାଇଲେ ନେଇ ॥୪୦
କୁବୁଜା କାମଭୋଳେ କରି ।
କୃଷ୍ଣ ଚରଣ କରେ ଧରି ॥୪୧
ଚକ୍ଷୁ ହୃଦୟ କୁଚ ଭରେ ।
ଆଘ୍ରାଣ କଲା ନାସାଦ୍ୱାରେ ॥୪୨
କୁବୁଜା କାମଭୋଳେ କରି ।
କୃଷ୍ଣ ଚରଣ କରେ ଧରି ॥୪୩
ଚକ୍ଷୁ ହୃଦୟ କୁଚ ଭରେ ।
ଆଘ୍ରାଣ କଲା ନାସାଦ୍ୱାରେ ॥୪୪
ଯେତେ କଳୁଷ ଦେହେ ଥିଲା ।
ଗୋବିନ୍ଦ ଚରଣେ ମାଜିଲା ॥୪୫
ନିର୍ଭରେ ବେନିଭୁଜ ତୋଳି ।
ହୃଦେ ଲଗାଇ ବନମାଳୀ ॥୪୬
ଆନନ୍ଦ ରୂପ ଭଗବାନ ।
ନିବିଡେ କଲା ଆଲିଙ୍ଗନ ॥୪୭
ଜନ୍ମୁଁ ସଞ୍ଚିଲା ବହୁ ପାପ ।
ହେଲେ ଛାଡ଼ିଲା ତିନିତାପ ॥୪୮
ଯେ ହରି କଇବଲ୍ୟନାଥ ।
ଲୋଡ଼ି ନ ପାନ୍ତି ମୁନି ସନ୍ଥ ॥୪୯

Dr. Sudhanshu Sekhar Mishra

ତାଙ୍କୁ କୁବୁଜା ଘେନି କୋଳେ ।
ଗନ୍ଧ ଲେପିଲା ପୁଣ୍ୟବଳେ ।।୫୦
ହସି ବୋଇଲେ ନାରାୟଣ ।
ବର ତୁ ମାଗ ଗୋ ବହନ ।।୫୧
ଦେଖ ହୋ ଭାଗ୍ୟବଳ ତାର ।
କୃଷ୍ଣଙ୍କୁ ମାଗିଲା ସେ ବର ।।୫୨
ଭୋ ନାଥ ରହ କିଛିଦିନ ।
ତୋଷ ନୋହିଲା ମୋର ମନ ।।୫୩
ପଦ୍ମଲୋଚନ ତୋର ସଙ୍ଗେ ।
କ୍ରୀଡା କରିବି ନାନାରଙ୍ଗେ ।।୫୪
ମୁନି କହନ୍ତି ରାଜା ଆଗ ।
ଦେଖ ଏ କୁବୁଜାର ଭାଗ୍ୟ ।।୫୫
ଶୁଣି ସାନନ୍ଦ ଗୋପୀନାଥେ ।
ତହିଁ ରହିଲେ ଦିନାକେତେ ।।୫୬
କାମନା ପୂର୍ଣ୍ଣ କରି ତାର ।
ତହୁଁ ଚଳିଲେ ଦାମୋଦର ।।୫୭
ଅଶେଷ ସୁଖ ଭୋଗ ଦେଇ ।
ଉଦ୍ଧବ ସଙ୍ଗେ ଭାବଗ୍ରାହୀ ।।୫୮
ପ୍ରବେଶ ଆପଣା ମନ୍ଦିର ।
ଶୁଣ ହୋ କୁବୁଜା ବେଭାର ।।୫୯
ଦୁର୍ଲ୍ଲଭ ଯାର ପାଦସେବା ।
ଲୋଡି ନ ପାନ୍ତି ସୁରଦେବା ।।୬୦
ତାହାଙ୍କୁ ତପବଳେ ପାଇ ।
ବିଷୟସୁଖ ଯେ ଲୋଡ଼ଇ ।।୬୧
କୁତ୍ସିତମତି ବୋଲି ତାରେ ।
ପଡ଼ଇ ଦୁଃଖ ଅନ୍ଧକାରେ ।।୬୨
ଅଜ୍ଞାନ ବିପ୍ର ଜଗନ୍ନାଥ ।
କାହିଁ ପାଇବ କୃଷ୍ଣପଥ ।।୬୩
ଶୁଣ ହୋ ଅଭିମନ୍ୟୁ ସୁତ ।
ମଥୁରା ପୁରେ ଜଗନ୍ନାଥ ।।୬୪
ରଜନୀ ଅନ୍ତେ ମନେ ଗୁଣି ।
ରାମ ଉଦ୍ଧବ ସଙ୍ଗେ ଘେନି ।।୬୫
କଳ୍ପିତ-କାର୍ଯ୍ୟ ଉପଦେଶେ ।
ପଣ୍ଡୁ ତନୟଙ୍କ ଉଦ୍ଦେଶ୍ୟେ ।।୬୬
ଅକ୍ରୂରହିତ ମନେ ଗୁଣି ।
ରାମ ଉଦ୍ଧବ ସଙ୍ଗେ ଘେନି ।।୬୭

ମିଳିଲେ ଅକ୍ରୂର ମନ୍ଦିର ।
ଦୟାସାଗର ଦାମୋଦର ।।୬୮
ନିକଟେ ଦେଖି ବନ୍ଧୁଜନ ।
ଅକ୍ରୂର ହରଷ ବଦନ ।।୬୯
ଆନନ୍ଦେ କୃଷ୍ଣ ସଙ୍ଗ ପାଇ ।
ନିବିଡ଼େ ଆଲିଙ୍ଗନ ଦେଇ ।।୭୦
ପୁଲକେ ଅଶ୍ରୁଜଳ ବହେ ।
ପ୍ରଣାମ କଲା କୃଷ୍ଣପାୟେ ।।୭୧
ରାମର ପାଦେ ପୁଣ ପଡ଼ି ।
ଉଦ୍ଧବ କର ହୃଦେ ଭିଡ଼ି ।।୭୨
ରାମଗୋବିନ୍ଦ ବନ୍ଧୁପଣେ ।
ନମିଲେ ଅକ୍ରୂର ଚରଣେ ।।୭୩
ଅକ୍ରୂର ନିଜ ଘରେ ନେଇ ।
ଉତ୍ତମ ଆସନେ ବସାଇ ।।୭୪
ଜାଣଇ ପୂଜାର ବିଧାନ ।
ଆନନ୍ଦ ମନେ ଛନଛନ ।।୭୫
ସୁବର୍ଣ୍ଣପାତ୍ରେ ଜଳ ନେଇ ।
ରାମଗୋବିନ୍ଦ ପାଦ ଧୋଇ ।।୭୬
ପାଦଉଦକ ଶିରେ ଘେନି ।
ଭାବେ ବୁଡିଲା ଚକ୍ଷୁ ବେନି ।।୭୭
ଦିବ୍ୟବସନ ଗନ୍ଧମାଳେ ।
ପୂଜିଲା ମଦନଗୋପାଳେ ।।୭୮
ମଣିମୁକୁତା ହାର ରଙ୍ଗେ ।
ମଣ୍ଡିଲା ଗୋବିନ୍ଦର ଅଙ୍ଗେ ।।୭୯
ରାମଙ୍କୁ ଦେଇ ଅଳଙ୍କାର ।
ଭାବେ ଯୋଡିଲା ବେନିକର ।।୮୦
ଖଟେ ବସାଇ ଦାମୋଦର ।
ଚରଣ ଚାପଇ ଅକ୍ରୁର ।।୮୧
ରାମର ପାଦେ ହସ୍ତ ଦେଇ ।
ବିଶ୍ୱାସେ ଅକ୍ରୂର ବୋଲଇ ।।୮୨

ଅକ୍ରୂର ଉବାଚ

ଭୋ ନାଥ ପ୍ରଭୁ ନାରାୟଣ ।
ଅଶେଷ ବ୍ରହ୍ମାଣ୍ଡ କାରଣ ।।୮୩
ପାପିଷ୍ଠ କଂସରାଜା ମଲା ।
ଆମ୍ଭର କୁଳେ ଭାଗ୍ୟ ଥିଲା ।।୮୪

ତାହାର ଭୟେ ଯଦୁବଂଶ ।
ନିଶ୍ଚୟେ ହେଉଥିଲା ଧ୍ୱଂସ ।।୮୫
ତାହାଙ୍କୁ ହେଳେ ନାଶ କଲ ।
ବୁଡ଼ିଲା ଭେଳା ଉଦ୍ଧରିଲ ।।୮୬
ଏ କୁଳ ଏବେ ତ ବଢ଼ିବ ।
ଅବନିତଳେ ଯଶ ଥିବ ।।୮୭
ତମ୍ଭେ ଯେ ପ୍ରକୃତିପୁରୁଷ ।
ଲୀଳା ଏ ସଂସାରେ ପ୍ରବେଶ ।।୮୮
ଜଗତ ନାନାରୂପ ହୋଇ ।
ତୁମ୍ଭ ଶରୀରୁ ପ୍ରକାଶଇ ।।୮୯
ଏଣୁ ଜଗତମୟ ନାମା ।
କି ଅବା କରିବା ଉପମା ।।୯୦
କାର୍ଯ୍ୟକାରଣ ବିଚାରଣେ ।
ତୋ ବିନୁ ନାହିଁ ଅନ୍ୟ ଜଣେ ।।୯୧
ତୁମ୍ଭେ ଏ ସଂସାର ଭିଆଇ ।
ଜୀବ ପରମ ରୂପ ହୋଇ ।।୯୨
ଆତ୍ମାର ତେଜ ବଳ ତୁମ୍ଭେ ।
ପ୍ରବେଶ କ୍ରୀଡ଼ା ଅନୁଭାବେ ।।୯୩
ନାନାପ୍ରକାରେ ରୂପହୋଇ ।
ଏ କଥା ନିଗମ ଜାଣଇ ।।୯୪
ସଚରାଚର ଭୂତଯୋନି ।
ଶବଦ ଆଦି ଗୁଣ ଘେନି ।।୯୫
ବହୁ ପ୍ରକାରେ ପ୍ରକାଶନ୍ତି ।
ତୁମ୍ଭ ମହିମା ନ ଜାଣନ୍ତି ।।୯୬
ଏମନ୍ତ ପ୍ରକାଶ ତୁମ୍ଭର ।
କେବଳ ଆତ୍ମାଜ୍ଞାନ ସାର ।।୯୭
ପ୍ରପଞ୍ଚ ନାନା ରୂପ ହୋଇ ।
ମାୟାସଂସାରେ ବିହରଇ ।।୯୮
ତୁ ପୁଣି ତୋହର ଆୟତ୍ତ ।
ମାୟାରେ ଭ୍ରମାଉଁ ଜଗତ ।।୯୯
ସୃଷ୍ଟି ପାଳନ ସଂହାରଣ ।
ରଜ ସାତ୍ତ୍ୱିକ ତମଗୁଣ ।।୧୦୦
ଏଣୁ ଯେ ତୋର ବନ୍ଧନାହିଁ ।
ଯେଣୁ ଏହାର ହେତୁ ତୁହି ।।୧୦୧
ଉପାଧି ରୂପ ତନୁ ଯାର ।
ଜନ୍ମ ମରଣ ନାହିଁ ତାର ।।୧୦୨

Dr. Sudhanshu Sekhar Mishra

ତରଙ୍ଗ ଯେହ୍ନେ ନାଶ ଯାଇ ।
ନିଶ୍ଚଳ ଭାବେ ଜଳ ଥାଇ ॥୧୦୩
ଗୁଣ ବେଭାର ଯାର ଭେଦ ।
ତାହାର ଦୁଃଖ ସୁଖେ ଖେଦ ॥୧୦୪
ଅଭେଦ ଆତ୍ମା ତୁ ପ୍ରତ୍ୟକ୍ଷ ।
ତୋହର ନାହିଁ ବନ୍ଧ-ମୋକ୍ଷ ॥୧୦୫
ନାହିଁ ତୋହର ଭିନ୍ନ ଭାବ ।
ଏଣୁ କେ ମହିମା କହିବ ॥୧୦୬
ତୋର ବଚନ ଶ୍ରୁତିଗଣ ।
ସଂସାର-ହିତର କାରଣ ॥୧୦୭
ପାଷାଣ୍ଡେ ନିଜ ବାଦବଳେ ।
ବେଦ ନିନ୍ଦନ୍ତି ଯେତେବେଳେ ॥୧୦୮
ତୁ ନାଥ ସତ୍ତ୍ୱଗୁଣ ଭକ୍ତ ।
ତାହାଙ୍କ ଗର୍ବ ହେଲେ ଗଞ୍ଜୁ ॥୧୦୯
ନିନ୍ଦନ୍ତି ନିଜ ଧର୍ମ କର୍ମ ।
ତୋର ଶରୀର ସର୍ବଧର୍ମ ॥୧୧୦
ଈଶ୍ୱର ଆଦି ଦେବ ଯାଏଁ ।
ନିନ୍ଦା କରନ୍ତି ପଶୁପ୍ରାୟେ ॥୧୧୧
ପ୍ରକୃତିପୁରୁଷ ତୁ ଅଟୁ ।
ସ୍ତିରୀପୁରୁଷ ରୂପେ ଖଟୁ ॥୧୧୨
ପାଷାଣ୍ଡେ କରନ୍ତି ତା ଭିନ୍ନ ।
ସର୍ବଶରୀରେ ନାରାୟଣ ॥୧୧୩
ଏହା ଯେ ବିଚାର ନ କରେ ।
ତାହାକୁ ଲେଖିବ ପଶୁରେ ॥୧୧୪
ତାହାଙ୍କ ଦର୍ପ କରି ନାଶ ।
ନରକେ ଦେଉ ତାଙ୍କୁ ବାସ ॥୧୧୫
ଏମନ୍ତେ ପ୍ରଭୁ ନରହରି ।
ଯାଦବ ବଂଶେ ଅବତରି ॥୧୧୬
ବସୁଦେବର ଘରେ ନାଥ ।
ଅଂଶେ ହୋଇଲୁ ଦେହବନ୍ତ ॥୧୧୭
ଅବନୀଭାରା ନିବାରଣ ।
ଅଶେଷ ବ୍ରହ୍ମାଣ୍ଡ କାରଣ ॥୧୧୮
ଅସୁରବଳ କରି ନାଶ ।
ଥୋଇତୁ ଯଦୁକୁଳେ ଯଶ ॥୧୧୯
ଏମନ୍ତ ମହିମା ତୋହର ।
ବିଜୟ କଲୁ ମୋର ପୁର ॥୧୨୦

ଦେବତା ପିତୃ ଭୂତ ରୂପ ।
ତୁ ନାଥ ସକଳ ସ୍ୱରୂପ ॥୧୨୧
ତୁ ଯହିଁ ହୋଇତୁ ପ୍ରକାଶ ।
ସେ ଧନ୍ୟ ପୁଣ୍ୟ ଗୃହବାସ ॥୧୨୨
ତୋହର ଚରଣ ଉଦକ ।
ପବିତ୍ର କରେ ତିନିଲୋକ ॥୧୨୩
କେଉଁ ପଣ୍ଡିତ ତୋ ଚରଣ ।
ଛାଡ଼ି ଭଜିବ ଆନଜଣ ॥୧୨୪
ଭକତପ୍ରିୟ ବନ୍ଧୁ ତୁହି ।
ସତ୍ୟବଚନ ତୋର ତହିଁ ॥୧୨୫
ତୁ ଜୀବଆତ୍ମା ତତ୍ତ୍ୱ ଜାଣୁ ।
ଶୁଭଅଶୁଭ ପରିମାଣୁ ॥୧୨୬
ଭକତି ଅନୁରୂପେ ଫଳ ।
ଦେଉ ତୁ ଭକତବତ୍ସଳ ॥୧୨୭
ଭାବକୁ ଆତ୍ମା ଦେଉ ତୁହି ।
ବୃଦ୍ଧି ବିନାଶ ତୋର ନାହିଁ ॥୧୨୮
ତୁ ଯେ ସକଳ ମୁକ୍ତିଦାତା ।
ଭବଜଳଧିରୁ ତାରନ୍ତା ॥୧୨୯
ଆମ୍ଭେ ସକଳ ହତଜ୍ଞାନ ।
କେବଳ ଭାଗ୍ୟେ ଜନାର୍ଦ୍ଦନ ॥୧୩୦
ତୋତେ ପାଇଲୁ ପୁଣ୍ୟଫଳେ ।
ଚିହ୍ନି ନ ପାରୁ ଚର୍ମଡୋଳେ ॥୧୩୧
ସକଳ ସୁର ସିଦ୍ଧ ଯତି ।
ଜାଣି ନ ପାରନ୍ତି ତୋ ଗତି ॥୧୩୨
ସୁତ କଳତ୍ର ଧନ ମିତ୍ର ।
ଗୃହ ବାନ୍ଧବ ବୃତ୍ତି କ୍ଷେତ୍ର ॥୧୩୩
ଏ ରୂପେ ତୋର ମାୟାଫାନ୍ଦେ ।
ବନ୍ଧନେ ଅଛୁଁ ଆମ୍ଭେ ହାଦେ ॥୧୩୪
ତୋହର ଅଛି ଯେବେ ଦୟା ।
ଭୋ ନାଥ ଛେଦ ବେଗେ ଏହା ॥୧୩୫
ତୁ ନାଥ ଚଉବର୍ଗଦାତା ।
ତୋ ନହୁଁ ନାହିଁନା କରତା ॥୧୩୬
ତୁ ନାଥ କର ଏଥୁଁ ପାର ।
ଶରଣ ଗଲି ତୋ ପୟର ॥୧୩୭
ଏମନ୍ତ ଅକ୍ରୂରର ବାଣୀ ।
ଶୁଣି ହସନ୍ତି ଚକ୍ରପାଣି ॥୧୩୮

ମୋହିଲେ ଅକ୍ରୂରର ମନ ।
କୋମଳ ଗଭୀର ବଚନ ॥୧୩୯
କହନ୍ତି ପ୍ରଭୁ ଭାବଗ୍ରାହୀ ।
ମାୟାମୋହନ ନେତ୍ରେ ଚାହିଁ ॥୧୪୦

ଭଗବାନ ଉବାଚ

ତୁ ମୋର ଗୁରୁ ପିତାମାତ ।
ବାନ୍ଧବ ମଧ୍ୟରେ ପୂଜିତ ॥୧୪୧
ଆମ୍ଭେ ତୋହର ପୁତ୍ର ହୁଇ ।
ତୋର ପୋଷଣେ ଆମ୍ଭ ଦେହୀ ॥୧୪୨
ତୋହର ପାଦେ ସେବାକରି ।
ତେବେ ସେ ଥିବୁ ଦେହ ଧରି ॥୧୪୩
ତୋ ପରି ସାଧୁ ସେବାକରି ।
ତେବେ ସେ ଭକ୍ତ ହୋଇପାରି ॥୧୪୪
ଆପଣା ହିତ ସାଧମତେ ।
ଦେବଦାନବ ଏ ଜଗତେ ॥୧୪୫
ଏ ଭାବ ସାଧୁଜନେ ନାହିଁ ।
ହସି ବୋଲନ୍ତି ଭାବଗ୍ରାହୀ ॥୧୪୬
ଜଳେ ପୂରିତ ତୀର୍ଥଗଣ ।
ଦେବତା ମୃତ୍ତିକା ପାଷାଣ ॥୧୪୭
ଏହାଙ୍କୁ ସେବୁଥିଲେ ନିତି ।
ଅନେକ କାଳେ ଫଳ ଦ୍ୟନ୍ତି ॥୧୪୮
ସାଧୁଙ୍କ ଦରଶନ ମାତ୍ରେ ।
ଦୁରିତ ନ ରହଇ ଗାତ୍ରେ ॥୧୪୯
ବନ୍ଧୁଙ୍କ ମଧ୍ୟେ ଶ୍ରେଷ୍ଠ ମୋର ।
ଏବେ ତୁ ମୋ ବଚନ କର ॥୧୫୦
ହସ୍ତିନାପୁର ଯାଅ ବେଗେ ।
କହଇ କଥା ତୋର ଆଗେ ॥୧୫୧
ପଣ୍ଡୁରାଜାର ପଞ୍ଚସୁତ ।
ପିତାମରଣେ ଅରକ୍ଷିତ ॥୧୫୨
ଅଛନ୍ତି ଧୃତରାଷ୍ଟ୍ରପୁରେ ।
ବନ୍ଦୀ ଯେସନେ ବନ୍ଦୀଘରେ ॥୧୫୩
ଅମ୍ବିକାସୁତ ଚକ୍ଷୁହୀନ ।
ତାହାର ପୁତ୍ର ଦୁର୍ଯ୍ୟୋଧନ ॥୧୫୪
ଶତେକ ପୁତ୍ର ମଧ୍ୟେ ଶ୍ରେଷ୍ଠ ।
ଉଗ୍ରସ୍ୱଭାବ ମହାଦୁଷ୍ଟ ॥୧୫୫

Dr. Sudhanshu Sekhar Mishra

ରାଜା ତାହାରେ ବଶ ହୋଇ ।
ସମେ ନ ଦେଖେ ପାଞ୍ଚଭାଇ ।।୧୫୬
ତାଙ୍କ ନିମନ୍ତେ ନାଶଯିବ ।
ପୃଥ୍ୱୀର ଭାରା ଉଶ୍ୱାସିବ ।।୧୫୭
ତୁ ଏବେ ଯାଅ ମୋର ବୋଲେ ।
ତାଙ୍କ କୁଶଳ ବୁଝ ଭଲେ ।।୧୫୮
ଭୋ ତାତ ଚଳ ବେଗ ହୋଇ ।
କହି ଉଠିଲେ ବେନିଭାଇ ।।୧୫୯
ଶୁଣି ଅକ୍ରୂର କୃତକୃତ୍ୟ ।
ବୋଲଇ ଶୁଣ ଗୋପୀନାଥ ।।୧୬୦
ମଣୋହି ସାରି ବିଜେକର ।
ମୁଁ ଯିବି ହସ୍ତିନାନଗର ।।୧୬୧
ଅକ୍ରୂରବାକ୍ୟ କର୍ଣ୍ଣେ ଶୁଣି ।
ହରଷ କୃଷ୍ଣ ହଳପାଣି ।।୧୬୨
ବେଗେ ତୁ ମଣୋହି କରାଇ ।
ହସ୍ତିନା ଯାଅ ବେଗ ହୋଇ ।।୧୬୩
ଭିତରପୁରେ ବେନିଭାଇ ।
ମଣୋହି କରାଇଲା ନେଇ ।।୧୬୪
ଅମୃତପାନ ଘୃତ ସର ।
ଭୁଞ୍ଜନ୍ତି ରାମ ଦାମୋଦର ।।୧୬୫
ଉଦ୍ଧବ ଭୁଞ୍ଜନ୍ତି ହରଷେ ।
କ୍ଷୀରି ଶାକର ଘୃତରସେ. ।।୧୬୬
ଭୁଞ୍ଜି ସାନନ୍ଦ ବେନିଭାଇ ।
ଯମୁନାନୀରେ ମୁଖ ଧୋଇ ।।୧୬୭
ହସ୍ତ ପଖାଳି ବାସ ଗୁଆ ।
ଅକ୍ରୂର ଯୋଗାଏ ବିଡ଼ିଆ ।।୧୬୮

ଭୁଞ୍ଜନ୍ତି ରାମ ଦଇତ୍ୟାରି ।
ରତ୍ନପଲଙ୍କେ ବିଜେକରି ।।୧୬୯
କେଶେ ସାଜଇ ଦିବ୍ୟ ଗଭା ।
ରାମଗୋବିନ୍ଦ ମୁଖପ୍ରଭା ।।୧୭୦
ଚନ୍ଦନ ଶ୍ରୀଅଙ୍ଗେ ବୋଳଇ ।
କଣ୍ଠେ ବିବିଧ ମାଳା ଦେଇ ।।୧୭୧
ହୃଦେ ପଦକ କଣ୍ଠେ ମଣି ।
କୁଣ୍ଡଳ ରବିତେଜ ଜିଣି ।।୧୭୨
କଚଟି ବାହୁଟି ସାଜଇ ।
ଅଷ୍ଟରତନମାଳା ଦେଇ ।।୧୭୩
ଦେଇଣ ନାନା ଉପହାର ।
ଚରଣେ ପଡ଼ିଲା ଅକ୍ରୂର ।।୧୭୪
ରାମ ଗୋବିନ୍ଦ ପାଦ ଧରି ।
ଅଶ୍ରୁ ଗଳଇ ମୋଦଭରି ।।୧୭୫
ରାମ ଗୋବିନ୍ଦ ଦୟା କଲେ ।
ପଲ୍ୟଙ୍କେ ନେଇ ବସାଇଲେ ।।୧୭୬
ବୋଲନ୍ତି ଆମ୍ଭର ପିଅର ।
ବସୁଦେବ ହୁଁ ଶ୍ରେଷ୍ଠ ସାର ।।୧୭୭
ଜୀବନ୍ତେ ଭୋଗ ତୁ କରିବୁ ।
ଅନ୍ତେ ମୋ ଶରୀରେ ପଶିବୁ ।।୧୭୮
ଅକ୍ରୂର ନାରୀ ହୀରାବତୀ ।
ମିଳିଲା ରାମକୃଷ୍ଣ କତି ।।୧୭୯
ଶତେକ ସୁନ୍ଦର କାମିନୀ ।
ପୁତ୍ର ଦୁହିତା ସଙ୍ଗେ ଘେନି ।।୧୮୦

ସୁଗନ୍ଧ ନାନା ଉପହାର ।
ପୂଜିଲା ରାମଦାମୋଦର ।।୧୮୧
ଗୋବିନ୍ଦ ମହାତୋଷ ହୋଇ ।
ବର ଦିଅନ୍ତି ଭାବଗ୍ରାହୀ ।।୧୮୨
ଅନେକ ହୋଇବ ସମ୍ପଦ ।
କେ କହୁ ତୁମ୍ଭର ଆନନ୍ଦ ।।୧୮୩
ମୋର ଚରଣେ ଚିତ୍ତ ରହୁ ।
ମୋ ନାମ ଧରି ଦିନ ଯାଉ ।।୧୮୫
ଭକତି ତୁମ୍ଭର ହୋଇବ ।
ଏ ଘୋରଜଳେ ନ ପଡ଼ିବ ।।୧୮୬
ରାମ ଉଦ୍ଧବ ସଙ୍ଗେ କରି ।
ନିଜ ଭୁବନେ ଯାଇ ମିଳି ।।୧୮୭
ଅକ୍ରୂର ହରଷ ବଦନେ ।
ଗଲା ସେ ହସ୍ତିନା ଭୁବନେ ।।୧୮୮
ସେ ରାମକୃଷ୍ଣ ପାଦଯୁଗେ ।
ଚିତ୍ତ ମୋ ରହୁ ଧ୍ୟାନଯୋଗେ।।୧୮୯
ସୁଜନେ ଏହି ଭାବେ ରସ ।
କଟିବ ଭବବନ୍ଧପାଶ ।।୧୯୦
ନାମେ ସକଳ ପାପ ହର ।
ଏ ଘୋର - ସଂସାରୁ ନିସ୍ତର।।୧୯୧
ବୋଲଇ ଦାସ ଜଗନ୍ନାଥ ।
ସୁଜନ ହିତେ ଭାଗବତ ।।୧୯୨

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ଦ୍ୱିପଞ୍ଚାଶଦ୍ ଅଧ୍ୟାୟଃ ।।

---

## ତ୍ରିପଞ୍ଚାଶତ ଅଧ୍ୟାୟ

ଶୁକ ଉବାଚ

ଶୁଣ ହୋ ରାଜା ପରୀକ୍ଷିତ ।
ଅକ୍ରୂର ଚଢ଼ି ଦିବ୍ୟରଥ ।।୧
ଗୋବିନ୍ଦ ଆଜ୍ଞା ପରମାଣେ ।
ଅକ୍ରୂର ଗଲା ତତ୍‌କ୍ଷଣେ ।।୨
ବିମାନେ ବସି କୁତୂହଳେ ।
ମିଳିଲା ହସ୍ତିନା ମଣ୍ଡଳେ ।।୩

କୃଷ୍ଣ ବିମାନ ପ୍ରାୟ ଦିଶି ।
ସକଳ ଲୋକେ ପରଶଂସି ।।୪
ରଥୁଁ ଓହ୍ଲାଇ ଭୂମିତଳେ ।
ମିଳିଲା ଯାଇ କୁରୁମେଳେ ।।୫
ରାଜନ ବସି ସଭାତଳେ ।
ବନ୍ଧୁବାନ୍ଧବ ଘେନି ମେଳେ ।।୬
ପରମ ହରଷେ ବସିଲା ।
ଶ୍ରୀରାମ ଗୋବିନ୍ଦ ଭାଷିଲା ।।୭

ତଦନ୍ତେ ଅକ୍ରୁର ହରଷ ।
ଦେଖଇ କୁରୁଙ୍କର ଦେଶ ।।୮
ଭୀଷ୍ମ ବିଦୁର ସଙ୍ଗେ ନୃପ ।
ଗାନ୍ଧାରୀ କୁନ୍ତୀ ଦ୍ରୋଣ କୃପ ।।୯
ରବିକୁମର ଦୁର୍ଯ୍ୟୋଧନ ।
ଦ୍ରୋଣନନ୍ଦନ ଦୁଃଶାସନ ।।୧୦
ପଣ୍ଡୁର ପଞ୍ଚପୁତ୍ର ଦେଖି ।
ଅଶ୍ରୁପୂରିତ କଲା ଆଖି ।।୧୧

Dr. Sudhanshu Sekhar Mishra

ଅକ୍ରୂର ଦେଖି ଜଣେ ଜଣ ।
ଆନନ୍ଦେ କରି ଆଲିଙ୍ଗନ ॥୧୨
ବନ୍ଧୁ କୁଶଳ ପଚାରିଲେ ।
ଆନନ୍ଦେ ଅକ୍ରୂରର ତୁଲେ ॥୧୩
ଅକ୍ରୂର ବିଚାରଇ ମନେ ।
ବିଶ୍ୱାସ ଜାଣିବି କେସନେ ॥୧୪
ସ୍ୱାମୀ ମରଣେ ଅଶ୍ରୁମୁଖୀ ।
ପଞ୍ଚବାଳକ ଘେନି ଦୁଃଖୀ ॥୧୫
କୁନ୍ତୀ ଯେ ଅଛି ଏହା ପୁରେ ।
କି ଅବା ବିଚାରେ ମନରେ ॥୧୬
ନିରତେ ଖଳ ବୁଦ୍ଧିହୀନ ।
ଅନ୍ଧ ସ୍ୱଭାବେ ହତଜ୍ଞାନ ॥୧୭
ଶତେକୁମର ପାଞ୍ଚମେଳେ ।
ସମେ କି ଦେଖିବ କୁଶଳେ ॥୧୮
ପଣ୍ଡୁପୁତ୍ରଙ୍କ ଗୁଣ ଯେତେ ।
ଅନ୍ଧ ନ ସହେ ହୃଦଗତେ ॥୧୯
ତେଜ ପ୍ରତାପ କ୍ଷତ୍ରିବୃତ୍ତ ।
ରାଜନ୍ୟ ଷଡ଼ଗୁଣ ଯୁକ୍ତ ॥୨୦
ଏ ଆଦି ପ୍ରଜା ଅନୁରାଗ ।
ଦେଖି ପାଇଲା ଉଦ୍‌ବେଗ ॥୨୧
ମାରିବା ପାଇଁ ବିଚାରିଲେ ।
କପଟେ ବିଷଲଡୁ ଦେଲେ ॥୨୨
ଏ ଆଦି ଯେତେକ ବେଭାର ।
ଏକାନ୍ତେ କହିଲେ ବିଦୁର ॥୨୩
କୁନ୍ତୀ କହିଲା ସେହି ମତ ।
ଶୁଣି ଅକ୍ରୂର ଦୁଃଖିଚିତ୍ତ ॥୨୪
କୁନ୍ତୀ ଅକ୍ରୂର ମୁଖ ଚାହିଁ ।
ବୋଲଇ ଶୋକଭର ହୋଇ ॥୨୫
କାନ୍ଦନ୍ତି ଅଧର କମ୍ପାଇ ।
ଜନ୍ମମନ୍ଦିର ସୁମରଇ ॥୨୬
ହେ ଭ୍ରାତ ଶୁଣ ମୋ ଉତ୍ତର ।
ତାତ ଜନନୀ ଯେ ମୋହର ॥୨୭
ଭାଇ ଭଗିନୀ ବନ୍ଧୁ ନାରୀ ।
ସଖା ସୁହୃଦ ଆଦି କରି ॥୨୮
ଯେତେ ଅଛନ୍ତି ସହୋଦର ।
ଚିନ୍ତା କରନ୍ତିଟିକି ମୋର ॥୨୯

ସ୍ୱାମୀ ମରଣେ ଦୁଃଖ ପାଇ ।
ପଞ୍ଚବାଳକ କୋଳେ ଲଇଁ ॥୩୦
ଏହାଙ୍କ ଘରେ ବନ୍ଦୀ ପ୍ରାୟେ ।
ଦେଖ ଦୁଃଖିତ ମୋର ପୋଏ ॥୩୧
ଅର୍ଜିଲା କର୍ମ ଏ ମୋହର ।
କିସ କରିବି ସହୋଦର ॥୩୨
ମୋହର ଭ୍ରାତା ବସୁଦେବ ।
ଯାହାର ସୁତ ବାସୁଦେବ ॥୩୩
ସେ କୃଷ୍ଣ ଶରଣସୋଦର ।
ଭକତବନ୍ଧୁ ବାନା ତାର ॥୩୪
ପିତୃ-ଭଗିନୀ-ସୁତ କଥା ।
ସେ ନାଥ କରଇ କି ଚିନ୍ତା ॥୩୫
ପଦ୍ମଲୋଚନ ହଳଧର ।
ତାରେ ଶରଣ ମୋ କୁମର ॥୩୬
ଶତ୍ରୁଙ୍କ ମଧ୍ୟେ ମୋର ବାସ ।
କୁରୁ କୁଟୁମ୍ବେ ଅବିଶ୍ୱାସ ॥୩୭
ଶାର୍ଦ୍ଦୁଳ ମଧ୍ୟେ ମୃଗ ଥାଇ ।
ସେ ଯେହ୍ନେ ପଥ ନ ଜାଣଇ ॥୩୮
ମୋର ବାଳକେ ପିତୃହୀନ ।
ଏମନ୍ତ ମୋହର ଜୀବନ ॥୩୯
ସେ କୃଷ୍ଣ ମୋର ଘରେ ଆସି ।
କୋମଳ ବଚନେ ଆଶ୍ୱାସି ॥୪୦
ଶାନ୍ତି କରିବ ମୋର ପ୍ରାଣ ।
ତା ପାଦେ ପଶିଲି ଶରଣ ॥୪୧
ସେ କୃଷ୍ଣ ମହାଯୋଗେଶ୍ୱର ।
ବିଶ୍ୱପାଳକ ଦାମୋଦର ॥୪୨
ପଞ୍ଚବାଳକ ମୋର ନେବି ।
ମୁଁ ତାରେ ଶରଣ ପଶିବି ॥୪୩
ମୃତ୍ୟୁ ସଂସାର ଭୟେ ଜନେ ।
ଭାଳନ୍ତି ପାଇ ଖେଦମନେ ॥୪୪
ପଶଇ ଯେବେ ତାର ପାଦେ ।
ତେବେ ବଂଚଇ ଅପ୍ରମାଦେ ॥୪୫
ତା ପାହୁଁ ଆନଠାବ ନାହିଁ ।
ଏମନ୍ତ ପ୍ରାୟ ମୁଁ ମଣଇ ॥୪୬
ନମସ୍ତେ କୃଷ୍ଣ ଶୁଦ୍ଧଦେହୀ ।
ଜୀବ ପରମଆତ୍ମା ତୁହି ॥୪୭

ଯଜ୍ଞସ୍ୱରୂପ ଯୋଗେଶ୍ୱର ।
ଭୋ ନାଥ ଶରଣ ମୁଁ ତୋର ॥୪୮
ଏମନ୍ତ ସୁମନେ ସୁମରି ।
କୃଷ୍ଣଚରଣେ ଧ୍ୟାନ କରି ॥୪୯
କାନ୍ଦେ ଅକ୍ରୂର ମୁଖ ଚାହିଁ ।
ପରୀକ୍ଷ ତୋ ପ୍ରପିତାମହୀ ॥୫୦
ପାଣ୍ଡବଜନନୀ ରୋଦନ ।
ଶୁଣି ଅକ୍ରୂର ଖେଦମନ ॥୫୧
ନିକଟେ ବସିଲା ଅକ୍ରୂର ।
କହଇ ହୋଇ ଚିନ୍ତାଭର ॥୫୨
ଭୋ ମାତ ସାବଧାନେ ଶୁଣ ।
ତୋହର ପୁତ୍ରଙ୍କର ଗୁଣ ॥୫୩
ଧର୍ମ ପବନ ସୁନାସୀର ।
ବିବୁଧ ଅଶ୍ୱିନୀ କୁମାର ॥୫୪
ଏହାଙ୍କ ଅଂଶେ ଜାତ ହୋଇ ।
ଭାରା ନିବାରେ ପାଞ୍ଚଭାଇ ॥୫୫
ଅନାଦି ବିଷ୍ଣୁ ଯାର ବନ୍ଧୁ ।
ଏହା ନ ବୁଝି କିମ୍ପା କାନ୍ଦୁ ॥୫୬
ଏମନ୍ତ କହି କଲେ ଶାନ୍ତି ।
ଶୁଣି ହରଷ ହେଲେ କୁନ୍ତୀ ॥୫୭
ଅକ୍ରୂର ବିଚାରଇ ଚିତ୍ତେ ।
ଏଥେ ରହିବି ଦିନାକେତେ ॥୫୮
ବୁଝିବି ରାଜାର ବେଭାର ।
ତେବେ ମୁଁ ଯିବି ନିଜପୁର ॥୫୯
ଏମନ୍ତ ମନେ ବିଚାରଇ ।
ବିଦୁର ହସ୍ତେ ହସ୍ତ ଦେଇ ॥୬୦
ତକ୍ଷଣେ ଅକ୍ରୂର ବିଦୁର ।
ମିଳିଲେ ନୃପତି ଛାମୁର ॥୬୧
ପୁତ୍ରଲାଳସେ କୁରୁପତି ।
ବିଷମ ଦମ୍ଭ ତାର ମତି ॥୬୨
ବନ୍ଧୁ ସୁହୃଦେ ମଧ୍ୟେ ଥାଇ ।
ଅକ୍ରୂର ବୋଲେ ଅନ୍ଧେ ଚାହିଁ ॥୬୩
ରାମଗୋବିନ୍ଦଙ୍କ ବଚନେ ।
ଅକ୍ରୂର କହେ ଶୁଦ୍ଧମନେ ॥୬୪

ଅକ୍ରୂର ଉବାଚ

ତୁ କୁରୁବଂଶେ ବିଦ୍ୟମାନ ।
ବିଚିତ୍ରବୀର୍ଯ୍ୟର ନନ୍ଦନ ॥୬୫

Dr. Sudhanshu Sekhar Mishra

ପଣ୍ଡୁରାଜାର ଅନ୍ତଃକାଳେ ।
ରାଜା ହୋଇଲୁ କୁରୁକୁଳେ ॥୬୬
ଧର୍ମେ ପାଳନ କର ମହୀ ।
ପ୍ରଜାର ହିତେ ଚିତ୍ତ ଦେଇ ॥୬୭
ଶତେକ ପୁତ୍ର ଅଛି ତୋର ।
ଏ ପଞ୍ଚ ପଣ୍ଡୁର କୁମର ॥୬୮
ଏହାଙ୍କୁ ଦେଖ ସମ କରି ।
ଯେବେ ପାଇବୁ ଯଶଶିରୀ ॥୬୯
ଏହା ନ କରି ମୂଢ ପ୍ରାୟେ ।
ଯେବେ ବୁଡ଼ିବୁ ମାୟାମୋହେ ॥୭୦
ଅଧର୍ମ କରି ଇହଲୋକେ ।
ଅନ୍ତେ ତୁ ପଡ଼ିବୁ ନରକେ ॥୭୧
ଏ ଯେ ପଣ୍ଡୁର ପାଞ୍ଚପୁଅ ।
ତୋହର ଶତେକ ତନୟ ॥୭୨
ଏଣେ ସମାନଚିତ୍ତ କର ।
ତୋତେ ରଖିବେ ଦାମୋଦର ॥୭୩
ଏ ଭବ ମଧ୍ୟେ ଯେତେ ଜନ ।
ନିତ୍ୟେ ନ ଥାନ୍ତି ଏକ ସ୍ଥାନ ॥୭୪
ଏ ଦେହ ମଧ୍ୟେ ନରହରି ।
ସମେ ଅଛନ୍ତି ସେହୁ ପୂରି ॥୭୫
ନିଜ ଶରୀର ନ ରହଇ ।
ପୁତ୍ର କଳତ୍ର ଆଉ କାହିଁ ॥୭୬
ଏ ଜୀବ ଆତ୍ମା ଏକ ହୋଇ ।
ନାନା ଯୋନିରେ ଦେହ ବହି ॥୭୭
କର୍ମବିପାକେ ଛାଡ଼େ ଦେହ ।
ନିତ୍ୟେ କଳ୍ପିତ ମାୟାମୋହ ॥୭୮
ଭୁଞ୍ଜାଇ ଦୁଃଖ ସୁଖ ଫଳେ ।
ଏକା ଭ୍ରମଇଁ ଅନ୍ତଃକାଳେ ॥୭୯
ଅଧର୍ମେ ସଂଚଇ ଯେ ଧନ ।
ତାର ବିଯୋଗେ ଭୁଞ୍ଜେ ଆନ ॥୮୦
ଅଧର୍ମ ମାର୍ଗେ ମୂଢପ୍ରାଣୀ ।
ଧନ ସଂଚଇ ଗୃହେ ଆଣି ॥୮୧
ପୁତ୍ର କଳତ୍ର ବନ୍ଧୁ ଭାଇ ।
ସଂଚିଲା ଧନ ତାର ଖାଇ ॥୮୨
ଯେ ଯାହା ପଥେ ଯାନ୍ତି ବେଗେ ।
ଦୁଷ୍କୃତ ରହେ ତାର ସଙ୍ଗେ ॥୮୩
ମୋର କୁଟୁମ୍ବ ବୋଲି ମୋହେ ।
ଅଧର୍ମ କରି ନିଜ ଦେହେ ॥୮୪
ଧନ ସଂଚଇ କରି ପୋଷେ ।
ସେ କାହିଁଥିବେ ତାର ପାଶେ ॥୮୫
ବିଷ୍ଣୁର ମାୟାବଳେ ଭ୍ରାନ୍ତି ।
ଅନାଥ କରି ଛାଡ଼ିଯାନ୍ତି ॥୮୬
ଧନ ଜୀବନ ଦାରା ସୁତ ।
ଆବୋରି ଆପଣାର ପଥ ॥୮୭
ଏ ମୋହମାୟାକୁ ଆବୋରି ।
ଯେ ବୋଲେ ମୋହରି ମୋହରି ॥୮୮
ତାହାକୁ ବୋଲି ଅପଣ୍ଡିତ ।
ସଂଚିତ-ପାପେ ହୋଏ ଗ୍ରସ୍ତ ॥୮୯
ପଡ଼ଇ ଅନ୍ଧକାର ତମେ ।
ମହାନରକେ ଅତିଶ୍ରମେ ॥୯୦
ସ୍ୱଧର୍ମେ ଛାଡ଼ିଲେ ଏମନ୍ତ ।
ଏ ବେଦପୁରୁଷଙ୍କ ମତ ॥୯୧
ସ୍ୱପ୍ନର ପ୍ରାୟ ଏ ଜଗତ ।
ଭ୍ରମଇଁ ମାୟା-ମନୋରଥ ॥୯୨
ତୁ ମହାପୁରୁଷଙ୍କ ଅଂଶ ।
କିମ୍ପାଇଁ ହେଉ ବୁଦ୍ଧିଭ୍ରଂଶ ॥୯୩
ମାୟାକୁ ଆତ୍ମଜ୍ଞାନେ ଭେଦି ।
ଚଞ୍ଚଳ ଇନ୍ଦ୍ରିୟ ନିରୋଧି ॥୯୪
ସମଦୃଷ୍ଟିରେ ଶାନ୍ତି ଭଜ ।
ତୁ କୁରୁବଂଶେ ମହାରାଜ ॥୯୫
ଏମନ୍ତେ ଅକ୍ରୂରର ବାଣୀ ।
ବୋଲଇ ଧୃତରାଷ୍ଟ୍ର ଶୁଣି ॥୯୬

ଧୃତରାଷ୍ଟ୍ର ଉବାଚ

ଅକ୍ରୂର କହୁଅଛୁ ଯେତେ ।
ଅମୃତପ୍ରାୟ ମଣେ ଚିତ୍ତେ ॥୯୭
ମନୁଷ୍ୟ ପାଇ ସୁଧାରସ ।
ପିବନ୍ତେ ମନ ନୋହେ ତୋଷ ॥୯୮
ଦରିଦ୍ର ପାଇ ଯେହ୍ନେ ଧନ ।
ତୋଷ ନୋହଇ ତାର ମନ ॥୯୯
ତୋର ବଚନ ସେହିମତ ।
ଶୁଣି ଚଞ୍ଚଳ ମୋର ଚିତ୍ତ ॥୧୦୦
ତୋ ବାଣୀ ନ ରହେ ମୋ ମନେ ।
ମେଘେ ବିଜୁଳିରୂପ ଯେହ୍ନେ ॥୧୦୧
ପୁତ୍ରର ଅନୁରାଗେ ଚିତ୍ତ ।
ଈଶ୍ୱରମାୟାରେ ମୋହିତ ॥୧୦୨
ଏମନ୍ତ ଗୋବିନ୍ଦର ମାୟା ।
ଅନ୍ୟଥା କେ କରିବ ତାହା ॥୧୦୩
ଅବନୀଭାରେ ଭାବଗ୍ରାହୀ ।
ଯାଦବବଂଶେ ଜାତ ହୋଇ ॥୧୦୪
ଏ କଥା ତାହାର ଭିଆଣ ।
ଅକ୍ରୂର ସ୍ଥିରମନେ ଶୁଣ ॥୧୦୫
ବିଷ୍ଣୁର ମାୟାର ମହିମା ।
କେ ଜାଣିପାରେ ତାର ସୀମା ॥୧୦୬
ସେ ମାୟାବଳେ ଗୁଣ ତିନି ।
ଆପଣେ ଭ୍ରମେ ନାନାଯୋନି ॥୧୦୭
ଜୀବନରୂପେ ତହିଁ ପଶି ।
ଭୁଞ୍ଜାଇ କର୍ମଫଳ ବସି ॥୧୦୮
ପରମ ଭିନ୍ନରୂପେ ଥାଇ ।
କରନ୍ତି କର୍ମ ନ ଲାଗଇ ॥୧୦୯
ଏମନ୍ତ ମହିମା ତାହାର ।
ମୁଁ କିସ କହିବି ପାମର ॥୧୧୦
ତାହାର କ୍ରୀଡ଼ା ଏ ଜଗତ ।
କେ ଜାଣିପାରେ ତାର ମତ ॥୧୧୧
ସଂସାର ଚକ୍ରଗତି କରି ।
ମାୟାର ବଳେଛନ୍ତି ଧରି ॥୧୧୨
ତାହାଙ୍କୁ ମୋର ନମସ୍କାର ।
ଛାମୁରେ କହିବୁ ଅକ୍ରୂର ॥୧୧୩
ଏମନ୍ତ ରାଜାର ବଚନେ ।
ଅକ୍ରୂର ଶୁଣି ତୋଷମନେ ॥୧୧୪
ବନ୍ଧୁବାନ୍ଧବ ପାଦେ ଲାଗି ।
କର ପ୍ରସାରି ଆଜ୍ଞା ମାଗି ॥୧୧୫
ପାଇଣ ଅକ୍ଷତ ବେଭାର ।
ମିଳିଲା ପାଣ୍ଡବଙ୍କ ପୁର ॥୧୧୬
କୁନ୍ତୀଦେବୀଙ୍କି ଆଜ୍ଞା ମାଗି ।
ରଥ ଚଢିଣ ଚଳେ ବେଗି ॥୧୧୭
ପବନୁଁ ବେଗେ ଗତି ଯାନ ।
ସ୍ୱର୍ଗେ ଦେଖନ୍ତି ଦେବଗଣ ॥୧୧୮

Dr. Sudhanshu Sekhar Mishra

ମଥୁରା ଗଲା ତତକ୍ଷଣ ।
ଦେଖିଲା ଗୋବିନ୍ଦଚରଣ ॥୧୧୯
ରାମର ପାଦେ ହସ୍ତ ଦେଇ ।
ବନ୍ଧୁକୁଶଳ କଥା କହି ॥୧୨୦
ପଣ୍ଡୁବାଳକେ ରାଜା ଚିତ୍ତ ।
ବକ୍ରବେଭାର ବିପରୀତ ॥୧୨୧
ଶୁଣି ହସିଲେ ଭଗବାନ ।
ଅକ୍ରୂର ମୁଖେ ଅବଧାନ ॥୧୨୩
ସେ ରାମକୃଷ୍ଣ ପାଦେ ଚିତ୍ତ ।
ନମଇଁ ଦାସ ଜଗନ୍ନାଥ ॥୧୨୪

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ପୂର୍ବାର୍ଦ୍ଧେ
ତ୍ରିପଞ୍ଚାଶଦ୍ ଅଧ୍ୟାୟଃ ॥

## ଚତୁଃପଞ୍ଚାଶଦ୍ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ରାମ ଗୋବିନ୍ଦଙ୍କ ଚରିତ ॥୧
କୃଷ୍ଣ ଯେ କଂସକୁ ମାଇଲେ ।
ତାହାର ବେନି ନାରୀ ଥିଲେ ॥୨
ଅସ୍ତି ପ୍ରାପିତ ନାମେ ଦୁଇ ।
ସ୍ୱାମୀ ମରଣେ ଦୁଃଖ ପାଇ ॥୩
ବିଧବା କଷ୍ଟେ ଗରୁଚିନ୍ତା ।
ଜରାସନ୍ଧର ସେ ଦୁହିତା ॥୪
ବିଚାର କରି ମନେ ଗୁଣି ।
ସ୍ୱାମୀ ମରଣେ ସେ ତରୁଣୀ ॥୫
ମନେ ଅନେକ ଦୁଃଖ କରି ।
ଯାଇ ମିଳିଲେ ଜରାପୁରୀ ॥୬
ମାତାର ପାଦତଳେ ପଡ଼ି ।
ଉଠିଲେ ଶିରେ କରଯୋଡ଼ି ॥୭
ସ୍ୱାମୀ ମରଣେ ଯେତେ ଦୁଃଖ ।
ଭୋ ମାତ ତାହାଁ ଆମ୍ଭ ମୁଖ ॥୮
କାନ୍ଦି କହିଲେ ପିତା ଆଗେ ।
ନିଜ ଜନନୀ ଘେନି ସଙ୍ଗେ ॥୯
ଭୋ ତାତ ବସୁଦେବ ପୋଏ ।
ଆମ୍ଭର ସ୍ୱାମୀ କଲେ କ୍ଷୟେ ॥୧୦
କେମନ୍ତେ ବଞ୍ଚୁଚି ଦିନ ।
ଆମ୍ଭର କର୍ମ ବଡ଼ ହୀନ ॥୧୧
ବେନିଦୁହିତା ବାକ୍ୟ ଶୁଣି ।
କୋପେ ବୋଲଇ ନୃପମଣି ॥୧୨
ଯାଦବବଂଶେ କୃଷ୍ଣରାମ ।
ଲଭିତେ କଲେ ଏଡ଼େ କର୍ମ ॥୧୩
ଭୂମିରେ ଯଦୁବଂଶ ଥିଲେ ।
ଆମ୍ଭ କୁଶଳ ନାହିଁ ଭଲେ ॥୧୪
ରାମ ଗୋବିନ୍ଦ ବେଗେ ମାରି ।
ଏ ଭୂମି ଅଯାଦବ କରି ॥୧୫
ତେବେ ଜୀବନ ମୋର ସ୍ଥିର ।
କୋପେ ବୋଲଇ ନୃପବର ॥୧୬
ତେଇଶ ଅକ୍ଷୌହିଣୀ ସଙ୍ଗେ ।
ବଳ ସାଜିଲା ଚତୁରଙ୍ଗେ ॥୧୭
ପାହି ପାଇକ ନୃପଗଣ ।
ସାଜିଲା ମଗଧରାଜନ ॥୧୮
ଶବଦେ କମ୍ପେ ମହୀସ୍ଥଳୀ ।
ବାହାର ହେଲେ ମହାବଳୀ ॥୧୯
ରଜନୀ ଅଛି ବେନିଘଡ଼ି ।
ମଧୁରାପୁର ଯାଇ ବେଢ଼ି ॥୨୦
ରୁନ୍ଧିଲେ ଅଷ୍ଟଦିଗେ ପଥ ।
ଗହଳେ ନ ବହେ ମରୁତ ॥୨୧
କୃଷ୍ଣ ଦେଖିଲେ ତାର ବଳ ।
ଯେସନେ ସମୁଦ୍ର ଉଲ୍ଲୋଳ ॥୨୨
ପ୍ରଳୟକାଳେ ଜଳରାଶି ।
ଭୂମି ଗଗନ ଯେସ୍ନେ ଗ୍ରାସି ॥୨୩
ଦେଖି ମଥୁରାପୁରଜନ ।
ଡାକନ୍ତି ରଖ ଭଗବାନ ॥୨୪
ନିଶ୍ଚୟ ଆଜ ଗଲୁ ନାଶ ।
ଛାଡ଼ିଲୁ ଜୀବନର ଆଶ ॥୨୫
କାନ୍ଦନ୍ତି ଦଇବ ସୁମରି ।
ମଥୁରାପୁର ନରନାରୀ ॥୨୬
ଏମନ୍ତେ ମଥୁରାର ପ୍ରାଣୀ ।
ଦେଖି ଭାଳନ୍ତି ଚକ୍ରପାଣି ॥୨୭
ଭୂମିର ଭାରା ଖଣ୍ଡିବାରେ ।
ମୋ ଜନ୍ମ ମନୁଷ୍ୟ ଶରୀରେ ॥୨୮
ବ୍ରହ୍ମା ଶଙ୍କର ବୋଲେ ମୁହିଁ ।
ଯାଦବ ବଂଶେ ଦେହ ବହି ॥୨୯
ନାଶିବି ଅବନୀର ଭାର ।
ଏଣେ ସେ ପ୍ରୟୋଜନ ମୋର ॥୩୦
ଏ ବଳ ଆଜ ମୁଁ ସହାରି ।
କିଞ୍ଚିତେ ଭୂମିବାରା ହରି ॥୩୧
ଜରାସନ୍ଧର ତୁଲେ ରଣ ।
ଦେଖି ଗଗନେ ସୁରଗଣ ॥୩୨
ଆନନ୍ଦେ ହୋଇବେ ହରଷ ।
ସଂସାରେ ଥିବ ମୋର ଯଶ ॥୩୩
ଭୂମିରେ ଯେତେ ନରପତି ।
ଶୁଣି ପାଇବେ ମନେ ଭୀତି ॥୩୪
ତେଇଶ ଅକ୍ଷୌହିଣୀ ବଳ ।
ଭାରେ ଧରଣୀ ଟଳମଳ ॥୩୫
ଜରା ଜୀବନ ମାତ୍ର ଥୋଇ ।
ଏ ବଳ ସଂହାରିବି ମୁହିଁ ॥୩୬
ମୁଣ୍ଡ ମୁଣ୍ଡାଇ ଅବହେଳେ ।
ଗଳାଇ ଦେବି ଜାନୁତଳେ ॥୩୭
ଏ ଅପମାନ ମନେ ଘେନି ।
ପୁଣି ଆସିବ ବଳ ଘେନି ॥୩୮
ଏମନ୍ତେ ଅଷ୍ଟାଦଶ ବାର ।
ଏହାର ତୁଲେ ରଣ ମୋର ॥୩୯

Dr. Sudhanshu Sekhar Mishra

ଏମନ୍ତେ ଅବନୀର ଭାର ।
ଥୋକାଏ ହୋଇବ ସଂହାର ।।୪୦
ଦୁଷ୍ଟଦାନବ ବଳ ନାଶି ।
ସାଧୁଜନଙ୍କୁ ମୁଁ ଆଶ୍ୱାସି ।।୪୧
ଅଧର୍ମ ନାଶି ଧର୍ମ ଥୋଇ ।
ଏଥିନିମନ୍ତେ ମୋର ଦେହୀ ।।୪୨
ଏମନ୍ତ ଚିତ୍ତେ ପରିମାଣି ।
ଚାହିଁଲେ ପ୍ରଭୁ ଚକ୍ରପାଣି ।।୪୩
ଗଗନମାର୍ଗେ ବେନିରଥ ।
କୃଷ୍ଣ ସମୀପେ ଉପଗତ ।।୪୪
ଆଦିତ୍ୟପ୍ରାୟ ତେଜରାଶି ।
ବେନି ସାରଥି ଛନ୍ତି ବସି ।।୪୫
ଦେବ-ଆୟୁଧ ବ ାଣ ଦୀକ୍ଷା ।
ଶର କୋଦଣ୍ଡ ଦେହ ରକ୍ଷା ।।୪୬
ବିଷ୍ଣୁର ନିଜ ଶସ୍ତ୍ରମାନ ।
ଦେଖି ସାନନ୍ଦ କୃଷ୍ଣମନ ।।୪୭
ରାମର ବଦନ ଅନାଇ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ।।୪୮
ଭୋ ରାମ ଦେଖ ଜରାସନ୍ଧ ।
ସ୍ୱଭାବେ ଦୁଷ୍ଟ ବଡ଼ ମନ୍ଦ ।।୪୯
ଏହାର ବଳ ନାଶକରି ।
ମଥୁରାଜନଙ୍କୁ ଉଦ୍ଧରି ।।୫୦
କେବଳ ଜରାସନ୍ଧ ଥିବ ।
ଅନେକ ସୈନ୍ୟ ସେ ଆଣିବ ।।୫୧
ଏଠାରେ କରିବା ସଂହାର ।
ଯୁଝିବା ଅଷ୍ଟାଦଶ ବାର ।।୫୨
ଏବେ ଏ ରଥେ ବିଜେ କର ।
ତେଇଶି ଅକ୍ଷୌହିଣୀ ମାର ।।୫୩
ଏ ଯେ ତୁମ୍ଭର ନିଜ ରଥ ।
ହଳ ମୁଷଳ ଅଛି ଏଥ ।।୫୪
ଜରାସନ୍ଧର ବଳ ଦେଖି ।
ଯାଦବେ ହୋଇବେ ନିରେଖି ।।୫୫
ମେଦିନୀ ଭାରା ନାଶିବାରେ ।
ଆମ୍ଭ ଜନମ ମର୍ତ୍ତ୍ୟପୁରେ ।।୫୬
ଏତେ ବିଚାରି ବେନିଭାଇ ।
ରଥେ ବସିଲେ ବେଗେ ଯାଇ ।।୫୭

ସମରେ ସଜ ବୀରମତେ ।
ବିବିଧ ଶସ୍ତ୍ର ଘେନି ହସ୍ତେ ।।୫୮
ମଥୁରାପୁର ନରନାରୀ ।
ଦେଖିଣ ଆଶ୍ଚର୍ଯ୍ୟ ବିଚାରି ।।୫୯
ରାମଗୋବିନ୍ଦ ସଙ୍ଗେ ରଥ ।
କାହୁଁ ଆଣିଲେ ଯଦୁନାଥ ।।୬୦
ଦେବଦାନବେ ଅଗୋଚର ।
ବେନି ବିମାନ କାମଚର ।।୬୧
ଦେଖି ଆନନ୍ଦ ସର୍ବଜନ ।
ସୈନ୍ୟ ସହିତେ ଉଗ୍ରସେନ ।।୬୨
ଉଗ୍ରସେନର ବଳ ଘେନି ।
ଯୁଦ୍ଧକୁ ସଜ ଭାଇବେନି ।।୬୩
ଶଙ୍ଖ ଶବଦ କଲେ ହରି ।
ଶୁଭିଲା ଦଶଦିଗ ପୂରି ।।୬୪
ଦାରୁକ ନନ୍ଦିଘୋଷ ରଥେ ।
ଅଶ୍ୱଦଉଡ଼ି ଘେନି ହସ୍ତେ ।।୬୫
ଶୁଣି ଗୋବିନ୍ଦ ଶଙ୍ଖଧ୍ୱନି ।
ଜୟ ଶବଦେ ସୁରମୁନି ।।୬୬
ପୁଷ୍ପ ବରଷି ସ୍ତୁତି କରି ।
ରଥେ ଦେଖିଲେ ରାମହରି ।।୬୭
ଶଙ୍ଖଶବଦ କର୍ଣ୍ଣେ ଶୁଣି ।
ବଳ ତେଇଶ ଅକ୍ଷୌହିଣୀ ।।୬୮
ହୃଦୟ କମ୍ପିଲା ବିକଳେ ।
ଶସ୍ତ୍ର ପଡ଼ିଲା ହସ୍ତୁ ତଳେ ।।୬୯
ଜରା ଧାଇଁଲା ଏକରଥେ ।
ଆବୋରି ଗୋବିନ୍ଦର ପଥେ ।।୭୦
କୃଷ୍ଣଙ୍କୁ ଚାହିଁ ମହାବଳୀ ।
ବୋଲଇ ବାମଭୁଜ ତୋଳି ।।୭୧
ତୁ କୃଷ୍ଣ ପୁରୁଷ ଅଧମ ।
ତୁ କାହିଁ ଜାଣିବୁ ସଂଗ୍ରାମ ।।୭୨
ବାଳକ ହୋଇ ରଣେ ସଜ ।
ମୁଖେ ନ ପାଉ କିମ୍ପା ଲାଜ ।।୭୩
ତୋହର ତୁଲେ ଯୁଦ୍ଧ କଲେ ।
ଲୋକେ ହସିବେ ମୋତେ ଭଲେ ।।୭୪
ଗୁପତେ ବନ୍ଧୁ କଲୁ ନାଶ ।
ତୋର ମଉଳା ବୀର କଂଶ ।।୭୫

ତୋହର ବଦନ ନ ଦେଖି ।
ପଳା ତୁ ସମର ଉପେକ୍ଷି ।।୭୬
ହେ ରାମ ତୁ ଯେ ବଳୀୟାର ।
ସଂଗ୍ରାମ କର ମୋର ତୁଲେ ।।୭୭
ହୃଦୟ ସ୍ଥିର କରି ଭଲେ ।
ସଂଗ୍ରାମ କର ମୋର ତୁଲେ ।।୭୮
ମୋହର ବାଣେ ପ୍ରାଣ ଦେଇ ।
ଯମର ପୁରେ ଯାଅ ଦୁହି ।।୭୯
କି ଅବା କର ମୋତେ ନାଶ ।
ସଂସାରେ ଥିବ ତୋର ଯଶ ।।୮୦
ଜରାସନ୍ଧର ବୋଲ ଶୁଣି ।
ଆଗ ହୋଇଲେ ଚକ୍ରପାଣି ।।୮୧
କୋମଳ ଗଭୀର ବଚନ ।
କହିଲେ ଶ୍ରୀମଧୁସୂଦନ ।।୮୨
ଶୁଣ ମଗଧ ମହୀପତି ।
କହଇ ଏଥିର ଯୁକତି ।।୮୩
ଶଉର୍ଯ୍ୟବଳ ଯାର ଥାଇ ।
ସଂଗ୍ରାମ ମଧ୍ୟେ ସେ ଦେଖାଇ ।।୮୪
ଆତ୍ମପ୍ରଶଂସା ଆତ୍ମ ମୁଖେ ।
ଯେ ପ୍ରାଣୀ କହୁଥାନ୍ତି ସୁଖେ ।।୮୫
ଯଶ ନ ରହେ ବେନିଲୋକେ ।
ମରଣେ ପଡ଼ନ୍ତି ନରକେ ।।୮୬
ଆପଣା ମରଣ ନ ଜାଣୁ ।
ମୁଖେ ଅଶୁଭ କିମ୍ପା ଭଣୁ ।।୮୭
ମରଣ କାଳେ ତୋର ବାଣି ।
ଆମ୍ଭର କର୍ଣ୍ଣେ ତା ନ ଶୁଣି ।।୮୮
ଆଜ ଜାଣିବା ତୋର ରଣ ।
ଅବଶ୍ୟ ଘେନି ତୋ ପରାଣ ।।୮୯
ଦାତାପଣକୁ ତୁ ଯେ ଟାଣ ।
ଦାନ ତୁ ଦେବୁ ସୈନ୍ୟଗଣ ।।୯୦
ଆପଣେ ଯିବୁ ପ୍ରାଣ ଘେନି ।
ଦକ୍ଷିଣା ଦେବୁ ପୁଣ ଆଣି ।।୯୧
ଏମନ୍ତେ ଅଷ୍ଟାଦଶ ବେଳ ।
ଶୁଣ ତୁ ଜରା ମହୀପାଳ ।।୯୨
ଶୁକ ବୋଲନ୍ତି ଶୁଣ ରାୟେ ।
କୋପ ବସିଲା ଜରାଦେହେ ।।୯୩

Dr. Sudhanshu Sekhar Mishra

କୃଷ୍ଣର କଟୁବାକ୍ୟ ଶୁଣି ।
ହୃଦେ ଚିନ୍ତିଲା ନୃପମଣି ॥୯୪

ଦନ୍ତେ ଅଧର କାମୁଡ଼ିଲା ।
କୃଷ୍ଣକୁ ମାରରେ ବୋଇଲା ॥୯୫

ତକ୍ଷଣେ ରଥ-ଗଜ ଯୂଥ ।
ରୁନ୍ଧିଲେ ରାମକୃଷ୍ଣ ପଥ ॥୯୬

ପବନ ରେଣୁ ଘେନି ଯେହ୍ନେ ।
ଆଦିତ୍ୟ ଆଚ୍ଛାଦେ ଗଗନେ ॥୯୭

ମଥୁରାପୁର ନରନାରୀ ।
ଆରୋହୀ ଜଗତି ଅଟ୍ଟାଳି ॥୯୮

କେ ବୃକ୍ଷେ ଉଠି ଦୃଷ୍ଟି ଦେଇ ।
ରାମ ଗୋବିନ୍ଦ ରଥେ ଚାହିଁ ॥୯୯

ସଂଗ୍ରାମେ ନ ଦିଶିଲା ରଥ ।
ପଡ଼ି ହୋଇଲେ ମୋହଗତ ॥୧୦୦

କାନ୍ଦନ୍ତି କୃଷ୍ଣ ନାମ ଧରି ।
ତାହା ଜାଣିଲେ ନରହରି ॥୧୦୧

ଜରାସଇନି ମେଘପ୍ରାୟେ ।
ବାଣ ବିନ୍ଧିଲେ ଅପ୍ରମୟେ ॥୧୦୨

ଅସୁର ବାଣେ ଚାରିପଥେ ।
ଆପଣା ନିଜ ବଳ ଯେତେ ॥୧୦୩

ମୂର୍ଚ୍ଛିତ ଦେଖି ନରହରି ।
ସାରଙ୍ଗଧନୁ କରେ ଧରି ॥୧୦୪

ଗୋବିନ୍ଦ କଲେ ଗୁଣ ଘୋଷ ।
ଶବଦ ପୂରେ ଦଶଦିଶ ॥୧୦୫

କନ୍ଧେ ଯେ ଥିଲା ବେନି ତୂଣ ।
ତହୁଁ ଘେନିଲେ ତୀକ୍ଷ୍ଣ ବାଣ ॥୧୦୬

ଗୁଣେ ବସାଇ ଦେବରାୟେ ।
ଧନୁ ଟାଣିଲେ କର୍ଣ୍ଣଯାଏଁ ॥୧୦୭

ମନ୍ତ୍ର ସୁମରି କୋଟି କୋଟି ।
ଗୋବିନ୍ଦ କଲେ ଶରବୃଷ୍ଟି ॥୧୦୮

ରଥ କୁଞ୍ଜର ବାଜି ନର ।
ବାଣେ ଛେଦିଲେ ଚକ୍ରଧର ॥୧୦୯

ଅନଳଗତି ପ୍ରାୟ ବାଣ ।
କୃଷ୍ଣ ବିନ୍ଧିଲେ ପୁଣ ପୁଣ ॥୧୧୦

କୃଷ୍ଣର ବାଣ ନିରନ୍ତରେ ।
ପଡ଼ିଲା ଗଜ-ବାଜି ଶିରେ ॥୧୧୧

ରଥୀ ପଦାତି ଶିର ଛିଡି ।
ପଡ଼ିଲେ ରଣଭୂମି ମାଡ଼ି ॥୧୧୨

ଧ୍ୱଜ ସାରଥି ତୁଲେ ରଥ ।
ରଣେ ପଡ଼ିଲେ ଯୁଥ ଯୁଥ ॥୧୧୩

ପଦାତି ରଣେ ଛନ୍ତି ପଡ଼ି ।
ଭୁଜ ଚରଣ କନ୍ଧ ଛିଡ଼ି ॥୧୧୪

ଆନନ୍ଦେ ଶୁକମୁନି କହେ ।
ଶୁଣ ପରୀକ୍ଷ କୁରୁରାୟେ ॥୧୧୫

ନର କୁଞ୍ଜର ଶିର ଛିଡ଼ି ।
ରୁଧିରନଦୀ ବେଗେ ବଢ଼ି ॥୧୧୬

ଶତେ ସହସ୍ର ଧାରା ପୂରି ।
ବିଷମ ତରଙ୍ଗ ଲହରୀ ॥୧୧୭

ଗଭୀର ଘୋରନାଦ ପୁଣ ।
ରାଜନ ସାବଧାନେ ଶୁଣ ॥୧୧୮

ଭୁଜେ ଭାସନ୍ତି ସର୍ପପ୍ରାୟେ ।
ଶିର ଦିଶନ୍ତି କୂର୍ମମୟେ ॥୧୧୯

ଗହଳେ ହସ୍ତୀଦେହ ଭାସି ।
ନଦୀର କୁଦ ପ୍ରାୟେ ଦିଶି ॥୧୨୦

କୁମ୍ଭୀର ପ୍ରାୟ କୋଟି କୋଟି ।
ତୁରଙ୍ଗ ଦେହେ ଯାଏ ଘୋଟି ॥୧୨୧

ମୀନଙ୍କ ପ୍ରାୟ କର ଉର ।
ବାଳ ଭାସଇ ଯେହ୍ନେ ଦଳ ॥୧୨୨

ତରଙ୍ଗ ପ୍ରାୟ ଧନୁର୍ଗୁଣ ।
ଆୟୁଦ୍ଧ ଯେହ୍ନେ ବୃକ୍ଷ ତୃଣ ॥୧୨୩

ଖଡ଼୍‌ଗ ଚର୍ମ ଉର୍ମିମାଳ ।
ଘୋର ଗଭୀର ଅନ୍ତରାଳ ॥୧୨୪

ମଣିଏ ଭେକ ପ୍ରାୟ ଦିଶି ।
ରୁଧିର ସଙ୍ଗେ ଯାନ୍ତି ଭାସି ॥୧୨୫

ବାଲୁକା ପ୍ରାୟ କୋଟି କୋଟି ।
ଶୁଣ ରାଜନ ଯୁଦ୍ଧ ବାଣୀ ॥୧୨୬

ମଡ଼ାଏ ଯାନ୍ତି କୋଟି କୋଟି ।
ଲହରୀ ଯେହ୍ନେ ରହେ ଫୁଟି ॥୧୨୭

ରୁଧିର ଜଳେ ନଦୀଗଣେ ।
ବହିଲେ ଗୋବିନ୍ଦମାରଣେ ॥୧୨୮

ଦେଖି ହସନ୍ତି ଦେବତାଏ ।
ସ୍ୱର୍ଗେ ଶୁଭିଲା ଜୟେ ଜୟେ ॥୧୨୯

ମୂଷଳ ଘାତେ ହଳଧର ।
ଅନେକ ରଥ କଲେ ଚୂର ॥୧୩୦

ସେ ଉଗ୍ରସେନ ନୃପବର ।
ସଂଗ୍ରାମ କଲେକ ଅପାର ॥୧୩୧

ଯାଦବ ସଙ୍ଗେ ମହାବୀର ।
ସଂଗ୍ରାମ କଲେ ଅତି ଘୋର ॥୧୩୨

ସମସ୍ତେ ହୋଇଣ ହରଷ ।
ଜରା ସଇନି କଲେ ନାଶ ॥୧୩୩

ଦେଖି ଅସୁରବଳ ରାୟେ ।
ଘୋର ପ୍ରଳୟ ସିନ୍ଧୁ ପ୍ରାୟେ ॥୧୩୪

କାହାର ବଳ ତାହା ସାଧି ।
ଦୁର୍ଗମ ଦୁସ୍ତର ଜଳଧି ॥୧୩୫

ବସୁଦେବର ବେନି ପୋଏ ।
କିଞ୍ଚିତ ମାତ୍ରେ କଲେ କ୍ଷୟେ ॥୧୩୬

ଜଗତେ ଶୂରବୀରପଣ ।
ଇଛିତେ ଶତ୍ରୁ ସଂହାରଣ ॥୧୩୭

ଏ ତିନିଭୁବନ କାରଣ ।
ମାୟାମନୁଷ୍ୟ ନାରାୟଣ ॥୧୩୮

ଲୀଳା ମାତ୍ରକେ ନରହରି ।
ଅନନ୍ତ ନାନା ରୂପ ଧରି ॥୧୩୯

ସେ ମାୟାଧର ଯେତେ କୃତ୍ୟ ।
ମନୁଷ୍ୟ ଲୋକେ ବିପରୀତ ॥୧୪୦

ଏମନ୍ତେ ରିପୁ କଲେ ନାଶ ।
ରହିଲା ଜରାସନ୍ଧ ଶେଷ ॥୧୪୧

ଯେଣେ ଚାହିଁଇ ନୃପମଣି ।
ଦେଖେ ରୁଧିର ତରଙ୍ଗିଣୀ ॥୧୪୨

ରକତ ସିନ୍ଧୁ ଦଶଦିଶେ ।
ଦେଖଇ କେହି ନାହିଁ ପାଶେ ॥୧୪୩

ରାମ ଗୋବିନ୍ଦ ବେନିରଥେ ।
ସାରଙ୍ଗଧନୁ-ହଳହସ୍ତେ ॥୧୪୪

ଯେସନେ ନଟବର ଦୁଇ ।
ସଂଗ୍ରାମ ମଧ୍ୟେ ଛନ୍ତି ରହି ॥୧୪୫

ଦୁର୍ଜ୍ଜୟ ବଳ କରି ନାଶ ।
ରଙ୍ଗ ଅଧରେ ମନ୍ଦହାସ ॥୧୪୬

ସିଂହକୁ ସିଂହ ଯେହ୍ନେ ମାଡ଼ି ।
ଜରା ଛାଡ଼ିଲା ଘୋର ରଡ଼ି ॥୧୪୭

Dr. Sudhanshu Sekhar Mishra

ସଂଗ୍ରାମ ମଧ୍ୟେ କରି ଗତି ।
ଯେସନେ ଯୂଥଭ୍ରଷ୍ଟ ହସ୍ତୀ ॥୧୪୮
ଦେଖି ଧାଇଁଲେ ହଳଧର ।
ମୁଷଳେ ରଥ କଲେ ଚୂର ॥୧୪୯
କେଶ ଧଇଲେ ବାମହସ୍ତେ ।
କୋପେ ଚାପିଲେ ଭୂମିଗତେ ॥୧୫୦
ସିଂହ ଯେସନେ ହସ୍ତୀ ପାଡ଼ି ।
ରାମ ଛାଡ଼ିଲେ ଘୋର ରଡ଼ି ॥୧୫୧
ଦେଖି ତାହାର କର୍ମଫଳ ।
ହେଲେ ହସିଲେ କୃଷ୍ଣ ବଳ ॥୧୫୨
ନର-ବରୁଣ ପାଶ ଆଣି ।
ବନ୍ଧନ କଲେ ହଳପାଣି ॥୧୫୩
ଦେଖି ଧାଇଁଲେ ଦେବହରି ।
ତାର ବନ୍ଧନ ବେଗେ ଫେଡ଼ି ॥୧୫୪
ବୋଲନ୍ତି ଶୁଣ ଦେବରାଜ ।
ଏହାରେ ଅଛି ବଡ଼ କାର୍ଯ୍ୟ ॥୧୫୫
ଏମନ୍ତ କହି ସୁଖଭୋଳେ ।
ଗଳାଇ ଦେଲେ ଜାନୁତଳେ ॥୧୫୬
ଜୀବନ ଘେନି ପଳାଇଲା ।
ଡ଼ରେ ଅନେକ ଦୂର ଗଲା ॥୧୫୭
ସ୍ୱଭାବେ ବୀର ମଧ୍ୟେ ଶ୍ରେଷ୍ଠ ।
କର୍ମେ ପାଇଲା ବଡ଼ କଷ୍ଟ ॥୧୫୮
ପଥେ ବସିଲା ଲଜ୍ୟା ପାଇ ।
ଭାଳଇ ଚଉଦିଗ ଚାହିଁ ॥୧୫୯
ଏ ଭୂମି ଭୋଗ ତପଫଳେ ।
ଭୁଞ୍ଜଇ ବେନି ଭୁଜବଳେ ॥୧୬୦
ମୁଁ ଏବେ ଘୋରତପ କରି ।
ପୂଜିବି ଶଙ୍କରଗଉରୀ ॥୧୬୧
ଈଶ୍ୱର ତହୁଁ ବର ପାଇ ।
ଯଦୁଙ୍କୁ ସଂହାରିବି ମୁହିଁ ॥୧୬୨
ରାମ ଗୋବିନ୍ଦ ମୋ ବଇରୀ ।
ନିଶ୍ଚେ ମାରିବି ତପକରି ॥୧୬୩
ଏମନ୍ତ ବିଚାରଇ ମନେ ।
ଲାଜ ନ ପାଇବି ଯେସନେ ॥୧୬୪
ବୋଇଲା ଏତ ମହାପାପ ।
ନିରସ୍ତ କଲେ ଶିଶୁଗୋପ ॥୧୬୫

ମରଣୁଁ ବଳିଲା ଏ ଲାଜ ।
କିସ ବୋଲିବେ ସର୍ବରାଜ ॥୧୬୬
ଏମନ୍ତ ଭାଳି ମନେ ମନ ।
ଜରା ହୋଇଲା ଛନଛନ ॥୧୬୭
ସୈନ୍ୟ ମୋ ହୋଇଲେ ନିଧନ ।
କିସ ବୋଲିବେ ସର୍ବଜନ ॥୧୬୮
ପାତ୍ର-ମନ୍ତ୍ରୀଏ ଦାରାସୁତ ।
କି ବୋଲି କହିବି ତାହାନ୍ତ ॥୧୬୯
କାହାର ଚାହିଁବଇଁ ମୁଖ ।
ଦଇବ ଦେଲା ବଡ଼ ଦୁଃଖ ॥୧୭୦
ଏମନ୍ତ ବିଚାରନ୍ତେ ମନେ ।
ଆସି ମିଳିଲେ ବନ୍ଧୁଜନେ ॥୧୭୧
ବୋଲନ୍ତି ରାଜାମୁଖ ଚାହିଁ ।
ବିମନ ହେଉ କିସ ପାଇଁ ॥୧୭୨
ଅର୍ଜିଲା କର୍ମବନ୍ଧ-ଫଳେ ।
ରଣେ ହାରିଲୁ ଏକାବେଳେ ॥୧୭୩
ଯଦୁଙ୍କ ହସ୍ତେ ପରାଭବ ।
ଏକଥା ସଂଚିଲା ଦଇବ ॥୧୭୪
କ୍ଷତ୍ରିୟଧର୍ମ ମହୀତଳେ ।
ଜୟ-ଅଜୟ ଯୁଦ୍ଧକାଳେ ॥୧୭୫
କ୍ଷତ୍ରିୟ ନ କରେ ବିଷାଦ ।
ଶତ୍ରୁର ସଙ୍ଗେ ଯେବେ ବାଦ ॥୧୭୬
ତହିଁକି ପୁଣ ପୁଣ କରି ।
ଯୁଦ୍ଧ କରିବ ଦଣ୍ଡଧାରୀ ॥୧୭୭
ସର୍ବେ କରିବା ମହାରଣ ॥
ରାଜନ ଆମ୍ଭ ବୋଲ ଶୁଣ ॥୧୭୮
ଯଦୁଙ୍କୁ ସମରେ ସଂହାରି ।
ମହୀ ଭୁଞ୍ଜିବୁ ଦଣ୍ଡଧାରୀ ॥୧୭୯
ଏମନ୍ତ ମନବୋଧ କରି ।
ରଥେ ତୋଳିଲେ ହସ୍ତଧରି ॥୧୮୦
ପଛେ ଗୋଡ଼ାନ୍ତି ବନ୍ଧୁଜନେ ।
ଜରା ଚଳିଲା ଦୁଃଖମନେ ॥୧୮୧
ଲାଜେ ନ ଚାହିଁ ଦଶଦିଶ ।
ରାତ୍ରେ ମିଳିଲା ନିଜ ଦେଶ ॥୧୮୨
ଏବେ ହୋ ଶୁଣ ନୃପମଣି ।
ସଂଗ୍ରାମେ କୃଷ୍ଣ ହଳପାଣି ॥୧୮୩

ଉଗ୍ରସେନର ଯେତେ ବଳ ।
ରଖିଲେ ମଦନଗୋପାଳ ॥୧୮୪
ସକଳେ ବିଷ୍ଣୁତେଜମୟେ ।
କ୍ଷତ ନୋହିଲା ତାଙ୍କ ଦେହେ ॥୧୮୫
ରିପୁ ସାଗରୁ ସୈନ୍ୟ ତାରି ।
ବିଜୟ କଲେ ରାମହରି ॥୧୮୬
ଦେବେ କରନ୍ତି ଜୟଧ୍ୱନି ।
ସ୍ତୁତି କରନ୍ତି ସୁରମୁନି ॥୧୮୭
ପୁଷ୍ପ ବରଷି ଜଳସଙ୍ଗେ ।
ନାଚନ୍ତି ସୁରନାରୀ ରଙ୍ଗେ ॥୧୮୮
ମଥୁରାପୁର ନରନାରୀ ।
ମିଳିଲେ କରେ ଅର୍ଘ୍ୟ ଧରି ॥୧୮୯
ପଛେ ଗୋଡ଼ାନ୍ତି ବନ୍ଧୁଜନେ ।
ଦେଖନ୍ତି ହରଷ ନୟନେ ॥୧୯୦
ସୂତ ମାଗଧେ ଯଶ ଭଣି ।
ଦ୍ୱିଜେ ମଙ୍ଗଳ ବେଦଧ୍ୱନି ॥୧୯୧
ଶଙ୍ଖ ଦୁନ୍ଦୁଭି ବାଦ୍ୟଘୋଷ ।
ଗୋବିନ୍ଦ ମଥୁରା ପ୍ରବେଶ ॥୧୯୨
ଚନ୍ଦନ ଛେରା ମାର୍ଗେ ଦେଇ ।
ଉପରେ ତୋରଣା ଲମ୍ୱାଇ ॥୧୯୩
ଦଧି ଅକ୍ଷତ ପୂର୍ଣ୍ଣକୁମ୍ଭ ।
କରନ୍ତି ମଙ୍ଗଳ ଆରମ୍ଭ ॥୧୯୪
ଦୁର୍ବା କୁସୁମ ଘେନି ନାରୀ ।
ଆନନ୍ଦେ ବନ୍ଦାପନା କରି ॥୧୯୫
ରାମ ଗୋବିନ୍ଦ ବେନିଭାଇ ।
ହରଷ ନୟନେ ଅନାଇ ॥୧୯୬
ମିଳିଲେ ଆପଣା ଭୁବନେ ।
ସଙ୍ଗତେ ଉଗ୍ରସେନ ସୈନ୍ୟେ ॥୧୯୭
ଯୁଦ୍ଧେ ଜିଣିଲା ଧନ ଆଣି ।
ବୋଲନ୍ତି ପ୍ରଭୁ ଚକ୍ରପାଣି ॥୧୯୮
ରାଜନ ଜିଣିଲୁ ସମର ।
ଏ ଧନ ଭଣ୍ଡାର ତୁମ୍ଭର ॥୧୯୯
ଉଗ୍ରସେନଙ୍କୁ ଧନ ଦେଇ ।
ପୁରେ ମିଳିଲେ ବେନିଭାଇ ॥୨୦୦
ରାମଗୋବିନ୍ଦ ଭାଇବେନି ।
ପିତାମାତାଙ୍କ ପାଦେ ନମି ॥୨୦୧

Dr. Sudhanshu Sekhar Mishra

ଭୋ ତାତ ମାତ ତୋ ପ୍ରସାଦେ ।
ଶତ୍ରୁ ଜିଣିଲୁ ଅପ୍ରମାଦେ ॥୨୦୨
ଉଗ୍ରସେନର ବଳ ଘେନି ।
ଆମ୍ଭେ ଜିଣିଲୁ ଭାଇବେନି ॥୨୦୩
ଶୁଣି ଆନନ୍ଦ ବାପମାଏ ।
କୋଳେ ବସାଇ ଚୁମ୍ବ ଦିଏ ॥୨୦୪
ଭିତରପୁରେ ବିଜେ କଲେ ।
ଯେ ଯାହା ପୁରେ ସର୍ବେ ଗଲେ ॥୨୦୫
କହନ୍ତି ବ୍ୟାସଙ୍କ ତନୟ ।
ଶୁଣ ସୁମନେ କୁରୁରାୟ ॥୨୦୬
ସପତଦଶବାର ଆଣି ।
ବଳ ତେଇଶ ଅକ୍ଷୌହିଣୀ ॥୨୦୭
ଗୋବିନ୍ଦ ସଙ୍ଗେ ଯୁଦ୍ଧ କଲା ।
ମାଗଧ ବେଳେ ନ ଜିଣିଲା ॥୨୦୮
କୃଷ୍ଣର ତେଜେ ଯଦୁବଳ ।
ଯୁଦ୍ଧେ ଦିଶନ୍ତି ସର୍ବକାଳ ॥୨୦୯
ଅଭେଦ୍ୟ ତାହାଙ୍କ ଶରୀର ।
ଏବେ ହୋ ଶୁଣ ନୃପବର ॥୨୧୦
ଜରାସନ୍ଧର ଯେତେ କୃତ୍ୟ ।
ତୋତେ କହିଲି ଭାଗବତ ॥୨୧୧
ସପତଦଶବାର ହାରି ।
ପୁଣି ସାଜିଲା ଦଣ୍ଡଧାରୀ ॥୨୧୨
ବ୍ରହ୍ମାନନ୍ଦନ ତାହା ଜାଣି ।
ଭାଳନ୍ତି ମନେ ପରିମାଣି ॥୨୧୩
କାଳଯବନ ବୀର ଥିଲେ ।
ଯଦୁକୁଶଳ ନାହିଁ ଭଲେ ॥୨୧୪
ଆଜ କରିବି ଦେବକାର୍ଯ୍ୟ ।
ଗଞ୍ଜିବି ଯବନର ତେଜ ॥୨୧୫
ଏତେ ବିଚାରି ଶୂନ୍ୟବାଟେ ।
ମିଳିଲେ ଯବନ ନିକଟେ ॥୨୧୬
ଦେଖି ସାନନ୍ଦ ନୃପବର ।
ପୂଜିଲା ନାରଦ ପୟର ॥୨୧୭
କରଯୁଗଳ ଦେଇ ଶିରେ ।
ନମିଲା ମୁନିଙ୍କ ପୟରେ ॥୨୧୮
କାଳଯବନ ମୁଖ ଚାହିଁ ।
ମୁନି କହନ୍ତି ଖେଦ ବହି ॥୨୧୯

ଯାଦବବଂଶେ ମହାବଳୀ ।
ଅଛନ୍ତି ରାମବନମାଳୀ ॥୨୨୦
ଜରାସନ୍ଧର ଯେତେ ବଳ ।
ମାଇଲେ ସପ୍ତଦଶ ବେଳ ॥୨୨୧
ତାହାଙ୍କ ସଙ୍ଗେ ଯୁଦ୍ଧକାରୀ ।
ତିନିଭୁବନେ ନାହିଁ ସରି ॥୨୨୨
ତୁ ଯେ ବୋଲାଉ ବଳୀୟାର ।
ଯଦୁଙ୍କ ସଙ୍ଗେ ଯୁଦ୍ଧ କର ॥୨୨୩
ଜରା ହିଁ ସାଜିଅଛି ଯୁଦ୍ଧେ ।
ପାରିଲେ ସାଧ ଏହି ମଧ୍ୟେ ॥୨୨୪
ଆସ ମୋହର ତୁଲେ ତୁହି ।
କୃଷ୍ଣଙ୍କୁ ଭେଟାଇବି ନେଇ ॥୨୨୫
କୃଷ୍ଣର ରୂପ ଗୁଣ କହି ।
ନାରଦ ଗଲେ ଆଗ ହୋଇ ॥୨୨୬
କାଳଯବନ ଶୁଣି ତାହା ।
ଯୁଦ୍ଧକୁ ବଳିଲା ଉତ୍ସାହା ॥୨୨୭
ଯବନ ବଳ ତିନିକୋଟି ।
ସାଜିଲା ବନ ଗିରି ଘୋଟି ॥୨୨୮
ରଜନୀକାଳେ ମଧୁପୁରୀ ।
ରୁନ୍ଧିଲା ତିନିପୁର କରି ॥୨୨୯
ଯବନ ବଳ ଦେଖି ହରି ।
କହନ୍ତି ରାମ କର ଧରି ॥୨୩୦
ଦେଖ ଯାଦବ ବଳ କଷ୍ଟ ।
ଦଇବ ଆଣି କଲା ହଟ ॥୨୩୧
ମାଗଧ ଆସୁଅଛି ବାହି ।
ଯାଦବେ ଯିବେ ଆଜ କାହିଁ ॥୨୩୨
ଯବନ ସଙ୍ଗେ ଯୁଦ୍ଧ କରି ।
ରହିଲେ ସମର ଆବୋରି ॥୨୩୩
ଏମନ୍ତେ ମାଗଧ ଆସିବ ।
ଯଦୁଙ୍କୁ ପ୍ରାଣେ ସଂହାରିବ ॥୨୩୪
ଧନଜୀବନ ବନ୍ଦୀ କରି ।
ଘେନାଇ ଯିବ ନିଜ ପୁରୀ ॥୨୩୫
ନିର୍ଜନେ ଦୁର୍ଗେକ ଭିଆଇ ।
ଧନ କୁଟୁମ୍ବ ତହିଁ ଥୋଇ ॥୨୩୬
ତେବେ କରିବା ରଣରଙ୍ଗ ।
ଏମନ୍ତେ କହିଲେ ଶ୍ରୀରଙ୍ଗ ॥୨୩୭

ଜଳଧି ମଧ୍ୟେ କୃଷ୍ଣ ଯାଇ ।
ବୋଲନ୍ତି ବରୁଣଙ୍କୁ ଚାହିଁ ॥୨୩୮
ସମୁଦ୍ର ମଧ୍ୟେ ଛାଡ଼ ସ୍ଥାନ ।
ଏଥେ ମୁଁ କରିବି ବିଶ୍ରାମ ॥୨୩୯
ଶୁଣି ଗୋବିନ୍ଦର ବଚନ ।
ଛାଡ଼ିଲା ଦ୍ୱାଦଶ ଯୋଜନ ॥୨୪୦
ଗୋବିନ୍ଦ ବିଶ୍ୱକର୍ମା ରାଇ ।
ବୋଲନ୍ତି ତାର ମୁଖ ଚାହିଁ ॥୨୪୧
ଦ୍ୱାରକାର ନାମେ ଦିବ୍ୟପୁର ।
ଦେବ ମାନବେ ଅଗୋଚର ॥୨୪୨
ମଥୁରାପୁର ପ୍ରାୟ କର ।
ଯାହାର ଯେମନ୍ତ ମନ୍ଦିର ॥୨୪୩
ଗୋବିନ୍ଦ ଆଜ୍ଞା ପରମାଣେ ।
ନିର୍ମାଣ କଲା ତତ୍କ୍ଷଣେ ॥୨୪୪
ଚିତ୍ରବିଚିତ୍ର ପୁରମାନ ।
ଦେଖିଲେ ମୋହେ ଜନମନ ॥୨୪୫
ଅତି ସୁସଞ୍ଚ ଉଚ୍ଚସାର ।
ମେଢ ଅଟ୍ଟାଳୀ ପୁରଦ୍ୱାର ॥୨୪୬
ହେମ ରଜତ ତମ୍ବା ମହୀ ।
ନାନା ଭୁବନ ପ୍ରକାଶଇ ॥୨୪୭
ମହାମର୍କତ ପଦ୍ମରାଗ ।
ନୀଳଲୋହିତ ପୀତ ରଙ୍ଗ ॥୨୪୮
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।
ଯେ ଯାହା ପୁର ଭିନ୍ନ ଭିନ୍ନ ॥୨୪୯
ସୁଧର୍ମା ସଭା ପାରିଜାତ ।
ଆଣି ସ୍ଥାପିଲା ଶଚୀନାଥ ॥୨୫୦
ଯହିଁ ବସିଲେ ମର୍ତ୍ତ୍ୟଜନ ।
ଦିଶନ୍ତି ଦେବତା ସମାନ ॥୨୫୧
ବରୁଣ ଅଶ୍ୱ ଶ୍ୟାମକର୍ଣ୍ଣ ।
ମନପବନ ଗତି ଯାନ ॥୨୫୨
ଏମନ୍ତ ଅଶ୍ୱ ଆଣି ଦେଲା ।
ଗୋବିନ୍ଦ ଚରଣେ ପୂଜିଲା ॥୨୫୩
ବାସବଆଦି ଦିଗପତି ।
ନିଯୋଗେ ପୂଜିଲେ ଶ୍ରୀପତି ॥୨୫୪
ଗୋବିନ୍ଦ ଯୋଗମାୟା କରି ।
ରାତ୍ରେ ମଥୁରାପୁର ଶିରୀ ॥୨୫୫

Dr. Sudhanshu Sekhar Mishra

ଦ୍ୱାରକାପୁର ମଧ୍ୟେ ଥୋଇ ।
ମିଳିଲେ ରାମସଙ୍ଗେ ଯାଇ ।।୨୫୬
ରଜନୀ ହୋଇଲା ପ୍ରଭାତ ।
ବାହାର ହେଲେ ଗୋପୀନାଥ ।।୨୫୭
କମଳମାଳା କଣ୍ଠେ ଶୋହି ।
କରଯୁଗଳେ ଶସ୍ତ୍ର ନାହିଁ ।।୨୫୮
କହଇ ଦାସ ଜଗନ୍ନାଥ ।
ସେ ହରିପାଦେ ଦେଇ ଚିତ୍ତ ।।୨୫୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପରାମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଦୁର୍ଗନିବେଶନଂ ନାମ
ଚତୁଃପଞ୍ଚାଶଦ୍ ଅଧ୍ୟାୟଃ ।।

---

## ପଞ୍ଚପଞ୍ଚାଶଦ୍ ଅଧ୍ୟାୟ

ଶୁକ ଉବାଚ

ନମଇଁ କୃଷ୍ଣର ଚରଣ ।
ଅନାଦି ପୁରୁଷ ପୁରାଣ ।।୧
କହନ୍ତି ଶୁକ ମୁନିବର ।
ଶୁଣ ପରୀକ୍ଷ ନୃପବର ।।୨
ସକଳ ନିଯୋଜିତ କରି ।
ସୈନ୍ୟ ଆଗରେ ନରହରି ।।୩
ମଥୁରା ଗଡ଼ଦ୍ୱାର ମଧ୍ୟେ ।
କୃଷ୍ଣ ବିଜୟ ପଦ୍ମପାଦେ ।।୪
ଉଦୟଗିରି ମଧ୍ୟେ ଆସି ।
ଯେହ୍ନେ ବିରାଜେ ପୂର୍ଣ୍ଣଶଶୀ ।।୫
ଅତି ସୁନ୍ଦର ଶ୍ୟାମଦେହୀ ।
ପୀତବସନ ବିରାଜଇ ।।୬
ଶ୍ରୀବତ୍ସଲାଞ୍ଛନ ସୁନ୍ଦର ।
କୌସ୍ତୁଭମଣି ହୃଦେ ହାର ।।୭
ଆଜାନୁଲମ୍ବେ ଚାରିଭୁଜ ।
ଅରୁଣ ଚକ୍ଷୁ ପଦ୍ମତେଜ ।।୮
ନିତ୍ୟ ଆନନ୍ଦ ହାସମୁଖ ।
ସୁନ୍ଦର କପୋଳ ସୁରେଖ ।।୯
କର୍ଣ୍ଣେ ମକରାକାର ହୋଇ ।।
ରତ୍ନକୁଣ୍ଡଳ ବିରାଜଇ ।।୧୦
କୋଟି କନ୍ଦର୍ପରୂପ ସାର ।।
ରୂପକୁ ନାହିଁ ପଟାନ୍ତର ।।୧୧
କାଳଯବନ କୃଷ୍ଣେ ଚାହିଁ ।।
ନାରଦ ବାକ୍ୟେ ମନ ଦେଇ ।।୧୨
ବୋଲଇ ବାସୁଦେବ ଏହି ।
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହି ।।୧୩
ଆଜାନୁଲମ୍ବେ ଚାରିଭୁଜେ ।
କମଳନୟନ ବିରାଜେ ।।୧୪
ବନମାଳାଏ ଲମ୍ବେ ଉର ।
ଅପୂର୍ବ ମୋହନସୁନ୍ଦର ।।୧୫
ନାରଦ କହିଛନ୍ତି ଯେତେ ।
ଚିହ୍ନ ଦେଖିଲି ଏହା ଗାତ୍ରେ ।।୧୬
କୃଷ୍ଣହୁଁ ନୋହଇ ଏ ଆନ ।
ରୂପେ ମୋହିଲା ମୋର ମନ ।।୧୭
ଏହାର କରେ ଶସ୍ତ୍ର ନାହିଁ ।
ଚରଣେ ଚାଲୁଅଛି ମହୀ ।।୧୮
ମୁଁ କିମ୍ପା କରେ ଶସ୍ତ୍ର ଧରି ।
ଏହାର ତୁଲେ ଯୁଦ୍ଧ କରି ।।୧୯
ନିନ୍ଦା ପାଇବି ଇହଲୋକେ ।
ମରଣେ ପଡ଼ିବି ନରକେ ।।୨୦
ମୁହିଁ ହୋଇବି ନିରାୟୁଧ ।
ତେବେ ଏହାର ତୁଲେ ଯୁଦ୍ଧ ।।୨୧
ଏମନ୍ତ ଅସୁର ବିଚାରି ।
ତାହା ଜାଣିଲେ ନରହରି ।।୨୨
ମାୟାରେ ମୋହି ତାର ମନ ।
ବେଗେ ଧାଇଁଲେ ଭଗବାନ ।।୨୩
କାଳଯବନ ବିଚାରଇ ।
ଲୁଚିଣ ଯିବ ଏ ପଳାଇ ।।୨୪
ଯୁଦ୍ଧ ନ କରି ପଳାଇଲା ।
ଏମନ୍ତ ବୋଲି ଗୋଡ଼ାଇଲା ।।୨୫
ଯେ ହରି ଦେବଙ୍କୁ ଦୁର୍ଲ୍ଲଭ ।
ତାହାଙ୍କୁ ମଣଇ ସୁଲଭ ।।୨୬
ଧରିବ ବୋଲି କୃଷ୍ଣ ପଛେ ।
ଯବନ ଧାଇଁଲା ପ୍ରତ୍ୟକ୍ଷେ ।।୨୭
ହସ୍ତ ଲାଗଇ କୃଷ୍ଣଦେହେ ।
ପାଦ ବାଜଇ ବେନିପାୟେ ।।୨୮
ଏମନ୍ତେ ଦୂରପଥ ନେଇ ।
ବନଗହନେ ଭାବଗ୍ରାହୀ ।।୨୯
କୃଷ୍ଣଙ୍କୁ ଗୋଡ଼ାଇ ଯବନ ।
ବୋଲଇ ଝିଙ୍ଗାସ ବଚନ ।।୩୦
ଯାଦବକୁଳେ ଜାତ ହୋଇ ।
ଡରେ ପଳାଉ କାହିଁପାଇଁ ।।୩୧
ଉଚିତ ନୁହଇ ତୋ ଯଶ ।
ଲୋକେ କରିବେ ଉପହାସ ।।୩୨
କ୍ଷତ୍ରିୟଅଂଶେ ଜାତ ହୋଇ ।
ଶୃଗାଳ ପ୍ରାୟ ତୁ ପଳାଇ ।।୩୩
ଏ ନୋହେ ତୋର କ୍ଷତ୍ରିଧର୍ମ ।
କିମ୍ପାଇ କରୁ ଏଡେ କର୍ମ ।।୩୪
ନିନ୍ଦଇ ଗୋବିନ୍ଦ ମହିମା ।
ଯେଣୁ ଅଟଇ ହୀନକର୍ମା ।।୩୫
ଏମନ୍ତ ବାକ୍ୟେ ଦେଇ ଗାଳି ।
ଗିରିଗହନେ ଯାଇ ମିଳି ।।୩୬
ପଶିଲେ ପର୍ବତକନ୍ଦରେ ।
ଯବନ ଘେନି ଅନ୍ଧକାରେ ।।୩୭
ହରି ହୋଇଲେ ଅନ୍ତର୍ଦ୍ଧାନ ।
ଭିତରେ ପଶିଲା ଯବନ ।।୩୮
ଚାହିଁଇ ଚଉଦିଗେ କୋପେ ।
ପୁରୁଷେ ଦେଖିଲା ସମୀପେ ।।୩୯
ଶୟନେ ନିଦ୍ରାଗତେ ହୋଇ ।
ଉତ୍ତାନମତେ ଅଛି ଶୋଇ ।।୪୦
ଦେଖି ବୋଲଇ କୋପମନେ ।
ନିନ୍ଦିତ-ପୁରୁଷ-ବଚନେ ।।୪୧

Dr. Sudhanshu Sekhar Mishra

ଏତେ ଯୋଜନ ମୋତେ ଆଣି ।
ମୋହର ମହିମା ନ ଜାଣି ॥୪୨
ସାଧୁଙ୍କ ପ୍ରାୟ ଅଛି ଶୋଇ ।
ମିଛେ ବୁଜିଣ ଚକ୍ଷୁ ଦୁଇ ॥୪୩
ମରଣକାଳେ ନିଦ୍ରା ଗଲେ ।
କାଳ କି ବଞ୍ଚାଇବ ଭଲେ ॥୪୪
ଏମନ୍ତେ କରି ଘୋରନାଦ ।
ହୃଦେ ମାଇଲା ବେନିପାଦ ॥୪୫
ବଜ୍ର ସମାନ ପାଦ ବାଜି ।
ତାହାର ନିଦ୍ରା ଗଲା ଭାଜି ॥୪୬
ଉଠି ବସିଲା ମହାବଳୀ ।
ଚାହିଁଲ ନୟନ ନିରେଖି ॥୪୭
ବେନିପାରୁଶ ଆଗପଛେ ।
ଯବନେ ଦେଖିଲା ପ୍ରତ୍ୟକ୍ଷେ ॥୪୮
କୋପେ କମ୍ପଇ ତାର ଦେହୀ ।
ଅନଳନୟନେ ଅନାଇଁ ॥୪୯
ଅଗ୍ନି ଉଠିଲା ମହାଘୋର ।
ପଡ଼ିଲା ଯବନ ଉପର ॥୫୦
ଦେଖନ୍ତି ପ୍ରଭୁ ନାରାୟଣ ।
ଭସ୍ମ ହୋଇଲା ତତକ୍ଷଣ ॥୫୧
ଶୁଣି ପରୀକ୍ଷ ପଚାରଇ ।
ବ୍ୟାସନନ୍ଦନ ମୁଖ ଚାହିଁ ॥୫୨

ପରୀକ୍ଷିତ ଉବାଚ

ଭୋ ମୁନି ଶୋଇଲା ପୁରୁଷ ।
କହ ତାହାର ନାମ କିସ ॥୫୩
କାହାର ପୁତ୍ର ଏଡ଼େ ବଳୀ ।
ନୟନେ ଅଗ୍ନି ପରଜ୍ୱଳି ॥୫୪
କାଳଯବନ ଭସ୍ମଗଲା ।
ଏ ତପ କେମନ୍ତେ ସାଧିଲା ॥୫୫
ନିଦ୍ରାରେ ଗିରିମଧ୍ୟେ ଶୋଇ ।
କହ ସେ ପୂର୍ବେ ଥିଲା କାହିଁ ॥୫୬

ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର ।
ଇକ୍ଷାକୁବଂଶେ ନୃପବର ॥୫୭
ମାନଧାତା ନାମେ ମହେନ୍ଦ୍ର ।
ତାର କୁମର ମୁଚୁକୁନ୍ଦ ॥୫୮
ବିପ୍ର ସେବକ ସତ୍ୟବାଦୀ ।
ସକଳ ଗୁଣେ ଗୁଣନିଧି ॥୫୯
ତାହାକୁ ଦେବଗଣେ ଆସି ।
ବଚନ କହିଲେ ବିଶ୍ୱାସି ॥୬୦
ତୋର ଶରଣ ନୃପବର ।
ଆମ୍ଭେ ଛାଡ଼ିଲୁ ସ୍ୱର୍ଗପୁର ॥୬୧
ହାରିଲୁ ଅସୁରଙ୍କୁ ରଣେ ।
ପଶିଲୁ ତୋହର ଶରଣେ ॥୬୨
ତୁ ଏବେ କର ପ୍ରତିକାର ।
ଅସୁରବଳ ବେଗେ ମାର ॥୬୩
ଏମନ୍ତ କହି ସୁରବୃନ୍ଦ ।
ଘେନାଇ ଗଲେ ମୁଚୁକୁନ୍ଦ ॥୬୪
ଦେବତାଗଣେ ଦୁଃଖ ଦେଖି ।
ସେ ମୁଚୁକୁନ୍ଦ ପଦ୍ମଆଖି ॥୬୫
ନିଜ ବିମାନେ ବିଜେ କଲା ।
ତେଜେ ବିରାଜେ ରବିକଳା ॥୬୬
ନାନା ଆୟୁଧ ଘେନି ହସ୍ତେ ।
ବିଜୟ କଲେ ଶୂନ୍ୟ ହସ୍ତେ ॥୬୭
ଅସୁର ତୁଲେ କଲେ ରଣ ।
ଗଗନ ପଥେ ଦେବଗଣ ॥୬୮
ତାହା ଦେଖିଣ ନୃପବର ।
ମିଳିଲା ସଂଗ୍ରାମ ମଧ୍ୟର ॥୬୯
ଦେବତା ଅସୁର-ସମରେ ।
କ୍ଷୋଭ ପାଇଲେ ତୀକ୍ଷ୍ଣ ଶରେ ॥୭୦
ଏମନ୍ତ ଦେଖି ନୃପବର ।
କ୍ଷୁବ୍ଧ କରଇ ମହାଘୋର ॥୭୧
ମୁଚୁକୁନ୍ଦର ତୀକ୍ଷ୍ଣ ବାଣେ ।
ଅସୁରେ ପଳାଇଲେ ରଣେ ॥୭୨
ଅନେକ ହେଲେ ପଣେ ନାଶ ।
ରହିଲେ ପାଞ୍ଚ ସାତ କୋସ ॥୭୩
ସେ ରାଜା ମହା ବଳୀୟାର ।
ଅନେକ କାଳାକ ସମର ॥୭୪
ପୁଣି ଅନେକ ଯୁଦ୍ଧ କରି ।
ସକଳ ଅସୁର ସଂହାରି ॥୭୫
ଗଜର ସମରେ କେଶରୀ ।
ଯେଉଁ ପ୍ରକାରେ ନାସ କରି ॥୭୬
ତେମନ୍ତ କରିଣ ସମର ।
ଅସୁର କଳାକ ସହାଂର ॥୭୭
ଅସୁର ସୈନ୍ୟ ନାଶ କରି ।
ଦେବଙ୍କୁ ଦେଲା ସ୍ୱର୍ଗପୁରୀ ॥୭୮
ଯୁଦ୍ଧରେ ତମ ଗୁଣ ଘେନି ।
ରାତ୍ର ଦିବସ ହିଁ ନ ଜାଣି ॥୭୯
ଏମନ୍ତ ତାର କାଳ ଗଲା ।
ଯୁଦ୍ଧରେ ନୃପତିର ବଳା ॥୮୦
କାର୍ତ୍ତିକେ ପାଇ ସେନାପତି ।
ଦେବତାମାନେ ବୃହସ୍ପତି ॥୮୧
ବୋଲନ୍ତି ଚାହିଁ ମୁଚୁକୁନ୍ଦ ।
ଆମ୍ଭେ ଯେ ହୋଇଲୁ ଆନନ୍ଦ ॥୮୨
ତୋ ଯଶ ପରଉପକାର ।
ସମ୍ପଦ ରଖିଲୁ ଆମ୍ଭର ॥୮୩
ତୁ ଆଉ ନ କର ସମର ।
ଅସୁର ଭୟ ଗଲା ଦୂର ॥୮୪
ତୁ ମର୍ତ୍ତ୍ୟପୁର ନୃପବର ।
ଏ ଯେ ଅମର ସ୍ୱର୍ଗପୁର ॥୮୫
ଆମ୍ଭେ ଆଣିଲୁ ତୋତେ ବରି ।
ତୁ ଏବେ ଏହାଙ୍କୁ ସଂହାରି ॥୮୬
ରଖିଲୁ ଦେବଙ୍କ ସମ୍ପଦ ।
ଥିଲା ଯେ ତୋର ରାଦପଦ ॥୮୭
ସମରେ ତୋର ମନ ଥିଲା ।
ମଝେ ଅନେକ କାଳ ଗଲା ॥୮୮
ସୁତ କଳତ୍ର ବନ୍ଧୁ ଗୋତ୍ର ।
ସକଳେ ହେଲେ କାଳଗ୍ରସ୍ତ ॥୮୯
ପ୍ରଜା ଯେ ଥିଲେ ତୋର ତୁଲେ ।
କାଳେ ସକଳେ ନାଶ ଗଲେ ॥୯୦
ଦଇବ ବଳେ କାଳବଳୀ ।
ଜନ୍ତୁଙ୍କୁ କର୍ମବଳେ ଗିଳି ॥୯୧
ଈଶ୍ୱର ଭାବେ ଖେଳେ କାଳ ।
ପଶୁଙ୍କୁ ଯେହ୍ନେ ପଶୁପାଳ ॥୯୨
କିସ କରିବୁ ନର ଲୋକେ ।
ପଡ଼ିବୁ ପୁତ୍ର ଦାରା ଶୋକେ ॥୯୩

Dr. Sudhanshu Sekhar Mishra

ରାଜନ ଛାଡୁ ମନୁ ଚିନ୍ତା ।
ଆମ୍ଭେ ହୋଇଲୁ ବର ଦାତା ॥୯୪
ଧନ ସମ୍ପଦ କାମ ଯେତେ ।
ମାଗ ତୁ ଦେବୁ ଅପ୍ରମିତେ ॥୯୫
ମୋକ୍ଷକୁ ନୋହୁଁ ଅଧିକାରୀ ।
ଏଥକୁ ପ୍ରଭୁ ନରହରି ॥୯୬
ଦେବଙ୍କ ବାକ୍ୟ କର୍ଣ୍ଣେ ଶୁଣି ।
ରାଜନ ମନେ ମନେ ଗୁଣି ॥୯୭
ଦେବଙ୍କୁ କରି ନମସ୍କାର ।
ବୋଲଇ ଯୋଡି ବେନିକର ॥୯୮
ଯେବେ ମୋହର ମୋକ୍ଷ ନାହିଁ ।
ବର ମାଗିବି କିସ ପାଇଁ ॥୯୯
ଯୁଦ୍ଧରେ ଗଲା ଏତେ ଦିନ ।
ନିଦ୍ରା ତ ନାହିଁ ମୋ ନୟନ ॥୧୦୦
ଶୋଇବି ବରେ କାର୍ଯ୍ୟ ନାହିଁ ।
ନିଦ୍ରା ପିଡୀତ ମୋର ଦେହୀ ॥୧୦୧
ଶୁଣି ସାନନ୍ଦ ଦେବେ ମନେ।।
ମିଳିଲେ ଦୁର୍ଗମ କାନନେ ॥୧୦୨
ଗିରିକନ୍ଦରେ ଶଯ୍ୟା କରି ।
ତହିଂ ଶୁଆଇ ଦଣ୍ଡଧାରୀ ॥୧୦୩
ବୋଇଲେ ଇନ୍ଦ୍ରଆଦି ଦେବେ ॥
ତୋହର ନିଦ୍ରା ଯେ ଭାଙ୍ଗିବେ ॥୧୦୪
ତୋର-ନୟନ-ଅଗ୍ନି ବାଣେ ॥
ବସ୍ମ ହୋଇବ ତତକ୍ଷଣେ ॥୧୦୫
ତୋହର ନିଦ୍ରା ଅନ୍ତକାଳେ ।
ଦେଖିବୁ ପ୍ରଭୁ ଆଦିମୂଳେ ॥୧୦୬
ଏମନ୍ତ କହି ଦେବେ ଗଲେ ।
କୃଷ୍ଣ ଜାଣନ୍ତି ତାହାଭଲେ ॥୧୦୭
ଯବନ ମରାଇଲେ ନେଇ ।
ଶୁଣ ରାଜନ ମନଦେଇ ॥୧୦୮
କାଳଯବନ ନାଶ ଗଲା ।
ଶୁଣ ହୋ ଗୋବିନ୍ଦର ଲୀଳା ॥୧୦୯
କୃଷ୍ଣଶରୀର ତେଜ ରାଶି ।
ଗିରିକନ୍ଦର-ତମ ନାଶି ॥୧୧୦
ଚକିତେ ଚାହିଁ ନୃପବର ।
ଦେଖିଲା ବ୍ରହ୍ମାଣ୍ଡ ଠାକୁର ॥୧୧୧

ନୀଳଜଳଦ-ତନୁବର୍ଣ୍ଣ ।
ପୀତ ବସନ ପରିଧାନ ॥୧୧୨
ଶ୍ରୀବତ୍ସ ଚିହ୍ନ ମଣି କଣ୍ଠେ ।
ରତ୍ନମେଖଳା କଟିତଟେ ॥୧୧୩
ସୁନ୍ଦର ବନମାଳା ସାଜେ ।
ନିଜ ଆୟୁଧ ଚାରିଭୁଜେ ॥୧୧୪
ପ୍ରସନ୍ନ ବଦନ ଗୋପାଳ ।
ଶ୍ରବଣେ ମକରକୁଣ୍ଡଳ ॥୧୧୫
ଅତି ସୁନ୍ଦର ହାସମୁଖ ।
କୁଟୀଳ କୁନ୍ତଳ ସୁରେଖ ॥୧୧୬
ଆଜାନୁଲମ୍ବେ ଚାରିଭୁଜ ।
ବିକ୍ରମସିଂହ ପ୍ରାୟ ତେଜ ॥୧୧୭
ଏମନ୍ତ କୃଷ୍ଣଦେହେ ତେଜ ।
ଦେଖି ଚକିତ ମହାରାଜ ॥୧୧୮
ଗୋବିନ୍ଦ ତେଜେ ହରଷିତ ।
ଶଙ୍କିତେ ଯୋଡ଼ି ବେନିହସ୍ତ ॥୧୧୯
କୃଷ୍ଣବଦନ ଅରବିନ୍ଦ ।
ଚାହିଁ ବୋଲାଇ ମୁଚୁକୁନ୍ଦ ॥୧୨୦

ମୁଚୁକୁନ୍ଦ ଉବାଚ

କହ ତୁ କାହାର ନନ୍ଦନ ।
କୁଳ ପ୍ରବର ନିଜ କାମ ॥୧୨୧
ଏମନ୍ତ ଦେଖିଲା ତ ନାହିଁ ।
ଗିରିକନ୍ଦରେ ଥିଲୁ କାହିଁ ॥୧୨୨
କମଳ ପ୍ରାୟ ତୋ ଚରଣ ।
କିମ୍ପାଇ ବୁଲୁ ଘୋରବନ ॥୧୨୩
ତେଜସ୍ୱୀମାନଙ୍କର ତେଜ ।
କି ଅବା ପ୍ରଭୁ ଦେବରାଜ ॥୧୨୪
ସୂର୍ଯ୍ୟ ଶଶାଙ୍କ ଆଖଣ୍ଡଳ ।
କି ଅବା କେଉଁ ଦିଗପାଳ ॥୧୨୫
ବିଷ୍ଣୁ ଶଙ୍କର ପଦ୍ମଯୋନି ।
ଦେବଙ୍କ ଦେବତା ଏ ତିନି ॥୧୨୬
ଏ ତିନିମଧ୍ୟେ ଏକ ତୁହି ।
ଗୋବିନ୍ଦପ୍ରାୟ ମୁଁ ମଣଇଁ ॥୧୨୭
ଶୟନକାଳେ ଦେବଗଣେ ।
ବର ଯେ ଦେଲେ ଶୁଦ୍ଧମନେ ॥୧୨୮

ସେ କି ହୋଇଲା ପରାପତ ।
ତୁମ୍ଭେ ବା ଅଟ ହେ ଅଚ୍ୟୁତ ॥୧୨୯
ତୋହର ତେଜେ ତମ ଗଲା ।
ପ୍ରଦୀପ ପ୍ରାୟ ପ୍ରକାଶିଲା ॥୧୩୦
ସତ୍ୟବଚନ କହ ମୋତେ ।
ମୁଁ ତୋତେ ଜାଣଇଁ ଯେମନ୍ତେ ॥୧୩୧
ଦେବତାବରେ ନିଦ୍ରା ମୁହିଁ ।
ଅନେକ କାଳୁ ଅଛି ଯାଇ ॥୧୩୨
ମୋହର ନିଦ୍ରା ଯେ ଭାଙ୍ଗିବ ।
ଚକ୍ଷୁଅନଳେ ନାଶଯିବ ॥୧୩୩
କେ ମୋର କଲା ନିଦ୍ରା ଭଙ୍ଗ ।
ତୁମ୍ଭେ କି ଥିଲ ତାର ସଙ୍ଗ ॥୧୩୪
ଦିଶୁଛ ଆଦିସୂର୍ଯ୍ୟ ପ୍ରାୟେ ।
ଭୟେ କମ୍ପଇ ମୋର କାୟେ ॥୧୩୫
ଶ୍ରବଣେ ଯେବେ ମୁହିଁ ପାତ୍ର ।
କହ ତୋହର ନାମ ଗୋତ୍ର ॥୧୩୬
ମୋହର କଥା ଶୁଣ ତୁହି ।
ଇକ୍ଷ୍ୱାକୁ ବଂଶେ ଜାତ ମୁହିଁ ॥୧୩୭
ମାନ୍ଧାତା ନୃପତି-ନନ୍ଦନ ।
ମୋହର ମୁଚୁକୁନ୍ଦ ନାମ ॥୧୩୮
ଯୁଦ୍ଧେ ଉନ୍ନିଦ୍ର-ଶ୍ରମ ପାଇ ।
ନିରୋଳେ ନିଦ୍ରାଗତ ହୋଇ ॥୧୩୯
ନିଦ୍ରା ଯେ ଭାଙ୍ଗିଲା ମୋହର ।
ଭସ୍ମ ହୋଇଲା ତା ଶରୀର ॥୧୪୦
ଏବେ ମୁଁ ତୋର ରୂପ ଦେଖି ।
ଚାହାନ୍ତେ ସ୍ଫୁରେ ବେନି ଆଖି ॥୧୪୧
ଦେଖି ତୋହର ରୂପ ତେଜ ।
ହତ ମୋ ହେଲା ବଳବୀର୍ଯ୍ୟ ॥୧୪୨
ଏମନ୍ତ ରାଜାମୁଖୁଁ ଶୁଣି ।
ବୋଲନ୍ତି ପ୍ରଭୁ ଚକ୍ରପାଣି ॥୧୪୩
ଗଭୀର ମେଘପ୍ରାୟ ଘୋଷ ।
ରଙ୍ଗଅଧରେ ମନ୍ଦହାସ ॥୧୪୪
ମୋତେ ତୁ ପଚାରିଲୁ ଯାହା ।
ଶୁଣ ରାଜନ ପୁଣ୍ୟଦେହା ॥୧୪୫
ମୋହର ଜନ୍ମ-କର୍ମ-ଗତି ।
ସହସ୍ର ସଂଖ୍ୟାଏ ଅଛନ୍ତି ॥୧୪୬

Dr. Sudhanshu Sekhar Mishra

ନାମ  ହିଁ ଅଛି ରେଣୁ ଯେତେ ।
ସଂଖ୍ୟା କରିବ କେହୁ କେତେ ।।୧୪୭
ଭୂମିରେ ଅଛି ରେଣୁ ଯେତେ ।
ଅନନ୍ତସଂଖ୍ୟା ଅପ୍ରମିତେ ।।୧୪୮
ଏମାନ ଗଣି କେ ପାରଇ ।
ଅନେକ ଜନ୍ମେ ଦେହ ବହି ।।୧୪୯
ମୋହର ଜନ୍ମ-କର୍ମ ନାମ ।
ଗଣି ନପାରେ କେହି ଜନ ।।୧୫୦
ମୋହର ଜନ୍ମ-କର୍ମ ଯେତେ ।
ତ୍ରିକାଳବ୍ୟାପୀ ଏ ଜଗତେ ।।୧୫୧
ପରମଋଷି ଯେତେ ଛନ୍ତି ।
କେହି ସେ ତତ୍ତ୍ୱ ନ ଜାଣନ୍ତି ।।୧୫୨
ଏବେ ମୁଁ କହୁଅଛି ଯେତେ ।
ରାଜନ ଶୁଣ ଏକଚିତ୍ତେ ।।୧୫୩
ବ୍ରହ୍ମା ଶଙ୍କର ଦେବେ ଯାଇ ।
କ୍ଷୀରଜଳଧି ତଟେ ରହି ।।୧୫୪
ସ୍ତୁତି ସେ କଲେ ମୋ ଚରଣେ ।
ମେଦିନୀଭାରା ନିବାରଣେ ।।୧୫୫
ଅସୁରବଳ କରି ନାଶ ।
ସାଧୁଙ୍କୁ କରିବି ଆଶ୍ୱାସ ।।୧୫୬
ଏଣୁ ମୁଁ ବସୁଦେବ ଘରେ ।
ଜନ୍ମିଲି ଦେବକୀ ଉଦରେ ।।୧୫୭
ବସୁଦେବର ପୁତ୍ରଭାବ ।
ତେଣୁ ମୋ ନାମ ବାସୁଦେବ ।।୧୫୮
ରମିଲି ବୃନ୍ଦାବନେ ରହି ।
କଂସକୁ ସଂହାରିଲି ମୁହିଁ ।।୧୫୯
ପ୍ରଳମ୍ବାଆଦି ଯେ ଦାନବେ ।
ମୁହିଁ ମାଇଲି ବାଳଭାବେ ।।୧୬୦
କାଳଯବନ ଅଣାଇଲି ।
ତୋର ନୟନ ସଂହାରିଲି ।।୧୬୧
ତୋତେ ମୋ ଅନୁଗ୍ରହ ଚିତ୍ତେ ।
ତେଣୁ ମିଳିଲି ତୋ ଅଗ୍ରତେ ।।୧୬୨
ପୂର୍ବେ ତୁ ଘୋରତପ କରି ।
ମନପବନ ହୃଦେ ଧରି ।।୧୬୩
ଦେବେ ତ ଦେଇଛନ୍ତି ବର ।
ଶୟନକାଳେ ନୃପବର ।।୧୬୪
ମୋତେ ଦେଖିବୁ ବୋଲି ଚିତ୍ତେ ।
ଏବେ ପ୍ରସନ୍ନ ହେଲି ତୋତେ ।।୧୬୫
ଭକତ ବତ୍ସଳ ମୋ ନାମ ।
ବର ତୁ ମାଗ ଇଚ୍ଛା କାମ ।।୧୬୬
ଯାହା ମାଗିବୁ ଶୁଦ୍ଧଚିତ୍ତେ ।
ପ୍ରସନ୍ନେ ଦେବଇଁ ମୁଁ ତୋତେ ।।୧୬୭
ମୋରେ ଯେ ଶରଣ ପଶନ୍ତି ।
ସଂସାରେ ନାହିଁ ତାଙ୍କ ଭୀତି ।।୧୬୮

ଶୁକ ଉବାଚ

ଏମନ୍ତ କୃଷ୍ଣମୁଖୁଁ ଶୁଣି ।
ପ୍ରଣାମ କଲା ପୁଣପୁଣି ।।୧୬୯
ଗର୍ଗବଚନ ପରିମାଣି ।
ନିଶ୍ଚେ ଜାଣିଲା ଚକ୍ରପାଣି ।।୧୭୦
ଆନନ୍ଦେ ବେନିକର ଯୋଡ଼ି ।
କହଇ କୃଷ୍ଣପାଦେ ପଡ଼ି ।।୧୭୧

ମୁଚୁକୁନ୍ଦ ଉବାଚ

ଭୋ ନାଥ ତୋର ମାୟାବଳେ ।
ମୋହିତ ପ୍ରାଣୀଏ ଶୟଳେ ।।୧୭୨
ଅନର୍ଥ ଅର୍ଥ ପ୍ରାୟ ମଣେ ।
ନଭଜେ ତୋହର ଚରଣେ ।।୧୭୩
ଦୁଃଖଗହନେ ସୁଖ ଆଶେ ।
ପଡ଼ଇ ଦାରା ମୋହପାଶେ ।।୧୭୪
ମୈଥୁନସୁଖେ କାଳ ବଂଚେ ।
ନଭୁଞ୍ଜି ନିତ୍ୟେ ଧନ ସଂଚେ ।।୧୭୫
ଅଶେଷ ଜନ୍ମ ପୁଣ୍ୟଫଳେ ।
ମନୁଷ୍ୟଦେହ ମହୀତଳେ ।।୧୭୬
ଇନ୍ଦ୍ରିୟସୁଖେ ଦେଇ ମତି ।
ତୋର ଚରଣେ ନ ଭଜନ୍ତି ।।୧୭୭
ପଡ଼ନ୍ତି ଅନ୍ଧକୂପ-ଗୃହେ ।
ପଶୁ ଯେସନେ ତୃଣ ମୋହେ ।।୧୭୮
ଶୁଣ ହେ ମଦନଗୋପାଳ ।
ନିଷ୍ଫଳେ ଗଲା ଏତେ କାଳ ।।୧୭୯
ରାଜ୍ୟ ସମ୍ପଦେ ଭୋଳ ହୋଇ ।
ଆତ୍ମାର ଗତି ନ ଜାଣଇ ।।୧୮୦
ଦେହାଭିମାନ ବୁଦ୍ଧିବଳେ ।
ସୁତ କଳତ୍ର ମୋହଜାଳେ ।।୧୮୧
ଦୁରନ୍ତ ଚିନ୍ତା ପଥେ ମଜ୍ଜେ ।
ତୋତେ ନ ଭଜି ଦେବରାଜେ ।।୧୮୨
ମୃତ୍ତିକାଘଟ ମଧ୍ୟେ ଥାଇ ।
ବୋଲଇ ନରଦେବ ମୁହିଁ ।।୧୮୩
ରଥ କୁଞ୍ଜର ଅଶ୍ୱଯୂଥେ ।
ପଦାତିବଳ ଅପ୍ରମିତେ ।।୧୮୪
ଖେଳଇ ଏ ମହୀମଣ୍ଡଳେ ।
ତୋତେ ନ ଜାଣି ମତିଭୋଳେ ।।୧୮୫
ପଶୁଙ୍କ ପ୍ରାୟେ ଏ ସଂସାରେ ।
ପଶି ଗହନ ଚିନ୍ତାଘୋରେ ।।୧୮୬
ବିଷୟ ସୁଖ ଭୋଗେ ବଢ଼ି ।
ତୋ ପାଦପଦ୍ମ ଚିନ୍ତା ଛାଡ଼ି ।।୧୮୭
ପଡ଼ଇ ତୋର ମାୟାବଳେ ।
ତୁ ତାକୁ ନାଶୁ ଅବହେଳେ ।।୧୮୮
ଗ୍ରାସଇ ତୋର କାଳରୂପ ।
ଇନ୍ଦୁରେ ଯେହ୍ନେ କାଳସର୍ପ ।।୧୮୯
ପୂର୍ବେ ସୁବର୍ଣ୍ଣମୟ ରଥେ ।
କୁଞ୍ଜରକନ୍ଧେ ନାନାପଥେ ।।୧୯୦
ନରଦେବତା ନାମ ବହି ।
ଭ୍ରମଇଁ ମତ୍ତଭୋଳେ ମହୀ ।।୧୯୧
ସେ ଦେହ ତୋର ଅଂଶ କାଳ ।
କରଇ କୃମି ଭସ୍ମ ମଳ ।।୧୯୨
କେ ଅବା ନୃପ ଚୂଡ଼ାମଣି ।
ଅଶେଷ ଦିଗଭାଗ ଜିଣି ।।୧୯୩
ସଂଗ୍ରାମେ ଦଶଦିଗ ବାହି ।
ଅଦ୍ଭୁତ ବିଗ୍ରହ ବୋଲାଇ ।।୧୯୪
ଉତ୍ତମ ସିଂହାସନେ ପୂଜା ।
ପାଦେ ନମନ୍ତି ସର୍ବରାଜା ।।୧୯୫
ଏମନ୍ତ ପ୍ରାଣକୁ ଯେ ଧରି ।
ସ୍ତିରୀଏ କ୍ରୀଡ଼ାମୃଗ କରି ।।୧୯୬
ମୈଥୁନ ସୁଖ ଗୃହମଧ୍ୟେ ।
କରନ୍ତି ପରମଆନନ୍ଦେ ।।୧୯୭
ଯେ ପ୍ରାଣୀ ଦେବପୂଜା କରି ।
ବୋଲଇ ଭବୁ ଯିବି ତରି ।।୧୯୮

Dr. Sudhanshu Sekhar Mishra

ନିବୃତ୍ତିମାର୍ଗେ ମହାଶ୍ରମେ ।
ତପ ଆରାଧି ନାନକର୍ମେ ।।୧୯୯
ଦେବତା ବରଦାନ କାଳେ ।
ପୁଣ ମାଗଇ ସୁଖଭୋଳେ ।।୨୦୦
କରଇ ସ୍ୱର୍ଗଭୋଗ ବାଞ୍ଛା ।
ପରମସୁଖେ ନାହିଁ ଇଚ୍ଛା ।।୨୦୧
ଜନ୍ମମରଣ ବେନିପଥେ ।
ସେ ପ୍ରାଣୀ ଭ୍ରମୁଥାଇ ନିତ୍ୟେ ।।୨୦୨
ତାହାର ଯେବେ ଭାଗ୍ୟ ଥାଇ ।
ସୁସାଧୁ-ସଙ୍ଗତେ ମିଳଇ ।।୨୦୩
ସତ୍‌ସଙ୍ଗେ ହୋଇ ପାପ ନାଶ ।
ନିର୍ମଳ ପ୍ରକାଶଇ ଯଶ ।।୨୦୪
ସୁସାଧୁ-ଯୋଗୀଙ୍କର ପ୍ରାୟେ ।
ଶୁଦ୍ଧ ପ୍ରକାଶେ ତାର ଦେହେ ।।୨୦୫
ପରମବ୍ରହ୍ମ ତୋର ପାଦେ ।
ସେ ପ୍ରାଣୀ ଭଜଇ ଆନନ୍ଦେ।।୨୦୬
ତୋହର ମାର୍ଗେ ହୋଇ ଗତି ।
ତୁଟଇ ଭଵବନ୍ଧ-ଭ୍ରାନ୍ତି ।।୨୦୭
ଭୋ ନାଥ ଜାଣିଲି ମୁଁ ଚିତ୍ତେ ।
ତୋହର ଅନୁଗ୍ରହ ମୋତେ ।।୨୦୮
ରାଜ୍ୟ-ସମ୍ପଦ-ବନ୍ଧ-ପାଶ ।
ଏବେ ହୋଇଲା ମୋର ନାଶ ।।୨୦୯
ଅଖଣ୍ଡ-ଅବନୀ-ମଣ୍ଡଳେ ।
ଅଶେଷ ଭୋଗ ମହୀତଳେ ।।୨୧୦
ଯେ ଛାଡ଼ି ଭଜେ ତୋ ଚରଣ ।
ଏକା ବୁଲଇ ବନେବନ ।।୨୧୧
ଅଶେଷ ଘୋରାତପ କରି ।
ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ।।୨୧୨
ଭୋ ନାଥ ପରମ ମଙ୍ଗଳ ।
ଅନାଦିଧର୍ମ ଆଦିମୂଳ ।।୨୧୩
ତୋହର ଅଭୟଚରଣ ।
ନିତ୍ୟେ ସେବିବି ନାରାୟଣ ।।୨୧୪
ଆନ ସମ୍ପଦେ କାର୍ଯ୍ୟ ନାହିଁ ।
ଏ ବର ଦିଅ ମୋତେ ତୁହି ।।୨୧୫
ତୁ ନାଥ କଇବଲ୍ୟଦାତା ।
ଦୁଃଖୀଜନଙ୍କ ପିତାମାତା ।।୨୧୬
ତୋହର ଦରଶନ ପାଇ ।
ଆତ୍ମାର ବନ୍ଧ ଯେ ମାଗଇ ।।୨୧୭

ତାହାକୁ ବୋଲି ଅପଣ୍ଡିତ ।
ତୋର ମାୟାରେ ଜ୍ଞାନହତ ।।୨୧୮
ଭୋ ନାଥ ପରମଈଶ୍ୱର ।
ତୁ ଯେ ଯାଚିଲୁ ମୋତେ ବର ।।୨୧୯
ତ୍ରିଗୁଣେ ବନ୍ଧ ମୋହପାଶ ।
ସେ ବରେ ନାହିଁ ମୋର ଆଶ ।।୨୨୦
ନିର୍ଗୁଣ-ନିରଞ୍ଜନ-ପର ।
କେବଳ ଆତ୍ମଜ୍ଞାନ ସାର ।।୨୨୧
ଏମନ୍ତ ପୁରୁଷର ପାଦେ ।
ଶରଣ ଯିବି ଅପ୍ରମାଦେ ।।୨୨୨
ଏ ଭବସିନ୍ଧୁ ମଧ୍ୟେ ମୁହିଁ ।
ଅଶେଷ ଜନ୍ମ ଦୁଃଖ ପାଇ ।।୨୨୩
ବାସନ ବଳେ କରି ପାପ ।
ସୁମରି ପଛେ ଅନୁତାପ ।।୨୨୪
ସେ ତାପେ ପୀଡ଼ିତ ଜୀବନେ ।
ଭ୍ରମଇଁ ଦୁଃଖେ ପଥଶ୍ରମେ ।।୨୨୫
ଷଡ଼ଅଇରି ସଙ୍ଗେ ଭ୍ରମି ।
ନିଗମପଥେ ମହାଶ୍ରମୀ ।।୨୨୬
ତୃଷିତେ ଜଳପାନ ଚିନ୍ତି ।
କେବେ ନୁହଇ ତୃଷା ଶାନ୍ତି ।।୨୨୭
ସେ ଜଳ ତୋର ପାଦେ ଥୋଇ ।
ସଂସାର ତାପ ନିବାରଇ ।।୨୨୮
ନିର୍ଭୟ-ସତ୍ୟ-ଶୋକହର ।
ଭୋନାଥ ଶରଣ ତୋହର ।।୨୨୯
ଆପଦକାଳେ ସୁଖ ଦେଇ ।
ତୋ ପାଦେ ରଖ ଭାବଗ୍ରାହୀ ।।୨୩୦
ଏମନ୍ତ ରାଜାବାକ୍ୟ ଶୁଣି ।
କୃଷ୍ଣ କହନ୍ତି ମୃଦୁବାଣୀ ।।୨୩୧

ଭଗବାନ ଉବାଚ

ତୁ ମହାଭାଗ ଚକ୍ରବର୍ତ୍ତୀ ।
ନିର୍ମଳ-ନିଷ୍କାମ ତୋ ମତି ।।୨୩୨
ବରେ ମୋହିଲି ତୋର ଚିତ୍ତ ।
ଲୋଭେ ନୋହିଲୁ ଅଭିଭୂତ ।।୨୩୩
ଏମନ୍ତ ବୁଦ୍ଧି ଯେବେ ତୋର ।
ନିଶ୍ଚେ ତରିବୁ ଭବଘୋର ।।୨୩୪
ଭକତଜନଙ୍କର ଚିତ୍ତ ।
ସମ୍ପଦେ ନୋହେ ମୋହଗ୍ରସ୍ତ।।୨୩୫

ଅଷ୍ଟାଙ୍ଗଯୋଗ ଲୟ କରି ।
ମୋତେ ଚିନ୍ତନ୍ତି ବ୍ରହ୍ମଚାରୀ ।।୨୩୬
ମୋର ଭକତି ନ ଜାଣନ୍ତି ।
ତାହାଙ୍କ ଚିତ୍ତେ ନାହିଁ ଶାନ୍ତି ।।୨୩୭
କର୍ମ-ବାସନା ରଜ୍ଜୁ-ବନ୍ଧ ।
ଭାବେ ଭ୍ରମଇ ଯେହ୍ନେ ଅନ୍ଧ ।।୨୩୮
ମୋହର ପାଦେ ଚିତ୍ତ ଦେଇ ।
ଏବେ ତୁ ସୁଖେ ଭ୍ରମ ମହୀ ।।୨୩୯
ନିଶ୍ଚଳ ହୋଇ ମୋର ପାଦେ ।
ତୋର ଭକତି ଅପ୍ରମାଦେ ।।୨୪୦
ହେଉ ବୋଇଲେ ଚକ୍ରପାଣି ।
ଏବେ ହୋ ଶୁଣ ନୃପମଣି ।।୨୪୧
କ୍ଷତ୍ରିୟକୁଳେ ହୋଇ ଜାତ ।
ଜୀବ ମାଇଲୁ ଅପ୍ରମିତ ।।୨୪୨
ମୃଗୟା କରି ମାଂସ ଖାଇ ।
ଏ ଜନ୍ମେ ତୋର ଗତି ନାହିଁ ।।୨୪୩
ମୋହର ପାଦେ ଆଶ୍ରୟ କର ।
ସାଧିବୁ ତପ ମହାଘୋର ।।୨୪୪
ତେବେ ହୋଇବ ପାପକ୍ଷୟେ ।
ଭେଦିବୁ ବ୍ରହ୍ମଲୋକ ଯାଏ ।।୨୪୫
ପାପ-ଅନ୍ତରେ ଏ ସଂସାରେ ।
ଜନ୍ମିବୁ ବ୍ରାହ୍ମଣୀ ଉଦରେ ।।୨୪୬
ସୁହୃଦ ହୋଇ ସର୍ବଭୂତେ ।
ତୁ ମୋତେ ଚିହ୍ନିବୁ ଯୁକତେ ।।୨୪୭
ବ୍ରାହ୍ମଣକର୍ମ ସଦ୍‌ଭାବେ ।
କରିବୁ ଯଥାବିଧି ଲାଭେ ।।୨୪୮
ଷଡ଼କରମେ ଯୁତ ହୋଇ ।
ମୋ ପାଦେ ସମର୍ପିବୁ ତୁହି ।।୨୪୯
ତେବେ ପାଇବୁ ମୋ ଚରଣ।
ହସି ବୋଲନ୍ତି ନାରାୟଣ ।।୨୫୦
ସେ ନାରାୟଣ ପାଦଗତ ।।
ନମଇଁ ଦାସ ଜଗନ୍ନାଥ ।।୨୫୧

ଇତି ଶ୍ରୀମଦ୍‌ଭାଗବତ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ମୁଚୁକୁନ୍ଦସ୍ତୁତି
ନାମ ପଞ୍ଚପଞ୍ଚାଶତ୍ ଅଧ୍ୟାୟଃ ।।

---

Dr. Sudhanshu Sekhar Mishra

## ଷଟ୍‌ପଞ୍ଚାଶତ୍ ଅଧ୍ୟାୟ

ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ ।
ଏମନ୍ତେ କୃଷ୍ଣ ଅନୁଗ୍ରହେ ॥୧
ହ୍ରଦ-ଉତ୍ସାହେ ମୁଚୁକୁନ୍ଦ ।
ନିର୍ମଳେ ଚାହିଁଲ ଗୋବିନ୍ଦ ॥୨
ଆନନ୍ଦେ ଶୋକ ଗଦ୍‌ଗଦେ ।
ପ୍ରଣାମ କଲା କୃଷ୍ଣପାଦେ ॥୩
ଭୋ ନାଥ କର ପ୍ରତିକାର ।
ଏ ଭବସାଗରୁ ଉଦ୍ଧର ॥୪
ତପ କରିବି ଯେଉଁମତେ ।
କହ ତୁ ମୋତେ ଶୁଦ୍ଧଚିତ୍ତେ ॥୫
ହସି ବୋଲନ୍ତି ନାରାୟଣ ।
ଯାଅ ତୁ ବଦରିକାଶ୍ରମ ॥୬
ତପ କରିବୁ ବନେପଶି ।
ନର-ନାରାୟଣ ବିଶ୍ୱାସି ॥୭
ଆସନେ ଶୁଦ୍ଧି କରି ମନେ ।
ପବନ ଫଳମୂଳ ବନେ ॥୮
ଏହାନ୍ତ କରିବୁ ଆହାର ।
ମନେ ନ ଧରିବୁ ସଂସାର ॥୯
ଶୁଣି ହରଷ ନୃପବର ।
ଶିରେ ଯୋଡ଼ିଲା ବେନିକର ॥୧୦
ଶିର ଲଗାଇ କୃଷ୍ଣପାଦେ ।
ଆନନ୍ଦେ ଶୋକ ଗଦଗଦେ ॥୧୧
ବାହାର ହୋଇ ମୁଚୁକୁନ୍ଦ ।
ଚଳିଲା ଚାହାଁନ୍ତି ଗୋବିନ୍ଦ ॥୧୨
ଦେଖିଲା ସ୍ଥାବର ଜଙ୍ଗମ ।
ବନ ଦୁର୍ଗମ ଗିରିମାନ ॥୧୩
ପଶୁଙ୍କୁ ଚାହିଁ ବିଚାରଇ ।
ଏମନ୍ତ ଦେଖିଲାତ ନାହିଁ ॥୧୪
ଅଳପପ୍ରାୟେ ତ ଦିଶନ୍ତି ।
ଏମନ୍ତେ କଲା ମନେ ଭ୍ରାନ୍ତି ॥୧୫
ପୁଣି କ୍ଷଣକେ ଅନୁରାଗ ।
ଏ କି ହୋଇଲା କଳିଯୁଗ ॥୧୬
ନିଦ୍ରାରେ ତିନିଯୁଗ ଗଲା ।
ଏମନ୍ତ ବୋଲି ବିଚାରିଲା ॥୧୭
ଉତ୍ତରଦିଗେ ନୃପବର ।
ଗଲା ଅନେକ ପଥଦୂର ॥୧୮
ସର୍ବସଂଶୟ ସଙ୍ଗ ଛାଡ଼ି ।
ତପ ସାଧନେ ଚିତ୍ତବୁଡ଼ି ॥୧୯
ସମାଧି କରି କୃଷ୍ଣପାଦେ ।
ମନ ନିବେଶି ଅପ୍ରମାଦେ ॥୨୦
ଗନ୍ଧମାର୍ଦ୍ଦନ ମଧ୍ୟେ ଗଲା ।
ବଦ୍ରିକା ଆଶ୍ରମେ ମିଳିଲା ॥୨୧
ନରନାରାୟଣ ଆଶ୍ରମେ ।
ଶୁଚି ପବିତ୍ର ପୁଣ୍ୟଧାମେ ॥୨୨
ସମାଧିବଳେ ତପ କରି ।
ମନପବନ ହୃଦେ ଧରି ॥୨୩
ସକଳ ଇନ୍ଦ୍ରି ଦୁଃଖ ସହି ।
ସମଦରଶୀ ଶୁଦ୍ଧଦେହୀ ॥୨୪
ହରି ଆରାଧି ଯୋଗବଳେ ।
ବସିଲା ଆସନେ ନିଶ୍ଚଳେ ॥୨୫
ଏବେ ହୋ ଶୁଣ ନୃପବର ।
ମାୟା-ମନୁଷ୍ୟ ଚକ୍ରଧର ॥୨୬
କପଟେ ମରାଇ ଯବନ ।
ମିଳିଲେ ମଥୁରାଭୁବନ ॥୨୭
ଯବନ ବଳ ତିନିକୋଟି ।
ମଥୁରାପୁର ଥିଲେ ଘୋଟି ॥୨୮
ତାହାଙ୍କୁ ମାରି ଭଗବାନ ।
ଯୁଦ୍ଧେ ପାଇଲେ ଯେତେ ଧନ ॥୨୯
ଗୋରୁ ମହିଷ ବନମାଳୀ ।
ଧରି ଦ୍ୱାରକାପୁରେ ଚଳି ॥୩୦
ବିଚାରି କାର୍ଯ୍ୟ ଅନୁବନ୍ଧ ।
ଆସି ମିଳିଲା ଜରାସନ୍ଧ ॥୩୧
ତେଇଶ ଅକ୍ଷୌହିଣୀ ବଳ ।
ଶୁଭଇ ମୁଖରାବ ଗୋଳ ॥୩୨
ସୈନ୍ୟର ଦେଖି ବ୍ୟଗ୍ରଗତି ।
ଭାଳନ୍ତି ରାମ ଯଦୁପତି ॥୩୩
ଆମ୍ଭେ ଏ ନଗରେ ନ ଥିବା ।
ପଳାଇ ପର୍ବତେ ଲୁଚିବା ॥୩୪
ମନୁଷ୍ୟ ଚେଷ୍ଟା ଆଶ୍ରେ କରି ।
ଛାଡ଼ି ମଥୁରାପୁର ଶିରୀ ॥୩୫
ଅଭୟଦାତା ଭୟ ପାଇ ।
ପାଦେ ଚଳନ୍ତି ବେନିଭାଇ ॥୩୬
ଆକ୍ରମି ଅନେକ ଯୋଜନ ।
ପଶିଲେ ଗହନକାନନ ॥୩୭
ଭାଜିବା ଦେଖି କୃଷ୍ଣରାମେ ।
ପଛେ ଧାମଇଁ ଜରା ତମେ ॥୩୮
ରଥ କୁଞ୍ଜର ଘେନି ସଙ୍ଗେ ।
ପଥେ ହସନ୍ତି ନବରଙ୍ଗେ ॥୩୯
ଆଜ ଜିଣିବି କରି ରଣ ।
ନ ଜାଣେ ଈଶ୍ୱର ପ୍ରମାଣ ॥୪୦
ରାମକୃଷ୍ଣ ଯେ ବେନିଭାଇ ।
ବନେ ଅନେକ ଶ୍ରମ ପାଇ ॥୪୧
ଏକ ଆରେକ ଧରି କରେ ।
ଉଠିଲେ ପର୍ବତ ଶିଖରେ ॥୪୨
ନିତ୍ୟେ ବରଷେ ସୁନାସୀର ।
ପ୍ରବର୍ଷଣ ନାମ ତାହାର ॥୪୩
ଉଠନ୍ତେ ପର୍ବତ ଉପରେ ।
ଜରା ଦେଖିଲା ଥାଇ ଦୂରେ ॥୪୪
ଅଧିକ ପାଦେ ହେଁ ନ ଗଲା ।
ପର୍ବତ ରୁନ୍ଧରେ ବୋଇଲା ॥୪୫
ବେଢ଼ି ପର୍ବତ ଚାରିଦିଗେ ।
ଅନଳ ଲଗାଇଲେ ବେଗେ ॥୪୬
ଦହନ କରି ବନଘୋର ।
ଜାଣିଲା ଶତ୍ରୁ ଗଲା ମାର ॥୪୭
ଅନଳଯୋଗେ ମହୀଧର ।
ତାପିଲା ଅତ୍ୟନ୍ତ ପ୍ରଖର ॥୪୮
ତକ୍ଷଣେ ରାମ ନରହରି ।
ଗଗନଗତି ଅନୁସରି ॥୪୯
ପର୍ବତ ଶିଖ ଅତିଶେଷ ।
ଉଚ୍ଚ ଯୋଜନ ଏକାଦଶ ॥୫୦

Dr. Sudhanshu Sekhar Mishra

ରାମଗୋବିନ୍ଦ ବାହୁବଳେ ।
ଡେଇଁ ପଡ଼ିଲେ ମହୀତଳେ ॥୫୧
ବଳ ସହିତେ ଜରା ଥିଲା ।
ରାମକୃଷ୍ଣଙ୍କୁ ନ ଦେଖିଲା ॥୫୨
ଲୁଚି ପଳାଇ ବେନିଭାଇ ।
ମିଳିଲେ ନିଜ ପୁରେ ଯାଇ ॥୫୩
ଜଳଧିପରିଖା ଯାହାର ।
ଦେବମାନବେ ଅଗୋଚର ॥୫୪
ମିଥ୍ୟାକୁ ସତ୍ୟପ୍ରାୟ ମଣି ।
ମନେ ଆନନ୍ଦ ନୃପମଣି ॥୫୫
ବୋଲଇ ବଳଙ୍କୁ ଅନାଇ ।
ପର୍ବତେ ମଲେ ବେନିଭାଇ ॥୫୬
ଭସ୍ମ ହୋଇଲେ ଅଗ୍ନିଯୋଗେ ।
ଚାଲି ବାହୁଡ଼ିଯିବା ବେଗେ ॥୫୭
ବଳ ଆକର୍ଷି ମହାବଳୀ ।
ନିଜ ଭୁବନେ ଯାଇ ମିଳି ॥୫୮
ସଂଗ୍ରାମେ ଜିଣି ଜୟବାଦ୍ୟ ।
ବଜାଇ ହୋଇଲେ ଆନନ୍ଦ ॥୫୯
ଏବେ ହୋ ଶୁଣ ନରନାଥ ।
ଆନର୍ତ୍ତପତି ରଇବତ ॥୬୦
ରେବତୀ ନାମେ କନ୍ୟା ଥିଲ ।
ବଳଦେବଙ୍କୁ ବିଭା ଦେଲା ॥୬୧
ବ୍ରହ୍ମାବଚନେ ଦେଲା ଆଣି ।
ନବମସ୍କନ୍ଧେ ଅଛୁ ଶୁଣି ॥୬୨
ଭୀଷ୍ମକ ନାମେ ମହାରାଜା ।
ରୁକ୍ମିଣୀ ତାହାର ତନୁଜା ॥୬୩
ଅଂଶେ କମଳା ଅବତାର ।
କୁଣ୍ଡୀନଗର ନୃପବର ॥୬୪
ରୁକ୍ମିଣୀ ବିବାହ ବିଚାରେ ।
ହରି ହରିଲେ ସ୍ୱୟମ୍ବରେ ॥୬୫
ରାଜାଏ ଥିଲେ ଯେ ପ୍ରତ୍ୟକ୍ଷେ ।
ଆବୋରି ଶିଶୁପାଳ ପକ୍ଷେ ॥୬୬
ଶାଲ୍ୱ ମାଗଧ ଆଦି ଯେତେ ।
ବଳ ହିଁ ଥିଲେ ଅପ୍ରମିତେ ॥୬୭
ତାହାଙ୍କ ଗର୍ବ କରି ଚୂର ।
ପଥେ ଦେଖନ୍ତି ସୁରନର ॥୬୮
କନ୍ୟା ହରିଲେ ଦାମୋଦର ।
ଅମୃତ ଯେହ୍ନେ ଖଗେଶ୍ୱର ॥୬୯
ତା ଶୁଣି ଅଭିମନ୍ୟୁ ବଳା ।
ଶୁକମୁନିଙ୍କି ପଚାରିଲା ॥୭୦

ପରୀକ୍ଷିତ ଉବାଚ

ଭୋ ମୁନି ଭୀଷ୍ମକନନ୍ଦିନୀ ।
ରୁକ୍ମିଣୀ ରୁଚିରବଦନୀ ॥୭୧
କେମନ୍ତେ ପ୍ରଭୁ ନରହରି ।
ରାକ୍ଷସ ମତେ ବିଭାକରି ॥୭୨
ଶୁଣି ଚକିତ ମୋର ଚିତ୍ତ ।
ଅସୁର ବଳ ଅପ୍ରମିତ ॥୭୩
କେମନ୍ତେ ଶିଶୁପାଳ ଆଦି ।
ପଥେ ତାହାଙ୍କ ବଳ ଛେଦି ॥୭୪
ଏକାକୀ ରଥେ ଚକ୍ରପାଣି ।
କେମନ୍ତେ ହରିଲେ ରୁକ୍ମଣୀ ॥୭୫
କୃଷ୍ଣର କଥା ପୁଣ୍ୟମୟ ।
କର୍ଣ୍ଣ ବଚନେ ସୁଧାପ୍ରାୟ ॥୭୬
ଅଖିଳଜନ ପାପ ନାଶେ ।
ପରମବ୍ରହ୍ମ ପରକାଶେ ॥୭୭
କାହାର ଚିତ୍ତ ଶୁଣି ଏହା ।
ସନ୍ତୋଷେ ନୋହିବ ଉତ୍ସାହା ॥୭୮
ନବୀନ ବସ୍ତୁ ପାଇ ଯେହ୍ନେ ।
ଆଦରେ ଆବୋରନ୍ତି ଜନେ ॥୭୯
କୃଷ୍ଣଚରିତ ସେହିମତ ।
ଭୋ ମୁନି କହ ଭାଗବତ ॥୮୦
ଶୁଣି ସନ୍ତୋଷଚିତ୍ତ ହୋଇ ।
ଶୁକ କହନ୍ତି ରାଜା ଚାହିଁ ॥୮୧

ଶୁକ ଉବାଚ

ଭୀଷ୍ମକ ନାମେ ମହୀନାଥ ।
ବିଦର୍ଭନଗରେ ସମ୍ଭୂତ ॥୮୨
ତାହାର ପତ୍ନୀଗର୍ଭୁ ଜାତ ।
ଏକ ଦୁହିତା ପାଞ୍ଚସୁତ ॥୮୩
ରୁକ୍ମୀ ଅଗ୍ରଜ ରୁକ୍ମରଥ ।
ଏ ବେନି ବଳେ ଅପ୍ରମିତ ॥୮୪
ପୁଣ ହୋଇଲା ରୁକ୍ମବାହୁ ।
ତାର ପ୍ରତାପ କେବା କହୁ ॥୮୫
ଚତୁର୍ଥ ପୁତ୍ର ରୁକ୍ମକେଶ ।
ପଞ୍ଚମ ରୁକ୍ମମାଳୀ ଶେଷ ॥୮୬
ଏହାଙ୍କ ଶେଷେ କନ୍ୟାଜାତ ।
ପ୍ରତ୍ୟକ୍ଷେ କମଳା ସମ୍ଭୂତ ॥୮୭
ରୁକ୍ମିଣୀ ନାମେ ବିଦ୍ୟମାନ ।
ତାର ମହିମା ଏବେ ଶୁଣ ॥୮୮
କୃଷ୍ଣର ଗୁଣ କର୍ମ ଯେତେ ।
ସେହୁ ଶୁଣଇ ହୃଷ୍ଟଚିତ୍ତେ ॥୮୯
ଦ୍ୱାରକାପୁର ଲୋକେ ଆସି ।
କହନ୍ତି ତାର ପାଶେ ବସି ॥୯୦
ନିରତେ କୃଷ୍ଣକଥା ଶୁଣି ।
ରୁକ୍ମିଣୀ ମନେ ମନେ ଗୁଣି ॥୯୧
ଆତ୍ମ-ସଦୃଶେ ଶୁଣି ବର ।
ମନେ ବରିଲା ଚକ୍ରଧର ॥୯୨
ଗୋବିନ୍ଦ ତାର ମନ ଜାଣି ।
ସଙ୍କଳ୍ପେ ବରିଲେ ରୁକ୍ମିଣୀ ॥୯୩
ଅଂଶେ କମଳା ଦେହଧରି ।
ଆତ୍ମସଦୃଶେ କନ୍ୟା ବରି ॥୯୪
ବନ୍ଧୁବାନ୍ଧବଙ୍କର ମତେ ।
ଦୁହିତା ବିଭାର ଉଚିତେ ॥୯୫
ଭୀଷ୍ମକ କୃଷ୍ଣକୁ ବରିଲା ।
ତା ଶୁଣି ରୁକ୍ମୀ କୋପ କଲା ॥୯୬
ଅନେକ ନିନ୍ଦାବାକ୍ୟ କରି ।
ଶିଶୁପାଳକୁ ଗଲା ବରି ॥୯୭
ଶିଶୁପାଳକୁ ଦେବା ଶୁଣି ।
ଚକିତେ ଭାଳଇ ରୁକ୍ମିଣୀ ॥୯୮
ବିକଳଚିତ୍ତେ ବିଚାରିଲା ।
ବୃଦ୍ଧବ୍ରାହ୍ମଣ ହକାରିଲା ॥୯୯
ବିଶ୍ୱାସବାକ୍ୟ ତାଙ୍କୁ କହି ।
ଚରଣେ ବେନିକର ଦେଇ ॥୧୦୦
ବୋଲଇ ଶୁଣ ବିପ୍ରମଣି ।
ଦ୍ୱାରକା ଯାଅ ଏହିକ୍ଷଣି ॥୧୦୧
ଯେବେ ଆସିବେ ଚକ୍ରଧର ।
ତେବେ ସେ ଜୀବନ ମୋହର ॥ ୧୦୨

Dr. Sudhanshu Sekhar Mishra

ଅଧିକ କହିବଇଁ କେତେ ।
କୃଷ୍ଣ ଜାଣନ୍ତି ଏହା ଚିତ୍ତେ ॥୧୦୩
ହେଉ ବୋଇଲେ ବିପ୍ରବର ।
ଦେଖିବି କୃଷ୍ଣର ପୟର ॥୧୦୪
କନ୍ୟା ବଚନେ ବିପ୍ର ଗଲେ ।
ଦ୍ୱାରକାଭୁବନେ ମିଳିଲେ ॥୧୦୫
ଦ୍ୱାରେ ଯେ ଦ୍ୱାରପାଳ ଥିଲା ।
କୃଷ୍ଣଙ୍କୁ ନେଇ ଭେଟାଇଲା ॥୧୦୬
ସୁବର୍ଣ୍ଣ ସିଂହାସନେ ହରି ।
ଯାଦବେ ଅଛନ୍ତି ଆବୋରି ॥୧୦୭
ଖଟନ୍ତି ଦଶଦିଗପାଳ ।
ବିପ୍ର ଦେଖିଲେ ଚର୍ମଢ଼ୋଳେ ॥୧୦୮
ବିପ୍ରବତ୍ସଳ ନରହରି ।
ଉଠି ବ୍ରାହ୍ମଣ କର ଧରି ॥୧୦୯
ନିଜ ଆସନେ ବସାଇଲେ ।
ଅନେକ ମତେ ପୂଜା କଲେ ॥୧୧୦
ତାହାଙ୍କୁ ଯେହ୍ନେ ଦେବଗଣେ ।
ବିଶ୍ୱାସେ ପୂଜନ୍ତି ଚରଣେ ॥୧୧୧
କୃଷ୍ଣ ପୂଜିଲେ ସେହିମତେ ।
ଶୁଣ ରାଜନ ଏକଚିତ୍ତେ ॥୧୧୨
ବିପ୍ରଙ୍କୁ କରାଇ ଭୋଜନ ।
ପାଶେ ବସିଲେ ଭଗବାନ ॥୧୧୩
ଶ୍ରମ ଦେଖିଣ ନରହରି ।
ବିପ୍ରଚରଣ କରେ ଧରି ॥୧୧୪
ଚାପନ୍ତେ ପ୍ରଭୁ ଭଗବାନ ।
ବିପ୍ରଚରଣୁ ଗଲା ଶ୍ରମ ॥୧୧୫
ବିଶ୍ରାମ ଦେଖି ବିପ୍ରବର ।
ପୁଚ୍ଛନ୍ତି ବ୍ରହ୍ମାଣ୍ଡଠାକୁର ॥୧୧୬
ଭୋ ବିପ୍ର ବଡ଼ଦୁଃଖ ପାଇ ।
ଆସିଛ ପଥଶ୍ରମୀ ହୋଇ ॥୧୧୭
ବେଦ ଉଚିତ ହୋମକର୍ମ ।
ଯଜନ ଆଦି ଷଟ୍‌କର୍ମ ॥୧୧୮
ସ୍ୱଧର୍ମେ ବଞ୍ଚିକି ସୁଖେ ।
ସନ୍ତୋଷଚିତ୍ତେ ଗୃହଦୁଃଖେ ॥୧୧୯
ଧର୍ମେ ପ୍ରାପତ ଯେତେ ଧନ ।
ତେତେଣେ ସନ୍ତୋଷ ଯାର ମନ ॥୧୨୦

ସେ ଦୁଃଖୀ ଦରିଦ୍ର ନୁହଇଁ ।
ସ୍ୱଧର୍ମେ ବିପ୍ର ଯେ ଜୀଅଇ ॥୧୨୧
ଦୁଃଖେ ଯେ ନ ଚଳନ୍ତି ଧର୍ମୁ ।
ସେ ଧର୍ମ ବିପ୍ର କାମଧେନୁ ॥୧୨୨
ଅଖିଳ କାମ୍ୟଫଳ ଦେଇ ।
ସ୍ୱଧର୍ମେ ବିପ୍ର ସେ ଜୀଅଇ ॥୧୨୩
ବହୁତ ଥାଇ ଯାର ଧନ ।
ହେଳା କରଇ ନିଜ କର୍ମ ॥୧୨୪
ନିରତେ ଚିତ୍ତ ଅସନ୍ତୋଷ ।
ଉଭୟଲୋକେ ନାହିଁ ଯଶ ॥୧୨୫
ଦରିଦ୍ରପଣେ ଦୁଃଖ ସହି ।
ନିଜ ଧର୍ମକୁ ନ ଛାଡ଼ଇ ॥୧୨୬
ସେ ବିପ୍ର ହୋଇ ମୋର ସଙ୍ଗ ।
ତରଇ ସଂସାର ତରଙ୍ଗ ॥୧୨୭
ଯଥାଲାଭରେ ଯେ ସନ୍ତୋଷ ।
ଅଧର୍ମେ ନ କରନ୍ତି ଆଶ ॥୧୨୮
ସାଧୁ-ସୁହୃଦ ସର୍ବଭୂତ ।
ସକଳ ଜୀବହିତେ ରତ ॥୧୨୯
ହୃଦେ ନ ବହେ ଅହଙ୍କାର ।
ସମଦରଶୀ ଚିତ୍ତ ଯାର ॥୧୩୦
ତାହାଙ୍କୁ ମୋର ନମସ୍କାର ।
ବୋଲନ୍ତି ବ୍ରହ୍ମାଣ୍ଡଠାକୁର ॥୧୩୧
ଭୋ ବିପ୍ର କୁଶଳ ତୁମ୍ଭର ।
କହ କଲ୍ୟାଣ କ୍ଷେମସାର ॥୧୩୨
ରାଜାଏ ବସନ୍ତି ଜଗତେ ।
ପ୍ରଜା ପାଳନ୍ତି ଧର୍ମମତେ ॥୧୩୩
ଯାହାର ରାଜ୍ୟେ ପ୍ରଜାଜନେ ।
ସୁଖେ ବଞ୍ଚନ୍ତି ରାତ୍ରଦିନେ ॥୧୩୪
ସେ ରାଜା ମୋର ବଡ଼ ପ୍ରିୟ ।
ଭୋ ବିପ୍ର ଆଗମନ କହ ॥୧୩୫
କେବଣ କାର୍ଯ୍ୟେ ଉପଗତ ।
ଏଡ଼େ ଦୁର୍ଗମ ଜିଣି ପଥ ॥୧୩୬
ଗୁପତ ନୋହେ ଯେବେ ବାଣୀ ।
ଭୋ ବିପ୍ର କହ ଏହିକ୍ଷଣି ॥୧୩୭
ମୁଁ ଅବା କି କହିବି ତୋତେ ।
ସଂଶୟ ଫେଡ଼ି କହ ମୋତେ ॥୧୩୮

ଏମନ୍ତ କୃଷ୍ଣବାକ୍ୟ ଶୁଣି ।
ବ୍ରାହ୍ମଣ ବୋଲେ ସାଧୁବାଣୀ ॥୧୩୯
ରୁକ୍ମିଣୀ କହିଛନ୍ତି ଯାହା ।
ଭୋ ନାଥ ଶୁଣ ଚଉବାହା ॥୧୪୦

ରୁକ୍ମିଣୀ ଉଚାବ

ହେ କୃଷ୍ଣ ଭୁବନସୁନ୍ଦର ।
ଶୁଣିଲି ଗୁଣକର୍ମ ତୋର ॥୧୪୧
ତୋହର ଗୁଣ-କର୍ମ-ଯଶ ।
ଯାହାର ଶ୍ରବଣେ ପ୍ରବେଶ ॥୧୪୨
ହରେ ଅଶେଷ ଜନ୍ମ ପାପ ।
ଆଧ୍ୟାତ୍ମଆଦି ତିନିତାପ ॥୧୪୩
ଚକ୍ଷୁ ବହନ୍ତି ଯେତେ ପ୍ରାଣୀ ।
ତୋହର ରୂପ ପରିମାଣି ॥୧୪୪
ଅଖିଳ ଅର୍ଥଲାଭ ବଳେ ।
ଲଭନ୍ତି ରୂପ ଦେଖି ଡ଼ୋଳେ ॥୧୪୫
ସେ ରୂପ କର୍ଣ୍ଣପଥେ ଶୁଣି ।
ମୋହର ଚିତ୍ତ ଚକ୍ରପାଣି ॥୧୪୬
ଲାଜ ଉପେକ୍ଷି ତୋ ଶରଣେ ।
ପଶିଲା ଅଭୟ-ଚରଣେ ॥୧୪୭
କେଉଁ ଯୁବତୀ ଦେହ ବହି ।
ପିତା ଜନନୀ କୋଳେ ଥାଇ ॥୧୪୮
ବିବାହକାଳେ କନ୍ୟା ହୋଇ ।
ଉତ୍ତମକୁଳେ ଜନ୍ମ ପାଇ ॥୧୪୯
ଶୀଳ ସ୍ୱରୂପ ବିଦ୍ୟାବଳ ।
ଦ୍ରବିଣ ତେଜେ ଆତ୍ମା ତୁଲ୍ୟ ॥୧୫୦
ସୁଧୀର ସାଧୁ କୁଳବତୀ ।
ତୋହର ପ୍ରାୟ ଥାଉଁ ପତି ॥୧୫୧
ହେ ନରସିଂହ ପୂର୍ଣ୍ଣକାମ ।
ଜନଲୋଚନ ଅଭିରାମ ॥୧୫୨
ଶ୍ରବଣେ ଶୁଣି ତୋର ଭାବ ।
ସେ କିମ୍ବା ଆନକୁ ବରିବ ॥୧୫୩
ଏବେ ବରିଲି ତୋତେ ମୁହିଁ ।
ମନ ବଚନ ତନୁ ଦେଇ ॥୧୫୪
ତୋହର ଅର୍ଥେ ଏ ଶରୀର ।
ବିଚାରି ମୋତେ ତ୍ରାହି କର ॥୧୫୫

Dr. Sudhanshu Sekhar Mishra

ଭୋ ନାଥ ବୀରଙ୍କର ବୀର ।
ମୁଁ ତୋ ଆମିଷ ଉପହାର ॥୧୫୬
ନିକଟେ ଶିଶୁପାଳ ଆସି ।
ନ ବସୁ ତୋର ବଳିଗ୍ରାସି ॥୧୫୭
ସିଂହର ବଳି ତଳେ ଚାହିଁ ।
ଶୃଗାଳ ଯେସନେ ଧାମଇଁ ॥୧୫୮
ମୁଁ ଯେବେ ପୂର୍ବଜନ୍ମଗତେ ।
ତପ ଆରାଧି ନାନାମତେ ॥୧୫୯
ତଡ଼ାଗ ଇଷ୍ଟ ଯଜ୍ଞ ଦାନ ।
ନିୟତ ତୀର୍ଥ ବ୍ରତ ଧର୍ମ ॥୧୬୦
ଦେବତା ବିପ୍ର ଗୁରୁ ପୂଜି ।
ନିରତେ ବିଷ୍ଣୁପାଦେ ଭଜି ॥୧୬୧
ଏ ଯେବେ ପ୍ରମାଣ ମୋହର।
ବେଗେ ଆସିବେ ଚକ୍ରଧର ॥୧୬୨
ମୋହର ହସ୍ତ ଆଗ ଧରୁ ।
ଦଇବ ଏହି ବର କରୁ ॥୧୬୩
ଦମଘୋଷର ପୁତ୍ର ଆଦି ।
ଯେତେ ଅଛନ୍ତି ଅପରାଧୀ ॥୧୬୪
ଏମାନେ ନ ପାଇବେ ମୋତେ ।
ପ୍ରମାଣ ଯେବେ ବେଦପଥେ ॥୧୬୫
ରାତ୍ର ପାହିଲେ ଅଧିବାସ ।
ହୋଇବ ମଙ୍ଗଳ-ଦିବସ ॥୧୬୬
ତୁ ନାଥ ସାଜି ନନ୍ଦିଘୋଷେ ।
ଘେନାଇ ଯଦୁବଳ ପାଶେ ॥୧୬୭
ମଙ୍ଗଳକାଳେ ଗୋପ୍ୟ ହୋଇ ।
ଆସିବ ନ ଜାଣିବେ କେହି ॥୧୬୮
ଗୁପତେ ଗ୍ରାମ ଅନ୍ତେ ଥାଇ ।
ମୋର ଗମନେ ବାଟ ଚାହିଁ ॥୧୬୯
ସଂଗ୍ରାମେ ରାଜା ଶିଶୁପାଳ ।
ମୋର ପିତାର ଯେତେ ବଳ ॥୧୭୦
ଏହାଙ୍କ ଗର୍ବ ନାଶ କରି ।
ତୁ ମୋତେ ବଳେ ନିଅ ହରି ॥୧୭୧
ରାକ୍ଷସମତେ ବିଭାକର ।
କିଣିଲା ସେବକୀ ମୁଁ ତୋର ॥୧୭୨
ତୁ ନାଥ ଭାଳୁ ଅବା ଚିତ୍ତେ ।
ମୁଁ ତୋତେ ଆଣିବି କେମନ୍ତେ ॥୧୭୩
ରାଜାର ଅନ୍ତଃପୁରେ ଥାଉ ।
ତୋତେ ପାଇବି ମୁହିଁ କାହୁଁ ॥୧୭୪
ତହିଁକି କହିବି ଉପାୟ ।
ଶୁଣିମା ପ୍ରଭୁ ଦେବରାୟ ॥୧୭୫
ଆମ୍ଭର ଅଛି କୁଳାଚାର ।
କନ୍ୟାକୁ କରନ୍ତି ବାହାର ॥୧୭୬
ଭବାନୀ ପୂଜିବା ନିମନ୍ତେ ।
ଅମ୍ବିକା ଗୃହେ ଗ୍ରାମପ୍ରାନ୍ତେ ॥୧୭୭
ଯାତ୍ରା-ଉତ୍ସବେ ମୁହିଁ ଯିବି ।
ଭବାନୀ ଚରଣେ ପୂଜିବି ॥୧୭୮
ପଥେ ଆସିବା ବେଳେ ମୋତେ ।
ପ୍ରଜାଏ ଦେଖିବେ ସମସ୍ତେ ॥୧୭୯
ଥିବି ମୁଁ ନାରୀଙ୍କର ମେଳେ ।
ସେଠାରୁ ନିଅ ମୋତେ ବଳେ ॥୧୮୦
ଯାହାର ପାଦପଦ୍ମଧୂଳି ।
ମହତଜନେ ଶିରେ ବୋଳି ॥୧୮୧
ନୀଳଲୋହିତ ଜଟେ ଆଶ ।
ଏଣେ ହୋଇବ ତମ ନାଶ ॥୧୮୨
ସେ ପାଦପଦ୍ମ ମୁହିଁ ଯେବେ ।
ଲଭି ନ ପାରିବି ପ୍ରସ୍ତାବେ ॥୧୮୩
ବ୍ରତେ ଶୁଖାଇ ପଞ୍ଚପ୍ରାଣ ।
ନିଶ୍ଚେ ଛାଡ଼ିବି ନାରାୟଣ ॥୧୮୪
ଏମନ୍ତେ ଶତେଜନ୍ମ ଯାଏଁ ।
ପ୍ରାଣ ଛାଡ଼ିବି ତୋର ପାୟେ ॥୧୮୫
ସତ୍ୟବଚନ ଏ ମୋହର ।
ତୁ କି ନ ଜାଣୁ ମାୟାଧର ॥୧୮୬
ବ୍ରାହ୍ମଣ କୃଷ୍ଣମୁଖ ଚାହିଁ ।
ରୁକ୍ମିଣୀ ସନ୍ଦେଶ କହଇ ॥୧୮୭
ବୋଲଇ ଯୋଡ଼ି ବେନିକର ।
ଯେ ତୋର ଇଚ୍ଛା ଏବେ କର ॥୧୮୮
କହଇ ଦାସ ଜଗନ୍ନାଥ ।
କୃଷ୍ଣ ଧଇଲେ ବିପ୍ର ହସ୍ତ ॥୧୮୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ରୁକ୍ମିଣୀ
ଉଦ୍‌ବାହ ପ୍ରସ୍ତାବେ
ଷଟ୍‌ପଞ୍ଚାଶତ୍ ଅଧ୍ୟାୟଃ ॥

---

Dr. Sudhanshu Sekhar Mishra

## ସପ୍ତପଞ୍ଚାଶତ୍ ଅଧ୍ୟାୟ

ଶୁକ ଉବାଚ

ଭୀଷ୍ମକ-ନନ୍ଦିନୀର ବାଣୀ ।
ଗୋବିନ୍ଦ ବିପ୍ରମୁଖୁଁ ଶୁଣି ॥୧
ବ୍ରାହ୍ମଣ ହସ୍ତ କରେ ଧରି ।
ହସି ବୋଲନ୍ତି ନରହରି ॥୨
ମୋହର ତହିଁ ଚିତ୍ତେ ଦେଇ ।
ରୁକ୍ମିଣୀ ନିଦ୍ରା ନ ଲଭଇ ॥୩
ମୋହର ମନ ସେହିମତ ।
ରାତ୍ରେ ନୁହଇ ନିଦ୍ରାଗତ ॥୪
ଜାଣଇଁ ତାର ଜ୍ୟେଷ୍ଠ ଭାଇ ।
ମୋର ବିଭାରେ ରୋଷ ହୋଇ ॥୫
ଅନେକ ନିନ୍ଦା ମୋତେ କଲା ।
ଶିଶୁପାଳକୁ ସେ ବରିଲା ॥୬
ମୁହିଁ ଆଣିବି ତାକୁ ହରି ।
ସଂଗ୍ରାମେ ରିପୁବଳ ମାରି ॥୭
ସେ କନ୍ୟା ଅନନ୍ଦିତା ଦେହୀ ।
ଅନଳ ଶିଖା ପ୍ରାୟ ହୋଇ ॥୮
ମୋହର ପାଦେ ଧ୍ୟାନ କରି ।
ହୃଦରେ ମୋତେ ଅଛି ବରି ॥୯
ଏମନ୍ତେ ମଦନଗୋପାଳ ।
ଜାଣିଣ ବିଭାଲଗ୍ନ ବେଳ ॥୧୦
ଦାରୁକେ ରାଇ ଦାମୋଦର ।
ବୋଇଲେ ରଥ ସଜ କର ॥୧୧
ଶୁଣି ଦାରୁକ ଯାଇ ବେଗେ ।
ରଥ ସାଜିଲା ଅତି ବ୍ୟଗେ ॥୧୨
ଶୈବ୍ୟ ସୁଗ୍ରୀବ ମେଘପୁଷ୍ପ ।
ଯୋଚିଲା ବଳାହକ ଅଶ ॥୧୩
ଗୋବିନ୍ଦ ନିକଟେ ମିଳିଲା ।
କରଅଞ୍ଜଳି ଶିରେ ଦେଲା ॥୧୪
ଆନନ୍ଦେ ବିପ୍ର କର ଧରି ।
ରଥେ ବସିଲେ ନରହରି ॥୧୫
ଦାରୁକ ରଥ ବାହେ ବଳେ ।
ଶୂନ୍ୟେ ଗମିଲେ ରାତ୍ରକାଳେ ॥୧୬
କୁଣ୍ଡୀ ନଗରେ ଏକାରାତ୍ରେ ।
ମିଳିଲେ ଅଳପ ପ୍ରଭାତେ ॥୧୭
ଭୀଷ୍ମକ ପୁତ୍ରବଶ ହୋଇ ।
ଶିଶୁପାଳକୁ ବିଭାପାଇଁ ॥୧୮
ମଙ୍ଗଳକାର୍ଯ୍ୟେ ଦେଇ ଚିତ୍ତ ।
ପୁରମଣ୍ଡିଲା ନରନାଥ ॥୧୯
ଚନ୍ଦନଛେରା ରାଜପଥେ ।
ମାର୍ଜନା କରି ନାନାମତେ ॥୨୦
ଚିତ୍ର ପକାତା ଧ୍ୱଜ ଦେଇ ।
ପଲ୍ଲବ ତୋରଣ ଲମ୍ବାଇ ॥୨୧
ବିବିଧ ଅଳଙ୍କାର ଭରି ।
ରାଜ୍ୟରେ ଯେତେ ନରନାରୀ ॥୨୨
ଗନ୍ଧଚନ୍ଦନ ପୁଷ୍ପସାର ।
ବିବିଧ ନାନା ଉପହାର ॥୨୩
ନାରୀ ପୁରୁଷେ ସଜ ହୋଇ ।
ଗୃହେ ଅଗୁରୁ ଧୂପ ଦେଇ ॥୨୪
ମଙ୍ଗଳ ଶ୍ରାଦ୍ଧେ ବିପ୍ରଜନ ।
ରାଜା କରାଇଲେ ଭୋଜନ ॥୨୫
ପିତୃଦେବତା ପୂଜା ସାରି ।
ବ୍ରାହ୍ମଣେ ଶାନ୍ତିବାକ୍ୟ କରି ॥୨୬
ମଙ୍ଗଳଘୋଷ ନାନାବାଦ୍ୟ ।
ବିପ୍ରେ ପଢନ୍ତି ଶୁଭବେଦ ॥୨୭
ଯୁବତୀଗଣେ ଗୀତରସ ।
ଦ୍ୱିଜେ କରନ୍ତି ଅଧିବାସ ॥୨୮
ମଙ୍ଗଳଗୀତେ ବଧୂଜନ ।
କନ୍ୟାକୁ କରାଇଲେ ସ୍ନାନ ॥୨୯
କୁଙ୍କୁମ ଲେପି କଳେବରେ ।
ମଙ୍ଗଳସୂତ୍ର ବାନ୍ଧି କରେ ॥୩୦
ଉତ୍ତମ ଅଳଙ୍କାର ଦେଇ ।
ମଙ୍ଗଳନାଦେ ଗୀତ ଗାଇ ॥୩୧
ବ୍ରାହ୍ମଣେ ବେଦମନ୍ତ୍ରେ ଦୀକ୍ଷା ।
କନ୍ୟାକୁ କରାଇଲେ ରକ୍ଷା ॥୩୨
ଗୋଚରେ ଗ୍ରହଶାନ୍ତି ଅର୍ଥେ ।
ଅଥର୍ବବେଦୀ ପୁରୋହିତେ ॥୩୩
ହୋମ କରାଇ ଗ୍ରହ ଶାନ୍ତି ।
ଆନନ୍ଦମନେ ମହୀପତି ॥୩୪
ହେମ ରଜତ ବସ୍ତ୍ର ତିଳ ।
ଗୁଡ଼େ ମିଶାଇଣ ପ୍ରବାଳ ॥୩୫
ସୁବର୍ଣ୍ଣଶୃଙ୍ଗ ଧେନୁ ଦେଇ ।
ବିପ୍ରଙ୍କୁ ସନ୍ତୋଷ କରାଇ ॥୩୬
ବେଦ ଆଗମ ପଥଭେଦି ।
ରାଜା ଜାଣଇ ସର୍ବବିଧି ॥୩୭
ଏମନ୍ତେ ରାଜା ଦମଘୋଷ ।
ଉତ୍ସବ କଲା ନିଜ ଦେଶ ॥୩୮
ପୁତ୍ରର ଶୁଭଅର୍ଥେ ରାଜା ।
ପିତୃଦେବତା କଲା ପୂଜା ॥୩୯
ମଙ୍ଗଳସୂତ୍ର ବାନ୍ଧି ହସ୍ତେ ।
ବସିଲା ଶିଶୁପାଳ ରଥେ ॥୪୦
ମତ୍ତକୁଞ୍ଜର ଅଶ୍ୱରଥୀ ।
ପଦାତିବୃନ୍ଦେ ନରପତି ॥୪୧
ଘେନାଇ ଚତୁରଙ୍ଗ ବଳ ।
ବାଜଇ ବାଦ୍ୟ ସୁମଙ୍ଗଳ ॥୪୨
କୁଣ୍ଡୀନଗରେ ବେଗେ ଗଲା ।
ହରଷେ ଦମଘୋଷ ବଳା ॥୪୩
ଭୀଷ୍ମକ ଆସି କିଛି ଦୂର ।
ପ୍ରବେଶ କରାଇଲା ପୁର ॥୪୪
ଉତ୍ତମ ଗୃହେ ବାସ ଦେଇ ।
ପୂଜିଲା ଆସନେ ବସାଇ ॥୪୫
ଶିଶୁପାଳର ପକ୍ଷ ହୋଇ ।
ରାଜାଏ ମିଳିଛନ୍ତି ଯାଇ ॥୪୬
ଶାଲ୍ୱ ମଗଧ ନରନାଥ ।
ବିକଟ ଦନ୍ତ ବିଦୂରଥ ॥୪୭
ପୌଣ୍ଡ୍ରକ ଆଦି ଯେତେ ଥିଲେ ।
ସହସ୍ର ସଂଖ୍ୟାରେ ମିଳିଲେ ॥୪୮
ସ୍ୱଭାବେ କୃଷ୍ଣର ବଇରି ।
ଶିଶୁପାଳର ହିତକାରୀ ॥୪୯
ବୋଲନ୍ତି ରାମକୃଷ୍ଣ ଆସି ।
ଗୁପତେ ସଭାମଧ୍ୟେ ବସି ॥୫୦

Dr. Sudhanshu Sekhar Mishra

ନପୁଣ କନ୍ୟା ହରି ନ୍ୟନ୍ତି ।
ଏମନ୍ତ ଭାଳି କଲେ ଭ୍ରାନ୍ତି ।।୫୧
ମିଳିଲେ ଦଣ୍ଡ ସଜକରି ।
ଯୁଦ୍ଧେ ମାରିବା ରାମହରି ।।୫୨
ଶିଶୁପାଳକୁ କନ୍ୟାଦେଇ ।
ଧରଣୀ ମଧେ ଯଶ ଥୋଇ ।।୫୩
ଏମନ୍ତ ଭାଳି ଦୃଢ କଲେ ।
ବିଦର୍ଭ ଦେଶରେ ମିଳିଲେ ।।୫୪
ଯେ ଯାହା ଅଙ୍ଗ ବଳ ଘେନି ।
ଶବଦେ କମ୍ପାଇ ମେଦିନୀ ।।୫୫
ଏକଥା ଶୁଣି ବଳରାମ ।
ବିପକ୍ଷ ନୃପତି ଆଗମ ।।୫୬
କୃଷ୍ଣ ଯେ ଗଲେ ଏକା ରଥେ ।
ନପୁଣ ଗୋଳ ହୋଏ ରଥେ ।।୫୭
ଏମନ୍ତ ମନେ ଶଙ୍କା କରି ।
ସଜ ହୋଇଲେ ହଳଧାରୀ ।।୫୮
ଅନେକ ବଳ ଘେନି ପାଶେ ।
ଧାଇଁଲେ ଭ୍ରାତୃସ୍ନେହ ବଶେ ।।୫୯
ଏମନ୍ତ ଶୁଣ ନୃପମଣୀ ।
ଭବନେ ଭୀଷ୍ମକ ନନ୍ଦୀନୀ ।।୬୦
କୃଷ୍ଣ ଆଗମେ ଆଶା କରି ।
ଜୀବନେ ନ ପାରଇ ଧରି ।।୬୧
ନ ଦେଖି ବିପ୍ର ଆଗମନ ।
କାତରେ କମ୍ପଇ ଜୀବନ ।।୬୨
କାନ୍ଦଇ ଦଇବ ସୁମରି ।
ଧରଣୀ ଗତେ ଶିର ତାଡି ।।୬୩
ରାତ୍ର ପାଇଲେ ବିଭା ମୋର ।
ବ୍ରାହ୍ମଣ ନଇଲା ମୋହର ।।୬୪
ବ୍ରାହ୍ମଣ ନଇଲା ମୋହର ।
କେମନ୍ତେ ଧରିବି ଶରୀର ।।୬୫
ସେ ହରି କୃପା-ପୟୋନିଧି ।
ମୁଁ ଅବା ପାପୀ ଅପରାଧୀ ।।୬୬
ନିନ୍ଦିତକର୍ମ ଦେଖି ମୋର ।
କୋପ କି କଲେ ଚକ୍ରଧର ।।୬୭
ବିବାହ ଅର୍ଥେ ମୋ ନଇଲେ ।
ଦଇବ ମୋତେ ମାୟା କଲେ ।।୬୮

ଈଶ୍ୱରସେବା ମୋର ନାହିଁ ।
କୃଷ୍ଣ ଦେଖିବି ଅବା କାହିଁ ।।୬୯
ମୋରେ ବା ବିମୁଖ ଭବାନୀ ।
ଅନେକ ଅପରାଧ ଘେନି ।।୭୦
ଏମନ୍ତେ କୃଷ୍ଣ ଆଗମନେ ।
ନିଶ୍ଚଳ-ଧ୍ୟାନ କଲା ମନେ ।।୭୧
ଅଶ୍ରୁପୂରିତ ବେନିଡୋଳେ ।
ନିରାଶେ ରହିଲା ନିଶ୍ଚଳେ ।।୭୨
କୃଷ୍ଣ ଆଗମେ ମନ ଦେଲା ।
ଏମନ୍ତେ ଶୁଭ ପ୍ରକାଶିଲା ।।୭୩
ସ୍ଫୁରଇ ବାମନେତ୍ର ତାର ।
ଜାନୁ କମ୍ପଇ ଥରହର ।।୭୪
କୃଷ୍ଣ ଯେ ଯାଉଥିଲେ ପଥେ ।
ବ୍ରାହ୍ମଣ ଘେନି ନିଜ ରଥେ ।।୭୫
ବୋଇଲେ ବିପ୍ରମୁଖ ଚାହିଁ ।
କହ ରୁକ୍ମିଣୀ ଆଗେ ଯାଇ ।।୭୬
ଅଇଲୁ ବୋଲି ବେଗେ କହ ।
ନୋହିଲେ ଛାଡ଼ିବଟି ଦେହ ।।୭୭
ଗୋବିନ୍ଦବାଣୀ ଶୁଣି କର୍ଣ୍ଣେ ।
ବ୍ରାହ୍ମଣ ଗଲା ତୋଷମନେ ।।୭୮
ରାଜାର ଭୁବନେ ପଶିଲା ।
ରୁକ୍ମିଣୀ ନିକଟେ ମିଳିଲା ।।୭୯
ନୟନେ ଦେଖି ବିପ୍ରବର ।
ଚଞ୍ଚଳଚିତ୍ତ କଲା ସ୍ଥିର ।।୮୦
ବ୍ରାହ୍ମଣ ହରଷ ବଦନ ।
ଦେଖି ରୁକ୍ମଣୀ ତୋଷମନ ।।୮୧
ଶୁଭ ଲକ୍ଷଣ ଦେଖି ତାର ।
ଚରଣେ କଲେ ନମସ୍କାର ।।୮୨
ବେନିଚରଣେ କର ଦେଇ ।
ପୁଚ୍ଛଇ ବିପ୍ରମୁଖ ଚାହିଁ ।।୮୩
ବ୍ରାହ୍ମଣ କହେ ଶୁଭବାଣୀ ।
ବିଜୟ କଲେ ଚକ୍ରପାଣି ।।୮୪
ସତ୍ୟ ବଚନ ମୋତେ କହି ।
କୃଷ୍ଣ ଅଇଲେ ତୋର ପାଇଁ ।।୮୫
ଲିଭିବୁ ତ୍ରୈଲୋକ୍ୟଠାକୁର ।
ଧନ୍ୟ ଗୋ ଜନନୀ ତୋହର ।।୮୬

କୃଷ୍ଣ ଆଗମ କଥା ଶୁଣି ।
ଆନନ୍ଦସାଗରେ ରୁକ୍ମିଣୀ ।।୮୭
ବୁଡି ହୋଇଲା ଛନଛନ ।
ନିକଟେ ନ ଦେଖଇ ଜନ ।।୮୮
ଅନ୍ୟ ପ୍ରିୟକୁ ନ ଗଣଇ ।
ବ୍ରାହ୍ମଣ ଚରଣେ ପୂଜଇ ।।୮୯
ଏମନ୍ତେ ଶୁଣ ନରନାଥେ ।
କୃଷ୍ଣ ରହିଲେ ଏକା ରଥେ ।।୯୦
ଦୂତେ ଯେ ଜଗିଥିଲେ ପଥେ ।
କୃଷ୍ଣଙ୍କୁ ଦେଖିଲେ ସେ ରଥେ ।।୯୧
ରାମର ସଙ୍ଗେ ଯଦୁବଳ ।
ଶୁଣିଲେ ମୁଖରାବ ଗୋଳ ।।୯୨
ବେଗେ ଭୀଷ୍ମକ ଆଗେ ଯାଇ ।
କହିଲେ ଶିରେ କର ଦେଇ ।।୯୩
ଶୁଣ ଭୀଷ୍ମକ ମହୀପାଳ ।
ଶୁଣିଲୁ ମୁଖରାବ ଗୋଳ ।।୯୪
ରାମଗୋବିନ୍ଦ ସୈନ୍ୟ ଘେନି ।
ନଗ୍ରେ ପଶିଲେ ଏହିକ୍ଷଣି ।।୯୫
ଅନେକ ବଳ ତାଙ୍କ ସଙ୍ଗେ ।
ବିବାହ ଦେଖିବାର ରଙ୍ଗେ ।।୯୬
ଆଗେ ଅଇଲେ ବେନିଭାଇ ।
କହିଲୁ ଆମ୍ଭ ଦୋଷ ନାହିଁ ।।୯୭
ଶୁଣି ସଂଭ୍ରମେ ନୃପବର ।
ଘେନାଇ ନାନା ଉପହାର ।।୯୮
ସୁବର୍ଣ୍ଣ ପାତ୍ରେ ମଧୁରସ ।
ନୀଳଦୁକୂଳ ପୀତବାସ ।।୯୯
ବିବିଧ ଉପହାର ଘେନି ।
ଭାବେ ପୂଜିଲା ଭାଇ ବେନି ।।୧୦୦
ଉତ୍ତମପୁରେ ଦେଲା ସ୍ଥାନ ।
ପୂଜିଲା ଯଥା ବିଧିବିଧାନ ।।୧୦୧
ରାଜାଏ ଆସିଛନ୍ତି ଯେତେ ।
ପୂଜିଲା ଯଥାବିଧି ମତେ ।।୧୦୨
କୃଷ୍ଣଆଗମ କଥା ଶୁଣି ।
ବିଦର୍ଭପୁରେ ଯେତେ ପ୍ରାଣୀ ।।୧୦୩
ସକଳେ ନିଜପୁର ଛାଡ଼ି ।
ଧାଇଁଲେ ରାଜପଥ ମାଡ଼ି ।।୧୦୪

Dr. Sudhanshu Sekhar Mishra

କୃଷ୍ଣଙ୍କୁ ଦେଖି ବେନିନେତ୍ରେ ।
ଅଞ୍ଜଳି କରି ନେତ୍ର-ପାତ୍ରେ ॥୧୦୫
ଗୋବିନ୍ଦ-ମୁଖ-ପଦ୍ମ-ରସ ।
ପିବନ୍ତେ ନୋହେ ମନତୋଷ ॥୧୦୬
ଆନନ୍ଦେ ବୋଲନ୍ତି ଯୁବତୀ ।
ରୁକ୍ମିଣୀ ସଦୃଶ ଏ ପତି ॥୧୦୭
କନ୍ୟା ସଦୃଶ ଏହୁ ବର ।
ତୁଳନା ନାହିଁ ତିନିପୁର ॥୧୦୮
ଆମ୍ଭର ପୁଣ୍ୟବଳ ଯେତେ ।
ତେଣୁ ଈଶ୍ୱର ତୋଷଚିତ୍ତେ ॥୧୦୯
ପ୍ରସନ୍ନ ହୋନ୍ତୁ ଶୂଳଧର ।
ରୁକ୍ମିଣୀ ଲଭୁ ଏହୁ ବର ॥୧୧୦
ଏମନ୍ତ ବୋଲୁ ବୋଲୁ ଜନ ।
ଶୁଭିଲା ନାନାବାଦ୍ୟ ସ୍ୱନ ॥୧୧୧
ରୁକ୍ମିଣୀ ଘେନି ବିପ୍ରନାରୀ ।
ସଙ୍ଗେ ଅଛନ୍ତି ପରିବାରୀ ॥୧୧୨
ଆବୋରି ଚତୁରଙ୍ଗ ବଳ ।
ଶୂନ୍ୟେ ଦେଖନ୍ତି ଦିଗପାଳ ॥୧୧୩
ବୀରେ ଆବୋରି ଚଉପାଶେ ।
ଗମନ୍ତି ରିପୁବଳ ତ୍ରାସେ ॥୧୧୪
ବେନିଚରଣେ ଚାଲେ ପଥେ ।
ଅମ୍ବିକା ପୂଜିବା ନିମନ୍ତେ ॥୧୧୫
କୃଷ୍ଣଚରଣେ ମନ ଦେଇ ।
ଚାଲଇ ଚଉଦିଗ ଚାହିଁ ॥୧୧୬
ମାତାଙ୍କ ସଙ୍ଗେ ଚାଲେ ପଥେ ।
କଥା ନ କହି ମୌନବ୍ରତେ ॥୧୧୭
ରାଜପୁତ୍ରୁଷେ ଆଗସରି ।
ଚାଲନ୍ତି ନାନା ଶସ୍ତ୍ର ଧରି ॥୧୧୮
ମୃଦଙ୍ଗ ଶଙ୍ଖ ତୁରୀ ଭେରୀ ।
ଶୁଭଇ ଦଶଦିଗ ପୂରି ॥୧୧୯
ଶତ ସହସ୍ର ପରିବାରୀ ।
କରେ ଚାମର ଛନ୍ତି ଧରି ॥୧୨୦
ଆଗେ ଖଟନ୍ତି ବେଶ୍ୟାନାରୀ ।
ଚଳନ୍ତି ରଙ୍ଗେ ନୃତ୍ୟକରି ॥୧୨୧
ବ୍ରାହ୍ମଣନାରୀ କନ୍ୟା ସଙ୍ଗେ ।
ପୁଷ୍ପଚନ୍ଦନ ରତ୍ନ ଅଙ୍ଗେ ॥୧୨୨

ସୂତ ମାଗଧ ସ୍ତୁତି ରଙ୍ଗେ ।
ନାନା ସୁବାଦ୍ୟ ଗୀତ ସଙ୍ଗେ ॥୧୨୩
କନ୍ୟା ଆବୋରି ଯୂଥ ଯୂଥ ।
ସୁନ୍ଦର ଦିଶେ ରାଜପଥ ॥୧୨୪
ଦେବୀଭୁବନେ ଯାଇ ମିଳି ।
କାମିନୀ ଦ୍ୟନ୍ତି ହୁଳହୁଳି ॥୧୨୫
କର ଚରଣ ମୁଖ ଧୋଇ ।
ରୁକ୍ମିଣୀ ହସ୍ତେ ପୁଷ୍ପ ଦେଇ ॥୧୨୬
ଦେବୀ ଅଗ୍ରତେ ନେଇ କରି ।
ପାଶେ ବସିଲେ ବିପ୍ରନାରୀ ॥୧୨୭
ବୟସେ ଅଧିକ ଖଟନ୍ତି ।
ସକଳ ବିଧି ସେ ଜାଣନ୍ତି ॥୧୨୮
କନ୍ୟାର ସ୍ୱାମୀ ହିତ ଅର୍ଥେ ।
ପୂଜା କରାଇ ନାନାମତେ ॥୧୨୯
ବୋଇଲେ ନମସ୍କାର କର ।
ଯେମନ୍ତ ବାଞ୍ଛା ମନେ ତୋର ॥୧୩୦
ଆପଣା ସ୍ୱାମୀସୁଖ ଅର୍ଥେ ।
ବର ତୁ ମାଗ ଶୁଦ୍ଧଚିତ୍ତେ ॥୧୩୧
ଶୁଣି ରୁକ୍ମିଣୀ କରଯୋଡ଼ି ।
କହେ ଅମ୍ବିକା ପାଦେ ପଡ଼ି ॥୧୩୨
ନମଇ ଅମ୍ବିକାର ପାଦେ ।
ସକଳ - ସୁଖ-ବରପ୍ରଦେ ॥୧୩୩
ପୁତ୍ର ଦୁହିତା ସୁଖ ଘେନି ।
ଈଶ୍ୱରି ହୁଅ ବରଦାନୀ ॥୧୩୪
ଭୋ ମାତ ତୋହର ପ୍ରସାଦେ ।
ବର ମାଗଇ ଅପ୍ରମାଦେ ॥୧୩୫
କୃଷ୍ଣ ମୋହର ବର ହେଉ ।
ତା ପାଦ ସେବି ଦିନ ଯାଉ ॥୧୩୬
ପବିତ୍ରଜଳ ଗନ୍ଧାକ୍ଷତ ।
ବସ୍ତ୍ରଭୂଷଣ ନାନାମତ ॥୧୩୭
ଅନେକ ଉପହାର ଦେଇ ।
ଧୂପ ପ୍ରଦୀପ ତଳେ ଥୋଇ ॥୧୩୮
ବ୍ରାହ୍ମଣନାରୀ ସୁଲକ୍ଷଣୀ ।
ଦେବୀପ୍ରସାଦ ଦେଲେ ଆଣି ॥୧୩୯
ପ୍ରସାଦ ଘେନି କନ୍ୟା ହସ୍ତେ ।
ନାରୀଙ୍କି ଦେଲା ନାନାମତେ ॥୧୪୦

ଶେଷେ ଘେନିଲା ନିଜ ଶିରେ ।
ନମିଲା ନାରୀଙ୍କ ପୟରେ ॥୧୪୧
ମଉନବ୍ରତ କଲା ଦୂର ।
ମନ୍ଦିରୁ ହୋଇଲା ବାହାର ॥୧୪୨
ସଖୀଏ ବାମପାଶେ ଥିଲା ।
ତାହାର କନ୍ଧେ ହସ୍ତ ଦେଲା ॥୧୪୩
ରତ୍ନମୁଦ୍ରିକା ବିରାଜଇ ।
ଚଞ୍ଚଳେ ଚଉଦିଗେ ଚାହିଁ ॥୧୪୪
ଅଂଶେ କମଳା ଅବତାର ।
ରୂପେ କି ଦେବା ପଟାନ୍ତର ॥୧୪୫
କିଏ ସ୍ୱରୂପେ ଦେବମାୟା ।
ବୀରମୋହିନୀ ରୂପ ଏହା ॥୧୪୬
ଦଇବ ଭିଆଇଲା ବାମା ।
ଜଗମୋହିନୀ ଏ ସୁଷମା ॥୧୪୭
ନବଯୁବତୀ ମଧ୍ୟେ ବାମା ।
ଚିତ୍ର କି କଲା ବିଶ୍ୱକର୍ମା ॥୧୪୮
ରତ୍ନକୁଣ୍ଡଳ କର୍ଣ୍ଣେ ଶୋହେ ।
ତିନିଭୁବନ ମନମୋହେ ॥୧୪୯
କଟିମେଖଳା କଣ୍ଠମାଳ ।
ନାନାରତନେ କି ଉଜ୍ଜ୍ୱଳ ॥୧୫୦
ହୃଦୟ ଫୁଟି ବେନି ସ୍ତନ ।
କୁନ୍ତଳେ ଶଙ୍କିତ ନୟନ ॥୧୫୧
ଅଳପହାସେ ମୁଖରଙ୍ଗ ।
ଓଷ୍ଠ ପାଚିଲା ଫଳ ନିମ୍ବ ॥୧୫୨
କୁନ୍ଦକଳିକା ଦନ୍ତପନ୍ତି ।
ଯେହ୍ନେ ସିନ୍ଦୂରେ ଗଜମୋତି ॥୧୫୩
ରାଜହଂସର ପ୍ରାୟେ ଧୀରେ ।
ଚାଲଇ ନୂପୁର ପୟରେ ॥୧୫୪
ବିବାହଯାତ୍ରା ଛଳେ ଆସି ।
ଅନେକ ରାଜା ଥିଲେ ବସି ॥୧୫୫
ଏମନ୍ତେ ରୁକ୍ମିଣୀ ବଦନ ।
ଦେଖି ହାରିଲେ ନିଜ ଜ୍ଞାନ ॥୧୫୬
ରୁକ୍ମିଣୀ ରୂପ ଦେଖି ବୀରେ ।
ଜ୍ଞାନ ହାରିଲେ କାମଜ୍ୱରେ ॥୧୫୭
ଗଜ ତୁରଙ୍ଗ ରଥେ ଥାଇ ।
ରୁକ୍ମିଣୀ ରୂପକୁ ଅନାଇଁ ॥୧୫୮

Dr. Sudhanshu Sekhar Mishra

ହସ୍ତୁ ପଡ଼ିଲା ଶସ୍ତ୍ର ଝଡ଼ି ।
ଅଜ୍ଞାନ ହୋଇ ତଳେ ପଡ଼ି ॥୧୫୯
ଏମନ୍ତେ ଦେବୀଯାତ୍ରା ଛଳେ ।
ଚାଲଇ ଯୁବତୀଙ୍କ ମେଳେ ॥୧୬୦
ଆପଣ ଦେହର ଯେ କାନ୍ତି ।
ଦେଖାଇ ଲୋଡ଼ଇ ଶ୍ରୀପତି ॥୧୬୧
ଗଗନେ ଟେକିଣ ବଦନ ।
ଚିନ୍ତଇ କମଳଲୋଚନ ॥୧୬୨
କେତେହେଁ ଦୂର ପୁଣି ଯାଇ ।
ବିକଳେ ଦଶଦିଗେ ଚାହିଁ ॥୧୬୩
ନୟନେ ନିରେଖି ସଧୀରେ ।
ଶୂନ୍ୟେ ଦେଖିଲା ଚକ୍ରଧରେ ॥୧୬୪
ନୟନେ ଅନଳକୁ ଚାହିଁ ।
ପତଙ୍ଗ ଯେହ୍ନେ ପଡ଼େ ଧାଇଁ॥୧୬୫
ଗଗନେ ଦେଖି କୃଷ୍ଣରଥ ।
ବେଗେ ଟେକିଲା ବେନିହସ୍ତ॥୧୬୬
ରଥେ ଉଠିଲା ପ୍ରାୟ ମଣି ।
କର ଧଇଲେ ଚକ୍ରପାଣି ॥୧୬୭
ନେଇଣ ବସାଇଲେ କୋଳେ ।
ଶୂନ୍ୟେ ଦେଖନ୍ତି ଦିଗପାଳେ ॥୧୬୮
ମାଗଧ ଆଦି ରିପୁ ଯେତେ ।
ସକଳ ଦୃଷ୍ଟି କୃଷ୍ଣରଥେ ॥୧୬୯

ଗରୁଡ଼ଧ୍ୱଜ ରଥେ ଆଣି ।
କୋଳେ ବସାଇ କମଳିନୀ ॥୧୭୦
କ୍ଷତ୍ରିୟବଳ ତୁଚ୍ଛ କରି ।
ସାରଙ୍ଗଧନୁ କରେ ଧରି ॥୧୭୧
ବିଜୟ କଲେ ଦାମୋଦର ।
ସଙ୍ଗେ ସାତ୍ୟକି ହଳଧର ॥୧୭୨
ଯାଦବବଳ ଅପ୍ରମିତ ।
ଗହଳେ ନ ଦିଶଇ ପଥ ॥୧୭୩
ଶୃଗାଳ ମଧ୍ୟୁ ମାଂସଭାଗ ।
ବଳେ ହରଇ ଯେହ୍ନେ ସିଂହ ॥୧୭୪
ଦେଖି ଚକିତ ସର୍ବଜନ ।
ଥିଲେ ଯେ ଅନେକ ରାଜନ ॥୧୭୫
ଏକ ଆରେକ ମୁଖ ଚାହିଁ ।
ବଦନୁ ବାକ୍ୟ ନ ସ୍ଫୁରଇ ॥୧୭୬
ଶୁଭଇ ନେଲା ନେଲା ବାଣୀ ।
ଚହଳେ କମ୍ପଇ ଧରଣୀ ॥୧୭୭
ଘଡ଼ିକେ ଜାଣିଲେ ସକଳେ ।
କନ୍ୟା ହରିଲେ କୃଷ୍ଣ ବଳେ ॥୧୭୮
କୃଷ୍ଣର ରିପୁରାଜା ଯେତେ ।
ବିବିଧ ଶସ୍ତ୍ର ଘେନି ହସ୍ତେ ॥୧୭୯
ଶିଶୁପାଳର ସଭାତଳେ ।
ପ୍ରତିଜ୍ଞା କଲେ ସେହୁବଳେ ॥୧୮୦

ଆମ୍ଭେ ଆଣିବୁ ତୋର ନାରୀ ।
ସଂଗ୍ରାମେ ରାମକୃଷ୍ଣ ମାରି ॥୧୮୧
ଏବେ ହୋଇଲା ଯଶ ନାଶ ।
ସମ୍ଭ୍ରମେ ଛାଡ଼ନ୍ତି ନିଃଶ୍ୱାସ ॥୧୮୨
ବୋଲନ୍ତି ଅଧର କାମୋଡ଼ି ।
ଆପଣା ଶିରେ କର ତାଡ଼ି ॥୧୮୩
ଆମ୍ଭର ବଳ ଧିକ୍ ହେଉ ।
ଗୃଧ୍ର ଶୃଗାଳ ମାଂସ ଖାଉ ॥୧୮୪
ଗୋପାଳେ ନେଲେ ବଳ କରି ।
ଆମ୍ଭର ମଧ୍ୟୁ କନ୍ୟା ହରି ॥୧୮୫
ଶୃଗାଳ ସିଂହଭାଗ ନେଲା ।
ଏମନ୍ତ ଶବଦ ଶୁଭିଲା ॥୧୮୬
ରୁକ୍ମିଣୀ ହରଣ ଏ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୧୮୭
ବୋଲଇ ଦାସ ଜଗନ୍ନାଥ ।
ସଜ ହୋଇଲେ ନୃପଯୂଥ ॥୧୮୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ରୁକ୍ମିଣୀହରଣଂ
ନାମ ସପ୍ତପଞ୍ଚାଶତ୍ ଅଧ୍ୟାୟଃ ॥

---

## ଅଷ୍ଟପଞ୍ଚାଶତ୍ ଅଧ୍ୟାୟ

ଶୁକ ଉବାଚ

କହନ୍ତି ଶୁକ ରାଜା ଆଗେ ।
ଏମନ୍ତ ବୋଲି ଚାରିଦିଗେ ॥୧
ଯେ ଯାହା ବାହାନ ଆବୋରି ।
ଅଙ୍ଗେ ସକଳେ ସ୍ନେହା ଭରି ॥୨
ସବୁ ସଇନ୍ୟ କରି ଆଗେ ।
ଧାଇଁଲେ ଶସ୍ତ୍ର ଘେନି ବେଗେ ॥୩
ବୋଲନ୍ତି ମାର ମାର ବାଣୀ ।
ଯାଦବବଳ ତାହା ଶୁଣି ॥୪
ଥିଲେ ଯେ ରାମ କୃଷ୍ଣ ପାଖେ ।
ଆବୋରି ରହିଲେ ସମ୍ମୁଖେ ॥୫

କୋପେ କରନ୍ତି ଗୁଣଘୋଷ ।
ଶବଦେ କମ୍ପେ ଦଶଦିଶ ॥୬
ଅଶ୍ୱ କୁଞ୍ଜର ରଥେ ଥାଇ ।
ନିଜ କୋଦଣ୍ଡେ ଗୁଣ ଦେଇ ॥୭
ଶର ବିନ୍ଧନ୍ତି ମେଘ ପ୍ରାୟେ ।
ପଡ଼ଇ ଯାଦବଙ୍କ ଦେହେ ॥୮
ଗିରିଶିଖରେ ଘୋଟି ଘନେ ।
ବୃଷ୍ଟି କରନ୍ତି ଯେହ୍ନେ ବନେ ॥୯
ଯାଦବବଳେ ବାଣ ବୃଷ୍ଟି ।
ଦେଖି ରୁକ୍ମିଣୀ ଭୟଦୃଷ୍ଟି ॥୧୦

ଲଜ୍ଜାରେ ଜଡ଼ିତ ନୟନ ।
ଚାହିଁଲା କୃଷ୍ଣର ବଦନ ॥୧୧
ବାଣବରଷଣେ ଅନାଇଁ ।
କମ୍ପଇ କୃଷ୍ଣକୋଳେ ଥାଇ ॥୧୨
ହାସବଦନେ ଭାଗଗ୍ରାହୀ ।
ବୋଲନ୍ତି କନ୍ୟାମୁଖ ଚାହିଁ ॥୧୩
କିମ୍ପା ସୁନ୍ଦରୀ ପାଉ ତ୍ରାସ ।
ହେଲେ ତୋ ରିପୁ ଯିବେ ନାଶ॥୧୪
ମୋହର ବଳ ଦେଖ ଏବେ ।
ଅକ୍ଷୟ ଅଟନ୍ତି ଯାଦବେ ॥୧୫

Dr. Sudhanshu Sekhar Mishra

ଏମନ୍ତ ବୋଲୁ ବୋଲୁ ଭାବେ ।
ସଂଗ୍ରାମେ ଧାଇଁଲେ ଯାଦବେ ।।୧୬
ଗଦ ସଙ୍କରଷଣ ଆଦି ।
ଯାଦବବଳେ ଏ ପ୍ରସିଦ୍ଧି ।।୧୭
କରିଣ ବାଣବୃଷ୍ଟି ଘୋର ।
ଦିବସ କଲେ ଅନ୍ଧକାର ।।୧୮
ରଥକୁଞ୍ଜର ଅଶ୍ୱ ତୁଳେ ।
ତୀକ୍ଷ୍ଣ ନାରାଚେ ସଂହାରିଲେ ।।୧୯
ରିପୁଙ୍କ ଶିର କୋଟି କୋଟି ।
ଛିଡ଼ି ପଡ଼ିଲେ ମହୀ ଘୋଟି ।।୨୦
କନ୍ଧ ସହିତେ ମୁଣ୍ଡମାଳ ।
ଲୋଟନ୍ତି କିରୀଟ କୁଣ୍ଡଳ ।।୨୧
ଗଦା ଖଡ଼ଗ ବାଣ ହସ୍ତେ ।
ଛିଡ଼ି ପଡ଼ିଲେ ମହୀଗତେ ।।୨୨
ହସ୍ତ ହୃଦୟ ଜାନୁ ଛିଡ଼ି ।
ପଡ଼ିଣେ ରଣଭୂମି ମାଡ଼ି ।।୨୩
ତୁରଙ୍ଗ ଅଶ୍ୱତର ନାଗ ।
ଉଷ୍ଟ୍ର ଗର୍ଦ୍ଦଭ ଶିର ଭାଗ ।।୨୪
ମନୁଷ୍ୟ ଶିର ସଙ୍ଗେ ପଡ଼ି ।
ଭଲେ ନ ଦିଶେ ବସୁନ୍ଧରୀ ।।୨୫
ଦେଖି ଯାଦବବଳ ତେଜ ।
ରଣେ ଭାଜିଲେ ସର୍ବରାଜା ।।୨୬
ମାଗଧ ଆଦି ସର୍ବବୀରେ ।
ମିଳିଲେ ବିଦର୍ଭ ନଗରେ ।।୨୭
ଦେଖିଲେ ଛାୟାବେଦୀ ମଧେ ।
ବର ବସିଛି କନ୍ୟା ସଧେ ।।୨୮
ଦାରାହରଣ ଶୋକ ଦୁଃଖେ ।
ଧୂଳି ପଡ଼ିଲା ପ୍ରାୟ ମୁଖେ ।।୨୯
ଲଜାରେ ଶୁଖିଲା ଅଧର ।
ସୁନ୍ଦରପଣ ହେଲା ଦୂର ।।୩୦
ଛାଡ଼ିଲା ବିବାହର ଆଶ ।
ଲାଜେ ନ ଚାହେଁ ଦଶଦିଶ ।।୩୧
ବଚନ ନ ସ୍ଫୁରଇ ମୁଖେ ।
ରାଜାଏ ବସି ତାର ପାଖେ ।।୩୨
ବୋଲନ୍ତି ଶୁଣ ନରରାୟ ।
ମନେ ନ କର ଦୁଃଖ ଭୟ ।।୩୩

ବିମନ ଛାଡ଼ ବେଗେ ତୁହି ।
ଶୁଣ ତୁ ଯାହା ଆମ୍ଭେ କହି ।।୩୪
ଅର୍ଜିଲା କର୍ମ ଭୁଞ୍ଜେ ଦେହୀ ।
ଏହାର ପ୍ରିୟାପ୍ରିୟ ନାହିଁ ।।୩୫
ଏ ଦେହୀ ଈଶ୍ୱର ଆୟତ୍ତ ।
ସ୍ୱକର୍ମ ପଥେ ଆତଯାତ ।।୩୬
କାଷ୍ଠପିତୁଳୀ ହସ୍ତେ ନେଇ ।
କୁହୁକୀ ଯେମନ୍ତ ନଚାଇ ।।୩୭
ପ୍ରତିମା ନାଚେ ସେହିମତ ।
ସେ ଯେହ୍ନେ କୁହୁକୀ ଆୟତ୍ତ ।।୩୮
ଈଶ୍ୱର ଆୟତ୍ତ ଏ ଦେହୀ ।
ଏହାର ଦୁଃଖ ସୁଖ ନାହିଁ ।।୩୯
ଜରା କହଇ ସାଧୁବାଣୀ ।
ବିଧାତା ଗତିକୁ ନ ଜାଣି ।।୪୦
ଶୁଣ ମୋହର କର୍ମବାଣୀ ।
ବଳ ଦେଇଣ ଅକ୍ଷୌହିଣୀ ।।୪୧
ସପତଦଶ ବାର ହାରି ।
ବେଳେ ଜିଣିଲି ରାମ ହରି ।।୪୨
ଏହା ମୁଁ ଅନୁଭବ କରି ।
ଜୟ ଅଜୟ ନ ବିଚାରି ।।୪୩
ହରଷ ଶୋକେ ନାହିଁ ଇଚ୍ଛା ।
ନିଜ କରମଫଳ ଦୀକ୍ଷା ।।୪୪
ଜୀବଟି କର୍ମେ ଆତଯାତ ।
କାଳର କ୍ରୀଡ଼ା ଏ ଜଗତ ।।୪୫
ଦେଖ ଏ କାଳର ମହିମା ।
ଆମ୍ଭେ ସକଳେ ବୀର ସିନା ।।୪୬
ହାରିଲୁ ନିଜ କର୍ମ ବଳେ ।
ଯାଦବେ ଜିଣିଲେ ସମରେ ।।୪୭
ରିପୁଙ୍କ କାଳ ବଳୀୟାର ।
ଅଯଶ ଆମ୍ଭ କର୍ମ ଫଳ ।।୪୮
ଆମ୍ଭର ପୁଣ୍ୟଯଶ କାଳେ ।
ରିପୁ ଜିଣିବା ଅବହେଳେ ।।୪୯
ଏମନ୍ତ ପ୍ରବୋଧ-ବଚନେ ।
ହରଷ କଲା ତାର ମନେ ।।୫୦
ନିଜ ନଗରେ ତାକୁ ନେଇ ।
ଅନେକ ପ୍ରବୋଧନ କହି ।।୫୧

ରାଜାଏ ଦୁଃଖ ଶୋକ ମନେ ।
ମିଳିଲେ ଯେ ଯାହା ଭୁବନେ ।।୫୨
ରୁକ୍ମି ଯେ କୃଷ୍ଣର ବଇରୀ ।
ଶିଶୁପାଳକୁ ଥିଲା ବରି ।।୫୩
କନ୍ୟା ଗୋବିନ୍ଦ ହରି ନେଲେ ।
ଶତ୍ରୁଙ୍କ ଗର୍ବ ନାଶ କଲେ ।।୫୪
ମାଗଧ ଆଦି ମହୀପାଳେ ।
ଯେ ଯାହା ଗୃହେ ଯିବାବେଳେ ।।୫୫
ସମସ୍ତ ରାଜା ମଧ୍ୟେ ଥାଇ ।
ପ୍ରତିଜ୍ଞା କଲା ଗର୍ବ ବହି ।।୫୬
ଅଭେଦ ସ୍ନେହା ଦେହେ ଘେନି ।
ପିତାର ବଳ ଅକ୍ଷୌହିଣୀ ।।୫୭
ସଙ୍ଗତେ ଘେନି ମହାବୀର ।
ରାଜାଙ୍କୁ ବୋଲଇ ଉତ୍ତର ।।୫୮
ତୁମ୍ଭେତ ହୋଇଲ ନିରେଖ ।
ମୋର ମହିମା ଆଜ ଦେଖ ।।୫୯
ସମରେ ରାମକୃଷ୍ଣ ମାରି ।
ବନ୍ଦୀରୁ ରୁକ୍ମିଣୀ ଉଦ୍ଧରି ।।୬୦
ଆଜ ଆଣିବି ବାହୁବଳେ ।
ଯଶ ମୋ ଥିବ ମହୀତଳେ ।।୬୧
ଏହା ମୁଁ କରି ନ ପାରିଲେ ।
ବାହୁଡ଼ି ନ ଆସିବି ଭଲେ ।।୬୨
ସତ୍ୟବଚନ ଏ ମୋହର ।
ନଗରୁ ହୋଇଲା ବାହାର ।।୬୩
ରଥେ ବସିଲା ବେଗେ ଯାଇ ।
ବୋଲେ ସାରଥି ମୁଖ ଚାହିଁ ।।୬୪
ରଥ ତୁ ବାହା ବେଗେ କରି ।
ଯହିଁ ଅଛନ୍ତି ରାମହରି ।।୬୫
ରାମ-ଗୋବିନ୍ଦ ଯୁଦ୍ଧେ ମାରି ।
ରୁକ୍ମିଣୀ ଆଣିବି ଉଦ୍ଧରି ।।୬୬
ତୀକ୍ଷ୍ଣ ନାରାଚ ଦେଖ ମୋର ।
ହେଳେ ଜିଣିବି ଯଦୁବଳ ।।୬୭
ଗୋପାଳେ ବଳେ ବଳୀୟାର ।
ଆଜ କରିବି ଗର୍ବ ଚୂର ।।୬୮
ବଳେ ହରିଲା ମୋ ବହେଣୀ ।
ଆଜ ଆଣିବି ଶିର ହାଣି ।।୬୯

Dr. Sudhanshu Sekhar Mishra

ମୋତେ ଦେଖାଏ ବଳ-ଗର୍ବ ।
ଅଜାତି ଗଉଡ଼ ସ୍ୱଭାବ ॥୭୦
ଏମନ୍ତ ଗର୍ବ ମନେ ବହି ।
ହରିମହିମା ନ ଜାଣଇ ॥୭୧
ବେଗେ ଧାଇଁଲା ଏକା ରଥେ ।
ଡ଼ାକଇ ରହ ରହ ପଥେ ॥୭୨
ଗୁଣେ ବସାଇ ତିନିବାଣ ।
ଶ୍ରବଣ ଯାଏଁ ଟାଣି ଗୁଣ ॥୭୩
ବିନ୍ଧିଲା ଗୋବିନ୍ଦ ଉପରେ ।
ଡ଼ାକଇ କୁତ୍ସିତ ବେଭାରେ ॥୭୪
ଯାଦବ-କୁଳପାଂଶୁ ତୁହି ।
ମୋର ସଂଗ୍ରାମେ ଯିବୁ କାହିଁ ॥୭୫
କ୍ଷଣେକ ରହ ରଣ ମଧେ ।
ରୁକ୍ମିଣୀ ହରିଲୁ ଯେ ସଧେ ॥୭୬
କାକ ଯେସନେ ମାୟା କରି ।
ଯଜ୍ଞର ଚରୁ ନିଏ ହରି ॥୭୭
ମନ୍ଦ ମାୟାବୀ କୂଟଯୋଦ୍ଧି ।
ଗୋପାଳେ ହୀନ ଦୁଷ୍ଟବୁଦ୍ଧି ॥୭୮
ଆଜ ଜିଣିବି ତୋତେ ହାଣି ।
ଯାବତ ନ ଛାଡୁ ରୁକ୍ମିଣୀ ॥୭୯
ଶୁଣି ହସିଲେ ଦାମୋଦର ।
ସାରଙ୍ଗଧନୁ ଧରି କର ॥୮୦
ଈଷିତେ ଷଡ଼ବାଣ ବିନ୍ଧି ।
ତାହାର ହସ୍ତୁ ଧନୁ ଛେଦି ॥୮୧
ପୁଣ ବିନ୍ଧିଲେ ଅଷ୍ଟବାଣ ।
ଲୀଳା ମାତ୍ରକେ ନାରାୟଣ ॥୮୨
ରଥର ଚାରି ଅଶ୍ୱ ହାଣି ।
ପୁଣି ବିନ୍ଧିଲେ ବାଣ ତିନି ॥୮୩
ରଥସାରଥୀ ମୁଣ୍ଡ କାଟି ।
ତିନି ନାରାଚେ ଧ୍ୱଜ ଲୋଟି ॥୮୪
ଦେଖିଣ ରୁକ୍ମୀ ବହି ମନ୍ୟୁ ।
ହସ୍ତେ ଘେନିଲା ଆର ଧନୁ ॥୮୫
ସେ ଧନୁ କାଟିଲେ ମୁରାରି ।
ଗୁଣ ଟଙ୍କାରନାଦ କରି ॥୮୬
ପୁଣ ଘେନିଲା ଆନ ଧନୁ ।
ତାହା ଛେଦିଲେ ଦେବ କାହ୍ନୁ ॥୮୭

ପରିଘ ଖଡ୍‌ଗ ଶୂଳ ଚର୍ମ ।
ଶକ୍ତି ତୋମର ତୀକ୍ଷ୍ଣ ମୁନ ॥୮୮
ଯେତେ ଆୟୁଧ କରେ ଧରି ।
ସବୁ ଛେଦିଲେ ନରହରି ॥୮୯
ତକ୍ଷଣେ ରଥୁଁ ଓହ୍ଲାଇଲା ।
କୋପେ ଖଡ଼ଗ ହସ୍ତେ ନେଲା ॥୯୦
କୃଷ୍ଣଙ୍କୁ ମାରିବାର ଆଶେ ।
ଡ଼େଇଁ ଉଠିଲା ନନ୍ଦିଘୋଷେ ॥୯୧
କୋପେ ଗର୍ଜଇ କୃଷ୍ଣ ପାଖେ ।
ପବନ ଯେସନେ ପାବକେ ॥୯୨
ଦେଖି ଗୋବିନ୍ଦ ବେଗେ ଉଠି ।
ତିଳ ପ୍ରମାଣେ ଶସ୍ତ୍ର କାଟି ॥୯୩
କୋପେ ଉଞ୍ଚାଇ ଅସିବର ।
କେଶ ଧଇଲେ ସେ ରୁକ୍ମିର ॥୯୪
କୃଷ୍ଣର କୋପମୁଖ ଦେଖି ।
ଭୟେ କମ୍ପଇ ଶଶୀମୁଖୀ ॥୯୫
ଭାଇର ପ୍ରାଣନାଶ ଜାଣି ।
ଚରଣେ ପଡ଼ିଲା ରୁକ୍ମିଣୀ ॥୯୬
କାତରେ କରଇ କାରୁଣ୍ୟ ।
ଭୋ ନାଥ ଯୋଗେଶ୍ୱର ଶୁଣ ॥୯୭
ଅନନ୍ତ ମହିମା ତୋହର ।
ଦୋଷ ଉପେକ୍ଷ ଦେବ ତାର ॥୯୮
ଜଗତପତି ନାରାୟଣ ।
ମୁଁ ତୁମ୍ଭ ଚରଣେ ଶରଣ ॥୯୯
ନ ମାର ମୋର ଜ୍ୟେଷ୍ଠଭ୍ରାତ ।
ପରମାନନ୍ଦ ଜଗନ୍ନାଥ ॥୧୦୦
ଶୁକ ବୋଲନ୍ତି ଶୁଣ ରାୟେ ।
ଦୟା ବସିଲା କୃଷ୍ଣଦେହେ ॥୧୦୧
ଚାହିଁଲେ ରୁକ୍ମିଣୀ ଶରୀର ।
ଭୟେ କମ୍ପଇ ଥରହର ॥୧୦୨
ଶୋକେ ଶୁଖିଲା ଦେବୀ ଓଷ୍ଠ ।
ବାକ୍ୟ ନ ସ୍ଫୁରେ ରୁନ୍ଧି କଣ୍ଠ ॥୧୦୩
କାତରେ ହେମକଣ୍ଠୀମାଳ ।
ପଡ଼ିଲା କୃଷ୍ଣପାଦତଳେ ॥୧୦୪
ରୁକ୍ମିଣୀ ଉଠି କରଯୋଡ଼ି ।
ପୁଣି କୃଷ୍ଣର ପାଦେ ପଡ଼ି ॥୧୦୫

ଅଶେଷ ବ୍ରହ୍ମାଣ୍ଡ ଠାକୁର ।
ରଖିବା ଜୀବନ ଏହାର ॥୧୦୬
ଏମନ୍ତ ଦେଖି କନ୍ୟାଦୁଃଖ ।
କରୁଣା କଲେ ପଦ୍ମମୁଖ ॥୧୦୭
ଆକର୍ଷି ଧରି ତାର କର ।
ବସ୍ତ୍ରେ ବାନ୍ଧିଲେ ଦାମୋଦର ॥୧୦୮
ବିମାନ ଖମ୍ବେ ନେଇ ବାନ୍ଧି ।
ବେନିଚରଣ ତାର ଛନ୍ଦି ॥୧୦୯
ତୀକ୍ଷ୍ଣ ନାରାଚେ ହୃଷୀକେଶ ।
ବିରୂପ କଲେ ତାର ବେଶ ॥୧୧୦
ସାତପ୍ରକାରେ କେଶ ଧରି ।
କୋପେ କାଟିଲେ ଦେବହରି ॥୧୧୧
ସଙ୍ଗତେ ଯଦୁବଳ ଥିଲେ ।
ରୁକ୍ମୀର ସୈନ୍ୟଙ୍କୁ ବେଢିଲେ ॥୧୧୨
ତକ୍ଷଣେ ସର୍ବ କଲେ ନାଶ ।
ଅଳପ ରହେ ଅବଶେଷ ॥୧୧୩
ନଳିନୀବନେ ଗଜେ ପଶି ।
କ୍ଷଣକେ ଯାନ୍ତି ଯେହ୍ନେ ଧ୍ୱଂସି ॥୧୧୪
ସୈନ୍ୟ ହୋଇଲେ ବଳ କ୍ଷୀଣ ।
ରୁକ୍ମି ଯେ ପଡ଼ିଲା ବନ୍ଧନ ॥୧୧୫
ରଥ ନିକଟେ ରାମ ଯାଇ ।
ବୋଲନ୍ତି କୃଷ୍ଣମୁଖ ଚାହିଁ ॥୧୧୬
ବନ୍ଧନ ଫେଡ଼ାଇ ବହନ ।
ଚାହିଁଲେ ରୁକ୍ମୀର ବଦନ ॥୧୧୭
ବିରୂପ ଦେଖି ତାର ଦେହୀ ।
ରାମ ବୋଲନ୍ତି କୃଷ୍ଣେ ଚାହିଁ ॥୧୧୮
ହେ କୃଷ୍ଣ କଲୁ ଦୁଷ୍ଟପଣ ।
ଆପଣା ବନ୍ଧୁରେ କଷଣ ॥୧୧୯
ଅସାଧୁ କର୍ମ ଏ ତୋହର ।
ନିନ୍ଦା କରିବେ ତିନିପୁର ॥୧୨୦
ବିରୂପ କଲୁ କେଶ-ବେଶ ।
ନାଶିଲୁ ସୁହୃଦ ବିଶ୍ୱାସ ॥୧୨୧
ନ ଜାଣି କଲୁ ଏଡ଼େ କାର୍ଯ୍ୟ ।
ମରଣୁଁ ଅଧିକ ଏ ଲାଜ ॥୧୨୨
ଏମନ୍ତ କହି ବଳରାମ ।
ଚାହିଁଲେ ରୁକ୍ମିଣୀ ବଦନ ॥୧୨୩

Dr. Sudhanshu Sekhar Mishra

ବୋଲନ୍ତି ରେବତୀରମଣ ।
କୋମଳ ମଧୁର ବଚନ ।।୧୨୪
ଜ୍ୟେଷ୍ଠଭ୍ରାତର ରୂପ ଦେଖି ।
କିମ୍ପାଇ ମନେ ହୁଅ ଦୁଃଖୀ ।।୧୨୫
ଆମ୍ଭଙ୍କୁ ନିନ୍ଦିତ ନ କର ।
ଦଇବ ବଳ ବଳୀୟାର ।।୧୨୬
କର୍ମ ସେ ସୁଖ ଦୁଃଖ ଦେଇ ।
ପୁରୁଷ ଅବଶ୍ୟ ଭୁଞ୍ଜଇ ।।୧୨୭
କୃଷ୍ଣଙ୍କୁ ଚାହିଁ ହଳଧର ।
କହନ୍ତି ସଂସାର ବେଭାର ।।୧୨୮
ମରଣତୁଲ୍ୟ ଦୋଷ ଯେବେ ।
ବନ୍ଧୁ କରଇ ମୂଢ଼ଭାବେ ।।୧୨୯
ତାହାଙ୍କୁ ନ କରିବ ନାଶ ।
ଆପଣା ଦୋଷେ ତା ଅଯଶ ।।୧୩୦
ତାହାର ଲାଜେ ସେ ମରଇ ।
ପୁଣି କହନ୍ତି କନ୍ୟା ଚାହିଁ ।।୧୩୧
କ୍ଷତ୍ରିୟ ଧର୍ମର ଏ ଗତି ।
ଯାହା ସଂଚିଲା ପ୍ରଜାପତି ।।୧୩୨
ଅତି ଦାରୁଣ ତମଘୋରେ ।
ଭାଇକି ଭାଇ ବଳେ ମାରେ ।।୧୩୩
ପୁଣି ଗୋବିନ୍ଦ ମୁଖ ଚାହିଁ ।
କହନ୍ତି ସ୍ୱଧର୍ମ ଦେଖାଇ ।।୧୩୪
ରାଜ୍ୟଧରଣୀ ବିତ୍ତ ଆଶେ ।
ମାନ ସମ୍ପଦ ତେଜେ ବଶେ ।।୧୩୫
ଆପଣା ଅର୍ଥେ ମତ୍ତ ହୋଇ ।
ପ୍ରାଣୀ ପୀଡ଼ନ୍ତି ଗର୍ବ ବହି ।।୧୩୬
ତୋର ବିଷମବୁଦ୍ଧି ଚିତ୍ତେ ।
ମୁହିଁ ଦେଖିଲି ସର୍ବମତେ ।।୧୩୭
ରୁକ୍ମିଣୀମୁଖ ଚାହିଁ ପୁଣି ।
ବୋଲନ୍ତି ପ୍ରଭୁ ହଳପାଣି ।।୧୩୮
ଶତ୍ରୁର ଅମଙ୍ଗଳ ଦେଖି ।
ଆପଣା ଚିତ୍ତେ ହେଉ ସୁଖୀ ।।୧୩୯
ସୁହୃଦ ସ୍ନେହେ ମୂର୍ଖ ପଣ୍ଡୁ ।
ଭଲଙ୍କୁ ମନ୍ଦ ପ୍ରାୟ ମଣୁ ।।୧୪୦
ତାର ଉଚିତ ଦଣ୍ଡ ଦେଖି ।
ଆପଣା ମନେ ହେଉ ଦୁଃଖୀ ।।୧୪୧

ଦଇବ ମାୟାବଳେ ଜନ ।
ଆତ୍ମାରେ କଳ୍ପଇ ଅଜ୍ଞାନ ।।୧୪୨
ଆତ୍ମାରେ ଭେଦ ସେ କରନ୍ତି ।
ଉଦାସୀ ଶତ୍ରୁ ମିତ୍ର ହୋନ୍ତି ।।୧୪୩
ସକଳ ଦେହେ ଆତ୍ମା ଏକ ।
ଅଜ୍ଞାନୀଜନଙ୍କୁ ଅନେକ ।।୧୪୪
ଯେହ୍ନେ ଗଗନ ଆଉ ଜ୍ୟୋତି ।
ଅନେକ ମତେ ଦୃଶ୍ୟ ହୋନ୍ତି ।।୧୪୫
ଜନ୍ମ ମରଣ ପଥେ ଦେହୀ ।
ଦ୍ରବ୍ୟ ଇନ୍ଦ୍ରିୟ ଗୁଣ ବହି ।।୧୪୬
ଆତ୍ମା ଯେ ମୋହଜଡ଼ ହୋଇ ।
ଜନ୍ମମରଣେ ଭ୍ରମୁ ଥାଇ ।।୧୪୭
ଆତ୍ମା ନିର୍ଗୁଣ ନିରଞ୍ଜନ ।
ସଂଯୋଗ ବିଯୋଗୁଁ ଏ ଭିନ୍ନ ।।୧୪୮
ଆଦି କାରଣ ଆତ୍ମା ଯେଣୁ ।
ଦୃଷ୍ଟି ରୂପକୁ ଯେହ୍ନେ ଭାନୁ ।।୧୪୯
ଜନ୍ମ ବିକାର ଷଡ଼ଗୁଣ ।
ଏ ଆଦି ପିଣ୍ଡର କାରଣ ।।୧୫୦
ଆତ୍ମାର ବିକାର ନୁହନ୍ତି ।
କଳାରେ ଚନ୍ଦ୍ର ଯେହ୍ନେ ଥାନ୍ତି ।।୧୫୧
ଅମାନିଶାରେ କଳାହୀନ ।
ବିଚାରେ ଶଶାଙ୍କ ନିର୍ଗୁଣ ।।୧୫୨
ଶୟନେ ପୁରୁଷ ଯେସନ ।
ଦେଖନ୍ତି ବିଷୟ ସ୍ୱପନ ।।୧୫୩
ବାସନାବଳେ ଅନୁଭବ ।
କରି ଲଭନ୍ତି ଯେହ୍ନେ ଭୋଗ ।।୧୫୪
ଏଣୁ ଅଜ୍ଞାନୁ ଶୋକ ଜାତ ।
ଆତ୍ମା ସେ ଶୋକ ମୋହଗ୍ରସ୍ତ ।।୧୫୫
ଏ ମାୟା ତତ୍ତ୍ୱଜ୍ଞାନେ ହରି ।
ନିର୍ମଳଜ୍ଞାନ ଚିତ୍ତେ ଧରି ।।୧୫୬
ସଂସାର ଭ୍ରମପ୍ରାୟ ଦେଖ ।
ଶୋକ ସିଂହର ଚନ୍ଦ୍ରମୁଖି ।।୧୫୭
ଏମନ୍ତେ ଶ୍ରୀରାମର ବାଣୀ ।
ଆଦରେ ଶୁଣିଲା ରୁକ୍ମିଣୀ ।।୧୫୮
ବିମନ ଛାଡ଼ି ଜ୍ଞାନ ପାଇ ।
ଶୋକ ଛାଡ଼ିଲା ରାମେ ଚାହିଁ ।।୧୫୯

କହନ୍ତି ଶୁକମୁନି ତୋଷେ ।
ରୁକ୍ମୀ ଯେ ଥିଲା ନନ୍ଦିଘୋଷେ ।।୧୬୦
କେବଳ ଅବଶେଷ ପ୍ରାଣ ।
ରଥୁଁ ଓହ୍ଲାଇଲା ରୁକ୍ମିଣ ।।୧୬୧
ବିଶେଷେ ହତବଳ ସର୍ବ ।
ହରି ଗଞ୍ଜିଲେ ତାର ଗର୍ବ ।।୧୬୨
ସଙ୍କଳ୍ପ-ଭଙ୍ଗେ ପଳାଇଲା ।
କୁଣ୍ଡୀନଗରେ ନ ପଶିଲା ।।୧୬୩
ହରିଙ୍କି ମାରିଯିବା ବେଳେ ।
ପ୍ରତିଜ୍ଞା କରିଥିଲା ବଳେ ।।୧୬୪
ଆଜ ଗୋବିନ୍ଦମୁଣ୍ଡ ହାଣି ।
ଆଣି ନ ପାରିଲେ ରୁକ୍ମିଣୀ ।।୧୬୫
କୁଣ୍ଡୀନଗରେ ନ ପଶିବି ।
ଜୀବନ୍ତେ ଯେତେକାଳ ଥିବି ।।୧୬୬
ଏମନ୍ତେ ପଶି ଘୋରବନେ ।
ବୃକ୍ଷ କଟାଇ କୋପମନେ ।।୧୬୭
ବସାଇଲା ସେ ବହୁଗ୍ରାମ ।
ନଗର ଭୋଜକଟ ନାମ ।।୧୬୮
ତହିଁ ରହିଲା ବାସକରି ।
କୃଷ୍ଣ ବଇର ମନେ ଧରି ।।୧୬୯
ରୁକ୍ମିଣୀ ଘେନି ଭଗବାନ ।
ପ୍ରବେଶ ଦ୍ୱାରକାଭୁବନ ।।୧୭୦
ସମରେ ଜିଣି ସର୍ବରାଜା ।
ଯାଦବେ କଲେ ପାଦପୂଜା ।।୧୭୧
ସ୍ତୁତି କରନ୍ତି ସୁରନର ।
ଆନନ୍ଦ ଦ୍ୱାରାବତୀପୁର ।।୧୭୨
ଗୋବିନ୍ଦ ବିଭାର ଉତ୍ସବେ ।
ପୁରମଣ୍ଡିଲେ ନାନାଭାବେ ।।୧୭୩
ଉତ୍ସବ କଲେ ସର୍ବପୁରେ ।
ବାଦ୍ୟ ବଜାଇ ପଞ୍ଚସ୍ୱରେ ।।୧୭୪
ଦ୍ୱାରକାପୁର ନରନାରୀ ।
ବିବିଧ ଅଳଙ୍କାର ଭରି ।।୧୭୫
କୃଷ୍ଣ ବିବାହେ ଉନମତ୍ତ ।
କାମିନୀ କଲେ ନୃତ୍ୟଗୀତ ।।୧୭୬
ମଙ୍ଗଳ ଦ୍ୱାରକାନଗର ।
କି ଅବା ଦେବା ପଟାନ୍ତର ।।୧୭୭

Dr. Sudhanshu Sekhar Mishra

ଧ୍ୱଜ ତୋରଣ ରତ୍ନମାଳ ।
ପୂର୍ଣ୍ଣକଳସ ସୁମଙ୍ଗଳ ॥୧୭୮
ଅଗୁରୁ ଧୂପ ଦୀପାବଳୀ ।
ପଥେ ସିଂଚନ୍ତି ଗନ୍ଧ ଗୋଳି ॥୧୭୯
ମାର୍ଜନା କରି ଦାଣ୍ଡ କକ୍ଷ ।
ଦ୍ୱାରେ ରୋପିଲେ ରମ୍ଭାବୃକ୍ଷ ॥୧୮୦
ବନ୍ଧୁବେଭାରେ ରାଜାଗଣେ ।
ଆସି ମିଳିଲେ ଜଣେ ଜଣେ॥୧୮୧
କୁରୁ ସୃଞ୍ଜୟ ଆଦି ରାଜ ।
ବିଦର୍ଭ ଯଦୁ କୁନ୍ତି ଭୋଜ ॥୧୮୨
ଆରୋହି ଘୋଟକ-ବାରଣେ ।
ପ୍ରବେଶ ଦ୍ୱାରକାଭୁବନେ ॥୧୮୩

ହସ୍ତୀଙ୍କ ମଦଜଳେ ମହୀ ।
ବରଷାକାଳ ପ୍ରାୟ ହୋଇ ॥୧୮୪
ଏକ ଆରେକ ମତ୍ତ ହୋଇ ।
ଆନନ୍ଦ କେ ପାରିବ କହି ॥୧୮୫
ମଙ୍ଗଳ କର୍ମମାନ କଲେ ।
ଗୁରୁଦେବତା ଆରାଧିଲେ ॥୧୮୬
ରୁକ୍ମିଣୀହରଣର ବାଣୀ ।
ଭରତଖଣ୍ଡ ରାଜା ଶୁଣି ॥୧୮୭
ରାଜକୁମାରୀ ଯେତେ ଛନ୍ତି ।
ଭଲେ ପାଇଲେ ମନେ ଭ୍ରାନ୍ତି ॥୧୮୮
ଦ୍ୱାରକାପୁରେ ଯେତେ ନର ।
କେ କହୁ ତପ ତାହାଙ୍କର ॥୧୮୯

ଆନନ୍ଦ କଲେ ପୁରେ ପୁରେ ।
ନୟନେ ଦେଖି କନ୍ୟାବରେ ॥୧୯୦
ଲକ୍ଷ୍ମୀମାଧବ ବିଭାକାଳେ ।
ବାନ୍ଧବେ ଯଉତୁକ ଦେଲେ ॥୧୯୧
ସେ ବରକନ୍ୟା ପାଦଗତ ।
ନମଇଁ ଦାସ ଜଗନ୍ନାଥ ॥୧୯୨

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ରୁକ୍ମିଣୀ ଉଦ୍‌ବାହେ
ଅଷ୍ଟପଞ୍ଚାଶତ୍ ଅଧ୍ୟାୟଃ ॥

---

## ଊନଷଷ୍ଠିତମ ଅଧ୍ୟାୟଃ

ନମଇଁ ନୃସିଂହ ଚରଣ ।
ଅନାଦି ପରମ କାରଣ ॥୧
କହନ୍ତି ବ୍ୟାସଙ୍କର ଶିଷ ।
ଶୁଣି ରାଜନ ମନତୋଷ ॥୨
ରୁକ୍ମିଣୀ ଘେନି ଭଗବାନ ।
ରଙ୍ଗେ ରମିଲେ କେତେଦିନ ॥୩
ଏମନ୍ତେ ବିଧାତାର ବଶେ ।
କନ୍ଦର୍ପ ନାରାୟଣ ଅଂଶେ ॥୪
ଜାତ ହୋଇଲା ଦେହ ବହି ।
ଶୁଣ ରାଜନ ମନଦେଇ ॥୫
ପୂର୍ବେ ଦେବଙ୍କ କାର୍ଯ୍ୟେ ଗଲା ।
ଈଶ୍ୱର ତପ ଭଗ୍ନ କଲା ॥୬
ଘୋର ସମାଧି ଭଗ୍ନକାଳେ ।
କଠୋର-ନୟନ-ଅନଳେ ॥୭
ଶରୀର କଲା ଭସ୍ମଯୋଗ ।
ତେଣୁ ସେ ବୋଲାଇ ଅନଙ୍ଗ ॥୮
କୃଷ୍ଣର ବୀର୍ଯ୍ୟେ ଜାତ ହୋଇ ।
ପୁଣି ପାଇଲା ନିଜ ଦେହୀ ॥୯
ତାହାର ପତ୍ନୀ ନାମ ରତି ।
ମାୟା ସଂଯୋଗେ ମାୟାବତୀ ॥୧୦
କାମଦେବର ଭସ୍ମକାଳେ ।
ଶମ୍ବର ନେଲା ତାକୁ ବଳେ ॥୧୧

ଅସୁର ଘରେ କାମସତୀ ।
ମାୟା ମୋହିଲା ମାୟାବତୀ ॥୧୨
ନିତ୍ୟେ କନ୍ୟାଏ ଜାତକରେ ।
ଶମ୍ବର ଭୋଗ କରେ ତାରେ ॥୧୩
ଦିନ ହରଇ ତହିଁ ଥାଇ ।
ଏକଥା ନ ଜାଣନ୍ତି କେହି ॥୧୪
ଏମନ୍ତେ ଶୁଣ ନରନାଥ ।
ଶମ୍ବରପୁରେ ବ୍ରହ୍ମାସୁତ ॥୧୫
ରାତ୍ରେ ମିଳିଲେ ତାର ପାଶେ ।
କହନ୍ତି ସୁହୃଦ ବିଶ୍ୱାସେ ॥୧୬
ବୋଲନ୍ତି ଅସୁରକୁ ଚାହିଁ ।
ନିଶ୍ଚିତେ ଅଛୁ କାହିଁପାଇଁ ॥୧୭
ବୋଲନ୍ତି ଅସୁରକୁ ଚାହିଁ ।
ଆଜ ଜନ୍ମିଲା ଯଦୁପୁରୀ ॥୧୮
ରୁକ୍ମିଣୀ ଗର୍ଭେ କୃଷ୍ଣବୀର୍ଯ୍ୟେ ।
ଜାତ ହୋଇଲା ମହାତେଜେ ॥୧୯
ତୁ ଯାଇ ବେଗେ କର ନାଶ ।
ସେ ତୋର ମରଣେ ବିଶ୍ୱାସ ॥୨୦
କହି ଚଳିଲେ ଶୂନ୍ୟପଥେ ।
ଅସୁର ମାରିବାର ଅର୍ଥେ ॥୨୧
ନାରଦବଚନେ ଅସୁର ।
ପଶିଲା ଦ୍ୱାରକା ନଗର ॥୨୨

କୃଷ୍ଣର ଅନ୍ତଃପୁରେ ଯାଇ ।
ଯହିଁ ରୁକ୍ମିଣୀଛନ୍ତି ଶୋଇ ॥୨୩
ପଶିଲା ମାୟାରୂପ ଧରି ।
ସୂତିକା ଘରୁ ପୁତ୍ର ହରି ॥୨୪
ଗଗନମାର୍ଗେ ଘେନିଯାନ୍ତେ ।
ଦୈତ୍ୟ ଭାଳଇ ହୃଦଗତେ ॥୨୫
ଏ ଯେବେ ମୋହର ବଇରୀ ।
ମୁଁ କିମ୍ପା ଅଛି କୋଳେ ଧରି ॥୨୬
ଏମନ୍ତ ମନେ ବିଚାରିଲା ।
ସମୁଦ୍ର ମଧ୍ୟେ ପକାଇଲା ॥୨୭
ଆହାର ପ୍ରାୟ ପାଇ ଭାବ ।
ତକ୍ଷଣେ ଗିଳିଲା ରାଘବ ॥୨୮
କୃଷ୍ଣର ବଳବୀର୍ଯ୍ୟ ଯୋଗେ ।
ଭସ୍ମ ନୋହିଲା ମୀନଗର୍ଭେ ॥୨୯
ରାଘବ ମତ୍ସ୍ୟଗଣ ମେଳେ ।
ପଡ଼ିଲା କୈବର୍ତ୍ତ ଜାଲରେ ॥୩୦
ଧୀବରଗଣେ ତାହା ପାଇ ।
ଶମ୍ବର ଆଗେ ଦେଲେ ନେଇ ॥୩୧
ଅସୁର ମୀନ ଦେଖି ହସି ।
ସେବକେ ବୋଲଇ ବିଶ୍ୱାସି ॥୩୨
ସୂପକାରଙ୍କ ପାଶେ ଦିଅ ।
ରନ୍ଧନ କର ବୋଲି କୁହ ॥୩୩

Dr. Sudhanshu Sekhar Mishra

ତକ୍ଷଣେ ମୀନ ଘେନି କରେ ।
ସେବକେ ମିଳିଲେ ଭିତରେ ॥୩୪
ମୀନ କାଟନ୍ତେ ସୂପକାରେ ।
ବାଳକ ଦେଖିଲେ ଉଦରେ ॥୩୫
ତକ୍ଷଣେ ପୁତ୍ର କୋଳେ ଲଇଁ ।
ଶମ୍ବର ଆଗେ ଦେଲେ ନେଇ ॥୩୬
ଦେଖି ସାନନ୍ଦ ମହାସୁର ।
ବୋଲଇ ଶୁଣ ସୂପକାର ॥୩୭
ଦଇବେ ମୋର ପୁତ୍ର ନାହିଁ ।
ରତି ସମୀପେ ଦିଅ ନେଇ ॥୩୮
ଏ ମୋର ହୋଇବ କୁମର ।
ତକ୍ଷଣେ ଗଲେ ସୂପକାର ॥୩୯
ରତିର କୋଳେ ନେଇ ଦେଲେ ।
ଭୋ ମାତ ପାଳ ଏହା ଭଲେ ॥୪୦
ଦେଖି ସାନନ୍ଦ ମାୟାବତୀ ।
ପୁତ୍ରପାଳନେ ଦେଲା ମତି ॥୪୧
ଦିନକୁ ଦିନ କୃଷ୍ଣବୀର୍ଯ୍ୟ ।
ବଢଇ ଅପ୍ରମିତ ତେଜ ॥୪୨
ଏମନ୍ତେ ଗଲା କେତେ ଦିନ ।
ମିଳିଲେ ବ୍ରହ୍ମାଙ୍କ ନନ୍ଦନ ॥୪୩
ଅସୁର ଅନ୍ତଃପୁରେ ପଶି ।
ରତିକି କହନ୍ତି ବିଶ୍ୱାସି ॥୪୪
ଆଦିକାରଣ କଥା କହି ।
ବୋଇଲେ ତୋର ସ୍ୱାମୀ ଏହି ॥୪୫
ଅନଙ୍ଗ କୃଷ୍ଣବୀର୍ଯ୍ୟେ ଜାତ ।
ସୂତିକା ଘରୁ ଏ ଦଇତ ॥୪୬
ହରି ଆଣନ୍ତେ ବାହୁବଳେ ।
ପଥେ କ୍ଷେପିଲା ସିନ୍ଧୁଜଳେ ॥୪୭
ଆହାର ପ୍ରାୟ ମଣି ମୀନ ।
ଗିଳିଲା କୃଷ୍ଣର ନନ୍ଦନ ॥୪୮
ବନ୍ଦୀ ପଡ଼ିଲା ମହାଜାଲେ ।
ଦଇବ ଦେଲା ତୋତେ ଭଲେ ॥୪୯
ଏହାକୁ ପାଳ ଚିତ୍ତ ଦେଇ ।
ଶମ୍ବର ସଂହାରିବ ଏହି ॥୫୧
ଲଭିବୁ ତୋର ନିଜ କାନ୍ତ ।
କହି ଚଳିଲେ ବ୍ରହ୍ମାସୁତ ॥୫୨

ସେ କାମନାରୀ ମାୟାବତୀ ।
ସ୍ୱାମୀ ସଙ୍ଗମ ମନେ ଚିନ୍ତି ॥୫୩
ଅସୁର ବୋଲେ ପାକଶାଳେ ।
ବସଇ ସୂପକାର ମେଳେ ॥୫୪
ରନ୍ଧନ କରି ଷଡ଼ରସ ।
ଅସୁର ମନ କରେ ତୋଷ ॥୫୫
ଏମନ୍ତେ ଶୁଣ ନରନାଥ ।
ଦିନକୁ ଦିନ କୃଷ୍ଣସୁତ ॥୫୬
ଶୁକଳ ପକ୍ଷେ ଚନ୍ଦ୍ର ଯେହ୍ନେ ।
ତେଜେ ବଢ଼ଇ ଦିନେ ଦିନେ ॥୫୭
ନିଜ ସ୍ୱାମୀଙ୍କି ଶିଶୁ ଦେଖି ।
ସ୍ନେହେ ପାଳଇ ଶଶୀମୁଖୀ ॥୫୮
ଅଳପଦିନେ ଯୁବା ଦେହ ।
ଦେଖି କାମିନୀ ଗଲେ ମୋହ ॥୫୯
ଭସ୍ମଅଙ୍କୁର ସେ ମଦନ ॥
ବିଶେଷେ କୃଷ୍ଣର ନନ୍ଦନ ॥୬୦
ଲୋଚନେ ଦିଶେ ପଦ୍ମତେଜ ।
ଲମ୍ବ ସୁନ୍ଦର ବେନିଭୁଜ ॥୬୧
ଅତି ସୁନ୍ଦର ରୂପ ଦେଖି ।
ଅଳପ ହାସେ ଶଶୀମୁଖୀ ॥୬୨
କଟାକ୍ଷ ନୟନେ ଅନାଇଁ ।
ଭାବେ କାମିନୀ ପ୍ରାୟ ହୋଇ ॥୬୩
ମିଳିଲା କୃଷ୍ଣସୁତ ପାଶେ ।
ସକାମେ ରତିରଙ୍ଗ ଆଶେ ॥୬୪
ଦେଖି ତାହାର ବିପରୀତ ।
ଭୟେ ଉଠିଲା କୃଷ୍ଣସୁତ ॥୬୫
ସଂଭ୍ରମେ ତାର ମୁଖ ଚାହିଁ ।
ବୋଲଇ ଶିରେ କରଦେଇ ॥୬୬
ତୁହି ମୋହର ନିଜ ମାତ ।
ଏବେ ଦେଖିଲି ବିପରୀତ ॥୬୭
ମାତାର ସ୍ନେହ ଦୂର କରି ।
କାମିନୀଭାବକୁ ଆଚରି ॥୬୮
କହ କେବଣ ଏହୁ କୃତ୍ୟ ।
ଭୟେ ବୋଲଇ କୃଷ୍ଣସୁତ ॥୬୯
ଶୁଣି ଭାଷଇ ମାୟାବତୀ ।
ତୁ ନାଥ ମୋର ନିଜ ପତି ॥୭୦

ରୁଦ୍ରନୟନେ ଭସ୍ମ ହୋଇ ।
ଅନଙ୍ଗ ନାମ ବହୁ ତୁହି ॥୭୧
କେତେହେଁ କାଳେ ନିଜତେଜେ ।
ଜାତ ହୋଇଛୁ କୃଷ୍ଣବୀର୍ଯ୍ୟେ ॥୭୨
ନାରଦମୁଖୁଁ ତୋର ବାଣୀ ।
ନିଜ ମରଣ ତଥ୍ୟ ଶୁଣି ॥୭୩
ମାୟା-ଅସୁର ବେଗେ ଗଲା ।
ଦ୍ୱାରକା ନବରେ ମିଳିଲା ॥୭୪
ସୂତିକାଘରୁ ତୋତେ ଆଣି ।
ଆମ୍ବଭଉରୀ ପ୍ରାୟ ମଣି ॥୭୫
ଲବଣଜଳେ ପକାଇଲା ।
ତୋତେ ଯେ ମୀନ ଗିଳିଥିଲା ॥୭୬
ସେ ମୀନ ଅସୁର ନିକଟେ ।
ଧୀବର ଆଣିଦେଲା ଭେଟେ ॥୭୭
ସୁଆର ଆଣି ପାକଶାଳେ ।
ଶସ୍ତ୍ରେ ଛେଦିଲା ଯେତେବେଳେ ॥୭୮
ମୀନ ଉଦରୁ ତୋତେ ପାଇ ।
ପାଳଇ ସ୍ନେହଭରେ ମୁହିଁ ॥୭୯
ନାରଦ କହିଗଲେ ଏବେ ।
ତେଣୁ ସେବଇ ପତ୍ନୀଭାବେ ॥୮୦
ମୋହର ନିଜ ନାମ ରତି ।
ଦଇବ ମିଳାଇଲା ପତି ॥୮୧
ମାୟାରେ ବଞ୍ଚାଇ ଅସୁର ।
ବସଇ ଶମ୍ବରର ପୁର ॥୮୨
ଦୁର୍ଜ୍ଜୟ ରିପୁ ଏ ତୋହର ।
ଏହାର ପ୍ରାଣ ବେଗେ ହର ॥୮୩
ଅନେକ ମାୟାଶସ୍ତ୍ର ଜାଣେ ।
ଦେବେ ଡରନ୍ତି ଏହା ରଣେ ॥୮୪
ମୋହର ମାୟା ଅଛି ଯେତେ ।
ଶମ୍ବର ନ ଜାଣଇ ତେତେ ॥୮୫
ମାୟାମୋହନ ଶସ୍ତ୍ର ଭେଦି ।
ବେଗେ ଏହାର ଶିର ଛେଦି ॥୮୬
ବିମାନେ ବସି ନାଥ ଏବେ ।
ଚାଲ ଦ୍ୱାରକା ଯିବା ବେଗେ ॥୮୭
ତୋର ଜନନୀ ଚନ୍ଦ୍ରମୁଖୀ ।
ରୁକ୍ମିଣୀଦେବୀ ବଡ଼ ଦୁଃଖୀ ॥୮୮

Dr. Sudhanshu Sekhar Mishra

ଉଦରେ ବହି ଦଶମାସ ।
ପ୍ରସବି ହୋଇଲେ ନିରାଶ ।।୮୯
କୁରରୀ ପ୍ରାୟେ ପୁତ୍ର ଶୋକେ ।
ଦିନ ବଞ୍ଚଇ ଅତିଦୁଃଖେ ।।୯୦
ଆକୁଳେ ପୁତ୍ର ଶୋକେ ଦେହି ।
ମୃତବସିକା ଯେହ୍ନେ ଗାଈ ।।୯୧
ଏମନ୍ତ କହି ତାର ପାଶେ ।
ମୋହନ ବିଦ୍ୟା ଦେଲା ତୋଷେ ।।୯୨
ସକଳ ମାୟା ଯେଣେ ଜିଣି ।।
ସ୍ୱାମୀଙ୍କି କହିଲା ତରୁଣୀ ।।୯୩
କୃଷ୍ଣନନ୍ଦନ ଶୁଣି ତାହା ।।
ଅଭ୍ୟାସ କଲା ସର୍ବମାୟା ।।୯୪
ଏମନ୍ତେ ପାହିଲା ରଜନୀ ।
କନ୍ଦର୍ପ କରେ ଗଦା ଘେନି ।।୯୫
ଶମ୍ବର ସଭାତଳେ ମିଳି ।
ଯୁଦ୍ଧେ ଡାକଇ ମହାବଳୀ ।।୯୬
ଅନେକ ନିନ୍ଦାବାକ୍ୟ ମତ ।
କହନ୍ତେ କଳି କଲା ଦୈତ୍ୟ ।।୯୭
ଅତିନିନ୍ଦିତ କଥା ଶୁଣି ।
ବେଗେ ଉଠିଲା ଶିର ଶୁଣି ।।୯୮
ଶମ୍ବର କହେ ବଳଦର୍ପେ ।
ଯଷ୍ଟି ପ୍ରହାରେ ଯେହ୍ନେ ସର୍ପେ ।।୯୯
ବଜ୍ରସମାନ ଗଦା କର ।
ଶମ୍ବର ହୋଇଲା ବାହାର ।।୧୦୦
ରୋଷେ ଲୋଚନ ତମ୍ବାପ୍ରାୟେ ।
ପିଟିଲା ପ୍ରଦ୍ୟୁମ୍ନର ଦେହେ ।।୧୦୧
କୋପେ ଛାଡ଼ିଲା ଘୋରରଡ଼ି ।
ଯେସନେ ବଜ୍ର ଘଡ଼ଘଡ଼ି ।।୧୦୨
କୃଷ୍ଣନନ୍ଦନ ଗଦା ବେଗେ ।
କୋପେ ବୁଲାଇ ଦଶଦିଗେ ।।୧୦୩
ଶମ୍ବର ଗଦା କଲା ଚୂର ।
କୋପେ ଡାକିଲା ମହାବୀର ।।୧୦୪
କନ୍ଦର୍ପ କରେ ଗଦା ଦେଖି ।
ଅସୁର ସମର ଉପେକ୍ଷି ।।୧୦୫
ଗଗନମାର୍ଗେ ଆଶ୍ରେ କରି ।
ଅନେକ ମାୟାଶସ୍ତ୍ର ଧରି ।।୧୦୬

ଶର ବରଷା ମହାଘୋର ।
କଲାକ ମାୟାବୀ ଅସୁର ।।୧୦୭
ବାଣ ବରଷେ ପୀଡ଼ା ପାଇ ।
କନ୍ଦର୍ପ ଚଉଦିଗେ ଚାହିଁ ।।୧୦୮
ନିଜ ମୋହିନୀମାୟା ସତ୍ତ୍ୱ ।
ଶମ୍ବରମାୟା କଲା ହତ ।।୧୦୯
ପୁଣି ଅସୁର ଶୂନ୍ୟଦେହା ।
ପ୍ରକାଶ କଲା ନାନାମାୟା ।।୧୧୦
ପିଶାଚ ଗନ୍ଧର୍ବ ଗୁହ୍ୟକ ।
ରାକ୍ଷସ ଉରଗ ଶୋଷକ ।।୧୧୧
ଶତସହସ୍ର ଅପ୍ରମିତ ।
ଯୁଦ୍ଧେ ପ୍ରକାଶିଲା ଦଇତ୍ୟ ।।୧୧୨
ସକଳମାୟା କୃଷ୍ଣସୁତ ।
ନିଜ ମାୟାରେ କଲା ହତ ।।୧୧୩
ନିଜ ଖଡ଼ଗ କରେ ଧରି ।
ପ୍ରଦ୍ୟୁମ୍ନ ଗଗନେ ସଞ୍ଚରି ।।୧୧୪
ଶମ୍ବର ଶିର ବାମକରେ ।
ଧରି କାଟିଲା କୋପଭରେ ।।୧୧୫
ମୁଣ୍ଡ ପଡ଼ିଲା ଭୂମିତଳେ ।
ସୁନ୍ଦର କିରୀଟ କୁଣ୍ଡଳେ ।।୧୧୬
ତମ୍ବାର ପ୍ରାୟ ଦାଢ଼ି ମୁଖେ ।
ଦେଖନ୍ତି ସ୍ୱର୍ଗେ ଦେବଲୋକେ ।।୧୧୭
ଆନନ୍ଦେ କୁସୁମ ବରଷି ।
କାମର ବିକ୍ରମ ପ୍ରଶଂସି ।।୧୧୮
ଶମ୍ବର ମାରି କୃଷ୍ଣବଳା ।
ସୁବର୍ଣ୍ଣରଥେ ବିଜେ କଲା ।।୧୧୯
କୋଳେ ବସାଇ ମାୟାବତୀ ।
ବେଗେ ଚଳିଲା ଦ୍ୱାରାବତୀ ।।୧୨୦
ଗଗନମାର୍ଗେ କୃଷ୍ଣପୁରେ ।
ବିମାନ ପଶିଲା ଭିତରେ ।।୧୨୧
ବିଜୁଳି ସଙ୍ଗେ ମେଘ ଯେହ୍ନେ ।
ଦେଖି ଚକିତ ସର୍ବଜନେ ।।୧୨୨
କୃଷ୍ଣର ପୁରେ ଯେତେ ନାରୀ ।
ରୁକ୍ମିଣୀ ଆଦି ମନୋହାରୀ ।।୧୨୩
ଅପୂର୍ବ କୃଷ୍ଣର ନନ୍ଦନ ।
ଦିଶନ୍ତି ଅତି ଶୋଭାବନ ।।୧୨୪

ନୀଳଜୀମୂତ ପ୍ରାୟ ଦେହୀ ।
ପୀତବସନ ବିରାଜଇ ।।୧୨୫
ପଦ୍ମଲୋଚନ ଦୀର୍ଘବାହୁ ।
ବୋଲନ୍ତି ଅଇଲା ଏ କାହୁଁ ।।୧୨୬
ଅଳପ ହାସେ ମୁଖ ଶୋହେ ।
ରୂପେ କାମିନୀ ମନେମୋହ ।।୧୨୭
ନୀଳକୁନ୍ତଳ ଭୃଙ୍ଗ ତେଜେ ।
ସୁନ୍ଦର ମୁଖପଦ୍ମ ସାଜେ ।।୧୨୮
କୃଷ୍ଣର ପ୍ରାୟ ତାଙ୍କୁ ମଣି ।
ସଂଭ୍ରମେ ଲୁଚିଲେ ତରୁଣୀ ।।୧୨୯
ପୁଣି କ୍ଷଣକେ ସ୍ଥିରେ ରହିଁ ।
ଜାଣିଲେ କୃଷ୍ଣ ଏ ନୁହଇ ।।୧୩୦
ପୁଣି ମିଳିଲେ ତାର ପାଶେ ।
ନିଶ୍ଚୟ ଜାଣିବାର ଆଶେ ।।୧୩୧
ଆନନ୍ଦେ ତାର ମୁଖ ଚାହିଁ ।
ମଦନେ ମନ ନ ଚଳଇ ।।୧୩୨
କାମିନୀରତ୍ନ ତାର କୋଳେ ।
ଦେଖି ଭାଳନ୍ତି କାମଭୋଳେ ।।୧୩୩
ରୁକ୍ମିଣୀ ସୁତକୁ ଅନାଇ ।
ବିତର୍କମନେ ବିଚାରଇ ।।୧୩୪
ପ୍ରସବକାଳେ ମୋ କୁମର ।
ଶୟନସ୍ଥାନୁ ନେଲା ଚୋର ।।୧୩୫
ପୁତ୍ର ସୁମରି ଦୁଃଖମନେ ।
କ୍ଷୀର ସ୍ରବଇ ବେନିସ୍ତନେ ।।୧୩୬
କାହୁଁ ଅଇଲା ଏ କୁମର ।
ମନୁଷ୍ୟ ରତ୍ନ କଳେବର ।।୧୩୭
କୃଷ୍ଣର ଚିହ୍ନ ଏହା ଦେହେ ।
ଦିଶଇ ଇନ୍ଦ୍ରନୀଳ ପ୍ରାୟେ ।।୧୩୮
କାହାର ଗର୍ଭେ ଏହୁ ଥିଲା ।
ଅପୂର୍ବ କାହୁଁ ଏ ଅଇଲା ।।୧୩୯
ଯୁବତୀରତ୍ନ ଅଛି କୋଳେ ।
ଲଭିଲା ପୂର୍ବ ପୁଣ୍ୟଫଳେ ।।୧୪୦
ମୋର ବାଳକ ନାଶ ଗଲା ।
ସୂତିକା ଘରୁ କେ ହରିଲା ।।୧୪୧
ଜୀବନେ ଥିଲେ ଯହିଁ ତହିଁ ।
ଏହାର ତୁଲେ ସମ ହୋଇ ।।୧୪୨

Dr. Sudhanshu Sekhar Mishra

ଏ ଯେ ସକଳ ଚିହ୍ନ ବହି ।
କୃଷ୍ଣର ପ୍ରାୟେକ ଦିଶଇ ॥୧୪୩
ଆକୃତି ବୟ ବପୁ ଯେହ୍ନେ ।
ସୁନ୍ଦର ହାସ ବିଲୋକନେ ॥୧୪୪
ସେ ପୁତ୍ର ଅବା ହୋଇ ଏବେ ।
ଯାହା ଧଇଲି ମୁହିଁ ଗର୍ଭେ ॥୧୪୫
ମୋ ଚିତ୍ତେ ସ୍ନେହ ଏହା ଚାହିଁ ।
ବାମନୟନ ମୋ ସ୍ଫୁରଇ ॥୧୪୬
ପୁଲକେ କମ୍ପେ ବାମଭୁଜ ।
ଏହାର ଅଙ୍ଗେ କୃଷ୍ଣତେଜ ॥୧୪୭
ରୁକ୍ମିଣୀ ଏମନ୍ତ ବିଚାରି ।
ବିଜୟ କଲେ ନରହରି ॥୧୪୮
ଦେବକୀ ବସୁଦେବ ସଙ୍ଗେ ।
କୃଷ୍ଣ ମିଳିଲେ ସୁତ ଆଗେ ॥୧୪୯
ଗୋବିନ୍ଦ ତାହା ସର୍ବ ଜାଣି ।
କୁମର ଦେଖି ହେଲେ ତୁନି ॥୧୫୦
ଏମନ୍ତେ ଶୁଣ ନରନାଥ ।
ବ୍ରହ୍ମାନନ୍ଦନ ଉପଗତ ॥୧୫୧
ଦେଖିଣ ସଂଶୟ ବିଷାଦ ।
ସକଳ କହିଲେ ନାରଦ ॥୧୫୨
ଶୁଣି ନାରଦ ମୁଖୁଁ ବାଣୀ ।
ଗୋବିନ୍ଦ ଯେତେକ ତରୁଣୀ ॥୧୫୩
ତରୁଣ ବାଳ ବୃଦ୍ଧ ସଙ୍ଗେ ।
ଉତ୍ସବ କଲେ ନାନା ରଙ୍ଗେ ॥୧୫୪
ଦେଖ ରୁକ୍ମିଣୀ ପୁଣ୍ୟ ରାଶି ।
ଯମଭୁବନୁ ପୁତ୍ର ଆସି ॥୧୫୫
ମୋହିଲା ଦ୍ୱାରକା ଭୁବନ ।
ବାଳ ତରୁଣ ବୃଦ୍ଧଜନ ॥୧୫୬
କୋଳେ କାମିନୀ ସୁକୁମାରୀ ।
ରୂପେ ଭୁବନେ ନାହିଁ ସରି ॥୧୫୭
ଦେବକୀଦେବୀ ବସୁଦେବ ।
ଥିଲେ ଯେ ଶ୍ରୀରାମ ମାଧବ ॥୧୫୮
ଯଦୁନଗରେ ନାରୀ ଯେତେ ।
ମିଳିଲେ ଦୁର୍ବାଙ୍କୁର ହସ୍ତେ ॥୧୫୯
ଅକ୍ଷତ ଦେଇ ପୁତ୍ର ଶିରେ ।
ମଙ୍ଗଳ କଲେ ଉଚ୍ଚସ୍ୱରେ ॥୧୬୦
ରୁକ୍ମିଣୀ ଘେନି ପୁତ୍ର କୋଳେ ।
ଚୁମ୍ବନ ଦେଲେ ସୁଖଭୋଳେ ॥୧୬୧
ସଙ୍ଗେ ସକଳ ପରିବାରୀ ।
ଆନନ୍ଦେ କୋଳେ ବଧୂ ଧରି ॥୧୬୨
ଯଦୁନଗରେ ଯେତେ ଜନ ।
ଶୁଣି ସାନନ୍ଦ କଲେ ମନ ॥୧୬୩
ରୁକ୍ମିଣୀଦେବୀ ଭାଗ୍ୟ ଦେଖ ।
ମରଣୁ ଅଇଲା ବାଳକ ॥୧୬୪
ଶୁକ କହନ୍ତି ଶୁଣ ନୃପ ।
ମାତାଏ ଦେଖି ପୁତ୍ରରୂପ ॥୧୬୫
କୃଷ୍ଣର ପ୍ରାୟ ମଣି ତାହା ।
ଆନନ୍ଦେ ବଳିଲା ଉତ୍ସାହ ॥୧୬୬
ସ୍ୱଭାବେ କାମ କୃଷ୍ଣପ୍ରାୟେ ।
ସର୍ବଲକ୍ଷଣ ଅଛି ଦେହେ ॥୧୬୭
ଅନ୍ୟ ଭୁବନେ ନାରୀ ଯେତେ ।
ତାହାକୁ ଦେଖି ଦୃଷ୍ଟିପଥେ ॥୧୬୮
କାମେ ହୋଇଲେ ଉନମତ୍ତ ।
ଚିତ୍ର ନୋହଇ ଏହୁ କଥା ॥୧୬୯
ବୋଲଇ ଦାସ ଜଗନ୍ନାଥ ।
ରୁକ୍ମିଣୀ ତନୟ ପ୍ରାପତ ॥୧୭୦
ସୁଜନେ ଶୁଣ ଶ୍ରୁତିପଥେ ।
ସଂସାରୁ ତରିବ ଯେମନ୍ତେ ॥୧୭୧

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ପ୍ରଦ୍ୟୁମ୍ନ
ଉତ୍ପତ୍ତି ନିରୂପଣଂ ନାମ
ଊନଷଷ୍ଟିତମ ଅଧ୍ୟାୟଃ ॥

---

## ଷଷ୍ଠିତମ ଅଧ୍ୟାୟଃ

ଶୁକ ଉବାଚ

କହନ୍ତି ଶୁକ ମହାମୁନି ।
ଶୁଣ ରାଜନ ସାଧୁବାଣୀ ॥୧
ଯଦୁନଗରେ ସତ୍ରାଜିତ ।
କୃଷ୍ଣରେ କରି ଦ୍ରୋହଚିତ୍ତ ॥୨
ନିଜ ଦୁହିତା ସତ୍ୟଭାମା ।
ଅଂଶେ ସମ୍ଭୂତ ଯେହ୍ନୁ ରମା ॥୩
ଅମୂଲ୍ୟ ସ୍ୟମନ୍ତକ ମଣି ।
ନିଜ ଦୁହିତା ସଙ୍ଗେ ଆଣି ॥୪
କୃଷ୍ଣଚରଣେ ଦେଲା ନେଇ ।
ଆମ୍ଭ ଅପରାଧ ଛଡ଼ାଇ ॥୫
ଏମନ୍ତେ ଶୁକ ବାକ୍ୟ ଶୁଣି ।
ପରୀକ୍ଷ କହେ ସାଧୁବାଣୀ ॥୬

ପରୀକ୍ଷିତ ଉବାଚ

କହ କେମନ୍ତେ ସତ୍ରାଜିତ ।
କୃଷ୍ଣ ବିଷୟେ ବିପରୀତ ॥୭
କାହୁଁ ଆଣିଲା ରତ୍ନମଣି ।
ଦୁହିତା ତୁଲେ ଦେଲା ଆଣି ॥୮
କି ଦ୍ରୋହ କଲା ଯଦୁପୁରେ ।
ସ୍ୱଜନ ବାନ୍ଧବ ବେଭାରେ ॥୯

ଶୁକ ଉବାଚ

ଶୁଣି କହନ୍ତି ବ୍ୟାସସୁତ ।
ରାଜନ ଶୁଣ ଦେଇ ଚିତ୍ତ ॥୧୦
ଅନେକ ତପେ ସତ୍ରାଜିତ ।
ସୂର୍ଯ୍ୟ ସଙ୍ଗତେ ହେଲା ମିତ ॥୧୧
ପ୍ରସନ୍ନ ଚିତ୍ତେ ଦିନମଣି ।
ଆପଣା କଣ୍ଠୁ ରତ୍ନମଣି ॥୧୨

Dr. Sudhanshu Sekhar Mishra

ସତ୍ରାଜିତର କଣ୍ଠେ ଦେଇ ।
ତପନ ଗଲେ ତୋଷ ହୋଇ ॥୧୩
ଏମନ୍ତେ ମଣି କଣ୍ଠେ ଭରି ।
ଆନନ୍ଦେ ଗଲା ନିଜ ପୁରୀ ॥୧୪
ପଥେ ଆସନ୍ତେ ସତ୍ରାଜିତ ।
ଦିଶଇ ଦ୍ୱିତୀୟ ଆଦିତ୍ୟ ॥୧୫
ମଣିର ତେଜେ ତାର ଦେହି ।
ଜନନୟନେ ନୋହେ ଚାହିଁ ॥୧୬
ଚାହିଁଲେ ଚକ୍ଷୁତେଜ ନାଶେ ।
କେହି ନ ରହେ ତାର ପାଶେ ॥୧୭
ଦେଖି ସକଳେ ପଳାଇଲେ ।
କୃଷ୍ଣର ନିକଟେ ମିଳିଲେ ॥୧୮
ଅଭୟ ପଦ୍ମପାଦେ ପଡ଼ି ।
କହନ୍ତି ବେନିକର ଯୋଡ଼ି ॥୧୯
ଅକ୍ଷ ଖେଳନ୍ତେ ଭଗବାନ ।
ଜନବଚନେ ଅବଧାନ ॥୨୦
ଜନେ କହନ୍ତି ଯୋଡ଼ିକର ।
ଭୋ ନାଥ ଶୁଣ ଚକ୍ରଧର ॥୨୧
ପଦ୍ମଲୋଚନ ନାରାୟଣ ।
ଅନାଦି ସଂସାର କାରଣ ॥୨୨
ଭୋ ନାଥ ତୋର ପଦ୍ମପାଦ ।
ଦର୍ଶନେ ରବି କଲା ସଧ ॥୨୩
ଗଗନେ ଛନ୍ତି ଦେହ ଧରି ।
ମର୍ତ୍ତ୍ୟେ ପ୍ରତ୍ୟକ୍ଷେ ବିଜେ କରି ॥୨୪
ତାହାର ତେଜେ ଭଗବାନ ।
ଚାହିଁଲେ ଝଲସେ ନୟନ ॥୨୫
ତୁ ନାଥ ଜଗତ ଠାକୁର ।
ସକଳେ ତୋହର କିଙ୍କର ॥୨୬
ଦେବେ ତୋହର ପଦ୍ମପାଦେ ।
ସେବନ୍ତି ମୋକ୍ଷଫଳ ସଧେ ॥୨୭
ଏ ଯଦୁବଂଶେ ତୋ ସମ୍ଭୁତ ।
ଶୁଣି ସାନନ୍ଦେ ଛାୟାକାନ୍ତ ॥୨୮
ଦେଖିବ ତୋହର ଚରଣ ।
ତୁ ଯେ ଅନାଦି ନାରାୟଣ ॥୨୯
ବୋଲନ୍ତି ଶୁକ ମହାମୁନି ।
ଜନବଚନ କୃଷ୍ଣ ଶୁଣି ॥୩୦
ପଦ୍ମଲୋଚନେ ଚାହିଁ ବସି ।
କହନ୍ତି ସ୍ୱଜନେ ଆଶ୍ୱାସି ॥୩୧

ଭଗବାନ ଉବାଚ

ସେ ନୋହେ ପ୍ରତି ଦିନନାଥ ।
ବର ଲଭିଲା ସତ୍ରାଜିତ ॥୩୨
ତପେ ଆଦିତ୍ୟେ ସେବା କରି ।
ଆସଇ ମଣି କଣ୍ଠେ ଭରି ॥୩୩
ମଣି କିରଣ ରବିପ୍ରାୟ ।
ତୁମ୍ଭେ ନକର ମନେ ଭୟ ॥୩୪
ଏମନ୍ତ କହି ଭଗବାନ ।
ଅକ୍ଷକ୍ରୀଡ଼ାରେ ଦେଲେ ମନ ॥୩୫
ଏମନ୍ତେ ସତ୍ରାଜିତ ଗଲା ।
ନିଜ ଭୁବନେ ବିଜେ କଲା ॥୩୬
ନିତ୍ୟେ ଉତ୍ସବ ତାର ପୁରେ ।
ଦେବମନ୍ଦିରେ ବିପ୍ରବରେ ॥୩୭
ମଣି ନିବେଶି ଦେବଘରେ ।
ଆନନ୍ଦେ ପଶିଲା ଭିତରେ ॥୩୮
ଶୁଣ ରାଜନ ସାଧୁବାଣୀ ।
ତାର ଭୁବନେ ରତ୍ନମଣି ॥୩୯
ସୁବର୍ଣ୍ଣ ଅଷ୍ଟଭାର ନିତି ।
ମଣି ଶରୀରୁ ଉତପତ୍ତି ॥୪୦
ଦୁର୍ଭିକ୍ଷ ମାରୀଭୟ ନାହିଁ ।
ଅଶୁଭ ତ୍ରାସ ନ ଲାଗଇ ॥୪୧
ସର୍ପବିଘାତ ଆଦି ରୋଗ ।
ତୁହଁନ୍ତି ଭୁବନେ ସଂଯୋଗ ॥୪୨
ଯହିଁ ପୂଜନ୍ତି ରତ୍ନମଣି ।
ତହିଁ ନ ଥାନ୍ତି ମାୟା ପ୍ରାଣୀ ॥୪୩
ଏମନ୍ତେ ଗଲା ଦିନାକେତେ ।
ଶୁଣ ରାଜନ ଏକଚିତ୍ତେ ॥୪୪
ଦିନେକ ପ୍ରଭୁ ଜଗନ୍ନାଥ ।
ଗୃହେ ଅଣାଇ ସତ୍ରାଜିତ ॥୪୫
କହନ୍ତି ପ୍ରଭୁ ଚକ୍ରପାଣି ।
ଉଗ୍ରସେନକୁ ଦିଅ ମଣି ॥୪୬
ଏହା ଭଣ୍ଡାରେ ନାହିଁ ଧନ ।
ମଣି ଏ ପୂଜ୍ୟ କିଛିଦିନ ॥୪୭
ଏମନ୍ତେ ଗୋବିନ୍ଦ ବଚନେ ।
ଭାଳଇ ସତ୍ରାଜିତ ମନେ ॥୪୮
ଦିନକୁ ଦିନ ଅଷ୍ଟଭାର ।
ସୁବର୍ଣ୍ଣ ଭଣ୍ଡାରେ ମୋହର ॥୪୯
କେମନ୍ତେ ଦେବି ରତ୍ନମଣି ।
ଏମନ୍ତେ ଭାଳି ହେଲା ତୁନି ॥୫୦
ଅର୍ଥ-କାମୁକ ଧନଆଶେ ।
ପଡ଼ିଲା ମାୟା-ମୋହ-ପାଶେ ॥୫୧
ଦେବା ନ ଦେବା ନ ବୋଇଲା ।
କୃଷ୍ଣର ଆଜ୍ଞା ଭଗ୍ନ କଲା ॥୫୨
ନିରାଶ କରି ଚକ୍ରଧରେ ।
ମିଳିଲା ଆପଣା ମନ୍ଦିରେ ॥୫୩
ଏମନ୍ତେ ଶୁଣ ନରନାଥ ।
ପ୍ରସେନ ନାମେ ତାର ଭ୍ରାତ ॥୫୪
ସେ ରତ୍ନମଣି କଣ୍ଠେ ଭରି ।
ଅଶ୍ୱ ଉପରେ ବିଜେ କରି ॥୫୫
ମୃଗୟାଛଳେ ସୁଖମନେ ।
ପଶିଲା ଗହନକାନନେ ॥୫୬
ଗହନବନେ ସିଂହ ଥିଲା ।
ପ୍ରସେନ୍ ଦେଖି ଓଗାଳିଲା ॥୫୭
ଅଶ୍ୱ ସହିତେ ତାକୁ ମାରି ।
ସିଂହ ସେ ମଣି କଣ୍ଠେ ଭରି ॥୫୮
ପର୍ବତ ନିକଟେ ମିଳିଲା ।
ତହିଁ ଜାମ୍ବବ ବୀର ଥିଲା ॥୫୯
ଭଲ୍ଲୁକ ରୂପ ସେ ସ୍ୱଭାବେ ।
ଧାଇଁଲା ସିଂହ ଦେଖି ଜବେ ॥୬୦
କର ପ୍ରହାରେ ମୁଣ୍ଡ କାଟି ।
ସିଂହ ପଡ଼ିଲା ମହୀ ଲୋଟି ॥୬୧
ସେ ମଣି ଘେନି ଅତିଖରେ ।
ପଶିଲା ବିବର ଭିତରେ ॥୬୨
ନିଜ ଭୁବନେ ବୀର ଯାଇ ।
ସେ ମଣି ପୁତ୍ରକଣ୍ଠେ ଦେଇ ॥୬୩
ଧାଇ ଖେଳାଏ ତାର ସୁତ ।
ଏବେ ହୋ ଶୁଣ ନରନାଥ ॥୬୪
ପ୍ରସନେ ନ ଦେଖି ନୟନେ ।
ଭାଳଇ ସତ୍ରାଜିତ ମନେ ॥୬୫

Dr. Sudhanshu Sekhar Mishra

ମୃଗୟା ଗଲା ମୋର ଭ୍ରାତ ।
ପୁରେ ନୋହିଲା ଉପଗତ ।।୬୬
ବନେ କି ପଡ଼ିଲା ଆପଦ ।
ଶୋକେ ହୋଇଲା ଗଦଗଦ ।।୬୭
ଏମନ୍ତେ କରଇ ରୋଦନ ।
ବିକଳେ ବିଚାରଇ ମନ ।।୬୮
କୃଷ୍ଣ ମାଗିଲେ ମୋତେ ମଣି ।
ନଦେଇ ହୋଇଲି ମୁଁ ତୁନି ।।୬୯
ସେ ଅବା ମୋତେ ମାୟା କଲା ।
ପ୍ରସେନ ମାରି ମଣି ନେଲା ।।୭୦
ସେ କଥା ଶୁଣି ସର୍ବଜନେ ।
ମିଳି କହନ୍ତି କାନେ କାନେ ।।୭୧
ଗୋବିନ୍ଦ କଲେ ଏଡ଼େ କର୍ମ ।
ଲୋକରେ ଶୁଭିଲା ଲାଞ୍ଛନ ।।୭୨
ବିଷମଲୋକ ଅପବାଦ ।
ଶୁଣି ପାଇଲେ କୃଷ୍ଣ ଖେଦ ।।୭୩
ବୋଲନ୍ତି ମୋର ଅପମାନ ।
ମୁହିଁ ସେ କରିବି ମାର୍ଜନ ।।୭୪
ସଙ୍ଗତେ ଘେନି ସର୍ବଜନ ।
ବନେ ପଶିଲେ ଭଗବାନ ।।୭୫
ବନେ ଖୋଜନ୍ତି ବନମାଳୀ ।
ପ୍ରସେନ ହତସ୍ଥାନେ ମିଳି ।।୭୬
ଅଶ୍ୱ ସହିତେ ବନେ ମରି ।
ଦେଖି ଚକିତ ନରହରି ।।୭୭
ବୋଲନ୍ତି ମଲାଏ କେମନ୍ତେ ।
ଦେଖିଲେ ସିଂହପାଦ ପଥେ ।।୭୮
ପହଣ୍ଡ ଚିହ୍ନି ସର୍ବଜନେ ।
ଥୋକାଏ ଗଲେ ଘୋରବନେ ।।୭୯
ଗିରି-ନିକଟେ ନାରାୟଣ ।
ଦେଖିଲେ ସିଂହର ମରଣ ।।୮୦
ଚକିତେ ପ୍ରଭୁ ନରହରି ।
ସିଂହ ମରଣ ଅନୁସରି ।।୮୧
ଦେଖିଲେ ଭଲ୍ଲୁକ ଚରଣ ।
ସମ୍ଭ୍ରମେ ମିଳି ସର୍ବଜନ ।।୮୨
ଭଲ୍ଲୁକ ପାଦଚିହ୍ନ ଚାହିଁ ।
ଚଳନ୍ତି ଅଙ୍ଗୁଳି ଦେଖାଇ ।।୮୩

ପୁଣି କେତେଦେହେଁ ଦୂର ଗଲେ ।
ଚରଣ ପଡ଼ିଛି ବିବରେ ।।୮୪
ସେ ବିଳ ଘୋର ଅନ୍ଧକାର ।
ଦେଖି ବୋଲନ୍ତି ଦାମୋଦର ।।୮୫
ତୁମ୍ଭେ ସକଳ ପ୍ରଜାଜନେ ।
ଏଠାରେ ଥାଅ ସାବଧାନେ ।।୮୬
ଆଜ ସେ ଲୋକ ଅପବାଦେ ।
ମୁହିଁ ପଶିବି ବିଳ ମଧ୍ୟେ ।।୮୭
ଏମନ୍ତ କହି ଭାବଗ୍ରାହୀ ।
ବିଳେ ପଶିଲେ ବେଗେ ଯାଇ ।।୮୮
ଅନ୍ଧାର ପଥେ ଦଇତ୍ୟାରି ।
ଜାମ୍ବବ ପୁରେ ବିଜେ କରି ।।୮୯
ତାହାର ପୁତ୍ରକଣ୍ଠେ ମଣି ।
ଦୂରୁ ଦେଖିଲେ ଚକ୍ରପାଣି ।।୯୦
ବେଗେ ମିଳିଲେ ତାର ପାଶେ ।
ସେ ମଣି ଲିଭିବାର ଆଶେ ।।୯୧
ଧାଇ ଯେ ପୁତ୍ରପାଶେ ଥିଲା ।।
ଅପୂର୍ବ ପୁରୁଷ ଦେଖିଲା ।।୯୨
ମନୁଷ୍ୟ ଦେଖି ଭୟ କରି ।
ସଂଭ୍ରମେ ପୁତ୍ର କୋଳେ ଧରି ।।୯୩
ଭୟେ ଡ଼ାକିଲା ଉଚ୍ଚସ୍ୱରେ ।
ଜାମ୍ବବ ଥିଲା ଯେ ଭିତରେ ।।୯୪
ଶୁଣି ଧାଇଁଲା ମହାବଳୀ ।
ବେଗେ ବାଳକପାଶେ ମିଳି ।।୯୫
ଦେଖିଲା ପ୍ରଭୁ ଭଗବାନ ।
ହୃଦରେ ଶ୍ରୀବତ୍ସର ଚିହ୍ନ ।।୯୬
ଜାମ୍ବବ ଜଗନ୍ନାଥ ଚାହିଁ ।
ମାୟାରେ ଚିହ୍ନି ନ ପାରଇ ।।୯୭
ଇତରଲୋକ ପ୍ରାୟ ମଣି ।
କୋପେ ଧାଇଁଲା ଶିରଝୁଣି ।।୯୮
ଭଲ୍ଲୁକ ସ୍ୱଭାବ ଯୁକତ ।
ବେଗେ ଧଇଲା କୃଷ୍ଣହସ୍ତ ।।୯୯
ହରି ମହିମା ନ ଜାଣିଲା ।
ମଣିଷ ପ୍ରାୟ ସେ ମଣିଲା ।।୧୦୦
ତକ୍ଷଣେ ପାଦେ ପାଦ ଛନ୍ଦି ।
ଭୁଜଯୁଗଳେ ହୃଦବାନ୍ଧି ।।୧୦୧

ବିଷମ ମାଲଯୁଦ୍ଧ ଘୋର ।
ଜିଣିବା ଆଶେ ବଳୀୟାର ।।୧୦୨
ଜିଣି ନ ପାରି ମାଲଯୁଦ୍ଧେ ।
ସମର କରନ୍ତି ଆୟୁଧେ ।।୧୦୩
ବୃକ୍ଷ ପାଷାଣ କରେ ଧରି ।
ପିଟନ୍ତି ଘୋରନାଦ କରି ।।୧୦୪
ଆମିଷ ଅର୍ଥେ ଯେହ୍ନେ ଖଗ ।
କୋପେ କରନ୍ତି ରଣରଙ୍ଗ ।।୧୦୫
ଏମନ୍ତେ ଅଷ୍ଟାଦଶ ଦିନ ।
ସମର କଲେ ବେନିଜନ ।।୧୦୬
ବୃକ୍ଷ ପାଷାଣ ଯେଣୁ ଗଲା ।
ଅନେକ କୋପ ଉପୁଜିଲା ।।୧୦୭
ମୁଷ୍ଟି ପ୍ରହାର ହୃଦେ ପଡ଼ି ।
ଶବଦ ବଜ୍ର ଘଡ଼ଘଡ଼ି ।।୧୦୮
ନିରତେ କରନ୍ତି ସମର ।
ଶୁଣ ରାଜନ କୁରୁବୀର ।।୧୦୯
କୃଷ୍ଣର ମୁଷ୍ଟି ହୃଦେ ବାଜି ।
ଜାମ୍ବବ ଅସ୍ଥି ଛନ୍ଦ ଭାଜି ।।୧୧୦
କ୍ଷୀଣ ହୋଇଲା ବଳ ଗାତ୍ର ।
ବିସ୍ମୟେ ହୋଇ ମୁରୁଛିତ ।।୧୧୧
ଚାହିଁଲା କୃଷ୍ଣର ବଦନ ।
ତକ୍ଷଣେ ପାଇ ଦିବ୍ୟଜ୍ଞାନ ।।୧୧୨
ବୋଲଇ କୃଷ୍ଣମୁଖ ଚାହିଁ ।
ଭୋନାଥ ମୋତେ କର ତ୍ରାହି ।।୧୧୩
ତୁ ସର୍ବ ପ୍ରାଣ ଓଜ ବଳ ।
ମହାପୁରୁଷ ଆଦିମୂଳ ।।୧୧୪
ପୁରାଣପୁରୁଷ ଅନାଦି ।
ସଂସାର ମାୟାବଳେ ଛନ୍ଦି ।।୧୧୫
ବରଦ ବିଷ୍ଣୁ ତୁ ଈଶ୍ୱର ।
ମହାମହିମ ଯୋଗେଶ୍ୱର ।।୧୧୬
ବ୍ରହ୍ମାଦି ଯେତେ ସୃଷ୍ଟିପାଳ ।
ତାହାଙ୍କ ସ୍ୱାମୀ ତୁ ଗୋପାଳ ।।୧୧୭
ଏ ସୃଷ୍ଟି ଅନ୍ତେ ତୋର ଦେହେ ।
ପଶନ୍ତି ପରମାଣୁ ପ୍ରାୟେ ।।୧୧୮
କାଳଦଳନ ବାନା ତୋର ।
ପରମ ଆତ୍ମା ଯୋଗେଶ୍ୱର ।।୧୧୯

Dr. Sudhanshu Sekhar Mishra

ଈକ୍ଷିତ ରୋଷ ତୋ ବଦନ ।
ଦେଖି ଜଳଧି କମ୍ପମାନ ॥୧୨୦
ଯେ ମହାମସ୍ୟ ଗ୍ରାହଗଣ ।
କ୍ଷୋଭିତ ହୋଇ ଅନୁକ୍ଷଣ ॥୧୨୧
ତୋହର ଚରଣେ ପଡ଼ିଲେ ।
ଲଙ୍କା ଗମନେ ମାର୍ଗ ଦେଲେ ॥୧୨୨
ପର୍ବତେ ସେତୁବନ୍ଧ କରି ।
ଘୋର ସମୁଦ୍ର ହେଲେ ତରି ॥୧୨୩
ଲଙ୍କା ଦହିଲୁ ଘୋର ଦୃଷ୍ଟି ।
ରାବଣ ଦଶମୁଣ୍ଡ କାଟି ॥୧୨୪
ରାକ୍ଷସ ଶିରେ ମହୀସ୍ଥଳୀ ।
ଯୁଦ୍ଧେ ଡାକିଲୁ ବନମାଳୀ ॥୧୨୫
ଏମନ୍ତ ମହିମା ଯାହାର ।
ଭୋନାଥ ଶରଣ ମୁଁ ତୋର ॥୧୨୬
ମୁଁ ଛାର ନ ଜାଣିଲି ତୋତେ ।
ପଶୁରେ ଜନ୍ମକଲୁ ମୋତେ ॥୧୨୭
ଗୋବିନ୍ଦ ଶୁଣି ତା ବଚନ ।
ହୋଇଲେ ଅତି ହୃଷ୍ଟମନ ॥୧୨୮
ଶୁକ ବୋଲନ୍ତି ଶୁଣ ରାୟେ ।
ଦୟା ବସିଲା କୃଷ୍ଣଦେହେ ॥୧୨୯
ଜାମ୍ବବ ଶିରେ ଦେଇ କର ।
ଆଶ୍ୱାସ କଲେ ଚକ୍ରଧର ॥୧୩୦
ପରମ ଦୟାଳୁ ମୁରାରି ।
କହନ୍ତି ତାର କର ଧରି ॥୧୩୧
ମେଘ ଗମ୍ଭୀର ପ୍ରାୟ ବାଣୀ ।
ହସି କହନ୍ତି କମ୍ବୁପାଣି ॥୧୩୨
ଏମଣି ହେତୁ ତୋର ବିଳେ ।
ପଶିଲି ମିଥ୍ୟାବାଦ ଛଳେ ॥୧୩୩
ଦୁଃସହ ଜନ ଅପବାଦ ।
ମିଥ୍ୟାବଚନେ ମନଖେଦ ॥୧୩୪
ଏ ମଣି ଯଦୁପୁରେ ନେବି ।
ଆପଣା ଦୋଷ ଛଡ଼ାଇବି ॥୧୩୫
ଜାମ୍ବବ କୃଷ୍ଣବାକ୍ୟ ଶୁଣି ।
ଆନନ୍ଦମନେ ପରିମାଣି ॥୧୩୬
କୃଷ୍ଣ ଅଇଲେ ମୋର ଘର ।
କି ଅବା ଦେବି ଉପହାର ॥୧୩୭

ମୋର ଦୁହିତା ଜାମ୍ବବତୀ ।
ତାର ସଦୃଶେ କୃଷ୍ଣପତି ॥୧୩୮
ଏମନ୍ତ ମନେ ବିଚାରିଲା ।
କନ୍ୟାର କଣ୍ଠେ ମଣି ଦେଲା ॥୧୩୯
କୃଷ୍ଣର ପାଦତଳେ ନେଇ ।
ବୋଲଇ ଶିରେ କର ଦେଇ ॥୧୪୦
ଭୋ ନାଥ ପରମପୁରୁଷ ।
ମୋହର ନ ଘେନିବା ଦୋଷ ॥୧୪୧
ଅନେକ କଲି ଅପରାଧ ।
ନ ଚିହ୍ନି ତୋର ପଦ୍ମପାଦ ॥୧୪୨
ଏମନ୍ତେ ଶୁଣ ହୋ ରାଜନ ।
ଦ୍ୱାରେ ଯେ ଥିଲେ ସର୍ବଜନ ॥୧୪୩
ନିରତେ ବିଳଦ୍ୱାରେ ଚାହିଁ ।
କୃଷ୍ଣ ଆଗମେ ମନ ଦେଇ ॥୧୪୪
ବଂଚିଲେ ଦ୍ୱାଦଶ ଦିବସ ।
ନ ଦେଖି ହୋଇଲେ ନିରାଶ ॥୧୪୫
ବାହୁଡ଼ିଗଲେ ଦୁଃଖ ମନେ ।
କହିଲେ କୃଷ୍ଣର ଭୁବନେ ॥୧୪୬
ଶୁଣି ଦେବକୀ ବସୁଦେବ ।
ଏ ଆଦି ସକଳ ଯାଦବ ॥୧୪୭
ରୁକ୍ମିଣୀ ଆଦି ବଧୂଜନ ।
ଶୁଣି ହୋଇଲେ ହତଜ୍ଞାନ ॥୧୪୮
ମିଳି ସୁହୃଦେ ବନ୍ଧୁଜନ ।
ବିକଳେ କରନ୍ତି ରୋଦନ ॥୧୪୯
ନ ଦେଖି ଅଭୟ ଚରଣ ।
ସଙ୍କଷ୍ଟେ ଚିନ୍ତନ୍ତି ମରଣ ॥୧୫୦
ନ ଦେଖି ପ୍ରଭୁ ନରହରି ।
ଜୀବନ ନ ପାରନ୍ତି ଧରି ॥୧୫୧
ଦ୍ୱାରକାପୁର ଜନେ ଯାଇ ।
ନିନ୍ଦନ୍ତି ସତ୍ରାଜିତ ଚାହିଁ ॥୧୫୨
ତୋହର ଯୋଗୁଁ ଯଦୁପୁରୀ ।
ଆଜ୍ଞୁଁ ହୋଇଲା ହତଶିରୀ ॥୧୫୩
ଏମନ୍ତେ ଦୁଃଖ ଶୋକମନେ ।
ମିଳିଲେ ଅମ୍ବିକା ଭୁବନେ ॥୧୫୪
କୃଷ୍ଣଙ୍କୁ ଲଭିବାର ଆଶେ ।
ସ୍ତୁତି କରନ୍ତି ଦେବୀପାଶେ ॥୧୫୫

ନମୋ ଜଗତ ଆଦିମାତ ।
ଯାଦବେ ହୋଇଲୁ ଅନାଥ ॥୧୫୬
ଦୁର୍ଗମ ଦୁଃଖ ନାଶିବାରେ ।
ଦୁର୍ଗା ବୋଲାଉ ତିନିପୁରେ ॥୧୫୭
ତୋ ପାଦେ ପଶିଲୁ ଶରଣ ।
ଦେଖାଅ ଗୋବିନ୍ଦ ଚରଣ ॥୧୫୮
ଯଦୁଙ୍କ ଦୁଃଖ ଶୋକ ଜାଣି ।
ଶୂନ୍ୟେ କହନ୍ତି ଠାକୁରାଣୀ ॥୧୫୯
ମନେ ନ କର ତୁମ୍ଭେ ଶୋକ ।
ଦେଖିବ ଶ୍ରୀକୃଷ୍ଣର ମୁଖ ॥୧୬୦
ଏମନ୍ତ କହୁଁ କହୁଁ ଜନେ ।
ଗୋବିନ୍ଦ ମିଳିଲେ ଭୁବନେ ॥୧୬୧
କନ୍ୟା ସହିତେ ଭଗବାନ ।
ଘେନାଇ ଅମୂଲ୍ୟ ରତନ ॥୧୬୨
ହରଷ କରି ସୁରନର ।
ବିଜୟ କଲେ ଚକ୍ରଧର ॥୧୬୩
ଦେଖି ସାନନ୍ଦ ସର୍ବଜନେ ।
ମିଳିଲେ କୃଷ୍ଣ ଦରଶନେ ॥୧୬୪
ମଲା ପୁରୁଷ ଯେହ୍ନେ ଆସି ।
କହନ୍ତି କୃଷ୍ଣଙ୍କୁ ପ୍ରଶଂସି ॥୧୬୫
କନ୍ୟା ସହିତେ ଦାମୋଦର ।
ପ୍ରବେଶ ଆପଣା ମନ୍ଦିର ॥୧୬୬
ତକ୍ଷଣେ ସତ୍ରାଜିତେ ଆଣି ।
କହନ୍ତି ପ୍ରଭୁ ଚକ୍ରପାଣି ॥୧୬୭
ଉଗ୍ରସେନର ସଭାମଧ୍ୟେ ।
କୃଷ୍ଣ କହନ୍ତି ମନ ଖେଦେ ॥୧୬୮
ମଣି ଆଣିଲେ ଯେତେ ଦୁଃଖେ ।
କହିଲେ ଆପଣା ଶ୍ରୀମୁଖେ ॥୧୬୯
ମଣି ତାହାର କରେ ଦେଇ ।
ପୁରେ ମିଳିଲେ କୃଷ୍ଣଯାଇ ॥୧୭୦
ସଭାରୁ ସତ୍ରାଜିତ ମଣି ।
ସଭୟେ ନିଜ କରେ ଘେନି ॥୧୭୧
ଅତି ଲଜ୍ଜିତେ ଅଧୋମୁଖ ।
ପଥେ ଗମଇ ଦୁଃଖଶୋକେ ॥୧୭୨
ମନେ ବାଧିଲା ଅନୁତାପ ।
କୃଷ୍ଣଚରଣେ କଲି ପାପ ॥୧୭୩

Dr. Sudhanshu Sekhar Mishra

ଦିନକୁ ଦିନ ମନଖେଦେ ।
ଭାଳଇ କୃଷ୍ଣ ଅପରାଧେ ॥୧୭୪
ନିରତେ ଭାଳଇ ବିଷାଦେ ।
ଦ୍ରୋହ ଯେ କଲି କୃଷ୍ଣପାଦେ ॥୧୭୫
କେମନ୍ତେ ଆତ୍ମଦୋଷ ଯିବ ।
ଗୋବିନ୍ଦ ପ୍ରସନ୍ନ ହୋଇବ ॥୧୭୬
ଲୋକେ ବୋଲିବେ ମୋତେ ଭଲା
ତେବେ ସେ ଯିବ ଆତ୍ମାଶଲ ॥୧୭୭
ବିଚାର ନାହିଁ ମୋର ତହିଁ ।
ସ୍ୱଭାବେ କ୍ଷୁଦ୍ର ମୁଁ ଅଟଇ ॥୧୭୮
ଅଜ୍ଞାନ ମୂଢ ଧନଲୋଭୀ ।
ଆପଣା ପାପେ ପରାଭବୀ ॥୧୭୯
ମଣିକାଞ୍ଚନେ ଲୋଭ ମୋର ।
ଅଯଶ କଲି ତିନିପୁର ॥୧୮୦
ଏ ଯେ ଦୁହିତା ଅଛି ମୋର ।
ଅପୂର୍ବ ସ୍ତିରୀ ରତ୍ନସାର ॥୧୮୧
ଏ ମଣି ଏହା କଣ୍ଠେ ଦେଇ ।
କୃଷ୍ଣଙ୍କୁ ସମର୍ପିବି ନେଇ ॥୧୮୨
ଏହି ଉପାୟ ମୋର ଭଲ ।
ଏ କନ୍ୟାରତ୍ନ ମଣି ତୁଲ୍ୟ ॥୧୮୩

ସେ ହରି କମଳାର ପତି ।
ଅନ୍ୟଥା ନାହିଁ ତାର ଶାନ୍ତି ॥୧୮୪
ଏମନ୍ତ ନିଜ କର୍ମ ଚିନ୍ତି ।
ଛାଡ଼ିଲା ମନୁ ଖେଦ ଭ୍ରାନ୍ତି ॥୧୮୫
ଏମନ୍ତ ମନେ ବିଚାରିଲା ।
ଦୁହିତା ଅଳଙ୍କୃତ କଲା ॥୧୮୬
କନ୍ୟାର କଣ୍ଠେ ମଣି ଦେଇ ।
ମିଳିଲା କୃଷ୍ଣପାଖେ ଯାଇ ॥୧୮୭
ଅଞ୍ଜଳି କରି ବେନିକର ।
କୃଷ୍ଣଙ୍କୁ କହଇ ମଧୁର ॥୧୮୮
ତୁ ନାଥ ଜଗତଠାକୁର ।
ମୁଁ ତୋରା ଚରଣେ କିଙ୍କର ॥୧୮୯
ସତ୍ୟଭାମାକୁ ତୋତେ ଦେଲି ।
ଶରଣ ପଶିଲି ଗୋସାଇଁ ॥୧୯୦
ଏମନ୍ତ ତାର ବାକ୍ୟ ଶୁଣି ।
ଦୟାସାଗର ଚକ୍ରପାଣି ॥୧୯୧
ଆନନ୍ଦମନେ ଦେବଦେବା ।
ସତ୍ୟଭାମାକୁ ହେଲେ ବିଭା॥୧୯୨
ଅଂଶେ କମଳା ଅବତାର ।
କି ଅବା ଦେବା ପଟାନ୍ତର ॥୧୯୩

ସୁନ୍ଦର ରୂପ ଦେଖି ତାର ।
ଅନେକ ହୋଇଥିବେ ବର ॥୧୯୪
ବିବାହ ଅନ୍ତେ ଚକ୍ରପାଣି ।
ସେ ମଣିରତ୍ନ କରେ ଘେନି ॥୧୯୫
ସତ୍ରାଜିତର ମୁଖ ଚାହିଁ ।
ବୋଇଲେ ମଣି ନିଅ ତୁହି ॥୧୯୬
ଏ ସୂର୍ଯ୍ୟକଣ୍ଠୁ ଅବତରି ।
କେ ଏହା ପାରିବଟି ଧରି ॥୧୯୭
ରବିଭକତି ତପଫଳେ ।
ତୁ ଏହା ଧରିପାରୁ ଭଲେ ॥୧୯୮
ଏ ପାପୀଜନଙ୍କୁ ନ ସହି ।
ଏ ମଣି ଆଉ ତୋର ତହିଁ ॥୧୯୯
ମଣି ପ୍ରସାଦେ ମୁଁ ବିହରି ।
ବିଭା ହୋଇଲି ବେନିହାରୀ ॥୨୦୦
ହରିଚରିତ ସୁଧାମୟ ।
ଶୁଣନ୍ତେ ପାପ ହୋଏ କ୍ଷୟ ॥୨୦୧
ସୁଜନେ ଏହି ରସେ ରସ ।
ହେଲେ ତରିବ ମୋହପାଶ ॥୨୦୨
ବୋଲଇ ଦାସ ଜଗନ୍ନାଥ ।
ଗୀତବିନୋଦେ ଭାଗବତ ॥୨୦୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ସ୍ୟମନ୍ତକ
ଉପାଖ୍ୟାନେ ଷଷ୍ଠିତମ ଅଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଏକଷଷ୍ଟିତମ ଅଧ୍ୟାୟ

ଆନନ୍ଦେ କୃଷ୍ଣଭାବ ଘେନି ।
କହନ୍ତି ଶୁକ ମହାମୁନି ।।୧

ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ ।
ଦ୍ୱାରକାପୁରେ ଉପଗତ ।।୨
କୁରୁନଗରୁ ଦୂତ ବେଗେ ।
କହିଲା ରାମକୃଷ୍ଣ ଆଗେ ।।୩
ଜାଣନ୍ତି ପ୍ରଭୁ ଦେବରାୟେ ।
ଭଲେ ଅଛନ୍ତି ପଞ୍ଚୁପୋଏ ।।୪
ଜତୁର ଘରେ ପଞ୍ଚଭ୍ରାତ ।
ଜନନୀ ତୁଲେ ହେଲେ ହତ ।।୫
ଶୁଣି ବିକଳ ବସୁଦେବ ।
ଭୁବନେ ଯେତେକ ଯାଦବ ।।୬
ବିଷାଦେ କରନ୍ତି ରୋଦନ ।
ରାମଗୋବିନ୍ଦ ଦୁଃଖମନ ।।୭
ଶୋକ ନିବାରି ବେନିଭାଇ ।
ରଥେ ବସିଲେ ସଜ ହୋଇ ।।୮
କୁଳ ବେଭାରେ ରାମହରି ।
କୁରୁନଗରେ ବିଜେ କରି ।।୯
ଭୀଷ୍ମ ବିଦୁର କୃପମେଳେ ।
ଗାନ୍ଧାରୀ ଦ୍ରୋଣ ଶଲ୍ୟ ତୁଲେ ।।୧୦
ଲୋକ ବେଭାରେ ବେନିଭାଇ ।
କହନ୍ତି ମନେ ଦୁଃଖ ବହି ।।୧୧
ପ୍ରେତ ଉଚିତ କ୍ରିୟାକରି ।
ମାୟାଭିଆଣ ନରହରି ।।୧୨
ବନ୍ଧୁଙ୍କ ମୁଖ ଚାହିଁ ଭଣି ।
ପଦ୍ମଲୋଚନ ହଳପାଣି ।।୧୩
ଦେଖ ଏ ସଂସାର ବେଭାର ।
ଭ୍ରମନ୍ତି ଦେବାସୁରନର ।।୧୪
ଭବସାଗରେ ଏହି ମତେ ।
ସକଳେ ଯିବା ଶୂନ୍ୟପଥେ ।।୧୫
ଏମନ୍ତେ ବହୁ ଦୁଃଖ ବହି ।
ବାନ୍ଧବ ମଧ୍ୟେ ବେନିଭାଇ ।।୧୬
କହିଲେ ସଂସାର-ବେଭାର ।
ଏବେ ହେ। ଶୁଣ ନୃପବର ।।୧୭
ଦ୍ୱାରକାପୁରେ ତିନିଜଣ ।
ବିଚାର କଲେ ଏକମନ ।।୧୮
ଗଗନେ ଅସ୍ତ ହେଲେ ଭାନୁ ।
ଅକ୍ରୁର ତୁଲେ ଶତଧନୁ ।।୧୯
କୃତବର୍ମାଙ୍କୁ ରାଇ ଧୀରେ ।
ବିଚାର କଲେ ଏକସ୍ୱରେ ।।୨୦
ଦେଖ ଏ ପାପୀ ଶତ୍ରାଜିତ ।
ଅନ୍ୟାୟେ କଲା ବିପରୀତ ।।୨୧
ସତ୍ୟଭାମାଙ୍କୁ ଦେବାପାଇଁ ।
ବରିଲା ସତ୍ୟବାକ୍ୟ ଦେଇ ।।୨୨
ଏବେ ଆମ୍ଭଙ୍କୁ ନିନ୍ଦା କଲା ।
କନ୍ୟା ଗୋବିନ୍ଦେ ସମର୍ପିଲା ।।୨୩
ଦୁଷ୍ଟ ଦୁର୍ଜନ ମନ୍ଦଭାଗ୍ୟ ।
ପ୍ରସେନ ପଥକୁ ଏ ଯୋଗ୍ୟ ।।୨୪
ଅମୂଲ୍ୟ ମଣି ଏହା ତହିଁ ।
କେମନ୍ତେ ଆମ୍ଭ କରେ ହୋଇ ।।୨୫
ଅକ୍ରୁର ବୋଲେ ତାହା ଶୁଣି ।
ଜୀବନ୍ତେ ନ ଦେବ ସେ ମଣି ।।୨୬
ଏମନ୍ତ ବୋଲଇ ବିଚାରିଲେ ।
ନିଜ ମନ୍ଦିରେ ରାତ୍ରେ ଗଲେ ।।୨୭
ଆପଣା ଘରେ ଶତଧନୁ ।
କୋପେ କମ୍ପଇ ତାର ତନୁ ।।୨୮
ବସ୍ତ୍ର ପିନ୍ଧିଲା ଭିଡ଼ି ଗାଢେ ।
କରେ ଘେନିଲା ଯମଦାଢେ ।।୨୯
ରାତ୍ରେ ମିଳିଲା ତାର ପୁରେ ।
ଶତ୍ରାଜିତର ଶଯ୍ୟାଠାରେ ।।୩୦
ଦଇବେ କ୍ଷୀଣ ତା ଜୀବନ ।
ଯାହା ସଂଚିଲେ ଭଗବାନ ।।୩୧
ନିକଟେ ଥିଲେ ଯେ କାମିନୀ ।
ସଭୟେ କଲେ ଗୋଳଧ୍ୱନି ।।୩୨
ଅନାଥ ପ୍ରାୟ ଶୋକକରି ।
ତାହାର କରଛନ୍ତି ଧରି ।।୩୩
ସ୍ତିରୀଙ୍କି କରି ଅବହେଳା ।
ଛେଦିଲା ଶତ୍ରାଜିତ ଗଳା ।।୩୪
ପଶୁଙ୍କ ପ୍ରାୟ ବଧ କରି ।
ଅମୂଲ୍ୟ ମଣି କରେ ଧରି ।।୩୫
ନିଜ ଭୁବନେ ବିଜେ କଲା ।
ଏମନ୍ତେ ରଜନୀ ପାଇଲା ।।୩୬
ଶୁଣ ରାଜନ ଶୁଦ୍ଧକର୍ମା ।
ପିତାମରଣେ ସତ୍ୟଭାମା ।।୩୭
ବିଳାପ କରେ ଶୋକେ ପଡ଼ି ।
ଭୁଜ ଯୁଗଳ ଶିରେ ତାଡ଼ି ।।୩୮
ହା ହା ପିଅର ବୋଲି ମୋହେ ।
ଜୀବନ ନ ରହଇ ଦେହେ ।।୩୯
ପୁଣି ତଦନ୍ତେ ଚେତା ପାଇ ।
ସେହୁ ଶରଦଚନ୍ଦ୍ରମୁହଁୀ ।।୪୦
ମୃତଶରୀରରେ ଗନ୍ଧଲେପି ।
ତଇଳଦ୍ରୋଣୀ ମଧ୍ୟେ କ୍ଷେପି ।।୪୧
ପିତା ବିୟୋଗେ ଶୋକତ୍ରାସେ ।
ରଥେ ଗମିଲା କୁରୁଦେଶେ ।।୪୨
ପିତା ବିୟୋଗ ଦୁଃଖ ବହି ।
ଚଳନ୍ତେ ଦିଗ ନ ଦିଶଇ ।।୪୩
କୃଷ୍ଣ ଜାଣନ୍ତି ତାହା ଭଲେ ।
ହସ୍ତିନାପୁରେ ରାମ ତୁଲେ ।।୪୪
ଏମନ୍ତେ ସତ୍ୟଭାମା ଯାଇ ।
କହନ୍ତି କୃଷ୍ଣ ମୁଖ ଚାହିଁ ।।୪୫
ଭୋ ନାଥ ଶତଧନୁ ଚୋର ।
ବଧିଲା ପିଅର ମୋହର ।।୪୬
ଘରେ ପଶିଲା ଶସ୍ତ୍ର ଧରି ।
ପଶୁର ପ୍ରାୟ ବଧ କରି ।।୪୭
ଅମୂଲ୍ୟମଣି ଘେନି କରେ ।
ପଳାଇଗଲା ଅନ୍ଧକାରେ ।।୪୮
ଅନାଥ ମୋହର ଜୀବନ ।
ବୋଲି ସେ କରଇ ରୋଦନ ।।୪୯
ଶୁଣି ଚକିତ ଦାମୋଦର ।
ବେନିଲୋଚନୁ ବହେ ନୀର ।।୫୦

Dr. Sudhanshu Sekhar Mishra

ସତ୍ୟଭାମାର ମୁଖ ଚାହିଁ ।
ରୋଦନ କଲେ ବେନିଭାଇ ॥୫୧
କପଟେ କୁରୁବଳ ମଧ୍ୟେ ।
ଗୋବିନ୍ଦ କହିଲେ ବିଷାଦେ ॥୫୨
ସତ୍ୟଭାମାଙ୍କୁ ଆଗକରି ।
ରଥେ ବସିଲେ ରାମହରି ॥୫୩
ଦାରୁକ ଦାହ ଧାଡିକାରେ ।
କୃଷ୍ଣ ବୋଲନ୍ତି କୋପଭରେ ॥୫୪
ଶତଧନୁର ଶିରହାଣି ।
ଆଜ ଆଣିବି ରତ୍ନମଣି ॥୫୫
ଏମନ୍ତେ ଶୁଣ ହେ ରାଜନ ।
ରାମ ଗୋବିନ୍ଦ ଆଗମନ ॥୫୬
ସଭୟେ ଶତଧନୁ ଶୁଣି ।
କରେ ଘେନିଲା ରତ୍ନମଣି ॥୫୭
କୃତବର୍ମାର ପୁରେ ପଶି ।
ବିଶ୍ୱାସେ କହେ ପାଶେ ବସି ॥୫୮
ଶତ୍ରାଜିତ୍‌ର ଶିର ହାଣି ।
ମୁଁ ଯେ ଆଣିଲି ରତ୍ନମଣି ॥୫୯
ତୋର ବଚନେ ମତିଭ୍ରମ ।
ନ ଜାଣି କଲି ଏଡ଼େ କର୍ମ ॥୬୦
ମୋତେ ମାରିବେ ଚକ୍ରଧର ।
ତୁ ଏବେ ପକ୍ଷ ହୁଅ ମୋର ॥୬୧
ଏମନ୍ତ କୃତବର୍ମା ଶୁଣି ।
ଭୟେ ବୋଲଇ ସାଧୁବାଣୀ ॥୬୨
ରାମକୃଷ୍ଣରେ ଦ୍ରୋହ କରି ।
କେ ଅବା ଥିବ ଦେହଧରି ॥୬୩
ଯାହାର କୋପେ କଂସ ମଲା ।
ସର୍ବସମ୍ପଦ ନାଶଗଲା ॥୬୪
ସପତଦଶବାର ଦ୍ୱନ୍ଦ ।
ଯୁଦ୍ଧେ ହାରିଲା ଜରାସନ୍ଧ ॥୬୫
ତାର ବଇରୀ ହୋଇ ବଳେ ।
କେ ଅବା ଥିବ ରବି ତଳେ ॥୬୬
ଏମନ୍ତ ଶୁଣି ତା ବଚନ ।
ମିଳିଲା ଅକ୍ରୂର ଭୁବନ ॥୬୭
ପଡ଼ି ତାହାର ପାଦତଳେ ।
ବୋଲଇ ଜୀବନ ବିକଳେ ॥୬୮
ମୋତେ କୋପିଲେ ଚକ୍ରଧର ।
ମୁଁ ଏବେ ଶରଣ ତୋହର ॥୬୯
ତୁ ଏବେ ମୋତେ ହୁଅ ସାହା ।
ତୋହର ବୋଲେ କଲି ଏହା ॥୭୦
ଶୁଣିଣ ବୋଲଇ ଅକ୍ରୂର ।
ନ ଜାଣୁ ଗତି ଗୋବିନ୍ଦର ॥୭୧
ଯେ ରାମକୃଷ୍ଣରେ ବଇରୀ ।
ତାହାକୁ କେବା ରଖିପାରି ॥୭୨
ଯେ ବିଶ୍ୱମାୟା ଲୀଳା କରି ।
ସର୍ଜଇ ପାଳଇ ସଂହରି ॥୭୩
ତାର ମହିମା କେବା କହି ।
ମାୟା ସଂସାରେ ଦେହ ବହି ॥୭୪
ଜାଣୁନା ବାଳକ ବୟସେ ।
କି କି ନ କଲେ ନନ୍ଦଦେଶେ ॥୭୫
ଇନ୍ଦ୍ରର ତୁଲେ ବାଦ କଲା ।
ହସ୍ତକେ ପର୍ବତ ଧଇଲା ॥୭୬
ବାଳକ କରେ ଛତ୍ର ଯେହ୍ନେ ।
ଦେଖି ଚକିତ ସର୍ବଜନେ ॥୭୭
ଯେ କୃଷ୍ଣ ଜଗତ କାରଣ ।
ଅଦ୍ଭୁତ ଯାର କର୍ମଗୁଣ ॥୭୮
ଅନନ୍ତ ଆଦିକୂଟ ହରି ।
ଯେ ଆତ୍ମା ରୂପେ ବିଶ୍ୱ ଧରି ॥୭୯
ତାହାଙ୍କୁ ମୋର ନମସ୍କାର ।
ଏମନ୍ତ କହିଲା ଅକ୍ରୂର ॥୮୦
ତା ଶୁଣି ଶତଧନୁ ଭୟେ ।
ବୋଲଇ ପଡ଼ି ତାର ପାୟେ ॥୮୧
ଏ ମଣି ଥାଉ ତୋର ଠହିଁ ।
ମୋର ଜୀବନ ଆର କାହିଁ ॥୮୨
ନିଶ୍ଚେ ମାରିବେ ଚକ୍ରଧର ।
ଅର୍ଜିଲା କର୍ମ ଏ ମୋହର ॥୮୩
ମଣି ଅକ୍ରୂର କରେ ଦେଇ ।
ମିଳିଲା ଅଶ୍ୱଶାଳେ ଯାଇ ॥୮୪
ଯେ ଅଶ୍ୱ ଗମେ ପାଦବଳେ ।
ଶତେଯୋଜନ ଅବହେଳେ ॥୮୫
ଅଶ୍ୱ ଉପରେ ସେ ବସିଲା ।
ଉତ୍ତର ଦିଗେ ପଳାଇଲା ॥୮୬
ଏମନ୍ତେ ଶୁଣି ନୃପମଣି ।
ରାମଗୋବିନ୍ଦ ତାହା ଜାଣି ॥୮୭
ଦାରୁକ ବେଗେ ରଥବାହି ।
ପଛେ ଧାଇଁଲେ ବେନିଭାଇ ॥୮୮
ସେ ଶତଧନୁ ଗୁରୁଦ୍ରୋହୀ ।
ଧର୍ମ ଅଧର୍ମ ନ ଜାଣଇ ॥୮୯
ଅଶ୍ୱେ ପଳାନ୍ତେ ମହାବଳୀ ।
ମିଥିଳା ଉପବନେ ମିଳି ॥୯୦
ଅଶ୍ୱ ପଡ଼ିଲା ମୁହଁ ମାଡ଼ି ।
ତକ୍ଷଣେ ପ୍ରାଣ ଗଲା ଛାଡ଼ି ॥୯୧
ଅଶ୍ୱ ଉପେକ୍ଷି ମହାବୀର ।
ପାଦେ ଗମିଲା ଅତି ଖର ॥୯୨
ଗୋବିନ୍ଦ ଦେଖି ତା ଗମନ ।
ରଥୁଁ ଓହ୍ଲାଇଲେ ବହନ ॥୯୩
କୋପେ ନୟନେ ନରହରି ।
ଧାଇଁଲେ କରେ ଚକ୍ର ଧରି ॥୯୪
ଦେଖି ସେ ଗୋବିନ୍ଦର ମନ୍ୟୁ ।
ଭୟେ ପଳାଏ ଶତଧନୁ ॥୯୫
ଭୟେ ପଳାନ୍ତେ କମ୍ପେ କାୟେ ।
ଚକ୍ର ପେଶିଲେ ଦେବରାୟେ ॥୯୬
କୃଷ୍ଣର ଚକ୍ର ତୀକ୍ଷ୍ଣ ଧାର ।
କାଟିଲା ଶତଧନୁ ଶିର ॥୯୭
ଛିଡ଼ି ପଡ଼ିଲା କଣ୍ଠ ତଳେ ।
ଗୋବିନ୍ଦ ନିକଟେ ମିଳିଲେ ॥୯୮
ତାହାର ବସ୍ତ୍ରେ ମଣି ଖୋଜି ।
ନ ପାଇଁ କୃଷ୍ଣ ମନେ ହେଜି ॥୯୯
ମଣି କାହାର କରେ ଦେଇ ।
ଭୟରେ ଅଇଲା ପଳାଇ ॥୧୦୦
ଏମନ୍ତ ବୋଲି ବାହୁଡ଼ିଲେ ।
ରାମର ନିକଟେ ମିଳିଲେ ॥୧୦୧
ବୋଲନ୍ତି ପ୍ରଭୁ ଜଗନ୍ନାଥ ।
ଭୋ ଦେବ ଶୁଣ ବିପରୀତ ॥୧୦୨
ମିଛେ ମାଇଲି ଶତଧନୁ ।
ଯେଣୁ ସେ ମୋତେ କଲା ମନ୍ୟୁ ॥୧୦୩
ମଣି ଏହାର ଠହିଁ ନାହିଁ ।
କହିଲେ ରାମ ମୁଖ ଚାହିଁ ॥୧୦୪

Dr. Sudhanshu Sekhar Mishra

ଶୁଣି ବୋଲନ୍ତି ହଳଧର ।
କୋମଳ ବଚନ ଗମ୍ଭୀର ॥୧୦୫
ଏ ମଣି ଅଛି ତୋ ଭୁବନେ ।
ସନ୍ଦେହ ନ କର ତୁ ମନେ ॥୧୦୬
କାହାର ହସ୍ତେ ଅବା ଦେଇ ।
ଭୟେ ଏ ଅଇଲା ପଳାଇ ॥୧୦୭
ମଣି ଉଦ୍ଦେଶ୍ୟେ ଯାଅ ଘର ।
ମୁଁ ଯିବି ଜନକ ନଗର ॥୧୦୮
ପ୍ରିୟ ସୁହୃଦ ସେ ମୋହର ।
ଦେଖିବି ତାହାର ବେଭାର ॥୧୦୯
ଏମନ୍ତ କହି ହଳଧାରୀ ।
ଜନକପୁରେ ବିଜେକରି ॥୧୧୦
ରାମ ଆଗମ ଦେଖି ରାଜା ।
ସଂଭ୍ରମେ କଲା ପାଦପୂଜା ॥୧୧୧
ଜନକ ପୂଜନ୍ତେ ଚରଣ ।
ସନ୍ତୋଷେ ରେବତୀରମଣ ॥୧୧୨
କେତେହେଁ ଦିନ ତହିଁ ରହି ।
ଜନକ ପ୍ରିୟ ଭାବ ବହି ॥୧୧୩
ହସ୍ତିନାପୁରେ ଦର୍ଯ୍ୟୋଧନ ।
ଶୁଣିଲା ରାମ ଆଗମନ ॥୧୧୪
ମନଆନନ୍ଦେ ଅନ୍ଧସୁତ ।
ମିଥିଳାପୁରେ ଉପଗତ ॥୧୧୫
ମିଳିଲା ହଳଧର ପାଶେ ।
ଅନେକ ଭକତି ବିଶ୍ୱାସେ ॥୧୧୬
ଗଦାସମର ଘୋର ଦୀକ୍ଷା ।
ରାମର ତହୁଁ କଲା ଶିକ୍ଷା ॥୧୧୭
ଗୋବିନ୍ଦ ବସି ନନ୍ଦିଘୋଷେ ।
ଆସି ମିଳିଲେ ନିଜ ଦେଶେ ॥୧୧୮
ଶତଧନ୍ୱର ଶିର ହାଣି ।
ତା ତହୁଁ ନ ପାଇଲେ ମଣି ॥୧୧୯
ସକଳ ପ୍ରିୟା ଆଗେ କହି ।
ମାୟା ଭିଆଣ ଭାବଗ୍ରାହୀ ॥୧୨୦
ବନ୍ଧୁବାନ୍ଧବ ସଙ୍ଗେ ମିଳି ।
ବାନ୍ଧବ ପ୍ରିୟ ବନମାଳୀ ॥୧୨୧
ମଲା ଯେ ଶତଧନ୍ୱ ବୀର ।
ପ୍ରେତ ଉଚିତ କ୍ରିୟା ତାର ॥୧୨୨

ଶ୍ରୀକୃଷ୍ଣ କରାଇଲେ ଭାବେ ।
ଶୁଣ ପରୀକ୍ଷନୃପ ଏବେ ॥୧୨୩
ଶତଧନ୍ୱର ବଧ ଶୁଣି ।
ଅକ୍ରୂର ମନେମନେ ଗୁଣି ॥୧୨୪
କୃତବର୍ମାର ତୁଲେ ଭାଳି ।
ନିଶ୍ଚେ ମାରିବେ ବନମାଳୀ ॥୧୨୫
ଏମନ୍ତ ଭାଳି ମନଛନ୍ନେ ।
ପଳାଇଗଲେ ବେନିଜନେ ॥୧୨୬
ଅକ୍ରୂର ଯେତେବେଳେ ଗଲା ।
ଶୁଣ ରାଜନ କୃଷ୍ଣଲୀଳା ॥୧୨୭
ଦ୍ୱାରକାପୁରେ ରିଷ୍ଟଜାତ ।
ଦେଖି ଚକିତ ଯଦୁନାଥ ॥୧୨୮
ଉତ୍ପାତ ଦେଖିଲେ ପ୍ରତ୍ୟକ୍ଷେ ।
ଭୂମି–ଗଗନ–ଅନ୍ତରୀକ୍ଷେ ॥୧୨୯
ପ୍ରାଣୀଙ୍କ ଦେହେ ବ୍ୟାଧି ଜାତ ।
ମନ ଉଚ୍ଚାଟ ଉଲ୍‌କାପାତ ॥୧୩୦
ରୁଧିର ବୃଷ୍ଟି ଦଶଦିଶେ ।
ଭୂମି କମ୍ପଇ ମହାତ୍ରାସେ ॥୧୩୧
ଦ୍ୱାରକାପୁରଜନେ ଚାହିଁ ।
ଭାଳନ୍ତି ଏକଠୁଣ୍ଠ ହୋଇ ॥୧୩୨
ଘୋର ଆପଦ ଆଗମନେ ।
ଭାଳି ବୋଲନ୍ତି ବୃଦ୍ଧଜନେ ॥୧୩୩
ଅକ୍ରୂର ପଳାଇଲା ଡରେ ।
ତେଣୁ ଆପଦ ଯଦୁପୁରେ ॥୧୩୪
ଅକ୍ରୂର ବିନୁ ଏହି ରିଷ୍ଟି ।
ରୁଧିର ସଙ୍ଗେ ଶିଳା ବୃଷ୍ଟି ॥୧୩୫
ଅନେକ ଅକ୍ରୂରର ଗୁଣ ।
ତୁମ୍ଭେ ହୋ ସାବଧାନେ ଶୁଣ ॥୧୩୬
ପୂର୍ବେ ଯେ ଥିଲା କାଶୀରାଜା ।
ସୁଖେ ପାଳଇ ଜନପ୍ରଜା ॥୧୩୭
ଏମନ୍ତେ ଇନ୍ଦ୍ର ତା ଭୁବନେ ।
ବୃଷ୍ଟି ନ କଲା କୋପମନେ ॥୧୩୮
ଅନ୍ନ ନ ପାଇ କ୍ଷୁଧାଭୟେ ।
ଅନେକ ଜନ୍ତୁ ଗଲେ କ୍ଷୟେ ॥୧୩୯
ସଙ୍ଗତେ ଘେନି ଜନପ୍ରଜା ।
ଭୟେ ଭାଳଇ କାଶୀରାଜା ॥୧୪୦

ବିଚାର କଲେ ଏକଭାବ ।
ଶ୍ୱଫଲ୍କ ନାମେଣ ଯାଦବ ॥୧୪୧
ପୂର୍ବେ ଅନେକ ତପ କଲା ।
ଇନ୍ଦ୍ର ତାହାକୁ ବର ଦେଲା ॥୧୪୨
ସେ ଯହିଁ ଥାଇ ପୁଣ ରହି ।
ସେ ଦେଶେ ଇନ୍ଦ୍ର ବରଷଇ ॥୧୪୩
ଏମନ୍ତ ବିଚାରିଲେ ବସି ।
ସ୍ୱଫଲ୍କ ଆଣିଲେ ଆଶ୍ୱାସି ॥୧୪୪
କନ୍ୟାଏ ଥିଲା ତାର ଘର ।
ଅତି ସୁନ୍ଦର ରୂପସାର ॥୧୪୫
ଶୁଣ କନ୍ୟାର ଜନ୍ମବାଣୀ ।
ଆମ୍ଭେ ଯେ ପୂର୍ବେ ଅଛୁ ଶୁଣି ॥୧୪୬
ଜନନୀ ଗର୍ଭେ ଚିରବାସ ।
ରହିଲା ଦ୍ୱାଦଶ ବରଷ ॥୧୪୭
ଜାତ ନୋହିଲା ଯେତେବେଳେ ।
ନୃପତି ଭାଳଇ ବିକଳେ ॥୧୪୮
ଦିନେକ ପତ୍ନୀ ଗର୍ଭ ଚାହିଁ ।
କହେ ବିକଳ ଭାବ ବହି ॥୧୪୯
ହେ ଗର୍ଭ ଶୁଣ ମୋ ଉତ୍ତର ।
ହେଲେ ନାଶିଲୁ ଘର ମୋର ॥୧୫୦
କହ ତୁ କେବଣ କାରଣ ।
ଏ ବଡ଼ ମରଣ କଷଣ ॥୧୫୧
ଏମନ୍ତ ରାଜା ବାକ୍ୟ ଶୁଣି ।
ଗର୍ଭ କହିଲା ମୁକ୍ତିବାଣୀ ॥୧୫୨
ଭୋ ତାତ ଶୁଣ ମୋ ଉତ୍ତର ।
ଯେମନ୍ତ ବ୍ୟବସ୍ଥା ଗର୍ଭର ॥୧୫୩
ଉତ୍ତମଧେନୁ ପ୍ରତିଦିନେ ।
ଦାନ ତୁ ଦିଅ ବିପ୍ରଜନେ ॥୧୫୪
ସଂପୂର୍ଣ୍ଣ ଦ୍ୱାଦଶବରଷେ ।
ଜନମ ହୋଇବି ବିଶ୍ୱାସେ ॥୧୫୫
ତକ୍ଷଣେ ଗର୍ଭର ବଚନେ ।
ନୃପତି ଭାଳଇ ବିକଳେ ॥୧୫୬
ନିରତେ କଲା ସେହି ମତ ।
ଧେନୁ ସେ ଦେଲା ଅପ୍ରମିତ ॥୧୫୭
ଏମନ୍ତେ କନ୍ୟା ଜାତ ହୋଇ ।
କାଶୀନଗରେ ଥିଲା ରହି ॥୧୫୮

Dr. Sudhanshu Sekhar Mishra

ସେ କନ୍ୟା ଶ୍ୱଫଳ୍କରେ ବରି ।
ବିବାହ ଦେଲା ଦଣ୍ଡଧାରୀ ॥୧୫୯
ତାହାର ଦେଶେ ଶସ୍ୟନାଶ ।
ନିର୍ଜଳ ଦ୍ୱାଦଶ ବରଷ ॥୧୬୦
ତକ୍ଷଣେ ମିଳି ମେଘମାଳ ।
ଆନନ୍ଦେ ବରଷିଲେ ଜଳ ॥୧୬୧
ତାର କୁମର ଦାନପତି ।
ଏମନ୍ତ ଅକ୍ରୂରର ଗତି ॥୧୬୨
ସେ ମହାଭାଗ ଯହିଁ ଥାଇ ।
ରିଷ୍ଟ ଅରିଷ୍ଟ ଭୟ ନାହିଁ ॥୧୬୩
ଏମନ୍ତ ବୃଦ୍ଧ ବାକ୍ୟ ଶୁଣି ।
ଆନନ୍ଦେ ପ୍ରଭୁ ଚକ୍ରପାଣି ॥୧୬୪
କାଶୀନଗରେ ଦୂତ ପେଶି ।
ଆଣିଲେ ଅକ୍ରୂରେ ଆଶ୍ୱାସି ॥୧୬୫
କାଶୀନଗରେ ସେ ଅକ୍ରୂର ।
କଲା ଅନେକ ଯଜ୍ଞ ସାର ॥୧୬୬
ପୂର୍ବେ ତା ପିତୃ ପିତାମହୀ ॥
କାଶୀନଗରେ ବଡ଼ ସ୍ନେହୀ ॥୧୬୭
ଅନେକ ଯଜ୍ଞର ବିଧାନ ।
ପୁରୁଷଅର୍ଥ ଧର୍ମମାନ ॥୧୬୮
ସେ ପୁରେ ଧର୍ମବିଧି ମତେ ।
ଯଜ୍ଞ ସେ କଲା ନାନାମତେ ॥୧୬୯
ଦଇବେ ମଣି ରତ୍ନସାର ।
ଦିଅଇ ସ୍ୱର୍ଣ୍ଣ ଅଷ୍ଟଭାର ॥୧୭୦
ସେ ଦ୍ରବ୍ୟ ରଖିଣ ନିଃଶଙ୍କେ ।
ଅନେକ ଯଜ୍ଞ କଲା ସୁଖେ ॥୧୭୧
ତାହା ଜାଣିଲେ ଭଗବାନ ।
ଅକ୍ରୂର ଅଣାଇ ବହନ ॥୧୭୨
ପାଶେ ବସାଇ ଦାମୋଦର ।
ବିଶ୍ୱାସେ କହନ୍ତି ମଧୁର ॥୧୭୩
ସେ କୃଷ୍ଣ ଜଗତ ଜୀବନ ।
ଜାଣନ୍ତି ପ୍ରାଣୀଙ୍କର ମନ ॥୧୭୪
ଆଶ୍ୱାସି ବସାଇ ଅକ୍ରୂର ।
ବୋଲନ୍ତି ବ୍ରହ୍ମାଣ୍ଡଠାକୁର ॥୧୭୫
ଶୁଣ ଅକ୍ରୂର ମୋର ବାଣୀ ।
ତୋ ତହିଁ ସ୍ୟମନ୍ତକମଣି ॥୧୭୬
ଥୋଇଣ ଶତଧନ୍ୱ ଗଲା ।
ଦଇବେ ପ୍ରାଣ ସେ ହାରିଲା ॥୧୭୭
ସେ ମଣିସଂକଟୁ ଉଦ୍ଧରି ।
ବିଭା ହୋଇଲି ବେନି ନାରୀ ॥୧୭୮
ଉଚିତେ ସେ ମଣି ମୋହର ।
ଶ୍ୱଶୁର ଦେଲା ଉପହାର ॥୧୭୯
ସତ୍ରାଜିତର ପୁତ୍ର ନାହିଁ ।
ଦୁହିତା ସତ୍ୟଭାମା ହୋଇ ॥୧୮୦
ମରଣେ ପ୍ରେତକ୍ରିୟା ସାରି ।
ଦୁର୍ଗମ-ନରକୁ ଉଦ୍ଧାରି ॥୧୮୧
ତାହାର ପୁତ୍ରୀ ମଣି ନେବ ।
ଏମନ୍ତ ଶାସ୍ତ୍ରର ପ୍ରସ୍ତାବ ॥୧୮୨
ସତ୍ରାଜିତର ତପ ଫଳେ ।
ରବି ତାହାଙ୍କୁ ମଣି ଦେଲେ ॥୧୮୩
ନିର୍ମଳଲୋକେ ତାହା ଧରି ।
ଆନ କେ ପାରିବ ଆବୋରି ॥୧୮୪
ସୁକୃତ-ତନୁ ପୁଣ୍ୟବନ୍ତ ।
ତୁ ସେ ଧାରଣେ ସାମରଥ ॥୧୮୫
ରାମ ମୋହର ଜ୍ୟେଷ୍ଠଭାଇ ।
ତାହାଙ୍କ ଚିତ୍ତଶୁଦ୍ଧି ନାହିଁ ॥୧୮୬
ବନ୍ଧୁବାନ୍ଧବ ଯେତେ ମୋର ।
ଚିତ୍ତେ ସଂଶୟ ତାହାଙ୍କର ॥୧୮୭
ଏ ସଭା ମଧ୍ୟେ ମଣି ତୁହି ।
ଦେଖାଅ ମୋର ଭାବ ବହି ॥୧୮୮
ତାହାଙ୍କ ମନୁ ଯିବ ଭ୍ରାନ୍ତି ।
ଏଥେ ମୋହର ମନ ଶାନ୍ତି ॥୧୮୯
ଏ ମଣି କାଶୀପୁରେ ନେଇ ।
ଅନେକ ଯଜ୍ଞ କଲୁ ତୁହି ॥୧୯୦
ସୁବର୍ଣ୍ଣ ଯଜ୍ଞବେଦୀ ତୋର ।
ଦେଖନ୍ତି ଦେବାସୁର ନର ॥୧୯୧
ଏମନ୍ତେ କୃଷ୍ଣ ସାଧୁବାଣୀ ।
ଅକ୍ରୂର ଶୁଣି ରତ୍ନମଣି ॥୧୯୨
ବସ୍ତ୍ରେ ଲୁଚାଇଥିଲା କାଖେ ।
ସଭାରେ ଥୋଇଲା ପ୍ରତ୍ୟକ୍ଷେ ॥୧୯୩
ସୂର୍ଯ୍ୟକିରଣ ପ୍ରାୟ ଦେଖି ।
ଜନେ ବୁଜିଲେ ବେନି ଆଖି ॥୧୯୪
ଏମନ୍ତେ ମଣି ଦେଖାଇଲେ ।
ଆତ୍ମାର ବାଦ ଦୂର କଲେ ॥୧୯୫
ଗୋବିନ୍ଦ କରେ ଘେନି ମଣି ।
ଅକ୍ରୂର ମୁଖ ଚାହିଁ ଭଣି ॥୧୯୬
ତୁ ପୁଣ୍ୟକର୍ମା ସାଧୁଜନ ।
ଏ ମଣି ଧାରଣେ ଭାଜନ ॥୧୯୭
ଏ ମଣି ଥାଉ ତୋର ତହିଁ ।
ଏମନ୍ତ କହି ଭାବଗ୍ରାହୀ ॥୧୯୮
ନିଜ ଭୁବନେ ବିଜେ କଲେ ।
ଲୋକେ ଅଯଶ ନିବାରିଲେ ॥୧୯୯
ଏବେ ହୋ ଶୁମ ନରନାଥ ।
ତୁ ସାଧୁ ପୁଣ୍ୟ ଭାଗ୍ୟବନ୍ତ ॥୨୦୦
ମଣିହରଣ ସାଧୁବାଣୀ ।
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ॥୨୦୧
ଦୁଃଖ-ଦୁରିତ-ଅପବାଦ ।
ଏ ଆଦି ଯେତେ ମନଖେଦ ॥୨୦୨
ଦୁଷ୍ଟସ୍ୱପନ ଗ୍ରହଗତି ।
ଶ୍ରବଣେ ପଠନେ ନାଶନ୍ତି ॥୨୦୩
ସର୍ବମଙ୍ଗଳ ଉପଗତ ।
କହଇ ଦାସ ଜଗନ୍ନାଥ ॥୨୦୪

ଇତି ଶ୍ରୀମଦ ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ସ୍ୟମନ୍ତକ
ଉପାଖ୍ୟାନେ

Dr. Sudhanshu Sekhar Mishra

ଏକଷଷ୍ଟିତମ ଅଧ୍ୟାୟଃ ।।

## ଦ୍ୱିଷଷ୍ଟିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରପତି ।
ଅଶେଷ ଗୋବିନ୍ଦର ଗତି ।।୧
ପାଣ୍ଡବେ ବହୁ ଦୁଃଖ ତ୍ରାସେ ।
ଅରଣ୍ୟେ ଦ୍ୱାଦଶ ବରଷେ ।।୨
ଅଜ୍ଞାତ ଘୋର ବନବାସେ ।
ଥିଲେ ସେ ବିରାଟର ଦେଶେ ।।୩
ବରଷେ ବଞ୍ଚି ତା ଭୁବନେ ।
ବିଖ୍ୟାତ ପଣ୍ଡୁର ନନ୍ଦନେ ।।୪
ଇନ୍ଦ୍ରପ୍ରସ୍ତରେ ଛନ୍ତି ରହି ।
ସେ କଥା ଶୁଣି ଭାବଗ୍ରାହୀ ।।୫
ଦାରୁକ ସାଜି ନନ୍ଦିଘୋଷେ ।
ଚଳିଲେ ସୁହୃଦ ବିଶ୍ୱାସେ ।।୬
ଇନ୍ଦ୍ରପ୍ରସ୍ଥରେ ବନମାଳୀ ।
ଧର୍ମନନ୍ଦନ ଗୃହେ ମିଳି ।।୭
ଦେଖି ସାନନ୍ଦ ପଞ୍ଚଜନେ ।
ଚାହାନ୍ତି ନିଶ୍ଚଳ ନୟନେ ।।୮
ବେଗେ ଉଠିଲେ ପାଞ୍ଚଭାଇ ।
କି ପଟାନ୍ତିର ଦେବି ମୁହିଁ ।।୯
ଜୀବନ ଗଲା ପିଣ୍ଡ ଯେହ୍ନେ ।
ପୁଣି ଉଠଇ ଦିବ୍ୟଜ୍ଞାନେ ।।୧୦
ଦେଖି ଅଖିଳ ଯୋଗେଶ୍ୱର ।
ନୟନ ପିଛା କଲେ ସ୍ଥିର ।।୧୧
ରୋମ ପୁଲକେ କମ୍ପେ ଦେହୀ ।
ନୟନଯୁଗୁଁ ଲୁହ ବହି ।।୧୨
ଗୋବିନ୍ଦ ଜଣେ ଜଣେ ଧରି ।
ହୃଦେ ଲଗାଇ କୋଳକରି ।।୧୩
ପଦ୍ମଲୋଚନ ସଙ୍ଗ ପାଇ ।
ପବିତ୍ର ହେଲେ ପାଞ୍ଚଭାଇ ।।୧୪
ଧର୍ମନନ୍ଦନ ଭୀମ ପାଦେ ।
ଗୋବିନ୍ଦ ନମିଲେ ଆନନ୍ଦେ ।।୧୫
ପାର୍ଥଙ୍କୁ କଲେ ଆଲିଙ୍ଗନ ।
ନକୁଳ ଆଦି ବେନିଜନ ।।୧୬
ମାଦ୍ରୀକୁମର ସହଦେବ ।
ବନ୍ଦିଲେ ଗୋବିନ୍ଦର ପାଦ ।।୧୭
ଆନନ୍ଦେ କଲେ ନମସ୍କାର ।
ଯେସନେ ସଂସାର ବେଭାର ।।୧୮
କୃଷ୍ଣଙ୍କୁ ଆସନେ ବସାଇ ।
ଭାବେ ପୂଜିଲେ ପାଞ୍ଚଭାଇ ।।୧୯
ଦ୍ରୋପଦୀ ଥିଲେ ନିଜ ପୁରେ ।
କୃଷ୍ଣ ଆଗମ ଜାଣି ଧୀରେ ।।୨୦
ନମ୍ରଶିରରେ ଲଜ୍ଜାଭରେ ।
କୃଷ୍ଣଙ୍କୁ ନମିଲେ ଅନ୍ତରେ ।।୨୧
ସାତ୍ୟକି କର କରେ ଧରି ।
ଶ୍ରୀକୃଷ୍ଣ ତୁଲେ ପୂଜାକରି ।।୨୨
ଯେତେକ ଥିଲେ କୃଷ୍ଣ ସଙ୍ଗେ ।
ପୂଜିଲେ ସର୍ବେ ଅନୁରାଗେ ।।୨୩
କୁନ୍ତୀ ଯେ ଥିଲେ ପୁରଦେଶେ ।
ହା କୃଷ୍ଣ ବୋଲି ସ୍ନେହବଶେ ।।୨୪
ଆନନ୍ଦେ ପାଣ୍ଡବଜନନୀ ।
ହସ୍ତରେ ଉପାୟନ ଘେନି ।।୨୫
ବେଗେ ମିଳିଲେ କୃଷ୍ଣ ଆଗେ ।
ଦ୍ରୌପଦୀ ତୁଲେ ଅନୁରାଗେ ।।୨୬
ଲୋକବେଭାରେ ଦାମୋଦର ।
ନମିଲେ କୁନ୍ତୀର ପୟର ।।୨୭
କୁନ୍ତୀ ଗୋବିନ୍ଦେ କୋଳକରି ।
ତୋଳିଲା ବେନିଭୁଜେ ଧରି ।।୨୮
ବନ୍ଧୁକୁଶଳ ପୁଚ୍ଛାକରି ।
ଦ୍ରୌପଦୀକର କରେ ଧରି ।।୨୯
ମୁକୁନ୍ଦ ବଦନ ଅନାଇ ।
କହନ୍ତେ ଅଶ୍ରୁଜଳ ବହି ।।୩୦
ଯେମନ୍ତ କ୍ଲେଶ ବନବାସେ ।
ବଞ୍ଚିଲେ ଦ୍ୱାଦଶବରଷେ ।।୩୧
ତାହା ସୁମରି କୁନ୍ତୀ କାନ୍ଦେ ।
ମନ ନିବେଶି କୃଷ୍ଣପାଦେ ।।୩୨
ହେ କୃଷ୍ଣ ତବ ଦରଶନ ।
କୃତାର୍ଥ କଲା ମୋ ଜୀବନ ।।୩୩
ହସ୍ତିନାପୁରେ ଦୁଃଖ ସହି ।
ସ୍ୱାମୀ ମରଣେ ଥିଲି ମୁହିଁ ।।୩୪
ତୁ ନାଥ ଅକ୍ରୂରକୁ ପେଶି ।
ମୋର କୁମରଙ୍କୁ ଆଶ୍ୱାସି ।।୩୫
ସେଦିନୁ ଦୁଃଖ ମୋ ଦହନ ।
ଏବେ ଦେଖିଲି ତୋ ବଦନ ।।୩୬
ତୁ ନାଥ ଶରଣସୋଦର ।
ପର ଆପଣା ନାହିଁ ତୋର ।।୩୭
ତଥାପି ଯେ ତୋତେ ଲୋଡ଼ଇ ।
ତାହାର ହୃଦେ ଥାଉ ତୁହି ।।୩୮
ଅଶେଷ ଦୁଃଖ କରୁ ହତ ।
ଏମନ୍ତ ପ୍ରଭୁ ତୁ ଅଚ୍ୟୁତ ।।୩୯
ଧର୍ମନନ୍ଦନ କୃଷ୍ଣ ଚାହିଁ ।
ବୋଲନ୍ତି ପ୍ରିୟଭାବ ବହି ।।୪୦
ଅନେକ ଅଛି ପୁଣ୍ୟବଳ ।
ତୋତେ ଭେଟିଲୁ ଆଦିମୂଳ ।।୪୧
ଭୋ ନାଥ ମହିମା ତୋହର ।
ଯୋଗେଶ୍ୱରଙ୍କୁ ଅଗୋଚର ।।୪୨
ଆମ୍ଭେ କିଞ୍ଚିତ ବୁଦ୍ଧିହୀନ ।
ପାଇଲୁ ତବ ଦରଶନ ।।୪୩
ଏମନ୍ତେ ଭକତ ବିଶ୍ୱାସେ ।
କୃଷ୍ଣ ପରମ ମନତୋଷେ ।।୪୪
ତହିଁ ପରଷା ଚାରି ମାସ ।
ରହିଲେ ପ୍ରଭୁ ପୀତବାସ ।।୪୫
ଇନ୍ଦ୍ରପ୍ରସ୍ଥର ଯେତେ ଜନ ।
କରନ୍ତି କୃଷ୍ଣ ଦରଶନ ।।୪୬
ଚର୍ମଲୋଚନ କରି ସାଧୁ ।
ତରିଲେ ଭବ ପରମାବୁ ।।୪୭
ଏମନ୍ତେ ଶୁଣ ନରନାଥ ।
ଦିନେକ କୃଷ୍ଣ ଧରି ପାର୍ଥ ।।୪୮
ପିତୃଦିବସ ଆଗମନେ ।

Dr. Sudhanshu Sekhar Mishra

ମିଳିଲା ହରଷ ବଦନେ ॥୪୯
ଧର୍ମନନ୍ଦନ ଆଜ୍ଞାମତେ ।
ବସିଲା କପିଧ୍ୱଜ ରଥେ ॥୫୦
ଦାରୁକ ଘେନି ନନ୍ଦିଘୋଷେ ।
ଗୋବିନ୍ଦ ବସିଲେ ହରଷେ ॥୫୧
ଅର୍ଜୁନ କରେ ଧନୁ ଘେନି ।
କନ୍ଧେ ଶୋଭିତ ତ୍ରୋଣ ବେନି ॥୫୨
ଗହନ ବନେ ନରହରି ।
ଅନେକ ମୃଗ ବଧ କରି ॥୫୩
ଅର୍ଜୁନ କରେ ତୀକ୍ଷ୍ଣ ବାଣ ।
ଦିଗ ଆବୋରି ନାରାୟଣ ॥୫୪
ବରାହ ମହିଷ ହରିଣ ।
ଶଶା ଶାର୍ଦ୍ଦୂଳ ପକ୍ଷୀଗଣ ॥୫୫
ଶରଭ ଗବୟ ଖଡ଼ଗ ।
ପିତୃଯଜ୍ଞକୁ ଯେତେ ଯୋଗ୍ୟ ॥୫୬
ରାଜସେବକେ ତାହା ବହି ।
ପାଣ୍ଡବପୁରେ ଦେଲେ ନେଇ ॥୫୭
ତୃଷିତ ହୋଇ ବୀର ପାର୍ଥ ।
ଯମୁନାତୀରେ ପ୍ରଗତ ॥୫୮
ସଙ୍ଗେ ମିଳିଲେ ଭଗବାନ ।
ସନ୍ତୋଷେ କଲେ ଜଳପାନ ॥୫୯
ମୁଖ-ନୟନ ଜଳେ ଧୋଇ ।
ଆନନ୍ଦେ ଚଉଦିଗ ଚାହିଁ ॥୬୦
ଯମୁନାଜଳେ ବାଲିକୁଦେ ।
କନ୍ୟାଏ ବସି ତାର ମଧ୍ୟେ ॥୬୧
ତପ କରଇ ସୂର୍ଯ୍ୟେ ଚାହିଁ ।
ତା ରୂପ ପାରିବ କେ କହି ॥୬୨
ଅତି ସୁସଞ୍ଚ ଚାରୁବେଶ ।
ମୋହଇ ବନ ଗିରି ଦେଶ ॥୬୩
ଦେଖି ଚକିତ ଭଗବାନ ।
ଚାହିଁଲେ ଅର୍ଜୁନ ବଦନ ॥୬୪
ବୋଲନ୍ତି ଦେଖ ରୂପରାଶି ।
କାଳିନ୍ଦୀ ବାଲିକୁଦେ ବସି ॥୬୫
ତପ କରଇ କିସ ସଧେ ।
ନିର୍ଜନ ଘୋରବନ ମଧ୍ୟେ ॥୬୬
କୃଷ୍ଣବଚନେ ପଣ୍ଡୁବଳା ।

କନ୍ୟା ସମୀପେ ବିଜେ କଲା ॥୬୭
ପୁଚ୍ଛଇ କନ୍ୟାମୁଖ ଚାହିଁ ।
ତୋ ରୂପ ଦେଖିଲା ତ ନାହିଁ ॥୬୮
କାହାର ଦୁହିତା ବୋଲାଉ ।
କିମ୍ବା ତୁ ଏତେ ଦୁଃଖ ସହୁ ॥୬୯
କାହୁଁ ଆସି ଏ ଘୋରବନେ ।
ତପ ଆଚରୁ ଶୁଦ୍ଧମନେ ॥୭୦
କେବଣ ଫଳେ ତବ ଇଚ୍ଛା ।
କି ଅବା ବରେ ତୋର ବାଞ୍ଛା ॥୭୧
କହ ନକରି ମନେ ଭ୍ରାନ୍ତି ।
କାହାକୁ ଇଚ୍ଛ ନିଜ ପତି ॥୭୨
ଅର୍ଜୁନ ବାଣୀ ଶୁଣି କର୍ଣ୍ଣେ ।
କାଳିନ୍ଦୀ କହେ ଶୁଦ୍ଧମନେ ॥୭୩
ଅନ୍ଧାରେ ଜ୍ୟୋତିରୂପ ଧରେ ।
ପ୍ରାଣୀନୟନ ଯେ ବିସ୍ତାରେ ॥୭୪
ରଥେ ମଣଇ ଅନ୍ତରୀକ୍ଷେ ।
ତାର ଦୁହିତା ମୁଁ ପ୍ରତ୍ୟକ୍ଷେ ॥୭୫
ସେ ତାତ ଆଜ୍ଞା ପରମାଣେ ।
ଦୁସ୍ତର ତପ ଆଚରଣେ ॥୭୬
ଅତି ନିଷ୍ଠୁର ଘୋର ଦୀକ୍ଷା ।
ତପ କରଇ କାନ୍ତ ଇଚ୍ଛା ॥୭୭
ହରିଙ୍କି ତପେ ତୋଷକରି ।
ହୋଇବି ତାର ପରିବାରୀ ॥୭୮
ଅନାଥନାଥ ଦାମୋଦର ।
ମୋହର ହୋଇବେ ସେ ବର ॥୭୯
କମଳାକାନ୍ତ ଭଗବାନ ।
ଦୁର୍ଗମ ଦୁରିତ ଦହନ ॥୮୦
ଅଶେଷ ଫଳ ସୁଖଦାତା ।
ତାରେ ବରିଲା ମୋର ପିତା ॥୮୧
କାଳିନ୍ଦୀ ନାମଟି ମୋହର ।
ପିତା ମୋହର ଦିନକର ॥୮୨
ଯାବତ ନ ପାଇବି ହରି ।
ପ୍ରାଣ ଛାଡ଼ିବି ତପକରି ॥୮୩
ମୋହର ସତ୍ୟ ଏ ବଚନ ।
ଶୁଣି ଅର୍ଜୁନ ତୋଷମନ ॥୮୪
ବେଗେ ମିଳିଲା କୃଷ୍ଣପାଶେ ।

କହିଲା ଆନନ୍ଦ-ବିଶ୍ୱାସେ ॥୮୫
ଭୋ ନାଥ ତୋର ପାଦ ଇଚ୍ଛା ।
କାଳିନ୍ଦୀ କରେ ମନେ ବାଞ୍ଛା ॥୮୬
ଅତି ନିଷ୍ଠୁର ତପ ତାର ।
ଶୁଣି ସାନନ୍ଦ ଦାମୋଦର ॥୮୭
ଯମୁନାତୀରେ ଯାଇ ମିଳି ।
ଭକତବନ୍ଧୁ ବନମାଳୀ ॥୮୮
ବୋଲନ୍ତି କନ୍ୟାମୁଖ ଚାହିଁ ।
ତପ ତୁ କରୁ ଯହିଁପାଇଁ ॥୮୯
ସେ କଥା ହୋଇଲା ସଫଳ ।
ଏମନ୍ତ ବୋଲି ଆଦିମୂଳ ॥୯୦
ରଥେ ବସାଇ ଭଗବାନ ।
ଆଣିଲେ ପାଣ୍ଡବ ଭୁବନ ॥୯୧
ତକ୍ଷଣେ ବିଶ୍ୱକର୍ମା ରାଇ ।
ବିଶ୍ୱାସ ବାକ୍ୟ ତାକୁ କହି ॥୯୨
ଦେବମାନବେ ଅଗୋଚର ।
ଏମନ୍ତ ପୁର ବେଗେ କର ॥୯୩
ଗୋବିନ୍ଦ ଆଜ୍ଞା ପରମାଣେ ।
ନିର୍ମାଣ କଲା ତତକ୍ଷଣେ ॥୯୪
ସେପୁରେ କୃଷ୍ଣ କନ୍ୟା ଥୋଇ ।
ଧର୍ମନନ୍ଦନ ପ୍ରିୟେ ରହି ॥୯୫
ଏମନ୍ତେ ଗଲା କେତେଦିନ ।
ଶୁଣ ପରୀକ୍ଷ ସାବଧାନ ॥୯୬
ଅଗ୍ନିପୁରୁଷ କରଯୋଡ଼ି ।
କହିଲା କୃଷ୍ଣପାଦେ ପଡ଼ି ॥୯୭
ସତ୍ୟବ୍ରତର ଯଜ୍ଞେ ମୁହିଁ ।
ରୋଗୀ ହୋଇଲି ଘୃତ ଖାଇ ॥୯୮
ଭୋ ନାଥ ରଖ ମୋ ଜୀବନ ।
ଦେଇ ଔଷଧ ରସ ଦାନ ॥୯୯
ଶୁଣି ଭକତବନ୍ଧୁ ହରି ।
ଅର୍ଜୁନ କର କରେ ଧରି ॥୧୦୦
ଦାରୁକ କଲା ରଥ ସଜ ।
ବିଜୟ କଲେ ଦେବରାଜ ॥୧୦୧
ଅର୍ଜୁନ ସଙ୍ଗେ ବନମାଳୀ ।
ଖାଣ୍ଡବବନେ ବେଗେ ମିଳି ॥୧୦୨
ତକ୍ଷଣେ ରୁନ୍ଧି ଦଶଦିଗ ।

Dr. Sudhanshu Sekhar Mishra

କାନନେ କଲେ ଅଗ୍ନିଯୋଗ ।।୧୦୩
ସର୍ବଔଷଧି ବନମଧ୍ୟେ ।
ଅନଳ ଭକ୍ଷିଲା ଆନନ୍ଦେ ।।୧୦୪
ତକ୍ଷଣେ ବ୍ୟାଧି ଗଲା ନାଶ ।
ଅନଳ ହୋଇଲା ସନ୍ତୋଷ ।।୧୦୫
ଅଗ୍ନି ଶରୀରୁ ବ୍ୟାଧି ଗଲା ।
ଧନୁଏ ଅର୍ଜୁନକୁ ଦେଲା ।।୧୦୬
ଶ୍ୱେତକୁଞ୍ଜର ଶ୍ୱେତରଥ ।
ଅଭେଦ କବଚ ସହିତ ।।୧୦୭
ଅକ୍ଷୟତ୍ରୋଣ ବେନି ଦେଲା ।
ନାନାଦି ମନ୍ତ୍ର ସେ କହିଲା ।।୧୦୮
ମୟଦାନବ ବନେ ଥିଲା ।
ଅର୍ଜୁନ ତାହାକୁ ଦେଖିଲା ।।୧୦୯
ଅଗ୍ନିଦହନ କାଳେ ବନେ ।
ଥିଲା ସେ ଅର୍ଜୁନ ଶରଣେ ।।୧୧୦
ଜୀବନ ପାଇ ତୋଷ ହୋଇ।
ମାୟା ସଭାଏ ସେ ଭିଆଇ ।।୧୧୧
ସନ୍ତୋଷେ ଅର୍ଜୁନକୁ ଦେଲା ।

ଶୁଣ ରାଜନ କୃଷ୍ଣଲୀଳା ।।୧୧୨
ଯହିଁ ରାଜସୂ ଯଜ୍ଞକାଳେ ।
ଅନ୍ଧନନ୍ଦନ ରାଜାମେଳେ ।।୧୧୩
ବସିବା କାଳେ ହୀନିମାନ ।
ହୋଇଲା ଜଳେ ସ୍ଥଳ ଭ୍ରମ ।।୧୧୪
ସେ ସଭା ଘେନି ବନମାଳୀ ।
ଇନ୍ଦ୍ରପ୍ରସ୍ଥରେ ଯାଇ ମିଳି ।।୧୧୫
ଧର୍ମନନ୍ଦନ ମୁଖ ଚାହିଁ ।
କହନ୍ତି ପ୍ରିୟଭାବ ବହି ।।୧୧୬
ମେଲାଣି ଦିଅ ଯିବୁ ଘର ।
ତୁମ୍ଭେ ତ ଜୀବନ ମୋହର ।।୧୧୭
ଏମନ୍ତେ ପ୍ରଭୁ ଭଗବାନ ।
ସଙ୍ଗେ ଘେନାଇ ନିଜ ଜନ ।।୧୧୮
ଦ୍ୱାରକାପୁରେ ଗଲେ ହରି ।
ଏବେ ହୋ ଶୁଣ ଦଣ୍ଡଧାରୀ ।।୧୧୯
ଉତ୍ତରାୟଣ ଶୁଦ୍ଧକାଳେ ।
ଶୁଭନକ୍ଷତ୍ର ଶୁଭବେଳେ ।।୧୨୦
ଅମରଗୁରୁ ଲଗ୍ନ ତୁଲେ ।

କାଳିନ୍ଦୀକନ୍ୟା ବିଭା ହେଲେ ।।୧୨୧
ଉତ୍ସବ–ବରକନ୍ୟା ଦେଖି ।
ଯାଦବେ ଧନ୍ୟ କଲେ ଆଖି ।।୧୨୨
କାଳିନ୍ଦୀ ବିଭାର ବିଧାନ ।
ଯେ କରେ ଶ୍ରବଣ ପଠନ ।।୧୨୩
ଦୁରିତ ଦୁଃଖ ଭୟ ନାଶେ ।
ଅନ୍ତେ ମିଳଇ କୃଷ୍ଣପାଶେ ।।୧୨୪
ସେ ହରି ପାଦେ ମନ ଦେଇ।
ସୁଜନେ ତର ଏହା ଗାଇ ।।୧୨୫
କହଇ ବିପ୍ର ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ।।୧୨୬

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟା
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଖାଣ୍ଡବବନ
ଦହନେ କାଳିନ୍ଦୀ ବିବାହେ ନାମ
ଦ୍ୱିଷଷ୍ଟିତମ ଅଧ୍ୟାୟଃ ।।

---

## ତ୍ରିଷଷ୍ଠିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
ଶ୍ରୀକୃଷ୍ଣଲୀଳା ଭାଗବତ ।।୧
ଅବନ୍ତୀପୁରେ ବେନିଭାଇ ।
ବିନ୍ଦାନୁବିନ୍ଦ ନାମ ବହି ।।୨
ସେ ଦୁର୍ଯ୍ୟୋଧନର ବିଶ୍ୱାସେ ।
ପ୍ରଜା ପାଳନ୍ତି ନିଜେ ଦେଶେ ।।୩
ମିତ୍ରବିନ୍ଦା ଯେ କନ୍ୟାସାର ।
ବହେଣୀ ଥିଲା ତାହାଙ୍କର ।।୪
ନବମସ୍କନ୍ଧେ ମୁହିଁ ତୋତେ ।
କହିବି ବଂଶାନୁଚରିତେ ।।୫
ଶୂର ଯାଦବକୂଳେ ଜାତ ।
ଥିଲା ତା ପାଞ୍ଚ ଯେ ଦୁହିତ ।।୬

ପାଞ୍ଚ ଦୁହିତା ମଧ୍ୟେ ସାର ।
ରାଜାଧିଦେବୀ ନାମ ଯାର ।।୭
ତାର କୁମାରୀ ଅନୁପମ ।
ସୁନ୍ଦର ମିତ୍ରବିନ୍ଦା ନାମ ।।୮
ତାହାର ସ୍ୱୟଂମ୍ବର କାଳେ ।
ମିଳିଲେ ନୃପତି ସକଳେ ।।୯
ଗୋବିନ୍ଦଗଲେ ତାହା ଶୁଣି ।
ସଙ୍ଗେ ଯାଦବ ବଳ ଘେନି ।।୧୦
କନ୍ୟାର ସ୍ୱୟମ୍ବର କାଳେ ।
ରାଜକୁମାରମାନେ ଥିଲେ ।।୧୧
ସେ ବେନିଭାଇ ରାଜା ମେଳେ।
କନ୍ୟାକୁ ଯେତେ ନିଷେଧିଲେ ।।୧୨
ସେ କନ୍ୟା କୃଷ୍ଣଙ୍କୁ ବରିଲା ।
ଅନେକ ଗୋଳ ଉପୁଜିଲା ।।୧୩

ତାହାର ସ୍ୱୟମ୍ବର କାଳେ ।
କୃଷ୍ଣ ହରିଲେ ତାକୁ ବଳେ ।।୧୪
ଦେଖନ୍ତି ରାଜପୁତ୍ରେ ମିଳି ।
ରଥେ ବସାଇ ବନମାଳୀ ।।୧୫
ଦ୍ୱାରକାପଥେ ବିଜେ କଲେ ।
ଶଙ୍ଖ ଦୁନ୍ଦୁଭି ସୁମଙ୍ଗଳେ ।।୧୬
କୃଷ୍ଣର ଭଗ୍ନୀ ସେ ଯୁକତେ ।
ଜନ ବେଭାର କୁଳ ମତେ ।।୧୭
ଏବେ ହୋ ଶୁଣ ନୃପମଣି ।
ଯେମନ୍ତ କଲେ ଚକ୍ରପାଣି ।।୧୮
କୋଶଳରାଜ୍ୟେ ନରନାଥ ।
ଧାର୍ମିକ ନାମେ ନଗ୍ନଜିତ ।।୧୯
ତାର ଦୁହିତା ସତ୍ୟା ନାମ ।
ରୂପେ ସୁନ୍ଦର ଅନୁପମ ।।୨୦

Dr. Sudhanshu Sekhar Mishra

ନୃପତି ତାର ସ୍ୱୟମ୍ବରେ ।
ନିୟମ କଲା ଗୁରୁତରେ ॥୨୧

ସପ୍ତ ବୃଷଭ ପୁରେ ଥୋଇ ।
ବୋଲେ ସାରଥି ମୁଖ ଚାହିଁ ॥୨୨

ଘୋଷଣା ଚଉଦିଗେ ଦିଅ ।
ଏମନ୍ତେ ବାକ୍ୟ ମୋର କହ ॥୨୩

ଏ ସାତବୃକ୍ଷ ଏକ ତୁଲ୍ୟେ ।
ବନ୍ଧନ କରିବ ଯେ ବଳେ ॥୨୪

ଏ କନ୍ୟା ହୋଇବ ତାହାର ।
ସତ୍ୟବଚନ ଏ ମୋହର ॥୨୫

ଏମନ୍ତ ଶୁଣି ତାର ପୁରେ ।
ମିଳିଲେ ନୃପତି କ୍ରମରେ ॥୨୬

ସପତ ଷଣ୍ଢ ମୁଖ ଚାହିଁ ।
ସମୀପେ ନ ପାରିନ୍ତି ଯାଇ ॥୨୭

ଆଘ୍ରାଣେ ବୀର-ଗନ୍ଧ ପାଇ ।
କୁଟୀଳନୟନେ ଅନାଇ ॥୨୮

ଜଳଦପ୍ରାୟ ନାଦ କରି ।
ଖୁରେ ଖୋଳନ୍ତି ବସୁନ୍ଧରୀ ॥୨୯

ଚଉଦଶୃଙ୍ଗ ତୀକ୍ଷଖୁର ।
ଦେଖି ଭାଜିଲେ ସର୍ବବୀର ॥୩୦

ବୃକ୍ଷ-ବନ୍ଧନେ କନ୍ୟା ଲାଭ ।
ଏମନ୍ତ ଶୁଣି ପଦ୍ମନାଭ ॥୩୧

ହରଷ ମଦନ ଗୋପାଳ ।
ସଙ୍ଗତେ ଘେନି ଯଦୁବଳ ॥୩୨

ମିଳିଲେ କୋଶଳ ଭୁବନେ ।
ଦେଖି ନୃପତି ତୋଷମନେ ॥୩୩

ଗନ୍ଧକୁସୁମ ଉପହାରେ ।
ପୂଜିଲା ଗୋବିନ୍ଦ ପୟରେ ॥୩୪

ସୁବର୍ଣ୍ଣ ଆସନେ ବସାଇ ।
ବୋଲଇ କୃଷ୍ଣମୁଖ ଚାହିଁ ॥୩୫

ଆଜ ଜୀବନ ମୋର ଧନ୍ୟ ।
ଦେଖିଲି ପ୍ରଭୁ ନିରଞ୍ଜନ ॥୩୬

ସିଦ୍ଧମୁନିଙ୍କି ଅଗୋଚର ।
ଅଶେଷ-ବ୍ରହ୍ମାଣ୍ଡ-ଠାକୁର ॥୩୭

ସୃଷ୍ଟିପାଳନ ସଂହାରଣ ।
ତୁ ଆଦି ପରମକାରଣ ॥୩୮

ପରମ ସନ୍ତୋଷ ହୋଇଲା ।
ଏମନ୍ତ ସ୍ତୁତି ସେହୁ କଲା ॥୩୯

ଏମନ୍ତେ କୃଷ୍ଣଙ୍କୁ ପୂଜିଲା ।
ଦୁହିତା ତାର ପଛେ ଥିଲା ॥୪୦

ରାଜକୁମାରୀ କୃଷ୍ଣେ ଚାହିଁ ।
ଆନନ୍ଦ ମନେ ବିଚାରଇ ॥୪୧

ପୂର୍ବେ ମୋହର ତପ ଯେବେ ।
ସାଧିଲା ଅଛି ଶୁଦ୍ଧଭାବେ ॥୪୨

ଇଷ୍ଟଦେବତା ହୋଇ ତୋଷ ।
ସଫଳ କରିବେ ମୋ ଆଶ ॥୪୩

ଯେ କୃଷ୍ଣ-ପାଦପଦ୍ମ ଧୂଳି ।
ବ୍ରହ୍ମାଶଙ୍କର ଶିରେ ବୋଳି ॥୪୪

ବାସବ ଆଦି ଦେବତାଏ ।
ନମନ୍ତି ଯାର ପଦ୍ମପାୟେ ॥୪୫

ସୁକୃତସେତୁ ରକ୍ଷା ପାଇଁ ।
ଲୀଳାଏ ନାନା ରୂପ ବହି ॥୪୬

ଅଧର୍ମ ନାଶି ଧର୍ମ ସ୍ଥାପି ।
ନିର୍ମଳ ସୂକ୍ଷ୍ମ ଶୂନ୍ୟେ ବ୍ୟାପି ॥୪୭

ସେ ହରି କେଉଁ ପୁଣ୍ୟଫଳେ ।
ତୋଷ ହୋଇବେ ସୁମଙ୍ଗଳେ ॥୪୮

ଅଶେଷ-ବ୍ରହ୍ମାଣ୍ଡର ଗତି ।
ସେ ମୋର ହେଉ ପ୍ରାଣପତି ॥୪୯

ଏମନ୍ତେ ଶୁଦ୍ଧଭାବ ବହି ।
ରାଜା ବୋଲଇ କୃଷ୍ଣ ଚାହିଁ ॥୫୦

ଭୋ ନାଥ ଜଗତ ଈଶ୍ୱର ।
ଅନାଦି ଧର୍ମ ନିରାକାର ॥୫୧

ଜଗତ ଆତ୍ମଭୂତ ତୁହି ।
ଜଗତ ପୁଣ୍ୟମୟ ଦେହୀ ॥୫୨

ଜଗତ-ମୋହନ ତୋ ରୂପ ।
ସ୍ୱଭାବେ ମୁହିଁ ଯେ ଅଳପ ॥୫୩

ଭୋ ନାଥ ଶରଣସୋଦର ।
କିମ୍ପା ଅଇଲ ମୋର ପୁର ॥୫୪

ଆନନ୍ଦେ ବସିଣ ଆସନେ ।
ଜଳଦ-ଗମ୍ଭୀର-ବଚନେ ॥୫୫

ରାଜା ବଚନ ଶୁଣି ହସି ।
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥୫୬

ଶ୍ରୀକୃଷ୍ଣ ଉବାଚ

ଶୁଣ ରାଜନ ଚୂଡ଼ାମଣି ।
କ୍ଷତ୍ରିୟଜନ ଧର୍ମବାଣୀ ॥୫୭

ଭିକ୍ଷାଗ୍ରହଣେ ନିନ୍ଦା ପାଇ ।
ଉଭୟଲୋକେ ସୁଖ ନାହିଁ ॥୫୮

ତଥାପି ତୋର ଭାବ ଲଇଁ ।
କନ୍ୟା ମାଗିବା ଆଶେ ମୁହିଁ ॥୫୯

ମିଳିଲି ତୋହର ଭୁବନେ ।
ବିଦିତ କଥା ସର୍ବଜନେ ॥୬୦

ଆମ୍ଭର କୁଳଧର୍ମ ଏହି ।
ବିଭା ନ କରୁ ଧନଦେଇ ॥୬୧

କୃଷ୍ଣବଚନ ରାଜା ଶୁଣି ।
ବୋଲଇ ହୃଦେ ପରିମାଣ ॥୬୨

ରାଜା ବଚନ

ଭୋ ନାଥ ଶୁଣ ଦାମୋଦର ।
କନ୍ୟା ଉଚିତେ ତୁମ୍ଭେ ବର ॥୬୩

ସକଳ ଗୁଣ ତୋର ତହିଁ ।
ତୋ ଅଙ୍ଗେ କମଳା ବସଇ ॥୬୪

ଯଦୁବଂଶର ତୁ ଈଶ୍ୱର ।
ଶୁଣ ଗୋବିନ୍ଦ ମୋ ବିଚାର ॥୬୫

ରାଜାଙ୍କ ବଳ ଜାଣିବାରେ ।
ସତ୍ୟ ମୁଁ କଲି ସ୍ୱୟମ୍ବରେ ॥୬୬

ସପତଷଣ୍ଢ ମହାବଳୀ ।
ମୋହର ପୁରେ ବନମାଳୀ ॥୬୭

ଶୃଙ୍ଗଯୁଗଳ ତୀକ୍ଷ୍ଣଖୁର ।
ଦୁର୍ମଦ ଦୁଷ୍ଟ ମହାଘୋର ॥୬୮

ଦେଖିଣ ତାହାଙ୍କ ବଦନ ।
ଭାଜିଲେ ନୃପତି ନନ୍ଦନ ॥୬୯

ସଂକଳ୍ପ କରିଅଛି ମୁହିଁ ।
ଘୋଷଣା ଚାରିଦିଗେ ଦେଇ ॥୭୦

ଏ ସାତବୃଷେ ବନ୍ଦୀ କଲେ ।
ତାହାକୁ କନ୍ୟା ଦେବି ଭଲେ ॥୭୧

ସତ୍ୟବଚନ ଏ ମୋହର ।
ଭୋ ନାଥ ଶୁଣ ଦାମୋଦର ॥୭୨

ତୁ ଯେବେ ବାନ୍ଧିପାରୁ ଏହା ।
ନିଶ୍ଚୟେ କନ୍ୟା ଦେବି ବାହା ॥୭୩

Dr. Sudhanshu Sekhar Mishra

ଏମନ୍ତ ରାଜା ବାକ୍ୟ ଶୁଣି ।
ଅଳପ ହସି ଚକ୍ରପାଣି ।।୭୪
କନ୍ୟା ହୃଦୟ ବିଚାରିଲେ ।
ଗୋବିନ୍ଦ ମାୟା ପ୍ରକାଶିଲେ ।।୭୫
ତକ୍ଷଣେ ସାତରୂପ ହୋଇ ।
ମାୟାରେ ନଦେଖିଲେ କେହି ।।୭୬
ମାୟା ଗୋବିନ୍ଦ ସାତରୂପ ।
କନ୍ୟାକୁ ଦେଖାନ୍ତି ସ୍ୱରୂପ ।।୭୭
ଜନେ ଦେଖିଲେ କଉତୁକେ ।
କୃଷ୍ଣ ବାନ୍ଧିଲେ ସାତ ଏକେ ।।୭୮
ଦାଉଣି ବାନ୍ଧି ସାତଷଣ୍ଢେ ।
କୃଷ୍ଣ ବିଜୟ ରାଜଦଣ୍ଡେ ।।୭୯
ଏକଦଉଡ଼ି ସାତ କନ୍ଧେ ।
ଗୋବିନ୍ଦ ବାନ୍ଧିଲେ ଆନନ୍ଦେ ।।୮୦
କାଷ୍ଠ ପିତୁଳୀ ବାନ୍ଧି ହସ୍ତେ ।
ବାଳକେ ଖେଳନ୍ତି ଯେମନ୍ତେ ।।୮୧
ଦେଖି ହରଷ ସର୍ବଜନ ।
ଆନନ୍ଦ କୋଶଳ ରାଜନ ।।୮୨
ତକ୍ଷଣେ ମିଳି ବନ୍ଧୁଜନେ ।
ଉତ୍ସବ ରାଜାର ଭୁବନେ ।।୮୩
ବେଦ ଉଚିତ ଧର୍ମ ଘେନି ।
ମଙ୍ଗଳ କଲେକ କାମିନୀ ।।୮୪
ବରକନ୍ୟାଙ୍କୁ କରି ଶୋଭା ।
ଆନନ୍ଦେ କରାଇଲେ ବିଭା ।।୮୫
ରାଜକାମିନୀ ମିଳି ଧୀରେ ।
ଅକ୍ଷତ ଦେଲେ କୃଷ୍ଣ ଶିରେ ।।୮୬
ଦୁହିତା ତୁଲ୍ୟ ବର ଦେଖି ।
ନିର୍ମଳ କଲେ ଚର୍ମଆଖି ।।୮୭
ଗୀତମଙ୍ଗଳ ଶଙ୍ଖ ଭେରୀ ।
ଆନନ୍ଦେ ବାଦ୍ୟନାଦ କରି ।।୮୮
ବିପ୍ରେ ଆଶିଷ ଶିରେ ଦେଇ ।
ଉତ୍ସବ କେ ପାରିବ କହି ।।୮୯
କୋଶଳପୁର ନରନାରୀ ।
ଅନେକ ଅଳଙ୍କାର ଭରି ।।୯୦
ଦିବ୍ୟବସନ ପୁଷ୍ପମାଳେ ।
ବିବାହେ ମିଳିଲେ ସକଳେ ।।୯୧

କୋଶଳପତି ସୁବିବେକ ।
ଅନେକ ଦେଲା ଯଉତୁକ ।।୯୨
ଦଶସହସ୍ର ଧେନୁ ଦେଲା ।
ଶୁଣ ହେ ଅଭିମନ୍ୟୁବଳା ।।୯୩
ତିନିସହସ୍ର ପରିବାରୀ ।
ବିବିଧ ଅଳଙ୍କାରେ ଭରି ।।୯୪
ଦୁହିତା ହିତେ ନୃପମଣି ।
କୃଷ୍ଣସମୀପେ ଦେଲା ଆଣି ।।୯୫
ନବସହସ୍ର ମତ୍ତହସ୍ତୀ ।
କୃଷ୍ଣଙ୍କୁ ଦେଲା ନରପତି ।।୯୬
ସୁବର୍ଣ୍ଣ ରଥ ନବଲକ୍ଷ ।
କୃଷ୍ଣଙ୍କୁ ଦେଲା ସେ ପ୍ରତ୍ୟକ୍ଷ ।।୯୭
ଆନନ୍ଦ ମନେ ନରଇନ୍ଦ୍ର ।
ତୁରଙ୍ଗ ଦେଲା ନବବୃନ୍ଦ ।।୯୮
ପଦାତି ନବପଦ୍ମ ଦେଇ ।
ବରକନ୍ୟାଙ୍କୁ ରଥେ ଥୋଇ ।।୯୯
ସଙ୍ଗତେ ନିଜବଳ ଘେନି ।
ବଜାଇ ବୀରତୂର ଧ୍ୱନି ।।୧୦୦
ଆନନ୍ଦେ ଅଶ୍ରୁଜଳ ବହି ।
ପଥେ କେତେହେଁ ଦୂର ଯାଇ ।।୧୦୧
କୃଷ୍ଣଙ୍କୁ ମାଗି ଅନୁଯାନ ।
ମିଳିଲା ଆପଣା ଭୁବନ ।।୧୦୨
ଗୋବିନ୍ଦ ଦ୍ୱାରକାର ପଥେ ।
ବିଜୟ ନନ୍ଦିଘୋଷ ରଥେ ।।୧୦୩
ଅନେକ ନୃପତି କ୍ରମରେ ।
ଥିଲେ ଯେ କନ୍ୟା ସ୍ୱୟମ୍ବରେ ।।୧୦୪
ସାତଷଣ୍ଢର ଯୁଦ୍ଧେ ହାରି ।
କନ୍ୟାକୁ ଚିତ୍ତେ ଥିଲେ ବରି ।।୧୦୫
କନ୍ୟାକୁ ବଳେ ନେବୁଆଜ ।
କିସ କରିବେ ଯଦୁଭୋଜ ।।୧୦୬
ଏମନ୍ତ ଭାଳି କୁବିଚାରେ ।
ପଛେ ଧାଇଁଲେ ଅତିଖରେ ।।୧୦୭
ବୃଷ୍ଟି ପରାୟେ ବାଣବିନ୍ଧି ।
ବେଗେ ଯାଦବ ବଳ ରୁନ୍ଧି ।।୧୦୮
ଅର୍ଜୁନ ଥିଲେ କୃଷ୍ଣସଙ୍ଗେ ।
ଦେଖି ଧାଇଁଲେ ଅତିବେଗେ ।।୧୦୯

ଗାଣ୍ଡୀବ ଚାପେ ଗୁଣ ଦେଇ ।
ମନ୍ତ୍ର ସୁମରି କୋପ ବହି ।।୧୧୦
ଅକ୍ଷୟତ୍ରୋଣୁଁ ବାଣ ବିନ୍ଧି ।
ଅନେକ ରଥ ଗଜ ଛେଦି ।।୧୧୧
ଶର ବରଷା ମହାଘୋର ।
ଦେଖି ଭାଜିଲେ ନୃପବର ।।୧୧୨
ଯୁଦ୍ଧେ ହାରିଲେ ରିପୁଜନେ ।
କେଶରୀ ମୁଖେ ମୃଗ ଯହ୍ନେ ।।୧୧୩
କନ୍ୟା ଘେନିଣ ଭଗବାନ ।
ମିଳିଲେ ଦ୍ୱାରକା ଭୁବନ ।।୧୧୪
ଯଦୁ-କୁମୁଦ-ନିଶାକର ।
ପୁରେ ମିଳିଲେ କନ୍ୟାବର ।।୧୧୫
ଲକ୍ଷ୍ମୀର ଅଂଶ ସତ୍ୟା ସଙ୍ଗେ ।
କୃଷ୍ଣ ରମିଲେ ସୁଖରଙ୍ଗେ ।।୧୧୬
ଅନାଦି ପ୍ରଭୁ ଜଗନ୍ନାଥ ।
ଦେବକୀଦେବୀ ଯାର ମାତ ।।୧୧୭
ଏବେ ହୋ ଶୁଣ ନରପତି ।
କେକୟ ରାଣୀ ଶ୍ରୁତକୀର୍ତ୍ତି ।।୧୧୮
ତାର ଦୁହିତା ଭଦ୍ରା ନାମ ।
ରୂପେ କମଳା ନୋହେ ସମ ।।୧୧୯
ପିତୃ ଭଗିନୀ ସୁତା ସେହି ।
ଭ୍ରାତା ବିଚାରେ କନ୍ୟା ଦେଇ ।।୧୨୦
ସକଳ ବନ୍ଧୁଜନ ମିଳି ।
ବିବାହ କଲେ ବନମାଳୀ ।।୧୨୧
ମଦ୍ରାଧିପତିର ଦୁଲଣୀ ।
ଲକ୍ଷଣା ନାମେ ସୁଲକ୍ଷଣୀ ।।୧୨୨
ତାହାର ସ୍ୱୟମ୍ବର କାଳେ ।
କୃଷ୍ଣ ହରିଲେ ତାକୁ ବଳେ ।।୧୨୩
ଦୁର୍ଗମ ଲାଖି ହେଳେ ବିନ୍ଧି ।
ସମରେ ରିପୁବଳ ଛେଦି ।।୧୨୪
ଦେବଙ୍କମଧ୍ୟୁଁ ସୁଧାରାଶି ।
ଗରୁଡ଼ ଯେସନେ ଗରାସି ।।୧୨୫
ଏବେ ହୋ ଶୁଣ ନୃପମଣି ।
ନାରକାପୁରୁ ଚକ୍ରପାଣି ।।୧୨୬
ଷୋଳସହସ୍ର ଶତେ ନାରୀ ।
ଆଣିଲେ ଘୋରଯୁଦ୍ଧ କରି ।।୧୨୭

Dr. Sudhanshu Sekhar Mishra

ମାଇଲେ ଅନେକ ଅସୁର ।
ଦୁଷ୍ଟଦଳନ ଦାମୋଦର ।।୧୨୮
ସେ ହରିପାଦ ଅବିରତେ ।
ସୁଜନେ ଚିନ୍ତ ଧ୍ୟାନମତେ ।।୧୨୯

ଫିଟିବ ଜଡ଼ ମୋହପାଶ ।
କହଇ ଜଗନ୍ନାଥ ଦାସ ।।୧୩୦

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଅଷ୍ଟମହିଷୀ ଉଦ୍‌ବାହୋ ନାମ
ତ୍ରିଷଷ୍ଠିତମ ଅଧ୍ୟାୟଃ ।।

---

## ଚତୁଃଷଷ୍ଠିତମ ଅଧ୍ୟାୟ

କୃଷ୍ଣସେବକ ଭାଗ୍ୟବନ୍ତ ।
କୁରୁନନ୍ଦନ ପରୀକ୍ଷିତ ।।୧
ବ୍ୟାସ ନନ୍ଦନ ମୁଖ ଚାହିଁ ।
କହଇ ଶିରେ କରଦେଇ ।।୨

ପରିକ୍ଷୀତ ଉବାଚ

ଭୋ ମୁନି କେମନ୍ତେ ଅନନ୍ତ ।
ନାରକାସୁର କଲେହତ ।।୩
ଆଣିଲେ ଅନେକ ସୁନ୍ଦରୀ ।
ଦାନବଙ୍କର ପ୍ରାଣ ହରି ।।୪
ସାରଙ୍ଗ ଧନୁ ଧରି କର ।
ମହା ମହିମା ଯୋଗେଶ୍ୱର ।।୫
ଅବନୀ ଭାରା ନିବାରଣ ।
ନିର୍ଗୁଣ ପୁରୁଷ ପୁରାଣ ।।୬
କହ କେମନ୍ତେ ନରହରି ।
କନ୍ୟା ଆଣିଲେ ଶତ୍ରୁ ମାରି ।।୭
କେମନ୍ତେ ନାରକା ଅସୁର ।
ରଣେ ଜିଣିଲା ତିନିପୁର ।।୮
କାହୁଁ ଆଣିଲା କନ୍ୟା ହରି ।
ନିଜ ଭୁବନେ ଥିଲା ଭରି ।।୯
ଶୁକ କହନ୍ତି ତାହା ଶୁଣି ।
କୃଷ୍ଣ-ମହିମା ମନେ ଗୁଣି ।।୧୦

ଶୁକ ଉବାଚ

ଶୁଣ ପରୀକ୍ଷ ମହୀପାଳ ।
ସ୍ୱର୍ଗଭୁବନୁ ଆଖଣ୍ଡଳ ।।୧୧
ନାରକାସୁର ଭୟେ ତ୍ରାସି ।
ଯଦୁନଗରେ ରାତ୍ରେ ପଶି ।।୧୨

ମିଳିଲା ଗୋବିନ୍ଦର ପାଶେ ।
ଏକାନ୍ତେ କହଇ ବିଶ୍ୱାସେ ।।୧୩
ଭୋ ନାଥ ଦୁଷ୍ଟ ନିବାରଣ ।
ଅନାଦି-ପରମ-କାରଣ ।।୧୪
ଅଦିତି ମୋହର ଜନନୀ ।
ସୁପୁଣ୍ୟ-ଦକ୍ଷର ନନ୍ଦିନୀ ।।୧୫
ଅମୂଲ୍ୟ-ଦିବ୍ୟ ମଣି ବେନି ।
କର୍ଣ୍ଣେ କୁଣ୍ଡଳ ଥିଲା ଘେନି ।।୧୬
ନାରକାସୁର ମୋର ପୁରେ ।
ପଶିଲା ଯୁଦ୍ଧ-ମହାଘୋରେ ।।୧୭
କୁଣ୍ଡଳ ମାତା କର୍ଣ୍ଣୁ ନେଲା ।
ସ୍ୱର୍ଗେ ବରୁଣଛତ୍ର ଥିଲା ।।୧୮
ମୋତେ ଘଉଡ଼ି ବାହୁବଳେ ।
ସର୍ବ ହରିଲା ଅବହେଳେ ।।୧୯
ମନ୍ଦରଗିରିଶିଖି ମୂଳେ ।
ମଣି ପର୍ବତ ନେଲାବେଳେ ।।୨୦
ରାଜାଙ୍କ କନ୍ୟା ବିଭା ଛଳେ ।
ହରି ଆଣିଲା ଭୁଜବଳେ ।।୨୧
ପୁରେ ନିବେଶି କନ୍ୟା ବଳେ ।
ବିଭା ହୋଇବ ଏକାବେଳେ ।।୨୨
ତାର ମହିମା ଶୁଣି କର୍ଣ୍ଣେ ।
ତିନିଭୁବନେ ଯେତେ ଜନେ ।।୨୩
ଭୟେ ଚକିତମନେ ଛନ୍ତି ।
ବଦନୁ ନ ସ୍ଫୁରେ ବଚନ ।।୨୪
ତାହାର ଡରେ ଦାମୋଦର ।
ଭାଜିଲା ଅମର-ନଗର ।।୨୫
ହରିଲା ମୋର ଅଧିକାର ।
ଭୋ ନାଥ ଶରଣ ମୁଁ ତୋର ।।୨୬

ବାସବ ବାକ୍ୟ ଶୁଣି କର୍ଣ୍ଣେ ।
ଗୋବିନ୍ଦ ହରଷ ବଦନେ ।।୨୭
ବୋଇଲେ ଯାଅ ନିଜପୁର ।
ମୁହିଁ କରିବି ପ୍ରତିକାର ।।୨୮
କୃଷ୍ଣ ନିକଟେ ମିଳେ ଆସି ।
ଗୋବିନ୍ଦ ଗରୁଡ଼ ସୁମରି ।।୨୯
ସତ୍ୟଭାମାର କରଧରି ।
ଗୋବିନ୍ଦ ତାର ସ୍କନ୍ଧେ ବସି ।।୩୦
ଧ୍ୟାନେ ଜାଣିଲା ଖଗେଶ୍ୱର ।
ମିଳିଲା ଦ୍ୱାରକା ନବର ।।୩୧
କୃଷ୍ଣ ନିକଟେ ମିଳେ ଆସି ।
ଗୋବିନ୍ଦ ତାର ସ୍କନ୍ଧେ ବସି ।।୩୨
ସତ୍ୟଭାମାକୁ କୋଳେ ଘେନି ।
ଗୋବିନ୍ଦ କଲେ ଶଙ୍ଖ ଧ୍ୱନି ।।୩୩
ଦେଖନ୍ତି ଦଶଦିଗପାଳେ ।
ଗରୁଡ଼ ଉଡ଼େ ଅନ୍ତରାଳେ ।।୩୪
ପ୍ରାଗଜ୍ୟୋତିଷପୁର ନାମେ ।
ମିଳିଲା ନାରକା-ଭୁବନେ ।।୩୫
ଶତେଯୋଜନଦୀର୍ଘ ସ୍ଥଳୀ ।
ଦେଖି ହରଷ ବନମାଳୀ ।।୩୬
ଶୁଣ ରାଜନ ତା ମହିମା ।
ଦୁର୍ଗମ ଦାନବର ସୀମା ।।୩୭
ଗିରିଦୁର୍ଗମ ଚାରିପାଖେ ।
ବାଣକମାଣ ଶସ୍ତ୍ର ରଖେ ।।୩୮
ବାଣ ଅନ୍ତରେ ଜଳଖଣ୍ଡା ।
ଦେଖିଲେ ଦେବେ ହୋନ୍ତି ବଣ୍ଡା ।।୩୯
ଗଭୀର କେ କରୁ ପ୍ରମାଣ ।
ଘୋର ଗହନ ଗ୍ରାହଗଣ ।।୪୦

Dr. Sudhanshu Sekhar Mishra

ସେ ଦୁର୍ଗ ଅନ୍ତରେ ଅନଳ ।
ଉଚ୍ଛେ ଜଳଇ ତିନିତାଳ ॥୪୧
ଅଗ୍ନି ଅନ୍ତରେ ସମୀରଣ ।
ପ୍ରଚଣ୍ଡେ ବହଇ ପବନ ॥୪୨
ରିପୁ ପଡ଼ିଲେ ଯାନ୍ତି ଉଡ଼ି ।
ମରନ୍ତି ଅଗ୍ନି ଜଳେ ପଡ଼ି ॥୪୩
ତାର ଅନ୍ତରେ ମୁରପାଶୀ ।
ନୀଳଜୀମୂତ ପ୍ରାୟେ ଦିଶି ॥୪୪
ଏମନ୍ତ ଗଡ଼ ସେ ଭିଆଇ ।
ନିଶ୍ଚିନ୍ତେ ମଧ୍ୟେ ଅଛି ରହି ॥୪୫
ହେଲେ ଜିଣିଲା ସୁରନର ।
ଦେଖି ହସନ୍ତି ଚକ୍ରଧର ॥୪୬
ଗଦା ପ୍ରହାରେ ଗଦାଧର ।
ଗିରି ଦୁର୍ଗମ କଲେ ଚୂର ॥୪୭
ବାଣକମାଣ ନରହରି ।
ତୀକ୍ଷ୍ଣ ନାରାଚେ ଚୂର୍ଣ୍ଣ କରି ॥୪୮
ଜଳ ଅନଳ ସମୀରଣ ।
ଚକ୍ରେ ଶୋଷିଲେ ନାରାୟଣ ॥୪୯
ଖଡ଼ଗ ଧାରେ ବ୍ରହ୍ମରାଶି ।
ବେଗେ ଛେଦିଲେ ମୁରପାଶୀ ॥୫୦
ଶଙ୍ଖ ଶବଦ କଲେ ହରି ।
ଶୁଭିଲା ଦଶଦିଗ ପୂରି ॥୫୧
ଗିରିଦୁର୍ଗମକୁ ଆବୋରି ।
ବୀରେ ଯେ ଥିଲେ ଶସ୍ତ୍ର ଧରି ॥୫୨
ହୃଦୟ କମ୍ପିଲା ବିକଳେ ।
ଶସ୍ତ୍ର ପଡ଼ିଲା ହସ୍ତୁ ତଳେ ॥୫୩
ଗୋବିନ୍ଦ ବସି ଖଗେଶ୍ୱରେ ।
ମିଳିଲେ ନାରକାର ଦ୍ୱାରେ ॥୫୪
ଶିଳାପାଚେରୀ ଚାରିଦିଗେ ।
ଦେଖି ଗୋବିନ୍ଦ ଅତିବେଗେ ॥୫୫
ଗଦା ପ୍ରହାରେ ଚୂର୍ଣ୍ଣ କରି ।
ଶବଦେ କମ୍ପେ ବସୁନ୍ଧରୀ ॥୫୬
କୃଷ୍ଣର ଶୁଣି ଶଙ୍ଖନାଦ ।
ଅସୁରେ ମନେ ପାଇ ଖେଦ ॥୫୭
ଯୁଗାନ୍ତ ବଜ୍ରପ୍ରାୟ ମଣି ।
ମୁରଦାନବ ତାହା ଶୁଣି ॥୫୮

ଗଭୀର ଜଳେ ଶୋଇଥିଲା ।
ଶବଦ ଶୁଣି ବିଜେ କଲା ॥୫୯
ପର୍ବତ ପ୍ରାୟ ପଞ୍ଚଶିର ।
ନିଦ୍ରା ବିୟୋଗ ମହାବୀର ॥୬୦
ତ୍ରିଶୂଳ ଅଛି ତାର କରେ ।
କିବା ଉପମା ଦେବା ତାରେ ॥୬୧
ପ୍ରଳୟକାଳେ ଦିବାକର ।
ପ୍ରଚଣ୍ଡ ଜ୍ୟୋତି ପରଖର ॥୬୨
ତେମନ୍ତ ପ୍ରାୟ ଶୂଳ ଦିଶି ।
ଧାଇଁଲା ତ୍ରିଭୁବନ ତ୍ରାସି ॥୬୩
ଗିଳିବା ପ୍ରାୟ ପଞ୍ଚଭୂତ ।
ପଞ୍ଚବଦନ ବିସ୍ତାରିତ ॥୬୪
କୃଷ୍ଣ ଦେଖନ୍ତି ତାର ବେଗ ।
ଗରୁଡ଼ ମୁଖେ ଯେହ୍ନେ ନାଗ ॥୬୫
ଧାମଇଁ ମରଣ ନ ଜାଣି ।
ଦେଖି ହସନ୍ତି ଚକ୍ରପାଣି ॥୬୬
ତ୍ରିଶୂଳ ଅଛି ତାର କରେ ।
କିବା ଉପମା ଦେବା ତାରେ ॥୬୭
ଶବଦ କଲା ପଞ୍ଚତୁଣ୍ଡ ।
ପୂରିଲା ଅଖିଳ ବ୍ରହ୍ମାଣ୍ଡ ॥୬୮
ତ୍ରିଶୂଳ ଦେଖି ନାରାୟଣ ।
ବେଗେ ବିନ୍ଧିଲେ ବେନି ବାଣ ॥୬୯
ତକ୍ଷଣେ ତିନିଖଣ୍ଡ କରି ।
ଶୂଳ କାଟିଲେ ନରହରି ॥୭୦
କୃଷ୍ଣ ବିନ୍ଧିଲେ ତୀକ୍ଷ୍ଣ ବାଣ ।
ଅସୁର କୋପେ ଗରୁଟାଣ ॥୭୧
ଗଦାଏ ଥିଲା ବାମ କରେ ।
ପିଟିଲା ଗୋବିନ୍ଦ ଉପରେ ॥୭୨
ତକ୍ଷଣେ ମଦନଗୋପାଳ ।
ଗଦାକୁ ଗଦା ପରିତାଳ ॥୭୩
ଦାନବ ଗଦା ଚୂର୍ଣ୍ଣକରି ।
ଶଙ୍ଖେ ଶବଦ କଲେ ହରି ॥୭୪
ନିରସ୍ତ୍ର ହୋଇ ସେ ଦନୁଜ ।
ବେଗେ ତୋଳିଲା ବେନି ଭୁଜ ॥୭୫
ଧାମଇଁ ଘୋର ନାଦ କରି ।
ପାଦେ କମ୍ପଇ ବସନ୍ଧରୀ ॥୭୬

ସ୍ୱର୍ଗେ ଦେଖନ୍ତି ଦେବେ ମିଳି ।
ଚକ୍ର ପେଶିଲେ ବନମାଳୀ ॥୭୭
ତକ୍ଷଣେ ହୋଇ ବେନିଖଣ୍ଡ ।
ଜଳେ ପଡ଼ିଲା ମୃତପିଣ୍ଡ ॥୭୮
ବାସବ-ବଜ୍ରେ ହୋଇ ଭଙ୍ଗ ।
ଯେହ୍ନେ ପଡ଼ଇ ଗିରିଶୃଙ୍ଗ ॥୭୯
ସପ୍ତ କୁମର ତାର ଥିଲେ ।
ପିତାର ମରଣ ଜାଣିଲେ ॥୮୦
ପିତୃ-ବଇରୀ ମାରିବାରେ ।
ଧାଇଁଲେ ପବନହୁଁ ଖରେ ॥୮୧
ଅତି ଗହନ ଘୋରତମ ।
ଶୁଣ ହୋ ତାହାଙ୍କର ନାମ ॥୮୨
ତାମ୍ର ଅନ୍ତରୀକ୍ଷ ଶ୍ରବଣ ।
ଚତୁର୍ଥ ବିଭାବସୁ ଜାଣ ॥୮୩
ପଞ୍ଚମ ବସୁ ମହାବୀର ।
ଷଷ୍ଠରେ ନବସ୍ୱାନ ଶୂର ॥୮୪
ପୁଣ ଅରୁଣ ନାମେ ବୀର ।
ଏମନ୍ତେ ଧାଇଁଲେ ଅସୁର ॥୮୫
ବିବିଧ ଶସ୍ତ୍ର କରେ ଘେନି ।
ସାଜିଲେ ନାରକା ସଇନି ॥୮୬
ଯୂଥପତିଙ୍କି କରି ଆଗେ ।
ନାରକା ସୈନ୍ୟ ବେନିଭାଗେ ॥୮୭
ଆବୋରି ଧାଇଁଲା ସମରେ ।
ଭୂମି କମ୍ପାଇ ପାଦଭରେ ॥୮୮
ବାଣ ଖଡ଼ଗ ଗଦା ଋଷ୍ଟି ।
ଶୂଳ ତୋମର ଲୌହଯଷ୍ଟି ॥୮୯
ରବିକିରଣ ପ୍ରାୟ ଦିଶି ।
ଭୂମି ଗଗନେ ତେଜ ଗ୍ରାସି ॥୯୦
ଶର ବରଷା ମେଘପ୍ରାୟେ ।
ବିନ୍ଧିଲେ ଗୋବିନ୍ଦର ଦେହେ ॥୯୧
ଦେଖି କେଶବ ଅତି ଖରେ ।
ସାରଙ୍ଗଧନୁ ଧରି କରେ ॥୯୨
କୃଷ୍ଣ ବିନ୍ଧିଲେ ପୁଣପୁଣ ।
ଅନଳପ୍ରାୟ ତୀକ୍ଷ୍ଣ ବାଣ ॥୯୩
ଅସୁରଙ୍କର ଶସ୍ତ୍ର ନାଶେ ।
ରବି ଯେସନେ ତମ ଗ୍ରାସେ ॥୯୪

Dr. Sudhanshu Sekhar Mishra

ତିଳପ୍ରମାଣେ ଶସ୍ତ୍ର କାଟି ।
ଗୋବିନ୍ଦ କଲେ ଶର ବୃଷ୍ଟି ।।୯୫
ଅସୁରଙ୍କର ସେହ୍ନାଫୁଟି ।
ଭୁଜ ଚରଣ ଶିର ତୁଟି ।।୯୬
ତକ୍ଷଣେ ପଡ଼ିଲେ ସକଳେ ।
ମେଦିନୀ ନ ଦିଶେ ଗହଳେ ।।୯୭
କୃଷ୍ଣର ବାଣ ତୀକ୍ଷ୍ଣ ଫଳ ।
ଧ୍ୱଂସିଲା ଚତୁରଙ୍ଗ ବଳ ।।୯୮
ନାରକାସୁର ତାହା ଦେଖି ।
ଧାଇଁଲା ଭୁବନ ଉପେକ୍ଷି ।।୯୯
ଷଷ୍ଠିସହସ୍ର ଗଜୟୁଥ ।
ଜଳଧି ମଛରୁଁ ସମ୍ଭୂତ ।।୧୦୦
ବରଷା ପ୍ରାୟ ମଦଗଳି ।
ଦିଶନ୍ତି କରୀବରେ ଝଳି ।।୧୦୧
ଅଙ୍କୁଶ ମାହୁନ୍ତଙ୍କ କରେ ।
ଝଲକେ ରବି ପଟାନ୍ତରେ ।।୧୦୨
ନାରକାସୁର ଗଜ ମଧେ ।
ବେଗେ ମିଳିଲା ଘୋରନାଦେ ।।୧୦୩
ଉଚ୍ଚ କୁଞ୍ଜରେ ଭୂମିସୁତ ।
ନୟନେ ଦେଖିଲା ଅନନ୍ତ ।।୧୦୪
ସୁବର୍ଣ୍ଣ ପ୍ରାୟ ପକ୍ଷୀରାଜ ।
ଶୂନ୍ୟେ ଉଡ଼ଇ ମହାତେଜ ।।୧୦୫
ତାହାର ପୃଷ୍ଠେ ନରହରି ।
ସତ୍ୟଭାମାକୁ କୋଳେ ଧରି ।।୧୦୬
ଉର୍ଦ୍ଧେ ତୋଳିଣ ଭୁଜଚାରି ।
ଶଙ୍ଖ କୋଦଣ୍ଡ ଗଦାଧରି ।।୧୦୭
ଦକ୍ଷିଣ କରେ ଚକ୍ର ସାଜେ ।
କୋଟି ଆଦିତ୍ୟେ ତେଜ ଗଞ୍ଜେ ।।୧୦୮
ବନମାଳାଏ ଲମ୍ବେ ଉରେ ।
କିବା ଉପମା ଦେବା ତାରେ ।।୧୦୯
ନୀଳଜୀମୂତ ଶୂନ୍ୟେ ମିଳି ।
ଯେସନେ ପ୍ରକାଶେ ବିଜୁଳି ।।୧୧୦
ରବି ଯେସନେ ତେଜ ବହି ।
ଗଗନମଧେ ବିରାଜଇ ।।୧୧୧
ଏମନ୍ତ କୃଷ୍ଣରୂପ ଚାହିଁ ।
ନାରକାସୁର କୋପ ବହି ।।୧୧୨

ଶକ୍ତିଏ ଥିଲା କରେ ଘେନି ।
ନାମ ତାହାର ଶତଘନି ।।୧୧୩
ପ୍ରହାର କରି ଅବିରତ ।
ରିପୁ ମାଇଲା ଶତଶତ ।।୧୧୪
କୃଷ୍ଣ ଉପରେ ପ୍ରହାରିଲା ।
ପ୍ରତାପେ ଘୋରନାଦ କଲା ।।୧୧୫
ଯେତେ ମାହୁନ୍ତ ସଙ୍ଗେ ଥିଲେ ।
କୃଷ୍ଣଙ୍କୁ ଶକ୍ତି ପ୍ରହାରିଲେ ।।୧୧୬
ଶକ୍ତି ପଡ଼ନ୍ତେ କୃଷ୍ଣ ଚାହିଁ ।
ନାରାଚ ଗୁଣରେ ବସାଇ ।।୧୧୭
ନିରତେ ବିନ୍ଧି ତୀକ୍ଷ୍ଣ ଶର ।
ଶକ୍ତି ସମୂହ କଲେ ଚୂର ।।୧୧୮
ନାରକା-ସୈନ୍ୟଙ୍କୁ ଅନାଇଁ ।
ନାରାଚ ଘେନି ଭାବଗ୍ରାହୀ ।।୧୧୯
ବଜ୍ରଶବଦ ପ୍ରାୟ ବାଣ ।
କୃଷ୍ଣ ବିନ୍ଧିଲେ ପୁଣପୁଣ ।।୧୨୦
ସୈନ୍ୟ ପଡ଼ିଲେ ମହୀଲୋଟି ।
ଜାନୁ ହୃଦୟ ଶିରଫୁଟି ।।୧୨୧
ଅଶ୍ୱ କୁଞ୍ଜର ରଥ ଯେତେ ।
ଛିଡ଼ି ପଡ଼ିଲେ ଭୂମିଗତେ ।।୧୨୨
ଶସ୍ତ୍ର ସହିତେ ରିପୁ-ପିଣ୍ଡ ।
ଛିଡ଼ି ପଡ଼ିଲେ ଖଣ୍ଡଖଣ୍ଡ ।।୧୨୩
ଗରୁଡ଼ ନଖ ଚଞ୍ଚୁଘାତେ ।
ଗଜ ପଡ଼ିଲେ ଯୂଥେ ଯୂଥେ ।।୧୨୪
କେତେ ପଳାଇ ପୁରେ ପଶି ।
ଥୋକାଏ ଜଳେ ପଡ଼ି ଭାସି ।।୧୨୫
ଯୁଦ୍ଧ କରଇ ମହୀସୁତ ।
କୁଞ୍ଜରେ ହୋଇଲେ ଅନାଥ ।।୧୨୬
ଗରୁଡ଼ବାତେ ସୈନ୍ୟଗଲା ।
ଦେଖି ନାରକା କୋପକଲା ।।୧୨୭
ପୁଣ ଶକ୍ତିଏ କରେ ଧରି ।
ଗର୍ଜିଲ ଘୋର ନାଦ କରି ।।୧୨୮
ବଜ୍ର ଭାଙ୍ଗଇ ଯାର ଘାଏ ।
ପିଟିଲା ଗରୁଡ଼ର ଦେହେ ।।୧୨୯
ଶକ୍ତି ପ୍ରହାରେ କୋପମନ ।
ଗରୁଡ଼ ନିଶ୍ଚଳ ଆସନ ।।୧୩୦

ଫୁଲପେଣ୍ଡାଏ କରେ ଧରି ।
ଯେହ୍ନେ କୁଞ୍ଜର ଦେହେ ମାରି ।।୧୩୧
ଶକ୍ତି ଗରୁଡ଼ ଦେହେ ବାଜି ।
ପଡ଼ିଲା ଭୂମିଗତେ ଭାଜି ।।୧୩୨
ତ୍ରିଶୂଳ ଘେନି ଭୂମିସୁତ ।
ମିଳିଲା କୃଷ୍ଣର ଅଗ୍ରତ ।।୧୩୩
ନିଷ୍କଳ ଉଦ୍ୟମ ତାହାର ।
ଯୁଦ୍ଧ ଦେଖନ୍ତି ସୁରନର ।।୧୩୪
ତ୍ରିଶୂଳ ଦେଖି କରେ ତାର ।
ଚକ୍ର ପେଷିଲେ ଚକ୍ରଧର ।।୧୩୫
ଗଜ ଉପରେ ବସିଥିଲା ।
ସୁନ୍ଦର ଧରଣୀର ବଳା ।।୧୩୬
ଅମୂଲ୍ୟ କିରୀଟ ବିରାଜେ ।
କର୍ଣ୍ଣେ କୁଣ୍ଡଳ ବେନି ସାଜେ ।।୧୩୭
ଛିଡ଼ି ପଡ଼ିଲା କନ୍ଧୁଁ ଶିର ।
ଅବନୀ ଦିଶିଲା ସୁନ୍ଦର ।।୧୩୮
ହା ହା ଶବଦ ଅତିଘୋର ।
ଶୁଭିଲା ନାରକାନଗର ।।୧୩୯
ଦେବସମୂହେ ବ୍ରହ୍ମଋଷି ।
ସ୍ୱର୍ଗେ ଯେ ଦେଖୁଥିଲେ ବସି ।।୧୪୦
ଜୟ ଶବଦ ଉଚ୍ଚସ୍ୱରେ ।
ପୁଷ୍ପ ବର୍ଷିଲେ କୃଷ୍ଣଶିରେ ।।୧୪୧
ଭୂମି ନାରକାପୁରେ ଥିଲା ।
ପୁତ୍ରର ମରଣ ଶୁଣିଲା ।।୧୪୨
ସର୍ବ ସମ୍ପଦ ସଙ୍ଗେ ଘେନି ।
କୃଷ୍ଣଙ୍କୁ ଭେଟିଲା ଅବନୀ ।।୧୪୩
ହିରଣ୍ୟମୟ ରତ୍ନମାଳ ।
ଘେନିଣ ଅଦିତି କୁଣ୍ଡଳ ।।୧୪୪
ବରୁଣଛତ୍ର ମଣିଗିରି ।
ବନମାଳାଏ କରେ ଧରି ।।୧୪୫
କୃଷ୍ଣ ସମୀପେ ନେଇ ଦେଲା ।
ଅଭୟଚରଣେ ପୂଜିଲା ।।୧୪୬
ଭୁଜଯୁଗଳ ଦେଇ ଶିରେ ।
ସ୍ତୁତି କରଇ ଶୋକଭରେ ।।୧୪୭

ଭୂମି ଉବାଚ

ଭୂମି ବୋଲଇ ଯୋଡ଼ିକର ।
ତୁ ନାଥ ଦେବଙ୍କର ବର ।।୧୪୮

Dr. Sudhanshu Sekhar Mishra

ଶଙ୍ଖ କମଳ ଗଦା ହସ୍ତେ ।
ଦେବାଧିଦେବ ନମୋସ୍ତୁତେ ॥୧୪୯
ଯେ ତୋତେ ଯେମନ୍ତ ଭଜଇ ।
ସେ ଅନୁରୂପେ ତୋତେ ପାଇ ॥୧୫୦
ପରମଆତ୍ମା ଆଦିମୂଳ ।
ନମସ୍ତେ ପରମମଙ୍ଗଳ ॥୧୫୧
ପଙ୍କଜନାଭ ପଦ୍ମମାଳୀ ।
ପଦ୍ମଲୋଚନ ତୋତେ ବୋଲି ॥୧୫୨
ପଙ୍କଜନିଧି ତୋ ପୟର ।
ଭୋ ନାଥ ଶରଣ ମୁଁ ତୋର ॥୧୫୩
ନମସ୍ତେ ପ୍ରଭୁ ଭଗବାନ ।
ବିଷ୍ଣୁ ବାସୁଦେବ ତୋ ନାମ ॥୧୫୪
ଆଦିପୁରୁଷ ବୀଜଆଦି ।
ସମ୍ପୂର୍ଣ୍ଣ ଜ୍ଞାନ ତୋ ପ୍ରସିଦ୍ଧି ॥୧୫୫
ଜଗତଜନ୍ମ କରୁ ତୁହି ।
ଜନ୍ମମରଣ ତୋର ନାହିଁ ॥୧୫୬
ବ୍ରହ୍ମଣ୍ୟରୂପୀ ନମୋନମ ।
ଅନନ୍ତଶକ୍ତି ଅନୁପମ ॥୧୫୭
ପରଅପର ଭୂତଆତ୍ମା ।
ପରମାନନ୍ଦ ତୋ ମହିମା ॥୧୫୮
ଏ ସୃଷ୍ଟି ଉପୁଜିବା କାଳେ ।
ତୁ ରଜଗୁଣ ଧରି ହେଲେ ॥୧୫୯
ନିରୋଧକାଳେ ତମଗୁଣ ।
ଆନନ୍ଦେ ବହୁ ନାରାୟଣ ॥୧୬୦
ସୃଷ୍ଟିପାଳନେ ଧର୍ମରୂପେ ।
ସତ୍ତ୍ୱଗୁଣକୁ ଭଜୁ ଆପେ ॥୧୬୧
ପ୍ରଧାନପୁରୁଷ ତୁ କାଳ ।
ନିର୍ଗୁଣ ଆତ୍ମା ନନ୍ଦବାଳ ॥୧୬୨
ମୋ ଆଦି ସଲିଳ ଅନଳ ।
ପବନ ଆକାଶମଣ୍ଡଳ ॥୧୬୩
ଶବ୍ଦ ସ୍ପରଶ ରୂପ ରସ ।
ଗନ୍ଧ ଇନ୍ଦ୍ରିୟ ଏକାଦଶ ॥୧୬୪
ଲୋକପାଳକ ଦେବଗଣ ।
ତୁ ଆଦି ପରମ କାରଣ ॥୧୬୫
ତୁ ଅହଙ୍କାର ଭୂତ ଆଦି ।
ସଚରାଚର ପରସିଦ୍ଧି ॥୧୬୬

ଏ ମାୟା ତୋର ଦେହୁଁ ଭ୍ରମ ।
ତୁ ଏକ ବିଭୁ ପରଂବ୍ରହ୍ମ ॥୧୬୭
ତୁ ମୋର ନାଶିଲୁ ତନୁଜ ।
ଯେ ତୋର ପୁତ୍ର ଦେବରାଜ ॥୧୬୮
ଏହାର ପୁତ୍ର ଅଛି ଏକ ।
ଭୋ ନାଥ ହୋଇଲା ନିରେଖ ॥୧୬୯
ତୋ ପାଦପଦ୍ମେ ଅଛି ଶୋଇ ।
ଭୁଜଯୁଗଳ ଶିରେ ଦେଇ ॥୧୭୦
ଏହାକୁ ରଖ ଜଗନ୍ନାଥ ।
ଶିରେ ନିବେଶି ପଦ୍ମହସ୍ତ ॥୧୭୧

ଶୁକ ଉବାଚ

ଶୁକ କହନ୍ତି ରାଜା ଚାହିଁ ।
ଭୂମି-ବଚନେ ଭାବଗ୍ରାହୀ ॥୧୭୨
ନାରକାପୁତ୍ରକୁ ତୋଳିଲେ ।
ଅଭୟହସ୍ତ ଶିରେ ଦେଲେ ॥୧୭୩
ବାଳକ ଘେନି ବ୍ରହ୍ମରାଶି ।
ନାରକାପୁର ମଧ୍ୟେ ପଶି ॥୧୭୪
ରାଜା କରାଇ ଯଦୁନାଥ ।
ନାମ ତା ଦେଲେ ଭଗଦତ୍ତ ॥୧୭୫
ତକ୍ଷଣେ ଅନ୍ତଃପୁରେ ପଶି ।
ସେବକଜନଙ୍କୁ ଆଶ୍ୱାସି ॥୧୭୬
ଦେଖିଲେ ରାଜକନ୍ୟାୟୂଥ ।
ଷୋଳସହସ୍ର ଏକଶତ ॥୧୭୭
କୃଷ୍ଣଙ୍କୁ ଦେଖି ସର୍ବନାରୀ ।
ଏକୁ ଆରେକ ଆଗସରି ॥୧୭୮
ଚର୍ମଲୋଚନେ କୃଷ୍ଣ ଦେଖି ।
ପିଛାଡ଼ି ନ ପାରନ୍ତି ଆଖି ॥୧୭୯
ଚଞ୍ଚଳଚିତ୍ତ କାମବାଣେ ।
ଚଳି ନ ପାରନ୍ତି ଚରଣେ ॥୧୮୦
ନିଶ୍ଚଳେ ଚାହାଁନ୍ତି ଯୁବତୀ ।
ଦଇବ ମିଳାଇଲା ପତି ॥୧୮୧
ବୋଲନ୍ତି କୃଷ୍ଣ ସ୍ୱାମୀ ହେଉ ।
ବିଧାତା ଏହି ବର ଦେଉ ॥୧୮୨
ଏମନ୍ତ କୃଷ୍ଣଭାବ ସଧେ ।
ବରିଲେ ହୃଦୟର ମଧ୍ୟେ ॥୧୮୩

ଗୋବନ୍ଦ ଜାଣି ତାଙ୍କ ମନ ।
ଆନନ୍ଦେ ହୋଇଲେ ପ୍ରସନ୍ନ ॥୧୮୪
ଷୋଳସହସ୍ର ଶତେବାଳୀ ।
ଲଭିଲେ ପ୍ରଭୁ ବନମାଳୀ ॥୧୮୫
କନ୍ୟା ସହିତେ ଭଗବାନ ।
ନରକୁଞ୍ଜର ଯେତେ ଧନ ॥୧୮୬
ଅଶ୍ୱ ଗୋଧନ ଧନରାଶି ।
ଦ୍ୱାରକାପୁରେ ତାହା ପେଶି ॥୧୮୭
ନାରକା ଅସୁରର ପୁର ।
ଥିଲେ ଯେ ଅନେକ କୁଞ୍ଜର ॥୧୮୮
ଅଇରାବତ କୁଳେ ଜାତ ।
ସ୍ୱଭାବେ ଚାରି ଚାରି ଦାନ୍ତ ॥୧୮୯
ମଦ ଗଳଇ କର୍ଣ୍ଣପାଟି ।
ଏମନ୍ତେ ନେଲେ ଚଉଷଠି ॥୧୯୦
ଗମନେ ଅତି ବଳୀୟାର ।
ସ୍ୱଭାବେ ଦିଶନ୍ତି ପାଣ୍ଡୁର ॥୧୯୧
ତାହାଙ୍କୁ ଦେବକୀନନ୍ଦନ ।
ଚଳାଇ ଦ୍ୱାରକାଭୁବନ ॥୧୯୨
ଗରୁଡ଼େ ବସି ଦାମୋଦର ।
ତକ୍ଷଣେ ଗଲେ ସ୍ୱର୍ଗପୁର ॥୧୯୩
ଅଦିତି ହସ୍ତେ ଭାବଗ୍ରାହୀ ।
ରତ୍ନକୁଣ୍ଡଳ ଦେଲେ ନେଇ ॥୧୯୪
ଦେଖି ଅଦିତି ତୋଷ ହୋଇ ।
କୃଷ୍ଣଙ୍କୁ ଆସନେ ବସାଇ ॥୧୯୫
ଶଚୀ ସହିତେ ସୁରରାୟେ ।
ପୂଜିଲେ ଗୋବିନ୍ଦର ପାୟେ ॥୧୯୬
ଗୋବିନ୍ଦ ସମୀପେ ଅଦିତି ।
ଅନେକ କଲା ଦିବ୍ୟସ୍ତୁତି ॥୧୯୭
ସନ୍ତୋଷେ ପ୍ରଭୁ ଦେବରାୟେ ।
ମେଲାଣି ମାଗି ମାତା ପୋଏ ॥୧୯୮
ସନ୍ତୋଷ କରି ଦେବବୃନ୍ଦ ।
ଦ୍ୱାରକା ଗମନେ ଆନନ୍ଦ ॥୧୯୯
ସଙ୍ଗେ ସୁନ୍ଦରୀ ସତ୍ୟବତୀ ।
ବୋଲନ୍ତି ଶୁଣ ଯଦୁପତି ॥୨୦୦
ଦେଖ ସୁନ୍ଦର ପାରିଜାତ ।
ଗନ୍ଧେ ଲୋଭିତ ମୋର ଚିତ୍ତ ॥୨୦୧

Dr. Sudhanshu Sekhar Mishra

ସିନ୍ଧୁମନ୍ଥନୁଁ ଏ ପ୍ରକାଶେ ।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟ ଦିଶେ ।।୨୦୨
ଏ ବୃକ୍ଷ ନରଲୋକେ ନାହିଁ ।
ମୋର ମନ୍ଦିରେ ନେବି ମୁହିଁ ।।୨୦୩
ଭୋ ନାଥ ଘେନ ପାରିଜାତ ।
ଭାମାବଚନେ ଗୋପୀନାଥ ।।୨୦୪
ବୃକ୍ଷ ଉପାଡ଼ି ବାମକରେ ।
ଥୋଇଲେ ଗରୁଡ଼ ଉପରେ ।।୨୦୫
ବନରକ୍ଷକ ଯେତେ ଥିଲେ ।
ଗୋବିନ୍ଦ ସଙ୍ଗେ ଯୁଦ୍ଧ କଲେ ।।୨୦୬
ବାସବ ଆଦି ଦିଗପାଳ ।
ଆବୋରି ଆକାଶମଣ୍ଡଳ ।।୨୦୭
କୃଷ୍ଣର ତୁଲେ କଲେ ରଣ ।
ଜ୍ଞାନ ବିନାଶି ଦେବଗଣ ।।୨୦୮
ବିଷ୍ଣୁମାୟାରେ ଭୋଳ ହୋଇ ।
ଅଜ୍ଞାନେ ତମଗୁଣ ବହି ।।୨୦୯
ଯାହାର ପଦ୍ମପାଦେ ନିତି ।
ମୁକୁଟଶିରେ ସେ ନମନ୍ତି ।।୨୧୦
ସେ ହରି ମହିମା ନ ଜାଣି ।
ମନୁଷ୍ୟ ପ୍ରାୟ ତାଙ୍କୁ ମଣି ।।୨୧୧
ଏ ଅପରାଧ ତାହାଙ୍କର ।
ଏବେ ହୋ ଶୁଣ ନୃପବର ।।୨୧୨
ଦେବଙ୍କ ଗର୍ବ ହେଲେ ନାଶି ।
ଦ୍ୱାରକା ବିଜେ ବ୍ରହ୍ମରାଶି ।।୨୧୩
ସତ୍ୟଭାମାର ପୁରେ ଆଣି ।
ଆନନ୍ଦେ ପ୍ରଭୁ ଚକ୍ରପାଣି ।।୨୧୪
ରୋପିଲେ ପାରିଜାତ ବନ ।
ଗନ୍ଧେ ମୋହିତ ସର୍ବଜନ ।।୨୧୫
ଯାହାର ଛାୟା ଲାଗି ଦେହେ ।
ବୃଦ୍ଧେ ଦିଶନ୍ତି ଯୁବାପ୍ରାୟେ ।।୨୧୬
କଳ୍ପବୃକ୍ଷର ଗୁଣ ଯେତେ ।
କହି ପାରିବି ମୁହିଁ କେତେ ।।୨୧୭
ଏବେ ହୋ ଶୁଣ କୁରୁବୀର ।
ଦ୍ୱାରକାପୁରେ ଦାମୋଦର ।।୨୧୮
ନାରକାପୁରୁ କନ୍ୟା ଆଣି ।
ଏକଇ ଲଗ୍ନେ ଚକ୍ରପାଣି ।।୨୧୯
ବିଭା ହୋଇଲେ ବିଧିମତେ ।
ଶୁଣ କହୁଛି ମୁହିଁ ତୋତେ ।।୨୨୦
ନାନା ଭୁବନେ କନ୍ୟା ଥୋଇ ।
ସୁଖେ ରମିଲେ ଭାବଗ୍ରାହୀ ।।୨୨୧
କନ୍ୟାଙ୍କ ପୁରୁ ଯଦୁବୀର ।
ଦଣ୍ଡେ ହେଁ ନୁହନ୍ତି ବାହାର ।।୨୨୨
ତ୍ରିଗୁଣ ହୋଏ ଯହିଁ ଲୀନ ।
ନାମ ଯାହାର ନିରଞ୍ଜନ ।।୨୨୩
ଇତରଜନ ପ୍ରାୟ ହୋଇ ।
ଯୁବତୀଗଣ ମଧ୍ୟେ ରହି ।।୨୨୪
ରମିଲେ ବ୍ରହ୍ମାଣ୍ଡଠାକୁର ।
ଶୁଣ ମହିମା ନାରୀଙ୍କର ।।୨୨୫
କିବା ସ୍ତିରୀଙ୍କ ଭାଗ୍ୟ କହି ।
ରମାରମଣ ସ୍ୱାମୀ ପାଇ ।।୨୨୬
ସଲ୍ଲଜ ହାସ କ୍ରୀଡ଼ାରଙ୍ଗେ ।
ନିତ୍ୟେ ରମନ୍ତି କୃଷ୍ଣସଙ୍ଗେ ।।୨୨୭
କୃଷ୍ଣ ଆଗମ ଦେଖି ଉଠି ।
କେତେ ହେଁ ଦୂରରୁ ପାଛୋଟି ।।୨୨୮
ଆଣନ୍ତି ହସ୍ତେ ହସ୍ତ ଦେଇ ।
ସୁଗନ୍ଧଜଳେ ପାଦ ଧୋଇ ।।୨୨୯
ବସାଇ ଉତ୍ତମ ଆସନେ ।
ପୂଜନ୍ତି ସ୍ୱାମୀ ସୁବିଧାନେ ।।୨୩୦
ଅନ୍ନଭୋଜନ ଜଳପାନେ ।
ଖଟନ୍ତି ତାମ୍ବୁଳ ଯୋଗାଣେ ।।୨୩୧
କେଶ ପ୍ରସାଧନ ରଞ୍ଜନ ।
ଯେ ବିଧି ସ୍ୱାମୀ ସେବାମାନ ।।୨୩୨
ବ୍ରହ୍ମାଦି ମୁନି ଯାର ପଥେ ।
ବିବେକୀ ନୋହିଲେ ସମର୍ଥେ ।।୨୩୩
ହରିଙ୍କ ସଙ୍ଗେ ସେ କାମିନୀ ।
ରମିଲେ ନାନାଭାବ ଘେନି ।।୨୩୪
ରାତ୍ରିଦିବସ ନ ଜାଣିଲେ ।
କୃଷ୍ଣଙ୍କୁ ପ୍ରେମେ ମୁଗ୍ଧ କଲେ ।।୨୩୫
ଦାସୀ ସହସ୍ରେ ଘେନି ସଙ୍ଗେ ।
ସେବନ୍ତି କୃଷ୍ଣପାଦଯୁଗେ ।।୨୩୬
ସେ ମାୟାଧର ପାଦଗତେ ।
ସୁଜନେ ଚିନ୍ତ ଅବିରତେ ।।୨୩୭
ଖଣ୍ଡିବ ମାୟାମୋହପାଶ ।
କହଇ ଜଗନ୍ନାଥ ଦାସ ।।୨୩୮

ଇତି ଶ୍ରୀମଦ୍‌ଭାଗବତ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ପାରିଜାତ
ହରଣ ନରକାବଧୋ ନାମ
ଚତୁଃଷଷ୍ଠିତମ ଅଧ୍ୟାୟଃ ।।

Dr. Sudhanshu Sekhar Mishra

ବିରାଟସୁତାସୁତ ପାଶେ ।
ଗୋବିନ୍ଦ ଭକତି ବିଶ୍ୱାସେ ।।୧
ବ୍ୟାସକୁମର ତତ୍ତ୍ୱଜ୍ଞାନୀ ।
କହନ୍ତି କୃଷ୍ଣଭାବ ଘେନି ।।୨

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ
କୃଷ୍ଣଚରିତ ଭାଗବତ ।।୩
ଦ୍ୱାରକାପୁରେ ଏକଦିନେ
ରୁକ୍ମିଣୀ ଏକାନ୍ତଭୁବନେ ।।୪
ଯେ ହରି ତ୍ରିଗୁଣ ଅତୀତ
ପଲ୍ୟଙ୍କ ମଧ୍ୟେ ଉପଗତ ।।୫
ଯେ ବିଶ୍ୱମାୟା ଲୀଳା କରି
ସର୍ଜଇ ପାଳଇ ସଂହରି ।।୬
ସ୍ୱଧର୍ମ ପାଳିବାର ଆଶେ
ଯାହାର ଜନ୍ମ ଯଦୁବଂଶେ ।।୭
ତାର ନିକଟେ ଭାବ ଘେନି
ମିଳିଲେ ଭୀଷ୍ମକ ନନ୍ଦିନୀ ।।୮
ଦିବ୍ୟ ଆଲଟ କରେ ଧରି
ସଙ୍ଗେ ଅଛନ୍ତି ପରିବାରୀ ।।୯
କୃଷ୍ଣ ଅଛନ୍ତି ଯେ ଭୁବନେ ।
କି ପଟାନ୍ତର ଦେବା ଅନ୍ୟେ ।।୧୦
ଉପରେ ଚନ୍ଦ୍ରାତପ ଟାଣି ।
ମୁକୁତାଦାମେ ସୁଖଞ୍ଜଣି ।।୧୧
ରତ୍ନପ୍ରଦୀପ ଚାରିଦିଗେ ।
ମଲ୍ଲିକାମାଳା ତଥି ଲାଗେ ।।୧୨
ମଧୁପେ ମକରନ୍ଦ ଆଶେ ।
ନାବେ ଉଡ଼ନ୍ତି ପୁଷ୍ପବାସେ ।।୧୩
ଜଳାକବାଟି ବାଟେ ଯାଇ ।
ଚନ୍ଦ୍ରକିରଣ ପ୍ରକାଶଇ ।।୧୪
ଆବୋରି ପାରିଜାତ ବନ ।
ସୁଗନ୍ଧ ବହଇ ପବନ ।।୧୫
ଅଗୁରୁ ଧୂପ ଜଳାରନ୍ଧ୍ରେ ।
ପ୍ରସରେ ଦଶଦିଗ ଗନ୍ଧେ ।।୧୬

## ପଞ୍ଚଷଷ୍ଠିତମ ଅଧ୍ୟାୟ

ସୁନ୍ଦର ପାଟବସ୍ତ୍ରମାନ ।
ନିର୍ମଳ ଅତ୍ୟନ୍ତ ଯତନ ।।୧୭
ଶୁଭ୍ର ସୁଝୀନ ପାଟବସ୍ତ୍ରେ ।
ଶଯ୍ୟା ନିର୍ମିତ ହସ୍ତୀଦନ୍ତେ ।।୧୮
ପୁଷ୍ପପାଖୁଡ଼ା ସଙ୍ଗେ ମିଶି ।
ଗୋରସଫେନ ପ୍ରାୟ ଦିଶି ।।୧୯
ସଖୀର କନ୍ଧେ ହସ୍ତ ଦେଇ ।
ଶୁଭ୍ର ଚାମର କରେ ନେଇ ।।୨୦
ଯେ ହରି ଜଗତର ଗତି ।
ରୁକ୍ମିଣୀଦେବୀ ନିଜ ପତି ।।୨୧
ଚାମର ବିଞ୍ଚି କରେ ସେବା ।
ଯାହା ନ ପାନ୍ତି ସୁରଦେବା ।।୨୨
ନିର୍ମଳ ନାନା ରତ୍ନପନ୍ତି ।
ରୁକ୍ମିଣୀ ଅଙ୍ଗେ ଝଟକନ୍ତି ।।୨୩
ସଖୀର କନ୍ଧେ ବାମକର ।
ଦକ୍ଷିଣେ ଚଳଇ ଚାମର ।।୨୪
ବଜ୍ରଜଡ଼ିତ ହୃଦେ ଥାଇ ।
କୁଚଯୁଗଳ ବିରାଜଇ ।।୨୫
କୁଙ୍କୁମାଙ୍କିତ ହୃଦେ ହାର ।
କଟିମେଖଳା ରତ୍ନସାର ।।୨୬
ତୁଙ୍ଗ ନିତମ୍ବ ବେନି ଶୋହେ ।
ରୂପେ ଜଗତଜନ ମୋହେ ।।୨୭
କୃଷ୍ଣହୁଁ ନ ଜାଣଇ ଆନ ।
ମନ ବଚନେ ସାବଧାନ ।।୨୮
ଲୀଳା ମନୁଷ୍ୟ ରୂପ ଧରି ।
ସେ ରୂପେ ରୂପ ଅନୁସରି ।।୨୯
କର୍ଣ୍ଣେ କୁଣ୍ଡଳ ରବି ତ୍ରାସ ।
ସଲ୍ଲଜ ମୁଖେ ମନ୍ଦହାସ ।।୩୦
କଣ୍ଠେ ଅମୂଲ୍ୟହାର ଶୋହେ ।
ନୀଳକୁନ୍ତଳ ମନ ମୋହେ ।।୩୧
ଏମନ୍ତ ଦେଖି ତା ବଦନ ।
ବୋଲନ୍ତି ଦେବକୀନନ୍ଦନ ।।୩୨

ହେ ରାଜପୁତ୍ରି ମୋ ବଚନ ।
ଶୁଣ ତୁ ହୋଇ ସାବଧାନ ।।୩୩
ଅନେକ ନୃପତିକୁମରେ ।
ମିଳିଲେ ତୋର ସ୍ୱୟମ୍ବରେ ।।୩୪
ଅଶେଷ ଗୁଣ ତାହାଙ୍କର ।
ସୁର ସୁନ୍ଦର ବଳୀୟାର ।।୩୫
ତୋର ପିଅର ଜ୍ୟେଷ୍ଠଭାଇ ।
ଶିଶୁପାଳକୁ ସେ ଅଣାଇ ।।୩୬
ତୋହର ରୂପେ ଲୋଭ ବହି ।
ମିଳିଲେ ରାଜପୁତ୍ରେ ଯାଇ ।।୩୭
ରଣେ ଦୁର୍ମଦ ମହାବୀର ।
ଅନେକ ବଳ ତାହାଙ୍କର ।।୩୮
ତାହାଙ୍କୁ ଅବଜ୍ଞା ତୁ କରି ।
ମୁଁ ତାଙ୍କୁ କେଉଁଗୁଣେ ସରି ।।୩୯
କି ଗୁଣେ ବରିଲୁ ତୁ ମୋତେ ।
ସନ୍ଦେଶ ଦେଇ ବିପ୍ରହସ୍ତେ ।।୪୦
ରାଜାଙ୍କ ଡରେ ମୁଁ ପଳାଇ ।
ସମୁଦ୍ର ମଧ୍ୟେ ଅଛି ରହି ।।୪୧
ବଳିଷ୍ଠ ରାଜକୁଳେ ବାଦ ।
ଆମ୍ଭେ ନ ଇଚ୍ଛୁ ପରମାଦ ।।୪୨
ଯଯାତି ଶାପ ପୂର୍ବେ ପାଇ ।
ନୃପଆସନ ମୋର ନାହିଁ ।।୪୩
ଅଜ୍ଞାତ ମାର୍ଗ ମୋର ପଥ ।
ସ୍ୱଭାବେ ନାହିଁ ଲୋକମତ ।।୪୪
ତାହାଙ୍କୁ ସ୍ୱାମୀପଣେ ବରି ।
ସୁଖୀ ହୋଇବ କେଉଁ ନାରୀ ।।୪୫
ସ୍ୱଭାବେ ଅକିଞ୍ଚନ ମୁହିଁ ।
ଦରିଦ୍ରପ୍ରିୟ ମୁଁ ବୋଲାଇ ।।୪୬
ଏଣୁ ସମ୍ପଦେ ଅନ୍ଧ ଲୋକେ ।
ମୋତେ ନ ଭଜନ୍ତି ବିମୁଖେ ।।୪୭
ଶୁଣ ସୁନ୍ଦରି ଶାସ୍ତ୍ରବାଣୀ ।
ବେଦଆଗମେ ପରିମାଣି ।।୪୮

Dr. Sudhanshu Sekhar Mishra

ବରକନ୍ୟାର ବିଭାକାଳେ ।
ବୟ ସମ୍ପଦ କୁଳ ତୁଲେ ।।୪୯
ସେ ବିଭା ମିତ୍ରପଣେ ସମ ।
ନ କରି ଅଧମ ଉତ୍ତମ ।।୫୦
ତୁ ପୁଣି ଜାଣୁ ଏହା ଭଲେ ।
ବିଚାର କରି ବିପ୍ରତୁଲେ ।।୫୧
ମୋତେ ବରିଲୁ କିସ ଦେଖି ।
ଶୁଣ ସୁନ୍ଦରୀ ଚନ୍ଦ୍ରମୁଖି ।।୫୨
ଦେଖ ନିର୍ଗୁଣ ଦେହ ମୋର ।
ଭିକ୍ଷୁକ ଜନେ ମୋ ସୋଦର ।।୫୩
ନ ଜାଣି କଲୁ ଏଡ଼େ କର୍ମ ।
କେ ତୋତେ କଲା ମତିଭ୍ରମ ।।୫୪
ଏବେ ଏମନ୍ତ ତୁହି କର ।
ଆତ୍ମାର ଅନୁରୂପେ ବର ।।୫୫
ଉତ୍ତମ ରାଜପୁତ୍ର ଦେଖି ।
ଏ ନାରୀଜନ୍ମ କର ସୁଖୀ ।।୫୬
ଯେ ତୋର ଇଚ୍ଛା ଭୋଗସୁଖେ ।
ଲଭିବୁ ଇହପରଲୋକେ ।।୫୭
ତୋହର ବର ଶିଶୁପାଳ ।
ବେଗେ ତାହାର ପୁରେ ଚଳ ।।୫୮
ଶାଲ୍ୱ ମାଗଧ ବକ୍ରଦନ୍ତ ।
ଏ ଆଦି ଯେତେ ନୃପନାଥ ।।୫୯
ମୋତେ ହିଂସନ୍ତି ଗର୍ବ ବହି ।
ରୁକ୍ମୀ ଯେ ତୋର ଜ୍ୟେଷ୍ଠଭାଇ ।।୬୦
ଏ ଆଦି ବୀର ଛନ୍ତି ଯେତେ ।
ତାହାଙ୍କ ମଧ୍ୟୁ ଅଭିମତେ ।।୬୧
ତୋର ବିଚାରେ ସ୍ୱାମୀ ବର ।
ବୋଲନ୍ତି ପ୍ରଭୁ ଦାମୋଦର ।।୬୨
ଶୁଣ ସୁନ୍ଦରୀ ମନସ୍ଥିରେ ।
ତାହାଙ୍କ ଗର୍ବ ନାଶିବାରେ ।।୬୩
ବଳେ ଆଣିଲି ତୋତେ ମୁହିଁ ।
ଅସାଧୁ ଗର୍ବ ନ ସହଇ ।।୬୪
ଉଦାସୀଜନ ମୁଁ ବୋଲାଇ ।
ଦାରା ସମ୍ପଦେ କାର୍ଯ୍ୟ ନାହିଁ ।।୬୫
ଆତ୍ମଲାଭରେ ପୂର୍ଣ୍ଣ ମୁହିଁ ।
ଗୃହେ ପ୍ରଦୀପ ପ୍ରାୟ ଥାଇ ।।୬୬

ଶୁକ ବୋଲନ୍ତି ରାୟେ ଶୁଣ ।
ଏମନ୍ତେ ପ୍ରଭୁ ନାରାୟଣ ।।୬୭
ଲୀଳା ମନୁଷ୍ୟ ଦେହ ଧରି ।
ଆତ୍ମସଦୃଶେ ପ୍ରିୟନାରୀ ।।୬୮
କୂଟବଚନ ମନେ ଧରି ।
ମଣ୍ଡନ ହେଲେ ଦଇତ୍ୟାରି ।।୬୯
ଏମନ୍ତ କୃଷ୍ଣ ବାକ୍ୟ ଶୁଣି ।
ଚକିତେ ଚାହିଁଲା ରୁକ୍ମିଣୀ ।।୭୦
ତ୍ରୈଲୋକ୍ୟପତି ଆତ୍ମାନାଥ ।
କୃଷ୍ଣର କଥା ବିପରୀତ ।।୭୧
ଅଶ୍ରୁତ-ଅପୂର୍ବ ବଚନ ।
ଶୁଣି ହାଲିଲା ଦେବୀ ଜ୍ଞାନ ।।୭୨
ଭୟେ କମ୍ପଇ ଥରହର ।
ହୃଦରେ ଚିନ୍ତା ଶୋକଭର ।।୭୩
ପାଦଅଙ୍ଗୁଳି ନଖପନ୍ତି ।
ଅରୁଣ ପ୍ରାୟ ଝଟକନ୍ତି ।।୭୪
ସେ ପାଦ ଅଙ୍ଗୁଳିର ଅଗ୍ରେ ।
ଶୋକେ ଲେଖଇ ଭୂମିଭାଗେ ।।୭୫
ଅଞ୍ଜନରଞ୍ଜିତ ଲୋଚନେ ।
ଅଶ୍ରୁ ବହଇ ଖେଦମନେ ।।୭୬
ହୃଦେ ପଡ଼ନ୍ତି ଅଶ୍ରୁଧାରେ ।
କୁଙ୍କୁମ ଚିହ୍ନ କୁଚଭାରେ ।।୭୭
ଅଧୋବଦନେ ଦେବୀ ରହି ।
କଣ୍ଠେ ବଚନ ନ ସ୍ଫୁରଇ ।।୭୮
ସେ ଦୁଃଖ ଭୟ ଶୋକାତୁରେ ।
ବୁଦ୍ଧି ଭ୍ରମିଲା ଖେଦଭରେ ।।୭୯
ବଳୟ ବେନି ହସ୍ତେ ଥିଲେ ।
ଶ୍ଳଥ ହୋଇଲେ ଏକତୁଲେ ।।୮୦
ଚାମର ଶ୍ରୀହସ୍ତରେ ଥିଲା ।
ତକ୍ଷଣେ ଭୂମିରେ ପଡ଼ିଲା ।।୮୧
ରମ୍ଭା ଯେସନେ ଘୋରବାତେ ।
ଭାଜି ପଡ଼ଇ ଭୂମିଗତେ ।।୮୨
କେଶ ବସନ ଅସମ୍ଭାଳ ।
ନୟନୁ ବହେ ଅଶ୍ରୁଜଳ ।।୮୩
ପଡ଼ିଲା ମୃତପିଣ୍ଡ ପ୍ରାୟ ।
ଦେଖନ୍ତି ପ୍ରଭୁ ଦେବରାୟ ।।୮୪

ପ୍ରିୟାର ପ୍ରେମଭାବ ଚିନ୍ତି ।
ଗୋବିନ୍ଦ ମନେ ବିଚାରନ୍ତି ।।୮୫
ହାସ୍ୟ ମୁଁ କଲି ଭାବ ବହି ।
ଜାଣି ନ ପାରି ଚନ୍ଦ୍ରମୁହିଁ ।।୮୬
ମୋ ତହୁଁ ଆନ ନ ଜାଣଇ ।
ତେଣୁ ଏହାର ଜ୍ଞାନ ନାହିଁ ।।୮୭
ଏମନ୍ତ ଚିତ୍ତେ ଭାବବହି ।
ପ୍ରିୟା ବିଷୟେ ଭାବଗ୍ରାହୀ ।।୮୮
ମନେ ସୁମରି ଅନୁତାପ ।
ତକ୍ଷଣେ ହୋଇ ଦିବ୍ୟରୂପ ।।୮୯
ପଲ୍ୟଙ୍କୁ ଉଠି ଦେବରାଜ ।
ସୁନ୍ଦର ଶୋଭା ଚାରିଭୁଜ ।।୯୦
ଭୂମିରୁ ବେନିଭୁଜେ ତୋଳି ।
କୋଳେ ବସାଇ ବନମାଳୀ ।।୯୧
ବସ୍ତ୍ର ପିନ୍ଧାଇ ଦେବରାଜେ ।
କେଶ ବାନ୍ଧିଲେ ବେନିଭୁଜେ ।।୯୨
ମୁଖମାର୍ଜନ କରି ଧୀରେ ।
ଅଶ୍ରୁ ପୋଛିଲେ ପୀତାମ୍ବରେ ।।୯୩
ଶ୍ରୀଭୁଜେ କଲେ ଆଲିଙ୍ଗନ ।
କୃଷ୍ଣ ଜାଣନ୍ତି ତାର ମନ ।।୯୪
ମନ ବଚନ କର୍ମ ଲଇଁ ।
କୃଷ୍ଣହୁଁ ଆନ ନ ଜାଣଇ ।।୯୫
ପ୍ରିୟ ବଚନେ ଚକ୍ରପାଣି ।
ଶାନ୍ତି କରାଇ କମଳିନୀ ।।୯୬
ହରି ଜାଣିଲେ ତାର ମନ ।
ହାସ୍ୟକୁ ନୋହେ ଏ ଭାଜନ ।।୯୭
ସଚେତ କରି ନିଜ ନାରୀ ।
ହସି ବୋଲନ୍ତି ନରହରି ।।୯୮
ଶୁଣ ବିଦର୍ଭ ରାଜପୁତ୍ରି ।
ବିଭ୍ରମ କଲୁ ନିଜ ମତି ।।୯୯
ମୁହିଂ ଜାଣଇ ହୃଦଗତେ ।
ମୋ ତହୁଁ ଅନ୍ୟ ନାହିଁ ଚିତ୍ତେ ।।୧୦୦
ମୋ ତହୁଁ ନ ଜାଣୁ ତୁ ଆନ ।
ମୁହିଁ ତୋହର ନିଜ ଧନ ।।୧୦୧
ମନେ ନ କର ତୁମ୍ଭେ ରୋଷ ।
ଶୁଣ ମୁଁ କହଇ ବିଶ୍ୱାସ ।।୧୦୨

Dr. Sudhanshu Sekhar Mishra

ହାସ୍ୟ ମୁଁ କଲି ତୋର ପାଶେ ।
ତୋ ଚିତ୍ତ ଜାଣିବାର ଆଶେ ।।୧୦୩
ତୋହର କୁପିତ ବଦନ ।
ଭ୍ରୁକୁଟି କୁଟିଳଲୋଚନ ।।୧୦୪
ଦେଖିବା ପାଇଁ କଲି ଏହା ।
ତୁ ପୁଣି ନ ଜାଣିଲୁ ତାହା ।।୧୦୫
ଯେ ପ୍ରାଣୀ ଥାଇ ଗୃହବାସେ ।
ପ୍ରିୟାସଂଯୋଗେ ହାସ୍ୟରସେ ।।୧୦୬
ଦିନ ହରଇ ପ୍ରିୟଭାବେ ।
ବିଷୟ ସୁଖେ ଏହା ଲଭେ ।।୧୦୭
ଶୁଣ ପରୀକ୍ଷ ନରପତି ।
ମୋହନ ବାକ୍ୟେ ତାର ମତି ।।୧୦୮
ଶାନ୍ତ କରାଇ ଭଗବାନ ।
ମୋହିଲେ ରୁକ୍ମିଣୀର ମନ ।।୧୦୯
ଦେଖି ରୁକ୍ମିଣୀ କୃଷ୍ଣ ଭାବ ।
ଛାଡ଼ିଲା ଚିନ୍ତା ପରାଭବ ।।୧୧୦
କୃଷ୍ଣର ପଦ୍ମମୁଖ ଚାହିଁ ।
କଟାକ୍ଷ ନୟନେ ଅନାଇ ।।୧୧୧
ପୁରୁଷୋତ୍ତମ ପାଶେ ରହି ।
କହେ କମଳମୁଖ ଚାହିଁ ।।୧୧୨
ଅମଳ-କମଳ ଲୋଚନ ।
ତୋହର ସତ୍ୟ ଏ ବଚନ ।।୧୧୩
ଅନାଦି ପ୍ରଭୁ ନିରଞ୍ଜନ ।
ମୁଁ ତୋରେ ନୁହଁଇ ଭାଜନ ।।୧୧୪
ନିଜ ମହିମା ରୂପ ବହୁ ।
ତ୍ରିଗୁଣ ଅତୀତ ବୋଲାଉ ।।୧୧୫
ଗୁଣ ପ୍ରକୃତି ବନ୍ଦେ ମୁହିଁ ।
ତୋର ଚରଣ ତଳେ ଥାଇ ।।୧୧୬
ଏତେ ଅନ୍ତର ତୋର ମୋର ।
ତୁ ନୋହୁ ପ୍ରକୃତି ଗୋଚର ।।୧୧୭
ବୋଲୁ ଯେ ରାଜଭୟେ ମୁହିଁ ।
ସମୁଦ୍ର ମଧ୍ୟେ ଅଛି ରହି ।।୧୧୮
ଏକଥା ପ୍ରମାଣ ତୋହର ।
ଯେଣୁ ତ୍ରିଗୁଣେ ଅଗୋଚର ।।୧୧୯
ଗୁଣ ଦୋଷକୁ ଭୟକରି ।
ପ୍ରଳୟେ ବ୍ରହ୍ମରୂପ ଧରି ।।୧୨୦
ଆତ୍ମା ସ୍ୱରୂପ ମାତ୍ର ଲକ୍ଷେ ।
ସମୁଦ୍ରେ ଶୋଉ ତୁ ପ୍ରତ୍ୟକ୍ଷେ ।।୧୨୧
ଇନ୍ଦ୍ରିୟଗଣେ ତୋର ବାଦ ।
ଏମନ୍ତ କହିଛନ୍ତି ବେଦ ।।୧୨୨
ତୋର ସେବକ ଯେତେ ପ୍ରାଣୀ ।
ସମ୍ପଦ ତୁଚ୍ଛପ୍ରାୟ ମଣି ।।୧୨୩
ତୋ ପାଦପଦ୍ମ-ମକରନ୍ଦ ।
ନିତ୍ୟେ ପିବନ୍ତି ମୁନିବୃନ୍ଦ ।।୧୨୪
ଅଭେଦ ତାହାଙ୍କର ଗତି ।
ନୃ-ପଶୁଗଣେ ନ ଜାଣନ୍ତି ।।୧୨୫
ତୋହର ମହିମା ତ୍ରୈଲୋକ୍ୟେ ।
ଗୋଚର କେ କରୁ ଅନେକେ ।।୧୨୬
ତୋର ସେବକ ଯେତେ ଜନ ।
ତୋ ତହୁଁ ନ ଜାଣନ୍ତି ଆନ ।।୧୨୭
ବୋଲୁ ଯେ ଅକିଞ୍ଚନ ମୁହିଁ ।
ଯହୁଂ ତୋ ତହୁଁ ଆନ ନାହିଁ ।।୧୨୮
ବ୍ରହ୍ମାଦି ଯେତେ ମୁନି ଛନ୍ତି ।
ସେ ତୋ ମହିମା ନ ଜାଣନ୍ତି ।।୧୨୯
ପୂଜନ୍ତି ତୋହର ଚରଣ ।
ତୁ ଆଦି ପରମକାରଣ ।।୧୩୦
ଇନ୍ଦ୍ରିୟଅର୍ଥେ ତୋଷ ଯେହୁ ।
ସେ ତୋତେ ପାଇବଟି କାହୁଁ ।।୧୩୧
ଦାରା ସମ୍ପଦେ ଅନ୍ଧ ପ୍ରାଣୀ ।
ସେ ତୋତେ ନିକଟେ ନ ଜାଣି ।।୧୩୨
ତୋର ମାୟାରେ ମର୍ତ୍ତ୍ୟଲୋକେ ।
ନିକଟେ ଅନ୍ତକ ନ ଦେଖେ ।।୧୩୩
ଦେବେ ଭୁଞ୍ଜନ୍ତି ଯଜ୍ଞେବଳି ।
ସେ ତୋର ପାଦେ ବନମାଳୀ ।।୧୩୪
ପୂଜା କରନ୍ତି ବଳି ଦେଇ ।
ତାହାଙ୍କ ଇଷ୍ଟ ଯେଣୁ ତୁହି ।।୧୩୫
ପରମଆତ୍ମା ଆଦିମୂଳ ।
ତୁ ସର୍ବପୁରୁଷାର୍ଥ ଫଳ ।।୧୩୬
ଯାହା ଲଭିବା ଇଚ୍ଛା କରି ।
ସଂସାର ଛାଡ଼େ ବ୍ରହ୍ମଚାରୀ ।।୧୩୭
ତାହାଙ୍କୁ ହେଉ ତୁ ସୁଲଭ ।
ବ୍ରହ୍ମାଦି ଦେବଙ୍କୁ ଦୁର୍ଲଭ ।।୧୩୮
ସନ୍ନ୍ୟାସୀଜନଙ୍କର ହୃଦେ ।
ତୁ ନାଥ ବସୁ ଅପ୍ରମୋଦେ ।।୧୩୯
ଭାବରେ ଆତ୍ମା ରୂପେ ଥାଉ ।
ଭାବକୁ ଆତ୍ମାପଦ ଦେଉ ।।୧୪୦
ଏଣୁ ବରିଲି ତୋତେ ମୁହିଁ ।
ତୋ ବିନୁ ଆନ ବର ନାହିଁ ।।୧୪୧
ତୋର ଭ୍ରୁକୁଟିଭଙ୍ଗୀ କାଳ ।
ଜଗତ ମଧ୍ୟେ ମହାବଳ ।।୧୪୨
ସେ କାଳବଳେ ହୋଇ ଧ୍ୱସ୍ତ ।
ଭବ ବିରଞ୍ଚି ସୁରନାଥ ।।୧୪୩
ଉଡ଼ନ୍ତି ରେଣୁପ୍ରାୟ ହୋଇ ।
ଅନ୍ୟ କେ ଅଛି ଦେହ ବହି ।।୧୪୪
ସାରଙ୍ଗଧନୁର ଶବଦେ ।
ରାଜାଙ୍କୁ ଜିଣି ଅପ୍ରମାଦେ ।।୧୪୫
ହରି ଆଣିଲୁ ମୋତେ ହେଳେ ।
ସିଂହ ଯେସନେ ବାହୁବଳେ ।।୧୪୬
ପଶୁଙ୍କ ମଧ୍ୟୁ ମହାବେଗେ ।
ଆକର୍ଷି ଭୁଞ୍ଜଇ ସ୍ୱଭାଗେ ।।୧୪୭
ସେ ରାଜା ଭୟେ ନାରାୟଣ ।
ପଶିଲୁ ସମୁଦ୍ରେ ଶରଣ ।।୧୪୮
ସତ୍ୟବଚନ ଏ ତୋହର ।
ଯେଣୁ ବଢ଼ିଲୁ ଗୋପପୁର ।।୧୪୯
ବିତର୍କ କହୁ ମୋର ପାଶେ ।
ତୋ ପାଦ ଲଭିବାର ଆଶେ ।।୧୫୦
ବେଣର ପିତା ପୁଣି ପୁତ୍ର ।
ନାହୁଷ ଗୟ ଯେ ଜୟନ୍ତ ।।୧୫୧
ଚିତ୍ତ ନିବାରି ରାଜ୍ୟସୁଖେ ।
ବନେ ପଶିଲେ ଘୋରଦୁଃଖେ ।।୧୫୨
କଠୋର ଯୋଗ କରି ସାଧି ।
ଲଭିଲେ ତୋର ପଦ୍ମପାଦ ।।୧୫୩
ସେ ପାଦ ସରୋଜର ଗନ୍ଧ ।
ପୁଣ୍ୟ ପବିତ୍ର ମକରନ୍ଦ ।।୧୫୪
ଆଘ୍ରାଣ ନାସାରନ୍ଧ୍ରେ କରି ।
କେ ନାରୀ ଆନ ବର ବରି ।।୧୫୫
ତୁ ନାଥ ଜଗତ ଈଶ୍ୱର ।
ସକଳ ଆତ୍ମା କାମପୁର ।।୧୫୬

Dr. Sudhanshu Sekhar Mishra

ବିବାହକାଳେ ଏ ବିଚାରେ ।
ତୋରେ ବରିଲି ମୁହିଁ ବରେ ॥୧୫୭
ଭବ ବିରଞ୍ଚି ଆଦି ସଭା ।
ମଧ୍ୟେ ତୋ ଗୁଣ କଥା ଶୋଭା ॥୧୫୮
ତୋର ମହିମା ଦାମୋଦର ।
ନ ପଶେ କର୍ଣ୍ଣପଥେ ଯାର ॥୧୫୯
ସେ ନାରୀ ବରେ ଅନ୍ୟ ଲୋକେ ।
ଇନ୍ଦ୍ରିୟ ଅର୍ଥ ଲୋଭ ସୁଖେ ॥୧୬୦
ସେ ନାରୀ ବଶେ ଯେ ରହଇ ।
ଶ୍ୱାନ ମାର୍ଜାର ପ୍ରାୟ ହୋଇ ॥୧୬୧
ଗୋରୁ ଗର୍ଦ୍ଦଭ ଅଶ୍ୱରୂପେ ।
ନିର୍ବନ୍ଧ ଗୃହ ଅନ୍ଧକୂପେ ॥୧୬୨
କୁନ୍ତଳ ନଖ ଚର୍ମ ଦାଢ଼ି ।
ଦେହ ଉପରେ ଛନ୍ତି ବେଢ଼ି ॥୧୬୩
ରୁଧିର ମାଂସ ମଜ୍ଜା ଅସ୍ଥି ।
ଶିରା ନିର୍ବନ୍ଧ ମନେ ସ୍ଥିତି ॥୧୬୪
ଅନ୍ତରେ ମଳ କୃମି ମୂତ୍ର ।
କଫ ଦୁର୍ଜ୍ଜୟ ବାତ ପିତ୍ତ ॥୧୬୫
ଏଣେ ନିର୍ମିତ ଯାର ଦେହି ।
ଜୀବନ୍ତେ ମୃତପିଣ୍ଡ ସେହି ॥୧୬୬
ତାହାକୁ ସ୍ୱାମୀପଣେ ବରି ।
ଜୀବନ ବହେ ଦୁଷ୍ଟ ନାରୀ ॥୧୬୭
ତୋର ଚରଣ ମକରନ୍ଦ ।
ଆଘ୍ରାଣ ନ କଲା ଯେ ଗନ୍ଧ ॥୧୬୮
ତୋର ଚରଣ ଉପାସନ ।
ନିଶ୍ଚଳେ କରୁ ମୋର ମନ ॥୧୬୯
ସ୍ୱଭାବେ ଆତ୍ମାରତ ତୁହି ।
ପର ଅପର ତୋର ନାହିଁ ॥୧୭୦
ତୁ ଯେବେ ରଜଗୁଣ ମଧ୍ୟେ ।
ମୋତେ ଦେଖିବୁ ଅନୁବନ୍ଧେ ॥୧୭୧
ଏ ବର ମୋତ ନିତ୍ୟେ ହେଉ ।
ତୋ ପାଦ ସେବି ଦିନ ଯାଉ ॥୧୭୨
ଭୋ ନାଥ ତୋର ବାକ୍ୟ ମୁହିଁ ।
କପଟ ପ୍ରାୟ ନ ମଣଇ ॥୧୭୩
ଅମ୍ବା କନ୍ୟାର ଚିତ୍ତ ଯେହ୍ନେ ।
ଭୀଷ୍ମଙ୍କୁ ନ ବରିଲା ମନେ ॥୧୭୪
ଦୁଷ୍ଟଯୁବତୀଙ୍କର ମନ ।
ଭଜଇ ଅଭିନବ ଜନ ॥୧୭୫
ଅସତୀବାଦ ତାଙ୍କ ତହିଁ ।
ପଣ୍ଡିତେ ନ କରିବେ ଦ୍ରାହି ॥୧୭୬
ଯେ ନର ତାହାଙ୍କୁ ବିଶ୍ୱାସ ।
ଉଭୟ ଲୋକ କରେ ନାଶ ॥୧୭୭
ଏମନ୍ତ ପତ୍ନୀ ବାକ୍ୟ ଶୁଣି ।
ହସି ବୋଲନ୍ତି ପଦ୍ମପାଣି ॥୧୭୮
ତୁ ସ୍ୱାଧୀପଣେ ଅନୁପମ ।
ମୋହର ଆତ୍ମା ଅଭିରାମ ॥୧୭୯
ଶୁଣିବା ପାଇଁ ତୋ ବଚନ ।
ମୁଁ ତୋର ମନ କଲି ଛିନ୍ନ ॥୧୮୦
ମୋର ଉଦ୍ଦେଶ୍ୟେ ତୋର ବାଣୀ ।
ଏ ଶୁଦ୍ଧ ସତ୍ୟ ପରିମାଣି ॥୧୮୧
ଏବେ ମୁଁ ହୋଇଲି ପ୍ରସନ୍ନ ।
ବର ତୁ ମାଗ ତୋଷମନ ॥୧୮୨
ଯେ ତୋର ଇଚ୍ଛା ମାଗ ବର ।
ହସି ବୋଲନ୍ତି ଦାମୋଦର ॥୧୮୩
ଏକାନ୍ତ ପ୍ରିୟା ତୁ ମୋହର ।
ସକଳ ସମ୍ପଦ ତୋହର ॥୧୮୪
ତୋହର ଇଷ୍ଟ ପତିବ୍ରତ ।
ମୁହିଁ ଜାଣିଲି ଆଜ ସତ୍ୟ ॥୧୮୫
ଅନେକ କଲି ଉପାଳମ୍ଭ ।
ତୋହର ଚିତ୍ତ ବଡ଼ ଦମ୍ଭ ॥୧୮୬
ଭ୍ରଷ୍ଟ ନୋହିଲା ମୋର ପାହୁଁ ।
ତରିବୁ ସକଳ ପ୍ରମାହୁଁ ॥୧୮୭
ଯେ ପ୍ରାଣୀ ବ୍ରହ୍ମଚାରୀ ମତେ ।
ତପ ସାଧନ୍ତି ଶୁଦ୍ଧଚିତ୍ତେ ॥୧୮୮
ତପର କାମ୍ୟ ଫଳଆଶ ।
ବର ମାଗନ୍ତି ଗୃହବାସ ॥୧୮୯
ସେ ମୋତେ ପାଇବେଟି କାହିଁ ।
ଅଭୟ-ବରଦାତା ମୁହିଁ ॥୧୯୦
ମୋହର ମାୟାବଳ ଏହି ।
ହସି ବୋଲନ୍ତି ଭାବଗ୍ରାହୀ ॥୧୯୧
ମୋକ୍ଷଭଣ୍ଡାର ମୋତେ ପାଇ ।
ଯେ ପ୍ରାଣୀ ସମ୍ପଦ ଇଚ୍ଛଇ ॥୧୯୨
ସେ ମନ୍ଦଭାଗୀ ଦୁଃଖୀ ହୋଇ ।
ନରକେ ପଡ଼ିଛନ୍ତି ଯାଇ ॥୧୯୩
ତୁ ମୋର ଗୃହ-ଠାକୁରାଣୀ ।
ମୋର ମହିମା ପରିମାଣି ॥୧୯୪
ଭବମୋଚନ ବୃତ୍ତି ମୋର ।
ଖଳ ସମୂହେ ଆଗୋଚର ॥୧୯୫
ସେ ଭାବ କଲୁ ମୋର ତହିଁ ।
ସ୍ୱଭାବେ ସ୍ଥିରୀଜନ୍ମ ହୋଇ ॥୧୯୬
ତୋହାର ପ୍ରାୟ ଗୃହେଶ୍ୱରୀ ।
ନାହିଁ ନୋହିବ ପୁରନାରୀ ॥୧୯୭
ତୋର ବିବାହକାଳେ ଆସି ।
ଲକ୍ଷେ ନୃପତି ଥିଲେ ବସି ॥୧୯୮
ତାହାଙ୍କୁ ତୁଚ୍ଛ ଭାବ ବହି ।
ବିପ୍ର ପେଷିଲୁ ମୋର ତହିଁ ॥୧୯୯
ମୁଁ ତୋତେ ହରିଆଣୁ ପଥେ ।
ତୋହର ଭାଇ ଏକାରଥେ ॥୨୦୦
ଘୋର ସମର ମୋରେ କଲା ।
ଦଇବେ ବନ୍ଧନେ ପଡ଼ିଲା ॥୨୦୧
ରୂପ ବିରୂପ ତାର କଲି ।
ଶସ୍ତ୍ରରେ ଚୂଳ ତା କାଟିଲି ॥୨୦୨
ବିଭା-ମଙ୍ଗଳ ପର୍ବକାଳେ ।
ବନ୍ଧୁବାନ୍ଧବ-ଗୋଷ୍ଠୀମେଳେ ॥୨୦୩
ଅକ୍ଷକ୍ରୀଡ଼ାର କାଳେ ବଳେ ।
ଦୁଷ୍ଟରାଜନ ସଙ୍ଗମେଳେ ॥୨୦୪
ବଳଦେବଙ୍କୁ ଦ୍ରୋହ କଲା ।
ସେକାଳେ ଭ୍ରାତ ତୋର ମଲା ॥୨୦୫
ଏ ବେନି ଗୁରୁ ଅପରାଧ ।
ଉଭୟ-ସଂକଟ ପ୍ରମାଦ ॥୨୦୬
ଦୁଃସହ-ତାପ ଦୁଃଖ ଏହି ।
କାହାର ସାଧ୍ୟ ଏହା ସହି ॥୨୦୭
କିଛି ନ ବୋଲି ମୁଖଗତେ ।
ନିଶ୍ଚେ ଜିଣିଲୁ ଏବେ ମୋତେ ॥୨୦୮
ବିପ୍ରକୁ ମୋର ତହିଁ ପେଶି ।
ଯୁଗ ମଣିଲୁ ଏକ ନିଶି ॥୨୦୯
ଜଗତ ଦେଖି ଶୂନ୍ୟମୟେ ।
ଅନଳ ଦେଇ ନିଜ ଦେହେ ॥୨୧୦

Dr. Sudhanshu Sekhar Mishra

ମରିବା ପ୍ରାୟ କଲୁ ଯୋଗ ।
ଏ ଦେହ ଆନେ କାହିଁ ଭୋଗ ॥୨୧୧
ସେ ଭାବ ଘେନି ହୃଦଗତେ ।
ବଳେ ଆଣିଲି ଯାଇ ତୋତେ ॥୨୧୨
ଶୁକ କହନ୍ତି ରାୟ ଶୁଣ ।
ଏମନ୍ତ କହି ନାରାୟଣ ॥୨୧୩
ନିଜ ମହିମା ଆତ୍ମାରତି ।
ରୁକ୍ମିଣୀ ଲଭିଲେ ଶ୍ରୀପତି ॥୨୧୪
ଏକାନ୍ତ ଲକ୍ଷ୍ମୀନାରାୟଣ ।
ଏ ନରଲୋକେ ବିଡ଼ମ୍ବନ ॥୨୧୫
ଅଷ୍ଟ ଅଧିକ ଏକଶତେ ।
ଷୋଳସହସ୍ର ପତ୍ନୀ ଯେତେ ॥୨୧୬
ତାହାଙ୍କ ପୁରେ ନରହରି ।
ମାୟାରେ ତୁଲ୍ୟ ରୂପ ଧରି ॥୨୧୭
ଗୃହସ୍ଥ ଧର୍ମେ ଭୋଗକରି ।
ନିର୍ଗୁଣ ଆତ୍ମା ନରହରି ॥୨୧୮
ସେ ଲକ୍ଷ୍ମୀ ନାରାୟଣ ପାଦେ ।
ସୁଜନେ ଚିନ୍ତ ଅପ୍ରମାଦେ ॥୨୧୯
ଏକାନ୍ତ ଲକ୍ଷ୍ମୀ ନାରାୟଣ ।
ଶୁଣନ୍ତେ ଦୁଃଖ ନିବାରଣ ॥୨୨୦
ଚିତ୍ତେ ନିରୋପି ଭାଗବତ ।
କହଇ ବିପ୍ର ଜଗନ୍ନାଥ ॥୨୨୧

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
କୃଷ୍ଣରୁକ୍ମିଣୀସମ୍ବାଦୋ ନାମ
ପଞ୍ଚଷଷ୍ଠିତମ ଅଧ୍ୟାୟଃ ॥

---

## ଷଷ୍ଠଷଷ୍ଠିତମ ଅଧ୍ୟାୟ

ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କର ସୁତ ।
ଶୁଣ ରାଜନ ପରୀକ୍ଷିତ ॥୧
କୃଷ୍ଣ ବରିଲେ ଯେତେ ନାରୀ ।
ରୁକ୍ମିଣୀଦେବୀ ଆଦି କରି ॥୨
ତାହାଙ୍କ ଗର୍ଭେ ଯେତେ ଜାତ ।
ହୋଇଲେ ଗୋବିନ୍ଦର ସୁତ ॥୩
ହରିର ବଂଶ ସଂଖ୍ୟା କରି ।
କେ କହୁ ନରଦେହ ଧରି ॥୪
ପ୍ରଦ୍ୟୁମ୍ନ ଆଦି ପୁତ୍ର ଯେତେ ।
ପ୍ରଧାନେ କହିବଇଁ କେତେ ॥୫
କନ୍ୟା କେ ଦଶ ଦଶ ସୁତା ।
ଅପରେ ଏକଇ ଦୁହିତ ॥୬
କୃଷ୍ଣର ପ୍ରାୟ ରୂପଗୁଣ ।
ଏବେ ହୋ ସାବଧାନେ ଶୁଣ ॥୭
କନ୍ୟାଏ କୃଷ୍ଣ ପାଦଗତେ ।
ସେବା କରନ୍ତି ଅନୁବ୍ରତେ ॥୮
ତାହାଙ୍କ ପୁତ୍ର ଦାମୋଦର ।
ଦଣ୍ଡେ ହେଁ ନୁହନ୍ତି ଅନ୍ତର ॥୯
ଦେଖି ଗୋବିନ୍ଦ ସ୍ନେହଭାବ ।
ଆତ୍ମାକୁ ମଣିଲେ ଦୁର୍ଲ୍ଲଭ ॥୧୦
କୃଷ୍ଣ ମହିମା ନ ଜାଣନ୍ତି ।
ସ୍ୱାମୀର ପ୍ରାୟ ସେ ମଣନ୍ତି ॥୧୧
କାହୁଁ ଜାଣିବେ କୃଷ୍ଣଭାବ ।
ଯେ ବ୍ରହ୍ମାଶଙ୍କରେ ଦୁର୍ଲ୍ଲଭ ॥୧୨
ଶୋଭାରେ ଜଗତମୋହିନୀ ।
ବିଶେଷେ କୃଷ୍ଣର କାମିନୀ ॥୧୩
କୃଷ୍ଣର ମାୟାର ବେଭାରେ ।
ଭ୍ରମନ୍ତି ବ୍ରହ୍ମା-ଶିବ-ସୁରେ ॥୧୪
ଚାରୁକମଳ-କୋଷବର୍ଣ୍ଣ ।
ନିର୍ମଳ ମୋହନ ବଦନ ॥୧୫
ବିସ୍ତାର ଭୁଜନେତ୍ର ବେନି ।
ପ୍ରେମହସିତ ରସ ଘେନି ॥୧୬
ସପ୍ରେମ ଦୃଷ୍ଟି ମର୍ମବାଣୀ ।
ଏ ଭାବେ ମୋହିତ ତରୁଣୀ ॥୧୭
ଯୁବତୀଗଣେ କୃଷ୍ଣମନ ।
ମୋହନେ ନୋହିଲେ ଭାଜନ ॥୧୮
ଯେ ହରି ସର୍ବ ପରିପୂର୍ଣ୍ଣ ।
ରୂପ ଅରୂପ ନିରଞ୍ଜନ ॥୧୯
ଯୁବତୀମାନେ ଅନୁଦିନ ।
ସକାମେ ସସ୍ମିତ ବଦନ ॥୨୦
କଟାକ୍ଷ ଦୃଷ୍ଟି ପ୍ରେମଭାବ ।
ଆତ୍ମାକୁ ମଣିଲେ ଦୁର୍ଲ୍ଲଭ ॥୨୧
ଅନଙ୍ଗବାଣ ଆଣ୍ଡେ ଟାଣି ।
ବିନ୍ଧନ୍ତି କୃଷ୍ଣର ତରୁଣୀ ॥୨୨
ସ୍ୱଭାବେ ହରିର ଭାବିନୀ ।
ଶୁଦ୍ଧ ସୁରତ ଭାବ ଘେନି ॥୨୩
ଷୋଳସହସ୍ର ପରିହାସେ ।
କୃଷ୍ଣର ଚିତ୍ତ ପ୍ରେମପାଶେ ॥୨୪
ବନ୍ଧନେ ନୋହିଲେ ଭାଜନ ।
ତେଣୁ ନ ଘଟେ ଅନୁମାନ ॥୨୫
ରମାରମଣ ଜଗନ୍ନାଥ ।
ତାହାଙ୍କୁ ପାଇ ନିଜ କାନ୍ତ ॥୨୬
ବ୍ରହ୍ମାଦି ଦେବମୁନି ଯତି ।
ଯାର ମାୟାରେ ମୋହ ଯାନ୍ତି ॥୨୭
ସେ ହରି ସଙ୍ଗତେ ଯୁବତୀ ।
ଆନନ୍ଦେ ନିରତେ ରମନ୍ତି ॥୨୮
ନବ-ସଂଗମେ ପ୍ରିୟଭାବ ।
ନିତ୍ୟେ ବର୍ଦ୍ଧିତ ଅନୁରାଗ ॥୨୯
ସେବନ୍ତି କୃଷ୍ଣର ଚରଣେ ।
ଯୁବତୀ ଭାବ ଆଚରଣେ ॥୩୦
କୃଷ୍ଣର ଆଗମନ ଦେଖି ।
ଉଠନ୍ତି ଆସନ ଉପେକ୍ଷି ॥୩୧
କେତେହେଁ ଦୂର ବେଗେ ଯାଇ ।
କୃଷ୍ଣର ହସ୍ତେ ହସ୍ତ ଦେଇ ॥୩୨
ସକାମ ଲାଳସେ ତରୁଣୀ ।
କୃଷ୍ଣଙ୍କୁ ନିଜ ଗୃହେ ଆଣି ॥୩୩
ସୁବର୍ଣ୍ଣ ଆସନେ ବସାଇ ।
ବେନି ଚରଣ ହସ୍ତେ ଧୋଇ ॥୩୪
ସୁଗନ୍ଧ ଲେପି କୃଷ୍ଣ ଅଙ୍ଗେ ।
ଚାମର ପକାନ୍ତି ସୁରଙ୍ଗେ ॥୩୫

Dr. Sudhanshu Sekhar Mishra

ବିଶ୍ରାନ୍ତ କରି ନିଜ ପତି ।
ସୁଗନ୍ଧେ କୁସୁମେ ପୂଜନ୍ତ ।।୩୬
କେଶ ପ୍ରସାଧନ ରଞ୍ଜନେ ।
ସେବନ୍ତି ସ୍ନାହାନ ଭୋଜନେ ।।୩୭
ଏମନ୍ତେ କୃଷ୍ଣର ଚରଣେ ।
ସେବନ୍ତି ସେବକୀ ପ୍ରମାଣେ ।।୩୮
କନ୍ୟାଙ୍କେ ଶତ ଶତ ନାରୀ ।
ପାଶେ ଖଟନ୍ତି ତାହାଙ୍କରି ।।୩୯
ତଥାପି ସ୍ୱାମୀର ଚରଣେ ।
ସେବନ୍ତି ସେବକୀ ପ୍ରମାଣେ ।।୪୦
ଏବେ ହୋ ଶୁଣ ନରପତି ।
କୃଷ୍ଣର ଯେତେକ ଯୁବତୀ ।।୪୧
ତହିଁରେ ଶ୍ରେଷ୍ଠ ଅଷ୍ଟନାରୀ ।
ରୁକ୍ମିଣୀଦେବୀ ଆଦିକରି ।।୪୨
ଏକ କନ୍ୟାଙ୍କେ ଦଶସୁତ ।
ତାହାଙ୍କ ଉଦରୁ ସମ୍ଭୂତ ।।୪୩
ଷୋଳସହସ୍ର ଏକଶତେ ।
ପୂର୍ବେ ମୁଁ କହିଅଛି ତୋତେ ।।୪୪
ତାହାଙ୍କ ଗର୍ଭୁ ସେହିମତ ।
ଏକ ଦୁହିତା ଦଶପୁତ୍ର ।।୪୫
ଜନ୍ମ ହୋଇଲେ କୃଷ୍ଣବୀର୍ଯ୍ୟେ ।
କି ପଟାନ୍ତର ଦେବା ତେଜେ ।।୪୬
ସୁର-ସୁନ୍ଦର ସର୍ବଗୁଣେ ।
ସୃଷ୍ଟିର ଦୁଷ୍ଟ ସଂହାରଣେ ।।୪୭
ସର୍ବେ ଦିଶନ୍ତି କୃଷ୍ଣତେଜ ।
ଏବେ ହୋ ଶୁଣ ମହାରାଜ ।।୪୮
ହରିର ବଂଶ ସଂଖ୍ୟା କରି ।
କେ କହିପାରେ ଦେହ ଧରି ।।୪୯
ଅଷ୍ଟକନ୍ୟାଙ୍କ ପୁତ୍ର ଯେତେ ।
ପ୍ରମାଣି କହିବି ମୁଁ ତୋତେ ।।୫୦
ସେ କଥା ଶୁଣ ନରନାଥ ।
ରୁକ୍ମିଣୀ ଗର୍ଭୁ ଯେତେ ପୁତ୍ର ।।୫୧
ପ୍ରଦ୍ୟୁମ୍ନ ଚାରୁଦେଷ୍ଣ ଆଦି ।
ସୁଦେଷ୍ଣ ତୃତୀୟ ପ୍ରସିଦ୍ଧି ।।୫୨
ଚତୁର୍ଥ ପୁତ୍ର ଚାରୁଦେହ ।
ଏହାଙ୍କ ବଳ ଅପ୍ରମେୟ ।।୫୩

ସୁଚାରୁ ଚାରୁଗୁପ୍ତ ବେନି ।
ସପ୍ତମେ ଭଦ୍ରଚାରୁ ଘେନି ।।୫୪
ଚାରୁଚନ୍ଦ୍ର ବିଚାରୁ ନାମ ।
ଚାରୁ ସହିତେ ଏ ଦଶମ ।।୫୫
ରୁକ୍ମିଣୀ ଗର୍ଭୁ ଏ ସମ୍ଭୂତ ।
କୃଷ୍ଣର ପ୍ରାୟ ନେତ୍ର ଗାତ୍ର ।।୫୬
ସତ୍ୟଭାମାର ଯେତେ ସୁତ ।
ଏବେ ହୋ ଶୁଣ ନରନାଥ ।।୫୭
ପ୍ରଥମେ ଭାନୁ ଯେ ସୁଭାନୁ ।
ତୃତୀୟ ସ୍ୱର୍ଭାନୁ ପ୍ରଭାନୁ ।।୫୮
ଭାନୁମାନ ଯେ ଚନ୍ଦ୍ରଭାନୁ ।
ବୃହଦ୍‌ଭାନୁ ଯେ ଅତିଭାନୁ ।।୫୯
ଶ୍ରୀଭାନୁ ପ୍ରତିଭାନୁ ଶେଷ ।
ଏ ସତ୍ୟଭାମା ପୁତ୍ର ଦଶ ।।୬୦
ଋକ୍ଷ ନନ୍ଦିନୀ ଜାମ୍ବବତୀ ।
ଶୁଣ ତୁ ତାହାର ସନ୍ତତି ।।୬୧
ଶାମ୍ବ ସୁମିତ୍ର ପୁରୁଜିତ ।
ସହସ୍ରଜିତ ଶତଜିତ ।।୬୨
ବିଜୟ ପୁଣି ଚିତ୍ରକେତୁ ।
ଦ୍ରବିଡ଼ ବସୁମାନ କ୍ରତୁ ।।୬୩
ସତ୍ୟାର ପୁତ୍ର ଶୁଣ ଏବେ ।
ତୋତେ କହିବି ପ୍ରିୟଭାବେ ।।୬୪
ବୀର ଚନ୍ଦ୍ର ଯେ ଅଶ୍ୱସେନ ।
ଚିତ୍ରଗୁ ବୃକ୍ଷ ଅନୁଭବି ।।୬୫
ଶ୍ରୀମାନ-ଶଙ୍କୁ ବସୁ ଆମ ।
କୁନ୍ତି ସହିତେ ଏ ଦଶମ ।।୬୬
ସାଧୁ-ସୁନ୍ଦର-ଶ୍ରୁତ କବି ।
ତୃତୀୟେ ବୃକ୍ଷ ଅନୁଭବି ।।୬୭
ବୀର ସୁବାହୁ ଭଦ୍ର-ଏକ ।
ଶାନ୍ତି ଅଷ୍ଟମ ଯେ ସୋମକ ।।୬୮
ଦରଶ ପୂର୍ଣ୍ଣମାସ ଶେଷ ।
କାଳିନ୍ଦୀପୁତ୍ର ଏ ଯେ ଦୀଶ ।।୬୯
ପ୍ରଘୋଷ ଗାତ୍ରବାନ ବଳ ।
ସିଂହ ଉର୍ଦ୍ଧ୍ୱଗ ଯେ ପ୍ରବଳ ।।୭୦
ମହାଶକ୍ତି ଯେ ସହ ଓଜ ।
ଅପରାଜିତ ଯେ ଆତ୍ମଜ ।।୭୧

ଲକ୍ଷ୍ମଣା ଦଶପୁତ୍ର ଏହି ।
ଶୁଣ ରାଜନ ମନଦେଇ ।।୭୨
ଏହାଙ୍କ ମହିମା ଏମନ୍ତ ।
ଶୁଣ ତୁ ମିତ୍ରବିନ୍ଦା ସୁତ ।।୭୩
ବୃକ ହର୍ଷ ଅନିଳ ଗୃଧ୍ର ।
ବର୍ଦ୍ଧନ ଆବର ଅନ୍ନାଦ ।।୭୪
ମହାଶ ପାବନ ଯେ ବହ୍ନି ।
କ୍ଷୁଧି ସହିତେ ଦଶ ଘେନି ।।୭୫
ଏ ସର୍ବେ ମିତ୍ରବିନ୍ଦାସୁତ ।
ଏବେ ହୋ ଶୁଣ ଭଦ୍ରା ସୁତ ।।୭୬
ସଂଗ୍ରାମଜିତ ବୃହତ୍‌ସେନ ।
ଶୁଭ ସତ୍ୟକ ପ୍ରହରଣ ।।୭୭
ଜୟ ସୁଭଦ୍ର ଅରିଜିତ ।
ବାମ ଆୟୁ ଏ ଦଶସୁତ ।।୭୮
ଏମନ୍ତେ ଅଷ୍ଟପାଟରାଣୀ ।
ଷୋଳସହସ୍ର ମଧ୍ୟେ ଗଣି ।।୭୯
ଦୀପ୍ତିମାନ ଯେ ତାମ୍ରତପ୍ତ ।
ରୋହିଣୀ ଗର୍ଭେ କୃଷ୍ଣସୁତ ।।୮୦
ଏମନ୍ତେ କୃଷ୍ଣପତ୍ନୀ ଯେତେ ।
ପୁତ୍ର ପୁତ୍ରୀ ଯେ ଅପ୍ରମିତେ ।।୮୧
ଅନଙ୍ଗ ଅନୁରୂପେ ଜାତ ।
ପ୍ରଦ୍ୟୁମ୍ନ ରୁକ୍ମିଣୀର ସୁତ ।।୮୨
ରୁକ୍ମୀ କୁମାରୀ ରୁକ୍ମବତୀ ।
ସାଧ୍ୱୀ ଲକ୍ଷଣା ଶୁଦ୍ଧମତି ।।୮୩
ତାହାକୁ ସ୍ୱୟମ୍ବର ମଧ୍ୟେ ।
ପ୍ରଦ୍ୟୁମ୍ନ ହରିଲା ବିବାଦେ ।।୮୪
ରାଜାଙ୍କ ବଳ ଦର୍ପ ହରି ।
କନ୍ୟା ପ୍ରଦ୍ୟୁମ୍ନେ ବିଭା କରି ।।୮୫
ସେ କନ୍ୟା ଗର୍ଭେ ପୁତ୍ର ଜାତ ।
ଯା ନାମ ଅନିରୁଦ୍ଧ ଖ୍ୟାତ ।।୮୬
ଏମନ୍ତ ପରୀକ୍ଷିତ ଶୁଣି ।
ଆନନ୍ଦ ମନେ ପରିମାଣ ।।୮୭
ବୋଲଇ ମଧୁର ବଚନ ।
ଶୁଣ ହେ ବ୍ୟାସଙ୍କ ନନ୍ଦନ ।।୮୮
ଏ ବଡ଼ କଉତୁକ ବାଣୀ ।
ସନ୍ଦେହ ଲାଗିଲା ତ ଶୁଣି ।।୮୯

Dr. Sudhanshu Sekhar Mishra

ରୁକ୍ମୀ ଯେ କୃଷ୍ଣର ବଇରୀ ।
ସଂଗ୍ରାମ କାଳେ ଅଛି ହାରି ॥୯୦
କେମନ୍ତେ ରିପୁସୁତେ ବରି ।
ବିବାହ ଦେଲା ତା କୁମାରୀ ॥୯୧
ଯେ ନିତ୍ୟେ ମୋହ ବୁଦ୍ଧି ଗାଢ଼େ ।
କୃଷ୍ଣ ମରଣ ଛିଦ୍ର ଲୋଡ଼େ ॥୯୨
ମାରିବା ପାଇଁ କରେ ଆଶ ।
ସେ କାହିଁ ବିବାହେ ବିଶ୍ୱାସ ॥୯୩
ଉଭୟେ ବଇରୀ ବିରୋଧ ।
କେମନ୍ତେ ବିବାହ ସମ୍ବନ୍ଧ ॥୯୪
ଭୂତ ଭବିଷ୍ୟ ବର୍ତ୍ତମାନେ ।
ଏକଥା ନ ଘଟଇ ମନେ ॥୯୫
ବଇରୀ ଭାବେ ବନ୍ଧୁ କାହିଁ ।
ଉତ୍ତମ ଲୋକେ ଛନ୍ତି କହି ॥୯୬
କହନ୍ତି ଶୁକ ମୁନିବର ।
ଶୁଣ ହୋ ରୁକ୍ମୀର ବେଭାର ॥୯୭
କୃଷ୍ଣର ତହିଁ ଅପମାନେ ।
ବଇରୀ ଭାବ ଅଛି ମନେ ॥୯୮
ତଥାପି ଭଗିନୀର ସୁତ ।
ଭଣଜା ପଣେ ବରପାତ୍ର ॥୯୯
କୁଳ ବେଭାର ଏହିମତେ ।
ଦେଲା ଭଗିନୀ ପ୍ରିୟଅର୍ଥେ ॥୧୦୦
ରୁକ୍ମିଣୀ ସୁତା ଅନୁପମ ।
ଯାହାର ଚାରୁମତୀ ନାମ ॥୧୦୧
ବଳୀ ଯେ କୃତବର୍ମା ସୁତ ।
ତାରେ ବରିଲେ ଯଦୁନାଥ ॥୧୦୨
ରୁକ୍ମୀପୁତ୍ରର କନ୍ୟା ଥିଲା ।
ଅନିରୁଦ୍ଧକୁ ବିଭା ଦେଲା ॥୧୦୩
କୃଷ୍ଣର ବଇରୀ ଯୁକତେ ।
ଦେଲା ରୁକ୍ମିଣୀ ପ୍ରିୟଅର୍ଥେ ॥୧୦୪
ଅଧର୍ମ ଶାସ୍ତ୍ର ଏ ବିଚାରି ।
ତଥାପି ଦେଲା ସ୍ନେହଭରି ॥୧୦୫
ତାର ବିବାହକାଳେ ହରି ।
ରାମ ରୁକ୍ମିଣୀ ଆଦି କରି ॥୧୦୬
ଶାମ୍ବ ପ୍ରଦ୍ୟୁମ୍ନ ଆଦି ସୁତେ ।
ଯାଦବ ସଇନ୍ୟ ସହିତେ ॥୧୦୭

ବିବାହ ଉତ୍ସବେ ସମ୍ଭାରେ ।
ମିଳିଲେ ଯୋବକଟପୁରେ ॥୧୦୮
ବିବାହ ସାରି ତାର ପୁରେ ।
ଯେମନ୍ତ କୁଟୁମ୍ବ ବେଭାରେ ॥୧୦୯
ତାର ବିବାହେ ବିପରୀତ ।
ଶୁଣ ରାଜନ ପରୀକ୍ଷିତ ॥୧୧୦
ଉତ୍ସବ ଅନ୍ତେ ଏକଦିନେ ।
ବିବାହେ ଥିଲେ ଯେ ରାଜନେ ॥୧୧୧
କଳିଙ୍ଗରାଜ ଆଦି ଯେତେ ।
ବିଚାର କରନ୍ତେ ଏକାନ୍ତେ ॥୧୧୨
ଆଜ ସଭାର ମଧ୍ୟେ ବସି ।
ରୋହିଣୀନନ୍ଦନେ ବିଶ୍ୱାସି ॥୧୧୩
ଆନନ୍ଦେ ପଶାଖେଳ କରି ।
ଛଳେ ଜିଣିବା ହଳଧାରୀ ॥୧୧୪
ଖେଳ ନ ଜାଣେ ବଳରାମ ।
ଜିଣିବା ଗଜ ଧନ ଗ୍ରାମ ॥୧୧୫
ରୁକ୍ମିର ସଙ୍ଗେ ଖେଳାଇବା ।
ଆମ୍ଭେ ନିକଟେ ବସିଥିବା ॥୧୧୬
ଏତେ ବିଚାରି ଖେଳ କଲେ ।
କପଟେ ରାମଙ୍କୁ ଆଣିଲେ ॥୧୧୭
ସଭାର ମଧ୍ୟେ ଖେଳ କରି ।
ସୁଖେ ଖେଳନ୍ତି ହଳଧାରୀ ॥୧୧୮
ପ୍ରଥମେ ଲକ୍ଷ ଲକ୍ଷ ପଣ ।
ଯେମନ୍ତେ ଖେଳର ଭିଆଣ ॥୧୧୯
ରାମ ପାତିଲେ ପଶାଦାନ ।
ଜିଣିଲା ଭୀଷ୍ମକନନ୍ଦନ ॥୧୨୦
ପାଶେ ଯେ ଥିଲା ଦନ୍ତବକ୍ର ।
ସ୍ୱଭାବେ କରିଅଛି ଚକ୍ର ॥୧୨୧
ହସିଲା ରାମମୁଖ ଚାହିଁ ।
ବିକଟ-ଦର୍ଶନ ଦେଖାଇ ॥୧୨୨
ଖେଳର ସ୍ୱଭାବ ଏମନ୍ତ ।
କୋପ ନ କଲେ ହଳହସ୍ତ ॥୧୨୩
ଲକ୍ଷକୁ ଦଶଗୁଣ କରି ।
ହୁଡ଼ ଧରିଲେ ହଳଧାରୀ ॥୧୨୪
ସେବେଳେ ହଳଧର ଜିଣି ।
ରୁକ୍ମୀ ବୋଇଲା ଏହୁ ବାଣୀ ॥୧୨୫

ମୁହିଁ ଜିଣିଲି ଏତେ ଧନ ।
ଭୋ ରାମ ପୁଛ ସଭାଜନ ॥୧୨୬
ସେଠାରେ ଯେତେ ରାଜା ଥିଲେ ।
ରୁକ୍ମୀ ଯେ ଜିଣିଲା ବୋଇଲେ ॥୧୨୭
ଏମନ୍ତେ କଇତବ କଲା ।
ରାମର କୋପ ଉପୁଜିଲା ॥୧୨୮
ଜଳଧି ଯେହ୍ନେ ପର୍ବକାଳେ ।
ଉଛୁଳେ ବହୁତ କଲ୍ଲୋଳେ ॥୧୨୯
ସ୍ୱଭାବେ ଅରୁଣ ଲୋଚନ ।
କୋପେ ବୋଲନ୍ତି ବଳରାମ ॥୧୩୦
ଏବେ ମୋହର ପଣ ଶୁଣ ।
ହୁଡ଼ିଲି ଦଶକୋଟି ଧନ ॥୧୩୧
ଏତେକ ସୁବର୍ଣ୍ଣ ମୋହର ।
କୋପେ ବୋଲନ୍ତି ହଳଧର ॥୧୩୨
ଏମନ୍ତେ ଖେଳପୀଢ଼ କରି ।
ଦାନ ପାତିଲେ ହଳଧାରୀ ॥୧୩୩
ଧର୍ମେ ଜିଣିଲେ ବଳରାମ ।
କପଟେ ବୋଇଲା ରୁକ୍ମଣ ॥୧୩୪
ଏ ବେଳେ ଜିଣିଲିଟି ମୁହିଁ ।
ପଚାର ସଭାମଧ୍ୟେ ତୁହି ॥୧୩୫
ସେକଥା ଦନ୍ତବକ୍ର ଶୁଣି ।
ବୋଇଲା ମୁହିଁ ଅଛି ଜାଣି ॥୧୩୬
ଏବେଳେ ଜିଣିଲା ରୁକ୍ମଣ ।
ସୁବର୍ଣ୍ଣ ଯେତେ ପୀଢ଼ ପୁଣ ॥୧୩୭
ରୋହିଣୀସୁତ ତାହା ଶୁଣି ।
ବୋଇଲା ମୁହିଁ ଅଛି ଜାଣି ॥୧୩୮
ସେକାଳେ ଅନ୍ତରୀକ୍ଷ ବାଣୀ ।
ଶୁଭିଲା ରାମ ଏହା ଜିଣି ॥୧୩୯
କପଟ କରଇ ରୁକ୍ମଣ ।
ଏମନ୍ତ ଆକାଶ ବଚନ ॥୧୪୦
ଧର୍ମବଚନ ନିନ୍ଦା କରି ।
ରୁକ୍ମୀ ବୋଲଇ କୋପଭରି ॥୧୪୧
ଏମନ୍ତ ଶୁଣିଲାତ ନାହିଁ ।
ଜିଣିଲି ସଭାମଧ୍ୟେ ମୁହିଁ ॥୧୪୨
ଦୁଷ୍ଟ ରାଜନେ ତାହା ଶୁଣି ।
ବୋଲନ୍ତି ଏହୁ ଅଛି ଜିଣି ॥୧୪୩

Dr. Sudhanshu Sekhar Mishra

ଶୁଣି ରୁକ୍ମଣ କଲା ହାସ ।
ଯେଣୁ ଆବୃତ୍ତ କାଳପାଶ ।।୧୪୪
ବୋଲଇ ପରୁଷ ବଚନ ।
ତୁମ୍ଭେ ଯେ ଅଟ ଜାତିହୀନ ।।୧୪୫
ତୁମ୍ଭେ ଜାଣିବ ଖେଳ କାହିଁ ।
ବନେ ଗୋପାଳମେଳେ ଥାଇ ।।୧୪୬
ସ୍ୱଭାବେ ତୁମ୍ଭେ ବନ୍ୟଲୋକ ।
ନ ଜାଣ ପଶା-କଉତୁକ ।।୧୪୭
ଗୋରୁ ଚରାଇ ଗଲା ଦିନ ।
ତୁମ୍ଭର ଏଣେ କାହିଁ ଜ୍ଞାନ ।।୧୪୮
ଖେଳ ଜଣନ୍ତି ରାଜସୁତେ ।
ସଂଗ୍ରାମେ ଜୟ ଏହୁ ମତେ ।।୧୪୯
ପଶା ଦେଖିଲା ତୁମ୍ଭ ନାହିଁ ।
ରୁକ୍ମୀ ବୋଇଲା ରାମେ ଚାହିଁ ।।୧୫୦
ଏମନ୍ତେ ରୁକ୍ମୀର ବଚନ ।
ଶୁଣି ହସିଲେ ସଭାଜନ ।।୧୫୧
ରାମ କୋପିଲେ ତାହା ଶୁଣି ।
ପରିଘ ଶସ୍ତ୍ର କରେ ଘେନି ।।୧୫୨
ରୁକ୍ମୀର ମୁଣ୍ଡେ ଘୋରନାଦେ ।
ପ୍ରହାର କଲେ ସଭାମଧ୍ୟେ ।।୧୫୩
ତଳେ ଯେ ଥିଲା ପଶାକାଠି ।
ବାଜି ଝଡ଼ିଲା ଦନ୍ତପାଟି ।।୧୫୪
ସଭାର ଅପମାନ ଦୁଃଖେ ।
ପିଟିଲେ ଦନ୍ତବକ୍ର ମୁଖେ ।।୧୫୫
ବଜ୍ରସମାନ ପଶାକାଠି ।
ବାଜି ଝଡ଼ିଲା ଦନ୍ତପାଟି ।।୧୫୬
ଯେ ଦନ୍ତେ ରାମଙ୍କୁ ହସିଲା ।
ସେ ଭାଜି ଭୂମିରେ ପଡ଼ିଲା ।।୧୫୭
ରୁଧିର ଗଳେ ତାର ତୁଣ୍ଡେ ।
ଗୋଳ ଶୁଭିଲା ରାଜଦାଣ୍ଡେ ।।୧୫୮
ରାମର ଅକ୍ଷକ୍ରୀଡ଼ା କାଳେ ।
ଦୁଷ୍ଟେ ଯେ ଥିଲେ ସଭାମେଳେ ।।୧୫୯
ରାମର ଶସ୍ତ୍ରେ ଖଣ୍ଡ ଖଣ୍ଡ ।
ଛିଡ଼ିଲା ଭୁଜ ଉରୁ ମୁଣ୍ଡ ।।୧୬୦
ଅଙ୍ଗ ରୁଧିର ରଙ୍ଗ ବେଶେ ।
ପଳାଇ ଗଲେ ନିଜ ଦେଶେ ।।୧୬୧
ରୁକ୍ମୀର ହତ କୃଷ୍ଣ ଦେଖି ।
ଭାଳି ବୁଜିଲେ ବେନି ଆଖି ।।୧୬୨
ରାମ ରୁକ୍ମିଣୀ ସ୍ନେହଭଙ୍ଗ ।
ଭୟେ ମଉନ ଶିରୀରଙ୍ଗ ।।୧୬୩
ତକ୍ଷଣେ ପ୍ରଭୁ ଭଗବାନ ।
ଆରୋହୀ ନନ୍ଦୀଘୋଷ ଯାନ ।।୧୬୪
ବରକନ୍ୟାଙ୍କୁ ଘେନି ସଙ୍ଗେ ।
ଦ୍ୱାରକା ବିଜେକଲେ ରଙ୍ଗେ ।।୧୬୫
ରାମ ଯାଦବ ଆଦି ଯେତେ ।
ଗମିଲେ କୃଷ୍ଣ ଅନୁପଥେ ।।୧୬୬
ସେ ରାମକୃଷ୍ଣ ପାଦଗତ ।
ନମଇ ଦାସ ଜଗନ୍ନାଥ ।।୧୬୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଅନିରୁଦ୍ଧ
ବିବାହେ ରୁକ୍ମୀବଧୋ ନାମ
ଷଟ୍‌ଷଷ୍ଠିତମ ଅଧ୍ୟାୟଃ ।।

## ସପ୍ତଷଷ୍ଠିତମ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧର ।
ଶୋଣିତପୁରେ ମହାବୀର ।।୧
ଦନୁଜବଳୀର କୁମର ।
ନାମ ତାହାର ବାଣାସୁର ।।୨
ଶତେ କୁମର ମଧ୍ୟେ ଶ୍ରେଷ୍ଠ ।
ତାମସ ଭାବେ ମହାଦୁଷ୍ଟ ।।୩
ତପେ ସେ ଈଶ୍ୱରଙ୍କୁ ଧ୍ୟାୟି ।
ବରେ ସହସ୍ରଭୁଜ ପାଇ ।।୪
ସେହୁ ସହସ୍ରଭୁଜ ବଳେ ।
ଯୁଦ୍ଧେ ଭ୍ରମିଲା ମହୀତଳେ ।।୫
ଦେଖି ତାହାର ଭୁଜ ତେଜ ।
ଯୁଦ୍ଧେ ହାରିଲେ ସର୍ବରାଜ ।।୬
ଯୁଦ୍ଧ ନ ପାଇ ମନସ୍ତାପେ ।
ମିଳିଲା ଈଶ୍ୱର ସମୀପେ ।।୭
ମର୍ଦ୍ଦଳ ପଞ୍ଚଶତ ବନ୍ଧେ ।
ଦିବ୍ୟତାଣ୍ଡବ ଅନୁବନ୍ଧେ ।।୮
ତୋଷିଲା ଭବାନୀଶଙ୍କର ।
ପ୍ରସନ୍ନ ହୋଇ ଶୂଳଧର ।।୯
ବୋଇଲେ ବର ମାଗ ତୁହି ।
ତୋତେ ପ୍ରସନ୍ନ ହେଲି ମୁହିଁ ।।୧୦
ସେ ବୋଲେ ହୁଅ ମୋର ଦ୍ୱାରୀ ।
ହେଉ ବୋଇଲେ ଶୂଳଧାରୀ ।।୧୧
ଦିନେ ସମ୍ଭ୍ରମେ ମହାବୀର ।
ରତ୍ନମୁକୁଟ ଅଛି ଶିର ।।୧୨
ସେ ଶିରେ ହରପାଦେ ପଡ଼ି ।
ବୋଲଇ ବେନିକର ଯୋଡ଼ି ।।୧୩
ନମଇଁ ତୁମ୍ଭର ଚରଣ ।
ଅନାଦି ପରମକାରଣ ।।୧୪
ତୁ ନାଥ ସର୍ବଲୋକଗୁରୁ ।
ଭକତଜନେ ଦୟା କରୁ ।।୧୫
ଅପୂର୍ଣ୍ଣକାମ ଯେତେ ଜନ ।
ତୁମ୍ଭେ ତାହାଙ୍କ କଳ୍ପଦ୍ରୁମ ।।୧୬
ସର୍ବସମ୍ପଦ ପାଉ ଦେଇ ।
ଭକତ ଯେମନ୍ତ ଲୋଡ଼ଇ ।।୧୭
ସହସ୍ରେ ଦେଲୁ ମୋତେ କର ।
କେବଳ ଭାର ଏ ମୋହର ।।୧୮
କି ପ୍ରୟୋଜନ ଭୁଜ ବହି ।
ସଂଗ୍ରାମେ ସୁଖ ମୋର ନାହିଁ ।।୧୯
ସମର ଆଶେ ତିନିଲୋକ ।
ବୁଲେ ଖୋଜିଲି ଏକେ ଏକେ ।।୨୦

Dr. Sudhanshu Sekhar Mishra

ମୋ ଆଗେ ନ ମିଳିଲେ କେହି ।
ତୁ ମାତ୍ର ଅଛୁ ଶେଷ ହୋଇ ।।୨୧
ଏ ମୋର ଭୁଜକଣ୍ଡୁ ବଳେ ।
ଭ୍ରମିଲି ଅବନୀମଣ୍ଡଳେ ।।୨୨
ଅଇରାବତ ଆଦିନାଗେ ।
ଯେ ଛନ୍ତି ଅଷ୍ଟଦିଗଭାଗେ ।।୨୩
ତାହାଙ୍କ ତୁଲେ ମୁଁ ଆନନ୍ଦେ ।
ସମର କରିବାର ସଧେ ।।୨୪
ପର୍ବତେ ପିଟିଲି ମୁଁ କର ।
ତକ୍ଷଣେ ଗିରି ହେଲା ଚୂର ।।୨୫
ଦେଖି ମୋହର ଭୁଜତେଜ ।
ଭୟେ ଭାଜିଲେ ସୁରରାଜ ।।୨୬
ଏମନ୍ତ ଶୁଣି ତା ବଚନ ।
କୋପନୟନେ ତ୍ରିଲୋଚନ ।।୨୭
ବୋଇଲେ ଶୁଣ ବାଣାସୁର ।
ରଥେ ଯେ ଧ୍ୱଜ ଅଛି ତୋର ।।୨୮
ସେ ଧ୍ୱଜ ଗର୍ବ ନାଶିବାରେ ।
ରିପୁ ମିଳିବ ତୋ ନଗରେ ।।୨୯
ଏ ଭୁଜ ଗର୍ବ ନାଶିବାରେ ।
ରିପୁ ମିଳିବ ତୋ ନଗରେ ।।୩୦
ସେ ବେଳେ ତାର ତୁଲେ ରଣ ।
କରିବୁ ଶୁଣ ମୂଢ଼ ବାଣ ।।୩୧
ଏମନ୍ତ ହରବାକ୍ୟ ଶୁଣି ।
ଆନନ୍ଦମନେ ବୀରମଣି ।।୩୨
ନିତ୍ୟେ ଚିନ୍ତଇ ହରକଥା ।
କେମନ୍ତେ ଯିବ ଭୁଜବ୍ୟଥା ।।୩୩
ଚିନ୍ତଇ ନିଜ ବୀର୍ଯ୍ୟ ନାଶ ।
କୁମତିକୁଳ କାଳପାଶ ।।୩୪
ଶୁଣ ରାଜନ ଚିତ୍ରକଥା ।
ଉଷା ନାମରେ ତା ଦୁହିତା ।।୩୫
ଅତି ସୁନ୍ଦର ରୂପରାଶି ।
କି ଅବା କହିବା ପ୍ରଶଂସି ।।୩୬
ତାହାର କନ୍ୟାକାଳ ଜାଣି ।
ନିରୋଧେ କଲା ଦୈତମଣି ।।୩୭
ଅତି ଦୁର୍ଗମପୁର କରି ।
ନିରୋଧେ ଜଗାଇ ପାହାରୀ ।।୩୮

ଦେବମାନବେ ଅଗୋଚର ।
ଏମନ୍ତ କରି କନ୍ୟାପୁର ।।୩୯
ଉତ୍ତମକୁଳେ ବର ବରି ।
ବିବାହ ଦେବଇଁ କୁମାରୀ ।।୪୦
ଏମନ୍ତେ ରଖି ଯତ୍ନକରି ।
ଏବେ ହୋ ଶୁଣ ଦଣ୍ଡଧାରୀ ।।୪୧
ସେ କନ୍ୟା ସେ ପୁରରେ ଥାଇ ।
ହରପାର୍ବତୀ ଆରାଧଇ ।।୪୨
ଅନେକମତେ କଲା ସେବା ।
ପ୍ରସନ୍ନ ହେଲେ ଶିବଶିବା ।।୪୩
ତପେ ଆରାଧି ଶାକମ୍ଭରୀ ।
ବରପାଇଲା ଉଷାନାରୀ ।।୪୪
ଦେବୀ ବୋଇଲେ ମାଗ ବର ।
ଉଷା ଯୋଡ଼ିଲା ବେନିକର ।।୪୫
ଭୋ ଦେବି ହେଲୁ ଯେ ପ୍ରସନ୍ନ ।
ଜାଣୁ ତ ସ୍ତିରୀଙ୍କର ମନ ।।୪୬
ଯୁବାଅବସ୍ଥା ହେଲା ମୋର ।
ମନେ ପାଇଲି ଚିନ୍ତା ଘୋର ।।୪୭
କରିବାରୁ ମୁଁ ଆରାଧନ ।
ମୋତେ ହୋଇଲୁ ପରସନ୍ନ ।।୪୮
ମୋର ସମାନେ ବର ଦେବ ।
ସଂସାରେ କଥା ରହିଥିବ ।।୪୯
ଉଷାବଚନେ ମହାମାୟା ।
ବୋଲନ୍ତି ହରଷିତ ହୋଇ ।।୫୦
ସ୍ୱପନେ ଯାହା ସଙ୍ଗେ ତୁହି ।
ରାତ୍ରେ ରମିବୁ ତୋଷ ହୋଇ ।।୫୧
ସେ ତୋର ହେବ ପ୍ରାଣନାଥ ।
ଆମ୍ଭେ କହିଲୁ ତୋତେ ସତ୍ୟ ।।୫୨
କହି ସେ ହେଲେ ଅନ୍ତର୍ଦ୍ଧାନ ।
ହରଷ ହେଲା ଉଷା ମନ ।।୫୩
ସେ କନ୍ୟା ରାତ୍ରେ ନିଦ୍ରାକାଳେ ।
ସ୍ୱପ୍ନେ ରମିଲା କାନ୍ତକୋଳେ ।।୫୪
ପ୍ରଦ୍ୟୁମ୍ନସୁତ ସଙ୍ଗେ ରମି ।
ପ୍ରଳାପେ କଲା ଶୋକଧ୍ୱନି ।।୫୫
ହେ କାନ୍ତ କାହିଁ ଗଲ ଛାଡ଼ି ।
ଶୋକସାଗରେ ମୋତେ ଏଡ଼ି ।।୫୬

ନ ଦେଖି ଛାଡ଼ିବି ଜୀବନ ।
ଦେଖାଅ ସୁନ୍ଦରବଦନ ।।୫୭
ଏମନ୍ତ ନିଦ୍ରାଭୋଳ-ବାଣୀ ।
ଉଠିଲେ ସଖୀଜନେ ଶୁଣି ।।୫୮
ସଚେତ କରିଣ ବହନ ।
ବସାଇ କହନ୍ତି ବଚନ ।।୫୯
ବାଣାସୁରର ମନ୍ତ୍ରୀବର ।
କୁମ୍ଭାଣ୍ଡ ବୋଲି ନାମ ତାର ।।୬୦
ତାର କୁମାରୀ ଚିତ୍ରଲେଖା ।
କନ୍ୟାର ତୁଲେ ଥିଲା ଏକା ।।୬୧
ଅନ୍ତରେ ଅଛନ୍ତି କାମିନୀ ।
ସେ ବୋଲେ କନ୍ୟା କୋଳେ ଘେନି ।।୬୨
ଶୁଣ ସୁନ୍ଦରି ମୋର ବାଣୀ ।
ଉଠିଲେ ସଖୀଜନେ ଶୁଣି ।।୬୩
ସଚେତ କରିଣ ବହନ ।
ବସାଇ କହନ୍ତି ବଚନ ।।୬୪
ତୋହର କାନ୍ତସଙ୍ଗ ନାହିଁ ।
ପ୍ରଳାପ କଲୁ କାହିଁପାଇ ।।୬୫
ଏ ତ ତୁହଁଇ ଭଲ ଚିହ୍ନ ।
ଶୁଣିବେ ଦ୍ୱାରପାଳଗଣ ।।୬୬
କହିବେ ତୋର ପିତା ଆଗେ ।
କଷ୍ଟ ହୋଇବ ମୋର ଭାଗେ ।।୬୭
ତାର ବଚନ କର୍ଣ୍ଣେ ଶୁଣି ।
ଉଷା ଭାଷଇ ମଞ୍ଜୁବାଣୀ ।।୬୮
ସ୍ୱପନେ ଦେଖିଲି ପୁରୁଷ ।
ଅତିସୁନ୍ଦର ତାର ବେଶ ।।୬୯
ଶ୍ୟାମଳ କମଳଲୋଚନ ।
ସୁନ୍ଦର ଶଶାଙ୍କ-ବଦନ ।।୭୦
ପୀତବସନ ପରିଧାନ ।
ଯୁବତୀଜନଙ୍କ ମଦନ ।।୭୧
ନିବିଡ଼େ ଦେଇ ଆଲିଙ୍ଗନ ।
ସେ ମୋର ଚୁମ୍ବିଲା ବଦନ ।।୭୨
ଶୋକସାଗରେ ମୋତେ ଥୋଇ ।
ତକ୍ଷଣେ ଗଲା ସେ ପଳାଇ ।।୭୩
ମୁଁ ତାର ନ ଦେଖି ବଦନ ।
ନିଶ୍ଚୟେ ଛାଡ଼ିବି ଜୀବନ ।।୭୪

Dr. Sudhanshu Sekhar Mishra

ଏମନ୍ତ କନ୍ୟାବୋଲ ଶୁଣି ।
ସେ ଚିତ୍ରଲେଖା ମନେ ଗୁଣି ॥୭୫
ହରଷେ ଧରି କନ୍ୟା କର ।
ବୋଇଲା ଚିତ୍ତ ସ୍ଥିର କର ॥୭୬
ମୋହର ସିଦ୍ଧବିଦ୍ୟା ଅଛି ।
ପ୍ରତ୍ୟକ୍ଷେ ଦେଖ କମଳାକ୍ଷି ॥୭୭
ଲେଖି ଆଣିବି ତିନିପୁର ।
ପୁରୁଷ ଯେତେକ ସୁନ୍ଦର ॥୭୮
ଚିତ୍ରେ ଦେଖିଣ ସର୍ବଜନ ।
ତୋହର କାନ୍ତ ଭଲେ ଚିହ୍ନ ॥୭୯
ତାହାକୁ ଦେବି ତୋତେ ଆଣି ।
ଶୋକ ନକର ସୁଲକ୍ଷଣି ॥୮୦
ଏମନ୍ତ କହି ଚନ୍ଦ୍ରମୁଖୀ ।
ଚିତ୍ରେ ତ୍ରିଲୋକଜନ ଲେଖି ॥୮୧
ଦେବ ଗନ୍ଧର୍ବ ସିଦ୍ଧଗଣ ।
ଗୁହ୍ୟକ କିନ୍ନର ଚାରଣ ॥୮୨
ଅସୁର ବିଦ୍ୟାଧର ଯକ୍ଷ ।
ଦାନବ ମାନବ ପ୍ରତ୍ୟକ୍ଷ ॥୮୩
ମନୁଷ୍ୟ ମଧ୍ୟେ ବୃଷ୍ଣିବଂଶେ ।
ଦେବେ ଉପୁଜିଛନ୍ତି ଅଂଶେ ॥୮୪
ବସୁଦେବଙ୍କୁ ପଟେ ଲେଖି ।
ଦେଖ ଗୋ ବୋଲେ ଚନ୍ଦ୍ରମୁଖୀ ॥୮୫
ପୁଣି ଲେଖିଲା କୃଷ୍ଣରାମ ।
ରୂପ ଯାହାଙ୍କ ଅନୁପମ ॥୮୬
ପ୍ରଦ୍ୟୁମ୍ନ କୃଷ୍ଣପାଶେ ଲେଖି ।
ତା ଦେଖି ଉଷା ଅଧୋମୁଖୀ ॥୮୭
ପ୍ରଦ୍ୟୁମ୍ନପୁତ୍ର ଅନିରୁଦ୍ଧ ।
ଲେଖନ୍ତେ ଉଷା କଲା ସଧ ॥୮୮
ସକାମ ଦୃଷ୍ଟିରେ ସେ ଦେଖି ।
ଲାଜେ ହୋଇଲା ଅଧୋମୁଖୀ ॥୮୯
ବୋଲଇ ଚିତ୍ରଲେଖା ଚାହିଁ ।
ଭୋ ସଖି ସେ ପୁରୁଷ ଏହି ॥୯୦
ଆନନ୍ଦେ ହରଷ ବଦନ ।
ସଖୀ ଜାଣିଲା ତାର ମନ ॥୯୧
ତାର ଲୀଳାରେ ସୁଖ ପାଇ ।
ବିଳାପ କରୁ ଛନ୍ନ ହୋଇ ॥୯୨

ଚିତ୍ରଲେଖାର କଥା ଶୁଣି ।
ପାଦେ ପଡ଼ିଲା ଉଷା ପୁଣି ॥୯୩
ଭୋ ସଖି ଶୁଣ ଚିତ୍ରଲେଖା ।
ତାହାକୁ ଆଣି ମୋତେ ଦେଖା ॥୯୪
ନୋହିଲେ ଛାଡ଼ିବିଟି ପ୍ରାଣ ।
ତୋ କଷ୍ଟ ହେବ ଅକାରଣ ॥୯୫
ଉଷାର ଦେଖିଣ ବିକଳ ।
ବୋଲଇ କିଛି ହିଁ ନ ଭାଳ ॥୯୬
ମହାହରଷେ ବଞ୍ଚ ଆଜ ।
ଆଣି ମୁଁ ଦେବି ବୀରରାଜ ॥୯୭
ସିଦ୍ଧଯୋଗିନୀ ଯୋଗବଳେ ।
ଗମିଲା ଗଗନମଣ୍ଡଳେ ॥୯୮
ଏମନ୍ତେ ପ୍ରକାଶିଲା ନିଶି ।
ବେଗେ ଦ୍ୱାରକାପୁରେ ପଶି ॥୯୯
ଅନିରୁଦ୍ଧର ନିଦ୍ରାକାଳେ ।
ହରିଲା ଯୋଗମାୟା ବଳେ ॥୧୦୦
ଶଯ୍ୟା ସହିତେ ଶୂନ୍ୟପଥେ ।
ଘେନିଣ ଚଳିଲା ତ୍ୱରିତେ ॥୧୦୧
ଗଗନମାର୍ଗେ ଅତି ଖରେ ।
ପ୍ରବେଶି ଶୋଣିତନଗରେ ॥୧୦୨
ଉଷା ଶୟନେ ଦରଶନ ।
କରାଇ ତୋଷ କଲା ମନ ॥୧୦୩
ଉଷା ପୂଜିଲା ବୀରପାଦ ।
ଛାଡ଼ିଲା ମନର ବିଷାଦ ॥୧୦୪
ସୁନ୍ଦରବର ଦେଖି ହସି ।
ରମିଲା ହୃଦୟ ବିଶ୍ୱାସି ॥୧୦୫
ଏକାନ୍ତପୁର ମଧ୍ୟେ ଥାଇ ।
ଯହିଁ ପୁରୁଷ ଦୃଷ୍ଟି ନାହିଁ ॥୧୦୬
ପୁଷ୍ପ ଚନ୍ଦନ ଧୂପ ଦୀପ ।
ଆସନ ଭୋଜନ ସମୀପ ॥୧୦୭
ଏକବସନ ବେନିଦେହେ ।
ସେବା ସୁବାକ୍ୟେ ମନ ମୋହେ ॥୧୦୮
ପୂଜିତ କୃଷ୍ଣସୁତ ବଳା ।
ରତିପଣ୍ଡିତ କାମକଳା ॥୧୦୯
ଗୁପତେ କନ୍ୟାପୁରେ ଥାଇ ।
ଅଧିକ ସ୍ନେହଭାବ କହି ॥୧୧୦

ରାତ୍ର-ଦିବାସ ନ ଜାଣିଲା ।
ଏମନ୍ତେ କେତେଦିନ ଗଲା ॥୧୧୧
ଉଷାର ପ୍ରିୟପ୍ରେମ ଲୋଭେ ।
ଯନ୍ତ୍ରିତ ଇନ୍ଦ୍ରିୟ ସ୍ୱଭାବେ ॥୧୧୨
କୁମର ପ୍ରେମପ୍ରିୟ ଭରେ ।
ରହିଲା ବୀର ଅନ୍ତଃପୁରେ ॥୧୧୩
ଏମନ୍ତେ ଶୁଣ ମହୀପତି ।
କନ୍ୟାର ଦେଖି ହୃଷ୍ଟମତି ॥୧୧୪
ଯଦୁକୁମର ସଙ୍ଗେ ରମି ।
ଚିହ୍ନ ଦିଶଇ ରତିଶ୍ରମୀ ॥୧୧୫
କନ୍ୟା-ଦୂଷଣ ଚିହ୍ନମାନ ।
ଦେଖି ଡରିଲେ ଦ୍ୱାରୀଗଣ ॥୧୧୬
ତକ୍ଷଣେ ନୃପନାଥ ଆଗେ ।
କହିଲେ କରଯୋଡ଼ି ବେଗେ ॥୧୧୭
ଶୁଣ ରାଜନ ଚୂଡ଼ାମଣି ।
ଦେଖିଲୁ ତୋହର ଦୁଲଣୀ ॥୧୧୮
କୁଳଦୂଷଣ କନ୍ୟାଗୁଣ ।
ରାଜନ ସାବଧାନେ ଶୁଣ ॥୧୧୯
କନ୍ୟାର ଦ୍ୱାରେ ଆମ୍ଭେ ଥାଇ ।
ଦଣ୍ଡେ ହେଁ ଅବକାଶ ନାହିଁ ॥୧୨୦
ଶଶୀ-ତପନ ଶୂନ୍ୟେ ଯାନ୍ତି ।
ତପନତେଜ ନ ଲାଗଇ ॥୧୨୧
ପୁରୁଷ ଦୃଷ୍ଟି ଯହିଁ ନାହିଁ ।
ତପନତେଜ ନ ଲାଗଇ ॥୧୨୨
ପରେ ଦୂଷିତା କନ୍ୟା ଦେଖି ।
ଅଇଲୁ ଭୁବନ ଉପକ୍ଷି ॥୧୨୩
ଯେ ତୋର ଇଚ୍ଛା ଏବେ କର ।
ଏଥକୁ ସାକ୍ଷୀ ଦିବାକାର ॥୧୨୪
ଆମ୍ଭେ ଜାଣିବୁ ଅବା କାହିଁ ।
କହିଲୁ ଆମ୍ଭ ଦୋଷ ନାହିଁ ॥୧୨୫
ଶୁଣି ଚକିତ ନୃପବର ।
କାତରେ କମ୍ପଇ ଶରୀର ॥୧୨୬
ପୁଣି ନ ଚଳଇ ଚରଣ ।
ଦୁଃସହ ଦୁହିତାକଷଣ ॥୧୨୭
ବାଣ-କୋଦଣ୍ଡ ଧରି କରେ ।
ବେଗେ ମିଳିଲା କନ୍ୟାପୁରେ ॥୧୨୮

Dr. Sudhanshu Sekhar Mishra

ଦେଖିଲା ମଦନତନୁଜ ।
ଆଜାନୁଲମ୍ବେ ବେନିଭୁଜ ।।୧୨୯
ପୀତବସନ ହୃଦେ ହାର ।
ଅଶେଷ ଭୁବନ ସୁନ୍ଦର ।।୧୩୦
ଶ୍ୟାମସୁନ୍ଦର ପଦ୍ମନେତ୍ର ।
ଅଳକା-କପୋଳ ବିଚିତ୍ର ।।୧୩୧
କର୍ଣ୍ଣେ କୁଣ୍ଡଳ ବେନି ଶୋହେ ।
ସୁନ୍ଦରରୂପ ଜନ ମୋହେ ।।୧୩୨
ଅଧରେ ଶୋହେ ମନ୍ଦହାସ ।
ସୁଚିତ୍ତେ ବସି କନ୍ୟା ପାଶ ।।୧୩୩
ଅକ୍ଷ ଖେଳଇ ପ୍ରିୟା ସଙ୍ଗେ ।
କୁଚକୁଙ୍କୁମ ସର୍ବଅଙ୍ଗେ ।।୧୩୪
ମଲ୍ଲିକା ପୁଷ୍ପମାଳ ହୃଦେ ।
ଆନ୍ଦୋଳେ ବେନିଭୁଜ ମଧ୍ୟେ ।।୧୩୫
ଏମନ୍ତେ କନ୍ୟାର ସମୀପେ ।
ଦେଖି ଦାନବ ମହାକୋପେ ।।୧୩୬
ଚକିତେ ଚଉଦିଗ ଚାହିଁ ।
କମ୍ପେ କୋଦଣ୍ଡେ ଗୁଣ ଦେଇ ।।୧୩୭
ଅନେକବୀର ତାର ସଙ୍ଗେ ।
ଦ୍ୱାର ରୁନ୍ଧିଲେ ଚାରିଦିଗେ ।।୧୩୮
ଦେଖି ତାହାର ସୈନ୍ୟବଳ ।
ସମ୍ଭ୍ରମେ ପ୍ରଦ୍ୟୁମ୍ନ ଦୁଲାଳ ।।୧୩୯
କରେ ପରିଘ ଶସ୍ତ୍ର ଧରି ।
ଉଠିଲା ଘୋରନାଦ କରି ।।୧୪୦
କନ୍ୟାର ଆଗେ ହୋଇ ଉଭା ।
କୃତାନ୍ତ ପ୍ରାୟ ଦିଶେ ଶୋଭା ।।୧୪୧
ଧରିବା ଆଶେ ଚଉଦିଗେ ।
ବୀରେ ଯେ ଥିଲେ ଦ୍ୱାରଲାଗେ ।।୧୪୨
ପରିଘ ପ୍ରହାରେ ବିନାଶି ।
ସିଂହ ଯେସନେ ପଶୁଗ୍ରାସି ।।୧୪୩
ପରିଘଘାତେ ବଜ୍ର ପ୍ରାୟେ ।
ଜୀବନ ନଶିଲେ ଥୋକାଏ ।।୧୪୪
କାହାର ଭୁଜ ଉର ଛିଡ଼ି ।
ପଳାଇଗଲେ ରଣ ଛାଡ଼ି ।।୧୪୫
ଦେଖିଣ ଅନିରୁଦ୍ଧ ରଣ ।
ଭାଜିଲେ ଅସୁର ସଇନ୍ୟ ।।୧୪୬
ବାଣା ଯୁଝଇ ଅତି ରୋଷେ ।
ବାଣେ ତାହାର ବାଣ ନାଶେ ।।୧୪୭
ଶସ୍ତ୍ରରେ ନ ପାରିଲା ଜିଣି ।
ମନେ ବିଚାରେ ନୃପମଣି ।।୧୪୮
ଦେଖିଣ ଅନିରୁଦ୍ଧ ଗତି ।
ନାଗପାଶରେ ମହାରଥୀ ।।୧୪୯
ବଳିନନ୍ଦନ ବେଗେ ବାନ୍ଧେ ।
ବନ୍ଧନ ଦେଖି ଉଷା କାନ୍ଦେ ।।୧୫୦
ଦେଖଇ ବିପ୍ର ଜଗନ୍ନାଥ ।
ନାଗବନ୍ଧନେ କାମସୁତ ।।୧୫୧
ସୁଜନେ ସାବଧାନେ ଶୁଣ ।
କୃଷ୍ଣ ନାଶିବେ ଏ କଷଣ ।।୧୫୨

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଅନିରୁଦ୍ଧେ ବନ୍ଧୋ ନାମ
ସପ୍ତଷଷ୍ଠିତମ ଅଧ୍ୟାୟଃ ।।

---

## ଅଷ୍ଟଷଷ୍ଠିତମ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ଭାଗବତ ।
ଦ୍ୱାରକାପୁରେ କାମସୁତ ।।୧
ନ ଦେଖି ଅତି ଶୋକଭରେ ।
ଲୋଡ଼ନ୍ତି ଗ୍ରାମ ବନଘୋରେ ।।୨
ନ ଦେଖି ହୋଇଲେ ନିରାଶ ।
ଏମନ୍ତେ ଗଲା ଚାରିମାସ ।।୩
ବହ୍ମାନନ୍ଦନ ଏକଦିନେ ।
ମିଳିଲେ ଦ୍ୱାରକାଭୁବନେ ।।୪
ରାମଗୋବିନ୍ଦ ପାଶେ ବସି ।
ମୁନି କହନ୍ତି ମନ୍ଦେ ହସି ।।୫
ଶୁଣ ଗୋବିନ୍ଦ ହଳଧର ।
ତୁମ୍ଭର ପୁତ୍ରର କୁମର ।।୬
ଶୋଣିତପୁରେ କନ୍ୟାଛଳେ ।
ବନ୍ଧନ ନିଜ କର୍ମଫଳେ ।।୭
ବଳୀର ପୁତ୍ର ବାଣାସୁର ।
ଦୁର୍ଜ୍ଜୟ ଦୁଷ୍ଟ ଦୁରାଚାର ।।୮
ତାର ସହସ୍ରଭୁଜ ବହି ।
ତା ସମ ରଣେ ବୀର ନାହିଁ ।।୯
ଈଶ୍ୱରବରେ ଭୁଜ ବହି ।
ତା ସମ ରଣେ ବୀର ନାହିଁ ।।୧୦
ଦେଖି ଡରନ୍ତି ସର୍ବଜନେ ।
ଅଜେୟ ଏ ତିନିଭୁବନେ ।।୧୧
ଏମନ୍ତ କହି କୃଷ୍ଣଆଗେ ।
ନାରଦ ଗଲେ ଶୂନ୍ୟମାର୍ଗେ ।।୧୨
କୃଷ୍ଣ ଆଦେଶେ ଉଗ୍ରସେନ ।
ସାଜିଲେ ଯଦୁ ଭୋଜ ସୈନ୍ୟ ।।୧୩
ପ୍ରଦ୍ୟୁମ୍ନ ଯୁଯୁଧାନ ଗଦ ।
ଶାମ୍ବ ସାରଣ ଉପନନ୍ଦ ।।୧୪
ଭଦ୍ର ସୁନନ୍ଦ ଆଦି ବେଗେ ।
ସାଜିଲେ ରାମକୃଷ୍ଣ ସଙ୍ଗେ ।।୧୫
ଦ୍ୱାଦଶ ଅକ୍ଷୌହିଣୀ ଘେନି ।
ଶବଦେ କମ୍ପଇ ମେଦିନୀ ।।୧୬
ଶଙ୍ଖ ଶବଦେ ଦିଗ ପୂରି ।
ରୁନ୍ଧିଲେ ଶୋଣିତନଗରୀ ।।୧୭
ଦୁର୍ଜ୍ଜୟ ଯଦୁ ଭୋଜବୀର ।
ଭାଙ୍ଗିଲେ ବନ ଗ୍ରାମ ପୁର ।।୧୮
ପାଚେରୀ ଅଟ୍ଟାଳୀ ଗୋପୁର ।
ଭାଙ୍ଗିଣ ସର୍ବ କଲେ ଚୂର ।।୧୯
ଗହନ ଘୋରନାଦ ଶୁଣି ।
ବଳିନନ୍ଦନ ବୀରମଣି ।।୨୦
ଦୁଷ୍ଟସ୍ୱଭାବେ ମହାରୋଷେ ।
ବେଗେ ମିଳିଲା ରୁଦ୍ର ପାଶେ ।।୨୧

Dr. Sudhanshu Sekhar Mishra

ସମ୍ଭ୍ରମେ ରୁଦ୍ରପାଦେ ପଡ଼ି ।
ବୋଲଇ ବେନିକର ଯୋଡ଼ି ॥୨୨
ଭୋ ନାଥ ଅମ୍ବିକାରମଣ ।
ମୋ ପୁରେ କନ୍ୟାର ଦୂଷଣ ॥୨୩
ନିର୍ଭୟେ ପ୍ରଦ୍ୟୁମ୍ନ କୁମର ।
ବଳେ ହରିଲା କନ୍ୟା ମୋର ॥୨୪
ବନ୍ଧନ କଲି ନାଗପାଶେ ।
ତା ଶୁଣି କୃଷ୍ଣ ମହାରୋଷେ ॥୨୫
ବଳେ ମୋହର ପୁରେ ଆସି ।
ରାହୁ ଯେସନେ ଶଶୀ ଗ୍ରାସି ॥୨୬
ଭାଙ୍ଗିଲେ ମୋର ଗଡ଼ ଗ୍ରାମ ।
ଶୁଣି ଶଙ୍କର ଗରୁତମ ॥୨୭
ବିଶେଷେ କନ୍ୟାର ଦୂଷଣ ।
ଶୁଣି ସାଜିଲେ ରୁଦ୍ରଗଣ ॥୨୮
ତକ୍ଷଣେ ବଳିର ନନ୍ଦନ ।
ମିଳିଲା ଆପଣା ଭୁବନ ॥୨୯
କୃଷ୍ଣର ବଳ ପରିମାଣି ।
ସାଜି ଦ୍ୱାଦଶ ଅକ୍ଷୌହିଣୀ ॥୩୦
ସଙ୍ଗତେ ଘେନି ମହାବୀର ।
ନଗରୁ ହୋଇଲା ବାହାର ॥୩୧
ଦେଖି ତାହାର ଆଗୁସାର ।
ତକ୍ଷଣେ ମିଳିଲେ ଶଙ୍କର ॥୩୨
ସଙ୍ଗେ କାର୍ତ୍ତିକ ଗଣପତି ।
ଆବର ଯେତେ ସେନାପତି ॥୩୩
ବୃଷଭ ପୃଷ୍ଠେ ବସି ହର ।
ମିଳିଲେ ଯହିଁ ଚକ୍ରଧର ॥୩୪
ଶଙ୍କର ଗଣ ଅପ୍ରମିତ ।
ରଣ ଆବୋରି ଯୂଥ ଯୂଥ ॥୩୫
ମାରନ୍ତି ନାନାଶସ୍ତ୍ର ଘେନି ।
ଶବଦେ କମ୍ପଇ ମେଦିନୀ ॥୩୬
ଶୂନ୍ୟେ ଦେଖନ୍ତି ଦିଗପାଳ ।
କୃଷ୍ଣଶଙ୍କର ରଣଗୋଳ ॥୩୭
ଦୁର୍ଲ୍ଲଭ ହରିହର ଗଣ ।
ଶୁଣନ୍ତେ ରୋମହରଷଣ ॥୩୮
ଅଦ୍ଭୁତ ଶୁଭେ ଘୋରନାଦ ।
ଶୁଣ ହେ ସଂଗ୍ରାମ ପ୍ରମାଦ ॥୩୯

କୃଷ୍ଣଶଙ୍କର ରଣ ଘୋର ।
କାର୍ତ୍ତିକେ ରୁକ୍ମିଣୀକୁମର ॥୪୦
ବାଣର ମନ୍ତ୍ରୀ ବେନିଜନ ।
ନାମ କୁମ୍ଭାଣ୍ଡ କୂପକର୍ଣ୍ଣ ॥୪୧
କୁମ୍ଭାଣ୍ଡ କୂପକର୍ଣ୍ଣ ବୀର ।
ସଙ୍ଗେ ଯୁଝନ୍ତି ହଳଧର ॥୪୨
ବାଣକୁମର ଶାମ୍ବ ବେନି ।
ଯୁଦ୍ଧ କରନ୍ତି ଶସ୍ତ୍ର ଘେନି ॥୪୩
ସାତ୍ୟକି ବାଣ ତୁଲେ ରଣ ।
କେ କହୁ ଯୁଦ୍ଧ ଗରୁଟାଣ ॥୪୪
ସହସ୍ର ଭୁଜେ ବେନିଭୁଜ ।
ଯେଣୁ ସାତ୍ୟକି ବିଷ୍ଣୁତେଜ ॥୪୫
ଦେଖି ଅଦ୍‌ଭୁତ ଘୋରଗଣ ।
ଶୂନ୍ୟେ ମିଳିଲେ ଦେବଗଣ ॥୪୬
ବ୍ରହ୍ମାଙ୍କ ତୁଲେ ଆଖଣ୍ଡଳ ।
ସିଦ୍ଧଚାରଣ ଦିଗପାଳ ॥୪୭
ଗନ୍ଧର୍ବ ଅପସରା ଯକ୍ଷ ।
ବିମାନେ ମିଳିଲେ ପ୍ରତ୍ୟକ୍ଷ ॥୪୮
ଗୋବିନ୍ଦ ଦେଖି ରୁଦ୍ରଗଣ ।
ନିଜ କୋଦଣ୍ଡେ ଦେଲେ ଗୁଣ ॥୪୯
ଭୂତ ପ୍ରଥମ ଗୁହ୍ୟଗଣ ।
ଗ୍ରହ ଡାକିନୀ ଯାତୁଧାନ ॥୫୦
ବେତାଳ ଆଦି ବିନାୟକ ।
କୋଟରା ରେବତୀ ଅନ୍ତକ ॥୫୧
ଜ୍ୟେଷ୍ଠା ପୂତନା ଆଦି ଯେତେ ।
ପ୍ରେତ ମାତୃକାଗଣ ଯୂଥେ ॥୫୨
ପିଶାଚ କୁଷ୍ମାଣ୍ଡକ ବୀର ।
ବ୍ରହ୍ମରାକ୍ଷସ ମହାଘୋର ॥୫୩
ଏ ଆଦି କହିବି ମୁଁ କେତେ ।
ରୁଦ୍ରର ବଳ ଛନ୍ତି ଯେତେ ॥୫୪
ସାରଙ୍ଗ ଧନୁର୍ବାଣ ବିନ୍ଧି ।
ନିମିଷ ମାତ୍ରେ କୃଷ୍ଣ ଛେଦି ॥୫୫
ତା ଦେଖି ରୁଦ୍ର କୋପଭରେ ।
ପିନାକ ଧନୁ ଧରି କରେ ॥୫୬
ତକ୍ଷଣେ ଦଶଦିଗ ରୁନ୍ଧି ।
କୃଷ୍ଣ ଉପରେ ବାଣ ବିନ୍ଧି ॥୫୭

ରୁଦ୍ର ନାରାଚ ଦେଖି ହରି ।
ଗୁଣ ଟଙ୍କାରି ନାଦ କରି ॥୫୮
ବାଣକୁ ବାଣ ପରିତାଳ ।
କରନ୍ତି ମଦନଗୋପାଳ ॥୫୯
ତିଳପ୍ରମାଣ ଛେଦି କରି ।
କାଟିଲେ ରୁଦ୍ରବାଣ ହରି ॥୬୦
ଲୀଳାମାତ୍ରକେ ବାଣ ଗଲା ।
ତା ଦେଖି ରୁଦ୍ର କୋପ କଲା ॥୬୧
ଦହିବା ପ୍ରାୟ ତିନିପୁର ।
ଗୁଣେ ବସାଇ ରୁଦ୍ରଶର ॥୬୨
ଆକର୍ଣ୍ଣଯାଏ ଟାଣି ଗୁଣ ।
ଦେଖି ହସନ୍ତି ନାରାୟଣ ॥୬୩
ବ୍ରହ୍ମଅସ୍ତ୍ରେ ତାହା ଛେଦି ।
ପର୍ବତବାଣ ରୁଦ୍ର ବିନ୍ଧି ॥୬୪
ବଜ୍ର ପ୍ରହାରି ଜଗନ୍ନାଥ ।
ରୁଦ୍ରଶସ୍ତ୍ରକୁ କଲେ ହତ ॥୬୫
ହର ପେଷିଲେ ମେଘମାଳ ।
ପବନଶରେ ନନ୍ଦବାଳ ॥୬୬
ମେଘସମୂହେ ବେଗେ ନାଶେ ।
ଶଙ୍କର ଅନଳ ନିବାରି ॥୬୭
ଗୋବିନ୍ଦ ଜଳବୃଷ୍ଟି କରି ।
ତକ୍ଷଣେ ଅନଳ ନିବାରି ॥୬୮
ଦେଖି ଶଙ୍କର କୋପଚିତ୍ତେ ।
ବେଗେ ବିନ୍ଧିଲେ ପାଶୁପତେ ॥୬୯
କୃଷ୍ଣ ପେଷିଲେ ଚକ୍ର ବେଗେ ।
ପଡ଼ିଲା ପାଶୁପତ ଅଙ୍ଗେ ॥୭୦
ତକ୍ଷଣେ କଲା ଭସ୍ମସାର ।
ଯୁଦ୍ଧ ଦେଖନ୍ତି ସୁର ନର ॥୭୧
ରୁଦ୍ର ଶରୀରେ ଗୋପୀନାଥ ।
କୃମ୍ଭଣ ଶସ୍ତ୍ର କଲେ ଘାତ ॥୭୨
ପୁଣି ମୋହନଶସ୍ତ୍ର ଧରି ।
ଶଙ୍କର ଦେହେ କୃଷ୍ଣ ମାରିଁ ॥୭୩
ତକ୍ଷଣେ ଅମ୍ବିକାରମଣ ।
ମୋହେ ପଡ଼ିଲେ ଘୋରରଣ ॥୭୪
ପଞ୍ଚପରାଣ କଣ୍ଠାଗତ ।
ତକ୍ଷଣେ ହୋଇଲେ ଅଚେତ ॥୭୫

Dr. Sudhanshu Sekhar Mishra

ରୁଦ୍ରଙ୍କୁ କରାଇ ମୋହନ ।
ଚାହିଁଲେ ଦେବକୀନନ୍ଦନ ।।୭୬
ବାଣାସୁରର ବଳ ଦେଖି ।
ଧନୁକୁ କଲେ ଅଧୋମୁଖୀ ।।୭୭
ଗଦାଖଡ଼ଗ ବାଣେ ହରି ।
ଦ୍ୱାଦଶ ଅକ୍ଷୌହିଣୀ ମାରି ।।୭୮
ଗୋବିନ୍ଦ କଲେ ଶଙ୍ଖଧ୍ୱନି ।
ଶବଦେ କମ୍ପିଲା ମେଦିନୀ ।।୭୯
କାର୍ତ୍ତିକ ପ୍ରଦ୍ୟୁମ୍ନର ତୁଲେ ।
ଘୋରଶବଦେ ରଣ କଲେ ।।୮୦
ପ୍ରଦ୍ୟୁମ୍ନବାଣେ ହରବଳା ।
ମୟୁର ଘେନି ପଳାଇଲା ।।୮୧
କୁମ୍ଭାଣ୍ଡ କୂପକର୍ଣ୍ଣ ବେନି ।
ରାମର ତୁଲେ ଧନୁ ଘେନି ।।୮୨
ଯୁଦ୍ଧ କରନ୍ତି ଗରୁତର ।
ଦେଖି କୋପିଲେ ହଳଧର ।।୮୩
ମୁଷଳ ଘେନି ବେଗେ ପିଟି ।
ପଡ଼ିଲେ ବେନିବୀର ଲୋଟି ।।୮୪
ସନ୍ନିଧେ ଯେତେ ବୀର ଥିଲେ ।
ସମର ଛାଡ଼ି ପଳାଇଲେ ।।୮୫
ସାତ୍ୟକି ତୁଲେ ବାଣାସୁର ।
ନିବିଡ଼େ କରନ୍ତେ ସମର ।।୮୬
ଦେଖିଲା ନିଜ ସୈନ୍ୟ ନାହିଁ ।
ସମ୍ଭ୍ରମେ ଦଶଦିଗ ଚାହିଁ ।।୮୭
ତା ଦେଖି ବଳିର କୁମର ।
କୋପ ବଢ଼ିଲା ଗରୁତର ।।୮୮
ସାତ୍ୟକି ତୁଲେ ରଣ ଛାଡ଼ି ।
ଧାଇଁଲା ରଣଭୂମି ମାଡ଼ି ।।୮୯
କୃଷ୍ଣନିକଟେ ରଥ ନେଇ ।
ରଖିଲା ଚାପେ ଗୁଣ ଦେଇ ।।୯୦
ଆକର୍ଷି ଧନୁ ପାଞ୍ଚଶତ ।
ଅସୁର ବଳ ଅପ୍ରମିତ ।।୯୧
ଗୁଣକେ ବେନି ବେନି ବାଣ ।
କୋପେ ବିନ୍ଧିଲା ଗରୁଡାଣ ।।୯୨
ରଣ-ଦୁର୍ମଦ ଅତି ଖରେ ।
ବିନ୍ଧିଲା ଗୋବିନ୍ଦ ଉପରେ ।।୯୩

ଦେଖି ତାହାର ବାଣବୃଷ୍ଟି ।
ଗୋବିନ୍ଦ କଲେ ଦୃଢ଼ମୁଷ୍ଟି ।।୯୪
ଏକାବେଳେକେ ଦେବରାଜ ।
ବିନ୍ଧିଲେ ସହସ୍ର ନାରାଚ ।।୯୫
ଶରର ମୁଖେ ଶର ବାଜି ।
ଅସୁର ବାଣ ଗଲା ଭାଜି ।।୯୬
ତକ୍ଷଣେ ତିନିଶର ବିନ୍ଧି ।
ଅଶ୍ୱ ସାରଥି ରଥ ଛେଦି ।।୯୭
ବାଣ ହୋଇଲା ଭୂମିପାଦ ।
ଗୋବିନ୍ଦତ କଲେ ଶଙ୍ଖନାଦ ।।୯୮
ତାର ଜନନୀ ପୁରେ ଥିଲା ।
ପୁତ୍ରର ମରଣ ଜାଣିଲା ।।୯୯
ସିଦ୍ଧଯୋଗିନୀ ସେ ଯୁକତେ ।
ସଂଗ୍ରାମେ ମିଳିଲା ତୁରିତେ ।।୧୦୦
କୃଷ୍ଣର ନିକଟ ହୋଇଲା ।
ଅତି ବିରୂପ ପ୍ରକାଶିଲା ।।୧୦୧
କେଶ ମୁକୁଳା ମୁଣ୍ଡେ ଚାଲେ ।
ବସ୍ତ୍ର ପଡ଼ିଲା ଫିଟି ତଳେ ।।୧୦୨
ବିବସ୍ତ୍ର ଦେଖି ତା ଶରୀର ।
ବିଷ୍ଣୁ ସୁମରି ଗଦାଧର ।।୧୦୩
ଅଧୋବଦନ ନାରାୟଣ ।
ବିରଥ ହୋଇଥିଲା ବାଣ ।।୧୦୪
ବେଗେ ପଳାଇ ପୁରେ ପଶି ।
ଗୋପନେ ଜୀବନ ଆଶ୍ୱାସି ।।୧୦୫
ଭୁବନେ ହୋଇଲା ନିଶ୍ଚିନ୍ତ ।
ଏମନ୍ତେ ଶୁଣ ନରନାଥ ।।୧୦୬
ରୁଦ୍ର ଯେ ପଡ଼ିଥିଲେ ମୋହେ ।
ଜ୍ଞାନ ପଶିଲା ନିଜ ଦେହେ ।।୧୦୭
ଉଠି ସମ୍ଭାଳି କଳେବର ।
ଶରୀରୁ ଜାତ କଲେ ଜ୍ୱର ।।୧୦୮
ବୋଇଲେ କୃଷ୍ଣେ ମାର ତୁହି ।
ତକ୍ଷଣେ ଶିବ ଆଜ୍ଞା ପାଇ ।।୧୦୯
ସ୍ୱଭାବେ ତ୍ରିଶିର ତ୍ରିପାଦ ।
ଚଳନ୍ତେ କରେ ଘୋର ନାଦ ।।୧୧୦
ଶବଦେ ଭୁବନ କମ୍ପିଲା ।
କୃଷ୍ଣର ନିକଟେ ମିଳିଲା ।।୧୧୧

ଅଦ୍‌ଭୁତ ଦେଖି ରୂପ ତାର ।
ଅଳପ ହସି ଚକ୍ରଧର ।।୧୧୨
କୃଷ୍ଣ ଆଦେଶେ ବିଷ୍ଣୁଜ୍ୱର ।
ଶରୀରୁ ହୋଇଲା ବାହାର ।।୧୧୩
ଏ ବେନି ଜ୍ୱର ଏକମେଳେ ।
ଶୂନ୍ୟେ ଦେଖନ୍ତି ଦିଗପାଳେ ।।୧୧୪
କୋପେ ଯୁଝନ୍ତି ବେନି ଜ୍ୱର ।
ଶବଦେ କମ୍ପେ ତିନିପୁର ।।୧୧୫
ବଜ୍ର ଶବଦ ଘୋରନାଦେ ।
ସମର କଲେ ବାହୁଯୁଦ୍ଧେ ।।୧୧୬
ବିଷ୍ଣୁର ଜ୍ୱର ମହାଘୋର ।
ଦେଖି ଭାଜିଲା ଶିବଜ୍ୱର ।।୧୧୭
ପଳାଇଗଲା ଅନ୍ତରୀକ୍ଷେ ।
ଗୋଡ଼ାଏ ବିଷ୍ଣୁଜ୍ୱର ପଛେ ।।୧୧୮
ଭ୍ରମିଲା ଦଶଦିଶ ତ୍ରାସେ ।
କେହି ନୋହିଲେ ତା ବିଶ୍ୱାସେ ।।୧୧୯
ଚଉଦଭୁବନେ ବୁଲିଲା ।
ଶରଣ କେହି ନ ରଖିଲା ।।୧୨୦
କୃଷ୍ଣବଇରୀ କେ ବିଶ୍ୱାସ ।
ଜୀବନେ ଅଛି ଯାର ଆଶ ।।୧୨୧
ନିରାଶେ ଶିବଜ୍ୱର ଧାଇଁ ।
ମିଳିଲା କୃଷ୍ଣପାଶେ ଯାଇ ।।୧୨୨
ଭୟେ ରୋଦଇ ଘୋରନାଦେ ।
ଶରଣ ଗଲା କୃଷ୍ଣପାଦେ ।।୧୨୩
ଆରତେ କୃଷ୍ଣପାଦେ ଯାଇ ।
କରଯୁଗଳ ଶିରେ ଦେଇ ।।୧୨୪
କାତରେ ଯୋଡ଼ି ବେନିକର ।
ସ୍ତୁତିକରଇ ଶିବଜ୍ୱର ।।୧୨୫

ଜ୍ୱର ଉବାଚ

ନମଇଁ ପ୍ରଭୁ ଭାବଗ୍ରାହୀ ।
ଅନନ୍ତଶକ୍ତିମୟ ତୁହି ।।୧୨୬
ପରମପୁରୁଷ ତୁ ହରି ।
ଜଗତେ ଆତ୍ମାରୂପେ ପୂରି ।।୧୨୭
ତୋହର ନାହିଁ ଆଦିଅନ୍ତ ।
କେବଳ ଆତ୍ମାଜ୍ଞାନେ ରତ ।।୧୨୮

Dr. Sudhanshu Sekhar Mishra

ସୃଷ୍ଟିପାଳନ ସଂହାରଣ ।
ତୁ ନାଥ ପରମକାରଣ ।।୧୨୯
ଯେ ନିର୍ବିକାର ବ୍ରହ୍ମତତ୍ତ୍ୱ ।
ବେଦାନ୍ତେ ବୋଲନ୍ତି ପ୍ରଶସ୍ତ ।।୧୩୦
କାଳ ଦଇବ କର୍ମ ଜୀବ ।
ଏମନ୍ତେ ପଞ୍ଚମେ ସ୍ୱଭାବ ।।୧୩୧
ତୁ ଭୂତ ସୂକ୍ଷ୍ମ କ୍ଷେତ୍ରଆତ୍ମା ।
ବିକାର ପଞ୍ଚ ତୋ ମହିମା ।।୧୩୨
ଏ ଦଶଇନ୍ଦ୍ରି ଏକକରି ।
ତୋ ମାୟା ବୀଜରୂପ ଧରି ।।୧୩୩
ଅଙ୍କୁରି ଫଳଇ ବ୍ରହ୍ମାଣ୍ଡ ।
ଏଣେ ବିଲଗ ତୋର ପିଣ୍ଡ ।।୧୩୪
ଲୀଳାଏ ଉତପନ୍ନ ହେଉ ।
ତୁ ନାଥ ଭାବେ ଦେହ ବହୁ ।।୧୩୫
ଦେବତା ସାଧୁ ଲୋକଧର୍ମ ।
ଯଜ୍ଞାଦି ଯେତେ ଶୁଭକର୍ମ ।।୧୩୬
ଏ ଆଦି ଯେତେ ଧର୍ମହେତୁ ।
ଏହାଙ୍କ ରକ୍ଷଣେ ତୁ ସେତୁ ।।୧୩୭
ସାଧୁ ହିଂସନ୍ତି ଯେତେ ପ୍ରାଣୀ ।
ତାହାଙ୍କୁ ଦଣ୍ଡୁ ଚକ୍ରପାଣି ।।୧୩୮
ଭୂମିର ଭାର ଖଣ୍ଡିବାରେ ।
ତୋହର ଜନ୍ମ ଏ ସଂସାରେ ।।୧୩୯
ତୋହର ତେଜେ ନିଜ ଜ୍ୱର ।
ଦୁଃସହ ଘୋର ଭୟଙ୍କର ।।୧୪୦
ତାହାର ମହାତେଜେ ମୁହିଁ ।
ବ୍ରହ୍ମାଣ୍ଡେ ଭ୍ରମି ଶ୍ରମ ପାଇ ।।୧୪୧
ପଶିଲି ତୋହରେ ଶରଣ ।
ତୁ ମୋତେ ରଖ ନାରାୟଣେ ।।୧୪୨
ଯାବତ ଜନ୍ତୁ ତୋର ପାଦେ ।
ଶରଣ ନ ପଶେ ପ୍ରମାଦେ ।।୧୪୩
ତାବତ ତାପତ୍ରୟେ ଦୁଃଖୀ ।
କର୍ମବନ୍ଧନେ ଉପଲକ୍ଷ୍ୟ ।।୧୪୪
ଏମନ୍ତ ଜ୍ୱରବାକ୍ୟ ଶୁଣି ।
ହସି ବୋଲନ୍ତି ଚକ୍ରପାଣି ।।୧୪୫

ଭଗବାନ ଉବାଚ

ତ୍ରିଶିର ଶୁଣ ମୋ ବଚନ ।
ମୁଁ ତୋତେ ହୋଇଲି ପ୍ରସନ୍ନ ।।୧୪୬
ତୋତେ ମୋ ଜ୍ୱର ଭୟ ନାହିଁ ।
ଶୁଣ ମୁଁ ପ୍ରସନ୍ନେ ବୋଲଇ ।।୧୪୭
ତୋହର ମୋହର ସମ୍ବାଦ ।
ଶୁଣନ୍ତେ ଖଣ୍ଡିବ ପ୍ରମାଦ ।।୧୪୮
ଜ୍ୱର ନ ଲାଗୁ ତା ଶରୀର ।
ସତ୍ୟବଚନ ଏ ମୋହର ।।୧୪୯
ଏମନ୍ତ କୃଷ୍ଣବାକ୍ୟ ଶୁଣି ।
ଜ୍ୱର ନମିଲା ଚକ୍ରପାଣି ।।୧୫୦
ଆନନ୍ଦେ ଗଲା ଶିବଜ୍ୱର ।
ଏବେ ହେ ଶୁଣ ନୃପବର ।।୧୫୧
ବାଣ ଯେ ନିଜପୁରେ ଥିଲା ।
ପୁଣି ସଂଗ୍ରାମେ ବିଜେ କଲା ।।୧୫୨
ରଥେ ବସିଲା କୋପଭରେ ।
ଅର୍ଦ୍ଧସହସ୍ର ଧନୁ କରେ ।।୧୫୩
ସହସ୍ରଭୁଜେ ମହାରୋଷେ ।
ବାଣ ବରଷେ ଦଶଦିଶେ ।।୧୫୪
ଆୟୁଧ ନାନାରୂପେ ଧରି ।
ମିଳିଲା ଯହିଁ ନରହରି ।।୧୫୫
ବାଣ ବରଷେ ମହାଘୋର ।
ଯେସନ୍ତେ ଗଗନେ ଜଳଧର ।।୧୫୬
ଦେଖି ତାହାର ବାଣବୃଷ୍ଟି ।
କୃଷ୍ଣ ଚାହିଁଲେ ସ୍ଥିରଦୃଷ୍ଟି ।।୧୫୭
ସୁଦରଶନ ଘେନି ହସ୍ତେ ।
ଆସନ୍ତେ ପ୍ରହାରିଲା ପଥେ ।।୧୫୮
ବାଣବରଷା ଅତିବେଗ ।
କୋପେ ଛେଦିଲେ ଶୂନ୍ୟମାର୍ଗେ ।।୧୫୯
ବଜ୍ରଶବଦ ପ୍ରାୟ ସ୍ଫୁରି ।
କୋଟିତପନ ରୂପ ଧରି ।।୧୬୦
ପଡ଼ିଲା ବାଣାସୁର କନ୍ଧେ ।
ଭୁଜଛେଦିଲା ଘୋରନାଦେ ।।୧୬୧
ବାମ-ଦକ୍ଷିଣେ ବେଗେ ପଡ଼େ ।
ବୃକ୍ଷରୁ ପତ୍ର ଯେସନ୍ତେ ଝଡ଼େ ।।୧୬୨
ବାଣର ଭୁଜ ନାଶ ଦେଖି ।
ଶଙ୍କର ସମର ଉପେକ୍ଷି ।।୧୬୩
ମିଳିଲେ ଗୋବିନ୍ଦ ନିକଟେ ।
ଦେବେ ଦେଖନ୍ତି ଶୂନ୍ୟବାଟେ ।।୧୬୪
ଭକତବନ୍ଧୁ ସେ ଶଙ୍କର ।
ଶିରେ ନିବେଶି ବେନିକର ।।୧୬୫

ରୁଦ୍ର ଉବାଚ

ବୋଲନ୍ତି ଚକ୍ରାୟୁଧ ତୁହି ।
ତୁ ନାଥ ନୋହୁ ଭୂତଦେହୀ ।।୧୬୬
ତୁ ବ୍ରହ୍ମ ପୁରୁଷ ପୁରାଣ ।
ଅଶେଷ-ପୁରମକାରଣ ।।୧୬୭
ପରମଜ୍ୟୋତି ରୂପ ତୋର ।
ଚର୍ମଲୋଚନେ ଅଗୋଚର ।।୧୬୮
ନିର୍ମଳଆତ୍ମା ଯୋଗୀଜନେ ।
ତୋତେ ଭାବନ୍ତି ଶୁଦ୍ଧମନେ ।।୧୬୯
ତୁ ଆତ୍ମାରୂପେ ସର୍ବଦେହେ ।
ତୋତେ ଦେଖନ୍ତି ପୁଣ୍ୟମୟେ ।।୧୭୦
ତୋହର ନାଭି ଅନ୍ତରୀକ୍ଷ ।
ବଦନ ଅନଳ ପ୍ରତ୍ୟକ୍ଷ ।।୧୭୧
ଆପ ତୋହର ରେତସାର ।
ଗଗନ ଘେନି ତୋର ଶିର ।।୧୭୨
ଦିଗ ଯେ ତୋହର ଶ୍ରବଣ ।
ମେଦିନୀ ପ୍ରକାଶ ଚରଣ ।।୧୭୩
ତୋହର ମନ ନିଶାକର ।
ରବି ତୋ ନୟନୁ ବାହାର ।।୧୭୪
ମୁଁ ତୋର ଆତ୍ମାର ନିକଟ ।
ସପ୍ତ ସମୁଦ୍ର ତୋର ପେଟ ।।୧୭୫
ତୋହର ଭୁଜ ଆଖଣ୍ଡଳ ।
ତୋ ତନୁରୋମ ତରୁମାଳ ।।୧୭୬
ଜୀମୂତଗଣେ ତୋର କେଶ ।
ବିରଞ୍ଚି ତୋ ବୁଦ୍ଧି ପ୍ରକାଶ ।।୧୭୭
ତୋର ବୃକ୍ଷଣ ପ୍ରଜାପତି ।
ଏଣୁ କେ ଜାଣେ ତୋର ଗତି ।।୧୭୮।।
ଧର୍ମ ତୋ ହୃଦୟୁ ପ୍ରକାଶ ।
ଏଣୁ ତୁ ବିରାଟପୁରୁଷ ।।୧୭୯
ଜଗତେ ତୋର ଅବତାର ।
ଧର୍ମରକ୍ଷଣେ ଚକ୍ରଧର ।।୧୮୦
ଜଗତହିତେ ତୋର ଦେହୀ ।
ତୋ ମାୟା ନ ଜାଣନ୍ତି କେହି ।।୧୮୧

Dr. Sudhanshu Sekhar Mishra

ତୋ ଅନୁଭବ ଆମ୍ଭେ ହେଉଁ ।
ଆଜ୍ଞାରୁ ଭୁବନ ଭିଆଉଁ ।।୧୮୨
କରୁ ପାଳନ ସଂହାରଣ ।
ତୋହର ଆଜ୍ଞା ପରମାଣ ।।୧୮୩
ଆଦିପୁରୁଷ ଏକ ତୁହି ।
ଦ୍ୱିତୀୟଭାବ ତୋର ନାହିଁ ।।୧୮୪
ଜ୍ଞାନ ପ୍ରକାଶ ଶୁଦ୍ଧଜ୍ୟୋତି ।
ହେତୁ ଅହେତୁ ତୁ ଶ୍ରୀପତି ।।୧୮୫
ପ୍ରକାଶ ହେଉ ଯଥାବିଧି ।
ତୋ ମାୟା ସକଳେ ପ୍ରସିଦ୍ଧି ।।୧୮୬
ସୂର୍ଯ୍ୟର ତହୁଁ ଛାୟା ଜାତ ।
ଛାୟାରେ ଛନ୍ନ ଛାୟାକାନ୍ତ ।।୧୮୭
ଛାୟାର ମଧ୍ୟେ ନାନାରୂପ ।
ତେସନେ ତୋର ମାୟାକଳ୍ପ ।।୧୮୮
ତ୍ରିଗୁଣେ ନୋହୁ ତୁ ବିକାଶ ।
ରବି ଯେସନେ ସ୍ୱପ୍ରକାଶ ।।୧୮୯
ଆତ୍ମାପ୍ରକାଶେ ଗୁଣ ନାଶେ ।
ଆଦିତ୍ୟ ଯେସନେ ଆକାଶେ ।।୧୯୦
ତୁ ନାଥ ନିତ୍ୟ ଶୁଦ୍ଧଜ୍ଞାନ ।
ମହାମହିମ ଭଗବାନ ।।୧୯୧
ତୋର ମାୟାରେ ବୁଦ୍ଧିନାଶି ।
ଜୀବର ଗଳେ ମୋହପାଶି ।।୧୯୨
ପୁତ୍ର-କଳତ୍ର-ଗୃହ-ଧନେ ।
ବନ୍ଧନ ତୋହର ବଚନେ ।।୧୯୩
ଦୁଃଖସାଗରେ ମୂଢ଼ମତି ।
ବୁଡ଼ନ୍ତି ପୁଣି ପ୍ରକାଶନ୍ତି ।।୧୯୪
ପ୍ରମାଦେ କରୁଥାନ୍ତି କେଳି ।
ତୋର ମାୟାରେ ବନମାଳୀ ।।୧୯୫
ମନୁଷ୍ୟ ଦେହ ପଦ୍ମନାଭ ।
ନିଶ୍ଚୟ ଦେବଙ୍କୁ ଦୁର୍ଲ୍ଲଭ ।।୧୯୬
ଏ ଦେହ ପାଇ ଜ୍ଞାନ ହାରି ।
ତୋତେ ନ ଜାଣେ ଦଇତ୍ୟାରି ।।୧୯୭
ଭାବ ତୋ ଚରଣେ ନ ସଞ୍ଚେ ।
ସେ ଦୁଃଖେ ନିଜ ଆତ୍ମା ବଞ୍ଚେ ।।୧୯୮
ଆତ୍ମା ଈଶ୍ୱର ପ୍ରିୟ ତୁହି ।
ସେ ପ୍ରାଣୀ ତୋତେ ପାସୋରଇ ।।୧୯୯
ଇନ୍ଦ୍ରିୟ ଅର୍ଥେ ବିପରୀତ ।
ହସ୍ତରୁ ପକାଇ ଅମୃତ ।।୨୦୦
ବିଷ ଭକ୍ଷଇ ସ୍ୱାଦୁ ମଣି ।
ତୋ ମାୟାଗୁଣେ ଚକ୍ରପାଣି ।।୨୦୧
ମୁହିଁ ବିରଞ୍ଚି ମୁନି ଦେବା ।
ନିର୍ମଳ ଚିତ୍ତେ ତୋତେ ସେବା ।।୨୦୨
କହୁଁ ସଂସାରେ ଦେହ ବହି ।
ଜୀବର ଇଷ୍ଟଦାତା ତୁହି ।।୨୦୩
ସ୍ଥିତି-ପାଳନ-ଅନ୍ତ ହେତୁ ।
ସମ ପ୍ରଶାନ୍ତ ଆତ୍ମା କେତୁ ।।୨୦୪
ଆତ୍ମା ଦେବତା ତୁ ଅନେକ ।
ତୋ ତହୁଁ ନାହିଁ ଅନ୍ୟ ଏକ ।।୨୦୫
ତୁ ଏ ଜଗତମିତ୍ର ହେତୁ ।
ଜନ୍ମ ମରଣ ବନ୍ଧ ସେତୁ ।।୨୦୬
ତୋତେ ଭଜିଲେ ନରନାରୀ ।
ତୋ ମାୟାବନ୍ଧରୁ ନିସ୍ତରି ।।୨୦୭
ଏ ବାଣାସୁର ଭକ୍ତ ମୋର ।
ପ୍ରିୟ ସୁହୃଦ ଅନୁଚର ।।୨୦୮
ଏହାର ତପେ ତୋଷ ହୋଇ ।
ଅଭୟ ବର ଦେଲି ମୁହିଁ ।।୨୦୯
ସେ ବର ପ୍ରତିପାଳ ତୁହି ।
ମୋହର ଭାବେ ତୋଷ ହୋଇ ।।୨୧୦
ଅସୁରସୁତ ପ୍ରହଲ୍ଲାଦ ।
ତରିଲା ଅନେକ ପ୍ରମାଦ ।।୨୧୧
ତୋର ପ୍ରସାଦେ ଭାବଗ୍ରାହୀ ।
ମୋର ସେବକ ରଖ ତୁହି ।।୨୧୨
ଏମନ୍ତ ଶମ୍ଭୁବାକ୍ୟ ଶୁଣି ।
ହସି ବୋଲନ୍ତି ଚକ୍ରପାଣି ।।୨୧୩

ଭଗବାନ ଉବାଚ

ଭୋ ଦେବ ତୋହର ବଚନ ।
ଅବଶ୍ୟ କରିବି ପାଳନ ।।୨୧୪
ଯେମନ୍ତ ଆଜ୍ଞା ଦେଲୁ ମୋତେ ।
କରିବି ତୋର ଅନୁମତେ ।।୨୧୫
ଏ ମୋର ହସ୍ତେ ନ ମରଇ ।
ଭଲେ ଜାଣଇ ଏହା ମୁହିଁ ।।୨୧୬
ମୋର ଭକତ ପ୍ରହଲ୍ଲାଦ ।
ତାହାରେ ନ ଲାଗେ ପ୍ରମାଦ ।।୨୧୭
ତାର କୁମର ବିରୋଚନ ।
ବଳି ଯେ ତାହାର ନନ୍ଦନ ।।୨୧୮
ବଳିର ପୁତ୍ର ବାଣାସୁର ।
ଏଣୁ ଏ ଅବଧ୍ୟ ମୋହର ।।୨୧୯
ପ୍ରହଲ୍ଲାଦର ବଂଶ ଯେଣୁ ।
ଏହାକୁ ନ ମାରିବି ତେଣୁ ।।୨୨୦
ପୂର୍ବେ ମୁଁ ଅଛି ବର ଦେଇ ।
ତା ବଂଶ ନ ମାରିବି ମୁହିଁ ।।୨୨୧
ଏହାର ଗର୍ବ ନାଶିବାରେ ।
ଚକ୍ର ପେଷିଲି କୋପଭରେ ।।୨୨୨
ସହସ୍ରଭୁଜ ଛେଦି କରି ।
ଦ୍ୱାଦଶ ଅକ୍ଷୌହିଣୀ ମାରି ।।୨୨୩
ତ୍ରିଦଶହିତେ ଭୂମିଭାର ।
ବିନାଶ ଅର୍ଥେ ଅବତାର ।।୨୨୪
ଏବେ ମୁଁ କଲି ଦେବକାର୍ଯ୍ୟ ।
ଥାଉ ଏହାର ଚାରିଭୁଜ ।।୨୨୫
ଅଜରାମର-ପ୍ରାଣ ହେଉ ।
ତୋର ସେବକ ସୁଖେ ଥାଉ ।।୨୨୬।।
ଅଭୟ ହେଉ ଏ ଅସୁର ।
ଏମନ୍ତ କୃଷ୍ଣ ଦେଲେ ବର ।।୨୨୭
ଏମନ୍ତ କୃଷ୍ଣବାକ୍ୟ ଶୁଣି ।
ଅସୁର ନମେ ଚକ୍ରପାଣି ।।୨୨୮
ବାଜଇ ନାନାବାଦ୍ୟ ରଙ୍ଗେ ।
ଉଷାକୁ ଅନିରୁଦ୍ଧ ସଙ୍ଗେ ।।୨୨୯
ରଥେ ବସାଇ ବଳି-ବଳା ।
କୃଷ୍ଣ ସମୀପେ ଆଣି ଦେଲା ।।୨୩୦
ଉଷା ସହିତେ ଅନୁରୁଦ୍ଧେ ।
ଦେଇ ନମିଲା କୃଷ୍ଣପାଦେ ।।୨୩୧
ଯାଦବବଳ ମଧ୍ୟେ ହରି ।
ବରକନ୍ୟାଙ୍କୁ ରଥେ ଧରି ।।୨୩୨
ବୃଦ୍ଧଙ୍କୁ କରି ନମସ୍କାର ।
ଦ୍ୱାରକା ବିଜେ ଦାମୋଦର ।।୨୩୩
କୃଷ୍ଣବିଜୟେ ଦ୍ୱାରାପୁରୀ ।
ଅଧିକେ ଅଳଙ୍କୃତ କରି ।।୨୩୪

Dr. Sudhanshu Sekhar Mishra

ତୋରଣ ବାନ୍ଧି ଉଚ୍ଚବୃକ୍ଷେ ।
ମାର୍ଜନା କଲେ ଦାଣ୍ଡରକ୍ଷେ ।।୨୩୫
ମଙ୍ଗଳଦ୍ରବ୍ୟ କରେ ଘେନି ।
ଆନନ୍ଦେ ମିଳିଲେ କାମିନୀ ।।୨୩୬
ଶଙ୍ଖ ଦୁନ୍ଦୁଭି ବାଦ୍ୟସ୍ୱରେ ।
ଆଶିଷ ଦେଲେ କନ୍ୟାବରେ ।।୨୩୭
ଆନନ୍ଦେ ନୃତ୍ୟ ଗୀତ ବାଦ୍ୟ ।
ବିଜୟେ ଦ୍ୱାରକା-ସମ୍ପଦ ।।୨୩୮
ଏମନ୍ତ ହରିହର-ରଣ ।
ଯେ କରେ ଶ୍ରବଣ କୀର୍ତ୍ତନ ।।୨୩୯
ପ୍ରଭାତ କାଳେ ପ୍ରତିଦିନେ ।
ଯେ ପ୍ରାଣୀ ଚିନ୍ତେ ଶୁଦ୍ଧମନେ ।।୨୪୦
ତାହାର ନାହିଁ ପରାଭବ ।
ନିରତେ ରଖନ୍ତି ମାଧବ ।।୨୪୧
କୃଷ୍ଣ ମଙ୍ଗଳ ଶୁଦ୍ଧବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୨୪୨
ସୁଜନହିତେ ଭାଗବତ ।
କହିଲା ଦାସ ଜଗନ୍ନାଥ ।।୨୪୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଅନିରୁଦ୍ଧ
ଆନୟନଂ ନାମ
ଅଷ୍ଟଷଷ୍ଟିମ ଅଧ୍ୟାୟଃ ।।

---

## ଏକୋନସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ସାବଧାନେ ।
ଦ୍ୱାରକାପୁରେ ଏକ ଦିନେ ।।୧
କୃଷ୍ଣକୁମର ଛନ୍ତି ଯେତେ ।
କହିବା ଏକେ ଏକେ କେତେ ।।୨
ପ୍ରଦ୍ୟୁମ୍ନ ଶାମ୍ବ ଆଦି ମିଳି ।
ବନେ କରନ୍ତି ନାନା କେଳି ।।୩
ଅନେକବେଳ କ୍ରୀଡାକରି ।
ତୃଷିତେ ଲୋଡୁଛନ୍ତି ବାରି ।।୪
ଏମନ୍ତେ ଜଳପାନ ସଧେ ।
କୂପ ଦେଖିଲେ ବନମଧ୍ୟେ ।।୫
ସକଳେ କୂପପାଶେ ମିଳି ।
ଚାହାଁନ୍ତି ନୟନ ନିରୋଳି ।।୬
ତୃଣ ଗହଳ ଅନ୍ଧକାରେ ।
ଅଦ୍ଭୁତ ଜନ୍ତୁ ତା ଭିତରେ ।।୭
ଦିଶଇ ପର୍ବତ ସଦୃଶ ।
ଦେଖି ଚିହ୍ନିଲେ କୃକଳାଶ ।।୮
ବିସ୍ମିତେ ଏକ ଆରେ ଚାହିଁ ।
ବୋଲନ୍ତି ଅଙ୍ଗୁଳି ଦେଖାଇ ।।୯
ଦଣ୍ଡେ ବିଚାରି ଯତ୍ନକରି ।
ବୋଲନ୍ତି ଦେଖିବା ଉଦ୍ଧରି ।।୧୦
ଏତେ ବିଚାରି ଦୟା ବହି ।
ଲାଙ୍ଗୁଳେ ଦଉଡ଼ି ଲଗାଇ ।।୧୧
ତୃଣବକଳ ଚର୍ମପାଶି ।
ନିବିଡ଼େ ବାନ୍ଧିଲେ ଆକର୍ଷି ।।୧୨
ଟାଣନ୍ତି ଧରି ଜଣେ ଜଣ ।
ନ ଚଳେ ତାହାର ଚରଣ ।।୧୩
ଦେଖି ଚକିତ କୃଷ୍ଣବାଳେ ।
ସର୍ବେ ଟାଣିଲେ ଏକାବେଳେ ।।୧୪
ତିଳେ ନ ଚଳେ କୃକଳାଶ ।
ଟାଣି ପାଇଲେ ସର୍ବେ ତ୍ରାସ ।।୧୫
ପୁଣି ଧରନ୍ତି ବାହୁବଳେ ।
ସର୍ବେ ଟାଣିଲେ ଏକାବେଳେ ।।୧୬
ଏମନ୍ତେ ବହୁ କ୍ଳେଶ ପାଇ ।
ଏକ ଆରକେ ମୁଖ ଚାହିଁ ।।୧୭
ବୋଲନ୍ତି ଦେଖି ବିପରୀତ ।
ଆମ୍ଭର ବଳବୀର୍ଯ୍ୟ ହତ ।।୧୮
ଟାଣନ୍ତେ ତିଳେ ନ ଚଳିଲା ।
ଲାଜ ତ ମରଣୁ ବଳିଲା ।।୧୯
ଶ୍ରୀକୃଷ୍ଣ ବୀର୍ଯ୍ୟେ ଆମ୍ଭ ଜନ୍ମ ।
ଶୁଣି ହସିବେ ସର୍ବଜନ ।।୨୦
ରିପୁ ହସିବେ ଏହା ଶୁଣି ।
କିବା ବୋଲିବେ ଚକ୍ରପାଣି ।।୨୧
ରୋହିଣୀସୁତ ଶୁଣି ଏହା ।
ଆମ୍ଭରେ ହୋଇବେ ନିର୍ଦ୍ଦୟା ।।୨୨
ପୁରେ ହସିବେ ବଧୂଜନେ ।
ବସନ ଆଚ୍ଛାଦି ବଦନେ ।।୨୩
ନିରାଶେ କୃଷ୍ଣପାଶେ ଯାଇ ।
ବୋଲନ୍ତି ଶିରେ କର ଦେଇ ।।୨୪
ଭୋ ଦେବ ଶୁଣ ସାବଧାନେ ।
ଅଦ୍ଭୁତ କଥା ଘୋରବନେ ।।୨୫
ବନଗହନେ ଅନ୍ଧକୂପ ।
ତା ମଧ୍ୟେ କୃକଳାଶ ରୂପ ।।୨୬
ପର୍ବତ ପ୍ରାୟ ତା ଶରୀର ।
ନ ଚଳେ ଅତି ଗରୁତର ।।୨୭
ଓଟାରି ନ ପାରିଲୁ ବଳେ ।
ଟାଣନ୍ତେ ଚରଣ ନ ଚଳେ ।।୨୮
ଏ ବଡ଼ ଲଜ୍ୟା ବିପରୀତ ।
ଶୁଣି ହସିଲେ ଯଦୁନାଥ ।।୨୯
ବୋଲନ୍ତି ଚାଲ ଯିବା ବନେ ।
ପୋଏ ଧାଇଁଲେ ତୋଷମନେ ।।୩୦
ଏମନ୍ତେ ଘୋରବନେ ଯାଇ ।
କୂପେ ଚାହିଁଲେ ଭାବଗ୍ରାହୀ ।।୩୧
ଦେଖିଲେ ଘୋର ଅନ୍ଧକାର ।
ନିର୍ଜ୍ଜଳ ତୃଣେ ମହାଘୋର ।।୩୨
ଅଦ୍ଭୁତ କୃକଳାଶ କାୟେ ।
ଦିଶଇ ଗିରିଶୃଙ୍ଗ ପ୍ରାୟେ ।।୩୩
ଅଧୋବଦନ ଉର୍ଦ୍ଧ୍ୱଲାଞ୍ଜ ।
ଦେଖି ଚକିତ ଦେବରାଜ ।।୩୪
ଦୟାସାଗର ଦେବହରି ।
ତା ଲାଞ୍ଜ ବାମକରେ ଧରି ।।୩୫

Dr. Sudhanshu Sekhar Mishra

କୂପୁଁ ତୋଳିଲେ ଦାମୋଦର ।
ମାଳୀ ଯେସନେ ମାଳାକାର ।।୩୬
ତୋଳି ପକାନ୍ତେ ହୃଷୀକେଶ ।
ପ୍ରାଣ ଛାଡ଼ିଲା କୃକଲାଶ ।।୩୭
ଯେଣୁ ଲାଗିଲା କୃଷ୍ଣକର ।
ଦିବ୍ୟସ୍ୱରୂପ ହେଲା ତାର ।।୩୮
ଉଦୟ ଗିରିଶିଖେ ଶଶୀ ।
ଯେସନେ ଗଗନେ ପ୍ରକାଶି ।।୩୯
ଶୁଦ୍ଧସୁବର୍ଣ୍ଣ ଦେହ ଝଳି ।
ଜଳଦେ ଯେସନେ ବିଜୁଳି ।।୪୦
ଦିବ୍ୟବସନ ଗନ୍ଧମାଳ ।
ଦେଖି ଚକିତ ନନ୍ଦବାଳ ।।୪୧
ତାହା ଜାଣନ୍ତି କୃଷ୍ଣ ଏକେ ।
ବିଖ୍ୟାତ ଅର୍ଥେ ନରଲୋକେ ।।୪୨
ତାର ବଦନ ଚାହିଁ ହସି ।
ପୁଛନ୍ତି ପ୍ରଭୁ ବ୍ରହ୍ମରାଶି ।।୪୩
ତୁ ମହାଭାଗ ପୁଣ୍ୟଦେହୀ ।
ଦେବତାପ୍ରାୟ ମୁଁ ମଣଇ ।।୪୪
କହ ତୁ କେବଣ ପୁରୁଷ ।
କିମ୍ପା ହୋଇଲୁ କୃକଲାଶ ।।୪୫
କି ପାପବଶୁଁ ଭୋଗ କରି ।
ଶରୀର ଅନ୍ଧକୂପେ ଭରି ।।୪୬
ଏ କୂପେ ଅଛୁ କେତେକାଳ ।
କହ ନ କରି ଅବହେଳ ।।୪୭
ତୁହି ତ ନୋହୁ ପାପୀଜନ ।
କହ ଏ କେବଣ ବିଧାନ ।।୪୮
ଶୁଣିତେ ଯୋଗ୍ୟ ଯେବେ ମୁହିଁ ।
କହ ନିର୍ଭୟ ଚିତ୍ତ ହୋଇ ।।୪୯
ଏମନ୍ତ କୃଷ୍ଣ ବାକ୍ୟ ଶୁଣି ।
ଆନନ୍ଦେ କହେ ନୃପମଣି ।।୫୦
ଶିରେ ମୁକୁଟ ରବିପ୍ରାୟେ ।
ନମିଲା ଗୋବିନ୍ଦର ପାୟେ ।।୫୧
ଭୋ ନାଥ ନୃଗରାଜା ମୁହିଁ ।
ଇକ୍ଷ୍ୱାକୁବଂଶେ ଜାତ ହୋଇ ।।୫୨
ଜଗତମଧ୍ୟେ ଯେତେ ଦାନୀ ।
ତାହାଙ୍କ ମଧ୍ୟେ ମୁଁ ଅଗ୍ରଣୀ ।।୫୩

ତୁ ତାହା ଅଛୁ ଭଲେ ଜାଣି ।
ମୁଁ କି କହିବି ପରିମାଣି ।।୫୪
ସର୍ବଭୂତଙ୍କ ଆତ୍ମା ତୁହି ।
ଅଶେଷ ଜ୍ଞାନ ତୋର ତହିଁ ।।୫୫
ତୁ ନାଥ ଭଲେ ଏହା ଜାଣୁ ।
କେବଳ ମୋତେ ପରିମାଣୁ ।।୫୬
ତଥାପି ଆଜ୍ଞା ଘେନି ଶିରେ ।
କହିବି ତୋହର ଛାମୁରେ ।।୫୭
ଭୋ ନାଥ ଶୁଣ ମୋ ବଚନ ।
ଅନେକ ଦେଲି ଗୋରୁଦାନ ।।୫୮
ସଂଖ୍ୟା କରିବି ମୁହିଁ କେତେ ।
ଶୁଣ ଉପମା କହୁଁ ତୋତେ ।।୫୯
ଭୂମିରେ ଅଛି ଯେତେ ଧୂଳି ।
ଗଗନେ ଯେତେ ତାରାମାଳୀ ।।୬୦
ବରଷାଧାରା ଯେତେ ହୋଇ ।
ଏହି ପ୍ରମାଣେ ଦେଲି ଗାଈ ।।୬୧
କ୍ଷୀର ସମ୍ପୂର୍ଣ୍ଣ ରୂପବନ୍ତୀ ।
ସାଧୁ ତରୁଣ ବତ୍ସାବତୀ ।।୬୨
ସୁନ୍ଦର ସୁକପିଳ ବର୍ଣ୍ଣ ।
ସୁବର୍ଣ୍ଣଶୃଙ୍ଗ ଗୁଣପୂର୍ଣ୍ଣ ।।୬୩
ଖୁରରେ ରଜତ ଖଞ୍ଜାଣି ।
ଉଚିତ ଧନେ ତାହା କିଣି ।।୬୪
ଦୋହନ ଅର୍ଥେ କାଂସ୍ୟପାତ୍ର ।
ବସ୍ତ୍ର କୁସୁମମାଳା ଗାତ୍ର ।।୬୫
ଗନ୍ଧଚନ୍ଦନ ମାଳ ସାଜି ।
ଷଡ଼ର୍ଘ୍ୟେ ବିପ୍ରପାଦ ପୂଜି ।।୬୬
ବରିଲି ଯେମନ୍ତ ବ୍ରାହ୍ମଣ ।
ଭୋ ନାଥ ସାବଧାନେ ଶୁଣ ।।୬୭
ଯୁବା ସୁଗୁଣ ସାଧୁଶୀଳ ।
ଦରିଦ୍ର କୁଟୁମ୍ବଗହଳ ।।୬୮
ଉତ୍ତମ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
ବେଦାଧ୍ୟୟନେ ମନ୍ତ୍ର ଶିକ୍ଷା ।।୬୯
ଏମନ୍ତ ବିପ୍ରେ ସାବଧାନ ।
ସୁପୁଣ୍ୟକାଳେ ଦେଲି ଦାନ ।।୭୦
ଅଧିକ ଦାନ ଦେଲି ଯେତେ ।
ଶୁଣ କହିବା ତୋ ଅଗ୍ରତେ ।।୭୧

ଗୋ ଚର୍ମମାପେ ଭୂମିଦାନ ।
ଶୁଦ୍ଧସୁବର୍ଣ୍ଣ ଆୟତନ ।।୭୨
ଗଜ ତୁରଗ କନ୍ୟାଦାସୀ ।
ତିଳ ପର୍ବତ ଧାନ୍ୟରାଶି ।।୭୩
ଭୋଗ୍ୟସମ୍ପୂର୍ଣ୍ଣ ସୁଖଶଯ୍ୟା ।
ବସ୍ତ୍ରଭୂଷଣ ବଳିଭୋଜ୍ୟା ।।୭୪
ଯଜ୍ଞେ ସୁବର୍ଣ୍ଣରଥ ଯେତେ ।
ସଂଖ୍ୟାରେ କହିବି ମୁଁ କେତେ ।।୭୫
ଦେବମନ୍ଦିରେ ଜଳ ଅନ୍ନ ।
ସୁମିଷ୍ଟ ପବିତ୍ର ଭୋଜନ ।।୭୬
ଏମନ୍ତେ ନାନା ଦାନ କରି ।
କିଞ୍ଚିତେ ପାପ ମୁଁ ଆଚରି ।।୭୭
ବ୍ରାହ୍ମଣ ଦାନ ନେଲା ଗାଈ ।
ଫିଟି ପଶିଲା ଗୋଷ୍ଠେ ଯାଇ ।।୭୮
ଅଜ୍ଞାନେ ନ ଜାଣି ପ୍ରଭାତେ ।
ଦାନ ମୁଁ ଦେଲି ବିପ୍ରହସ୍ତେ ।।୭୯
ବ୍ରାହ୍ମଣ ଧେନୁ ଘେନି ଯାନ୍ତେ ।
ବିପ୍ର ଦେଖିଲା ରାଜପଥେ ।।୮୦
ତା ନିଜ ଧେନୁ ଚିହ୍ନି ବଳେ ।
ତକ୍ଷଣେ ଧଇଲା ଲାଙ୍ଗୁଳେ ।।୮୧
ବୋଇଲା ମୋର ଧେନୁ ଏହି ।
ହଜିଲା ଲୋଡୁଅଛି ମୁହିଁ ।।୮୨
ଶୁଣି ବ୍ରାହ୍ମଣ କୋପମନେ ।
ବୋଲଇ ପରୁଷ ବଚନେ ।।୮୩
ପ୍ରତ୍ୟକ୍ଷେ ଘେନିଅଛି ଦାନ ।
ଦେଖ ତୁ ଫେଡ଼ିଣ ନୟନ ।।୮୪
ଜଳ ତୁଳସୀ କୁଶ ହସ୍ତେ ।
ତିଳ ହିଁ ଦେଖ ତୁ ପ୍ରତ୍ୟକ୍ଷେ ।।୮୫
ଏ ଧେନୁ କେମନ୍ତେ ତୋହର ।
ଶୁଣି ବୋଲଇ ବିପ୍ରବର ।।୮୬
ଧେନୁ ଶରୀରେ ମୋର ଲେଖ ।
ତୋହର ଚକ୍ଷୁ ଥିଲେ ଦେଖ ।।୮୭
ଏମନ୍ତ କହି ଶୃଙ୍ଗ ଧରି ।
ଘେନି ଚଳିଲା ନିଜପୁରୀ ।।୮୮
ବ୍ରାହ୍ମଣ ଧରେ ଲାଞ୍ଜେ ଧେନୁ ।
ଏମନ୍ତେ ଉପୁଜିଲା ମନ୍ୟୁ ।।୮୯

Dr. Sudhanshu Sekhar Mishra

କଳି ଭିଆଇ ପଥ ମଧ୍ୟେ ।
ପ୍ରହାର କଲେ ହସ୍ତପାଦେ ॥୯୦
ଏମନ୍ତ ଉଚ୍ଚବାଚ ହୋଇ ।
ମିଳିଲେ ମୋର ପୁରେ ଯାଇ ॥୯୧
ବ୍ରାହ୍ମଣ ମୋର ମୁଖ ଚାହିଁ ।
ବୋଲଇ କୋପଭର ହୋଇ ॥୯୨
ତୁ ମୋର ହସ୍ତେ ଧେନୁ ଦେଇ ।
ଏବେ ହରିଲୁ କିସ ପାଇ ॥୯୩
ଉତ୍ସର୍ଗ-ଦାନ ଯେହୁ ହରେ ।
ଅନ୍ତେ ନରକ ଭୋଗ କରେ ॥୯୪
ଯେ ବିପ୍ର ପ୍ରତିଗ୍ରହ ତ୍ୟାଗେ ।
ସେହି ପଡ଼ଇ ଦୁଃଖଭାଗେ ॥୯୫
ଏମନ୍ତ ବିପ୍ର-ବାକ୍ୟ ଶୁଣି ।
ବଜ୍ର ପଡ଼ିଲା ଶିରେ ମଣି ॥୯୬
ମନେ ପାଇଲି ମହାଭୟ ।
କାତରେ କମ୍ପେ ମୋର କାୟ ॥୯୭
ଉଭୟ ସଙ୍ଗତେ ମୁଁ ପଡ଼ି ।
କରଯୁଗଳ ଶିରେ ଯୋଡ଼ି ॥୯୮
ବେନି ବିପ୍ରଙ୍କ ପାଦଗତେ ।
ପ୍ରବୋଧ କଲି ନାନାମତେ ॥୯୯
ସଙ୍କଳ୍ପ ଲକ୍ଷେଧେନୁ କରି ।
ବୋଇଲି ବିପ୍ର ପାଦ ଧରି ॥୧୦୦
ଭୋ ବିପ୍ର ଲକ୍ଷେ ଧେନୁ ନେଇ ।
ଏ ଧେନୁଗୋଟି ଦିଅ ତୁହି ॥୧୦୧
ତୁ ମୋତେ ଅନୁଗ୍ରହ କର ।
ଉଭୟ-ସଙ୍କଟୁ ଉଦ୍ଧର ॥୧୦୨
ନ ଜାଣି କଲି ଏଡ଼େ କର୍ମ ।
ଭୋ ବିପ୍ର ରଖ ମୋର ଧର୍ମ ॥୧୦୩
ନକର ମନେ ଆନ ବୁଦ୍ଧି ।
ଦକ୍ଷିଣା ଦେବି ହେମ-ନିଧି ॥୧୦୪
ନରକପଥୁଁ ରଖ ମୋତେ ।
ଏ ଧେନୁ ଦିଅ ତୋଷଚିତ୍ତେ ॥୧୦୫
ଶୁଣି ବୋଲଇ ପ୍ରତିଗ୍ରାହୀ ।
ଲକ୍ଷକେ ମୋର କାର୍ଯ୍ୟ ନାହିଁ ॥୧୦୬
ଏମନ୍ତ ବୋଲି ବିପ୍ର ଗଲା ।
ଆନ ଯେ ପ୍ରତିଗ୍ରାହୀ ଥିଲା ॥୧୦୭

ଅଯୁତେ ଦେଲି ତାକୁ ଧେନୁ ।
ତା ଦେଖି ବିପ୍ର କଲା ମନ୍ୟୁ ॥୧୦୮
ବୋଇଲି ଲକ୍ଷେ ନିଅ ତୁହି ।
ଶୁଣି କୋପିଲା ମୋତେ ଚାହିଁ ॥୧୦୯
ବୋଇଲା ପରୁଷ ବଚନେ ।
ନିନ୍ଦା ତୁ କଲୁ ମହାଜନେ ॥୧୧୦
କୋପେ ଚଳିଲା ନିଜ ଘରେ ।
ନିତ୍ୟେ ଆସଇ ମୋର ପୁରେ ॥୧୧୧
ପ୍ରତିଦିବସେ ବୋଧ କରି ।
ବୋଲଇ ବିପ୍ରପାଦ ଧରି ॥୧୧୨
କୋପେ ନ ଶୁଣେ ମୋ ବଚନ ।
ଏମନ୍ତେ ଗଲା କେତେଦିନ ॥୧୧୩
ଭୋ ନାଥ ଶୁଣ ଜନାର୍ଦ୍ଦନ ।
କାଳେ ମୁଁ ଛାଡ଼ିଲି ଜୀବନ ॥୧୧୪
ମରଣକାଳେ ଯମଦୂତେ ।
ମିଳିଲେ ମୋହର ଅଗ୍ରତେ ॥୧୧୫
ବନ୍ଧନ କରି ମୋର ଦେହୀ ।
ଯମ ନିକଟେ ଦେଲେ ନେଇ ॥୧୧୬
ତକ୍ଷଣେ ରବିର ନନ୍ଦନ ।
ଅନେକ କଲା ସନମାନ ॥୧୧୭
ପୁଣ୍ୟ-ପାତକ ବିଚାରିଲା ।
ଆନନ୍ଦେ ମୋତେ ଆଜ୍ଞା ଦେଲା ॥୧୧୮
ଶୁଣ ରାଜନ ପୁଣ୍ୟବନ୍ତ ।
କେ କରୁ ତୋର ପୁଣ୍ୟ ଅନ୍ତ ॥୧୧୯
କିଞ୍ଚିତ ପାପ ଅଛି ତୋର ।
ଯେ ଇଚ୍ଛା ଆଗେ ଭୋଗ କର ॥୧୨୦
ଶୁଭ-ଅଶୁଭ ଫଳ ଦୁଇ ।
ନିଶ୍ଚୟ ଭୋଗ ସେ କରଇ ॥୧୨୧
ବ୍ରହ୍ମା-ଶଙ୍କରେ ଦେହ ଧରି ।
ଅନ୍ୟଥା ନ ପାରନ୍ତି କରି ॥୧୨୨
ଏମନ୍ତ ଯମବାକ୍ୟ ଶୁଣି ।
ଆପଣା ଚିତ୍ତେ ପରିମାଣି ॥୧୨୩
ଅନେକ ଅଛି ପୁଣ୍ୟରାଶି ।
କିଞ୍ଚିତେ ପାତକ ପ୍ରକାଶି ॥୧୨୪
ଆଗ ଭୁଞ୍ଜିବି ପାପଭାର ।
ଏ ଦୁଃଖ ଘୋର ଭୟଙ୍କର ॥୧୨୫

ପଛେ ଭୁଞ୍ଜିବି ପୁଣ୍ୟ ମୁହିଁ ।
ଯମ ବୋଇଲେ ଦୂତେ ରାଇ ॥୧୨୬
ବ୍ରହ୍ମସ୍ୱ-ପାପ ମହାଘୋର ।
ଏହାକୁ କୃକଳାଶ କର ॥୧୨୭
ବନ-ଗହନ ଅନ୍ଧକୂପେ ।
ଅନେକ କାଳ ଥାଉ ପାପେ ॥୧୨୮
ଏମନ୍ତ ବେଲୁଁ ବୋଲୁଁ ଯମ ।
ଲଭିଲି କୃକଳାଶ ଜନ୍ମ ॥୧୨୯
ଆତ୍ମ-ସଂଯୋଗ କାଳେ ମୁହିଁ ।
ଡାକିଲି କର ମୋତେ ତ୍ରାହି ॥୧୩୦
ତା ଶୁଣି ଯମ ଦୟା କଲା ।
ପ୍ରସନ୍ନେ ମୋତେ ଆଜ୍ଞା ଦେଲା ॥୧୩୧
ଏ ପାପଅନ୍ତେ ମହୀପାଳ ।
ଭେଟିବୁ ମଦନଗୋପାଳ ॥୧୩୨
ସେ କୃଷ୍ଣ-କର ଲାଗି ତୁହି ।
ତକ୍ଷଣେ ଦିବ୍ୟତନୁ ବହି ॥୧୩୩
ସ୍ୱର୍ଗେ ବସିବୁ ପୁଣ୍ୟବଳେ ।
ନିଜ ସୁକୃତ-ତପଫଳେ ॥୧୩୪
ଭୋନାଥ ତୋର ଆଜ୍ଞାବଳେ ।
କହିଲି ପଦ୍ମପାଦ ତଳେ ॥୧୩୫
ବିପ୍ରସେବକ ସମ ମତି ।
ତୋହର ପାଦେ ଚିତ୍ତବୃତ୍ତି ॥୧୩୬
ଏଣୁ ତୋହର ଦରଶନ ।
ନିରତେ ଚିନ୍ତଇ ମୋ ମନ ॥୧୩୭
ଜାତି ସୁମରି ଦୁଃଖ ସହି ।
ଏ ଅନ୍ଧକୂପେ ପଡ଼ିଲଇଁ ॥୧୩୮
ଏବେ ଦେଖିଲି ତୋ ଶ୍ରୀମୁଖ ।
ଖଣ୍ଡିଲି ଜନ୍ମବନ୍ଧ-ଦୁଃଖ ॥୧୩୯
ଏ ପାପୁଁ ଉଦ୍ଧରିଲୁ ମୋତେ ।
କି ପୁଣ୍ୟେ ଦେଖିଲି ମୁଁ ତୋତେ ॥୧୪୦
ଭୋ ନାଥ ଚରଣ ତୋହର ।
ଯୋଗେଶ୍ୱରଙ୍କୁ ଅଗୋଚର ॥୧୪୧
ନିଜ ଅର୍ଜିତ ଦୃଢ଼ବନ୍ଧେ ।
ପାପ-ପଟଳ-ଚକ୍ଷୁ ଅନ୍ଧେ ॥୧୪୨
ମୁଁ ଅନ୍ଧକୂପ ମଧ୍ୟେ ଥାଇ ।
ଅନେକକାଳ ଦୁଃଖ ସହି ॥୧୪୩

Dr. Sudhanshu Sekhar Mishra

ପାଇଲି ତବ ଦରଶନ ।
ଭୋ ନାଥ ରଖ ଭଗବାନ ॥୧୪୪
ଯାର ଦର୍ଶନେ ବନ୍ଧ ମୋକ୍ଷ ।
ସେ ମୋତେ ହୋଇଲା ପ୍ରତ୍ୟକ୍ଷ ॥୧୪୫
ତୁ ଦେବଦେବ ଜଗନ୍ନାଥ ।
ସୁହୃଦ ଆତ୍ମା ଦଇବତ ॥୧୪୬
ଗୋବିନ୍ଦ ପୁରୁଷ-ପୁରାଣ ।
ତୁ ହୃଷିକେଶ ନାରାୟଣ ॥୧୪୭
ଅବ୍ୟୟ ଅଚ୍ୟୁତ ପ୍ରକାଶ ।
ତୋର ଚରିତ ପୁଣ୍ୟଯଶ ॥୧୪୮
ଏବେ ତୁ ଆଜ୍ଞାଦିଅ ମୋତେ ।
ନିଶ୍ଚିନ୍ତେ ଯିବି ପୁଣ୍ୟପଥେ ॥୧୪୯
ଯହିଁ ମୁଁ ଥିବି ଦେହ ବହି ।
ତୋର ଶରଣ ଭାବଗ୍ରାହୀ ॥୧୫୦
ତୋ ପାଦେ ମୋର ମନ ଥିବ ।
ଯାହା ନ ପାନ୍ତି ବ୍ରହ୍ମା-ଶିବ ॥୧୫୧
ନମସ୍ତେ ସର୍ବଭୂତ-ଦେହୀ ।
ବ୍ରହ୍ମ ଅନନ୍ତଶକ୍ତି ତୁହି ॥୧୫୨
ଶ୍ରୀକୃଷ୍ଣ ବସୁଦେବସୁତ ।
ତୁ ଯୋଗେଶ୍ୱର ଯୋଗତତ୍ତ୍ୱ ॥୧୫୩
ଏମନ୍ତ କହି ନୃଗରାଜା ।
କୃଷ୍ଣଚରଣେ କଲା ପୂଜା ॥୧୫୪
କିରୀଟ ଅଛି ଶିର ମଧ୍ୟେ ।
ନମିଲା କୃଷ୍ଣ ପଦ୍ମପାଦେ ॥୧୫୫
ତକ୍ଷଣେ ବସି ଦିବ୍ୟରଥେ ।
ବିଜୟ କଲା ଶୂନ୍ୟପଥେ ॥୧୫୬
ଦେଖନ୍ତି ଦିଗପାଳେ ମିଳି ।
ଜଳଦେ ଯେସନେ ବିଜୁଳି ॥୧୫୭
ରାଜା ମିଳିଲା ସ୍ୱର୍ଗପୁରେ ।
ଗୋବିନ୍ଦ ଅନ୍ଧକୂପ ଦ୍ୱାରେ ॥୧୫୮
ସ୍ୱଜନ ଚାହିଁ ଜନାର୍ଦ୍ଦନ ।
ବୋଲନ୍ତି ନିଗମ ବଚନ ॥୧୫୯
କ୍ଷତ୍ରୀୟ-ଶିକ୍ଷା ଧର୍ମବାଣୀ ।
ଯେ ଧର୍ମଶାସ୍ତ୍ର ପରିମାଣି ॥୧୬୦
ବିପ୍ର-ବତ୍ସଳ ଦାମୋଦର ।
ବୋଲନ୍ତି ଶୁଣ ସର୍ବବୀର ॥୧୬୧

ଦେଖ ଦୁର୍ଜୟ ବ୍ରହ୍ମଧନ ।
ଅନଳେ ନୁହଇ ଦହନ ॥୧୬୨
ରାଜାଈଶ୍ୱର ରାଜା ହୋଇ ।
କେ ପାର କରେ ତାହା ଖାଇ ॥୧୬୩
ଗରଳ ହଳାହଳ ବିଷ ।
ମୁଁ ତାହା ମଣଇ ଉଶ୍ୱାସ ॥୧୬୪
ଯାହାର ପ୍ରତିକାର ଥାଇ ।
ତାର ଭକ୍ଷଣେ ଭୟ ନାହିଁ ॥୧୬୫
ବ୍ରହ୍ମସ୍ୱ ମହାବିଷ ହୋଇ ।
ତାହାର ପ୍ରତିକାର ନାହିଁ ॥୧୬୬
ବିଷ ଭକ୍ଷିଲେ ଜଣେ ମରେ ।
ବ୍ରହ୍ମସ୍ୱ ବଂଶନାଶ କରେ ॥୧୬୭
ଯେ ବନ ଦହଇ ଅନଳ ।
ରକ୍ଷା କରଇ ତହିଁ ଜଳ ॥୧୬୮
ବ୍ରହ୍ମସ୍ୱ-ଅଗ୍ନି ଏ ସଂସାରେ ।
ସମୂଳେ ବଂଶ ନାଶ କରେ ॥୧୬୯
ବ୍ରହ୍ମସ୍ୱ-ଅଗ୍ନି ତେଜ ଯେତେ ।
କେ ଲଘି ପାରିବ ଜଗତେ ॥୧୭୦
ବ୍ରାହ୍ମଣଧନ ଯେହୁ ଗ୍ରାସେ ।
ତିନିପୁରୁଷ ତାର ନାଶେ ॥୧୭୧
ତାତ ଜନନୀ ବେନିବଂଶ ।
ଉଭୟକୁଳ କରେ ନାଶ ॥୧୭୨
ଆତ୍ମା ସହିତେ କରେ ନାଶ ।
ଏ କଥା ବେଦରେ ପ୍ରକାଶ ॥୧୭୩
ବ୍ରାହ୍ମଣଧନ ଯେହୁ ହରେ ।
ପଡ଼େ ନରକ ତମଘୋରେ ॥୧୭୪
କ୍ଷତ୍ରିୟ ରାଜପଣ ପାଇ ।
ଆତ୍ମାର ଗତି ନ ଜାଣଇ ॥୧୭୫
ବ୍ରାହ୍ମଣଧନ ସ୍ୱାଦୁ ମଣି ।
ବଳେ ହରନ୍ତି ଯେତେ ପ୍ରାଣୀ ॥୧୭୬
ନିରତେ ସୁଖ ପ୍ରାୟ ମଣି ।
ପଡ଼ନ୍ତି ତମ-ତରଙ୍ଗିଣୀ ॥୧୭୭
ବ୍ରାହ୍ମଣବୃତ୍ତି ଯେବେ ବଳେ ।
କ୍ଷତ୍ରିୟେ ହରେ ବାହୁବଳେ ॥୧୭୮
ଅନ୍ନ ନ ପାଇ ବିପ୍ରଜନ ।
ବିକଳେ କରନ୍ତି ରୋଦନ ॥୧୭୯

ବିପ୍ରରୋଦନ ଲୁହ ପଡ଼ି ।
ଭୂମିରେ ଯେତେ ରେଣୁ ଜଡ଼ି ॥୧୮୦
ତାବତ କଳ୍ପ ମହାଘୋରେ ।
ନରକେ ପଡ଼ଇ ନିର୍ଭରେ ॥୧୮୧
ସେ ନିରଙ୍କୁଶ ହୋଇ ନର୍କେ ।
ଅନ୍ତେ ପଡ଼ଇ କୁମ୍ଭୀପାକେ ॥୧୮୨
ସ୍ୱଦତ୍ତ-ପରଦତ୍ତ-ବୃତ୍ତି ।
ଯେ ଅବା ଅଜ୍ଞାନେ ହରନ୍ତି ॥୧୮୩
ଷାଠିଏ-ସହସ୍ର-ବରଷ ।
ବିଷ୍ଠାରେ କୃମି ରୂପେ ବାସ ॥୧୮୪
ମୋହର ବଂଶେ ଯେତେ ଜନ ।
ବଳେ ହରିବେ ବିପ୍ରଧନ ॥୧୮୫
ତାହାର ନାହିଁ ଭଲ ଗତି ।
ହସି ବୋଲନ୍ତି ଶିରୀପତି ॥୧୮୬
ମୋହର ବଂଶେ ଯେତେ ଜନ ।
ବିପ୍ରେ ନ କର ଅପମାନ ॥୧୮୭
ବ୍ରାହ୍ମଣେ କଲେ ଅପରାଧ ।
ବେଗେ ବନ୍ଦିବ ତାଙ୍କ ପାଦ ॥୧୮୮
ମାରନ୍ତେ ଶାନ୍ତିରେ ସହିବ ।
କେବେହେଁ କୋପ ନ କରିବ ॥୧୮୯
ବିପ୍ର ଗ୍ରାସିବ ଲୋଭେ ଯାହା ।
ସାତ୍ୱିକମତେ ଦେବ ତାହା ॥୧୯୦
ମୁହିଁ ଯେମନ୍ତ ବିପ୍ରପାଦେ ।
ସର୍ବଦା ନମଇଁ ଆନନ୍ଦେ ॥୧୯୧
ତୁମ୍ଭେ ନମିବ ସେହିମତେ ।
ନୋହିଲେ ଦଣ୍ଡ ମୋର ହସ୍ତେ ॥୧୯୨
ଅପହରଣେ ବିପ୍ରଧନ ।
ନିଶ୍ଚୟେ ନରକେ ପତନ ॥୧୯୩
ଅଜ୍ଞାନେ ନୃଗରାଜା ହରି ।
ଏତେ ନରକ ଭୋଗ କରି ॥୧୯୪
ଯେଣୁ ତାହାର ପୁଣ୍ୟ ଥିଲା ।
ମୋହର ହସ୍ତେ ସେ ଲାଗିଲା ॥୧୯୫
ଦେଖିଲ ତୁମ୍ଭେ ମୋର ଆଗେ ।
କହି ଚଳିଲା ସ୍ୱର୍ଗମାର୍ଗେ ॥୧୯୬
ଏମନ୍ତ କହି ନିଜ ଜନେ ।
ମୁକୁନ୍ଦ ମିଳିଲେ ସଦନେ ॥୧୯୭

Dr. Sudhanshu Sekhar Mishra

ଯାହାର ନାମ ପାପବନ ।
ଶ୍ରବଣେ କରଇ ଦହନ ॥୧୧୯୮
ଶୁଣ ହୋ ଅଭିମନ୍ୟୁବାଳ ।
ସାଧୁଙ୍କ ଦରଶନ ଫଳ ॥୧୧୯୯
ନୃଗ ନରକୁ ପାର ହେଲା ।
ଦେବଭୁବନେ ଭୋଗ କଲା ॥୧୨୦୦
ସାଧୁଙ୍କ ମୁଖ ଦରଶନ ।
ଯେ କରେ ଶ୍ରବଣ କୀର୍ତ୍ତନ ॥୧୨୦୧
ସ୍ତୁତିବଚନ ଅଙ୍ଗସଙ୍ଗ ।
ପବିତ୍ରକରେ ନିଜ ଅଙ୍ଗ ॥୧୨୦୨
ଲଭେ କୋଟିଏ ତୀର୍ଥଫଳ ।
ଯେ କରେ ସାଧୁସଙ୍ଗେ ମେଳ ॥୧୨୦୩
ତୁ ଏହା ଜାଣି ସାଧୁମେଳେ ।
ଏ କାଳ ବଞ୍ଚ ସୁଖଭୋଳେ ॥୧୨୦୪
ବ୍ରାହ୍ମଣଧନ ତୁ ନ ହର ।
ଅମୃତେ ଇଚ୍ଛା ଯେବେ ତୋର ॥୧୨୦୫
ବୋଲଇ ବିପ୍ର ଜଗନ୍ନାଥ ।
ନିବେଶି କୃଷ୍ଣପାଦେ ଚିତ୍ତ ॥୧୨୦୬
ଭବଜଳଧି ମଧ୍ୟେ ଥାଇ ।
ଭାବ ଅଭାବ ନ ଜାଣଇ ॥୧୨୦୭
ସୁଜନେ କୃଷ୍ଣପାଦେ ରସ ।
କହଇ ଜଗନ୍ନାଥ ଦାସ ॥୧୨୦୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ନୃଗ
ଉପାଖ୍ୟାନଂ ନାମ
ଏକୋନସପ୍ତତିତମ ଅଧ୍ୟାୟଃ ॥

---

## ସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ କୁରୁବୀର ।
ଦ୍ୱାରକାପୁରେ ହଳଧର ॥୧
ସୁହୃଦ ଦରଶନ ସଧେ ।
ବିଜୟ ତାଳଧ୍ୱଜ ମଧେ ॥୨
ନିଜ ସେବକ ସଙ୍ଗମେଳେ ।
ମିଳିଲେ ନନ୍ଦର ଗୋକୁଳେ ॥୩
ରାମର ଆଗମନ ଶୁଣି ।
ଗୋପାଳେ ଗୋପର ତରୁଣୀ ॥୪
ମିଳିଲେ ରାମର ଛାମୁରେ ।
ମଙ୍ଗଳଦ୍ରବ୍ୟ ଘେନି କରେ ॥୫
ଆନନ୍ଦେ ରୋହିଣୀନନ୍ଦନ ।
ଗୋପଙ୍କୁ କଲେ ଆଲିଙ୍ଗନ ॥୬
ଗୋପୀ ମିଳିଲେ ଭାବଭରି ।
ରାମଚରଣ ହୃଦେ ଧରି ॥୭
ଶିର-ବଦନେ ଚାପି ପାଦ ।
ଛାଡ଼ିଲେ ଚିର ମନଖେଦ ॥୮
ହରଷେ ରେବତୀରମଣ ।
ବନ୍ଦିଲେ ନନ୍ଦରଚରଣ ॥୯
ଯଶୋଦା ପାଦତଳେ ପଡ଼ି ।
ଶୋକବଦନେ କରଯୋଡ଼ି ॥୧୦
ନନ୍ଦଯଶୋଦା ସୁଖଭୋଳେ ।
ରାମଙ୍କୁ ବସାଇଲେ କୋଳେ ॥୧୧
ଚିରବିଚ୍ଛେଦେ ହୃଦେ ଜାକି ।
ଅଶ୍ରୁପୂରିତ ବେନି ଆଖି ॥୧୨
ବଦନୁ ନ ସ୍ଫୁରେ ବଚନ ।
ନିବିଡ଼େ କଲେ ଆଲିଙ୍ଗନ ॥୧୩
ବୋଲନ୍ତି ଶୋକଭର ହୋଇ ।
ଜଗଦୀଶ୍ୱର ତୁମ୍ଭେ ଦୁଇ ॥୧୪
ନିରାଶ କଲ ମୋର ଘର ।
ମୁଁ ଏବେ ଶରଣ ତୁମ୍ଭର ॥୧୫
ଗୋପନଗର ବୃଦ୍ଧ ଜଣେ ।
ମିଳିଲେ ରାମ ସନ୍ନିଧାନେ ॥୧୬
ରାମ ନମିଲେ ଜଣେ ଜଣେ ।
ଗୋପାଳବୃଦ୍ଧଙ୍କ ଚରଣେ ॥୧୭
ତୁଲ୍ୟବୟସ ଗୋପଜନେ ।
ସଙ୍ଗେ ଯେ ଥିଲେ ବୃନ୍ଦାବନେ ॥୧୮
ରାମଙ୍କୁ ଦେଖି ସ୍ନେହଭରେ ।
କୋଳ କରନ୍ତି ସୁଖଭୋଳେ ॥୧୯
ସ୍ନେହବନ୍ଧନେ ବନ୍ଧୁସଙ୍ଗେ ।
ରାମ ଯେ ଥିଲେ ନାନାରଙ୍ଗେ ॥୨୦
ନିବିଡ଼େ ଭିଡ଼ି କୋଳ କଲେ ।
ଆନନ୍ଦସାଗରେ ବୁଡ଼ିଲେ ॥୨୧
ଏମନ୍ତେ ଜଣେ ଜଣେ କୋଳ ।
କରି ବସିଲେ ଏକମେଳ ॥୨୨
କ୍ଷୀର-ପାୟସ-ମଧୁରସେ ।
ରାମଙ୍କୁ ଭୁଞ୍ଜାଇ ହରଷେ ॥୨୩
ବିଶ୍ରାମ କରାଇ ଗୋପାଳେ ।
ବସି ପୁଚ୍ଛନ୍ତି ଏକମେଳେ ॥୨୪
ନେତ୍ରେ ପୂରିତ ଅଶ୍ରୁଜଳ ।
ପୁଚ୍ଛନ୍ତି ବନ୍ଧୁଙ୍କ କୁଶଳ ॥୨୫
କୃଷ୍ଣଚରଣେ ମନ ଦେଇ ।
ସମ୍ଭ୍ରମେ ନ ପାରନ୍ତି କହି ॥୨୬
ବିଷୟସୁଖ ନ ଜାଣନ୍ତି ।
କୃଷ୍ଣକୁଶଳ ପଚାରନ୍ତି ॥୨୭
ହେ ରାମ କମଳଲୋଚନ ।
କହ ତୁ ଯାଉ ଖେଦମନ ॥୨୮
କୃଷ୍ଣ ଯେ ଗଲେ ମଧୁବନ ।
ତାର ସଙ୍ଗତେ ଆମ୍ଭ ମନ ॥୨୯
ବନ୍ଦୀ ହୋଇଲା ପ୍ରେମଡୋଳେ ।
ଏବେ ନ ଦେଖୁ ଚର୍ମଡୋଳେ ॥୩୦
ପୁତ୍ର କଳତ୍ର ଧନ ପାଇ ।
ଆମ୍ଭ ସ୍ମରଣ ତାର କାହିଁ ॥୩୧
ଆମ୍ଭର ଭାଗ୍ୟେ ମଲା କଂସ ।
ନିଶ୍ଚିନ୍ତ ହେଲା ଯଦୁବଂଶ ॥୩୨

Dr. Sudhanshu Sekhar Mishra

ସକଳ ରିପୁବଳ ମାରି ।
ଦ୍ୱାରକାପୁରେ ବିଜେ କରି ।।୩୩
ସୁଖେ ଅଛନ୍ତି ଯଦୁନାଥ ।
ଏଣୁଟି ଆମ୍ଭେ ଭାଗ୍ୟବନ୍ତ ।।୩୪
ଗୋପୀଏ ରାମଙ୍କୁ ଅନାଇଁ ।
ବୋଲନ୍ତି ସ୍ନେହଭର ହୋଇ ।।୩୫
ହେ ରାମ କହ କୃଷ୍ଣକଥା ।
ଯେଣେ ଛାଡ଼ିବ ମନୁ ବ୍ୟଥା ।।୩୬
ଭଲେ କି ଛନ୍ତି ପଦ୍ମନାଭ ।
ମଧୁରାନାରୀଙ୍କ ବଲ୍ଲଭ ।।୩୭
ମାତା ଯଶୋଦା ନନ୍ଦ ପିତା ।
ଏହାଙ୍କୁ କରେଟିକି ଚିନ୍ତା ।।୩୮
ଆମ୍ଭେ ତାହାଙ୍କୁ ଭଲେ ଜାଣି ।
ସୁହୃଦ୍‌ପଣେ ପରିମାଣି ।।୩୯
ତାହାର ଅର୍ଥେ ଆମ୍ଭ ଦୁଃଖ ।
କହିବୁ ଶୁଣ ଚନ୍ଦ୍ରମୁଖ ।।୪୦
ମାତା ପିଅର ଭ୍ରାତୃଗଣ ।
ପତି ତନୟ ଗୁରୁଜନ ।।୪୧
ତାର ଆନନ୍ଦେ ଆମ୍ଭେ ଛାଡ଼ି ।
ନିରତେ ପ୍ରିୟଭାବେ ବୁଡ଼ି ।।୪୨
ସକଳ ଛାଡ଼ି ତା ବିଶ୍ୱାସ ।
ହୋଇଲୁ କଲା ସେ ନିରାଶ ।।୪୩
କ୍ଷଣକେ ଛାଡ଼ି ଆମ୍ଭ ଭାବ ।
ନିର୍ଦ୍ଦୟ ହୋଇଲେ ମାଧବ ।।୪୪
ମଥୁରାପୁର ବଧୂଜନ ।
ମଧୁରେ କହନ୍ତି ବଚନ ।।୪୫
କ୍ଷଣସୁହୃଦ କୂଟମତି ।
କେମନ୍ତେ ବିଶ୍ୱାସ କରନ୍ତି ।।୪୬
ତାହାର ଆତ୍ମା ତାର ନୋହେ ।
ଭକତଜନ ତାକୁ ମୋହେ ।।୪୭
କୃତଘ୍ନଭାବ ଦୁଷ୍ଟମତି ।
ମଥୁରାନାରୀ ନ ଜାଣନ୍ତି ।।୪୮
ତାହାର ବିଚିତ୍ରବଚନ ।
ସସ୍ମିତ ଅନଙ୍ଗବର୍ଦ୍ଧନ ।।୪୯
ଦେଖିଲେ ହୋଏ ମୋହଗତ ।
ଅନଙ୍ଗବାଣେ ଜଡ଼ି ଚିତ୍ତ ।।୫୦

କେତେ କହିବୁ ତାର ଗୁଣ ।
ବୋଲନ୍ତି ସଖୀଜନେ ଶୁଣ ।।୫୧
ତାହାର କଥା କିମ୍ପା କହ ।
ଶୁଣନ୍ତେ ଦହେ ପ୍ରାଣ ଦେହ ।।୫୨
ଆମ୍ଭେ ଯେ ନାହୁଁ ତାର ସଙ୍ଗେ ।
ଏତେ ଦିବସ ନାନାରଙ୍ଗେ ।।୫୩
ସେ ଯେ ଆମ୍ଭର ସଙ୍ଗେ ନାହିଁ ।
କାଳ କି ଅଛି ସ୍ଥିର ହୋଇ ।।୫୪
ଏମନ୍ତ ସ୍ନେହଭର ହୋଇ ।
କୃଷ୍ଣର ରୂପେ ମନ ଦେଇ ।।୫୫
କୃଷ୍ଣର ହସିତବଦନ ।
ମୋହନ ଗଭୀର ବଚନ ।।୫୬
କଟାକ୍ଷଦୃଷ୍ଟି ଚିତ୍ରଗତି ।
ପ୍ରେମ ଆଲିଙ୍ଗନ ସୁରତି ।।୫୭
କାନ୍ଦନ୍ତି କୃଷ୍ଣଭାବ ବହି ।
ସଙ୍କରଷଣ ତାହା ଚାହିଁ ।।୫୮
କୃଷ୍ଣର ଯଶକଥାମାନ ।
କହି ତୋଷିଲେ ତାଙ୍କ ମନ ।।୫୯
ନାନା ବିଶ୍ୱାସବାକ୍ୟେ ରାମ ।
ଗୋପୀଙ୍କ ଚିତ୍ତ କଲେ ସାମ ।।୬୦
ସେ ରାମ ଗୋପୀଙ୍କ ବିଶ୍ୱାସ ।
ଗୋପେ ରହିଲେ ବେନିମାସ ।।୬୧
ମଧୁମାଧବ ମାସ ବେନି ।
ଗୋପୀଙ୍କ ପ୍ରିୟଭାବ ଘେନି ।।୬୨
ସେ ରାମ ଯୋଗମାୟା ବଳେ ।
ଗୋପକାମିନୀ ସଙ୍ଗ ମେଳେ ।।୬୩
ନିତ୍ୟେ ରଜନୀକାଳ ବେଳେ ।
ଗୋପକାମିନୀ ସଙ୍ଗେ ଖେଳେ ।।୬୪
ବିସ୍ତାରି ଯୋଗମାୟା ଗତି ।
ଯମୁନାକୂଳେ ଯଦୁପତି ।।୬୫
ଚନ୍ଦ୍ରକିରଣ ବୃନ୍ଦାବନ ।
ସୁଗନ୍ଧ ବହଇ ପବନ ।।୬୬
କାମିନୀଗମ ମଧ୍ୟେ ବସି ।
ତାରାମଣ୍ଡଳେ ଯେହ୍ନେ ଶଶୀ ।।୬୭
ଏମନ୍ତେ ପରୀକ୍ଷିତ ଶୁଣ ।
ଜଳଧିପତି ଯେ ବରୁଣ ।।୬୮

ବାରୁଣୀ ନାମେ ତା ନନ୍ଦିନୀ ।
ରାମର ପ୍ରିୟଭାବ ଘେନି ।।୬୯
ବରୁଣ-ବିଶ୍ୱାସ ବଚନେ ।
ବେଗେ ମିଳିଲା ବୃନ୍ଦାବନେ ।।୭୦
ବୃକ୍ଷକ୍ରୋଟରୁ ସୁଧାରୂପେ ।
ବହିଲା ରାମର ସମୀପେ ।।୭୧
ତାର ସୁଗନ୍ଧେ ବନ ବାସେ ।
ରାମ ମିଳିଲେ ଦେଖି ପାଶେ ।।୭୨
ଗୋପୀ ସହିତେ ବଳରାମ ।
ଆନନ୍ଦେ କଲେ ମଧୁପାନ ।।୭୩
ବାରୁଣୀପାନେ ଭୋଳ ହୋଇ ।
ଗୋପୀଏ ରାମ ଯଶ ଗାଇ ।।୭୪
ନାନା କୌତୁକେ ସେ କାନନେ ।
ରାମଙ୍କୁ ସେବି ଶୁଦ୍ଧମନେ ।।୭୫
ଢୁଲନ୍ତି ରାମ ବୃକ୍ଷତଳେ ।
ବାରୁଣୀପାନେ ମତ୍ତଭୋଳେ ।।୭୬
ମଦ୍ୟେ ମୁଦ୍ରିତ ବେନି ଆଖି ।
ମତ୍ତକୁଞ୍ଜର ପ୍ରାୟ ଲକ୍ଷ୍ୟ ।।୭୭
ଶୋଭିତ ଶ୍ରବଣେ କୁଣ୍ଡଳ ।
ହୃଦେ ଲମ୍ବଇ ବନମାଳ ।।୭୮
ମୁଖକମଳେ ମନ୍ଦହାସ ।
ଝାଳେ ଜଡ଼ିତ ନୀଳବାସ ।।୭୯
ରବିକିରଣେ ଶ୍ରମ ପାଇ ।
ବୋଲନ୍ତି ଯମୁନାକୁ ଚାହିଁ ।।୮୦
ଆସ କାଳିନ୍ଦୀ ମୋର ପାଶ ।
ସକଳ ଶ୍ରମ କର ନାଶ ।।୮୧
ତୋ ଜଳେ କରି ଅବଗାହ ।
ଶ୍ରମ ନ ରହୁ ମୋର ଦେହ ।।୮୨
ଯମୁନା ରାମବାଣୀ ଶୁଣି ।
ମଦିରାମତ୍ତ ପ୍ରାୟ ମଣି ।।୮୩
ଅବଜ୍ଞା କରି ରାମବାଣୀ ।
ତରଳେ ବହେ ତରଙ୍ଗିଣୀ ।।୮୪
ତା ଦେଖି ରାମ କୋପଭରେ ।
ତୀକ୍ଷ୍ଣ ଲଙ୍ଗଳ ଧରି କରେ ।।୮୫
କାଳିନ୍ଦୀ ମଧ୍ୟେ ହଳ ସ୍ଥାପି ।
କୋପେ ବୋଲନ୍ତି ବିଶ୍ୱରୂପୀ ।।୮୬

Dr. Sudhanshu Sekhar Mishra

ରେ ପାପୀ ଏଡ଼େ ଗର୍ବ ତୋର ।
ଅବଜ୍ଞା କଲୁ ବାକ୍ୟ ମୋର ।।୮୭
ତୁ ମୋତେ କରୁ ଅବହେଳ ।
ଆଜ ପାଇବୁ ପ୍ରତିଫଳ ।।୮୮
ଲଙ୍ଗଳ ଅଗ୍ରେ ତୋତେ ଧରି ।
କାଟିବି ଶତଖଣ୍ଡ କରି ।।୮୯
ନିଶ୍ଚେ ମରିବୁ ଆଜ ତୁହି ।
ଆଜ୍ଞା ଭାଙ୍ଗିଲୁ ଗର୍ବ ବହି ।।୯୦
ଏମନ୍ତ ରାମବାକ୍ୟ ଶୁଣି ।
ଭୟେ ବୋଲଇ ତରଙ୍ଗିଣୀ ।।୯୧
ଲହରୀ ବ୍ୟାଜେ ବେନିକରେ ।
ମିଳିଲା ରାମର ପୟରେ ।।୯୨
କମଳ ଉପହାର ମୁଖେ ।
ରାମଙ୍କୁ ବୋଲେ ଭୟଦୁଃଖେ ।।୯୩
ହେ ରାମ ରାମ ମହାଭୁଜ ।
ମୁହିଁ ନ ଜାଣେ ତୋର ତେଜ ।।୯୪
ତୋହର ଏକ ଅଂଶେ ମହୀ ।
ମୁକୁଟ ଶିରେ ଅଛି ହୋଇ ।।୯୫
ଜଗତପତି ମହୀଧର ।
ଭୋ ନାଥ ଶରଣ ମୁଁ ତୋର ।।୯୬
ତୋର ମହିମା ଭଗବାନ ।
ନ ଜାଣି କଲି ଅବଜ୍ଞାନ ।।୯୭
ପଶିଲି ତୋହରେ ଶରଣେ ।
ସୁନ୍ଦର ଅଭୟଚରଣେ ।।୯୮
ତୁ ନାଥ ଭକତବତ୍ସଳ ।
ଶରଣ ରଖ ଆଦିମୂଳ ।।୯୯
ଏମନ୍ତ ନଦୀବାକ୍ୟ ଶୁଣି ।
ହଳ ସଂହରି ହଳପାଣି ।।୧୦୦
ସକଳ ଗୋପନାରୀ ମେଳେ ।
ପଶିଲେ ଯମୁନାର ଜଳେ ।।୧୦୧
କରିଣୀଯୂଥେ ଗଜବର ।
ଯେହ୍ନେ ଦିଶଇ ମନୋହର ।।୧୦୨
ନିଶ୍ଚିନ୍ତେ ଜଳକ୍ରୀଡ଼ା ସାରି ।
ନିର୍ମଳ ନୀଳବସ୍ତ୍ର ଘେନି ।।୧୦୩
ତକ୍ଷଣେ ରବିର ନନ୍ଦିନୀ ।
ନିର୍ମଳ ନୀଳବସ୍ତ୍ର ଘେନି ।।୧୦୪
ରାମର କରେ ଦେଲା ଆଣି ।
ଭୂଷଣ ନାନାରତ୍ନମଣି ।।୧୦୫
ନୀଳକମଳମାଳ ଗଳେ ।
ଦେଇ ନମିଲା ପାଦତଳେ ।।୧୦୬
ନୀଳବସନ ଅନୁପମ ।
ଆନନ୍ଦେ ପିନ୍ଧି ବଳରାମ ।।୧୦୭
ଭୂଷଣ ନାନାରତ୍ନକୁଳ ।
ହୃଦେ ଲମ୍ବାଇ ବନମାଳ ।।୧୦୮
ଗନ୍ଧ ଚନ୍ଦନ ଲେପି ଦେହେ ।
ଦିଶିଲେ ଇନ୍ଦ୍ରହସ୍ତୀ ପ୍ରାୟେ ।।୧୦୯
ଶୁଣ ହେ ଅଭିମନ୍ୟୁସୁତ ।
ଯମୁନାକୂଳେ ରାମକୃତ୍ୟ ।।୧୧୦
ଅଦ୍ୟାପି ବୃନ୍ଦାବନ ଦେଶେ ।
ଯମୁନା ବକ୍ରେ ବହି ଆସେ ।।୧୧୧
ଅନନ୍ତବଳୀ ବଳରାମ ।
ତାର ଚରିତ ଅନୁପମ ।।୧୧୨
ଯମୁନାତଟେ ବୃନ୍ଦାବନେ ।
ଏବେ ତୁ ଶୁଣ ସାବଧାନେ ।।୧୧୩
ଏମନ୍ତ କରି କ୍ରୀଡ଼ାରସ ।
ରାମ ରହିଲେ ବେନିମାସ ।।୧୧୪
ଯେତେ ରଜନୀ ବେନିମାସେ ।
ଗୋପୀଏ ବୃନ୍ଦାବନ ଦେଶେ ।।୧୧୫
ରାମର ପ୍ରିୟଭାବେ ମିଶି ।
ଜାଣନ୍ତି ଗଲା ଏକ ନିଶି ।।୧୧୬
ସେ ରାମ ପାଦପଦ୍ମତଳେ ।
ସୁଜନେ ଚିନ୍ତ ଧ୍ୟାନବେଳେ ।।୧୧୭
ଅନନ୍ତ ଚରିତ ଅମୃତ ।
କହଇ ବିପ୍ର ଜଗନ୍ନାଥ ।।୧୧୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ବଳଦେବ
ବିଜୟେ ଯମୁନାକର୍ଷଣଂ ନାମ
ସପ୍ତତିତମ ଅଧ୍ୟାୟଃ ।।

---

## ଏକ ସପ୍ତତିତମ ଅଧ୍ୟାୟ

ଆନନ୍ଦମନେ ବ୍ୟାସସୁତ ।
ବୋଲନ୍ତି ଶୁଣ ପରୀକ୍ଷିତ ।।୧
ଗୋପେ ଯେ ଗଲେ ହଳହସ୍ତ ।
ଏବେ ହୋ ଶୁଣ ଭାଗବତ ।।୨
ପୌଣ୍ଡ୍ରକ ନାମେ ନୃପବର ।
କରୁଷ ଦେଶେ ତାର ଘର ।।୩
କୃଷ୍ଣର ଜନ୍ମକର୍ମବାଣୀ ।
ଶୁଣି ନିରତେ ମନେ ଗୁଣି ।।୪
ନିର୍ଗୁଣବ୍ରହ୍ମ ଯେବେ ଅଂଶେ ।
ଜନ୍ମ ହୋଇଲେ ଯଦୁବଂଶେ ।।୫
କେମନ୍ତେ ଦେଖିବି ଲୋଚନେ ।
ନିତ୍ୟେ ଭାବଇ ଶୁଦ୍ଧମନେ ।।୬
ଏତେ ବିଚାରି ହୃଷ୍ଟମନ ।
ଶରୀରେ ବହେ କୃଷ୍ଣଚିହ୍ନ ।।୭
ନିଜଜନଙ୍କୁ ପାଶେ ରାଇ ।
ବୋଲଇ ବିଶ୍ୱାସ କରାଇ ।।୮
ଅଟଇ ମୁହିଁ ବାସୁଦେବ ।
ମୋର ଚରଣେ ତୁମ୍ଭେ ସେବ ।।୯
ତୁମ୍ଭେ ତ ପ୍ରଜାଜନେ ମୋର ।
ଦେଖ ମୋହର ବର୍ଣ୍ଣ ଚିହ୍ନ ।।୧୦
ମୁହିଁଟି ଦେବ ଜନାର୍ଦ୍ଦନ ।
ଦେଖ ମୋହର ବର୍ଣ୍ଣ ଚିହ୍ନ ।।୧୧
ଏମନ୍ତ ପ୍ରଜାଗଣେ କହି ।
କୃଷ୍ଣର ପ୍ରାୟ ସଜ ହୋଇ ।।୧୨

Dr. Sudhanshu Sekhar Mishra

ବହଇ କୃଷ୍ଣର ସ୍ୱଭାବ ।
ବୋଲଇ ମୁହିଁ ବାସୁଦେବ ॥୧୩

ଯେ ମୋତେ ନ ବୋଲିବ ହରି ।
ତାହାକୁ ପକାଇବି ମାରି ॥୧୪

ଧନ ସମ୍ପଦ ନେବି ବଳେ ।
ତା ଶୁଣି ପ୍ରଜାଏ ବିକଳେ ॥୧୫

ବୋଲନ୍ତି ତୁ ସେ ନାରାୟଣ ।
ଅନାଦି ପରମକାରଣ ॥୧୬

ତୋହର ଅଂଶେ ସୁରଦେବା ।
ତୋର ଚରଣେ ଆମ୍ଭ ସେବା ॥୧୭

ଏମନ୍ତେ ପ୍ରଜା ତାର ପୁରେ ।
ବିଶ୍ୱାସେ ସେବନ୍ତି ପୟରେ ॥୧୮

ନାମ ଜପନ୍ତି ତାର ନିତି ।
ନିରତେ ଚରଣେ ସେବନ୍ତି ॥୧୯

ଏମନ୍ତେ କେତେଦିନ ଗଲା ।
ପୌଣ୍ଡ୍ରକ ମନେ ବିଚାରିଲା ॥୨୦

ନିଶ୍ଚୟେ ମୁହିଁ ଜଗଦୀଶ ।
ସକଳ ଦେହରେ ପ୍ରକାଶ ॥୨୧

ଏତେ ବିଚାରି ଦୂତେ ରାଇ ।
ତାହାର ହସ୍ତେ ଲେଖ ଦେଇ ॥୨୨

ବୋଲଇ ଯାଅ ଯଦୁପୁର ।
କହିବୁ କୃଷ୍ଣର ଛାମୁର ॥୨୩

ଜଗତେ ମୋର ଅବତାର ।
ନାଶିବି ଅବନୀର ଭାର ॥୨୪

ମୁଁ ବ୍ରହ୍ମ ପରମ କାରଣ ।
ଅନାଦି ପୁରୁଷ ପୁରାଣ ॥୨୫

ମୋହର ଅଛି ଚାରି କର ।
ମୁହିଁଟି ଶଙ୍ଖଚକ୍ରଧର ॥୨୬

ଗଦା କମଳ କରେ ଘେନି ।
ଶ୍ରୀବତ୍ସ ଚିହ୍ନ କଣ୍ଠେ ମଣି ॥୨୭

ପୀତବସନ ବନମାଳ ।
କର୍ଣ୍ଣେ ମୋ ମକରକୁଣ୍ଡଳ ॥୨୮

କିରୀଟ ବଳୟ କଙ୍କଣ ।
ବିଜୟ ଗରୁଡ଼ ଆସନ ॥୨୯

ମୋ ତହୁଁ ପରେ ନାହିଁ କେହି ।
ମୁହିଁ ସକଳଜୀବ-ଦେହୀ ॥୩୦

ପ୍ରାଣୀଙ୍କି ଜୟା ବହି ଚିତ୍ତେ ।
ମୋହର ଜନ୍ମ ଏ ଜଗତେ ॥୩୧

ନାଶିବି ଅବନୀର ଭାର ।
ତୁ ବେଗେ ଛାଡ଼ ଚିହ୍ନ ମୋର ॥୩୨

ମିଛେ ହେଁ ବୋଲୁ କୃଷ୍ଣ ମୁହିଁ ।
ତୋ କଥା ଭଲେ ମୁଁ ଜାଣଇ ॥୩୩

ଏବେ ତୁ ମୋର ଚିହ୍ନ ଛାଡ଼ି ।
ମୋହର ପାଦେ କରଯୋଡ଼ି ॥୩୪

ଶରଣ ପଶ ଆସି ବେଗେ ।
ତୋର ଜୀବନ ମୋର ଭାଗେ ॥୩୫

ଯେବେ ନ ପଶିବୁ ଶରଣ ।
ମୋହର ତୁଲେ କର ରଣ ॥୩୬

ଜିଣିଲେ ବାସୁଦେବ ତୁହି ।
ତୁ ମଲେ ବାସୁଦେବ ମୁହିଁ ॥୩୭

ଏମନ୍ତ କହି ଦୂତ ଆଗେ ।
ବୋଲେ ଦ୍ୱାରକା ଯାଅ ବେଗେ ॥୩୮

ତାହାର ଆଜ୍ଞା ଘେନି ଶିରେ ।
ଦୂତ ମିଳିଲା ଯଦୁପୁରେ ॥୩୯

କୃଷ୍ଣର ସଭାମଧ୍ୟେ ଯାଇ ।
କହିଲା ଶିରେ କର ଦେଇ ॥୪୦

ଲେଖପ୍ରମାଣେ ତାର ବାଣୀ ।
ଗୋବିନ୍ଦ ସଭାମଧ୍ୟେ ଶୁଣି ॥୪୧

ଅଳପ ହସି ଭଗବାନ ।
ଦୂତ ବଚନେ ଅବଧାନ ॥୪୨

ଶୁଣି ହସିଲେ ଉଗ୍ରସେନ ।
ସଭାର ମଧ୍ୟେ ଯେତେ ଜନ ॥୪୩

ଏକ ଆରକେ ମୁଖ ଚାହିଁ ।
ହସିଲେ କରତାଳି ଦେଇ ॥୪୪

ଦୂତକୁ ଚାହିଁ ଚକ୍ରପାଣି ।
ବୋଲନ୍ତି ପରିହାସ ବାଣୀ ॥୪୫

ରେ ଦୂତ ଶୁଣ ମୋ ବଚନ ।
ମୋହର ବାସୁଦେବ ଚିହ୍ନ ॥୪୬

ମୂଢ଼ବଚନ ଉପଲକ୍ଷ୍ୟ ।
ନିଷ୍ଠେ ଛାଡ଼ିବି ତାକୁ ଦେଖି ॥୪୭

ମୋହର ଚିହ୍ନ-ବେଶ ବହି ।
ବୀରଶୟନେ ଥିବ ଶୋଇ ॥୪୮

କଙ୍କ ଶୃଗାଳ ଗୃଧ୍ର ଶ୍ୱାନ ।
ପଶିବ ତାହାରେ ଶରଣ ॥୪୯

କୃଷ୍ଣବଚନେ ଦୂତ ଗଲା ।
ପୌଣ୍ଡ୍ରକ ଆଗରେ କହିଲା ॥୫୦

ଦାରୁକେ ରାଇ ଦାମୋଦର ।
ବୋଇଲେ ରଥ ସଜ କର ॥୫୧

ତକ୍ଷଣେ ସାଜି ନନ୍ଦିଘୋଷ ।
ମିଳିଲା ଗୋବିନ୍ଦର ପାଶ ॥୫୨

ରଥେ ବିଜୟ ନରହରି ।
ସଙ୍ଖ-ଶବଦେ ଦିଗ ପୂରି ॥୫୩

କରୁଷଦେଶେ ବନମାଳୀ ।
ନିମିଷମାତ୍ରେ ଯାଇ ମିଳି ॥୫୪

କୃଷ୍ଣର ଆଗମନ ଶୁଣି ।
ପୋଣ୍ଡ୍ରକ ବେନି ଅକ୍ଷୌହିଣୀ ॥୫୫

ସାଜି ମିଳିଲା କୃଷ୍ଣପାଶେ ।
ସଂଗ୍ରାମେ ଜିଣିବାର ଆଶେ ॥୫୬

ତାହାର ମିତ୍ର କାଶୀରାଜ ।
ସେହୁ ତାହାର ତୁଲେ ସଜ ॥୫୭

କୃଷ୍ଣର ତୁଲେ ରଣ ଜାଣି ।
ସାଜିଲା ତିନି ଅକ୍ଷୌହିଣୀ ॥୫୮

କୃଷ୍ଣଙ୍କୁ ଦେଖି ମହାରୋଷେ ।
ବେଗେ ରୁନ୍ଧିଲା ଚଉପାଶେ ॥୫୯

କୃଷ୍ଣ ଚାହାଁନ୍ତି ରଣମଧ୍ୟେ ।
ପୌଣ୍ଡ୍ରକ ଦେଖିବାର ସଧେ ॥୬୦

ବାଜଇ ବୀରତୂରମାନ ।
ରଣେ ପୌଣ୍ଡ୍ରକ ଆଗମନ ॥୬୧

କୃଷ୍ଣ ଦେଖିଲେ ତାର ରଥ ।
ରତ୍ନଭୂଷଣ ଅପ୍ରମିତ ॥୬୨

ରଥ ଉପରେ ପକ୍ଷୀରାଜ ।
ଧ୍ୱଜପତାକା ମଧ୍ୟେ ସଜ ॥୬୩

ବିମାନମଧ୍ୟେ ତା ଶରୀର ।
ଦେଖିଲେ କମଳାର ବର ॥୬୪

ବିସ୍ତାର ଶୋହେ ଭୁଜ ଚାରି ।
ଶଙ୍ଖ କମଳ ଗଦା ଧରି ॥୬୫

ସାରଙ୍ଗଧନୁ ଅଛି କରେ ।
ଶ୍ରୀବତ୍ସଚିହ୍ନ ହୃଦୟରେ ॥୬୬

Dr. Sudhanshu Sekhar Mishra

କଣ୍ଠେ ଲମ୍ବଇ ରତ୍ନମଣି ।
ରବିକିରଣ ପ୍ରାୟ ଜାଣି ॥୬୭
ହୃଦେ ଲମ୍ବଇ ବନମାଳ ।
ଶ୍ରବଣେ ମକର କୁଣ୍ଡଳ ॥୬୮
ପୀତବସନ ଦେହେ ଝଳି ।
ନୀଳଜୀମୂତେ କି ବିଜୁଳି ॥୬୯
ଅମୂଲ୍ୟ କିରୀଟ ବିରାଜେ ।
ରତ୍ନମେଖଳା କଟି ସାଜେ ॥୭୦
ତାର କପଟବେଶ ଦେଖି ।
ଆତ୍ମାର ପ୍ରାୟ ଉପଲକ୍ଷି ॥୭୧
ନଟର ପ୍ରାୟ ବେଶ ଧରି ।
ଦେଖି ହସିଲେ ନରହରି ॥୭୨
କୃଷ୍ଣଙ୍କୁ ଦେଖି ରିପୁଗଣ ।
ଉଭାରି କଲେ ଘୋରରଣ ॥୭୩
ଶୂଳ ପରିଘ ଗଦା ରଷ୍ଟ ।
ପାଶ ତୋମର ଲୌହଯଷ୍ଟି ॥୭୪
ଅସି କୁଠାର ପର୍ଶୁ ଯେତେ ।
ପ୍ରହାର କଲେ ଅପ୍ରମିତେ ॥୭୫
ପୌଣ୍ଡ୍ରକ କାଶୀରାଜାବଳ ।
ଦେଖିଲେ ମଦନଗୋପାଳ ॥୭୬
ପଦାତି ରଥ ଗଜ ବାଜି ।
ଏମନ୍ତେ ଚତୁରଙ୍ଗ ସାଜି ॥୭୭
ଏମନ୍ତେ ଚତୁରଙ୍ଗବଳ ।
ଲାଗିଲା ରଣରଙ୍ଗ ଗୋଳ ॥୭୮
ଗଦା ଖଡ଼ଗ ଚକ୍ର ବାଣ ।
କୋପେ ପ୍ରହାରି ନାରାୟଣ ॥୭୯
ବେଗେ ନାଶିଲେ ରିପୁବଳ ।
ଯେସନେ ଯୁଗାନ୍ତଅନଳ ॥୮୦
ରୁଦ୍ରନୟନୁ ଜାତ ହୋଇ ।
ତିନି ଭୁବନ ଯେହ୍ନେ ଦହି ॥୮୧
କୃଷ୍ଣ ସଂଗ୍ରାମେ ରଣ ଭୂଇଁ ।
କି ପଟାନ୍ତର ଦେବି ମୁହିଁ ॥୮୨
ଗଜ ତୁରଗ ରଥ ଖର ।
ଉଷ୍ଟ୍ର ପଦାତି ମହାଘୋର ॥୮୩
ଚକ୍ର ପ୍ରହାରଣେ ଖଣ୍ଡିତ ।
ଜଳଧି ସଦୃଶେ ଶୋଣିତ ॥୮୪
ଉଛୁଳି ବହେ ରଣମଧ୍ୟେ ।
ଗଗନେ ଦେଖନ୍ତି ବିବୁଧେ ॥୮୫
ବ୍ରହ୍ମାଦିବସ ଅନ୍ତେ ମହୀ ।
ପ୍ରଳୟଜଳେ ହତ ହୋଇ ॥୮୬
ଈଶ୍ୱରକ୍ରୀଡ଼ାସ୍ଥାନେ ପ୍ରାୟେ ।
ରକତେ ରଣଭୂମି ଶୋହେ ॥୮୭
ପୌଣ୍ଡ୍ରକ ଅଛି ଏକା ରଥେ ।
ଉଭାରି ଗୋବିନ୍ଦ ଅଗ୍ରତେ ॥୮୮
ସମରେ ତାର ମୁଖ ଚାହିଁ ।
ହସି ବୋଲନ୍ତି ଭାବଗ୍ରାହୀ ॥୮୯
ଆହେ ପୌଣ୍ଡ୍ରକ ତୋର ଦୂତ ।
ମୋ ଆଗେ କହିଲା ଯେମନ୍ତ ॥୯୦
ତୋହର ଚିହ୍ନ ବର୍ଣ୍ଣମାନ ।
ଛୁଡ଼ିଲି ସମ୍ଭାଳ ବହନ ॥୯୧
ମିଛେ ମୁଁ ଧରି ତୋର ବେଶ ।
ବିଷ୍ଣୁ ବୋଲାଏ ମର୍ତ୍ତ୍ୟଦେଶ ॥୯୨
ଯେବେ ହାରିବି ତୋତେ ରଣେ।
ଛାଡ଼ି ପଶିବି ତୋ ଶରଣେ ॥୯୩
ଏମନ୍ତ କହି ଦାମୋଦର ।
ବେଗେ ବିନ୍ଧିଲେ ତୀକ୍ଷ୍ଣ ଶର ॥୯୪
ବିରଥ କରି ତାର ଶିର ।
ଚକ୍ରେ ଛେଦିଲେ ଚକ୍ରଧର ॥୯୫
ବାସବବଜ୍ରେ ହତ ହୋଇ ।
ପର୍ବତ ଯେମନ୍ତ ଦିଶଇ ॥୯୬
କାଶୀରାଜାର ଦେଖି ରଥ ।
ବେଗେ ମିଳିଲେ ଗୋପୀନାଥ ॥୯୭
ନିଜ କୋଦଣ୍ଡେ ଦେଇ ଗୁଣ ।
ସନ୍ଧାନ କଲେ ତୀକ୍ଷ୍ଣ ବାଣ ॥୯୮
କାଶି ରାଜାର ଶିର କାଟି ।
ନାରାଜ ଗଲା ଶୂନ୍ୟେ ଘୋଟି ॥୯୯
ଦିଗ ପୁରିଲା ଘୋର ନାଦେ ।
ପଡିଲା କାଶୀପୁର ମଧ୍ୟେ ॥୧୦୦
ରାଜାର ଦ୍ୱାରେ ଦେଖି ମୁଣ୍ଡ ।
ଲୋକେ ହୋଇଲେ ବେଗେ ଜୁଣ୍ଡ ॥୧୦୧
ପବନବଳେ ଛିଡ଼ି ପାଶ ।
ଯେହ୍ନେ ଦିଶଇ ପଦ୍ମକୋଷ ॥୧୦୨
ଏମନ୍ତେ ଶୁଣ ଦଣ୍ଡଧାରୀ ।
ପଞ୍ଚ ଅକ୍ଷୌହିଣୀ ସଂହାରି ॥୧୦୩
ପୌଣ୍ଡ୍ରକ କାଶୀରାଜା ଦୁଲେ।
ରଣେ ଗୋବିନ୍ଦ ସଂହାରିଲେ ॥୧୦୪
ଦେଖି ଆନନ୍ଦ ଦେବଗଣେ ।
ରିପୁ ନିବାରି ଘୋରରଣେ ॥୧୦୫
ଦ୍ୱାରକା ବିଜେ ଲକ୍ଷ୍ମୀକାନ୍ତ ।
ଏବେ ହୋ ଶୁଣ ନରନାଥ ॥୧୦୬
ପୌଣ୍ଡ୍ରକ ଗୋବିନ୍ଦର ଭାବ ।
ନିରତେ କରି ଅନୁଭବ ॥୧୦୭
ମରଣେ ଚାହିଁ ପଦ୍ମମୁଖ ।
ଲଭିଲା ଆତ୍ମଗତି ସୁଖ ॥୧୦୮
କାଶୀରାଜାର ଶିର ଦେଖି ।
ଜନେ ବୋଲନ୍ତି ଉପଲକ୍ଷ୍ୟ ॥୧୦୯
ଏହୁ କାହାର ଦେଖ ଶିର ।
ଛିଡ଼ି ପଡ଼ିଲା ରାଜଦ୍ୱାର ॥୧୧୦
ଏମନ୍ତେ କରନ୍ତେ ବିଚାର ।
ଚିହ୍ନିଲେ କାଶୀରାଜା ଶିର ॥୧୧୧
ସମରେ କୃଷ୍ଣ କଲେ ନାଶ ।
ଜାଣି ପାଇଲେ ମନେ ତ୍ରାସ ॥୧୧୨
ତାହାର ଯେତେକ ତରୁଣୀ ।
ସ୍ୱାମୀମରଣ କଥା ଶୁଣି ॥୧୧୩
ବନ୍ଧୁ ବାନ୍ଧବ ଜନେ ମିଳି ।
କାନ୍ଦନ୍ତେ ଭୁବନ ଉଛୁଳି ॥୧୧୪
କାନ୍ଦନ୍ତି ନାଥ ନାଥ ବାଣୀ ।
ଗୋଳ ପ୍ରଳୟ ପ୍ରାୟ ମଣି ॥୧୧୫
ତାର କୁମର ସୁଦକ୍ଷିଣ ।
ଶୋକ ନିବାରି ସର୍ବଜନ ॥୧୧୬
ପିତାର ପ୍ରେତକ୍ରିୟା ସାରି ।
ସଙ୍କଳ୍ପ କଲା କୋପଭରି ॥୧୧୭
ପିତୃବଇରୀ ଯେବେ ମାରି ।
ତେବେ ମୁଁ ଥିବି ଦେହ ଧରି ॥୧୧୮
ଏମନ୍ତେ ମନ ସ୍ଥିର କରି ।
ସେବିଲା ଶଙ୍କର-ଗଉରି ॥୧୧୯

Dr. Sudhanshu Sekhar Mishra

ସମାଧି କରି ଯୋଗବଳେ ।
ତୋଷିଲା ଶିବଙ୍କୁ ନିଶ୍ଚଳେ ।।୧୨୦
ପ୍ରସନ୍ନ ହୋଇ ଶୂଳଧର ।
ବୋଇଲେ ଦେବି ମାଗ ବର ।।୧୨୧
ଭଗ୍ନ-ସମାଧି ସୁଦକ୍ଷିଣ ।
ବନ୍ଦିଲା ଈଶ୍ୱରଚରଣ ।।୧୨୨
ବୋଲଇ ଶିରେ ଦେଇ କର ।
ପିତୃବଇରୀ ଅଛି ମୋର ।।୧୨୩
ତାହାକୁ କରିବି ମୁଁ ହତ ।
ଏ ବର ଦିଅ ଉମାକାନ୍ତ ।।୧୨୪
ଶୁଣି ବୋଇଲେ ଦେବହର ।
ଶୁଣି ବୋଇଲେ ଦେବହର ।।୧୨୫
ବିପ୍ରବଚନ ମନେ ଧରି ।
ନାନାସମିଧ ମିଶ୍ର କରି ।।୧୨୬
ଆଗମଶାସ୍ତ୍ରର ବିଧାନେ ।
ଅନଳ ପୂଜ ଏକମନେ ।।୧୨୭
ଋତ୍ୱିଜ କରିଣ ବରଣ ।
ମାରଣେ ବେଦ ଅଥର୍ବଣ ।।୧୨୮
ଆଭିଚାରିକ ବେଦନାଦେ ।
ଆହୁତି ଦେବୁ କୁଣ୍ଡ ମଧ୍ୟେ ।।୧୨୯
ଅଗ୍ନିପୁରୁଷ ଜାତ ହେବ ।
ତେବେ ତୋ କାମନା ପୂରିବ ।।୧୩୦
ମରିବ ରିପୁ ସେ ତୋହର ।
ବ୍ରାହ୍ମଣେ ସେବା ନାହିଁ ଯାର ।।୧୩୧
ଏମନ୍ତେ ରୁଦ୍ରବାକ୍ୟ ଶୁଣି ।
ଯଜ୍ଞ ଆରମ୍ଭେ ନୃପମଣି ।।୧୩୨
ଅନଳେ ଅଭିଚାର ମତେ ।
ଆହୁତି ଦେଲା ଅପ୍ରମିତେ ।।୧୩୩
କୁବୁଦ୍ଧିପଣ ଦେଖ ତାର ।
କୃଷ୍ଣଙ୍କୁ ଚିନ୍ତେ ଅଭିଚାର ।।୧୩୪
ଅଗ୍ନିପୁରୁଷ କୁଣ୍ଡମଧ୍ୟେ ।
ଜାତ ହୋଇଲେ ଘୋରନାଦେ ।।୧୩୫
ଅତିଭୀଷଣ ରୂପବନ୍ତ ।
ତା ରୂପ ଶୁଣ ନରନାଥ ।।୧୩୬
ତପତତମ୍ବା ପ୍ରାୟ ଶିଖା ।
ଶ୍ମଶ୍ରୁ ନାସିକା ପିଙ୍ଗରେଖା ।।୧୩୭
ଗ୍ରହରାଜର ତେଜ ତାର ।
ଲୋଚନ ବଚନ ଗଭୀର ।।୧୩୮
ଅଙ୍ଗାର ଉଦ୍‌ଗାରଇ ତୁଣ୍ଡେ ।
ବିକଟ ଦଶନ ପ୍ରଚଣ୍ଡେ ।।୧୩୯
ଭୃକୁଟୀ କୁଟୀଳ କଠୋର ।
ତୁଣ୍ଡ ଗଭୀର ଅନ୍ଧକାର ।।୧୪୦
ଜିହ୍ୱା ବୁଲାଇ ବେନିକଳେ ।
ଯେସନେ ବିଜୁଳି ଚଞ୍ଚଳେ ।।୧୪୧
ଉଲଗ୍ନ ଶରୀର କରାଳ ।
ହସ୍ତେ କମ୍ପଇ ତୀକ୍ଷ୍ଣ ଶୂଳ ।।୧୪୨
ଚଳଇ କରି ଘୋର ନାଦ ।
ତାଳ ପ୍ରମାଣେ ବେନି ପାଦ ।।୧୪୩
କୋପେ ଧାମଇଁ ଶୂଳହସ୍ତେ ।
ଅବନୀ କମ୍ପେ ପାଦଘାତେ ।।୧୪୪
ପ୍ରମଥଭୂତଗଣ ସଙ୍ଗେ ।
ଦ୍ୱାରକା ଗଲା ଅତିବେଗେ ।।୧୪୫
ତାହାର ତେଜ ଦେହେ ଦିଶ ।
ସଧୂମେ ପୂରିଲା ଆକାଶ ।।୧୪୬
ଏମନ୍ତେ ବହ୍ନିର ଆଗମ ।
ଧୂମ ପୂରିତ ମହାତମ ।।୧୪୭
ଦ୍ୱାରକାପୁରେ ଯେତେ ଜନ ।
ଭୟେ କମ୍ପନ୍ତି ଛନଛନ ।।୧୪୮
ଭୟେ ଭାଜିଲେ ଚାରିଦିଗେ ।
ବନ ଦହନେ ଯେହ୍ନେ ମୃଗେ ।।୧୪୯
ପଶା ଖେଳନ୍ତି ଭଗବାନ ।
ଏମନ୍ତେ ମିଳି ସର୍ବଜନ ।।୧୫୦
ବୋଲନ୍ତି କୃଷ୍ଣମୁଖ ଚାହିଁ ।
ଭୋ ନାଥ କର ଜନେ ତ୍ରାହି ।।୧୫୧
ତ୍ରୈଲୋକ୍ୟନାଥ ତୋର ପୁର ।
ଅନଳ ଦହନ୍ତୁ ଉଦ୍ଧର ।।୧୫୨
ଏମନ୍ତେ ସ୍ୱଜନ ବିକଳ ।
ଦେଖି ବୋଲନ୍ତି ଆଦିମୂଳ ।।୧୫୩
ଶରଣ ବନ୍ଧୁ ବନମାଳୀ ।
ବୋଲନ୍ତି ବେନିଭୁଜ ତୋଳି ।।୧୫୪
ଭୟ ନ କର ତୁମ୍ଭେ କେହି ।
ଅନଳ ସଂହାରିବି ମୁହିଁ ।।୧୫୫
ଯେ ହରି ଅଶେଷ ଶରୀରେ ।
ବିଦିତ ଅନ୍ତର ବାହାରେ ।।୧୫୬
ସ୍ୱଜନ ଶୁଭାଶୁଭ ଜାଣେ ।
ଏମନ୍ତ ନିଗମ ବଖାଣେ ।।୧୫୭
ରୁଦ୍ରଅନଳ କୃଷ୍ଣ ଜାଣି ।
ଚକ୍ରେ ସୁମରି ଚକ୍ରପାଣି ।।୧୫୮
ଚକ୍ର ଗୋବିନ୍ଦ ପାଶେ ଥିଲା ।
କୃଷ୍ଣର ମନ ସେ ଜାଣିଲା ।।୧୫୯
କୋଟି-ଆଦିତ୍ୟ-ତେଜ ନାଶେ ।
ପ୍ରଳୟ ଅନଳ ପ୍ରକାଶେ ।।୧୬୦
ଭୂମି ଗଗନ ତେଜ ବ୍ୟାପି ।
କୃଷ୍ଣର ତେଜ ବିଶ୍ୱରୂପୀ ।।୧୬୧
ସେ କୃତ୍ୟାଅଗ୍ନି ଅଙ୍ଗେ ପଡ଼ି ।
ଶବଦ ଶୁଭେ ଘଡ଼ଘଡ଼ି ।।୧୬୨
ଚକ୍ର ସଂଯୋଗେ ଅଗ୍ନି ନାଶ ।
ଭସ୍ମ ଉଡ଼ିଲା ଦଶଦିଶ ।।୧୬୩
ଘୋର ଅନଳ ନାଶି ଖରେ ।
ଚକ୍ର ମିଳିଲା କାଶୀପୁରେ ।।୧୬୪
ଯଜ୍ଞଶାଳରେ ଯାଇ ମିଳି ।
କୋଟି ଆଦିତ୍ୟ ପ୍ରାୟ ଝଳି ।।୧୬୫
ଋତ୍ୱିଜ ସଙ୍ଗେ ସୁଦକ୍ଷିଣ ।
ଦହନ କଲା ତତକ୍ଷଣ ।।୧୬୬
ପ୍ରଚଣ୍ଡ ତେଜ ମହାଘୋର ।
କୋପେ ଦହିଲା କାଶୀପୁର ।।୧୬୭
ନରକୁଞ୍ଜର ଅଶ୍ୱ ରଥ ।
ଭସ୍ମ ହୋଇଲେ ଯୂଥ ଯୂଥ ।।୧୬୮
ସକଳଗୁଣ କାଶୀପୁରେ ।
କିବା ଉପମା ଦେବା ତାରେ ।।୧୬୯
ଦହନ କରି ସେହୁ ପୁର ।
କୃଷ୍ଣର ତେଜ ମହାଘୋର ।।୧୭୦

Dr. Sudhanshu Sekhar Mishra

ଦେଖି ଅଖିଳ ଜନ ତ୍ରାସେ ।
ପୁଣି ମିଳିଲା କୃଷ୍ଣପାଶେ ॥୧୭୧
ବୋଲନ୍ତି ଶୁକ ମୁନିବର ।
ଶୁଣ ସୁମନେ କୁରୁବୀର ॥୧୭୨
କୃଷ୍ଣ-ବିକ୍ରମ-ରସ ବାଣୀ ।
ଯେ ଏହା ଜନମଧ୍ୟେ ଭଣି ॥୧୭୩
ଯେ ଅବା ଶ୍ରବଣେ ଶୁଣନ୍ତି ।
ସକଳ ପାପୁଁ ସେ ତରନ୍ତି ॥୧୭୪
ସୁଜନେ ଶୁଣ କୃଷ୍ଣରସ ।
ଭଣଇ ଜଗନ୍ନାଥ ଦାସ ॥୧୭୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ପୌଣ୍ଡ୍ରକାଦିବଧୋ ନାମ
ଏକସପ୍ତତିତମ ଅଧ୍ୟାୟଃ ॥

---

## ଦ୍ୱିସପ୍ତତିତମ ଅଧ୍ୟାୟ

ଶୁକଚରଣେ ଦେଇ ଚିତ୍ତ ।
ଭାବେ ବୋଲଇ ପରିକ୍ଷିତ ॥୧

ପରିକ୍ଷିତ ଉବାଚ

ଭୋ ମୁନି ପ୍ରଭୁ କାମପାଳ ।
ସୁନ୍ଦର ବୀରବାହୁ ବଳ ॥୨
ଯମୁନା ଆକର୍ଷଣ କରି ।
ବନେ ରମିଲେ ଗୋପନାରୀ ॥୩
ତୁମ୍ଭ ବଦନୁ ସୁଧାବାଣୀ ।
କୃଷ୍ଣ ଚରିତ କର୍ଣ୍ଣେ ଶୁଣି ॥୪
ନିର୍ମଳ କଲି ପ୍ରାଣ ଦେହ ।
ରାମ ବିକ୍ରମ ମୋତେ କହ ॥୫
ଅନନ୍ତ ଅପ୍ରମେୟ ତେଜ ।
ଯେଣୁ ସେ କୃଷ୍ଣର ଅଗ୍ରଜ ॥୬
କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ହେ ରାମର ଚରିତ ॥୭
ନାରକା ପୃଥିବୀର ବଳା ।
ସଂଗ୍ରାମେ କୃଷ୍ଣହାତେ ମଲା ॥୮
ତାର ସୁହୃଦ ସଖା ଯେତେ ।
ରାଜ୍ୟେ ଅଛନ୍ତି ନାନାମତେ ॥୯
ତାର ମରଣ ଶୁଣି କର୍ଣ୍ଣେ ।
ବାନରେ ଥିଲା ଘୋରବନେ ॥୧୦
ପ୍ରଚଣ୍ଡ ଦ୍ୱିବିଦ ବାନର ।
ଦେବମାନବେ ଅଗୋଚର ॥୧୧
ବାଳୀ ସୁଗ୍ରୀବ ମନ୍ତ୍ରୀ ସେହି ।
ମଇନ୍ଦ ତାର ଜ୍ୟେଷ୍ଠ ଭାଇ ॥୧୨
ଶୁଝିବା ଅର୍ଥେ ମିତ୍ରଋଣ ।
ଇଚ୍ଛଇ କୃଷ୍ଣତୁଲେ ରଣ ॥୧୩
ତାର ସମରେ ନାହିଁ ବୀର ।
ପର୍ବତୁଁ ହୋଇଲା ବାହାର ॥୧୪
ଦେଖି ପାଇଲେ ଦେବେ ତ୍ରାସ ।
କରଇ ଜନପ୍ରଜା ନାଶ ॥୧୫
ଗ୍ରାମ-ପାଟଣା-ପୁରେ ଯାଇ ।
ଲାଙ୍ଗୁଳେ ଅନଳ ଲଗାଇ ॥୧୬
ଦୁର୍ଗମ ବନ ଦେଶ ଗ୍ରାମ ।
କରଇ ବାନର ଦହନ ॥୧୭
ଧାମଇଁ ଶିଳା ବୃକ୍ଷ ଘେନି ।
ଶବଦେ କମ୍ପଇ ମେଦିନୀ ॥୧୮
ପ୍ରଚଣ୍ଡ-ଘୋରନାଦ କରି ।
ଭାଙ୍ଗଇ ପୁର ଗ୍ରାମ ଗିରି ॥୧୯
ମିଳିଲା ଦ୍ୱାରକାନଗରୀ ।
ଲୋଡ଼ଇ ମିତ୍ର ଶତ୍ରୁ ମାରି ॥୨୦
ପ୍ରଚଣ୍ଡ-ଘୋରନାଦ କରି ।
ଭାଙ୍ଗଇ ପୁର ଗ୍ରାମ ଗିରି ॥୨୧
କୃଷ୍ଣ ମାରିବି ଭୁଜବଳେ ।
ମିତ୍ର ତୋଷିବି ଗଙ୍ଗାଜଳେ ॥୨୨
ସମୁଦ୍ରଜଳ କୋପାନଳେ ।
ପିଙ୍ଗଇ ବେନିଭୁଜବଳେ ॥୨୩
ସମୁଦ୍ରକୁଳେ ଗ୍ରାମ ଯେତେ ।
ଜଳେ ଭାସିଲେ ଅପ୍ରମିତେ ॥୨୪
ଅୟୁତେ ମତ୍ତଗଜ ବଳ ।
ପିଙ୍ଗଇ ରାତ୍ରଦିନେ ଜଳ ॥୨୫
ଭାଙ୍ଗଇ ଫଳପୁଷ୍ପ ଦ୍ରୁମ ।
ନାଶିଲା ମୁନିଙ୍କ ଆଶ୍ରମ ॥୨୬
ମୁନିଙ୍କ ଯଜ୍ଞକୁଣ୍ଡେ ଯାଇ ।
ଅନଳ ଦେଖି ରୋଷ ବହି ॥୨୭
ଭାଙ୍ଗଇ ଯଜ୍ଞର ମଣ୍ଡଳ ।
ଅନଳେ କ୍ଷେପେ ମୂତ୍ର ମଳ ॥୨୮
ସ୍ତିରୀ ପୁରୁଷ ବଳେ ଧରି ।
ଗିରିକନ୍ଦର ମଧ୍ୟେ ଭରି ॥୨୯
ଦ୍ୱାର ରୁନ୍ଧଇ ଶିଳା ଦେଇ ।
କୁମ୍ଭାରକୀଟ ପ୍ରାୟ ହୋଇ ॥୩୦
ଏମନ୍ତେ ଦେଶ ନାଶ କରି ।
ଦୂଷଣ କରେ କୁଳସ୍ତିରୀ ॥୩୧
ରଜନୀକାଳେ ଏକ ଦିନେ ।
ରୈବତଗିରି ଘୋରବନେ ॥୩୨
ସୁସ୍ୱରଗୀତ କର୍ଣ୍ଣେ ଶୁଣି ।
କୋପେ ଧାଇଁଲା ବୀରମଣି ॥୩୩
ଗିରିଶିଖରେ ବେଗେ ଉଠି ।
ଚାହିଁଇ ସ୍ଥିରକରି ଦୃଷ୍ଟି ॥୩୪
କାମିନୀଗଣ ମଧ୍ୟେ ରାମ ।
ଯଦୁସୁନ୍ଦର ଅନୁପମ ॥୩୫

Dr. Sudhanshu Sekhar Mishra

ବିବିଧ ଅଳଙ୍କାର ଶୋହେ ।
କୁସୁମମାଳା ମନ ମୋହେ ॥୩୬
ବାରୁଣୀପାନେ ମତ୍ତ ହୋଇ ।
କାମିନୀ ସଙ୍ଗେ ଗୀତ ଗାଇ ॥୩୭
ମଦ୍ୟେ ଅରୁଣ ଚକ୍ଷୁ ହୁଇ ।
କି ପଟାନ୍ତର ଦେବି ମୁହିଁ ॥୩୮
କରିଣୀଯୂଥ ମଧ୍ୟେ ପଶି ।
ମତ୍ତକୁଞ୍ଜର ପ୍ରାୟ ଦିଶି ॥୩୯
ଦୁଷ୍ଟବାନର ବାହୁବଳେ ।
ବୃକ୍ଷେ ଉଠିଲା କୋପାନଳେ ॥୪୦
ଡାଳେ କମ୍ପାଇ ତାର ପାଦ ।
କରଇ କିଳିକିଳା ନାଦ ॥୪୧
ତଦନ୍ତେ ବୃକ୍ଷଶିଖେ ଯାଇ ।
ଗର୍ଜଇ ଦଶନ ଦେଖାଇ ॥୪୨
ଦେଖି ତାହାର ଦୁଷ୍ଟପଣ ।
ଭୟେ ଚାହିଁଲେ ସ୍ତିରୀଗଣ ॥୪୩
କରାଳ ତାର ମୁଖ ଦେଶ ।
ଦେଖି କାମିନୀ କଲେ ହାସ ॥୪୪
ଦେଖି ବାନର କୋପମନେ ।
ଭୂକୁଟୀ କୁଟୀଳ ନୟନେ ॥୪୫
କପି ସ୍ୱଭାବେ କରି ନାଦ ।
ନାରୀଙ୍କି ଦେଖାଇଲା ଗୁଦ ॥୪୬
ଏମନ୍ତ ତାର ଦୁଷ୍ଟପଣ ।
ଦେଖିଲେ ରେବତୀରମଣ ॥୪୭
ପାଷାଣ ଖଣ୍ଡ ଧରି କରେ ।
ଫିଙ୍ଗିଲେ ବାନର ଉପରେ ॥୪୮
ଦେଖି ବାନର କୋପମନେ ।
ଡେଇଁ ପଡ଼ିଲା ମଧ୍ୟେ ଯାଇ ॥୪୯
ବାରୁଣୀକୁମ୍ଭ ଘେନି କରେ ।
ଫିଟିଲା ରାମର ଉପରେ ॥୫୦
ରାମଙ୍କୁ ଚାହିଁ କୋପମନ ।
ଘୂରାଇ ଅରୁଣଲୋଚନ ॥୫୧
ଲାଙ୍ଗୁଳ ନିଜ ମୁଖେ ଭରି ।
ରାମର ବସ୍ତ୍ର କରେ ଧରି ॥୫୨
ତକ୍ଷଣେ କଲା ବେନିଫାଳ ।
ବାନର ତେଜେ ଅନର୍ଗଳ ॥୫୩

କଦର୍ଥ କରି ହଳଧର ।
ମଦ୍ୟକଳସ କଲା ଚୂର ॥୫୪
ରାମଙ୍କୁ ମଣି ତୁଚ୍ଛ ପ୍ରାୟେ ।
ଓଷ୍ଠ କାମୋଡ଼ି କୋପେ ଚାହେଁ ॥୫୫
ଦୁଷ୍ଟର କର୍ମ ଦେଖି ତାର ।
ଜାଣିଲେ ରୋହିଣୀକୁମର ॥୫୬
ଅନେକ ପ୍ରାଣୀ କରି ନାଶ ।
ଆସି ମିଳିଲା ମୋର ପାଶ ॥୫୭
ଏ ଦୁଷ୍ଟ କପି ପ୍ରାଣେ ଥିଲେ ।
ଆଉ କି ପ୍ରାଣୀ ଥିବେ ଭଲେ ॥୫୮
ଏମନ୍ତ ହୃଦରେ ବିଚାରି ।
ହଳମୂଷଳ କରେ ଧରି ॥୫୯
କୋପିତ ରୋହିଣୀନନ୍ଦନ ।
ରିପୁମାରଣେ ସାବଧାନ ॥୬୦
ଦେଖି ବାନର କୋପ କଲା ।
ହୁଙ୍କାରେ ବୃକ୍ଷ ଉପାଡ଼ିଲା ॥୬୧
କରେ ବୁଲାଇ କୋପଭରେ ।
ପିଟିଲା ରାମର ଉପରେ ॥୬୨
ମୁଣ୍ଡେ ପଡ଼ନ୍ତେ ମହାଦ୍ରୁମ ।
ଅଚଳ ପ୍ରାୟ ରହି ରାମ ॥୬୩
ମୁଷଳଘାତେ ମହାବୀର ।
ତାହାର ବୃକ୍ଷ କଲେ ଚୂର ॥୬୪
ପୁଣି ଘୂରାଇ ବାହୁଦଣ୍ଡେ ।
ପିଟିଲେ ଦୁଷ୍ଟକପି ମୁଣ୍ଡେ ॥୬୫
ଘୋର ପ୍ରହାରେ ଶିର ଫାଟି ।
ରୁଧିର ଗଳେ ଦନ୍ତପାଟି ॥୬୬
ରୁଧିରଧାର ତା ଶରୀରେ ।
କିବା ଉପମା ଦେବା ତାରେ ॥୬୭
ପର୍ବତୁଁ ଯେହ୍ନେ ଗେରୁ ଗଳେ ।
ରଙ୍ଗ ବିରାଜେ ବୃଷ୍ଟିକାଳେ ॥୬୮
ପୁଣି ମୁଷଳେ ବେଗେ ମାରି ।
ଦେଖି ବାନର କୋପ କରି ॥୬୯
ତେଡ଼େ ପ୍ରହାର ନ ଗଣଇ ।
ପୁଣ ଘେନିଲା ବୃକ୍ଷ ଦୁଇ ॥୭୦
ସକ୍ରୋଧେ ବଳେ ବୃକ୍ଷ ଧରି ।
ରାମର ଉପରେ ପ୍ରହାରି ॥୭୧

ବୃକ୍ଷ ପଡ଼ନ୍ତେ ହଳଧର ।
ମୁଷଳେ କଲେ ଶତେଚୂର ॥୭୨
ପୁଣି ଉପାଡ଼ି ବୃକ୍ଷ ଦୁଇ ।
କୋପେ ଧାଇଁଲା ନାଦ ଦେଇ ॥୭୩
ରାମ ମୁଷଳେ ଚୂର୍ଣ୍ଣ କରି ।
ଦେଖି ବାନର କୋପଭରି ॥୭୪
ପୁଣି ଉପାଡ଼ି ବୃକ୍ଷଶ୍ରେଣୀ ।
ପିଟଇ ବଜ୍ରାଘାତ ଜାଣି ॥୭୫
ଏମନ୍ତେ ପୁଣ ପୁଣ ପିଟି ।
ବୃକ୍ଷେ ପଡ଼ିଲେ ମହୀଲୋଟି ॥୭୬
ପୁଣିହିଁ କପି କୋପମନ ।
ନିବୃକ୍ଷ କଲା ଘୋରବନ ॥୭୭
ବୃକ୍ଷ ନପାଇ କୋପଭରେ ।
ପାଷାଣ ଟୋଳି ବେନି କରେ ॥୭୮
ସନ୍ତତେ କଲା ଘୋର ବୃଷ୍ଟି ।
ଧାମଇଁ ଟୋଳି ବେନି ମୁଷ୍ଟି ॥୭୯
ପ୍ରହାର କରି ରାମହୃଦେ ।
ପୁଣି ଗର୍ଜଇ ଘୋରନାଦେ ॥୮୦
ହଳମୂଷଳ ଘେନି କରେ ।
ତକ୍ଷଣେକ ରାମ କୋପଭରେ ॥୮୧
ପାଷାଣ ବୃଷ୍ଟି କଲେ ଚୂର ।
ଲୀଳା ମାତ୍ରକେ ହଳଧର ॥୮୨
ପାଷାଣ ବୃଷ୍ଟି ନାଶ ଗଲା ।
ଦେଖି ବାନର କୋପ କଲା ॥୮୩
କୋପେ ବାନର ବିଶ୍ୱକାୟେ ।
ମୁଷ୍ଟି ଟେକିଲା ବଜ୍ରପ୍ରାୟେ ॥୮୪
ପିଟିଲା ହଳଧର ହୃଦେ ।
ଲାଙ୍ଗୁଳ ଚାଳି ଘୋରନାଦେ ॥୮୫
ରାମ ତାହାର ଗର୍ବ ଦେଖି ।
ମଦ୍ୟେ ଅରୁଣ ବେନି ଆଖି ॥୮୬
ହଳମୁଷଳ ଏକାବେଳେ ।
ଶୂନ୍ୟେ ବୁଲାଇ କୋପଭରେ ॥୮୭
ପ୍ରହାର କଲେ ତାର ଶିର ।
ତକ୍ଷଣେ ହେଲା ଶତେ ଚୂର ॥୮୮
ରୁଧିର ବହେ ଶତଧାର ।
ଜୀବନ ଛାଡ଼ିଲା ବାନର ॥୮୯

Dr. Sudhanshu Sekhar Mishra

ଭୂମିରେ ପଡ଼ି ତା ଶରୀର ।
ଶବଦ କଲା ମହାଘୋର ।।୯୦
ଗିରି କମ୍ପିଲା ମହାଭୟେ ।
ଜଳେ ପବନେ ନାବ ପ୍ରାୟେ ।।୯୧
ଏମନ୍ତେ ବାନର ବିନାଶି ।
ସାଧୁଶବଦ ଶୂନ୍ୟେ ଘୋଷି ।।୯୨
ଦେଖି ଗଗନେ ଦେବଗଣ ।
ବନ୍ଦିଲେ ରାମର ଚରଣ ।।୯୩
ଜୟଶବଦ ଶୂନ୍ୟେ ପୂରି ।
ନମୋ ଶବଦେ ସ୍ତୁତି କରି ।।୯୪
ଦୁନ୍ଦୁଭି ବାଇଲେ ଆକାଶେ ।
ତ୍ରିଦଶେ ମନର ହରଷେ ।।୯୫
ଆନନ୍ଦ ହୋଇ ସୁରକୁଳ ।
ପୁଷ୍ପ ବରଷିଲେ ଗହଳ ।।୯୬
ସାଧୁଶବଦେ ନାଦ କରି ।
ରଙ୍ଗେ ନାଚନ୍ତି ଅପସରୀ ।।୯୭
ପୁରେ ପ୍ରବେଶ ହଳଧର ।
ଶୋହେ ସୁନ୍ଦର ଯଦୁପୁର ।।୯୮
ସେ ରାମଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ।।୯୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଦ୍ୱିବିଦବଧୋନାମ
ଦ୍ୱିସପ୍ତତିତମ ଅଧ୍ୟାୟଃ ।।

---

## ତ୍ରିସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କ ନନ୍ଦନ ।
ଶୁଣ ହେ ରାମର ବିକ୍ରମ ।।୧।।
ଥିଲା ଯେ ଦୁର୍ଯ୍ୟୋଧନ ରାଜା ।
ଲକ୍ଷ୍ମଣା ତାହାର ତନୁଜା ।।୨।।
ତାହାର ସ୍ୱୟମ୍ବର କାଳେ ।
କୃଷ୍ଣନନ୍ଦନ ଯାଇ ବଳେ ।।୩।।
ହରିଲା ଶାମ୍ବ ବଳବନ୍ତ ।
ସୁନ୍ଦର ଜାମ୍ବବତୀସୁତ ।।୪।।
ଦେଖି କନ୍ୟାର ରୂପଗୁଣ ।
ହରିଲା ସ୍ୱୟମ୍ବରୁ ପୁଣ ।।୫।।
ଲକ୍ଷେକ ରାଜା ଥିଲେ ତହିଁ ।
ରଥେ ବସିଲା କନ୍ୟା ନେଇ ।।୬।।
ଯେମନ୍ତ ବିକ୍ରମ କୃଷ୍ଣର ।
ତେମନ୍ତ କଲା ଶାମ୍ବବୀର ।।୭।।
ଦେଖି ତାହାର ଦୁଷ୍ଟପଣ ।
କୋପେ କମ୍ପିଲା କୁରୁରାଣ ।।୮।।
ଦେଖ ଏ ଶ୍ରୀକୃଷ୍ଣରବଳା ।
ଆମ୍ଭର ମୁଖେ ଦେଲା କଳା ।।୯।।
ଆମ୍ଭଙ୍କୁ କରି ହୀନିମାନ ।
କୁଳୁ ହରିଲା କନ୍ୟାଧନ ।।୧୦
ଆମ୍ଭ ବିଚାରେ ଦେବା ନାହିଁ ।
ଏମନ୍ତ କହି କୋପ ବହି ।।୧୧
ଏହାକୁ ବନ୍ଦୀକର ବଳେ ।
କି କରି ପାରିବେ ଗୋପାଳେ ।।୧୨।।
ଆମ୍ଭର ଦେଲା ରାଜପଣ ।
ରାଜ୍ୟ ଭୁଞ୍ଜନ୍ତି ଯଦୁଗଣ ।।୧୩।।
ଏହାର ପାଇଁ ଯେବେଛଳେ ।
ଯାଦବେ ଆସି ବାହୁବଳେ ।।୧୪।
ଆମ୍ଭର ତୁଲେ ଯୁଦ୍ଧ କରି ।
ହେଳେ ସଂଗ୍ରାମେ ଯିବେ ହାରି ।।୧୫।
ବିମୁଖେ ନ କରିବେ ରଣ ।
ଯୋଗେ ଯେସନ ଇନ୍ଦ୍ରିଗଣ ।।୧୬।
ଏମନ୍ତେ କରି ଏକମନ ।
ଭୂରିଶ୍ରବାଦି ଶଲ୍ୟ କର୍ଣ୍ଣ ।।୧୭।
ଯୂଯଜ୍ଞକେତୁ ଦୁର୍ଯ୍ୟୋଧନ ।
ଆରାଧି ଅନ୍ଧର ବଚନ ।।୧୮।
ଭୀଷ୍ମ ଦ୍ରୋଣଙ୍କ ଆଜ୍ଞା ପାଇ ।
ସକଳ ବୀରେ ସଜ ହୋଇ ।।୧୯।
ଏକ ଆରକେ ମହାଦମ୍ଭ ।
ସମର କରଣେ ଆରମ୍ଭ ।।୨୦।
କୃପ ଧାଇଁଲେ ମନଦୁଃଖେ ।
ମିଳିଲେ ଶାମ୍ବର ସମ୍ମୁଖେ ।।୨୧।
ଦେଖି ତାହାଙ୍କ ଦୁଷ୍ଟଚିତ୍ତ ।
କୃଷ୍ଣନନ୍ଦନ ବଳବନ୍ତ ।।୨୨
ନିଜ କୋଦଣ୍ଡେ ଗୁଣ ଦେଇ ।
ରହିଲା ସିଂହପ୍ରାୟ ହୋଇ ।।୨୩
ବେଗେ ମିଳିଲେ କୁରୁବଳ ।
ଶୁଭଇ ମୁଖରାବ-ଗୋଳ ।।୨୪
ଡାକନ୍ତି ଧର ଧର ବାଣୀ ।
ସିନ୍ଧୁଶବଦ ପ୍ରାୟ ମଣି ।।୨୫
ଶାମ୍ବକୁ ଜିଣିବାର ଆଶେ ।
ବେଗେ ମିଳିଲେ ତାର ପାଶେ ।।୨୬
ରୁନ୍ଧିଲେ ଚାରିଦିଗ କୋଣେ ।
କର୍ଣ୍ଣ ସହିତେ ଘୋରରଣେ ।।୨୭
ସ୍ୱଭାବେ ସର୍ବେ ଧନୁର୍ଦ୍ଧର ।
ଶର ବରଷା ମହାଘୋର ।।୨୮
କରି ରୁନ୍ଧିଲେ ଦଶଦିଶେ ।
ତା ଦେଖି ଶାମ୍ବ ମହାରୋଷେ ।।୨୯
କୋପେଣ କମ୍ପଇ ଶରୀର ।
ନିର୍ଭୟେ କୃଷ୍ଣରକୁମର ।।୩୦
ଛାଗଳ ପଲ ମଧ୍ୟେ ଥାଇ ।
କେଶରୀ ଯେମନ୍ତେ ଦିଶଇ ।।୩୧
ଶାମ୍ବ କରନ୍ତେ ଗୁଣଘୋଷ ।
ଶବଦେ କମ୍ପେ ଦଶଦିଶ ।।୩୨

Dr. Sudhanshu Sekhar Mishra

କର୍ଣ୍ଣ ସହିତେ ଷଡ଼ରଥୀ ।
ଶାମ୍ବକୁ ବାଣ ବରଷନ୍ତି ॥୩୩
ଦେଖି କୁପିତ କୃଷ୍ଣସୁତ ।
ବାଣ ବରଷେ ଅବିରତ ॥୩୪
କର୍ଣ୍ଣକୁ ପାଞ୍ଚବାଣ ବିନ୍ଧି ।
ରଥ ସାରଥି ଅଶ୍ୱ ଛେଦି ॥୩୫
ଷଡ଼ରଥୀଙ୍କି ଏହିମତେ ।
ବାଣ ବିନ୍ଧିଲା ଅପ୍ରମିତେ ॥୩୬
ଦେଖି ତାହାର କ୍ଷତ୍ରିପଣ ।
କୁରୁଏ କଲେ ଘୋରରଣ ॥୩୭
ସାଧୁଶବଦ ଉଚ୍ଚନାଦେ ।
ଶୁଭିଲା କୁରୁବଳ ମଧ୍ୟେ ॥୩୮
ଶାମ୍ବ ଉପରେ କୁରୁବୀରେ ।
ତୀକ୍ଷ୍ଣ ନାରାଚ କୋପଭରେ ॥୩୯
ବିନ୍ଧି ସାରଥି କଲେ ନାଶ ।
ଛେଦିଲେ ଅଶ୍ୱଙ୍କର ପାଶ ॥୪୦
ରଥକୁ କଲେ ଖଣ୍ଡ ଖଣ୍ଡ ।
ଛେଦିଲେ ହସ୍ତର କୋଦଣ୍ଡ ॥୪୧
ବିରଥ କରି ତାକୁ ବଳେ ।
ବନ୍ଧନ କଲେ ଅବହେଳେ ॥୪୨
କନ୍ୟା ସହିତେ ତାକୁ ଧରି ।
ମିଳିଲେ ହସ୍ତିନାନଗରୀ ॥୪୩
କଷ୍ଟରେ କୃଷ୍ଣସୁତ ଜିଣି ।
ସମରେ ଜୟପ୍ରାୟ ମଣି ॥୪୪
ହୋଇଲେ ନିର୍ଭୟ ନିଶ୍ଚିନ୍ତ ।
ଏବେ ହୋ ଶୁଣ ନରନାଥ ॥୪୫
ବ୍ରହ୍ମନନ୍ଦନ ତାହା ଜାଣି ।
ରାମ-ବିକ୍ରମ ପରିମାଣି ॥୪୬
ମିଳିଲେ ଦ୍ୱାରକାଭୁବନେ ।
ରାମ-ଗୋବିନ୍ଦ ସନ୍ନିଧାନେ ॥୪୭
ଉଗ୍ରସେନର ସଭାମଧ୍ୟେ ।
ନାରଦ କହେ ମନଖେଦେ ॥୪୮
ଶୁଣ ହୋ ଭୋଜ ନୃପବର ।
କୁରୁସଭାର ଅବିଚାର ॥୪୯
ତାହାର କନ୍ୟା-ସ୍ୱୟମ୍ବରେ ।
ଶାମ୍ବ ଯେ ଗଲା ତାର ପୁରେ ॥୫୦

କନ୍ୟା ବରିଲା ଇଚ୍ଛାମତେ ।
ଦେଖି କୌରବେ କୋପଚିତ୍ତେ ॥୫୧
କୂଟ ସଂଗ୍ରାମେ ତାକୁ ଧରି ।
ରଖିଲେ ହସ୍ତିନାନଗରୀ ॥୫୨
ଏମନ୍ତ କହି କୃଷ୍ଣଆଗେ ।
ନାରଦ ଗଲେ ଶୂନ୍ୟମାର୍ଗେ ॥୫୩
ନାରଦବାକ୍ୟ କର୍ଣ୍ଣେ ଶୁଣି ।
ସମରେ ସଜ ଚକ୍ରପାଣି ॥୫୪
ପୁତ୍ରବନ୍ଧନ ଶୁଣି ରୋଷେ ।
ଦାରୁକ ରାଇଲେ ବିଶ୍ୱାସେ ॥୫୫
ବୋଇଲେ ରଥ ସାଜ ବେଗେ ।
ତା ଶୁଣି ସାଜିଲେ ଯାଦବେ ॥୫୬
ଉଗ୍ରସେନର ଆଜ୍ଞା ପାଇ ।
ବୀରେ ଚଳିଲେ ସଜ ହୋଇ ॥୫୭
କେ କହୁ କୃଷ୍ଣର ସଇନି ।
ଚଳନ୍ତେ କମ୍ପଇ ମେଦିନୀ ॥୫୮
ବାଜଇ ବୀରତୂରମାନ ।
ରଥେ ବିଜୟ ଭଗବାନ ॥୫୯
ଦେଖିଣ ଗୋବିନ୍ଦ ଆଗମ ।
ବୋଲନ୍ତି ପ୍ରଭୁ ବଳରାମ ॥୬୦
ଏ ତ ନୁହଇ ଭଲ କଥା ।
ବନ୍ଧୁରେ ବିରୋଧ ବ୍ୟବସ୍ଥା ॥୬୧
ସେ ଯେବେ ନ ଜାଣି ଆଚରି ।
ଆମ୍ଭେ କେମନ୍ତେ ବାଦ କରି ॥୬୨
ତୁମ୍ଭେ ନ କର ଆଗମନ ।
ଶୁଣି ରହିଲେ ଭଗବାନ ॥୬୩
ଆଜ ହସ୍ତିନା ଯିବି ମୁହିଁ ।
ଉଭୟକୁଳ ଭାବ ବହି ॥୬୪
ତୁମ୍ଭେ ନ କର ଆଗମନ ।
ଶୁଣି ରହିଲେ ଭଗବାନ ॥୬୫
ଏମନ୍ତେ ପ୍ରଭୁ ବଳରାମ ।
ଯାଦବବଳ କରି ସାମ ॥୬୬
ଉଗ୍ରସେନକୁ ବୋଧ କରି ।
ହସ୍ତିନା ବିଜେ ହଳଧାରୀ ॥୬୭
କୁରୁଯାଦବ ହିତ ଅର୍ଥେ ।
ବେଗେ ଚଳିଲେ ହଳହସ୍ତେ ॥୬୮

ଆନନ୍ଦେ ରେବତୀରମଣ ।
କଳି-କଳୁଷ-ନିବାରଣ ॥୬୯
କୁଳବୃଦ୍ଧଙ୍କୁ ରାଇ ବେଗେ ।
ଉତ୍ତମବିପ୍ର ଘେନି ସଙ୍ଗେ ॥୭୦
ରଥେ ବସିଲେ ତୋଷମନେ ।
ନକ୍ଷତ୍ର ମଧ୍ୟେ ଚନ୍ଦ୍ର ଯେହ୍ନେ ॥୭୧
ମିଳିଲେ ହସ୍ତିନାଭୁବନେ ।
ଦୁର୍ଯୋଧନର ଉପବନେ ॥୭୨
ରାମ ଆଦେଶେ ମନ୍ତ୍ରୀବର ।
ଉଦ୍ଧବ ଗଲା କୁରୁପୁର ॥୭୩
ଦୁର୍ଯ୍ୟୋଧନର ସଭାମଧ୍ୟେ ।
ନମିଲା ଧୃତରାଷ୍ଟ୍ର ପାଦେ ॥୭୪
ଭୀଷ୍ମ-ଦ୍ରୋଣଙ୍କ ପାଦେ ନମି ।
ବୋଲେ ସୁହୃଦଭାବ ଘେନି ॥୭୫
ଦୁର୍ଯ୍ୟୋଧନଙ୍କୁ କରି ଶମ ।
କହିଲା ରାମର ଆଗମ ॥୭୬
ଶୁଣି ରାମର ଆଗମନ ।
ଆନନ୍ଦ ହୋଇ ଭୀଷ୍ମ ଦ୍ରୋଣ ॥୭୭
ସଭାରୁ ଉଠି ଧାଡିକାରେ ।
ମିଳିଲେ ରାମର ଛାମୁରେ ॥୭୮
ବନ୍ଧୁସ୍ୱଭାବପଣେ ହେଜି ।
ରାମଙ୍କୁ ଷଡ଼ଅର୍ଘ୍ୟ ପୂଜି ॥୭୯
କହିଣ ମଧୁର ବଚନ ।
ଆନନ୍ଦ କଲେ ରାମ ମନ ॥୮୦
କୁରୁଙ୍କ ମଧ୍ୟେ ଧୀରମତି ।
ରାମ ମହିମା ସେ ଜାଣନ୍ତି ॥୮୧
ଭାବେ ନମିଲେ ରାମପାଦେ ।
ବନ୍ଧୁ କୁଶଳ ପ୍ରୀତି ସଧେ ॥୮୨
ରାମହିଁ କଲେ ଯଥାବିଧି ।
ଯେ ବନ୍ଧୁକୁଶଳ ପ୍ରସିଦ୍ଧି ॥୮୩
କୁରୁଙ୍କ ମଧ୍ୟେ ହଳପାଣି ।
କହନ୍ତି ପ୍ରିୟଭାବ ଘେନି ॥୮୪
ରାଜାଧିରାଜ ଉଗ୍ରସେନ ।
ଯେମନ୍ତ ବୋଲିଛି ବଚନ ॥୮୫
ବେଗେ କରିବ ସେହିମତ ।
ଆମ୍ଭକୁଳଶ ଯେବେ ଚିନ୍ତ ॥୮୬

Dr. Sudhanshu Sekhar Mishra

ତୁମ୍ଭେ ଉତ୍ତମ ଶସ୍ତ୍ରଧାରୀ ।
ଧର୍ମର ପଥ ନ ବିଚାରି ॥୮୭
କପଟଯୁଦ୍ଧେ କୃଷ୍ଣସୁତ ।
ଧରି ମଣିଲ କୃତକୃତ୍ୟ ॥୮୮
ଏ ଅପରାଧ ଆମ୍ଭେ ସହି ।
ବନ୍ଧୁକୁଶଳ ମନେ ବହି ॥୮୯
ଏମନ୍ତ ଶୁଣି ରାମକଥା ।
ସ୍ୱଭାବେ ସର୍ବେ ମହାରଥୀ ॥୯୦
କୁରୁନନ୍ଦନ ଦୁର୍ଯ୍ୟୋଧନ ।
ଆବର ଯେତେ ଦୁଷ୍ଟଜନ ॥୯୧
ଆମ୍ଭର ନିନ୍ଦାପ୍ରାୟ ବାଣୀ ।
ବଳଦେବଙ୍କ ମୁଖୁଁ ଶୁଣି ॥୯୨
ବଦନ ଚାହିଁ ଏକେ ଏକେ ।
କୋପେ ବୋଲନ୍ତି ମନଦୁଃଖେ ॥୯୩
ଦେଖ ବିଚିତ୍ର କାଳଗତି ।
ଯାହା କହିଲେ ଯଦୁପତି ॥୯୪
ଚର୍ମପାଦୁକା ଗର୍ବ ବହି ।
ଶିରମୁକୁଟ ଶିଖେ ଯାଇ ॥୯୫
ଥିବାକୁ କରଇ ବିଚାର ।
ଏମନ୍ତ ଗର୍ବ ଏହାଙ୍କର ॥୯୬
ଏହାଙ୍କୁ ଆମ୍ଭେ ବନ୍ଧୁପଣେ ।
ରାଜ୍ୟେ ସ୍ଥାପିଲୁ ରାଜାପଣେ ॥୯୭
ନୁହଁନ୍ତି ରାଜପଣେ ଯୋଗ୍ୟ ।
ଆମ୍ଭର ଦେଲା ବଳଭୋଗ ॥୯୮
ଭୁଞ୍ଜି ମଣନ୍ତି ଆମ୍ଭାଶିରୀ ।
ଯେଣୁ ଉପେକ୍ଷା ଆମ୍ଭେ କରି ॥୯୯
ଏହାଙ୍କ ରାଜ୍ୟ ନେବା ବଳେ ।
ଗର୍ବ ଯେ କଲେ ମତ୍ତଭୋଳେ॥୧୦୦
ରାଜ୍ୟକୁ ନୁହଁନ୍ତି ଭାଜନ ।
ସର୍ପକୁ ଯେହ୍ନେ କ୍ଷୀରପାନ ॥୧୦୧
କ୍ଷୀର-ସଂଯୋଗେ ବଢ଼େ ବିଷ ।
ଦାତାକୁ କରେ ପ୍ରାଣେ ନାଶ ॥୧୦୨
ଆମ୍ଭର ଦେଲା ଅନ୍ନ ଖାଇ ।
ସର୍ପର ପ୍ରାୟ ଗର୍ବ ବହି ॥୧୦୩
ଆମ୍ଭଙ୍କୁ ଆଜ୍ଞା ଏ ଦିଅନ୍ତି ।
ଅଳପ ପ୍ରାୟେକ ମଣନ୍ତି ॥୧୦୪

ଦେଖ ଆମ୍ଭର ତୁଲେ ବାଦେ ।
ଇନ୍ଦ୍ର ନ ରହେ ରଣମଧ୍ୟେ ॥୧୦୫
ସିଂହ ସମ୍ମୁଖେ ଯେହ୍ନେ ମେଷ ।
ତେହ୍ନେ ଛାଡ଼ଇ ସ୍ୱର୍ଗଦେଶ ॥୧୦୬
କହନ୍ତି ଶୁକମୁନିବର ।
ଶୁଣ ହେ କୁରୁଙ୍କ ବେଭାର ॥୧୦୭
ଉତ୍ତମଜନ ବନ୍ଧୁଜନେ ।
ଗର୍ବ ବହିଲେ ଦୁଷ୍ଟମନେ ॥୧୦୮
ଏମନ୍ତ କୁରୁ ଦୁଷ୍ଟବାଣୀ ।
ଶୁଣି କୋପିଲେ ହଳପାଣି ॥୧୦୯
କୋପେ ଯମର ପ୍ରାୟ ଦିଶି ।
ବୋଲନ୍ତି ପୁଣ ପୁଣ ହସି ॥୧୧୦
ଦେଖ ସଂସାର ବେଭାର ।
ସମ୍ପଦ ବଢ଼ଇ ଯାହାର ॥୧୧୧
ଅସାଧୁପଣ ଆଚରନ୍ତି ।
ଆମ୍ଭର ସୁଖ ନ ଇଚ୍ଛନ୍ତି ॥୧୧୨
ତାଙ୍କ ପ୍ରସଙ୍ଗେ ଦଣ୍ଡ ହିତ ।
ପଶୁଙ୍କୁ ଲଗୁଡ଼ ଯେମନ୍ତ ॥୧୧୩
ଏ ବଡ଼ ଖେଦ ମୋର ମନେ ।
ଉଗ୍ରସେନର ଅପମାନେ ॥୧୧୪
ଯଦୁଙ୍କ ତୁଲେ ନାରାୟଣ ।
ଏହାଙ୍କ ସଙ୍ଗେ ଇଚ୍ଛି ରଣ ॥୧୧୫
ସକଳ ସୈନ୍ୟ ତୁଲେ ସାଜି ।
ରଥ କୁଞ୍ଜର ନର ବାଜି ॥୧୧୬
ନଗରୁ ହୋଇଲେ ବାହାର ।
ମୁଁ ଏହା କରି ସୁବିଚାର ॥୧୧୭
ଏହାଙ୍କ ପ୍ରିୟଭାବ ବହି ।
ନିବାରି ଅଇଲି ଯେ ମୁହିଁ ॥୧୧୮
ତହିଁର ଫଳ ଏବେ ମୋତେ ।
ଦଇବେ ଫଳିଲା ଉଚିତେ ॥୧୧୯
ଏ ଯେ ସ୍ୱଭାବେ ମନ୍ଦମତି ।
କଳହରୁଚି ଖଳପ୍ରୀତି ॥୧୨୦
ଦେଖ ଅବଜ୍ଞା ମୋତେ କଲେ ।
ଦୁଷ୍ଟବଚନ ନିନ୍ଦାବୋଲେ ॥୧୨୧
ଭୋଜ ଅନ୍ଧକ ବୃଷ୍ଣିବଂଶ ।
ଯାହାର ପୁତ୍ର ବୀରକଂସ ॥୧୨୨

ଯାଦବକୁଳର ଈଶ୍ୱର ।
କୃଷ୍ଣ ଯାହାର ଅନୁଚର ॥୧୨୩
ସେ କାହିଁ ରାଜପଣେ ସାଜେ ।
ଦେବେ ଖଟନ୍ତି ଯା ସମାଜେ॥୧୨୪
ବାସବ ଆଦି ଦିଗପାଳେ ।
ସେବନ୍ତି ଯାର ପାଦତଳେ ॥୧୨୫
ସୁଧର୍ମାସଭା ଯାର ଦ୍ୱାରେ ।
ପାରିଜାତକପୁଷ୍ପ ପୁରେ ॥୧୨୬
ମର୍ତ୍ତ୍ୟେ କରଇ ସ୍ୱର୍ଗଭୋଗ ।
ସେ ନୋହେ ରାଜପଣେ ଯୋଗ୍ୟ ॥୧୨୭
ପଦ୍ମସମ୍ଭବା କମଳିନୀ ।
ସ୍ୱଭାବେ ଜଗତଜନନୀ ॥୧୨୮
ସେ ଯାର ସେବଇ ଚରଣେ ।
ସେ କାହିଁ ଯୋଗ୍ୟ ରାଜ ପଣେ॥୧୨୯
ଯାହାର ପାଦପଦ୍ମରଜ ।
ଅଖିଳଦେବଙ୍କ ସମାଜ ॥୧୩୦
ପବିତ୍ର କରେ ମୁନି ତୀର୍ଥ ।
ଯେଣୁ ସେ ତୀର୍ଥଙ୍କର ତୀର୍ଥ ॥୧୩୧
ବ୍ରହ୍ମାଶଙ୍କର ଆଦି ମୁହିଁ ।
ଯାହାର ଅଂଶେ ଦେହବହି ॥୧୩୨
ଲକ୍ଷ୍ମୀ ସହିତେ ଆଜ୍ଞା ବହି ।
ତାହାର ନୃପାସନ କାହିଁ ॥୧୩୩
କୁରୁଙ୍କ ଭୋଗ ଆମ୍ଭେ ଖାଇ ।
ଧରଣୀ ମଧ୍ୟେ ଦେହ ବହି ॥୧୩୪
ଆମ୍ଭେ ସକଳେ ଉପାନହ ।
କୁରୁ ବହନ୍ତି ଶିର ଦେହ ॥୧୩୫
କାହାର ବଳେ ଏହା ସହି ।
ରୁଧିର ମାଂସ ଦେହ ବହି ॥୧୩୬
ଦେଖ ଏ କୁରୁକୁଳ ମତ ।
ସମ୍ପଦେ ହୋଇ ଅନାୟତ୍ତ ॥୧୩୭
ମାନୀ ଅଟନ୍ତି ଗର୍ବ ବହି ।
କେ ଏହା ସହେ ପ୍ରଭୁ ହୋଇ ॥୧୩୮
ଆଜ କରିବି ପ୍ରତିଫଳ ।
ଏମନ୍ତ ବୋଲି ତୀକ୍ଷ୍ଣ ହଳ ॥୧୩୯
ତକ୍ଷଣେ ଘେନି ବାମହସ୍ତେ ।
ବୋଲନ୍ତି ରାମ କୋପଚିତ୍ତେ ॥୧୪୦

Dr. Sudhanshu Sekhar Mishra

ଆଜ ମୁଁ ଏହାଙ୍କୁ ସଂହାରି ।
ସୁଖୀ କରିବି ବସୁନ୍ଧରୀ ।।୧୪୧
ତେବେ ସେ ଯିବି ନିଜପୁର ।
ସତ୍ୟବଚନ ଏ ମୋହର ।।୧୪୨
ଏମନ୍ତ ବୋଲି କୋପେ ଉଠି।
ଦୃଢେ ଧଇଲେ ହଳମୁଷ୍ଟି ।।୧୪୩
ରାମର କୋପ ଗୁରୁତର ।
ତେଜ କି ଦହେ ତିନିପୁର ।।୧୪୪
ଲଗାଇଲେ ହସ୍ତିନା ଉପାଡ଼ି ।
ଶବଦ ଶୁଭେ ଘଡ଼ଘଡ଼ି ।।୧୪୫
ଦକ୍ଷିଣ କରେ ସଉନନ୍ଦ ।
ଶୂନ୍ୟେ ଦେଖନ୍ତି ଦେବବୃନ୍ଦ ।।୧୪୬
ନଗର ଛାଡ଼ି ଗଙ୍ଗାଜଳେ ।
କୌରବେ ପଡ଼ନ୍ତୁ ପାତାଳେ ।।୧୪୭
ଏମନ୍ତ ବୋଲି ହଳଧାରୀ ।
ହସ୍ତିନା ଉପାଡ଼ିଲେ ଧରି ।।୧୪୮
ସମୁଦ୍ରେ ନାବପ୍ରାୟ ହୋଇ ।
ହସ୍ତିନାନଗର କମ୍ପଇ ।।୧୪୯
ପଡ଼ିବା ପ୍ରାୟ ଗଙ୍ଗାଜଳେ ।
ଦେଖିଣ କୌରବେ ବିକଳେ ।।୧୫୦
କୁଟୁମ୍ବ ତୁଲେ ଉଚ୍ଚନାଦେ ।
ଶରଣ ଗଲେ ରାମପାଦେ ।।୧୫୧
ଡ଼ାକନ୍ତି ଜୀବନ ବିକଳେ ।
ଭୋ ରାମ ରଖ ପାଦତଳେ ।।୧୫୨
ଆମ୍ଭେ ତ ସ୍ୱଭାବେ ନିରେଖା।
ତୋର କୁମର ବଧୂ ରଖ ।।୧୫୩
କୁମର ତୁଲେ କନ୍ୟା ନେଇ ।
ରାମଚରଣ ତଳେ ଯାଇ ।।୧୫୪
ଏ କନ୍ୟା ଦେଇ ତୋ ଶରଣ ।
ପଶିଲୁ ଅଭୟଚରଣ ।।୧୫୫
ହେ ରାମ ତୋହର ମହିମା ।
ବେଦ ନ ଜାଣେ ଆଦିସୀମା ।।୧୫୬
ମୂଢ ଅଜ୍ଞାନ ଆମ୍ଭେ ହେଉଁ ।
ତୋ ଭାବ ଜାଣିବୁଟି କାହୁଁ ।।୧୫୭
ଆମ୍ଭେ କୌରବେ ଅପରାଧୀ ।
ତୁ ନାଥ କରୁଣାବାରିଧି ।।୧୫୮

ସ୍ଥିତି-ପାଳନ-ଅନ୍ତ କରୁ ।
ଯେଣୁ ତୁ ଶେଷରୂପ ଧରୁ ।।୧୫୯
ତୁ ଆଦିହେତୁ ନିର୍ବିକ୍ଷୟ ।
ନିର୍ଲେପ ଏକ ତୁ ଅବ୍ୟୟ ।।୧୬୦
ତୋହର କ୍ରୀଡ଼ାର କନ୍ଦୁକ ।
ସ୍ୱଭାବେ ହୋନ୍ତି ତିନିଲୋକ ।।୧୬୧
ସହସ୍ର ସହସ୍ର ସଂଖ୍ୟାରେ ।
ମହୀମଣ୍ଡଳ ତୋର ଶିରେ ।।୧୬୨
ସୋରିଷ ପ୍ରାୟ ଅଛୁ ଧରି ।
ଲୀଳାମାତ୍ରକେ ବସୁନ୍ଧରୀ ।।୧୬୩
ପାଳନ କରି ପୁଣି ହରୁ ।
ତେଣୁ ତୁ ଶେଷରୂପ ଧରୁ ।।୧୬୪
ଯେ କୋପ ତୋର ଦେଖୁଁ ତାତ ।
ଏକ ଅଖିଳ-ଶିକ୍ଷା-ଅର୍ଥ ।।୧୬୫
ହିଂସା ମତ୍ସର ନାହିଁ ଯେଣୁ ।
ପାଳନ ହେତୁ ତୋର ତେଣୁ ।।୧୬୬
ସୃଷ୍ଟି ପାଳନେ ବ୍ୟଗ୍ର ହେଉ ।
ତୁ ନାଥ ସତ୍ତ୍ୱଗୁଣ ବହୁ ।।୧୬୭
ସଂସାର ମଧ୍ୟେ ତୋର ଲୀଳା।
ଯେହ୍ନେ ବାଳୁତଜନ ଖେଳା ।।୧୬୮
ନମସ୍ତେ ସର୍ବଭୂତ ପ୍ରାଣ ।
ଭକତବନ୍ଧୁ ସଙ୍କର୍ଷଣ ।।୧୬୯
ଜୀବର ଶକତି ଧାରଣ ।
ତୋବିନୁ ନାହିଁ ଅନ୍ୟ ଜନ ।।୧୭୦
ଅବ୍ୟୟ ବୋଲାଉ ଜଗତେ ।
ଭୋ ନାଥ ତୋର ଅନୁମତେ ।।୧୭୧
ତୁ ବିଶ୍ୱକର୍ମା ଜ୍ଞାନ ସାର ।
ଭୋ ନାଥ ତୋତେ ନମସ୍କାର ।।୧୭୨
ତୋହର ପାଦପଦ୍ମ ତଳେ ।
ଶରଣ ପଶିଲୁ ନିଶ୍ଚଳେ ।।୧୭୩
ଶୁକ ବୋଲନ୍ତି ରାୟେ ଶୁଣ ।
ଭକତବନ୍ଧୁ ସଙ୍କର୍ଷଣ ।।୧୭୪
କୁରୁଙ୍କ ଦୁଃଖ ଭୟ ଚାହିଁ ।
ପ୍ରସନ୍ନ ଚିତ୍ତେ ଦୟା ବହି ।।୧୭୫
ହଳ ସଂହରି ହଳଧର ।
ବୋଇଲେ ନାହିଁ ତୁମ୍ଭ ଡର ।।୧୭୬

ନିର୍ଭୟ ହୋଇ କୁରୁଜନ ।
ତକ୍ଷଣେ ରାଜା ଦୁର୍ଯ୍ୟୋଧନ ।।୧୭୭
କନ୍ୟା ସହିତେ କୃଷ୍ଣସୁତ ।
ସମର୍ପି ରାମର ଆଗ୍ରତ ।।୧୭୮
ଅନେକ ଯଉତୁକ ଦେଲା ।
ଶୁଣ ହୋ ଅଭିମନ୍ୟୁ ବଳା ।।୧୭୯
ଅତି ସୁନ୍ଦର ମନୋହର ।
ଦେଲା ବାରଶତ କୁଞ୍ଜର ।।୧୮୦
ଅଶ୍ୱ ସେ ଦେଲାକ ଅୟୁତେ।
ଷଟସହସ୍ର ଦେଲାକ ଯୁବତୀ ।।୧୮୧
ରଥେ ଦିଶନ୍ତି ରବିତେଜ ।
ପୁଣି ଆନନ୍ଦେ କୁରୁରାଜ ।।୧୮୨
ଦୁହିତା ହିତେ କୁରୁପତି ।
ସହସ୍ରେ ଦେଲାକ ଯୁବତୀ ।।୧୮୩
ଅମୂଲ୍ୟରତ୍ନ କଣ୍ଠେ ଭରି ।
ଦେଲା ସେବକୀ ସଜ କରି ।।୧୮୪
ଏମନ୍ତେ କନ୍ୟାଆଦି ଯେତେ।
ରାମ ଘେନାଇଁ ତୋଷଚିତ୍ତେ ।।୧୮୫।।
ଏ ଆଦି ଘେନି ହଳଧର ।
ଗମନ୍ତେ ସର୍ବ କୁରୁବୀର ।।୧୮୬
ରାମଙ୍କୁ କରି ପ୍ରଦକ୍ଷିଣ ।
ମିଳିଲେ ହସ୍ତିନା ଭୁବନ ।।୧୮୭
ସଙ୍କରଷଣ ତୋଷଚିତ୍ତେ ।
ଆନନ୍ଦେ ରାମର ଅଗ୍ରତେ ।।୧୯୦
କନ୍ୟା ସହିତେ କୃଷ୍ଣସୁତ ।
ସଙ୍ଗେ ସମ୍ପଦ ଅପ୍ରମିତ ।।୧୯୧
ଦେଖି ହରଷ ସର୍ବଜନ ।
ସଭାର ମଧ୍ୟେ ବଳରାମ ।।୧୯୨
କୁରୁଙ୍କ କୃତକର୍ମ କହି ।
କୃଷ୍ଣର ପ୍ରିୟଭାବ ବହି ।।୧୯୩
କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ରାଜନ ପରୀକ୍ଷିତ ।।୧୯୪
ଅଦ୍ୟାପି ରାମର ଚରିତ ।
ହସ୍ତିନାନଗରେ ବିଦିତ ।।୧୯୫
ରାମ-ବିକ୍ରମ-ଯଶ ଅଛି ।
ପୁର ଦକ୍ଷିଣଭାଗେ ଲକ୍ଷି୍ୟ ।।୧୯୬

Dr. Sudhanshu Sekhar Mishra

ଉତ୍ତର ଭାଗ ନୀଚ ଦିଶେ ।
ଯେହ୍ନେ ଜାହ୍ନବୀ ଜଳେ ମିଶେ ॥୧୯୭
ଏମନ୍ତେ ରାମର ମହିମା ।
କେ କହିପାରେ ଅନ୍ତଃସୀମା ॥୧୯୮
ସେ ରାମ ପାଦେ ଦେଇ ଚିତ୍ତ ।
କହଇ ବିପ୍ର ଜଗନ୍ନାଥ ॥୧୯୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ହାସ୍ତିନପୁର
କର୍ଷଣ ରୂପ ସଙ୍କର୍ଷଣ ବିଜୟୋ
ନାମ ତ୍ରିସପ୍ତତିତମ ଅଧ୍ୟାୟଃ ॥

---

## ଚତୁଃସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରନାଥ ।
କୃଷ୍ଣଚରିତ ଭାଗବତ ॥୧॥
ବ୍ରହ୍ମାନନ୍ଦନ ଏକଦିନେ ।
ବିଚାର କଲେ ବସି ମନେ ॥୨॥
ରଣେ ନାରକାସୁର ମାରି ।
କୃଷ୍ଣ ଆଣିଲେ ଯେତେ ନାରୀ ॥୩॥
ଷୋଳସହସ୍ର ଏକଶତ ।
ଗୃହେ ନିବେଶି ଏକମତ ॥୪॥
ଏକ ଅନେକ ନାରୀ ରମେ ।
ଏତେ ବିଚାରି ମନଭ୍ରମେ ॥୫॥
କେମନ୍ତେ ରମଇଁ ଏକାନ୍ତେ ।
ପୁତ୍ର ପଉତ୍ର ଅପ୍ରମିତେ ॥୬॥
ଏକେ ଅନେକ ନାରୀ ରମେ ।
ଏତେ ବିଚାରି ମନଭ୍ରମେ ॥୭॥
ଦେଖିବି ବୋଲି କରି ସଧ ।
ଦ୍ୱାରକା ମିଳିଲେ ନାରଦ ॥୮॥
ସ୍ୱଭାବେ ଗୋବିନ୍ଦର ପୁର ।
କି ଅବା ଦେବା ପଟାନ୍ତର ॥୯॥
ପୁଷ୍ପିତ ଉପବନ ମଧ୍ୟେ ।
ଭ୍ରମର ପକ୍ଷୀ କଳନାଦେ ॥୧୦
ନୀଳ କୁମୁଦ ପଦ୍ମସାର ।
ସୁଗନ୍ଧ କୁସୁମ କହ୍ଲାର ॥୧୧
ହଂସ ସାରସ ମଧ୍ୟେ ପଶି ।
ସୁନ୍ଦର ଜଳାଶୟେ ଭାସି ॥୧୨
ଶୁଭ୍ର ପ୍ରାସାଦ ନବଲକ୍ଷ ।
ସ୍ଫଟିକ ରଜତ ପ୍ରତ୍ୟକ୍ଷ ॥୧୩

ମହାମର୍କତ ତେଜ କାନ୍ତି ।
ରତ୍ନ ସୁବର୍ଣ୍ଣ ଝଟକନ୍ତି ॥୧୪
ଏକାନ୍ତ ମାର୍ଗ ଚତୁଷ୍ପଥ ।
ହାଟ ପାଟଣା ସୁଶୋଭିତ ॥୧୫
ଦେବତା ଗୃହ ଯଜ୍ଞଶାଳ ।
ଦିଶନ୍ତି ଯେହ୍ନେ ମେଘମାଳ ॥୧୬
ମାର୍ଗ ଅଗଣା ରାଜପଥ ।
ମାର୍ଜିତ ଚନ୍ଦନେ ସିଞ୍ଚିତ ॥୧୭
ଚିତ୍ରପିତୁଳି କାଛମାଝେ ।
ଧ୍ୱଜ ପତାକା ତଥି ସାଜେ ॥୧୮
ଏଣୁ ନ ଲାଗେ ରବି ତେଜ ।
ଯହିଁ ବିଜୟେ ଦେବରାଜ ॥୧୯
କେ କହୁ ପୁରଙ୍କର ଶୋଭା ।
କିବା ଉପମା ତାକୁ ଦେବା ॥୨୦
କୃଷ୍ଣର ଅନ୍ତଃପୁର ଦ୍ୱାରେ ।
ଦେବେ ଖଟନ୍ତି ନିରନ୍ତରେ ॥୨୧
ବିଶ୍ୱକର୍ମାର ଶିଳ୍ପୀପଣ ।
ଯେପୁରେ ହୋଇଛି ପ୍ରମାଣ ॥୨୨
ଷୋଳସହସ୍ରଶତେ ନାରୀ ।
ସେ ପୁରେ ଗୃହବାସ୍ତୁ କରି ॥୨୩
କୃଷ୍ଣ ସେବନ୍ତି ମନସୁଖେ ।
କେ କହୁ ତାଙ୍କ ପୁଣ୍ୟ ମୁଖେ ॥୨୪
ବ୍ରହ୍ମାନନ୍ଦନ ଏକସରେ ।
ମିଳିଲେ କୃଷ୍ଣ-ଅନ୍ତଃପୁରେ ॥୨୫
ବିଦ୍ରୁମ ସ୍ତମ୍ଭମାନ ଶୋହେ ।
ଚଳଇ ଇନ୍ଦ୍ରନୀଳ ପ୍ରାୟେ ॥୨୬

ଫଳକମାନ ବଇଦୂର୍ଯ୍ୟ ।
ଖଞ୍ଜିତ ନାନା ମଣିପୁଞ୍ଜ ॥୨୭
ଏଣେ ଗଞ୍ଜାଇ ସର୍ବଜ୍ୟୋତି ।
ତମେ ଯେସନେ ତାରାପନ୍ତି ॥୨୮
ମୁକ୍ତା ଦାମେ ଚନ୍ଦ୍ରାତପ ।
ଯେ ବିଶ୍ୱକର୍ମାର ଶିଳିପ ॥୨୯
ଆସନ ପଲ୍ୟଙ୍କ ସହିତେ ।
ନିର୍ମିତ କରି ବରଦନ୍ତେ ॥୩୦
ଖଚିତ ପଦ୍ମରାଗ ପନ୍ତି ।
ଦେଖନ୍ତେ ମନ ସେ ହରନ୍ତି ॥୩୧
କୃଷ୍ଣ କାମିନୀଙ୍କର ପାଶେ ।
ସେବକୀ ସେବନ୍ତି ବିଶ୍ୱାସେ ॥୩୨
ତାହାଙ୍କ କଣ୍ଠେ ରତ୍ନମଣି ।
ରବିକିରଣ ପ୍ରାୟେ ଜାଣି ॥୩୩
ବିବିଧ ବସ୍ତ୍ର ପରିଧାନ ।
ରୂପ ବୟସ ସୁଘଟଣ ॥୩୪
ବଳୟ କରେ ବିଭୂଷଣ ।
ପାଦେ ନୂପୁର ରୁଣଝୁଣ ॥୩୫
ମଣିକୁଣ୍ଡଳ ଶୋହେ କର୍ଣ୍ଣେ ।
କୃଷ୍ଣକାମିନୀ ଅବଧାନେ ॥୩୬
ଜଳନ୍ତି ରତ୍ନଦୀପ ପନ୍ତି ।
ନିବିଡ଼ତମ ସେ ହରନ୍ତି ॥୩୭
ଚିତ୍ର-ଜଗତି ଶିଖେ ଥାଇ ।
ଅଗୁରୁ ଧୂପ ଧୂମ ଚାହିଁ ॥୩୮
ଜଳଦ ପ୍ରାୟ ମଣି ମନେ ।
ନାଚନ୍ତି ନୀଳକଣ୍ଠଗଣେ ॥୩୯

Dr. Sudhanshu Sekhar Mishra

ଏମନ୍ତ ପୁରେ କୃଷ୍ଣନାରୀ ।
ସମାନ ବୟ-ବେଶଧାରୀ ॥୪୦
ସେବନ୍ତି କୃଷ୍ଣର ଚରଣେ ।
ନିଜ ମନ୍ଦିରେ ଜଣେ ଜଣେ ॥୪୧
ଦାସୀ-ସହସ୍ର ମେଳେ ଥାଇ ।
ସେବନ୍ତି ଭାବେ ଭାବଗ୍ରାହୀ ॥୪୨
ଏମନ୍ତେ ରୁକ୍ମିଣୀ ଭୁବନେ ।
ନାରଦ ମୁନି ଶୁଦ୍ଧମନେ ॥୪୩
ମିଳିଲେ କୃଷ୍ଣପାଶେ ଯାଇ ।
ଦେଖି ଉଠିଲେ ଭାବଗ୍ରାହୀ ॥୪୪
ଧାର୍ମିକ ବର ବ୍ରହ୍ମରାଶି ।
ଲକ୍ଷ୍ମୀ ପଲ୍ୟଙ୍କ ତଳେ ବସି ॥୪୫
କିରୀଟ ଶିରେ ଦେବହରି ।
ନମିଲେ ମୁନି ପାଦ ଧରି ॥୪୬
ନାରଦ ହସ୍ତେ ହସ୍ତ ଦେଇ ।
ଆସନେ ବସାଇଲେ ନେଇ ॥୪୭
ମୁନି ଚରଣଯୁଗ ଧୋଇ ।
ଶିରେ ଘେନିଲେ ଭାବଗ୍ରାହୀ ॥୪୮
ବ୍ରହ୍ମଣ୍ୟଦେବ ଯାର ନାମ ।
ସକଳ ଗୁଣେ ଅନୁପମ ॥୪୯
ଯାହାର ଚରଣ ଉଦକ ।
ହରଇ ସକଳ ପାତକ ॥୫୦
ପୁରାଣପୁରୁଷ ମୁରାରି ।
ବୋଲନ୍ତି ମୁନିପାଦ ଧରି ॥୫୧
ହସି ବୋଲନ୍ତି ମହାବାହୁ ।
ନିଯୋଗ ଆଜ୍ଞା ମୋତେ ହେଉ ॥୫୨
ନାରଦ କୃଷ୍ଣ ମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୫୩
ଭୋ ନାଥ ଶୁଣ ନାରାୟଣ ।
ଅଖିଳ ବ୍ରହ୍ମାଣ୍ଡ କାରଣ ॥୫୪
ସକଳଜନେ ତୋର କୀର୍ତ୍ତି ।
ଖଳ-ଦଣ୍ଡନେ ବକ୍ରଗତି ॥୫୫
ସାଧୁଙ୍କ ନିସ୍ତାର ନିମନ୍ତେ ।
ତୋ ଅବତାର ଏ ଜଗତେ ॥୫୬
କ୍ଷିତି ରକ୍ଷଣେ ଚକ୍ରଧର ।
ତୋହର ଯେତେ ଅବତାର ॥୫୭

ନିଗମେ ତୋର ଯଶ ଗାଇ ।
ଏହା ତ ଭଲେ ମୁଁ ଜାଣଇଁ ॥୫୮
ଦେଖିଲି ତୋ ଚରଣ ଯୁଗ ।
ଯହୁଁ ଜନ୍ତୁଇ ଅପବର୍ଗ ॥୫୯
ଯେ ପାଦ ବହ୍ମା ବେଦବାଦୀ ।
ଯାହା ଚିନ୍ତନ୍ତି ନିରବଧି ॥୬୦
ସଂସାର-କୂପ ମଧ୍ୟେ ପଡ଼ି ।
ଜନ୍ତୁଏ ମାୟାଜଳେ ବୁଡ଼ି ॥୬୧
ତାହାଙ୍କ ତରିବା ନିଶ୍ରୁଣି ।
ତୋ ପାଦପଦ୍ମ ଚକ୍ରପାଣି ॥୬୨
ସେ ପାଦ ଧ୍ୟାୟୀ ଏ ଜଗତେ ।
ମୁଁ ଯେ ବୁଲଇ ଅବିରତେ ॥୬୩
ସେ ପାଦ ଚିନ୍ତା ମୋର ହୃଦେ ।
ନିରତେ ଥାଉ ଅପ୍ରମାଦେ ॥୬୪
ତୋତେ ଅଇଲି ଦେଖି ମୁହିଁ ।
ଏମନ୍ତେ ଶିରେ କର ଦେଇ ॥୬୫
ନାରଦ ଗଲେ ସ୍ନେହଭରେ ।
ପୁଣି ମିଳିଲେ ଅନ୍ୟପୁରେ ॥୬୬
କୃଷ୍ଣର ମାୟା ଯୋଗମତ ।
ବୁଝିବା ଅର୍ଥେ ବ୍ରହ୍ମାସୁତ ॥୬୭
ସତ୍ୟଭାମାର ପୁରେ ଯାଇ ।
ମିଳିଲେ ବୀଣାବାଦ୍ୟ ବାଇ ॥୬୮
ଉଦ୍ଧବ ସଙ୍ଗେ ଯଦୁପତି ।
ପଶାଖେଳରେ ଦୃଢ଼ମତି ॥୬୯
ପ୍ରିୟାସହତେ ଦାମୋଦର ।
ଦେଖିଲେ ବ୍ରହ୍ମାର କୁମର ॥୭୦
ନାରଦ ଆଗମନ ଦେଖି ।
ଗୋବିନ୍ଦ ଆସନ ଉପେକ୍ଷି ॥୭୧
ପ୍ରିୟାସହତେ ନରହରି ।
ଉଦ୍ଧବ କରେ କର ଧରି ॥୭୨
ପୂଜିଲେ ନାରଦ ଚରଣ ।
ବିପ୍ରଭକତ ନାରାୟଣ ॥୭୩
ଆସନ ଆଦି ଉପଚାରେ ।
ଗୃହସ୍ଥ ଆଶ୍ରମ ବେଭାରେ ॥୭୪
ପୂଜି କପାଳେ ଯୋଡ଼ିକର ।
ପୁଚ୍ଛନ୍ତି ପ୍ରଭୁ ଦାମୋଦର ॥୭୫

କେଣେ ଆଗମନ ତୁମ୍ଭର ।
ପବିତ୍ର କଲ ମୋର ପୁର ॥୭୬
ତମ୍ଭେ ସକଳ ଗୁଣେ ପୂର୍ଣ୍ଣ ।
ସ୍ୱଭାବେ ମୁହିଁ କ୍ଷୁଦ୍ର ଜନ ॥୭୭
କି ଅବା କରିବଇଁ ସେବା ।
ବିଚାରି ମୋତେ ଆଜ୍ଞା ଦେବା ॥୭୮
କହ କିମର୍ଥେ ଆଗମନ
ପବିତ୍ର କର୍ମ ମୋର ଜନ୍ମ ॥୭୯
ସୁଫଳ ହେଉ ଆଜ୍ଞା ବହି
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୮୦
ଶୁଣି ନାରଦ ମହାମୁନି
କିଛି ନ ବୋଲି ହେଲେ ତୁନି ॥୮୧
ତକ୍ଷଣେ ଉଠି ବ୍ରହ୍ମାସୁତ
ଅନ୍ୟ ଭୁବନେ ଉପଗତ ॥୮୨
ତହିଁ ଦେଖିଲେ ନରହରି
ବାଳକ କୋଳେ ଛନ୍ତି ଧରି ॥୮୩
ଶିଶୁ ଲାଳନେ ଭଗବାନ ।
ଦେଖି ନାରଦ ଆଗମନ ॥୮୪
ସଂଭ୍ରମେ ପ୍ରଭୁ ଦେବରାଜା ।
ପୂର୍ବ ପ୍ରାୟେକ କଲେ ପୂଜା ॥୮୫
ନାରଦ ମୁନି ଶୁଖଭରେ ।
ପୁଣି ମିଳିଲେ ଅନ୍ୟପୁରେ ॥୮୬
ତହିଁ ଦେଖିଲେ ଭଗବାନ ।
ସ୍ନାହାନ ଅର୍ଥେ ଆଗମନ ॥୮୭
ପୁଣି ଦେଖିଲେ ଅନ୍ୟ ପୁରେ ।
କୃଷ୍ଣ ଅଛନ୍ତି ଯଜ୍ଞଘରେ ॥୮୮
ଅଗ୍ନି ପୂଜନ ପଞ୍ଚମୁଖେ ।
ବ୍ରହ୍ମାନନ୍ଦନ ଦେଖି ସୁଖେ ॥୮୯
ଅନ୍ୟ ଭୁବନେ ପୁଣି ମିଳି ।
ଦେଖନ୍ତି ପ୍ରଭୁ ବନମାଳୀ ॥୯୦
ବିପ୍ରେ ଭୁଞ୍ଜାଇ ମିଷ୍ଟଅନ୍ନେ ।
ଶେଷ ଭୁଞ୍ଜନ୍ତି ତୋଷମନେ ॥୯୧
ତକ୍ଷଣେ ଅନ୍ୟ ପୁରେ ପଶି ।
କୃଷ୍ଣେ ଦେଖିଲେ ବ୍ରହ୍ମଋଷି ॥୯୨
ଗୋବିନ୍ଦ ସନ୍ଧ୍ୟା ଉପାସନେ ।
ଗାୟତ୍ରୀ ଜପନ୍ତି ମଉନେ ॥୯୩

Dr. Sudhanshu Sekhar Mishra

ଖଡ଼ଗ ଚର୍ମ ଧରି କରେ ।
ଶର ସାଧନ୍ତି କେଉଁ ପୁରେ ॥୯୪
ଆରୋହୀ ଅଶ୍ୱ-ରଥ-ଗଜେ ।
ନାନା ଭୁବନେ ନାନା ସଜେ ॥୯୫
ଏମନ୍ତ ଦେଖି ବ୍ରହ୍ମଋଷି ।
ପୁଣି ହିଁ ଅନ୍ୟ ପୁରେ ପଶି ॥୯୬
ତହିଁ ଦେଖିଲେ ଭଗବାନ ।
ପଲ୍ୟଙ୍କ ଉପରେ ଶୟନ ॥୯୭
ଉପରେ ଚନ୍ଦ୍ରାତପ ଶୋହି ।
ସେବନ୍ତି ବାମାଗଣେ ରହି ॥୯୮
ସ୍ତୁତି କରନ୍ତି ବନ୍ଦୀଜନେ ।
ଦେଖି ଚଳିଲେ ତୋଷମନେ ॥୯୯
ଦେଖନ୍ତି ଅନ୍ୟ ପୁରେ ଯାଇ ।
ଉଦ୍ଧବେ ନିକଟେ ବସାଇ ॥୧୦୦
ମନ୍ତ୍ରଣା ମନ୍ତ୍ରୀ ଗଣ ସଙ୍ଗେ ।
ଦେଖି ନାରଦ ଭବରଙ୍ଗେ ॥୧୦୧
ପୁଣି ମିଳିଲେ ଅନ୍ୟ ପୁରେ ।
ଦେଖନ୍ତି ଜଳର ଭିତରେ ॥୧୦୨
ଦିବ୍ୟଯୁବତୀଗଣ ସଙ୍ଗେ ।
ଜଳେ ଖେଳନ୍ତି ନାନାରଙ୍ଗେ ॥୧୦୩
ପୁଣି ମିଳିଲେ ଅନ୍ୟ ସ୍ଥାନେ ।
ଗୋବିନ୍ଦ ବସି ତୋଷମନେ ॥୧୦୪
ଗୋରୁଙ୍କୁ କରି ଅଳଙ୍କାର ।
ପ୍ରସନ୍ନେ କମଳାର ବର ॥୧୦୫
ଉତ୍ତମ ବିପ୍ରେ ଗୋରୁଦାନ ।
କରନ୍ତି ପ୍ରଭୁ ଭଗବାନ ॥୧୦୬
ତକ୍ଷଣେ ବ୍ରହ୍ମାଙ୍କ କୁମର ।
ପୁଣି ମିଳିଲେ ଅନ୍ୟ ପୁର ॥୧୦୭
ତହିଁ ଦେଖିଲେ ନାରାୟଣ ।
ମଙ୍ଗଳପୁରାଣ ଶ୍ରବଣ ॥୧୦୮
କେବଣ ଠାରେ ହାସ୍ୟମୁଖେ ।
ହସି ଚାହାନ୍ତି ପ୍ରିୟା ସୁଖେ ॥୧୦୯
କେବଣ ଠାରେ ଚିନ୍ତି ଧର୍ମ ।
ଅନ୍ୟ ଚାହାନ୍ତି ପ୍ରିୟା ସୁଖେ ॥୧୧୦
ଧ୍ୟାନ-ସମାଧି ଅନ୍ୟ ସ୍ଥାନେ ।
ବ୍ରହ୍ମ ଚିନ୍ତନ୍ତି ସ୍ଥିରମନେ ॥୧୧୧

କେବଣଠାରେ ଗୁରୁପୂଜା ।
ସକାମ-ଭୋଗେ ପରିଚର୍ଯ୍ୟା॥୧୧୨
କେବଣ ସ୍ଥାନେ ଯଦୁପତି ।
ସନ୍ଧି ବିଗ୍ରହ ରାଜନୀତି ॥୧୧୩
ଚିନ୍ତନ୍ତି ରାମ ଅନୁମତେ ।
ଯେ ଅବା ଭକ୍ତଜନ ହିତେ ॥୧୧୪
କେବଣ ସ୍ଥାନେ ଯଦୁପତି ।
ସନ୍ଧି ବିଗ୍ରହ ରାଜନୀତି ॥୧୧୫
ଶ୍ୱଶୁରଭୁବନେ ପେଷନ୍ତି ।
ପୁତ୍ରର ପତ୍ନୀଙ୍କି ଅଣାନ୍ତି ॥୧୧୬
ଅନ୍ୟ ଭୁବନେ ନନ୍ଦବାଳ ।
ପୁତ୍ରଦୁହିତାଙ୍କ ମଙ୍ଗଳ ॥୧୧୭
ବିଚାରି କରନ୍ତି ଉତ୍ସବ ।
ନାରଦ ଦେଖି ନାନାଭାବ ॥୧୧୮
ଅଦ୍‌ଭୁତ କର୍ମ ନରଲୋକେ ।
ଅନ୍ୟ ଭୁବନେ ମିଳି ସୁଖେ ॥୧୧୯
ତହିଁ ଦେଖିଲେ ନାରାୟଣ ।
ଯଜ୍ଞେ ପୂଜନ୍ତି ଦେବଗଣ ॥୧୨୦
କେବଣପୁର ଜଳଦାନ ।
କୂପ-ତଡ଼ାଗେ ଅବଧାନ ॥୧୨୧
ମଣ୍ଡପ ଦେବତାମନ୍ଦିର ।
ଯେ ଧର୍ମ ଗୃହସ୍ଥ ବେଭାର ॥୧୨୨
ପୁଣି ଦେଖନ୍ତି ଅନ୍ୟ ପୁରେ ।
କୃଷ୍ଣ ମୃଗୟା ଅନୁସରେ ॥୧୨୩
ଆରୋହି ଅଶ୍ୱ ସଇନ୍ଧବ ।
ବନେ ମାରନ୍ତି ନାନା ଜୀବ ॥୧୨୪
ପବିତ୍ର ପଶୁ କରି ହତ ।
ନିଜ ଭୁବନେ ଉପଗତ ॥୧୨୫
ଏମନ୍ତେ ପତ୍ନୀପୁର ଅନ୍ତେ ।
ମଧ୍ୟେ ବୁଲନ୍ତି ବ୍ରହ୍ମାସୁତେ ॥୧୨୬
ପୁଣ ଦେଖିଲେ ଭଗବାନ ।
କପଟ ମାୟାରୂପେ ଛନ୍ନ ॥୧୨୭
ବୁଲନ୍ତି ନାରୀଙ୍କ ଭୁବନେ ।
ସ୍ତିରୀଚରିତ ଅବଧାନେ ॥୧୨୮
ଦେଖି ନାରଦ ମହାଋଷି ।
କୃଷ୍ଣବଦନ ଚାହିଁ ହସି ॥୧୨୯

ବୋଲନ୍ତି ବ୍ରହ୍ମାଙ୍କ ନନ୍ଦନ ।
କୋମଳ ଶଂକିତ ବଚନ ॥୧୩୦
ଲୀଳା ମନୁଷ୍ୟ ଅବତାର ।
ଭୋ ନାଥ ମହିମା ତୋହର ॥୧୩୧
ଯୋଗେଶ୍ୱରଙ୍କୁ ଅଗୋଚର ।
ଭୋ ନାଥ ମହିମା ତୋହର ॥୧୩୨
ଜଗଦୀଶ୍ୱର ତୁ ଜଗତେ ।
ତୋ ପାଦପଦ୍ମ ସେବା ଅର୍ଥେ ॥୧୩୩
ତୋହର ଯଶ ଓ ଜଗତେ ।
ମୁଁ ତାହା ଗାଇଣ ନିରତେ ॥୧୩୪
ଯେ ଯଶ ଅଖିଳ ପାବନି ।
ଗାଇ ବୁଲିବି ଦେହ ଘେନି ॥୧୩୫
ନାରଦ ବାକ୍ୟେ ତୋଷ ହୋଇ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୧୩୬

ଭଗବାନ ଉବାଚ

ଶୁଣ ନାରଦ ସାଧୁକଥା ।
ମୁହିଁ ଯେ ଧର୍ମର ବକତା ॥୧୩୭
ହର୍ତ୍ତା କରତା ମୁଁ ବୋଲାଇ ।
ସ୍ୱକର୍ମ ଜଗତେ କରାଇ ॥୧୩୮
ଧର୍ମରକ୍ଷଣେ ମୁଁ ଜଗତେ ।
ଶରୀର ଧରି ନାନାମତେ ॥୧୩୯
ବୁଲଇ ହୋଇ ରୂପଭେଦ ।
ମନେ ନ କର ତୁମେ ଖେଦ ॥୧୪୦
କହନ୍ତି ଶୁକ ବ୍ରହ୍ମବେତ୍ତା ।
ଶୁଣ ରାଜନ କୃଷ୍ଣକଥା ॥୧୪୧
ଏମନ୍ତେ ଗୃହାଶ୍ରମ ଧର୍ମ ।
ଗୋବିନ୍ଦ କଲେ ଯେତେ କର୍ମ ॥୧୪୨॥
ଏକ ଶରୀର ନରହରି ।
ସର୍ବକାମିନୀ ପୁରେ ପୁରୀ ॥୧୪୩
ଅନନ୍ତ ଯୋଗ ମାୟାରାଶି ।
ଦେଖି ସାନନ୍ଦ ବ୍ରହ୍ମଋଷି ॥୧୪୪
ଆନନ୍ଦେ ପାଇ କଉତୁକ ।
ବିସ୍ମିତ ସୁଜ୍ଞାନି ବିବେକ ॥୧୪୫
କୃଷ୍ଣର ଗୃହମେଧିକର୍ମ ।
ଯେ ନିତ୍ୟ ଧର୍ମ ଅର୍ଥ କାମ ॥୧୪୬

Dr. Sudhanshu Sekhar Mishra

ଦେଖି ନାରଦ ମହାମୁନି ।
ପରମବ୍ରହ୍ମ ତତ୍ତ୍ୱଜ୍ଞାନୀ ॥୧୪୭
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
କୃଷ୍ଣ ମହିମା ମନେ ଧ୍ୟାୟି ॥୧୪୮
ଗଲେ ନାରଦ ବ୍ରହ୍ମଚାରୀ ।
ଶୁଣ ପରୀକ୍ଷ ଦଣ୍ଡଧାରୀ ॥୧୪୯
ଏମନ୍ତ ମନୁଷ୍ୟର କର୍ମ ।
ଯେ ନିତ୍ୟ କାମ ଅର୍ଥ ଧର୍ମ ॥୧୫୦
ଏ ଅନୁପଥେ ଦେହ ବହି ।
ସଂସାର ହିତେ ଭାବଗ୍ରାହୀ ॥୧୫୧
ଷୋଳସହସ୍ର ନାରୀ ମଧ୍ୟେ ।
ରମିଲେ ନାନା ଅନୁବନ୍ଧେ ॥୧୫୨
ସୃଷ୍ଟି ପାଳନ ସଂହାରଣ ।
ଯେ ହରି ପରମ କାରଣ ॥୧୫୩
ଅଦ୍ଭୁତ କର୍ମ କଲେ ଯେତେ ।
ଗୃହସ୍ଥ ଆଶ୍ରମ ଭକତେ ॥୧୫୪
ଯେ ଏହା ଶୁଣି ଭାବ ବହେ ।
ଜଗତଜନ ମଧ୍ୟେ କହେ ॥୧୫୫
କୃଷ୍ଣଚରଣେ ଭକ୍ତିଭାବ ।
ସେ ପ୍ରାଣୀ ଲଭେ ଅପବର୍ଗ ॥୧୫୬
କହଇ ଜଗନ୍ନାଥ ଦାସ ।
କୃଷ୍ଣ ମହିମା ସୁଧାରସ ॥୧୫୭
ଗୋବିନ୍ଦ ମାୟାଯୋଗ ବାଣୀ ।
ଶୁଣି ସାନନ୍ଦ ନୃପମଣି ॥୧୫୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
କୃଷ୍ଣଗାର୍ହସ୍ଥ୍ୟଦର୍ଶନଂ ନାମ
ଚତୁଃସପ୍ତତିତମ ଅଧ୍ୟାୟଃ ॥

---

## ପଞ୍ଚସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନରପତି ।
କୃଷ୍ଣର ଯେତେକ ଯୁବତୀ ॥୧
ରଜନୀ ପ୍ରଭାତ ନିକଟେ ।
ଗୃହୀତ ନିଜ ପତି କଣ୍ଠେ ॥୨
କୃଷ୍ଣର ବିରହେ କାତର ।
ଭାବେ ଅଧିକ ସ୍ନେହଭର ॥୩
କୁକ୍କୁଟ ନାଦ ଶୁଣି କର୍ଣ୍ଣେ ।
ତାହାଙ୍କୁ ଅତି ଦୁଃଖ ମନେ ॥୪
ଶପନ୍ତି ବିରହ ବିଷାଦେ ।
ନିବିଡ଼େ ଭିଡ଼ି ସ୍ୱାମୀ ହୃଦେ ॥୫
କୋକିଳ ଆଦି ପକ୍ଷୀଗଣ ।
ନାଦେ ବୋଧନ୍ତି ନାରାୟଣ ॥୬
ବନ୍ଦୀ ମାଗଧ ପ୍ରାୟ ହୋଇ ।
ସେ ବିଶ୍ୱମ୍ଭର ମନ ମୋହି ॥୭
ସ୍ୱଭାବେ ପାରିଜାତ ବନ ।
ସୁଗନ୍ଧ ବହଇ ପବନ ॥୮
ସୁନ୍ଦର ନ ମଣେ ପ୍ରଭାତ ।
ରୁକ୍ମିଣୀ କୃଷ୍ଣଭାବେ ଚିତ୍ତ ॥୯
କୃଷ୍ଣ-ଆଲିଙ୍ଗନ-ବିଷାଦେ ।
ପଶିଲା ବେନିଭୁଜ ମଧ୍ୟେ ॥୧୦
ପ୍ରକାଶେ ଅରୁଣ କିରଣ ।
ଶଯ୍ୟାରୁ ଉଠି ନାରାୟଣ ॥୧୧
ପବିତ୍ରଜଳେ ମୁଖ ଧୋଇ ।
ଚିତ୍ତେ ପରମପଦ ଧ୍ୟାୟି ॥୧୨
ଆତ୍ମାକୁ ଆତ୍ମଜ୍ଞାନେ ଚିନ୍ତି ।
ଯେ ଏକ ନିତ୍ୟ ସ୍ୱୟଂଜ୍ୟୋତି ॥୧୩
ଅବ୍ୟୟସ୍ଥିତି ବିଶ୍ୱରୂପୀ ।
ବ୍ରହ୍ମାଣ୍ଡ ମଧ୍ୟେ ଅଛି ବ୍ୟାପି ॥୧୪
ରୂପ-ବର୍ଜିତ ନିରଞ୍ଜନ ।
କଳି-କଳୁଷ ନିବାରଣ ॥୧୫
ଏମନ୍ତ ବ୍ରହ୍ମ ଯାର ନାମ ।
ତ୍ରିଗୁଣ ମୟା ହେତୁ ଧାମ ॥୧୬
ଜଗତ ଯାହାର ପ୍ରକାଶେ ।
ଦର୍ପଣ ବିମ୍ବ ପ୍ରାୟ ଦିଶେ ॥୧୭
ଏମନ୍ତ ପ୍ରଭୁ ନରହରି ।
ନିର୍ମଳ ଜଳେ ସ୍ନାନ ସାରି ॥୧୮
କ୍ରିୟାକଳାପ ଯଥାବିଧି ।
ପବିତ୍ର ପୀତବସ୍ତ୍ର ପିନ୍ଧି ॥୧୯
ସନ୍ଧ୍ୟାତର୍ପଣ ଆଦି କର୍ମ ।
ଅନଳ ପୂଜା ଗୃହଧର୍ମ ॥୨୦
ମଉନେ ବେଦମନ୍ତ୍ର ଜପି ।
ତର୍ପଣ ବିଧି ପାଶେ ସ୍ଥାପି ॥୨୧
ରବି ସମ୍ମୁଖେ ନନ୍ଦବଳା ।
ତର୍ପଣେ ତୋଷି ଆତ୍ମକଳା ॥୨୨
ଦେବତା ଋଷି ପିତୃଗଣେ ।
ଗୋବିନ୍ଦ ପୂଜିଲେ ତର୍ପଣେ ॥୨୩
ବୃଦ୍ଧ-ବାଳକ ମୁଖେ ଦେଇ ।
ବିପ୍ରଙ୍କୁ ଆସନେ ବସାଇ ॥୨୪
ସୁବର୍ଣ୍ଣଶୃଙ୍ଗୀ ଧେନୁ ହରି ।
ମଣ୍ଡିଲେ ଅଳଙ୍କାର ଭରି ॥୨୫
ମୁକ୍ତାମାଳେ ପୁଷ୍ପପନ୍ତି ।
ସାଧୁ ସୁବସା ରୂପବତୀ ॥୨୬
କ୍ଷୀରସମ୍ପନ୍ନା ପୀନସ୍ତନୀ ।
ଦେହେ ମଣ୍ଡିଲେ ବସ୍ତ୍ର ଘେନି ॥୨୭
ରଜତେ ମଣ୍ଡି କ୍ଷୁର ଚାରି ।
ପାଟବସନେ ତିଳ ପୂରି ॥୨୮
ନିର୍ମଳ-କୃଷ୍ଣାଜିନ ସଙ୍ଗେ ।
ବେଦବିହିତ ବିଧି ମାର୍ଗେ ॥୨୯
ବିପ୍ରଙ୍କୁ କରି ଅଳଙ୍କୃତ ।
ଧେନୁ ଅର୍ପିଲେ ଯୂଥ ଯୂଥ ॥୩୦
ଏମନ୍ତେ କୃଷ୍ଣ ପ୍ରତିଦିନେ ।
ବିପ୍ରେ ତୋଷନ୍ତି ଧେନୁଦାନେ ॥୩୧
ଗୋ-ବିପ୍ର-ବୃଦ୍ଧ-ଗୁରୁଗଣେ ।
ଦେବତା ଆଦି ସର୍ବଜନେ ॥୩୨

Dr. Sudhanshu Sekhar Mishra

ଯେତେ ବିଷୟ ଆତ୍ମାଭୂତ ।
ତାହାଙ୍କୁ ନମି ଗୋପୀନାଥ ॥୩୩
ଜଗତଗୁରୁ ଭଗବାନ ।
ମଙ୍ଗଳ ଦ୍ରବ୍ୟ ସ୍ପରଶନ ॥୩୪
ସ୍ୱଭାବେ ଜଗତସୁନ୍ଦର ।
ଭୂଷଣ ନାନା ଅଳଙ୍କାର ॥୩୫
ପୀତବସନେ ଅନୁପମ ।
ଶ୍ରୀବତ୍ସ କଉସ୍ତୁଭଦାମ ॥୩୬
ଦିବ୍ୟକୁସୁମ ମାଳମାଳ ।
ଶୋହେ ସୁନ୍ଦର ବକ୍ଷସ୍ଥଳ ॥୩୭
ଘୃତ୍ୟ ଦର୍ପଣେ ମୁଖ ଚାହିଁ ।
ବିପ୍ର ଦେବତା କରେ ଛୁଇଁ ॥୩୮
ପ୍ରକୃତି ଅନ୍ତଃପୁର ବାସୀ ।
ଧନେ ତାହାଙ୍କ ମନ ତୋଷି ॥୩୯
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
କୃଷ୍ଣ ପୂଜିଲେ ଅବଧାନେ ॥୪୦
ପ୍ରବୋଧ କରି ପୁରଜନ ।
ଆନନ୍ଦ କଲେ ଆତ୍ମମନ ॥୪୧
ତାମ୍ବୁଳ କୁସୁମ ସୁଗନ୍ଧ ।
ବିଭାଗ କରି ଆଦିକନ୍ଦ ॥୪୨
ବିପ୍ରଙ୍କୁ ଦେଇ ଅଗ୍ରଭାଗ ।
ଦାରା ପ୍ରକୃତି ଯେଝା ଭାଗ ॥୪୩
ସକଳ ଜନେ ସୁଖ ଦେଇ ।
ଭୋଜନ କଲେ ଭାବଗ୍ରାହୀ ॥୪୪
ଯାତ୍ରା ଉତ୍ସବେ ପଦ୍ମମୁଖ ।
ତକ୍ଷଣେ ମିଳିଲେ ଦାରୁକ ॥୪୫
ଅଦ୍ଭୁତ ରଥ ସଜ କରି ।
ରଥେ ଯୋଚିଲା ଅଶ୍ୱ ଚାରି ॥୪୬
ସୁଗ୍ରୀବ ଆଦି ଚାରିଯାନ ।
ସୁନ୍ଦର ଗୋବିନ୍ଦ ବିମାନ ॥୪୭
କାଞ୍ଚନରଜ୍ଜୁ ଅଶ୍ୱ ଯୋଗେ ।
ସାଜି ମିଳିଲା କୃଷ୍ଣ ଆଗେ ॥୪୮
ଦାରୁକ ହସ୍ତେ ହସ୍ତ ଦେଇ ।
ରଥେ ବିଜୟ ଭାବଗ୍ରାହୀ ॥୪୯
ସାତ୍ୟକି ଉଦ୍ଧବ ବିଶ୍ୱାସେ ।
ବସିଲେ କୃଷ୍ଣ ବେନି ପାଶେ ॥୫୦

କି ଅବା ଦେବା ପଟାନ୍ତର ।
ଶୁଣ ସୁମନେ ଶୋଭା କରେ ॥୫୧
ଉଦୟ ପର୍ବତ ଶିଖରେ ।
ରବି ଯେସନେ ଶୋଭା କରେ ॥୫୨
ଯେତେକ ପୁର ବଧୂଜନ ।
ହାସ୍ୟ କଟାକ୍ଷେ ଭଗବାନ ॥୫୩
ସ୍ନେହଲାଳସେ ଅପସରି ।
ପୁରୁ ବାହାର ନରହରି ॥୫୪
ଉଗ୍ରସେନର ସଭାମଧ୍ୟେ ।
ଯାଇ ମିଳିଲେ ଆଦିକନ୍ଦେ ॥୫୫
ବେନିଜନଙ୍କ ହସ୍ତ ଧରି ।
ସଭାର ମଧ୍ୟେ ବିଜେ କରି ॥୫୬
ଉଗ୍ରସେନଙ୍କୁ ନିଉଛାଳି ।
କରି ବସିଲେ ବନମାଳୀ ॥୫୭
ବାମ ଦକ୍ଷିଣେ ବେନି ବୀର ।
ମଧ୍ୟେ ବିଜୟ ଦାମୋଦର ॥୫୮
ଶୁଣ ରାଜନ କୁରୁବୀର ।
ଉଗ୍ରସେନର ସଭାଘର ॥୫୯
ଯାଦବବଳେ ଇନ୍ଦ୍ରସଭା ।
କିରଣେ ଯେହ୍ନେ ରବିପ୍ରଭା ॥୬୦
କୃଷ୍ଣ ସୁଧର୍ମା ମଧ୍ୟସ୍ଥାନେ ।
ବିଜୟ କାଞ୍ଚନ-ଆସନେ ॥୬୧
ମନୁଷ୍ୟ ସୁଧର୍ମା-ପ୍ରବେଶେ ।
ତକ୍ଷଣେ ଷଡ଼ଊର୍ମି ନାଶେ ॥୬୨
କୃଷ୍ଣର ତେଜେ ଇନ୍ଦ୍ରସଭା ।
ବିକାଶେ ଦଶଦିଗ-ପ୍ରଭା ॥୬୩
ଯଦୁବୀରଙ୍କ ମଧ୍ୟେ ବସି ।
କଥା ପ୍ରସ୍ତାବେ ମନ ତୋଷି ॥୬୪
ଯେ ଉପମନ୍ତ୍ରୀଗଣ ପାଶେ ।
ନାନାପ୍ରବନ୍ଧ ପରିହାସେ ॥୬୫
କୃଷ୍ଣ ସମୀପେ ସୁଖେ ବସି ।
କଥା ପ୍ରସ୍ତାବେ ମନ ତୋଷି ॥୬୬
ନଟ ନର୍ତ୍ତକୀ ଆଦି ଯେତେ ।
ମିଳିଲେ ନାନା ବାଦ୍ୟହସ୍ତେ ॥୬୭
ନୃତ୍ୟ, ତାଣ୍ଡବ ଗୀତ ସ୍ୱନେ ।
ସୂତ ମାଗଧ ବନ୍ଦୀଜନେ ॥୬୮

କୃଷ୍ଣେ କରାଇ ସାବଧାନ ।
କରନ୍ତି ନୃତ୍ୟ ଗୀତ ମାନ ॥୬୯
ବ୍ରାହ୍ମଣେ ଶୁଦ୍ଧ ବେଦନାଦେ ।
ଶାସ୍ତ୍ର ଆଗମ ଅନୁବନ୍ଧେ ॥୭୦
ପୁରାଣ ପ୍ରବନ୍ଧ ପ୍ରମାଣେ ।
ପୂର୍ବେ ଯେ ଥିଲେ ରାଜାଗଣେ ॥୭୧
ତାହାଙ୍କ ପୁଣ୍ୟଯଶ ଗାଇ ।
କହନ୍ତି କୃଷ୍ଣମୁଖ ଚାହିଁ ॥୭୨
ଏବେ ହୋ ଶୁଣ ନରନାଥ ।
ସଭାରେ ଯେତେ ରାଜଦୂତ ॥୭୩
କୃଷ୍ଣ ଆଦେଶେ ଦ୍ୱାରପାଳେ ।
ପ୍ରବେଶ କଲେ ସଭାତଳେ ॥୭୪
ଅଦୃଷ୍ଟପୂର୍ବ ଶ୍ରେଷ୍ଠ ରୂପେ ।
ମିଳିଲେ ଗୋବିନ୍ଦ ସମୀପେ ॥୭୫
ଦୂର ଆଗମେ ପଥଶ୍ରମୀ ।
ସେ ଦୂତ କୃଷ୍ଣପାଦେ ନମି ॥୭୬
କରଅଞ୍ଜଳି ଦେଇ ମୁଣ୍ଡେ ।
ରାଜନିଯୋଗ କହେ ତୁଣ୍ଡେ ॥୭୭
ଜରାସନ୍ଧର ବନ୍ଦୀଘରେ ।
ନିବିଡ଼ ଦୁଃଖ ଶୋକଭରେ ॥୭୮
ତାହାର ଦିଗବିଜେ କାଳେ ।
ଯେ ନ ନମିଲେ ପାଦତଳେ ॥୭୯
ତାହାଙ୍କୁ ନିଜ ଭୁଜବଳେ ।
ବନ୍ଧନ କଲା ଏକମେଳେ ॥୮୦
ବେନି ଅୟୁତ ପରିମିତ ।
ରାଜା ନିରୋଧ ଜରାସୁତ ॥୮୧
ଅନେକ ଦୁଃଖଶୋକ ପାଇ ।
ଦୂତର ହସ୍ତେ ଲେଖ ଦେଇ ॥୮୨
ହେ କୃଷ୍ଣ କୃଷ୍ଣ ମହାବାହୁ ।
ଶରଣ ତୋର ପାଦେ ଯେହୁ ॥୮୩
ତାହାର ଦୁଃଖ କରୁ ନାଶ ।
ତୁ ନାଥ ଭକ୍ତବିଶ୍ୱାସ ॥୮୪
ପ୍ରପନ୍ନଭୟ ନାଶୁ ଯେଣୁ ।
ଆମ୍ଭେ ତୋ ପଦ୍ମପାଦେ ତେଣୁ ॥୮୫
ବିଭ୍ରମ ବୁଦ୍ଧି ଭବଭୟେ ।
ଶରଣ ଗଲୁ ତୋର ପାୟେ ॥୮୬

Dr. Sudhanshu Sekhar Mishra

ଭୋ ନାଥ ଶୁଣ ଭାବଗ୍ରାହୀ ।
ଆମ୍ଭେ ଯେ ରାଜଭୋଗ ପାଇ ॥୮୭
ଶ୍ରୀମଦେ ବୁଦ୍ଧି କଲୁ ନାଶ ।
ଏ ଭୂମି ଜୟ କରି ଆଶ ॥୮୮
ଏକ ଆରକେ ଯୁଦ୍ଧବଳେ ।
ପ୍ରଜା ନାଶିଲୁ ମତ୍ତଭୋଳେ ॥୮୯
ଅତି ନିର୍ଦ୍ଦୟକର୍ମ କରି ।
ଅଗ୍ରେ ମରଣ ନ ବିଚାରି ॥୯୦
ଏ ଜୀବଲୋକେ ତୋ ସଂସାରେ ।
ବିକର୍ମେ ରତ ନିରନ୍ତରେ ॥୯୧
ତୋହର ମାୟାଚକ୍ରେ ପଡ଼ି ।
କୁଶଳ କର୍ମପଥ ଛାଡ଼ି ॥୯୨
ତାର ଜୀବନ ଆଶା ତୁହି ।
ନିମିଷେ ନାଶୁ ମାୟାବହି ॥୯୩
ଏଣୁ ତୋ ନାମ ଅନିମିଷ ।
ନମସ୍ତେ ଅନାଦି ପୁରୁଷ ॥୯୪
ତୁ ଏ ଜଗତେ ମାୟାଧର ।
ନିଜ କଳାରେ ଅବତାର ॥୯୫
ଆଦିପୁରୁଷ ତୁ ଦୟାଳୁ ।
ଖଳ ନିବାରି ସନ୍ଥ ପାଳୁ ॥୯୬
ଏ ଜରାସନ୍ଧ ଆଦି ଦୁଷ୍ଟ ।
ଲୋକେ ଦିଅନ୍ତି ନାନା କଷ୍ଟ ॥୯୭
ଅବଜ୍ଞା କରି ତୋ ବଚନେ ।
ଚଳନ୍ତି ନିଜ ଅଭିମାନେ ॥୯୮
କି ଅବା କର୍ମଫଳ ବଳେ ।
କଷ୍ଟ ଲଭୁଛୁଁ ଏ ଶୟଳେ ॥୯୯
ଜାଣି ନ ପାରୁ ଆମ୍ଭେ ଏହା ।
ଯେଣୁ ସକଳ ତୋର ମାୟା ॥୧୦୦
ସ୍ୱପ୍ନସଦୃଶ ନୃପସୁଖ ।
ପର ଆୟତ୍ତେ ନିତ୍ୟେ ଦୁଃଖ ॥୧୦୧
ଏ ମୃତ୍ୟୁପିଣ୍ଡେ ସ୍ନେହ ବହି ।
ଯେଣୁ ଆମ୍ଭର ଜ୍ଞାନ ନାହିଁ ॥୧୦୨
ତୁ ଆତ୍ମାରୂପୀ ନରହରି ।
ତୋ ପାଦ ଅନାଦର କରି ॥୧୦୩
ତୋତେ ନ ଚିହ୍ନି କ୍ଳେଶ ପାଇ ।
ତୋହର ମାୟାଜଡ଼େ ଥାଇ ॥୧୦୪

ତୋର ଶରଣ ଚକ୍ରଧର ।
ପ୍ରଣତଜନ ଦୁଃଖ ହର ॥୧୦୫
ଏ ଜରାସନ୍ଧ ଧୂମକେତୁ ।
ଆମ୍ଭର କର୍ମପାଶ-ହେତୁ ॥୧୦୬
ତାର ବନ୍ଧନୁ ରକ୍ଷାକର ।
ଭୋ ନାଥ ଶରଣ ତୋହର ॥୧୦୭
ଏ ଦୁରାଚାର ଅତି ଖଳ ।
ଅୟୁତ-ମତ୍ତଗଜ-ବଳ ॥୧୦୮
ଏକ ଅନେକେ ଅଛି ଧରି ।
ପଶୁଙ୍କୁ ଯେସନେ କେଶରୀ ॥୧୦୯
ଏ ଜରାସନ୍ଧ ତୋର ମେଳେ ।
ଯୁଦ୍ଧେ ନ ଜିଣି ବାହୁବଳେ ॥୧୧୦
ତେଇଶି ଅକ୍ଷୌହଣୀ ସାଜି ।
ସପ୍ତଦଶବାର ଭାଜି ॥୧୧୧
ତୋର ମାୟାରେ ଚକ୍ରପାଣି ।
ବେଳେ ଜିଣିଲା ପ୍ରାୟ ମଣି ॥୧୧୨
ଲୀଳାମନୁଷ୍ୟ ରୂପ ତୁହି ।
ତୋତେ ନ ଜାଣି ଗର୍ବ ବହି ॥୧୧୩
ତୋହର ପ୍ରଜା କଲା ନାଶ ।
ଆମ୍ଭେ ନ ଜାଣୁ ତୋ ବିଶ୍ୱାସ ॥୧୧୪
ଯେ ତୋର ଇଚ୍ଛା ଏବେ କର ।
ଆମ୍ଭେ ତୋ ଚରଣେ କିଙ୍କର ॥୧୧୫
ଏମନ୍ତ ଦୁଃଖେ ନୃପବରେ ।
ବନ୍ଧନ ମଗଧ ଦେଶରେ ॥୧୧୬
ଇଚ୍ଛନ୍ତି ତବ ଦରଶନ ।
ଭୋ ନାଥ ହୋଇବା ପ୍ରସନ୍ନ ॥୧୧୭
ଆମ୍ଭେ ଦୁଃଖିତ ରାଜାଗଣ ।
ତୋ ପାଦେ ପଶିଲୁ ଶରଣ ॥୧୧୮
ପରମଦୁଃଖୁଁ କର ତ୍ରାହି ।
ଭୋ ନାଥ ରଖ ଭାବଗ୍ରାହୀ ॥୧୧୯
ଏମନ୍ତ କହୁଁ ରାଜଦୂତ ।
ଆସି ମିଳିଲେ ବ୍ରହ୍ମାସୁତ ॥୧୨୦
ଅତିସୁନ୍ଦର ରୂପକାନ୍ତି ।
ରବିକିରଣ ପ୍ରାୟ ଜ୍ୟୋତି ॥୧୨୧
ପିଙ୍ଗଳଜଟା ଶୋହେ ଶିରେ ।
ମିଳିଲେ ଗୋବିନ୍ଦ ସଭାରେ ॥୧୨୨

ନାରଦେ ଦେଖି ଭଗବାନେ ।
ତକ୍ଷଣେ ତେଜିଲେ ଆସନ ॥୧୨୩
ଈଶ୍ୱର ସର୍ବଲୋକ ନାଥ ।
ନାରଦପାଦେ ପ୍ରଣମିତ ॥୧୨୪
ସଭାରେ ମଧ୍ୟେ ଲୋକଯେତେ ।
ତାହାଙ୍କୁ ନମିଲେ ତୁରିତେ ॥୧୨୫
ଆନନ୍ଦେ କମଳାରମଣ ।
ପୂଜିଲେ ନାରଦ ଚରଣ ॥୧୨୬
କନକ ଆସନେ ବସାଇ ।
କୋମଳେ ବାକ୍ୟେ ଭାବଗ୍ରାହୀ ॥୧୨୭
ନାରଦ ମନ କରି ତୋଷ ।
ପ୍ରସନ୍ନେ ଭକତବିଶ୍ୱାସ ॥୧୨୮
ବୋଲନ୍ତି ଶୁଣ ବ୍ରହ୍ମାସୁତ ।
ଆଜ ମୁଁ ଲଭିଲି ସୁକୃତ ॥୧୨୯
ଏ ତିନିପୁର ଲୋକ ଯେତେ ।
ତାହାଙ୍କ କଲ୍ୟାଣ ନିମନ୍ତେ ॥୧୩୦
ତୋର ଭ୍ରମଣ ଏ ଜଗତେ ।
କୁଶଳ କହ ଶୁଦ୍ଧଚିତ୍ତେ ॥୧୩୧
ତୋହର ଗତି ତ୍ରିଭୁବନ ।
ମିତ୍ର ଅଇରି ତୋର ସମ ॥୧୩୨
ଈଶ୍ୱର ନିର୍ମାଣ ଜଗତେ ।
ନ ଘଟେ ତୋର ଅବିଦିତେ ॥୧୩୩
ବାରୁଣାବନ୍ତେ ପାଣ୍ଡୁସୁତେ ।
ଅଛନ୍ତି ଜନନୀ ସହିତେ ॥୧୩୪
କି ଅବା କରନ୍ତି ବିଚାର ।
ତୁମ୍ଭେ ସୁହୃଦ ତାହାଙ୍କର ॥୧୩୫
ମୋହର ମନ ତାଙ୍କ କାହିଁ ।
ତେଣୁ ପୁଚ୍ଛଇ ଭାବ ରହି ॥୧୩୬
କୃଷ୍ଣ ବଚନ ବ୍ରହ୍ମାସୁତ ।
ଶୁଣି ଯୋଡ଼ିଲେ ବେନି ହସ୍ତ ॥୧୩୭
ଭୋ ନାଥ ନିଜ ମାୟା ତୋର ।
ବ୍ରହ୍ମାଶଙ୍କରେ ଅଗୋଚର ॥୧୩୮
ବିଶ୍ୱେ ସର୍ଜିତ ଯେତେ ଜନ ।
ମାୟାରେ ମୋହୁ ତାଙ୍କ ମନ ॥୧୩୯
ପ୍ରାଣୀଙ୍କ ଦେହେ ଥାଉ ତୁହି ।
ଅନଳ ପ୍ରାୟ ଗୋପ୍ୟ ହୋଇ ॥୧୪୦

Dr. Sudhanshu Sekhar Mishra

ଅଦ୍‌ଭୁତ ନୁହଁଇନା ତୋତେ ।
ତେଣୁ ଭାବଇ ମୁହିଁ ଚିତ୍ତେ ॥୧୪୧
ତୋହର ମହିମା କେ ଜାଣେ ।
ଆଗମ ନିଗମ ପ୍ରମାଣେ ॥୧୪୨
ସ୍ୱମାୟାବଳେ ଏ ଜଗତ ।
ସୃଜି ପାଳିଣ କରୁ ଅନ୍ତ ॥୧୪୩
ତୁ ସତ୍ୟ ଆତ୍ମାଶକ୍ତି ବଳେ ।
ନିଜେ ପ୍ରକାଶୁ ଏ ଶୟଳେ ॥୧୪୪
ତୋ ଆତ୍ମାରୂପ ବିଲକ୍ଷଣ ।
ଏଣୁ ନମଇଁ ତୋ ଚରଣ ॥୧୪୫
ଜୀବର ସଞ୍ଚରଣ -ପାଶ ।
ଅନର୍ଥ -ଶରୀର-ପ୍ରକାଶ ॥୧୪୬
ଲୀଳାବତାର ରୂପ ତୋର ।
ଦୀପ ଯେସନେ ଅନ୍ଧକାର ॥୧୪୭
ନାଶଇ ନିଜ ତେଜବଳେ ।
ତେଣୁ ମୁଁ ତୋର ପାଦତଳେ ॥୧୪୮
ପଶିଲି ଛାଡ଼ି ମନ ଭ୍ରାନ୍ତି ।
ଯେଣୁ ତୁ ଅଗତିର ଗତି ॥୧୪୯
ତଥାପି ତୋହର ପ୍ରଶନ ।
ଏ ନରଲୋକେ ବିଡ଼ମ୍ବନ ॥୧୫୦
ତଥାପି ଶୁଣ ଶୁଦ୍ଧଚେତା ।
କହିବି ପାଣ୍ଡବଙ୍କ କଥା ॥୧୫୧
ପିତୃଭଗିନୀସୁତ ତୋର ।
ଯେ ରାଜା ନାମ ଯୁଧିଷ୍ଠିର ॥୧୫୨
ବିଶ୍ୱାସୀ ଭକତ ସେ ତୋର ।
ଶୁଣ ତୁ ତାହାଙ୍କ ବିଚାର ॥୧୫୩
ଦୁସ୍ତର ରାଜସୂୟ ଯାଗେ ।
ପୂଜିବେ ତୋର ପାଦଯୁଗେ ॥୧୫୪
ପରମଇଷ୍ଟ ତାର କାମ ।
ଆଜ୍ଞା ତୁ ଦିଅ ଶୁଦ୍ଧଧାମ ॥୧୫୫
ସେ ରାଜସୂୟ ଯଜ୍ଞବରେ ।
ଯେତେ ଏ ଲୋକ ତିନିପୁରେ ॥୧୫୬
ତୋ ରୂପ ଦେଖିବାର ସଧେ ।
ଗଗନୁ ଆସିବେ ବିବୁଧେ ॥୧୫୭
ଯେତେ ରାଜନ ଯଶକାରୀ ।
ତୋତେ ଦେଖିବେ ନରହରି ॥୧୫୮

ତୋ ନାମ ଶ୍ରବଣ କୀର୍ତ୍ତନ ।
ନିଶ୍ଚଳ ଚିତ୍ତେ ଯୋଗ ଧ୍ୟାନ ॥୧୫୯
ପତିତଜନ ଶୁଦ୍ଧକରେ ।
ଯେ ପ୍ରାଣୀ ଶରଣ ତୋହରେ ॥୧୬୦
ତୁ ବ୍ରହ୍ମ ପରମକାରଣ ।
କିବା ଅଧିକ ବିଚାରଣ ॥୧୬୧
ତୋର ସ୍ତୁତି ଶୃତିପଥ ।
ନିର୍ମଳ କରଇ ଜଗତ ॥୧୬୨
ପାଦଉଦକ ପାପ ହରେ ।
ଶରୀର ବାହ୍ୟ ଅଭ୍ୟନ୍ତରେ ॥୧୬୩
ବଚନ ଶାସ୍ତ୍ରମତେ ହୋଇ ।
ବିଧି ନିଷେଧ ପଥ ଦୁଇ ॥୧୬୪
କାଳ ଅନଳ ଜଳେ ଭ୍ରମୀ ।
ହତ ବିଭୂତି ମହାଶ୍ରମୀ ॥୧୬୫
ତୋହର ଚରଣ ସ୍ମରଣେ ।
ଜୀବନ ବହୁ ସେ ଉଶ୍ୱାସେ ॥୧୬୬
ସେ ପାଦପଦ୍ମ ମହାବାହୁ ।
ଆମ୍ଭଙ୍କୁ ଚଉବର୍ଗ ଦେଉ ॥୧୬୮
ଭୋ ନାଥ ଭୁବନମଙ୍ଗଳ ।
ତୋହର ଯଶ ସୁନିର୍ମଳ ॥୧୬୯
ବିଖ୍ୟାତ ଏ ତିନିଭୁବନେ ।
ଭଲେ ଜାଣନ୍ତି ସର୍ବଜନେ ॥୧୭୦
ସୁରଭୁବନେ ମନ୍ଦାକିନୀ ।
ପୁଣି ସେ ନିଜ ରୂପ ଘେନି ॥୧୭୧
ପାତାଳପୁରେ ଭୋଗବତୀ ।
ଗଙ୍ଗା ଏ ମର୍ତ୍ତ୍ୟପୁରେ ସ୍ଥିତି ॥୧୭୨
ତୋ ପାଦ ଜଳର ମହିମା ।
କେ ଜାଣିପାରେ ଗୁଣସୀମା ॥୧୭୩
ଏମନ୍ତ ସଭା ଆତ୍ମପକ୍ଷେ ।
ଗୋବିନ୍ଦ ବିଚାରି ପ୍ରତ୍ୟକ୍ଷେ ॥୧୭୪
ଜାଣିବା ପାଇଁ ସର୍ବଜନ ।
ଉଦ୍ଧବେ ଚାହିଁ ଭଗବାନ ॥୧୭୫
କୋମଳ ବଚନ ଗଭୀର ।
ବୋଲନ୍ତି ପ୍ରଭୁ ଦାମୋଦର ॥୧୭୬
ଉଦ୍ଧବ ଶୁଣ ମୋ ଉତ୍ତର ।
ତୁ ମୋର ଚକ୍ଷୁ ମନ୍ତ୍ରବୀର ॥୧୭୭

ପ୍ରିୟ ସୁହୃଦ ତୁହି ସାର ।
ତୋତେ ମୁଁ ପୁଛଇ ବିଚାର ॥୧୭୮
ସଂଶୟ ପ୍ରସ୍ତାବଟି ଏହି ।
ମୁଁ କି କରିବି କହ ତୁହି ॥୧୭୯
ଏମନ୍ତ କୃଷ୍ଣ ବାକ୍ୟ ଶୁଣି ।
ଉଦ୍ଧବ ମନେ ମନେ ଗୁଣି ॥୧୮୦
ସର୍ବଜ୍ଞ ଜଗତଜୀବନ ।
ଅଲଂଘ୍ୟ ଯାହାର ବଚନ ॥୧୮୧
ତାହାର ଆଜ୍ଞା ଶିରେ ବହି ।
କହେ ଗୋବିନ୍ଦ ମୁଖ ଚାହିଁ ॥୧୮୨
ସେ ହରି ଚରଣ କମଳେ ।
ମନ ମୋ ରହୁ ଧ୍ୟାନବଳେ ॥୧୮୩
ଅନାଥନାଥ ଜଗନ୍ନାଥ ।
ସଂସାର ହିତେ ଭାଗବତ ॥୧୮୪
ସୁଜନପାଦ ହୃଦେ ଲଇଁ ।
କରିଣ ନୃତ୍ୟ ଗୀତ ଗାଇ ॥୧୮୫
କହଇ ଦାସ ଜଗନ୍ନାଥ ।
ଗୀତବିନୋଦେ ଭାଗବତ ॥୧୮୬

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଭଗବଦ୍‌ଧ୍ୟାନ ବିଚାରେ
ପଞ୍ଚସପ୍ତତିତମ ଅଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଷଟ୍‌ସପ୍ତତିତମ ଅଧ୍ୟାୟ

ମୁନି କହନ୍ତି ଭାବ ବହି ।
ଆନନ୍ଦେ ରାଜାମୁଖ ଚାହିଁ ॥୧

ଶୁକ ଉବାଚ

ଏବେ ହୋ ପରୀକ୍ଷିତ ଶୁଣ ।
ସୁଧର୍ମା ମଧ୍ୟେ ନାରାୟଣ ॥୨
ଉଦ୍ଧବେ ପଚାରିଲେ ଯାହା ।
ଶୁଣ ତୁ ଏକମନେ ତାହା ॥୩
ଉଦ୍ଧବ ଯଦୁସଭା ମଧ୍ୟେ ।
ନାରଦ ବାକ୍ୟ ଅନୁବନ୍ଧେ ॥୪
ସଭାଜନଙ୍କ ମନ ଜାଣି ।
ଶ୍ରୀକୃଷ୍ଣ ମୁଖ ଚାହିଁ ଭଣି ॥୫
ରାଜାଙ୍କ ଦୂତର ବଚନ ।
କାର୍ଯ୍ୟ ହୋଇବ ସମାଧାନ ॥୬
ସର୍ବଜ୍ଞପଣ ଅଛି ତାର ।
ଯାଦବକୁଳ ମନ୍ତ୍ରୀବର ॥୭
ପବିତ୍ର ମଧୁର ବଚନ ।
ହରଷ କରି ସର୍ବ ମନ ॥୮
କୃଷ୍ଣ ସମୀପେ ଯୋଡ଼ି କର ।
ବୋଲେ ଉଦ୍ଧବ ମନ୍ତ୍ରୀବର ॥୯
ଭୋ ନାଥ ଶୁଣ ଭଗବାନ ।
ସଂସାର ହିତେ ତୋ ଜନମ ॥୧୦
ନାରଦମୁନି ଯାହା କହି ।
ତୁ ତାହା ଜାଣୁ ଭାବଗ୍ରାହୀ ॥୧୧
ପିତୃଭଗିନୀସୁତ କର୍ମ ।
ଶରଣ ରକ୍ଷଣ ତୋର ଧର୍ମ ॥୧୨
ପଣ୍ଡୁନନ୍ଦନ ଅନୁରାଗେ ।
ଉତ୍ସବ ରାଜସୂୟ ଯାଗେ ॥୧୩
ହୋଇବ ଜରାସନ୍ଧ ହତ ।
ଏ ବେନି କାର୍ଯ୍ୟ ମୋର ମତ ॥୧୪
ଏଣୁ ଆମ୍ଭର ବଡ଼ ଲାଭ ।
ହୋଇବ ଶୁଣ ପଦ୍ମନାଭ ॥୧୫
ତୋହର ଯଶ ମଞ୍ଚେ ଥିବ ।
ରାଜାଙ୍କ ଦୁଃଖ ନାଶ ଯିବ ॥୧୬

ଭୋ ନାଥ ଶୁଣ ନାରାୟଣ ।
ଜରାସନ୍ଧର ବୀରପଣ ॥୧୭
ଦଶସହସ୍ର ମତ୍ତହସ୍ତୀ ।
ବଳବହଇ ସେ ନୃପତି ॥୧୮
ଏଣୁ ବିଷମ କର୍ମ ତାର ।
କ୍ଷତ୍ରିୟ ମଧ୍ୟେ ବଳିୟାର ॥୧୯
କେହି ନୁହଁନ୍ତି ଯୁଦ୍ଧେ ସମ ।
ସମରେ ପାରେ ଅବା ଭୀମ ॥୨୦
ଅବଶ୍ୟ ଭୀମ ମାଲଯୁଦ୍ଧେ ।
ମାରିବ ଘୋରରଣ ମଧ୍ୟେ ॥୨୧
ସୈନ୍ୟ ତେଇଶି ଅକ୍ଷୌହିଣୀ ।
କେ ପାରେ ରଣେ ତାକୁ ଜିଣି ॥୨୨
ଭିକ୍ଷୁକ ବ୍ରାହ୍ମଣ ବଚନ ।
ସର୍ବଥା ନ କରଇ ଆନ ॥୨୩
ଏଣୁ ବ୍ରାହ୍ମଣ ବେଶ ହୋଇ ।
ଭୀମ ଅର୍ଜୁନ ତୁଲେ ତୁହି ॥୨୪
ଭିକ୍ଷୁକ ରୂପେ ଯଜ୍ଞଦ୍ୱାରେ ।
ମାଗିବୁ ବ୍ରାହ୍ମଣ ବେଭାରେ ॥୨୫
ସତ୍ୟ କରାଇ ଦାନକାଳେ ।
ଭୀମ ମାରିବ ତାକୁ ବଳେ ॥୨୬
କେବଳ ସାକ୍ଷୀ ପ୍ରାୟ ହୋଇ ।
ସମର ମଧ୍ୟେ ଥିବୁ ତୁହି ॥୨୭
ତୋର ମହିମା ନ ଜାଣନ୍ତି ।
ଶିବ-ବିରଞ୍ଚି-ପ୍ରଜାପତି ॥୨୮
ରାଜାଏ ବନ୍ଦୀମୋକ୍ଷ ହୋଇ ।
ଆନନ୍ଦେ ନିଜ ପୁରେ ଯାଇ ॥୨୯
କାମିନୀ ମଧ୍ୟେ ତୋର ଯଶ ।
କହି ହୋଇବେ ମନେ ତୋଷ ॥୩୦
ଆମ୍ଭର ବନ୍ଦୀ ବିମୋକ୍ଷଣ ।
ସେ ଜରାସନ୍ଧର ମରଣ ॥୩୧
ନନ୍ଦଗୋକୁଳେ ଗୋପୀଗଣ ।
ଯେ ଯଶ କରନ୍ତି ଗାୟନ ॥୩୨
ଗଜ-କୁମ୍ଭୀର ମୋକ୍ଷ କଥା ।
ରାବଣ ବଧ୍ ଆଣି ସୀତା ॥୩୩

କଂସର ବନ୍ଧନୁ ନିସ୍ତାରି ।
ତୋହର ତାତ ଗର୍ଭଧାରୀ ॥୩୪
ମୁନି ବ୍ରାହ୍ମଣ ଅନୁମତେ ।
ଆମ୍ଭେ ତୋହର ବନ୍ଧୁ ଯେତେ ॥୩୫
ଯେସନେ ତୋରା ଯଶ ଗାଇ ।
ଭଜନେ ତୋର ବହୁଁ ଦେହୀ ॥୩୬
ଭୋ ନାଥ ଜରାସନ୍ଧ ମଲେ ।
ରାଜାଏ ନିସ୍ତରିବେ ଭଲେ ॥୩୭
ହୋଇବ ଯୁଧିଷ୍ଠିର ଯାଗ ।
ଆମ୍ଭର ଥିବ ଯେବେ ଭାଗ୍ୟ ॥୩୮
ଏମନ୍ତ ଉଦ୍ଧବ ବଚନ ।
ଶୁଣି ଗୋବିନ୍ଦ ତୋଷମନ ॥୩୯
ବ୍ରହ୍ମାନନ୍ଦନ ଯଦୁବୃନ୍ଦେ ।
ଉଦ୍ଧବେ ଚାହିଁ ସାଧୁବାଦେ ॥୪୦
ସନ୍ତୋଷେ କରନ୍ତି କଲ୍ୟାଣ ।
ଏବେ ହୋ ପରୀକ୍ଷିତ ଶୁଣ ॥୪୧
ତକ୍ଷଣେ ପ୍ରଭୁ ଦେବରାଜ ।
ଇନ୍ଦ୍ରପ୍ରସ୍ଥକୁ ହେଲେ ସଜ ॥୪୨
ସାତ୍ୟକି ଦାରୁକ ବଦନ ।
ହରଷେ ଚାହିଁ ଭଗବାନ ॥୪୩
ବୋଇଲେ ରଥ ସଜ କର ।
ଗୁରୁଙ୍କୁ କରି ନମସ୍କାର ॥୪୪
କୃଷ୍ଣର ଯେତେକ କାମିନୀ ।
ସୁତ-ସମ୍ପଦ ସଙ୍ଗେ ଘେନି ॥୪୫
କୃଷ୍ଣବଚନେ ସଜ ହୋନ୍ତି ।
ବିବୁଧେ ଗଗନେ ଦେଖନ୍ତି ॥୪୬
ଦାରୁକ ସାଜି ଦେବରଥ ।
ମିଳିଲା ଗୋବିନ୍ଦ ଅଗ୍ରତ ॥୪୭
ଗରୁଡ଼ଧ୍ୱଜ ରଥେ ହରି ।
ଶଙ୍ଖଶବଦେ ବିଜେକରି ॥୪୮
ତକ୍ଷଣେ ଚତୁରଙ୍ଗ ବଳ ।
ଚଳନ୍ତେ ଶୁଭେ ମୁଖଗୋଳ ॥୪୯
ମୃଦଙ୍ଗ ଆଦି ବାଦ୍ୟଘୋଷ ।
କମ୍ପେ ଗଗନ ଭୂମିଦେଶ ॥୫୦

Dr. Sudhanshu Sekhar Mishra

ନରକୁଞ୍ଜର ଅଶ୍ୱରଥେ ।
ସୁବର୍ଣ୍ଣ ଶିବିକା ସହିତେ ॥୫୧
ସକଳଜନ ଅନୁମତେ ।
ସେବକ ସେବକୀ ସହିତେ ॥୫୨
କୃଷ୍ଣର ଅନୁପଥେ ଯାନ୍ତି ।
ଯେହ୍ନେ ଗଗନେ ତାରାପନ୍ତି ॥୫୩
କୋଳେ ବସାଇ ସୁତ ସୁତା ।
କୃଷ୍ଣକାମିନୀ ପତିବ୍ରତା ॥୫୪
ଦିବ୍ୟବସନ ପରିଧାନ ।
କୁଙ୍କୁମ ସୁଗନ୍ଧ ଲେପନ ॥୫୫
ଖଡ଼ଗ ଚର୍ମ ଧନୁହସ୍ତେ ।
ବୀରେ ଆବୋରି ଯୂଥେ ଯୂଥେ ॥୫୬
ଓଟ ମଇଁଷି ଗୋରୁ ନର ।
ଗର୍ଦ୍ଦଭ ଅଶ୍ୱ ଅଶ୍ୱତର ॥୫୭
ଯାନ ଶକଟେ କରି ଘର ।
ଚିତ୍ରବିଚିତ୍ର ତମ୍ବୁଦ୍ୱାର ॥୫୮
ହସ୍ତୀଙ୍କ ଉପରେ ଅମାରି ।
ଆନନ୍ଦେ ଯାନ୍ତି ପରିବାରୀ ॥୫୯
ଏ ଆଦି ସକଳ ସମ୍ଭାର ।
ଚଳନ୍ତେ ଶୋହେ ମଞ୍ଚପୁର ॥୬୦
ଗମନ୍ତି କୃଷ୍ଣର ସଙ୍ଗନି ।
ପ୍ରଳୟସିନ୍ଧୁ ପ୍ରାୟ ମଣି ॥୬୧
ଉତ୍ତମଧ୍ୱଜ ଛତ୍ରପାଟ ।
ଚାମର କଳସ କିରୀଟ ॥୬୨
ବିବିଧ ଶସ୍ତ୍ରମାନ ସାଜେ ।
ଝଳକି ରବିରଶ୍ମି ଗଞ୍ଜେ ॥୬୩
ଘୋର ଶବଦ ଘରଷଣେ ।
ଜଳଧି ଯେହ୍ନେ ଊର୍ମିଗଣେ ॥୬୪
ବିଷମ କଲ୍ଲୋଳ ସଙ୍କୁଳ ।
ବିରାଜେ ଯଦୁଭୋଜ-ବଳ ॥୬୫
କୃଷ୍ଣବଚନେ ବ୍ରହ୍ମାସୁତ ।
ନିଜଭୁବନେ ଉପଗତ ॥୬୬
ହରିଚରଣେ ନମସ୍କାରି ।
ହୃଦେ ଗୋବିନ୍ଦ ଭାବ ଭରି ॥୬୭
ମୁକୁନ୍ଦ ଦରଶନ ଫଳେ ।
ଚଞ୍ଚଳ ଇନ୍ଦ୍ରିୟ ନିଶ୍ଚଳେ ॥୬୮
ଗଗନମାର୍ଗେ ମୁନି ଗଲେ ।
ଦୂତ ଯେ ଥିଲା କୃଷ୍ଣତୁଲେ ॥୬୯
ରାଜାଙ୍କ ଦୁଃଖ କଷ୍ଟ ଜାଣି ।
ଦୂତ ବଦନ ଚାହିଁ ଭଣି ॥୭୦
ହେ ଦୂତ କହ ଯାଇ ବେଗେ ।
ବନ୍ଧନ ନୃପତିଙ୍କ ଆଗେ ॥୭୧
ଭୟ ନ କର ତୁମ୍ଭେ କେହି ।
ନାଶିବି ଜରାସନ୍ଧ ମୁହିଁ ॥୭୨
ଆଜ୍ଞା ପ୍ରମାଣେ ଦୂତ ଗଲା ।
ରାଜାଙ୍କୁ ସନ୍ଦେଶ କହିଲା ॥୭୩
ଦୂତବଚନ ଶୁଣି କର୍ଣ୍ଣେ ।
ରାଜାଏ ନିବିଡ଼ ବନ୍ଧନେ ॥୭୪
ଛାଡ଼ିଲେ ଘୋରବନ୍ଧ ଦୁଃଖ ।
କୃଷ୍ଣଦରଶନେ ଉତ୍ସୁକ ॥୭୫
କୃଷ୍ଣଚରଣେ ମନ ଦେଇ ।
ରାତ୍ର ଦିବସେ ପଥ ଚାହିଁ ॥୭୬
ଗୋବିନ୍ଦ ବସି ନିଜ ରଥେ ।
ଗମନ କଲେ ରାଜପଥେ ॥୭୭
ଆନର୍ତ୍ତ ସଉବୀର ପୁରୀ ।
ମରୁଭୁବନ ବେଗେ ତରି ॥୭୮
ତକ୍ଷଣେ କୁରୁକ୍ଷେତ୍ର ଜିଣି ।
ବନ ପର୍ବତ ତରଙ୍ଗିଣୀ ॥୭୯
ବିବିଧ ଗ୍ରାମ ପୁର ଘୋଷ ।
ବନଗହନ ନାନା ଦେଶ ॥୮୦
ଦୃଷଦବତୀ ସରସ୍ୱତୀ ।
ପଥେ ଲଂଘିଲେ ଯଦୁପତି ॥୮୧
ପାଞ୍ଚାଳ ମତ୍ସ୍ୟଦେଶ ଜିଣି ।
ଇନ୍ଦ୍ରପ୍ରସ୍ଥରେ ଚକ୍ରପାଣି ॥୮୨
ମିଳି କରନ୍ତି ଶଙ୍ଖନାଦ ।
ଖଣ୍ଡିଲା ସଂସାର ବିଷାଦ ॥୮୩
ଶଙ୍ଖଶବଦ ଶୁଣି କର୍ଣ୍ଣେ ।
ଧର୍ମନନ୍ଦନ ତୋଷମନେ ॥୮୪
ଗୁରୁ ସୁହୃଦ ଘେନି ସଙ୍ଗେ ।
କୃଷ୍ଣଦର୍ଶନ ଅନୁରାଗେ ॥୮୫
ଗୀତଶବଦ ନାନାବାଦ୍ୟେ ।
ବିପ୍ର-ମଙ୍ଗଳ-ବେଦନାଦେ ॥୮୬
କୁସୁମ ବୃଷ୍ଟି ପଥେ କରି ।
ମଙ୍ଗଳେ ଶୁଭେ ହରିହରି ॥୮୭
ମିଳିଲେ କୃଷ୍ଣ ପାଶେ ଯାଇ ।
କିବା ଉପମା ଦେବି ମୁହିଁ ॥୮୮
ପ୍ରାଣ ଆଗମେ ମୃତଦେହୀ ।
ଯେହ୍ନେ ଉଠଇ ଜ୍ଞାନ ପାଇ ॥୮୯
ନିଶ୍ଚଳ ଚିତ୍ତେ କୃଷ୍ଣଦେଖି ।
ନିର୍ମଳ କଲେ ଚର୍ମଆଖି ॥୯୦
ଗୋବିନ୍ଦ ସ୍ନେହ ହୃଦେ ବହି ।
ଅନେକ ଦିନେ ଭେଟ ପାଇ ॥୯୧
ହୃଦେ ଲଗାଇ ପୁନଃ ପୁନଃ ।
ନିବିଡ଼େ କଲେ ଆଲିଙ୍ଗନ ॥୯୨
କମଳା ଥାଇ ଯାର ଦେହେ ।
ସେ ଦେହ ଛୁଇଁ ସ୍ନେହମୋହେ ॥୯୩
ନିର୍ମଳ ହୋଇ କମ୍ପେ ଦେହ ।
ନୟନଯୁଗୁଁ ବହେ ଲୁହ ॥୯୪
ହରଷେ ତନୁ ପୁଲକିଲା ।
ଲୋକ ବେଭାର ପାସୋରିଲା ॥୯୫
ଭୀମସେନଙ୍କୁ ନମସ୍କାର ।
ଯେମନ୍ତେ ସୁହୃଦ ବେଭାର ॥୯୬
ମାତୁଳପୁତ୍ର ପାଇ କୋଳେ ।
ଆଣ୍ଡେ ଭିଡ଼ିଲେ ପ୍ରେମଭୋଳେ ॥୯୭
ଗୋବିନ୍ଦ ଅର୍ଜୁନଙ୍କୁ କୋଳେ ।
ବସାଇ ଅତି ସୁଖଭୋଳେ ॥୯୮
ନକୁଳ ସହଦେବ ଦୁଇ ।
କୃଷ୍ଣଚରଣେ ଶିର ଦେଇ ॥୯୯
ପ୍ରଣାମ କଲେ ଜଣେ ଜଣେ ।
ସଙ୍ଗେ ଅନେକ ବିପ୍ରଗଣେ ॥୧୦୦
ତାହାଙ୍କ ପାଦେ ଦେଇ କର ।
ନମିଲେ ବ୍ରହ୍ମାଣ୍ଡ ଠାକୁର ॥୧୦୧
କୁଳବୃଦ୍ଧଙ୍କ ମୁଖ ଚାହିଁ ।
କପାଳେ ବେନିକର ଦେଇ ॥୧୦୨
ଯେ ଯାହାମତେ ମାନ୍ୟ କରି ।
ଅର୍ଜୁନଙ୍କର କରେ ଧରି ॥୧୦୩
କୁରୁ ସୃଞ୍ଜୟ କଇକେୟ ।
ଗୋବିନ୍ଦ ଦେଖି ସ୍ନେହମୋହ॥୧୦୪

Dr. Sudhanshu Sekhar Mishra

ସୂତ ମାଗଧ ବନ୍ଦୀଜନ ।
ଗନ୍ଧର୍ବ ଉପମନ୍ତ୍ରୀଗଣ ॥୧୦୫
ମୃଦଙ୍ଗ ଶଙ୍ଖ ଭେରୀନାଦ ।
ବିବିଧ ବେଣୁ ବୀଣାବାଦ୍ୟ ॥୧୦୬
ବ୍ରାହ୍ମଣେ କୃଷ୍ଣମୁଖ ଚାହିଁ ।
ସ୍ତୁତି କରନ୍ତି ବେଦ ଗାଇ ॥୧୦୭
ଗୋବିନ୍ଦ ଆଗେ ଆଗସରି ।
ନୃତ୍ୟ କରନ୍ତି ଅପସରୀ ॥୧୦୮
ସୁହୃଦଗଣେ ସ୍ତୁତିଭଣି ।
ପୁଣ୍ୟ ପୁରୁଷ ଶିଖାମଣି ॥୧୦୯
ଏମନ୍ତେ ପ୍ରଭୁ ବନମାଳୀ ।
ଧର୍ମନନ୍ଦନ ପୁରେ ମିଳି ॥୧୧୦
କୁଞ୍ଜର-ମଦଗନ୍ଧ ପାଣି ।
ସିଞ୍ଚନ୍ତେ ସୁନ୍ଦର ଧରଣୀ ॥୧୧୧
ଚିତ୍ର-ପତାକା ଧ୍ୱଜ-ସ୍ତମ୍ଭ ।
ପତ୍ର ତୋରଣା ପୂର୍ଣ୍ଣକୁମ୍ଭ ॥୧୧୨
ବିବିଧ ଅଳଙ୍କାର ଘେନି ।
ସୁନ୍ଦର ପୁରୁଷ କାମିନୀ ॥୧୧୩
ସେବନ୍ତି ନାନା ଉପହାରେ ।
ଚଞ୍ଚଳଚିତ୍ତେ ପୁରଦ୍ୱାରେ ॥୧୧୪
ମାଣିକ୍ୟଦୀପ ଜଳାରନ୍ଧ୍ରେ ।
ପ୍ରକାଶେ ନାନାପରିବନ୍ଧେ ॥୧୧୫
ଅଗୁରୁ ଧୂପ ଗନ୍ଧବାସେ ।
ସେ ଧୂମ ମୋହେ ଦଶଦିଶେ ॥୧୧୬
ନାନା ପତାକା ଚାରିପାଶେ ।
ସୁନ୍ଦର ସୁବର୍ଣ୍ଣ କଳସେ ॥୧୧୭
ରଜତଗିରି ଶୃଙ୍ଗ ପ୍ରାୟେ ।
ଧର୍ମନନ୍ଦନପୁର ଶୋହେ ॥୧୧୮
ଆନନ୍ଦମନେ ହୃଷୀକେଶ ।
ପାଣ୍ଡବଭୁବନେ ପ୍ରବେଶ ॥୧୧୯
କୃଷ୍ଣଆଗମ କର୍ଣ୍ଣେ ଶୁଣି ।
ସେ ପୁରେ ଯେତେକ ତରୁଣୀ ॥୧୨୦
ଜନଲୋଚନ ପାନପାତ୍ର ।
ଭାବେ ତୃଷିତ ବେନିନେତ୍ର ॥୧୨୧
ଦେଖିବା ଅର୍ଥେ ଭାବସୁଖେ ।
ଧାଇଁଲେ ଆନନ୍ଦ ଉତ୍ସୁକେ ॥୧୨୨

କେଶବସନ ଅସମ୍ଭାଳେ ।
ଚରଣ ନ ଚଳେ ନିଶ୍ଚଳେ ॥୧୨୩
ଭୋଳେ ତେଜିଲେ ଘରଦ୍ୱାର ।
ଶଯ୍ୟାରେ ଛାଡ଼ି ନିଜ ବର ॥୧୨୪
କୃଷ୍ଣଙ୍କୁ ଦେଖିବାରେ ସଧେ ।
ଧାଇଁଲେ ରାଜପଥ ମଧ୍ୟେ ॥୧୨୫
ଶୁଭଇ ମୁଖରାବ ଗୋଳ ।
ଯେସନେ ସମୁଦ୍ର ଉଲ୍ଲୋଳ ॥୧୨୬
ନାନାସୁବାଦ୍ୟେ ଦିଗ ପୂରେ ।
କେ ଯାଇ ଉଠେ ବୃକ୍ଷପରେ ॥୧୨୭
ଜଗତି ଅଟ୍ଟାଳୀ ପାଚେରୀ ।
ଆରୋହି ଲଜ୍ଜା ଦୂର କରି ॥୧୨୮
ନିଜ ଯୁବତୀଗଣ ସାଥେ ।
କୃଷ୍ଣଙ୍କୁ ଦେଖି ଦିବ୍ୟରଥେ ॥୧୨୯
ପୁଷ୍ପବରଷି ସ୍ତୁତି ଭଣି ।
ଗୁରୁଗଉରବ ନ ଗଣି ॥୧୩୦
କୃଷ୍ଣ ସୁନ୍ଦରରୂପ ଦେଖି ।
ନିର୍ମଳ କଲେ ଚର୍ମ ଆଖି ॥୧୩୧
ଅନ୍ତରେ ଆଲିଙ୍ଗନ ଦେଇ ।
ନୟନେ ସ୍ୱାଗତ ଜଣାଇ ॥୧୩୨
କୃଷ୍ଣକାମିନୀ ମଧ୍ୟେ ବସି ।
ତାରାମଣ୍ଡଳେ ଯେହ୍ନେ ଶଶୀ ॥୧୩୩
ବୋଲନ୍ତି ଏକୁ ଆରେ ଚାହିଁ ।
କି ପୁଣ୍ୟ କଲେ ଏ ଗୋ ସହି ॥୧୩୪
ଦେଖ ଏ ପୁରୁଷଉତ୍ତମ ।
ରୂପେ ଗ ଞ୍ଜାଇ କୋଟି କାମ ॥୧୩୫
ସୁରଙ୍ଗମୁଖେ ମନ୍ଦହାସେ ।
ଜୀବନବାନ୍ଧେ କାମପାଶେ ॥୧୩୬
ସୁରେଖ ଦେଖ ଭ୍ରୂଭଙ୍ଗ ।
ଲୋଚନ ବିସ୍ତାରେ ଅନଙ୍ଗ ॥୧୩୭
ଏମନ୍ତ ଭାବୁଁ ନାରୀମାନେ ।
ଆସି ମିଳିଲେ ପୁରଜନେ ॥୧୩୮
ମଙ୍ଗଳ ଦ୍ରବ୍ୟ ଭୁଜଦଣ୍ଡେ ।
କୃଷ୍ଣେ ଭେଟିଲେ ରାଜଦାଣ୍ଡେ ॥୧୩୯
କୃଷ୍ଣଙ୍କୁ ନମି ଅଶ୍ରୁମୁଖେ ।
ତରିଲେ ଭବବନ୍ଧଦୁଃଖେ ॥୧୪୦

ରାଜାର ଅନ୍ତଃପୁର ଜନେ ।
କୃଷ୍ଣଙ୍କୁ ଦେଖନ୍ତି ନୟନେ ॥୧୪୧
ଅଭିଗମନେ ଅନୁସରି ।
କୃଷ୍ଣଙ୍କୁ ଅନ୍ତଃପୁରେ ଭରି ॥୧୪୨
ଉତ୍ସବ କେବା ପରିମାଣି ।
କୃଷ୍ଣ ଆଗମ କୁନ୍ତୀ ଶୁଣି ॥୧୪୩
ଯେ ହରି ତ୍ରିଭୁବନନାଥ ।
ଲୋକବେଭାରେ ଭ୍ରାତୃସୁତ ॥୧୪୪
ନିଜ ପଲ୍ୟଙ୍କୁ ଉଠି ବେଗେ ।
ଦ୍ରୌପଦୀବଧୂ ଘେନି ସଙ୍ଗେ ॥୧୪୫
କୋଳେ ବସାଇ ଭଗବାନ ।
ଆନନ୍ଦେ କଲେ ଆଲିଙ୍ଗନ ॥୧୪୬
ଗୋବିନ୍ଦେ ଆଣି ନିଜପୁରେ ।
ଧର୍ମନନ୍ଦନ ସ୍ନେହଭରେ ॥୧୪୭
ଆନନ୍ଦସିନ୍ଧୁଜଳେ ବୁଡ଼ି ।
ପୂଜାର କର୍ମପଥ ଛୁଡ଼ି ॥୧୪୮
ପିତୃଭଗିନୀ ଗୁରୁନାରୀ ।
ଚରଣ ବନ୍ଦିଲେ ମୁରାରି ॥୧୪୯
ସୁଭଦ୍ରା ଦ୍ରୌପଦୀର ସଙ୍ଗେ ।
ନମିଲା କୃଷ୍ଣପାଦଯୁଗେ ॥୧୫୦
ଦ୍ରୁପଦସୁତା ଶୁଦ୍ଧମନେ ।
ତକ୍ଷଣେ କୁନ୍ତୀର ବଚନେ ॥୧୫୧
ପୂଜିଲା ଯଥା ଅନୁମତେ ।
ଯେ ଯାହା ବିଧାନ ଯେମନ୍ତେ ॥୧୫୨
ରୁକ୍ମିଣୀ ସତ୍ୟଭାମା ସତୀ ।
ଭଦ୍ରା କାଳିନ୍ଦୀ ଜାମ୍ବବତୀ ॥୧୫୩
ଲକ୍ଷଣା ସତ୍ୟା ମିତ୍ରବିନ୍ଦା ।
ଏ ଅଷ୍ଟକୃଷ୍ଣର ପ୍ରମଦା ॥୧୫୪
ଏ ଆଦି ଯେତେ କୃଷ୍ଣନାରୀ ।
ପୂଜିଲେ ଅଳଙ୍କାର ଭରି ॥୧୫୫
ଏମନ୍ତେ ଧର୍ମର ନନ୍ଦନ ।
ସୁଖେ ନିବେଶି ଜନାର୍ଦ୍ଦନ ॥୧୫୬
ସକଳଜନ ତୁଲେ ହରି ।
ନିତ୍ୟେ ନୂତନେ ପୂଜା କରି ॥୧୫୭
ପୂର୍ବେ ଅର୍ଜ୍ଜୁନ ତୁଲେ ହରି ।
ଖାଣ୍ଡବବନ ଦାହ କରି ॥୧୫୮

Dr. Sudhanshu Sekhar Mishra

ଅଗ୍ନିର କରି ଉପକାର ।
ରଖିଲେ ମୟଦୈତ୍ୟ ବୀର ॥୧୫୯

ତାର ନିର୍ମିତ ମାୟାସଭା ।
କିବା ଉପମା ଦେବା ଅବା ॥୧୬୦

ସେ ସଭାମଧ୍ୟେ ହୃଷୀକେଶ ।
ଭାବେ ରହିଲେ କେତେ ମାସ ॥୧୬୧

ଅର୍ଜୁନ ତୁଲେ ନାରାୟଣ ।
ସଙ୍ଗତେ ଘେନି ବୀରଗଣ ॥୧୬୨

ରଥ ଆରୋହି ଭଗବାନ ।
ନିତ୍ୟେ ଭ୍ରମନ୍ତି ଦେଶବନ ॥୧୬୩

ସେ ହରିଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୧୬୪

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ କୃଷ୍ଣସ୍ୟ
ଇନ୍ଦ୍ରପ୍ରସ୍ଥ ଗମନଂ ନାମ
ଷଟ୍‌ସପ୍ତତିତମ ଅଧ୍ୟାୟଃ ॥

## ସପ୍ତସପ୍ତତିତମ ଅଧ୍ୟାୟ

ଶୁକ ବୋଲନ୍ତି ଶୁଦ୍ଧମନେ ।
ଇନ୍ଦ୍ରପ୍ରସ୍ଥରେ ଏକଦିନେ ॥୧

ସଭାରେ ମଧ୍ୟେ ଧର୍ମସୁତ ।
ସଙ୍ଗତେ ଘେନି ଚାରିଭ୍ରାତ ॥୨

ସନ୍ନିଧେ ବ୍ରହ୍ମଋଷିଜନ ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ॥୩

ବୃନ୍ଦେ ଅଛନ୍ତି ଯେତେ ଭାବେ ।
ସିଦ୍ଧାଦି ଗନ୍ଧର୍ବେ ଏ ସର୍ବେ ॥୪

ଏହାଙ୍କୁ କରି ସାବଧାନ ।
ଚାହିଁଣ କୃଷ୍ଣର ବଦନ ॥୫

ସମ୍ଭ୍ରମେ ଯୋଡ଼ି ବେନିକର ।
କୃଷ୍ଣଙ୍କୁ ବୋଲେ ନୃପବର ॥୬

ଭୋ ଦେବ ଶୁଣ ସାବଧାନେ ।
ମଞ୍ଚ ରାଜସୂୟ ବିଧାନେ ॥୭

ତୋର ବିଭୂତି ଦେବଗଣେ ।
ପବିତ୍ର ପରମକାରଣେ ॥୮

ତାହାଙ୍କୁ ତୋର ପାଦଗତେ ।
ପୂଜିବି ମହାଯଜ୍ଞମତେ ॥୯

ଏଣୁ ମୋହର ମନଖେଦ ।
କର ତୁ ଏ ଯଜ୍ଞ ସମ୍ପାଦ ॥୧୦

ତୋର ଚରଣ ଅବିରତେ ।
ଯେ ପ୍ରାଣୀ ଚିନ୍ତେ ଶୁଦ୍ଧଚିତ୍ତେ ॥୧୧

ନିଶ୍ଚଳଚିତ୍ତେ କରି ଧ୍ୟାନ ।
ମୁଖେ ଗୁଣନ୍ତି ତୋର ନାମ ॥୧୨

ସେବନ୍ତି ଉପବାସ ବ୍ରତେ ।
ବେଦବଚନ ଶାସ୍ତ୍ରମତେ ॥୧୩

ସେ ତୋତେ କରନ୍ତି ପ୍ରଣାମ ।
ତୁ ଅପବର୍ଗର କାରଣ ॥୧୪

ତୁ ଦେବଦେବ ନରହରି ।
ଯେ ତୋର ପାଦେ ସେବାକରି ॥୧୫

ସେବାର ଫଳେ ଯେତେ ଲାଭ ।
ଉଭୟଲୋକ ଅନୁଭବ ॥୧୬

ଏ ସଭାଲୋକର ସମ୍ମୁଖେ ।
ତୁ ଏବେ ଦେଖାଅ ପ୍ରତ୍ୟକ୍ଷେ ॥୧୭

ଯେ ତୋତେ ଭଜେ ଦୃଢଚିତ୍ତେ ।
ଯେ ଅବା ନ ଭଜନ୍ତି ତୋତେ ॥୧୮

ଏ ବେନିଜନଙ୍କର ଗତି ।
ପ୍ରକାଶ କର ଦାଶରଥି ॥୧୯

କୁରୁ ସୃଞ୍ଜୟ ସଭା ମଧ୍ୟେ ।
ଏ ଲୋକେ ଦେଖନ୍ତୁ ଆନନ୍ଦେ ॥୨୦

ତୁ ଯେ ନିର୍ଗୁଣ ବ୍ରହ୍ମସାର ।
ମିତ୍ର ଅଇରି ନାହିଁ ତୋର ॥୨୧

ଏ ସର୍ବଭୂତେ ତୋର ବାସ ।
ଏଣୁ ବୋଲାଉ ସମଦୃଶ ॥୨୨

ସ୍ୱସୁଖ-ଅନୁଭବେ ପୂର୍ଣ୍ଣ ।
ସେବକେ ହେଉ ସୁରଦ୍ରୁମ ॥୨୩

ସେବାର ଅନୁରୂପେ ହିତ ।
ଏଣେ ତୋ ନାହିଁ ବିପରୀତ ॥୨୪

ଏମନ୍ତେ ଧର୍ମସୁତ ବାଣୀ ।
ଗୋବିନ୍ଦ ସଭାମଧ୍ୟେ ଶୁଣି ॥୨୫

ଅଳପ ହସି ଭାବଗ୍ରାହୀ ।
ବୋଲନ୍ତି ରାଜାମୁଖ ଚାହିଁ ॥୨୬

ଭଗବାନ ଉବାଚ

ଶୁଣ ହୋ ଶତ୍ରୁ-କରଷଣ ।
ଏ ତୋର ଉତ୍ତମ ପ୍ରମାଣ ॥୨୭

ତୋହର ପୁଣ୍ୟଯଶ-ବାଣୀ ।
ତିନିଭୁବନଲୋକେ ଶୁଣି ॥୨୮

କଲ୍ୟାଣବାଣୀ ରାତ୍ରି ଅନ୍ତେ ।
ସୁଜନେ ସୁମରିବେ ନିତ୍ୟେ ॥୨୯

ଶୁଣ ଏ ଯଜ୍ଞର ମହିମା ।
ଅଧିକେ କି ଦେବା ଉପମା ॥୩୦

ଋଷି ଦେବତା ପିତୃଗଣ ।
ଏ ପୁଣ୍ୟ ଯଜ୍ଞରେ ତର୍ପଣ ॥୩୧

ସୁହୃଦ ଆଦି ଯେତେ ଜନ୍ତୁ ।
ଏଣେ ତାହାଙ୍କ ସୁଖ ହେତୁ ॥୩୨

ସମରେ ସର୍ବନୃପ ଜିଣି ।
ତୁ ବଶ କର ଏ ଧରଣୀ ॥୩୩

ସର୍ବସମ୍ପାରେ ନୃପବର ।
ସୁଖେ ତୁ ମହାଯଜ୍ଞ କର ॥୩୪

ଏ ଯେ ତୋହର ଚାରିଭ୍ରାତ ।
ଦିଗପାଳଙ୍କ ଅଂଶେ ଜାତ ॥୩୫

Dr. Sudhanshu Sekhar Mishra

ମୁହିଁ ଦୁର୍ଜୟ ସୁରାସୁରେ ।
ଭାବେ ଖଟଇ ତୋ ପୟରେ ।।୩୬
ଏବେ ହୋ ଶୁଣ ତୁ ରାଜନ ।
ମୋର ସେବକ ଯେତେ ଜନ ।।୩୭
ତାହାଙ୍କୁ ଇହପରଲୋକେ ।
ଥୋଇଣ ଥାଇ ନାନାସୁଖେ ।।୩୮
ତେଜ ଶଉର୍ଯ୍ୟ ଯଶ ଶିରୀ ।
ନାନାବିଭୂତି ଆଦି କରି ।।୩୯
କେହି ନ ପାରେ ତାଙ୍କୁ ଜିଣି ।
ମୋର ଶରଣ ଯେତେ ପ୍ରାଣୀ ।।୪୦
ଦେବେ ନ ପୀଡ଼ନ୍ତି ଯାହାକୁ ।
କି ଭୟ ମନୁଷ୍ୟ ରାଜାକୁ ।।୪୧
ଭାବେ କହନ୍ତି ବ୍ୟାସସୁତ ।
ଶୁଣ ସୁମନେ ପରୀକ୍ଷିତ ।।୪୨
ଏମନ୍ତେ କୃଷ୍ଣବାଣୀ ଶୁଣି ।
ଆନନ୍ଦମନେ ନୃପମଣି ।।୪୩
ଚାରିଦିଗକୁ ଚାରିଭାଇ ।
ପେଷିଲେ କୃଷ୍ଣଆଜ୍ଞା ପାଇ ।।୪୪
ତକ୍ଷଣେ ବିଷ୍ଣୁ ତେଜରାଶି ।
ବେଗେ ତାହାଙ୍କ ଦେହେ ପଶି ।।୪୫
ଦିଶନ୍ତି ବିଷ୍ଣୁତେଜକାନ୍ତି ।
ଏବେ ହୋ ଶୁଣ ନରପତି ।।୪୬
ଦକ୍ଷିଣ ଦିଗେ ସହଦେବ ।
ତକ୍ଷଣେ ପେଷିଲେ ମାଧବ ।।୪୭
ସୃଞ୍ଜୟବଳ ସଙ୍ଗେ ଦେଇ ।
ବୋଲନ୍ତି ନକୁଳକୁ ଚାହିଁ ।।୪୮
ପଶ୍ଚିମ ଦିଗେ ତୁମ୍ଭେ ଚଳ ।
ସଙ୍ଗେ ଘେନିଣ ମତ୍ସ୍ୟବଳ ।।୪୯
ଅର୍ଜୁନମୁଖ ଚାହିଁ ହରି ।
ବୋଲନ୍ତି କରେ କର ଧରି ।।୫୦
ଉତ୍ତରଦିଗେ ଯାଅ ତୁହି ।
ମୋହର ନିଜ ଭାବ ବହି ।।୫୧
କୈକୟବଳ ସଙ୍ଗେ ଘେନ ।
ଆନନ୍ଦେ ଚଳ ହେ ଅର୍ଜୁନ ।।୫୨
ପୁଣି ଅନାଇଁ ବୃକୋଦର ।
ବୋଇଲେ ବ୍ରହ୍ମାଣ୍ଡଠାକୁର ।।୫୩
ମଦ୍ର ରାଜନବଳ ସଙ୍ଗେ ।
ଭୀମ ତୁ ଯାଅ ପୂର୍ବଦିଗେ ।।୫୪
ବୋଲନ୍ତି ପ୍ରଭୁ ନାରାୟଣ ।
ରାଜାଙ୍କୁ କରି ନିମନ୍ତ୍ରଣ ।।୫୫
ବହନ ଆଣ ଚାରିଭାଇ ।
ଯଜ୍ଞସମ୍ଭାର ସଙ୍ଗେ ଲଇ ।।୫୬
ଗୋବିନ୍ଦ ଆଜ୍ଞା ପରମାଣେ ।
ଗଲେ ସେ ରାଜା ନିମନ୍ତ୍ରଣେ ।।୫୭
ବୋଲନ୍ତି ବ୍ୟାସଙ୍କ ନନ୍ଦନ ।
ଶୁଣ ହୋ ପରୀକ୍ଷ ରାଜନ ।।୫୮
ରାଜାଙ୍କୁ ବିଷ୍ଣୁତେଜେ ଜିଣି ।
ଧନସମ୍ପଦ ବେଗେ ଆଣି ।।୫୯
ଧର୍ମନନ୍ଦନ ପାଶେ ଦେଲେ ।
କୃଷ୍ଣର ଛାମୁରେ କହିଲେ ।।୬୦
ଭୋ ନାଥ ଶୁଣିମା ଗୋବିନ୍ଦ ।
ଘୋର ଦୁର୍ଜୟ ଜରାସନ୍ଧ ।।୬୧
ତାହାକୁ ନ ପାରିଲୁ ଜିଣି ।
ଶୁଣି ହସନ୍ତି ଚକ୍ରପାଣି ।।୬୨
ଦ୍ୱାରକାପୁରେ କଲୁ ବାସ ।
ସେ ଦୈତ୍ୟ ନୋହିଲା ବିନାଶ ।।୬୩
ସବୁ ନୃପତି ବନ୍ଦୀ କରି ।
ତୁ କି ନ ଜାଣୁ ଚକ୍ରଧାରୀ ।।୬୪
ତୋର ବୁଦ୍ଧିରେ ନାଶ ଯିବ ।
ତେବେ ସେ ମୋ ଯଜ୍ଞ ହୋଇବ ।।୬୫
ଶୁଣି ବୋଲନ୍ତି ଚକ୍ରପାଣି ।
ଏ କଥା ମୁହିଁ ଅଛି ଜାଣି ।।୬୬
ସେ ବନ୍ଦୀ ନୃପତିଙ୍କ ତାର ।
କହିଲା ମୋହର ଆଗର ।।୬୭
ଅବଶ୍ୟ ତାକୁ ସଂହାରିବି ।
ବନ୍ଦୀନୃପତି ଉଦ୍ଧରିବି ।।୬୮
ରାଜାଏ କରୁ ମନେ ଧ୍ୟାନ ।
ତକ୍ଷଣେ ଜାଣି ଜନାର୍ଦ୍ଦନ ।।୬୯
ଉଦ୍ଧବ ବାକ୍ୟ ସୁମରଣ ।
କରି ଉଠିଲେ ନାରାୟଣ ।।୭୦
ଭୀମ ଅର୍ଜୁନ ତୁଲେ ହରି ।
ତକ୍ଷଣେ ବିପ୍ରରୂପ ଧରି ।।୭୧
ମିଳିଲେ ଯାଇ ଗିରିବରେ ।
ଦୁର୍ଗମ ଜରାସନ୍ଧପୁରେ ।।୭୨
ଅତିଥିବେଶେ ତାର ଦ୍ୱାରେ ।
ମିଳିଲେ ଭିକ୍ଷୁକ ବେଭାରେ ।।୭୩
ଗୃହସ୍ଥଧର୍ମ ଭିକ୍ଷୁପୂଜା ।
ବ୍ରହ୍ମଣ୍ୟ ଜରାସନ୍ଧ ରାଜା ।।୭୪
ଦ୍ୱାର ସମୀପେ ଭଗବାନ ।
ସୁସ୍ୱରେ କଲେ ସାମଗାନ ।।୭୫
କ୍ଷତ୍ରିୟକୁଳେ ଜାତ ହୋଇ ।
ଛଦ୍ମେ ବ୍ରାହ୍ମଣ ରୂପ ବହି ।।୭୬
କୃଷ୍ଣର ବେଦନାଦ ଶୁଣି ।
ମନେ ବିଚାରେ ନୃପମଣି ।।୭୭
ଏତ ଅପୂର୍ବ ବିପ୍ରବର ।
ମିଳିଲେ ମୋହର ନଗର ।।୭୮
ଆଜ ଜୀବନ ମୋର ଧନ୍ୟ ।
ଉତ୍ତମ ବିପ୍ରେ ଦେବି ଦାନ ।।୭୯
ଏମନ୍ତ ମନେ ବିଚାରିଲା ।
କୃଷ୍ଣର ନିକଟେ ମିଳିଲା ।।୮୦
ତାର ବଦନ ଚାହିଁ ହରି ।
କହନ୍ତି ଅଞ୍ଜଳି ପ୍ରସାରି ।।୮୧
ଶୁଣ ଧାର୍ମିକ ନୃପବର ।
ଅନେକ ଦୂରେ ଆମ୍ଭ ଘର ।।୮୨
ତୋର ମହିମା ଶୁଣି କର୍ଣ୍ଣେ ।
ଆମ୍ଭେ ଅଇଲୁ ପଥଶ୍ରମେ ।।୮୩
ତୋର କୁଶଳ ହେଉ ସୁଖେ ।
ଯାହା ମାଗିବୁ ଆମ୍ଭେ ମୁଖେ ।।୮୪
ସନ୍ତୋଷେ ଦେବୁ ନୃପବର ।
ଏ ଧର୍ମେ ବିଳମ୍ବ ନ କର ।।୮୫
ତୁ ପୁଣ୍ୟବନ୍ତ ଶିରୋମଣି ।
ଆମ୍ଭେ ଅଇଲୁ ଯଶ ଶୁଣି ।।୮୬
ସଂସାର ଦୁଃଖର କାରଣ ।
ତିତିକ୍ଷୁ ବୋଲାନ୍ତି ଯେ ଜନ ।।୮୭
ତାର ସଦୃଶ ନାହିଁ କେହି ।
ଦୁର୍ଲ୍ଲଭ ମାଗିଲେ ସେ ଦେଇ ।।୮୮
ଅସାଧୁ ବୁଦ୍ଧି ଯେତେ ନର ।
କିବା ଅକାର୍ଯ୍ୟ ତାହାଙ୍କର ।।୮୯

Dr. Sudhanshu Sekhar Mishra

ଜାଣି ନ ଜାଣି ସୁଖଲାଭେ ।
କର୍ମ କରନ୍ତି ପଶୁ ଭାବେ ॥୯୦
ବିପାକେ ଫଳ ବିପରୀତ ।
ବୋଲନ୍ତି ପ୍ରଭୁ ଜଗନ୍ନାଥ ॥୯୧
ନିର୍ମଳଜ୍ଞାନ ଯାର ଦେହୀ ।
ଅଦେୟ ବସ୍ତୁ ତାର ନାହିଁ ॥୯୨
ପ୍ରାଣୀର ହିତେ ସର୍ବ ଦେଇ ।
ତାହାକୁ ବୋଲି ପୁଣ୍ୟଦେହୀ ॥୯୩
ସମଦରଶୀ ଚିତ୍ତ ଯାର ।
ମିତ୍ର ଅଇରି ନାହିଁ ତାର ॥୯୪
ଯେ ପ୍ରାଣୀ ଅନିତ୍ୟ ଶରୀରେ ।
ନିର୍ମଳଯଶ ଏ ସଂସାରେ ॥୯୫
ପୁଣ୍ୟପୁରୁଷେ ଯାହା ଗାଇ ।
ତାହା ନ ସଞ୍ଚେ ଦେହ ବହି ॥୯୬
ନିଷ୍ଫଳ ତାହାର ଜୀବନ ।
ନିନ୍ଦା କରନ୍ତି ସର୍ବଜନ ॥୯୭
ତା ସୁଖ ନାହିଁ ବେନିଲୋକେ ।
ଜୀବନ ବହେ ଦୁଃଖଶୋକେ ॥୯୮
ପୁଣ୍ୟପୁରୁଷ ପୂର୍ବକାଳେ ।
ଥିଲେ ଯେ ଏ ମହୀମଣ୍ଡଳେ ॥୯୯
ଯେ ହରିଶ୍ଚନ୍ଦ୍ର ମହୀପତି ।
ଯେ ରନ୍ତିଦେବ ଉଞ୍ଛବୃତ୍ତି ॥୧୦୦
ଶିବିରାଜନ ଭାଗ୍ୟବନ୍ତ ।
ବଳି ଯେ ବିରୋଚନସୁତ ॥୧୦୧
ବ୍ୟାଧକପୋତ ଆଦି ଯେତେ ।
ଅଧ୍ରୁବ ଦେହେ ଧ୍ରୁବପଥେ ॥୧୦୨
ଗମିଲେ ପୁଣ୍ୟଫଳେ ସୁଖେ ।
ଯଶ ରହିଲା ତିନିଲୋକେ ॥୧୦୩

ଶୁକ ଉବାଚ

ଏମନ୍ତେ କୃଷ୍ଣବାଣୀ ଶୁଣି ।
ବିପ୍ରଙ୍କୁ ଚାହିଁ ନୃପମଣି ॥୧୦୪
ସ୍ୱର ଆକୃତି ପରିମାଣେ ।
ହସ୍ତକର୍କଶ ଧନୁଗୁଣେ ॥୧୦୫
ଦେଖି କରଇ ବିଚାରଣ ।
ନିଶ୍ଚେ ଏ ନୁହଁଇ ବ୍ରାହ୍ମଣ ॥୧୦୬
ପୂର୍ବେ ଏହାଙ୍କୁ ଅଛି ଦେଖି ।
ଏମନ୍ତ ମନେ ଉପଲକ୍ଷି ॥୧୦୭
ପୁଣି ବିଚାରେ ଶୁଦ୍ଧଚିତ୍ତେ ।
ଅତିଥି ଲଙ୍ଘିବି କେମନ୍ତେ ॥୧୦୮
ବ୍ରାହ୍ମଣ ରୂପେ ହୋଇ ଛନ୍ନ ।
ଯେବେ ମାଗିବେ ମୋ ଜୀବନ ॥୧୦୯
ଏହାକୁ ନାହିଁ ମୋର ଭୀତି ।
ମୋହର ଦ୍ୱାରେ ଏ ଅତିଥି ॥୧୧୦
ଏହାଙ୍କୁ ନିଶ୍ଚେ ଦେବି ଦାନ ।
ଯେବେ ମାଗିବେ ମୋ ଜୀବନ ॥୧୧୧
ବଳି ରାଜାର ଯଜ୍ଞକାଳେ ।
ବିଷ୍ଣୁ ମିଳିଲେ ବିପ୍ରଛଳେ ॥୧୧୨
ତିନିଚରଣେ ମହୀ ଦେଲା ।
ତା ଯଶ ସଂସାରେ ରହିଲା ॥୧୧୩
ବିଷ୍ଣୁ ନାଶିଲେ ତାର ଦୁଃଖ ।
ଭୁଞ୍ଜେ ଅଛିଦ୍ର ନିତ୍ୟସୁଖ ॥୧୧୪
ମନ୍ତ୍ରୀବଚନ ନ ଶୁଣିଲା ।
ଯେଣୁ ତା ପୂର୍ବଭାଗ୍ୟ ଥିଲା ॥୧୧୫
କ୍ଷତ୍ରିୟକୁଳେ ଜାତ ହୋଇ ।
ବ୍ରାହ୍ମଣହିତ ଯେ ନ ବହି ॥୧୧୬
ଧନ ଜୀବନ ଧିକ ତାର ।
ନିର୍ମଳ ଯଶ ନାହିଁ ଯାର ॥୧୧୭
ଏମନ୍ତ କରି ଅନୁମାନ ।
ବିପ୍ରଙ୍କୁ ବୋଲଇ ବଚନ ॥୧୧୮
ଭୋ ବିପ୍ରବରେ ମାଗ ଦାନ ।
ଦେବଇଁ ସତ୍ୟ ମୋ ବଚନ ॥୧୧୯
ଏ ଧର୍ମେ ବିଳମ୍ବ ନ କର ।
ମାଗିଲେ ଦେବି ଆଜ ଶିର ॥୧୨୦
ଶୁଣି ତାହାର ସତ୍ୟବାଣୀ ।
ବୋଲନ୍ତି ପ୍ରଭୁ ଚକ୍ରପାଣି ॥୧୨୧
ତୁ ପୁଣ୍ୟବନ୍ତ ନୃପମଣି ।
ଆମ୍ଭେ ତୋହର ଯଶ ଶୁଣି ॥୧୨୨
ଅଇଲୁ ଦୁଃଖ ଦୂରପଥ ।
ଯେଣୁ ତୁ ପୁରୁଷ ମହତ ॥୧୨୩
ଆମ୍ଭଙ୍କୁ ଯୁଦ୍ଧ ଦିଅ ଦାନ ।
ଆନରେ ନାହିଁ ପ୍ରୟୋଜନ ॥୧୨୪
ଶସ୍ତ୍ରସମରେ ନାହିଁ ସଧ ।
ଆମ୍ଭଙ୍କୁ ଦିଅ ବାହୁଯୁଦ୍ଧ ॥୧୨୫
ଯେବେ ତୋ ଇଷ୍ଟଧର୍ମ ସତ୍ୟ ।
ଆମ୍ଭେ କହିବୁ ଶୁଣ ତତ୍ତ୍ୱ ॥୧୨୬
କ୍ଷତ୍ରିୟ ଜନ୍ମ ଆମ୍ଭେ ତିନି ।
ଏବେ ତୁ ନ ପାରିଲୁ ଚିହ୍ନି ॥୧୨୭
ତା ଶୁଣି ଚକିତେ ରାଜନ ।
ଚାହିଁ କରଇ ଅନୁମାନ ॥୧୨୮
କି ଏ ଗନ୍ଧର୍ବ ବିଦ୍ୟାଧର ।
ମନୁଷ୍ୟ ରାକ୍ଷସ କିନ୍ନର ॥୧୨୯
ବ୍ରାହ୍ମଣ କାହିଁ ଏତେ ତେଜ ।
କର୍କଶ ଧନୁର୍ଗୁଣେ ଭୁଜ ॥୧୩୦
ନିଶ୍ଚେ କ୍ଷତ୍ରିୟ ତିନିଜଣ ।
ପୁଣି କହନ୍ତି ନାରାୟଣ ॥୧୩୧
ଦେଖ ଏ ବୀର ବୃକୋଦର ।
ବାମେଟି ଅର୍ଜୁନ ଏହାର ॥୧୩୨
ଏହାଙ୍କ ମାତୁଳଜ ଭ୍ରାତ ।
ମୁଁ କୃଷ୍ଣ ବସୁଦେବସୁତ ॥୧୩୩
ମୁଁ ତୋର ରିପୁ ମହାବଳ ।
ଜିଣିଲି ସପ୍ତଦଶବେଳ ॥୧୩୪
ବେଳେ ଜିଣିଲୁ ବଳେ ତୁହି ।
ତା ଶୁଣି କୃଷ୍ଣ ମୁଖ ଚାହିଁ ॥୧୩୫
ଉଚ୍ଚେ ହସିଲା ଜରାସନ୍ଧ ।
ବୋଲଇ ତୁରେ ବଡ଼ ମନ୍ଦ ॥୧୩୬
କୋପେ ବୋଲଇ କୃଷ୍ଣେ ଚାହିଁ ।
ସତ୍ୟ ଯେ କରିଅଛି ମୁହିଁ ॥୧୩୭
ସଂଗ୍ରାମ ମୋହର ଉଚିତ ।
ତୁ ପୁଣି ସଂଗ୍ରାମେ ନିସତ ॥୧୩୮
ପଳାଇ ଗଲୁ ମୋର ଭୟେ ।
ଏବେ ଭଣ୍ଡିଲୁ କୂଟ ମୋହେ ॥୧୩୯
ମଥୁରା ଛାଡି ଜଳେ ପଶି ।
ଏବେ ଛକିଲୁ ମୋତେ ଆସି ॥୧୪୦
ସମୁଦ୍ରେ ପଶିଲୁ ଶରଣ ।
ତୋହର ତୁଲେ କାହିଁ ରଣ ॥୧୪୧
ଏ ଯେ ଅର୍ଜୁନ ସଖା ତୋର ।
ତୁଲ୍ୟ ବୟସ ନୋହେ ମୋର ॥୧୪୨

Dr. Sudhanshu Sekhar Mishra

ଏହାର ଦେହେ ନାହିଁ ବଳ ।
ଏ କାହିଁ ହେବ ମୋର ତୁଲ ।।୧୪୩
ମୋହର ତୁଲ୍ୟ ବଳୀ ଭୀମ ।
ସେ ଜାଣେ ବାହୁଯୁଦ୍ଧ ଧର୍ମ ।।୧୪୪
ଏମନ୍ତ ବୋଲି କୋପଭରେ ।
ବେଗେ ମିଳିଲା ନିଜପୁରେ ।।୧୪୫
ବୁଲାଇ ବେନିଗଦା ହସ୍ତେ ।
ମିଳିଲା କୃଷ୍ଣର ଅଗ୍ରତେ ।।୧୪୬
ଗଦାଏ ଭୀମହସ୍ତେ ଦେଲା ।
ସମର କର ତୁ ବୋଇଲା ।।୧୪୭
ଆପଣେ ଗଦା ହସ୍ତେ ଧରି ।
ରଣେ ପଶିଲା ଆଗସରି ।।୧୪୮
ସମରେ ଭୀମ-ଜରାସନ୍ଧ ।
ଶୂନ୍ୟେ ଦେଖନ୍ତି ଦେବବୃନ୍ଦ ।।୧୪୯
ଅନ୍ତରେ ନିଜ ଛଳ ଆଣି ।
ଗଦାସମରେ ପଞ୍ଚାପଞ୍ଚି ।।୧୫୦
ରଣେ ଦୁର୍ମଦ ବେନିବୀର ।
ଘୂରାଇ କରନ୍ତି ପ୍ରହାର ।।୧୫୧
ଶବଦ ଯେହ୍ନେ ଘଡଘଡି ।
ଶୁଭଇ ବେନିଦେହେ ପଡି ।।୧୫୨
ବାମ ଦକ୍ଷିଣେ ଗଦା ଚାଳି ।
କୋପେ ପିଟନ୍ତି ଭୁଜତୋଳି ।।୧୫୩
ସମରେ ମତ୍ତଗଜ ପ୍ରାୟେ ।
ଗଦା ପିଟନ୍ତି ବେନି ଦେହେ ।।୧୫୪
ଶୁଭଇ ଘଡଘଡି ନାଦ ।
ଗଜେ ଯେସନେ ଗଜଯୁଦ୍ଧ ।।୧୫୫
ବଜ୍ରଶବଦେ ଦିଗ ପୂରେ ।
ମାଗଧ ଭୀମର ସମରେ ।।୧୫୬
ଏମନ୍ତେ ବେନି ଗଦା ତୋଳି ।
ଅନ୍ୟୋନ୍ୟେ ପ୍ରହାରନ୍ତି ବଳୀ ।।୧୫୭
ପିଟନ୍ତି ଭୁଜଯୁଗେ ବେଗେ ।
ଗଦାଏ ବାଜି ତାଙ୍କ ଅଙ୍ଗେ ।।୧୫୮
କଟୀ ଜଘନ ଉର କନ୍ଧେ ।
ବଜ୍ରଶବଦ ଘୋରନାଦେ ।।୧୫୯
ଭାଜି ପଡିଲେ ଗଦାତଳେ ।
ହସ୍ତୀ ସଂଗ୍ରାମେ ଯେହ୍ନେ ଡାଳେ ।।୧୬୦
ସେ ବେନିଗଦା ଯହୁଁ ଗଲା ।
ଅନେକ କୋପ ଉପୁଜିଲା ।।୧୬୧
ମୁଷ୍ଟି ଉଞ୍ଚାଇ ମହାକୋପେ ।
ପ୍ରହାର କଲେ ଆପେ ଆପେ ।।୧୬୨
ଶୁଭଇ ବଜ୍ର ଘଡଘଡି ।
ପୁଣି ପ୍ରହାରେ ଆଗ ବଢି ।।୧୬୩
ଏମନ୍ତେ ବଢିଲା ସଂଗ୍ରାମ ।
ଦଇବ ବେନିବୀରେ ସମ ।।୧୬୪
ନିରତେ ସମର ବଢିଲା ।
ସପତବିଂଶ ଦିନ ଗଲା ।।୧୬୫
ଏମନ୍ତେ ରଜନୀ ପ୍ରବେଶେ ।
କୃଷ୍ଣ ଯେ ଥିଲେ ଭୀମ ପାଶେ ।।୧୬୬
କୃଷ୍ଣବଦନ ଭୀମ ଚାହିଁ ।
କହିଲା ଆଙ୍ଗୁଳି ଦେଖାଇ ।।୧୬୭
ଏହାକୁ ନ ପାରିବି ମୁହିଁ ।
ଉପାୟ ଥିଲେ କହ ତୁହି ।।୧୬୮
ଭୀମ ବଚନେ ନାରାୟଣ ।
ଚିନ୍ତିଲେ ଜରାର ମରଣ ।।୧୬୯
ଜରାରାକ୍ଷସୀ ଜନ୍ମକାଳେ ।
ସନ୍ଧାନ କଲା ବେନିଫାଳେ ।।୧୭୦
ବୋଇଲା ହୁଅ ତୁ ଅକ୍ଷୟ ।
କେ ଜାଣିପାରେ ଏ ଉପାୟ ।।୧୭୧
ତୋତେ କରିବ ବେନିଫାଳ ।
ଖଣ୍ଡେ କ୍ଷେପିବ ଅନ୍ତରାଳ ।।୧୭୨
ଖଣ୍ଡେ ପଡିବ ସିନ୍ଧୁଜଳେ ।
ଦହିବ ବଡବା ଅନଳେ ।।୧୭୩
ତେବେ ସେ ତୋହର ମରଣ ।
ଏ କଥା ଜାଣି ନାରାୟଣ ।।୧୭୪
ଭୀମ ଶରୀରେ ନରହରି ।
ତକ୍ଷଣେ ନିଜ ତେଜ ଭରି ।।୧୭୫
ନିର୍ଭୟ କଲେ ତାର ମନ ।
ଘୋର ଶବଦେ ଭୀମସେନ ।।୧୭୬
ଚାହିଁଲା କୃଷ୍ଣର ବଦନ ।
ତକ୍ଷଣେ ପ୍ରଭୁ ଭଗବାନ ।।୧୭୭
ଶତ୍ରୁର ମରଣ ଉପାୟ ।
ତୃଣ ଉପାଡି ଦେବରାୟ ।।୧୭୮
ଭୀମେ ଦେଖାଇ ନରହରି ।
ଚିରିଲେ ବେନିଫାଳ କରି ।।୧୭୯
ତକ୍ଷଣେ ଚାହିଁ ବୃକୋଦର ।
ଶବଦ କଲା ମହାଘୋର ।।୧୮୦
ଉତ୍ତାନେ ପଡିଥିଲା ଭୀମ ।
ଦେହେ ବସିଲା ଗରୁତମ ।।୧୮୧
ଜରାକୁ ପକାଇଲା ତଳେ ।
ତକ୍ଷଣେ ଉଠି ମହାବଳେ ।।୧୮୨
ବିଷ୍ଣୁର ତେଜେ ଘୋରନାଦ ।
କରି ଧଇଲା ବେନି ପାଦ ।।୧୮୩
ଆକର୍ଷି ପାଦେ ପାଦ ମୋଡି ।
ଆର ଚରଣ ହସ୍ତେ ତାଡି ।।୧୮୪
ଦେଖନ୍ତି ପ୍ରଭୁ ଦାମୋଦର ।
ବେଗେ ଫାଟିଲା ମଳଦ୍ୱାର ।।୧୮୫
ହୁଙ୍କାରନାଦେ ମହାବଳ ।
ତକ୍ଷଣେ କଲା ବେନିଫାଳ ।।୧୮୬
ଦେବେ ତା ଦେଖନ୍ତି ପ୍ରତ୍ୟକ୍ଷେ ।
ଖଣ୍ଡେ ଫିଙ୍ଗିଲା ଅନ୍ତରୀକ୍ଷେ ।।୧୮୭
ଆର ଖଣ୍ଡକ ଭୂମିଗତେ ।
ପଡିଲା କୃଷ୍ଣର ଅଗ୍ରତେ ।।୧୮୮
ଗଜ ଯେସନେ ବୃକ୍ଷଡାଳ ।
ଲୀଳାଏ କରେ ବେନିଫାଳ ।।୧୮୯
ଏକଇ ଚରଣ ବୃଷଣ ।
ଜଘନ କଟୀ ପୃଷ୍ଠ ସ୍ତନ ।।୧୯୦
ଏକଇ ଭୁଜ ଅଂଶ ଧରି ।
ଯେହ୍ନେ କରତେ କାଷ୍ଠ ଚିରି ।।୧୯୧
ଏକଇ ନାସାପୁଟ କର୍ଣ୍ଣ ।
ଚକ୍ଷୁ କପୋଳ ଦେଖି ଜନ ।।୧୯୨
ଶୁଭଇ ହାହାକାର ବାଣୀ ।
ଭୀମ ଉଠିଲା ଶିରଝୁଣି ।।୧୯୩
ଜରାସନ୍ଧର ପାଦ ଧରି ।
ବୁଲାଇ ଅନ୍ତରାଳ କରି ।।୧୯୪
ବଡବାନଳେ ପକାଇଲା ।
ଏମନ୍ତେ ଶତ୍ରୁ ନାଶ ଗଲା ।।୧୯୫
ତକ୍ଷଣେ ପାର୍ଥ ଜଗନ୍ନାଥ ।
ଧଇଲେ ବୃକୋଦର ହସ୍ତ ।।୧୯୬

Dr. Sudhanshu Sekhar Mishra

ଜୟ ଶବଦେ ନରହରି ।
ଭୀମକୁ ଆଲିଙ୍ଗନ କରି ॥୧୯୭
ଜରାସନ୍ଧର ପୁତ୍ରେ ଆଣି ।
ନୃପ ଆସନେ ଚକ୍ରପାଣି ॥୧୯୮
ବସାଇ ନିଜ ଜନ ମଧ୍ୟେ ।
କୃଷ୍ଣ ସଞ୍ଚିଲେ ରାଜପଦେ ॥୧୯୯
ବନ୍ଧନେ ଯେତେକ ନୃପତି ।
ତାହାଙ୍କୁ ସୁମରି ଶ୍ରୀପତି ॥୨୦୦
ପର୍ବତକ୍ରୋଟ ମଧ୍ୟଗତେ ।
ଗୋବିନ୍ଦ ଗଲେ ପାଦଗତେ ॥୨୦୧
ସେ ହରିଚରଣେ ବିଶ୍ୱାସ ।
ଶରଣେ ଜଗନ୍ନାଥ ଦାସ ॥୨୦୨

ଇତି ଶ୍ରୀମଦ୍ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଜରାସନ୍ଧ ବଧୋ ନାମ
ସପ୍ତସପ୍ତତିତମ ଅଧ୍ୟାୟଃ ॥

---

## ଅଷ୍ଟସପ୍ତତିତମ ଅଧ୍ୟାୟ

ଶୁକ ଉବାଚ

ଶୁକ ବୋଲନ୍ତି ରାୟେ ଶୁଣ ।
ରିପୁ ସଂହାରି ନାରାୟଣ ॥୧
ଗିରିକନ୍ଦରେ ବନମାଳୀ ।
ରାଜା ନିରୋଧସ୍ଥାନେ ମିଳି ॥୨
ଜରା-ବନ୍ଧନ ଦୁଃଖ ସହି ।
ଯେତେ ନୃପତି ଥିଲେ ତହିଁ ॥୩
ଶୁଣ ହେ ଅଭିମନ୍ୟୁ ସୁତ ।
ବେନିଅୟୁତ ଅଷ୍ଟଶତ ॥୪
ଦିଗବିଜୟେ ଜରାସୁର ।
ଲୀଳାଏ ଜିଣି ନୃପବର ॥୫
ବନ୍ଧନ କରିଅଛି ବଳେ ।
ସର୍ବନୃପତି ଏକମେଳେ ॥୬
ମଳିନ ବସ୍ତ୍ର ପରିଧାନ ।
କ୍ଷୁଧାର୍ତ୍ତେ ଦୁଃଖିତ ବଦନ ॥୭
ତୃଷାରେ କମ୍ପଇ ଶରୀର ।
ବନ୍ଦୀଭୁବନ ଅନ୍ଧକାର ॥୮
ଦ୍ୱାରକୁ ଚାହାନ୍ତି ନିରେଖି ।
ବିଜୟ କଲେ ବନମାଳୀ ॥୯
ପୂର୍ବ ପର୍ବତେ ରବି ଯେହ୍ନେ ।
କିରଣ ପ୍ରକାଶେ ଗଗନେ ॥୧୦
ଶରୀର ଶ୍ୟାମଘନ ପ୍ରାୟେ ।
ପୀତବସନ ଜନ ମୋହେ ॥୧୧
ଶ୍ରୀବତ୍ସ ଚିହ୍ନ ହୃଦେ ସାଜେ ।
ରତ୍ନମେଖଳା କଟୀ ମାଝେ ॥୧୨
ଆଜାନୁଲମ୍ବେ ଚାରି କର ।
ଶଙ୍ଖ କମଳ ଚକ୍ରଧର ॥୧୩
ପଦ୍ମର ପ୍ରଭା ପ୍ରାୟ ହୋଇ ।
ରଙ୍ଗନୟନ ବିରାଜଇ ॥୧୪
ସୁନ୍ଦର ଶ୍ରୀମୁଖ ମଣ୍ଡଳ ।
ଶ୍ରବଣେ ମକରକୁଣ୍ଡଳ ॥୧୫
ହାର କିରୀଟ ରତ୍ନମୟେ ।
କରେ କଙ୍କଣ ଜନ ମୋହେ ॥୧୬
କଣ୍ଠେ ବିରାଜେ ରତ୍ନମଣି ।
ରବି କିରଣ ପ୍ରାୟ ଜାଣି ॥୧୭
ହୃଦେ ଲମ୍ବଇ ବନମାଳ ।
ମଦନମୋହନ ଗୋପାଳ ॥୧୮
ଦେଖି ସକଳ ନୃପମଣି ।
ଅମୃତନିଧି ପ୍ରାୟ ମଣି ॥୧୯
ପିଇବା ପ୍ରାୟ ଚକ୍ଷୁଦ୍ୱାରେ ।
କି ଅବା ଲିହିବେ ଜିହ୍ୱାରେ ॥୨୦
ଆଘ୍ରାଣ କରି ନାସାରନ୍ଧ୍ରେ ।
ହୃଦେ ଭିଡିବେ ବାହୁବନ୍ଧେ ॥୨୧
ଏମନ୍ତ ଭାବେ ନୃପବରେ ।
ନମିଲେ ଶ୍ରୀକୃଷ୍ଣ ପୟରେ ॥୨୨
କିରୀଟ ସହିତରେ କରି ।
ପ୍ରଣାମ କଲେ ପାଦ ଧରି ॥୨୩
ଲଭିଲେ କୃଷ୍ଣ ଦରଶନ ।
ହତ ହୋଇଲା ଦୁଃଖ ଶ୍ରମ ॥୨୪
କରଅଞ୍ଜଳି ଶିରେ ଦେଇ ।
ବୋଲନ୍ତି କୃଷ୍ଣ ତ୍ରାହି ତ୍ରାହି ॥୨୫
ନମସ୍ତେ ଦେବଦେବବର ।
ପ୍ରପନ୍ନଜନ ଦୁଃଖହର ॥୨୬
ଅବ୍ୟୟପୁରୁଷଉତ୍ତମ ।
ଶରଣଜନଙ୍କ ଜୀବନ ॥୨୭
ଘୋର ସଂସାରେ ଅଧୋମୁଖୋ ।
ଆମ୍ଭେ ଭ୍ରମିଲୁ ଅତି ଦୁଃଖେ ॥୨୮
ଅନାଥନାଥ ତୋ ମହିମା ।
ଆମ୍ଭେ ନ ଜାଣୁ ଗୁଣସୀମା ॥୨୯
ତୋହର ଗତି ଚକ୍ରଧର ।
ନ ଜାଣେ ଶିବ ବେଦବର ॥୩୦
ଏଣୁ ତୁ ଦୁର୍ଲ୍ଲଭ ସଂସାରେ ।
ଶୁଣ କହିବୁ ତୋ ଛାମୁରେ ॥୩୧
ଏ ଯେ ମାଗଧ ଜରାସନ୍ଧ ।
ଏହାକୁ ନ ବୋଲିବା ମନ୍ଦ ॥୩୨
ତୋହର ଅନୁଗ୍ରହେ ହରି ।
ଆମ୍ଭଙ୍କୁ ବଳେ ବନ୍ଦୀ କରି ॥୩୩
ଥୋଇଲା ଧରି ଏ ପର୍ବତେ ।
ତୋ ମୁଖ ଦେଖିବାର ଅର୍ଥେ ॥୩୪
ଏ ଆମ୍ଭ ରାଜ୍ୟଭ୍ରଷ୍ଟ କଲା ।
ଯେଣୁ ତୋହର ଆଜ୍ଞା ଥିଲା ॥୩୫
ଯେ ରାଜମଦେ ମତ୍ତ ହୋଇ ।
ତାହାର ଶ୍ରେୟ ଲାଭ କାହିଁ ॥୩୬
ତୋର ମାୟାରେ ହୋଇ ରତ ।
ମିଥ୍ୟା ସମ୍ପଦ ମଣେ ସତ୍ୟ ॥୩୭
ଅଜ୍ଞାନମତେ ହୋଇ ଭୋଳ ।
ମୃଗତୃଷ୍ଣାକୁ ମଣେ ଜଳ ॥୩୮
ନିବିଡ ମାୟାର ବିକାରେ ।
ବସ୍ତୁ ବିଚାରେ ଅବସ୍ତୁରେ ॥୩୯
ଆମ୍ଭେ ସକଳେ ନୃପଦେହେ ।
ଶ୍ରୀମଦେ ନଷ୍ଟ ବୁଦ୍ଧି ମୋହେ ॥୪୦

Dr. Sudhanshu Sekhar Mishra

ଏ ଭୂମି ଜିଣିବାର ଆଶେ ।
ଘୋରସଂକଟ ରଣ ତ୍ରାସେ ॥୪୧
ଏକ ଆରକେ ରିପୁପଣେ ।
ପ୍ରଜା ନାଶିଲୁ ଅକାରଣେ ॥୪୨
ଅତି ନିର୍ଦ୍ଦୟକର୍ମ କଲୁ ।
ତୋର ମହିମା ପାସୋରିଲୁ ॥୪୩
ନିକଟେ ନ ଦେଖି ମରଣ ।
ବୁଦ୍ଧି ଦୁର୍ମଦ କରଷଣ ॥୪୪
ତୁ ପୁଣି କାଳରୂପେ ହରି ।
ବଳେ ହରିଲୁ ଆମ୍ଭ ଶିରୀ ॥୪୫
ଯେଣୁ ତୋହର ଅନୁଗ୍ରହ ।
ଆମ୍ଭର ଗଲା ଦୁଃଖ ମୋହ ॥୪୬
ଏବେ ସୁମରି ତୋ ଶରଣେ ।
ପଶିଲୁ ଅଭୟ ଚରଣେ ॥୪୭
ଏ ମୃଗତୃଷ୍ଣା ପ୍ରାୟ ରାଜ୍ୟ ।
ଏଣେ ଆମ୍ଭର ନାହିଁ କାର୍ଯ୍ୟ ॥୪୮
ଏ ଛିଦ୍ର ଜଳଘଟ ପ୍ରାୟ ।
ନିତି ପତନ ଏହି କାୟ ॥୪୯
ସର୍ବରୋଗର ମୂଳଭୂମି ।
ସଦା ଅନିତ୍ୟେ ପଥଶ୍ରମୀ ॥୫୦
ଏଣେ ଆମ୍ଭର ନାହିଁ କାର୍ଯ୍ୟ ।
ଶୁଣିବା ପ୍ରଭୁ ଦେବରାଜ ॥୫୧
କର୍ମକରଣ ଯଜ୍ଞମେଳେ ।
କର୍ଣ୍ଣରୋଚନ କ୍ରିୟାଫଳେ ॥୫୨
ଏଣେ ଆମ୍ଭର କାର୍ଯ୍ୟ ନାହିଁ ।
ଏମନ୍ତ ଆଜ୍ଞା ଦିଅ ତୁହି ॥୫୩
ତୋ ପାଦପଦ୍ମେ ଅବିରତ ।
ନିରତେ ଥିବ ଆମ୍ଭ ଚିତ୍ତ ॥୫୪
ତୋର ସ୍ମରଣେ ଆମ୍ଭ ମନ ।
ଦଣ୍ଡେ ନଛାଡୁ ଭଗବାନ ॥୫୫
ସଂସାର ଭ୍ରମଣ ଆମ୍ଭର ।
ବେଗେ ନିବାର ଚକ୍ରଧର ॥୫୬
ଶ୍ରୀକୃଷ୍ଣ ବାସୁଦେବ ହରି ।
ପରମ ଆତ୍ମା ତୁ ମୁରାରି ॥୫୭
ପ୍ରଣତଜନ କ୍ଳେଶ ହର ।
ନମୋ ଗୋବିନ୍ଦ ଦାମୋଦର ॥୫୮

ଏମନ୍ତେ ପ୍ରଭୁ ଚକ୍ରପାଣି ।
ରାଜାଙ୍କ ସ୍ତୁତିବାକ୍ୟ ଶୁଣି ॥୫୯
ଶରଣ୍ୟ କରୁଣାସାଗର ।
କୋମଳବଚନ ଗଭୀର ॥୬୦
ରାଜାଙ୍କ ମୁଖ ଚାହିଁ ହସି ।
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥୬୧
ତୁମ୍ଭର ଚିତ୍ତ ସୁନିଶ୍ଚଳେ ।
ଆଜହୁଁ ମୋ ପାଦକମଳେ ॥୬୨
ହେଉ ବୋଇଲେ ଭଗବାନ ।
ଏ ମୋର ନିଶ୍ଚିତ ବଚନ ॥୬୩
ତୁମ୍ଭେ କହିଲେ ସତ୍ୟବାଣୀ ।
ମୁହିଁ ସନ୍ତୋଷ ତାହା ଶୁଣି ॥୬୪
ମନୁଷ୍ୟ ମଧ୍ୟେ ଥାଇ ଯେତେ ।
ସମ୍ପଦ ଅଇଶ୍ୱର୍ଯ୍ୟ ମତ୍ତେ ॥୬୫
ଗର୍ବ ଯେ ବହନ୍ତି ମନରେ ।
ନିଶ୍ଚେ ମୁଁ ନାଶଇ ତାହାରେ ॥୬୬
ସହସ୍ରାର୍ଜ୍ଜୁନ ନାମେ ରାଜା ।
ନୃପ ନହୁଷ ମହାତେଜା ॥୬୭
ଅଙ୍ଗନୃପତିସୁତ ବେଣ ।
ନାରକାସୁର ଦଶାନନ ॥୬୮
ଦେବ ଦାନବ କୁଳେ ଜାତ ।
ଥିଲେ ଯେ ଅଇଶ୍ୱର୍ଯ୍ୟ ମତ୍ତ ॥୬୯
ତାହାଙ୍କୁ କଲି ସ୍ଥାନଭ୍ରଷ୍ଟ ।
ଯେଣୁ ହୋଇଲେ ବୁଦ୍ଧିନଷ୍ଟ ॥୭୦
ତୁମ୍ଭେ ସକଳ ଏହା ଜାଣି ।
ଏ ଦେହ ମିଥ୍ୟା ପ୍ରାୟ ମଣି ॥୭୧
ଯଜ୍ଞେ ପୂଜିବ ମୋ ଚରଣ ।
ପାଳିବ ନିଜ ପ୍ରଜାଗଣ ॥୭୨
ଧର୍ମସେବନ ରାତ୍ରଦିନେ ।
ନିରତେ ହୋଇ ଅବଧାନେ ॥୭୩
ଦୁର୍ଗତି ବିଭବ ବିମୁଖେ ।
ଜନ୍ମ ସଞ୍ଚିତ ଦୁଃଖସୁଖେ ॥୭୪
କର୍ମକକ୍ଷଣ ହାନି ଲାଭ ।
ଗତ-ଆଗତେ ସମଭାବ ॥୭୫
ଏତେ ଗହନେ ତୁମ୍ଭେ ଥାଇ ।
ମୋର ଚରଣେ ଚିତ୍ତ ଦେଇ ॥୭୬

ମାୟାସଂସାରେ ପଡି ଭ୍ରମ ।
କେବେ ହେଁ ନୋହୁ ତୁମ୍ଭ ମନ ॥୭୭
ଏ ଦେହ ଆଦି ମୋର ଯେତୋ ।
ନ ଲାଗୁ ତୁମ୍ଭ ଶୁଦ୍ଧ ଚିତ୍ତେ ॥୭୮
ନିରତେ ହେଉ ଆତ୍ମଜ୍ଞାନ ।
ନିଶ୍ଚଳଚିତ୍ତୋ ମୋର ଧ୍ୟାନ ॥୭୯
ପବିତ୍ର ହୋଇ ବ୍ରହ୍ମପଥେ ।
ପଶିବ ମୋର ଦେହେ ଅନ୍ତେ ॥୮୦
କହନ୍ତି ବ୍ୟାସଙ୍କର ସୁତ ।
ଏବେ ହୋ ଶୁଣ ପରିକ୍ଷୀତ ॥୮୧
ଭକତବନ୍ଧୁ ଭଗବାନ ।
ରାଜାଙ୍କୁ କହି ଦିବ୍ୟଜ୍ଞାନ ॥୮୨
ତାହାଙ୍କ ଅଭିଷେକ ଅର୍ଥେ ।
ନାରୀପୁରୁଷ ଶତେ ଶତେ ॥୮୩
ମାର୍ଜ୍ଜନା କରି ସର୍ବରାଜା ।
ଗୋବିନ୍ଦ କରାଇଲେ ପୂଜା ॥୮୪
ଜରାସନ୍ଧର ପୁତ୍ର ହସ୍ତେ ।
ଭାବେ ଗୋବିନ୍ଦ ଅନୁମତେ ॥୮୫
ରାଜଉଚିତେ ଅଳଙ୍କାର ।
ପୁଷ୍ପ ଚନ୍ଦନ ବସ୍ତ୍ରସାର ॥୮୬
ରତ୍ନମୁକୁଟ ଶିରେ ଖଞ୍ଜି ।
ଉତ୍ତମ ଅନ୍ନ ଜଳ ଭୁଞ୍ଜି ॥୮୭
ନାନାପ୍ରକାରେ ରାଜଭୋଗ ।
ତାମ୍ବୁଳ କର୍ପୂର ସଂଯୋଗ ॥୮୮
କର୍ଣ୍ଣେ କୁଣ୍ଡଳ ସମସରି ।
ହାର କେୟୁର ହୃଦେ ଭରି ॥୮୯
ବନ୍ଧନ ଦୁଃଖୁଁ ପାର ହୋଇ ।
କିବା ଉପମା ଦେବି ମୁହିଁ ॥୯୦
ବରଷାକାଳ ଅନ୍ତେ ଯେହ୍ନେ ।
ଗ୍ରହେ ବିରାଜନ୍ତି ଗଗନେ ॥୯୧
ବସାଇ ରତ୍ନମୟ ଯାନେ ।
ଗୋବିନ୍ଦ କୋମଳ ବଚନେ ॥୯୨
ବୋଇଲେ ନିଜପୁରେ ଯିବ ।
ଯଜ୍ଞର ଆରମ୍ଭେ ଆସିବ ॥୯୩
ଅନେକ ସୈନ୍ୟ ବଳ ଦେଇ ।
ପେଷିଲେ ପ୍ରଭୁ ଭାବଗ୍ରାହୀ ॥୯୪

Dr. Sudhanshu Sekhar Mishra

ଏମନ୍ତେ କୃଷ୍ଣ ପରସାଦୁ ।
ରାଜାଏ ବଞ୍ଚିଲେ ପ୍ରମାଦୁ ॥୯୫
କୃଷ୍ଣର ପାଦେ ଦେଇ ମନ ।
ଗଲେ ସେ ଯେ ଯାହା ଭୁବନ ॥୯୬
ଗୋବିନ୍ଦ ଆଜ୍ଞା ଘେନି ଶିରେ ।
ସୁଖେ ରହିଲେ ନିଜ ପୁରେ ॥୯୭
ଏମନ୍ତେ ଜରାସନ୍ଧ ମାରି ।
ଭୀମଅର୍ଜ୍ଜୁନ ତୁଲେ ହରି ॥୯୮
ଜରାନନ୍ଦନ ସହଦେବ ।
ଆନନ୍ଦେ ପୂଜିଲେ ମାଧବ ॥୯୯
ତାହାକୁ ପ୍ରଭୁ ଭଗବାନ ।
ଅନେକ କଲେ ସନମାନ ॥୧୦୦
ସେ ରାଜ୍ୟେ ତାକୁ ରାଜା କରି ।
କହନ୍ତି ଅନୁଗ୍ରହ ହରି ॥୧୦୨
ତୋର ପିଅର ଦୁଷ୍ଟମତି ।
ନୃପତିଗଣେ ଦେଲା ଶାସ୍ତି ॥୧୦୩
ବହୁତଜନେ ହିଂସା କରି ।
କେମନ୍ତେ ଥିବ ଦେହ ଧରି ॥୧୦୪
ଏ ମୋର ଧର୍ମର ସଂସାର ।
ଏଥେ ଯେ କରେ ଅବିଚାର ॥୧୦୫
ମୁଁ ତାହା ନ ପାରଇ ସହି ।
ଧର୍ମ ଧାରଣେ ମୋର ଦେହୀ ॥୧୦୬
ତୋର ପିଅର ନାଶ ଗଲା ।
ପୃଥିବୀ ଉଶ୍ୱାସ ହୋଇଲା ॥୧୦୭
ଏଥିକୁ ନ କର ବିଚାର ।
ସୁଖେ ତୁ ନିଜ ରାଜ୍ୟ କର ॥୧୦୮
ମୋର ଚରଣେ ଚିତ୍ତ ଦେଇ ।
ସୁଖେ ତୁ ପାଳ ନିଜ ମହୀ ॥୧୦୯
ଯାଗ ଆରମ୍ଭ କାଳେ ଯାଇ ।
ମିଳିବୁ ମୋର ଆଜ୍ଞା ବହି ॥୧୧୦
ଏମନ୍ତ କୃଷ୍ଣମୁଖୁଁ ଶୁଣି ।
ହରଷ ହୋଇ ନୃପମଣି ॥୧୧୧
କୃଷ୍ଣର ପଦ୍ମପାଦେ ପଡି ।
ଉଠି ବୋଲଇ କରଯୋଡି ॥୧୧୨
ଭୋ ନାଥ ହୋଇଲି ନିସ୍ତାର ।
ଭାରାନିବାରେ ଅବତାର ॥୧୧୩
ଈଶ୍ୱର ସଂସାର କାରଣ ।
ମୁଁ ତୋର ଚରଣେ ଶରଣ ॥୧୧୪
ତୁ ମୋତେ କଲୁ ଅନୁଗ୍ରହ ।
ଫିଟିଲା ମନର ସନ୍ଦେହ ॥୧୧୫
ଭୀମ ଅର୍ଜ୍ଜୁନ କୃଷ୍ଣ ତୁଲେ ।
ସାଷ୍ଟାଙ୍ଗ ପୂଜି ସୁଖ ଭୋଳେ॥୧୧୬
ଅନେକ ଧନରତ୍ନ ଦେଲା ।
ଦିବ୍ୟବିମାନ ସମର୍ପିଲା ॥୧୧୭
କୃଷ୍ଣର ପାଦେ ଚିତ୍ତ ଦେଇ ।
ହୃଦେ ପରମ ସୁଖ ପାଇ ॥୧୧୮
କୃଷ୍ଣଙ୍କୁ ପାଦେ ଚିତ୍ତ ଦେଇ ।
ହୃଦେ ପରମ ସୁଖ ପାଇ ॥୧୧୯
କୃଷ୍ଣଙ୍କୁ ମାଗି ଅନୁଯାନ ।
ମିଳିଲା ଆପଣା ଭୁବନ ॥୧୨୦
ଭୀମ ଅର୍ଜ୍ଜୁନ ବନମାଳୀ ।
ବିମାନେ ବସି ହଂସକେଳି ॥୧୨୦
ପବନବେଗେ ରଥ ଚଳି ।
ଇନ୍ଦ୍ରପ୍ରସ୍ଥରେ ଯାଇ ମିଳି ॥୧୨୧
ଶଙ୍ଖ ବଜାନ୍ତେ ଭଗବାନ ।
ହରଷ ହେଲେ ବନ୍ଧୁଜନ ॥୧୨୨
ଖଳଜନଙ୍କ ମନେ ଦୁଃଖ ।
ହେଲେ ନିବେଶି ପଦ୍ମମୁଖ ॥୧୨୩
ଇନ୍ଦ୍ରପ୍ରସ୍ଥରେ ରାଜାଗଣ ।
ଶୁଣିଲେ ମାଗଧ ମରଣ ॥୧୨୪
ନିଶ୍ଚିନ୍ତେ ଧର୍ମସୁତ କାର୍ଯ୍ୟ ।
ସୁଖେ ସଞ୍ଚିଲେ ଦେବରାଜ ॥୧୨୫
ହରଷେ ଧର୍ମର କୁମର ।
ସଙ୍ଗତେ ଘେନି ସହୋଦର ॥୧୨୬
ବନ୍ଧୁବାନ୍ଧବ ପ୍ରଜାଜନ ।
କୃଷ୍ଣଙ୍କୁ ଭାବେ କଲେ ମାନ୍ୟ॥୧୨୭
ଭୀମ ଅର୍ଜ୍ଜୁନ ନାରାୟଣ ।
ବନ୍ଦିଲେ ଯୁଧିଷ୍ଠି ଚରଣ ॥୧୨୮
ଯେମନ୍ତେ ଜରା ନାଶ ଗଲା ।
ସଂକ୍ଷେପି କହି ନନ୍ଦବଳା ॥୧୨୯
ବସିଲେ ଧର୍ମସୁତ ପାଶେ ।
ଶୁଣି ନୃପତି ମନତୋଷେ ॥୧୩୦
ପୁଲକ କଲେ ରୋମରାଜି ।
ବାକ୍ୟ ନ ସ୍ଫୁରେ ଚକ୍ଷୁବୁଜି ॥୧୩୧
ସେ ହରି ଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୧୩୨

ଇତି ଶ୍ରୀମଦ୍ଭଗବତେ ମହାପୁରାଣେ
ପାରମହଂସ୍ୟାଂ ସଂହିତାୟାଂ
ଦଶମସ୍କନ୍ଧେ କୃଷ୍ଣାଦିଆଗମନେ
ଅଷ୍ଟସପ୍ତତିତମ ଅଧ୍ୟାୟଃ ॥

Dr. Sudhanshu Sekhar Mishra

## ଏକୋନଅଶୀତିତମ ଅଧ୍ୟାୟ

ଶୁକ ଉବାଚ

ଏବେ ହୋ ଶୁଣ ନୃପମଣି ।
ଜରାସନ୍ଧର ବଧ ଶୁଣି ।।୧
କୃଷ୍ଣମହିମା ଅନୁଭବ ।
ଆମ୍ଭାକଞ୍ଚିତ କାର୍ଯ୍ୟ ଲାଭ ।।୨
ଯୁଧିଷ୍ଠି ବୋଲେ ପ୍ରିୟମନେ ।
କୋମଳ ଗଭୀର ବଚନେ ।।୩

ଯୁଧିଷ୍ଠିର ଉବାଚ

ବ୍ରହ୍ମା ଶଙ୍କର ଆଦି ଯେତେ ।
ଦେବେ ଅଛନ୍ତି ଏ ଜଗତେ ।।୪
ତୋର ଦୁର୍ଲ୍ଲଭ ଆଜ୍ଞା ପାଇ ।
ଶିରେ ବହନ୍ତି ତୋଷ ହୋଇ ।।୫
ଏମନ୍ତ ପ୍ରଭୁ ମହାବାହୁ ।
ତୁ ଯେ ମୋହର ଆଜ୍ଞା ବହୁ ।।୬
ଏ ବଡ ବିଡମ୍ବନ କର୍ମ ।
ତୁ ଆଦି ନିରଞ୍ଜନ ଧର୍ମ ।।୭
ଏକ ଅଦ୍ୱିତୀୟ ଅନନ୍ତ ।
ପରମଆତ୍ମା ତୁ ଅଚ୍ୟୁତ ।।୮
ତୁ ସର୍ବଭୂତେ ଦେହ ବହି ।
କର୍ମବନ୍ଧନ ତୋର କାହିଁ ।।୯
ପ୍ରବେଶ ହେଉ ସର୍ବଜନେ ।
ଆଦିତ୍ୟ ଯେସନେ ଗଗନେ ।।୧୦
ଗୁଣ ଗ୍ରହଣେ ତୁ ଅଜିତ ।
ଯେ ପ୍ରାଣୀ ତୋହର ଭକତ ।।୧୧
ତାହାଙ୍କ ଚିତ୍ତେ ନାହିଁ ଭ୍ରାନ୍ତି ।
ମୁହିଁ ମୋହର ନ ବୋଲନ୍ତି ।।୧୨
ଏ ତୋର ମାୟାର ବିକାର ।
କେ ଜାଣିପାରେ ଦାମୋଦର ।।୧୩
ବୋଲନ୍ତି ଶୁକ ମହାଯତି ।
ଶୁଣ ରାଜନ କୁରୁପତି ।।୧୪
ଧର୍ମନନ୍ଦନ ଯଜ୍ଞକାଳେ ।
କହି ଗୋବିନ୍ଦ ପାଦତଳେ ।।୧୫
ସଙ୍ଗତେ ଘେନି ନରହରି ।
ରତ୍ୱିଜ ଚାରିବେଦୁଁ ବରି ।।୧୬
ଶ୍ରୀବେଦବ୍ୟାସ ଭରଦ୍ୱାଜ ।
ସୁମନ୍ତୁ ଗଉତମ ଦ୍ୱିଜ ।।୧୭
ଅସିତ ବଶିଷ୍ଠ ଚ୍ୟବନ ।
କବଷ ମହାତେଜା କଣ୍ୱ ।।୧୮
ସୁପୁଣ୍ୟ ମଇତ୍ରେୟ ଋଷି ।
ଏ ଆଦି ଯେତେ ଭୃଗୁବଂଶୀ ।।୧୯
ଯେ ବିଶ୍ୱାମିତ୍ର ବାମଦେବ ।
ସୁମିତି ଜୈମିନି ଅଥର୍ବ ।।୨୦
କ୍ରତୁ ପଇଲ ପରାଶର ।
ଗର୍ଗ ଗଉତମକୁମର ।।୨୧
ବୈଶମ୍ପାୟନ ମୁନିବର ।
କଶ୍ୟପ ବ୍ରହ୍ମାଙ୍କ କୁମର ।।୨୨
ଧୌମ୍ୟ ଭାର୍ଗବ ପର୍ଶୁରାମ ।
ଆସୁରି ବୀତିହୋତ୍ର ନାମ ।।୨୩
ମଧୁଚ୍ଛନ୍ଦା ଯେ ବୀରସେନ ।
ଅକୃତବଣ ମୁନିଜନ ।।୨୪
ଅଣାଇ ନାନା ମୁନିଗଣ ।
ଆଦରେ ପୂଜି ଭୀଷ୍ମଦ୍ରୋଣ ।।୨୫
କୃପ ସହିତେ କୁରୁନାଥ ।
ସଙ୍ଗେ ଘେନାଇ ପୁତ୍ରଶତ ।।୨୬
ବିଦୁର ଆଦି ବନ୍ଧୁ ଯେତେ ।
ମିଳିଲେ ଆଖଣ୍ଡଳପ୍ରସ୍ଥେ ।।୨୭
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।
ଯଜ୍ଞ ଉତ୍ସବେ ଆଗମନ ।।୨୮
ଭୂମିରେ ଯେତେ ନୃପଗଣ ।
ଯଜ୍ଞମଙ୍ଗଳେ ନିମନ୍ତ୍ରଣ ।।୨୯
ପ୍ରକୃତି ସଙ୍ଗତେ ମିଳିଲେ ।
ଧର୍ମନନ୍ଦନ ଯଜ୍ଞକାଳେ ।।୩୦
ଉତ୍ତମ ଶୁଭଲଗ୍ନ ବେଳେ ।
ବ୍ରାହ୍ମଣେ ସୁବର୍ଣ୍ଣଲଙ୍ଗଳେ ।।୩୧
କରନ୍ତି ଭୂମି କରଷଣ ।
ଶୁଭେ ମଙ୍ଗଳେ ଉଚ୍ଚାରଣ ।।୩୨
ଯଥା ଉଚିତ ବେଦମନ୍ତ୍ରେ ।
ଦୀକ୍ଷିତ କଲେ ଧର୍ମସୁତେ ।।୩୩
ଶଙ୍ଖେ ଉଦକ କୁଶ କରେ ।
ବିପ୍ରେ ବରିଲେ ମନ୍ତ୍ରସ୍ୱରେ ।।୩୪
ସର୍ବ ସୁବର୍ଣ୍ଣ ପରିଚ୍ଛଦ ।
କେ କହୁ ଯଜ୍ଞର ସମ୍ପଦ ।।୩୫
ପୂର୍ବେ ବରୁଣଯଜ୍ଞେ ଯେହ୍ନେ ।
ଧରଣୀ ପୂରିଲା ସୁବର୍ଣ୍ଣେ ।।୩୬
ବାସବ ଆଦି ଦିଗପାଳେ ।
ଭବ ବିରଞ୍ଚି ସିଦ୍ଧମେଳେ ।।୩୭
ଗନ୍ଧର୍ବ ବିଦ୍ୟାଧର ନାଗ ।
ଯକ୍ଷ ରାକ୍ଷସ ଯେ ଉରଗ ।।୩୮
ଖଗ କିନ୍ନର ଯେ ଚାରଣ ।
ପତ୍ନୀ ସହିତେ ରାଜାଗଣ ।।୩୯
ଧର୍ମନନ୍ଦନ ଯଜ୍ଞେ ଆସି ।
ସମ୍ପଦ ଦେଖି ପରଶଂସି ।।୪୦
କୃଷ୍ଣଭକତ ଯେତେ ନର ।
କିବା ସମ୍ପଦ ତାଙ୍କୁ ଦୂର ।।୪୧
ନାନା ସମ୍ପଦ ସୁଖସୀମା ।
ଏ ସର୍ବ କୃଷ୍ଣର ମହିମା ।।୪୨
ରାଜାର ପୁରୋହିତ ଯେତେ ।
ଶୁଦ୍ଧ ଶରୀରେ ବେଦମତେ ।।୪୩
ସେ ରାଜସୂୟ ଯଜ୍ଞ ବିଧି ।
କରାଇ ସକଳ ସମୃଦ୍ଧି ।।୪୪
ବରୁଣଯଜ୍ଞେ ଦେବଗଣେ ।
ଯେମନ୍ତେ ଥିଲେ ନିମନ୍ତ୍ରଣେ ।।୪୫
ଯଜ୍ଞ ଆରମ୍ଭ ପୂର୍ବଦିନେ ।
ଧର୍ମନନ୍ଦନ ଶୁଦ୍ଧମନେ ।।୪୬
ଯାଜ୍ଞିକ ସଭାସଦ ଆଦି ।
ପାଦପୂଜନେ ଅର୍ଘ୍ୟବିଧି ।।୪୭

Dr. Sudhanshu Sekhar Mishra

ଘେନି ମିଳିଲେ ସଭାତଳେ ।
ବନ୍ଧୁବାନ୍ଧବ ଭ୍ରାତମେଳେ ॥୪୮
ରାଜସୂୟ ଯଜ୍ଞେ ମହାସଭା ।
ଅଛନ୍ତି ଶୁର ମୁନି ଦେବା ॥୪୯
ଧର୍ମନନ୍ଦନ ସଭା ଚାହିଁ ।
ହୃଦୟ ମଧ୍ୟେ ବିଚାରଇ ॥୫୦
ଏ ଅର୍ଘ୍ୟ ଦେବି କାହା ପାଦେ ।
ଭାଳଇ ସଂଶୟ ବିଷାଦେ ॥୫୧
ମୁହୂର୍ତ୍ତେ ରହି ଦୃଢଭାବ ।
ତା ଦେଖି ବୋଲେ ସହଦେବ ॥୫୨
କରଅଞ୍ଜଳି ଶିରେ ଦେଇ ।
କହେ ରାଜନ ମୁଖ ଚାହିଁ ॥୫୩
ଜାଣଇ କୃଷ୍ଣର ମହିମା ।
ସର୍ବଙ୍କ ପଣେ ଏକସୀମା ॥୫୪
ଶୁଣ ରାଜନ ଚୂଡାମଣି ।
ମୋର ଉଚିତ ଧର୍ମବାଣୀ ॥୫୫
ଏ ମହାସଭା ମଧ୍ୟଗତେ ।
ଅର୍ଘ୍ୟକୁ ପାତ୍ର ଜଗନ୍ନାଥେ ॥୫୬
ଦେଖ ଏ କୃଷ୍ଣର ଚରଣ ।
ଅନାଦି ପରମ କାରଣ ॥୫୭
ଯେ ହରି ସର୍ବଦେବମୟେ ।
ସର୍ବେ ଅଛନ୍ତି ଏହା ଦେହେ ॥୫୮
ଏ କୃଷ୍ଣ ଦେଶ କାଳ ପାତ୍ର ।
ଧନ ଜୀବନ ବେଦମନ୍ତ୍ର ॥୫୯
ଯଜ୍ଞପୁରୁଷ ଏହୁ ହରି ।
ଏହାର ଦେହେ ବିଶ୍ୱ ପୁରି ॥୬୦
ଯଜ୍ଞ ଆହୁତି ଭୋକ୍ତା ଏହୁ ।
ଯଜ୍ଞର କର୍ତ୍ତା ମହାବାହୁ ॥୬୧
ଏଟି ଅନଳ ଦେବଗଣ ।
ଏ ବେଦମନ୍ତ୍ର ଉଚ୍ଚାରଣ ॥୬୨
ଏହାର ଦେହେ ସାଂଖ୍ୟ ଯୋଗ।
ଏଟି ଭୁଞ୍ଜଇ ହବିର୍ଭାଗ ॥୬୩
ନିତ୍ୟେ ଏ ଏକ ନୋହେ ଦୁଇ ।
ଏ ସର୍ବଜୀବ ଦେହେ ଥାଇ ॥୬୪
ଏ ମାୟା ସୃଷ୍ଟି ଆତ୍ମା ଏହି ।
ମାୟାପୁରୁଷ ଏ ବୋଲାଇ ॥୬୫

ଏହାରା ମାୟା ତିନିଗୁଣ ।
ସୃଷ୍ଟି ପାଳନ ସଂହାରଣ ॥୬୬
କରଇ ଆତ୍ମଯୋଗ ବଳେ ।
ଲୀଳା ବିହାର ମହୀତଳେ ॥୬୭
ବିବିଧ କର୍ମଦାତା ଏହି ।
କର୍ମବିପାକ ଏ ଦିଅଇ ॥୬୮
ଏହାର ଭ୍ରୂଭଙ୍ଗିମା ଭାବେ ।
ଜଗତ ପ୍ରକାଶ ସ୍ୱଭାବେ ॥୬୯
ଧର୍ମାର୍ଥ କାମ ମୋକ୍ଷସଙ୍ଗେ ।
ଥାନ୍ତି ଏହାର ପାଦଯୁଗେ ॥୭୦
ଏଣୁ ଏ ମହାବିଷ୍ଣୁପାଦେ ।
ଏ ଅର୍ଘ୍ୟ ଦିଅ ହେ ଆନନ୍ଦେ ॥୭୧
ସର୍ବଭୂତଙ୍କ ପିଣ୍ଡ ପ୍ରାଣ ।
ଏଣେଟି ହୋଇବ ତର୍ପଣ ॥୭୨
ଯେଣୁ ଏ ସର୍ବଭୂତଦେହୀ ।
ଭେଦ ଅଭେଦ ଭାବ ନାହିଁ ॥୭୩
ଏହାର ପାଦେ ମହାଅର୍ଘ୍ୟ ।
ଦେଇ ତୁ ଲଭ ଚଉବର୍ଗ ॥୭୪
କୃଷ୍ଣର ପାଦେ ଅର୍ଘ୍ୟ ଦେଲେ ।
ବ୍ରହ୍ମାଣ୍ଡ ପୂଜିବୁ ତୁ ଭଲେ ॥୭୫
ସର୍ବଜୀବଙ୍କ ଆତ୍ମାଭୂତ ।
ପ୍ରଭୁ ଅନନ୍ତ ଦଇବତ ॥୭୬
କର୍ମର ଫଳ ଏହା ପାଦେ ।
ଯେ ପ୍ରାଣୀ ସମର୍ପେ ଆନନ୍ଦେ ॥୭୭
ଏହାକୁ କର୍ମଫଳ ଦେଇ ।
ଅନ୍ତେ ଅନନ୍ତଫଳ ପାଇ ॥୭୮
ଏମନ୍ତ କୃଷ୍ଣର ସ୍ୱଭାବ ।
ଜାଣି କହିଲା ସହଦେବ ॥୭୯
ଶୁଣି ସହଦେବ ବଚନ ।
ସଭାର ମଧ୍ୟେ ଯେତେ ଜନ ॥୮୦
ସର୍ବେ କରନ୍ତି ସାଧୁବାଣୀ ।
ଧର୍ମନନ୍ଦନ ତାହା ଶୁଣି ॥୮୧
ପ୍ରଣମି ପ୍ରିୟଭାବେ ଭୋଳ ।
ଗୋବିନ୍ଦପାଦେ ଅର୍ଘ୍ୟଜଳ ॥୮୨
ବେଦବଚନେ ରାଜା ଢାଳି ।
ପାଦଉଦକ ଶିରେ ବୋଳି ॥୮୩

ପତ୍ନୀ ସହିତେ ଭ୍ରାତାଗଣ ।
ପୂଜିଲେ ଗୋବିନ୍ଦଚରଣ ॥୮୪
ବନ୍ଧୁ କୁଟୁମ୍ବ ଆଦି ଯେତେ ।
ନମିଲେ କୃଷ୍ଣପାଦଗତେ ॥୮୫
ନାନଭୂଷଣ ହସ୍ତେ ଘେନି ।
ଉତ୍ତମ ପୀତବସ୍ତ୍ର ବେନି ॥୮୬
ଆନନ୍ଦେ କୃଷ୍ଣପାଦେ ପୂଜି ।
ଅଶ୍ରୁପୂରିତ ଚକ୍ଷୁବୁଜି ॥୮୭
ରୋମପୁଲକ ସର୍ବଦେହୀ ।
କୃଷ୍ଣଙ୍କୁ ନ ପାରନ୍ତି ଚାହିଁ ॥୮୮
ଏମନ୍ତେ ସଭାଜନେ ଚାହିଁ ।
କର ଅଞ୍ଜଳି ଶିରେ ଦେଇ ॥୮୯
ଶୁଭିଲା ଜୟ ଜୟ ବାଣୀ ।
ନମ ଶବଦେ ସ୍ତୁତି ଭଣି ॥୯୦
ଦେବେ କରନ୍ତି ପୁଷ୍ପବୃଷ୍ଟି ।
ତା ଦେଖି ଶିଶୁପାଳ ଉଠି ॥୯୧
କୋପେ ଅଧର କାମୋଡଇ ।
ଶୋଣିତ ନୟନେ ଅନାଇଁ ॥୯୨
ପ୍ରଚଣ୍ଡ ଦମଘୋଷ ବଳା ।
କୃଷ୍ଣର ନିକଟେ ମିଳିଲା ॥୯୩
କୃଷ୍ଣର ଗୁଣ କର୍ମ ତେଜ ।
କହଇ ଟୋକି ବେନିଭୂଜ ॥୯୪
ସଭାଜନଙ୍କୁ କୋପମନେ ।
ବୋଲଇ ପୁରୁଷବଚନେ ॥୯୫
ଦେଖ ଏ ଦୁରାଶୟ କାଳ ।
ଈଶ୍ୱର ଚେଷ୍ଟା ଅନ୍ତରାଳ ॥୯୬
ଏ ସତ୍ୟବତୀସୁତ ବାଣୀ ।
ଭବିଷ୍ୟେ ଯାହା ପରିମାଣି ॥୯୭
ଧ୍ରୁବବଚନ ମହୀତଳେ ।
ଭାଙ୍ଗିଲ ବାଳକର ବୋଲେ ॥୯୮
ସେ କଥା ହୋଇଲା ପ୍ରତ୍ୟକ୍ଷେ ।
ଏ ସଭାଜନଙ୍କ ସମ୍ମୁଖେ ॥୯୯
ହେ ସଭାଜନେ ମୋ ବଚନ।
ଶ୍ରବଣେ ହୁଅ ସାବଧାନ ॥୧୦୦
ପାତ୍ର ଅପାତ୍ର ବେନିମତେ ।
କୁଶଳେ ଜାଣ ତ ସମସ୍ତେ ॥୧୦୧

Dr. Sudhanshu Sekhar Mishra

ବାଳବଚନ କିମ୍ବା କର ।
ଏ ବଡ ଅନୀତି ତୁମ୍ଭର ॥୧୦୨
ସଭାରେ ବସି ମତିଭ୍ରମ ।
କେମନ୍ତେ କଲ ଏଡେ କର୍ମ ॥୧୦୩
ଦେଖ ଏ ସଭାମଧ୍ୟଗତେ ।
ଉତ୍ତମପାତ୍ର ଛନ୍ତି କେତେ ॥୧୦୪
ତପସ୍ୱୀ ବିଦ୍ୟା ବ୍ରତଧର ।
ଜ୍ଞାନବିଧୃତ କଳେବର ॥୧୦୫
ଦେଖ ଉତ୍ତମ ଋଷିଗଣ ।
ଦେବେ ପୂଜନ୍ତି ଯା ଚରଣ ॥୧୦୬
ଏ ଆଦି ଯେତେ ନୃପବର ।
କେ କହୁ ଗୁଣ ତାହାଙ୍କର ॥୧୦୭
ଏ ମହାସଭା ପୂଜା ଏଡି ।
ବାଳବଚନେ ତୁମ୍ଭେ ବୁଡି ॥୧୦୮
ଏ ମହାସଭା ବ୍ରତ ବଳୀ ।
ଅଜ୍ଞାନ ବେନିଭୁଜ ତୋଳି ॥୧୦୯
ଏ ସହଦେବ ଅନୁବାଦେ ।
ନେଇ ଡାକିଲ କାକ ପାଦେ ॥୧୧୦
ଏ ଯଜ୍ଞସଭା ପୁରୋଡାଶ ।
କେମନ୍ତେ କାକ କଲା ଗ୍ରାସ ॥୧୧୧
ଦେଖ ଏ ମନ୍ଦ ଗୋପଶିଶୁ ।
ବ୍ରଜଗୋପାଳ କୁଳପାଂଶୁ ॥୧୧୨
ଏହାର ଗୁଣ କର୍ମ ନାହିଁ ।
କେମନ୍ତେ ବଳିଭୋଗ୍ୟ ହୋଇ ॥୧୧୩
ଏହାକୁ କେମନ୍ତେ ପୂଜିଲ ।
ବେଦବଚନ ନ ମାନିଲ ॥୧୧୪
ଏ ନାହିଁ ଚାରିବର୍ଣ୍ଣ ମଧ୍ୟେ ।
ଆଶ୍ରମ କୁଳ ଧର୍ମ ବାଦେ ॥୧୧୫
ଏ ଥାଇ ଆପଣାର ମତେ ।
ସମସ୍ତେ ଜାଣନ୍ତି ଜଗତେ ॥୧୧୬
ଏହାର ଗୁଣ କିଛି ନାହିଁ ।
କେମନ୍ତେ ଅର୍ଘ୍ୟଯୋଗ୍ୟ ଏହି ॥୧୧୭
ପୂର୍ବେ ଯଯାତି ଶାପଫଳେ ।
ନୃପଆସନ ନାହିଁ କୁଳେ ॥୧୧୮
ନିଶ୍ଚୟେ ନାହିଁ ଜାତି କୁଳ ।
ନିତ୍ୟେ ଏ ମଧୁପାନେ ଭୋଳ ॥୧୧୯

ଏ ତ ନୁହଇ ତୁମ୍ଭ ଭଲ ।
କେମନ୍ତେ ଏହାକୁ ପୂଜିଲ ॥୧୨୦
ଦେଖ ଏ ପୁଣ୍ୟଭୂମି ଛାଡି ।
ଋଷି ବ୍ରାହ୍ମଣ ସଙ୍ଗ ଏଡି ॥୧୨୧
ସମୁଦ୍ର ମଧ୍ୟେ ଘର କରି ।
କଷ୍ଟେ ଜୀବନ ଅଛି ଧରି ॥୧୨୨
ନିତ୍ୟେ ପିଡଇ ଜନ ପ୍ରଜା ।
କେମନ୍ତେ ଏହା ପାଦେ ପୂଜା ॥୧୨୩
କେତେ କହିବା ଏହା ଗୁଣ ।
ଏ ନୋହେ ତୁମ୍ଭର ପ୍ରମାଣ ॥୧୨୪
ଅଧିକେ ଦୋଷ ଗୁଣ ଯେତେ ।
ଲୋକେ ଜାଣନ୍ତି ଏ ଜଗତେ ॥୧୨୫
ଏମନ୍ତ କହି ମନ୍ଦବାଣୀ ।
କୋପେ କମ୍ପଇ ଶିରଝୁଣି ॥୧୨୬
ନିନ୍ଦା ପୁରୁଷ ତାର ବାଣୀ ।
ଗୋବିନ୍ଦ ସଭାମଧ୍ୟେ ଶୁଣି ॥୧୨୭
ଚାହିଁଲେ ହସିତ ବଦନେ ।
ଶୃଗାଳ ବାକ୍ୟେ ସିଂହ ଯେହ୍ନେ ॥୧୨୮
ଏ ଦୁଷ୍ଟ ଶିଶୁପାଳବାଣୀ ।
ସେ ମହାସଭାଜନେ ଶୁଣି ॥୧୨୯
ଦୁଃସହ ବଚନ ତାହାର ।
ଶୁଣି ଉଠିଲେ କୋପଭର ॥୧୩୦
ଅଙ୍ଗୁଳି ଦେଇ କର୍ଣ୍ଣଦ୍ୱାରେ ।
ଗମିଲେ ଯେ ଯାହା ମନ୍ଦିରେ॥୧୩୧
ଚଳନ୍ତି ଅତି କୋପ ବହି ।
ଶିଶୁପାଳକୁ ଗାଳି ଦେଇ ॥୧୩୨
ବୋଲନ୍ତି କୋପଭର ହୋଇ ।
ଧର୍ମବଚନେ ମନ ଦେଇ ॥୧୩୩
ବିଷ୍ଣୁର ନିନ୍ଦା ଯହିଁ ଶୁଣି ।
ବିଷ୍ଣୁଭକତ ଯେତେ ପ୍ରାଣୀ ॥୧୩୪
ସେ ଠାବ ତେଜି ଯେ ନ ଯାନ୍ତି ।
ନିଶ୍ଚୟେ ନରକେ ପଡନ୍ତି ॥୧୩୫
ଏମନ୍ତେ ସଭାମଧ୍ୟେ ଗୋଳ ।
ଶୁଭିଲା ଦିଗ ଅନ୍ତରାଳ ॥୧୩୬
ଶୁଣି ପାଣ୍ଡବେ କୋପଭରି ।
ଧାଇଁଲେ କରେ ଶସ୍ତ୍ର ଧରି ॥୧୩୭

ମତ୍ସ୍ୟ କେକୟ ଯେ ସୃଞ୍ଜୟ ।
ଶସ୍ତ୍ର ଆୟୁଧ ବର୍ମଦେହ ॥୧୩୮
ବୋଲନ୍ତି ମାର ଶିଶୁପାଳ ।
ନିଶ୍ଚେ ପୂରିଲା ତାର କାଳ ॥୧୩୯
ଏମନ୍ତ ବୋଲି ମହାରୋଷେ ।
ମିଳିଲେ ଶିଶୁପାଳ ପାଶେ ॥୧୪୦
ଦେଖି ସମ୍ଭ୍ରମେ ଶିଶୁପାଳ ।
ସ୍ୱଭାବେ ଦୁଷ୍ଟ ମହାବଳ ॥୧୪୧
ଖଡଗ ଚର୍ମ କରେ ଧରି ।
ରହିଲା ସମର ଆବୋରି ॥୧୪୨
କୃଷ୍ଣର ପକ୍ଷ ଯେତେ ଜନ ।
ତାହାଙ୍କୁ କରଇ ଭର୍ତ୍ସନ ॥୧୪୩
ରୋଷେ ଗର୍ଜଇ ଘୋରନାଦେ ।
ଧର୍ମନନ୍ଦନ ସଭାମଧ୍ୟେ ॥୧୪୪
ଦେଖି ତାହାର ଦୁଷ୍ଟପଣ ।
ଗୋବିନ୍ଦ ଆବୋରିଲେ ରଣ ॥୧୪୫
ପାଣ୍ଡବବଳ ପୃଷ୍ଠଭାଗେ ।
ମିଳିଲେ ଶିଶୁପାଳ ଆଗେ ॥୧୪୬
ଦୁରନ୍ତ ଚକ୍ରେ ଦାମୋଦର ।
ଛେଦିଲେ ଶିଶୁପାଳ ଶିର ॥୧୪୭
ଶିର କମଳ ତାର କଟି ।
ପଡିଲା ମହୀତଳେ ଲୋଟି ॥୧୪୮
ଦେଖି ତାହାର ରକ୍ତଶିର ।
ଜନେ କରନ୍ତି ହାହାକାର ॥୧୪୯
ଶୁଭଇ ମୁଖରାବ ଗୋଳ ।
ଶୁଣି ସମ୍ଭ୍ରମେ ମହୀପାଳ ॥୧୫୦
ଯେ ଶିଶୁପାଳ ପକ୍ଷେ ଥିଲେ ।
ମରଣ ଡରେ ପଳାଇଲେ ॥୧୫୧
ଶିଶୁପାଳର ମୃତପିଣ୍ଡ ।
ଚକ୍ରେ ହୋଇଣ ବେନିଖଣ୍ଡ ॥୧୫୨
ପଡିଲା ମହାସଭା ତଳେ ।
ଶୂନ୍ୟେ ଦେଖନ୍ତି ଦିଗପାଳେ ॥୧୫୩
ତାର ଶରୀରୁ ଦିବ୍ୟଜ୍ୟୋତି ।
ଶିଶୁତପନ ପ୍ରାୟ କାନ୍ତି ॥୧୫୪
ପଶିଲା ଗୋବିନ୍ଦର ଦେହେ ।
ଦେଖି ବିବୁଧେ କଲେ ଜୟେ॥୧୫୫

Dr. Sudhanshu Sekhar Mishra

ପୂର୍ବେ ସେ ବିଷ୍ଣୁଦ୍ୱାରପାଳ ।
ବ୍ରାହ୍ମଣେ କରି ଅବହେଳ ॥୧୫୬
ବିଷ୍ଣୁଙ୍କ ଶତ୍ରୁପ୍ରାୟ ମଣି ।
ବ୍ରାହ୍ମଣ ଶାପେ ଜନ୍ମ ତିନି ॥୧୫୭
ଏ ମହୀତଳେ ତାଙ୍କ ଭ୍ରମ ।
ବିଷ୍ଣୁଙ୍କ କରାଇଲେ ଜନ୍ମ ॥୧୫୮
ତୃତୀୟଜନ୍ମ ଭ୍ରାତମେଳେ ।
ଭ୍ରମିଲା ଅବନୀମଣ୍ଡଳେ ॥୧୫୯
କୃଷ୍ଣେ ବଇରୀଭାବ ଘେନି ।
ତିନିଜନମ ଭାଇବେନି ॥୧୬୦
ଆଦି ଅସୁର ମହାବପୁ ।
ଜନ୍ମିଲା ହିରଣ୍ୟକଶିପୁ ॥୧୬୧
ଅନୁଜ ହିରଣ୍ୟାକ୍ଷ ବୀର ।
ପୁଣି ଜନ୍ମିଲା ସହୋଦର ॥୧୬୨
ବିଶ୍ରବାମୁନି ଘରେ ଯାଇ ।
ପୁଣି ରାକ୍ଷସ ଜନ୍ମ ହୋଇ ॥୧୬୩
ରାବଣ କୁମ୍ଭକର୍ଣ୍ଣ ନାମ ।
ସମରେ ନାହିଁ କେହି ସମ ॥୧୬୪
ପୁଣି ଜନ୍ମିଲେ ଚେଦିଦେଶେ ।
କ୍ଷତ୍ରିୟ ଦମଘୋଷ ବଂଶେ ॥୧୬୫
ଦନ୍ତବିକଟ ଶିଶୁପାଳ ।
ଘୋରସମରେ ମହାବଳ ॥୧୬୬
ପୂର୍ବେ ନୃସିଂହରୂପେ ହରି ।
ହିରଣ୍ୟକଶିପୁ ବିଦାରି ॥୧୬୭
ବରାହ ରୂପେ ହିରଣ୍ୟାକ୍ଷ ।
ଶ୍ରୀକୃଷ୍ଣ ବଧିଲେ ପ୍ରତ୍ୟକ୍ଷ ॥୧୬୮
ତେବେ ପ୍ରଚଣ୍ଡ ଘୋରତମ ।
ପୁଣି ଜନ୍ମିଲେ ରଘୁରାମ ॥୧୬୯
ଜାନକୀଛଳେ ଧନୁର୍ଦ୍ଧର ।
ଛେଦିଲେ ବେନିଭାଇ ଶିର ॥୧୭୦
ଏବେ ବଇରୀ ଅନୁବନ୍ଧେ ।
ଚକ୍ରେ ଛେଦିଲେ ବେନିକନ୍ଧେ ॥୧୭୧
ନିର୍ମଳରୂପେ ବେନିଭାଇ ।
ପଶିଲେ କୃଷ୍ଣଦେହେ ଯାଇ ॥୧୭୨
ବ୍ରାହ୍ମଣ ଶାପୁଁ ମୋକ୍ଷ ହୋଇ ।
ମିଳିଲେ ବିଷ୍ଣୁପୁରେ ଯାଇ ॥୧୭୩
ଭାବେ ଭଜିଲେ ନାରାୟଣ ।
ଏବେ ହୋ ସାବଧାନେ ଶୁଣ ॥୧୭୪
ଭାବଟି ଜନ୍ମର କାରଣ ।
ହୃଦେ ଯେ ଚିନ୍ତେ ନାରାୟଣ ॥୧୭୫
ଶିଶୁପାଳର ପ୍ରାଣ ନାଶ ।
ଅବନୀମଣ୍ଡଳ ଉଶ୍ୱାସ ॥୧୭୬
ନିର୍ମଳ ଦଶଦିଶ ଦିଶେ ।
ଧର୍ମନନ୍ଦନ କୃଷ୍ଣପାଶେ ॥୧୭୭
ଋତ୍ୱିକ ବିପ୍ରଗଣ ଯେତେ ।
ଥିଲେ ଯେ ସଭା ଅନ୍ତର୍ଗତେ ॥୧୭୮
ଦକ୍ଷିଣା ଦେଇ ଧର୍ମସୂତ ।
ଯଜ୍ଞର ଅନ୍ତେ ଅବଭୃଥ ॥୧୭୯
ସ୍ନାନ କରିଲେ ନୃପମେଳେ ।
ସାନନ୍ଦେ ଭାଗିରଥୀ ଜଳେ ॥୧୮୦
ଏମନ୍ତେ ଯୁଧିଷ୍ଠିର ଯଜ୍ଞେ ।
ସମ୍ପାଦି କୃଷ୍ଣ ଅନୁରାଗେ ॥୧୮୧
ହୋଇଲା ରାଜ୍ୟେ ଏକ ରାଜା ।
ସର୍ବନୃପତି କଲେ ପୂଜା ॥୧୮୨
ଏମନ୍ତେ କୃଷ୍ଣ ସ୍ନେହଭରେ ।
କେତେହେଁ ମାସ ତା ନବରେ ॥୧୮୩
ରହି ରଞ୍ଜିଲେ ତାଙ୍କ ମନ ।
ପୁଣି ଦ୍ୱାରକା ଆଗମନ ॥୧୮୪
ନିଜ କୁଟୁମ୍ବ ସଙ୍ଗେ ଘେନି ।
ଯାଦବ ଯେତେକ ସଇନି ॥୧୮୫
ଗମନ୍ତେ ଶୋଭା ଦିଶେ ପଥ ।
ଆନନ୍ଦେ ଦେବକୀର ସୁତ ॥୧୮୬
ନିଜ ଭୁବନେ ଗଲେ ହରି ।
ଶିଶୁପାଳକୁ ମୋକ୍ଷ କରି ॥୧୮୭
ସୁର ଅସୁର ନରଲୋକେ ।
ଯଜ୍ଞେ ଯେ ଥିଲେ ଏକେଏକେ ॥୧୮୮
କୃଷ୍ଣମହିମା ସ୍ତୁତି କରି ।
ଆନନ୍ଦେ ଗଲେ ଯେଝାପୁରୀ ॥୧୮୯
ଅନ୍ଧନନ୍ଦନ ଦୁର୍ଯ୍ୟୋଧନ ।
ଅଧିକେ କରି ଦୁଃଖମନ ॥୧୯୦
ରାଜସମ୍ପଦ ନ ସହିଲା ।
ନିଜ ହସ୍ତିନାପୁରେ ଗଲା ॥୧୯୧
ବଇରୀ ଅନୁବନ୍ଧ ଦେହେ ।
ପାଣ୍ଡବ ସମ୍ପଦ ନ ସହେ ॥୧୯୨
ଏ ମହାଯଜ୍ଞ ଯଶ ବାଣୀ ।
ଯେ ଏହା ସାବଧାନେ ଶୁଣି ॥୧୯୩
କୃଷ୍ଣର ମହିମା ପ୍ରତ୍ୟକ୍ଷ ।
ଜୟବିଜୟ ଶାପୁଁ ମୋକ୍ଷ ॥୧୯୪
ସକଳ ପାପୁଁ ସେ ତରନ୍ତି ।
ତୁଟଇ ଭବ ଭୟ ଭ୍ରାନ୍ତି ॥୧୯୫
କୃଷ୍ଣବିଷୟ ଭାଗବତ ।
କହଇ ଜଗନ୍ନାଥ ଦାସ ॥୧୯୬

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଶିଶୁପାଳ
ବଧୋ ନାମ
ଏକୋନଅଶୀତିତମ ଅଧ୍ୟାୟଃ ॥

Dr. Sudhanshu Sekhar Mishra

## ଅଶୀତିତମ ଅଧ୍ୟାୟ

ବୋଲନ୍ତି ରାଜା ପରୀକ୍ଷିତ ।
ଶୁକଚରଣେ ଦେଇ ହସ୍ତ ॥୧॥

ପରୀକ୍ଷିତ ଉବାଚ

ଭୋ ମୁନି କୃଷ୍ଣର ଚରିତ ।
ଶୁଣି ହୋଇଲି କୃତକୃତ୍ୟ ॥୨॥
ଏ ମହାଯଜ୍ଞେ ଯେତେ ଥିଲେ ।
କୃଷ୍ଣ ମହିମା ସେ ଦେଖିଲେ ॥୩॥
ଆନନ୍ଦେ ଗଲେ ନିଜପୁର ।
ପ୍ରଶଂସି ଧର୍ମର କୁମର ॥୪॥
ଅନ୍ଧନନ୍ଦନ ଦୁର୍ଯ୍ୟୋଧନ ।
ସେ କିମ୍ପା ହେଲା ଦୁଃଖମନ ॥୫॥
ଏଣେ ସଂଶୟ ମୋର ଚିତ୍ତ ।
ଭୋ ମୁନି କହିବା ତଦନ୍ତ ॥୬॥
ଏମନ୍ତେ ରାଜାବାଣୀ ଶୁଣି ।
ଶୁକ କହନ୍ତି ମନେ ଗୁଣି ॥୭॥

ଶୁକ ଉବାଚ

ବୋଲନ୍ତି ଶୁକ କୁରୁବୀର ।
ତୋ ପିତାମହ ଯୁଧିଷ୍ଠିର ॥୮॥
ବନ୍ଧୁବାନ୍ଧବ ତା ଭୁବନେ ।
ଯଜ୍ଞସଭାର ପ୍ରୟୋଜନେ ॥୯॥
ଯେ ଯାହାମତେ କାର୍ଯ୍ୟକଲେ ।
ଧର୍ମନନ୍ଦନ କୃଷ୍ଣ ବୋଲେ ॥୧୦
ଯାଗର ପାକଶାଳେ ଭୀମ ।
ଧନେ ଅଧ୍ୟକ୍ଷ ଦୁର୍ଯ୍ୟୋଧନ ॥୧୧
ସଭାଜନଙ୍କ ପୂଜାଭାବ ।
ଅର୍ଥ ସାଧନେ ସହଦେବ ॥୧୨
ନକୁଳ ଦ୍ରବ୍ୟ ସମ୍ପାଦନେ ।
ଦେବକୀନନ୍ଦନ ବଚନେ ॥୧୩
ଗନ୍ଧଚନ୍ଦନ ପୁଷ୍ପଦାନେ ।
ଅର୍ଜ୍ଜୁନ ଥିଲା ସାବଧାନେ ॥୧୪
ବିପ୍ରଚରଣ ସମାର୍ଜ୍ଜନ ।
କରନ୍ତି ନନ୍ଦରନନ୍ଦନ ॥୧୫

ଦ୍ରୁପଦରାଜାର ନନ୍ଦିନୀ ।
ସେ ଯଜ୍ଞେ ଅନ୍ନ-ପରଷୁଣୀ ॥୧୬
ଦାନେ ଅଧୀପ ବୀରକର୍ଣ୍ଣ ।
ଧନେ ତୋଷିଲା ବିପ୍ରମନ ॥୧୭
ବିକର୍ଣ୍ଣ ବୀର ଯୁଯୁଧାନ ।
ବିଦୁର ହାର୍ଦ୍ଦିକ୍ୟନନ୍ଦନ ॥୧୮
ଭୂଶୁବା ବାହ୍ଲୀକନନ୍ଦନ ।
ଏ ଆଦି ବୀର ସନ୍ତର୍ଦ୍ଦନ ॥୧୯
ଧର୍ମନନ୍ଦନ ଅନୁବାଦେ ।
ଯଜ୍ଞର ନାନାକର୍ମ ସାଧେ ॥୨୦
ପଣ୍ଡୁକୁମର ପ୍ରିୟମତେ ।
ଥିଲେ ସନ୍ତୋଷଭାବ ଚିତ୍ତେ ॥୨୧
ଯାଜ୍ଞିକ ଆଦି ସଭାସଦ ।
ସୁମ୍ପ୍ରି ବାନ୍ଧବ ସୁହୃଦ ॥୨୨
ଇଷ୍ଟକୁଟୁମ୍ବ ଆଦି ଯେତେ ।
ଦକ୍ଷିଣା ପୂଜା ଯେଝାମତେ ॥୨୩
ରାଜୁସିଯଜ୍ଞସଭା ମଧ୍ୟେ ।
ମଧୁସୂଦନ ପଦ୍ମପାଦେ ॥୨୪
ଶିଶୁପାଳର ପଞ୍ଚପ୍ରାଣ ।
ନିଶ୍ଚିନ୍ତେ ପଶିଲା ଶରଣ ॥୨୫
ଏମନ୍ତେ ମହାଯଜ୍ଞ ସାରି ।
ଧର୍ମନନ୍ଦନ ଦଣ୍ଡଧାରୀ ॥୨୬
ଉତ୍ସବ ବାଦ୍ୟନାଦ ମେଳେ ।
ଯଜ୍ଞସ୍ନାହାନ ଗଙ୍ଗାଜଳେ ॥୨୭
ମିଳିଲେ ମଙ୍ଗଳ ସମ୍ପଦେ ।
ଶଙ୍ଖଶବଦ ବେଦନାଦେ ॥୨୮
ଦେବ ଗନ୍ଧର୍ବ ପିତୃଗଣ ।
କରନ୍ତି ପୁଷ୍ପ ବରଷଣ ॥୨୯
ଯହିଁ ବିଜୟ ନରନାରୀ ।
ନାନାଭୂଷଣ ଅଙ୍ଗେ ଭରି ॥୩୦
ଗନ୍ଧଚନ୍ଦନ ଗଙ୍ଗାଜଳେ ।
ଦେହେ ସିଞ୍ଚନ୍ତି ଭୁଜବଳେ ॥୩୧
କ୍ରୀଡନ୍ତି ନାନାରସଭାବେ ।
ସୁପୁଣ୍ୟବାଦେ ଜନସର୍ବେ ॥୩୨

ତଇଳ ଘୃତ ଗନ୍ଧୋଦକ ।
ହରିଦ୍ରା କୁଙ୍କୁମ ଶଶାଙ୍କ ॥୩୩
ପୁରୁଷେ ନାରୀଙ୍କର ମୁଖେ ।
ଲେପି ସିଞ୍ଚନ୍ତି ମନସୁଖେ ॥୩୪
ରାଜକାମିନୀ ନାନାରଥେ ।
ବିଜୟ କଲେ ରାଜପଥେ ॥୩୫
ପାଶେ ଆବୃତ ଶୂରବରେ ।
ବେଗେ ମିଳିଲେ ଗଙ୍ଗାତୀରେ ॥୩୬
ଦେବକାମିନୀ ପ୍ରାୟ ମିଳି ।
କରନ୍ତି ଗଙ୍ଗାଜଳେ କେଳି ॥୩୭
କୃଷ୍ଣକାମିନୀ ପରିହାସେ ।
ସିଞ୍ଚନ୍ତି ନୀର ମୁଖ କେଶେ ॥୩୮
ସଲ୍ଲଜେ ହରଷେ ହସନ୍ତି ।
ଯେହ୍ନେ ଗଗନେ ତାରାପନ୍ତି ॥୩୯
ଭୀମ ଅର୍ଜ୍ଜୁନ ଆଦି ଯେତେ ।
ସର୍ବକାମିନୀ ମଧ୍ୟଗତେ ॥୪୦
ଜଳ ସିଞ୍ଚନ୍ତି ବେନିହସ୍ତେ ।
ଝୀନବସନ ଉର ଗାତ୍ରେ ॥୪୧
ପ୍ରକାଶେ ଜାନୁ କଟୀ ସ୍ତନ ।
ଓଦାବସନେ କି ସୁବର୍ଣ୍ଣ ॥୪୨
ଦେଖି କାମିନୀ ଦୁଷ୍ଟଜନେ ।
ଅନଙ୍ଗବାଣେ ମନଛନ୍ନେ ॥୪୩
ବଦନେ ମନ୍ଦହାସ ଦେଖି ।
ମୋହେ ବୁଜିଲେ ବେନି ଆଖି ॥୪୪
ଏମନ୍ତେ ଅବଭୃଥ ସ୍ନାନ ।
ଆନନ୍ଦେ କରି ସର୍ବଜନ ॥୪୫
କୂଳେ ବିଜୟ ମହାରାଜ ।
ଉଦୟରବି ଜିଣି ତେଜ ॥୪୬
ନାନା ଭୂଷଣେ ଅଳଙ୍କୃତ ।
ରଥେ ଆରୋହି ଧର୍ମସୁତ ॥୪୭
ପାଶେ ଆବୃତ ନାରୀଜନେ ।
କ୍ରିୟା କଳାପେ ଯଜ୍ଞ ଯେହ୍ନେ ॥୪୮
ଦ୍ରୌପଦୀ ଘେନି ରାଜା କୋଳେ ।
ସ୍ନାହାନ କରି ଗଙ୍ଗାଜଳେ ॥୪୯

Dr. Sudhanshu Sekhar Mishra

ବାଜଇ ବୀରତୁର ଭେରୀ ।
ଗଙ୍ଗାରେ ଅଭିଷେକ କରି ।।୫୦
ଦୁନ୍ଦୁଭି ଶୁଭଇ ଆକାଶେ ।
ସୁଗନ୍ଧ କୁସୁମ ବରଷେ ।।୫୧
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।
ଅଗ୍ରତେ ଚତୁର୍ଥ ଆଶ୍ରମ ।।୫୨
ରାଜାର ଅବଭୃଥ କାଳେ ।
ସ୍ନାହାନ କରି ଗଙ୍ଗାଜଳେ ।।୫୩
ନିର୍ମଳ କଲେ ଦେହ ମନ ।
ଯେ ଜଳେ କଳୁଷହଦନ ।।୫୪
ବିଶେଷେ ଚାହିଁ କୃଷ୍ଣମୁଖ ।
ଛାଡିଲେ ଭବବନ୍ଧ ଦୁଃଖ ।।୫୫
ଉତ୍ତମ ବସ୍ତ୍ର ଆଦି ଧନ ।
ଅଣାଇ ପଣ୍ଡୁର ନନ୍ଦନ ।।୫୬
ଯଜ୍ଞେ ବରଣ ବ୍ରହ୍ମା ଆଦି ।
ଯେ ଅବା ଥିଲେ ମନ୍ତ୍ରବାଦୀ ।।୫୭
ଜ୍ଞାତି ବାନ୍ଧବ ନୃପଗଣେ ।
ମିତ୍ର ସୁହୃଦ ଯେବା ଅନ୍ୟେ ।।୫୮
କୃଷ୍ଣବଚନେ ପୂଜା କରି ।
ମନ ତୋଷିଲେ ଦଣ୍ଡଧାରୀ ।।୫୯
ମଣି କୁଣ୍ଡଳ ପାଗ ଶିରେ ।
ନାନାଭୂଷଣ ରତ୍ନହାରେ ।।୬୦
ନାରୀପୁରୁଷେ ବିରାଜନ୍ତି ।
ଯେହ୍ନେ ଗଗନେ ତାରାପନ୍ତି ।।୬୧
କୃଷ୍ଣ ପାଣ୍ଡବ ଅନୁଯାନେ ।
ଗଲେ ସେ ଯେ ଯାହା ଭୁବନେ ।।୬୨
ଯେ ରାଜା ଗୋବିନ୍ଦର ଦାସ ।
ସେ ମହାଯଜ୍ଞେ ତାର ଯଶ ।।୬୩
ଆନନ୍ଦେ ମୁଖେ ମୁଖ ଚାହିଁ ।
ପଥେ ଚଳନ୍ତି ଗୀତ ଗାଇ ।।୬୪
ପୁଣି ସନ୍ତୋଷ ନୋହେ ମନ ।
ମନୁଷ୍ୟେ ଯେହ୍ନେ ସୁଧାପାନ ।।୬୫
ଋତ୍ୱିକ ଆଦି ମନ୍ତ୍ରବାଦୀ ।
ଅନେକ ରାଜରଷି ଆଦି ।।୬୬
ଧର୍ମନନ୍ଦନ ବନ୍ଧୁଗଣେ ।
ପ୍ରିୟବଚନେ ଜଣେ ଜଣେ ।।୬୭

ଦେବକୀନନ୍ଦନ ସଙ୍ଗତେ ।
ଭାବେ ରହିଲେ ଦିନା କେତେ ।।୬୮
ତକ୍ଷଣେ ପ୍ରଭୁ ଭଗବାନ ।
ପାଶେ ବସାଇ ଉଗ୍ରସେନ ।।୬୯
ପ୍ରଦ୍ୟୁମ୍ନ ଆଦି ଯେତେ ସୁତ ।
କୁଟୁମ୍ବ ସୁହୃଦ ସହିତ ।।୭୦
ମେଲାଣି ଦେଇ ନିଜପୁରେ ।
କୃଷ୍ଣ ରହିଲେ ରାଜାଘରେ ।।୭୧
ଏମନ୍ତେ ପଣ୍ଡୁର ନନ୍ଦନ ।
ଦୁସ୍ତର-ମନୋରଥ-ପୂର୍ଣ୍ଣ ।।୭୨
କୃଷ୍ଣଚରଣ ଭେଳା କଲେ ।
ଯଜ୍ଞ ଜଳଧି ନିସ୍ତରିଲେ ।।୭୩
ଏମନ୍ତେ ଶୁଣ ହେ ରାଜନ ।
ଦିନେକ ରାଜା ଦୁର୍ଯ୍ୟୋଧନ ।।୭୪
ଧର୍ମନନ୍ଦନ ଅନ୍ତଃପୁରେ ।
ପଶିଲା ବାନ୍ଧବ ବେଭାରେ ।।୭୫
ଦେଖି ସମ୍ପଦ ଅଗୋଚର ।
ଉପମା ନାହିଁ ତିନିପୁର ।।୭୬
ଯଜ୍ଞେ ଗୋବିନ୍ଦର ମହିମା ।
କେ କହିପାରେ ଗୁଣସୀମା ।।୭୭
ଯାହାର ଧ୍ୟାନ କୃଷ୍ଣପାଦେ ।
କେଅନ୍ତ କରୁ ତା ସମ୍ପଦେ ।।୭୮
ନର ଅସୁର ସୁର ଶିରୀ ।
ଯାର ଭୁବନେ ଅଛି ପୁରି ।।୭୯
ବ୍ରହ୍ମା ସଞ୍ଚିତ ଭୋଗ ଯେତେ ।
ନାନାପ୍ରକାରେ ଅପ୍ରମିତେ ।।୮୦
ଦ୍ରୁପଦ ରାଜାର ନନ୍ଦିନୀ ।
ସର୍ବସମ୍ପଦ ସଙ୍ଗେ ଘେନି ।।୮୧
ସେବଇ ଯୁଧିଷ୍ଠିର ପାଦେ ।
କୃଷ୍ଣପ୍ରସନ୍ନେ ଅପ୍ରମାଦେ ।।୮୨
ତା ଦେଖି ଅନ୍ଧରନନ୍ଦନ ।
ଅନ୍ତରେ ଦହଇ ଜୀବନ ।।୮୩
ଯହିଁ ଗୋବିନ୍ଦ ନାରୀଗଣେ ।
ବଳୟ ନୂପୁର କଙ୍କଣେ ।।୮୪
ଚାଲନ୍ତେ ନୂପୁର ବାଜେଣୀ ।
କଟୀରେ ରତ୍ନ ଓଡିଆଣୀ ।।୮୫

କୁଚ-କୁଙ୍କୁମେ ଶୋଣହାର ।
କର୍ଣ୍ଣେ କୁଣ୍ଡଳ ରତ୍ନସାର ।।୮୬
ଏମନ୍ତ ଦେଖି ତା ଭୁବନ ।
ଅନ୍ଧନନ୍ଦନ ଦୁର୍ଯ୍ୟୋଧନ ।।୮୭
ବାହୁଡି ହରଷ ବିଷାଦେ ।
ପୁଣି ମିଳିଲା ସଭାମଧ୍ୟେ ।।୮୮
ମୟନିର୍ମିତ ମାୟାସଭା ।
କି ଅବା ପଟାନ୍ତର ଦେବା ।।୮୯
ଯହିଁ ବିଜୟ ଦାମୋଦର ।
ସ୍ୱଭାବେ କାଳଚକ୍ରଧର ।।୯୦
ଚକ୍ଷୁ ଚଳନ୍ତେ ବିଶ୍ୱଚଳେ ।
ତାହାର ଜନ୍ମ ମହୀତଳେ ।।୯୧
ଭାବ ଅଭାବ ମତ ବେନି ।
କହନ୍ତି ହସ୍ତେ ବେତ୍ର ଘେନି ।।୯୨
ସେ ସଭାମଧ୍ୟେ ଧର୍ମସୁତ ।
ସଙ୍ଗେ ଅଛନ୍ତି ଚାରିଭ୍ରାତ ।।୯୩
କାଞ୍ଚନ ଆସନେ ବିଜୟେ ।
ଦିଶେ ଆକାଶେ ଇନ୍ଦ୍ର ପ୍ରାୟେ ।।୯୪
ବ୍ରହ୍ମାଙ୍କ ସଭା ପ୍ରାୟ ଦିଶି ।
ସୂତ-ମାଗଧେ ପରଶଂସି ।।୯୫
ଏମନ୍ତେ ମିଳି ଅନ୍ଧସୁତ ।
ସଙ୍ଗେ ଅଛନ୍ତି ଶତେ ଭ୍ରାତ ।।୯୬
ରତ୍ନମୁକୁଟ ଅଛି ଶିରେ ।
ହସ୍ତିନିବେଶୀ ମନ୍ତ୍ରୀ କରେ ।।୯୭
ରୋଷେ କମ୍ପଇ ତା ଶରୀର ।
ଏମନ୍ତେ ଶୁଣ ନୃପବର ।।୯୮
ମୟନିର୍ମିତ ମାୟାସଭା ।
ଯହିଁ ଭ୍ରମନ୍ତି ଶୂର ଦେବା ।।୯୯
କୃଷ୍ଣ ମହିମା ଅନ୍ତରାଳ ।
କ୍ଷଣକେ ଦିଶେ ଜଳସ୍ଥଳ ।।୧୦୦
ସ୍ଥଳକୁ ଜଳ ପ୍ରାୟ ମଣି ।
ବସ୍ତ୍ର ତୋଳିଲା କରେ ଆଣି ।।୧୦୧
ଜଳକୁ ସ୍ଥଳ ପ୍ରାୟ ବୁଝି ।
କୋପେ ପଶିଲା ଚକ୍ଷୁବୁଜି ।।୧୦୨
ଜଳେ ହୋଇଲା ସ୍ଥଳ ଭ୍ରାନ୍ତି ।
ମୟ-ମାୟାରେ ମୋହଗତି ।।୧୦୩

Dr. Sudhanshu Sekhar Mishra

ଜଳେ ପଡନ୍ତି କୁରୁପତି ।
ତା ଦେଖି ହସିଲା ମାରୁତି ॥୧୦୪
ଦ୍ରୌପଦୀ ଆଦି ଯେତେ ନାରୀ ।
ସର୍ବେ ହସିଲେ ହାସ୍ୟ କରି ॥୧୦୫
ଯେତେ ନୃପତି ଥିଲେ ବସି ।
ମୁଖେ ବସନ ଦେଇ ହସି ॥୧୦୬
ଚକ୍ଷୁ ଚାଳିଣ ଚକ୍ରଧର ।
ଠାରିଲେ ସର୍ବେ ହାସ୍ୟ କର ॥୧୦୭
ଏମନ୍ତେ ସର୍ବ ସଭାଜନେ ।
ହସିଲେ ବିକୃତ ବଦନେ ॥୧୦୮
ଦେହ ସମ୍ଭାଳି କୁରୁନାଥ ।
ଉଠିଲା ଧରି ଭ୍ରାତହସ୍ତ ॥୧୦୯
ଅଧୋବଦନେ କୋପକରି ।
ଦୁଃଶାସନର କର ଧରି ॥୧୧୦
ଜନେ କରନ୍ତି ହାହାକାର ।
ହସ୍ତିନା ଗଲା ନୃପବର ॥୧୧୧

ତା ଦେଖି ଧର୍ମର ନନ୍ଦନ ।
ସମ୍ଭ୍ରମେ କଲେ ଦୁଃଖମନ ॥୧୧୨
ପଣ୍ଡୁନନ୍ଦନ ଭାବ ଘେନି ।
ଗୋବିନ୍ଦ ଜାଣି ହେଲେ ତୁନି ॥୧୧୩
ଅଶେଷ ଅବନୀର ଭାର ।
ଯେ ହରି କରିବେ ସଂହାର ॥୧୧୪
ଯାହାର ମାୟାରେ ମୋହିତ ।
ହୋଇଛି ଅଶେଷ ଜଗତ ॥୧୧୫
ବ୍ରହ୍ମାଶଙ୍କରେ ଅଗୋଚର ।
ଏ ପୁଣି ମନୁଷ୍ୟ ମାତର ॥୧୧୬
ଶୁଣ ପରୀକ୍ଷ ଶୁଦ୍ଧଚିତ୍ତେ ।
ତୁ ଯାହା ପଚାରିଲୁ ମୋତେ ॥୧୧୭
ରାଜସୂୟଯଜ୍ଞେ ବରଣ ।
ଦୁର୍ଯ୍ୟୋଧନର ଦୂଷପଣ ॥୧୧୮
ବୋଲଇ ଦାସ ଜଗନ୍ନାଥ ।
କୃଷ୍ଣରଚିତ ଭାଗବତ ॥୧୧୯

ରାଜସୂୟଯଜ୍ଞ କଥା ଶୁଣି ।
ସଂସାରୁ ତର ସର୍ବପ୍ରାଣୀ ॥୧୨୦
ଗୋବିନ୍ଦ ପାଦେ କର ଭାବ ।
ଯେବେ ଏ ସଂସାରୁ ତରିବ ॥୧୨୧
ଜଗତହିତେ କୃଷ୍ଣବାଣୀ ।
ଗୀତେ ମୁଁ ବଖାଣିଲି ଆଣି ॥୧୨୨
ଏଣେ ନିଶ୍ଚଳ କର ଚିତ୍ତ ।
ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥୧୨୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଦୁର୍ଯ୍ୟୋଧନ
ମାନଭଙ୍ଗୋ ନାମ
ଅଶୀତିତମ ଅଧ୍ୟାୟଃ ।

---

## ଏକାଶିତିତମ ଅଧ୍ୟାୟ

ଶୁକ ଉବାଚ

ଆନନ୍ଦମନେ ବ୍ୟାସସୁତ ।
ବୋଲନ୍ତି ଶୁଣ ପରୀକ୍ଷିତ ॥୧
ଅଦ୍ଭୁତ କୃଷ୍ଣକର୍ମବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ॥୨
କ୍ରୀଡା ମନୁଷ୍ୟେ ଅବତାର ।
ଦେବମାନବେ ଅଗୋଚର ॥୩
ଯେମନ୍ତେ ପ୍ରଭୁ ଜଗନ୍ନାଥ ।
ଶାଲ୍ୱରାଜାଙ୍କୁ କଲେ ହତ ॥୪
ଧର୍ମନନ୍ଦନ ଯଜ୍ଞକାଳେ ।
ଶିଶୁପାଳକୁ ସଂହାରିଲେ ॥୫
ତାହାର ସଖା ଶାଲ୍ୱ ନାମ ।
ମିତ୍ର ମରଣେ ବହେ ତମ ॥୬
ପୂର୍ବେ ରୁକ୍ମିଣୀବିଭାକାଳେ ।
ଥିଲା ସେ ନୃପତିଙ୍କ ମେଳେ ॥୭
କୃଷ୍ଣଙ୍କୁ ହାରି ଯୁଦ୍ଧକାଳେ ।
ମାଗଧ ଆଦି ରାଜାମେଳେ ॥୮

ସେ ଦିନୁ ଅଭିମାନେ ଗଲା ।
କୃଷ୍ଣର ମରଣ ଇଚ୍ଛିଲା ॥୯
ଏବେ ଶୁଣିଲା ମିତ୍ରବଧ ।
ହୃଦରେ ବହେ ଗୁରୁକ୍ରୋଧ ॥୧୦
କୃଷ୍ଣ ଅଛନ୍ତି ଇନ୍ଦ୍ରପ୍ରସ୍ଥେ ।
ଥୋକାଏ ବଳ ଅଛି ସାଥେ ॥୧୧
ଏ ଛିଦ୍ରକଥାମାନ ଜାଣି ।
ସଇନି ସାଜି ନୃପମଣି ॥୧୨
ନିଜ କାର୍ମୁକ ଧରି କରେ ।
ବୋଲଇ ସ୍ଫୁରିତ ଅଧରେ ॥୧୩
ଯାଦବ ବିହୀନ ଧରଣୀ ।
କରିବି ସତ୍ୟ ମୋର ବାଣୀ ॥୧୪
ତୁମ୍ଭେ ସକଳ ନୃପବର ।
ଦେଖିବ ପୌରୁଷ ମୋହର ॥୧୫
ଏମନ୍ତେ ମୂଢ଼ ଗର୍ବ ବହି ।
ମିଳିଲା ଘୋରବନେ ଯାଇ ॥୧୬
ନଦୀ ପୁଳିନେ ତପକରି ।
ସେବିଲା ଶଙ୍କର ଗଉରୀ ॥୧୭

ରଜନୀ କାଳେ ପାଂଶୁମୁଷ୍ଟି ।
ଆହାରେ ପ୍ରାଣ କରେ ତୁଷ୍ଟି ॥୧୮
ଏମନ୍ତେ ବରଷକ ଅନ୍ତେ ।
ଗଉରୀ କାନ୍ତ ତୋଷଚିତ୍ତେ ॥୧୯
ଭବାନୀକାନ୍ତେ ଦେଇ କର ।
ବୋଇଲେ ବେଗେ ମାଗ ବର ॥୨୦
ଶୁଣି ନୃପତି ଜ୍ଞାନ ପାଇ ।
କପାଳେ ବେନିକର ଦେଇ ॥୨୧
ବୋଲଇ ଶୁଣ ବିଶ୍ୱନାଥ ।
ତୋର ସଞ୍ଜିତ ଏ ଜଗତ ॥୨୨
ବିବୁଧ ଅସୁର ମନୁଷ୍ୟ ।
ଗନ୍ଧର୍ବ କିନ୍ନର ରାକ୍ଷସ ॥୨୩
ଏ ଆଦି ଯେତେ ଦିଗପାଳେ ।
ଭୂମି ପାତାଳ ଅନ୍ତରାଳେ ॥୨୪
କେହି ନ ପାରୁ ମୋତେ ଜିଣି ।
ଏ ବର ଦିଅ ଶୂଳପାଣି ॥୨୫
ମାୟାବିମାନ ଦିଅ ମୋତେ ।
ସେ ପୁଣି ମୋହର ଆୟତ୍ତେ ॥୨୬

Dr. Sudhanshu Sekhar Mishra

ନୃପ ଅରୂପ ସ୍ଥୂଳ ସୁକ୍ଷ୍ମେ ।
ଅଣୁ ପ୍ରମାଣେ ଅନ୍ତରୀକ୍ଷେ ॥୨୭
ଯହିଁ କଳ୍ପିବ ମୋର ମନ ।
ସେ ପୁରେ ପଶିବ ବିମାନ ॥୨୮
ଦୃଶ୍ୟ ଅଦୃଶ୍ୟ ମହାଘୋର ।
ବୃଷ୍ଣି ଯାଦବେ ଭୟଙ୍କର ॥୨୯
ଏ ବର ଦିଅ ବିଶ୍ୱନାଥ ।
ଶୁଣି ସନ୍ତୋଷ ଉମାକାନ୍ତ ॥୩୦
ମୟଦାନବେ ସୁମରଣ ।
କରନ୍ତି ଅମ୍ବିକାରମଣ ॥୩୧
ଚିନ୍ତା କରନ୍ତେ ମହେଶ୍ୱର ।
ଦାଣିଲା ମାୟାବୀ ଅସୁର ॥୩୨
ତକ୍ଷଣେ ପରପୁରଞ୍ଜୟ ।
ବେଗେ ମିଳିଲା ବୀରମୟ ॥୩୩
ନଦୀପୁଲିନେ ଘୋରବନେ ।
ନମିଲା ଈଶ୍ୱର ଚରଣେ ॥୩୪
ପ୍ରସନ୍ନେ ପ୍ରଭୁ ଉମାକାନ୍ତ ।
ବୋଇଲେ ଧରି ତାର ହସ୍ତ ॥୩୫
ମାୟାବିମାନ ବେଗେ କର ।
ଦେବଦାନବେ ଅଗୋଚର ॥୩୬
ଏହାର ମନ ଅନୁମତେ ।
କହି ଚଳିଲେ ଶୂନ୍ୟପଥେ ॥୩୭
ତକ୍ଷଣେ ରୁଦ୍ରଆଜ୍ଞା ପାଇ ।
ଅଦ୍‌ଭୂତ ବିମାନ ଭିଆଇ ॥୩୮
ତାହାର ନାମ ସୌଭପୁର ।
ନିର୍ମିତ ଲୌହମୟ ସାର ॥୩୯
ଆନନ୍ଦେ ପ୍ରଜାପତିବଳା ।
ଶାଲ୍ୱ ସମ୍ମୁଖେ ଆଣି ଦେଲା ॥୪୦
ସେ ମାୟାରଥ କାମରୂପୀ ।
ପ୍ରକାଶେ ଘୋରତମ ବ୍ୟାପୀ ॥୪୧
କେହି ନ ପାରେ ତାହା ଜାଣି ।
ଏମନ୍ତେ ଶୁଣ ନୃପମଣି ॥୪୨
ବସିଲା ଯାଇ ମାୟାରଥେ ।
ଗମିଲା ନିଜପୁର ପଥେ ॥୪୩
ଈଶ୍ୱରବରେ ପାଇ ରଥ ।
ନିଜ ଭୁବନେ ଉପଗତ ॥୪୪

କୃଷ୍ଣବଇର ଭାବ ଗୁଣି ।
ସାଜିଲା ନିଜ ଅକ୍ଷୌହିଣୀ ॥୪୫
କୋପେ ବସିଲା ମାୟାରଥେ ।
ଗମିଲା ଦ୍ୱାରାବତୀ ପଥେ ॥୪୬
ରଜନୀ ମଧ୍ୟେ ନରପତି ।
ବଳେ ରୁନ୍ଧିଲା ଦ୍ୱାରାବତୀ ॥୪୭
ଭାଙ୍ଗଇ ବନ ଉପବନ ।
ଗ୍ରାମ ପାଟଣା ପୁରମାନ ॥୪୮
ଦ୍ୱାର ଅଟ୍ଟାଳୀ କ୍ରୀଡାପୁର ।
ଅନଳେ କଲା ଭସ୍ମସାର ॥୪୯
ଶର ବରଷଇ ଗହଳ ।
ଯେହ୍ନେ ଗଗନୁ ବୃଷ୍ଟିଜଳ ॥୫୦
ଦ୍ରୁମ ପାଷାଣ ବଜ୍ର ବାରି ।
ସର୍ପ ଖର୍ପର ଆଦିକରି ॥୫୧
ପ୍ରଚଣ୍ଡେ ବହେ ଚକ୍ରବାତ ।
ଧୂଳିରେ ଦଶଦିଗ ଗ୍ରସ୍ତ ॥୫୨
ଏମନ୍ତେ ମାୟାରଥେ ବୀର ।
କୃଷ୍ଣନଗର କଲା ଚୂର ॥୫୩
ଅସୁର ତେଜେ ଯଦୁପୁରୀ ।
ତକ୍ଷଣେ ହେଲା ହତଶିରୀ ॥୫୪
ପୂର୍ବେ ଅନ୍ଧକ ଯୁଦ୍ଧକାଳେ ।
ଯେହ୍ନେ ଅଭୂତ ମହୀତଳେ ॥୫୫
ଘୋରଗହନ ଅନ୍ଧକାର ।
ତା ଦେଖି ରୁକ୍ମିଣୀକୁମର ॥୫୬
ବିମାନେ ବସି ମହାବଳୀ ।
ଡାକଇ ବେନିଭୁଜ ତୋଳି ॥୫୭
ଭୟ ନ କର ତୁମ୍ଭେ କେହି ।
ଏ ମାୟା ସଂହାରିବି ମୁହିଁ ॥୫୮
ଏମନ୍ତ କହି ରାଜପଥେ ।
ବେଗେ ଧାଇଁଲେ ଏକା ରଥେ ॥୫୯
ଦେଖି ତାହାର ବୀରପଣ ।
ରଣେ ମିଳିଲେ ଯଦୁଗଣ ॥୬୦
ସାତ୍ୟକି ଚାରୁଦେଷ୍ଣ ଶାମ୍ବ ।
ଅକ୍ରୁର ଯଦୁଙ୍କ ଉତ୍ତମ ॥୬୧
ଭୋଜ ଅନ୍ଧକ ବୀରଚନ୍ଦ୍ର ।
ମିଳିଲେ ସର୍ବ ଯଦୁବୃନ୍ଦ ॥୬୨

ଅଜେୟ ହାର୍ଦ୍ଦିକ୍ୟନନ୍ଦନ ।
ଶୁକ ସାରଣ ଭାନୁମାନ ॥୬୩
ଗଦ ସଙ୍କରଷଣ ଆଦି ।
ଯାଦବ ମଧ୍ୟେ ଯେ ପ୍ରସିଦ୍ଧି ॥୬୪
ଏ ଆଦି ଯେତେ ଧନୁର୍ଦ୍ଧର ।
ଦୁର୍ଜୟ କୃଷ୍ଣର କୁମର ॥୬୫
ରଥେ ବିଜୟ ପନ୍ତି ପନ୍ତି ।
ଘୋଟକ କୁଞ୍ଜର ପଦାତି ॥୬୬
ଶାଲ୍ୱ ସହିତେ ଯଦୁବଳ ।
ଶୁଭେଇ ମୁଖରାବ ଗୋଳ ॥୬୭
କୋପେ କରନ୍ତି ଗୁଣଘୋଷ ।
ଶବଦେ କମ୍ପେ ଦଶଦିଶ ॥୬୮
ଉଭାରି କରନ୍ତି ସମର ।
ଘୋର ଗହନ ଅନ୍ଧକାର ॥୬୯
ଅମୃତ ଅର୍ଥେ ଭୁଜବଳେ ।
ଦେବ ଅସୁର ପୂର୍ବକାଳେ ॥୭୦
ତେମନ୍ତ ହୋଇଲାକ ରଣ ।
ଅଭୂତ ରୋମହରଷଣ ॥୭୧
ଶାଲ୍ୱର ମାୟାଗତି ଯେତେ ।
ନାନାପ୍ରପଞ୍ଚ ଅପ୍ରମିତେ ॥୭୨
ପ୍ରକାଶି ଥିଲା ଶୂନ୍ୟମଧ୍ୟେ ।
ଶାଲ୍ୱ ଯାଦବ ଘୋରଯୁଦ୍ଧେ ॥୭୩
ରୁକ୍ମିଣୀସୁତ ଦେଖି ତାହା ।
ଶସ୍ତ୍ରେ ଛେଦିଲା ତାର ମାୟା ॥୭୪
ରଜନୀଅନ୍ତେ ରବିତ୍ରାସ ।
ଯେହ୍ନେ ଅନ୍ଧାର କରେ ନାଶ ॥୭୫
ସୁବର୍ଣ୍ଣପୁଚ୍ଛ ଲୌହମୁଖ ।
ବିଚିତ୍ର ସୁରଙ୍ଗ ସୁରେଖ ॥୭୬
ଗୁଣେ ବସାଇ ମହାରୋଷେ ।
ବାଣ ବିନ୍ଧିଲା ପଞ୍ଚବିଂଶେ ॥୭୭
ଶାଲ୍ୱର ସେନାପତି ଅଙ୍ଗେ ।
ଅଶ୍ୱ ବିମାନ ଧ୍ୱଜ ସଙ୍ଗେ ॥୭୮
ତକ୍ଷଣେ କରି ହତପ୍ରାଣ ।
ପୁଣ ବିନ୍ଧିଲା ଗରୁଟାଣ ॥୭୯
ଶାଲ୍ୟ ଉପରେ କୃଷ୍ଣବଳା ।
ଶତେ ନାରାଚ ବରଷିଲା ॥୮୦

Dr. Sudhanshu Sekhar Mishra

ଅପରେ ସଇନି ଯେତେକେ ।
ତାହାଙ୍କୁ ପେଷେ ଏକ ଏକ ॥୮୧
ରଥୀ ସାରଥୀଙ୍କ ଉପରେ ।
ଦଶ ନାରାଚ କୋପଭରେ ॥୮୨
ଅଶ୍ୱକୁ ବିନ୍ଧି ତିନିଶର ।
ଶବଦ କଲା ମହାଘୋର ॥୮୩
ରୁକ୍ମିଣୀସୁତ କର୍ମ ଦେଖି ।
ସକଳେ ସଂଗ୍ରାମ ଉପେକ୍ଷି ॥୮୪
ପର ଅପର ବୀରଶ୍ରେଣୀ ।
କରନ୍ତି ସାଧୁ ସାଧୁ ବାଣୀ ॥୮୫
ମୟନିର୍ମିତ ମାୟାରଥ ।
ତାର ମହିମା ଅପ୍ରମିତ ॥୮୬
ନିଜ ସୈନ୍ୟଙ୍କୁ ଦିଶେ ଏକ ।
ରିପୁଙ୍କୁ ଦିଶଇ ଅନେକ ॥୮୭
ଭିତରେ ଦିଶେ ଅନ୍ଧକାର ।
ଦେବମାନବେ ଅଗୋଚର ॥୮୮
ସମ୍ମୁଖେ ଦିଶେ ମହୀତଳେ ।
ଚାହିଁଲେ ଉଡେ ଅନ୍ତରାଳେ ॥୮୯
ପର୍ବତଶିଖେ କ୍ଷଣେ ଥାଇ ।
କ୍ଷଣକେ ସମୁଦ୍ରେ ବୁଡଇ ॥୯୦
ପୁଣି ଗଗନ ଅତିକ୍ରମେ ।
ଅଲାତଚକ୍ର ପ୍ରାୟେ ଭ୍ରମେ ॥୯୧
ଏମନ୍ତେ ଦେଖି ତା ବିମାନ ।
କ୍ଷଣକେ କୃଷ୍ଣର ନନ୍ଦନ ॥୯୨
ଉଭାରି କୋଦଣ୍ଡ ବହନ ।
କୋପେ ବିନ୍ଧିଲା ତୀକ୍ଷଣବାଣ ॥୯୩
ଧାବନ୍ତେ ଶୁଭେ ମୁଖରାବ ।
କ୍ଷଣେ ନ ରହେ ଏକ ଠାବ ॥୯୪
ପବନ ଯୋଗେ ଯେହ୍ନେ ମେଘ ।
ଧାମନ୍ତି ଅତି ଉଦବେଗ ॥୯୫
ଯହିଁ ଦେଖନ୍ତି ତାର ରଥ ।
କୃଷ୍ଣକୁମରେ ଯୁଥ ଯୁଥ ॥୯୬
ଧନୁ ଆମଞ୍ଚି ପୁଣ ପୁଣ ।
କରନ୍ତି ଶର ବରଷଣ ॥୯୭
ଅଗ୍ନି ଆଦିତ୍ୟ ପ୍ରାୟ ଦିଶି ।
ପଡନ୍ତି ରିପୁବଳେ ଗ୍ରାସି ॥୯୮

ବାଣଶବଦ ବଜ୍ରପ୍ରାୟେ ।
ଭେଦିଲା ଅସୁରଙ୍କ କାୟେ ॥୯୯
ରୁଧିର ବୃଷ୍ଟି ରଣମଧ୍ୟେ ।
ଯେସନେ ଦେବାସୁର ଯୁଦ୍ଧେ ॥୧୦୦
ଯଦୁବୀରଙ୍କ ବାଣଘାୟେ ।
ରଥେ ପଡିଲା ଶାଲ୍ୱ ମୋହେ ॥୧୦୧
ମାୟାବିମାନ ଶୂନ୍ୟପଥେ ।
କୃଷ୍ଣକୁମରେ ଭୂମିଗତେ ॥୧୦୨
ଉଭୟବଳୁଁ ଶରବୃଷ୍ଟି ।
ରୁଧିର ଗଳେ ତନୁ ଫୁଟି ॥୧୦୩
କ୍ଷତ୍ରିୟଧର୍ମ ମହାଘୋର ।
କେହି ନ ଛାଡନ୍ତି ସମର ॥୧୦୪
ଉଭୟଲୋକେ ଜୟ ଇଚ୍ଛା ।
ସାୟକଗୁଣେ ବାଣ ଦୀକ୍ଷା ॥୧୦୫
ଦ୍ୟୁମନ ନାମେ ମହାବଳୀ ।
ରୁକ୍ମିଣୀସୁତ ପାଶେ ମିଳି ॥୧୦୬
ପୂର୍ବେ ପ୍ରଦ୍ୟୁମ୍ନ ବାଣଘାତେ ।
ପଡି ଯେ ଥିଲା ମୋହଗତେ॥୧୦୭
ଶାଲ୍ୱର ମନ୍ତ୍ରୀ ସେ ଯୁକତେ ।
ବିଷମ ଲୌହଗଦା ହସ୍ତେ ॥୧୦୮
ଚନ୍ଦ୍ରସମୀପେ ଯେହ୍ନେ ରାହୁ ।
ହୁଙ୍କାରେ ତୋଳି ବେନିବାହୁ ॥୧୦୯
ରୁକ୍ମିଣୀସୁତ ବକ୍ଷସ୍ଥଳେ ।
ପ୍ରହାର କଲା ଭୁଜବଳେ ॥୧୧୦
ଗର୍ଜ୍ଜଇ କରି ମହାରୋଷ ।
ଶବଦେ କମ୍ପେ ଦଶଦିଶ ॥୧୧୧
ଗଦାପ୍ରହାରେ କୃଷ୍ଣବାଳା ।
ବିମାନେ ପଡି ମୋହଗଲା ॥୧୧୨
ଦେଖି ତାହାର ମୋହଗତ ।
ତକ୍ଷଣେ ଦାରୁକର ସୁତ ॥୧୧୩
ସଂଗ୍ରାମ ଛାଡି ରଥ ବାହି ।
ଯୁଦ୍ଧର ଧର୍ମ ସେ ଜାଣଇ ॥୧୧୪
ସଂଗ୍ରାମ ହୁଡି ପଳାଇଲା ।
କେତେକ ଦୂରେ ବିଶ୍ରାମିଲା ॥୧୧୫
ପ୍ରଦ୍ୟୁମ୍ନ ପଡିଥିଲା ମୋହେ ।
ଶୀତପବନ ଲାଗି ଦେହେ ॥୧୧୬

ତକ୍ଷଣେ ପାଇଲା ଜୀବନ ।
ଚାହିଁଲା ସାରଥୀ ବଦନ ॥୧୧୭
ବୋଲଇ କୋପଭର ହୋଇ ।
ଏମନ୍ତ ଦେଖିଲା ତ ନାହିଁ ॥୧୧୮
ଅସାଧୁକର୍ମା କିମ୍ପା କଲୁ ।
ସଂଗ୍ରାମ ଛାଡି ପଳାଇଲୁ ॥୧୧୯
ଯାଦବକୁଳେ ହୋଇ ଜାତ ।
ସଂଗ୍ରାମେ ନପୁଂସକ ହୋଇ ॥୧୨୦
ତୁ ଦୁରାଚାର ମତିଭ୍ରମ ।
ନ ଜାଣି କଲୁ ଏଡେ କର୍ମ ॥୧୨୧
ତୋର ସାରଥିପଣେ ମୁହିଁ ।
ସଂଗ୍ରାମେ ନପୁଂସକ ହୋଇ ॥୧୨୨
ସଂଗ୍ରାମେ ପଳାଉ ନିରେଖ ।
ତୋର ଜୀବନ ହେଉ ଧିକ ॥୧୨୩
କେମନ୍ତେ କୃଷ୍ଣପାଶେ ଯାଇ ।
ବଦନ ଦେଖାଇବି ମୁହିଁ ॥୧୨୪
ରାମର ବଦନ କେମନ୍ତେ ।
ଚାହିଁବି ସଂଗ୍ରାମ ନିସତେ ॥୧୨୫
କିବା କହିବି କୃଷ୍ଣପାଶେ ।
ପଳାଇ ଜୀବନର ଆଶେ ॥୧୨୬
ସଂଗ୍ରାମେ ମୋର ବୀରପଣ ।
ଶୁଣି ହସିବେ ଶତ୍ରୁଗଣ ॥୧୨୭
ପୁରେ ହସିବେ ବଧୁଜନେ ।
ବସନ ଆଚ୍ଛାଦି ବଦନେ ॥୧୨୮
ତୁ ଧିକ ମୋହର ସାରଥୀ ।
ଭଜିଲୁ ନଂପୁସକ ଗତି ॥୧୨୯
କିମ୍ପା ଛାଡିଲୁ ରଣଭୂଇଁ ।
ଅର୍ଦ୍ଧଯୋଜନେ ରଥବାହି ॥୧୩୦
କହ ନ କର ମନେ ଭ୍ରାନ୍ତି ।
ତା ଶୁଣି ବୋଲଇ ସାରଥୀ ॥୧୩୧
ଶୁଣ ହୋ କୃଷ୍ଣର କୁମର ।
ସଂଗ୍ରାମ ଧର୍ମ ଏ ମୋହର ॥୧୩୨
ରଥୀର ମୋହ ଯେବେ ଦେଖି ।
ସାରଥୀ ସଂଗ୍ରାମ ଉପେକ୍ଷି ॥୧୩୩
କେତେହେଁ ଦୂରେ ରଥ ଧରି ।
ରଥୀ ଜୀବନ ସ୍ଥିର କରି ॥୧୩୪

Dr. Sudhanshu Sekhar Mishra

ପୁଣ ସମରେ ବାହେ ରଥ ।
ଏ ଧର୍ମ ସାରଥୀଙ୍କ ମତ ॥୧୩୫
ଏହା ଯେ ନ ଜାଣି ରହନ୍ତି ।
ରଥୀ ସାରଥୀ ନାଶଯାନ୍ତି ॥୧୩୬
ସ୍ୱର୍ଗେ ବସଇ ରଥୀ ଏକେ ।
ସାରଥୀ ପଡଇ ନରକେ ॥୧୩୭

ଏଣୁ ମୁଁ କଲି ନିଜ ଧର୍ମ ।
ଯେଣୁ ତୁ ଗଦାଘାତେ ଭ୍ରମ ॥୧୩୮
କହଇ ବିପ୍ର ଜଗନ୍ନାଥ ।
ସାରଥୀ ବାକ୍ୟେ କୃଷ୍ଣସୁତ ॥୧୩୯
ବୋଲଇ ବାହ ବେଗେ ରଥ ।
ଆଜ ନାଶିବି ରିପୁଯୁଥ ॥୧୪୦

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଶାଲ୍ୱଯୁଦ୍ଧେ
ନାମ ଏକାଶୀତିତମ ଅଧ୍ୟାୟଃ ॥

---

## ଦ୍ୱିଅଶୀତିତମ ଅଧ୍ୟାୟ

ଶୁକ କହନ୍ତି ରାଜା ଆଗେ ।
କୃଷ୍ଣନନ୍ଦନ ଅତିବେଗେ ॥୧
ତୃଷିତେ ରଥୁଁ ଅବତରି ।
ସନ୍ତୋଷେ ଜଳପାନ କରି ॥୨
କର-ଚରଣ- କଳେବରେ ।
ଜଳ ସିଞ୍ଚିଲା ସୁଖଭରେ ॥୩
କବଚ ଭରି କଳେବରେ ।
ଧନୁ ଧଇଲା ବାମକରେ ॥୪
ମୀନକେତନେ ବିଜେ କଲା ।
ସାରଥୀ ମୁଖକୁ ଚାହିଁଲା ॥୫
ବୋଲେ ସାରଥୀ ମୁଖ ଚାହିଁ ।
ବେଗେ ତୁ ଚଳ ରଥ ବାହି ॥୬
ଦ୍ୟୁମାନ ମୁଖେ ରଥ କର ।
ତା ତୁଲେ ସମର ମୋହର ॥୭
ଶୁଣି ଦାରୁକସୁତ ବେଗେ ।
ମିଳିଲା ଦ୍ୟୁମାନର ଲାଗେ ॥୮
ଅସୁରମାୟା ଅପ୍ରମିତ ।
ଅସୁରବଳ କରେ ହତ ॥୯
ରୁକ୍ମିଣୀସୁତ ଦେଖି ରୋଷେ ।
ହୁଙ୍କାର କରି ଗୁଣ ଘୋଷେ ॥୧୦
ସନ୍ଧାନ କଲା ଅଷ୍ଟଶର ।
କେ କହୁ ମହିମା ତାହାର ॥୧୧
ରଥ ତୁରଗ ଚାରିବାଣେ ।
ଛିଡି ପଡିଲେ ଘୋରରଣେ ॥୧୨
ସାରଥୀ ଏକବାଣେ ମଲା ।
ବେନି ନାରାଚେ ଧ୍ୱଜ ଗଲା ॥୧୩

ଏକା ନାରାଚେ ଛେଦି ଶିର ।
ବିମାନ କଲା ଶତେ ଚୁର ॥୧୪
ଗଦ ସାତ୍ୟକି ଶାମ୍ବ ଆଦି ।
ତୀକ୍ଷ୍ଣ ନାରାଚ ବେଗେ ବିନ୍ଧି ॥୧୫
ଶାଲ୍ୱସଇନି କଲେ ନାଶ ।
ନାରାଚେ ନ ଦିଶେ ଆକାଶ ॥୧୬
ଶିର ଛିଡିଲା ଭୁଜବଳେ ।
ପଡିଲା ବାରାନିଧି ଜଳେ ॥୧୭
ଏମନ୍ତେ ଶାଲ୍ୱ ଯଦୁବୀରେ ।
ରଣ ବଢିଲା ଏକୁଆରେ ॥୧୮
ଯୁଦ୍ଧ କରନ୍ତେ କୃଷ୍ଣବାଳା ।
ତ୍ରିନବରାତ୍ର ହେଲେ ଗଲା ॥୧୯
ଏବେ ହୋ ଶୁଣ ପରୀକ୍ଷିତ ।
ଇନ୍ଦ୍ରପ୍ରସ୍ଥରେ ଯଦୁନାଥ ॥୨୦
ଥିଲେ ରାଜସୂୟଯଜ୍ଞକାଳେ ।
ଚକ୍ରେ ସଂହାରି ଶିଶୁପାଳେ ॥୨୧
ତାହାର ଭ୍ରାତ ଶାଲ୍ୱବୀର ।
ଯଦୁଙ୍କ ସଙ୍ଗତେ ସମର ॥୨୨
ତାହା ଜାଣିଲେ ଭାବଗ୍ରାହୀ ।
ଏମନ୍ତେ ଇନ୍ଦ୍ରପ୍ରସ୍ଥେ ଥାଇ ॥୨୩
ଦ୍ୱାରକାଯିବା ସଜ ହୋଇ ।
ପଣ୍ଡୁନନ୍ଦନ ଆଗେ କହି ॥୨୪
ଗୁରୁ ବୃଦ୍ଧଙ୍କୁ ଆଜ୍ଞା ମାଗି ।
ପିତୃଭଗିନୀପାଦେ ଲାଗି ॥୨୫
ମୁନିଙ୍କି କରି ନମସ୍କାର ।
ଗୋବିନ୍ଦ ହୋଇଲେ ବାହାର ॥୨୬

ଦେଖିଲେ ଅନ୍ଧକାର ଦିଶ ।
ନିର୍ଘାତେ କମ୍ପଇ ଆକାଶ ॥୨୭
ଭୂମି ଗଗନ ଅନ୍ତରୀକ୍ଷେ ।
ଉତ୍ପାତ ଦିଶଇ ପ୍ରତ୍ୟକ୍ଷେ ॥୨୮
ଘୋର ନିର୍ଘାତ ରିଷ୍ଟ ଚାହିଁ ।
ମନେ ଭାଳନ୍ତି ଭାବଗ୍ରାହୀ ॥୨୯
ଧର୍ମନନ୍ଦନପୁରେ ମୁହିଁ ।
ନିଶ୍ଚିନ୍ତେ ଅଛି ଭାବବହି ॥୩୦
ବନ୍ଧୁବାନ୍ଧବ ମୋର ସଙ୍ଗେ ।
ସୁଖେ ବଞ୍ଚନ୍ତି ନାନାରଙ୍ଗେ ॥୩୧
ଦୁଷ୍ଟସ୍ୱଭାବେ ମହାବଳ ।
ମୁଁ ଯେ ନାଶିଲି ଶିଶୁପାଳ ॥୩୨
ତାହାର ପକ୍ଷ ରାଜା ଯେତେ ।
ସକଳ ମିଳି କୋପଚିତ୍ତେ ॥୩୩
ନିଶ୍ଚେ ନାଶିଲେ ମୋର ପୁର ।
ତେଣୁ ଏ ରିଷ୍ଟ ମହାଘୋର ॥୩୪
ଶ୍ରୀକୃଷ୍ଣ ଏମନ୍ତ ବିଚାରି ।
ବେଗେ ମିଳିଲେ ନିଜପୁରୀ ॥୩୫
ଦେଖିଲେ ପ୍ରଜାଙ୍କ କଷଣ ।
ପୁତ୍ରେ କରନ୍ତି ଘୋରରଣ ॥୩୬
ନିଜ କୁଟୁମ୍ବ ରକ୍ଷା କରି ।
ପୁରେ ରହିଲେ ହଳଧାରୀ ॥୩୭
ରାମଙ୍କୁ ରଖି ନିଜପୁରେ ।
ଗୋବିନ୍ଦ ସାଜିଲେ ସମରେ ॥୩୮
ଦାରୁକେ ରାଇ ବନମାଳୀ ।
ବୋଲନ୍ତି ବେନିଭୁଜ ତୋଳି ॥୩୯

Dr. Sudhanshu Sekhar Mishra

ତୁ ଯେବେ ସାରଥୀ ମୋହର ।
ଶାଲ୍ୱ ନିକଟେ ରଥ କର ॥୪୦
ଚିତ୍ତେ ନ କର ତୁହି ହ୍ରାସ ।
ଜାଣ ତୁ ଶାଲ୍ୱ ଗଲା ନାଶ ॥୪୧
ଏମନ୍ତେ କୃଷ୍ଣଆଜ୍ଞା ପାଇ ।
ଦାରୁକ ବେଗେ ରଥ ବାହି ॥୪୨
ଗରୁଡ ବସେ ରଥ ଶିଖେ ।
ସ୍ୱର୍ଗେ ଦେଖନ୍ତି ବୃନ୍ଦାରକେ ॥୪୩
ଉଭୟବଳ ମଧ୍ୟେ ରଥ ।
ଶାଲ୍ୱ ଦେଖିଲା ଯଦୁନାଥ ॥୪୪
ସ୍ୱଭାବେ ହୀନବଳ-ପ୍ରାଣ ।
ମାୟା ପ୍ରକାଶେ ଗରୁଟାଣ ॥୪୫
ଦେଖି ଦାରୁକ ଦାମୋଦର ।
କୋପେ ଗର୍ଜଇ ମହାବୀର ॥୪୬
ଶକ୍ତିଏ ଥିଲା ତାର ହସ୍ତେ ।
କୋପେ ବୁଲାଇ ଶୂନ୍ୟପଥେ ॥୪୭
ରବିକିରଣ ପ୍ରାୟ ଦିଶି ।
କୃଷ୍ଣ ଉପରେ ଦେଲା ପେଷି ॥୪୮
ଶକ୍ତି ଶବଦେ ଦିଗ ପୂରି ।
ଦେଖି ଗୋବିନ୍ଦ ଧନୁ ଧରି ॥୪୯
ତୀକ୍ଷ୍ଣ ନାରାଚେ ଦାମୋଦର ।
ଶକତି କଲେ ଶତେ ଚୂର ॥୫୦
ଆକାଶେ ଭ୍ରମେ ମାୟାରଥ ।
ଶାଲ୍ୱ ସେ ବିମାନେ ଗୁପତ ॥୫୧
ଦେହ ନ ଦିଶେ ଅନ୍ଧକାରେ ।
ଚାହିଁ ଗୋବିନ୍ଦ କୋପଭରେ ॥୫୨
ଶର ବରଷେ ଯଦୁନାଥ ।
ଗଗନେ ଯେହ୍ନେ ଛାୟାକାନ୍ତ ॥୫୩
ତାପଇ ନିଜ ରଶ୍ମିଜାଳେ ।
କୃଷ୍ଣନାରାଚ ଅନ୍ତରାଳେ ॥୫୪
ନିମିଷମାତ୍ରେ କୋଟି କୋଟି ।
ବିଷ୍ଣୁନାରାଚ ଶୂନ୍ୟେ ଘୋଟି ॥୫୫
ଦେଖି ଚକିତ ମହାବୀର ।
ଲୌହ ଧନୁଏ ଧରି କର ॥୫୬
ମାୟା ପ୍ରକାଶି ଗରୁଟାଣ ।
କୋପେ ବିନ୍ଧିଲା ତୀକ୍ଷ୍ଣବାଣ ॥୫୭

ତକ୍ଷଣେ କୃଷ୍ଣବାମ ମୁଷ୍ଟି ।
ଧନୁସହିତେ ଗଲା ଫୁଟି ॥୫୮
ହସ୍ତୁ ପଡିଲା ଧନୁ ତଳେ ।
ଦେଖି ଚକିତ ଦିଗପାଳେ ॥୫୯
କରନ୍ତି ହାହାକାରା ବାଣୀ ।
ଶାଲ୍ୱ ବୋଲଇ ତାହା ଶୁଣି ॥୬୦
ରେ ମୂଢ ଶୁଣ ମୋର ବାଣୀ ।
ମୋ ମିତ ବରିଲା ରୁକ୍ମିଣୀ ॥୬୧
ମଙ୍ଗଳ ଶୁଭଲଗ୍ନ ବେଳେ ।
ସେ କନ୍ୟା ନେଇଅଛୁ ବଳେ ॥୬୨
ସଭାର ମଧ୍ୟେ ଅବିଶ୍ୱାସ ।
ଶିଶୁପାଳକୁ କଲୁ ନାଶ ॥୬୩
ଏବେ ପଡିଲୁ ମୋର ମୁଖେ ।
ସମର କର ଆମ୍ଭ ସୁଖେ ॥୬୪
ଦେଖ ମୋ ନାରାଚ ପ୍ରଚଣ୍ଡ ।
ଏଥେ କାଟିବି ତୋର ମୁଣ୍ଡ ॥୬୫
ଅଜେୟ ବୋଲାଉ ଜଗତେ ।
ଆଜ ପଡିଲୁ ମୋ ଅଗ୍ରତେ ॥୬୬
ଏମନ୍ତ ତାର ବାକ୍ୟ ଶୁଣି ।
ହସି ବୋଲନ୍ତି ଚକ୍ରପାଣି ॥୬୭
ଶୁଣ ହୋ ଶାଲ୍ୱ ମହାବୀର ।
ଏ କଥା ଉଚିତ ତୋହର ॥୬୮
ତୋ ପଞ୍ଚପ୍ରାଣ କଣ୍ଠତଟେ ।
ଯମକୁ ନ ଦେଖୁ ନିକଟେ ॥୬୯
ମରଣକାଳେ ଯେହ୍ନେ ପ୍ରାଣୀ ।
ଗୁରୁଗଉରବ ନ ଗଣି ॥୭୦
ପ୍ରଳାପ କରେ ରୋଗତାପେ ।
କୃତାନ୍ତ ସେବକ ସମୀପେ ॥୭୧
ଯେ ଯାହା ବୀରପଣ ବଳେ ।
ଲୋକେ ଦେଖନ୍ତି ଯୁଦ୍ଧକାଳେ ॥୭୨
ଆତ୍ମପ୍ରଶଂସା ଯେ କରନ୍ତି ।
ସେ ପ୍ରାଣୀ ନରକେ ପଡନ୍ତି ॥୭୩
ଏମନ୍ତ କହୁଁ କହୁଁ ହରି ।
ଦକ୍ଷିଣଭୁଜେ ଗଦା କରି ॥୭୪
ଉଠି ତାହାର ରଥ ଦଣ୍ଡେ ।
ଗଦା ପ୍ରହାର କଲେ ମୁଣ୍ଡେ ॥୭୫

ଶବଦ ଶୁଭେ ମହାଘୋର ।
ବଦନୁ ଗଳାଇ ରୁଧିର ॥୭୬
ଦେଖନ୍ତି ପ୍ରଭୁ ଭଗବାନ ।
ଶାଲ୍ୱ ହୋଇଲା ଅନ୍ତର୍ଦ୍ଧାନ ॥୭୭
କୃଷ୍ଣ ଚାହାନ୍ତି ଦଶଦିଶେ ।
ବିଷମମାୟା ପରକାଶେ ॥୭୮
ଏମନ୍ତେ ଗଲା ଦଣ୍ଡଚାରି ।
ମାୟାପୁରୁଷ ରୂପ ଧରି ॥୭୯
ବେଗେ ମିଳିଲା କୃଷ୍ଣପାଶେ ।
ଚରଣେ ନମଇଁ ବିଶ୍ୱାସେ ॥୮୦
ବୋଲଇ ଶିରେ ଦେଇ ହସ୍ତ ।
ଦେବକୀଦେବୀର ମୁଁ ଦୂତ ॥୮୧
କଣ୍ଠକୁଣ୍ଠିତେ ବାକ୍ୟ କହେ ।
ବେନି ଲୋଚନୁ ଅଶ୍ରୁ ବହେ ॥୮୨
ହେ କୃଷ୍ଣ କୃଷ୍ଣ ମହାଭୁଜ ।
ମହାପୁରୁଷ ବିଶ୍ୱତେଜ ॥୮୩
ଆଜ ରଜନୀ ଅର୍ଦ୍ଧନିଶି ।
ଶାଲ୍ୱ ଦ୍ୱାରକାପୁରେ ପଶି ॥୮୪
ଯୁଦ୍ଧେ ଯାଦବବଳ ମାରି ।
ବସୁଦେବଙ୍କୁ ନେଲା ଧରି ॥୮୫
ପୁରେ କାନ୍ଦନ୍ତି ବଧୂଜନେ ।
ପଶୁଙ୍କୁ ପଶୁମାର ଯେହ୍ନେ ॥୮୬
ପିତୃବତ୍ସଳ ନାଥ ତୁହି ।
କହିଲି ମୋର ଦୋଷ ନାହିଁ ॥୮୭
ଏମନ୍ତେ ଦୂତବାକ୍ୟ ଶୁଣି ।
ମନୁଷ୍ୟ-ମୋହେ ଚକ୍ରପାଣି ॥୮୮
ପିତାର ସ୍ନେହପାଶେ ଗ୍ରସ୍ତ ।
ବିଭ୍ରମଚିତ୍ତେ ମୋହଗତ ॥୮୯
ଇତରଜନ ପ୍ରାୟ ଭାଳି ।
ମନେ ଚିନ୍ତିଲେ ବନମାଳୀ ॥୯୦
ଏ ତ ବିଷମ ବିପରୀତ ।
ଦେବକୀ ପେଷିଛନ୍ତି ଦୂତ ॥୯୧
ଯହିଁ ରକ୍ଷକ ହଳଧର ।
ଦେବଦାନବେ ଅଗୋଚର ॥୯୨
ତାହାଙ୍କୁ ଜିଣିଲା କେମନ୍ତେ ।
ବିହି ହୋଇଲା ବାମ ମୋତେ ॥୯୩

Dr. Sudhanshu Sekhar Mishra

ଏ ଶାଲ୍ୱ କୀଟ ପ୍ରାୟ ମୋତେ ।
ରାମଙ୍କୁ ଜିଣିଲା କେମନ୍ତେ ॥୯୪
ଏତେ ବିଚାରି ନରହରି ।
ଭାଳନ୍ତି ହସ୍ତେ ଗଦା ଧରି ॥୯୫
ଦିଗେ ଦିଶନ୍ତି ଧୂମମେଘ ।
ଭୂମି ପ୍ରଚଣ୍ଡ ଘୋରବାୟେ ॥୯୬
ଦେଖନ୍ତି ପ୍ରଭୁ ଭଗବାନ ।
ଗଗନେ ପ୍ରକାଶେ ବିମାନ ॥୯୭
ରବିକିରଣ ପ୍ରାୟ ଦିଶେ ।
ଶାଲ୍ୱ ମିଳିଲା କୃଷ୍ଣ ପାଶେ ॥୯୮
ବସୁଦେବର କେଶ ଧରି ।
ଝିଙ୍କଇ ଘୋରନାଦ କରି ॥୯୯
କୃଷ୍ଣଙ୍କୁ ଚାହିଁ ମହାରୋଷେ ।
ବୋଲଇ ବଚନ ପରୁଷେ ॥୧୦୦
ଦେଖ ଏ ତୋ ପିତା ଅଧମ।
ଯାହାର ବୀର୍ଯ୍ୟେ ତୁ ଜନମ ॥୧୦୧
ଏହାର ଅର୍ଥେ ଦେହ ବହୁ ।
ଶ୍ରୀବାସୁଦେବ ତୁ ବୋଲାଉ ॥୧୦୨
ତୁ ଯେବେ ବୋଲାଉ ସମର୍ଥ।
ଆଜ ମରୁଣୁ ରଖ ତାତ ॥୧୦୩
ଏମନ୍ତେ କରଇ ଭର୍ତ୍ସନ ।
ଦୁଃସହ ନିଷ୍ଠୁର ବଚନ ॥୧୦୪
ଆକର୍ଷି ବସୁଦେବ ଆଣି ।
ତୀକ୍ଷ୍ଣ ଖଡଗେ ଶିର ହାଣି ॥୧୦୫
କୃଷ୍ଣ କୋଳକୁ ଫିଙ୍ଗି ଦେଲା ।
ବିମାନେ ଗଗନେ ପଶିଲା ॥୧୦୬
ପିତାବଦନ ଦେଖି ହରି ।
ମୁହୂର୍ତ୍ତେ ମାତ୍ର ଶୋକ କରି ॥୧୦୭
ସ୍ୱଜନ ଅନୁଷଙ୍ଗ ଦୋଷେ ।
ନିଜ ପ୍ରକୃତି ମାୟା ଗ୍ରାସେ ॥୧୦୮
ଶୁଦ୍ଧ ସ୍ୱଭାବେ ନିରଞ୍ଜନ ।
ସ୍ୱୟଂ ପ୍ରକାଶ ଠୁଳ ଶୂନ୍ୟ ॥୧୦୯
ଜଗତପତି ଜ୍ଞାନଗୁରୁ ।
କେବା ମହିମା ଅନ୍ତଃ କରୁ ॥୧୧୦
ତକ୍ଷଣେ ପ୍ରଭୁ ଭଗବାନ ।
ନିଜ ସ୍ୱଭାବେ ଅବଧାନ ॥୧୧୧

ଜ୍ଞାନପ୍ରକାଶେ ମାୟା ନାଶ ।
ସୁଜ୍ଞାନ ଗୋବିନ୍ଦେ ପ୍ରକାଶ ॥୧୧୨
ଜାଣିଲେ ମୟ-ମାୟାବଳେ ।
ଶାଲ୍ୱ ଯୁଝଇ ମୋର ତୁଲେ ॥୧୧୩
ଏମନ୍ତ ଭାଳି କୃଷ୍ଣ ଚାହିଁ ।
ଦେଖିଲେ ରଥେ କେହି ନାହିଁ॥୧୧୪
ନ ଦିଶେ ପିତା ଛିନ୍ନଶିର ।
ଦୂତ ହିଁ ହୋଇଲା ଅନ୍ତର ॥୧୧୫
ସ୍ୱପ୍ନେ ଯେସନେ ନିଦ୍ରାବୋଧେ।
ଶ୍ରୀକୃଷ୍ଣ ଚାହାନ୍ତି ଆନନ୍ଦେ ॥୧୧୬
ଘୋର ଅନ୍ଧାରେ ମୟଯାନ ।
ଗଗନେ ଦେଖି ଭଗବାନ ॥୧୧୭
ରିପୁମାରଣେ ସାବଧାନ ।
ଶୁଣ ହେ ପରୀକ୍ଷ ରାଜନ ॥୧୧୮
ବେଦବଚନେ ଋଷିଗଣେ ।
ପୂଜନ୍ତି ଯାହାର ଚରଣେ ॥୧୧୯
ସ୍ମରଣ କରି ନାମ ହୃଦେ ।
ତରନ୍ତି ସଂସାର ପ୍ରମାଦେ ॥୧୨୦
ତାହାର କାହିଁ ଶୋକ ମୋହ।
ଅଜ୍ଞାନେ ଜାତ ସ୍ନେହଭୟ ॥୧୨୧
ଲୀଳା ପ୍ରକାରେ ଅନୁମାନେ ।
ଅବିଦ୍ୟା ବିରୋଧ ବଚନେ ॥୧୨୨
ଅଖଣ୍ଡ ବିଜ୍ଞାନ ଯାହାର ।
ଜ୍ଞାନ ଅଜ୍ଞାନର ଈଶ୍ୱର ॥୧୨୩
ଯା ପାଦପଦ୍ମ ସେବା ଫଳେ।
ନିର୍ମଳଆତ୍ମା ଜ୍ଞାନବଳେ ॥୧୨୪
ଅଜ୍ଞାନ ଅବିଦ୍ୟା ନାଶନ୍ତି ।
ଜନ୍ମ ମରଣେ ନାହିଁ ଭ୍ରାନ୍ତି ॥୧୨୫
ଲଭନ୍ତି ଆତ୍ମାନନ୍ଦ ହରି ।
ସକଳ ବିଷାଦ ପାସୋରି ॥୧୨୬
ଯାର ସେବକ ଏ ଜଗତେ ।
ମୋହ ନଯାନ୍ତି ମାୟାଗ୍ରସ୍ତେ ॥୧୨୭
ତାହାର ମାୟାମୋହ କାହିଁ ।
ଏବେ ହେ ଶୁଣ ମନଦେଇ ॥୧୨୮
ଶାଲ୍ୱ ଗଗନପଥେ ଥାଇ ।
କୃଷ୍ଣଙ୍କୁ ବାଣ ବରଷଇ ॥୧୨୯

ଦେଖି ତାହାର ରଥ ଶୂନ୍ୟେ ।
ଗୋବିନ୍ଦ ତୀକ୍ଷ୍ଣବାଣ ମୁନେ ॥୧୩୦
ତାହାର ଶସ୍ତ୍ର କଲେ ନାଶ ।
ତମ ଯେସନେ ରବିତ୍ରାସ ॥୧୩୧
ଚର୍ମ ଖଡଗ ଧନୁଦଣ୍ଡ ।
ତକ୍ଷଣେ କଲେ ଖଣ୍ଡ ଖଣ୍ଡ ॥୧୩୨
ତାହାର ଶିରୋମଣି ହରି ।
ଗଦା ପ୍ରହାରେ ରଥ ଚୂରି ॥୧୩୩
ଗୋବିନ୍ଦ ହସ୍ତେ ଗଦା ବେଗେ ।
ମାୟାବିମାନ ଶୂନ୍ୟମାର୍ଗେ ॥୧୩୪
ଭାଙ୍ଗି ହୋଇଲା ଶତେଖଣ୍ଡ ।
ଶବଦ ଶୁଭଇ ପ୍ରଚଣ୍ଡ ॥୧୩୫
ଆକାଶେ ଦେଖନ୍ତି ବିବୁଧେ ।
ବୁଡିଲା ସିନ୍ଧୁଜଳ ମଧ୍ୟେ ॥୧୩୬
ବିମାନୁଁ ପଡି ଅନ୍ତରାଳେ ।
ଶାଲ୍ୱ ମିଳିଲା ମହୀତଳେ ॥୧୩୭
ଦକ୍ଷିଣକରେ ଗଦା ଘେନି ।
ଧାମନ୍ତେ କମ୍ପଇ ମେଦିନୀ ॥୧୩୮
ଦେଖି ଗୋବିନ୍ଦ ଆଗସରି ।
ଅଭେଦ ବାଣ କରେ ଧରି ॥୧୩୯
ଗଦା ସହିତେ ତାର କର ।
ଦୁରୁ ଛେଦିଲେ ଦାମୋଦର ॥୧୪୦
ଶାଲ୍ୱର ପ୍ରାଣ ନାଶିବାରେ ।
ସୁଦରଶନ ଧରି କରେ ॥୧୪୧
ପ୍ରଳୟରବି ପ୍ରାୟ ତେଜେ ।
ଶୋହେ ଶ୍ରୀକୃଷ୍ଣ ଦକ୍ଷଭୁଜେ ॥୧୪୨
ଯାହାର ତେଜେ କମ୍ପେ ମହୀ ।
କି ପଟାନ୍ତର ଦେବି ମୁହିଁ ॥୧୪୩
ଉଦୟଗିରି ସୂର୍ଯ୍ୟଯୋଗେ ।
ଯେହ୍ନେ ବିରାଜେ ପୂର୍ବଦିଗେ ॥୧୪୪
ଚକ୍ର ପ୍ରହାରି ଦାମୋଦର ।
ଦୁରୁ ଛେଦିଲେ ତାର ଶିର ॥୧୪୫
ଶିର ପଡିଲା ମହୀତଳେ ।
ବିରାଜେ କିରୀଟ କୁଣ୍ଡଳେ ॥୧୪୬
ବାସବ ବଜ୍ରେ ବୃତ୍ର ଯେହ୍ନେ ।
ହାହା ଶବଦ କଲେ ଶୂନ୍ୟେ ॥୧୪୭

Dr. Sudhanshu Sekhar Mishra

ଶାଲ୍ୱ ଜୀବନ ତେଜରାଶି ।
ତକ୍ଷଣେ କୃଷ୍ଣଦେହେ ପଶି ॥୧୪୮
ବିଜୁଳି ଯେହ୍ନେ ନୀଳମେଘେ ।
ଦେବେ ଦେଖନ୍ତି ଶୂନ୍ୟମାର୍ଗେ ॥୧୪୯
ଏମନ୍ତେ ଶାଲ୍ୱ ନାଶ ଗଲା ।
ଅବନୀ ଉଶ୍ୱାସ ହୋଇଲା ॥୧୫୦
ବାଜଇ ଦୁନ୍ଦୁଭି ଶବଦ ।
ନାଚନ୍ତି ଅପସରାବୃନ୍ଦ ॥୧୫୧
ତାହାର ସଖା ଦନ୍ତବକ୍ର ।
ଗୋବିନ୍ଦେ ହୋଇ ରିପୁଚକ୍ର ॥୧୫୨
ମିଳିଲା ଶ୍ରୀକୃଷ୍ଣ ଅଗ୍ରତ ।
ହୃଦେ ସୁମରି ଭାତୃହତ ॥୧୫୩
କହଇ ବିପ୍ର ଜଗନ୍ନାଥ ।
କୃଷ୍ଣଚରିତ ଭାଗବତ ॥୧୫୪
ଭାରା ହରଣେ କୃଷ୍ଣ କଥା ।
ଶୁଣନ୍ତେ ହରେ ଭବବ୍ୟଥା ॥୧୫୫

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ସୌଭବଧୋ
ନାମ ଦ୍ୱିଅଶୀତିତମ ଅଧ୍ୟାୟଃ ॥

---

## ତ୍ରିଅଶୀତିତମ ଅଧ୍ୟାୟ

### ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ ନନ୍ଦନ ।
ରାଜନ ହୁଅ ସାବଧାନ ॥୧॥
ମଲେ ଯେ ଶାଲ୍ୱ ଶିଶୁପାଳ ।
ଯୁଦ୍ଧେ ପୌଣ୍ଡ୍ରକ ମହାବଳ ॥୨॥
ଏହାର ସଖା ଦନ୍ତବକ୍ର ।
କୃଷ୍ଣେ ସାଜିଲା ରିପୁଚକ୍ର ॥୩॥
ସୁହୃଦଧର୍ମ ପରଲୋକେ ।
ଦେଖାଇ ଯୁଦ୍ଧେ ଗଲା ଏକେ ॥୪॥
ଏକାକୀ ଧାଏଁ କୋପ କରି ।
ଦକ୍ଷିଣଭୁଜେ ଗଦା ଧରି ॥୫॥
ଧରଣୀ କମ୍ପେ ପାଦଭରେ ।
ମିଳିଲା କୃଷ୍ଣର ଛାମୁରେ ॥୬॥
ଦେଖି ତାହାର ମହାକାୟ ।
ସତ୍ୱରେ ପ୍ରଭୁ ଦେବରାୟ ॥୭॥
ରଥୁଁ ଓହ୍ଲାଇ ପାଦେ ଗମି ।
ଧାଇଁଲେ କରେ ଗଦା ଘେନି ॥୮॥
ସମୁଦ୍ର ଯେହ୍ନେ ଲଙ୍ଘେ ତୀର ।
କୃଷ୍ଣ ମିଳିଲେ ତା ଛାମୁର ॥୯॥
କୃଷ୍ଣଙ୍କୁ ଦେଖି ଗଦା ତୋଳି ।
କୋପେ ବୋଲଇ ମହାବଳୀ ॥୧୦
ଆଜ ମୋହର ଭାଗ୍ୟରାଶି ।
ତୁ ମୋର ଦୃଷ୍ଟିପଥେ ଆସି ॥୧୧
ପଡିଲୁ ଆଜ ଯିବୁ କାହିଁ ।
ରେ ଦୁଷ୍ଟ ମୁଖ ତୋ ନ ଚାହିଁ ॥୧୨
ମୋର ମାତୁଳସୁତ ତୁହି ।
ସ୍ୱଭାବେ ଅଟୁ ମିତ୍ରଦ୍ରୋହୀ ॥୧୩
ଧିକ ତୋହର ଶସ୍ତ୍ରଦୀକ୍ଷା ।
ମୋର ମରଣେ ତୋର ଇଚ୍ଛା ॥୧୪
ଏ ବଜ୍ରକଳ୍ପ ଗଦାଘାତେ ।
ଆଜ ପେଷିବି ଯମପଥେ ॥୧୫
ତୋହର ତୁଲେ କରି ରଣ ।
ଆଜ ଶୁଝିବି ଭାତୃଋଣ ॥୧୬
ତୁ ବନ୍ଧୁ ରିପୁ ମୋ ବଇରୀ ।
ମୁଁ ଆଜ ରଣେ ତୋତେ ମାରି ॥୧୭
ନିଶ୍ଚିନ୍ତେ ହୋଇବି ଆନନ୍ଦ ।
ବ୍ୟାଧିକି ଯେସନେ ଔଷଧ ॥୧୮
ରୋଗ ନ ମଲେ ଦେହ ମରେ ।
ବ୍ୟାଧି ଚିକିତ୍ସା ଯେ ନ କରେ ॥୧୯
ଏମନ୍ତେ କଟୁବାକ୍ୟ ବୋଲି ।
ଦକ୍ଷିଣଭୁଜେ ଗଦାତୋଳି ॥୨୦
ପିଟିଲା ଗୋବିନ୍ଦର ମୁଣ୍ଡେ ।
ଘୋରଶବଦ କରି ତୁଣ୍ଡେ ॥୨୧
ଗଦା ପ୍ରହାରେ ରଣ ମଧ୍ୟେ ।
ଗୋବିନ୍ଦ ନ ଚଳିଲେ ପାଦେ ॥୨୨
ବିଷମ-ଗଦାଘାତ ସହି ।
ତକ୍ଷଣେ ପ୍ରଭୁ ଭାବଗ୍ରାହୀ ॥୨୩
କଉମୋଦକୀ ଗଦା ବେଗେ ।
କୋପେ ବୁଲାଇ ଶୂନ୍ୟମାର୍ଗେ ॥୨୪
ହୁଙ୍କାର କରି ବାହୁବଳେ ।
ପିଟିଲେ ତାର ବକ୍ଷସ୍ଥଳେ ॥୨୫
ଗଦା ପ୍ରହାରେ ହୃଦଫାଟି ।
ପଡିଲା ମହୀତଳେ ଲୋଟି ॥୨୬
ମୁଖରୁ ଗଳଇ ରୁଧିର ।
ଜନେ କରନ୍ତି ହାହାକାର ॥୨୭
ପ୍ରସାରି କେଶ-ପାଦ-କର ।
ରଣେ ପଡିଲା ମହାବୀର ॥୨୮
ତାର ଶରୀରୁ ପୁଣ୍ୟତେଜ ।
ଯେହ୍ନେ ଉଦିତ ଗ୍ରହରାଜ ॥୨୯
ପଶିଲା କୃଷ୍ଣଦେହ ମଧ୍ୟେ ।
ଗଗନେ ଦେଖନ୍ତି ବିବୁଧେ ॥୩୦
ଧର୍ମନନ୍ଦନ ସଭାମଧ୍ୟେ ।
ଯେସନେ ଶିଶୁପାଳ ବଧେ ॥୩୧
ଦେଖିଣ ଦନ୍ତବକ୍ର ହତ ।
ତାହାର ଭ୍ରାତ ବିଦୁରଥ ॥୩୨
ଭ୍ରାତୃମରଣ ଶୋକେ ତାପି ।
ରୋଷେ ଦଶନେ ଓଷ୍ଠ ଚାପି ॥୩୩
ଖଡଗ ଚର୍ମ କରେ ଧରି ।
କୃଷ୍ଣଙ୍କୁ ସମରେ ଆବୋରି ॥୩୪
ନିଷ୍ଠୁର ବାକ୍ୟ କହେ ତୁଣ୍ଡେ ।
ବଜ୍ର ପ୍ରହାର ଯେହ୍ନେ ମୁଣ୍ଡେ ॥୩୫
ଦେଖି ତାହାର ବ୍ୟଗ୍ରଗତି ।
ଚକ୍ରପ୍ରହାରେ ଯଦୁପତି ॥୩୬
ବେଗେ ଛେଦିଲେ ତା କପାଳ ।
ବିରାଜେ କିରୀଟ କୁଣ୍ଡଳ ॥୩୭
ଶିର ପଡିଲା ଭୂମିମଧ୍ୟେ ।
ପ୍ରାଣ ପଶିଲା କୃଷ୍ଣହୃଦେ ॥୩୮

Dr. Sudhanshu Sekhar Mishra

ଏମନ୍ତେ ଶାଲ୍ୱ ଶିଶୁପାଳ ।
ସଂହାରି ମଦନଗୋପାଳ ॥୩୯
ଦନ୍ତବିକଟ ବିଦୁରଥ ।
କୃଷ୍ଣର ହସ୍ତେ ହୋଇ ହତ ॥୪୦
ପଶିଲେ ଅଭୟଚରଣେ ।
ଯେ ଅବା ମଲେ କୃଷ୍ଣରଣେ ॥୪୧
ମୁନି କରନ୍ତି ଜୟବାଣୀ ।
ପୁଷ୍ପବରଷି ସ୍ତୁତି ଭଣି ॥୪୨
ଦେବେ ଯେ ଶୂନ୍ୟମାର୍ଗେ ଥିଲେ ।
ଶ୍ରୀଅଙ୍ଗେ ପୁଷ୍ପ ବରଷିଲେ ॥୪୩
ଦୁନ୍ଦୁଭି ବାଜେ ସୁରଲୋକେ ।
ନାରୀ ନାଚନ୍ତି କଉତୁକେ ॥୪୪
ଯକ୍ଷ କିନ୍ନର ବିଦ୍ୟାଧରେ ।
ଗନ୍ଧର୍ବେ ଗାବନ୍ତି ସୁସ୍ୱରେ ॥୪୫
କୃଷ୍ଣବିଜୟ କଉତୁକେ ।
ଆନନ୍ଦେ ସୁର- ନରଲୋକେ ॥୪୬
ଯାଦବବଳ ସଙ୍ଗେ ହରି ।
ପ୍ରବେଶ ଦ୍ୱାରକାନଗରୀ ॥୪୭
ସେ ହରିଚରଣ ପଙ୍କଜେ ।
ବ୍ରାହ୍ମଣ ଜଗନ୍ନାଥ ଭଜେ ॥୪୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟା
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଦନ୍ତବକ୍ର -ବିଦୁରଥବଧୋ ନାମ
ତ୍ରିଅଶୀତିତମ ଅଧ୍ୟାୟଃ ॥

---

## ଚତୁଃଅଶୀତିତମ ଅଧ୍ୟାୟ

ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁସୁତ ।
କୃଷ୍ଣଚରିତ ଭାଗବତ ॥୧॥
ଏମନ୍ତେ ପ୍ରଭୁ ନରହରି ।
ମନୁଷ୍ୟରୂପେ ଅବତରି ॥୨॥
ସ୍ୱଭାବେ ମାୟା ଅପ୍ରମିତ ।
ସେ କାହୁଁ ହେବେ ପରାଜିତ ॥୩॥
ତାହାଙ୍କୁ ପୀଡନ୍ତି ଅସୁରେ ।
ବିନାଶ ହୁଅନ୍ତି ସମରେ ॥୪॥
ପଶୁବୁଦ୍ଧଙ୍କର ଏ ମତ ।
ଏ ନୋହେ ପୁଣି ପରମାର୍ଥ ॥୫॥
ଏବେ ହୋ ଶୁଣ ନୃପମଣି ।
ଦ୍ୱାରକାପୁରେ ହଳପାଣି ॥୬॥
କୁରୁପାଣ୍ଡବ ଘୋରତମ ।
ଶୁଣିଲେ ଯୁଦ୍ଧର ଉଦ୍ୟମ ॥୭॥
ମଧ୍ୟସ୍ଥ ପଣେ ହଳପତି ।
ତୀର୍ଥ ଗମନ ବ୍ୟାଜମତ ॥୮॥
ପିତାମାତାଙ୍କୁ ଆଜ୍ଞା ମାଗି ।
ଗୁରୁପୁତ୍ରଙ୍କ ପାଦେ ଲାଗି ॥୯॥
ସାଧୁଜନଙ୍କୁ ସଙ୍ଗ କରି ।
ବିଜୟ କଲେ ହଳଧାରୀ ॥୧୦
ଯାଇ ମିଳିଲେ କୁରୁକ୍ଷେତ୍ରେ ।
ପର୍ଶୁରାମର କୀର୍ତ୍ତି ଯେତେ ॥୧୧
ସ୍ନାହାନ ସାରି ରାମ ହ୍ରଦେ ।
ଦେବତା ପିତୃଙ୍କୁ ଆନନ୍ଦେ ॥୧୨
ଜଳତର୍ପଣେ ତୋଷି ମନ ।
ବ୍ରାହ୍ମଣେ ଦେଇ ମହାଦାନ ॥୧୩
ଗମନ୍ତି ସରସ୍ୱତୀତୀରେ ।
ସଙ୍ଗେ ସକଳ ବିପ୍ରବରେ ॥୧୪
ପୃଥୁଉଦକ ବିନ୍ଦୁସର ।
ଏ ବେନି ତୀର୍ଥେ ହଳଧର ॥୧୫
ପିତୃ ଦେବତା ବିପ୍ରେ ପୁଜି ।
ତ୍ରିତକୂପକୁ ପୁଣ ଭଜି ॥୧୬
ସୁଦରଶନ ସୁବିଶାଳ ।
ଏ ବେନିତୀର୍ଥେ କାମପାଳ ॥୧୭
ଆନନ୍ଦେ ସାରି ନିତ୍ୟକର୍ମ ।
ବ୍ରହ୍ମତୀର୍ଥରେ ଆଗମନ ॥୧୮
ପୁଣି ମିଳିଲେ ଚକ୍ରତୀର୍ଥେ ।
ସୁପ୍ରାଚୀ ସରସ୍ୱତୀ ପଥେ ॥୧୯
ଯମୁନାସ୍ନାନ ସାରି ଧୀରେ ।
ଆସି ମିଳିଲେ ଗଙ୍ଗାତୀରେ ॥୨୦
ତହୁଁ ଚଳିଲେ ଶୁଦ୍ଧମନେ ।
ମିଳିଲେ ନୈମିଷଅରଣ୍ୟେ ॥୨୧
ଷଷ୍ଟିସହସ୍ର ବ୍ରହ୍ମଋଷି ।
ଯଜ୍ଞ କରନ୍ତି ତହିଁ ବସି ॥୨୨
ରାମଙ୍କୁ ମୁନିଜନେ ଦେଖି ।
ତକ୍ଷଣେ ଆସନ ଉପେକ୍ଷି ॥୨୩
ପୋଛୋଟି ଗଲେ କିଛି ଦୂରେ ।
ପୂଜିଲେ ଅତିଥି ବେଭାରେ ॥୨୪
ଏମନ୍ତେ ଆଣି ତୋଷମନେ ।
ରାମଙ୍କୁ ବସାଇ ଆସନେ ॥୨୫
ସ୍ତୁତି କରନ୍ତି ମୁନିଗଣ ।
ଏମନ୍ତେ ରୋମହରଷଣ ॥୨୬
ବ୍ୟାସଙ୍କ ଶିଷ୍ୟ ସେ ଯୁକତେ ।
ଆସନେ ରାମଙ୍କ ଅଗ୍ରତେ ॥୨୭
ବସି କହନ୍ତି କୃଷ୍ଣକଥା ।
ଦେଖି ପାଇଲେ ରାମ ବ୍ୟଥା ॥୨୮
ମନେ ଭାଳନ୍ତି କୋପଚିତ୍ତେ ।
ଏ ତ ଅବଜ୍ଞା କଲା ମୋତେ ॥୨୯
ଏ ଶୂଦ୍ର ହୋଇ ବିପ୍ରମଧ୍ୟେ ।
ଧର୍ମାଦି ଶିକ୍ଷା ଅନୁବାଦେ ॥୩୦
ଗୁରୁଙ୍କ ପ୍ରାୟ ଗର୍ବ କଲା ।
ମୋତେ ଆସନ ନ ଦେଲା ॥୩୧
କେମନ୍ତେ ଧର୍ମ ବିପ୍ରଜନେ ।
କହେ ଅନୁବାଦ ବଚନେ ॥୩୨
ଏ ବଡ ମୋତେ ବୀପରୀତ ।
ସ୍ୱଭାବେ ପ୍ରତିଲୋମ ଜାତ ॥୩୩
ଯେଣୁ ଏ ବ୍ୟାସଙ୍କର ଶିଷ୍ୟ ।
ଜାଣଇ ଅତୀତ ଭବିଷ୍ୟ ॥୩୪
ପୁରାଣ ଇତିହାସ ଆଦି ।
ଏ ସର୍ବଶାସ୍ତ୍ର ଧର୍ମବାଦୀ ॥୩୫

Dr. Sudhanshu Sekhar Mishra

କେବଳ ଆତ୍ମାକୁ ନ ଜାଣେ ।
ଅବିନୀତ ଏ ପରମାଣେ ।।୩୬

ଦମ୍ଭେ ଏ ପଣ୍ଡିତ ବୋଲାଇ ।
ମୋତେ ନ ଗଣେ ଗର୍ବ ବହି ।।୩୭

ନଷ୍ଟ ଦାମ୍ଭିକ ଦୁରାଚାର ।
ସ୍ୱଭାବେ ଗର୍ବ ଅହଙ୍କାର ।।୩୮

ଏହାର ଧର୍ମବିଦ୍ୟା ଯେତେ ।
ନିଶ୍ଚେ ନୁହଇଁ ଗୁଣଅର୍ଥେ ।।୩୯

ଏହାଙ୍କୁ ଦଣ୍ଡିବାର ଅର୍ଥେ ।
ମୋ ଅବତାର ଏ ଜଗତେ ।।୪୦

ଏମନ୍ତ ହୃଦରେ ବିଚାରି ।
ଅନନ୍ତବଳ ଆଗସରି ।।୪୧

ଯେ ରାମ ଆତ୍ମାଗୁଣେ ରତ ।
ବିଧାତା ଫଳ ବିପରୀତ ।।୪୨

ହସ୍ତେ ଯେ ଥିଲା କୁଶମୁଷ୍ଟି ।
ତାମସଗୁଣେ କୋପଦୃଷ୍ଟି ।।୪୩

କୁଶକୁ ଘେନି ଅତି କୋପେ ।
ମିଳିଲେ ତାହାର ସମୀପେ ।।୪୪

କୋପେ ପ୍ରଚଣ୍ଡ ଗୁରୁତର ।
କୁଶେ ଛେଦିଲେ ତାର ଶିର ।।୪୫

ହା ହା ଶବଦେ ବିପ୍ରଜନେ ।
ରାମଙ୍କୁ ଚାହିଁ ଖେଦମନେ ।।୪୬

ସଙ୍କରଷଣମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ।।୪୭

ଭୋ ନାଥ ଜଗତ କାରଣ ।
ଏ ବଡ ପାପ ଆଚରଣ ।।୪୮

ଆଗମ ନିଗମ ଏ ବାଦ ।
ପ୍ରତ୍ୟେକ୍ଷ କଲୁ ବ୍ରହ୍ମବଧ ।।୪୯

ଭୋ ନାଥ ମହାଯଜ୍ଞ ଅର୍ଥେ ।
ଏହାଙ୍କୁ ଅଣାଇ ସମସ୍ତେ ।।୫୦

ବ୍ରହ୍ମା ଆସନେ ବସାଇଲୁ ।
ବଳ ଆୟୁଷ ବିସ୍ତାରିଲୁ ।।୫୧

ସ୍ଥାପିଲୁ କରି ଅଭିମତ ।
ଯାବତ ଯଜ୍ଞ ସମାପତ ।।୫୨

ତୁ ଯେବେ କଲୁ ଏଡେ କର୍ମ ।
ଏବେ ଆଚର ଦୀକ୍ଷାଧର୍ମ ।।୫୩

ତୁ ଯୋଗେଶ୍ୱର ଭଗବାନ ।
ପାଳ ତୁ ନିଗମବଚନ ।।୫୪

ଲୋକ ସଂଗ୍ରହ ତୁମ୍ଭେ କର ।
ଏ ବ୍ରହ୍ମବଧ ପ୍ରତିକାର ।।୫୫

ଶୁଣି ଚକିତ ହଳଧର ।
ବୋଲନ୍ତି ଯୋଡି ବେନିକର ।।୫୬

ନମସ୍ତେ ବ୍ରହ୍ମରଷିଗଣ ।
କହ ହେ ଏହାର କାରଣ ।।୫୭

ଲୋକେ ବେଭାରେ ଯଥାବିଧି ।
ପ୍ରଥମକଳ୍ପେ ଯେ ପ୍ରସିଦ୍ଧି ।।୫୮

କହ କି କରିବି ଉପାୟ ।
ଯେମନ୍ତେ ହତ୍ୟା ଯିବ କ୍ଷୟ ।।୫୯

ମୁଁ ପୁଣି ତୁମ୍ଭ ଯଜ୍ଞଅର୍ଥେ ।
ସାଧିବି ନିଜ ଯୋଗମତେ ।।୬୦

ଏହାଙ୍କୁ ଜିଆଇବୀ ମୁହିଁ ।
ବଳ ଶଉର୍ଯ୍ୟ ବୁଦ୍ଧି ଦେଇ ।।୬୧

ସ୍ଥାପିବି ଏ ମୋହର ସତ୍ୟ ।
ଯାବତ ଯଜ୍ଞ ସମାପତ ।।୬୨

ଏମନ୍ତେ ରାମବାକ୍ୟ ଶୁଣି ।
ବିପ୍ରେ ବୋଲନ୍ତି ମନେ ଗୁଣି ।।୬୩

ଭୋ ନାଥ ଶୁଣ ହଳଧର ।
ଏ ସତ୍ୟବଚନ ଆମ୍ଭର ।।୬୪

ମରଣେ ନୋହିବ ଏ ଗ୍ରସ୍ତ ।
ତୁମ୍ଭର ବଚନ ଯେମନ୍ତ ।।୬୫

ଯଜ୍ଞେ ଏ ଥିବ ଆମ୍ଭ ମେଳେ ।
ଧର୍ମସଂଶୟ ପ୍ରଶ୍ନକାଳେ ।।୬୬

ବିପ୍ରଙ୍କ ବାକ୍ୟ ସାଧୁବାଣୀ ।
ରାମ ବୋଲନ୍ତି ତାହା ଶୁଣି ।।୬୭

ଆତ୍ମାରୁ ଆତ୍ମାର ସମ୍ଭୂତ ।
ଏ ବେଦବାକ୍ୟ ଅନୁମତ ।।୬୮

ଏହାର ପୁତ୍ରକୁ ବସାଇ ।
ବଳ ଆୟୁଷ ଜ୍ଞାନ ଦେଇ ।।୬୯

ପିତାହୁଁ ହେଉ ଗୁଣାକର ।
ଏମନ୍ତ କହି ହଳଧର ।।୭୦

ତାର ପୁତ୍ରକୁ ସାବଧାନେ ।
ବସାଇ ବ୍ରହ୍ମାର ଆସନେ ।।୭୧

ବୋଇଲେ ହୁଅ ଜ୍ଞାନସିଦ୍ଧି ।
ତାତୁଁ ଅନେକ ହେଉ ବୃଦ୍ଧି ।।୭୨

ଏମନ୍ତେ ସ୍ଥାପି ତାର ସୁତ ।
ବୋଲନ୍ତି ରେବତୀର କାନ୍ତ ।।୭୩

ଏବେ କରିବି କିସ କହ ।
ବିଚାରି ମୋତେ ଆଜ୍ଞା ଦିଅ ।।୭୪

ଶୁଣି ଆନନ୍ଦ ମୁନିଗଣ ।
ବୋଲନ୍ତି ଶୁଣ ସଙ୍କର୍ଷଣ ।।୭୫

ଇଲ୍ୱଳ ନାମେ ମହାସୁର ।
ବଲ୍ୱଳ ତାହାର କୁମର ।।୭୬

ନିତ୍ୟେ ପାର୍ବଣ ଯୋଗେ ଆସେ ।
ଆମ୍ଭର ଯଜ୍ଞକର୍ମ ନାଶେ ।।୭୭

ସେ ଦୁରାଚାର ନାଶ ଗଲେ ।
ଯଜ୍ଞ କରିବୁ ଆମ୍ଭେ ଭଲେ ।।୭୮

ଶଶୀ-ପ୍ରଳୟ-ନିଶି-ଜାଣି ।
ସଙ୍ଗେ ଅସୁର ବଳ ଆଣି ।।୭୯

ରାତ୍ରେ ମିଳଇ ଯଜ୍ଞଶାଳେ ।
ରାକ୍ଷସ ମାୟା ଯୋଗବଳେ ।।୮୦

ପୂଯ ଶୋଣିତ ମଳ ମୂତ୍ର ।
କୁଣ୍ଡେ ବରଷେ ଅପ୍ରମିତ ।।୮୧

ତାହାକୁ କରି ପ୍ରାଣେ ହତ ।
ଆମ୍ଭକୁ କରାଅ ନିଶ୍ଚିନ୍ତ ।।୮୨

ଭାରତ ମଧ୍ୟେ ଯେତେ ପୁରୀ ।
ଦକ୍ଷିଣ ପ୍ରଦିକ୍ଷଣ କରି ।।୮୩

ଏମନ୍ତେ ଦ୍ୱାଦଶ ଯେ ମାସ ।
ଭ୍ରମିବ ପୁର ଗ୍ରାମ ଦେଶ ।।୮୪

ଏମନ୍ତେ ହତ୍ୟା ଯିବ ନାଶ ।
ନିର୍ମଳେ ନିଜପୁରେ ପଶ ।।୮୫

ବୋଲଇ ବିପ୍ର ଜଗନ୍ନାଥ ।
ତା ଶୁଣି ରାମ କୃତ୍ୟକୃତ୍ୟ ।।୮୬

ଅସୁର ଆଗମନ ଚାହିଁ ।
ଯଜ୍ଞେ ରହିଲେ ତୋଷ ହୋଇ ।।୮୭

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ବଳଦେବ ଚରିତ୍ରେ ବଲ୍ୱଳବଧ
ଉପକ୍ରମୋ ନାମ
ଚତୁଃଅଶୀତିତମ ଅଧ୍ୟାୟଃ ।।

Dr. Sudhanshu Sekhar Mishra

## ପଞ୍ଚଅଶୀତିତମ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ ।
ରାକ୍ଷସ ମିଳି ଯଜ୍ଞଭାଗେ ॥୧॥
ଶଶୀପାର୍ବଣ ରାତ୍ରକାଳେ ।
ପ୍ରଚଣ୍ଡ ବାତ ସଙ୍ଗ ମେଳେ ॥୨॥
ଧୂଳି ପୂରିଲା ଦଶଦିଶେ ।
କୁତ୍ସିତ ପୂୟେ ଗନ୍ଧବାସେ ॥୩॥
ବଲ୍ୱଳବୀର ମହାରୋଷେ ।
ଆଛାଦି ଅମେଧ୍ୟ ବରଷେ ॥୪॥
ଯଜ୍ଞନାଶନେ ମହାବୀର ।
ମାୟା ପ୍ରକାଶେ ଅନ୍ଧକାର ॥୫॥
ଭୟେ ଚାହାନ୍ତି ବ୍ରହ୍ମମୁନି ।
ମିଳିଲା ହସ୍ତେ ଶୂଳ ଘେନି ॥୬॥
ଘୋର ପ୍ରଚଣ୍ଡ ମହାକାୟେ ।
ଓଷ୍ଠ କାମୋଡି କୋପେ ଚାହେଁ ॥୭॥
ତାର ବଦନ ଚାରିପାଶେ ।
ଅନଳଖଣ୍ଡ ପ୍ରାୟ ଦିଶେ ॥୮॥
ତପତତମ୍ବା ପ୍ରାୟ ଦାଢି ।
ବଦନୁ ଶୁଭେ ଘୋରରଡି ॥୯॥
ବିକଟଦନ୍ତ ତାର ମୁଖେ ।
ଭ୍ରୁକୁଟି କୁଟିଳ ସୁରେଖେ ॥୧୦
ଦେଖି ତାହାର ଦୁଷ୍ଟମତି ।
ହଳ ସୁମରି ହଳପତି ॥୧୧
ହସ୍ତ ପାତିଲେ ଶୂନ୍ୟମାର୍ଗେ ।
ହଳ ମିଳିଲା ଆସି ବେଗେ ॥୧୨
ଘୋରଦାନବ ନିବାରଣେ ।
ମୁଷଳ ମିଳିଲା ତକ୍ଷଣେ ॥୧୩
ଗଗନେ ଦେଖି ତା ଶରୀର ।
ଲଙ୍ଗଳ ଅଗ୍ରେ ନୀଳାମ୍ବର ॥୧୪
ଆକର୍ଷି ଆଣି ଯଜ୍ଞଦାଣ୍ଡେ ।
ମୁଷଳ ପ୍ରହାରିଲେ ମୁଣ୍ଡେ ॥୧୫
ତକ୍ଷଣେ ହୋଇ ଖଣ୍ଡ ଖଣ୍ଡ ।
ତଳେ ପଡିଲା ମୃତପିଣ୍ଡ ॥୧୬
ରୁଧିର ଗଳେ ତା ବଦନେ ।
ପ୍ରାଣ ଛାଡିଲା ଘୋରସ୍ୱନେ ॥୧୭
ଶବଦ ଦଶଦିଗେ ପୁରି ।
ବାସବ ବଜ୍ରେ ଯେହ୍ନେ ଗିରି ॥୧୮
ଅବନୀ ହୋଇଲା ଉଶ୍ୱାସ ।
ବ୍ରାହ୍ମଣେ ମିଳି ରାମ ପାଶ ॥୧୯
କଲ୍ୟାଣ କରନ୍ତି ଆନନ୍ଦେ ।
ନିଗମ ବାକ୍ୟ ଅନୁବାଦେ ॥୨୦
ପୁଷ୍ପ ବରଷି ସ୍ତୁତି ଭଣି ।
ସୁନ୍ଦର ଦିଶଇ ଧରଣୀ ॥୨୧
ରାମେ ପୂଜିଲେ ମହାଜନେ ।
ବୃତ୍ର ବିନାଶେ ଇନ୍ଦ୍ରେଯେହ୍ନେ ॥୨୨
ନାନା କୁସୁମେ ପରିମଳ ।
ହୃଦେ ଲମ୍ବାଇ ବନମାଳ ॥୨୩
ନୀଳଦୁକୁଳ ରତ୍ନମଣି ।
ପୂଜିଲେ ହରଷରେ ଘେନି ॥୨୪
ବ୍ରାହ୍ମଣେ ହୋଇ ଅନୁଜ୍ଞାତ ।
ହରଷେ ରୋହିଣୀର ସୁତ ॥୨୫
ଚଳିଲେ ତୀର୍ଥର କାରଣେ ।
ମିଳିଲେ କଉଶିକୀ ସ୍ଥାନେ ॥୨୬
ତକ୍ଷଣେ କଉଶିକୀ ଜଳେ ।
ସ୍ନାନ ସାରିଲେ ବିପ୍ରମେଳେ ॥୨୭
ପିତୃତର୍ପଣ ସାରି ତୀରେ ।
ମିଳିଲେ ମାନସରୋବରେ ॥୨୮
ସରଯୂ ଅନୁସ୍ରୋତେ ଚଳି ।
ବେଣୀ-ପ୍ରୟାଗେ ଯାଇ ମିଳି ॥୨୯
ଗଙ୍ଗା ଯମୁନାର ସଙ୍ଗମେ ।
ପ୍ରୟାଗ ତୀର୍ଥେ ଶୁଦ୍ଧମନେ ॥୩୦
ରାମ ସାରିଲେ ନିତ୍ୟକର୍ମ ।
ପିତୃଦେବଙ୍କୁ ଜଳଦାନ ॥୩୧
ପୁଲହାଶ୍ରମ ତହୁଁ ଗଲେ ।
ଋଷି ବ୍ରାହ୍ମଣଙ୍କର ତୁଲେ ॥୩୨
ସୁଖେ ଗମନ ଯଦୁପତି ।
ମିଳିଲେ ଗଣ୍ଡକୀ ଗୋମତୀ ॥୩୩
ବିପାଶା ଶୋଣନଦୀ ଜିଣି ।
ଗୟା ଗମିଲେ ହଳପାଣି ॥୩୪
ପିଣ୍ଡେ ଉଦ୍ଧରି ପିତୃଗଣ ।
ତହୁଁ ଚଳିଲେ ତୋଷମନ ॥୩୫
ତହୁଁ କେତେ ହେଁ ଦିନେ ହଳୀ ।
ଗଙ୍ଗାସାଗରେ ଯାଇ ମିଳି ॥୩୬
ସ୍ନାନ ସାରିଣ କାମପାଳ ।
ପ୍ରବେଶ ହେଲେ ନୀଳାଚଳ ॥୩୭
ସମୁଦ୍ରେ ସାରିଲେ ସ୍ନାହାନ ।
ତହୁଁ ଚଳିଲେ ତୋଷମନ ॥୩୮
ମିଳିଲେ ମହେନ୍ଦ୍ର ଆଶ୍ରମେ ।
ତହିଁ ଭେଟିଲେ ପର୍ଶୁରାମେ ॥୩୯
ତାହାଙ୍କୁ କରି ନମସ୍କାର ।
ଗମନ କଲେ ହଳଧର ॥୪୦
ସପତ ଗୋଦାବରୀ ବେଣୀ ।
ପମ୍ପା ଯେ ଭୀମରଥୀ ଜିଣି ॥୪୧
କାର୍ତ୍ତିକେୟଙ୍କୁ ଦେଖିବାରେ ।
ମିଳିଲେ ଯାଇ ଶ୍ରୀଶଇଳେ ॥୪୨
ରୁଦ୍ରଙ୍କୁ କରି ନମସ୍କାର ।
ଦ୍ରାବିଡେ ଗଲେ ହଳଧର ॥୪୩
ବେଙ୍କଟପ୍ରଭୁ ଦରଶନ ।
ଆନନ୍ଦେ ରୋହିଣୀ ନନ୍ଦନ ॥୪୪
କରି ଚଳିଲେ ତପନିଷ୍ଠୀ ।
ପୁଣି ମିଳିଲେ କାମକୋଟୀ ॥୪୫
କାଞ୍ଚିକାବେରୀ ତହୁଁଗଲେ ।
ଯୋଗୀଜନଙ୍କ ସଙ୍ଗମେଳେ ॥୪୬
ଶ୍ରୀରଙ୍ଗତୀର୍ଥ ତହିଁ କରି ।
ନିତ୍ୟ ସଂସ୍ଥିତ ଯହିଁ ହରି ॥୪୭
ଋଷଭଗିରି ବିଷ୍ଣୁସ୍ଥାନ ।
ତହୁଁ ଚଳିଲେ ମଧୁବନ ॥୪୮
ଦକ୍ଷିଣପଥେ ଅପ୍ରମାଦେ ।
ତହୁଁ ଚଳିଲେ ସେତୁବନ୍ଧେ ॥୪୯
ଦୁରିତ ଦହେ ଦରଶନେ ।
ଶ୍ରୀରାମେ ପୂଜି ତୋଷମନେ ॥୫୦

Dr. Sudhanshu Sekhar Mishra

ରଘୁନାଥଙ୍କ ପ୍ରୀତୀ ଅର୍ଥେ ।
ଧେନୁ ଉତ୍ସର୍ଗିଲେ ଅୟୁତେ ।।୫୧
ତହୁଁ ଆନନ୍ଦେ କାମପାଳ ।
ମିଳିଲେ ପୁଣ୍ୟ କୃତମାଳ ।।୫୨
ତହୁଁ ଚଳିଲେ ତାମ୍ରପର୍ଣ୍ଣୀ ।
ସଙ୍ଗେ ଅନେକ ବିପ୍ର ଘେନି ।।୫୩
ମଳୟ କୁଳାଚଳ ଦେଶେ ।
ମିଳିଲେ ଅଗସ୍ତିଙ୍କ ପାଶେ ।।୫୪
ଚରଣେ କରି ନମସ୍କାର ।
ଆଶିଷ ଘେନି ତାହାଙ୍କର ।।୫୫
ଦକ୍ଷିଣସିନ୍ଧୁତୀରେ ମିଳି ।
ରାମ ଦେଖିଲେ ଭଦ୍ରକାଳୀ ।।୫୬
ଦୁର୍ଗା ନିକଟୁ କୁମ୍ଭମାସେ ।
ରାମ ଚଳିଲେ ମନତୋଷେ ।।୫୭
ଉତ୍ତମ ପଞ୍ଚଅପସର ।
ତହୁଁ ଚଳିଲେ ହଳଧର ।।୫୮
ଯହିଁ ଗୋବିନ୍ଦ ସନ୍ନିହିତ ।
ଧେନୁ ଉତ୍ସର୍ଗିଲେ ଅୟୁତ ।।୫୯
ତହୁଁ ଆନନ୍ଦେ ବଳରାମ ।
କେରଳ ନଗରେ ଆଗମ ।।୬୦
ତ୍ରିଗର୍ତ୍ତଦେଶ ତହୁଁ ଦେଖି ।
ରାମ ମିଳିଲେ ଜ୍ୱାଳାମୁଖୀ ।।୬୧
ଗୋକର୍ଣ୍ଣତୀର୍ଥ ମହାସ୍ଥାନ ।
ଯହିଁ ଧୂର୍ଜଟି ସନ୍ନିଧାନ ।।୬୨
ତହୁଁ ଭେଟିଲେ ଆର୍ଯ୍ୟାଦେବୀ ।
ବ୍ୟାସନନ୍ଦିନୀ ପାଦେ ସେବି ।।୬୩
ତାପ୍ତୀ ପୟୋଷ୍ଣୀ ବିନ୍ଧ୍ୟା ସେବି।
ଦଣ୍ଡକାରଣ୍ୟ ପୁଣ୍ୟଭୁବି ।।୬୫
ତହୁଁ ଗମନ ରେବାତୀରେ ।
ପ୍ରବେଶ ମାହିଷ୍ମତୀପୁରେ ।।୬୬
ସ୍ନାହାନ ସାରି ମନୁତୀର୍ଥେ ।
ଧେନୁ ଉତ୍ସର୍ଗ ଶିବ ଅର୍ଥେ ।।୬୭
ସନ୍ତୋଷେ ରୋହିଣୀ ନନ୍ଦନ ।
ପୁଣି ପ୍ରଭାସେ ଆଗମନ ।।୬୮
ବନ୍ଦିଲେ ବିପ୍ରଙ୍କ ଚରଣ ।
ଶୁକ ବୋଲନ୍ତି ରାୟ ଶୁଣ ।।୬୯

କୁରୁପାଣ୍ଡବ ଯୁଦ୍ଧ ବାଣୀ ।
ବିପ୍ରଙ୍କ ମୁଖୁ ରାମ ଶୁଣି ।।୭୦
ଅନେକ ରାଜା ଗଲେ ନାଶ ।
ବଳାକ୍ଷୌହିଣୀ ଅଷ୍ଟାଦଶ ।।୭୧
ଶୁଣି ସାନନ୍ଦ ହଳଧର ।
ବୋଇଲେ ଗଲା ଭୂମିଭାର ।।୭୨
ସୁଜନେ ନାହିଁ ଦୁଷ୍ଟବାଧା ।
ଯୁଦ୍ଧ ହୋଇଲା ଶେଷ ଗଦା ।।୭୩
ଶେଷେ ଯୁଝନ୍ତି ବେନିଜନ ।
ଦୁର୍ଜୟ ଭୀମ ଦୁର୍ଯ୍ୟୋଧନ ।।୭୪
ବିଷମ ଶୁଣି ଗଦାଯୁଦ୍ଧ ।
ରାମ ମିଳିଲେ ରଣମଧ୍ୟ ।।୭୫
ରାମଙ୍କୁ ଦେଖି ଧର୍ମସୁତ ।
ସଙ୍ଗେ ଅଛନ୍ତି ତିନିଭ୍ରାତ ।।୭୬
କୃଷ୍ଣ ଅଛନ୍ତି ତାଙ୍କ ମେଳେ ।
ତା ଦେଖି ରାମ ସୁଖଭୋଳେ ।।୭୭
କୃଷ୍ଣଙ୍କୁ ଆଲିଙ୍ଗନ କରି ।
ଧର୍ମନନ୍ଦନ କର ଧରି ।।୭୮
ଗୋବିନ୍ଦ ରାମପାଦେ ନମି ।
କିଛି ନ ବୋଲି ହେଲେ ତୁନି ।।୭୯
ରାମ ଚାହିଁଲେ ବେନିବୀର ।
ଗଦାସମରେ ମହାଘୋର ।।୮୦
ବାରିବା ଅର୍ଥେ ବିଚାରିଲେ ।
ଜାଣି ଗୋବିନ୍ଦ ମାୟା କଲେ ।।୮୧
ଦେଖି ମଣ୍ଡଳ ଗଦାଗତି ।
ବୋଲନ୍ତି ରେବତୀର ପତି ।।୮୨
ଶୁଣ ହୋ ଦୁର୍ଯ୍ୟୋଧନ ଭୀମ ।
ଗଦାସମରେ ଦୁହେଁ ସମ ।।୮୩
ଉତ୍ତମ ଶିକ୍ଷା ଦୁର୍ଯ୍ୟୋଧନ ।
ବଳେ ଅଧିକ ଭୀମସେନ ।।୮୪
ଏ ଗଦାରଣେ ଫଳ ନାହିଁ ।
ସଂଗ୍ରାମ ଛାଡ ଦୁଇଭାଇ ।।୮୫
ଗଦା ପ୍ରହାରେ ଦୃଢମତି ।
ରାମର ବାକ୍ୟ ନ ଶୁଣନ୍ତି ।।୮୬
ବଇରୀ ବଧ ସୁମରନ୍ତି ।
ଘୋର ଶବଦେ ପ୍ରହାରନ୍ତି ।।୮୭

ରାମ ଦେଖିଲେ ତାଙ୍କ ଗତି ।
ଆନନ୍ଦମନେ ଦ୍ୱାରାବତୀ ।।୮୮
ମିଳିଲେ ରୋହିଣୀ ନନ୍ଦନ ।
ଦେଖି ଆନନ୍ଦ ଉଗ୍ରସେନ ।।୮୯
ବନ୍ଧୁ ବାନ୍ଧବ ପୁତ୍ର ବଳ ।
କରନ୍ତି ଜଣେ ଜଣେ କୋଳ ।।୯୦
ଏମନ୍ତେ ରହି ଦିନାକେତେ ।
ମିଳିଲେ ନଇମିଷ ତୀର୍ଥେ ।।୯୧
ଯଜ୍ଞେ ଯେ ଥିଲେ ମୁନିଜନେ ।
ତକ୍ଷଣେ ରାମର ବଚନେ ।।୯୨
ରାମଙ୍କୁ କରାଇଲେ ଯାଗ ।
ନିବୃତ୍ତ କ୍ରିୟା ଅନୁରାଗ ।।୯୩
ସନ୍ତୋଷେ ରୋହିଣୀନନ୍ଦନ ।
ମୁନିଙ୍କି ଦେଲେ ଦିବ୍ୟଜ୍ଞାନ ।।୯୪
ଯାହାର ମାୟାବଳେ ବିଶ୍ୱ ।
ରବିର ପ୍ରାୟ ଦୃଶ୍ୟାଦୃଶ୍ୟ ।।୯୫
ସଙ୍ଗତେ ଘେନି ନିଜ ନାରୀ ।
ସେ ଅବଭୃଥ ସ୍ନାନ କରି ।।୯୬
ସୁହୃଦ ବନ୍ଧୁ ମଧ୍ୟେ ଥାଇ ।
ଶଶାଙ୍କ ପ୍ରାୟ ବିରାଜଇ ।।୯୭
ଏ ଆଦି ଯେତେ କର୍ମ ଗୁଣ ।
ରାଜନ ଏକମନେ ଶୁଣ ।।୯୮
ମାୟା ମନୁଷ୍ୟ ଅବତାର ।
କେ କହୁ ମହିମା ତାହାର ।।୯୯
ଏ ରାମକର୍ମ ଯେ ଶୁଣନ୍ତି ।
ମାୟାମୋହରେ ନ ପଡନ୍ତି ।।୧୦୦
ଉଭୟ ସନ୍ଧ୍ୟାକାଳେ ଶୁଣି ।
କୃଷ୍ଣସେବକ ଯେତେ ପ୍ରାଣୀ ।।୧୦୧
ଲଭନ୍ତି ଭକତି ତତ୍ତ୍ୱ ।
କହଇ ବିପ୍ର ଜଗନ୍ନାଥ ।।୧୦୨

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ବଳଦେବ ତୀର୍ଥଯାତ୍ରା ନିରୂପଣଂ
ନାମ ପଞ୍ଚଅଶୀତିତମ ଅଧ୍ୟାୟଃ ।।

Dr. Sudhanshu Sekhar Mishra

## ଷଟ୍ଅଶୀତିତମ ଅଧ୍ୟାୟ

ଶୁକ ଚରଣେ ଦେଇ ଶିର ।
ବୋଲେ ପରୀକ୍ଷ ନୃପବର ॥୧॥

ପରୀକ୍ଷିତ ଉବାଚ

ଭୋ ମୁନି ଅନନ୍ତ ଚରିତ ।
ଶୁଣି ହୋଇଲି କୃତକୃତ୍ୟ ॥୨॥
ମହାତ୍ମା ଅନନ୍ତର ବାଣୀ ।
ଆତ୍ମା ପବିତ୍ର କଲି ଶୁଣି ॥୩॥
ଅପରେ କର୍ମ କଲେ ଯେତେ ।
ଅନନ୍ତ ବଳ ଅପ୍ରମିତେ ॥୪॥
ମାୟାମନୁଷ୍ୟ ରୂପ ଧରି ।
ଦେବେ ଅଦ୍ଭୁତ କର୍ମ କରି ॥୫॥
ଅଧର୍ମ ନାଶି ଧର୍ମରକ୍ଷା ।
ପୁରାଇ ସାଧୁ ମନବାଞ୍ଛା ॥୬॥
ହରିଲେ ଧରଣୀର ଭାର ।
ବ୍ରହ୍ମାଶଙ୍କରେ ଅଗୋଚର ॥୭॥
ଆବର କର୍ମ କଲେ ଯେତେ ।
ଭୋ ମୁନି କହ ମୋ ଅଗ୍ରତେ ॥୮॥
କୃଷ୍ଣଚରିତ ଅବିରତ ।
ଶୁଣି କେ ନୋହେ ତୋଷଚିତ୍ତ ॥୯॥
କାମ୍ୟ ସଙ୍କଳ୍ପେ ମୂଢଜନ ।
ବିଷ୍ଣୁମାୟାରେ ହୋଇ ଛନ୍ନ ॥୧୦
ଯନ୍ତ୍ରିତ ହୋଇ ମାୟାପାଶ ।
ଦୁର୍ଲ୍ଲଭଜନ୍ମ କରେ ନାଶ ॥୧୧
କୃଷ୍ଣର ଗୁଣ ଶୁଦ୍ଧମନେ ।
ନିରତେ ଗୁଣେ ଯେ ବଚନେ ॥୧୨
ତାହାକୁ ବୋଲି ବାକ୍ୟସାର ।
ଅନ୍ୟ ପ୍ରଳାପ ଅନ୍ଧକାର ॥୧୩
ଯେ ହସ୍ତ କରେ ବିଷ୍ଣୁକର୍ମ ।
ତାହାକୁ ବୋଲି ହସ୍ତଧର୍ମ ॥୧୪
ସ୍ଥାବର ଜଙ୍ଗମରେ ହରି ।
ଅନ୍ତର ବାହ୍ୟେ ଛନ୍ତି ପୂରି ॥୧୫
ଏ ଭାବେ କରଇ ଯେ ଧ୍ୟାନ ।
ତାହାକୁ ବୋଲି ଶୁଦ୍ଧମନ ॥୧୬
କୃଷ୍ଣର ଗୁଣ କର୍ମ ବାଣୀ ।
ଯେ କର୍ଣ୍ଣେ ନିରନ୍ତରେ ଶୁଣି ॥୧୭
ତାହାକୁ କର୍ଣ୍ଣବୋଲି ଲେଖି ।
ଅନ୍ୟଥା ଭୂମିବିଳ ଲକ୍ଷ୍ୟ ॥୧୮
ସ୍ଥାବର ଆଦି ଯେତେ ଦେହୀ ।
ଏହାଙ୍କ ମଧ୍ୟେ ବିଷ୍ଣୁ ଥାଇ ॥୧୯
ଯେ ଜାଣି କରେ ନମସ୍କାର ।
ନିଶ୍ଚେ ତାହାକୁ ବୋଲି ଶିର ॥୨୦
କୃଷ୍ଣର ରୂପ ଯେ ଲୋଚନ ।
ନିରତେ କରେ ଦରଶନ ॥୨୧
ତାହାକୁ ବୋଲି ଚକ୍ଷୁ ଏକା ।
ଅନ୍ୟ ସେ ମୟୂରଚନ୍ଦ୍ରିକା ॥୨୨
ବିଷ୍ଣୁ ସେବକ ଯେତେ ଲୋକ ।
ତାହାଙ୍କ ଚରଣଉଦକ ॥୨୩
ଯାହାଙ୍କ ଶରୀରେ ଲାଗଇ ।
ସେ ପ୍ରାଣୀ ଧନ୍ୟ ଦେହ ବହି ॥୨୪

ସୂତ ଉବାଚ

ଏମନ୍ତ ଶୁଣି ରାଜା ମୁଖେ ।
ଶୁକ ଲୋଚନ ବୁଜି ସୁଖେ ॥୨୫
କୃଷ୍ଣଚରଣେ ମନ ଦେଇ ।
କହନ୍ତି ରାଜାମୁଖ ଚାହିଁ ॥୨୬

ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁବଳା ।
ପୂର୍ବେ ଦରିଦ୍ର ବିପ୍ରେ ଥିଲା ॥୨୭
ବିଦ୍ୟାପଠନେ ଗୁରୁଘରେ ।
ଗୋବିନ୍ଦ ଅବନ୍ତୀନଗରେ ॥୨୮
ତାହାର ସଙ୍ଗେ ହେଲେ ମିତ୍ର ।
ଏ କଥା ଇହଲୋକେ ଚିତ୍ର ॥୨୯
ସେ ବିପ୍ର ବେଦବିଦ୍ୟା ମଧ୍ୟେ ।
ଉତ୍ତମ ଇନ୍ଦ୍ରିଗଣ ସାଧେ ॥୩୦
ଗୃହସ୍ଥ ଆଶ୍ରମେ ବସଇ ।
ସ୍ୱଧର୍ମେ ଯେତେ ଧନପାଇ ॥୩୧
ସେ ଧନେ ପୋଷଇ ଜୀବନ ।
ନିରତେ କୃଷ୍ଣପାଦେ ମନ ॥୩୨
କୁତ୍ସିତବସ୍ତ୍ର ପରିଧାନ ।
କ୍ଷୁଧାରେ ଶରୀର ତା କ୍ଷୀଣ ॥୩୩
ତାର କାମିନୀ ପତିବ୍ରତା ।
ନିରତେ ସ୍ୱାମୀ ପାଦେ ଚିନ୍ତା ॥୩୪
ଏମନ୍ତେ ମହାଦୁଃଖ ସହି ।
ବୋଲେ ସ୍ୱାମୀର ମୁଖ ଚାହିଁ ॥୩୫
ଭୋ ନାଥ ସଂସାରର ସାର ।
ଦୁର୍ଲ୍ଲଭ ମନୁଷ୍ୟଶରୀର ॥୩୬
ପୂର୍ବେ ସଞ୍ଚିଲା ପୁଣ୍ୟ ନାହିଁ ।
ଦରିଦ୍ରପଣେ ଦେହ ବହି ॥୩୭
ଆହାରେ ହୋଇଲୁଁ ନିରାଶ ।
ଧିକ ଆମ୍ଭର ଗୃହବାସ ॥୩୮
ପୂର୍ବେ ନ ଦେଲୁ ବିପ୍ରହସ୍ତେ ।
ଏବେ ପାଇବୁ କେଉଁମତେ ॥୩୯
ହୋଇଲୁଁ ଦରିଦ୍ର ଜୀବନ ।
ଭୋ ନାଥ ଶୁଣ ମୋ ବଚନ ॥୪୦
ତୁମ୍ଭେ ଯେ ବୋଲୁଥାଅ ନିତ୍ୟେ ।
ମୁଁ ମିତ୍ର କୃଷ୍ଣର ସଙ୍ଗତେ ॥୪୧
ସେ ହରି ବ୍ରାହ୍ମଣବତ୍ସଳ ।
କରୁଣାସିନ୍ଧୁ ଆଦିମୂଳ ॥୪୨
ଅନାଥଜନ ନିସ୍ତାରଣ ।
ଶରଣ ପରମ କାରଣ ॥୪୩
ସାଧୁଜନଙ୍କର ସେ ଗତି ।
ନିଶ୍ଚିନ୍ତେ ଛନ୍ତି ଦ୍ୱାରାବତୀ ॥୪୪
ତାଙ୍କ ନିକଟେ ତୁମ୍ଭେ ଯାଅ ।
ଆମ୍ଭ ଦରିଦ୍ରପଣ କହ ॥୪୫
ମିତ୍ରକାମିନୀ ଦୁଃଖ ଶୁଣି ।
ଦୟାସାଗର ଚକ୍ରପାଣି ॥୪୬
ଅନେକ ଧନ ତୁମ୍ଭ ହସ୍ତେ ।
ଦେବେ ସେ ମିତ୍ରଭାବ ଅର୍ଥେ ॥୪୭
ତାହାଙ୍କ ପଦ୍ମପାଦେ ଚିତ୍ତ ।
ଯେ ପ୍ରାଣୀ ଚିନ୍ତେ ଅବିରତ ॥୪୮

Dr. Sudhanshu Sekhar Mishra

ତାହାଙ୍କୁ ଆତ୍ମାପଦ ଦ୍ୟନ୍ତି ।
ଏ ତଥ୍ୟ ବେଦେ କହିଛନ୍ତି ।।୪୯
ଯେ ଅବା ଭୋଗଅର୍ଥେ ସେବେ ।
ଧର୍ମାଦି ଚତୁବର୍ଗ ଲଭେ ।।୫୦
ଏମନ୍ତ ମହିମା ତାଙ୍କର ।
ଭୋ ନାଥ ବିଳମ୍ବ ନ କର ।।୫୧
ଏମନ୍ତ ଶୁଣି ତା ବଚନ ।
ବ୍ରାହ୍ମଣ ବିଚାରଇ ମନ ।।୫୨
ଏ ତ ପରମ ଭାଗ୍ୟ ମୋର ।
ଦେଖିବି ଶରଣସୋଦର ।।୫୩
ବଡ ପରମଲାଭ ମୋର ।
ଜନ୍ମ ମରଣ ଯିବ ଦୂର ।।୫୪
ବ୍ରାହ୍ମଣବତ୍ସଳ ଅନନ୍ତ ।
ସ୍ୱଭାବେ ମୁହିଁ ତାଙ୍କ ମିତ୍ର ।।୫୫
ପ୍ରାଣୀର ଭାବ ସେ ଜାଣନ୍ତି ।
ଯେଣୁ ସକଳ ହୃଦେ ଥାନ୍ତି ।।୫୬
କମଳା ସେବେ ଯା ଚରଣ ।
ମୁଁ ତାରେ ପଶିବି ଶରଣ ।।୫୭
ପତ୍ନୀବଚନେ ମୋ ଗମନ ।
ଗୋବିନ୍ଦ ଦେବେ ମୋତେ ଧନ ।।୫୮
ମିତ୍ର ଅଇରି ନାହିଁ ଯାର ।
ଭାବକୁ ବଶ ଆତ୍ମା ତାର ।।୫୯
ଏମନ୍ତ କରି ଅନୁମାନ ।
ପତ୍ନୀକି ବୋଲଇ ବଚନ ।।୬୦
ମିତ୍ରଭୁବନ ଯିବି ମୁହିଁ ।
ଭେଟିବି କିବା ଦ୍ରବ୍ୟ ଦେଇ ।।୬୧
ବନ୍ଧୁସୁହୃଦ ଗୃହଗତେ ।
ଯେ ପ୍ରାଣୀ ଗମେ ଶୂନ୍ୟହସ୍ତେ ।।୬୨
ଭାବ ନ ରହେ ବେନି ମଧ୍ୟେ ।
ନିନ୍ଦିତ ଶାସ୍ତ୍ର ଅନୁବାଦେ ।।୬୩
ଯେ ଅବା ଅଛି ମୋର ଘରେ ।
ଆଣ କଲ୍ୟାଣି ଉପହାରେ ।।୬୪
ଯିବଇଁ ମିତ୍ର ଦରଶନେ ।
ଏମନ୍ତେ ସ୍ୱାମୀର ବଚନେ ।।୬୫
ବିପ୍ରଘରଣୀ ଭିକ୍ଷାକରି ।
ପୃଥୁତଣ୍ଡୁଳ ମୁଷ୍ଟି ଚାରି ।।୬୬

ଚିରାବସନେ ବାନ୍ଧି ଧୀରେ ।
ତକ୍ଷଣେ ଦେଲା ସ୍ୱାମୀ କରେ ।।୬୭
ପୃଥୁକ ଘେନି ଉପାୟେନ ।
ଚଳିଲା ଦ୍ୱାରକାଭୁବନ ।।୬୮
ବିପ୍ର ଚିନ୍ତଇ ପଥେ ଯାନ୍ତେ ।
କୃଷ୍ଣଙ୍କୁ ଭେଟିବି କେମନ୍ତେ ।।୬୯
ଦାରିଦ୍ର୍ୟ ଦୁଃଖ ଏ ମୋହର ।
ଯେ ହରି ବ୍ରହ୍ମାଣ୍ଡଠାକୁର ।।୭୦
ଜାଣନ୍ତି ସକଳ ବେଦନା ।
ପ୍ରାଣୀଙ୍କ ହୃଦୟଭାବନା ।।୭୧
ସେ ପ୍ରଭୁ ସଂସାରଈଶ୍ୱର ।
ମୁହିଁ ଦରିଦ୍ର ଦୁରାଚାର ।।୭୨
ଯାଦବ ଭୋଜ ବୃଷ୍ଣି କରି ।
ବସି ଯେ ଥିବେ ଦେବହରି ।।୭୩
କେମନ୍ତେ ଦେବଇଁ ମୁଁ ଏହା ।
କିସ ବୋଲିବେ ଚଉବାହା ।।୭୪
ସଭାରେ ଯେତେ ଲୋକ ଥିବେ ।
ଦେଖିଣ କି ଅବା ବୋଲିବେ ।।୭୫
ଏମନ୍ତ ବିଚାରଇ ମନେ ।
ପଥେ ଗମଇ ସାବଧାନେ ।।୭୬
କଣ୍ଟକ ତୃଣ ଲତା ଗୁଳ୍ମ ।
ପାଷାଣ ପର୍ବତ ଦୁର୍ଗମ ।।୭୭
ଏମନ୍ତେ ଯାଇ କେତେ ଦୂରେ ।
ପ୍ରବେଶ ହେଲା ବନଘୋର ।।୭୮
ଘୋର ଗହନ ବନ ଜିଣି ।
ଗମଇ ଦିବସ ରଜନୀ ।।୭୯
ଅନେକ ପାଇ ପଥଶ୍ରମ ।
ମିଳିଲା ଦ୍ୱାରକାଭୁବନ ।।୮୦
ବୃଷ୍ଣି ଅନ୍ଧକ ଯଦୁପୁର ।
କି ଅବା ଦେବା ପଟାନ୍ତର ।।୮୧
ଯହିଁ ଗୋବିନ୍ଦ ଗୃହାଶ୍ରମୀ ।
ଷୋଳସହସ୍ର ନାରୀ ରମି ।।୮୨
ସେ ପୁରେ ବିପ୍ର ପରବେଶେ ।
ଜୀବ ଯେସନେ ବ୍ରହ୍ମେ ମିଶେ ।।୮୩
ମିଳିଲା ରୁକ୍ମିଣୀ ମନ୍ଦିର ।
ଯହିଁ ବିଜୟ ଚକ୍ରଧର ।।୮୪

ବିପ୍ର ମିଳିଲା ସେ ଭୁବନେ ।
ଭକତ ବନ୍ଧୁ ଦରଶନେ ।।୮୫
ଗୋବିନ୍ଦ ବିପ୍ର ମୁଖ ଦେଖି ।
ଉଠିଲେ ଆସନ ଉପେକ୍ଷି ।।୮୬
ପ୍ରିୟାର ସଙ୍ଗ ଛାଡ଼ି ହରି ।
ବିପ୍ରକୁ ଆଲିଙ୍ଗନ କରି ।।୮୭
ଭକତବନ୍ଧୁ ଦାମୋଦର ।
ହୃଦେ ଲଗାଇ ବିପ୍ରବର ।।୮୮
ଆନନ୍ଦେ ପୁଣ ପୁଣ କୋଳ ।
ନୟନୁ ବହେ ଅଶ୍ରୁଜଳ ।।୮୯
ପଲ୍ୟଙ୍କେ ମିତ୍ରକୁ ବସାଇ ।
ଚରଣ ଶୁଦ୍ଧଜଳେ ଧୋଇ ।।୯୦
ଶେଷ ଉଦକ ଶିରେ ଲଈଁ ।
ନମିଲେ ବ୍ରହ୍ମାଣ୍ଡ ଗୋସାଇଁ ।।୯୧
ଯା ପାଦଜଳ ଗଙ୍ଗାନଦୀ ।
ପବିତ୍ର ଜଗତେ ପ୍ରସିଦ୍ଧି ।।୯୨
ଯା ନାମ ସର୍ବପାପ ହରେ ।
ସେ ବିପ୍ରପାଦ ବହେ ଶିରେ ।।୯୩
ଶ୍ରୀକରେ ଘେନି ଚତୁଃସମ ।
ସୌରଭ ଗନ୍ଧେ ମନୋରମ ।।୯୪
ଆନନ୍ଦେ ବିପ୍ରଅଙ୍ଗେ ବୋଳି ।
ଭକତବନ୍ଧୁ ବନମାଳୀ ।।୯୫
ଅଗୁରୁ ଧୂପ ଥୋଇ ପାଶେ ।
ପାଦ ପୋଛନ୍ତି ପୀତବାସେ ।।୯୬
କର୍ପୂର ବାସେ ଦୀପପନ୍ତି ।
ଆନନ୍ଦେ ଜାଳି ଯଦୁପତି ।।୯୭
ଚରଣ ପୂଜି ଷଡ଼ଅର୍ଘ୍ୟେ ।
ତାମ୍ବୁଳ ଦେଲେ ଅନୁରାଗେ ।।୯୮
କୁଶଳ ପ୍ରଶ୍ନ ଭଗବାନ ।
ମିତ୍ରେ ପୁଚ୍ଛନ୍ତି ତୋଷମନ ।।୯୯
କୁତ୍ସିତ ବସ୍ତ୍ର ଦ୍ୱିଜବର ।
ଦୁଃଖେ ମଳିନ କଳେବର ।।୧୦୦
କ୍ଷୁଧା ଅନଳେ କ୍ଷମେ କାୟେ ।
ଶିରା ଦିଶଇ ସର୍ବଦେହେ ।।୧୦୧
ଦିବ୍ୟଚାମର କରେ ଘେନି ।
ବିଞ୍ଚନ୍ତି ଭୀଷ୍ମକନନ୍ଦିନୀ ।।୧୦୨

Dr. Sudhanshu Sekhar Mishra

କୃଷ୍ଣର ଅନ୍ତଃପୁର ନାରୀ ।
ବିପ୍ରଙ୍କୁ ଦେଖନ୍ତି ଉଭାରି ॥୧୦୩
କୃଷ୍ଣର ସେବା ଅନୁମାନେ ।
ଦେଖନ୍ତି ବିସ୍ମିତ ବଦନେ ॥୧୦୪
ଏକ ଆରେକ ମୁଖ ଚାହିଁ ।
ବୋଲନ୍ତି ଗାଲେ ହସ୍ତ ଦେଇ॥୧୦୫
ଦେଖ ଏହାର ତପଫଳ ।
ଯାର ସେବକ ନନ୍ଦବାଳ ॥୧୦୬
ଏମନ୍ତ ନାହିଁ ନା ଦେଖିଲା ।
ପୂର୍ବେ ଏ କେତେ ପୁଣ୍ୟ କଲା ॥୧୦୭
ରୂପ ଦିଶଇ ବିପରୀତ ।
କେଶ ଖାଙ୍କର ଅବଧୂତ ॥୧୦୮
ଦେଖ ଏ ଅଧମ ନିର୍ଦ୍ଧନ ।
ଇହ ସଂସାରେ କ୍ରିୟାହୀନ ॥୧୦୯
ଏହାର ଦେହେ ନନ୍ଦବଳା ।
ଶ୍ରୀଭୁଜେ ଆଲିଙ୍ଗନ କଲା ॥୧୧୦
ଲକ୍ଷ୍ମୀର ସଙ୍ଗ ସ୍ନେହ ତେଜି ।
ଆନନ୍ଦେ ବେନିଚକ୍ଷୁ ବୁଜି ॥୧୧୧
ଆନନ୍ଦେ ତୋଳି ବେନି ଭୁଜେ ।
ଯେସନେ ବଳଭଦ୍ରେ ଭଜେ ॥୧୧୨
ଏମନ୍ତ ବୋଲୁଁ ପୁରଜନେ ।
ଗୋବିନ୍ଦ ଗଭୀର ବଚନେ ॥୧୧୩
ଗୁରୁଭୁବନେ ବାଲ୍ୟକାଳେ ।
ଥିଲେ ଯେ ବିଦ୍ୟାସଙ୍ଗ ମେଳେ ॥୧୧୪
ସେ କଥା ଗୋବିନ୍ଦ ସୁମରି ।
କହନ୍ତି ମିତ୍ର ହସ୍ତ ଧରି ॥୧୧୫
ଲଳିତ ଗତି ଦାମୋଦର ।
ବୋଲନ୍ତି ଶୁଣ ବିପ୍ରବର ॥୧୧୬
କାଷ୍ଠ ଆଣିବା ଦିନ ଯେତେ ।
ଦୁଃଖ ପାଇଣ ଅଛୁଁ ମିତେ ॥୧୧୭
ସେ କଥା ଅଛିଟିକି ମନ ।
ହସି ବୋଲନ୍ତି ଭଗବାନ ॥୧୧୮
ଗୁରୁଦକ୍ଷିଣା ଆମ୍ଭେ ଦେଇ ।
ପୁରେ ଅଇଲୁ ବେନିଭାଇ ॥୧୧୯
ତୁମ୍ଭେ ଯେ ବିଦ୍ୟା ସମାପତେ ।
ନିଜଭୁବନେ ଉପଗତେ ॥୧୨୦

ଉତ୍ତମକୁଳେ କନ୍ୟା ବରି ।
ବିଭା ହୋଇଲ ନିକି ନାରୀ ॥୧୨୧
ତାହା ମୁଁ ନ ମଣଇ ସତ ।
ଦେଖି ତୁମ୍ଭର ଦୁଃଖ ଚିତ୍ତ ॥୧୨୨
ଗୃହକରେଣ କାମଭୋଗେ ।
ତୁମ୍ଭର ମନ ବଇରାଗେ ॥୧୨୩
ନିରେଖି ପ୍ରାୟ ମୁଁ ମଣଇଁ ।
ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥୧୨୪
ଥୋକାଏ ଲୋକ ଏ ସଂସାରେ ।
କର୍ମ ସାଧନ୍ତି ନିଜଘରେ ॥୧୨୫
କର୍ମେ ନୁହନ୍ତି ହତଚେତା ।
ସଂସାର ଗୃହେ ମୁହିଁ ଯଥା ॥୧୨୬
ଭୋ ମିତ୍ର ଗୁରୁଗୃହେ ଥାଇ ।
ବିଦ୍ୟା ପଢ଼ିଲୁଁ ବେନିଭାଇ ॥୧୨୭
ତୁମ୍ଭର ସଙ୍ଗେ ଶିଶୁମେଳେ ।
ଯେ ଅବା କଲୁଁ ବାଳକାଳେ ॥୧୨୮
ଗୁରୁ କହନ୍ତି ଜ୍ଞାନସାର ।
ଯେଣେ ନ ଲାଗେ ଏ ସଂସାର ॥୧୨୯
ଯେ ଗୁରୁ ପୁଣ୍ୟକର୍ମଫଳେ ।
ଜନ୍ମ ଲଭିଲୁଁ ମହୀତଳେ ॥୧୩୦
ସେ ଆଦିଗୁରୁ ଜନ୍ମକର୍ତ୍ତା ।
ତହୁଁ ଅଧିକ ବିଦ୍ୟାଦାତା ॥୧୩୧
ତା ତହୁଁ ଶ୍ରେଷ୍ଠ ଜ୍ଞାନଗୁରୁ ।
ମହିମା କେବା ଅନ୍ତ କରୁ ॥୧୩୨
ଆଶ୍ରମୀ ଜନ କାମଦାତା ।
ମୁଁ ଯେହ୍ନେ ଜ୍ଞାନଗୁରୁ କର୍ତ୍ତା ॥୧୩୩
ଯେ ପ୍ରାଣୀ ବର୍ଣ୍ଣାଶ୍ରମ ମଧ୍ୟେ ।
ପଣ୍ଡିତ ଶାସ୍ତ୍ର ଅନୁବାଦେ ॥୧୩୪
ମୋର ବଚନ ଉପଦେଶେ ।
ସଂସାରୁ ତରନ୍ତି ବିଶ୍ୱାସେ ॥୧୩୫
ଯଜ୍ଞ ସମାଧି ତପ ଶାନ୍ତି ।
ଏ ମାର୍ଗେ ଯେ ମୋତେ ସେବନ୍ତି॥୧୩୬
ତାହାଙ୍କୁ ଯେତେ ନାହିଁ ତୋଷ ।
ଗୁରୁଭକତେ ମୋ ବିଶ୍ୱାସ ॥୧୩୭
ହେ ବିପ୍ର ଶୁଣ ମିତ୍ର ମୋର ।
ସ୍ମରଣ ଅଛିକି ତୁମ୍ଭର ॥୧୩୮

ଆମ୍ଭେ ଯେ ଗୁରୁଗୃହେ ଥାଇ ।
ଗୁରୁକାମିନୀ ଆଜ୍ଞା ପାଇ ॥୧୩୯
ଗୁରୁଙ୍କ ଅନ୍ନସିଦ୍ଧ ଅର୍ଥେ ।
ଅରଣ୍ୟେ ପଶିଲୁ ସମସ୍ତେ ॥୧୪୦
ଶୁଖିଲା କାଷ୍ଠ ଆଣିବାରେ ।
ମିଳିଲୁ ଘୋର ବନସ୍ତରେ ॥୧୪୧
ଏମନ୍ତେ ଅପରତୁ କାଳେ ।
ଗଗନେ ମିଳି ମେଘମାଳେ ॥୧୪୨
ଦିବସେ କଲେ ଅନ୍ଧକାର ।
ବାତ ବରଷା ମହାଘୋର ॥୧୪୩
ନିଷ୍ଠୁର ବଜ୍ରଘାତ ତ୍ରାସ ।
ବନେ ନ ଦିଶେ ଦଶଦିଶ ॥୧୪୪
ତକ୍ଷଣେ ରବି ଅସ୍ତ ଗଲା ।
ଘୋର ତିମିର ପ୍ରକାଶିଲା ॥୧୪୫
ଶୁଖିଲା କାଷ୍ଠ ଘେନି କରେ ।
ଆମ୍ଭେ ବୁଲିଲୁ ବନଘୋରେ ॥୧୪୬
ଜଳେ ପୂରିଲା ବନଭୂଇଁ ।
ସ୍ଥଳ ଗଭୀର ନ ଦିଶଇ ॥୧୪୭
ଜଳ ପବନ ଦେହେ ବାଜି ।
ଆମ୍ଭେ ବୁଲିଲୁ ସ୍ଥାନଖୋଜି ॥୧୪୮
ଏକ ଆରକେ ହସ୍ତ ଧରି ।
ଦିଗ ନ ପାରୁ ସ୍ଥିର କରି ॥୧୪୯
କାତରେ ଉଠି ବୃକ୍ଷଡାଳେ ।
ରାତ୍ରେ ବଞ୍ଚିଲୁ ସଙ୍ଗ ମେଳେ ॥୧୫୦
ଏମନ୍ତେ ରଜନୀ ପାହିଲା ।
ରବି କିରଣ ପ୍ରକାଶିଲା ॥୧୫୧
ଗୁରୁକାମିନୀ ଗୁରୁ ତୁଲେ ।
ଆମ୍ଭଙ୍କୁ ଖୋଜି ପ୍ରାତଃକାଳେ ॥୧୫୨
ମିଳିଲେ ବନଭୂମି ଲାଗେ ।
ସେ ପତିପତ୍ନୀ ଏକସଙ୍ଗେ ॥୧୫୩
ଡାକନ୍ତି ମୁଖେ ନାମ ଧରି ।
ଖୋଜନ୍ତି ଘୋରବନେ ହେରି॥୧୫୪
ଶବଦ ଶୁଣି ଘୋର ବନେ ।
ଆମ୍ଭେ ମିଳିଲୁ ତୋଷମନେ ॥୧୫୫
ଆତୁରେ ଶୁଖିଛି ବଦନ ।
ଆମ୍ଭଙ୍କୁ ଦେଖି ତୋଷମନ ॥୧୫୬

Dr. Sudhanshu Sekhar Mishra

ଆମ୍ଭର ଦୁଃଖ ମୁଖ ଚାହିଁ ।
ଗୁରୁ ବୋଲନ୍ତି ତୋଷ ହୋଇ ॥୧୫୭
ହେ ଶିଷ୍ୟ ପୁତ୍ର ମୋର ଅର୍ଥେ ।
ଅଇଲ ଗହନ ବନସ୍ତେ ॥୧୫୮
ଦୁର୍ଲ୍ଲଭ ପ୍ରାଣ ଏ ଜଗତେ ।
ଏହା ନ ଗଣି ମୋର ଅର୍ଥେ ॥୧୫୯
ଦୁଃଖେ ଭ୍ରମିଲ ଘୋରବନ ।
ମୁଁ ଆଜ ହୋଇଲି ପ୍ରସନ୍ନ ॥୧୬୦
ଯେତେ ତୁମ୍ଭର ମନୋରଥ ।
ମୋର କଲ୍ୟାଣେ ହେଉ ସାର୍ଥ ॥୧୬୧
ତୁମ୍ଭର ବିଦ୍ୟା ତିନିଲୋକେ ।
ଅକ୍ଷୟ ହୋଇଥାଉ ସୁଖେ ॥୧୬୨
ଏମନ୍ତ କଲେ ସେ କଲ୍ୟାଣ ।
କୃଷ୍ଣ ବୋଲନ୍ତି ମିତ୍ର ଶୁଣ ॥୧୬୩
ଏମନ୍ତେ ନାନା କଉତୁକେ ।
ବଞ୍ଚିଲୁ ଗୁରୁଗୃହେ ସୁଖେ ॥୧୬୪
ଗୁରୁପ୍ରସନ୍ନେ ବିଦ୍ୟା ଜାଣି ।
ବ୍ରାହ୍ମଣ ବୋଲେ ତାହା ଶୁଣି ॥୧୬୫
ତୁ ନାଥ ଦେବଙ୍କର ଗୁରୁ ।
ବିପାକ ଫଳକୁ ବିଚାରୁ ॥୧୬୬
ଗୁରୁଭବନେ ତୋର ମେଳେ ।
ମୁଁ ଯେ ବଞ୍ଚିଲି ବାଳକାଳେ ॥୧୬୭
ତୋ ସଙ୍ଗ ପାଇ ପୂର୍ଣ୍ଣକାମ ।
କାହୁଁ ଲାଗିବ ଭବଭ୍ରମ ॥୧୬୮
ଦେବଙ୍କ ସ୍ଥାନ ତୋ ଶରୀର ।
ତୁ ଆଦି ଧର୍ମ ନିରାକାର ॥୧୬୯
ସର୍ବସମ୍ଭବ ତୋ ଶରୀରେ ।
ତୋ ସଙ୍ଗେ ଗୁରୁଙ୍କ ନବରେ ॥୧୭୦
ମୁଁ ଥିଲି ବୋଲିବ କେ ଜନ ।
ଏ ବଡ଼ ଶାସ୍ତ୍ର ବିଡ଼ମ୍ବନ ॥୧୭୧
ପୂର୍ବ ବାସନା ପୁଣ୍ୟଫଳେ ।
ଭେଟ ହୋଇଲା ଏହିଠାରେ ॥୧୭୨
କୃଷ୍ଣପ୍ରସନ୍ନେ ଭାଗବତ ।
କହଇ ବିପ୍ର ଜଗନ୍ନାଥ ॥୧୭୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଶ୍ରୀଦାମଚରିତେ
ଷଟ୍‌ଅଶୀତିତମ ଅଧ୍ୟାୟଃ ॥

---

## ସପ୍ତଅଶୀତିତମ ଅଧ୍ୟାୟ

ଏମନ୍ତେ ହରିପାଦ ଧ୍ୟାୟି ।
ପରୀକ୍ଷ ଆଗେ ଶୁକ କହି ॥୧

ଶୁକ ଉବାଚ

ଗୋବିନ୍ଦ ମିତ୍ର ଅଙ୍ଗସଙ୍ଗେ ।
ବିବିଧ କଥା ଭାବରଙ୍ଗେ ॥୨
ଯେ ହରି ସର୍ବଭୂତଗାମୀ ।
ପରମବ୍ରହ୍ମ ଅନ୍ତର୍ଯ୍ୟାମୀ ॥୩
ମିତ୍ରବଦନ ଚାହିଁ ହସି ।
ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥୪
ବିପ୍ରବତ୍ସଳ ଚକ୍ରପାଣି ।
ଯାର କଟାକ୍ଷେ କମଳିନୀ ॥୫
ମିତ୍ରର ସର୍ବଅଙ୍ଗ ଚାହିଁ ।
ହସି ବୋଲନ୍ତି ଭାବଗ୍ରାହୀ ॥୬

ଭଗବାନ ଉବାଚ

ଭୋ ମିତ୍ର ମୋର ପ୍ରାଣସଖା ।
କିସ ଆଣିଛ ମୋତେ ଦେଖା ॥୭
ମୋର ଭକତପ୍ରାଣୀ ଯେବେ ।
ମୋତେ ପୂଜଇ ପ୍ରେମଭାବେ ॥୮
ସେ ଅଣୁମାତ୍ରେ ଯେବେ ଦେଇ ।
ପର୍ବତ ପ୍ରାୟ ମୁଁ ମଣଇ ॥୯
ଯେ ମୋର ଭାବ ନ ଜାଣନ୍ତି ।
ପର୍ବତ ପ୍ରାୟ ଧନ ଦ୍ୟନ୍ତି ॥୧୦
ସେ ମୋତେ ଦିଶେ ତୁଚ୍ଛପ୍ରାୟ ।
ବୋଲନ୍ତି ପ୍ରଭୁ ଦେବରାୟ ॥୧୧
ପତ୍ର କୁସୁମ ଫଳ ପାଣି ।
ଯେ ମୋତେ ଭାବେ ଦ୍ୟନ୍ତି ଆଣି ॥୧୨
ତାର ଭକତି ଭାବେ ଲଇଁ ।
ହସ୍ତ ପ୍ରସାରି ମୁଁ ଭଞ୍ଜଇ ॥୧୩
ଏମନ୍ତ କହି ରମାକାନ୍ତ ।
ଭାବେ ପାତିଲେ ବେନିହସ୍ତ ॥୧୪
ଦେଖି ଚକିତ ବିପ୍ରବର ।
ଅନ୍ତରେ କରଇ ବିଚାର ॥୧୫
ମୋର ଅର୍ଜିତ କର୍ମଫଳ ।
ଆଣିଛି ପୃଥକ ତଣ୍ଡୁଳ ॥୧୬
କେମନ୍ତେ ଦେବି କୃଷ୍ଣକରେ ।
ହସିବେ ନାରୀ ଅନ୍ତଃପୁରେ ॥୧୭
ଏମନ୍ତ ଭାଳି ଲଜ୍ଜା ଦୁଃଖେ ।
ବିପ୍ର ରହିଲା ଅଧୋମୁଖେ ॥୧୮
ତା ଦେଖି କମଳାର ବର ।
ହୃଦରେ କରନ୍ତି ବିଚାରେ ॥୧୯
ଏ ବିପ୍ର ପତ୍ନୀର ବଚନେ ।
ମିଳିଲା ମୋହର ଭୁବନେ ॥୨୦
ଦରିଦ୍ରପଣେ ଦୁଃଖ ପାଇ ।
ଅର୍ଜିଲା କର୍ମ ନ ଜାଣଇ ॥୨୧
ଏହାର ପୂର୍ବଜନ୍ମ ଯେତେ ।
ନିଷ୍କାମେ ଭଜିଅଛି ମୋତେ ॥୨୨
ସକାମେ ମୋତେ ନ ଭଜଇ ।
ଏବେ ପାଇବ ଭୋଗ କାହିଁ ॥୨୩
ପତ୍ନୀବଚନେ ଭୋଗ ଚିନ୍ତେ ।
ଯେବେ ମିଳିଲା ମୋ ଅଗ୍ରତେ ॥୨୪
ପତିବ୍ରତାର ସୁଖ ଅର୍ଥେ ।
ମୋହର ମିତ୍ରପଣ ହିତେ ॥୨୫

Dr. Sudhanshu Sekhar Mishra

ଦେବି ସମ୍ପଦ ସର୍ବଭାବ ।
ବ୍ରହ୍ମାଣ୍ଡ ମଧ୍ୟେ ଯେ ଦୁର୍ଲ୍ଲଭ ॥୨୬
ଏତେ ବିଚାରି ନରହରି ।
ବିପ୍ରର ଛିନ୍ନବସ୍ତ୍ର ଧରି ॥୨୭
କି ବସ୍ତୁ ବୋଲି ଆଦିମୂଳ ।
ଘେନିଲେ ପୃଥକତଣ୍ଡୁଳ ॥୨୮
ଛିଣ୍ଡା କବଟା ମଧ୍ୟୁଁ ଫେଇ ।
କୃଷ୍ଣ ବୋଲନ୍ତି କରେ ଲଇଁ ॥୨୯
ଭୋ ମିତ୍ର ତୁମ୍ଭ ଉପହାର ।
ଏ ମୋର ପ୍ରାଣ-ପ୍ରୀତିକର ॥୩୦
ତୁମ୍ଭର ପୃଥୁକତଣ୍ଡୁଳ ।
ଅଶେଷ ଭୁବନମଙ୍ଗଳ ॥୩୧
ମୋହର ଜୀବନ ସହିତେ ।
ତୃପତ କଲ ଆଜ ମୋତେ ॥୩୨
ଏମନ୍ତ କହି ନରହରି ।
ବେନି ଲୋଚନୁ ବହେ ବାରି ॥୩୩
ଗୋବିନ୍ଦ ମିତ୍ର ପ୍ରୀତିଅର୍ଥେ ।
ପୃଥୁତଣ୍ଡୁଳ ବେନି ହସ୍ତେ ॥୩୪
କମଳା ଚାହେଁ ସ୍ଥିରଦୃଷ୍ଟି ।
ତୁଣ୍ଡେ ଭରିଲେ ଏକ ମୁଷ୍ଟି ॥୩୫
ସନ୍ତୋଷେ ଭୁଞ୍ଜି ଦାମୋଦର ।
ଦ୍ୱିତୀୟ ମୁଷ୍ଟି ଘେନି କର ॥୩୬
ତୁଣ୍ଡେ ଭରନ୍ତେ ଗୋପୀନାଥ ।
ଲକ୍ଷ୍ମୀ ଧଇଲେ ବେଗେ ହସ୍ତ ॥୩୭
ବୋଲନ୍ତି ଜଗତଜନନୀ ।
ପୃଥୁକ ମୁଷ୍ଟି କରେ ଘେନି ॥୩୮
ଭୋ ବିଶ୍ୱନାଥ ଭଗବାନ ।
ଏ ମୁଷ୍ଟି ନ କର ଭୋଜନ ॥୩୯
ତୋର ସନ୍ତୋଷେ ନାରାୟଣ ।
ଉଭୟ ଲୋକର କାରଣ ॥୪୦
ମୁଷ୍ଟିକେ ଦେଲୁ ସର୍ବସୁଖ ।
କେବଳ ମାତ୍ର ମୋତେ ରଖ ॥୪୧
ମୁଁ ତୋର ଚରଣକମଳେ ।
ଯେମନ୍ତେ ସେବଇଁ ନିଶ୍ଚଳେ ॥୪୨
ଏମନ୍ତ କହି ଅନୁବାଦେ ।
ପଶିଲା ଗୋବିନ୍ଦର ହୃଦେ ॥୪୩

ଏମନ୍ତେ ରବି ଅସ୍ତ ଗଲା ।
ଶୁଣ ହୋ ଅଭିମନ୍ୟୁବାଳା ॥୪୪
ଗୋବିନ୍ଦ ତୁଳେ ବିପ୍ର ତୋଷେ ।
ଭୋଜନ କଲେ ଷଡ୍‌ରସେ ॥୪୫
ରତ୍ନପଲ୍ୟଙ୍କେ କୃଷ୍ଣମେଳେ ।
ରଜନୀ ବଞ୍ଚେ ସୁଖଭୋଳେ ॥୪୬
ଅଙ୍ଗନିବେଶି କୃଷ୍ଣଦେହେ ।
ମଣିଲା ସ୍ୱର୍ଗଭୋଗ ପ୍ରାୟେ ॥୪୭
ଏମନ୍ତେ ପାହିଲା ରଜନୀ ।
ଗୋବିନ୍ଦ ଝୀନବସ୍ତ୍ର ଘେନି ॥୪୮
ବିପ୍ରେ କରାଇ ଅବଧାନ ।
ପାଳଟି ପିନ୍ଧାଇ ବସନ ॥୪୯
ଆନନ୍ଦେ ଆଲିଙ୍ଗନ କରି ।
ଭାବେ ବ୍ରାହ୍ମଣ ପାଦ ଧରି ॥୫୦
ଅନୁଗମନ କିଛି ଦୂରେ ।
ବିପ୍ର ପେଷିଲେ ନିଜପୁରେ ॥୫୧
କୃଷ୍ଣ ବାହୁଡେ ନିଜପୁର ।
ଏବେ ହୋ ଶୁଣ ନୃପବର ॥୫୨
ବିଶ୍ୱକର୍ମାକୁ କୃଷ୍ଣ ରାଇ ।
ଧୀରେ କହନ୍ତି ମୁଖ ଚାହିଁ ॥୫୩
ବେଗେ ତୁ ଯାଅ ବିପ୍ରଘର ।
ଉତ୍ତମ କରିଦେବୁ ପୁର ॥୫୪
ଦେବଦାନବେ ଅଗୋଚର ।
ଏମନ୍ତେ ହୋଇବ ସୁନ୍ଦର ॥୫୫
ନାନାରତନ ଧନ ଜନ ।
ବେଗେ ତୁ ଭିଆଅ ଏମାନ ॥୫୬
ଆଜ୍ଞା ପ୍ରମାଣେ ଚଳିଗଲା ।
ଦିବ୍ୟଭୁବନ ଭିଆଇଲା ॥୫୭
ରଥ ତୁରଗ ପରିବାରୀ ।
ତୋଟା ପୋଖରୀ ମନୋହରୀ ॥୫୮
ଏମନ୍ତ କରି ସେ ନିର୍ମାଣ ।
ଶୂନ୍ୟେ ଗମିଲା ତତ୍‌କ୍ଷଣ ॥୫୯
ଏବେ ହୋ ଶୁଣ କୁରୁବୀର ।
ବିପ୍ର ଚଳଇ ନିଜ ଘର ॥୬୦
ବିପ୍ର ଗମନ୍ତେ ନିଜସ୍ଥାନେ ।
ଭାଳଇ କୃଷ୍ଣଗୁଣ ମନେ ॥୬୧

କିଛି ନ ଦେଲେ ନାରାୟଣ ।
ଲାଜେ ନ ମାଗିଲା ବ୍ରାହ୍ମଣ ॥୬୨
ପଥେ ଗମଇ ଧୀରପାଦେ ।
କୃଷ୍ଣ ଦରଶନ ଆନନ୍ଦେ ॥୬୩
ଲଜ୍ଜା ଜଡିତ ଅଧୋମୁଖେ ।
ପଥେ ବିଚାରେ ମନଦୁଃଖେ ॥୬୪
ଏ ମୋ ଅର୍ଜିତ କର୍ମଗୁଣ ।
ବିପ୍ରବତ୍ସଳ ନାରାୟଣ ॥୬୫
ଅତି ଦରିଦ୍ର ମୁଁ ପାମର ।
ସେ କୃଷ୍ଣ କରୁଣା ସାଗର ॥୬୬
କମଳା ସେବେ ଯାର ପାଦେ ।
ସେ ହୃଦେ ପରମଆନନ୍ଦେ ॥୬୭
ଲଗାଇ ମୋତେ ତୋଷମନ ।
ନିବିଡେ କଲେ ଆଲିଙ୍ଗନ ॥୬୮
ଅତି ଦରିଦ୍ର ପାପୀ ମୁହିଁ ।
କୋଟି ବ୍ରହ୍ମାଣ୍ଡନାଥ କାହିଁ ॥୬୯
ବ୍ରାହ୍ମଣ ବୋଲି ଦୟାକଲେ ।
ଶ୍ରୀଭୁଜେ ଆଲିଙ୍ଗନ ଦେଲେ ॥୭୦
ଲକ୍ଷ୍ମୀ-ପଲ୍ୟଙ୍କେ ମୋତେ ନେଇ ।
ଭାଇର ପ୍ରାୟ ସ୍ଥାନ ଦେଇ ॥୭୧
ଚାମର ଧରି ନିଜ କରେ ।
ଲକ୍ଷ୍ମୀ ବିଞ୍ଚିଲେ ମୋତେ ଧୀରେ ॥୭୨
ମିତ୍ର ସୁହୃଦ ବନ୍ଧୁବର୍ଗେ ।
ମୋତେ ପୂଜିଲେ ଷଡଅର୍ଘେ ॥୭୩
ଯେ ହରି ସଂସାର ଦୁର୍ଲ୍ଲଭ ।
ସେ ମୋତେ ହୋଇଲେ ସୁଲଭ ॥୭୪
ବିପ୍ର ଦେବତା ସେ ଯୁକତେ ।
ଏଣୁ ପୂଜିଲେ କୃଷ୍ଣ ମୋତେ ॥୭୫
ଭୂମି ଗଗନ ରସାତଳ ।
ସ୍ୱର୍ଗାପବର୍ଗ ବେନି ଫଳ ॥୭୬
ସର୍ବସମ୍ପଦର କାରଣ ।
ଯାହାର ଅଭୟଚରଣ ॥୭୭
ସେ ମୋର ମିତ୍ର ନରହରି ।
ହୃଦରେ ଏମନ୍ତ ବିଚାରି ॥୭୮
ଦୁଃଖୀ ଦରିଦ୍ର ଏ ବ୍ରାହ୍ମଣ ।
ଏହାକୁ ଯେବେ ଦେବା ଧନ ॥୭୯

Dr. Sudhanshu Sekhar Mishra

ଧନ ପ୍ରାପତେ ମତ୍ତ ହୋଇ ।
ମୋତେ ସ୍ମରିବ ଆଉ କାହିଁ ।।୮୦
ତାହାର ମୋତେ ବଡ ଦୟା ।
ମୁଁ ପାପୀ ନ ଜାଣଇ ଏହା ।।୮୧
ଧନ ସମ୍ପଦ ଯେତେ ଜନ ।
ମତ୍ତଗରବ ଅନୁକ୍ଷଣ ।।୮୨
ଧନ ସମ୍ପଦେ ବଢେ ଆଶ ।
ସେ କାହିଁ କୃଷ୍ଣରେ ବିଶ୍ୱାସ ।।୮୩
ଏଣୁ ନ ଦେଲେ ମୋତେ ଧନ ।
ଧନ୍ୟ ସେ ମୋହର ଜୀବନ ।।୮୪
ମନରେ ଏମନ୍ତ ବିଚାରି ।
ବିପ୍ର ମିଳିଲା ନିଜପୁରୀ ।।୮୫
ଦେଖଇ ଆପଣା ମନ୍ଦିର ।
କି ଅବା ଦେବା ପଟାନ୍ତର ।।୮୬
ରବି ଅନଳ ଚନ୍ଦ୍ରକାନ୍ତି ।
ବୈଦୁର୍ଯ୍ୟମାନ ଝଟକନ୍ତି ।।୮୭
ନାନା ବିଚିତ୍ର ଉପବନ ।
ହଂସ ମୟୁର ପିକ ସ୍ୱନ ।।୮୮
ବିବିଧ ଜଳାଶୟ ରାଶି ।
ପୁଷ୍ପସୁଗନ୍ଧ ବାୟୁ ମିଶି ।।୮୯
କହ୍ଲାର ଉତ୍ପଳ କୁମୁଦ ।
ପବନ କରଇ ଆମୋଦ ।।୯୦
ନାରୀ ପୁରୁଷ ନାନାରଙ୍ଗେ ।
ବିବିଧ ଅଳଙ୍କାର ଅଙ୍ଗେ ।।୯୧
ଏମନ୍ତ ଦେଖି ବିପ୍ରବର ।
ହୃଦରେ କରଇ ବିଚାର ।।୯୨
ଏ କି କାହାର ଦିବ୍ୟପୁର ।
ଅବନୀ ମଧ୍ୟେ ଅଗୋଚର ।।୯୩
ମୋର କୁଟୁମ୍ବ ଏହି ସ୍ଥାନେ ।
ଛାଡି ଗଲି ଯେ ବିଦ୍ୟମାନେ ।।୯୪
ଦରିଦ୍ରପତ୍ନୀ ଗଲା କାହିଁ ।
କି ଅବା ପଥ ଚୁଡିଲଇଁ ।।୯୫
ଭ୍ରମେ ମିଳିଲି ଅନ୍ୟ ସ୍ଥାନେ ।
ଏମନ୍ତ ବିଚାରଇ ମନେ ।।୯୬
ଭୟେ ବୁଜଇ ଚକ୍ଷୁ ବେନି ।
ପୁଣି ଭାଳଇ ମନେ ଗୁଣି ।।୯୭

ଚିହ୍ନିଲା ଲୋକ ନାହିଁ ଜଣେ ।
ପୁଛିବି କେବଣ କାରଣେ ।।୯୮
ମୁହିଁ ଯେ ଗଲି ସାତଦିନ ।
କେ କଲା ଏମନ୍ତ ଭୁବନ ।।୯୯
ମୋର ବ୍ରାହ୍ମଣୀ କେଣେ ଗଲା ।
ଏଡେ ଅନୀତି କେହୁ କଲା ।।୧୦୦
ଏତେ ବିଚାରି ଦ୍ୱିଜବର ।
ଥକିତେ ଚାହିଁଇ ନବର ।।୧୦୧
ଏମନ୍ତେ ଶୁଣି ନୃପବର ।
ବ୍ରାହ୍ମଣୀ ନବରୁ ବାହାର ।।୧୦୨
ଅମରପ୍ରଭା ନରନାରୀ ।
ବିବିଧ ପାତ୍ର କରେ ଧରି ।।୧୦୩
ସୁସ୍ୱର ଦିବ୍ୟଗୀତ ନାଦ ।
ଅଦ୍‌ଭୁତ ଅଖିଳ ସମ୍ପଦ ।।୧୦୪
ଆଗେ ଶତେକ ପରିବାରୀ ।
କରେ ଚାମର ଛନ୍ତି ଧରି ।।୧୦୫
ମଙ୍ଗଳଗୀତ ନାଦ ବାଣୀ ।
ମଧ୍ୟେ ବିଜୟ ତା ଘରଣୀ ।।୧୦୬
ରୂପେ କି ଦେବା ପଟାନ୍ତର ।
ଅପୂର୍ବ ବେଶ ମନୋହର ।।୧୦୭
କରନ୍ତି ଜୟ ଜୟ ଧ୍ୱନି ।
ଏମନ୍ତେ ବିପ୍ରର କାମିନୀ ।।୧୦୮
ପତି ଆଗମନେ ଆନନ୍ଦ ।
ସଙ୍ଗେ ସୁନ୍ଦରୀ ସଖୀବୃନ୍ଦ ।।୧୦୯
ଭୁବନୁ ହୋଇଲା ବାହାର ।
ରୂପେ ମୋହଇ ସୁର ନର ।।୧୧୦
କମଳା ଯେହ୍ନେ ହରିପୁରେ ।
ବ୍ରାହ୍ମଣୀ ଶୋହେ ସେ ପ୍ରକାରେ ।।୧୧୧
ବିପ୍ରକାମିନୀ ପତିବ୍ରତା ।
ଜଗତେ ଯାର ପୁଣ୍ୟକଥା ।।୧୧୨
ନୟନେ ଅଶ୍ରୁଜଳ ପୂରି ।
ସ୍ୱାମୀଚରଣ କରେ ଧରି ।।୧୧୩
ଭାବେ ନମଇ ପୁଣ ପୁଣ ।
ମନରେ କଲା ଆଲିଙ୍ଗନ ।।୧୧୪
ଅନେକମତେ ପୂଜାକରି ।
ମନେ ଚିନ୍ତଇ ନରହରି ।।୧୧୫

ବ୍ରାହ୍ମଣ ନିଜ ନାରୀ ଚାହିଁ ।
ଚକିତମନେ ବିଚାରଇ ।।୧୧୬
ସୁନ୍ଦର ନିବିଡ ସୁଶ୍ରୋଣୀ ।
କିଏ ଗଗନ ବିଳାସିନୀ ।।୧୧୭
ରମ୍ଭା ମେନକା ଅପସରୀ ।
ସେମାନେ ନୁହନ୍ତି ନା ସରି ।।୧୧୮
ଅଭୂତ ରୂପକାନ୍ତି ସାଜେ ।
ସୁନ୍ଦରୀ ଦାସିଗଣ ମାଝେ ।।୧୧୯
ଏମନ୍ତେ ସ୍ୱାମୀଙ୍କର ଧରି ।
ଗୃହେ ପଶିଲା ବିପ୍ରନାରୀ ।।୧୨୦
ସ୍ତମ୍ଭେ ଦିଶନ୍ତି ରତ୍ନରାଶି ।
ଇନ୍ଦ୍ରଭୁବନ ପ୍ରାୟ ଦିଶି ।।୧୨୧
ଗୋକ୍ଷୀର ଫେନ ପ୍ରାୟ କାନ୍ତି ।
ଶଯ୍ୟା ପଲଙ୍କେ ବିରାଜନ୍ତି ।।୧୨୨
ରତ୍ନପଲଙ୍କେ ହେମଦଣ୍ଡେ ।
ନିର୍ମିତ ହସ୍ତୀଦନ୍ତ ମଣ୍ଡେ ।।୧୨୩
ଶ୍ୱେତଚାମର ରତ୍ନପନ୍ତି ।
ମୁକ୍ତାମାଳ ବିରାଜନ୍ତି ।।୧୨୪
ନାନା ଆସନ ରତ୍ନମୟ ।
ଯାହା ଭିଆଣ ଦେବରାୟ ।।୧୨୫
ବିବିଧ ଚନ୍ଦ୍ରାତାପ ଲମ୍ବେ ।
ରତ୍ନ ଜଡ଼ିତ ଶୁଭ୍ରସ୍ତମ୍ଭେ ।।୧୨୬
ସ୍ଫଟିକ କାନ୍ଥେ ଦୀପପନ୍ତି ।
ନିର୍ମଳ ରତ୍ନ ବିରାଜନ୍ତି ।।୧୨୭
ପାନ -ଭୋଜନ ଅପ୍ରମିତ ।
ବ୍ରାହ୍ମଣ ଦେଖିଲା ଅଦ୍‌ଭୁତ ।।୧୨୮
ନୃତ୍ୟ ଗାୟନ ନାନାସ୍ଥାନେ ।
ବିପ୍ରଭୋଜନ ଆଚମନେ ।।୧୨୯
ଦେବତା ପୂଜା ମହୋତ୍ସବ ।
ପୁର ମଣ୍ଡିତ ସର୍ବଠାବ ।।୧୩୦
ସର୍ବସମ୍ପଦ ଏକଠୁଳେ ।
ଦେଖଇ ନୟନ ନିଶ୍ଚଳେ ।।୧୩୧
ମନେ ଚିନ୍ତଇ ଯୋଗବଳେ ।
ଏ କର୍ମ ନାହିଁ ରବିତଳେ ।।୧୩୨
ଏମନ୍ତ ସମ୍ପଦ ମୋହର ।
ନିଶ୍ଚୟ ଦେଲେ ଦାମୋଦର ।।୧୩୩

Dr. Sudhanshu Sekhar Mishra

କୃଷ୍ଣଙ୍କ ପୁରେ ମୁଁ ଯେ ଥିଲି ।
ଏଡେ ସମ୍ପଦ ନ ଦେଖିଲି ॥୧୩୪
ପରମାନନ୍ଦର ମହିମା ।
ନିଗମ ନ ଜାଣଇ ସୀମା ॥୧୩୫
ମାଗିଲେ ନିଷ୍ପୁର ଭଜଇ ।
ଭକତେ ଆଚମ୍ବିତ ଦେଇ ॥୧୩୬
କାଳ ନିୟମ ଯାର ନାହିଁ ।
ଗଗନ-ଘନ ପ୍ରାୟ ଦେଇ ॥୧୩୭
ମୋହର ମିତ୍ର ଯଦୁପତି ।
ବେଦ ନ ଜାଣେ ଯାର ଗତି ॥୧୩୮
ଅଭାବେ ଦେଲେ କୃଷ୍ଣ ଚିତ୍ତ ।
କିଞ୍ଚିତେ ମଣଇ ବହୁତ ॥୧୩୯
ଅଳପ ଦେଲେ ଭାବ ଘେନି ।
ବହୁତ ଘେନେ ଅନ୍ତର୍ଯ୍ୟାମୀ ॥୧୪୦
ପୃଥୁକମୁଷ୍ଟି ଦେଲି ମୁହିଁ ।
ଭାବେ ଘେନିଲେ ଭାବଗ୍ରାହୀ ॥୧୪୧
ମୁଷ୍ଟିଏ ଖାଇ ତୋଷଚିତ୍ତ ।
ଲକ୍ଷ୍ମୀ ଧଇଲେ ବେଗେ ହସ୍ତ ॥୧୪୨

ତେଣୁ ଏ ସମ୍ପଦ ମୋହର ।
ଏତେ ବିଚାରି ବିପ୍ରବର ॥୧୪୩
ବୋଲଇ ହୋଇ କୃତକୃତ୍ୟ ।
କପାଳେ ଦେଇ ବେନି ହସ୍ତ ॥୧୪୪
କୃଷ୍ଣଚରଣେ ମୋର ଚିତ୍ତ ।
ନିଶ୍ଚଳେ ରହୁ ଅବିରତ ॥୧୪୫
ମିତ୍ର ସୁହୃଦ ଦାସପଣେ ।
ଖଟିବି ଅଭୟ ଚରଣେ ॥୧୪୬
ଅଶେଷ ଯୋନି ମଧ୍ୟେ ଜାତ ।
ହୋଇ ଖଟିବି ଅବିରତ ॥୧୪୭
ତାର ଭକତିପଥ ଦ୍ୱାର ।
ବ୍ରହ୍ମାଶଙ୍କରେ ଅଗୋଚର ॥୧୪୮
ମୋର ଭକତିଭାବ ଘେନି ।
ଏ ଧନ ଦେଲେ ଚକ୍ରପାଣି ॥୧୪୯
ଏମନ୍ତ ଭାଳି ବିପ୍ର ଚିତ୍ତେ ।
ସମ୍ପଦେ ରହିଲା ନିଶ୍ଚିନ୍ତେ ॥୧୫୦
ଭ୍ରମର ପ୍ରାୟ ଭୋଗ କରି ।
ଅନ୍ତେ ପାଇଲା ନରହରି ॥୧୫୧

ଶୁଣ ପରୀକ୍ଷ ଦଣ୍ଡଧର ।
ବିପ୍ର ଭକତ ଦାମୋଦର ॥୧୫୨
ଏହା ଯେ କରନ୍ତି ଶ୍ରବଣ ।
ଖଣ୍ଡନ୍ତି କର୍ମର ବନ୍ଧନ ॥୧୫୩
ସେ ହରି ଚରଣକମଳେ ।
ମୋ ମନ ରହୁ ସୁନିଶ୍ଚଳେ ॥୧୫୪
କୃଷ୍ଣଚରଣେ କରି ଆଶ ।
କହଇ ଜଗନ୍ନାଥ ଦାସ ॥୧୫୫

ଇତି ଶ୍ରୀମଦଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ପୃଥୁକ
ଉପାଖ୍ୟାନଂ ନାମ
ସପ୍ତଅଶୀତିତମ ଅଧ୍ୟାୟଃ ।

---

## ଅଷ୍ଟଅଶୀତିତମ ଅଧ୍ୟାୟଃ

ପ୍ରେମ ଆନନ୍ଦେ ମୁନିବର ।
ବୋଲନ୍ତି ଶୁଣ କୁରୁବୀର ॥୧
ଧରଣୀଭାରା ନିବାରଣ ।
ଅନାଦିପରମ କାରଣ ॥୨
ଅନନ୍ତ ତୁଲେ ନରହରି ।
ମନୁଷ୍ୟ ରୂପେ ଅବତରି ॥୩
ଆନନ୍ଦେ ଦ୍ୱାରାବତୀ ପୁରେ ।
ବିହରେ ନରକଳେବରେ ॥୪
ଜ୍ୟୋତିଷବିଦ୍ୟା ଅନୁମାନେ ।
ବିଚାରି ଋଷିଙ୍କ ବଚନେ ॥୫
ଜ୍ୟୋତିଷେ କୃଷ୍ଣ ପାଶେ ଯାଇ ।
କହିଲେ ଶିରେ କର ଦେଇ ॥୬
ଭୋ ନାଥ ଶୁଣ ସାବଧାନେ ।
ମକର ପଞ୍ଚଦଶ ଦିନେ ॥୭

ତୃତୀୟ ମୁହୂର୍ତ୍ତ ପ୍ରବେଶେ ।
ସିଂହିକାସୁତ ରବି ଗ୍ରାସେ ॥୮
ଦିବସେ ପ୍ରକାଶିବ ନିଶି ।
ପ୍ରଳୟକାଳ ପ୍ରାୟ ଦିଶି ॥୯
ଏମନ୍ତେ ଦଇବଜ୍ଞ ବାଣୀ ।
ଗୋବିନ୍ଦ ସାବଧାନେ ଶୁଣି ॥୧୦
ଘୋଷଣ ଦେଲେ ନିଜପୁରେ ।
ତୀର୍ଥଗମନ ଅନୁସାରେ ॥୧୧
ତ୍ରେତୟାଯୁଗେ ଭୃଗୁରାମ ।
ରାଜାଙ୍କୁ ବହି ଘୋରତମ ॥୧୨
ଦିଗବିଜୟେ ପର୍ଶୁପାଣି ।
ରାଜାଙ୍କୁ କୁରୁକ୍ଷେତ୍ରେ ଆଣି ॥୧୩
କୋପେ ଛେଦିଲେ ତାଙ୍କ ମୁଣ୍ଡ ।
ରୁଧିରେ କରି ସାତକୁଣ୍ଡ ॥୧୪

ରୁଧିରକୁଣ୍ଡ ସ୍ନାନ କରି ।
ପିତାଙ୍କୁ ତର୍ପଣେ ଉଦ୍ଧରି ॥୧୫
ତେଣୁ ହୋଇଲା ତୀର୍ଥକଳ୍ପ ।
ସ୍ନାନେ ହରଇ ସର୍ବପାପ ॥୧୬
ଏମନ୍ତେ ଜନେ ରାମତୀର୍ଥେ ।
ସ୍ନାହାନ ଦାନ ଯେଝାମତେ ॥୧୭
କରନ୍ତି ନିଗମ ବେଭାର ।
ଏବେ ହୋ ଶୁଣ କୁରୁବୀର ॥୧୮
ଭାରତଭୂମି ପ୍ରଜା ଯେତେ ।
ପୁତ୍ର କଳତ୍ର ଧନ ଯୁତେ ॥୧୯
ରାଜା ପରଜା ନରନାରୀ ।
ସଞ୍ଚପି କେ ତା କହିପାରି ॥୨୦
ଏମନ୍ତେ ଚାରିଦିଗୁଁ ଯେତେ ।
ପ୍ରବେଶ ହେଲେ କୁରୁକ୍ଷେତ୍ରେ ॥୨୧

Dr. Sudhanshu Sekhar Mishra

ଜ୍ଞାନ ଅଜ୍ଞାନ ପାପ ଯେତେ ।
ସ୍ନାନେ ଖଣ୍ଡିବେ ରାହୁଗ୍ରସ୍ତେ ॥୨୨
ସୁତୀର୍ଥେ ସ୍ନାନ ଦାନ ଫଳେ ।
ପାପୁଁ ତରିବେ ପୁଣ୍ୟବଳେ ॥୨୩
ଏତେ ବିଚାରି ପୁଣ୍ୟଧାୟି ।
ମିଳିଲେ କୁରୁକ୍ଷେତ୍ରେ ଯାଇ ॥୨୪
ଗୋବିନ୍ଦ ନନ୍ଦିଘୋଷ ରଥେ ।
ବସି ଚଳିଲେ ରାଜପଥେ ॥୨୫
ଶ୍ରୀକୃଷ୍ଣ ଯାନ୍ତେ କୁରୁକ୍ଷେତ୍ରେ ।
ସଜ ହୋଇଲେ ଜ୍ଞାତି ଗୋତ୍ରେ ॥୨୬
ଦେବକୀ ବସୁଦେବ ଘେନି ।
କୃଷ୍ଣର ଯେତେକ କାମିନୀ ॥୨୭
ପ୍ରଦ୍ୟୁମ୍ନ ଶାମ୍ବ କୃଷ୍ଣସୁତେ ।
ଶୁକ ସାରଣର ସହିତେ ॥୨୮
କୃତବର୍ମା ଯେ ଅନିରୁଦ୍ଧ ।
ପୁର ରଖନ୍ତି ଯେତେ ଯୋଧ ॥୨୯
ଉଗ୍ରସେନର ଯେତେ ବଳ ।
ସଜ ହୋଇଲେ କାମପାଳ ॥୩୦
ଏମନ୍ତେ ଗଲେ ଯଦୁଯୂଥେ ।
ଆରୋହି ଅଶ୍ୱ ଗଜ ରଥେ ॥୩୧
ନିଜ କାମିନୀ ଘେନି ସାଥେ ।
ଗମିଲେ କୁରୁକ୍ଷେତ୍ରେ ପଥେ ॥୩୨
ଇନ୍ଦ୍ରର ସଙ୍ଗେ ଦେବବୃନ୍ଦେ ।
ଯେମନ୍ତେ ଗମନ୍ତି ଆନନ୍ଦେ ॥୩୩
ଗଗନେ ଗ୍ରସ୍ତ ଦିବାକର ।
ଦିବସେ ଦିଶିଲା ଅନ୍ଧାର ॥୩୪
ଗଗନେ ଦେଖି ରବିଗ୍ରାସ ।
ସକଳେ ହୋଇଲେ ହରଷ ॥୩୫
ଏମନ୍ତେ ରାହୁ ଗ୍ରାସ କାଳେ ।
ରାଜା ପରଜା ପୁଣ୍ୟଜଳେ ॥୩୬
କରନ୍ତି ସ୍ନାନ ଦାନ ବିଧି ।
ବେଦବଚନେ ଯେ ପ୍ରସିଦ୍ଧି ॥୩୭
ଗୋବିନ୍ଦ ଉପବାସ ଛଳେ ।
ହରଷେ ପଶି ତୀର୍ଥଜଳେ ॥୩୮
ବିପ୍ରଙ୍କୁ ବରି ଭଗବାନ ।
ଦେଲେ ସବତ୍ସା ଧେନୁଦାନ ॥୩୯

ବିବିଧ ଅଳଙ୍କାର ଭରି ।
କୋଟିଏ ଧେନୁ ଦାନ କରି ॥୪୦
ଅନ୍ନ ସୁବର୍ଣ୍ଣ ବସ୍ତ୍ର ଦାନ ।
ଆନନ୍ଦ ମନେ ଭଗବାନ ॥୪୧
ବିବିଧ ମତେ ଦାନ ଦେଇ ।
ତୀରେ ବସିଲେ କୃଷ୍ଣ ଯାଇ ॥୪୨
ଯାଦବ ଭୋଜ ସେହିମତେ ।
ସ୍ନାହାନ କଲେ ଯଥୋଚିତେ ॥୪୩
ଭୋଜନ ସାରି ସଙ୍ଗମେଳେ ।
ବସିଲେ ନାନା ବୃକ୍ଷତଳେ ॥୪୪
ଦେବକୀଦେବୀ ବସୁଦେବ ।
ବସିଲେ ରାମ ପଦ୍ମନାଭ ॥୪୫
ଏ ଆଦି କହିବି ମୁଁ କେତେ ।
କୃଷ୍ଣର ପତ୍ନୀ ସୁତ ଯେତେ ॥୪୬
ବୃକ୍ଷଙ୍କ ମୂଳେ ବିରାଜନ୍ତି ।
ଗଗନେ ଯେହ୍ନେ ତାରାପନ୍ତି ॥୪୭
ଏମନ୍ତେ ରାମହ୍ରଦତଟେ ।
ରାମ ଗୋବିନ୍ଦର ନିକଟେ ॥୪୮
କୃଷ୍ଣର ଦର୍ଶନେ ଆନନ୍ଦ ।
ଆସି ମିଳିଲେ ବନ୍ଧୁବୃନ୍ଦ ॥୪୯
ମତ୍ସ୍ୟ ଉଶୀନର କୋଶଳ ।
ବିଦର୍ଭ ଆଦି କୁରୁବଳ ॥୫୦
ସୃଞ୍ଜୟ କାମ୍ବୋଜ କୈକୟ ।
ଆନର୍ତ୍ତ କୁନ୍ତୀ ମଦ୍ରରାୟ ॥୫୧
କହିବି ଏକେ ଏକେ କେତେ ।
କେରଳ ଆଦି ରାଜା ଯେତେ ॥୫୨
ସୁହୃଦବନ୍ଧୁ ମିତ୍ରଜନ ।
ଅପରେ ଅନେକ ରାଜନ ॥୫୩
ନନ୍ଦ ଯଶୋଦା ଆଦି କରି ।
ଗୋପରେ ଯେତେ ନରନାରୀ ॥୫୪
ଗୋପୀଏ କୃଷ୍ଣରୂପ ଦେଖି ।
ଅଶ୍ରୁ ଗଳଇ ବେନି ଆଖି ॥୫୫
ଫୁଟିଲା ପଦ୍ମପ୍ରାୟ ନେତ୍ର ।
ନୀଳ କୁନ୍ତଳ ହୃଦ ଗାତ୍ର ॥୫୬
କି ଅବା ଦେବା ପଟାନ୍ତର ।
ଯାହା ରମିଲେ ଦାମୋଦର ॥୫୭

ଲୋଚନେ କରି ମନେ ଧ୍ୟାନ ।
ଅନ୍ତର କଲେ ଆଲିଙ୍ଗନ ॥୫୮
ପୁଲକେ ଅଙ୍ଗେ ରୋମରାଜି ।
ପ୍ରେମ ଆନନ୍ଦେ ଚକ୍ଷୁବୁଜି ॥୫୯
କଣ୍ଠକୁଣ୍ଠିତ ମଞ୍ଜୁବାଣୀ ।
ତା ଦେଖି କୃଷ୍ଣର ତରୁଣୀ ॥୬୦
ସୁହୃଦଭାବେ ଏକମେଳେ ।
କରନ୍ତି ଜଣେ ଜଣେ କୋଳେ ॥୬୧
ମୁଖେ ବିସ୍ମିତ ମନ୍ଦହାସେ ।
ଦୃଢେ ଯନ୍ତ୍ରିତ ସ୍ନେହପାଶେ ॥୬୨
ନିବିଡେ କୁଙ୍କୁମ ଲେପନ ।
ଭାବେ ଲଗାଇ ସ୍ତନେ ସ୍ତନ ॥୬୩
ଭୁଜେ କରନ୍ତି କୋଳେକୋଳେ ।
ଅଶ୍ରୁପୂରିତ ବେନିଡୋଳ ॥୬୪
କୃଷ୍ଣକାମିନୀ ଗୋପନାରୀ ।
ସେନେହ ଭାବ ମନେ ଧରି ॥୬୫
କହନ୍ତି କୃଷ୍ଣ କଥାମାନ ।
ସୁମରି କରନ୍ତି ରୋଦନ ॥୬୬
ଗୋପିଙ୍କୀ ବୋଧି କୃଷ୍ଣନାରୀ ।
କଥା ପ୍ରବନ୍ଧେ ମନ ହରି ॥୬୭
ସମସ୍ତେ ହୋଇଲେ ହରଷ ।
କୃଷ୍ଣର ଭାବ ମଧୁରସ ॥୬୮
ଏହି ପ୍ରକାରେ ବଧୂଜନେ ।
ଯେ ବିଧି ଯଥା ଅନୁମାନେ ॥୬୯
ଆଶିଷ ବଚନ୍ତେ କରନ୍ତି ।
କୁଳ କୁଶଳ ପଚାରନ୍ତି ॥୭୦
ଏକ ଆରକେ କହି ବ୍ୟଥା ।
ଆନନ୍ଦେ କହେ କୃଷ୍ଣକଥା ॥୭୧
କୃଷ୍ଣଭକତି ହୃଦେ ଘେନି ।
ମିଳିଲେ ପାଣ୍ଡବ ଜନନୀ ॥୭୨
ଭ୍ରାତ ଭଗିନୀଜନ ମଧ୍ୟେ ।
ପୁତ୍ର ପଉତ୍ର ଅନୁବନ୍ଧେ ॥୭୩
ପିତା ଜନନୀ ମୁଖ ଚାହିଁ ।
ଭାତୃ କାମିନୀ ମଧ୍ୟେ ଥାଇ ॥୭୪
ଅନାଇଁ ଗୋବିନ୍ଦ ଶ୍ରୀମୁଖ ।
ଛାଡିଲା କଷ୍ଟ ଦୁଃଖ ଶୋକ ॥୭୫

Dr. Sudhanshu Sekhar Mishra

ବସୁଦେବର ମୁଖ ଚାହିଁ ।
ବୋଲଇ ଶୋକଭରେ ହୋଇ ॥୭୬

**କୁନ୍ତୀ ଉବାଚ**

ହେ ଭ୍ରାତ ଏ ମୋହର ଜନ୍ମ ।
ମନୁଷ୍ୟ ମଧ୍ୟେ ହୀନକର୍ମ ॥୭୭
ଯେତେ ଆପଦ ମୋତେ ହୋଇ ।
ମୋ ତହୁଁ ଆନ କେବା ସହି ॥୭୮
ତେତେ ଆପଦେ ନ ସୁମର ।
ଅଭାଗୀ ଜୀବନ ମୋହର ॥୭୯
ସୁହୃଦ ଜ୍ଞାତି ପୁତ୍ର ଭାଇ ।
ପିତା ଜନନୀ ଯାର ଥାଇ ॥୮୦
ଆପଦେ ନ କରନ୍ତି ଚିନ୍ତା ।
ତାହାକୁ ବାମଟି ବିଧାତା ॥୮୧
ଏମନ୍ତ କର୍ମ ମୋର ଭାବ ।
ତା ଶୁଣି ବୋଲେ ବସୁଦେବ ॥୮୨
ଶୁଣ ଗୋ ମାତ ମୋ ବଚନ ।
ଆମ୍ଭଙ୍କୁ ନ କର ନିନ୍ଦନ ॥୮୩
ଦେଖ ସଂସାରେ ଯେତେ ଲୋକ ।
ଈଶ୍ୱର କ୍ରୀଡାର କନ୍ଦୁକ ॥୮୪
ଈଶ୍ୱର ଯନ୍ତ୍ର ମଧ୍ୟେ ପଡି ।
କାର୍ଯ୍ୟ କାରଣେ ପଥ ଛୁଡି ॥୮୫
ଈଶ୍ୱର ଆଜ୍ଞା ଅନୁମତେ ।
ପ୍ରାଣୀ ଭାଜନ୍ତି ନାନାପଥେ ॥୮୬
କଂସ ପ୍ରତାପେ ଆମ୍ଭେ ତାପୀ ।
ବୁଲିଲୁ ବନ ଦେଶବ୍ୟାପୀ ॥୮୭
ପୁଣି ମିଳିଲୁ ନିଜଦେଶେ ।
ଏସର୍ବ ଈଶ୍ୱର ଆଦେଶେ ॥୮୮
କହନ୍ତି ବସୁଦେବ ସ୍ନେହେ ।
ସଂସାରବନ୍ଧ ମାୟାମୋହେ ॥୮୯
ଶୁଣି ପ୍ରବୋଧ ପଣ୍ଡୁରାଣୀ ।
ଭାବବଚନେ ହେଲା ତୁନି ॥୯୦
କହନ୍ତି ବ୍ୟାସଙ୍କ ନନ୍ଦନ ।
ଶ୍ରୀବାସୁଦେବ ଉଗ୍ରସେନ ॥୯୧
ଯାଦବେ ମାନ ଗଉରବେ ।
ପୂଜିଲେ ନୃପତିଙ୍କି ଭାବେ ॥୯୨
ରାଜାଏ କୃଷ୍ଣ ଦରଶନେ ।
ହରଷେ ପୂଜିଲେ ସୁମନେ ॥୯୩
ଶୁଣ ବିରାଟସୁତାସୁତ ।
ଗୋବିନ୍ଦ ସମୀପେ ଆଗତ ॥୯୪
ଜାହ୍ନବୀସୁତ ଦ୍ରୋଣଗୁରୁ ।
ଅମ୍ବିକାପୁତ୍ର ମହାମେରୁ ॥୯୫
ଗାନ୍ଧାରୀ ଘେନି ପୁତ୍ରଶତ ।
ଦ୍ରୌପଦୀ ସମୀପେ ଆଗତ ॥୯୬
ଶକୁନି ସଞ୍ଜୟ ବିଦୁର ।
ଏ ଆଦି ଯେତେ ନୃପବର ॥୯୭
ବିରାଟ ତୁଲେ କୁନ୍ତୀଭୋଜ ।
ଭୀଷ୍ମକ ନଗ୍ନଜିତ ରାଜ ॥୯୮
ଦ୍ରୁପଦ ପୁରୁଜିତ ବେନି ।
ଶଲ୍ୟ ଯେ ଧୃଷ୍ଟକେତୁ ଘେନି ॥୯୯
କାଶୀନୃପତି ଦମଘୋଷ ।
ବିଶାଳା ମିଥିଳାର ଈଶ ॥୧୦୦
ମଦ୍ରକ କଇକେୟ ଭାନୁ ।
ସଙ୍ଗେ ନୃପତି ଯୁଧାମନ୍ୟୁ ॥୧୦୧
ସୁଶର୍ମା ବାହ୍ଲୀକର ମେଳେ ।
ମିଳିଲେ ଯୁଧିଷ୍ଠିର ତୁଲେ ॥୧୦୨
ଷୋଳସହସ୍ର ଶତେ ନାରୀ ।
ଅଷ୍ଟ ଅଧିକ ଆଦି କରି ॥୧୦୩
ଦେଖି ବିସ୍ମୟେ ନୃପଗଣେ ।
ନମିଲେ କୃଷ୍ଣର ଚରଣେ ॥୧୦୪
ରାମଗୋବିନ୍ଦ ତୋଷମନେ ।
ରାଜାଙ୍କୁ ବସାଇ ଆସନେ ॥୧୦୫
ନାନା ପ୍ରକାରେ ପୂଜାବିଧି ।
ପୂଜିଲେ ବେଭାର ପ୍ରସିଦ୍ଧି ॥୧୦୬
ଆନନ୍ଦେ ସର୍ବ ନୃପବର ।
ଯଦୁଙ୍କୁ ବୋଲନ୍ତି ମଧୁର ॥୧୦୭
ହେ ଭୋଜପତି ତୁମ୍ଭ ଜନ୍ମ ।
ସଂସାର ମଧ୍ୟେ ବଡ ଧନ୍ୟ ॥୧୦୮
ଯେ ହରି ଯୋଗୀଙ୍କି ଦୁର୍ଲ୍ଲଭ ।
ତୁମ୍ଭଙ୍କୁ ହୋଇଲେ ସୁଲଭ ॥୧୦୯
ଦୃଷ୍ଟିଗୋଚର କୃଷ୍ଣ ଦେଖି ।
ନିର୍ମଳ କଲ ଚର୍ମଆଖି ॥୧୧୦
ଯାର ବିଶ୍ରୁତି ଶ୍ରୁତିସ୍ତୁତ ।
ପବିତ୍ର କରଇ ଜଗତ ॥୧୧୧
ପାଦଉଦକ ସୁରଧୁନୀ ।
ପବିତ୍ର କରେ ପୁର ତିନି ॥୧୧୨
ସକଳଶାସ୍ତ୍ର ଯାର ବାଣୀ ।
ଜଗତ ତରେ ଯାହା ଶୁଣି ॥୧୧୩
କାଳଅନଳେ ଏ ଧରଣୀ ।
ଭାବେ ଭର୍ଜିତ ପ୍ରାୟ ମଣି ॥୧୧୪
ଯାହାର ଚରଣ ସ୍ମରଣେ ।
ଜୀବନ ପାଇ ଭାରା ନାଶେ ॥୧୧୫
ଏମନ୍ତ ପ୍ରଭୁ ମହାବାହୁ ।
ଆମ୍ଭଙ୍କୁ ଚଉବର୍ଗ ଦେଉ ॥୧୧୬
ସେ ହରି ନିତ୍ୟେ ତୁମ୍ଭ ପାଶେ ।
ନରକପଥ-ଗୃହବାସେ ॥୧୧୭
ତାର ଦର୍ଶନ ହାସ୍ୟରସ ।
ଅନୁଗମନ ପରିହାସ ॥୧୧୮
ଯୋନି ସମ୍ବନ୍ଧେ ପିଣ୍ଡଦାନ ।
ନାନା ସମ୍ବନ୍ଧେ ଅନୁଧ୍ୟାନ ॥୧୧୯
ଏହା ପାଇଲ ତପ ଦାହି ।
ସ୍ୱର୍ଗାପବର୍ଗେ ବାଞ୍ଛା ନାହିଁ ॥୧୨୦
ଏମନ୍ତେ ରାଜାଙ୍କ ବଚନ ।
ଶୁଣି ହରଷ ଉଗ୍ରସେନ ॥୧୨୧
କହନ୍ତି ବ୍ୟାସଙ୍କର ବଳା ।
ନନ୍ଦ ଯେ କୁରୁକ୍ଷେତ୍ରେ ଥିଲା ॥୧୨୩
ନିଜ ଗୋକୁଳ ସଙ୍ଗତରେ ।
ମିଳିଲା ଶ୍ରୀକୃଷ୍ଣ ଛାମୁରେ ॥୧୨୪
ଶକଟ ସାଜି ନାନାମତେ ।
ଅନେକ ପରଜା ସଙ୍ଗତେ ॥୧୨୫
ନନ୍ଦକୁ ଦେଖି ଯଦୁଗଣ ।
ଆସନ ତେଜିଲେ ତକ୍ଷଣ ॥୧୨୬
ପିଣ୍ଡ ଯେସନେ ପ୍ରାଣ ପାଇ ।
ଉଠି ଆନନ୍ଦେ ସମ୍ଭାଷଇ ॥୧୨୭
ଚିତଦରଶନ କାତରେ ।
ହୃଦେ ଭିଡନ୍ତି ସ୍ନେହଭରେ ॥୧୨୮
ଆନନ୍ଦେ ଉଠି ବସୁଦେବ ।
ନନ୍ଦର ମିତ୍ର ପ୍ରିୟଭାବ ॥୧୨୯

Dr. Sudhanshu Sekhar Mishra

କଂସର କୃତକ୍ଲେଶ ଯେତେ ।
ସର୍ବ ସୁମରି ଶୋକଚିତ୍ତେ ॥୧୩୦
କୃଷ୍ଣଙ୍କୁ ଘେନି ରାତ୍ରକାଳେ ।
ଯେମନ୍ତେ ଥୋଇଲା ଗୋକୁଳେ ॥୧୩୧
ତାହା ସୁମରି ଅତି ସ୍ନେହେ ।
ଚିତ୍ତଜଡିତ ମାୟାମୋହେ ॥୧୩୨
ପାଶେ ଯେ ଥିଲେ ରାମହରି।
ନନ୍ଦ ଯଶୋଦା ପାଦ ଧରି ॥୧୩୩
ନମିଲେ ଅତି ସୁଖଭୋଳେ ।
ବସିଲେ ବେନିଜନ କୋଳେ ॥୧୩୪
ହୃଦରେ କରି ଆଲିଙ୍ଗନ ।
ବଦନୁ ନ ସ୍ଫୁରେ ବଚନ ॥୧୩୫
ଯଶୋଦା ବେନି ଭୁଜେ ଧରି
ହୃଦେ ଲଗାଇ ନରହରି ॥୧୩୬
ପ୍ରାଣହୁଁ ଅତି ସ୍ନେହ ଭରି ।
ନିବିଡେ ଆଲିଙ୍ଗନ କରି ॥୧୩୭
ପରମାନନ୍ଦ ଲଭି ସୁଖ ।
ବେଗେ ଛୁଟିଲା ମନଦୁଃଖ ॥୧୩୮
ନନ୍ଦ ରାମଙ୍କୁ କରି କୋଳ ।
ନୟନୁ ବହେ ଅଶ୍ରୁଜଳ ॥୧୩୯
ହୃଦେ ନିରୋପି ଦିବ୍ୟଜ୍ଞାନ ।
ଛାଡିଲା ଦୁଃଖ ଶୋକମାନ ॥୧୪୦
ଦେବକୀ ରୋହିଣୀ ଆନନ୍ଦେ।
ଭାବେ ଲଗାଇ ହୃଦହୃଦେ ॥୧୪୧
ନିର୍ଭରେ ଆଲିଙ୍ଗନ କରି ।
ମିତ୍ର ସ୍ୱଭାବେ ବ୍ରଜେଶ୍ୱରୀ ॥୧୪୨
ବିପଦକାଳେ ମିତ୍ରଗୁଣ ।
ଶୋକେ ସୁମରି ପୁଣ ପୁଣ ॥୧୪୩
ବୋଲନ୍ତି ଯଶୋଦାକୁ ଚାହିଁ ।
କିସ ଉପମା ଦେବି ମୁହିଁ ॥୧୪୪
ଇନ୍ଦ୍ରସମ୍ପଦ ସୁଖ ଭୁଞ୍ଜି ।
କେ ପାରୁ ତୁମ୍ଭ ଋଣ ଶୁଝି ॥୧୪୫
ବେନି ବାଳକ ତୁମ୍ଭ ଘରେ ।
ପ୍ରାଣ ପୋଷିଲେ କଂସ ଡରେ ॥୧୪୬
ରାମଗୋବିନ୍ଦ ଭାଇ ବେନି ।
ତୁମ୍ଭେ ଯେ ପିଅର ଜନନୀ ॥୧୪୭

ପାଳିଲ ପୁତ୍ରହୁଁ ଅଧିକେ ।
ତୁମ୍ଭେ ଯେ ଧନ୍ୟ ବେନିଲୋକେ ॥୧୪୮
ପୋଷିଲ ପୁତ୍ରଭାବ ଘେନି ।
ଅନ୍ଧ ଯେସନେ ଚକ୍ଷୁବେନି ॥୧୪୯
କି ଆଉ ସଂସାର ବେଭାର ।
ତୁମ୍ଭର ନାହିଁ ପରାପର ॥୧୫୦
ଏମନ୍ତେ ଯଶୋଦାର ତୁଳେ ।
ଦେବକୀ ରୋହିଣୀ ବସିଲେ ॥୧୫୧
ଶୁଣ ରାଜନ ଚୂଡାମଣି ।
ଆନନ୍ଦେ ଗୋପର ତରୁଣୀ ॥୧୫୨
କୃଷ୍ଣଙ୍କୁ ଦେଖି ସୁଖଭୋଳେ ।
ନିରୋପି ନୟନେ ନିଶ୍ଚଳେ ॥୧୫୩
ଲଜ୍ଜା ଉପେକ୍ଷି ଗୋପୀବୃନ୍ଦ ।
ଚିରଦରଶନେ ଆନନ୍ଦ ॥୧୫୪
କୃଷ୍ଣର ବଦନ ଦେଖନ୍ତି ।
ଚକ୍ଷୁ ନିମିଷେ ନ ଚାଳନ୍ତି ॥୧୫୫
ଚାହାନ୍ତି କୃଷ୍ଣ ସର୍ବଅଙ୍ଗ ।
ଅଗ୍ନିକି ଯେସନେ ପତଙ୍ଗ ॥୧୫୬
କୃଷ୍ଣର ରୂପ ପ୍ରିୟଭାବେ ।
ହୃଦେ ଭରିଲେ ଦୃଷ୍ଟିମାର୍ଗେ ॥୧୫୭
ଆନନ୍ଦ ରୂପ ଭଗବାନ ।
ଅନ୍ତରେ କଲେ ଆଲିଙ୍ଗନ ॥୧୫୮
ଲଭିଲେ ନିଜ ପ୍ରିୟଭାବ ।
ଯେ ହରି ଯୋଗିଙ୍କି ଦୁର୍ଲ୍ଲଭ ॥୧୫୯
ଗୋପୀଙ୍କ ଭାବ ଦେଖି ହରି।
ଅନନ୍ତମାୟା ଯୋଗ କରି ॥୧୬୦
କେହି ନ ଦେଖେ ରୂପ ଡୋଳେ ।
ମିଳିଲେ ଗୋପୀଙ୍କର ମେଳେ ॥୧୬୧
ପଚାରି ଗୋପୀଙ୍କ କୁଶଳ ।
କରନ୍ତି ଜଣେ ଜଣେ କୋଳ ॥୧୬୨
ବୋଲନ୍ତି ଜଗତମୋହନ ।
କୋମଳ ଗଭୀର ବଚନ ॥୧୬୩
ଶୁଣ ଗୋ ସଖୀଜନେ ମୋର।
ମୁଁ ଯେ ରହିଲି ମଧୁପୁର ॥୧୬୪
ଅଇଲି ନିଜ କର୍ମ ଆଶେ ।
ଭାରା ନିବାରଣ ବିଶ୍ୱାସେ ॥୧୬୫

ଅନେକ ଦିନୁଁ ନାହିଁ ଦେଖା ।
ମୁହିଁ ତୁମ୍ଭର ନିଜ ସଖା ॥୧୬୬
ଈଶ୍ୱର ମାୟାରେ ସଂସାର ।
ସଂଯୋଗ ବିଯୋଗ ବେଭାର ॥୧୬୭
ପବନ ଯେହ୍ନେ ମେଘମାଳା ।
ଧରଣୀ ରେଣୁ ତୃଣ ତୁଳା ॥୧୬୮
କରଇ ସଂଯୋଗ ବିଯୋଗ ।
ଏମନ୍ତ ଈଶ୍ୱରର ଯୋଗ ॥୧୬୯
ମୋହରେ ଭାବ ଯେ କରନ୍ତି।
ମୋ ଠହୁଁ ଭିନ୍ନ ସେ ନୁହନ୍ତି ॥୧୭୦
ତୁମ୍ଭର ଭାଗ୍ୟ ଏ ସଂସାରେ।
ଭାବେ ଭଜିଲ ମୋ ପୟରେ ॥୧୭୧
ମୁହିଁ ସକଳ ପ୍ରାଣୀଙ୍କର ।
ଆବୋରି ଭିତର ବାହାର ॥୧୭୨
କରଇ ସୃଷ୍ଟି ଆଦିଅନ୍ତ ।
ଯେହ୍ନେ ଜଡିତ ପଞ୍ଚଭୂତ ॥୧୭୩
ଉଭୟ ମହିମା ମୋହର ।
ଜ୍ଞାନୀଜନଙ୍କୁ ଅଗୋଚର ॥୧୭୪
ଏମନ୍ତେ ପ୍ରଭୁ ଭଗବାନ ।
ଗୋପିଙ୍କି କହି ତତ୍ତ୍ୱଜ୍ଞାନ ॥୧୭୫
ଗୋପୀଏ କୃଷ୍ଣର ବଚନ ।
ଶୁଣି ପାଇଲେ ଦିବ୍ୟଜ୍ଞାନ ॥୧୭୬
ନିର୍ଲୋଭ କୃଷ୍ଣ ରୂପ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୧୭୭
ଭୋ ନାଥ ଶୁଣ ପଦ୍ମନାଭ ।
ଲଭିଲୁ ତୋ ଚରଣେ ଭାବ ॥୧୭୮
ତୋର ଚରଣ ହେ ଅନନ୍ତ ।
ଯୋଗୀଙ୍କ ହୃଦପଦ୍ମେ ସ୍ଥିତ ॥୧୭୯
ଅଜ୍ଞାନ ମାୟାର ପ୍ରବୋଧ ।
ଭୋ ନାଥ ତୋର ପଦ୍ମପାଦ ॥୧୮୦
ସଂସାର ଅନ୍ଧକାର କୂପେ ।
ପ୍ରାଣୀଯନ୍ତ୍ରିତ ତିନିତାପେ ॥୧୮୧
ତୋ ପଦ୍ମପାଦ ଚକ୍ରପାଣି ।
ତାହାଙ୍କ ତରିବା ନିଶୁଣି ॥୧୮୨
ଗୋପୀଏ କୃଷ୍ଣପାଦ ଧରି ।
ବୋଲନ୍ତି ତରିଲୁ ମୁରାରି ॥୧୮୩

Dr. Sudhanshu Sekhar Mishra

ଆମ୍ଭର ତୋ ଚରଣେ ମନ ।
ଏ ବର ଦେବୁ ନାରାୟଣ ॥୧୮୪
ଏମନ୍ତ ଗୋପୀଙ୍କ ବଚନ ।
ଶୁଣି ସନ୍ତୋଷ ଭଗବାନ ॥୧୮୫
ହସି ବୋଲନ୍ତି ଦାମୋଦର ।
ପୂର୍ବହୁଁ ଦେଇଅଛୁ ବର ॥୧୮୬
ତୁମ୍ଭର ମୋ ଚରଣେ ମନ ।
ନିଶ୍ଚେ ପାଇବ ମୋର ସ୍ଥାନ ॥୧୮୭

ଏମନ୍ତେ ଗୋପିଙ୍କି ନିସ୍ତାରି ।
ନିଜ ଆସନେ ବିଜେ କରି ॥୧୮୮
ସେ ହରି ଚରଣକମଳେ ।
ମୋ ମନ ରହୁ ଧ୍ୟାନବଳେ ॥୧୮୯
ସୁଜନେ ଚିନ୍ତ ଦୃଢମନେ ।
ଗୋପୀଙ୍କ ପ୍ରାୟ ଶୁଦ୍ଧଧ୍ୟାନେ ॥୧୯୦
ପାଇବ ପରମକାରଣ ।
ତାରିବେ ପ୍ରଭୁ ନାରାୟଣ ॥୧୯୧

ଗୋପୀଙ୍କ ପ୍ରାୟ ଭାବେ ଧାୟି ।
ସକଳ କର୍ମେ ଭାବଗ୍ରାହୀ ॥୧୯୨
ପାଇ ନ ପାଇ କଲି ଆଶ ।
ବୋଲଇ ଜଗନ୍ନାଥ ଦାସ ॥୧୯୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ବୃଷ୍ଣିଗୋପସଙ୍ଗମୋନାମ
ଅଷ୍ଟଅଶୀତିତମ ଅଧ୍ୟାୟଃ ॥

---

## ଏକୋନନବତିତମ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ସୁମନେ ପରୀକ୍ଷିତ ॥୧
ଅଖିଳଜନଗୁରୁ ହରି ।
ବ୍ରଜକାମିନୀ ବୋଧ କରି ॥୨
ଧର୍ମନନ୍ଦନ ତୁଲେ ଯେତେ ।
ସୁହୃଦ ବାନ୍ଧବ ସମେତେ ॥୩
ତାହାଙ୍କୁ ଚାହିଁ ନନ୍ଦବାଳ ।
ହରଷେ ପୁଚ୍ଛନ୍ତି କୁଶଳ ॥୪
ଭୋ ରାଜା ଶୁଣ ମୋ ବଚନ ।
କୁଶଳ କହ ସର୍ବଜନ ॥୫
କୃଷ୍ଣବଚନ ଶୁଣି କର୍ଣ୍ଣେ ।
ଆନନ୍ଦ ମନେ ବନ୍ଧୁଜନେ ॥୬
କୃଷ୍ଣର ପାଦପଦ୍ମ ଚାହିଁ ।
ତାହାଙ୍କ ଦେହେ ପାପ ନାହିଁ ॥୭
ବୋଲନ୍ତି ସ୍ନେହ ଗଦଗଦେ ।
ଚିତ୍ତ ନିବେଶି ପଦ୍ମପାଦେ ॥୮
ଭୋ ନାଥ ଶୁଣ ହୃଷୀକେଶ ।
ତୋ ପାଦପଦ୍ମ ମଧୁରସ ॥୯
ମହତ ମୁଖୁଁ ଝରେ ନିତି ।
ଯେ କର୍ଣ୍ଣପୁଟରେ ପିବନ୍ତି ॥୧୦

ନିତ୍ୟେ ପିବନ୍ତି ମୋଦଭରି ।
ତେଣେ ଅଜ୍ଞାନମାର୍ଗ ହରି ॥୧୧
ତାର ଅଶୁଭ ଫଳ କାହିଁ ।
ପୁଣି ବୋଲନ୍ତି କୃଷ୍ଣେ ଚାହିଁ ॥୧୨
ଭୋ ନାଥ ଶୁଣ ପୂର୍ଣ୍ଣକାମ ।
ନିର୍ମଳ ତୋର ଆତ୍ମଧାମ ॥୧୩
ମାୟା ଅଙ୍କୁର ପରକାଶ ।
ଯାର ସ୍ମରଣେ ଯାଇ ନାଶ ॥୧୪
ଆନନ୍ଦ ସୁଖସିନ୍ଧୁ ନାବ ।
ଅଖଣ୍ଡ ଅକୁଣ୍ଠିତ ଭାବ ॥୧୫
ନିଗମେ ଯେବେ ବିନଶନ୍ତି ।
କାଳ ସର୍ଜିତ ମାୟାକୃତି ॥୧୬
ସ୍ୱରୂପେ ଥାଇ ଜନହିତେ ।
ତୁ ଦେହ ବହୁ ଏ ଜଗତେ ॥୧୭
ନିଜ ପରମହଂସ ଗତି ।
ଆମ୍ଭର ତୋର ପାଦ ମତି ॥୧୮
ବୋଲନ୍ତି ବ୍ୟାସଙ୍କ ନନ୍ଦନ ।
ଶୁଣ ହେ ପରୀକ୍ଷ ରାଜନ ॥୧୯
ସମସ୍ତେ କୃଷ୍ଣମୁଖ ଚାହିଁ ।
ସ୍ତୁତି କରନ୍ତି ଭାବରହି ॥୨୦

ଏମନ୍ତ ଜନେ ସ୍ତୁତି ଭଣି ।
ଉତ୍ତମ ଯଶ ଶିଖାମଣି ॥୨୧
ସମୀପେ ଦେଖି ନରହରି ।
ବୃଷ୍ଣି ଅନ୍ଧକ କୁରୁନାରୀ ॥୨୨
ଆନନ୍ଦେ ବସି ମନସୁଖେ ।
କହନ୍ତି କୃଷ୍ଣକଥା ମୁଖେ ॥୨୩
ଏକ ଆରକେ ମୁଖ ଚାହିଁ ।
ତ୍ରୈଲୋକ୍ୟ ତରେ ଯାହା ଗାଇ ॥୨୪
କୃଷ୍ଣକାମିନୀଗଣ ଚାହିଁ ।
ହରଷେ ଦ୍ରୌପଦୀ ବୋଲଇ ॥୨୫
ହେ ବଇଦର୍ଭି ରୂପଶୀଳେ ।
ହେ ଜାମ୍ବବତୀ କଉଶଲ୍ୟେ ॥୨୬
ହେ ସତ୍ୟଭାମା ରବିସୁତେ ।
ଶୈବ୍ୟା ଲକ୍ଷଣା ଆଦି ଯେତେ ॥୨୭
ଭଦ୍ରା ରୋହିଣୀ ଆଦି କରି ।
ଷୋଳସହସ୍ର ଯେତେ ନାରୀ ॥୨୮
କେମନ୍ତେ କୃଷ୍ଣଙ୍କୁ ବରିଲ ।
ଏ ମାୟାବନ୍ଧୁ ନିସ୍ତାରିଲ ॥୨୯
କେବଣ ତପ ପୂର୍ବେ ଦାହି ।
କୃଷ୍ଣଙ୍କୁ ସ୍ୱାମୀ ପଣେ ପାଇ ॥୩୦
କହ ଶ୍ରବଣେ ଇଚ୍ଛା ମୋର ।
କେମନ୍ତେ କୃଷ୍ଣ ତୁମ୍ଭ ବର ॥୩୧

Dr. Sudhanshu Sekhar Mishra

ଏକଇ ପୁରୁଷ ଗୋବିନ୍ଦ ।
ଅନେକ ନାରୀ ଯେ ଆନନ୍ଦ ।।୩୨
କେମନ୍ତେ ମନାଇଲ ହରି ।
କହ ଉଚିତ ଭାବ ଭରି ।।୩୩
ଏମନ୍ତେ ଦ୍ରୌପଦୀ ବଚନେ ।
ରୁକ୍ମିଣୀ କହେ ତୋଷମନେ ।।୩୪
ରୁକ୍ମୀ ଯେ ମୋର ଜ୍ୟେଷ୍ଠଭାଇ ।
ଶିଶୁପାଳକୁ ଦେବାପାଇଁ ।।୩୫
ମଙ୍ଗଳ ଲଗ୍ନେ ବର ବରି ।
ରାଜାଏ ନାନା ଶସ୍ତ୍ର ଧରି ।।୩୬
ମୋତେ ଆବୋରି ରାଜପଥେ ।
ଅନେକ ଗଜ ଅଶ୍ୱ ରଥେ ।।୩୭
ମୋହର ସ୍ୱୟମ୍ବର ଶୁଣି ।
ଅଇଲେ ପ୍ରଭୁ ଚକ୍ରପାଣି ।।୩୮
ମୋତେ ହରିଲେ ଏକା ରଥେ ।
ସିଂହ ଯେସନେ ମେଷଯୂଥେ ।।୩୯
ତାର ଶ୍ରୀଯୁତ ପଦ୍ମପାଦେ ।
ଚିତ୍ତ ମୋ ସେତୁ ଅପ୍ରମାଦେ ।।୪୦
କହି ହରଷ କୃଷ୍ଣବାମା ।
ତଦନ୍ତେ କଲେ ସତ୍ୟଭାମା ।।୪୧
ମୋହର ପିତା ଶତ୍ରାଜିତ ।
ସୂର୍ଯ୍ୟଙ୍କ ତୁଲେ ହେଲେ ମିତ ।।୪୨
ସନ୍ତୋଷେ ପ୍ରଭୁ ଦିନମଣି ।
ଦେଲେ ସେ ସ୍ୟମନ୍ତକ ମଣି ।।୪୩
ଏକଇ ଦିନେ ପିତା ମୋର ।
ଗଳାରେ ଖଞ୍ଜିଣ ବାହାର ।।୪୪
ସଭାର ମଧ୍ୟେ ଚକ୍ରପାଣି ।
ମାଗିଲେ ସାମନ୍ତକ ମଣି ।।୪୫
ପିତା ମୋ ନ ଦେଲା ତାହାଙ୍କୁ ।
ପ୍ରସେନ ନେଲା ବନସ୍ତକୁ ।।୪୬
ମୃଗୟା ବିନୋଦେ ଗମନ ।
ଚଢିଣ ଥିଲା ହୟଯାନ ।।୪୭
ବନେ ତା ସିଂହ କଲା ହତ ।
ନ ଦେଖି ତାତ ସାନଭ୍ରାତ ।।୪୮
ମନେ ଭାଳଇ ପୁଣ ପୁଣି ।
କୃଷ୍ଣ ଯେ ମାଗିଥିଲେ ମଣି ।।୪୯

ମୁଁ ଯେ ନ ଦେଲି ଲୋଭବଶେ ।
ତେଣୁ ଗୋବିନ୍ଦ ଅବିଶ୍ୱାସେ ।।୫୦
ମୋ ଭ୍ରାତ ବନେ ସଂହାରିଲା ।
ଏମନ୍ତ ଅପବାଦ ଦେଲା ।।୫୧
ସେ ଅପବାଦ ମାର୍ଜ୍ଜିବାରେ ।
କୃଷ୍ଣ ମିଳିଲେ ବନଘୋରେ ।।୫୨
ବନ୍ଧୁବାନ୍ଧବେ ବନେ ମିଳି ।
ଦେଖି ପ୍ରସେନ ମୃତ୍ୟୁସ୍ଥଳୀ ।।୫୩
ସିଂହର ଦନ୍ତ ନଖଘାତେ ।
ଦେଖି ସମସ୍ତେ ସ୍ତମ୍ଭୀଭୂତେ ।।୫୪
ଜାଣିଲେ ଋକ୍ଷ ସିଂହ ମାରି ।
ସେ ମଣି ନେଲା ନିଜପୁରୀ ।।୫୫
ତା ଦେଖି କୃଷ୍ଣ ବିଳେ ପଶି ।
ଜାମ୍ବବ ତୁଲେ ହୃଷୀକେଶୀ ।।୫୬
ଋକ୍ଷକୁ ମାଲ୍ଲଯୁଦ୍ଧେ ଜିଣି ।
ଆଣିଲେ ସ୍ୟାମନ୍ତ୍ୟକ ମଣି ।।୫୭
ସେ ମଣି ପିତା କଣ୍ଠେ ନେଇ ।
କୃଷ୍ଣ ସନ୍ତୋଷମନେ ଦେଇ ।।୫୮
ପିତା ମୋ କଣ୍ଠେ ନେଇ ।
କୃଷ୍ଣ ସନ୍ତୋଷମନେ ଦେଇ ।।୫୯
ଏଣୁ ମୁଁ କୃଷ୍ଣର ଯୁବତୀ ।
ତା ଶୁଣି ବୋଲେ ଜାମ୍ବବତୀ ।।୬୦
ଏ ମଣି ହେତୁ ନରହରି ।
ମୋ ତାତ ତୁଲେ ଯୁଦ୍ଧକରି ।।୬୧
ତ୍ରିନବଦିନ ମହାଘୋର ।
ଯୁଦ୍ଧେ ହାରିଲା ପିତା ମୋର ।।୬୨
ଗାଢ ପ୍ରହାରେ ତନୁ କ୍ଷୀଣ ।
ପ୍ରତ୍ୟେକ୍ଷ ଜାଣି ବିଷ୍ଣୁଚିହ୍ନ ।।୬୩
ଜାଣିଲା ଏ ମୋ ନିଜ ନାଥ ।
ରଘୁନନ୍ଦନ ସୀତାକାନ୍ତ ।।୬୪
ପୂର୍ବର କଥା ମନେ ଗୁଣି ।
ଚିହ୍ନିଲା ପ୍ରଭୁ ଚକ୍ରପାଣି ।।୬୫
ମଥୁରା ଜନମ ମୁରାରି ।
ମୋ ମନକଥା ଜାଣିକରି ।।୬୬
ଅଇଲେ ଯୁଦ୍ଧଦେବା ଅର୍ଥେ ।
ମୁଁ ଏବେ ପରମକୃତାର୍ଥେ ।।୬୭

କୋପସଂହାରି ଗୁଣମଣି ।
ଅନେକ ସ୍ତୁତିବାକ୍ୟ ଭଣି ।।୬୮
ପଡିଲା କୃଷ୍ଣପଦ୍ମପାଦେ ।
ଆନନ୍ଦେ ଶୋକ ଗଦଗଦେ ।।୬୯
ନିଜ ଅପରାଧ ବିଚାରି ।
ମଣି ମୋହର କଣ୍ଠେ ଭରି ।।୭୦
ଗୋବିନ୍ଦପାଦେ ଦେଲା ଆଣି ।
ଏଣୁ ମୁଁ କୃଷ୍ଣର ଘରଣୀ ।।୭୧
ଏ କଥା ଜଗତେ ପ୍ରସିଦ୍ଧି ।
ତା ଶୁଣି ବୋଲଇ କାଳିନ୍ଦୀ ।।୭୨
ଶୁଣ ଗୋ ସଖୀ କଥା ମୋର ।
ପିତା ମୋହର ଦିନକର ।।୭୩
ବୋଇଲେ ତପକର ଯାଇ ।
ପାଇବୁ ତ୍ରୈଲୋକ୍ୟଗୋସାଇଁ ।।୭୪
ପିତାବଚନେ ଘୋରବନେ ।
ତପ କରଇ ଶୁଦ୍ଧମନେ ।।୭୫
ଅଭୟପାଦ ସେବା ଆଶେ ।
ତା ଜାଣି କୃଷ୍ଣ ମୋର ପାଶେ ।।୭୬
ଅର୍ଜ୍ଜୁନେ ପେଷି ମୋତେ ଆଣି ।
ବିଭା ହୋଇଲେ ଚକ୍ରପାଣି ।।୭୭
ପିତାବଚନ ଶିରେ ଘେନି ।
ତେଣୁ ମୁଁ କୃଷ୍ଣର କାମିନୀ ।।୭୮
ଏଣୁ ମୋ ବର ଚକ୍ରପାଣି ।
ମିତ୍ରବିନ୍ଦା ବୋଲେ ତା ଶୁଣି ।।୭୯
ଶୁଣ ଗୋ ଦ୍ରୁପଦକୁମାରୀ ।
ମୋ ପିତା ସ୍ୱୟମ୍ବର କରି ।।୮୦
ଅନେକ ଥିଲେ ରାଜାଗଣେ ।
କେତେ କହିବି ଜଣେ ଜଣେ ।।୮୧
ଏମନ୍ତ ଜାଣି ଗୋପୀନାଥେ ।
ଯାଇ ମିଳିଲେ ଏକାରଥେ ।।୮୨
ଗୋବିନ୍ଦ ଆସି ନୃପମେଳେ ।
ସମରେ ଜିଣି ବାହୁବଳେ ।।୮୩
ମୋତେ ହରିଲେ ଏକାରଥେ ।
ସିଂହ ଯେସନେ ଶ୍ୱାନଯୂଥେ ।।୮୪
ହରଇ ନିଜ ଭାଗ ବଳେ ।
ମୋ ଭାତୃଗଣ ମୋର ଛଳେ ।।୮୫

Dr. Sudhanshu Sekhar Mishra

କୃଷ୍ଣର ତୁଲେ କଲେ ରଣ ।
ତାହାଙ୍କୁ ଜିଣି ତତ୍‌କ୍ଷଣ ।।୮୬
ମୋତେ ଆଣିଲେ ଶ୍ରୀନିବାସ ।
ତାର ଚରଣେ ସେବା ଆଶ ।।୮୭
ସେ ପଦ୍ମପାଦେ ମୋର ସେବ ।
ହେଉ ଏମନ୍ତ ଆଜ୍ଞା ଦେବା ।।୮୮
ମିତ୍ରବିନ୍ଦାର ଏ ବଚନେ ।
ସତ୍ୟା ବୋଲଇ ତୋଷମନେ ।।୮୯
ମୋ ପିତା ଭୁବନେ ପ୍ରଚଣ୍ଡ ।
ଥିଲେ ଯେ ଦୁଷ୍ଟ ସାତଷଣ୍ଢ ।।୯୦
ଅତି ସୁତୀକ୍ଷଣ ଶୃଙ୍ଗ ଖୁର ।
ଦେଖି ଡରନ୍ତି ମହାବୀର ।।୯୧
ତାହାଙ୍କୁ ନିଜ ପୁରେ ଥୋଇ ।
ଘୋଷଣ ଚଉଦିଗେ ଦେଇ ।।୯୨
ରାଜାଙ୍କ ବଳ ପରୀକ୍ଷାର୍ଥେ ।
ମଧ୍ୟେ ସଞ୍ଚିତ କରି ମୋତେ ।।୯୩
ଏ ସାତଷଣ୍ଢ ବାହୁବଳେ ।
ଯେ ବାନ୍ଧିପାରେ ଏକାବେଳେ ।।୯୪
ଏ କନ୍ୟା ହୋଇବ ତାହାର ।
ସତ୍ୟବଚନ ଏ ମୋହର ।।୯୫
ତା ଶୁଣି ନୃପତିକୁମରେ ।
ମିଳିଲେ ମୋ ପିତା ନଗରେ ।।୯୬
ଦେଖି ସପତଷଣ୍ଢ ରୂପ ।
ଭୟେ ଭାଜିଲେ ସର୍ବ ନୃପ ।।୯୭
ଏମନ୍ତେ ପ୍ରଭୁ ବନମାଳୀ ।
ବେଗେ ମୋ ପିତା ପୁରେ ମିଳି ।।୯୮
ସେ ସାତଷଣ୍ଢ ବାହୁବଳେ ।
ବନ୍ଧନ କଲେ ଏକାବେଳେ ।।୯୯
ଛାଗବାଳକ ରାଜପଥେ ।
ବାଳକେ ବାନ୍ଧନ୍ତି ଯେମନ୍ତେ ।।୧୦୦
ଏମନ୍ତେ ବୃଷ ବନ୍ଦୀ କରି ।
ମୋତେ ଲଭିଲେ ନରହରି ।।୧୦୧
ପଥେ ସମରେ ରାଜା ଜିଣି ।
ଦ୍ୱାରକା ନେଲେ ଚକ୍ରପାଣି ।।୧୦୨
ସେ ହରି ଅଭୟ ଚରଣେ ।
ମୋ ଚିତ୍ତ ରହୁ ଅନୁକ୍ଷଣେ ।।୧୦୩

ଯାର ସ୍ମରଣେ ନାହିଁ ବାଧା ।
ତା ଶୁଣି ବୋଲଇ ଯେ ଭଦ୍ରା ।।୧୦୪
କୃଷ୍ଣ ମୋ ମାତୁଳକୁମର ।
ପିତା ବରିଲା ତାଙ୍କୁ ବର ।।୧୦୫
କୃଷ୍ଣଙ୍କୁ ଆଣି ନିଜପୁରେ ।
ବିବାହ ଦେଲା ସୁହୃଦରେ ।।୧୦୬
ଶୁଣ ଦ୍ରୌପଦୀ ମନଦେଇ ।
ମୋହର ଚିତ୍ତ କୃଷ୍ଣ ତହିଁ ।।୧୦୭
ବଳ ଅକ୍ଷୌହିଣୀ ସଙ୍ଗତେ ।
ସଖୀ ସମେତ ଦେଲା ମୋତେ ।।୧୦୮
ସେ ହରିପାଦେ ମୋର କର୍ମେ ।
ସ୍ମରଣ ହେଉ ଜନ୍ମେ ଜନ୍ମେ ।।୧୦୯
ଏ ଭବଜଳେ ମୋର ଜନ୍ମ ।
ଅର୍ଜିତକର୍ମେ ପଥଶ୍ରମ ।।୧୧୦
ସେ କୃଷ୍ଣପାଦେ ସେବା ହେଉ ।
ଏ ମୋର ମାୟାଭ୍ରମ ଯାଉ ।।୧୧୧
ଏମନ୍ତେ ଶୁଣି ସର୍ବବାଣୀ ।
ଲକ୍ଷଣା କହେ ମନେ ଗୁଣି ।।୧୧୨
ଶୁଣ ଗୋ ଧର୍ମସୁତରାଣି ।
ଲକ୍ଷଣା କହେ ମନେ ଗୁଣି ।।୧୧୩
ନାରଦମୁନି ଶୁଦ୍ଧଚେତା ।
କୃଷ୍ଣର ଜନ୍ମଧର୍ମକଥା ।।୧୧୪
ନିତ୍ୟେ କହନ୍ତି ମୋର ପାଶେ ।
ତା ଶୁଣି ମନ ମୋ ବିଶ୍ୱାସେ ।।୧୧୫
ମୁକୁନ୍ଦପାଦେ ଲୋଭ କରି ।
ଯେ ପାଦ ଲକ୍ଷ୍ମୀ ଅଛି ଧରି ।।୧୧୬
ଲୋକପାଳଙ୍କୁ ତେଜି ଦୂରେ ।
ସେବଇ ଶ୍ରୀକୃଷ୍ଣ ପୟରେ ।।୧୧୭
ତା ପାଦେ ଭଜିଲା ମୋ ଚିତ୍ତ ।
କ୍ଷଣକ୍ଷଣକେ ମୋହଗତ ।।୧୧୮
ମନବଚନ କୃଷ୍ଣପାଦେ ।
କଣ୍ଠ ମୋ ଶୋକ ଗଦଗଦେ ।।୧୧୯
ମୋର ପିଅର ବୃହତସେନ ।
ତକ୍ଷଣେ ଜାଣିଲା ମୋ ମନ ।।୧୨୦
ସ୍ୱଭାବେ ଦୁହିତାବତ୍ସଳ ।
ପୁଣ୍ୟପବିତ୍ର ଯାର କୂଳ ।।୧୨୧

ଉପାୟ କଲା ମୋର ଅର୍ଥେ ।
ଶୁଣ କହିବି ତୋଷଚିତ୍ତେ ।।୧୨୨
ଭୋ ଦେବି ତୋର ସ୍ୱୟମ୍ବରେ ।
ଯେମନ୍ତେ ଦ୍ରୁପଦନଗରେ ।।୧୨୩
ଲାଖ ଭିଆଣ ପାର୍ଥଛଳେ ।
ମତ୍ସ୍ୟ ସଂକାଶ କୁମ୍ଭଜଳେ ।।୧୨୪
ବସ୍ତ୍ର ଆଚ୍ଛାଦି ଅଷ୍ଟଦିଶେ ।
ଧନୁ ସ୍ଥାପିଲା କୁମ୍ଭପାଶେ ।।୧୨୫
ତା ଶୁଣି ନୃପତିକୁମରେ ।
ମିଳିଲେ ମୋ ପିତା ନଗରେ ।।୧୨୬
ଜାଣନ୍ତି ଅସ୍ତ୍ରଶସ୍ତ୍ର ତତ୍ତ୍ୱ ।
ସ୍ୱଗୁରୁ ତୁଲେ ଉପଗତ ।।୧୨୭
ଚାରିଦିଗରୁ ଲକ୍ଷେ ରାଜା ।
ଦେଖି ମୋ ପିତା କଲା ପୂଜା ।।୧୨୮
ପୂଜିଲା ନାନା ଉପହାରେ ।
ଯାହାକୁ ଯେମନ୍ତ ବେଭାରେ ।।୧୨୯
ସକଳେ ମିଳି ଲାଖତଳେ ।
ଧନୁସନ୍ଧାନ ବାହୁବଳେ ।।୧୩୦
କେ ଧନୁ ନ ପାରନ୍ତି ତୋଳି ।
କା ମୁଖୁଁ ରୁଧିର ନିକିଳି ।।୧୩୧
କେ ଗୁଣ ଦେଇ ନ ପାରନ୍ତି ।
କେ ଚ୍ଛୁଡି ଭୂମିରେ ପଡନ୍ତି ।।୧୩୨
କେ ଧନୁହୁଳେ ଗୁଣ ତାଡି ।
ପଡିଲେ ଧନୁହୁଦେ ମାଡି ।।୧୩୩
ମାଗଧ  ଆଦି ବୀର ଯେତେ ।
ଧନୁସାଧନ ଗୁରୁମତେ ।।୧୩୪
ଥିଲେ ଯେ ଭୀମ ଦୁର୍ଯ୍ୟୋଧନ ।
ରବିନନ୍ଦନ ବୀରକର୍ଣ୍ଣ ।।୧୩୫
ମୀନର ନ ଦେଖିଲେ ସ୍ଥାନ ।
ତା ଦେଖି ଉଠିଲା ଅର୍ଜୁନ ।।୧୩୬
ଧନୁ ଆମଣ୍ଡି ଦୃଢମୁଷ୍ଟି ।
ଊର୍ଦ୍ଧ୍ୱନାରାଚ ଅଧୋଦୃଷ୍ଟି ।।୧୩୭
ମତ୍ସ୍ୟ ଆଭାସ ଦେଖି ଜଳେ ।
ବାଣ ଛାଡିଲା ଅନ୍ତରାଳେ ।।୧୩୮
ମତ୍ସ୍ୟରେ ଲାଗି ବାଣ ଗଲା ।
ଲାଜେ ଅର୍ଜୁନ ବାହୁଡିଲା ।।୧୩୯

Dr. Sudhanshu Sekhar Mishra

ଏମନ୍ତେ ସକଳ ରାଜନ ।
ଲାଜେ ନିବୃତ୍ତ ଅପମାନ ॥୧୪୦
ମାନୀଙ୍କ ମାନଭଙ୍ଗ ଡରେ ।
କେହି ନଗଲେ ଧନୁଘରେ ॥୧୪୧
ଏମନ୍ତେ କମଳଲୋଚନ ।
ଧନୁମନ୍ଦିରେ ଆଗମନ ॥୧୪୨
ଲୀଳାଏ ବାମ କରେ ଧରି ।
ଗୁଣ ଟଙ୍କାର ନାଦ କରି ॥୧୪୩
ନାରାଚ ତୋଳି ଧନୁ ଧରି ।
ଅଧୋବଦନେ ବନମାଳୀ ॥୧୪୪
ମତ୍ସ୍ୟକୁ ଚାହିଁ କୁମ୍ଭଜଣେ ।
ବାଣ ଛାଡିଲେ ବାହୁବଳେ ॥୧୪୫
ନାରାଚ ତେଜେ ମୀନ ଗୋଟି ।
ତଳେ ପଡିଲା ଚକ୍ଷୁଫୁଟି ॥୧୪୬
ମୁହୂର୍ତ୍ତ ଅଭିଜିତ କାଳେ ।
ବିବୁଧେ ଗଗନ ମଣ୍ଡଳେ ॥୧୪୭
ଦୁନ୍ଦୁଭି-ବାଦ୍ୟ-ନାଦ କଲେ ।
ଜୟ ଶବଦ ମହୀତଳେ ॥୧୪୮
ହରଷ ଭୋଳେ ସୁରଗଣ ।
କରନ୍ତି ପୁଷ୍ପବରଷଣ ॥୧୪୯
ଶୁଣ ପାଞ୍ଚାଳି ଶୁଦ୍ଧଚିତ୍ତେ ।
ମୁଁ ତହିଁ ମିଳିଲି ଯେମନ୍ତେ ॥୧୫୦
ଗଭୀର ନୁପୁର ଶବଦେ ।
ମଞ୍ଜୁ କୋମଳ ବେନିପାଦେ ॥୧୫୧
କରେ ନିର୍ମଳ ରତ୍ନମାଳ ।
ମୋହନ ଭୁବନମଣ୍ଡଳ ॥୧୫୨
ନବୀନ ପାଟବସ୍ତ୍ର ପିନ୍ଧି ।
କବରୀଭାରେ ପୁଷ୍ପ ବାନ୍ଧି ॥୧୫୩
ଅଳପ ଲାଜେ ମନ୍ଦହାସେ ।
ମୁଖ ଶୋଭିତ ରଙ୍ଗରସେ ॥୧୫୪
ନିକଟେ ଦେଖି ବନମାଳୀ ।
ଲଜ୍ଜା ଛାଡିଲି ମୁଖ ତୋଳି ॥୧୫୫
ନୀଳକୁନ୍ତଳ ମୋ କପୋଳେ ।
ରତ୍ନକୁଣ୍ଡଳ ଗଣ୍ଡସ୍ଥଳେ ॥୧୫୬
ସସ୍ମିତହାସ ମୁଖେ ସାଜେ ।
କଟାକ୍ଷ ଲୋଚନ ବିରାଜେ ॥୧୫୭

ଦେଖନ୍ତି ସକଳ ରାଜନେ ।
ନିର୍ମଳ ନିଶ୍ଚଳ ଲୋଚନେ ॥୧୫୮
ଭୋ ସଖି ଦୂର କଲି ଲାଜ ।
ଧୀରେ ମୁଁ ତୋଳି ବେନିଭୁଜ ॥୧୫୯
କୃଷ୍ଣର ଦେହେ ଚିତ୍ତ ମୋର ।
ରଙ୍ଗେ ଦେଖନ୍ତି ସୁରନର ॥୧୬୦
ଶଙ୍ଖ ଶବଦ ଜୟନାଦେ ।
ମାଳା ମୁଁ ଦେଲି କୃଷ୍ଣହୃଦେ ॥୧୬୧
ମୃଦଙ୍ଗ ପଟହ ଶବଦେ ।
ଦୁନ୍ଦୁଭି ଆଦି ବାଦ୍ୟନାଦେ ॥୧୬୨
ରଙ୍ଗେ ନାଚନ୍ତି ନାରୀଗଣେ ।
ଗୀତ ସୁସ୍ୱର ବାଦ୍ୟସ୍ୱନେ ॥୧୬୩
ଏମନ୍ତେ କୃଷ୍ଣଙ୍କୁ ମୁଁ ବରି ।
ରାଜାଏ ଦେଖି ଯୁଦ୍ଧ କରି ॥୧୬୪
ମୋ ରୂପେ ହୋଇ ଅସମ୍ଭାଳ ।
ଯୁଦ୍ଧ ଆରମ୍ଭି କଲେ ଗୋଳ ॥୧୬୫
ତା ଦେଖି ପ୍ରଭୁ ବନମାଳୀ ।
ନନ୍ଦିଘୋଷରେ ମୋତେ ତୋଳି ॥୧୬୬
ରଥେ ଚତୁର ଅଶ୍ୱଯୁତ ।
ଶାରଙ୍ଗଧନୁ ଧରି ହସ୍ତ ॥୧୬୭
ସନ୍ନିଧେ ଦେଖି ରଣସଜ ।
ରଥେ ହୋଇଲେ ଚତୁର୍ଭୁଜ ॥୧୬୮
ରତ୍ନବିମାନେ ଜନ ମୋହେ ।
ଦାରୁକ ବିଷ୍ଣୁ ତେଜେ ବାହେ ॥୧୬୯
ଦେଖନ୍ତି ସର୍ବ ରାଜାଗଣ ।
ରଣେ ମିଳିଲେ ନାରାୟଣ ॥୧୭୦
ଶୁଣ ପାଞ୍ଚାଳି ଏକମନେ ।
ମୃଗଙ୍କ ମଧ୍ୟେ ସିଂହ ଯେହ୍ନେ ॥୧୭୧
ଅନେକ ରାଜା ରାଜପଥେ ।
ରୁନ୍ଧିଲେ ଅତି ବଳବନ୍ତେ ॥୧୭୨
ସଜ୍ଜିତ ହୋଇ ଧନୁ ଧରି ।
ରହିଲେ କୃଷ୍ଣଙ୍କୁ ଆବୋରି ॥୧୭୩
ସିଂହକୁ ଯେହ୍ନେ ଶ୍ୱାନଯୂଥ ।
ଆବୋରି ଚଉଦିଗ ପଥ ॥୧୭୪
କୃଷ୍ଣ ସାରଙ୍ଗଧନୁ ବାଣେ ।
ରଣେ ପଡିଲେ ରାଜାଗଣେ ॥୧୭୫

ବାହୁଚରଣ କନ୍ଧ ଛାଡି ।
ପଡିଲେ ରଣଭୂମି ମାଡି ॥୧୭୬
ଥୋକାଏ ପ୍ରାଣରକ୍ଷା ଆଶେ ।
ପଳାଇଗଲେ ନିଜ ଦେଶେ ॥୧୭୭
ସମରେ ଜିଣି ବନମାଳୀ ।
ବିଜୟ କଲେ କୁଶସ୍ଥଳୀ ॥୧୭୮
ଅତି ସୁନ୍ଦର ଅଳଙ୍କୃତ ।
ଧ୍ୱଜ ପତାକା ନାନା ଚିତ୍ର ॥୧୭୯
ନାନା ତୋରଣ ଗୃହେ ଶୋହେ ।
ଦେଖନ୍ତେ ଜନମନ ମୋହେ ॥୧୮୦
ଯେ କୁଶସ୍ଥଳୀ ଦିବ୍ୟଭୂମି ।
ଯହିଁ ବିଜୟ ଅନ୍ତର୍ଯ୍ୟାମୀ ॥୧୮୧
ପିତା ମୋହର ବିଭାକାଳେ ।
ବନ୍ଧୁବାନ୍ଧବ ଜ୍ଞାତିମେଳେ ॥୧୮୨
ପୂଜିଲା ନାନା ଉପହାରେ ।
ଶଯ୍ୟା ଆସନ ଅଳଙ୍କାରେ ॥୧୮୩
ଅନେକ ଦାସ ଦାସୀ ଧନ ।
ବାଜି କୁଞ୍ଜର ବହୁ ସୈନ୍ୟ ॥୧୮୪
ବିବିଧ ଅସ୍ତ୍ରଶସ୍ତ୍ର ଆଣି ।
ଦେଲାକ ସର୍ବ ପରିମାଣି ॥୧୮୫
କୃଷ୍ଣଙ୍କୁ ଯଉତୁକ ଦେଲା ।
ଅନେକ ଭକ୍ତିଭାବ କଲା ॥୧୮୬
ଯେ ହରି ନିଜ ତେଜ ଧାମ ।
ମହାମହିମ ପୂର୍ଣ୍ଣକାମ ॥୧୮୭
ସେ ହରି ପଦ୍ମପାଦ ତଳେ ।
ମୋ ନିଜ ସଖୀ ସଙ୍ଗମେଳେ ॥୧୮୮
ତାହାର ଗୃହଦାସୀ ସଙ୍ଗେ ।
ନିବୃତ୍ତ ଚିତ୍ତ ଅନୁରାଗେ ॥୧୮୯
ତପସ୍ୟା ଫଳୁଁ ଚିତ୍ତ ରହୁ ।
ସେ ପାଦ ସେବି ଦିନ ଯାଉ ॥୧୯୦
ଏମନ୍ତେ ଲକ୍ଷଣା ବଚନେ ।
ଷୋଳସହସ୍ର ନାରୀଜନେ ॥୧୯୧
ଶତେ ଅଧିକ ସେ ସ୍ୱଭାବେ ।
ହସି କହନ୍ତି ପ୍ରିୟଭାବେ ॥୧୯୨
ଭୂମିନନ୍ଦନ ମହାବୀର ।
ଦୁର୍ଜ୍ଜୟ ନାରକା ଅସୁର ॥୧୯୩

Dr. Sudhanshu Sekhar Mishra

ଦିଗବିଜୟେ ବୀରମଣି ।
ଅନେକ ରାଜକନ୍ୟା ଆଣି ।।୧୯୪
ନିଜ ଭୁବନେ ଥିଲା ଭରି ।
ସମରେ କୃଷ୍ଣ ତାଙ୍କୁ ମାରି ।।୧୯୫
ଆମ୍ଭଙ୍କୁ ବନ୍ଦିମୋକ୍ଷ କରି ।
ଆଣିଲେ ପ୍ରଭୁ ଦଇତ୍ୟାରି ।।୧୯୬
ଘୋର ସଂସାର ମାୟାବନ୍ଧ ।
ଧ୍ୟାନେ ଛେଦଇ ଯାର ପାଦ ।।୧୯୭
ସେ ହରି ଆମ୍ଭ ଚିତ୍ତ ଜାଣି ।
ଉଦ୍ଧରି ନିଜପୁରେ ଆଣି ।।୧୯୮
ଆମ୍ଭେ ହୋଇଲୁ ତାର ଦାସୀ ।
ଅଭୟ-ପଦ୍ମପାଦେ ଆସି ।।୧୯୯
ସ୍ୱଭାବେ ଆତ୍ମାରାମ ସେହି ।
ତାହାର ଆଦିଅନ୍ତ ନାହିଁ ।।୨୦୦
ନିତ୍ୟେ ଚିନ୍ତଉଁ ସର୍ବନାରୀ ।
ଗୋବିନ୍ଦ ପାଦେ ମନ ଧରି ।।୨୦୧
ସେ ପ୍ରଭୁ ଜଗତଜୀବନ ।
ପଶିଲୁ ତାହାରେ ଶରଣ ।।୨୦୨

ଶୁଣ ସାଧବି ଆମ୍ଭ ବାଣୀ ।
ଚିତ୍ତେ ଏମନ୍ତ ପରିମାଣି ।।୨୦୩
ସକଳ ରାମରାଜ୍ୟ ଭୋଗ ।
ଅଣିମା ଆଦି ସିଦ୍ଧିଯୋଗ ।।୨୦୪
ଇନ୍ଦ୍ର କି ବ୍ରହ୍ମପଦ ଅବା ।
କୈବଲ୍ୟ ବଇକୁଣ୍ଠ କିବା ।।୨୦୫
ଏଣେ ଆମ୍ଭର ନାହିଁ ଇଚ୍ଛା ।
ଅଭୟ ପାଦପଦ୍ମେ ବାଞ୍ଛା ।।୨୦୬
ଶ୍ରୀକୃଷ୍ଣ ପାଦପଦ୍ମ ଧୂଳି ।
କୁଚ କୁଙ୍କୁମେ ଲକ୍ଷ୍ମୀ ବୋଳି ।।୨୦୭
ତେଣୁ ସୁଗନ୍ଧ ଅତି ସ୍ଥିରେ ।
ନିତ୍ୟେ ବହିଁବୁଁ ତାହା ଶିରେ ।।୨୦୮
ଯା ପାଦ-ସରସିଜ ତିନି ।
ବାଞ୍ଛନ୍ତି ଗୋପାଳ ଯୁବତୀ ।।୨୦୯
ପୁଲିନ ତୃଣ ଗୁଳ୍ମ ଜାତି ।
ଗାବ ଗୋପାଳେ ଯାହା ଚିନ୍ତି ।।୨୧୦
ସେ ପଦ୍ମପାଦ ଆମ୍ଭ ଚିତ୍ତେ ।
ସ୍ମରଣ ହେଉ ଅବିରତେ ।।୨୧୧

କୃଷ୍ଣ ମହିମା ଅଗୋଚର ।
ମୁଁ କୀଟ କୋଟିକେ ଅନ୍ତର ।।୨୧୨
ଏଣୁ ହୋଇଲି ଅପରାଧୀ ।
ଯେହ୍ନେ ଗଗନେ ଲାଖ ବିନ୍ଧି ।।୨୧୩
ସୁଜନେ ଶୁଣ ପରିହସ ।
ମୁଁ ତୁମ୍ଭ ଚରଣରେ ଦାସ ।।୨୧୪
ଏଣେ ସୁଜନେ ମନ ଦେଇ ।
ଭେଟିବ ପ୍ରଭୁ ଭାବଗ୍ରାହୀ ।।୨୧୫
ବୋଲଇ ଦାସ ଜଗନ୍ନାଥ ।
ଗୀତବିନୋଦେ ଭାଗବତ ।।୨୧୬

ଇତି ଶ୍ରୀମଦ୍ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଏକୋନନବତିତମ ଅଧ୍ୟାୟଃ ।।

---

## ନବତିତମ ଅଧ୍ୟାୟ

ଶୁକ ବୋଲନ୍ତି ଶୁଦ୍ଧମନେ ।
ହରଷେ ରାଜା ସନ୍ନିଧାନେ ।।୧

ଶୁକ ଉବାଚ

ଶୁଣ ସୁମନେ ଶୁଦ୍ଧଚେତା ।
କୃଷ୍ଣ ମଙ୍ଗଳ ଗୁଣଗାଥା ।।୨
କୃଷ୍ଣର ଅଷ୍ଟପାଟରାଣୀ ।
ତାହାଙ୍କ ମୁଖୁଁ ବାକ୍ୟ ଶୁଣି ।।୩
କୁନ୍ତୀ ଗାନ୍ଧାରୀ ଯାଜ୍ଞସେନୀ ।
ମାଧବୀ ସୁଭଦ୍ରା କାମିନୀ ।।୪
ଅପରେ ରାଜପତ୍ନୀ ଯେତେ ।
ବ୍ରଜକାମିନୀଗଣ ସାଥେ ।।୫
କୃଷ୍ଣମହିମା ଶୁଣି କର୍ଣ୍ଣେ ।
ଅପରେ ଯେତେ ବଧୂଜନେ ।।୬
ପରମାନନ୍ଦ ବିଷ୍ଣୁଭାବେ ।
ପ୍ରେମ ଅନୁବନ୍ଧ ସ୍ୱଭାବେ ।।୭

ଆନନ୍ଦେ ତନୁ ପୁଲକିତ ।
ଲୋଚନ କୋଣେ ଅଶ୍ରୁଜାତ ।।୮
ଏକ ଆରେକ ମୁଖ ଚାହିଁ ।
କୃଷ୍ଣ ମହିମା ଗୁଣ ଗାଇ ।।୯
ସୁଖସାଗରେ ନିମଜ୍ଜିଲେ ।
ଏମନ୍ତେ ବିପ୍ରେ ବିଜେ କଲେ ।।୧୦
ଦେଖିବା ଅର୍ଥେ ରାମ ହରି ।
ଅନେକ ଦୂରୁଁ ଆଶା କରି ।।୧୧
ବ୍ୟାସ ସହିତେ ବ୍ରହ୍ମାସୁତ ।
ଚ୍ୟବନ ଦେବଳ ଅସିତ ।।୧୨
ବିଶ୍ୱାମିତ୍ର ଯେ ମହାମୁନି ।
ସଙ୍ଗତେ ଶତାନନ୍ଦ ଘେନି ।।୧୩
ଭରଦ୍ୱାଜ ଯେ ଗଉତମ ।
ମିଳିଲେ ଶ୍ରୀପରଶୁରାମ ।।୧୪
ବଶିଷ୍ଠ ଶିଷ୍ୟଙ୍କ ସହିତେ ।
ଗାଲବ ଆଦି ଭୃଗୁ ଯେତେ ।।୧୫

ପୁଲସ୍ତ୍ୟ କଶ୍ୟପ ଯେ ଅତ୍ରି ।
ମୃକଣ୍ଡୁସୁତ ବୃହସ୍ପତି ।।୧୬
ବ୍ରହ୍ମାର ସୁତ ଦ୍ୱିତ ତ୍ରିତ ।
ଏକତ୍ର ଅଙ୍ଗିରା ସହିତ ।।୧୭
ଅଗସ୍ତ୍ୟ ଯାଜ୍ଞବଲ୍କ୍ୟ ମୁନି ।
ଅପରେ ବାମଦେବ ଘେନି ।।୧୮
ଋଷିଙ୍କି ଦେଖି କିଛି ଦୂରେ ।
ବେଗେ ଉଠିଲେ ନୃପବରେ ।।୧୯
ପାଣ୍ଡବେ ରାମକୃଷ୍ଣ ତୁଲେ ।
ବିପ୍ରଙ୍କ ପାଦେ ପ୍ରଣମିଲେ ।।୨୦
ବିଶ୍ୱବନ୍ଦିତ ମୁନିଗଣ ।
କୃଷ୍ଣ ନମନ୍ତି ପୁଣ ପୁଣ ।।୨୧
ରାମ ସହିତେ ଦାମୋଦର ।
ପୂଜିଲେ ବିପ୍ରଙ୍କ ପୟର ।।୨୨
ଆସନ ପାଦ୍ୟ ଅର୍ଘ୍ୟ ମାଲ୍ୟେ ।
ଆନନ୍ଦେ ଗନ୍ଧ ଧୂପ ଦେଲେ ।।୨୩

Dr. Sudhanshu Sekhar Mishra

ସୁଖେ ବସାଇ ମୁନିଗଣ ।
ଧର୍ମପାଳନ ନାରାୟଣ ॥୨୪
ଯେମନ୍ତେ ସଭାଲୋକେ ଶୁଣି ।
ଉଚ୍ଚବଚନେ ଚକ୍ରପାଣି ॥୨୫
ବୋଲନ୍ତି ପ୍ରଭୁ ଭଗବାନ ।
ଆଜ ଜୀବନ ମୋର ଧନ୍ୟ ॥୨୬
ଯେ ଫଳ ଅତି ତପ ଦାହି ।
ଆଜ ଲଭିଲି ତାହା ମୁହିଁ ॥୨୭
ଯୋଗେଶ୍ୱରଙ୍କ ଦରଶନ ।
ଦେବଙ୍କୁ ଦୁର୍ଲଭ ଏ ଜାଣ ॥୨୮
ଏ ଜନ ମଧ୍ୟେ ଯାର ଜନ୍ମ ।
ଅଳ୍ପ ତପସ୍ୟା ପୁଣ୍ୟହୀନ ॥୨୯
ଏହାଙ୍କ ଦରଶନ ପାଇ ।
ନିର୍ମଳ ନ କରଇ ଦେହୀ ॥୩୦
ଏହାଙ୍କ ମୁଖ ଦରଶନ ।
ପ୍ରଣାମ ପୁଚ୍ଛା ସ୍ମରଣନ ॥୩୧
ଆଦର ପାଦପୂଜା କରି ।
ପ୍ରାଣୀ ତରନ୍ତି ଭବବାରି ॥୩୨
ତୀର୍ଥ ପୂରିତ ପୁଣ୍ୟଜଳେ ।
ଯେତେ ଦେବତା ଭୂମିତଳେ ॥୩୩
ପାଷାଣ ମୃତ୍ତିକା ଭିଆଣେ ।
ଆଗମ ନିଗମ ପ୍ରମାଣେ ॥୩୪
ଅନେକ କାଳେ ଏ ତାରନ୍ତି ।
ସେବା ଉଚିତେ ଫଳ ଦ୍ୟନ୍ତି ॥୩୫
ସାଧୁଙ୍କୁ ଦେଖି ଦୃଷ୍ଟିପଥେ ।
ପାପ ନ ରହେ ଅନ୍ତର୍ଗତେ ॥୩୬
ଅନଳ ରବି ନିଶାକର ।
ନକ୍ଷତ୍ର ମହୀ ସର୍ବ ନୀର ॥୩୭
ଶୂନ୍ୟ ପବନ ବାକ୍ୟ ମନ ।
ଏ ଆଦି ବିଷୟ ପ୍ରଧାନ ॥୩୮
ଏହାଙ୍କୁ ସେବନ୍ତି ଯେ ନିତ୍ୟେ ।
ଶାସ୍ତ୍ର ପୁରାଣ ବେଦମତେ ॥୩୯
ତାହାର ପାପ ନ ଛାଡଇ ।
ସେବା ଉଚିତେ ଫଳ ପାଇ ॥୪୦
ସାଧୁଙ୍କ ଜ୍ଞାନବାଣୀ ଶୁଣି ।
ମୁହୂର୍ତ୍ତେ ସେବନ୍ତି ଯେ ପ୍ରାଣୀ ॥୪୧

ସକଳ ପାପୁଁ ସେ ନିସ୍ତରେ ।
ନିର୍ମଳ ବାହ୍ୟ ଅଭ୍ୟନ୍ତରେ ॥୪୨
ତ୍ରିଧାତୁରୂପ ଏ ଶରୀର ।
ନିତ୍ୟେ ମରଣ ଅଧିକାର ॥୪୩
ଏ ଦେହ ଆତ୍ମା ବୁଦ୍ଧି ଯାର ।
କଳତ୍ର ଆଦି ବୋଲେ ମୋର ॥୪୪
ମାଟି ପାଷାଣ ଦାରୁଖଣ୍ଡ ।
ଏଣେ ନିର୍ମିତ ଦେବପିଣ୍ଡ ॥୪୫
ତହିଁ ଯାହାର ପୂଜାବିଧି ।
ଜଳେ ଯାହାର ତୀର୍ଥବୁଦ୍ଧି ॥୪୬
ସାଧବେ ନ କରେ ଆଦର ।
ତାହାକୁ ବୋଲିଟି ଗୋଖର ॥୪୭
ଶୁକ କହନ୍ତି ମୁନିଜନେ ।
ଏମନ୍ତେ କୃଷ୍ଣର ବଚନେ ॥୪୮
ଶୁଣି ସମ୍ଭ୍ରମେ ଋଷିଜନ ।
ଚିତ୍ତେ ମଣିଲେ ବୁଦ୍ଧିଛନ୍ନ ॥୪୯
ଦୁରଧିଗମ୍ୟ ବାକ୍ୟ ଶୁଣି ।
ଚଞ୍ଚଳ ଚିତ୍ତେ ହୋଇ ତୁନି ॥୫୦
ଈଶ୍ୱର ବାକ୍ୟ ଅବଧାନେ ।
ଚିତ୍ତେ ବିଚାରି ଦୃଢମନେ ॥୫୧
ଜନ ସଂଗ୍ରହ ଅର୍ଥେ ଧାୟି ।
ହସି ବୋଲନ୍ତି କୃଷ୍ଣ ଚାହିଁ ॥୫୨

ମୁନିଗଣ ଉବାଚ

ବ୍ରହ୍ମାଦି ଯେତେ ପ୍ରଜାପତି ।
ଏ ବିଶ୍ୱସଂସାର ସର୍ଜନ୍ତି ॥୫୩
ତାଙ୍କ ଈଶ୍ୱର ଅଟୁ ତୁହି ।
ବିଷ୍ଣୁର ମାୟାତନ୍ତ୍ରେ ମୋହି ॥୫୪
ଭ୍ରମୁଁ ସଂସାରଚକ୍ରେ ପଡି ।
ନିଜ ନିସ୍ତାର ପଥ ଛୁଡି ॥୫୫
ବିଚିତ୍ର ବିଷ୍ଣୁର ଚେଷ୍ଟିତ ।
ଯେଣୁ ଭ୍ରମାନ୍ତି ଏ ଜଗତ ॥୫୬
ସ୍ୱଭାବେ ନିର୍ବିକଳ୍ପ ହରି ।
ଆତ୍ମରେ ଆତ୍ମମାୟା କରି ॥୫୭
ଏ ବିଶ୍ୱ ସର୍ଜଇ ପାଳଇ ।
ପ୍ରଳୟକାଳେ ସଂହାରଇ ॥୫୮

ଏ ପୁଣି କର୍ମେ ବଦ୍ଧ ନୋହେ ।
ମାୟାର ବଳେ ବିଶ୍ୱ ମୋହେ ॥୫୯
ମୃତ୍ତିକା ଯେସନେ ବିକାରେ ।
ବହୁତ ନାମ ରୂପ ଧରେ ॥୬୦
ତେସନ ଈଶ୍ୱର ରଚିତ ।
ମାୟାବିଡମ୍ବେ ବିପରୀତ ॥୬୧
ପୁଣି ଗୋବିନ୍ଦ ମୁଖ ଚାହିଁ ।
ବୋଲନ୍ତି ଶିରେ କର ଦେଇ ॥୬୨
ତୋର ମହିମା ଏହିମତ ।
ଯେଣୁ ତୋ ସର୍ଜନା ଜଗତ ॥୬୩
ତଥାପି ଖଳ ନିବାରଣ ।
ସୁଜନ ଧର୍ମ ସମ୍ପାଦନ ॥୬୪
ନିର୍ମଳ ଦେହେ ବିଶ୍ୱବ୍ୟାପୀ ।
ଲୀଳାଏ ବେଦପଥ ସ୍ଥାପି ॥୬୫
ଯେ ସନାତନ ବର୍ଣ୍ଣାଶ୍ରମ ।
ତୁ ରଖୁ ଏହାଙ୍କର ଧର୍ମ ॥୬୬
ଯେଣୁ ତୁ ପରମପୁରୁଷ ।
ଏ ଜନ ମଧ୍ୟେ ତୋର ଯଶ ॥୬୭
ଯେ ବ୍ରହ୍ମ ଅନାଦିକରଣ ।
ସେ ତୋର ହୃଦୟ ପ୍ରମାଣ ॥୬୮
ସ୍ୱାଧ୍ୟାୟ ତପ ପ୍ରାଣାୟମେ ।
ଯାହାକୁ ଲଭି ଅତିଶ୍ରମେ ॥୬୯
ସେ ତୋର ତହୁଁ ଆତଯାତ ।
ଯାର ପ୍ରମାଣ ବ୍ୟକ୍ତାବ୍ୟକ୍ତ ॥୭୦
ତୁ ସର୍ବଶାସ୍ତ୍ରଙ୍କ ଜନନୀ ।
ତେଣୁ ତୁ ଆତ୍ମମାୟା ଘେନି ॥୭୧
ବ୍ରହ୍ମକୁଳକୁ ରକ୍ଷା କରୁ ।
ତୁ ନାଥ ଆତ୍ମା ଜ୍ଞାନଗୁରୁ ॥୭୨
ବ୍ରହ୍ମଣ୍ୟବର ତୋର ନାମ ।
ତୁ ଜାଣୁ ତୋର ନିଜ ଧାମ ॥୭୩
ଆଜ ସଫଳ ଆମ୍ଭ ଜନ୍ମ ।
ତପ ସମାଧି ବିଦ୍ୟା କର୍ମ ॥୭୪
ଏ ଦୃଷ୍ଟି ଶ୍ରବଣର ଲାଭ ।
ତୋ ସଙ୍ଗେ ବାକ୍ୟ ପ୍ରିୟଭାବ ॥୭୫
ଜୀବନ ମୋକ୍ଷ ତୋ ନିକଟେ ।
ଲଭିଲୁଁ ପୁଣ୍ୟତୀର୍ଥେ ତଟେ ॥୭୬

Dr. Sudhanshu Sekhar Mishra

ବଚନ ତୋତେ ନ ଜାଣଇ ।
ମନ ପାଇବ ଅବା କାହିଁ ।।୭୭
ଏମନ୍ତେ କୃଷ୍ଣ ରୂପେ ତୋର ।
ନମସ୍ତେ ପ୍ରଭୁ ଦାମୋଦର ।।୭୮
ସୁଯୋଗ ମାୟାଛନ୍ନ ତୁହି ।
ମାୟାମନୁଷ୍ୟ ରୂପ ବହି ।।୭୯
ତୁ ପରମାତ୍ମା ନାରାୟଣ ।
ନମସ୍ତେ ପରମକାରଣ ।।୮୦
ତୋର ସୁହୃଦ ରାଜା ଯେତେ ।
ସ୍ୱଜନ ବାନ୍ଧବ ସହିତେ ।।୮୧
ଭୋଜ ଯାଦବ ବୃଷ୍ଣି ବଂଶେ ।
ତୁ ଯେ ପ୍ରକାଶି ଅଛୁ ଅଂଶେ ।।୮୨
ତୋହର ଅଙ୍ଗ ସଙ୍ଗେ ଥାଇ ।
ଏ ତୋତେ ଜାଣିଲେଟି ନାହିଁ ।।୮୩
ତୁ ଆତ୍ମା ପରମଈଶ୍ୱର ।
ମାୟାପଟଳେ ଅଗୋଚର ।।୮୪
ଯେହ୍ନେ ପୁରୁଷ ନିଦ୍ରାଭୋଳେ ।
ଶୟନ ଶରୀର ନିଷ୍ଫଳେ ।।୮୫
ଅଜ୍ଞାନ ଭାବ ମାୟାତୁଳେ ।
ଆତ୍ମାକୁ ନ ଜାଣଇ ଭଲେ ।।୮୬
ତୋର ମାୟାରେ ଛନ୍ନ ହୋଇ ।
ତୋତେ ଜାଣିବେ ଅବା କାହିଁ ।।୮୭
ଭୋ ନାଥ ତୋହର ଚରଣ ।
ଆଜ ଦେଖିଲୁଁ ନାରାୟଣ ।।୮୮
ଯେ ପାଦ ସର୍ବପାପ ନାଶେ ।
ଯୋଗୀଙ୍କ ହୃଦୟେ ପ୍ରକାଶେ ।।୮୯
ଅଶେଷ ତୀର୍ଥଫଳ ସେହି ।
ଯେ ଭଜିପାରେ ଦେହ ବହି ।।୯୦
ଉତ୍ତମ ଭକ୍ତି ଯୋଗବଳେ ।
ଅନ୍ତର ବାହାର ନିଷ୍ଫଳେ ।।୯୧
ନିରୋପି ପଦ୍ମପାଦେ ମତି ।
ସେ ତୋତେ ପାଇବେ ଶ୍ରୀପତି ।।୯୨
ତୋର ଭଜନେ ଆମ୍ଭ ଦେହ ।
ଆମ୍ଭଙ୍କୁ କର ଅନୁଗ୍ରହ ।।୯୩

ଶୁକ ଉବାଚ

କୃଷ୍ଣଙ୍କୁ ମାଗିଣ ମେଲାଣି ।
ହରଷମନେ ସର୍ବମୁନି ।।୯୪
ଯୁଧିଷ୍ଠି ବଦନକୁ ଚାହିଁ ।
ଧୃତରାଷ୍ଟ୍ରଙ୍କ ଆଗେ କହି ।।୯୫
ନିଜ ଆଶ୍ରମକୁ ଗମନ ।
କଳ୍ପିଲା ଋଷିଙ୍କର ମନ ।।୯୬
ରାମ ଗୋବିନ୍ଦଙ୍କ ସମ୍ମୁଖେ ।
ଥିଲା ଯେ ବସୁଦେବ ସୁଖେ ।।୯୭
ଅନୁଗମନ ପ୍ରଶ୍ନ ଆଶେ ।
ମିଳିଲା ମୁନିଙ୍କର ପାଶେ ।।୯୮
ପ୍ରଣାମ କରି ତାଙ୍କ ପାୟେ ।
ସାନନ୍ଦ ଚିତ୍ତେ ବାକ୍ୟ କହେ ।।୯୯
ନମସ୍ତେ ସର୍ବ ମୁନିବର ।
ଶୁଣିମା ବଚନ ମୋହର ।।୧୦୦
କି କର୍ମ କର୍ମଫଳ ନାଶେ ।
ନିର୍ମଳ ଜ୍ଞାନ ସୁପ୍ରକାଶେ ।।୧୦୧
ଜ୍ଞାନେ ଅଜ୍ଞାନେ କର୍ମ କରି ।
ବୃଦ୍ଧ ବୟସେ ତା ସୁମରି ।।୧୦୨
ତହିଁ କି ପ୍ରାୟଶ୍ଚିତ କଲେ ।
କର୍ମ ନାଶଇଟିକି ଭଲେ ।।୧୦୩
ଶୁଣି ବସୁଦେବ ବଚନ ।
ବୋଲନ୍ତି ବ୍ରହ୍ମାଙ୍କ ନନ୍ଦନ ।।୧୦୪
ହେ ମୁନିଗଣେ ଶୁଣ ଧୀରେ ।
ଏ ବସୁଦେବର ବିଚାରେ ।।୧୦୫
ଚିତ୍ର ନୁହଇଁ ଏ ପ୍ରଶନ ।
ଗୋବିନ୍ଦ ଯାହାର ନନ୍ଦନ ।।୧୦୬
କୃଷ୍ଣଙ୍କୁ ପୁତ୍ରପ୍ରାୟ ମଣି ।
ଏମନ୍ତ ପ୍ରଶ୍ନ କଲା ଆଣି ।।୧୦୭
ଆତ୍ମାର ଗତି ନ ଜାଣଇ ।
ଏହାଙ୍କୁ ବିଷ୍ଣୁମାୟା ମୋହି ।।୧୦୮
ନିକଟେ ଥିଲେ ଅନାଦର ।
ଏହିଟି ସଂସାର ବେଭାର ।।୧୦୯
ଗଙ୍ଗା ନିକଟେ ଯେତେ ଜନେ ।
ଅତି ପରତେ ଅପମାନେ ।।୧୧୦

ଆତ୍ମାର ଗତି ଶୁଦ୍ଧି ଅର୍ଥେ ।
ଲୋଭେ ଭ୍ରମନ୍ତି ଅନ୍ୟ ତୀର୍ଥେ ।।୧୧୧
ଯାହାର ଆତ୍ମା ଅନୁଭବ ।
କାଳେ ନୁହଇଁ ପରାଭବ ।।୧୧୨
ଏହାର ସୁତ ଏ ଅନନ୍ତ ।
ତଥାପି ବିଷ୍ଣୁମାୟାଗ୍ରସ୍ତ ।।୧୧୩
ଶୁଣ ହେ କୃଷ୍ଣର ମହିମା ।
କେ କହିପାରେ ଗୁଣସୀମା ।।୧୧୪
କର୍ମ କଷଣ ପରିତାପ ।
ଗୁଣପ୍ରବାହ ତ୍ରୟତାପ ।।୧୧୫
ଏଣେ ନ ଲାଗେ ଯାର ଦେହ ।
ଏଣୁ ଈଶ୍ୱର ଅଦ୍ୱିତୀୟ ।।୧୧୬
ପ୍ରାଣ ଇନ୍ଦ୍ରିୟ ତିନିଗୁଣ ।
ଯେଣୁ ଏ ଶରୀର ଭିଆଣ ।।୧୧୭
ଏଣେ ଆଚ୍ଛନ୍ନ ପ୍ରାୟ ଦିଶେ ।
ଆଦିତ୍ୟ ଯେସନେ ଆକାଶେ ।।୧୧୮
ହିମ ପରାଗ ମେଘେ ଛନ୍ନ ।
ଏଣୁ ମୋହିତ ପ୍ରାଣୀ ମନ ।।୧୧୯
ଏମନ୍ତେ ସର୍ବ ମୁନିଜନ ।
ଚାହିଁ ବସୁଦେବ ବଦନ ।।୧୨୦
ଶୁଣନ୍ତି ସର୍ବ ରାଜାମାନେ ।
ରାମ ଗୋବିନ୍ଦ ସନ୍ନିଧାନେ ।।୧୨୧
ବୋଲନ୍ତି ଶୁଣ ବସୁଦେବ ।
ଏ ସାଧୁଜନଙ୍କ ସ୍ୱଭାବ ।।୧୨୨
ଅଶେଷ ଯଜ୍ଞର କାରଣ ।
ଅନାଦି ପ୍ରଭୁ ନାରାୟଣ ।।୧୨୩
ତାହାଙ୍କୁ ଯଜ୍ଞମାର୍ଗେ ପୂଜି ।
ତେବେ ଯେ ଚଉବର୍ଗ ଅର୍ଜି ।।୧୨୪
ଚଞ୍ଚଳଚିତ୍ତ ଶାନ୍ତି ଅର୍ଥେ ।
ଶାସ୍ତ୍ରଲୋଚନେ ଧର୍ମପଥେ ।।୧୨୫
ସୁଗମ ମାର୍ଗେ କବିଜନେ ।
ଦେଖାଇଛନ୍ତି ବିଦ୍ୟମାନେ ।।୧୨୬
ଏ ଯଜ୍ଞ ଆତ୍ମାସୁଖ ଦେଇ ।
ଗୃହସ୍ଥାଶ୍ରମ ଧର୍ମ ଏହି ।।୧୨୭
ଶ୍ରଦ୍ଧା ସହିତେ ଶୁଦ୍ଧଚିତ୍ତେ ।
ପୁଷ୍କଳ ଧନେ ବେଦମତେ ।।୧୨୮

Dr. Sudhanshu Sekhar Mishra

ଯଜ୍ଞପୁରୁଷ ପୂଜା କରି ।
ହେଲେ ତରନ୍ତି ଭବବାରି ॥୧୨୯
ବିତ୍ତ ଇଛନ୍ତି ଯଜ୍ଞଦାନେ ।
ଗୃହକରଣେ ସୁତ ଧନେ ॥୧୩୦
ନିବର୍ତ୍ତାଏ ଯେ ଜ୍ଞାନବନ୍ତ ।
ସର୍ବସଂକଳ୍ପ କାଳଗ୍ରସ୍ତ ॥୧୩୧
ବିଚାରି ସକଳ ତେଜଇ ।
ଗ୍ରାମ୍ୟ ଭୋଗକୁ ନ ଇଚ୍ଛଇ ॥୧୩୨
ଏମନ୍ତ ଜାଣି ଦିବ୍ୟଜ୍ଞାନେ ।
କାଳେ ତେଜନ୍ତି ସୁଜ୍ଞଜନେ ॥୧୩୩
ବିପ୍ର କ୍ଷତ୍ରିୟ ବୈଶ୍ୟଜନ ।
ଏ ତିନି ମଧ୍ୟେ ଯେତେ ଜନ ॥୧୩୪
ଦେବତା ଋଷି ପିତୃଙ୍କର ।
ସ୍ୱଭାବେ ଋଣୀ ଏ ଶରୀର ॥୧୩୫
ଏହା ନ ଶୁଝି ଧର୍ମ ଛାଡି ।
ମଲେ ନରକେ ଥାନ୍ତି ପଡି ॥୧୩୬
ନିର୍ମଳ ଧନେ ଯଜ୍ଞ କଲେ ।
ଦେବତା ଋଣ ଶୁଝି ଭଲେ ॥୧୩୭
ବିଦ୍ୟାପଠନେ ଋଷିଗଣ ।
ନିଶ୍ଚେ ଶୁଝନ୍ତି ଜ୍ଞାନିଜନ ॥୧୩୮
ପୁତ୍ର ପଉତ୍ର ଜାତ କଲେ ।
ପିତୃଙ୍କ ଋଣ ଶୁଝି ଭଲେ ॥୧୩୯
ତୁ ଏବେ ବେନି ଋଣ ମୁକ୍ତ ।
ବିଦ୍ୟା ପଠନ ପୁତ୍ର ଜାତ ॥୧୪୦
ଦେବତା ଋଣ ଅଛି ତୋର ।
ତୁ ଏବେ ସୁଖେ ଯାଗ କର ॥୧୪୧
ଏ ତିନି ଋଣୁ ତୁ ନିସ୍ତରି ।
ସୁଖେ ବିହର ଯଦୁପୁରୀ ॥୧୪୨
ଶୁଣ ସୁମନେ ଯଦୁବୀର ।
ନିର୍ମଳ ବଚନ ଆମ୍ଭର ॥୧୪୩
ପରମ ଭକ୍ତିଭାବ ଭରି ।
ପୂର୍ବେ ପୂଜିଲୁ ନରହରି ॥୧୪୪
ଅନାଦିପ୍ରଭୁ ଜଗନ୍ନାଥ ।
ତୋହର ପୁତ୍ର ରୂପେ ଜାତ ॥୧୪୫
ବୋଲନ୍ତି ଶୁକ ମହାମୁନି ।
ବ୍ରହ୍ମାନନ୍ଦନ ବାକ୍ୟ ଶୁଣି ॥୧୪୬

ସମ୍ଭ୍ରମ ଚିତ୍ତେ ଶୁରବାଳା ।
ଋଷିଙ୍କି ଋତ୍ୱିଜେ ବରିଲା ॥୧୪୭
ପ୍ରଣାମ କରି ତାଙ୍କ ପାଦେ ।
ଯଜ୍ଞ ଆରମ୍ଭିଲା ଆନନ୍ଦେ ॥୧୪୮
ବେଦବଚନେ ମୁନିଜନ ।
କରନ୍ତି ଯଜ୍ଞର ବିଧାନ ॥୧୪୯
ଆନନ୍ଦେ ବସି କୁରୁକ୍ଷେତ୍ରେ ।
ଶୁଦ୍ଧ ସୁବର୍ଣ୍ଣ ନାନା ପାତ୍ରେ ॥୧୫୦
ଉତ୍ତମକାଳେ ବେଦମତେ ।
ରାମ ଗୋବିନ୍ଦଙ୍କ ଅଗ୍ରତେ ॥୧୫୧
ଦୀକ୍ଷିତ ହୋଇ ବୃଷ୍ଣିବୀର ।
ଭୂଷିତ ନାନା ଅଳଙ୍କାର ॥୧୫୨
ଦେବକୀ ଆଦି ଯେତେ ନାରୀ ।
ବସୁଦେବର ତୁଲେ ବରି ॥୧୫୩
ରାଜାଙ୍କୁ ଅଳଙ୍କୃତ କଲେ ।
ପତ୍ନୀ ସହିତେ ଯଜ୍ଞକାଳେ ॥୧୫୪
ରାଜକାମିନୀ ନିଜେ ମଧ୍ୟେ ।
ସୁବାସ ଲେପନ୍ତି ଆନନ୍ଦେ ॥୧୫୫
ମଙ୍ଗଳ ଦ୍ରବ୍ୟ କରେ ଲଇଁ ।
ମିଳିଲେ ଯଜ୍ଞଶାଳେ ଯାଇ ॥୧୫୬
ନାନା ଶବଦ ବାଦ୍ୟନାଦେ ।
ନର୍ତ୍ତକୀ ନାଚନ୍ତି ଆନନ୍ଦେ ॥୧୫୭
ସୂତ ମାଗଧ ସ୍ତୁତି ଭଣି ।
କିନ୍ନରୀ ଗୀତନାଦ ବାଣୀ ॥୧୫୮
କୋମଳ ସୁସଙ୍ଗୀତ ନାଦେ ।
ଗାଇଲେ ଗନ୍ଧର୍ବେ ଆନନ୍ଦେ ॥୧୫୯
ଋତ୍ୱିଜେ ଉତ୍ତମ ଆସନେ ।
ବସି ମଙ୍ଗଳ ବେଦସ୍ୱନେ ॥୧୬୦
ବସୁଦେବଙ୍କୁ ମଧ୍ୟେ କରି ।
ସଙ୍ଗେ ବସାଇ ତାର ନାରୀ ॥୧୬୧
ବିବିଧ ଅଳଙ୍କାର ବେଶେ ।
ବସୁଦେବର ବାମପାଶେ ॥୧୬୨
ବସିଲେ ଅଷ୍ଟାଦଶ ନାରୀ ।
ସୁବର୍ଣ୍ଣ କୁମ୍ଭେ ତୀର୍ଥବାରି ॥୧୬୩
ପଲ୍ଲବେ ତୋଳି ଜଳକଣା ।
ମୁନିଏ କରନ୍ତି ମାର୍ଜନା ॥୧୬୪

ସ୍ୱଭାବେ ଅଗ୍ନିଷ୍ଟୋମ ସଭା ।
ମଧ୍ୟେ କି ପଟାନ୍ତର ଦେବା ॥୧୬୫
ନକ୍ଷତ୍ର ମଧ୍ୟେ ଯେହ୍ନେ ଶଶୀ ।
ତେମନ୍ତ ବସୁଦେବ ଦିଶି ॥୧୬୬
ବସୁଦେବର ନାରୀଗଣେ ।
ନାନା ଭୂଷଣ ଆଭରଣେ ॥୧୬୭
ଦିଶନ୍ତି ରୂପ ଅନୁପମ ।
ଆବୃତ କୃଷ୍ଣମୃଗଚର୍ମ ॥୧୬୮
ବସୁଦେବର ବିପ୍ରଜନେ ।
ପୀତବସନ ପରିଧାନେ ॥୧୬୯
ସଭାଜନଙ୍କ ମଧ୍ୟେ ଥାଇ ।
କିବା ଉପମା ଦେବି ମୁହିଁ ॥୧୭୦
ସ୍ୱର୍ଗେ ବାସବଯଜ୍ଞକାଳେ ।
ମୁନିଏ ବୃନ୍ଦାରକ ମେଳେ ॥୧୭୧
ଯେମନ୍ତେ ଥିଲେ ପନ୍ତି ପନ୍ତି ।
ଋତ୍ୱିଜେ ତେମନ୍ତ ଦିଶନ୍ତି ॥୧୭୨
ରାମ ଗୋବିନ୍ଦ ସେହିମତେ ।
ସଭାଜନଙ୍କ ମଧ୍ୟଗତେ ॥୧୭୩
ବନ୍ଧୁବାନ୍ଧବ ଜ୍ଞାତି ମେଳେ ।
ନିଜ କାମିନୀ ସୁତ ତୁଲେ ॥୧୭୪
ନିଜ ବିଭୂତି ସଙ୍ଗେ ଘେନି ।
ବିଜୟେ ଆନନ୍ଦ ମେଦିନୀ ॥୧୭୫
ରାମ ଗୋବିନ୍ଦ ସଭାମେଳେ ।
ବସୁଦେବ ସେ ଯଜ୍ଞକାଳେ ॥୧୭୬
ବିଶେଷେ କୃଷ୍ଣର ପିଅର ।
ଉତ୍ତମ ଜ୍ଞାନ କ୍ରିୟାସାର ॥୧୭୭
ପୂଜିଲା ଅଗ୍ନିହୋତ୍ର ମନ୍ତ୍ରେ ।
ଯେମନ୍ତେ ପ୍ରାକୃତ-ବୈକୃତେ ॥୧୭୮
ଏମନ୍ତେ ଯଜ୍ଞ ସମାପତେ ।
ଦକ୍ଷିଣା ଦେଲେ ବେଦମତେ ॥୧୭୯
ବିପ୍ରଙ୍କୁ ଦେଇ ଅଳଙ୍କାର ।
ଆନନ୍ଦମନେ ଯଦୁବୀର ॥୧୮୦
ଗୋ ଭୂମି କନ୍ୟା ମହାଧନ ।
ବିପ୍ରଙ୍କୁ ଦେଲେ ତୋଷମନ ॥୧୮୧
ଯଜ୍ଞସମ୍ପଦ କାମପୂର୍ଣ୍ଣ ।
କରନ୍ତି ଅବଭୃଥ ସ୍ନାନ ॥୧୮୨

Dr. Sudhanshu Sekhar Mishra

ନାନା ସୁବାଦ୍ୟେ ବେଦନାଦେ ।
ସ୍ନାନ ସାରିଲେ ରାମହ୍ରଦେ ॥୧୮୩
ବସୁଦେବର ନାରୀମାନେ ।
ବିବିଧ ଅଳଙ୍କାର ଧନେ ॥୧୮୪
ଗୋ ଭୂମି ଅନ୍ନ ବସ୍ତ୍ର ତୁଳେ ।
ଆଚାର୍ଯ୍ୟ ଆଦି ବିପ୍ରେ ଦେଲେ ॥୧୮୫
ଏମନ୍ତେ ବର୍ଣ୍ଣାଶ୍ରମୀ ଯେତେ ।
ଅନ୍ନ ବସନ ନାନାମତେ ॥୧୮୬
ପୂଜି ସନ୍ତୋଷ କଲେ ମନ ।
ଅପରେ ଯେତେ ବନ୍ଧୁଜନ ॥୧୮୭
ଦାରା ତନୟ ପରିମାଣି ।
ସନ୍ତୋଷେ ଦେଲେ ମନ ଜାଣି ॥୧୮୮
ବିଦର୍ଭ କୋଶଳ ସହିତେ ।
କୁରୁ ସୃଞ୍ଜୟ ଆଦି ଯେତେ ॥୧୮୯
ସଭାରେ ଯେତେ ଋଷି ଥିଲେ ।
ସୁର ମାନବ ଭୃତ୍ୟ ମେଳେ ॥୧୯୦
ପିତୃ ଚାରଣ ଆଦି ଜନ ।
କୃଷ୍ଣଙ୍କୁ ମାଗି ଅନୁଯାନ ॥୧୯୧
ନିଜ ଭୁବନେ ସର୍ବେ ଗଲେ ।
ଏମନ୍ତେ ଯେତେ ବନ୍ଧୁ ଥିଲେ ॥୧୯୨
ଆନନ୍ଦେ ଯେତେ ରାଜବଂଶୀ ।
ଚଳନ୍ତି ଯଜ୍ଞକୁ ପ୍ରଶଂସି ॥୧୯୩
ବିଦୁର ଧୃତରାଷ୍ଟ୍ର ବେନି ।
ପାଣ୍ଡବ ଭୀଷ୍ମ ଦ୍ରୋଣ ଘେନି ॥୧୯୪
ନକୁଳ ସହଦେବ ବେନି ।
କୁନ୍ତୀ ଯେ ପାଣ୍ଡବଜନନୀ ॥୧୯୫
ବ୍ୟାସ ନାରଦ ମହାମୁନି ।
ଆନନ୍ଦେ ପ୍ରିୟଭାବ ଘେନି ॥୧୯୬
ସୁହୃଦ ସମୂହେ ବାନ୍ଧବ ।
ପ୍ରିୟ ବଚନେ ବସୁଦେବ ॥୧୯୭
ବନ୍ଧୁଙ୍କୁ ଆଲିଙ୍ଗନ କରେ ।
ଅତ୍ୟନ୍ତ ପ୍ରୀତିଭାବଭରେ ॥୧୯୮
ବିଚ୍ଛେଦ ବିରହ କାତରେ ।
ଗଲେ ସେ ଯେ ଯାହାର ପୁରେ ॥୧୯୯
ନନ୍ଦଙ୍କୁ ଗୋପାଳଙ୍କ ତୁଳେ ।
ପୂଜିଲା ବସୁଦେବ ଭଲେ ॥୨୦୦

ରାମ ଗୋବିନ୍ଦ ଉଗ୍ରସେନ ।
ନନ୍ଦଙ୍କୁ କଲେ ସନମାନ ॥୨୦୧
ସୁଭାଗ୍ୟବନ୍ତ ବସୁଦେବ ।
ତରିଲା ମାୟାବନ୍ଧ ଭାବ ॥୨୦୨
ବନ୍ଧୁ ସୁହୃଦ ଭାବ ଭରି ।
ଆନନ୍ଦେ ନନ୍ଦ କର ଧରି ॥୨୦୩
ବୋଲଇ ବସୁଦେବ ସ୍ନେହେ ।
ଭୁଜେ ଆବୋରି ଦେହେ ଦେହେ ॥୨୦୪
ଭୋ ମିତ୍ର ଦେଖ ଏ ଜଗତ ।
ଈଶ୍ୱରତନ୍ତ୍ରେ ମୋହଗତ ॥୨୦୫
ଅତି ସୁହୃଦେ ସ୍ନେହ ପାଶି ।
ସୁରଯୋଗୀଙ୍କ ଚିତ୍ତ ଗ୍ରାସି ॥୨୦୬
ତୁମ୍ଭେ ଯେ ମିତ୍ରସ୍ନେହ ରଙ୍ଗେ ।
ଭାବେ ମିଳିଲ ମୋର ସଙ୍ଗେ ॥୨୦୭
ମିତ୍ର ସୁପ୍ରୀତି ଫଳ ଯେତେ ।
ମୁଁ ତେଣେ ନୋହିଲି ସମର୍ଥେ ॥୨୦୮
ପର ଆୟତ୍ତ ପୂର୍ବକାଳ ।
ଏଣୁ ମୋ ହୋଇଲା ନିଷ୍ଫଳ ॥୨୦୯
ତୁମ୍ଭ ବିଷୟେ ମିତ୍ରପଣ ।
ନ କରି ଲଭିଲି କଷଣ ॥୨୧୦
ଏବେ ଶ୍ରୀମଦେ ଅନ୍ଧ ହୋଇ ।
ମିତ୍ରଭାବକୁ ନ ଦେଖଇ ॥୨୧୧
ଆତ୍ମାର ହିତ ଇଚ୍ଛା ଯାର ।
ରାଜସମ୍ପଦ ନୋହୁ ତାର ॥୨୧୨
ରାଜସମ୍ପଦେ ଅନ୍ଧ ହୋଇ ।
ବନ୍ଧୁ ସ୍ୱଜନ ନ ଦେଖଇ ॥୨୧୩
ଏମନ୍ତେ ମିତ୍ରଭାବ ଚିତ୍ତେ ।
ରୋଦନ କଲା ମୋହଗ୍ରସ୍ତେ ॥୨୧୪
ସୁମରି ନନ୍ଦ ମିତ୍ରପଣ ।
ଲୋତକ ପୂରେ ଘନ ଘନ ॥୨୧୫
ମିତ୍ରର ପ୍ରିୟଭାବେ ନନ୍ଦ ।
ସଙ୍ଗତେ ଘେନି ଗୋପବୃନ୍ଦ ॥୨୧୬
ରାମ ଗୋବିନ୍ଦ ସଙ୍ଗ ପାଇ ।
ଅନେକ ସ୍ନେହଭାବି ବହି ॥୨୧୭
ହୋଇଣ ହରଷ ବିଷାଦ ।
ମନରେ ବିଚାରଇ ନନ୍ଦ ॥୨୧୮

ଆଜ ରହିବି ଅନୁକୂଳେ ।
କାଲି ମୁଁ ଯିବି ପ୍ରାତଃକାଳେ ॥୨୧୯
ଯଦୁଙ୍କ ଅତି ମାନ୍ୟବଶେ ।
ନନ୍ଦ ରହିଲା ସେ ବିଶ୍ୱାସେ ॥୨୨୦
ରାମ ଗୋବିନ୍ଦ ଧରି କୋଳେ ।
ଦିନ ହରିଲେ ରସଭୋଳେ ॥୨୨୧
ଗୋପୀ ଗୋପାଳ ଆଦି କରି ।
କୃଷ୍ଣମୋହନେ ଦିନ ହରି ॥୨୨୨
ନାନା ବିନୋଦ କ୍ରୀଡାରାସ ।
ଏମନ୍ତେ ଗଲା ତିନିମାସ ॥୨୨୩
ବ୍ରଜ ସହିତେ ବନ୍ଧୁଜନେ ।
ପୂଜିଲେ ବସନ ଭୂଷଣେ ॥୨୨୪
ନନ୍ଦକୁ ବସୁଦେବ ଯେତେ ।
ବିଚାରି ଉଗ୍ରସେନ ମତେ ॥୨୨୫
ଉଦ୍ଧବ ଆଦି ବନ୍ଧୁ ଯେତେ ।
ରାମ ଗୋବିନ୍ଦ ଅନୁମତେ ॥୨୨୬
ଆଦରେ ଦେଲେ ଯେତେ ଧନ ।
ନନ୍ଦ ଘେନାଇ ତୋଷମନ ॥୨୨୭
କେତେହେଁ ଦୂର ନନ୍ଦ ତୁଳେ ।
ରାମ ଗୋବିନ୍ଦ ସୁଖଭୋଳେ ॥୨୨୮
ଯଶୋଦା ଆଦି ବ୍ରଜନାରୀ ।
ସବୁରି ମନ ତୋଷ କରି ॥୨୨୯
ଗୋବିନ୍ଦ ମାୟାଯୋଗବଳେ ।
ସବୁରି ମନ ଗୃହେ ଦେଲେ ॥୨୩୦
ସମସ୍ତେ ହୋଇଣ ହରଷ ।
ଚଳିଲେ ନିଜ ଗୃହବାସ ॥୨୩୧
ଯାଦବେ ସ୍ନେହଭରେ ଗଲେ ।
ପୁଣି ବାହୁଡାବିକେ କଲେ ॥୨୩୨
ଗୋପୀ ଗୋପାଳ ମନ ।
କୃଷ୍ଣ ଚରଣେ କରି ଲୀନ ॥୨୩୩
ସମ୍ଭାଳି ନ ପାରନ୍ତି ଭଲେ ।
ଗୋବିନ୍ଦ ଚରଣେ ନିଶ୍ଚଳେ ॥୨୩୪
ଏମନ୍ତେ ଗଲେ ଗୋପପୁର ।
ଶୁଣ ପରୀକ୍ଷା ନୃପବର ॥୨୩୫
ବାନ୍ଧବେ ଯାନ୍ତେ ନିଜ ପୁରେ ।
ଯାଦବେ ଗୋବିନ୍ଦ ବିଚାରେ ॥୨୩୬

Dr. Sudhanshu Sekhar Mishra

ବରଷା ଆଗମନ ଜାଣି ।
ରୋହିଣୀସୁତ ଚକ୍ରପାଣି ।।୨୩୭
ବନ୍ଧୁ ବାନ୍ଧବ ଘେନି ତୁଲେ ।
ଦ୍ୱାରକାପୁରେ ବିଜେ କଲେ ।।୨୩୮
ଯାଦବେ ନିଜ ପୁରେ ଯାଇ ।
କୁଳବୃଦ୍ଧଙ୍କ ପାଶେ ଥାଇ ।।୨୩୯
ବସୁଦେବର ଯଜ୍ଞକର୍ମ ।
ବନ୍ଧୁବାନ୍ଧବ ଆଗମନ ।।୨୪୦
କହନ୍ତି ହର୍ଷିତ ବଦନ ।
ଶୁଣି ସାନନ୍ଦ ସର୍ବଜନ ।।୨୪୧
ବୋଲଇ ଦାସ ଜଗନ୍ନାଥ ।
ରବିଗ୍ରହଣେ ଗୋପୀନାଥ ।।୨୪୨
ସୁପୁଣ୍ୟତୀର୍ଥେ ଯାତ୍ରା କଲେ ।
ସୁଜନେ ସୁମର ତା ଭଲେ ।।୨୪୩
ତୁଟିବ ଭବବନ୍ଧ ଭ୍ରମ ।
ନ ଲାଗେ ତାପତ୍ରୟଶ୍ରମ ।।୨୪୪
ଏ ଭାବେ ରସ ନିରନ୍ତରେ ।
ନ ବୁଡ ସଂସାର-ସାଗର ।।୨୪୫

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ତୀର୍ଥଯାତ୍ରାନୁବର୍ଣ୍ଣନଂ
ନାମ ନବତିତମ ଅଧ୍ୟାୟଃ ।।

## ଏକନବତିତମ ଅଧ୍ୟାୟ

ଶୁକ ଉବାଚ

ଶୁକ ବୋଲନ୍ତି ତୋଷମନେ ।
ଦ୍ୱାରକାପୁରେ ଏକ ଦିନେ ।।୧
ରାମ ଗୋବିନ୍ଦ ବେନିଭାଇ ।
ତାତ ଜନନୀ ପାଶେ ଯାଇ ।।୨
ପ୍ରଣାମ କଲେ ବେନିପାଦେ ।
ସ୍ନେହହରଷ ଗଦଗଦେ ।।୩
ଆନନ୍ଦ ବସୁଦେବ ହୋଇ ।
ରାମ ଗୋବିନ୍ଦ ମୁଖ ଚାହିଁ ।।୪
ଆନନ୍ଦେ ତନୁ ପୁଲକିତ ।
କୋଳେ ବସାଇ ବେନିସୁତ ।।୫
ମୁନିଜନଙ୍କ ବାକ୍ୟ ଶୁଣି ।
କୃଷ୍ଣମହିମା ପରିମାଣି ।।୬
ବୋଲଇ ଶଙ୍କିତ ବଚନେ ।
କୃଷ୍ଣ ମହିମା ଭାବି ମନେ ।।୭
ହେ କୃଷ୍ଣ କୃଷ୍ଣ ଭଗବାନ ।
ସଙ୍କରଷଣ ସନାତନ ।।୮
ଆନନ୍ଦ ମୁକୁନ୍ଦ ମୁରାରି ।
ଯା ନାମେ ମୁନିଜନେ ତରି ।।୯
ନିଶ୍ଚେ ଜାଣିଲି ଏବେ ମୁହିଁ ।
ସୃଷ୍ଟିକାରଣ ତୁମ୍ଭେ ଦୁଇ ।।୧୦
ପରମବ୍ରହ୍ମ ପରକାଶ ।
ତୁମ୍ଭେ ଯେ ପ୍ରଧାନ ପୁରୁଷ ।।୧୧
ଯହିଁ ଯେମନ୍ତ ଯହୁଁ ଜାତ ।
ଯାହାର ଯେ ଅବା ନିର୍ମିତ ।।୧୨
ଯେ ଅବା ଯେବେ ଯଥାଭାବେ ।
ଯାହାର ପ୍ରୟୋଜନ ଲାଭେ ।।୧୩
ସମ୍ଭୂତ ହୋଇ ଏ ସଂସାର ।
ତୁମ୍ଭେ ସେ ପ୍ରଧାନ ଈଶ୍ୱର ।।୧୪
ତୁମ୍ଭର ସୃଷ୍ଟି ଏ ଜଗତ ।
ସ୍ଥାବର ଆଦି ନାନାମତ ।।୧୫
ଏହାଙ୍କ ଦେହେ ତୁମ୍ଭେ ପଶି ।
ପ୍ରାଣୀଙ୍କ ଜୀବନ ଆଶ୍ୱାସି ।।୧୬
ପ୍ରାଣାଦି ପଞ୍ଚମହାଭୂତ ।
ସୃଷ୍ଟି କରନ୍ତି ଆତଯାତ ।।୧୭
ତାହାଙ୍କ ଶକ୍ତି ତୁମ୍ଭେ ଧରି ।
ସଚେତ ଅଚେତ ବିଚାରି ।।୧୮
ବ୍ରହ୍ମାଣ୍ଡ ତେଜ କାନ୍ତି ପ୍ରଭା ।
ଆବର ବଳ ନାନା ଶୋଭା ।।୧୯
ଚନ୍ଦ୍ରର କାନ୍ତି ରବିପ୍ରଭା ।
ତାରା ବିଜୁଳି ଅଗ୍ନି ଆଭା ।।୨୦
ଗିରି ସ୍ଥିରତା ଭୂମି ବାସ ।
ଏ ସର୍ବ ତୁମ୍ଭର ପ୍ରକାଶ ।।୨୧
ଜଳରେ ତର୍ପଣ ଜୀବନ ।
ଆବର ରସ ତୋ ଭିଆଣ ।।୨୨
ପବନ ଗତି ଚେଷ୍ଟା ବଳ ।
ଦିଗଙ୍କ ମଧ୍ୟେ ଅନ୍ତରାଳ ।।୨୩
ଓଁକାର ନାଦ ବର୍ଣ୍ଣ ସ୍ୱର ।
ଆକୃତି ମଧ୍ୟେ ନାନାକାର ।।୨୪
ଇନ୍ଦ୍ରିୟ ମଧ୍ୟେ ତୁମ୍ଭେ ମନ ।
ତୋ ଅନୁଗ୍ରହେ ଦେବଗଣ ।।୨୫
ବୁଦ୍ଧିର ବୋଧବୁଦ୍ଧି ତୁମ୍ଭେ ।
ଜୀବର ଶକ୍ତି ତୁ ଆରମ୍ଭ ।।୨୬
ଭୂତଙ୍କ ମଧ୍ୟେ ଭୂତ ଆଦି ।
ଇନ୍ଦ୍ରିୟଗଣ ତେଜ ସିଦ୍ଧି ।।୨୭
ବିକଳ୍ପ ମଧ୍ୟେ ତୁ ବିକାର ।
ପ୍ରଧାନ ରୂପ ଜୀବଙ୍କର ।।୨୮
ବିନାଶୀଭୂତଙ୍କର ମଧ୍ୟ ।
ତୁମ୍ଭେ ଅବିନାଶୀ ପ୍ରସିଦ୍ଧ ।।୨୯
ଦ୍ରବ୍ୟ ବିକାର ଦ୍ରବ୍ୟ ତୁମ୍ଭେ ।
ତ୍ରିଗୁଣବୃତ୍ତିର ଆରମ୍ଭେ ।।୩୦
ଆତ୍ମା କଳ୍ପିତ ଏ ଶୟଳେ ।
ତୁମ୍ଭର ଯୋଗମାୟା ବଳେ ।।୩୧
ଏ ଘେନି ଅନୁମାନ କଲେ ।
ମାୟା ନ ଲାଗେ ତୁମ୍ଭ ତୁଲେ ।।୩୨
ନାନା ବିକାରଙ୍କ ପ୍ରମାଣେ ।
ନ ଘଟେ ତୁମ୍ଭ ବିଚାରଣେ ।।୩୩
ଏ ଗୁଣ ପ୍ରବାହ ତୁମ୍ଭର ।
ଅଜ୍ଞାନଜନେ ଅଗୋଚର ।।୩୪
ଏଣୁ ସଂସାରେ କର୍ମବଳେ ।
ପ୍ରାଣୀ ଭ୍ରମନ୍ତି ଅନ୍ତରାଳେ ।।୩୫

Dr. Sudhanshu Sekhar Mishra

ଅନେକ ଭାଗ୍ୟେ ଏ ସଂସାରେ ।
ମନୁଷ୍ୟରୂପ ପ୍ରାଣୀ ଧରେ ॥୧୩୬
ନିତ୍ୟ ସମର୍ଥ ଆତ୍ମାଭାବ ।
ପ୍ରାଣୀଙ୍କ ମଧ୍ୟେ ଏ ଦୁର୍ଲଭ ॥୧୩୭
ତୁମ୍ଭ ମାୟାରେ ପ୍ରାଣୀ ମୋହି ।
ଆତ୍ମାର ଗତି ନ ଜାଣଇ ॥୧୩୮
ବୟସ ହରେ ପ୍ରମାଦରେ ।
ନିବିଡ ସଂସାରେ ବେଭାରେ ॥୧୩୯
ମୁହିଁ ମୋହର ଏ ସଂସାର ।
ସୁତ କଳତ୍ର ଧନ ମୋର ॥୧୪୦
ଏମନ୍ତ ସ୍ନେହପାଶ ଦେଇ ।
ବନ୍ଧନ କର ତୁମ୍ଭେ ଦୁଇ ॥୧୪୧
ପ୍ରଧାନପୁରୁଷ ଈଶ୍ୱର ।
ତୁମ୍ଭେ ଯେ ମୋହର କୁମର ॥୧୪୨
ଭୂମିର ଭାରା ନିବାରଣେ ।
ମୋହର କୁଳ ନିସ୍ତାରଣେ ॥୧୪୩
ଏଣୁ ମୋହର ତୁହଁ ସୁତ ।
ଏ ମାୟା ତୁମ୍ଭର ନିର୍ମିତ ॥୧୪୪
ସଂସାର-ସଙ୍କଟ-ନିସ୍ତାର ।
ତୁମ୍ଭର ଅଭୟ ପୟର ॥୧୪୫
ସେ ପାଦେ ପଶିଲି ଶରଣ ।
ଏବେ ତୁ ରଖ ନାରାୟଣ ॥୧୪୬
ଆରତଜନ ବନ୍ଧୁ ତୁମେ ।
ଏ ମାୟାସଂସାର ଆରମ୍ଭେ ॥୧୪୭
ଲୋଭ ଲାଳସା ମୋର ନୋହୁ ।
ଏମନ୍ତ ଆଜ୍ଞା ମୋତେ ହେଉ ॥୧୪୮
ତୁ ନିରାକାର ନିରଞ୍ଜନ ।
ପରମବ୍ରହ୍ମ ଭଗବାନ ॥୧୪୯
ତୋର ବିଷୟେ ପୁତ୍ରବୁଦ୍ଧି ।
ଭୋ ନାଥ ପକା ଏହା ଛେଦି ॥୧୫୦
ହେ କୃଷ୍ଣ ଶରଣ ସୋଦର ।
ତୁମ୍ଭେ ଯେ କରୁଣାସାଗର ॥୧୫୧
କଂସ ରାଜାର ବନ୍ଦୀଘରେ ।
ରଜନୀ ଦ୍ୱିତୀୟ ପ୍ରହରେ ॥୧୫୨
ତୋହର ଜନ୍ମକାଳେ ମୋତେ ।
ଯାହା କହିଲୁ ଦୟାଚିତ୍ତେ ॥୧୫୩

ବୋଇଲୁ ଜନ ଅନୁରାଗେ ।
ମୋହର ଜନ୍ମ ଯୁଗେ ଯୁଗେ ॥୧୫୪
ଏଣୁ ତୁ ଧର୍ମରକ୍ଷା ଅର୍ଥେ ।
ଶରୀର ବହୁ ନାନାମତେ ॥୧୫୫
ଗଗନେ ଯେହ୍ନେ ମେଘପନ୍ତି ।
ଉଭାରି ପୁଣି ଲୀନ ହୋନ୍ତି ॥୧୫୬
ଏମନ୍ତ ତୋ ମାୟାବିଭୂତି ।
କେ ଜାଣିପାରେ ତୋର ଗତି ॥୧୫୭
କହନ୍ତି ଶୁକ ମହାମୁନି ।
ପିତାବଚନ କୃଷ୍ଣ ଶୁଣି ॥୧୫୮
ହସିଣ ଯୋଡି ବେନିକର ।
କୋମଳ ବଚନ ମଧୁର ॥୧୫୯
ବୋଲନ୍ତି ପ୍ରଭୁ ଭଗବାନ ।
ଭୋ ତାତ ସାଧୁ ତୋ ବଚନ ॥୧୬୦
ଆମ୍ଭେ ତୋହର ପୁତ୍ର ଦୁଇ ।
ପୁତ୍ର ଉଦ୍ଦେଶ୍ୟ ଭାବ ବହି ॥୧୬୧
ତୁମ୍ଭେ କହିତ ତତ୍ତ୍ୱଜ୍ଞାନ ।
ଏ କଥା ସର୍ବମତେ ସମ ॥୧୬୨
ମୁଁ ପୁତ୍ର ତୁମ୍ଭେ ମୋର ତାତ ।
ଏ ଯେ ମୋହର ଜ୍ୟେଷ୍ଠଭ୍ରାତ ॥୧୬୩
ଦ୍ୱାରକାପୁର ଜନ ଯେତେ ।
ସଚରାଚର ଏହି ମତେ ॥୧୬୪
ଈଶ୍ୱର ମାୟା ଏ ସଂସାର ।
ଏଣେ ଭ୍ରମନ୍ତି ସୁରନର ॥୧୬୫
ଏ ଆତ୍ମା ଏକ ସ୍ୱୟଂଜ୍ୟୋତି ।
ନିତ୍ୟ ନିର୍ଗୁଣ ଶୁଦ୍ଧକାନ୍ତି ॥୧୬୬
ଆତ୍ମାକଳ୍ପିତ ସୃଷ୍ଟି ମଧ୍ୟେ ।
ଆତ୍ମା ପ୍ରବେଶ ଅନୁବାଦେ ॥୧୬୭
ନାନା ପ୍ରପଞ୍ଚ ବହୁରୂପେ ।
କ୍ରୀଡା କରାଇ ମୋହକଳ୍ପେ ॥୧୬୮
ଶୂନ୍ୟ ପବନ ଜ୍ୟୋତି ଜଳ ।
ତାରେ ନିର୍ମିତ ଭୂମଣ୍ଡଳ ॥୧୬୯
ଅଙ୍ଗ ବିଶେଷ ନାନାମତେ ।
ଈଶ୍ୱର ରୂପ ଏ ଜଗତେ ॥୧୭୦
ଶୁକ ବୋଲନ୍ତି ରାୟେ ଶୁଣ ।
ଯାହା କହିଲେ ନାରାୟଣ ॥୧୭୧

ତା ଶୁଣି ବସୁଦେବ ଜ୍ଞାନ ।
ନାନା ପ୍ରକାରେ ନୋହି ଛନ୍ନ ॥୧୭୨
ବିନଷ୍ଟ ଭେଦବୁଦ୍ଧି ଘେନି ।
ପ୍ରେମ ଆନନ୍ଦେ ହେଲା ତୁନି ॥୧୭୩
ଏବେ ହୋ ଶୁଣ କୁରୁରାୟ ।
ଦେବକୀ ସର୍ବଦେବମୟ ॥୧୭୪
ଭାବେ ଗୋବିନ୍ଦ ମୁଖ ଚାହିଁ ।
ବିସ୍ମିତ ମନେ ବିଚାରଇ ॥୧୭୫
ଗୁରୁଙ୍କ ପୁତ୍ର ମରିଥିଲା ।
ଏ ଯମଘରୁ ଆଣିଦେଲା ॥୧୭୬
ଏ କୃଷ୍ଣବାଦେ ମୋର ପୋଏ ।
କଂସ କଚାଡିଲା ନିର୍ଦ୍ଦୟେ ॥୧୭୭
ସୁମରି ପୁତ୍ରକଷ୍ଟ ମନେ ।
କାନ୍ଦଇ ଦୁଃଖିତ ବଦନେ ॥୧୭୮
ପୁଣି କ୍ଷଣକେ ସ୍ଥିର ହୋଇ ।
ବୋଲଇ ରାମ କୃଷ୍ଣ ଚାହିଁ ॥୧୭୯
ଶୁଣ ହେ କୃଷ୍ଣ ହଳଧର ।
ମହାମହିମା ଯୋଗେଶ୍ୱର ॥୧୮୦
ମୁହିଁ ଜାଣଇ ତୁମ୍ଭ ଗତି ।
ସଂସାରେ ଯେତେ ପ୍ରଜାପତି ॥୧୮୧
ତୁମ୍ଭେ ତାହାଙ୍କର ଈଶ୍ୱର ।
ଆଦିପୁରୁଷ ନିରାକାର ॥୧୮୨
ଏ ଭୂମିତଳେ ରାଜା ଯେତେ ।
ବିନଷ୍ଟମତି କାଳଗ୍ରସ୍ତେ ॥୧୮୩
ତାହାଙ୍କ ପାଦଭାରେ ମହୀ ।
ତୋତେ ନମିଲା ଭାବଗ୍ରାହୀ ॥୧୮୪
ଏଣୁ ମୋ ଗର୍ଭୁଁ ତୁମ୍ଭେ ଜାତ ।
ମାୟାମନୁଷ୍ୟ ବେନିଭ୍ରାତ ॥୧୮୫
ତୋହର ଅଂଶାଂଶ ଭାବେ ।
ଏ ବିଶ୍ୱସଂସାର ସମ୍ଭବେ ॥୧୮୬
ସୃଷ୍ଟି ପାଳନ ଅନ୍ତ ହୋଇ ।
ଏଣୁ ମୋ ଗତି ତୁମ୍ଭେ ଦୁଇ ॥୧୮୭
ବିଦ୍ୟାପାଠନ କାଳେ ପୁଣି ।
ଗୁରୁଙ୍କ ମଲାପୁତ୍ର ଆଣି ॥୧୮୮
ଗୁରୁଦକ୍ଷିଣା ଦେଇଅଛି ।
ଏହା ମୁଁ ଜାଣଇ ପ୍ରତ୍ୟକ୍ଷ ॥୧୮୯

Dr. Sudhanshu Sekhar Mishra

ଏଣୁ ମୋହର ବାକ୍ୟ କର ।
ତୁମ୍ଭେ ଯେ ଭୁବନ ଈଶ୍ୱର ।।୯୦
କଂସ ମାଇଲା ଯେତେ ସୁତ ।
ତୁମ୍ଭର ଜ୍ୟେଷ୍ଠ ଷଡଭ୍ରାତ ।।୯୧
ତାହାଙ୍କୁ ଲୋଚନେ ମୁଁ ଦେଖି ।
ଜୀବନ କରିବଇଁ ସୁଖୀ ।।୯୨
କହନ୍ତି ଶୁକ ମହାମୁନି ।
ଏମନ୍ତ ମାତା ବାକ୍ୟ ଶୁଣି ।।୯୩
ରାମ ଗୋବିନ୍ଦ ସଙ୍ଗମେଳେ ।
ଦୁର୍ଗମ ଯୋଗମାୟା ବଳେ ।।୯୪
ସୁତଳେ ପଶି ବେନିଭାଇ ।
ମିଳିଲେ ବଳି ଦ୍ୱାରେ ଯାଇ ।।୯୫
ସେ ଯେ ଅସୁର ନୃପମଣି ।
କୃଷ୍ଣ ଆଗମ କଥା ଶୁଣି ।।୯୬
ନିକଟେ ମିଳି ତତକ୍ଷଣ ।
ସଙ୍ଗତେ ଘେନି ପରଜନ ।।୯୭
ପୁତ୍ର ପଉତ୍ର ସଙ୍ଗେ ଘେନି ।
ନମିଲା ରାମ କୃଷ୍ଣ ବେନି ।।୯୮
ବସାଇ ସୁବର୍ଣ୍ଣ ଆସନେ ।
ପୂଜିଲା ତାଙ୍କୁ ତୋଷମନେ ।।୯୯
ପଖାଳି ପଦ୍ମପାଦ ଦୁଇ ।
ଶିରେ ଘେନିଲା ଜଳ ଦେଇ ।।୧୦୦
ଯେ ନୀର ବ୍ରହ୍ମଲୋକ ଆଦି ।
ପରମ ପବିତ୍ର ପ୍ରସିଦ୍ଧି ।।୧୦୧
ମଙ୍ଗଳ ଦ୍ରବ୍ୟମାନ ଘେନି ।
ପୂଜିଲା ରାମ କୃଷ୍ଣ ବେନି ।।୧୦୨
ଚକ୍ଷୁ ଆନନ୍ଦ ଜଳେ ପୂରେ ।
ରୋମ ହରଷ କଳେବରେ ।।୧୦୩
କର ନିବେଶି କୃଷ୍ଣପାଦେ ।
କହଇ କଣ୍ଠ ଗଦଗଦେ ।।୧୦୪
ନମେ ଅନନ୍ତ ମହାଶୟ ।
ସୃଷ୍ଟିକାରଣ ବ୍ରହ୍ମଦେହ ।।୧୦୫
ତୁ ବ୍ରହ୍ମ ପରମ କାରଣ ।
ତୁ ସାଂଖ୍ୟଯୋଗ ବିସ୍ତାରଣ ।।୧୦୬
ତୁମ୍ଭର ଦରଶନ ଲାଭ ।
ଜଗତେ ଯୋଗିଙ୍କୀ ଦୁର୍ଲ୍ଲଭ ।।୧୦୭

ଆମ୍ଭେ ସ୍ୱଭାବେ ରଜ ତମ ।
ପାଇଲୁ ତୁମ୍ଭ ଦରଶନ ।।୧୦୮
ଦଇତ୍ୟ ଦାନବ ଗନ୍ଧର୍ବ ।
ସିଦ୍ଧ ଚାରଣ ମହୋରଗ ।।୧୦୯
ଯକ୍ଷ ପିଶାଚ ଆଦି ଯେତେ ।
ଭୂତ ପ୍ରମଥ ନାନାମତେ ।।୧୧୦
ବିଶୁଦ୍ଧସତ୍ତ୍ୱ ତୁ ଅଗାଧ ।
ତୋ ପଥ କରନ୍ତି ବିରୋଧ ।।୧୧୧
ତୁ ଶାସ୍ତ୍ରଶରୀର ଅନନ୍ତ ।
ଏଣେ ନ ଲଭି ଜ୍ଞାନତତ୍ତ୍ୱ ।।୧୧୨
ଏହାଙ୍କ ମାର୍ଗେ ଥାନ୍ତି ଯେତେ ।
ସେ ତୋତେ ଲଭିବେ କେମନ୍ତେ ।।୧୧୩
ଏ ଆଦି ଯେ ତୋର ଚରଣେ ।
ଯେବେ ଭଜନ୍ତି ଶତ୍ରୁପଣେ ।।୧୧୪
ଲଭନ୍ତି ତୋର ପଦ୍ମପାଦ ।
ନାହିଁ ତାହାଙ୍କ ଶାସ୍ତ୍ରବାଦ ।।୧୧୫
ଯେ ଅବା ଶତ୍ରୁପଣେ ଥାଇ ।
ତୋ ପାଦକମଳ ଭଜଇ ।।୧୧୬
ବନ୍ଧବଇର ଭାବ ଚିନ୍ତି ।
ଭୋ ନାଥ ତୋତେ ସେ ଲଭନ୍ତି ।।୧୧୭
ଭକତି ଭାବେ ଯେ ଭଜନ୍ତି ।
ଯେ ଅବା କାମମାର୍ଗେ ଚିନ୍ତି ।।୧୧୮
ସେ ତୋତେ ନିକଟେ ଲଭନ୍ତି ।
ନରକେ ନାହିଁ ତାଙ୍କ ଭ୍ରାନ୍ତି ।।୧୧୯
ସତ୍ତ୍ୱପ୍ରଧାନ ଦେବଗଣେ ।
ତୋର ନିକଟେ ଅନୁକ୍ଷଣେ ।।୧୨୦
ଏମନ୍ତ ତୋ ମାୟା ପ୍ରଭାବ ।
ସେମାନେ ନ ପାଇଲେ ଠାବ ।।୧୨୧
ତୁ ନାଥ ଯୋଗିଙ୍କି ଦୁର୍ଲ୍ଲଭ ।
ତୋତେ କେ ଜାଣେ ପଦ୍ମନାଭ ।।୧୨୨
ନିଶ୍ଚୟ କରି ତୋ ଶରୀର ।
କେ ଜାଣିପାରେ ଯୋଗେଶ୍ୱର ।।୧୨୩
ତୋର ମହିମା ଯୋଗମାୟା ।
ଆମ୍ଭେ ଜାଣିବୁ କାହୁଁ ତାହା ।।୧୨୪
ଭୋ ନାଥ ଶୁଣ ନିରଞ୍ଜନ ।
ତୁ ମୋତେ ହୋଇବା ପ୍ରସନ୍ନ ।।୧୨୫

ଗୃହାନ୍ଧକୂପେ ଥାଇ ନିତି ।
ତୋ ପାଦପଦ୍ମ ମୁଁ ନ ଚିନ୍ତି ।।୧୨୬
ସେ ପାଦପଦ୍ମ ଲଭିବାରେ ।
ସନ୍ଥ ଯେସନେ ଆଶା କରେ ।।୧୨୭
ସଙ୍ଗେ ମୁଁ ଘେନି ସଖାଗଣ ।
ସେବିବି ତୋହର ଚରଣ ।।୧୨୮
ତୋର ଆଗମ ମୋତେ କହ ।
ନିଷ୍ପାପ କର ମୋର ଦେହ ।।୧୨୯
ତୋହର ଆଜ୍ଞା ଘେନି ଶିରେ ।
ଘୋରସଂସାରୁ ପ୍ରାଣୀ ତରେ ।।୧୩୦

ଶୁକ ଉବାଚ

ବଳି ବଚନେ ଦାମୋଦର ।
କୋମଳ ବଚନ ଗଭୀର ।।୧୩୧
ବୋଲନ୍ତି ଶୁଣ ନୃପମଣି ।
ପ୍ରଥମ ମନ୍ୱନ୍ତର ବାଣୀ ।।୧୩୨
ଛପୁତ୍ର ମରୀଚିର ଘରେ ।
ଜନ୍ମିଲେ ଊର୍ଣ୍ଣାର ଉଦରେ ।।୧୩୩
ସ୍ୱଭାବେ ଦୁଷ୍ଟଭାବ ଘେନି ।
ନିର୍ଭୟେ ଭ୍ରମନ୍ତି ଅବନୀ ।।୧୩୪
ଦେବଳ ନାମେ ବ୍ରହ୍ମଋଷି ।
ତାହାଙ୍କ ତପୋବନେ ପଶି ।।୧୩୫
ତାହାଙ୍କ ରୂପ ଦେଖି ହସି ।
ଆକର୍ଷି ଗୃହମଧେ ପଶି ।।୧୩୬
ଦୁହିତା ଦେଖି ଗୃହମଧେ ।
ଧଇଲେ ମଇଥୁନ ସଧେ ।।୧୩୭
ଦେଖି କୁପିତ ମୁନିବର ।
ବୋଇଲେ ଶୁଣ ଷଡବୀର ।।୧୩୮
ଅସୁର ଯୋନି ତୁମ୍ଭେ ପାଅ ।
ଜନ୍ମି ତକ୍ଷଣେ କ୍ଷୟ ଯାଅ ।।୧୩୯
ଏଣୁ ସେ ଶାପ ଗୁରୁତରେ ।
ହିରଣ୍ୟକଶିପୁ ମନ୍ଦିରେ ।।୧୪୦
ଜନ୍ମିଲେ ଯୋଗମାୟା ଭରେ ।
ପୁଣି ହିଁ ଦେବକୀ ଉଦରେ ।।୧୪୧
ତାହାଙ୍କୁ ଜନ୍ମମାତ୍ରେ ଧରି ।
କଂସ ମାଇଲା କୋପକରି ।।୧୪୨

Dr. Sudhanshu Sekhar Mishra

ଏବେ ଦେବକୀ ଦେଖି ମୁଖ ।
ତୁଟିବ ଭବବନ୍ଧ ଦୁଃଖ ॥୧୪୩
ନିତ୍ୟେହେଁ ଜନନୀ ମୋହରି ।
କାନ୍ଦଇ ପୁତ୍ରଶୋକେ ଘାରି ॥୧୪୪
ଏହାଙ୍କୁ ତୋର ପୁତ୍ର ନେଇ ।
ମାତା ନିକଟେ ଦେବି ମୁହିଁ ॥୧୪୫
ଜନନୀ ହୋଇବେ ଆନନ୍ଦ ।
ଏହାଙ୍କ ଫିଟୁ ମାୟାବନ୍ଧ ॥୧୪୬
ବୋଲନ୍ତି ପ୍ରଭୁ ନାରାୟଣ ।
ଷଡ ଭାଇଙ୍କ ନାମ ଶୁଣ ॥୧୪୭
ସ୍ମର ଉଦ୍‌ଗୀଥ ପରିଷ୍ୱଙ୍ଗ ।
ଘୃଣି କ୍ଷୁଦ୍ରଭୃତ ପତଙ୍ଗ ॥୧୪୮
ମୋର ପ୍ରସାଦେ ଷଡ ଜଣ ।
ପୁଣି ଲଭିବେ ମୋକ୍ଷସ୍ଥାନ ॥୧୪୯
ଏମନ୍ତ କୃଷ୍ଣମୁଖୁଁ ଶୁଣି ।
ବଳି ତାହାଙ୍କୁ ଦେଲା ଆଣି ॥୧୫୦
ତକ୍ଷଣେ ରାମ ଯଦୁପତି ।
ମିଳିଲେ ପୁର ଦ୍ୱାରାବତୀ ॥୧୫୧
ଦେବକୀ ପାଶେ ତାଙ୍କୁ ଦେଇ ।
ପ୍ରଣାମ କଲେ ବେନିଭାଇ ॥୧୫୨
ତାହାଙ୍କୁ ଦେଖିଣ ଦେବକୀ ।
ସ୍ନେହେ ଲୋତକପୂର୍ଣ୍ଣ ଆଖି ॥୧୫୩
କ୍ଷୀର ସ୍ରବଇ ପୟୋଧରେ ।
କୋଳେ ବସାଇ ସ୍ନେହଭରେ॥୧୫୪
ଆଘ୍ରାଣ କରି ତାଙ୍କ ଶିରେ ।
ସ୍ତନ ପିଆଇ ସ୍ନେହଭରେ ॥୧୫୫
କୃଷ୍ଣର ମାୟାରେ ମୋହିତ ।
ଶୁଣ ରାଜନ ପରୀକ୍ଷିତ ॥୧୫୬
କୃଷ୍ଣ ଭକ୍ଷିତ ଶେଷ କ୍ଷୀର ।
ଭାବେ ପିଇଲେ ଷଡବୀର ॥୧୫୭
ଅମୃତସମ କ୍ଷୀର ପିଇ ।
କୃଷ୍ଣ-ଶ୍ରୀଅଙ୍ଗସଙ୍ଗ ପାଇ ॥୧୫୭
ଦେଖିଣ ରାମ କୃଷ୍ଣ ମୁଖ ।
ଫିଟିଲା ଭବବନ୍ଧ ଦୁଃଖ ॥୧୫୮
ଆନନ୍ଦେ ଉଠି ଷଡ ଭାଇ ।
କୃଷ୍ଣର ପାଦେ ଶିର ଦେଇ ॥୧୫୯
ରାମର ପାଦରଜ ଘେନି ।
ବନ୍ଦିଲେ ପିଅର ଜନନୀ ॥୧୬୦
ଦେଖନ୍ତି ଦିଗପାଳେ ମିଳି ।
ଗଗନେ ଯେସନେ ବିଜୁଳି ॥୧୬୧
ଦିବ୍ୟ ଶରୀରେ ଷଡ ଜଣ ।
ଗଗନମାର୍ଗେ ହେଲେ ଲୀନ ॥୧୬୨
ଦେବକୀ ଦେବୀ ତାହା ଦେଖି ।
କୃଷ୍ଣ ମହିମା ଉପଲକ୍ଷି ॥୧୬୩
ମଲା ପୁତ୍ରଙ୍କୁ ଦେଲେ ଆଣି ।
ପରମାନନ୍ଦ ହଳପାଣି ॥୧୬୪
ଏମାୟା କୃଷ୍ଣର ଉପାୟ ।
ଏତେ ବିଚାରି କଲା ଭୟ ॥୧୬୫
ଅଦ୍‌ଭୁତ କୃଷ୍ଣକର୍ମ ଦେଖି ।
ସଂଶୟେ ରହିଲା ଦେବକୀ ॥୧୬୬
ଶୁଣ ହେ ଅଭିମନ୍ୟୁସୁତ ।
କୃଷ୍ଣର ମହିମା ଏମନ୍ତ ॥୧୬୭
ଏ ଆଦି ଯେତେ କୃଷ୍ଣଗୁଣ ।
ଅଦ୍‌ଭୁତକର୍ମା ନାରାୟଣ ॥୧୬୮
ଏମନ୍ତେ କର୍ମ କଲେ ଯେତେ ।
ଅନ୍ତ କରିବି ତାହା କେତେ ॥୧୬୯
ଶ୍ରୀକୃଷ୍ଣ ଲୀଳା ଭାଗବତ ।
ଯେ ନର ଶୁଣେ ଅବିରତ ॥୧୭୦
ଯେ ଅବା ସାଧୁସଙ୍ଗ ମେଳେ ।
ଆନନ୍ଦେ କହେ ସୁଖଭୋଳେ॥୧୭୧
ଅଶେଷ ପାପବନ୍ଧୁ ତରି ।
ଅନ୍ତେ ଲଭଇ ନରହରି ॥୧୭୨
ସେ ହରିଚରଣେ ବିଶ୍ୱାସ ।
କହଇ ଜଗନ୍ନାଥ ଦାସ ॥୧୭୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ମୃତଅଗ୍ରଜ
ଆନୟନଂ ନାମ
ଏକନବତିତମ ଅଧ୍ୟାୟଃ ॥

---

## ଦ୍ୱିନବତିତମ ଅଧ୍ୟାୟ

ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ ।
ଶୁଣ ରାଜନ ପରୀକ୍ଷିତ ॥୪
ଅର୍ଜ୍ଜୁନ ତୀର୍ଥଯାତ୍ରା ଛଳେ ।
ଭ୍ରମଇଁ ଅବନୀମଣ୍ଡଳେ ॥୫
ପ୍ରଭାସତୀର୍ଥେ ଏକଦିନେ ।
ଅର୍ଜ୍ଜୁନ ରହି ତୋଷମନେ ॥୬

ଶୁକ ସନ୍ନିଧେ ଯୋଡିହସ୍ତ ।
ଆନନ୍ଦେ ବୋଲେ ପରୀକ୍ଷିତ ॥୧

ପରୀକ୍ଷିତ ଉବାଚ

ରାମ ଗୋବିନ୍ଦଙ୍କ ଭଗିନୀ ।
ସୁଭଦ୍ରା ନାମେଣ କାମିନୀ ॥୨
କେମନ୍ତେ ଅର୍ଜ୍ଜୁନ ତା ପାଇ ।
ସେ ଯେ ମୋହର ପିତାମହୀ ॥୩

ଶୁଣିଲା ଦ୍ୱାରକାର ବାଣୀ ।
ନିଜ ମାତୁଳର ନନ୍ଦିନୀ ॥୭
ସଙ୍କରଷଣ ଅନୁମତେ ।
ଦୁର୍ଯ୍ୟୋଧନଙ୍କୁ ଦେବା ଅର୍ଥେ ॥୮
କାହାରି ନାହିଁ ସନମତ ।
ଶୁଣି ବିଚାରେ ମନେ ପାର୍ଥ ॥୯
ସୁଭଦ୍ରା ଲଭିବାର ଆଶେ ।
ତକ୍ଷଣେ ବ୍ରହ୍ମଚାରୀ ବେଶେ ॥୧୦

Dr. Sudhanshu Sekhar Mishra

ମାୟାତ୍ରିଦଣ୍ଡୀ ରୂପ ଧରି ।
ମିଳିଲା ଦ୍ୱାରକାନଗରୀ ।।୧୧
ଆପଣା କାର୍ଯ୍ୟ ସିଦ୍ଧି ଆଶେ ।
ରହି ବରଷା ଚାରିମାସେ ।।୧୨
ଯାଦବେ ନିତ୍ୟେ ଅନ୍ନ ଦ୍ୟନ୍ତି ।
ଏ କଥା ରାମ ନ ଜାଣନ୍ତି ।।୧୩
ଦିନେକ କୃଷ୍ଣ ହଳପାଣି ।
ଅତିଥି ନିଜ ଘରେ ଆଣି ।।୧୪
ଶରଧା ଚିତ୍ତେ ଭିକ୍ଷା ଦେଲେ ।
ହରଷେ ଅର୍ଜୁନ ଭୁଞ୍ଜିଲେ ।।୧୫
ଅନ୍ନ ଭୋଜନେ ବୀରମଣି ।
ଦେଖି ବସୁଦେବ ଦୁଲଣୀ ।।୧୬
ବୀରମୋହିନୀ ରୂପ ତାର ।
ଭୁବନେ ନାହିଁ ପଟାନ୍ତର ।।୧୭
ଅପାଙ୍ଗ ଲୋଚନେ ଅନାଇଁ ।
ହୃଦେ ଅନଙ୍ଗ ଭାବ ବହି ।।୧୮
ସ୍ୱଭାବେ ଅର୍ଜୁନ ସୁନ୍ଦର ।
ରୂପେ କାମିନୀ ମନୋହର ।।୧୯
ସୁଭଦ୍ରା ଦେଖି ତା ବଦନ ।
ସମ୍ଭ୍ରମେ ପୀଡିତ ମଦନ ।।୨୦
ଏକେ ତ କୃଷ୍ଣର ଭଗିନୀ ।
ରୂପେ ମୋହଇ ପୁର ତିନି ।।୨୧
ସବ୍ରୀଡହାସେ ମୁଖ ଶୋହେ ।
କଟାକ୍ଷେ ମୁନିଜନ ମୋହେ ।।୨୨
ଅର୍ଜୁନ ଦେଖି ଅଭିରାମ ।
ଚିତ୍ତ ମୋହିତ କୋଟିକାମ ।।୨୩
ସୁଭଦ୍ରାରୂପେ ମନ ଦେଇ ।
ଅର୍ଜୁନ ବସି ବିଚାରଇ ।।୨୪
କେମନ୍ତେ ଲଭିବି ଏ ନାରୀ ।
ନିରତେ ଛିଦ୍ର ଅନୁସରି ।।୨୫
ଏମନ୍ତେ ଦେବଯାତ୍ରା କାଳେ ।
ବନ୍ଧୁବାନ୍ଧବ ଜ୍ଞାତିମେଳେ ।।୨୬
ଉତ୍ତମରଥେ କନ୍ୟା ଘେନି ।
ମଙ୍ଗଳକରଣେ କାମିନୀ ।।୨୭
ଦ୍ୱାରକାପୁର ଦୁର୍ଗ ମଧେ ।
ଚଳନ୍ତି ନୃତ୍ୟ ଗୀତ ବାଦ୍ୟେ ।।୨୮
ପିତାମାତାଙ୍କ ଶୁଦ୍ଧଚିତ୍ତେ ।
କୃଷ୍ଣର ଭାବ ଅନୁମତେ ।।୨୯
ଅର୍ଜୁନ ଦେବଯାତ୍ରା ଛଳେ ।
କନ୍ୟା ହରିଲା ବାହୁବଳେ ।।୩୦
ଆପଣେ ନିଜ ରଥେ ବସି ।
ଧନୁ ଟଙ୍କାରେ ଗୁଣ ଘୋଷି ।।୩୧
କନ୍ୟା ଆବୋରି ଥିଲେ ଯେତେ ।
ନାନା ଆୟୁଧ ଧରି ହସ୍ତେ ।।୩୨
ତାହାଙ୍କ ଗର୍ବ ନାଶ କରି ।
ସ୍ୱଭାଗ ଯେସନେ କେଶରୀ ।।୩୩
ପଶୁଙ୍କ ମଧ୍ୟୁ ହରେ ଯେହ୍ନେ ।
ତା ଦେଖି ରାମ କୋପମନେ ।।୩୪
ଯେହ୍ନେ ପୂର୍ଣ୍ଣିମା ନିଶାକାଳେ ।
ସମୁଦ୍ର ଉଚ୍ଛୁଳେ ଉଲ୍ଲୋଳେ ।।୩୫
ରାମର କୋପ ଦେଖି ହରି ।
ବାନ୍ଧବ ସଙ୍ଗତେ ବିଚାରି ।।୩୬
ବୃଦ୍ଧଙ୍କ ସଙ୍ଗେ ବିଚାରିଲେ ।
ରାମର କୋପ ଶାନ୍ତି କଲେ ।।୩୭
କୃଷ୍ଣ ବଚନେ ହଳପାଣି ।
ଅନେକ ରତ୍ନବସ୍ତ୍ର ଆଣି ।।୩୮
ବରକନ୍ୟାର ବିଭାକାଳେ ।
ଅନେକ ଯଉତୁକ ଦେଲେ ।।୩୯
ଅମୂଲ୍ୟରତ୍ନ ବସ୍ତ୍ର ଧନ ।
ଅଶ୍ୱ କୁଞ୍ଜର ଦାସୀଜନ ।।୪୦
ଘେନି ଆନନ୍ଦେ କନ୍ୟା ବର ।
ମଙ୍ଗଳେ ଗଲେ ନିଜ ପୁର ।।୪୧
ବନ୍ଧୁବାନ୍ଧବ ଯେତେଜନ ।
ଗଲେ ସେ ଯେ ଯାହା ଭୁବନ ।।୪୨
କହନ୍ତି ବ୍ୟାସଙ୍କର ସୁତ ।
କୃଷ୍ଣମଙ୍ଗଳ ଭାଗବତ ।।୪୩
କୃଷ୍ଣର ସଖା ପୂର୍ବକାଳେ ।
ଥିଲା ଯେ ବିଦେହମଣ୍ଡଳେ ।।୪୪
କୃଷ୍ଣର ଅତି ପ୍ରିୟଭାବ ।
ନାମ ତାହାର ଶ୍ରୁତଦେବ ।।୪୫
ଏକାନ୍ତ ହରିଭାବ ଭୋଳେ ।
ସମ୍ପୂର୍ଣ୍ଣ ହୃଦୟ ନିଶ୍ଚଳେ ।।୪୬
ଯୋଗେ ଇନ୍ଦ୍ରିୟ ବଳ ଜିଣି ।
ଜଗତଆତ୍ମା ପରିମାଣି ।।୪୭
ମିଥିଳାପୁରେ ଗୃହାଶ୍ରମୀ ।
ବ୍ରାହ୍ମଣଭାବେ ନିତ୍ୟକର୍ମୀ ।।୪୮
ଧନ ଅର୍ଜନେ ନାହିଁ ଚିତ୍ତ ।
କେବଳ ପ୍ରାଣ ବୃତ୍ତି ମାତ୍ର ।।୪୯
ଅଧର୍ମମାର୍ଗେ ମନେ ଭୀତି ।
କ୍ରିୟାକଳାପ କରେ ନିତି ।।୫୦
ଏମନ୍ତେ ବହୁଳାଶ୍ୱ ନାମ ।
ମିଥିଳାନଗରେ ରାଜନ ।।୫୧
ସେ ବେନିଜନ ହରିଭାବେ ।
ଜିତଇନ୍ଦ୍ରିୟ ସେ ସ୍ୱଭାବେ ।।୫୨
ତାହାଙ୍କ ଭାବ ଘେନି ହୃଦେ ।
ଗୋବିନ୍ଦ ପରମଆନନ୍ଦେ ।।୫୩
ଭକତଭାବେ ବଶ ହରି ।
ଉଦ୍ଧବ ସଙ୍ଗେ ଦଇତ୍ୟାରି ।।୫୪
ଦାରୁକ ରଥ କଲା ଆଣି ।
ମୁନିଙ୍କ ସଙ୍ଗେ ଚକ୍ରପାଣି ।।୫୫
ରଥ ଆରୋହି ହୃଷୀକେଶ ।
ମିଥିଳାନଗରେ ପ୍ରବେଶ ।।୫୬
ନାରଦ ବାମଦେବ ଅତ୍ରି ।
ବ୍ୟାସ ପରଶୁରାମ ଯତି ।।୫୭
ଅସିତ କେବଳ ଅରୁଣି ।
ଦେବଙ୍କଗୁରୁ ଶୁକମୁନି ।।୫୮
କଣ୍ୱ ମଇତ୍ରେୟ ଚ୍ୟବନ ।
ଏ ଆଦି ବ୍ରହ୍ମଋଷିଗଣ ।।୫୯
ମିଳିଲେ ସକଳେ ହେଁ ଆସି ।
ଦେଖି ଗୋବିନ୍ଦ ରୂପରାଶି ।।୬୦
ଶୁଣି ଗୋବିନ୍ଦ ଆଗମନ ।
ମିଥିଳାପଥେ ଯେତେ ଜନ ।।୬୧
ବିବିଧ ଅର୍ଘ୍ୟପାତ୍ର କରେ ।
ମିଳିଲେ କୃଷ୍ଣର ଛାମୁରେ ।।୬୨
ଆଦିତ୍ୟ ଉଦୟ ନିକଟେ ।
ଯେହ୍ନେ ବ୍ରାହ୍ମଣେ ଜଳଘାଟେ ।।୬୩
ତେହ୍ନେ ଦିଶନ୍ତି ଶୀରିବସ୍ତ୍ର ।
ଅନନ୍ତ ରୂପ କି ପ୍ରତ୍ୟକ୍ଷ ।।୬୪

Dr. Sudhanshu Sekhar Mishra

ଧନୁତୂଣୀର କମ୍ବୁ ଚକ୍ର ।
ଗଦା କମଳ ପଦ୍ମନେତ୍ର ॥୬୫
ଦେଖିଣ ଆନନ୍ଦ ସବୁରି ।
ମଙ୍ଗଳ ଶବଦ ଉଚାରି ॥୬୬
ଆନର୍ତ୍ତ ଧନ୍ୱ ଯେ ଜାଙ୍ଗଳ ।
କୁରୁ କଙ୍କ ମତ୍ସ୍ୟ ପାଞ୍ଚାଳ ॥୬୭
କୈକୟ ମଧୁ କୁନ୍ତୀ ଆଦି ।
କୋଶଳଦେଶ ଯେ ପ୍ରସିଦ୍ଧି ॥୬୮
ଏ ଆଦି ଯେତେ ଜନପଦେ ।
କୃଷ୍ଣର ବଦନ ଆନନ୍ଦେ ॥୬୯
ପିବନ୍ତି ଚକ୍ଷୁରନ୍ଧ୍ରେ ଭରି ।
ଅଶେଷ ତପେ ନରନାରୀ ॥୭୦
ତାହାଙ୍କ ତପସିଦ୍ଧ କରି ।
ଭକତବନ୍ଧୁ ନରହରି ॥୭୧
ଦିଗପୂରିତ ନିଜ ଯଶ ।
ତାହାଙ୍କ ମୁଖୁଁ ହୃଷୀକେଶ ॥୭୨
ଅଶୁଭନାଶନ ମଙ୍ଗଳ ।
ଶୁଣି ସାନନ୍ଦ ନନ୍ଦବାଳ ॥୭୩
ସର୍ବକୁଶଳ ସ୍ନେହଭରେ ।
ପ୍ରବେଶ ମିଥିଳାନଗରେ ॥୭୪
ମିଥିଳାପୁର ନରନାରୀ ।
କୃଷ୍ଣ ଆଗମ ଅନୁସରି ॥୭୫
ମଙ୍ଗଳ ଦ୍ରବ୍ୟ ଘେନି କରେ ।
ମିଳିଲେ କୃଷ୍ଣର ଛାମୁରେ ॥୭୬
ଗୋବିନ୍ଦମୁଖ ଦେଖି ଜନେ ।
ପ୍ରଫୁଲ୍ଲ ନିଶ୍ଚଳ ନୟନେ ॥୭୭
କରଅଞ୍ଜଳି ଦେଇ ଶିରେ ।
ରୋମପୁଲକ କଳେବରେ ॥୭୮
ସକଳେ ମୁନିଗଣ ମେଳେ ।
ନମିଲେ କୃଷ୍ଣ ପାଦତଳେ ॥୭୯
ଜନକ ଶ୍ରୁତଦେବ ବେନି ।
ହୃଦେ ଗୋବିନ୍ଦ ଭାବ ଘେନି ॥୮୦
ବୋଲନ୍ତି ଆମ୍ଭ ଅନୁଗ୍ରହେ ।
ବିଜୟ କଲେ ଦେବରାୟେ ॥୮୧
ଏମନ୍ତେ ପରମ ଆନନ୍ଦେ ।
ପ୍ରଣାମ କଲେ କୃଷ୍ଣପାଦେ ॥୮୨

ମୁନି ସମେତେ ନାରାୟଣ ।
ଅତିଥି କଲେ ନିମନ୍ତ୍ରଣ ॥୮୩
କୃଷ୍ଣଙ୍କୁ ଆସନେ ବସାଇ ।
ପୂଜିଲେ ଷଡଅର୍ଘ୍ୟ ଦେଇ ॥୮୪
ସେ ବେନିଜନଙ୍କର ମନ ।
ଜାଣନ୍ତି ଜଗତଜୀବନ ॥୮୫
ଭାବରେ ବନ୍ଧୁ ଦାମୋଦର ।
ମନରେ କରନ୍ତି ବିଚାର ॥୮୬
ଦୁହିଁଙ୍କ ଘରେ ମୁହିଁ ରହି ।
ଚିତ୍ତ ଆନନ୍ଦେ ବୋଧ ଦେଇ ॥୮୭
ତେବେ ମୁଁ ଯିବି ନିଜ ପୁର ।
ଏତେ ବିଚାରି ଚକ୍ରଧର ॥୮୮
ଜନକ ଗୃହେ ଭଗବାନ ।
ମୁନିଙ୍କି ଘେନି ଆଗମନ ॥୮୯
ଆନନ୍ଦମନେ ମହାରାଜା ।
ମୁନିଙ୍କି କଲେ ପାଦପୂଜା ॥୯୦
ହରଷ୍ଟ ତନୁ ରୋମମୂଳ ।
ନୟନୁ ବହେ ଅଶ୍ରୁଜଳ ॥୯୧
ପଖାଳି ମୁନିଙ୍କର ପାଦ ।
ଆନନ୍ଦେ କଣ୍ଠ ଗଦଗଦ ॥୯୨
ବିଶ୍ୱପବିତ୍ର ପାଦଜଳ ।
କୁଟୁମ୍ବ ସଙ୍ଗେ ଘେନି ଶିର ॥୯୩
ମୁନିଙ୍କ ଚରଣ ସମୀପେ ।
ପୁଷ୍ପଚନ୍ଦନ ଧୂପ ଦୀପେ ॥୯୪
ଅର୍ଘ୍ୟ ଗୋ ବୃଷ ଆଦି ଦେଇ ।
ମଧୁର ସ୍ୱରେ ବାକ୍ୟ କହି ॥୯୫
ଆତ୍ମଦରଶୀ ମୁନିଗଣେ ।
ଆନନ୍ଦେ ବସିଲେ ଆସନେ ॥୯୬
କୃଷ୍ଣଙ୍କୁ ପଲ୍ୟଙ୍କେ ବସାଇ ।
ବେନିଚରଣ କୋଳେ ଲଇଁ ॥୯୭
ପାଦମର୍ଦ୍ଦଇ ମନସୁଖେ ।
କହେ କୋମଳ ବାଣୀ ମୁଖେ ॥୯୮
ଭୋ ନାଥ ସର୍ବପ୍ରାଣୀଙ୍କର ।
ତୁ ଆତ୍ମାସାକ୍ଷୀ ଦାମୋଦର ॥୯୯
ତୋର ଚରଣ ଚକ୍ଷୁଦ୍ୱାରେ ।
ଦେଖିଲି ମନୁଷ୍ୟ ଶରୀରେ ॥୧୦୦

ତୋହର କର୍ମ ଶୁଣି କର୍ଣ୍ଣେ ।
ପ୍ରତ୍ୟେକ୍ଷ ଦେଖିଲି ନୟନେ ॥୧୦୧
ତୋ ପାଦରଜ ଜଗନ୍ନାଥ ।
ଲଭିବା ପାଇଁ କରେ ଚିନ୍ତା ॥୧୦୨
ଏହା ଯେ ଚିତ୍ତେ ଭଜେ ଜାଣି ।
ସଂସାରୁ ତରଇ ସେ ପ୍ରାଣୀ ॥୧୦୩
ସମଦରଶୀ ଚିତ୍ତ ଯାର ।
ଶାନ୍ତ ନିଷ୍କାମ ମୁନିଙ୍କର ॥୧୦୪
ମରଣେ ଦେଉ ଆତ୍ମପଦ ।
ଆଗମ ନିଗମେ ପ୍ରସିଦ୍ଧ ॥୧୦୫
ସଂସାର ପ୍ରାଣୀଙ୍କର ମଧ୍ୟେ ।
ତୁ ନାଥ ଭୂମିଭାରା ସାଧେ ॥୧୦୬
ଯାଦବବଂଶେ ହୋଇ ଜାତ ।
ତୋ ଯଶ ଜଗତେ ବିଦିତ ॥୧୦୭
ତୋ ପାଦରେଣୁ ପାପ ନାଶେ ।
ନିର୍ମଳ ସୁଜ୍ଞାନ ପ୍ରକାଶେ ॥୧୦୮
ନମସ୍ତେ ପ୍ରଭୁ ଭଗବାନ ।
ତୁ କୃଷ୍ଣ ବଇକୁଣ୍ଠଧାମ ॥୧୦୯
ତୁ ନର ନାରାୟଣ ରୂପୀ ।
ଅଶେଷ ପ୍ରାଣୀ ହିତେ ତପୀ ॥୧୧୦
ଭୋ ନାଥ ଘେନି ମୁନିଜନ ।
ମୋ ଗୃହେ ରହ କିଛିଦିନ ॥୧୧୧
ତୋ ପାଦରଜେ ମୋର କୁଳ ।
ପବିତ୍ର ହେଉ ଆଦିମୂଳ ॥୧୧୨
ଏମନ୍ତ ରାଜା ବାକ୍ୟ ଶୁଣି ।
ମନ ଆନନ୍ଦେ ଚକ୍ରପାଣି ॥୧୧୩
ମିଥିଳା ନରନାରୀଙ୍କର ।
ପ୍ରୀତି କାରଣେ ଚକ୍ରଧର ॥୧୧୪
ରହିଲେ କେତେଦିନ ତହିଁ ।
ଜନକ ପ୍ରିୟଭାବ ବହି ॥୧୧୫
ଆନନ୍ଦମନେ ହୃଷୀକେଶ ।
ଶ୍ରୁତଦେବ ଗୃହେ ପ୍ରବେଶ ॥୧୧୬
ସ୍ୱଗୃହେ ଗୋବିନ୍ଦ ଆଗମେ ।
ଦେଖି ଶ୍ରୁତଦେବ ବିଭ୍ରମେ ॥୧୧୭
ନମି ଗୋବିନ୍ଦେ ଶୁଦ୍ଧଚିତ୍ତେ ।
ଭଉରୀ ତୋଳି ବେନି ହସ୍ତେ ॥୧୧୮

Dr. Sudhanshu Sekhar Mishra

ଭାବେ ସୁମନେ ନୃତ୍ୟ କରି ।
ଆନନ୍ଦେ ବୋଲେ ହରିହରି ।।୧୧୯
ଶ୍ରୀକୃଷ୍ଣ ପାଦପଦ୍ମ ବେନି ।
ପୂଜିଲା ପ୍ରିୟଭାବ ଘେନି ।।୧୨୦
ସଙ୍ଗତେ ଘେନି ନିଜ ନାରୀ ।
ଶ୍ରୀକୃଷ୍ଣପାଦ କରେ ଧରି ।।୧୨୧
ପଖାଳି ଶୀତଳ ଉଦକେ ।
ଉଦକ ଘେନିଲା ମସ୍ତକେ ।।୧୨୨
ଜଳ ସିଞ୍ଚିଲା ନେଇ ଘରେ ।
ଯେ ଜଳେ ମନୋରଥ ପୂରେ ।।୧୨୩
ସକଳ ଫଳ ଥାଇ ଯହିଁ ।
ସେ ପାଦ ପୂଜେ ଭାବ ବହି ।।୧୨୪
ସୁଗନ୍ଧତୃଣ ବାସ ଜଳେ ।
ଶ୍ୟାମତୁଳସୀ ପଦ୍ମତଳେ ।।୧୨୫
ଯେ ଅବା ଥିଲା ତା ମନ୍ଦିରେ ।
ଅର୍ପିଲା ସର୍ବ ଉପହାରେ ।।୧୨୬
ବିତର୍କେ ବିଚାରଇ ଚିତ୍ତେ ।
ପୂର୍ବେ ମୁଁ ପୁଣ୍ୟ କଲି କେତେ ।।୧୨୭
ସେ ପୁଣ୍ୟେ ଲଭିଲି ଏ ଗତି ।
ମୋର ମନ୍ଦିରେ ଯଦୁପତି ।।୧୨୮
ଯାହାର ପାଦରଜ-ନୀର ।
ସକଳ ତୀର୍ଥଙ୍କର ଘର ।।୧୨୯
ଆତ୍ମାନିକେତ ମୁନିମେଳେ ।
ଗୋବିନ୍ଦ ମୋ ଗୃହମଣ୍ଡଳେ ।।୧୩୦
ଏମନ୍ତେ କୃଷ୍ଣଙ୍କୁ ବସାଇ ।
କରଅଞ୍ଜଳି ଶିରେ ଦେଇ ।।୧୩୧
ସୁତ କଳତ୍ର ବନ୍ଧୁ ଘେନି ।
ଚାପଇ କୃଷ୍ଣପାଦ ବେନି ।।୧୩୨
ବୋଲଇ କୋମଳ ବଚନ ।
ପାଦପଙ୍କଜେ ଦେଇ ମନ ।।୧୩୩
ଆଜ ଯେ ଧନ୍ୟ ମୋର ବଂଶ ।
ଦେଖିଲି ପରମପୁରୁଷ ।।୧୩୪
ଯେ ହରି ଜଗତ ଭିଆଇ ।
ଖେଳଇ ସର୍ବରୂପ ହୋଇ ।।୧୩୫
ନିଦ୍ରିତ ପୁରୁଷ ଯେମନ୍ତେ ।
ସ୍ୱପ୍ନ ଦେଖଇ ନାନାମତେ ।।୧୩୬
ଚିଆଇଁ ପୁଣି ଚିତ୍ତେ ଧାୟେ ।
ସେ କଥା ମଣେ ସତ୍ୟ ପ୍ରାୟେ ।।୧୩୭
ତୋ ନାମ ଶୁଣନ୍ତି ଯେ କର୍ଣ୍ଣେ ।
ନିରତେ ଗୁଣନ୍ତି ବଦନେ ।।୧୩୮
ନିଶ୍ଚଳ ଧ୍ୟାନେ ମନେ ଚିନ୍ତି ।
ତୋର ପ୍ରତିମା ଯେ ପୂଜନ୍ତି ।।୧୩୯
ବିଷୟସଙ୍ଗ ଦୂର କରି ।
ତୋତେ ଭାବନ୍ତି ହୃଦେ ଧରି ।।୧୪୦
ତାହାଙ୍କ ହୃଦେ ତୁ ଗୋବିନ୍ଦ ।
ପ୍ରକାଶୁ ଜଳେ ଯେହ୍ନେ ଚନ୍ଦ୍ର ।।୧୪୧
କର୍ମେ ଚଞ୍ଚଳ ଯାର ଚିତ୍ତ ।
ତାହାକୁ ଦୂର ତୁ ଅଚ୍ୟୁତ ।।୧୪୨
ହୃଦରେ ଥାଇ ଦୂର ହେଉ ।
ତୋତେ ପାଇବେ ସେ ବା କାହୁଁ ।।୧୪୩
ତୋ ଗୁଣ ଯେହ୍ନୁ ଗୁଣେ ରଟେ ।
ତୁ ଧାଉ ତାହାର ନିକଟେ ।।୧୪୪
ଆତ୍ମାର ଶକ୍ତି ଅଗୋଚର ।
ଭୋ ନାଥ ମହିମା ତୋହର ।।୧୪୫
ନମସ୍ତେ ପ୍ରଭୁ ନିରଞ୍ଜନ ।
ଅଧ୍ୟାତ୍ମଜ୍ଞାନୀଙ୍କ ଜୀବନ ।।୧୪୬
ଅଜ୍ଞାନୀ ଦେହବନ୍ତଙ୍କର ।
ମୃତ୍ୟୁ ସ୍ୱରୂପ ତୁ ନିକର ।।୧୪୭
ସ୍ୱଭାବେ ଦେହ ତୋର ନାହିଁ ।
ମାୟାରେ ବହୁ ସର୍ବଦେହୀ ।।୧୪୮
କାରଣ ସଙ୍ଗେ ଅକାରଣ ।
ଉଭୟଲିଙ୍ଗ ତୁ ଧାରଣ ।।୧୪୯
ମାୟା ଆବୃତେ ରୁଦ୍ଧଦୃଷ୍ଟି ।
ଏଣୁ ତୋ ନାନା ରୂପ ସୃଷ୍ଟି ।।୧୫୦
ମୁଁ ତୋର ଭୃତ୍ୟଙ୍କ କିଙ୍କର ।
ସୁହୃଦ କୋଟିକେ ଅନ୍ତର ।।୧୫୧
ମୁଁ ତୋର କି କରିବି ସେବା ।
ବିଚାରି ମୋତେ ଆଜ୍ଞା ଦେବା ।।୧୫୨
ଦୃଷ୍ଟିଗୋଚର ଯାର ତୁହି ।
ତାହାର କ୍ଲେଶ ଆଉ କାହିଁ ।।୧୫୩
କହନ୍ତି ଶୁକ ମହାମୁନି ।
ଶ୍ରୁତ ଦେବର ବାକ୍ୟ ଶୁଣି ।।୧୫୪
ପ୍ରାଣୀଙ୍କର ଆରତଭଞ୍ଜନ ।
ହରଷେ ପ୍ରଭୁ ଭଗବାନ ।।୧୫୫
ବ୍ରାହ୍ମଣ ହସ୍ତ କରେ ଧରି ।
ହସି ବୋଲନ୍ତି ନରହରି ।।୧୫୬
ତୋତେ ପ୍ରସନ୍ନ ମନ ମୋର ।
ତେଣୁ ଅଇଲି ତୋର ଘର ।।୧୫୭
ଏ ମୁନିଜନଙ୍କ ମହିମା ।
କେ କହିପାରେ ଗୁଣସୀମା ।।୧୫୮
ଏହାଙ୍କ ପାଦରଜ ଶିରେ ।
ଘେନି ସଂସାରୁ ପ୍ରାଣୀ ତରେ ।।୧୫୯
ଦେବତାକ୍ଷେତ୍ର ତୀର୍ଥଜନେ ।
ଦର୍ଶନ-ସ୍ପର୍ଶନ-ଅର୍ଚ୍ଚନେ ।।୧୬୦
ଶୁଦ୍ଧ କରନ୍ତି ଚିରକାଳେ ।
ଯେ ଯାହା କର୍ମ ଫଳାଫଳେ ।।୧୬୧
ସାଧୁଙ୍କ ଦରଶନ ମାତ୍ରେ ।
ଦୁରିତ ନ ରହଇ ଗାତ୍ରେ ।।୧୬୨
ସକଳ ପ୍ରାଣୀ ମଧ୍ୟେ ସାର ।
ବ୍ରାହ୍ମଣ ଶରୀର ଯାହାର ।।୧୬୩
ସନ୍ତୋଷ ତପ ବିଦ୍ୟାଫଳେ ।
କ୍ରିୟା କଳାପ ଯୋଗବଳେ ।।୧୬୪
ବ୍ରାହ୍ମଣ ସର୍ବଦେବମୟ ।
ସେ ମୋର ଦେହଟି ନିଶ୍ଚୟ ।।୧୬୫
ଚତୁରଭୁଜ ମୋର ଦେହୀ ।
ଏହା ମୁଁ ପ୍ରିୟ ନ ମଣଇଁ ।।୧୬୬
ବ୍ରାହ୍ମଣଜନ ପ୍ରିୟ ମୋର ।
ହସି ବୋଲନ୍ତି ଚକ୍ରଧର ।।୧୬୭
ବ୍ରାହ୍ମଣ ଗୁରୁ ଚାରିବର୍ଣ୍ଣେ ।
ମୋହର ସ୍ୱରୂପ ଅଭିନ୍ନେ ।।୧୬୮
ତାହା ନ ଜାଣି ମୂଢଜନେ ।
ପ୍ରତିମା ପୂଜେ ଦୃଢମନେ ।।୧୬୯
ଏ ଚରାଚର ବିଶ୍ୱ ମଧ୍ୟେ ।
ଦେଖନ୍ତି ଯେ ମୋତେ ଅଭେଦେ ।।୧୭୦
ଏ ବିପ୍ରବରେ ଶ୍ରଦ୍ଧା ବହି ।
ସ୍ୱଧର୍ମଭାବେ ପୂଜ ତୁହି ।।୧୭୧
ଏହାଙ୍କୁ ସେବା କର ନିତ୍ୟେ ।
ମୋ ଭାବ ପାଇବୁ ଯେମନ୍ତେ ।।୧୭୨

Dr. Sudhanshu Sekhar Mishra

ବିପ୍ରସେବନେ ମୋତେ ପାଇ ।
ଅନ୍ୟଥା କୋଟି ଯଜ୍ଞେ ନୋହି ।।୧୭୩
ଶୁକ କହନ୍ତି ଶୁଦ୍ଧମନେ ।
ଏମନ୍ତ ବିଷ୍ଣୁର ବଚନେ ।।୧୭୪
ବିପ୍ରଙ୍କୁ ପୂଜି ନିତିନିତି ।
ଲଭିଲେ ଅପବର୍ଗ ଗତି ।।୧୭୫
ଏମନ୍ତେ ପ୍ରଭୁ ଭଗବାନ ।
ମିଥିଳା ରହି କେତେଦିନ ।।୧୭୬
ତାହାଙ୍କୁ ନିଜ ଜ୍ଞାନ ଦେଇ ।
ଦ୍ୱାରକା ବିଜେ ଭାବଗ୍ରାହୀ ।।୧୭୭
ସେ ହରିପାଦେ ଦେଇ ଚିତ୍ତ ।
କହଇ ଦାସ ଜଗନ୍ନାଥ ।।୧୭୮
ସୁଜନେ କୃଷ୍ଣପାଦେ ସେବ ।
ସଂସାର-ସାଗରୁ ତରିବ ।।୧୭୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଶ୍ରୁତଦେବ ଅନୁଗ୍ରହୋ ନାମ
ଦ୍ୱିନବତିତମ ଅଧ୍ୟାୟଃ ।।

---

## ତ୍ରିନବତିତମ ଅଧ୍ୟାୟ

ସୁଭଦ୍ରା-ତନୟ-କୁମର ।
କୃଷ୍ଣସେବକ ମଧ୍ୟେ ସାର ।।୧
ପ୍ରଣାମ କରି ଶୁକ ପାଦେ ।
ବୋଲେ ଆନନ୍ଦ ଗଦଗଦେ ।।୨

ପରୀକ୍ଷିତ ଉବାଚ

ଭୋ ମୁନି ତୁମ୍ଭର ମହିମା ।
କେ କହିପାରେ ଗୁଣସୀମା ।।୩
କୃଷ୍ଣସେବକ ମଧ୍ୟେ ବର ।
ମୁଁ ତୁମ୍ଭ ଚରଣେ କିଙ୍କର ।।୪
ପାଣ୍ଡବ କୁଳେ ଜାତ ହୋଇ ।
ସ୍ୱଭାବେ ଭାଗ୍ୟବନ୍ତ ମୁହିଁ ।।୫
ତୁମ୍ଭର ମୁଖୁଁ କୃଷ୍ଣବାଣୀ ।
ନିରତେ ଶ୍ରୁତିପଥେ ଶୁଣି ।।୬
ଅନେକ ଜନ୍ମ ତପଫଳେ ।
ଜନ୍ମିଲି ଭାରତମଣ୍ଡଳେ ।।୭
ଦେଖ ମୋହର ଜନ୍ମକାଳେ ।
ଲିଖିତ ଅଛି ଯେ କପାଳେ ।।୮
ସେ ଘେନି ପ୍ରାଣ ତ୍ୟାଗ କାଳେ ।
ଚରଣ ଦେଇ ଗଙ୍ଗାଜଳେ ।।୯
ବ୍ରହ୍ମ ବିଚାର ତୁମ୍ଭ ତୁଳେ ।
କଲି ଆନନ୍ଦ ସୁଖ ଭୋଳେ ।।୧୦
ବିଶ୍ୱସଂସାର ମଧ୍ୟେ ହରି ।
ଜନ୍ମିଲେ ଯେତେ ରୂପ ଧରି ।।୧୧
ମୀନ କମଠ ଆଦି ରୂପ ।
ଧରି ନାଶିଲେ ମହୀତାପ ।।୧୨
ଯେ ଏହା ଶୁଣେ କର୍ଣ୍ଣଦ୍ୱାରେ ।
ନ ବୁଡେ ସଂସାର ସାଗରେ ।।୧୩
ହରି ମହିମା ତୁମ୍ଭେ ଯେତେ ।
ମୋତେ କହିଲ ଭାଗବତେ ।।୧୪
ସଂସାର-ବୃକ୍ଷ-ମୂଳ-କନ୍ଦ ।
ଅନାଦି ପୁରୁଷ ଗୋବିନ୍ଦ ।।୧୫
ନିଜ ସ୍ୱରୂପେ ବ୍ରହ୍ମରାଶି ।
ଏକ ଅନେକ ରୂପେ ଦିଶି ।।୧୬
ବସଇ ସର୍ବଜୀବ ଦେହେ ।
ବିଷୟ-ମାୟା-ଜଡ ମୋହେ ।।୧୭
କର୍ମ କରଇ ତେଜ ବହି ।
କାର୍ଯ୍ୟକାରଣେ ନ ଲାଗଇ ।।୧୮
ଏଣୁ ତା ନିଜ ରୂପ ଭାବ ।
ସଂସାରେ କେ ଅବା କହିବ ।।୧୯
ବେଦ-ବେଦାନ୍ତ କେବା ଜାଣୁ ।
ଯେ ନୋହେ ଅଣୁ ପରମାଣୁ ।।୨୦
ନାଭିକମଳୁ ବ୍ରହ୍ମା ଜାତ ।
ସେ ଖୋଜି ନ ପାଇଲା ଅନ୍ତ ।।୨୧
ତାର ନିଃଶ୍ୱାସୁଁ ବେଦ ଜନ୍ମି ।
ତ୍ରିଗୁଣ ମାୟାଚକ୍ରେ ଭ୍ରମି ।।୨୨
କେମନ୍ତେ ବିଷ୍ଣୁଙ୍କୁ ଜାଣନ୍ତି ।
ଏ ମୋର ମନେ ବଡ ଭ୍ରାନ୍ତି ।।୨୩
ସ୍ୱଭାବେ ବିଷ୍ଣୁ ନିରଞ୍ଜନ ।
ନୋହେ ପ୍ରକାଶ ସ୍ଥୂଳ ଶୂନ୍ୟ ।।୨୪
ଏ କଥା କହ ମୁନିବର ।
ନିର୍ମଳ ହେଉ ମୋ ଶରୀର ।।୨୫
ଏମନ୍ତ ପରୀକ୍ଷିତ ବାଣୀ ।
ଶୁକ ବୋଲନ୍ତି ତାହା ଶୁଣି ।।୨୬

ଶୁକ ଉବାଚ

ତୁ ପୁଣ୍ୟବନ୍ତ ନୃପବର ।
ଚଞ୍ଚଳ ମନ ସ୍ଥିର କର ।।୨୭
ଜଗତ ଈଶ୍ୱର ମୁରାରି ।
ସଂସାର ମାୟାଯୋଗେ କରି ।।୨୮
ଭିଆଇ ସୂକ୍ଷ୍ମରୂପେ ଜୀବ ।
ସ୍ଥାବର ଆଦି ଦେହୀ ସର୍ବ ।।୨୯
ଆଗେ ଭିଆଣ କଲା ମନ ।
ଅହଙ୍କାର ବୁଦ୍ଧି ଚେତନ ।।୩୦
କର୍ମର ଅର୍ଥେ ଇନ୍ଦ୍ରିଗଣ ।
ସର୍ଜିଲା ଆଦି ନାରାୟଣ ।।୩୧
କର୍ମରୁ ବାସନା ସମ୍ଭୂତ ।
ତେଣୁଟି ବଦ୍ଧ ଏ ଜଗତ ।।୩୨
କର୍ମ ବାସନା ରଜ୍ଜୁ ବଳେ ।
ପ୍ରାଣୀ ଭ୍ରମନ୍ତି ଏ ଶୟଳେ ।।୩୩
ଏଣୁ ସେ ଇହ ପରଲୋକେ ।
ଫଳ ଭୁଞ୍ଜଇ ଦୁଃଖେ ସୁଖେ ।।୩୪

Dr. Sudhanshu Sekhar Mishra

ଏ ଘେନି କର୍ମର ଭିଆଣ ।
ପ୍ରବୃତ୍ତି ନିବୃତ୍ତି କାରଣ ।।୩୫
ଦେହ ଧାରଣା ଦଶପ୍ରାଣ ।
ଭିତରେ ବାହାରେ ପ୍ରମାଣ ।।୩୬
ଏମନ୍ତ ସର୍ବ ବିଶ୍ୱକାୟା ।
ତୁ ମୋତେ ପଚାରିଲୁ ଯାହା ।।୩୭
ବୋଲୁ ଯେ ବିଷ୍ଣୁର ମହିମା ।
କେ ଜାଣିପାରେ ଗୁଣସୀମା ।।୩୮
ବେଦ କେମନ୍ତେ ତାହା ଜାଣି ।
କହେ ମହିମା ପରିମାଣି ।।୩୯
ବୁଦ୍ଧି ଇନ୍ଦ୍ରିୟ ପ୍ରାୟ ମନ ।
ଏହାଙ୍କ ବିଷୟ ପ୍ରମାଣ ।।୪୦
ଯେ ରୂପେ ହୋଇବ ପ୍ରବେଶ ।
ତହିଁକି ଦେବ ଉପଦେଶ ।।୪୧
ବିଧାତା ଆଦି ଯେତେ ମୁନି ।
ବେଦରୁ ବ୍ରହ୍ମଭାଗ ଘେନି ।।୪୨
ସେ ବ୍ରହ୍ମଜ୍ଞାନକୁ ଶ୍ରବଣ ।
ଆବର କରନ୍ତି ଧାରଣ ।।୪୩
ବେଦ ବଚନେ ବ୍ରହ୍ମ ଜାଣି ।
ଭବସାଗରୁ ତରେ ପ୍ରାଣୀ ।।୪୪
ବେହୁଁ ପରମ ଗତି ପାନ୍ତି ।
ଉପନିଷଦ ଭାଗ ଚିନ୍ତି ।।୪୫
ଶୁଣ ପାଣ୍ଡବ ଚୂଡାମଣି ।
ଯେମନ୍ତେ ବେଦୁଁ ବ୍ରହ୍ମ ଜାଣି ।।୪୬
ପୁଣ୍ୟ ଆଶ୍ରମ ବଦରିକା ।
ଯହିଁ ଗୋବିନ୍ଦ ବେନି ସଖା ।।୪୭
ସେ ନର ନାରାୟଣ ରୂପେ ।
ସାଧନ୍ତି ଜନ୍ମସୁଖ ତପେ ।।୪୮
ଭାରତ ମଧ୍ୟେ ଯେତେ ଜନ୍ତୁ ।
ଏହାଙ୍କ ତପ ତାଙ୍କ ହେତୁ ।।୪୯
କଳାପ ଗ୍ରାମେ ଯକ୍ଷବାଟେ ।
ମୁନିଏ ଅଛନ୍ତି ନିକଟେ ।।୫୦
ତହିଁ ନାରଦ ମହାମୁନି ।
ମିଳିଲେ ବିଷ୍ଣୁଭାବ ଘେନି ।।୫୧
ସେ ମୁନି ବିଷ୍ଣୁର ସ୍ୱରୂପ ।
ଜୀବନମୁକ୍ତ ଜ୍ଞାନଦୀପ ।।୫୨

ନିରତେ ଜନ ଉପକାରେ ।
ଭ୍ରମନ୍ତି ଚତୁର୍ଦ୍ଦଶପୁରେ ।।୫୩
ବୀଣାଶବଦ କରେ ବାଇ ।
ମିଳିଲେ ବିଷ୍ଣୁ ପାଶେ ଯାଇ ।।୫୪
ଚରଣେ ଦେଇ ବେନିକର ।
ନମିଲେ ବ୍ରହ୍ମାଙ୍କ କୁମର ।।୫୫
କହନ୍ତି ଶୁକ ମୁନିବର ।
ଶୁଣ ପରୀକ୍ଷ ନୃପବର ।।୫୬
ବିଷ୍ଣୁ ନାରଦଙ୍କ ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ।।୫୭
ବୋଲି ନାରଦ ମହାଋଷି ।
ବିଷ୍ଣୁ ଚରଣତଳେ ବସି ।।୫୮
ନମଇଁ ପ୍ରଭୁ ନାରାୟଣ ।
ତୁମ୍ଭର ଅଭୟଚରଣ ।।୫୯
ହୃଦରେ ଅଛି ମୋ ସନ୍ଦେହ ।
ବ୍ରହ୍ମବିଚାର ମୋତେ କୁହ ।।୬୦
କହନ୍ତି ନାରାୟଣ ଋଷି ।
ନାରଦ ବାକ୍ୟ ପରଶଂସି ।।୬୧

ନାରାୟଣ ଉବାଚ

ଶୁଣ ନାରଦ ଶୁଦ୍ଧଚେତା ।
ଜନଲୋକ ସମ୍ବାଦ କଥା ।।୬୨
ବ୍ରହ୍ମା ମନରୁ ଜାତ ହୋଇ ।
ସନକ ଆଦି ଚାରିଭାଇ ।।୬୩
ଯୋଗ ସାଧନେ ଉର୍ଦ୍ଧ୍ୱରେତା ।
ବ୍ରହ୍ମବିଚାରେ ସେ ବକତା ।।୬୪
ସମାନ ବୁଦ୍ଧି ଚାରିଭାଇ ।
ଶ୍ରୋତା ବକତା ହୋଇ ତହିଁ ।।୬୫
ତାହାଙ୍କ ମଧ୍ୟେ ବିଚାରଣ ।
ଯେ ବ୍ରହ୍ମ ପରମକାରଣ ।।୬୬
ସେ ବ୍ରହ୍ମବିଚାର ସୂଚକେ ।
ତୁମ୍ଭେ ନ ଥିଲ ଜନଲୋକେ ।।୬୭
ଅଗାଧ ଜଳେ ଶ୍ୱେତଦୀପେ ।
ବିଷ୍ଣୁ ଶୟନ ମହାସର୍ପେ ।।୬୮
ଦେଖିବା ପାଇଁ ତୁମ୍ଭେ ଗଲ ।
ସେ ଘେନି ସେ ଲୋକେ ନଥିଲ ।।୬୯

ତୁମ୍ଭ ଗଲାରେ ପ୍ରଶ୍ନ ହୋଇ ।
ଶୁଣିଲି ଜନଲୋକ ମୁହିଁ ।।୭୦

ନାରଦ ଉବାଚ

ମୁନି ବୋଲନ୍ତି ନାରାୟଣ ।
ଗହନ ବ୍ରହ୍ମ ବିଚାରଣ ।।୭୧
ମନ ବଚନେ ନୋହେ ଧରି ।
ବେଦ କି ପାରେ ଅନ୍ତଃ କରି ।।୭୨
ସମାନଜ୍ଞାନୀ ଚାରିମୁନି ।
ଶ୍ରୋତା ବକତା ଭାବ ଘେନି ।।୭୩
ବ୍ରହ୍ମ ସମ୍ବାଦ କଲେ ଯାହା ।
ଭୋ ନାଥ ମୋତେ କହ ତାହା ।।୭୪

ନାରାୟଣ ଉବାଚ

କହନ୍ତି ପ୍ରଭୁ ନାରାୟଣ ।
ନାରଦ ସାବଧାନେ ଶୁଣ ।।୭୫
ବ୍ରହ୍ମାର ସେ ଚାରି କୁମର ।
ମହାମହିମା ତାହାଙ୍କର ।।୭୬
ସନନ୍ଦ ମୁନି ମୁଖ ଚାହିଁ ।
ବ୍ରହ୍ମ ପୁଛିଲେ ତିନିଭାଇ ।।୭୭
ମୁନିଏ ବାଳଖିଲ୍ୟା ଆଦି ।
ଅନେକ ଥିଲେ ବ୍ରହ୍ମବାଦୀ ।।୭୮
ସନନ୍ଦ କହେ ଶୁଦ୍ଧମନେ ।
ବ୍ରାହ୍ମଣେ ଶୁଣ ସାବଧାନେ ।।୭୯
ପୁରାଣ ପୁରୁଷ ମୁରାରି ।
ମାୟାର ବଳେ ସୃଷ୍ଟି କରି ।।୮୦
ପାଳନ ଧର୍ମରୂପେ କଲା ।
ପୁଣି ପ୍ରଳୟେ ସଂହାରିଲା ।।୮୧
ସେ ମାୟା ନିଜ ଦେହେ ଧରି ।
ଜଳ ଶୟନେ ନରହରି ।।୮୨
ବିଷ୍ଣୁ ରଜନୀ ପ୍ରକାଶିଲା ।
କେ ଜାଣେ କେତେକାଳ ଗଲା ।।୮୩
ପ୍ରବୋଧ କାଳେ ସେ ପୁରୁଷ ।
ଅଳସେ ଛାଡିଲା ନିଶ୍ୱାସ ।।୮୪
ଶୁଭିଲା ପ୍ରଚଣ୍ଡ ଶବଦ ।
ତହୁଁ ଜନ୍ମିଲେ ତିନି ବେଦ ।।୮୫

Dr. Sudhanshu Sekhar Mishra

ଦୁର୍ଗମ ଅନ୍ଧକାର ଦେଖି ।
ଭୟେ ବୁଜିଲେ ବେନିଆଖି ।।୮୬
ବିଷ୍ଣୁର ତେଜ ସେ ବହନ୍ତି ।
ବିଷ୍ଣୁ ଭେଟିଲେ ଯିବ ଭ୍ରାନ୍ତି ।।୮୭
ଏତେ ବିଚାର ମନେ ଘେନି ।
ସ୍ତୁତି କରନ୍ତି ବେଦ ତିନି ।।୮୮
ମାଗଧେ ରଜନୀର ଅନ୍ତେ ।
ରାଜାଙ୍କୁ ଡାକନ୍ତି ଯେମନ୍ତେ ।।୮୯

ବେଦଗଣ ଉବାଚ

ପ୍ରଥମେ ଜୟ ଜୟ ସ୍ତୁତି ।
ନିର୍ଗୁଣ ନିଗମେ ବୋଲନ୍ତି ।।୯୦
ଜୟ ଅଜିତ ଆଦିକନ୍ଦ ଆଦିକନ୍ଦ ।
ନିର୍ଲେପ ପରମ ଆନନ୍ଦ ।।୯୧
ଜୟ ମଙ୍ଗଳ ଜଗନ୍ନାଥ ।
ଏ ଜୀବ ତୋର ତହୁଁ ଜାତ ।।୯୨
ସ୍ଥାବର ଆଦି ଚାରି ମୂଳେ ।
ବନ୍ଧନ ବାସନାର ବଳେ ।।୯୩
ତୋର ମାୟାରେ ଭ୍ରମ ପାଇ ।
ନାନା ଯୋନିରେ ଜାତ ହୋଇ ।।୯୪
ଭ୍ରମନ୍ତି ତୋ ଭାବ ନ ପାଇ ।
ତାହାଙ୍କ ମାୟା ଛେଦ ତୁହି ।।୯୫
ସେ ମାୟା ପ୍ରକାଶିବୁ କେତେ ।
ଗୁଣ ଯେ ଭଜେ ଦୋଷ ଅର୍ଥେ ।।୯୬
ତୁ ଆତ୍ମାଗୁଣେ ନରହରି ।
ଅଷ୍ଟମ ନିଧି ଯୋଗଧାରୀ ।।୯୭
ଉପାଧି ଭେଦେ ନୋହୁଁ ସଙ୍ଗ ।
ସଲିଳେ ଯେସନେ ତରଙ୍ଗ ।।୯୮
ପରମ ଆତ୍ମା ରୂପେ ବସୁ ।
ଜୀବର ଶକ୍ତି ତୁ ପ୍ରକାଶୁ ।।୯୯
ତୋ ମାୟା ତରିବାର ଆଶେ ।
ବୈରାଗ ଜ୍ଞାନ ସେ ଅଭ୍ୟାସେ ।।୧୦୦
ନାନାପ୍ରକାରେ ବୁଦ୍ଧି କରି ।
ତୋ ମାୟା ନ ପାରନ୍ତି ତରି ।।୧୦୧
ଏଣୁ ଜୀବର ଘୋର ମାୟା ।
ତୁଟାଇ ଯାକୁ କରୁ ଦୟା ।।୧୦୨

ଅନାଦିମାୟା ସୃଷ୍ଟି କାଳେ ।
ତୁ ସେ ମାୟାର ସଙ୍ଗମେଳେ ।।୧୦୩
ଜୀବ ପରମ ରୂପ ଧରି ।
ତୋହର କ୍ରୀଡ଼ା ନରହରି ।।୧୦୪
ଅନନ୍ତ ଶକ୍ତି ତୋର ମାୟା ।
କେ ଜାଣିପାରେ ନାଥ ତାହା ।।୧୦୫
ଆଦି ଅନ୍ତ ନାହିଁ ତୋହର ।
ଏ ଘେନି କେ କରୁ ଗୋଚର ।।୧୦୬
ଦ୍ୱିତୀୟେ ବୃହଦୁପଲବ୍ଧ ।
ଭାବେ ବୋଲନ୍ତି ତିନି ବେଦ ।।୧୦୭
ତୁ ନାଥ ପରମଆନନ୍ଦ ।
ସଂସାର ମୂଳ ଆଦିକନ୍ଦ ।।୧୦୮
ତୁ ବୋଲୁ ବେଦ ଯେ ଅନାଦି ।
ସର୍ବ ପାରନ୍ତି ଏ ସମ୍ପାଦି ।।୧୦୯
ବାସବ ଆଦି ଦେବଗଣ ।
ଏ ଦେବେ ଯଜ୍ଞରେ ବରଣ ।।୧୧୦
କର୍ମ କରଣ ଶୁଭାଶୁଭ ।
ମୋକ୍ଷାଦି ଦିଅନ୍ତି ଏ ସର୍ବ ।।୧୧୧
ତହିଁ କି କହିବୁ ତୋ ଆଗେ ।
ପବନ ଯୋଗେ ଜଳବିମ୍ବେ ।।୧୧୨
କରିବା ଯେତେ ଅନୁମାନ ।
ଜଳୁ ସେ ନୁହନ୍ତି ନା ଭିନ୍ନ ।।୧୧୩
ତୁ ସର୍ବମୟ ନିରାକାର ।
ଅଶେଷ ଶେଷ ନାହିଁ ତୋର ।।୧୧୪
ସୃଷ୍ଟି ସମ୍ଭୂତ ତୋର ତହୁଁ ।
ତୁ ବ୍ରହ୍ମ ବିକାର ଯେ ନୋହୁ ।।୧୧୫
ଘଟାଦି ମୃତ୍ତିକା ଯେସନେ ।
ଉଦୟ ଅସ୍ତ ଅନୁମାନେ ।।୧୧୬
ବାସବ ଆଦି ଏ ଜଗତେ ।
ତୋହର ସର୍ଜିଲା ଜଗତେ ।।୧୧୭
ଏ ଘେନି ଋଷିଗଣ ଯେତେ ।
ମନବଚନ ଦେଇ ତୋତେ ।।୧୧୮
ସମର୍ପି ତୋ ପାଦ କମଳେ ।
ତୋ ମାୟା ନିସ୍ତରନ୍ତି ହେଳେ ।।୧୧୯
ଦିଗପାଳଙ୍କ ପୂଜା ଘେନି ।
ଯଜ୍ଞେ କି ନ ତରିବେ ମୁନି ।।୧୨୦

କାଷ୍ଠ ତୃଣ ଅବା ପାଷାଣ ।
ଏଣେ ଯେ ଚାଳନ୍ତି ଚରଣ ।।୧୨୧
ବାଳକ ଦୃଷ୍ଟି ଦିଶେ ଭ୍ରାନ୍ତି ।
ଜାଣିଲେ ଭୂମିରେ ସେ ଥାନ୍ତି ।।୧୨୨
ତୃତୀୟେ ଇତି ବେଦେ ବାଣୀ ।
ଭାବେ ବୋଲନ୍ତି ପରିମାଣି ।।୧୨୩
ତ୍ରି ଅଧିପତି ତୋର ନାମ ।
କହିବୁଁ ଶୁଣ ସାବଧାନ ।।୧୨୪
ତ୍ରିଗୁଣ ମାୟାଯନ୍ତ୍ର କରି ।
ମୃଗୀ ନଚାଉ ନରହରି ।।୧୨୫
ଏଣୁ ତୋ ତ୍ରିଅଧିପ ନାମ ।
ଶୁଣ କହିବୁଁ ଗୁଣ ଗ୍ରାମ ।।୧୨୬
ଆଦ୍ୟେ ଯେ ମୃଗ ଅନ୍ୱେଷଣ ।
ତାହାର ଅର୍ଥଟି ଭ୍ରମଣ ।।୧୨୭
ସେ ଭ୍ରମ ଅଛି ଯାର ତହିଁ ।
ଏ ଘେନି ମୃଗୀ ସେ ବୋଲାଇ।।୧୨୮।।
ଅଶେଷ ଯୋନି ମଧ୍ୟେ ଥାଇ ।
ଜୀବ ଭ୍ରମଇ ଦେହ ବହି ।।୧୨୯
ଏଣୁ ଏ ଜୀବ ମୃଗୀ ନାମ ।
ଯେଣୁ ନିରତେ ତାର ଭ୍ରମ ।।୧୩୦
ତ୍ରିଗୁଣ ସତ୍ତ୍ୱ ରଜ ତମ ।
ଏମନ୍ତ ଯନ୍ତ୍ର ଅନୁମାନ ।।୧୩୧
ନାନା ବିଷୟ ବିଦ୍ୟମାନେ ।
ଜୀବ ନାଚଇ ସାବଧାନେ ।।୧୩୨
ଏଣୁ ତ୍ରିଅଧିପ ବୋଲାଉ ।
ଯେ ଯନ୍ତ୍ରେ ଜୀବକୁ ନଚାଉ ।।୧୩୩
ଏମନ୍ତେ ବେଦ ଅନୁମାନି ।
ପୁଣି ବୋଲନ୍ତି ଭାବ ଘେନି ।।୧୩୪
ସଂସାରେ ସୁପଣ୍ଡିତ ପ୍ରାଣୀ ।
ତୋ ଅନୁମାନେ ତୋତେ ଜାଣି ।।୧୩୫
ତୋ କଥା ଅମୃତ ସାଗର ।
ଅଶେଷ ପାପ ଯହିଁ ଦୂର ।।୧୩୬
ସେ ଜଳେ ମନ ବୁଡ଼ାଇଲେ ।
ନଲାଗେ ତାପତ୍ରୟ ଭଲେ ।।୧୩୭
ତୋ ନାମ ମହିମା ଏମନ୍ତ ।
ତୋ ରୂପ କେ କରିବ ଅନ୍ତ ।।୧୩୮

Dr. Sudhanshu Sekhar Mishra

ଯୋଗୀଏ ବସି ଯୋଗାସନେ ।
ଅଖଣ୍ଡାନନ୍ଦ ରୂପ ଧ୍ୟାନେ ॥୧୩୯
ଅନ୍ତଃ କରଣେ ତାହା ଧରି ।
ତେଜି କାମାଦି ଷଡ ଅରି ॥୧୪୦
ଗର୍ଭ ଜନ୍ମ ବାଳ କିଶୋର ।
ତରୁଣ ବୃଦ୍ଧ ଦେହାନ୍ତର ॥୧୪୧
ଏ ସପ୍ତଦଶା ଜିଣି କରି ।
ମାୟା ସଂସାର ଯାନ୍ତି ତରି ॥୧୪୨
ଚତୁର୍ଥେ ଈଶ୍ୱରର ସ୍ତୁତି ।
ନିର୍ମଳ ନିଗମେ ବୋଲନ୍ତି ॥୧୪୩
ଭୋ ନାଥ କମ୍ବୁଚକ୍ରପାଣି ।
ତୋତେ ଯେ ନ ଭଜନ୍ତି ପ୍ରାଣୀ ॥୧୪୪
ଶରୀର ବହି ଏ ଶୟଳେ ।
ପ୍ରାଣ ଧରନ୍ତି ସୁଖ ଭୋଳେ ॥୧୪୫
ତାଙ୍କ ଜୀବନ ଅକାରଣ ।
ଭୋ ନାଥ ଶୁଣ ନାରାୟଣ ॥୧୪୬
କର୍ମକାରକ ଯନ୍ତ୍ର ବଳେ ।
ଭାତିଏ ଗର୍ଜୁଥାନ୍ତି ଶାଳେ ॥୧୪୭
ଛାଡିଲେ ନଥାଇ ପବନ ।
ତେମନ୍ତ ତାହାଙ୍କ ଜୀବନ ॥୧୪୮
ମହତ ଅହଙ୍କାର ମନ ।
ଗଗନ ଆବର ପବନ ॥୧୪୯
ଜଳ ଅନଳ ସଙ୍ଗେ ମହୀ ।
ତୋ ଅନୁଗ୍ରହେ ଜଡ ହୋଇ ॥୧୫୦
ବ୍ରହ୍ମାଣ୍ଡ ହୋଏ ଦେହଧାରୀ ।
ତୁ ନାଥ ଜୀବରୂପ ଧରି ॥୧୫୧
ପଞ୍ଚଶରୀରେ ତୋର ବାସ ।
ଯାହାକୁ ବୋଲି ପଞ୍ଚକୋଷ ॥୧୫୨
ଅନ୍ନ ଯେ ପ୍ରାଣ ଆର ମନ ।
ବିଜ୍ଞାନ ଆନନ୍ଦ ଏ ନାମ ॥୧୫୩
ଏ ପଞ୍ଚପୁରେ ତୁ ଯେ ପଶି ।
ଜ୍ୟୋତିସ୍ୱରୂପ ପରକାଶି ॥୧୫୪
ଏହାଙ୍କୁ ତୁଲେ ଲଗ୍ନ ନୋହୁ ।
ଯେଣୁ ନିର୍ଲେପ ରୂପ ବହୁ ॥୧୫୫
ଏଣୁ ତୋ ଚରଣ କମଳେ ।
ଯେ ନ ଭଜନ୍ତି ସୁଖଭୋଳେ ॥୧୫୬

ତୁ ନାଥ ତାହାଙ୍କୁ ଦୁର୍ଲ୍ଲଭ ।
ସେ ପ୍ରାଣୀ ଲଭେ ପରାଭାବ ॥୧୫୭
ଉଦର ପଞ୍ଚମରେ ସ୍ତୁତି ।
ବେଦେ ବାସୁଦେବ ବୋଲନ୍ତି ॥୧୫୮
ଶୁଣ ହେ ପରମ କାରଣ ।
ଋଷିଙ୍କ ମାର୍ଗ ବିଚାରଣ ॥୧୫୯
ସ୍ଥୂଳ ଦୃଷ୍ଟିରେ ତୋତେ ଚିନ୍ତି ।
ସୂକ୍ଷ୍ମ ସ୍ୱରୂପ ନ ଜାଣନ୍ତି ॥୧୬୦
ଗୁରୁଙ୍କ ଉପଦେଶ ଶୁଣି ।
ଉଦରେ ବ୍ରହ୍ମ ପରିମାଣି ॥୧୬୧
କୁମ୍ଭକ କର୍ମେ ବାୟୁ ପୂରି ।
ନାଭିଚକ୍ରକୁ ଧ୍ୟାନ କରି ॥୧୬୨
ଉଦର ଚକ୍ରେ ଦୃଷ୍ଟିସ୍ଥିରେ ।
ଚିନ୍ତତି ପବନ ନିଶ୍ଚଳେ ॥୧୬୩
ଚକ୍ର ପବନେ ସୂକ୍ଷ୍ମ ରେଣୁ ।
ନୟନେ ଆଚ୍ଛାଦଇ ତେଣୁ ॥୧୬୪
ତାହାକୁ ଅନ୍ଧ ବୋଲି ଜାଣି ।
ସେ ତୋତେ କାହିଁ ପରିମାଣି ॥୧୬୫
ସେ ନାଭିଚକ୍ର ଊର୍ଦ୍ଧ୍ୱଗତେ ।
ଦଶ ଅଙ୍ଗୁଳି ପରିମିତେ ॥୧୬୬
ସହସ୍ର ସଂଖ୍ୟା ଦ୍ୱିସପ୍ତତି ।
ନାଡୀଏ ଅଧ ଊର୍ଦ୍ଧ୍ୱେଛନ୍ତି ॥୧୬୭
ଏହାଙ୍କ ଦେହେ ପ୍ରାଣ ବହେ ।
ଦେହ ଆବୋରି ବସ୍ତ୍ର ପ୍ରାୟେ ॥୧୬୮
ଏ ନାଡୀମାନଙ୍କର ମୂଳ ।
ନାମ ତା ହୃଦୟ କମଳ ॥୧୬୯
ଆରୁଣି ବଂଶେ ଯେତେ ମୁନି ।
ତାହାଙ୍କ ଗୁରୁ ଶିକ୍ଷା ଘେନି ॥୧୭୦
ସେ ତୋତେ ସୂକ୍ଷ୍ମରୂପେ ଚିନ୍ତି ।
ହୃଦୟେ ଧ୍ୟାନ ସେ କରନ୍ତି ॥୧୭୧
ଭୋ ନାଥ ସୂକ୍ଷ୍ମର ମହିମା ।
ଆମ୍ଭେ କରିବୁ ଗୁଣ ସୀମା ॥୧୭୨
ତୀକ୍ଷ୍ଣ ଶସ୍ତ୍ରରେ ବାଳ ଅଗ୍ର ।
ଚିରି କରିବ ଦଶଭାଗ ॥୧୭୩
ତାହାକୁ ପୁଣି ସହସ୍ରକେ ।
ଚିରି ଗଣିବ ଏକେ ଏକେ ॥୧୭୪

ତହିଁର ଏକ ଭାଗ ସମ ।
ସୂକ୍ଷ୍ମ ବୋଲାଇ ତାର ନାମ ॥୧୭୫
ତହିଁ ଯାହାର ମନ ରହେ ।
ତା ତହୁଁ ଅଧିକ ବୋଲାଏ ॥୧୭୬
ଏ ଦୁଇ ଚକ୍ର ଭେଦ କଲେ ।
ସୁଷୁମ୍ନା ରନ୍ଧ୍ରେ ଯୋଗବଳେ ॥୧୭୭
ମୃଣାଳସୂତ୍ର ରନ୍ଧ୍ର ପଥେ ।
ମନ ପବନ ଊର୍ଦ୍ଧ୍ୱଗତେ ॥୧୭୮
ଶିର କମଳେ ଯେବେ ମିଶେ ।
ତୋ ରୂପ ତାହାକୁ ପ୍ରକାଶେ ॥୧୭୯
ଛାଡଇ ଭବ ଭୟ ଭ୍ରାନ୍ତି ।
ସେ ଯମ ମୁଖେ ନ ପଡନ୍ତି ॥୧୮୦
ସ୍ୱକୃତ ବିଚିତ୍ର ସପ୍ତମ ।
ବେଦେ ବୋଲନ୍ତି ଗୁଣଗ୍ରାମ ॥୧୮୧
ତୋର ସର୍ଜିଲା ନାନା ଯୋନି ।
ତୁ ତହିଁ ଜୀବରୂପ ଘେନି ॥୧୮୨
ବାସନା ବଳେ ଉଚ୍ଚ ନୀଚ ।
ଏଣୁ ଟି ତୋ ରୂପ ପ୍ରପଞ୍ଚ ॥୧୮୩
ଅଣୁ ପ୍ରମାଣେ ସୂକ୍ଷ୍ମ ସ୍ଥୂଳେ ।
ରୂପ ପ୍ରକାଶୁ ମାୟା ବଳେ ॥୧୮୪
କାଷ୍ଠ ପ୍ରମାଣେ ଅଗ୍ନି ଯେହ୍ନେ ।
ଜ୍ୟୋତି ପ୍ରକାଶେ ସ୍ଥୂଳେ ଶୂନ୍ୟେ ॥୧୮୫
ଏ ନାନା ଜ୍ୟୋତିଯେତେବେଳେ ।
ବିନାଶ ହୋନ୍ତି କର୍ମ ବଳେ ॥୧୮୬
ତୁ ଏକା ରହୁ ଅବସାନେ ।
ଘଟ ବିନାଶେ ଚନ୍ଦ୍ର ଯେହ୍ନେ ॥୧୮୭
ଏମନ୍ତ କରି ଅନୁମାନ ।
ଯାର ପ୍ରକାଶେ ଦିବ୍ୟଜ୍ଞାନ ॥୧୮୮
ଚୈତନ୍ୟ ସତ୍ୟ ତାହାଙ୍କର ।
ସେ ତୋତେ କରନ୍ତି ବିଚାର ॥୧୮୯
ତୋର ବିହାର ଆତ୍ମ ସୁଖେ ।
ପ୍ରକାଶ ଇହ ପରଲୋକେ ॥୧୯୦
ମିଥ୍ୟା ପ୍ରକାଶ ଏହା ଜାଣି ।
ଆତ୍ମାସ୍ୱରୂପ ପରିମାଣି ॥୧୯୧
ଏ ସର୍ବ ଛାଡି ତୋ ଶରଣେ ।
ପଶନ୍ତି ଅଭୟ ଚରଣେ ॥୧୯୨

Dr. Sudhanshu Sekhar Mishra

ତୋ ରୂପ ଏକରସେ ରସି ।
ପରମ କ୍ଷେମ ଧାମେ ମିଶି ।।୧୯୩
ସ୍ୱକୃତ ସ୍ତୁତି ସପତମେ ।
ବିଷ୍ଣୁଙ୍କୁ ବୋଲନ୍ତି ନିଗମେ ।।୧୯୪
ଅନନ୍ତ ପ୍ରଭୁ ହେ ଅଚ୍ୟୁତ ।
ତୋର ସଂଚିଲା ଏ ଜଗତ ।।୧୯୫
ମାୟାରେ ଭିଆଇ ବ୍ରହ୍ମାଣ୍ଡ ।
ଅଶେଷ ରୂପେ କରୁ ପିଣ୍ଡ ।।୧୯୬
ପୁଣି ଏ ପ୍ରପଞ୍ଚେ ପ୍ରକାଶ ।
ବାସନା ଅନ୍ତେ ହୋଇ ନାଶ ।।୧୯୭
କର୍ମ ନଥିଲେ ଜୀବ କାହୁଁ ।
ତୁହି ସେ ଅବଶେଷେ ରହୁ ।।୧୯୮
ପ୍ରାଣୀର ବାହ୍ୟ ଅନ୍ତେ ଥାଉ ।
ସ୍ୱଭାବେ ପଞ୍ଚକୋଷ ବହୁ ।।୧୯୯
ଘଟକୁ ଥୋଇ ଯେହ୍ନେ ନୀର ।
ପୂରଇ ଭିତର ବାହାର ।।୨୦୦
ଅଶେଷ ଦେହେ ନାରାୟଣ ।
ଏ ପିଣ୍ଡ ତୋହର ଭିଆଣ ।।୨୦୧
ଏ ପିଣ୍ଡ ବାହ୍ୟ ଅଭ୍ୟନ୍ତରେ ।
ତୋ ତହୁଁ କେ ଅଛି ଅପରେ ।।୨୦୨
ସ୍ୱକର୍ମେ ଯେତେ ଦେହ ଜାତ ।
ତୋ ଅଂଶ ତାର ମଧଗତ ।।୨୦୩
କର୍ମରେ ଯେ ଫଳ ଉପୁଜେ ।
ତୋ ଅଂଶ ଦେହ ମଧ୍ୟେ ଭୁଞ୍ଜେ ।।୨୦୪
ଜୀବର ଏହି ଗତି ଜାଣି ।
ତୋ ପାଦେ ଭଜନ୍ତି ଯେ ପ୍ରାଣୀ ।।୨୦୫
ଜୀବର ବଳ ଅଳ୍ପ ପ୍ରାୟେ ।
ସକଳ ଶକ୍ତି ତୋର ପ୍ରାୟେ ।।୨୦୬
ତେଣୁ ସକଳ ତ୍ୟାଗ କରି ।
ତୋ ପାଦ ଚିନ୍ତେ ବ୍ରହ୍ମଚାରୀ ।।୨୦୭
ବେଦରୁ ଯେତେ କର୍ମ ଫଳେ ।
ସେ ଥାନ୍ତି ତୋ ଚରଣ ତଳେ ।।୨୦୮
ଏଣୁ ତୋ ପାଦେ ଯାର ଆଶ ।
ନ ଲାଗେ ଭବ-ବନ୍ଧ-ତ୍ରାସ ।।୨୦୯
ବେଦଙ୍କ ସ୍ତୁତି ଯେ ଅଷ୍ଟମ ।
ବୋଲନ୍ତି ଯେ ଦୁରବଗମ ।।୨୧୦

କେହି ତା ତତ୍ତ୍ୱ ନ ଜାଣଇ ।
ତାହା ତୁ ଜଣାଇବା ପାଇଁ ।।୨୧୧
ନାନା ଯୋନିରେ ରୂପ ତୋର ।
ତୁ ଏକ ବାହାର ଭିତର ।।୨୧୨
ଅମୃତସିନ୍ଧୁ ତୋର ନାମ ।
ଅବଗାହନେ ନାଶେ ଶ୍ରମ ।।୨୧୩
ପରମଜ୍ଞାନୀ ତାହା ଜାଣି ।
ତୋ ନାମ ଜଳେ ପରମାଣି ।।୨୧୪
ନିରତେ ଅବଗାହ କରି ।
ଶ୍ରମ ଛାଡନ୍ତି ନାମ ଧରି ।।୨୧୫
ସଂସାର ମତେ ବେଦ ଧର୍ମ ।
ସାଧି ଲଭନ୍ତି ପ୍ରାଣୀ ଶ୍ରମ ।।୨୧୬
ତୋ ନାମ ସୁଧାଜଳେ ବୁଡି ।
ଜ୍ଞାନ ସାଧନା ଶ୍ରମ ଛାଡି ।।୨୧୭
ମୋକ୍ଷକୁ ନ କରି ସେ ଇଚ୍ଛା ।
ତୋ ନାମ ତତ୍ତ୍ୱେ କରି ଦୀକ୍ଷା ।।୨୧୮
ତୋ ନାମ ସ୍ୱର୍ଗ-ଅପବର୍ଗ ।
ତେଣୁ ଛାଡିଲେ ଜ୍ଞାନମାର୍ଗ ।।୨୧୯
ଭକ୍ତିରେ ତୋ ନାମ ଆବୋରି ।
ବେଗେ ତରିଲେ ଭବବାରି ।।୨୨୦
ତୋ ନାମ ସୁଧା ସିନ୍ଧୁଜଳେ ।
ହଂସର ପ୍ରାୟ ଜ୍ଞାନୀ ଭୋଳେ ।।୨୨୧
ବୁଡି ଉଠନ୍ତି ପୁଣ ପୁଣି ।
ତୋ ନାମ ଉଚ୍ଚସ୍ୱରେ ଭଣି ।।୨୨୨
ନିତ୍ୟେ ସୁମରି ତୋ ଚରଣ ।
ତାହାଙ୍କୁ ନ ଲାଗେ ମରଣ ।।୨୨୩
ସଂସାର ଛାଡି ସୁଖଭୋଳେ ।
ଯେ ତାଇ ତାଙ୍କ ସଙ୍ଗ ମେଳେ ।।୨୨୪
ତୋତେ ଜାଣନ୍ତି ସତସଙ୍ଗେ ।
ନ ଲାଗେ ଭବଦୁଃଖ ଅଙ୍ଗେ ।।୨୨୫
ତ୍ୱଦନୁପଥ ଯେ ନବମ ।
କୃଷ୍ଣଙ୍କୁ ବୋଲନ୍ତି ନିଗମ ।।୨୨୬
ଶୁଣ ହେ କମଳାର ବର ।
ଯେତେ ଏ ଜନ୍ତୁଙ୍କ ଶରୀର ।।୨୨୭
ତୋହର ଅନୁପଥ ଏହି ।
ଯେଣୁ ଏହାଙ୍କ ପଥେ ତୁହି ।।୨୨୮

ଜୀବ ପରମ ରୂପ ଧରି ।
ତୋ ଭୋଗ କ୍ରୀଡା ଅନୁସରି ।।୨୨୯
ଏଣୁ ତୋ ଅନୁପଥ ଏହି ।
ଜଳାୟ ନାମ ଏ ବୋଲାଇ ।।୨୩୦
ତୁ ନୋହୁ ଲଗ୍ନ ଏ ଶରୀରେ ।
ନଳିନୀ ଥାଇ ଯେହ୍ନେ ନୀରେ ।।୨୩୧
ତୋର ମହିମା ଯେ ନ ଜାଣି ।
ଦେହକୁ ସତ୍ୟ ପ୍ରାୟ ମଣି ।।୨୩୨
ପ୍ରିୟ ସୁହୃଦ ବନ୍ଧୁ ପ୍ରାୟେ ।
ପ୍ରୀତି କରନ୍ତି ମୃତ ଦେହେ ।।୨୩୩
ତୋତେ ନ ଭଜେ ସୁଖଭୋଳେ ।
ବାଳକ ଯେହ୍ନେ ମାତା କୋଳେ ।।୨୩୪
ମାତାର ପ୍ରାୟ ହିତ ତୁହି ।
ଅଜ୍ଞାନ ତୋତେ ନ ଜାଣଇ ।।୨୩୫
ତୁ ଆତ୍ମାହିତ ପ୍ରିୟବନ୍ଧୁ ।
ନିର୍ବାଣଦାତା ସୁଖସିନ୍ଧୁ ।।୨୩୬
ଏ ବିପରୀତ କିବା କହି ।
ଦେହ ଘେନିଣ ଭ୍ରମେ ମହୀ ।।୨୩୭
ଦେହକୁ ମଣିଥାଇ ସତ୍ୟ ।
ଅନିତ୍ୟ ଜଳବିମ୍ବ ବତ ।।୨୩୮
ଏଣେ ଯାହାର ପ୍ରୀତି ହୋଇ ।
ଅସାଧୁଜନ ମଧ୍ୟେ ସେହି ।।୨୩୯
ଉତ୍ତମ ନାବ ଥାଉଁ କୂଳେ ।
ସେ ଯେ ନ ତରେ ଭବଜଳେ ।।୨୪୦
କୁଦେହ ଘେନି ଭବେ ଭ୍ରମି ।
ଜନ୍ମ ମରଣ ପଥେ ଶ୍ରମି ।।୨୪୧
ତାହାକୁ ବୋଲି ଆତ୍ମାହନ ।
ନିଷ୍ଫଳ ତାହାଙ୍କ ଜୀବନ ।।୨୪୨
ନିଭୃତ ମରୁତ୍ ଦଶ ସ୍ତୁତି ।
ନିଗମେ ନିର୍ଭରେ ବୋଲନ୍ତି ।।୨୪୩
ଅଷ୍ଟାଙ୍ଗଯୋଗେ ମୁନିଜନେ ।
ବସି ନିର୍ଜନ ଘୋର ବନେ ।।୨୪୪
ଇନ୍ଦ୍ରିୟଗଣ କରି ଦମି ।
ମନ ପବନ ହୃଦେ ଛନ୍ଦି ।।୨୪୫
ଯାହା ଲଭିବା ଅର୍ଥେ ଚିତ୍ତେ ।
ଚିନ୍ତା କରନ୍ତି ଅବିରତେ ।।୨୪୬

Dr. Sudhanshu Sekhar Mishra

ଯେ ତୋତେ ଶତ୍ରୁପଣେ ଚିନ୍ତି ।
ସେ ପୁଣି ତୋ ଦେହେ ପଶନ୍ତି ।।୧୨୪୭
ହେ ନାଥ ତୋର ସ୍ନେହେ ଗଣ ।
ଆମ୍ଭ କହିବୁଁ କିଛି ପୁଣ ।।୧୨୪୮
ଗୋପନଗରେ ନାରୀଜନେ ।
କୁବୁଜୀ ଆଦି ମନ୍ମଥେନେ ।।୧୨୪୯
ଯେ ତୋରେ ଚିନ୍ତିବ ହୋଇ ।
ଚୁମ୍ବନ ଆଲିଙ୍ଗନ ଦେଇ ।।୧୨୫୦
ହେ ନାଥ ତୋର ସେବିକତା ।
ଭରତଚନ୍ଦ୍ର ମତାନ୍ତର ।।୧୨୫୧
ସେ ଭୁଜେ ଆଲିଙ୍ଗନ ପାଇ ।
ମନ ବଚନ ତୋତେ ଦେଇ ।।୧୨୫୨
କାମିନୀ ରୂପେ ଭାବବୋଳେ ।
ସେ ତୋତେ ଭଜିଲେ ନିଶ୍ଚଳେ ।।୧୨୫୩
ଆମ୍ଭେ ସକଳ ବେଦବୃନ୍ଦେ ।
ଭାବେ ପଶିବୁଁ ସେହି ପାଦେ ।।୧୨୫୪
ଯେଣୁ ତୋ ରିପୁ ମିତ୍ର ନାହିଁ ।
ସମଦରଶୀ ତେଣୁ ତୁହି ।।୧୨୫୫
ପ୍ରପଞ୍ଚେ ଉଚ୍ଚ ନୀଚ ଯୋନି ।
ତୁ ବହୁ ଲୀଳାଭାବ ଘେନି ।।୧୨୫୬
ଏ ଯେ ତୋହର ପଦ୍ମପାଦ ।
ସ୍ରବଇ ସୁଧାମକରନ୍ଦ ।।୧୨୫୭
ସେ ପାଦେ ଆମ୍ଭ ବୁଦ୍ଧି ମତି ।
ପ୍ରେମ ଭକ୍ତିରେ ଭଜୁ ନିତି ।।୧୨୫୮
କ ଇହ ଏକାଦଶ ବାଣୀ ।
ବେଦେ ବୋଲନ୍ତି ପରିମାଣି ।।୧୨୫୯
ତୁ ନାଥ କରୁଣାଜଳଧି ।
ସର୍ବବିଷୟ ପୂର୍ବସିଦ୍ଧି ।।୧୨୬୦
ତୋ ଠହୁଁ ସୃଷ୍ଟି ଆଦିକାଳେ ।
ପ୍ରାଣୀ ଉପୁଜେ ମାୟାବଳେ ।।୧୨୬୧
ଉପୁଜି ପ୍ରଳୟ ହୁଅନ୍ତି ।
ଏ ଘେନି ତୋତେ ନ ଜାଣନ୍ତି ।।୧୨୬୨
ତୋହର ନାହିଁ ମୋହ ଦ୍ୱନ୍ଦ୍ୱ ।
ଏଣୁ ବୋଲାଉ ଆଦିକନ୍ଦ ।।୧୨୬୩
ବିଧାତା ଜାତ ତୋର ଠହୁଁ ।
ନିଗମ ଜାତ ଯାର ଦେହୁଁ ।।୧୨୬୪

ତୋ ଠହୁଁ ଦେବାସୁର ଜାତ ।
ତାପତ୍ରୟାଦି ଏ ଜଗତ ।।୧୨୬୫
ବ୍ରହ୍ମା ସୃଷ୍ଟିରେ ଜାତ ଯେତେ ।
ଏ ଘେନି କେ ଜାଣିବ ତୋତେ ।।୧୨୬୬
ତୋହର ଆଶ୍ରେ ଏ ଜଗତ ।
ସୃଷ୍ଟି ପ୍ରଳୟ ତୋର ମତ ।।୧୨୬୭
ସୃଷ୍ଟି ସଂହାରି ଯୋଗବଳେ ।
ଶୟନ କରୁ ମହାଜଳେ ।।୧୨୬୮
ସେ କାଳେ ପ୍ରାଣୀ ଯେବେ ଥାନ୍ତେ ।
ତୋ ରୂପ ନୟନେ ଦେଖନ୍ତେ ।।୧୨୬୯
ଅବନୀ ଆଦି ପଞ୍ଚଭୂତ ।
ମହତ ଆଦି ତିନିତତ୍ତ୍ୱ ।।୧୨୭୦
ଅସତ୍ୟ ସତ୍ୟ ଏ ବୋଲାନ୍ତି ।
ଏ କାହୁଁ ତୋ ରୂପ ଜାଣନ୍ତି ।।୧୨୭୧
ତୋର ମହିମା ଜ୍ଞାନିଜନେ ।
ଦୁର୍ଲ୍ଲଭ ଗଗନ ଯେସନେ ।।୧୨୭୨
ବ୍ରହ୍ମବିଚାରି ଶାସ୍ତ୍ରଭାବେ ।
ବେଦ ବିଚାରି ତୋର ଲାଭେ ।।୧୨୭୩
ସକଳେ ଯାନ୍ତି ଉପହାସେ ।
ଭକତ ରହେ ତୋରପାଶେ ।।୧୨୭୪
ଜନି ଅସତ ଏ ଦ୍ୱାଦଶ ।
ବେଦେ ବୋଲନ୍ତି ହରିଯଶ ।।୧୨୭୫
ବୈଶେଷିକ ଶାସ୍ତ୍ରପଥ ।
ତୋତେ ବିଚାରେ ନାମମାତ୍ର ।।୧୨୭୬
ବିନାଶ ଏକବିଂଶ ଦୁଃଖ ।
ମୋକ୍ଷ ବୋଲନ୍ତି ନୈୟାୟିକ ।।୧୨୭୭
ସତ ଅସତ ମାର୍ଗେ ଚିନ୍ତି ।
ମିଥ୍ୟା ଏ ଜଗତ ବୋଲନ୍ତି ।।୧୨୭୮
ବ୍ରହ୍ମ ଯେ ବିଦ୍ୟମାନ ସତ୍ୟ ।
ବିଚାରେ ପାତଞ୍ଜଳି ମତ ।।୧୨୭୯
ସାଂଖ୍ୟଯୋଗୀଙ୍କ ବିଚାରଣା ।
ଜଗତ ଆତ୍ମକଳ୍ପଣା ।।୧୨୮୦
କର୍ମ ବେଭାର ମୀମାଂସକେ ।
ଜଗତ ସତ୍ୟ ତାଙ୍କ ଲେଖେ ।।୧୨୮୧
ଏ ଭ୍ରାନ୍ତି ଶାସ୍ତ୍ରମାର୍ଗେ ଭ୍ରମି ।
ବିବାଦେ ହୋନ୍ତି ପରିଶ୍ରମୀ ।।୧୨୮୨

ଭ୍ରମେ ଭ୍ରମନ୍ତି ବହୁଶ୍ରମେ ।
କାହୁଁ ଜାଣିବେ ନିଜ ଭ୍ରମେ ।।୧୨୮୩
ଯେଣୁ ଏ ଜୀବ ଗୁଣମୟେ ।
ଏଣୁ ବିଚାର ଭେଦ ରହେ ।।୧୨୮୪
ଅଜ୍ଞାନେ ତୋ ଭେଦ ବିଚାରି ।
ତୁ ସଙ୍ଗୀ ନୋହୁନା କାହାରି ।।୧୨୮୫
ସବିକମନ ତ୍ରୟୋଦଶେ ।
ଶ୍ରୁତି ବୋଲନ୍ତି ହୃଷୀକେଶେ ।।୧୨୮୬
ପ୍ରପଞ୍ଚ ତ୍ରିଗୁଣେ ଜଗତ ।
ଜାଣିଲେ ନିଶ୍ଚେ ନୋହେ ସତ୍ୟ ।।୧୨୮୭
ମନ ବିଳାସ ମାତ୍ର ଏହି ।
ଅସତ୍ୟ ସତ୍ୟ ଆଭାସଇ ।।୧୨୮୮
ତୁ ଏଥ ଅଧିପତି ଯେଣୁ ।
ଆଭାସେ ସତ୍ୟ ପ୍ରାୟ ତେଣୁ ।।୧୨୮୯
ଅସତ୍ୟ ସତ୍ୟ ପ୍ରାୟ ଦିଶି ।
ଛାୟା ଦର୍ପଣେ ଯେହ୍ନେ ଶଶୀ ।।୧୨୯୦
ଜୀବର ଜନ୍ମ ତୋର ଠହିଁ ।
ବ୍ୟାପିଛୁ ଜଗତକୁ ମୋହି ।।୧୨୯୧
କାରଣ କାର୍ଯ୍ୟ ନୋହେ ଭିନ୍ନ ।
ଶୁଣ କହିବା ଅନୁମାନ ।।୧୨୯୨
ସୁବର୍ଣ୍ଣେ କାର୍ଯ୍ୟ ଯାର ପଡେ ।
କୁଣ୍ଡଳ ଆଦି କମ ଗଢେ ।।୧୨୯୩
ପୁଣି ଅନଳେ ପାକ କଲେ ।
ସୁବର୍ଣ୍ଣ ହୋଇ ଏକଠୁଳେ ।।୧୨୯୪
ନାମ ବିକାର ନାଶ ଯାନ୍ତି ।
ଏଣୁ ଜଗତେ ଭେଦ ଭ୍ରାନ୍ତି ।।୧୨୯୫
ଏ ଘେନି ଶାସ୍ତ୍ର ଅନୁମାନ ।
ତୋ ଠହୁଁ ସୃଷ୍ଟି ନୋହେ ଭିନ୍ନ ।।୧୨୯୬
ଚତୁରଦଶେ ଚବପରି ।
ବେଦେ ବୋଲନ୍ତି ଶୁଣ ହରି ।।୧୨୯୭
ଯେଣୁ ତୋ ସର୍ବଭୂତେ ବାସ ।
ଏ ଘେନି ପ୍ରାଣୀ ତୋ ବିଶ୍ୱାସ ।।୧୨୯୮
ଏହା ଯେ ଜାଣି ତୋତେ ଭାବେ ।
ସେ ନ ପଡନ୍ତି ପରାଭବେ ।।୧୨୯୯
ଚରଣ ମୃତ୍ୟୁଶିରେ ଦ୍ୟନ୍ତି ।
ପରମପଦେ ସେ ପଶନ୍ତି ।।୧୩୦୦

Dr. Sudhanshu Sekhar Mishra

ତୋ ଭାବ ନ ଜାଣନ୍ତି ଯେହୁ ।
ତାରିବେ ଭବସିନ୍ଧୁ କାହୁଁ ।।୩୦୧
ପଣ୍ଡିତପଣେ ଶାସ୍ତ୍ରବାଦେ ।
ଭାବ ନକରି ତୋର ପାଦେ ।।୩୦୨
ସ୍ୱକର୍ମପାଶେ ପାଦ ଛନ୍ଦି ।
ବେଦବଚନେ ହୋନ୍ତି ବନ୍ଦୀ ।।୩୦୩
ପଶୁପାଳଙ୍କ ଘରେ ଯେହ୍ନେ ।
ବନ୍ଧନେ ଥାନ୍ତି ପଶୁମାନେ ।।୩୦୪
ତେସନ ଏ ଭବବନ୍ଧନେ ।
ଜୀବ–ବନ୍ଦୀ ବେଦବଚନେ ।।୩୦୫
ଏଣୁ ସଂସାରେ ଯେତେ ଜନ୍ତୁ ।
ତୋ ବାକ୍ୟବନ୍ଧ କରି ହେତୁ ।।୩୦୬
ଏ ଘେନି ତୋ ପାଦକମଳେ ।
ଯେ ଭାବ କରେ ପ୍ରୀତି ଭୋଳେ ।।୩୦୭
ସଂସାର ତାରି ସେ ତରନ୍ତି ।
ମରଣେ ନାହିଁ ତାଙ୍କ ଭ୍ରାନ୍ତି ।।୩୦୮
ତୋତେ ନ ଜାଣି ଧର୍ମ ଚିନ୍ତି ।
ଯଜ୍ଞ ଦାନ ତୀର୍ଥେ ଭଜନ୍ତି ।।୩୦୯
ଆତ୍ମାକୁ ନିସ୍ତାରି ନପାରେ ।
ତା ବୋଲେ ସଂସାର କି ତରେ ।।୩୧୦
ତୋର ବିମୁଖ ଶାସ୍ତ୍ରେ ଭ୍ରମି ।
ଜନ୍ମମରଣେ ପଥଶ୍ରମୀ ।।୩୧୧
ତ୍ୱମକରଣ ପଞ୍ଚଦଶେ ।
ବେଦେ ବୋଲନ୍ତି ଉପଦେଶେ ।।୩୧୨
ଭୋ ନାଥ ତୋହର ଜଗତେ ।
କର୍ମ କରନ୍ତି ପ୍ରାଣୀ ଯେତେ ।।୩୧୩
ତୁ ତାହା ନ କରୁ ଗ୍ରହଣ ।
ଏଣୁ ତୋ ନାମ ଅକାରଣ ।।୩୧୪
କର୍ମକରଣ ତୋର ନାହିଁ ।
ସ୍ୱଭାବେ ନିରଞ୍ଜନ ତୁହି ।।୩୧୫
ତଥାପି ସର୍ବ ଜନ୍ତୁ ଦେହେ ।
ତୋ ଅଂଶ ଅଛି ଜୀବ ପ୍ରାୟେ ।।୩୧୬
ପ୍ରାଣୀର ରସନା ଲୋଚନ ।
ଶ୍ରବଣ ନାସା ଚର୍ମ ଘେନ ।।୩୧୭
ଜ୍ଞାନଇନ୍ଦ୍ରିୟ ଏ ବୋଲାନ୍ତି ।
ମନର ସଙ୍ଗେ ବିହରନ୍ତି ।।୩୧୮

ପାଦ ବଚନ ଭୁଜ ଲିଙ୍ଗ ।
ମୂଳକମଳ ଦ୍ୱାର ସଙ୍ଗ ।।୩୧୯
କର୍ମଇନ୍ଦ୍ରିୟ ଏ ବୋଲାନ୍ତି ।
କର୍ମକରଣେ ଥାନ୍ତି ନିତି ।।୩୨୦
ଅଗ୍ନି ବାସବ ଲକ୍ଷ୍ମୀକାନ୍ତ ।
ମିତ୍ରାବରୁଣ ପ୍ରଜାନାଥ ।।୩୨୧
ଏ ପଞ୍ଚଦେବ ବସି ରଥେ ।
ତୋତେ ସେବନ୍ତି ଅବିରତେ ।।୩୨୨
ତୁ ନାଥ ଭୂତଆତ୍ମାଦେହୀ ।
ଏହାଙ୍କ ଶକ୍ତି ବହୁ ତୁହି ।।୩୨୩
ବାସବ ଆଦି ବେଦଧାମ ।
ବହନ୍ତି ଅନିମିଷ ନାମ ।।୩୨୪
ବିଧାତା ଆଦି ସର୍ବଦେବା ।
ତୋର ଚରଣେ ତାଙ୍କ ସେବା ।।୩୨୫
ମାନବେ ତାହାଙ୍କୁ ସେବନ୍ତି ।
ତାହାଙ୍କ ବଳି ସେ ଭୁଞ୍ଜନ୍ତି ।।୩୨୬
ଅଜର ଅମର ନିର୍ଭୟେ ।
ତଥାପି ତୋର ପଦ୍ମପାୟେ ।।୩୨୭
ପୂଜନ୍ତି ଅତି ଭୟମନେ ।
ଖଣ୍ଡମଣ୍ଡଳପତି ଯେହ୍ନେ ।।୩୨୮
ପ୍ରଜାଙ୍କ ତହୁଁ କର ନ୍ୟନ୍ତି ।
ରାଜାଙ୍କ ଚରଣେ ସେବନ୍ତି ।।୩୨୯
ଅଧିକ ଧନ ମାନ ଦ୍ୟନ୍ତି ।
ନିରତେ ଚରଣେ ଖଟନ୍ତି ।।୩୩୦
ଏମନ୍ତେ ଦେବେ ତୋର ପାଶେ ।
ଖଟନ୍ତି ଭକତି ବିଶ୍ୱାସେ ।।୩୩୧
ଷୋଡଶ ସ୍ତୁତି ସ୍ଥିରଚର ।
ଶୁଣ ହେ ବ୍ରହ୍ମାଣ୍ଡଠାକୁର ।।୩୩୨
ତୋହର କ୍ରୀଡା ନାନାରଙ୍ଗେ ।
ଇଚ୍ଛାରେ ମାୟା ଘେନି ସଙ୍ଗେ ।।୩୩୩
ଦର୍ପଣ ଘେନି ଯେହ୍ନେ ହସ୍ତ ।
ଚାହିଁଲେ ଛାୟା ହୋଏ ଜାତ ।।୩୩୪
ସ୍ଥାବର ଆଦି ଏ ଜଗତେ ।
ତୋ ତହିଁ ଜୀବ ସେହିମତେ ।।୩୩୫
ତୁ ପୁଣି ତାଙ୍କ ମଧ୍ୟେ ଥାଉ ।
କର୍ମକରଣେ ଶିକ୍ଷା ଦେଉ ।।୩୩୬

ସେ କର୍ମଫଳେ ନୋହୁ ସଙ୍ଗ ।
ଦର୍ପଣେ ଯେହ୍ନେ ଛାୟା ଅଙ୍ଗ ।।୩୩୭
ଦେହ ବେଭାର କରୁଥାଇ ।
ସେ ଯେହ୍ନେ ତାକୁ ନ ଲାଗଇ ।।୩୩୮
ମାୟାକୁ ଥାଉ ଅତି ଦୂରେ ।
ଆଦିତ୍ୟ ଯେସନେ ଅମ୍ବରେ ।।୩୩୯
ମାୟା ବିସ୍ତାରି ମାୟାକାରୀ ।
ଯେହ୍ନେ ସଂସାର ମନ ହରି ।।୩୪୦
ମୋହନ କରେ ସଂସାରକୁ ।
ସେ ଯେହ୍ନେ ନ ଲାଗେ ତାହାକୁ ।।୩୪୧
ଏମନ୍ତ ତୋହର ମହିମା ।
କେ ଜାଣି ପାରେ ଗୁଣ ସୀମା ।।୩୪୨
ଜଗତେ ହେଉ ସାକ୍ଷୀରୂପ ।
ମନ୍ଦିରେ ଯେସନେ ପ୍ରଦୀପ ।।୩୪୩
ଏ ସର୍ବଜୀବ କ୍ରୀଡା ଅନ୍ତେ ।
ପଶନ୍ତି ତୋର ଗର୍ଭବତେ ।।୩୪୪
ପୁଣି ଯେମନ୍ତେ ଜାତ ହୋନ୍ତି ।
ଶୁଣ କହିବା ତାଙ୍କ ଗତି ।।୩୪୫
ଦେହକୁ ପାଇ ମାୟା ଗ୍ରସ୍ତେ ।
କର୍ମ କରନ୍ତି ଅବିରତେ ।।୩୪୬
ତେଣୁ ସେ ଜନ୍ମ ମୃତ ହୋନ୍ତି ।
ବାସନାରଜ୍ଜୁ ବନ୍ଧେ ଥାନ୍ତି ।।୩୪୭
କର୍ମ ତାହାଙ୍କୁ ସୃଷ୍ଟିକାଳେ ।
ଧରଇ ନିଜ ଭୁଜବଳେ ।।୩୪୮
ଅଶେଷ ଯୋନି ମଧ୍ୟେ ଭରି ।
ବିହରେ ନାନାରୂପ ଧରି ।।୩୪୯
ଦେହକୁ ଧରି କର୍ମବଳେ ।
ଭୁଞ୍ଜନ୍ତି ଦୁଃଖସୁଖ ଫଳେ ।।୩୫୦
ତୋ ଦେହେ ପ୍ରାଣୀ ଏ ଜଗତେ ।
ମିଳନ୍ତି କର୍ମର ଆୟତ୍ତେ ।।୩୫୧
ତୋହର ରିପୁ ମିତ୍ର ନାହିଁ ।
ଏ ଘେନି କର୍ମ ନ ଲାଗଇ ।।୩୫୨
କର୍ମେ ପ୍ରପଞ୍ଚ ଏ ଜଗତ ।
ଏହାର ଫଳ ବୀପରିତ ।।୩୫୩
ଦୁଃଖୀ ଦରିଦ୍ର ବ୍ୟାଧିବନ୍ତ ।
ଥୋକାଏ ସୁଖୀ ଧନବନ୍ତ ।।୩୫୪

Dr. Sudhanshu Sekhar Mishra

ଏ ଦୁଃଖସୁଖ ତୋର ନାହିଁ ।
କର୍ମକରତା ସେ ଭୁଞ୍ଜଇ ।।୩୫୫
ଗଗନେ ଯେତେ ଦିଗ ପୂରୀ ।
ଶୂନ୍ୟ ରୂପେ ସର୍ବ ଆବୋରି ।।୩୫୬
ଏଣୁ ନ ଜାଣେ ତୋତେ ପ୍ରାଣୀ ।
ମନ ବଚନେ ପରିମାଣି ।।୩୫୭
ଅପରିମିତ ସପ୍ତଦଶ ।
ବେଦେ କହନ୍ତି ଜ୍ଞାନରସ ।।୩୫୮
ନାନା ଯୋନିରେ ଜୀବ ଯେତେ ।
ଅନନ୍ତ ହୋନ୍ତି ଅପ୍ରମିତେ ।।୩୫୯
କର୍ମ ସରିଲେ ପୁଣ ଯାନ୍ତି ।
ଏଣୁ ଏ ଅଧ୍ରୁବ ବୋଲାନ୍ତି ।।୩୬୦
ତୋ ତହୁଁ ଯେବେ ଏ ନୁହନ୍ତି ।
ଇଚ୍ଛାରେ ସର୍ବ ଆବୋରନ୍ତି ।।୩୬୧
ଏହାଙ୍କ ଦଣ୍ଡକ ତୁ ଯେବେ ।
ତୋ ତହୁଁ ଦଣ୍ଡ କେ ପାଇବେ ।।୩୬୨
ଏମନ୍ତେ ନ ଘଟେ ବିଚାର ।
ସକଳ ଜୀବ ତୋ ଶରୀର ।।୩୬୩
ତୁ ଥାଉ ଏହାଙ୍କ ଜୀବନେ ।
ଅନଳ କାଷ୍ଠ ସଙ୍ଗେ ଯେହ୍ନେ ।।୩୬୪
ତୋତେ ଜାଣଇ ଯେବା କହେ ।
ଅଜ୍ଞାନୀ ମିଥ୍ୟାଭାବ ବହେ ।।୩୬୫
ଉପାଧି ଲିଙ୍ଗ ଏ ଶରୀର ।
ଜନ୍ମ ମରଣ ହୋଏ ତୋର ।।୩୬୬
ତା ମଲେ ନ ମରେ ଜୀବନ ।
ଘଟ ବିଯୋଗେ ଯେହ୍ନେ ଶୂନ୍ୟ ।।୩୬୭
ତେଣୁ ତୋ ଅଂଶ ଏହି ଜୀବ ।
ସେ କାହିଁ ତୋତେ ବା ଜାଣିବ ।।୩୬୮
ଅଷ୍ଟାଦଶରେ ନ ଘଟତ ।
ବେଦେ ବୋଲନ୍ତି ଜ୍ଞାନତତ୍ତ୍ୱ ।।୩୬୯
ପ୍ରକୃତି ପୁରୁଷ ଏ ବେନି ।
ଜଗତ ପିଅର ଜନନୀ ।।୩୭୦
ସ୍ୱଭାବେ ଅଜ ନାମ ବହି ।
ଯେଣୁ ଏହାଙ୍କ ଜନ୍ମ ନାହିଁ ।।୩୭୧
କେବେ ହେଁ ନୁହନ୍ତି ଏ ଭିନ୍ନ ।
ଏଣୁ ନ ଘଟେ ଅନୁମାନ ।।୩୭୨

ଏହାଙ୍କ ତହୁଁ ଜାତ ଜୀବ ।
ଜଳୁ ଯେସନେ ଜଳବିମ୍ବ ।।୩୭୩
ନିଶ୍ଚଳ ଜଳବାୟୁ ଯୋଗେ ।
ଯେମନ୍ତେ ଉଚ୍ଛଳେ ତରଙ୍ଗେ ।।୩୭୪
ବେନି ତରଙ୍ଗ ଅଙ୍ଗଘାତେ ।
ବିମ୍ବ ଉପୁଜନ୍ତି ଯେମନ୍ତେ ।।୩୭୫
ଜଳେ ପବନେ ସେ ନଥାନ୍ତି ।
ବେନି ସଂଯୋଗେ ଜାତ ହୋନ୍ତି ।।୩୭୬
ବିବିଧ ନାମ ରୂପ ବହି ।
କ୍ରୀଡନ୍ତି ଜଳମଧ୍ୟେ ଥାଇ ।।୩୭୭
କର୍ମର ଅନ୍ତେ ତୋ ଶରୀରେ ।
ପଶନ୍ତି ଯେମନ୍ତ ବେଭାରେ ।।୩୭୮
ସକଳ ନଦୀଜଳ ବେଗେ ।
ଯେମନ୍ତେ ପଶନ୍ତି ଅର୍ଣ୍ଣବେ ।।୩୭୯
ମଧୁକରଙ୍କ ଗୃହବାସେ ।
ଯେହ୍ନେ ପଶନ୍ତି ପୁଷ୍ପରସେ ।।୩୮୦
ଊନବିଂଶତି ନୃଷ୍ଟୁତବ ।
ବେଦେ କହନ୍ତି ବିଷ୍ଣୁଭାବ ।।୩୮୧
ତୋ ମାୟା ଭ୍ରମ ଜୀବ ଦେହେ ।
ତେଣୁ ଅଜ୍ଞାନେ ଥାନ୍ତି ମୋହେ ।।୩୮୨
ଏଣୁ ପଣ୍ଡିତେ ଏହା ଜାଣି ।
ତୋ ଭାବ ମନେ ପରିମାଣି ।।୩୮୩
ତୋ ପାଦପଦ୍ମ ମଧୁ ଲୋଭେ ।
ପଶିଲେ ଉନମତ୍ତ ଭାବେ ।।୩୮୪
ତାହାଙ୍କୁ ନାହିଁ କାଳଡର ।
ତୋ ପଦ୍ମପାଦେ ଆଶା ଯାର ।।୩୮୬
ତ୍ରିନେମିକାଳ ତୋ ଭ୍ରୂଭଙ୍ଗ ।
ରୂପ ଅରୂର ଯାର ଅଙ୍ଗ ।।୩୮୭
ହିମ ଶୀତଳ ଘର୍ମ ବୃଷ୍ଟି ।
ଏ ଆଦି ଯେତେ ନାନା ରିଷ୍ଟି ।।୩୮୮
ତାହାକୁ ନ ଲାଗନ୍ତି କେହି ।
ତୋ ନାମ ଯାର ହୃଦେ ଥାଇ ।।୩୮୯
ବିଜିତ ହୃଷୀକ ବିଂଶତି ।
ବେଦେ ବୋଲନ୍ତି ଦିବ୍ୟ ସ୍ତୁତି ।।୩୯୦
ମୁନିଏ ଯୋଗ ଧ୍ୟାନ ସାଧି ।
ମନ ପବନ ହୃଦେ ରୁନ୍ଧି ।।୩୯୧

ଯେତେ ସେ କରନ୍ତି ଉପାୟେ ।
ମନତରଙ୍ଗ ସ୍ଥିର ନୋହେ ।।୩୯୨
ସ୍ୱଭାବେ ଅଦମ୍ୟ ସେ ଯେଣୁ ।
ରୁନ୍ଧି ନ ପାରେ ପ୍ରାଣୀ ତେଣୁ ।।୩୯୩
ନାନା ପ୍ରକାରେ ଖେଦ ପାଇ ।
ମନ ନ ପାରନ୍ତି ରୁହାଇ ।।୩୯୪
ଗୁରୁପାଦେ ଆଶ୍ରେ ନକରି ।
ସାଧନା ଶ୍ରମେ ଯାନ୍ତି ମରି ।।୩୯୫
ବୋଇତେ ବସି ବଣିଜାରେ ।
ଯେସନେ ଭାସନ୍ତି ସାଗରେ ।।୩୯୬
ନାନାପ୍ରକାରେ ବାହୁଥାନ୍ତି ।
କେବେହେଁ କୂଳେ ନ ଲାଗନ୍ତି ।।୩୯୭
ଯାବତ ନାହିଁ କର୍ଣ୍ଣଧାର ।
କାହିଁ ଲଭିବେ ସିନ୍ଧୁପାର ।।୩୯୮
ପବନ ରୁନ୍ଧି ଇନ୍ଦ୍ରି ଜିଣି ।
ଗୁରୁ ଉପଦେଶ ନ ମଣି ।।୩୯୯
ଚଞ୍ଚଳ ମନ କାହୁଁ ସ୍ଥିର ।
ଯାବତ ସଂଶୟ ଶରୀର ।।୪୦୦
ନିଶ୍ଚଳ ନିର୍ମଳ ତୋ ପାଦେ ।
ତୋ ରୂପ ଗୁଣ ଅନୁବାଦେ ।।୪୦୧
ନିତ୍ୟେ ଯେ ଚିନ୍ତେ ଧ୍ୟାନବଳେ ।
ତା ମନ ରହଇ ନିଶ୍ଚଳେ ।।୪୦୨
ସ୍ୱଜନସୁତ ଏକବିଂଶେ ।
ବେଦେ ବୋଲନ୍ତି ବିଷ୍ଣୁପାଶେ ।।୪୦୩
ସ୍ୱଜନ ସୁତ ଦାରା ଧର ।
ଗୃହ ମେଦିନୀ ସୁଖାସନ ।।୪୦୪
ତୋ ପାଦ ହୃଦେ ଯାର ଥାଇ ।
ଏଣେ ପ୍ରୟୋଜନ ନାହିଁ ।।୪୦୫
ତୋତେ ଯେ ନ ଭଜନ୍ତି ଚିରେ ।
ତାହାଙ୍କ ମନ ଅବିରତେ ।।୪୦୬
ଲୋଭ ଲାଳସେ ମୋହେ ଜଡି ।
ବିପଦପଦେ ଥାନ୍ତି ପଡି ।।୪୦୭
ସକଳ ଦୁଃଖ ଯହିଁ ଥାନ୍ତି ।
ଅମୃତ ପ୍ରାୟ ତା ମଣନ୍ତି ।।୪୦୮
ସକଳ ସୁଖ ତୋର ପାଦେ ।
ତହିଁ ଯେ ବିଶ୍ରମେ ଆନନ୍ଦେ ।।୪୦୯

Dr. Sudhanshu Sekhar Mishra

ଏ ମାୟା ତାଙ୍କୁ ତୁଚ୍ଛ ହୋଏ ।
ପର୍ବତଶିଖ ଭୂମି ପ୍ରାୟେ ।।୪୧୦

ତୋ ପାଦ ଆଶ୍ରେ ଯେ ନ କରି ।
ମୈଥୁନ ସୁଖ ମନେ ଧରି ।।୪୧୧

ତେଣୁ ଏ ସଂସାର ସାଗରେ ।
ବୁଡନ୍ତି ଦୁଃଖ ମହାଘୋରେ ।।୪୧୨

କ୍ଷଣେ ହେଁ ନ ପାରନ୍ତି ତରି ।
ତୋ ବିଶ୍ୱମାୟାକୁ ଆବୋରି ।।୪୧୩

ସଂସାର ଅସାର ପ୍ରତ୍ୟକ୍ଷେ ।
ସାର ଯେସନେ ରମ୍ଭାବୃକ୍ଷେ ।।୪୧୪

ତୋ ନାମ ସଂସାରରେ ସାର ।
ନ ଭଜି କେ ହୋଇବ ପାର ।।୪୧୫

ଭୁବିପୁରୁପୁଣ୍ୟ ଦ୍ୱାବିଂଶେ ।
ବେଦେ କହନ୍ତି ମହାତୋଷେ ।।୪୧୬

ଭୂମିରେ ଯେତେ ତୀର୍ଥ ଅଛନ୍ତି ।
ମୁନିଏଁ ତହିଁ ବିଶ୍ରାମନ୍ତି ।।୪୧୭

ମଦ ମତ୍ସର ଅହଙ୍କାର ।
ହୃଦୟେ ନାହିଁ ତାହାଙ୍କର ।।୪୧୮

ତୋ ପାଦ ହୃଦୟେ ବହନ୍ତି ।
ସଂସାରେ ନାହିଁ ତାଙ୍କ ଭୀତି ।।୪୧୯

ତାଙ୍କ ଚରଣ-ନୀର ସଙ୍ଗେ ।
ପାପ ନ ରହେ ପ୍ରାଣୀ ଅଙ୍ଗେ ।।୪୨୦

ସୁପୁଣ୍ୟତୀର୍ଥ ସାଧୁ ସଙ୍ଗେ ।
ନିତ୍ୟେ ଭ୍ରମନ୍ତି ଅନୁରାଗେ ।।୪୨୧

ଏଣୁ ତୋ ପାଦ ଆଶ୍ରେ କରି ।
ଯେ ପ୍ରାଣୀ ଚିତ୍ତ ସ୍ଥିର କରି ।।୪୨୨

ପରମଆତ୍ମା ସୁଖସୀମା ।
ଶୁଣିମା ତାହାଙ୍କ ମହିମା ।।୪୨୩

ବିବେକ ଶାନ୍ତି କ୍ଷମା ଧୀର ।
ଏ ଚାରି ପୁରୁଷଙ୍କ ସାର ।।୪୨୪

ଏହା ହରଇ ଗୃହଦ୍ୱନ୍ଦ୍ୱ ।
ଅଜ୍ଞାନୀଜନଙ୍କ ଆନନ୍ଦ ।।୪୨୫

ଯେ ତୋତେ ଚିନ୍ତେ ଅବିରତେ ।
ଗୃହ ନ ଲାଗେ ତାର ଚିତ୍ତେ ।।୪୨୬

ତାଙ୍କ ମହିମା ଏ ବ୍ରହ୍ମାଣ୍ଡେ ।
କେ କହିପାରେ ଏକ ତୁଣ୍ଡେ ।।୪୨୭

ତ୍ରୟବିଂଶତି ସତ ଇଦଂ ।
ଯାହା କହିଲେ ତିନି ବେଦ ।।୪୨୮

ଭୋ ଦେବ ପରମପୁରୁଷ ।
ସଂସାର ତୋ ତହୁଁ ପ୍ରକାଶ ।।୪୨୯

ଏ ସତ୍ୟ ନୋହେ ସତ୍ୟବାଦେ ।
ବିଚାର ତର୍କ ଅନୁବାଦେ ।।୪୩୦

କାର୍ଯ୍ୟ କାରଣ ପ୍ରାୟ ଯେଣୁ ।
କହିବା ଅନୁମାନେ ତେଣୁ ।।୪୩୧

ମୁକ୍ତା ସିପେ କରି ଭ୍ରାନ୍ତି ।
ରଜତ ପ୍ରାୟ ତା ମଣନ୍ତି ।।୪୩୨

ପୁଣି ବିଚାରେ ସେ ଯେମନ୍ତ ।
ମୁକ୍ତା ସିପ ହୋଏ ସତ୍ୟ ।।୪୩୩

ମାୟା ପ୍ରକାଶ ତୋ ବ୍ରହ୍ମାଣ୍ଡେ ।
ସର୍ପ ଯେସନେ ରଜ୍ଜୁଖଣ୍ଡେ ।।୪୩୪

କାର୍ଯ୍ୟ କାରଣ ମାୟାଲକ୍ଷି ।
ତୁ ପରମାତ୍ମା ଏତେ ସାକ୍ଷୀ ।।୪୩୫

ସାକ୍ଷୀ ସ୍ୱରୂପେ ରହେ ଆତ୍ମା ।
ଏହା ତ ମାନନ୍ତି ମହାତ୍ମା ।।୪୩୬

ସ୍ୱର୍ଗାଦିଫଳ ବେଦ କହି ।
ଏ ଘେନି ପ୍ରାଣୀ କର୍ମବାହି ।।୪୩୭

ଏଣୁ ସଂସାର ସତ୍ୟ ଦିଶେ ।
କର୍ମ ସାଧନ୍ତି ମନତୋଷେ ।।୪୩୮

ଭବପ୍ରବଞ୍ଚ ବ୍ୟବହାରେ ।
ଚିତ୍ତ ବୁଡାଇଥାନ୍ତି ଧୀରେ ।।୪୩୯

ବେଦବାଦୀଏ ତାଙ୍କ ମନ ।
ଶିକ୍ଷା ଦେଇ ବେଦ ବଚନ ।।୪୪୦

କର୍ମର ଫଳ ସତ୍ୟ ପ୍ରାୟେ ।
ବିଷୟ ତାପ ଭ୍ରମେ ମୋହେ।।୪୪୧

ଏ ଘେନି କର୍ମ କରି ଦେହେ ।
ଭ୍ରମନ୍ତି ତବ ମାୟାମୋହେ ।।୪୪୨

ପୂର୍ବ ଲୋକଙ୍କ କର୍ମ ଦେଖି ।
ଅପର ଲୋକେ ତାହା ଶିଖି ।।୪୪୩

ଭୋ ନାଥ ବେଦ ତୋ ବଚନ ।
ପୁଷ୍ପର ପ୍ରାୟ ଅନୁମାନ ।।୪୪୪

ପୁଷ୍ପରେ ଥାଇ ସର୍ବଗନ୍ଧ ।
ଭ୍ରମର ଲଭେ ମକରନ୍ଦ ।।୪୪୫

ବେଦବଚନେ ପୁଷ୍ପ ପ୍ରାୟେ ।
କର୍ଣ୍ଣେ ଶୁଣନ୍ତେ ଚିତ୍ତଧାୟେ ।।୪୪୬

ସର୍ବେ ବୋଲନ୍ତି ସାଧୁ ସାଧୁ ।
କେହି ନ ଲଭେ ପୁଷ୍ପମଧୁ ।।୪୪୭

ପ୍ରାଣୀଙ୍କି କର୍ମ ସେ କରାଏ ।
ଅନ୍ଧକୁ ଅନ୍ଧ ଯେହ୍ନେ ବାହେ ।।୪୪୮

ନ ଯଦିବ ଯେ ଚତୁର୍ବିଂଶ ।
ଶୁଣ କହିବା ତା ଉଦ୍ଦେଶ୍ୟ ।।୪୪୯

ଏ ସୃଷ୍ଟି ପୂର୍ବେ ଥିଲା କାହିଁ ।
ପୁଣି ଏ ଅନ୍ତେ ଥିବ କାହିଁ ।।୪୫୦

ଏଣୁ ଏହାର ସତ୍ତା ନାହିଁ ।
ଶାସ୍ତ୍ର ମାର୍ଗରେ ଏହା କହି ।।୪୫୧

ତୋ ତହୁଁ ବିରାଟ ପୁରୁଷ ।
ଏ ମିଥ୍ୟା ସଂସାରେ ପ୍ରକାଶ।।୪୫୨

ବ୍ରହ୍ମ ନିର୍ମାତା ଏକ ତୁହି ।
ତୋ ଅଙ୍ଗେ ସତ୍ୟ ଆଭାସଇ ।।୪୫୩

ଏ ନାନା ଦ୍ରବ୍ୟମାନ ଯେତେ।
ଆମ୍ଭେ ଜାଣିଲୁ ଏବେ ତଥ୍ୟେ ।।୪୫୪

ମୃତ୍ତିକା ଆଦି ଧାତୁ ଯେତେ ।
ଏ ଯେତେ ଘଟ ବସ୍ତ୍ର ପାତ୍ରେ ।।୪୫୫

ଜଗତ ତୁଲେ ଏ ଶୟନ ।
ପୁଣ କହିବୁ ଅନୁମାନ ।।୪୫୬

ଯାହାର ତହୁଁ ସେ ଘଟନ ।
ବିଚାରେ ତହୁଁ ନୋହେ ଆନ ।।୪୫୭

ନାମ ମାତ୍ରକେ ଭେଦ ରହେ ।
ଏ ଅନୁମାନ ବେଦ କହେ ।।୪୫୮

କାରଣୁ କାର୍ଯ୍ୟ ଭିନ୍ନେ ଥାନ୍ତି ।
ଅନ୍ତେ କାରଣେ ସେ ମିଶନ୍ତି ।।୪୫୯

ଜଗତ କାରଣ ଯେ ତୁହି ।
କାର୍ଯ୍ୟ ଭିନ୍ନ ପ୍ରାୟ ଦିଶଇ ।।୪୬୦

ତୁ ସତ୍ୟ ଭବମଧ୍ୟେ ହରି ।
କେ ତୋ ମହିମା କହିପାରି ।।୪୬୧

ମନ ବିଳାସ ମାତ୍ର ଏହି ।
ଅଜ୍ଞାନେ ପ୍ରତ୍ୟକ୍ଷ ଦିଶଇ ।।୪୬୨

ସଯଦ ପଞ୍ଚବିଂଶ ସ୍ତୁତି ।
ବେଦ କହନ୍ତି ଭାବ ଚିନ୍ତି ।।୪୬୩

Dr. Sudhanshu Sekhar Mishra

ତୁ ମହାମହିମ ଅନନ୍ତ ।
ଆଗମ ନିମନ୍ତେ ତୋ ଅନ୍ତ ॥୪୬୪
କେହି ନ ଜାଣେ ଅନୁମାନେ ।
ନିର୍ମଳ ଚିତ୍ତେ ଶୁଦ୍ଧଜ୍ଞାନେ ॥୪୬୫
ମିଥ୍ୟା ପ୍ରପଞ୍ଚ ଏ ଜଗତେ ।
ଜୀବ କି ଜାଣିପାରେ ଚିତ୍ତେ ॥୪୬୬
ବେଦବଚନେ ନିତ୍ୟେ ଭ୍ରମି ।
ଜନ୍ମମରଣ ପଥେ ଶ୍ରମୀ ॥୪୬୭
ଜୀବକୁ ମାୟାବଳେ ଧରି ।
କ୍ରୀଡଇ ସଂସାରେ ବିହରି ॥୪୬୯
ଗୁଣ ଇନ୍ଦ୍ରିୟ ଦେହମେଳେ ।
ଭ୍ରମେ ତୋ ମାୟା ଯୋଗବଳେ ॥୪୭୦
ଦେହାଦି ଧର୍ମ ଯେ ଭଜନ୍ତି ।
ସେ କାହିଁ ତୋ ଭାବ ଜାଣନ୍ତି ॥୪୭୧
ଅପେତଭଗ ସେ ବୋଲାଇ ।
ତେଣୁ ସଂସାର ନ ଛାଡଇ ॥୪୭୨
ତାପେ ତାପିତ ଏ ଶୟଳେ ।
ମରଇ ଅନ୍ତେ କର୍ମବଳେ ॥୪୭୩
ପୁରୁଣା ଚର୍ମ ଯେହ୍ନେ ସର୍ପେ ।
ଛାଡଇ ପାଇ ନିଜ ରୂପ ॥୪୭୪
ଏ ମାୟା ଯେବେ ଛାଡୁ ତୁହି ।
ଜୀବ ସ୍ୱରୂପେ ବିରାଜଇ ॥୪୭୫
ଅପରିମିତଭଗ ଯେଣୁ ।
ନିତ୍ୟେ ପ୍ରାପତ ସୁଖ ତେଣୁ ॥୪୭୬
ଯଦିନସମ୍ଭୁ ଷଡବିଂଶେ ।
ନିଗମେ ବୋଲନ୍ତି ହରଷେ ॥୪୭୭
ଅଶେଷ ବାସନା ଦଉଡି ।
ସେ ଅଜଗର ରୂପେ ଜଡି ॥୪୭୮
ତହୁଁ ସଞ୍ଚରେ କାମବୃକ୍ଷ ।
ପତ୍ର ପୁଷ୍ପ ଫଳ ପ୍ରତ୍ୟକ୍ଷ ॥୪୭୯
ଜୀବ ତା ସୁଖେ ଭୋଗ କରେ ।
ପଶୁ ଯେସନେ ପତ୍ର ଚରେ ॥୪୮୦
ସେ କାମବୃକ୍ଷ ଅବିରତେ ।
ସୁଖେ ବଢଇ ହୃଦଗତେ ॥୪୮୧
ତାହାକୁ ବଳେ ଛଳେ ଭିଡି ।
କେହି ନ ପାରନ୍ତି ଉପାଡି ॥୪୮୨

ତୁଲନ୍ତି ନାନା ତପଫଳେ ।
ଯୋଗ ସମାଧି ତୀର୍ଥ ଛଳେ ॥୪୮୩
ଅତି କଠୋରେ ସେ ଭ୍ରମନ୍ତି ।
ହୃଦରୁ ନ ତୁଟଇ ଭ୍ରାନ୍ତି ॥୪୮୪
ବିବିଧମତେ ଦୁଃଖ ପାଇ ।
ତାହାଙ୍କୁ ଅତି ଦୂର ତୁହି ॥୪୮୫
ନିତ୍ୟେ ସେ କାମଭୋଗ ଚିନ୍ତି ।
ଏ ଘେନି ତୋତେ ପାସୋରନ୍ତି ॥୪୮୬
ଅସାଧୁପଣ ତାହାଙ୍କର ।
ଶୁଣ ହେ କମଳାରବର ॥୪୮୭
ଅମୂଲ୍ୟମଣି କଣ୍ଠେ ଧରି ।
ମନ ବିଷୟ ଜଡେ ଭରି ॥୪୮୮
ଯାବତ ସ୍ମରଣ ନାହିଁ ।
ପ୍ରାପତ ନୋହେ କଣ୍ଠେ ଥାଇ ॥୪୮୯
ମଣିର ପ୍ରାୟ କଣ୍ଠତଟେ ।
ତୁ ଥାଉ ପ୍ରାଣୀଙ୍କ ନିକଟେ ॥୪୯୦
ନିତ୍ୟେ ତୋ ମାୟା ମୋହ ଚିନ୍ତି ।
ଏ ଘେନି ତୋତେ ନ ଜାଣନ୍ତି ॥୪୯୧
ଯୋଗୀ ବୋଲାଇ ଜ୍ଞାନପଥେ ।
ବିଷୟରସ ଅବିରତେ ॥୪୯୨
ନିରତେ ଇନ୍ଦ୍ରିୟ ପୋଷଣେ ।
ଧନ ସଞ୍ଚୟ କରଷଣେ ॥୪୯୩
ଉଭୟ ଲୋକ ତାର ନାହିଁ ।
ତୋତେ ପାଇବେ ଅବା କାହିଁ ॥୪୯୪
ଯାବତ ତୋ ଚରଣ ତଳେ ।
ଚିତ୍ତ ନ ରହଇ ନିଶ୍ଚଳେ ॥୪୯୫
ସପ୍ତବିଂଶେ ଦୃଢବଗମୀ ।
ବେଦେ ବୋଲନ୍ତି ଶୁଣ ସ୍ୱାମୀ ॥୪୯୬
ଭୋ ନାଥ ତୋତେ ଯେ ଜାଣନ୍ତି ।
ତାଙ୍କ ମହିମା କେବା ଚିନ୍ତି ॥୪୯୭
ପ୍ରାଣୀଙ୍କ ଚିତ୍ତ ତୋ ଚରଣେ ।
ଆଶ୍ରିତ ଥାଇ ଅନୁକ୍ଷଣେ ॥୪୯୮
ଯେ ଯାହା କର୍ମଫଳ ଘେନି ।
ଫଳଇ ଦୁଃଖ ସୁଖ ବେନି ॥୪୯୯
ଏ ବେନିଫଳଙ୍କର ରସ ।
ନିଶ୍ଚେ ନ ଜାଣେ ତୋର ଦାସ ॥୫୦୦

ଦେହାଭିମାନୀ ପ୍ରାଣୀଙ୍କର ।
ବିଧି ନିଷେଧ ଅନୁଚର ॥୫୦୧
ତାହାଙ୍କ ନିନ୍ଦା ସ୍ତୁତି ବାଣୀ ।
ତୋର ସେବକ ତାହା ଶୁଣି ॥୫୦୨
ଚିତ୍ତେ ନ କରନ୍ତି ବିଚାର ।
ଏମନ୍ତ ମହିମା ତୁମର ॥୫୦୩
ଯୁଗାନୁଯୁଗ ତୋ ଶରୀର ।
ମତ୍ସ୍ୟାଦି ନାନା ଅବତାର ॥୫୦୪
ତୋହର ଗୁଣ କର୍ମ ଯେତେ ।
ଯେ ପ୍ରାଣୀ ଶୁଣେ କର୍ଣ୍ଣପଥେ ॥୫୦୫
ତୁଣ୍ଡେ ଭାଷନ୍ତି ଅନୁକ୍ଷଣେ ।
ଚିନ୍ତନ୍ତି ତୋହର ଚରଣେ ॥୫୦୬
ତୁ ନାଥ ଅପବର୍ଗ ଗତି ।
ଅନ୍ତେ ତୋ ଚରଣେ ପଶନ୍ତି ॥୫୦୭
ଅଷ୍ଟବିଂଶତି ପୂର୍ଣ୍ଣସ୍ତୁତି ।
ବୋଲନ୍ତି ଦ୍ୟୁପତୟ ଶ୍ରୁତି ॥୫୦୮
ବେଦେ ବୋଲନ୍ତି ହେ ଅନନ୍ତ ।
ନିତ୍ୟେ ତୋହର ଆଦିଅନ୍ତ ॥୫୦୯
ମନ ବଚନ ବହୁ ଚିନ୍ତି ।
ବ୍ରହ୍ମାଦି ଦେବେ ନ ଜାଣନ୍ତି ॥୫୧୦
ତୋ ରୂପ ତୁହି ନ ପ୍ରମାଣୁ ।
କେ ତାହା ଦେହ ବହି ଜାଣୁ ॥୫୧୧
ତୁ ଅବା ବୋଲୁ ମୋ ମହିମା ।
ମୁଁ କିମ୍ୱା ନ ଜାଣଇ ସୀମା ॥୫୧୨
ସର୍ବଜ୍ଞପଣ କି ମୋ ନାହିଁ ।
କହିବୁଁ ଶୁଣ ଭାବଗ୍ରାହୀ ॥୫୧୩
ସ୍ୱଭାବେ ଶୂନ୍ୟ ଅପ୍ରମିତ ।
କେ ଜାଣେ ତୋର ଆଦି ଅନ୍ତ ॥୫୧୪
ଉଦୟ ଅସ୍ତ ନାହିଁ ଯାର ।
ଏଣୁ ତୁ ତୋତେ ଅଗୋଚର ॥୫୧୫
ଏଣୁ ଆମ୍ଭର ଅନୁମତେ ।
ସର୍ବଜ୍ଞ ବୋଲିବୁ କେମନ୍ତେ ॥୫୧୬
ଶଶାର ମୁଣ୍ଡେ ଶୃଙ୍ଗ ଜାତ ।
ବନ୍ଧ୍ୟା କି ପ୍ରସବିବ ସୁତ ॥୫୧୭
ଏ ବେନି ନ ଜାଣନ୍ତି ଯେହ୍ନେ ।
ସର୍ବଜ୍ଞ ବୋଲାଇବେ କାହୁଁ ॥୫୧୮

Dr. Sudhanshu Sekhar Mishra

ତୋ ଆଦି ଅନ୍ତ ମଧ୍ୟ ତୁହି ।
କହିବୁଁ ଶୁଣ ମନଦେଇ ।।୫୧୯
ଏକ ଆରକେ ଦଶଗୁଣ ।
ବ୍ରହ୍ମାଣ୍ଡ ସପ୍ତ ଆବରଣ ।।୫୨୦
ଏମନ୍ତେ ଅଶେଷ ବ୍ରହ୍ମାଣ୍ଡ ।
ଆଶ୍ରେ କରନ୍ତି ତୋର ପିଣ୍ଡ ।।୫୨୧
ଭ୍ରମନ୍ତି କାଳଚକ୍ର ବଳେ ।
ଧୂଳି ଯେସନେ ଅନ୍ତରାଳେ ।।୫୨୨
ସେ ରେଣୁ ମଧ୍ୟେ ପ୍ରାଣୀ ଥାଇ ।
ତୋ ରୂପ ପ୍ରମାଣିବ କାହିଁ ।।୫୨୩
ବେଦେ ବୋଲନ୍ତି ବିଶ୍ୱମଧ୍ୟେ ।
ଆମ୍ଭେ ହୋ ଭ୍ରମୁ ମାୟାବନ୍ଧେ ।।୫୨୪
ତୋର ମହିମା ଅଛି ଯେତେ ।
ଆମ୍ଭେ ତା ଜାଣିବୁ କେମନ୍ତେ ।।୫୨୫
ସଗୁଣ ନିର୍ଗୁଣର ସୀମା ।
ଭୋ ନାଥ ତୋହର ମହିମା ।।୫୨୬
ବିଧିନିଷେଧ ବାଦ କରି ।
ତୋର ମହିମା କେ ବିଚାରି ।।୫୨୭
ବିଧି ନିଷେଧ ହିଁ ନ ଜାଣେ ।
ପ୍ରଣମେ ତୋହର ଚରଣେ ।।୫୨୮
ବେଦେ ବୋଲନ୍ତି ଆମ୍ଭ ଚିତ୍ତେ ।
ତୋର ମହିମା ଅନୁମତେ ।।୫୨୯
ସୃଷ୍ଟି ସଂହାରି ତୋ ଶରଣେ ।
ପଶିଲୁଁ ଅଭୟ ଚରଣେ ।।୫୩୦
ନିରତେ ତୋର ପଦ୍ମପାଦେ ।
ଥିବୁଁ ସର୍ବଦା ସୁଖ ସଧେ ।।୫୩୧
ଏମନ୍ତେ ବେଦଙ୍କ ବଚନ ।
ଶୁଣି ବୋଲନ୍ତି ନାରାୟଣ ।।୫୩୨
ଏମନ୍ତେ ବ୍ରହ୍ମାର ନନ୍ଦନ ।
ସନନ୍ଦ ତହୁଁ ଆତ୍ମଜ୍ଞାନ ।।୫୩୩
ଶୁଣି ସାନନ୍ଦ ତିନି ଭାଇ ।
ଚରଣଯୁଗେ ଶିର ଦେଇ ।।୫୩୪
ପୂଜିଲେ ସନନ୍ଦ ଚରଣ ।
କହନ୍ତି ପ୍ରଭୁ ନାରାୟଣ ।।୫୩୫

ନାରାୟଣ ଉବାଚ

ଶୁଣ ନାରଦ ମୁନିଙ୍କର ।
ସେ ଚାରି ବ୍ରହ୍ମାର କୁମର ।।୫୩୬
ବ୍ରହ୍ମ ସମାଧି ସଙ୍ଗ ପାଇ ।
ନିରତେ ଆତ୍ମାନନ୍ଦ ଧ୍ୟାୟି ।।୫୩୭
ଆଗମ ପୁରାଣ ବଖାଣି ।
ଉପନିଷଦେ ବ୍ରହ୍ମ ଜାଣି ।।୫୩୮
ତୁ ବିପ୍ରବର ଜ୍ଞାନବଳେ ।
ନିରତେ ଭ୍ରମି ଭୂମଣ୍ଡଳେ ।।୫୩୯
ନିର୍ମଳ ଚିତ୍ତେ ଜ୍ଞାନ ଜାଣୁ ।
ଜୀବନ ମୁକତି ପ୍ରମାଣୁ ।।୫୪୦
ଏ ତତ୍ତ୍ୱଜ୍ଞାନେ ଯାର ଚିତ୍ତ ।
ଆନନ୍ଦ ବଢେ ଅବିରତ ।।୫୪୧
ସଂସାର ବାସନାରୁ ତରେ ।
ନ ବୁଡେ ଭବ ମହାଘୋରେ ।।୫୪୨

ଶୁକ ଉବାଚ

କହିଲେ ନରନାରାୟଣ ।
ପ୍ରସ୍ତାବେ ବ୍ରହ୍ମର କାରଣ ।।୫୪୩
ଏ ଦୁଇଜନଙ୍କ ସମ୍ବାଦ ।
ଯେତେ କହିଲେ ତିନି ବେଦ ।।୫୪୪
ଶୁକ କହନ୍ତି ଅନୁରାଗେ ।
ବେଦଉପନିଷଦ ଭାଗେ ।।୫୪୫
ଶୁଣି ସାନନ୍ଦ ମୁନିବର ।
ନମିଲେ ବିଷ୍ଣୁର ପୟର ।।୫୪୬
ଗୋବିନ୍ଦ ଯଶ ଗାଇ ତୁଣ୍ଡେ ।
ଆନନ୍ଦେ ଗଲେ ସେ ବ୍ରହ୍ମାଣ୍ଡେ ।।୫୪୭
ଶୁଣ ହୋ ଅଭିମନ୍ୟୁସୁତ ।
ମୋ ଜନ୍ମ କର୍ମର ଚରିତ ।।୫୪୮
ଯଜ୍ଞର ଅର୍ଥେ ପରାଶର ।
ଅଗ୍ନିମନ୍ଥନେ ତତପର ।।୫୪୯
ମନ୍ତ୍ର ଉଚ୍ଚାରନ୍ତି ଆନନ୍ଦେ ।
ଏମନ୍ତେ ଅଗ୍ନିକୁଣ୍ଡ ମଧ୍ୟେ ।।୫୫୦
ଅରଣି ଯୋଗେ କାମଚିତ୍ତ ।
ପଡିଲା ବ୍ୟାସଙ୍କର ରେତ ।।୫୫୧
ସେ ବୀର୍ଯ୍ୟ ଅଙ୍କୁରୁ ମୁଁ ଜାତ ।
ତେଣୁ ମୁଁ ଅଯୋନି ସମ୍ଭୂତ ।।୫୫୨
ଏ ଘେନି ବ୍ୟାସ ମୋର ତାତ ।
ତାଙ୍କ ଆଶ୍ରମେ ଉପଗତ ।।୫୫୩
ନାରଦ ଋଷି ଆଗମନ ।
ଦେଖି ପରାଶର ନନ୍ଦନ ।।୫୫୪
ଆସନୁ ଉଠି କିଛି ଦୂରେ ।
ଅଭିଗମନ ତତପରେ ।।୫୫୫
ଉତ୍ତମ ଆସନେ ବସାଇ ।
ପାଦ ପୂଜିଲେ ଅର୍ଘ୍ୟ ଦେଇ ।।୫୫୬
ବ୍ୟାସଙ୍କୁ କହିଲେ ନାରଦ ।
ନର ନାରାୟଣ ସମ୍ବାଦ ।।୫୫୭
ତୁ ଯାହା ପଚାରିଲୁ ମୋତେ ।
ବ୍ରହ୍ମ ସମ୍ବାଦ ଭାବଚିତ୍ତେ ।।୫୫୮
ବୋଲୁ ଯେ ନିର୍ବିକାର ବ୍ରହ୍ମ ।
କେମନ୍ତେ ଜାଣନ୍ତି ନିଗମ ।।୫୫୯
ତାହା ତ କହିଲି ମୁଁ ତୋତେ ।
ଏବେ ହୋ ଶୁଣ ଏକଚିତ୍ତେ ।।୫୬୦
ଯେ ହରି ଜଗତ ଭିଆଇ ।
ଆଦ୍ୟନ୍ତ ସାକ୍ଷୀରୂପ ହୋଇ ।।୫୬୧
ପ୍ରକୃତି ପୁରୁଷହୁଁ ଦୂର ।
ବ୍ରହ୍ମାଣ୍ଡ ଯାର ଖେଳଘର ।।୫୬୨
ବ୍ରହ୍ମାଣ୍ଡେ ପଶି ଆତ୍ମାଅଂଶେ ।
ଜୀବକୁ ପାଳଇ ଆଶ୍ୱାସେ ।।୫୬୩
ନିଜ ସେବକେ ମୋକ୍ଷ ଦେଇ ।
ନିତ୍ୟେ ଭକତ ପାଶେ ଥାଇ ।।୫୬୪
ତୋ ରୂପ ଜୀବରେ ନିରେଖି ।
ମାୟା ଛାଡଇ ତାହା ଦେଖି ।।୫୬୫
ତୁ ଯେ ବୋଇଲୁ ଏ ଜଗତେ ।
ଜୀବନମୁକ୍ତ ଛନ୍ତି ଯେତେ ।।୫୬୬
ଶରୀରବନ୍ଧ ତାଙ୍କ ଦେଖି ।
ମାୟା କେମନ୍ତେ ତା ଉପେକ୍ଷି ।।୫୬୭
ଶୁଣ ଯାହାକୁ କୃଷ୍ଣ ଦୟା ।
ତାହାକୁ ନ ଲାଗଇ ମାୟା ।।୫୬୮
ଆତ୍ମାର ଜ୍ଞାନ ନିତ୍ୟେ ବଢେ ।
ଦେହାଦି ଧର୍ମକୁ ସେ ଛାଡେ ।।୫୬୯
ଯେମନ୍ତେ ନିଦ୍ରାଗତ ପ୍ରାଣୀ ।
ଦେହାଦି ଧର୍ମ ନ ଜାଣି ।।୫୭୦
ଆତ୍ମାରେ ଜଗତ ଦେଖଇ ।
ଦେହାଦି ଧର୍ମ ନ ଲାଗଇ ।।୫୭୧

Dr. Sudhanshu Sekhar Mishra

ସମସ୍ତ ପ୍ରାଣୀ ଦୃଷ୍ଟି ତାଙ୍କୁ ।
ତା ଦୃଷ୍ଟି ନ ଥାଇ ଦେହକୁ ॥୫୭୨
ସେ ହରି ନିରଞ୍ଜନ ରୂପ ।
କେବଳ ସାକ୍ଷୀ ଏ ସ୍ୱରୂପ ॥୫୭୩

ଅଭୟଦାତାର ଚରଣ ।
ନିରତେ କର ସୁମରଣ ॥୫୭୪
ଯା ରୂପ ନିରନ୍ତର ଲୋଡ଼ି ।
ମନ ବଚନ ହିଁ ବାହୁଡ଼ି ॥୫୭୫

ଅଧିକ କ କହବ ମୁହିଁ ।
ପରୀକ୍ଷ ଭାଗ୍ୟବନ୍ତ ତୁହି ॥୫୭୬

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟା
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ନାରଦନାରାୟଣ ସମ୍ବାଦେ
ବେଦସ୍ତୁତିର୍ନାମ
ତ୍ରିନବତିତମ ଅଧ୍ୟାୟଃ ॥

---

## ଚତୁଃନବତିତମ ଅଧ୍ୟାୟ

ପରୀକ୍ଷ ଶୁକମୁଖ ଚାହିଁ ।
ବୋଲଇ ଶିରେ କର ଦେଇ ॥୧

ପରୀକ୍ଷିତ ଉବାଚ

ଭୋ ମୁନି ସଂଶୟ ମୋ ମନେ ।
ଛେଦନ କର ସୁପ୍ରସନ୍ନେ ॥୨
ଦେବ ଅସୁର ନର ମଧ୍ୟେ ।
ଯେ ସେବା କରେ ରୁଦ୍ରପାଦେ ॥୩
ତାହାଙ୍କ ଘରେ କମଳିନୀ ।
ସକଳ ନିଧି ସଙ୍ଗେ ଘେନି ॥୪
ଖଟଇ ଭୃତ୍ୟପ୍ରାୟ ହୋଇ ।
ଅନେକ ସୁଖ ସେ ଭୁଞ୍ଜଇ ॥୫
ଅଜେୟ ସର୍ବଲୋକ ହୋନ୍ତି ।
ଏଣୁ ବିଷ୍ଣୁଙ୍କୁ ନ ଭଜନ୍ତି ॥୬
କମଳାକାନ୍ତ ଯେ ମୁରାରି ।
ପ୍ରାଣୀ ତାହାଙ୍କୁ ସେବା କରି ॥୭
ସକଳ ଦୁଃଖେ ହୋନ୍ତି ଦୁଃଖୀ ।
ସ୍ୱଜନେ ତାହାଙ୍କୁ ଉପେକ୍ଷି ॥୮
ଜଗତ ଅନାଦର ଭୟେ ।
ବନେ ପଶଇ ଦୁଃଖ ଦେହେ ॥୯
ସେ ହରିହର ଏକମତ ।
ଭକତେ କିମ୍ପା ବିପରୀତ ॥୧୦

ଏଣୁ ସଂଶୟ ଚିତ୍ତ ମୋର ।
କହି ନିର୍ମଳ ମୋତେ କର ॥୧୧
ଶୁଣି ସାନନ୍ଦ ବ୍ୟାସସୁତ ।
ବୋଲନ୍ତି ଶୁଣ ନରନାଥ ॥୧୨

ଶୁକ ଉବାଚ

ଶିବ ଯେ ନିତ୍ୟ ଶକ୍ତିଯୁକ୍ତ ।
ତ୍ରିଲିଙ୍ଗ ତ୍ରିଗୁଣ ସମ୍ଭୃତ ॥୧୩
ସାତ୍ତ୍ୱିକ ରାଜସ ତାମସ ।
ତ୍ରିଧା ଅହଙ୍କାର ପ୍ରକାଶ ॥୧୪
ତେଣୁ ବିକାରେ ହୋନ୍ତି ଜାତ ।
ବ୍ରହ୍ମାଣ୍ଡେ ଏ ଷୋଡ଼ଶତତ୍ତ୍ୱ ॥୧୫
ଏଥୁ ଏ ବିଭୂତିଙ୍କ ଗତି ।
ଅଧିଦୈବତେ ଆବୋରନ୍ତି ॥୧୬
ଏ ଜୀବ ଆତ୍ମାରୂପ ଧରି ।
ବିଭୂତିରସ ଭୋଗ କରି ॥୧୭
ଏଣୁ ଭକତଜନ ଲାଭେ ।
ବିଭୂତି ଈଶ୍ୱର ଯେ ଭାବେ ॥୧୮
ଭକତେ ଦେଇ ସୁଖଫଳ ।
ଏବେ ହୋ ଶୁଣ ମହୀପାଳ ॥୧୯
ନିର୍ଗୁଣ ନିରଞ୍ଜନ ହରି ।
ପ୍ରକୃତି ନପାରେ ଆବୋରି ॥୨୦

ଏ ସୃଷ୍ଟିପାଳକ ସ୍ୱରୂପେ ।
ସବୁ ଦେଖଇ ସାକ୍ଷୀରୂପେ ॥୨୧
ସେ ହରି ପାଦେ ଯେ ଶରଣ ।
ତାଙ୍କୁ ନ ଲାଗେ ତିନିଗୁଣ ॥୨୨
ଏଣୁ ନିର୍ଗୁଣ ମୋକ୍ଷ ରୂପେ ।
ରହନ୍ତି ବିଷ୍ଣୁର ସମୀପେ ॥୨୩
ଏ ଭବଜଳୁ ହୋନ୍ତି ପାର ।
ଏବେ ହୋ ଶୁଣ ନୃପବର ॥୨୪
ତୋ ପିତାମହ ଯୁଧିଷ୍ଠିର ।
ବିଖ୍ୟାତ ଧର୍ମର କୁମର ॥୨୫
ରାଜସୂୟସଜ୍ଞ ସମାପତେ ।
ଆନନ୍ଦେ କୃଷ୍ଣର ଅଗ୍ରତେ ॥୨୬
ଧର୍ମପ୍ରସଙ୍ଗ କରୁଥିଲା ।
ଏ କଥା କୃଷ୍ଣଙ୍କୁ ଅଗ୍ରତେ ॥୨୬
ଧର୍ମପ୍ରସଙ୍ଗ କରୁଥିଲା ।
ଏ କଥା କୃଷ୍ଣଙ୍କୁ ପୁଚ୍ଛିଲା ॥୨୭
ଯେ ହରି ଜନଙ୍କର ହିତେ ।
ମନୁଷ୍ୟ ରୂପ ଏ ଜଗତେ ॥୨୮
ଧର୍ମନନ୍ଦନ ପ୍ରଶ୍ନ ଶୁଣି ।
କହିଲେ ପ୍ରଭୁ ଚକ୍ରପାଣି ॥୨୯

ଭଗବାନ ଉବାଚ

ଯାହାକୁ ଚିତ୍ତେ ଦୟା ମୋର ।
ସମ୍ପଦ ହରଇ ତାହାର ॥୩୦

Dr. Sudhanshu Sekhar Mishra

ନିର୍ଦ୍ଧନ ଦେଖି ବନ୍ଧୁଜନେ ।
ତାକୁ ଛାଡନ୍ତି ଦୁଃଖମନେ ॥୩୧
ତାର ସଂସାରେ ଇଚ୍ଛା ନୋହେ।
ବନେ ଭ୍ରମିଣ ଦୁଃଖ ସହେ ॥୩୨
ମୋର ଭକତ ମିତ୍ରପଣେ ।
ମୋତେ ଭଜଇ ଅନୁକ୍ଷଣେ ॥୩୩
ତାହାର କର୍ମନାଶ କାଳେ ।
ମୋର ଭକତିଭାବ ବଳେ ॥୩୪
ପରମବ୍ରହ୍ମ ସୂକ୍ଷ୍ମରୂପ ।
ସଚ୍ଚିଦାନନ୍ଦ ମୁଁ ନିର୍ଲେପ ॥୩୫
ଏମନ୍ତ ରୂପେ ମୋତେ ଧ୍ୟାୟି ।
ପଶଇ ମୋର ଦେହେ ଯାଇ ॥୩୬
ଏହାକୁ ନ ଲାଗେ ସଂସାର ।
ଏମନ୍ତ ମହିମା ମୋହର ॥୩୭
ଏଣୁ ସଂସାରେ ଇଚ୍ଛା ଯାର ।
ସେ ମୋତେ ନ କରେ ଆଦର ॥୩୮
ରାଜସମ୍ପଦ ଭୋଗ ଇଚ୍ଛା ।
କରଇ ନାନାମତେ ଦୀକ୍ଷା ॥୩୯
ଅଳପ ତପେ ତୋଷ ହୋନ୍ତି ।
ବେଗେ ବାଞ୍ଛିତ ଫଳ ଦ୍ୟନ୍ତି ॥୪୦
ଏମନ୍ତ ଦେବତାଙ୍କୁ ସେବି ।
ସୁଖ ସମ୍ପଦ ଅନୁଭବି ॥୪୧
କାଳେ ଲଭନ୍ତି ମହାଦୁଃଖ ।
କହି ହସନ୍ତି ପଦ୍ମମୁଖ ॥୪୨
ଏମନ୍ତ କୃଷ୍ଣର ବଚନ ।
କହିଲେ ବ୍ୟାସଙ୍କ ନନ୍ଦନ ॥୪୩
ପୁଣି ବୋଲନ୍ତି ଶୁଦ୍ଧଚିତ୍ତେ ।
ତିନି ଦେବତା ଏ ଜଗତେ ॥୪୪
ଶାପ ପ୍ରସାଦର ଈଶ୍ୱର ।
ବ୍ରହ୍ମା ଗୋବିନ୍ଦ ଶୂଳଧର ॥୪୫
ଶାପ ପ୍ରସାଦ ତତକ୍ଷଣେ ।
ଭକତେ ଦ୍ୟନ୍ତି ବେନି ଜନେ ॥୪୬
ଚତୁରାନନ ପଶୁପତି ।
ଏମନ୍ତେ ନୋହେ କୃଷ୍ଣଗତି ॥୪୭
ଏବେ ତୁ ଶୁଣ ତୋଷମନେ ।
ପୂର୍ବେ ପଣ୍ଡିତ ମହାଜନେ ॥୪୮
କହିଲେ ଇତିହାସ ବାଣୀ ।
ତାହାଙ୍କ ମୁଖୁ ମୁହିଁ ଶୁଣି ॥୪୯
ଜାଣଇ ଈଶ୍ୱର ବେଭାର ।
ଶୁଣ କହିବା ତୋ ଛାମୁର ॥୫୦
ବୃକାସୁରକୁ ପୂର୍ବକାଳେ ।
ଈଶ୍ୱର ତାର ତପଫଳେ ॥୫୧
ପ୍ରସନ୍ନ ହୋଇ ବର ଦେଲେ ।
ବିଷମ ସଙ୍କଟେ ପଡ଼ିଲେ ॥୫୨
ଶକୁନି ନାମେ ମହାସୁର ।
ଘୋର ଦୁର୍ଗମ ବଳୀୟାର ॥୫୩
ମହାବଳିଷ୍ଠ ତା କୁମର ।
ନାମ ତାହାର ବୃକାସୁର ॥୫୪
ସୁର ଅସୁରେ ସେ ଅଜିତ ।
ଶୁଣ ତାହାର ବିପରୀତ ॥୫୫
ମୃଗୟା ଅର୍ଥେ ଏକଦିନେ ।
ପଥେ ଚଳଇ ଘୋରବନେ ॥୫୬
ଚିନ୍ତଇ ପଶୁଙ୍କ ପ୍ରମାଦ ।
ଏମନ୍ତେ ଭେଟିଲା ନାରଦ ॥୫୭
ପ୍ରମାଣ କରି ପାଦଯୁଗେ ।
କହଇ ନାରଦଙ୍କ ଆଗେ ॥୫୮
ଭୋ. ମୁନିବର ଏ ଜଗତେ ।
ଦେବେ ଅଛନ୍ତି ନାନାମତେ ॥୫୯
ଭକତଜନ ତପଫଳେ ।
କେ ବର ଦ୍ୟନ୍ତି ଅଳ୍ପକାଳେ ॥୬୦
ତୁମ୍ଭର ମୁଖୁଁ ମୁହିଁ ଶୁଣି ।
ସେବା କରିବି ତଥ୍ୟ ଜାଣି ॥୬୧
ଶୁଣି ବୋଲନ୍ତି ବ୍ରହ୍ମଋଷି ।
ଅସୁର ବଚନ ପ୍ରଶଂସି ॥୬୨
ସାଧୁ ବିଚାର ଏ ତୋହର ।
ଈଶ୍ୱର ପାଦେ ସେବାକର ॥୬୩
ଚତୁରାନନ ଭଗବାନ ।
ଏହାଙ୍କ ତପେ ମହାବିଘ୍ନ ॥୬୪
ତାହାଙ୍କ ତପସ୍ୟା କଠୋର ।
ଅନେକ କାଳେ ଦ୍ୟନ୍ତି ବର ॥୬୫
ତୋହର ଭୋଗେ ଯେବେ ଇଚ୍ଛା ।
ବେଗେ ତୁ କର ହରଦୀକ୍ଷା ॥୬୬
ପୂର୍ବେ ରାବଣ ବାଣାସୁର ।
ତାଣ୍ଡବେ ସେବି ଶୂଳଧର ॥୬୭
ଅନେକମତେ କଲେ ଭାବ ।
ପ୍ରସନ୍ନ ହୋଇ ସଦାଶିବ ॥୬୮
ଅତୁଳ ଅଇଶ୍ୱର୍ଯ୍ୟ ଦେଲେ ।
କାଳେ ସେ ସଙ୍କଟ ଲଭିଲେ ॥୬୯
ଏମନ୍ତ କହି ଗଲେ ମୁନି ।
ବୃକଦାନବ ତାହା ଶୁଣି ॥୭୦
ହିମକେଦାର କୁଣ୍ଡେ ଯାଇ ।
ଅନଳ ଜାଳି ତପ ଦାହି ॥୭୧
ପରଶୁ ଘେନି ଦୃଢମୁଷ୍ଟି ।
ନିଜ ଶରୀରୁ ମାଂସ କାଟି ॥୭୨
ଘୃତେ ବୁଡ଼ାଇ ମନ୍ତ୍ର ତୋଳି ।
ଅନଳେ କ୍ଷେପେ ସ୍ୱାହା ବୋଲି ॥୭୩
ଅଗ୍ନି ବଦନେ ରୁଦ୍ରେ ଧ୍ୟାୟି ।
ଶରୀରୁ ସର୍ବ ମାଂସ ଦେଇ ॥୭୪
ଅତି କଠୋର ତପ କଲା ।
ରୁଦ୍ର ଦର୍ଶନ ନ ପାଇଲା ॥୭୫
ମନେ ବିଚାରେ ମହାସୁର ।
ଆଜି କାଟିବି ନିଜ ଶିର ॥୭୬
ପୂର୍ଣ୍ଣଆହୁତି କୁଣ୍ଡେ ଦେବି ।
ଏମନ୍ତ ଦୃଢମନେ ଭାବି ॥୭୭
କେଦାରକୁଣ୍ଡ ଜଳ ଶିରେ ।
ଆଣି ସିଞ୍ଚିଲା ବେନି କରେ ॥୭୮
ହର ସୁମରି ଶସ୍ତ୍ର ଧରି ।
ଅନଳକୁଣ୍ଡେ ମୁଣ୍ଡ କରି ॥୭୯
ପରଶୁ ପ୍ରହାରନ୍ତେ କନ୍ଧେ ।
ତକ୍ଷଣେ ଶଙ୍କର ଆନନ୍ଦେ ॥୮୦
ସେ କୁଣ୍ଡୁ ହୋଇଲେ ବାହାର ।
ଅନଳ ପ୍ରାୟ ପଞ୍ଚଶିର ॥୮୧
ସଙ୍ଗେ ସୁନ୍ଦରୀ ନିଜ ନାରୀ ।
ଭୁଜେ ଅସୁର କର ଧରି ॥୮୨
ବୋଇଲେ ହୋଇଲି ମୁଁ ତୋଷ ।
ତୋହର ପୂରାଇବି ଆଶ ॥୮୩
ଈଶ୍ୱର କର ଦେହେ ଲାଗି ।
ଅସୁର ହୋଏ ସୁଖଭାଗୀ ॥୮୪

Dr. Sudhanshu Sekhar Mishra

ତକ୍ଷଣେ ନିଜ ଦେହ ପାଇ ।
ତେଜେ ସୁନ୍ଦର ବିରାଜଇ ।।୮୫
ଦେଖି ତାହାର ଦିବ୍ୟ ତେଜ ।
ବୋଲନ୍ତି ପ୍ରଭୁ ଦେବରାଜ ।।୮୬
ତପେ ପ୍ରସନ୍ନ ମୁହିଁ ତୋତେ ।
ବର ତୁ ମାଗ ଦୃଢଚିତ୍ତେ ।।୮୭
ତୋର ଦୁର୍ଲ୍ଲଭ ତପଘୋର ।
ଯେ ତୋର ଇଚ୍ଛା ମାଗ ବର ।।୮୮
ଈଶ୍ୱର ଆଜ୍ଞା ପରମାଣେ ।
ଅସୁର ନମିଲା ଚରଣେ ।।୮୯
ଉଠି ଯୋଡିଣ ବେନି କର ।
ବୋଲଇ ଶୁଣ ଶୂଳଧର ।।୯୦
ମୁଁ ଯାର ମୁଣ୍ଡେ ଦେବି କର ।
ଭସ୍ମ ହୋଇବ ତା ଶରୀର ।।୯୧
ଏମନ୍ତ ଅସୁର ବଚନେ ।
ଦୁଃଖ ବିଚାରି ରୁଦ୍ର ମନେ ।।୯୨
ହେଉ ବୋଇଲେ ତ୍ରିଲୋଚନ ।
ସର୍ପଙ୍କୁ ଯେହ୍ନେ କ୍ଷୀରପାନ ।।୯୩
ବିଷ ବର୍ଦ୍ଧନ ମାତ୍ର ଲାଭ ।
ଦାତାର କାହିଁ ସୁଖଭାବ ।।୯୪
ଏମନ୍ତେ ରୁଦ୍ର ବର ପାଇ ।
ଅସୁର ନିଶ୍ଚଳେ ଅନାଇଁ ।।୯୫
ଈଶ୍ୱର ବାମଭୁଜ ଧରି ।
ବିରାଜେ ତ୍ରିପୁରାସୁନ୍ଦରୀ ।।୯୬
ଜଗନ୍ମୋହିନୀ ରୂପ ଚାହିଁ ।
ଅସୁର ମନେ ବିଚାରଇ ।।୯୭
ଏ ରୂପ ଅତି ଅଗୋଚର ।
ଭୁବନେ ନାହିଁ ପଟାନ୍ତର ।।୯୮
ତପର ଫଳମାତ୍ର ଏହୁ ।
ଏ କନ୍ୟା ମୋତେ ଭୋଗ ହେଉ ।।୯୯
ଈଶ୍ୱର ମୁଣ୍ଡେ ହସ୍ତ ଦେଇ ।
ଏ କନ୍ୟା ଘେନି ଯିବି ମୁହିଁ ।।୧୦୦
ବର ପ୍ରତ୍ୟକ୍ଷ ଅନୁମାନ ।
ବିଡିବା ଈଶ୍ୱର ବଚନ ।।୧୦୧
ଏମନ୍ତ ମନେ ବିଚାରିଲା ।
ଈଶ୍ୱର ନିକଟେ ମିଳିଲା ।।୧୦୨

ତାହା ଜାଣିଲେ ଶୂଳଧର ।
ଅସୁର ତୋଳେ ବାମକର ।।୧୦୩
ଈଶ୍ୱର ମୁଣ୍ଡେ ଦେବ ହସ୍ତ ।
ତା ଦେଖି ବେଗେ ଉମାକାନ୍ତ ।।୧୦୪
ରୁଦ୍ର ପଳାଇଲେ ପ୍ରତ୍ୟେକ୍ଷେ ।
ଅସୁର ଗୋଡାଇଲା ପଛେ ।।୧୦୫
ସ୍ୱଭାବେ ରୁଦ୍ର ମହାବଳ ।
ଧାଇଁଲେ ଅବନୀ ମଣ୍ଡଳ ।।୧୦୬
ପଛକୁ ଚାହିଁ ଶିବ ଭୟେ ।
ଅସୁର ଲାଗେ ପାୟେ ପାୟେ ।।୧୦୭
ଦେଖି ବିକଳେ ଭୂମି ଛାଡି ।
ଶିବ ଧାଇଁଲେ ଶୂନ୍ୟ ମାଡି ।।୧୦୮
ସଙ୍ଗେ ଉଡିଲା ମହାସୁର ।
ଦେଖି ଡରିଲେ ସୁର ନର ।।୧୦୯
ରୁଦ୍ର ଧାମନ୍ତେ ଅନ୍ତରାଳେ ।
ଡାକନ୍ତି ରଖ ଦିଗପାଳେ ।।୧୧୦
ହରବଚନ ଶୁଣି କର୍ଣ୍ଣେ ।
ତ୍ରିଦଶେ ରହିଲେ ମଉନେ ।।୧୧୧
ନ ଶୁଣି ଦେବଙ୍କ ଉତ୍ତର ।
ଭୟେ ପଳାନ୍ତି ଦେବ ହର ।।୧୧୨
ପୁଣି ଚାହାନ୍ତି ପଛ ଭରେ ।
ଅସୁରକର ଲାଗେ ଶିରେ ।।୧୧୩
ଏମନ୍ତେ ରୁଦ୍ର ପଳାଇଲେ ।
ଭୂର୍ଲୋକ ଭୁବର୍ଲୋକେ ଗଲେ ।।୧୧୪
ସ୍ୱର୍ଲୋକ ମହର୍ଲୋକ ଜିଣି ।
ଜନଲୋକରେ ଶୂଳପାଣି ।।୧୧୫
ଡାକନ୍ତି ରଖ ମୁନିଜନେ ।
ବିଲୋକି ବିକୃତ ବଚନେ ।।୧୧୬
ମୁନି ଯେ ଥିଲେ ତପଲୋକେ ।
ବାକ୍ୟ ନ ସ୍ଫୁରେ ତାଙ୍କ ମୁଖେ ।।୧୧୭
ତହୁଁ ମିଳିଲେ ବ୍ରହ୍ମଲୋକେ ।
ମାୟା ଅସୁର ପଛେ ଡାକେ ।।୧୧୮
ତା ଶୁଣି ରୁଦ୍ର ଭୟଚିତ୍ତେ ।
ଧାଇଁଲେ ବଇକୁଣ୍ଠ ପଥେ ।।୧୧୯
ଭୟେ କାତର ଶୂଳଧର ।
ଡାକନ୍ତି ରଖ ଚକ୍ରଧର ।।୧୨୦

ତୁ ନିରଞ୍ଜନ ନାରାୟଣ ।
ରଖ ମୋହର ପଞ୍ଚପ୍ରାଣ ।।୧୨୧
ଶରଣ ପଶିଲି ତୋ ପାଦେ ।
ଡାକନ୍ତି ଶୋକ ଗଦଗଦେ ।।୧୨୨
ହେ ଦେବ ଦେବଙ୍କ ଈଶ୍ୱର ।
ମୋର ଜୀବନ ରକ୍ଷା କର ।।୧୨୩
ଭୟ କାତରେ ତୋ ଶରଣେ ।
ପଶିଲି ଅଭୟ ଚରଣେ ।।୧୨୪
ଦୁଷ୍ଟ ଦାନବ ପରାଭାବେ ।
ହେ ଗଦାଗ୍ରଜ ତୋତେ ଭାବେ ।।୧୨୫
ଏକଇ ଆତ୍ମା ତୋର ମୋର ।
ଏଣୁ ଏ ଅଶେଷ ସଂସାର ।।୧୨୬
ତୋହର ମାୟା କେବା ଜାଣି ।
ଅଶେଷ ଭୁବନେ ପ୍ରମାଣି ।।୧୨୭
ଏ ମାୟା ତୋହର ସର୍ଜନ ।
ଏଣେ ଅଶେଷ ତ୍ରିଭୁବନ ।।୧୨୮
ଯେ ମନ୍ଦ ଦୁଷ୍ଟ ମୂଢଜନେ ।
ତୁ ନାଥ ତାହାଙ୍କ ମାର୍ଜନେ ।।୧୨୯
ଜଗତେ ହେଉ ଅବତାର ।
ତୋ ପାଦନୀର ଗଙ୍ଗାଜଳ ।।୧୩୦
ଗୋବିନ୍ଦ ହେ ଗୋକୁଳ ପତି ।
ଶରଣ ରଖ ଦାଶରଥି ।।୧୩୧
ଭୋ ନାଥ ପ୍ରଭୁ ଚକ୍ରପାଣି ।
ଚତୁରାନନ ସ୍ତୁତି ଭଣି ।।୧୩୨
ତୁ ନାଥ ମୀନରୂପ ହେଲେ ।
ଧରି ପଶିଲୁ ସିନ୍ଧୁଜଳେ ।।୧୩୩
ତକ୍ଷଣେ ମାରି ଶଙ୍ଖାସୁର ।
ବେଦ ଉଦ୍ଧରି ଚକ୍ରଧର ।।୧୩୪
ତୋର ସୃଷ୍ଟିକା ଏ ଜଗତ ।
ତୋହର ମାୟାରେ ମୋହିତ ।।୧୩୫
ତାହାଙ୍କୁ ସ୍ୱର୍ଗ ମୋକ୍ଷ ଦାନ ।
ଦେଇ କରାଉ ମହୀୟାନ ।।୧୩୬
ସଚରାଚର ମହୀସ୍ଥଳ ।
ଲୀଳାରେ କଲୁ ଆଦିମୂଳ ।।୧୩୭
ଗୋପୀ ବିନୋଦ ପରିପୂର୍ଣ୍ଣ ।
ଭୋ ନାଥ ତୋର ବେଣୁସ୍ୱନ ।।୧୩୮

Dr. Sudhanshu Sekhar Mishra

କୋମଳ ଗଭୀର ଶବଦେ ।
ଗିରିକାନନ ପୂରେ ନାଦେ ।।୧୩୯
ଗୋପାଳବୃନ୍ଦ ରକ୍ଷା ଅର୍ଥେ ।
ଗିରି ଟେକିଲୁ ବାମହସ୍ତେ ।।୧୪୦
ଏଣୁ ତୋ ନାମ ଗିରିଧର ।
ମୋର ଜୀବନ ରକ୍ଷାକର ।।୧୪୧
ଏମନ୍ତ ସ୍ତୁତି ରୁଦ୍ର ଭଣି ।
ଡାକନ୍ତି ରଖ ଚକ୍ରପାଣି ।।୧୪୨
ମିଳିଲେ ବଇକୁଣ୍ଠ ଦ୍ୱାରେ ।
କି ପଟାନ୍ତର ଦେବା ତାରେ ।।୧୪୩
ପରମଯୋଗୀଙ୍କର ମନ ।
ଯୋଗରେ ହୋଇ ଯହିଁ ଲୀନ ।।୧୪୪
ପରମବ୍ରହ୍ମ ଜ୍ୟୋତି ରୂପେ ।
ଯାହାର ତେଜ ବିଶ୍ୱବ୍ୟାପେ ।।୧୪୫
ଯହିଁ ଅଶେଷ ଲୋକଗତି ।
ଜନଜୀବନ ରମାପତି ।।୧୪୬
ଶିବ ବିକଳ କର୍ଣ୍ଣେ ଶୁଣି ।
ତକ୍ଷଣେ ପ୍ରଭୁ ଚକ୍ରପାଣି ।।୧୪୭
ମାୟାବଟୁକ ରୂପ ଧରି ।
ପଥେ ମିଳିଲେ ନରହରି ।।୧୪୮
ଚର୍ମମେଖଳା କଟିଭରେ ।
ତ୍ରିଦଣ୍ଡ କମଣ୍ଡଳୁ କରେ ।।୧୪୯
କଣ୍ଠେ ଲମ୍ୱଇ ଅକ୍ଷମାଳ ।
ମାୟା –ମୂରତି ଆଦିମୂଳ ।।୧୫୦
ଅନଳ ପ୍ରାୟେ ତେଜ ଦିଶି ।
ପଥେ ମିଳିଲେ କୃଷ୍ଣ ଆସି ।।୧୫୧
କଲ୍ୟାଣ କରି କୁଶହସ୍ତେ ।
ବିନୋଇ ବାକ୍ୟ ନାନାମତେ ।।୧୫୨
ବୋଲନ୍ତି ପ୍ରଭୁ ଭଗବାନ ।
କୋମଳ ଗଭୀର ବଚନ ।।୧୫୩

ଭଗବାନ ଉବାଚ

ଶକୁନି ପୁତ୍ର ତୁହି ଏକ ।
ତୋହର ନାମ ପରା ବୃକ ।।୧୫୫
ତୁ ଅତିଦୁଃଖେ ଶ୍ରାନ୍ତ ହୋଇ ।
ଗଗନେ କିମ୍ପା ଅଛୁ ଧାଇଁ ।।୧୫୬
ତୋର ସୁନ୍ଦର ନିଜ ତନୁ ।
ଅଖିଳ ଫଳ କାମଧେନୁ ।।୧୫୭
ଆମ୍ଭରେ ଅତି ଶ୍ରମ କରି ।
ହୃଦରେ ମହାକୋପ ଭରି ।।୧୫୮
କିମ୍ପା ଗଗନେ ପାଉ ଶ୍ରମ ।
ମୋ ଆଗେ କ୍ଷଣେ ତୁ ବିଶ୍ରମ ।।୧୫୯
କହ କି ଅର୍ଥେ ତୋ ଗମନ ।
ଶୁଣିବେ ଶ୍ରଦ୍ଧା ମୋର ମନ ।।୧୬୦
ପ୍ରାଣୀ ଯେ ଆପଣାର ହିତେ ।
କର୍ମ ସାଧନ୍ତି ଅବିରତେ ।।୧୬୧
କହ କେବଣ କଥା ତୋର ।
ହସି ବୋଲନ୍ତି ମାୟାଧର ।।୧୬୨
ବୋଲନ୍ତି ଶୁକ ମହାମୁନି ।
ଏମନ୍ତ କୃଷ୍ଣକଥା ଶୁଣି ।।୧୬୩
କୃଷ୍ଣେ କହିଲା ସର୍ବକଥା ।
ଈଶ୍ୱର ତପସ୍ୟା ବ୍ୟବସ୍ଥା ।।୧୬୪
ଶୁଣି ହସିଲେ ଭଗବାନ ।
କହନ୍ତି ମୋହନ ବଚନ ।।୧୬୫
ରୁଦ୍ର ବୋଇଲେ ତୋତେ ଯାହା ।
ସତ ନ କରୁ ଆମ୍ଭେ ତାହା ।।୧୬୬
ଦକ୍ଷ ଯେ ପ୍ରଜାପତି ଥିଲା ।
କୋପେ ରୁଦ୍ରକୁ ଶାପ ଦେଲା ।।୧୬୭
ସେ ଶାପ ପାଇ ଦେବ ହର ।
କ୍ରୋଧ ବହିଲେ ନିରନ୍ତର ।।୧୬୮
ତେଣୁ ଦୁରାତ୍ମା ପଦ ପାଇ ।
ପ୍ରେତ ପିଶାଚ ମଧ୍ୟେ ଥାଇ ।।୧୬୯
ଭୂତ ବେତାଳ ପ୍ରେତଗଣେ ।
ଭ୍ରମଇ ଶମଶାନ ସ୍ଥାନେ ।।୧୭୦
ତାର ବଚନେ ପ୍ରତେ କାହିଁ ।
ଭଲେ ଜାଣଇଁ ଏହା ମୁହିଁ ।।୧୭୧
ତୋର ବିଚାରେ ଯେବେ ରୁଚେ ।
ଏଠାରେ ବୁଝ ତୁ ପ୍ରତ୍ୟକ୍ଷେ ।।୧୭୨
ଆପଣା ମୁଣ୍ଡେ ଦିଅ କର ।
କିଛି ହିଁ ନୋହିବ ତୋହର ।।୧୭୩
ତୋତେ ଭଣିଲା ଯେଣୁ ମିଛେ ।
ତେଣୁ ସେ ପଳାଏ ପ୍ରତ୍ୟକ୍ଷେ ।।୧୭୪
ତୁ ତାହା ବାକ୍ୟ ସତ୍ୟ କରି ।
ଗଗନେ ଭ୍ରମୁ ଅନୁସରି ।।୧୭୫
ଏମନ୍ତ ଗୋବିନ୍ଦର ବାଣୀ ।
ଅସୁର ଚିତ୍ତେ ପରିମାଣି ।।୧୭୬
ବିଷ୍ଣୁମାୟାରେ ମୋହ ଗଲା ।
ଆପଣା ମୁଣ୍ଡେ ହସ୍ତ ଦେଲା ।।୧୭୭
ତକ୍ଷଣେ ହୋଇ ଭସ୍ମରାଶି ।
ଗଗନେ ଉଡି ଦିଗେ ମିଶି ।।୧୭୮
ବଜ୍ରପ୍ରହାରେ ଗିରି ଯେହ୍ନେ ।
ବିବୁଧେ ଦେଖନ୍ତି ଗଗନେ ।।୧୭୯
କରନ୍ତି ଜୟ ଜୟ ବାଣୀ ।
ନାମ ଶବଦେ ସ୍ତୁତି ଭଣି ।।୧୮୦
ସାଧୁଶବଦ ଦଶଦିଶେ ।
ଆକାଶୁଁ କୁସୁମ ବରଷେ ।।୧୮୧
ପାପିଷ୍ଠ ବକାସୁର ନାଶେ ।
ରୁଦ୍ର ମିଳିଲେ କୃଷ୍ଣ ପାଶେ ।।୧୮୨
ପିତୃ ଦେବତା ଋଷିଗଣ ।
ସଙ୍ଗତେ ଅମ୍ୱିକାରମଣ ।।୧୮୩
ଅସୁର ସଂକଟୁ ନିସ୍ତରି ।
ହରିଙ୍କି ଆଲିଙ୍ଗନ କରି ।।୧୮୪
ଗୋବିନ୍ଦ ହରମୁଖ ଚାହିଁ ।
ବୋଲନ୍ତି କରେ କର ଦେଇ ।।୧୮୫
ହେ ଦେବ ଦେବଙ୍କ ଈଶ୍ୱର ।
ତୋ ଅପରାଧୀ ଏ ଅସୁର ।।୧୮୬
ଅର୍ଜିତ କର୍ମେ ଗଲା ନାଶ ।
ଏ ସତ୍ୟ ଧର୍ମର ବିଶ୍ୱାସ ।।୧୮୮
ଦେବହେଳନ ଯେ କରନ୍ତି ।
ସ୍ୱକର୍ମ ଫଳ ସେ ଭୁଞ୍ଜନ୍ତି ।।୧୮୯
ଏମନ୍ତେ କୃଷ୍ଣର ବଚନେ ।
ଗଲେ ସେ ଯେ ଯାହା ଭୁବନେ ।।୧୯୦
କହନ୍ତି ଶୁକ ମହାମୁନି ।
ଶୁଣ ରାଜନ ଚୂଡାମଣି ।।୧୯୧

Dr. Sudhanshu Sekhar Mishra

ଗିରିଶ ମୋକ୍ଷ ଯେ ଶୁଣନ୍ତି ।
ସର୍ବ ସଙ୍କଟୁ ନିସ୍ତରନ୍ତି ।।୧୯୨
ହରି ମହିମା ଦୃଢ଼ ଚିତ୍ତେ ।
ସୁଜନେ ଶୁଣ ଭାଗବତେ ।।୧୯୩
ସୁଜନେ ଏଣେ କର ଚିତ୍ତ ।
କହଇ ଦାସ ଜଗନ୍ନାଥ ।।୧୯୪

ଇତି ଶ୍ରୀମଦଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ରୁଦ୍ରମୋକ୍ଷଣଂ
ନାମ ଚତୁର୍ନବତିତମ ଅଧ୍ୟାୟ ।।

---

## ପଞ୍ଚନବତିତମ ଅଧ୍ୟାୟ

ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ ।
କୃଷ୍ଣ ମହିମା ଭାଗବତ ।।୧
ପୂର୍ବେ ଯେ ସରସ୍ୱତୀ ତୀରେ ।
ମିଳି ସକଳ ମୁନିବରେ ।।୨
ଯଜ୍ଞ କରିବା ଅନୁମତେ ।
ବିଚାର କଲେ ସର୍ବଶାସ୍ତ୍ରେ ।।୩
ଜଗତେ ଦେବଦେବ ତିନି ।
ବିଷ୍ଣୁ ଶଙ୍କର ପଦ୍ମଯୋନି ।।୪
ଏ ତିନି ମଧ୍ୟେ ଯେ ପ୍ରଧାନ ।
ସେ ଆମ୍ଭର ଯଜ୍ଞରେ ବରଣ ।।୫
ଏମନ୍ତେ କରି ସନମତ ।
ଭୃଗୁ ନାମେଣ ବ୍ରହ୍ମାସୁତ ।।୬
ଏ ତିନି ଦେବତା କଳନେ ।
ତାହାଙ୍କୁ ପେଶି ଦୂତପଣେ ।।୭
ବୋଇଲେ ବଚନ ବିଶ୍ୱାସ ।
ତିନି ଦେବଙ୍କୁ ବରି ଆସି ।।୮
ଋଷିଙ୍କ ଆଜ୍ଞା ଘେନି ବେଗେ ।
ଭୃଗୁ ଚଳିଲେ ଶୂନ୍ୟମାର୍ଗେ ।।୯
ବ୍ରହ୍ମାର ସଭା ମଧ୍ୟେ ଯାଇ ।
ଭୃଗୁ ମିଳିଲେ ଛଳ ବହି ।।୧୦
ବ୍ରହ୍ମାଙ୍କୁ ଛଳିବାର ଆଶେ ।
ଅବଜ୍ଞା କରି ବସି ପାଶେ ।।୧୧
ବ୍ରହ୍ମାଙ୍କୁ ପ୍ରଣାମ ନକଲେ ।
ସ୍ତୁତି ବଚନ ନ ବୋଇଲେ ।।୧୨
ତା ଦେଖି ବ୍ରହ୍ମା ମହାକୋପି ।
ଗାଢେ ଦଶନେ ଓଷ୍ଠ ଚାପି ।।୧୩
ବୋଲନ୍ତି ଜ୍ୟେଷ୍ଠପୁତ୍ର ଏହି ।
ଏ ମୋତେ ଅବଜ୍ଞା ସେ ବହି ।।୧୪
ପୁଣି ବିଚାରି ଦିବ୍ୟଜ୍ଞାନେ ।
ପୁତ୍ରଙ୍କୁ ନାଶିବା କେସନେ ।।୧୫
ଏହାଙ୍କୁ କଲେ ଆଜ ନାଶ ।
ମୋତେ ହୋଇବ ଅପଯଶ ।।୧୬
ଏତେ ବିଚାରି ଦୁଷ୍ଟମନ ।
ତକ୍ଷଣେ ବ୍ରହ୍ମା କଲେ ଶମ ।।୧୭
ଅନଳ ଯେହ୍ନେ ଜଳ ପାଇ ।
ଲିଭଇ କୁଣ୍ଡ ମଧ୍ୟେ ଥାଇ ।।୧୮
ଭୃଗୁଙ୍କ ପୁତ୍ରଭାବ ଘେନି ।
ଶାନ୍ତ ହୋଇଲେ କୁଶପାଣି ।।୧୯
ତାହା ଜାଣିଲେ ବ୍ରହ୍ମାସୁତ ।
କପୋଳେ ଦେଇ ଘେନି ହସ୍ତ ।।୨୦
ପ୍ରଣମି ବ୍ରହ୍ମାଙ୍କ ଚରଣେ ।
ଭୃଗୁ ଚଳିଲେ ତତକ୍ଷଣେ ।।୨୧
ପଥେ ଚଳନ୍ତେ ମନତୋଷେ ।
ମିଳିଲେ କଇଳାସ ଦେଶେ ।।୨୨
ରୁଦ୍ର ଉଠିଲେ ଭୃଗୁ ଚାହିଁ ।
ବୋଲନ୍ତି ଏ ମୋ ଜ୍ୟେଷ୍ଠଭାଇ ।।୨୩
ଧାଇଁଲେ ଆଲିଙ୍ଗନ ଆଶେ ।
ଭୃଗୁ ଚଳିଲେ ବାମ ପାଶେ ।।୨୪
ତା ଦେଖି ରୁଦ୍ର କୋପଭରେ ।
ବେଗେ ତ୍ରିଶୂଳ ଧରି କରେ ।।୨୫
ଧାଇଁଲେ ଅରୁଣଲୋଚନେ ।
ଦହିବା ପ୍ରାୟ ତ୍ରିଭୁବନେ ।।୨୬
ତା ଦେଖି ଭୃଗୁ କରଯୋଡି ।
ବେଗେ ଶଙ୍କର ପାଦେ ପଡି ।।୨୭
ଅନେକ ସ୍ତୁତିବାକ୍ୟ ଭଣି ।
ଶାନ୍ତ କରାଇ ଶୂଳପାଣି ।।୨୮
ଅନେକ ମତେ ଭାବ କଲେ ।
ତକ୍ଷଣେ ବଇକୁଣ୍ଠ ଗଲେ ।।୨୯
ଦ୍ୱାରେ ପଶନ୍ତେ ବ୍ରହ୍ମାସୁତ ।
ଶୁଣିଲେ ବିଷ୍ଣୁ ନିଦ୍ରାଗତ ।।୩୦
ମୁହୂର୍ତ୍ତେ ରହି ଅବକାଶେ ।
ତକ୍ଷଣେ ଭୃଗୁ ମହାରୋଷେ ।।୩୧
ବିଷ୍ଣୁ ଶୟନସ୍ଥାନେ ମିଳି ।
ନିଦ୍ରା ଅଚେତ ବନମାଳୀ ।।୩୨
ଉତ୍ତାନ ଶୟନେ ଆନନ୍ଦେ ।
ତା ଦେଖି ଭୃଗୁ ମହା କ୍ରୋଧେ ।।୩୩
ବ୍ରାହ୍ମଣପଣେ ଗର୍ବ ବହି ।
ପାଦେ ମାଇଲେ ହୃଦେ ନେଇ ।।୩୪
କୋପେ ଗର୍ଜନ୍ତି ଗରୁତର ।
ଶୁଣି ଉଠିଲେ ଚକ୍ରଧର ।।୩୫

Dr. Sudhanshu Sekhar Mishra

ଲକ୍ଷ୍ମୀର କରେ ଧରି ମୁଷ୍ଟି ।
ପଲ୍ୟଙ୍କୁ କୃଷ୍ଣ ବେଗେ ଉଠି ।।୩୬
ବିପ୍ରଚରଣେ ତଳେ ପଡି ।
ବୋଲନ୍ତି ବେନିକର ଯୋଡି ।।୩୭
ଭୋ ବିପ୍ର ତୋର ଆଗମନ ।
ଆଜ ଶରୀର ମୋର ଧନ୍ୟ ।।୩୮
ଭୋ ବିପ୍ର ବସ ଏ ଆସନେ। ।
ଅପ୍ରାଧ କଲି ମୁଁ ଅଜ୍ଞାନେ ।।୩୯
ଏ ଅପରାଧ କ୍ଷମା କର ।
କୋମଳ ଚରଣ ତୁମ୍ଭର ।।୪୦
କଠୋର ହୃଦୟେ ବାଜିଲା ।
ମୋ ମନେ କଷ୍ଟ ଉପୁଜିଲା ।।୪୧
ନପୁଣ ବଥାଇ ଚରଣ ।
ଏମନ୍ତ ବୋଲି ନାରାୟଣ ।।୪୨
ବିପ୍ରଚରଣ ଜଳେ ଧୋଇ ।
ପାଦଉଦକ ଶିରେ ଲଇଁ ।।୪୩
ଆଜ ଶରୀର ମୋର ଧନ୍ୟ ।
ପବିତ୍ର ହୋଇଲା ଜୀବନ ।।୪୪
ଏ ବିଶ୍ୱ ସଂସାର ସମେତ ।
ଲୋକପାଳଙ୍କ ଛନ୍ତି ଯେତେ ।।୪୫
ଆଜ ପବିତ୍ର ଏ ସକଳେ ।
ତୋ ପାଦରଜ ତୀର୍ଥଜଳେ ।।୪୬
ଭୋ ବିପ୍ରବର ମୋର ହୃଦେ ।
କମଳା ବସଇ ଆନନ୍ଦେ ।।୪୭
ଆଜ ପବିତ୍ର ମୋର ଘର ।
ଧନ୍ୟ ଏ ଜୀବନ ମୋହର ।।୪୮
ଅତି ଆଦରେ ନାରାୟଣ ।
ପୂଜିଲେ ଭୃଗୁର ଚରଣ ।।୪୯
ମଧୁର ବାକ୍ୟେ ଲକ୍ଷ୍ମୀପତି ।
ବ୍ରାହ୍ମଣ ମନ କଲେ ଶାନ୍ତି ।।୫୦
ବିଷ୍ଣୁ ମହିମା ଗୁଣ ଦେଖି ।
ଭୃଗୁ ବୁଜିଲେ ବେନି ଆଖି ।।୫୧
କଣ୍ଠକୁଣ୍ଠିତ ମନ୍ଦସ୍ୱର ।
ରୋମପୁଲକ କଳେବର ।।୫୨
ବିଷ୍ଣୁର ଭାବ ହୃଦେ ବହି ।
ଭୃଗୁ ଚଳିଲେ ତୋଷ ହୋଇ ।।୫୩
ଏମନ୍ତେ ବିଷ୍ଣୁଭାବ ଭୋଳେ ।
ମିଳିଲେ ସରସ୍ୱତୀ କୂଳେ ।।୫୪
ବ୍ରହ୍ମଋଷିଙ୍କ ମଧ୍ୟେ ଯାଇ ।
ବୋଲନ୍ତି ଶିରେ କର ଦେଇ ।।୫୫
ବ୍ରାହ୍ମଣ କହେ ସର୍ବକଥା ।
ଯାହାର ଯେମନ୍ତ ବ୍ୟବସ୍ଥା ।।୫୬
ଭୃଗୁବଚନ ବିପ୍ରେ ଶୁଣି ।
ବିଷ୍ଣୁ ମହିମା ପରିମାଣି ।।୫୭
ଯେ ହରି ଜଗତଠାକୁର ।
ମିତ୍ର ଅଇରି ନାହିଁ ଯାର ।।୫୮
ତାର ସ୍ମରଣେ ମନ ଶାନ୍ତି ।
ନ ଲାଗେ ଭବବନ୍ଧ ଭ୍ରାନ୍ତି ।।୫୯
ଯାର ଚିନ୍ତନେ ଧର୍ମଜ୍ଞାନ ।
ଶ୍ରୁତି ନିଷ୍କାମେ ଯୋଗ କ୍ଷେମ ।।୬୦
ନିର୍ମଳ ଯଶ ବିକାଶଇ ।
ଯାର ସ୍ମରଣେ ପାପ ନାହିଁ ।।୬୧
ମୁନି ସନ୍ନ୍ୟାସୀ ଶାନ୍ତନର ।
ସମଦରଶୀ ଚିତ୍ତ ଯାର ।।୬୨
ଯେ ଅବା ଅକିଞ୍ଚନ ଜନ ।
ତାହାଙ୍କ ଗତି ଭଗବାନ ।।୬୩
ଯା ପ୍ରିୟରୂପ ସତ୍ତ୍ୱଗୁଣ ।
ଯା ଇଷ୍ଟ ଦେବତା ବ୍ରାହ୍ମଣ ।।୬୪
ତାହାକୁ ଯଜ୍ଞେ ପୂଜା କରି ।
ସକଳ ଦୁଃଖ ଅପହରି ।।୬୫
ତ୍ରିଗୁଣେ ତିନି ରୂପ ତାର ।
ରାକ୍ଷସ ଅସୁର ଯେ ସୁର ।।୬୬
ଯେ ରୂପ ସତ୍ତ୍ୱଗୁଣମୟ ।
ତହୁଁ ମିଳିଲା ସର୍ବଶ୍ରେୟ ।।୬୭
ନିର୍ମଳ ଚିତ୍ତେ ମୁନିଗଣେ ।
କାନନେ ନିଶ୍ଚଳେ ଆସନେ ।।୬୮
ଗୋବିନ୍ଦପାଦେ ଧ୍ୟାନ କରି ।
ହେଲେ ତରିଲେ ଭବବାରି ।।୬୯
ବୋଲଇ ବିପ୍ର ଜଗନ୍ନାଥ ।
କୃଷ୍ଣ ମହିମା ବ୍ୟାସସୁତ ।।୭୦
ଯାହା କହିଲେ ରାଜା ଆଗେ ।
ସୁଜନେ ଚିନ୍ତ ସେହି ମାର୍ଗେ ।।୭୧
ପୁରାଣ ଭାଗବତ ବାଣୀ ।
କେ କହିପାରେ ପରିମାଣି ।।୭୨
କୃଷ୍ଣ ସକଳ ପ୍ରାଣୀ ଦେହେ ।
ଦୃଶ୍ୟଅଦୃଶ୍ୟେ ଜ୍ଞାନମୋହେ ।।୭୩
ନିର୍ଲେପ ସାକ୍ଷୀରୂପ ହୋଇ ।
ଯାହାକୁ ଯେତେ ଜ୍ଞାନ ଦେଇ ।।୭୪
ସକଳ ଜନ୍ତୁ ଚିତ୍ତଗତେ ।
ଗତ ଆଗତ କର୍ମପଥେ ।।୭୫
ଭ୍ରମଣ ଦୁଃଖ କରେ ଦୂର ।
ଯେବେ ଭଜଇ ତା ପୟର ।।୭୬
ଶୁଣ ରାଜନ ସାବଧାନେ ।
ବ୍ରାହ୍ମଣ ଦ୍ୱାରକା ଭୁବନେ ।।୭୭
ସେ ବିପ୍ର ଦ୍ୱାରକା ବସତି ।
ପତ୍ନୀର ଗର୍ଭେ ତା ସନ୍ତତି ।।୭୮
ଗର୍ଭପ୍ରସବ କାଳେ ତାର ।
ଯେତେ ଉପୁଜିଲେ କୁମର ।।୭୯
ଗର୍ଭରେ ଦଶମାସ ଥାନ୍ତି ।
ଭୂମିରେ ପଡିଲେ ମରନ୍ତି ।।୮୦
ସେ ମୃତପିଣ୍ଡ କୋଳେ ଧରି ।
ବିପ୍ର ବିକଳେ ଶୋକ କରି ।।୮୧
କୃଷ୍ଣର ଦ୍ୱାରେ ନେଇ ଥୋଇ ।
ବିପ୍ର ବୋଲଇ କୋପ ବହି ।।୮୨
ବ୍ରହ୍ମହିଂସକ ଯଦୁବଂଶ ।
ଶଠ ହୃଦୟ ଅବିଶ୍ୱାସ ।।୮୩
ନିର୍ଦ୍ଦୟ ବୁଦ୍ଧି ଦୁରାଚାର ।
ଦୁଃଶୀଳ ପାପିଷ୍ଠ ପାମର ।।୮୪
ଗର୍ବିତ ବିଷୟ ବିଳାସେ ।
ଏମନ୍ତ ରାଜା କର୍ମଦୋଷେ ।।୮୫
ଦଣ୍ଡେ ନଥାଇ ଏହା ଦେଶେ ।
ଏମନ୍ତ ବୋଲି ମହାରୋଷେ ।।୮୬
ମୋ ପୁତ୍ର ଜନ୍ମକାଳେ ମଲା ।
ଏମନ୍ତ ବୋଲି ଶୋକ କଲା ।।୮୭
ପୁଣି ବୋଲଇ ଖେଦଚିତ୍ତେ ।
ଏ ଦୁଷ୍ଟକାଳ ବିପରୀତେ ।।୮୮
ହିଂସା ବେଭାର ନରରାୟ ।
ଦୁଃଶୀଳ ଅଜିତ ଇନ୍ଦ୍ରିୟ ।।୮୯

Dr. Sudhanshu Sekhar Mishra

ଏମନ୍ତ ନରପତି ଦେଶେ ।
ଯେ ପ୍ରଜା ରହନ୍ତି ବିଶ୍ୱାସେ ।।୯୦
ଦୁଃଖୀ ଦରିଦ୍ର ହୋନ୍ତି ନିତ୍ୟେ ।
ମରନ୍ତି କାଳ ଅପ୍ରାପତେ ।।୯୧
ଏମନ୍ତେ ବାଳକ ପକାଇ ।
ବିପ୍ର କାନ୍ଦଇ ଗୃହେ ଚାହିଁ ।।୯୨
ଏମନ୍ତେ ପ୍ରତି ସମ୍ୱତ୍ସରେ ।
ପୁତ୍ର ମରନ୍ତେ ବିପ୍ରଘରେ ।।୯୩
ପୁଣି ପକାଇ ରାଜଦ୍ୱାରେ ।
ବିପ୍ର କାନ୍ଦଇ ଉଚ୍ଚସ୍ୱରେ ।।୯୪
ନିତ୍ୟେ ନିନ୍ଦଇ କୃଷ୍ଣ ରାମ ।
ବିପ୍ର ସ୍ୱଭାବେ ଗରୁତମ ।।୯୫
ଏକ ଦ୍ୱିତୀୟ ବୋଲି ଗଣେ ।
ତୃତୀୟ ଚତୁର୍ଥ ପ୍ରମାଣେ ।।୯୬
କୃଷ୍ଣର ଦ୍ୱାରେ ପୁତ୍ର ଥୋଇ ।
କୋପେ ଅନେକ ଗାଳି ଦେଇ ।।୯୭
ଏମନ୍ତେ ନବ ପୁତ୍ର ମଲା ।
ଶୁଣ ହୋ ଶ୍ରୀକୃଷ୍ଣର ଲୀଳା ।।୯୮
ଅର୍ଜୁନ ଥିଲା ନିଜ ଦେଶେ ।
ଏକଥା ଶୁଣି ସେ ବିଶ୍ୱାସେ ।।୯୯
ମିଳିଲା ରାଜଦ୍ୱାରେ ଆସି। ।
ଦେଖିଲା ବିପ୍ର ଅଛି ବସି ।।୧୦୦
ମୃତବାଳକ ଧରି କୋଳେ ।
କାନ୍ଦଇ ଜୀବନ ବିକଳେ ।।୧୦୧
ନିନ୍ଦଇ ରାମ ବନମାଳୀ ।
ଗର୍ଜଇ କୋପେ ଦେଇ ଗାଳି ।।୧୦୨
ବିଷ୍ଣୁନନ୍ଦନ ବାକ୍ୟ ଶୁଣି ।
କୋପେ ଚାହିଁଲା ବୀରମଣି ।।୧୦୩
ବ୍ରାହ୍ମଣ ବୋଲି ଭୟ ପାଇ ।
କର ଅଞ୍ଜଳି ଶିରେ ଦେଇ ।।୧୦୪
ବୋଲଇ ଶୁଣ ବିପ୍ରବର ।
ଏ କୋପ ଶୋକ ତୁ ସଂହର ।।୧୦୫
ତୋହର ରାଜ୍ୟେ ବିପ୍ରବର ।
ବୀର କି ନାହିଁ ଧନୁର୍ଦ୍ଧର ।।୧୦୬
ବ୍ରାହ୍ମଣ ପ୍ରାୟ ଯଜ୍ଞ କରି ।
କିବା ବୁଲନ୍ତି ପେଟ ଭରି ।।୧୦୭

ଧନ ତନୟ ଦାରାଯୁତେ ।
ଯହିଁ ବ୍ରାହ୍ମଣ ଶୋକଚିତ୍ତେ ।।୧୦୮
ଜନ ପରଜା ଯହିଁ ଦୁଃଖୀ ।
ପଣ୍ଡିତ ଜନେ ନିରିମାଖି ।।୧୦୯
ସେ ରାଜା ରାଜକୁଳେ ହୀନ ।
ଧିକତ ତାହାର ଜୀବନ ।।୧୧୦
ଜନ ପରଜା ନ ରଖନ୍ତି ।
ନଟଙ୍କ ପ୍ରାୟ ସେ ଜୀଅନ୍ତି ।।୧୧୧
ଏବେ ହୋ ବିପ୍ରବର ଶୁଣ ।
ଦେଖ ମୋହର ବୀରପଣ ।।୧୧୨
ଧନୁ ଗାଣ୍ଡୀବେ ଗୁଣ ଦେଇ ।
ତୋ ରିପୁ ସଂହାରିବି ମୁହିଁ ।।୧୧୩
ରଖିବି ତୋହର ବାଳକ ।
ମୋର ପ୍ରତିଜ୍ଞା ଏବେ ଦେଖ ।।୧୧୪
ପ୍ରସବକାଳେ ତୋର ଘରେ ।
ମୁଁ ଧନୁ ଧରିଥିବି କରେ ।।୧୪୫
ରଖିବି ତୋହର କୁମର ।
ସତ୍ୟବଚନ ଏ ମୋହର ।।୧୪୬
ଦେଖ ମୋହର ଧନୁଦୀକ୍ଷା ।
ଯେବେ ନ ପାରେ କରି ରକ୍ଷା ।।୧୪୭
ଅନଳେ ଛାଡ଼ିବି ମୁଁ ପ୍ରାଣ ।
ତା ଶୁଣି ବୋଲଇ ବ୍ରାହ୍ମଣ ।।୧୪୮
ସଙ୍କରଷଣ ଦାମୋଦର ।
ପ୍ରଦ୍ୟୁମ୍ନ ରୁକ୍ମିଣୀକୁମର ।।୧୪୯
ଶାମ୍ବକୁମର ଅନିରୁଦ୍ଧ ।
ଧନୁ ସଂଗ୍ରାମେ ମହାଯୋଦ୍ଧ ।।୧୫୦
ଏ ସର୍ବେ ମୋ ପୁତ୍ର ରକ୍ଷଣେ ।
କ୍ଷମ ନୋହିଲେ କେହି ଜଣେ ।।୧୫୧
କି ଅର୍ଥେ ରଖିବି ମୁଁ ଆଶା ।
ଦେଖାଇ କରୁଛୁ ଭରସା ।।୧୫୨
ଏଣେ ମୋହର ପ୍ରତେ ନାହିଁ।
ତୋ ବୀରପଣ ମୁଁ ଜାଣଇ ।।୧୫୩
ଶୁଣି ଅର୍ଜୁନ କୋପଭରେ ।
ଶ୍ରୀ ଜଗନ୍ନାଥ ଭରସାରେ ।।୧୫୪
ବୋଲଇ ଧନୁ ଧରି କର ।
ଭୋ ବିପ୍ର ସତ୍ୟ ଏ ମୋହର ।।୧୫୫

ଭୋ ବିପ୍ର ଶୁଣ ମୋ ବଚନ ।
ମୁଁ ନୋହେ ରୋହିଣୀନନ୍ଦନ ।।୧୫୬
କୃଷ୍ଣ ପ୍ରଦ୍ୟୁମ୍ନ ନୋହେ ମୁହିଁ ।
ଅର୍ଜୁନ ନାମ ମୁଁ ବୋଲାଇ ।।୧୫୭
ଦେଖ ଗାଣ୍ଡୀବଧନୁ ମୋର ।
ରଣେ ମୁଁ ତୋଷିଲି ଈଶ୍ୱର ।।୧୫୮
ଅକ୍ଷୟ ତୂଣ ମୋର ହସ୍ତେ ।
ଏକଥା ବିଦିତ ଜଗତେ ।।୧୫୯
ମୃତ୍ୟୁଦେବତା ରଣେ ଜିଣି ।
ତୋର ବାଳକ ଦେବି ଆଣି ।।୧୬୦
ନ ଦେଲେ ଛାଡ଼ିବି ଜୀବନ ।
ଶୁଣି ସାନନ୍ଦ ବିପ୍ରମନ ।।୧୬୧
ମୃତବାଳକ ରାଜଦ୍ୱାରେ ।
ଥୋଇ ଚଳିଲା ନିଜ ପୁରେ ।।୧୩୨
ଶୋକ ହରଷ ଖେଦଛନ୍ନେ ।
ଅର୍ଜୁନ ତେଜ ଗୁଣ ମନେ ।।୧୩୩
ଏମନ୍ତେ ସମ୍ୱତ୍ସର ପରେ ।
ବିପ୍ର କାମିନୀ ନିଜ ଘରେ ।।୧୩୪
ଗର୍ଭ ହୋଇଲା ଦଶମାସ ।
ଦେଖି ବ୍ରାହ୍ମଣ ମନେ ତ୍ରାସ ।।୧୩୫
ବିକଳେ ଅର୍ଜୁନ ସୁମରି ।
ଉଚ୍ଚେ ଡାକଇ ନାମ ଧରି ।।୧୩୬
ହେ ବୀରମଣି ରକ୍ଷାକର ।
ମରଣ ମୁଖୁଁ ମୋ କୁମର ।।୧୩୭
ଶୁଣି ଅର୍ଜୁନ ବେଗେ ଧାଇଁ ।
ମିଳିଲା ବିପ୍ରଦ୍ୱାରେ ଯାଇ ।।୧୩୮
କର ଚରଣ ମୁଖ ଧୋଇ ।
ତକ୍ଷଣେ ଶୁଚିମନ୍ତ ହୋଇ ।।୧୩୯
ହର ଗଉରୀ ପାଦ ଚିନ୍ତି ।
ନମଇଁ ପୁଣପୁଣ କ୍ଷିତି ।।୧୪୦
ଗାଣ୍ଡୀବେ ଗୁଣ ଦେଇ କରେ ।
ମନ୍ତ୍ର ସୁମରି ବିପ୍ରଘରେ ।।୧୪୧
ରୁନ୍ଧିଲା ନାନାଶସ୍ତ୍ର ଯୋଗେ ।
ବିପ୍ରଭୁବନ ଦଶଦିଗେ ।।୧୪୨
ପଞ୍ଜୁରୀ ମଧ୍ୟେ ଯେସନ୍ହେ ପକ୍ଷୀ ।
ବିପ୍ରଭୁବନ ତେସନ୍ହେ ଲକ୍ଷ୍ୟ ।।୧୪୩

Dr. Sudhanshu Sekhar Mishra

ଏମନ୍ତେ ଜନ୍ମିଲା ନନ୍ଦନ ।
ଅର୍ଜୁନ ଶୁଣିଲା ରୋଦନ ।।୧୪୪
ଭୂମି ସ୍ପରଶେ ଶୂନ୍ୟେ ଗଲା ।
ବାଳକ କେହି ନ ଦେଖିଲା ।।୧୪୫
ତକ୍ଷଣେ ବିପ୍ର କୋପଭରେ ।
ମିଳିଲା ଅର୍ଜୁନ ଛାମୁରେ ।।୧୪୬
ବୋଲଇ ପୁରୁଷ ବଚନ ।
ଧିକ ଅର୍ଜୁନ ତୋ ଜୀବନ ।।୧୪୭
ତୋହର ନପୁଂସକ ବାଣୀ ।
ମୁହିଁ ପାପିଷ୍ଠ ତାହା ଶୁଣି ।।୧୪୮
ନ ଜାଣି ହୋଇଲି ହରଷ ।
ଏବେ ମୁଁ ନିଶ୍ଚୟେ ନିରାଶ ।।୧୪୯
ମୃତବାଳକ ଧରି କୋଳେ ।
ଦଣ୍ଡେ ଦେଖଇ ବେନିଡୋଳେ ।।୧୫୦
ଏବେ ମୋ ପୁତ୍ର ଗଲା କେଣେ ।
ଧନ୍ୟ ଅର୍ଜୁନ ବୀରପଣେ ।।୧୫୧
ରୁକ୍ମିଣୀପୁତ୍ର ମହାଯୋଦ୍ଧ ।
ତାହାର ପୁତ୍ର ଅନିରୁଦ୍ଧ ।।୧୫୨
ସଙ୍କରଷଣ ଜଗନ୍ନାଥ ।
ଏ ଯହିଁ ନୋହିଲେ ସମର୍ଥ ।।୧୫୩
କାହାର ବଳ ରକ୍ଷା କରି ।
ମର୍ତ୍ତେ ମାନବ ଦେହ ଧରି ।।୧୫୪
ଧିକ ତୋହର ମିଥ୍ୟା ବାଣୀ ।
ପ୍ରତିଜ୍ଞା କଲୁ ତୁ ନ ଜାଣି ।।୧୫୫
ଧିକ ଗାଣ୍ଡିବଧନୁ ତୋର ।
ବିବିଧ ଶସ୍ତ୍ର ଉପହାର ।।୧୫୬
ଦଇବେ ହତକର୍ମ ତୋର ।
କୁମତି ପାପିଷ୍ଠ ପାମର ।।୧୫୭
ମୁଖେ ଯେ କହୁ ଗର୍ବବାଣୀ ।
ଆପଣାବଳ ତୁ ନ ଜାଣି ।।୧୫୮
ଏମନ୍ତ ବିପ୍ର କୋପବାଣୀ ।
ଅର୍ଜୁନ ସାବଧାନେ ଶୁଣି ।।୧୫୯
ବିବିଧ ମତେ ବିଧି କରି ।
ଗାଣ୍ଡିବୀ ଧନୁ କରେ ଧରି ।।୧୬୦
ମିଳିଲା ଯମର ଭୁବନେ ।
ରବିକୁମାର ସନ୍ନିଧାନେ ।।୧୬୧

ତାହାର ପୁରେ ବିପ୍ରସୁତ ।
ଅର୍ଜୁନ ଖୋଜିଲା ବହୁତ ।।୧୬୨
ନ ପାଇ ମନ ଦୁଃଖ କରି ।
ପୁଣି ମିଳିଲା ଇନ୍ଦ୍ରପୁରୀ ।।୧୬୩
ତହିଁ ନ ପାଇ ବିପ୍ରସୁତ ।
ଅଗ୍ନିଭୁବନେ ଉପଗତ ।।୧୬୪
ନ ପାଇ ନଇରତ ଦେଶେ ।
କୋପେ ମିଳିଲା ସୋମ ପାଶେ ।।୧୬୫
ତହିଁ ନ ପାଇ ବିପ୍ରବାଳ ।
ବରୁଣ ନଗରେ ମିଳିଲା ।।୧୬୬
ତହିଁ ନ ପାଇ ବେଗେ ଯାଇ ।
କୁବେର ଭୁବନେ ଖୋଜଇ ।।୧୬୭
ନ ଦେଖି ବିପ୍ରବର ସୁତ ।
ବିସ୍ମୟେ ଭାଳି ବୀର ପାର୍ଥ ।।୧୬୮
ତକ୍ଷଣେ ନିଜ ବିଦ୍ୟାବଳେ ।
ଖୋଜିଲା ସପତ ପାତାଳେ ।।୧୬୯
ନ ପାଇ ନାଗଲୋକ ତଳେ ।
ପୁଣି ଉଠିଲା ଅନ୍ତରାଳେ ।।୧୭୦
ଉର୍ଦ୍ଧ୍ୱେ ସପତଲୋକେ ଗଲା ।
ବିପ୍ରବାଳକ ନ ଦେଖିଲା ।।୧୭୧
ଧନୁ ଖଡଗ ଧରି କରେ ।
ପୁଣି ମିଳିଲା ବିପ୍ରଦ୍ୱାରେ ।।୧୭୩
ପ୍ରତିଜ୍ଞା ଭଙ୍ଗେ ବୀରମଣି ।
ଅଗ୍ନି ଜାଳିଲା ବେଗେ ଆଣି ।।୧୭୪
ଅନଳ ଜଳଇ ପ୍ରଚଣ୍ଡେ ।
ଲୋକଗହଳ ରାଜଦାଣ୍ଡେ ।।୧୭୫
ଗୋବିନ୍ଦ ଶୁଣି ନିଜ ପୁରେ ।
ମିଳିଲେ ଅର୍ଜୁନ ଛାମୁରେ ।।୧୭୬
ସୁହୃଦ ଭାବେ ନରହରି ।
ବୋଲନ୍ତି ବେନିକର ଧରି ।।୧୭୭
ଦେଖ ଏ ମନୁଷ୍ୟ ଶରୀର ।
ଦେବ ଦୁର୍ଲ୍ଲଭ ସୁଖସାର ।।୧୭୮
ଯେ ଦେହେ ଚଉବର୍ଗ ସାଧି ।
ଏ ତ ନୁହଇ ଅପରାଧୀ ।।୧୭୯
ଏ ଦେହ ନାଶିବୁ କେମନ୍ତେ ।
ସତ୍ୟବଚନ ଭଙ୍ଗ ଅର୍ଥେ ।।୧୮୦

ମୁଁ ତୋତେ ଦେଖାଇବି ନେଇ ।
ବିପ୍ର ବାଳକ ଦଶଭାଇ ।।୧୮୧
ଆତ୍ମାକୁ ଆପଣେ ନ ମାର ।
ଶୁଣ ପାଣ୍ଡବ ବୀରବର ।।୧୮୨
ତୋର ମହିମା ଏ ଜଗତେ ।
ମୁହିଁ ସ୍ଥାପିବି ଦୃଢମତେ ।।୧୮୩
ଯାବତ ଥିବ ଏ ମେଦିନୀ ।
ତୋର ନିର୍ମଳ ଯଶ ଘେନି ।।୧୮୪
ଏମନ୍ତ ଅର୍ଜୁନକୁ କହି ।
ଦାରୁକ କୃଷ୍ଣ ଆଜ୍ଞା ପାଇ ।।୧୮୫
ଉତ୍ତମ ଅଶ୍ୱେ ସାଜି ରଥ ।
ଦାରୁକ ଉଭା ଯୋଡି ହସ୍ତ ।।୧୮୬
ତକ୍ଷଣେ ପ୍ରଭୁ ଚକ୍ରଧର ।
ଧରି ଅର୍ଜୁନ ବାମକର ।।୧୮୭
ରଥେ ବିଜୟ ନରହରି ।
ଆନନ୍ଦେ ଶଙ୍ଖନାଦ କରି ।।୧୮୮
ପଶ୍ଚିମଦିଗେ ରଥ ବାହି ।
ଚଳନ୍ତେ ନ ଦେଖିଲେ କେହି ।।୧୮୯
ସପତସିନ୍ଧୁ ସପ୍ତଦ୍ୱୀପ ।
ବେଗେ ଲଂଘିଲେ ବିଶ୍ୱରୂପ ।।୧୯୦
ଗିରି କାନନ ଭୂମି ଜିଣି ।
ଅର୍ଜୁନ ସଙ୍ଗେ ଚକ୍ରପାଣି ।।୧୯୧
ଲିଭିଲେ ଲୋକାଲୋକ ଦେଶ ।
ଘୋର ଅନ୍ଧକାରେ ପ୍ରବେଶ ।।୧୯୨
ରଥେ ଯୋଚିଲା ଅଶ୍ୱ ଚାରି ।
ଅନ୍ଧାରେ ପଥ ନ ବିଚାରି ।।୧୯୩
ଦିଗ ନ ଜାଣି ଭ୍ରମଗତି ।
ତା ଦେଖି କମଳାର ପତି ।।୧୯୪
ଚକ୍ର ଯେ ଥିଲା କୃଷ୍ଣଭୁଜେ ।
ସହସ୍ର ଆଦିତ୍ୟର ତେଜେ ।।୧୯୫
ଅଗ୍ରେ ପେଷିଲେ ଚକ୍ରଧର ।
ଖଣ୍ଡିଲା ଘୋର ଅନ୍ଧକାର ।।୧୯୬
ରାମ କୋଦଣ୍ଡବାଣ ଯେହ୍ନେ ।
ତେଜ ବିରାଜେ ରିପୁ ସୈନ୍ୟ ।।୧୯୭
ଚକ୍ରର ପଥ ତମ ଗଞ୍ଜେ ।
ନିଜ ପରମ ଜ୍ୟୋତି ତେଜେ ।।୧୯୮

Dr. Sudhanshu Sekhar Mishra

ତମ ନାଶିଲେ କୃଷ୍ଣ ପଥେ ।
ଦେଖି ଅର୍ଜୁନ ଭୟଚିତ୍ତେ ॥୧୧୯୯
ହସ୍ତେ ବୁଜିଲା ବେନି ଆଖି ।
ପଥେ ଅଦ୍‌ଭୁତ କର୍ମ ଦେଖି ॥୧୨୦୦
ଏମନ୍ତେ ଗଲେ ତମ ଜିଣି ।
ରଥେ ଅର୍ଜୁନ ଚକ୍ରପାଣି ॥୧୨୦୧
ଦିଶିଲା ଜଳପୂର୍ଣ୍ଣ ଦେଶ ।
ତକ୍ଷଣେ ସମୁଦ୍ରେ ପ୍ରବେଶ ॥୧୨୦୨
ପବନ ଯୋଗେ ଊର୍ମିଗଣ ।
ଦିଶନ୍ତି ସ୍ୱରୂପେ ଭୀଷଣ ॥୧୨୦୩
ସେ ଜଳମଧ୍ୟେ ଯାଇ ପଶି ।
ଦେଖିଲେ ଦିବ୍ୟ ତେଜରାଶି ॥୧୨୦୪
ଦିବ୍ୟଭୁବନ ବିରାଜଇ ।
କିବା ଉପମା ଦେବି ମୁହିଁ ॥୧୨୦୫
ସହସ୍ର ମଣିସ୍ତମ୍ଭ ସାଜେ ।
ସୁନ୍ଦର ଅଧିକେ ବିରାଜେ ॥୧୨୦୬
ମଧ୍ୟେ ସୁବର୍ଣ୍ଣ ସିଂହାସନ ।
ଦେଖି ନିଶ୍ଚଳ କଲେ ମନ ॥୧୨୦୭
ଅନନ୍ତ ମହାଯୋଗେଶ୍ୱର ।
ଅଦ୍‌ଭୁତ ରୂପ ଭୟଙ୍କର ॥୧୨୦୮
ଫଣାସହସ୍ରେ ମଣି ସାଜେ ।
ଅମୂଲ୍ୟ ରତନ ବିରାଜେ ॥୧୨୦୯
ଦ୍ୱିଗୁଣେ ବିରାଜଇ ଜ୍ୟୋତି ।
ଉତ୍କଟ ଲୋଚନେ ଦିଶନ୍ତି ॥୧୨୧୦
ବେନି ସହସ୍ର ଜିହ୍ୱା ଶୋହେ ।
ସୁନ୍ଦର ଶିବଗିରି ପ୍ରାୟେ ॥୧୨୧୧
ତାର ଉପରେ ଦିବ୍ୟରୂପେ ।
ସୁଖ ଆସନେ ମହାସର୍ପେ ॥୧୨୧୨
ମହାନୁଭବ ଅନୁପମ ।
ସୁନ୍ଦର ପୁରୁଷଉତ୍ତମ ॥୧୨୧୩
ନୀଳଜୀମୂତ ଦେହକାନ୍ତି ।
ପୀତବସନ ବିରାଜନ୍ତି ॥୧୨୧୪
ପ୍ରସନ୍ନ ବଦନ ସୁନ୍ଦର ।
ବେନିଲୋଚନ ଶୋଭାକର ॥୧୨୧୫
କିରୀଟ ରବିକୋଟି ଗଞ୍ଜେ ।
ଅମୂଲ୍ୟ ମଣିଗଣ ପୁଞ୍ଜେ ॥୧୨୧୬

କପୋଳେ କୁଟିଳ କୁନ୍ତଳ ।
ଶ୍ରବଣେ ମକରକୁଣ୍ଡଳ ॥୧୨୧୭
ଆଜାନୁଲମ୍ବେ ଚାରି ଭୁଜ ।
କଣ୍ଠେ କୌସ୍ତୁଭମଣି ତେଜ ॥୧୨୧୮
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ ।
ବନମାଳାଏ ଜନ ମୋହେ ॥୧୨୧୯
ନନ୍ଦସୁନନ୍ଦ ଆଦି ଦେବା ।
କରନ୍ତି ପଦ୍ମପାଦେ ସେବା ॥୧୨୨୦
ଶଙ୍ଖ କମଳ ଚକ୍ର ଗଦା ।
ଯେ ଶୋହେ ଚତୁର୍ଭୁଜେ ସଦା ॥୧୨୨୧
ନିଜ ମୂରତି ଧରି ପାଶେ ।
ଖଟନ୍ତି ଭକତି ବିଶ୍ୱାସେ ॥୧୨୨୨
କମଳା ଆଦି ଅଷ୍ଟଦେବୀ ।
ବାମ ଦକ୍ଷିଣେ ଛନ୍ତି ସେବି ॥୧୨୨୩
ବ୍ରହ୍ମା ଶଙ୍କର ଆଦି ଯେତେ ।
ଅଷ୍ଟଲୋକପାଳ ସହିତେ ॥୧୨୨୪
ବ୍ରହ୍ମାଦି ଦେବଙ୍କର ଗତି ।
ଦେଖି ସମ୍ଭ୍ରମେ ଯଦୁପତି ॥୧୨୨୫
ପରମଆତ୍ମା ପାଦଯୁଗେ ।
କୃଷ୍ଣ ବନ୍ଦିଲେ ଅନୁରାଗେ ॥୧୨୨୬
କୃଷ୍ଣଙ୍କୁ ଦେଖି ବିଷ୍ଣୁ ତୋଷେ ।
ବୋଲନ୍ତି ପରମ ହରଷେ ॥୧୨୨୭
ତୁମ୍ଭେ ଯେ ନରନାରାୟଣ ।
ସଂସାର ପରମକାରଣ ॥୧୨୨୮
ଭାରା ନିବାରେ ଦେବବାଣୀ ।
କ୍ଷୀର ଜଳଧିତଟେ ଶୁଣି ॥୧୨୨୯
ଆମ୍ଭାରୁ ତୁମ୍ଭଙ୍କୁ ଭିଆଇ ।
ମର୍ତ୍ତେ ମନୁଷ୍ୟ ଦେହ ଦେଇ ॥୧୨୩୦
ତୁମ୍ଭଙ୍କୁ କଲି ଅବତାର ।
ଖଣ୍ଡିଲ ଅବନୀର ଭାର ॥୧୨୩୧
ସଂସାର ଇନ୍ଦ୍ରିୟ ଲାଳସେ ।
ଏବେ ହେଁ ନ ମିଳିଲ ପାଶେ ॥୧୨୩୨
ଏଣୁ ମୁଁ ଚିତ୍ତେ କୋପକରି ।
ଆଣିଲି ବିପ୍ରସୁତ ହରି ॥୧୨୩୩
ଦେଖିବା ପାଇଁ ରୂପ ତୁମ୍ଭ ।
ହସି କହନ୍ତି ପଦ୍ମନାଭ ॥୧୨୩୪

ଏବେ ହୋ ବିଳମ୍ବ ନକର ।
ଏମନ୍ତ ଏହି ଚକ୍ରଧର ॥୧୨୩୫
ବିଷ୍ଣୁର ପଛେ ବିପ୍ରସୁତେ ।
ଥିଲେ ଯେ ଅଭୟ ନିଶ୍ଚିନ୍ତେ ॥୧୨୩୬
କୃଷ୍ଣ ଅର୍ଜୁନ ପାଶେ ଯାଇ ।
ମିଳିଲେ ବିପ୍ର ଦଶ ଭାଇ ॥୧୨୩୭
ଦେଖି ସାନନ୍ଦ ଚକ୍ରପାଣି ।
ଅର୍ଜୁନ ତୁଲେ ତାଙ୍କୁ ଆଣି ॥୧୨୩୮
ରଥେ ବସାଇ ଦାମୋଦର ।
ସେଠାରୁ ହୋଇଲେ ବାହାର ॥୧୨୩୯
ବିଷ୍ଣୁଙ୍କୁ କରି ନମସ୍କାର ।
ଆସି ମିଳିଲେ ନିଜ ପୁର ॥୧୨୪୦
ବ୍ରାହ୍ମଣ ଦ୍ୱାରେ ପୁତ୍ର ଦେଇ ।
ପାଦେ ନମିଲେ ଭାବଗ୍ରାହୀ ॥୧୨୪୧
ବୋଲନ୍ତି ନିଅ ତୋର ସୁତ ।
ତୁ ମୋତେ ନିନ୍ଦିଲୁ ବହୁତ ॥୧୨୪୨
ଦଶ ବାଳକ ନିଅ ଗଣି ।
ସମ୍ଭାଳ ବୋଲେ ଚକ୍ରପାଣି ॥୧୨୪୩
ଅର୍ଜୁନ କର କରେ ଧରି ।
ମିଳିଲେ ନିଜ ପୁରେ ହରି ॥୧୨୪୪
କୃଷ୍ଣ ଅଦ୍‌ଭୁତ କର୍ମ ଦେଖି ।
ଅର୍ଜୁନ ମନେ ଉପଲକ୍ଷ୍ୟ ॥୧୨୪୫
ବିଷ୍ଣୁ ପରମଧାମ ଚିନ୍ତି ।
ନର ସ୍ୱଭାବେ କଲା ଭୀତି ॥୧୨୪୬
ଚତୁରବର୍ଗ ଦାତା ହରି ।
କପଟେ ନରରୂପ ଧରି ॥୧୨୪୭
ପ୍ରାଣୀଙ୍କୁ କରେ ଅନୁକମ୍ପା ।
ଏତେ ବିଚାରି କଲା ଶଙ୍କା ॥୧୨୪୮
କହନ୍ତି ଶୁକ ମୁନିବର ।
ଶୁଣ ପରୀକ୍ଷ ଦଣ୍ଡଧର ॥୧୨୪୯
ଏ ଆଦି ଯେତେ କର୍ମ ହରି ।
କଲେ ମନୁଷ୍ୟ ଦେହ ଧରି ॥୧୨୫୦
ନାନା ବିଷୟ ଭୋଗ ଭୁଞ୍ଜି ।
ଦେବମାନବ ମନ ରଞ୍ଜି ॥୧୨୫୧
କ୍ଷତ୍ରିୟ ଧର୍ମର ଉଚିତେ ।
ବ୍ରାହ୍ମଣ ବାକ୍ୟେ ବେଦମତେ ॥୧୨୫୨

Dr. Sudhanshu Sekhar Mishra

ଅନେକ କଲେ ଯଜ୍ଞଦାନ ।
ଯେ ବେଦ ଆଗମ ବିଧାନ ।।୨୫୩
ଯଜ୍ଞ ଭୋଜନେ ତୋଷ ହୋଇ ।
ଯେମନ୍ତେ ଇନ୍ଦ୍ର ବରଷଇ ।।୨୫୪
ଅଶେଷ ସୁଖ ସେହିମତେ ।
କୃଷ୍ଣ ବରଷିଲେ ଜଗତେ ।।୨୫୫
ବ୍ରାହ୍ମଣ ଆଦି ପ୍ରଜା ଯେତେ ।
ସର୍ବ ସମ୍ପଦ ନାନାମତେ ।।୨୫୬
ଯାଦବବଂଶେ ହୋଇ ଜାତ ।
ସଙ୍ଗତେ ଘେନି ପଣ୍ଡୁସୁତ ।।୨୫୭
ନିମିତ୍ତ ମାତ୍ର ତାଙ୍କୁ କରି ।
ଭାରା ନାଶିଲେ ନରହରି ।।୨୫୮
ଅଧର୍ମ ନାଶି ଧର୍ମ ପାଳି ।
ଜଗତନାଥ ବନମାଳୀ ।।୨୫୯
ସେ କୃଷ୍ଣ ଚରଣ କମଳେ ।
ସୁଜନେ ଚିନ୍ତ ଧ୍ୟାନବଳେ ।।୨୬୦
ମାୟା ସଂସାରେ ତୁହି ରତ ।
ଛାଡ଼ି ଅମୃତ ଭାଗବତ ।।୨୬୧
ଏ ସୁଖନାବ ହେଲେ ଛାଡ଼ି ।
ନ ମର ଭବଜଳେ ବୁଡ଼ି ।।୨୬୨
କୃଷ୍ଣଚରଣେ କରି ଆଶ ।
କହଇ ଜଗନ୍ନାଥ ଦାସ ।।୨୬୩

ଇତି ଶ୍ରୀମଦଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଦ୍ୱିଜକୁମାର ଆନୟନଂ ନାମ
ପଞ୍ଚନବତିତତମ ଅଧ୍ୟାୟଃ ।।

---

## ଷଡନବତିତମ ଅଧ୍ୟାୟ

ବ୍ୟାସନନ୍ଦନ ତୋଷମନେ ।
ପୁଣି କହନ୍ତି କୃଷ୍ଣଧ୍ୟାନେ ।।୧

ଶୁକ ଉବାଚ

ବୋଲନ୍ତି ଶୁଣ ନରନାଥ ।
କୃଷ୍ଣଚରିତ ଭାଗବତ ।।୨
ସକଳ ସୁଖ ଭୋଗ ପୂର୍ଣ୍ଣେ ।
ଗୋବିନ୍ଦ ଦ୍ୱାରକାଭୁବନେ ।।୩
ଅଖଣ୍ଡ କଳା ଯେହ୍ନେ ଶଶୀ ।
ନିର୍ମଳ ଆକାଶେ ପ୍ରକାଶି ।।୪
ଯଦୁକୁମୁଦବନ ଦେଶେ ।
ସୁଖେ ପ୍ରକାଶେ ମନ ତୋଷ ।।୫
ଯହିଁ ଅମୂଲ୍ୟମଣି ପୁଞ୍ଜେ ।
ତପନତେଜ ହେଲେ ଗଞ୍ଜେ ।।୬
ସର୍ବସମ୍ପଦ ସୁଖଘରେ ।
କମଳା ସେବେ ନିରନ୍ତରେ ।।୭
ନିଜ ଯୁବତୀ ସୁଖମତେ ।
ଷୋଳସହସ୍ର ଏକଶତେ ।।୮
ଅଷ୍ଟମହିଷୀ ଅଙ୍ଗସଙ୍ଗେ ।
ଦିନ ହରନ୍ତି ଭାବରଙ୍ଗେ ।।୯
କନ୍ଦୁକ ଆଦି କ୍ରୀଡାରସେ ।
ସେବନ୍ତି କୃଷ୍ଣ ଭାବରଙ୍ଗେ ।।୧୦
ଅଦ୍‌ଭୁତ ଦ୍ୱାରାବତୀପୁର ।
ଦେବମାନବେ ଅଗୋଚର ।।୧୧
ସୁଗନ୍ଧହସ୍ତୀ ମଦ ଜଳେ ।
ଶୁଭସୁନ୍ଦର ମହୀତଳେ ।।୧୨
ଯହିଁ ଯାଦବେ ଯୁଥଯୁଥ ।
ଦିଶନ୍ତି ନାନା ଅଳଙ୍କୃତ ।।୧୩
ମାର୍ଗେ ଉଜ୍ଜଳ ରଥପନ୍ତି ।
ନକ୍ଷତ୍ର ପ୍ରାୟ ବିରାଜନ୍ତି ।।୧୪
ନାନା ଉଦ୍ୟାନେ ବନରାଶି ।
ପୁଷ୍ପପଲ୍ଲବେ ପରକାଶି ।।୧୫
ଭୃଙ୍ଗ ବିହଙ୍ଗ ଅନୁବାଦେ ।
ମନ ହରନ୍ତି ମୃଦୁନାଦେ ।।୧୬
ତିନି ଭୁବନେ ଅଗୋଚର ।
କୃଷ୍ଣଭୁବନ ମନୋହର ।।୧୭
ଏମନ୍ତ ପୁରେ ନରହରି ।
ଷୋଳସହସ୍ର ଶତେ ନାରୀ ।।୧୮
ମାୟାମନୁଷ୍ୟ ରୂପ ହୋଇ ।
ନିତ୍ୟେ ତାହାଙ୍କ ପୁରେ ଥାଇ ।।୧୯
ତୋଷନ୍ତି ନାରୀଙ୍କର ମନ ।
ଇତର ପୁରୁଷ ଯେସନ ।।୨୦
ନିଦାଘ କାଳେ ଶୀତଜଳେ ।
ନାନାକୁସୁମ ପରିମଳେ ।।୨୧
ବିବିଧ ଜଳାଶୟ ମାନ ।
ସୁଗନ୍ଧେ ପ୍ରସରେ ପବନ ।।୨୨
କୁସୁମରଜ ଜଳେ ମିଶେ ।
ଶୁକ କୋକିଳ ନାଦ ଘୋଷେ ।।୨୩
ଏମନ୍ତେ ନାନାଜଳେ ହରି ।
ସଙ୍ଗେ ସୁନ୍ଦରୀ ମନୋହରୀ ।।୨୪
କନ୍ୟାଙ୍କ ସଙ୍ଗେ ବନମାଳୀ ।
କରନ୍ତି ନାନାରଙ୍ଗେ କେଳି ।।୨୫
ନାରୀଙ୍କ ଆଲିଙ୍ଗନ କାଳେ ।
କୁଚକୁଙ୍କୁମ ବକ୍ଷସ୍ଥଳେ ।।୨୬
ଦେବେ ଆବୋରି ଦଶଦିଶେ ।
ନାନା ସୁବାଦ୍ୟ ଗୀତରସେ ।।୨୭
ସୂତ ମାଗଧ ମହୀତଳେ ।
ବୀଣାଦି ବାଦ୍ୟ କୁତୁହଳେ ।।୨୮
କାମିନୀ ଜଳ ଘେନି କରେ ।
ହସି ସିଞ୍ଚନ୍ତି କୃଷ୍ଣଶିରେ ।।୨୯

Dr. Sudhanshu Sekhar Mishra

କୁବେର ଯେହ୍ନେ ପକ୍ଷୀ ମେଳେ ।
ବିରାଜେ ଜଳକ୍ରୀଡା ସ୍ଥଳେ ।।୩୦
ଚଳେ କୃଷ୍ଣର ନାରୀଜନ ।
ହୃଦରେ ଜଡିତ ବସନ ।।୩୧
କୃଷ୍ଣ ସିଚନ୍ତି କରେ ନୀର ।
ଦିଶଇ ହୃଦୟ ବିକାର ।।୩୨
କାଞ୍ଚନ ପ୍ରାୟ କୁଚ ବର୍ଣ୍ଣେ ।
ଦିଶନ୍ତି ଆରଦ୍ର ବସନେ ।।୩୩
ଓଦା ବସନେ ଉରୁଦେଶ ।
ଅଧିକେ କରଇ ପ୍ରକାଶ ।।୩୪
କବରୀ ମଧ୍ୟେ ପୁଷ୍ପଭାର ।
ହରଷେ ବରଷନ୍ତି ନୀର ।।୩୫
କୃଷ୍ଣଙ୍କୁ ଜିଣିବାର ଆଶେ ।
ଅଧିକେ ସିଞ୍ଚନ୍ତି ହରଷେ ।।୩୬
ମୁଖ କି କନ୍ଦର୍ପ ଲହରୀ ।
ଜଳ ସିଞ୍ଚନ୍ତି ସର୍ବନାରୀ ।।୩୭
ସିଞ୍ଚନ୍ତି ପୁଣପୁଣ ଅଙ୍ଗେ ।
କାମ ବିକାର ନାନାରଙ୍ଗେ ।।୩୮
କରିଣୀ ମଧ୍ୟେ ଯେହ୍ନେ ଗଜ ।
ନାରୀଙ୍କ ମଧ୍ୟେ ଦେବରାଜ ।।୩୯
ନାନା ପ୍ରକାରେ କ୍ରୀଡାରସ ।
କରି ପିନ୍ଧିଲେ ପୀତବାସ ।।୪୦
ଉତ୍ସବ ଗୀତବାଦ୍ୟ ରୋଳେ ।
ଦେବମାନବ ସୁଖ ଭୋଳେ ।।୪୧
ତୀରେ ବିଜୟ ବନମାଳୀ ।
ନାରୀଙ୍କ କର କରେ ଧରି ।।୪୨
ନଟ ନର୍ତ୍ତକୀଗଣ ଚାହିଁ ।
ଆନନ୍ଦମନେ ଭାବଗ୍ରାହୀ ।।୪୩
ଅନେକ ବସ୍ତ୍ର ଅଳଙ୍କାର ।
ତାହାଙ୍କୁ ଦେଲେ ଦାମୋଦର ।।୪୪
କନ୍ୟାଏ ନାନା ରତ୍ନବାସ ।
ନଟଙ୍କୁ ଦେଲେ ହୋଇ ତୋଷ ।।୪୫
ଏମନ୍ତେ କ୍ରୀଡାରସେ ହରି ।
ଜଗମୋହନ ରୂପ ଧରି ।।୪୬
ହରିଲେ ନାରୀଙ୍କର ମନ ।
ବୁଦ୍ଧି ଅହଙ୍କାର ଚେତନ ।।୪୭

କନ୍ୟାଏ ନିଜ ପୁରେ ଯାଇ ।
କୃଷ୍ଣବଦନେ ମନ ଥୋଇ ।।୪୮
ନିମିଷେ ନଦେଖି ମୁରାରି ।
ଜୀବନ ନ ପାରନ୍ତି ଧରି ।।୪୯
ଚିନ୍ତନ୍ତି ସ୍ୱଗୃହେ ତରୁଣୀ ।
ଜଡ ଉନ୍ମତ୍ତ ପ୍ରାୟ ବାଣୀ ।।୫୦
ଯେମନ୍ତ କଲେ ବିପରୀତ ।
କହିବା ଶୁଣ ପରୀକ୍ଷିତ ।।୫୧
ବୃକ୍ଷରେ ପକ୍ଷୀଗଣ ଚାହିଁ ।
ବୋଲନ୍ତି ବାଇ ପ୍ରାୟ ହୋଇ ।।୫୨
କୁରରୀ ଆମ୍ଭବାଣୀ ଶୁଣ ।
କିମ୍ପା ଉନ୍ନିଦ୍ର ତୋ ନୟନ ।।୫୩
ଏ ରାତ୍ରକାଳେ ସର୍ବଜନ ।
ନିଦ୍ରା ମୋହିତେ ଅଚେତନ ।।୫୪
ଆମ୍ଭ ଜୀବନ ଗୋପୀନାଥ ।
ଦେଖ ନିଶ୍ଚିନ୍ତେ ନିଦ୍ରାଗତ ।।୫୫
ତାର ନିବିଡ ଆଲିଙ୍ଗନ ।
ତେଣେ ଯନ୍ତ୍ରିତ ଆମ୍ଭ ମନ ।।୫୬
ଲୋଚନେ ନିଦ୍ରା ନ ମାଡଇ ।
ତୁ ଯେ ଆମ୍ଭର ପ୍ରାୟ ହୋଇ ।।୫୭
ଦେଖିଛୁ କଟାକ୍ଷ ନୟନ ।
ତେଣୁ ଚଞ୍ଚଳ ତୋର ମନ ।।୫୮
ପୁଣି ବୋଲନ୍ତି ଭ୍ରମ ପାଇ ।
ଚକ୍ରବାକୀର ମୁଖ ଚାହିଁ ।।୫୯
ଏ ରାତ୍ରକାଳେ ସ୍ୱାମୀ ସଙ୍ଗ ।
ନ ଲଭି ଦୁଃଖିତ ତୋ ଅଙ୍ଗ ।।୬୦
ଅତି କାରୁଣ୍ୟେ କିମ୍ପା କାନ୍ଦୁ ।
ଦେଖ ଆମ୍ଭର ପ୍ରାଣବନ୍ଧୁ ।।୬୧
ନିଦ୍ରିତେ ନ ପାଇଲୁ ସଙ୍ଗ ।
ଯେମନ୍ତେ ତୋର ସଙ୍ଗଭଙ୍ଗ ।।୬୨
କିମ୍ପାଇ ଆମ୍ଭ ମୁଖ ଚାହୁଁ ।
କି ଅବା ତେଣେ ତୋଷ ହେଉ ।।୬୩
ଆମ୍ଭେ ଯେ ଗୋବିନ୍ଦର ଦାସୀ ।
ତା ପାଦପଦ୍ମର ତୁଳସୀ ।।୬୪
କବରୀ ଭାର ସଜ କରି ।
କଣ୍ଠେ ଜୀବନ ଅଛୁ ଧରି ।।୬୫

ସେମାନ ଇଚ୍ଛା କରୁ ଯେବେ ।
ଦେବୁ ଯେ ତୋତେ ପ୍ରିୟଭାବେ ।।୬୬
କବରୀଭାର ସଜ କର ।
ସେବ ତୋହର ନିଜ ବର ।।୬୭
ପୁଣି ସମୁଦ୍ରକୁ ଅନାଇଁ ।
ବୋଲନ୍ତି କୃଷ୍ଣଭାବ ବହି ।।୬୮
ହେ ନଦୀକାନ୍ତ ହେ ସମୁଦ୍ର ।
ତୁ କିମ୍ପା ଏ ରାତ୍ରେ ଉନ୍ନିଦ୍ର ।।୬୯
ନିଦ୍ରା ନ ଯାଇ ନାଦ କରୁ ।
ତୁ କୃଷ୍ଣକଥା କି ସୁମରୁ ।।୭୦
ତାର ନୟନ ବାଣେ ଛନ୍ନ ।
ଯେମନ୍ତ ଆମ୍ଭର ଜୀବନ ।।୭୧
ସେ ଦୋଷ ତୋତେ କି ବାଧିଲା ।
ନିଶ୍ଚେ ଜାଣିଲୁ କୃଷ୍ଣଲୀଳା ।।୭୨
ପୁଣି ସେ ଚନ୍ଦ୍ରକୁ ଅନାଇଁ ।
ବୋଲନ୍ତି ପ୍ରିୟଭାବ ବହି ।।୭୩
କୁମୁଦବନ୍ଧୁ ତୁ ବୋଲାଉ ।
ମୃଗଲାଞ୍ଛନ ହୃଦେ ବହୁ ।।୭୪
ପୂର୍ବେ ଅର୍ଜିଲା କର୍ମଭୋଗ ।
ଏଣୁ ତୋ ଦେହେ କ୍ଷୟ ରୋଗ ।।୭୫
ନିଜ କରମେ କ୍ଷୀଣ ହେଉ ।
ତୁ କିମ୍ପା ରାତ୍ରେ ଉଦେ ନୋହୁ ।।୭୬
ଆମ୍ଭେ ଯେ କୃଷ୍ଣର ତରୁଣୀ ।
ତାର ମୋହନ କଥା ଶୁଣି ।।୭୭
ଆତ୍ମା ନ ସୁମରି ଯେମନ୍ତେ ।
ତେମନ୍ତେ ଦେଖିଲୁ ଯେ ତୋତେ ।।୭୮
ତୋର ଗୋବିନ୍ଦଭାବେ ମନ ।
ତେଣୁ କି ହୋଇଲୁ ମଉନ ।।୭୯
ମଳୟାନିଳ ଦେଖି ଭ୍ରମେ ।
ବିଶ୍ୱାସେ ବୋଲନ୍ତି ପବନେ ।।୮୦
ଶୁଣି ତୁ କୃଷ୍ଣବାକ୍ୟବନ୍ଧ ।
ଭୁବନେ ବହୁ ମନ୍ଦମନ୍ଦ ।।୮୧
କୃଷ୍ଣଲୀଳାରେ କରୁ ଆଶା ।
ଯେ ଭାବେ ଆମ୍ଭର ଭରସା ।।୮୨
ଆମ୍ଭଙ୍କୁ ଚାହିଁ ମେଘମାଳା ।
ଛଳେ କହନ୍ତି କୃଷ୍ଣଲୀଳା ।।୮୩

Dr. Sudhanshu Sekhar Mishra

ବୋଲନ୍ତି ମେଘକୁ ଅନାଇଁ ।
କୃଷ୍ଣର ମିତ୍ର ଅଟୁ ତୁହି ॥୮୪
ନିଶ୍ଚେ ତୁ କରୁ କୃଷ୍ଣେ ଧ୍ୟାନେ ।
ଯା ହୃଦେ ଶ୍ରୀବତ୍ସର ଚିହ୍ନ ॥୮୫
ଆମ୍ଭର ପ୍ରାୟ ପ୍ରେମବନ୍ଧେ ।
ଚିନ୍ତା ତୁ କରୁ କୃଷ୍ଣପାଦେ ॥୮୬
ହୃଦେ ନିବିଡ ପ୍ରେମଭରେ ।
ଆମ୍ଭେ ଯେମନ୍ତ ଚକ୍ଷୁଦ୍ୱାରେ ॥୮୭
ନିତ୍ୟେ ଲୋତକ କୁଚେ ସିଞ୍ଚୁ ।
ତୋତେ ତେମନ୍ତ ପ୍ରାୟ ପାଞ୍ଚୁ ॥୮୮
ତୋ ହୃଦେ କୃଷ୍ଣପ୍ରେମ ଭରା ।
ତେଣୁ ତୁ ସିଞ୍ଚୁ ଜଳଧାରା ॥୮୯
ସୁମରି ପୁଣ ପୁଣ ସୁଖ ।
ତାଙ୍କ ପ୍ରସଙ୍ଗ ମହାଦୁଃଖ ॥୯୦
କୋକିଳନାଦ କର୍ଣ୍ଣେ ଶୁଣି ।
ବୋଲନ୍ତି କୃଷ୍ଣର ତରୁଣୀ ॥୯୧
ଶୁଣ କୋକିଳ ଆମ୍ଭ ବାଣୀ ।
ଆମ୍ଭେ ତୋହର ଭାବ ଜାଣି ॥୯୨
ତେଣୁ ତୁ ଦୁଃଖୀ ଆମ୍ଭ ଦୁଃଖେ ।
କୋମଳବାଣୀ କହୁ ମୁଖେ ॥୯୩
କିସ କରିବୁ କହ ତୋର ।
ତୁ ଆମ୍ଭ ଜୀବନ ସୋଦର ॥୯୪
ପର୍ବତଶୃଙ୍ଗ ଚାହିଁ ପୁଣି ।
ବୋଲନ୍ତି କୃଷ୍ଣର ତରୁଣୀ ॥୯୫
ତୁ ମହୀଧର ବଡ ଧନ୍ୟ ।
ନ ଚଳୁ ନ ବୋଲୁ ବଚନ ॥୯୬
ଉଦାର ବୁଦ୍ଧି ତୋର ଜାଣି ।
ଗୁପତେ ଚିନ୍ତୁ ଚକ୍ରପାଣି ॥୯୭
ଆମ୍ଭେ ଗୋବିନ୍ଦପାଦ ଯେହ୍ନେ ।
କୁଚେ ଲଗାଉ ସାବଧାନେ ॥୯୮
ତୁହି ତେମନ୍ତ କରୁ ଆଶ ।
ତେଣୁ ତୁ ଆମ୍ଭର ବିଶ୍ୱାସ ॥୯୯
ନିକଟେ ନଦୀସ୍ରୋତ ଦେଖି। ।
ଭାବେ ବୋଲନ୍ତି ଚନ୍ଦ୍ରମୁଖୀ ॥୧୦୦
ପ୍ରିୟବିଯୋଗେ ସଖି ତୋର ।
ଶୁଖିଲା ବେନି ତଟୁଁ ନୀର ॥୧୦୧

କମଳ ଉପହାର କରୁ ।
ସ୍ୱାମୀର ସଙ୍ଗ ତୁ ସୁମରୁ ॥୧୦୨
ଦେଖ ଆମ୍ଭର ମନ ଛନ୍ନ ।
ନ ଦେଖି କୃଷ୍ଣର ବଦନ ॥୧୦୩
ଦୁଃଖ ହୃଦୟେ ଦିନ ବଞ୍ଚୁ ।
ଆମ୍ଭର ପ୍ରାୟ ତୋତେ ପାଞ୍ଚୁ ॥୧୦୪
ପୁଣି ଚାହାନ୍ତି ଦଶଦିଶେ ।
ଦେଖିଲେ ରାଜହଂସ ପାଶେ ॥୧୦୫
କୃଷ୍ଣର ଦୂତ ପ୍ରାୟ ମଣି ।
ବୋଲନ୍ତି ପ୍ରିୟଭାବେ ବାଣୀ ॥୧୦୬
ଭଲେ ଅଇଲୁ ହଂସ ପଥେ ।
ଆମ୍ଭର ପ୍ରିୟ ଘେନି ଚିତ୍ତେ ॥୧୦୭
ଆସ ତୁ କ୍ଷୀର କର ପାନ ।
ଆମ୍ଭ ସମୀପେ ତୋ ଆସନ ॥୧୦୮
ବସି ତୁ କହ କୃଷ୍ଣକଥା ।
ତୋ ତହିଁ ବିଶ୍ୱାସ ବ୍ୟବସ୍ଥା ॥୧୦୯
ଜାଣିଲୁ ଦୂତ ବୋଲି ତୋତେ ।
ଶ୍ରମ ପାଇଲୁ ଆସି ପଥେ ॥୧୧୦
ଭଲେ କି ଛନ୍ତି ଦାମୋଦର ।
କହ ତୁ କପଟ ନକର ॥୧୧୧
କପଟ ହୃଦୟ ତାହାର ।
ଚଞ୍ଚଳ ସୁହୃଦ ବେଭାର ॥୧୧୨
ଆମ୍ଭର ଭାବ କି ସୁମରେ ।
ଏ ମାୟା ସଂସାରେ ସାଗରେ ॥୧୧୩
କିବା କରିବୁ ଯିବୁ କାହିଁ ।
ତା ତହୁଁ ଆନଗତି ନାହିଁ ॥୧୧୪
ଅମୃତ ବଚନ ତାହାର ।
ଶୁଣି ଶ୍ରବଣ ସୁଖକର ॥୧୧୫
ସକାମ କରେ ଆମ୍ଭ ମନ ।
ତା ଭାବ ଛାଡିବୁ କେସନ ॥୧୧୬
ଏମନ୍ତେ କୃଷ୍ଣର କାମିନୀ ।
ଚିତ୍ତେ ନିର୍ମଳ ଭାବ ଘେନି ॥୧୧୭
ଯୋଗେଶ୍ୱରଙ୍କୁ ଅଗୋଚର ।
ଅଭୟ ଚରଣ ଯାହାର ॥୧୧୮
ସେ ହରିପାଦେ ଭାବ କଲେ ।
ଜନ୍ମ ମରଣୁଁ ନିସ୍ତରିଲେ ॥୧୧୯

ପରମପଦେ ତାଙ୍କ ଗତି ।
ଏବେ ହୋ ଶୁଣ ନରପତି ॥୧୨୦
ସେ ହରିଗୁଣ ଶ୍ରୁତିପଥେ ।
ପଶି କାମିନୀଗଣ ଚିତ୍ତେ ॥୧୨୧
ବଳେ କରଇ କାମମୟେ ।
ଯେ ଭାବେ ବସି ନିତ୍ୟେ ଧାୟେ ॥୧୨୨
ତା ରୂପ ଚକ୍ଷୁଦ୍ୱାରେ ଦେଖି ।
କାମିନୀ କେ ନୋହିବେ ସୁଖୀ ॥୧୨୩
ତାହାଙ୍କୁ ସ୍ୱାମୀପଣେ ପାଇ ।
ପାଦେ ସେବନ୍ତି ଗୃହେ ଥାଇ ॥୧୨୪
ତାହାଙ୍କ ତପ କେ ବର୍ଣ୍ଣିବ ।
ଯାହା ବାଞ୍ଛନ୍ତି ବ୍ରହ୍ମା ଶିବ ॥୧୨୫
ଏମନ୍ତ ପ୍ରଭୁ ବନମାଳୀ ।
ବେଦଉଚିତେ ଧର୍ମ ପାଳି ॥୧୨୬
ଗୃହସ୍ଥିଧର୍ମ ଅନୁମତେ ।
ଚତୁରବର୍ଗ ସିଦ୍ଧି ଅର୍ଥେ ॥୧୨୭
ଷୋଳସହସ୍ର ଶତେ ନାରୀ ।
ଗୃହେ ରମିଲେ ନରହରି ॥୧୨୮
ନାରୀଙ୍କ ମଧ୍ୟେ ଅଷ୍ଟଦେବୀ ।
କମଳା ଅଂଶେ କୃଷ୍ଣ ସେବି ॥୧୨୯
ଏ ଆଦି ସକଳ ଯୁବତୀ ।
ଗୋବିନ୍ଦ ଗୃହେ ପୁତ୍ରବତୀ ॥୧୩୦
କନ୍ୟାକେ ଦଶଦଶ ସୁତ ।
ଏକ ଦୁହିତା ହୋଏ ଜାତ ॥୧୩୧
ପୁତ୍ରଙ୍କ ମଧ୍ୟେ ସାଧୁ ଧୀର ।
ଉତ୍ତମ ଅଷ୍ଟାଦଶ ବୀର ॥୧୩୨
ସୁଯୋଦ୍ଧା ରଥୀ ଅନୁପମ ।
ଶୁଣ ତୁ ପୁତ୍ରଙ୍କର ନାମ ॥୧୩୩
ପ୍ରଦ୍ୟୁମ୍ନ ଦୀପ୍ତିମାନ ଭାନୁ ।
ଶାମ୍ବ ମଧୁ ଯେ ବୃହଦ୍‌ଭାନୁ ॥୧୩୪
ଚିତ୍ରଭାନୁ ବୃକ ଅରୁଣ ।
ଚିତ୍ରବାହୁ ଯେ ସୁନନ୍ଦନ ॥୧୩୫
ପୁଷ୍କର ବେଦବାହୁ ବେନି ।
ଚଉଦ ଶ୍ରୁତଦେବ ଘେନି ॥୧୩୬
ବିରୂପ କବି ଯେ ନ୍ୟଗ୍ରୋଧ ।
ପ୍ରଦ୍ୟୁମ୍ନ ପୁତ୍ର ଅନିରୁଦ୍ଧ ॥୧୩୭

Dr. Sudhanshu Sekhar Mishra

ଏହାଙ୍କ ମଧ୍ୟେ ଜ୍ୟେଷ୍ଠଭ୍ରାତ ।
ଉତ୍ତମ ରୁକ୍ମିଣୀର ସୁତ ।।୧୩୮
କୃଷ୍ଣର ପ୍ରାୟେକ ଦିଶଇ ।
ରୁକ୍ମୀ ଯେ ରୁକ୍ମିଣୀର ଭାଇ ।।୧୩୯
ତାର ଦୁହିତା ତାକୁ ଦେଲା ।
ତାହାର ଅନିରୁଦ୍ଧ ବଳା ।।୧୪୦
ରୁକ୍ମୀପୁତ୍ର ନାରୀ ଉଦରେ ।
କନ୍ୟାଏ ଥିଲା ତାର ପୁରେ ।।୧୪୧
ପ୍ରଦ୍ୟୁମ୍ନ ପୁତ୍ରେ ତାହା ବରି ।
ବିଭା କରାଇଲେ ମୁରାରି ।।୧୪୨
ବଜ୍ର ତାହାର ଠହୁଁ ଜାତ ।
ଏବେ ହେ ଶୁଣ ପରୀକ୍ଷିତ ।।୧୪୩
ମୂଷଳ ଅବଶେଷ ସେହୁ ।
ତାର କୁମର ପ୍ରତିବାହୁ ।।୧୪୪
ସୁବାହୁ ତା ଠହୁଁ ଜନମ ।
ତାର କୁମର ଶାନ୍ତସେନ ।।୧୪୫
ତାହାର ଶତସେନ ବଳା ।
ସେଠାରୁ ଯଦୁବଂଶ ଗଲା ।।୧୪୬
ସେ ଯଦୁବଂଶେ ମହୀତଳେ ।
ଯେତେ କୁମର ଉପୁଜିଲେ ।।୧୪୭
ଏ ବଂଶେ ଯେତେକ ସନ୍ତତି ।
ନିର୍ଦ୍ଧନ ଅପୁତ୍ରୀ ନୁହଁନ୍ତି ।।୧୪୮
ଅକାଳେ ନୁହଁନ୍ତି ବିନାଶ ।
ନାହିଁ ପାପିଷ୍ଠ ଅଳ୍ପାୟୁଷ ।।୧୪୯
ଏ ହରିବଂଶର ମହିମା ।
କେ କହିପାରେ ଗୁଣସୀମା ।।୧୫୦
ଯେତେ ବାଳକ ଉପୁଜିଲେ ।
କେ ଗଣିପାରେ ତାହା ଭଲେ ।।୧୫୧
ଶୁଣ ତା କହିବା ପ୍ରକଟି ।
ଅଠାଶୀସହସ୍ର ତିନିକୋଟି ।।୧୫୨
ଏତେ ଆଚାର୍ଯ୍ୟ ବିଦ୍ୟାଗୁରୁ ।
ଏଣୁ କେ ସଂଖ୍ୟା କରିପାରୁ ।।୧୫୩
ଅୟୁତ ନିୟୁତ ପ୍ରମାଣି ।
କେ ପାରୁ ହରିବଂଶ ଗଣି ।।୧୫୪
ପୂର୍ବେ ଯେ ଦେବାସୁର ରଣେ ।
ଯେ ଅବା ମଲେ ଯାତୁଧାନେ ।।୧୫୫

ପୁଣି ମନୁଷ୍ୟ ଦେହ ବହି ।
ଅଶେଷ ମହୀତଳେ ହୋଇ ।।୧୫୬
ତାହାଙ୍କ ସଂହାରଣ ଅର୍ଥେ ।
ବିଷ୍ଣୁର ଅଂଶ ଏ ଜଗତେ ।।୧୫୭
ମନୁଷ୍ୟେ ହୋଇ ଅବତାର ।
ହରିଲେ ଅବନୀର ଭାର ।।୧୫୮
ଦେବେ ସକଳେ ଆଜ୍ଞା ପାଇ ।
ଯାଦବବଂଶେ ଜାତ ହୋଇ ।।୧୫୯
ଏକ ଉତ୍ତର ଶତବଂଶ ।
ଧରଣୀ ମଧ୍ୟେ କଲେ ନାଶ ।।୧୬୦
ଯାଦବବଂଶେ ହୋଇ ଜନ୍ମ ।
ଯହିଁ ସେ କଲେ ଯେତେ କର୍ମ ।।୧୬୧
ଆସନ ଶୟନ ଭୋଜନ ।
ଯଦୁଙ୍କ ତୁଲେ ଭଗବାନ ।।୧୬୨
ଏମନ୍ତେ ଦ୍ୱାରାବତୀପୁର ।
ସର୍ବସମ୍ପଦ ସୁଖସାର ।।୧୬୩
ଅଖଣ୍ଡସୁଖ ଭୋଗ କରେ ।
ଦ୍ୱାରକାପୁରବାସୀ ।।୧୬୪
ଏମନ୍ତେ ସାତବଂଶ ଜନ ।
ସ୍ୱଧର୍ମେ ବଞ୍ଚନ୍ତି ସେଦିନ ।।୧୬୫
ଯହିଁ ସେ ରାମ କୃଷ୍ଣ ବେନି ।
ସୁକୃତକର୍ମ ଅବଧାନୀ ।।୧୬୬
ସକଳତୀର୍ଥ ଯଦୁକୁଳ ।
ଯହିଁ ବିଜୟ ଆଦିମୂଳ ।।୧୬୭
ପାଦଉଦକ ଗଙ୍ଗାନୀର ।
କମଳା ସେବେ ନିରନ୍ତର ।।୧୬୮
ଯା ନାମ ସର୍ବଦେବ ଘୋଷେ ।
ଶ୍ରବଣେ ଅମଙ୍ଗଳ ନାଶେ ।।୧୬୯
ମନୁଷ୍ୟଭାବ କର୍ମ କରି ।
ଅନ୍ତେ ସକଳ ଦେହେ ଭରି ।।୧୭୦
ଯାହାର କାଳଚକ୍ର ହସ୍ତେ ।
କେ ଜାଣି ପାରେ ତା ଜଗତେ।।୧୭୧
ଦେବକୀ ଗର୍ଭେ ଅବତରି ।
ତେବେ ଧରଣୀଭାର ହରି ।।୧୭୨
ସ୍ଥାବର ଆଦି ଯେତେ ଜନ୍ତୁ ।
ଖଣ୍ଡିଲେ ତାହାଙ୍କର ନାମ ।।୧୭୩

ଶ୍ରୀମୁଖ ଚାହିଁ ଗୋପନାରୀ ।
କାମ ଗରଳ ସେ ନିବାରି ।।୧୭୪
ସେ ହରି କଲେ କର୍ମ ଯେତେ ।
ସଂକ୍ଷେପେ କହିଲି ମୁଁ ତୋତେ ।।୧୭୫
ଏ କଥା କର୍ଣ୍ଣେ ଯେ ଶୁଣନ୍ତି ।
ଆନନ୍ଦେ ହୃଦୟେ ଗୁଣନ୍ତି ।।୧୭୬
ଜନ୍ମ ମରଣ ତାଙ୍କ ନାହିଁ ।
ଯେ ନିତ୍ୟେ କୃଷ୍ଣଲୀଳା ଗାଇ ।।୧୭୭
ଅମୃତ ଭାଗବତ ବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୧୭୮
ବୋଲଇ ଦାସ ଜଗନ୍ନାଥ ।
ସୁଜନ ହିତେ ଭାଗବତ ।।୧୭୯
ଦଶମେ କୃଷ୍ଣର ମହିମା ।
ଯାହା ନ ଜାଣେ ଶିବ ବ୍ରହ୍ମା ।।୧୮୦
ସେ ହରି ଆଜ୍ଞା ଶିରେ ବହି ।
ଗୀତେ ପାରିଲି ଯାହା କହି ।।୧୮୧
ପ୍ରାକୃତ ଭାଷା ଏ ପ୍ରବନ୍ଧ ।
ଫିଟେ ଅନ୍ଧାର – ଭବବନ୍ଧ ।।୧୮୨
ମୁଁ ଛାର ହୀନ ମୂଢ଼ମତି ।
କୃଷ୍ଣଚରଣେ ହେଉ ମତି ।।୧୮୩
ଦଶମସ୍କନ୍ଧ ପୁଣ୍ୟବାଣୀ ।
ଶୁଣି ସଂସାରୁ ତର ପ୍ରାଣୀ ।।୧୮୪

ଇତି ଶ୍ରୀମଦ୍ ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ
ଶ୍ରୀକୃଷ୍ଣ ଚରିତ ଅନୁବର୍ଣ୍ଣନଂ ନାମ
ଷଣ୍ଣବତିତମ ଅଧ୍ୟାୟଃ ।।

---

Dr. Sudhanshu Sekhar Mishra

# ଅତିବଡ଼ୀ ଜଗନ୍ନାଥଦାସକୃତ

# ଶ୍ରୀମଦ୍‌ଭାଗବତ

## ଏକାଦଶସ୍କନ୍ଧ

Dr. Sudhanshu Sekhar Mishra

# ଏକାଦଶ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ନମଇଁ ନୃସିଂହ ଚରଣ ।
ଅନାଦି ପରମ କାରଣ ॥୧
ନୀଳଜୀମୂତ କଳେବର ।
ଦେବମାନବେ ଅଗୋଚର ॥୨
ମାୟା ସଂସାରେ ଯାର ଖେଳା ।
ଯା' ନାମ ଭବଜଳେ ଭେଳା ॥୩
କରୁଣା କଟାକ୍ଷ ପ୍ରକାଶେ ।
ଭକତଜନ ଦୁଃଖ ନାଶେ ॥୪
ସେ ପାଦେ ଶରଣ ମୋହର ।
ହେଲେ ତରିବି ତମଘୋର ॥୫
ସେ ହରି ଚରିତ ପ୍ରକାଶ ।
ମୁକ୍ତି ଲକ୍ଷଣ ଏକାଦଶ ॥୬
ଏ ଭାଗବତ ଧର୍ମ କଥା ।
ହେଲେ ଖଣ୍ଡଇ ଭବବ୍ୟଥା ॥୭
ନାରଦ ବସୁଦେବ ବାଣୀ ।
ନିମି ରାଜନେ ନବମୁନି ॥୮
ଉଦ୍ଧବ ନିସ୍ତାରଣ ବାଣୀ ।
ଯାହା କହିଲେ ଚକ୍ରପାଣି ॥୯
ସେ କଥା ପ୍ରାକୃତେ ପ୍ରକାଶ ।
ଆରମ୍ଭେ ଜଗନ୍ନାଥ ଦାସ ॥୧୦
ବ୍ୟାସନନ୍ଦନ ମୁଖୁଁ ଶୁଣି ।
ନିର୍ମଳ ଭାଗବତ ବାଣୀ ॥୧୧
ସାଧୁସଙ୍ଗମେ ଗଙ୍ଗାତୀରେ ।
ଶୁକ ଚରଣ ଧରି କରେ ॥୧୨
ଆନନ୍ଦେ କରି ଅଶ୍ରୁପାତ । ।
ବୋଇଲେ ଅଭିମନ୍ୟୁ ସୁତ ॥୧୩

ପରିକ୍ଷିତ ଉବାଚ

ଭୋ ମୁନି ନମେ ତୋ' ପୟରେ।
ମୋତେ ଉଦ୍ଧର ଏ ସଂସାରେ ॥୧୪
କହ ଶ୍ରୀକୃଷ୍ଣ ଗୁଣମାନ ।
ପୁଣି କି କଲେ ଭଗବାନ ॥୧୫

ଶୁକ ଉବାଚ

କହନ୍ତି ବ୍ୟାସଙ୍କ ତନୁଜ ।
ଶୁଣ ପରୀକ୍ଷ ମହାରାଜ ॥୧୬
ଦେବଙ୍କ ବ୍ୟାକୁଳେ ମୁରାରି ।
ଅବନୀ ତଳେ ଅବତରି ॥୧୭
ଅଂଶେ ମନୁଷ୍ୟରୂପ ଧରି ।
ଯାଦବ କୁଳେ ରାମହରି ॥୧୮
ଦୁଷ୍ଟ ଦନୁଜଗଣ ମାରି ।
ଅବନୀଭାରା ହେଲେ ହରି ॥୧୯
କୁରୁ ପାଣ୍ଡବ ମଧ୍ୟେ ହରି ।
ମାୟା କନ୍ଦଳେ ଭେଦ କରି ॥୨୦
କପଟ ପଶା ବନବାସ ।
ଆକର୍ଷି ଦ୍ରୌପଦୀର କେଶ ॥୨୧
ଭୀମକୁ ବିଷଲଡ୍ଡୁ ଦେଇ ।
ଜତୁର ଘରେ ଅଗ୍ନି ଦାହି ॥୨୨
ଏ ଆଦି ଯେତେ କଷ୍ଟମାନ ।
ପାଣ୍ଡବେ ଦେଲା ଦୁର୍ଯ୍ୟୋଧନ ॥୨୩
ସେ ଅପମାନେ କ୍ରୋଧ ବହି ।
ସଙ୍ଗତେ ଘେନି ପାଞ୍ଚଭାଇ ॥୨୪
ନିମିତ୍ତ କରି ତା'ଙ୍କୁ ହରି ।
ଅନେକ ଅକ୍ଷୌହିଣି ମାରି ॥୨୫
ଭାରା ନିବାରି ଭଗବାନ ।
ଅନ୍ତେ ଚଳିଲେ ନିଜ ସ୍ଥାନ ॥୨୬
ଯାଦବେ କୃଷ୍ଣ ଭୁଜବଳେ ।
ଅଜେୟ ଏ ମହୀମଣ୍ଡଳେ ॥୨୭
ତାହାଙ୍କୁ ସଙ୍ଗେ ଘେନି କରି ।
ଦୁଷ୍ଟରାଜାଙ୍କ ପ୍ରାଣ ହରି ॥୨୮
ମନରେ କରନ୍ତି ବିଚାର ।
ଯାବତ ଛନ୍ତି ଯଦୁବୀର ॥୨୯
ତାବତ ପୃଥିବୀର ଭାର ।
ଉଶ୍ୱାସ କାହିଁ ଅଛି ଆଉ ॥୩୦

ଦେବତା ଆଦି ନାଗ ନର ।
ଏଣେ ଏ ନୁହଁନ୍ତି ସଂହାର ॥୩୧
ମୋର ବିଭବ ମୋର ହସ୍ତେ ।
ନାଶିବା ନୁହଇ ଉଚିତେ ॥୩୨
କଳି ଭିଆଇ ନିଜବଂଶେ ।
ସଂହାରି ବିଶ୍ରମିବି ଶେଷେ ॥୩୩
ବନୁ ଅନଳ ଜାତ ହୋଇ ।
ଯେସନ୍ତେ ଲିଭଇ ବନ ଦହି ॥୩୪
ଶୁଣ ରାଜନ ପରିକ୍ଷିତ ।
ଏମନ୍ତ ବିଚାରି ଅଚ୍ୟୁତ ॥୩୫
ନିମିତ୍ତ ବିପ୍ରଶାପ କରି ।
କନ୍ଦଳେ ନିଜବଂଶ ମାରି ॥୩୬
ଲାବଣ୍ୟରୂପେ ଜନ ମୋହି ।
ପ୍ରାଣୀ ନୟନେ ସୁଖ ଦେଇ ॥୩୭
ସେ ରୂପ କରି ଅନ୍ତର୍ଦ୍ଧାନ ।
ହରିଲେ ପ୍ରାଣୀଙ୍କର ମନ ॥୩୮
କୃଷ୍ଣ କୋମଳ ମଞ୍ଜୁବାଣୀ ।
ଯେ ଅବା କର୍ଣ୍ଣେ ଥିଲେ ଶୁଣି ॥୩୯
ତେଣେ ତାହାଙ୍କ ମନ ହରି ।
ଅନ୍ତର ହୋଇଲେ ମୁରାରି ॥୪୦
କୃଷ୍ଣର ପାଦପଦ୍ମ ଚିହ୍ନ ।
ସୁନ୍ଦର ମନ୍ଥର ଗମନ ॥୪୧
ସେ ପାଦପଦ୍ମେ ଦେଇ ମନ ।
ଯେ ଅବା ଦେଖିଥିଲେ ଜନ ॥୪୨
ସେ ରୂପେ ତା'ଙ୍କ ମନ ହରି ।
ନିଜ ଭୁବନେ ବିଜେ କରି ॥୪୩
କୃଷ୍ଣର ଯଶ ଗୁଣ ଯେତେ ।
ସଂସାରେ ଶୁଣି ଗୁଣି ଚିତ୍ତେ ॥୪୪
ପ୍ରାଣୀ ହୋଇବେ ଭବୁ ପାର ।
ଏମନ୍ତ ମହିମା ଯାହାର ॥୪୫
ସେ ରୂପ କଲେ ଅନ୍ତର୍ଦ୍ଧାନ ।
ହରି ଚଳିଲେ ନିଜ ସ୍ଥାନ ॥୪୬

Dr. Sudhanshu Sekhar Mishra

ଶୁକ ଚରଣତଳେ ପଡ଼ି ।
କହେ ପରୀକ୍ଷ କରଯୋଡ଼ି ॥୪୭

ପରିକ୍ଷିତ ଉବାଚ

ଅଖଣ୍ଡ ନିଜବଂଶ କୋପେ ।
କିମ୍ବା ହରିଲେ ବିପ୍ରଶାପେ ॥୪୮
ଯେ ଯଦୁବଂଶ ମହୀତଳେ ।
କ୍ଷୟ ନୁହଁନ୍ତି ରିପୁବଳେ ॥୪୯
ଯାହାର ସ୍ନେହ ଅନୁବନ୍ଧେ ।
ଈଶ୍ୱର ଖେଳଇ ଆନନ୍ଦେ ॥୫୦
ଯାଦବେ ବିପ୍ର ଗୁରୁପାଦେ ।
ସେବନ୍ତି ବେଦବିଧି ବାଦେ ॥୫୧
ସେ ବ୍ରହ୍ମଶାପ ନରହରି ।
ହେଲେ ପାରଇ ଆନ କରି ॥୫୨
ସର୍ବ ସମ୍ପଦ ନିଜପୁରୀ ।
ମାୟାର ବଳେ ଭେଦ କରି ॥୫୩
କିମ୍ପା ଗୋବିନ୍ଦ ସଂହାରିଲେ ।
ନିଜ ଭୁବନେ ବିଜେ କଲେ ॥୫୪
ଯାଦବେ ଏକଆତ୍ମା ହୋଇ ।
କିପାଁ କନ୍ଦଳ କଲେ ସେହି ॥୫୫
କି ଶାପ କି ଅବା କାରଣ ।
ଏ ସର୍ବ ମୋହର ପ୍ରଶନ ॥୫୬
ଭୋ ମୁନି କହ ତୋଷମନେ ।
ଏମନ୍ତ ରାଜାର ବଚନେ ॥୫୭

ଶୁକ ଉବାଚ

ବୋଲନ୍ତି ବ୍ୟାସମୁନି ସୁତ ।
ଶୁଣ ହୋ କୃଷ୍ଣର ଚରିତ ॥୫୮
ଜନମୋହନ ମାୟାଧର ।
ପ୍ରକାଶି ନର କଳେବର ॥୫୯
ନାନା ବିଚିତ୍ରକର୍ମ କରି ।
କନ୍ଦଳେ ନିଜବଂଶ ମାରି ॥୬୦
କାହାର ସାଧ୍ୟ ଏ ବେଭାର ।
ଶୁଣ ସୁମନେ ନୃପବର ॥୬୧
କଳି କଳୁଷ ନିବାରଣ ।
ସଂସାରେ ସ୍ଥାପି ଯଶଗୁଣ ॥୬୨
ଏବେ ଗୋବିନ୍ଦ କଲେ ଯେତେ ।
କହିବା ଶୁଣ ଏକଚିତ୍ତେ ॥୬୩
ଯାଦବବଂଶ ନାଶ ଅର୍ଥେ ।
ଗୋବିନ୍ଦ ବିଚାରିଲେ ଚିତ୍ତେ ॥୬୪
ବିପ୍ରେ ଯେ ଥିଲେ ନିଜ ଦେଶେ ।
କୃଷ୍ଣର ଦରଶନ ଆଶେ ॥୬୫
ବିଶ୍ୱାମିତ୍ରଙ୍କୁ ଆଗ କରି ।
ଅସିତ କଣ୍ୱ ବ୍ରହ୍ମଚାରୀ ॥୬୬
ବଶିଷ୍ଠ ନାରଦ ବିଶେଷି ।
ଭୃଗୁ ଅଙ୍ଗିରା ଅତ୍ରିଋଷି ॥୬୭
ଦୁର୍ବାସା କଶ୍ୟପଙ୍କୁ ଘେନି ।
ଶ୍ରୀବାମଦେବ ମହାମୁନି ॥୬୮
ଶ୍ରମେ ଚାଲନ୍ତି ବନପଥେ ।
ମିଳିଲେ ପିଣ୍ଡାରକ ତୀର୍ଥେ ॥୬୯
ଏଣେ ଯେ କୃଷ୍ଣର କ୍ରମରେ ।
ଆନନ୍ଦେ ସମୁଦ୍ରର ତୀରେ ॥୭୦
ସକଳେ ଏକସ୍ଥାନେ ମିଳି ।
ରଙ୍ଗେ କରନ୍ତି ନାନାକେଳି ॥୭୧
ଶାମ୍ବକୁ ନାରୀବେଶ କରି ।
ଅନେକ ଅଳଙ୍କାର ଭରି ॥୭୨
ପ୍ରସବ ଗର୍ଭ ପ୍ରାୟ କରି ।
ଉଦରେ ଲୌହପାତ୍ର ଭରି ॥୭୩
ଚାଲଇ ଚରଣ ମନ୍ଥରେ ।
ଶ୍ରମେ ଘୂର୍ମିତ କଳେବରେ ॥୭୪
ମୁନିଙ୍କି ଦେଖି ଲଜ୍ଜା ପାଇ ।
ଅନ୍ତରେ ଅଧୋମୁଖ ହୋଇ ॥୭୫
ରହିଲା ଲତା ଅଭ୍ୟନ୍ତରେ ।
ଏମନ୍ତେ କୃଷ୍ଣର କ୍ରମରେ ॥୭୬
ମୁନିଙ୍କ ପାଶେ ଯାଇ ଧୀରେ ।
କର ଅଞ୍ଜଳି ଦେଇ ଶିରେ ॥୭୭
କୋମଳ ମଧୁର ବଚନେ ।
ବୋଲନ୍ତି ଶୁଣ ବିପ୍ରଜନେ ॥୭୮
ଯାଦବ କୁଳବଧୂ ଏହି ।
ଅନେକ ଦିନୁ ଗର୍ଭ ବହି ॥୭୯
ପ୍ରସବ ନୋହେ କି କାରଣେ ।
ପୁଚ୍ଛିଲୁ ତୁମ୍ଭର ଚରଣେ ॥୮୦
ଚଳି ନ ପାରେ ଶ୍ରମଭାଗେ ।
ଲାଜେ ନ କହେ ତୁମ୍ଭ ଆଗେ ॥୮୧
ତୁମ୍ଭେ ସର୍ବଜ୍ଞ ମୁନିବର ।
କି ଅଛି ଗର୍ଭରେ ଏହାର ॥୮୨
ପୁତ୍ର ଦୁହିତା କିବା ଜାତ ।
ମାୟା ନ କରି କହ ସତ ॥୮୩
ଶୁଣି ସେ କପଟ ବଚନ ।
କୋପେ ବୋଲନ୍ତି ମୁନିଜନ ॥୮୪
ଏ ନାରୀ ଗର୍ଭବାସ ବାଣୀ ।
ଆମ୍ଭେ ଜାଣିଲୁ ପରିମାଣି ॥୮୫
ଏହାର ଗର୍ଭ ହେବ କାଳ ।
ନିଷ୍ଠୁର ଲୌହର ମୂଷଳ ॥୮୬
ଆଜ ଏ ଗର୍ଭ ପ୍ରସବିବ ।
ତୁମ୍ଭର ବଂଶ ବିନାଶିବ ॥୮୭
କୁଳ ସମୂଳେ କରି ନାଶ ।
ଭୂମିରେ ଯେତେ ଯଦୁବଂଶ ॥୮୮
ଏମନ୍ତ କହି ଗଲେ ମୁନି ।
କୃଷ୍ଣକ୍ରମରେ ତାହା ଶୁଣି ॥୮୯
ବଜ୍ର ପଡ଼ିଲା ଯେହ୍ନେ ମୁଣ୍ଡେ ।
ଶାମ୍ବକୁ ଘେନି ରାଜଦାଣ୍ଡେ ॥୯୦
ତକ୍ଷଣେ ଲୌହପାତ୍ର ଫେଇ ।
ପେଟ ଖୋଜନ୍ତି ହସ୍ତ ଦେଇ ॥୯୧
କର୍କଶ ପିଙ୍ଗଳ ପିଚ୍ଛିଳ ।
ଦେଖିଲେ ଲୌହର ମୂଷଳ ॥୯୨
ଗର୍ଭୁ ପଡ଼ିଲା ବଜ୍ର ପ୍ରାୟେ ।
ଦେଖି କମ୍ପିଲେ କୃଷ୍ଣପୋଏ ॥୯୩
ଲୌହମୂଷଳ ତେଜଭରେ ।
ଚକ୍ଷୁ ବୁଜିଲେ ବେନିକରେ ॥୯୪
ବୋଲନ୍ତି କଲୁ ମନ୍ଦକର୍ମ ।
କିବା ବୋଲିବେ କୃଷ୍ଣରାମ ॥୯୫
ଏମନ୍ତେ ଶ୍ରୀକୃଷ୍ଣର ସୁତେ ।
ଲୌହମୂଷଳ ଘେନି ହସ୍ତେ ॥୯୬
ଉଗ୍ରସେନର ସଭାତଳେ ।
ମିଳିଲେ ହୃଦୟ ବ୍ୟାକୁଳେ ॥୯୭
ଲୌହମୂଷଳ ତଳେ ଥୋଇ ।
ବୋଲନ୍ତି ସଭାମୁଖ ଚାହିଁ ॥୯୮

Dr. Sudhanshu Sekhar Mishra

ଆମ୍ଭେ ଯେ କ୍ରୀଡ଼ା କଉତୁକେ ।
ଖେଳନ୍ତେ ତୀର୍ଥ ପିଣ୍ଡାରକେ ॥୯୯
ଶାମ୍ବକୁ ନାରୀବେଶ କଲି ।
ଉଦରେ ଲୌହପାତ୍ର ଭରି ॥୧୦୦
ମୁନିଙ୍କି ପଚାରିଲୁ ଭାବେ ।
ଗର୍ଭ ପ୍ରସବ ପ୍ରସ୍ତାବେ ॥୧୦୧
ଶୁଣି କୋପିଲେ ମୁନିଜନେ ।
ବନ-ଗହନ-ପଥ ଶ୍ରମେ ॥୧୦୨
ବୋଇଲେ ଗର୍ଭେ ଅଛି କାଳ।
ନିଷ୍ଠୁର ଲୌହର ମୂଷଳ ॥୧୦୩
ଭୂମିରେ ଯଦୁବଂଶ ଯେତେ ।
ଏ ଲୌହେ ମରିବେ ସମସ୍ତେ॥୧୦୪
ନିର୍ମୂଳ କରି ଯଦୁକୁଳ ।
ଏ ଜାତ ଲୌହର ମୂଷଳ ॥୧୦୫
ତକ୍ଷଣେ ଗର୍ଭ ଫେଇ ଦେଖି ।
ଭୟେ ବୁଜିଲୁ ବେନିଆଖି ॥୧୦୬
ଏମନ୍ତେ କହି ସଭାମଧ୍ୟେ ।
କୁମରେ ବସିଲେ ବିଷାଦେ ॥୧୦୭
ଶୁଣି ସକଳ ଗୁରୁଜନେ ।
କହଇ ଦୁଃଖଦ ବଦନେ ॥୧୦୮
ନିଷ୍ଠୁର ବ୍ରହ୍ମ କୋପାନଳ ।
ଦହଇ ଭୁବନମଣ୍ଡଳ ॥୧୦୯
ଅନ୍ୟଥା କେ ତାହା କରିବ ।
ବ୍ରହ୍ମାଶଙ୍କର ବାସୁଦେବ ॥୧୧୦
ଶୁଣି ବିଷାଦ ସଭାଜନ ।
ବଦନୁ ନ ସ୍ଫୁରେ ବଚନ ॥୧୧୧
ତା' ଦେଖି ରାଜା ଉଗ୍ରସେନ ।
ଭୃତ୍ୟଙ୍କୁ ବୋଲନ୍ତି ବଚନ ॥୧୧୨

ଏ ଲୌହ ଗିରିଶିଖେ ନେଇ ।
ଘଷ ସମୁଦ୍ରଜଳ ଦେଇ ॥୧୧୩
ନିଃଶେଷ କରି ଲୌହ ଘଷ ।
ଯେମନ୍ତେ ନ ରହଇ ଶେଷ ॥୧୧୪
ତକ୍ଷଣେ ରାଜା ଆଜ୍ଞା ପାଇ ।
ମୂଷଳ ଘେନି ବେଗେ ଯାଇ ॥୧୧୫
ପର୍ବତେ ସମୁଦ୍ରର ଜଳେ ।
ଲୌହ ଘଷିଲେ ଭୁଜବଳେ ॥୧୧୬
ଘଷନ୍ତେ ଲୌହଚୂର୍ଣ୍ଣ ଶିଳେ ।
ପଡ଼ଇ ସମୁଦ୍ର ଉଲ୍ଲୋଳେ ॥୧୧୭
ଅନେକ ଦିନ ଘଷି ରୋଷେ ।
ଅଳପ ରହେ ଅବଶେଷେ ॥୧୧୮
ଅଙ୍ଗୁଳି ଛିଡ଼ି ଘରଷଣେ ।
ନିଷ୍ଠୁରେ ନିଃଶେଷ କରଣେ ॥୧୧୯
ନ ପାରି ପକାଇଲେ ଜଳେ ।
ଘୋର ଗଭୀର ମୀନମେଳେ॥୧୨୦
ଲୌହ ପଡ଼ନ୍ତେ ଘୋର ପାଣି।
ଆହାର ପ୍ରାୟ ତାହା ମଣି ॥୧୨୧
ମୀନ ଗିଳିଲା ଅତି ବେଗେ ।
ସେ ମୀନ ମତ୍ସ୍ୟଗଣ ସଙ୍ଗେ॥୧୨୨
ଚରନ୍ତେ ସମୁଦ୍ରର ଜଳେ ।
ଜାଲେ ପଡ଼ିଲା ରାତ୍ରକାଳେ ॥୧୨୩
ଧୀବରେ ମୀନ ନେଇ ଏକା ।
ଜାରାଶବରେ ଦେଲା ଦେଖା ॥୧୨୪
ମୀନ କାଟନ୍ତେ ତା'ର ଘରେ।
ଲୌହ ଦେଖିଲା ତା' ଉଦରେ ॥୧୨୫
କର୍କଶ ପିଙ୍ଗଳ ପ୍ରଚଣ୍ଡ ।
ଜଳଇ ଯେହ୍ନେ ମାରତଣ୍ଡ ॥୧୨୬

ଦେଖି ଶବର ତୋଷ ହୋଇ ।
ନାରାଚଫଳ କଲା ନେଇ ॥୧୨୭
ବାଣର ମୁନେ ତୀକ୍ଷ୍ଣଫଳ ।
ତେଜେ କି ଗଞ୍ଜଇ ଅନଳ ॥୧୨୮
ଯେ ଲୌହଚୂର୍ଣ୍ଣ ପଡ଼ିଜଳେ ।
ଭାସିଲା ସମୁଦ୍ର ଉଲ୍ଲୋଳେ ॥୧୨୯
ତୀରେ ଲାଗନ୍ତେ ଲୌହଚୂର୍ଣ୍ଣ ।
ଜନ୍ମିଲା ଏରକାର ବନ ॥୧୩୦
ତୀକ୍ଷ୍ଣ ତ୍ରିଶିର ସେ ସ୍ୱଭାବେ।
ଯେଣେ ଯାଦବେ ନାଶଯିବେ॥୧୩୧
ସେ କାଳରୂପୀ ଭଗବାନ ।
ଜାଣନ୍ତି ସକଳ ବିଧାନ ॥୧୩୨
ଖେଳଇ ମାୟାମୟ ଜନ୍ମେ ।
ସେ ପ୍ରଭୁ ଡ଼ରେ ବ୍ରହ୍ମଶାପେ ॥୧୩୩
କୁଳବିନାଶ ହେତୁ କରି ।
ଅବନୀଭାରା ହେଲେ ହରି ॥୧୩୪
ନିଜ ଭୁବନେ ଅବଧାନ ।
ନିର୍ଲେପ ପ୍ରଭୁ ଭଗବାନ ॥୧୩୫
ବୋଲଇ ଦାସ ଜଗନ୍ନାଥ ।
ଶ୍ରୀଏକାଦଶ ଭାଗବତ ॥୧୩୬
ଜାହ୍ନବୀତୀରେ ରାଜା ଆଗେ ।
ଶୁକ କହିଲେ ସାଧୁସଙ୍ଗେ ॥୧୩୭
ପୁରାଣ ଭାଗବତ ବାଣୀ ।
ସୁଜନେ ତର ଏହା ଶୁଣି ॥୧୩୮

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଏକାଦଶସ୍କନ୍ଧେ
ପ୍ରଥମୋଧ୍ୟାୟଃ ॥

Dr. Sudhanshu Sekhar Mishra

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ଶୁଣ ପରୀକ୍ଷ ମନସ୍କିରେ ।
ଅଦ୍ଭୁତ ଦ୍ୱାରକା ନଗରେ ॥୧
ଗୋବିନ୍ଦ ଭୁଜଦଣ୍ଡବଳେ ।
ଯାଦବେ ଥା'ନ୍ତି ସୁଖଭୋଳେ ॥୨
ଯହିଁ ନାରଦ ଥା'ନ୍ତି ନିତି ।
କୃଷ୍ଣଭକତି ହୃଦେ ଚିନ୍ତି ॥୩
ମର୍ତ୍ତ୍ୟେ ମନୁଷ୍ୟ ଦେହ ଧରି ।
କେ କୃଷ୍ଣଭାବ ପରିହରି ॥୪
ବାସବ ଆଦି ଦେବଗଣ ।
ଯା'କୁ ସେବନ୍ତି ଅନୁକ୍ଷଣ ॥୫
ଭବ ବିରଞ୍ଚି ଯା'ର ପାଦେ ।
ସେବନ୍ତି ନିତ୍ୟେ ଅପ୍ରମାଦେ ॥୬
ନାରଦମୁନି ଏକଦିନେ ।
ଗଲେ ବସୁଦେବ ଭୁବନେ ॥୭
ନାରଦ ଆଗମନ ଭାବ ।
ଦେଖି ମିଳିଲେ ବସୁଦେବ ॥୮
ପବିତ୍ର ଜଳେ ପାଦଧୋଇ ।
ଆସନେ ବସାଇଲେ ନେଇ ॥୯
ଚରଣେ କରି ନମସ୍କାର ।
ଭାବେ ବୋଇଲେ ଯଦୁବୀର ॥୧୦

ବସୁଦେବ ଉବାଚ

ଧନ୍ୟ ଜୀବନ ଆଜ ମୋର ।
ଦେଖିଲି ଚରଣ ତୁମ୍ଭର ॥୧୧
ତୁମ୍ଭେ ଯେ ଲୋକ-ପରିତ୍ରାଣେ ।
ବ୍ରହ୍ମାଣ୍ଡେ ବୁଲ ଅନୁକ୍ଷଣେ ॥୧୨
ପିତାମାତାଙ୍କ ଆଗମନ ।
ପୁତ୍ରଙ୍କୁ କଲ୍ୟାଣ ଯେସନ ॥୧୩
ବିଷ୍ଣୁ-ଭକତଜନ ଦେଖି ।
ନିର୍ମଳ ହୋଏ ଚର୍ମ ଆଖି ॥୧୪
ଜନ୍ତୁଙ୍କୁ ଦେବଙ୍କ ଚରିତ ।
ସାଧଇ ଦୁଃଖ ସୁଖ ଅର୍ଥ ॥୧୫
ତୁମ୍ଭର ପ୍ରାୟ ସାଧୁ ଯେତେ ।
କେବଳ ପ୍ରାଣୀ ସୁଖ ଅର୍ଥେ ॥୧୬
ସାଧବେ ବିଷ୍ଣୁଭାବେ ଥା'ନ୍ତି ।
ଏଣୁ ପ୍ରାଣୀଙ୍କ ହିତ ଚିନ୍ତି ॥୧୭
ଦେବଙ୍କ ଚରିତ ପ୍ରମାଦ ।
କରଇ ହରଷ ବିଷାଦ ॥୧୮
ମନୁଷ୍ୟେ ସୁଖଭୋଗ ଚିନ୍ତି ।
କେ ଅବା ଦେବଙ୍କୁ ପୂଜନ୍ତି ॥୧୯
ଦେବେ ତାହାଙ୍କ ଉପକାରେ ।
ଭଜନ୍ତି ଭକ୍ତି ଅନୁସାରେ ॥୨୦
ସ୍ୱଭାବେ ଦେବେ ଛାୟାବତ ।
ବସନ୍ତି କର୍ମର ଆୟତ୍ତ ॥୨୧
ତେଣୁ ସେ କର୍ମ ଅନୁସାରେ ।
ପ୍ରାଣୀଙ୍କି ତୋଷୁଥା'ନ୍ତି ବରେ ॥୨୨
ସେ କର୍ମଫଳ ଅନୁମତେ ।
ପ୍ରାଣୀ ଭୁଞ୍ଜନ୍ତି ଏ ଜଗତେ ॥୨୩
ବିଷ୍ଣୁ ଭକତ ପ୍ରାଣୀଙ୍କର ।
ଜଗତେ ନାହିଁ ଆତ୍ମାପର ॥୨୪
ଦୟା କରନ୍ତି ସର୍ବଲୋକେ ।
ଦିନ ହରନ୍ତି ଦୁଃଖସୁଖେ ॥୨୫
ଆଜ ମୁଁ ଦେଖି ତୁମ୍ଭପଦ ।
ଲଭିଲି ସକଳ ସମ୍ପଦ ॥୨୬
ତଥାପି ବୈଷ୍ଣବର ଧର୍ମ ।
ବିଷ୍ଣୁ ପ୍ରସନ୍ନେ ଯେତେ କର୍ମ ॥୨୭
ତାହା ଶୁଣିତେ ମୋର ଇଚ୍ଛା ।
ପୁଚ୍ଛଇ କହ ଧର୍ମଦୀକ୍ଷା ॥୨୮
ଯେ ଧର୍ମ କଥନ ଶ୍ରବଣ ।
ସକଳ ଭୟ ନିବାରଣ ॥୨୯
ପୂର୍ବେ ମୁଁ ତପଯୋଗବଳେ ।
ସେବିଲି ବିଷ୍ଣୁ ପାଦ ମୂଳେ ॥୩୦
ବିଷ୍ଣୁ ଯାଚିଲେ ମୋତେ ବର ।
ମୋର ଅଦୃଷ୍ଟ ବଳୀୟାର ॥୩୧
ମୋକ୍ଷ ନ ମାଗି ପୁତ୍ରକାମେ ।
ପଡ଼ିଲି ମାୟା ମୋହ ଭ୍ରମେ ॥୩୨
ଏବେ ଉପାୟ ତୁମ୍ଭେ କର ।
ଯେମନ୍ତେ ତୁଟେ ଭ୍ରମ ମୋର ॥୩୩
ବସୁଦେବର ବାକ୍ୟ ଶୁଣି ।
ମନଆନନ୍ଦେ ବ୍ରହ୍ମମୁନି ॥୩୪

ନାରଦ ଉବାଚ

ବୋଲନ୍ତି ଶୁଣ ଯଦୁବୀର ।
ଧନ୍ୟ ବଚନ ଏ ତୋହର ॥୩୫
ତୋ ଚିତ୍ତ ଭାଗବତଧର୍ମେ ।
କଳ୍ପିଲା ପୂର୍ବ ପୁଣ୍ୟକର୍ମେ ॥୩୬
ଶୁଣ ସେ ଧର୍ମର ମହିମା ।
କେ କହିପାରେ ଗୁଣ ସୀମା ॥୩୭
ଯେବେ ଶ୍ରବଣେ ଏହା ଶୁଣି ।
ମନ ବଚନେ ପରିମାଣି ॥୩୮
ଯଦ୍ୟପି ଦେବ-ବିଶ୍ୱଦ୍ରୋହୀ ।
ଅନ୍ୟ ପତିତ ଯେବେ ହୋଇ ॥୩୯
ସେ ଧର୍ମେ ଯେବେ ମନ ପଶେ ।
ସର୍ବ କଳୁଷ ବେଗେ ନାଶେ ॥୪୦
ଧନ୍ୟ ଯାଦବ ତୋ' ଜୀବନ ।
କୃଷ୍ଣରେ ନିବେଶିଲୁ ମନ ॥୪୧
କୃଷ୍ଣର ଶ୍ରବଣ କୀର୍ତ୍ତନ ।
ଅଶେଷ ଦୁରିତ ଦହନ ॥୪୨
କହିବା ଶୁଣ ସାବଧାନେ ।
ଯେ ଇତିହାସ ପୁରାତନେ ॥୪୩
ପୂର୍ବେ ଯେ ବିଦେହମଣ୍ଡଳେ ।
ନିମି ରାଜାର ଯଜ୍ଞକାଳେ ॥୪୪
ଦିବ୍ୟ ପୁରୁଷ ନବଋଷି ।
ମିଳିଲେ ଯଜ୍ଞଶାଳେ ଆସି ॥୪୫
ସେ ନବଋଷି ମହାଜନ ।
ଶୁଣ ହେ ତାହାଙ୍କ ବିଧାନ ॥୪୬
ବ୍ରହ୍ମାର ଶରୀରୁ ସମ୍ଭବ ।
ଯେ ମନୁ ନାମ ସ୍ୱାୟମ୍ଭୁବ ॥୪୭

Dr. Sudhanshu Sekhar Mishra

ତା'ର ତନୟ ପ୍ରିୟବ୍ରତ ।
ସୁଗୁଣ ସାଧୁ ଶୁଚିବନ୍ତ ॥୪୮
ପ୍ରିୟବ୍ରତର ସୁତ ଯେହି ।
ଆଗ୍ନୀଧ୍ର ବୋଲି ନାମ ହୋଇ ॥୪୯
ଆଗ୍ନୀଧ୍ରସୁତ ନାଭି ନାମ ।
ସୁନ୍ଦର ସର୍ବଗୁଣଧାମ ॥୫୦
ଋଷଭ ତାହାର କୁମର ।
ସେ ବିଷ୍ଣୁଅଂଶେ ଅବତାର ॥୫୧
ତା'ର ମହିମା ଗୁଣ ଯେତେ ।
ଅନ୍ତ କେ କରୁ ତ୍ରିଜଗତେ ॥୫୨
ଅଶେଷ ମହିମା ଯାହାର ।
ଭରତ ତାହାର କୁମର ॥୫୩
ଶତେକ ପୁତ୍ରେ ଶ୍ରେଷ୍ଠ ସେହି ।
ଅପରେ ଊନଶତ ଭାଇ ॥୫୪
ସକଳେ ବେଦବିଦ୍ୟା ସାର ।
ପବିତ୍ରମୟ କଳେବର ॥୫୫
ଭରତ ଥାଇ ପୁଣ୍ୟକର୍ମେ ।
ଭାରତ ଭୂମି ଯା'ର ନାମେ ॥୫୬
ଭୁବନେ ରାଜଭୋଗ ଭୁଞ୍ଜି ।
ବନେ ପଶିଲା ରାଜ୍ୟ ତେଜି ॥୫୭
ତପେ ତୋଷିଲା ଭାବଗ୍ରାହୀ ।
ଜାତିସ୍ମର ସେ ଜନ୍ମୁଁ ହୋଇ ॥୫୮
ଏମନ୍ତେ ତିନିଜନ୍ମ ଅନ୍ତେ ।
ପଶିଲା ବିଷ୍ଣୁପାଦଗତେ ॥୫୯
ଅଶେଷଦୁଃଖ ନାଶ ଗଲା ।
ଜନ୍ମ ମରଣୁଁ ନିସ୍ତରିଲା ॥୬୦
ଆଉ ଯେ ଊନଶତ ଭାଇ ।
ତା'ଙ୍କ ମହିମା ଶୁଣ ତୁହି ॥୬୧
ତାହାଙ୍କ ମଧ୍ୟେ ନବସୁତ ।
ସାଧୁ ସୁଗୁଣ ବଳବନ୍ତ ॥୬୨
ହୋଇଲେ ନବଦ୍ୱୀପେ ରାଜା ।
ସୁଖେ ପାଳିଲେ ଜନପ୍ରଜା ॥୬୩
ଏକ ଅଧିକେ ଅଶୀ ସୁତେ ।
ବେଦ ଅଭ୍ୟାସି ଦୃଢଚିତ୍ତେ ॥୬୪
ତପେ ଆରାଧି ନାରାୟଣ ।
ଜଗତେ ହୋଇଲେ ବ୍ରାହ୍ମଣ ॥୬୫

ଶେଷ ଯେ ନବସୁତ ଥିଲେ ।
ନିର୍ଗୁଣ ଯୋଗ ଅଭ୍ୟାସିଲେ ॥୬୬
ସେ ଆତ୍ମାଜ୍ଞାନୀ ସାଧୁ ଧୀର ।
ଜଟା ବିଭୂତି ଦିଗମ୍ବର ॥୬୭
ମିତ୍ର ଅଇରି ପକ୍ଷ ସମ ।
ଶୁଣ ହେ ତାହାଙ୍କର ନାମ ॥୬୮
ସେ କବି ହରି ଅନ୍ତରୀକ୍ଷ ।
ଏ ତିନି ଜ୍ଞାନେ ଧ୍ୟାନେ ଦକ୍ଷ ॥୬୯
ପ୍ରବୁଦ୍ଧ ଯେ ପିପ୍ପଳାୟନ ।
ଷଷ୍ଠରେ ଆବିର୍ହୋତ୍ର ନାମ ॥୭୦
ଦ୍ରୁମିଳ ଚମସ ଏ ଦୁଇ ।
କରଭାଜନ ନବଭାଇ ॥୭୧
ଏମନ୍ତେ ନବ ସହୋଦରେ ।
ଆନନ୍ଦେ ଭ୍ରମନ୍ତି ସଂସାରେ ॥୭୨
ତାହାଙ୍କ ମନ କୃଷ୍ଣଦେହେ ।
କପଟ ତେଜି ଏକସ୍ନେହେ ॥୭୩
ଦେଖନ୍ତି ସର୍ବଜୀବ ଦେହେ ।
ଏକା ଗୋବିନ୍ଦ ଆନ ନୋହେ ॥୭୪
ପରମଆତ୍ମା ଭାବେ ମଜ୍ଜି ।
ଏକା ଗୋବିନ୍ଦ ପାଦେ ଭଜି ॥୭୫
ସେ ଅବ୍ୟାହତ ଇଷ୍ଟଗତି ।
ଏମନ୍ତେ ନବବିପ୍ରେ ଥା'ନ୍ତି ॥୭୬
ସିଦ୍ଧ ଗନ୍ଧର୍ବ ସୁରମେଳେ ।
ଯକ୍ଷକିନ୍ନର ରସାତଳେ ॥୭୭
ଶିବ ସୁରଭିପୁରେ ଥା'ନ୍ତି ।
ବ୍ରହ୍ମାର ଭୁବନେ ମିଳନ୍ତି ॥୭୮
ଏ ଆଦି ନାନା ଦେଶ ପୁରେ ।
ଭ୍ରମନ୍ତି ନବସହୋଦରେ ॥୭୯
ସେ ନବମୁନି ଏକଦିନେ ।
ମିଳିଲେ ନିମି ଯଜ୍ଞସ୍ଥାନେ ॥୮୦
ତାହାଙ୍କୁ ଯଜ୍ଞଶାଳେ ଦେଖି ।
ଜନକ ଆସନ ଉପେକ୍ଷି ॥୮୧
ଦେଖିଲେ ଦିବ୍ୟତେଜୋମୟେ ।
ରବିଶଶାଙ୍କ ସମ ନୋହେ ॥୮୨
ଅଗ୍ନି ଯେ କୁଣ୍ଡମଧ୍ୟେ ଥିଲେ ।
ବିପ୍ରଙ୍କ ସଙ୍ଗତେ ଉଠିଲେ ॥୮୩

ଜାଣିଲେ ବିଦେହରାଜନ ।
ଏ ସର୍ବେ କୃଷ୍ଣପରାୟଣ ॥୮୪
ଆନନ୍ଦମନେ ନୃପବର ।
ପୂଜିଲେ ମୁନିଙ୍କ ପୟର ॥୮୫
ପ୍ରଣାମ କରି ତା'ଙ୍କ ପାଦେ ।
ଆସନେ ବସାଇ ଆନନ୍ଦେ ॥୮୬
ଦେଖଇ ରୂପ ତାହାଙ୍କର ।
ଯେସନେ ବ୍ରହ୍ମାଙ୍କ କୁମର ॥୮୭
କରଯୁଗଳ ଶିରେ ଦେଇ ।
ବୋଲଇ ନିସ୍ତରିଲି ମୁହିଁ ॥୮୮
ତୁମ୍ଭ ଚରଣଯୁଗ ଦେଖି ।
ନିର୍ମଳ କଲି ଚର୍ମଆଖି ॥୮୯
ତୁମ୍ଭେ ଯେ ନବ ବିପ୍ରବର ।
ନିଶ୍ଚୟେ କୃଷ୍ଣ ଅନୁଚର ॥୯୦
ସଂସାରେ ତୁମ୍ଭର ଭ୍ରମଣ ।
ଅଶେଷ ଲୋକ ପରିତ୍ରାଣ ॥୯୧
ଏ ଯେ ମନୁଷ୍ୟ କଳେବର ।
ଦୁର୍ଲ୍ଲଭ କ୍ଷଣିକ ଭଙ୍ଗୁର ॥୯୨
ତଥାପି ମନୁଷ୍ୟ ଶରୀରେ ।
ଯେ ଭଜେ ଗୋବିନ୍ଦ ପୟରେ ॥୯୩
ତାହାଙ୍କୁ ଦେଖନ୍ତି ଯେ ପ୍ରାଣୀ ।
ତରନ୍ତି ଭବତରଙ୍ଗିଣୀ ॥୯୪
କ୍ଷଣେ ନିମିଷେ ଲବେ ଲେଶେ ।
ଯେବେ ସେ ସାଧୁଜନ ପାଶେ ॥୯୫
ଚିତ୍ତେ ଚିନ୍ତଇ କୃଷ୍ଣଭାବ ।
ତାହାକୁ ବୋଲି ନିଧିଲାଭ ॥୯୬
ସେ ଲାଭ ତୁମ୍ଭର ବଚନ ।
ମୁଁ ଯେବେ ଶୁଣିତେ ଭାଜନ ॥୯୭
ଯେ ଧର୍ମ ଆଚରଣେ ପ୍ରାଣୀ ।
ନିଶ୍ଚେ ଲଭନ୍ତି ଚକ୍ରପାଣି ॥୯୮
ସେ ହରି ତା'ଙ୍କ ବଶେ ଥାଇ ।
ଏ ମାୟା ତା'ଙ୍କୁ ନ ଲାଗଇ ॥୯୯
ଏମନ୍ତେ ନିମିବାକ୍ୟ ଶୁଣି ।
ବୋଲନ୍ତି ନବମହାମୁନି ॥୧୦୦
ଶୁଣ ହେ ରାଜା ଏକ ଚିତ୍ତେ ।
ଯାହା କହିଲେ ଭାଗବତେ ॥୧୦୧

Dr. Sudhanshu Sekhar Mishra

କବି ଉବାଚ

କବି ବୋଲନ୍ତି ରାୟେ ଶୁଣ ।
ଯେ ଭାଗବତ ଧର୍ମ ଗୁଣ ॥୧୦୨
ନାନା ପ୍ରକାରେ ହରିପାଦେ ।
ଯାହାର ଚିତ୍ତ ଅପ୍ରମାଦେ ॥୧୦୩
ଭଜଇ ଜାଣି ବିଷ୍ଣୁମାୟା ।
ସେ ହରି ତା'ରେ କରେ ଦୟା ॥୧୦୪
ବିଷ୍ଣୁର ଅଭୟ ଚରଣ ।
ମଙ୍ଗଳ କୁଶଳ କାରଣ ॥୧୦୫
ଅଶେଷ ଦୁଃଖ ନାଶକରେ ।
ଯେ ନିତ୍ୟେ କୃଷ୍ଣନାମ ଧରେ ॥୧୦୬
ଦେହ ସମ୍ପଦ ଦାରା ସୁତ ।
ଏଣେ ମୋହିତ ଯା'ର ଚିତ୍ତ ॥୧୦୭
କାମ ସଙ୍ଗହ ଦିନେ ଦିନେ ।
ବଢ଼ଇ ବିଷୟ-ଚିନ୍ତନେ ॥୧୦୮
ମାୟାରେ ମନ ଆଗୋଚରେ।
ଭ୍ରମଇ ଅଶେଷ ପ୍ରକାରେ ॥୧୦୯
କୃଷ୍ଣର ଅଭୟ ଚରଣ ।
ଅଶେଷ ଦୁଃଖ ନିବାରଣ ॥୧୧୦
ହରି ଚରଣ ଲାଭ ଅର୍ଥେ ।
ନାନା ଉପାୟ ଶାସ୍ତ୍ରଗତେ ॥୧୧୧
ଯାହା କହିଲେ ଚକ୍ରଧର ।
ସେ ଭାଗବତ ଧର୍ମସାର ॥୧୧୨
ଭାବେ ଅଭାବେ ମନେ ଗୁଣି ।
ମୂର୍ଖ ହିଁ ତରେ ଯାହା ଶୁଣି ॥୧୧୩
ଏଣେ ଯେ ଚିନ୍ତେ କୃଷ୍ଣପାଦ ।
ତାହାକୁ ନ ଲାଗେ ପ୍ରମାଦ ॥୧୧୪
ହୃଦେ ଗୋବିନ୍ଦପାଦ ଧାୟି ।
ନୟନ ବୁଜି ଯେବେ ଧାଇଁ ॥୧୧୫
ପଥ ନ ଜାଣି ଯେବେ ହୁଡ଼େ ।
ସେ ପ୍ରାଣୀ କେବେହେଁ ନ ପଡ଼େ॥୧୧୬
ବେଦବଚନ ଧର୍ମଶାସ୍ତ୍ର ।
ଏ ବେନି ବିପ୍ରଙ୍କର ନେତ୍ର ॥୧୧୭
ଏକ ନ ଥିଲେ କଣା ହୋଇ ।
ଦୁଇ ଅଭାବେ ଅନ୍ଧ ସେହି ॥୧୧୮

ଏମନ୍ତ ବିପ୍ର ଯେବେ ଚିତ୍ତେ ।
କୃଷ୍ଣଙ୍କୁ ଭଜେ ଅବିରତେ ॥୧୧୯
ତାହାର ଅମଙ୍ଗଳ ନାହିଁ ।
ସକଳ ପାପୁ ସେ ତରଇ ॥୧୨୦
ଏ ଧର୍ମ ଭାଗବତ ମତ ।
ଈଶ୍ୱର ବଚନ ନିର୍ମିତ ॥୧୨୧
ଏହା ଯେ ନ କରନ୍ତି ପ୍ରାଣୀ ।
ଧର୍ମ-ସଂଶୟ ମନେ ଗୁଣି ॥୧୨୨
କେବେ ହେଁ ନାହିଁ ସୁଖଲେଶ ।
ଉଭୟ ଲୋକେ ସେ ନିରାଶ ॥୧୨୩
ମନ ବଚନ ଦେହ ଚିତ୍ତ ।
ଅବା ଇନ୍ଦ୍ରିୟ ବୁଦ୍ଧିକୃତ ॥୧୨୪
କିବା ସ୍ୱଭାବ ଅନୁସାରେ ।
ଯେ କର୍ମ କରି ଏ ସଂସାରେ॥୧୨୫
ତା' ନାରାୟଣେ ସମର୍ପିବ ।
ଜୀବର ସ୍ୱଧର୍ମ ଏ ଭାବ ॥୧୨୬
ଏ ଭାଗବତ ଧର୍ମ ଗୁଣ ।
ଈଶ୍ୱର ବଚନ ପ୍ରମାଣ ॥୧୨୭
ଏଣେ ସକଳ ଜ୍ଞାନ ପାଇ ।
ଅଜ୍ଞାନତମ ନାଶ ଯାଇ ॥୧୨୮
ଶୁଣ ବିଦେହ ମହୀପତି ।
ଯେ ହରିଭାବ ନ ଜାଣନ୍ତି ॥୧୨୯
ନାନା ପ୍ରକାରେ ତପ କରେ ।
ସେ ପ୍ରାଣୀ ସଂସାରୁ ନ ତରେ ॥୧୩୦
ହରି ବିମୁଖ ପ୍ରାଣୀ ଯେତେ ।
ସେ ଥା'ନ୍ତି ପଶୁଙ୍କ ସଙ୍ଗତେ ॥୧୩୧
ତାହାଙ୍କ ମୋହେ ବିଷ୍ଣୁମାୟା ।
ବିଷୟା ରସେ ବଢ଼େ ସ୍ପୃହା ॥୧୩୨
ଦେହକୁ ବସ୍ତୁପ୍ରାୟ ମଣେ ।
ବଇରୀ ମିତ୍ର ପରିମାଣେ ॥୧୩୩
ଭ୍ରମଇଁ ଶୋକ ମୋହ ପଥେ।
ଅଜ୍ଞାନ ବୁଦ୍ଧି ଭ୍ରମ ଗ୍ରସ୍ତେ ॥୧୩୪
ତେଣୁ ସଂସାର ମୋହେ ଜଡ଼ି।
ଦୁଃଖ ସଙ୍କଟେ ଥା'ନ୍ତି ପଡ଼ି ॥୧୩୫
ଯା'ର ମାୟାରେ ଏତେ ଗତି।
ତା' ଭାବ ବୁଧଜନେ ଚିନ୍ତି ॥୧୩୬

କୃଷ୍ଣ ଭଜନ୍ତି ଏକମନେ ।
ନିର୍ମଳ ଧ୍ୟାନେ ଆତ୍ମାଜ୍ଞାନେ ॥୧୩୭
ଗୁରୁଙ୍କୁ ଇଷ୍ଟଦେବ ଭାବେ ।
ମନେ ଚିନ୍ତନ୍ତି ଜ୍ଞାନଲାଭେ ॥୧୩୮
ଜୀବ ଅଜ୍ଞାନଭାବ ଦେଖ ।
ଦୁଃଖକୁ ମଣେ ମହାସୁଖ ॥୧୩୯
ଯେସନେ ସ୍ୱପ୍ନ ମନୋରଥେ।
ଭ୍ରମଇଁ ନିଦ୍ରାର ଆୟତ୍ତେ ॥୧୪୦
ମଣଇଁ ସତ୍ୟପ୍ରାୟ ତାହା ।
ମନ ବିଳାସ ମାତ୍ର ମାୟା ॥୧୪୧
ଏ ମନ କୃଷ୍ଣପାଦେ ଦେଲେ ।
ଏ ମାୟା ନ ଲାଗଇ ଭଲେ ॥୧୪୨
ଦୁର୍ଗମ ପଥ ଏ ଭଜନ ।
ଭୟେ ଭାଜିଲେ ଯୋଗୀଜନ ॥୧୪୩
ଏବେ କହିବା ଶୁଣ ରାୟ ।
ସେ ହରି ଭଜନ ଉପାୟ ॥୧୪୪
କୃଷ୍ଣର ଜନ୍ମକର୍ମ ଯେତେ ।
ନାନା ଚରିତ ଏ ଜଗତେ ॥୧୪୫
ଶ୍ରବଣ ସ୍ମରଣ କୀର୍ତ୍ତନ ।
ତାରଇ ଅଶେଷ ଭୁବନ ॥୧୪୬
ସେ ନାମଭାବେ ଚିତ୍ତ ଜଡ଼ି ।
ହୃଦରୁ ଲାଜଭୟ ଏଡ଼ି ॥୧୪୭
କାମାଦି ସଙ୍ଗ ଦୂର କରି ।
ଏ ଘୋର ସଂସାରେ ବିହରି ॥୧୪୮
ଉଚ୍ଚେ ଡ଼ାକିବ କୃଷ୍ଣ ନାମ ।
ଶୁଭିବ ସକଳ ଶ୍ରବଣ ॥୧୪୯
ଆନନ୍ଦେ ଟେକି ବେନିକର ।
କଣ୍ଠ ଗର୍ଜନ ଉଚ୍ଚସ୍ୱର ॥୧୫୦
ଉନ୍ମତ୍ତ ପ୍ରାୟ ନୃତ୍ୟ କରେ ।
ଲୋଭ ବେଭାର ପରିହାରେ ॥୧୫୧
ଗଗନ ସମୀରଣ ଜ୍ୟୋତି ।
ଯେ ଅବା ସଲିଳ ଧରିତ୍ରୀ ॥୧୫୨
ନଦୀ ସାଗର ତରୁଗଣ ।
ପର୍ବତ ସ୍ଥାବର ଜଙ୍ଗମ ॥୧୫୩
ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତର ।
ଏ ସର୍ବ କୃଷ୍ଣର ଶରୀର ॥୧୫୪

Dr. Sudhanshu Sekhar Mishra

ନନ୍ଦିବର୍ଦ୍ଧନ ତା'ର ସୁତ ।
ମହାନନ୍ଦି ତହୁଁ ସମ୍ଭୂତ ॥୧୦୨
ଶିଶୁନାଗମନ୍ତ୍ରୀ ବଂଶରେ ।
ଦଶପୁରୁଷ ରାଜ୍ୟ କରେ ॥୧୦୩
ତିନିଶ ଷାଠିଏ ବରଷ ।
ପାଳିବେ ଆର୍ଯ୍ୟାବର୍ତ୍ତ ଦେଶ ॥୧୦୪
ସେହି ମହାନନ୍ଦି ରାଜାର ।
ଶୂଦ୍ରା ଭାରିଯା ହେବେ ତା'ର ॥୧୦୫
ତା' ଗର୍ଭୁ ହୋଇବ କୁମର ।
ନନ୍ଦ ନାମ ଯେ ହେବ ତା'ର॥୧୦୬
ମହାପଦ୍ମପତି ନାମରେ ।
ରାଜା ହୋଇବ ବାହୁବଳେ ॥୧୦୭
ସଇନି ହୋଇବେ ଅପାର ।
ଯୁଦ୍ଧେ ହୋଇବ ମହାମଲ୍ଲ ॥୧୦୮
ସକଳ କ୍ଷତ୍ରିୟ ବିନାଶ ।
ସେ ରାଜା କରିବ ଅବଶ୍ୟ ॥୧୦୯
ଏହାର ପରେ ହେବେ ପୁଣ ।
ଅପରେ ଯେତେକ ରାଜନ ॥୧୧୦
ଶୂଦ୍ରେ ହୋଇବେ ସବୁରାଜା ।
ଅଧର୍ମେ ପାଳିବେ ପରଜା ॥୧୧୧
ଅଧାର୍ମିକ ପଣେ ରାଜନ ।
କରିବେ ପରଜା କଷଣ ॥୧୧୨
ଅଳପଦିନେ ନାଶ ଯିବେ ।
ସେ ରାଜା ବଡ଼ ବୋଲାଇବେ॥୧୧୩
ଏକଛତ୍ରନନ୍ଦ ରାଜନ ।
ପୃଥିବୀ କରିବ ଶାସନ ॥୧୧୪
ସୂର୍ଯ୍ୟର ପ୍ରାୟ ବିଦ୍ୟମାନ ।
ଦ୍ୱିତୀୟ ପର୍ଶୁରାମ ସମ ॥୧୧୫
ସର୍ବାଧିକାରୀ ରାଜା ହୋଇ ।
ପାଳନ କରିବ ସେ ମହୀ ॥୧୧୬
ନନ୍ଦର ଅଷ୍ଟସୁତ ହୋଇ ।
ସୁମାଲ୍ୟ ଆଦି ଅଷ୍ଟଭାଇ ॥୧୧୭
ନନ୍ଦ ଯେ ମୃଗୟା ଗମନେ ।
ପଶିବ ଗହନ କାନନେ ॥୧୧୮
ଶତେ ବରଷ ପୃଥ୍ୱୀପତି ।
ହୋଇ ପାଳିବେ ବସୁମତୀ ॥୧୧୯

ଚାଣକ୍ୟ ନାମରେ ବ୍ରାହ୍ମଣ ।
ତାହାକୁ କରିବ ନିଧନ ॥୧୨୦
ତାହାଙ୍କ ଅଭାବରେ ପୁଣ ।
ମଉର୍ଯ୍ୟ ହୋଇବ ରାଜନ ॥୧୨୧
ଚାଣକ୍ୟ ସାହାଯ୍ୟରେ ପୁଣ ।
ଚନ୍ଦ୍ରଗୁପ୍ତ ହେବ ରାଜନ ॥୧୨୨
ତାହାକୁ ଅଭିଷେକ କରି ।
ବାରିସାର ପୁତ୍ର ଏହାରି ॥୧୨୩
ତା' ସୁତ ଅଶୋକବର୍ଦ୍ଧନ ।
ସୁଯଶା ତାହାର ନନ୍ଦନ ॥୧୨୪
ତା' ପୁତ୍ର ନାମ ଯେ ସଙ୍ଗତ ।
ଶାଳିଶୂକ ନାମେ ତା' ସୁତ ॥୧୨୫
ତା' ସୁତ ନାମ ସୋମଶର୍ମା ।
ତା' ସୁତ ହେବ ଶତଧନ୍ୱା ॥୧୨୬
ବୃହଦ୍ରଥ ଯେ ତା' ତନୟୋ
ତା' ପୁତ୍ର ଦେବମିତ୍ର ହୋଏ ॥୧୨୭
ଭୋଗ ଯେ ଏ ଦଶ ପୁରୁଷ ।
ବରଷ ଶଏସପ୍ତତ୍ରିଂଶ ॥୧୨୮
ବୃହଦ୍ରଥର ସେନାପତି ।
ପୁଷ୍ପମିତ୍ର ନାମେ ବିଖ୍ୟାତି ॥୧୨୯
ରାଜାକୁ ମାରି ରାଜା ହେବ ।
ଶୁଙ୍ଗ ବଂଶରେ ତା' ସମ୍ଭବ ॥୧୩୦
ପୁଷ୍ପମିତ୍ରଙ୍କ ଅଗ୍ନିମିତ୍ର ।
ସୁଜ୍ୟେଷ୍ଠ ନାମେ ତା'ର ପୁତ୍ର॥୧୩୧
ବସୁମିତ୍ର ଯେ ସୁତ ତା'ର ।
ଭଦ୍ରକ ତାହାର କୁମର ॥୧୩୨
ପୁଳିନ୍ଦ ତାହାର ତନୟେ ।
ଘୋଷ ତା ତହୁଁ ଜାତ ହୋଏ॥୧୩୩
ତା' ପୁତ୍ର ହେବ ବଜ୍ରମିତ୍ର ।
ଭାଗବତ ଯେ ତା'ର ପୁତ୍ର ॥୧୩୪
ତା' ସୁତ ହେବ ଦେବଭୂତି ।
ଶୁଙ୍ଗବଂଶେ ଦଶ ଉତ୍ପତ୍ତି ॥୧୩୫
ଏ ଶଏଦ୍ୱାଦଶ ବରଷ ।
ରାଜାପଣରେ ଭୋଗ ଶେଷ॥୧୩୬
ଦେବଭୂତି ରାଜାର ମନ୍ତ୍ରୀ ।
କଣ୍ୱ ନାମରେ ତା' ବିଖ୍ୟାତି॥୧୩୭

ରାଜାକୁ ମାରି କଣ୍ୱ ରାଜା ।
ହୋଇ ସେ ପାଳିବ ପରଜା ॥୧୩୮
ତା' ସୁତ ବସୁଦେବ ନାମ ।
ଭୂମିତ୍ର ତାହାର ନନ୍ଦନ ॥୧୩୯
ତା' ସୁତ ନାମ ନାରାୟଣ ।
ସୁଶର୍ମା ଏହାର ନନ୍ଦନ ॥୧୪୦
ଏ କଣ୍ୱ ପାଞ୍ଚଜଣେ ଯୋଗ ।
ତିନିଶ ପାଞ୍ଚାଳିଶ ଭୋଗ ॥୧୪୧
ସୁଶର୍ମା ନାମେ ରାଜା ଏକ ।
ବୃଷଳ ତାହାର ସେବକ ॥୧୪୨
ସେ ଆନ୍ଧ୍ରଜାତି ଶୂଦ୍ରାଧମ ।
ରାଜାକୁ ମାରିଣ ରାଜନ ॥୧୪୩
ତା' ଅନ୍ତେ ଭାଇ କୃଷ୍ଣ ନାମା।
ରାଜା ହୋଇବ ବିଦ୍ୟମାନ ॥୧୪୪
ଶ୍ରୀକାନ୍ତକର୍ଣ୍ଣ ତାର ସୁତ ।
ପୌର୍ଣ୍ଣମାସ ତା' ତହୁଁ ଜାତ ॥୧୪୫
ତା' ସୁତ ନାମ ଲମ୍ବୋଦର ।
ଚିବିଳକ ଯେ ତା' କୁମର ॥୧୪୬
ତା' ପୁତ୍ର ନାମ ମେଘସ୍ୱାତି ।
ଅଟମାନ ତା'ର ସନ୍ତତି ॥୧୪୭
ଅନିଷ୍ଟକର୍ମା ତା'ର ପୁଅ ।
ତା' ପୁତ୍ର ନାମ ଯେ ହାଳେୟ ॥୧୪୮
ତଳକ ତା'ର ହେବ ସୁତ ।
ପୁରୁଷଭୀରୁ ତା'ର ପୁତ୍ର ॥୧୪୯
ସୁନନ୍ଦନ ଯେ ତା' କୁମର ।
ତା' ସୁତ ନାମ ଯେ ଚକୋର ॥୧୫୦
ବଟକ ତାହାର ସନ୍ତତି ।
ତା' ସୁତ ନାମ ଶିବସ୍ୱାତି ॥୧୫୧
ତା' ସୁତ ନାମ ଯେ ଗୋମତି।
ପୁରୀମାନ ତା'ର ସନ୍ତତି ॥୧୫୨
ତା' ସୁତ ନାମ ମେଦଶିର ।
ତା' ସୁତ ଶିବସ୍କନ୍ଧ ବୀର ॥୧୫୩
ଯଜ୍ଞଶ୍ରୀ ପୁତ୍ର ନାମ ତା'ର ।
ବିଜୟ ତାହାର କୁମର ॥୧୫୪
ଚନ୍ଦ୍ରବିଜ୍ଞ ତା'ର ସନ୍ତତି ।
ତା' ଭ୍ରାତା ନାମ ଯେ ଲୋମଧି ॥୧୫୫

Dr. Sudhanshu Sekhar Mishra

ଆନନ୍ଦେ ତିରିଶ ପୁରୁଷ ।
ଚାରିଶ ଛପନ ବରଷ ॥୧୫୬
ଏଥୁ ଅନ୍ତରେ କଥା ଶୁଣ ।
ଅବଭୃତି ନଗରେ ପୁଣ ॥୧୫୭
ସପ୍ତ ଆଭୀର ରାଜା ହେବେ ।
ଦଶ ଗର୍ଦ୍ଦଭୀ ଏହି ଭାବେ ॥୧୫୮
ଷୋଡ଼ଶ କଙ୍କ ଏଥି ପରେ ।
ରାଜା ହୋଇବେ ଏ ସଂସାରେ ॥୧୫୯
ଧର୍ମାର୍ଥପଣ ନ କରିବେ ।
ଅଧର୍ମ ମାର୍ଗେ ଦିନ ନେବେ ॥୧୬୦
ଅତ୍ୟନ୍ତ ଲୋଭଗ୍ରସ୍ତ ହେବେ ।
ପ୍ରଜାଙ୍କୁ ଅତିଦୁଃଖ ଦେବେ ॥୧୬୧
ମ୍ଳେଚ୍ଛ ଆଚାର ତା'ଙ୍କ କର୍ମ ।
ସଂସାରେ ନ ସ୍ଥାପିବେ ଧର୍ମ ॥୧୬୨
ଏ ଯେଣୁ ମେଳଛ ହୋଇବେ ।
ମ୍ଳେଚ୍ଛେ ଯେ ଭୂମି ଆକର୍ଷିବେ ॥୧୬୩
ଏ ଅନ୍ତେ ହୋଇବେ ଯବନ ।
ଆଠପୁରୁଷ ସେ ରାଜନ ॥୧୬୪
ଚଉଦପୁରୁଷ ତୁରସ୍କ ।
ରାଜାପଣେ ସେ ଅଭିଷେକ ॥୧୬୫
ଏ ଅନ୍ତେ ଗୁରୁଣ୍ଡକ ବଂଶ ।
ହୋଇବେ ସେ ଦଶପୁରୁଷ ॥୧୬୬
ଏଣୁ ସକଳ ଧର୍ମ ଯିବ ।
ବର୍ଣ୍ଣ ଆଚାର ନ ରହିବ ॥୧୬୭
ଏ ଅନ୍ତେ ମଉନ ମୋଗଲ ।
ପୃଥ୍ୱୀକୀ ହୋଇବେ ସେ ଶଲ ॥୧୬୮
ଏଗାର ପୁରୁଷ ରାଜନ ।
ହୋଇବେ ମୋଗଲ ବଂଶେଣ ॥୧୬୯
ରାଜା ହୋଇବେ ସର୍ବଦେଶ ।
ଇନ୍ଦ୍ରପ୍ରସ୍ଥରେ ସେ ପ୍ରକାଶ ॥୧୭୦
ଖୁରୁଷାଣି ଜନମ ଆଦି ।
ଚାରିଜାତିରେ ସେ ପ୍ରସିଦ୍ଧି ॥୧୭୧
ଛୟାଳିଶ ପୁରୁଷେ ପୁଣ ।
ଏଗାରଶତ ଏକ ଊନ ॥୧୭୨
ଏମନ୍ତେ ଏଗାର ପୁରୁଷ ।
ମଉନ ରାଜ୍ୟଭୋଗ ଶେଷ ॥୧୭୩

ଏଥୁ ଅନ୍ତରେ ନୃପବର ।
କିଳିକିଳା ନାମେ ନଗର ॥୧୭୪
ଭୂତନନ୍ଦ ଯେ ରାଜା ହେବ ।
ଦ୍ୱିତୀୟେ ବଙ୍ଗିରି ହୋଇବ ॥୧୭୫
ଶିଶୁନନ୍ଦ ନାମେ ରାଜନ ।
କରିବ ପ୍ରଜା ସେ ପାଳନ ॥୧୭୬
ତାହାର ଭାଇର ବଂଶର ।
ଯଶୋନନ୍ଦ ନାମ ତାହାର ॥୧୭୭
ପ୍ରବୀରକ ଯେ ତା'ର ସୁତ ।
ପାଞ୍ଚପୁରୁଷ ସେ ଏମନ୍ତ ॥୧୭୮
ଏକଶତ ଛଅ ବରଷ ।
ଏହାଙ୍କ ରାଜ୍ୟଭୋଗ ଶେଷ ॥୧୭୯
ଏହାଙ୍କ ତ୍ରୟୋଦଶ ସୁତ ।
ବାହ୍ଲୀକ ନାମେ ହେବ ଖ୍ୟାତ ॥୧୮୦
ପୁଷ୍ପମିତ୍ର ନାମେ ଆବର ।
ହୋଇବ ଏକ ନୃପବର ॥୧୮୧
ଦୁର୍ମିତ୍ର ତାହାର ସନ୍ତତି ।
ସୁଖେ ପାଳିବ ସେହୁ କ୍ଷିତି ॥୧୮୨
ଏ ଅନ୍ତେ ଆନ୍ଧ୍ରଦେଶୀ ପୁଣ ।
ସାତପୁରୁଷ ସେ ରାଜନ ॥୧୮୩
ଏମନ୍ତ କୋଶଳ ଦେଶର ।
ସାତପୁରୁଷ ନୃପବର ॥୧୮୪
ପୁଣି ସେ ବୈଦୁର୍ଯ୍ୟ ନଗରେ ।
ସପ୍ତପୁରୁଷ ନୃପବରେ ॥୧୮୫
ସାତପୁରୁଷ ହେ ରାଜନ ।
ହୋଇବେ ନିଷଧ ଦେଶେଣ ॥୧୮୬
ଖଣ୍ଡମଣ୍ଡଳେ ଅଧିପତି ।
ପାଳିବେ ଏକାବେଳେ କ୍ଷିତି ॥୧୮୭
ଏ ଅନ୍ତେ ମଗଧ ଦେଶେଣ ।
ବିଶ୍ୱସ୍ଫୁର୍ଜି ନାମେ ରାଜନ ॥୧୮୮
ପୁରଞ୍ଜୟ ତା' ନାମ ଆର ।
ସେ ରାଜା ଅତ୍ୟନ୍ତ ପ୍ରବଳ ॥୧୮୯
ଏ ଅତି ଅଧାର୍ମିକ ପୁଣ ।
କରିବ ପରଜା କଷଣ ॥୧୯୦
ଏକ ଆଚାର ସେ କରିବ ।
ବର୍ଣ୍ଣ ଧର୍ମ ସେ ନ ରଖିବ ॥୧୯୧

ବ୍ରାହ୍ମଣାଦି ଚାରିବର୍ଣ୍ଣର ।
କରିବ ସେହୁ ଏକାକାର ॥୧୯୨
ପୁଳିନ୍ଦ ଯଦୁ ଯେ ମଦ୍ରକ ।
ସଙ୍ଗୁ ସେ ନୋହିବ ପୃଥକ ॥୧୯୩
ସର୍ବେ ହୋଇବେ ଏକାକାର ।
ନ ଥିବ ବେଦର ବିଚାର ॥୧୯୪
ମ୍ଳେଚ୍ଛଙ୍କ ପ୍ରାୟ ବ୍ୟବହାର ।
ହେବ ବ୍ରାହ୍ମଣାଦି ବର୍ଣ୍ଣର ॥୧୯୫
ସବୁଜାତି ଏକତ୍ର କରି ।
ଅଧାର୍ମିକପଣ ଆଚରି ॥୧୯୬
କର୍ମ ଧର୍ମ ସବୁ ଛଡ଼ାଇ ।
ଦୁଷ୍ଟ ଆଚରଣ ବଢାଇ ॥୧୯୭
ବିବିଧ ବର୍ଣ୍ଣର ପ୍ରଚାର ।
କରିବ ଏହୁ ନୃପବର ॥୧୯୮
ବର୍ଣ୍ଣାତିରିକ୍ତ ମ୍ଳେଚ୍ଛ ପ୍ରଜା ।
ପାଳନ କରିବ ଏ ରାଜା ॥୧୯୯
ବଳବନ୍ତରେ ଜିଣି ମହୀ ।
ସବୁ କ୍ଷତ୍ରିୟ ମାରି ସେହି ॥୨୦୦
ପଦ୍ମାବତୀ ନାମ ନଗରେ ।
ରାଜା ହୋଇବେ ତେଜଭରେ ॥୨୦୧
ହସ୍ତିନା ଦ୍ୱାରକା ମଥୁରା ।
ପ୍ରୟାଗ ଯାଏ ଗଙ୍ଗାଦ୍ୱାରା ॥୨୦୨
ଏକାଙ୍ଗ ହୋଇବ ନରେନ୍ଦ୍ର ।
ଅଧର୍ମେ ନାଶି ପ୍ରଜାବୃନ୍ଦ ॥୨୦୩
ସୌରାଷ୍ଟ୍ର ଅବନ୍ତୀ ଆଭୀର ।
ଅର୍ବୁଦ ମାଳବ ଯେ ଶୂର ॥୨୦୪
ବ୍ରାହ୍ମଣେ ସଂସ୍କାରରେ ହୀନ ।
ଶୂଦ୍ର ପ୍ରାୟେକ ଆଚରଣ ॥୨୦୫
ତାହାର ସମୟରେ ପୁଣ ।
ନଶିବ ସର୍ବଗୁଣମାନ ॥୨୦୬
କରିବେ ଶୂଦ୍ରଧର୍ମ କର୍ମ ।
ବେଦବିଦ୍ୟାରେ ହେବେ ଭ୍ରମ ॥୨୦୭
କ୍ଷତ୍ରିୟେ ଶୂଦ୍ର ପ୍ରାୟ ହୋଇ ।
ପ୍ରଜା ପୀଡ଼ିବେ ରାଜା ହୋଇ ॥୨୦୮
ଏ ପୁରଞ୍ଜୟ-ବଂଶ ପୁଣ ।
ଚଉଦ ପୁରୁଷ ରାଜନ ॥୨୦୯

Dr. Sudhanshu Sekhar Mishra

ସାତଶଅଶୀ ଯେ ବରଷ ।
ରାଜପଣେ ପାଳିବେ ଦେଶ ॥୨୧୦
ଏ ଅନ୍ତେ ପୁଣି ସେ ରାଜନ ।
ହୋଇବେ ଯେମନ୍ତ ଭାବେଣ ॥୨୧୧
ଚନ୍ଦ୍ରଭାଗା ଯେ ସିନ୍ଧୁତଟ ।
କୌନ୍ତୀ ଯେ କାଶ୍ମୀର ନିକଟ॥୨୧୨
ବ୍ରାହ୍ମଣ କ୍ଷତ୍ରି ନାମଧାରୀ ।
ଶୂଦ୍ରେ ହୋଇବେ ଅଧିକାରୀ ॥୨୧୩
ମ୍ଳେଚ୍ଛ ଶରୀରେ ରାଜା ହେବେ।
ଅଧାର୍ମିକ ପଣେ ବର୍ତ୍ତିବେ ॥୨୧୪
ଗୋରୁ ବ୍ରାହ୍ମଣାଦି ମାରିବେ ।
ମିଥ୍ୟାବାଦରେ ଦିନ ନେବେ ॥୨୧୫
ହିଂସା-ଗ୍ରାମ୍ୟଧର୍ମ ଆଚରି ।
ସତ୍ୟ-ଧର୍ମ-ଗୁଣ ପାସୋରି ॥୨୧୬
ଅଳପ ଦାନ ସେହୁ ଦେବେ ।
ଅଳପେ କ୍ରୋଧ ସେ କରିବେ॥୨୧୭

ଅଦୋଷେ ଦଣ୍ଡିବେ ପ୍ରାଣୀଙ୍କି ।
ବିଚାର ନ ଥିବ ତହିଁକି ॥୨୧୮
ସ୍ତିରୀ-ବାଳକ-ଗୋ-ବ୍ରାହ୍ମଣ ।
ମାରି କରିବେ ରଣଭଣ ॥୨୧୯
ପରଦ୍ରବ୍ୟ ବଳେ ହରିବେ ।
ପରଦାରା ଯେ ସେ କରିବେ॥୨୨୦
ଅଳପ ସମ୍ପତ୍ତି ହୋଇବ ।
ଉଦୟ ଅସ୍ତ ପ୍ରାୟ ଯିବ ॥୨୨୧
ଅଳପ ଦିନେ ଯିବେ ନାଶ ।
ଅଯଶେ ରଖି ନିଜ ଅଂଶ ॥୨୨୨
ଯମ ଭୁବନ ସେ ଦେଖିବେ ।
ଅନ୍ତେ ସେ ଅଗତିକି ଯିବେ ॥୨୨୩
ଅସଂସ୍କାର ଯେ କ୍ରିୟାହୀନା ।
ରଜତମରେ ଯୁକ୍ତ ମନ ॥୨୨୪
ସେ ମ୍ଳେଚ୍ଛରୂପୀ ରାଜାମାନ ।
ପ୍ରଜାଙ୍କୁ କରିବେ ପୀଡ଼ନ ॥୨୨୫

ସେ ଦିନେ ପ୍ରଜାମାନେ ପୁଣ ।
ଦେଖିଣ ରାଜା ଆଚରଣ ॥୨୨୬
ଅବିଦ୍ୟା ଅକର୍ମେ ବର୍ତ୍ତିବେ ।
ସେ ରାଜଭାଷା ହିଁ କହିବେ ॥୨୨୭
ପ୍ରଜାଏ ଅନ୍ୟୋଅନ୍ୟେ ହୋଇ ।
ଆପଣା ଛାଏଁ ନାଶ ଯାଇ ॥୨୨୮
ଏକ ଆରକେ ଗର୍ବ କରି ।
ମରିବେ ହିଂସାଭାବ ଧରି ॥୨୨୯
ରାଜାଏ ପ୍ରଜାଙ୍କୁ ନାଶିବେ ।
ଗୁହାରି କଲେ ନ ଶୁଣିବେ ॥୨୩୦
ସୂତ କହନ୍ତି ତୋଷମନେ ।
ଶୌନକ ମୁନି ସନ୍ନିଧାନେ ॥୨୩୧
କହଇ ଜଗନ୍ନାଥ ଦାସ ।
କଳିର ଆଗତ ଭବିଷ୍ୟ ॥୨୩୨

ଇତି ଶ୍ରୀମଦ୍ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ପ୍ରଥମୋଽଧ୍ୟାୟଃ ॥

## ଦ୍ୱିତୀୟ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ବିଦ୍ୟମାନେ ।
ଶୁଣ ରାଜନ ସାବଧାନେ ॥୧
କଳିଯୁଗ-ଧର୍ମ-ବିଧାନ ।
ଏ ଯୁଗେ ହୋଇବ ଯେସନ ॥୨
ସତ୍ୟ ଶଉଚ ଦୟା କ୍ଷମା ।
ତୁଟିବ ଧର୍ମମାର୍ଗ ସୀମା ॥୩
କାଳ ଯେ ବଳବନ୍ତ ହୋଇ ।
ପ୍ରାଣୀଙ୍କି ଗ୍ରାସିବ ଯେ ସେହି ॥୪
ଏଣୁ ଯେ ଧର୍ମହାନି ହୋଇ ।
ବଳ ଆୟୁଷ କ୍ଷୟ ଯାଇ ॥୫
ଜ୍ଞାନ ଯେ ଧର୍ମ ନ ରହଇ ।
ଧର୍ମ ନ ଥିଲେ ପୁଣ୍ୟ କାହିଁ ॥୬
ଏଣୁ ଧର୍ମାଦି ପୁଣ୍ୟହୀନ ।
ବର୍ଦ୍ଧନ ହେବେ ମ୍ଳେଚ୍ଛଜନ ॥୭

ଯେଉଁ ଜନର ଧନ ଥିବ ।
ସଂସାରେ ବଡ଼ ସେ ହୋଇବ ॥୮
ତାଙ୍କର ସର୍ବଗୁଣ ପୁଣ ।
ଜାତି ଆଚାର। କୁଳ ବର୍ଣ୍ଣ ॥୯
ଶୀଳ ବୁଦ୍ଧି ଆଦି ଯେ ଗୁଣ ।
ଧର୍ମ ନ୍ୟାୟ ଯେ ବିଚାରଣ ॥୧୦
ବଳବନ୍ତ ହୋଇବେ ସେହି ।
ତା' ବିନୁ କେହି କିଛି ନୋହି ॥୧୧
ବିବାହ ସମ୍ବନ୍ଧେ ଅଗ୍ରଣୀ ।
କୁଳ ନ ବିଚାରିବେ ପୁଣି ॥୧୨
ଯେ କନ୍ୟା ଯେ ବର ବରିବ ।
ସେ ଇଚ୍ଛା ସୁଖେ ବିଭାହେବ ॥୧୩
ଯା' ମନ ଯାହାକୁ ଭଜିବ ।
ସେ ବର ତା'କୁ ବିଭା ହେବ ॥୧୪

ଆରମ୍ଭୀ ଦମ୍ଭୀ ଖଳପ୍ରାଣୀ ।
ସେ ବଡ଼ ଏ ସଂସାର ପୁଣି ॥୧୫
ଯାହାର ସତ୍ୟଗୁଣ ଥାଇ ।
ତାହାକୁ ନ ମାନିବେ କେହି ॥୧୬
କରିବେ କପଟ ବେଭାର ।
ଧର୍ମ ଆଚାର ଲୋକାଚାର ॥୧୭
ଛନ୍ଦ କପଟ ମାୟା ସର୍ବ ।
ମିଥ୍ୟା ପାଷଣ୍ଡଭାବ ଗର୍ବ ॥୧୮
ସ୍ତିରୀଏ ସ୍ତିରୀଙ୍କି ରମିବେ ।
ପୁରୁଷ ପୁରୁଷେ ଭଜିବେ ॥୧୯
ମୁଖେ ମୁଖେ କାକୁସ୍ଥରତି ।
ଏମନ୍ତ ହୋଇବ ପ୍ରକୃତି ॥୨୦
କେବଳ ରୁଚି ଅନୁସାରେ ।
ରତି ଯେ ସ୍ତିରୀ ପୁରୁଷରେ ॥୨୧
କ୍ରୀଡ଼ା ବିହାର ଜାତିହୀନେ ।
କରିବେ ଯେ ଅଭିଗମନେ ॥୨୨

Dr. Sudhanshu Sekhar Mishra

ବେଶ୍ୟାକୁ ପାଇ ନିଜନାରୀ ।
ଛାଡ଼ି ତା' ସଙ୍ଗେ କ୍ରୀଡ଼ାକରି ॥୨୩
ଜାତି ଭେଦକୁ ଭୟ ନାହିଁ ।
ଦୀପେ ପତଙ୍ଗ ପ୍ରାୟ ହୋଇ ॥୨୪
ବ୍ରହ୍ମତ୍ୱ କିଞ୍ଚିତ ପ୍ରକାରେ ।
ରହିବ ଯଜ୍ଞୋପବୀତରେ ॥୨୫
ନାମେ ବୋଲାଇବେ ବ୍ରାହ୍ମଣ ।
ଦ୍ୱାଦଶଗୁଣେ ହେବେ ହୀନ ॥୨୬
ବ୍ରହ୍ମଚାରୀ ଯେ ଚାରିବର୍ଣ୍ଣ ।
ନାମରେ ବହିବେ ସେ ଚିହ୍ନ ॥୨୭
ଦଣ୍ଡକମଣ୍ଡଳୁ ଅଜୀନ ।
ଧରିଣ ଆଶ୍ରମର ଚିହ୍ନ ॥୨୮
ଏମାନେ ଛାଡ଼ି ଚାରିବର୍ଣ୍ଣ ।
ନାନା ବିକାରେ ହେବେ ଭ୍ରମ ॥୨୯
ଆଶ୍ରମ ଧର୍ମେ ନ ରହିବେ ।
ସଂସାର ମାର୍ଗରେ ଚଳିବେ ॥୩୦
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ।
ବର୍ଣ୍ଣ-ଧର୍ମ ଛାଡ଼ି ଅଜ୍ଞାନ ॥୩୧
ଆନ ଆନ ବର୍ଣ୍ଣେ ପଶିବେ ।
ଅମାର୍ଗପଥ ଆଚରିବେ ॥୩୨
ଅଷ୍ଟାଦଶ ପାଟକ ଜନ ।
ବର୍ଣ୍ଣଶଙ୍କର ଜାତିମାନ ॥୩୩
ଏମାନେ ଦମ୍ଭେ ପ୍ରବର୍ତ୍ତିବେ ।
ଆରମ୍ଭେ ବଡ଼ ବୋଲାଇବେ ॥୩୪
ବ୍ରାହ୍ମଣମାନେ ନିଜକର୍ମ ।
ବେଦ ଆଚାରେ ଜ୍ଞାନ ଧର୍ମ ॥୩୫
ତା' ଛାଡ଼ି ଅକର୍ମେ ବଢିବେ ।
ଶୂଦ୍ରା ଗର୍ଭରେ ରେତ ଦେବେ ॥୩୬
କରିବେ ଶୂଦ୍ରଙ୍କ ବିଧାନ ।
ନ ଜାଣି ବେଦର ବଚନ ॥୩୭
ଶୂଦ୍ରାଦିମାନେ ବ୍ରହ୍ମଚାରୀ ।
ସନ୍ୟାସ ବୈଷ୍ଣବେ ପ୍ରଚରି ॥୩୮
ବେଦମାର୍ଗ ନିନ୍ଦା କରିବେ ।
କିଞ୍ଚିତ ଜ୍ଞାନେ କରି ଗର୍ବେ ॥୩୯
ବ୍ରାହ୍ମଣମାନେ ହୋଇ ଶିଷ୍ୟ ।
ଘେନିବେ ମନ୍ତ୍ରଉପଦେଶ ॥୪୦

ଗୁରୁ ବୋଲାଇ ହେବେ ଶ୍ରେଷ୍ଠ ।
ଉଚ୍ଚସ୍ଥାନେ ବସି ବଶିଷ୍ଠ ॥୪୧
ବ୍ରାହ୍ମଣ ଆଦି ବର୍ଣ୍ଣମାନେ ।
ନମସ୍କାର କରି ଅଜ୍ଞାନେ ॥୪୨
ଏ ରୂପେ କଳିଯୁଗ ଗତି ।
ଅଜ୍ଞାନେ ହୋଇ ଦୁଷ୍ଟମତି ॥୪୩
ନ୍ୟାୟ-ଅନ୍ୟାୟ ବିଚାରଣ ।
ନ କରି ଶାସ୍ତ୍ରର ପ୍ରମାଣ ॥୪୪
ଯେ ଜନ ନିର୍ଦ୍ଧନ ହୋଇବେ ।
ସାହା ତାଙ୍କୁକେହି ନୋହିବେ ॥୪୫
ନ୍ୟାୟରେ ସେ ଲୋକ ହାରିବ ।
ସଭାରେ ନିନ୍ଦିତ ହୋଇବ ॥୪୬
ପଣ୍ଡିତ ଯେହୁ ବୋଲାଇବେ ।
ଚଞ୍ଚଳ ବଚନ କହିବେ ॥୪୭
ଦରିଦ୍ର ହେବ ଯେଉଁଜନ ।
ନଷ୍ଟ ହୋଇବ ସର୍ବଗୁଣ ॥୪୮
ଅସାଧୁ ବୋଲାଇବ ସେହି ।
ସତ୍ୟ ବଚନ ମିଥ୍ୟା ହୋଇ ॥୪୯
ସାଧୁ ଯେ ଦମ୍ଭେ ବୋଲାଇବେ ।
ପ୍ରାଣୀଙ୍କି ହୃଦେ ହିଂସୁଥିବେ ॥୫୦
ଜାତି ଧର୍ମକୁ ନ ବିଚାରି ।
ବଚନେ ଉପ୍ରୋଧ ନ କରି ॥୫୧
ସ୍ୱୀକାର ବଚନରେ କରି ।
ବିଭା ହୋଇବେ ଅବିଚାରି ॥୫୨
କରେ ପାନିଆ ଘେନି ଥିବେ ।
କେଶ କୁଣ୍ଡାଇ ସୁଖଭାବେ ॥୫୩
ସ୍ନାନ କଲୁ ବୋଲି ବୋଲିବେ ।
ଦୂର ଗାଡ଼ିଆ ପାଶେ ଯିବେ ॥୫୪
ତାହାକୁ ତୀର୍ଥ ବୋଲି ଜାଣି ।
ସ୍ନାନ କରିବେ ତହିଁ ପୁଣି ॥୫୫
କେବଳ କେଶର ଧାରଣ ।
ହୋଇବ ଲାବଣ୍ୟ କାରଣ ॥୫୬
ଆପଣା ପେଟକୁ ପୋଷିବା ।
ବଡ଼ ପ୍ରୟୋଜନ ହୋଇବା ॥୫୭
କାର୍ଯ୍ୟକଳାର ପ୍ରାୟ ମଣି ।
ସେ ଲୋକ ହୋଇବେ ଅଗ୍ରଣୀ ॥୫୮

ଆଣ୍ଟ ପଣରେ ଶତେ ଗୁଣ ।
କୁଟୁମ୍ବପୋଷି ବଡ଼ପଣ ॥୫୯
ଚତୁର ବୋଲାଇବେ ସେହି ।
ଏ ରୂପେ ଯୁଗଧର୍ମ କହି ॥୬୦
ଧର୍ମ କରିବେ ଯଶ ଅର୍ଥେ ।
ଶାସ୍ତ୍ରକୁ ମଣିବେ ଅନର୍ଥେ ॥୬୧
ଏମନ୍ତ ହୋଇ ଯେତେବେଳେ ।
ପାପ ଆଚ୍ଛାଦିବ ଶୟଳେ ॥୬୨
ପରଜାମାନେ ଦୁଷ୍ଟପଣେ ।
ପୃଥ୍ୱୀ ପୂରିବ ଦୁଷ୍ଟଜନେ ॥୬୩
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ।
ବଳ-ବିଚାର-ପରାକ୍ରମେ ॥୬୪
ବଳିଷ୍ଠ ବୋଲାଇବେ ଯେହି ।
ନୃପତି ବୋଲାଇବେ ସେହି ॥୬୫
ଏମାନେ ଦୁର୍ବୃତ୍ତ ହୋଇବେ ।
ନିର୍ଦ୍ଦୟ ଭାବକୁ ବହିବେ ॥୬୬
ପ୍ରଜାମାନଙ୍କୁ କଷ୍ଟଦେବେ ।
ଅଧର୍ମ-ବଳ-ଗୁଣ-ଭାବେ ॥୬୭
ସର୍ବସ୍ୱ ପ୍ରଜାଙ୍କର ନେବେ ।
ବିକଳ କେହି ନ ଶୁଣିବେ ॥୬୮
ପରଦାରାଧନ ହରିବେ ।
ଶୋକବିପତ୍ତିରେ ଦଣ୍ଡିବେ ॥୬୯
ଏମନ୍ତ ହୋଇ ଯେତେବେଳେ ।
ପ୍ରଜାଙ୍କୁ ପୀଡ଼ିବେ ଶୟଳେ ॥୭୦
ବନପର୍ବତରେ ଲୁଚିବେ ।
ସ୍ୱଦେଶ ଧର୍ମରେ ରହିବେ ॥୭୧
ଭକ୍ଷିବେ ଶାକ କନ୍ଦମୂଳ ।
ଆମିଷ ପୁଷ୍ପ ମଧୁଫଳ ॥୭୨
ଇନ୍ଦ୍ର ବରଷା ନ କରିବ ।
ଏଣୁ ଯେ ଦୁର୍ଭିକ୍ଷ ହୋଇବ ॥୭୩
କରପୀଡ଼ାରୁ ପ୍ରାଣୀମାନେ ।
ବିଷାଦ ହୋଇବେ ଯେ ଜନେ ॥୭୪
ରାଜାଏ କ୍ଷମା ନ କରିବେ ।
ଯମକିଙ୍କର ପ୍ରାୟ ହେବେ ॥୭୫
ଶୀତ ବାତ ଖରା ବରଷା ।
ପୀଡ଼ିବ ବ୍ୟାଧି କ୍ଷୁଧା ତୃଷା ॥୭୬

Dr. Sudhanshu Sekhar Mishra

ଚିନ୍ତା-ସନ୍ତାପ-ଜ୍ୱରେ ଦୁଃଖୀ ।
ପ୍ରଜାଏ ହେବେ ନିରିମାଖି ॥୭୭
କଳିଯୁଗରେ ପ୍ରାଣୀମାନ ।
ପାପେ ହୋଇବେ ଆୟୁହୀନ ॥୭୮
ସ୍ତିରୀ ପୁରୁଷଙ୍କ ଆୟୁଷ ।
ବିଂଶ କି ତିରିଶ ବରଷ ॥୭୯
ପ୍ରାଣୀ ଆୟୁଷ ଦିନେ ଦିନେ ।
କ୍ଷୀଣ ଯେ ହୋଇବ ଅଧର୍ମେ ॥୮୦
ଚାରିବର୍ଣ୍ଣ ଚାରିଆଶ୍ରମ ।
ତୁଟିବ ବେଦମାର୍ଗ-ଧର୍ମ ॥୮୧
ସକଳ ଧର୍ମ ନାଶଯିବେ ।
ପାଷଣ୍ଡ ବହୁତ ହୋଇବେ ॥୮୨
ରାଜାଏ ଦସ୍ୟୁପରି ହେବେ ।
ପ୍ରଜାଏ ଏମନ୍ତ କରିବେ ॥୮୩
ଚୋରି ମିଥ୍ୟା ହିଂସା ବିବାଦ ।
ବିଶ୍ୱାସଘାତ ବୃତ୍ତିଛେଦ ॥୮୪
ଏମନ୍ତେ ପ୍ରବର୍ତ୍ତିବେ ପ୍ରାଣୀ ।
ଜୀବିକା କରିଣ ଅଗ୍ରଣୀ ॥୮୫
ସକଳ ବର୍ଣ୍ଣରେ ବିସ୍ତାର ।
ଶୂଦ୍ରେ ଯେ ବଢ଼ିବେ ଅପାର ॥୮୬
ସବୁ ଯେ ବର୍ଣ୍ଣମାନଙ୍କର ।
ଶୂଦ୍ର ପରି ହେବ ଆଚାର ॥୮୭
ଗାଈ ଯେ ଛେଳି ପ୍ରାୟ ହୋଇ ।
ଅଭକ୍ଷ ଭକ୍ଷି କ୍ଷୀର ଦେଇ ॥୮୮
ସର୍ବ ଆଶ୍ରମୀମାନେ ପୁଣ ।
କରିବେ ଗୃହୀ ଆଚରଣ ॥୮୯
ଗୃହସ୍ଥ ଧର୍ମ ଆଚରିବେ ।
ବେଦବଚନ ନ ମାନିବେ ॥୯୦
ସର୍ବ ଯେ ବନ୍ଧୁମାନଙ୍କର ।
ଶାଳକେ ହେବେ ସ୍ନେହଭର ॥୯୧
ଧାନ୍ୟାଦି ସର୍ବ ଶସ୍ୟମାନ ।
ସକଳ ହେବ ରସହୀନ ॥୯୨
ବୃକ୍ଷ ସକଳ ଶମୀ ତୁଲ୍ୟ ।
ଅତ୍ୟନ୍ତ କ୍ଷୀଣ ପତ୍ର ଫଳ ॥୯୩
ମେଘ ଯେ ଗର୍ଜନ କରିବେ ।
ବିଜୁଳିମାନେ ଆଚ୍ଛାଦିବେ ॥୯୪
ବରଷା କିଞ୍ଚିତେ କରିବେ ।
ପବନେ ମେଘ ଉଡ଼ିଯିବେ ॥୯୫
ବରଷା ଫିରିଫିରି କରି ।
ପ୍ରଜା ଚାଷ କରି ନ ପାରି ॥୯୬
ଘରମାନ ଶୂନ୍ୟ ହୋଇବେ ।
ପ୍ରାଣୀଏ ନିର୍ଦ୍ଧନେ ବଞ୍ଚିବେ ॥୯୭
ଗର୍ଦ୍ଦଭ ପ୍ରାୟ ଆଚରଣ ।
କରିବେ ପ୍ରାଣୀ ପରିଶ୍ରମ ॥୯୮
ଏମନ୍ତେ ଘୋରକଳିଯୁଗ ।
ଯେବେ ହୋଇବ ଶେଷଭାଗ ॥୯୯
ସର୍ବେ କରିବେ ଦୁଷ୍ଟରୀତି ।
ତାହା ଜାଣିଣ ଶିରୀପତି ॥୧୦୦
ସତ୍ତ୍ୱଗୁଣକୁ ଆଶ୍ରେ କରି ।
ମାନବ ରୂପେ ଦେହ ଧରି ॥୧୦୧
ସେ କାଳେ ପ୍ରଭୁ ଭଗବାନ ।
ଧର୍ମ ରକ୍ଷଣେ ହେବେ ଜନ୍ମ ॥୧୦୨
ଏମନ୍ତେ ଦଶସହସ୍ରବର୍ଷ ।
କଳିର ହୋଇବ ଯେ ଶେଷ ॥୧୦୩
ଉତ୍କଳଦେଶ ସିନ୍ଧୁତଟେ ।
ନୀଳଗିରି କଳପବଟେ ॥୧୦୪
ନୀଳାଚଳରେ ଜଗନ୍ନାଥ ।
ଅନ୍ତର୍ଦ୍ଧାନରେ ସେ ଗୁପତ ॥୧୦୫
ଗଙ୍ଗାରେ ସ୍ରୋତ ନ ବହିବ ।
ପୋତିଣ ଉସର୍ଗ ହୋଇବ ॥୧୦୬
ଦେବଦେବୀମାନେ ଯେ ପୁଣ ।
ସକଳେ ଯିବେ ଅନ୍ତର୍ଦ୍ଧାନ ॥୧୦୭
ସକଳ ପୁଣ୍ୟସ୍ଥାନ ମାନ ।
ତମରେ ହୋଇବ ଗୋପନ ॥୧୦୮
ପ୍ରାଣୀ ଅଜ୍ଞାନେ କହୁଥିବେ ।
ଏଠାରେ ଥିଲେ ପୂର୍ବେ ଦେବେ॥୧୦୯
ଏମନ୍ତ ଦେଖିଣ ଶ୍ରୀହରି ।
କୀକଟ ନାମେ ଯେ ନଗରୀ ॥୧୧୦
ଗୟାରେ ଆଶ୍ରମ ତାହାର ।
ଅଙ୍ଗିରା ନାମେ ଦ୍ୱିଜବର ॥୧୧୧
ସୁଗତି ନାମେ ଯେ ବ୍ରାହ୍ମଣୀ ।
ତା'ର ଗର୍ଭରେ ତପୋଧନୀ ॥୧୧୨
ଧର୍ମରକ୍ଷା ନିମନ୍ତେ କରି ।
ବଉଦ୍ଧ ରୂପେ ଜାତ ହରି ॥୧୧୩
ସେ ବାସୁଦେବ ଚକ୍ରଧାରୀ ।
ଜଗ୍ମିଣ ଯୋଗାରୂଢ଼ ହରି ॥୧୧୪
ସ୍ଥାବର ଜଙ୍ଗମ କୀଟରେ ।
ପୂରି ଯେ ଈଶ୍ୱର ଭାବରେ ॥୧୧୫
ସେ ବାସୁଦେବ ନାରାୟଣ ।
ଅଧର୍ମ ସମୂହ ନାଶିଣ ॥୧୧୬
ପ୍ରବର୍ତ୍ତାଇବେ ଧର୍ମ ପୁଣ ।
ଏକାକ୍ଷର ମନ୍ତ୍ର ଜପିଣ ॥୧୧୭
ଯଜ୍ଞାଦି ହିଂସା ଧର୍ମନାସ୍ତି ।
କରିବେ ପ୍ରଭୁ ଶିରୀପତି ॥୧୧୮
ପ୍ରାଣୀଙ୍କି ଜ୍ଞାନମାର୍ଗେ ସ୍ଥାପି ।
ଏକତ୍ୱ ଭାବେଣ ନିରୋପି ॥୧୧୯
ବେଦ ଯେ ଧର୍ମ ଛଡ଼ାଇବେ ।
ସର୍ବେ ଏକାକାର କରିବେ ॥୧୨୦
ଜ୍ଞାନରେ ବିଷ୍ଣୁଙ୍କୁ ଭଜିବେ ।
ନିର୍ଗୁଣ ମାର୍ଗରେ ରହିବେ ॥୧୨୧
କରଣି ନ କରିବେ ପୁଣ ।
ଏଯେଣୁ ମାୟାର ଭିଆଣ ॥୧୨୨
ସେ ଯେ ସମୟମାନଙ୍କରେ ।
ସିଦ୍ଧାନ୍ତ କ୍ରୟବିକ୍ରୟରେ ॥୧୨୩
ସମସ୍ତ ବର୍ଣ୍ଣ ଏକଠାରେ ।
ବସିଣ ଭକ୍ଷିବେ ସୁଖରେ ॥୧୨୪
ବ୍ରାହ୍ମଣ ବେଦକୁ ବିକିବ ।
କର୍ମେଣ ଜ୍ଞାନଲୋପ ଯିବ ॥୧୨୫
କୁଳସ୍ତ୍ରୀ ଅନ୍ୟାୟ କରିବେ ।
ପରପୁରୁଷେ ମନ ଦେବେ ॥୧୨୬
କୁଳଧର୍ମକୁ ନ ରଖିବେ ।
ବର୍ଣ୍ଣଭେଦକୁ ସେ ଛାଡ଼ିବେ ॥୧୨୭
ବେଭାରେ ଜାତିଭେଦ ନାହିଁ ।
ସମସ୍ତେ ଏକାକାର ହୋଇ ॥୧୨୮
ଏ ଭାବେ କଳିଯୁଗ ଶେଷ ।
ଥିବ ଦଶସହସ୍ର ବରଷ ॥୧୨୯
ସାଧୁଙ୍କ ଧର୍ମ ରଖିବାରେ ।
ସମ୍ଭଳ ନାମକ ଗ୍ରାମରେ ॥୧୩୦

Dr. Sudhanshu Sekhar Mishra

ସେ ଚରାଚର ଗୁରୁଈଶ ।
ସକଳ ଆତ୍ମାରେ ପ୍ରକାଶ ॥୧୩୧
ସାଧୁଜନଙ୍କ ପରିତ୍ରାଣେ ।
ଜନ୍ମକର୍ମ ମୋକ୍ଷ କାରଣେ ॥୧୩୨
ବିଷ୍ଣୁଯଶା ନାମେ ବ୍ରାହ୍ମଣ ।
ବିଷ୍ଣୁ ଯେ ତା'ର ବୀର୍ଯ୍ୟେ ଜନ୍ମ॥୧୩୩
ଯଶୋବନ୍ତୀ ନାମେ ବ୍ରାହ୍ମଣୀ।
ତା' ଗର୍ଭେ ଜନ୍ମ ଚକ୍ରପାଣି ॥୧୩୪
କଳ୍କୀ ନାମରେ ଅବତାର ।
ହୋଇବେ ପରମ ଈଶ୍ୱର ॥୧୩୫
ସେ ପୁଣି ସହସ୍ର ବରଷ ।
ତପଜ୍ଞାନ ଯୋଗେ ପ୍ରବେଶ ॥୧୩୬
ସେ ଅନ୍ତେ ଈଶ୍ୱର ପ୍ରସନ୍ନ ।
ଅଗ୍ନିରୁ ଅଶ୍ୱ ସମର୍ପିଣ ॥୧୩୭
ନନ୍ଦକ ନାମେ ଖଡ୍ଗ ଦେବ ।
ଯୋଜନେ ବିସ୍ତାର ହୋଇବ ॥୧୩୮
ଖଡ୍ଗ ସେ ଧରି ଦେବଦତ୍ତ ।
ଅଶ୍ୱ ଚଢ଼ିବେ ବେଗବନ୍ତ ॥୧୩୯
ସେ ଅଶ୍ୱ ଚଢ଼ି ଖଡ୍ଗ ଘେନି ।
ଅଷ୍ଟ ଐଶ୍ୱର୍ଯ୍ୟ ରସଦାନୀ ॥୧୪୦
ପୃଥ୍ୱୀରେ ବୁଲିବେ ପ୍ରକୋପେ ।
ମ୍ଳେଚ୍ଛ ନାଶନେ ମହାଦର୍ପେ ॥୧୪୧
ରାଜବଂଶରେ ଯେତେ ଦୁଷ୍ଟ ।
ଖଣ୍ଡ ରାକ୍ଷସ ଯେ ପାପିଷ୍ଠ ॥୧୪୨
ମାରିବେ କୋଟିକୋଟି ଧରି ।
ପୃଥ୍ୱୀ ନିକ୍ଷତ୍ରିୟ କରି ॥୧୪୩
ଏ ଅନ୍ତେ ସାଧୁଙ୍କୁ ପାଳିବେ ।
ଯେବା ତାହାଙ୍କୁ ଭଜୁଥିବେ ॥୧୪୪
ସତ୍ତ୍ୱଗୁଣରେ ଯେହୁଥିବେ ।
ସେ ବାସୁଦେବଙ୍କୁ ଦେଖିବେ॥୧୪୫
ସେ ସାଧୁପ୍ରଜାମାନେ ପୁଣ ।
ବାସୁଦେବସଙ୍ଗ ଲଭିଣ ॥୧୪୬
ତା'ଙ୍କ ଅଙ୍ଗବାସନା ଲାଗି ।
ସର୍ବେ ହୋଇବେ ସୁଖଭାଗୀ॥୧୪୭
ନିର୍ମଳମନା ଯହୁଁ ହେବେ ।
ସର୍ବେ ସତ୍ତ୍ୱଗୁଣେ ଚଳିବେ ॥୧୪୮

ପୁର ନଗର ଗ୍ରାମ୍ୟ ଦେଶ ।
ହୋଇବେ ଦୁଷ୍ଟମାନେ ନାଶ ॥୧୪୯
ସାଧୁ ଉତ୍ତମେ ପ୍ରବର୍ତ୍ତିବେ ।
ଉତ୍ତମ ଧର୍ମେ ମନ ଦେବେ ॥୧୫୦
ଭଗବାନ ବାସୁଦେବଙ୍କୁ ।
ହୃଦୟେ ଧରିଣ ତାହାଙ୍କୁ ॥୧୫୧
ଭଜିବେ ପରମ ପୁରୁଷ ।
ସର୍ବକଳୁଷ ଯିବ ନାଶ ॥୧୫୨
କଳକୀ ଅବତାର ଯେବେ ।
ସକଳ ଧର୍ମରକ୍ଷା ତେବେ ॥୧୫୩
ସେ ସତ୍ତ୍ୱଗୁଣାତ୍ମକ ଭାବେ ।
ପ୍ରଜାଏ ଜନମ ଲଭିବେ ॥୧୫୪
ସତ୍ୟଯୁଗ ଧର୍ମ ହୋଇବ ।
କଳିଯୁଗ ଧର୍ମ ରହିବ ॥୧୫୫
ଯେ କାଳେ ଚନ୍ଦ୍ରସୂର୍ଯ୍ୟ ବେନି।
ପୁଷ୍ୟାନକ୍ଷତ୍ର ଗୁରୁ ଘେନି ॥୧୫୬
କର୍କଟରାଶି ଏକାବେଳେ ।
ଆସିବେ ଏ କଥା ଦେଖିଲେ॥୧୫୭
ଜାଣିବ ସତ୍ୟଯୁଗ ଆଦ୍ୟ ।
ଏଭାବେ ପୁରାଣ ସମ୍ବାଦ ॥୧୫୮
ସୋମ ସୂର୍ଯ୍ୟାଦି ବଂଶେ ଯେତେ ।
ନୃପତି ଥିଲେ ଏ ଜଗତେ ॥୧୫୯
ବର୍ତ୍ତମାନରେ ଯେତେ ଛନ୍ତି ।
ଭବିଷ୍ୟେ ଯେତେକ ନୃପତି ॥୧୬୦
ତାହା ତ ସଂକ୍ଷେପି କହିଲୁ ।
ଏବେ କି ସନ୍ତୋଷ ଲଭିଲୁ ॥୧୬୧
ପରୀକ୍ଷିତ ତୋ' ଜନ୍ମଆଦି ।
ନନ୍ଦରାଜାଭିଷେକାବଧି ॥୧୬୨
କଳିଯୁଗର ଭୋଗ ଶେଷ ।
ଏଗାରଶତ ପଞ୍ଚଦଶ ॥୧୬୩
ସପ୍ତଋଷିରୁ ଆଦ୍ୟେ ପୁଣି ।
ଉଦେ ପୁଲହ କ୍ରତୁ ବେନି ॥୧୬୪
ଅଶ୍ୱି ଆଦି ଏ ମଧ୍ୟୁ ଏକ ।
ତା' ମଧ୍ୟେ ଦିଶଇ ଯେ ଋକ୍ଷ ॥୧୬୫
ତହିଁରେ ସପ୍ତଋଷି ଥା'ନ୍ତି ।
ଶତେବରଷ ସେ ବସନ୍ତି ॥୧୬୬

ମଘା ନକ୍ଷତ୍ରେ ସପ୍ତଋଷି ।
ଅଛନ୍ତି ଏବେ କୁରୁବଂଶୀ ॥୧୬୭
ଯେ ଦିନେ କୃଷ୍ଣ ଅବତାର ।
ତେଜିଲେ ନରକଳେବର ॥୧୬୮
ମଘା ନକ୍ଷତ୍ରେ ସପ୍ତଋଷି ।
ସେ ଦିନ ଉଦୟେ ପ୍ରକାଶି ॥୧୬୯
କଳି ପ୍ରବେଶ ସେ ଦିନରେ ।
ପାପ ପ୍ରବେଶ ପ୍ରାଣୀଙ୍କରେ ॥୧୭୦
କୃଷ୍ଣର ପାଦପଦ୍ମ ଚିହ୍ନ ।
ଥିଲା ପୃଥ୍ୱୀରେ ଯେତେ ଦିନ॥୧୭୧
ସେଦିନ ଯାଏ କଳିଯୁଗ ।
ପୃଥ୍ୱୀକି ନୋହିଥିଲା ଭୋଗ ॥୧୭୨
କୃଷ୍ଣ ବୈକୁଣ୍ଠେ ବିଜେ ଯେଣୁ।
ସଂସାରେ ପ୍ରବର୍ତ୍ତିଲା ତେଣୁ ॥୧୭୩
ମଘା ନକ୍ଷେତ୍ରେ ସପ୍ତଋଷି ।
କଳି ଆଦ୍ୟରେ ପରବେଶି ॥୧୭୪
ଦେବତାମାନଙ୍କ ବରଷ ।
ବାରଶ ବରଷରେ ଶେଷ ॥୧୭୫
ମନୁଷ୍ୟ ବରଷରେ ଶେଷ ।
ଚାରିଲକ୍ଷ ସସ୍ର ବତିଶ ॥୧୭୬
ସପତଋଷିମାନେ ଯେବେ ।
ମଘାରୁ ପୂର୍ବାଷାଢେ ଯିବେ ॥୧୭୭
ନନ୍ଦ ନାମେ ଯେଦିନୁ ରାଜ ।
ସେ ଦିନୁ କଳିଯୁଗ ତେଜ ॥୧୭୮
ମାଘ ଅମାବାସ୍ୟା ଦିନରେ ।
କଳିଯୁଗ ଜନ୍ମ ସଂସାରେ ॥୧୭୯
ଯେବଣ ଦିନେ ଯେଉଁ କ୍ଷଣ ।
ଶ୍ରୀକୃଷ୍ଣ ଗଲେ ଅନ୍ତର୍ଦ୍ଧାନ ॥୧୮୦
କଳି ପ୍ରବେଶ ତତକ୍ଷଣେ ।
ବୋଲନ୍ତି ପୁରାବିଦଜନେ ॥୧୮୧
ଦେବ ବରଷରେ ସହସ୍ର ।
ଅନ୍ତେ ସତ୍ୟଯୁଗ ପ୍ରବେଶ ॥୧୮୨
ପ୍ରାଣୀଏ ସତ୍ୟ ଯେ କହିବେ।
ଆତ୍ମାଜ୍ଞାନରେ ଧ୍ୟାନ ଦେବେ॥୧୮୩
ଏ ମନ୍ୱନ୍ତରେ ମନୁ ଜାତ ।
ବୈବସ୍ୱତ ନାମ ବିଖ୍ୟାତ ॥୧୮୪

Dr. Sudhanshu Sekhar Mishra

ଏହାଙ୍କ ବଂଶରେ ବ୍ରାହ୍ମଣ ।
କ୍ଷତ୍ରିୟ ବୈଶ୍ୟ ଶୂଦ୍ରଜନ ॥୧୮୫
ଏ ଯୁଗେ ଯୁଗେ ହେଉଛନ୍ତି ।
ଏ ଚାରିଯୁଗେ ଲେଉଟନ୍ତି ॥୧୮୬
ଦୁଇଶ ଚଉରାଶୀ ଯୁଗ ।
ମନ୍ୱନ୍ତର ଗୋଟିକେ ଭୋଗ ॥୧୮୭
ବଇବସ୍ୱତ ମନ୍ୱନ୍ତର ।
ଅଷ୍ଟାବିଂଶ ଗଣ୍ଡା ଯୁଗର ॥୧୮୮
ଶତେ ବାର ଯୁଗ ଯେ ଭୋଗ ।
ଏ ମନ୍ତରକୁ ସଂଯୋଗ ॥୧୮୯
ଏ ଯୁଗେ ଯେତେ ପ୍ରଜାଜନ ।
ବୈବସ୍ୱତ ମନୁ ବଂଶେଣ ॥୧୯୦
ଏ ସର୍ବ ପୁରୁଷଙ୍କ ଚିହ୍ନ ।
ନାମ କୀର୍ତ୍ତି ମାତ୍ର ପ୍ରମାଣ ॥୧୯୧
ଅବଶେଷେ ରହେ ଧରଣୀ ।
ଗମନ୍ତି ପାପପୁଣ୍ୟେ ପ୍ରାଣୀ ॥୧୯୨
ହୋଇବ ସତ୍ୟଯୁଗ ଯେବେ ।
ସୋମ ସୂର୍ଯ୍ୟବଂଶ ହୋଇବେ॥୧୯୩
ସୋମବଂଶରେ ରାଜା ପୁଣ ।
ହୋଇବେ ଯେମନ୍ତ ଭାବେଣ ॥୧୯୪
ଦେବାପି ଶାନ୍ତନୁର ଭାଇ ।
ସୋମ ବଂଶରେ ରାଜା ହୋଇ ॥୧୯୫
ସୂର୍ଯ୍ୟବଂଶରେ ଉତପନ୍ନ ।
ଇକ୍ଷ୍ୱାକୁ ନାମେଣ ରାଜନ ॥୧୯୬
ତାହାର ବଂଶେ ମନୁ ଜାତ ।
ତା' ତହୁଁ ସୂର୍ଯ୍ୟବଂଶ ଖ୍ୟାତ ॥୧୯୭
ଏ ଦୁଇବୀର ତପୋବଳେ ।
ଚିରଞ୍ଜିବୀ ହୋଇ ଶୟଳେ ॥୧୯୮
ହେମବନ୍ତ ଉତ୍ତରଭାଗେ ।
କଳାପ ନାମ ଗ୍ରାମ ଲାଗେ ॥୧୯୯
ତପସ୍ୟା ମହାଘୋର କରି ।
ଥିବେ କଳିଶେଷ ଆବୋରି ॥୨୦୦
କଳିର ଅନ୍ତେ କଳ୍କୀରୂପୀ ।
ଏ ଦୁଇ ରାଜାଙ୍କୁ ନିରୋପି ॥୨୦୧
ମରୁକୁ ଅଯୋଧ୍ୟାରେ ଆଣି ।
ସ୍ଥାପିବେ ପ୍ରଭୁ ଚକ୍ରପାଣି ॥୨୦୨

ଦେବାପି ହସ୍ତିନା ନଗରେ ।
ସ୍ଥାପିବେ ଯୁଗ ଅନୁସାରେ ॥୨୦୩
ସେ ବାସୁଦେବ ଆଜ୍ଞାଧରି ।
ସତ୍ତ୍ୱଗୁଣରେ ପ୍ରଜା ପାଳି ॥୨୦୪
ସତ୍ତ୍ୱଗୁଣକୁ ସେ ବିସ୍ତାରି ।
ବର୍ଣ୍ଣଧର୍ମମାନ ପ୍ରଚରି ॥୨୦୫
ସତ୍ୟ ତ୍ରେତା ଦ୍ୱାପର କଳି ।
ଏ କ୍ରମେ ଚାରିଯୁଗ ଚଳି ॥୨୦୬
ପୃଥ୍ୱୀରେ ପ୍ରାଣୀଙ୍କ ବେଭାରେ ।
ପ୍ରବର୍ତ୍ତ କରିବେ ଆଚାରେ ॥୨୦୭
ଏ ଭାବେ ଆତଯାତ ହୋଇ ।
ମନ୍ୱନ୍ତର ଭୋଗ ସରଇ ॥୨୦୮
ବ୍ରହ୍ମାଙ୍କ ଏକଘଡ଼ି ଜାଣ ।
ଏଭାବେ ଚଉଦ ମନ୍ତ୍ରେଣ ॥୨୦୯
ଚତୁର୍ଦ୍ଦଶ ଘଡ଼ିରେ ଦିନ ।
ବ୍ରହ୍ମାଙ୍କୁ ହୁଅଇ ମଧ୍ୟାହ୍ନ ॥୨୧୦
ସନ୍ଧ୍ୟାରେ ଏକଘଡ଼ି ଯାଇ ।
ଏହି ପ୍ରମାଣେ ରାତ୍ର ହୋଇ ॥୨୧୧
ଏହା ପୁରାଣରେ ବର୍ଣ୍ଣନ ।
ଦେବତା ମନୁଷ୍ୟେ ଗଣନ ॥୨୧୨
ସମର୍ଥ ଭାବରେ ପୃଥିବୀ ।
ମୋହର ବୋଲି ଲୋଭେ ସେବି ॥୨୧୩
ରାଜାଏ କାଳେ ନାଶ ଗଲେ ।
କଥାମାତ୍ରକ ରୁହାଇଲେ ॥୨୧୪
ଏ ଦେହ ବିଷ୍ଠା ଭସ୍ମ କୃମି ।
ମାୟାବଳରେ ବ୍ୟର୍ଥେ ଭ୍ରମି ॥୨୧୫
ସଙ୍ଗତେ ଏ ଭୂମି ନ ନେଲେ ।
ପୃଥ୍ୱୀରେ ବଡ଼ ବଡ଼ ଥିଲେ ॥୨୧୬
ଅନିତ୍ୟ ଶରୀରକୁ ବହି ।
ପ୍ରାଣୀଙ୍କ ଦ୍ରୋହ ଯେ ଚିନ୍ତଇ ॥୨୧୭
ମାୟା ଶରୀରେ ଗର୍ବ ବହି ।
ଆଜ୍ଞାନେ ଯାତନା ସଞ୍ଚଇ ॥୨୧୮
ନରକ ଭୋଗ ସେ କରଇ ।
କୃମି ଚଣ୍ଡାଳ କୋଳ ହୋଇ ॥୨୧୯
ସେ ବିଷ୍ଣୁମାୟାରେ ମୋହିତ ।
ହୋଇଣ ପ୍ରାଣୀ ଉନମତ୍ତ ॥୨୨୦

ଏ ପୃଥ୍ୱୀ ଅଖଣ୍ଡିତ ହୋଇ ।
କେମନ୍ତେ ମୋତେ ପ୍ରାପ୍ତ ହୋଇ ॥୨୨୧
ମୋ' ପୂର୍ବପୁରୁଷ ସେମାନେ ।
ଏ ଭୂମି ଭୁଞ୍ଜି ସୁଖମନେ ॥୨୨୨
ମୋହର ପୁତ୍ରପୌତ୍ରମାନେ ।
କେମନ୍ତେ ଭୁଞ୍ଜିବେ ଅବିଘ୍ନେ ॥୨୨୩
କରିବେ ଅଖଣ୍ଡିତ ଭୋଗ ।
ଏମନ୍ତ ବିଚାରି ସଂଯୋଗ ॥୨୨୪
ମମତ୍ୱ ମାୟାବଦ୍ଧ ହୋଇ ।
ଆତ୍ମା ଉଦ୍ଧରି ନ ପାରଇ ॥୨୨୫
ସ୍ତ୍ରୀ ପୁତ୍ର କୁଟୁମ୍ବାଦି କରି ।
ମୋହର ବୋଲିଣ ବିଚାରି ॥୨୨୬
ମୋହ ତ୍ରିଗୁଣ ରଜ୍ଜୁପାଶ ।
ବନ୍ଧନ କରିଅଛି ବିଶ୍ୱ ॥୨୨୭
ଅନ୍ତେ ଯେ କାଳବଶ ହୋଇ ।
ସବୁ ଛାଡ଼ିଣ ଚଳିଯାଇ ॥୨୨୮
ଏକଥା ମିଥ୍ୟା କରି ଜାଣ ।
ପାପ ପୁଣ୍ୟକୁ ଅବଧାନ ॥୨୨୯
ଯେ ରାଜାମାନେ ପୂର୍ବେ ଥିଲେ ।
ପୃଥିବୀ ଭୋଗକଲେ ବଳେ ॥୨୩୦
ସେ ପୁଣି କାଳବଶେ ନାଶ ।
କଥା ରହିଲା ଅବଶେଷ ॥୨୩୧
ପୁଣି କଳ୍ପକେ ଯାଏ କ୍ଷୟ ।
ଏମନ୍ତେ ବିଷ୍ଣୁ-ମାୟାମୋହ ॥୨୩୨
କହଇ ଦାସ ଜଗନ୍ନାଥ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୨୩୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ଦ୍ୱିତୀୟୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ତୃତୀୟ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ତୋଷମନ ।
ଶୁଣ ହେ ପରୀକ୍ଷ ରାଜନ ॥୧
ଏ କଳିଯୁଗରେ ପୃଥ୍ୱୀରେ ।
ଅଛନ୍ତି ଯେତେ ରାଜା ବୀରେ ॥୨
ଏକ ଆରେକ ହିଂସା ବହି ।
ଜିଣିବା ଅର୍ଥେ ଦଣ୍ଡବାହି ॥୩
ସଇନିମାନଙ୍କୁ ସାଜିଣ ।
ରାଜ୍ୟ ଜିଣନ୍ତି କରି ରଣ ॥୪
ମୁହିଁ ଘେନିବି ବଳେ ଜିଣି ।
ଏମନ୍ତ ଭାବେ ଗର୍ବେ ଭଣି ॥୫
ଯେ ଭୂମି ମୋ' ଭାଗେ ହୋଇବ ।
ପୁତ୍ର ପୌତ୍ରାଦି କାଳେ ଥିବ ॥୬
ଏମନ୍ତ ବୋଲି ସୈନ୍ୟ ଘେନି ।
ତା' ଦେଖି ହସଇ ମେଦିନୀ ॥୭
ଦେଖ ବିଧାତା କାଳଗତି ।
ସ୍ୱଭାବେ କଳିଯୁଗ ରୀତି ॥୮
ଆଶ୍ଚର୍ଯ୍ୟ କଥାମାନ ଦେଖ ।
ଏ ରାଜାମାନେ ଯେ ମୁରୁଖ ॥୯
ମୃତ୍ୟୁଦେବତା ଖେଳଘର ।
ମଞ୍ଚେ ଜନମ ଏହାଙ୍କର ॥୧୦
ମୋତେ ଜିଣିବେ ଲୋଡୁଛନ୍ତି ।
କେ କେତେ ଗଲେଣି ଏ ପୃଥ୍ୱୀ ॥୧୧
ରାଜାମାନଙ୍କର ଯେ ମନ୍ତ୍ରୀ ।
ସୁଜ୍ଞାନ ବୁଦ୍ଧି ନ କହନ୍ତି ॥୧୨
ପଣ୍ଡିତମାନେ ଯେତେ ଛନ୍ତି ।
ଅର୍ଥଶାସ୍ତ୍ରବାଦେ ଭ୍ରମନ୍ତି ॥୧୩
ଏହି ବିଚାର ବ୍ୟର୍ଥ ପ୍ରାୟ ।
ଯେଣୁ ଶରୀର ମିଥ୍ୟାମୟ ॥୧୪
ତେଣୁ ଏ ଫେନ ପ୍ରାୟେ ଦେହ ।
କ୍ଷଣକେ ଛାଡ଼େ ସର୍ବମୋହ ॥୧୫
ଏ ଦେହେ ବିଶ୍ୱାସ କରନ୍ତି ।
ଷଡ଼ଅଇରି ଦେହେ ଛନ୍ତି ॥୧୬
କାମାଦି ଏକାଦଶ ଇନ୍ଦ୍ରି ।
ଅବିଦ୍ୟା କୁହୁକରେ ବନ୍ଦୀ ॥୧୭
ଏହାଙ୍କୁ ଜିଣିତ ନାହାଁନ୍ତି ।
ମନରେ ବିଚାରୁଅଛନ୍ତି ॥୧୮
ପ୍ରଥମେ ଯାଇ ଶତ୍ରୁଘରେ ।
ଘେନିବା ରାଜ୍ୟ ଗଡ଼ ଖରେ ॥୧୯
ଜିଣିଣ ସେ ପୁରଜନଙ୍କୁ ।
ବଶ କରିବା ପୁରୋଧାଙ୍କୁ ॥୨୦
ମନ୍ତ୍ରୀ ଯେ ଅମାତ୍ୟମାନଙ୍କୁ ।
ଆବର ନଗର ଲୋକଙ୍କୁ ॥୨୧
ଅର୍ଥ ବଚନେ ବଶ ତା'ଙ୍କୁ ।
ଏମନ୍ତେ ଜିଣିବା ରାଜାଙ୍କୁ ॥୨୨
ଶତ୍ରୁଙ୍କୁ ମାରିଣ ସେ ରାଜ୍ୟ ।
ଆମେ ହୋଇବା ତହିଁ ରାଜ ॥୨୩
ଉତ୍ତମ ରାଜ୍ୟ ଏହୁ ସୀମା ।
ଭୋଗ କରି ରହୁ ମହିମା ॥୨୪
କ୍ରମରେ ପୃଥିବୀ ଜିଣିମା ।
ସମୁଦ୍ରଅନ୍ତ ଯା'ର ସୀମା ॥୨୫
ଏ ଆଶା ହୃଦୟରେ ବାନ୍ଧି ।
ହିଂସା ସ୍ୱଭାବେ ହୋଏ ବନ୍ଦୀ ॥୨୬
ନିକଟ ଶିରପରେ ମୃତ୍ୟୁ ।
ତାହା ନ ଜାଣେ ମତ୍ତ ହେତୁ ॥୨୭
ଲୋଭ ଯେ ଗ୍ରାସିଛି ମନକୁ ।
ଭୟ ନାହିଁ ପାପପୁଣ୍ୟକୁ ॥୨୮
ସମୁଦ୍ର ଯାଏ ପୃଥ୍ୱୀ ଜିଣି ।
ଅତି ତାମସ-ଲୋଭେ ପୁଣି ॥୨୯
ବୋଇତେ ଚଢ଼ି ବଣିଜାରେ ।
ପଶନ୍ତି ସମୁଦ୍ର ଭିତରେ ॥୩୦
ଏତେ ପ୍ରଭାବେ ମୋତେ ଜିଣି ।
କି ଭୋଗ କରେ ସେ ଧରଣୀ ॥୩୧
ମୋତେ ତ ନେଇ ନ ପାରନ୍ତି ।
ବ୍ୟର୍ଥକର୍ମରେ ସେ ଭ୍ରମନ୍ତି ॥୩୨
ଯେବେ ଆପଣା ଆତ୍ମା ଜାଣେ ।
ଭଜେ ବାସୁଦେବ ଚରଣେ ॥୩୩
ତେବେ ସେ ମୁକ୍ତିଫଳ ପାଇ ।
ସକଳ ପାପୁଁ ମୁକ୍ତ ହୋଇ ॥୩୪
ଯେ ରଜାମାନେ ପୂର୍ବେ ଜିଣି ।
ମୁଁ ଭୋଗ କରିବି ଧରଣୀ ॥୩୫
ଭୋଗ କରିବେ ପୁତ୍ର ନାତି ।
ଏମନ୍ତ ମନେ ଥିଲେ ଚିନ୍ତି ॥୩୬
ମନୁବଂଶୀୟ ରାଜାଗଣ ।
ତାହାଙ୍କ ପୁତ୍ରପୌତ୍ରମାନ ॥୩୭
ସେମାନେ ମୋତେ ଛାଡ଼ିଗଲେ ।
ଏ ଲୋକେ ପ୍ରତ୍ୟକ୍ଷେ ଦେଖିଲେ ॥୩୮
ଏବେ ଏ କଳିଯୁଗ ପ୍ରାଣୀ ।
ଅଳ୍ପ ଆୟୁଷ ପରିମାଣି ॥୩୯
ଅଳପବୁଦ୍ଧି ଦୁଷ୍ଟମତି ।
ମୋତେ ଜିଣିମା ଲୋଡୁଛନ୍ତି ॥୪୦
ମୋର ନିମନ୍ତେ ପିତାପୁତ୍ର ।
ଭ୍ରାତା ଆଦି ଜ୍ଞାତି ମାନନ୍ତ ॥୪୧
ଇଷ୍ଟ ମିତ୍ର ବନ୍ଧୁ ସ୍ୱଜନେ ।
ବାଦ ବିଗ୍ରହ ଚିନ୍ତି ମନେ ॥୪୨
ତାମସେ ପ୍ରାଣୀ ଦୁଃଖ ନେଇ ।
ଅସାଧୁ ବୁଦ୍ଧି ଥା'ନ୍ତି ଧାୟି ॥୪୩
ଏ ରାଜାମାନେ ମମତ୍ୱରେ ।
ପଡ଼ି ତ୍ରିଗୁଣ ବନ୍ଧନରେ ॥୪୪
ଏ ସର୍ବ ଭୂମି ଯେ ମୋହର ।
ରେ ମୂର୍ଖ ନୁହଇ ତୋହର ॥୪୫
ମୂର୍ଖପଣରେ ଏହା ଭାଷି ।
ଅନ୍ୟୋନ୍ୟେ ହୁଅନ୍ତି ବିନାଶି ॥୪୬
ମୋର ନିମନ୍ତେ କରି ବାଦ ।
ଅର୍ଜନ୍ତି ହରାନ୍ତି ସମ୍ପଦ ॥୪୭
ସତ୍ୟଯୁଗାଦି ଯେତେ ରାଜା ।
ଯେସନେ ପାଳୁଥିଲେ ପ୍ରଜା ॥୪୮
ପୃଥୁ ପୁରୁରବା ଯେ ଗାଧି ।
ସହସ୍ରାର୍ଜୁନ ନହୁଷାଦି ॥୪୯
ମାନ୍ଧାତା ଶ୍ରୀରାମ ସଗର ।
ଖଟ୍ୱାଙ୍ଗରାଜା ଧୁନ୍ଧୁମାର ॥୫୦

Dr. Sudhanshu Sekhar Mishra

ରଘୁ ତୃଣବିନ୍ଦୁ ଯଯାତି ।
ଶାନ୍ତନୁ ଭରତ ଶର୍ଯାତି ॥୫୧
ନୈଷଧ ଭଗୀରଥରାୟ ।
କକୁତ୍ଥ ନୃଗ କୁବଳୟ ॥୫୨
ହିରଣ୍ୟକଶିପୁ ସମର ।
ରାବଣ ହିରଣ୍ୟାକ୍ଷ ବୀର ॥୫୩
ବୃତ୍ତ ନମୁଚି ଯେ ତାରକା ।
ଆବର ଅସୁର ନାରକା ॥୫୪
ଏ ଆଦି ଯେତେ ରାଜା ଥିଲେ ।
ଅନ୍ୟ ଦାନବ ମହୀପାଳେ ॥୫୫
ସମସ୍ତେ ସର୍ବବିଜ୍ଞ ବୀର ।
ମହିମା ଶୁଣିଛ ତା'ଙ୍କର ॥୫୬
ସମର୍ଥ ସର୍ବଜ୍ଞ ଅଟନ୍ତି ।
ବଳେ ସର୍ବତେଜା ବୋଲାନ୍ତି ॥୫୭
ଏମାନେ ଆଶା ମମତାରେ ।
ମୃତ୍ୟୁର ବଶ ଯେ ହୋଇଲେ ॥୫୮
ଏ ମୋତେ ନେଇ ନ ପାରିଲେ ।
କଥାମାତ୍ରକ ରୁହାଇଲେ ॥୫୯
ଯେ ଯାହା ଅର୍ଜିତ କର୍ମରେ ।
ଭୋଗ ଦୁଃଖ ସୁଖ ମାର୍ଗରେ ॥୬୦
ଗୁଣ-କର୍ମେ ହୋଇ୍ ବନ୍ଧନ ।
ଜାଣି ନ ପାରି ରାତ୍ରଦିନ ॥୬୧
କାଳବଶରେ ଅକୃତାର୍ଥ ।
ଲୋଭେ ନ ସଞ୍ଚି ପରମାର୍ଥ ॥୬୨
କୃଷ୍ଣ ପଦାରବିନ୍ଦ ଛାଡ଼ି ।
ପତିତମାର୍ଗେ ଚିତ୍ତ ବଢ଼ି ॥୬୩
କୃଷ୍ଣଙ୍କୁ ନ ଜାଣିଲେ ଯେଣୁ ।
ଯାତନା ଜନ୍ମମୃତ୍ୟୁ ତେଣୁ ॥୬୪
ଏମନ୍ତ ଭାଷି ମହୀ ହସି ।
ବିଷ୍ଣୁଲୀଳାକୁ ପରଶଂସି ॥୬୫
ଶୁକ କହନ୍ତି ପରୀକ୍ଷିତ ।
ଏମନ୍ତ ଶ୍ରୀକୃଷ୍ଣ ଚରିତ ॥୬୬
ଏ ଯେଉଁ କଳିଯୁଗ ରୀତି ।
କହିଲୁ ନୃପକୁଳ ଖ୍ୟାତି ॥୬୭
ଏ ଯେ ଉଦୟ-ଅସ୍ତ ପ୍ରାୟେ ।
ସଂସାର ମାୟାଜାଲ ମୋହେ ॥୬୮

ଜ୍ଞାନ ବୈରାଗ୍ୟ ଅନୁଭବ ।
ବିଭୂତି ପରମାର୍ଥ ଭାବ ॥୬୯
ଏମାନ ନାହିଁ ଏହାଙ୍କର ।
ଏଣୁ ଅଧର୍ମେ ପରିଚାର ॥୭୦
ଏ କଳିଯୁଗ ଗତି ଜାଣ ।
ପ୍ରସଙ୍ଗେ କହିଲୁ ପୁରାଣ ॥୭୧
ଉତ୍ତମ ଶ୍ଳୋକ ବାସୁଦେବ ।
ତାହାଙ୍କୁ ଯେ ପ୍ରାଣୀ ଭଜିବ ॥୭୨
ନାମ ଗାୟନ ଗୁଣବାଦ ।
ନାଶଇ ସକଳ ପ୍ରମାଦ ॥୭୩
ଅଶୁଭମାନ ନାଶ କରେ ।
ନିତ୍ୟେ ଯେ ତା' ନାମ ସୁମରେ॥୭୪
ଶୁଣି ଶୁଣାଇ ଯେବେ ମଜ୍ଜେ ।
କୃଷ୍ଣ ପଦାରବିନ୍ଦ ଭଜେ ॥୭୫
ନିର୍ମଳ-ଭକ୍ତି ବାଞ୍ଛା କରି ।
ଅନ୍ତେ ସେ ଲଭେ ବିଷ୍ଣୁପୁରୀ ॥୭୬
ପୁଣି ପରୀକ୍ଷିତ ପଚାରି ।
ଶୁକ ଚରଣ ଶିରେ ଧରି ॥୭୭

ପରୀକ୍ଷିତ ଉବାଚ

ହେ ଭଗବାନ ଆତ୍ମାରୂପୀ ।
କଳି ଘୋଟିବ ତମ ବ୍ୟାପୀ ॥୭୮
ଏ ଯୁଗେ ପ୍ରାଣୀଙ୍କ ନିସ୍ତାର ।
ହୋଇବ ଯେବଣ ପ୍ରକାର ॥୭୯
ମୃତ୍ୟୁକୁ କେମନ୍ତେ ଜିଣିବେ ।
ଏହା ସଂକ୍ଷେପି କହ ଏବେ ॥୮୦
ଯୁଗ ଧର୍ମ ଯୁଗ ନିର୍ଣ୍ଣୟ ।
କହର ପ୍ରଳୟ ବିଷୟ ॥୮୧
ଈଶ୍ୱରରୂପୀ ଯେଉଁ କାଳ ।
କହ ତା' ଗତି ଅନ୍ତରାଳ ॥୮୨
ଶୁକ ହୋଇଣ ତୋଷମନ ।
କହନ୍ତି ଯୁଗଧର୍ମମାନ ॥୮୩

ଶୁକ ଉବାଚ

ସତ୍ୟ ଯୁଗର ଧର୍ମ ଶୁଣ ।
ଥିଲା ଯେ ଚାରିପାଦ ପୁଣ୍ୟ ॥୮୪
ସେ ଯୁଗେ ପ୍ରାଣୀମାନେ ପୁଣ ।
ଚାରିପାଦେ ଧର୍ମ କରିଣ ॥୮୫

ସତ୍ୟ ତପସ୍ୟା ଦୟା ଦାନ ।
ଧର୍ମର ଏ ଚାରିଚରଣ ॥୮୬
ସେ ଯୁଗେ ପ୍ରାଣୀ ଦୟାଶୀଳ ।
ସନ୍ତୋଷ ସତ୍ୟ କ୍ଷମା ଧୀର ॥୮୭
ଶାନ୍ତ ତପସ୍ୱୀ ଆତ୍ମାରାମ ।
ସମଦରଶୀ ସାଧୁ ସମ ॥୮୮
ତ୍ରେତାରେ ଧର୍ମ ତିନିପାଦ ।
ସତ୍ୟ ପାଦକ ହୋଏ ଛେଦ ॥୮୯
ଅଧର୍ମ ଏହାକୁ ନାଶଇ ।
ଯାହାର ଚାରିପାଦ କହି ॥୯୦
ମିଥ୍ୟା ହିଂସା ଯେ ଅସନ୍ତୋଷ ।
ବିଗ୍ରହ ଏ ଚାରି ପ୍ରକାଶ ॥୯୧
ସେ କାଳେ ପ୍ରାଣୀମାନେ ପୁଣ ।
କ୍ରିୟା ତପୋନିଷ୍ଠା ଯୋଗେଣ ॥୯୨
ଅହିଂସ ଅଲମ୍ପଟ ହୋନ୍ତି ।
ଧର୍ମାର୍ଥ କାମ ସେ ସାଧନ୍ତି ॥୯୩
ଋକ ଯଜୁ ଯେ ସାମ ତିନି ।
ଏ ତିନି ଯଜ୍ଞରେ ଅଗ୍ରଣୀ ॥୯୪
ବ୍ରାହ୍ମଣ ଆଦି ବର୍ଣ୍ଣମାନ ।
ଉତ୍ତମ ମଧ୍ୟ କନିଷ୍ଠେଣ ॥୯୫
ଏ ଭାବେ ଏ ଯୁଗ ଚଳଇ ।
ତିନିପାଦେ ଧର୍ମ ରହଇ ॥୯୬
ଦ୍ୱାପରେ ଧର୍ମ ଦୁଇପାଦ ।
କ୍ରମେ ଦ୍ୱିପାଦ ହୋଏ ଛେଦ ॥୯୭
ତପ ସତ୍ୟ ଦୟା ଦାନରୁ ।
ତୁଟଇ ଯୁଗ ଅନୁସାରୁ ॥୯୮
ହିଂସା ଅସନ୍ତୋଷ ବଇର ।
ମିଥ୍ୟା ଲକ୍ଷଣ ଅଧର୍ମର ॥୯୯
ଏହାଙ୍କ ସକାଶରୁ ପୁଣ ।
ଧର୍ମ ତୁଟଇ ଏ କ୍ରମେଣ ॥୧୦୦
ଏ ଯୁଗେ ପ୍ରାଣୀମାନେ ପୁଣ ।
ଯଶସ୍ୱୀ ଶୀଳରେ ନିପୁଣ ॥୧୦୧
ସର୍ବଦା ସେ ବେଦ ପଢନ୍ତି ।
ବିପ୍ରେ ବିଷ୍ଣୁସେବା କରନ୍ତି ॥୧୦୨
ଧନ କୁଟୁମ୍ବେ ହୃଷ୍ଟମତି ।
ବ୍ରାହ୍ମଣ କ୍ଷତ୍ରିୟେ ବଢନ୍ତି ॥୧୦୩

Dr. Sudhanshu Sekhar Mishra

କଳିଯୁଗରେ ଧର୍ମ ପୁଣ ।
ରହଇ ଏକଇ ଚରଣ ॥୧୦୪
ଅଧର୍ମ ହେତୁ କରି ପୁଣ ।
ତିନିପାଦ ହୁଅଇ ଛିନ୍ନ ॥୧୦୫
ସତ୍ୟ ତପ ଦୟା ଯେ ଯାଇ ।
କେବଳ ଦାନମାତ୍ର ରହି ॥୧୦୬
ଯୁଗାନ୍ତେ ସେହୁ ନାଶଯିବ ।
ଏକାନ୍ତେ ତମ ଆଚ୍ଛାଦିବ ॥୧୦୭
ଏ ଯୁଗେ ଯେତେ ଲୋକମାନେ ।
ନିର୍ଦ୍ଦୟ ଦୁରାଚାର ମନେ ॥୧୦୮
କରି ଅକାରଣେ ବଇରୀ ।
ଅଭାଗ୍ୟବନ୍ତ ହତଶିରୀ ॥୧୦୯
ଅତ୍ୟନ୍ତ ଲୋଭୀ ଜନେ ହେବେ ।
ଶୂଦ୍ରେ ଯେ ବହୁତ ବଢ଼ିବେ ॥୧୧୦
ସତ୍ତ୍ୱ ରଜ ତମ ତ୍ରିଗୁଣ ।
ପୁରୁଷେ ଥାଇ ଅନୁକ୍ଷଣ ॥୧୧୧
କାଳର ବଳେ ଗୁଣ ଦୋଷ ।
ହୁଅଇ ଅଳପ ବିଶେଷ ॥୧୧୨
ବଢ଼ଇ ସତ୍ତ୍ୱଗୁଣ ଯେବେ ।
ମନ ବୁଦ୍ଧି ଇନ୍ଦ୍ରିୟ ତେବେ ॥୧୧୩
ଜ୍ଞାନ-ତପରେ ରତ ହୋଇ ।
ଶ୍ରୀବାସୁଦେବଙ୍କୁ ଭଜଇ ॥୧୧୪
ତାଙ୍କ ପଦାରବିନ୍ଦେ ଭକ୍ତି ।
ଉଦୟ ହୋଇଲେ ମୁକତି ॥୧୧୫
ଭକତି କୃଷ୍ଣପାଦେ ଜାଣ ।
ସତ୍ୟଯୁଗର ଏ ଲକ୍ଷଣ ॥୧୧୬
ଯେବେ କାମ୍ୟକର୍ମ ଯଶରେ ।
ବୁଦ୍ଧି ବଢ଼େ ରଜୋଗୁଣରେ ॥୧୧୭
ତ୍ରେତାଯୁଗର ଚିହ୍ନ ଏହି ।
ଯଜ୍ଞରେ ପଶୁବଧ ଯହିଁ ॥୧୧୮
ତହୁଁ ସ୍ୱର୍ଗାଦିଭୋଗ ପା'ନ୍ତି ।
ସେ ପୁଣି ହୋ'ନ୍ତି ଗତାଗତି ॥୧୧୯
ବୁଦ୍ଧିମନ୍ତ ପ୍ରାଣୀ ତା' ଜାଣି ।
ନିଷ୍କାମେ ଭଜେ ଚକ୍ରପାଣି ॥୧୨୦
ଯେବେ ଦ୍ୱାପର ଯୁଗ ହୋଇ ।
ରଜ ତମ ଗୁଣ ବଢ଼ଇ ॥୧୨୧

ଲୋଭ ଅସନ୍ତୋଷାଭିମାନ ।
ଦମ୍ଭ-ମତ୍ସର-କାମ୍ୟକର୍ମ ॥୧୨୨
ଏମାନେ ଅଧିକ ବଢ଼ନ୍ତି ।
ଦୟା ଦାନ ଦୂରେ ରହନ୍ତି ॥୧୨୩
ଅଧର୍ମ ତିନି ଯେ ଚରଣ ।
ବଢ଼ଇ ଏମନ୍ତ ଭାବେଣ ॥୧୨୪
ହିଂସା ଯେ ମିଥ୍ୟା ଅସନ୍ତୋଷ ।
ଦ୍ୱାପର ଲକ୍ଷଣ ବିଶେଷ ॥୧୨୫
ଯେବେ ସେ କଳିଯୁଗ ହୋଇ ।
ଏକା ତମୋଗୁଣ ବଢ଼ଇ ॥୧୨୬
ପ୍ରାଣୀମାନଙ୍କର ଯେ ପୁଣ ।
ଅଳସ ମାୟା ମିଥ୍ୟା ଗୁଣ ॥୧୨୭
ବିଷାଦ ନିଦ୍ରା ହିଂସା ଶୋକ ।
ବଢ଼ାଏ ମାୟାମୋହ ଦୁଃଖ ॥୧୨୮
ଏତେ ଗୁଣରେ କଳି ହୋଇ ।
ସେ କଳି ତାମସ ବୋଲାଇ ॥୧୨୯
ପ୍ରାଣୀଏ ହୋ'ନ୍ତି ମନ୍ଦମତି ।
ଅଳପ-ଭାଗ୍ୟେ ସେ ଜୀଅନ୍ତି॥୧୩୦
ବହୁତ ଭକ୍ଷନ୍ତି ଆହାର ।
କାମୀ ହୁଅନ୍ତି ମୂଢ଼ନର ॥୧୩୧
କୁଟୁମ୍ବୀ ଜୀବିକାବିହୀନ ।
ଦରିଦ୍ର ହୋଇ ବଞ୍ଚେ ଦିନ ॥୧୩୨
କୁଳସ୍ତ୍ରୀ ହୋଇ ଦୋଚାରୁଣୀ ।
ଅସତୀ ପଣେ ସାହସିନୀ ॥୧୩୩
ଦେବ ବ୍ରାହ୍ମଣ ଗୁରୁ ସ୍ୱାମୀ ।
ଶାଶୁ ଶ୍ୱଶୁରଙ୍କୁ ନ ଗଣି ॥୧୩୪
ରାଜ୍ୟରେ ଖଣ୍ଡ ପ୍ରବର୍ତ୍ତିବେ ।
ବେଦକୁ ପାଷଣ୍ଡେ ଦୂଷିବେ ॥୧୩୫
ପ୍ରଜା ସର୍ବସ୍ୱ ରାଜା ନେବେ ।
ତା'ଙ୍କୁ ବହୁତ କଷ୍ଟ ଦେବେ ॥୧୩୬
ବ୍ରାହ୍ମଣେ ଜିହ୍ୱା-ଇନ୍ଦ୍ରିବଶ ।
ହୋଇଣ କର୍ମେ ଯିବେ ନାଶ॥୧୩୭
କ୍ରୟ ବିକ୍ରୟ ବେଦ କରି ।
ବ୍ରତୀ ନୋହିବେ ବ୍ରହ୍ମଚାରୀ ॥୧୩୮
ସନ୍ନ୍ୟାସୀ ହେବେ ଅନାଚାରୀ ।
କୁଟୁମ୍ବ ଘେନି ଗୃହକରି ॥୧୩୯

ଲୋଭେ ବୈଶ୍ୟବୃତ୍ତି କରିବେ ।
ଭେକ ଧରି ନାମ ବହିବେ ॥୧୪୦
ଯେତେ ବାନପ୍ରସ୍ଥ ତପସ୍ୱୀ ।
ଅଜ୍ଞାନେ ହେବେ ଗ୍ରାମବାସୀ ॥୧୪୧
ସ୍ତିରୀ ପୁରୁଷେ ଅସୁନ୍ଦର ।
ବିରୂପ ବିକଟ ଶରୀର ॥୧୪୨
ସହଜେ ସ୍ତିରୀମାନେ ପୁଣ ।
ବହୁତ କରିବେ ଭୋଜନ ॥୧୪୩
ହୋଇବେ ଅତ୍ୟନ୍ତ ନିର୍ଲ୍ଲଜ ।
ବିସ୍ତାର ହୋଇବେ ତନୁଜ ॥୧୪୪
ନିରତେ କହି କଟୁବାଣୀ ।
ଶାଶୁଶ୍ୱଶୁରଙ୍କୁ ନ ଗଣି ॥୧୪୫
ସ୍ୱାମୀ ଗୁରୁଜନ ନ ମାନି ।
ଚଉର୍ଯ୍ୟ ମାୟା ସାହସିନୀ ॥୧୪୬
ପାପିଷ୍ଠବୁଦ୍ଧି ମତ୍ତଗର୍ବେ ।
ବ୍ୟଭିଚାରିଣୀ ଏ ସ୍ୱଭାବେ ॥୧୪୭
ମନୁଷ୍ୟମାନେ ସାନସାନ ।
କେହି ବା ହୋଇବେ ବାମନ॥୧୪୮
ମନୁଷ୍ୟ ମନ୍ଦଗତି ହୋଇ ।
କ୍ଷୁଦ୍ର ବ୍ୟାଧିରେ ପୀଡ଼ା ପାଇ॥୧୪୯
କ୍ରୟ ବିକ୍ରୟ ବ୍ୟବହାରେ ।
କୂଟ କପଟ ବଣିଜାରେ ॥୧୫୦
ବ୍ୟାଧ ଆଚାର ଆଚରିବେ ।
ମୃଗ ମତ୍ସ୍ୟ ବଧ କରିବେ ॥୧୫୧
ଛନ୍ଦ କରି ଜୀବ ମାରିବେ ।
ପ୍ରାଣୀଙ୍କି ହିଂସାରେ ନାଶିବେ॥୧୫୨
ବିନା ବିପଦେ ସର୍ବଜନେ ।
ଆପଣା ବୃତ୍ତି ଛାଡ଼ି ଅନ୍ୟେ ॥୧୫୩
ନିନ୍ଦିତ ଜୀବିକା କରିବେ ।
ପତିତ କର୍ମ ଆଚରିବେ ॥୧୫୪
ସ୍ୱାମୀ ନିର୍ଦ୍ଧନ ହେବ ଯେବେ ।
ସେବକେ ତାକୁ ଛାଡ଼ିଯିବେ ॥୧୫୫
ସେବକେ ଅସମର୍ଥ ଦେଖି ।
ସ୍ୱାମୀଏ ତାହାଙ୍କୁ ଉପେକ୍ଷି ॥୧୫୬
ଉତ୍ତମ ଗାଈ ବୃଦ୍ଧା ହେଲେ ।
ନ ପାଳି ଛାଡ଼ିଦେବେ ଭଲେ॥୧୫୭

Dr. Sudhanshu Sekhar Mishra

ପିତା ମାତା ଭ୍ରାତା ବାନ୍ଧବ ।
ମିତ୍ର ସୁହୃଦଗୁଣ ଭାବ ॥୧୫୮
ସକଳ ସଙ୍ଗ ତ୍ୟାଗ କରି ।
ଶ୍ୱଶୁର ଶାଳକେ ପଚାରି ॥୧୫୯
ଶୀଳ ଅଚାର ନ କରିବେ ।
ସ୍ତିରୀଙ୍କ ବଶେ ଦିନ ନେବେ ॥୧୬୦
କେ କାହା ପିତା କେହୁ ମାତ ।
ଆପଣା କର୍ମେ ଆତଯାତ ॥୧୬୧
ଏମନ୍ତ ବିଚାରିବେ ମନେ ।
ରହି ଶ୍ୱଶୁର ସନ୍ନିଧାନେ ॥୧୬୨
ତପସ୍ୱୀ ଶୂଦ୍ରମାନେ ହେବେ ।
ଦାନପ୍ରତିଗ୍ରହ କରିବେ ॥୧୬୩
ସେମାନେ ଉଚ୍ଚସ୍ଥାନେ ଥିବେ।
ଧର୍ମାଦି ନ୍ୟାୟ ସେ କହିବେ ॥୧୬୪
ସଂସାରେ ଗୁରୁ ବୋଲାଇବେ।
ସକଳେ ସେ ବୋଲ ପାଳିବେ ॥୧୬୫
ପ୍ରଜାଏ କରପୀଡ଼ା ପାଇ ।
ଦୁର୍ଭିକ୍ଷେ କଷ୍ଟି ହେବେ ସେହି ॥୧୬୬
ମନ ଉଦ୍‌ବେଗ କରିବେ ।
ଅନ୍ନବସ୍ତ୍ରାଦି ନ ପାଇବେ ॥୧୬୭
ଦେବେ ବରଷା ନ ବରଷି ।
ଏ ରୂପେ ନଷ୍ଟ ଯିବ କୃଷି ॥୧୬୮
ଅକାଳେ ବରଷିବ ଜଳ ।
ଏ ଘେନି ନ ଫଳିବ ଫଳ ॥୧୬୯
ପ୍ରାଣୀଏ ସ୍ଥାନଭ୍ରଷ୍ଟ ହୋଇ ।
ଦେଶ ଭାଜିଣ ଶୂନ୍ୟ ହୋଇ ॥୧୭୦
ଅନ୍ନ ପାଣି ବସ୍ତ୍ର ଭୋଜନ ।
ସ୍ନାନ ଭୂଷଣ ଆୟେମାନ ॥୧୭୧
ନ ମିଳି ହୋଇବେ ଦାରୁଣ ।
ପିଶାଚ ସ୍ୱରୂପ ଧାରଣ ॥୧୭୨
ବୋଡ଼ିକ ନିମନ୍ତେ ମରିବେ ।
ଅତି ତମେ ଯେ ଗ୍ରସ୍ତହେବେ॥୧୭୩
ଆପଣା ପ୍ରିୟଲୋକ ମାରି ।
ଐହିକ ସୁଖ ମଣେ ଶିରୀ ॥୧୭୪
ତାତ ଜନନୀ ବୃଦ୍ଧକାଳେ ।
ତାଙ୍କୁ ନ ପୋଷେ ମତ୍ତଭୋଳେ ॥୧୭୫

ଛାଡ଼ି ସାଧବୀ ପତିବ୍ରତା ।
ହୋଇବେ ମତ୍ତ ଅନ୍ୟେ ଭର୍ତ୍ତା॥୧୭୬
ପୁରୁଷେ ବେଶ୍ୟାଙ୍କୁ ଭଜିବେ।
ଲମ୍ପଟେ ନାରୀଙ୍କି ଛାଡ଼ିବେ ॥୧୭୭
କୁଳସ୍ତ୍ରୀମାନେ ଏହିମତେ ।
ନାଶିବେ କୁଟୁମ୍ବ ସହିତେ ॥୧୭୮
ଇନ୍ଦ୍ରି ଲାଳସେ ପେଟ ପୋଷି ।
ରହିବେ ହୋଇ ଦାସଦାସୀ ॥୧୭୯
କଳିର ତମ ଆଚ୍ଛାଦନେ ।
ବିଷ୍ଣୁଙ୍କୁ ନ ଭଜିବେ ଜନେ ॥୧୮୦
ଶ୍ରୀକୃଷ୍ଣ ପାଦପଦ୍ମରସ ।
କେହି ଯେ ନ କରିବେ ଆଶ॥୧୮୧
ପାଷଣ୍ଡଚିତ୍ତେ ବୁଦ୍ଧିଭେଦେ ।
ନ ଭଜେ ଚରଣାରବିନ୍ଦେ ॥୧୮୨
ଯେ ନାମ ପତିତପାବନ ।
ମହାବିପତ୍ତି ବିନାଶନ ॥୧୮୩
ମରଣକାଳେ ଯେଉଁ ନାମ ।
ଧଇଲେ ନ ଦଣ୍ଡଇ ଯମ ॥୧୮୪
ଅତି ଆତୁରେ ବିବଶରେ ।
ପତନ ସ୍ଖଳନ କାଳରେ ॥୧୮୫
ଯେ ନାମ ଗ୍ରହଣ ମାତ୍ରେଣ ।
କର୍ମବନ୍ଧୁ ମୁକ୍ତ ହୋଇଣ ॥୧୮୬
ବୈକୁଣ୍ଠପଦକୁ ଲଭଇ ।
ଯେ ସୁଖ ତିନିଲୋକେ ନାହିଁ॥୧୮୭
ତାଙ୍କୁ ନ ଭଜେ ମୂଢପ୍ରାଣୀ।
ମାୟାକୁ ସତ୍ୟପ୍ରାୟ ମଣି ॥୧୮୮
ଏ କଳିଯୁଗେ ପାପ ଯେତେ।
ପ୍ରାଣୀ ସଞ୍ଚଇ ମାୟାଗ୍ରସ୍ତେ ॥୧୮୯
ନାମ ମାତ୍ରକେ ପାପ ନାଶେ।
ଅନ୍ତେ ବୈକୁଣ୍ଠପୁରେ ବସେ ॥୧୯୦
ଯେ ନାମ ଶ୍ରବଣ କୀର୍ତ୍ତନ ।
ପୂଜା-ଆଚରଣ ଧିଆନ ॥୧୯୧
ହୃଦ-କମଳ ମଧ୍ୟେ ଥାଇ ।
ଅଶେଷ ପାପକୁ ଦହଇ ॥୧୯୨
ଅନନ୍ତ କୋଟି ଯେ କଳ୍ମଷ ।
ସ୍ମରଣେ କରେ ତାହା ନାଶ ॥୧୯୩

ଏ କଳିଯୁଗେ ଏକା ସାର ।
ଭଜନ ଶ୍ରୀକୃଷ୍ଣ ପୟର ॥୧୯୪
ଏ ବିନୁ ଆନଗତି ନାହିଁ ।
ଭଜ ସୁଜନେ ମନ ଦେଇ ॥୧୯୫
ସୁବର୍ଣ୍ଣ ଅଗ୍ନିରେ ଦହିଲେ ।
ତାହାର ମଳ ହରେ ଭଲେ ॥୧୯୬
ଏ ରୂପେ ପଶି କୃଷ୍ଣଦେହେ ।
ପାପ ଯେ ନାଶନ୍ତି ପ୍ରାଣୀଏ ॥୧୯୭
ବିଦ୍ୟା ତପସ୍ୟା ପ୍ରାଣାୟାମ ।
ମିତ୍ରତା ତୀର୍ଥଜଳେ ସ୍ନାନ ॥୧୯୮
ବ୍ରତ ଆରମ୍ଭ ଯଜ୍ଞାଦାନ ।
ଦେବତା ପୂଜା ନାନାକର୍ମ ॥୧୯୯
ଏଥେ ଅତ୍ୟନ୍ତ ଶୁଦ୍ଧ ହୋଇ ।
ଆତ୍ମା ଉଦ୍ଧରି ନ ପାରଇ ॥୨୦୦
ଏ ସର୍ବଫଳେ ଅଧିକାରୀ ।
ପାପପୁଣ୍ୟକୁ ଭୋଗକରି ॥୨୦୧
ବାସୁଦେବ ଭଜନ ବିନୁ ।
ଉଦ୍ଧରି ନ ପାରଇ ତନୁ ॥୨୦୨
ଭୂତ ଭବିଷ୍ୟ ବର୍ତ୍ତମାନ ।
ବିଧାନେ ହୁଅ ସାବଧାନ ॥୨୦୩
ମାନସେ ବାଞ୍ଛା ଯେ କରିଣ ।
ନିରନ୍ତରେ କରେ ଭଜନ ॥୨୦୪
କାଳେ ମରଣ ନିକଟରେ ।
କୃଷ୍ଣର ନାମ ଯେ ଉଚ୍ଚାରେ ॥୨୦୫
ତେବେ ସେ ପରାଗତି ପାଇ।
ନିଦାନେ ନାମ ଉଚ୍ଚାରଇ ॥୨୦୬
ଏବେ ତୁ ଶୁଣ ହେ ରାଜନ ।
ହୃଦୟେ ଗୋବିନ୍ଦ ଚରଣ ॥୨୦୭
ଧରି ମରଣ ନିକଟର ।
ସେ ନାମ ମୁଖରେ ଉଚ୍ଚାର ॥୨୦୮
ଏଣେ ତୁ ସାବଧାନ ହୁଅ ।
ଅନ୍ତେ ପରମଗତି ପାଅ ॥୨୦୯
ତୁମେ ଯେ ରାଜରଷି ଯେଣୁ।
ତାଙ୍କ ଚରଣେ ଭଜ ତେଣୁ ॥୨୧୦
ଅନେକ ଜନ୍ମେ ଭାଗ୍ୟେ ଥାଇ।
ଲୟ ଲଗାଅ ତାଙ୍କ ତହିଁ ॥୨୧୧

Dr. Sudhanshu Sekhar Mishra

ଶ୍ରୀକୃଷ୍ଣ ଚରଣାରବିନ୍ଦେ ।
ମନକୁ ନିବେଶ ଆନନ୍ଦେ ॥୨୧୨
ସାଯୁଜ୍ୟ-ମୁକ୍ତିକି ପାଇବ ।
କଳି କଳୁଷ ନାଶ ଯିବ ॥୨୧୩
ଯେ ଜନ ଭଜେ ବିଷ୍ଣୁପାଦ ।
ଲଭେ ସାଯୁଜ୍ୟ ମୁକ୍ତିପଦ ॥୨୧୪
ସେ ବିଷ୍ଣୁଅଙ୍ଗେ ଲୀନ ହୋନ୍ତି ।
ସେ ବିନା ନାହିଁ ଅନ୍ୟଗତି ॥୨୧୫
ସେ ବାସୁଦେବ ସର୍ବମୟ ।
ସର୍ବାତ୍ମା ସର୍ବଜନାଶ୍ରୟ ॥୨୧୬

ସେ ବାସୁଦେବର ମହିମା ।
ସକଳଗୁଣ ପୁଣ୍ୟସୀମା ॥୨୧୭
ଶୁଣ ପରୀକ୍ଷ ନୃପବର ।
ଏ କଳିଦୋଷର ସାଗର ॥୨୧୮
ଏ କଳିଯୁଗର ମହିମା ।
ଅଛଇ ଏକା ଗୁଣସୀମା ॥୨୧୯
ସେ ବାସୁଦେବ ନାମ ଶୁଣି ।
ବୈକୁଣ୍ଠ ଲଭେ ହେଲେ ପ୍ରାଣୀ ॥୨୨୦
ସତ୍ୟଯୁଗର ଧ୍ୟାନଫଳ ।
ତ୍ରେତାରେ ଯଜ୍ଞାଦି ସକଳ ॥୨୨୧

ଦ୍ୱାପରେ ପୂଜାର ବିଧାନ ।
କଳିରେ ନାମ ସଂକୀର୍ତ୍ତନ ॥୨୨୨
ଏମନ୍ତ ମହିମା ଯାହାର ।
ସୁଜନେ ଭଜ ସେ ପୟର ॥୨୨୩
ମୁହିଁ ଯେ ପାପିଷ୍ଠ ଅଧମ ।
ମୋହର ଦୋଷ ନ ଘେନିମ ॥୨୨୪
କହଇ ଦାସ ଜଗନ୍ନାଥ ।
ତ୍ରାହି କରିବେ ପୀତବାସ ॥୨୨୫

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

ଶୁକ ଉବାଚ

ଶୁକ କହନ୍ତି ପରୀକ୍ଷିତ ।
ଶୁଣ ହେ କାଳର ଚରିତ ॥୧
କାଳର ନିର୍ଣ୍ଣୟ ଯେ ଗତି ।
ତା' ସୂକ୍ଷ୍ମ କେହି ନ ଜାଣନ୍ତି ॥୨
ପରମଅଣୁ ଠାରୁ ମୁହିଁ ।
କାଳ ଗଣନା କହିଛଇଁ ॥୩
ଦୁଇ ପରାର୍ଦ୍ଧ ପରିଯନ୍ତେ ।
ବ୍ରହ୍ମାର ପରମାୟୁ ଯେତେ ॥୪
ଯୁଗ ନିର୍ଣ୍ଣୟ ଆଦି ମୁହିଁ ।
ତୃତୀୟସ୍କନ୍ଧେ କହିଛଇଁ ॥୫
ଏବେ କଳ୍ପ ପ୍ରଳୟ ଚାରି ।
ତୁମ୍ଭଙ୍କୁ କହିବା ବିସ୍ତାରି ॥୬
ନୈମିତ୍ତିକ ଯେ ପ୍ରାକୃତିକ ।
ନିତ୍ୟ ଆବର ଆତ୍ୟନ୍ତିକ ॥୭
ଏ ଚାରି ପ୍ରଳୟର ଗୁଣ ।
ରାଜନ ତୋଷମନେ ଶୁଣ ॥୮
ସହସ୍ର ଚାରିଯୁଗ ଶେଷେ ।
ବ୍ରହ୍ମାର ହୁଅଇ ଦିବସେ ॥୯
ଚଉଦମନୁ ଉତପନ ।
ତାହାର ନାମ କଳ୍ପ ଜାଣ ॥୧୦

ଏହି ପ୍ରମାଣେ ରାତ୍ର ହୋଇ ।
ଯହିଁ ତ୍ରିଲୋକ ନାଶ ଯାଇ ॥୧୧
ଏଥିରେ ବିଶ୍ୱସ୍ରଷ୍ଟା ପୁଣ ।
ବିଶ୍ୱ କରନ୍ତି ସଂହାରଣ ॥୧୨
ତିନିଭୁବନ ଆଦି କରି ।
ନାଭିକମଳେ ବ୍ରହ୍ମା ଭରି ॥୧୩
ବିଷ୍ଣୁ ସହିତେ ଥାଏ ଶୋଇ ।
ପ୍ରଳୟ ନୈମିତ୍ତିକ ହୋଇ ॥୧୪
ଏ ଭାବେ ଶତେକ ବରଷ ।
ବ୍ରହ୍ମାର ପରମାୟୁ ଶେଷ ॥୧୫
ଦୁଇ ପରାର୍ଦ୍ଧ ପୂର୍ଣ୍ଣ ହୋଇ ।
ବ୍ରହ୍ମା ପ୍ରଳୟ ତେବେ କହି ॥୧୬
ପଞ୍ଚତନମାତ୍ର ସହିତେ ।
ମହତ ଅହଙ୍କାର ଯେତେ ॥୧୭
ପ୍ରକୃତି ପ୍ରଳୟ ହୁଅଇ ।
ତେଣୁ ପ୍ରାକୃତ ସେ ବୋଲାଇ ॥୧୮
ଶୁଣ ରାଜନ ପରୀକ୍ଷିତ ।
ଯେ ଭାବେ ପ୍ରଳୟ ପ୍ରାକୃତ ॥୧୯
ସେ କାଳେ ଦ୍ୱାଦଶ ଆଦିତ୍ୟ ।
ଉଦୟେ ହୋନ୍ତି ତେଜବନ୍ତ ॥୨୦
ବ୍ରହ୍ମାଣ୍ଡଭାଣ୍ଡ ତା ତେଜେଣ ।
ଦଗ୍‌ଧ ହୋଏ ତତକ୍ଷଣ ॥୨୧

ପ୍ରଥମେ ଦେବଙ୍କ ବରଷେ ।
ଶତେବରଷ ନ ବରଷେ ॥୨୨
ତେଣୁ ଅନାବୃଷ୍ଟି ହୁଅଇ ।
ତହୁଁ ସକଳ ନାଶ ଯାଇ ॥୨୩
ଅନ୍ନ ବିହୁନେ ଭୋକେ ଲୋକେ ।
ଭକ୍ଷନ୍ତି ଏକକୁ ଆରକେ ॥୨୪
ସର୍ବ ରଚନା କ୍ଷୟ ଯାଇ ।
କାଳ ତା ସକଳ ହରଇ ॥୨୫
ସମ୍ବର୍ତ୍ତ ନାମେ ରବି ତହୁଁ ।
ପ୍ରଚଣ୍ଡେ ଉଦେ ହୁଏ ଯହୁଁ ॥୨୬
ତେଜ ପ୍ରଳୟାଗ୍ନି ଲାଗିଣ ।
ସମୁଦ୍ର ପୃଥ୍ୱୀ ଜଳମାନ ॥୨୭
ପ୍ରାଣୀ ଦେହରୁ ରସ ଜଳ ।
ସବୁ ଶୁଖାଏ ମହାନଳ ॥୨୮
ତହୁଁ ସମ୍ବର୍ତ୍ତ ନାମେ ଅଗ୍ନି ।
ସଙ୍କର୍ଷଣଙ୍କ ମୁଖୁଁ ଜନ୍ମି ॥୨୯
ପବନ ବେଗେ ମହାତେଜ ।
କରଇ ସକଳ ଦହିଜ ॥୩୦
ସେ ସର୍ବ ଭୂମିର ବିବର ।
ଶୂନ୍ୟ ପାତାଳ ଚରାଚର ॥୩୧
ଗ୍ରାସ କରଇ ମହାନଳ ।
ଅଧ ଉର୍ଦ୍ଧ୍ୱରେ ଯେତେ ସ୍ଥଳ ॥୩୨

Dr. Sudhanshu Sekhar Mishra

ବ୍ରହ୍ମାଣ୍ଡ ଏହି ଅଗ୍ନି ଦହି ।
ସୂର୍ଯ୍ୟ ଶିଖା ଯାଏ ଲାଗଇ ॥୩୩
ଶୁଷ୍କ ଗୋମୟ ଭସ୍ମ ପ୍ରାୟେ ।
ସଞ୍ଜା ମାତ୍ରକ ଦିଶୁଥାଏ ॥୩୪
ତହୁଁ ପ୍ରଚଣ୍ଡବାତ ବହି ।
ସମ୍ବର୍ତ୍ତ ନାମ ସେ ବୋଲାଇ ॥୩୫
ସଙ୍କରଷଣ ମୁଖୁଁ ଜାତ ।
ବରଷ ଅଷ୍ଟୋତ୍ତରଶତ ॥୩୬
ଦେବଙ୍କ ବରଷରେ ଜାଣ ।
ବହଇ ଅବିଶ୍ରାନ୍ତ ପୁଣ ॥୩୭
ଆକାଶ ମଧ୍ୟେ ଧୂମ୍ରବର୍ଣ୍ଣ ।
ଭସ୍ମରେ କରେ ଆଚ୍ଛାଦନ ॥୩୮
ସଙ୍କର୍ଷଣର ମୁଖୁଁ ପୁଣ ।
ଜାତ ସମ୍ବର୍ତ୍ତ ମେଘମାନ ॥୩୯
ଦେବଙ୍କ ବରଷରେ ପୁଣ ।
ଶତେ ବରଷ ପରିମାଣ ॥୪୦
ମୁଷଳଧାରା ପରମାଣେ ।
ବୃଷ୍ଟି ସେ କରନ୍ତି ଗର୍ଜନେ ॥୪୧
ସେ ଦିନେ ବ୍ରହ୍ମାଣ୍ଡ ପ୍ରଳୟ ।
ପୃଥ୍ୱୀରେ ଯେତେକ ସଞ୍ଚୟ ॥୪୨
ଗନ୍ଧଗୁଣାଦି ଲୀନ ହୋଏ ।
ହୁଅଇ ସର୍ବ ଜଳମୟେ ॥୪୩
ସେ ଜଳ ଅଗ୍ନି କରେ କ୍ଷୟେ ।
ଜଳ ତେଜରେ ଲୀନ ହୋଏ ॥୪୪
ପବନ ତେଜରୂପ ହରେ ।
ପବନ ରୂପ ଲୀନ କରେ ॥୪୫
ଆକାଶ ବାୟୁଗୁଣ ହରେ ।
ପବନ ଆକାଶେ ସଞ୍ଚରେ ॥୪୬
ଆକାଶ ଶବଦତା ଗୁଣ ।
ତାମସ ଅହଙ୍କାରେ ଲୀନ ॥୪୭
ଅହଙ୍କାର ଯେ ଏକାଦଶ ।
ଇନ୍ଦ୍ରିୟ ଦେବତା ବିଶେଷ ॥୪୮
ମହତ୍ତତ୍ତ୍ୱରେ ପ୍ରକାଶିବ ।
ମାୟାରେ ସର୍ବ ଲୀନ ହେବ ॥୪୯
ମହତ୍ତତ୍ତ୍ୱ ଯେ ତିନିଗୁଣ ।
କାଳରେ ପ୍ରବେଶଇ ପୁଣ ॥୫୦

ତ୍ରିଗୁଣ କାଳ ଆଦି ହୋଇ ।
ପରମାଣୁରେ ପ୍ରକାଶଇ ॥୫୧
ମାୟାରେ ସର୍ବ ଲୀନ ଯାଇ ।
ମହାପ୍ରକୃତି ରୂପ ସେହି ॥୫୨
ମାୟା ଅବ୍ୟକ୍ତ ପୁରୁଷେଣ ।
ଲୀନ ସତ୍ତ୍ୱାଦି ଗୁଣମାନ ॥୫୩
ଅନାଦି ପୁରୁଷ ଅବ୍ୟକ୍ତ ।
ତାହାର ନାହିଁ ଆଦି ଅନ୍ତ ॥୫୪
ନିତ୍ୟ ସ୍ୱରୂପ ନିରଞ୍ଜନ ।
ଅବ୍ୟୟ ଜଗତ କାରଣ ॥୫୫
ତାହାର ପ୍ରଳୟ ଯେ ନାହିଁ ।
ଶୁଣ ରାଜନ ମନ ଦେଇ ॥୫୬
ମନବଚନ ତିନିଗୁଣ ।
ପ୍ରାଣ ବୁଦ୍ଧି ଇନ୍ଦ୍ରିୟମାନ ॥୫୭
ମହତଆଦି ଯେତେ ଛନ୍ତି ।
ଏମାନେ ତା'କୁ ନ ଜାଣନ୍ତି ॥୫୮
ଏ ଲୋକ ସମୂହ କାରଣ ।
ଯା' ମାୟା କଳ୍ପନା ଭିଆଣ ॥୫୯
ସ୍ୱପ୍ନ ଜାଗ୍ରତ ଯା'ର ନାହିଁ ।
ସୁଷୁପ୍ତି ଭେଦ ହିଁ ନ ଥାଇ ॥୬୦
ପୃଥ୍ୱୀ ଜଳ ଅଗ୍ନି ପବନ ।
ଆକାଶ ଚନ୍ଦ୍ର ସୂର୍ଯ୍ୟ ମାନ ॥୬୧
ଏମାନେ ଯହିଁ ଭେଦ ନୋହିଁ ।
ଅଲେଖ ଚିହ୍ନ ବର୍ଣ୍ଣ କାହିଁ ॥୬୨
ଅନୁଭବୀ ତର୍କୀ ନ ପାଇ ।
ମୂଳ ବ୍ରହ୍ମସ୍ୱରୂପ ସେହି ॥୬୩
ତାଠାରେ ଯୋଗମାୟା ଲୀନ ।
ବ୍ରହ୍ମାଣ୍ଡ ସମେତ ହୋଇଣ ॥୬୪
ଏହି ପ୍ରକାରେ ଲୟ ହୋଏ ।
ପ୍ରାକୃତ ପ୍ରଳୟ ବୋଲାଏ ॥୬୫
ବୁଦ୍ଧି ଇନ୍ଦ୍ରିୟ ଅର୍ଥମାନ ।
ଜ୍ଞାନରେ ଯେବେ ହୋନ୍ତି ଲୀନ ॥୬୬
ଏ ଯେ ପ୍ରଳୟ ଆତ୍ୟନ୍ତିକ ।
ଅପର ନାମ ତା'ର ମୋକ୍ଷ ॥୬୭
ବ୍ରହ୍ମାଣ୍ଡ ସମେତ ହୋଇଣ ।
ତା' ଲୋମକୂପେ ହୋନ୍ତି ଲୀନ॥୬୮

ଏ ଯେ ପୁରୁଷ ନିରଞ୍ଜନ ।
ଯୋଗ ମାୟାଦି ସମେତେଣ ॥୬୯
ଆପଣା ସ୍ୱଗୁଣରୁ କରି ।
ପ୍ରଭାକୁ ଆକାଶେ ବିସ୍ତାରି ॥୭୦
ଲୀନ ହୁଅଇ ସେ ଇଚ୍ଛାକୁ ।
ମହାପ୍ରଳୟ ବୋଲି ତା'କୁ ॥୭୧
ନିରାକାର ଯେ ନିରଞ୍ଜନ ।
ତାହାର ନାହିଁ ଦରଶନ ॥୭୨
ଆକାଶ ପ୍ରାୟ ଶୂନ୍ୟ ରୂପୀ ।
ସ୍ୱଇଚ୍ଛା ଗୁଣେ ସର୍ବବ୍ୟାପି ॥୭୩
ଦୀପ ଚକ୍ଷୁ ରୂପ ଯେସନ ।
ଜ୍ୟୋତିରୁ ନୁହଁନ୍ତି ଏ ଭିନ୍ନ ॥୭୪
ଇଚ୍ଛାରେ ଏମାନ ହୁଅଇ ।
ତାହାର ଭେଦବୁଦ୍ଧି ନାହିଁ ॥୭୫
ବୁଦ୍ଧି ଇନ୍ଦ୍ରିୟ ପଞ୍ଚଭୂତ ।
ଶବଦ ଆଦି ପଞ୍ଚମାତ୍ର ॥୭୬
ନିରାକାରରେ ଲଗ୍ନ ହୋଇ ।
ପ୍ରକୃତି ପୁରୁଷର ତହିଁ ॥୭୭
ବୁଦ୍ଧି ଇନ୍ଦ୍ରିୟ ଯେ ବିଷୟ ।
ବ୍ରହ୍ମସ୍ୱରୂପ ଜ୍ଞାନମୟ ॥୭୮
ସୁଷୁପ୍ତି ସ୍ୱପ୍ନ ଜାଗରଣ ।
ବୁଦ୍ଧିର ଏହି ତିନିଧର୍ମ ॥୭୯
ଏମାନେ ମାୟାର ସ୍ୱରୂପୀ ।
ଜୀବ ଆଚ୍ଛାଦି ଥା'ନ୍ତି ବ୍ୟାପି ॥୮୦
ଯେମନ୍ତ ହୋଇ ମେଘମାନେ ।
ପବନ ସକାଶୁ ଗଗନେ ॥୮୧
ଘୋଟନ୍ତି ପୁଣି ଛାଡ଼ିଯା'ନ୍ତି ।
ତେମନ୍ତ ହୋଇ ମାୟାଗତି ॥୮୨
ମାୟା ସକାଶୁ ଏ ବ୍ରହ୍ମାଣ୍ଡ ।
ଉତ୍ପତ୍ତି କ୍ଷୟ ପୁଣି ରୁଣ୍ଡ ॥୮୩
ଯେମନ୍ତ ସୂତାଖିଅ ହୋଇ ।
ଓତଃପ୍ରୋତଃ ବସ୍ତ୍ର ହୁଅଇ ॥୮୪
ସେ ବସ୍ତ୍ର ଫିଟିଲେ ସେ ସୂତ୍ର ।
ଏମନ୍ତ ଈଶ୍ୱରର ଯନ୍ତ୍ର ॥୮୫
ତେମନ୍ତ ବିକାର ମାୟାର ।
ବ୍ରହ୍ମଟି ବୋଲାଏ ସଂସାର ॥୮୬

Dr. Sudhanshu Sekhar Mishra

ଯୋଗମାୟା ପୁରୁଷଠାରେ ।
କାର୍ଯ୍ୟକାରଣ ଯେ ଆବୋରେ ॥୮୭
ଅନ୍ୟୋନ୍ୟ ଆଶ୍ରୟ ସେ କରେ।
ସଂଯୋଗ ବିୟୋଗ ପ୍ରକାରେ ॥୮୮
ଏଣୁ ସେ ଭ୍ରମ ହେଉଅଛି ।
ସଂସାର ଜଡ଼ ଆବୋରିଛି ॥୮୯
ଏ ଯେତେ ଆତଯାତ ହୋନ୍ତି ।
ମାୟାକୁ ଧରି ସେ ଜନ୍ମନ୍ତି ॥୯୦
ଏ ମାୟାବିକାର କାରଣ ।
ବ୍ରହ୍ମାଣ୍ଡ ବିଷ୍ଣୁଦେହୁଁ ଜନ୍ମ ॥୯୧
ବ୍ରହ୍ମସ୍ୱରୂପ ତେଣୁ ନାମ ।
ଅନାଦି ପରମ କାରଣ ॥୯୨
ସେ ଅବିନାଶୀ ଯେ ପୁରୁଷ ।
ବିକାର ଭେଦେ ଅପ୍ରକାଶ ॥୯୩
ଯହାର ରୂପରେଖ ନାହିଁ ।
ତାହାର ବର୍ଣ୍ଣଭେଦ କାହିଁ ॥୯୪
ତାହାର ମାୟାର ରଚନା ।
ନାନା ରୂପ କରେ ସର୍ଜନା ॥୯୫
ଯେମନ୍ତେ ଠୁଳ ସୁବର୍ଣ୍ଣାଦି ।
କାରଣ କାର୍ଯ୍ୟ କୁଣ୍ଡଳାଦି ॥୯୬
ନାନା ଅଳଙ୍କାର ଗଢାଇ ।
ବହୁ ବିଚିତ୍ର ନାମ ଦେଇ ॥୯୭
ତା' ପୁଣି ଭାଙ୍ଗି ଦଗଧିଲେ ।
ଏକ ହୁଅଇ ଯେ ପ୍ରକାରେ ॥୯୮
ମାୟାରୁ ଜୀବ ଏ ବେଭାରେ ।
ବ୍ରହ୍ମାଣ୍ଡ କଳ୍ପେ ଏ ପ୍ରକାରେ ॥୯୯
ଦେହ ଯେ ହୁଅଇ ବିନାଶ ।
ନାମ ଯଶ ରହେ ବିଶେଷ ॥୧୦୦
ଏ ଭାବେ ବାସୁଦେବ ଲୀଳା।
ଜ୍ୟୋତି ପ୍ରଭାବ ଅଂଶ କଳା॥୧୦୧
ବାସନା ପ୍ରବେଶ କରିଣ ।
ନାମ-ରୂପ-ବର୍ଣ୍ଣ ଭେଦେଣ ॥୧୦୨
ବେଦପୁରାଣେ ତା'ଙ୍କୁ ଚିହ୍ନି ।
ମହିମା ବ୍ୟାଖ୍ୟାନ କରନ୍ତି ॥୧୦୩
ବ୍ରହ୍ମାଦି ଯେତେ ଋଷିମାନେ ।
ଯାକୁ ଚିନ୍ତନ୍ତି ଯୋଗଧ୍ୟାନେ ॥୧୦୪

ମେଘ ସୂର୍ଯ୍ୟ-ତେଜୁଁ ଜନ୍ମଇ ।
ଆକାଶେ ସୂର୍ଯ୍ୟଙ୍କୁ ଘୋଡ଼ାଇ॥୧୦୫
ସୂର୍ଯ୍ୟ-ତେଜୁଁ ଚକ୍ଷୁ ଜନ୍ମଇ ।
ମେଘରେ ସୂର୍ଯ୍ୟ ନ ଦିଶଇ ॥୧୦୬
ବ୍ରହ୍ମରୁ ଜନ୍ମ ଏ ପ୍ରକାର ।
ତ୍ରିଗୁଣମୟ ଅହଙ୍କାର ॥୧୦୭
ଆତ୍ମଦର୍ଶନ ବିରୋଧଇ ।
ମାୟାରେ ଉହାଡ଼ କରଇ ॥୧୦୮
ସେ ମେଘ ପୁଣି ନାଶ ଗଲେ।
ସୂର୍ଯ୍ୟ ପ୍ରକାଶ ହୋଏ ଭଲେ॥୧୦୯
ସେ ଗଲେ ଚକ୍ଷୁ ସୂର୍ଯ୍ୟ ଦେଖେ ।
ଅଜ୍ଞାନ ତେହ୍ନେ ଜୀବ ପାଖେ॥୧୧୦
ଆତ୍ମା ଅହଙ୍କାର ଅଜ୍ଞାନ ।
ଯେବେ ଦୂରକରେ ଏମାନ ॥୧୧୧
ଜୀବ ପରମ ତେବେ ପାଇ ।
ଅଜ୍ଞାନ ତମକୁ ନାଶଇ ॥୧୧୨
ଆତ୍ମା ବିବେକ ଜ୍ଞାନମୟ ।
ମାୟା ଅହଙ୍କାର ନିର୍ଣ୍ଣୟ ॥୧୧୩
ପାଶବନ୍ଧନ ଜ୍ଞାନ ଖଡ଼୍‌ଗେ ।
ଯେବେ ନ ଛେଦେ ମତିଭଙ୍ଗେ॥୧୧୪
ଅଜ୍ଞାନ ଭ୍ରମ ସେ ଭ୍ରମଇ ।
ଆତ୍ମାକୁ ଦର୍ଶନ ନ ପାଇ ॥୧୧୫
ଯେବେ ସେ ମାୟାକୁ ଛେଦଇ।
ବ୍ରହ୍ମଶରୀରେ ଲୀନ ହୋଇ ॥୧୧୬
ସାଯୁଜ୍ୟ ମୁକ୍ତି ସେ ଲଭଇ ।
ମାତୃଗର୍ଭରେ ଲୀନ ହୋଇ ॥୧୧୭
ତେବେ ଆତ୍ୟନ୍ତିକ ପ୍ରଳୟ ।
କହିବି ଯେ ନିତ୍ୟ ପ୍ରଳୟ ॥୧୧୮
ନିତ୍ୟ ବ୍ରହ୍ମାଦିମାନଙ୍କର ।
ଉତ୍ପତ୍ତି ପ୍ରଳୟ ସଞ୍ଚାର ॥୧୧୯
ହୁଅଇ ପୁଣି ନିତିନିତି ।
ସୂକ୍ଷ୍ମଜ୍ଞାନୀଏ କହିଥା'ନ୍ତି ॥୧୨୦
କାଳ ସିନ୍ଧୁସ୍ରୋତ ବେଗରେ ।
ବ୍ରହ୍ମାଦି ପ୍ରାଣୀ ଏ ସଂସାରେ॥୧୨୧
ଭାସି ଯାଇ ପୁଣି ଉଠିଣ ।
ପଡ଼ନ୍ତି ସେ ସ୍ରୋତ ଧାରେଣ॥୧୨୨

ପରିଣାମେ ନାନାବସ୍ଥାରେ ।
ଭୋଗ କରେ କଳ୍ପମାନରେ ॥୧୨୩
ଏ ଅନୁଭବ କରୁଛନ୍ତି ।
କେହି ତା' ନ ଜାଣନ୍ତି ଗତି ॥୧୨୪
ଏ ଯେ କାଳ ଈଶ୍ୱର ମୂର୍ତ୍ତି ।
ନାହିଁ ତା' ଆଦିଅନ୍ତ ସ୍ଥିତି ॥୧୨୫
ଲଭଇ ନାନା ପରିଣାମ ।
ଯେହ୍ନେ ଆକାଶେ ଜ୍ୟୋତିର୍ଗଣ ॥୧୨୬
ତେମନ୍ତ କାଳର ମହିମା ।
ଯା' ଅନ୍ତ ନ ଜାଣନ୍ତି ବ୍ରହ୍ମା ॥୧୨୭
କୋଟି କୋଟି ବ୍ରହ୍ମାଣ୍ଡମାନ ।
ଉତ୍ପତ୍ତି ସ୍ଥିତି ଅବସାନ ॥୧୨୮
କାଳର ଅନ୍ତ ନାହିଁ ରୂପ ।
ଯେଣୁ ବାସୁଦେବ ସ୍ୱରୂପ ॥୧୨୯
ମାୟାର ଅଗୋଚର ଯେଣୁ ।
ଚାରି ପ୍ରଳୟ କରେ ତେଣୁ ॥୧୩୦
ଏ ନିତ୍ୟ ନୈମିତ୍ତିକ ଦୁଇ ।
ପ୍ରାକୃତ ଆତ୍ୟାନ୍ତିକ ହୋଇ ॥୧୩୧
କାଳ ଏ ପ୍ରଳୟ କରଇ ।
ଈଶ୍ୱର ଦେହେ ଲୀନ ହୋଇ॥୧୩୨
ହେ କୁରୁଶ୍ରେଷ୍ଠ ପରୀକ୍ଷିତ ।
ନାରାୟଣ ଜଗତ ତାତ ॥୧୩୩
ବିଧାତା ସ୍ୱରୂପ ସେ ପୁଣି ।
ତହିଁ ଆଶ୍ରିତ ସର୍ବପ୍ରାଣୀ ॥୧୩୪
ଏଥେ ସଂଯୋଗ ମାୟାରୂପେ ।
ଯା' ଅବତାର କଳ୍ପେ କଳ୍ପେ ॥୧୩୫
ଲୀଳାବତାରଙ୍କର ସୀମା ।
ସଂକ୍ଷେପି କହୁଛି ମହିମା ॥୧୩୬
କେ ବା ବିସ୍ତାରି କହୁ ଅର୍ଥ ।
ବ୍ରହ୍ମାଦି ନୋହିବେ ସମର୍ଥ ॥୧୩୭
ସଂସାର-ସମୁଦ୍ର ଦୁସ୍ତର ।
ତାରଣେ ବିଷ୍ଣୁ କର୍ଣ୍ଣଧାର ॥୧୩୮
ବାସୁଦେବ-ପଦାରବିନ୍ଦ ।
ଯେବେ ନ ଧରେ ହୃଦମଧ୍ୟ ॥୧୩୯
ସେ କାହିଁ ତରିବ ସଂସାର ।
ବୁଡ଼ଇ ତମ-ମହାଘୋର ॥୧୪୦

Dr. Sudhanshu Sekhar Mishra

ବୋଇତ ଆଶ୍ରେ ବିନା ପ୍ରାଣୀ ।
ବାଣିଜ୍ୟେ ସମୁଦ୍ର ନ ଜିଣି ॥୧୪୧
ତା' ଲୀଳା ଅବତାର କଥା ।
ଶୁଣିଲେ ଖଣ୍ଡେ ଭବବ୍ୟଥା ॥୧୪୨
ପଢ଼ି ଗାୟନ କଲେ ପ୍ରାଣୀ ।
ତରେ ସଂସାର ତରଙ୍ଗିଣୀ ॥୧୪୩
ଶ୍ରୀଭାଗବତ ପୁରାଣରେ ।
ଅମୃତ ପୂରିଛି ବିସ୍ତାରେ ॥୧୪୪
ଏ ତତ୍ତ୍ୱ ଭାଗବତ ଯେଣୁ ।
ପୁରାଣ ଭାଗବତ ତେଣୁ ॥୧୪୫
ଏ ଯେ ପୁରାଣରସ ଗୀତା ।
ପ୍ରଥମେ ଏକାକ୍ଷର କଥା ॥୧୪୬
ବୈକୁଣ୍ଠନାଥ ମୁଖୁଁ ଜାତ ।
ପ୍ରଣବ ସ୍ୱରୂପେ ସମ୍ଭୂତ ॥୧୪୭
ତା'କୁ ଯେ ତିନି ଅକ୍ଷରେଣ ।
ଅନନ୍ତେ ଉପଦେଶ ପୁଣ ॥୧୪୮
ପୁଣ ଚଉବିଂଶ ଅକ୍ଷରେ ।
ଅନନ୍ତ ବ୍ରହ୍ମାଙ୍କୁ ଯେ ଦେଲେ ॥୧୪୯

ବ୍ରହ୍ମାଠାରୁ ଚାରିଶ୍ଳୋକେଣ ।
ପାଇଲେ ନରନାରାୟଣ ॥୧୫୦
ନାରଦେ ନରନାରାୟଣ ।
ଦଶଶ୍ଳୋକେଣ ଦେଲେ ପୁଣ ॥୧୫୧
ନାରଦ ବ୍ୟାସେ ଉପଦେଶ ।
ଶତଶ୍ଳୋକରେ ପରକାଶ ॥୧୫୨
ସେ ବ୍ୟାସମୁନି ବିଚକ୍ଷଣ ।
ଅଠର ସହସ୍ର ଶ୍ଳୋକେଣ ॥୧୫୩
ଆମ୍ଭେ ଯେ ଶୁକ ତା'ଙ୍କ ଶିଷ୍ୟ ।
ଆମ୍ଭଙ୍କୁ ଦେଲେ ଉପଦେଶ ॥୧୫୪
ଏବେ ଏ ଗଙ୍ଗାର ତୀରରେ ।
ବ୍ରହ୍ମଋଷି ସଭା ମଧ୍ୟରେ ॥୧୫୫
ତୁମ୍ଭଙ୍କୁ କହି ଏ ପୁରାଣ ।
ଆମ୍ଭେ ଯେ ହୋଇଲୁ କାରଣ ॥୧୫୬
ଏହି ପୁରାଣ ତୁମ୍ଭେ ଶୁଣି ।
ଲଭିବ ବିଷ୍ଣୁଅଙ୍ଗ ପୁଣି ॥୧୫୭
ଏ ଭାଗବତ ଧର୍ମସାର ।
ଚାରିବେଦୁଁ ଅର୍ଥ ବାହାର ॥୧୫୮

ଏବେ ଏ ଗଙ୍ଗାପାଶେ ଜାଣ ।
ସମ୍ବାଦ ତୁମ୍ଭ ଆମ୍ଭ ପୁଣ ॥୧୫୯
ସୂତ ପୌରାଣିକ ଶୁଣିଲେ ।
ସକଳ ଜ୍ଞାନ ସମ୍ପାଦିଲେ ॥୧୬୦
ଏ ପୁଣି ନୈମିଷ ଅରଣ୍ୟେ ।
ଶୌନକ ଆଦି ଋଷିଜନେ ॥୧୬୧
ଯଜ୍ଞ ଆରମ୍ଭେ ତୋଷମନେ ।
କହିବେ ସଭା ସନ୍ନିଧାନେ ॥୧୬୨
ହରି ଚରିତ କରି ପାନ ।
କାଳ ଖଣ୍ଡିବେ ମୁନିଜନ ॥୧୬୩
କହଇ ଦାସ ଜଗନ୍ନାଥ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୧୬୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦ୍ୱାଦଶସ୍କନ୍ଧେ ଚତୁର୍ଥୋଽଧ୍ୟାୟଃ ॥

## ପଞ୍ଚମ ଅଧ୍ୟାୟ

ପରୀକ୍ଷିତ ଉବାଚ

କହେ ପରୀକ୍ଷ ନୃପମଣି ।
ଭୋ ମୁନି ଶୁଣ ମୋର ବାଣୀ ॥୧
ଏ ତୋର ମୁଖୁଁ ଜ୍ଞାନମାନ ।
ଶୁଣି ଶ୍ରୁତିରେ କଲି ପାନ ॥୨
ଘୋର ସଂସାରୁ ଉଦ୍ଧାରିଲ ।
ବିଷ୍ଣୁର ଚରିତ କହିଲ ॥୩
ଏବେ ସନ୍ଦେହ ମୋର ମନ ।
ତକ୍ଷକ କରିବ ଦଂଶନ ॥୪
ଏ କାଳରୂପୀ ମହାସର୍ପ ।
ହରିବ ମୋର ଏଡ଼େ ଦର୍ପ ॥୫
ଦଂଶିବ ଲୋଚନେ ଦେଖିବି ।
କେମନ୍ତ ଦେହ ସମର୍ପିବି ॥୬
ଏଣୁ ମୋ' ଚିତ୍ତେ ଭୟ ପାଇ ।
ତୁମ୍ଭ ଛାମୁରେ କହିଲଇଁ ॥୭
ଦୁଃସହ-ସଙ୍କଟ କଷଣ ।
ଏଥିରୁ କର ପରିତ୍ରାଣ ॥୮
ଏମନ୍ତ ରାଜା ମୁଖୁଁ ଶୁଣି ।
କହନ୍ତି ଶୁକ ମହାମୁନି ॥୯

ଶୁକ ଉବାଚ

ଶୁକ କହନ୍ତି ଶୁଣ ରାୟ ।
ଶ୍ରୀଭାଗବତର ନିର୍ଣ୍ଣୟ ॥୧୦
ଏ ଭାଗବତ ଆଦିଅନ୍ତ ।
ବିଶ୍ୱାତ୍ମା ହରିର ଚରିତ ॥୧୧
ଭଗବାନ ପରଂପୁରୁଷ ।
ଅମାୟ ରୂପେ ପରକାଶ ॥୧୨
ଯାହାର ଅନୁଗ୍ରହ କରି ।
ବ୍ରହ୍ମା ଜନମି ସୃଷ୍ଟି କରି ॥୧୩
ଯାହାର ସ୍ୱରୂପ ହୋଇଣ ।
ସତ୍ତ୍ୱଗୁଣକୁ ବିଷ୍ଣୁଜନ୍ମ ॥୧୪
ଜନ୍ମି ସଂସାର ପ୍ରବର୍ତ୍ତନ୍ତି ।
ପାଳିଣ ରଚନା କରନ୍ତି ॥୧୫
ଯାହାର କ୍ରୋଧୁ ଜାତ ହୋଇ ।
ରୁଦ୍ର ଜଗତ ସଂହାରଇ ॥୧୬
ଶୁଣ ପରୀକ୍ଷ କ୍ଷିତିପତି ।
ମରିବୁ ବୋଲି ଯେଉଁ ଭୀତି ॥୧୭
ପ୍ରାଣୀ ତା' ଅଜ୍ଞାନେ କରନ୍ତି ।
ତୁ ଏବେ ଛାଡ଼ ଏହି ଭ୍ରାନ୍ତି ॥୧୮
ଜନମ କଉଣସି ଦିନ ।
ନୋହିଛ ତୁମ୍ଭେ ତ ରାଜନ ॥୧୯
ଆଗରେ ଜନମ ନୋହିବ ।
ବର୍ତ୍ତମାନରେ ନ ମରିବ ॥୨୦
ଐହିକେ ଜାତ ନୋହିଅଛ ।
ଜନମ ନୋହିଥିଲ ପଛ ॥୨୧
ଉତ୍ପତ୍ତି ସ୍ଥିତି ଯା'ର ନାହିଁ ।
ବିନାଶ ହୋଇବ କିପାଇଁ ॥୨୨

Dr. Sudhanshu Sekhar Mishra

ପୁତ୍ର ପୌତ୍ରାଦି ଏ ତୋହର ।
କେହି ଯେ ନୁହଁନ୍ତି କାହାର ॥୨୩
ସମ୍ପତ୍ତି ଅଇଶ୍ୱର୍ଯ୍ୟ-ମତ୍ତ ।
ବାସୁଦେବ ମାୟା ସଞ୍ଚିତ ॥୨୪
ଯେମନ୍ତେ ବୀଜରୁ ଅଙ୍କୁର ।
ତହୁଁ ବୃକ୍ଷାଦି ଅବତାର ॥୨୫
ସେ ଫଳ ଫଳଇ ପ୍ରତ୍ୟକ୍ଷେ ।
ବୀଜ ଅଙ୍କୁରି ପୁଣି ବୃକ୍ଷେ ॥୨୬
ତେମନ୍ତ ନୋହେ ପିତାପୁତ୍ର ।
ସମ୍ବନ୍ଧ ଜାଣ ପରୀକ୍ଷିତ ॥୨୭
ଏହା ସେ କହିବା ବୁଝାଇ ।
ଯେହ୍ନେ କାଷ୍ଠରେ ଅଗ୍ନି ଥାଇ ॥୨୮
ଅରଣି କରି ତା' ମନ୍ଥିଲେ ।
ଅଗ୍ନି ପ୍ରକାଶ ହୋଏ ଭଲେ ॥୨୯
ପ୍ରତ୍ୟକ୍ଷେ ଦର୍ଶନ ଦିଅଇ ।
ଅରଣି ଭସ୍ମ ସେ କରଇ ॥୩୦
ଆପଣେ ଅନ୍ତର୍ଦ୍ଧାନେ ଯାଇ ।
ଏ ଭାବେ ଦେହେ ମାୟା ଥାଇ॥୩୧
ଯୋଗ ଅଭ୍ୟାସରେ ମନ୍ଥିଲେ ।
ଦର୍ଶନ ପାଇ ତା'କୁ ଭଲେ ॥୩୨
ସେ କର୍ମବନ୍ଧନ ଶରୀର ।
ଦଗ୍‌ଧ କରି ହୁଏ ଅନ୍ତର ॥୩୩
ସ୍ୱପ୍ନେ ଯେ ମୁଣ୍ଡକାଟ ଯାଇ ।
ପ୍ରାଣତ୍ୟାଗ ହୋଇଣ ଥାଇ ॥୩୪
ନିଦ୍ରାଭଙ୍ଗରେ ମିଥ୍ୟା ହୋଇ ।
ଏ ଭାବେ ଜନ୍ମ ମୃତ୍ୟୁ ଦୁଇ ॥୩୫
ଏ ଆତ୍ମା ଶରୀରୁ ବିଲଗ ।
ଜନ୍ମ ମରଣେ ନାହିଁ ସଙ୍ଗ ॥୩୬
ଘଟର ଭିତରେ ଆକାଶ ।
ସେ ଘଟ ଯେବେ ହୋଏ ନାଶ॥୩୭
ଆକାଶ ପୂର୍ଣ୍ଣମୟ ଦିଶେ ।
ଘଟ ବିଯୋଗେ ରହେ ଶେଷେ ॥୩୮
ସେ ଭାବେ ଦେହ ନାଶ ଗଲେ।
ଜୀବ ମିଶଇ ବ୍ରହ୍ମ ତୁଲେ ॥୩୯
ଘଟର ବିନାଶ ହୁଅଇ ।
ଜନ୍ମ ମରଣ ତା'ର ନାହିଁ ॥୪୦

ଜୀବ ଅବିନାଶୀ ବୋଲାଇ ।
ପୁଣି ଶରୀରେ ପ୍ରକାଶଇ ॥୪୧
ମନ ହିଁ ଦେହ ଗୁଣ କର୍ମ ।
ଆପଣେ କରଇ ସୃଜନ ॥୪୨
ସେ ମନ ମାୟାରୁ ସମ୍ଭବ ।
ତେଣୁ ଜନମ ମୃତ୍ୟୁ ଲାଭ ॥୪୩
ମାୟା ଦେହର ଅଧିଷ୍ଠାନ ।
ଦେହ ସଂଯୋଗ ବିଯୋଗେ ॥୪୪
ଘୃତ ବଳିତା ଯୋଗ ପାଇ ।
ଯେସନେ ପ୍ରଦୀପ ଜଳଇ ॥୪୫
ତାହାକୁ ଅସଂଯୋଗ କଲେ ।
ଅଗ୍ନି ଅଦୃଶ୍ୟ ହୋଏ ଭଲେ ॥୪୬
ଏମନ୍ତ ଜୀବ କର୍ମଯୋଗେ ।
ଦେହରେ ସଂଯୋଗ ବିଯୋଗ ॥୪୭
ଦେହ ଦର୍ଶନ ଭସ୍ମଭୋଗ ।
ଏ ସର୍ବ ମାୟାର ସଂଯୋଗ ॥୪୮
ଦୀପରେ ଅଗ୍ନି ଯେହ୍ନେ ଥାଇ ।
ଦୀପବଳିତା ନାମ ବହି ॥୪୯
ତା' ଗଲେ ବଇଠା ବୋଲାଇ ।
ସଂଯୋଗେ ଏ ଜୀବ କୁହାଇ ॥୫୦
ଜୀବ ମୃତ୍ୟୁକର୍ମେ ବିଯୋଗ ।
ଦେହ ରଜଗୁଣେ ସଂଯୋଗ ॥୫୧
ତମ ଗୁଣରେ ନାଶ ଯାଇ ।
ସତ୍ତ୍ୱଗୁଣରେ ସେ ବଢ଼ଇ ॥୫୨
ଦେହେ ଆତ୍ମା ଲାଗି ନ ଥାଇ ।
ଆତ୍ମା ଯେ ଜ୍ୟୋତି ସ୍ୱରୂପ ହିଁ ॥୫୩
ବ୍ୟକ୍ତ ଅବ୍ୟକ୍ତ ପରାପର ।
ଆକାଶ ପ୍ରାୟ ତା' ସଞ୍ଚାର ॥୫୪
ସର୍ବବ୍ୟାପୀ ଯେ ନିର୍ବିକାର ।
ଅନ୍ତଉପମା ନାହିଁ ଯା'ର ॥୫୫
ଜଗତ ଆଶ୍ରୟ ଯେ ଭୂତ ।
ସର୍ବବ୍ୟାପୀ ନିଶ୍ଚଳ ମତ ॥୫୬
ଅମୃତଫଳ ସେ ଫଳନ୍ତି ।
ଯୋଗ ଅଭ୍ୟାସେ ଉତପତ୍ତି ॥୫୭
ଏହି ପ୍ରକାରେ ଆତ୍ମା ଜାଣି ।
ଆତ୍ମାକୁ ଆତ୍ମାଭାବେ ମଣି ॥୫୮

ଅନୁଭବ ବୁଦ୍ଧି ବିଚାର ।
ବାସୁଦେବଙ୍କୁ ଚିନ୍ତାକର ॥୫୯
ଚିତ୍ତ ତନ୍ମୟ ହୋଇ ଧର ।
ମନକୁ ଭ୍ରୂମଧରେ ଭର ॥୬୦
ବାସୁଦେବରେ ଆତ୍ମା ଲୀନ ।
ଧ୍ୟାନେ ଦେଖ ତୁ ନିରଞ୍ଜନ ॥୬୧
ନିର୍ବାଣ ମୁକତି ପାଇବ ।
ତକ୍ଷକ ବାଧା ନ ଲାଗିବ ॥୬୨
ତକ୍ଷକ ବ୍ରାହ୍ମଣ ଶାପରେ ।
ଦଂଶିବ ତୁମର ଶରୀରେ ॥୬୩
ମାୟା-ଦେହକୁ ସେ ଦଂଶିବ ।
ବିଷଜ୍ୱାଳାରେ ଭସ୍ମ ହେବ ॥୬୪
ଜୀବ ଥିବା ଯାଏ ତୁମ୍ଭର ।
ଦଗ୍ଧ ନ କରିବ ଶରୀର ॥୬୫
ଏମାନ ମୃତ୍ୟୁକାଳେ ପୁଣ ।
ଭୋଗ ନୋହେ ତୁମ୍ଭ ଦେହେଣ॥୬୬
ତୁମ୍ଭେ ଯେ ମୃତ୍ୟୁର ଈଶ୍ୱର ।
ଅବିନାଶୀ ଜୀବ ତୁମ୍ଭର ॥୬୭
ତେଣୁ ତୁ ମୃତ୍ୟୁକୁ ନ ଡ଼ର ।
ଜନ୍ମିଲେ ମରଣ ନିକର ॥୬୮
ପରମବ୍ରହ୍ମ ନିରାକାରେ ।
ଜ୍ୟୋତି ସ୍ୱରୂପେ ଲୀନ କରେ ॥୬୯
ତେବେ ଆପଣାକୁ ଚିହ୍ନଇ ।
ପରମବ୍ରହ୍ମ ମୁଁ ଅଟଇ ॥୭୦
ନିରାକାର ବ୍ରହ୍ମସ୍ୱରୂପୀ ।
ପରମ ପଦେ ଅଛି ବ୍ୟାପୀ ॥୭୧
ଏ ରୂପ ଚିନ୍ତି ଆତ୍ମଧ୍ୟାନେ ।
ଲୟ ଲଗାଅ ନିରଞ୍ଜନେ ॥୭୨
ଆତ୍ମା ଆତ୍ମାଭାବ ଜାଣଇ ।
ସୂକ୍ଷ୍ମରେ ବ୍ରହ୍ମଭାବ ପାଇ ॥୭୩
ସେ ନିରାକାରେ ଲୀନ ହୋଇ ।
ଚାରିପ୍ରଳୟେ ଶଙ୍କା ନାହିଁ ॥୭୪
ଶୁଣ ରାଜନ ପୁଣ୍ୟଦେହା ।
କହିବା ତୁମ୍ଭ ଆଗେ ଏହା ॥୭୫
ତକ୍ଷକ ବ୍ରହ୍ମଶାପେ ଆସି ।
ତୁମ୍ଭର ଚରଣରେ ଦଂଶି ॥୭୬

Dr. Sudhanshu Sekhar Mishra

ସେ ବିଷଅଗ୍ନିରେ ଏ ଦେହ ।
ଦହି ହୋଇବ ଭସ୍ମମୟ ॥୭୭
ତୁମ୍ଭେ ଯେ ତା'ଙ୍କୁ ନ ଦେଖିବ ।
ତୁମ୍ଭ ଦେହେ ଜୀବ ନ ଥିବ ॥୭୮
ଯୋଗ ଅଗ୍ନିରେ ତୋ' ଶରୀର ।
ପ୍ରକୃତି ଜିଣିଣ ସତ୍ୱର ॥୭୯
ପରମପଦେ ଯାଇଥିବ ।
ଏ ମାୟାଦେହ ନ ଦେଖିବ ॥୮୦
ଏମନ୍ତ ତକ୍ଷକ ସ୍ୱଭାବେ ।
ଋଷିବାକ୍ୟ ପ୍ରତିପାଳିବେ ॥୮୧
ଏଣୁ ତୁମ୍ଭ ଚରଣେ ଘାତ ।
ତକ୍ଷକ କରିବ ନିୟତ ॥୮୨
ମାୟା ଶରୀର ନାଶଯିବ ।
ଜଗତ ପ୍ରତ୍ୟକ୍ଷେ ଦେଖିବ ॥୮୩
ତୁମ୍ଭର ଦେହୁ ଆତ୍ମା ଯିବ ।
ନିରାକାରରେ ଲୀନ ହେବ ॥୮୪
ଯା' ମୋତେ ତୁମ୍ଭେ ପୁଚ୍ଛା କଲ ।
କହିଲୁଁ ତୁମ୍ଭଙ୍କୁ ସକଳ ॥୮୫
ସର୍ବ ଆତ୍ମା ଯେ ବାସୁଦେବ ।
ଏବେ ଧ୍ୟାନରେ ତା'ଙ୍କୁ ଭାବ ॥୮୬
ମଉନବ୍ରତ ହୋଇ ବସ ।
ପଦାରବିନ୍ଦେ ମନ ରସ ॥୮୭
ମନ ଲଗାଅ ତନ୍ମନରେ ।
ପଶ ନିର୍ବାଣ ମୁକ୍ତିଦ୍ୱାରେ ॥୮୮
ଏଥିରେ ନାହିଁ ଯେ ସଂଶୟ ।
କି ଇଚ୍ଛା ଏବେ ନୃପ କହ ॥୮୯
ଏମନ୍ତ ଶୁକ ମୁଖୁଁ ବାଣୀ ।
ବୋଲଇ ପରୀକ୍ଷିତ ଶୁଣି ॥୯୦
ଚିତ୍ତ ଆନନ୍ଦେ ପୁଲକିତ ।
କୃଷ୍ଣଚରଣେ ଦେଇ ଚିତ୍ତ ॥୯୧
ହେ ପ୍ରଭୁ ପରମ ପୁରୁଷ ।
ମହିମା ନ ଜାଣଇ ଶେଷ ॥୯୨
ତୁମ୍ଭର ଭାବ ତୁମ୍ଭେ ଜାଣ ।
ତୋ' ବିନୁ ନାହିଁ ପରିତ୍ରାଣ ॥୯୩
ତୁମ୍ଭ ଚରଣେ ମନ ମୋ'ର ।
କାଳେ ରଖିବ ଚକ୍ରଧର ॥୯୪
ଆଶା-ବିଶ୍ରାମ ବାନା ତୋ'ର ।
ମୋ' ଆଶା ରଖ ତୋ' ପୟର ॥୯୫
ନମସ୍ତେ ଦେବ ନାରାୟଣ ।
ଭବଜଳରୁ କର ତ୍ରାଣ ॥୯୬
କହଇ ଦାସ ଜଗନ୍ନାଥ ।
ତ୍ରାହି କରିବେ ପଦ୍ମନେତ୍ର ॥୯୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦ୍ୱାଦଶସ୍କନ୍ଧେ ବ୍ରହ୍ମୋପଦେଶୋ ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠ ଅଧ୍ୟାୟ

ସୂତ ପୌରାଣିକ କହନ୍ତି ।
ଶୌନକ ଆଦି ମୁନି ପ୍ରତି ॥୧
ନୈମିଷାରଣ୍ୟେ ସର୍ବେ ମିଳି ।
ଶୁଣନ୍ତି ବାସୁଦେବ କେଳି ॥୨

ସୂତ ଉବାଚ

ଶୁକଙ୍କ ତହୁଁ ତତ୍ତ୍ୱବାଣୀ ।
ପରୀକ୍ଷ ବିଷ୍ଣୁରତ ଶୁଣି ॥୩
ନମିଲା ଶୁକମୁନି ପାଦେ ।
ରୋମପୁଲକ ଗଦଗଦେ ॥୪
ଅଞ୍ଜଳି କରି ତତକ୍ଷଣ ।
କହଇ ଏମନ୍ତ ବଚନ ॥୫

ପରୀକ୍ଷିତ ଉବାଚ

ହେ ବ୍ୟାସସୁତ ଜ୍ଞାନଧୀର ।
ଜଗତ ଆତ୍ମାରୂପ ତୋ'ର ॥୬
ସମଦରଶୀ ଭାବ ବହୁ ।
ଏଣୁ ସଂସାରେ ଭେଦ ନୋହୁ ॥୭
ଏମନ୍ତ କହିଣ ଚରଣେ ।
ପ୍ରଣାମ କଲା ତତ୍‌କ୍ଷଣେ ॥୮
ଅଦ୍ଭୁତ କଥା ତୁମ୍ଭ ବାଣୀ ।
ଏଣୁ ସଂସାର ମିଥ୍ୟା ଜାଣି ॥୯
ମରଣେ ଭୟ କିଛି ନାହିଁ ।
ଅଜ୍ଞାନୀଜନ ସେ ମରଇ ॥୧୦
ତୁମ୍ଭର କୃପା ହେଲା ଯେଣୁ ।
ନାହିଁ ମୋ ଜନ୍ମମୃତ୍ୟୁ ତେଣୁ ॥୧୧
ତୁମ୍ଭେ ଯେ ବାସୁଦେବରୂପୀ ।
ସର୍ବଜ୍ଞ ଯେଣୁ ବିଶ୍ୱବ୍ୟାପୀ ॥୧୨
ପ୍ରାଣୀ ସଂସାରତାପେ ଥାଇ ।
ଆତ୍ମାରେ ବାସୁଦେବ ବହି ॥୧୩
ଯାହାକୁ ଅନୁଗ୍ରହ କରେ ।
ସେ ପ୍ରାଣୀ ଏ ସଂସାରୁ ତରେ ॥୧୪
ପୁରାଣ ଭାଗବତ ଗୀତା ।
ଉତ୍ତମ ଶ୍ଳୋକ ଯେଉଁ କଥା ॥୧୫
କହି କୃତାର୍ଥ ମୋତେ କଲ ।
ବିଷ୍ଣୁମାୟାରୁ ଉଦ୍ଧରିଲ ॥୧୬
ତୁମ୍ଭଙ୍କୁ ମୋର ନମସ୍କାର ।
ପରମଦୟାଳୁ ଈଶ୍ୱର ॥୧୭
ତୁମ୍ଭେ ଯେ ଅଚ୍ୟୁତ ଭକତ ।
ସଂସାରେ ପ୍ରାଣୀ ମୋହଗ୍ରସ୍ତ ॥୧୮
ତୁମ୍ଭଙ୍କୁ ମୋର ନମସ୍କାର ।
ପରମଦୟାଳୁ ଈଶ୍ୱର ॥୧୯
ଏହି ପୁରାଣ ଭାଗବତ ।
ଉତ୍ତମ ଶ୍ଳୋକର ଚରିତ ॥୨୦
ସାକ୍ଷାତେ ଶ୍ରୀମଧୁସୂଦନ ।
ତା'ଙ୍କୁ କରାଇଲ ଦର୍ଶନ ॥୨୧
ଏଣୁ ମୁଁ ବିଶୁଦ୍ଧ ହୋଇଲି ।
ଭଗବାନଗୁଣ ଶୁଣିଲି ॥୨୨
ହେ ଶୁକଦେବ ଭଗବାନ ।
ତକ୍ଷକ ଆଦି ମୃତ୍ୟୁମାନ ॥୨୩
ତହିଁ ମୋହର ଭୟ ନାହିଁ ।
ବ୍ରହ୍ମନିର୍ବାଣ ଜାଣିଲଇଁ ॥୨୪
ଅବ୍ୟୟ ଅବିନାଶୀ ବ୍ରହ୍ମ ।
ଦର୍ଶନେ ଛଡ଼ାଇଲ ଭ୍ରମ ॥୨୫

Dr. Sudhanshu Sekhar Mishra

ଏବେ ଯେ ମୋତେ ଆଜ୍ଞା ଦିଅ ।
ବ୍ରହ୍ମରେ ଲାଗିବ ମୋ' ଲୟ ॥୨୬
ବସୁ ଅଛଇ ଯୋଗାସନେ ।
ମଉନବ୍ରତ ଆତ୍ମଜ୍ଞାନେ ॥୨୭
ଅଧୋକ୍ଷଜ ବିଷ୍ଣୁର ଲୟେ ।
କାମନା ଛାଡ଼ିଲି ବିଷୟେ ॥୨୮
ଅଷ୍ଟାଙ୍ଗଯୋଗ ଧାରଣାରେ ।
ଷଡ଼ଚକ୍ର ଭେଦି ଆତ୍ମାରେ ॥୨୯
ପରମଆତ୍ମାରେ ମିଶାଇ ।
ସସ୍ରକମଳ ମଧ୍ୟେ ନେଇ ॥୩୦
ପ୍ରାଣକୁ ତହିଁ ନିବେଶିବି ।
ମାୟା ବ୍ରହ୍ମାଣ୍ଡ ଜିଣିଯିବି ॥୩୧
ତକ୍ଷକ ବ୍ରାହ୍ମଣ ଶାପରେ ।
ଭସ୍ମ କରିବ ମୋ' ଶରୀରେ ॥୩୨
ଜ୍ଞାନ ବିଜ୍ଞାନ ଦେଇ ମୋ'ର ।
ହେଲେ ଅଜ୍ଞାନ କଲ ଦୂର ॥୩୩
ପରମ ବାସୁଦେବ ପଦ ।
ଲଭି ଯା ହୋଇବି ଆନନ୍ଦ ॥୩୪
ସେ ମାର୍ଗ ମୋତେ ଦେଖାଇଲ ।
ବିଷ୍ଣୁ ଶରୀରେ ନିଯୋଜିଲ ॥୩୫
ଏବେ ମୁଁ ସେ ମାର୍ଗେ ପଶିବି ।
ଧ୍ୟାନେର ମୁକତି ଲଭିବି ॥୩୬
ଏ ଭାବେ ଅନେକ ପ୍ରକାରେ ।
ବିନୋୟି ଶୁକ ଚରଣରେ ॥୩୭

ସୂତ ଉବାଚ

ସୂତ କହନ୍ତି ମୁନି ଶୁଣ ।
ପରୀକ୍ଷେ କହେ ବାଦରାଣ ॥୩୮
ବିଷ୍ଣୁ ଭକତିରେ ନିମଜ୍ଜି ।
ମୁକତ ହୁଅ ପାପ ତେଜି ॥୩୯
ଆମ୍ଭର ଆଶୀର୍ବାଦୁଁ କରି ।
ଅନ୍ତେ ତୁ ଲଭ ବିଷ୍ଣୁପୁରୀ ॥୪୦
ଏମନ୍ତ କହି ଶୁକମୁନି ।
ହରଷେ କଲେ କୃଷ୍ଣଧ୍ୱନି ॥୪୧
ରାଜାର ପୂଜାବିଧି ପାଇ ।
ଶୁକ ହରଷମନ ହୋଇ ॥୪୨
ସକଳ ମହାଋଷି ସଙ୍ଗେ ।
ବଦ୍ରିକାଶ୍ରମେ ଗଲେ ବେଗେ ॥୪୩
ପରୀକ୍ଷ ରାଜା ଯୋଗଧ୍ୟାନେ ।
ବସିଲେ ନିଶ୍ଚଳ ଆସନେ ॥୪୪
ଆତ୍ମାରେ ଆତ୍ମା ନିଯୋଜିଣ ।
ଅଷ୍ଟାଙ୍ଗ ଯୋଗରେ ଧାରଣ ॥୪୫
ପରମବ୍ରହ୍ମ ସ୍ୱରୂପରେ ।
ପବନ-ସଂଯମ ଧ୍ୟାନରେ ॥୪୬
ବୃକ୍ଷର ପ୍ରାୟେ ଅଚେଷ୍ଟିତ ।
ନିଶ୍ଚଳଭାବେ ରହେ ଚିତ୍ତ ॥୪୭
ହସ୍ତିନାନଗର ବାହାରେ ।
ଗଙ୍ଗା ପୂର୍ବଦିଗ-ଭାଗରେ ॥୪୮
ବାଲୁକାବେଦୀର ଉପରେ ।
କୁଶ ଆସନ କରି ଧୀରେ ॥୪୯
ଉତ୍ତର ଅଭିମୁଖେ ବସି ।
ବ୍ରହ୍ମରେ ଲୟକୁ ନିବେଶି ॥୫୦
ଆତ୍ମାକୁ ବ୍ରହ୍ମରନ୍ଧ୍ରେ ନେଇ ।
ସୁଷୁମ୍ନା ରନ୍ଧ୍ରରେ ରୁନ୍ଧାଇ ॥୫୧
ଷଡ଼ଚକ୍ର ଭେଦି ଭ୍ରୂମଧ୍ୟେ ।
ପରମ ଆତ୍ମା ଭାବ ଭେଦେ ॥୫୨
ବିଷୟ ସଙ୍ଗ କରି ଦୂର ।
ବିଚାର ନାହିଁ ବାହ୍ୟାନ୍ତର ॥୫୩
ଏକାକ୍ଷର ବ୍ରହ୍ମେ ପ୍ରବେଶି ।
ଯାତନା ଶରୀର ବିନାଶି ॥୫୪
ପରମପଦକୁ ଲଭିଲେ ।
ବିଷ୍ଣୁ ଅଙ୍ଗରେ ଲୀନ ହେଲେ ॥୫୫
ଶମୀକ ଋଷିଙ୍କ ନନ୍ଦନ ।
ତାଙ୍କର ଶୃଙ୍ଗୀଋଷି ନାମ ॥୫୬
ପୂର୍ବେ ସପ୍ତଦିନ ଆଗରେ ।
କୋପେ ଶାପ ଦେଲା ରାଜାରେ ॥୫୭
ଅନୀତି ରାଜା ହୋଇ କଲା ।
ଋଷି ଗଳାରେ ସର୍ପ ଦେଲା ॥୫୮
ଆଜୁଁ ସପତଦିନ ଅନ୍ତେ ।
ତକ୍ଷକ ଭକ୍ଷୁ ଭସ୍ମୀଭୂତେ ॥୫୯
ଏମନ୍ତ ସେ ତକ୍ଷକ ଜାଣି ।
ରାଜାଙ୍କୁ ଦଂଶିବ ସେ ପୁଣି ॥୬୦
ମାୟା ବ୍ରାହ୍ମଣ ରୂପେ ଛନ୍ନ ।
ପଥରେ କରଇ ଗମନ ॥୬୧
ଏମନ୍ତ ସମୟରେ ପୁଣ ।
କାଶ୍ୟପ ନାମେକ ବ୍ରାହ୍ମଣ ॥୬୨
କଶ୍ୟପ ଧନ୍ୱନ୍ତରୀ ନାମ ।
ବିଷ୍ଣୁବୈଦ୍ୟ ମଧ୍ୟେ ଉତ୍ତମ ॥୬୩
ରାଜାର ମୃତ୍ୟୁକଥା ଶୁଣି ।
ବ୍ରାହ୍ମଣ ରୂପ ଧରି ପୁଣି ॥୬୪
ଆସନ୍ତେ ବାଟେ ଭେଟ ହୋଇ ।
ତକ୍ଷକ ଧନ୍ୱନ୍ତରୀ ଦୁଇ ॥୬୫
ତକ୍ଷକ ପଚାରିଲା ପୁଣ ।
କି ଅର୍ଥେ କରୁଛ ଗମନ ॥୬୬
କହିଲେ ଆମ୍ଭେ ଧନ୍ୱନ୍ତରୀ ।
ଯାଉଛୁ ପରୀକ୍ଷେ ନିସ୍ତାରି ॥୬୭
ତକ୍ଷକ ବ୍ରହ୍ମଶାପେ ଦଂଶି ।
ରାଜା ହୋଇବ ଭସ୍ମରାଶି ॥୬୮
ତାହାକୁ ଆମ୍ଭେ ଜୀଆଇବୁ ।
ଯଶ ଧନ ଧର୍ମ ପାଇବୁ ॥୬୯
ଏମନ୍ତ ଶୁଣି ତାଙ୍କ ବାଣୀ ।
ତକ୍ଷକ ବୋଲେ ତତକ୍ଷଣି ॥୭୦
ଯାହାକୁ ତକ୍ଷକ ଭକ୍ଷିବ ।
ଜଗତେ କେ ତାକୁ ରଖିବ ॥୭୧
ଅଘୋର ବିଷମୁଖ ତାର ।
ଦଂଶିଲେ ନ ବର୍ତ୍ତନ୍ତି ନର ॥୭୨
କାଳକୂଟ ବିଷ ତାହାର ।
ଘାତେ ଭସ୍ମ ମେରୁ ସ୍ଥାବର ॥୭୩
ତା ଶୁଣି ଧନ୍ୱନ୍ତରୀ କହି ।
ତକ୍ଷକ ଗୁଳ୍ମମାତ୍ର ହୋଇ ॥୭୪
ଦଂଶିଲେ ନିର୍ବିଷ କରିବୁ ।
କିଞ୍ଚିତେ ରାଜାକୁ ରଖିବୁ ॥୭୫
ଶୁଣି ତକ୍ଷକ କୋପ ବହି ।
ବୋଲଇ ଧନ୍ୱନ୍ତରୀ ଚାହିଁ ॥୭୬
ଆମ୍ଭେ ତକ୍ଷକ ନାଗ ନାମ ।
ଦଂଶିଲେ କେବା ନୋହେ ଭସ୍ମ ॥୭୭
ଜୀଆଇ ତୁମେ ଯେବେ ପାର ।
ପରୀକ୍ଷା ଏହିଠାରେ କର ॥୭୮

Dr. Sudhanshu Sekhar Mishra

ଏମନ୍ତ କହି ସେ ତକ୍ଷକ ।
ଆଗରେ ଥିଲା ଯେ ବୃକ୍ଷେକ ॥୭୯
ତହିଁ ଉପରେ ଏକଜଣ ।
କାଷ୍ଠ ଯେ ଭାଙ୍ଗୁଥିଲା ପୁଣ ॥୮୦
ଏ ଦୁଇ ବିପ୍ରେ ନ ଦେଖିଲେ ।
ଏହାଙ୍କୁ ଦେଖି ସେ ଲୁଚିଲେ ॥୮୧
ଏମନ୍ତେ ତକ୍ଷକ ଯେ ଅହି ।
ବଟବୃକ୍ଷକୁ ସେ ଦଂଶଇ ॥୮୨
ତକ୍ଷଣେ ଭସ୍ମ ହୋଇଗଲା ।
ଯେଉଁ ମନୁଷ୍ୟ ତହିଁ ଥିଲା ॥୮୩
ସେ ଭସ୍ମ ଧନ୍ୱନ୍ତରୀ ପୁଣ ।
କଲେ ସେ ଏକଠାବେ ପୁଣ ॥୮୪
ଜଳ ସିଞ୍ଚିଲେ ତତ୍‌କ୍ଷଣ ।
ମୃତ ସଞ୍ଜୀବନୀ ମନ୍ତ୍ରେଣ ॥୮୫
ବୃକ୍ଷ ଅଙ୍କୁର ହୋଏ ପୁଣି ।
କ୍ରମେ ସେ ଦ୍ରୁମଭାବ ଘେନି ॥୮୬
ସେହିଭାବେ ବୃକ୍ଷ ହୋଇଲା ।
ମନୁଷ୍ୟ ଆଦି ଦୃଶ୍ୟ ହେଲା ॥୮୭
ତା' ଦେଖି ତକ୍ଷକ କହିଲେ ।
ନିଶ୍ଚେ ଜୀଇବ ତୁମ୍ଭ ବୋଲେ ॥୮୮
ତୁମ୍ଭେ ତ ମହତ ପୁରୁଷ ।
ଯଶ ମୋ' ନ କର ବିନାଶ ॥୮୯
ମହତ ଲୋକଙ୍କର ଭାବ ।
ପର ଯଶରେ ନିତ୍ୟେ ଥିବ ॥୯୦
ଆପଣା ଯଶ ନ କରଇ ।
ପରର ହିତେ କ୍ଳେଶ ପାଇ ॥୯୧
ପ୍ରାପତ ରାଜାଠାରୁ ଧନ ।
ମୋଠାରୁ ନିଅସି ଦ୍ୱିଗୁଣ ॥୯୨
ଏମନ୍ତ ଶୁଣି ଧନ୍ୱନ୍ତରୀ ।
ମନରେ ବିଚାର ସେ କରି ॥୯୩
ରାଜାର ଆୟୁଷ ତ ନାହିଁ ।
ଜାଣଇ ଯୋଗବଳେ ମୁହିଁ ॥୯୪
ତାହାର ଜୀଇଁବାକୁ ନାହିଁ ।
ଶୁକ ପ୍ରସନ୍ନ ଭାବ ବହି ॥୯୫
ବିରାଜ ହୋଇ ଗଙ୍ଗାତୀରେ ।
ଯୋଗାରୂଢ ତତ୍ତ୍ୱଜ୍ଞାନରେ ॥୯୬

ଆତ୍ମାକୁ ପରମ ଆତ୍ମାରେ ।
ପ୍ରବେଶ କରି ବ୍ରହ୍ମଦ୍ୱାରେ ॥୯୭
ଯୋଗାଗ୍ନିରେ ଦଗ୍ଧ ହୋଇବ ।
ସେ ତ ବ୍ରହ୍ମରେ ଲୀନ ହେବ ॥୯୮
ପିଣ୍ଡରେ ତକ୍ଷକ ଦଂଶିବ ।
ଆମ୍ଭର ଯଶ ତ ନୋହିବ ॥୯୯
ଆମ୍ଭେ ଯେ ଏହାଠାରୁ ପୁଣ ।
ଛାଡ଼ିଣ ଯିବା କିପାଁ ଧନ ॥୧୦୦
ଏମନ୍ତ ବିଚାରି ଭିଷକ ।
ବୋଇଲେ ଶୁଣ ହେ ତକ୍ଷକ ॥୧୦୧
ତୋ' ଯଶ କିପାଇଁ ନାଶିବୁ ।
ପାଇଲେ ଧନ ବାହୁଡ଼ିବୁ ॥୧୦୨
ତକ୍ଷକ ତା'ଙ୍କୁ ଧନ ଦେଲେ ।
ବାହୁଡ଼ି ଧନ୍ୱନ୍ତରୀ ଗଲେ ॥୧୦୩
ତକ୍ଷକ ବ୍ରାହ୍ମଣ ରୂପେଣ ।
ଗଲେ ସେ ରାଜା ସନ୍ନିଧାନ ॥୧୦୪
ଫଳ-ପୁଷ୍ପ ଘେନି ଭେଟିଲେ ।
ଫଳେ ତକ୍ଷକ କୃମି ହେଲେ ॥୧୦୫
ଏମନ୍ତେ କୃମିରୂପେ ପୁଣ ।
ଦଂଶିଲେ ରାଜାର ଚରଣ ॥୧୦୬
ସେ କାମରୂପୀ ନାଗବିଷ ।
ରାଜାଶରୀର କଲା ନାଶ ॥୧୦୭
ତକ୍ଷଣେ ଭସ୍ମ ହୋଇଗଲେ ।
ସକଳ ପ୍ରାଣୀ ତା' ଦେଖିଲେ ॥୧୦୮
ହାହାକାର ଶବ୍ଦ ଶୁଭିଲା ।
ଶବଦେ ପୃଥିବୀ ପୂରିଲା ॥୧୦୯
ଆକାଶେ ଦେବତା ଅସୁର ।
ମନୁଷ୍ୟ ଆଦି ନାନାଚର ॥୧୧୦
ସମସ୍ତେ ବିସ୍ମୟ ହୋଇଲେ ।
ତକ୍ଷକେ କେହି ନ ଦେଖିଲେ ॥୧୧୧
ରାଜାମୁକତି ଦେଖି ଦେବେ ।
ଦୁନ୍ଦୁଭିନାଦ କଲେ ଭାବେ ॥୧୧୨
ଗନ୍ଧର୍ବ ଅପସରା ନୃତ୍ୟ ।
ସାଧୁଶବଦେ କଲେ ଗୀତ ॥୧୧୩
ଦେବେ ଯେ ପୁଷ୍ପବୃଷ୍ଟି କଲେ ।
ଆନନ୍ଦେ ସ୍ୱର୍ଗକୁ ସେ ଗଲେ ॥୧୧୪

ପରୀକ୍ଷସୁତ ଜନ୍ମେଜୟେ ।
ସେ ପୁଣି ରାଜ୍ୟେ ରାଜା ହୋଏ ॥୧୧୫
ପିତୃ-କ୍ରିୟା-କର୍ମ ସାରିଲେ ।
ରାଜତେଜେ ଭୂମି ପାଳିଲେ ॥୧୧୬
ସେ କିଛିଦିନର ଅନ୍ତରେ ।
ନୃପତି ଶୁଣିଲେ ସଭାରେ ॥୧୧୭
ଉତ୍ତଙ୍କଋଷି ସେ କହିଲେ ।
ତକ୍ଷକ ରାଜାଙ୍କୁ ଦଂଶିଲେ ॥୧୧୮
ବ୍ରାହ୍ମଣ ଶାପେଣ ତକ୍ଷକ ।
ରାଜାଙ୍କୁ କଲା ଭସ୍ମାନ୍ତକ ॥୧୧୯
ଧନ୍ୱଂତ୍ରୀ ଜୀଆଁଇବା ପାଇଁ ।
ଆସୁ ଯେ ଥିଲେ ବିପ୍ର ହୋଇ ॥୧୨୦
ତକ୍ଷକ ତା'ଙ୍କୁ ଧନ ଦେଲେ ।
ବାଟରୁ ଧନ୍ୱନ୍ତରୀ ଗଲେ ॥୧୨୧
ଏମନ୍ତ ବାରତା ପ୍ରମାଣେ ।
କହିଲେ ପାତ୍ର ମନ୍ତ୍ରୀଗଣ ॥୧୨୨
ଶୁଣିଛୁ ଏମନ୍ତ ପ୍ରକାର ।
ନ ଜାଣୁ ଧନ୍ୱଂତ୍ରୀ ଯିବାର ॥୧୨୩
ଏମନ୍ତେ ରାଜାଲୋକ ଯାଇ ।
ପଚାରିଲେ ସନ୍ଦେଶ ପାଇ ॥୧୨୪
ତହିଁ ଯେ କାଷ୍ଠ ଭାଙ୍ଗୁଥିଲା ।
ବୃକ୍ଷ ସଙ୍ଗତେ ଭସ୍ମ ହେଲା ॥୧୨୫
ଧନ୍ୱଂତ୍ରୀ ମନ୍ତ୍ରବଳେ ବୃକ୍ଷ ।
ଯେମନ୍ତେ ହୋଇଲା ପ୍ରତ୍ୟକ୍ଷ॥୧୨୬
ତଂକ୍ଷକ ତା'କୁ ଧନ ଦେଲା ।
ଯେମନ୍ତ ବଚନ କହିଲା ॥୧୨୭
ଏ ସର୍ବ ବାରତା ସଂକ୍ଷେପେ ।
କହିଲେ ରାଜାର ସମୀପେ ॥୧୨୮
ଶୁଣି ଜନ୍ମେଜୟ ରାଜନ ।
ତକ୍ଷକଠାରେ କ୍ରୋଧମନ ॥୧୨୯
ସମସ୍ତ ଋଷିଗଣ ଚାହିଁ ।
ତକ୍ଷକ କଥା ପଚାରଇ ॥୧୩୦
ସେ ମୋର ପିତାର ବଇରୀ ।
ତା'କୁ କେମନ୍ତେ ସାଧ କରି ॥୧୩୧
ଉତ୍ତଙ୍ଗ ଋଷି ଯେ କହିଲେ ।
ତକ୍ଷକ ତାହାଙ୍କୁ ଦଂଶିଲେ ॥୧୩୨

Dr. Sudhanshu Sekhar Mishra

ସର୍ପଯଜ୍ଞ କର ଆରମ୍ଭ ।
ବଇରୀ ନାଶ ହେବ ତୁମ୍ଭ ॥୧୩୩
ଯେମନ୍ତେ ସର୍ପଯଜ୍ଞ ରୀତି ।
ସମସ୍ତ କହିଲେ ସେ ଯତି ॥୧୩୪
ଏମନ୍ତେ ସର୍ପଯଜ୍ଞ କଲେ ।
ଅନେକ ସର୍ପ ଦଗଧିଲେ ॥୧୩୫
ଯଜ୍ଞକୁଣ୍ଡରେ ପଡ଼ି ନାଶ ।
ତକ୍ଷକ ରହେ ଅବଶେଷ ॥୧୩୬
ସର୍ପକୁଳ ଦଗଧ ଦେଖି ।
ନାଗଲୋକକୁ ସେ ଉପେକ୍ଷି ॥୧୩୭
ଦେବଲୋକେ ଇନ୍ଦ୍ରେ ଶରଣ ।
ପଶିଲା ମହାଭୟେ ପୁଣ ॥୧୩୮
ଆଚାର୍ଯ୍ୟେ ଏମନ୍ତ କହିଲେ ।
ତକ୍ଷକ ଯଜ୍ଞକୁ ନ ଇଲେ ॥୧୩୯
ତା' ଶୁଣି ରାଜନ ବୋଲଇ ।
ଅଧର୍ମ ସର୍ପ ନ ଆସଇ ॥୧୪୦
ଏ କୁଣ୍ଡେ ଭସ୍ମ ତ ନୋହିଲା ।
କିମର୍ଥେ ଏମନ୍ତ ହୋଇଲା ॥୧୪୧
ତା' ଶୁଣି ବ୍ରାହ୍ମଣେ କହନ୍ତି ।
ନାଗଲୋକରେ ସେ ନାହାଁନ୍ତି॥୧୪୨
ଇନ୍ଦ୍ରରେ ଶରଣ ପଶିଲେ ।
ଇନ୍ଦ୍ରଯୋଗବଳେ ରଖିଲେ ॥୧୪୩
ତେଣୁ ଅଗ୍ନିରେ ନ ପଡ଼ଇ ।
ଏମନ୍ତ ଶୁଣି ରାଜା କହି ॥୧୪୪
ଶୁଣ ବ୍ରାହ୍ମଣେ ମନଦେଇ ।
ଯେ ଅର୍ଥେ ଯଜ୍ଞ ମୁଁ କରଇ ॥୧୪୫
ତକ୍ଷକ ମୋ' ପିତା ବଇରୀ ।
ତାହାର ଅର୍ଥେ ଯଜ୍ଞ କରି ॥୧୪୬
ଇନ୍ଦ୍ର ଯେବେ ତା'କୁ ରଖିଲା ।
ମୋ' ପିତା ଶତ୍ରୁ ସେ ହୋଇଲା ॥୧୪୭
ଇନ୍ଦ୍ର ତକ୍ଷକ ଏହି ଦ୍ୱୟ ।
ଅଗ୍ନିରେ ମନ୍ତ୍ରବଳେ ଦିଅ ॥୧୪୮
ଏମନ୍ତ ଶୁଣି ବିପ୍ରଜନେ ।
ମନ୍ତ୍ରଯୁକ୍ତ କରି ବିଧାନେ ॥୧୪୯
ଘୃତ ସ୍ରୁବମାନ ଘେନିଲେ ।
ମନ୍ତ୍ରରେ ଆହୁତି ତୋଳିଲେ ॥୧୫୦

ଇନ୍ଦ୍ର ତକ୍ଷକ ଦୁହେଁ ଆସି ।
କୁଣ୍ଡରେ ହୁଅନ୍ତୁ ବିନାଶି ॥୧୫୧
ଇନ୍ଦ୍ର ସମେତ ମରୁଦ୍‌ଗଣ ।
ସତ୍ୱରେ ଟଳିଲା ଆସନ ॥୧୫୨
ବିମାନ ସମେତ ଖସିଲେ ।
ମର୍ତ୍ତ୍ୟ ଭୂମିକି ଦୃଷ୍ଟି ଦେଲେ ॥୧୫୩
ଅଗ୍ନିରେ ଘୃତ ଯେବେ ଦେବେ ।
ନିଶ୍ଚୟେ ଅଗ୍ନିରେ ପଡ଼ିବେ ॥୧୫୪
ତା' ଦେଖି ଇନ୍ଦ୍ର ସଭୟରେ ।
ଗୁରୁଙ୍କୁ ମନେ ସୁମରିଲେ ॥୧୫୫
ଅଙ୍ଗିରା ଋଷିଙ୍କର ସୁତ ।
ଯେ ବୃହସ୍ପତି ନାମେ ଖ୍ୟାତ ॥୧୫୬
ତକ୍ଷକ ଇନ୍ଦ୍ର ଉପକାରେ ।
ରାଜାଙ୍କ ଛାମୁରେ ମିଳିଲେ ॥୧୫୭
ତା' ଜାଣି ଆସ୍ତିକ ଯେ ମୁନି ।
ମିଳିଲେ ଯଜ୍ଞସ୍ଥାନେ ପୁଣି ॥୧୫୮
ଜରତ୍କାରୁ ଋଷିଙ୍କ ସୁତ ।
ବୃହସ୍ପତି ସମାନେ ଖ୍ୟାତ ॥୧୫୯
ଆସ୍ତିକ ରାଜାର ଛାମୁରେ ।
ମିଳି ତକ୍ଷକ ଉପକାରେ ॥୧୬୦
ନାଗମାନଙ୍କର ଭଗ୍ନୀଜ ।
ସେ କହେ ଶୁଣ ମହାରାଜ ॥୧୬୧
ସର୍ପେ ଯେ ମୋ'ର ମାତୃକୁଳ ।
ଏହାଙ୍କୁ ଦଗ୍ଧ ତୁ ନ କର ॥୧୬୨
ଏମନ୍ତେ ବୃହସ୍ପତି ଥିଲେ ।
ରାଜାଙ୍କୁ ବଚନ କହିଲେ ॥୧୬୩
ତକ୍ଷକ ଏଥେ ନ ମରିବ ।
ଅମୃତ ଭକ୍ଷିଛି ଜୀଇଁବ ॥୧୬୪
ତେଣୁ ଅଜରାମର କାୟ ।
କୋପ ସଂହର ନରରାୟ ॥୧୬୫
ତୁ ବୋଲୁ ପିତାକୁ ମାଇଲା ।
ଏହାଙ୍କୁ ମୁଁ ମାଇଲେ ଭଲା ॥୧୬୬
କେହି କାହାକୁ ନ ମାରଇ ।
କାହାରେ କେହି ନ ଜୀଆଁଇ ॥୧୬୭
ଶୁଣ ରାଜନ ମନଦେଇ ।
ଜନ୍ମମରଣ କର୍ମେ ହୋଇ ॥୧୬୮

ଯେ ଯାହା ଅର୍ଜଇ ଭୁଞ୍ଜଇ ।
ବ୍ରହ୍ମାଶଙ୍କରେ ଆନ ନୋହିଁ ॥୧୬୯
କେ କାର ସୁଖଦୁଃଖଦାତା ।
ଯେମନ୍ତେ ଲେଖିଛି ବିଧାତା ॥୧୭୦
ସର୍ପାଗ୍ନି ଚୋର ଜଳ କ୍ଷୁଧା ।
ବ୍ୟାଧି ତୃଷ୍ଣାଦି ଯେତେ ବାଧା॥୧୭୧
ପ୍ରାଣୀ ଏମାନ ଭୋଗ କରେ ।
ଆପଣା ଅର୍ଜିତ କର୍ମରେ ॥୧୭୨
ଜନ୍ମମରଣ ଏହିଭାବେ ।
ଈଶ୍ୱର ସଂଯୋଗ ବିଯୋଗେ ॥୧୭୩
ତୋ ପିତା ପରୀକ୍ଷିତ ବୀର ।
ସେ ବ୍ରହ୍ମଋଷିର ଶାପର ॥୧୭୪
ଅଦୋଷେ ଋଷିଗଳେ ନେଇ ।
ମୃତ ସର୍ପକୁ ଗୁଡ଼ିଆଇ ॥୧୭୫
ସେ ଦୋଷେ ଋଷି ଶାପ ଦେଲେ ।
ତକ୍ଷକ ବିଷେ ଭସ୍ମ ହେଲେ ॥୧୭୬
ସେ ଶୁକବେଦଠାରୁ ପୁଣ ।
ଶୁଣି ଭାଗବତ ପୁରାଣ ॥୧୭୭
ଶରୀର ଯୋଗାଗ୍ନିରେ ଦହି ।
ପ୍ରାଣକୁ ବ୍ରହ୍ମରେ ମିଶାଇ ॥୧୭୮
ତକ୍ଷକ ଦଂଶେ ଯେତେବେଳେ ।
ଦେହେ ଜୀବ ନାହିଁ ସେକାଳେ ॥୧୭୯
ତକ୍ଷକେ କିଛି ଦୋଷ ନାହିଁ ।
ସର୍ପହତ୍ୟା କରୁ କିପାଇଁ ॥୧୮୦
ନିର୍ଦ୍ଦୋଷ ସର୍ପେ ଗଲେ ମା'ରି ।
ସର୍ପଯଜ୍ଞ ନିବର୍ତ୍ତ କର ॥୧୮୧
କଶ୍ୟପ ଋଷିଙ୍କ ବନିତା ।
କଦ୍ରୁ ଯେ ନାଗଙ୍କର ମାତା ॥୧୮୨
ଅଦିତି ସଙ୍ଗେ କଥାଛଳେ ।
ଏ ପୁତ୍ରେ ତା' ବୋଲ ନ କଲେ ॥୧୮୩
କହିଲେ ଦୁହେଁ ଆତ୍ମମାତ ।
କେହ୍ନେ ଜିଂଘାସିବୁ ତାହାନ୍ତ ॥୧୮୪
ଏ ଘେନି କଦ୍ରୁ ଶାପଦେଲେ ।
ଏଣୁ ଏ ଯଜ୍ଞେ ନାଶ ଗଲେ ॥୧୮୫
ଏମନ୍ତେ ବୃହସ୍ପତି ବାଣୀ ।
ସନ୍ତୋଷ ନରନାଥ ଶୁଣି ॥୧୮୬

Dr. Sudhanshu Sekhar Mishra

ସର୍ପଯଜ୍ଞ ନିବର୍ତ୍ତ କଲେ ।
ଗୁରୁଙ୍କୁ ପୂଜାରେ ତୋଷିଲେ ॥୧୮୭
ଆସ୍ତିକ ଋଷିଙ୍କି ସେ ଆଣି ।
ନାଗଙ୍କୁ ସମର୍ପିଲେ ପୁଣି ॥୧୮୮
ତୋଷେ ଆସ୍ତିକ ଋଷି ଗଲେ।
ଇନ୍ଦ୍ର ରଖି ଗୁରୁ ଚଳିଲେ ॥୧୮୯
ବର ଦେଲେ ଆସ୍ତି ଯୁକତେ ।
ମୋ' ନାମ ଧରିବ ଯେ ନିତ୍ୟେ ॥୧୯୦
ତାହାଙ୍କୁ ସର୍ପବାଧା ନାହିଁ ।
ଏମନ୍ତ କହି ତୋଷ ହୋଇ ॥୧୯୧
ଏ ଯେ ବିଷ୍ଣୁମାୟା ଜଗତ ।
ତମ ମାୟାରେ ବିମୋହିତ ॥୧୯୨
ପ୍ରାଣୀଙ୍କ ଉତ୍ପତ୍ତି ପ୍ରଳୟ ।
ଏ ମାୟାଭିଆଣ ଆଶ୍ରୟ ॥୧୯୩
ଏ ବିଷ୍ଣୁଆତ୍ମା ସର୍ବମୟୀ ।
ଦମ୍ଭ ମାୟା କପଟ ବହି ॥୧୯୪
ଅହଙ୍କାର ବୁଦ୍ଧି ବିଚାରେ ।
ଯା' ନାମ ନୁହଇ ଗୋଚରେ॥୧୯୫
ତ୍ରିଗୁଣ ବାସନା ହିଁ ନାହିଁ ।
ମନ ବଚନେ ଭେଦ ନୋହି ॥୧୯୬
ଶବ୍ଦ ସ୍ପରଶ ରସ ଗନ୍ଧ ।
ରୂପ ଏ ପଞ୍ଚ ନୋହେ ଭେଦ॥୧୯୭
ସେ ବିଷ୍ଣୁ ନିର୍ମଳେ ସେବିଲେ।
ପ୍ରାଣୀ ନିର୍ମଳ ହୋଏ ଭଲେ ॥୧୯୮
ଏ ମାୟା ବନ୍ଧନୁ ତରଇ ।
ପରମପଦକୁ ଲଭଇ ॥୧୯୯

ବଇକୁଣ୍ଠ ପରମଧାମ ।
ଯାହାର ପରେ ନାହିଁ ସ୍ଥାନ ॥୨୦୦
ସେ ଜନ ସଂସାରୁ ତରିବେ ।
ଜନ୍ମମୃତ୍ୟୁରୁ ନିସ୍ତରିବେ ॥୨୦୧
ସଂସାର ବନ୍ଧନ ଛାଡ଼ନ୍ତି ।
ନିରତେ ବିଷ୍ଣୁଙ୍କୁ ଚିନ୍ତନ୍ତି ॥୨୦୨
ଦୁରାତ୍ମାପଣ ଦୂରକରି ।
ଜଗତ ମଣେ ନରହରି ॥୨୦୩
ଆତ୍ମା ସମବୁଦ୍ଧି ଭାବରେ ।
ଏକ ଭାବରେ ନାମ ସ୍ମରେ ॥୨୦୪
ସେ ବିଷ୍ଣୁପଦେ ଲୀନ ହୋନ୍ତି।
ପରମପଦକୁ ଲଭନ୍ତି ॥୨୦୫
ଯେ ପ୍ରାଣୀ ବିଚାରନ୍ତି ଚିତ୍ତ ।
ଏ ସର୍ବ ମୋହର ଅର୍ଜିତ ॥୨୦୬
ଅର୍ଜିଲି ନାନା କଷ୍ଟ ପାଇ ।
ସୁଖିରେ ବିଳସିବି ମୁହିଁ ॥୨୦୭
ସେମାନେ ଦୁର୍ଜନ ବୋଲାନ୍ତି।
ଆପଣା ଆତ୍ମା ନ ଚିହ୍ନନ୍ତି ॥୨୦୮
ମାୟାଜାଲରେ ଭ୍ରମୁଥା'ନ୍ତି ।
ଈଶ୍ୱରଭାବ ନ ଜାଣନ୍ତି ॥୨୦୯
ଏ ଦେହ ଘର ଧନ ସୁତ ।
ଦାରା ବୃତ୍ତି ନାନାଦି ମତ ॥୨୧୦
ଏଥିରୁ ବିରତ ହୋଇବ ।
ଅପବାଦକୁ ସହିଥିବ ॥୨୧୧
ଅମାନ୍ୟ କାହିଁ ନ କରିବ ।
ଦେହକୁ ମିଥ୍ୟା ଯେ ମଣିବ ॥୨୧୨

କାହାରି ସଙ୍ଗତେ ବଇର ।
ନ କରି ସାଧୁପଣେ ଧୀର ॥୨୧୩
ଯେ ଭଗବାନ ବାସୁଦେବ ।
ତେବେ ସେ ତାହାଙ୍କୁ ପାଇବ ॥୨୧୪
ଅସାଧ୍ୟଜ୍ଞାନ ଯେ ଈଶ୍ୱର ।
କୃଷ୍ଣସ୍ୱରୂପୀ ନିରାକାର ॥୨୧୫
ତାହାଙ୍କୁ କରେ ନମସ୍କାର ।
ନିରତେ ଥାଉ ସେ ମନର ॥୨୧୬
ତା'ର ପଦାରବିନ୍ଦ ଧ୍ୟାନ ।
ପୁରାଣ ସଂହିତା ଅଭିନ୍ନ ॥୨୧୭
ପଢି ଶୁଣିଲେ ମୁକ୍ତି ହୋଇ ।
ଏଥିରେ ସଂଶୟ ନ ଥାଇ ॥୨୧୮
ସେ ବ୍ୟାସଋଷି ଶୁକଦେବ ।
ବିଷ୍ଣୁସ୍ୱରୂପୀ ବାସୁଦେବ ॥୨୧୯
ତାହାଙ୍କୁ ମୋର ନମସ୍କାର ।
ମହିମା ନ ଜାଣେ ଶଙ୍କର ॥୨୨୦
ତୁମ୍ଭ ଚରଣେ ଆଶ୍ରେ କରି ।
ମୁଁ ଥାଇ ଚିତ୍ତେ ଅନୁସରି ॥୨୨୧
ତୁମ୍ଭେ ଯେ ମହତପୁରୁଷ ।
ମୋହର ନ ଘେନିବା ଦୋଷ ॥୨୨୨
କହଇ ଜଗନ୍ନାଥ ଦ୍ୱିଜ ।
ସୁଜନେ ହରିପାଦେ ଭଜ ॥୨୨୩

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦ୍ୱାଦଶସ୍କନ୍ଧେ ପରୀକ୍ଷିତ
ବୈକୁଣ୍ଠ ଆରୋହଣେ ଜନ୍ମେଜୟ
ରାଜା ସର୍ପଯଜ୍ଞ କରଣେ ନାମ
ଷଷ୍ଠୋଽଧ୍ୟାୟଃ ॥

Dr. Sudhanshu Sekhar Mishra

## ସପ୍ତମ ଅଧ୍ୟାୟ

ଶୌନକ ପଚାରେ ହରଷେ ।
ସୂତ ପୌରାଣିକର ପାଶେ ।।୧

ଶୌନକ ଉବାଚ

ଭୋ ମୁନି ହୋଇବା ପ୍ରସନ୍ନ ।
କହିବା ବେଦ ଉତପନ୍ନ ।।୨
ଶବଦ ବୋଲି ଦେବବ୍ରହ୍ମ ।
ବିଷ୍ଣୁର କର୍ମ ଯଶ ଧର୍ମ ।।୩
ବିଷ୍ଣୁ ମୁଖରୁ ପ୍ରକାଶିଲା ।
ପ୍ରଚଣ୍ଡ ଶବଦ ଶୁଭିଲା ।।୪
ତାହାଙ୍କ ଚାରିନାମ ହୋଇ ।
ଚତୁର୍ମୁଖରେ ପ୍ରକାଶଇ ।।୫
ପୂର୍ବମୁଖରୁ ଋକ୍‌ବେଦ ।
ଦକ୍ଷିଣ ମୁଖୁଁ ଯଜୁର୍ବେଦ ।।୬
ପଶ୍ଚିମ ମୁଖୁଁ ସାମ ହୋଇ ।
ଉତ୍ତରେ ଅଥର୍ବ ଜନ୍ମଇ ।।୭
ରଜୋଗୁଣରୁ ଋକ୍ ବେଦ ।
ତମୋ ଗୁଣୁଁ ଯଜୁ ସମ୍ବାଦ ।।୮
ସତ୍ତ୍ୱଗୁଣରୁ ବେଦସାମ ।
ନିର୍ଗୁଣେ ଅଥର୍ବ ନିଗମ ।।୯
ଉତ୍ପନ୍ନ ଚାରିବେଦ କରି ।
ବ୍ରହ୍ମା ଅନୁଭବେ ବିଚାରି ।।୧୦
ଜାଣିଲେ ପୂର୍ବେ ସୃଷ୍ଟିଥିଲା ।
ବିଷ୍ଣୁର ଅବତାର ଲୀଳା ।।୧୧
ଏମନ୍ତେ ସୃଷ୍ଟି ଅନୁଭବ ।
ସ୍ଥାବର ଜଙ୍ଗମାଦି ଜୀବ ।।୧୨
ଆଚାର୍ଯ୍ୟେ ଚାରିବେଦ ହେଲେ ।
ପ୍ରଜାପତି ମରୀଚି ତୁଲେ ।।୧୩
ବେଦ ବିସ୍ତାର ତେଣୁ ହୋଇ ।
ସତ୍ୟ ତ୍ରେତା ଦ୍ୱାପରେ ରହି ।।୧୪
ଦ୍ୱାପର ଅନ୍ତେ ଅନ୍ତର୍ଦ୍ଧାନ ।
ରହେ ସ୍ୱର୍ଗାଦି ଊର୍ଦ୍ଧ୍ୱେ ପୁଣ ।।୧୫
ଏମନ୍ତ ଜାଣି ନାରାୟଣ ।
ବିଷ୍ଣୁ ଅଂଶେ ଜନ୍ମ ହୋଇଣ ।।୧୬
ସ୍ଥାପିବା ଅର୍ଥେ ଧର୍ମମାନ ।
ସମ୍ଭବ ଯୁଗେ ଯୁଗେ ପୁଣ ।।୧୭
ପରାଶର ଋଷିଙ୍କ ସୁତ ।
ସତ୍ୟବତୀ ଗର୍ଭେ ସମ୍ଭୂତ ।।୧୮
ବିଷ୍ଣୁ ଯେ ବେଦବ୍ୟାସ ରୂପେ ।
ଜନ୍ମ ସେ ଲଭେ କଳ୍ପେ କଳ୍ପେ ।।୧୯
ବୈବସ୍ୱତମନୁ ବିଭୂତେ ।
ଅଷ୍ଟାବିଂଶଗଣ୍ଡା ଯୁକତେ ।।୨୦
ଚାରିବେଦ ବିସ୍ତାର କଲେ ।
ବେଦବ୍ୟାସ ନାମ ବହିଲେ ।।୨୧
ସେ ପୁଣି ଏ ବେଦମାନଙ୍କୁ ।
ଶାଖା ଭେଦେ ଦେଲେ ଶିଷ୍ୟଙ୍କୁ ।।୨୨
ପ୍ରଥମେ ଋକ୍‌ବେଦ ଦୃଢେ ।
ପଇଲ ନାମେ ଋଷି ପଢେ ।।୨୩
ବୈଶମ୍ପାୟନ ଯଜୁର୍ବେଦ ।
ଜଇମିନି ଯେ ସାମବେଦ ।।୨୪
ଅଥର୍ବ ଆଙ୍ଗିରସେ ଦେଲେ ।
ଏମନ୍ତେ ବେଦ ସମ୍ପାଦିଲେ ।।୨୫
ସେମାନେ ଶିଷ୍ୟଗଣ କଲେ ।
ଶାଖା କରିଣ ବାଣ୍ଟିଦେଲେ ।।୨୬
ଯେ ବେଦ ଯେତେ ଶାଖା ହୋଇ ।
ଯେ ଶିଷ୍ୟେ ଯେ ଶାଖା ବୋଲାଇ ।।୨୭
ଏ ବେଦ ପ୍ରଥମେ କେମିତି ।
ବିଷ୍ଣୁଙ୍କ ଠାରୁ ଉତପତ୍ତି ।।୨୮
କେମନ୍ତେ ବ୍ରହ୍ମା ଉପଦେଶ ।
କହ ତା ବିସ୍ତାରି ବିଶେଷ ।।୨୯
ଶୁଣି ଶୌନକ ମୁଖୁଁ ବାଣୀ ।
ସୂତ କହନ୍ତି ତୋଷଘେନି ।।୩୦

ସୂତ ଉବାଚ

ପ୍ରଥମେ ବିଷ୍ଣୁ ଯେତେବେଳେ ।
ଯୋଗ ଧ୍ୟାନରେ ନିଦ୍ରା ଗଲେ ।।୩୧
ଲୟ ଲଗାଇ ନିରାକାରେ ।
ବ୍ରହ୍ମା ବସିଲେ ସମାଧିରେ ।।୩୨
ତାଙ୍କ ହୃଦୟୁ ନାଦ ଜନ୍ମ ।
ଆକାଶ ଶୂନ୍ୟ ଯା'ର ଧାମ ।।୩୩
ସେ ନାଦ କର୍ଣ୍ଣ ଆବୋରିଲେ ।
ଶୁଭଇ ସମସ୍ତଙ୍କୁ ଭଲେ ।।୩୪
ଯାହାକୁ କଲେ ଉପାସନା ।
ଆତ୍ମା ନିର୍ମଳ ଶୁଦ୍ଧମନା ।।୩୫
ସଂସାର-ଜନ୍ମ-ମରଣାଦି ।
ତରେ ତ୍ରିତାପ କର୍ମ ଛେଦି ।।୩୬
ସେ ନାଦୁଁ ପ୍ରଭାବିନ୍ଦୁ ଜନ୍ମ ।
ପରମବ୍ରହ୍ମ ପରଂଧାମ ।।୩୭
ବିନ୍ଦୁ ତ୍ରିଗୁଣାତ୍ମକ ହୋଇ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ବୋଲାଇ ।।୩୮
ଏ ରୂପେ ଏକାକ୍ଷର ବ୍ରହ୍ମ ।
ଅବ୍ୟକ୍ତ ରୂପୀ ତ୍ରୟଧାମ ।।୩୯
ସେ ଏକାକ୍ଷର ବ୍ରହ୍ମପର ।
ଅର୍ଦ୍ଧମାତ୍ରା ବିନ୍ଦୁ ଆଧାର ।।୪୦
ଯୋଗମାୟା ସ୍ୱରୂପ ସେହି ।
ସେ ମାୟା ତ୍ରିଗୁଣ ସର୍ଜଇ ।।୪୧
ତିନିମାତ୍ରା ଯେ ଏକାକ୍ଷର ।
ଅକାର ଉକାର ମକାର ।।୪୨
ଅର୍ଦ୍ଧମାତ୍ରା ବିନ୍ଦୁ ସ୍ୱରୂପ ।
ଯେ ବାସୁଦେବ ରସକୂପ ।।୪୩
ଯେ ଜାଣି ନିମଗ୍ନେ ଭଜନ୍ତି ।
ବ୍ରହ୍ମରେ ଲୀନ ସେ ହୁଅନ୍ତି ।।୪୪
ଶବଦବ୍ରହ୍ମ ଏହି ନାଦ ।
ଯେ ଜନ କରେ ଆତ୍ମା ଭେଦ ।।୪୫
ଅର୍ଦ୍ଧମାତ୍ରେ ଏକାନ୍ତେ ବସି ।
ଯୋଗଧାରଣା ଭାବେ ବସି ।।୪୬
ଇନ୍ଦ୍ରିୟ ସୁପ୍ତ ଅବସ୍ଥାରେ ।
କର୍ଣ୍ଣକୁ ଢାଙ୍କିଣ ହସ୍ତରେ ।।୪୭
ଶୂନ୍ୟ ଦୃଷ୍ଟିରେ ମନଦେଇ ।
ଶରୀର ଚେଷ୍ଟା କିଛି ନାହିଁ ।।୪୮
ତେବେ ଯେ ଶବଦ ଶୁଣଇ ।
ତାହାକୁ ପରମାତ୍ମା କହି ।।୪୯

Dr. Sudhanshu Sekhar Mishra

ତେବେ ବ୍ରହ୍ମଦର୍ଶନ ପାଇ ।
ଶାନ୍ତି ସମଦୃଷ୍ଟି ଭଜଇ ॥୫୦
ମନବଚନେ ଅଗୋଚର ।
ସେ ବ୍ରହ୍ମ ଥାଇ ଅତିଦୂର ॥୫୧
ଅବ୍ୟକ୍ତ ଆକାଶ ସ୍ୱରୂପୀ ।
ସେ ଥାଇ ସର୍ବଭୂତେ ବ୍ୟାପୀ ॥୫୨
ଆକାଶ ହୃଦୟ ମଧରେ ।
ଜୀବ ସ୍ୱରୂପେଣ ସଞ୍ଚରେ ॥୫୩
ସେ ପୁଣି ଭ୍ରୂରୁମଧ୍ୟେ ସ୍ଥାନ ।
ଶୁଦ୍ଧ ସ୍ଫଟିକ ସ୍ୱରୂପେଣ ॥୫୪
ପରମାତ୍ମା ରୂପେ ପ୍ରକାଶ ।
ଗଗନେ ବିଦ୍ୟୁ ଜ୍ୟୋତ୍ସ୍ନା ତ୍ରାସ ॥୫୫
ସେ ପୁଣ ଭ୍ରୂରୁ ମଧ୍ୟେ ଊର୍ଦ୍ଧ୍ୱେ ।
ଦ୍ୱାଦଶଶାଙ୍ଗୁଳ ପରେ ଶୁଦ୍ଧେ ॥୫୬
ସହସ୍ର ଦଳ କମଳରେ ।
ନାନା ରସାଦି ଲୀଳା କରେ ॥୫୭
ସେ ମଧ୍ୟେ ନିରାକାର ବ୍ରହ୍ମ ।
ବାଲୁକା ସମାନ ଯେ ଧାମ ॥୫୮
ଜ୍ୟୋତିର୍ମୟ ସୂକ୍ଷ୍ମ ପ୍ରକାଶ ।
ତୀକ୍ଷଣ ବାଳାଗ୍ର ସଦୃଶ ॥୫୯
ପରମ ପରାତ୍ମା ବୋଲାନ୍ତି ।
ସେ ଅଂଶୁ ଅବତାର ହୋନ୍ତି ॥୬୦
ହୃଦପଦ୍ମରେ ଜୀବଆତ୍ମା ।
ଅଦୃଶ୍ୟମାତ୍ର ରୂପ ସୂକ୍ଷ୍ମା ॥୬୧
ଦ୍ୱିଭୁଜ ଶଙ୍ଖ ଚକ୍ରଧାରୀ ।
ଅଶେଷ ଜୀବରେ ପ୍ରଚରି ॥୬୨
ପ୍ରଫୁଲ୍ଲ ପଦ୍ମ ପ୍ରାୟ ମୁଖ ।
ପୀତାମ୍ବରଧାରୀ ସୁରେଖ ॥୬୩
ଅଷ୍ଟଦଳ କମଳ ପରେ ।
ଅଷ୍ଟଶକ୍ତି ଚଉପାଶରେ ॥୬୪
ଶୁଦ୍ଧ ସୁବର୍ଣ୍ଣ ପ୍ରାୟ ଶୋଭା ।
ହସିତ ଭାବ ମୁଖ ଆଭା ॥୬୫
ସପ୍ତଶିଖା ମୁକୁଟ ମଣି ।
ରତ୍ନଜଡ଼ିତ ଶୋଭା ଜିଣି ॥୬୬
ସେ ଜୀବଆତ୍ମା ଯେ ପୁରୁଷ ।
ସର୍ବ ଜୀବେ ପୂରି ଆଭାସ ॥୬୭

ମାୟାରେ ରଜ ତମ ଗୁଣେ ।
ଆବୋରିଛନ୍ତି ଅନୁକ୍ଷଣେ ॥୬୮
ସେ ଜୀବଆତ୍ମା ଦ୍ୟୁତିରୂପ ।
ପରମାତ୍ମା ସତ୍ୟ ସ୍ୱରୂପ ॥୬୯
ସତ୍ତ୍ୱଗୁଣରେ ଯୁକ୍ତ ସେହି ।
ସ୍ୱରୂପ ଶୁଦ୍ଧଶୁକ୍ଳ ବହି ॥୭୦
ଏ ଭ୍ରୂରୁମଧ୍ୟେ ଛନ୍ତି ବସି ।
କୃଷ୍ଣ ବୈକୁଣ୍ଠ ନାମ ଭାଷି ॥୭୧
ଅର୍ଦ୍ଧମାତ୍ରା ତଳେ ଅଛନ୍ତି ।
ଏ ପରେ ନିରାକାର ସ୍ଥିତି ॥୭୨
ତ୍ରୟ ସ୍ୱରୂପୀ ବ୍ରହ୍ମଜ୍ୟୋତି ।
ବ୍ରହ୍ମପ୍ରକାଶ ହୋଇଛନ୍ତି ॥୭୩
ଏକାକ୍ଷର ବ୍ରହ୍ମ ପ୍ରଣବ ।
ଶବଦ ରୂପୀ ବୀଜ ସର୍ବ ॥୭୪
ତାହାଙ୍କ ତହୁଁ ଉତପନ୍ନ ।
ଚଉଦ ଆକାରାଦି ବର୍ଣ୍ଣ ॥୭୫
ଚଉଦ ସ୍ୱର ଏ ବୋଲାନ୍ତି ।
ଏ ଭାବେ ଅକ୍ଷରର ଗତି ॥୭୬
କ କାର ଆଦି ଚଉତ୍ରିଂଶ ।
ବ୍ୟଞ୍ଜନ ଶବଦ ବିଶେଷ ॥୭୭
ଏ ସ୍ୱରମାନେ ବିଷ୍ଣୁରୂପ ।
ବ୍ୟଞ୍ଜନ ମାୟାର ସ୍ୱରୂପ ॥୭୮
ଏ ସର୍ବ ଅକ୍ଷର ମାତୃକା ।
ପ୍ରକୃତି ବଶ ଶବ୍ଦ ଏକା ॥୭୯
ସ୍ୱରମାନେ ଦୀର୍ଘ ଯେ ହ୍ରସ୍ୱ ।
ପ୍ଳୁତ ନାମରେ ପରକାଶ ॥୮୦
ସନ୍ଧି ଅକ୍ଷର ଏ ବୋଲାଇ ।
ଏ କାର ଆଦି ଚାରି ଯେହି ॥୮୧
ପଚିଶବର୍ଣ୍ଣେ ପଞ୍ଚ ପଞ୍ଚ ।
ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ॥୮୨
ଏ ଅନ୍ତେ ଅନ୍ତ୍ୟସ୍ଥ ଏ ଜାଣ ।
ଯରଲବଏ ଚାରିବର୍ଣ୍ଣ ॥୮୩
ଶଷସହଏ ଚାରିବର୍ଣ୍ଣ ।
ଉଷ୍ମବର୍ଣ୍ଣରେ ବିଦ୍ୟମାନ ॥୮୪
ବିନ୍ଦୁ ଅନୁସାର ବୋଲାଇ ।
ସେ ବିନ୍ଦୁ ଯେବେ ଦୁଇ ହୋଇ ॥୮୫

ବିସର୍ଗ ନାମ ସେ ବୋଲାଇ ।
ଗଜକୁମ୍ଭାକୃତି ଯେ ହୋଇ ॥୮୬
ଏମନ୍ତ ହୋଇ ଶବ୍ଦବ୍ରହ୍ମ ।
ପଞ୍ଚାଶବର୍ଣ୍ଣଭେଦ ନାମ ॥୮୭
ଅକ୍ଷର ଆକୃତି ହୋଇଲେ ।
ଦେହ ବାହ୍ୟରେ ପ୍ରକାଶିଲେ ॥୮୮
ତହିଁ ଭିତରୁ ବ୍ରହ୍ମଯନ୍ତି ।
ଚବିଶ ଅକ୍ଷର ଗାୟତ୍ରୀ ॥୮୯
ଏ ମାୟା ରୂପେ ପ୍ରକାଶିଲେ ।
ସପ୍ତବ୍ୟାହୃତି ସେ ହୋଇଲେ ॥୯୦
ଦଶ ପ୍ରଣବ ମଧ୍ୟେ ହୋଇ ।
ଗାୟତ୍ରୀଶିର ସେ ବୋଲାଇ ॥୯୧
ସେ ବ୍ରହ୍ମ ଗାୟତ୍ରୀ ସାବିତ୍ରୀ ।
ସରସ୍ୱତୀ ତ୍ରିକାଳଗତି ॥୯୨
ତ୍ରିକାଳ ସନ୍ଧ୍ୟା ଏ ବୋଲାନ୍ତି ।
ଋକ୍ ଯଜୁ ସାମ ହୁଅନ୍ତି ॥୯୩
ତ୍ରିଗୁଣ ରୂପରେ ପ୍ରକାଶ ।
ଯଶ କର୍ମ ଗୁଣେ ବିଶେଷ ॥୯୪
ସେ ଗାୟତ୍ରୀ ବ୍ରହ୍ମ ଅଭ୍ୟାସ ।
ଯଜ୍ଞମାନ ସିଦ୍ଧି ଉଦ୍ଦେଶ୍ୟ ॥୯୫
ଚାରିବେଦକୁ ଜାତ କଲେ ।
ଚାରିବ୍ରାହ୍ମଣେ ବିତରିଲେ ॥୯୬
ହୋମରେ ଆହୁତିର ଅର୍ଥେ ।
ଋକ୍‌ବେଦୀ ହୁଅଇ ମର୍ତ୍ତ୍ୟେ ॥୯୭
ଯଜୁର୍ବେଦୀମାନଙ୍କୁ ପୁଣ ।
କର୍ମ ପ୍ରଚାରେ ଆଚାର୍ଯ୍ୟେଣ ॥୯୮
ସାମବେଦୀ ସାମଗାୟନେ ।
ସଂହିତା କଲେ ବିଦ୍ୟମାନେ ॥୯୯
ଅଥର୍ବେ ବ୍ରହ୍ମାର ବରଣ ।
ଏମନ୍ତ କରି ବେଦମାନ ॥୧୦୦
ଭିଆଇ ନାନାବିଧ ଶ୍ରୁତି ।
ମରୀଚି ଆଦି ପ୍ରଜାପତି ॥୧୦୧
ଏହାଙ୍କୁ ବେଦ ପଢାଇଲେ ।
ଏ ପୁଣି ପୁତ୍ରେ ଶିଷ୍ୟେ ଦେଲେ ॥୧୦୨
ଧର୍ମ ଉପଦେଶ ବିଧାନ ।
ସେମାନେ କଲେ ଶ୍ରୁତିମାନ ॥୧୦୩

Dr. Sudhanshu Sekhar Mishra

ଷଟତ୍ରିଂଶ ଶ୍ରୁତି ସ୍ୱଭାବେ ।
ସଂସାରେ ଧର୍ମ ପ୍ରବର୍ତ୍ତିବେ ॥୧୦୪
ସେମାନେ ପରସ୍ପରେ ପୁଣ ।
ପୁତ୍ରଙ୍କୁ ଦେଲେ ବେଦମାନ ॥୧୦୫
ଶାଖାପ୍ରଶାଖା କରି ଦେଲେ ।
ଉପଦେଶେଣ ପଢାଇଲେ ॥୧୦୬
ଏହି ପ୍ରକାରେ ଚାରିବେଦ ।
ସତ୍ୟାଦି ତିନିଯୁଗେ ଭେଦେ ॥୧୦୭
ବିସ୍ତାର ହୋଇ ତିନିଲୋକେ ।
କଳିକି ରହିଲା ଅଳ୍ପକେ ॥୧୦୮
ଦ୍ୱାପର ଶେଷ ହୋନ୍ତେ କଳି ।
ପ୍ରାଣୀଙ୍କି ଦେଖି ଅଳ୍ପବଳୀ ॥୧୦୯
ଅଳ୍ପ ଆୟୁଷ ଅଳ୍ପ ବୁଦ୍ଧି ।
ଦେଖି ବ୍ରହ୍ମଋଷି ସୁବୁଦ୍ଧି ॥୧୧୦
ଏ ବେଦ ଶାଖା-ପ୍ରଶାଖାରେ ।
କଲେ ବାସୁଦେବ ଆଜ୍ଞାରେ ॥୧୧୧
ସେ ମନ୍ୱନ୍ତର ଗୋଟିକରେ ।
ଯୁଗ ଏକସ୍ତରି ବିସ୍ତାରେ ॥୧୧୨
ଯେ ଯୁଗେ ଯେଉଁ ଋଷିମାନ ।
ବେଦ ବିସ୍ତାର କଲେ ପୁଣ ॥୧୧୩
ସେହି ବେଦବ୍ୟାସ ବୋଲାନ୍ତି ।
ତା ଦେହେ ବିଷ୍ଣୁ ପ୍ରବେଶନ୍ତି ॥୧୧୪
ଏ ବୈବସ୍ୱତ ମନ୍ୱନ୍ତରେ ।
ସପ୍ତବିଂଶ ଗଣ୍ଡା ଯୁଗରେ ॥୧୧୫
ସପ୍ତବିଂଶ ବେଳ ବିସ୍ତାର ।
ବେଦଶାଖାର ଯେ ପ୍ରଚାର ॥୧୧୬
ସପ୍ତବିଂଶ ଋଷି ହୃଦରେ ।
ବିଷ୍ଣୁ ପଶି ବେଦ ବିସ୍ତାରେ ॥୧୧୭
ଅଷ୍ଟାବିଂଶ ଗଣ୍ଡା ଯୁଗାନ୍ତେ ।
ଦ୍ୱାପର ଯୁଗ ଶେଷ ହୋନ୍ତେ ॥୧୧୮
ବ୍ରହ୍ମା ମହେଶ ଲୋକପାଳେ ।
ପ୍ରାର୍ଥନା କଲେ ଆଦିମୂଳେ ॥୧୧୯
ଏ ଘେନି ବେଦରକ୍ଷା ପାଇଁ ।
ବେଦବ୍ୟାସ ନାମ ବୋଲାଇ ॥୧୨୦
ପରାଶରଙ୍କ ବୀର୍ଯ୍ୟେ ଜାତ ।
ସତ୍ୟବତୀ ଗର୍ଭେ ସମ୍ଭୂତ ॥୧୨୧

ବିଷ୍ଣୁ ଅଂଶକଳାବତାର ।
ଅଗାଧଗୁଣରେ ଗମ୍ଭୀର ॥୧୨୨
ଚାରିବେଦ ମିଶ୍ରିତ ହୋଇ ।
ଏକ ବେଦରେ ଥିଲା ରହି ॥୧୨୩
ତାହାକୁ ଭିନ୍ନ ଭିନ୍ନ କରି ।
ଶାଖାରେ ବେଦଭାବ ଭରି ॥୧୨୪
ଋକ ଯଜୁ ସାମ ଅଥର୍ବ ।
ଏ ଚାରିବେଦେ ଭିନ୍ନ ଭାବ ॥୧୨୫
ତିନିବେଦ ତ୍ରିଗୁଣାତ୍ମକ ।
ତହିଁ ମିଶାଇ କଲେ ଏକ ॥୧୨୬
ଏମାନେ ଅନ୍ୟ ଅନ୍ୟେ ମିଳି ।
ସମ୍ବନ୍ଧ ଜାତି ଭାବେ ଚଳି ॥୧୨୭
ଚାରି ସଂହିତା ଏକ ଜାଣ ।
ସୂତ୍ରରେ ଯେହ୍ନେ ମଣିଗଣ ॥୧୨୮
ସେ ଭାବେ ମନ୍ତ୍ରକୁ ବାହାର ।
ବେଦବୀଜ କଲେ ବିସ୍ତାର ॥୧୨୯
ଚାରିବେଦ ଚାରି ଶିଷ୍ୟେଣ ।
ପଢାଇଲେ ବାଦରାୟଣ ॥୧୩୦
ପଇଳ ନାମେ ଶିଷ୍ୟ ପୁଣ ।
ସେ ଋକବେଦ ଅଭ୍ୟାସିଣ ॥୧୩
ବହ୍ବୃଚ ବୋଲି ସେ ବୋଲାଇ ।
ପଇଳ ତାହାକୁ ପଢଇ ॥୧୩୨
ବୈଶମ୍ପାୟନେ ଯର୍ଜୁବେଦ ।
ପଢାନ୍ତି ଯା' ନାମ ନିଗଦ ॥୧୩୩
ଜୈମିନି ଋଷିଙ୍କି ସେ ପୁଣ ।
ଛନ୍ଦୋଗ ପଢାଇଲେ ସାମ ॥୧୩୪
ଏ ବେଦ ଏମାନେ ପଢିଲେ ।
ଅଥର୍ବ ସୁମନ୍ତୁଙ୍କୁ ଦେଲେ ॥୧୩୫
ଅଥର୍ବ ଅଙ୍ଗୀରସ ଶ୍ରୁତ ।
ପଢିଲେ ନିର୍ଗୁଣ ବେଦାନ୍ତ ॥୧୩୬
ଏମନ୍ତେ ଚାରିଶିଷ୍ୟ ମୁଖେ ।
ଶାଖାପ୍ରଶାଖା ବେଦ ଶିଖେ ॥୧୩୭
ଋକ୍‌ବେଦ କର୍ତ୍ତା ପଇଳ ।
ତାହାଙ୍କ ଶିଷ୍ୟ ଯେ ବାସ୍କଳ ॥୧୩୮
ଇନ୍ଦ୍ର ପ୍ରମିତି ଦୁଇ ଜଣ ।
ପଢିଲେ ବିଭାଗ କରିଣ ॥୧୩୯

ସଂହିତା ଆପଣା ନାମରେ ।
ଏ ପୁଣି ଦେଲେ ଯେ ଶିଷ୍ୟରେ ॥୧୪୦
ବାସ୍କଳ ପୁଣି ଚାରିଭାଗେ ।
ଚାରିଶିଷ୍ୟେ ଦେଲେ ସରାଗେ ॥୧୪୧
ବୋଧ୍ୟ ଆବର ଯାଜ୍ଞବଲ୍କ୍ୟ ।
ପରାଶର ଅଗ୍ନିମିତ୍ରକ ॥୧୪୨
ଏ ଚାରିଶିଷ୍ୟଙ୍କୁ ସେ ଦେଲେ ।
ବିଭିନ୍ନେ ଶାଖାମାନ କଲେ ॥୧୪୩
ଇନ୍ଦ୍ରପ୍ରମିତି ନିଜ ସୁତ ।
ମାଣ୍ଡୁକେୟ ନାମରେ ଖ୍ୟାତ ॥୧୪୪
ତାହାଙ୍କୁ ନିଜେ ବେଦ ଦେଲେ ।
ସେ ପୁଣି ଦେବମିତ୍ରେ ଦେଲେ ॥୧୪୫
ସେ ଦେବମିତ୍ର ଶାଖା କଲେ ।
ସୌଭରି ଆଦି ପଢାଇଲେ ॥୧୪୬
ଶାକଲ୍ୟ ମାଣ୍ଡୁକେୟ ପୁତ୍ର ।
ତାହାଙ୍କ ପାଞ୍ଚପୁତ୍ର ଖ୍ୟାତ ॥୧୪୭
ବାତ୍ସ୍ୟ ଶାଳୀୟ ଯେ ମୁଦ୍‌ଗଳ ।
ଶିଶିର ଆଉ ଯେ ଗୋଖଲ୍ୟ ॥୧୪୮
ଏହାଙ୍କୁ ବେଦ ପଢାଇଲେ ।
ଆବର ଏକଶିଷ୍ୟ ଥିଲେ ॥୧୪୯
ଜାତୂକର୍ଣ୍ଣ୍ୟ ତାହାଙ୍କ ନାମ ।
ସେ କଲେ ଚାରିଶିଷ୍ୟ ପୁଣ ॥୧୫୦
ବିରଜ ବଳାକ ବୈତାଳ ।
ପଇଜ ଶିଷ୍ୟ ଯେ ଆବର ॥୧୫୧
ପ୍ରତି ଶାଖାରୁ ସେ ବାସ୍କଳି ।
ବାଳଖିଲ୍ୟ ସଂହିତା କରି ॥୧୫୨
ବାଳାୟନି ଭଜ୍ୟ କାସାର ।
ତିନିଙ୍କୁ ଦେଲେ ବେଦସାର ॥୧୫୩
ଏ ଭାବେ ଋକ୍‌ବେଦ ପୁଣ ।
ବହୁତ ଶାଖା ବିସ୍ତାରଣ ॥୧୫୪
ସତାଇଶ ଶାଖା ବିଭକ୍ତ ।
ଏ ବ୍ରହ୍ମରୂପରେ ପୂଜିତ ॥୧୫୫
ସଂହିତାମାନଙ୍କ ବିସ୍ତାର ।
ଶୁଣିଲେ ପ୍ରାଣୀ ଯେ ନିସ୍ତାର ॥୧୫୬
ବୈଶମ୍ପାୟନ ଯେଉଁ ଋଷି ।
ଯର୍ଜୁବେଦକୁ ସେ ଅଭ୍ୟାସି ॥୧୫୭

Dr. Sudhanshu Sekhar Mishra

ସତାଇଶ ଶିଷ୍ୟ ତାଙ୍କର ।
କଣ୍ୱ ମାଧନିନ୍ଦ ଆବର ॥୧୫୮
ସତ୍ୟ ଦ୍ରୟ ଆଦି ଯେ ହୋଇ ।
ସତାଇଶ ଶାଖା ପଢାଇ ॥୧୫୯
ସେ ବେଦ ପଢୁଁ ଶିଷ୍ୟଗଣ ।
ଏକ ଅକ୍ଷର ଅଶୁଦ୍ଧେଣ ॥୧୬୦
ଗର୍ଗରଷିଙ୍କର ତନୁଜ ।
ବୈଶମ୍ପାୟନଙ୍କ ଭଗ୍ନୀଜ ॥୧୬୧
ଗାର୍ଗ୍ୟ ଶିରେହସ୍ତ ପ୍ରହାରେ ।
ଶିର ତା' ଚୂର୍ଣ୍ଣ ହୋନ୍ତେ ଖରେ ॥୧୬୨
ବ୍ରହ୍ମହତ୍ୟା ବୈଶମ୍ପାୟନେ ।
ଲାଗିଲା ବେଦର ବିଧାନେ ॥୧୬୩
ସେ ଶିଷ୍ୟମାନଙ୍କୁ କହିଲେ ।
ବ୍ରହ୍ମହତ୍ୟା ଲାଗେ ଆମ୍ଭରେ ॥୧୬୪
ପ୍ରାୟଶ୍ଚିତ ବ୍ରତ ଯେ କରି ।
ତା' ଶୁଣି ଶିଷ୍ୟ ବ୍ରତାଚାରୀ ॥୧୬୫
ସେ ଶିଷ୍ୟମାନେ ବ୍ରତ କଲେ ।
ଚରକାଧ୍ୱର୍ଯ୍ୟୁ ବୋଲାଇଲେ ॥୧୬୬
ଚରକ ଶାଖା ତା'ର ନାମ ।
ତୈତ୍ତ୍ରିୟ ଶାଖା ଏବେ ଶୁଣ ॥୧୬୭
ତା' ଦେଖି ଦେବରାତ ପୁତ୍ର ।
ଯା' ନାମ ଯାଜ୍ଞବଲ୍କ୍ୟ ଖ୍ୟାତ ॥୧୬୮
ଗୁରୁଙ୍କୁ ଯାଜ୍ଞବଲ୍କ୍ୟ କହେ ।
ବ୍ରତୀ ହୋଇଣ କେହି ରହେ ॥୧୬୯
ଅଳ୍ପବଳ ଯେ ଏହାଙ୍କରି ।
ପ୍ରାୟଶ୍ଚିତ୍ତ କରି ନ ପାରି ॥୧୭୦
ଏ ବ୍ରତ ବଡ଼ଇ କଠିନ ।
ବାରବରଷେ ହୋଏ ପୂର୍ଣ୍ଣ ॥୧୭୧
ମୁହିଁ କରିବି ଆଜ୍ଞା ହେଲେ ।
ତା' ଶୁଣି ଗୁରୁ କ୍ରୋଧ କଲେ ॥୧୭୨
ମୋ ଶିଷ୍ୟେ ଅମାନନା କଲୁ ।
ଆମ୍ଭରେ ଗର୍ବ ତୁ ବହିଲୁ ॥୧୭୩
ଏଣୁ ତୁ ମୋହଠାରୁ ଯେତେ ।
ବେଦ ପଢ଼ିଲୁ ଅନୁମତେ ॥୧୭୪
ଏବେ ଏ ବେଦ ତୁହି ଛାଡ଼ ।
ଆନ ଠାବରେ ଯାଇ ପଢ଼ ॥୧୭୫

ତା' ଶୁଣି ଯାଜ୍ଞବଲ୍କ୍ୟ ଡ଼ରେ ।
ପଢ଼ିଲା ବେଦ ବାନ୍ତି କଲେ ॥୧୭୬
ସେ ବେଦ କାଣ୍ଡିମାନ ପୁଣ ।
ତିତିରି ଚଢ଼େଇ ରୂପେଣ ॥୧୭୭
ତାହାକୁ ଯେଉଁ ଋଷିମାନେ ।
ଗ୍ରହଣ କଲେ ସାବଧାନେ ॥୧୭୮
ତୈତ୍ତିରୀୟ ସେ ବୋଲାଇଲେ ।
ତହୁଁ ଯେ ଯାଜ୍ଞବଲ୍କ୍ୟ ଗଲେ ॥୧୭୯
ବେଦ ସେ ପଢ଼ିବା ନିମିତ୍ତ ।
ସୂର୍ଯ୍ୟଙ୍କ ଠାରେ ଉପଗତ ॥୧୮୦
ଗୁରୁଙ୍କଠାରୁ ନବତନ ।
ବେଦ ମୁଁ ପଢ଼ିବଇଁ ପୁଣ ॥୧୮୧
ମେରୁ ପୃଷ୍ଠରେ ବସି ପୁଣ ।
ସୂର୍ଯ୍ୟଙ୍କୁ କଲେ ଉପାସନ ॥୧୮୨

### ଯାଜ୍ଞବଲ୍କ୍ୟ ଉବାଚ

ହେ ଭଗବନ୍ତ ଦିବାକର ।
ତୁମ୍ଭଙ୍କୁ ମୋର ନମସ୍କାର ॥୧୮୩
ଜଗତ ଅଖିଳ ଯେ ପ୍ରାଣୀ ।
ଆତ୍ମା ସ୍ୱରୂପେ ଅଛ ପୁଣି ॥୧୮୪
କାଳ ସ୍ୱରୂପେ ଗ୍ରହରୂପୀ ।
ସ୍ଥାବର ଜଙ୍ଗମାଦି ବ୍ୟାପୀ ॥୧୮୫
ବ୍ରହ୍ମରୁ କୀଟ ପରିଯନ୍ତେ ।
ପ୍ରାଣୀମାନଙ୍କ ହୃଦଗତେ ॥୧୮୬
ଆତ୍ମା ସ୍ୱରୂପେ ପୂରିଅଛ ।
ଆକାଶେ ଶୂନ୍ୟେ ପ୍ରକାଶିଛ ॥୧୮୭
ଅନ୍ତର୍ଗତ-ବାହାରେ ପୁଣି ।
ଏକାଦଶ-ଇନ୍ଦ୍ରିୟ ଜିଣି ॥୧୮୮
ଏ ତୁମ୍ଭ ଅନୁଗ୍ରହେ ହୋଇ ।
ବାହ୍ୟେ କାଳରୂପେ ଭ୍ରମଇ ॥୧୮୯
ଲବ ନିମେଷାଦି ବତ୍ସର ।
ଯେତେ ଯେତେ ଏ ପ୍ରାଣୀଙ୍କର ॥୧୯୦
ଉତ୍ପତ୍ତି ପ୍ରଳୟ କରୁଛ ।
ଏଣୁ ଆକାଶେ ଉଇଁଅଛ ॥୧୯୧
ଏ ତୁମ୍ଭ ମଣ୍ଡଳର ଗତି ।
ନିର୍ମଳ ବିରାଜଇ ଜ୍ୟୋତି ॥୧୯୨

ପରମବ୍ରହ୍ମ ନିରାକାର ।
ଜ୍ୟୋତିର ଭିତର ବାହାର ॥୧୯୩
ଶଙ୍ଖଚକ୍ରଧାରୀ ହୋଇଣ ।
ନାରାୟଣ ସ୍ୱରୂପବର୍ଣ୍ଣ ॥୧୯୪
ବ୍ରାହ୍ମଣେ ତ୍ରିସନ୍ଧ୍ୟାରେ ନିତ୍ୟ ।
ଗାୟତ୍ରୀ ପଢି ବେଦମନ୍ତ୍ର ॥୧୯୫
ଅଞ୍ଜଳି ଦେଇ ଉପସ୍ଥାନ ।
କ୍ଷୟ ସକଳ ପାପମାନ ॥୧୯୬
ଏ ଦିବାରାତ୍ରି କରି ଶେଷ ।
ସଂସାର ଲୋକ ତମ ଧ୍ୱଂସ ॥୧୯୭
ଆପଣା କିରଣରେ ବୃଷ୍ଟି ।
ଶସ୍ୟ ଉପୁଜି ପ୍ରାଣୀ ତୁଷ୍ଟି ॥୧୯୮
ପ୍ରାଣୀଙ୍କ ଜୀବଦାତା ହୋଇ ।
ପାଳୁଛ ଋତୁଭାବ ବହି ॥୧୯୯
ଶୀତ ବରଷା ଗିରୀଷମ ।
ଶରଦ ବସନ୍ତ ଯେ ହିମ ॥୨୦୦
ଏ ଷଡ଼ଋତୁ ବାରମାସ ।
ତୋ' ତହୁଁ ହେଉଛି ପ୍ରକାଶ ॥୨୦୧
ଏ ଜ୍ୟୋତିର୍ମୟ ତୋ ମଣ୍ଡଳ ।
ସକଳ ସୁଖଙ୍କର ଘର ॥୨୦୨
ବିପ୍ରେ ଯେ ଚାରିବେଦ ମନ୍ତ୍ରେ ।
କରନ୍ତି ଉପସ୍ଥାନ ତୋତେ ॥୨୦୩
ସେ ଦ୍ୱିଜମାନଙ୍କର ପାପ ।
ତୁମ୍ଭେ ଯେ ହର ସର୍ବବ୍ୟାପ ॥୨୦୪
ତୁମ୍ଭ ମଣ୍ଡଳ ଜ୍ୟୋତି ତୀକ୍ଷ୍ଣ ।
ଅନ୍ଧପଟଳ ବିନାଶନ ॥୨୦୫
ସେ ଜ୍ୟୋତି ସ୍ୱରୂପ ଯେ ତୁହି ।
କରୁଛି ଉପସ୍ଥାନ ମୁହିଁ ॥୨୦୬
ସ୍ଥାବର ଜଙ୍ଗମ ଯେ କୀଟ ।
ପତଙ୍ଗ ଚାରିଖାନି ଭେଟ ॥୨୦୭
ଇନ୍ଦ୍ରିୟଗଣମାନଙ୍କର ।
ପ୍ରବେଶି ଅନୁଗ୍ରହ କର ॥୨୦୮
ସ୍ୱୟଂ ଅନ୍ତର୍ଯ୍ୟାମୀ ସ୍ୱରୂପେ ।
ଆତ୍ମାଜ୍ଞାନ ପ୍ରକାଶ ରୂପେ ॥୨୦୯
ଏ ଲୋକ ତୁମ୍ଭର ମାୟାରେ ।
ପଡ଼ିଛି ତମ ଅନ୍ଧକାରେ ॥୨୧୦

Dr. Sudhanshu Sekhar Mishra

ପ୍ରାଣୀଙ୍କି ଅଜଗର ରୂପ ।
ସର୍ପ ଗିଳିଲେ ଯେହ୍ନେ ଧାପ ॥୨୧୧
ଅଚେତେ ମୃତ ହୋଇଥାଇ ।
ନିଦ୍ରାରେ ଯେହ୍ନେ ପ୍ରାଣୀ ଶୋଇ ॥୨୧୨
ମାୟାରେ ଅଚେତ ଯେ ପ୍ରାଣୀ ।
ପରମକୃପାଳୁ ତୁ ପୁଣି ॥୨୧୩
ଉଦୟେ ଅନୁଗ୍ରହ କର ।
ଉଦିତ କିରଣେ ଉଦ୍ଧର ॥୨୧୪
ଦିନେ ଦିନେ ଯେ ପ୍ରାଣୀମାନେ ।
ଶ୍ରେୟ ନିମନ୍ତେ ତୋ' ଚରଣେ ॥୨୧୫
ତୋ' ଅନୁଗ୍ରହେ ଯଜ୍ଞ କରି ।
ସମାଧି ଅପବର୍ଗ ଧରି ॥୨୧୬
ଯେସନେ ରାଜା ଦୁଷ୍ଟ ନାଶି ।
ସାଧୁମାନଙ୍କୁ ସେ ଆଶ୍ୱାସି ॥୨୧୭
ଦୈତ୍ୟ ଦାନବ ଯେ ଅସାଧୁ ।
ଖଳ ଦୁର୍ବୁଦ୍ଧି ଧର୍ମନିନ୍ଦୁ ॥୨୧୮
ଏ ଅଂଶେ ଜନ୍ମ ଯେତେ ତନୁ ।
ନାଶେ କୁମୁଦ ଯେହ୍ନେ ଭାନୁ ॥୨୧୯
ତୁମ୍ଭ ମହିମା ଯେ ରଖିଛି ।
ତୁମ୍ଭେ ତାହାକୁ ହୁଅ ସାକ୍ଷୀ ॥୨୨୦
ଏଣୁ ଉଦୟ ଅସ୍ତ ହୁଅ ।
ସର୍ବଜୀବରେ ପୂଜା ପାଅ ॥୨୨୧
ଦିଗପାଳ ଯେଝା ଦିଗରେ ।
କୃତାଞ୍ଜଳିରେ ପୂଜା କରେ ॥୨୨୨
ହେ ଭଗବାନ ବାସୁଦେବ ।
ମୋର ସେବା ତୁମ୍ଭେ ଘେନିବ ॥୨୨୩
ସମର୍ପେ ତୁମ୍ଭ ପଦ୍ମପାଦେ ।
ମୁଁ ଉପସ୍ଥାନ ଯେ ଆନନ୍ଦେ ॥୨୨୪
ତୁମ୍ଭ ପଦ୍ମପାଦ କେମନ୍ତ ।
ତିନି ଭୁବନରେ ପୂଜିତ ॥୨୨୫
ବ୍ରହ୍ମା ବିଷ୍ଣୁ ମହେଶ ଆଦି ।
ବାସବ ଆଦି ଦେବ ବନ୍ଦି ॥୨୨୬
ଏବଂଭୂତ ପଦ୍ମପାଦରେ ।
ମୋ ଶିର ଲାଗୁ ନିରନ୍ତରେ ॥୨୨୭
ନବୀନ ଯର୍ଜୁବେଦ ମୋତେ ।
ଆଜ୍ଞା ହୋଇବ ଛାୟାକାନ୍ତେ ॥୨୨୮

ଯେ ବେଦ ଗୁରୁଠାରେ ନାହିଁ ।
ତାହାକୁ ପଢିବଇଁ ମୁହିଁ ॥୨୨୯
ଏଣୁ ତୁମ୍ଭଙ୍କୁ ଆଶ୍ରେ ମୋର ।
ଏ ବେଦ ଆଜ୍ଞା ମୋତେ କର ॥୨୩୦
ସୂତ ପୌରାଣିକ କହନ୍ତି ।
ଶୁଣ ଶୌନକ ଆଦି ଯତି ॥୨୩୧

ସୂତ ଉବାଚ

ଯାଜ୍ଞବଲ୍କ୍ୟଙ୍କ ସ୍ତୁତି ଶୁଣି ।
ସନ୍ତୋଷ ହୋଇ ଦିନମଣି ॥୨୩୨
ଅଶ୍ୱରୂପକୁ ଧରି ପୁଣ ।
ଉପଦେଶ କର୍ଣ୍ଣ ମାର୍ଗେଣ ॥୨୩୩
ନବୀନ ଯଜୁର୍ବେଦଭାଗେ ।
ମୁନିଙ୍କି ଦେଲେ ସେ ସରାଗେ ॥୨୩୪
ସେ ଯାଜ୍ଞବଲ୍କ୍ୟ ଯେଉଁ ମୁନି ।
ସେ ବେଦ ଉପଦେଶ ଘେନି ॥୨୩୫
ତା' ନାମ ବାଜସନୀ ଦେଲେ ।
ପୁଣ ପନ୍ଦର ଶାଖା କଲେ ॥୨୩୬
ସେ ପଞ୍ଚଦଶ ଶାଖା ବାଣୀ ।
ସଂହିତା କରି ପଢେ ପୁଣି ॥୨୩୮
ଏମାନେ ଶିଷ୍ୟେ ପୁଣ ଦେଲେ ।
ଚଉରାଶୀ ଶାଖା ହୋଇଲେ ॥୨୩୯
କାଣ୍ୱସଂହିତା ମାଧ୍ୟନ୍ଦିନି ।
ଅପର ଅଟେ ବାଜସନୀ ॥୨୪୦
ଅଶ୍ୱରୂପଧାରୀ ଆଦିତ୍ୟ ।
ତା'ଙ୍କ କେଶରରୁ ସମ୍ଭୂତ ॥୨୪୧
ବାଜିର କେଶରୁ ଜନ୍ମିଲା ।
ବାଜସନୀ ସେ ଯେ ହୋଇଲା ॥୨୪୨
ସାମବେଦର ଅଧିକାରୀ ।
ଜୈମିନି ମୁନି ଯେ ବିସ୍ତାରି ॥୨୪୩
ସୁମନ୍ତୁ ସୁନ୍ୱାନ ଯେ ଦୁଇ ।
ଜୈମିନି ପୁତ୍ର ପୌତ୍ର ହୋଇ ॥୨୪୪
ଦୁଇ ସଂହିତା କରି ଦେଲେ ।
ଏ ପୁଣି ଶିଷ୍ୟେ ପଢାଇଲେ ॥୨୪୫
ତାହାଙ୍କ ଶିଷ୍ୟ ଯେ ସୁକର୍ମା ।
ସହସ୍ର ଶିଷ୍ୟେ ସେ ଉତ୍ତମା ॥୨୪୬

ସହସ୍ର ଭାଗ ସେ ସଂହିତା ।
ସହସ୍ର ଶାଖାରେ ବିଦିତା ॥୨୪୭
ଯେ ଋଷି ଯେ ଶାଖା ପଢିଲେ ।
ସେ ଶାଖା ସେ ନାମୁଁ ହୋଇଲେ ॥୨୪୮
ତାହାଙ୍କ ନାମ ଏବେ ଶୁଣ ।
କହିବା ତାହା ବିସ୍ତାରିଣ ॥୨୪୯
ହିରଣ୍ୟନାଭ କୌଶଳେଶ ।
ପୌଷ୍ୟଞ୍ଜି ନାମେ ଦୁଇ ଶିଷ୍ୟ ॥୨୫୦
ସୁକର୍ମାଙ୍କର ଶିଷ୍ୟ ଦୁଇ ।
ଏକର ପାଞ୍ଚଶତ ଭାଇ ॥୨୫୧
ଆବନ୍ତ୍ୟ ଯେ ବ୍ରହ୍ମବିତ୍ତମ ।
ଏ ଆଦି ପାଞ୍ଚଶିଷ୍ୟ ନାମ ॥୨୫୨
ଔଦିଚ୍ୟ ସାମ ସେ ବୋଲାନ୍ତି ।
ଏ ପଞ୍ଚଶତ ଶିଷ୍ୟେ ଖ୍ୟାତି ॥୨୫୩
ବ୍ରହ୍ମବିତ୍ତମ ଯେ ଆବନ୍ତ୍ୟ ।
ଏ ଦୁଇ ଶିଷ୍ୟେ ଶିଷ୍ୟବନ୍ତ ॥୨୫୪
ବ୍ରହ୍ମବିତ୍ତମ ଆଦି ହୋଇ ।
ପାଞ୍ଚଶିଷ୍ୟବନ୍ତ ବୋଲାଇ ॥୨୫୫
ଔଦିଚ୍ୟ ସାମ ସେ ବୋଲାନ୍ତି ।
କୌଶଲ୍ୟ ଆଦି ଉତପତ୍ତି ॥୨୫୬
ଲୋଗାକ୍ଷି ମାଙ୍ଗଳିକ ସ୍ଥାପି ।
କୁସୀଦ କୁଲ୍ୟ କୁକ୍ଷୀ ବ୍ୟାପୀ ॥୨୫୭
ଏ ଆଦି ଯେତେ ଶିଷ୍ୟମାନେ ।
ପୌଷ୍ୟଞ୍ଜିଙ୍କର ବିଦ୍ୟମାନେ ॥୨୫୮
ଆପଣା ସଂହିତାକୁ ପୁଣ ।
ଶତ ଶତ ଭାଗ କରିଣ ॥୨୫୯
କୃତ ହିରଣ୍ୟନାଭ ଦୁଇ ।
ଆପଣା ସଂହିତାକୁ ନେଇ ॥୨୬୦
ଚବିଶ ସଂହିତା ସେ କଲେ ।
ପୁଣି ତା' ପ୍ରତି ଶିଷ୍ୟେ ଦେଲେ ॥୨୬୧
ଆଉ ସଂହିତାମାନ ପୁଣି ।
ଆବନ୍ତ୍ୟ ସାମେଣ ବଖାଣି ॥୨୬୨
ଏ ସର୍ବ ସଂହିତା କହନ୍ତି ।
ପ୍ରାଚ୍ୟ ସାମଗ ସେ ବୋଲାନ୍ତି ॥୨୬୩
ଏ ସାମବେଦ ମନ୍ତ୍ରମାନେ ।
ପ୍ରପାଠକ ବୋଲି ଅଧ୍ୟାନେ ॥୨୬୪

Dr. Sudhanshu Sekhar Mishra

ଏହାଙ୍କର ସଂହିତା ନାମ ।
ଶୁଣନ୍ତେ ହୋଏ ମୋକ୍ଷମାନ ॥୨୬୫
ନବବେଦମାନ ବୋଲାନ୍ତି ।
ଏକଇ ବାହନେ ଚଳନ୍ତି ॥୨୬୬
ଅଙ୍ଗୁଳି ରେଖାରେ ଚଳନ ।
ପଦ ଘନ ଜଟା ଭାବେଣ ॥୨୬୭
ଭୂପାଳ ସ୍ୱରେଣ ଗାୟନ ।
ଏ ସାମବେଦର ବର୍ଣ୍ଣନ ॥୨୬୮
ଏବେ ଅଥର୍ବବେଦ ଶୁଣ ।
ଏ ବେଦକର୍ତ୍ତା ଅଥର୍ବଣ ॥୨୬୯
ଅଥର୍ବ ଋଷି ଆଙ୍ଗିରସ ।
ସୁମନ୍ତୁ ତାହାଙ୍କର ଶିଷ୍ୟ ॥୨୭୦
ସେ ପିତାଠାରୁ ଉପଦେଶ ।
ସଂହିତା ବିଭାଗେ ବିଶେଷ ॥୨୭୧
କବନ୍ଧ ନାମେ ଶିଷ୍ୟ ଥିଲେ ।
ତାହାଙ୍କୁ ଉପଦେଶ ଦେଲେ ॥୨୭୨
ସେ ପୁଣି ଦୁଇଭାଗ କରି ।
ଶିଷ୍ୟ ଦୁଇରେ ସେ ବିସ୍ତାରି ॥୨୭୩
ପଥ୍ୟେ ଏ ବେଦଦର୍ଶ ଦୁଇ ।
ଶିଷ୍ୟଙ୍କୁ କବନ୍ଧ ପଢାଇ ॥୨୭୪
ବେଦଦର୍ଶଙ୍କର ପୁଣ ।
ଚାରିଶିଷ୍ୟ ଯେ ବିଦ୍ୟମାନ ॥୨୭୬
ବ୍ରହ୍ମବଳି ଯେ ଶୌଲ୍କାୟନି ।
ମାଦୋଷ ଯେ ପିପ୍ପଳାୟନି ॥୨୭୬
ଏ ଚାରିଶିଷ୍ୟରୁ ଅନେକ ।
ପଥ୍ୟଙ୍କରି ଶିଷ୍ୟ ଶୁନକ ॥୨୭୭
କୁମୁଦ କାଳଳି ଆବର ।
କହିବା ଶିଷ୍ୟ ଶୁନକର ॥୨୭୮
ବଭ୍ରୁ ସୈନ୍ଧବାୟନ ହେଲେ ।
ଏ ଦୁଇ ସଂହିତା ପଢିଲେ ॥୨୭୯
ସାବର୍ଣ୍ଣି ପ୍ରଭୃତି ଅନ୍ୟାନ୍ୟ ।
ଶୁନକ ଶିଷ୍ୟ ଥିଲେ ପୁଣ ॥୨୮୦
ନକ୍ଷତ୍ରକଳ୍ପ ଶାନ୍ତିକଳ୍ପ ।
ଆଙ୍ଗିରସ ଆଦି କଶ୍ୟପ ॥୨୮୧
ସଂହିତା ଆଚାର୍ଯ୍ୟ ଏମାନେ ।
ଅଥର୍ବ ବେଦେ ବିଦ୍ୟମାନେ ॥୨୮୨

ହେ ମୁନି ଶୁଣ ଅନନ୍ତର ।
ଯେ ନାମ ପୌରାଣିକଙ୍କର ॥୨୮୩
କଶ୍ୟପ ତ୍ରୟ୍ୟାରୁଣି ପୁଣ ।
ସାବର୍ଣ୍ଣି ଯେ ଅକୃତବ୍ରଣ ॥୨୮୪
ବୈଶମ୍ପାୟନ ଯେ ହାରୀତ ।
ଏ ଷଟ ପୌରାଣିକ ଖ୍ୟାତ ॥୨୮୫
ଏବେ ଯେ ବ୍ୟାସ ଶିଷ୍ୟ ପୁଣ ।
ମୋ' ପିତା ଲୋମହରଷଣ ॥୨୮୬
ତାଙ୍କଠାରୁ ଏ ଷଟଶିଷ୍ୟ ।
ସଂହିତା କଲେ ଉପଦେଶ ॥୨୮୭
ତାହାଙ୍କଠାରୁ ମୁହିଁ ପୁଣ ।
ପଢିଲି ସକଳ ପୁରାଣ ॥୨୮୮
ମୁଁ ଅଟେ ସୂତପୌରାଣିକ ।
ଆବର କଶ୍ୟପହିଁ ଏକ ॥୨୮୯
ସାବର୍ଣ୍ଣି ପର୍ଶୁରାମ ଶିଷ୍ୟ ।
ଅକୃତବ୍ରଣ ଚାରିଶିଷ୍ୟ ॥୨୯୦
ଏ ରୂପେ ଆମ୍ଭେ ଚାରଜଣ ।
ବ୍ୟାସଶିଷ୍ୟଙ୍କଠାରୁ ପୁଣ ॥୨୯୧
ଚାରି ମୂଳସଂହିତାମାନ ।
ସମସ୍ତ କଲୁ ଅଧ୍ୟୟନ ॥୨୯୨
ବେଦମାନଙ୍କ ଅର୍ଥ ପୁଣ ।
ବ୍ୟାସେ ଅଷ୍ଟାଦଶ ପୁରାଣ ॥୨୯୩
ତା' ମୋ ପିତାଙ୍କୁ ଉପଦେଶ ।
ହରଷେ ଦେଲେ ବେଦବ୍ୟାସ ॥୨୯୪
ମୁହିଁ ମୋ' ପିତାଠାରୁ ପୁଣ ।
ପାଇ ଅଷ୍ଟାଦଶ ପୁରାଣ ॥୨୯୫
ପୁରାଣ ଦଶ ଯେ ଲକ୍ଷଣ ।
ପଞ୍ଚଲକ୍ଷଣ ଥୋକେ ଜାଣ ॥୨୯୬
ଯାହା ବର୍ଣ୍ଣନ୍ତି ଋଷିଗଣ ।
ପୁରାଣ ଲକ୍ଷଣ ତା' ପୁଣ ॥୨୯୭
ସର୍ଗ ବିସର୍ଗ ବୃତ୍ତି ରକ୍ଷା ।
ହେତୁ ଯେ ମନ୍ୱନ୍ତର ସଂଖ୍ୟା ॥୨୯୮
ବଂଶାନୁଚରିତ ଯେ ସଂସ୍ଥା ।
ଆଶ୍ରୟ ବଂଶର ବ୍ୟବସ୍ଥା ॥୨୯୯
ଏ ଦଶଲକ୍ଷଣରେ ଯୁକ୍ତ ।
ବଡ଼ ପୁରାଣ ନାମେ ଖ୍ୟାତ ॥୩୦୦

ସାନ ଉପପୁରାଣମାନ ।
ପଞ୍ଚଲକ୍ଷଣରେ ବଖାଣ ॥୩୦୧
ବିଷ୍ଣୁ ନିର୍ଗୁଣ ନିରାକାର ।
ତ୍ରିଗୁଣଯୁକ୍ତ ସେ ମାୟାର ॥୩୦୨
ତହୁଁ ମହତ ଅହଙ୍କାର ।
ପଞ୍ଚମହାଭୂତ ସଞ୍ଚାର ॥୩୦୩
ଶବ୍ଦାଦି ତନମାତ୍ର ପଞ୍ଚ ।
ଇନ୍ଦ୍ରିୟ ଏକାଦଶ ସଞ୍ଚ ॥୩୦୪
ଏମାନଙ୍କର ଉତପତ୍ତି ।
ଏ ସର୍ବେ ସର୍ଗ ଯେ ବୋଲାନ୍ତି ॥୩୦୫
ଏହାଙ୍କ ସଙ୍ଗତରେ ପୁଣ ।
ପୁରୁଷ ସଂଯୋଗ ଭାବେଣ ॥୩୦୬
ଏହାଙ୍କ ବାସନାର ଅଙ୍ଗ ।
ସ୍ଥାବର ଜଙ୍ଗମ ପତଙ୍ଗ ॥୩୦୭
କୀଟ ଆଦି ଚାରି ଉତ୍ପତ୍ତି ।
ଏମାନେ ବିସର୍ଗ ବୋଲାନ୍ତି ॥୩୦୮
ପ୍ରାଣୀମାନଙ୍କ ଯେ ପ୍ରକୃତି ।
ଜୀବିକା ଆଚାରାଦି ଗତି ॥୩୦୯
ଏ ସର୍ବ ବୃତ୍ତି ଯେ ବୋଲାଇ ।
ପୁରାଣ ଲକ୍ଷଣ ଯେ କହି ॥୩୧୦
ଏମାନେ ରକ୍ଷାର ନିମନ୍ତେ ।
ତୀର୍ଯ୍ୟକ ଋଷି ଦେବମତେ ॥୩୧୧
ସ୍ଥିତି ପ୍ରଳୟର କାରଣ ।
ବିଷ୍ଣୁର ଯେତେ ଅଂଶମାନ ॥୩୧୨
ଏହାଙ୍କୁ ରକ୍ଷା ଯେ ବୋଲାନ୍ତି ।
ଏଣୁ ବିଷ୍ଣୁ ସର୍ବ ରଖନ୍ତି ॥୩୧୩
ଏ ସମୟରେ ମନୁମାନେ ।
ବ୍ରହ୍ମା ମୁହୂର୍ତ୍ତ ଉତପନ୍ନେ ॥୩୧୪
ଏ ବ୍ରହ୍ମାମୁହୂର୍ତ୍ତକେ ପୁଣ ।
ମନ୍ୱନ୍ତର ହୁଏ ପ୍ରମାଣ ॥୩୧୫
ଇନ୍ଦ୍ର ସପତଋଷି ଦେବ ।
ମନୁପୁତ୍ର ଆଦି ଏ ସର୍ବ ॥୩୧୬
ଏ ମନ୍ୱନ୍ତର ସେ ବୋଲାଇ ।
ଆନ ମନୁବଂଶ ବଢଇ ॥୩୧୭
ସୃଷ୍ଟି କରନ୍ତି ଆତଯାତ ।
ଏମନ୍ତ ବଂଶାନୁଚରିତ ॥୩୧୮

Dr. Sudhanshu Sekhar Mishra

ଏ ସମୟରେ ବାସୁଦେବ ।
ଷଟ ଯେ ରୂପରେ ସମ୍ଭବ ।।୩୧୯
ମନୁ ଦେବତା ମନୁପୁତ୍ର ।
ଏ ସର୍ବେ ବ୍ରହ୍ମାର ଯେ ଗୋତ୍ର।।୩୨୦
ଇନ୍ଦ୍ର ସପ୍ତଋଷି ପଞ୍ଚମ ।
ଅବତାରଲୀଳା ଷଷ୍ଠେଣ ।।୩୨୧
ଏମନ୍ତ ଭାବେ ବାସୁଦେବ ।
ସଂସାରେ ଉତ୍ପତ୍ତି ସମ୍ଭବ ।।୩୨୨
ମନ୍ୱନ୍ତ ଅଧିକାର ବୋଲି ।
ପୁରାଣ ଲକ୍ଷଣ କହିଲି ।।୩୨୩
ଏ ରାଜାମାନଙ୍କ ବଂଶରେ ।
ବ୍ରହ୍ମଋଷି ଦେବ ଅଂଶରେ ।।୩୨୪
ଗନ୍ଧର୍ବ ଚାରଣ କିନ୍ନରେ ।
ଯେତେ ଉତ୍ପତ୍ତି ଏ ସଂସାରେ ।।୩୨୫
ତାହାଙ୍କୁ ବଂଶ ବୋଲି କହି ।
ତା'ଙ୍କ ଚରିତ ଅବା ଯେହି ।।୩୨୬
ବଂଶାନୁଚରିତ ତା' ନାମ ।
ଶୁଣ ଶୌନକ ଦେଇ ମନ ।।୩୨୭
ନିତ୍ୟ ନୈମିତ୍ତ ପ୍ରାକୃତିକ ।
ଯେବା ପ୍ରଳୟ ଆତ୍ୟନ୍ତିକ ।।୩୨୮
ଏ ଚାରି ସଂସ୍ଥା ବୋଲି ଜାଣ ।
ଜୀବ ଉତ୍ପତ୍ତି ସଂହାରଣ ।।୩୨୯
ଅବିଦ୍ୟା ଯୋଗାମାୟା ନାମ ।
ତା' କର୍ମେ ଯେତେ ଉତପନ୍ନ ।।୩୩୦
ତାହାକୁ ହେତୁ ବୋଲି କହି ।
ଯୋଗମାୟା ଗୁଣରେ ମୋହି।।୩୩୧
ପଞ୍ଚମହାଭୂତରେ ଯୁକ୍ତ ।
ତ୍ରିଗୁଣେ ବ୍ରହ୍ମାଣ୍ଡ ଜଡ଼ିତ ।।୩୩୨
ବ୍ରହ୍ମରୁ ତୃଣ ପରିଯନ୍ତେ ।
ପ୍ରାଣୀ ସମେତ ହୋଇ ଯେତେ ।।୩୩୩
ଉତ୍ପତ୍ତି ସ୍ଥିତି ପ୍ରଳୟନ ।
ଏ ଭାବେ ଦର୍ଶନା ଦର୍ଶନ ।।୩୩୪
ଜାଗ୍ରତ-ସ୍ୱପ୍ନ-ସୁଷୁପ୍ତିରେ ।
ଯେ ସାକ୍ଷୀରୂପେ ନିରନ୍ତରେ ।।୩୩୫
ଜୀବ ବ୍ରହ୍ମାଣ୍ଡ ମଧ୍ୟେ ହୋଇ ।
ପ୍ରକୃତି ଭାବେ ସଞ୍ଚରଇ ।।୩୩୬

ବ୍ରହ୍ମରେ ଲୀନ ହୋଏ ପୁଣ ।
ତାହାକୁ ଅପାଶ୍ରୟ ଜାଣ ।।୩୩୭
ଯେସନେ ଘଟାଦି ପଦାର୍ଥ ।
ମୃତ୍ତିକା ସଙ୍ଗେ ଯୁତାଯୁତ ।।୩୩୮
ପଞ୍ଚତନମାତ୍ରା ସ୍ୱରୂପ ।
ବୀଜାଦି ପଞ୍ଚବର୍ଣ୍ଣ ରୂପ ।।୩୩୯
ଆକାରାଦି ଯେ ବ୍ୟବସ୍ଥାରେ ।
ସଂଯୋଗ ବିଯୋଗ ପ୍ରକାରେ।।୩୪୦
ଆଶ୍ରୟ ଜାଣିବଟି ସେହି ।
ଦଶମ ଲକ୍ଷଣଟି ଏହି ।।୩୪୧
ଏ ସର୍ବ ମାୟାର ବାସନା ।
ସବୁ ବାସୁଦେବ ରଚନା ।।୩୪୨
ଚିତ୍ତ ତ୍ରିଗୁଣରୁ ବାହାରେ ।
ରହଇ ଯେବେ ଯୋଗବଳେ ।।୩୪୩
ଯେବେ ବିରକ୍ତଭାବ ହୋଇ ।
ଯୋଗବଳେ ଆମ୍ଭେ ମିଶଇ ।।୩୪୪
ଜୀବ ପରମରେ ମିଶଇ ।
ଜୀବ ଦେହବନ୍ଧୁ ତରଇ ।।୩୪୫
ଏମନ୍ତେ ଦଶ ଲକ୍ଷଣରେ ।
ଯୁକ୍ତ ପୁରାଣ ମାନଙ୍କରେ ।।୩୪୬
ପୂର୍ବେ ଋଷିମାନ ବୋଲନ୍ତି ।
ପୁରାଣ ଅଷ୍ଟାଦଶ ଗ୍ରନ୍ଥି ।।୩୪୭
ଏଥେ ଅଛନ୍ତି ବଡ଼ସାନ ।
ଶୁଣ ସେ ଅଷ୍ଟାଦଶ ନାମ ।।୩୪୮
ବ୍ରହ୍ମ ଯେ ବିଷ୍ଣୁ ଲିଙ୍ଗ ଶିବ ।
ଗରୁଡ଼ ନାରଦ ଏ ଭାବ ।।୩୪୯
ଆଗ୍ନେୟ ସ୍କନ୍ଦ ଭାଗବତ ।
ଭବିଷ୍ୟ ବ୍ରହ୍ମବଇବର୍ତ୍ତ ।।୩୫୦
ମାରକଣ୍ଡେୟ ଯେ ବାମନ ।
ବରାହ ମତ୍ସ୍ୟ ଯେ କୁରୁମ ।।୩୫୧
ବ୍ରହ୍ମାଣ୍ଡ ପଦ୍ମ ଯେ ପୁରାଣ ।
ଏମନ୍ତେ ଅଷ୍ଟାଦଶ ଜାଣ ।।୩୫୨
ଅଷ୍ଟାଦଶ ପୁରାଣ ସାର ।
ଶ୍ରୀଭାଗବତ ନାମ ଯା'ର ।।୩୫୩
ଏ ଅଷ୍ଟାଦଶ ଯେ ପୁରାଣ ।
ଚାରିଲକ୍ଷ ଏ ଗ୍ରନ୍ଥ ପୁଣ ।।୩୫୪

ଅଷ୍ଟାଦଶ ଉପପୁରାଣ ।
ଏହାଙ୍କ ନାମମାନ ଶୁଣ ।।୩୫୫
ବୃହଦ୍‌ବିଷ୍ଣୁ ନୃସିଂହ ଦୁଇ ।
ବୃହଦ୍ ନୃସିଂହ ଆଦି ତ୍ରୟୀ ।।୩୫୬
ଅଙ୍ଗିରସ ଯେ ବାୟୁ ନନ୍ଦୀ ।
ଇତିହାସ ଅଷ୍ଟମେ ଛନ୍ଦି ।।୩୫୭
ଲଘୁ ଭାଗବତ ପ୍ରକାଶ ।
ଲଘୁଭାରତ ଏହୁ ଦଶ ।।୩୫୮
ଦେବୀପୁରାଣ ଯେ ବରୁଣ ।
କାର୍ତ୍ତିକ ହରିବଂଶ ପୁଣ ।।୩୫୯
କାଳିକା ନାରଦୀୟ ଜାଣ ।
ସୋମ ଭାସ୍କର ଯେ ସଂଖ୍ୟେଣ ।।୩୬୦
ଉପପୁରାଣ ଅଷ୍ଟାଦଶ ।
ଦ୍ୱିଲକ୍ଷ ଗ୍ରନ୍ଥରେ ପ୍ରକାଶ ।।୩୬୧
ମହାଭାରତ ଲକ୍ଷେ ଗ୍ରନ୍ଥ ।
ଅଷ୍ଟାଦଶ ପର୍ବେ ଯନ୍ତ୍ରିତ ।।୩୬୨
ଚତୁର୍ବିଂଶସସ୍ର ଶ୍ଳୋକେଣ ।
ସାତକାଣ୍ଡ ଯେ ରାମାୟଣ ।।୩୬୩
ଚାରିବେଦକୁ ଲକ୍ଷେ କହି ।
ଛତିଶ ଶ୍ରୁତି ଲକ୍ଷେ ହୋଇ ।।୩୬୪
ଷଟଶାସ୍ତ୍ର ଯେ ଷଡ଼ଲକ୍ଷ ।
ନ୍ୟାୟ ମୀମାଂସା ଶାସ୍ତ୍ର ସାଂଖ୍ୟ ।।୩୬୫
ପାତଞ୍ଜଳି ତର୍କଶାସ୍ତ୍ରେଣ ।
ବଇଶେଷିକ ଷଷ୍ଠ ପୁଣ ।।୩୬୬
ଷଡ଼ଙ୍ଗ ଷଡ଼ଲକ୍ଷ ପୁଣ ।
ଶିକ୍ଷାକଳ୍ପ ନିରୁକ୍ତ ଜାଣ ।।୩୬୭
ଛନ୍ଦ ଜ୍ୟୋତିଷ ବ୍ୟାକରଣ ।
ଅଙ୍ଗ ଯେ ଏ ଭାବେ ପ୍ରମାଣ ।।୩୬୮
ଚାରି ଯେ ଉପବେଦପୁଣ ।
ଚାରି ଲକ୍ଷେଣ ସେ ସମ୍ପୂର୍ଣ୍ଣ ।।୩୬୯
ଆୟୁର୍ବେଦ ଯେ ଧନୁର୍ବେଦ ।
ଗାନ୍ଧର୍ବ ଶିଳ୍ପ ଚାରି ଭେଦ ।।୩୭୦
ଆଗମ ମନ୍ତ୍ର ଆଦି ପୁଣ ।
ଦଶଲକ୍ଷ ଗ୍ରନ୍ଥେ ପ୍ରମାଣ ।।୩୭୧
ଏମନ୍ତ ହୋଇ ଜଗତରେ ।
ଶବଦବ୍ରହ୍ମ ସୃଷ୍ଟିକରେ ।।୩୭୨

Dr. Sudhanshu Sekhar Mishra

ଅଷ୍ଟାଦଶ ବିଦ୍ୟାରୂପରେ ।
ପ୍ରକାଶକରେ ଜଗତରେ ।।୩୭୩
ଷଡ଼ ଅଙ୍ଗରେ ଷଡ଼ ହୋଇ ।
ଚାରିବେଦ ମିଶି ଦଶ ।।୩୭୪
ମୀମାଂସା ନ୍ୟାୟ ଯେ ପୁରାଣ ।
ଧର୍ମଶାସ୍ତ୍ର ମନୁବଚନ ।।୩୭୫
ଏଭାବେ ଚତୁର୍ଦ୍ଦଶ ବିଦ୍ୟା ।
ମିଶିଣ ଚାରି ଉପବେଦ୍ୟା ।।୩୭୬
ଏମନ୍ତ ଅଷ୍ଟାଦଶ ହୋଇ ।
ବ୍ରହ୍ମାଣ୍ଡ ମଧ୍ୟେ ବିହରଇ ।।୩୭୭
ସୂତ କହନ୍ତି ତୋଷମନେ ।
ଶୁଣ ହେ ବ୍ରହ୍ମଋଷିମାନେ ।।୩୭୮

ବେଦ ଯେ ଶାଖା ପ୍ରଣୟନ ।
ବିସ୍ତାରି ତୁମ୍ଭର ଆଗେଣ ।।୩୭୯
କହିଲୁ ତୁମ୍ଭର ପ୍ରଶନେ ।
ଶିଷ୍ୟ-ପ୍ରଶିଷ୍ୟ ବିଚାରଣେ ।।୩୮୦
ଏହା ଯେ କର୍ଣ୍ଣରେ ଶୁଣଇ ।
ବ୍ରହ୍ମତେଜ ତା'ର ବଢଇ ।।୩୮୧
ସକଳ କଳୁଷ ନାଶଇ ।
ଅନ୍ତେ ସେ ବଇକୁଣ୍ଠ ପାଇ ।।୩୮୨
ନମଇଁ ବିପ୍ର ଜଗନ୍ନାଥ ।
ଦ୍ୱାଦଶସ୍କନ୍ଧେ ଭାଗବତ ।।୩୮୩
କେବଳ ଆଶାକରେ ଏତେ ।
କୃପାଳୁ କୃପାକର ମୋତେ ।।୩୮୪

ସୁଜନେ ଶୁଣ କର୍ଣ୍ଣଦ୍ୱାରେ ।
ତରିବ ଏ ଭବ-ସଂସାରେ ।।୩୮୫
ସୂତ ଶୌନକର ସମ୍ବାଦ ।
ଶୁଣନ୍ତେ ନ ଲାଗେ ପ୍ରମାଦ ।।୩୮୬
ଶ୍ରୀହରିଚରଣ-ସରୋଜ ।
ଭାବଇ ଜଗନ୍ନାଥ ଦ୍ୱିଜ ।।୩୮୭

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଶୌନକ ପୁଛେ ତୋଷମନେ ।
ସୂତମୁନିଙ୍କ ସନ୍ନିଧାନେ ।।୧
ଶୌନକ ଉବାଚ
ହେ ସୂତ ହୁଅ ଚିରଞ୍ଜୀବୀ ।
ପରମ ସାଧୁଗୁଣ ସେବି ।।୨
ପୁରାଣବକ୍ତା ତୁମ୍ଭେ ଶ୍ରେଷ୍ଠ ।
ଆମ୍ଭେ ମାୟାରେ ପଡ଼ି ନଷ୍ଟ ।।୩
ଅପାର ସମୁଦ୍ରେ ଭ୍ରମିଲୁ ।
ଅନ୍ଧକାରେ ପଡ଼ି ମହିଲୁ ।।୪
ଏଥୁଁ ଆମ୍ଭଙ୍କୁ ଉଦ୍ଧରିବ ।
ସଂସାର ପାର ଦେଖାଇବ ।।୫
ମାର୍କଣ୍ଡେୟ ଆୟୁଷ ବାଣୀ ।
ଜଗତ ଜନମୁଖୁଁ ଶୁଣି ।।୬
କଳ୍ପାନ୍ତେ ପ୍ରଳୟ ଜଳରେ ।
କେମନ୍ତେ ରକ୍ଷା ସେ ପାଇଲେ ।।୭
ଜଗତ ଯେଉଁ ବିଷ୍ଣୁଠାରେ ।
ଜନ୍ମ ଉତ୍ପତ୍ତି ଲୟ ଧରେ ।।୮
ସେ ବିଷ୍ଣୁ ଦର୍ଶନ କେମନ୍ତେ ।
ପାଇଲେ ମାର୍କଣ୍ଡେୟ ଅନ୍ତେ ।।୯
ସେ ଆମ୍ଭ ଭୃଗୁଋଷି ବଂଶେ ।
ଜନମ ମୃକଣ୍ଡଙ୍କ ଅଂଶେ ।।୧୦

ତା'ଙ୍କ ଜନମ ଦିନୁ ପୁଣ ।
ପ୍ରଳୟ ନାହିଁ ସଂସାରେଣ ।।୧୧
କେଉଁ ପ୍ରଳୟ ଅନୁଭବ ।
କଲେ ସେ ମୃକଣ୍ଡସମ୍ଭବ ।।୧୨
ସେ ଏକାର୍ଣ୍ଣବଜଳେ ପୁଣ ।
ଏକାକୀ କଲେ ସନ୍ତରଣ ।।୧୩
ଏକ ପୁରୁଷ ବଟପୁଟେ ।
ଦେଖିଲେ ଆପଣା ନିକଟେ ।।୧୪
ଅଙ୍ଗୁଷ୍ଠ ପ୍ରମାଣେ ପୁରୁଷ ।
ସେ ବଟପତ୍ର ପୁଟେ ବାସ ।।୧୫
ଏହାଙ୍କ ନାମ ଧରି ରାଇ ।
ଲାଗିଲେ ତା'ଙ୍କ ପାଶେ ଯାଇ ।।୧୬
ବାଳକ ଗର୍ଭର ଭିତରେ ।
ଋଷି ପଶିଲେ ପ୍ରଳୟରେ ।।୧୭
ସେ ପ୍ରଳୟରୁ ରକ୍ଷା ପାଇ ।
ଗର୍ଭେ ଅନେକ ଦିନ ରହି ।।୧୮
ବାଳକରୂପୀ ଯେ ପୁରୁଷ ।
ତା'ଙ୍କର ନାମ ଗୁଣ କିସ ।।୧୯
ଆମ୍ଭର ମନରେ ସଂଶୟ ।
ସେ କଥା ଆମ୍ଭ ଆଗେ କହ ।।୨୦

ଏ ମାୟା କୁତୂହଳ କଥା ।
କହିଣ ଛେଦ ମନବ୍ୟଥା ।।୨୧
ତୁମ୍ଭେ ପରମଯୋଗୀ ଯେଣୁ ।
କୁଶଳ ପୁରାଣରେ ତେଣୁ ।।୨୨
ଏମନ୍ତ ଶୌନକଙ୍କ ବାଣୀ ।
ସୂତ କହନ୍ତି ତାହା ଶୁଣି ।।୨୩
ସୂତ ଉବାଚ
ହେ ମହାଋଷିମାନେ ଶୁଣ ।
ପୁଛିଲ ଯେ ଅବା ପ୍ରଶନ ।।୨୪
ପ୍ରାଣୀଙ୍କି ସୁଧା ଯେଉଁ ବାଣୀ ।
କରନ୍ତି ଶ୍ରମ ଦୂର ପୁଣି ।।୨୫
ନାରାୟଣର କଥାମାନ ।
ଯହିଁରେ ହୋଇଛି ବଖାଣ ।।୨୬
କଳିଯୁଗର ମୋହ ନାଶେ ।
ତାହା କହିବା ଶୁଣ ତୋଷେ ।।୨୭
ବ୍ରହ୍ମାଙ୍କ ପୁତ୍ର ଭୃଗୁମୁନି ।
ଧାତା ବିଧାତା ସୁତ ବେନି ।।୨୮
ବିଧାତା ସୁତ ଯେ ମୃକଣ୍ଡ ।
ଏହାଙ୍କ ସୁତ ମାରକଣ୍ଡ ।।୨୯
ଜନ୍ମଲଭିଲେ ଏ ସଂସାରେ ।
ଆୟୁଷ ନବ ବରଷରେ ।।୩୦

Dr. Sudhanshu Sekhar Mishra

ବ୍ରାହ୍ମଣ କର୍ମରେ ସଂସ୍କାର ।
ପିତା ତା କଲେ ତପୀବର ॥୩୧
ବେଦମାନଙ୍କୁ ସେ ପଢିଲେ ।
ବ୍ରହ୍ମଚର୍ଯ୍ୟେ ପିତୃ ସେବିଲେ ॥୩୨
ପିତୃସେବା ସକାଶୁ ପୁଣ ।
ଆୟୁ ସପତକଳ୍ପ ଜାଣ ॥୩୩
ବ୍ରହ୍ମଚର୍ଯ୍ୟ ବ୍ରତ ସେ କଲେ ।
ଶାନ୍ତ ସମଚିତ୍ତ ଭଜିଲେ ॥୩୪
ଜଟାଧାରୀ ବଲ୍କଳ ପିନ୍ଧି ।
ହସ୍ତେ କମଣ୍ଡଳୁ ତ୍ରିଦଣ୍ଡି ॥୩୫
ଯଜ୍ଞୋପବୀତ କନ୍ଧେ ଶୋହେ ।
କୁଶ ମେଖଳା କଟୀ ମୋହେ ॥୩୬
କନ୍ଧେ କୃଷ୍ଣାଜିନ ଉତ୍ତରୀ ।
ରୁଦ୍ରାକ୍ଷ କଣ୍ଠ ହସ୍ତେ ଭରି ॥୩୭
ହସ୍ତରେ କୁଶ ଯେ ପବିତ୍ର ।
ଏମନ୍ତେ ବ୍ରହ୍ମଚର୍ଯ୍ୟ ବ୍ରତ ॥୩୮
ଅଗ୍ନି ସୂର୍ଯ୍ୟ ଗୋରୁ ବ୍ରାହ୍ମଣ ।
ଗୁରୁ ବିଷ୍ଣୁପାଦେ ସେବିଣ ॥୩୯
ସାୟଂ ପ୍ରାତଃ ଦୁଇ ସନ୍ଧ୍ୟାରେ ।
ଗୁରୁଙ୍କ ପାଦ ସେବାକଲେ ॥୪୦
ଭିକ୍ଷାଅନ୍ନ ଗୁରୁଙ୍କ ପାଶେ ।
ଆଣି ସେ ଦିଅନ୍ତି ସନ୍ତୋଷେ ॥୪୧
ସେ ଅନ୍ନ ଗୁରୁଆଜ୍ଞା ପାଇ ।
ଭୋଜନ କରେ ତୋଷ ହୋଇ ॥୪୨
ଏ ରୂପେ ବେଦ ଯେ ଅଭ୍ୟାସି ।
ଅନ୍ୟଥା ହୁଏ ଉପବାସୀ ॥୪୩
ବେଦାଧ୍ୟୟନ ଏହିମତେ ।
ବତ୍ସର ଦଶକୋଟି ଗତେ ॥୪୪
ସେ ବାସୁଦେବ ଆରାଧନା ।
ଧ୍ୟାନେ ଧଇଲେ ଏ ଧାରଣା ॥୪୫
ଏମନ୍ତେ ମୃତ୍ୟୁକୁ ଜିଣିଲେ ।
ଯେଣୁ ନାରାୟଣ ଜାଣିଲେ ॥୪୬
ବ୍ରହ୍ମା ମହେଶ ଭୃଗୁ ଦକ୍ଷ ।
ପିତୃ ଭୂତାଦି ଗଣ ରକ୍ଷ ॥୪୭
ବ୍ରହ୍ମପୁତ୍ର ଦେବ ମନୁଷ୍ୟ ।
ଯେ ତପୀ ବ୍ରହ୍ମଚାରୀ ଅଂଶ ॥୪୮

ଦେଖିଣ ବିସ୍ମୟ ହୋଇଲେ ।
ମନରେ ଭୟ ଜାତ କଲେ ॥୪୯
ବ୍ରହ୍ମଚର୍ଯ୍ୟ ବ୍ରତ ଧରିଣ ।
ତପସ୍ୟା ବେଦ ଅଧ୍ୟୟନ ॥୫୦
ମନ ପବନ ଯୋଗବଳେ ।
ରହିଲେ ଆସନ ନିଶ୍ଚଳେ ॥୫୧
ସଂଯମେ ରହି ବିଷ୍ଣୁପାଦେ ।
ଯୋଗ ଅଭ୍ୟାସେ ଧ୍ୟାନେ ହୃଦେ॥୫୨
ଅନ୍ତରାତ୍ମାରେ ଧ୍ୟାନ କଲେ ।
ସକଳ କ୍ଳେଶ ପାସୋରିଲେ ॥୫୩
ଏମନ୍ତ ପ୍ରକାରରେ ପୁଣ ।
ବାସୁଦେବଙ୍କୁ କଲେ ଧ୍ୟାନ ॥୫୪
ଏମନ୍ତେ ଷଟ ମନ୍ୱନ୍ତରେ ।
ବୈବସ୍ୱତମନୁ ସପ୍ତରେ ॥୫୫
ତା'ଙ୍କ ସମୟେ ପୁରନ୍ଦର ।
ନାମ ଯେ ଅଟଇ ଇନ୍ଦ୍ରର ॥୫୬
ମାରକଣ୍ଡେୟ ତପ ଦେଖି ।
ଶଙ୍କା ମନରେ ହୋଇ ଦୁଃଖୀ ॥୫୭
ଏ ବିଚାରରେ ପୁରନ୍ଦର ।
ରାଇ ଗନ୍ଧର୍ବ ପଞ୍ଚଶର ॥୫୮
ଅପ୍ସରାଗଣଙ୍କୁ ଡ଼କାଇ ।
କହେ କନ୍ଦର୍ପ ମୁଖ ଚାହିଁ ॥୫୯
ବସନ୍ତ ମଳୟପବନ ।
ଷଡ଼ଋତୁଙ୍କ ସମେତେଣ ॥୬୦
ଲୋଭ ମୋହ ମଦ ମତ୍ସର ।
ସଙ୍ଗେ ଘେନି ଚଳ ସତ୍ୱର ॥୬୧
ତାଙ୍କର ତପ ଭଗ୍ନକର ।
ଆଜ୍ଞା ପ୍ରମାଣେ ଚଳେ ମାର ॥୬୨
ମାର୍କଣ୍ଡ ଆଶ୍ରମେ ପ୍ରବେଶ ।
ହିମବନ୍ତ ଉତ୍ତରପାଶ ॥୬୩
ନଦୀର ପୁଷ୍ପଭଦ୍ରା ନାମ ।
ଚିତ୍ରଶିଳା ନାମେ ଯେ ସ୍ଥାନ ॥୬୪
ଆଶ୍ରମ ମାର୍କଣ୍ଡେୟ ତହିଁ ।
ସେ ସ୍ଥାନେ କିଛି ଭୟ ନାହିଁ ॥୬୫
ସେ ଋଷି ଆଶ୍ରମ ମହିମା ।
ଅଶେଷ ସୁଖାଳୟ ସୀମା ॥୬୬

ପୂର୍ଣ୍ଣ ସେ ବୃକ୍ଷଲତାଦିରେ ।
ବେଷ୍ଟିତ ସୁଗନ୍ଧ ପୁଷ୍ପରେ ॥୬୭
ପୁଷ୍ପଶ୍ରେଣୀର ଶୋଭା ଘେନି ।
ନିର୍ମଳଜଳ ପୁଷ୍କରିଣୀ ॥୬୮
ମତ୍ତଭ୍ରମରେ ପୁଷ୍ପବାସେ ।
ମକରନ୍ଦପାନ ହରଷେ ॥୬୯
ମତ୍ତ-କୋକିଳ କରେ ଧ୍ୱନି ।
ମତ୍ତ-ମୟୂର ନୃତ୍ୟେ ଭ୍ରମି ॥୭୦
ଉଲ୍ଲଷେ ନାନା ପଶୁଗଣେ ।
ସର୍ବେ ଆନନ୍ଦ ସେହୁ ବନେ ॥୭୧
ଏମନ୍ତେ ଇନ୍ଦ୍ରଦୂତମାନେ ।
ମିଳିଲେ ଋଷି-ତପସ୍ଥାନେ ॥୭୨
ପବନ ମଦଗନ୍ଧ ଘେନି ।
ଶୀତଳ ହିମଜଳ ଆଣି ॥୭୩
ପୁଷ୍ପବାସରେ ଯୁକ୍ତ ହୋଇ ।
ବହଇ ମଳୟ ପୂରାଇ ॥୭୪
କାମ ଉଦିତ ନାନାମତେ ।
ଆଚ୍ଛନ୍ନକଲେ ଇନ୍ଦ୍ରଦୂତେ ॥୭୫
ପୂର୍ଣ୍ଣ ଚନ୍ଦ୍ରମା ଉଦେ ହୋଇ ।
ନବପଲ୍ଲବେ ଶୋଭା ପାଇ ॥୭୬
ବସନ୍ତ ଆଦି ଷଡ଼ଋତୁ ।
ଏ ସର୍ବେ ତପଭଗ୍ନ ହେତୁ ॥୭୭
ଗନ୍ଧର୍ବ ଅପସରା ଆଦି ।
କନ୍ଦର୍ପ ପୁଷ୍ପବାଣ ସନ୍ଧି ॥୭୮
ଲୋଭ ମୋହ ଅଙ୍ଗେ ଭେଦିଲା ।
ରତିସଙ୍କେତ ଦେଖାଇଲା ॥୭୯
ମାରକଣ୍ଡେୟ ସନ୍ଧ୍ୟା ସାରି ।
ଅଗ୍ନିହୋତ୍ରରେ ସେବାକରି ॥୮୦
ଯୋଗଧ୍ୟାନରେ ବସିଛନ୍ତି ।
ଏମନ୍ତେ କନ୍ଦର୍ପେ ଭେଦନ୍ତି ॥୮୧
ସେ ମାରକଣ୍ଡ ଯୋଗଧ୍ୟାନେ ।
ଚିନ୍ତେ ବାସୁଦେବ ଚରଣେ ॥୮୨
ଅତ୍ୟନ୍ତ ଯେ ଜାଜ୍ୱଲ୍ୟମାନ ।
ଅଗ୍ନିମୂର୍ତ୍ତିରେ ଶୋଭାବନ ॥୮୩
ସେ ଋଷିଆଗେ ଇନ୍ଦ୍ରଦୂତେ ।
ଆଚ୍ଛନ୍ନ କଲେ ଯେଝାମତେ ॥୮୪

Dr. Sudhanshu Sekhar Mishra

ଗନ୍ଧର୍ବ ଅପସରା ନୃତ୍ୟ ।
ମୃଦଙ୍ଗ ବୀଣା ନାନାଯନ୍ତ୍ର ॥୮୫
ପୁଷ୍ପଧନୁରେ ପଞ୍ଚଶର ।
କାମ ଭେଦେ ଋଷିହୃଦର ॥୮୬
ମଧୁ ମାଧବାଦି ଯେତେକ ।
ତପଭଗ୍ନେ ଇନ୍ଦ୍ର ସେବକ ॥୮୭
ପୁଞ୍ଜିକଷ୍ଠଳୀ ଅପସରା ।
ସାରଣୀ ଘେନି ଖେଳୁଥିଲା ॥୮୮
କବରୀ ଫିଟିଲା ତାହାର ।
ସାରଣୀ ଖସିଗଲା ଦୂର ॥୮୯
ବାମ ଡ଼ାହାଣେ ଚକ୍ଷୁ ଢାଳି ।
କବରୀ ବାନ୍ଧେ ଭୁଜ ଟୋଳି ॥୯୦
ପିନ୍ଧିଲା ବସ୍ତ୍ର ଖସି ତଳେ ।
ପବନ ଉଡ଼ାଇ ତା' ନେଲେ ॥୯୧
ଏମନ୍ତ ସମୟେ ମଦନ ।
ପୁଷ୍ପଶର ମାରେ ବେଗେଣ ॥୯୨
ଏ ସର୍ବ ବିଅର୍ଥ ହୋଇଲେ ।
ଋଷି ଅଙ୍ଗରେ ନ ଭେଦିଲେ ॥୯୩
ଯେଣୁ ସେ ବିଷ୍ଣୁପାଦ ଧ୍ୟାୟି ।
ଏକାଗ୍ରଚିତ୍ତେ ଲୟେ ରହି ॥୯୪
ଋଷିଙ୍କ ଅପକାର ଭାବେ ।
ଦଗ୍ଧ ସେ ହୁଅନ୍ତି ସ୍ୱଭାବେ ॥୯୫
ଏଣୁ ସତ୍ୱରେ ଲେଉଟିଲେ ।
ଇନ୍ଦ୍ରର ଭୁବନେ ମିଳିଲେ ॥୯୬
ସର୍ପକୁ ଚାହିଁଣ ଯେସନେ ।
ବାଳକେ ପଳାଅନ୍ତି ଛନେ ॥୯୭
ଏ ଭାବେ ଇନ୍ଦ୍ରଦୂତେ ମୋହି ।
ସେ ଗୁଣେ ମୁନିଖେଦ ନାହିଁ ॥୯୮
ଗୋବିନ୍ଦଚରଣ ଧ୍ୟାନରେ ।
ଲେଶମାତ୍ରକ ନ ଛାଡ଼ିଲେ ॥୯୯
ଯା' ନାମ ହୃଦୟରେ ଭାବି ।
ଜନ୍ମ ମୃତ୍ୟୁ ଭୟ ନ ଲଭି ॥୧୦୦
ଯେ ତାଙ୍କୁ ନିମଗ୍ନେ ଭଜଇ ।
ସଂସାର-ଦୁସ୍ତରୁ ତରଇ ॥୧୦୧
ତା' ପାଦ ହୃଦେ ଧ୍ୟାୟୁଥିଲେ।
ଏଣୁ ସେ ବିଘ୍ନେ ନ ବାଧିଲେ ॥୧୦୨

ଏ ବଡ଼ ବିଚିତ୍ର ନୁହଇ ।
ଯା' ଚିତ୍ତ ବିଷ୍ଣୁପାଦେ ଥାଇ ॥୧୦୩
କାମାଦି ଯେତେ ଦେବଗଣ ।
କହିଲେ ଇନ୍ଦ୍ରର ଆଗେଣ ॥୧୦୪
ଇନ୍ଦ୍ର ତା ଶୁଣିଣ ଜାଣିଲେ ।
ବଡ଼ ବିସ୍ମୟ ମନେ କଲେ ॥୧୦୫
ଏମନ୍ତ ପ୍ରକାରେ ସେ ଋଷି ।
ବାସୁଦେବେ ଚିତ୍ତ ନିବେଶି ॥୧୦୬
ତପସାଧନ ସଂଯତରେ ।
ସମଭାବ ବହି ମନରେ ॥୧୦୭
ଏମନ୍ତ ଭକ୍ତି ତା'ର ଜାଣି ।
ସେ ବାସୁଦେବ ଚକ୍ରପାଣି ॥୧୦୮
ତାହାଙ୍କୁ ଅନୁଗ୍ରହ କଲେ ।
ନରନାରାୟଣ ହୋଇଲେ ॥୧୦୯
ଦର୍ଶନ ମାରକଣ୍ଡେ ଦେଲେ ।
ଶୁକ୍ଳ କୃଷ୍ଣ ଦୁଇ ବର୍ଣ୍ଣରେ ॥୧୧୦
ନବୀନ ପଦ୍ମ ପ୍ରାୟ ଅକ୍ଷ ।
ଚତୁର୍ଭୁଜ ହୃଦେ ଶ୍ରୀବତ୍ସ ॥୧୧୧
ବକଳ କୃଷ୍ଣାଜିନ ପିନ୍ଧି ।
ତପଚାରୀ ବେଶେ ଆନନ୍ଦୀ ॥୧୧୨
ଉତ୍ତରୀ କନ୍ଧେ ସୁଶୋଭନ ।
ହସ୍ତରେ ପବିତ୍ର ଗ୍ରହଣ ॥୧୧୩
ତ୍ରିଗୁଣ ପଇତା କନ୍ଧେଣ ।
କମଣ୍ଡଳୁ ହସ୍ତେ ଶୋଭନ ॥୧୧୪
ବେଣୁର ତ୍ରିଦଣ୍ଡ କନ୍ଧରେ ।
ପଦ୍ମ ରୁଦ୍ରାକ୍ଷ ହୃଦୟରେ ॥୧୧୫
ବିଦ୍ୟୁତ ପ୍ରାୟ ଜଟା ଶିରେ ।
ସ୍ୱଭାବେ ତପସ୍ୱୀ ବେଶରେ ॥୧୧୬
ଆଜାନୁ ଲମ୍ବେ ବେନିଭୁଜ ।
ଏମନ୍ତ ରୂପେ ଦେବରାଜ ॥୧୧୭
ଦେବତାଗଣରେ ପୂଜିତ ।
ପ୍ରବେଶ ମାର୍କଣ୍ଡ ଅଗ୍ରତ ॥୧୧୮
ସେ ନରନାରାୟଣେ ଦେଖି ।
ମାର୍କଣ୍ଡ ଆସନ ଉପେକ୍ଷି ॥୧୧୯
ସାଷ୍ଟାଙ୍ଗେ ପ୍ରଣମି ଚରଣେ ।
ଦଣ୍ଡବତ ସ୍ତୁତିବଚନେ ॥୧୨୦

ତା'ଙ୍କ ଦର୍ଶନେ ଆନନ୍ଦରେ ।
ରୋମପୁଲକ ପ୍ରେମଭରେ ॥୧୨୧
ଆତ୍ମା ଇନ୍ଦ୍ରିୟଗଣ ମନ ।
ଚକ୍ଷୁ ଲୋତକେ ହୋଏ ପୂର୍ଣ୍ଣ॥୧୨୨
ତା'ଙ୍କ ଜ୍ୟୋତିର ତେଜ ଦେଖି ।
ସମର୍ଥ ନୁହଇ ଯେ ଆଖି ॥୧୨୩
ମନ ଉତ୍ସୁକେ କୃତାଞ୍ଜଳୀ ।
ଆଲିଙ୍ଗନ ପ୍ରାୟ ପ୍ରସାରି ॥୧୨୪
ବଚନେ ନମୋନମୋ ସ୍ତୁତି ।
ଗଦଗଦେ ବାଣୀ ଭାଷନ୍ତି ॥୧୨୫
ଉତ୍ତମ ଆସନେ ବସାଇ ।
ଚରଣ ଧୋଇଣ ପିଅଇ ॥୧୨୬
ସିଞ୍ଚନ ଶିରଗାତ୍ରେ କରି ।
ଷଡ଼ଅର୍ଘ୍ୟେ ପୂଜା ଆଚରି ॥୧୨୭
ଚନ୍ଦନ ଧୂପ ଦୀପ ପୁଷ୍ପ ।
ପୂଜିଲେ ମୃକଣ୍ଡଙ୍କ ଶିଷ୍ୟ ॥୧୨୮
ସନ୍ତୋଷେ ପ୍ରସନ୍ନ ବଦନ ।
ହୋଇଲେ ନରନାରାୟଣ ॥୧୨୯
ମୁନି ଯେ ଦଣ୍ଡବତ ପୁଣି ।
ବିଷ୍ଣୁ ତୋଷିଷ ସ୍ତୁତି ଭଣି ॥୧୩୦

### ମାର୍କଣ୍ଡେୟ ଉବାଚ

ହେ ପ୍ରଭୁ ତୁମ୍ଭର ମହିମା ।
ମୁଁ କିସ ବର୍ଣ୍ଣିବି ଯେ ସୀମା ॥୧୩୧
ଯାହାର ଅଂଶୁ ପ୍ରାଣୀମାନେ ।
ପ୍ରବେଶ ସୃଷ୍ଟି ସରଜନେ ॥୧୩୨
ଯେ ଦେହେ ପ୍ରବେଶ ହୋଇଣ ।
ମନ ଇନ୍ଦ୍ରିୟଗଣମାନ ॥୧୩୩
ସଂସାର ଚେଷ୍ଟା କରୁଛନ୍ତି ।
ସର୍ବ ଅନୁଭବ କରନ୍ତି ॥୧୩୪
ଯହିଁ ଜୀବରୂପେ ଥାଇଣ ।
ଅନୁଭବ ତୁମ୍ଭ ଭାବେଣ ॥୧୩୫
ଏ ଦୁଇ ଲୋକ ଯେ ତୁମ୍ଭର ।
ତ୍ରୈଲୋକ୍ୟ ମଙ୍ଗଳ ଈଶ୍ୱର ॥୧୩୬
ପ୍ରାଣୀ ଜନ୍ମମୃତ୍ୟୁ ନାଶନେ ।
ବସିଛ ବଦରିକାଶ୍ରମେ ॥୧୩୭

Dr. Sudhanshu Sekhar Mishra

ନାନା ରୂପେ ପ୍ରାଣୀ ସର୍ଜନ ।
କରିଣ ସବୁଠାରୁ ଭିନ୍ନ ॥୧୩୮
ଉର୍ଣ୍ଣନାଭ ସୂତ୍ରେ ଯେସନ ।
ସଂହରେ ଗୃହ କରି ପୁଣ ॥୧୩୯
ଏ ଭାବେ ଜଗତ ପ୍ରଚରି ।
ମାୟା ଘେନି ତହିଁ ବିହରି ॥୧୪୦
ସଂସାରେ ଥାଇ ଯେଉଁମାନେ।
ନିତ୍ୟେ ଭଜନ୍ତି ତୋ' ଚରଣେ ॥୧୪୧
ଏକାଗ୍ରେ ତୋ' ପାଦେ ସେବନ୍ତି ।
ଜନ୍ମ ମୃତ୍ୟୁରୁ ତରିଯା'ନ୍ତି ॥୧୪୨
ଯେ ତୁମ୍ଭ ମାୟା ପାର ହୋଇ।
ସେ ତୁମ୍ଭ ଚରଣେ ଭଜଇ ॥୧୪୩
ତୋର ଚରଣ ଆଶ୍ରେ ବିନୁ ।
ନ ତରେ ଏଭବ ବନ୍ଧନୁ ॥୧୪୪
ଅଜ୍ଞାନ ସଂସାର ନିରତ ।
ଜାଣି ଭଜିଲେ ଯୋଗୀପଥ ॥୧୪୫
ତୁମ୍ଭ ଦେଲାରୁ ଚତୁର୍ମୁଖ ।
ଭୋଗ କରଇ ବ୍ରହ୍ମସୁଖ ॥୧୪୬
ଦୁଇପରାର୍ଦ୍ଧ ଆୟୁ ପାଇ ।
ତା' ଶିରେ କାଳ ବସିଛଇଁ ॥୧୪୭
ସମୟେ ତା'କୁ ସଂହାରଇ ।
ଏମନ୍ତ ବନ୍ଧ ମାୟାମୟୀ ॥୧୪୮
ଏଥେ ଯେ ପ୍ରାଣୀ ଜଡ଼ିଛନ୍ତି ।
ତୋତେ ଅଜ୍ଞାନେ ନ ଜାଣନ୍ତି ॥୧୪୯
ଯେ ଭଜେ ତୋ' ଚରଣ ଆଶେ।
ସେ ମାୟା ବନ୍ଧନେ ନ ମିଶେ ॥୧୫୦
ଏମନ୍ତ ଚରଣରେ ମୁହିଁ ।
ନିରତେ ଭଜନ କରଇ ॥୧୫୧
ତୋ' ମାୟା ମୋର ମନେ ଥାଇ।
ଦେହାଦି ଅଭିମାନ ବହି ॥୧୫୨
ମୋ' ଦେହ ଜନ୍ମ ସେ କରିଛି।
ସେ ମାୟା ମୋ'ର ମନୁ ଲେଛି ॥୧୫୩
ଚରଣାରବିନ୍ଦେ ଲଗାଅ ।
ତୁମ୍ଭ ମାୟାରୁ ଫେଡ଼ିଦିଅ ॥୧୫୪
ସତ୍ତ୍ୱ ରଜ ତମ ତ୍ରିଗୁଣେ ।
ବ୍ରହ୍ମା ବିଷ୍ଣୁ ମହେଶ ଜନ୍ମେ ॥୧୫୫
ସେ ରୂପ ବହିଁଣ ସଂସାର ।
ସୃଷ୍ଟି ସ୍ଥିତି ପ୍ରଳୟକର ॥୧୫୬
ଏ ମାୟା ଲୀଳାର ବିହାର ।
କେବଳ ତୋ'ର ଖେଳଘର ॥୧୫୭
ତୁମ୍ଭେ ଯେ କରୁଣାସାଗର ।
ତେଣୁ ଶରଣ ଅଟ ମୋ'ର ॥୧୫୮
ତୁମ୍ଭେ ଯେ ଶୁଦ୍ଧ ଶୁକ୍ଳ ବର୍ଣ୍ଣ ।
ନିର୍ଗୁଣରୂପୀ ନରୋତ୍ତମ ॥୧୫୯
ଯେ ପ୍ରାଣୀ ତୁମ୍ଭଙ୍କୁ ଭଜନ୍ତି ।
ତ୍ରିଗୁଣ ବନ୍ଧନୁ ତରନ୍ତି ॥୧୬୦
ମୁକ୍ତ ହୋଇ ଚରଣେ ଲୀନ ।
ବୈକୁଣ୍ଠେ ସୁଖେ ଲଭେ ସ୍ଥାନ ॥୧୬୧
ବ୍ରହ୍ମା ସମ୍ପଦେ ସୁଖ ନାହିଁ ।
ତୋର ଚରଣ ରସ ପାଇ ॥୧୬୨
ଭକତ ପୁରୁଷ ଉତ୍ତମ ।
ପରମଗୁରୁ ବିଶ୍ୱଧାମ ॥୧୬୩
ନାରାୟଣ ଯେ ନରୋତ୍ତମ ।
ନିଗମେଶ୍ୱର ନିରୁପମ ॥୧୬
ହେ ପ୍ରଭୁ ଯୋଗାରୂଢ଼ବର ।
ତୁମ୍ଭଙ୍କୁ ମୋର ନମସ୍କାର ॥୧୬୫
ଉପନିଷଦେ ବ୍ରହ୍ମଭାଗ ।
ବେଦବଚନେ ହବିର୍ଭାଗ ॥୧୬୬
ଦେବେ ଯା' ନାମ ଭଜୁଛନ୍ତି।
ଭାବେଣ ଯଶକର୍ମ ସ୍ତୁତି ॥୧୬୭
ସାକ୍ଷାତ ଗୁରୁ ଜଗତର ।
ଯେ ନାରାୟଣ ଅବତାର ॥୧୬୮
ଇନ୍ଦ୍ରିୟ ହୃଦ ଦୃଷ୍ଟିପଥେ ।
ମୋହିତ ତୁହି ଅବିରତେ ॥୧୬୯
ତୋ'ର ମାୟାରେ ମୂଢ଼ମତି ।
ତୋ'ତେ ସେ ଜାଣି ନ ପାରନ୍ତି ॥୧୭୦
ତୋ' ବେଦପଥ ଆଶ୍ରେ କଲେ ।
ଜାଣି ପାରନ୍ତି ତୋତେ ଭଲେ॥୧୭୧
ଯାହାର ଦରଶନ ଭାବେ ।
ବେଦ ତତ୍ତ୍ୱଭାବେଣ ସେବେ ॥୧୭୨
ଦେଖିବା ଅର୍ଥେ ମୋହି ହେଲେ ।
ଅର୍ଥବାଦେ ସୂକ୍ଷ୍ମେ ବିଭୋଳେ ॥୧୭୩
ତୁମର ସ୍ୱରୂପ ରହସ୍ୟ ।
ବେଦରେ ହୋଇଛି ପ୍ରକାଶ ॥୧୭୪
କବିମାନେ ପାଦେ ନିମଜ୍ଜି ।
ଆଗମେ ନ ପାରନ୍ତି ହେଜି ॥୧୭୫
ଅଷ୍ଟାଙ୍ଗଯୋଗ ସାଧନରେ ।
ଦର୍ଶନ ଅର୍ଥେ ଯତ୍ନ କରେ ॥୧୭୬
ମୋହିତ ହୁଅନ୍ତି ତମରେ ।
ଦର୍ଶନ ନ ପାରି ସୂକ୍ଷ୍ମରେ ॥୧୭୭
ସକଳ ବେଦବାକ୍ୟଶୀଳ ।
ତୁମ୍ଭେ ଯେ ନିର୍ଗୁଣ ଶରୀର ॥୧୭୮
ହେ ମହା ପରମପୁରୁଷ ।
ସର୍ବ ଆତ୍ମାରୂପେ ପ୍ରକାଶ ॥୧୭୯
ଦର୍ଶନ ଦେଇଣ ସାକ୍ଷାତେ ।
ନମସ୍କାର ତୋ' ପାଦଗତେ ॥୧୮୦
ସେ ମାରକଣ୍ଡ ମହାମୁନି ।
ଅନେକ ସ୍ତୁତିବାକ୍ୟ ଭଣି ॥୧୮୧
ନମଇଁ ବିପ୍ର ଜଗନ୍ନାଥ ।
ଉଦ୍ଧର ଶଙ୍ଖଚକ୍ରହସ୍ତ ॥୧୮୨
ତୁମ୍ଭର ଚରଣକମଳେ ।
ମୋ ମନ ରହୁ ସୁନିଶ୍ଚଳେ ॥୧୮୩

ଇତି ଶ୍ରୀମଦ୍ ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ଅଷ୍ଟମୋଽଧ୍ୟାୟ ॥

---

Dr. Sudhanshu Sekhar Mishra

## ନବମ ଅଧ୍ୟାୟ

ସୂତ ଉବାଚ

ସୂତ ପୌରାଣିକ କହନ୍ତି ।
ଶୁଣ ଶୌନକ ଆଦି ଯତି ॥୧
ଏହି ପ୍ରକାରେ ମାର୍କଣ୍ଡେୟ ।
କଲେ ବହୁ ସ୍ତୁତି ବିନୟ ॥୨
ନର ନାରାୟଣ ତା' ଶୁଣି ।
ସନ୍ତୋଷ ଭାବେ କହି ବାଣୀ ॥୩

ଭଗବାନ ଉବାଚ

ହେ ବ୍ରହ୍ମଋଷି ତପୋନିଷ୍ଠ ।
ସମାଧି ଯୋଗେ ଜ୍ଞାନୀ ଅଟ ॥୪
ତେଣୁ ତୁମ୍ଭେ ସିଦ୍ଧ ହୋଇଲ ।
ନିଶ୍ଚଳ ଭକ୍ତିରେ ଭଜିଲ ॥୫
ମୋ' ଠାରେ ତପଜ୍ଞାନବଳେ ।
ବେଦାଧ୍ୟୟନ ସଂଯମରେ ॥୬
ଆମ୍ଭେ ଯେ ସନ୍ତୋଷ ହୋଇଲୁ ।
ବ୍ରତ-ଆଚାର-ତପ ବଳୁ ॥୭
ଏବେ ହୋ ବର ମାଗ ତୁମ୍ଭେ ।
ଯାହା ମାଗିବ ଦେବୁ ଆମ୍ଭେ ॥୮
ମନୋରଥ ପୂର୍ଣ୍ଣ କରିଣ ।
କୁଶଳେ ବର ମାଗି ଘେନ ॥୯
ବିଷ୍ଣୁ ବଦନୁଁ ଏହା ଶୁଣି ।
କହନ୍ତି ମାରକଣ୍ଡ ମୁନି ॥୧୦

ମାର୍କଣ୍ଡେୟ ଉବାଚ

ହେ ଦେବ ଦେବ ନାରାୟଣ ।
ସକଳ ଜଗତ କାରଣ ॥୧୧
ଶରଣାପନ୍ନ ତାପ ହର ।
ବିପତ୍ତି ପାପ କ୍ଷୟ କର ॥୧୨
ପରମପଥ ଦେଖାଇଲ ।
କୃତାର୍ଥ ପ୍ରଭୁ ମୋତେ କଲ ॥୧୩
ବରେ ମୋ' କିବା ପ୍ରୟୋଜନ ।
ଯେଣୁ ଦେଖିଲି ତୋ' ଚରଣ ॥୧୪
ତୁମ୍ଭର ଚରଣକୁ ଧ୍ୟାୟି ।
ଶ୍ରୀପଦେ ଆମ୍ଭାକୁ ମିଶାଇ ॥୧୫
ତୁମ୍ଭ ଦର୍ଶନ ପାଇଲଇଁ ।
ଅନ୍ୟ କି ବର ମାଗିବଇଁ ॥୧୬
ଅଷ୍ଟାଙ୍ଗଯୋଗ ଧାରଣାରେ ।
ଦେଖନ୍ତି ଦେହର ଭିତରେ ॥୧୭
ଯାହାର ଚରଣକୁ ଧ୍ୟାୟି ।
ପରମପଦ ବ୍ରହ୍ମା ପାଇ ॥୧୮
ସେ ତୁମ୍ଭେ ମୋ ଚକ୍ଷୁ ଗୋଚରେ ।
ଦର୍ଶନ ଦେଲ ସାକ୍ଷାତରେ ॥୧୯
ହେ ପଦ୍ମନେତ୍ର ଚକ୍ରପାଣି ।
ହେ ପୁଣ୍ୟଶ୍ଳୋକ ଶିଖାମଣି ॥୨୦
ତୁମ୍ଭର ଅନୁଗ୍ରହ ହେବ ।
ମାୟା ମହିମା ଦେଖାଇବ ॥୨୧
ଯେ ମାୟା ସକଳ ଲୋକରେ ।
ଲୋକପାଳାଦି ବଶ କରେ ॥୨୨
ସୂତ କହନ୍ତି ମୁନି ଆଗେ ।
ମାର୍କଣ୍ଡ ବିନୟ ଯେ ଭାବେ ॥୨୩
ପ୍ରସନ୍ନେ କହି ଭଗବାନ ।
ଏ ତୋ'ର ବାଞ୍ଛା ହେଉ ପୂର୍ଣ୍ଣ ॥୨୪
ମାୟା ମହିମା ମୋର ଦେଖ ।
ଏ ଅନ୍ତେ ଲଭ ସର୍ବ ସୁଖ ॥୨୫
ଏମନ୍ତ କହି ବଦ୍ରିସ୍ଥାନେ ।
ବିଜୟ ନରନାରାୟଣେ ॥୨୬
ତହୁଁ ମାର୍କଣ୍ଡେୟ ଆଶ୍ରମେ ।
ରହିଲେ ବାସୁଦେବ ଧ୍ୟାନେ ॥୨୭
ଜଳ ପବନ ଯେ ଆକାଶ ।
ଭୂ ଅଗ୍ନି ପଞ୍ଚଭୂତେ ବାସ ॥୨୮
ସ୍ଥାବର ଜଙ୍ଗମ ପତଙ୍ଗ ।
କୀଟାଦି ଚାରିଖାନି ଅଙ୍ଗ ॥୨୯
ସବୁ ବାସୁଦେବ ସ୍ୱରୂପେ ।
ଧ୍ୟାନ କରନ୍ତି ଲୟ କଳ୍ପେ ॥୩୦
ଭାବଯୁକ୍ତ ହୋଇ ମନରେ ।
ଭାବଦ୍ରବ୍ୟେ ପୂଜେ ବିଷ୍ଣୁରେ ॥୩୧
କେବେ ବା ପ୍ରେମେ ବିହ୍ୱଳିତ ।
ହୋଇ ଭୁଲଇ ପୂଜା ଅର୍ଥ ॥୩୨
ବାସୁଦେବ ଚରଣେ ଲୟେ ।
ଧ୍ୟାନରେ ନିମଗ୍ନ ସେ ହୋଏ ॥୩୩
ଆପଣା ଆଶ୍ରମରେ ଥାଇ ।
କିଛିଦିନ ଯେ ଶେଷ ହୋଇ ॥୩୪
ପୁଷ୍ପଭଦ୍ରାନଦୀ ତଟରେ ।
ସ୍ନାନ ସନ୍ଧ୍ୟା ସାରି ତ୍ରିକାଳେ ॥୩୫
ଯୋଗଧ୍ୟାନରେ ବସିଛନ୍ତି ।
ବାସୁଦେବଙ୍କୁ ହୃଦେ ଚିନ୍ତି ॥୩୬
ଏମନ୍ତେ ପ୍ରଚଣ୍ଡ ପବନ ।
ବହେ ମହାଘୋର ଶବ୍ଦେଣ ॥୩୭
ଆକାଶେ ମହାଭୟଙ୍କର ।
ମେଘେ ଉଠିଲେ ଶୀଘ୍ରତର ॥୩୮
ରଥ ଅଖର ପରକାରେ ।
ଧାରା ବୃଷ୍ଟି କଲେ ଶୂନ୍ୟରେ ॥୩୯
ବିଦ୍ୟୁତ୍ ଝଟକ ଶବଦ ।
ବଜ୍ର ନିର୍ଘାତ ଇନ୍ଦ୍ରାୟୁଧ ॥୪୦
ସେ ଜଳେ ଭୂମିପୂର୍ଣ୍ଣ ହୋଇ ।
ସମୁଦ୍ରେ ଲାଗି ଉଛୁଳଇ ॥୪୧
ସର୍ବେ ଏକାର୍ଣ୍ଣବ ହୋଇଲେ ।
ତରଙ୍ଗ ଲହରୀ ଉଠିଲେ ॥୪୨
ପବନ ବଳେ ଜଳମାନେ ।
ଉଲ୍ଲୋଳେ ଲାଗିଲେ ଗଗନେ ॥୪୩
କଚ୍ଛପ କୁମ୍ଭୀର ମକର ।
ମତ୍ସ୍ୟ ଆଦି ଯେ ଜଳଚର ॥୪୪
ଏମାନେ ଭାସିଣ ଗର୍ଜିଲେ ।
ସର୍ବେ ଜଳରେ ଲୀନ ହେଲେ ॥୪୫
ସପ୍ତସମୁଦ୍ର ସପ୍ତଦୀପ ।
ହୋଇଲା ଏକଖଣ୍ଡ ଆପ ॥୪୬
ବ୍ରହ୍ମାଣ୍ଡଯାକ ପୂର୍ଣ୍ଣ ହୋଇ ।
ନିର୍ଘାତ ଶବଦେ ଚଳଇ ॥୪୭
ଏ ଭାବେ ସମସ୍ତେ ବୁଡ଼ିଲେ ।
ଯେଣୁ ସେ ବିଷ୍ଣୁ ମାୟା କଲେ ॥୪୮
ମୁନି ଆପଣା ସଙ୍ଗତରେ ।
ଜୀବଙ୍କୁ ଭିତରେ ବାହାରେ ॥୪୯

Dr. Sudhanshu Sekhar Mishra

ଦେଖି ଜଳରେ ନିମଗନ ।
ବିଜୁଳି ତେଜେ ଖେଦମନ ॥୫୦
ପୃଥିବୀ ଜଳମଗ୍ନ ଦେଖି ।
ଭୟେ ହୋଇଲେ ମହାଦୁଃଖୀ ॥୫୧
ଜଳ ଏକାର୍ଣ୍ଣବ ହୋଇଣ ।
ଆକାଶ ପର୍ଯ୍ୟନ୍ତ ଲାଗିଣ ॥୫୨
ଜଗତ ଅନ୍ତର୍ଦ୍ଧାନ ହେଲା ।
ପୃଥ୍ୱୀ ଆକାଶ ନ ଦିଶିଲା ॥୫୩
ସ୍ୱର୍ଗେ ନକ୍ଷତ୍ର ଗ୍ରହଗଣ ।
ଜ୍ୟୋତିଷ ଚକ୍ର ସମେତେଣ ॥୫୪
ସବୁ ଜଳେ ଏକ ହୋଇଲା ।
ସମସ୍ତ ଜଳରେ ବୁଡ଼ିଲା ॥୫୫
ସେ ମୁନି ଯୋଗମାୟାବଳେ ।
ଭାସିଲେ ପ୍ରଳୟ ଜଳରେ ॥୫୬
ଜଟାମଣ୍ଡଳ ଫିଟି ଭାସେ ।
ଅନ୍ଧାର ପଥ ପ୍ରାୟ ଦିଶେ ॥୫୭
କ୍ଷୁଧା ତୃଷାରେ ପୀଡ଼ା ପାଇ ।
ପବନେ ତରଙ୍ଗେ ଭାସଇ ॥୫୮
ମକର ତିମି ଜନ୍ତୁଗଣେ ।
ପୀଡ଼ିତ ହୋଇ ଋଷି ଭ୍ରମେ ॥୫୯
ଅନ୍ଧାରେ ଦିଗ ହିଁ ନ ଦିଶେ ।
ବୁଡ଼ି ଜୀବନ ମାତ୍ର ଶେଷେ ॥୬୦
ମହା ଆବର୍ତ୍ତେ ପଡ଼ି କାହିଁ ।
ସେ ମୁନି ମୋହିତ ହୁଅଇ ॥୬୧
କାହିଁ ତରଙ୍ଗେ ବୁଡ଼ିଯା'ନ୍ତି ।
ଲହରୀମାନଙ୍କେ ଉଠନ୍ତି ॥୬୨
କୁମ୍ଭୀର ମକରେ ବା କାହିଁ ।
ସାନକୁ ବଡ଼ ଯେ ଗିଳଇ ॥୬୩
ତା'ଙ୍କ ତହୁଁ ବଳି ପଡ଼ନ୍ତି ।
ଶୋକେ ଦୁଃଖେ ମୋହେ ମଜ୍ଜନ୍ତି ॥୬୪
କେବେ ତାହାଙ୍କ ଭକ୍ଷ୍ୟ ହୋନ୍ତି ।
କାହିଁବା ଶୋକ ଭୟ ପା'ନ୍ତି ॥୬୫
ବ୍ୟାଧି ଦୁଃଖ ପାଇ ମରନ୍ତି ।
ଆତ୍ମା ପୀଡ଼ିତେ ମୋହ ଯା'ନ୍ତି ॥୬୬
ଏମନ୍ତେ ଅୟୁତ ଲକ୍ଷେଣ ।
ଗଲା ବତ୍ସର ଦିନମାନ ॥୬୭

ଅତି ଆରତେ ମାରକଣ୍ଡ ।
ଜାଣିଲେ ନିଶ୍ଚେ ଯିବ ପିଣ୍ଡ ॥୬୮
ବିଷ୍ଣୁର ମାୟାମୋହେ ପୁଣି ।
ଭାସନ୍ତି ମାରକଣ୍ଡ ମୁନି ॥୬୯
ବିଷ୍ଣୁମାୟାରେ ଏକଦିନେ ।
ଭାସି ଲାଗିଲେ ଉଚ୍ଚସ୍ଥାନେ ॥୭୦
ବ୍ରହ୍ମାଣ୍ଡ ମଧ୍ୟେ ଜମ୍ବୁଦ୍ୱୀପ ।
ନବଖଣ୍ଡରେ ସେ ସଂକ୍ଷେପ ॥୭୧
ଭାରତବରଷ ମଧ୍ୟରେ ।
ଆର୍ଯ୍ୟାବର୍ତ୍ତ ନାମ ବିସ୍ତାରେ ॥୭୨
ଉତ୍କଳ ନାମକ ଦେଶରେ ।
ଆର୍ଯ୍ୟାବର୍ତ୍ତ ଅଗ୍ନିକୋଣରେ ॥୭୩
ଦକ୍ଷିଣ ମହୋଦଧି ତଟ ।
ସମୁଦ୍ର ଉତ୍ତରେ ପ୍ରକଟ ॥୭୪
ନାମ ଯା' ଶ୍ରୀପୁରୁଷୋତ୍ତମ ।
ସକଳ କ୍ଷେତ୍ର ଯହୁଁ ଜନ୍ମ ॥୭୫
ନୀଳାଚଳ ଗିରି ଶିଖରେ ।
ଅକ୍ଷୟ କଳ୍ପବଟ ପରେ ॥୭୬
କ୍ଷେତ୍ରବଟ ସମେତ ହୋଇ ।
ପ୍ରଳୟ ଜଳରେ ଭାସଇ ॥୭୭
ପବନ ବଳରେ ନ ଚଳେ ।
ସଳଖେ ଜନଲୋକେ ମିଳେ ॥୭୮
ପଞ୍ଚକୋଶ ବିସ୍ତାର ହୋଇ ।
ବେଢ଼ିଣ ଜ୍ୟୋତିର୍ମୟ ଦେହୀ ॥୭୯
ଜଳ ଉପରେ ତା ପଲ୍ଲବ ।
ଫଳ ପଲ୍ଲବେ ଶୋଭା ଦିବ୍ୟ ॥୮୦
ସେ ଯେଉଁ ବୃକ୍ଷ ତିନିଡ଼ାଳ ।
ପୂର୍ବ ଐଶାନ୍ୟ ଯେ ଉତ୍ତର ॥୮୧
ପୂର୍ବ ଉତ୍ତର ମଧ୍ୟେ ଶାଖା ।
ଐଶାନ୍ୟ ଡ଼ାଳ ମଧ୍ୟେ ଦେଖା ॥୮୨
ନବ ପଲ୍ଲବ ବଟପୁଟେ ।
ଏକ ପୁରୁଷ ଜବାଙ୍ଗୁଷ୍ଠେ ॥୮୩
ସେ ବଟପୁଟରେ ଶୟନ ।
ମାର୍କଣ୍ଡ କଲେ ତା' ଦର୍ଶନ ॥୮୪
ଅଙ୍ଗୁଷ୍ଠ ପ୍ରମାଣେ ପୁରୁଷ ।
ଆପଣା ପ୍ରଭାରେ ସେ ଦୃଶ୍ୟ ॥୮୫

ପ୍ରଳୟ-ଅନ୍ଧାର ଛେଦନ ।
ମହାମର୍କତ ମଣି ଶ୍ୟାମ ॥୮୬
ମୁଖ ଲୋଚନ ପାଣି କର୍ଣ୍ଣ ।
ପ୍ରକାଶ କମଳ ଯେସନ ॥୮୭
କଣ୍ଠରେ ଶଙ୍ଖରେଖା ଅଛି ।
ଶ୍ରୀବତ୍ସଚିହ୍ନ ହୃଦେ ଗଛି ॥୮୮
ହୃଦୟ ବିସ୍ତାର ସୁନ୍ଦର ।
ବ୍ରହ୍ମାଣ୍ଡ ସର୍ଜନ ସଂହାର ॥୮୯
ନାସିକା ଅତ୍ୟନ୍ତ ସୁନ୍ଦର ।
ଭ୍ରୂଲତା ଧନୁ କନ୍ଦର୍ପର ॥୯୦
ନିଃଶ୍ୱାସ ପବନ ଚଞ୍ଚଳ ।
ଚଳନ୍ତି କର୍ଣ୍ଣର କୁଣ୍ଡଳ ॥୯୧
ପକ୍ୱ ଡ଼ାଳିମ୍ବ ବୀଜ ପ୍ରାୟେ ।
ଦନ୍ତପନ୍ତି ଯେ ଶୋଭାପାଏ ॥୯୨
ପ୍ରବାଳ ଅରୁଣ ଅଧର ।
ଦରହାସରେ ସେ ସୁନ୍ଦର ॥୯୩
ଅରୁଣପଦ୍ମ ଯେ ଲୋଚନ ।
କଟାକ୍ଷ କୋଣେ ବିଲୋକନ ॥୯୪
ନାଭି ଉପରେ ବଳିମାନ ।
ନିଃଶ୍ୱାସ ପବନେ କମ୍ପନ ॥୯୫
ଦୁଇ ହସ୍ତେ ପାଦ ଅଙ୍ଗୁଳି ।
ଧରି ଚୁମ୍ବନ୍ତି ମୁଖେ ତୋଳି ॥୯୬
ଚରଣାମ୍ବୁଜ ମକରନ୍ଦ ।
ମୁଖେ ଭରିଣ ସେ ଆନନ୍ଦ ॥୯୭
ବାଳକ ରୂପରେ ଶୟନ ।
ମାର୍କଣ୍ଡ ବିସ୍ମୟ ଦେଖିଣ ॥୯୮
ଦର୍ଶନେ ଶ୍ରମ ଦୂର ଗଲା ।
ଆନନ୍ଦେ ରୋମ ପୁଲକିଲା ॥୯୯
ପଦ୍ମପ୍ରାୟେ ଚକ୍ଷୁ ବିକାଶି ।
ପୁଲକ ରୋମାବଳୀ ରାଶି ॥୧୦୦
ତା'ଙ୍କ ନାମ ପୁଚ୍ଛିବା ଅର୍ଥେ ।
ମାର୍କଣ୍ଡ ବିଚାରିଲେ ଚିତ୍ତେ ॥୧୦୧
ବାଳକ ନିକଟେ ପ୍ରବେଶି ।
ଉଭା ହୋଇଲେ ସେହି ଋଷି ॥୧୦୨
ବାଳକ ନିଃଶ୍ୱାସ ପବନ ।
ବାଜେ ମାରକଣ୍ଡ ଦେହେଣ ॥୧୦୩

Dr. Sudhanshu Sekhar Mishra

ମୁଖ ବିସ୍ତାର କରି ହରି ।
ଗିଳିଲେ ମଶା ପ୍ରାୟ କରି ॥୧୦୪
ହୃଦୟ ଭିତରେ ପଶିଲେ ।
ତହିଁରେ ବୁଲିଣ ଦେଖିଲେ ॥୧୦୫
ପୂର୍ବ ପରାୟେ ସୃଷ୍ଟି ଅଛି ।
ଦେଖିଲେ ମୃକଣ୍ଡର ବସି ॥୧୦୬
ପୃଥ୍ୱୀମଣ୍ଡଳ ସ୍ୱର୍ଗ ଆଦି ।
ଆକାଶ ସାଗର ପ୍ରସିଦ୍ଧି ॥୧୦୭
ଗ୍ରହ ନକ୍ଷତ୍ର ତାରାଗଣ ।
ବରଷ ସପ୍ତଦ୍ୱୀପମାନ ॥୧୦୮
ପର୍ବତ ଦେଶ ଭୂମି ବନ ।
ନଗର କ୍ଷେତ୍ର ଯେ ଆଶ୍ରମ ॥୧୦୯
ଦେବ ଅସୁର ଜନ୍ତୁ ଯେତେ ।
ନଦୀ ସରୋବର ସହିତେ ॥୧୧୦
ବ୍ରଜ ଆଶ୍ରମ ବୃତ୍ତି ବର୍ଣ୍ଣ ।
ଯେତେକ ଜୀବଜନ୍ତୁମାନ ॥୧୧୧
ପଞ୍ଚମହାଭୂତ ଶବଦ ।
ସ୍ପରଶ ରସ ରୂପ ଗନ୍ଧ ॥୧୧୨
ଚତୁର୍ଦ୍ଦଶ ଭୁବନ ଗତି ।
ଯେ କାଳ ଯୁଗ କଳ୍ପ ହୋ'ନ୍ତି॥୧୧୩
ବ୍ରହ୍ମାଦି କୀଟ ପରିଯନ୍ତେ ।
ସର୍ବ ଦେଖିଲେ ଆଚମ୍ବିତେ ॥୧୧୪
ହିମାଳୟ ଯେ ପରବତ ।
ପୁଷ୍ପଭଦ୍ରା ନଦୀ ସହିତ ॥୧୧୫

ଆପଣା ଆଶ୍ରମ ଦେଖିଲେ ।
ସମସ୍ତ ଋଷିଙ୍କର ମେଳେ ॥୧୧୬
ଏଭାବେ ବୁଲୁଁ ମୁନିବର ।
ଗଲା ଅନେକ ସମ୍ୱତ୍ସର ॥୧୧୭
ଦେଖି ମାର୍କଣ୍ଡ ଶ୍ରମଭାଗୀ ।
ଭେଦି ନ ପାରି ମହାଯୋଗୀ॥୧୧୮
ସଂସାର ଦେଖିଣ ବିସ୍ମୟ ।
ମିଥ୍ୟା ମଣିଲେ ସେ ପ୍ରଳୟ ॥୧୧୯
ଏମନ୍ତେ ପୁଣି ବିଷ୍ଣୁମାୟା ।
ପ୍ରକାଶ କଲେ ବିଶ୍ୱକାୟା ॥୧୨୦
ଆପଣା ନିଃଶ୍ୱାସରେ ପୁଣ ।
ବାହାର କଲେ ତତ୍‌କ୍ଷଣ ॥୧୨୧
ପ୍ରଳୟ ଜଳେ ପକାଇଲେ ।
ପୁଣି ସେ ଜଳରେ ଭାସିଲେ ॥୧୨୨
ପୂର୍ବର ଯାହା ଅନୁଭବ ।
ପାଇଲେ ସେହି ପରାଭବ ॥୧୨୩
ପୁଣ ସେ ବଟ ତଳେ ଲାଗି ।
ତା' ଆହାଲ୍ଲାଦେ ସୁଖଭାଗୀ ॥୧୨୪
ସେ ବଟପତ୍ରପୁଟେ ଶୋଇ ।
ବାଳକ ଚରଣ ଚୁମ୍ୱଇ ॥୧୨୫
ଦରହସିତ ମୁଖ ତା'ର ।
ଅପାଙ୍ଗ ଦୃଷ୍ଟି ମନୋହର ॥୧୨୬
ଲାଗିଣ ଆଶ୍ୱାସନା ପାଇ ।
ଋଷି ସେ ବାଳକକୁ ଚାହିଁ ॥୧୨୭

ହୃଦରେ ତା'ଙ୍କୁ ଧ୍ୟାନ କଲେ ।
ମନେ ଆଲିଙ୍ଗନ ବାଞ୍ଛିଲେ ॥୧୨୮
ଏମନ୍ତ ଜାଣିଣ ମୁକୁନ୍ଦ ।
ଯେ ସ୍ଥିତି ହୃଦୟର ମଧ୍ୟ ॥୧୨୯
ଏମନ୍ତେ ପାର୍ଶ୍ୱରେ ଲାଗିଲେ ।
ଦେଖି ଅନେକ ସ୍ତୁତି କଲେ ॥୧୩୦
ସେ କୃଷ୍ଣ ଅନ୍ତର୍ଦ୍ଧାନ ଗଲେ ।
ଆପଣା ମାୟା ଦେଖାଇଲେ ॥୧୩୧
ବିଷ୍ଣୁ ହୁଅନ୍ତେ ଅନ୍ତର୍ଦ୍ଧାନ ।
ପ୍ରଳୟ ଅନ୍ତଃ ତତକ୍ଷଣ ॥୧୩୨
କ୍ଷଣ ମାତ୍ରକେ ସର୍ବ ଗଲେ ।
ମାର୍କଣ୍ଡ ଲୋଚନେ ଦେଖିଲେ ॥୧୩୩
ପୂର୍ବେ ଆପଣା ଆଶ୍ରମରେ ।
ଯେଉଁ ଭାବରେ ବସିଥିଲେ ॥୧୩୪
ଆମ୍ଭେରେ ଯୋଗଧ୍ୟାନ କରି ।
ଚିତ୍ତରେ ଚିନ୍ତି ନରହରି ॥୧୩୫
ଆସନେ ବସିଛନ୍ତି ପୁଣ ।
ଏମନ୍ତ ମାୟାର ଭିଆଣ ॥୧୩୬
ଦେଖିଣ ମାରକଣ୍ଡ ଋଷି ।
ଆଶ୍ଚର୍ଯ୍ୟ ମଣି ମନେ ତୋଷି ॥୧୩୭
ସେ ବିଷ୍ଣୁମାୟାର ତଦନ୍ତ ।
କେ ଅବା ଜାଣିବ ଏମନ୍ତ ॥୧୩୮
କହଇ ଜଗନ୍ନାଥ ଦାସ ।
କୃଷ୍ଣଚରଣେ କରି ଆଶ ॥୧୩୯

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ଦ୍ୱାଦଶସ୍କନ୍ଧେ ନାମ
ନବମୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

## ଦଶମ ଅଧ୍ୟାୟ

ସୂତ ପୌରାଣିକ ଯେ କହି ।
ଶୌନକ ଆଦି ମୁନି ଚାହିଁ ॥୧

ସୂତ ଉବାଚ

ସେ ମାରକଣ୍ଡ ଋଷି ପୁଣ ।
ବିଷ୍ଣୁ ନିର୍ମିତ ମାୟାରେଣ ॥୨
ମାୟା ବିଭୂତି ଅନୁଭବି ।
ସେ ବିଷ୍ଣୁ ଚରଣରେ ସେବି ॥୩
ସେ ବିଷ୍ଣୁ ଚରଣରେ ସ୍ତୁତି ।
ନିରତେ ଧ୍ୟାନେ କରୁଛନ୍ତି ॥୪
ଶ୍ରୀବାସୁଦେବ ନମୋସ୍ତୁତେ ।
ଶରଣାଗତ ହେଲି ତୋତେ ॥୫
ତୁମ୍ଭ ପଦାରବିନ୍ଦ ଗୁଣ ।
ଅଭୟଦାତା ପରିପୂର୍ଣ୍ଣ ॥୬
ବ୍ରହ୍ମା ଆଦି ଦେବତାମାନେ ।
ସେବନ୍ତି ଜ୍ଞାନ ପରାୟଣେ ॥୭
ତୁମ୍ଭ ଚରଣେ ଭଜୁଛନ୍ତି ।
ମାୟାରେ କେ ମୋହି ନୁହଁନ୍ତି ॥୮
ଏ ଭବ ସଂସାର-ସାଗରେ ।
ତୋ' ବିନୁ କେ ଉଦ୍ଧରି ପାରେ ॥୯
ଏମନ୍ତ ସ୍ତୁତି ବାସୁଦେବେ ।
ମନ ଲଗାଇ ପାଦେ ସେବେ ॥୧୦
ଆତ୍ମା ବାସୁଦେବେ ନିବେଶି ।
ସର୍ବ ଜୀବେ ଏକ ପ୍ରକାଶି ॥୧୧
ଜଗତ ବାସୁଦେବ ଜାଣି ।
ସର୍ବେ ଏକତ୍ୱ ପରିମାଣି ॥୧୨
ଏମନ୍ତ ସମୟେ ମହେଶ ।
ପାର୍ବତୀ ଶିବଗଣ ଶିଷ୍ୟ ॥୧୩
ଏମାନେ ବେଷ୍ଟିତ ହୋଇଣ ।
କରି ବୃଷଭ ଆରୋହଣ ॥୧୪
କୈଳାସ ପର୍ବତରୁ ଖସି ।
ହିମବନ୍ତ ଉତ୍ତରେ ଆସି ॥୧୫
ପୁଷ୍ପଭଦ୍ରା ନଦୀ ତଟରେ ।
ମାର୍କଣ୍ଡ ଆଶ୍ରମେ ମିଳିଲେ ॥୧୬
ମାର୍କଣ୍ଡେୟଙ୍କୁ ସେ ଦେଖିଲେ ।
ପାର୍ବତୀ ମହେଶେ ଭାଷିଲେ ॥୧୭

ପାର୍ବତୀ ଉବାଚ

ହେ ଦେବ ଦେଖ ଋଷିଧ୍ୟାନ ।
ସାଧନ କରେ ବ୍ରହ୍ମଜ୍ଞାନ ॥୧୮
ନିଶ୍ଚଳମନଆତ୍ମା କରି ।
ସକଳ ଇନ୍ଦ୍ରିୟ ନିବାରି ॥୧୯
ସଂଯମ କରି ମନ ପ୍ରାଣ ।
ପରମେ ଆତ୍ମା ନିବେଦନ ॥୨୦
ତନ୍ମୟେ ପବନ ନିରୋଧି ।
ଯେସନେ ନିଶ୍ଚଳ ବାରିଧି ॥୨୧
ନିର୍ବାତ ଦେଶେ ଦୀପ ଯେହ୍ନେ ।
ଋଷିତପସ୍ୟା ସିଦ୍ଧ ତେହ୍ନେ ॥୨୨
ପାଇ ବିଷ୍ଣୁ ମାୟାନୁଭବ ।
ସଂସାର ଦେହ ମିଥ୍ୟାଭାବ ॥୨୩
ହରି ଦର୍ଶନେ ସିଦ୍ଧ ହୋଇ ।
ବସିଛି ଯୋଗରୂଢ଼ ହୋଇ ॥୨୪
ଏହାଙ୍କ ତପ ସିଦ୍ଧଫଳେ ।
ତୁମ୍ଭେ ପ୍ରବେଶ ଋଷିଆଳେ ॥୨୫
ଯୋଗ ସିଦ୍ଧିର ଫଳ ଦିଅ ।
ବିଷ୍ଣୁ ବୈଷ୍ଣବେ ଯଶ ପାଅ ॥୨୬
ପାର୍ବତୀଠାରୁ ଏହା ଶୁଣି ।
ଶିବ କହନ୍ତି ମଞ୍ଜୁବାଣୀ ॥୨୭

ଶିବ ଉବାଚ

ଏ ଋଷି ବରେ ଇଚ୍ଛା ନାହିଁ ।
ଚତୁର୍ବିଧ ମୁକ୍ତି ନ ଚାହିଁ ॥୨୮
ଧର୍ମାର୍ଥ କାମ ମୋକ୍ଷମାନ ।
ଏଣେ ଋଷିର ନାହିଁ ଧ୍ୟାନ ॥୨୯
କେବଳ ବାସୁଦେବେ ପ୍ରୀତି ।
ପଦାରବିନ୍ଦରେ ଭକତି ॥୩୦
ମାୟାବିଭୂତିଭାବ ଜାଣି ।
ସକଳ ମିଥ୍ୟା ପରିମାଣି ॥୩୧
ରହିଛି ବାସୁଦେବ ଲୟେ ।
ବଚନେ ସମସ୍ୟା ନ ଦିଏ ॥୩୨
ତେବେ ସେ ଭକତ ଆସ୍ଥରି ।
ଏହାଙ୍କୁ ସମ୍ଭାଷଣ କରି ॥୩୩
ନର ଦେହରେ ସାଧୁସଙ୍ଗ ।
ପରମ ଲାଭ ମୋକ୍ଷଯୋଗ ॥୩୪

ସୂତ ଉବାଚ

ଏମନ୍ତ କହିଣ ଶଙ୍କର ।
ସକଳ ଭୂତେ ଯେ ଈଶ୍ୱର ॥୩୫
ହରପାର୍ବତୀ ଦୁଇ ଯାଇ ।
ଋଷିଙ୍କ ଆଗେ ଉଭା ହୋଇ ॥୩୬
ଈଶ୍ୱରେ ଋଷି ଦୃଷ୍ଟି ନାହିଁ ।
ଶିବଗଣଙ୍କୁ ନ ଦେଖଇ ॥୩୭
ଆପଣା ଦେହକୁ ନ ଜାଣି ।
ଏମନ୍ତ ଜାଣି ଶୂଳପାଣି ॥୩୮
ଯୋଗମାୟା ବଳେ ମହେଶ ।
ମାର୍କଣ୍ଡ ହୃଦେ ପରବେଶ ॥୩୯
ପବନ ପ୍ରାୟ ହୋଇ ପଶି ।
ନ ଜାଣେ ମାର୍କଣ୍ଡେୟ ଋଷି ॥୪୦
ଏମନ୍ତ ରୂପି ମହେଶ୍ୱର ।
ଜଟାଝଟକ ବିଜୁଳିର ॥୪୧
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିଲୋଚନ ।
ଶିରରେ ଚନ୍ଦ୍ର ଶୋଭାବନ ॥୪୨
ପାଉଛି ଦଶଭୁଜ ଶୋଭା ।
ଆଜାନୁଲମ୍ବି ବାହୁପ୍ରଭା ॥୪୩
ଭସ୍ମରେ ଅତି ଶୋଭା ପାଇ ।
ସୂର୍ଯ୍ୟର ପ୍ରାୟ ତେଜୋମୟୀ ॥୪୪
ବ୍ୟାଘ୍ରର ଚର୍ମ ପରିଧାନ ।
ପନ୍ନଗ ଦେହେ ଆଭରଣ ॥୪୫
ଡ଼ମ୍ବରୁ ଧନୁ ଯେ ତ୍ରିଶୂଳ ।
କାଣ୍ଡ ଖଡ୍ଗ ଚର୍ମ କପାଳ ॥୪୬
ପରଶୁ ରୁଦ୍ରାକ୍ଷର ମାଳୀ ।
ଅଭୟବର ହସ୍ତେ ଧରି ॥୪୭

Dr. Sudhanshu Sekhar Mishra

ଏମନ୍ତ ରୂପ ହୃଦେ ଚାହିଁ ।
ମାର୍କଣ୍ଡ ବିସ୍ମିତ ଯେ ହୋଇ ।।୪୮
ମହେଶରୂପ ମୋ' ହୃଦେ ।
କାହୁଁ ଏ ଦରଶନ ହୋଏ ।।୪୯
ଚିତ୍ତ ମୋ' ଅଛି ବିଷ୍ଣୁ ତହିଁ ।
ମହେଶରୂପ ତ ଦେଖଇ ।।୫୦
ବିଚାରି ଚକ୍ଷୁ ଫେଇ ବେଗେ ।
ହରପାର୍ବତୀ ଦେଖେ ଆଗେ ।।୫୧
ସହିତେ ରୁଦ୍ରଗଣ ଚାହିଁ ।
ମାର୍କଣ୍ଡେୟ ସଂଭ୍ରମ ହୋଇ ।।୫୨
ସାଷ୍ଟାଙ୍ଗେ ପ୍ରଣାମ ସେ କଲେ ।
ମହାଦେବଙ୍କ ପାଦତଳେ ।।୫୩
ପାର୍ବତୀ ରୁଦ୍ରଗଣ ମେଳେ ।
ମାନସଭାବେ ପୂଜା କଲେ ।।୫୪
ସ୍ୱାଗତ ଆସନ ଯେ ପାଦ୍ୟ ।
ଅର୍ଘ୍ୟ ଧୂପ ଦୀପ ସୁଗନ୍ଧ ।।୫୫
ପୁଷ୍ପ ନୈବିଦ୍ୟ ପୂଜା କରି ।
ଆମ୍ଭାରେ ସ୍ତୁତି ସେ ଆଚରି ।।୫୬
ତୁମ୍ଭେ ଯେ ଅଟ ପୂର୍ଣ୍ଣକାମ ।
ଜଗତେ ବରଦାତା ନାମ ।।୫୭
ଜଗତ ନିର୍ମାଣ ତୋ' ରୂପ ।
ହେ ଦେବଦେବ ବିଶ୍ୱରୂପ ।।୫୮
ସତ୍ତ୍ୱ ରଜ ତମ ଗୁଣକ ।
ମୃତ୍ୟୁରୂପ ପବିତ୍ରାତ୍ମକ ।।୫୯
ତୁମ୍ଭଙ୍କୁ ମୋର ନମସ୍କାର ।
ତୁମ୍ଭେ ଯେ ଅବ୍ୟକ୍ତ ଈଶ୍ୱର ।।୬୦
କହନ୍ତି ସୂତମୁନି ଧୀରେ ।
ଶୌନକ ମୁନିଙ୍କ ଆଗରେ ।।୬୧
ସେ ଯେ ମହେଶ ଦେବଦେବ ।
ସାଧୁମାନଙ୍କ ଗତିଭାବ ।।୬୨
ଏ ସ୍ତୁତି ଶୁଣିଣ ହରଷ ।
କୋମଳେ କହନ୍ତି ମହେଶ ।।୬୩

### ଶିବ ଉବାଚ

ହେ ମୁନି ମାଗ ବର ମୋତେ ।
ପ୍ରସନ୍ନ ହୋଇଲି ମୁଁ ତୋତେ ।।୬୪
ବ୍ରହ୍ମା ବିଷ୍ଣୁ ମହେଶ ତିନି ।
ଅଭେଦ ଏକମୂର୍ତ୍ତି ଘେନି ।।୬୫
ତିନିହେଁ ବରେ ଅଧିକାରୀ ।
ମାଗ ହେ ମନ ଇଚ୍ଛା କରି ।।୬୬
କଠୋରେ ବିଷ୍ଣୁବଶ କରି ।
ଶୁଣ ମାର୍କଣ୍ଡ ତପଚାରୀ ।।୬୭
ତ୍ରିବର୍ଗ ଆତ୍ମ ଦରଶନେ ।
ମୁକତି ବିଷ୍ଣୁର ପ୍ରସନ୍ନେ ।।୬୮
ସାଧୁସନ୍ଥଙ୍କ ସଙ୍ଗ ଯେହି ।
ଭକତ ବସଳ ବା ହୋଇ ।।୬୯
ଏକାନ୍ତଭକ୍ତି ଆତ୍ମଠାରେ ।
ସମଦରଶୀ ନିର୍ବୈରେ ।।୭୦
ଏ ଗୁଣେ ବ୍ରାହ୍ମଣେ ଭଜିଲେ ।
ବ୍ରହ୍ମେ ପ୍ରବେଶ ହୋ'ନ୍ତି ଭଲେ ।।୭୧
ସକଳ ଲୋକପାଳମାନ ।
ତା'ଙ୍କୁ କରନ୍ତି ଉପାସନ ।।୭୨
ବ୍ରହ୍ମା ବିଷ୍ଣୁ ଯେ ମୁଁ ମହେଶ ।
ତିନିହେଁ ତା'ର ହେଉ ବଶ ।।୭୩
ଆମ୍ଭର ଲେଶେ ଭିନ୍ନ ନାହିଁ ।
ତୁମ୍ଭର ଭାବ ମୁଁ ଜାଣଇ ।।୭୪
ତୁମ୍ଭେ ପରମ ଭାଗବତ ।
ବିଷ୍ଣୁରେ ଧ୍ୟାନ ଅବିରତ ।।୭୫
ତେଣୁ ତୁମ୍ଭଙ୍କୁ ଦରଶନ ।
ଦେଲଇଁ ହୋଇଣ ପ୍ରସନ୍ନ ।।୭୬
ଯେ ଜଳମୟ ତୀର୍ଥସ୍ଥାନ ।
ପାଷାଣମୟ ଦେବଗଣ ।।୭୭
ପବିତ୍ର ବହୁଦିନେ କରେ ।
ତୁମ୍ଭ ଦର୍ଶନମାତ୍ରେ ତରେ ।।୭୮
ବ୍ରାହ୍ମଣ ଜନେ ନମସ୍କାର ।
ସମଦରଶୀ ଭାବ ଯା'ର ।।୭୯
ଆତ୍ମ ରୂପ ତ୍ରିଗୁଣ ଭେଦ ।
ଋକ ଯଜୁ ଯେ ସାମବେଦ ।।୮୦
ଆପଣା ସମାଧି ଯୋଗରେ ।
ତପ ସାଧନ୍ତି ସଂଯମରେ ।।୮୧
ନାନା ଭାବରେ ବିହରନ୍ତି ।
ଜଗତ ପବିତ୍ର କରନ୍ତି ।।୮୨
ଯା ନାମ ଶ୍ରବଣ କଲାରୁ ।
ଦର୍ଶନ ସେବା କିବା କରୁ ।।୮୩
ମହାପାତକୀ ଅନ୍ତ୍ୟ ଜାତି ।
ଏମାନେ ପବିତ୍ର ହୁଅନ୍ତି ।।୮୪
ବିଶୁଦ୍ଧ ବିଷ୍ଣୁର ଭକତ ।
ନିର୍ଗୁଣବ୍ରହ୍ମେ ଯା'ର ଚିତ୍ତ ।।୮୫
ସେ ସାଧୁ ବ୍ରାହ୍ମଣ ସଙ୍ଗତେ ।
ସଙ୍ଗ ହୁଅନ୍ତି ଯେବା ନିତ୍ୟେ ।।୮୬
କିପାଇଁ ପବିତ୍ର ନୋହିବେ ।
ସେ କିପାଁ ସଂସାରେ ପଡ଼ିବେ ।।୮୭

### ସୂତ ଉବାଚ

ସୂତ କହେ ଶୌନକ ଶୁଣ ।
ସେ ଚନ୍ଦ୍ରଶେଖର ବଚନ ।।୮୮
ଗୁପତ ଧର୍ମଯୁକ୍ତ ବାଣୀ ।
ଅମୃତ ଆପ୍ୟାୟନେ ମୁନି ।।୮୯
ତା' ମନ ତୃପତ ନ ହୋଇ ।
ମହେଶ ଭାବେ ମନ ଦେଇ ।।୯୦
ସୁଧାବଚନ କର୍ଣ୍ଣେ ପିଇ ।
ଅଜ୍ଞାନକ୍ଳେଶ ଦୂର ହୋଇ ।।୯୧
ଶିବ ପୀୟୁଷବାଣୀ ଶୁଣି ।
କହଇ ମାରକଣ୍ଡ ମୁନି ।।୯୨

### ମାର୍କଣ୍ଡେୟ ଉବାଚ

ଭୋ ପ୍ରଭୁ ତୁମ୍ଭର ମହିମା ।
ଦେହଧାରୀଙ୍କୁ ସେ ଅଜଣା ।।୯୩
ଯା'ର ମାୟା ମୋହିତ ହୋଇ ।
ବ୍ରହ୍ମା ବିଷ୍ଣୁ ଶିବ ଅଛଇ ।।୯୪
ସେମାନେ ଜଗତ ଈଶ୍ୱର ।
ଯେଝା ମାର୍ଗେ ସେ ଦ୍ୟନ୍ତି ବର ।।୯୫
ତ୍ରିଗୁଣ ପାଶେ ଯେ ବନ୍ଧନ ।
ମାୟାର ମୋହେ ହୋନ୍ତି ଛନ୍ନ ।।୯୬
ଯେଉଁ ପ୍ରକାରେ ତା'ଙ୍କୁ ମାୟା ।
ପ୍ରବର୍ତ୍ତି କରେ ବିଷ୍ଣୁ ଏହା ।।୯୭
ସେ ମାର୍ଗେ ପ୍ରବର୍ତ୍ତି ଅଛନ୍ତି ।
ଧର୍ମ ଅଧର୍ମ ମାର୍ଗେ ଯା'ନ୍ତି ।।୯୮

Dr. Sudhanshu Sekhar Mishra

ପ୍ରାଣୀଏ ସଂସାର କାରଣେ ।
ମନ୍ୱାଦି ଧର୍ମଶାସ୍ତ୍ରମାନେ ॥୯୯
ଏ ଭାବେ ସଂସାର ରଚନା ।
ଏ ସର୍ବ ବିଷ୍ଣୁ ପ୍ରଭାବନା ॥୧୦୦
ଧର୍ମରେ ଯେ ଲୋକ ଅଛନ୍ତି ।
ଆତ୍ମାରେ ବିଷ୍ଣୁଙ୍କୁ ଜାଣନ୍ତି ॥୧୦୧
ତାଙ୍କୁ ଦେଖିଣ ଜନମାନେ ।
ସ୍ତୁତି କରନ୍ତି ଯଶଗୁଣେ ॥୧୦୨
ଯେ ଅଟେ ଜଗତ ଈଶ୍ୱର ।
ସେ ପୁଣି କରେ ନମସ୍କାର ॥୧୦୩
ଏ ବଡ଼ ଲୋକଙ୍କର ଗୁଣ ।
ଲୋକଶିକ୍ଷାର ପାଇଁ ପୁଣ ॥୧୦୪
ଅଳପଲୋକେ ଦ୍ୟନ୍ତି ମାନ ।
ସ୍ତୁତି କରନ୍ତି ଯଶଗୁଣ ॥୧୦୫
ଏଥେ ନ ଯାଏ ବଡ଼ପଣ ।
କୁହୁକ ଏ ଚକ୍ଷୁହରଣ ॥୧୦୬
ହେ ପ୍ରଭୁ ମୋର ବାଞ୍ଛା ଏତେ ।
ତୁମ୍ଭ ମାୟାରେ ଏ ଜଗତେ ॥୧୦୭
ମାୟା-ଚେଷ୍ଟାରେ ପ୍ରାଣୀ ଭ୍ରମି ।
ଯେତେ ହୁଅନ୍ତି ପଥଶ୍ରମୀ ॥୧୦୮
ଏ କଥା ଯେମନ୍ତ ନୋହଇ ।
ତେମନ୍ତ କର ଉମାସାଇଁ ॥୧୦୯
ଏ ଚକ୍ଷୁହରଣ କୁହୁକ ।
ପ୍ରତ୍ୟକ୍ଷେ ଦେଖାଇ ଅନେକ ॥୧୧୦
ହରନ୍ତି ଯେମନ୍ତ ପ୍ରକାରେ ।
ତେମନ୍ତ ଭାବ ଜଗତରେ ॥୧୧୧
କର୍ମବନ୍ଧନ ତୁମ୍ଭେ ହର ।
ଚରଣେ ନିମଗ୍ନ ତୁମ୍ଭର ॥୧୧୨
ଆପଣା ମନରୁ ଭିଆଇ ।
ଯେ ସୃଷ୍ଟି ମଧ୍ୟେ ପ୍ରବେଶଇ ॥୧୧୩
ସ୍ୱପ୍ନ ଦେଖନ୍ତା ପ୍ରାୟ ରହି ।
କର୍ତ୍ତା ସ୍ୱରୂପେ ପ୍ରତେ ହୋଇ ॥୧୧୪
ସ୍ୱପ୍ନେ ଦେଖିଲା କଥା ଯେହ୍ନେ ।
ମିଥ୍ୟା ସେ ନିଦ୍ରାର ଭଞ୍ଜନେ ॥୧୧୫
ତେମନ୍ତ ସଂସାର ବନ୍ଧନ ।
ମାୟା କର୍ମରେ ସେ ସର୍ଜନ ॥୧୧୬

ସେ ଯେ ଭଗବତ ପୁରୁଷ ।
ବାସୁଦେବ ନିର୍ଗୁଣ ଅଂଶ ॥୧୧୭
ତ୍ରିଗୁଣେ ସଂଯୁତ କେବଳ ।
ନାହିଁ ତାହାର ଆଦିମୂଳ ॥୧୧୮
ସକଳ ଜଗତର ଗୁରୁ ।
ସେ ଯେ ଅଟନ୍ତି ମହାମେରୁ ॥୧୧୯
ତୁମ୍ଭେ ଯେ ବ୍ରହ୍ମମୂର୍ତ୍ତି ହର ।
ତୁମ୍ଭଙ୍କୁ ମୋ'ର ନମସ୍କାର ॥୧୨୦
ଆଜ୍ଞା ହୋଇଲା ମାଗ ବର ।
କି ବର ମାଗିବି ଆବର ॥୧୨୧
ଯାହାର ଦରଶନେ ପୁଣି ।
ପୂର୍ଣ୍ଣ ଯେ କାମ ତତକ୍ଷଣି ॥୧୨୨
ତୁମ୍ଭ ଦର୍ଶନେ ସେ ସକଳ ।
ପୂର୍ଣ୍ଣ କାମ ହୋଇ ସଫଳ ॥୧୨୩
ତଥାପି ତୁମ୍ଭର ବଚନ ।
ମାଗୁଛି ଏକବର ପୁଣ ॥୧୨୪
ତୁମ୍ଭେ ଯେ ପୂର୍ଣ୍ଣକାମଦାତା ।
ଈଶ୍ୱରମୟ ସର୍ବଭୂତା ॥୧୨୫
ତୁମ୍ଭର ଚରଣାରବିନ୍ଦେ ।
ଭକ୍ତି ମୋ' ରହିବ ଆନନ୍ଦେ ॥୧୨୬
ସେ ବାସୁଦେବ ନାରାୟଣ ।
ସକଳ ପ୍ରାଣୀଙ୍କ ଜୀବନ ॥୧୨୭
ତାଙ୍କ ଚରଣରେ ଭକତି ।
ଅବିଘ୍ନେ ରହିବ ମୋ' ମତି ॥୧୨୮
ବୈଷ୍ଣବ ଜନମାନଙ୍କରେ ।
ବିଶ୍ୱାସ ଭକ୍ତି ରହୁ ମୋରେ ॥୧୨୯

ସୂତ ଉବାଚ

ସୂତ କହେ ଶୌନକ ମୁନି ।
ମହେଶ ତାଙ୍କ ସ୍ତୁତି ଶୁଣି ॥୧୩୦
ମୁନିଙ୍କ ସୁକୋମଳ ବାଣୀ ।
ସନ୍ତୋଷମନେ ଶୂଳପାଣି ॥୧୩୧
ପାର୍ବତୀ ସହିତ ଆନନ୍ଦେ ।
ଋଷିଙ୍କୁ କହେ ଆଶୀର୍ବାଦେ ॥୧୩୨

ଈଶ୍ୱର ଉବାଚ

ହେ ମହାଋଷି ବାଞ୍ଛା ତୋ'ର ।
ସିଦ୍ଧି ହୋଇଲା ଯେ ନିକର ॥୧୩୩

ବାସୁଦେବ ଚରଣେ ଭକ୍ତି ।
ଅବିଘ୍ନେ ଲଭ ସେହୁ ଗତି ॥୧୩୪
ସାତକଳପ ପରିଯନ୍ତେ ।
ଅଜ୍ରାମର ହୁଅ ନିଶ୍ଚିନ୍ତେ ॥୧୩୫
ପ୍ରାପତ ହେଉ ଯଶପୁଣ୍ୟ ।
ଭୂତ ଭବିଷ୍ୟ ବର୍ତ୍ତମାନ ॥୧୩୬
ଅକ୍ଷୟ ତିନିକାଳେ ଜ୍ଞାନ ।
ଆତ୍ମାରେ ପରମାତ୍ମା ଚିହ୍ନ ॥୧୩୭
ଲଭ ବୈରାଗ୍ୟ ବ୍ରହ୍ମଜ୍ଞାନ ।
ହେଉ ତୋ' ବ୍ରହ୍ମତେଜ ପୁଣ ॥୧୩୮
ପୁରାଣକର୍ତ୍ତା ତୁମ୍ଭେ ହୁଅ ।
ଯାହାର ନାମ ମାର୍କଣ୍ଡେୟ ॥୧୩୯
ସୂତ କହେ ନୈମିଷାରଣ୍ୟେ ।
ଶୌନକ ମୁନି ସନ୍ନିଧାନେ ॥୧୪୦

ସୂତ ଉବାଚ

ଏମନ୍ତ ବର ହର ଦେଇ ।
ଗଲେ ସେ ଅନ୍ତର୍ଦ୍ଧାନ ହୋଇ ॥୧୪୧
ସେ ମାୟା ଅନୁଭବ ପୁଣ ।
କହିଲେ ପାର୍ବତୀ ଆଗେଣ ॥୧୪୨
ଯୋଗ ମହିମା ଋଷି ପାଇ ।
ଆପଣା ଆଶ୍ରମରେ ରହି ॥୧୪୩
ସିଦ୍ଧ ସ୍ୱରୂପ ଧ୍ୟାନେ ରହି ।
ବାସୁଦେବେ ନିମଗ୍ନ ହୋଇ ॥୧୪୪
ସାତକଳପ ଚିରଞ୍ଜିବୀ ।
ଧ୍ୟାନେ ରହିଲେ ବିଷ୍ଣୁସେବି ॥୧୪୫
ସେ ଏବେ ଅନ୍ତର୍ଦ୍ଧାନେ ରହି ।
ତପ-ଧ୍ୟାନରେ ବସିଛନ୍ତି ॥୧୪୬
ସେ ଯେ ମାର୍କଣ୍ଡ ମହାଋଷି ।
ଏହାଙ୍କ ମହିମା ବିଶେଷି ॥୧୪୭
ବର୍ଣ୍ଣନା କରି ତୁମ୍ଭ ଆଗେ ।
କହିଲୁ ଯଥାବିଧିଭାଗେ ॥୧୪୮
ବାସୁଦେବ ମାୟାନୁଭବ ।
ଅଦ୍ଭୁତ ଅଟେ ଯେଉଁ ଭାବ ॥୧୪୯
ପଣ୍ଡିତମାନେ ଏ ସଂସାରେ ।
ପଡ଼ି ଏ ମାୟା ବନ୍ଧନରେ ॥୧୫୦

Dr. Sudhanshu Sekhar Mishra

ନାନା ପ୍ରକାରେ ମୋହି ହୋ'ନ୍ତି ।
ବାସୁଦେବଙ୍କୁ ନ ଜାଣନ୍ତି ॥୧୫୧
ସେ କୃଷ୍ଣଚରଣାରବିନ୍ଦେ ।
ଯେ ନିତ୍ୟ ସେବନ୍ତି ଆନନ୍ଦେ॥୧୫୨
ସେହୁ ସେ ପଣ୍ଡିତ ବୋଲାନ୍ତି।
ଏ ମାୟା ସେମାନେ ତରନ୍ତି ॥୧୫୩
ସୂତ କହନ୍ତି ହେ ଶୌନକ ।
ତୁ ଭୃଗୁଶ୍ରେଷ୍ଠ ପୁଣ୍ୟାତ୍ମକ ॥୧୫୪
ଏ ବାସୁଦେବର ବର୍ଣ୍ଣନ ।
କହିଲୁ ତୁମ୍ଭର ଆଗେଣ ॥୧୫୫
ସେ ବାସୁଦେବ ଚକ୍ରଧର ।
ଚକ୍ରରେ କାଟେ ମାୟାଘୋର॥୧୫୬
ତା'ଙ୍କ ମହିମା ଯେଉଁମାନେ।
ଶୁଣନ୍ତି ଶୁଣାନ୍ତି ଗାୟନେ ॥୧୫୭
ତାଙ୍କର କର୍ମବନ୍ଧ ନାହିଁ ।
ସଂସାର ମାୟା ନ ଲାଗଇ ॥୧୫୮
ଅନ୍ତେ ସେ ବଇକୁଣ୍ଠ ପା'ନ୍ତି ।
ସକଳ ପାପରୁ ତରନ୍ତି ॥୧୫୯
କହଇ ବିପ୍ର ଜଗନ୍ନାଥ ।
ଦ୍ୱାଦଶସ୍କନ୍ଧେ ଭାଗବତ ॥୧୬୦

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ଦଶମୋଽଧ୍ୟାୟଃ ॥

## ଏକାଦଶ ଅଧ୍ୟାୟ

ଶୌନକ ଆଦି ମୁନିଜନେ ।
ପୁଚ୍ଛନ୍ତି ସୂତ ସନ୍ନିଧାନେ ॥୧

ଶୌନକ ଉବାଚ

ଏଥି ଉତ୍ତାରେ ଯେ ପ୍ରଶନ ।
ପୁଚ୍ଛିତେ ମୋର ବଡ଼ ମନ ॥୨
ବିଶେଷେ ତୁମ୍ଭେ ଶାସ୍ତ୍ରଜ୍ଞାତା ।
ମନ୍ତ୍ରତନ୍ତ୍ରର ଯେ ବକତା ॥୩
ବହୁତ ପ୍ରକାରେ ଅଭ୍ୟାସ ।
ଯେଣୁ ତୁମ୍ଭେ ବ୍ୟାସଙ୍କ ଶିଷ୍ୟ ॥୪
ସର୍ବ ବେଦାନ୍ତ ସାର ସେହି ।
ପୁରାଣ ଭାଗବତ ଯେହି ॥୫
ଭାଗବତର ତତ୍ତ୍ୱମାନ ।
ବେଦାନ୍ତସାର ଯେଉଁ ଜ୍ଞାନ ॥୬
ଯେଣେ ଯାହାରଟି ଅଭ୍ୟାସ ।
ଆସ୍ୱାଦ କରେ ତା'ର ରସ ॥୭
ଯେ ପ୍ରାଣୀ ବିଷ୍ଣୁଙ୍କୁ ଜାଣନ୍ତି ।
ସେ ବା ତନ୍ତ୍ରମନ୍ତ୍ରେ ଭଜନ୍ତି ॥୮
ବାସୁଦେବଙ୍କୁ ଯେ ପ୍ରକାରେ ।
ସେବା କରନ୍ତି ଭକ୍ତିଭରେ ॥୯
ଯେ ଜଗନ୍ନାଥ ଲକ୍ଷ୍ମୀପତି ।
ମହିମା ଦେବେ ନ ଜାଣନ୍ତି ॥୧୦
ନିରଞ୍ଜନ ଯେ ନିରାକାର ।
ଅରୂପରୂପ ବର୍ଣ୍ଣ ଯା'ର ॥୧୧
ତା'ଙ୍କୁ କି ରୂପେ କରି ଧ୍ୟାନ ।
କଳ୍ପନା କରି ପୂଜାମାନ ॥୧୨
ତା'ଙ୍କର ଅଙ୍ଗ ଆଭରଣ ।
ପ୍ରତ୍ୟଙ୍ଗ ଆୟୁଧ ଯେ ମାନ ॥୧୩
କାହାକୁ କି ଭାବେ କଳ୍ପନ୍ତି ।
କେମନ୍ତ ବିଧିରେ ପୂଜନ୍ତି ॥୧୪
କେବଣ ମନ୍ତ୍ରେ କରି ଜପ ।
ଆମ୍ଭ ଆଗେ କହ ସ୍ୱରୂପ ॥୧୫
ସର୍ବ କୁଶଳ ତୁମ୍ଭ ହେଉ ।
ସନ୍ଦେହ ଆମ୍ଭ ମନୁ ଯାଉ ॥୧୬
ଯେ କ୍ରିୟା ପୂଜାବିଧି କଲେ ।
ମନୁଷ୍ୟ ବିଷ୍ଣୁରୂପ ଧରେ ॥୧୭
ଜନ୍ମ ମରଣ ବିବର୍ଜିତ ।
ଏ କଥା କହିବା ନିୟତ ॥୧୮
ଏମନ୍ତ ଶୁଣି ସୂତମୁନି ।
ଶୌନକେ କହେ ମଞ୍ଜୁବାଣୀ ॥୧୯

ସୂତ ଉବାଚ

ଏ ବିଷ୍ଣୁପୂଜାର ବିଶେଷ ।
ଯେ ଗୁରୁ ଜ୍ଞାନ ଉପଦେଶ ॥୨୦
ବ୍ୟାସାଦି ଗୁରୁ ନମସ୍କାରି ।
ବିଭୂତି କହିବା ବିସ୍ତାରି ॥୨୧
ବ୍ରହ୍ମାଦି ଆଚାର୍ଯ୍ୟ ଯେମାନେ ।
ବେଦ ମନ୍ତ୍ରତନ୍ତ୍ର ବିଧାନେ ॥୨୨
କର୍ମତନ୍ତ୍ର ଭେଦଭାବରେ ।
ସେ ବିଧି ଶୁଣ ଏକଚିତ୍ତରେ ॥୨୩
ଋଷି ବୈଷ୍ଣବ ସାଧୁଜନ ।
କେ ପୂଜା କେବା ଆତ୍ମଧ୍ୟାନ ॥୨୪
ପ୍ରାତଃ ସୂର୍ଯ୍ୟ ଅଣଉଦୟେ ।
ସ୍ନାନ ଶଉଚବନ୍ତ ହୋଏ ॥୨୫
ଜଳରେ ଯଥାକର୍ମ ସାରି ।
ଭୂମିରେ କୁଶାସନ କରି ॥୨୬
ଆସନଶୁଦ୍ଧି ଭୂତଶୁଦ୍ଧି ।
ବର୍ଣ୍ଣଭେଦରେ ଦେହ ଭେଦି ॥୨୭
ଷଟଚକ୍ର ଭେଦି ସପ୍ତମେ ।
ପବନ ତୋଳିବ ସଂଯମେ ॥୨୮
ଏ ଆଦି ଯେତେ କର୍ମମାନ ।
କର ଅଙ୍ଗନ୍ୟାସ ଶୋଧନ ॥୨୯
ସେ ଯେ ଈଶ୍ୱର ନିରାକାର ।
ନିର୍ଗୁଣ ନିର୍ବିକାର ବର ॥୩୦
ମନ କଳ୍ପନାରୁ ତାଙ୍କର ।
ମାୟା ହୋଇଲା ଅବତାର ॥୩୧
ମାୟାରୁ ସୂତ୍ର ଯେ ଜନମ ।
ସୂତ୍ରରୁ ମହତତ୍ତ୍ୱ ଜାଣ ॥୩୨
ମହତତ୍ତ୍ୱରୁ ଅହଂକାର ।
ତନ୍ମାତ୍ର ପାଞ୍ଚଟି ଆବର ॥୩୩
ଏ ନବତତ୍ତ୍ୱେ ଯା' ସ୍ୱରୂପ ।
ବିକାରମୟ ସର୍ବାଧିପ ॥୩୪
ପୁରୁଷ ରୂପ ସେ ଧଇଲା ।
ସହସ୍ରଶୀର୍ଷ ବୋଲାଇଲା ॥୩୫
ଅସଂଖ୍ୟମାୟାରେ ସେ ଯୁକ୍ତ ।
ମହାପୁରୁଷ ବିଶ୍ୱଭୂତ ॥୩୬

Dr. Sudhanshu Sekhar Mishra

ତା' ନାଭିକମଳୁଁ ପ୍ରକାଶ ।
ଉପୁଜି ବିରାଟ ପୁରୁଷ ॥୩୭
ଯା' ରୂପ ଚଉଦ ଭୁବନେ ।
ପୂରିଛି ଜ୍ୟୋତି ପ୍ରଭାଗଣେ ॥୩୮
ଏ ପୁରୁଷର ଅଙ୍ଗମାନ ।
ପାତାଳ ଏହାର ଚରଣ ॥୩୯
ଏହାଙ୍କ ଅଗ୍ରଭାଗ ସୀମା ।
କେ ବର୍ଣ୍ଣୁ ଏହାର ମହିମା ॥୪୦
ଦୁଇ ପାପୁଲି ରସାତଳ ।
ଦୁଇ ଗୁଲ୍ଫ ଯେ ମହାତଳ ॥୪୧
ଅତଳ ଦିପୁଟ ଯେ ଜଂଘ ।
ସୁତଳ ଜାନୁ ଦୁଇଭାଗ ॥୪୨
ବିତଳ ତଳାତଳ ଉରୁ ।
ଦି ପିଚା ସପ୍ତପୃଥ୍ୱୀ ଧରୁ ॥୪୩
ନାଭିମଣ୍ଡଳ ଯେ ଆକାଶ ।
ନଭ ନାମ ତା'ର ବିଶେଷ ॥୪୪
ସ୍ୱର୍ଗ ଜ୍ୟୋତିଷଚକ୍ର ହୋଇ ।
ହୃଦରେ ଏମାନ ଅଛଇ ॥୪୫
କଣ୍ଠ ଯେ ମହଲୋକ ପୁଣ ।
ମୁଖ ଯେ ଜନଲୋକ ସ୍ଥାନ ॥୪୬
ଲଲାଟେ ତପଲୋକ ବସେ ।
ଶିରେ ସତ୍ୟଲୋକ ପ୍ରକାଶେ ॥୪୭
ସୂର୍ଯ୍ୟ ଏହାଙ୍କ ଚକ୍ଷୁଦ୍ୱୟ ।
ନାସିକା ବାୟୁଟି ନିଶ୍ଚୟ ॥୪୮
ଦଶଦିଶ ତା' କର୍ଣ୍ଣ ହୋଇ ।
ମେଢ ପ୍ରଜାପତି ବୋଲାଇ ॥୪୯
ମୃତ୍ୟୁ ଯାହାର ପାୟୁ ଜାଣ ।
ବାହୁ ଲୋକପାଳ ପ୍ରମାଣ ॥୫୦
ଚନ୍ଦ୍ରମା ଯାହାରଟି ମନ ।
ଦୁଇ ଭ୍ରୂଲତା କାଳଯମ ॥୫୧
ଅଧର ଓଷ୍ଠ ଲୋଭ ହୋଇ ।
ଉପର ଓଷ୍ଠ ଲଜ୍ଜା କହି ॥୫୨
ଯାହାର ଦନ୍ତମାନ ଜ୍ୟୋସ୍ନା ।
ହାସ୍ୟ ଭ୍ରମ ନାମରେ ଜଣା ॥୫୩
ବୃକ୍ଷମାନେ ଯେ ରୋମଦେଶ ।
ଯାହାର ମେଘମାନେ କେଶ ॥୫୪

ଏ ଯେଉଁ ବିରାଟ ପୁରୁଷ ।
ତେଜ ବିସ୍ତାରି ସେ ପ୍ରକାଶ ॥୫୫
ସପ୍ତବିତସ୍ତି ପରିମାଣ ।
ସମସ୍ତ ଠହୁଁ ଯେ ଭିଆଣ ॥୫୬
ତା' କଣ୍ଠେ କଉସ୍ତୁଭ ମଣି ।
ନିରାକାର ଜ୍ୟୋତି ସେ ପୁଣି ॥୫୭
ସେ ଜ୍ୟୋତି କଣ୍ଠେ ବହିଛନ୍ତି ।
ଯୋଗୀ ଯେଉଁ ଜ୍ୟୋତି ଭାବନ୍ତି ॥୫୮
ତା' ପ୍ରଭା ଜଗତ ପାବନୀ ।
ଯେ ନିରାକାର ସ୍ୱରୂପିଣୀ ॥୫୯
ଜୀବ ଚୈତନ୍ୟ ସେ ଅଟଇ ।
ଶ୍ରୀବତ୍ସ ତା'ର ପ୍ରଭା ହୋଇ ॥୬୦
ତ୍ରିଗୁଣମୟୀ ମାୟାଛଳେ ।
ବନମାଳାଏ ଲମ୍ବେ ଗଳେ ॥୬୧
ବେଦ ଯାହାର ପୀତବସ୍ତ୍ର ।
ପ୍ରଣବ ରୂପ ଉପବୀତ ॥୬୨
କର୍ଣ୍ଣରେ ମକର କୁଣ୍ଡଳ ।
ସାଂଖ୍ୟ ଯୋଗ ଦୁହେଁ ସୁଢଳ ॥୬୩
ତାହାର ଶିରରେ ମୁକୁଟ ।
ଚତୁର୍ବିଧମୁକ୍ତି ପ୍ରକଟ ॥୬୪
ଯା' ପରମେଷ୍ଠୀପଦ ଭଣି ।
ତା' ଶିଖା ମୁକୁଟର ମଣି ॥୬୫
ସେ ସର୍ବଲୋକ ନମସ୍କୃତ ।
ଯା' ରୂପ ଅବ୍ୟକ୍ତ ଅନନ୍ତ ॥୬୬
ତା'ଙ୍କର ଶୟନ ଆସନ ।
ଯେ ଧର୍ମ ବଇରାଗ୍ୟ ଜ୍ଞାନ ॥୬୭
ଏ ଅଷ୍ଟଦଳ ଯେ କମଳ ।
ବସିବା ଆସନ ନିର୍ମଳ ॥୬୮
ଯମ ନିୟମାଦି ଅଷ୍ଟାଙ୍ଗ ।
ଚତୁଷଷ୍ଟି ଆସନ ଯୋଗ ॥୬୯
ପଦ୍ମକେଶରେ ତା'ଙ୍କ ସ୍ଥାନ ।
ଏବେ ଆୟୁଧମାନ ଶୁଣ ॥୭୦
ବଳ ସାହସ ତେଜ ପ୍ରାଣ ।
କଉମୋଦକୀ ଗଦା ଜାଣ ॥୭୧
ଶୁଦ୍ଧ ସତ୍ତ୍ୱ ଯେ ଜଳ ପୁଣ ।
ପାଞ୍ଚଜନ୍ୟଶଙ୍ଖ କରେଣ ॥୭୨

ତା' ବାମହସ୍ତେ ବହିଛନ୍ତି ।
ଡାହାଣ ହସ୍ତେ ଚକ୍ର ସ୍ଥିତି ॥୭୩
ସେ ଜ୍ୟୋତିସ୍ତତ୍ତ୍ୱରୂପ ତେଜେ ।
ମହାତୀକ୍ଷ୍ଣ ଧାରେ ବିରାଜେ ॥୭୪
ସହସ୍ରଧାର ରୂପ ତା'ର ।
ସୁଦର୍ଶନ ଚକ୍ର ପ୍ରଚାର ॥୭୫
ଆକାଶତତ୍ତ୍ୱ ଅସିବର ।
ନନ୍ଦକ ଖଡ୍ଗ ନାମ ଯା'ର ॥୭୬
ବିସ୍ତାର ତମୋମୟ ଚର୍ମ ।
ଦକ୍ଷିଣ ହସ୍ତେ ଶୋଭମାନ ॥୭୭
କାଳରୂପ ଯେ ନିମେଷାଦି ।
ଗଣନା ଯେ ବତ୍ସର ଆଦି ॥୭୮
ସାରଙ୍ଗଧନୁ ତା'କୁ ଜାଣ ।
ଶୋଭା ସେ ବାମହସ୍ତେ ପୁଣ ॥୭୯
ପାପପୁଣ୍ୟ ଯେ କର୍ମ ଦୁଇ ।
ଏ ମାୟା ମୋହମାନ ହୋଇ ॥୮୦
କର୍ମମୟ କାଣ୍ଡ ଭାରତି ।
କଟି ପୃଷ୍ଠରେ ବହିଛନ୍ତି ॥୮୧
କର୍ମ ତ୍ରିଗୁଣ ଦଉଡ଼ିରେ ।
କଟିରେ ବେଷ୍ଟିତ ଆକାରେ ॥୮୨
ଏକାଦଶ ଇନ୍ଦ୍ରିୟଗଣ ।
କାଣ୍ଡ ସଂଗ୍ରହଣ କରିଣ ॥୮୩
ଦକ୍ଷିଣହସ୍ତେ ତାହା ଘେନି ।
ଟଙ୍କାର କରୁଛନ୍ତି ପୁଣି ॥୮୪
ଇନ୍ଦ୍ରିୟମାନଙ୍କ ଚେଷ୍ଟିତ ।
ସେମାନେ ହୋଇଛନ୍ତି ରଥ ॥୮୫
ମନକୁ କରିଣ ସାରଥି ।
ତ୍ରିଗୁଣେ ଅଶ୍ୱ ରୂପେ ସ୍ଥିତି ॥୮୬
ଇନ୍ଦ୍ରିୟମାନଙ୍କ ଲକ୍ଷଣ ।
ଆକୃତି ରୂପ ନାନାବର୍ଣ୍ଣ ॥୮୭
ଅର୍ଥକ୍ରିୟା ଇନ୍ଦ୍ରି ବିକାର ।
ମଣ୍ଡଳ ନାମେ ସେ ପ୍ରଚାର ॥୮୮
ଦେବତା ସ୍ୱରୂପ ଗ୍ରହଣ ।
ଯଜ୍ଞାଦି ଦୀକ୍ଷାମାନେ ପୁଣ ॥୮୯
ଏହି ରଥରେ ସେ ସଂସ୍କାର ।
ଧର୍ମାଧର୍ମ ରଥଚକ୍ରର ॥୯୦

Dr. Sudhanshu Sekhar Mishra

ଏହାଙ୍କ ଭାବ ଚତୁର୍ଦ୍ଦଶ ।
ଏମନ୍ତେ ଚକ୍ର ଷଟଦଶ ॥୯୧
ରଥରେ ଘୋଷ ତିନିବେଦ ।
ନନ୍ଦୀ ଯମକ ସର୍ବଭେଦ ॥୯୨
ତହିଁରୁ ବେଦଧ୍ୱନି ରସ ।
ରଥର ନାମ ନନ୍ଦିଘୋଷ ॥୯୩
ତାହାଙ୍କ ଧ୍ୱଜ ଯେ ଗରୁଡ଼ ।
ଶବଦ ବ୍ରହ୍ମଲୋକେ ବଡ଼ ॥୯୪
ଏହି ପ୍ରକାରେ ବାସୁଦେବ ।
ସର୍ବପ୍ରାଣୀ ହୃଦେ ପ୍ରଭବ ॥୯୫
ଜୀବ ସ୍ୱରୂପେ ପୂରିଛନ୍ତି ।
ପିଣ୍ଡ ବ୍ରହ୍ମାଣ୍ଡ ଏକମତି ॥୯୬
ସଂସାର କରଇ ସର୍ଜନ ।
ବ୍ରହ୍ମସ୍ୱରୂପେ ଭଗବାନ ॥୯୭
ତା'ଙ୍କ ସେବା ଯେ ପ୍ରାଣୀ କରେ ।
ଆତ୍ମାର ପାପ ଯାଇ ଦୂରେ ॥୯୮
ସେ ଭଗବାନ ଯେ ପୁରୁଷ ।
ଆପଣା ସମ୍ପତ୍ତିର ଅଂଶ ॥୯୯
ଯେ ଷଡ଼ ଅଇଶ୍ୱର୍ଯ୍ୟ ମାନ ।
କମଳ ରୂପରେ ଘଟଣ ॥୧୦୦
ଲୀଳାକମଳ କରିଛନ୍ତି ।
ଦକ୍ଷିଣ ଭୁଜରେ ବହନ୍ତି ॥୧୦୧
ଆଲଟ ଚାମର ରୂପେଣ ।
ଧର୍ମ ଯଶକୁ ସେ ବହିଣ ॥୧୦୨
ବୈକୁଣ୍ଠପଦକୁ ସେ ପୁଣ ।
ଧବଳଛତ୍ର ସେ କରିଣ ॥୧୦୩
ଶିର ଉପରେ ସେ ଧାରଣ ।
ଅଭୟଦାତା ପଦ ପୁଣ ॥୧୦୪
ରକ ଯଜୁ ସାମ ତ୍ରିବେଦ ।
ଯଜ୍ଞମୟ ପୁରୁଷ ଭେଦ ॥୧୦୫
ଗରୁଡ଼ ରୂପେ ବହିଛନ୍ତି ।
ବିଷ୍ଣୁରଥ ନାମ ବହନ୍ତି ॥୧୦୬
ଯେ ନିରାକାର ସ୍ୱରୂପିଣୀ ।
ସାକ୍ଷାତେ ଈଶ୍ୱରୀ ସେ ଲକ୍ଷ୍ମୀ ॥୧୦୭
ସେ ରୂପ ହୃଦୟରେ ଛନ୍ତି ।
ସକଳ ମନ୍ତ୍ରଯନ୍ତ୍ର ମୂର୍ତ୍ତି ॥୧୦୮

ବିଶ୍ୱ-କେଶନ ତନ୍ତ୍ରମୂର୍ତ୍ତି ।
ପାରିଷଦର ଅଧିପତି ॥୧୦୯
ନିର୍ଗୁଣାଦି ଯେ ଭକ୍ତମାନେ ।
ସନକାଦି ଯେ ରଷିଗଣେ ॥୧୧୦
ଷୋଡ଼ଶ ପାରିଷଦ ହୋଇ ।
ଦ୍ୱାରପାଳ ନନ୍ଦ ବିଜେ ହିଁ ॥୧୧୧
ଅଣିମାଦି ସମ୍ପତ୍ତିମାନ ।
ମନ୍ତ୍ରଉପନିଷଦ ଜ୍ଞାନ ॥୧୧୨
ଚାରିବେଦ ଚାରିଦୁଆରେ ।
ଗାୟତ୍ରୀ ଚବିଶ ଅକ୍ଷରେ ॥୧୧୩
ପାବଚ୍ଛମାନ ସେ ରଥକୁ ।
ଅଗମ୍ୟ ବ୍ରହ୍ମାଶଙ୍କରଙ୍କୁ ॥୧୧୪
ବାସୁଦେବ ସଙ୍କରଷଣ ।
ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥୧୧୫
ଏ ଚାରିବ୍ୟୁହ ଚାରିକୋଟି ।
ଚାରି ପୀଠରେ ପରମେଷ୍ଠୀ ॥୧୧୬
ତା'ଙ୍କ ମଧ୍ୟେ ନିର୍ଗୁଣରୂପ ।
ବିଶ୍ୱତୈଜସ ପ୍ରାଜ୍ଞରୂପ ॥୧୧୭
ତୁରୀୟ ପୁରୁଷ ତ୍ରିଧାମ ।
ସେ ରଥ ମଧ୍ୟେ ତା' ବିଶ୍ରାମ ॥୧୧୮
ଅଥ ଇନ୍ଦ୍ରିୟାଶୟ ଜ୍ଞାନ ।
ବୃତ୍ତି ଭାବନା ଭଗବାନ ॥୧୧୯
ଚାରିମୂର୍ତ୍ତି ସେବକମାନେ ।
ସେବନ୍ତି ଯେ ଯାହା ବିଧାନେ ॥୧୨୦
ଅଙ୍ଗ ଉପାଙ୍ଗ ଯେ ଆୟୁଧ ।
ଆଭରଣ ସଂଖ୍ୟା ଏ ଭେଦ ॥୧୨୧
ଉପନିଷଦ ବ୍ରହ୍ମଭାଗ ।
ଜ୍ୟୋତି ପ୍ରଭାରେ ଏ ସଂଯୋଗ ॥୧୨୨
ଏହି ପ୍ରକାରେ ସେ ପୁରୁଷ ।
ବିରାଜମାନ ହୋଏ ଦୃଶ୍ୟ ॥୧୨୩
ମହାବିରାଟ ସେ ବୋଲାନ୍ତି ।
ବିଶ୍ୱକୁ ଗୋଚର ନୁହଁନ୍ତି ॥୧୨୪
ହେ ବିପ୍ରବର ଶଉନକ ।
ଏ ବିଷ୍ଣୁମହିମା ଅନେକ ॥୧୨୫
ଏ ବିଷ୍ଣୁ ସ୍ୱୟଂ ବ୍ରହ୍ମଜ୍ୟୋତି ।
ସକଳ ଦ୍ରଷ୍ଟା ସେ ବୋଲାନ୍ତି ॥୧୨୬

ଆପଣା ମହିମା ତ୍ରିଗୁଣ ।
ମାୟାରୁ ସଂସାର ଭିଆଣ ॥୧୨୭
ତ୍ରିଗୁଣ ଉତ୍ପତ୍ତି ପ୍ରଳୟ ।
କରି ଅଛନ୍ତି ମହାଶୟ ॥୧୨୮
ସେ ତେଣୁ ଇନ୍ଦ୍ରିୟାଦିମାନ ।
ବଶକୁ ନୁହଁନ୍ତି ଭାଜନ ॥୧୨୯
ତେଣୁ ହୃଷୀକେଶ ବୋଲାନ୍ତି ।
ଯେଣୁ ମାୟା ଆବୋରିଛନ୍ତି ॥୧୩୦
ମାୟାବନ୍ଧନ ପ୍ରାୟେ ଦିଶେ ।
କାହାରି ସଙ୍ଗେ ସେ ନ ମିଶେ ॥୧୩୧
ତା'ଙ୍କ ସେବକ ଯେଉଁମାନେ ।
କରଣି କରନ୍ତି ଯତନେ ॥୧୩୨
ସେ ଆତ୍ମଜ୍ଞାନ ଯେବେ ଜାଣି ।
ଆମ୍ଭେ ଦର୍ଶନ ଦ୍ୟନ୍ତି ପ୍ରାଣୀ ॥୧୩୩
ତା'ଙ୍କ ଭକତ ଯେଉଁ ଜନେ ।
ନାରଦ ଆଦି ମୁନିମାନେ ॥୧୩୪
ସ୍ୱଭାବେ କୀର୍ତ୍ତନ କରନ୍ତି ।
ଭକ୍ତି ମୁକ୍ତି ଗତି ଇଚ୍ଛନ୍ତି ॥୧୩୫
ଯେ ଯେତେ ଭାବରେ ଭାବନ୍ତି ।
ସେ ସ୍ଥାନେ ପ୍ରବେଶ ହୁଅନ୍ତି ॥୧୩୬
ଏମନ୍ତ ସ୍ତୁତି ଯେ କରନ୍ତି ।
ନମସ୍ତେ ପ୍ରଭୁ ଜଗଜ୍ୟୋତି ॥୧୩୭
ହେ, କୃଷ୍ଣ କୃଷ୍ଣ ସର୍ବସୁଖ ।
ଏ ମାୟାମୟକୁ ଉପେକ୍ଷ ॥୧୩୮
ଅର୍ଜ୍ଜୁନ କୃଷ୍ଣସଖା ଯେଣୁ ।
କୃଷ୍ଣସଖା ଯେ ନାମ ତେଣୁ ॥୧୩୯
ହେ କୃଷ୍ଣ କୃଷ୍ଣସଖା ତୁହି ।
ହେ ବୃଷ୍ଣିଶ୍ରେଷ୍ଠ ଭାବଗ୍ରାହୀ ॥୧୪୦
ଅବନୀ ଭାରା ଉଦ୍ଧାରଣେ ।
ନାଶିଲୁ ଦୁଷ୍ଟ କ୍ଷତ୍ରିଗଣେ ॥୧୪୧
ହେ ପାପାଗ୍ନି ବଡ଼ବାନଳ ।
ଗୋବିନ୍ଦ ମଦନ ଗୋପାଳ ॥୧୪୨
ହେ ଗୋପୀପତେ ହେ ଗୋକୁଳ ।
ଅନାଦି ପ୍ରଭୁ ଆଦିମୂଳ ॥୧୪୩
ଗୋପବନିତା ଭୃତ୍ୟ ତୋ'ରା ।
ଗାବନ୍ତି ଯଶ ନିରନ୍ତର ॥୧୪୪

Dr. Sudhanshu Sekhar Mishra

ହେ ଭୂତ ବିପତ୍ତି ନାଶନ ।
ହେ ତୀର୍ଥସର୍ବ ନାରାୟଣ ॥୧୪୫
ହେ କୃଷ୍ଣ ଶ୍ରବଣ ମଙ୍ଗଳ ।
ଅଖିଳ ସର୍ବସିଦ୍ଧି ଫଳ ॥୧୪୬
ଏ ଯେ ତୁମ୍ଭ ବିଭୂତିମାନ ।
ବ୍ରହ୍ମାଦି ତୃଣାନ୍ତ ସର୍ଜନ ॥୧୪୭
ଏହାଙ୍କୁ ତୁମ୍ଭେ ରକ୍ଷା କର ।
ଅଶେଷ ମହିମା ତୁମ୍ଭର ॥୧୪୮
ଏହି ପ୍ରକାରେ ଭକ୍ତମାନେ ।
ନିରତେ ସ୍ତୁତି କରି ଧ୍ୟାନେ ॥୧୪୯
ଯୋଗାଦି ବିଧି ସେ କରନ୍ତି ।
ଧର୍ମଶାସ୍ତ୍ର ମାର୍ଗେ ପ୍ରବର୍ତ୍ତି ॥୧୫୦
ଏ ମହାପୁରୁଷ ଲକ୍ଷଣ ।
ଯେତେକ କରିଲୁ ବର୍ଣ୍ଣନ ॥୧୫୧
ଏ ମହାପୁରୁଷ ଅନନ୍ତ ।
ନିତ୍ୟେ ଯେ କରେ ଦଣ୍ଡବତ ॥୧୫୨
ପ୍ରେମ ଭକତି ଭାବେ ଯୁତ ।
ଦେଇଣ କୃଷ୍ଣପାଦେ ଚିତ୍ତ ॥୧୫୩
ପଢଇ ଶୁଣାଇ ଶୁଣଇ ।
ଏକାଗ୍ରଚିତ୍ତ ଯେବା ହୋଇ ॥୧୫୪
ଏହାଙ୍କ ମନ୍ତ୍ର ଯେ ଜପଇ ।
ଆତ୍ମା ସର୍ବଭୂତେ ଦେଖଇ ॥୧୫୫
ଏ ଯେ ନିରାକାର ପୁରୁଷ ।
ସର୍ବବ୍ୟାପୀ ହୃଦେ ପ୍ରକାଶ ॥୧୫୬
ବ୍ରହ୍ମରୂପୀ ସୂକ୍ଷ୍ମ ବୋଲାଇ ।
ସଂସାର ଭେଦ ତା'ର ନାହିଁ ॥୧୫୭
ବ୍ରହ୍ମ ସ୍ୱରୂପେ ଲୀନ ହୋଇ ।
ଅନ୍ତେ ସେ ସେହି ସ୍ଥାନ ପାଇ ॥୧୫୮
ଏମନ୍ତ ସୂତ ମୁଖୁଁ ଶୁଣି ।
ଶୌନକ ପଚାରନ୍ତି ପୁଣି ॥୧୫୯

ଶୌନକ ଉବାଚ

ଭୋ ସୂତ ଧନ୍ୟ ସେ ମହିମା ।
କହିଲ ଯେଉଁ ଗୁଣସୀମା ॥୧୬୦
ଏ ମହାପୁରୁଷ ଲକ୍ଷଣ ।
ଶୁଣି କୃତାର୍ଥ ମୋ' ଜୀବନ ॥୧୬୧

ଯେ ମହାପୁରୁଷ ସ୍ୱରୂପୀ ।
ସୂର୍ଯ୍ୟ ଜ୍ୟୋତି ଜଗତ ବ୍ୟାପୀ ॥୧୬୨
ଆକାଶ ମଣ୍ଡଳେ ଉଦୟେ ।
କାଳ ଉତ୍ପତ୍ତି ସ୍ଥିତି ହୋଏ ॥୧୬୩
ପ୍ରବୃତ୍ତି ସଂସାର ଉତ୍ପତ୍ତି ।
ପ୍ରଳୟମାନ ପ୍ରାଣୀ ହୋନ୍ତି ॥୧୬୪
ବାରମାସେ ବାର ଆଦିତ୍ୟ ।
ଦେହ ବହିଣ ତେଜବନ୍ତ ॥୧୬୫
କାଳ ପ୍ରବର୍ତ୍ତାଉ ଅଛନ୍ତି ।
ଉଦୟ ଅସ୍ତ ସେ ହୁଅନ୍ତି ॥୧୬୬
ତା'ଙ୍କ ଦେହ ଜ୍ୟୋତିମଣ୍ଡଳୀ ।
ସପତଗଣ ଘେନି ଚଳେ ॥୧୬୭
ତା'ଙ୍କର ନାମ ଗୁଣ କର୍ମ ।
କହି ଛଡ଼ାଅ ମତିଭ୍ରମ ॥୧୬୮
ସେମାନେ ବାସୁଦେବେ ଭକ୍ତି ।
ସୂର୍ଯ୍ୟ ମଣ୍ଡଳେ ପ୍ରବର୍ତ୍ତନ୍ତି ॥୧୬୯
ସେ ସୂର୍ଯ୍ୟ ସ୍ୱରୂପ ଯେ ହରି ।
ମହିମା କହିବା ବିସ୍ତାରି ॥୧୭୦
ଏମନ୍ତ ଶୁଣି ସୂତ ତୋଷେ ।
ଶୌନକେ କହନ୍ତି ହରଷେ ॥୧୭୧

ସୂତ ଉବାଚ

ବିଷ୍ଣୁର ଅନାଦି ଅବ୍ୟୟ ।
ମାୟାରୁ ହୁଅନ୍ତି ଉଦୟ ॥୧୭୨
ସକଳ ଜନ୍ତୁ ଆତ୍ମା ରୂପ ।
ନିର୍ମାଣ କରିଣ ସଂକ୍ଷେପ ॥୧୭୩
ଲୋକରେ କାଳ ବର୍ତ୍ତମାନ ।
ନାନାଦି ଜୀବେ ପ୍ରବର୍ତ୍ତନ ॥୧୭୪
ସକଳ ଆତ୍ମାରୂପୀ ସୂର୍ଯ୍ୟ ।
ସର୍ବେ ଆତଯାତ ତା' ତେଜ ॥୧୭୫
ସବୁରି ଦେହେ ଆତ୍ମାସୃଷ୍ଟି ।
ଯେ ହରିରୂପେ ପରମେଷ୍ଟୀ ॥୧୭୬
ସକଳ ବେଦକ୍ରିୟା ମୂଳ ।
ନିରାକାର ଜ୍ୟୋତିମଣ୍ଡଳ ॥୧୭୭
ଋଷିମାନେ ବହୁ ପ୍ରକାରେ ।
କହନ୍ତି ସୂର୍ଯ୍ୟର ସଞ୍ଚାରେ ॥୧୭୮

ନିମେଷ ଆଦି ଯେ ବତ୍ସର ।
କାଳଗଣନା ପ୍ରାଣୀଙ୍କର ॥୧୭୯
ସଂସାରେ ଯେତେ ଦେଶମାନ ।
ଏ ସର୍ବ ତାହାର ଭିଆଣ ॥୧୮୦
ସକଳ ପ୍ରାଣୀମାନଙ୍କର ।
କ୍ରିୟା କର୍ମରେ ସେ ଈଶ୍ୱର ॥୧୮୧
କର୍ମର କରତା ହିଁ ସେହି ।
କର୍ମକରଣ ତା'କୁ କହି ॥୧୮୨
କାର୍ଯ୍ୟ ସ୍ୱରୂପ ପୁଣ ସେହି ।
ସର୍ବ ଆଗମ ରୂପ ହୋଇ ॥୧୮୩
ଦ୍ରବ୍ୟ ଯେ ଫଳ ପ୍ରକାରେଣ ।
ନବଧା ରୂପେ ସୂର୍ଯ୍ୟ ଜାଣ ॥୧୮୪
ଯେ ଚୈତ୍ର ଆଦି ବାରମାସେ ।
କାଳରୂପ ଧରି ବିଳସେ ॥୧୮୫
ପ୍ରାଣୀଙ୍କ କୁଶଳ ନିମନ୍ତେ ।
ବିହାର ତେଜୋମୟ ରଥେ ॥୧୮୬
ବାର ଆଦିତ୍ୟ ତେଜ ବହି ।
ମଧ୍ୟରେ ସାକ୍ଷୀରୂପ ହୋଇ ॥୧୮୭
ଭିନ୍ନ ଭିନ୍ନ ଗୁଣ ଆଚରେ ।
ଯେମନ୍ତେ ସଂସାର ବିହରେ ॥୧୮୮
ଚଇତ୍ର ମାସେ ଯେ ବିହାର ।
କହିବା ତହିଁର ବିଚାର ॥୧୮୯
ଧାତା ନାମେ ଆଦିତ୍ୟ ସୁର ।
କୃତସ୍ଥଳୀ ନାମେ ଅପ୍‌ସର ॥୧୯୦
ହେତି ନାମେଣ ସେ ରାକ୍ଷସ ।
ବାସୁକି ନାମେ ନାଗ ଶେଷ ॥୧୯୧
ରଥକୃତ ନାମରେ ଯକ୍ଷ ।
ପୁଲସ୍ତ୍ୟଋଷି ବ୍ରହ୍ମଦକ୍ଷ ॥୧୯୨
ଗନ୍ଧର୍ବ ନାମ ଯେ ତୁମ୍ବୁର ।
ଏ ସାତ ରଥରେ ବିହାର ॥୧୯୩
ବିହାର ଏମାନଙ୍କ ପୁଣ ।
ଆଦିତ୍ୟ ତେଜ ପ୍ରକାଶେଣ ॥୧୯୪
ଅପସରା ନୃତ୍ୟ କରନ୍ତି ।
ରାକ୍ଷସେ ପୃଷ୍ଠ ରଖିଥା'ନ୍ତି ॥୧୯୫
ନାଗେ ରଥ ଦଉଡ଼ି ହୋଇ ।
ଯକ୍ଷ ରୂପେ ଦ୍ରବ୍ୟନ୍ତ ଦେଇ ॥୧୯୬

Dr. Sudhanshu Sekhar Mishra

ପ୍ରାଣୀଙ୍କି ଅର୍ଥ ସେ ଦିଅନ୍ତି ।
ଋଷିରୂପେ ମନ୍ତ୍ର ଜପନ୍ତି ॥୧୯୭
କରନ୍ତି ଜଗତକୁ ଶାନ୍ତି ।
ଧର୍ମମାର୍ଗେ ତଥ୍ୟ କହନ୍ତି ॥୧୯୮
ଗନ୍ଧର୍ବେ ଗୀତ ଯେ ଗାୟନ ।
ଏମନ୍ତେ ସପ୍ତ ନିଯୋଜନ ॥୧୯୯
ବୈଶାଖ ମାସରେ ଯେ ପୁଣ ।
ଆଦିତ୍ୟ ଅର୍ଯ୍ୟମା ନାମେଣ ॥୨୦୦
ପୁଲହ ନାମେ ମହାଋଷି ।
ପ୍ରହେତି ନାମେଣ ରାକ୍ଷସୀ ॥୨୦୧
ଅଧୌଜା ନାମେ ଯକ୍ଷବୀର ।
ପୁଞ୍ଜିକସ୍ଥଳୀ ଅପସର ॥୨୦୨
ନାରଦ ନାମରେ ଗନ୍ଧର୍ବ ।
କଛନୀର ନାମେଣ ନାଗ ॥୨୦୩
ଏବେ ଯେ ଜ୍ୟେଷ୍ଠମାସ ଶୁଣ ।
ଆଦିତ୍ୟ ନାମ ମିତ୍ର ପୁଣ ॥୨୦୪
ଅତ୍ରି ନାମରେ ମହାଋଷି ।
ପୌରୁଷେୟ ନାମେ ରାକ୍ଷସୀ॥୨୦୫
ତକ୍ଷକ ନାଗ ଯେ ବିଦିତ ।
ମେନକା ଅପସରା ନୃତ୍ୟ ॥୨୦୬
ହା ହା ଯେ ଗନ୍ଧର୍ବର ନାମ ।
ଯକ୍ଷ ଅଟଇ ରଥସ୍ୱନ ॥୨୦୭
ଏବେ ଯେ ଆଷାଢ ମାସର ।
ବରୁଣ ନାମ ସୂର୍ଯ୍ୟଙ୍କର ॥୨୦୮
ବଶିଷ୍ଠ ନାମେ ଋଷି ହୋଏ ।
ଅପ୍‌ସରା ରମ୍ଭା ନାମ ବହେ ॥୨୦୯
ହୂହୁ ନାମରେ ଯେ ଗନ୍ଧର୍ବ ।
ନାଗର ନାମ ଶୁକ୍ରଭାବ ॥୨୧୦
ଚିତ୍ରସ୍ୱନ ନାମରେ ରକ୍ଷ ।
ସହଜନ୍ୟ ଯେ ଅଟେ ଯକ୍ଷ ॥୨୧୧
ଏବେ ଶ୍ରାବଣ ମାସେ ପୁଣ ।
ଆଦିତ୍ୟ ଇନ୍ଦ୍ର ନାମେ ଜାଣ ॥୨୧୨
ବିଶ୍ୱାବସୁ ନାମେ ଗନ୍ଧର୍ବ ।
ଏଳାପତ୍ର ନାଗ ପ୍ରଭବ ॥୨୧୩
ଋଷିଙ୍କ ନାମ ଯେ ଅଙ୍ଗିରା ।
ପ୍ରମ୍ଲୋଚା ନାମେ ଅପସରା ॥୨୧୪

ବର୍ଜ୍ୟ ନାମରେ ହୋଏ ରକ୍ଷ ।
ଶ୍ରୋତା ନାମକ ହୋଏ ଯକ୍ଷ॥୨୧୫
ଏବେ ଭାଦ୍ରବ ମାସେ ଶୁଣ ।
ଆଦିତ୍ୟ ନାମ ବିବସ୍ୱାନ ॥୨୧୬
ଅସାରଣ ନାମରେ ଯକ୍ଷ ।
ବ୍ୟାଘ୍ର ନାମକ ଅଟେ ରକ୍ଷ ॥୨୧୭
ଗନ୍ଧର୍ବ ନାମ ଉଗ୍ରସେନ ।
ମହର୍ଷି ନାମ ଭୃଗୁ ଜାଣ ॥୨୧୮
ଅନୁମ୍ଲୋଚା ଯେ ଅପସରା ।
ଶଙ୍ଖପାଳ ଯେ ନାଗବୀରା ॥୨୧୯
ଏବେ ଆଶ୍ୱିନ ମାସେ ପୁଣ ।
ଆଦିତ୍ୟ ତ୍ୱଷ୍ଟା ନାମେ ଜାଣ॥୨୨୦
ଜମଦଗ୍ନି ଯେ ମହାଋଷି ।
କମ୍ବଳ ନାମେ ନାଗ ବସି ॥୨୨୧
ତିଲୋତ୍ତମା ଯେ ଅପସର ।
ବ୍ରହ୍ମାପେତ ନାମେ ଅସୁର ॥୨୨୨
ଯକ୍ଷର ନାମ ଶତଜିତ ।
ଗନ୍ଧର୍ବ ଧୃତରାଷ୍ଟ୍ର ଖ୍ୟାତ ॥୨୨୩
ଏବେ ହୋ କାର୍ତ୍ତିକ ଯେ ମାସେ ।
ଆଦିତ୍ୟ ବିଷ୍ଣୁ ନାମେ ବସେ॥୨୨୪
ନାଗର ନାମ ଅଶ୍ୱତର ।
ରମ୍ଭା ନାମରେ ଅପସର ॥୨୨୫
ମଖାପେତ ନାମକ ରକ୍ଷ ।
ସତ୍ୟଜିତ ନାମେଣ ଯକ୍ଷ ॥୨୨୬
ବିଶ୍ୱାମିତ୍ର ନାମକ ଋଷି ।
ଗନ୍ଧର୍ବ ସୂର୍ଯ୍ୟବର୍ଚ୍ଚା ବସି ॥୨୨୭
ଏବେ ଯେ ମାର୍ଗଶିର ମାସ ।
ଅଂଶୁମାନ ଆଦିତ୍ୟ ଅଂଶ ॥୨୨୮
ଋଷି ଯେ କଶ୍ୟପ ପ୍ରତ୍ୟକ୍ଷ ।
ତାର୍କ୍ଷ୍ୟ ନାମରେ ହୋଏ ପକ୍ଷ॥୨୨୯
ଋତସେନ ଗନ୍ଧର୍ବ ବୀର ।
ଉର୍ବଶୀ ନାମେ ଅପସର ॥୨୩୦
ବିଦ୍ୟୁଚ୍ଛତ୍ରୁ ନାମେ ରାକ୍ଷସ ।
ମହାଶଙ୍ଖ ନାମେ ନାଗେଶ ॥୨୩୧
ଏବେ ହୋ ପୌଷମାସ ଶୁଣ ।
ଆଦିତ୍ୟ ଭଗ ନାମେ ପୁଣ ॥୨୩୨

ଊର୍ଣ୍ଣ ନାମରେ ହୋଏ ପକ୍ଷ ।
ସ୍ଫୂର୍ଜ୍ଜ ନାମକ ଅଟେ ରକ୍ଷ ॥୨୩୩
ଆୟୁ ନାମରେ ମହାମୁନି ।
ଗନ୍ଧର୍ବ ଯେ ଅରିଷ୍ଟନେମି ॥୨୩୪
ପୂର୍ବଚିତ ଯେ ଅପସର ।
କର୍କୋଟକ ଯେ ନାଗବୀର ॥୨୩୫
ଏବେ ହୋ ଶୁଣ ମାଘମାସ ।
ଆଦିତ୍ୟ ନାମ ଜାଣ ପୂଷ ॥୨୩୬
ବାତ ନାମକ ପୁଣି ରକ୍ଷ ।
ସୁରୁଚି ନାମେ ହୋଏ ଯକ୍ଷ ॥୨୩୭
ନାଗର ଧନଞ୍ଜୟ ନାମ ।
ଗନ୍ଧର୍ବ ନାମ ଯେ ସୁଷେଣ ॥୨୩୮
ଘୃତାଚୀ ନାମେ ଅପସରୀ ।
ଗୌତମ ଋଷି ନାମ ଧରି ॥୨୩୯
ଏବେ ଫାଲଗୁନ ମାସେ ପୁଣ ।
ଆଦିତ୍ୟ ନାମ ଯେ ପର୍ଜନ୍ୟ ॥୨୪୦
କ୍ରତୁ ନାମରେ ହୋଏ ପକ୍ଷ ।
ଭରଦ୍ୱାଜ ଋଷି ପ୍ରତ୍ୟକ୍ଷ ॥୨୪୧
ବର୍ଚ୍ଚା ନାମରେ ଯେ ରାକ୍ଷସ ।
ଅଇରାବତ ନାଗଈଶ ॥୨୪୨
ସେନଜିତ ଯେ ଅପସର ।
ବିଶ୍ୱ ନାମେ ଗନ୍ଧର୍ବ ବୀର ॥୨୪୩
ଏ ରୂପେ ବାରମାସ ପୁଣ ।
ସାତ ସାତଗଣେ ଭ୍ରମିଣ ॥୨୪୪
ଏ ସର୍ବେ ସୂର୍ଯ୍ୟର ବିଭୂତି ।
ଜ୍ୟୋତିଷ ଚକ୍ରରେ ଚଳନ୍ତି ॥୨୪୫
ଏହାଙ୍କୁ ଯେ ଦୁଇସନ୍ଧ୍ୟାରେ ।
ସ୍ମରଣେ କରନ୍ତି ନିତ୍ୟରେ ॥୨୪୬
ତାହାଙ୍କ ପାପ ଦିନେ ଦିନେ ।
ହରନ୍ତି ସୁମତି ପ୍ରଦାନେ ॥୨୪୭
ଏ ବାରମାସେ ସୂର୍ଯ୍ୟ ଏକ ।
ନାରାୟଣ ପରମାତ୍ମକ ॥୨୪୮
ସେ ସୂର୍ଯ୍ୟ ଜ୍ୟୋତିମଣ୍ଡଳରେ ।
ଘେନି ଯେ ବାର ଆଦିତ୍ୟରେ ॥୨୪୯
ଦ୍ୱାଦଶାଦିତ୍ୟ ତେଜ ବହି ।
ଷଡଋତୁ ଯେ ଜାତ ହୋଇ ॥୨୫୦

Dr. Sudhanshu Sekhar Mishra

ଇହଲୋକ ପରଲୋକରେ ।
ଯା ତେଜ ପରକାଶ କରେ ॥୨୫୧
ପାତାଳ ସପତ ପୁରରେ ।
ଆପଣେ ଉଦେ ଅସ୍ତ କରେ ॥୨୫୨
ଇହ ପରଲୋକେ ପାତାଳେ ।
ପ୍ରାଣୀଙ୍କି ସଦଗତି କରେ ॥୨୫୩
ସକଳ ଋଷିଗଣମାନ ।
ତାଙ୍କୁ କରନ୍ତି ଉପାସନ ॥୨୫୪
ଋକ ଯଜୁ ଏ ସାମ ନିତି ।
ବେଦ ମନ୍ତ୍ରମାନଙ୍କେ ଘେନି ॥୨୫୫
ତାହାଙ୍କୁ ସ୍ତୁତି କରୁଛନ୍ତି ।
ଗନ୍ଧର୍ବେ ଗାୟନେ କରନ୍ତି ॥୨୫୬
କରନ୍ତି ଅପସରା ନୃତ୍ୟ ।
ନାଗେ ଯେ ଓଟାରନ୍ତି ରଥ ॥୨୫୭
ଯକ୍ଷମାନେ ରଥ ଯୋଚନ୍ତି ।
ପ୍ରାଣୀଙ୍କି ଦ୍ରବ୍ୟ ସେ ଦିଅନ୍ତି ॥୨୫୮
ରଥପୃଷ୍ଠେ ରାକ୍ଷସେ ଥାଇ ।
ରଥ ରକ୍ଷାକରି ଚଳାଇ ॥୨୫୯
ଅରୁଣ ସାରଥିର ନାମ ।
ସାତଅଶ୍ୱ ଚାଳେ ବେଗେଣ ॥୨୬୦
ଗାୟତ୍ରୀ ଆଦି ଛନ୍ଦ ସାତ ।
ବହନ୍ତି ବିଶ୍ୱରୂପ ରଥ ॥୨୬୧
ଏ ରଥ ଆଗରେଣ ବସି ।
ଷଷ୍ଠିସହସ୍ର ବାଳଋଷି ॥୨୬୨
ଆଗରେ ସ୍ତୁତି କରୁଛନ୍ତି ।
ପ୍ରାଣୀଙ୍କି ଆଶୀର୍ବାଦ ଦ୍ୟନ୍ତି ॥୨୬୩
ଏ ଭାବେ ଅନାଦିନିଧାନ ।
ସେ ଯେ ଈଶ୍ୱର ଭଗବାନ ॥୨୬୪
ଦିନେ ଦିନେ ଆତ୍ମା ବିସ୍ତାର ।
ତେଜମଣ୍ଡଳ ପରଚର ॥୨୬୫
ପ୍ରକାଶ ଦିବାରାତ୍ର କରି ।
ନିତ୍ୟ ଭ୍ରମଣେ ପ୍ରାଣୀ ପାଳି ॥୨୬୬
ଯେଉଁ ଠାବରେ ଦୃଶ୍ୟ ହୋଇ ।
ସେଠାରେ ଉଦୟ ବୋଲାଇ ॥୨୬୭
ନ ଦିଶିଲା ଠାବରେ ଅସ୍ତ ।
ରାତ୍ର ଦିବସ ଏଣୁ ମତ ॥୨୬୮

ମେରୁ ଭ୍ରମଣ ନିତ୍ୟେ କରେ ।
ପୂର୍ବରୁ ପଶ୍ଚିମ କ୍ରମରେ ॥୨୬୯
ଉଦୟାସ୍ତ ଦୁଇ ପର୍ବତ ।
ଆରୋହଣ ବେଳେ ନିର୍ମିତ ॥୨୭୦
ତିନିକୋଟି ଅର୍ଦ୍ଧ କୋଟିଏ ।
ବ୍ରହ୍ମଲୋକରୁ ଜାତ ହୋଏ ॥୨୭୧
ଏ ବ୍ରହ୍ମରାକ୍ଷସେ ନିର୍ମାଣ ।
ନିତ୍ୟେ ବ୍ରହ୍ମଶାପ ପାଇଣ ॥୨୭୨
ନିତ୍ୟେ ଦୁଇବେଳରେ ଖାଏ ।
ମରନ୍ତି ଜୀଅନ୍ତି ନିଶ୍ଚୟେ ॥୨୭୩
ଏ ସୂର୍ଯ୍ୟ ଉଦୟର କାଳେ ।
ସୂର୍ଯ୍ୟଙ୍କୁ ଗ୍ରାସନ୍ତି ସେ ବଳେ ॥୨୭୪
ଏଣୁ ବ୍ରହ୍ମା ଆଜ୍ଞାରେ ପୁଣ ।
ବ୍ରହ୍ମଋଷି ଆଦି ବ୍ରାହ୍ମଣ ॥୨୭୫
ସୂର୍ଯ୍ୟଙ୍କୁ ସନମୁଖ ହୋଇ ।
ଗାୟତ୍ରୀମନ୍ତ୍ର ଉଚ୍ଚାରଇ ॥୨୭୬
ତିନି ଅଞ୍ଜଳି ଜଳ ଦେଇ ।
ଦ୍ୱିସନ୍ଧ୍ୟେ ଆକାଶକୁ ଚାହିଁ ॥୨୭୭
ଜଳକୁ ଟେକିଣ ପକାନ୍ତି ।
ମନ୍ତ୍ରେ ସେ ଜଳ ବଜ୍ର ହୋନ୍ତି ॥୨୭୮
ରାକ୍ଷସ ଉପରେ ପଡନ୍ତି ।
ରାକ୍ଷସେ ଭସ୍ମ ହୋଇ ଯାନ୍ତି ॥୨୭୯
ସୂର୍ଯ୍ୟ ଯେ ବଳବନ୍ତ ।
ତେତେ ଜଗତ ପ୍ରକାଶଇ ॥୨୮୦
ସେ ସୂର୍ଯ୍ୟଙ୍କ ରଥଚକ୍ରର ।
ମାନସୋତ୍ତର ଯେ ଗିରିର ॥୨୮୧
ପୁଷ୍କରଦ୍ୱୀପ ମଧ୍ୟେ ସେହି ।
ରଥ ଏକଚକ୍ର ଭ୍ରମଇଁ ॥୨୮୨
ସମ୍ବତ୍ସରରେ ସେହୁ ପୁଣ ।
ମକର ଆଦି ଯେ ମିଥୁନ ॥୨୮୩
ଉତ୍ତରାୟଣ ତାକୁ କହି ।
ସ୍ୱର୍ଗକୁ ଦିବସେ ଅଟଇ ॥୨୮୪
କର୍କଟାଦି ଛ ରାଶି ଯେବେ ।
ଦକ୍ଷିଣାୟନ କହି ତେବେ ॥୨୮୫
ଏମନ୍ତେ ଦୁଇ ଯେ ଅୟନେ ।
ରାତ୍ର ଦିବସ ଦେବମାନେ ॥୨୮୬

ଏ ଭାବେ ରଥେ ଭ୍ରମୁଛନ୍ତି ।
ଯୋଜନ ଅୟୁତ ଯେ ପ୍ରତି ॥୨୮୭
ଅଠର ସହସ୍ର ଯୋଜନ ।
ଉଚ୍ଚ ଅଟଇ ବିଦ୍ୟମାନ ॥୨୮୮
ଅଷ୍ଟାଦଶ ସହସ୍ର ଯୋଜନ ।
ଲମ୍ବ ତା ଅଟଇ ପ୍ରମାଣ ॥୨୮୯
ଲକ୍ଷେ ସତୁରି ସସ୍ର ଯୁଣ ।
ଅଖର ଲମ୍ବ ପରିମାଣ ॥୨୯୦
ପ୍ରତି ଅଖ ଲମ୍ବ ତଳର ।
ଦି କୋଟି ତେପନ ଲକ୍ଷର ॥୨୯୧
ସତୁରି ସହସ୍ର ଯୋଜନ ।
ଅଖମୁଣ୍ଡି ଲୋକାଲୋକେଣ ॥୨୯୨
ଉପର ଖଣ୍ଡ ଅଖ ପୁଣ ।
ଚଉଦଲକ୍ଷ ଯେ ଯୋଜନ ॥୨୯୩
ଷୋଳ ଯେ ସହସ୍ର ଆବର ।
ଏ ମୁଣ୍ଡି ଲାଗିଛି ମେରୁର ॥୨୯୪
ଧ୍ରୁବମଣ୍ଡଳେ ବ୍ୟାପିଅଛି ।
ବିମ୍ୟାନମାନ ତହିଁ ଗଛି ॥୨୯୫
ସବୁ ଗ୍ରହମାନଙ୍କ ରଥ ।
ଦଉଡିମାନ ସେ ନିର୍ମିତ ॥୨୯୬
ଧ୍ରୁବମଣ୍ଡଳ ସୁଷୁମ୍ନାରେ ।
ବନ୍ଧନ ଯେ ଯାହା ଭେଦରେ ॥୨୯୭
ଦଉଡିମାନଙ୍କର ପୁଣ ।
ତିନିଶ ଷାଠିଏ ନିର୍ମାଣ ॥୨୯୮
ପ୍ରତି ଦଉଡି ଲାଗିଛନ୍ତି ।
ସେ ମେରୁରନ୍ଧ୍ରେ ଯୁକ୍ତ ହୋନ୍ତି ॥୨୯୯
ତହୁଁ ନିତ୍ୟେ ନିତ୍ୟେ ଭ୍ରମଣ ।
ଦିବା ରାତ୍ର ହୋଏ ଏସନ ॥୩୦୦
ମନୁଷ୍ୟମାନଙ୍କୁ ସେ ହୋଇ ।
ପିତୃଙ୍କୁ ମାସେ ଦିନେ କହି ॥୩୦୧
ଏବଂଭୂତ ଯେ ଯେଉଁ ରଥ ।
ସେ ତହିଁ ମାୟାତ୍ମକ ସତ୍ୟ ॥୩୦୨
ସମ୍ବତ୍ସର ଚକ୍ର ତା ବୋଲି ।
କାଳ ଗତାଗତ କହିଲି ॥୩୦୩
ସେ ସମ୍ବତ୍ସର ଯେ ଚକ୍ରର ।
ତିନିକୋଟି ନାଭି ତାହାର ॥୩୦୪

Dr. Sudhanshu Sekhar Mishra

ବରଷା ଶୀତ ଗ୍ରୀଷ୍ମ ତିନି ।
ତ୍ରିକାଳ ବୋଲାନ୍ତି ସେ ପୁଣି ॥୩୦୫
ବାରଗୋଟି ଯେ ରଥ ଅର ।
ବାରମାସ ନାମ ତାହାର ॥୩୦୬
ଛ ଗୋଟି ପହି ଛନ୍ତି ତହିଁ ।
ଷଡରତୁଙ୍କ ସ୍ଥାନ ସେହି ॥୩୦୭
ସାତଶ କୋଟିଏକ ପହି ।
ଏକଚକ୍ରରେ ସେହୁ ଥାଇ ॥୩୦୮
ରାତ୍ର ଯେ ଦିବସ ହୋଇଣ ।
ସପ୍ତଶତ କୋଟି ଏ ଦିନ ॥୩୦୯
ଏମନ୍ତ ହୋଇ ସମ୍ବତ୍ସର ।
ଭ୍ରମୁଅଛି ସେ ଚକ୍ରବର ॥୩୧୦
ଏ କାଳଚକ୍ର ବୋଲି କହେ ।
କାଳ ସ୍ୱରୂପୀ ସୂର୍ଯ୍ୟମୟେ ॥୩୧୧
ସେ ସୂର୍ଯ୍ୟ ନିରାକାର ଜ୍ୟୋତି ।
ଉତ୍ପତ୍ତି ପ୍ରଳୟ କରନ୍ତି ॥୩୧୨
ସେ ସଦା ଥାଇ ଯେ ଅନାଦି ।
ଅକ୍ରାମରେ ସର୍ବ ସମ୍ପାଦି ॥୩୧୩
ଭୂତ ଭବିଷ୍ୟ ବର୍ତ୍ତମାନ ।
ହିତମୟ ସର୍ବକାରଣ ॥୩୧୪
ପରମ ବ୍ରହ୍ମ ସେ ସ୍ୱରୂପୀ ।
ସଂସାର କର୍ତ୍ତା ସର୍ବବ୍ୟାପୀ ॥୩୧୫

ସଂସାର ଏ ଆଦିକାରଣ ।
ସକଳ ଏହାଙ୍କ ଭିଆଣ ॥୩୧୬
ଯେ ଏହା ପଢନ୍ତି ଶୁଣନ୍ତି ।
ବିଷ୍ଣୁ ସ୍ୱରୂପେ ତାଙ୍କୁ ଚିନ୍ତି ॥୩୧୭
ସର୍ବ ପାପରୁ ସେ ତରଇ ।
ଅଗ୍ନି ଯେହ୍ନେ ସର୍ବ ଭକ୍ଷଇ ॥୩୧୮
ସୂତ କହନ୍ତି ବିଷ୍ଣୁଭାବେ ।
ଶୁଣ ଶୌନକ ଅନୁଭବେ ॥୩୧୯
ସୁଜନେ ଶୁଣସି ଆନନ୍ଦେ ।
ଭକ୍ତି ହୋଇବ କୃଷ୍ଣପାଦେ ॥୩୨୦
ମହାବିଷ୍ଣୁଙ୍କ ଯେ ମହିମା ।
ସୂର୍ଯ୍ୟଭ୍ରମଣ ସୁଖସୀମା ॥୩୨୧
ଶୁଣିଲେ ସଂସାରୁ ତରଇ ।
ଅନ୍ତେ ସେ ବୈକୁଣ୍ଠ ଲଭଇ ॥୩୨୨
ଶ୍ରୀବିଷ୍ଣୁପୁରାଣ ଭକତି ।
ଚନ୍ଦ୍ରମଣ୍ଡଳର ଏ ଗତି ॥୩୨୩
ଅମୃତମୟ ରୂପ ତାର ।
କ୍ଷୀରାର୍ଣ୍ଣବରୁ ଜାତ ଯାର ॥୩୨୪
ଶୁକ୍ଳ ପକ୍ଷେ ବୃଦ୍ଧି ହୋଏ ।
କୃଷ୍ଣ ପକ୍ଷରେ କଳା କ୍ଷୟେ ॥୩୨୫
କୃଷ୍ଣପକ୍ଷେ ପ୍ରତିପ ଦିନ ।
ଏ ଆଦି ପନ୍ଦର ତିଥେଣ ॥୩୨୬

ଦେବତାମାନେ ପ୍ରତିଦିନ ।
ଅମୃତ କରନ୍ତି ଯେ ପାନ ॥୩୨୭
ଅମାସ୍ୟା ଦିନେ କଳାହୀନେ ।
ଚନ୍ଦ୍ର ପଳାଇ ସୂର୍ଯ୍ୟେ ଲୀନେ ॥୩୨୮
ସ୍ଥାବର-ଜଳ-ତୃଣ-ମଧ୍ୟେ ।
ଲୁଚଇ ଭୟ ମନସଧେ ॥୩୨୯
ଏଣୁ ସର୍ବନିଷେଧ ଦିନେ ।
ରାବ ଯେ ତୃଣ ଜଳପାନେ ॥୩୩୦
କ୍ଷୀର ଘୃତ ଜାତ ସଂଯୋଗେ ।
ଋଷି ବିପ୍ର ଆହୁତି ଭୋଗେ ॥୩୩୧
କଳା ବର୍ଦ୍ଧମାନ ହୁଅଇ ।
ପଞ୍ଚଦଶ ଦିନେ ପୂର୍ଣ୍ଣ ହିଁ ॥୩୩୨
କହଇ ବିପ୍ର ଜଗନ୍ନାଥ ।
ସୂର୍ଯ୍ୟେନ୍ଦୁ ମହାବିଷ୍ଣୁ ମତ ॥୩୩୩
ଶୁଣିଲେ ସର୍ବପାପୁଁ ତରେ ।
ବିଷ୍ଣୁଭକତି ହୋଏ ତାରେ ॥୩୩୪
ବିଷ୍ଣୁର ଭକତେ ସେବିଲେ ।
ଏ ସୁଖ ଲଭଇ ସେ ଭଲେ ॥୩୩୫

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ଆଦିତ୍ୟବ୍ୟୂହ ବିବରଣଂ
ନାମ ଏକାଦଶୋଽଧ୍ୟାୟଃ ॥

## ଦ୍ୱାଦଶ ଅଧ୍ୟାୟ

ଶୌନକ ଆଦି ଋଷିଗଣ ।
କହନ୍ତି ସୂତଙ୍କ ଆଗେଣ ॥୧
ଏ ଯେ ଭାଗବତ ପୁରାଣ ।
କହିଲ ଆମ୍ଭର ଆଗେଣ ॥୨
ପ୍ରଥମସ୍କନ୍ଧଠାରୁ ପୁଣ ।
କହ ସେ ସୁଚିତ୍ତ କରିଣ ॥୩
ସନ୍ଦେହ ଆମ୍ଭ ମନୁ ଯାଉ ।
ତୁମ୍ଭର କଲ୍ୟାଣ ସେ ହେଉ ॥୪
ସୂତ କହନ୍ତି ସୁଚିତ୍ତରେ ।
ଶୌନକ ମୁନିଙ୍କ ଆଗରେ ॥୫

### ସୂତ ଉବାଚ

ଧର୍ମ ଦେବତା ଦିବାକର ।
ତାହାଙ୍କୁ ମୋର ନମସ୍କାର ॥୬
ସେ ଧର୍ମ ସର୍ବଦେବ ଶ୍ରେଷ୍ଠ ।
ସାଧୁଙ୍କୁ ପାଳି ନାଶେ ଦୁଷ୍ଟ ॥୭
କୃଷ୍ଣ ବ୍ରହ୍ମସ୍ୱରୂପୀ ବର ।
ତା ପାଦେ ମୋର ନମସ୍କାର ॥୮
ଶ୍ରୀଭାଗବତ ପୁରାଣରେ ।
ଯେ ଧର୍ମ ଭକତ ସଂସାରେ ॥୯

ସେ ଧର୍ମ ସଦା ଥାଇ ପୂର୍ଣ୍ଣ ।
ଚତୁର୍ବର୍ଗଦାୟୀ କାରଣ ॥୧୦
ଭୋ ଋଷିଗଣେ ତାହା ଶୁଣ ।
ଲଭିବ ବିଷ୍ଣୁଭକ୍ତି ଜ୍ଞାନ ॥୧୧
ବିଷ୍ଣୁର ଏ ଲୀଳା ଚରିତ ।
ପରମତତ୍ତ୍ୱ ଏ ଅଦ୍ଭୁତ ॥୧୨
ଯାହା ସେ ତୁମ୍ଭେ ପଚାରିଲ ।
ଶୁଣିଣ ସଫଳ ହୋଇଲ ॥୧୩
ସେ ମହାପୁରୁଷ ସ୍ୱରୂପୀ ।
ନିର୍ଣ୍ଣୟ ଯେହ୍ନେ ଜଗଦ୍‌ବ୍ୟାପୀ ॥୧୪

Dr. Sudhanshu Sekhar Mishra

ନାରାୟଣ ସ୍ୱରୂପୀ ସୂର୍ଯ୍ୟ ।
କହିଲୁ ମହିମା ଆଶ୍ଚର୍ଯ୍ୟ ॥୧୫
ଏ ଭାଗବତ ଯେ ପୁରାଣ ।
ସାକ୍ଷାତ ବିଷ୍ଣୁର ନିର୍ମାଣ ॥୧୬
ଯେ ହରି ସର୍ବପାପ ହରେ ।
ତାଙ୍କ ମହିମା ନିରନ୍ତରେ ॥୧୭
କେ ଆଦି ଅନ୍ତ ତାହା କହି ।
ଏ ପଞ୍ଚଭୂତେ ଦେହ ବହି ॥୧୮
ଯେ ସ୍ଥୂଳ ସୂକ୍ଷ୍ମରୁ ବାହାର ।
ଏଣୁ ପ୍ରାଣୀଙ୍କି ଅଗୋଚର ॥୧୯
କୃତାର୍ଥ ଆଦିଅନ୍ତେ ହୋଇ ।
ନାରାୟଣ ମହିମା କହି ॥୨୦
ନାରା ଯେ ବୋଲି ଜଳ ନାମ ।
ସେ ଜଳେ ଯେଣୁ ତା ଶୟନ ॥୨୧
ତେଣୁ ନାରାୟଣ ବୋଲନ୍ତି ।
ପାପହରଣେ ଶିରୀପତି ॥୨୨
ହୃଷୀକ କହି ଇନ୍ଦ୍ରିଗଣ ।
ତାହାଙ୍କୁ କରି ଆକର୍ଷଣ ॥୨୩
ତେଣୁ ହୃଷୀକେଶ ବୋଲାନ୍ତି ।
ମହିମା କେହି ନ ଜାଣନ୍ତି ॥୨୪
ଭଗ ଯେ ଷଡଅଇଶ୍ୱର୍ଯ୍ୟ ।
ଅଣିମା ଆଦିରେ ବିରାଜ ॥୨୫
ଜ୍ଞାନ ବୈରାଗ୍ୟ ଯଶ ସୀମା ।
ଏ ଆଦି ସମୂହ ମହିମା ॥୨୬
ଏଣୁ ଭଗବାନ ବୋଲାନ୍ତି ।
ପ୍ରାଣୀଙ୍କି ସଂସାରେ ଭ୍ରମାନ୍ତି ॥୨୭
ସାତ୍ୱତ ଯେ ବୈଷ୍ଣବଜନ ।
ସାତ୍ୱତ ଯଦୁବଂଶମାନ ॥୨୮
ସାଧୁ-ଯାଦବପତି ଯେଣୁ ।
ସାତ୍ୱତପତି ନାମ ତେଣୁ ॥୨୯
ତାହାଙ୍କ ମହିମା ବଖାଣ ।
ହୋଇଛି ଶ୍ରୀଭାଗବତେଣ ॥୩୦
ପରମବ୍ରହ୍ମ ଯେ ଈଶ୍ୱର ।
ପରମଗୁପ୍ତ ସେହୁ ସାର ॥୩୧
ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ ।
ଯେହୁ ଅନାଦି ବିଶ୍ୱମୟ ॥୩୨

ପ୍ରଥମସ୍କନ୍ଧ ଭାଗବତେ ।
ବନ୍ଦେ ଶ୍ରୀକୃଷ୍ଣ ପାଦଗତେ ॥୩୩
ତାହାଙ୍କୁ ଜାଣିବାର ଜ୍ଞାନ ।
ତାହାର ଚରିତ ବାଖ୍ୟାନ ॥୩୪
ଅନୁଭବଜ୍ଞାନ ସମେତ ।
ବର୍ଣ୍ଣନା ହୋଇଛି ଏମନ୍ତ ॥୩୫
ଭକତିଯୋଗର ବର୍ଣ୍ଣନ ।
ବୈରାଗ୍ୟ ସାଂଖ୍ୟଯୋଗ୍ୟମାନ॥୩୬
ଜ୍ଞାନ ଆଶ୍ରୟ ଯେଉଁ ବ୍ରହ୍ମ ।
ତାହାଙ୍କ ମହିମା ଉତ୍ତମ ॥୩୭
ନାରଦ ବେଦବ୍ୟାସଙ୍କର ।
ବଦ୍ରିକାଶ୍ରମେ ବିଚାର ॥୩୮
ତହୁଁ ଯେ ନାରଦଙ୍କ ତହିଁ ।
ବ୍ୟାସ ଯେ ଭାଗବତ ପାଇ ॥୩୯
ପୂର୍ବ ତିନିଜନ୍ମର କଥା ।
ନାରଦ କହେ ସେ ବ୍ୟବସ୍ଥା ॥୪୦
ପଞ୍ଚକଟକେ ଯେ ରାଜନ ।
ନାମ ତାହାରଦୁର୍ଯ୍ୟୋଧନ ॥୪୧
ସମର ଶେଷେ ଜାନୁଭଗ୍ନ ।
ପଡିଲା ଠାରେ ଆଚରଣ ॥୪୨
କୃପ ଆଚାର୍ଯ୍ୟ କୃତବର୍ମା ।
ସମୀପେ ମିଳେ ଅଶ୍ୱତ୍ଥମା ॥୪୩
ଦୁର୍ଯ୍ୟୋଧନ ପ୍ରୀତି ନିମନ୍ତେ ।
ପୃଥିବୀ ଅପାଣ୍ଡବା ଅର୍ଥେ ॥୪୪
ପାଣ୍ଡବ ପାଞ୍ଚାଳୀ କୁମର ।
ପେଷିଲା ଅଶ୍ୱତ୍ଥମା ଶର ॥୪୫
ମାରିଣ ଦୁର୍ଯ୍ୟୋଧନ ଆଗେ ।
ସେ ପାଞ୍ଚମୁଣ୍ଡ ଦେଲା ବେଗେ ॥୪୬
ଦୁର୍ଯ୍ୟୋଧନ ଯେ କ୍ରୋଧ କଲା।
ତାପେଣ ପ୍ରାଣ ବିସର୍ଜିଲା ॥୪୭
ପଞ୍ଚକୁମର ବଧ ଶୁଣି ।
କୃଷ୍ଣ ଅର୍ଜୁନ ସେ ଅଗ୍ରଣୀ ॥୪୮
ଯୁଦ୍ଧେ ଜିଣି ମଥାରୁ ମଣି ।
ଖୋଲି ଘେନିଲେ ପାର୍ଥ ଜାଣି ॥୪୯
ଦ୍ରୌପଦୀ ଆଗେ ବାନ୍ଧିଆଣି ।
ସମର୍ପି ଦେଲେ ତତକ୍ଷଣି ॥୫୦

ଦେଖି ଦ୍ରୌପଦୀ ଦୟାଚିତ୍ତେ ।
ବନ୍ଧନ ଫେଡିଲେ ତୁରିତେ ॥୫୧
ତାହାଙ୍କୁ କରି ସାତବେଣ୍ଟି ।
ଛଡାଇ ଦେଲେ ସେ ଯୁଧିଷ୍ଠି ॥୫୨
ସେ ଅପମାନେ କୋପଭର ।
ସତ୍ୱରେ ଦ୍ରୋଣର କୁମର ॥୫୩
ଚଞ୍ଚଳମନ ଅନୁରାଗେ ।
ପେଷିଲା ବ୍ରହ୍ମଶର ବେଗେ ॥୫୪
ସେ ବ୍ରହ୍ମଶର ଅନିର୍ବାର ।
ଦେଖି ଅର୍ଜୁନ ଭୟଙ୍କର ॥୫୫
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ ।
ତା ପ୍ରତିଶରେ ସଂହରଇ ॥୫୬
ତଦନ୍ତେ ପୁଣ ଦ୍ରୋଣବାଳା ।
ଅତି ନିନ୍ଦିତ କର୍ମ କଲା ॥୫୭
ଉତ୍ତରା ଗର୍ଭେ ଯେ କୁମର ।
ତାର ବିନାଶେ ବ୍ରହ୍ମଶର ॥୫୮
ପେଷିଲା ଅତି କୋପମନେ ।
ଧର୍ମକୁ ଉପେକ୍ଷି ଅଜ୍ଞାନେ ॥୫୯
ଗଗନମାର୍ଗେ ଶର ଯାନ୍ତେ ।
ଉତ୍ତରା ଡାକିଲା ଆରତେ ॥୬୦
ତକ୍ଷଣେ ପ୍ରଭୁ ଭଗବାନ ।
ଖଣ୍ଡିଲେ ତା ଗର୍ଭ କଷଣ ॥୬୧
ଅଙ୍ଗୁଷ୍ଠ ପ୍ରମାଣେ ପୁରୁଷ ।
ଉତ୍ତରା ଗର୍ଭରେ ପ୍ରବେଶ ॥୬୨
ଶ୍ରୀକୃଷ୍ଣ ଚକ୍ର ଘେନି ତହିଁ ।
ବ୍ରହ୍ମଶରକୁ ସେ ଛେଦଇ ॥୬୩
ଗର୍ଭେ ବାଳକ ରକ୍ଷା କଲେ ।
ପରୀକ୍ଷ ଜନମ ହୋଇଲେ ॥୬୪
ଯୁଧିଷ୍ଠି ଅଶ୍ୱମେଧଯାଗ ।
ସେ ପୁଣ ରାଜ୍ୟ କଲେ ଭୋଗ ॥୬୫
କଳିର ଛତିଶ ବରଷ ।
ସେ ରାଜପଣେ କଲେ ଶେଷ ॥୬୬
ପରୀକ୍ଷେ ଦେଇ ନୃପାସନ ।
ପାଣ୍ଡବେ ସ୍ୱର୍ଗ ଆରୋହଣ ॥୬୭
ଶ୍ରୀକୃଷ୍ଣ ବୈକୁଣ୍ଠେ ବିଜୟ ।
ସର୍ବଯାଦବ ଗଲେ କ୍ଷୟ ॥୬୮

Dr. Sudhanshu Sekhar Mishra

ପରୀକ୍ଷିତ ଦିଗବିଜୟେ ।
କଳିଯୁଗକୁ ଦଣ୍ଡବହେ ॥୬୯
ପରୀକ୍ଷିତର ରାଜଯୋଗ ।
ଏକଷଠି ବରଷ ଭୋଗ ॥୭୦
ଏ ମଧ୍ୟେ ପରୀକ୍ଷ ରାଜନ ।
ମୃଗୟା ବିହାରେ ଗମନ ॥୭୧
ଶମୀକ ଋଷି ଆଶ୍ରମରେ ।
ଜଳ ମାଗିଲେ ତୃଷାତୁରେ ॥୭୨
ଋଷି ଗଳାରେ ମୃତସର୍ପେ ।
ରାଜା ଲମ୍ବାଏ ଅତିକୋପେ ॥୭୩
ଋଷିବାଳକ ଶୃଙ୍ଗୀ ନାମେ ।
ରାଜାକୁ ଶାପ ଦେଲା ତମେ ॥୭୪
ସେ ଶାପ ପରୀକ୍ଷିତ ଜାଣି ।
ପୁତ୍ରକୁ କରି ନୃପମଣି ॥୭୫
ରାଜ୍ୟ ଉପେକ୍ଷି ଗଙ୍ଗାତୀରେ ।
ଶୟନ କୁଶ ଶଯ୍ୟାପରେ ॥୭୬
ଶୁଣିଣ ସର୍ବଋଷିଗଣେ ।
ମିଳିଲେ ନୃପ ସନ୍ନିଧାନେ ॥୭୭
ଶୁକଦେବଙ୍କ ଆଗମନ ।
ଦେଖି ସାନନ୍ଦ ଋଷିଜନ ॥୭୮
ସେ ରାଜା ସର୍ବଋଷିଗଣେ ।
ପୁଚ୍ଛିଲେ ନିସ୍ତାର କାରଣେ ॥୭୯
ପ୍ରସନ୍ନ ଶୁକଦେବ ହୋଇ ।
ଶ୍ରୀଭାଗବତ ଗ୍ରନ୍ଥ କହି ॥୮୦
ଊନବିଂଶତି ଅଧ୍ୟାୟେଣ ।
ପ୍ରଥମସ୍କନ୍ଧ ଯେ ସମ୍ପୂର୍ଣ୍ଣ ॥୮୧
ଦ୍ୱିତୀୟସ୍କନ୍ଧର ଆଦ୍ୟରେ ।
ଶୁକ ପରୀକ୍ଷକୁ କହିଲେ ॥୮୨
ପରମବ୍ରହ୍ମ ଯେ ପୁରୁଷ ।
ବିରାଟ ସ୍ୱରୂପେ ପ୍ରକାଶ ॥୮୩
ପରମଆତ୍ମା ଭେଟିବାରେ ।
ଅଷ୍ଟାଙ୍ଗଯୋଗ ଧାରଣାରେ ॥୮୪
ଜୀବ ପରମରେ ଏକତ୍ୱ ।
ଲୀନ ହୁଅଇ ଯେଉଁ ମତ ॥୮୫
ବ୍ରହ୍ମା ନାରଦଙ୍କ ସମ୍ବାଦ ।
ଭାଗବତ ଉପନିଷଦ ॥୮୬
ବ୍ରହ୍ମାଠାରୁ ନାରଦ ପାଇ ।
ଚାରିଶ୍ଳୋକରେ ବୋଧ ହୋଇ ॥୮୭
ନାରଦ ଦଶଶ୍ଳୋକେ ପୁଣ ।
ବ୍ୟାଖ୍ୟାନ କଲେ ସେ ପୁରାଣ ॥୮୮
ମହାବିରାଟ ଯେ ପୁରୁଷ ।
ତାଙ୍କ ଉତ୍ପତ୍ତି ସ୍ଥିତି ନାଶ ॥୮୯
ଚବିଶ ଅବତାର ଲୀଳା ।
ବ୍ରହ୍ମାଣ୍ଡ ଉତ୍ପତ୍ତି ସେ କଳା ॥୯୦
ଦ୍ୱିତୀୟସ୍କନ୍ଧ ଏ ଚରିତ ।
ଦଶ ଅଧ୍ୟାରେ ସମାପତ ॥୯୧
ଏବେ ତୃତୀୟସ୍କନ୍ଧ ବାଣୀ ।
ବିଦୁର ଉଦ୍ଧବ ଭାଳେଣି ॥୯୨
ବିଦୁର ମୈତ୍ରେୟ ସମ୍ବାଦ ।
ପୁରାଣ ସଂହିତାରେ ଭେଦ ॥୯୩
ବିଦୁର ପରମ ଆନନ୍ଦେ ।
ଚିତ୍ତ ନିବେଶି କୃଷ୍ଣପାଦେ ॥୯୪
ମହାପୁରୁଷର ନିର୍ଣ୍ଣୟ ।
ପ୍ରାକୃତିକ ସର୍ଗ ନିର୍ଣ୍ଣୟ ॥୯୫
ସାତ ଯେ ବୈକାରିକ ସର୍ଗ ।
ବ୍ରହ୍ମାଣ୍ଡ ଉତ୍ପତ୍ତିର ମାର୍ଗ ॥୯୬
ବିରାଟ ପୁରୁଷ ସ୍ୱରୂପ ।
କାଳର ସ୍ଥୂଳ ସୂକ୍ଷ୍ମ ରୂପ ॥୯୭
ନାଭିକମଳୁ ଉତପତ୍ତି ।
ସେ ମହାପଦ୍ମ ନାମ ଖ୍ୟାତି ॥୯୮
ଦିତିର ପୁତ୍ର ଯେ ହିରଣ୍ୟ ।
ଆବର ହିରଣ୍ୟାକ୍ଷ ପୁଣ ॥୯୯
ଏହାଙ୍କ ଜନ୍ମର ଚରିତ ।
ତହୁଁ ଯେ ସ୍ୱୟଂ ଭାଗବତ ॥୧୦୦
ବରାହ ଅବତାର ହୋଇ ।
ଦନ୍ତାଗ୍ରେ ପୃଥିବୀ ଧରଇ ॥୧୦୧
ଆଦି ଅସୁର ଅବତାର ।
ହିରଣ୍ୟାକ୍ଷ ବଧ ବିଚାର ॥୧୦୨
ଦେବତା ଗନ୍ଧର୍ବ କିନ୍ନର ।
ସିଦ୍ଧ ଚାରଣ ବିଦ୍ୟାଧର ॥୧୦୩
କିଂପୁରୁଷ ଆଦି ଏମାନ ।
ଏ ସର୍ବ ଉତ୍ପତ୍ତି କାରଣ ॥୧୦୪
ବ୍ରହ୍ମା ଦେହରୁ ଅବତାର ।
କୀଟ ପତଙ୍ଗାଦି ସ୍ଥାବର ॥୧୦୫
ଜଙ୍ଗମ ଆଦି ଚାରିଖାନି ।
ଅଣ୍ଡଜ ଜରାୟୁଜ ଘେନି ॥୧୦୬
ସ୍ୱେଦଜ ଉଦ୍ଭିଦଜ ପୁଣି ।
ଏମନ୍ତେ ସୃଷ୍ଟି ଲାଭ ହାନି ॥୧୦୭
ଏମନ୍ତେ ବ୍ରହ୍ମାଣ୍ଡ ସର୍ଜନ ।
ପାତାଳବାସୀଙ୍କ ଉତ୍ପନ୍ନ ॥୧୦୮
ଦିବସ ରାତ୍ର ସନ୍ଧ୍ୟା ପୁଣ ।
କାଳର ଉତପତି ମାନ ॥୧୦୯
ଅର୍ଦ୍ଧନାରୀ ନର ଆକୃତି ।
ସ୍ୱୟମ୍ଭୁବର ଉତପତ୍ତି ॥୧୧୦
ଶତରୂପା କନ୍ୟାର ଜନ୍ମ ।
ଏକାଦଶ ରୁଦ୍ର ଉତ୍ପନ୍ନ ॥୧୧୧
ସନକ ଆଦି ଋଷିମାନ ।
ସ୍ୱୟମ୍ଭୁ ଦୁଇପୁତ୍ର ଜନ୍ମ ॥୧୧୨
ଆବର ତିନିକନ୍ୟା ହୋଇ ।
ଏଥୁ ଅନେକ ସମ୍ଭବଇ ॥୧୧୩
ଯେ ଧର୍ମ ପତ୍ନୀମାନେ ପୁଣ ।
ଏହାଙ୍କ ଯେବା ଆଚରଣ ॥୧୧୪
ଚତୁରଦଶ ପ୍ରଜାପତି ।
ତାଙ୍କ କନ୍ୟାଙ୍କର ସନ୍ତତି ॥୧୧୫
ବ୍ରହ୍ମାର ପୁତ୍ର ଯେହୁ ପୁଣ ।
କର୍ଦ୍ଦମ ପ୍ରଜାପତି ନାମ ॥୧୧୬
ତାଙ୍କ ଭାରିଯା ଦେବହୂତି ।
ସ୍ୱାୟମ୍ଭୁବଙ୍କର ଦୁହିତୀ ॥୧୧୭
ତାହାଙ୍କ ଗର୍ଭୁ ଜାତ ପୁଣ ।
ନବକନ୍ୟା ଏକ ନନ୍ଦନ ॥୧୧୮
ସେ କନ୍ୟା ନବ ପ୍ରଜାପତି ।
ବିବାହେ ତାଙ୍କର ସନ୍ତତି ॥୧୧୯
କର୍ଦ୍ଦମପୁତ୍ର ଯେ କପିଳ ।
ସେ ବିଷ୍ଣୁଅଂଶ ଜ୍ଞାନେ ଭୋଳା ॥୧୨୦
ମାତାଙ୍କୁ ଜ୍ଞାନଧର୍ମ କହି ।
ବିଷ୍ଣୁର ମହିମା ବୁଝାଇ ॥୧୨୧
କପିଳ ଯୋଗସ୍ଥାନେ ଗଲେ ।
ଯୋଗ ଆସନରେ ବସିଲେ ॥୧୨୨

Dr. Sudhanshu Sekhar Mishra

ତୃତୀୟସ୍କନ୍ଧେ ଏ ଚରିତ ।
ତେତିଶ ଅଧ୍ୟା ସମାପତ ॥୧୨୩

ଚତୁର୍ଥସ୍କନ୍ଧରେ ବର୍ଣ୍ଣନ ।
ନବ ପ୍ରଜାପତିଙ୍କ ଜନ୍ମ ॥୧୨୪

ଏହାଙ୍କ ବଂଶାନୁଚରିତ ।
ସଂସାର ଯହୁଁ ସେ ଉଦିତ ॥୧୨୫

ଦକ୍ଷ ପ୍ରଜାପତି ଯେ ପୁଣ ।
ଯଜ୍ଞ ସେ କଲେକ ଉଦ୍ୟମ. ॥୧୨୬

ଶିବ ଯେ ଯଜ୍ଞ ଭଗ୍ନ କଲେ ।
ପାର୍ବତୀ ନିଧନେ କୋପିଲେ ॥୧୨୭

ତଦନ୍ତେ ଧ୍ରୁବର ଚରିତ ।
ତପରେ ତୋଷିଲେ ଅନନ୍ତ ॥୧୨୮

ତହୁଁ ଯେ ପୃଥୁର କାହାଣୀ ।
ଯେମନ୍ତେ ଦୁହିଁଲେ ଧରଣୀ ॥୧୨୯

ବେଣ ଯେ ବିପ୍ରଶାପେ ନାଶ ।
ରାଜା ବିହୀନେ ପୃଥ୍ୱୀ ଧ୍ୱଂସ ॥୧୩୦

ପୃଥ୍ୱୀ ରଖିବା ଅର୍ଥେ ହରି ।
ପୃଥୁ ରୂପରେ ଅବତରି ॥୧୩୧

ଋଷି ଦେବତାଙ୍କର ଅଂଶେ ।
ଜନ୍ମ ଲଭିଲେ ମନୁବଂଶେ ॥୧୩୨

ପୃଥିବୀ ଧରି ବାହୁବଳେ ।
ଦୋହନ କଲେ ଅବହେଳେ ॥୧୩୩

ଚଉଦ ଭୁବନର ଜନ ।
ଯାହାର ଯାହା ପ୍ରୟୋଜନ ॥୧୩୪

ସଂସାରେ ଶସ୍ୟବୀଜ କଲେ ।
ଯଜ୍ଞରେ ଦେବଙ୍କୁ ପୂଜିଲେ ॥୧୩୫

ପ୍ରାଚୀନବରହି ଦୁର୍ମଦ ।
ସେ ରାଜା ନାରଦ ସମ୍ବାଦ ॥୧୩୬

ପୁରଞ୍ଜନର ଉପାଖ୍ୟାନ ।
ଦଶପ୍ରଚେତାଙ୍କ ବର୍ଣ୍ଣନ ॥୧୩୭

ଏ ରାଜା ପ୍ରାଚୀନବରହି ।
ଏହାର ଦଶପୁତ୍ର ହୋଇ ॥୧୩୮

ଦଶ ପ୍ରଚେତାଙ୍କର ପୁଣ ।
ହୋଇଲା ଏକଇ ନନ୍ଦନ ॥୧୩୯

ନାମ ତା ଦକ୍ଷପ୍ରଜାପତି ।
ଏକମାତା ଗର୍ଭୁ ଜନ୍ମନ୍ତି ॥୧୪୦

ଏକ କୁମର ଦଶତାତ ।
ତେଣୁ ସେ ଦକ୍ଷ ନାମେ ଖ୍ୟାତ ॥୧୪୧

ସେ ନାରୀ ପୂର୍ବଜନ୍ମଗତି ।
ଯେମନ୍ତେ ହୋଇଲା ଉପୁରି ॥୧୪୨

ପ୍ରମ୍ଲୋଚା ନାମେ ଅପସରୀ ।
କଣ୍ଡୁଋଷିଙ୍କ ବୀର୍ଯ୍ୟ କରି ॥୧୪୩

ଯେମନ୍ତେ ହୋଇଲେ ସେ ଜାତ ।
ଚତୁର୍ଥସ୍କନ୍ଧେ ଏ ଚରିତ ॥୧୪୪

ଏକତିରିଶ ଅଧ୍ୟାୟେଣ ।
ଏହୁ ସେ ହୋଇଲା ସମ୍ପୂର୍ଣ୍ଣ ॥୧୪୫

ପଞ୍ଚମସ୍କନ୍ଧ ଆଦ୍ୟେ ପୁଣି ।
ପ୍ରିୟବ୍ରତ ରାଜା କାହାଣୀ ॥୧୪୬

ନାଭି ରାଜାର ଯେ ଚରିତ ।
ଋଷଭ ଜନମ ବୃତ୍ତାନ୍ତ ॥୧୪୭

ଭରତ ରାଜାର ବର୍ଣ୍ଣନ ।
ତିନି ଜନ୍ମେ ବିଷ୍ଣୁ ସେବନ ॥୧୪୮

ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନ ।
ସପତଦ୍ୱୀପ ଆୟତନ ॥୧୪୯

ସପତ ସମୁଦ୍ର ଯେସନ ।
ଦ୍ୱିଗୁଣ କାଞ୍ଚନ ଭୁବନ ॥୧୫୦

ଲୋକେଲୋକ ସମେତ ହୋଇ ।
ବ୍ରହ୍ମାଣ୍ଡ ଯେମନ୍ତ ଅଟଇ ॥୧୫୧

ବର୍ଷ ପର୍ବତ ନଦୀମାନ ।
ଯେତେକ ଏହାଙ୍କ ବର୍ଣ୍ଣନ ॥୧୫୨

ଜ୍ୟୋତିଷଚକ୍ର ଧ୍ରୁବଚକ୍ର ।
ଆବର ଶିଶୁମାର ଚକ୍ର ॥୧୫୩

ପାତାଳ ନରକ ବର୍ଣ୍ଣନ ।
ପାପେ ନରକ ଭୋଗମାନ ॥୧୫୪

ପଞ୍ଚମସ୍କନ୍ଧେ ଏ ଚରିତ ।
ଛବିଶ ଅଧ୍ୟା ସମାପତ ॥୧୫୫

ଏବେ ଯେ ଷଷ୍ଠସ୍କନ୍ଧ ବାଣୀ ।
ଯାହା କହିଲି ପରିମାଣି ॥୧୫୬

ଅଜାମିଳର ଉପାଖ୍ୟାନ ।
ନାମର ମହାତ୍ମ୍ୟ ବର୍ଣ୍ଣନ ॥୧୫୭

ବିଷ୍ଣୁଦୂତ ଯେ ଯମଦୂତ ।
ଏହାଙ୍କ ସମ୍ବାଦ ଚରିତ ॥୧୫୮

ଯମ ଯେ ଆପଣାର ଦୂତେ ।
ବିଷ୍ଣୁର ମହିମା ଭକତେ ॥୧୫୯

ବିଷ୍ଣୁ ଭକତ ଯେତେ ଜନ ।
ନ ଯିବ ତାହାଙ୍କ ପାଶେଣ ॥୧୬୦

ଦୂରୁଁ ଦେଖିଣ ଉପେକ୍ଷିବ ।
ନାମ ଲକ୍ଷଣ ଜାଣିଥିବ ॥୧୬୧

ଅଜାମିଳର ଯେ ମୁକତ ।
ବୈକୁଣ୍ଠ ଯେମନ୍ତ ପ୍ରାପତ ॥୧୬୨

ଦକ୍ଷ ପ୍ରଜାପତି ଚରିତ ।
ଯେମନ୍ତେ ପୁତ୍ର କଲେ ଜାତ ॥୧୬୩

ସେ ପୁତ୍ରେ ନାରଦଙ୍କ ହେତୁ ।
ଯେମନ୍ତେ ଲଭିଲେ ସେ ମୃତ୍ୟୁ ॥୧୬୪

ନାରଦ ଦକ୍ଷ ପ୍ରଜାପତି ।
ଅନ୍ୟୋନ୍ୟେ ଶାପ ସେ ଦିଅନ୍ତି ॥୧୬୫

ସେ ଦକ୍ଷ ପ୍ରଜାପତିଙ୍କର ।
ଷାଠିଏ ଝିଅଙ୍କୁ ସେ ବର ॥୧୬୬

ତାହାଙ୍କ ସନ୍ତତି ଯେମାନ ।
ଯକ୍ଷ ମନୁଷ୍ୟ ଦେବଗଣ ॥୧୬୭

ଅସୁର ପଶୁପକ୍ଷୀ ଜନ୍ତୁ ।
ଏ ଆଦି ଜନମର ହେତୁ ॥୧୬୮

ତ୍ୱଷ୍ଟା ପ୍ରଜାପତିନନ୍ଦନ ।
ବିଶ୍ୱରୂପରେ ଉତପନ୍ନ ॥୧୬୯

ଏହାଙ୍କ ଜନ୍ମମରଣାଦି ।
ବୃତ୍ତାସୁରଙ୍କୁ ଇନ୍ଦ୍ର ବଧି ॥୧୭୦

ଦିତିର ପୁତ୍ର ଯେ ହିରଣ୍ୟ ।
ଆବର ହିରଣ୍ୟାକ୍ଷ ପୁଣ ॥୧୭୧

ଏହାଙ୍କ ଜନ୍ମର ଚରିତ ।
ବରାହ ବଧିଲେ ଯେମନ୍ତ ॥୧୭୨

ଏହାଙ୍କ ପତ୍ନୀଙ୍କ ରୋଦନ ।
ସୁଯଜ୍ଞ ରାଜାଙ୍କ ବିଧାନ ॥୧୭୩

ନାରଦ ଯେମନ୍ତେ ବୋଧିଲେ ।
ପବନ ଯେସନେ ଜନ୍ମିଲେ ॥୧୭୪

ଅଣଚାଶ ରୂପ ଧଇଲେ ।
ଦୃଢବ୍ରତେ ନାଶ ନୋହିଲେ ॥୧୭୫

ଦିତିର ଗର୍ଭେ ପଶି ପୁଣ ।
ଇନ୍ଦ୍ର ତା କଲେ ଭିନ୍ନ ଭିନ୍ନ ॥୧୭୬

Dr. Sudhanshu Sekhar Mishra

ଏ ଷଷ୍ଠସ୍କନ୍ଧର ଚରିତ ।
ଊନବିଂଶ ଅଧ୍ୟା ଭକତ ॥୧୭୭
ଏବେ ଯେ ସପ୍ତମସ୍କନ୍ଧର ।
ହିରଣ୍ୟକଶିପୁ ଅସୁର ॥୧୭୮
ତାହାର ପୁତ୍ର ପ୍ରହଲ୍ଲାଦ ।
ସେ ଯେ ଦଇତ୍ୟେଶ୍ୱର ଇନ୍ଦ୍ର ॥୧୭୯
ତାହାଙ୍କ ଯେତେକ ଚରିତ ।
ପ୍ରହଲ୍ଲାଦଙ୍କ କଷ୍ଟମତ ॥୧୮୦
ହିରଣ୍ୟକଶିପୁ ନିଧନ ।
ନୃସିଂହ ରୂପେ ବିଦାରଣ ॥୧୮୧
ବ୍ରାହ୍ମଣ କ୍ଷତ୍ରି ବୈଶ୍ୟ ଶୂଦ୍ର ।
ଚାରିବର୍ଣ୍ଣର ଧର୍ମ ଭେଦ ॥୧୮୨
ବ୍ରହ୍ମଚାରୀ ଯେ ବାନପ୍ରସ୍ଥ ।
ଗୃହୀ ସନ୍ୟାସୀ ଚାରିମତ ॥୧୮୩
ଏଥିର ଧର୍ମ ବର୍ଣ୍ଣାଚାର ।
ସର୍ବ ଧର୍ମକର୍ମ ବିଚାର ॥୧୮୪
ଶ୍ରାଦ୍ଧ ବିଧିରେ ଯେତେ ହୋଇ ।
ସପ୍ତମସ୍କନ୍ଧେ ଏହା କହି ॥୧୮୫
ପନ୍ଦର ଅଧ୍ୟାରେ ସମ୍ପୂର୍ଣ୍ଣ ।
ଏବେ ଅଷ୍ଟମସ୍କନ୍ଧ ଶୁଣ ॥୧୮୬
ଚତୁର୍ଦ୍ଦଶ ମନୁ ଚରିତ ।
ଭୂତ ବର୍ତ୍ତମାନ ଯେମନ୍ତ ॥୧୮୭
ଗଜଇନ୍ଦ୍ରର ଯେ ମୋକ୍ଷଣ ।
ଗ୍ରାହକୁ ଚକ୍ରେ ନିବାରଣ ॥୧୮୮
ଶାପରୁ କରି ପରିତ୍ରାଣ ।
ଦେଲେ ସେ ବଇକୁଣ୍ଠେ ସ୍ଥାନ ॥୧୮୯
ବିଷ୍ଣୁମନ୍ୱନ୍ତର ମାନରେ ।
ହୟଗ୍ରୀବାଦି ଅବତାରେ ॥୧୯୦
ବରାହ ମତ୍ସ୍ୟ ଯେ କଚ୍ଛପ ।
ନରସିଂହ ବାମନ ରୂପ ॥୧୯୧
ନାନା ଅବତାର ମହିମା ।
କ୍ଷୀରୋଦ ମନ୍ଥନ ଉପମା ॥୧୯୨
ସକଳ ରତ୍ନ ଉତପତ୍ତି ।
ଲକ୍ଷ୍ମୀ ଅମୃତର ସମ୍ଭୂତି ॥୧୯୩
ଅଇରାବତ ଉଚ୍ଚୈଶ୍ରବା ।
ବାରୁଣୀ ସମ୍ଭୂତ ହୋଇବା ॥୧୯୪

ଧନ୍ୱନ୍ତରୀ ଜନ୍ମ କାରଣ ।
ମୋହିନୀ ରୂପର ଧାରଣ ॥୧୯୫
ଈଶ୍ୱର ପାର୍ବତୀ ଶରଧା ।
ମୋହିନୀ ମୋହେ ଯେଉଁ ବାଧା ॥୧୯୬
ଅମୃତ ଭକ୍ଷେ ରାହୁ ଛେଦ ।
ଚନ୍ଦ୍ରସୂର୍ଯ୍ୟ ଗ୍ରାସିବା ଭେଦ ॥୧୯୭
ଅମୃତ ନ ପାଇ ଅସୁରେ ।
ଦେବଙ୍କ ସଙ୍ଗେ ଯୁଦ୍ଧ କଲେ ॥୧୯୮
ସ୍ୱର୍ଗ ଛାଡି ଇର୍ନ୍ଦ ସମେତ ।
ପଶିଲେ ଗହନ ବନସ୍ତେ ॥୧୯୯
ବଳି ଯେ ସ୍ୱର୍ଗ ଭୋଗ କରି ।
ଦାନେଣ ନାହିଁ ସମସରି ॥୨୦୦
ପୁତ୍ରଙ୍କ କଷ୍ଟେ ଦେବମାତ ।
ଅଦିତି କଲେ ପୟୋବ୍ରତ ॥୨୦୧
ବାମନ ଜନମ ହୋଇଲେ ।
ଯଜ୍ଞେ ପ୍ରବେଶ ଦାନଛଳେ ॥୨୦୨
ବଳିଠାରୁ ଦାନ ଗ୍ରହଣ ।
ଶୁକ୍ର ନିଷେଧ କଲେ ପୁଣ ॥୨୦୩
ବଳିକି କରିଣ ବନ୍ଧନ ।
ତିନିପାଦ ଯେ ଭୂମିଦାନ ॥୨୦୪
ବାମନ ବିଶ୍ୱରୂପ ହୋଇ ।
ପାଦକେ ପୃଥିବୀ ଘୋଟଇ ॥୨୦୫
ପାଦେକ ଆକାଶକୁ ଗଲା ।
ବ୍ରହ୍ମାଣ୍ଡଭାଣ୍ଡ ଫାଟିଗଲା ॥୨୦୬
ଆକାଶୁ ଗଙ୍ଗା ଯେ ବହିଲା ।
ଜଗତ ପବିତ୍ର ହୋଇଲା ॥୨୦୭
ନାଭିକମଳୁ ପାଦେ ହୋଇ ।
ବଳିକି ପାତାଳେ ଚାପଇ ॥୨୦୮
ସତ୍ୟବ୍ରତ ରାଜା ଚରିତ ।
ପ୍ରଳୟଜଳରେ ଯେମନ୍ତ ॥୨୦୯
ମତ୍ସ୍ୟ ଅବତାର ସେ ହୋଇ ।
ମତ୍ସ୍ୟ ଶୃଙ୍ଗରେ ନାବ ବହି ॥୨୧୦
ଭ୍ରମିଲେ ମହାର୍ଣ୍ଣବ ଜଳେ ।
ଶଙ୍ଖ ଦଇତ୍ୟ ମାରି ହେଲେ ॥୨୧୧
ସେ ରାଜା ଦିବାକର ବଂଶେ ।
ଜନ୍ମ ହୋଇଲେ ମନୁ ଅଂଶେ ॥୨୧୨

ବଇବସ୍ୱତ ମନୁ ହୋଇ ।
ଯେମନ୍ତେ ସ୍ୱର୍ଗେ ସେ ବସଇ ॥୨୧୩
ଅଷ୍ଟମସ୍କନ୍ଧେ ଏ ଚରିତ ।
ତ୍ରିବିଂଶ ଅଧ୍ୟା ସମାପତ ॥୨୧୪
ନବମସ୍କନ୍ଧେ ଏବେ ଶୁଣ ।
ବଂଶାନୁଚରିତ ବିଧାନ ॥୨୧୫
ଯେ ସୂର୍ଯ୍ୟବଂଶାନୁ କୀର୍ତ୍ତନ ।
ସୂର୍ଯ୍ୟର ଅଟଇ ନନ୍ଦନ ॥୨୧୬
ବଇବସ୍ୱତ ମନୁ ନାମ ।
ସେ ବଂଶେ ଇକ୍ଷ୍ୱାକୁ ଜନମ ॥୨୧୭
ତାଙ୍କ ବଂଶରେ ହେଲେ ପୁଣ ।
ସୁଦ୍ୟୁମ୍ନ ନାମରେ ରାଜନ ॥୨୧୮
ଶଙ୍କର ଶାପେ କନ୍ୟା ହେଲେ ।
ଇଳା କନ୍ୟା ସେ ବୋଲାଇଲେ ॥୨୧୯
ତାରାକୁ ହରିଲେ ଯେ ସୋମ ।
ବୁଧ ତହିଁରୁ ହେଲେ ଜନ୍ମ ॥୨୨୦
ଇଳା ଗର୍ଭରୁ ବୁଧ ବୀର୍ଯ୍ୟେ ।
ପୁତ୍ର ପୁରୁରବା ଉପୁଜେ ॥୨୨୧
ତାହାର ଯେତେ ଉପାଖ୍ୟାନ ।
କହିଛୁଁ ବିସ୍ତାର କରିଣ ॥୨୨୨
ଏ ଦୁଇବଂଶ ଆଦ୍ୟ ଏହି ।
ଏଥୁଁ ସୋମ ସୂର୍ଯ୍ୟ ବୋଲାଇ ॥୨୨୩
ସୂର୍ଯ୍ୟବଂଶର ଯେ କଥନ ।
ଶଶାଦ ନୃଗ ଉପାଖ୍ୟାନ ॥୨୨୪
ଶର୍ଯ୍ୟାତିରାଜାଙ୍କ ଚରିତ ।
ସୁକନ୍ୟା କରିଲା ଯେମନ୍ତ ॥୨୨୫
ଚ୍ୟବନ ଋଷି ଉପାଖ୍ୟାନ ।
କାକୁସ୍ଥ ରାଜବଂଶମାନ ॥୨୨୬
ଖଟ୍ୱାଙ୍ଗ ରାଜାର ମହିମା ।
ସେ ମାନଧାତାର ଗାରିମା ॥୨୨୭
ସୌଭରି ଋଷିଙ୍କ ଚରିତ ।
ସଗର ରାଜନ ଯେମନ୍ତ ॥୨୨୮
ସଗର ଅଶ୍ୱମେଧ ଯାଗ ।
ଷଷ୍ଠିସହସ୍ରସୁତ ତ୍ୟାଗ ॥୨୨୯
କପିଳ କୋପରେ ଦହନ ।
ଦିଲୀପ ରାଜାରୁ ଯେ ପୁଣ ॥୨୩୦

Dr. Sudhanshu Sekhar Mishra

ଭଗୀରଥର ଉତପନ୍ନ ।
ଗଙ୍ଗାର ଯେବା ଆଗମନ ॥୨୩୧
ଶ୍ରୀରଘୁନାଥଙ୍କ ଚରିତ ।
ହୋଇଲେ ଦଶରଥ ସୁତ ॥୨୩୨
ବାଳ କାଳେ ସେ ମୃଗୟା ।
ବନୁଁ ଆଣନ୍ତି ଗଜହୟା ॥୨୩୩
ବିଶ୍ୱାମିତ୍ରଙ୍କ ସଙ୍ଗେ ଗଲେ ।
ବାଟରେ ତାଡକୀ ବଧିଲେ ॥୨୩୪
ଗୌତମପତ୍ନୀ ଯେ ଅହଲ୍ୟା ।
ପାଷାଣୁ ମୁକତ ହୋଇଲା ॥୨୩୫
ମିଥିଳାପୁରରେ ଜନକ ।
ନୃପତି ଅଟଇ ଧାର୍ମିକ ॥୨୩୬
ସେ ଧନୁସ୍ୱୟମ୍ବର କାଳେ ।
ମିଳିଲେ ସକଳ ଭୂପାଳେ ॥୨୩୭
ଶିବଧନୁ ରାମ ଭାଙ୍ଗିଣ ।
ମଇଥିଳୀ ବିଭା ହୋଇଣ ॥୨୩୮
ଅଯୋଧ୍ୟା ନଗରେ ପ୍ରବେଶ ।
ନୃପତି କରଣେ ଉଦ୍ଦେଶ୍ୟ ॥୨୩୯
କଇକେୟୀର ସତ୍ୟେ ପୁଣି ।
ସେ ଦଶରଥ ନୃପମଣି ॥୨୪୦
ରାମ ଯେ ବନବାସ ଗଲେ ।
ସୀତା ଲକ୍ଷ୍ମଣ ଘେନି ତୁଲେ ॥୨୪୧
ଅଗମ୍ୟ ବନରେ ପଶିଲେ ।
ପଞ୍ଚବଟୀବନେ ରହିଲେ ॥୨୪୨
ଖର ଦୂଷଣ ନାଶକରି ।
ଯାଗ ରଖିଲେ ଚାପଧାରୀ ॥୨୪୩
ରାବଣ ସୀତା ହରି ନେଲା ।
ତା ଜାଣି ରାମ ଚଳିଗଲା ॥୨୪୪
ସୁଗ୍ରୀବ ମିତ୍ର ଛଳେ ପୁଣ ।
ବାଳୀକୁ କଲେ ସେ ନିଧନ ॥୨୪୫
ତହୁଁ ପବନ ସୁତ ଗଲା ।
ଲଙ୍କାରେ ସୀତା ଠାବ କଲା ॥୨୪୬
ରାବଣ ଭାଇ ବିଭୀଷଣ ।
ଶ୍ରୀରାମେ ପଶିଲା ଶରଣ ॥୨୪୭
ବରୁଣ ବୋଲେ ରାମ ସେତୁ ।
ବାନ୍ଧିଲେ ବାନରଙ୍କ ହେତୁ ॥୨୪୮

ରାବଣ ସଗୋତ୍ର ସହିତ ।
ସବୁ ନାଶିଲେ ରଘୁନାଥ ॥୨୪୯
ବିଭୀଷଣକୁ ରାଜା କଲେ ।
ଅମରପଦ ତାକୁ ଦେଲେ ॥୨୫୦
ସୀତା ଅଗ୍ନି ପରୀକ୍ଷା କରି ।
ପ୍ରବେଶ ଅଯୋଧ୍ୟା ନଗରୀ ॥୨୫୧
ତହିଁ ଯେ ଭୋଗ କିଛିଦିନେ ।
ସୀତାଙ୍କୁ ପେଷିଲେ ସେ ବନେ ॥୨୫୨
ତଦନ୍ତେ ଅଶ୍ୱମେଧ କଲେ ।
ପୁତ୍ରଙ୍କୁ ବାଲମିକ ଦେଲେ ॥୨୫୩
ଚାରିଭାଇଙ୍କ ଅଷ୍ଟପୁତ୍ର ।
ଚାରି ଦେଶରେ ଆଧିପତ୍ୟ ॥୨୫୪
ଋକ୍ଷ ମର୍କଟ ଯେତେ ତହିଁ ।
ଦେବତା ରୂପେ ଜାତ ହୋଇ ॥୨୫୫
ତାଙ୍କୁ ଘେନି ସ୍ୱର୍ଗକୁ ଗଲେ ।
ବୈକୁଣ୍ଠେ ନିଦ୍ରାରେ ଶୋଇଲେ ॥୨୫୬
ଜନ୍ମାଦି ବୈକୁଣ୍ଠ ପ୍ରାପତ ।
କହିତ ଅଛୁ ସେ ଚରିତ ॥୨୫୭
ସେ ରାମନାମ ଯେ ଧରନ୍ତି ।
ସଂସାର ତାପୁଁ ନିସ୍ତରନ୍ତି ॥୨୫୮
ନିମି ରାଜାର ଯେ ଚରିତ ।
ଜନକ ରାଜାର ବୃତ୍ତାନ୍ତ ॥୨୫୯
ଜନକ ରାଜାର ସନ୍ତତି ।
ସୂର୍ଯ୍ୟବଂଶରେ ଉତପତ୍ତି ॥୨୬୦
ଭୃଗୁର ଜମଦଗ୍ନି ସୁତ ।
ତା ସୁତ ପର୍ଶୁରାମ ଖ୍ୟାତ ॥୨୬୧
ତପ କରଣେ ଅତିଶ୍ରେଷ୍ଠ ।
କ୍ଷତ୍ରିୟବୃତ୍ତିରେ ଗରିଷ୍ଠ ॥୨୬୨
ମାତା ଦୁହିତା ଚରୁଭ୍ରମ ।
ଋଷି ଜନ୍ମ କ୍ଷତ୍ରି ଅଂଶେଷ ॥୨୬୩
କ୍ଷତ୍ରି ଆଚାର ଋଷି ହୋଇ ।
ଏଣୁ ସେ କ୍ଷତ୍ରିୟ ବୋଲାଇ ॥୨୬୪
ସହସ୍ରାର୍ଜୁନ ଯେ ରାଜନ ।
ବଳେ ନେଲା ତାଙ୍କ ଗୋଧନ॥୨୬୫
ଜମଦଗ୍ନିର ଶିର ଛେଦି ।
ଶୁଣିଣ ପର୍ଶୁରାମ କ୍ରୋଧି ॥୨୬୬

ବିଷ୍ଣୁଙ୍କୁ ଧ୍ୟାନ ସେହୁ କଲେ ।
ବିଷ୍ଣୁ ଯେ ପ୍ରସନ୍ନ ହୋଇଲେ ॥୨୬୭
ସେ ନାରାୟଣ ଜ୍ୟୋତିଭାବେ ।
ପଶିଲେ ପର୍ଶୁରାମ ଗର୍ଭେ ॥୨୬୮
ସହସ୍ରାର୍ଜୁନଙ୍କର ବଂଶ ।
ସମୂଳେ କଲେ ସେ ବିନାଶ ॥୨୬୯
ପୃଥିବୀ ଏକବିଂଶ ବାର ।
ଛେଦିଲେ କ୍ଷତ୍ରିୟଙ୍କ ଶିର ॥୨୭୦
ପୃଥ୍ୱୀରେ କ୍ଷତ୍ରି ଶେଷ କଲେ ।
ଦୁଷ୍ଟଙ୍କ ଅଂଶ ନ ରଖିଲେ ॥୨୭୧
ସୋମବଂଶରେ ସେ ଜନମ ।
ରାଜାର ପୁରୁରବା ନାମ ॥୨୭୨
ସେ ପୁଣି ଉର୍ବଶୀ ସଙ୍ଗତେ ।
ବିହ୍ୱଳ ହୋଇଲେ ଯେମନ୍ତେ ॥୨୭୩
ଏ ଆଦି ଯେତେ ଗୁଣ ତାର ।
ପୃଥ୍ୱୀରେ ଏକା ନୃପବର ॥୨୭୪
ଆୟୁ ରାଜାର ଯେତେ ଗୁଣ ।
ନହୁଷ ଯଯାତି ଯେ ପୁଣ ॥୨୭୫
ଦୁଷ୍ୟନ୍ତ ରାଜାର ବିଧାନ ।
ଶକୁନ୍ତଳାର ଉପାଖ୍ୟାନ ॥୨୭୬
ଭରତ ରାଜାର ଚରିତ ।
ଶାନ୍ତନୁ ଯେମନ୍ତ ବିଦିତ ॥୨୭୭
ଭୀଷ୍ମର ମହିମା ଯେମନ୍ତେ ।
ବିବାହ ନୋହେ ପିତା ଅର୍ଥେ॥୨୭୮
ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟ ।
ଜନମ ଶାନ୍ତନୁ ତନୁଜ ॥୨୭୯
ଏମାନେ ଅପୁତ୍ରିକେ ନାଶ ।
ତହୁଁ ଅଇଲେ ବେଦବ୍ୟାସ ॥୨୮୦
ପୁତ୍ର ଉପୁଜାଇଲେ ଭାବେ ।
ମାତା ବଚନେ ଅନୁରାଗେ ॥୨୮୧
ଧୃତରାଷ୍ଟ୍ର ପଣ୍ଡୁ ବିଦୁର ।
ଏ ତିନି ବ୍ୟାସଙ୍କ କୁମର ॥୨୮୨
କୌରବ ପାଣ୍ଡବ ଯେ ହୋଇ ।
ଶତେ ପାଞ୍ଚଭ୍ରାତ ଜନ୍ମାଇ ॥୨୮୩
ଏହାଙ୍କ ସନ୍ତତି ଯେ ପୁଣ ।
ପରୀକ୍ଷିତ ଆଦି ଜନମ ॥୨୮୪

Dr. Sudhanshu Sekhar Mishra

କଳିଯୁଗରେ ଏ ବଂଶରେ ।
ଯେତେ ହୋଇଲେ ନୃପବରେ ॥୨୮୫
ଭୂତ ଭବିଷ୍ୟ ବର୍ତ୍ତମାନ ।
ହୋଇଲେ ଯେତେକ ରାଜନ ॥୨୮୬
ସହସ୍ରେ ବରଷ ଭିତରେ ।
ଏ ସର୍ବେ ହେଲେ ନୃପବରେ ॥୨୮୭
ଏଥୁଅନ୍ତରେ ଏବେ ଶୁଣ ।
ଯଦୁବଂଶର ଯେ ପ୍ରମାଣ ॥୨୮୮
ଯଯାତିପୁତ୍ର ଯଦୁ ଜ୍ୟେଷ୍ଠ ।
ଅଷ୍ଟାଦଶ ଯାଦବେ ଶ୍ରେଷ୍ଠ ॥୨୮୯
ତାହାଙ୍କ ଯେତେକ ବର୍ଣ୍ଣନା ।
ଏ ଆଦି ଶୁଣିଅଛ ସିନା ॥୨୯୦
ଯଯାତି ଦ୍ୱିତୀୟ ଯେ ପୁତ୍ର ।
ପୁରୁ ବଂଶର ଯେ ଚରିତ ॥୨୯୧
ତୁର୍ବସୁ ବଂଶେ ଯେତେ ଜନ ।
ପଶ୍ଚିମେ ହୋଏ ଉତପନ୍ନ ॥୨୯୨
ଚତୁର୍ଥ ପୁତ୍ର ଯେ ଦ୍ରୁହୁଜ ।
ତା ବଂଶେ ଜନମ ଯେ ଭୋଜ ॥୨୯୩
ପଞ୍ଚମ ପୁତ୍ର ନାମ ଅନୁ ।
ତା ବଂଶେ ଯେତେ ରାଜା ତନୁ ॥୨୯୪
ସେ ଯଦୁ ଚାରିପୁତ୍ରେ ଶ୍ରେଷ୍ଠ ।
ଶତଜିତ ନାମ ବିଶିଷ୍ଟ ॥୨୯୫
ତା ବଂଶେ ସହସ୍ରଅର୍ଜ୍ଜୁନ ।
ତାକୁ ମାଇଲେ ପର୍ଶୁରାମ ॥୨୯୬
ଦ୍ୱିତୀୟପୁତ୍ର ଯେ ପୟୋଦ ।
ତା ବଂଶେ ଜାତ ଜରାସନ୍ଧ ॥୨୯୭
ତୃତୀୟ ପୁତ୍ର କ୍ରୋଷ୍ଟି ନାମ ।
ସେ ବୃଷ୍ଣିବଂଶେ ବିଦ୍ୟମାନ ॥୨୯୮
ଶୂରସେନ ବସୁଦେବାଦି ।
ଏମାନ କହିଛି ସମ୍ପାଦି ॥୨୯୯
ଚତୁର୍ଥ ପୁତ୍ର ନଳ ନାମ ।
ତା ବଂଶେ ପଣ୍ଡୁ ବିଦ୍ୟମାନ ॥୩୦୦
ଏ ବଂଶେ ଜନ୍ମିଲେ ଅନ୍ଧକ ।
ଭୋଜ ଯେ ଉଗ୍ରସେନାଦିକ ॥୩୦୧
ବୃଷ୍ଣିବଂଶରେ ତହିଁ ପୁଣ ।
ଶୂରସେନାଦି ଯେ ରାଜନ ॥୩୦୨
ତା ସାତକନ୍ୟା ଦଶସୁତ ।
ତହିଁ ଜ୍ୟେଷ୍ଠ ବସୁଦେବତ ॥୩୦୩
ତାହାର ଅଷ୍ଟାଦଶ ନାରୀ ।
ରୋହିଣୀ ଭଦ୍ରା ଆଦିକରି ॥୩୦୪
ଏ ମଧ୍ୟେ ରୋହିଣୀ ଗର୍ଭରେ ।
ଦୁହିତା ଅଷ୍ଟପୁତ୍ର ହେଲେ ॥୩୦୫
ଜ୍ୟେଷ୍ଠ ଯେ ବଳଭଦ୍ର ହୋଇ ।
ଦୁହିତା ସୁଭଦ୍ରା ବୋଲାଇ ॥୩୦୬
ଆଉ ସେ ଯେତେ ସ୍ତିରୀମାନ ।
ଜାତ ବେନି ବେନି ନନ୍ଦନ ॥୩୦୭
ଦେବକୀ ଷଡପୁତ୍ର ପୁଣ ।
କଂସ ତା କଚାଡେ ଶିଳଣ ॥୩୦୮
ସପ୍ତମ ଗର୍ଭେ ବଳଦେବ ।
ଯୋଗମାୟାରେ ଗର୍ଭସ୍ରାବ ॥୩୦୯
ରୋହିଣୀ ଗର୍ଭରେ ପଶିଲେ ।
ଗୋପରେ ଜନମ ହୋଇଲେ ॥୩୧୦
ଅଷ୍ଟମ ଗର୍ଭେ ବିଷ୍ଣୁ ଜାତ ।
ଯେ କୃଷ୍ଣ ବଇକୁଣ୍ଠ ନାଥ ॥୩୧୧
କୃଷ୍ଣ ଅବତାର ହୋଇଲେ ।
ନବମେ ଏମନ୍ତ କହିଲେ ॥୩୧୨
ଚବିଶ ଅଧ୍ୟାରେ ସମ୍ପୂର୍ଣ୍ଣ ।
ବଂଶାନୁଚରିତ ଆଖ୍ୟାନ ॥୩୧୩
ଦଶମସ୍କନ୍ଧେ କୃଷ୍ଣରସ ।
ଶୁଣିଲେ ନ ଥାଇ କଳୁଷ ॥୩୧୪
ଶୁକ ପରୀକ୍ଷେ କହେ ଏହା ।
ଶୁଣ ରାଜନ ପୁଣ୍ୟଦେହା ॥୩୧୫
ଆଦ୍ୟେ ବସୁଦେବ ବିବାହ ।
କଂସ ଯେ ଦେବକୀ ନିଗ୍ରହ ॥୩୧୬
ଆକାଶବାଣୀ ଶୁଣି ରୋଷେ ।
ମାରନ୍ତେ ବସୁଦେବ ତ୍ରାସେ ॥୩୧୭
ସତ୍ୟ ଯେ ବସୁଦେବ କଲା ।
ବାଳକ ଦେବଇଁ ବୋଇଲା ॥୩୧୮
ପୃଥିବୀ ଦେବଗଣ ଆଦି ।
ବ୍ରହ୍ମାଶଙ୍କର ବ୍ରହ୍ମବାଦୀ ॥୩୧୯
ବିଷ୍ଣୁଙ୍କ କ୍ଷୀରାର୍ଣ୍ଣବ ତୀରେ ।
ଗୁହାରି କଲେ ସ୍ତୁତିଭରେ ॥୩୨୦
ସେ ବିଷ୍ଣୁ ସର୍ବ ଅନ୍ତର୍ଯ୍ୟାମୀ ।
କହେ ଆକାଶୁ ଶୂନ୍ୟବାଣୀ ॥୩୨୧
ହେ ଦେବେ ଭୟ ଅପହର ।
ନାଶିବୁ ପୃଥିବୀର ଭାର ॥୩୨୨
କୃଷ୍ଣ ଅବତାର ହୋଇବୁ ।
ନିଶ୍ଚୟେ ଅସୁର ନାଶିବୁ ॥୩୨୩
ଗୋପରେ ଗୋପାଳଙ୍କ ମେଳେ ।
ଜାତ ହୋଇବୁ ମହୀତଳେ ॥୩୨୪
ଏମନ୍ତେ ଦେବକୀ ଛ ପୁତ୍ର ।
କଂସ ଯେ ମାଇଲା ନିୟତ ॥୩୨୫
ଯୋଗମାୟାଙ୍କୁ ବିଷ୍ଣୁ ରାଇ ।
ମଞ୍ଚରେ ଜନ୍ମହୁଅ ଯାଇ ॥୩୨୬
ଦେବକୀ ସପ୍ତମଗର୍ଭର ।
ବଳଦେବଙ୍କୁ ତହୁଁ ଦୂର ॥୩୨୭
ରୋହିଣୀ ଗର୍ଭେ ଥୁଅ ନେଇ ।
ଅଷ୍ଟମେ ମୁହିଁ ଜନ୍ମିବଇଁ ॥୩୨୮
ତୁ ଜାତ ଯଶୋଦା ଗର୍ଭରେ ।
ଏମନ୍ତ ଯୋଗମାୟା କଲେ ॥୩୨୯
ଏମନ୍ତେ ପ୍ରସନ୍ନ ହୋଇଲେ ।
ଜାଣି ବ୍ରହ୍ମା ଦେବେ ପୂଜିଲେ ॥୩୩୦
ଗର୍ଭକୁ କଲେ ବହୁ ସ୍ତୁତି ।
ଏ ଅନ୍ତେ କୃଷ୍ଣ ଜନ୍ମ ହୋନ୍ତି ॥୩୩୧
ବସୁଦେବ ଯେ ସ୍ତୁତି କଲେ ।
ତାଙ୍କୁ ଶ୍ରୀକୃଷ୍ଣ ଆଜ୍ଞା ଦେଲେ ॥୩୩୨
ତା ତିନି ଜନ୍ମର ବାରତା ।
କହିଲେ ସର୍ବଭୂତଜ୍ଞାତା ॥୩୩୩
ଦେବକୀ ବସୁଦେବ ସ୍ତୁତି ।
ଶ୍ରୀକୃଷ୍ଣ ସନ୍ତୋଷ ହୁଅନ୍ତି ॥୩୩୪
କୃଷ୍ଣଙ୍କୁ ବସୁଦେବ ନେଇ ।
ଗୋପରେ ଛାଡିଣ ଆସଇ ॥୩୩୫
ନନ୍ଦର ଘରୁ କନ୍ୟା ଆଣି ।
କଂସ ନିକଟେ ଦେଲା ପୁଣି ॥୩୩୬
ସେ କନ୍ୟା କଂସ କଚାଡନ୍ତେ ।
ହସ୍ତରୁ ଗଲା ଶୂନ୍ୟପଥେ ॥୩୩୭
କଂସକୁ କହିଣ କପଟ ।
ତା ଶୁଣି କଂସ ଯେ ଉଚ୍ଚାଟ ॥୩୩୮

Dr. Sudhanshu Sekhar Mishra

କୃଷ୍ଣ ପ୍ରବେଶ ନନ୍ଦଘରେ ।
ଉତ୍ସବ କଲେ ଗୋପପୁରେ ॥୩୩୯
ସେ କୃଷ୍ଣ ଥାଇଣ ଗୋପରେ ।
ଶୁଣିଛ ଯେତେ ଲୀଳାକଲେ ॥୩୪୦
ସପତଦିନ ରାତ୍ରେ ମୁଣ ।
ଶୋଷିଲେ ପୂତନାର ପ୍ରାଣ ॥୩୪୧
ମାସକେ ଶକଟ ଭଞ୍ଜନ ।
ଦ୍ୱିମାସେ ତୃଣାକୁ ନିଧନ ॥୩୪୨
ଶଏ ରାତ୍ରେ ନାମ କରଣ ।
ଗାର୍ଗବ ଆସିଣ ବିଧାନ ॥୩୪୩
ତଦନ୍ତେ ମୃତ୍ତିକା ଭକ୍ଷଣ ।
ମାତାଙ୍କୁ ଗର୍ଭ ଦରଶନ ॥୩୪୪
ଯଶୋଦା ଦଧି ଯେ ମନ୍ଥନ ।
କୃଷ୍ଣ ଦଧିଭାଣ୍ଡ ଭଞ୍ଜନ ॥୩୪୫
ତଦନ୍ତେ ଲବଣି ଭକ୍ଷଣ ।
ଗୋପୀଏ ନୃତ୍ୟ କରାଇଣ ॥୩୪୬
କୃଷ୍ଣ ସେ ରୋଳରେ ବନ୍ଧନ ।
ଯାମଳା ଅର୍ଜୁନ ଭଞ୍ଜନ ॥୩୪୭
ଯେ ନଳ ମଣିଗ୍ରୀବ ମୁକ୍ତି ।
ପୂର୍ବେ ଯେ ଶାପ ପାଇଛନ୍ତି ॥୩୪୮
ତହୁଁ ସେ କଲେ ବାଲ୍ୟଲୀଳା ।
କେହୁ କହିବ ତାଙ୍କ ଖେଳା ॥୩୪୯
ତଦନ୍ତେ କୋଳି ଯେ ଭକ୍ଷଣ ।
ଏ ରୂପେ ଗୋପେ ଆଚରଣ ॥୩୫୦
ବକା ବତ୍ସାସୁର ନିଧନ ।
ମୁରଲୀ ଗୀତ ଯେ କଳନ ॥୩୫୧
ବନରେ ବନଭୋଜି କଲେ ।
ଅଘାସୁରକୁ ସେ ବଧିଲେ ॥୩୫୨
ବ୍ରହ୍ମା ଯେ ବତ୍ସା ହରିନେଲେ ।
କୃଷ୍ଣ ବିଶ୍ୱମୂର୍ତ୍ତି ହୋଇଲେ ॥୩୫୩
ବତ୍ସା ବାଳକ ଜାତ କଲେ ।
ପୂର୍ବେ ଯେମନ୍ତ ହୋଇଥିଲେ ॥୩୫୪
ବ୍ରହ୍ମା ଯେ ବାହୁଡାଇ ଦେଲେ।
ବେଦରେ ବ୍ରହ୍ମା ସ୍ତୁତି କଲେ ॥୩୫୫
ଧେନୁକାସୁରର ନାଶନ ।
କାଳିନ୍ଦୀରେ କାଳୀଦଳନ ॥୩୫୬

ପ୍ରଲମ୍ବାସୁରକୁ ନିଧନ ।
ଦାବାଗ୍ନିରୁ ଗୋପ ରକ୍ଷଣ ॥୩୫୭
ଗୋପ ଗୋକୁଳକୁ ତାରଣ ।
ଅଜଗରୁ ନନ୍ଦ ମୋକ୍ଷଣ ॥୩୫୮
ବୃନ୍ଦାବନରେ ଯେ ବିହାର ।
ମୁରଲୀ ଧ୍ୱନିରେ ସୁସ୍ୱର ॥୩୫୯
ଗୋପୀଙ୍କ ବୃନ୍ଦାବନେ ପ୍ରୀତି ।
ଯେତେ ଗୁଣ ତା ବାହୁନନ୍ତି ॥୩୬୦
ବରଷା ଶରଦ ଋତୁର ।
ତହିଁ ବର୍ଣ୍ଣନା ଯେ ପ୍ରକାର ॥୩୬୧
ଗୋପୀମାନଙ୍କ ବ୍ରତସ୍ନାନ ।
ଯେ ବ୍ରତେ ତୋଷ ଭଗବାନ॥୩୬୨
ତଦନ୍ତେ ବସ୍ତ୍ର ଯେ ହରଣ ।
କଦମ୍ବ ବୃକ୍ଷେ ଆରୋହଣ ॥୩୬୩
ଯଜ୍ଞପତ୍ନୀରେ ଅନୁଗ୍ରହ ।
ତାହାଙ୍କ ସ୍ନେହର ବିଷୟ ॥୩୬୪
ଯଜ୍ଞ ଅନ୍ନକୁ ସେ ଭୋଜନ ।
ବ୍ରାହ୍ମଣେ ଅନୁତାପମାନ ॥୩୬୫
ଇନ୍ଦ୍ରର ଗରବ ଗଞ୍ଜନ ।
କରେ ଗୋବର୍ଦ୍ଧନ ଧାରଣ ॥୩୬୬
ଇନ୍ଦ୍ର ସୁରଭି ଦରଶନ ।
କଲେ ଅନେକ ସ୍ତୁତିମାନ ॥୩୬୭
ଗୋବିନ୍ଦ ନାମେ ଅଭିଷେକ ।
କଲେ ସେ ସ୍ୱର୍ଗର ନାୟକ ॥୩୬୮
ତହୁଁ ନନ୍ଦର ଏକାଦଶୀ ।
ବରୁଣ ହରିନେଲା ଆସି ॥୩୬୯
ସେ ପୁଣି କୃଷ୍ଣ ଦରଶନ ।
ପାଇ ସନ୍ତୋଷ ହୋଇ ମନ ॥୩୭୦
ଗୋପାଳ ପୁଅଙ୍କୁ ସେ ନେଇ।
ବରୁଣ ଭୁବନ ଦେଖାଇ ॥୩୭୧
ବିଦ୍ୟାଧରର ଯେ ମୋକ୍ଷଣ ।
ଦର୍ଶନେ ସ୍ୱର୍ଗକୁ ଗମନ ॥୩୭୨
ତହୁଁ ଯେ ବୃନ୍ଦାବନେ ରାସ ।
କୃଷ୍ଣ ବୃନ୍ଦାବନେ ପ୍ରବେଶ ॥୩୭୩
ଯେଣୁ ସେ ଶରଦର କାଳ ।
ଦିଗମାନେ ଅତି ନିର୍ମଳ ॥୩୭୪

ଗୋପୀଙ୍କ ମୋକ୍ଷର କାରଣେ ।
ଶ୍ରୀକୃଷ୍ଣ ବିଚାରିଲେ ମନେ ॥୩୭୫
ମୁରଲୀ ଧ୍ୱନି ସେ ସୁସ୍ୱରେ ।
ଶବଦ ଶୁଣି ଗୋପପୁରେ ॥୩୭୬
ଗୋପୀଏ ବୃନ୍ଦାବନେ ଗଲେ।
ଗୋବିନ୍ଦ ଦର୍ଶନ ପାଇଲେ ॥୩୭୭
କୃଷ୍ଣର ନିଷ୍ଠୁର ଯେ ବାଣୀ ।
ଆତଙ୍କ ହୋଇ ଗୋପାଳୁଣୀ॥୩୭୮
ସ୍ତୁତି ବିନୟେ ପ୍ରବୋଧିଲେ ।
ସେ କୃଷ୍ଣ ନାରୀବଶ ହେଲେ॥୩୭୯
ତହୁଁ ସେ ରାସ କ୍ରୀଡା ହୋଇ ।
ଉଛୁଳେ ସୁଖସିନ୍ଧୁ ଯହିଁ ॥୩୮୦
ଗୋପୀ ମଦନେ ଭୋଳ ହୋଇ ।
ବୃନ୍ଦା ଗୋପୀ ଗର୍ବ କରଇ ॥୩୮୧
ଜାଣିଣ କୃଷ୍ଣ ଅନ୍ତର୍ଦ୍ଧାନ ।
ଗୋପୀଏ ବିକଳେ ରୋଦନ ॥୩୮୨
ନାନା ପ୍ରକାରେ ସେ ବିକଳ ।
ରକ୍ଷାକର ହେ ଆଦିମୂଳ ॥୩୮୩
ଗୋପୀଙ୍କି ଦେଲେକ ଦର୍ଶନ ।
ରାସେ ତୋଷିଲେ ତାଙ୍କ ମନ॥୩୮୪
ଅନେକ ରୂପେ ନନ୍ଦସୂନୁ ।
ଏକ ଗୋପୀକେ ଏକ କାହ୍ନୁ ॥୩୮୫
ରାସ ଉତ୍ସବେ ଭଗବାନ୍ ।
ଆନନ୍ଦ ସର୍ବଗୋପୀମନ ॥୩୮୬
ତଦନ୍ତେ ଶଙ୍ଖଚୂଡ ବଧେ ।
ବ୍ୟୋମାସୁରକୁ ନାଶି ଯୁଦ୍ଧେ ॥୩୮୭
ଷଣ୍ଢାସୁରକୁ ନାଶ କରି ।
କେଶିକୀ ପେଷି ସ୍ୱର୍ଗପୁରୀ ॥୩୮୮
କଂସ ଯେ ରଙ୍ଗସଭା କରି ।
ମାରିବ ବୋଲି ରାମହରି ॥୩୮୯
ଅକ୍ରୂରେ ଗୋପକୁ ପେଷିଣ ।
ଅଣାଇ କାହ୍ନୁ ସଙ୍କର୍ଷଣ ॥୩୯୦
ନନ୍ଦ ଆଦି ଗୋପାଳମାନେ ।
ଘେନି ଚଳିଲେ ମଧୁବନେ ॥୩୯୧
ମଥୁରା ରାମକୃଷ୍ଣ ଗଲେ ।
ଦେଖି ବିଳାପ ଗୋପୀ କଲେ॥୩୯୨

Dr. Sudhanshu Sekhar Mishra

ଶ୍ରୀକୃଷ୍ଣ ଗୋପିଙ୍କୀ ବୋଧିଣ।
ଅକ୍ରୂର ସଙ୍ଗତେ ରଥେଣ ॥୩୯୩
ଅକ୍ରୂର କାଳିନ୍ଦୀ ସ୍ନାହାନ ।
ଜଳେ ଦେଖିଲା ଭଗବାନ ॥୩୯୪
ଅକ୍ରୁର ଅନୁଗ୍ରହଭାବ ।
ଗୋଲୋକ ବଇକୁଣ୍ଠେ ଠାବ ॥୩୯୫
ମଥୁରାପୁରେ ପରବେଶ ।
ଦେଖି ବୁଲନ୍ତି ନଗ୍ରଦେଶ ॥୩୯୬
ରଜକଶିର ଛେଦି ତହୁଁ ।
ବସନ ନ ଦେଲା ସେ ଯହୁଁ ॥୩୯୭
ଧନୁର ଭଗ୍ନ ତଦଅନ୍ତେ ।
ମାଳାକାରକୁ ଯେ ମୁକତେ ॥୩୯୮
କୁବୁଜା ଗନ୍ଧ ଯେ ଲେପନ ।
ସୁନ୍ଦରୀ ହେଲା ଅନୁପମ ॥୩୯୯
କୁବଳୟାଗଜ ନିବାରି ।
ପ୍ରବେଶ ରଙ୍ଗସଭା ହରି ॥୪୦୦
ମାଲଯୁଦ୍ଧର ଯେ ବ୍ୟବସ୍ଥା ।
ଚାଣୂର ମୁଷ୍ଟିକ ନିହନ୍ତା ॥୪୦୧
ରାଜା ଅଷ୍ଟମଲ୍ଲ ନାଶିଣ ।
ଉଠିଲେ ମଞ୍ଚା ଉପରେଣ ॥୪୦୨
କଂସକୁ କଲେ ସେ ନିଧନ ।
କଂସର ଯେତେ ଭାଇମାନ ॥୪୦୩
ଉଗ୍ରସେନକୁ ରାଜା କରି ।
ସର୍ବଯାଦବ ମଧ୍ୟେ ହରି ॥୪୦୪
ଦେବକୀ ବସୁଦେବ ଆଣି ।
ବନ୍ଦୀରୁ ମୋକ୍ଷ ତତକ୍ଷଣି ॥୪୦୫
ମାତାପିତାଙ୍କୁ କଲେ ସ୍ତୁତି ।
ମୋହନ ବଚନେ ଶ୍ରୀପତି ॥୪୦୬
ମାଇଁଙ୍କ ରୋଦନ ନିବାରି ।
କଂସର ପ୍ରେତକର୍ମ ସାରି ॥୪୦୭
ଅବନ୍ତୀ ଦେଶରେ ସେ ଯାଇ ।
ବିଦ୍ୟା ପଢିଲେ ବେନିଭାଇ ॥୪୦୮
ଶମନ ଭୁବନୁ ଆଣିଲେ ।
ଗୁରୁଙ୍କୁ ପୁତ୍ରଦାନ ଦେଲେ ॥୪୦୯
ମଥୁରା ପରବେଶ ହୋଇ ।
ଉଦ୍ଧବ ଗୋପକୁ ଗମଇଁ ॥୪୧୦

ଗୋପେ ଉଦ୍ଧବ ପ୍ରବେଶନ ।
ଗୋପୀ ଗୋପାଳଙ୍କ ରୋଦନ॥୪୧୧
ଉଦ୍ଧବ ଗୋପୀଙ୍କ ବିଚାର ।
ବୃନ୍ଦାବତୀ ନାମ ଯାହାର ॥୪୧୨
ଭ୍ରମର ଘୁରୂ ତା ପାଦେଣ ।
ତା ଦେଖି ଗୋପୀ ମୋହମାନ ॥୪୧୩
କୃଷ୍ଣର ଦୂତ ତାକୁ ଜାଣି ।
ପ୍ରେମେ ଅନେକ କହେ ବାଣୀ ॥୪୧୪
ଉଦ୍ଧବ କରି ସନମାନେ ।
କହେ ଗୋପୀଙ୍କି ସମ୍ବୋଧନେ ॥୪୧୫
କୁବୁଜା ଗୃହକୁ ଗମନ ।
କାମେ ତୋଷିଲେ ତାର ମନ ॥୪୧୬
ଅକ୍ରୂର ପୁରେ ପରବେଶ ।
ଯେ ପ୍ରଭୁ ଅନାଦିପୁରୁଷ ॥୪୧୭
ଅକ୍ରୁରେ ହସ୍ତିନା ଭୁବନ ।
ପେଷିଲେ ଶ୍ରୀମଧୁସୂଦନ ॥୪୧୮
ମଥୁରାପୁରେ ନରହରି ।
ଯାଦବମାନ ପ୍ରତିପାଳି ॥୪୧୯
ଜରାସନ୍ଧ ଯେ ଧାଡିଦେଲା ।
ମଥୁରାନଗର ବେଢିଲା ॥୪୨୦
ଏମନ୍ତେ ସପ୍ତଦଶବାର ।
ଯୁଦ୍ଧେ ହାରିଲା ଜରାବୀର ॥୪୨୧
ଅଷ୍ଟାଦଶବେଳ ତା ଜାଣି ।
ସୈନ୍ୟ ତା ମଲେ ଅକ୍ଷୌହିଣୀ ॥୪୨୨
କାଳଯବନ କୂଟେ ନେଇ ।
ମୁଚୁକୁନ୍ଦ ଚକ୍ଷୁରେ ଦାହି ॥୪୨୩
ଦ୍ୱାରକାପୁରର ନିର୍ମାଣ ।
ବିଶ୍ୱକର୍ମାର ଯେ ଘଟଣ ॥୪୨୪
ତହିଁ ସର୍ବଯାଦବ ଘେନି ।
ବିହାର କଲେ ଯଦୁମଣି ॥୪୨୫
ତହୁଁ ଯେ ରୁକ୍ମିଣୀ ହରଣ ।
ଆଣିଲେ ଯେମନ୍ତ ଭାବେଣ ॥୪୨୬
ଜରାସନ୍ଧାଦି ରାଜା ଜିଣି ।
ବିବାହ କଲେ ସେ ରୁକ୍ମିଣୀ ॥୪୨୭
ସ୍ୟମନ୍ତକମଣି ହରଣ ।
ବନରେ ପ୍ରସେନ ମରଣ ॥୪୨୮

ଜାମ୍ବବଠାରୁ ମଣି ଆଣି ।
ବିବାହ ଜାମ୍ବବତୀ ରାଣୀ ॥୪୨୯
ସତ୍ୟଭାମାକୁ ବିଭା ହୋଇ ।
କାଳିନ୍ଦୀ ମିତ୍ରବିନ୍ଦା ଦୁଇ ॥୪୩୦
ଭଦ୍ରା ଲକ୍ଷଣା ସତ୍ୟାରାଣୀ ।
ଏହାଙ୍କୁ ବିଭା ଚକ୍ରପାଣି ॥୪୩୧
ନାରକାସୁର ନାଶି ଆଣି ।
ଷୋଳସହସ୍ର ଶତେ ରାଣୀ ॥୪୩୨
ଏହାଙ୍କୁ ନିଜ ପୁରେ ନେଇ ।
ଏକ ମୁହୂର୍ତ୍ତେ ବିଭା ହୋଇ ॥୪୩୩
ରୁକ୍ମିଣୀ ଗର୍ଭରେ ଜନମ ।
ନାମ ତାହାଙ୍କର ପ୍ରଦ୍ୟୁମ୍ନ ॥୪୩୪
ଶମ୍ବରାସୁର ବଧ କରି ।
ରତି ଘେନି ଦ୍ୱାରକାପୁରୀ ॥୪୩୫
ଅନିରୁଦ୍ଧ ବିବାହେ ପୁଣ ।
ରୁକ୍ମ ଯେ ବଧ ସେ ବେଳେଣ॥୪୩୬
ସତ୍ୟଭାମାର ମାନ କଥା ।
ପାରିଜାତକର ବ୍ୟବସ୍ଥା ॥୪୩୭
ଇନ୍ଦ୍ର ଗୋବିନ୍ଦ ମଧ୍ୟେ ରଣ ।
ସୁଧର୍ମା ସଭାର ହରଣ ॥୪୩୮
ତହୁଁ ଯେ ଉଷାର ହରଣ ।
ଯେମନ୍ତେ ଯୁଦ୍ଧ କଲା ବାଣ ॥୪୩୯
ଯଦୁମାନଙ୍କ ଯୁଦ୍ଧେ ପୁଣ ।
ହରିହରଙ୍କର ଯେ ରଣ ॥୪୪୦
ଯେମନ୍ତେ କୃଷ୍ଣ ବିଜେ କଲେ।
ବାଣା ଭୁଜମାଳ ଛେଦିଲେ ॥୪୪୧
ନୃଗରାଜାଙ୍କର ଉପାଖ୍ୟାନ ।
ହସ୍ତିନାପୁରକୁ ଗମନ ॥୪୪୨
ରାଜସୂୟଜ୍ଞର ସମ୍ବନ୍ଧେ ।
ଭୀମ ନାଶିଲେ ଜରାସନ୍ଧେ ॥୪୪୩
ରାଜସୂୟଜ୍ଞ ପୂଜା ଭାବେ ।
ଦୂଷିଲା ଶିଶୁପାଳ ଗର୍ବେ ॥୪୪୪
ସେ କୃଷ୍ଣଚକ୍ରେ ଛେଦଗଲା ।
ଗୋବିନ୍ଦ ଶରୀରେ ପଶିଲା ॥୪୪୫
ବାସୁଦେବଙ୍କ ବେଶ ବହି ।
ପୌଣ୍ଡ୍ରକ ବାସୁଦେବ କହି ॥୪୪୬

Dr. Sudhanshu Sekhar Mishra

ତାହାକୁ ରଣେ ନାଶକଲେ ।
ଶାଲ୍ୱଦନ୍ତବକ୍ର ବଧିଲେ ॥୪୪୭
ଜୟ ବିଜୟ ବେନିଭାଇ ।
ଚତୁଃସନଙ୍କ ଶାପ ପାଇ ॥୪୪୮
ହିରଣ୍ୟ ହିରଣ୍ୟାକ୍ଷ ହୁଇ ।
ରାବଣ କୁମ୍ଭକର୍ଣ୍ଣ ହୋଇ ॥୪୪୯
ଶାଲ୍ୱ ଶିଶୁପାଳ ଏ ବେନି ।
ଶାପୁଁ ପାଇ ଜନମ ତିନି ॥୪୫୦
ଦ୍ୱିବିନ୍ଦବାନର ନାଶିଲେ ।
ପୀଠ ମୁରଦୈତ୍ୟ ମାଇଲେ ॥୪୫୧
ପଞ୍ଚଜନ କାଶୀରାଜନ ।
ସୁଦର୍ଶନେ କାଶୀ ଦହନ ॥୪୫୨
ଗୋପେ ବିଜୟ ବଳରାମ ।
କଦମ୍ବରସ କରି ପାନ ॥୪୫୩
ଯମୁନା ଆକର୍ଷଣ କଲେ ।
ଅଦ୍ୟାପି ଦେଖି ତାହା ଭଲେ ॥୪୫୪
ଦୁର୍ଯ୍ୟୋଧନର କନ୍ୟା ପୁଣ ।
ଶାମ୍ବକୁମର ଯେ ହରଣ ॥୪୫୫
ହସ୍ତିନାପୁର ଯେ ତାଡନ ।
କଲେ ସେ ବଳଦେବ ପୁଣ ॥୪୫୬
ତୀର୍ଥଯାତ୍ରାରେ ବଳରାମ ।
ମୁନିଙ୍କ ଯଜ୍ଞରେ ଆଗମ ॥୪୫୭
ସକଳ ମୁନିମଧ୍ୟେ ବସି ।
ସୂତପୌରାଣିକ ଯେ ଋଷି ॥୪୫୮
ବସି ଆସନ ନ ଛାଡିଲେ ।
ତା ଦେଖି ରାମ କୋପ କଲେ ॥୪୫୯
କୁଶରେ କାଟି ତାର ଶିର ।
ତା ସୁତେ ଦେଲେ ଅଧିକାର ॥୪୬୦
ବ୍ରହ୍ମହତ୍ୟା ଦୋଷରେ ରାମ ।
ଗଲେ ସକଳ ତୀର୍ଥାଶ୍ରମ ॥୪୬୧
ସୁଦାମା ଦରିଦ୍ର ବ୍ରାହ୍ମଣ ।
ବିଦ୍ୟାପଠନେ ମିତ୍ରପଣ ॥୪୬୨
ଅଷ୍ଟଐଶ୍ୱର୍ଯ୍ୟ ତାକୁ ଦେଇ ।
ଦୟାସାଗର ଭାବଗ୍ରାହୀ ॥୪୬୩
କୁରୁକ୍ଷେତ୍ରରେ ଉପରାଗ ।
ଜ୍ୟୋତିଷ ଗ୍ରହର ସଂଯୋଗ ॥୪୬୪

ତହିଁ ସକଳେ ରୁଣ୍ଡ ହୋଇ ।
ନନ୍ଦ ଗୋପୀଗୋପାଳ ଯହିଁ ॥୪୬୫
ଦ୍ୱାରକା ଯଦୁବଂଶ ଆଦି ।
କୁରୁ ପାଣ୍ଡବ ଯେ ପ୍ରସିଦ୍ଧି ॥୪୬୬
ସମସ୍ତ ବନ୍ଧୁର କୁଶଳ ।
ଘେନାଘେନି ଭାବ ନିଶ୍ଚଳ ॥୪୬୭
ବସୁଦେବ ଯେ ଯଜ୍ଞ କଲେ ।
ଦେବକୀ ଷଡପୁତ୍ର ଦେଲେ ॥୪୬୮
ସେ ପୁଣି ଅନ୍ତର୍ଦ୍ଧାନେ ଗଲେ ।
ସୁଭଦ୍ରା ପାର୍ଥେ ବିଭା କଲେ ॥୪୬୯
ଦୁର୍ଯ୍ୟୋଧନ ମାନ ପାଇଲେ ।
ପାଣ୍ଡବେ କ୍ରୋଧମାନ କଲେ ॥୪୭୦
ଶ୍ରୁତଦେବ ମିଥିଳା ରାଜ ।
ଜନକବଂଶେ ସେ ତନୁଜ ॥୪୭୧
ତହିଁ ଯେ ରାମକୃଷ୍ଣ ପୁଣ ।
ରହିଣ ତୋଷିଲେ ତା ମନ ॥୪୭୨
ବ୍ରହ୍ମଲୋକରେ ପୂର୍ବ ଯଜ୍ଞେ ।
ଭୃଗୁଙ୍କୁ ଦେଖିଲେ ସେ ଭାଗ୍ୟେ ॥୪୭୩
ତିନିଦେବ ପରୀକ୍ଷା ଅର୍ଥେ ।
ଭୃଗୁ ଯେ ଗଲେ ଯେଝା ପଥେ ॥୪୭୪
ନାତେକ ଚରଣେ ମାଇଲେ ।
ବିଷ୍ଣୁର ମହିମା କହିଲେ ॥୪୭୫
ସେ ବଦ୍ରିଆଶ୍ରମରେ ପୁଣ ।
ନରନାରାୟଣ ଆଶ୍ରମ ॥୪୭୬
ନାରଦ ପ୍ରବେଶ ହୋଇଲେ ।
ବେଦବ୍ରହ୍ମା ସମ୍ବାଦ କଲେ ॥୪୭୭
ବ୍ରହ୍ମା ବେଦରେ ସ୍ତୁତି ଭଣି ।
ଏମନ୍ତେ ନାରାୟଣ ପୁଣି ॥୪୭୮
ଅର୍ଜ୍ଜୁନ ସତ୍ୟ ରଖିବାରେ ।
ସେ କୃଷ୍ଣ ଅର୍ଜ୍ଜୁନ ରଥରେ ॥୪୭୯
ବସି ଦୁର୍ଗମପଥେ ଗଲେ ।
ବିପ୍ର କୁମର ଆଣି ଦେଲେ ॥୪୮୦
ବକ ଅସୁର ବଧ ଗଲା ।
ଗିରୀଶେ ଅପରାଧ କଲା ॥୪୮୧
କୁରୁପାଣ୍ଡବଙ୍କ ବିରୋଧ ।
ମହାଭାରତ ଯୁଦ୍ଧେ ସଧ ॥୪୮୨

କୁରୁକୁଳକୁ ସଂହାରିଲେ ।
ଏ ସଂଗେ ଦୁଷ୍ଟରାଜା ମଲେ ॥୪୮୩
ଯୁଧିଷ୍ଠିରଙ୍କୁ ରାଜା କରି ।
ଦ୍ୱାରକା ବିଜେ ନରହରି ॥୪୮୪
ଏମନ୍ତେ ଦ୍ୱାରକା ବିହାରୀ ।
ଯେ କୃଷ୍ଣ କୃପାର ସାଗର ॥୪୮୫
ନାରଦ ମାୟାରେ ଦର୍ଶନ ।
ଏକ ଏକେଣ ନାରାୟଣ ॥୪୮୬
ପ୍ରାକୃତଜନ ପ୍ରାୟ ତହିଁ ।
ପୁତ୍ର କଳତ୍ର ଘେନି ରହି ॥୪୮୭
କୃଷ୍ଣର ଯେତେ ବଂଶମାନ ।
ପୁତ୍ର ନାତି ଲତା ଯେସନ ॥୪୮୮
ସମୁଦ୍ରଜଳ କ୍ରୀଡା ବାଣୀ ।
ଏଥିରେ ଯେତେକ କାହାଣୀ ॥୪୮୯
ମେଘ ହଂସାଦି ଦୂତମାନ ।
ଶ୍ରୀକୃଷ୍ଣ ସ୍ତିରୀଙ୍କ ବର୍ଣ୍ଣନ ॥୪୯୦
ଏଠାରୁ ଦଶମ ସମ୍ପୂର୍ଣ୍ଣ ।
ଛୟାନବେ ଅଧ୍ୟା ବର୍ଣ୍ଣନ ॥୪୯୧
ଏବେ ହୋ ଶୁଣ ଏକାଦଶ ।
ଶ୍ରୀକୃଷ୍ଣ ବିଭୂତି ପ୍ରକାଶ ॥୪୯୨
ଶୁକେ ପରୀକ୍ଷ ପଚାରିଲା ।
କେମନ୍ତେ ବ୍ରହ୍ମଶାପ ହେଲା ॥୪୯୩
ବ୍ରହ୍ମା ସହିତେ ଦେବେ ଆସି ।
ଶ୍ରୀକୃଷ୍ଣ ଚରଣରେ ଭାଷି ॥୪୯୪
ପୃଥିବୀଭାରା ନିବାରିଲ ।
ସଂସାରେ ଥିବା ନୋହେ ଭଲ ॥୪୯୫
ଏକଶ ପଚିଶ ବରଷ ।
ଏ ଅବତାର କଲ ଶେଷ ॥୪୯୬
ନିଜ ଧାମକୁ ଏବେ ଚଳ ।
ଆମ୍ଭର ହୋଇବ କୁଶଳ ॥୪୯୭
ଏମନ୍ତ କୃଷ୍ଣ ଚିତ୍ତେ ଜାଣି ।
ଯାଦବକ୍ଷୟ ମନେ ଗୁଣି ॥୪୯୮
ପୃଥ୍ୱୀରେ ଯଦୁବଂଶ ଥିଲେ ।
ଉଶ୍ୱାସ ନୋହେ ମହୀ ଭଲେ ॥୪୯୯
ଏତେ ବିଚାରି ଭଗବାନ ।
ଋଷି ଯେ ଥିଲେ ନିଜସ୍ଥାନ ॥୫୦୦

Dr. Sudhanshu Sekhar Mishra

ତାହାଙ୍କୁ ସୁମରନ୍ତେ ଚିତ୍ତ ।
କୃଷ୍ଣ ଦର୍ଶନେ ସେ ଆଗତ ॥୫୦୧
ବନ ଗହନେ ପଥଶ୍ରମେ ।
ଭେଟିଲେ କୃଷ୍ଣର ନନ୍ଦନେ ॥୫୦୨
କୃଷ୍ଣ ବାଳକଙ୍କ ବିହାର ।
ନାରୀବେଶ ଶାମ୍ବକୁମର ॥୫୦୩
ତା ପେଟେ ଲୌହର ଖପରା ।
ଦିଶଇ ଗର୍ଭସ୍ଥିରୀ ପରା ॥୫୦୪
ଋଷି ଯେ ପଥଶ୍ରମ ପାଇ ।
ଫୁଟିଣ ଆସି ଯେ ଅଛଇ ॥୫୦୫
ପହିଲି ଗର୍ଭ ଅର୍ଥେ ପୁଛି ।
ଶୁଣି କୋପିଲେ ବ୍ରହ୍ମବସି ॥୫୦୬
ବାଳକେ ଉପହାସ କଲେ ।
ଋଷିଏ କୋପେ ଶାପ ଦେଲେ ॥୫୦୭
କହିଲେ ଲୌହର ମୁଷଳ ।
ଜନ୍ମି ନାଶିବ ଯଦୁକୂଳ ॥୫୦୮
ତହୁଁ ମୁଷଳ ଉତପତ୍ତି ।
ତା ନେଇ ପର୍ବତେ ଘଷନ୍ତି ॥୫୦୯
ସେ ଜଳୁ ସନ୍ତରା ଯେ ବଣ ।
ଶେଷ ଲୁହା ଜାରାର ବାଣ ॥୫୧୦
ବସୁଦେବ ପୁରେ ନାରଦ ।
ତା ଆଗେ ଜ୍ଞାନର ସମ୍ବାଦ ॥୫୧୧
ବସୁଦେବଙ୍କୁ ଜ୍ଞାନ କହି ।
ନାରଦ ଗଲେ ତୋଷ ହୋଇ ॥୫୧୨
ଜନକ ମିଥିଳା ନଗରେ ।
ନିମିରାଜା ଯଜ୍ଞଶାଳାରେ ॥୫୧୩
ନବଋଷିଙ୍କର ସମ୍ବାଦ ।
କହିଲେ ନିର୍ଗୁଣର ଭେଦ ॥୫୧୪
କବି ହରି ଯେ ଅନ୍ତରୀକ୍ଷ ।
ପିପ୍ପଳାୟନ ପ୍ରବୁଦ୍ଧାକ୍ଷ ॥୫୧୫
ଦ୍ରୁମିଳ ଆବିର୍ହୋତ୍ର ନାମ ।
ଚମସ ଯେ କରଭାଜନ ॥୫୧୬
ଏ ନବଭାଇ ଅନ୍ୟୋ ଅନ୍ୟୋ ।
ଜ୍ଞାନ କହି ନିମି ରାଜନେ ॥୫୧୭
ଋଷଭଦେବଙ୍କ ଚରିତ ।
ଶତେକୁମରେ ଜ୍ୟେଷ୍ଠଭ୍ରାତ ॥୫୧୮

ଏକାଶୀ ଭାଇ ଯେ ବ୍ରାହ୍ମଣ ।
ଗଲେ ସେ ବ୍ରହ୍ମଲୋକେ ପୁଣ ॥୫୧୯
ଭରତ ସପ୍ତଦ୍ୱୀପେ ରାଜା ।
ସେ ପୁଣି କଲେ ସର୍ବ ତେଜ୍ୟା ॥୫୨୦
କରିଣ ନବଖଣ୍ଡ ମହୀ ।
ନବଭାଇଙ୍କି ସେ ଦିଅଇ ॥୫୨୧
ତଦନ୍ତେ ଯଦୁନୃପବର ।
ଅବଧୂତର ଯେ ବିଚାର ॥୫୨୨
ଚବିଶ ଗୁରୁର ବିଧାନ ।
ଯାହାର ଯେବା ଶିକ୍ଷାମାନ ॥୫୨୩
ସେ ଅବଧୂତ ଭାବ ଲଇ ।
ଜ୍ଞାନ ବୈରାଗ୍ୟ ଶିକ୍ଷା ଦେଇ ॥୫୨୪
ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ ।
କହି ଛେଦିଲେ ମାୟାବନ୍ଧ ॥୫୨୫
ଆତ୍ମାରେ ଆତ୍ମଜ୍ଞାନ ଧ୍ୟାନ ।
କର୍ମ ସାଂଖ୍ୟାଦି ଯୋଗମାନ ॥୫୨୬
ଗୃହୀ ବାନପ୍ରସ୍ଥ ସନ୍ନ୍ୟାସ ।
ବର୍ଣ୍ଣ ଆଶ୍ରମ ଉପଦେଶ ॥୫୨୭
ଏ ଆଦି ଯାର ଯେବା ଧର୍ମ ।
କରଣେ ବିମୁକ୍ତ ବନ୍ଧନ ॥୫୨୮
ଏ ସର୍ବ ଉଦ୍ଧବେ ବୁଝାଇ ।
ତୀର୍ଥେ ପେଷିଲେ ଭାବଗ୍ରାହୀ ॥୫୨୯
ଉଦ୍ଧବ ବଦ୍ରିକାଶ୍ରମରେ ।
ଗଲେ ତପୋଧନ ବେଶରେ ॥୫୩୦
ସର୍ବ ସମ୍ପଦ ପରିହରି ।
ତପ ସାଧନେ ବନଚାରୀ ॥୫୩୧
ଦ୍ୱାରକା-ଉତ୍ପାତ ଦର୍ଶନ ।
ପ୍ରଭାସ ତୀର୍ଥକୁ ଗମନ ॥୫୩୨
ହୋମ-ଯଜ୍ଞାଦି ନାନା ଶାନ୍ତି ।
କୃଷ୍ଣ ଯେ ମାୟାରେ କରାନ୍ତି ॥୫୩୩
ବାରୁଣୀ ମଦ୍ୟ କଲେ ପାନ ।
ଯାଦବେ ହୋଇ ହତଜ୍ଞାନ ॥୫୩୪
ଏରକାବନେ ଯୁଦ୍ଧ କଲେ ।
ସର୍ବେ ସଂହାର ତହିଁ ହେଲେ ॥୫୩୫
ପ୍ରଦ୍ୟୁମ୍ନ ଶିର ଚକ୍ରେ ଛେଦ ।
ଦେଖି ବଳରାମ ବିଷାଦ ॥୫୩୬

ତକ୍ଷଣେ ସର୍ପରୂପ ଧରି ।
ବୈକୁଣ୍ଠସ୍ଥାନେ ବିଜେ କରି ॥୫୩୭
ମାଘ ଯେ ଅମାବାସ୍ୟା ଦିନ ।
ଅଶ୍ୱତ୍ଥମୂଳେ ଭଗବାନ ॥୫୩୮
ଜାରା ଶବର ଉପଗତ ।
ପଦ୍ମପାଦରେ ଶରାଘାତ ॥୫୩୯
ଜାରା ଯେ ବୈକୁଣ୍ଠକୁ ଗଲା ।
ଦେବଙ୍କ ଦର୍ଶନ ହୋଇଲା ॥୫୪୦
କୃଷ୍ଣ ଯେ ଯୋଗଧ୍ୟାନେ ରହି ।
ଦାରୁକ ଦର୍ଶନ କରଇ ॥୫୪୧
ଦ୍ୱାରକା ଦାରୁକକୁ ପେଷି ।
ଶ୍ରୀକୃଷ୍ଣ ବଇକୁଣ୍ଠବାସୀ ॥୫୪୨
ବସୁଦେବାଦି ସ୍ୱର୍ଗପ୍ରାପ୍ତି ।
ଯାଦବେ ସଂସ୍କାର ହୁଅନ୍ତି ॥୫୪୩
କୃଷ୍ଣର ଅଷ୍ଟପାଟନାରୀ ।
ଅଗ୍ନି ପ୍ରବେଶେ ତନୁ ହାରି ॥୫୪୪
ଶେଷେ ଯେ କୃଷ୍ଣନାରୀ ଥିଲେ ।
ଅର୍ଜ୍ଜୁନ ତା ଘେନି ଚଳିଲେ ॥୫୪୫
ଦ୍ୱାରକା ସମୁଦ୍ର ଗ୍ରହଣ ।
ରହେ ନିବାସ ଏକସ୍ଥାନ ॥୫୪୬
ଅର୍ଜ୍ଜୁନ ଦେହୁଁ ତେଜ ଗଲା ।
ଗାଣ୍ଡୀବ ଧନୁ ଶିରେ କଲା ॥୫୪୭
କୃଷ୍ଣପତ୍ନୀଙ୍କ ଅନ୍ତର୍ଦ୍ଧାନ ।
ପାଷାଣରୂପ ସେ ଧାରଣ ॥୫୪୮
ମଥୁରାପୁରେ ସେ ରାଜନ ।
ବଜ୍ର ଅନିରୁଦ୍ଧ ନନ୍ଦନ ॥୫୪୯
ହସ୍ତିନା ନଗରେ ନୃପତି ।
ପରୀକ୍ଷ ଅର୍ଜ୍ଜୁନର ନାତି ॥୫୫୦
ପାଣ୍ଡବଙ୍କ ମହାପ୍ରସ୍ଥାନ ।
ହିମାଳୟେ ସ୍ୱର୍ଗାରୋହଣ ॥୫୫୧
ଏକାଦଶସ୍କନ୍ଧ ଚରିତ ।
ବତିଶ ଅଧ୍ୟା ସମାପତ ॥୫୫୨
ଦ୍ୱାଦଶସ୍କନ୍ଧର ଚରିତ ।
ଭବିଷ୍ୟ ବର୍ତ୍ତମାନ ଭୂତ ॥୫୫୩
ସୂତ କହନ୍ତି ବିଦ୍ୟମାନ ।
ଶୌନକ ଶୁଣ ସାବଧାନ ॥୫୫୪

Dr. Sudhanshu Sekhar Mishra

ଏ କଳିଯୁଗର ପ୍ରବେଶ ।
ବର୍ତ୍ତମାନ ରାଜାଙ୍କ ବଂଶ ॥୫୫୫
ଭବିଷ୍ୟ ରାଜବଂଶ ଭୋଗ ।
ଏଥି ନିର୍ଣ୍ଣୟ ଯେତେ ଯୋଗ ॥୫୫୬
ଯୁଗ ଲକ୍ଷଣ ଯେବା ବୃତ୍ତି ।
କଳିଯୁଗର ଧର୍ମଗତି ॥୫୫୭
ଏ ଚାରି ବର୍ଣ୍ଣାଶ୍ରମମାନ ।
ଧର୍ମେ ଅଧର୍ମେ ଯେବା ଜ୍ଞାନ ॥୫୫୮
ପ୍ରାଣୀମାନଙ୍କର ବିନାଶ ।
ସୃଷ୍ଟି ସର୍ଜନାର ଯେ ଶେଷ ॥୫୫୯
ନିତ୍ୟ ନୈମିତ୍ତିକ ଯେ ଦୁଇ ।
ପ୍ରାକୃତ ଆତ୍ୟନ୍ତିକ ହୋଇ ॥୫୬୦
ଏ ଚାରି ପ୍ରଳୟ ବର୍ଣ୍ଣନ ।
କହିଲୁ ତୁମ୍ଭର ଆଗେଣ ॥୫୬୧
ଭୂତ ପ୍ରାକୃତ ସର୍ଗ ବେନି ।
ବୈକୃତ ସର୍ଗ ଘେନି ତିନି ॥୫୬୨
ଏ ତିନି ଉପୃତ୍ତି ବର୍ଣ୍ଣନ ।
ତହୁଁ ଯେ ସୃଷ୍ଟିର ସର୍ଜନ ॥୫୬୩
ପରୀକ୍ଷିତ ଯୋଗ ଅଭ୍ୟାସ ।
ଶୁକଦେବଙ୍କ ଉପଦେଶ ॥୫୬୪
ପରୀକ୍ଷ ଭଜେ ବାସୁଦେବେ ।
ନିମଗ୍ନ ହୋଇ ଯେଉଁ ଭାବେ॥୫୬୫
ରାଜାକୁ ବ୍ରହ୍ମଶାପ ଦେଲେ ।
ତକ୍ଷକ ଦଂଶିବ ବୋଇଲେ ॥୫୬୬
ଧନ୍ୱନ୍ତ୍ରୀ ତକ୍ଷକ ଦର୍ଶନ ।
ମୃତସଞ୍ଜୀବନୀ ମନ୍ତ୍ରେଣ ॥୫୬୭
ଧନ୍ୱନ୍ତ୍ରୀ ପଥୁଁ ବାହୁଡ଼ିବା ।
ତକ୍ଷକ କପଟେ ଆସିବା ॥୫୬୮
କୃମିରୂପେ ରାଜା ଦଂଶନ ।
ବିଷାଗ୍ନି ଶରୀର ଦହନ ॥୫୬୯
ବିଷ୍ଣୁର ଭକ୍ତ ପରୀକ୍ଷିତ ।
ଯୋଗରେ ହେଲେ ଆତ୍ମଭୂତ ॥୫୭୦
ତାଙ୍କ ବୈକୁଣ୍ଠ ଆରୋହଣ ।
ବେଦର ଶାଖା ପ୍ରଣୟନ ॥୫୭୧
ମାରକଣ୍ଡ ଋଷି ଚରିତ ।
ମାୟାପ୍ରଳୟେ ଗର୍ଭଗତ ॥୫୭୨

ମାର୍କଣ୍ଡେୟଙ୍କୁ ଅନୁଗ୍ରହ ।
ସପତକଳ୍ପ ରକ୍ଷା ଦେହ ॥୫୭୩
ମାୟାପ୍ରଳୟ ଅନ୍ତର୍ଦ୍ଧାନ ।
ହରପାର୍ବତୀଙ୍କ ଦର୍ଶନ ॥୫୭୪
ମହାପୁରୁଷ ନିର୍ଣ୍ଣୟ ।
ଯେ ପ୍ରଭୁ ସର୍ବତେଜୋମୟ ॥୫୭୫
ଶଙ୍ଖ ଚକ୍ର ଆଦି ଆୟୁଧ ।
ଅଙ୍ଗ ଆଭରଣ ପାର୍ଷଦ ॥୫୭୬
ଯେବା ତାହାଙ୍କ ତତ୍ତ୍ୱଜ୍ଞାନ ।
ଆବର ଜ୍ୟୋତି-ଜ୍ୟୋସ୍ନାମାନ॥୫୭୭
ଏ ସର୍ବ କହିଲୁ ତୁମ୍ଭରେ ।
ଯେ ଭାବେ ପୁଚ୍ଛିଲ ଆମ୍ଭରେ॥୫୭୮
ସୂର୍ଯ୍ୟ ଜଗତ ଆତ୍ମାମୟ ।
ଦ୍ୱାଦଶ ଆଦିତ୍ୟ ନିର୍ଣ୍ଣୟ ॥୫୭୯
ରଥମଣ୍ଡଳର ବିଚାର ।
ଯକ୍ଷ ଗନ୍ଧର୍ବ ବିଦ୍ୟାଧର ॥୫୮୦
ଅପ୍‌ସରା ରକ୍ଷ ଋଷି ନାଗ ।
ଏ ଆଦି ସପତ ନିଯୋଗ ॥୫୮୧
ବାରମାସର ଯେ ନିର୍ଣ୍ଣୟ ।
ସର୍ବ ଶୁଣିଲ ମହାଶୟ ॥୫୮୨
ଚନ୍ଦ୍ରର କ୍ଷୟବୃଦ୍ଧି ପୁଣ ।
ଦେବେ କରନ୍ତି ସୁଧାଦାନ ॥୫୮୩
ସୂତ କହେ ଶୌନକ ମୁନି ।
ପୁଚ୍ଛିଲ ଭାଗବତ ବାଣୀ ॥୫୮୪
ପୂର୍ବେ ମୁଁ ଯାହା ଶୁଣିଥିଲି ।
ବିସ୍ତାରି ତୁମ୍ଭଙ୍କୁ କହିଲି ॥୫୮୫
ପ୍ରଥମୁଁ ଯେ ଦ୍ୱାଦଶ ଯାଏଁ ।
କହିଲିଁ ଠିକେଣ ନିର୍ଣ୍ଣୟେ ॥୫୮୬
ଦ୍ୱାଦଶସ୍କନ୍ଧ ଭାଗବତ ।
ଅଷ୍ଟାଦଶ ସହସ୍ର ଗ୍ରନ୍ଥ ॥୫୮୭
ତିନିଶତ ପଞ୍ଚତିରିଶ ।
ଅଧ୍ୟାରେ ଏ ପୁରାଣ ଶେଷ ॥୫୮୮
ବାସୁଦେବର ଯେତେ ଲୀଳା ।
ଅବତାରରେ ଯେତେ କଳା ॥୫୮୯
ବର୍ଣ୍ଣନ ତାହାଙ୍କ ମହିମା ।
ଯେତେ କହିଲି ଗୁଣସୀମା ॥୫୯୦

ସେ ପ୍ରଭୁ ପରମପୁରୁଷ ।
ତାହାର ମହିମା ଅଶେଷ ॥୫୯୧
ଶ୍ରୀରାମ ହଳୀ ଯେ ବରାହ ।
କମଠ ମୀନ ନରସିଂହ ॥୫୯୨
ହରି ଯେ ଧ୍ରୁବ ପୃଶ୍ନିଗର୍ଭ ।
ହୟଗ୍ରୀବ ଆଉ ଋଷଭ ॥୫୯୩
ଭାର୍ଗବ କପିଳ ଯେ ହଂସ ।
ନାରଦ ଯଜ୍ଞ ବେଦବ୍ୟାସ ॥୫୯୪
ମୋହିନୀ ନରନାରାୟଣ ।
ଦତ୍ତାତ୍ରେୟ ଯେ ଶ୍ରୀବାମନ ॥୫୯୫
ବୁଦ୍ଧ କଲକୀ ଧନ୍ୱନ୍ତରୀ ।
ଧର୍ମଧାତା ଯେ ଆଦି କରି ॥୫୯୬
କୁମାର ପୃଥୁ ମନ୍ୱନ୍ତର ।
କୃଷ୍ଣ କୌଶିକ ଅବତାର ॥୫୯୭
ବତିଶ ଅବତାର ହୋଇ ।
ଦୁଷ୍ଟନାଶି ଉଶ୍ୱାସି ମହୀ ॥୫୯୮
ତାହାର ନାମ ଉଚ୍ଚାରିଲେ ।
ମନରେ ତା ରୂପ ଚିନ୍ତିଲେ ॥୫୯୯
ଶୁଣି ଶୁଣାଇ ଯେବା ଗାଏ ।
ଶମନ ଭୁବନେ ନ ଯାଏ ॥୬୦୦
ପ୍ରାଣୀ କ୍ଷୁଧା-ତୃଷାର୍ତ୍ତ ହୋଇ ।
ନାନା ତାପରେ ବ୍ୟଥା ପାଇ॥୬୦୧
ଚାଲନ୍ତେ ପଥ ହୁଡ଼ି ପଡ଼େ ।
ପାଷାଣେ ଅବା କଣ୍ଟାବାଡ଼େ ॥୬୦୨
ହେଳା ବା ଶ୍ରଦ୍ଧାରେ ଶୁଣଇ ।
ସଂସାର ସାଗରୁ ତରଇ ॥୬୦୩
ତା ନାମ ଦୃଢେ ଯେ ଭଜନ୍ତି ।
ତା ହୃଦେ ବାସୁଦେବେ ସ୍ଥିତି ॥୬୦୪
ଅଜ୍ଞାନ-ଅନ୍ଧକାର ଦୂର ।
ନିର୍ମଳ ହୁଅଇ ଶରୀର ॥୬୦୫
ଅନ୍ଧକାରକୁ ସୂର୍ଯ୍ୟ ନାଶେ ।
ମେଘ ଯେହ୍ନେ ପବନ ତ୍ରାସେ ॥୬୦୬
ବାସୁଦେବର କଥା ଛାଡ଼ି ।
ଆନ କଥାରେ ଚିତ୍ତ ବଡ଼ି ॥୬୦୭
ସକଳ ବ୍ୟର୍ଥ ତାର ହୋଏ ।
କୁହୁକ ବିଦ୍ୟା ଖେଳ ପ୍ରାୟେ ॥୬୦୮

Dr. Sudhanshu Sekhar Mishra

ଯେ କୃଷ୍ଣ କଥା ରସ ବିନା ।
କବି ଯେତେ କରେ ବର୍ଣ୍ଣନା ॥୬୦୯
ରସକଳାରେ ରସି ମନ ।
ଯେ ସର୍ବ ବିଅର୍ଥ କାରଣ ॥୬୧୦
ଏଣୁ ଶ୍ରୀକୃଷ୍ଣ କଥା ସାର ।
ସତ୍ୟ ପବିତ୍ର ସୁଧାଧାର ॥୬୧୧
ମଙ୍ଗଳ ଦାୟକ ଶବ୍ଦରେ ।
ମନରୁ ମଳ ଅପହରେ ॥୬୧୨
ନବୀନ ମନ ମହୋତ୍ସବ ।
ଆନନ୍ଦ କରେ ସର୍ବଜୀବ ॥୬୧୩
ଏ ଦୁଃଖ ଶୋକାର୍ଣ୍ଣବମାନ ।
ଶୋଷଣ କରେ ତତକ୍ଷଣ ॥୬୧୪
ଜଗତହିତ କୃଷ୍ଣନାମ ।
ଯେ କରେ ଶ୍ରବଣ କୀର୍ତ୍ତନ ॥୬୧୫
ଆପଣା ଆତ୍ମାକୁ ତାରଇ ।
ଜଗତ ପୁଣି ନିସ୍ତାରଇ ॥୬୧୬
ଯେ ମୁଖେ ବାସୁଦେବ ବାଣୀ ।
ଗାୟନ ନ କରନ୍ତି ପ୍ରାଣୀ ॥୬୧୭
ତା ବାକ୍ୟ କାକତୀର୍ଥ ବୋଲି ।
ହଂସ ନ କରେ ତହିଁ କେଳି ॥୬୧୮
ଯେ ବାକ୍ୟେ କୃଷ୍ଣନାମ ଭଣେ ।
ସେ ପୁଣ୍ୟତୀର୍ଥ ପରମାଣେ ॥୬୧୯
ତହିଁ ପରମହଂସ ମେଳି ।
ସେ ପୁଣ୍ୟତୀର୍ଥ ମଧ୍ୟେ ବଳି ॥୬୨୦
ତା ନାମ ଧରି ସାଧୁଜନ ।
ପତିତ କରନ୍ତି ପାବନ ॥୬୨୧
ଜଗତ ପାପ ବିନାଶଇ ।
ଶ୍ଳୋକେ ଶ୍ଳୋକେ ପାପ ହରଇ ॥୬୨୨
ଏ ଭାଗବତ ଯେ ପଢନ୍ତି ।
ତତ୍ତ୍ୱ ଜାଣି ବିଷ୍ଣୁ ଭଜନ୍ତି ॥୬୨୩
ଯେ ପ୍ରାଣୀ ସର୍ବକର୍ମ ଛାଡି ।
ସନ୍ନ୍ୟାସମାର୍ଗେ ଚିତ୍ତ ବଢି ॥୬୨୪
ବାସୁଦେବ ଭଜନ ନାହିଁ ।
ତାହାର ଜ୍ଞାନ ନ ଶୋଭଇ ॥୬୨୫
ସଂସାରେ ଥାଇ ସର୍ବଧର୍ମ ।
ଯେତେକ ଶୁଭାଶୁଭ କର୍ମ ॥୬୨୬

ଯେବେ ଶ୍ରୀବାସୁଦେବେ ଦେଇ ।
ସାଧୁ ବୈଷ୍ଣବ ତାକୁ କହି ॥୬୨୭
ବେଦ ପଠନ ବର୍ଣ୍ଣଧର୍ମେ ।
ତପ ଆଦିରେ ଯେବା ଭ୍ରମେ॥୬୨୮
ବାସୁଦେବ ଯେବେ ନ ଜାଣି।
ବିଅର୍ଥେ ମରନ୍ତି ସେ ପ୍ରାଣୀ ॥୬୨୯
ଶ୍ରୀକୃଷ୍ଣ ଚରଣାରବିନ୍ଦ ।
ଯେ ପ୍ରାଣୀ କରନ୍ତି ଆସ୍ୱାଦ ॥୬୩୦
କୀର୍ତ୍ତନ ନାମ ଗୁଣମାନ ।
ଆବର ସ୍ମରଣ ପୂଜନ ॥୬୩୧
ଚିତ୍ତ ଗୋବିନ୍ଦ ନ ପାସୋରେ ।
ସକଳ ଅମଙ୍ଗଳୁ ତରେ ॥୬୩୨
ଇଚ୍ଛାଏ ମଙ୍ଗଳ ବଢଇ ।
ଦେହକୁ ଶୁଦ୍ଧ ସେ କରଇ ॥୬୩୩
ପରମଭକ୍ତି ଖ୍ୟାତ ହୋଇ ।
ଜ୍ଞାନ ବୈରାଗ୍ୟ ସେ ଜନ୍ମାଇଁ ॥୬୩୪
ହେ ବିପ୍ରଶ୍ରେଷ୍ଠ ଭାଗ୍ୟବନ୍ତ ।
ସାଧୁ ପବିତ୍ର ତୁମ୍ଭ ଚିତ୍ତ ॥୬୩୫
ଜଗତଆତ୍ମା ବାସୁଦେବ ।
ଏକାଗ୍ରଚିତ୍ତେ ତାଙ୍କୁ ଭାବ ॥୬୩୬
ଚିତ୍ତେ ଗୋବିନ୍ଦ ପାଦ ଧର ।
ସକଳ ଆପଦୁଁ ନିସ୍ତର ॥୬୩୭
ପରୀକ୍ଷରାଜା ଗଙ୍ଗାତୀରେ ।
ପ୍ରାୟୋପବେଶନ ସେ କଲେ॥୬୩୮
ଯୋଗଆସନେ ବସି ପୁଣି ।
ଯେ ଭାଗବତ ଶୁକବାଣୀ ॥୬୩୯
ମୁହିଁ ତା ଶୁଣିଥିଲି ପୂର୍ବେ ।
କହିଲି ତୁମ୍ଭ ଭକ୍ତିଭାବେ ॥୬୪୦
ଏବେ ତା ସୁମରଣ କଲି ।
ସଂସାର -ବନ୍ଧନୁଁ ତରିଲି ॥୬୪୧
ହେ ବ୍ରହ୍ମଋଷିମାନେ ଶୁଣ ।
ଶ୍ରୀଭାଗବତ ଏ ପୁରାଣ ॥୬୪୨
ଶ୍ରୀବାସୁଦେବଙ୍କ ଚରିତ ।
ଅତି ପବିତ୍ର ଏ ଅମୃତ ॥୬୪୩
ଶ୍ରୀବାସୁଦେବଙ୍କ କର୍ମଗୁଣ ।
ବେଦ ପୁରାଣରେ ବଖାଣ ॥୬୪୪

କେହି ତା ନ ଜାଣନ୍ତି ଅନ୍ତ ।
ଯେହ୍ନେ ଆକାଶ ଅପ୍ରମିତ ॥୬୪୫
ଶୁଣିଲେ ସର୍ବପାପ ହରେ ।
ପଠନେ କି କହିବା ତାରେ ॥୬୪୬
ଯେ ଅନ୍ତର୍ଗତେ ନାମ ଧରେ ।
ବ୍ରହ୍ମାଙ୍କୁ ନ ଯାଇ ଗୋଚରେ ॥୬୪୭
କ୍ଷଣେ ପ୍ରହରେ ଯେବା ନିତ୍ୟେ ।
ଶୁଣେ ଶୁଣାଏ ଏକଚିତ୍ତେ ॥୬୪୮
ଶ୍ରଦ୍ଧାଭାବରେ ଯେ ପଢନ୍ତି ।
ସପ୍ତପୁରୁଷ ଉଦ୍ଧାରନ୍ତି ॥୬୪୯
ଜୀବନମୁକ୍ତ ସେ ବୋଲାଇ ।
ଅନ୍ତେଣ ବଇକୁଣ୍ଠ ପାଇ ॥୬୫୦
ସାତକୁଳରୁ ସାତ ଗୋଟି ।
ସେ ପ୍ରାଣୀ ଉଦ୍ଧାର କରେଟି ॥୬୫୧
ମାତୃକୂଳ ଯେ ପିତୃକୂଳ ।
ଭଉଣୀକୂଳ ପତ୍ନୀକୂଳ ॥୬୫୨
ପିଉସୀ ମଉସୀ ଜେଠେଇ ।
କୁଳକେ ଗୋଟିଏ ତାରଇ ॥୬୫୩
ଦ୍ୱାଦଶୀ ଏକାଦଶୀ ତିଥି ।
ଅଷ୍ଟମୀ ପୂର୍ଣ୍ଣିମା ସଂକ୍ରାନ୍ତି ॥୬୫୪
ଅମାସ୍ୟା ଚତୁର୍ଦ୍ଦଶୀ ପର୍ବ ।
ଯେ ପୁଣ୍ୟତିଥିମାନ ସର୍ବ ॥୬୫୫
ପଢି ଶୁଣିଲେ ସର୍ବସିଦ୍ଧି ।
ପୁଣ୍ୟ -ସମ୍ପଦ ଆୟୁବୃଦ୍ଧି ॥୬୫୬
ଅନ୍ନଭୋଜନ ବିନା ଯେବେ ।
ପଠନ ଶ୍ରବଣ କରିବେ ॥୬୫୭
ମହାପାପରୁ ମୁକ୍ତ ହୋଇ ।
ବିଷ୍ଣୁର ମୁକତି ଲଭଇ ॥୬୫୮
ଶୁଣ ଶୌନକ ମୁନିଗଣ ।
ଏ ବିନୁ ନାହିଁ ଉଦ୍ଧାରଣ ॥୬୫୯
ଆବର ପୁଣ୍ୟକର୍ମ ଯେତେ ।
ଆଶ୍ରୟ ଏହୁ ଭାଗବତେ ॥୬୬୦
ପୁଷ୍କରତୀର୍ଥ ବଦରିକା ।
ମଥୁରା ପ୍ରୟାଗ ଦ୍ୱାରକା ॥୬୬୧
କୁରୁକ୍ଷେତ୍ର ପୁରୁଷୋତ୍ତମ ।
କାଶୀପୁର ଉତ୍ତମ ସ୍ଥାନ ॥୬୬୨

Dr. Sudhanshu Sekhar Mishra

ସଂଯମୀ ହୋଇ ଯେଉଁ ଜନ ।
ଦଶମୀ ଏକାଦଶୀ ଦିନ ॥୬୬୩
ଦ୍ୱାଦଶୀ ତିନି ଉପବାସ ।
ସଂକଳ୍ପ ଚିତ୍ତରେ ଅଭ୍ୟାସ ॥୬୬୪
ଏ ଯେ ପୁରାଣ ଭାଗବତ ।
ଦ୍ୱାଦଶସ୍କନ୍ଧରେ ବିଦିତ ॥୬୬୫
ତିନିଶତ ପଞ୍ଚତିରିଶ ।
ଅଠରସସ୍ର ଗ୍ରନ୍ଥ ଶେଷ ॥୬୬୬
ଏହାକୁ ସମାପ୍ତ କରିଣ ।
ପଢ଼ିବ ଏ ତିନିଦିନେଣ ॥୬୬୭
ଏକାଗ୍ରଚିତ୍ତ ହୋଇ ଶୁଣି ।
ନିସ୍ତରେ ଭବତରଙ୍ଗିଣୀ ॥୬୬୮
ସର୍ବପାପରୁ ମୁକ୍ତ ହୋଇ ।
ଅଗ୍ନି ଯେସନେ ସର୍ବଖାଇ ॥୬୬୯
ଦେବତା ମୁନି ସିଦ୍ଧଗଣ ।
ପିତୃ ମନୁ ଏ ନୃପଗଣ ॥୬୭୦
ଅବିଘ୍ନେ କାମନା ପୂରଣ ।
କରନ୍ତି ହୋଇ ତୋଷମନ ॥୬୭୧
ସଂହିତା ଭାବେଣ ବ୍ରାହ୍ମଣ ।
ଗାୟତ୍ରୀ ତ୍ରିବେଦ ପଠନ ॥୬୭୨
ମଧୁକୁଲ୍ୟା ଯେ ଘୃତକୁଲ୍ୟା ।
ଦଧିକୁଲ୍ୟା ଯେ ଦୁଗ୍ଧକୁଲ୍ୟା ॥୬୭୩
ଏ ଚାରିଦାନ ଫଳ ପାଏ ।
ବିଷ୍ଣୁ ଚରଣେ ପ୍ରୀତି ହୋଏ ॥୬୭୪
କ୍ଷତ୍ରି ଯେବେ ପଢ଼ି ଶୁଣଇ ।
ସପତଦ୍ୱୀପେ ରାଜା ହୋଇ ॥୬୭୫
ବୈଶ୍ୟ ହୋଇ ପଢ଼ି ଶୁଣିଲେ ।
ଧନରତନ ତାକୁ ମିଳେ ॥୬୭୬
ବିଷ୍ଣୁପ୍ରାପ୍ତି ତାକୁ ହୁଅଇ ।
ସୁଖେ ବାଣିଜ୍ୟ କୃଷି ହୋଇ ॥୬୭୭
ଶୂଦ୍ର ହୋଇଣ ଯେବେ ପଢ଼ି ।
ଶୁଣଇ ଶ୍ରଦ୍ଧାଚିତ୍ତେ ବଢ଼ି ॥୬୭୮
ସକଳ ପାପୁଁ ମୁକ୍ତ ହୋଇ ।
ଶ୍ରୀକୃଷ୍ଣ ଚରଣ ଲଭଇ ॥୬୭୯
ବ୍ରାହ୍ମଣ ସଂହିତାରେ ପଢ଼ି ।
**ଅର୍ଥବେଦରେ ଚିତ୍ତ ବଢ଼ି** ॥୬୮୦

ଯେ ଫଳ ହୁଅଇ ତାହାର ।
ଆବର ତିନି ବର୍ଣ୍ଣଙ୍କର ॥୬୮୧
ଶୁଣିଲେ ସେ ଫଳ ହୁଅଇ ।
ଶ୍ରଦ୍ଧା ବିଶ୍ୱାସେ ଯେ ଶୁଣଇ ॥୬୮୨
ସକଳ ପାପ ନ ଲାଗଇ ।
ବିଷ୍ଣୁଚରଣେ ଲୀନ ହୋଇ ॥୬୮୩
ଶ୍ରୀଭାଗବତ ପୁରାଣରେ ।
କଳିର ପାପ ନାଶ କରେ ॥୬୮୪
ସେ ବାସୁଦେବର ମହିମା ।
ଗାୟନ ତାଙ୍କ ଗୁଣସୀମା ॥୬୮୫
ଆନ ପୁରାଣମାନଙ୍କର ।
ଏ ଭାବ ନୁହଇଁ ପ୍ରଚାର ॥୬୮୬
ଅଶେଷ ଜଗତ ମୂରତି ।
ଏ ଗ୍ରନ୍ଥେ ବାସୁଦେବ ସ୍ଥିତି ॥୬୮୭
ତାଙ୍କ ମହିମା ପଦେପଦେ ।
କଥା ପ୍ରସଙ୍ଗରେ ଆନନ୍ଦେ ॥୬୮୮
ସେ ଭାଗବତ ବାସୁଦେବ ।
ଅଜୟ ଅମୂର୍ତ୍ତି ଯେ ଦେବ ॥୬୮୯
ଅନନ୍ତ ଆତ୍ମତତ୍ତ୍ୱମୟ ।
କରେ ଉତ୍ପତ୍ତି-ସ୍ଥିତି-ଲୟ ॥୬୯୦
ସକଳ ମାୟାର କାରଣ ।
ଅଶେଷ ଜୀବର ଧାରଣ ॥୬୯୧
ବ୍ରହ୍ମା ଯେ ସର୍ବବେଦ ପିତା ।
ଇନ୍ଦ୍ର ମହେଶ ବ୍ରହ୍ମବେତ୍ତା ॥୬୯୨
ନିଗମେ ତାଙ୍କୁ କରି ସ୍ତୁତି ।
ଯା ଆଦିଅନ୍ତ ନ ଜାଣନ୍ତି ॥୬୯୩
ସେ ପ୍ରଭୁ ଅଚ୍ୟୁତ ଚରଣେ ।
ଏ ଚିତ୍ତ ରମୁ ଅନୁକ୍ଷଣେ ॥୬୯୪
ସେହି ଅଚ୍ୟୁତ ଚରଣର ।
କରଇ କୋଟି ନମସ୍କାର ॥୬୯୫
ଅରୂପ ହୋଇ ରୂପବନ୍ତ ।
ଯେ ନବଶକ୍ତିରେ ସଂଯୁତ ॥୬୯୬
ସକଳମାୟାର ରଚନା ।
ସ୍ଥାବର ଜଙ୍ଗମ ଯାତନା ॥୬୯୭
ସର୍ବଭୂତରେ ପୂରିଛନ୍ତି ।
**କେବଳ ପ୍ରଭା ପ୍ରକାଶନ୍ତି** ॥୬୯୮

ସେ ଦେବଦେବ ସନାତନ ।
ତା ପାଦେ ମୋହର ପ୍ରଣାମ ॥୬୯୯
ସେ ପ୍ରଭୁ ଜଗତ ଈଶ୍ୱର ।
ଜ୍ଞାନ ଅନୁଭବ ମାତର ॥୭୦୦
ଜଗତ ଲୋକ ଉପଦେଶ ।
ଉଦ୍ଧରି ବଇକୁଣ୍ଠେ ବାସ ॥୭୦୧
ବିଷ୍ଣୁର ଅଂଶ ବେଦବ୍ୟାସ ।
ଏ ଗ୍ରନ୍ଥ କଲେ ସେ ପ୍ରକାଶ ॥୭୦୨
ତାଙ୍କ ଅଙ୍ଗରୁ ଜାତ ହୋଇ ।
ପୁତ୍ର ସ୍ୱରୂପେ ଶୁକ ହୋଇ ॥୭୦୩
ସାକ୍ଷାତେ ବାସୁଦେବ ଅଂଶ ।
ଜନନୀ ଉଦରୁ ସନ୍ନ୍ୟାସ ॥୭୦୪
ଆତ୍ମଜ୍ଞାନରେ ସୁପ୍ରକାଶ ।
ସ୍ୱରୂପ ଅବଧୂତ ବେଶ ॥୭୦୫
ବ୍ୟାସଙ୍କ ତହୁଁ ଉପଦେଶ ।
ଶ୍ରୀଭାଗବତ ପୁଣ୍ୟରସ ॥୭୦୬
ଏ ଶୁକମୁନି ଉର୍ଦ୍ଧ୍ୱରେତା ।
ହରି ଭଜନେ ଶୁଦ୍ଧଚେତା ॥୭୦୭
ତତ୍ତ୍ୱଜ୍ଞାନ-ଦୀପ ସଦୃଶ ।
ବ୍ୟାସଙ୍କ ମାୟା କଲେ ନାଶ ॥୭୦୮
ସେ ବ୍ରହ୍ମଦର୍ଶନେ ସନ୍ତୋଷ ।
ବ୍ୟାସଙ୍କୁ ଛାଡ଼ି ବନେ ବାସ ॥୭୦୯
ତାଙ୍କ ପଛେ ବ୍ୟାସ ଗୋଡ଼ାଇ ।
ବଦ୍ରିକା ଆଶ୍ରମୁଁ ଚଳଇ ॥୭୧୦
ମେରୁଶିଖର ପରିଯନ୍ତେ ।
ଏମନ୍ତ ପଥରେ ସେ ଯାନ୍ତେ ॥୭୧୧
ଆକାଶମାର୍ଗେ ଦେବସ୍ତିରୀ ।
ବିବସ୍ତ୍ରଭାବେ ସ୍ନାନ କରି ॥୭୧୨
ଶୁକଙ୍କୁ ଦେଖି ସେ ଜଳ ଛାଡ଼ି ।
ଆନନ୍ଦେ ପାଦଗତେ ପଡ଼ି ॥୭୧୩
ଶୁକ ତା ଦେଖି ନ ଦେଖିଲେ ।
ବ୍ୟାସଙ୍କୁ ଦେଖି କନ୍ୟା ଗଲେ ॥୭୧୪
ତାହାଙ୍କୁ ବ୍ୟାସ ପୁଚ୍ଛା କଲେ ।
ଆମ୍ଭଙ୍କୁ ଦେଖି ପଶ ଜଳେ ॥୭୧୫
ଏ ବୃଦ୍ଧ ଶରୀର ଆମ୍ଭର ।
ମୋ ପୁତ୍ର ଯୁବା କଳେବର ॥୭୧୬

Dr. Sudhanshu Sekhar Mishra

ତାହାଙ୍କୁ ଦେଖିତ ନମିଲ ।
ଆମ୍ଭଙ୍କୁ ଦେଖି ଲଜ୍ଜା କଲ ॥୭୧୭
ଜଳେ ପଶିଲ ବେଗେ ଯାଇ ।
ଏମନ୍ତେ ବ୍ୟାସ କୋପ ବହି ॥୭୧୮
ତକ୍ଷଣେ ମଣେ କରି ଭ୍ରାନ୍ତି ।
ବ୍ୟାସଙ୍କ ଚରଣେ ନମନ୍ତି ॥୭୧୯
ଉଠି କପୋଳେ କର ଦେଇ ।
କହନ୍ତି ବ୍ୟାସଙ୍କୁ ଅନାଇଁ ॥୭୨୦
ତୁମ୍ଭେ ଯେ ବୋଲ ଆମ୍ଭେ ବୃଦ୍ଧ ।
ବିଷୟାରସେ ଅଛି ସଧ ॥୭୨୧
ସ୍ତିରୀ ପୁରୁଷ ଭାବ ଜାଣ ।
ଏ ଘେନି ଲଜ୍ଜା କଲୁ ପୁଣ ॥୭୨୨
ଏ ଯେ ତୁମ୍ଭର ନିଜ ସୁତ ।
ପରମଶ୍ରେଷ୍ଠ ଭାଗବତ ॥୭୨୩
ସଂସାରଭାବେ ନାହିଁ ତାର ।
ଆମ୍ଭର ଦୋଷ କ୍ଷମାକର ॥୭୨୪
ଶୁକ ଯେ ବନରେ ପ୍ରବେଶ ।
ଜ୍ଞାନରେ ହୋଇଲେ ଅଦୃଶ୍ୟ ॥୭୨୫
ବ୍ୟାସ ତାହାଙ୍କୁ ନ ଦେଖିଲେ ।
ସେ ସର୍ବଜୀବେ ଲୀନ ଗଲେ ॥୭୨୬
ବ୍ୟାସ ସେ ବନେ ଶୋକେ ରହି ।
ତାହାଙ୍କ ଦୁଃଖେ ଦୟା ବହି ॥୭୨୭
ତକ୍ଷଣେ ବୃକ୍ଷଙ୍କର ମଧ୍ୟେ ।
ଅଦ୍‌ଭୁତ ଶୁଭିଲା ଶବଦେ ॥୭୨୮
ପ୍ରାଣୀ ଜନ୍ମନ୍ତି ବାରମ୍ବାର ।
କେ ପୁତ୍ର କେ କାହା ପିଅର ॥୭୨୯
ସକଳେ କର୍ମେ ଆତଯାତ ।
କର୍ମ ବନ୍ଧନେ ତାତ ମାତ ॥୭୩୦
ଏ ଭାବେ ଚତୁର୍ଦ୍ଦଶଲୋକ ।
ଶୁଣିଲେ ବୃକ୍ଷର ଯେ ବାକ୍ୟ ॥୭୩୧
ତା ଶୁଣି ବ୍ୟାସ ବୋଧ ହୋଇ ।
ଆପଣା ହୃଦେ ଜ୍ଞାନ ପାଇ ॥୭୩୨
ସନ୍ତତି -ବୃଦ୍ଧିର ନିମନ୍ତେ ।
ପ୍ରାର୍ଥନା କଲେ କର୍ମମତେ ॥୭୩୩
ସେ ଶୁକଦେବ ପ୍ରତିଛାୟା ।
ଶୁକ ନାମେଣ ପ୍ରତିକାୟା ॥୭୩୪

ଆପଣା ଅଂଶ ତହିଁ ଥୋଇ ।
ବ୍ୟାସଙ୍କୁ ପ୍ରତିଶୁକ ଦେଇ ॥୭୩୫
ସେ ପ୍ରତିଶୁକ ଘେନି ବ୍ୟାସ ।
ଆପଣା ଆଶ୍ରମେ ପ୍ରବେଶ ॥୭୩୬
ତାଙ୍କୁ ବ୍ରତଉପନୟନ ।
କରାଇ ବେଦ ଅଧ୍ୟୟନ ॥୭୩୭
ପିତୃଲୋକଙ୍କର ଦୁହିତୀ ।
ସେ ତାଙ୍କ ମନୁ ଉତପତ୍ତି ॥୭୩୮
ଶର୍ବରୀ ନାମ ତାହାଙ୍କରି ।
ଛାୟା ଶୁକକୁ ବିଭାକରି ॥୭୩୯
ତହୁଁ ସେ ଚାରି ଯେ ତନୟେ ।
ଜନମ ଏକଇ କନ୍ୟାଏ ॥୭୪୦
କୃଷ୍ଣ ଗଉର ପ୍ରଭୁ ଶମ୍ଭୁ ।
ଏ ଚାରି ପୁତ୍ର ତା ସମ୍ଭବୁ ॥୭୪୧
କନ୍ୟାର ନାମ କୃତି ହୋଇ ।
ପାଞ୍ଚାଳଦେଶେ ବିଭା ଦେଇ ॥୭୪୨
ଅସହ ନାମେଣ ରାଜନ ।
ପାଞ୍ଚାଳଦେଶେ ବିଦ୍ୟମାନ ॥୭୪୩
ସେ କନ୍ୟା ପୁତ୍ର ବ୍ରହ୍ମଦତ୍ତ ।
ଯେ ବ୍ରହ୍ମଜ୍ଞାନରେ ଯୁକତ ॥୭୪୪
ସେ ଚାରିପୁତ୍ରଙ୍କ ବଂଶେଣ ।
ପରାଶର ଗୋତ୍ରୀ ବ୍ରାହ୍ମଣ ॥୭୪୫
ଚାରିବେଦରେ ସେ ହୋଇଲେ ।
ତହୁଁ ଯେ ଶୁକମୁନି ଗଲେ ॥୭୪୬
ବ୍ୟାସଙ୍କୁ ଜ୍ଞାନ ସେ ପୁଛିଲେ ।
ତହୁଁ ସେ ବୋଧ ନ ହୋଇଲେ॥୭୪୭
ମିଥିଳା ଜନକ ରାଜନ ।
ଯେ ରାଜରଷି ବିଦ୍ୟମାନ ॥୭୪୮
ସ୍ୱଭାବେ ନବମୁନି ଶିଷ୍ୟ ।
ସେ ଆତ୍ମଜ୍ଞାନରେ ବିଶେଷ ॥୭୪୯
ସେ ଶୁକଦେବେ ଶିକ୍ଷା ଦେଇ ।
ଆତ୍ମାରେ ବ୍ରହ୍ମକୁ ମିଶାଇ ॥୭୫୦
ଜ୍ଞାନ ପ୍ରବୋଧେ ଶୁକଦେବ ।
ବିଷୟା ତେଜି ଆତ୍ମାଭାବ ॥୭୫୧
ପିତାପୁତ୍ରାଦି ଛାଡିଗଲେ ।
ଶୁକଙ୍କ ଦେହରେ ମିଶିଲେ ॥୭୫୨

ଏବଂଭୂତ ଯେ ଶୁକଦେବ ।
ତାଙ୍କ ଚରଣେ ନିତ୍ୟେ ଭାବ ॥୭୫୩
ଜଗତହିତେ ବ୍ରହ୍ମଦେହୀ ।
ପୁରାଣ ଭାଗବତ କହି ॥୭୫୪
ଏ ଭାଗବତର ମହିମା ।
କେ କହିପାରେ ଗୁଣସୀମା ॥୭୫୫
ପରୀକ୍ଷରାଜା ପୁଣ୍ୟବଳେ ।
ଶୁକ ମିଳିଲେ ଅବହେଳେ ॥୭୫୬
ପରୀକ୍ଷ ଭାଗବତ ଶୁଣି ।
ବୈକୁଣ୍ଠ ଲଭିଲେ ସେ ପୁଣି ॥୭୫୭
ଜଗତ-ନିସ୍ତାର ନିମନ୍ତେ ।
କହିଲୁ ତୁମ୍ଭର ଅଗ୍ରତେ ॥୭୫୮
ସକଳ ପ୍ରାଣୀ ଏଣେ ରସ ।
ପୁରାଣ ଶୁଣି ପାପଧ୍ୱଂସ ॥୭୫୯
ଶୁକପ୍ରସନ୍ନେ ଏ ପୁରାଣ ।
କହିଲୁ ତୁମ୍ଭ ଆଗେ ପୁଣ ॥୭୬୦
ମହିମା ସେ ଶୁକଦେବର ।
କୀର୍ତ୍ତନ କରେ ଶତେବାର ॥୭୬୧
ସେ ଶୁକେଦେବେ ନମସ୍କାର ।
ଶତ ଦଣ୍ଡପ୍ରଣାମ ମୋର ॥୭୬୨
କହଇ ବିପ୍ର ଜଗନ୍ନାଥ ।
ଭାଷା-ପ୍ରବନ୍ଧେ ଭାଗବତ ॥୭୬୩
ସୁଜନେ ଦୋଷ ନ ଧରିବା ।
ମୋହର ତୁମ୍ଭ ପାଦେ ସେବା ॥୭୬୪
ପ୍ରାକୃତ ଦେଶଭାଷାବନ୍ଧ ।
ଏଥେ ସଂସ୍କାର ନାହିଁ ଭେଦ ॥୭୬୫
ବାରମାତ୍ରା ପଞ୍ଚାଶାକ୍ଷର ।
ଶବଦବ୍ରହ୍ମର ବିଚାର ॥୭୬୬
ସକଳ ପ୍ରାଣୀ ପାପ ନାଶେ ।
ଔଷଧ ଯେହ୍ନେ ରୋଗ ଧ୍ୱଂସେ ॥୭୬୭
ବେଦ ପୁରାଣ ଆଦି ଯେତେ ।
ସଂସ୍କାର ପ୍ରାକୃତ ସହିତେ ॥୭୬୮
ସକଳ ଦେଶଭାଷାମାନ ।
ସେହି ଅକ୍ଷର ଭିନ୍ନ ଭିନ୍ନ ॥୭୬୯
ସେ ବିଷ୍ଣୁ ସର୍ବଭୂତେ ଏକ ।
ଅର୍ଥବାଦେ କହି ଅନେକ ॥୭୭୦

Dr. Sudhanshu Sekhar Mishra

ଯେଣୁ ତା ମିତ୍ର ଅରି ନାହିଁ ।
କେବଳ ଭାବେ ବଶ ହୋଇ ॥୭୭୧
ଶାମୁଁକୁ ମୁକୁତା ଯେସନ ।
ପ୍ରାକୃତ ଛାଡି ତତ୍ତ୍ୱ ଘେନ ॥୭୭୨
ମୁଁ ପାପୀ ମୂଢ ଯେ ଅଜ୍ଞାନ ।
ନମଇଁ ତୁମ୍ଭର ଚରଣ ॥୭୭୩
କୃଷ୍ଣ ଚରଣେ କରି ଆଶ ।
କହଇ ଜଗନ୍ନାଥ ଦାସ ॥୭୭୪
ଦ୍ୱାଦଶସ୍କନ୍ଧେ ହରିବାଣୀ ।
ସଂସାର ତରେ ଯାହା ଶୁଣି ॥୭୭୫

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ଦ୍ୱାଦଶସ୍କନ୍ଧାର୍ଥ
ନିରୂପଣଂ ନାମ ଦ୍ୱାଦଶୋଽଧ୍ୟାୟଃ ॥

---

## ତ୍ରୟୋଦଶ ଅଧ୍ୟାୟ

ସୂତ କହନ୍ତି ତୋଷମନେ ।
ଶୌନକ ଆଦି ମୁନିଜନେ ॥୧

ସୂତ ଉବାଚ

ବ୍ରହ୍ମା ବରୁଣ ଇନ୍ଦ୍ର ଶିବ ।
ମରୁତ ଆଦି ଯେତେ ଦେବ ॥୨
ଦିବ୍ୟ ଯେ ସ୍ତୁତିମାନଙ୍କରେ ।
ସ୍ତୁତି କରନ୍ତି ଭାବଭରେ ॥୩
ଅଙ୍ଗ ଉପାଙ୍ଗ ପଦକ୍ରମ ।
ଉପନିଷଦ ସମେତେଣ ॥୪
ସାମଗାୟନେ ବିପ୍ରଜନେ ।
ମହିମା ଗାବନ୍ତି ବଦନେ ॥୫
ଧ୍ୟାନରେ ତଦଗତ ହୋଇ ।
ପରମଯୋଗୀ ଯାହା ଧ୍ୟାୟି ॥୬
ଆତ୍ମା ସ୍ୱରୂପେ ଦେଖୁଛନ୍ତି ।
ଯା ଅନ୍ତ କେହି ନ ଜାଣନ୍ତି ॥୭
ସେ ବ୍ରହ୍ମସ୍ୱରୂପ ଈଶ୍ୱର ।
ତାହାଙ୍କୁ ମୋର ନମସ୍କାର ॥୮
କ୍ଷୀରସମୁଦ୍ର ମନ୍ଥନରେ ।
ପୃଷ୍ଠେ ମନ୍ଦର ଗିରିବରେ ॥୯
ଭ୍ରମିଲା ଦଧିଦଣ୍ଡ ପ୍ରାୟେ ।
ସମୁଦ୍ର ମନ୍ଥନ ସମୟେ ॥୧୦
ଦେବବରଷେ ଅନୁଦିନ ।
ସହସ୍ରେ ବରଷ ମନ୍ଥନ ॥୧୧
କଣ୍ଡୁ ଯେ କୂର୍ମପୃଷ୍ଠେ ଥିଲା ।
ଘର୍ଷଣେ ସୁଖ ଜନମିଲା ॥୧୨
ନିଦ୍ରା ଉପୁଜେ ସୁଖଭରେ ।
ସେ ନିଦ୍ରୁଁ ପବନ ସଞ୍ଚରେ ॥୧୩
ଘୋର ନିଃଶ୍ୱାସ ଗତାଗତେ ।
ସେ ବିଶ୍ୱବାୟୁ ମହାଭୂତେ ॥୧୪
ସେ ସର୍ବଜୀବ ରକ୍ଷା ହେତୁ ।
ଯାରେ ବଞ୍ଚନ୍ତି ସର୍ବଜନ୍ତୁ ॥୧୫
ଯାର ନିଃଶ୍ୱାସ ପ୍ରକ୍ଷେପଣ ।
ବାଜି ସମୁଦ୍ର କମ୍ପମାନ ॥୧୬
ସେ ଜଳେ ଲହରୀ ଉଦ୍‌ଗତ ।
ଏବେ ହେଁ ନୋହିଛି ନିବର୍ତ୍ତ ॥୧୭
ଅନ୍ୟୋନ୍ୟେ ତଟେ ପ୍ରକ୍ଷେପଇ ।
ସେ କୂର୍ମରୂପୀ ବିଶ୍ୱଦେହୀ ॥୧୮
ତାଙ୍କୁ ମୋହର ନମସ୍କାର ।
ସେ ଦେବଦେବଙ୍କ ଈଶ୍ୱର ॥୧୯
ପୁରାଣମାନଙ୍କୁ ନିର୍ଣ୍ଣୟ ।
ଯେ ସଂଖ୍ୟା ତହିଁର ବିଷୟ ॥୨୦
ଏହା ଶୁଣିଲେ ଯେତେ ଫଳ ।
ପୁରାଣଦାନର ସୁଫଳ ॥୨୧
ପୁରାଣ ଅଷ୍ଟାଦଶ ସାର ।
ଚାରିଲକ୍ଷରେ ସେ ବିସ୍ତାର ॥୨୨
ସହସ୍ର ସଂଖ୍ୟାରେ ପ୍ରମାଣ ।
ଅପରେ ଶତାଧିକ ପୁଣ ॥୨୩
ବ୍ରହ୍ମପୁରାଣ ଦଶସସ୍ର ।
ପଦ୍ମ ଅଣଶାଠି ସହସ୍ର ॥୨୪
ଆବର ପୁଣି ପାଞ୍ଚଶତ ।
ଏହି ପୁରାଣ ସଂଖ୍ୟା ଖ୍ୟାତ ॥୨୫
ଶ୍ରୀବିଷ୍ଣୁ ବୈଷ୍ଣବପୁରାଣ ।
ତ୍ରିବିଂଶ ସହସ୍ରେ ନିର୍ମାଣ ॥୨୬
ଚବିଶ ସହସ୍ରେ ବିଦିତ ।
ଶିବପୁରାଣ ସଂଖ୍ୟା ମତ ॥୨୭
ନାରଦ ପୁରାଣ ବାଖ୍ୟାନ ।
ପଚିଶ ସହସ୍ର ଗ୍ରନ୍ଥେଣ ॥୨୮
ମାରକଣ୍ଡେୟ ଯେ ପୁରାଣ ।
ନବସସ୍ର ଗ୍ରନ୍ଥେ ନିର୍ମାଣ ॥୨୯
ଆଗ୍ନେୟ ପୁରାଣର ଶେଷ ।
ପନ୍ଦରସହସ୍ର ଚାରିଶ ॥୩୦
ପୁରାଣ ନାମ ଯେ ଭବିଷ୍ୟ ।
ଚଉଦସହସ୍ର ପାଞ୍ଚଶ ॥୩୧
ବ୍ରହ୍ମବୈବର୍ତ୍ତ ଯେ ପୁରାଣ ।
ଅଠରସହସ୍ର ଗ୍ରନ୍ଥେଣ ॥୩୨
ଲିଙ୍ଗ ପୁରାଣର ବିସ୍ତାର ।
ଏଗାରସହସ୍ର ଯେ ସାର ॥୩୩
ବରାହପୁରାଣ ଯେ କହି ।
ଚତୁର୍ବିଂଶସହସ୍ର ହୋଇ ॥୩୪
ସ୍କନ୍ଦପୁରାଣର ବିସ୍ତାର ।
ଏକାଶୀସସ୍ର ଗ୍ରନ୍ଥ ସାର ॥୩୫
ଶତେକ ଅଧିକ ଅପର ।
ବାମନ ଯେ ଦଶସସ୍ରର ॥୩୬
ଯେ କୂର୍ମପୁରାଣ ବଖାଣ ।
ସପତଦଶସହସ୍ରେଣ ॥୩୭
ମତ୍ସ୍ୟପୁରାଣର ବିଧାନ ।
ଚଉଦସହସ୍ର ଗ୍ରନ୍ଥେଣ ॥୩୮

Dr. Sudhanshu Sekhar Mishra

ଗରୁଡପୁରାଣ ଯେ ପୁଣି ।
ଊନବିଂଶସହସ୍ରେ ଜାଣି ।।୩୯
ବ୍ରହ୍ମାଣ୍ଡପୁରାଣର ଶେଷ ।
ଦ୍ୱାଦଶସହସ୍ରେ ପ୍ରକାଶ ।।୪୦
ଏ ଭାବେ ଅଷ୍ଟାଦଶେ ସାର ।
ଶ୍ରୀଭାଗବତ ନାମ ଯାର ।।୪୧
ଏ ସର୍ବପୁରାଣ ଅଧିପ ।
ଏଟି ପ୍ରତ୍ୟେକ୍ଷ ବିଷ୍ଣୁରୂପ ।।୪୨
ସର୍ବୋପରି ବିରାଜମାନ ।
ଶୁକ ପରୀକ୍ଷ ସମ୍ୱାଦେଣ ।।୪୩
ଅଠରସହସ୍ର ଯେ ଗ୍ରନ୍ଥ ।
ଶ୍ରୀବାସୁଦେବଙ୍କ ଚରିତ ।।୪୪
ଏହୁ ପୁରାଣରେ ବଖାଣ ।
ଶ୍ରୀବିଷ୍ଣୁ ମହିମା ବର୍ଣ୍ଣନ ।।୪୫
ଏହୁ ପୁରାଣର ଉଦ୍ଦେଶ୍ୟ ।
ଯେ ରୂପେ ହୋଇଲା ପ୍ରକାଶ ।।୪୬
ବିଷ୍ଣୁର ନାଭିପଦ୍ମଗତ ।
ବ୍ରହ୍ମା ଯେ ହୋଇଲେ ସମ୍ଭୂତ ।।୪୭
ବିଷ୍ଣୁ ତାହାଙ୍କୁ ଶିକ୍ଷା ଦେଲେ ।
ସେ ପୁଣି ନାରଦେ କହିଲେ ।।୪୮
ନାରଦ ତହୁଁ ବ୍ୟାସ ପାଇ ।
ସେ ବ୍ୟାସ ଶୁକଦେବ କହି ।।୪୯
ଶୁକଦେବଙ୍କ ତହୁଁ ପୁଣ ।
ମୋ ପିତା ଲୋମହରଷଣ ।।୫୦
ସୂତ ପୌରାଣିକ ତା ନାମ ।
ଜାଣେ ପୁରାଣ ତତ୍ତ୍ୱଜ୍ଞାନ ।।୫୧
ତୁମ୍ଭ ସମ୍ମୁଖେ ସେ ବାଖ୍ୟାନ ।
ଥୋକାଏ କରିଥିଲେ ପୁଣ ।।୫୨
ତାଙ୍କୁ ବଳଦେବ ନାଶିଲେ ।
ମୋତେ ସେ ଅଧିକାର ଦେଲେ ।।୫୩
ଏ ଭାଗବତ ଗ୍ରନ୍ଥସାର ।
ମୋ ଶିକ୍ଷା ପୂର୍ବେ ତାଙ୍କଠାର ।।୫୪
କହିଲି ତୁମ୍ଭର ଛାମୁରେ ।
ଯା ମୋତେ ଅନୁଭବ ସ୍ଫୁରେ ।।୫୫
ଶ୍ରୀଭାଗବତ ଯେ ପୁରାଣ ।
ଶ୍ରୀକୃଷ୍ଣ ଚରିତ ବଖାଣ ।।୫୬

ଶ୍ରବଣେ ପ୍ରାଣୀଙ୍କ ନିସ୍ତାର ।
ଅଶେଷ ଲୀଳାମୃତ ସାର ।।୫୭
ଏ କଥାର୍ଣ୍ଣବେ ପରିପୂର୍ଣ୍ଣ ।
ବେଦବେଦାନ୍ତ ସାରମର୍ମ ।।୫୮
ସକଳଶାସ୍ତ୍ର ଯେ ପୁରାଣ ।
ଅର୍ଥମାନରେ ପରିପୂର୍ଣ୍ଣ ।।୫୯
କେବଳ ଏହି ମୋକ୍ଷଦାତା ।
ଅଦ୍ୱୈତ ବ୍ରହ୍ମରୂପ ଗାଥା ।।୬୦
ଏ ଯେ ପୁରାଣ ଭାଗବତ ।
ବିଷ୍ଣୁର ମହିମା ବର୍ଣ୍ଣିତ ।।୬୧
ଏହା ଈଶ୍ୱରଭାବେ ମଣି ।
ଆଦ୍ୟରେ ସେବିବ ଯେ ପ୍ରାଣୀ ।।୬୨
ଭାଦ୍ରବ ପୂର୍ଣ୍ଣିମା ଦିନରେ ।
ସୁବର୍ଣ୍ଣ ସିଂହାସନପରେ ।।୬୩
ପୁସ୍ତକମାନ ବସାଇଣ ।
ପୂଜା ବିଷ୍ଣୁପ୍ରୀତି ଭାବେଣ ।।୬୪
ବିପ୍ର ବୈଷ୍ଣବେ ଦେବ ଦାନ ।
ଯେ ଧର୍ମଶୀଳ ସୁଜ୍ଞଜନ ।।୬୫
ଦକ୍ଷିଣା ଯଥାଭାବେ ଦେବ ।
ବେଦ ବଚନେ ଉତ୍ସର୍ଗିବ ।।୬୬
ଅନ୍ତେ ପରମଗତି ପାଇ ।
ବୈକୁଣ୍ଠଭୁବନେ ଗମଇ ।।୬୭
ସାଯୁଜ୍ୟ ମୁକ୍ତି ସେ୍ ଲଭଇ ।
ବିଷ୍ଣୁ ଦେହରେ ଲୀନ ହୋଇ ।।୬୮
ଏଣୁ ଯେ ସାଧୁଙ୍କ ସଭାରେ ।
ଅନ୍ୟ ପୁରାଣ ଯେ ପ୍ରଚରେ ।।୬୯
ସେ ସାଧୁସଭା ଶୋଭା କାହିଁ ।
ଯାବତ ଭାଗବତ ନାହିଁ ।।୭୦
ଚନ୍ଦ୍ର ବିହୀନ ଜ୍ୟୋତିଗଣ ।
ଅନ୍ଧାର କେ ନାଶିବ ପୁଣ ।।୭୧
ସହସ୍ର ସଂଖ୍ୟା ବିରାଜନ୍ତି ।
ଚନ୍ଦ୍ର ବିହୀନେ ନ ଶୋଭନ୍ତି ।।୭୨
ସକଳ ବେଦାନ୍ତର ସାର ।
ଶ୍ରୀଭାଗବତରେ ବିସ୍ତାର ।।୭୩
ସେ ରସକଥା ଅମୃତରେ ।
ତୃପତ ହୁଅନ୍ତି ସଂସାରେ ।।୭୪

ଯେ ଅନ୍ୟ ପୁରାଣ ପ୍ରକାଶ ।
ନ କରନ୍ତି ମନ ସନ୍ତୋଷ ।।୭୫
ଯେହ୍ନେ ସରିତେ ପୁଣ୍ୟବନ୍ତ ।
ଜାହ୍ନବୀ ଜଳେ ସୁପୂଜିତ ।।୭୬
ଦେବତା ମଧ୍ୟେ ବାସୁଦେବ ।
ବୈଷ୍ଣବେ ଶ୍ରେଷ୍ଠ ମହାଦେବ ।।୭୭
ସକଳ କ୍ଷେତ୍ରମଧ୍ୟେ ବର ।
ଯେସନେ କାଶୀକ୍ଷେତ୍ର ସାର ।।୭୮
ପୁରାଣମାନଙ୍କରେ ଶ୍ରେଷ୍ଠ ।
ଶ୍ରୀଭାଗବତ ଯେ ବିଶିଷ୍ଟ ।।୭୯
ଶ୍ରୀଭାଗବତ ଯେ ପୁରାଣ ।
ସାକ୍ଷାତେ ବିଷ୍ଣୁର ନିର୍ମାଣ ।।୮୦
ସମଗ୍ର ବଇଷ୍ଣବପ୍ରିୟ ।
ପରମହଂସର ନିର୍ଣ୍ଣୟ ।।୮୧
ନିର୍ମଳ ଧର୍ମ ଜ୍ଞାନ ଭାବ ।
ଭକ୍ତି ବୈରାଗ୍ୟ ମୁକ୍ତିବର୍ଗ ।।୮୨
ଏ ଆଦି ଯହିଁରେ ପ୍ରକାଶ ।
ନିର୍ଗୁଣ ଗାୟନ ଅଭ୍ୟାସ ।।୮୩
ପଢନ୍ତି ଶୁଣନ୍ତି ଯେ ପ୍ରାଣୀ ।
କର୍ମବନ୍ଧନୁଁ ମୋକ୍ଷ ପୁଣି ।।୮୪
ଜନ୍ମ-ମରଣାଦି ନୋହଇ ।
ନିରାକାରରେ ଲୀନ ହୋଇ ।।୮୫
ଏ ଜ୍ଞାନ-ପ୍ରଦୀପ-ପୁରାଣ ।
ବ୍ରହ୍ମାରେ ଦେଲେ ନାରାୟଣ ।।୮୬
ବ୍ରହ୍ମା ନାରଦଙ୍କୁ କହିଲେ ।
ନାରଦ ବ୍ୟାସେ ପୁଣ ଦେଲେ ।।୮୭
ସେ ବ୍ୟାସ ଶୁକଦେବେ କହି ।
ଶୁକ ଯେ ପରୀକ୍ଷେ ବୁଝାଇ ।।୮୮
ସେଠାରୁ ଜଗତେ ବିଖ୍ୟାତ ।
ନାମ ଯେ ଶିରୀଭାଗବତ ।।୮୯
ଏବଂଭୂତ ଯେ ଶୁକଦେବ ।
ତା ପାଦେ ଧ୍ୟାନ ମୋ ରହିବ ।।୯୦
ବ୍ରହ୍ମା ବରୁଣ ଇନ୍ଦ୍ରଦେବ ।
ଦିବ୍ୟ ସ୍ତୁତିରେ ସ୍ତୁତିଭାବ ।।୯୧
ଅଙ୍ଗ ଉପାଙ୍ଗ ପଦକ୍ରମ ।
ଜଟା ଉପନିଷଦ ବ୍ରହ୍ମ ।।୯୨

Dr. Sudhanshu Sekhar Mishra

ସମେତ କରି ସାମବେଦ ।
ଗାୟନ କରି ବ୍ରହ୍ମାପଦ ॥୯୩
ସାମଗାୟନ ବିପ୍ରଜନେ ।
ମହିମା ଗାୟନ ବଦନେ ॥୯୪
ଧ୍ୟାନରେ ତଦଗତ ହୋଇ ।
ପରମଯୋଗୀ ଯାହା ଧ୍ୟାୟି ॥୯୫
ଆତ୍ମା ସ୍ୱରୂପେ ଦେଖୁଛନ୍ତି ।
ଯା ଅନ୍ତ କେହି ନ ଜାଣନ୍ତି ॥୯୬
ସେ ବ୍ରହ୍ମରୂପୀ ଯେ ଈଶ୍ୱର ।
ତାହାଙ୍କୁ ମୋର ନମସ୍କାର ॥୯୭
ସେ ଭାଗବତ ବାସୁଦେବ ।
ସର୍ବ ଆତ୍ମାସ୍ୱରୂପୀ ଜୀବ ॥୯୮
ସେ ପାପପୁଣ୍ୟରେ ସାକ୍ଷିଣ ।
ତା ପାଦେ ପଶିଲି ଶରଣ ॥୯୯
ମୋକ୍ଷ ନିମନ୍ତେ ବ୍ରହ୍ମ କହେ ।
ଶ୍ରୀଭାଗବତ ଅନୁଗ୍ରହେ ॥୧୦୦
ଯେ ଯୋଗୀଇନ୍ଦ୍ର ଶୁକଦେବ ।
ତାଙ୍କ ଚରଣେ ନିତ୍ୟ ଭାବ ॥୧୦୧
ସେ ବ୍ରହ୍ମରୂପୀ ଯେ ଅଟନ୍ତି ।
ସଂସାର ହିତ ମନେ ଚିନ୍ତି ॥୧୦୨
ବିଷ୍ଣୁଭକତ ପରୀକ୍ଷିତ ।
ତାଙ୍କୁ ସଂସାରୁ କଲେ ମୁକ୍ତ ॥୧୦୩
ସେ ମୁନି ପାଦଯୁଗେ ମୁହିଁ ।
ଭକତିଭାବେ ପ୍ରଣମଇଁ ॥୧୦୪
ଶ୍ରୀଭାଗବତ ଯେ ପୁରାଣ ।
ଦ୍ୱାଦଶସ୍କନ୍ଧରେ ସମ୍ପୂର୍ଣ୍ଣ ॥୧୦୫
ଦ୍ୱାଦଶସ୍କନ୍ଧ ତ୍ରୟୋଦଶ ।
ଅଧ୍ୟାରେ କହିଲୁ ବିଶେଷ ॥୧୦୬
ସୂତ କହନ୍ତି ତୋଷମନେ ।
ଶୁଣ ଶୌନକ ମୁନିଜନେ ॥୧୦୭
କହିଲୁ ସର୍ବଶାସ୍ତ୍ର ସାର ।
ତା ଶୁଣି ସଂସାରୁ ନିସ୍ତର ॥୧୦୮
ଜ୍ଞାନେ ଅଜ୍ଞାନେ ଯେ ଶୁଣନ୍ତି ।
ଶ୍ରଦ୍ଧା ଅଶ୍ରଦ୍ଧାରେ ଗୁଣନ୍ତି ॥୧୦୯
ସେ ସର୍ବଦୁଃଖ ପରିହରେ ।
ସମିଧ ଯେହ୍ନେ ବୈଶ୍ୱାନରେ ॥୧୧୦

ସରଶେ କରଇ ଦହନ ।
ସାର ଅସାର ଭସ୍ମମାନ ॥୧୧୧
ଏମନ୍ତ କୃଷ୍ଣର ଚରିତ ।
ବ୍ରହ୍ମଚଣ୍ଡାଳ ଏକମତ ॥୧୧୨
ଏ ଭାଗବତ ଗ୍ରନ୍ଥ ଯେବେ ।
ଦୃଢେ ଶୁଣିବ ପ୍ରିୟଭାବେ ॥୧୧୩
ରାତ୍ର ଦିବସ ମଧ୍ୟଗତେ ।
ଶ୍ରବଣ ପଠନ ନିରତେ ॥୧୧୪
ସକଳ ଚେଷ୍ଟା ପରିହରି ।
ସାଧୁସଙ୍ଗତେ ଚିତ୍ତ ଧରି ॥୧୧୫
ସାଧୁଙ୍କ ମୁଖାମୃତ ବାଣୀ ।
ସାଦରେ ଯେବା ଶୁଣେ ପ୍ରାଣୀ ॥୧୧୬
ସେ ଭବବ୍ୟାଧି ବିନାଶନ୍ତି ।
ଆରୋଗ୍ୟେ ସୁଖେ ବିହରନ୍ତି ॥୧୧୭
ଶୁଣ ଶୌନକ ମୁନିଜନେ ।
ଆନନ୍ଦେ ସୂତ ମୁନିଗଣେ ॥୧୧୮
ପ୍ରଶଂସା କରି ଜଣେ ଜଣେ ।
ସୂତଙ୍କୁ କୋଳ ସମ୍ଭାଷଣେ ॥୧୧୯
ହେ ସୂତ ଧନ୍ୟ ତୋ ମହିମା ।
କେ କହିପାରେ ଗୁଣସୀମା ॥୧୨୦
ଏ ଯେ ପୁରାଣ ଭାଗବତ ।
ତୁମ୍ଭର ମୁଖରୁ ଗଳିତ ॥୧୨୧
ଶୁଣି କୃତାର୍ଥ ଆମ୍ଭେ ହେଲୁ ।
ସଂସାର ଚକ୍ରୁ ନିସ୍ତରିଲୁ ॥୧୨୨
ଏମନ୍ତ କହି ଶୌନକାଦି ।
ସୂତଙ୍କୁ ବିନୟେ ପ୍ରବୋଧି ॥୧୨୩
ନିଶ୍ଚଳଚିତ୍ତେ ସେ ରହିଲେ ।
ହରିଚରଣେ ଆଶ୍ରେ କଲେ ॥୧୨୪
କହଇ ବିପ୍ର ଜଗନ୍ନାଥ ।
ଧର୍ମ ପ୍ରତିପାଳନ ଅର୍ଥ ॥୧୨୫
ଦ୍ୱାଦଶସ୍କନ୍ଧ ଭାଗବତ ।
ଶୁଣିଲେ ହରଇ ଦୁରିତ ॥୧୨୬
ବଦନେ ସକୃତ ଉଚ୍ଚାରେ ।
ସେ କୃଷ୍ଣଲାଞ୍ଛନେ ବିହରେ ॥୧୨୭
କେବେହେଁ ସଂସାରେ ନ ପଡେ ।
ଏ ଅନୁକ୍ରମେ ମାୟା ଛିଡେ ॥୧୨୮

ନାମର ମହିମା ଏମନ୍ତ ।
ଅଜ୍ଞାନେ ନ ଜାଣେ ଜଗତ ॥୧୨୯
ଶୁଣ ସୁଜନେ ତୋଷମନେ ।
ଏ ଭାଗବତ ଅନୁଦିନେ ॥୧୩୦
ବିଷ୍ଣୁ ପୂର୍ବବାଣୀ ନିମିତ୍ତେ ।
ଧର୍ମ ପରିପାଳନ ଅର୍ଥେ ॥୧୩୧
ସମ୍ଭବ ଯୁଗେ ଯୁଗେ ହୋଇ ।
ଧର୍ମ ପ୍ରବର୍ତ୍ତେ ଶିକ୍ଷା ଦେଇ ॥୧୩୨
ବିଷ୍ଣୁଅଂଶକୁ ପ୍ରାଣୀ ବହି ।
ସାଧୁ ବୈଷ୍ଣବ ବିଷ୍ଣୁଦେହୀ ॥୧୩୩
ଶ୍ରୀଧର ନାମେ ବିପ୍ରବର ।
କଳିଯୁଗରେ ଜନ୍ମ ତାର ॥୧୩୪
ସେ ବିପ୍ର ଅତି ବିଚକ୍ଷଣ ।
ସଂସ୍କାର ଟୀକାରେ ନିପୁଣ ॥୧୩୫
ଶ୍ରୀଭାଗବତ ଏ ପୁରାଣ ।
ଅଠରସହସ୍ର ଶ୍ଳୋକେଣ ॥୧୩୬
ତା ଟୀକା ଚଉବିଂଶସସ୍ର ।
କରଇ ଶ୍ରୀଧର ପ୍ରକାଶ ॥୧୩୭
ବିପ୍ରକୁଳରେ ଜନ୍ମ ହୋଇ ।
ସେ ଜଗନ୍ନାଥ ନାମ ବହି ॥୧୩୮
ପ୍ରାକୃତବନ୍ଧେ ଭାଗବତ ।
କହିଲେ ସନ୍ତଜନ ହିତ ॥୧୩୯
ସୁଜନେ ଦୋଷ ମୋ ନ ଧର ।
ଅଶେଷ ମହିମା କୃଷ୍ଣର ॥୧୪୦
ତାଙ୍କର ଗୁଣ କର୍ମ ଯଶ ।
ପୁରାଣ କଲେ ଗୀତରସ ॥୧୪୧
ସାଧୁଚରଣରେଣୁ ଆଶେ ।
ସୁଚିତ୍ତେ ଅନୁକ୍ଷଣେ ଘୋଷେ ॥୧୪୨
ଶ୍ରୀଜଗନ୍ନାଥଙ୍କ ସଙ୍ଗୀତ ।
ଯା ନାମ ଶିରୀଭାଗବତ ॥୧୪୩
ତିନିଶତ ଉନତିରିଶ ।
ଏକାଦଶ ଯାଏଁ ପ୍ରକାଶ ॥୧୪୪
ଅଧ୍ୟା ନାମେଣ ଯେ ବିଶେଷ ।
ଶ୍ରୀଭାଗବତ ଗୀତରସ ॥୧୪୫
ଏଣୁ ଚିତ୍ତ ବୋଧିବା ଅର୍ଥେ ।
ଦ୍ୱାଦଶସ୍କନ୍ଧ ଶ୍ରୁତିପଥେ ॥୧୪୬

Dr. Sudhanshu Sekhar Mishra

ବିପ୍ରଙ୍କଠାରୁ ଶୁଣି ମନେ ।
ଚିତ୍ତୋଇ କଲଇଁ ଲେଖନେ ॥୧୪୭
ଯେଣୁ ସେ ଗୀତରେ ବିଶୁଦ୍ଧ ।
ଜଗନ୍ନାଥ ନାମ ପ୍ରସିଦ୍ଧ ॥୧୪୮
ତେଣୁ ତାଙ୍କ ନାମ ବଖାଣ ।
ସେ ଯେ ମହତ ମହାଜନ ॥୧୪୯
ସେ ବିପ୍ର ଜାଣି କୃଷ୍ଣରସ ।
ପୁରାଣ ଗୀତରେ ପ୍ରକାଶ ॥୧୫୦
ଜଗତ ଉଦ୍ଧାର ନିମନ୍ତେ ।
ରଚିଲେ ଶିରୀଭାଗବତେ ॥୧୫୧
ତାଙ୍କ ଚରଣେ ତେଣୁ ମନ ।
ସୁଜନେ ଦୋଷ ମୋ ନ ଘେନ ॥୧୫୨
ଆଶା ମୋ ସାଧୁଙ୍କ ଚରଣ ।
ଶରଣ ମହାଦେବ ହୀନ ॥୧୫୩
ସୁଜନେ ଦୋଷ ନ ଧରିବ ।
ବିଷ୍ଣୁମହିମା ଅନୁଭବ ॥୧୫୪
ପ୍ରାକୃତ ସଂସ୍କାର ହିଁ ନାହିଁ ।
ଭକତଭାବେ ବଶ ହୋଇ ॥୧୫୫
ଆଗମ ନିଗମ ପୁରାଣେ ।
ଧ୍ୟାନ ସମାଧି ତତ୍ତ୍ୱଜ୍ଞାନେ ॥୧୫୬
ଖୋଜି ନ ପାନ୍ତି ତାଙ୍କ ଲେଶ ।
କିଞ୍ଚିତ ଭାବେ ପରକାଶ ॥୧୫୭

ଶାମୁକେ ମୁକୁତା ଯେସନ ।
ପ୍ରାକୃତ ତେଜି ତତ୍ତ୍ୱ ଘେନ ॥୧୫୮
ବ୍ୟାଧ ଗଣିକା ଅଜାମିଳେ ।
ତାଙ୍କ ଭାବ ଘେନି ତରିଲେ ॥୧୫୯
ପୂତନା ଆଦି ପାପୀ ଯେତେ ।
ତରିଲେ ତାଙ୍କୁ ଭାବି ନିତ୍ୟେ ॥୧୬୦
ଗୋପୀଙ୍କ ସଙ୍ଗେ ଲମ୍ପଟରେ ।
କେଳି ଯେ ବୃନ୍ଦାବନେ କଲେ ॥୧୬୧
ଗୋପୀଏ କାମଭାବେ ତରି ।
କୃଷ୍ଣଙ୍କୁ କାନ୍ତଭାବେ ବରି ॥୧୬୨
ଏ ଗୁଣ ଘୋଷି ପ୍ରାଣୀ ତରି ।
ଏମନ୍ତ ମହିମା ଯେ ହରି ॥୧୬୩
ଶିଶୁପାଳ ଯେ ଦୁର୍ଯ୍ୟୋଧନ ।
କଂସାଦି ଅଷ୍ଟମଲ୍ଲମାନ ॥୧୬୪
ଏ ଆଦି ଯେତେ ଶତ୍ରୁଗଣେ ।
ହିଂସା ବହିଣ ନିତ୍ୟେ ମନେ ॥୧୬୫
ସାଯୁଜ୍ୟ ମୁକ୍ତି ଯେ ପାଇଲେ ।
ସେ ବିଷ୍ଣୁଅଙ୍ଗେ ଲୀନ ହେଲେ ॥୧୬୬
ଭାବ ଅଭାବ ଯାର ନାହିଁ ।
ମହିମା ଗୋଚର ନୋହଇ ॥୧୬୭
ବ୍ରହ୍ମା ଶିବ ଦେବ ଅନନ୍ତ ।
ସର୍ବଭୂତଆତ୍ମା ଅଚ୍ୟୁତ ॥୧୬୮

ଏଣୁ ମହିମା ଅନ୍ତ କରି ।
କେ ଜାଣି କହିବ ବିସ୍ତାରି ॥୧୬୯
ନାମ ମାତ୍ରକ ଯାର ସାର ।
ସେ ଜାଣେ ଗତିର ବିଚାର ॥୧୭୦
ଏ ସୂତ-ଶୌନକ ସମ୍ବାଦ ।
ଶୁକ ପରୀକ୍ଷଙ୍କ ପ୍ରମୋଦ ॥୧୭୧
ଦ୍ୱାଦଶସ୍କନ୍ଧ ସମାପତ ।
ନାମ ଯେ ଶିରୀଭାଗବତ ॥୧୭୨
ତ୍ରିଦଶଅଧ୍ୟା ହରିଗୁଣ ।
ଦ୍ୱାଦଶ ହୋଇଲା ସମ୍ପୂର୍ଣ୍ଣ ॥୧୭୩
ଏ ବାରସ୍କନ୍ଧ ଭାଗବତ ।
ପୁରାଣ ଅଧ୍ୟାରେ ବିଖ୍ୟାତ ॥୧୭୪
ତିନିଶତ ବୟାଳିଶେଣ ।
ବାରସ୍କନ୍ଧ ହୋଏ ସମ୍ପୂର୍ଣ୍ଣ ॥୧୭୫
କହଇ ଦାସ ଜଗନ୍ନାଥ ।
କୃଷ୍ଣ ଚରଣେ ଦେଇ ଚିତ୍ତ ॥୧୭୬
ଦ୍ୱାଦଶସ୍କନ୍ଧେ ହରିଲୀଳା ।
ଭବସିନ୍ଧୁ ତରଣେ ଭେଳା ॥୧୭୭

ଇତି ଶ୍ରୀମଦ୍‌ଭାଗବତେ
ମହାପୁରାଣେ ବୈୟାସିକ୍ୟାଂ
ଅଷ୍ଟାଦଶ ସାହସ୍ର୍ୟାଂ
ପାରମହଂସ୍ୟାଂ ସଂହିତାୟାଂ
ଦ୍ୱାଦଶସ୍କନ୍ଧେ ତ୍ରୟୋଦଶୋଽଧ୍ୟାୟଃ ॥

---

Dr. Sudhanshu Sekhar Mishra

# ପ୍ରଥମସ୍କନ୍ଧ ଓ ଦ୍ୱିତୀୟସ୍କନ୍ଧ

ଜଗନ୍ନାଥ ଦାସ ଗୋସାଇଁଙ୍କ ରଚିତ ଭାଗବତର କେତେକ କଠିନ ଶବ୍ଦ ଓ ଚରିତ ଉପରେ ଏଠାରେ ଅର୍ଥ ଓ ବ୍ୟାଖ୍ୟା ଦିଆଯାଇଛି । ପ୍ରସ୍ତୁତ ଖଣ୍ଡରେ ଭାଗବତର ପ୍ରଥମସ୍କନ୍ଧ ଓ ଦ୍ୱିତୀୟସ୍କନ୍ଧ ଦିଆଯାଇଥିବାରୁ ଏହି 'ଭାଗବତ ଅର୍ଥ ଦୀପିକା'ରେ କେବଳ ପ୍ରଥମ ଓ ଦ୍ୱିତୀୟ ସ୍କନ୍ଧର କେତେକ କଠିନ ଶବ୍ଦ ତଥା ଚରିତ ଗୁଡ଼ିକର ବ୍ୟାଖ୍ୟା ଦିଆଯାଇଛି ।

### ଅ

**ଅଇରାବତ** -

ଇନ୍ଦ୍ରଙ୍କ ହସ୍ତୀର ନାମ (ଐରାବତ) । ଏହା ଐରାବତ ଶବ୍ଦର କାବ୍ୟିକ ରୂପ । ଏହାର ବର୍ଣ୍ଣ ଶ୍ୱେତ । ଏହା ସମୁଦ୍ରମନ୍ଥନରୁ ଜାତ ହୋଇଥିଲା ।

**ଅକୁଣ୍ଠ ମହିମା** –

ଯେଉଁ ମହିମା-ପ୍ରକାଶରେ କେହି କୁଣ୍ଠାବୋଧ କରନ୍ତି ନାହିଁ । ଅକୁଣ୍ଠ ମହିମାଶାଳୀ ବିଷ୍ଣୁ ।

**ଅକ୍ଷୌହିଣୀ** –

ହସ୍ତୀ, ପଦାତି, ଅଶ୍ୱ ଓ ରଥ ବିଶିଷ୍ଟ ଅପରିମିତ ସେନା । ଶହେ କୋଟି ।

**ଅଗ୍ରଜ ମୁନି** –

ଯେଉଁ ମୁନିମାନେ ପ୍ରଥମେ ଜନ୍ମଗ୍ରହଣ କରିଥିଲେ, ସନକ, ସନନ୍ଦନ, ସନାତନ ଓ ସନତ୍ କୁମାର ।

**ଅଗ୍ରତ** –

ଆଗରେ, ସମ୍ମୁଖରେ ।

**ଅଙ୍ଗଦ** –

ବାଜୁବନ୍ଧ, ହାତରେ ପିନ୍ଧା ଯାଉଥିବା ଅଳଙ୍କାର ବିଶେଷ ।

**ଅତି ଉତ୍ସର୍ଗ** –

ଅତି ଉଚ୍ଚ

**ଅତିମାନୁଷ** –

ମନୁଷ୍ୟଦ୍ୱାରା ଯାହା ସମ୍ଭବ ନୁହେଁ ।

**ଅତ୍ରିପୁତ୍ର** –

ଅତ୍ରି ନାମକ ମହର୍ଷିଙ୍କ ପୁତ୍ର – ଦୁର୍ବାସା; ଦତ୍ତାତ୍ରେୟ ନାମକ ବିଷ୍ଣୁ ଅଂଶରେ ଜାତ ମହର୍ଷି ।

**ଅଧ୍ୟାତ୍ମମନ୍ତ** –

ଅଲୌକିକ, ଜୀବାତ୍ମା, ପଞ୍ଚଭୂତ ରହିତ ଜୀବାତ୍ମା । ଏହା ଅଧ୍ୟାତ୍ମମନ୍ତ ଆତ୍ମାରୂପେ ବ୍ୟବହୃତ ହୋଇଛି ।

**ଅଧିଯଜ୍ଞ** –

ଯଜ୍ଞର ପ୍ରତିଷ୍ଠାତା, ବିଷ୍ଣୁ ।

**ଅଧଃପଥ** –

ସଂସାରପଥ, ନିମ୍ନପଥ, ନିକୃଷ୍ଟ ପଥ ।

**ଅନଙ୍ଗ** –

କାମଦେବ, କନ୍ଦର୍ପ । ବ୍ରହ୍ମାଙ୍କର ମାନସରୁ ଜାତ ଚିତ୍ତବିକାର ଉତ୍ପନ୍ନ-କାରୀ । ପାର୍ବତୀଙ୍କ ବିବାହ ପୂର୍ବରୁ ଶିବ କାମଦେବଙ୍କ ଅଙ୍ଗ ଧ୍ୱଂସ କରି ଦେଇଥିବାରୁ ତାହାଙ୍କୁ ଅନଙ୍ଗ କୁହାଯାଏ ।

**ଅନଙ୍ଗ ତୁଲେ ନିଶାକର** –

କାମ ସମ୍ଭୋଗ ବା ସ୍ତ୍ରୀ ପୁରୁଷଙ୍କ ସମ୍ଭୋଗରେ ଅନଙ୍ଗ ପ୍ରଥମେ ମନ ମଧ୍ୟରେ କାମଭାବ ଜାତ କରାନ୍ତି । ତା'ପରେ ଚନ୍ଦ୍ରଚାଳନ ଅର୍ଥାତ ଚୁମ୍ବନ ଆଲିଙ୍ଗନ ଆଦି କାମଭାବ ମନ ମଧ୍ୟରେ ବିଶେଷ କୌତୁହଳ ଓ ଆଗ୍ରହ ଜାତ କରାଇଥାଏ । ତେଣୁ ସମ୍ଭୋଗର ଦେବତା ରୂପେ ଅନଙ୍ଗ ଓ ନିଶାକରଙ୍କୁ ପ୍ରାଧାନ୍ୟ ଦିଆଯାଇଛି ।

**ଅନାଦି ମଧ୍ୟମ ନିଧନ** –

ଯାହାର ଆଦି, ମଧ୍ୟ, ଅନ୍ତ ନାହିଁ । ଉତ୍ପତ୍ତି ସ୍ଥିତି, ଲୟ ବିହୀନ ।

**ଅନୁଗତି** –

ପଛେ ପଛେ ଯିବା, ଅନୁସରଣ କରିବା ।

**ଅନୁଦିନ** –

ପ୍ରତିଦିନ

**ଅନୁଭାବ** –

ପ୍ରଭାବ, ମହିମା

**ଅନୁଯାନ** –

ଅନୁଜ୍ଞା, ଆଜ୍ଞା, ଯିବା ପାଇଁ ଅନୁମତି ପ୍ରାର୍ଥନା ।

**ଅନ୍ୱୟ** –

ସଂଯୁକ୍ତ, ମିଳିତ

**ଅନ୍ତର** –

ଅପର, ଭିନ୍ନ, ଆତ୍ମୀୟ ମନ, ଅପସାରଣ ।

**ଅନ୍ତରୀକ୍ଷ** –

ଶୂନ୍ୟ, ଆକାଶ

Dr. Sudhanshu Sekhar Mishra

**ଅନ୍ଧକ –**

ଅନ୍ଧକ ନାମଧାରୀ ଏକ ରାକ୍ଷସ କଶ୍ୟପ ଋଷିଙ୍କ ପତ୍ନୀ ଦିତିଙ୍କ ଅନୁରୋଧରୁ ମୁନିଙ୍କ ଅଙ୍ଗୁଳିରୁ ଜାତ ହୋଇ ଅନ୍ଧ ହୋଇ ନ ଥିଲେ ମଧ୍ୟ ଅନ୍ଧପରି ଯିବା ଆସିବା କରିବାକୁ ଭଲ ପାଉଥିବାରୁ, ସେହି ପୁତ୍ରର ନାମ ଅନ୍ଧକ ହୋଇଥିଲା ।

**ଅନ୍ଧବଳା –**

କୌରବରାଜ ଧୃତରାଷ୍ଟ୍ର ଅନ୍ଧ ଥିବାରୁ ତାଙ୍କ ପୁତ୍ର ଦୁର୍ଯୋଧନଙ୍କୁ ଅନ୍ଧପୁତ୍ର ବା ଅନ୍ଧବଳା ବୋଲି କୁହାଯାଏ ।

**ଅପ୍ରମାଦ –**

ନିର୍ଭୁଲ, ଅନାୟାସ, ସହଜ ।

**ଅପ୍ରମେୟ –**

ଯାହା ଚିନ୍ତା କରିହୁଏ ନାହିଁ, ଜାଣି ହୁଏନାହିଁ, ସଂଖ୍ୟା କରିହୁଏ ନାହିଁ, ମାପି ହୁଏ ନାହିଁ, ଜ୍ଞାନର ବାହାରେ । ପରମାତ୍ମାଙ୍କୁ ମଧ୍ୟ ଅପ୍ରମେୟ କୁହାଯାଏ ।

**ଅବଧାନ –**

ଏକ ମନରେ ଶୁଣିବା, ମନଯୋଗ ପୂର୍ବକ ଶୁଣିବା ।

**ଅବନୀ ମଣ୍ଡଳ –**

ସମଗ୍ର ପୃଥିବୀ ।

**ଅବିଦ୍ୟା –**

ଅଜ୍ଞାନ, ଈଶ୍ୱର ସମ୍ବନ୍ଧୀୟ ଜ୍ଞାନର ଅଭାବ ।

**ଅବୋଧକର୍ମ –**

ବୁଝି ନ ପାରି କରୁଥିବା କାର୍ଯ୍ୟ ନିର୍ବୋଧକର୍ମ, ପାପକର୍ମ ।

**ଅବ୍ୟାହତ ଗତି –**

ଯେଉଁ ଗତିକୁ ରୋଧ କରିହୁଏ ନାହିଁ ।

**ଅଭୟବ୍ରହ୍ମ –**

ପରମେଶ୍ୱର, ତାଙ୍କଠାରେ ଲୀନ ହେଲେ ଆଉ ସଂସାରରେ ଜନ୍ମହୋଇ ପୁଣି ମୃତ୍ୟୁବରଣ କରିବାର ଭୟ ନ ଥିବାରୁ ତାଙ୍କୁ ଅଭୟବ୍ରହ୍ମ ବୋଲି କୁହାଯାଏ ।

**ଅଭିଚାର –**

ଶତ୍ରୁମାରଣ ନିମିତ୍ତ, ମାରଣ, ମୋହନ, ବଶ୍ୟ, ଉଚ୍ଚାଟନଆଦିର ପ୍ରୟୋଗ । ଅନ୍ୟର ଅନିଷ୍ଟ ପାଇଁ କରାଯିବା ତାନ୍ତ୍ରିକ ପ୍ରକ୍ରିୟା ।

**ଅଭ୍ୟନ୍ତର –**

ଭିତର, ଅନ୍ତର

**ଅମର –**

ଦେବତା

**ଅମଳ –**

ନିର୍ମଳ, ଶୁଦ୍ଧ

**ଅମୋଘଦୃଷ୍ଟି –**

ଦୂରଦୃଷ୍ଟି, ଅବ୍ୟର୍ଥ ଦୃଷ୍ଟି

**ଅମ୍ବିକାସୁତ –**

ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ଅମ୍ବିକା ନାମ୍ନୀ ରାଣୀଙ୍କ ଗର୍ଭରୁ ଜାତ, ଧୃତରାଷ୍ଟ୍ର ।

**ଅରୁଣ ଲୋଚନ –**

ରକ୍ତବର୍ଣ୍ଣ ଚକ୍ଷୁ, ଲାଲ ଆଖି ।

**ଅରୂପବ୍ରହ୍ମ –**

ଯେଉଁ ପରମେଶ୍ୱରଙ୍କର କୌଣସି ରୂପ ନାହିଁ ।

**ଅର୍କ –**

ସୂର୍ଯ୍ୟ ।

**ଅର୍ଘ୍ୟ –**

ଗନ୍ଧ, ପୁଷ୍ପ ଓ ସୁବାସିତ ଦ୍ରବ୍ୟ ମିଶାଇ ଅଭିମନ୍ତ୍ରଣ କଲେ ଅର୍ଘ୍ୟ ହୁଏ, ସୁବାସିତ ଜଳ ।

**ଅର୍ଜୁନ –**

କୁନ୍ତୀଙ୍କ ତୃତୀୟ ପୁତ୍ର, ତୃତୀୟ ପାଣ୍ଡବ, ତ୍ରେତୟା ଯୁଗର ହୈହୟବଂଶୀୟ ରାଜା କାର୍ତ୍ତବୀର୍ଯ୍ୟାର୍ଜୁନ ।

**ଅର୍ଜୁନ ଶିବଙ୍କ ଯୁଦ୍ଧ –**

ବନବାସ ସମୟରେ ଅର୍ଜୁନ ଗୋଟିଏ ଗଣ୍ଡା ଉପରକୁ ଶର ନିକ୍ଷେପ କଲେ । ଏହାଦେଖି ଈଶ୍ୱର ପାର୍ବତୀ କୋପକରି ଅର୍ଜୁନଙ୍କୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ଯୁଦ୍ଧ କରିବା ଲାଗି ଆହ୍ୱାନ କଲେ । ଅର୍ଜୁନଙ୍କ ଶରାଘାତରେ ଶିବ ପରାସ୍ତ ହୋଇଥିଲେ । ଶିବ ଅର୍ଜୁନଙ୍କ ବୀରତ୍ୱରେ ସନ୍ତୁଷ୍ଟ ହୋଇ ତାଙ୍କୁ ପାଶୁପାତ ଅସ୍ତ୍ର ପ୍ରଦାନ କରିଥିଲେ ଏବଂ ପାର୍ବତୀ ମଧ୍ୟ ଅକ୍ଷୟ ତୂଣୀର ପ୍ରଦାନ କରିଥିଲେ ।

(ଶାରଳା ଦାସ)

**ଅର୍ଜୁନ ସଖା –**

ଶ୍ରୀକୃଷ୍ଣ

**ଅର୍ଜୁନଙ୍କଦ୍ୱାରା ଅସୁର ବିନାଶ –**

ଇନ୍ଦ୍ରାଦି ଦେବଗଣଙ୍କ ଅନୁରୋଧରେ ଅର୍ଜୁନ ସ୍ୱର୍ଗପୁରକୁ ଗମନ କରି ସେଠାରେ ନିବାତକବଚ ଆଦି ବଳଶାଳୀ ଅସୁରମାନଙ୍କୁ ବଧ କରିଥିଲେ ।

**ଅର୍ଥ –**

ପ୍ରୟୋଜନ, ଧନ ।

**ଅର୍ଯ୍ୟମଣ –**

ସୂର୍ଯ୍ୟ, ପିତୃଦେବତା ବିଶେଷ ।

**ଅଳକା –**

କୁଞ୍ଚୁକୁଞ୍ଚିଆ କେଶ, ଚୂର୍ଣ୍ଣ କୁନ୍ତଳ, ଅଳଙ୍କାର ବିଶେଷ, କୁବେର ପୁରୀ ।

**ଅଶେଷଜନ ପିତାଗୁରୁ –**

Dr. Sudhanshu Sekhar Mishra

ଅଶ୍ୱରୂପଧାରୀ ସୂର୍ଯ୍ୟଙ୍କ ଔରସରୁ ଘୋଟକୀ ରୂପଧାରୀ ସଂଜ୍ଞାଙ୍କ ଗର୍ଭରୁ ଜାତ ପୁତ୍ରଦ୍ୱୟ, ସ୍ୱର୍ଗବୈଦ୍ୟ ।

**ଅଶ୍ୱିନୀ କୁମାର –**

ଅଶ୍ୱ ରୂପଧାରୀ ସୂର୍ଯ୍ୟଙ୍କ ଔରସରୁ ଘୋଟକୀ ରୂପଧାରୀ ସଂଜ୍ଞାଙ୍କ ଗର୍ଭରୁ ଜାତ ପୁତ୍ରଦ୍ୱୟ, ସ୍ୱର୍ଗବୈଦ୍ୟ ।

**ଅଶ୍ୱୀସୁତ –**

ସୂର୍ଯ୍ୟଙ୍କ ପ୍ରଚଣ୍ଡ ତେଜ ସହ୍ୟ କରି ନ ପାରି ବିଶ୍ୱକର୍ମାଙ୍କ କନ୍ୟା ତଥା ସୂର୍ଯ୍ୟଙ୍କ ପତ୍ନୀ ସଂଜ୍ଞା ଅଶ୍ୱରୂପ ଧାରଣ କରି ବନମଧ୍ୟରେ ତପସ୍ୟା କରିବାକୁ ଲାଗିଲେ । ସୂର୍ଯ୍ୟ ତାହା ଜାଣିପାରି ଅଶ୍ୱରୂପ ଧାରଣ କରି ବନମଧ୍ୟରେ ସଂଜ୍ଞାଙ୍କ ସହିତ ମିଳିତ ହେବାରୁ ଅଶ୍ୱୀରୂପ ଧାରିଣୀ ସଂଜ୍ଞାଙ୍କ ଗର୍ଭରୁ ଦୁଇପୁତ୍ର ଜନ୍ମ ହୋଇଥିଲେ । ସେ ପୁତ୍ର ଦୁହିଁଙ୍କ ନାମ ଅଶ୍ୱିନୀକୁମାର । ସୂର୍ଯ୍ୟ ସେହି ପୁତ୍ରଦ୍ୱୟଙ୍କୁ ସ୍ୱର୍ଗବୈଦ୍ୟରୂପେ ନିଯୁକ୍ତ କରିଥିଲେ । ତେଣୁ ଅଶ୍ୱିନୀକୁମାରଙ୍କୁ ଅଶ୍ୱୀସୁତ କୁହାଯାଏ ।

**ଅଶ୍ମ –**

ପାଷାଣ, ପଥର ।

**ଅଷ୍ଟଦିଶ –**

ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ, ଐଶାନ୍ୟ, ଅଗ୍ନି, ନୈର୍ଋତ, ବାୟୁ ।

**ଅଷ୍ଟବିଭୂତି –**

ଅଣିମା, ଲଘିମା, ବ୍ୟାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶୀତ୍ୱ, କାମବସାୟିତା ।

**ଅଷ୍ଟାଦଶ ପୁରାଣ –**

ସଂସ୍କୃତରେ ଲିଖିତ ଅଠର ଗୋଟି ପୁରାଣ – ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଶ୍ରୀମଦ୍‌ଭାଗବତ, ନାରଦୀୟ, ମାର୍କଣ୍ଡେୟ, ଅଗ୍ନି, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼ ଓ ବ୍ରହ୍ମାଣ୍ଡ ପୁରାଣ ।

## ଆ

**ଆକାଶଗୁଣ –**

ଶବ୍ଦ, ଶବ୍ଦଗୁଣକଂ ଆକାଶମ୍ ଅର୍ଥାତ୍ ଆକାଶର ଗୁଣ ହେଉଛି – ଶବ୍ଦ ।

**ଆଖ୍ୟାନ –**

କଥା, କିମ୍ବଦନ୍ତୀ ମୂଳକ ଓ ଐତିହାସିକ କାହାଣୀ ବିଶେଷ ।

**ଆଗମ –**

ତନ୍ତ୍ରାଦିଶାସ୍ତ୍ର

**ଆତତାୟୀ –**

ଲୁଚିଛପି ବିନା ବିଚାରରେ ଯେ ନିର୍ମମ ଭାବରେ ହତ୍ୟାକାଣ୍ଡ ଘଟାଏ, ହିଂସ୍ର, ଆକ୍ରମଣକାରୀ, ଜଘନ୍ୟପାପୀ ।

**ଆତ୍ମମାର୍ଗ –**

ଜ୍ଞାନମାର୍ଗ, ବ୍ରହ୍ମତତ୍ତ୍ୱ ।

**ଆତ୍ମମାୟା –**

ଈଶ୍ୱରଙ୍କଦ୍ୱାରା ପ୍ରବର୍ତ୍ତିତ ମାୟା, ଯୋଗମାୟା ।

**ଆତ୍ମାରାମ –**

ଈଶ୍ୱରଙ୍କ ଚିନ୍ତାରେ ଲୀନ ବ୍ରହ୍ମ ଚିନ୍ତାରେ ମଗ୍ନ ।

**ଆଦିଦେବଗଣ –**

ବ୍ରହ୍ମା, ପ୍ରଜାପତି ଓ ମନୁଗଣ ।

**ଆନଗତି –**

ଅନ୍ୟ ଉପାୟ

**ଆଭାସ –**

ସୂଚି, ଅସ୍ପଷ୍ଟପ୍ରକାଶ, ସୂଚନା ।

**ଆମତନ୍ତ୍ର –**

ସ୍ୱାଧୀନ, ନିଜ ଇଚ୍ଛାନୁସାରେ ପରିଚାଳିତ ।

**ଆରବାରେ –**

ଆଉଥରେ

**ଆସ୍ନବ –**

ସ୍ନାନ

## ଇ, ଈ

**ଇତି ସଙ୍କଳ୍ପି –**

ଏହା ସଙ୍କଳ୍ପ କରି, ଏହା ନିଶ୍ଚିତ କରି ।

**ଇତିହାସ –**

ପ୍ରାଚୀନ କଥା, ପ୍ରାଚୀନ ଉପାଖ୍ୟାନ, ପ୍ରାଚୀନ ରାଜବଂଶ ଚରିତ ।

**ଇନ୍ଦ୍ରଙ୍କ ପୁତ୍ର ଅର୍ଜୁନ –**

ରାଜା ପଣ୍ଡୁ ସ୍ତ୍ରୀ ସମ୍ଭୋଗ ବିଷୟରେ ଅଭିଶପ୍ତ ହୋଇଥିବାରୁ ତାଙ୍କ ଜ୍ୟେଷ୍ଠାପତ୍ନୀ କୁନ୍ତୀ ଦୁର୍ବାସା ମହର୍ଷିଙ୍କଠାରୁ ପାଇଥିବା ମାଳା ପ୍ରଭାବରୁ ଧର୍ମଙ୍କଠାରୁ ଯୁଧିଷ୍ଠିର, ପବନଙ୍କଠାରୁ ଭୀମସେନ ଓ ଇନ୍ଦ୍ରଙ୍କଠାରୁ ଅର୍ଜୁନଙ୍କୁ ପୁତ୍ରରୂପେ ଲାଭ କରିଥିଲେ । ତେଣୁ ଅର୍ଜୁନଙ୍କୁ ଇନ୍ଦ୍ରଙ୍କ ପୁତ୍ର ବୋଲି କୁହାଯାଏ ।

**ଇନ୍ଦ୍ର ବିବାଦ –**

ଗୋପପୁରର ଗୋପାଳମାନେ ପରମ୍ପରାକ୍ରମେ ବୃଷ୍ଟିର ଦେବତା ଇନ୍ଦ୍ରଙ୍କୁ ପୂଜା କରି ଆସୁଥିଲେ । କିନ୍ତୁ ଶ୍ରୀକୃଷ୍ଣ ଗୋପାଳମାନଙ୍କୁ ଇନ୍ଦ୍ରଙ୍କ ପରିବର୍ତ୍ତେ ଗୋବର୍ଦ୍ଧନ ଗିରିକୁ ପୂଜା କରିବା ଲାଗି ପରାମର୍ଶ ଦେଲେ । ଗୋପାଳମାନେ କୃଷ୍ଣଙ୍କ ଉପଦେଶ ଅନୁସାରେ ଗୋବର୍ଦ୍ଧନ ଗିରିକୁ ପୂଜା କରିବାରୁ ଇନ୍ଦ୍ର କ୍ରୋଧରେ ଗୋପପୁରକୁ ଧ୍ୱଂସ କରିଦେବା ଲାଗି ସାତଦିନ ଧରି ଘଡ଼ଘଡ଼ି ଓ ପବନ ସହିତ ମୂଷଳ ଧାରରେ ବର୍ଷା କରିଥିଲେ ।

Dr. Sudhanshu Sekhar Mishra

**ଇନ୍ଧନ -**

କାଠ, ଜାଳେଣି କାଠ ଯଜ୍ଞରେ ବ୍ୟବହୃତ ସମିଧ ।

**ଇଷ୍ଟ -**

ଅଭିଳଷିତ, ମଙ୍ଗଳକର, ପୂଜ୍ୟ, କୁଳରେ ପୂଜିତ ଦେବତା, କୁଳ ଗୁରୁ ।

**ଇକ୍ଷ୍ୱାକୁ -**

ବୈବସ୍ୱତ ମନୁଙ୍କ ପୁତ୍ର ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜାମାନଙ୍କର ଆଦିପୁରୁଷ । ଏହାଙ୍କ ନାମ ଅନୁସାରେ ରାମଚନ୍ଦ୍ରଙ୍କ ବଂଶକୁ ଇକ୍ଷ୍ୱାକୁ ବଂଶ ବୋଲି କୁହାଯାଏ । ସେ ଇକ୍ଷୁ ଦଣ୍ଡ ଭେଦକରି ଜନ୍ମଗ୍ରହଣ କରିଥିବାରୁ ତାଙ୍କ ନାମ ଇକ୍ଷ୍ୱାକୁ ହୋଇଥିଲା ।

**ଉ, ଊ**

**ଉକତ -**

ଉକ୍ତ ଶବ୍ଦର କାବ୍ୟିକ ରୂପ, ଯାହା ପୂର୍ବରୁ କୁହାଯାଇଛି, ବ୍ୟକ୍ତ ।

**ଉତ୍ପଥ -**

କୁମାର୍ଗ, ଅସତ୍‌ମାର୍ଗ ।

**ଉତ୍ସର୍ଗ -**

ସତ୍ ଉଦ୍ଦେଶ୍ୟରେ ଅର୍ପଣ, ଦେବତାଙ୍କ ଉଦ୍ଦେଶ୍ୟରେ ସମର୍ପଣ, ସତ୍‌ପାତ୍ରରେ ଦାନ ।

**ଉତି -**

ଯେଉଁ କର୍ମଦ୍ୱାରା ଜୀବ ସଂସାର ବନ୍ଧନରୁ ମୁକ୍ତହୁଏ, ତାହାକୁ 'ଉତି' କୁହାଯାଏ ।

**ଉତ୍ତମକଲ୍ପେ -**

ଭଲ ଭାବରେ

**ଉତ୍ତରା -**

ବିରାଟ ରାଜକନ୍ୟା, ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କର ପତ୍ନୀ ତଥା ପରମ ଭାଗବତ ରାଜା ପରୀକ୍ଷିତଙ୍କ ମାତା ।

**ଉଦକ -**

ଜଳ

**ଉପଗତ -**

ଉପସ୍ଥିତ, ପ୍ରାପ୍ତ, ଜ୍ଞାତ ।

**ଉପଲକ୍ଷ୍ୟ -**

ଦ୍ରଷ୍ଟବ୍ୟ, ପ୍ରୟୋଜନୀୟ, ଉଦାହରଣ ଯୋଗ୍ୟ ।

**ଉପସ୍ଥ -**

ଲିଙ୍ଗ, ଯୋନି, ସ୍ତ୍ରୀ ପୁରୁଷଙ୍କ ଜନନେନ୍ଦ୍ରିୟ ।

**ଉପୁଜେ -**

ଜାତହୁଏ

**ଉପେକ୍ଷି -**

ତ୍ୟାଗକରି, ଅବଜ୍ଞା କରି, ଅସ୍ୱୀକାର କରି ।

**ଉଭୟ ଲୋକ -**

ଇହଲୋକ ଓ ପରଲୋକ, ସ୍ୱର୍ଗଲୋକ ଓ ମର୍ତ୍ତ୍ୟଲୋକ, ବର୍ତ୍ତମାନ ଓ ଭବିଷ୍ୟତ ।

**ଉର୍ବଶୀ -**

ବିଷ୍ଣୁ ଅଂଶରେ ଜାତ ନର ଓ ନାରାୟଣ ନାମକ ଋଷିଙ୍କର ଉଗ୍ର ତପସ୍ୟାକୁ ଭଙ୍ଗ କରିବାପାଇଁ ଦେବରାଜ ଇନ୍ଦ୍ର କାମଦେବ, ଗନ୍ଧର୍ବ ଓ ଅପ୍‌ସରାମାନଙ୍କୁ ପଠାଇଥିଲେ । ଏମାନେ ବହୁ ଚେଷ୍ଟାକରି ମଧ ନରନାରାୟଣଙ୍କ ତପସ୍ୟା ଭଙ୍ଗ କରିପାରିଲେ ନାହିଁ । କିନ୍ତୁ ନାରାୟଣ ତାଙ୍କ ଉରୁ ଦେଶରୁ ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟା ଜାତ କରି ଇନ୍ଦ୍ରଙ୍କ ନିକଟକୁ ପଠାଇବା ସଙ୍ଗେ ସଙ୍ଗେ ନିଜର ତପଃପ୍ରଭାବ ପ୍ରଦର୍ଶନ କରିଥିଲେ । ସେହି ସୁନ୍ଦରୀ ଦେବକନ୍ୟାର ନାମ ଉର୍ବଶୀ ହୋଇଥିଲା । ଉର୍ବଶୀ ଇନ୍ଦ୍ରଙ୍କ ଅଭିଶାପରେ ଚନ୍ଦ୍ରବଂଶୀୟ ରାଜା ପୁରୁରବାଙ୍କର ପତ୍ନୀରୂପେ କିଛିକାଳ ମର୍ତ୍ତ୍ୟରେ ଅତିବାହିତ କରିଥିଲେ । ଉର୍ବଶୀଙ୍କ ଗର୍ଭରୁ ପୁରୁରବାଙ୍କ ଔରସରେ ଆୟୁ, ଅମାବସୁ, ବିଶ୍ୱାୟୁ, ଶ୍ରୁତାୟୁ, ଦୃଢ଼ାୟୁ, ବନାୟୁ ଓ ଶତାୟୁ ନାମକ ସାତପୁତ୍ର ଜାତ ହୋଇଥିଲେ । ଉର୍ବଶୀ ଏକଦା ଇନ୍ଦ୍ରପୁତ୍ର ଅର୍ଜୁନଙ୍କୁ କାମନା କରି ବିଫଳ ହେବାରୁ ସେ ତାଙ୍କୁ (ଅର୍ଜୁନଙ୍କୁ) ନଂପୁସକ ହେବା ଲାଗି ଅଭିଶାପ ଦେଇଥିଲେ । ଦେବସଭାର ଶ୍ରେଷ୍ଠ ସୁନ୍ଦରୀ ତଥା ନର୍ତ୍ତକୀ ଇନ୍ଦ୍ରଙ୍କ ମନୋହାରିଣୀ ହୋଇଥିଲେ ମଧ ମିତ୍ରାବରୁଣ ଓ ଏୖଳ ତାଙ୍କ ରୂପରେ ମୁଗ୍ଧ ହୋଇଥିଲେ ।

**ଉରଗ -**

ସର୍ପ

**ଊର୍ଣ୍ଣନାଭ -**

ବୁଢ଼ିଆଣୀ, ମାଙ୍କଡ଼ସା ।

**ଊର୍ଦ୍ଧ୍ୱପଥ -**

ମୁକତିର ମାର୍ଗ

**ଋ**

**ଋକ୍ଷ -**

ନକ୍ଷତ୍ର

**ଏ**

**ଏକାନ୍ତମତି -**

ଅନ୍ୟ କାର୍ଯ୍ୟରେ ମନ ନ ବଳାଇ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ଚିନ୍ତା ।

**ଏକାନ୍ତେ -**

ଗୋପନରେ, ଏକାକୀ ।

**ଏକେଏକେ -**

ଜଣଜଣ କରି

**ଏରକାବନ -**

Dr. Sudhanshu Sekhar Mishra

ଯଦୁକୁମାରମାନେ ବ୍ରହ୍ମଶାପଗ୍ରସ୍ତ ହୋଇ ରାଜା ଉଗ୍ରସେନଙ୍କ ଆଗରେ ସବୁ ବିଷୟ ଜଣାଇଲେ । ଉଗ୍ରସେନ ସମୁଦ୍ରକୂଳର ପର୍ବତ ଉପରେ ସେହି ଲୌହ ମୂଷଳକୁ ଭୀମଙ୍କଦ୍ୱାରା ଘର୍ଷଣ କରାଇଲେ । ସେହି ଘର୍ଷଣ ଫଳରେ ଯେଉଁ ଫେନ ଜାତ ହୋଇଥିଲା ସେଥିରୁ ଏରକା ନାମକ ଏକପ୍ରକାର ଜଣ୍ଡାଗଛ ସୃଷ୍ଟି ହେଲା । ତାହା ଶର ପରି ତୀକ୍ଷ୍ଣ ଓ ଲୁହାଦଣ୍ଡ ପରି କଠିନ । ସେହି ଏରକାବନ ଦ୍ୱାରାକା ଠାରୁ ଅନେକ ଦୂର । ପ୍ରଭାସ କ୍ଷେତ୍ର (ସୋମନାଥ ମନ୍ଦିର ନିକଟ, ଗୁଜୁରାଟ) ନିକଟରେ ସୃଷ୍ଟି ହୋଇଥିଲା ।

**ଓ, ଔ**

**ଓଜ –**

ବଳ, ଇନ୍ଦ୍ରିୟ ଶକ୍ତି ।

**ଔଷଧି –**

ବିରି, ଯବ, ମୁଗ, ସୋରିଷ ଆଦି ଯଜ୍ଞ ସମ୍ବନ୍ଧୀୟ ଶସ୍ୟ ।

**କ**

**କଇବଲ୍ୟ ନାଥ –**

ମୋକ୍ଷଦାତା, ବିଷ୍ଣୁ, ସ୍ୱପ୍ରକାଶ-ମୟ ।

**କ କାରାଦି ଏକବିଂଶ ବର୍ଣ୍ଣ –**

କ ଠାରୁ ଏକବିଂଶ ଅକ୍ଷର 'ପ' ।

**କ କାରାଦି ଷୋଡ଼ଶ ବର୍ଣ୍ଣ –**

କ ଠାରୁ ଷୋଡ଼ଶ ଅକ୍ଷର 'ତ' ।

**କଣ୍ଠ କୁଣ୍ଠିତ –**

ଗଦ୍‌ଗଦ୍

**କପଟ ପାଶା –**

ଶକୁନିଙ୍କ କୁମନ୍ତ୍ରଣାରେ ଦୁର୍ଯ୍ୟୋଧନ ଧର୍ମସୁତ ଯୁଧିଷ୍ଠିରଙ୍କୁ କପଟରେ ପଶା ଖେଳିବା ପାଇଁ ନିମନ୍ତ୍ରଣ କରିଥିଲେ । ଏହି କପଟପଶା ଖେଳରେ ଯୁଧିଷ୍ଠିର ନିଜ ରାଜ ସିଂହାସନ, ଭାଇ ଏବଂ ପତ୍ନୀ ଦ୍ରୌପଦୀଙ୍କୁ ହରାଇ ବସିଲେ । ତା'ରି ଫଳରେ ଦୁର୍ଯ୍ୟୋଧନ, ଦୁଃଶାସନଙ୍କ ଦ୍ୱାରା ଦ୍ରୌପଦୀଙ୍କୁ ଅନ୍ତଃପୁରରୁ ଅଣାଇ ସଭା ମଧ୍ୟରେ ଉଲଗ୍ନ କରାଇବାର ହୀନ ଚେଷ୍ଟା କରିଥିଲେ । କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କର ଆଶୀର୍ବାଦରୁ ଦ୍ରୌପଦୀଙ୍କ ମାନସମ୍ମାନ ସଭାମଧ୍ୟରେ ସଂରକ୍ଷିତ ହୋଇଥିଲା ।

**କପି –**

ମର୍କଟ, ବାନର, ଦ୍ୱିବିନ୍ଦ ନାମକ ଏକ ଦୁଷ୍ଟ ବାନର । ତାହାକୁ ବଳରାମ ବଧ କରିଥିଲେ ।

**କପିଧ୍ୱଜ ରଥ –**

ଶ୍ରୀକୃଷ୍ଣଙ୍କ ରଥର ନାମ । ଏହି ରଥର ପତାକା ଉପରେ ମହାକପି ହନୁମାନ ବସି ରଥଟିର ସୁରକ୍ଷା କରୁଥିବାରୁ ଏହାର ନାମ କପିଧ୍ୱଜ ।

**କପିଳ –**

କର୍ଦ୍ଦମ ମହର୍ଷିଙ୍କ ଔରସରୁ, ତଥା ଦେବହୂତିଙ୍କ ଗର୍ଭରୁ ଜାତ ବିଷ୍ଣୁଅଂଶ ସମ୍ପନ୍ନ ମୁନି ବିଶେଷ । ଏହାଙ୍କୁ ଭଗବାନଙ୍କର ପଞ୍ଚମ ଅବତାର ରୂପେ ଗଣାଯାଇଛି । କପିଳ ସାଂଖ୍ୟଦର୍ଶନର ପ୍ରଣେତା ଅଟନ୍ତି । ରାମାୟଣରେ ବର୍ଣ୍ଣିତ ସଗରର ପୁତ୍ରଙ୍କ ଧ୍ୱଂସକାରୀ କପିଳ ଭାଗବତରେ ବର୍ଣ୍ଣିତ ଦେବହୂତିଙ୍କ ପୁତ୍ର କପିଳଙ୍କଠାରୁ ଭିନ୍ନବ୍ୟକ୍ତି ନୁହନ୍ତି । (ଚରିତ ଚିନ୍ତାମଣି – ଗ-୩୧)

**କପୋଳ –**

ଗଣ୍ଡଦେଶ, ଗାଲ ।

**କବ୍ୟ –**

ହୋମ ଯଜ୍ଞରେ ଦିଆଯାଉଥିବା ଚରୁ ଓ ଅର୍ଣ୍ଣାଦିପିଣ୍ଡ ।

**କର୍ମ –**

ଜୀବର ଶୁଭାଶୁଭ, କାର୍ଯ୍ୟ, ଅଦୃଷ୍ଟ ।

**କର୍ଦ୍ଦମ –**

ଅନ୍ୟତମ ପ୍ରଜାପତି । ସେ ଦେବହୂତିଙ୍କୁ ବିବାହ କରିଥିଲେ । ତାଙ୍କ ଔରସରୁ ବିଷ୍ଣୁଙ୍କ ପଞ୍ଚମ ଅବତାର ତଥା ସାଂଖ୍ୟଦର୍ଶନର ପ୍ରଣେତା କପିଳ ମହର୍ଷି ଜନ୍ମ ହୋଇଥିଲେ । ତାଙ୍କର ସମ୍ରାଟ, କୁକ୍ଷି, ବିରାଟ ଓ ପ୍ରଭୁ ନାମରେ ଆହୁରି ଚାରିପୁତ୍ର ଏବଂ କାମ୍ୟା ଓ କଳା ପ୍ରଭୃତି ଦଶଗୋଟି କନ୍ୟା ଥିଲେ ।

**କର୍ମଶୁଦ୍ଧ –**

ବେଦନିୟମ ଅନୁସାରେ ପବିତ୍ର ତଥା ନିଷ୍ଠାର ସହିତ କାର୍ଯ୍ୟ ।

**କର୍ମେନ୍ଦ୍ରିୟ –**

ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ । ଏମାନଙ୍କର ଦେବତା ରୂପେ ଯଥାକ୍ରମେ ବହ୍ନି, ଇନ୍ଦ୍ର, ବିଷ୍ଣୁ, ମିତ୍ର ଓ ପ୍ରଜାପତିଙ୍କୁ କଳ୍ପନା କରାଯାଇଛି ।

**କଳତ୍ର –**

ଭାର୍ଯ୍ୟା, ସ୍ତ୍ରୀ ।

**କଳୁଷ –**

ପାପ

**କଳେବର –**

ଦେହ

**କଳ୍ପ –**

ବୌଦ୍ଧାୟନ ଆଦି କଳ୍ପସୂତ୍ର । ବିଷ୍ଣୁ ଥରେ ମାତ୍ର ଅନନ୍ତ ଶଯ୍ୟାରେ ଶୟନ କରି ଉଠିଲେ ଗୋଟିଏ କଳ୍ପ ହୁଏ । ଏହା ଚାରିଶହ ବତିଶ କୋଟି ଦେବ

Dr. Sudhanshu Sekhar Mishra

ବର୍ଷ ବୋଲି କଳ୍ପନା କରା-ଯାଇଛି ।

**କଳ୍ପପ୍ରଳୟ –**

ଏହାର ଅପର ନାମ ନୈମିତ୍ତିକ ପ୍ରଳୟ । ବହୁବର୍ଷ ଧରି ଅନାବୃଷ୍ଟି ହେବା ଫଳରେ ସମଗ୍ର ଭୂମଣ୍ଡଳ ଓ ସପ୍ତପାତାଳ ନଷ୍ଟ ହୋଇଯାଏ । ଭଗବାନ ବିଷ୍ଣୁ ଚରାଚର ବିଶ୍ୱ ବ୍ରହ୍ମାଣ୍ଡକୁ ନିଜ ଅନ୍ତରରେ ଲୀନ କରାଇ ଯୋଗନିଦ୍ରାରେ ଶୟନ କରନ୍ତି । ଏହାର ନାମ କଳ୍ପପ୍ରଳୟ ।

**କଲ୍ମଷ –**

କଲୁଷ, ପାପ

**କାଛେଣୀ –**

ପୋଷାକ, ଲେଙ୍ଗୁଟୀ, କଉ-ପୁନୀ, ଛୋଟ ଲୁଗା ।

**କାମଗଞ୍ଜନ –**

କନ୍ଦର୍ପ ରୂପକୁ ଗଞ୍ଜନ କରୁଥିବା, ଅତି ସୁନ୍ଦର ।

**କାମବର –**

କାମ୍ୟ ବସ୍ତୁର ପ୍ରାପ୍ତିସ୍ଥାନ ।

**କାମ୍ୟକର୍ମ –**

ଶାସ୍ତ୍ର ଅନୁସାରେ କର୍ତ୍ତବ୍ୟକର୍ମ ।

**କାଳବଳେ –**

କାଳର ପ୍ରଭାବରେ, କଳିକାଳର ପ୍ରଭାବରେ ।

**କାଳଭ୍ରମ –**

ମରଣ ସନ୍ନିକଟ ମାୟାଜନିତ ଭ୍ରମ ।

**କିଂପୁରୁଷ –**

ଦେବ ଓ ଗନ୍ଧର୍ବଙ୍କ ସଂଯୋଗରୁ ଜାତ ପୁରୁଷ ।

**କିଙ୍କର –**

ଦାସ, ଚାକର, ସେବକ ।

**କିଞ୍ଜଳ୍କ –**

କେଶର, ନାଗକେଶର ଫୁଲ, ପଦ୍ମ ମଧ୍ୟରେ ଥିବା କେଶାକାର ଗୁଚ୍ଛ ପୀତପରାଗ ।

**କିନ୍ନର –**

ଦେବତା ବିଶେଷ, ସୁନ୍ଦର ରୂପଯୁକ୍ତ ଦେବପୁରୁଷ ।

**କିରୀଟ –**

ମୁକୁଟ

**କିଲ୍‌ବିଷ –**

ପାପ

**କୀର୍ତ୍ତିଧର –**

କୀର୍ତ୍ତିମାନ୍, ଯେ ଭଲକାମ କରି ଉଦାହରଣ ରଖିଯାଏ ।

**କୁକ୍ଷି –**

ଉଦର, ପେଟ ।

**କୁବେର –**

ବିଶ୍ରବା ଋଷିଙ୍କ ପୁତ୍ର, ରାକ୍ଷସରାଜ ରାବଣର ଭାଇ, ଦେବତାମାନଙ୍କ ଧନ ଭଣ୍ଡାରର ରକ୍ଷାକାରୀ, ଉତ୍ତର ଦିଗର ଦିକ୍‌ପାଳ । ଗୁହ୍ୟକମାନଙ୍କ ଅଧିପତି ।

**କୁବେର ନନ୍ଦନ –**

ନଳକୁବେର, ଶଙ୍ଖଚୂଡ଼ । ଦ୍ୱାପର ଯୁଗରେ ନଳକୁବେର ଶଙ୍ଖଚୂଡ଼ ରୂପ ଧାରଣ କରି ଗୋପୀ-ମାନଙ୍କୁ ଭୟଭୀତ କରାଇଥିଲା । ଶ୍ରୀକୃଷ୍ଣ ଏହାକୁ ବଧ କରିଥିଲେ ।

**କୁନ୍ତଳ –**

କେଶପାଶ

**କୁମାର –**

ସନକ, ସନନ୍ଦନ, ସନାତନ ଓ ସନତ୍ କୁମାରଙ୍କୁ କୁମାର ନାମରେ ଅଭିହିତ କରାଯାଇଛି ।

**କୁମ୍ଭକ –**

ଯୋଗସାଧନରେ ନିଃଶ୍ୱାସ ରୋଧ ।

**କୁମ୍ଭୀରୀ ଦୈତ୍ୟ –**

ବନବାସ ସମୟରେ ନଦୀପାର ହେଉଥିବାବେଳେ ଜଳପ୍ରଭା ନାମ୍ନୀ ଦଇତୁଣୀ ନାବରେ ବସିଥିବା ମାତା ସମେତ ପାଣ୍ଡବମାନଙ୍କୁ ଖାଇବାକୁ ବସନ୍ତେ ସମସ୍ତେ ବିଚାର କରି ଭୀମସେନଙ୍କୁ ରାକ୍ଷସୀ ଉଦ୍ଦେଶ୍ୟରେ ପ୍ରଦାନ କଲେ । କୁମ୍ଭୀରୀ ଜଳପ୍ରଭା ଭୀମସେନଙ୍କୁ ଭୟଙ୍କର ମୁଖବିସ୍ତାର କରି ଗିଳିଦେଲା । ଭୀମସେନ ଭୟଙ୍କର ତଥା ବିରାଟରୂପ ଧାରଣ କରି କୁମ୍ଭୀରୀର ପେଟଚିରି ବାହାରିବା ସଙ୍ଗେ ସଙ୍ଗେ ଜଳପ୍ରଭା ନାମ୍ନୀ କୁମ୍ଭୀରୀକୁ ବଧ କରିଥିଲେ ।

**କୁଳପାଂଶୁ, କୁଳପାଂଶୁଳ –**

କୁଳର ପାଉଁଶ, ଯେ ନିଜର କୁକର୍ମଦ୍ୱାରା କୁଳକୁ ଅପାମାନିତ କରିଥାଏ, କୁଳାଙ୍ଗାର ।

**କୁଶପାଣି –**

ବ୍ରହ୍ମା

**କୁହକ –**

ମାୟାଜାଲ

**କୃଷ୍ଣା –**

ଦ୍ରୌପଦୀ

**କେୟୁର –**

ବାହୁରେ ପିନ୍ଧିବା ଅଳଙ୍କାର, ତାଡ, ଅଙ୍ଗଦ ଆଦି ।

**କେଶବପନ –**

କେଶ କାଟିବା, ଲଣ୍ଡା କରିବା ।

**କୈବଲ୍ୟ –**

ତ୍ରିଗୁଣ ରହିତ, ମାୟା ରହିତ, ବ୍ରହ୍ମ ଉପାସନା ଜନିତ ତାଦାତ୍ମ୍ୟଭାବ, ମୋକ୍ଷ ।

**କୋଳରୂପ –**

ବରାହ ଅବତାର

**କୌଶିକୀ –**

ହିମାଳୟର ପାଦଦେଶରେ ପ୍ରବହମାନା ନଦୀ ବିଶେଷ, କୌଶିକ ଅର୍ଥାତ ବିଶ୍ୱାମିତ୍ରଙ୍କ କନ୍ୟା

Dr. Sudhanshu Sekhar Mishra

**କ୍ରିୟାଯୋଗ -**
ସତ୍‌କର୍ମ କରିବାର ଧାରଣା ।
**କ୍ଳେଶିତ -**
ଦୁଃଖରେ ପୀଡ଼ିତ
**କ୍ଷୀର ଜଳଧି -**
କ୍ଷୀର ସମୁଦ୍ର, ଯେଉଁଠାରେ ବିଷ୍ଣୁ ଅନନ୍ତଶଯ୍ୟାରେ ଶୟନ କରନ୍ତି ।
**କ୍ଷେତ୍ରଜ୍ଞ -**
ବୁଦ୍ଧି ଆଦିର ଦ୍ରଷ୍ଟା, ମନ, ପରମାତ୍ମାଙ୍କ ଉଦ୍ଦେଶ୍ୟରେ ଏ ଶବ୍ଦ ବ୍ୟବହୃତ ହୋଇଛି । "କ୍ଷେତ୍ରଜ୍ଞେ ବୁଦ୍ଧ୍ୟାଦି ଦ୍ରଷ୍ଟରି", ଜୀବାତ୍ମା ।
**କ୍ଷେପିବା -**
ବେଗରେ ମାଡ଼ି ଆସିବା ।
**କ୍ଷେମ -**
ହୃଦୟମଣ୍ଡଳ, ମଙ୍ଗଳମୟ ହୃତ୍‌ପଦ୍ମ ।

### ଖ

**ଖଗ -**
ପକ୍ଷୀ
**ଖଗପାଳ -**
ପକ୍ଷୀରାଜ, ଗରୁଡ଼
**ଖଟ୍ୱାଙ୍ଗ ରାଜା -**
ତ୍ରେତୟା ଯୁଗରେ ଶ୍ରୀ ରାମଚନ୍ଦ୍ରଙ୍କ ବଂଶରେ ବିଶ୍ୱସହ ନାମକ ପରମ ଉଦାର ଓ ଦାନୀଙ୍କର ପୁତ୍ର ଥିଲେ ଖଟ୍ୱାଙ୍ଗ । ସେ ନିଜ ବୀରତ୍ୱ ବଳରେ ଦେବତାମାନଙ୍କର ପ୍ରିୟପାତ୍ର ହୋଇଥିଲେ । ଦେବାସୁର ସଂଗ୍ରାମ ସମୟରେ ସେ ଦେବତାମାନଙ୍କ ପକ୍ଷରୁ ଯୁଦ୍ଧକରି ଅସୁରମାନଙ୍କୁ ପରାସ୍ତ କରିଥିଲେ । ଦେବଗଣ ତାଙ୍କୁ ବର ଦେବାପାଇଁ ଇଚ୍ଛାପ୍ରକାଶ କରନ୍ତେ ସେ ନିଜର "ଆୟୁଷ କେତେଅଛି" ବୋଲି ପଚାରିଲେ । ଗୋଟିଏ ମୁହୂର୍ତ୍ତ ତୁମ୍ଭର ଆୟୁଷ ଅଛି ବୋଲି ଦେବତାମାନେ କହନ୍ତେ, ରାଜା ଖଟ୍ୱାଙ୍ଗ "ଅନବରୁଦ୍ଧ ଗତି" ବିମାନରେ ବସି ଦେବତାମାନଙ୍କ ଅନୁଗ୍ରହରୁ ମର୍ତ୍ତ୍ୟପୁରକୁ ଆସିବା ସଙ୍ଗେ ସଙ୍ଗେ ପରମେଶ୍ୱରଙ୍କ ନାମ ଉଚ୍ଚାରଣ ପୂର୍ବକ ପରଂବ୍ରହ୍ମରେ ଲୀନ ହୋଇଗଲେ । ସପ୍ତର୍ଷିମାନେ ତାଙ୍କ ସମ୍ବନ୍ଧରେ କହନ୍ତି - "ଖଟ୍ୱାଙ୍ଗ ପରି ରାଜା କେହି ନ ଥିଲେ କିମ୍ବା ହେବେ ନାହିଁ । ତାଙ୍କର ଆୟୁଷ ମୁହୂର୍ତ୍ତ ମାତ୍ର ଥିଲେ ମଧ୍ୟ ସେ ସେହି ମୁହୂର୍ତ୍ତଟିକୁ ସତ୍ୟସ୍ୱରୂପ ଭଗବାନଙ୍କ ଚିନ୍ତାରେ ବିତାଇଥିଲେ । (ବିଷ୍ଣୁପୁରାଣ)
**ଖର -**
ଗଧ, ଖଚର
**ଖେଟ-ଖର୍ବଟ-ବାଟୀ -**
ବନ-ଉପବନ-ଉଦ୍ୟାନ
**ଖେଦ -**
ଦୁଃଖ

### ଗ

**ଗଉତମୀ -**
ଗୌତମୀ, କୃପାଚାର୍ଯ୍ୟଙ୍କ ଭଉଣୀ, କୃପୀ, ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ, ଅଶ୍ୱତ୍ଥାମା ମାତା ।
**ଗଙ୍ଗାସୁତ -**
ଭୀଷ୍ମ
**ଗଜରାଜ -**
ହାତୀମାନଙ୍କର ଦଳପତି । ଯାହାକୁ ଭଗବାନ ବିଷ୍ଣୁ କୁମ୍ଭୀର କବଳରୁ ରକ୍ଷା କରିଥିଲେ ।
**ଗତି -**
ଗମନ, ବିଷ୍ଣୁ ଆରାଧନାଦି ।
**ଗନ୍ଧବହ -**
ସୁଗନ୍ଧ ବାୟୁ, ପବନ ।
**ଗମିଲେ -**
ଚାଲିଗଲେ
**ଗହନ ବନସ୍ତ -**
ଘୋର ଜଙ୍ଗଲ
**ଗାୟତ୍ରୀ -**
ବେଦମାତା, ସୁପ୍ରସିଦ୍ଧ ବୈଦିକ ମନ୍ତ୍ର । ଭୂଃ, ଭୁବଃ ଆଦିମନ୍ତ୍ର ।
**ଗୁଣଧାମ -**
ଗୁଣର ଆଶ୍ରୟ ସ୍ଥଳ, ସର୍ବଗୁଣସମ୍ପନ୍ନ (ବିଷ୍ଣୁ) ।
**ଗୁଣନିଧି -**
ସର୍ବଗୁଣର ଆଧାର । ପରମାତ୍ମା ।
**ଗୁଳ୍ମ -**
ବୁଦୁବୁଦୁକିଆ ଜଙ୍ଗଲ ।
**ଗୁହ୍ୟକ -**
ଯକ୍ଷ, କୁବେରଙ୍କ ଅନୁଚର ।
**ଗୁହ୍ୟତମ -**
ଅତିଗୂଢ଼, ଅତ୍ୟନ୍ତ ଗୋପନୀୟ ।
**ଗୋଦୋହନ -**
ଗାଈ ଦୁହିଁବା
**ଗୋଦୋହ ମାତ୍ର -**
ଗାଈଟିଏ ଦୁହିଁବା ପାଇଁ ଯେତିକି ସମୟ ଆବଶ୍ୟକ ।
**ଗୋବତ୍ସ -**
ଗାଈ ବାଛୁରୀ
**ଗ୍ରହରାଜ -**
ସୂର୍ଯ୍ୟ
**ଗ୍ରାମ -**
ସମୂହ, ଜନବସତି ।

### ଘ

**ଘନରସ -**
ବୃଷ୍ଟିଜଳ, ବର୍ଷାଜଳ ।

Dr. Sudhanshu Sekhar Mishra

**ଘନାବଳୀ –**

ମେଘ ସମୂହ

**ଚ**

**ଚଉବର୍ଗ –**

ଧର୍ମ, ଅର୍ଥ, କାମ, ମୋକ୍ଷ ।

**ଚତୁର୍ଥମାତ୍ରା –**

ରସ

**ଚତୁର ବର୍ଣ୍ଣାଶ୍ରମ –**

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଆଦି ଚାରିବର୍ଣ୍ଣର କୁଳୋଚିତ ଧର୍ମ । ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ।

**ଚତୁର୍ବିଧ –**

ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍ଭିଦଜ ଚାରି ପ୍ରକାର ।

**ଚତୁର ହୋତ୍ର –**

ଚାତୁର୍ହୋତ୍ର, ଏକ ପ୍ରକାର ଯଜ୍ଞକର୍ମ ।

**ଚତୁଃସନ –**

ସନ ଆଦ୍ୟରେ ଥାଇ ଚାରିଜଣ ଋଷି – ସନକ, ସନନ୍ଦନ, ସନାତନ, ସନତ୍ କୁମାର ।

**ଚାରିବର୍ଣ୍ଣ –**

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ।

**ଚାରିବେଦ –**

ଋକ, ଯଜୁଃ, ସାମ, ଅଥର୍ବ । ହିନ୍ଦୁମାନଙ୍କର ଆଦିଗ୍ରନ୍ଥ ।

**ଚିତ୍ତ-କରଷଣ –**

ମନ ଆନ୍ଦୋଳନ, ହୃଦୟର ଆବେଗ ।

**ଚେତନା ଚଞ୍ଚଳ –**

ମନର ଚଞ୍ଚଳତା, ବୁଦ୍ଧିର ଚାଞ୍ଚଲ୍ୟ ।

**ଜ**

**ଜତୁଗୃହଦହନ –**

ପାଣ୍ଡବମାନଙ୍କୁ ସେମାନଙ୍କ ମାତାଙ୍କ ସହିତ ମାରିଦେବା ପାଇଁ ଦୁର୍ଯ୍ୟୋଧନ ତାଙ୍କ ବନ୍ଧୁମାନଙ୍କ ସହିତ ପରାମର୍ଶ କରି ଶଣପଟ, ଝୁଣା ଓ ଲାଖ ମିଶାଇ ଗୋଟିଏ ସୁନ୍ଦର ଗୃହ ନିର୍ମାଣ କରିଥିଲେ । ସେହି ଗୃହରେ କୁନ୍ତୀଙ୍କ ସମେତ ପାଣ୍ଡବମାନଙ୍କୁ ରଖାଇ କୌରବମାନେ ନିଆଁ ଲଗାଇ ଦେଲେ । ବିଦୁର ଓ ଶ୍ରୀକୃଷ୍ଣଙ୍କ ଅନୁଗ୍ରହରୁ ପାଣ୍ଡବମାନେ ରକ୍ଷା ପାଇଥିଲେ ।

**ଜନନ –**

ଜନନେନ୍ଦ୍ରିୟ, ଲିଙ୍ଗ ।

**ଜଳଧି –**

ସମୁଦ୍ର

**ଜାତିସ୍ମର –**

ଯେ ପୂର୍ବଜନ୍ମର ଘଟଣା ମନେ ରଖିଥାଏ ।

**ଜାନୁ –**

ଜଂଘ

**ଜାଲ –**

ସମୂହ

**ଜୀମୂତ –**

ମେଘ

**ଜୃମ୍ଭଣ –**

ହାଇ

**ଜ୍ୟୋତିର୍ଗଣ –**

ନକ୍ଷତ୍ରମାଳା

**ଜ୍ଞାନ ବୈରାଗ୍ୟ –**

ଈଶ୍ୱରଙ୍କ ସମ୍ବନ୍ଧୀୟ ଧାରଣାଜାତ ହେବାପରେ ସଂସାରକୁ ତୁଚ୍ଛ ମନେ କରିବା ।

**ଜ୍ଞାନବୋଧ –**

ସତ୍‌ଚିନ୍ତା, ସଦ୍‌ଜ୍ଞାନକୁ ଜାଣିବା ।

**ଝ**

**ଝିଗାସ –**

କଟୁକଥା, ଦେହଜଳା କଥା ।

**ତ**

**ତତ୍ତ୍ୱଶୁଦ୍ଧି –**

ତତ୍ତ୍ୱଜ୍ଞାନ

**ତଦଅନ୍ତର –**

ତାହାପରେ

**ତନୟ –**

ପୁତ୍ର

**ତନ୍ତ୍ର –**

ଯଜ୍ଞର ବିଧି ବିସ୍ତାର, ତନ୍ତ୍ରନାମକ ଶାସ୍ତ୍ର ବିଶେଷ ।

**ତପନ –**

ସୂର୍ଯ୍ୟ

**ତପୋନିଷ୍ଠ –**

ତପସ୍ୱୀ, ତପସ୍ୟା କରୁଥିବା ବ୍ୟକ୍ତି ।

**ତାପିତ –**

ଉତପ୍ତ, ଅତ୍ୟଧିକ ଗରମ ହେବା ।

**ତାମସ ଅହଙ୍କାର –**

ଜଡ଼ ବସ୍ତୁ ପ୍ରତି ଗର୍ବ ।

**ତିନି ବିକାର –**

ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ବିକାର ।

**ତିନିବେଦ –**

ଋକ, ଯଜୁଃ, ସାମ ।

**ତିନିଲୋକ –**

ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ । ଭୂଃ, ଭୁବ ଓ ମହ । ଜନ, ତପ, ସତ୍ୟ । ସ୍ଥଳ ବିଶେଷରେ ତିନିଲୋକ ଅର୍ଥରେ

Dr. Sudhanshu Sekhar Mishra

ଏପରି ତିନିପ୍ରକାର ପ୍ରୟୋଗ କରାଯାଇଛି ।

**ତୀର୍ଥ ସେବନ –**

ତୀର୍ଥଭ୍ରମଣ, ପୁଣ୍ୟକ୍ଷେତ୍ର ପରିଭ୍ରମଣ ।

**ତୁଷ୍ଟି –**

ସନ୍ତୋଷ

**ତୃତୀୟ ବର୍ଗ –**

କାମ, କାମନା ଓ ବ୍ୟଭିଚାର ଚିନ୍ତା ।

**ତୃତୀୟ ମାତ୍ରା –**

ରୂପ

**ତୋଷଣ –**

ଖୁସି, ପ୍ରସନ୍ନ

**ତ୍ରାସ –**

ଭୟ

**ତ୍ରିଗୁଣ –**

ସତ୍ତ୍ୱ, ରଜ, ତମ

**ତ୍ରିଗୁଣ ଅହଙ୍କାର –**

ସାତ୍ତ୍ୱିକ ଅହଙ୍କାର, ରାଜସ ଅହଙ୍କାର ଓ ତାମସ ଅହଙ୍କାର ।

**ତ୍ରିତାପ ବା ତାପତ୍ରୟ –**

ଆଧିଭୌତିକ (ଯାହା ପ୍ରାଣୀ–ମାନଙ୍କ ଠାରୁ ଜାତ – ସର୍ପ, ବ୍ୟାଘ୍ର, ଚୌର ଆଦିଙ୍କଠାରୁ ଭୟ) ଆଧି–ଦୈବିକ – (ବଜ୍ରପାତ, ବନ୍ୟା, ଘରପୋଡ଼ି ଆଦି ଭୟ) ଆଧ୍ୟାତ୍ମିକ – (ଶରୀରରୁ ଜାତ ରୋଗ ବିଶେଷ)

**ତ୍ରିପୁର ବଧ –**

ତାରକାକ୍ଷ, ବିଦ୍ୟୁନ୍ମାଳି ଓ କମଳାକ୍ଷ ନାମକ ତିନିଜଣ ରାକ୍ଷସ ଯଥାକ୍ରମେ ସ୍ୱର୍ଣ୍ଣ, ରୌପ୍ୟ ଓ ଲୌହମୟ ଦୁର୍ଗ ନିର୍ମାଣ କରି ଦେବତାମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲେ । ଶିବ ସମସ୍ତ ଦେବତାଙ୍କଠାରୁ ଅସ୍ତ୍ରଶସ୍ତ୍ର ଓ ରଥ ସଂଗ୍ରହ କରି ଏକ ସମୟରେ ସେହି ତିନି–ଗୋଟିଏ ପୁରକୁ ଧ୍ୱଂସ ପୂର୍ବକ ରାକ୍ଷସତ୍ରୟଙ୍କୁ ବଧ କରିଥିଲେ ।

**ତ୍ରିବର୍ଗ –**

ଧର୍ମ, ଅର୍ଥ, କାମ ।

**ତ୍ରିବୃତବ୍ରହ୍ମ –**

ଅ, ଉ, ମ ତ୍ରିମାତ୍ରା ଅର୍ଥାତ୍ ଓଁ ।

**ତ୍ରିଭୁବନ –**

ଭୂ ଲୋକ, ଭୁବଲୋକ ଓ ମହଲୋକ ।

**ତ୍ରିଲୋକ –**

(ତିନି ଲୋକ ଦେଖ)

ଦ

**ଦଇତାରି –**

ଅସୁର ସଂହାରକାରୀ, ବିଷ୍ଣୁ ।

**ଦତ୍ତ –**

ଦତ୍ତାତ୍ରେୟ ନାମକ ମୁନିବିଶେଷ, ଦାନ ଦିଆଯାଇଥିବା ।

**ଦତ୍ତବଚନ –**

ପ୍ରତିଶ୍ରୁତି

**ଦର୍ଦ୍ଦୁର –**

ବେଙ୍ଗ, ମେଘ, ବାଦ୍ୟ ।

**ଦଶଇନ୍ଦ୍ରିୟ –**

କର୍ଣ୍ଣ, ଚର୍ମ, ନାସିକା, ନୟନ, ଜିହ୍ୱା (ଜ୍ଞାନେନ୍ଦ୍ରିୟ) ବଚନ, ପାଣି, ପାଦର; ମୂତ୍ରଦ୍ୱାର ଓ ମଳଦ୍ୱାର (କର୍ମେନ୍ଦ୍ରିୟ) ।

**ଦଶଦିଗପାଳ –**

ଇନ୍ଦ୍ର, ଅଗ୍ନି, ଯମ, ନୈର୍ଋତ, ବରୁଣ, ପବନ, କୁବେର, ଈଶାନ, ବ୍ରହ୍ମା ଓ ଅନନ୍ତ ।

**ଦଶପ୍ରାଣ –**

ପ୍ରାଣ, ଅପାନ, ସମାନ, ବ୍ୟାନ, ଉଦାନ ଏବଂ ତାର ବିପରୀତ ପଞ୍ଚ ବାୟୁକୁ ଦଶପ୍ରାଣ କୁହାଯାଏ ।

**ଦହନ –**

ଅଗ୍ନି, ପୋଡ଼ିବା ।

**ଦିଗଦେବତା –**

ଇନ୍ଦ୍ର–ପୂର୍ବଦିଗ, ବରୁଣ–ପଶ୍ଚିମ ଦିଗ, ଯମ–ଦକ୍ଷିଣଦିଗ, କୁବେର–ଉତ୍ତରଦିଗ, ଈଶାନ–ଐଶାନ୍ୟ କୋଣ, ଅଗ୍ନି–ଅଗ୍ନିକୋଣ, ନୈର୍ଋତ–ନୈର୍ଋତକୋଣ, ପବନ–ବାୟୁକୋଣ, ବ୍ରହ୍ମା–ଉର୍ଦ୍ଧ୍ୱଦେଶ, ଅନନ୍ତ–ଅଧଃଦେଶ ଅର୍ଥାତ ପାତା–ଐଶାନ୍ୟ । କୋଣ–ଉତ୍ତର ଓ ପୂର୍ବ କୋଣ । ଅଗ୍ନି–ପୂର୍ବ ଦକ୍ଷିଣ । ନୈର୍ଋତ–ଦକ୍ଷିଣ ପଶ୍ଚିମ । ବାୟୁ–ପଶ୍ଚିମ ଉତ୍ତର ।

**ଦିବାକର –**

ସୂର୍ଯ୍ୟ

**ଦିବ୍ୟକାମିନୀ –**

ସ୍ୱର୍ଗପୁରର ନାରୀ, ଦେବକନ୍ୟା, ଅପ୍ସରା ।

**ଦିଶ –**

ଦିଗ

**ଦୁରଧିଗମ୍ୟ –**

କିଛି ଜଣା ନଯିବା, ଅତି କଷ୍ଟରେ ଜଣାଯିବା ।

**ଦୁରିତ –**

ପାପ

**ଦୁର୍ଜ୍ଜୟ –**

ଅତ୍ରିମୁନିଙ୍କ ଔରସରୁ ସତୀ ଅନସୂୟାଙ୍କ ଗର୍ଭରୁ ଶିବଙ୍କ ଅଂଶ ସ୍ୱରୂପ ଦୁର୍ବାସା ଜନ୍ମଲାଭ କରିଥିଲେ । ସେ ଜଣେ କ୍ରୋଧୀ ଋଷି ରୂପେ

Dr. Sudhanshu Sekhar Mishra

ପରିଚିତ ଥିଲେ । ଔର୍ବ ମୁନିଙ୍କ କନ୍ୟା କନ୍ଦଳୀ ଥିଲେ ଦୁର୍ବାସାଙ୍କ ପତ୍ନୀ ।

**ଦୁର୍ବାସାଙ୍କ ଶାକାନ୍ନ ଭୋଜନ –**

ବନବାସ ସମୟରେ ଦିନେ ଦ୍ରୌପଦୀ ପାଣ୍ଡବମାନଙ୍କୁ ଖୁଆଇ ସାରି ଶେଷରେ ନିଜେ ଭୋଜନ କଲେ । ସେ ଖାଇସାରିବା ପରେ ହଠାତ୍ ଆସି ଦୁର୍ବାସା ତାଙ୍କ ଶିଷ୍ୟମାନଙ୍କ ଗହଣରେ ସେଠାରେ ଉପସ୍ଥିତ ହେଲେ । ଯୁଧିଷ୍ଠିର ମୁନି ଦୁର୍ବାସା ଓ ତାଙ୍କ ଶିଷ୍ୟମାନଙ୍କୁ ଆଦରପୂର୍ବକ ସ୍ୱାଗତ ଜଣାଇ, ଭୋଜନ ପାଇଁ ନିମନ୍ତ୍ରଣ କଲେ । ଘରେ ଅନ୍ନ ଅଛି କି ନାହିଁ ସେ କଥା ଯୁଧିଷ୍ଠିର ଆଦୌ ଚିନ୍ତାକରି ନ ଥିଲେ ।

ମୁନିମାନେ ଦୁର୍ବାସାଙ୍କ ସମେତ ସ୍ନାନ କରିବାକୁ ଚାଲିଗଲେ ଏବଂ ସ୍ନାନସାରି ଭୋଜନ କରିବେ ବୋଲି ଯୁଧିଷ୍ଠିରଙ୍କୁ କହିଗଲେ । ଦ୍ରୌପଦୀ ଏହାଶୁଣି ବ୍ୟସ୍ତ ହୋଇପଡ଼ିଲେ । ସେ ବହୁସଂଖ୍ୟକ ମୁନିଙ୍କୁ କିପରି ଅନ୍ନ ଭୋଜନ କରାଇବେ ସେ ବିଷୟରେ ଚିନ୍ତାକରି ବ୍ୟତିବ୍ୟସ୍ତ ହୋଇ-ପଡ଼ିଲେ । ପରିଶେଷରେ ସେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଆର୍ତ୍ତସ୍ୱରରେ ପ୍ରାର୍ଥନା କଲେ । ଭଗବାନ୍ ଶ୍ରୀକୃଷ୍ଣ ତତ୍କ୍ଷଣାତ୍ ଆସି ଉପସ୍ଥିତ ହୋଇ ଦ୍ରୌପଦୀଙ୍କୁ ଖାଇବା ପାଇଁ ମାଗିଲେ । ଅନ୍ନ ଶେଷ ହୋଇଯାଇଛି ବୋଲି ଦ୍ରୌପଦୀ ଯେତେ ବୁଝାଇଲେ ହେଁ ଶ୍ରୀକୃଷ୍ଣ ସେ କଥା ବୁଝିଲେ ନାହିଁ । ପରିଶେଷରେ ଦ୍ରୌପଦୀ ଆଣି ତାଙ୍କ ଥାଳିଟିକୁ ଦେଖାଇଲେ । ଥାଳିର ଗୋଟିଏ ଅଂଶରେ ସାମାନ୍ୟ ଶାକାନ୍ନ ଲାଗିଥିଲା । ଶ୍ରୀକୃଷ୍ଣ ସେତକ ଖାଇ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ କହିଲେ ଜଗତର ସମସ୍ତେ ପରିତୃପ୍ତ ହୁଅନ୍ତୁ ।

ଦୁର୍ବାସାଦି ଯେଉଁ ମୁନିମାନେ ନଦୀରେ ସ୍ନାନ କରୁଥିଲେ, ସେମାନେ ନିଜ ନିଜର ପେଟ ପୁରିଯାଇଛି ବୋଲି ଅନୁଭବ କଲେ । ତହୁଁ ଦୁର୍ବାସା ନିଜ ଶିଷ୍ୟମାନଙ୍କୁ ଘେନି ସେହି ନଦୀକୂଳରୁ ପଳାୟନ କଲେ ଏବଂ ଶ୍ରୀକୃଷ୍ଣଙ୍କ ପ୍ରଭାବରୁ ପାଣ୍ଡବମାନେ ଦୁର୍ବାସାଙ୍କ ଅଭିସାପରୁ ରକ୍ଷା ପାଇଲେ ।

**ଦୁର୍ଭଗା –**

ବିଧବା, ଧନହୀନା, ପୁଣ୍ୟହୀନା ଓ ଯଶହୀନା ନାରୀ । .

**ଦୁର୍ଯ୍ୟୋଧନ –**

କୌରବ ବଂଶରେ ଜାତ ଅନ୍ଧରାଜା ଧୃତରାଷ୍ଟ୍ର ଓ ତାଙ୍କର ପତ୍ନୀ ଗାନ୍ଧାରୀଙ୍କ ଜ୍ୟେଷ୍ଠପୁତ୍ର । ସେ ନିଜର ଅପକର୍ମ ଦ୍ୱାରା ସାରା ଜୀବନ ପାଣ୍ଡବମାନଙ୍କର ଅପକାର କରି ଶେଷରେ ଅସହାୟ ଭାବରେ ମୃତ୍ୟୁବରଣ କରିଥିଲେ ।

**ଦୁଷ୍କୃତ –**

ପାପ

**ଦୃଢ଼ ମାନସିକ –**

ମନର ଦୃଢ଼ତା

**ଦେବକୀ ନନ୍ଦନ –**

ଯାଦବବୀର ଦେବକଙ୍କ କନ୍ୟା, ଭୋଜରାଜ କଂସର ଭଉଣୀ ତଥା ବସୁଦେବଙ୍କ ପତ୍ନୀ ଦେବକୀଙ୍କ ପୁତ୍ର ଶ୍ରୀକୃଷ୍ଣ ।

**ଦେବବରଷ ଦଶଶତ –**

ମନୁଷ୍ୟମାନଙ୍କର ଏକ ବର୍ଷରେ ଦେବତାମାନଙ୍କର ଏକଦିନ ହୁଏ । ଏହି ନିୟମରେ ଦେବତାମାନଙ୍କର ଦଶ ଶହ ବର୍ଷ ମନୁଷ୍ୟ ଗଣନାରେ ତିନିଲକ୍ଷ ପଞ୍ଚଷଠି ହଜାର ବର୍ଷ ହେବ ।

**ଦେବମାତା –**

ଅଦିତି, କଶ୍ୟପ ଋଷିଙ୍କ ପତ୍ନୀ, ଇନ୍ଦ୍ରାଦି ଦେବଗଣଙ୍କ ମାତା ।

**ଦେବମୁନି –**

ଦେବର୍ଷି ନାରଦ

**ଦେବଯଜ୍ଞ –**

ଦେବତାମାନଙ୍କ ଉଦ୍ଦେଶ୍ୟରେ ପୂଜା, ଅର୍ଚ୍ଚନା, ହୋମ ଓ ନୈବେଦ୍ୟ ଅର୍ପଣ ଆଦି ।

**ଦେହୀ –**

ଦେହଧାରୀ; ଆତ୍ମା ।

**ଦୈତ୍ୟ –**

ଦ୍ୟୁତପଣ

**ଦ୍ରବିଣ –**

ଧନରତ୍ନ ଆଦି

**ଦ୍ରବ୍ୟ –**

ମହତତ୍ତ୍ୱଠାରୁ ଆରମ୍ଭ କରି ପୃଥିବୀ ପର୍ଯ୍ୟନ୍ତ ସମସ୍ତ ବସ୍ତୁ, ପଞ୍ଚ ମହାଭୂତ ।

**ଦ୍ରବ୍ୟ, ଗୁଣ, କର୍ମ, କାଳ –**

ଚର ଅଚର ସମସ୍ତ ବସ୍ତୁ ।

**ଦ୍ରୋଣବଳା (ଦ୍ରୋଣନନ୍ଦନ) –**

ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ କୃପୀଙ୍କ ଗର୍ଭରୁ ଜାତ, ଅଶ୍ୱତ୍ଥାମା ।

**ଦ୍ରୋଣି –**

ଦ୍ରୋଣଙ୍କର ପୁତ୍ର ଅଶ୍ୱତ୍ଥାମା ।

**ଦ୍ରୌପଦୀ –**

ପାଞ୍ଚାଳରାଜ ଦ୍ରୁପଦଙ୍କର ଯଜ୍ଞକୁଣ୍ଡରୁ ଜାତ ହୋଇଥିବା କନ୍ୟା, ଏହାଙ୍କର ବର୍ଣ୍ଣ କୃଷ୍ଣ ହୋଇଥିବାରୁ ତାଙ୍କର ଅପରନାମ କୃଷ୍ଣା ।

Dr. Sudhanshu Sekhar Mishra

ସ୍ୱୟମ୍ବରରେ ଲକ୍ଷ୍ୟ ଭେଦକରି ଅର୍ଜୁନ ଏହାଙ୍କୁ ଲାଭ କରିଥିଲେ ହେଁ ଦ୍ରୌପଦୀ ପଞ୍ଚ ପାଣ୍ଡବଙ୍କ ପତ୍ନୀ ରୂପେ ପରିଚିତା ହୋଇଥିଲେ । ପାଣ୍ଡବମାନଙ୍କ ବନବାସ ସମୟରେ (ଅଜ୍ଞାତବାସ) ଦ୍ରୌପଦୀ ବିରାଟ ରାଜପରିବାରରେ ସୈରିନ୍ଧ୍ରି ନାମରେ ପରିଚିତା ହୋଇଥିଲେ । ତାଙ୍କ ଗର୍ଭରୁ ପ୍ରତିବିନ୍ଧ୍ୟ, ଶ୍ରୁତସୋମ, ଶ୍ରୁତକର୍ମା, ସତାନିକ ଓ ଶ୍ରୁତସେନ ନାମକ ପଞ୍ଚପୁତ୍ର ଜାତ ହୋଇଥିଲେ ।

**ଦ୍ରୌପଦୀଙ୍କ ବସ୍ତ୍ରହରଣ –**

କପଟପଶାରେ ଯୁଧିଷ୍ଠିରଙ୍କୁ ହରାଇ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ପଣରୂପେ ଲାଭ କରିଥିଲେ । ମତ୍ତଗର୍ବୀ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ବାରୁଣାବନ୍ତର ରାଜ ଅନ୍ତଃପୁରରୁ ଘୋଷାରି ଆଣି ଉନ୍ମୁକ୍ତ ରାଜସଭାରେ ତାଙ୍କୁ ବିବସ୍ତ୍ର କରାଇବାର ଅପଚେଷ୍ଟା କରିଥିଲେ । କିନ୍ତୁ ଶ୍ରୀକୃଷ୍ଣଙ୍କ ଅନୁକମ୍ପାରୁ ଦ୍ରୌପଦୀ ଛପନକୋଟି ବସ୍ତ୍ର ଲାଭକରି ନିଜର ଲଜ୍ଜା ନିବାରଣ କରିଥିଲେ ।

**ଦ୍ୱିବିଧ –**

ସ୍ଥାବର ଓ ଜଙ୍ଗମ । ଦୁଇ ପ୍ରକାର ।

**ଦ୍ୱୈତଭାବ –**

ଗୁଣତ୍ରୟ ଓ ଲିଙ୍ଗ ବିଷୟଜ୍ଞାନ, ସତ୍ତ୍ୱ, ରଜ, ତମକୁ ତ୍ରିଗୁଣ କୁହାଯାଏ । ଲିଙ୍ଗ ଅର୍ଥାତ ଶରୀର ବିଷୟକ ଜ୍ଞାନ । ଏହି ଗୁଣତ୍ରୟ ଓ ଲିଙ୍ଗର ଧାରଣା ମନରେ ଜାତ ହେଲେ ତାହାକୁ ଦ୍ୱୈତଚିନ୍ତା ବା ଦ୍ୱୈତଭାବ କୁହାଯାଏ । ଦ୍ୱୈତଭାବ ମନରେ ଜାତହେଲେ ଅବିଦ୍ୟା ବା ଅଜ୍ଞାନ ମନ ମଧ୍ୟରେ ପ୍ରବେଶ କରେ । ଫଳରେ କାମ, କ୍ରୋଧାଦି ଷଡ଼ରିପୁ, ସ୍ଥୂଳଶରୀର ଓ ମନ ମଧ୍ୟରେ ଅଭିମାନ ଜାତ କରାଏ । ଏହି ଦ୍ୱୈତଭାବନା ମନରୁ ବିଦୂରିତ ହେଲେ ମନୁଷ୍ୟ ଶୋକରହିତ ହୋଇ ଆତ୍ମାକୁ ବ୍ରହ୍ମରେ ଲୀନ କରାଇପାରେ ।

## ଧ

**ଧନୁର୍ବେଦ ଗ୍ରାମ –**

ଧନୁର୍ବିଦ୍ୟା ସମ୍ବନ୍ଧୀୟ ଜ୍ଞାନ ସମୂହ ।

**ଧନ୍ୱନ୍ତରୀ –**

ଦେବବୈଦ୍ୟ । କାଶ୍ୟପଙ୍କ ପୁତ୍ର ଦୀର୍ଘତମା ଋଷିଙ୍କଠାରୁ ଧନ୍ୱନ୍ତରୀ ବିଷ୍ଣୁଙ୍କ ଅଂଶରେ ଜାତ ହୋଇଥିଲେ । ସେ ଅଷ୍ଟାଙ୍ଗ ଆୟୁର୍ବେଦର ଜ୍ଞାତା ଏବଂ ସକଳ ବେଦରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଧନ୍ୱନ୍ତରୀ ଅମୃତ କଳସ ଧରି ସମୁଦ୍ରରୁ ଜାତ ହୋଇଥିବାର ପୌରାଣିକ ଆଖ୍ୟାନ ରହିଛି ।

**ଧର୍ମନନ୍ଦନ –**

କୁନ୍ତୀଙ୍କ ଜପମାଳା ପ୍ରଭାବରେ ଧର୍ମଦେବଙ୍କ ଔରସରୁ ଜାତ ପୁତ୍ର, ଯୁଧିଷ୍ଠିର । ତାଙ୍କର ଅପର ନାମ ଧର୍ମସୁତ ।

**ଧାତୁଘଟଣଦେହ –**

ପଞ୍ଚଭୂତ ବିଶିଷ୍ଟ ଶରୀର, ପୃଥିବୀ, ଜଳ, ଅଗ୍ନି, ପବନ ଓ ଆକାଶ ପ୍ରମୁଖ ପଞ୍ଚଭୂତରେ ଗଠିତ ଶରୀର ।

**ଧାମଇ –**

ଦୌଡ଼ି, ପଳାଇ ।

**ଧାରଣାନୁଭାବ –**

ସାଧନ କର୍ମ ।

**ଧୂସର –**

ଈଷତ୍ ପାଣ୍ଡୁର ବର୍ଣ୍ଣ, ପାଉଁଶ ରଙ୍ଗ ।

## ନ

**ନକ୍ତ –**

ରାତ୍ରି

**ନକ୍ର –**

କୁମ୍ଭୀର

**ନନ୍ଦନ –**

ଯେ ଆନନ୍ଦ ଦାନକରେ, ପୁତ୍ର ।

**ନନ୍ଦିଘୋଷ –**

ଶ୍ରୀକୃଷ୍ଣଙ୍କ ରଥ, ପୁରୀ ଧାମର ରଥଯାତ୍ରାରେ ବ୍ୟବହୃତ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଥ ।

**ନବଦ୍ୱାର –**

ଦେହରେ ଥିବା ନଅଗୋଟି ଛିଦ୍ର– ଦୁଇଆଖି, ଦୁଇକାନ, ଦୁଇ ନାକପୁଡ଼ା, ପାଟି, ମଳଦ୍ୱାର ଓ ମୂତ୍ରଦ୍ୱାର ।

**ନବ ପ୍ରଜାପତି –**

ସୃଷ୍ଟି ଉଦ୍ଦେଶ୍ୟରେ ପରମେଷ୍ଠୀ ବ୍ରହ୍ମାଙ୍କଠାରୁ ଜାତ ନବପୁତ୍ର–ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, ଭୃଗୁ, ବଶିଷ୍ଠ, ନାରଦ, ଦକ୍ଷ, କ୍ରତୁ ।

**ନମିଲେ –**

ପ୍ରଣାମ କଲେ ।

**ନରନାରାୟଣ –**

ଦକ୍ଷକନ୍ୟା ମୂର୍ତ୍ତିଙ୍କ ଗର୍ଭରୁ ଧର୍ମଙ୍କ ଔରସରେ ନର ଓ ନାରାୟଣ ନାମକ ଦୁଇଜଣ ଋଷି ଜନ୍ମ ହୋଇଥିଲେ । ଉଭୟ ଋଷି ସରସ୍ୱତୀ ନଦୀ କୂଳରେ ଥିବା ବଦରିକା ଆଶ୍ରମରେ ରହି ତପସ୍ୟା କରୁଥିଲେ ।

**ନାରାଚ –**

ନାରାଚ, ଧନୁଶର ।

**ନାସାବିବର –**

ନାକପୁଡ଼ା ।

Dr. Sudhanshu Sekhar Mishra

**ନିଗମ –**

ବେଦ ।

**ନିଗ୍ରହ –**

ଆତ୍ମ ସଂଯମ, ଦମନ, ପରାଜୟ, ନିରୋଧ, ଅପମାନ ।

**ନିତ୍ୟ ପ୍ରଶାନ୍ତ –**

ସର୍ବଦା ନିଶ୍ଚଳ ।

**ନିନ୍ଦିତ କର୍ମ –**

କୁକର୍ମ, ଖରାପ କାମ ।

**ନିବେଦି –**

ନିବେଦନ କରି, ଜଣାଇ ।

**ନିବେଶି –**

ରଖାଇ ।

**ନିମିଷ –**

ଆଖିପିଛଡ଼ା ପକାଇବାକୁ ଯେତିକି ସମୟ ଆବଶ୍ୟକ ।

**ନିୟତ –**

କାର୍ଯ୍ୟ ଓ ସଙ୍କଳ୍ପରେ ଆନ୍ତରିକ ନିଷ୍ଠା, ନିଶ୍ଚିତ ।

**ନିୟମ –**

ଧର୍ମଶାସ୍ତ୍ର ଅନୁସାରେ କାର୍ଯ୍ୟ-କଳାପ, ଶପଥ ।

**ନିଯୋଗୀ –**

ନିଯୋଗ କରି, ପଠାଇ ।

**ନିରଞ୍ଜନ –**

ନିର୍ଦ୍ଦୋଷ, ଅକଳଙ୍କ, ପରମାତ୍ମା ।

**ନିରତ –**

ସର୍ବଦା ।

**ନିରସ୍ତ –**

କ୍ଷାନ୍ତ, ବିରତ, ବିହୀନ ।

**ନିରୋଧ –**

ପ୍ରଳୟ, ଅଟକ, ଅବରୋଧ, ଆତ୍ମସଂଯମ, ନିବାରଣ ।

**ନିର୍ଋତି –**

ରାକ୍ଷସ ।

**ନିର୍ଲେପ –**

କାହାରି ସହିତ ସମ୍ବନ୍ଧ ନ ଥିବା ଅନାଶକ୍ତି, ଉଦାସୀନ ।

**ନିଷ୍କାମ –**

ମନରେ କୌଣସି ପ୍ରକାର କାମନା ନ ଥିବା, କାମନା ରହିତ ।

**ନିଷ୍କିଞ୍ଚନ –**

ନିଷ୍କାମଯୋଗୀ, କାମନାରହିତ ତପସ୍ୱୀ ।

**ନିସ୍ତାର –**

ଉଦ୍ଧାର, ରକ୍ଷା, ମୁକ୍ତି ।

**ନିସ୍ତାରଣ –**

ବିମୁକ୍ତିକରଣ, ଉଦ୍ଧାରଣ ।

**ନୀଳଘନ –**

ନୀଳମେଘ

**ନୀଳ ଜୀମୂତ –**

ନୀଳମେଘ

**ନୈମିଷାରଣ୍ୟ –**

ଋଷିମାନଙ୍କ ଦ୍ୱାରା ପୂର୍ଣ୍ଣ ଗୋଟିଏ ପ୍ରାଚୀନ ଅରଣ୍ୟ । ଶୁନକ ଋଷିଙ୍କ ପୁତ୍ର ଶୌନକ ପ୍ରୟାଗତୀର୍ଥରେ ଉପସ୍ଥିତ ହୋଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ କିଛିଦିନ ଆଶ୍ରୟ ଗ୍ରହଣ କଲେ । ମହର୍ଷି ଭରଦ୍ୱାଜଙ୍କ ଉପଦେଶ ଅନୁସାରେ ସେମାନେ ପ୍ରୟାଗ ତୀର୍ଥରେ ପୂଜିତ ମାଧବଙ୍କୁ ଉପାସନା କରି ଖଣ୍ଡିଏ ତପୋଭୂମି ପାଇବା ପାଇଁ ବର ମାଗିଲେ । ମାଧବ ଶୌନକ ଆଦି ଋଷିମାନଙ୍କୁ ବର ଦେଇ କହିଲେ – ମୋ ଚକ୍ର ତୁମ ଆଗେ ଆଗେ ଯିବ । ତୁମେମାନେ ତା'ରି ଅନୁସରଣ କର । ସେ ଚକ୍ର ଯେଉଁଠାରେ ତଳକୁ ଖସିପଡ଼ିବ ସେହିସ୍ଥାନ ହେବ ତୁମମାନଙ୍କର ତପୋଭୂମି । ଚକ୍ର ଆକାଶ ପଥରେ ଯାଇ ଗୋମତୀ ନଦୀ ତୀରସ୍ଥିତ (ଉତ୍ତର ପ୍ରଦେଶର ସୀତାପୁର ଜିଲ୍ଲା) ଏକ ଅରଣ୍ୟ ମଧ୍ୟରେ ତଳକୁ ଖସିପଡ଼ିଲା । ଚକ୍ରର ନେମି (ଧାର) ଯେଉଁଠାରେ ଭୂମି ସ୍ପର୍ଶ କଲା, ଋଷିମାନେ ସେହିସ୍ଥାନକୁ ନୈମିଷାରଣ୍ୟ ନାମ ଦେଇ ତପୋଭୂମି ରୂପେ ନିର୍ବାଚିତ କଲେ । ସେମାନେ ଦୀର୍ଘଦିନବ୍ୟାପି ଯଜ୍ଞ କରିବାର ସଙ୍କଳ୍ପ କରି ପ୍ରଥମେ ଦ୍ୱାଦଶବର୍ଷ ବ୍ୟାପୀ ଏକ ଯଜ୍ଞ ଆରମ୍ଭ କରିଥିଲେ ।

## ପ

**ପଙ୍କଜଲୋଚନ –**

ପଦ୍ମଲୋଚନ

**ପଞ୍ଚଗ୍ରାମ –**

ହସ୍ତିନା, ବାରୁଣାବନ୍ତ, ଇନ୍ଦ୍ରପ୍ରସ୍ଥ, ଯମପ୍ରସ୍ଥ ଓ ଜୟନ୍ତିକା । ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ପକ୍ଷରୁ ଦୂତରୂପେ ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇ ଏହି ପଞ୍ଚଗ୍ରାମ ସନ୍ଧିସ୍ୱରୂପ ମାଗିଥିଲେ । ଶାରଳାଦାସଙ୍କ ମହାଭାରତରେ ଏହାକୁ ପଞ୍ଚପଡ଼ା ବୋଲି ବର୍ଣ୍ଣନା କରାଯାଇଛି ।

**ପଞ୍ଚତନ୍ମାତ୍ର –**

ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ।

**ପଞ୍ଚଦେବତା –**

କର୍ଣ୍ଣ, ଚକ୍ଷୁ, ଜିହ୍ୱା, ତ୍ୱକ ଓ ପ୍ରାଣର ଦେବତା ଯଥାକ୍ରମେ ଦିଗ, ସୂର୍ଯ୍ୟ, ବରୁଣ, ପବନ ଓ ଅଶ୍ୱିନୀ କୁମାର । ପଞ୍ଚଜ୍ଞାନେନ୍ଦ୍ରିୟର ଦେବତାରୂପେ ଏହି ପଞ୍ଚଦେବଙ୍କୁ କଳ୍ପନା କରାଯାଇଛି । ସେହିପରି ପଞ୍ଚକର୍ମେନ୍ଦ୍ରିୟର ଦେବତା ରୂପେ ବାକ୍-ଅଗ୍ନି, ପାଣି-ଇନ୍ଦ୍ର, ପାଦ-ବିଷ୍ଣୁ, ପାୟୁ-ମିତ୍ର, ଉପସ୍ଥ-ପ୍ରଜାପତିଙ୍କୁ

Dr. Sudhanshu Sekhar Mishra

କଳ୍ପନା କରାଯାଇଛି । ଗଣେଶ, ଭାସ୍କର, ବିଷ୍ଣୁ, ଶିବ ଓ ଦୁର୍ଗାଙ୍କୁ ମଧ୍ୟ ପଞ୍ଚଦେବତା ରୂପେ ପୂଜା କରାଯାଏ ।

**ପଞ୍ଚପବନ –**

ପ୍ରାଣ, ଅପାନ, ଉଦାନ, ସମାନ, ବ୍ୟାନ ।

**ପଞ୍ଚବିକାର –**

ଅରୁଚି, ଘୃଣା, ମୁଖବିକୃତି, ପ୍ରଳାପ ଓ ସ୍ଖଳନ ।

**ପଞ୍ଚବିଂଶତି ଶକ୍ତି –**

ପ୍ରକୃତି, ପୁରୁଷ, ମହତତ୍ତ୍ୱ, ଅହଙ୍କାର, ଏକାଦଶ ଇନ୍ଦ୍ରିୟ, ପଞ୍ଚ ମହାଭୂତ ଓ ପଞ୍ଚତନ୍ମାତ୍ରା ।

**ପଞ୍ଚଭୂତ –**

ପୃଥିବୀ, ଜଳ, ଆକାଶ, ବାୟୁ ଓ ଅଗ୍ନି ।

**ପଞ୍ଚମାତ୍ରା –**

(ପଞ୍ଚତନ୍ମାତ୍ର ଦେଖ)

**ପଞ୍ଚଯଜ୍ଞ –**

୧ –ବ୍ରହ୍ମଯଜ୍ଞ–ବେଦାଦି ଶାସ୍ତ୍ର ଅଧ୍ୟୟନ । ୨–ପିତୃଯଜ୍ଞ–ପିତୃ ପିତାମହଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଓ ତର୍ପଣ । ୩–ଦେବଯଜ୍ଞ–ହୋମ ଓ ବଳିପ୍ରଦାନ ଆଦି । ୪–ଭୂତଯଜ୍ଞ–ସମସ୍ତ ପ୍ରାଣୀଙ୍କ ସେବା । ୫–ନୃଯଜ୍ଞ–ଅତିଥି ସେବା । ଏହି ପଞ୍ଚଯଜ୍ଞ ଗୃହସ୍ଥ ବ୍ୟକ୍ତିର ଏକାନ୍ତ କର୍ତ୍ତବ୍ୟ ।

"ବ୍ରହ୍ମଯଜ୍ଞୋ ନୃଯଜ୍ଞଶ୍ଚ
ଦେବଯଜ୍ଞଶ୍ଚ ସତ୍ତମମ୍ ।
ପିତୃଯଜ୍ଞୋ ଭୂତଯଜ୍ଞଃ
ପଞ୍ଚଯଜ୍ଞାଃ ପ୍ରକୀର୍ତ୍ତିତାଃ ।

**ପଟାନ୍ତର –**

ଉପମା, ସୌନ୍ଦର୍ଯ୍ୟବର୍ଣ୍ଣନ, ତୁଳନା ।

**ପଦ୍ମକଳ୍ପ –**

ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ନାଡ଼ୀଚକ୍ରର ବିଚାର ।

**ପଦ୍ମଯୋନି –**

ବ୍ରହ୍ମା, ପ୍ରଜାପତି ।

**ପରତତ୍ତ୍ୱ –**

ବିଷ୍ଣୁଙ୍କ ସମ୍ବନ୍ଧୀୟ ଗୂଢ଼ବିଷୟ ।

**ପରଧାମ –**

ଶ୍ରେଷ୍ଠଧାମ, ବୈକୁଣ୍ଠ ।

**ପରମପୁରୁଷ –**

ଶ୍ରେଷ୍ଠ ମନୁଷ୍ୟ, ମହାତ୍ମା, ବିଷ୍ଣୁ ।

**ପରାପର –**

ଶତ୍ରୁ, ମିତ୍ର, ପର ଆପଣା ।

**ପରାଶର –**

ମହର୍ଷି ବଶିଷ୍ଠଙ୍କ ପୌତ୍ର । ଏହାଙ୍କ ପିତାଙ୍କ ନାମ ଶକତ୍ରି ଓ ମାତାଙ୍କ ନାମ ଅଦୃଶ୍ୟନ୍ତୀ । ପରାଶର ହେଉଛନ୍ତି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସଙ୍କ ପିତା । ଧୀବର କନ୍ୟା ମତ୍ସ୍ୟଗନ୍ଧାଙ୍କ ସହିତ ପରାଶରଙ୍କ ସଙ୍ଗମ ହେବାରୁ ବେଦବ୍ୟାସ ଜନ୍ମଗ୍ରହଣ କରିଥିଲେ ।

**ପରାଶର ସୁତ –**

ବ୍ୟାସଦେବ ।

**ପରିତ୍ରାଣ –**

ଉଦ୍ଧାର

**ପରିହରେ –**

ଦୂରକରେ

**ପରୀକ୍ଷିତ –**

ତୃତୀୟପାଣ୍ଡବ ଅର୍ଜୁନଙ୍କ ପୌତ୍ର ଓ ମହାବୀର ଅଭିମନ୍ୟୁଙ୍କ ପୁତ୍ର । ଏହାଙ୍କ ମାତା ମତ୍ସ୍ୟଦେଶର ଅଧିପତି ବିରାଟଙ୍କ କନ୍ୟା ଉତ୍ତରା ମହାରାଜ ପରୀକ୍ଷିତ ପାଣ୍ଡବମାନଙ୍କ ମହାପ୍ରୟାଣ ପରେ ରାଜସିଂହାସନ ଅଧିକାର କରିଥିଲେ ।

**ପରୀକ୍ଷିତ ପୁତ୍ର –**

ଜନମେଜୟ । ସେ ପିତୃବଧର ପ୍ରତିଶୋଧ ନିମିତ୍ତ ଗୋଟିଏ ସର୍ପଯଜ୍ଞ କରାଇଥିଲେ । ଏହା ଜାଣିପାରି ତକ୍ଷକ ପ୍ରାଣଭୟରେ ଇନ୍ଦ୍ରଙ୍କ ଶରଣ ପଶିଥିଲେ । ରାଜା ଜନମେଜୟ ଇନ୍ଦ୍ରଙ୍କ ସହିତ ତକ୍ଷକଙ୍କୁ ଯଜ୍ଞକୁଣ୍ଡରେ ପକାଇ ଧ୍ୱଂସ କରିବାର ବ୍ୟବସ୍ଥା କରନ୍ତେ, ନାଗକୁଳର ଭଣଜା ଆସ୍ତିକ ମହର୍ଷି ଆସି ସର୍ପଯଜ୍ଞ ବନ୍ଦ କରାଇଥିଲେ । ଜନମେଜୟଙ୍କ ମାତାଙ୍କ ନାମ ଥିଲା ଇରାବତୀ ।

**ପଶୁପତି –**

ରୁଦ୍ର, ଶିବ ।

**ପାଡ଼ିଣ –**

ପକାଇ

**ପାୟୁ –**

ମଳଦ୍ୱାର, ଗୁହ୍ୟଦ୍ୱାର

**ପାରିଷଦଗଣ –**

ସେବକଗଣ

**ପାର୍ଥ –**

ସୁରସେନଙ୍କ କନ୍ୟା ପୃଥା (କୁନ୍ତୀ)ଙ୍କ ତୃତୀୟ ପୁତ୍ର ଅର୍ଜୁନ ।

**ପାର୍ଥିବ –**

ପୃଥିବୀ ସମ୍ବନ୍ଧୀୟ, ନଶ୍ୱରଶୀଳ ।

**ପିବ –**

ପିଅ, 'ପା' ଧାତୁର ଲୋଟ୍ ଲକାର ମଧ୍ୟମ ପୁରୁଷ ଏକବଚନ ।

**ପିଙ୍ଗ –**

ପିଙ୍ଗଳବର୍ଣ୍ଣ, କହରା ।

**ପୁଣ୍ୟଦେହା –**

ଯେଉଁ ବ୍ୟକ୍ତି ନିଜ ଜୀବନକାଳ ମଧ୍ୟରେ ଅନେକ ଭଲକାମ କରିଥାଏ,

Dr. Sudhanshu Sekhar Mishra

ପୁଣ୍ୟବାନ୍ ।

**ପୁରୀଷ –**

ମଳ, ବିଷ୍ଠା ।

**ପୁଷ୍ଟି –**

ବୃଦ୍ଧି, ସୁଗଠନ, ସୁବିକାଶ ।

**ପୂର୍ବକଳ୍ପ –**

ପଦ୍ମକଳ୍ପ, (ବର୍ତ୍ତମାନ ବରାହ କଳ୍ପ ଚାଲିଛି)

**ପ୍ରକ୍ଷାଳନ –**

ପାଣିରେ ଧୋଇବା

**ପ୍ରଜାତୀର୍ଥ –**

ପୁତ୍ର, ଦକ୍ଷଆଦି ନବ ପ୍ରଜାପତି (ନବ ପ୍ରଜାପତି ଦେଖ)

**ପ୍ରଜାଶ୍ରମ –**

ବର୍ଣ୍ଣାଶ୍ରମ, ଗୃହସ୍ଥାଶ୍ରମ ।

**ପ୍ରଜାସର୍ଗ –**

ଲୋକସୃଷ୍ଟି

**ପ୍ରଣିପାତ –**

ପ୍ରଣାମ

**ପ୍ରତିପ୍ରତି –**

ବାରମ୍ବାର, ପୁନଃପୁନଃ ।

**ପ୍ରତୀତ –**

ଜ୍ଞାତ

**ପ୍ରତୀତି –**

ଜ୍ଞାନ

**ପ୍ରତ୍ୟକ୍ଷ –**

ଯାହା ଆଖିରେ ଦେଖିହୁଏ ।

**ପ୍ରତ୍ୟାହାର –**

ଫେରାଇନେବା– ଆକର୍ଷଣ କରିନେବା । ଯୋଗୀଙ୍କ ବିଶେଷ – "ପ୍ରତ୍ୟାହାରଶ୍ଚ ତର୍କଶ୍ଚ ପ୍ରାଣାୟାମ– ସ୍ତୃତୀୟକଃ ସମାଧିଧାରଣଂ ଧ୍ୟାନଂ ଷଡ଼ଙ୍ଗୋ ଯୋଗସଂଗ୍ରହଃ ।" ବିଷୟ ବାସନାରୁ ମନକୁ ଫେରାଇଆଣି ଯୋଗୀ ପ୍ରତ୍ୟାହାର ନିୟମରେ ପରମାତ୍ମାଙ୍କ ପାଦପଦ୍ମରେ ଲଗାଇଥାନ୍ତି ।

**ପ୍ରଥମବୟସ –**

ପିଲାବେଳ, ବାଲ୍ୟକାଳ ।

**ପ୍ରଥମାଶ୍ରମ –**

ଗୃହସ୍ଥାଶ୍ରମ

**ପ୍ରବନ୍ଧ –**

ପୂର୍ବାପର ସଙ୍ଗତି, ସନ୍ଦର୍ଭ, ଚାତୁରୀ, କାବ୍ୟ ।

**ପ୍ରବାଳ –**

ପୋହଳା

**ପ୍ରବୋଧ –**

ବିଶେଷଜ୍ଞାନ; ଈଶ୍ୱର ସମ୍ବନ୍ଧୀୟ ।

**ପ୍ରଭଞ୍ଜନ –**

ପ୍ରଚଣ୍ଡ ପବନ

**ପ୍ରଭବଶୀଳ –**

ଉତ୍ପତ୍ତିକାରକ, ଜଗନ୍ନିୟନ୍ତା ବିଷ୍ଣୁ ।

**ପ୍ରମାଣି –**

ଜାଣି; ଅନୁଭବ କରି ।

**ପ୍ରମାଣୁ –**

ଜାଣୁ, ପ୍ରମାଣରୁ ।

**ପ୍ରୟାସ –**

ଚେଷ୍ଟା

**ପ୍ରଳୟାନଳ –**

ପ୍ରଳୟକାଳର ଅଗ୍ନି । ପ୍ରଳୟ କାଳରେ ସୂର୍ଯ୍ୟଙ୍କ ପ୍ରଖର ତେଜ ।

**ପ୍ରସର –**

ବ୍ୟାପିବା, ବଢ଼ିବା ।

**ପ୍ରାକୃତସଂସାର –**

ପୂର୍ବକଳ୍ପରେ ଯେପରି ଥିଲା ସେହିପରି ସୃଷ୍ଟି ।

**ପ୍ରାଣତେଜ –**

ପରମାତ୍ମାଙ୍କର ତେଜ, (ପ୍ରାଣୀ–ମାନଙ୍କୁ ପରମାତ୍ମା ସ୍ୱତେଜରେ ପ୍ରକାଶ କରନ୍ତି) ।

**ପ୍ରାଦେଶ –**

ବୃଦ୍ଧାଙ୍ଗୁଳିଠାରୁ ତର୍ଜନୀ ପର୍ଯ୍ୟନ୍ତ ବିସ୍ତାରକୁ ପ୍ରାଦେଶ କୁହାଯାଏ । ଏହାର ମାପ ଦଶ ଅଙ୍ଗୁଳି ।

"ପ୍ରାଦେଶୋ ଦେଶମାତ୍ରେ ଚ
ତର୍ଜନ୍ୟାଙ୍ଗୁଷ୍ଠସମ୍ମିତେ ।"

**ପ୍ରାପତ –**

ପ୍ରାପ୍ତ, ମିଳିବା ।

**ପ୍ରାୟଶ୍ଚିତ –**

ଆତ୍ମଶୁଦ୍ଧି ଅର୍ଥରେ ଦାନ ।

## ଫ

**ଫେଲ –**

ଫିଟାଇ

## ବ

**ବଜ୍ରଧର –**

ଇନ୍ଦ୍ର

**ବଣିକାର –**

ବ୍ୟବସାୟୀ ବ୍ୟକ୍ତି, ବଣିକ ।

**ବଦନକମଳ –**

ପଦ୍ମମୁଖ

**ବଦରିକାଶ୍ରମ –**

ପ୍ରସିଦ୍ଧ ହିନ୍ଦୁତୀର୍ଥ ହିମାଳୟର କ୍ରୋଡ଼ ଦେଶରେ ଗଡ଼ୱାଲ ଅନ୍ତର୍ଗତ ଅଳକାନନ୍ଦା ନଦୀର ପଶ୍ଚିମ ତୀରରେ ଅବସ୍ଥିତ ହିମାଳୟର ଭୃଗୁତୁଙ୍ଗ ନାମକ ଶୃଙ୍ଗ ଉପରେ ଥିବା ଗୋଟିଏ ବଦରୀ (ବରକୋଳି) ଗଛରୁ ଏହାର ନାମ ବଦରିକା ହୋଇଛି । ଏଠାରେ ବ୍ୟାସଦେବଙ୍କର ଆଶ୍ରମ ରହିଛି । ହିନ୍ଦୁମାନଙ୍କର ଚାରିଧାମ ମଧ୍ୟରୁ ବଦ୍ରିନାଥ ଧାମ ଏହିଠାରେ ଅବସ୍ଥିତ ।

**ବନ୍ଧ –**

ବନ୍ଧନ, ସଂସାର ବନ୍ଧନ ।

Dr. Sudhanshu Sekhar Mishra

**ବର୍ଣ୍ଣାଶ୍ରମୀ –**

ସାଂସାରିକ ନିୟମକୁ ପାଳନ କରୁଥିବା ଗୃହସ୍ଥ ବ୍ୟକ୍ତି, ଛତିଶ ଫାଟକ ।

**ବଳ –**

ଦେହର ଶକ୍ତି

**ବଳାହକ –**

ମେଘ

**ବଷଟ୍‌କାର –**

ବେଦ ବିହିତ ମନ୍ତ୍ରପାଠ ପୂର୍ବକ ଯଜ୍ଞରେ ଆହୁତି ପ୍ରଦାନ, ମୋହ ।

**ବସୁ –**

ଧନ, ବସୁ ଆଠ ପ୍ରକାର । ଏହାଙ୍କୁ ଆଠଗୋଟି ଦେବତା ରୂପେ କଳ୍ପନା କରାଯାଇଛି । ଅଷ୍ଟବସୁ – ଧର, ଧ୍ରୁବ, ସୋମ, ବିଷ୍ଣୁ, ବାୟୁ, ଅଗ୍ନି, ପ୍ରଭାତ, ପ୍ରଭାସ ।

"ଧରୋ ଧ୍ରୁବଶ୍ଚ ସୋମଶ୍ଚ
ବିଷ୍ଣୁଶ୍ଚୈବାନିଳୋଽନଳଃ
ପ୍ରତ୍ୟୁଷଶ୍ଚ ପ୍ରଭାସଶ୍ଚ
ବସବୋଽଷ୍ଟୌକ୍ରମାତ୍ ସ୍ମୃତାଃ ।"

**ବସୁନ୍ଧରୀ –**

ପୃଥିବୀ

**ବାଚକ –**

ନାମ, ଅର୍ଥଜ୍ଞାପକ, କଥକ ।

**ବାଚ୍ୟ –**

ରୂପ, ନିନ୍ଦନୀୟ, କଥନୀୟ ।

**ବାଞ୍ଛା କଳ୍ପତରୁ –**

ଯେଉଁ ବୃକ୍ଷମୂଳରେ ଠିଆହୋଇ ଯାହା କାମନା କରିବ, ତାହା ପୂରଣ ହୋଇଥାଏ । ଭଗବାନ ବିଷ୍ଣୁଙ୍କ ପ୍ରତି ପ୍ରଯୁଜ୍ୟ ।

**ବାରି –**

ଜଳ

**ବାଳକଭାବ –**

ପିଲାଳିଆ, ଖେଳ ସରିବା ପରେ ଖେଳଘରକୁ ଭାଙ୍ଗିଦେବା ବାଳକ ସ୍ୱଭାବ ଅଟେ ।

**ବାସବ –**

ଇନ୍ଦ୍ର

**ବାହିଜ୍ୟ –**

ବାହ୍ୟ, ବାହାରେ ।

**ବାହ୍ୟ –**

ବାହାରେ

**ବିଅର୍ଥ –**

ବ୍ୟର୍ଥ, ବୃଥା, ନିଷ୍ଫଳ ।

**ବିକଳ୍ପ –**

ମନ୍ୱନ୍ତର ଆଦି ଅବାନ୍ତର କଳ୍ପ । କଳ୍ପକୁ ମନ୍ୱନ୍ତର ଭେଦରେ ବିଭାଗ କରାଯାଇଥିବାରୁ ଭାଗବତରେ ଏହାକୁ ବିକଳ୍ପ କୁହାଯାଇଛି, ଅନ୍ୟରୂପ, ଭ୍ରମ ।

**ବିକାର –**

ଅହଙ୍କାର (ପଞ୍ଚବିକାର ଦେଖ)

**ବିକ୍ରମ –**

ସ୍ଥିତି, ବଳ ।

**ବିଗତରାଗ –**

ସାଂସାରିକ ମମତା ଦୂର ହେବା, ଅନୁରାଗ ।

**ବିଘାତ –**

ବିଶେଷ ଆଘାତପ୍ରାପ୍ତ ।

**ବିଜ୍ଞାନଜ୍ଞାନ –**

ଶାସ୍ତ୍ରଜ୍ଞାନ, ଅନୁଭବଜନ୍ୟଜ୍ଞାନ ।

**ବିଡ଼ମ୍ବଣ –**

ପ୍ରତାରଣ, ଉପହାସାସ୍ପଦ, ଅଜ୍ଞାନ ।

**ବିତସ୍ତି –**

ଏକ ଚାଖଣ୍ଡ, ବାର ଆଙ୍ଗୁଳ ।

**ବିଦୁର –**

କୃଷ୍ଣ ଦ୍ୱୈପାୟନ ବ୍ୟାସଙ୍କ ଔରସରେ ଏବଂ କୁରୁବଂଶର ରାଜା ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ଅମ୍ବିକାଙ୍କ ପରିଚାରିକା ଗର୍ଭରୁ ବିଦୁର ଜନ୍ମ ଗ୍ରହଣ କରିଥିଲେ । ସେହି ଦୃଷ୍ଟିରୁ ସେ କୌରବ ଓ ପାଣ୍ଡବମାନଙ୍କର ସମ୍ପର୍କୀୟ କକେଇ ଥିଲେ । ସେ ଧୃତରାଷ୍ଟ୍ରଙ୍କର ଉପଦେଷ୍ଟା ଓ ମନ୍ତ୍ରୀ ଥିଲେ । ସେ ସତ୍ୟବାଦୀ ଓ ନ୍ୟାୟ ପରାୟଣ ଥିଲେ ।

**ବିଦ୍ୟା –**

ଜ୍ଞାନ, ବିଧିଯଜ୍ଞ ।

**ବିଧିଯଜ୍ଞ –**

ଅଗ୍ନିହୋତ୍ର, ବିଧିପୂର୍ବକ ଯଜ୍ଞ, ଇଷ୍ଟସାଧନ ନିମିତ୍ତ ଯଜ୍ଞ ।

**ବିଧୂତ –**

କମ୍ପିତ, ଅପସାରିତ ।

**ବିବସ୍ତ୍ର –**

ଉଲଗ୍ନ, ନଗ୍ନ ।

**ବିବିଧଛନ୍ଦ –**

ବିଭିନ୍ନ ରାଗରାଗିଣୀ, ନାନା ପ୍ରକାର ତାଳ ।

**ବିଭାବସୁ –**

ସୂର୍ଯ୍ୟ, ଅଗ୍ନି ।

**ବିରାଜପୁରୁଷ –**

ଜୀବନିୟନ୍ତା, ଯାହାଙ୍କଠାରୁ ଚରାଚର ସୃଷ୍ଟି ସମ୍ଭବ ହୋଇଛି, ବିଷ୍ଣୁ ।

**ବିରାଟ ପୁରୁଷ –**

ବିଷ୍ଣୁ, ବିରାଟ ପୁରୁଷଙ୍କ ମୁଖରୁ ବାଗିନ୍ଦ୍ରିୟ ଓ ତାହାର ଅଧିଷ୍ଠାତା ଅଗ୍ନି ଏବଂ ତଦ୍ ବିଷୟକ ବାକ୍ୟ, ଜିହ୍ୱାରୁ ଷଡ଼ରସ ଓ ବରୁଣ ଦେବତା, ଘ୍ରାଣେନ୍ଦ୍ରିୟରୁ ଅଶ୍ୱିନୀ କୁମାର, ସୁଗନ୍ଧ, ଦୁର୍ଗନ୍ଧ ଆଦି ଦ୍ରବ୍ୟ, ଚକ୍ଷୁରୁ ସୂର୍ଯ୍ୟ ଦେବତା ଓ ସମସ୍ତ ପ୍ରକାର ଶବ୍ଦ,

Dr. Sudhanshu Sekhar Mishra

ଚର୍ମରୁ ପବନ ଦେବତା, ସ୍ପର୍ଶ ଓ ଯଜ୍ଞ ସମ୍ବନ୍ଧୀୟ ଦ୍ରବ୍ୟ, କେଶ, ଶ୍ମଶ୍ରୁ ଓ ନଖରୁ ମେଘ, ବିଜୁଳି ପାଷାଣ ଓ ଲୌହ ଆଦି ଧାତୁ ଉତ୍ପନ୍ନ ହୋଇଛି । ତାଙ୍କ ବାହୁରୁ ଲୋକପାଳଗଣ ଉତ୍ପତ୍ତି ହୋଇଛନ୍ତି ।

**ବିଲୋମ –**

ବିପରୀତ, ପ୍ରତିଲୋମ, ବର୍ଣ୍ଣସଙ୍କର ।

**ବିଶ୍ୱଦେବ –**

ପିତୃଗଣଙ୍କ ଦେବତ, ଏମାନେ କ୍ରତୁ, ଦକ୍ଷ, ବସୁ, ସତ୍ୟ, କାମ, କାଳ, ପୁରୁବର ଆର୍ଦ୍ରବ, ଧ୍ୱନି ଓ ରୋଚକ ଆଦି ଗଣଦେବତା ବିଶେଷ । ଯଜ୍ଞ ଓ ଶ୍ରାଦ୍ଧାଦିରେ ଏମାନଙ୍କୁ ଆବାହନ କରାଯାଏ ।

**ବିଷଭକ୍ଷଣ (ଭୀମଙ୍କୁ ବିଷଲଡ୍ଡୁ ପ୍ରଦାନ) –**

କୌରବମାନେ ଭୀମସେନଙ୍କୁ ମାରିବା ଲାଗି ଚକ୍ରାନ୍ତ କରି ତାଙ୍କୁ ବିଷମିଶ୍ରିତ ଲଡ୍ଡୁ ଖାଇବାକୁ ଦେଇଥିଲେ । ଭୀମ ସେହି ବିଷଲଡ୍ଡୁ ଭକ୍ଷଣ କରି ଅଚେତ ହୋଇଯିବା ମାତ୍ରେ କୌରବମାନେ ତାହାଙ୍କୁ ପ୍ରଣାମକୋଟୀ ନାମକ କ୍ରୀଡ଼ାସ୍ଥଳୀର ଅଦୂରରେ ବହିଯାଉଥିବା ନଦୀ ଗର୍ଭରେ ପକାଇ ଦେଇଥିଲେ ।

**ବିଷୟରସ –**

ସଂସାର କାମନା, ଗୃହ, ଭାର୍ଯ୍ୟା, ପୁତ୍ର ଓ ଧନଆଦି ଚିନ୍ତା ।

**ବିସର୍ଗ –**

ଅସ୍ତ୍ରପ୍ରୟୋଗ

**ବିହର (ବିହରଣ) –**

ଭ୍ରମଣ

**ବୁଭୁକ୍ଷା –**

ଖାଇବାର ଇଚ୍ଛା

**ବୁଭୁକ୍ଷିତ –**

ଭୋକିଲା

**ବୃଜିନ –**

ପାପ

**ବୃଷ୍ଣି –**

ଯଦୁବଂଶର ଆଦିପୁରୁଷ । ତାଙ୍କରି ନାମ ଅନୁସାରେ ବୃଷ୍ଣି ହୋଇଛି । ଶ୍ରୀକୃଷ୍ଣଙ୍କ ବୃଷ୍ଣି କୁହାଯାଏ ।

**ବୃଷ୍ଣିବଂଶ –**

ସାତକୁଳ ଯାଦବମାନଙ୍କ ମଧ୍ୟରେ ଅନ୍ୟତମ ବଂଶ ।

**ବେଣ –**

ସତ୍ୟଯୁଗର ରାଜା ବେଣ । ମୁନିମାନଙ୍କ ହିତବଚନ ନ ମାନି ଅଧର୍ମ ପୂର୍ବକ ରାଜ୍ୟଶାସନ କରିବାରୁ ମୁନିମାନେ ତାଙ୍କୁ ସଂହାର କରିଥିଲେ ।

**ବେଣୁଧର –**

ଶ୍ରୀକୃଷ୍ଣ

**ବେଣୁନାଦ –**

ମୁରଲୀ ଧ୍ୱନି, ବଂଶୀଧ୍ୱନି ।

**ବେଦଗର୍ଭ –**

ବେଦ ଯାହାଙ୍କଠାରୁ ଉତ୍ପତ୍ତି ହୋଇଛି । ବ୍ରହ୍ମାଙ୍କ ଚାରିମୁଖରୁ ଚାରି ବେଦ-ଋକ୍, ଯଜୁ, ସାମ, ଅଥର୍ବ ଉତ୍ପତ୍ତି ହୋଇଥିବାରୁ ବ୍ରହ୍ମାଙ୍କର ଅନ୍ୟ ନାମ ବେଦଗର୍ଭ ।

**ବେଦଦ୍ରୁମ –**

ବେଦରୂପକ ବୃକ୍ଷ

**ବେଦପୁରୁଷ –**

ବ୍ରହ୍ମା

**ବେଦବର –**

ବ୍ରହ୍ମା

**ବେନିଅର୍ଜ୍ଜୁନ –**

ଯାଆଁଳା ଅର୍ଜ୍ଜୁନ ବୃକ୍ଷ । କୁବେରଙ୍କର ଦୁଇପୁତ୍ର ନଳକୁବେର ଓ ମଣିଗ୍ରୀବ ନାରଦଙ୍କ ଅଭିଶାପରୁ ଦୁଇଟି ଅର୍ଜ୍ଜୁନବୃକ୍ଷ ହୋଇ ଗୋପରେ ରହିଥିଲେ ।

**ବେନିଲୋକ –**

ଇହଲୋକ, ପରଲୋକ ।

**ବେଭାର –**

ଆଚରଣ, କାର୍ଯ୍ୟ ।

**ବୈକୃତ ସଂସାର –**

ଚରାଚର ପ୍ରାଣୀଙ୍କର ନୂତନ ଭାବରେ ସୃଷ୍ଟି ।

**ବୈଣବୀଲତା –**

ବାଉଁଶ ଗଛ

**ବୈତରଣୀ –**

ନରକ ବିଶେଷ, ନଦୀ ବିଶେଷ । ଏହି ନଦୀରେ ଦୁର୍ଗନ୍ଧ ରକ୍ତ ପ୍ରବାହିତ ହେଉଥାଏ । ଏଥିରେ ଅସ୍ଥି, କେଶ, ରକ୍ତ ପରିପୂର୍ଣ୍ଣ ହୋଇଥାଏ । ଏହାର ଜଳ ଉତପ୍ତ । ଏହି ନଦୀ ଯମ ଦ୍ୱାରରେ ପ୍ରବାହିତ ହେଉଛି । ଏହାର ବିସ୍ତୃତି ବହୁଯୋଜନ ବିଶିଷ୍ଟ ।

**ବୋଧିଲେ –**

ବୁଝାଇଲେ, ଆଶ୍ୱାସନାପୂର୍ଣ୍ଣ ବାଣୀ ଶୁଣାଇଲେ ।

**ବ୍ୟତିକର –**

ସମୂହ, ଯୁକ୍ତ, ବ୍ୟାପ୍ତି ।

**ବ୍ୟତିରେକ –**

ପୃଥକ୍

**ବ୍ୟସନ –**

ମନ୍ଦ ଅଭିଳାଷ, କୁକର୍ମ, ଜୁଆ, ଶିକାର, ମଦ୍ୟପାନ, ପର ସ୍ତ୍ରୀ ହରଣ ଆଦି ।

Dr. Sudhanshu Sekhar Mishra

**ବ୍ୟାକରଣ –**

ବିଚିତ୍ର ଶିଳ୍ପ ନୈପୁଣ୍ୟ, ଶବ୍ଦର ବ୍ୟୁତ୍ପତ୍ତି ଓ ଶୁଦ୍ଧ ପ୍ରୟୋଗ ।

**ବ୍ୟାସକୁମର (ମୁନି ଶୁକଦେବ) –**

ବେଦ-ବିଭାଗ-କର୍ତ୍ତା ମହର୍ଷି କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ପୁତ୍ର । ଏକଦା ବେଦବ୍ୟାସ ହୋମ କରିବା ପାଇଁ ଦୁଇଖଣ୍ଡି ଯଜ୍ଞକାଷ୍ଠ ଘର୍ଷଣ କରୁଥିଲେ । ଏହି ସମୟରେ ଘୃତାଚୀ ନାମ୍ନୀ ଅପ୍‌ସରା ତାଙ୍କର ନୟନ ଗୋଚର ହେଲା । ଅପସ୍‌ରାଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହେବାରୁ ବ୍ୟାସଦେବଙ୍କର ଚିତ୍ତଚାଞ୍ଚଲ୍ୟ ଘଟିଲା ଏବଂ ସେ ସମୟରେ ଘୃତାଚୀ ବ୍ୟାସଦେବଙ୍କ ମନୋଭାବ ଲକ୍ଷ୍ୟକରି ସେଠାରୁ ଶୁକପକ୍ଷିଣୀ ରୂପଧରି ପଳାୟନ କଲା । ବ୍ୟାସ୍‌ଦେବଙ୍କ ସ୍ଖଳିତ ବୀର୍ଯ୍ୟରୁ ପୁତ୍ରଟିଏ ଜନ୍ମଗ୍ରହଣ କଲା ଏବଂ ପିତା ତାହାର ନାମ ଶୁକଦେବ ରଖିଲେ । ଶୁକଦେବ ଚିର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ ଓ ମୋକ୍ଷଧର୍ମ ସମ୍ବନ୍ଧରେ ପିତାଙ୍କଠାରୁ ଅଧ୍ୟୟନ କରିଥିଲେ । ସେତିକିରେ ତାଙ୍କର ଜ୍ଞାନପିପାସା ଦୂର ନ ହେବାରୁ ସେ ପିତାଙ୍କ ଆଦେଶରେ ମିଥିଳାଧି-ପତି ଜନକଙ୍କଠାରୁ ମୋକ୍ଷଧର୍ମ ତଥା ବ୍ରହ୍ମତତ୍ତ୍ୱ ସମ୍ବନ୍ଧରେ ଉପଦେଶ ଗ୍ରହଣ କରିଥିଲେ । ମୁନି ଶୁକଦେବ ବ୍ୟାସଦେବଙ୍କଠାରୁ ବ୍ରହ୍ମତତ୍ତ୍ୱର ସାର ତଥା ଅଷ୍ଟାଦଶପୁରାଣର ସମସ୍ତ ତତ୍ତ୍ୱସମ୍ବଳିତ ଶ୍ରୀମଦ୍‌ଭାଗବତ ଅଧ୍ୟୟନ କରି ତାହାକୁ ପ୍ରଚାର କରିଥିଲେ । ପରୀକ୍ଷିତଙ୍କ ବ୍ରହ୍ମଶାପ ସମ୍ବାଦ ଶୁଣି ସେ ଗଙ୍ଗାକୂଳରେ ଉପସ୍ଥିତ ହୋଇ ମୁନିମାନଙ୍କ ଗହଣରେ ତାଙ୍କୁ ଭାଗବତ ଶୁଣାଇ-ଥିଲେ ।

**ବ୍ୟାସସରୋବର –**

କୁରୁକ୍ଷେତ୍ରର ଅଦୂରରେ ଥିବା ଦ୍ୱୈପାୟନ ହ୍ରଦ ବା ବ୍ୟାସଙ୍କ ନାମରେ ନାମିତ ପୁଷ୍କରିଣୀ । ଶାରଳାଦାସଙ୍କ ବର୍ଣ୍ଣନା ଅନୁସାରେ ବ୍ୟାସ ସରୋବରର ଲମ୍ବ ଓସାର ୧୨୦ ଯୋଜନ (ନଅଶହ ଷାଠିଏ ମାଇଲ) । ଶିବଙ୍କ ତ୍ରିଶୂଳରୁ ଏହି ସରୋବର ସମ୍ଭବ ହୋଇଥିଲା । ସେଥିରେ ଗଙ୍ଗା, ଯମୁନା ଓ ସରସ୍ୱତୀର ଧାର ମିଶିଛି ଏବଂ ବ୍ୟାସଦେବ କୈଳାସରୁ ଏକ ଲିଙ୍ଗ ଆଣି ତା ମଧ୍ୟରେ ସ୍ଥାପନ କରିଥିଲେ ।

**ବ୍ୟୋମ –**

ଆକାଶ

**ବ୍ରହ୍ମକଳ୍ପ –**

ବ୍ରହ୍ମାଙ୍କ ସୃଷ୍ଟି

**ବ୍ରହ୍ମତତ୍ତ୍ୱ –**

ଈଶ୍ୱରଙ୍କ ବିଷୟରେ ଜ୍ଞାନ ।

**ବ୍ରହ୍ମନଦୀ –**

ସରସ୍ୱତୀ ନଦୀ

**ବ୍ରହ୍ମରନ୍ଧ୍ର –**

ବ୍ରହ୍ମତାଲୁର କେନ୍ଦ୍ରବର୍ତ୍ତୀ ଛିଦ୍ର, ମସ୍ତିଷ୍କର ଛିଦ୍ର ।

**ବ୍ରହ୍ମଶିରା –**

ଅଶ୍ୱତ୍ଥାମାଙ୍କ ଦ୍ୱାରା ପ୍ରୟୋଗ କରାଯାଇଥିବା ବ୍ରହ୍ମାସ୍ତ୍ର ବିଶେଷ ।

**ବ୍ରହ୍ମସମ୍ଭୂତ –**

ପରମାତ୍ମାଙ୍କ ମୁଖ ନିର୍ଗତ ।

**ବ୍ରହ୍ମାଣ୍ଡ ଚତୁର୍ଦ୍ଦଶପୁର –**

ସପ୍ତସ୍ୱର୍ଗ ଓ ସପ୍ତପାତାଳ । ସପ୍ତସ୍ୱର୍ଗ-ଭୂ, ଭୁବ, ସ୍ୱ, ମହ, ଜନ, ତପ ଓ ସତ୍ୟଲୋକ । ସପ୍ତପାତାଳ-ଅତଳ, ବିତଳ, ସୁତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ ।

**ବ୍ରହ୍ମବର୍ତ୍ତ –**

କୁରୁକ୍ଷେତ୍ର ନିକଟସ୍ଥ ଦୃଷଦ୍‌ବତୀ ଓ ସରସ୍ୱତୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ । ମନୁସଂହିତାରେ ଏହି ଅଞ୍ଚଳର ପରମ୍ପରାଗତ ଆଚାରକୁ ଶ୍ରେଷ୍ଠ ସଦାଚାର ବୋଲି କୁହା-ଯାଇଛି ।

"ସରସ୍ୱତୀ ଦୃଷଦ୍‌ବତ୍ୟୋ
ର୍ଦେବନଦ୍ୟୋର୍ଯଦନ୍ତରଂ
ତଂ ଦେବ ନିର୍ମିତଂ ଦେଶଂ
ବ୍ରହ୍ମାବର୍ତ୍ତ ପ୍ରଚକ୍ଷ୍ୟତେ ।"
(ମନୁସ୍ମୃତି- ୨/୧୭)

**ବ୍ରାହ୍ମଣଶାପ –**

ଉଦ୍ଧତ ଯଦୁକୁମାରମାନେ ଶାମ୍ବଙ୍କୁ ନାରୀ ବେଶ କରି ତା ପେଟ ଉପରେ ଗୋଟିଏ ଲୁହା ଖପରା ବାନ୍ଧି, ମୁନିମାନଙ୍କୁ (ଶ୍ରୀକୃଷ୍ଣଙ୍କ ଦର୍ଶନ ଉଦ୍ଦେଶ୍ୟରେ ଆସୁଥିବା) ପଚାରିଲେ, ଏ ସ୍ତ୍ରୀ କେବେ ପ୍ରସବ କରିବ ଓ ଏହାର ପୁତ୍ର କି କନ୍ୟା ଜାତ ହେବ ? ବ୍ରହ୍ମର୍ଷିମାନେ କୁମାରମାନଙ୍କ ଔଦ୍ଧତ୍ୟ ଜାଣିପାରି, ଏହି ଗର୍ଭରୁ ଲୌହମୂଷଳ ଜାତ ହେବ ଏବଂ ତାହା ଯଦୁବଂଶକୁ ଧ୍ୱଂସ କରିବ ବୋଲି ଅଭିଶାପ ଦେଇଥିଲେ ।

**ବ୍ରାହ୍ମଣସୁତ –**

ଶମୀକ ଋଷିଙ୍କ ପୁତ୍ର ଶୃଙ୍ଗୀ ।

**ବ୍ରାହ୍ମଣାଦିଚାରିବର୍ଣ୍ଣ –**

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ।

**ଭ**

**ଭକ୍ତିଶିକ୍ଷା –**

ବିଷ୍ଣୁଭକ୍ତି ଓ ଈଶ୍ୱର ସମ୍ବନ୍ଧୀୟ

Dr. Sudhanshu Sekhar Mishra

ଶିକ୍ଷା ।

**ଭଗବତୀ –**

ଭଗବତ୍ ଅଂଶ ସ୍ୱରୂପିଣୀ ମାୟା ।

**ଭାବ –**

ସଂସାର, ଶିବ ।

**ଭବତରଙ୍ଗିଣୀ –**

ସଂସାରରୂପକ ନଦୀ

**ଭବବନ୍ଧ –**

ସଂସାର ବନ୍ଧନ

**ଭବଭେଳା –**

ସଂସାର-ସାଗରର ନୌକା ସ୍ୱରୂପ, ପରମେଶ୍ୱର ।

**ଭାଗବତୀ –**

ଭାଗବତ ସମ୍ବନ୍ଧୀୟ ଗତି, (କଥା) ।

**ଭାବଗ୍ରାହୀ –**

ଯେ ହୃଦୟର କଥା ଜାଣନ୍ତି, ପରମେଶ୍ୱର ।

**ଭାବବହି –**

ଭକ୍ତିରେ ଗଦ୍‌ଗଦ୍ ହୋଇ ।

**ଭାତି –**

କମାରଶାଳରେ ଥିବା ବାୟୁ ଯନ୍ତ୍ର ।

**ଭାବିତ –**

ଭାବନାଦ୍ୱାରା ଜଣାଯିବା ।

**ଭାରତୀ –**

ସରସ୍ୱତୀ, ବେଦବାଣୀ

**ଭିଆଇବା –**

ସୃଷ୍ଟି କରିବା

**ଭୂତଭାବନ –**

ଜୀବମାନଙ୍କର ସ୍ରଷ୍ଟା, ପ୍ରାଣୀମାନଙ୍କର ପାଳକ, ପରମେଶ୍ୱର ।

**ଭୂମିଭାରାହର –**

ପୃଥିବୀର ଦୁଃଖ ନାଶକାରୀ, ବିଷ୍ଣୁ ।

**ଭୂମଣ୍ଡଳ –**

ଭୂ ମଧ୍ୟବର୍ତ୍ତୀ ଆଜ୍ଞାଚକ୍ର ।

**ମ**

**ମକର –**

ମଗର

**ମକରକୁଣ୍ଡଳ –**

ମଗର ଆକୃତିର କୁଣ୍ଡଳ, ଏକ ପ୍ରକାର କର୍ଣ୍ଣ ଅଳଙ୍କାର ।

**ମକରନ୍ଦ –**

ଫୁଲର ମଧୁ, ମହୁ, ପୁଷ୍ପରେଣୁ ।

**ମଞ୍ଜୁବାଣୀ –**

ମଧୁର ବଚନ ।

**ମତି –**

ଦେବତାଧ୍ୟାନ ଆଦି, ବୁଦ୍ଧି ।

**ମତ୍ତ –**

ଅତ୍ୟଧିକ ଗର୍ବୀ, ପାଗଳ ।

**ମଧୁହାରୀ –**

ମଧୁ ନାମକ ଦୈତ୍ୟର ବିନାଶକାରୀ । ଯୁଗାନ୍ତ ପ୍ରଳୟ ସମୟରେ ଶ୍ରୀହରି ମଧୁ ଓ କୈଟଭଙ୍କୁ ବିନାଶ କରି ସେମାନଙ୍କର ମେଦରେ ମେଦିନୀ ନିର୍ମାଣ କରିଥିଲେ । ମଧୁସୂଦନ ।

**ମନୁ –**

ସଂସାରର ପାଳକ, ରାଜା । ଏହି ସଂସାରରେ ଚଉଦଜଣ ମନୁ ଉତ୍ପନ୍ନ ହୋଇ ଜଗତର ପାଳନ କରୁଥିବାର ବର୍ଣ୍ଣନା ପୁରାଣମାନଙ୍କରୁ ମିଳେ । ମନୁମାନଙ୍କର ନାମ ୧-ସ୍ୱାୟମ୍ଭୁବ, ୨-ସ୍ୱାରୋଚିଷ, ୩-ଉତ୍ତମ, ୪-ତାମସ, ୫-ରୈବତ, ୬-ଚାକ୍ଷୁଷ, ୭-ବୈବସ୍ୱତ, ୮-ସାବର୍ଣ୍ଣିକ, ୯-ଦକ୍ଷସାବର୍ଣ୍ଣି, ୧୦-ବ୍ରହ୍ମସାବର୍ଣ୍ଣି, ୧୧-ଧର୍ମ ସାବର୍ଣ୍ଣି, ୧୨-ରୁଦ୍ର ସାବର୍ଣ୍ଣି, ୧୩-ରୁଚି, ୧୪-ଭୌମ ।

**ମନୁକୁଟୁମ୍ବ –**

ସ୍ୱାୟମ୍ଭୁବ ମନୁ ତାଙ୍କ ପତ୍ନୀ ଶତରୂପା, ପୁତ୍ର ପ୍ରିୟବ୍ରତ ଓ ଉତ୍ତାନପାଦ ଓ କନ୍ୟା ଦେବହୂତି ।

**ମରୀଚି ଆଦି ସପ୍ତସୁତ –**

ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅତ୍ରି, ବଶିଷ୍ଠ । ଏହି ସାତଜଣ ବ୍ରହ୍ମାଙ୍କର ମାନସ ସନ୍ତାନ ।

**ମହତତ୍ତ୍ୱ –**

ପ୍ରମୋହ, ଅହଙ୍କାର, ବିକାର, ଈଶ୍ୱରଙ୍କଠାରେ ଅନାସ୍ଥାଭାବ, ଚତୁର୍ବିଂଶତିତତ୍ତ୍ୱ ଅନ୍ତର୍ଗତ ଦ୍ୱିତୀୟ ତତ୍ତ୍ୱ । ମହତ୍ତତ୍ତ୍ୱ ପ୍ରକୃତିରୁ ଉତ୍ପନ୍ନ ହୋଇଥାଏ ।

"ସବିକାରାତ୍ ପ୍ରଧାନାତ୍ତୁ
ମହତ୍ତତ୍ତ୍ୱ ପ୍ରଜାୟତେ
ଅହଙ୍କାରଶ୍ଚ ମହତୋ
ଯାୟତେ ମାନବର୍ଦ୍ଧନଃ ।"

**ମହାନୁଭାବ –**

ଈଶ୍ୱରଙ୍କ ଚିନ୍ତାରେ ନିମଗ୍ନ ଉଦାର ହୃଦୟ ।

**ମହାର୍ଣ୍ଣବ –**

ମହାସମୁଦ୍ର

**ମହୀତଳ –**

ପୃଥିବୀ

**ମହୀଧର –**

ପର୍ବତ

**ମହୋରଗ –**

ବିରାଟ ସର୍ପ

**ମାତୁଳସୁତ –**

ପାଣ୍ଡବ-ଜନନୀ କୁନ୍ତୀ ପ୍ରକୃତରେ

Dr. Sudhanshu Sekhar Mishra

ଶୂରସେନଙ୍କ ପୁତ୍ରୀ ଥିଲେ । ପରେ ତାହାଙ୍କୁ କୁନ୍ତିଭୋଜ ପାଳିଥିଲେ । ତେଣୁ ସୁରସେନଙ୍କ ପୁତ୍ର ବସୁଦେବଙ୍କର କୁନ୍ତୀଥିଲେ ଭଉଣୀ । ତେଣୁ ବସୁଦେବପୁତ୍ର ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ମାମୁଁପୁଅ ଭାଇ ଥିଲେ ।

**ମାଣ୍ଡବ୍ୟ ଶାପ –**

ଏକଦା ରାଜପୁରୁଷମାନେ ମାଣ୍ଡବ୍ୟ ଋଷିଙ୍କ ଆଶ୍ରମରୁ କେତେକ ଚୋରଙ୍କୁ ଧରିଥିଲେ । ମାଣ୍ଡବ୍ୟ ଋଷିଙ୍କୁ ଚୋରଙ୍କ ପୃଷ୍ଠପୋଷକ ବୋଲି ଭାବି ରାଜପୁରୁଷମାନେ ତାଙ୍କୁ ଧରି ନେଇ ରାଜାଙ୍କ ଆଗରେ ଉପସ୍ଥିତ କରାଇଲେ । ରାଜବିଚାରରେ ତାଙ୍କୁ ଶୂଳିଦଣ୍ଡରେ ଦଣ୍ଡାଦେଶ ଦିଆଗଲା । ଶୂଳିରେ ବସିଥିବା ସମୟରେ ସେ ଆତ୍ମପରିଚୟ ଦିଅନ୍ତେ, ରାଜା ତାଙ୍କଠାରେ କ୍ଷମାପ୍ରାର୍ଥନା କରି ଛାଡ଼ି ଦେଇଥିଲେ । ମାଣ୍ଡବ୍ୟ ଋଷି କ୍ରୋଧରେ ଧର୍ମଦେବତା ଯମଙ୍କ ନିକଟକୁ ଯାଇ ତାଙ୍କ ଶୂଳିଦଣ୍ଡର କାରଣ ସମ୍ପର୍କରେ ପଚାରିଲେ । ତହୁଁ ଯମ କହିଲେ ମହାତ୍ମନ, ଆପଣ ପିଲାଦିନେ କୁଶରେ ଗୋଟିଏ କୀଟକୁ ବଧ କରିଥିବାରୁ ଆପଣଙ୍କୁ ଏପରି ଦଣ୍ଡବିଧାନ କରାଯାଇଛି । କିନ୍ତୁ ଆପଣ ସଜ୍ଞାନରେ ଏହା କରି ନ ଥିବାରୁ ଆପଣଙ୍କୁ ଶୂଳିଦଣ୍ଡ ଦିଆଗଲା ନାହିଁ । ତହୁଁ ମାଣ୍ଡବ୍ୟ ରାଗିଯାଇ ଯମଙ୍କୁ ଅଭିଶାପ ଦେଇ କହିଲେ – "ତୁମେ ଏକଶହ ବର୍ଷ ପର୍ଯ୍ୟନ୍ତ ଶୂଦ୍ର ଯୋନିରେ କାଳାତିପାତ କରିବ । ଯମରାଜ ସେହି ଅଭିଶାପରେ ବିଦୁର ହୋଇ ଜନ୍ମଗ୍ରହଣ କରିଥିଲେ । ଯମଙ୍କ ଅନୁପସ୍ଥିତିରେ ଅର୍ଯ୍ୟମା (ସୂର୍ଯ୍ୟ) ଯମଙ୍କ ଆସନରେ ଅଧିଷ୍ଠିତ ହୋଇଥିଲେ ।

**ମାୟାଶୟଳ –**

ମାୟା ସଂସାର

**ମାୟା ସଭା –**

ଯୁଧିଷ୍ଠିରଙ୍କ ରାଜସୂୟ-ଯଜ୍ଞ ସମୟରେ ମୟଦାନବ ଗୋଟିଏ ମାୟାସଭା ନିର୍ମାଣ କରିଥିଲେ । ତାହା ଏପରି ଭାବରେ ନିର୍ମିତ ହୋଇଥିଲା ଯେ ସାଧାରଣତଃ ଜଳରେ ସ୍ଥଳ ଓ ସ୍ଥଳରେ ଜଳଭ୍ରମ ହେଉଥିଲା ।

**ମିତ୍ରାବରୁଣ –**

ଦୁଇଜଣ ବୈଦିକ ଦେବତା, ସେ ଦୁହେଁ ଯଜ୍ଞରେ ଉପସ୍ଥିତ ହୋଇ ଯଜମାନର ଅଶାନ୍ତି ଦୂର କରାନ୍ତି ।

**ମିଶ୍ର –**

ଶୁଭାଶୁଭ ମିଶ୍ରିତ ଫଳ ।

**ମୁନିଙ୍କ ଆଶ୍ରମ –**

ଶମୀକ ମୁନିଙ୍କ ଆଶ୍ରମ ।

**ମୁରାରି –**

ଭକ୍ତକବି ପୀତାମ୍ବର ଦାସଙ୍କ ବର୍ଣ୍ଣନା ଅନୁସାରେ ଭଗବାନ କୃଷ୍ଣବଲ୍ଲଭ ନାମକ ବ୍ରାହ୍ମଣ ଘରେ ନୃସିଂହ ନାମରେ ଜନ୍ମଗ୍ରହଣ କରି, ବ୍ରହ୍ମାଙ୍କ ଔରସରୁ ଜନୈକା ଅପସରାଙ୍କ ଗର୍ଭଜାତ ମୁରାସୁରକୁ ବଧ କରିଥିଲେ । ତେଣୁ ବିଷ୍ଣୁଙ୍କୁ ମୁରାରି କୁହାଯାଏ । ମୁର ଶବ୍ଦର ଅର୍ଥ ନାନାବି ସାଂସାରିକ କ୍ଳେଶରୁ ରକ୍ଷା କରୁଥିବାରୁ ସେ ମୁରର ନାଶକର୍ତ୍ତା ଅଟନ୍ତି ।

**ମୂଳନାଥ –**

ସ୍ୱୟଂ ପରମାତ୍ମା

**ମୂଳାଧାର –**

ଗୁହ୍ୟଦ୍ୱାର, ମଳଦ୍ୱାର ।

**ମୃଗତୃଷ୍ଣା –**

ମରୀଚିକା, ଖରା ସମୟରେ ଦୂରରେ ଦେଖାଯାଉଥିବା ଜଳ ସ୍ରୋତର ଭ୍ରମ ।

**ମୃଣାଳ –**

କଇଁ

**ମେଖଳା –**

ଅଣ୍ଟାସୂତା, ଚନ୍ଦ୍ରହାର ।

**ମେଢ୍ର –**

ଅଣ୍ଡକୋଷ

**ମୈତ୍ରେୟ –**

ପରାଶର ଋଷିଙ୍କର ଶିଷ୍ୟ । ପରାଶର ମୁନିଙ୍କଠାରୁ ସେ ବେଦବେଦାଙ୍ଗ ଓ ଧର୍ମଶାସ୍ତ୍ରାଦି ଅଧ୍ୟୟନ କରିବା ପରେ ବିଷ୍ଣୁପୁରାଣ ଶୁଣିବା ଲାଗି ଇଚ୍ଛା କରିଥିଲେ । ମହର୍ଷି ପରାଶର ଶିଷ୍ୟଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ବିଷ୍ଣୁପୁରାଣ ଶୁଣାଇ ଥିଲେ । ମୈତ୍ରେୟ ବିଦୁରଙ୍କୁ ମୋକ୍ଷଜ୍ଞାନ ଉପଦେଶ ଦେଇଥିଲେ ।

**ମୋକ୍ଷ କାମ –**

ବିଷ୍ଣୁ

**ମୋ ଭୁବନ –**

ବିଷ୍ଣୁଙ୍କ ଭୁବନ, ବୈକୁଣ୍ଠ ।

## ଯ

**ଯଜ୍ଞ ସମ୍ଭାର –**

ଯଜ୍ଞରେ ବ୍ୟବହୃତ ଶ୍ରୁବ, ଶ୍ରୁଚ, ପ୍ରୋକ୍ଷଣୀ, ପ୍ରଣିତା, ଯଜ୍ଞକାଷ୍ଠ, ଘୃତ ଓ ଚରୁନିମିତ୍ତ ଆବଶ୍ୟକୀୟ ଚାଉଳ, ବିରି, ମୁଗ, ଯଅ, ଧଳାସୋରିଷ ଓ ତିଳଆଦି ।

**ଯଜ୍ଞେଶ୍ୱର –**

ବିଷ୍ଣୁ

Dr. Sudhanshu Sekhar Mishra

**ଯଦୁ –**

ଯଯାତିଙ୍କ ଔରସ ତଥା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କ ଗର୍ଭରୁ ଯଦୁ ଜନ୍ମଗ୍ରହଣ କରିଥିଲେ । ତାଙ୍କରି ନାମାନୁସାରେ ଯାଦବବଂଶ ହୋଇଥିଲା ।

**ଯବନ –**

କାଳଯବନ ନାମକ ଏକ ଅସୁର । ସେ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ମଥୁରା ଆକ୍ରମଣ କରିଥିଲା । କିନ୍ତୁ ଶ୍ରୀକୃଷ୍ଣ ତାହାକୁ କୌଶଳରେ ମାନ୍ଧାତାଙ୍କ ପୁତ୍ର ମୁଚୁକୁନ୍ଦଙ୍କ ଦ୍ୱାରା ଭସ୍ମ କରାଇ ଦେଇଥିଲେ । କାଳଯବନ ଥିଲା ଗାର୍ଗ୍ୟ ମହର୍ଷିଙ୍କ ପୁତ୍ର । ସେ କେବଳ ଲୌହଚୂର୍ଣ୍ଣ ଖାଇ ବାରବର୍ଷ ପର୍ଯ୍ୟନ୍ତ କଠୋର ତପସ୍ୟା କରିଥିଲା । ଏହି ତପସ୍ୟାରେ ମହାଦେବ ସନ୍ତୁଷ୍ଟ ହୋଇ ତାଙ୍କୁ ପ୍ରବଳ ପରାକ୍ରମୀ ହେବାର ବରଦାନ କରିଥିଲେ ।

**ଯବନିକା –**

ପରଦା, ଆଢୁଆଳ ।

**ଯମ –**

ଆତ୍ମ ସଂଯମ, ମନକୁ ଏକନିଷ୍ଠ କରିବାର ପ୍ରକ୍ରିୟା । ବାହାରର ସମସ୍ତ ଚିନ୍ତାରୁ ମନକୁ ଟାଣିଆଣି ଈଶ୍ୱରଙ୍କ ଚିନ୍ତାରେ ଲଗାଇବା କାର୍ଯ୍ୟ, ମୃତ୍ୟୁଦେବତା ।

**ଯାଚଞ୍ଚା –**

ମାଗିବା

**ଯାତୁଧାନ –**

ଅସୁର

**ଯାଦବ ସାତବଂଶ –**

ମଧୁ, ଭୋଜ, ଦଶାର୍ହ, ଅର୍ହ, କୁକୁର (ସାତ୍ୱତ) ଅନ୍ଧକ, ବୃଷ୍ଣି ।

**ଯୁକତ –**

ଯୁକ୍ତିଯୁକ୍ତ

**ଯୁଗବିପ୍ଳବ –**

ଯୁଗପ୍ରଳୟ

**ଯୂଥପତି –**

ଦଳପତି, ହସ୍ତୀମାନଙ୍କ ରାଜା ।

**ଯୋଜନଗନ୍ଧା –**

କୈବର୍ତ୍ତ କନ୍ୟା ମତ୍ସ୍ୟଗନ୍ଧା, ପରାଶର ଋଷିଙ୍କ ଅନୁଗ୍ରହରୁ ଯୋଜନ-ଗନ୍ଧା ଜାତ ହୋଇଥିଲେ । ତାଙ୍କ ଗର୍ଭରୁ ବ୍ୟାସଦେବ ଜନ୍ମ ହୋଇଥିଲେ । ସେ ପରବର୍ତ୍ତୀ କାଳରେ ହସ୍ତିନାର ରାଜା ଶାନ୍ତନୁଙ୍କୁ ବିବାହ କରି ବିଚିତ୍ର ବୀର୍ଯ୍ୟଙ୍କ ଜନନୀ ରୂପେ ପ୍ରଖ୍ୟାତି ଅର୍ଜନ କରିଥିଲେ ।

## ର

**ରକ୍ଷ –**

ରାକ୍ଷସ

**ରକ୍ଷପାଳ –**

ଦଶ ଇନ୍ଦ୍ରିୟର ଅଧିଷ୍ଠାତୃ ଦେବତା । ଦିଗ, ପବନ, ଅର୍କ ବରୁଣ, ଅଶ୍ୱିନୀ, ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର ମିତ୍ର ଓ ପ୍ରଜାପତି ।

**ରନ୍ତିଦେବ –**

ଚନ୍ଦ୍ରବଂଶର ସାଙ୍କୃତିଦେବଙ୍କ ପୁତ୍ର, ସେ ଯଶପୁର ରାଜ୍ୟରେ ରାଜୁତି କରୁଥିଲେ । ସେ ବହୁଯଜ୍ଞ କରି ସହସ୍ର ସହସ୍ର ବ୍ରାହ୍ମଣଙ୍କୁ ଦାନ ଦେଇଥିଲେ । ତାଙ୍କର କୀର୍ତ୍ତି ହେଉଛି ଚର୍ମନ୍ୱତୀ (ଆଧୁନିକ ଚମ୍ବଲ) । ରନ୍ତିଦେବଙ୍କ ଦାନର ପରାକାଷ୍ଠା ପରୀକ୍ଷା କରିବା ପାଇଁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଛଦ୍ମ ବେଶରେ ଉପସ୍ଥିତ ହୋଇଥିଲେ । ରନ୍ତିଦେବ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପରମଦାନୀ ରୂପେ ପ୍ରଖ୍ୟାତି ଅର୍ଜନ କରିଥିଲେ ।

**ରବିରଶ୍ମି –**

ସୂର୍ଯ୍ୟ କିରଣ

**ରସ –**

ମଧୁର, କଟୁ, ଅମ୍ଳ, ତିକ୍ତ, କଷାୟ, ଲବଣ ଆଦି ଷଡ଼ରସ, ଶୃଙ୍ଗାର, ବୀର, କରୁଣ, ଅଦ୍‌ଭୁତ, ହାସ୍ୟ, ଭୟାନକ, ରୌଦ୍ର, ବୀଭତ୍ସ, ଶାନ୍ତ ଓ ବାତ୍ସଲ୍ୟ ଇତ୍ୟାଦି ଦଶରସ ।

**ରସନା –**

ଜିହ୍ୱା

**ରହସ୍ୟ –**

ଗୋପନୀୟ ମନ୍ତ୍ର

**ରାଜସ ଅହଙ୍କାର –**

ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ଜ୍ଞାନେନ୍ଦ୍ରିୟ ଜନିତ ଅହଙ୍କାର ।

**ରାଜସଦନ –**

ରାଜଗୃହ, ରାଜସଭା, ରାଜ ଦରବାର ।

**ରାବଣଭ୍ରାତ –**

ବିଭୀଷଣ

**ରାୟ –**

ରାଜା (ରାଜା ପରୀକ୍ଷିତ) ।

**ରିପୁ –**

ଶତ୍ରୁ, କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ । ଏ ଛଅଟିକୁ ଷଡ଼ରିପୁ ବୋଲି କୁହାଯାଇଛି ।

**ରୁକ୍ମିଣୀଭ୍ରାତ –**

ରୁକ୍ମ, ସେ ଶ୍ରୀକୃଷ୍ଣଙ୍କ ସହିତ ରୁକ୍ମିଣୀଙ୍କ ବିବାହର ବିରୋଧ କରି ବରରୂପେ ଶିଶୁପାଳଙ୍କୁ ବରଣ କରି ଆଣିଥିଲେ । କିନ୍ତୁ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ

Dr. Sudhanshu Sekhar Mishra

ଦେବୀଦ୍ୱାରରୁ ହରଣ କରି ନେଇଥିଲେ ।

**ରୁଧିର -**

ରକ୍ତ

**ରୂପ, ନାମ, କ୍ରିୟା, ଧାତୁ -**

ଅସ୍ଥି, ମେଦ, ମଜ୍ଜା-ବିଶିଷ୍ଟ ଶରୀର ଧାରଣ କରି ବିଭିନ୍ନ ନାମ, ରୂପ ଓ କାର୍ଯ୍ୟରେ ପରମାତ୍ମା ସଂସାରରେ ଲୀଳା କରନ୍ତି ।

**ରେଣୁ -**

ଧୂଳି

**ରୋମରାଜି -**

ରୋମ ସମୂହ

**ଲ**

**ଲଇ -**

ନେଇ

**ଲଙ୍କପତି -**

ରାବଣ

**ଲକ୍ଷି -**

ଜାଣି

**ଲାଞ୍ଛନ -**

ଚିହ୍ନ

**ଲିଙ୍ଗଭଗନ -**

ଯୋଗୀମାନେ ଲିଙ୍ଗ-ଶରୀରକୁ ଭଙ୍ଗକରି ମୋକ୍ଷଲାଭ ପାଇଁ ଇଚ୍ଛା କରନ୍ତି ।

**ଲେଙ୍କଡ଼ା -**

ଛିଣ୍ଡାକନା

**ଲୋମହର୍ଷଣ -**

ବ୍ୟାସଦେବ ଚାରିଲକ୍ଷ ଶ୍ଳୋକକୁ ଅଠର ଭାଗକରି ଅଷ୍ଟାଦଶ ପୁରାଣ ରଚନା କରିଥିଲେ । ସେ ପୁରାଣ-ଗୁଡ଼ିକୁ ନିଜର ସୂତଜାତୀୟ ଜନୈକ ଶିଷ୍ୟ ଲୋମହର୍ଷଣଙ୍କୁ ପାଠ କରାଇ-ଥିଲେ । ନୈମିଷ୍ୟାରଣ୍ୟରେ ଶୌନକଙ୍କ ଯାଗ ସମୟରେ ଲୋମ-ହର୍ଷଣ ସେଠାରେ ରହି ପୁରାଣ ପାଠ କରୁଥିଲେ । ବଳରାମ ତୀର୍ଥ ଯାତ୍ରା କାଳରେ ନୈମିଷାରଣ୍ୟର ଋଷି ସମାଜରେ ଉପସ୍ଥିତ ହେବା ସମୟରେ ଲୋମହର୍ଷଣ ନିଜ ଆସନରୁ ନ ଉଠିବାରୁ ବଳରାମ ତାହାଙ୍କୁ ହତ୍ୟା କରିଥିଲେ ।

**ଲୌହକାର -**

ଲୁହାକାମ କରୁଥିବା 'କମାର' ।

**ଶ**

**ଶୟଳ -**

ସଂସାର, ସ୍ଥାନ ।

**ଶରଣ ସୋଦର -**

ବିପଦ ସମୟରେ ଯେ ଭାଇପରି ରକ୍ଷାକରି ଶରଣ ଦିଏ, ଭଗବାନ ବିଷ୍ଣୁ ।

**ଶଶାଙ୍କ ରଶ୍ମି -**

ଚନ୍ଦ୍ର କିରଣ

**ଶାୟତନୁ (ଶାନ୍ତନୁ) -**

କୁରୁବଂଶର ଜନୈକ ରାଜା । ସେ ଗଙ୍ଗାଙ୍କୁ ପ୍ରଥମେ ବିବାହ କରିଥିଲେ । ତାଙ୍କ ଔରସରୁ ଦେବବ୍ରତ ଭୀଷ୍ମ ଜନ୍ମଗ୍ରହଣ କରିଥିଲେ । ପରେ ସେ କୈବର୍ତ୍ତ କନ୍ୟା ଯୋଜନଗନ୍ଧାଙ୍କୁ ବିବାହ କରିଥିଲେ । ତାଙ୍କ ଅନ୍ୟତମ ପୁତ୍ରର ନାମ ବିଚିତ୍ରବୀର୍ଯ୍ୟ ।

**ଶାୟତନୁ ସୁତ -**

ଦେବବ୍ରତ, ଭୀଷ୍ମ ।

**ଶାସ୍ତି -**

ଦଣ୍ଡ

**ଶିଖା -**

କେଶର ଅଗ୍ରଭାଗ, ଚୁଟି ।

**ଶିବପଥ -**

ମଙ୍ଗଳଦାୟକ ମାର୍ଗ ।

**ଶିବି -**

ଚନ୍ଦ୍ରବଂଶୀୟ ରାଜା ଉଶୀନରଙ୍କ ପୁତ୍ର ଶିବି ନିଜ ଶରୀରରୁ ମାଂସ କାଟି ଶରଣାଗତ କପୋତକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଦାନବୀର ଓ ଦୟାବୀର ନାମରେ ପ୍ରଖ୍ୟାତ ହୋଇଥିଲେ ।

**ଶିଶୁମାର -**

ମାଛ ଜାତୀୟ ଏକପ୍ରକାର ସ୍ତନ୍ୟପାୟୀ ଜୀବ ।

**ଶିଶୁମାର ଚକ୍ର -**

ଆକାଶ ମଣ୍ଡଳରେ ଶିଶୁମାର ଆକୃତିରେ ରହିଥିବା ନକ୍ଷତ୍ର ମଣ୍ଡଳ, ହୃଦୟ ମଣ୍ଡଳ ମଧ୍ୟରେ ପରମାତ୍ମାଙ୍କ ନିବାସ ସ୍ଥଳ ।

**ଶିଶ୍ନ -**

ଲିଙ୍ଗ ଓ ଯୋନି ।

**ଶୁକ୍ର -**

ନିର୍ମଳ ଆତ୍ମା, ପବିତ୍ର ଆତ୍ମା ।

**ଶୂକର -**

ଘୁଷୁରୀ, ଧରଣୀଙ୍କୁ ପାତାପୁରୀରୁ ଉଦ୍ଧାର କରି ଆଣିବା ପାଇଁ ଭଗବାନ ବିଷ୍ଣୁ ଶୂକର ରୂପ ଧାରଣ କରିଥିଲେ । ସେଇଥିପାଇଁ କବି ଜୟଦେବ ତାଙ୍କ ଗୀତ ଗୋବିନ୍ଦରେ ଲେଖିଛନ୍ତି -

"ବସତି ଦଶନ ଶିଖରେ
ଧରଣୀ ତବ ଲଗ୍ନା
ଶଶିନି କଳଙ୍କ କଳେବ ନିମଗ୍ନା
କେଶବ, ଧୃତ ଶୂକରରୂପ,
ଜୟ ଜଗଦୀଶ ହରେ ।"

**ଶୂଦ୍ରଜନ -**

ତାମସିକ ତଥା ଅସତ୍ ପ୍ରକୃତିର ବ୍ୟକ୍ତି ।

Dr. Sudhanshu Sekhar Mishra

**ଶୌନକ –**

ଭୃଗୁବଂଶରେ ଜାତ ଶୁସମଦ ଋଷିଙ୍କ ପୁତ୍ରଥିଲେ ଶୁନକ । ସେହି ଶୁନକଙ୍କ ପୁତ୍ର ଶୌନକ ଷାଠିଏ ହଜାର ଋଷିଙ୍କ ଆଶ୍ରମରେ ପଢ଼ୁଥିଲେ । ତାଙ୍କ ଉପଦେଶ ଅନୁସାରେ ପ୍ରୟାଗର ମାଧବଙ୍କ ଅନୁଗ୍ରହରୁ ଶୌନକ ନୈମିଷା-ରଣ୍ୟରେ ରହି ଦୀର୍ଘଦିନ ବ୍ୟାପି ଯଜ୍ଞର ସଙ୍କଳ୍ପ କରିଥିଲେ । ସେତିକିବେଳେ ସେ ଲୋମହର୍ଷଣ ଓ ତାଙ୍କ ପୁତ୍ର ସୂତଙ୍କଠାରୁ ଭାଗବତ ଶ୍ରବଣ କରିଥିଲେ ।

**ଶ୍ରବଣ –**

ଶୁଣିବା, କର୍ଣ୍ଣ ।

**ଶ୍ରବଣମଙ୍ଗଳ –**

ବିଷ୍ଣୁ, ଯାହାଙ୍କ ନାମ ଶ୍ରବଣରେ ମଙ୍ଗଳ ଉଦୟ ହୋଇଥାଏ, ଶ୍ରୀହରି ।

**ଶ୍ରୀକୃଷ୍ଣଙ୍କ ପତ୍ନୀହରଣ –**

ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପରେ ରୁକ୍ମିଣୀ ଆଦି ତାଙ୍କର ଅଷ୍ଟ ମହିଷୀ ଅଗ୍ନିରେ ଦେହତ୍ୟାଗ କରିଥିଲେ । ତାଙ୍କର ଅନ୍ୟାନ୍ୟ ପତ୍ନୀମାନଙ୍କୁ ଅର୍ଜୁନ ସଙ୍ଗରେ ଘେନି ହସ୍ତିନା ଫେରୁଥିବା ସମୟରେ ପାଞ୍ଚାଳ ଦେଶର ଦୁର୍ଦ୍ଧର୍ଷ ଗୋପାଳମାନେ ସେମାନଙ୍କୁ ବଳପୂର୍ବକ ଅପହରଣ କରିନେଇଥିଲେ ।

**ଶ୍ରୀପତି –**

ଲକ୍ଷ୍ମୀକାନ୍ତ, ବିଷ୍ଣୁ ।

**ଶ୍ରୁତିବଚନ –**

ବେଦବଚନ

**ଶ୍ରୁତିଯୁଗ –**

କୁକୁର

**ଷ**

**ଷଡ଼ରସ –**

କଟୁ, ଅମ୍ଳ, ମଧୁର, ଲବଣ, ତିକ୍ତ, କଷାୟ ।

**ସ**

**ସଂକ୍ରମ –**

ପ୍ରଳୟ, ସଞ୍ଚାର, ଗତି ।

**ସଂଗ୍ରାମ –**

ଯୁଦ୍ଧ

**ସଂଭ୍ରମ –**

ଭକ୍ତି ଓ ନମ୍ରତାର ସହିତ ବିନୟ ପ୍ରଦର୍ଶନ ।

**ସଂଶୟ –**

ସନ୍ଦେହ

**ସଂସ୍ଥାନ –**

ସ୍ଥିତି, ସୃଷ୍ଟି ଓ ସର୍ଜନା, ଅବସ୍ଥାନ, ଗଠନ, ଆକୃତି ।

**ସଂହରି –**

ଭଲ ଭାବରେ ଆକର୍ଷଣ କରି ଆଣି ବିନାଶ କରି ।

**ସଂହାର –**

ବିନାଶ

**ସଙ୍କଟ –**

ବିପଦ

**ସଚିବ –**

ମନ୍ତ୍ରୀ

**ସାଞ୍ଚ –**

ସୁନ୍ଦର ଆକୃତି

**ସାଞ୍ଚଇ –**

ସୃଷ୍ଟି କରଇ

**ସଞ୍ଚର –**

ଖେଳି ବୁଲିବା, ବ୍ୟାପିବା, ଗତି ।

**ସତ୍ୟବତୀ ସୁତ –**

ବ୍ୟାସଦେବ

**ସନ୍ନିଧାନ –**

ନିକଟ, ଅଗ୍ରତ ।

**ସପ୍ତଦ୍ୱାର –**

ନାକପୁଡ଼ା ଦୁଇ, ନେତ୍ର ଦୁଇ, କର୍ଣ୍ଣ ଦୁଇ ଓ ମୁଖ ଏକ ।

**ସପ୍ତଧାତୁ –**

ରସ, ରକ୍ତ, ମାଂସ, ମେଦ, ମଜ୍ଜା, ଶୁକ୍ର ଓ ଅସ୍ଥି, ଅଥବା ତ୍ୱକ, ଚର୍ମ, ମାଂସ, ରୁଧିର, ମେଦ, ମଜ୍ଜା, ଅସ୍ଥି ।

**ସପ୍ତପାତାଳ –**

ଅତଳ, ବିତଳ, ସୁତଳ, ତଳାତଳ, ମହୀତଳ, ରସାତଳ ଓ ପାତାଳ ।

**ସପ୍ତର୍ଷି –**

ମରୀଚି, ପୁଲସ୍ତ୍ୟ, ପୁଲହ, କ୍ରତୁ, ଅତ୍ରି, ଅଙ୍ଗିରା, ବଶିଷ୍ଠ ।

**ସପ୍ତସିନ୍ଧୁ –**

କ୍ଷୀର, ଦଧି, ଘୃତ, ମଧୁ, ସୁରା, ଲବଣ ଓ ଜଳସମୁଦ୍ର ।

**ସପ୍ତସ୍ୱର –**

ନିଶାଦ, ଋଷଭ, ଗାନ୍ଧାର, ଷଡ୍‌ଜ, ମଧ୍ୟମ, ଧୈବତ ଓ ପଞ୍ଚମ । 'ସାରିଗମପଧନି' ।

**ସପ୍ତାବରଣ –**

ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ, ମହତତ୍ତ୍ୱ ଓ ଅହଙ୍କାର ।

**ସବିତା ସୁତ –**

କର୍ଣ୍ଣ । ପାଣ୍ଡବଙ୍କ ଜନନୀ କୁମାରୀ ଅବସ୍ଥାରେ ଦୁର୍ବାସାଙ୍କ ବରମାଲ୍ୟ ପ୍ରଭାବରୁ ସୂର୍ଯ୍ୟଙ୍କ ଦ୍ୱାରା ଗୋଟିଏ ପୁତ୍ର ସନ୍ତାନର ଜନନୀ ହୋଇଥିବାରୁ ତାହାକୁ ସେ କର୍ଣ୍ଣଦ୍ୱାର ଦେଇ ଜନ୍ମ କରାଇଥିଲେ ।

**ସମ –**

ସମାନ ଭାବ

Dr. Sudhanshu Sekhar Mishra

**ସମଦରଶୀ (ସମଦର୍ଶୀ) –**

ଯେ ସମସ୍ତଙ୍କୁ ସମାନ ଭାବରେ ଦେଖିପାରେ ।

**ସମୀର –**

ପବନ

**ସମ୍ପାଦନା –**

ଯତ୍ନର ସହିତ କାର୍ଯ୍ୟ କରିବା ।

**ସମ୍ପାଦିଲେ**–ଆରମ୍ଭ କଲେ ।

**ସମ୍ଭୂତ** – ଜାତ

**ସର୍ଗ –**

ସୃଷ୍ଟି

**ସର୍ବଗତି –**

ଯେ ସବୁ ସ୍ଥାନକୁ ଯାଇପାରନ୍ତି, ପବନ, ବିଷ୍ଣୁ ।

**ସରୀସୃପ –**

ସର୍ପ ଓ ସର୍ପଜାତୀୟ ପ୍ରାଣୀ ବିଶେଷ ।

**ସଲିଳ –**

ଜଳ

**ସହ –**

ମାନସିକ ଶକ୍ତି, ସହିତ ।

**ସାଂଖ୍ୟଯୋଗ –**

ମହର୍ଷି କପିଳଙ୍କ ଦ୍ୱାରା ପ୍ରବର୍ତ୍ତିତ ଦର୍ଶନ ମାର୍ଗ, ପ୍ରକୃତି ପୁରୁଷ ବିଷୟକ ବିଚାର ।

**ସାତ୍ୟକି –**

ଯାଦବବୀର, ତଥା ଶ୍ରୀକୃଷ୍ଣଙ୍କ ସାରଥି, ଏହାଙ୍କର ଅପର ନାମ ଯୁଯୁଧାନ ।

**ସାତ୍ୱତ –**

ଭକ୍ତ, ଯାଦବ ସାତବଂଶ ମଧ୍ୟରେ ଅନ୍ୟତମ ବଂଶ ।

**ସାତ୍ତ୍ୱିକ –**

ସତ୍‌ଚିନ୍ତା, ସଦ୍‌ଭାବନା ।

**ସାତ୍ତ୍ୱିକ ଅହଙ୍କାର –**

ମନ ଓ ଇନ୍ଦ୍ରିୟ ଜନିତ ଅହଙ୍କାର ।

**ସାଧ୍ୟ –**

ଦେବଗଣ ବିଶେଷ । ଯାହା ସାଧନ ଯୋଗ୍ୟ ।

**ସାମରଥ –**

ସମର୍ଥ, ଦକ୍ଷ ।

**ସାୟଂକାଳ –**

ସନ୍ଧ୍ୟା

**ସାରଥି –**

ରଥ ଚାଳକ

**ସୁଚିରକାଳ –**

ବହୁଦିନ

**ସୁଜଡ଼ିତ –**

ବିଶେଷ ଭାବରେ ସମ୍ପର୍କ ଯୁକ୍ତ ।

**ସୁଧା –**

ଅମୃତ

**ସୁନିଶ୍ଚଳ –**

ସ୍ଥିର

**ସୁମରଣ –**

ସ୍ମରଣ, ଧ୍ୟାନ କରିବା ।

**ସୁମୃତି –**

ସ୍ମୃତି (ଧର୍ମଶାସ୍ତ୍ର)

**ସୁରଭି –**

ସୁଗନ୍ଧ, ଦେବଧେନୁ ।

**ସୁରଯୁବତୀ –**

ଦେବକନ୍ୟା, ଅପ୍ସରା ।

**ସୁହୃଦ –**

ବନ୍ଧୁ, ମିତ୍ର ।

**ସୂକ୍ଷ୍ମ –**

ଅବ୍ୟକ୍ତ ସ୍ୱରୂପ, ଯେଉଁ ରୂପକୁ ଦେଖିହୁଏ ନାହିଁ ।

**ସୂକ୍ଷ୍ମକର୍ମ –**

ନିଷ୍କାର ସହିତ କର୍ମ

**ସୂତ ମହର୍ଷି –**

ଲୋମହର୍ଷଣଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଉଗ୍ରଶ୍ରବା, ବଳରାମଙ୍କ ଦ୍ୱାରା ଅଲୌକିକ ଶକ୍ତିରେ ନିପୁଣ ହୋଇ ଶୌନକାଦି ମୁନିମାନଙ୍କୁ ପୁରାଣ ଶୁଣାଇଥିଲେ । ନୈମିଷାରଣ୍ୟର ପ୍ରଥମ ପର୍ଯ୍ୟାୟ ଯଜ୍ଞ ଶେଷ ହେବାପରେ ଉଗ୍ରଶ୍ରବା ଏଣେ ତେଣେ ବହୁଦିନ ପର୍ଯ୍ୟନ୍ତ ଭ୍ରମଣ କରି, ଶେଷରେ ଶୁକଦେବଙ୍କ ଗହଣରେ ରାଜା ପରୀକ୍ଷିତଙ୍କ ମୃତ୍ୟୁଶଯ୍ୟା ନିକଟକୁ ଆସିଥିଲେ । ସେଠାରେ ସେ ଶୁକମୁନିଙ୍କ ମୁଖରୁ ଯେଉଁ ଭାଗବତ ବାଣୀ ଶୁଣିଥିଲେ ତାହାକୁ ପରବର୍ତ୍ତୀ ସମୟରେ ନୈମିଷାରଣ୍ୟବାସୀ ଶୌନକାଦି ମୁନିମାନଙ୍କୁ ଶୁଣାଇଥିଲେ । ସେ ସୂତ (ରଥଚାଳକ) ଜାତିରେ ଜନ୍ମଗ୍ରହଣ କରିଥିବାରୁ ସୂତମୁନି ନାମରେ ପରିଚିତ ହୋଇଥିଲେ ।

**ସୃଜଇ –**

ସୃଷ୍ଟି କରଇ, ଜାତ କରଇ ।

**ସୋଦର –**

ଭାଇ

**ସୋମ –**

ଚନ୍ଦ୍ର

**ସୌରଭ –**

ସୁଗନ୍ଧ

**ସ୍ୱଧା –**

ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣ ଓ ପିଣ୍ଡଦାନ ।

**ସ୍ୱାହା –**

ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ଆହୁତି ଦେବା ।

**ସ୍ନେହରସ –**

ଘୃତ, ତୈଳ ଆଦି ।

Dr. Sudhanshu Sekhar Mishra

**ସ୍ମାର୍ତ୍ତ -**

ସ୍ମୃତିଶାସ୍ତ୍ରର ନିୟମକୁ ମାନି ଚଳୁଥିବା ବ୍ୟକ୍ତି, ଗୃହସ୍ଥ ।

**ସ୍ଥାବର ଆଦି ଚାରି ଦେହ -**

ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗ ।

**ସ୍ଥିତି -**

ପାଳନ, ସ୍ଥିରହୋଇ ରହିବା ।

**ହ**

**ହଂସ -**

ଭଗବାନ ହଂସ ରୂପ ଧାରଣ କରି ଭକ୍ତିଯୋଗ ସମ୍ବନ୍ଧରେ ବୁଝାଇ ଥିଲେ ।

**ହବ୍ୟ -**

ଘିଅ

**ହସ୍ତ -**

ହାତୀର ଥୋଡ଼, ହାତ ।

**ହସ୍ତୀସେବିତ -**

ହାତୀ ପରିପୂର୍ଣ୍ଣ

**ହିଡ଼ିମ୍ବକ -**

ବନବାସ ସମୟରେ ପାଣ୍ଡବ-ମାନଙ୍କୁ ଖାଇବା ପାଇଁ ହିଡ଼ିମ୍ବକ ଅସୁର ନିଜ ଭଉଣୀ ହିଡ଼ିମ୍ବୀ ବା ହିଡ଼ିମ୍ବାକୁ ଗୋଟିଏ ସୁନ୍ଦରୀ ସ୍ତ୍ରୀ ବେଶରେ ସଜାଇ ସେମାନଙ୍କ ନିକଟକୁ ପଠାଇଥିଲା । ହିଡ଼ିମ୍ବୀ ଭୀମଙ୍କ ରୂପରେ ମୁଗ୍ଧ ହୋଇ ତାଙ୍କୁ ପତି ପଦରେ ବରଣ କଲା ।

**ହିରଣ୍ୟକଶିପୁ -**

କଶ୍ୟପ ଋଷିଙ୍କର ଦିତି ନାମକ ପତ୍ନୀଙ୍କ ଗର୍ଭରୁ ମହାବଳଶାଳୀ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ନାମକ ଦୈତ୍ୟ ଜାତ ହୋଇଥିଲେ । ହିରଣ୍ୟକଶିପୁଙ୍କର ଅନ୍ୟତମ ପୁତ୍ରଥିଲେ ଭକ୍ତପ୍ରବର ପ୍ରହ୍ଲାଦ । ହିରଣ୍ୟକଶିପୁ ନୃସିଂହଙ୍କ ଦ୍ୱାରା ନିହତ ହୋଇଥିଲେ ଓ ବରାହରୂପୀ ଭଗବାନ ବିଷ୍ଣୁଙ୍କଦ୍ୱାରା ହିରଣ୍ୟାକ୍ଷ ବଧ ହୋଇଥିଲେ ।

**ହୈହୟ -**

ତ୍ରେତୟା ଯୁଗର ହୈହୟ ବଂଶୋଦ୍ଭବ କୀର୍ତ୍ତବୀର୍ଯ୍ୟ ବା ସହସ୍ରାର୍ଜୁନଙ୍କୁ ହୈହୟ କୁହା-ଯାଉଥିଲା । ସେ ଅତ୍ରିଙ୍କ ପୁତ୍ର ଦତ୍ତାତ୍ରେୟଙ୍କ ଠାରୁ ଅମୋଘ-ବର ଲାଭ କରି ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଉଠିଥିଲେ । ହୈହୟରାଜ କାର୍ତ୍ତବୀର୍ଯ୍ୟ ଋଷି ଜମଦଗ୍ନିଙ୍କ କାମଧେନୁକୁ ହରଣ କରନ୍ତେ ପରଶୁରାମ ତାଙ୍କୁ ବଧ କରିଥିଲେ ।

---

## ତୃତୀୟ ସ୍କନ୍ଧ

**ଅ**

**ଅକୁଣ୍ଠିତ ବୁଦ୍ଧି –**

ଯାହାଙ୍କର ବୁଦ୍ଧି କୌଣସି ବିଷୟ ଗ୍ରହଣରେ କୁଣ୍ଠିତ ନୁହେଁ

**ଅକ୍ରୁର –**

ଯାଦବବଂଶର ଅନ୍ୟତମ ବୀର। ଏହାଙ୍କ ପିତାଙ୍କ ନାମ ସଫଳକ। ମାତାଙ୍କ ନାମ ଗାନ୍ଧିନୀ। କଂସର ଆଦେଶରେ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ନେବାପାଇଁ ସେ ଗୋପପୁରକୁ ଆସିଥିଲେ। ପରବର୍ତ୍ତୀ ସମୟରେ ସେ ଶ୍ରୀକୃଷ୍ଣଙ୍କର ବିରୋଧୀ ହୋଇଯାଇଥିଲେ। ସେ ଶତଧନ୍ୱା ନାମକ ଯାଦବଙ୍କୁ ଶିଖାଇ ସତ୍ୟଭାମାଙ୍କ ପିତା ଶତ୍ରାଜିତଙ୍କୁ ବଧ କରି ସ୍ୟମନ୍ତକମଣି ଅପହରଣ କରିଥିଲେ। ଅକ୍ରୁର ସେହି ମଣିକୁ ନେଇ ଦ୍ୱାରକା ଛାଡ଼ି ଚାଲିଗଲେ। ପରେ ଶ୍ରୀକୃଷ୍ଣ ଏହା ଜାଣିପାରି ତା'ଙ୍କୁ ଦ୍ୱାରକାରେ ରଖାଇ ତା'ଙ୍କ ସହିତ ପୂର୍ବପରି ମିତ୍ରତା କରିଥିଲେ।

**ଅଗାଧ ବୋଧ –**

ପ୍ରଚୁର ଜ୍ଞାନ

**ଅଘତିମିରି –**

ପାପରୂପକ ଅନ୍ଧକାର

**ଅଘମର୍ଷଣ –**

ପାପ ବିନାଶକର

**ଅଜ –**

ଯାହାଙ୍କର ଜନ୍ମ ନାହିଁ, ଦଶରଥଙ୍କ ପିତାଙ୍କ ନାମ

**ଅଜୀନ –**

କୃଷ୍ଣବର୍ଣ୍ଣ ମୃଗର ଚମଡ଼ା

**ଅତିବେଳ –**

ସର୍ବଦା, ସବୁବେଳେ

**ଅଧିଦେବ –**

ଅଧିଷ୍ଠିତ ଦେବତା।

**ଅଧିପୁରୁଷ –**

ବିରାଟ ପୁରୁଷ, ସ୍ୱୟଂ ବିଷ୍ଣୁ

**ଅନଙ୍ଗ –**

କନ୍ଦର୍ପ

**ଅନନ୍ତପୁତ୍ର –**

ଅସଂଖ୍ୟ କ୍ଷଣ, ଅନେକ ମୁହୂର୍ତ୍ତ।

**ଅନ୍ଧତାମିସ୍ର –**

Dr. Sudhanshu Sekhar Mishra

ଦେହନଷ୍ଟ ହେଲେ ଆତ୍ମନାଶ ବୁଦ୍ଧି, ପାପୀମାନଙ୍କ ଯାତନା ଭୋଗ ନିମିତ୍ତ ଗୋଟିଏ ପ୍ରକାର ନରକ।

ଅନ୍ତଃପୁର –

ମନ୍ତ୍ରଣାଳୟ, ରାଣୀମାନଙ୍କ ରହିବା ଘର, ଭିତରପୁର।

ଅନଳ –

ଅଗ୍ନି

ଅନୁକ୍ଷଣ –

ସର୍ବଦା

ଅନୁଜନ୍ମ –

ଗୋଟିଏ ଜନ୍ମପରେ ଆଉ ଗୋଟିଏ ଜନ୍ମ, ବାରମ୍ବାର ଅଭିବ୍ୟକ୍ତି।

ଅନୁବାଦ –

କୀର୍ତ୍ତନ, ଭାଷାନ୍ତର।

ଅନୁଯାନ –

ଅନୁଗମନ, ବିଦାୟ ଦେବା।

ଅନୁସର –

ଅନୁସରଣ, ପଛେ ପଛେ ଯିବା।

ଅନ୍ୟଜନ –

ଅପରଲୋକ - ଶିଶୁପାଳ, ଦନ୍ତବକ୍ର, ପୌଣ୍ଡ୍ରକ, କାଶୀରାଜ ଓ ଜରାସନ୍ଧ ଆଦି ଭଗବାନ ଶ୍ରୀକୃଷ୍ଣଙ୍କ ଶତ୍ରୁଗଣ।

ଅପ୍ରମିତ –

ଅସଂଖ୍ୟ

ଅବଗାହ –

ସ୍ନାନ

ଅବିରତ –

ସର୍ବଦା

ଅବିଦ୍ୟା ପଞ୍ଚପଟ –

ତମ, ମୋହ, ମହାମୋହ, ତାମିସ୍ର, ଅନ୍ଧତାମିସ୍ର।

ଅବିଦ୍ଧ ତେଜ –

ଯେଉଁ ତେଜକୁ ଘୋଡ଼ାଇ ରଖାଯାଇ ପାରେ ନାହିଁ, ଅଲୌକିକ ତେଜ।

ଅମ୍ବିକା –

ପାର୍ବତୀ, କାଶୀରାଜଙ୍କ ମଧ୍ୟମା କନ୍ୟା, କୁରୁବଂଶର ରାଜା ବିଚିତ୍ରବୀର୍ଯ୍ୟଙ୍କ ପତ୍ନୀ ଓ ଧୃତରାଷ୍ଟ୍ରଙ୍କ ଜନନୀ।

ଅୟନ –

ଛ'ମାସ ବା ତିନି ଋତୁ ମିଶି ଗୋଟିଏ ଅୟନ ହୁଏ। ମକର ମାସଠାରୁ ମିଥୁନ ମାସ ପର୍ଯ୍ୟନ୍ତ ଛଅମାସକୁ ଉତ୍ତରାୟଣ (ଉତ୍ତର ଅୟନ) ଓ କର୍କଟମାସଠାରୁ ଧନୁମାସ ପର୍ଯ୍ୟନ୍ତ ଛଅମାସକୁ ଦକ୍ଷିଣାୟନ (ଦକ୍ଷିଣ ଅୟନ) କୁହାଯାଏ।

ଅରଣି –

ହୋମ ନିମିତ୍ତ ସଂଗୃହୀତ କାଠ, ଅରଣ୍ୟ।

ଅରୁଣ –

ଈଷତ୍ ରକ୍ତବର୍ଣ୍ଣ, ଉଷାକାଳୀନ ପୂର୍ବଦିଗର ଲାଲିମା, ନବୋଦିତ ସୂର୍ଯ୍ୟ, ସୂର୍ଯ୍ୟଙ୍କ ସାରଥି।

ଅଳକ –

କୁଞ୍ଚୁକୁଞ୍ଚିଆ ବାଳ

ଅଶ୍ରୁକଣ୍ଠ –

ଚକ୍ଷୁରେ ଲୁହ ଛଳ ଛଳ ଓ କଣ୍ଠରେ ଗଦ୍ ଗଦ୍ ବାଣୀ ପୂର୍ଣ୍ଣ ଅବସ୍ଥା।

ଅଷ୍ଟଦିଶ –

ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ, ଐଶାନ୍ୟ, ଅଗ୍ନି, ନୈଋତ, ବାୟୁ - ଏହି ଚାରିଦିଗ ଓ ଚାରିକୋଣକୁ ଅଷ୍ଟଦିଶ ବା ଅଷ୍ଟଦିଗ କୁହାଯାଏ।

ଅସି –

ଖଡ୍‌ଗ, ତରବାରୀ।

ଅସ୍ତାଚଳ –

ଅସ୍ତପର୍ବତ, ପଶ୍ଚିମ ଦିଗସ୍ଥିତ ପର୍ବତ।

ଆ

ଆତ୍ମଜ୍ଞାନ ନିଧି –

ଆତ୍ମଜ୍ଞାନ ସଂପନ୍ନ, ସ୍ୱୟଂ ବିଷ୍ଣୁ।

ଆତ୍ୟନ୍ତିକୀ ଗତି –

ପରମ ଗତି

ଆଦିଭବ –

ସୃଷ୍ଟିର ଆଦି ପୁରୁଷ, ଶିବ, ବିଷ୍ଣୁ ଓ ବ୍ରହ୍ମା।

ଆନ୍ୱିକ୍ଷିକା –

ଧର୍ମ, ଅର୍ଥ, ମୋକ୍ଷ ବିଦ୍ୟା।

ଆୟାସ –

ପ୍ରସ୍ଥ ବା ଓସାର।

ଆର୍ଜ୍ଜବ –

ସରଳତା

ଆର୍ତ୍ତିଯୁତ –

କରୁଣାଯୁକ୍ତ, ଦୀନ ଭାବନାଗ୍ରସ୍ତ।

ଆସ୍ୟ –

ମୁଖ

ଇ

ଇନ୍ଧନ –

ଜାଳେଣୀକାଠ

ଇଷ୍ଟାପୂର୍ତ୍ତି –

ଇଚ୍ଛାର ପରିପୂରଣ, ଈଶ୍ୱର ସେବା ଉଦ୍ଦେଶ୍ୟରେ ଦାନ।

ଇଡ଼ା –

ଯଜ୍ଞରେ ଆମନ୍ତ୍ରିତ ଦେବତାଙ୍କ ଭକ୍ଷର ପାତ୍ର।

ଉ

ଉଗ୍ରସେନ –

ଯଦୁବଂଶୀୟ ରାଜା ଆହୁକଙ୍କ ପୁତ୍ର। ତାଙ୍କ ମାତାଙ୍କ ନାମ କାଶ୍ୟା। ତାଙ୍କର କ୍ଷେତ୍ରଜ ପୁତ୍ର ହେଉଛନ୍ତି କଂସ। ପରବର୍ତ୍ତୀ କାଳରେ ସେ ମଥୁରା ଓ ଦ୍ୱାରକା ଉଭୟ ଦେଶର ରାଜା ହୋଇଥିଲେ।

ଉଡ୍ଡୁମ୍ବର –

ସକାଳୁ ଉଠି ଯେଉଁ ଦିଗକୁ ପ୍ରଥମେ ଦେଖିବ, ସେହି ଦିଗରୁ କିଛି ଫଳମୂଳ ଆଣି ଖାଇ ବଞ୍ଚିବା

Dr. Sudhanshu Sekhar Mishra

ଉଦ୍ଧବ -

ଯାଦବବୀର ସତ୍ୟକଙ୍କ ପୁତ୍ର। ଶ୍ରୀକୃଷ୍ଣଙ୍କର ପରମ ସଖା ଓ ଭକ୍ତ ରୂପେ ଖ୍ୟାତ। ଶ୍ରୀକୃଷ୍ଣଙ୍କର ଅନ୍ତରଙ୍ଗ ସଖା ଭାବରେ ସେ ମଥୁରାରୁ ଦୂତ ରୂପେ ଗୋପପୁରକୁ ଯାଇଥିଲେ। ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ସମ୍ବାଦ ଜାଣି ସେ ପ୍ରଭୁଙ୍କ ପାଦୁକା ଦୁଇଟିକୁ ନେଇ ବଦରିକା ଗମନ କରିଥିଲେ ଏବଂ ସେହିଠାରେ ତାଙ୍କର ମହାପ୍ରୟାଣ ଘଟିଥିଲା।

ଉପଷଦ -

ତିନି ପ୍ରକାର ଯଜ୍ଞ। ଯଥା -

(୧) ପ୍ରାୟଣୀ, ଦୀକ୍ଷା ପରେ ଯେଉଁ ଯଜ୍ଞ କରାଯାଏ।

(୨) ଉଦୟନ - ଦୀକ୍ଷା ସମାପ୍ତ କାଳରେ ଯେଉଁ ଯଜ୍ଞ କରାଯାଏ।

(୩) ପ୍ରବମଧ - ମହାବୀର ନାମକ ଯଜ୍ଞର କର୍ମ ବିଶେଷ

ଉପାଧାନ -

ତକିଆ (ମାଣ୍ଡି)

ଉପାସନା ଅଗ୍ନ -

ଏହାର ଅପର ନାମ ଆବସଥ୍ୟ।

ଉବୁରିଲା -

ଉଦ୍ଧାର ପାଇଲା

ଉଭୟ ସୃଷ୍ଟି -

ପଶୁ ଓ ମନୁଷ୍ୟ ସୃଷ୍ଟି, ଅର୍ଥାତ୍ ଅଶ୍ୱିନୀ କୁମାରଙ୍କ ଶରୀରର ଅର୍ଦ୍ଧଭାଗ ପଶୁ ଓ ଅର୍ଦ୍ଧଭାଗ ମନୁଷ୍ୟ ତୁଲ୍ୟ।

ଉଭାରି -

ସମର୍ଥ

ଉର୍ଦ୍ଧ୍ୱ ସ୍ରୋତ -

ଉପରକୁ ବୃଦ୍ଧି ପାଇବା

ଉର୍ମିସଙ୍କୁଳ -

ଲହରୀ ପରିପୂର୍ଣ୍ଣ

ଉଷତ -

ଆନନ୍ଦ

ଋ

ଋଣତ୍ରୟ -

ତିନି ପ୍ରକାର ଋଣ। ଯଥା- ଦେବ ଋଣ, ଋଷି ଋଣ, ପିତୃ ଋଣ।

ଏକାଙ୍ଗଚକ୍ର -

ଏକଛତ୍ର ସମ୍ରାଟ

ଓ

ଓଦନ -

ପକ୍ୱଅନ୍ନ

କ

କନ୍ଦଳ -

କଳିକଳିଆ

କପିଳ -

ପିଙ୍ଗଳବର୍ଣ୍ଣ (କପିଳମୁନି, ଦେବହୂତି ଓ କର୍ଦ୍ଦମଙ୍କ ପୁତ୍ର)

କମମୟ -

ସବୁ କାମରେ ନିର୍ମିତ।

କମଳଲୋଚନ -

ପଦ୍ମ ଆଖି, ବିଷ୍ଣୁ।

କମ୍ବୁ -

ଶଙ୍ଖ

କର୍ମ ଅଭାଗ୍ୟ -

ଭାଗ୍ୟହୀନ

କଳତ୍ର -

ଭାର୍ଯ୍ୟା

କାମଗ -

ଇଚ୍ଛାନୁସାରେ ଗମନକାରୀ

କାଳଅଂଶ -

ସନ୍ଧ୍ୟାଂଶ

କିଞ୍ଜଳ୍କ -

କେଶର

କୁଞ୍ଜର -

ହାତୀ

କୁଟୀଚକ୍ର

ଆଶ୍ରମ ଧର୍ମକୁ ପ୍ରାଧାନ୍ୟ ଦେବା

କୁନ୍ଦକୋରକ -

କୁନ୍ଦଫୁଲର କଢ଼ି।

କୁମାରସର୍ଗ -

ସନତକୁମାରଙ୍କ ସୃଷ୍ଟି

କୁଶପାଣି -

ବ୍ରହ୍ମା, ପ୍ରଜାପତି

କୋଳ -

ଶୂକର, ବରାହ।

କ୍ରିୟାପୂର୍ତ୍ତି -

କର୍ମ ସମ୍ପାଦନ

କ୍ଷମେ -

ମଙ୍ଗଳରେ

କ୍ଷୀଣ -

କ୍ଷୟ

କ୍ଷେମ -

କୁଶଳ, ମଙ୍ଗଳ, ସୁରକ୍ଷିତ।

ଖ

ଖଣ୍ଡାଇ -

ଖଣ୍ଡନ କରି

ଗ

ଗଜ -

କୁବଳୟା ନାମକ ଗଜ, କଂସର ପାଟହାତୀ।

ଗାନ୍ଧର୍ବ ବିବାହ -

କନ୍ୟା ଓ ବରଙ୍କ ଇଚ୍ଛାନୁସାରେ ବିବାହ। ଶାସ୍ତ୍ରମତରେ ଆଠ ପ୍ରକାର ବିବାହ ମତରେ ଗାନ୍ଧର୍ବ ବିବାହ ଅନ୍ୟତମ।

ଗବୟ -

ଗୟଳ ବା ନୀଳଗାଈ।

ଗୁଣଗ୍ରାମ -

ଗୁଣସମୂହ

ଗୃହମେଧ -

ଗୃହସ୍ଥ ଅଚାର ବିଚାର ଓ କର୍ମ।

ଗ୍ରନ୍ଥି -

ବନ୍ଧା ହୋଇ

Dr. Sudhanshu Sekhar Mishra

ଗ୍ରହା -

ସୋମରସ ପାତ୍ର

ଗ୍ରାମ୍ୟଧର୍ମ -

ନିମ୍ନପ୍ରବୃତ୍ତିଦ୍ୱାରା ପରିଚାଳିତ ଧର୍ମ କର୍ମ।

ଚ

ଚତୁର ଅଶୀତ -

ଚଉରାଅଶୀ, ନର୍କ ଚଉରାଅଶୀ ପ୍ରକାର ବୋଲି ଶାସ୍ତ୍ରରେ ଅଛି।

ଚକ୍ଷୁର ଅର୍କ -

ପୁଅ ଡୋଳା

ଚତୁର୍ଦ୍ଦଶ ଲୋକ -

ସପ୍ତସ୍ୱର୍ଗ ଓ ସପ୍ତପାତାଳ।

ଚନ୍ଦ୍ରକୁ ମୀନ ଯେହ୍ନେ ଜଳେ -

ଉଭୟେ ଜଳରୁ ଉତ୍ପନ୍ନ ହୋଇଥିଲେ ହେ ଚନ୍ଦ୍ରର ପ୍ରତିବିମ୍ବକୁ ଦେଖି ମୀନ ତାକୁ ଆହାର ବୋଲି ମନେ କରେ।

ଚନ୍ଦ୍ରାତପ -

ଚାନ୍ଦୁଆ

ଚମସ -

ବ୍ରହ୍ମାଙ୍କ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ ଘୃତ ପାତ୍ର।

ଚାତୁର୍ହୋତ୍ର -

ହୋତା, ଉଦ୍‌ଗାତା, ଅଧ୍ୱର୍ଯ୍ୟ, ବ୍ରହ୍ମା (ଅଧ୍ୱର୍ଯ୍ୟୁ ଯଜ୍ଞର ମୁଖ୍ୟ ପୁରୋହିତ)।

ଚାପ -

ଧନୁ

ଚିତି -

ଇଷ୍ଟକାରକ, ଇଷ୍ଟ ପ୍ରାପ୍ତି।

ଚୀରାଣି -

ଚୀରା, ଲେଙ୍ଗୁଡ଼ା।

ଜ

ଜାମ୍ବବତୀ -

ଶ୍ରୀକୃଷ୍ଣଙ୍କ ଦ୍ୱିତୀୟା ରାଣୀ, ଜାମ୍ବବାନର କନ୍ୟା।

ଜାମ୍ବବତୀ ସୁତ -

ଶାମ୍ବ

ଜୀମୂତ -

ମେଘ

ଜ୍ୱର -

ନଷ୍ଟଭ୍ରଷ୍ଟ

ଜ୍ୟେଷ୍ଠଭ୍ରାତ ସୁତ -

ଧୃତରାଷ୍ଟ୍ରର ପୁତ୍ର ଦୁର୍ଯ୍ୟୋଧନ, ଦୁଃଶାସନ ଆଦି।

ତ

ତପନ -

ସୂର୍ଯ୍ୟ

ତମ -

ଅନ୍ଧକାର

ତାମିସ୍ର -

ବିଷୟଭୋଗ ବିଘ୍ନ ଜନିତ କ୍ରୋଧ

ତୀର୍ଥ ଉଦକ -

ତୀର୍ଥର ଜଳ

ତୀର୍ଥପାଦ -

ଯାହାଙ୍କର ପାଦ ତୀର୍ଥ ସ୍ୱରୂପ।

ତୁଙ୍ଗ -

ଉନ୍ନତ

ତୁରୀୟ -

ଚତୁର୍ଥ

ତୃତୀୟ ତାପ -

ତ୍ରିତାପ, ତ୍ରିବିଧ ଦୁଃଖ।

ତୃତୀୟ ଦଶରଥ -

ମଳମାସ ସହିତ ତେର ମାସ।

ତୃତୀୟ ଶକ୍ତି -

ଜ୍ଞାନ, କ୍ରିୟା, ଆତ୍ମଶକ୍ତି।

ତ୍ରାସ -

ତରାସ, ପ୍ରକାଶ, ତେଜ।

ତ୍ରିନାଭି -

ଗ୍ରୀଷ୍ମ, ବରଷା ଓ ଶୀତ ଏହି ତିନି ଋତୁ।

ତ୍ରିଷଷ୍ଟି ପର୍ବ -

ତିନିଶହ ଷାଠିଏ ଅହୋରାତ୍ର

ଦ

ଦାବାନଳ -

ବନାଗ୍ନି, ଜଙ୍ଗଲର ନିଆଁ

ଦୁକୂଳ -

ବସ୍ତ୍ର

ଦୁଗ୍ଧଫେନନାଭି -

ଦୁଗ୍ଧ ଫେଣ ପରି ଧଳା

ଦୁର୍ଜ୍ଜୟ -

ଯାହାକୁ ଜୟ କରିବା କଷ୍ଟକର

ଦେବଉଦ୍ୟାନ -

ବୈଭ୍ରାଜକ, ସୁରସେନ, ନନ୍ଦନ, ପୁଷ୍ପଭଦ୍ର, ଚୈତ୍ରରଥ ଆଦି ଦେବତାମାନଙ୍କ ବାଟିକା

ଦେହଳି -

ଏରୁଣ୍ଡିବନ୍ଧ, କବାଟ ଆଗରେ ଥିବା ବରାଣ୍ଡା।

ଦ୍ରୁମ -

ବୃକ୍ଷ

ଧ

ଧର୍ମଧ୍ୱଜୀ -

ଧର୍ମ ନାମରେ ମିଥ୍ୟା ପ୍ରଚାରକାରୀ, ଅଧାର୍ମିକ

ଧାତିକାରେ -

ଅତି ଶୀଘ୍ରେ

ନ

ନବନବତି

ଅନେଶୋତ

ନାରକା ପୁତ୍ର -

ଭଗଦତ୍ତ

ନାରକାସୁର -

Dr. Sudhanshu Sekhar Mishra

ଶୂକର ରୂପୀ ବିଷ୍ଣୁଙ୍କ ସଂସର୍ଗରୁ ପୃଥିବୀଙ୍କଠାରୁ ଜାତ ପୁତ୍ର।

ନିଦାଘ -

ଗ୍ରୀଷ୍ମ

ନିବେଦ -

ସମର୍ପଣ

ନିମିତ୍ତ ଅର୍ଥେ -

ପ୍ରୟୋଜନ, ଶୁଭ ସୂଚନା।

ନିରଙ୍କୁଶ -

ବିନା ବାଧା

ନିରତେ -

ସର୍ବଦା

ନିର୍ମତ୍ସର -

ଈର୍ଷା ବା ଦ୍ୱେଷହୀନ।

ନୀଳଲୋହିତ -

ରୁଦ୍ର, ଶିବ।

ପ

ପାଞ୍ଚଜନ୍ୟ -

ବିଷ୍ଣୁଙ୍କ ହସ୍ତରେ ଥିବା ଶଙ୍ଖ, ପଞ୍ଚଜନ ନାମକ ସମୁଦ୍ରସ୍ଥିତ ଅସୁରର ଅସ୍ଥିବିଶେଷ।

ପଞ୍ଚନଖୀ -

ପାଞ୍ଚଗୋଟି ନଖଥିବା ପଶୁ, କୁକୁର, ବିଲୁଆ, ବାଘ, ଭାଲୁ।

ପରିଚ୍ଛିନ୍ନ -

ପୃଥକ୍ କୃତ।

ପରିମାଣି -

ଜାଣି

ପାବକ -

ଅଗ୍ନି

ପାୟୁ -

ମଳଦ୍ୱାର

ପାରାବାର -

ସମୁଦ୍ର

ପୁଲୀନ -

ବାଲିପୂର୍ଣ୍ଣ ନଦୀ ତଟ, ସମୁଦ୍ର ତଟ।

ପୁଣ୍ୟଶ୍ଳୋକ -

ପୁଣ୍ୟବାନ୍

ପୁଷ୍କଳ -

ନିର୍ମଳ, ବିସ୍ତୃତ, ପ୍ରଶସ୍ତ।

ପୁରୀଷ -

ଅଗ୍ନିଚୟନ, ମଳ।

ପ୍ରଣବ -

ଓଁ କାର।

ପ୍ରଣମିତେ -

ପ୍ରଣାମ କରି

ପ୍ରତିଗ୍ରହ -

ଗ୍ରହଣ (ଦାନଗ୍ରହଣ)

ପ୍ରତିଲୋମ -

ପ୍ରତିକୂଳ, ଉଚ୍ଚମବର୍ଣ୍ଣର ସ୍ତ୍ରୀ ଓ ନୀଚ ବର୍ଣ୍ଣର ପୁରୁଷର ସଂଯୋଗ।

ପ୍ରତ୍ୟଙ୍ଗ -

ଆୟୁଧ (ଗଦା, ପଦ୍ମ, ଶଙ୍ଖ)

ପ୍ରତ୍ୟାହାର -

ପବନ ଊର୍ଦ୍ଧ୍ୱକୁ ନେବା (ଫେରାଇ ନେବା)।

ପ୍ରଥମ ଆଶ୍ରମ -

ବ୍ରହ୍ମଚର୍ଯ୍ୟ ଆଶ୍ରମ

ପ୍ରଦକ୍ଷିଣ -

ଚାରିପଟେ ବୁଲି

ପ୍ରପଞ୍ଚ -

କଦର୍ଯ୍ୟ, ଅସତ୍ୟ।

ପ୍ରପନ୍ନ -

ଦାନ

ପ୍ରମାଣୁ -

ପରମାଣୁ

ପ୍ରମାଦ -

ବିପଦ ଆପଦ

ପ୍ରସରିବ -

ବିସ୍ତୃତ ହେବ।

ପ୍ରାଜାପତ୍ର -

ଉପନୟନର ଏକବର୍ଷ ପର୍ଯ୍ୟନ୍ତ ପାଳିତ ଧର୍ମ।

ପ୍ରାଶିତ୍ର -

ବ୍ରହ୍ମଭାଗ ପାତ୍ର

ପ୍ଳୁତ -

ଗୋଳା ହୋଇଥିବା ବା ବିଲୋଳିତ।

ଫ

ଫୁଟିଣ -

ଦୁଃଖ ପାଇ

ଫେନପା -

ଗଛରୁ ଆପଣାଛାଏଁ ପଡ଼ିଥିବା ଫଳ ଗୋଟାଇ ଆଣି ଜୀବନ ଧାରଣ କରିବା।

ବ

ବନ -

ଜଳ, ବଣ

ବରହିଣ -

ମୟୂର

ବଳି -

ପିଣ୍ଡାଦି ତର୍ପଣ

ବହୁମାନନା -

ବହୁ ସମ୍ମାନପୂର୍ବକ

ବାତ -

ପବନ

ବାରଣ -

ହସ୍ତୀ

ବାରୁଣୀ -

ସମୁଦ୍ରଜାତ ମଦ୍ୟ, ବରୁଣର କନ୍ୟା।

ବାର୍ତ୍ତା -

କୃଷି ବ୍ୟାପାର ଆଦି।

ବାଳଖିଲ୍ୟ -

ନୂଆ ଅନ୍ନ ମିଳିବାପରେ ପୂର୍ବ ସଞ୍ଚିତ ଅନ୍ନକୁ ତ୍ୟାଗ କରିବା ଏବଂ ବାଲଖିଲ୍ୟ ନାମକ ଋଷିଗଣ।

Dr. Sudhanshu Sekhar Mishra

ବିଡ଼ମ୍ବନ -

ଉପହାସ, ପ୍ରତାରଣା ।

ବିଡ଼ାଳ -

ବିରାଡ଼ି

ବିଦ୍ରୁମ -

ପୋହଳା

ବିପର୍ଯ୍ୟାସ -

ମିଥ୍ୟାଜ୍ଞାନ

ବିବୁଧ -

ପଣ୍ଡିତ, ଜ୍ଞାନୀ, ଦେବତା ।

ବିଭାବରୀ -

ରାତ୍ରି

ବିଯୁକ୍ତଭାବ -

ପୃଥକ ପୃଥକ ଭାବନା ।

ବିରକ୍ତି -

ଅନୁରାଗ ହୀନତା

ବିଶଦ -

ଶୁଭ୍ର, ଧବଳ ।

ବିଶ୍ୱକର୍ମା ପୁତ୍ର -

ବୃତ୍ରାସୁର

ବିଷୟ -

ସାଂସାରିକ ବାସନା, ସଂସାର ସୁଖ ।

ବିଷ୍ଣୁପଦ -

ସ୍ୱର୍ଗ

ବିସୃଷ୍ଟି -

ବିଶେଷ ସୃଷ୍ଟି

ବୀରୁଧ -

ଲତା

ବୃକ -

ହେଟାବାଘ ଓ ହୁଣ୍ଡାବାଘ

ବୃଜିନ -

ପାପ

ବୃଷଣ -

ଲିଙ୍ଗ

ବୃହତ୍ -

ନୈଷ୍ଠିକ କର୍ମ

ବେଣୁ -

ବାଉଁଶ, ବଂଶୀ ।

ବୈଖାନ -

ବାନପ୍ରସ୍ଥ (ଯେ କୌଣସି ମତେ ଅନ୍ନରାନ୍ଧି ଖାଇବା)

ବ୍ୟାସ କନିଷ୍ଠ ଭ୍ରାତ କ୍ଷେତ୍ରେ -

ବ୍ୟାସଙ୍କ କନିଷ୍ଠ ଭ୍ରାତା ବିଚିତ୍ରବୀର୍ଯ୍ୟଙ୍କ ଠାରେ ।

ବ୍ୟାହୃତି -

ଭୂଃ, ଭୁବଃ, ସ୍ୱଃ ଆଦି ଗାୟତ୍ରୀ ।

ବ୍ୟୋମ -

ଆକାଶ

ବ୍ରହ୍ମାବର୍ତ୍ତ -

କୁରୁକ୍ଷେତ୍ର ନିକଟସ୍ଥ ସରସ୍ୱତୀ ଓ ଦୃଶଦ୍‌ବତୀ ନଦୀଦ୍ୱୟ ମଧ୍ୟବର୍ତ୍ତୀ ଦେଶକୁ ପ୍ରାଚୀନ କାଳରେ ବ୍ରହ୍ମାବର୍ତ୍ତ କୁହାଯାଉଥିଲା ।

ବ୍ରାହ୍ମ -

ବେଦ ଗ୍ରହଣର ପରବର୍ତ୍ତୀ କର୍ମ ।

ଭ

ଭକ୍ତି ଚାରିମତ -

ସଗୁଣ, ଭକ୍ତି ତିନି, ନିର୍ଗୁଣ ଭକ୍ତି ଏକ । ସତ୍ତ୍ୱ, ରଜ, ତମ ଭେଦରେ ତିନି ।

ଭବ -

ଶିବ, ସଂସାର

ଭବାନୀ -

ପାର୍ବତୀ

ଭାଜନ -

ଯୋଗ୍ୟ

ଭାସ -

ଫୁଲ ଶାଗୁଣା

ଭୀମ -

ଭୟଙ୍କର

ଭୃଙ୍ଗ -

ଭ୍ରମର

ଭୋଗବତୀ -

ପାତାଳଗଙ୍ଗା

ମ

ମକରଧ୍ୱଜ -

କନ୍ଦର୍ପ

ମଧୁକର -

ଭ୍ରମର

ମନ୍ୟୁ -

କ୍ରୋଧ

ମହାଭାଗବତ -

ପରମ ବୈଷ୍ଣବ

ମହାରଥ -

ମହାଯୋଦ୍ଧା, ମହାବୀର ।

ମହୀ -

ପୃଥିବୀ

ମହାମୋହ -

ବିଷୟ ଭୋଗର ଅତ୍ୟନ୍ତ ଇଚ୍ଛା ।

ମହୀପାଳ -

ରାଜା

ମିହିର -

ସୂର୍ଯ୍ୟ

ମୁକୁର -

ଦର୍ପଣ

ମୁଖ -

ଚକ୍ଷୁ, ପ୍ରଧାନ

ମୁଞ୍ଚଇ -

ତ୍ୟାଗ କରଇ

ମୁହୂର୍ତ୍ତ -

ଲଗ୍ନ, ବିବାହ ଆଦି ମଙ୍ଗଳ କାର୍ଯ୍ୟର ଶୁଭ ମୁହୂର୍ତ୍ତ ।

ମୃଣାଳ -

କଇଁ

ଯ

ଯଶସ୍କର -

ଯଶସ୍ୱୀ

ଯାଜନ -

ପୂଜକ

Dr. Sudhanshu Sekhar Mishra

ସୁଗତେ -

ନିଶ୍ଚିନ୍ତେ

ଯୁଯୁଧନ -

ଯୋଦ୍ଧା, ଶ୍ରୀକୃଷ୍ଣଙ୍କ ସାରଥି ସାତ୍ୟକିଙ୍କ ଅପର ନାମ।

ଯୋଜନଗନ୍ଧା -

ସତ୍ୟବତୀ, ପରାଶର ମହର୍ଷିଙ୍କ ପତ୍ନୀ, କୈବର୍ତ୍ତ କନ୍ୟା, ତା'ଙ୍କର ଅପର ନାମ ମତ୍ସ୍ୟଗନ୍ଧା।

ର

ରସାତଳେ -

ପୃଥିବୀର ଜଳ ଭାଗରେ ପାତାଳରେ।

ରହସ୍ୟ -

ଗୋପନ ତଥ୍ୟ

ରକ୍ଷେ -

ରକ୍ଷାସୂତ୍ରରେ, ମଙ୍ଗଳ ସୂତ୍ରରେ, ରାକ୍ଷସମାନେ।

ରାତ୍ରିମୁଖ -

ସନ୍ଧ୍ୟା

ରାସଭ -

ଗଧ

ଲ

ଲୀଳା -

ଅବଲୀଳା, ଅନାୟାସ

ଲେଛଇ -

ଦୂର କରିବା

ଲୋକତନ୍ତ୍ର -

ଲୋକମାନଙ୍କ ଦ୍ୱାରା ପରିଚାଳିତ ଶାସନ।

ଶ

ଶଟା -

ଜଟା, ବେକପାଖରେ ଥିବା ରୋମ ରାଜି।

ଶବ୍ଦଯୋନି -

ଶବ୍ଦବ୍ରହ୍ମ

ଶବ୍ଦାଦି ଧର୍ମ -

ଜ୍ଞାନରୂପ, ନିର୍ଗୁଣ ରୂପ।

ଶମଳ -

ପାପ

ଶୟନ -

ଶଯ୍ୟା, ବିଛଣା।

ଶଶକ -

ଶଶ

ଶଶୀ -

ଚନ୍ଦ୍ର

ଶାଳୀନ -

ଅଯାଚିତ ବୃତ୍ତି, ଆପଣାଛାଏଁ ମିଳୁଥିବା ଜୀବିକା।

ଶିରୋଧର -

ବେକ

ଶିଶ୍ନ -

ଲିଙ୍ଗ

ଶିଳୋଞ୍ଛ -

ଗୃହସ୍ଥ ବୃତ୍ତି, ଖୁଣ୍ଟିକରି ସଂଗ୍ରହ କରିବା।

ଶୁକ୍ଳ -

ଧଳା, ବିଷ୍ଣୁ ଅର୍ଥରେ ବ୍ୟବହୃତ।

ଶୂଳଧାରୀ -

ଶିବ

ଶୋଣ -

ଈଷତ୍ ରକ୍ତବର୍ଣ୍ଣ

ଶୁଚ -

ହାତ ପାପୁଲି ଆକାରରେ ନିର୍ମିତ ଶ୍ରୁବ।

ଶ୍ରୁବ -

ଯେଉଁଥିରେ ଘୃତ ହୋମ କରାଯାଏ।

ଶ୍ୱା -

ଶ୍ୱାନ, କୁକୁର

ଷ

ଷଟନେମୀ -

ଛଅରଠ, ଚକ୍ରର ଛଅଟି ଅର।

ଷୋଡ଼ଶ ବିକାର -

ସଂସାର ଚକ୍ରର ଷୋହଳ ଗୋଟି ବିକାର। ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚତନ୍ମାତ୍ର ଓ ମନ।

ଷୋଡ଼ଶୀ -

ଷୋଳ ଭାଗରେ ବିଭକ୍ତ ସ୍ତୋତ୍ର।

ସ

ସଙ୍କର୍ଷଣ -

ଅନନ୍ତରୂପୀ, ଶେଷାବତାରୀ।

ସଞ୍ଚ -

ରଖ, ଯତ୍ନରେ ରଖିବା।

ସଦନୁଗ୍ରହ -

ସଜ୍ଜନମାନଙ୍କ ଦୟା ବା ଅନୁଗ୍ରହ।

ସଧ -

ଇଛା

ସନ୍ନିଧାନ -

ନିକଟ, ସମ୍ମୁଖ

ସର -

ପୋଖରୀ

ସରିତ -

ନଦୀ

ସର୍ଗ -

ସୃଷ୍ଟି

ସାନ୍ଦୀପନି -

ଶ୍ରୀକୃଷ୍ଣଙ୍କ ଗୁରୁ, ଜନୈକ ମୁନି।

ସାବିତ୍ରୀ -

ବ୍ରହ୍ମଚର୍ଯ୍ୟ, ବ୍ରହ୍ମାଙ୍କ ପତ୍ନୀ।

ସୁକୃତୀ -

ସୁକୃତଶାଳୀ, ପୁଣ୍ୟାତ୍ମା

ସୁଧା -

ଅମୃତ

ସୁପର୍ଣ୍ଣ -

ଗରୁଡ଼

ସୋମଯୋଗ୍ୟ -

ଦେବତା, ସୋମରସକୁ ଯଜ୍ଞରେ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବା।

Dr. Sudhanshu Sekhar Mishra

**ସ୍ପର୍ଶବର୍ଣ୍ଣ -**
କ ଠାରୁ ମ ପର୍ଯ୍ୟନ୍ତ ବର୍ଣ୍ଣ ।

**ସ୍ମିତ -**
ଦରହାସ ।

**ହ**

**ହୁତ -**
ଘିଅ, ଘିଅ ଢଳା ହେଉଥିବା ।

**ହୁତାଶନ -**
ଅଗ୍ନି

**ହୃଷିତ -**
ଆନନ୍ଦମନ

**ହୃଷୀକ -**
ଇନ୍ଦ୍ରିୟ

**ହୋମରହିତ ଅଗ୍ନି -**
ଏହାର ଅପର ନାମ ସଭ୍ୟ

---

## ଚତୁର୍ଥସ୍କନ୍ଧ

### ଅ

**ଅଘ —**
ପାପ ।

**ଅଘାର୍ଣ୍ଣବ —**
ପାପ ସମୁଦ୍ର ।

**ଅଘ୍ରିଂ —**
ପାଦ ।

**ଅର୍ଚ୍ଚିଳା —**
ଚମତ୍କୃତ କଳା, ପୂଜାକଳା ।

**ଅଣ୍ଡକୋଷ —**
ଭୁବନ ମଣ୍ଡଳ ।

**ଅତନୁ —**
କନ୍ଦର୍ପ ।

**ଅଧିପ —**
ରାଜା ।

**ଅଧିଷ୍ଠ —**
ଅଧିଷ୍ଠାତା ।

**ଅନ୍ତକ —**
ବିନାଶକର୍ତ୍ତା, ଯମ ।

**ଅନ୍ତରପୁର —**
ଭିତରପୁର ।

**ଅପବର୍ଗ —**
ମୋକ୍ଷ ।

**ଅବଭୃଥ ସ୍ନାନ —**
ଯଜ୍ଞ ଶେଷରେ ଯଜମାନ ଯେଉଁ ସ୍ନାନ କରେ, ତାହାକୁ ଅବଭୃତ ସ୍ନାନ କୁହାଯାଏ ।

**ଅଭିଚାର ତନ୍ତ୍ର —**
ଯେଉଁ ସବୁ ତାନ୍ତ୍ରିକ ପଦ୍ଧତି ଅବଲମ୍ବନ କରି ଅନ୍ୟକୁ ତାର ଅଲକ୍ଷ୍ୟରେ ମାରି ଦିଆଯାଏ, ମୋହିତ କରିଦିଆଯାଏ ଇତ୍ୟାଦି ।

**ଅମେଧ୍ୟ —**
ଯାହ : ଭକ୍ଷଣ ଯୋଗ୍ୟ ନୁହେଁ ।

**ଅମ୍ବର —**
ବସ୍ତ୍ର, ଆକାଶ ।

**ଅମ୍ବୁଜ —**
ପଦ୍ମ ।

**ଅୟସ୍କାନ୍ତ —**
ଚୁମ୍ବକ ପଥର ।

**ଅୟୁତ ତ୍ରୟୋଦଶ —**
ଏକ ଲକ୍ଷ ତିରିଶି ହଜାର ।

**ଅର୍ଣ୍ଣବ —**
ସମୁଦ୍ର ।

**ଅଳକବନ୍ଧ —**
କେଶପାଶ ।

**ଅଳକା —**
କୁଞ୍ଚ କୁଞ୍ଚିଆ କେଶ ।

**ଅଶିବ —**
ଅମଙ୍ଗଳ ।

**ଅଶ୍ୱିଶିର —**
ଅଶ୍ୱିନୀ କୁମାର ।

**ଅଷ୍ଟାଙ୍ଗଯୋଗ —**
ସହ ଯୋଗିତା, ଧ୍ୟାନ, ସାଧନ, ତପସ୍ୟା, ଚିତ୍ତବୃତ୍ତି, ନିରୋଧ, ଯମ (ଆତ୍ମସଂଯମ) ନିୟମ, ପ୍ରାଣାୟାମ - ଏ ହେଉଛି ଯୋଗର ଅଷ୍ଟଅଙ୍ଗ ।

**ଅହି —**
ସର୍ପ ।

**ଅହିତଳ୍ପ —**
ସର୍ପ ଶୟନ, ଅନନ୍ତ ଶୟନ ।

### ଆ

**ଆଖର —**
ଶେଷ ।

**ଆପରୂପ —**
ଜଳ ସ୍ୱରୂପ ।

**ଆବର୍ତ୍ତ —**
ଭଉଁରୀ ।

**ଆମଣ୍ଡି —**
ଓଟାରି ।

**ଆମପାତ୍ର —**
କଞ୍ଚାମାଟିରେ ତିଆରି ପାତ୍ର ।

**ଆମାତକ —**
ଆମ୍ବଡା, ଶାଳମା ।

**ଆରାମ —**
ଉପବନ ।

Dr. Sudhanshu Sekhar Mishra

**ଆଳ —**

ଛଳନା ।

**ଆଳୟ —**

ଗୃହ ।

**ଆସବ —**

ମଦ୍ୟ ଜାତୀୟ ପାନୀୟ ।

## ଇ, ଈ

**ଇନ୍ଦୀବର —**

ନୀଳପଦ୍ମ ।

**ଈଶାନ —**

ମହାଦେବ, ଶିବ ।

## ଉ, ଊ

**ଉଛୁଡ଼ିବା —**

ନିର୍ଗତ ହେବା, ଯିବା ।

**ଉଦଧି ମେଖଳା ମହୀ —**

ସମୁଦ୍ର ଯାହାର ଅଣ୍ଟାସୂତା ପରି ଶୋଭାପାଉଛି ଏମନ୍ତ ପୃଥିବୀ ।

**ଉପତାପ —**

ଅତ୍ୟନ୍ତ କଷ୍ଟ ।

**ଉପଧି —**

ତକିଆ ।

**ଉପାଧି —**

ଧନ, ଧାନ୍ୟ, ଅଳଙ୍କାର, ଭୂସମ୍ପତ୍ତି, ପଦପଦବୀ ।

**ଉଷ୍ଣୀଷ —**

ପଗଡ଼ି, ମୁକୁଟ ।

**ଊର୍ଜା —**

ଅରୁନ୍ଧତୀ ।

**ଊର୍ଣ୍ଣନାଭ —**

ବୁଢ଼ିଆଣୀ ।

**ଋଦ୍ଧି —**

ସୌଭାଗ୍ୟ ।

## ଓ, ଔ

**ଓଜ —**

ଇନ୍ଦ୍ରିୟବଳ ।

## କ

**କନକ ଭୂଧର —**

ସ୍ୱର୍ଣ୍ଣପର୍ବତ, ସୁମେରୁ ।

**କନ୍ଦୁକ —**

ଖେଳନା ପେଣ୍ଡୁ (ବଲ୍) ।

**କବନ୍ଧ —**

ମୁଣ୍ଡ ନଥିବା ଗଣ୍ଡି ।

**କବ୍ୟ —**

ପିତୃମାନଙ୍କ ଅନ୍ନ ।

**କମ୍ବୁ —**

ଶଙ୍ଖ ।

**କର୍ଣ୍ଣାଭିରାମ —**

କାନକୁ ସୁମଧୁର

**କଳୁଷ —**

ପାପ ।

**କଲ୍ଲୋଳ —**

ଲହରୀ ।

**କହ୍ଲାର —**

ଧଳାକଇଁ ।

**କାକୁସ୍ଥ —**

ତରିମରି, ସଭୟଚିତ୍ତ ।

**କାମଦୁଘା —**

ଯେ ସମଗ୍ର କାମନା ପୂରଣ କରନ୍ତି ।

**କାରକ —**

ଦେବତା ।

**କାରଣ୍ଡବ —**

ବାଲିହଂସ ।

**କୀଚକ —**

ବାଉଁଶ ।

**କୃଚ୍ଛ୍ର —**

କଷ୍ଟ ସାଧ୍ୟ ।

**କୁମାର —**

ସନତ୍ କୁମାର ।

**କୁଳାଚଳ —**

କୁଳପର୍ବତ, ପୁରାଣ ମତରେ ମହେନ୍ଦ୍ର, ହିମାଳୟ, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷ, ପାରିପାତ୍ର ନାମକ ସାତଗୋଟି କୁଳପର୍ବତ ଅଛି ।

**କୁଳିଶ —**

ବଜ୍ର ।

**କୁସୁମାକର —**

ବସନ୍ତ ।

**କୁହୁ —**

କୋକିଳ ରାବ,

କୂଜନ=ପକ୍ଷୀରାବ ।

**କୁବର —**

ଯୁଆଳି ବାନ୍ଧିବା ସ୍ଥାନ ।

**କେଶିନୀ —**

ନିକଷା, ରାବଣର ମାତା ।

**କୋଳ —**

ବରାହ ।

**କୌଣପ —**

ଅସୁର ।

**କୌମୋଦକୀ —**

ବିଷ୍ଣୁଙ୍କ ଗଦାର ନାମ ।

**କ୍ରମୁକ —**

ଗୁଆ ।

**କ୍ରିୟା —**

ଇନ୍ଦ୍ରିୟ ।

**କ୍ରିୟାକାଣ୍ଡ —**

ସନ୍ଧ୍ୟା, ବନ୍ଦନା, ଶ୍ରାଦ୍ଧ, ଅତିଥିସେବା, ଯଜ୍ଞ, ଯଜ୍ଞାଦି କର୍ମ ।

## ଖ

**ଖର୍ବଟ —**

ପାହାଡ଼ ତଳି ଅଞ୍ଚଳରେ ଥିବା ଗ୍ରାମ ।

**ଖେଟ —**

କୃଷକ ମାନଙ୍କର ଗ୍ରାମ

## ଗ

**ଗନ୍ଧ —**

ଗନ୍ଧର୍ବ ଅର୍ଥରେ କୁହାଯାଉଛି ।

Dr. Sudhanshu Sekhar Mishra

**ଗାନ୍ଧର୍ବ ଗାନ୍ଧର୍ବୀ —**
ଦିନ ଓ ରାତି ଅର୍ଥରେ ବ୍ୟବହୃତ ସାଙ୍କେତିକ ଶବ୍ଦ ।

**ଗିରିଶ —**
ଯେ ଗିରିରେ ଶୟନ କରେ, ଶିବ ।

**ଗୁଣକ୍ଷୋଭ —**
ଦେହ, ଇନ୍ଦ୍ରିୟ, ପ୍ରାଣ, ବୁଦ୍ଧି ଓ ଅହଂକାର ଯୁକ୍ତ ।

**ଗୁରୁ —**
ବୃହସ୍ପତି ।

**ଗୁହ୍ୟ —**
ଯକ୍ଷ ।

**ଗ୍ରାହ —**
କୁମ୍ଭୀର ।

## ଘ

**ଘର୍ମ —**
ଉତ୍ତାପ ।

**ଘୋଷଣ —**
ପ୍ରଚାର ।

## ଚ

**ଚଣ୍ଡାଂଶୁ —**
ସୂର୍ଯ୍ୟ, ତୀକ୍ଷ୍ଣ ସୂର୍ଯ୍ୟକିରଣ ।

**ଚତୁରଙ୍ଗ —**
ଅଶ୍ୱ, ହସ୍ତି, ରଥ ଓ ପଦାତିକଙ୍କୁ ଚତୁରଙ୍ଗ ବାହିନୀ କୁହାଯାଏ ।

**ଚତୁରଙ୍ଗ ବଳ —**
ରଥାରୋହୀ, ଗଜାରୋହୀ, ଅଶ୍ୱା ରୋହୀ, ପଦାତିକ ସୈନ୍ୟ ।

**ଚତୁର୍ବିଧ ଅନ୍ନ —**
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ।

**ଚତ୍ୱର —**
ଅଗଣା ।

**ଚାନ୍ଦ୍ରାୟଣ ବ୍ରତ —**
ଏକ ଚାନ୍ଦ୍ର ମାସ ବ୍ୟାପି କଠୋର ବ୍ରତ ।

**ଚାପ —**
ଧନୁ ।

**ଚାପପ୍ରଭା —**
ଫୁଲ ଧନୁର ଶୋଭା ।

**ଚାରିପ୍ରକାର ସୃଷ୍ଟି —**
ଉଦ୍‌ଭିଦଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ।

**ଚିନ୍ତାର୍ଣ୍ଣବ —**
ଚିନ୍ତା ରୂପକ ସମୁଦ୍ର ।

## ଜ

**ଜଳଗ୍ରାମ —**
ଜଳସମୂହ ।

**ଜୀମୂତ —**
ମେଘ ।

**ଜ୍ଞାନବିଜ୍ଞାନ —**
ପ୍ରତ୍ୟକ୍ଷ ଓ ପରୋକ୍ଷଜ୍ଞାନ ।

## ତ

**ତଡିତ —**
ବିଜୁଳି ।

**ତପନ —**
ସୂର୍ଯ୍ୟ ।

**ତର୍ଜନୀମୁଦ୍ରା —**
ତର୍ଜନୀ (ବିଶି) ଅଙ୍ଗୁଳିକୁ ଅଙ୍ଗୁଷ୍ଠ(ବୃଦ୍ଧା ଅଙ୍ଗୁଳି)ରେ ମିଶାଇ ଅନ୍ୟାନ୍ୟ ଅଙ୍ଗୁଳି ଗୁଡିକ ବିସ୍ତାର କଲେ ତର୍ଜନୀମୁଦ୍ରା ହୁଏ ।

**ତିତିକ୍ଷା —**
କ୍ଷମା, ସହିଷ୍ଣୁତା ।

**ତୁରଙ୍ଗମ —**
ଘୋଡା ।

**ତୁରୀୟ —**
ଚତୁର୍ଥ ।

**ତ୍ରାସେ —**
ଭୟରେ ।

**ତ୍ରିତାପ —**
ଅଧିଭୌତିକ, ଅଧିଦୈବିକ, ଅଧ୍ୟାତ୍ମିକ ।

**ତ୍ରିଦିବ —**
ସ୍ୱର୍ଗ ।

**ତ୍ରିପତି —**
ତ୍ରିଭୁବନ ପତି ।

**ତ୍ରିପୁରାରି —**
ତ୍ରିପୁର ଧ୍ୱଂସକାରୀ, ଶିବ ।

**ତ୍ରିବଳି —**
ପେଟରେ ପଡିଥିବା ତିନିଗୋଟି ଚର୍ମରେଖା ।

**ତ୍ରୋଣ —**
ତୋରଣ, ତୂଣୀର ।

## ଦ

**ଦତ୍ତ —**
ଦତ୍ତାତ୍ରେୟ ନାମକ, ଅତ୍ରି ମହର୍ଷିଙ୍କ ପୁତ୍ର ।

**ଦର୍ଭ —**
କୁଶ ।

**ଦଳ —**
ପତ୍ର ।

**ଦାମିନୀ —**
ବିଜୁଳି ।

**ଦିଗ୍‌ନାଗ —**
ଦିଗ୍‌ହସ୍ତୀ ।

**ଦୁକୂଳ —**
ପାଟଲୁଗା ।

**ଦୂତୀ —**
ଦ୍ୱିତୀୟ ।

**ଦୁରତ୍ୟାୟ —**
ଦୁଃଖରେ ପାର ପାଇହୁଏ ।

**ଦୁର୍ବିଷହ —**
ଅସହ୍ୟ, ଶତ୍ରୁମାନଙ୍କ ଦ୍ୱାରା ମଧ୍ୟ ଅସହ୍ୟ ।

**ଦୁରାସଦ —**
ଦୁଷ୍ପ୍ରାପ୍ୟ ( ଶତ୍ରୁର ମନ ଦ୍ୱାରା ଅପ୍ରାପ୍ୟ)

Dr. Sudhanshu Sekhar Mishra

**ଦେବଙ୍କ ଗୁପ୍ତ —**

ମୃତ୍ୟୁ ରହସ୍ୟ ।

**ଦେବମାନ —**

ଦେବ ପରିମାଣ ଅର୍ଥାତ ଦେବତା ବର୍ଷ, ମନୁଷ୍ୟଙ୍କର ଏକ ବର୍ଷରେ ଦେବତାଙ୍କର ଏକ ଦିନ ହୁଏ ।

**ଦେବଋଷି —**

ନାରଦ ।

**ଦୈତ୍ୟଚକ୍ର —**

ଅସୁର ସମୁଦ୍ର ।

**ଦୌହିତ୍ର —**

ଝିଅର ପୁଅ ।

**ଦ୍ୱାଦଶାକ୍ଷର ମନ୍ତ୍ର —**

ଓଁ ନମୋ ଭଗବତେ ବାସୁଦେବାୟ ।

**ଦ୍ୱିରଦ —**

ହାତୀ ।

**ଦ୍ରବ୍ୟ —**

ପଞ୍ଚ ମହାଭୂତ ।

**ଦ୍ରବିଣ —**

ଧନ ।

**ଦ୍ରୋଣୀ —**

ଗିରିସଙ୍କଟ, (ପର୍ବତର ମଧ୍ୟ ଭାଗରେ ଥିବା ଅଣଓସାରିଆ ସ୍ଥାନ, ନୌକାଜାତୀୟ କୁଣ୍ଡ ।

## ଧ

**ଧୂର୍ଜଟି —**

ଶିବ ।

**ଧୃତବ୍ରତ —**

ବ୍ରତପାଳନ କାରୀ

## ନ

**ନକ୍ର —**

କୁମ୍ଭୀର ।

**ନନ୍ଦକ —**

ବିଷ୍ଣୁଙ୍କ ଖଡ୍‌ଗର ନାମ ।

**ନାଗ —**

ହସ୍ତୀ ।

**ନିଗମ —**

ବେଦ ।

**ନିଦାଘ —**

ଗ୍ରୀଷ୍ମ ।

**ନିଧାନ —**

ଆଧାର, ଆଶ୍ରୟସ୍ଥଳ ।

**ନିବୃତ୍ତିଶାସ୍ତ୍ର —**

ଜ୍ଞାନକାଣ୍ଡ ।

**ନିରଗ୍ନିକ —**

ଯେ ଅଗ୍ନିହୋତ୍ର ପାଳନ କରେ ନାହିଁ ।

**ନିର୍ବାକ —**

ମୌନୀ ।

**ନିରୁଜ —**

ନୀରୋଗ ।

**ନିଶିତ —**

ଧାରୁଆ ।

**ନିସ୍ତ୍ରିଂଶ —**

ତିରିଶଆଙ୍ଗୁଳ ଲମ୍ବା ବିଶିଷ୍ଟ ତରବାରୀ, ଛୁରୀ ।

## ପ

**ପଙ୍କଜାରୁଣାଧର —**

ପଦ୍ମପରି ଈଷତ୍ ଲାଲ ଅଧର ।

**ପଞ୍ଚତାପ —**

ଚାରିଦିଗରେ ଚାରିଟି ଅଗ୍ନିକୁଣ୍ଡ ଜଳାଇ ମଝିରେ ବସି ସୂର୍ଯ୍ୟଙ୍କୁ ଚାହିଁ ତପସ୍ୟା କିରବା ।

**ପଞ୍ଚପର୍ବ —**

ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା, ପୂର୍ଣ୍ଣିମା, ସଙ୍କରାନ୍ତି ।

**ପଞ୍ଚବୃତ୍ତି —**

ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ ରୂପକ ପଞ୍ଚପବନ ।

**ପଞ୍ଚଯଜ୍ଞ —**

ଦେବସେବା, ଅତିଥି ସତ୍କାର, ପିତୃଶ୍ରାଦ୍ଧ, ଋଷି ମୁନିଙ୍କ ପ୍ରତି ଶ୍ରଦ୍ଧା, ବ୍ରହ୍ମଯଜ୍ଞ ଅର୍ଥାତ ବେଦାଧ୍ୟୟନ ।

**ପଟ୍ଟିଶ —**

ଦୁଇ ପାଖରେ ଧାର ଥିବା ଖଡ୍‌ଗ ।

**ପତ୍ରଶନ —**

ପ୍ରତଭକ୍ଷଣ ।

**ପଦ୍ମଯୋନି —**

ବ୍ରହ୍ମା ।

**ପଦ୍ମଯୋନିବଲା —**

ଭୃଗୁମହର୍ଷି ।

**ପର୍ଜନ୍ୟ —**

ଇନ୍ଦ୍ର ।

**ପରିଖା —**

ଗଡ଼ ଚଉପାଶରେ ଥିବା ନଦୀ, ଗଡ଼ଖାଇ ।

**ପଲାଶ —**

କୋମଳ ପତ୍ର, କଅଁଳିଆ, ପତ୍ର ।

**ପାର୍ଥିବୀ —**

ପୃଥିଙ୍କ ସମ୍ବନ୍ଧୀୟ ଅର୍ଥାତ ପୃଥିଙ୍କ ପରି । ପୃଥିବୀରୁ ଜାତ

**ପିତୃନ୍ତ —**

ପିତାମାନଙ୍କୁ ।

**ପୁଣ୍ୟଜନ —**

ଅସୁର, ଯକ୍ଷ, ଗୁହ୍ୟକ ।

**ପୁତ୍ରିକାଧର୍ମ —**

କନ୍ୟାର ପୁତ୍ରକୁ ପୁତ୍ରରୂପେ ଗ୍ରହଣ କରିବାର କାମନା ।

**ପୁରନ୍ଦର —**

ଇନ୍ଦ୍ର ।

**ପୂର୍ବସନ୍ଧ୍ୟା —**

ପ୍ରାତଃ କାଳୀନ ସଂଧ୍ୟା (ଦେବତାର୍ଚ୍ଚନା)

**ପୂଷା —**

ବୈଦିକ ଦେବତା ।

Dr. Sudhanshu Sekhar Mishra

**ପେଶସ୍କୃତ —**

ହସ୍ତ ।

**ପୌଗଣ୍ଡ —**

ପାଞ୍ଚ ବର୍ଷ ବୟସରୁ ପନ୍ଦରବର୍ଷ ବୟସର ଅବସ୍ଥାକୁ ପୌଗଣ୍ଡ କୁହାଯାଏ ।

**ପ୍ରଚେତସ୍ ଦଶଭାଇ —**

ଧ୍ରୁବଙ୍କ ବଂଶରେ ଜାତ ରିପୁଙ୍କ ଠାରୁ ଚାକ୍ଷୁସ ଜନ୍ମଗ୍ରହଣ କରିଥିଲେ । ସେହି ଚାକ୍ଷୁସ ବରୁଣକୁଳରେ ଉପନ୍ନ ତଥା ବାରଣ ପ୍ରଜାପତିଙ୍କ ପୁତ୍ରୀ ପୁଷ୍କରଣୀଙ୍କୁ ବିବାହ କରିଥିଲେ । ଚାକ୍ଷୁସ ଓ ପୁଷ୍କରଣୀଙ୍କ ଠାରୁ ଷଷ୍ଠ ମନ୍ୱନ୍ତର ଅଧିପତି ମନୁ ଜନ୍ମ ଗ୍ରହଣ କରିଥିଲେ । ଏହି ମନୁ ବୈରାଜ ପ୍ରଜାପତିଙ୍କ ପୁତ୍ରୀ ନଡ୍ୱଳାଙ୍କୁ ବିବାହ କରିଥିଲେ । ମନୁ ଓ ନଡ୍ୱଳାଙ୍କ ଗର୍ଭରୁ କୁରୁ, ପୁରୁ, ଶତଦ୍ୟୁମ୍ନ, ତପସ୍ୱୀ, ସତ୍ୟବାନ, ଶୁଚି, ଅଗ୍ନିଷ୍ଟୋମ, ଅତିରାତ୍ର ସୁଦ୍ୟୁମ୍ନ, ଅଭିମନ୍ୟୁ, ନାମକ ମହା ତେଜସ୍ୱୀ ଦଶପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କୁ ଦଶ ପ୍ରଚେତସ କୁହାଯାଏ । (ବିଷ୍ଣୁପୁରାଣ-ତ୍ରୟୋଦଶ ଅଧ୍ୟାୟ)

**ପ୍ରଚେତାଗଣ —**

ବରୁଣ ଓ ତାଙ୍କ ସଭାସଦ୍ ।

**ପଞ୍ଚ ପ୍ରହରଣ —**

ପାଞ୍ଚପ୍ରକାର ଅସ୍ତ୍ର ।

**ପତୋଷ —**

ସନ୍ତୋଷ ।

**ପ୍ରଥିତ —**

ବିଖ୍ୟାତ, କଥିତ ।

**ପ୍ରବୃତ୍ତିବନ୍ଧ —**

ସାଂସାରିକ ବନ୍ଧନ, ସାଂସାରିକ ତୃଷ୍ଣା ।

**ପ୍ରବୃତ୍ତିଶାସ୍ତ୍ର —**

କର୍ମକାଣ୍ଡ ।

**ପ୍ରମଥ —**

ନୃତ୍ୟ ଗୀତକାରୀ ଶିବଙ୍କ ଅନୁଚର ବିଶେଷ ।

**ପ୍ରସୂନ —**

ଫୁଲ ।

**ପ୍ରସ୍ରବଣ —**

ଝରଣା ।

**ପ୍ରହରଣ —**

ଅସ୍ତ୍ରଶସ୍ତ୍ର ।

**ପ୍ରାକର୍ମ —**

ପରାକ୍ରମ ।

**ପ୍ରାଣବୃତ୍ତି —**

ଜୀବିକା, ଶସ୍ୟାଦି

**ପ୍ରେମାଙ୍ଗ ଭକ୍ତି —**

ପ୍ରଭୁଙ୍କଠରେ ସମସ୍ତ ନିବେଦନ ପୂର୍ବକ ଆତ୍ମ ସମର୍ପଣଭକ୍ତିକୁ ପ୍ରେମାଙ୍ଗ ଭକ୍ତି କୁହାଯାଏ । ସେତେ ବେଳେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ପାର୍ଥକ୍ୟ ରହେ ନାହିଁ ।

## ବ

**ବନମାଳ —**

ଆଜାନୁଲମ୍ବିତ ମାଳ ।

**ବଳ —**

ଶାରୀରିକ ବଳ ।

**ବଳୟ —**

ବଳା ।

**ବଳାରାତି —**

ବଳ ନାମକ ଅସୁରର ଶତ୍ରୁ ଇନ୍ଦ୍ର ।

**ବାୟୁରସନା —**

ପବନରୂପକ ମେଖଳା ଅର୍ଥାତ୍, ଅଣ୍ଟାସୂତା ।

**ବାରଣ —**

ହାତୀ ।

**ବାଳିଶ —**

ମୂର୍ଖ ।

**ବିକୁଣ୍ଠ —**

ମାୟା ।

**ବିକୁଣ୍ଠନନ୍ଦନ —**

ମାୟାର ଆନନ୍ଦବର୍ଦ୍ଧନକାରୀ ।

**ବିଚେଷ୍ଟିତ —**

ଅଙ୍ଗୋଦ୍‌ଭବ ।

**ବିଟପୀ —**

ବୃକ୍ଷ, ଚରିତ୍ରହୀନା ନାରୀ ।

**ବିନତାସୁତ —**

ଗରୁଡ଼, କଶ୍ୟପଙ୍କ ବିନତା ନାମ୍ନୀ ସ୍ତ୍ରୀର ପୁତ୍ର ।

**ବିବୁଧ —**

ପଣ୍ଡିତ, ଦେବତା ।

**ବିମୁକ୍ତସଙ୍ଗ —**

ସନ୍ନ୍ୟାସ ।

**ବିରଞ୍ଚି —**

ବ୍ରହ୍ମା ।

**ବିଶିଖ —**

ଶର ।

**ବିଷାଦ —**

ଦୁଃଖ ।

**ବିଷ୍ଟରୀ —**

ମନ ।

**ବିଷ୍ଣୁପଦ —**

ସ୍ୱର୍ଗ ଗଙ୍ଗା ।

**ବୀରୁଧ —**

ବୃକ୍ଷଲତାଦି

**ବୃକ୍ —**

ବ୍ୟାଘ୍ର, କୁକୁର ।

**ବୃଜିନ —**

ପାପ ।

**ବୈତାନିକରଙ୍ଗ —**

ଯଜ୍ଞୀୟ କୁଣ୍ଡ ।

**ବୈଶସ —**

ମଳ ଉତ୍ସର୍ଗ ସ୍ଥାନ ।

Dr. Sudhanshu Sekhar Mishra

**ବ୍ୟଞ୍ଜନ —**

ବିଞ୍ଚଣା ।

**ବ୍ୟବାୟ —**

ମୈଥୁନ ।

**ବ୍ୟାଳ —**

ସର୍ପ ।

**ବ୍ୟାସସୁତ —**

ଏଠାରେ ବିଦୁରଙ୍କୁ ବ୍ୟାସସୁତ ବୋଲି କୁହାଯାଇଛି ।

**ବ୍ରହ୍ମାବର୍ତ୍ତ —**

ସରସ୍ୱତୀ ଓ ଦୃଷଦ୍‌ବତୀ ନଦୀର ମଧ୍ୟବର୍ତ୍ତୀ ସ୍ଥଳ ।

## ଭ

**ଭଟ —**

ବୀର ସୈନ୍ୟ ।

**ଭବ —**

ଶିବ ।

**ଭବ ଅଗ୍ରଜନ୍ମା —**

ଶିବଙ୍କ ପୂର୍ବରୁ ଜାତ (ସନକାଦି ମୁନି)

**ଭବବାରିଧି —**

ସଂସାର ରୂପକ ସମୁଦ୍ର ।

**ଭସ୍ମକର୍ତ୍ତା —**

ଅଗ୍ନି ।

**ଭାରତୀ —**

ସରସ୍ୱତୀ ।

**ଭୃଙ୍ଗ —**

ଭ୍ରମର ।

**ଭୋଗବତୀ —**

ବିଷୟ ସୁଖଶାଳିନୀ, ପାତାଳଗଙ୍ଗା, ନାଗମାନଙ୍କ ପୁର ।

## ମ

**ମଘବାନ —**

ଇନ୍ଦ୍ର ।

**ମଧୁକ —**

ମହୁଲ ।

**ମଧୁକର —**

ଭ୍ରମର ।

**ମଧ୍ୟଦେଶ —**

ଶରୀରର ମଧ୍ୟଭାଗ ଅଣ୍ଟା ।

**ମନ-ବାରଣ —**

ମନ ରୂପକ ହସ୍ତୀ ।

**ମନୁ ନରେନ୍ଦ୍ର —**

ବୈବସ୍ୱତ ମନୁ ।

**ମନୋଜବ —**

ମନଠାରୁ ଅଧିକ ବେଗଶାଳୀ ।

**ମନ୍ୟୁ —**

କ୍ରୋଧ ।

**ମମତ୍ୱ —**

ଅହଂ ବା ଅହଂକାର ।

**ମଳୟଧ୍ୱଜ —**

ପାଣ୍ଡ୍ୟଦେଶର ରାଜା ।

**ମହାମନ୍ୟୁ —**

ମହାକ୍ରୋଧ ।

**ମାରତଣ୍ଡ —**

ସୂର୍ଯ୍ୟ ।

**ମୁକୁର —**

ଦର୍ପଣ ।

**ମୃଗଇନ୍ଦ୍ର (ମୃଗେନ୍ଦ୍ର) —**

ସିଂହ ।

**ମେଖଳା —**

ଅଣ୍ଟାସୂତା, ଚନ୍ଦ୍ରହାର ।

**ମେଧି —**

ମେରି ମଧ୍ୟସ୍ଥଳର ଖୁଣ୍ଟ ।

**ମେଧ୍ୟ —**

ଭକ୍ଷଣ ଯୋଗ୍ୟ ।

## ଯ

**ଯକ୍ଷ-ଗୁହ୍ୟକ-ନାୟକ —**

କୁବେର ।

**ଯଜ୍ଞଘ୍ନ —**

ଯଜ୍ଞ ବିନାଶକାରୀ ।

**ଯଜ୍ଞପୁରୁଷ —**

ବିଷ୍ଣୁ ।

**ଯାଚକ —**

ମାଗିବା ଲୋକ ।

**ଯାତୁଧାନ —**

ରାକ୍ଷସ, ଯକ୍ଷ ।

**ଯୂପ —**

ଯଜ୍ଞରେ ପଶୁବଳି ଦିଆ ଯାଉଥିବା କାଠ ।

**ଯୋଷିତ —**

ନାରୀ ।

## ର

**ରଜତ —**

ରୂପା

**ରଦ —**

ଦନ୍ତ

**ରଶ୍ମି —**

ଦଉଡ଼ି, ରଥ ଦଉଡ଼ି, କିରଣ ।

**ରସନା —**

ଜିହ୍ୱା, ଦଉଡ଼ି ।

**ରସନେ —**

ଦଉଡ଼ିରେ

**ରିପୁଷଡ଼ବର୍ଗ —**

କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ।

**ରୁରୁ —**

ବଡ଼ ବଡ଼ କୃଷ୍ଣସାର ମୃଗ ।

**ରେଚକ ପୂରକ —**

ନିଃଶ୍ୱାସ ପ୍ରଶ୍ୱାସ ।

## ଲ

**ଲିଙ୍ଗରୂପ —**

ଭେଦଜ୍ଞାନ ।

**ଲିଙ୍ଗ-ଶରୀର —**

Dr. Sudhanshu Sekhar Mishra

ଇନ୍ଦ୍ରିୟାଦି ଅହଙ୍କାର ବିଶିଷ୍ଟ ଶରୀର ।

**ଲୁବ୍‌ଧକ —**

ମଳଦ୍ୱାର, ବ୍ୟାଧ ।

## ଶ, ଷ

**ଶକ୍ୟ —**

ସାମର୍ଥ୍ୟ ।

**ଶଚୀପତି —**

ଇନ୍ଦ୍ର ।

**ଶତକ୍ରତୁ —**

ଶହେଟି ଯଜ୍ଞ ।

**ଶତପତ୍ର —**

ପଦ୍ମ ।

**ସତସମା —**

ଶହେବର୍ଷ ।

**ଶମନ —**

ଯମ ।

**ଶୟଳେ —**

ପୃଥିବୀରେ ।

**ଶରାସନ —**

ଧନୁ ।

**ଶିବ —**

ମଙ୍ଗଳ ଓ ମହାଦେବ ।

**ଶୁଚି —**

ପବିତ୍ର ।

**ଶୁଦ୍ର —**

ଆଚାର ବିହୀନ ଅଜ୍ଞାନ ବ୍ୟକ୍ତି ।

**ଶ୍ୱେତାତପତ୍ର —**

ଧଳା ଛତା ।

**ଶ୍ରୀନିକେତନ —**

ପଦ୍ମ ।

**ଶ୍ରୋତା —**

ବେଦ ଅଧ୍ୟୟନକାରୀ ।

**ଷଡକୁଳ —**

ଛଅ ପ୍ରକାର ନୈଷ୍ଠିକକୁଳ ।

## ସ

**ସଙ୍କ୍ରମଣ —**

ସଙ୍କରାନ୍ତି ।

**ସଂଭ୍ରମ —**

ସସମ୍ମାନ ।

**ସତ୍ର —**

ଯଜ୍ଞ ।

**ସଦନ —**

ଗୃହ ।

**ସଦସତ୍ —**

ସତ୍ ଅସତ୍ ।

**ସଧେ —**

ଇଚ୍ଛାରେ ।

**ସନ୍ନିଧି —**

ନିକଟ, ସ୍ଥିତି ।

**ସନ୍ନିଧିରେ —**

ନିକଟରେ ।

**ସପ୍ତଧାତୁ —**

ଦେହ ମଧ୍ୟରେ ଥିବା ସାତଟି ସାର ବା ଉପାଦାନ - ରକ୍ତ, ରସ, ମେଦ, ମାଂସ, ଅସ୍ଥି, ମଜ୍ଜା, ଶୁକ୍ର ।

**ସମୀରଣ —**

ପବନ ।

**ସରସୀ —**

ପୋଖରୀ ।

**ସହ —**

ମନୋବଳ ।

**ସଗ୍ନିକ —**

ଯେ ଅଗ୍ନିହୋତ୍ର ପାଳନ କରେ ।

**ସାମବାଦ —**

ଶାନ୍ତିବଚନ ।

**ସିନ୍ଧୁଫଳ —**

ମୁକ୍ତା ।

**ସୁଧାଂଶୁ —**

ଚନ୍ଦ୍ର ।

**ସୁଧାକର —**

ଅମୃତର ଖଣି, ଚନ୍ଦ୍ର ।

**ସୁନାସୀର —**

ଇନ୍ଦ୍ର ।

**ସୁମଧ୍ୟମା —**

ସୁନ୍ଦର କଟୀଭାଗ ଯାହାର, ସୁନ୍ଦରୀ ।

**ସୁରନାଥ —**

ଇନ୍ଦ୍ର ।

**ସୁରବାରି —**

ଗଙ୍ଗାଜଳ ।

**ସୁରଭୀ —**

ଦେବତାଙ୍କ କାମଧେନୁ ।

**ସୋଗ —**

ସୁହାଗ, ସରାଗ ।

**ସ୍ତନ୍ୟ —**

କ୍ଷୀର ।

**ସ୍ଥାବର —**

ବୃକ୍ଷଲତାଦି ।

**ସ୍ୱସ୍ତୟନ —**

ମଙ୍ଗଳ ବିଧାୟକ ଯଜ୍ଞ ।

**ସ୍ତିରୀରେ ବଶ ଯେଉଁ ପ୍ରାଣୀ —**

(୪।୨୫।୨୨୫) -

ଏଠାରେ ସିରି ଶବ୍ଦଟି କାମାଚାରିଣୀ ସ୍ତ୍ରୀ ଅର୍ଥରେ ବ୍ୟବହୃତ ହୋଇଛି ।

## ହ

**ହଂସଦୀକ୍ଷା —**

ପରମହଂସ ଦୀକ୍ଷା ।

**ହବି —**

ଘିଅ ।

**ହୟ —**

ଘୋଡା ।

**ହବିର୍ଭୁଜ —**

ଆହୁତି ଆକାରରେ ଘୃତପାନ କରୁଥିବା ଅଗ୍ନି ।

Dr. Sudhanshu Sekhar Mishra

**ହରିଚରଣ-ପଦ୍ମଜାତ-ସରିତ —**
ଗଙ୍ଗା, ଗଙ୍ଗା ଶ୍ରୀହରିଙ୍କ ଚରଣ କମଳରୁ ସମ୍ଭୂତ ହୋଇ ଥିବାର ପୌରାଣିକ ମତ ରହିଛି ।

**ହାଟକ —**
ସୁନା ।

**ହୁତ —**
ଘିଅ ।

**ହେତୁଭୂତ —**
କାରଣ ।

**ହେନ ସମୟେ —**
ଏହି ସମୟରେ ।

**ହେମ —**
ସୁନା ।

## ପଞ୍ଚମ ଓ ଷଷ୍ଠସ୍କନ୍ଧ

### ଅ

**ଅକ୍ରମ —**
ଯାହାର କ୍ରମ ନାହିଁ ।

**ଅକ୍ଲେଶ ବୁଦ୍ଧି —**
ବିନା ବିଚାରରେ ।

**ଅକ୍ଷର ଦ୍ୱାଦଶ —**
ଦ୍ୱାଦଶ ଅକ୍ଷର ବିଶିଷ୍ଟ ନାରାୟଣ ମନ୍ତ୍ର - ଓଁ ନମୋ ଭଗବତେ ବାସୁଦେବାୟ ।

**ଅଗାଧ ବୁଦ୍ଧି —**
ଅତି ବୁଦ୍ଧିମାନ୍ (ଏହା ଶିବଙ୍କ ବିଶେଷଣ) ।

**ଅଗ୍ନିରୁ କୃତ୍ତିକା —**
ଶିବ ପାର୍ବତୀଙ୍କ ସଙ୍ଗମ ପରେ କପୋତ ରୂପଧାରୀ ଅଗ୍ନି ଶିବବୀର୍ଯ୍ୟକୁ ନେଇ କୃତ୍ତିକାଙ୍କୁ ପ୍ରଦାନ କରିଥିଲେ । ସେହି ଗର୍ଭରୁ ଅଗ୍ନିକୁମାର ଅର୍ଥାତ୍ କାର୍ତ୍ତିକେୟ ଜନ୍ମ ହୋଇଥିଲେ ।

**ଅଗ୍ନିହୋତ୍ର —**
ଏକ ପ୍ରକାର ଯଜ୍ଞ ।

**ଅଘ —**
ପାପ ।

**ଅଘମର୍ଷଣ —**
ଅଘମର୍ଷଣ ଅର୍ଥାତ୍ ପାପ ବିନାଶନ ।

**ଅଙ୍କ —**
କୋଳ ।

**ଅଙ୍ଗଦ —**
ବାହୁବନ୍ଧ, ଏକପ୍ରକାର ଗହଣା ।

**ଅଙ୍ଗାରକ —**
ମଙ୍ଗଳଗ୍ରହ ।

**ଅଚିନ୍ତ୍ୟ —**
ଯାହା ଚିନ୍ତା କରାଯାଇ ପାରେ ନାହିଁ ।

**ଅଜ —**
ଯେ ଯୋନିରୁ ଜାତ ନୁହନ୍ତି, ବ୍ରହ୍ମା ।

**ଅଜଗର ଆଚାର —**
ଯାହା ଅନାୟସରେ ମିଳିବ ତାହାକୁ ଖାଇ ବଞ୍ଚିବା ବୃତ୍ତି, ଅର୍ଥାତ୍ ଅଜଗର ସର୍ପ ପରି ବଞ୍ଚିରହିବା ।

**ଅଜର —**
ଯେ ବୃଦ୍ଧହୁଏ ନାହିଁ ।

**ଅଜାତପକ୍ଷ —**
ଯେଉଁ ଚଢ଼େଇଛୁଆର ପକ୍ଷୀ ହୋଇନାହିଁ ।

**ଅଜିତ —**
ଯାହାଜୟ କରାଯାଇ ନାହିଁ ।

**ଅଜିନ —**
କୃଷ୍ଣମୃଗଚର୍ମ ।

**ଅଜ୍ଞ —**
ମୂର୍ଖ, ଜ୍ଞାନହୀନ ।

**ଅଣ୍ଡକୋଷ —**
ବିଶ୍ୱବ୍ରହ୍ମାଣ୍ଡ ଅର୍ଥରେ ପ୍ରୟୋଗ ଶବ୍ଦ ।

**ଅତିଥି —**
ଯେ ଦ୍ୱାରକୁ କେବେହେଲେ ଆସି ନାହିଁ, ସେ ଭଳି ବ୍ୟକ୍ତି ।

**ଅଥର୍ବଣ —**
ଦଧୀଚି ନାମକ ଋଷି । ଇନ୍ଦ୍ରଙ୍କ ବଜ୍ର ପାଇଁ ସେ ନିଜର ଅସ୍ଥି ଦାନ କରିଥିଲେ ।

**ଅଦ୍ରିକୂଟ —**
ପର୍ବତ ଶିଖର ।

**ଅଧର —**
ତଳଭାଗ, ନିମ୍ନଭାଗ, ତଳଓଷ୍ଠ ।

**ଅନିବର୍ତ୍ତି —**
ଯେଉଁଠାରୁ ଫେରିହୁଏ ନାହିଁ ।

**ଅନୁବତ୍ସର —**
ବର୍ଷକୁ ବର୍ଷ, ପ୍ରତିବର୍ଷ ।

**ଅନୁଭାବ —**
ମହିମା ଯୁକ୍ତ ।

**ଅନୁସର୍ଗ —**
ପରବର୍ତ୍ତୀ ସୃଷ୍ଟି ।

**ଅନ୍ତକ —**
ଯମ ।

**ଅପତ୍ୟ —**
ପୁତ୍ର କନ୍ୟାଦି ।

**ଅବଲୋକନ —**
ଦେଖିବା ।

Dr. Sudhanshu Sekhar Mishra

**ଅବିଦ୍ୟା —**

ଅଜ୍ଞାନ ।

**ଅଭିରାମ —**

ପରିତୃପ୍ତ, ମନୋହର, ସୁନ୍ଦର ।

**ଅଭ୍ୟନ୍ତର —**

ଭିତର ପୁର ।

**ଅମୃତକୁଲ୍ୟା —**

ଯମ ଲୋକରେ ଥିବା କୃତ୍ରିମ ନଦୀ ।

**ଅମୃତ —**

ଯାହାର ମୃତ୍ୟୁ ନାହିଁ । ସମୁଦ୍ରରୁ ଜାତ ସ୍ୱାଦଯୁକ୍ତ ରସ ।

**ଅୟନ —**

ଛମାସରେ ଗୋଟିଏ ଅୟନ ହୁଏ । ମକର ମାସଠାରୁ ମିଥୁନ ମାସ ପର୍ଯ୍ୟନ୍ତ ଉତ୍ତର ଅୟନ ବା ଉତ୍ତରାୟଣ, କର୍କଟମାସ ଠାରୁ ଧନୁମାସ ପର୍ଯ୍ୟନ୍ତ ଦକ୍ଷିଣ ଅୟନ ବା ଦକ୍ଷିଣାୟନ ହୋଇଥାଏ ।

**ଅରୀ —**

ଅର ଯାହର ଅଛି, ଚକ୍ର ।

**ଅର୍ଣ୍ଣବ —**

ସମୁଦ୍ର ।

**ଅଲବ୍ଧକାମ —**

ନିଜର ଇଚ୍ଛା ଯେ ପୂରଣ କରିପାରେ ନାହିଁ ।

**ଅଶନି —**

ବଜ୍ର ।

**ଅଶୁଚି —**

ଅପବିତ୍ର ।

**ଅସି —**

ଖଡ୍ଗ ।

**ଅସିକ୍ନୀ —**

ପଞ୍ଚଜନ ଅସୁରର କନ୍ୟା । ସେ ଦକ୍ଷକୁ ବିବାହ କରି ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା ।

**ଅହୀଶ୍ୱର —**

ସର୍ପରାଜ ।

**ଅହୋରାତ୍ର —**

ଦିନରାତି ।

## ଆ

**ଆକର —**

ଭଣ୍ଡାର, ଖଣି ।

**ଆକାଶ —**

ଅନ୍ତରୀକ୍ଷ, ଶୂନ୍ୟ ।

**ଆଗୁସରି —**

ଅଗ୍ରସର ହୋଇ, ଆଗେଇ ଯାଇ ।

**ଆଙ୍ଗିରସ —**

ବୃହସ୍ପତି ।

**ଆତପ —**

ଟାଣ ଖରା

**ଆତ୍ମଯୋନି —**

ବ୍ରହ୍ମା ।

**ଆଧି —**

ମାନସିକ ରୋଗ ।

**ଆପ —**

ଜଳ ।

**ଆୟୁଧ —**

ଅସ୍ତ୍ରଶସ୍ତ୍ର ।

**ଆର୍ଦ୍ରପଦ —**

ଓଦାଗୋଡ଼ ।

## ଇ, ଈ

**ଇକ୍ଷୁ —**

ଆଖୁ ।

**ଇକ୍ଷୁଦଣ୍ଡ —**

ଆଖୁଗଛ ।

**ଇନ୍ଦ୍ରଙ୍କୁ ନିଗ୍ରହ ଯେ କଲେ —**

ଋଷଭଙ୍କ ରାଜ୍ୟରେ ଇନ୍ଦ୍ର ଈର୍ଷା ପରବଶ ହୋଇ ଅନାବୃଷ୍ଟି କରନ୍ତେ, ଋଷଭ ନିଜମାୟା ବଳରେ ବୃଷ୍ଟି କରାଇ ଇନ୍ଦ୍ରଙ୍କ ଗର୍ବ ଚୂର୍ଣ୍ଣ କଲେ ।

**ଇନ୍ଦ୍ରଦୂତୀ —**

ଏକ ସମୟରେ ଅସୁରମାନେ ଦେବଧେନୁଙ୍କୁ ଲୁଚାଇ ରଖନ୍ତେ, ତାକୁ ଖୋଜିବା ପାଇଁ ଇନ୍ଦ୍ର ସରମାନାମ୍ନୀ କୁକୁରୀକୁ ଇନ୍ଦ୍ରଦୂତୀ ଭାବେ ଅସୁରପୁରୀକୁ ପଠାଇ ଥିଲେ । ଅସୁରପୁରୀରେ ଇନ୍ଦ୍ରଙ୍କ ବଳବୀର୍ଯ୍ୟକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାକୁ ସେଠାରୁ ପଳାଇ ଯିବାଲାଗି ଅସୁରମାନେ ଉପଦେଶ ଦେଲେ ଏବଂ ସେମାନେ ଇନ୍ଦ୍ରଦୂତୀର ବାକ୍ୟରେ ଅତ୍ୟନ୍ତ ଭୟଭୀତ ହୋଇଥିଲେ ।

**ଈକ୍ଷଣ —**

ଆଖି, ଦୃଷ୍ଟି ।

**ଈଷତ —**

ଅଳ୍ପ, ସାମାନ୍ୟ ।

## ଉ

**ଉରକ୍ରମ —**

ତ୍ରିବିକ୍ରମ, ବାମନ ।

**ଉତ୍ତମ ଶ୍ଳୋକ —**

ବିଷ୍ଣୁ ।

**ଉଗ୍ରଦଶନ —**

ମୂଳିଆ ଦାନ୍ତ ।

**ଉଦଙ୍ମୁଖ —**

ଉତ୍ତରମୁଖ, ଉର୍ଦ୍ଧମୁଖ ।

**ଉଦାସୀନ —**

ନିରପେକ୍ଷ ।

**ଉନ୍ନିଦ୍ର —**

ଉଜାଗର, ଚେଇଁରହିବା ।

**ଉପସ୍ଥ —**

ଲିଙ୍ଗ ।

**ଉଭାରି —**

ଉଭା ହୋଇ ।

**ଊର୍ମି —**

ଲହରୀ, କିନ୍ତୁ ଏଠାରେ 'ଭାବାର୍ଥ ଦୀପିକା' ଅନୁସାରେ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଛଗୋଟି ଦୋଷ ।

Dr. Sudhanshu Sekhar Mishra

**ଉଲୂକ —**
ପେଚା ।
**ଉଶନା —**
ଶୁକ୍ର ।
**ଉଷର —**
ଅନୁର୍ବର ଭୂମି, ବାଲିଚର ଭୂମି ।

## ଋ

**ଋକ୍ଷ —**
ନକ୍ଷତ୍ର, ଭାଲୁ ।

## ଏ

**ଏକଖୁର —**
ଗୋଟିଏ ଖୁରାଥିବା ଜନ୍ତୁ, ଘୋଡା ଆଦି ।
**ଏକଦେଶେ —**
ଶୟନ ସ୍ଥାନରେ, (ଏକ ଦେଶସ୍ଥଂ ଶୟନଦେଶେ ସ୍ଥିତଂ)
**ଏକବେଳେ —**
ଥରେ ମାତ୍ର ।
**ଏକାନ୍ତଲୋକ —**
ଅସତ୍‌ସଙ୍ଗ ରହିତ ।

## କ

**କଇଟଭ —**
(କୈଟଭ) ବିଷ୍ଣୁଙ୍କ କର୍ଣ୍ଣମୂଳରୁ ଜାତ ମଧୁ ଓ କୈଟଭ ନାମକ ଅସୁର ଦ୍ୱୟ ନାଭି କମଳରେ ବସିଥିବା ବ୍ରହ୍ମାଙ୍କୁ ଖାଇବା ଲାଗି ଗୋଡ଼ାନ୍ତେ, ବିଷ୍ଣୁ ଅନନ୍ତଶଯ୍ୟାରୁ ଉଠି ସେ ଦୁହିଁଙ୍କ ସହିତ ଯୁଦ୍ଧ କରିଥିଲେ । ଅସୁରଦ୍ୱୟଙ୍କ ମେଦରୁ ପୃଥିବୀ ନିର୍ମିତ ହୋଇଥିବାରୁ ପୃଥିବୀର ଅନ୍ୟନାମ ମେଦିନୀ ହୋଇଛି ।
**କକୁଦ —**
ପିଠିର କୁଜ ।
**କଦର୍ଥନ୍ତି —**
କୁମାର୍ଗରେ ଚାଳିତ କରନ୍ତି, ନାନାପ୍ରକାର କଷ୍ଟ ଦିଅନ୍ତି ।
**କନ୍ୟାବର —**
ଶ୍ରେଷ୍ଠାକନ୍ୟା, ବରକନ୍ୟା ।

**କପିଳ —**
ପିଙ୍ଗଳ, ତମ୍ବାଳିଆ, କର୍ଦ୍ଦମ ଋଷିଙ୍କ ପୁତ୍ର ।
**କର୍ଦ୍ଦମ —**
କାଦୁଅ, କପିଳଙ୍କ ପିତା ।
**କର୍ମ —**
ପ୍ରାୟଶ୍ଚିତ୍ତ ଓ ଚାନ୍ଦ୍ରାୟଣ କର୍ମ ।
**କଳତ୍ର —**
ଭାର୍ଯ୍ୟା, ସ୍ତ୍ରୀ ।
**କ୍ଷଣଭଙ୍ଗୁର —**
ଯାହା ନଷ୍ଟଶୀଳ, ଅସ୍ଥାୟୀ ।
**କ୍ଷିତିଆଦି ପଞ୍ଚଭୂତ —**
ଭୂମି,ଜଳ,ଅଗ୍ନି, ବାୟୁ ଓ ଆକାଶ ।
**କହ୍ଲାର —**
ଶ୍ୱେତପଦ୍ମ ।
**କାଞ୍ଚି —**
ଅଣ୍ଟାସୂତୀ, ଚନ୍ଦ୍ରହାର
**କାଦ୍ରବ —**
ସର୍ପ ।
**କାମଦୁଘା —**
ଇଚ୍ଛା କରିବାମାତ୍ରେ ଯେ ପୂରଣ କରେ ।
**କାମ୍ୟକର୍ମ —**
ସାଂସାରିକ କର୍ମ ।
**କାରଣ୍ଡବ —**
ବାଳିହଂସ, ବତକ ।
**କାର୍ପାସ —**
କପା ।
**କାଳହୋଇଲା —**
ମୃତ୍ୟୁ ହେଲା ।
**କିଙ୍କର —**
ଭୃତ୍ୟ, ସେବକ ।
**କୁଚ୍ଛ —**
କଷ୍ଟ ।
**କୁଞ୍ଜର —**
ହାତୀ ।

**କୁମାର —**
ସନତ୍ କୁମାର, ସନକ, ସନନ୍ଦନ, ସନାତନ ।
**କୁମ୍ଭଜନ୍ମ ମୁନି —**
କୁମ୍ଭରୁ ଜାତ, ଅଗସ୍ତି ।
**କୁରରୀ —**
କପୋତ ଜାତୀୟ ଏକ ପ୍ରକାର ପକ୍ଷୀ ।
**କୁରାଳ (କୁଲାଳ) —**
କୁମ୍ଭାର ।
**କୁଳାଚଳ —**
କୁଳ ପର୍ବତ, ସାତଗୋଟି କୁଳପର୍ବତ ଯଥା - ହିମାଳୟ, ମହେନ୍ଦ୍ର, ମଳୟସହ, ଶୁକ୍ତିମାନ, ଋକ୍ଷ, ବିନ୍ଧ୍ୟ ଓ ପାରିପାତ୍ର ।
**କୁଳିଶ —**
ବଜ୍ର ।
**କୁସୁମାୟୁଧ —**
କନ୍ଦର୍ପ ।
**କୁସୁମାୟୁଧ ବାଣ —**
କାମବାଣ ।
**କୃତାନ୍ତ —**
ଯମ ।
**କୈତବ —**
ଠକ ।
**କୋଶକାର —**
ରେଶମ ପୋକ, ରେଶମ ପୋକ କୋଶ ବା ଖୋଷା ନିର୍ମାଣ କରି ତହିଁରେ ବନ୍ଦୀ ହୋଇଥାଏ ।
**କ୍ରବ୍ୟାଦ —**
ରାକ୍ଷସ ।
**କ୍ରିୟା —**
କର୍ମକାଣ୍ଡ ।

## ଖ

**ଖଦ୍ୟୋତ —**
ଜୁଳୁଜୁଳିଆ ପୋକ ।
**ଖରତର —**
ଶୀଘ୍ର ।

Dr. Sudhanshu Sekhar Mishra

### ଗ

**ଗଗନଙ୍କରି କଟିବାସ —**
ଲଙ୍ଗଳା ହୋଇ ।

**ଗଙ୍ଗାଦ୍ୱାର —**
ହରିଦ୍ୱାର ।

**ଗଣ୍ଡୂଷ —**
ଅଳ୍ପମାତ୍ର ଜଳରେ ଆଚମନ ।

**ଗର୍ଭ —**
ମା ପେଟରେ ଥିବା ପିଲା, ପେଟ, କୁକ୍ଷି ।

**ଗୁରୁ —**
ବୃହସ୍ପତି, ଦେବଗଣଙ୍କ ଗୁରୁ ।

**ଗୁଳ୍ପ —**
ବୁଦାଗଛ ।

**ଗୁହ୍ୟ —**
ଗୋପନ, ଗୋପନୀୟ ।

**ଗୋପୁର —**
ମନ୍ଦିରର ସମ୍ମୁଖସ୍ଥିତ ଦ୍ୱାରର ଉପରିଭାଗ ।

**ଗ୍ରହେଶ୍ୱର —**
ଗ୍ରହମାନଙ୍କ ଈଶ୍ୱର, ସୂର୍ଯ୍ୟ ।

**ଗ୍ରାମ୍ୟଭୋଗ —**
କୁତ୍ସିତଭୋଗ, ନିକୃଷ୍ଟଭୋଗ ।

**ଗ୍ରାସ —**
ଖାଦ୍ୟଦ୍ରବ୍ୟ, ଖାଇବା ।

### ଘ

**ଘ୍ରାଣ —**
ନାକ ।

### ଚ

**ଚକ୍ର —**
ଚକ, ଚକୁଆପକ୍ଷୀ ।

**ଚଞ୍ଚୁ —**
ଥଣ୍ଟ ।

**ଚଟକ —**
ଘରଚଟିଆ ଚଢ଼େଇ ।

**ଚତୁର୍ଥଭାଗ —**
ଏକ ଚତୁର୍ଥାଂଶ, ଏଠାରେ ନଅଲକ୍ଷ ଯୋଜନ ।

**ଚତୁରଙ୍ଗବଳ —**
ଗଜାରୋହୀ, ଅଶ୍ୱାରୋହୀ ରଥାରୋହୀ ଓ ପଦାତିକ ସୈନ୍ୟ ।

**ଚତୁଷ୍ପଦ —**
ଚାରିଗୋଡଥିବା ପଶୁ ।

**ଚତ୍ୱର —**
ଅଗଣା, ଯଜ୍ଞ ନିମିତ୍ତ ପ୍ରସ୍ତୁତ ସ୍ଥାନ ।

**ଚର୍ମ —**
ଚମଡ଼ା, ଏଠାରେ-ଗଣ୍ଡାଚମଡ଼ାରେ ନିର୍ମିତ ଢ଼ାଲ ।

**ଚାତୁର୍ମାସ୍ୟ —**
ଏକପ୍ରକାର ଯଜ୍ଞ ।

### ଜ

**ଜଗତ କାରଣ —**
ପରମାତ୍ମା, ଭଗବାନ୍ ।

**ଜଳହଂସ —**
ପାଣିହଂସ, ବତକ ।

**ଜାଚଞ୍ଚା —**
ମାଗିବା ।

**ଜିଘାଂସ —**
କୁବଚନ କହିବା, ଗାଳିଦେବା ।

**ଜୃମ୍ଭଣ —**
ହାଇମାରିବା ।

### ତ

**ତଇଳ ଯନ୍ତ୍ର —**
ତେଲୀଘଣା ସଦୃଶ ଗୋଲାକାର ଭ୍ରମଣ ଯନ୍ତ୍ର ।

**ତଦନ୍ତ —**
ରହସ୍ୟ ।

**ତନୁ —**
ତନୁଜ, ପୁତ୍ରଅର୍ଥରେ ବ୍ୟବହୃତ ।

**ତପତି —**
ଖରା ।

**ତମଘୋର —**
ଘୋର ଅନ୍ଧକାର

**ତରଣି —**
ସୂର୍ଯ୍ୟ ।

**ତର୍ଷ —**
ତୃଷା ।

**ତାରାନାୟକ —**
ଚନ୍ଦ୍ର ।

**ତିମିର —**
ଅନ୍ଧକାର ।

**ତୁଷ —**
ଚଷୁ, କୁଣ୍ଡାଆଦି ।

**ତୁଷ୍ଣୀ —**
ନୀରବ ।

**ତୁଷ୍ଣୀଭୂତ —**
ଚୁପ୍ ହୋଇ ରହିବା ।

**ତ୍ରୟୀମୟ —**
ବେଦମୟ, ବ୍ରହ୍ମା, ବିଷ୍ଣୁ ଶିବମୟ ।

**ତ୍ରିତାପ —**
ଆଧିଭୌତିକ, ଆଧିଦୈବିକ ଓ ଅଧ୍ୟାତ୍ମିକ ତାପ ।

**ତ୍ରିଦଶ —**
ଦେବତା ।

**ତ୍ରିଧାମା —**
ତ୍ରିମୂର୍ତ୍ତିଧାରୀ ମାଧବଅର୍ଥାତ୍ ଭୂଦେବୀ ଓ ଶ୍ରୀଦେବୀ ସମେତ ମାଧବ ।

**ତ୍ରିନୟନ —**
ତିନିଲୋକର ନେତା, ତିନିଲୋକର ଅଧୀଶ୍ୱର ।
(ତ୍ରୀନ୍ ଲୋକାନ୍ ନୟତୀତି)

**ତ୍ରିବିକ୍ରମ —**
ତିନିପାଦରେ ଯେ ବିକ୍ରମି ଥାଆନ୍ତି, ବାମନ ।

**ତ୍ରିବିଧକର୍ମ —**
କାୟିକ, ବାଚିକ, ମାନସିକକର୍ମ ।

**ତ୍ରିବିଧଲକ୍ଷଣ —**
ଭଲ, ମନ୍ଦ ଏବଂ ଭଲମନ୍ଦ ମିଶ୍ରିତ ଲକ୍ଷଣ ।

**ତ୍ୱଷ୍ଟାନନ୍ଦନ —**
ତ୍ୱଷ୍ଟାନାମକ ବ୍ରହ୍ମର୍ଷିଙ୍କ ପୁତ୍ର ବୃତ୍ରାସୁର ।

Dr. Sudhanshu Sekhar Mishra

ଦ

**ଦଣ୍ଡଧାରୀ —**

ଯମ ।

**ଦନ୍ଦଶୂକ —**

ପ୍ରଚଣ୍ଡ ସର୍ପ, ବିଷଧର ଜନ୍ତୁ ।

**ଦର୍ଶ —**

ବେଦ ବିଧାନ ଅନୁସାରେ ଏକ ପ୍ରକାର ଯଜ୍ଞ । ଅମାବାସ୍ୟା ।

**ଦାସୀପତି —**

ପତିତା ନାରୀର ସ୍ୱାମୀ ।

**ଦିବି —**

ଆକାଶ ।

**ଦୀପିତ —**

ଦୀପ୍ତ ଅର୍ଥାତ ଆଲୋକିତ ।

**ଦୁରଧିଗମ୍ୟ —**

ଯାହା ବହୁ କଷ୍ଟରେ ବୁଝାଯାଏ ।

**ଦୁସ୍ତ୍ୟଜ —**

ଯାହାକୁ ତ୍ୟାଗ କରିହୁଏ ନାହିଁ ।

**ଦେବବର —**

ଇନ୍ଦ୍ର ।

**ଦ୍ୟାବାପୃଥିବୀ —**

ସ୍ୱର୍ଗମର୍ତ୍ତ୍ୟ ।

**ଦ୍ରବିଣ —**

ଧନସମ୍ପଦ ।

**ଦ୍ରୁମ —**

ବୃକ୍ଷ ।

**ଦ୍ରୋଣି —**

ଗିରିସଙ୍କଟ, ଦୁଇ ପର୍ବତର ମଧ୍ୟଭାଗ ।

**ଦ୍ୱାଦଶ ଅକ୍ଷର -**

ଓଁ ନମୋ ଭଗବତେ ବାସୁଦେବାୟ ।

**ଦ୍ୱିପଦ —**

ମନୁଷ୍ୟ, ପକ୍ଷୀଆଦି ଦୁଇ ଗୋଡ଼ଥିବା ପ୍ରାଣୀ ।

**ଦ୍ୱେଷକାରୀ —**

ଯେଉଁମାନେ ଶତ୍ରୁତା କରନ୍ତି ।

ଧ

**ଧର୍ମସେତୁ —**

ଧର୍ମର ନିୟମ, ଧର୍ମର ବନ୍ଧନ ।

**ଧାତିକାରେ —**

ଅତିଶୀଘ୍ରେ ।

ନ

**ନବପର୍ବତ —**

ନୀଳ, ଧବଳ, ନିଷଧ, ହେମକୂଟ, ହିମାଳୟ, ମାଲ୍ୟବାନ, ଗନ୍ଧମାର୍ଦ୍ଦନ ଭଦ୍ରାଶ୍ୱ, କେତୁମାଳ ।

**ନଭୋମଣ୍ଡଳ —**

ଅନ୍ତରୀକ୍ଷ, ଶୂନ୍ୟ, ଆକାଶ ।

**ନରମେଧ —**

ଯଜ୍ଞରେ ବା ଦେବତାଙ୍କ ଉଦ୍ଦେଶ୍ୟରେ ମନୁଷ୍ୟ ବଳିଦାନ ।

**ନିଃସ୍ୱନ —**

ଶବ୍ଦ ।

**ନିଗମ —**

ବେଦବିଧି ଅନୁସାରେ ବିହିତ ଶାସ୍ତ୍ର ।

**ନିଗ୍ରହ —**

ଅପମାନିତ, ଲାଞ୍ଛିତ, ସଂଯମ ।

**ନିଦାଘ —**

ଗ୍ରୀଷ୍ମକାଳ ।

**ନିଦାନ —**

ମୂଳକାରଣ ।

**ନିଧାନ —**

ଭଣ୍ଡାର ।

**ନିବିଡ଼ —**

ପରିପୁଷ୍ଟ, ମୋଟାସୋଟା ବଳିଲା ବାଳିଲା, ଗାଢ଼ ।

**ନିବୃତ୍ତତୃଷ —**

ଯାହାଙ୍କର ତୃଷା ଅର୍ଥାତ୍ ପାଇବାର ଇଚ୍ଛା ଦୂର ହୋଇଛି ।

**ନିରତ —**

ସର୍ବଦା ।

**ନିରୟ —**

ନରକ ।

**ନିରେଖି —**

ଦେଖି ।

**ନିର୍ଝର —**

ଝରଣା ।

**ନିର୍ଯ୍ୟାସ —**

ସାର, ମଞ୍ଜ (ଗଛର ମଞ୍ଜ) ।

**ନିଶୀଥ —**

ଅର୍ଦ୍ଧ ରାତ୍ରି,

**ନିବୀ --**

ଅଣ୍ଟା ଖୋସଣୀ ।

**ନ୍ୟଗ୍ରୋଧ —**

ଅଶ୍ୱତ୍ଥ (ବଟ) ।

ପ

**ପକ୍ଷ ଛିଡ଼ନ୍ତେ —**

ପୂର୍ବକାଳରେ ପର୍ବତ ମାନଙ୍କର ପକ୍ଷ ଥିଲା । ସେମାନେ ଏକସ୍ଥାନରୁ ଅନ୍ୟସ୍ଥାନକୁ ଉଡ଼ିଯିବା ଫଳରେ ଅନେକ ଗ୍ରାମ ଓ ଜନସମୁଦାୟ ଧ୍ୱଂସ ପାଇଯାଉ ଥିଲା । ତେଣୁ ଇନ୍ଦ୍ର ସମସ୍ତ ପର୍ବତଙ୍କର ପକ୍ଷ ଛେଦନ କରି ସ୍ଥାଣୁ କରିଦେଲେ ଏବଂ ଏକମାତ୍ର ହିମାଳୟ ପୁତ୍ର ମୈନାକ ସମୁଦ୍ର ମଧ୍ୟରେ ଲୁଚି ରକ୍ଷା ପାଇଗଲା ।

**ପଞ୍ଚଜନ —**

ସମୁଦ୍ରରେ ବାସକରୁଥିବା ଅସୁର ବିଶେଷ ।ବରୁଣର ଅନୁରୋଧ ରେ ଶ୍ରୀକୃଷ୍ଣ ପଞ୍ଚଜନ ଅସୁରକୁ ବଧ କରି ତାହାର ଅସ୍ଥିରେ ପାଞ୍ଚଜନ୍ୟ ଶଙ୍ଖ ଲାଭ କରିଥିଲେ ।

**ପଞ୍ଚଯାମ —**

ଦିବସ । (ପାଞ୍ଚଯାମ ଅର୍ଥାତ ପାଞ୍ଚପ୍ରହର ଯାହାର ଅଛି) ସନ୍ଧ୍ୟା ଓ ପ୍ରଭାତକୁ ମିଶାଇ ଗୋଟିଏ ପ୍ରହର ହେତୁରୁ ଦିବସଟି ପାଞ୍ଚ ପ୍ରହର ଓ ରାତ୍ରି ତିନିପ୍ରହର ବୋଲି ଭାବାର୍ଥଦୀପିକା ଟୀକାରେ ବର୍ଣ୍ଣିତ ହୋଇଛି ।

**ପତଙ୍ଗ —**

ପକ୍ଷୀ ବିଶେଷ ।

**ପଦ୍ମାରବିନ୍ଦ —**

ପଦ୍ମପାଦ ।

Dr. Sudhanshu Sekhar Mishra

**ପନ୍ନଗ —**
ସାପ ।

**ପର —**
ଶ୍ରେଷ୍ଠ ।

**ପରଧର୍ମ —**
ଶ୍ରେଷ୍ଠଧର୍ମ ।

**ପଶୁଯଜ୍ଞ —**
ଯେଉଁ ଯଜ୍ଞରେ ପଶୁବଳି ଦିଆଯାଏ ।

**ପଶ୍ୱାଦି —**
ପଶୁଆଦି, ବିଭିନ୍ନପଶୁ ।

**ପଶ୍ଚିମରାତ୍ରି —**
ପୂର୍ବରାତ୍ରି ଅର୍ଥାତ୍ ପୂର୍ବରାତ୍ରି ଆଉ ଫେରି ଆସେନାହିଁ ।

**ପିଅର —**
ବାପା ବା ପିତା ।

**ପିପିଲିକା —**
ପିମ୍ପୁଡି ।

**ପୀନ —**
ବୃହତ୍, ବଡ଼, ମାଂସଳ ।

**ପୁଂଶ୍ଚଳୀ —**
ଭ୍ରଷ୍ଟା ସ୍ତ୍ରୀ, ଚରିତ୍ରହୀନା ନାରୀ ।

**ପୁଂସବନ ବ୍ରତ —**
ପୁତ୍ର ପାଇବା ଇଚ୍ଛାରେ ଯେଉଁ ବ୍ରତ କରାଯାଏ । ଏ ବ୍ରତ ମାର୍ଗଶିର ମାସ ଶୁକ୍ଳପ୍ରତିପଦ୍‌ଠାରୁ ଆରମ୍ଭ କରି ଲକ୍ଷ୍ମୀନାରାୟଣଙ୍କ ପୂଜା ଉଦ୍ଦେଶ୍ୟରେ କରାଯାଏ ।

**ପୁଣ୍ୟ ଶ୍ଳୋକ —**
ପବିତ୍ରଆତ୍ମା, ପରମେଶ୍ୱର ।

**ପୁରନ୍ଦର —**
ଇନ୍ଦ୍ର ।

**ପୁରୀଷ —**
ମଳ, ବିଷ୍ଠା ।

**ପୁରୁହୂତ —**
ଇନ୍ଦ୍ର ।

**ପୁରୁହୂତି —**
ସୁନ୍ଦର ନାମଧାରୀ ।

**ପୁଷ୍କରନାଳ —**
ପଦ୍ମନାଡ଼ ।

**ପୂତ —**
ପବିତ୍ର ।

**ପୃଥିବୀଗୁଣ —**
ସୁଗନ୍ଧ ଓ ଦୁର୍ଗନ୍ଧଆଦି ।

**ପୃଥୁଳବୁଦ୍ଧି —**
ମୋଟାବୁଦ୍ଧିଆ ।

**ପୌର୍ଣ୍ଣମାସ —**
ଏକ ପ୍ରକାର ଯଜ୍ଞ ।

**ପ୍ରଚରେ —**
ଭ୍ରମଣ କରେ ।

**ପ୍ରଜାକାମ —**
ପ୍ରଜାସୃଷ୍ଟିକାମନା ।

**ପ୍ରଜାପତି ଦୁହିତା —**
ସମ୍ବତ୍ସର ନାମକ ପ୍ରଜାପତିଙ୍କ ଝିଅ । ଯେଉଁମାନେ ଲକ୍ଷ୍ମୀଙ୍କର ସହଚରୀ ଅଟନ୍ତି ।

**ପ୍ରଣବ —**
ଓଁକାର ।

**ପ୍ରତୀତ —**
ବିଶ୍ୱାସ, ଜ୍ଞାନ ।

**ପ୍ରବୃତ୍ତିମାର୍ଗ —**
ସାଂସାରିକମାର୍ଗ ।

**ପ୍ରଥମଗଣ —**
ଶିବଗଣ ।

**ପ୍ରମାଦ —**
ଭ୍ରମ, କୁସଂସ୍କାର ।

**ପ୍ରସରଇ —**
ବିଶେଷଭାବରେ ଚାରିଆଡକୁ ବହିଯାଉଛି ।

**ପ୍ଲକ୍ଷ —**
ଅଶ୍ୱତ୍ଥ ।

## ବ

**ବକ୍ରତୁଣ୍ଡ —**
ଶାଗୁଣାଆଦି ପକ୍ଷୀ, ଯାହାର ଥଣ୍ଟ ବଙ୍କା, ଗଣେଶ ।

**ବଜ୍ରାୟୁଧ —**
ଇନ୍ଦ୍ର ।

**ବଡ଼ବା —**
ଘୋଟକ ।

**ବଦନାରବିନ୍ଦ —**
ମୁଖରୂପକ ପଦ୍ମ ।

**ବରଷ (ବର୍ଷ) —**
ଅଞ୍ଚଳ, ଦେଶ ।

**ବରାରୋହା —**
ସୁନ୍ଦରୀ (ସୁନ୍ଦରନିତମ୍ବ ଯାହାର ସେ ସ୍ତ୍ରୀ)

**ବର୍ମ —**
କବଚ ।

**ବଳୟ —**
ବଳା, କଙ୍କଣ ।

**ବଲ୍ମୀକ —**
ଉଇ ହୁଙ୍କା ।

**ବାଞ୍ଛିତ —**
ଯାହା ଇଚ୍ଛା କରାଯାଏ ।

**ବାତ —**
ପବନ ।

**ବାତଉପମା —**
ପବନପରି ।

**ବାତାପି —**
ବାତାପି ନାମକ ଅସୁରକୁ ମେଷ ରୂପରେ ମାରି ଇଲ୍ବଳ ଅଗସ୍ତିକୁ ଖାଇବାକୁ ଦେଲା । ଅଗସ୍ତି ତାହାକୁ ଖାଇ ପେଟରେ ହାତ ବୁଲାଇ ଭସ୍ମ କରି ଦେଲେ ।

**ବାଦରାୟଣି —**
ବାଦରାୟଣ (ବ୍ୟାସ)ଙ୍କ ପୁତ୍ର ଶୁକମୁନି ।

**ବାୟସ —**
କୁଆ, କାଉ ।

**ବାରଣ —**
ହସ୍ତୀ ।

**ବାଳଭାଷିତ —**
ଛୋଟ ପିଲାଙ୍କ ଦରୋଟି ବଚନ ।

**ବାଳିଶ —**

Dr. Sudhanshu Sekhar Mishra

ନିର୍ବୋଧ, ଶିଶୁଭାବଯୁକ୍ତ, ମୂର୍ଖ ।

**ବିକଚ —**

ପ୍ରସ୍ଫୁଟିତ, ଫୁଟିଲା ।

**ବିଟପୀ —**

ବୃକ୍ଷ, ଚରିତ୍ରହୀନା ନାରୀ ।

**ବିପଥ —**

ଖରାପ ମାର୍ଗ ।

**ବିପକ୍ଷପକ୍ଷ —**

ଶତ୍ରୁପକ୍ଷ ।

**ବିପିନ —**

ଗହନବନ ।

**ବିବସ୍ୱାନ —**

ସୂର୍ଯ୍ୟ

**ବିଭୂତି —**

ଧନସମ୍ପତ୍ତି, ଅଥବା ଧନଦାତା ଦେବଗଣ ।

**ବିଶଦ —**

ସ୍ୱଚ୍ଛ, ନିର୍ମଳ ।

**ବିଶାରଦ —**

ଦକ୍ଷ, ସ୍ୱଚ୍ଛ, ଅତ୍ୟନ୍ତ ଆମୋଦ ଦାୟକ ଅର୍ଥରେ ବ୍ୟବହୃତ ।

**ବିଷୟା —**

ସାଂସାରିକ ମାୟାମମତା ।

**ବିହଙ୍ଗମ —**

ପକ୍ଷୀ ।

**ବୀକ୍ଷଣ —**

ବିଶେଷଭାବରେ ଚାହିଁବା ।

**ବୁଧ —**

ପଣ୍ଡିତ, ଚନ୍ଦ୍ରଙ୍କ ପୁତ୍ର ।

**ବୃକ —**

ଗଧିଆ ।

**ବୃତ —**

ନିଯୁକ୍ତ ।

**ବୃଷଳ —**

ନୀଚକର୍ମ ଆଚରଣକାରୀ ଶୂଦ୍ର ।

**ବୃଷଳୀ —**

ଚରିତ୍ରହୀନା ସ୍ତ୍ରୀ ।

**ବେଦ —**

ଜ୍ଞାନ, ଋକ୍, ଯଜୁ, ସାମ, ଅଥର୍ବ ।

**ବେଦସନ୍ଧର୍ଷ —**

ଚାରିବେଦ ଅଧ୍ୟୟନକାରୀ ।

**ବୈବସ୍ୱତ —**

ଯମ ।

**ବୈରାନୁବନ୍ଧଭାବ —**

ଶତ୍ରୁତାମୂଳକ ଆଚରଣ ।

**ବ୍ୟଜନ —**

ବିଞ୍ଚଣା ।

**ବ୍ୟସନ —**

ଶିକାର, ଜୁଆଖେଳ, ମଦ୍ୟପାନ ଆଦି ।

**ବ୍ରତଧର —**

ଯେଉଁ ବ୍ୟକ୍ତି ନିଷ୍ଠାରେ ବ୍ରତପାଳନ କରେ ।

**ବ୍ରହ୍ମାନନ୍ଦନ —**

ନାରଦ, ଅଙ୍ଗିରା, ସନକାଦି ମୁନିବୃନ୍ଦ ।

### ଭ

**ଭବ —**

ଶିବ ।

**ଭର୍ଜିତ ବୀଜ —**

ଭଜା ହୋଇଥିବା ମଞ୍ଜି ।

**ଭାଗବତ —**

ପରମ ବୈଷ୍ଣବ ।

**ଭାଜନ —**

ପାତ୍ର, ଯୋଗ୍ୟ ।

**ଭିଷକ୍ —**

ଚିକିତ୍ସକ, ବୈଦ୍ୟ ।

**ଭୂତଭାବନ —**

ପ୍ରାଣୀଙ୍କ ସୃଷ୍ଟିକର୍ତ୍ତା, ବିଷ୍ଣୁ ।

**ଭୂମି —**

ସ୍ଥାନ ।

**ଭ୍ରାତୃନାଶ —**

ତ୍ୱଷ୍ଟାର ପ୍ରଥମ ପୁତ୍ର ବିଶ୍ୱରୂପଙ୍କୁ ଇନ୍ଦ୍ରବଧ କରିଥିଲେ ।

### ମ

**ମଘବାନ —**

ଇନ୍ଦ୍ର ।

**ମଘାଦି ଅଷ୍ଟନକ୍ଷତ୍ର —**

ମଘା, ପୂର୍ବଫାଲଗୁନି, ଉତ୍ତରା ଫାଲଗୁନି, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା ।

**ମଧୁ —**

ମଦ୍ୟ ।

**ମଧୁକର —**

ଭ୍ରମର ।

**ମଧୁପାନ —**

ମଦ୍ୟପାନ ।

**ମଧ୍ୟ —**

ମଧ୍ୟାହ୍ନ, ଦ୍ୱିପ୍ରହର ।

**ମଧ୍ୟଦେଶ —**

ଅଣ୍ଟା ।

**ମନୁ ଅଛନ୍ତି ବୃଂଶ୍ଚିତରି —**

ପ୍ରଳୟକାଳରେ ସତ୍ୟବ୍ରତ ମନୁ ମତ୍ସ୍ୟରୂପୀ ଭଗବାନ୍‌ଙ୍କ ଶୃଙ୍ଗରେ ନିଜର ନୌକାଟିକୁ ବାନ୍ଧି ପ୍ରଳୟ ଜଳରୁ ତରିଥିଲେ ।

**ମୟଦୈତ୍ୟ —**

ଶିଳ୍ପ ନିର୍ମାଣ କଳାରେ ସର୍ବଶ୍ରେଷ୍ଠ ଶିଳ୍ପୀ, ମୟ ନାମକ ଅସୁର ।

**ମହାନରକ —**

ମହାରୌରବ ନାମକ ନରକ ।

**ମର୍ତ୍ତ୍ୟପଶୁ —**

ପଶୁତୁଲ୍ୟ ମନୁଷ୍ୟ ।

**ମହେନ୍ଦ୍ର —**

ଇନ୍ଦ୍ର, ମହେନ୍ଦ୍ରନାମକ ପର୍ବତ ।

**ମହେନ୍ଦ୍ରବାରଣ —**

ଐରାବତ ହସ୍ତୀ ।

**ମିତ୍ର —**

ସୂର୍ଯ୍ୟ, ବନ୍ଧୁ ।

Dr. Sudhanshu Sekhar Mishra

**ମୂଢ଼ଲିଙ୍ଗ —**

ଇନ୍ଦ୍ରିୟବାସନା ବିହୀନ ।

**ମୃଗ —**

ପଶୁ, ହରିଣ ।

**ମୃଗତୃଷ୍ଣା —**

ମରିଚୀକା, ଦୂରରେ ଦିଶୁଥିବା ଜଳଭ୍ରମ ।

**ମୃଗେନ୍ଦ୍ର —**

ସିଂହ ।

**ମୃତାଣ୍ଡ —**

ମୃତ ଅର୍ଥାତ୍ ଅଚେତନ, ଅଣ୍ଡ-ବ୍ରହ୍ମାଣ୍ଡ ।

**ମେରି —**

ମେଢ଼ି, ବା ବେଙ୍ଗଳାର ମଝିଖୁଣ୍ଟ ।

## ଯ

**ଯାତନା —**

କଷ୍ଟ ।

**ଯାତୁଧାନ —**

ଅସୁର, ରାକ୍ଷସ ।

**ଯାମୀ —**

ସୂର୍ଯ୍ୟଙ୍କ ପତ୍ନୀ ସଂଜ୍ଞା ।

**ଯୁଗ —**

ଯୁଆଳୀ, ଦୁଇ ।

**ଯୁଗଳ ବେନି —**

ଚାରି ।

**ଯୋଷିତ —**

ସ୍ତ୍ରୀ ।

## ର

**ରଜ୍ଜୁ —**

ଦଉଡ଼ି ।

**ରଜ୍ଜୁରେ ସର୍ପଭ୍ରମ —**

ଅଜ୍ଞାନତାବଶତଃ ଦଉଡ଼ିକୁ ସାପ ବୋଲି ମନେ କରିବା ।

**ରଥଗର୍ଭ —**

ସାରଥିଙ୍କ ବସିବାସ୍ଥାନ ।

**ରାଜି —**

ସମୂହ ।

**ରୁଚିର —**

ସୁନ୍ଦର ।

**ରୁଧିର —**

ରକ୍ତ ।

**ରୌଦ୍ର —**

ଭୟଙ୍କର ।

## ଶ

**ଶକୁନ୍ତ —**

ଶାଗୁଣା, ପକ୍ଷୀବିଶେଷ ।

**ଶକ୍ର —**

ଇନ୍ଦ୍ର ।

**ଶତଦଳ —**

ପଦ୍ମ ।

**ଶମନ —**

ଯମ ।

**ଶୟଳ —**

ପୃଥିବୀ ।

**ଶର୍ବରୀ —**

ରାତି ।

**ଶଲଭ —**

ପଙ୍ଗପାଳ, ଝିଣ୍ଟିକା ।

**ଶଶଧର —**

ଚନ୍ଦ୍ର ।

**ଶାଙ୍କୁଳି —**

ବନ୍ଧନ, ଦଉଡ଼ି, ଜଞ୍ଜିର ।

**ଶାରଙ୍ଗ —**

ଶାର୍ଙ୍ଗନାମକ ନାରାୟଣଙ୍କ ଧନୁ ।

**ଶାସ୍ତା —**

ଯେ ଦଣ୍ଡ ବା ଶାସ୍ତି ଦିଅନ୍ତି ।

**ଶୁକ୍ଲଲୋହିତ କୃଷ୍ଣବର୍ଣ୍ଣ —**

ସତ୍ତ୍ୱ, ରଜ, ତମ ।

**ଶୁଚି —**

ପବିତ୍ର ।

**ଶୁଭ୍ର —**

ଉଜ୍ଜ୍ୱଳ, ଚିକ୍କଣ, ଧଳା ।

**ଶୁଶ୍ରୂଷଣ —**

ସେବା କାର୍ଯ୍ୟ କରଣ ।

**ଶୋଣିତ —**

ରକ୍ତ ।

**ଶ୍ୟେନ —**

ବାଜପକ୍ଷୀ ।

**ଶ୍ଳଥ —**

ହୁଗୁଳିବା, ଢ଼ିଲା ।

**ଶ୍ୱାନ —**

କୁକୁର ।

## ଷ

**ଷଟ୍‌କର୍ମ —**

ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ ।

**ଷଡ଼୍‌ବର୍ଗ —**

କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ।

**ଷୋଡ଼ଶ କଳା —**

ଅମୃତା, ମାନଦା, ପୂଷା, ତୁଷ୍ଟି, ପୁଷ୍ଟି, ରତି, ଧୃତି, ଶଶୀ, ଚନ୍ଦ୍ରିକା କାନ୍ତି ଜ୍ୟୋତ୍ସ୍ନା, ଶ୍ରୀ, ପ୍ରୀତି, ଅଙ୍ଗଦା, ପୂର୍ଣ୍ଣା ଏବଂ ପୂର୍ଣ୍ଣାମୃତା ।

## ସ

**ସଂସାରକର —**

ବ୍ରହ୍ମା ।

**ସଙ୍କର୍ଷଣ —**

ଅନନ୍ତରୂପୀ ବିଷ୍ଣୁ, ବଳରାମ ।

**ସତ୍ତ୍ୱ —**

ପ୍ରାଣ, ଜୀବ, ଅସ୍ତିତ୍ୱ ।

Dr. Sudhanshu Sekhar Mishra

**ସଦନ —**

ଗୃହ, ପୁର ।

**ସନ୍ତତି —**

ପ୍ରଜା, ଜନସମୁଦାୟ, ପୁତ୍ରକନ୍ୟା ।

**ସପତସପ୍ତ —**

ଅଣଚାଶ ।

**ସପ୍ତଛନ୍ଦ —**

ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ତ୍ରିଷ୍ଟୁପ୍, ଜଗତୀ ।

**ସବ୍ୟ —**

ଦକ୍ଷିଣ ।

**ସମବିଷମ ବୁଧଙ୍କର —**

ସମାନ ବୁଦ୍ଧି ତଥା ବିଷମ ବୁଦ୍ଧି ସମ୍ପନ୍ନ ପଣ୍ଡିତଙ୍କର ।

**ସର୍ପସର୍ପ —**

ଟାଳ, ଟାଲ ।

**ସର୍ଷପ —**

ସୋରିଷ ।

**ସରୋରୁହ —**

ପଦ୍ମ ।

**ସହି —**

ମାନସିକ କରି ।

**ସାତଧନୁ —**

ଏକ ଧନୁ ଚାରିହାତ ଅର୍ଥାତ୍ ଅଠେଇଶହାତ ।

**ସାଲୋକ୍ୟ —**

ମୁକ୍ତି, ଈଶ୍ୱରଙ୍କ ସହିତ ଏକ ଲୋକରେ ବାସ ।

**ସୁଧାମ —**

ଉତ୍ତମସ୍ଥାନ, ଶ୍ରେଷ୍ଠସ୍ଥାନ ।

**ସୁପର୍ଣ୍ଣ —**

ଗରୁଡ଼ ।

**ସୁରାପାୟୀ —**

ମଦ୍ୟପାନକାରୀ ।

**ସୁଶ୍ରୋଣୀ —**

ଯାହାର କଟିଭାଗ ସୁନ୍ଦର, ଯାହାର ନିତମ୍ବ ସୁନ୍ଦର ।

**ସୋମ —**

ଚନ୍ଦ୍ରମା ।

**ସୋମଯଜ୍ଞ —**

କାନ୍ତି ଓ ଐଶ୍ୱର୍ଯ୍ୟ ବୃଦ୍ଧି ପାଇଁ କରାଯାଉଥିବା ଯଜ୍ଞ ।

**ସ୍ୱପୁରତ୍ରୟ ଦଗ୍‌ଧକଲା —**

ମୟଦାନବଦ୍ୱାରା ରାକ୍ଷସ ଶ୍ରେଷ୍ଠ ତାରକାକ୍ଷ, ବିଦ୍ୟୁନ୍ମାଳୀ ଓ କମଳାକ୍ଷଙ୍କ ପାଇଁ ଯଥାକ୍ରମେ ସ୍ୱର୍ଣ୍ଣ, ରୌପ୍ୟ ଓ ଲୌହମୟ ପୁର ନିର୍ମାଣ କରାଯାଇଥିଲା । ଶେଷରେ ବିଷ୍ଣୁଙ୍କ ଆଦେଶରେ ଶିବ ସେହି ସେହି ପୁରତ୍ରୟକୁ ଏକା ବାଣକେ ଭସ୍ମ କରିଥିଲେ । ପୁର ନିର୍ମାଣ କୌଶଳରେ ମୟଦାନବ ଅତ୍ୟନ୍ତ କୁଶଳୀ ହେବ ବୋଲି ସେ ବିଷ୍ଣୁଙ୍କ ଠାରୁ ବର ପାଇଥିଲା ।

**ସ୍ୱୈରିଣୀ —**

ଭ୍ରଷ୍ଟାସ୍ତ୍ରୀ, ସ୍ୱେଚ୍ଛାଚାରିଣୀ ।

**ସ୍ଥୂଳ —**

ମୋଟା ।

## ହ

**ହନୁ —**

ଗାଲର ଉପର ଓ ତଳ ଅଂଶ ।

**ହରି ବରଷ —**

ହରିବର୍ଷ ହରି ନାମକ ଗୋଟିଏ ଅଞ୍ଚଳ ।

**ହାଟକ —**

ସୁନା ।

**ହ୍ରାଦିନୀ, (ହ୍ଲାଦିନୀ) —**

ନଦୀ, ବିଦ୍ୟୁତ୍, ବଜ୍ର ।

---

Dr. Sudhanshu Sekhar Mishra

## ସପ୍ତମ ଓ ଅଷ୍ଟମ ସ୍କନ୍ଧ

**ଅରିଷଡ୍‌ବର୍ଗ :** କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ।

**ଅଙ୍ଗୀକାର :** ସ୍ୱୀକାର, ଗ୍ରହଣ କରିବା, ପ୍ରତିଶ୍ରୁତି, ପ୍ରତିଜ୍ଞା।

**ଅଚଳ :** ପର୍ବତ ଓ ଶିଳାସମୂହ।

**ଅଣଚାଶ :** କଶ୍ୟପ ଓ ଦିତିଙ୍କ ପୁତ୍ର, ଅଣଚାଶ ସଂଖ୍ୟକ ମରୁଦ୍‌ଗଣ।

**ଅଦୃଷ୍ଟପୂର୍ବ:** ଯାହା ପୂର୍ବରୁ ଦେଖାଯାଇ ନ ଥାଏ।

**ଅଦୃଷ୍ଟସୁପାକ:** ଭାଗ୍ୟର ପରିପକ୍ୱତା, ସୌଭାଗ୍ୟବଶତଃ।

**ଆଧ୍ୟାତ୍ମ :** ଆତ୍ମା ବା ବ୍ରହ୍ମ ବିଷୟକ, ଏଠାରେ ଆଧିଭୌତିକ, ଆଦିଦୈବିକ ଓ ଆଧ୍ୟାତ୍ମିକ ତାପ ଅର୍ଥାତ ତ୍ରିତାପ।

**ଅନୁବନ୍ଧ :** ଭାବ, ଉପକ୍ରମ, ପ୍ରସଙ୍ଗ, ଉପଲକ୍ଷ୍ୟ।

**ଅନ୍ତକ :** ଯମ, ନାଶକ, ହତ୍ୟାକାରୀ।

**ଅନ୍ତର୍ଜଳ :** ଅନଶନ, ଅନଶନବ୍ରତ ।

**ଅନ୍ତଃ ସମୁଦ୍ର :** ପ୍ରାଣୀମାନଙ୍କ ହୃଦୟ ରୂପକ ସିନ୍ଧୁ।

**ଅପକ୍ଷୟ :** ଅମାବାସ୍ୟା।

**ଅପବର୍ଗ :** ମୋକ୍ଷ।

**ଅବଗାହନ :** ଗାଧୋଇବା।

**ଅବ୍‌ଜ :** ପଦ୍ମ ।

**ଅବତଂସ :** କୁଣ୍ଡଳ, କର୍ଣ୍ଣଭୂଷଣ, ମୁକୁଟ।

**ଅମ୍ବର :** ଲୁଗା।

**ଅମ୍ଳାନ :** ଯାହା ଶୁଖିଯାଇନାହିଁ, ଯାହା ମଉଳି ନାହିଁ, ସଜ, ତଟକା।

**ଅୟସ୍କାନ୍ତ :** ଚୁମ୍ବକ ପଥର।

**ଅଯାଚିତ :** ଅପ୍ରାର୍ଥିତ, ଅମଗା, ଆପେ ମିଳିବା।

**ଅରହଣ :** ଅର୍ହଣ, ଯୋଗ୍ୟ।

**ଅରିଷ୍ଟ :** ରିଠାଫଳ, ଅଶୁଭିଶାଳ, ଅନିଷ୍ଟ, ଘୋଳଦହି, ଗୁଡ଼ମିଶ୍ରିତ ଆୟୁର୍ବେଦୀୟ ଔଷଧ ବିଶେଷ।

**ଅଳକା :** କୁଞ୍ଚକୁଞ୍ଚିଆ କେଶ, କୁବେରପୁରୀ, ସ୍ତ୍ରୀମାନଙ୍କ ଶିରଭୂଷଣ ବିଶେଷ।

**ଅଷ୍ଟକାଦିବସ :** ମାର୍ଗଶିର, ପୌଷ, ମାଘ ଓ ଫାଲଗୁନ ମାସର ଶୁକ୍ଳ ସପ୍ତମୀ। ଏହି ଚାରିଦିନରେ ଦିଆଯାଉଥିବା ଶ୍ରାଦ୍ଧକୁ ଅଷ୍ଟକାଶ୍ରାଦ୍ଧ କୁହାଯାଏ।

**ଅଷ୍ଟଦିଗ୍‌ଗଜ :** ଐରାବତ, ପୁଣ୍ଡରୀକ, ବାମନ, କୁମୁଦ, ଅଞ୍ଜନ, ପୁଷ୍ପଦନ୍ତ, ସାର୍ବଭୌମ ଓ ସୁପ୍ରତୀକ। ଏମାନେ ଯଥାକ୍ରମେ ପୂର୍ବ, ଅଗ୍ନି, ଦକ୍ଷିଣ, ନୈଋତ, ପଶ୍ଚିମ, ବାୟୁ, ଉତ୍ତର ଓ ଐଶାନ୍ୟ ଦିଗ ଓ କୋଣର ଅଧିପତି। ଏମାନେ ପୃଥିବୀକୁ ଧାରଣ କରିଛନ୍ତି ବୋଲି କୁହାଯାଏ।

**ଅଷ୍ଟଦିଗଗଜୀ :** ଅଷ୍ଟଦିଗ୍‌ଗଜଙ୍କ ପତ୍ନୀ ଯଥାକ୍ରମେ ଅଭ୍ରମୁ, କପିଳା, ପିଙ୍ଗଳା, ତାମ୍ରକର୍ଣ୍ଣୀ, ଶୁଭ୍ରଦନ୍ତୀ, ଅଙ୍ଗନା, ଅଞ୍ଜନାବତୀ ଓ ଅନୁପମା।

**ଅଷ୍ଟନାଗ :** ଆଠଗୋଟି ପ୍ରସିଦ୍ଧ ସର୍ପ ଓ ତା'ଙ୍କ ପତ୍ନୀ। ଅନନ୍ତ, ବାସୁକି, ତକ୍ଷକ, କର୍କୋଟକ, ଶଙ୍ଖ, କୁଳିକ, ପଦ୍ମ, ମହାପଦ୍ମ। ସେମାନଙ୍କ ପତ୍ନୀଙ୍କ ନାମ ଯଥାକ୍ରମେ - ପଦ୍ମା, ଉତ୍ପଳା, ସୁମଧ୍ୟମା, ସୁପଥା, ଦଧିପ୍ରିୟା, ଶ୍ୱେତମୁଖୀ, ସୁନେତ୍ରା, ସୁଗନ୍ଧିନୀ।

**ଅଷ୍ଟନାଗ :** ଆଠଗୋଟି ଦିଗ ଓ କୋଣରେ ପୃଥିବୀକୁ ଧରି ରଖିଥିବା ଆଠଗୋଟି ହସ୍ତୀ (ଅଷ୍ଟଦିଗ୍‌ଗଜ ଦେଖ)।

**ଅଷ୍ଟପ୍ରକୃତି :** ମୂଳ ପ୍ରକୃତି, ମହତତ୍ତ୍ୱ ଓ ପଞ୍ଚ ତନ୍ମାତ୍ରା, ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର।

**ଅଷ୍ଠି :** ବୀଜ ସ୍ୱରୂପ, ମଞ୍ଜି ଯେପରି ତରୁ, ଲତା ଓ ଗୁଳ୍ମର କାରଣ ହୋଇଥାଏ।

**ଅହତ :** ଯାହା ଯନ୍ତ୍ର ନିର୍ମିତ ନୁହେଁ।

**ଅହତଂ :** ଯନ୍ତ୍ରନିର୍ମୁକ୍ତ ମୁକ୍ତଂ ବାସ ସ୍ୱୟମ୍ଭୁବା। ଶସ୍ତଂ ତନ୍ମାଙ୍ଗଳିକେଷ୍ୱ ତାବନ୍ମାତ୍ରେଣ ସର୍ବଦା। (ଶବ୍ଦ କଳ୍ପଦ୍ରୁମ)।

**ଆତପ :** ଖରା, କିନ୍ତୁ ଏଠାରେ ବିଦ୍ୟା ଓ ଜ୍ଞାନ ଅର୍ଥରେ ବ୍ୟବହୃତ।

**ଆତ୍ମାଭୂତ :** ବନ୍ଧୁ ସ୍ୱରୂପ, ଆତ୍ମାସ୍ୱରୂପ, ଅତ୍ୟନ୍ତ ଆପଣାର।

**ଆତ୍ମା ଉପଶାନ୍ତ :** ଆତ୍ମଜ୍ଞାନୀ ଯୋଗୀ।

**ଆତ୍ମାସ୍ୱଭାବ :** ନିତ୍ୟ, ଅବ୍ୟୟ, ଶୁଦ୍ଧ, ଅଦ୍ୱିତୀୟ, କ୍ଷେତ୍ରଜ୍ଞ, ସର୍ବାନ୍ତର୍ଯାମୀ, ସର୍ବ ଆଶ୍ରୟଭୂତ, ନିଷ୍କ୍ରିୟ, ସର୍ବବ୍ୟାପୀ, ଅନାବୃତ, ପରିପୂର୍ଣ୍ଣ, ଅସଙ୍ଗ, ସର୍ବକାରଣ କାରଣ, ସ୍ୱୟଂପ୍ରକାଶ।

**ଆଦିତ୍ୟ :** ଶଶାଙ୍କ ଗ୍ରାସ- ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ।

**ଆଦିମୁନି :** ସନକ, ସନନ୍ଦନ, ସନାତନ ଓ ସନତ୍ କୁମାର ଏବଂ ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠଙ୍କୁ ଆଦିମୁନି କୁହାଯାଏ। କାରଣ ଏମାନେ ସୃଷ୍ଟିର ଆରମ୍ଭରେ ବିଧାତାଙ୍କ ମାନସରୁ ଜାତ ହୋଇଥିଲେ।

**ଆନକ:** ଭେରୀ।

**ଆବୃତ:** ବେଢ଼ିଥିବା।

**ଆଭାସ:** ପ୍ରତିବିମ୍ବ, ମୂଳବସ୍ତୁ ପରି ଜଣାପଡ଼ିବା।

**ଆମୋଦ :** ମନମୁଗ୍ଧକାରୀ ସୁଗନ୍ଧ।

**ଆର୍ଜବ:** ସରଳତା, ସାରଲ୍ୟ, କୁଟିଳତାବିହୀନ।

**ଇନ୍ଧନ:** କାଠ।

**ଇଷିତ:** ଅଙ୍କ।

**ଈକ୍ଷା :** ଦେଖିବା, ଦର୍ଶନ।

**ଈଶତତ୍ତ୍ୱ:** ଭଗବାନଙ୍କ ଯୋଗମାୟା, ଈଶ୍ୱରଙ୍କ ବିଧାନ।

**ଉଛୁଡ଼ିବା :** ହାତରୁ ଖସିଯିବା, ଛିଟିକି ଯିବା।

**ଉତ୍ପଥ:** ଅବାଟ, ବିପଥ, ଯାହା ପ୍ରକୃତ ମାର୍ଗ ନୁହେଁ, ଅଜ୍ଞାନ ଓ ଅବିଦ୍ୟାମାର୍ଗ।

**ଉତ୍ପଳ :** ନୀଳକଇଁ।

**ଉଦକ:** ଜଳ।

**ଉଦଧି:** ସମୁଦ୍ର।

**ଉନ୍ନିଦ୍ର :** ଜାଗରଣ, ଅଜ୍ଞାନ ରହିତ।

**ଉନ୍ମୀଳ:** ଅକ୍ଷ ଆଖିଖୋଲି ଚାହିଁବା।

**ଉପନୟ :** ଉପନୟନ, ପଇତା ଧାରଣ।

**ଉପଶମ :** ନିବୃତ୍ତ, ଉପରତି, ଶାନ୍ତ, ଶ୍ରଦ୍ଧା।

**ଉପଶାନ୍ତି :** ନିବୃତ୍ତ, ଉପରତି, ଶାନ୍ତ, ଶ୍ରଦ୍ଧା।

Dr. Sudhanshu Sekhar Mishra

**ଉପସ୍ଥ :** ଲିଙ୍ଗ ।

**ଉପହୃତ:** ଉପହାର ସ୍ୱରୂପ ପ୍ରାପ୍ତ ।

**ଉପାୟନ:** ଉପହାର, ପାରିତୋଷିକ, ଉପହାର ଦ୍ରବ୍ୟ ।

**ଉର୍ଜ୍ଜ ମାସ:** କାର୍ତ୍ତିକ ମାସ ।

**ଉର୍ଣ୍ଣନାଭ :** ବୁଢ଼ିଆଣି, ମାଙ୍କଡ଼ସା ।

**ଉଷ୍ଟ୍ର :** ଗମର, ଡାଡିଲା ।

**ଋକ୍ଷ :** ନକ୍ଷତ୍ର, ଭାଲୁ, ପର୍ବତ ।

**ଋତ୍ୱିକ :** ଯଜ୍ଞରେ ଆହୁତି ଦେଉଥିବା ଯାଜ୍ଞିକ ବ୍ରାହ୍ମଣ ।

**ଓଁକାର:** ସଂସ୍କୃତରେ ଓମ୍ ହଁ ଅର୍ଥରେ ବ୍ୟବହାର କରାଯାଏ । ପ୍ରଣବ, ମନ୍ତ୍ରରେ ବ୍ୟବହୃତ ଅଉମ ଏହି ତିନୋଟି ଅକ୍ଷରର ସଂଯୋଗ ବର୍ଣ୍ଣ ।

**କଚ୍ଛ:** ତୀର, କୂଳ, ଜଳମୟ ଅଞ୍ଚଳ ।

**କଣ୍ଟକକୀର୍ଣ୍ଣ ବେଣୁ :** ଖେଜନା ।

**କନ୍ଦୁକ :** ପେଣ୍ଡୁ, ବର୍ଣ୍ଣ, ଯୋଗସିଦ୍ଧ ମହର୍ଷି ।

**କପୋଳ :** ଗଣ୍ଡଦେଶ, ଗାଲ ।

**କବ୍ୟ:** ପିତୃଶ୍ରାଦ୍ଧରେ ଦିଆଯାଉଥିବା ପିଣ୍ଡ ଆଦି ଦ୍ରବ୍ୟ ।

**କମ୍ବୁ :** ଶଙ୍ଖ ।

**କଳତ୍ର :** ଭାର୍ଯ୍ୟା ।

**କଳ୍ପ :** ବିଧିବିଧାନ, ବ୍ରହ୍ମାଙ୍କର ଗୋଟିଏ ଦିନ ଅର୍ଥାତ୍ ଚାରିଶହ ବତିଶ କୋଟି ବର୍ଷ, ଅଭୀଷ୍ଟ, ବେଦାଙ୍ଗ ବିଶେଷ ।

**କହ୍ଲାର :** ଶ୍ୱେତପଦ୍ମ ।

**କାଞ୍ଚଲୀ :** ନାରୀମାନଙ୍କ ବକ୍ଷ ବେଢ଼ଣି ।

**କାରଣ୍ଡବ:** ବାଲିହଂସ, ପାତିହଂସ ।

**କିଂଶୁକ:** ପଳାଶ ।

**କିଙ୍କର:** ସେବକ ।

**କୀଚକ:** ବାଉଁଶ, ମହାଭାରତରେ ବର୍ଣ୍ଣିତ ବିରାଟ ରାଜାଙ୍କ ଶାଳକ ।

**କୀଟଗ୍ରାମ:** କୀଟ ସମୂହ ।

**କୁକ୍ଷି :** ଉଦର, ପେଟ ।

**କୁଞ୍ଜର :** ହାତୀ ।

**କୁମୁଦ:** କଇଁଫୁଲ ।

**କୁରରୀ :** କପୋତୀ ।

**କୁଳିଙ୍ଗ :** ଏକ ପ୍ରକାର ପକ୍ଷୀ, ଯେ କି କନ୍ଦମୂଳ ଖାଏ ।

**କୁଳିଶ :** ବଜ୍ର ।

**କୁଶପାଣି :** ବ୍ରହ୍ମା ।

**କୂଟଜ :** ଗିରିମଲ୍ଲିକା, ବଣମଲ୍ଲି ।

**କୃତାନ୍ତ :** ଯମ ।

**କୃତ୍ୟାହୋମ:** ମାରଣ, ମୋହନ, ବଶ୍ୟ, ଉଚ୍ଚାଟନ, ସ୍ତମ୍ଭନ ଉଦ୍ଦେଶ୍ୟରେ କରାଯାଉଥିବା ହୋମ ।

**କୃଷ୍ଣାଜିନ :** କୃଷ୍ଣବର୍ଣ୍ଣ ମୃଗର ଚର୍ମ ।

**କେଶିନୀ :** ରାବଣର ମାତା ନିକଷାର ଅନ୍ୟ ନାମ ।

**କୈତବ :** ଠକ ।

**କୋବିଦାର :** ରକ୍ତ କାଞ୍ଚନ ଫୁଲ ।

**କୋପଷ୍ଟିକ :** ବତକ ।

**କୋଳ :** ବରାହ, ଘୁଷୁରି, କ୍ରୋଡ଼ ।

**କୋଷକାରୀ :** ଖୋସା ତିଆରି କରୁଥିବା ପୋକ, ରେଶମ ପୋକ, ଭ୍ରମର ।

**କ୍ରତୁ :** ଯଜ୍ଞ ।

**କ୍ରମଣ:** ପାଦ ପକାଇବା ।

**କ୍ଷତ୍ରଜ୍ଞ :** ଆତ୍ମଜ୍ଞାନୀ ।

**କ୍ଷେତ୍ର :** ସ୍ଥାନ, କିନ୍ତୁ ଏଠାରେ ଶରୀର ଅର୍ଥରେ କ୍ଷେତ୍ର ଶବ୍ଦ ପ୍ରୟୋଗ କରାଯାଇଛି ।

(୭।୭।୮୪)

**କ୍ଷେମ:** ମଙ୍ଗଳ, କୁଶଳ ।

**ଖଡ୍ଗ:** ଖଣ୍ଡା, ତରବାରୀ, କୁମ୍ଭୀରର ଖଗ । ଗଣ୍ଡାର ମୁନିଆଁ ଶିଙ୍ଗ ।

**ଖନିତ୍ର:** ଖଣତି, ଖୋଳିବା ଯନ୍ତ୍ର ।

**ଗଜ:** ହାତୀ, ଏଠାରେ ଅଷ୍ଟ ଦିଗ୍‌ଗଜ ଅର୍ଥରେ ବ୍ୟବହୃତ ।

**ଗଦାବ୍ଜ :** ଗଦା ଓ ପଦ୍ମ ।

**ଗାତ୍ର :** ଶରୀର, ଦେହ ।

**ଗୁରୁ :** ବୃହସ୍ପତି, ଦେବଗୁରୁ ।

**ଗୁହ୍ୟଦ୍ୱାର:** ମଳଦ୍ୱାର ।

**ଗୃହପାଳ:** କୁକୁର ।

**ଗୋପୁର :** ମୁଖଶାଳା, ପ୍ରବେଶଦ୍ୱାର ।

**ଗୋମୁଖ:** ଶିଙ୍ଗାବାଦ୍ୟ, ଗାଈ ମୁହଁ କୁମ୍ଭୀର, ଯକ୍ଷ ।

**ଗ୍ରହରାଜ:** ସୂର୍ଯ୍ୟ ।

**ଗ୍ରାମ୍ୟଧର୍ମ :** ଅଶିଷ୍ଟ ତଥା ନିନ୍ଦିତ ଆଚାର, ବେଦନିନ୍ଦିତ କର୍ମ ।

**ଗ୍ରାହ :** କୁମ୍ଭୀର ।

**ଘନ:** ମେଘ, ଗାଢ଼ ।

**ଘଟାକାଶ :** କେତୋଟି ଜଳପୂର୍ଣ୍ଣ ଘଟ ଥୋଇ ଦେଖିଲେ ସେଥି ମଧ୍ୟରୁ ପ୍ରତ୍ୟେକ ଘଟରେ ଆକାଶ ପ୍ରତିବିମ୍ବିତ ହୁଏ । ସବୁ ଘଟକୁ ଏକତ୍ର ରଖି ଦେଖିଲେ ସେଥିରେ ମଧ୍ୟ ଆକାଶ ଦେଖାଯାଏ । ସେହିପରି ଈଶ୍ୱର ଏକ ହୋଇଥିଲେ ମଧ୍ୟ ଘଟଘଟବାସୀ ବା ସର୍ବବ୍ୟାପକ ଅଟନ୍ତି ।

**ଚଣ୍ଡାଟହାସ :** ଘୋର ଅଟ୍ଟହାସ । ଶବ୍ଦାୟମାନ ବିକୃତ ହସ, ତାଚ୍ଛଲ୍ୟପୂର୍ଣ୍ଣ ହସ ।

**ଚତୁଃସନ:** ସନ ଆଦ୍ୟରେ ଥିବା ଚାରିଜଣ ମୁନି- ସନକ, ସନନ୍ଦନ, ସନ୍ତ କୁମାର, ସନାତନ ।

**ଚତୁର ଆଶ୍ରମ :** ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ, ସନ୍ନ୍ୟାସ ।

**ଚତୁରଶୃଙ୍ଗ:** ଋକ୍, ଯଜୁଃ ସାମ ଓ ଅଥର୍ବରୂପୀ ଚାରିବେଦ ଯାହାର ଶୃଙ୍ଗ ସ୍ୱରୂପ ଅର୍ଥାତ୍ ବେଦମୟ ।

**ଚତୁର୍ବିଧ ବାଦ୍ୟ:** ଚମଡ଼ା ଛାଉଣି ହୋଇଥିବା ତାରଯୁକ୍ତ, ଧାତୁ ନିର୍ମିତ, ପବନ ଯୋଗେ ବାଜୁଥିବା ବାଦ୍ୟ ବିଶେଷ, ଯଥାକ୍ରମେ ଢୋଲ, ବୀଣା, କଂସାଳ, ବଂଶୀ ।

**ଚର୍ମ:** ଚମଡ଼ା, ଏଠାରେ କୃଷ୍ଣବର୍ଣ୍ଣ ମୃଗର ଚମଡ଼ା ଅର୍ଥରେ ବ୍ୟବହୃତ, ଗଣ୍ଡାଚର୍ମରେ ପ୍ରସ୍ତୁତ ଢାଲ ।

**ଚାରି ଅନ୍ତଃକରଣ:** ଚତୁର ଆଶ୍ରମ ଦେଖ ।

**ଚିତ୍ :** ଜ୍ଞାନ ।

**ଚିତ୍ରଗତି:** ବିଚିତ୍ର ଗତି (ବଙ୍କେଇ ବଙ୍କେଇ ଯିବା) ।

**ଚେଦିପତି:** ଚେଦିଦେଶର ଅଧିପତି ଶିଶୁପାଳ ।

**ଛନ୍ଦ:** ଅନ୍ୟତମ ବେଦାଙ୍ଗ, ବେଦକୁ ଗାନ କରାଯାଉଥିବା ନିୟମ, 'ଛନ୍ଦଃ ପାଦସ୍ତୁ ବେଦସ୍ୟ' ବୋଲି କୁହାଯାଇଛି । ବେଦ, କାବ୍ୟ, ମହାକାବ୍ୟ, ଚମ୍ପୂଆଦି ଗାନ କରାଯିବାର ନିୟମ । ଏହା ପ୍ରଥମେ ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁବ୍, ବୃହତୀ, ପଙ୍କ୍ତି, ଜଗତୀ ନାମରେ ସପ୍ତଛନ୍ଦ ବ୍ୟବହୃତ ହେଉଥିଲା । ପରବର୍ତ୍ତୀ କାଳରେ ଅସଂଖ୍ୟ ଛନ୍ଦ କାବ୍ୟ, ଛନ୍ଦ ଯୁଗରେ ବ୍ୟବହୃତ ହୋଇଛି । ଦୁହିଁବା ବେଳେ ଗାଈର

Dr. Sudhanshu Sekhar Mishra

ଗୋଡ଼କୁ ବାନ୍ଧିବା ଦଉଡ଼ି।

ଛାୟା: ସୂର୍ଯ୍ୟଙ୍କ ପତ୍ନୀ, ଛାଇ, କିନ୍ତୁ ଏଠାରେ ଅବିଦ୍ୟା ବା ଅଜ୍ଞାନ ଅର୍ଥରେ ବ୍ୟବହୃତ।

ଜନ୍ମାଦି ସଂସ୍କାର: ଜାତକର୍ମ, ନାମକରଣ, ବହିଃନିଷ୍କ୍ରମଣ, ଅନ୍ନପ୍ରାଶନ, ଚୂଡ଼ାକରଣ, ଉପନୟନ, ବେଦାରମ୍ଭ, ସମାବର୍ତ୍ତନ, ବିବାହ ଓ ମୃତ୍ୟୁ ଆଦି କର୍ମ।

ଜୀମୂତ: ମେଘ।

ତଡ଼ିତ୍: ବିଜୁଳି।

ତତ୍ତ୍ୱ: ତତ୍ତ୍ୱ।

ତନୁରୁହ : ଲୋମ।

ତନ୍ତୁ: ସୂକ୍ଷ୍ମତାର, ବୁଢ଼ିଆଣୀ ଜାଲର ସୂତା, ବିସ୍ତାର, ଚର୍ମସୂତ୍ର।

ତପସ୍ୱୀଗ୍ରାମ: ତପସ୍ୱୀସମୂହ।

ତିତିକ୍ଷା: କ୍ଷମା, ସହିଷ୍ଣୁତା, ସହନଶୀଳତା।

ତିନିଗୁଣ: ସତ୍ତ୍ୱ, ରଜ, ତମ।

ତିନିବେଦ ଆତ୍ମା: ଋକ୍, ଯଜୁଃ, ସାମ ଶୀର୍ଷକ ତିନିବେଦ ଯାହାର ଆତ୍ମା ସ୍ୱରୂପ ଅର୍ଥାତ୍ ପରମାତ୍ମା।

ତିମିଙ୍ଗିଳ: ସମୁଦ୍ରରେ ଥିବା ଏକ ବିରାଟ ମତ୍ସ୍ୟଜାତୀୟ ଜନ୍ତୁ, ଯିଏ କି ତିମି ମାଛକୁ ଗିଳିଦିଏ।

ତିମିର: ରାତ୍ରି।

ତିରୋହିତ: ଅନ୍ତର୍ଦ୍ଧାନ, ଅଦୃଶ୍ୟ, ଉଭେଇଯିବା।

ତୁରଙ୍ଗ: ଘୋଡ଼ା, ଇନ୍ଦ୍ରିୟ।

ତୁରୀୟ ଅବସ୍ଥା: ଆତ୍ମବିଭୋର ଅବସ୍ଥା, ସତ୍ତ୍ୱ, ରଜ, ତମୋଗୁଣର ଊର୍ଦ୍ଧ୍ୱ ଅବସ୍ଥା, ସମାଧିସ୍ଥ ଅବସ୍ଥା। ବ୍ରହ୍ମ ଚିନ୍ତାରେ ବିଭୋର ଅବସ୍ଥା।

ତେଜଧାମ: ତେଜସ୍ୱୀ, ତେଜର ଯାନ।

ତ୍ରୟୀ: ଋକ୍, ଯଜୁଃ, ସାମ ବେଦକୁ ତ୍ରୟୀ କୁହାଯାଏ। ବ୍ରହ୍ମା, ବିଷ୍ଣୁ, ମହେଶ୍ୱର।

ତ୍ରିଉତ୍ତରା: ଉତ୍ତରା ଫାଲ୍‌ଗୁନି, ଉତ୍ତରାଷାଢ଼ା, ଉତ୍ତର ଭାଦ୍ରପଦ ନକ୍ଷତ୍ର ତ୍ରୟ।

ତ୍ରିଗୁଣ : ସତ୍ତ୍ୱ, ରଜ, ତମ।

ତ୍ରିଗୁଣ ଅହଙ୍କାର : ସାତ୍ତ୍ୱିକ, ଅହଙ୍କାର ଯଥା-ମନ, ଇନ୍ଦ୍ରିୟ, ଦେବତା। ରାଜସ ଅହଙ୍କାର ହେଉଛି, ଦଶଇନ୍ଦ୍ରିୟ, କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା, ନାସିକା, ବାକ୍, ପାଣି, ପାଦ, ପାୟୁ, ଉପସ୍ଥ। ପ୍ରଥମ ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ ଓ ଶେଷୋକ୍ତ ପାଞ୍ଚଗୋଟି କର୍ମେନ୍ଦ୍ରିୟ ନାମରେ କଥିତ। ତାମସ ଅହଙ୍କାର - ଜଡ଼ବସ୍ତୁ ବା ନଶ୍ୱରଶୀଳ ବସ୍ତୁରେ ଅହଙ୍କାର।

ତ୍ରିଚରଣ: ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳର ତ୍ରିସବନ ଅର୍ଥାତ୍ ତିନିଥର ସ୍ନାନ, ସୋମରସ ପାନ, ଘୃତପାନ। ଯାହାଙ୍କର ତିନିପାଦ ଅର୍ଥାତ୍ ଯଜ୍ଞପୁରୁଷ।

ତ୍ରିତାପ: ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ତାପ।

ତ୍ରିଦଶ: ଦେବତା, ତିରିଶ, ତେର।

ତ୍ରିନାଭ: ବିଷ୍ଣୁ, ଯାହାଙ୍କ ନାଭିରେ ତ୍ରିଲୋକର କର୍ତ୍ତା ବ୍ରହ୍ମା ଅବସ୍ଥାନ କରିଛନ୍ତି।

ତ୍ରିପୃଷ: ତ୍ରିଲୋକ ଅର୍ଥାତ୍ ଭୂ, ଭୁବ, ସ୍ୱ ଲୋକର ଉପରି ଭାଗରେ ସ୍ଥିତ ମହଲୋକ ବା ମହଲୋକର ଅଧିବାସୀ।

ତ୍ରିବର୍ଗ: ଧର୍ମ, ଅର୍ଥ, କାମ।

ତ୍ରିବୃତ୍ତ: ତ୍ରିଗୁଣ, ସତ୍ତ୍ୱ, ରାଜ, ତମ।

ତ୍ରୋଣ: ତୂଣୀର, ଶର ରଖିବା ପେଡ଼ି ବା ମୁଣା।

ଦକ୍ଷ: ବ୍ରହ୍ମାଙ୍କ ପୁତ୍ର, ସତୀଙ୍କ ପିତା, ଶିବଙ୍କ ଶ୍ୱଶୁର। ଯାହାଙ୍କର ଯଜ୍ଞ ପୁରାଣ ପ୍ରସିଦ୍ଧ। ସେହି ଯଜ୍ଞରେ ସତୀ ଶିବଙ୍କ ନିନ୍ଦ ସହି ନ ପାରି ଆତ୍ମାହୁତି ଦେଇଥିଲେ। ଅନ୍ୟତମ ପ୍ରଜାପତି।

ଦକ୍ଷକନ୍ୟା: ଦକ୍ଷଙ୍କର ଷାଠିଏ ଗୋଟି କନ୍ୟା ଥିଲେ। ଏଠାରେ କଶ୍ୟପଋଷିଙ୍କ ପତ୍ନୀ ଦିତି ଅର୍ଥରେ ବ୍ୟବହୃତ।

ଦକ୍ଷିଣ: ଅନୁକୂଳ, ଶୁଭସୂଚକ, ବାମେତର, ଅନ୍ୟତମ ଦିଗ।

ଦନ୍ଦଶୂକ: ସର୍ପ।

ଦମ: ଦମନ, ଇନ୍ଦ୍ରିୟ ଦମନ।

ଦର୍ଭ: କୁଶ।

ଦର୍ଭହସ୍ତ ବା ଦର୍ଭପାଣି: କୁଶହସ୍ତ, ବ୍ରାହ୍ମଣ।

ଦଶତୁରଙ୍ଗ: ଦଶଟି ଘୋଡ଼ା, ଦଶଟି ଇନ୍ଦ୍ରିୟ (ତ୍ରିଗୁଣ ଅହଙ୍କାର ଦେଖ)।

ଦାନ୍ତ : ଜିତେନ୍ଦ୍ରିୟ, ଦଶନ।

ଦାବାଗ୍ନି: ବଣରେ ଲାଗିଥିବା ନିଆଁ।

ଦିବସା : ତିଥି ଅନୁସାରେ ପିତୃପିତାମହ, ପ୍ରପିତାମହ ଆଦିଙ୍କ ଶ୍ରାଦ୍ଧଦିବସ।

ଦୁଜା: ଦ୍ୱିତୀୟ।

ଦୁଃଖପଡ଼ି : କଷ୍ଟପାଇ।

ଦୁର୍ବାସାଙ୍କ ଶାପ: ଦୁର୍ବାସା ବନରେ ବୁଲୁଥିବା ସମୟରେ ଦେଖିଲେ ଯେ, ଜଣେ ବିଦ୍ୟାଧରୀ ସନ୍ତାନକ ବୃକ୍ଷର ପୁଷ୍ପରେ ମାଳା ପ୍ରସ୍ତୁତ କରି, ହାତରେ ଧରି ଭ୍ରମଣ କରୁଛି। ସେ ମାଳାଟିକୁ ଦେଖି ଦୁର୍ବାସାଙ୍କ ମନରେ ଲୋଭ ଜାତ ହେଲା। ସେ ମାଳାଟିକୁ ମାଗିବା ମାତ୍ରେ ବିଦ୍ୟାଧରୀ ତାହା ଋଷିଙ୍କୁ ପ୍ରଦାନ କଲା। ମାଳାଟିକୁ ନେଇ ଦୁର୍ବାସା ବନ ମଧ୍ୟରେ ଆଉ କିଛି ଦୂର ଅଗ୍ରସର ହେଲେ। ସେହି ବନ ମଧ୍ୟରେ ଦେବରାଜ ଇନ୍ଦ୍ର ଐରାବତ ଉପରେ ବସି ପରିଭ୍ରମଣ କରୁଥିଲେ। ଦୁର୍ବାସା ସନ୍ତାନକ ପୁଷ୍ପମାଳାଟିକୁ ଇନ୍ଦ୍ରଙ୍କୁ ଅର୍ପଣ କରନ୍ତେ, ସେ ତାହା ଐରାବତ ହସ୍ତୀର କୁମ୍ଭସ୍ଥଳରେ ଲମ୍ବାଇ ଦେଲେ। ଐରାବତ ମାଳାଟିକୁ ଶୁଣ୍ଢରେ କିଛି ସମୟ ଧରବା ପରେ, ତଳେ ପକାଇଦେଇ ଗୋଡ଼ରେ ଦଳିଦେଲା। ଏହା ଦେଖି କୋପମୁନି ଦୁର୍ବାସା ଇନ୍ଦ୍ରଙ୍କ ଉପରେ ପ୍ରଚଣ୍ଡ ଭାବରେ ରାଗିଯାଇ, ତାଙ୍କର ଶ୍ରୀ ଓ ସଂପତ୍ତି ଅଚିରେ ନଷ୍ଟ ହେଉ ବୋଲି ଅଭିଶାପ ଦେଲେ। ପରିଶେଷରେ ଇନ୍ଦ୍ର ବହୁକଷ୍ଟରେ ସେ ଅଭିଶାପରୁ ମୁକ୍ତ ହେଲେ।

ଦୁର୍ବୃତ୍ତ : ଖରାପ କାର୍ଯ୍ୟ କରୁଥିବା ବ୍ୟକ୍ତି।

ଦୁରାଶୟ: ପାପ।

ଦେବମତେ : ଦେବତାମାନଙ୍କ ଗଣନା ଅନୁସାରେ। ମନୁଷ୍ୟଙ୍କର ଏକବର୍ଷରେ ଦେବତାଙ୍କର ଏକ ଦିନ ହୁଏ।

ଦେବଯଜ୍ଞ: ହୋମ କରିବା, ଦେବତା ପୂଜା କରିବା, ଦେବତାଙ୍କ ଉଦ୍ଦେଶ୍ୟରେ ବଳି ଭୋଜ୍ୟ ଆଦି ଅର୍ପଣ କରିବା।

ଦେବଳଙ୍କ ଶାପ: ହୁ ହୁ ନାମକ ଗନ୍ଧର୍ବ ଜଳରେ ପଶି ସ୍ତ୍ରୀ ସହିତ କ୍ରୀଡ଼ା କରୁଥିବା ସମୟରେ ଦେବଳ ଋଷି ସେହିଠାରେ ସ୍ନାନ କରୁଥିଲେ। ସେ ମୁନିଙ୍କ ପାଦ ଧରି କୌତୁହଳରେ ପାଣିରେ ଘୋଷାରି

Dr. Sudhanshu Sekhar Mishra

ନେବାରୁ ଋଷି କ୍ରୋଧରେ ଅଗ୍ନିଶର୍ମା ହୋଇ ତୁ କୁମ୍ଭୀର ହୋଇଯା ବୋଲି ଅଭିଶାପ ଦେଲେ । ଗନ୍ଧର୍ବ ମୁନିଙ୍କ ପାଦଧରି ଶାପରୁ ଉଦ୍ଧାର ପାଇବା ପାଇଁ ଅନୁରୋଧ କଲା । ଯେତେବେଳେ କୁମ୍ଭୀର ରୂପ ଗନ୍ଧର୍ବ ଗଜେନ୍ଦ୍ରର ପାଦକୁ କାମୁଡ଼ି ଧରିବ ଓ ସେ ବିଷ୍ଣୁଙ୍କୁ ସ୍ମରଣ କରିବ, ସେତିକିବେଳେ ବିଷ୍ଣୁଙ୍କ ଚକ୍ରରେ ପ୍ରାଣ ଦେଇ ତୁମେ ଉଦ୍ଧାର ପାଇବ ବୋଲି ମୁନି ବରଦାନ ଦେଲେ ।

ଦ୍ରୋଣ: ଜଳାଶୟ, ପାଣିଥିବା ଖାଲୁଆ ସ୍ଥାନ, କୌରବ ଓ ପାଣ୍ଡବମାନଙ୍କ ଗୁରୁ ।

ଦ୍ରୋଣି : ପର୍ବତ ଗହ୍ୱର, ଗିରିସଙ୍କଟ ।

ଦ୍ୱିପଞ୍ଚ: ଦଶ । ଏଠାରେ ଦଶଇନ୍ଦ୍ରିୟ ଅର୍ଥରେ ବ୍ୟବହୃତ ହୋଇଛି ।

ଦ୍ୱିଶିର: ଯଜ୍ଞ ପୁରୁଷ ବିଷ୍ଣୁଙ୍କର ଦୁଇଟି ମସ୍ତକ ହେଉଛି – 'ପ୍ରାଣୀୟ' ଓ 'ଉଦୟନୀୟ' ନାମକ ଯଜ୍ଞର କର୍ମ ବିଶେଷ ।

ଧୃତି : ଧୈର୍ଯ୍ୟ ।

ନକ୍ର : କୁମ୍ଭୀର ।

ନବଧାଭକ୍ତି : ଭକ୍ତିର ନଅଟି ଅଙ୍ଗ ଶ୍ରବଣ, କୀର୍ତ୍ତନ, ସ୍ମରଣ; ପୂଜା, ସ୍ତୋତ୍ରପାଠ, ପାଦସେବା, ଦାସ ଭାବରେ ନିଜକୁ ସମର୍ପଣ, ସଖା ଭାବରେ ଲୀଳା, ଆତ୍ମସମର୍ପଣ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ
ସ୍ମରଣଂ ପାଦସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ
ସଖ୍ୟମାତ୍ମନିବେଦନମ୍ ।
(୭/୫/୨୩)

ନବଶକ୍ତି : ବିମଳା, ଉତ୍କର୍ଷଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା । ଏହି ନବଶକ୍ତି ହେଉଛନ୍ତି ପରମପୁରୁଷଙ୍କର ସ୍ୱରୂପା ବୋଲି 'ପଞ୍ଚରାତ୍ର' ରେ କୁହାଯାଇଛି ।

ନଭ: ଆକାଶ, ଶୂନ୍ୟ ।

ନିଗ୍ରହ: ଅସନ୍ତୁଷ୍ଟ, ସଂଯମ, ଦମନ, ଶାସନ, ନିରୋଧ, ଦଣ୍ଡ, ଲାଞ୍ଛନା, ପ୍ରହାର, ଅପମାନ, ପୀଡ଼ନ ।

ନିରୀହ: କୌଣସି ଚେଷ୍ଟା ନ ଥିବା, ଅତିଶାନ୍ତ, ନିର୍ବିରୋଧ, ଅହିଂସା, ବିଚରା, ନିଃସ୍ପୃହ, ନିଶ୍ଚେଷ୍ଟ ।

ନିରୀହ ରୂପ: ଚେଷ୍ଟାବିହୀନ ସ୍ୱରୂପ, ପରମାତ୍ମା ।

ନିଶାନାଥ: ଚନ୍ଦ୍ର ।

ନିହାର: କୁହୁଡ଼ି, ବରଫ, ତୁଷାର, ଶିଶିର, କାକର ।

ନୀପ: କଦମ୍ବ ।

ନେମି: ଚକ୍ରର ଧାର ।

ନ୍ୟଗ୍ରୋଧ: ବରଗଛ ।

ନ୍ୟୂନାତିରିକ୍ତ: ଊଣାଅଧିକ ।

ପକ୍ଷ୍ମ: ପଲକ, ଆଖି ପିଛଡ଼ା, ଆଖିପତା ।

ପଞ୍ଚଦଶ ଅର : ଦଶ ଇନ୍ଦ୍ରିୟ ଓ ପଞ୍ଚପ୍ରାଣ ।

ପଞ୍ଚଦୀକ୍ଷା : ଯଜନ, ଯାଜନ, ପଠନ, ପାଠନ, ଦାନ ।

ପଞ୍ଚଭୂତ : ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ ।

ପଞ୍ଚଭୌତିକ: ପଞ୍ଚଭୂତର ସମଷ୍ଟି ପ୍ରାଣୀ ।

ପଞ୍ଚରାତ୍ର: ନାରଦୀୟ ପଞ୍ଚରାତ୍ର, ବୈଷ୍ଣବ ଧର୍ମ, ତନ୍ତ୍ର ଗ୍ରନ୍ଥ ।

ପଟହ: ପାଟଢ଼ୋଲ, ବଡ଼ବାଜା, ଢ଼କ୍କା ।

ପଟନୀ: ପାଟ ଲୁଗା ।

ପଦ୍ମଯୋନି: ବ୍ରହ୍ମା, ବିଷ୍ଣୁଙ୍କ ନାଭିକମଳରୁ ଜାତ ଆଦିପୁରୁଷ ବିଧାତା ।

ପଦ୍ମଯୋନି ତନୁ: ବ୍ରହ୍ମା, ବିଷ୍ଣୁଙ୍କ ପୁତ୍ର, ସନକାଦି ମୁନି, ନାରଦାଦି ଦେବର୍ଷି ।

ପରଅବର: ପରଆପଣା, ଉଚ୍ଚନୀଚ ।

ପରିମୁଖ: ସମ୍ମୁଖ, ଅଗ୍ରଭାଗ ।

ପରୁଷ: କଠୋର, କର୍କଶ ।

ପର୍ବକାଳ: ଅମାବାସ୍ୟା ଓ ପୂର୍ଣ୍ଣିମା ତିଥି ।

ପାଶ : ଜାଲ ।

ପାଶବ୍ୟ : ପଶୁମାନଙ୍କ ଯୋଗ୍ୟ ।

ପିତୃଯଜ୍ଞ : ଶ୍ରାଦ୍ଧ ।

ପିପିଲିକା : ପିମ୍ପୁଡ଼ି ।

ପୀତ : ହଳଦୀବର୍ଣ୍ଣ ।

ପୁଳିନ : ବାଲୁକାମୟ ତଟ ।

ପୁରୁହୂତ: ବହୁନାମଧାରୀ ଇନ୍ଦ୍ର ।

ପେଶସ୍କୃତି : ଧରି ଆଣିଥିବା ଜନ୍ତୁକୁ ନିଜ ରୂପ ପ୍ରଦାନ କରିବା । ଭ୍ରମର ଝିଣ୍ଟିକାକୁ ଧରିଆଣି ତା' ଗର୍ଭରେ ରଖେ । ଝିଣ୍ଟିକା ଭ୍ରମର ଭୟରେ ତା'ରି ରୂପ ଧାରଣ କରେ ।

ପୌଗଣ୍ଡ ସମୟ: ପୋଗଣ୍ଡ, ପାଞ୍ଚ ବର୍ଷରୁ ପନ୍ଦରବର୍ଷ ପର୍ଯ୍ୟନ୍ତ ବାଳକର ସମୟ ।

ପ୍ରଣବ : ଓଁକାର, ଅ, ଉ, ମ, ଯୋଗରେ ନିର୍ଦ୍ଦିଷ୍ଟ ଅକ୍ଷର ।

ପ୍ରଧାନ : ଶ୍ରେଷ୍ଠ, ପ୍ରକୃତି ।

ପ୍ରସନ୍ନଜନ ଦୁଃସ୍ଥଜନ, ଦୀନଜନ, ଶରଣାଗତଜନ ।

ପ୍ରପାନ : ସୁବାସିତ ଜଳ, ପ୍ରପାନକ, ସୁମିଷ୍ଟ ପାନୀୟ ।

ପ୍ରସର: ବ୍ୟାପ୍ତ, ପରିବ୍ୟାପ୍ତ, ଚାରିଆଡ଼କୁ ଖେଳିଯିବା ।

ପସୂନ : ଫୁଲ ।

ପ୍ରହୁତ : ଶ୍ରାଦ୍ଧରେ ପିଣ୍ଡଦାନ ।

ପ୍ରାକାର : ପ୍ରାଚୀର ।

ପ୍ରାଣୀ ଚତୁର୍ବିଧ : ସ୍ୱେଦଜ, ଅଣ୍ଡଜ, ଜରାୟୁଜ, ଉଦ୍‌ଭିଦଜ ।

ପ୍ରେକ୍ଷଣ : ଦର୍ଶନ ।

ବଞ୍ଜୁଳକ : ବେତ, ଅଶୋକ ।

ବଦନ ସୁରେଖେ : ନାକ ସଳଖା ।

ବନ: ଜଳ, ଅରଣ୍ୟ ।

ବନଜାତ : ଅରଣ୍ୟରେ ଜାତ ଫଳଫୁଲ ଓ ଅନ୍ୟାନ୍ୟ ଜିନିଷ ।

ବରହୀ : ବର୍ହୀ, ମୟୂର ।

ବର୍ମ : କବଚ, ସାଞ୍ଜୁ ।

ବଲ୍ମୀକ : ଉଇ ।

ବାଜି : ଘୋଡ଼ା ।

ବାରଣ : ହାତୀ ।

ବାରସ୍ୱତୀ : ସ୍ୱର୍ଗପୁର ।

ବାରଧି: ସମୁଦ୍ର ।

ବାସବ: ଇନ୍ଦ୍ର ।

ବିଟପୀ : ବୃକ୍ଷ, ଚରିତ୍ରହୀନା ସ୍ତ୍ରୀ ।

ବିତାନ : ଚାନ୍ଦୁଆ ।

ବିପାକମୟ : ନଷ୍ଟଶୀଳ ।

ବିବିଧ : ଦେବତା, ପଣ୍ଡିତ ।

Dr. Sudhanshu Sekhar Mishra

ବିରଜ : ନିର୍ମଳ, ଚକଚକିଆ।
ବିରୁଧ : ବୃକ୍ଷ।
ବିସର୍ଗ-ଶକ୍ତି : ସାଧନ, ଶକ୍ତି, କାର୍ଯ୍ୟକାରଣ ରୂପ ଶକ୍ତି।
ବୃତ୍ତିକଳ୍ପନ : ପେଟପୋଷଣ।
ବୃତ୍ତିକାରୀ : ଜୀବିକା ଉପାର୍ଜନକାରୀ।
ବୃନ୍ଦାରକ : ଦେବତା।
ବୃଶ୍ଚିକ : ବିଛା।
ବୃଷଣ : ଲିଙ୍ଗ।
ବୃଷାକପି : ଇନ୍ଦ୍ର, ଅଗ୍ନି, ଶିବ, ବିଷ୍ଣୁ।
ବେଣତନୟ : ବେଣ ନାମକ ଜଣେ ଦୁଶ୍ଚରିତ୍ର ରାଜା ଥିଲେ। ମୁନିମାନେ ତା'ଙ୍କୁ ହତ୍ୟା କରି ତା'ଙ୍କ ଶରୀରକୁ କୁଶରେ ମନ୍ଥନ କରିଥିଲେ। ସେଥିରୁ ପୃଥୁ ନାମକ ଏକ ଅଂଶାବତାର ପୁତ୍ର ଜାତ ହୋଇ, ଗୋରୂପ ଧାରିଣୀ ପୃଥିବୀକୁ ଦୋହନ କରି ସମସ୍ତଙ୍କ ମନସ୍କାମନା ପୂରଣ କରିଥିଲେ।
ବେଦଗର୍ଭ : ବ୍ରହ୍ମା, ତାଙ୍କର ଚାରିମୁଖରୁ ଋକ, ଯଜୁଃ, ସାମ ଓ ଅଥର୍ବ ବେଦ ନିଃସୃତ ହୋଇଥିଲା।
ବେଦନିଧି : ବ୍ରହ୍ମା।
ବେନି ଅୟନ : ଗୋଟିଏ ବର୍ଷରେ ଦୁଇଟି ଆୟନ ହୁଏ। ଶ୍ରାବଣଠାରୁ ପୌଷ ମାସ ପର୍ଯ୍ୟନ୍ତ ଦକ୍ଷିଣାୟନ ଓ ମାଘଠାରୁ ଆଷାଢ଼ ଯାଏଁ ଉତ୍ତରାୟଣ ହୁଏ। ଦକ୍ଷିଣାୟନକୁ ଅଶୁଦ୍ଧ କାଳ ବୋଲି ମନେ କରାଯାଏ ଏବଂ ଉତ୍ତରାୟଣ ଶୁଦ୍ଧକାଳ ରୂପେ ଶାସ୍ତ୍ରକାରମାନେ ମନେ କରନ୍ତି।
ବୈରାନୁବନ୍ଧ: ଶତ୍ରୁଭାବ।
ବ୍ୟତିପାତ : ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଅଶୁଭ ଲକ୍ଷଣ।
ବ୍ରହ୍ମ ନିର୍ମାଣ ଗ୍ରନ୍ଥତତ୍ତ୍ୱ : ବେଦ, ସେଥିପାଇଁ ବ୍ରହ୍ମାଙ୍କୁ ବେଦଗର୍ଭ, ବେଦତନୁ, ବେଦନିଧି ବୋଲି କୁହାଯାଏ।
ଭଲ୍ଲାତକ : ଭାଲିଆ, ଭାଲିଆ ବୃକ୍ଷ।
ଭାର୍ଗବ: ଭୃଗୁଙ୍କ ପୁତ୍ର, ଶୁକ୍ରାଚାର୍ଯ୍ୟ।
ଭାସ : ଶାଗୁଣା।
ମତି : ବୁଦ୍ଧି, ମନ।
ମଧୁକ: ମହୁଲ।
ମନ୍ୟୁ : କ୍ରୋଧ।
ମମତ୍ୱ : ଆପଣାର ବୋଲି ଜ୍ଞାନ।
ମହାଭୂତ : ପଞ୍ଚ ମହାଭୂତ-ପୃଥିବୀ, ଜଳ, ଅଗ୍ନି, ପବନ, ଆକାଶ।
ମହୋରଗ : ମହାଉରଗ, ବଡ଼ ବଡ଼ସାପ। ଅଜଗର, ଅହିରାଜ।
ମାତ୍ରା : ପଞ୍ଚତନ୍ମାତ୍ରା, ସ୍ପର୍ଶ, ଶବ୍ଦ, ରୂପ, ରସ, ଗନ୍ଧ। ସ୍ୱର-ନିୟମ ଅନୁସାରେ ହ୍ରସ୍ୱ ଓ ଦୀର୍ଘ ବର୍ଣ୍ଣ।
ମାର୍ତ୍ତଣ୍ଡ: ସୂର୍ଯ୍ୟ।
ମୁରଜ: ମୃଦଙ୍ଗ।
ମୂଢ଼ଧର୍ମ : ବିବେକହୀନ ଧର୍ମ। ମନ୍ଦ ଉଦ୍ଦେଶ୍ୟରେ ଧର୍ମାଚରଣ, ତାମସିକ ଧର୍ମ।
ମେଖଳା: ଛଣି ଖୋଟରେ ତିଆରି ହୋଇଥିବା ଲୁଗା, ଯାହାକୁ ଉପନୟନ କର୍ମରେ ବ୍ରହ୍ମଚାରୀ ପିନ୍ଧନ୍ତି। ଅଣ୍ଟାସୂତା, ଚନ୍ଦ୍ରହାର।
ମେଢ଼ୁ: ଲିଙ୍ଗ, ମେଣ୍ଢା।
ଯକ୍ଷ : କୃପଣ ଅର୍ଥରେ ବ୍ୟବହୃତ ଶବ୍ଦ, ଦେବଯୋନି ବିଶେଷ, କୁବେରଙ୍କ ଅନୁଚର, ପିଶାଚ।
ଯାଚଜ୍ଞା : ମାଗିବା।
ଯଜ୍ଞବାଟ : ଯାଗଶାଳା, ଯଜ୍ଞଗୃହ।
ଯାତୁ ଧାନ : ଅସୁର।
ରଶ୍ମି : କିରଣ, ଦଉଡ଼ି।
ରସନା : ଜିହ୍ୱା, ଅଣ୍ଟାସୂତା।
ରାଗ : ଅନୁରାଗ, ଆସକ୍ତି, ସଙ୍ଗୀତର ଗାନ ପଦ୍ଧତି।
ରିପୁଭୋଗ : ଶତ୍ରୁତା ପାସୋରି ଦେବା।
ଲାଜା : ଖଇ, ଲିଆ।
ଲୁବ୍ଧକ : ଲୋଭି, ଶିକାରୀ।
ଲେଶ : ଅଳ୍ପ, ସମାନ୍ୟ।
ଶକ୍ର : ଇନ୍ଦ୍ର।
ଶଚୀପତି : ଇନ୍ଦ୍ର।
ଶତକ୍ରତୁ : ଶହେଟି ଅଶ୍ୱମେଧ ଯଜ୍ଞ, ଦେବରାଜ ଇନ୍ଦ୍ର ଶହେଟି ଅଶ୍ୱମେଧ ଯଜ୍ଞ କରିଥିବାରୁ ତା'ଙ୍କୁ ଶତକ୍ରତୁ କୁହାଯାଏ।
ଶତପତ୍ର : ପଦ୍ମ।
ଶଫରୀ : କରାଣ୍ଡି ବା ଦଣ୍ଡିକିରୀ ମାଛ।
ଶମ : ଶାନ୍ତି।
ଶମ୍ବର ଦୈତ୍ୟ : ଶମ୍ବର ନାମକ ପ୍ରସିଦ୍ଧ ମାୟାବୀ ଦୈତ୍ୟ। ଅନ୍ତଃପୁରରୁ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ପ୍ରଥମ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ନିଜର ଭାବି ଶତ୍ରୁ ବୋଲି ଜାଣି ଅପହରଣ କରିନେଇଥିଲା। ସେ ଚିରଶତ୍ରୁ ପ୍ରଦ୍ୟୁମ୍ନଙ୍କୁ ସମୁଦ୍ରରେ ପକାଇ ଦେଲା। ଛୋଟ ପିଲାଟିକୁ ଗୋଟିଏ ବଡ଼ ମାଛ ଗିଳିଦେଲା। ସେହି ମାଛଟିକୁ ଦୈବାତ୍ କେଉଟମାନେ ଧରିଆଣି ଶମ୍ବରାସୁର ଗୃହରେ ଦେଲେ। ଯେତେବେଳେ କାମଦେବ ଶିବଙ୍କ ତୃତୀୟ ନେତ୍ରରେ ଜଳି ପାଉଁଶ ହୋଇଗଲେ ସେତେବେଳେ ଅସହାୟ କାମପତ୍ନୀ ରତିକୁ ଶମ୍ବରାସୁର ଅପହରଣ କରିନେଇ, ନିଜ ବାସ ଭବନରେ ରଖାଇ ଥିଲା। ରତି ମାୟାବଳରେ ପ୍ରତିଦିନ ଗୋଟିଏ ରୂପବତୀ ସ୍ତ୍ରୀ ଉତ୍ପନ୍ନ କରାଇ ଶମ୍ବରାସୁରକୁ ପ୍ରଦାନ କରିବା ସଙ୍ଗେ ସଙ୍ଗେ ନିଜ ସତୀତ୍ୱରକ୍ଷା କରିଥିଲେ। ରତି ମାଛ ପେଟରୁ ପିଲାଟିଏ ପାଇ ତା'କୁ ଆନନ୍ଦରେ ପାଳନ କଲା। ଦେବର୍ଷି ନାରଦ ଆସି ରୁକ୍ମିଣୀଙ୍କ ପୁତ୍ର ପ୍ରଦ୍ୟୁମ୍ନର ପରିଚୟ ଦିଅନ୍ତେ, ରତି ନିଜ ପତି କାମଦେବଙ୍କୁ ସଯତ୍ନ ପାଳନ କଲା ଏବଂ ସେହି ପୁତ୍ର ପ୍ରଦ୍ୟୁମ୍ନ ଶମ୍ବରାସୁରକୁ ବଧ କରି ରତି ସହିତ ଦ୍ୱାରକାପୁରକୁ ଫେରିଗଲେ। ସେଥିପାଇଁ ପ୍ରଦ୍ୟୁମ୍ନଙ୍କ ଅନ୍ୟନାମ ଶମ୍ବରାରି ଓ ରତିପତି।
ଶୟଳ : ପୃଥିବୀ।
ଶରଭ : ଆଠଗୋଟି ଗୋଡ଼ ବିଶିଷ୍ଟ ମୃଗ ଓ ଓଟ।
ଶଲ୍ୟ : ଝିଙ୍କପକ୍ଷୀ।
ଶଶାଙ୍କ : ଚନ୍ଦ୍ର। ଶଶକର ଚିହ୍ନ ଚନ୍ଦ୍ରଙ୍କ ଦେହରେ ରହିଛି।
ଶାଲାବୃକ: ବଣବିରାଡ଼ି, କଙ୍କସ, ବଣୁଆ କୁକୁର, ଏକପ୍ରକାର ମୃଗ।
ଶାକିନୀ: ପିଶାଚନୀ, ଡାହାଣୀ।
ଶାସ୍ତ୍ରଚକ୍ଷୁ : ବେଦ ଯାହାଙ୍କର ଚକ୍ଷୁ ବେଦବିତ୍ ବେଦାଧ୍ୟାୟୀ।
ଶାସ୍ତ୍ରମୁଖ: ପୁରାଣ ଆଦି ଧର୍ମଗ୍ରନ୍ଥ ଗୁଡ଼ିକରବାଣୀ।
ଶାସ୍ତ୍ରଜ୍ଞ ବିଦ୍ୱାନ।
ଶିପିବିଷ୍ଟ : ବିଷ୍ଣୁ, ଶିବ, ଯଜ୍ଞ।
ଶିବଙ୍କ ପଞ୍ଚମୁଖ : ତତ୍‌ପୁରୁଷ, ଅଘୋର ସଦ୍ୟୋଜାତ, ବାମଦେବ, ଈଶାନ।

Dr. Sudhanshu Sekhar Mishra

ଖିଲୋଛ : ଖୁଣ୍ଟିକରି, ସାଉଁଟି କରି ଧାନ୍ୟ ଆଦି ଶସ୍ୟ ଆଣିବା।

ଶୀଳ : ସ୍ୱଭାବ, ଚରିତ୍ର, ଆଚାର ବିଚାର, ରୀତିନୀତି, କୌଳିନ୍ୟ।

ଶୀଳାଦିଗୁଣ : ବ୍ରହ୍ମଣ୍ୟତା, ଦେବ ପିତୃଭକ୍ତି, ସୌମ୍ୟତା, ମୃଦୁତା, ମୈତ୍ରତା, କାରୁଣ୍ୟତା, ପ୍ରିୟବାଦିତା, ଅନସୂୟତା।

ଶୁଚିଦେଶ : ପବିତ୍ର ସ୍ଥାନ, ଯେଉଁ ସ୍ଥାନକୁ ପୂଜା ଓ ଯଜ୍ଞାଦି ପାଇଁ ବଛାଯାଏ।

ଶୁନଃଶେଫ : ଋଚୀକ

---

## ନବମ ସ୍କନ୍ଧ

**ଅଧ୍ୱର୍ଯ୍ୟୁ** - ଯଜ୍ଞର ମୁଖ୍ୟ - ପୁରୋହିତ । ଯଜ୍ଞର ପରିଚାଳକ ।

**ଅନୁପଥ** - ସେହି ବାଟେବାଟେ

**ଅନ୍ତର୍ବାସ** - କାଛିଆ ଭିତର ଲେଙ୍ଗୁଟି ।

**ଅବରଜ** - ସାନ, କନିଷ୍ଠ ।

**ଅଭିସ୍ରୋତ** - ଅନୁକୂଳ ସ୍ରୋତ ।

**ଅଭ୍ୟନ୍ତର** - ଭେଦ ।

**ଅଶ୍ମ** - ପଥର ।

**ଅଷ୍ଟନିଧି** - ଅଷ୍ଟଐଶ୍ୱର୍ଯ୍ୟ ।

**ଆଦିମୁନି** - ଶନକାଦି ମୁନି ।

**ଆନକ** - ଭେରୀ, ମେଘ ବିଶେଷ ।

**ଆବନ୍ତ୍ୟ** - ଅବନ୍ତୀ ଦେଶରେ ଜାତ ବ୍ୟକ୍ତି, ଅବନ୍ତୀ ଦେଶର ନୃପତି ।

**ଇନ୍ଦ୍ରିୟଗ୍ରାମ** - ଇନ୍ଦ୍ରିୟ ସମୂହ, ଆଖି, ନାକ, ଜିହ୍ୱାଦି ।

**ଉକ୍ତ** - ପୂର୍ବରୁ କୁହାଯାଇଥିବା, କଥିତ ।

**ଉଚ୍ଛିଷ୍ଟ** - ଅଇଁଠା ।

**ଉଡୁ** - ନକ୍ଷତ୍ର ।

**ଉଣ୍ଡିଣ** - ଖୋଜି, ଅନ୍ୱେଷଣ କରି ।

**ଉତଥ୍ୟ କ୍ଷେତ୍ରଜ**- ଦେବଗୁରୁ, ସାନଭାଇ।

**ଉତଥ୍ୟ** - ଉତଥ୍ୟଙ୍କ ପତ୍ନୀ ଗର୍ଭବତୀ ଥିବା ସମୟରେ ବୃହସ୍ପତି ଭାତୃବଧୂଙ୍କ ସହିତ ରତିକ୍ରୀଡ଼ା କରିଥିଲେ । ତା'ଙ୍କ ଔରସରୁ ଭରଦ୍ୱାଜ ଜନ୍ମଗ୍ରହଣ କରିଥିଲେ । ତେଣୁ ତା'ଙ୍କୁ ଉତଥ୍ୟଙ୍କ କ୍ଷେତ୍ରଜ ସନ୍ତାନ ବୋଲି କୁହାଯାଏ । ସେହି ଭରଦ୍ୱାଜ ମରୁଦ୍‌ଗଣଙ୍କ ଦ୍ୱାରା ପ୍ରତିପାଳିତ ହୋଇଥିଲେ ।

**ଉପାୟନ** - ଉପହାର ।

**ଉଭୟଲୋକ** - ଇହଲୋକ ଅର୍ଥାତ୍ ପୃଥିବୀ, ପରଲୋକ ଅର୍ଥାତ୍ ସ୍ୱର୍ଗ ଓ ନର୍କ । ପିତୃକୁଳ, ମାତୃକୁଳ ।

**ଉଭାରି** - ଛିଡ଼ା ହୋଇ, ଉଭା ହୋଇ ।

**ଉଲୁପୀ** - ନାଗରାଜଙ୍କ କନ୍ୟା, ଯେକି ଘଟଣାକ୍ରମେ ଅର୍ଜୁନଙ୍କ ସହ ପ୍ରେମ ବିବାହ କରିଥିଲେ ।

**କଲୁଷ** - ପାପ ।

**କହ୍ଲାର** - ଧଳା ପଦ୍ମଫୁଲ ।

**କାନୀନ** - କନ୍ୟାର ପୁତ୍ର ।

**କୁଳାନ୍ତକ** - ବଂଶର ଯମ ପରି, ଅର୍ଥାତ୍ ବଂଶନାଶକାରୀ ।

**କୁଶକେତୁବଳା** - ବ୍ରହ୍ମାଙ୍କ ପୁତ୍ର - ବଶିଷ୍ଠ ।

**କୃତଯୁଗ** - ସତ୍ୟଯୁଗ ।

**କୃତିହା** - କୃତ୍ୟା ଶବ୍ଦର ଦେଶଜ ପ୍ରୟୋଗ, କୃତ୍ୟା ଅର୍ଥାତ୍ କ୍ରୋଧର ମୂର୍ତ୍ତି, ଭୟଙ୍କର ତାନ୍ତ୍ରିକ ଦେବତା ।

**କୈବଲ୍ୟ** - ବିଷ୍ଣୁଲୋକ, ବୈକୁଣ୍ଠ ।

**କୌଶିକ** - କୁଶିକଙ୍କ ପୁତ୍ର, ବିଶ୍ୱାମିତ୍ର ।

**କ୍ଷତ୍ରଜପୁତ୍ର** - ସ୍ୱାମୀଙ୍କ ଅନୁମତି ଅନୁସାରେ ଅନ୍ୟ ପୁରୁଷଠାରୁ ଜାତ କରାଯାଇଥିବା ପୁତ୍ର ।

**କ୍ଷେତ୍ରେ** - ସ୍ଥାନରେ, ଏଠାରେ ସ୍ତ୍ରୀଙ୍କଠାରେ ।

**ଗଡ଼ଘାଲି** - ନିଶେଷ୍ଟ ଓ ନିଷ୍ଠଳ ହୋଇ ରହିବା । ଦଣ୍ଡବତ୍ ଶୋଇ ରହିବା ।

**ଗଣ୍ଡୁଷ** - ପୋଷେ, ଅଞ୍ଜ, ହସ୍ତୀ ଶୁଣ୍ଢର ଅଗ୍ରଭାଗ ।

**ଗୃହମେଧିଧର୍ମ** - ଗୃହସ୍ଥବ୍ୟକ୍ତିର ସଦାଚାର କର୍ମ ।

**ଗ୍ରହରାଜ** - ସୂର୍ଯ୍ୟ ।

**ଘର୍ମ** - ଝାଳ, ରୌଦ୍ର, ଉତ୍ତପ୍ତ ।

**ଘସ୍ର** - ଦିନ ।

**ଘାଘୁଡ଼ି** - ପାଦ ଓ କଟିର ଭୂଷଣ ।

**ଘ୍ରାଣ** - ନିଃଶ୍ୱାସପବନ ।

**ଚତୁର୍ଦ୍ଧାମୁକ୍ତି** - ସାମୀପ୍ୟ, ସାୟୁଜ୍ୟ, ସାଲୋକ୍ୟ ଓ ସାରୁପ୍ୟମୁକ୍ତି । ସାମୀପ୍ୟ - ଈଶ୍ୱରଙ୍କ ନିକଟରେ ରହିବା, ଅଭେଦଭାବ, ସାଲୋକ୍ୟ - ପରମାତ୍ମାଙ୍କ ସହିତ, ଗୋଟିଏ ଲୋକ ଅର୍ଥାତ୍ ବୈକୁଣ୍ଠରେ ବାସ କରିବା, ସାରୂପ୍ୟ- ଈଶ୍ୱରଙ୍କ ସ୍ୱରୂପ ଧାରଣ କରିବା ।

**ଚତୁର୍ମୁଖ** - ବ୍ରହ୍ମା । ବ୍ରହ୍ମାଙ୍କର ଚାରିଗୋଟି ଶିରଥିବାର ବର୍ଣ୍ଣନା ରହିଛି । ବ୍ରହ୍ମା ପୂର୍ବରୁ ପଞ୍ଚମୁଖ ଥିଲେ । ତାଙ୍କର ଚତୁର୍ମୁଖ ହେବା ବିଷୟରେ ଗୋଟିଏ କାହାଣୀ ଶିବ ପୁରାଣରୁ ମିଳେ ।

ଏକଦା ବ୍ରହ୍ମା ଓ ବିଷ୍ଣୁ ଆଦିବେଦ ଶିବଙ୍କ ଲିଙ୍ଗ ସ୍ୱରୂପ ଦେଖି, ତା'ର ଅଧ ଓ ଉର୍ଦ୍ଧ୍ୱଭାଗର କଳନା କରିବା ନିମିତ୍ତ ଦୁହେଁଯାକ ଚେଷ୍ଟା କରି ବିଫଳ ହେଲେ । ତହୁଁ ଦୁହେଁ ବିଚାର କରି ବ୍ରହ୍ମା ହଂସବାହନରେ ବସି ଉର୍ଦ୍ଧ୍ୱଦେଶକୁ ଗମନ କଲେ ଏବଂ ବିଷ୍ଣୁ ବରାହରୂପ ଧାରଣ କରି ତଳକୁ ତଳକୁ ଖୋଳି ଖୋଳି ଚାଲିଲେ । ବିଷ୍ଣୁ ଲିଙ୍ଗର ମୂଳ କଳନା କରି ନ ପାରି ଫେରି ଆସିଲେ । କିନ୍ତୁ ବ୍ରହ୍ମା କିଛି ସମୟ ପରେ ଗୋଟିଏ କେତକୀ ଫୁଲ ଧରି ଫେରି ଆସି କହିଲେ - ମୁଁ ଉର୍ଦ୍ଧ୍ୱ ଭାଗକୁ ଦେଖି ଆସିଲି । ତାଙ୍କର ଉର୍ଦ୍ଧ୍ୱ ଭାଗରେ ଏହି

Dr. Sudhanshu Sekhar Mishra

କେତକୀ ଫୁଲଟି ଥିଲା । ତହୁଁ କେତକୀ ମଧ୍ୟ ବ୍ରହ୍ମାଙ୍କ ଇଙ୍ଗିତ ମତେ ମିଥ୍ୟା ସାକ୍ଷ୍ୟ ଦେଇ ବ୍ରହ୍ମାଙ୍କ ବଚନକୁ ସମର୍ଥନ ଜଣାଇଲା ।
ଏହି ସମୟରେ ସେଠାରେ ଶିବ ଆବିର୍ଭୂତ ହୋଇ, କେତକୀକୁ ଶିବ ପୂଜାରେ ନିଷିଦ୍ଧ ପୁଷ୍ପରୂପେ ଅଭିଶାପ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଚାପୁଡ଼ାଏ ମାରି ବ୍ରହ୍ମାଙ୍କ ଉର୍ଦ୍ଧ୍ୱଶିରଟିକୁ ଛିଣ୍ଡାଇ ଦେଲେ । ସେହି କାଳରୁ ବ୍ରହ୍ମା ଚତୁର୍ମୁଖ ହୋଇ ରହିଲେ ।

**ଚିତ୍ରଦେବତା** - ଶିଳ୍ପୀଗୁରୁ ବିଶ୍ୱକର୍ମା ।

**ଚିତ୍ରରଥବନ** - ଚିତ୍ରରଥ ନାମକ ଗନ୍ଧର୍ବଙ୍କ ଦ୍ୱାରା ନିର୍ମିତ ମନୋରମ ଉଦ୍ୟାନ । ଏହା ଯକ୍ଷରାଜ କୁବେରଙ୍କ କ୍ରୀଡ଼ା ଉଦ୍ୟାନ ନାମରେ ଖ୍ୟାତ ।

**ଜୀମୂତ** - ମେଘ ।

**ଜୀମୂତବାହନ** - ଇନ୍ଦ୍ର ।

**ଜୈତ୍ର** - ଜୟଶୀଳ ।

**ଜୈମିନି**- ମୀମାଂସା ଶାସ୍ତ୍ରର ପ୍ରଣେତା ସ ଜନୈକ ଦେବଦ୍ରଷ୍ଟା ମୁନି ।

**ଜ୍ଞାନଗମ୍ୟ** - ଯାହା ଜ୍ଞାନ ଦ୍ୱାରା ବୁଝିହୁଏ ।

**ଜ୍ଞାନଯୋଗ** - ବ୍ରହ୍ମଜ୍ଞାନ ଉପଲବ୍ଧିର ଉପାୟ ।

**ଜ୍ଞାନାଞ୍ଜନ** - ଜ୍ଞାନରୂପକ ଅଞ୍ଜନ । ଜ୍ଞାନ ବିଷୟକ ସ୍ୱଚ୍ଛ ଚେତନା ।

**ଜ୍ଞାପନ** - ଜଣାଇବା ।

**ଜ୍ୟୋତିଷ୍କଚକ୍ର** - ରାଶିଚକ୍ର, ଗ୍ରହନକ୍ଷତ୍ରାଦିଙ୍କ ଗତିର ସ୍ଥାନ ।

**ଜ୍ୟୋତିଷ୍ମାନ୍** - ଦୀପ୍ତିମୟ, ସମୁଜ୍ଜ୍ୱଳ, ସୂର୍ଯ୍ୟ ।

**ତନମାତ୍ର** - ତନ୍ମାତ୍ରାର କାବ୍ୟିକ ପ୍ରୟୋଗ । ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦକୁ ପଞ୍ଚତନ୍ମାତ୍ରା କୁହାଯାଏ । ଏଗୁଡ଼ିକ କ୍ଷିତି, ଆପ୍, ତେଜ, ମରୁତ ଓ ବ୍ୟୋମ ନାମକ ପଞ୍ଚଭୂତର ବିକାର ମାତ୍ର ।

**ତୀର୍ଥପଦ** - ଶ୍ରୀହରି ।

**ତୀର୍ଥପଦଦାସ** - ହରିଭକ୍ତ ।

**ଦଗ୍ଧକଳୁଷ** - ଯାହାଙ୍କର ପାପ ନାହିଁ, ନିଷ୍ପାପ ।

**ଦତ୍ତ** - ପ୍ରଦତ୍ତ, ଦିଆ ହୋଇଥିବା, ଏଠାରେ ଅତ୍ରି ଓ ଅନସୂୟାଙ୍କ ପୁତ୍ର, ବିଷ୍ଣୁ ଅଂଶରେ ଜାତ - ଦତ୍ତାତ୍ରେୟ ।

**ଦାସକନ୍ୟା** - କୈବର୍ତ୍ତର ଝିଅ, ବ୍ୟାସଙ୍କ ମାତା ସତ୍ୟବତୀ । ଯେ କି କୁମାରୀ ସମୟରେ ନିଜ ରୂପରେ ମୁନି ପରାଶରଙ୍କୁ ମୁଗ୍ଧ କରିଥିଲେ । ତା'ଙ୍କ ଔରସରୁ ବ୍ୟାସଦେବ ଜନ୍ମିଥିଲେ । ସେ ପୁଣି ନିଜ ସୌନ୍ଦର୍ଯ୍ୟ ବଳରେ ହସ୍ତିନାର ନୃପତି, ଭୀଷ୍ମଙ୍କ ପିତା ମହାବୀର ଶାନ୍ତନୁଙ୍କୁ ମୁଗ୍ଧ କରିଥିଲେ ।

**ଦେବମତେ** - ଦେବବର୍ଷ ଅନୁସାରେ ଦେବତାଙ୍କର ଗୋଟିଏ ଦିନରେ ମନୁଷ୍ୟଙ୍କର ଏକବର୍ଷ ହୁଏ ।

**ଦେବହୁତି ବିଦ୍ୟା** - ଦେବଗଣଙ୍କୁ ଆହ୍ୱାନ କରିବା ମନ୍ତ୍ର ଅର୍ଥାତ୍ ବେଦମନ୍ତ୍ର ।

**ଦ୍ରବିଣ** - ଧନ, ସୁବର୍ଣ୍ଣ ।

**ଦ୍ରାକ୍ଷା** - ଅଙ୍ଗୁର, କିସମିସ୍, ମନାକ୍କା ଆଦି ଫଳ ।

**ଧନ୍ୱୀ** - ଧନୁର୍ଦ୍ଧାରୀ ।

**ଧବଳଗିରି** - ବରଫାବୃତ ପର୍ବତ, ଶ୍ୱେତପର୍ବତ, ହିମାଳୟର ଶୃଙ୍ଗବିଶେଷ ।

**ଧରଣୀଜ** - ପୃଥିବୀଜାତ, ମଙ୍ଗଳଗ୍ରହ, ନାରକାସୁର ।

**ଧରଣୀଧର** - ପର୍ବତ, ବାସୁକୀ, କୂର୍ମ ଓ ବରାହ ଅବତାର ।

**ଧର୍ମକାମ** - ଫଳପ୍ରାପ୍ତି ଆଶାରେ ଧର୍ମକର୍ମକାରୀ ।

**ନାରୀକବଚ** - ନାରୀଙ୍କୁ ଆଶ୍ରୟ କରି ରକ୍ଷା ପାଇଥିବା ନୃପ ମୂଳକ ।

**ନିଗମ** - ବେଦ ।

**ନିଦାନ** - ଆଦିକାରଣ ।

**ନିଧାନ** - ଭଣ୍ଡାର, ଆଧାର, ଆଶ୍ରୟ, ପୋତାଧନ ।

**ନୀବାର** - ଘୁଆଁଧାନରୁ ଉତ୍ପନ୍ନ ଚାଉଳ, ତୃଣଧାନ୍ୟ ।

**ନୀଳକାନ୍ତ** - ନୀଳବର୍ଣ୍ଣର ମଣି, ନୀଳା ।

**ନୀଳମାଧବ** - ବିଷ୍ଣୁ, ଓଡ଼ିଶାର କଣ୍ଟିଲୋ, ବୌଦ ଆଦି ସ୍ଥାନରେ ପୂଜିତ ବିଷ୍ଣୁ ବିଗ୍ରହ, ଶ୍ରୀଜଗନ୍ନାଥ ପୂର୍ବ ସ୍ୱରୂପ ଯାହାଙ୍କୁ ଶବରରାଜା ବିଶ୍ୱାବସୁ ପୂଜା କରୁଥିଲେ ।

**ନୀଳାମ୍ବର** - ବଳରାମ, ନୀଳବର୍ଣ୍ଣ ଲୁଗା ।

**ନୀଳୋତ୍ପଳ** - ନୀଳ କଇଁ ।

**ନୃତ୍ୟଶାଳା** - ରଙ୍ଗଶାଳା, ଅଭିନୟ ଗୃହ, ରଙ୍ଗମଞ୍ଚ ।

**ନୃଦେବ** - ରାଜା, ବ୍ରାହ୍ମଣ ।

**ନ୍ୟାୟବଳ** - ଦାବାଖେଳ, ଚେସ୍ ସତରଞ୍ଜ ଜାତୀୟ ଖେଳ ବିଶେଷ ।

**ନ୍ୟାସ** - ଅର୍ପଣ କରିବା, ବିଶ୍ୱାସ କରିଦେଇଯିବା, ଥୋଇବା ।

**ପଇଲ ଆଦି ମୁନି** - ବ୍ୟାସଦେବଙ୍କ ପ୍ରଧାନ ଚାରିଶିଷ୍ୟ । ପୈଲ, ବୈଶମ୍ପାୟନ, ଜୈମିନି, ସୁମନ୍ତ । ବ୍ୟାସଦେବ ଏହି ଚାରିଶିଷ୍ୟଙ୍କୁ ଯଥାକ୍ରମେ ଋକ୍,ଯଜୁ, ସାମ ଓ ଅର୍ଥବ ବେଦ ଶିକ୍ଷା ଦେଇଥିଲେ ।

**ପକ୍ଷୀଙ୍କ ପ୍ରାୟ ରୂପ** - ରାଜା ହରିଶ୍ଚନ୍ଦ୍ରଙ୍କର ସର୍ବସ୍ୱ ଦାନ ରୂପେ ଅପହରଣ କରିବା ପରେ, ବିଶ୍ୱାମିତ୍ର ତାଙ୍କୁ ପୁଣି ଦକ୍ଷିଣା ମାଗିବାରୁ, ନୃପଙ୍କ କୁଳଗୁରୁ ବଶିଷ୍ଠ କୋପରେ ଅଗ୍ନିଶର୍ମା ହୋଇଯାଇ, ବିଶ୍ୱାମିତ୍ରଙ୍କୁ ଆଡ଼ି ନାମକ ପକ୍ଷୀ ରୂପ ଧାରଣ କରିବାକୁ ଅଭିଶାପ ଦେଇଥିଲେ । ତହୁଁ ବିଶ୍ୱାମିତ୍ର ବଶିଷ୍ଠଙ୍କୁ ବଗପକ୍ଷୀ ରୂପ ଧାରଣ କରିବାର ଅଭିଶାପ ଦେଇଥିଲେ ।

**ପୟୋବ୍ରତା** - କ୍ଷୀରପାନ କରି ନିର୍ଦ୍ଦିଷ୍ଟ ବ୍ରତ ପାଳନ କରୁଥିବା ନାରୀ, ଅଦିତି, ଦେବମାତା ।

**ପରଗୃହାଶ୍ରମୀ** - ପର ଘରେ ରହୁଥିବା ବ୍ୟକ୍ତି ।

Dr. Sudhanshu Sekhar Mishra

**ପରପୁରଞ୍ଜୟ** - ଶତ୍ରୁରାଜାର ନଗର ଜୟକାରୀ ନୃପତି ।

**ପରିବେତ୍ତା** - ବଡ଼ଭାଇ ଥାଉଁ ଥାଉଁ ସାନ ଭାଇ ବିବାହ କରି ଅଗ୍ନିହୋତ୍ର ଆଦି କର୍ମ କରୁଥିଲେ, ତାହାକୁ ପରିବେତ୍ତା କୁହାଯାଏ । ଦାରାଗ୍ନିହୋତ୍ର ସଂଯୋଗଂ କୁରୁତେ ଯୋଽଗ୍ରଜେ ସ୍ଥିତେ । ପରିବେତ୍ତାସ ବିଜ୍ଞେୟଃ ପରିବିତ୍ତି ସ୍ତୁ ପୂର୍ବଜଃ । (ଭାବାର୍ଥଦୀପିକା)

**ପରିମାଣେ** - ଅନୁମାନ କରେ ।

**ପରୀକ୍ଷିତଙ୍କ ପୁତ୍ର** - ଜନ୍ମେଜୟ, ଶ୍ରୁତସେନ, ଭୀମସେନ, ଉଗ୍ରସେନ ।

**ପରୁଷ** - କଟୁ, କଠୋର, କର୍କଶ ।

**ପାଶହସ୍ତ** - ବରୁଣ ।

**ପୁଂସବନ** - ଗର୍ଭସଞ୍ଚାର ।

**ପୁକ୍କଶ** - ଚଣ୍ଡାଳ ।

**ପୁଣ୍ୟଜଳା** - ପବିତ୍ରଜଳ ଥିବା ନଦୀ, ଏଠାରେ କୌଶିକୀ ତୀର୍ଥ ।

**ପୁତ୍ରିକାତନୟ** - ଯେଉଁ ବ୍ୟକ୍ତି ଝିଅର ପୁଅକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରେ, ସେହି ପୁତ୍ରକୁ ପୁତ୍ରିକାତନୟ କୁହାଯାଏ ।

**ପୁରନ୍ଦର** - ଇନ୍ଦ୍ର ।

**ପୁରୁଷ ମେଧଯଜ୍ଞ** - ଯେଉଁ ଯଜ୍ଞରେ ନରବଳି ଦିଆଯାଏ ।

**ପୁଷ୍କକ** - ପରାଗ, ଫୁଲର ରେଣୁ ।

**ପ୍ରତିଲୋମ** - ବିପରୀତ (ଜାତିରେ ବିବାହ) ।

**ପ୍ରତିଷ୍ଠାନ** - ପୁରୀ - ପ୍ରୟାଗ ବା ଏଲ୍ଲାହାବାଦ ନିକଟସ୍ଥ ଗଙ୍ଗାର ଅପରପାର୍ଶ୍ୱରେ ଥିବା ଝୁସୀ ନାମକ ସ୍ଥାନ ପ୍ରାଚୀନ କାଳରେ ପ୍ରତିଷ୍ଠାନ ପୁରୀ ନାମରେ କଥିତ ହେଉଥିଲା ।

**ପ୍ରାଚ୍ୟସାମସଂହିତା** - ଋଷି ଜୈମିନିଙ୍କ ପ୍ରଚାରିତ ସାମବେଦ ପ୍ରଥମେ ଦୁଇଟି ଶାଖାରେ ବିଭକ୍ତ ହୋଇଥିଲା । ଗୋଟିଏ ଶାଖାର ଋଷିଥିଲେ - ସୁମନ୍ତ ଏବଂ ଅନ୍ୟ ଶାଖାରେ ଋଷିଥିଲେ ସୁକନ୍ୟା। ସୁକର୍ମାଙ୍କ ଶିଷ୍ୟ ପରମ୍ପରାରେ ହିରଣ୍ୟନାଭ ପ୍ରଥମେ ତାଙ୍କର ପାଞ୍ଚଶହ ଶିଷ୍ୟଙ୍କୁ ସାମବେଦର ଯେଉଁ ଶାଖାମାନ ପଢ଼ାଇଥିଲେ ତାହା ଉଦୀଚ୍ୟ ସାମସଂହିତା ନାମରେ କଥିତ ହୁଏ, ସାମବେଦକୁ ଅନ୍ୟ ଯେଉଁମାନେ ପାଠ କଲେ, ସେହି ଅଂଶକୁ ପ୍ରାଚ୍ୟ ସାମସଂହିତା କୁହାଯାଏ । (ବିଷ୍ଣୁପୁରାଣ) ।

**ପ୍ରୋକ୍ଷଣ** - ଶୁଦ୍ଧ କରିବା ପାଇଁ ଜଳ ସିଞ୍ଚିବା, ଯଜ୍ଞପଶୁବଧ, ପିତୃଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ପାଇଁ ଅର୍ପଣ ।

**ବଦରୀ** - ବରକୋଳି ।

**ବନ୍ଦୀ** - ଭାଟ, ଯେଉଁମାନେ ସ୍ତୁତି କରି ଜୟଗାନ କରନ୍ତି । ବନ୍ଧନରେ ପଡ଼ିଥିବା ବ୍ୟକ୍ତି ।

**ବଭ୍ରୁ** - କପିଳାଧେନୁ, ଦେବଧେନୁ, ବଶିଷ୍ଠଙ୍କ କାମଧେନୁ ।

**ବଳାହକ** - ମେଘ ।

**ବଳିଭୋଜା** - ଦେବତା ଓ ପିତୃଗଣଙ୍କ ଉଦ୍ଦେଶ୍ୟରେ ଆୟୋଜିତ ଫଳ ମିଷ୍ଟାନ ଆଦି ।

**ବିପିନ** - ବନ, ଅରଣ୍ୟ ।

**ବିବୁଧ** - ଦେବତା, ବିଦ୍ୱାନ ।

**ବିମୋହ**- ମୋହମାୟାରୁ ମୁକ୍ତ। ବିଶେଷ ଭାବରେ ମୋହ ଯୁକ୍ତ ଜଡ଼ତା ।

**ବିଷାଣ** - ଶିଙ୍ଗ ।

**ବୃଷ** - ବୃଷଭ, ଏଠାରେ ବୃଷପର୍ବା ନାମକ ଅସୁରରାଜା ।

**ବୃଷଣ** - ଅଣ୍ଡକୋଷ, ଲିଙ୍ଗ ।

**ବ୍ରହ୍ମ** - ବେଦ, ପରମାତ୍ମା ।

**ବ୍ରହ୍ମନଦୀ** - ସରସ୍ୱତୀ ନଦୀ । ଏହି ନଦୀ କୁରୁକ୍ଷେତ୍ରରେ ପ୍ରବାହିତା । ଓଡ଼ିଶାର ପୂର୍ବତନ ପୁରୀ ଓ କଟକ ଜିଲ୍ଲା ସୀମାରୂପେ ପ୍ରବାହିତା ପ୍ରାଚୀନଦୀ ସରସ୍ୱତୀ ନଦୀ ନାମରେ ପରିଚିତା ।

**ବ୍ରହ୍ମବର୍ଚ୍ଚସ** - ବ୍ରହ୍ମତେଜ । ଜାମିନୀ, ଭାବିନୀ, ପ୍ରିୟା, ପତ୍ନୀ, ପ୍ରେମିକା ।

**ଭୂତେଶ୍ୱର** - ଶିବ ।

**ଭୃଗୁପତି** - ଭୃଗୁବଂଶଜ ପରଶୁରାମ ।

**ଭ୍ରୁକୁଟୀ** - ଆଖିପତାର ଉପରିଭାଗ ଭୂରୁ ।

**ଭ୍ରୂଭଙ୍ଗ** - ଚାହିଁବା ଠାଣି ।

**ମଞ୍ଜୁଷା** - ପେଡ଼ି, ବାକ୍ସ ।

**ମଣିପୁରେ କନ୍ୟା** - ଚିତ୍ରାଙ୍ଗଦା । ଅର୍ଜୁନଙ୍କ ପତ୍ନୀ ବଭ୍ରୁବାହନର ମାତା ।

**ମଣ୍ଡୁକ** - ବେଙ୍ଗ ।

**ମଦୟନ୍ତୀ ପତି** - ସୌଦାସ ନାମକ ରାଜା ।

**ମନ୍ୟୁ**- କ୍ରୋଧ ।

**ମହେନ୍ଦ୍ର ପର୍ବତ** - ଅନ୍ୟତମ କୁଳପର୍ବତ । ଓଡ଼ିଶା ଓ ଆନ୍ଧ୍ରପ୍ରଦେଶ ସୀମାବର୍ତ୍ତୀ ପର୍ବତ । ଏହି ପର୍ବତ ଉପରୁ ଲମ୍ଫ ଦେଇ ହନୁମାନ ସୀତାଙ୍କୁ ଖୋଜିବା ପାଇଁ ଲଙ୍କାକୁ ଯାଇଥିଲେ । ଏହି ପର୍ବତରେ ପରଶୁରାମଙ୍କ ଆଶ୍ରମ ରହିଛି । ଏହି ପର୍ବତରୁ ମହେନ୍ଦ୍ରତନୟା ନଦୀ ବାହାରିଛି ।

**ମିତ୍ରାବରୁଣଙ୍କ ଶାପ** - ଇନ୍ଦ୍ରଙ୍କ ଦେବସଭାରେ ଉର୍ବଶୀ ନୃତ୍ୟ କରୁଥିବା ସମୟରେ ନାରଦଙ୍କ ମୁଖରୁ ସୋମବଂଶର ନୃପ ମହାରାଜା ପୁରୁରବାଙ୍କ ନାମ ଶୁଣି, କାମବଶରେ ତା'ଙ୍କ ନାମ ଉଚ୍ଚାରଣ କଲା । ଏଥିରେ ଉର୍ବଶୀଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତା'ଙ୍କୁ ମିତ୍ରାବରୁଣ ମର୍ତ୍ତ୍ୟରେ ରହିବା ପାଇଁ ଅଭିଶାପ ଦେଇଥିଲେ । ତା' ଫଳରେ ଉର୍ବଶୀ ମର୍ତ୍ତ୍ୟକୁ ଆସି ମହାରାଜା ପୁରୁରବାଙ୍କୁ ପତ୍ନୀରୂପେ କିଛି କାଳ ଅତିବାହିତ କରିଥିଲେ । ପୁଣି ଇନ୍ଦ୍ରଙ୍କ ଅନୁରୋଧରେ ଉର୍ବଶୀ ରାଜା ପୁରୁରବାଙ୍କ ନଗ୍ନ ଅବସ୍ଥାରେ ଦେଖି ସ୍ୱର୍ଗକୁ ଗମନ କରିଥିଲେ ।

**ମୃଗୟା** - ଶିକାର, ପାରିଧି ।

**ମୃତ୍ୟୁଞ୍ଜୟ** - ଶିବ, ମରଣବିଜୟୀ ।

**ମୃଦ୍ୱଙ୍ଗୀ** - କୋମଳାଙ୍ଗୀ ।

**ମୃଷା** - ମିଥ୍ୟା, ବୃଥା ।

**ମୃଷାବାଦ** - ମିଥ୍ୟା ଭାଷଣ ।

Dr. Sudhanshu Sekhar Mishra

**ମେଖଳା** - ଅଣ୍ଟାସୂତା, କଟିଭୂଷଣ, ପର୍ବତର ମଧ୍ୟଭାଗ, କମର ପଟି ।

**ଯଜ୍ଞବାଟ** - ଯଜ୍ଞଶାଳା ।

**ଯାବକ** - ଯବଧାନ ।

**ଯୁଗାବଧି** - ଯୁଗାନ୍ତ, ବହୁକାଳ ।

**ଯୁଞ୍ଜାନ** - ଯୋଗ ଅଭ୍ୟାସକାରୀ ।

**ଯୁଣ**- ଚାରିକୋଣ, ଯୋଜନ ।

**ଯୁଯୁକ୍ଷମାଣ** - ଯେ ମୁକ୍ତି ପାଇଁ ଯୋଗ ସାଧନ କରେ ।

**ଯୂପ** - ଯଜ୍ଞରେ ପଶୁକୁ ବଳିଦେବା ଖୁଣ୍ଟ ।

**ଯୂଥ** - ଦଳ ।

**ଯୂଥଭ୍ରଷ୍ଟ** - ଦଳରୁ ପୃଥକ୍ ହୋଇଯିବା ।

**ଯେତେମତେ** - ଯେନକେନ ପ୍ରକାରେ । ଯେକୌଣସି ଉପାୟରେ ।

**ଯୋଗଜନ୍ମା** - ଜଗତର ଅଶେଷ କଲ୍ୟାଣକାରୀ ପୁରୁଷ ।

**ଯୋଗାରୂଢ଼** - ଯୋଗରେ ମଗ୍ନ ।

**ଯୌବରାଜ** - ଯୁବରାଜଙ୍କ ପଦ, ବା ଅଧିକାର । ରାଜା ବଞ୍ଚିଥିବା ଅବସ୍ଥାରେ ପୁତ୍ରକୁ ସିଂହାସନରେ ବସାଇଲେ ତାହାକୁ ଯୁବରାଜ କୁହାଯାଏ । ତା'ଙ୍କର ଅଧିକାରକୁ ଯୌବରାଜ୍ୟ କୁହାଯାଏ ।

**ରବିତଳେ** - ସଂସାରରେ ।

**ରସଦାୟ** - ଶସ୍ୟଶ୍ୟାମଳା ।

**ରେବାନଦୀ** - ନର୍ମଦା ନଦୀ ।

**ରୋମହର୍ଷଣ** - ରୋମମୂଳ ଟାଙ୍କୁରି ଉଠିବା ।

**ଶୟଳ** - ପୃଥିବୀ ।

**ଶରଜନ୍ମା** - କାର୍ତ୍ତିକେୟ, ଗଙ୍ଗାନଦୀର ଶରବଣରେ ପଡ଼ିଥିବା ଅବସ୍ଥାରେ ଆଣି ତା'ଙ୍କୁ କୃତ୍ତିକାଦି ଛଅଟି ନକ୍ଷତ୍ର ପାଳନ କରିଥିବାରୁ ତାଙ୍କ ନାମ ଶରଜନ୍ମା ଓ କାର୍ତ୍ତିକେୟ ହୋଇଛି ।

**ଶରପୁଙ୍ଖ** - ଶରର ଯେଉଁ ଅଂଶଷର ପର ଲାଗିଥାଏ ।

**ଶରବାରଣ** - କବଚ, ସାଞ୍ଜୁ ।

**ଶରାବ** - ଶରା, ଚଟକାମାଟି ପାତ୍ର ଯାହା ଯଜ୍ଞକର୍ମରେ ବ୍ୟବହୃତ ହୁଏ ।

**ଶାଶ୍ୱତୀ** - ପୃଥିବୀ, ଚିରସ୍ଥାୟିନୀ ।

**ଶାସ୍ତା** - ଶାସନକାରୀ, ନୃପତି ।

**ଶାସ୍ତ୍ରଗଣ୍ଡ** - ଯେ ଶାସ୍ତ୍ରଜ୍ଞ ବୋଲି ଗର୍ବ କରେ, ମାତ୍ର କିଛି ଜାଣିନଥାଏ ।

**ଶିଖଣ୍ଡ** - ମୟୂର ପୁଚ୍ଛ ।

**ଶିଖାବଳ** - ମୟୂର ।

**ଶିଖାଭରଣ** - ମୁକୁଟ ।

**ଶିଖିଧ୍ୱଜ** - କାର୍ତ୍ତିକେୟ, ଧୂମ ।

**ଶିସୃକ୍ଷା** - ସୃଷ୍ଟିକରିବାର ଇଚ୍ଛା ।

**ଶୁଚି** - ପବିତ୍ର ।

**ଶୁନଃଶେଫ** - ଅଜୀଗର୍ତ୍ତ ବା ଋଚୀକ ଋଷିଙ୍କ ମଧ୍ୟମ ପୁତ୍ର । ପିତାମାତା ତାହାକୁ ଧନ ଲୋଭରେ ରାଜା ହରିଶ୍ଚନ୍ଦ୍ରଙ୍କ ପୁତ୍ର ରୋହିତଙ୍କ ହସ୍ତରେ ଯଜ୍ଞପଶୁ ହେବା ପାଇଁ ବିକ୍ରୟ କରି ଦେଇଥିଲେ । କିନ୍ତୁ ଶୁନଃଶେଫ ରାଜାଙ୍କ ସହିତ ରଥରେ ଆସିବା ମାର୍ଗରେ କୁରୁକ୍ଷେତ୍ରଠାରେ ତା'ଙ୍କ ମାତୁଳ ବିଶ୍ୱାମିତ୍ରଙ୍କୁ ସାକ୍ଷାତ କରି ସମସ୍ତ ଦୁଃଖ ଜଣାଇଲେ । ମାତୁଳ ବିଶ୍ୱାମିତ୍ରଙ୍କ ପରାମର୍ଶ ଅନୁସାରେ ଯୂପକାଷ୍ଠରେ ପଶୁରୂପେ ବନ୍ଧା ହୋଇଥିବା ସମୟରେ ଅଗ୍ନି, ବରୁଣ ଓ ଯମଙ୍କୁ ବୈଦିକ ମନ୍ତ୍ରରେ ପ୍ରାର୍ଥନା କରିଥିଲେ । ତା'ଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ, ଦେବଗଣ ତା'ଙ୍କୁ ଜୀବନଦାନ ଦେଇଥିଲେ । ପରବର୍ତ୍ତୀ ସମୟରେ ଶୁନଃଶେଫ ଜଣେ ବେଦବାଦୀ ଋଷି ଭାବରେ ପରିଚିତ ହୋଇଥିଲେ ।

**ଶୋଣି** - ରକ୍ତ ।

**ଶ୍ୱାନ** - କୁକୁର ।

**ଶ୍ୱାପଦ** - ହିଂସ୍ରଜନ୍ତୁ, କୁକୁରର ପାଦପରି ପାଦଥିବା ବିରାଡ଼ି, ବିଲୁଆ, ବାଘ ଆଦି ଜନ୍ତୁ ।

**ଶ୍ୱେତଦୀପ** - ପୁରାଣ ବର୍ଣ୍ଣିତ ଚନ୍ଦ୍ରଦୀପ, ଆଧୁନିକ ଗ୍ରେଟବ୍ରିଟେନ୍ ବୋଲି କେତେକ କହନ୍ତି ।

**ଶ୍ମଶ୍ରୁ** - ଦାଢ଼ି ।

**ଶ୍ରୋଣୀ** - ନିତମ୍ବ, ପିଚା ।

**ସଂହରି** - ତ୍ୟାଗକରି, ଛାଡ଼ି, ଦୂରକରି ।

**ସଂହାରି** - ମାରି, ବଧକରି ।

**ସଞ୍ଚରଣ** - ବୃଦ୍ଧି ପାଇବା, ବ୍ୟାପିବା ।

**ସାନ ଭାଇ** - ଏଠାରେ ପୃଷଧ୍ରର ସାନ ଭାଇ କବି ଅର୍ଥରେ ବ୍ୟବହୃତ ।

**ସାହସୀ** - ସାହସ କରି ।

**ସୁନାସୀର** - ଇନ୍ଦ୍ର, ଦେବରାଜ ।

**ସୁରେଶ୍ୱର** - ଇନ୍ଦ୍ର ।

**ସୋମନନ୍ଦନ** - ଚନ୍ଦ୍ରଙ୍କ ପୁତ୍ର ବୁଧ । ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ଚନ୍ଦ୍ର ଅପହରଣ କରି ନେଇଥିଲେ । ଚନ୍ଦ୍ରଙ୍କ ଔରସରୁ ବୁଧ ଜନ୍ମ ଗ୍ରହଣ କରିଥିଲେ । ଏହି ଘଟଣା ପାଇଁ ଦେବଗଣଙ୍କ ମଧ୍ୟରେ ତୁମୁଳ ବାଦବିବାଦ ଲାଗିଥିଲା । ବୁଧଙ୍କୁ ଉଭୟ ଚନ୍ଦ୍ର ଓ ବୃହସ୍ପତି ନିଜ ନିଜର ପୁତ୍ର ବୋଲି ଆଗ୍ରହ ପ୍ରକାଶ କରନ୍ତେ, ତାରାଙ୍କ ସ୍ୱୀକାରୋକ୍ତିରୁ ବୁଧ ଚନ୍ଦ୍ରଙ୍କ ପୁତ୍ର ରୂପେ ପରିଚିତ ହୋଇଥିଲେ ।

**ସେହ୍ନା** - କବଚ, ସାଞ୍ଜୁ ।

**ହବି** - ଘିଅ ।

**ହରିଣୀସୁତ** - ମହର୍ଷି ବିଭାଣ୍ଡକ ବନରେ ଥିବା ତା'ଙ୍କ ଆଶ୍ରମର ଅଦୂରରେ ବହି ଯାଇଥିବା କୁଳୁକୁଳୁ ନାଦିନୀ ଝରଣା ନିକଟକୁ ଯିବାବେଳେ ଦେଖିଲେ, ପୁଞ୍ଜିକସ୍ଥଳା ନାମ୍ନୀ ଅପସରା ଉଲଗ୍ନ ହୋଇ ସେଠାରେ ସ୍ନାନ କରୁଛି । ଅପ୍ସରାର ନବଯୌବନ ଦର୍ଶନରେ ବିଭାଣ୍ଡକଙ୍କ ମନରେ କାମବିକାର ଜାତ ହେଲା । ତା' ଫଳରେ ତାଙ୍କର ବୀର୍ଯ୍ୟ ସ୍ଖଳନ ହୋଇଥିଲା । ମହାମୁନି ବିଭାଣ୍ଡକ ନିଜ କୌପୀନଟିକୁ ଜଳରେ ଧୌତ କରନ୍ତେ, ମୁନିଙ୍କ ଅକ୍ଷୟ ବୀର୍ଯ୍ୟ ଜଳରେ ଭାସିଲା । ସେହି ସମୟରେ ଗୋଟିଏ ହରିଣୀ ସେହି ଜଳପାନ କରନ୍ତେ, ତା' ଗର୍ଭରୁ ଶୃଙ୍ଗଯୁକ୍ତ ମନୁଷ୍ୟ ସନ୍ତାନଟିଏ ଜାତ ହେଲା । ବିଭାଣ୍ଡକ ସେହି ହରିଣୀସୁତ କୁ ନିଜ

Dr. Sudhanshu Sekhar Mishra

ଆଶ୍ରମରେ ରଖାଇ ବିଧିବିଧାନରେ ସଂସ୍କାରାଦି କରାଇ, ପ୍ରତିପାଳନ କଲେ । ସେହି ପୁତ୍ରର ନାମ ଥିଲା ଋଷ୍ୟଶୃଙ୍ଗ । ସେ ଅଙ୍ଗଦେଶର ଅନାବୃଷ୍ଟି ଦୂର କରି ଅଙ୍ଗଦେଶର ରାଜକୁମାରୀ ଶାନ୍ତାଙ୍କୁ ବିବାହ କରିଥିଲେ । ସେହି ଯୋଗାରୂଢ଼ ପୁରୁଷ ଦଶରଥଙ୍କ ପାଇଁ ପୁତ୍ରେଷ୍ଟି କରନ୍ତେ, ଶ୍ରୀରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜାତ ହୋଇଥିଲେ । କବି ପୁରୁଷୋତ୍ତମଙ୍କ ଅନୂଦିତ 'ଆର୍ଷରାମାୟଣ'ରେ ଏ ପ୍ରସଙ୍ଗଟି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି ।

**ହୈହୟବଂଶ** - ଯେଉଁ ବଂଶରେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଜନ୍ମଗ୍ରହଣ କରିଥିଲେ । କାର୍ତ୍ତବୀର୍ଯ୍ୟଙ୍କର ଅନ୍ୟ ନାମ ଥିଲା ସହସ୍ରାର୍ଜ୍ଜୁନ । ସେ ପରଶୁରାମଙ୍କ ପିତା ଜମଦଗ୍ନିଙ୍କ ଆଶ୍ରମରୁ କାମଧେନୁ ଅପହରଣ କରିନେଇ, ପରଶୁରାମଙ୍କ କୋପଭାଜନ ହୋଇଥିଲେ । କଳିଙ୍ଗ ଦେଶର ପଶ୍ଚିମ ସୀମାନ୍ତରେ ଏହି ରାଜ୍ୟ ସର୍ବଦା କଳିଙ୍ଗର ଶତ୍ରୁରାଜ୍ୟ ରୂପେ କାର୍ଯ୍ୟକରୁଥିଲା । ସେହି ବଂଶର ଅନ୍ୟତମ ରାଜକୁମାର ପରମର୍ଦ୍ଦିଦେବ କଳିଙ୍ଗ ରାଜକୁମାରୀ, ଅନଙ୍ଗ ଭୀମଦେବଙ୍କ କନ୍ୟା ତଥା କୋଣାର୍କ ମନ୍ଦିରର ନିର୍ମାତା ଲାଙ୍ଗୁଳା ନରସିଂହଦେବଙ୍କ ଭଗିନୀ ଚନ୍ଦ୍ରିକା ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଅକାଳ ମୃତ୍ୟୁରେ ପରମବୈଷ୍ଣବୀ ଚନ୍ଦ୍ରିକା ଭୁବନେଶ୍ୱରର ବିନ୍ଦୁସରୋବର କୂଳରେ ସ୍ୱାମୀ ହୈହୟବଂଶଜ ପରମର୍ଦ୍ଦିଦେବଙ୍କ ସ୍ମୃତିରେ ଅନନ୍ତବାସୁଦେବ ମନ୍ଦିର ନିର୍ମାଣ କରାଇଥିଲେ ।

**ହୋତା** - ଯଜ୍ଞରେ ସେ ହୋମ କରନ୍ତି ଅର୍ଥାତ୍ ପ୍ରଧାନ ପୁରୋହିତ । ଉତ୍କଳରେ ବ୍ରାହ୍ମଣଙ୍କ ଉପାଧି ବିଶେଷ ।

**ହ୍ରୀ** - ଲଜ୍ଜା, ଦକ୍ଷକନ୍ୟା ଧର୍ମଙ୍କ ପତ୍ନୀ ।

**ହ୍ରେଷା** - ଘୋଡ଼ାର ହିଁ ହିଁ ଶବ୍ଦ ।

**ହ୍ଲାଦ** - ହର୍ଷ, ଆନନ୍ଦ, ହିରଣ୍ୟକଶିପୁର ପୁତ୍ର ।

**ହ୍ଲାଦିନୀ** - ବିଜୁଳୀ, ଯାହା ଆନନ୍ଦ ପ୍ରଦାନ କରେ, ଶ୍ରୀକୃଷ୍ଣଙ୍କ ଆନନ୍ଦଦାୟିନୀ ଶକ୍ତି ରାଧିକା ।

---

## ଦଶମ ସ୍କନ୍ଧ
### (ଗୋପଲୀଳା)

**ଅକିଞ୍ଚନ** - ଦରିଦ୍ର, ନଗଣ୍ୟ, ହୀନ ।

**ଅଗ୍ନିଧଉତବାସ** - ଅଗ୍ନିରେ ଧୁଆହେଲା ପରି ଦିଶୁଥିବା ଶ୍ରୀକୃଷ୍ଣଙ୍କ ପୀତାମ୍ବର ।

**ଅଙ୍କୁଶ** - ଆଙ୍କୁଶି, ହାତୀକୁ ଚଳାଇବା ପାଇଁ ନିର୍ମିତ ଲୌହଦଣ୍ଡ

**ଅଙ୍ଗଦ**- ବଳା, ବାହୁବନ୍ଧ, ବାଳୀ ଓ ତାରାଙ୍କ ପୁତ୍ର ତଥା ରାମାୟଣର ମହାନ୍ ଯୋଦ୍ଧା ।

**ଅଙ୍ଗନ୍ୟାସ** - ନିର୍ଦ୍ଦିଷ୍ଟ ମନ୍ତ୍ରପାଠ କରି ହୃଦୟ, ଶିର, ଶିଖା, ବାହୁ ଓ ନେତ୍ର ସ୍ପର୍ଶ କରିବା ।

**ଅଜା** - ଛେଳି, ମାଆଙ୍କ ପିତା ।

**ଅଡ଼ା** - ଅନିଷ୍ଟ, ଅଶୁଭଗ୍ରହ, ପଞ୍ଜୁରିର ଶୁଆକାଠି, ଡଙ୍କା ।

**ଆଧାମ** - ରାବିଡ଼ି ।

**ଅଧ୍ୟାତ୍ମଦୀପ** - ଜ୍ଞାନଦୀପ ।

**ଅନଙ୍ଗବାଣ** - କାମବାଣ ।

**ଅନଙ୍ଗରସ** - କାମକ୍ରୀଡ଼ା ରସ ।

**ଅନଳ** - ନିଆଁ, ଅଗ୍ନି ।

**ଅନୁଆନ** - ଅଧିକରୁ ଅଧିକ ।

**ଅନୁବ୍ରତ** - ସଦାସର୍ବଦା ।

**ଅପରତ** - ଅବିଶ୍ୱାସ ।

**ଅବନୀପତି** - ରାଜା, ନୃପତି ।

**ଅବିରତ** - ସଦାସର୍ବଦା ।

**ଅମାତ୍ୟ** - ପାତ୍ର ମନ୍ତ୍ରୀଗଣ, ପାରିଷଦଗଣ ।

**ଅମରଗୁରୁଲଗ୍ନ**- ବୃହସ୍ପତିଙ୍କ ବେଳା ।

**ଅମୀୟ** - ଅମୃତ ।

**ଅରି** - ଶତ୍ରୁ ।

**ଅରିଷ୍ଟ** - ଦୁଃଖ, ସଙ୍କଟ ।

**ଅରୀ** - ଅର ଯାହାର ଅଛି, ଚକ୍ର ।

**ଅଳକତିଳକ ପ୍ରକାଶି** - ବେଶଭୂଷଣ ହୋଇ ।

**ଅଳକା** - କୁଞ୍ଚୁକୁଞ୍ଚିଆ କେଶ, ଚୂର୍ଣ୍ଣକୁନ୍ତଳ, କୁବେରପୁର, ଯକ୍ଷମାନଙ୍କ ବାସସ୍ଥାନ ।

**ଅଶ୍ୱତ୍ଥାମାଦି ସାତସିଦ୍ଧ** - ଅଶ୍ୱତ୍ଥାମା, ବଳି, ବ୍ୟାସ, ହନୁମାନ୍, ବିଭୀଷଣ, କୃପ ଓ ପରଶୁରାମ, ଏହି ସାତଜଣ ଅମର ହୋଇଥିବାର ଶାସ୍ତ୍ରବଚନ ରହିଛି ।

**ଅଷ୍ଟମଡ଼ାଳ** - ଆଠଗୋଟି ଶାଖା । ଶରୀର ରୂପକ ବୃକ୍ଷର କ୍ଷିତି, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି, ଅହଙ୍କାର ରୂପକ ଆଠଗୋଟି ଶାଖା । ଏଠାରେ ଅଷ୍ଟମ ଆଠଗୋଟି ଅର୍ଥରେ ବ୍ୟବହୃତ ।

**ଆଈ** - ମାତା, ଦେବୀ ।

**ଆକ୍ରୋଷି** - ବିଦ୍ୱେଷ କରି, ଶତ୍ରୁତା କରି, ଅହନ୍ତା ରଖି ।

**ଆଖଣ୍ଡଳ** -ଇନ୍ଦ୍ର ।

**ଆଗୁଁସାର** - ଅଗ୍ରସର, ଆଗକୁ ଯିବା ।

**ଆଞ୍ଜୁ** - ଟାଣିଟୁଣି, ବଳକଷି, ଅଞ୍ଜିବା ଅର୍ଥାତ୍ ବଳ ପରୀକ୍ଷା କରିବା ।

**ଆଡ଼ତିଆ** - ଡ଼ଗର, ପିଆଦା, ଦୂତ ।

**ଆଦିତ୍ୟରତ୍ନ** - ସୂର୍ଯ୍ୟକାନ୍ତ ମଣି, ଏଠାରେ ଗୋପୀନାଥଙ୍କ ଶରୀର କାନ୍ତି ସୂର୍ଯ୍ୟକାନ୍ତ ମଣି ସଦୃଶ ।

**ଆଧି** - ମାନସିକ ପୀଡ଼ା, ଗଚ୍ଛିତ ବସ୍ତୁ, ଅଧିକାର, ଆଡ଼ମ୍ବର ।

Dr. Sudhanshu Sekhar Mishra

**ଆମ୍ଭନ୍ତ** - ଆମମାନଙ୍କୁ, ଆମମାନଙ୍କର ଅର୍ଥରେ ପ୍ରାଚୀନ ପ୍ରୟୋଗ ।

**ଆଶାବିଶ୍ରାମ** - ମନବାଞ୍ଛାପୂରଣକାରୀ ଅର୍ଥରେ ବ୍ୟବହୃତ ହୋଇଛି ।

**ଇନ୍ଦ୍ରଗୋପ-** ସାଧବବୋହୂପୋକ, ବର୍ଷାକାଳରେ ପଡ଼ିଆ ଓ ଉଚ୍ଚଜାଗାରେ ଚାଲୁଥିବା ନାଲି ଟୁକୁଟୁକୁ ପୋକ ।

**ଇନ୍ଦ୍ରଚାପ** - ଇନ୍ଦ୍ରଧନୁ । ବର୍ଷାକାଳରେ ମେଘାବୃତ ଆକାଶ ତଥା ସୂର୍ଯ୍ୟଙ୍କ ବିପରୀତ ଦିଗରେ ଦେଖା ଯାଉଥିବା ସାତରଙ୍ଗ ବିଶିଷ୍ଟ ଦିଗ୍‌ବଳୟ ଛବି ।

**ଇନ୍ଦ୍ରଧ୍ୱଜ-** ବଜ୍ର, ପୁରୁଷ ଆକୃତିର ଅଳଙ୍କୃତ ସ୍ତମ୍ଭ । ଇନ୍ଦ୍ରଧ୍ୱଜୋ ବଜ୍ରମ୍, ଉତ୍ସବେ ମହାନ୍ ସ୍ତମ୍ଭୋଧ୍ୱଜ ପତାକାଦ୍ୟଲଙ୍କୃତଃ ପୁରୁଷାକୃତିଃ ଉଚ୍ଛ୍ରୀୟତେ (ଭାବାର୍ଥ ଦୀପିକା) ୧୦।୪୪।୨୩

**ଉଚ୍ଛୁଡ଼ି** - ଟାଣି, ଛଡ଼ାଇ

**ଉଡୁମ୍ବର** - ଫ-ଉଦୁମ୍ବର, ଡ଼ିମ୍ବିରିଫଳ ।

**ଉତ୍‌ପଳ** - କଇଁ ।

**ଉତ୍ତାନ** - ଚିତ୍‌ହୋଇ, ଉପରକୁ ମୁହଁ କରି ।

**ଉଦାସ** - ନିରପେକ୍ଷ, ବିମର୍ଷ, ଦୁଃଖିତ, ଅନୁରାଗହୀନ ।

**ଉଦୂଖଳ** - ଧାନ, ମସଲା ଆଦି କୁଟିବା ହେମଦସ୍ତା ପରି କାଠ ଖୋଳ ।

**ଉପେକ୍ଷା** - ତ୍ୟାଗ, ବର୍ଜନ, ବହହେଳା, ଅସ୍ୱୀକାର ।

**ଉବୁରିବା** - ଉଦ୍ଧାର ପାଇବା, ରକ୍ଷା ପାଇବା।

**ଊର୍ମି** - ଲହରୀ, ଢେଉ ।

**ଉଲଟାରାମ୍ଭା** - କଦଳୀଗଛ ମୂଳଗଣ୍ଡିର ଓଲଟ ଖଣ୍ଡ । ଏହାକୁ ନାରୀମାନଙ୍କ ଜଂଘ ସହିତ ତୁଳନା କରାଯାଏ ।

**ଉସତ** - ଆନନ୍ଦିତ, ଔତ୍ସୁକ୍ୟର ସହିତ ।

**ଋଷିଦେବଅଂଶ** - ଭଗବାନ୍ ବିଷ୍ଣୁ ଜ୍ଞାନମାର୍ଗର ପ୍ରଚାର ନିମିତ୍ତ ଅତ୍ରି ଓ ଅନସୂୟାଙ୍କ କୋଳରେ ଜାତ ଦତ୍ତାତ୍ରେୟ ନାମକ ପୁତ୍ର ଅର୍ଥରେ ବ୍ୟବହୃତ ।

**ଏକାଙ୍ଗରାଜପଣ** - ଏକ ଚକ୍ରବର୍ତ୍ତୀ ।

**ଏଘାନ୍ତି** - ଏହି ସମୟରେ ।

**ଏହାଉଁ** - ଏହା ବ୍ୟତୀତ, ଏତଦ୍‌ବ୍ୟତୀତ ।

**ଏହ୍ନେ-** ଏସନେ ।

**ଓଡ଼ିଆଣି** - ଅଣ୍ଟାସୂତା, ଚନ୍ଦ୍ରହାର, ରସନା, ମେଖଳା ।

**କଟୀମେଖଳା** - ଅଣ୍ଟାସୂତା, ଚନ୍ଦ୍ରହାର ।

**କପୋଳ** - ଗଣ୍ଡଦେଶ, ଗାଲ ।

**କବରୀ** - କେଶପାଶ ।

**କବରୀଭାର** - ଖୋଷା ।

**କମଳା ଆଦି ଦେବୀ** - ଶ୍ରୀ, ପୁଷ୍ଟି, ବାଣୀ, କାନ୍ତି, କୀର୍ତ୍ତି, ତୁଷ୍ଟି, ଇଳା, ଉର୍ଜ୍ଜା, ବିଦ୍ୟା, ଅବିଦ୍ୟା, ଇଚ୍ଛା, ମାୟାଦି ଦ୍ୱାଦଶ ଦେବୀ ।

**କମଳିନୀ** - ଲକ୍ଷ୍ମୀ, ପଦ୍ମନିବାସିନୀ ।

**କମ୍ବୁପାଣି** - ବିଷ୍ଣୁ, କମ୍ବୁ ଅର୍ଥାତ୍ ଶଙ୍ଖ ।

**କର** - ହାତ, ହାତୀର ଶୁଣ୍ଢ ।

**କରବାଳ** - ତରବାରୀ, ଖଡ୍ଗ ।

**କରୀକୁମ୍ଭ-** ହାତୀମୁଣ୍ଡର ଦୁଇପାଖ ଉଚ୍ଚସ୍ଥାନ।

**କରୀଦଶନ** - ହାତୀଦାନ୍ତ ।

**କର୍ଦ୍ଦମ** - କାଦୁଅ, ବ୍ରହ୍ମାଙ୍କ ପୁତ୍ର ପ୍ରସିଦ୍ଧ ମହର୍ଷି ।

**କଳତ୍ର** - ସ୍ତ୍ରୀ, ଭାର୍ଯ୍ୟା ।

**କାକର ଘରେ ପିକ** - କୋଇଲି ନିଜ ନିଜ ନିଜ ଅଣ୍ଡାକୁ ଫୁଟାଇ ନ ପାରି, କୁଆ ବସାରେ ଥୋଇଦେଇ ଆସେ । କିନ୍ତୁ କୁଆ ଅଣ୍ଡାଟିକୁ ଫୁଟାଇ ଦେବା ପରେ ଓ ପକ୍ଷୀ ହେବା ମାତ୍ରେ ଛୁଆଟି କୁହୁକୁହୁ ରାବ କରି କୋଇଲି ପାଖକୁ ଉଡ଼ିଯାଏ । ଗୋପୀ ମାନଙ୍କ ଦ୍ୱାରା ଲାଳିତ ପାଳିତ ଶ୍ରୀକୃଷ୍ଣ ମଥୁରା ଚାଲିଯାନ୍ତେ, ଏପରି ଛଳୋକ୍ତି କରାଯାଇଛି ।

**କାପ-** ଏକପ୍ରକାର କାନର ଅଳଙ୍କାର ।

**କାଳଜଙ୍ଗ-** ଭୟଙ୍କର କାଳରୂପକ ସର୍ପ ।

**କୁବଳୟାପୀଡ଼** - ମଥୁରାର ରଙ୍ଗସଭାର ଦ୍ୱାରଦେଶରେ ଶ୍ରୀକୃଷ୍ଣ ବଳରାମଙ୍କୁ ମାରିବା ପାଇଁ କଂସ ଦ୍ୱାରା ରଖାଯାଇଥିବା ହସ୍ତୀର ନାମ ।

**କୁଶକେତୁ** - ବ୍ରହ୍ମା ।

**କୃତାନ୍ତ** - କ୍ରୂର, ଯମ ।

**କୋଳ** - ବରାହ, ଘୁଷୁରୀ ।

**କ୍ରୋଡ** - କୋରଡ଼, ଗଛରେ ଥିବା ଗର୍ତ୍ତ ।

**ଖ** - ଆକାଶ ।

**ଖଗ-** ପକ୍ଷୀ ।

**ଖଗବୈରି** - ସର୍ପ ।

**ଖଗନାଥ** - ଗରୁଡ଼ ।

**ଖଚ-** ତୁଗୁଲୀ, ମିଛକଥା ।

**ଖଣା** - ଖମା, ଖାଲ, ଖମଣା, ଗଡ଼ଖାଇ ।

**ଖଦ୍ୟୋତ-** ଜୁଳୁଜୁଳିଆ ପୋକ ।

**ଖେମଟା** - ନୃତ୍ୟ ବିଶେଷ ।

**ଗଛି** - ସମାନ ।

**ଗଣ୍ଠିଛନ୍ଦ** - ଶିରାପ୍ରଶିରାର ଗଣ୍ଠିଯୁକ୍ତ ଶରୀର

**ଗତେ** - ଅତୀତରେ ।

**ଗଦ** - ଔଷଧ, ବିଷଦୂରକାରୀ ଏକ ପ୍ରକାର ଗୁଳ୍ମର ଚେର ।

**ଗନ୍ତାଘର** - ଭଣ୍ଡାରଘର ।

**ଗନ୍ତାୟତ** - ସରଘରିଆ, ଭଣ୍ଡାରରକ୍ଷକ ।

**ଗାଲତୁର** - ଦୁଇଗାଲରେ ହାତ ମାରି ଶବ୍ଦ କରିବା ।

**ଗୁଆଳୀ** - ଗୋପାଳୁଣୀ ।

**ଗୁଳଗୁଞ୍ଜା** - ହାମୁଡ଼େଇ ଆଗକୁ ଓ ପଛକୁ ଝୁଲିଝୁଲି ଚାଲିବା ।

**ଗୁହ** - ଗୋଇଠିର ଉପର ଅଂଶ ।

**ଗୋଈ-** ଗୋପାଳୁଣୀ, ଗୋପୁରନାରୀ ।

**ଗୋଡ଼ଝୁଣ୍ଟିଆ** - ଗୋଡ଼ରେ ପିନ୍ଧା ଯାଉଥିବା ବାଜେଣୀ ଯୁକ୍ତ ଅଳଙ୍କାର ।

**ଗୋତ୍ରହତ** - ନିଜ ବଂଶର ହତ୍ୟାକାରୀ।

**ଗୋରଜ-** ଧୂଳି, ଗୋରୁ ଖୁରା ବାଜି ଯେଉଁ ଧୂଳି ଉଡେ ।

**ଘଟୁଆରି** - ହାଟୁଆରି, ହାଟକୁ ଯାଇ ବେପାର କରୁଥିବା ବ୍ୟକ୍ତି ।

**ଘର୍ମ-** ଝାଳ, ଖରାତାପ ।

**ଘାଏ-** ଆଘାତରେ ।

Dr. Sudhanshu Sekhar Mishra

**ଘୋଷ** - ନଦୀକୂଳରେ ଥିବା ଗୋପାଳ ମାନଙ୍କ କୁଡ଼ିଆ । ଶବ୍ଦ, ଘୋଷଣା, ଗମ୍ଭୀର ଧ୍ୱନୀ ।
**ଚକ୍ରପବନ** - ଘୂର୍ଣ୍ଣିବାତ୍ୟା, ଖଣ୍ଡିଆଭୂତ ।
**ଚକ୍ଷୁଶ୍ରବା** - ଯେ ଆଖିଦ୍ୱାରା ଶବ୍ଦ ଗ୍ରହଣ କରେ - ସର୍ପ ।
**ଚତୁର ରସ** - ଧର୍ମ, ଅର୍ଥ, କାମ, ମୋକ୍ଷ ରୂପକ ଚାରିଗୋଟି ସୁଗନ୍ଧ ଦ୍ରବ୍ୟ ।
**ଚତୁଃସମ** - ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ ଆଦି ଚାରିଗୋଟି ସୁଗନ୍ଧ ଦ୍ରବ୍ୟ ।
**ଚିରାଳ** - ବସ୍ତ୍ର, ଧ୍ୱଜା, ପତାକା ।
**ଚୂଡ଼ାମଣି** - ଶ୍ରେଷ୍ଠ, ମୁକୁଟର ମଣି ।
**ଛଦ୍ମ** - ଛଳାନ ।
**ଛାୟାକାନ୍ତ** - ସୂର୍ଯ୍ୟ, ସୂର୍ଯ୍ୟଙ୍କ ଦ୍ୱିତୀୟା ପତ୍ନୀଙ୍କ ନାମ ଛାୟା । ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞା ସୂର୍ଯ୍ୟଙ୍କ ପତ୍ନୀ ଥିଲେ । କିନ୍ତୁ ସେ ସ୍ୱାମୀ ସମାଗମ ସମୟରେ ସୂର୍ଯ୍ୟଙ୍କ ତେଜ ସହ୍ୟ କରିପାରୁନଥିଲେ । ତେଣୁ ସେ ନିଜ ଛାୟାକୁ ଜୀବନ୍ୟାସ ଦେଇ, ସୂର୍ଯ୍ୟଙ୍କ ନିକଟରେ ରଖାଇ, ନିଜର ତିନୋଟି ସନ୍ତାନଙ୍କୁ ତା' ଦାୟିତ୍ୱରେ ଦେଇ ସକଳ ତଥ୍ୟ ଗୋପନ ରଖିବା କାଇଁ ତାକୁ ଉଦେଶ ଦେଇଥିଲେ । ନିଜେ ବନକୁ ଯାଇ ସୂର୍ଯ୍ୟଙ୍କ ତେଜ ସହ୍ୟ କରିବାର କ୍ଷମତା ଅର୍ଜନ କରିବାକୁ ତପସ୍ୟାରେ ମଗ୍ନ ହେଲେ । ସୂର୍ଯ୍ୟ ଏ ରହସ୍ୟ ଆଦୌ ବୁଝି ନା ପାରି, ଛାୟା ସହିତ ମିଳିତ ହେଲେ । ତାଙ୍କ ଔରସରୁ ଶନୈଶ୍ଚର ଆଦି ତିନୋଟି ସନ୍ତାନ ଜାତ ହେଲେ । ଛାୟା ସଂଜ୍ଞାଙ୍କ ଉଦେଶ ଭୁଲି ଯାଇ, ନିଜ ସନ୍ତାନଙ୍କୁ ଅଧିକ ଆଦର କଲେ । ସଂଜ୍ଞାଙ୍କର ଯମ ସମେତ ତିନୋଟି ସନ୍ତାନ ନିତାନ୍ତ ଅବହେଳିତ ଅବସ୍ଥାରେ କାଳଯାପନ କଲେ । ସଂଜ୍ଞାଙ୍କ ଜ୍ୟେଷ୍ଠ ସନ୍ତାନ ଯମ ମାତତାଙ୍କ ପାତର ଅନ୍ତର ନୀତୀତିର ପ୍ରତିବାଦକଲେ । ଶେଷକୁ ଯମ ଓ ଛାୟାଙ୍କ ମଧ୍ୟରେ ବିବାଦ ଘନେଇଲା । ଦିନେ କ୍ରୋଧରେ ଯମ ମାତାଙ୍କୁ ଗୋଇଠାଟିଏ ମାରିଲେ । ଛାୟା ଖୁବ୍ ରାଗିଯାଇ ଯମକୁ କୁଷ୍ଠବ୍ୟାଧି ହେଉ ବୋଲି ଅଭିଶାପ ଦେଲେ । କଥା ଯାଇ ସୂର୍ଯ୍ୟଙ୍କ କାନରେ ପଡ଼ିଲା । ସେ ଅଷ୍ଟର୍ଯ୍ୟ ହୋଇ ଭାବିଲେ, ମାଆ କେବେ ପୁଅକୁ ଏପରି ନିଷ୍ଠୁର ଅଭିଶାପ ଦେବ ନାହିଁ, ଏହା ସ୍ଥିର କରି, ସେ ଛାୟାକୁ ଡକାଇ ସତ୍ୟ ପ୍ରକାଶ କରିବାକୁ ନିର୍ଦ୍ଦେଶ ଦେଲେ । ଛାୟା ସମସ୍ତ ରହସ୍ୟ ଉଦ୍‌ଘାଟନ କରିଦେଇ ଅନ୍ତର୍ଦ୍ଧାନ ହୋଇଗଲା ।
**ଛାୟାପତି** - ସୂର୍ଯ୍ୟ ।
**ଜଳଧିତନୟାନିବାସ** - ଲକ୍ଷ୍ମୀଙ୍କ ବାସସ୍ଥାନ । ଜଳଧି- ସମୁଦ୍ର, ତନୟା= କନ୍ୟା-ଲକ୍ଷ୍ମୀ, ନିବାସ= ବାସସ୍ଥାନ ।
**ଜଳାଳବାଟି** - ଝରକା, ଗବାକ୍ଷ ।
**ଜଳାଧିପତି** - ବରୁଣ ।
**ଜୀମୂତ**- ମେଘ ।
**ଝରୀ**- ନାଡଲଗା ଜାଳ, ଗଡୁଲୁଚିଆ ।
**ଝୀନପତନୀ**- ପତଳା ପାଟଲୁଗା ।
**ଟିକାଏ**- ଟିକିଏ , ଅଳ୍ପ ।
**ଟିପିବା** - ହାତୀ ଚଳାଇବା, ଲେଖିବା, ନକଲ କରିବା । ଟିପଇ ଅର୍ଥାତ୍ ହାତୀ ଚଳାଇ
**ଡ଼ଗ** - ପୋଖରୀ, ଜଳାଶୟ ।
**ତଣ୍ଡୁଳ** - ଚାଉଳ ।
**ତାପନ** - ସୂର୍ଯ୍ୟ ।
**ତରାସ** - ଶୀଘ୍ର, ତେଜ, ଭୟଭୀତ ।
**ତାଟ** - ଡାଲା, ଟାଙ୍ଗୁଡ଼ି ।
**ତାଣ୍ଡବ** - ପୁରୁଷମାନଙ୍କ ଉଦଣ୍ଡ ନୃତ୍ୟ, ଶିବଙ୍କ ନୃତ୍ୟ ।
**ତିନିବର୍ଗ** - ଧର୍ମ, ଅର୍ଥ, କାମ ।
**ତିନିମୂଳ**- ସତ୍ତ୍ୱ, ରଜ, ତମ ରୂପକ ତିନିଗୋଟି ଚେର ବା ମୂଳ ।
**ତିମିର**- ଅନ୍ଧକାର ।
**ତୁଙ୍ଗ** - ଉଚ୍ଚ ।
**ତୁଲ୍ୟବୟସ** - ସମାନ ବୟସ, ଏକ ସମୟରେ ଜନ୍ମ ।
**ତୁରଙ୍ଗଶାଳା** - ଘୋଡ଼ାଶାଳ ।
**ତୁଳାପୁରୁଷ ଦାନ** - ତରାଜୁର ଗୋଟିଏ ପଟେ ଦାନ ଦେଉଥିବା ବ୍ୟକ୍ତିଙ୍କୁ ବସାଇ ଅନ୍ୟପଟେ ଦାନନଦ୍ରବ୍ୟ ରୂପେ ସୁନା, ରୁପା, କଂସା, ପିତଳ, ଧାନ ଓ ଅନ୍ୟାନ୍ୟ ଶସ୍ୟ ତଉଲି କରି ଦାନ ଦେବାକୁ ତୁଳାପୁରୁଷ ଦାନ କୁହାଯାଏ ।
**ତୃତୀୟଗଣ**- ତମୋଗୁଣ ।
**ତ୍ରିଦଶ** - ଦେବତା, ଦେବ ।
**ତ୍ରିମଣ୍ଡିଗଭା** - ମୁଣ୍ଡର ଚୂଳକୁ ତିନି ଭାଗ କରି ଖୋଷା କରିବା ସଙ୍ଗେ ସଙ୍ଗେ ସେଥିରେ ଫୁଲ ସଜାଇବା । ତିନୋଟି ଗଭାଥିବା ଫୁଲହାର ।
**ତ୍ରାସି** - ଭୟ ଦେଖାଇ, ତେଜ ଦେଖାଇ ।
**ଦଇବତ** - ଦୈବତ, ଦେବତା ।
**ଦଣ୍ଡଆସୀ** - ଗ୍ରାମଜଗୁଆଳ, ଚୌକୀଦାର ।
**ଦଶପତ୍ର**- ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ନାଗ, କୂର୍ମ, କୃକଳ, ଦେବଦତ୍ତ, ଧନଞ୍ଜୟ ମିଶି ଦଶପତ୍ର ହୁଅନ୍ତି ଅଥବା ପଞ୍ଚଜ୍ଞାନେନ୍ଦ୍ରିୟ ଓ ପଞ୍ଚକର୍ମେନ୍ଦ୍ରିୟଙ୍କୁ ଦଶପତ୍ର କୁହାଯାଏ ।
**ଦାମୋଦର** - ଦାମ ଅର୍ଥାତ୍ ବନମାଳା, ଯାହାଙ୍କ ଉଦରରେ ଶୋଭାପାଏ - ଶ୍ରୀକୃଷ୍ଣ, ସୁଦାମା ନାମକ ଶ୍ରୀକୃଷ୍ଣଙ୍କ ଅନ୍ୟତମ ସଖା ।
**ଦିନିକର** - ସୂର୍ଯ୍ୟ ।
**ଦ୍ୱିଜପକ୍ଷୀ** - ଜୀବାତ୍ମା ଓ ପରମାତ୍ମା ।
**ଦୁସ୍ତର** - ଯହିଁରୁ ଅତି କଷ୍ଟକର ଉଦ୍ଧାର ମିଳେ, କଷ୍ଟସାଧ୍ୟ, ଅପାର ।
**ଦୁହୁଣୀ** - କ୍ଷୀର ଦୁହିଁବା ପାତ୍ର ।
**ଦ୍ୱାଦଶବନ** - ବୃନ୍ଦାବନ, ତାଳବନ, ଭାଣ୍ଡୀର ବନ, ଖଦୀରବନ, କଦମ୍ବବନ, ମଧୁବନ, କୁମୁଦବନ, କାମ୍ୟବନ, ଭଦ୍ରବନ, ବିଲ୍ୱବନ, ଲୌହବନ, ମହବନ । ଏହି ବାର ଗୋଟି ବନ ବୃନ୍ଦାବନର ପରିସରରେ ଥିଲା । ଏଥିରେ ଶ୍ରୀକୃଷ୍ଣ ସଖାମାନଙ୍କ ଗହଣରେ ବାଳକ୍ରୀଡ଼ା

Dr. Sudhanshu Sekhar Mishra

କରୁଥିଲେ ।
ଦ୍ୱାଦଶ ଯୁଣ - ବାରଯୋଜନ, ଅଠଚାଳିଶ କୋଶ, ଛୟାନବେ ମାଇଲ ।
ଧନୁ - କାଣ୍ଡ, ଏକ ପ୍ରକାର ମାପ ଅର୍ଥାତ୍ ଗୋଟିଏ ଧନୁକୁ ସଳଖ କରିଦେଲେ ଚାରିହାତ ବା ଛଅଫୁଟ ଲମ୍ୱ ହୁଏ । ସେତିକି ଲମ୍ୱ ।
ଧନୁଘୋଷ - ଧନୁର ଟଙ୍କାର ଶବ୍ଦ ।
ଧନୁଯାତ୍ରା- ଶ୍ରୀକୃଷ୍ଣଙ୍କୁ ବଧ କରିବା ପାଇଁ ମଥୁରାର ରାଜା କଂସ ଗୋଟିଏ ଗୃହ ମଧ୍ୟରେ ଏକ ଅଦ୍ଭୁତ ଧନୁ ରଖାଇ, ଯାତ୍ରା ଆରମ୍ଭ କରିଥିଲେ । ସେ ଧନୁରେ ଗୁଣ ଦେବା ଏକପ୍ରକାର ଅସମ୍ଭବ ଥିଲା । ସେହି ଉଲକ୍ଷ୍ୟେ କୁବଳୟାପୀଡ଼ ନାମକ ଗୋଟିଏ ମତୁଆଲ ହାତୀ ଓ ଚାଣୁର, ମୁଷ୍ଟିକ ଆଦି ମାଲମାନଙ୍କୁ ସଜ୍ଜିତ କରି ରଖିଥିଲେ । ସେହି ଧନୁଯାତ୍ରା ଦେଖିବା ପାଇଁ କଂସ ରାଜା ଅକ୍ରୁରକୁ ନିଜ ରଥ ଦେଇ ଗୋପପୁରକୁ ପଠାଇଥିଲେ । ଶ୍ରୀକୃଷ୍ଣ ବଡ଼ଭାଇ ବଳରାମ ଓ ଗୋପାଳ ବାଳକଙ୍କ ଗହଣରେ ମଥୁରାକୁ ଆସି କଂସକୁ ବଧ କରିଥିଲେ । ଏପରି ଏକ ଯାତ୍ରା ଅବିଭକ୍ତ ସମ୍ୱଲପୁର ଜିଲ୍ଲାର ବରପାଲୀ ଠାରେ ପ୍ରତିବର୍ଷ ଧନୁ ମାସରେ ଅନୁଷ୍ଠିତ ହୋଇଆସୁଛି ।
ଧାତିକାର - ଅତିଶୀଘ୍ର ।
ନଉଡ଼ି - ଗୋଟିଏ ପ୍ରକାର ପ୍ରାଚୀନ ମାପ, ଗୋଟିଏ ବଡ଼ ହାଣ୍ଡିରେ ହାଣ୍ଡିଏ ।
ନବଖଣ୍ଡ ମେଦିନୀ - ଭାରତବର୍ଷ, ଇନ୍ଦ୍ରଦ୍ୟୁମ୍ନ, କସେରୁ, ତାମ୍ରପର୍ଣ୍ଣି, ଗଭସ୍ତିମାନ୍ ନାଗଦ୍ୱୀପ, ସୌମ୍ୟ - ଦ୍ୱୀପ, ଗନ୍ଧର୍ବଦ୍ୱୀପ, ବରୁଣଦ୍ୱୀପ ।
ନବନେତ୍ର - ନଅଗୋଟି ଛିଦ୍ର ବା ଶରୀରର ନଅଟି ଦ୍ୱାର । ଯଥା - ମୁଖ, ଆଖି-୨, କାନ-୨, ନାକପୁଡ଼ା-୨, ଲିଙ୍ଗ ଓ ଗୁହ୍ୟଦ୍ୱାର ।
ନଳିନୀ - ପଦ୍ମିନୀ ।
ନିଉଛାଳି - ପୂଜା, ବନ୍ଦନା, ଆରତି, ନେହୁରା, ବିନୀତ ଭାବରେ ଜଣାଇବା ।
ନିର୍ଝର - ଝରଣା ।
ନିତମ୍ୱ- ପିଚା, ଅଣ୍ଟାର ତଳଭାଗ ।
ନିଦାଘ - ଖରା ।
ନରୋପି - ନିରୀକ୍ଷଣ କରି ।
ନିଶମୁଖ - ସନ୍ଧ୍ୟା ।
ନିଷେଧବନ୍ଧ- ଯାହା ବାରଣ କରାଯାଇଛି ।
ନିସତ - କ୍ଳାନ୍ତ, ଅସକ୍ତ, ଉପାୟହୀନ ।
ନୀଳଜୀମୂତ - କଳାହାଣ୍ଡିଆ ମେଘ, ନୀଳମେଘ ।
ନୀଳପତନୀ ନେଳିଆ ପାଟଲୁଗା ।
ନୀଳମେଘୀ - ଘନନୀଳ ବର୍ଣ୍ଣର ଶାଢ଼ୀ ।
ନୀଳାମ୍ୱର - ନୀଳବର୍ଣ୍ଣର ଲୁଗା, ନେଳିଆ ଆକାଶ, ବାଳରାମ ।
ନୀହାର - ବରଫ, ତୁଷାର, କାକର, ଶିଶିର ।
ପଡ଼ିତାଳ - ଅସ୍ତ୍ରକୁ ଅସ୍ତ୍ରବାଜିବା, ସଙ୍ଗୀତ ଶାସ୍ତ୍ରର ତାଳ ବିଶେଷ ।
ପଞ୍ଚଶିକଡ଼ - ପାଞ୍ଚଗୋଟି ଶିକୁଳି ବିଶିଷ୍ଟ ଅର୍ଥାତ୍ କାନ, ନାକ, ଜିଭ, ଚର୍ମ, ଆଖି ।
ପଞ୍ଚାଳି - ଅସୁବିଧା, ଦୋଦୋପାଞ୍ଚ, ଧନ୍ଦି ହେବା ।
ପତି - ଧାଡ଼ି ।
ପୟ- କ୍ଷୀର, ଜଳ ।
ପରିଚାରୀ- ପୋଇଲୀ, ଦାସୀ, ଚାକରାଣୀ ।
ପରୁଷ - କଠୋର, ଦେହଜଳା ।
ସର୍ବକାଳ - ଯାତ୍ରାଦିନ, ପୂର୍ଣ୍ଣିମା ଓ ଅମାବାସ୍ୟା ଦିନ ।
ପହରଣ - ବସ୍ତ୍ର, ଲୁଗାପଟା, ଆଭରଣ ।
ପହଲାଇ - ହାତହଲାଇ, ଗର୍ବରେ ଛାତି ଫୁଲାଇ ।
ପାଣୋଇ - ଜୋତା, କଠଉ, ଚର୍ମ, ପାଦୁକା ।
ପାଦଜଳ- ବିଷ୍ଣୁଙ୍କ ପାଦରୁ ଉତ୍ପନ୍ନ ଗଙ୍ଗା ଶିବଙ୍କ ମସ୍ତକରେ ପଡ଼ି, ଭାଗୀରଥଙ୍କ ପଛେ ପଛେ ଯାଉ ସଗରଙ୍କ ପୁତ୍ରମାନଙ୍କୁ ଉଦ୍ଧାର କରିଥିଲେ । ଗଙ୍ଗାଜଳରେ ଅଭିଷେକ କଲେ ଶିବ ସନ୍ତୁଷ୍ଟ ହୁଅନ୍ତି ବୋଲି ପୌରାଣିକୀ ବାର୍ତ୍ତା ରହିଛି । ତେଣୁ ପାଦଜଳ ଅର୍ଥ ଗଙ୍ଗାଜଳ ।
ପାହୁଡ଼ - ଗୋଡ଼ବଳା, ପାଦ ଅଳଙ୍କାର ।
ପିଞ୍ଜିବା - ଟିକିଟିକି କରିବା, ତୁଳାକୁ ପିଞ୍ଜି ଶେଯ ଓ ମାଣ୍ଡି ପ୍ରଭୃତି କରାଯାଏ ।
ପୀଢ଼ - ବାଜି ମାରିବା, ଉଚ୍ଚସ୍ଥାନ, ଆସ୍ଥାନ ପୀଠ, ଚଉତରା ।
ପୀତ- ହଳଦିଆ ରଙ୍ଗ ।
ପୀତବାସ - ବିଷ୍ଣୁ, କାରଣ ସେ ପୀତବର୍ଣ୍ଣର ଲୁଗା ପିନ୍ଧନ୍ତି - ପୀତବର୍ଣ୍ଣର ଲୁଗା ପିନ୍ଧନ୍ତି 'ପୀତବସନ ବନମାଳୀ' ।
ପୁଣ୍ୟଶ୍ଳୋକ- ସାଧୁସନ୍ଥମାନେ ଯାହାଙ୍କ କୀର୍ତ୍ତି ଗାନ କରନ୍ତି । ସଜ୍ଜନ, ଦେବତା, ବିଷ୍ଣୁ ।
ପୁରନ୍ଦର - ଇନ୍ଦ୍ର ।
ପୁଳିନ - ବାଲିପୂର୍ଣ୍ଣ ସ୍ଥାନ, ବାଲୁକାମୟ ନଦୀ ଓ ସମୁଦ୍ରତୀର ।
ପୂତିଗନ୍ଧ - ଅତି ଦୁର୍ଗନ୍ଧ, ପଚାସଢ଼ା ଗନ୍ଧ ।
ପୃଥୁ - ମୋଟା, ସ୍ଥୂଳ, ବେଣରାଜାଙ୍କ ପୁତ୍ର ।
ପ୍ରଣତ - ଅବନତ, ନମସ୍କାରକୃତ ।
ପ୍ରଣତଦେହୀ - ସର୍ବଦା ପ୍ରଣାମ କରୁଥିବା ବ୍ୟକ୍ତି ।
ପ୍ରଥମ ଯୁଗ - ସତ୍ୟଯୁଗ ।
ପ୍ରପାନ - ସ୍ୱାଦଯୁକ୍ତ ପାନୀୟ, ସର୍ବତ ।
ପ୍ରମାଦ - ଭ୍ରମ, ଦୁଃଖ, ଅପରାଧ ।
ପ୍ରମାଦୁ - ଦୁଃଖରୁ, ଅତ୍ୟାଚାରରୁ ।
ପ୍ରସ୍ରବଣ - ଝରଣା, ଗିରିନଦୀ, ଛୋଟନଦୀ ।
ପ୍ରାସ - ପରାସ, ଦରଜ, ବ୍ୟଥା ।
ଫୁଟି - କଷପାଇ । ଫଳ ବିଶେଷ ।
ବଣିଜାର - ବିକ୍ରୟକାରୀ, ବେପାରୀ ।
ବତ୍ସା- ବାଛୁରୀ ।
ବତ୍ସାଚରଣଜଳ - ବାଛୁରୀ ଖୁରାରେ ଗାତ ହୋଇ ଯେତିକି ଜଳ ରହେ ।
ବରହି - ବର୍ହି, ମୟୁର ।

Dr. Sudhanshu Sekhar Mishra

**ବର୍ଗ ଉତ୍ତମ** - ବଡ଼ଜାତି ।
**ବାଞ୍ଛାକଳ୍ପତରୁ** - ଯାହା ଇଚ୍ଛାକଲେ ଯେଉଁ ବୃକ୍ଷ ଦେଇପାରେ, କଳ୍ପବୃକ୍ଷ ।
**ବାୟେ** - ପବନରେ ।
**ବାରସ୍ୱତୀ** - ଇନ୍ଦ୍ରଙ୍କ ପୁରୀ, ସ୍ୱର୍ଗ ।
**ବାରିଧି**- ସମୁଦ୍ର ।
**ବାଳକହସ୍ତୀ** - ହାତୀଛୁଆ ।
**ବାଲିବନ୍ତ**- ବାଲିକୁଦ, ବାଲିଚଟାଣ ।
**ବାସବ** - ଇନ୍ଦ୍ର ।
**ବିକଚ**- ଫୁଟିଲା, ପ୍ରସ୍ଫୁଟିତ ।
**ବିଟପ** - ବୃକ୍ଷଶାଖା, ଜାର ପୁରୁଷ, ଅସତ୍ ଚରିତ୍ରର ଲୋକ ।
**ବିଟପୀ** - ବୃକ୍ଷ, ଅସତୀ ନାରୀ, ଚରିତ୍ରହୀନା ନାରୀ ।
**ବିଡ଼ିଆ** - ଚୂନ ସହିତ ମସଲାଦିଆ ପାନ ।
**ବିଡ଼ିବା** - ପରୀକ୍ଷା କରିବା ।
**ବିନତା ସୁତ** - ଗରୁଡ଼ ।
**ବିଶ୍ୱକେତୁ** - ବ୍ରହ୍ମା ।
**ବିଷାଃବଳି** - ବିଷପିଇ ମାରିବା, ନିର୍ଦ୍ଦୟ ଭାବରେ ମାରିବା ।
**ବୀରୁଧ** - ଲତା, ଗୁଳ୍ମ, ଛୋଟଗଛ ।
**ବୃନ୍ଦାରକ** - ଦେବତା ।
**ବୃଷଣ** - ଅଣ୍ଡକୋଷ, ମୁଷ୍କ, ଲିଙ୍ଗ ।
**ବୃଷ୍ଣିବଂଶ** - ଯାଦବମାନଙ୍କ ସାତବଂଶ ମଧ୍ୟରେ ବୃଷ୍ଣିବଂଶ ଅନ୍ୟତମ ।
**ବେନିଫଳ** - ପାପପୁଣ୍ୟ ଓ ସୁଖଦୁଃଖ ରୂପକ ଦୁଇଟି ଫଳ ।
**ବୋବି** - ରଡ଼ି, ଗର୍ଜନ ।
**ବ୍ୟସନ** - ଦୁଃଖ, ବିଳାସ ।
**ବ୍ରହ୍ମ ପ୍ରଦୀପ** - ବ୍ରହ୍ମଜ୍ଞାନ ତତ୍ତ୍ୱ ।
**ଭାଜିଲାଧାନ ପ୍ରାୟ** - ଧାନକୁ ଭାଜିଦେଲେ ଯେପରି ତାହା ଆଉ ଗଜା ହୁଏ ନାହିଁ, ଠିକ୍ ସେହିପରି, କୃଷ୍ଣଭକ୍ତମାନଙ୍କର ଜନ୍ମ ମରଣର ହୁଏ ନାହିଁ ।
**ଭାଣ୍ଡୀର** - ବରଗଛ ।
**ଭାବସେବକ** - ବିଷ୍ଣୁଙ୍କ ଭକ୍ତିଭାବରେ ବିଭୋର ହୋଇଥିବା ବ୍ୟକ୍ତି ।
**ଭିଆଣ** - ସୃଷ୍ଟି ।
**ଭୁଦେବ** - ବ୍ରାହ୍ମଣ ।
**ଭେକ**- ବସ୍ତ୍ରଭୂଷଣ, ବେଙ୍ଗ ।
**ମକରନ୍ଦ**- ମହୁ, ଅମୃତ ।
**ମଘବାନ** - ଇନ୍ଦ୍ର ।
**ମଢ଼ିଆଳ**- ଲୁଗାପଟା, ପାଲଟା ଲୁଗା ।
**ମରୋହି** - ଭୋଜନ, ଖାଇବା ।
**ମତ୍ତମାତଙ୍ଗ**- ମତୁଆଲ ହାତୀ ।
**ମହୀରୁହ** - ବୃକ୍ଷ
**ମୁହାଁସ** - ଆସ୍ପର୍ଦ୍ଧା, ଗର୍ବ, ମୁହାଁ ମୁହିଁ ହେବାର ସାହସ, ମୁଖଲଜ୍ଜା ।
**ମୃଗ** - ହରିଣ, ପଶୁ ।
**ମୃତବନ୍ତ** - ମାଟିପିଣ୍ଡୁଳା ସଦୃଶ ।
**ଯଜ୍ଞଭୋକତା** - ଯଜ୍ଞେଶ୍ୱର, ବିଷ୍ଣୁ ।
**ଯାମଳାର୍ଜ୍ଜୁନ** - ନଳକୁବେର ଓ ମଣିଗ୍ରୀବ ନାମକ ଯକ୍ଷ ଅପ୍ସରାମାନଙ୍କ ସହିତ ଜଳକ୍ରୀଡ଼ା କରୁଥିବା ସମୟରେ ନାରଦଙ୍କୁ ଦେଖି ଭଦ୍ର ବ୍ୟବହାର କଲେନାହିଁ । ତହୁଁ ନାରଦ ଅଭିଶାପ ଦେଲେ - ଦୁଇଟି ଅର୍ଜ୍ଜୁନ ବୃକ୍ଷ ହୋଇ ମର୍ତ୍ତ୍ୟରେ ଜନ୍ମ ହେବାପାଇଁ । ଉଦ୍ଧତ ଯୁବକ ଦ୍ୱୟଙ୍କ ବିନୀତ ପ୍ରାର୍ଥନାରେ ନାରଦ ସନ୍ତୁଷ୍ଟ ହୋଇ ପୁଣି ଅଭିଶାପ ଖଣ୍ଡନ ପାଇଁ କହିଲେ - ତୁମେ ଦୁହେଁ ଯାମଳ ଅର୍ଜ୍ଜୁନ ବୃକ୍ଷ ହୋଇ ଗୋପପୁରରେ ନନ୍ଦରାଜାଙ୍କ ଦ୍ୱାରଦେଶରେ ଜାତ ହେବ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ପାଦ ଲାଗିଲେ ତୁମର ଅଭିଶାପ ଖଣ୍ଡନ ହେବ ।
**ଯୁକତ** - ଯୁକ୍ତିଯୁକ୍ତ, ଠିକ୍ ।
**ଯୋଗଅଂଶ** - ଭଗବାନ ବିଷ୍ଣୁ ମହର୍ଷି କର୍ଦ୍ଦମ ଓ ଦେବହୂତୀଙ୍କ କୋଳରେ ଜାତ ହୋଇ କପିଳ ନାମ ଧାରଣ କରିବା ସଙ୍ଗେ ସଙ୍ଗେ ସାଂଖ୍ୟାଯୋଗର ପ୍ରଚାର କରିଥିବାରୁ ତାଙ୍କୁ ବିଷ୍ଣୁଙ୍କର ଯୋଗଅଂଶ ବୋଲି କୁହାଯାଏ ।
**ରଜନୀନାଥ** - ଚନ୍ଦ୍ର ।
**ରତ୍ନମେଖଳା** - ରତ୍ନରେ ତିଆରି ଅଣ୍ଟାସୂତା ବା ଚନ୍ଦ୍ରହାର ।
**ରମିଲେ**- ଖେଳାକଲେ, କ୍ରୀଡ଼ାକଲେ
**ରାଜନବଂଶ** - ରାଜାଙ୍କ ବଂଶ, ପ୍ରସଙ୍ଗ ଅନୁସାରେ ଶ୍ରୀରାମ ରୂପରେ ବିଷ୍ଣୁ ରାଜନବଂଶ ଅର୍ଥାତ୍ ଦଶରଥଙ୍କ ସୂର୍ଯ୍ୟବଂଶରେ ଜନ୍ମ ଗ୍ରହଣ କରିଥିଲେ ।
**ରାଜନିଯୋଗ** - ରାଜସେବା, ରାଜାଙ୍କ ଖଟଣି ।
**ରାଢ଼**- କଠୋର ହୃଦୟବାନ୍ ବ୍ୟକ୍ତି, ନିର୍ଦ୍ଦୟ, କ୍ରୁର ।
**ରାତ୍ରପାଳ** - ଚୌକୀଦାର, ଦଣ୍ଡୁଆସି ।
**ରାତ୍ରମାନେ** - ରାତ୍ରିକାଳରେ ।
**ରାହୁରେଖ** - ମଗର ଆକୃତିର କଳାଚିହ୍ନ, ବାଳକ ଓ ଯୁବତୀମାନଙ୍କ ଗଣ୍ଡଦେଶରେ ଏ' ପ୍ରକାର କଳାଚିତା ସୌନ୍ଦର୍ଯ୍ୟର ଅଭିବୃଦ୍ଧି ନିମିତ୍ତ ଲେଖା ଯାଇଥାଏ ।
**ରିଷ୍ଟ** - ଗ୍ରହଦୋଷ ।
**ରୁହାଇବା** - ରଖାଇବା, ଅଟକାଇବା ।
**ରୋଳ** - ଛୋଟଖୁଣ୍ଟ, କାଷ୍ଠଖଣ୍ଡ, ପାଟିତୁଣ୍ଡ ।
**ରୋହିଣୀସୁତ** - ରୋହିଣୀ ନାମକ ବସୁଦେବଙ୍କ ପତ୍ନୀ କଂସର ଡରରେ ମଥୁରାରୁ ପଳାଇ ଆସି ଗୋପପୁରରେ ଲୁଚିଥିଲେ । କଂସକୁ ଠକାଇବା ପାଇଁ ଯୋଗମାୟା ବିଷ୍ଣୁଙ୍କ ଆଦେଶରେ ଦେବକୀଙ୍କ ସପ୍ତମ ଗର୍ଭ ହରଣ କରି ନେଇ, ରୋହିଣୀଙ୍କ ଗର୍ଭରେ ରଖାଇଥିଲେ । ତାଙ୍କରି ଗର୍ଭରୁ ବଳରାମ ଜନ୍ମ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ରୋହିଣୀସୁତ ବୋଲି କୁହାଯାଏ ।
**ଲେହି** - ଚାଟି, ଲେହିବା-ଚାଟିବା, ଏହା ସଂସ୍କୃତରେ ଲେହ ଶବ୍ଦରୁ ଆନୀତ ।
**ଲୁଚାଏ ବା ଲୋଚାଏ** - ମୋଡ଼ାଏ, ଥୋଡ଼େ ।
**ଲୋକମାତ** - ସୁରଭୀ, ଲକ୍ଷ୍ମୀ, "ଇନ୍ଦିରା ଲୋକମାତା ମା କମଳା ଶ୍ରୀ ହରପ୍ରିୟା" ।
**ଶକୁନ** - ଚିହ୍ନ, ସଂକେତ, ଲକ୍ଷଣ ।
**ଶୟଳ** - ଭୂଭାଗ, ପୃଥିବୀ ।
**ଶଲ** - ଶତ୍ରୁ, ବିରୋଧୀ ।

Dr. Sudhanshu Sekhar Mishra

**ଶଲ୍ୟ** - କଣ୍ଟା, ତୀକ୍ଷ୍ଣଶର ।

**ଶଶାଙ୍କ** - ଚନ୍ଦ୍ର ।

**ଶାଙ୍କୋଳି** - ଶିକୁଳୀ, ଲୁହାଞ୍ଜୀର ।

**ଶାରଦା** - ସରସ୍ୱତୀ ।

**ଶାର୍ଦ୍ଦୂଳ** - ବ୍ୟାଘ୍ର ।

**ଶିରଝୁଣି** - ଅତ୍ୟନ୍ତ କୁପିତ ହୋଇ, ମୁଣ୍ଡବାଳ ଛିଣ୍ଡାଇ ।

**ଶୂରବନ୍ତ** - ବୀରପଣିଆ, ବୀରତ୍ୱ ।

**ଶୃଗାଳଯାଉଅଛି ବାମେ** - ଶୁଭ ସୂଚନା ।

**ଶୋଣିତ** - ରକ୍ତ, ଲାଲ ବର୍ଣ୍ଣ ।

**ଶ୍ରୀମୁଖ** - ସମ୍ମାନିତ ବ୍ୟକ୍ତି ବା ଦେବଗଣଙ୍କ ମୁଖ । ଏଠାରେ ଶ୍ରୀମୁଖରେ ଆଦେଶ ଅର୍ଥାତ୍ ରାଜାଙ୍କ ଆଦେଶପତ୍ର - ଚିଠି ।

**ଶ୍ରୁତିପଥ** - କାନ ।

**ଶ୍ରୁତିଯୁଗଳ** - ଦୁଇ କର୍ଣ୍ଣ ।

**ଷଟ୍ କର୍ମ** - ବ୍ରାହ୍ମଣର ନିତ୍ୟକର୍ମ । ଯଜନ, ଯାଜନ, ପଠନ, ପାଠନ, ଦାନ, ପ୍ରତିଗ୍ରହ (ଦାନ ନେବା) ।

**ଷଡ଼ଅର୍ଘ୍ୟ** - ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନ, ମଧୁପର୍କ ।

**ଷଡ଼ଆତ୍ମା**- ଦେହର ଛଅଗୋଟି ଅବସ୍ଥା - ଜନ୍ମହେବା, ରହିବା, ବୃଦ୍ଧିଲାଭ କରିବା, ପରିବର୍ତ୍ତନ ହେବା, କ୍ଷୟପ୍ରାପ୍ତ ହେବା, ନଷ୍ଟ ହେବା ।

**ଷଡ଼ଜଆଦି ପଞ୍ଚସ୍ୱର** - ଷଡ଼ଜ, ମଧ୍ୟମ, ଧୈବତ, ଗାନ୍ଧାର, ଋଷଭ ଆଦି ସଙ୍ଗୀତ ଶାସ୍ତ୍ର ବର୍ଣ୍ଣିତ ପାଞ୍ଚଗୋଟି ସ୍ୱର ।

**ସଙ୍ଖାଳି** - ଅତ୍ୟନ୍ତ ପ୍ରିୟ ।

**ସଞ୍ଚ**- ସୁନ୍ଦର, ସୁଠାମ, ସୁଢ଼ଳ ।

**ସଞ୍ଚା** - ଭୋଜନ ଲାଗି ଚାଉଳ ପରିବା ଆଦି ଦେବା, ଲେଖନ ପୂର୍ବରୁ ତାଳପତ୍ର ଖେଦା, ସିଧା, କୃପଣ, ସଂଗ୍ରହ ।

**ସଞ୍ଚିଲେ** - ସଂଗ୍ରହ କଲେ, ରଖାଇଲେ, ସ୍ଥାପନ କଲେ ।

**ସପତମହୀ** - ଭୂମଣ୍ଡଳର ସାତୋଟି ଦ୍ୱୀପ - ଜମ୍ବୁ, ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ, ପୁଷ୍କର ।

**ସପ୍ତତାଳଖଣ୍ଡ**- ସାଢ଼େ ତିନି ହାତ ଶରୀର ।

**ସମ୍ପାଇ** - ସମ୍ପାଦନ କରି, ତୁଲାଇ, ଶେଷ କରି ।

**ସରିସମ** - ସମାନ, ସାଦୃଶ୍ୟ, ଅବିକଳ ।

**ସଲ ବା ଶଲ** - କ୍ଷତିକାରକ, ଶଲ୍ୟ, ଅପକାର ।

**ସର୍ବଆଡ଼ା** - ସର୍ବାଙ୍ଗ, ସମସ୍ତ ଶରୀର ।

**ସର୍ମ** - ସରମ, ଲାଜ ।

**ସାତପୁର** - ଭୂ, ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ, ଅଥବା ଅତଳ, ବିତଳ, ସୁତଳ, ରସାତଳ, ତଳାତଳ, ପାତାଳ, ମହାତଳ ।

**ସାତବକଳ** - ଶରୀରର ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ର ପ୍ରମୁଖ ସାତଗୋଟି ମୁଖ୍ୟ ପଦାର୍ଥ ।

**ସାମଳିଆ** - ଶ୍ୟାମଳ ବର୍ଣ୍ଣ, ସାଉଁଳିଆ ପ୍ରାୟ ।

**ସାରଦା ବା ଶାରଦା** - ସରସ୍ୱତୀ, ଦୁର୍ଗା ।

**ସାହେର** - ସମୁଦ୍ର ।

**ସିକ୍ତ** - ଜରଜର, ଭିଜା, ଓଦା, ଆର୍ଦ୍ର ।

**ସୀମନ୍ତ** - ସୁନ୍ଥା, ସିନ୍ଥି, ଶିରଭୂଷଣ ।

**ସୀମସ୍ଥାନ** - ମସ୍ତକ ।

**ସୁନାସୀର** - ଇନ୍ଦ୍ର ।

**ସୁନିଆଁ** - ଓଡ଼ିଆ ବର୍ଷ ଆରମ୍ଭର ପ୍ରଥମ ଦିନ, ଓଡ଼ିଶା ଗଜପତି ରାଜାଙ୍କ ଅଙ୍କ (ବର୍ଷ) ଆରମ୍ଭ ଦିନ । ଦିଲ୍ଲୀ ବାଦଶାହୀ ସନ (ବର୍ଷ) ଆରମ୍ଭ ଦିନ । ଏହି ଦିନ ରାଜା ଓ ଜମିଦାରଙ୍କ ଗୃହରେ ପ୍ରଜାମାନେ ବାର୍ଷିକ ଖଜଣା ଓ ଉପହାର ସ୍ୱରୂପ ଭେଟିଦେଇ ରାଜତନ୍ତ୍ର ଶାସନକୁ ସ୍ୱୀକୃତି ଜଣାଇଥାନ୍ତି ।

**ସୁରତ** - ନାରୀ ପୁରୁଷଙ୍କର ରତିକ୍ରୀଡ଼ା ।

**ସୁରଦ୍ରୁମ** - ଦେବବୃକ୍ଷ, ପାରିଜାତ, କଳ୍ପବୃକ୍ଷ ଆଦି ।

**ସୁରେଶ୍ୱର** - ଦେବରାଜ ଇନ୍ଦ୍ର ।

**ସୁସଞ୍ଚ** - ଅତି ସୁନ୍ଦର, ଅତି ମନୋରମ ।

**ସ୍ତନ୍ୟ** - କ୍ଷୀର, ଦୁଧ ।

**ସ୍ତବକ** - ଫୁଲ ଗୋଛା, ପୁଷ୍ପ ଗୁଚ୍ଛ ।

**ସ୍ଥବିର** - ବୃଦ୍ଧ ।

**ସ୍ମିତହାସ୍ୟ** - ଅଳ୍ପ ହାସ ।

**ହକାରିବା** - ଡ଼ାକିବା ।

**ହୟ** - ଘୋଡ଼ା, ହୟଗ୍ରୀବ, ବିଷ୍ଣୁ ।

**ହସ୍ତ** - ହାତ, ହାତୀଶୁଣ୍ଢ ।

**ହସ୍ତୀରହସ୍ତ** - ହାତୀର ଶୁଣ୍ଢ ।

**ହାଦେ** - ନିଶ୍ଚିତ ରୂପେ ।

**ହୁଳ** - ଧନୁର ଅଗ୍ରଭାଗ ।

**ହୁଳାହୁଳି** - ଧାଁ ଧଉଡ଼, ବ୍ୟତିବ୍ୟସ୍ତ ।

**ହୃଷୀକେଶ** - ଇନ୍ଦ୍ରିୟର ଅଧିଷ୍ଠାତା, ବିଷ୍ଣୁ ।

**ହେରି** - ଶୁଣି, ହେରି ଶୁଣିବା ଅର୍ଥରେ ଭାଗବତ ଓ ମହାଭାରତାଦି ଗ୍ରନ୍ଥରେ ପ୍ରୟୋଗ କରାଯାଇଛି ।

**ହଂସ** - ପରଂବ୍ରହ୍ମ, ପକ୍ଷୀ ବିଶେଷ । ବିଷ୍ଣୁ ହଂସରୂପ ଧାରଣ କରି ବ୍ରହ୍ମାଙ୍କୁ ବେଦ ଶୁଣାଇଥିବାର ପୌରାଣିକ ବାର୍ତ୍ତା ରହିଛି ।

---

Dr. Sudhanshu Sekhar Mishra

## ଦଶମ ସ୍କନ୍ଧ
### (ଦ୍ୱାରକା ଲୀଳା)

ଅକିଞ୍ଚନ - ଗରିବ, ଦୁର୍ବଳ, ନଗଣ୍ୟ

ଅକ୍ଷ - ପଶା, ପଶାକାଠି, ଅଖ, ଚକ, ପଦ୍ମବୀଜ, ଆଖି, ଗ୍ରହମାନଙ୍କ ଗତିପଥ, ବିଷୁବରେଖା ଠାରୁ ଉଭୟପାର୍ଶ୍ୱସ୍ଥ ଯେ କୌଣସି ସ୍ଥାନର କୋଣଗତ ବ୍ୟବଧାନ, ଅସ୍ଥି ।

ଅକ୍ଷକ୍ରୀଡା - ପଶାଖେଳ । ଏଠାରେ ଅକ୍ଷକ୍ରୀଡା ସମ୍ପର୍କରେ ଏକ ଆଖ୍ୟାୟିକାର ଅବତାରଣା କରାଯାଇଛି - ରୁକ୍ମିଣୀଙ୍କ ଭାଇ ରୁକ୍ମୀର ପୌତ୍ରୀ ସହିତ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧଙ୍କ ବିବାହ ସମୟରେ କଳିଙ୍ଗରାଜ ପ୍ରଭୃତି ରାଜନ୍ୟବର୍ଗ, ରୁକ୍ମୀଙ୍କ ସହିତ ଗୁପ୍ତ ମନ୍ତ୍ରଣା କରି ବଳଦେବଙ୍କୁ ପଶା ଖେଳରେ ହରାଇବା ପାଇଁ ଯୋଜନା ପ୍ରସ୍ତୁତ କଲେ । ପ୍ରଥମେ ଅବଶ୍ୟ ବଳଦେବ ହାରିଗଲେ କିନ୍ତୁ ପରବର୍ତ୍ତୀ ହୁଡରେ ବଳଦେବ ଜୟଲାଭ କରନ୍ତେ, ରୁକ୍ମୀ ଓ ତାଙ୍କ ବନ୍ଧୁମାନେ ଅଧର୍ମ ମାର୍ଗରେ ଖେଳଟି ଜିତିଛନ୍ତି ବୋଲି ଛଳନା କରି, ବଳଦେବଙ୍କୁ ଉପହାସ କଲେ । ଏହି ପ୍ରସଙ୍ଗରେ ଉଭୟପକ୍ଷରେ ବୀରମାନେ ଧର୍ମକୁ ସାକ୍ଷ୍ୟ କରନ୍ତେ ବଳଦେବ ଜିଣିଛନ୍ତି ବୋଲି ଆକାଶ ବାଣୀ ହେଲା । ତାହାକୁ ସ୍ୱୀକାର ନକରି, ରୁକ୍ମୀ, ଓ ତାଙ୍କର ଘନିଷ୍ଠ ବନ୍ଧୁ କଳିଙ୍ଗରାଜ ଦୁହେଁ ମିଶି ବଳଦେବଙ୍କୁ ଗାଳିମନ୍ଦ କଲେ ଏବଂ କଳିଙ୍ଗରାଜ ଦାନ୍ତନିକୁଟି ଉପହାସ କରିବାକୁ ଲାଗିଲେ । ବଳଦେବ ଏଥିରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ହୋଇ ପଶାକାଠି ଫିଙ୍ଗି ରୁକ୍ମୀଙ୍କି ବଧ କରିବା ସଙ୍ଗେ ସଙ୍ଗେ କଳିଙ୍ଗରାଜଙ୍କ ଦାନ୍ତ ଝଡାଇ ଦେଲେ । ରୁକ୍ମୀଙ୍କ ବନ୍ଧୁ ଅନ୍ୟ ରାଜାମାନେ ସଂଘବଦ୍ଧ ହୋଇ ବଳରାମଙ୍କୁ ଆକ୍ରମଣ କରନ୍ତେ, ସେ ଗୋଟିଏ ସୁବର୍ଣ୍ଣ ସ୍ତମ୍ଭ ଉପାଡି ସମସ୍ତଙ୍କୁ ବଧ କଲେ ।

ଅଚଳ - ପର୍ବତ, ଯାହା ସାଧାରଣରେ ଗୃହୀତ ହୁଏ ନାହିଁ ।

ଅଜରାମର - ଅଜର ବା ବୃଦ୍ଧ ନହେବା ଏବଂ ଅମର ବା ମୃତ୍ୟୁ ନହେବା ଦେବଗଣ ।

ଅଦୃଷ୍ଟପୂର୍ବ - ଯାହା ପୂର୍ବରୁ ଦେଖାଯାଇ ନାହିଁ ।

ଅଧ୍ରୁବ - ଅନିଶ୍ଚିତ, ଅସତ୍ୟ ।

ଅନଙ୍ଗ - କାମ, ମଦନ ।

ଅନଳ - ଅଗ୍ନି, ନିଆଁ ।

ଅନଳଗତି - ଆଲୋକଗତି, ଆଲୋକର ଗତି ଅତ୍ୟନ୍ତ ଦ୍ରୁତ କଥିତ ହୁଏ ।

ଅନିମିଷ - କାଳ, ପଲକଶୂନ୍ୟ, ଅଳ୍ପ ସମୟ । ଅନିମିଷାୟ କାଳାତ୍ମନେ ନମଃ ।

ଅନୁପଥ - ପରମ୍ପରାର ଅନୁସରଣ, ମାର୍ଗର ଅନୁସରଣ, ଅନୁପଥେ - ବାଟ ଖୋଜିପକରି ।

ଅନୁବନ୍ଧ - ଉପକ୍ରମ । କାମକ୍ରୀଡା ଅନୁସରଣ ।

ଅନୁବାଦେ - କଥାଅନୁସାରେ, ବଚନ ପ୍ରମାଣ ।

ଅନୁମତ - ସ୍ୱୀକୃତ, ମତନେଇ, ସ୍ୱୀକୃତିପ୍ରାପ୍ତ ହୋଇ ।

ଅନୁଯାନ - ଆଜ୍ଞା, ଅନୁମତି ।

ଅନୁଷଙ୍ଗ - ସମ୍ପର୍କ, ସମ୍ବନ୍ଧ ।

ଅନ୍ୟୋନ୍ୟ - ପରସ୍ପର, ଜଣେ ଅନ୍ୟ ଜଣକୁ ।

ଅନ୍ତକ - କାଳ, ଯମ, ମୃତ୍ୟୁଦେବ ।

ଅନ୍ତରୀକ୍ଷ - ଆକାଶ, ଶୂନ୍ୟ, ଗଗନ ।

ଅନ୍ତରେ - ଭିତରପୁରରେ, ଅନ୍ତରାଳରେ ।

ଅନ୍ଧସୁତ - ଦୁର୍ଯ୍ୟୋଧନ ।

ଅପରତୁ - ଅଦିନ, ଦୁର୍ଦ୍ଦିନ ।

ଅପବର୍ଗ - ମୋକ୍ଷ, ପୂଣ୍ୟ ।

ଅପରିମିତ - ଯାହାଙ୍କ ଐଶ୍ୱର୍ଯ୍ୟର ସୀମା ନାହିଁ, ବଡ ଧନୀ ।

ଅପାଙ୍ଗ - ବାଙ୍କଚାହାଣୀ, ଆଖିକୋଣରେ ଚାହିଁବା ।

ଅପେତଭଗ - ଯାହାର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଯାଇଛି ।

ଅପ୍ରମିତ - ଅସଂଖ୍ୟ, ଅଗଣିତ ।

ଅବକାଶ - ଛୁଟି, ଅବସର ।

ଅବଗାହ - ଡାଣିବା, ବୁଡିବା ସ୍ନାନ,

ଅବଗାହନ - ଗାଧୋଇବା, ସ୍ନାନମାର୍ଜନ ହେବା ।

ଅବଭୃଥ - ଯଜ୍ଞଶେଷରେ ତୀର୍ଥଜଳରେ ସ୍ନାନ ।

ଅବିଦିତ - ଅଜଣା, ଜ୍ଞାନନଥିବା ।

ଅଭାଜନ - ଅଯୋଗ୍ୟ, ଅପାତ୍ର, ଶାସନକ୍ଷମତା, ବିହୀନ ।

ଅଭିନବ - ନୂଆ, ନୂତନ ।

ଅଭିରାମ - ସୁନ୍ଦର, ମନୋରମ ।

ଅଭୂତବିଗ୍ରହ - ଅବିଦ୍ୟମାନ ସଂଗ୍ରାମ, ଯାହାପାଇଁ ଆଉ କୌଣସି ଯୁଦ୍ଧ ନାହିଁ, ଯାହାଙ୍କ ସହିତ ଯୁଦ୍ଧ କରିବା ପାଇଁ ଆଉ ରାଜା ନାହାନ୍ତି ।

ଅମାନିଶା - ଅମାବାସ୍ୟା, ଅନ୍ଧାର ରାତି ।

ଅମାରି - ହାତୀ ଉପରେ ପକାଯାଇଥିବା ବସିବା ସ୍ଥାନ ।

ଅମେଧ୍ୟ - ଅପବିତ୍ର, ଅଶୁଦ୍ଧ, ମଳମୂତ୍ର, ପଚାମାଂସ ଆଦି ।

ଅମ୍ବିକାପୁତ୍ର - ଅମ୍ବିକା ନାମ୍ନୀ କନ୍ୟାର କାଶୀରାଜାଙ୍କ ଝିଅ ପୁତ୍ର ଧୃତରାଷ୍ଟ୍ର ।

ଅମ୍ବିକାସୁତ - ଧୃତରାଷ୍ଟ୍ର ।

ଅଯାଦବ - ଯାଦବହୀନ, ଯାଦବଶୂନ୍ୟ ।

ଅର୍ଣ୍ଣବ - ସମୁଦ୍ର ।

ଅଳ୍ପପ୍ରାୟେତ - ଛୋଟ ଛୋଟ ଆକାର ।

ଅଲାତଚକ୍ର - ବନାଟି, କୁମ୍ଭାର ଚକ ।

ଅଶେଷବ୍ରହ୍ମାଣ୍ଡଗତି - ନିଖିଳ ଜଗତର ମୁକ୍ତିଦାତା ।

Dr. Sudhanshu Sekhar Mishra

ଅଶ୍ୱତର - ଖଚର, ଗଧ ।
ଅଷ୍ଟପାଟରାଣୀ - ରୁକ୍ମିଣୀ, ଜାମ୍ବବତୀ, ସତ୍ୟଭାମା, କାଳିନ୍ଦୀ, ମିତ୍ରବିନ୍ଦା, ସତ୍ୟା, ଭଦ୍ରା, ଲକ୍ଷଣା ପ୍ରମୁଖ ଶ୍ରୀକୃଷ୍ଣଙ୍କ ଆଠ ଗୋଟି ପତ୍ନୀ ।
ଅଷ୍ଟଲୋକପାଳ - ଇନ୍ଦ୍ର, ଅଗ୍ନି, ଯମ, ନୈଋତ, ବରୁଣ, କୁବେର, ପବନ, ଈଶାନ । ଏହାଙ୍କୁ ଅଷ୍ଟଦିକ୍‌ପାଳ ବୋଲି ମଧ୍ୟ କୁହାଯାଏ ।
ଅଂଶ - କାନ୍ଧ, ଭାଗ ।
ଆକ୍ରମି - ଆକ୍ରମଣ କରି, ଅତିକ୍ରମ କରି, ପାର ହୋଇ ।
ଆଖଣ୍ଡଳ - ଇନ୍ଦ୍ର
ଆଖଣ୍ଡଳପ୍ରସ୍ଥ - ଇନ୍ଦ୍ରପ୍ରସ୍ଥ, ଯୁଧିଷ୍ଠିରଙ୍କ ରାଜଧାନୀ ।
ଆଗମ - ତନ୍ତ୍ର ଶାସ୍ତ୍ର ।
ଆଘ୍ରାଣ - ଶୁଙ୍ଘିବା ।
ଆତ୍ମକଳା - ପରମାତ୍ମାଙ୍କ ଅଂଶରୁ ଜାତ ଦେବତା, ଋଷି ଓ ପିତୃଗଣ ।
ଆତ୍ମଭୂତ - ଆତ୍ମାତ୍ମୟ, ଆତ୍ମାରୂପେ ଘଟଘଟବାସୀ, ନିଜ ସଦୃଶ ।
ଆତ୍ମାନିକେତନ - ଆତ୍ମା ରୂପକ ଗୃହ ।
ଆତ୍ମାର ନିକଟ - ଅହଙ୍କାର ।
ଆତ୍ମାହନ - ଆତ୍ମହତ୍ୟାକାରୀ ।
ଆଦିସୂର୍ଯ୍ୟ - ବାରମାସରେ ବାରକୋଟି ସୂର୍ଯ୍ୟଙ୍କ ମଧ୍ୟରେ ପ୍ରଥମ ସୂର୍ଯ୍ୟ ବିବସ୍ୱାନ ।
ଆଧ୍ୟାତ୍ମଆଦି ତିନିତାପ - ଆଧିଭୌତିକ, ଆଧିଦୈବିକ, ଆଧ୍ୟାତ୍ମିକ ଆଦି ସଂସାରର ତିନି ପ୍ରକାର କଷ୍ଟ ।
ଆନ୍ଦୋଳେ - ଦୋହଲୁଥାଏ ।
ଆପ - ଜଳ ।
ଆପଣେ - ଆପଣାଛାଏଁ, ଆପେ ଆପେ ।
ଆବୃତ - ଘେରି ହୋଇ ରହିବା, ଚାରିପଟେ ବେଢ଼ି ରହିବା ।
ଆଭିଚାରିକ - ମାରଣ,ମୋହନ, ବଶ୍ୟ ଓ ଉଚ୍ଚାଟନ ଆଦି ତାନ୍ତ୍ରିକ କ୍ରିୟା ।
ଆମଞ୍ଚି - ଆକର୍ଷଣ କରି, ଟାଣି ।

ଆମିଷ ଉପହାର - ମାଂସ, ମତ୍ସ୍ୟାଦି ସହିତ ଭୋଜନ ଦାନ ।
ଆୟତନ - ଗୃହ ଲମ୍ବ ଓସାର
ଆରଦ୍ର - ଆର୍ଦ୍ର, ଓଦା ।
ଆଲଟ - ବ ବିଞ୍ଚଣା, ବଡ ପଙ୍ଖା ।
ଆସନାଦି ଉପଚାର - ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନ ମୁଖ ଧୋଇବା ମଧୁପର୍କ, ପୁନରାଚମନ, ସ୍ନାନ, ଗନ୍ଧ, ବସନ, ପୁଷ୍ପ, ଭୂଷଣ, ଧୂପ, ଦୀପ, ନୈବେଦ୍ୟ, ଆଳତି ବା ବନ୍ଦନା । ଏହାକୁ ଷୋଡଶ ଉପଚାର କୁହାଯାଏ ।
ଇତି - ଶେଷ, ଏହିପରି ଭାବରେ ।
ଇନ୍ଦୁର - ମୂଷା
ଇଚ୍ଛିତେ - ଅଚ୍ଛକେ ।
ଇଷ୍ଟଯଜ୍ଞ - ମନସ୍କାମନା ପୂରଣ ପାଇଁ କରାଯାଉଥିବା ଯଜ୍ଞ ।
ଉକତ - ଉକ୍ତ, କୁହାଯାଇଥିବା, କଥିତ
ଉଞ୍ଛବୃତ୍ତି - ଡାଳ, ପତ୍ର ଓ ଗୁଳ୍ମରୁ ଶସ୍ୟାଦି ସଂଗ୍ରହ କରି ଜୀବନ ଧାରଣ କରୁଥିବା ବ୍ୟକ୍ତି ।
ଉତ୍ତାନ - ଉପରକୁ ମୁହଁ କରି ଶୋଇବା, ଚିତ୍ ହୋଇ ଶୋଇବା ।
ଉଦର ଚକ୍ର - ଉଦର ମଧ୍ୟସ୍ଥିତ ମଣିପୁର ଚକ୍ର ।
ଉପମନ୍ତ୍ରୀ - ମନ୍ତ୍ରୀଙ୍କ ସହାୟକ, ବିଦୂଷକ, ପ୍ରହସନକାରୀ, ହାସ୍ୟ କୌତୁକ କରୁଥିବା ବ୍ୟକ୍ତି ।
ଉପାନହ - ଯୋତା ।
ଉପାୟନ - ଉପହାର ।
ଉପାଲମ୍ଭ - ପରିହାସ, ଗାଳି ।
ଉରଗ - ସର୍ପ ।
ଉରଗଇନ୍ଦ୍ର - ବାସୁକି ।
ଉର୍ମି - ଲହରୀ, ଢେଉ ।
ଉଲ୍ଲୋଳ - ବଡ ଲହରୀ ।
ଉଷ୍ଟ୍ର - ଓଟ ।
ଋତ୍ୱିକ - ହୋମ କରୁଥିବା ବ୍ରାହ୍ମଣ ।
ଏକଅଂଶ - ଏକମାତ୍ର ଅଂଶ, ଅନନ୍ତ

ଏକସରେ - ଗୋଟିଏ ଖିଆଲରେ ।
ଏକାନ୍ତଭୁବନ - ଅନ୍ତଃପୁର କେଳିଗୃହ ।
ଏହାନ୍ତ - ଏମାନଙ୍କୁ ।
ଓଡିଆଣି - ଅଣ୍ଟାସୂତା, ଚନ୍ଦ୍ରହାର ।
କଇତବ - କୈତବ, କପଟ, ଠକାମି ।
କଉମୋଦକୀ - କୌମୋଦକୀ, ବିଷ୍ଣୁଙ୍କ ଗଦା ।
କଙ୍କ - ବଡିଆ କାଙ୍କ ।
କଟଟି - ମଣିବନ୍ଧ, ହାତପାପୁଲିର ଉପର ଅଂଶ ।
କଟାକ୍ଷ - ଆଖିକୋଣରେ ଚାହିଁବା, ଆଖି ମାରିବା, ଆଖିରେ ଇଶାରା ଦେବା ।
କଦର୍ଥ - ବିକୃତ, ଭ୍ରଷ୍ଟ ।
କନକ - ସୁନା ।
କନ୍ୟାକାଳ - କନ୍ୟାର ଋତୁମତୀ ହେବା ସମୟ ।
କନ୍ଦୁକ - ବଲ୍, ପେଣ୍ଡୁ, ଖେଳନା ।
କପାଳକଣ୍ଟି - ନିରୁପାୟ ହୋଇ, ଦୁଃଖକୁ ମନେ ମନେ ସହ୍ୟ କରି ।
କପିଧ୍ୱଜରଥ - ଅର୍ଜୁନଙ୍କ ରଥର ନାମ, ସ୍ୱୟଂ କପିରାଜ ହନୁମାନ ଏହି ରଥର ଧ୍ୱଜ ରକ୍ଷା କରିଥାଆନ୍ତି ।
କମଳାଆଦି ଅଷ୍ଟଦେବୀ - କମଳା, ପୁଷ୍ଟି, ଶ୍ରୀ, ହ୍ରୀ, କୀର୍ତ୍ତି, ଅଜା, ରତ୍ନୀ, ସିଦ୍ଧି,
କର୍ଣ୍ଣଧାର - ନାଉରିଆ, ନାବିକ, ପରମାତ୍ମା ।
କର୍ମକରଣ କ୍ରିୟାଫଳେ - ଯଜ୍ଞାଦି କର୍ମ କଲେ ସୁଫଳ ମିଳେ । ଯାହା ଶୁଣାଯାଏ, କାନକୁ ଭଲ ଶୁଭୁଥାଏ ।
କର୍ମକାରକ - କମାର, ଲୁହାକାମ କରୁଥିବା ବ୍ୟକ୍ତି ।
କର୍ମପାଶ ହେତୁ - ଦୁର୍ଭାଗ୍ୟ ରୂପକ ଦଉଡିର କାରଣ । ଦୁର୍ଭାଗ୍ୟବଶତଃ ମନୁଷ୍ୟ ଯାହାର ବନ୍ଧନରେ ପଡିଥାଏ ।
କଳତ୍ର - ଭାର୍ଯ୍ୟା, ପତ୍ନୀ ।
କଳାରେ ଚନ୍ଦ୍ର - କଳାରେ କ୍ଷୟ ଓ ବୃଦ୍ଧି ରହିଛି, କିନ୍ତୁ ଚନ୍ଦ୍ର ଅକ୍ଷୟ ଓ ପୂର୍ଣ୍ଣ ।

Dr. Sudhanshu Sekhar Mishra

କଳିକା - କଢ଼ି, ଦରଫୁଟା ଫୁଲ ।
କହ୍ଲାର - ଶ୍ୱେତପଦ୍ମ, କଇଁଫୁଲ ।
କ୍ଷେମ -ମଙ୍ଗଳ ।
କାଳଗ୍ରସ୍ତ - ମୃତ୍ୟୁ, ଯମଦୂତଙ୍କ ହାତୁଡେ ପଡିବା, ବିପଦରେ ପଡିବା ।
କାମଚର - ଇଚ୍ଛାମାତ୍ରକେ ବିଚରଣକାରୀ, ନାରଦ, ପରଶୁରାମ ଓ ମହାବୀର ହନୁମାନ ପ୍ରମୁଖ ବାନର ।
କାମଧେନୁ - ଯେଉଁ ଦେବଧେନୁ ଯାହା ଇଚ୍ଛା କରେ ଦେଇପାରେ, ତାକୁ କାମଧେନୁ କୁହାଯାଏ । ଜମଦଗ୍ନି ଓ ବଶିଷ୍ଠ ଆଦି ମୁନିମାନଙ୍କ ଆଶ୍ରମରେ ଗୋଟିଏ ଲେଖାଏଁ କାମଧେନୁ ଥିଲେ ।
କାମପାଳ - ବଳରାମ, ବଳଭଦ୍ର ।
କାର୍ମୁକ - ଧନୁ, କୋଦଣ୍ଡ ।
କାହାର ବଳେ ଏହା ସହି - କେଉଁ ବଳବାନ୍ ଏହା ସହିପାରିବ ।
କିଞ୍ଚିତ - ଅକିଞ୍ଚିତ୍ ଅର୍ଥାତ୍ ସାମାନ୍ୟ ଅର୍ଥରେ କିଞ୍ଚିତ ପଦ ବ୍ୟବହାର କରାଯାଇଛି ।
କୁଙ୍କୁମାଙ୍କିତ - କୁଙ୍କୁମ ଲାଗିଥିବା ।
କୁଞ୍ଜର - ହସ୍ତୀ, ହାତୀ, ଗଜ ।
କୁଟିଳ କୁନ୍ତଳ - କୁଞ୍ଚୁକୁଞ୍ଚିଆ କେଶପାଶ ।
କୁନ୍ତଳ - କେଶ, ମୁଣ୍ଡର ବାଳ ।
କୁନ୍ତଳେ ଶଙ୍କିତ ନୟନ - କେଶପାଶ ଓହଳି ପଡିଥିବାରୁ, ତାକୁ ରାତ୍ରି ବୋଲି ମନେ କରି ନେତ୍ର ରୂପକ ପଦ୍ମ ମୁଦ୍ରିତ ହୋଇଯିବା ।
କୁମ୍ଭାର କୀଟ - କୁମ୍ଭାଟୁଆ ପୋକ, ଭ୍ରମର ଜାତୀୟ ଏକ ପ୍ରକାର କୀଟ ।
କୁରରୀ - କପୋତୀ, କପୋତ ପକ୍ଷୀର ସ୍ତ୍ରୀ ।
କୁରୁନାଥ - ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ
କୁଳପାଂଶୁ - କୁଳର ପାଉଁଶ ଅର୍ଥାତ୍ ବଂଶର ଅହିତକାରୀ ।
କୁଳପାଂଶୁଳ - ସାଧାରଣତଃ ଦୁଷ୍ଟପୁତ୍ର ବା ବିପଥଗାମୀ ପୁତ୍ର ଅର୍ଥରେ ବ୍ୟବହୃତ କୁଳର ପାଉଁଶ ।
କୁଳାୟ - ଶରୀର, ପକ୍ଷୀର ବସା, ନୀଡ ।
କୁଳିର -କଙ୍କଡା ।
କୁଳୀନ - ଭଲ ବଂଶରେ ଯାତ ।
କୁହୁକୀ - ଯେ କୁହୁକ କରେ, ଯେ ଭୋଜବାଜି ଦେଖାଏ ।
କୂଟଯୋଦ୍ଧା - ଅନ୍ୟାୟ ଯୁଦ୍ଧରେ ପ୍ରବୀଣ ।
କୃକଳାସ - ଏଣ୍ଡୁଅ, ବଣୁଆ ଏଣ୍ଡୁଅ ।
କୃତକର୍ମ - ପୂର୍ବରୁ ବା ପୂର୍ବ ଜନ୍ମରେ କରିଥିବା କର୍ମ
କୃତାନ୍ତ - ଯମ, ଯମଦୂତ
କୃପାପୟୋନିଧି - ଦୟାର ସାଗର, ଅତ୍ୟନ୍ତ ଦୟାଳୁ ।
କୃଷ୍ଣାଜିନ - କଳାମୃଗର ଚମଡା ।
କୋଦଣ୍ଡ - ଧନୁ ।
କ୍ରିୟାପିଣ୍ଡ - ମୃତବ୍ୟକ୍ତି ପାଇଁ ଦିଆଯାଉଥିବା ପିଣ୍ଡ ବା ଅନ୍ନଦାନ ।
ଖଗେଶ୍ୱର - ପକ୍ଷୀରାଜ ଗରୁଡ ।
ଖଡଗ - ଗଣ୍ଡା, ଗଣ୍ଡାର ଶିଙ୍ଘକୁ ଖଡଗ କୁହାଯାଏ ଏବଂ ଗଣ୍ଡାକୁ ଖଡ୍ଗୀ ନାମରେ ଅଭିହିତ କୁହାଯାଏ । କିନ୍ତୁ ଉପଧା (ଶେଷ ଅକ୍ଷର) ମିଳନ ପାଇଁ ଖଡଗ ଶବ୍ଦକୁ ଖଡ୍ଗୀ ଅର୍ଥରେ ବ୍ୟବହାର କରାଯାଇଛି ।
ଖଣ୍ଡମଣ୍ଡଳାଧିପତି - ଛୋଟିଆ ଜମିଦାର ।
ଖାଙ୍କର - କର୍କଶ, ଟାଉଁଶିଆ, ନୁଖୁରା,
ଗଦାଗ୍ରଜ - ବିଷ୍ଣୁ, ଗଦ ନାମରେ ଶ୍ରୀକୃଷ୍ଣଙ୍କର ଗୋଟିଏ ସାନଭାଇ ଥିଲା
ଗବୟ - ଗୟଳ ନାମକ ହରିଣ ଜାତୀୟ ପଶୁ ।
ଗଳାଇଦେଲେ ଜାନୁତଳେ - ଯୁଦ୍ଧରେ ହାରି ଯାଇଥିବା ବ୍ୟକ୍ତିକୁ ଜୟ କରିଥିବା ବ୍ୟକ୍ତି ଦୁଇଗୋଡ ମଝିରେ ଗଳାଇ ଦେଇ ଅପମାନିତ କରିଥାଏ । ଏହା ଏକ ଲଜ୍ଜାକର ପରାଭବ । ଜରାସନ୍ଧକୁ ଯୁଦ୍ଧରେ ହରାଇ ବଳରାମ ତାକୁ ଦୁଇଜାନୁ ତଳେ ଗଳାଇ ଦେଇ ପରାଭାବ ଦେଇଥିଲେ ।
ଗୁଣତିନି - ତ୍ରିଗୁଣ, ସତ୍ତ୍ୱ, ରଜ, ତମ ।
ଗୁଣ ବେଭାର - ଭଲ ମନ୍ଦ ବିଚାର, ଲାଭକ୍ଷତି ଚିନ୍ତା ।
ଗୁଦ - ପିଚା, ଗୁହ୍ୟଦ୍ୱାର ।
ଗୁହ୍ୟକ - ଯକ୍ଷ, କୁବେରଙ୍କ ଅନୁଚର
ଗୃଧ୍ର - ଶାଗୁଣାପକ୍ଷୀ ଯ
ଗୋଟିକା - କ୍ଷୀରରେ ତିଆରି ରାବିଡି ଜାତୀୟ ଖାଦ୍ୟ ।
ଗୋରସଫେନ - ଗୋରସ କ୍ଷୀର ଫେଣ ।
ଗ୍ରହରାଜ - ସୂର୍ଯ୍ୟ ।
ଗ୍ରାହ - କୁମ୍ଭୀର ।
ଘଡିଆଳ - ଏକ ପ୍ରକାର କୁମ୍ଭୀର ।
ଘଣ୍ଟାକର୍ଣ୍ଣ - ଶିବଙ୍କ ଅନୁଚର ବିଶେଷ
ଘନ - ମେଘ, ଗାଢ, ବହଳ ।
ଘାଲି - ନିଦର ଛଳନା କରିବା, ଟଳମଳ ଅବସ୍ଥା ।
ଘ୍ରାଣ - ନାକ, ଗନ୍ଧ ଗ୍ରହଣ ।
ଚଉବର୍ଗ - ଚତୁବର୍ଗ,- ଧର୍ମ, ଅର୍ଥ, କାମ ଓ ମୋକ୍ଷ ।
ଚଞ୍ଚୁ - ଥଣ୍ଟ
ଚତୁରଙ୍ଗ ବଳ - ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ପଦାତି ସୈନ୍ୟ ।
ଚତୁଷ୍ପଥ - ଚାରିଛକ ବିଶିଷ୍ଟ ମାର୍ଗ ।
ଚନ୍ଦ୍ରାତାପ - ଚାନ୍ଦୁଆ ।
ଚର୍ମ - ଚମଡା, ଗଣ୍ଡା ଚମଡାରେ ତିଆରି ଢାଲ ।
ଚର୍ମମାପେ - ଚର୍ମ ଦଉଡିରେ ମାପ କରି, ଜରିବ ମାପ ଅନୁସାରେ ।
ଚାପ - ଧନୁ, କୋଦଣ୍ଡ, କାର୍ମୁକ ।
ଚାରୁ - ସୁନ୍ଦର ।
ଚିତ୍ରାଗତି - ଚାଲିବା ଭଙ୍ଗୀ, ବିଚିତ୍ର ଆଚରଣ ।
ଛାୟାକାନ୍ତ - ସୂର୍ଯ୍ୟ, ଛାୟା ନାମ୍ନୀ ସୂର୍ଯ୍ୟଙ୍କର ଦ୍ୱିତୀୟା ପତ୍ନୀ ।
ଛାୟାବେଦୀ - ମଣ୍ଡପ, ଛାମୁଣ୍ଡିଆ ।
ଛାୟାରେ ଛନ୍ନ ଛାୟାକାନ୍ତ - ମେଘ ଛାଇରେ ଘୋଡେଇ ହୋଇଥିବା ସୂର୍ଯ୍ୟ ମେଘ ଛାଇରେ ସୂର୍ଯ୍ୟ ଘୋଡେଇ ହୋଇଥିବା ବେଳେ ସେହି

Dr. Sudhanshu Sekhar Mishra

କିରଣ ଜାଲରୁ ଇନ୍ଦ୍ରଧନୁର ସାତରଙ୍ଗ ସୃଷ୍ଟି ହୋଇଥାଏ ।
ଜଗତୀ - ପୋଖରୀର ମଧ ଭାଗରେ ଥିବା ଉଚ୍ଚବେଦୀ, ଦାଣ୍ଡ ଆଗରେ ଥିବା ଚଉପାଢୀ ।
ଜନି ଅସତ - ରଜୋଗୁଣରୁ ଅସତ୍ ଅସତ୍‌ରୁ ଜଗତର ସୃଷ୍ଟି ।
ଜନ୍ମମନ୍ଦିର - ବାପଘର, ପିତୃଗୃହ ।
ଜନ୍ମାଦିବିକାର - ଶୈଶବରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ।
ଜବେ - ଶୀଘ୍ରେ ।
ଜରାସୁତ - ଜରାନାମ୍ନୀ ରାକ୍ଷସୀ ଦ୍ୱାରା ପୋଡ଼ାଯାଇ, ପାଳନ କରାଯାଇଥିବା ପୁତ୍ର ଜରାସନ୍ଧ ।
ଜଳଦ - ମେଘ ।
ଜଳଦଗମ୍ଭୀର - ମେଘ ପରି ଗମ୍ଭୀର, ସାନ୍ଦ୍ର ।
ଜଳଧର - ମେଘ ।
ଜଳାକବାଟି - ଝରକା, ଗବାକ୍ଷ ।
ଜଳାରନ୍ଧ୍ର - ଝରକାର କ୍ଷୁଦ୍ରପଥ ।
ଜାତିସୁମରି - ପୂର୍ବ ଜନ୍ମର କଥା ମନେ ପକାଇ, ଜାତିସ୍ମର ଯେ ପୂର୍ବ ଜନ୍ମର କଥା ମନେ ରଖିଥାଏ ।
ଜାୟନ୍ତ - ଭରତ ।
ଜାହ୍ନବୀ - ଗଙ୍ଗା ।
ଜାହ୍ନବୀ ସୁତ - ଗଙ୍ଗା ପୁତ୍ର ଭୀଷ୍ମ ।
ଜୀବର ସଞ୍ଚରଣ ପାଶ...
ପ୍ରକାଶ - ସଂସାରରେ ଜୀବ ଗୋଟିଏ ଅନିତ୍ୟ ଓ ଅନର୍ଥପୂର୍ଣ୍ଣ ଶରୀରକୁ ତ୍ୟାଗ କରି, ଆଉ ଗୋଟିଏ ଶରୀରରେ ପ୍ରବେଶ କରୁଥିବାର ପରମ୍ପରା ରହିଛି । ଜୀବର ଗତାଗତରେ ପରମେଶ୍ୱର ଦଉଡି ସଦୃଶ ଅଟନ୍ତି ।
ଜୀମୂତ - ମେଘ ।
ଜୁର - ଛଡାଇ ନେବା,
ଝୀଙ୍ଗାସ - ଧିକ୍କାର, ପୂର୍ଣ୍ଣ ଶବ୍ଦ, ଗାଳି, ଅପମାନ ଜନକ ଭାଷା ।
ତଇଲଦ୍ରୋଣୀ - ତେଲ ଭାଣ୍ଡ ।
ତଡାଗ - ପୋଖରୀ, ଜଳାଶୟ ।

ତପନ - ସୂର୍ଯ୍ୟ ।
ତପନ ତେଜ - ସୂର୍ଯ୍ୟଙ୍କ ତେଜ, ଖରା ।
ତବପରି - ତୁମରି ସଦୃଶ, ଏଠାରେ ପରିଶବ୍ଦ ପରିଚର୍ଯ୍ୟା ଅର୍ଥରେ ବ୍ୟବହୃତ
ତମ - କ୍ରୋଧ, ଅନ୍ଧାର
ତରଙ୍ଗିଣୀ - ଲହରି ସୃଷ୍ଟି ହେଉଥିବା ନଦୀ ।
ତରଳ - ଚଞ୍ଚଳ, ପାଣିଆ, ଦ୍ରବ ।
ତିତିକ୍ଷୁ - ମୋକ୍ଷ କାମନାକାରୀ ଜନ
ତିନିତାପ -ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ତାପ ।
ତୀକ୍ଷ୍ଣ ଫଳ - ଶରର ମୁନିଆଁ ଅଗ୍ରଭାଗ
ତୁଙ୍ଗ - ବଡ, ଉନ୍ନତ ।
ତୁଯେବେ ରଜୋଗୁଣ ମଧ୍ୟେ
ଅନୁବନ୍ଧେ - ସୃଷ୍ଟି କରିବା ଅର୍ଥରେ ତୁମେ ଯଦି ମୋତେ ସାଧାରଣ ନାରୀ ରୂପେ ଗ୍ରହଣ କର, ତେବେ ତାହାହିଁ ମୋ ପକ୍ଷରେ ସୌଭାଗ୍ୟର ବିଷୟ ହେବ ।
ତୁରଙ୍ଗ - ଘୋଡା
ତ୍ରାସ - ଭୟ ।
ତ୍ରାସି - ଭୟ ଦେଖାଇ ।
ତ୍ରିଅଧିପତି - ସତ୍ତ୍ୱ, ରଜ, ତମ ଆଦି ତିନିଗୁଣର ପ୍ରଭୁ - ଈଶ୍ୱର ।
ତ୍ରିଦଶ - ଦେବତା ।
ତ୍ରିଧା ଅହଂକାର - ତାମସିକ ଅହଂକାରରୁ ପୃଥିବୀ, ଜଳ ପବନ, ଅଗ୍ନି ଆକାଶ, ରାଜସ ଅହଂକାରରୁ ପଞ୍ଚଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ ଏବଂ ସାତ୍ତ୍ୱିକ ଅହଂକାରରୁ ମନ ସୃଷ୍ଟି ହୋଇ ଷୋଡସ ତତ୍ତ୍ୱ ହୋଇଛି ।
ତ୍ରିନେମିକାଳ - ଗ୍ରୀଷ୍ମ, ବର୍ଷା, ଶୀତ ଏହି ତିନି ଋତୁକୁ ନେମିକାଳ କୁହାଯାଏ । ଏହି ତ୍ରିନେମିକାଳକୁ ପରମେଶ୍ୱରଙ୍କର ଆଖିର ଇଶାରା ବୋଲି କୁହାଯାଇଛି ।
ଦ୍ରୋଣ - ତୂଣୀର, ଶର ରଖିବା ପାଇଁ ନିର୍ମିତ ପେଡି ।
ତ୍ୱଦନୁପଥ - ପରମାତ୍ମାଙ୍କୁ ଅନୁସରଣ କରିଥିବା ମାର୍ଗ ।

ତ୍ୱଦବଗମୀ - ବ୍ରହ୍ମଙ୍କ ବିଷୟରେ ଜ୍ଞାନୀ
ତ୍ୱମକରଣ - ତ୍ୱଂ ଅକରଣ, ଅର୍ଥାତ୍ ବ୍ରହ୍ମ ଇନ୍ଦ୍ରିୟ ବିକାରବର୍ଜିତ ।
ଦଇବଜ୍ଞ - ଦୈବଜ୍ଞ, ଜ୍ୟୋତିଷ ।
ଦଇବତ - ଦୈବତ, ଦେବତା ।
ଦାଉଣୀ - ବେଙ୍ଗଳାରେ ଯୋଚା ଯାଇଥିବା ଦଉଡି ।
ଦାନପତି - ଅକ୍ରୁରର ଅପରନାମ ।
ଅନେକ ଦାନ ଦେଉଥିବାରୁ ଅକ୍ରୁରଙ୍କ ନାମ ଦାନପତି ହୋଇଛି ।
ଦାବାନଳ - ବନରୁ ଜାତ ନିଆଁ ।
ଦାମ - ମାଳା. ହାର ।
ଦାରୁକ - ଶ୍ରୀକୃଷ୍ଣଙ୍କ ସାରଥୀ ଓ ଅର୍ଜୁନଙ୍କ ଶିଷ୍ୟ ।
ଦିନମଣି - ସୂର୍ଯ୍ୟ
ଦିବାକର - ସୂର୍ଯ୍ୟ
ଦୀପସନ୍ତି - ଦୀପମାଳା ।
ଦୁରନ୍ତ - ଯାହା ଅତି କଷ୍ଟରେ ଶେଷ ହୁଏ ।
ଦୁରବଗମ - ଅତି କଷ୍ଟରେ ବୁଝିବା ଭଳି ତତ୍ତ୍ୱ, ବ୍ରହ୍ମତତ୍ତ୍ୱ ।
ଦୁରାଶୟ - ପାପ ଅଭିଳାଷ ପୂର୍ଣ୍ଣ ।
ଦୁରିତ - ପାପ, ଦୁଃଖ ।
ଦୁର୍ଗମ - କଷ୍ଟରେ ଯେଉଁଠାକୁ ଯାଇହୁଏ ।
ଦୁର୍ମଦ - ଦୁର୍ଦ୍ଧଷ, ଅତି କଷ୍ଟରେ ଯାହାକୁ ସାଧନ କରିହୁଏ ।
ଦୁସ୍ତର - ଯେଉଁଠାରୁ କଷ୍ଟରେ ଉଦ୍ଧାର ପାଇହୁଏ ।
ଦୁଳାଳ - ପୁତ୍ର
ଦୃଷ୍ଟିରୂପକୁ ଯେହ୍ନେ ଭାନୁ - ସୂର୍ଯ୍ୟ ଯେପରି ଚକ୍ଷୁ ଓ ରୂପକୁ ପ୍ରକାଶ କରନ୍ତି, ସେହିପରି ଆତ୍ମା ଦେହ ଓ ଇନ୍ଦ୍ରିୟକୁ ପ୍ରକାଶ କରିଥାଏ ।
ଦେବଆଳ - ମନ୍ଦିର ।
ଦେବମୁନି - ସନକ, ସନନ୍ଦନ, ସନାତନ, ସନତ୍ କୁମାର ଓ ନାରଦ ଆଦି ମୁନି ।
ଦେହରକ୍ଷା - ସାଞ୍ଜୁ, କବଚ ।
ଦ୍ୟୁପତୟ - ସ୍ୱର୍ଗାଦି ଲୋକରେ ଥିବା ବ୍ରହ୍ମା

Dr. Sudhanshu Sekhar Mishra

ଓ ଇନ୍ଦ୍ରାଦି ଦେବତା ।
ଦ୍ରବିଣ - ଧନ ।
ଦ୍ରବ୍ୟ - ବିଭିନ୍ନ ଜିନିଷ କିନ୍ତୁ ଏଠାରେ ଦ୍ରବ୍ୟ ଶବ୍ଦ ସ୍ଥୂଳଶରୀର ଅର୍ଥରେ ବ୍ୟବହୃତ ହୋଇଛି ।
ଦ୍ରୁପଦସୁତା - ଦ୍ରୌପଦୀ, ପାଣ୍ଡବଙ୍କ ରାଣୀ, ପାଞ୍ଚାଳୀ ।
ଦ୍ରୋଣନନ୍ଦନ - ଅଶ୍ୱତ୍ଥାମା
ଦ୍ୱାରକାସମ୍ପଦ - ଦ୍ୱାରକା ନଗରୀର ଶ୍ରେଷ୍ଠଧନ ଶ୍ରୀକୃଷ୍ଣ ।
ଧାଡିକାରେ - ଶୀଘ୍ର ।
ନଘଟତ - ଯାହା ସମ୍ଭବ ହୁଏ ନାହିଁ ।
ନଟଗତି - ନାଚୁଆମାନେ ଗୋଟିଏ ବେଶ ପିନ୍ଧି ପୁଣି ତାକୁ ପାଲଟି ଅନ୍ୟ ଗୋଟିଏ ବେଶ ପିନ୍ଧନ୍ତି ।
ନଯଦିଦଂ - ଯାହା ପୂର୍ବେ ନଥିଲା ।
ନରଦେବ - ରାଜା ।
ନାଗ - ହସ୍ତୀ, ସର୍ପ, ପର୍ବତ ।
ନାନା ସମ୍ବନ୍ଧ - ଭାଇ, ବନ୍ଧୁ, କକା, ମଉଳା, ଆଦି ସମ୍ପର୍କୀୟ । ଏଠାରେ ଶ୍ରୀକୃଷ୍ଣ ।
ନାରକାସୁର - ପୃଥ୍ୱୀ ଦେବୀଙ୍କ ପୁତ୍ର । ଭୂମିପୁତ୍ର ହୋଇଥିବାରୁ, ତାର ଅପର ନାମ ଭୌମାସୁର । ବରାହ ଅବତାର ସମୟରେ ଯେତେବେଳେ ଭଗବାନ ଦନ୍ତ ଅଗ୍ରରେ ପୃଥିବୀକୁ ଧାରଣ କରି ପାତାଳ ପୁରକୁ ଆଣିଲେ, ସେତିକିବେଳେ ବରାହନାରାୟଣଙ୍କ ସଂସର୍ଗରୁ ଭୌମାସୁର ବା ନାରକାସୁରର ଜନ୍ମ । ଶ୍ରୀକୃଷ୍ଣ ତାହାକୁ ବଧ କରି ଦେବଜନନୀ ଅଦିତୀଙ୍କ କୁଣ୍ଡଳ ଓ ବରୁଣଛତ୍ର ଆଦି ତା ଠାରୁ ଉଦ୍ଧାରିବା ସଙ୍ଗେ ସଙ୍ଗେ ଷୋଳହଜାର ଏକଶହ ରାଜକୁମାରୀଙ୍କୁ ଉଦ୍ଧାର କରି ନିଜେ ବିବାହ କରିଥିଲେ ।
ନାହୁଷ - ନାହୁଷଙ୍କ ପୁତ୍ର ଯଯାତି ।
ନିକେତ - ଗୃହ, ଆତ୍ମାନିକେତ୍ ଅର୍ଥାତ୍ ଆତ୍ମାରେ ବାସ କରୁଥିବା ପରମାନନ୍ଦ ଶ୍ରୀହରି ।
ନିଗମ - ବେଦ, ବ୍ରହ୍ମଜ୍ଞାନ ।
ନିବିଡତମ - ଘନଅନ୍ଧାର, ଅତ୍ୟନ୍ତ ଆପଣାର ।
ନିଯୋଗ - ସେବା, ସେବା ନିମିତ୍ତ ।
ନିରାୟୁଧ - ଯାହା ହାତରେ କୌଣସି ଅସ୍ତ୍ର ନାହିଁ ।
ନିରେଖ - ଅସହାୟ ।
ନିରୋଧ - ଅବରୋଧ, ଗୋପନୀୟ ସ୍ଥାନ ।
ନିରୋଳି - ନିରୀକ୍ଷଣ କରି, ଭଲ ଭାବରେ ଚାହିଁ ।
ନିର୍ବିଷୟ - ବିଷୟ ବାସନା ଯାହାକୁ ଛୁଇଁନାହିଁ ।
ନିସତ - ଶ୍ରାନ୍ତ, କ୍ଲାନ୍ତ, ସତ୍ୟ ଲଙ୍ଘନ, ଅସତ୍ୟାଶ୍ରୟୀ ।
ନୀଳକଣ୍ଠ - ମୟୂର, ଶିବ ।
ନୀଳକୁନ୍ତଳ - କଳା ମଚମଚ କେଶ
ନୀଳଜୀମୂତ - କଳାମେଘ ।
ନୀଳଲୋହିତ - ଶିବ
ନୃପଶୁ - ନର ଓ ପଶୁ ।
ନୃଷୁତବ - ମନୁଷ୍ୟମାନଙ୍କ ଠାରେ ତୁମ୍ଭର ସତ୍ତା ଅର୍ଥାତ ଈଶ୍ୱରଙ୍କ ସତ୍ତା ।
ପଞ୍ଚକୋଶ - ଶରୀର ମଧ୍ୟରେ ଥିବା ପ୍ରାଣମୟ, ଅନ୍ନମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ କୋଷ ।
ପଞ୍ଚଭୂତ - କ୍ଷିତି, ଆପ, ତେଜ, ମରୁତ, ଆକାଶ । ପ୍ରତ୍ୟେକ ପ୍ରାଣୀର ଦେହ ଓ ଜଗତର ସମସ୍ତ ଜାଗତିକ ପଦାର୍ଥ, ଏହି ପଞ୍ଚଭୂତର ନିର୍ମିତ ।
ପଞ୍ଚସ୍ୱର - ଏଠାରେ ପଞ୍ଚମ ସ୍ୱର ଅର୍ଥାତ୍ ଉଚ୍ଚ ସ୍ୱର ଅର୍ଥରେ ଉଚ୍ଚ ସ୍ୱର ଅର୍ଥରେ ବ୍ୟବହୃତ ।
ପଦ୍ମଯୋନି - ବ୍ରହ୍ମା, ପଦ୍ମନାଭଙ୍କ ନାଭିକମଳରେ ଫୁଟିଥିବା ପଦ୍ମରୁ ଜାତ ହୋଇଥିବାରୁ, ବ୍ରହ୍ମାଙ୍କୁ ପଦ୍ମଯୋନି ବୋଲି କୁହାଯାଏ ।
ପଦ୍ମସମ୍ଭବା - ପଦ୍ମରୁ ଜନ୍ମ ହୋଇଥିବା ମହାଲକ୍ଷ୍ମୀ ।
ପଦ୍ମା - ଲକ୍ଷ୍ମୀ, କବି ଜୟଦେବଙ୍କ ପତ୍ନୀ ।
ପରପୁରଞ୍ଜୟ - ଶତ୍ରୁର ପୁର ଜୟକାରୀ ।
ପରିଖା - ଗଡଖାଇ, ଗଡ ବା ଦୁର୍ଗର ଚାରିପଟେ ଥିବା ଗଭୀର ନାଳ ।
ପରିଗ୍ରହ - ଗ୍ରହଣ, ଆଦରରେ ନେବା ।
ପରିଘ - ଲୌହମୁଖ ମୁଦ୍‌ଗର ।
ପରିଚର୍ଯ୍ୟା - ଆଦର କରି ପୂଜା କରିବା, ସେବା କରିବା ।
ପରିତାଳ - ତାଳକୁ ତାଳ ବାଜିବା । ଦୁଇପକ୍ଷର ବୀରଙ୍କର ମଲ୍ଲ ଯୁଦ୍ଧ ସମୟରେ ଜଣଙ୍କର ପାପୁଲିକୁ ଅନ୍ୟ ଜଣେ ଜୋର୍‌ରେ ପାପୁଲିରେ ପିଟିବା
ପରିବାରୀ - ପୋଇଲା, ଦାସୀ, ସହଚରୀ ।
ପରିମଳ - ସୁଗନ୍ଧ, ନିର୍ମଳ, ସୌରଭ ।
ପରିମାଣି - ବିଚାରକରି, କଳନା କରି ।
ପରୁଷ - କଠୋର, କର୍କଶ, କଡାକଡି ଭାବରେ ।
ପରେ - ଶତ୍ରୁଠାରେ, ଶତ୍ରୁଦ୍ୱାରା ।
ପର୍ବକାଳ-ପୂର୍ଣ୍ଣିମା ଓ ଅମାବାସ୍ୟା ସମୟ ।
ପଶୁପାଳ - ଗୋପାଳ, ଯେ ପଶୁଙ୍କୁ ପାଳନ କରେ ।
ପଶୁମାର - ବ୍ୟାଧ, ଶବର ।
ପାଟ - ରାଜସିଂହାସନ, ପ୍ରାଧାନ୍ୟ, ରେଶମବସ୍ତ୍ର ।
ପାବକ - ନିଆଁ, ଅଗ୍ନି ।
ପାହି - ପଦମର୍ଯ୍ୟାଦାବନ୍ତ, ଧାଡି ଧାଡି କରିବା ।
ପିତାମହୀ - ବାପାଙ୍କ ମାଆ ।
ପିଢି - ଗୋଡ ରଖିବା ପାଇଁ କାଠର ଉଚ୍ଚ ଆସନ, ପୀଢା, ପାଦପୀଠ, ଗୋଟିଏ ଯୁଗ ।
ପିତୃଦିବସ - ପିତୃପିତାମହଙ୍କ ମୃତ୍ୟୁଦିବସ, ଦିବସା ।
ପିତୃଭଗିନୀ - ବାପାଙ୍କ ଭଉଣୀ ।
ପିତୃଯଜ୍ଞ - ଶ୍ରାଦ୍ଧ

Dr. Sudhanshu Sekhar Mishra

ପୁରୋଡଶ - ପିଠା, ଯଜ୍ଞ ପାଇଁ ପ୍ରସ୍ତୁତ ପିଠା ।

ପୁଲିନ - ବାଲୁକାମୟ ନଦୀ ବା ସମୁଦ୍ରକୂଳ ।

ପୁଷ୍କଳ - ପବିତ୍ର ।

ପୃଥୁକ - ଖୁଦମକୁଖ, ଚାଉଳ ଭଜା ।

ପ୍ରକୃତି - ପ୍ରଜା, ପରିବେଶ, ସନ୍ତାନସନ୍ତତି, ନାରୀ ।

ପ୍ରଜାପତି - ବ୍ରହ୍ମା, ସୃଷ୍ଟିକର୍ତ୍ତା ।

ପ୍ରତିଗ୍ରହ - ଦାନଦେବା ।

ପ୍ରତିଲୋମ - ମାତାପିତା ଭିନ୍ନ ଭିନ୍ନ ଜାତିରୁ ଜାତ ସନ୍ତାନ ।

ପ୍ରଧାନପୁରୁଷ - ପ୍ରକୃତି ପୁରୁଷ ।

ପ୍ରପଞ୍ଚ - ଭ୍ରମ, ମାୟା ।

ପ୍ରପନ୍ନ - ଆର୍ତ୍ତ, ଦୁଃଖିତ, ପୀଡିତ ।

ପ୍ରପନ୍ନଜନ - ଦୁଃଖି ଲୋକ ।

ପ୍ରବର - ଗୋତ୍ରର ଶାଖା ।

ପ୍ରବାଳ - ପୋହଳା ।

ପ୍ରମଥ - ଶିବଙ୍କ ଦୂତ, କୈଳାସପୁରର ସୈନ୍ୟ, ଶିବଗଣ ।

ପ୍ରମାଦ - ଭ୍ରମ, ଭ୍ରାନ୍ତି ।

ପ୍ରସାଦ - ଅନୁଗ୍ରହ ।

ପ୍ରାକୃତ ବୈକୃତ - ଜ୍ୟୋତିଷ୍ଟୋମ ଆଦି ଯଜ୍ଞକୁ ପ୍ରାକୃତ ଯଜ୍ଞ ଓ ସୌର ଆଦି ଯଜ୍ଞକୁ ବୈକୃତ ଯଜ୍ଞ କୁହାଯାଏ ।

ପ୍ରାଗ୍ ଜ୍ୟୋତିଷପୁର - ଆସାମ ଓ ତାର ପାଖାଆଖ ଅଞ୍ଚଳ ।

ବଇଭୋଗ - ଧନ ସମ୍ପତ୍ତିର ଭୋଗ ।

ବଣିଜାର - ବ୍ୟାପାରୀ, ଯେଉଁମାନେ କିଣାବିକା କରନ୍ତି ।

ବନ୍ଧ -ବନ୍ଧନ, ସେତୁ ।

ବର୍ଣ୍ଣାଶ୍ରମୀ - ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ଆଦି ଲୋକମାନେ ।

ବଳ - ସୈନ୍ୟ, ଶକ୍ତି ।

ବଳୟ - ବଳା, ହସ୍ତଭୂଷଣ ।

ବଳିକି ଛଳା ସେହିମତ - ବାମନ ଅବତାରରେ ବିଷ୍ଣୁ ବଳିଠାରୁ ଦାନ ଗ୍ରହଣ କରି, ତାହାକୁ ପୁଣି ବନ୍ଧନ କରିଥିଲେ । ଏହା କୁଆର କାର୍ଯ୍ୟ ପରି ହୋଇଛି । କୁଆ ପିଣ୍ଡ ଅନ୍ନ ଖାଇବା ପରେ, ତାହାକୁ ଏଣେତେଣେ ବିଞ୍ଚି ଦେଇ ପୁଣି ସେହି ପବିତ୍ର ଅନ୍ନକୁ ଗୋଡରେ ଦଳିଦିଏ ।

ବଳିବଳା - ବଳିର ପୁଅ, ବାଣାସୁର ।

ବାଜି - ଘୋଡା ।

ବାଦ - ଅପବାଦ ।

ବାରନାରୀ - ବେଶ୍ୟା ।

ବାରାନିଧି - ସମୁଦ୍ର ।

ବାସବ - ଇନ୍ଦ୍ର ।

ବାହୁଟି - ବାଜୁବନ୍ଧ, ବାହୁରେ ପିନ୍ଧୁଥିବା ଅଳଙ୍କାର ବିଶେଷ ।

ବିକଟଦନ୍ତ - ଦନ୍ତବକ୍ର ନାମକ ରାଜା ।

ବିକର୍ମ - ଅକର୍ମ, ଯାହା ଭଲ କାମ ନୁହେଁ ।

ବିଜିତହୃଷୀକ - ଇନ୍ଦ୍ରିୟ ଜୟକାରୀ ।

ବିଦ୍ରୁମ - ପୋହଳା ।

ବିନ୍ଧାଣ - ମଲ୍ଲଯୁଦ୍ଧ

ବିବୁଧ - ଦେବତା, ବିଶେଷ ଜ୍ଞାନୀ ।

ବିମନ- ଦୁଃଖ, ଅନ୍ୟ ମନସ୍କତା ।

ବିମ୍ବ - ପାଣିଫୋଟକା, ଜଳବୁଦ୍‌ବୁଦ୍ ।

ବିରଞ୍ଚି - ବ୍ରହ୍ମା ।

ବିରଥ - ରଥହୀନ ।

ବିରାଟ ସୁତାସୁତ - ବିରାଟ ରାଜାଙ୍କ ଝିଅ ଉତ୍ତରାର ପୁତ୍ର ପରୀକ୍ଷିତ ।

ବିଲଗ - ପୃଥକ୍, ଅଲଗା ।

ବିଲୋଳ - ଚଞ୍ଚଳ, ଥରଥର କଣ୍ଠରେ

ବିଶ୍ରାନ୍ତ - ବିଗତ ଶ୍ରମ, ଶ୍ରମଦୂର କରିବା ।

ବିଶ୍ରୁତି - ପ୍ରସିଦ୍ଧି ।

ବିଶ୍ୱମ୍ଭର - ସଂସାରର ପାଳନ ଓ ପୋଷଣ କର୍ତ୍ତା - ବିଷ୍ଣୁ

ବିଷାଦ - ଦୁଃଖ ।

ବୁଡନ୍ତି ପୁଣି ପ୍ରକାଶନ୍ତି - ଈଶ୍ୱରଙ୍କ ମାୟାରେ ମୋହିତ ହୋଇ, ପ୍ରାଣୀମାନେ ଭିନ୍ନ ଭିନ୍ନ ଯୋନିରେ ଜନ୍ମ ହୋଇ ପୁଣି ମୃତ୍ୟୁ ବରଣ କରନ୍ତି ।

ବୃକୋଦର - ଭୀମ ।

ବୃତ୍ତିକ୍ଷେତ୍ର - ଜୀବିକା ଅର୍ଜନ ସ୍ଥାନ, ଚାଷଜମି, ଚାକିରିକ୍ଷେତ୍ର ।

ବୃନ୍ଦାରକ - ଦେବତା ।

ବୃଷଣ - ଲିଙ୍ଗ ।

ବୃଷ୍ଣିବଂଶ ଯାଦବଂଶ ଯାଦବମାନଙ୍କ ମଧ୍ୟରେ ଅନ୍ୟତମ ବଂଶ ।

ବୃହଦୁପଲବ୍ଧ - ବୃହତ ଉପଲବ୍ଧ, ବ୍ରହ୍ମ ବିଷୟରେ ଧାରଣା ।

ବେଙ୍କଟ ପ୍ରଭୁ - ବେଙ୍କଟେଶ୍ୱର, ତିରୁପତି ନାଥ, ବେଙ୍କଟାଚଳରେ ପୂଜିତ ବିଗ୍ରହ ।

ବେଣର ପିତା - ଅଙ୍ଗରାଜା ।

ବେଣର ପୁତ୍ର - ପୃଥୁରାଜା, ଯେ ପୃଥିବୀ ରୂପକ ଧେନୁକୁ ଦୋହନ କରି, ପ୍ରାଣୀମାନଙ୍କୁ ସର୍ବସମ୍ପଦ ପ୍ରଦାନ କରିଥିଲେ ।

ବେଣୀ ପ୍ରୟାଗ - ଗଙ୍ଗା, ଯମୁନା ଓ ସରସ୍ୱତୀର ସଙ୍ଗମ କ୍ଷେତ୍ର, ଏଲ୍ଲାବାଦ

ବେଦଧାମ - ବ୍ରହ୍ମା, ତାହାଙ୍କର ଚାରି ମୁଖରୁ, ଚାରୋଟି ବେଦ ଉତ୍ପତ୍ତି ହୋଇଥିଲା ।

ବେଦପୁରୁଷ - ବ୍ରହ୍ମା ଓ ବିଷ୍ଣୁ ।

ବେନି ଅୟୁତ - ଏକ ଅୟୁତ - ଦଶ ହଜାର କୋଡିଏ ହଜାର ।

ବେନିଲୋକ - ଇହଲୋକ ମର୍ତ୍ତ୍ୟ ଓ ପରଲୋକ - ସ୍ୱର୍ଗ ।

ବୈଶେଷିକ - କଣାଦ ମୁନିଙ୍କ ପ୍ରଣୀତ ଦର୍ଶନ ଶାସ୍ତ୍ର ।

ବୋଧନ୍ତି - ନିଦ୍ରାରୁ ଉଠାନ୍ତି ଓ ପ୍ରବୋଧନା ଦିଅନ୍ତି ।

ବ୍ରଜେଶ୍ୱରୀ - ବ୍ରଜ ଭୂମିର ରାଣୀ - ଯଶୋଦା ।

ବ୍ରତବଳି - ବ୍ରତଶେଷରେ କରାଯାଉ ଥିବା ପିଣ୍ଡଦାନ ଓ ବୈଶ୍ୱଦେବ ।

ବ୍ରାହ୍ମଣ୍ୟ - ବ୍ରହ୍ମଭାବାପନ୍ନ, ବ୍ରାହ୍ମଣ-ପ୍ରିୟ, ବ୍ରାହ୍ମଣ ସେବକ ।

ବ୍ରହ୍ମଣ୍ୟ ଦେବ - ବ୍ରହ୍ମ ତେଜ ବିଶିଷ୍ଟ, ବ୍ରାହ୍ମଣପ୍ରିୟ ନାରାୟଣ ।

Dr. Sudhanshu Sekhar Mishra

ବ୍ରହ୍ମସଞ୍ଚିତ ଭୋଗ - ବିଧାତା ସୃଷ୍ଟିର ସମସ୍ତ ପ୍ରକାର ଭୋଗ ।

ବ୍ରହ୍ମାସୁତ - ନାରଦ ଓ ସନକାଦି ମୁନିଗଣ ।

ବ୍ୟାଜେ - ଛଳରେ ।

ଭବ ନିଦାଘ - ସଂସାର ଯାତନା ରୂପକ ତାପ ।

ଭବିଷ୍ୟ - ଆଗତ ବିଷୟ, କିନ୍ତୁ ଏଠାରେ କଦାକାର ଓ କୁତ୍ସିତ ଅର୍ଥରେ ବ୍ୟବହୃତ (୧୦.୪୫.୧୨)

ଭର୍ଜିତ - ଭାଜି ହୋଇ ଯାଇଥିବା ଶୁଷ୍କ ହୋଇଥିବା ଦ୍ରବ୍ୟ ।

ଭାଗବତ - ମହାପୁରାଣ, ପରମବୈଷ୍ଣବ ।

ଭାଜନ - ଯୋଗ୍ୟ, ସମର୍ଥ ।

ଭାବକୁ ଆତ୍ମା ହେଉ ତୁହି - ଭକ୍ତର ଏକାନ୍ତ ଭାବରେ ବଶହୋଇ ଭଗବାନ୍ ଆତ୍ମସ୍ୱରୂପ ବା ନିଜ ଅଂଶ ପ୍ରଦାନ କରିଥାଆନ୍ତି ।

ଭାବିନୀ - ଶ୍ରଦ୍ଧା ଓ ସ୍ନେହଶୀଳା ନାରୀ ।

ଭୀଷ୍ମ ନନ୍ଦିନୀ - ରୁକ୍ମିଣୀ ।

ଭୀଷ୍ମକୁ ନ ବରିଲା ମନେ - କାଶୀରାଜଙ୍କ କନ୍ୟା ଆମ୍ବା ଶାଲ୍ୱଙ୍କୁ ବରଣ କରିବା ପାଇଁ ମନେ ମନେ ସ୍ଥିର କରିଥିଲା । ଭୀଷ୍ମ ବଳପୂର୍ବକ ଅମ୍ବା ସହିତ ତାର ଦୁଇ ଭଉଣୀ ଅମ୍ବିକା ଓ ଅମ୍ବାଳିକାକୁ ନିଜ ଭାଇ ବିଚିତ୍ରବୀର୍ଯ୍ୟ ପାଇଁ ହରଣ କରି ଆଣିଲେ । ପରେ ଅମ୍ବାର ଅଭିପ୍ରାୟ ଜାଣିପାରି, ତାକୁ ଶାଲ୍ୱଙ୍କୁ ପାଖକୁ ପଠାଇ ଦେଲେ । ସେ ଶାଲ୍ୱଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ପୁଣି ଭୀଷ୍ମଙ୍କ ନିକଟକୁ ଫେରି ଆସିଲେ । କିନ୍ତୁ ବିବାହ ନ କରିବା ପାଇଁ ଭୀଷ୍ମଙ୍କ ପ୍ରତିଜ୍ଞା କରିଥିବାରୁ, ସେ ଅମ୍ବାକୁ ଗ୍ରହଣ କଲେନାହିଁ । ତେଣୁ ଅମ୍ବା ସେହି ଜନ୍ମରେ ତପସ୍ୟା କରି, ପରଜନ୍ମରେ ଦ୍ରୁପଦଙ୍କ ପୁତ୍ର ଶ୍ରୀଖଣ୍ଡି ରୂପେ ଜନ୍ମଗ୍ରହଣ କରି, ଭୀଷ୍ମଙ୍କ ମୃତ୍ୟୁର କାରଣ ହୋଇଥିଲେ ।

ଭୁବିପୁତ୍ରପୁଣ୍ୟ - ସଂସାରରେ ପରିପୂର୍ଣ୍ଣ ଅନେକ ପୂଣ୍ୟତୀର୍ଥ ।

ଭୂତ - ପ୍ରାଣୀ,ଶରୀରଧାରୀ, ପ୍ରେତାତ୍ମା, ଅତୀତ ।

ଭୂମିସୁତ - ନାରକାସୁର ।

ଭୃଙ୍ଗ - ଭ୍ରମର ।

ଭେକ - ବେଙ୍ଗ

ଭୋଜପାଳ - ଭୋଜବଂଶର ରକ୍ଷକ କଂସ ।

ଭୂଶବା - ଭୂରିଶ୍ରବ ନାମକ ବାହ୍ଲୀକ ରାଜା ।

ମଗଧନରନାଥ - ଜରାସନ୍ଧ ।

ମଙ୍ଗଳ କଲେ - ମଙ୍ଗଳ ସୂଚକ ଗୀତ ଗାନ କଲେ ।

ମଣାଇ - ବୁଝାଇ

ମଣୋହି - ଭୋଜନ ।

ମତ୍ସର - ପରଶ୍ରୀକାତରତା

ମଧୁ - ମଦ୍ୟ, ମହୁ

ମଧୁକର ଗୃହ - ପୁଷ୍ପରେଣୁ

ମଧୁମାସ - ବୈଶାଖ ମାସ

ମନୁଷ୍ୟଲୋକ - ମର୍ତ୍ତମଣ୍ଡଳ

ମନ୍ୟୁ - କ୍ରୋଧ

ମହୀନାଥ - ରାଜା

ମହେନ୍ଦ୍ର - ପୃଥିବୀପାଳକ ରାଜା, ଇନ୍ଦ୍ର

ମାଗଧ - ମଗଧ ଦେଶ ଜାତ, ମଗଧର ରାଜା ଜରାସନ୍ଧ ରାଜାଙ୍କୁ ସ୍ତୁତି କରୁଥିବା ଭାଟ ।

ମାତୁଳଜ - ମାମୁଁପୁଅ ଭାଇ ।

ମାଧବ ଦାସ - ବୈଶାଖ ମାସ ।

ମାୟାଜଡ - ମାୟାରୂପକ ଜଡତା, ମାୟାରୂପକ ବୃକ୍ଷର ମୂଳ

ମାରିଭୟ - ବସନ୍ତ ଓ ହଇଜା ଆଦି ରୋଗଭୟ ।

ମାରୁତି - ଭୀମ, ହନୁମାନ୍

ମୀନକେତନ - ପ୍ରଦ୍ୟୁମ୍ନ କାମଦେବ ।

ମୁଣ୍ଡମୁଣ୍ଡାଇ - ଲଣ୍ଡାକରି ।

ମୁରପାଶୀ - ମୁର ନାମକ ଅସୁର ଦ୍ୱାରା ଖଣ୍ଡାରେ ନିର୍ମିତ ଜାଲ ।

ମୁଷଳ ଅବଶେଷ - ମୁନିମାନଙ୍କ ଶାପରେ ଶାମ୍ବକୁମର ଗର୍ଭରୁ ଜାତ ମୁଷଳର ଅବଶେଷ, ଜାରାଶବରର ଶରର ଅଗ୍ରଭାଗ ।

ମୂଳକମଳ ଦ୍ୱାର - ଗୁହ୍ୟଦ୍ୱାର

ମୃତବତ୍ସିକା - ବାଛୁରୀ ମରିଯାଇଥିବା ଗାଈ ।

ମୃତ୍ୟୁପିଣ୍ଡ - ଶରୀର ।

ଯଜ୍ଞବାଟ - ଯଜ୍ଞଶାଳା ।

ଯଦି ନ ସମୁ - ଯଦି ହୃଦୟରୁ ମାୟା ଉତ୍ପାଟିତ ନ ହୁଏ ।

ଯମଦାଢ - ଏକ ପ୍ରକାର ଧାରୁଆ ଅସ୍ତ୍ର ।

ଯାତୁଧାନ - ରାକ୍ଷସ

ଯାଦବ ଆଦି ସାତବଂଶ - ମଧୁ, ଭୋଜ, ଦଶାହ, ଅର୍ହ, କୁକୁର ଅନ୍ଧକ, ବୃଷ୍ଣି ଆଦି ସାତବଂଶ

ଯାର ବିଶ୍ରୁତି ଶ୍ରୁତିସ୍ତୁତି - ବେଦ ଯାହାଙ୍କ ସ୍ତୁତି ଗାନ କରୁଛି ।

ଯୋଗମାୟା - ଶ୍ରୀବିଷ୍ଣୁଙ୍କ ମନରୁ ଜାତ ମାୟାଶକ୍ତି ।

ଯୋଗେ ଯେସନେ ଇନ୍ଦ୍ରିଗଣ - ଯୋଗ ସମାଧିରେ ବସିଲେ ଚକ୍ଷୁ, ନାସା, ଜିହ୍ୱା, କର୍ଣ୍ଣ ଆଦି ଇନ୍ଦ୍ରିୟଗଣ ସ୍ୱାଭାବିକ ଗୁଣ ତ୍ୟାଗ କରି ବ୍ରହ୍ମ ଭାବନାରେ ଭାବିତ ହୁଅନ୍ତି ।

ଯୋଜନ - ଏକ ଯୋଜନ, ଚାରିକୋଶ

ଯୋନି ସମ୍ବନ୍ଧ - ଜନ୍ମ ସଂପର୍କ,

ରଜକ - ଧୋବା

ରଜନୀମୁଖ - ସନ୍ଧ୍ୟା

ରଞ୍ଜନ - କଳା ଆଦି ପିନ୍ଧାଇବା, ଖୁସି କରିବା

ରତ୍ନ ମେଖଳ - ରତ୍ନ ଖଚିତ ଅଣ୍ଟାସୂତା ବା ଚନ୍ଦ୍ରାହାର

ରବିକଳା - ସୂର୍ଯ୍ୟତେଜ

ରବିକୁମର - ସୂର୍ଯ୍ୟସୁତ ଯମ

ରବିନନ୍ଦନ - ଯମ

ରସନା - ଜିହ୍ୱା, ଅଣ୍ଟାସୂତା

ରାକ୍ଷସମତେ ବିଭା - ବିବାହ ଆଠ ପ୍ରକାର ମଧ୍ୟରେ ଅପହରଣ କରି କନ୍ୟାକୁ ବିବାହ କଲେ, ତାହାକୁ ରାକ୍ଷସ ବିବାହ କୁହାଯାଏ ।

ରାଜନ ଷଡଗୁଣ - ସନ୍ଧି, ବିଗ୍ରହ, ଯାନ,

Dr. Sudhanshu Sekhar Mishra

ଆସନ, ଦ୍ୱୈଧ, ଆଶ୍ରୟ ଏହି ଛଅଗୋଟି ରାଜାମାନଙ୍କର ଗୁଣ ।

ରାମହ୍ରଦ - କୁରୁକ୍ଷେତ୍ରରେ ଥିବା ପରଶୁରାମ ତୀର୍ଥ କାର୍ତ୍ତବୀର୍ଯ୍ୟଙ୍କ ପୁତ୍ରମାନେ ଯମଦଗ୍ନିଙ୍କ ହତ୍ୟା କରନ୍ତେ, ପରଶୁରାମ ପୃଥିବୀର ଦୁଷ୍ଟ କ୍ଷତ୍ରିୟମାନଙ୍କୁ ବଧ କରି ସେମାନଙ୍କ ରକ୍ତ କୁଣ୍ଡରେ ରଖି ପିତୃତର୍ପଣ କରିଥିଲେ । ଅଦ୍ୟାପି ତାହା ରାମହ୍ରଦ ନାମରେ ଖ୍ୟାତ ।

ରିପୁଚକ୍ର - ଶତ୍ରୁ ସମୂହ

ରୁଚିର - ସୁନ୍ଦର

ରୁଚିର ବଦନୀ - ସୁନ୍ଦର ମୁଖଶୋଭାଯୁକ୍ତ ନାରୀ

ରୁଧିର - ରକ୍ତ

ରେତ - ବୀର୍ଯ୍ୟ

ରୋମହରଷଣ - ରୋମହର୍ଷଣ, ରୋମ କମ୍ପନ, ରୋମହର୍ଷଣ ନାମକ ଜଣେ ପୁରାଣବକ୍ତା ଋଷି

ଲଗୁଡ - ଠେଙ୍ଗା, ଛୋଟବାଡି

ଲାଜା - ଖଇ, ଲିଆ

ଲାଞ୍ଛନ - ଚିହ୍ନ, ଅପନିନ୍ଦା, କଳଙ୍କ

ଲିହିବା - ଚାଟିବା, ଶୋଷିବା

ଲୀଳାୟେ - ଅବଲୀଳାକ୍ରମେ ଅଳ୍ପ ପରିଶ୍ରମରେ

ଶକ୍ୟ - ସମର୍ଥ

ଶତଘନି - ଶତଘ୍ନି, ଯେଉଁ ଶସ୍ତ୍ର ଶହେ ଜଣଙ୍କୁ ଏକ ସଙ୍ଗରେ ମାରିପାରେ

ଶବଦ ଆଦିଗୁଣ - ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ।

ଶମ - ଶାନ୍ତି

ଶଶାଙ୍କ - ଚନ୍ଦ୍ର, କର୍ପୂର

ଶଶୀ - ଚନ୍ଦ୍ର

ଶଶିପ୍ରଳୟ ନିଶି - ଅମାବାସ୍ୟା ରାତ୍ରି, ଯେଉଁ ରାତ୍ରିରେ ଚନ୍ଦ୍ର ଦେଖାଯାନ୍ତି ନାହିଁ

ଶାକମ୍ଭରୀ - ତପସ୍ୟା ସମୟରେ ଶାକ ଦ୍ୱାରା ଉଦର ପୋଷଣ କରୁଥିବା ପାର୍ବତୀ

ଶିବଗିରି - କୈଳାସ ପର୍ବତ

ଶିବମତ - ଶୈବ, କାପାଳିକ, ପାଶୁପତଙ୍କ ମତ

ଶିବିକା - ସବାରୀ, ପାଲିଙ୍କି

ଶିଶୁଗୋପ - ଗଉଡପିଲା, କୃଷ୍ଣ ଓ ବଳରାମ ଆଦି

ଶିଶୁ ପତନ ଉଦୟକାଳୀନ ସୂର୍ଯ୍ୟ, ବାଳସୂର୍ଯ୍ୟ

ଶୀତକର - ଶୀତଳ କିରଣ ଦାନକାରୀ ଚନ୍ଦ୍ର

ଶୀଳ - ସତ୍ ସ୍ୱଭାବ

ଶୂରବଳା - ଶୂରନାମକ ଯାଦବଙ୍କ ପୁତ୍ର ବସୁଦେବ

ଶୋଣିତ - ରକ୍ତ

ଶୋଷକ - ଯେ ଶୋଷିନିଏ, ଅତ୍ୟାଚାରୀ, ଧନୀବ୍ୟକ୍ତି

ଶ୍ରୀମଦ - ସମ୍ପତ୍ତିଗର୍ବ, ଧନର ଅହଙ୍କାର

ଶ୍ରୁତିଗଣ - ବେଦସମୂହ, ଋକ୍, ଯଜୁ, ସାମ, ଅଥର୍ବ

ଶ୍ରୁତିସ୍ତୁତ - ବେଦରେ ବର୍ଣ୍ଣିତ, ବେଦରେ ଗାନ ହୋଇଥିବା

ଶ୍ଲଥ - ଢିଲା

ଶ୍ମଶ୍ରୁ - ଦାଢି

ଷଡଅଇରି - କାମ,କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଆଦି ମନୁଷ୍ୟର ଛଅଗୋଟି ଶତ୍ରୁ ।

ଷଡଉର୍ମି - କ୍ଷୁଧା, ତୃଷା, ଶୋକ ମୋହ, ଜରା, ମୃତ୍ୟୁ, ଏହି ଛଅଗୋଟି ମନୁଷ୍ୟ ଜୀବନର ଛଅଗୋଟି ଉର୍ମି ବା ଲହରୀ ରୂପେ କଥିତ ହୁଏ ।

ଷଡକର୍ମ - ଯଜନ, ଯାଜନ, ପଠନ, ପାଠନ, ଦାନ ଓ ପ୍ରତିଗ୍ରହ ।

ସଇନ୍ଧବ - ସୈନ୍ଧବ, ସିନ୍ଧୁଦେଶ ଜାତ ଘୋଟକ ବିଶେଷ ।

ସଉନନ୍ଦ - ସୌନନ୍ଦ, ବଳରାମଙ୍କ ମୁଷଳର ନାମ ।

ସଙ୍କ୍ଷପି - ସଂକ୍ଷେପି ଶବ୍ଦର ପ୍ରାଚୀନ ପ୍ରୟୋଗ, ବର୍ଣ୍ଣନା କରି ।

ସତଇଦଂ - ଏହା ସତ୍ୟ ।

ସତ୍ୟବତୀ - କୈବର୍ତ୍ତ କନ୍ୟା, ପରାଶର ମହର୍ଷିଙ୍କ ପ୍ରେମିକା, ହସ୍ତିନାର ରାଜା ଶାନ୍ତନୁଙ୍କ ପତ୍ନୀ, ବ୍ୟାସଦେବଙ୍କ ମାତା ।

ସତ୍ୟବତୀ ସୁତ - ପୁରାଣମୁନି ପରାଶରଙ୍କ ଔରସ ତଥା କୈବର୍ତ୍ତ କନ୍ୟା ଯୋଜନଗନ୍ଧା ସତ୍ୟବ୍ରତୀର ପୁତ୍ର ବ୍ୟାସଦେବ ।

ସତ୍ୟବତୀ ସୁତବାଣୀ - ବେଦ, ବ୍ୟାସଦେବ ବେଦକୁ ସୁସଂଯତ କରି ଭାଗ ଭାଗ କରିଥିଲେ ।

ସତ୍ତ୍ୱ - ସୁଗୁଣ, ସାର, ନିର୍ଯ୍ୟାସ, ପରାକ୍ରମ, ସାହସ, ଆତ୍ମା, ପ୍ରାଣ ।

ସଦିବମନ - ସତ୍ ଇବ୍ ମନ ଅର୍ଥାତ୍ ଏହି ମାୟା ପ୍ରପଞ୍ଚ ଜଗତକୁ ମନ ସତ୍ ବୋଲି ମନେକରେ ।

ସଧେ - ଆଗ୍ରହରେ, ଇଚ୍ଛାରେ

ସନ୍ଦୀପନ - ବୃଦ୍ଧି କରାଇବା, ଉଦ୍ଦୀପ୍ତ କରାଇବା

ସବ୍ରୀଡ - ଲଜ୍ଜାର ସହିତ

ସବ୍ରୀଡ ହାସ - ଲଜ୍ଜାମିଶ୍ରିତ ହସ ।

ସମୀରଣ - ପବନ

ସମ୍ପାଦ - ସମ୍ପାଦନ, ଯଥାରିତୀରେ କରିବା

ସମ୍ଭ୍ରମ - ଭୟ, ସମ୍ମାନ, ଶ୍ରଦ୍ଧା ଓ ଗୌରବ ମିଶ୍ରିତ ଭାବ ।

ସମ୍ମାର୍ଜନ - ଧୋଇଦେବା, ଅଳିଆ ବାହାର କରିଦେବା, ଖରକି ଦେବା

ସଯଦ - ଯେ ଯିବ ଯେଉଁ ହେତୁରୁ

ସରିସମ - ସମାନ

ସରୋଜ - ପଦ୍ମ, ପାଦ ସରୋଜ, ପାଦପଦ୍ମ

ସଲ - ଦୁଃଖ, କଷ୍ଟଦାୟକ

ସହସ୍ର ସଂଖ୍ୟା - ଅନେକ ଅପରୀସିମ

ସାଗରନନ୍ଦିନୀ - ଲକ୍ଷ୍ମୀ

ସାତପାଞ୍ଚ - ଅଳ୍ପ ଅର୍ଥରେ ପ୍ରୟୋଗ ଦୋଦୋପାଞ୍ଚ

ସାମ - ଶାନ୍ତ

Dr. Sudhanshu Sekhar Mishra

ସାମରଥ - ସମର୍ଥବାନ, ଯୋଗ୍ୟ, ଶକ୍ତିମାନ

ସୁକୃତ ପୁଣ୍ୟ ଭଲ କାମ

ସୁକୃତ ସେତୁ - ପୁଣ୍ୟ ତଥା ପବିତ୍ର ବନ୍ଧନ

ସୁଖଞ୍ଜାଣି - ସୁନ୍ଦର ଭାବେ ଅର୍ଥାତ୍ ଭଲ ଭାବରେ ଖଞ୍ଜା ଯାଇଥିବା

ସୁଧର୍ମା ସଭା - ଦେବସଭାର ମଣ୍ଡପ, ଇନ୍ଦ୍ରଙ୍କ ଦରବାର, ଦ୍ୱାରକାର ରାଜା ଉଗ୍ରସେନଙ୍କ ସଭାମଣ୍ଡପ

ସୁଧାଆସବ - ଅମୃତ ତୁଲ୍ୟ ସ୍ୱାଦଯୁକ୍ତ

ସୁଧାରାଶି - ଅମୃତଭଣ୍ଡାର

ସୁରଦ୍ରୁମ - ଦେବବୃକ୍ଷ ମନ୍ଦାରଜାର, ପାରିଜାତ. ସନ୍ତାନ ଦ୍ରୁମ କଳ୍ପବୃକ୍ଷ

ସୁରଧୁନୀ - ଗଙ୍ଗା

ସୁରତ କାମକ୍ରୀଡା, ରତିକ୍ରୀଡା, ପ୍ରେମିକ ଓ ପ୍ରେମିକାଙ୍କ ସମ୍ଭୋଗ

ସୁସୁନ୍ଦର - ଦେବତାଙ୍କ ପରି ସୁନ୍ଦର, ଅତ୍ୟନ୍ତ ମନୋହର

ସୁଶ୍ରୋଣୀ - ମନୋହର ତଥା ବୃଷାଳ କଟିଯୁକ୍ତ ନାରୀ

ସୁଷମା - ଶୋଭା, ସୌନ୍ଦର୍ଯ୍ୟଯୁକ୍ତ

ସୁତମାଗଧ - ସ୍ତୁତିପାଠକାରୀ, ଯଶୋଗାନକାରୀ, ବନ୍ଦୀଜନ, ଭାଟ

ସେତୁ - ସଂଯୋଗକାରୀ ବନ୍ଧ

ସ୍ନେହା - ସାଞ୍ଜୁ କବଚ

ସ୍ୱକୃତ - ନିଜ କର୍ମଦ୍ୱାରା ଅର୍ଜିତ

ସ୍ୱକୃତ ବିଚିତ୍ର ନିଜ କୃତ ବିବିଧ ବସ୍ତୁ, ଈଶ୍ୱରସୃଷ୍ଟ ବିଚିତ୍ର ଯୋନି

ସ୍ୱଜନସୁତ - ନିଜ ଆତ୍ମୀୟଙ୍କ ସନ୍ତାନ ଆଦି

ସ୍ୱନ - ଶବ୍ଦ

ସ୍ଥିରଚର - ସ୍ଥାବର ଜଙ୍ଗମ ଆଦି

ସ୍ଥୂଳଶୂନ୍ୟ - ବହୁତ ଓ କମ ପରମାତ୍ମାଙ୍କ ସ୍ୱରୂପ ଅର୍ଥାତ୍ ସର୍ବବ୍ୟାପୀ ଓ ନିରାକାର

ସ୍ଫୁରଣ - କମ୍ପନ, ଥରିବା, ସ୍ଫୁରେ, ଆଖିର ପତା ଥରିଉଠେ, ଉଜ୍ଜ୍ୱଳ ତେଜ ଦେଖି ଆଖି ଝଲସି ଉଠେ

ହବିର୍ଭାଗ - ଘୃତ, ଆହୁତି, ଘିଅଧାର,

ହୟ - ଘୋଟକ, ଅଶ୍ୱ

ହାଦେ - ନିଶ୍ଚିତ ଭାବରେ

ହାନିମାନ - ହତାଦର, ଅପମାନ

ହୁଡିବା - ବାଜିରଖିବା, ଭୁଲ କରିବା

ହୁଡିଲି, ବାଜି ରଖିଲି, ସନ୍ତ୍ରମ ତ୍ୟାଗକରି କାର୍ଯ୍ୟ କଲି

ହେରି - ଦେଖି ଖୋଜି ।

---

## ଏକାଦଶ-ଦ୍ୱାଦଶ ସ୍କନ୍ଧ

ଅକାରାଦି ଚଉଦବର୍ଣ୍ଣ - ଅ ଠାରୁ ଆରମ୍ଭ କରି ଔ ପର୍ଯ୍ୟନ୍ତ ଚଉଦଟି ସ୍ୱରବର୍ଣ୍ଣ ।

ଅକୁଣ୍ଠ - ସଙ୍କୋଚଶୂନ୍ୟ, ଦ୍ୱିଧାହୀନ ।

ଅଗ୍ରହାୟଣ - ମାର୍ଗଶିର ମାସ ।

ଅଙ୍ଗଣ (ନ) - ଅଗଣା ।

ଅଜ୍ରାମର - ବୃଦ୍ଧ ନହେବା, ମୃତ୍ୟୁ ନହେବା ।

ଅଦୃଷ୍ଟ - ଭାଗ୍ୟ, ଯାହା ଦେଖି ହୁଏ ନାହିଁ, ପରମାତ୍ମା ।

ଅଧିକ୍ଷେପ - ତିରସ୍କାର ।

ଅଧୋକ୍ଷଜ - ବିଷ୍ଣୁ, ଜିତେନ୍ଦ୍ରିୟ ।

ଅଧ୍ୟାପନ - ପଢାଇବା ।

ଅନଳ - ଅଗ୍ନି, ନିଆଁ ।

ଅନାହତଚକ୍ର - ହୃଦୟ ପଦ୍ମରେ ପରମାତ୍ମାଙ୍କ ନିବାସସ୍ଥାନ, ତାହା ସୁଷୁମ୍ନା ନାଡି ମଧ୍ୟରେ ଅବସ୍ଥିତ ।

ଅନୁଦିନ - ପ୍ରତିଦିନ

ଅନୁଯାନ - ପଛେ ପଛେ ଯିବା, ନିଉଛାଳି ହେବା ।

ଅନୁସଙ୍ଗ - ବାରମ୍ବାର ଲାଗି ରହିବା, ପଛେ ପଛେ ଗୋଡାଇବା ।

ଅନ୍ଧକ - ଅନ୍ଧକ ନାମକ ଯାଦବଙ୍କର ଅନ୍ୟତମ ବଂଶ, ଚକ୍ଷୁହୀନ, ଶାସ୍ତ୍ରଜ୍ଞାନ ହୀନ ।

ଅପକ୍ୱଯୋଗ - ତପସ୍ୟା ସମ୍ପୂର୍ଣ୍ଣ ନ ହେବା ।

ଅପଚୟ - କ୍ଷତି, କ୍ଷୟ, ବିନାଶ ।

ଅପବର୍ଗ - ମୋକ୍ଷ, ଜନ୍ମରୁ ଉଦ୍ଧାର ପାଇବା ।

ଅପ୍ରମେୟ - ଯାହାକୁ ଜାଣି ହୁଏ ନାହିଁ,ଯାହାକୁ ମାପି ହୁଏ ନାହିଁ। ପରମେଶ୍ୱର, ଅଗୋଚର ।

ଅବଧାରି - ଧାରଣା କରି, ସ୍ମରଣ କରି, ଭାବି, ଚିନ୍ତାକରି ।

ଅବଲମ୍ବ - ଆଶ୍ରୟ, ନିର୍ଭର, ଭରା, ଏହା ଅବଲମ୍ବନ ଶବ୍ଦର ଅନ୍ୟରୂପ ।

ଅବିଦ୍ୟା - ଅଜ୍ଞନତା, ମୂର୍ଖତା, ମାୟାଯୁକ୍ତ ଜ୍ଞାନ, ଈଶ୍ୱର ବିରୋଧୀ ଧାରଣା ।

ଅବ୍ୟାହତ ଇଷ୍ଟଗତି - ଯାହାଙ୍କର ଗମନ ଆଗମନକୁ ବାଧା ଦିଆଯାଇପାରେ ନାହିଁ, ବା ବିରୋଧ କରାଯାଇପାରେ ନାହିଁ ।

ଅଭାବେ - ଭକ୍ତିବିହୀନ ମନରେ ।

ଅଭିଗମନ - ପଛେ ପଛେ ଯିବା, କାକୁତିମିନତି କରିବା । ସ୍ତ୍ରୀ ପୁରୁଷଙ୍କ ସମ୍ଭୋଗ ।

ଅଭିରାମ - ସୁନ୍ଦର, ମନୋହର ।

ଅଭ୍ୟଙ୍ଗ - ଅଙ୍ଗ, ଉପାଙ୍ଗ ।

ଅଭ୍ୟନ୍ତର - ଭିତର, ଉହାଡ ।

ଅମାନନା - ଅବଜ୍ଞା, ଅନାଦର ।

ଅମାନୀ - ଅଭିମାନ ତ୍ୟାଗ କରିଥିବା ବ୍ୟକ୍ତି, ଆପଣା ସତ୍କାର ଯେ ଇଚ୍ଛା କରେ ନାହିଁ ।

ଅମେଧ - ଅପବିତ୍ର, ମଳପୂର୍ଣ୍ଣ,

Dr. Sudhanshu Sekhar Mishra

ଅଖାଦ୍ୟ,ବିଜାତୀୟଖାଦ୍ୟ ।
ଅରି - ଶତ୍ରୁ, ବିରୋଧୀ ।
ଅରୀ - ଅର ଯାହାର ଅଛି - ଚକ୍ର ।
ଅରୁଣ - ସୂର୍ଯ୍ୟଙ୍କ ସାରଥି, ଅରୁଣ ପ୍ରକାଶ ଅର୍ଥାତ୍ ସୂର୍ଯ୍ୟୋଦୟ ।
ଅଳକା - କେଶଜାଳ, କୁଞ୍ଚିତକେଶ, ଝିଲିରି ବାଳ, କୁବେରଙ୍କ ପୁରୀ ।
ଅଶ୍ୱୀ - ଅଶ୍ୱିନୀ, ଅଶ୍ୱିନୀ କୁମାର ସ୍ୱର୍ଗ ବୈଦ୍ୟ ।
ଅଷ୍ଟନିଧି -ହୀରା, ନୀଳା, ମଣି, ମୁକ୍ତା, ବୈଦୂର୍ଯ୍ୟ, ପ୍ରବାଳ, ଶଙ୍ଖନିଧି, ପଦ୍ମନିଧି ।
ଅଷ୍ଟସିଦ୍ଧି - ଯୋଗରେ ଲାଭ କରାଯାଇଥିବା ଆଠ ପ୍ରକାର ସିଦ୍ଧି । ଯଥା - ଅଣିମା, ଲଘିମା, ମହିମା, ପ୍ରାକାମ୍ୟ, ଈଷିତା, ପ୍ରାପ୍ତି, ବଶିତା, କାମବଶାୟିତ ।
ଅଷ୍ଟାଙ୍ଗଯୋଗ - ଯମ, ନିୟମ, ଆସନ, ପ୍ରାଣାୟମ, ପ୍ରତ୍ୟାହାର, ଧ୍ୟାନ, ଧାରଣା, ସମାଧି ଏହି ଆଠ ପ୍ରକାରର ଯୋଗ ସାଧନକୁ ଅଷ୍ଟାଙ୍ଗଯୋଗ କୁହାଯାଏ ।
ଅଷ୍ଟାଦଶପାଟକ - ଅଠର ପ୍ରକାର ଜାତି ବିଶେଷ । ଓଡିଶାରେ ଛତିଶପାଟକ ଅର୍ଥାତ୍ ଛତିଶ ପ୍ରକାର ଜାତିର ବ୍ୟବହାର ଦେଖାଯାଏ ।
ଶ୍ରୀମନ୍ଦିରରେ ଛତିଶା ନିଯୋଗ ଅର୍ଥାତ୍ ଛତିଶ ପ୍ରକାର ସେବକ ଅଛନ୍ତି ।
ଅଷ୍ଟାଦଶସିଦ୍ଧି - ଅଷ୍ଟସିଦ୍ଧି ଅନୁବିସିଦ୍ଧି, ଦୂରଶ୍ରବଣ ସିଦ୍ଧି, ଦୂରଦର୍ଶନ ସିଦ୍ଧି, ମନୋଜବ ସିଦ୍ଧି, କାମରୂପସିଦ୍ଧି, ପରକାୟପ୍ରବେଶ ସିଦ୍ଧି, ସ୍ୱଚ୍ଛନ୍ଦ ମୃତ୍ୟୁସିଦ୍ଧି, ଅମର ସିଦ୍ଧି, ସଂକଳ୍ପସିଦ୍ଧି,ବଚନସିଦ୍ଧି । ଏହି ଅଷ୍ଟାଦଶ ସିଦ୍ଧି ପ୍ରାପ୍ତ ହେଲେ ଯୋଗୀପକ୍ଷରେ ଅଲଭ୍ୟ କିଛି ରହେ ନାହିଁ ।
ଅସଙ୍ଗୀ - ସଙ୍ଗବିହୀନ, ସଙ୍ଗଛଡା ।
ଆକାଶବର୍ଣ୍ଣ - ଶ୍ୟାମବର୍ଣ୍ଣ, ନୀଳବର୍ଣ୍ଣ, ଏହା ହେଉଛି ଶ୍ରୀକୃଷ୍ଣଙ୍କ ଶରୀରର ରଙ୍ଗ ।
ଆଗମ - ତନ୍ତ୍ରଶାସ୍ତ୍ର ।

ଆଦିଅସୁର - କଶ୍ୟପଙ୍କ ପତ୍ନୀ ଦିତିଙ୍କ ଗର୍ଭରୁ ଜାତ ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ।
ଆଧାର - ଧରି ରଖିବା ପାତ୍ର ।
ଆଧାରଶକ୍ତି - ମୂଳଶକ୍ତି, ଦୁର୍ଗା, ଇଷ୍ଟଦେବୀ ।
ଆମ୍ନାଚାରୀ - ଆମ୍ନାରେ ବିଚରଣକାରୀ, ଯୋଗୀ ।
ଆନନ - ମୁଖ
ଆନୁଆନ - ଅଧିକରୁ ଅଧିକ, ଏଣୁତେଣୁ, ଅର୍ଥହୀନ ବାଣୀ ।
ଆପ - ଜଳ
ଆବର୍ତ୍ତ - ଭଉଁରୀ, ଜଳଭଉଁରୀ ।
ଆମୋଦ - ସୁଗନ୍ଧ ।
ଆମୋଦନେ - ସୁଗନ୍ଧରେ, ଭଲ ଗନ୍ଧଯୁକ୍ତ ।
ଆୟେ - ବେଶଭୂଷଣ, ଅଳଙ୍କାର
ଆରମ୍ଭମାନ - ଭଲ ଉଦ୍ଦେଶ୍ୟ ନେଇ କାର୍ଯ୍ୟ ଆରମ୍ଭ କରିବା ।
ଆରମ୍ଭୀ - ଯେ ଯୋଗାଡ କରିପାରେ ।
ଆରୂଢଯୋଗୀ - ଯୋଗସିଦ୍ଧ ମହାତ୍ମା ।
ଆର୍ଜବ - ସରଳତା ।
ଆସ୍ତିକ - ଆସ୍ତିକ ହେଉଛନ୍ତି ନାଗକୁଳର ତ୍ରାତା ବା ରକ୍ଷକ, ପରୀକ୍ଷିତଙ୍କ ପୁତ୍ର ଜନମେଜୟ ନାଗମେଧ ଯଜ୍ଞ କରୁଥିବା ସମୟରେ, ଆସ୍ତିକ ସେ ଯଜ୍ଞରୁ ନିବୃତ ହେବା ଲାଗି ରାଜାଙ୍କୁବୁଝାଇଥିଲେ । ତେଣୁ ନାଗକୁଳରେ ଆସ୍ତିକଙ୍କ ସମ୍ମାନ ଥିଲା ଶୀର୍ଷରେ । ଏପରିକି, ଆସ୍ତିକଙ୍କ ନାମ ଜପ କଲେ ସର୍ପ ଦଂଶନରୁ ରକ୍ଷା ମିଳେ ।
ଇନ୍ଦ୍ରପ୍ରସ୍ଥ - ଆଧୁନିକ ଦିଲ୍ଲୀ ନଗରୀର ଗୋଟିଏ ଅଂଶ । ମହାଭାରତ ଯୁଗରେ ଇନ୍ଦ୍ରପ୍ରସ୍ଥ ପାଣ୍ଡବଙ୍କ ରାଜଧାନୀ ଥିଲା ।
ଇନ୍ଦ୍ରିୟପଞ୍ଚ -ପାଞ୍ଚଗୋଟି ଜ୍ଞାନେନ୍ଦ୍ରିୟ । ଯଥା - କର୍ଣ୍ଣର ଶୁଣିବା ଶକ୍ତି, ଚର୍ମର ସ୍ପର୍ଶ ଶକ୍ତି, ଚକ୍ଷୁର ଦୃଷ୍ଟିଶକ୍ତି, ଜିହ୍ୱାର ଆସ୍ୱାଦନ ଶକ୍ତି ଓ ନାସିକାର ଘ୍ରାଣଶକ୍ତି । ମୃତ୍ୟୁବରଣ କରିବା ମାତ୍ରେ, ଦେହଧାରୀ ଏହି ପଞ୍ଚଶକ୍ତି ସହିତ ମନର ଚିନ୍ତାଶକ୍ତି ହରାଇବସେ ।
ଇନ୍ଧନ - କାଠ, ସମିଧ, ଜାଳେଣି ।
ଈଶିତା - ମାୟାକୁ ଜିଣିବାର ଶକ୍ତି ।
ଉଚ୍ଛିଷ୍ଟ - ଅଇଁଠା ।
ଉଦକ - ଜଳ, କିନ୍ତୁ ୧୧/୧୪/୧୪ରେ ଜଳ ଉଦକ କାଳ କର୍ମ, ଅର୍ଥାତ୍ ଜନ୍ମରୁ ମୃତ୍ୟୁପର୍ଯ୍ୟନ୍ତ ସମସ୍ତ ସଂସ୍କାର ।
ଉନ୍ନିଦ୍ର -ଉଜାଗର
ଉପସ୍ଥ -ଲିଙ୍ଗ, ଯୋନି, ନିକଟସ୍ଥ ।
ଉପସ୍ଥାନ - ସ୍ୱାଗତ, ଆଗତ, ଆବାହନ ।
ଉଭାରି - ଛିଡା ହୋଇ ।
ଊର୍ଣ୍ଣନାଭ - ବୁଢିଆଣୀ, ମାଙ୍କଡସା ।
ଊର୍ଦ୍ଧ୍ୱରେତା - ସଂଯମୀ, ବ୍ରହ୍ମଚାରୀ, ଶିବ ।
ଉଲ୍ଲୋଳ - ଲହରୀ, ଢେଉ ।
ଉଶୀର - ବେଣାଚେର, ବେଣାଚେରକୁ ଘୋରି ପ୍ରସ୍ତୁତ କରାଯାଉଥିବା ପ୍ରଲେପ ।
ଊଷର - ଅନୁର୍ବର, ଭୂମି, ପତିତ ଭୂମି, ବାଲିଆ ଓ ପଥୁରିଆ ଭୂମି ।
ଉଷ୍ଣ - ଗରମ ।
ଉଷ୍ମ - ଗରମ, ତେଜସ୍ୱିୟ ।
ଏକାର୍ଣ୍ଣବ - ସାତଗୋଟି ସାଗର ମିଶି ଏକାକାର ହେବା, ତଥା ସସାଗରଧରା ଜଳମୟ ହେବା ।
ଏମନ୍ତ.. ସ୍ଥାପିବଶେ...
ଏହିପରି ଭାବରେ ଏକମାସ ପ୍ରାଣାୟମ କଲେ, ପ୍ରାଣବାୟୁ ବଶୀଭୂତ ହୋଇଥାଏ ।
ଏରକା - କାଣ୍ଡଶର, ତଣ୍ଡି, ମୁନିଙ୍କ ଅଭିଶାପରୁ ଯଦୁ କୁମାର ଶାମ୍ବଙ୍କ ଉଦରରୁ ଆକସ୍ମିକ ଭାବରେ ଜାତ ହୋଇଥିବା ଜ୍ୱଳନ୍ତ ଲୌହପିଣ୍ଡର ଘର୍ଷଣ ଫଳରେ ପ୍ରଭାସ କ୍ଷେତ୍ରରେ ଜାତ ହୋଇଥିବା ତ୍ରିଶୂଳ ପରି କାଣ୍ଡଯୁକ୍ତ ଗୁଳ୍ମ ।
ଐତିହ୍ୟ-ଏହି ଜଗତ ସମ୍ବନ୍ଧୀୟ ନଷ୍ଟଶୀଳ ।
ଔଦାର୍ଯ୍ୟ -ଉଦାରତା, ଉଦାରଗୁଣ, ସମଦୃଷ୍ଟି ସମ୍ପନ୍ନ ଗୁଣ ।

Dr. Sudhanshu Sekhar Mishra

କକଡାଦି ଛଅରାଶି - କକଡା, ସିଂହ, କନ୍ୟା, ତୁଳା, ବିଛା ଓ ଧନୁ ଏହି ଛଅ ଗୋଟି ଦକ୍ଷିଣାୟନରେ ପଡିଥାଏ ।
କଥାର୍ଣ୍ଣବ - କଥା ରୂପକ ସାଗର, ବହୁ କଥା ।
କନ୍ଦଳ -କଳି, କଳହ, ପରସ୍ପର ବିବାଦ ।
କର୍କଶ -ଆବୁଡାଖାବୁଡା, ଟାଣ, ଶ୍ରୁତିକଟୁ ।
କର୍ଣ୍ଣଧାର - ନାଉରିଆ, ପରଂବ୍ରହ୍ମ ।
କର୍ଣ୍ଣରୋଚନ - କାନକୁ ଭଲ ଶୁଣାଯିବା ।
କର୍ମତନ୍ତ୍ର - ସାଂସାରିକ ବିଷୟବାସନାରେ ଜଡିତ ।
କର୍ମନ୍ୟାସ -ସକଳ ପ୍ରକାର କର୍ମ ବିଷ୍ଣୁପଦାରବିନ୍ଦରେ ଅର୍ପଣ ।
କଳତ୍ର-ଭାର୍ଯ୍ୟା, ପତ୍ନୀ, ସ୍ତ୍ରୀ, ବିଷୟବାସନା ।
କଳିମଳ - କଳିଯୁଗର ପାପ, କଳିଯୁଗର ଦୁଷ୍କର୍ମ ।
କଳେବର - ଦେହ ।
କାକତୀର୍ଥ - ଅଳ୍ପ ଜଳଥିବା ଗାଡିଆ,ଦୂଷିତ ତୀର୍ଥ ।
କାଞ୍ଚନ - ସୁନା, ଧନସମ୍ପତ୍ତି ।
କାଦମ୍ବରୀ - କଦମ୍ବ ରସ, ଏକ ପ୍ରକାର ମଦ୍ୟ, ବାଣଭଟ୍ଟଙ୍କ ରଚିତ କଥାକାବ୍ୟ ।
କାମବଶାୟିତା - ଯେକୌଣସି ପ୍ରକାର କାମନାକୁ ବଶ କରିବାର ଶକ୍ତି ।
କାୟାଘର - ଶରୀରରୂପକ ଘର ।
କାର୍ପଣ୍ୟ - ଦୀନତା, କୃପଣତା, ନମ୍ରତା ।
କିରୀଟ - ମୁକୁଟ
କିଂ ଦେବ-ଦେବତା ଓ କିନ୍ନରଙ୍କ ସଂଯୋଗରୁ ଜାତ ସନ୍ତାନ ।
କୁଟିଳକୁନ୍ତଳ - କୁଞ୍ଚୁକୁଞ୍ଚିଆ କେଶ ।
କୁମାର - କାର୍ତ୍ତିକେୟ, ଅଶ୍ୱିନୀକୁମାର ।
କୁରର - ଛଞ୍ଚାଣ, ଇଗଲ ଜାତୀୟ ପକ୍ଷୀ ।
କୁଲ୍ୟା - ଛୋଟନଈ, ପରିଖା, କୁଳଜା ନାରୀ ।
କୃପାବାରିଧୀ - କରୁଣାସାଗର ।
କୈତବ - କପଟ

କୈବଲ୍ୟ - ମୋକ୍ଷ
ଦେବତା - ପ୍ରସାଦ, ସର୍ବୋଚ୍ଚ ସୁଖ ।
କୋଳ - ଘୁଷୁରୀ, ବରାହ, ବରାହ ଅବତାର ।
କ୍ଷଣଭଙ୍ଗୁର - ଯାହା ଅଳ୍ପକ୍ଷଣ ସ୍ଥାୟୀ, ଯାହା ଶୀଘ୍ର ନଷ୍ଟହୁଏ ।
କ୍ଷିତି - ପୃଥିବୀ, ମହୀ ।
କ୍ଷୀରବିକାର - କ୍ଷୀରରୁ ତିଆରି ଦହି, ଛେନା, ଲହୁଣି ଆଦି ।
କ୍ଷୀରୋଦ - କ୍ଷୀର ସମୁଦ୍ର ।
ଖଗେଶ୍ୱର -ଗରୁଡ ।
ଖର - ଗଧ ।
ଗଙ୍ଗାଦ୍ୱାର - ହରିଦ୍ୱାର ନାମକ ପ୍ରସିଦ୍ଧ ତୀର୍ଥ ।
ଗଜକୁମ୍ଭାକୃତି - ହାତୀର ମସ୍ତକ ପରି ଗଠନ ।
ଗଞ୍ଜଣା - ଅପମାନ, ଖୁଣ୍ଟା, ଲାଞ୍ଛନା, କଟୂକ୍ତି ।
ଗଞ୍ଜିନୋହିବା - ଅପମାନ ବା ଲାଞ୍ଛନା ନ ସହିବା ।
ଗବ୍ୟଘୃତ - ଗୁଆଘିଅ ।
ଗାତ୍ର - ଶରୀର ।
ଗୃହକାରୀ - ଗୃହସ୍ଥ, ବିଷୟବାସନାରେ ଲିପ୍ତଜନ ।
ଗୋଷ୍ପଦ - ଗାଈଖୁରା ।
ଗୋଷ୍ପଦ ସଳିଳ - ଅଳ୍ପଜଳ, ଗାଈ ଖୁରାରେ ହୋଇଥିବା ଗର୍ତ୍ତରେ ଥିବା ପାଣି ।
ଗ୍ରନ୍ଥ - ପ୍ରାଚୀନ ପୁସ୍ତକ, ଶ୍ଳୋକ - ଶ୍ରୀମଦ୍ ଭାଗବତରେ ଅଠର ହଜାର ଶ୍ଳୋକ ରହିଛି ।
ଗ୍ରହ - ଅନିଷ୍ଟ, ସୂର୍ଯ୍ୟଚନ୍ଦ୍ରାଦି ନବଗ୍ରହ ।
ଘଟଆକାଶ - ନ୍ୟାୟଶାସ୍ତ୍ର ମତରେ ଈଶ୍ୱରଙ୍କ ସମ୍ବନ୍ଧରେ ଗୋଟିଏ ପ୍ରକାର ଅନୁମାନ । ଅସଂଖ୍ୟ ଜଳଘଟ ଥୋଇ ଦେଖିଲେ, ଆକାଶ ପ୍ରତ୍ୟେକ ଘଟରେ ପୃଥକ୍ ପୃଥକ୍‌ଭାବେ ଦେଖାଯାଏ । ତାପରେ ସମସ୍ତ ଘଟକୁ ଉଠାଇ ଦେଇ ଗୋଟିଏ ଜଳ ପୂର୍ଣ୍ଣଘଟକୁ ଚାହିଁଲେ ଆକାଶ ମଧ୍ୟ ଠିକ୍ ସେହିପରି ଦେଖାଯାଏ । ସେହିପରି ପରମାତ୍ମା ଏକ ଏବଂ ଅଦ୍ୱିତୀୟ ତଥା ଅନନ୍ୟ, କିନ୍ତୁ ପ୍ରତ୍ୟେକ ପ୍ରାଣୀର ହୃଦୟ କନ୍ଦରରେ ସେ ବାସ କରୁଥିବାରୁ ତାଙ୍କ ନାମ ଘଟଘଟବାସୀ ।
ଘର୍ମ - ଝାଳ ।
ଚକ୍ର - ବିଷ୍ଣୁଙ୍କର ଆୟୁଧ, ତନ୍ତ୍ରରେ ବର୍ଣ୍ଣିତ ମଣ୍ଡଳ, ଶରୀର ମଧ୍ୟସ୍ଥ ଷଡଚକ୍ର - ମୂଳାଧାରଚକ୍ର, ଲିଙ୍ଗଚକ୍ର, ନାଭିଚକ୍ର, ଅନାହତ ଚକ୍ର, କଣ୍ଠଚକ୍ର, ଆଜ୍ଞାଚକ୍ର । ଏ ଚକ୍ରଗୁଡିକ ଦେହମଧ୍ୟସ୍ଥ ଛଅଟି ସ୍ଥାନରେ ଥାଆନ୍ତି । ଏହି ଚକ୍ରଗୁଡିକ ଯଥାକ୍ରମେ ଆଧାରଚକ୍ର (ଗୁହ୍ୟଦ୍ୱାରରେ ଉପରେ) ସ୍ୱାଧୀଷ୍ଠାନ ଚକ୍ର (ଲିଙ୍ଗମୂଳରେ) ମଣିପୂରକ ଚକ୍ର (ନାଭିମୂଳରେ) ହୃଦୟଚକ୍ର (ହୃଦୟ ମଧ୍ୟରେ) ବିଶୁଦ୍ଧଚକ୍ର (କଣ୍ଠଦେଶରେ) ରାଧାଚକ୍ର ବା ବ୍ରହ୍ମରନ୍ଧ୍ର ଚକ୍ର (ଦୁଇ ଭ୍ରୁରୁ ମଧ୍ୟ ଭାଗରେ) କୁହାଯାଏ । ତାନ୍ତ୍ରିକ ଯୋଗୀମାନେ ଏହି ଚକ୍ରପୂଜା ମାଧ୍ୟମରେ ଯୋଗୀସାଧନା କରନ୍ତି ।
ସକଳଚକ୍ର ଉପରେ ବ୍ରହ୍ମରନ୍ଧ୍ର ତାଳୁରେ ରହିଥିବାର କୁହାଯାଏ ।
ଚତୁଃସନ - ସନକ, ସନନ୍ଦନ, ସନତ୍ କୁମାର, ସନାତନ ନାମକ ଚାରିଜଣ ଆଦିଋଷିଙ୍କ ଚତୁଃସନ କୁହାଯାଏ ।
ଚତୁର୍ବିଧମୁକ୍ତି - ସାରୂପ୍ୟ, ସାଲୋକ୍ୟ, ସାଯୁଜ୍ୟ ଓ ସାମୀପ୍ୟ ମୁକ୍ତି ।
ଚତୁରାକ୍ଷରନାମ - ନାରାୟଣ ।
ଚତ୍ୱର - ଚଉତରା, ଅଗଣା ।
ଚଳାଚଳ - ସ୍ଥାୟୀ ଓ ଅସ୍ଥାୟୀ
ଚାଟୁଆଇ - ତୋଷାମଦ କରି, ମନ ରଞ୍ଜାଇ ।
ଚେଦିନାଥ - ଚେଦିଦେଶରେ ରାଜା-

Dr. Sudhanshu Sekhar Mishra

ଶିଶୁପାଳ ।
ଛତ୍ର - ଛତା, ମନ୍ଦପେଣା
ଜଟା - କେଶଗୁଚ୍ଛ, ବେଦରେ ଏକପ୍ରକାର ପଠନ ଶୈଳୀକୁ ଜଟାପାଠ ବୋଲି କୁହାଯାଏ ।
ଜନନୀଜଠର - ମାତୃଗର୍ଭ, ମାତାର ଉଦର ।
ଜବାଙ୍ଗୁଷ୍ଠ - ବୃଦ୍ଧାଙ୍ଗୁଳିର ଗୋଟିଏ ପବ ।
ଜଳଧି - ସମୁଦ୍ର ।
ଜାତିସ୍ମର - ଯେଉଁବ୍ୟକ୍ତି ପୂର୍ବଜନ୍ମର ଘଟଣା ପରଜନ୍ମରେ ମନେ ପକାଇ ପାରନ୍ତି ।
ଜାରପୁରୁଷ - ଚରିତ୍ରହୀନ ପରପୁରୁଷ ।
ଜାଳ - ସମୂହ, ଜାଲେଣି ।
ଜ୍ୟୋତିଷ୍ମନ୍ତ - ପ୍ରକାଶବାନ୍, ତେଜୀୟାନ୍ ।
ତଡାଗ - ପୋଖରୀ, ଜଳାଶୟ ।
ତଣ୍ଡୁଳ -ଚାଉଳ ।
ତନୁଜ - ପୁତ୍ର, ସନ୍ତାନ
ତନ୍ମନ - ସେହି ପରମେଶ୍ୱରଙ୍କଠାରେମନ ।
ତମ - ଅନ୍ଧକାର, କ୍ରୋଧ ।
ତରଙ୍ଗିଣୀ - ନଦୀ, ସଂସାର ରୂପକ ନଦୀ ।
ତାପତ୍ରୟ - ପ୍ରାଣୀ ତିନିପ୍ରକାର ତାପ ଦୁଃଖ ଭୋଗ କରନ୍ତି ।
ଆଧିଭୌତିକ - ଯାହା ପ୍ରାଣୀମାନଙ୍କଠାରୁ ଜାତ ସର୍ପ ବ୍ୟାଘ୍ର ଓ ଚୌର ଆଦିଙ୍କ ଠାରୁ ଜାତ ଦୁଃଖ ।
ଆଧିଦୈବିକ - ବଜ୍ରପାତ, ବନ୍ୟା ଓ ଗୃହଦାହ ଆଦିରୁ ଜାତ ଦୁଃଖ ।
ଆଧ୍ୟାତ୍ମିକ - ଶରୀରରୁ ଜାତ ରୋଗ ଜନିତ ଦୁଃଖ ।
ତିତିକ୍ଷା - କ୍ଷମା, ସହିଷ୍ଣୁତା
ତିନିଶତ ପଞ୍ଚତିରିଶ - ସଂସ୍କୃତ ଅନୁସାରେ ଭାଗବତର ଅଧ୍ୟାୟସଂଖ୍ୟା ୩୩୫, କିନ୍ତୁ ଜଗନ୍ନାଥ ଦାସଙ୍କ ଅନୁସାରେ ୩୪୧ ଅଧ୍ୟାୟ ।
ତିମିର - ଅନ୍ଧକାର, ଅଜ୍ଞାନ ।
ତୀର୍ଯ୍ୟକ୍ - ପକ୍ଷୀ

ତୁରଙ୍ଗମ - ଘୋଡା, ଚିତ୍ତ, କିନର ।
ତୁରୀୟ - ଚତୁର୍ଥ, ମାୟାତୀତ ଅବସ୍ଥା, ପରଂବ୍ରହ୍ମ
ତୁଳାଧାର - ବଣିକ, ବେପାରୀ ।
ତୁଷ୍ଟି - ତୃପ୍ତି, ସୁଖ ଲାଭ ।
ତ୍ରିଗୁଣ - ସତ୍ତ୍ୱ, ରଜ, ତମ ।
ତ୍ରିଗୁଣତାପ -ଆଧିଭୌତିକ, ଆଧିଦୈବିକ, ଆଧ୍ୟାତ୍ମିକ, ତାପତ୍ରୟ ।
ତ୍ରିଧାମବ୍ରହ୍ମ-
ଅ, ଉ, ମ, ଅର୍ଥାତ୍ ଓଁକାର । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଭୂ, ଭୁବ, ସ୍ୱ, ସତ୍ତ୍ୱ, ରଜ, ତମ ।
ତ୍ରିବର୍ଗ - ଧର୍ମ, ଅର୍ଥ, କାମ ।
ଦନ୍ତବିକଟ - ଦନ୍ତବକ୍ର ନାମକ ମହାଭାରତ ଯୁଗର ବୀର ।
ଦମୀ - ଦମନକାରୀ, ଜିତେନ୍ଦ୍ରିୟ ।
ଦଶବିଧି - ଜନ୍ମ, ଉଦକ, କାଳ, କର୍ମ, ଶାସ୍ତ୍ର, ପ୍ରଜା, ଧ୍ୟାନ, ମନ୍ତ୍ର, ଦେଶ, ସଂସ୍କାର ପ୍ରମୁଖ ଦଶବିଧ ସାତ୍ତ୍ୱିକ କର୍ମ ।
ଦାନ୍ତ -ଜିତେନ୍ଦ୍ରିୟ, ସଂଯମୀ, ପରିଶ୍ରମୀ ।
ଦାରୁ - କାଠ, ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ମୂର୍ତ୍ତିନିର୍ମିତ ଦରକାରୀ କାଠ ।
ଦିଗମ୍ବର - ଲଙ୍ଗଳା, ମହାଦେବ ।
ଦିବାକର - ସୂର୍ଯ୍ୟ ।
ଦୀର୍ଘିକା - ବାମ୍ପୀ, ପକ୍କାକୂଅ, ଚାରିପଟେ ପକ୍କାବନ୍ଧଥିବା ଛୋଟ ପୋଖରୀ ।
ଦୁରିତ - ପାପ ।
ଦୁର୍ବାସନା - ନାନାପ୍ରକାର ଖରାପ ଅଭିଳାଷ, ସାଂସାରିକ ଇଚ୍ଛା ।
ଦେବମତେ ବର୍ଷଗଣନା - ମନୁଷ୍ୟମାନଙ୍କୁ ଏକ ବର୍ଷ ହେଲେ, ଦେବତାମାନଙ୍କୁ ଏକଦିନ । ଏହି କ୍ରମରେ ଗଣନା ।
ଦେବସ୍ଥାନ - ମନ୍ଦିର ।
ଦେହକୁ ... ହୁତାଶନ - କାଠ ମଧ୍ୟରେ ରହିଥିବା ନିଆଁ ଯେପରି ବାହାରେ ଜଳୁଥିବା ନିଆଁଠାରୁ ପୃଥକ୍, ସେହିପରି ଆତ୍ମା ଦେହ

ବା ଶରୀରଠାରୁ ସମ୍ପୂର୍ଣ୍ଣ ପୃଥକ୍ ।
ଦେହାତ୍ମଭାବ - ଶରୀର ଓ ଆତ୍ମାର ସମ୍ବନ୍ଧ ।
ଦ୍ୱିସପ୍ତଲୋକ -ଚତୁର୍ଦ୍ଦଶ ଲୋକ, ଭୂ, ଭୁବ, ସ୍ୱ, ମହ, ଜନ,ତପ, ସତ୍ୟ ଭୂମିଠାରୁ ଉର୍ଦ୍ଧ୍ୱରେ ଏବଂ ଅତଳ, ବିତଳ, ସୁତଳ, ମହାତଳ, ତଳାତଳ, ରସାତଳ, ପାତାଳ, ଭୂମିର ଅଧୋଭାଗରେ ଅବସ୍ଥିତ ।
ଦ୍ୟୁତକ୍ରୀଡା - ଜୁଆଖେଳ, ପଶାଖେଳ ।
ଧର୍ମର ଚତୁର ଚରଣ - ତପ, ଶୌଚ, ଦୟା, ସତ୍ୟ ଅଥବା ସତ୍ୟ, ପବିତ୍ରତା, ଦୟା, କ୍ଷମା ।
ଧର୍ମସେତୁ - ଧର୍ମରୂପକ ସଂଯୋଗକାରୀ ବନ୍ଧ ।
ଧର୍ମାଦିଅଷ୍ଟମୂର୍ତ୍ତି - ଧର୍ମ, ଅଧର୍ମ, ଜ୍ଞାନ, ଅଜ୍ଞାନ, ବୈରାଗ୍ୟ, ଅବୈରାଗ୍ୟ, ଐଶ୍ୱର୍ଯ୍ୟ, ଅନୈଶ୍ୱର୍ଯ୍ୟ ।
ଧାନୁକୀ - ଧନୁର୍ଦ୍ଧର, ଯେ ଧନୁ ଧାରଣ କରେ ।
ଧୃତିମନ୍ତ - ଧୈର୍ଯ୍ୟଶାଳୀ, ଧୀରଭାବ ପୋଷଣକାରୀ ।
ନବଦ୍ୱାର - ଦୁଇଚକ୍ଷୁ, ଦୁଇକର୍ଣ୍ଣ, ଦୁଇନାକପୁଡା, ମୁଖ, ଗୁହ୍ୟଦ୍ୱାର, ମୂତ୍ରଦ୍ୱାର ।
ନବଧାରୂପସୂର୍ଯ୍ୟ -କାଳ, ଦେଶ, ଯଜ୍ଞାଦିକ୍ରିୟା, କର୍ତ୍ତା ଶ୍ରୁବଆଦି କରଣ, ଯଜ୍ଞାଦି-କର୍ମନୁଷ୍ଠାନ, ବେଦମନ୍ତ୍ର, ସ୍ୱର୍ଗାଦିଫଳ ।
ନବଶକ୍ତି -ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟ, ଈଶାନା, ଅନୁଗ୍ରହା ଅଥବା ବୈଷ୍ଣବୀ, ବ୍ରହ୍ମାଣୀ, ରୁଦ୍ରାଣୀ, ମାହେଶ୍ୱରୀ, ନାରସିଂହୀ, ବାରାହୀ, ଇନ୍ଦ୍ରାଣୀ, କୌମାରୀ, ସର୍ବମଙ୍ଗଳା ଆଦି ଦେବୀଙ୍କର ନବ ଶକ୍ତି ।
ନଶ୍ୱର - ନଷ୍ଟଶୀଳ, ଅଳ୍ପକ୍ଷଣସ୍ଥାୟୀ ।
ନାନାବିଧ ଶ୍ରୁତି -

Dr. Sudhanshu Sekhar Mishra

ବେଦ, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦାଦି ଗ୍ରନ୍ଥ ।
ନାରାଚଫଳ - ଧନୁଶରର ଅଗ୍ରଭାଗ ।
ନିଆଡେ - ଅଲଗାଭାଗେ, ନିକଟରେ ।
ନିଗଡ - ଟାଣ, କଠିନ, ଶକ୍ତ, ଦୃଢ ।
ନିଗମ - ବେଦଶାସ୍ତ୍ର ।
ନିତ୍ୟନିଧି - ଅକ୍ଷୟସମ୍ପତ୍ତି ।
ନିଦାନ - ମୂଳକାରଣ ।
ନିଧାନ - ଭଣ୍ଡାର
ନିପୁଣ - ଦକ୍ଷ, କୁଶଳ, କର୍ମଠ ।
ନିବୃତ୍ତି - ସାଂସାରିକ କର୍ମ ପ୍ରତି ଅନିଚ୍ଛା ।
ନିମଗ୍ନ - ବୁଡି ରହିବା, ମଜ୍ଜିବା ।
ନିୟତକର୍ମ - ନିର୍ଦ୍ଧାରିତ କର୍ମ, ଯେଉଁ କାର୍ଯ୍ୟ କରଣୀୟ ବେଦନିର୍ଦ୍ଦିଷ୍ଟକର୍ମ, ସଦାଚାରଯୁକ୍ତ କର୍ମ ।
ନିରବଧି - ସର୍ବଦା, ସବୁବେଳେ ।
ନିରବଚ୍ଛିନ୍ନ - ସର୍ବଦା, ନିରନ୍ତର, ଅତୁଟ, ଧାରାବାହିକ, କ୍ରମାଗତ ।
ନିରାଧାର - ଯାହାକୁ କେହି ଧରି ରଖେ ନାହିଁ, ନିରାଲମ୍ବ, ଆଧାର ଶୂନ୍ୟ ।
ନିରାଲମ୍ବ - ଯାହାର କାହାରି ସହିତ ସମ୍ପର୍କ ନାହିଁ, ପରମେଶ୍ୱର ।
ନିରୁପଦ୍ରବ -ଗଣ୍ଡଗୋଳ ଶୂନ୍ୟ, ଉପଦ୍ରବହୀନ ।
ନିରୋଳ - ଏକାନ୍ତ, ଗୁପ୍ତ, ଏକୁଟିଆ ।
ନିରୋଳି - ଲକ୍ଷ୍ୟକରି, ଏକାଗ୍ରତାର ସହିତ ଚାହିଁ ।
ନିର୍ଗୁଣ - ସତ୍ତ୍ୱ, ରଜ, ତମ ସହିତ ପରମାତ୍ମା ।
ନିର୍ବଇର - ଶତ୍ରୁହୀନ, ଯାହାର ଶତ୍ରୁ ନଥାଏ ।
ନିର୍ବାଣ ପଦ - ମୋକ୍ଷପଦ, ଚିରକାଳ ଲାଗି ଜନ୍ମମୃତ୍ୟୁର ଜଞ୍ଜାଳରୁ ମୁକ୍ତ ।
ନିର୍ବିକଳ୍ପ - ସଂଶୟହୀନ, ଯାହାର ଅନ୍ୟ ରୂପ ନାହିଁ, ନିତ୍ୟ, ଯାହାର ବିକଳ୍ପ ନାହିଁ ।
ନିର୍ଲେପ - ଯାହାର କାହାରି ସହିତ ସମ୍ପର୍କ ନଥାଏ ।

ନିସୂଦନ - ବିଶେଷ ଭାବରେ ବିନାଶ ।
ନିସ୍ତାର - ରକ୍ଷା, ଉଦ୍ଧାର ।
ନିସ୍ପୃହମତି - କିଛି କରିବାକୁ ଯାହାର ଇଚ୍ଛା ନଥାଏ, ଚେଷ୍ଟାହୀନ ବୁଦ୍ଧି, ଯାହାର କିଛି କାମନା ବା ଅଭିଳାଷ ନଥାଏ ।
ନୀରୁଜ - ନୀରୋଗ, ରୋଗବ୍ୟାଧିହୀନ ।
ନୀଳଜଳଦ - କଳା ବଉଦ ।
ନୀଳଜୀମୂତ - ନୀଳମେଘ, କଳାହାଣ୍ଡିଆ ମେଘ ।
ନୀଳଲୋହିତ - ଶିବ ।
ପଖାଳ - ଧୋଇଦିଅ, ପ୍ରକ୍ଷାଳନ ଶବ୍ଦରୁ ଆନୀତ । ପାଣିଦିଆ ଭାତ ।
ପଞ୍ଚଅନଳ - ଚାରିପାଖେ ନିଆଁଜାଳି ସୂର୍ଯ୍ୟଙ୍କୁ ଚାହିଁବା ।
ପଞ୍ଚନାରାଚ - ପଞ୍ଚବାଣ, କନ୍ଦର୍ପ, ପଦ୍ମ, ଅଶୋକ, ଆମ୍ର ବଉଳ, ନବମଲ୍ଲିକା ଓ ନୀଳକଇଁକୁ ପଞ୍ଚବାଣ ରୂପେ ଫୁଲଶରରେ ଯୋଚି ବିରହୀ ଓ ବିରହୀଣୀଙ୍କଠାରେ ପ୍ରୟୋଗ କରିଥାନ୍ତି ।
ପଞ୍ଚମାତ୍ର - ପାଞ୍ଚଗୋଟି ତନ୍ମାତ୍ରା ।
ପଞ୍ଚଯଜ୍ଞ - ବ୍ରହ୍ମଯଜ୍ଞ, ବେଦଅଧ୍ୟୟନ, ପିତୃଯଜ୍ଞ, ପିତୃତର୍ପଣ ଓ ଶ୍ରାଦ୍ଧ, ଦେବଯଜ୍ଞ -ହୋମଯାଗ ।
ଭୂତଯଜ୍ଞ - ପ୍ରାଣୀମାନଙ୍କ ସେବା ।
ନୃଯଜ୍ଞ - ଅତିଥି ସତ୍କାର ।
ଏହି ପଞ୍ଚଯଜ୍ଞ କରିବା ଗହସ୍ଥ ବ୍ୟକ୍ତିର ପ୍ରତିଦିନର କର୍ତ୍ତବ୍ୟ । ପଦ୍ମଯୋନିତନୁଜ । ବ୍ରହ୍ମାଙ୍କ ପୁତ୍ର ନାରଦାଦି ମୁନିଗଣ ।
ପନ୍ନଗ - ସର୍ପ ।
ପବିତ୍ର -କୁଶ, ଶୁଦ୍ଧ, ଆଚାରନିଷ୍ଠା ।
ପରକାୟପ୍ରବେଶ - ନିଜ ଆତ୍ମାକୁ ଅନ୍ୟ ଶରୀରରେ ପ୍ରବେଶ କରାଇବା ।
ପରଜ୍ଞାନ - ଶ୍ରେଷ୍ଠଜ୍ଞାନ, ଉତ୍ତମଜ୍ଞାନ ।
ପରମଆନନ୍ଦୀ - ଯେ ଖୁବ୍ ଆନନ୍ଦରେ ଥାଏ ।
ପରମେଷ୍ଠୀ - ବ୍ରହ୍ମା, ପ୍ରଜାପତି ।

ପରିକଳି - ଆଚରଣ କରି, ପରିକଳ୍ପନା କରି ।
ପରିଗ୍ରହ -ଧାରଣ ।
ପରିଚାର - ସେବକ ।
ପରିଚ୍ଛିନ୍ନ - ବ୍ୟାପ୍ତ, ପୂରିରହିବା ।
ପରିହରି - ଛାଡି, ତ୍ୟାଗକରି ।
ପର୍ଯ୍ୟୁସିତ -ବାସି, ନିବିଡ ଭାବରେ ।
ପଶୁପତି - ଶିବ, ପଶୁମାନଙ୍କ ରକ୍ଷକ ।
ପାଦ୍ୟପାତ୍ର - ପାଦଧୁଆ ଜଳପାତ୍ର ।
ପାୟୁ - ମଳଦ୍ୱାର ।
ପାର୍ବତୀନନ୍ଦନ - ଗଣେଶ, କାର୍ତ୍ତିକେୟ ।
ପିଙ୍ଗଳ - ତମ୍ବାଳିଆ ବର୍ଣ୍ଣ, ଲାଲ ଓ କଳା ମିଶ୍ରିତ ବର୍ଣ୍ଣ ।
ପିଚ୍ଛିଳ - ଖସରା, ଲାଳପୂର୍ଣ୍ଣ ।
ପିତୃଯଜ୍ଞ - ଶ୍ରାଦ୍ଧ, ତର୍ପଣ, ବୃଷୋତ୍ସର୍ଗ ।
ପିଷ୍ଟ - ପୀଠା ।
ପୀଠକ - ପୀଢା, କାଷ୍ଠଆସନ ।
ପୀତବସନ - ହଳଦିଆ ଲୁଗା ।
ପୀତବାସ - ଶ୍ରୀକୃଷ୍ଣ
ପୁଣ୍ଡରୀକ - ପଦ୍ମ ।
ପୁରନ୍ଦର - ଇନ୍ଦ୍ର ।
ପୁଷ୍ପକୋଦଣ୍ଡ - ଫୁଲଧନୁ, କନ୍ଦର୍ପର ଫୁଲକାଣ୍ଡ ।
ପୁଷ୍ଟି - ପରିପୂର୍ଣ୍ଣତା, ଜୀବନୀ ଶକ୍ତିର ସଞ୍ଚାର ।
ପୂରକ କୁମ୍ଭକ - ପ୍ରାଣାୟମର ଅଙ୍ଗ ସ୍ୱରୂପ ପବନ ଗ୍ରହଣ କରିବା ଓ ନିଃଶ୍ୱାସ ରୋଧ କରିବା ।
ପେଶସ୍କାରୀ - ଭ୍ରମର ଓ ବିରୁଡି ଗୋଟିଏ ଅନ୍ୟକୀଟକୁ ନେଇ ନିଜ ଗର୍ତ୍ତ ମଧ୍ୟରେ ରଖି ତାକୁ ନିଜ ସ୍ୱରୂପରେ ପରିବର୍ତ୍ତିତ କରନ୍ତି ।
ପ୍ରକୃତି ପୁରୁଷ ଅଷ୍ଟାବିଂଶ-ପ୍ରକୃତି, ପୁରୁଷ, ମହତତ୍ତ୍ୱ, ଅହଙ୍କାର, ପୃଥିବୀ, ତେଜ, ଜଳ, ପବନ, ଆକାଶ, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ମନ,

Dr. Sudhanshu Sekhar Mishra

ପଞ୍ଚତନ୍ମାତ୍ରା, ସତ୍ତ୍ୱ, ରଜ, ତମ ମିଶି, ଅଷ୍ଟାବିଂଶ ।
ପ୍ରଚରଇ - ବୁଲଇ, ଭ୍ରମଣ କରଇ । ଯିବା ଆସିବା କରଇ ।
ପ୍ରଣବ - ଓଁକାର, ଅ,ଉ,ମ ।
ପ୍ରତିଗ୍ରହ -ମାଗିକରି ନେବା, ଦାନଦେବା ।
ପ୍ରତୀତି - ଜ୍ଞାନ ହେବା ।
ପ୍ରପଞ୍ଚ - ଖଳନୀତି, ଦୁଷ୍ଟନୀତି ।
ପ୍ରପାନ - ପ୍ରପାନକ, ପଣା, ସରବତ୍ ।
ପ୍ରବୃତ୍ତି -ଇଚ୍ଛା, ସାଂସାରିକ ବିଷୟବାସନା ପ୍ରତି ଅଭିଳାଷ ।
ପ୍ରାକାମ୍ୟସିଦ୍ଧି - ଶୁଣିଥିବା ଓ ଦେଖିଥିବା ବସ୍ତୁର ଉପଭୋଗ କରିବା ଶକ୍ତି ।
ପ୍ରାକୃତ - କନିଷ୍ଠ, ଅଧମ, ସାଧାରଣ, ନୀଚ ।
ପ୍ରାକୃତ ସଂସ୍କାର - ବିଶୁଦ୍ଧ ଜ୍ଞାନ, ପୂର୍ବଜନ୍ମର ଜ୍ଞାନ ।
ପ୍ରାକ୍ତନ - ପୂର୍ବଜନ୍ମର କର୍ମ ।
ପ୍ରାପ୍ତିସିଦ୍ଧି - ସମଗ୍ର ପ୍ରାଣୀ ଜଗତକୁ ଦେଖି ପାରୁଥିବା ଶକ୍ତି ।
ପ୍ରାୟୋପବେଶନ - ଜୀବନ ଉତ୍ସର୍ଗ ପାଇଁ ଅନଶନ ବ୍ରତ, ଆମରଣ ଅନଶନ ।
ପ୍ରୋକ୍ଷଣ - ସ୍ପର୍ଶ, ଛିଞ୍ଚିବା, ଛୁଇଁବା, କାହାରି ଉଦ୍ଦେଶ୍ୟରେ ଅର୍ପଣ କରିବା ।
ଫଳଶ୍ରୁତି - ବିଷୟର ଗୁଣ ଶ୍ରବଣ, ବିଷୟର ମହାତ୍ମ୍ୟ ।
ଫଳା - ଶରର ଅଗ୍ରଭାଗ ।
ବଞ୍ଚିତକାୟ - ଦେହ ବିଷୟକ ଜ୍ଞାନମୁକ୍ତ, ଜ୍ଞାନୀ, ଯୋଗୀ ।
ବଡଶୀ - ମାଛ ଧରିବା ବନ୍‌ଶୀ କଣ୍ଟା, ଖଡା ।
ବଣିଜାର - ବଣିକ, ବ୍ୟାପାରୀ ।
ବନିତା - ସ୍ତ୍ରୀ, ପତ୍ନୀ, ନାରୀ ।
ବୟସତୃତୀୟ - ତୃତୀୟ ବୟସ ଅର୍ଥାତ୍ ଷାଠିଏ ବର୍ଷ ବୟସ ।
ବର୍ଣ୍ଣ - ଜାତି, ରଙ୍ଗ, ପ୍ରକାର ।

ବଶିତା - ବିଷୟ ଭୋଗ ପ୍ରତି ଅନାଶକ୍ତି ।
ବାଛୁରୀ ଖୋଜେ ଜଳ - ଅତି ଅଳ୍ପ ପାଣି, ବାଛୁରୀ ଖୁରାଦ୍ୱାରା ହୋଇଥିବା ଖାତରେ ଯେତିକି ପାଣି ଥାଏ, ସେତିକି ପାଣି ।
ବାତ - ପବନ ।
ବାଦରାଣ - ବାଦରାୟଣ ଶବ୍ଦର ସଙ୍କୋଚନ ରୂପ, ବ୍ୟାସଦେବ ।
ବାଦରାୟଣ - ବ୍ୟାସଦେବ, ସେ ବଦରୀ ବନରେ ବାସ କରୁଥିବାରୁ ତାଙ୍କର ନାମକରଣ ଏପରି ହୋଇଛି ।
ବାମ - ବିରୋଧ, ଅନିଷ୍ଟକାରୀ ।
ବାସବ - ଇନ୍ଦ୍ର ।
ବ୍ରାସ୍କଳି -ବାସ୍କଳ ମୁନିଙ୍କ ପୁତ୍ର ।
ବାହ୍ୟପବିତ୍ର - ପୂଜାସ୍ଥାନ ଓ ପୂଜକର ପରିସର ।
ବିକଚ - ପ୍ରସ୍ଫୁଟିତ, ଫୁଟିଥିବା ।
ବିକୁଣ୍ଠ-ନାନା ପ୍ରକାର ମାୟାଯୁକ୍ତ । ବିଶେଷ ଭାବରେ ସଂକୋଚ ।
ବିତସ୍ତି -ଏକଚାଖଣ୍ଡ, ବାରଆଙ୍ଗୁଳି
ବିଦ୍ୟମାନ - ସ୍ଥିତ, ବର୍ତ୍ତମାନ, ରହିବା ।
ବିଦ୍ୟା - ନିର୍ମଳ-ବିଶୁଦ୍ଧ-ଜ୍ଞାନ, ପାଠ
ବିଭୋଗ - ନାନା ପ୍ରକାର ଭୋଗ ।
ବିମୁକ୍ତବନ୍ଧ - ବିଷୟା ବା ସାଂସାରିକ ବନ୍ଧନରୁ ମୁକୁଳିବା ।
ବିରଞ୍ଚି -ବ୍ରହ୍ମା, ସୃଷ୍ଟିକର୍ତ୍ତା, ପିତାମହ ।
ବିଲଗ - ଅଲଗା, ପୃଥକ୍ ।
ବିଲଂଘନ - ନିୟମ ନ ମାନିବା, ଡେଇଁଯିବା, ଲଂଘିଯିବା, ପାରହେବା ।
ବିଷାଦ - ଦୁଃଖ ।
ବିଷ୍ଣୁରାତ - ପରୀକ୍ଷିତଙ୍କ ପ୍ରଥମ ନାମ, ଜନ୍ମ ସମୟରେ ମାତୃଗର୍ଭରେ ବିଷ୍ଣୁ ତାହାଙ୍କୁ ରକ୍ଷା କରିଥିବାରୁ, ତାଙ୍କର ପ୍ରଥମ ନାମ ଥିଲା ବିଷ୍ଣୁରାତ ।
ବୁଧ - ପଣ୍ଡିତ, ଚତୁର୍ଥଗ୍ରହ, ଚତୁର୍ଥ ବାର ।
ବୃଜିନ - ପାପ

ବୃତ୍ତି - ଜୀବିକା ।
ବୃଷପର୍ବା-ରାକ୍ଷସରାଜ, ପ୍ରସିଦ୍ଧ ପୁରାଣନାୟିକା ଶର୍ମିଷ୍ଠାଙ୍କ ପିତା । ଶୁକ୍ରାଚାର୍ଯ୍ୟଙ୍କ ପ୍ରସିଦ୍ଧ ଶିଷ୍ୟ । ଯେଉଁ ବୃଷପର୍ବା ରାକ୍ଷସ କୁଳର ଉନ୍ନତି ପାଇଁ ନିଜ କନ୍ୟା ଶର୍ମିଷ୍ଠାଙ୍କୁ ଗୁରୁପୁତ୍ରୀ ଦେବଯାନୀଙ୍କ ଦାସୀ ରୂପେ ନିଯୁକ୍ତ କରିଥିଲେ ।
ବେଣୁ - ବାଉଁଶ ।
ବେନିଗୁଣ - ରଜ ଓ ତମୋଗୁଣ ।
ବେନିନଦୀ - ବିଷ୍ଣୁକଥା ରୂପକ ନଦୀ ଓ ଗଙ୍ଗାନଦୀ ।
ବେନିପରିହରେ - ଇହ ଓ ପରଲୋକ ସୁଖ ନାଶକରେ ।
ବେନିମୂର୍ତ୍ତି - ସ୍ଥାୟୀ ଓ ଅସ୍ଥାୟୀ ପ୍ରତିମା ।
ବୈଶ୍ୱାନର - ଅଗ୍ନି
ବୋଡି - ପାଞ୍ଚଗଣ୍ଡା, ସେରର ଏକ ଚତୁର୍ଥାଂଶ ।
ବ୍ୟପନ - ଛେଦନ, କ୍ଷୌର, କାଟିବା, ଅପସାରଣ, ପରିହାର ।
ବ୍ୟସନ - ସ୍ତ୍ରୀସଙ୍ଗ, ଜୁଆଖେଳ, ମଦ୍ୟପାନ, ଆଦି ବିଳାସ ।
ବ୍ୟାହୃତି - ଗାୟତ୍ରୀ ମନ୍ତ୍ର ।
ବ୍ରଜ - ସମୂହ, ଗୋଷ୍ଠ ବା ଗୋଠ ।
ବ୍ରହ୍ମଯଜ୍ଞ - ଭଗବତ୍ ଶାସ୍ତ୍ର ଅଧ୍ୟୟନ ।
ବ୍ରହ୍ମରନ୍ଧ୍ର - ତାଳୁଦ୍ୱାର ।
ଭଗ୍ନୀଜ - ଭଣଜା ।
ଭଙ୍ଗୁର - ନଷ୍ଟଶୀଳ, ଯାହା ନଷ୍ଟ ହୋଇଯାଏ ।
ଭବ - ଶିବ, ସଂସାର ।
ଭବବନ୍ଧନ - ସାଂସାରିକ ମାୟା, ମାୟା ବନ୍ଧନ ।
ଭବାବ୍ଧି - ସଂସାର ରୂପକ ସମୁଦ୍ର ।
ଭର୍ତ୍ତା - ସ୍ୱାମୀ, ଭରଣପୋଷଣ ।
ଭାଗବତ - ଭଗବତ୍ ବିଶ୍ୱାସୀ, ବୈଷ୍ଣବ ।
ଭାବିତ - ଭାବନାଯୁକ୍ତ, ଚିନ୍ତାଯୁକ୍ତ,

Dr. Sudhanshu Sekhar Mishra

ଦୁଃଖିତ ।
ଭାଉତି -ତୂଣୀର, କାଣ୍ଡମୁଣ୍ଡା, ଶର ରଖିବା ସ୍ଥାନ ।
ଭୂତତତ୍ତ୍ୱ -ପ୍ରାଣୀମାନଙ୍କ ସମ୍ବନ୍ଧୀୟ ବିଚାର ।
ଭୂତହିଂସା - ପ୍ରାଣୀହିଂସା, ଜୀବବଧ ।
ଭୃଙ୍ଗ - ଭ୍ରମର ।
ଭେଦ - ପୃଥକ, ସମ୍ପର୍କ ଭଙ୍ଗ ।
ଭ୍ରମିଲେ ନେତ୍ର ଭୂମଣ୍ଡଳ- ମଣିଷ ଚକାଭଉଁରି ଖେଳିଲେ ପୃଥିବୀ ଘୁରିବା ପରି ଦେଖାଯାଏ କିନ୍ତୁ ପ୍ରକୃତ ଅବସ୍ଥା ତାହା ନୁହେଁ ।
ମକର ଆଦି ଯେ ମିଥୁନ -ମକର, କୁମ୍ଭ, ମୀନ, ମେଷ, ବୃଷ ଓ ମିଥୁନ ରାଶିରେ ସୂର୍ଯ୍ୟ ରହିଲେ, ତାହା ଉତ୍ତରାୟଣ ବୋଲି କଥିତ ହୁଏ ।
ମଞ୍ଜୀର - ଗୋଡବଳା, ଝୁଣ୍ଟିଆ, ନୂପୁର ।
ମଣାଇ - ବୁଝାଇ ।
ମଣିପୁର ଚକ୍ର - ନାଭିର ନିମ୍ନସ୍ଥ ଚକ୍ର,ଏହା ଦେହର ଷଟ୍‌ଚକ୍ର ମଧ୍ୟରୁ ଅନ୍ୟତମ ।
ମତ୍ସର - ଅନ୍ୟକୁ ଘୃଣା କରିବା ।
ମଦ - ଗର୍ବ, ମଦ୍ୟ, ଅଭିମାନ ।
ମଧୁହା - ମଧୁ, ଅପହରଣକାରୀ ଶିକାରୀ, ମଧୁନାମକ ଦୈତ୍ୟର ବିନାଶକାରୀ, ମଧୁସୂଦନ, ବିଷ୍ଣୁ ।
ମନବିକ୍ଷେପ - ମନର ଚଞ୍ଚଳତା ।
ମନ୍ୱନ୍ତ -ମନ୍ୱନ୍ତର ଶବ୍ଦର କାବ୍ୟିକ ରୂପ ।
ମନ୍ତ୍ରବିଧି - ନୀତିବିଷୟ, ନୀତିବଳ ।
ମହଦାଦି - ମହତ୍ ଆଦି ଅର୍ଥାତ୍ ପ୍ରମୋହ, ଅହଙ୍କାର, ବିକାର, ମହତତ୍ତ୍ୱ ପ୍ରକୃତିରୁ ଉତ୍ପନ୍ନ ହୋଇଥାଏ ।
ମହାଜନ -ଶ୍ରେଷ୍ଠଜନ, ଜ୍ଞାନୀ, ବଡ ବ୍ୟାପାରୀ, ଟଙ୍କା ସୁଧ ଦେବା ବ୍ୟକ୍ତି ।
ମହାଶୟ -ମହାମନା, ଉଚ୍ଚମନା, ଉଦାରମନା ।
ମହିମାସିଦ୍ଧି - ଅତିବିଶାଳ ହେବାର ଶକ୍ତି ।
ମହୀଧର - ପର୍ବତ ।

ମାତ୍ସର୍ଯ୍ୟ - ପରଶ୍ରୀକାତରତା ।
ମାନଦ - ଯେ ଅନ୍ୟକୁ ସମ୍ମାନ ଦିଏ, ଯେ ଅନ୍ୟକୁ ସତ୍କାର କରେ ।
ମାୟାଗ୍ରାହି - ମାୟାଗ୍ରସ୍ତ ହୋଇ, ମାୟାରେ ପଡି ।
ମାୟାଛନ୍ଦ - ମାୟାରୂପକ ବନ୍ଧନ ।
ମାର - କନ୍ଦର୍ପ ।
ମାରତଣ୍ଡ -ମାର୍ତ୍ତଣ୍ଡ, ସୂର୍ଯ୍ୟ ।
ମାର୍ଜନୀ - ଝାଡୁଣି ।
ମୂର୍ଦ୍ଧନି - କପାଳ, ଶିର ।
ମୃଗ - ପଶୁ, ହରିଣ ।
ମୃଣାଳସୂତ୍ର - କଇଁ ନାଡରେ ଥିବା ସୂତା ।
ମେଢ୍ର - ଲିଙ୍ଗ ।
ମୋଦ - ଆନନ୍ଦ ।
ଯଜ୍ଞପତି - ବିଷ୍ଣୁ ।
ଯଜ୍ଞକାମିନୀ -ଯଜ୍ଞ କରୁଥିବା ବିପ୍ରଙ୍କ ପତ୍ନୀ ।
ଯଦୁବୀର - ବସୁଦେବ ସକଳ ଯାଦବ ।
ଯମ - ସଂଯମ, କାଳ, ସୂର୍ଯ୍ୟପୁତ୍ର ।
ଯାଚଞ୍ଚା - ମାଗିବା ।
ଯାଜନ - ପୁରୋହିତପଣିଆ, ହୋମ ଦେବପୂଜା ଆଦି କରିବା ।
ଯେମନ୍ତେ ଗଙ୍ଗାଜଳେ ତପତି-ବଣରେ ନିଆଁ ଲାଗିଥିବା ସମୟରେ ହାତୀ ଗଙ୍ଗାଜଳରେ ପଶିଥିବାରୁ ତାକୁ ବନାଗ୍ନି ବାଧେ ନାହିଁ ।
ରଚନା - ସୃଷ୍ଟି
ରଜତ - ରୂପା ।
ରଜନୀମୁଖ - ସନ୍ଧ୍ୟା
ରତ୍ନମେଖଳା-ରତ୍ନରେ ତିଆରି ଅଣ୍ଟାସୂତା ।
ରବିସୋମାନଳ - ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ।
ରଶ୍ମି - କିରଣ ।
ରାଜଲକ୍ଷ୍ମୀ - ରାଜସମ୍ପତ୍ତି, ଦେବରାଜ୍ ଅର୍ଥାତ୍, ଇନ୍ଦ୍ରସମ୍ପଦ, ବିଷ୍ଣୁ ଓ ଲକ୍ଷ୍ମୀ ।
ରାଜସଦନ - ରଜୋଗୁଣ ଅର୍ଥାତ୍ ଦମ୍ଭ ଅହଙ୍କାର, ଗର୍ବ, ଅଭିମାନ ଆଦି ଦୁର୍ଗୁଣ ସମ୍ପନ୍ନ ବ୍ୟକ୍ତି ।

ରାଜୀବଲୋଚନ - ପଦ୍ମନେତ୍ର, ଶ୍ରୀରାମ ।
ଲଘିମାସିଦ୍ଧି -ଅତି ଲଘୁ ହୋଇ ସୂର୍ଯ୍ୟମଣ୍ଡଳ ପର୍ଯ୍ୟନ୍ତ ଯାଇ ପାରୁଥିବା ଶକ୍ତି ।
ଲକ୍ଷିତ - ଦେଖାଯାଇଥିବା, ପରିଦୃଷ୍ଟ ।
ଲାଞ୍ଛନ - ଚିହ୍ନ, କୃଷ୍ଣନାମାଙ୍କିତ ନାମାବଳୀ ନାମକ ଉତ୍ତରୀୟ ।
ଲିଙ୍ଗଶରୀର - ପଞ୍ଚଭୂତ, ଦଶଇନ୍ଦ୍ରିୟ ତଥା ମନଯୁକ୍ତ ଶରୀର ।
ଲୁବ୍ଧକ - ଲୋଭୀ, ବ୍ୟାଧ, ଚଢେଇଆ ।
ଲୋଳ - ଚଞ୍ଚଳ, ଢିଲା, ଶିଥିଳ ।
ଶଉଚ - ପବିତ୍ରତା ।
ଶକଟା - ଏକ ପ୍ରକାର ଜୁଆ ଖେଳ ।
ଶଚୀପତି - ଇନ୍ଦ୍ର ।
ଶୟଳ - ପୃଥିବୀ ।
ଶରଣସୋଦର - ଶରଣାଗତ ଲୋକର ଭାଇ ପରି ରକ୍ଷାକାରୀ ।
ଶଶାଙ୍କ - ଚନ୍ଦ୍ରମା, କର୍ପୂର ।
ଶିଖାମନ୍ତ୍ର - ଓଁକାର ।
ଶିଶ୍ନୋଦର - ଲିଙ୍ଗ ଓ ପେଟ ମୈଥୁନ, ଅଭିଳାଷୀ, ଆହାରଲୋଭୀ ।
ଶୀଳ - ସତ୍ ସ୍ୱଭାବ
ଶୁକ୍ତି - ଶାମୁକା
ଶୁଷ୍କଗୋମୟ - ଶୁଖିଲା ଗୋବର ।
ଶେଷ - ଅନନ୍ତ, ସହସ୍ର, ଫଣାଧାରୀ ନାଗ ।
ଶ୍ରୀମଦ୍ -ଧନଗର୍ବ, ରୂପଗର୍ବ ଓ ଜନଗର୍ବ ।
ଶ୍ରୁତିପୀରତି - କାନକୁ ଭଲ ଲାଗୁଥିବା ।
ଷଡଅଇରୀ - କାମ, କ୍ରୋଧ, ଲୋଭ, ମୋହ, ଗର୍ବ, ପରଶ୍ରୀକାତର ଆଦି ଛଅଗୋଟି ଶତ୍ରୁ ।
ଷଡଏଶ୍ୱର୍ଯ୍ୟ - ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଲକ୍ଷ୍ମୀ, ଜ୍ଞାନ, ବୈରାଗ୍ୟ ।
ସକୃତ୍ - ଏକବାର ।
ସପତଗଣ - ସାତଗୋଟି ଅଶ୍ୱରୂପୀ ଗଣ, ସୂର୍ଯ୍ୟଙ୍କ ରଥରେ ସାତଗୋଟି ଅଶ୍ୱ ଥାଆନ୍ତି ।
ସନ୍ଦୀପନ -ପ୍ରଜ୍ୱଳିତ କରାଇବା, ଜଳାଇବା

Dr. Sudhanshu Sekhar Mishra

ବୃଦ୍ଧି କରିବା ।
ସନ୍ନିଧାନ - ନିକଟ
ସମାନଭୂତି-ବିଷ୍ଣୁଙ୍କ ସହିତ ସକଳ ଐଶ୍ୱର୍ଯ୍ୟ ଭୋଗ କରି, ବୈକୁଣ୍ଠରେ ବସିବା ଭଳି ସମ୍ପଦ ।
ସମିଧ - ହୋମନିମିତ୍ତ ସଂଗୃହୀତ କାଠ ।
ସମ୍ଭ୍ରମ - ସମ୍ମାନ ଦେଖାଇବାର ବ୍ୟଗ୍ରତା ।
ସାରଣୀ - ଖେଳନା ବିଶେଷ, କନ୍ଦୁକ ପେଣ୍ଡୁ ।
ସାରୂପ୍ୟ ମୁକ୍ତି - ବିଷ୍ଣୁଙ୍କ ସ୍ୱରୂପ ଧାରଣ କରି ବୈକୁଣ୍ଠରେ ରହିବା ।
ସାଲୋକ୍ୟ ମୁକ୍ତି -ବିଷ୍ଣୁଙ୍କ ସହିତ ବୈକୁଣ୍ଠ ଲୋକରେ ରହି ମୋକ୍ଷ ଲାଭ କରିବା ।

ସାଂଖ୍ୟଯୋଗ-କର୍ମଯୋଗ, କପିଳମହର୍ଷିଙ୍କ ପ୍ରବର୍ତ୍ତିତ ଯୋଗଶାସ୍ତ୍ର ତୃତୀୟ ସ୍କନ୍ଦରେ ବର୍ଣ୍ଣିତ ଈଶ୍ୱର ତତ୍ତ୍ୱ ।
ସୁକଳ୍ୟ - ଅନ୍ୟକୁ ବୁଝାଇବାରେ ଦକ୍ଷ ।
ସୁନାସୀର - ଇନ୍ଦ୍ର ।
ସୁପର୍ଣ୍ଣ - ଗରୁଡ ।
ସୁମତି - ଭଲବୁଦ୍ଧି ।
ସୁରନଦୀ - ଦେବନଦୀ ଗଙ୍ଗା ।
ସୁରଭୀପୁର - ଗୋସ୍ଥାନ, ଗୋଶାଳା
ସୁରେନ୍ଦ୍ର - ଦେବରାଜ ଇନ୍ଦ୍ର ।
ସୁଷୁପ୍ତି - ନିଦ୍ରା, ଶୟନ ।
ସୂପ - ଡାଲିଜାତୀୟ ଝୋଳ, ପାୟସ, ଅନ୍ୟାନ୍ୟ ଝୋଳ ।

ସ୍ୱନ - ଶବ୍ଦ, ଧ୍ୱନି ।
ସ୍ତୋକ - ଅଳ୍ପ ।
ସ୍ଥୈର୍ଯ୍ୟ - ଧୈର୍ଯ୍ୟ, ସ୍ଥିରତା ।
ସ୍ଥଣ୍ଡିଳ-ମନ୍ତ୍ରଦ୍ୱାରା ସଂସ୍କାର କରାଯାଇଥିବା ବେଦୀ ସଦୃଶ ଭୂମି ।
ହବି -ଘିଅ ।
ହଳପାଣି - ବଳରାମ ।
ହଂସଦ୍ୱୟ - ଜୀବ ଓ ପରମ, ଜୀବାତ୍ମା ଓ ପରମାତ୍ମା ।
ହିମାଳ - ହିମାଳୟ ଶବ୍ଦର ସଂକ୍ଷିପ୍ତ ରୂପ ।
ହୁତାଶନ - ଅଗ୍ନି, ନିଆଁ ।
ହେଠମାଥ -ତଳକୁ ମୁହଁ କରିବା ।
ହେତୁ - କାରଣ ।
ହେଳେ -ସହଜରେ ।

---

OGP-MP-CTP-1(T&C)10,000Bks.-11-12-2013

Dr. Sudhanshu Sekhar Mishra

ଉତ୍କଳର ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ ଆବିର୍ଭୂତ ହୋଇଥିବା ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସ ଅନ୍ୟତମ। ଜଗନ୍ନାଥ ଦାସଙ୍କର ଅନେକ ରଚନା ଥିଲେ ମଧ୍ୟ କୌଣସି ଗ୍ରନ୍ଥରେ ସେ ନିଜର ଜନ୍ମ, ପରିବାର ପ୍ରଭୃତି ବିଷୟରେ ସନ୍ତୋଷଜନକ ପରିଚୟ ପ୍ରଦାନ କରିନଥିବାରୁ ଶ୍ରୀ ଚୈତନ୍ୟଙ୍କ ଉତ୍କଳ ଆଗମନ ସମୟ ୧୫୧୦ ସାଲକୁ ଆଧାର କରି ଜଗନ୍ନାଥ ଦାସଙ୍କ ଜନ୍ମ ସମୟ ୧୪୯୨ ବା ୧୪୯୩ ସାଲ ବୋଲି ଅନୁମାନ କରାଯାଏ । ଜଗନ୍ନାଥ ଦାସଙ୍କ ଶିଷ୍ୟ ଦିବାକର ଦାସଙ୍କ ରଚନା ଅନୁଯାୟୀ ଜଗନ୍ନାଥ ଦାସ ଭାଦ୍ରବ ମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଭଗବାନ ଦାସ ଓ ମାତାଙ୍କ ନାମ ପଦ୍ମାବତୀ। ପୁରୀ ନିକଟସ୍ଥ କପିଳେଶ୍ୱର ଶାସନ ଥିଲା ତାଙ୍କର ଜନ୍ମସ୍ଥାନ ।



ଅତିବଡ଼ୀ ଜଗନ୍ନାଥ ଦାସ

ଶୈଶବରୁ ତାଙ୍କର ଧର୍ମ ପ୍ରତି ଆସକ୍ତି ଥିଲା ଏବଂ ସେ ଧର୍ମ ଚର୍ଚ୍ଚାରେ ଜୀବନ ଅତିବାହିତ କରିଥିଲେ। ୧୮ ବର୍ଷ ବୟସରୁ ସେ ସନ୍ନ୍ୟାସ ଗ୍ରହଣ କରିଥିଲେ। ତାଙ୍କର ପ୍ରଗାଢ଼ ଭକ୍ତି ଓ ଈଶ୍ୱର ନିଷ୍ଠା ବଳରେ ସେ ଶ୍ରୀ ଚୈତନ୍ୟଙ୍କ ସହିତ ପରିଚିତ ହୋଇଥିଲେ। ଶ୍ରୀ ଚୈତନ୍ୟ ଜଗନ୍ନାଥ ଦାସଙ୍କ ପ୍ରବଳ ଐଶୀଶକ୍ତି ଓ ଈଶ୍ୱର ନିଷ୍ଠାର ପରିଚୟ ପାଇ ତାଙ୍କୁ 'ଅତିବଡ଼' ଉପାଧିରେ ଭୂଷିତ କରିଥିଲେ। ଏହି ଉପାଧି ପାଇବା ପରେ ସେ ଅତିବଡ଼ ଜଗନ୍ନାଥ ଦାସ ନାମରେ ପରିଚିତ ହେଲେ । ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ପ୍ରଦାୟକୁ ଏହି ହେତୁ ଅତିବଡ଼ ସମ୍ପ୍ରଦାୟ ନାମରେ ଅଭିହିତ କରାଯାଏ। ଜଗନ୍ନାଥ ଦାସଙ୍କୁ ୨୪ ବର୍ଷ ହେବା ପର୍ଯ୍ୟନ୍ତ ସେ ଶ୍ରୀ ଚୈତନ୍ୟଙ୍କର ନିତ୍ୟସଖା ଭାବରେ ତାଙ୍କ ସହିତ ରହିଥିଲେ। ତାଙ୍କୁ ୬୦ ବର୍ଷ ବୟସ ହେବା ପର୍ଯ୍ୟନ୍ତ ବା ଦେହତ୍ୟାଗ ପର୍ଯ୍ୟନ୍ତ ସେ ଈଶ୍ୱର ଆରାଧନା ଓ ଧର୍ମଚର୍ଚ୍ଚାରେ ସମୟ ଅତିବାହିତ କରିଥିଲେ।

ଜଗନ୍ନାଥ ଦାସଙ୍କ ପ୍ରମୁଖ ରଚନାବଳୀ ମଧ୍ୟରେ ରହିଛି - ଭାଗବତ, ଅର୍ଥକୋଇଲି, ତୂଳାଭିଣା, ମୃଗୁଣୀସ୍ତୁତି, ରାସକ୍ରୀଡ଼ା, ଦାରୁବ୍ରହ୍ମ ଗୀତା, ଗୁପ୍ତ ଭାଗବତ, ମନଶିକ୍ଷା, ଗଜସ୍ତୁତି, ପାଷାଣ୍ଡ ଦଳନ, ଶ୍ରୀସତ୍‌ସଙ୍ଗ ଏବଂ ଆହୁରି ଅନେକ ।

ଏହାବ୍ୟତୀତ ଜଗନ୍ନାଥ ଦାସଙ୍କର କେତେକ ସଂସ୍କୃତ ରଚନା ମଧ୍ୟ ରହିଛି । ସେଗୁଡ଼ିକ ହେଉଛି - କୃଷ୍ଣଭକ୍ତି କଳ୍ପଲତା, କୃଷ୍ଣଭକ୍ତି କଳ୍ପଲତା ଫଳ, ନିତ୍ୟଗୁପ୍ତ ମାଳା, ଉପାସନା ଶତକମ୍, ନିତ୍ୟାଚାର, ଦୀକ୍ଷା ସଂହିତା ସୋପାନ ବିଧିଃ, ନୀଳାଦ୍ରି ଶତକମ୍, ଜଗନ୍ନାଥ ଚରିତାମୃତ ଗୋଧସରଣୀ ଇତ୍ୟାଦି ।

ଜଗନ୍ନାଥ ଦାସଙ୍କ ଏହିସବୁ ସୃଷ୍ଟି ମଧ୍ୟରୁ 'ଶ୍ରୀମଦ୍‌ଭାଗବତ'କୁ ତାଙ୍କର ଅମର ସୃଷ୍ଟି ଓ ଅକ୍ଷୟ କୀର୍ତ୍ତିଭାବେ ବିବେଚନା କରାଯାଏ । ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଜାତି ପାଇଁ ଏହା ଏକ ଯୁଗାନ୍ତକାରୀ ସୃଷ୍ଟି।







ଓଡ଼ିଶା ସାହିତ୍ୟ ଏକାଡେମୀ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, ମଧୁପାଟଣା, କଟକ-୧୦ରେ ମୁଦ୍ରିତ